ସନ୍ଥକବି ବଳରାମ ଦାସଙ୍କ ବିରଚିତ

# ଜଗମୋହନ ରାମାୟଣ

ବା

# ଦାଣ୍ଡିରାମାୟଣ

(ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ)



(ନୂତନ ମୁଦ୍ରଣ)

## (ଲଙ୍କାକାଣ୍ଡ)

ସଂଗ୍ରାହକ – ୰ ତାରେଶ୍ୱର ଚୌଧୁରୀ
ଶ୍ରୀ ବନମାଳୀ ବିଶ୍ୱାଳ



ପ୍ରକାଶକ/ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର
ପ୍ରତିଷ୍ଠାତା : ବିଦ୍ୟାଧର ସାହୁ
ପରିଚାଳକ : ମହିମା ପ୍ରସାଦ ସାହୁ
ଅଲିଶାବଜାର, କଟକ-୨
ଫୋନ୍ : ୨୫୦୮୨୯୬

### ମହାପୁରୁଷ ବଳରାମ ଦାସଙ୍କ କୃତ

## ଦକ୍ଷିଣୀ ବା ଦାଣ୍ଡି ରାମାୟଣ

# ଲଙ୍କାକାଣ୍ଡ



ବନ୍ଦଇ ଯେ ଜଗନ୍ନାଥ କମଳା ଦେବୀପତି
ସର୍ବ ଦେବୀ ନିସ୍ତାରଣ ପ୍ରଭୁ ପରମ ମୂର୍ତ୍ତି ।
ଜଗତ ଜନର ହୃଦେ ସର୍ବଦା ଯାର ବାସ
ଭକତ ବତ୍ସଳ ପ୍ରଭୁ ପରମ ପୁରୁଷ ।
ଅପାର ମହିମା ପ୍ରଭୁ ଶରଣଜନ ସାହା
ଗରୁଡ଼ ଆସନ ପ୍ରଭୁ ଶଙ୍ଖଚକ୍ର ବାହା ।
ମତ୍ସ୍ୟ କୂର୍ମ ବରାହ ଯେ କେଶରୀ ବାମନ
ପର୍ଶୁରାମ ଶ୍ରୀରାମ ଯେ ଦେବକୀ ନନ୍ଦନ ।
ବଉଦ୍ଧ କଲକି ତୁମ୍ଭେ ଦଶରୂପ ଧରି
ଅନେକ ରୂପ ଧରିଣ ସେ ଅସୁର ମାରି ।
ଋଷି ବ୍ରାହ୍ମଣ ରୂପେ ଦେବଙ୍କର ଛଳେ
ବାରେ ବାରେ ଅବତାର ହୁଅ ମହୀତଳେ ।
ନୀଳଗିରିରେ ବିଜେ ଅପୂର୍ବ ରୂପସାର
ଡାହାଣେ ବଳଦେବ ମଧ୍ୟରେ ସୋହଦ୍ରାର ।
ବାମେ ସୁଦର୍ଶନ ଈଶ୍ୱର ରୂପଧରି
ସମ୍ମୁଖରେ ଖଗପତି ବିଜେ କରଯୋଡ଼ି ।
ଚାରିଗୋଟି ଦ୍ୱାର ଅଟେ ଚାରି ଯେ ଦିଗକୁ
ପୂର୍ବଦ୍ୱାରେ ଦୁଇସିଂହ ଅଗ୍ନିଦକ୍ଷିଣକୁ ।
ପଶ୍ଚିମ ଦ୍ୱାରେ ଶାର୍ଦ୍ଦୁଳ ଦୁଇଗୋଟି ଚୋର
ଉତ୍ତର ଦ୍ୱାରେ ହସ୍ତୀ ଯେ ଶ୍ୱେତକାନ୍ତି ତାର
ମେଘନାଦ ପାଚେରିର ଚାରିପାଶେ ବାଡ଼
ମଧ୍ୟରେ ବଡ଼ ଦେଉଳ ଆକାଶେ ଲାଗେଶିର
ପଛରେ ବିମଳା କମଳା ବସି ସ୍ଥଳେ
ଅନ୍ନ ବ୍ୟଞ୍ଜନ ଭୋଗ ବିଳସେ ଦେଉଳରେ ।
ପୂର୍ବଦ୍ୱାରେ ଧରିଣ ଆଦିତ୍ୟ ବେଢ ପୁଣ
ପଶ୍ଚିମ ଦ୍ୱାରେ ଧରିଣ ଆଦି ଦେବଜାଣ ।
ଉତ୍ତର ଦ୍ୱାରେ ନକ୍ଷତ୍ର ହୁଅନ୍ତି ଉଦୟେ
ଦକ୍ଷିଣ ଦ୍ୱାରେ ବସନ୍ତ ଜଳ ଘୋଟି ରହେ ।
ନୀଳକେଶର ଠାରୁ ବିଲ୍ୱକେଶ୍ୱର ଯାଏ
ଶଙ୍ଖ ନାଭି ମଣ୍ଡଳ ପାଞ୍ଚକୋଶ ହୁଏ ।
ପୂର୍ବେ ଇନ୍ଦ୍ରଦ୍ୟୁମ୍ନ ବୋଲି ଏକ ମନୁ
ସେ ଆଣିଲେ ପ୍ରଭୁଙ୍କୁ ବୈକୁଣ୍ଠ ଭୁବନୁ ।
ଦିବ୍ୟ ଅପୂର୍ବ ପୁରି ବଧାଇ ନିର୍ମିଲେ
ଜଗନ୍ନାଥଙ୍କୁ ରତ୍ନ ସିଂହାସନରେ ରଖିଲେ ।
ଭାବରେ ଦାରୁ ବ୍ରହ୍ମ ବିଜୟ ତୁଷ୍ଟି କରେ
ଜମ୍ବୁ ଦ୍ୱୀପ ମଣ୍ଡଳରେ ବୈକୁଣ୍ଠପୁର ସାରେ ।
ଚତୁର୍ଦ୍ଧା ମୂରତି ସେ ହୋଇ ନାରାୟଣ
ନୀଳଗିରି ପର୍ବତରେ ବିଜେ କଲେ ପୁଣ ।
ବିବିଧ ବନ୍ଧରେ କରନ୍ତି କ୍ରୀଡାରସ
ସେ ଦେବଙ୍କ ଦର୍ଶନରେ ନବାଧେ କଳିଦୋଷ
ଚନ୍ଦନ କର୍ପୂରଗନ୍ଧ କସ୍ତୁରୀ ନାନା ରସ
ନାନା ଭୂଷଣରେ ସ୍ୱାମି ହେଉଅଛନ୍ତି ବେଶ ।
ଦେବାଙ୍ଗ ଯେ ଅମଳାଣ କରି ପହରଣ
ଶୁଦ୍ଧ ସୁବର୍ଣ୍ଣ ହୀରା କରରେ କଙ୍କଣ ।
ବିଦ ମୁଦ ବାହୁଟି ଶୋଭେ ତୋ ବଳୟ
କପାଳରେ ବ୍ରହ୍ମ ଜାତି ହୀରା ଚୋରିପ୍ରିୟ ।
କ୍ଷୁଦ୍ର ମୁକୁତା ମାଳ ଶୋଭେ ତଉସାର
ବ୍ୟାଘ୍ର ନଖ ଲମ୍ବିଅଛି ବକ୍ଷସ୍ଥଳେ ପର ।
ବିବିଧ ପଦକ ଝଲେ ଝଲେ ବକ୍ଷି
କଣ୍ଠରେ ମାଣିକ୍ୟର ମାଳା ସତେ ଶଶୀ ।
ବ୍ରହ୍ମ ଜାତି ହୀରା ଅଙ୍ଗୁଳିରେ ଶୋଭେ ରୁଚି
ମାଣିକ୍ୟର କୁଣ୍ଡଳ କର୍ଣ୍ଣରେ ବେନିକୁନ୍ଦ ।
ଗୋପିନାଥ ଅବତାର ଲେଖାକୁ କରିଯେପଦକ
କେବଳ ମାଳା ଗୋଟି ଶୋଭେ ବ୍ୟାଘ୍ରନଖ ।
କେବଳ ମାଳା ଗୋଟି କୂର୍ମ ଅବତାର
ମତ୍ସ୍ୟ ଅବତାର ଲେଖା କେବଳ ପଦକର ।

କେବଣ ଚନ୍ଦ୍ର ଉଦୟେ ସୂର୍ଯ୍ୟର ହେଛନା
କାହିଁରେ ବିଜେକଲେ ଲକ୍ଷ୍ମୀ ନାରାୟଣ ।
କାହିଁରେ ନୃସିଂହ କାହିଁରେ ବିଶ୍ୱନାଥ
କେବଣ ପଦକରେ ପ୍ରଭୁଦ୍ୟନ୍ତି ହସ୍ତ ।
କାହିଁରେ ବାଳ ଯୋଏଳା ହରିଡ଼ା କଣ୍ଠିମାଳ
ନାନାବର୍ଣ୍ଣ ମାଳ ଲମ୍ବଇ ବକ୍ଷସ୍ଥଳ ।
ଶ୍ରବଣରେ ମକର କୁଣ୍ଡଳ ପରିମଳ
ଛାତିଁପରେ ଫାସିଆ ଚନ୍ଦନ ପ୍ରକାର ।
ମକର କୁଣ୍ଡଳ ଯେ କପାଟ ବିତପନ
ମଣିଗଣ କିରଣ ବିରାଜେ ଛନ୍ଦଛନ୍ଦ ।
ଲଲାଟରେ ଝଟକଇ ଗଜମୋତି ଝର
ମାଣିକ୍ୟର ଝରସୋହେ ନଳାର ମେଖଳା ।
ଶ୍ରବଣ ଶିଖରେ ଶୋଭିତ ସ୍ଫୁରୁଛନ୍ଦ
ନ ଜାଣି ପଟାନ୍ତର ଚନ୍ଦ୍ର ଅରବିନ୍ଦ ।
ସୁସଞ୍ଚ ବଳଣ ଯେ ବିଶଇ ଶ୍ରୀଭୁଜ
ଜମ୍ବୁ ନଦ ସୁନାଆଁ ଶଙ୍ଖ ଚକ୍ର ତେଜ ।
ଅପୂର୍ବ ଶୋଭାବନ ଶ୍ରୀମୁଖ ବଦନ
ଶ୍ୟାମଳ ସୁରତି ଯେ ଅଟନ୍ତି ନାରାୟଣ ।
ପ୍ରବାଳ ନୂପୁର ସୋହେ ତାଙ୍କର ପଦ୍ମପାଦେ
ବସନ ଅମଳାଣ ପିନ୍ଧଣ ଦେବ ରସେ ।
ଶିରପରେ ପାଗ ଦିଶେ ଅମଳାଣ ରଙ୍ଗ
ଅପୂର୍ବ ଶୋଭା ଦିଶେ ଶିକାପଣ୍ଡାଭଙ୍ଗ ।
ହୃଦରେ ଶୋଭାବନ କୁସୁମ ମାଳ ଶୋହେ
ଖଡ଼ିରନ୍ଧ ଜଣାଏ ଅନୁକୂଳ ହୁଏ ।
ଅରୁଣ ପ୍ରକାଶ ସୋହେ ଅନୁକୂଳ ବେଳ
ଦାହାଣାବର୍ତ୍ତିକ ଶଙ୍ଖ ଦିଶେ କୁତୁହଳ ।
ପୁଷ୍ୟାନାମେ ନକ୍ଷତ୍ର ଧନୁ ମାସର ଅନ୍ତେ
ବନ୍ଦାପନା ସାରି ଛାହିଁରେ ହେଲେ ଜଗନ୍ନାଥେ
ବିବିଧ ବେଶ ହେଲେ ସାହେର କୁମାରୀ
ଅମଳାଣ ପାଟେକ ସେ ପରିହରଣ କରି ।
ଉପରେ ପରିହରଣ ଖଣ୍ଡୁଆ ଶୋଭା ନେତ
ହୀରାର ମାଣିକ୍ୟ ଚୂଡ଼ି ବାହୁରେ ଜଡିତ ।
ଜଗନ୍ନାଥଙ୍କ କୋଳରେ ବସନ୍ତି ଦେବୀଯାଇ
ପରମ ସନ୍ତୋଷ ହେଲେ ବ୍ରହ୍ମାଣ୍ଡ ଗୋସାଇଁ ।
କନକ ଦଣ୍ଡ ଧରନ୍ତି ସେବକ ଜନମାନେ
ହରିବୋଲ ଶବଦ କଲେ ଭୃତ୍ୟ ଜନମାନେ

ଅପସରାମାନେ ମିଳି ହୁଳହୁଳି ଦ୍ୟନ୍ତି
ବିପ୍ରମାନେ ମିଳି ବେଦ ଅଧ୍ୟାନ କରନ୍ତି ।
ଜୟ ଜୟ ଶବଦ ଶୁଭେ ଚଉପାଶ
ଜଗନ୍ନାଥ ବନ୍ଦାପନା ଦେଖନ୍ତି ନିଦଶ ।
ସୁବର୍ଣ୍ଣ ଥାଳୀରେ ଦେବେ ଦୁର୍ବାକ୍ଷତ ଘେନି
ବାସୁଦେବଙ୍କୁ ବନ୍ଦନା କରନ୍ତି ସୁରମୁନି ।
ଲକ୍ଷ୍ମୀ ନାରାୟଣଙ୍କୁ କରନ୍ତି ବନ୍ଦାପନା
ଦର୍ଶନରେ ମହାପାତକ ହରେ ଜନା ।
ସେ କନକ ଦଣ୍ଡ ଶୁଦ୍ଧ ସୁବର୍ଣ୍ଣ ମଧ୍ୟେ
ସେହି ଦଶ ତୋଳା ସୁବର୍ଣ୍ଣେ ଗଢ଼ା ହୁଏ ।
ନେତର ଚଉଳ ଯେ ଗଜମୋତି ହାର
ଚଉପାଶେ ବେଷ୍ଟିଣ ଦିଶେ ଶୋଭା ତୋର ।
ସୁବର୍ଣ୍ଣର ବେଣୀରେ ଲମ୍ବେ ପାଟଝୁମ୍ପା
ନଜାଣି ପଟାନ୍ତର ନବଗ୍ରହଙ୍କ ପୂଜାରେଖା ।
ସୁବର୍ଣ୍ଣର ଘଟେ ସୋହେ ନେତର ବଳିତା
ଅର୍ଘ୍ୟ ବନ୍ଦାପନା କରନ୍ତି ସାଧବୀ ବନିତା ।
ଶ୍ରୀଜଗନ୍ନାଥଙ୍କର ହରଷ ବଦନ
ଦର୍ଶନରେ ଦୋଷ କୃତ୍ୟ ହରନ୍ତି ସର୍ବଜନ ।
ଅଯୋଧ୍ୟାରେ ବନ୍ଦାପନା ଯେସନ କରନ୍ତି
ତେସନକ ବନ୍ଦାପନା ନୀଳଗିରିରେ ହୋନ୍ତି
ମୁହିଁ ବଳରାମ ଯେ ସେଠାକୁ ଯାଇଥିଲି
ଲକ୍ଷ୍ମୀ ନାରାୟଣ ବନ୍ଦାପନା ମୁଁ ଦେଖିଲି ।
ଦର୍ଶନରେ ମୋହର ସକଳ ପାପ ଗଲା
ରାମାୟଣ ଗ୍ରନ୍ଥମୋର ହୃଦରେ ପ୍ରକାଶିଲା ।
ତେଣୁ ବିସ୍ତରିବ କରିଲି ରାମାୟଣ କେଳମୁହିଁ
ପାର୍ବତୀ ଆଗରେ ଏକାକହେ ଉମାସାଇଁ ।
ବାଲ୍ମିକି ଆଗରେ ଏହା ବିଧାତାଦେବଭଣି
ସେ ମୁନିଙ୍କ ପ୍ରସନ୍ନରେ ତରିବେ ସ୍ୱରଖାଣି ।
ଯାମବେଦୁ ସମ୍ଭୁତ ମହାନାଟକ ପୁରାଣ
ନାରଦ ମୁନି ମୁଖରୁ ହୋଇଲା ବଖାଣ ।
ଆପଣ ସରସ୍ୱତୀ କଣ୍ଠରେ ମୋର ଥାଇ
ଗ୍ରନ୍ଥ ମୁଁ ଉଚ୍ଚାରିକରେ ତାଙ୍କର ପ୍ରସନ୍ନଇ ।
ଚଉଦ ଖଣ୍ଡ ମହା ନାଟକ ବାକ୍ୟ ସାର
ପଞ୍ଚାଶସହସ୍ର ଶ୍ଳୋକବେଦୁଁ ହୋଇଲାବାହାର
ଏହା ଉପରେ ଆଗତରେ ପୁରାଣ ଥିଲା
ଏପୁରାଣ ଉଦରୁ ଯାବତ ପ୍ରକାଶିଲା ।

ତେଣୁ ଏ ମହାନାଟକ ଅଟେ ଏହା ନାମ
ରାମନାମ ଚରିତ ଅନ୍ତ ସେ ଉପାମ ।
ତେବେ ସେ ବଞ୍ଚିବ ଯେ ମୁଁ ଅକାଳମରଣ
ରାମପଦ ବିନୁ ମୋତେ ନାହିଁ ଅନ୍ୟ ପୁଣ ।
ହରିଜନ ମୁଖୁଁ ମୁଁ ଶୁଣିଲି ବାକ୍ୟଛନ୍ଦ
ହେଲେ ନାଶଗଲା ମୋର ସଂସାର ମାୟାବନ୍ଧ
ମନେ ମନେ ବିଚାର କରଇ ମୁଁ ନୟ ନିତି
ବିଷ୍ଣୁ ଦେବତାଙ୍କର ମୁଁ ଯେ ହୋଇବି ଭଗତି
ଶ୍ରୀରାମର ମହିମା ମୁଁ କରିବି ସ୍ମରଣ
ତେବେ ମୁଁ ବଞ୍ଚିବଟି ଅକାଳ ମରଣ ।
ରଘୁକୁଳ ନନ୍ଦନ କରିବେ ମୋତେ ଦୟା
ବାସୁଦେବେ ଭଗତ କରିବ ମୋର କାୟା ।
ନାରାୟଣ ପୁରୁଷ ନୀଳଗିରିବାସୀ
ଜଗନ୍ନାଥ ଚରଣରେ ମୁଁ ବଳରାମ ଦାସୀ ।
ସୋମନାଥ ମହାପାତ୍ର କୁଳରେ ସମ୍ଭୂତ
ଜନ୍ମେ ଜନ୍ମେ ପିତା ମୋର ବିଷ୍ଣୁର ଭକତ
ତେଣୁ ଜଗନ୍ନାଥ ପ୍ରଭୁ ଦୟା ମୋତେ କଲେ
ଜଗତ ଜନ ହିତରେ ଏହୁସେ ବାକ୍ୟଦେଲେ
ଶ୍ରୀରାମ ଚରିତ ମୁଁ ଯେ ପୁସ୍ତକେ ଲେଖିଲି
ରାମାୟଣ ଗ୍ରନ୍ଥ ମୋର ହୃଦରୁ ପ୍ରସରିଲି ।
ଆଦ୍ୟ ଅଯୋଧ୍ୟା ଯେ ଆରଣ୍ୟକ କାଣ୍ଡକଥା
କିଷ୍କିନ୍ଧ୍ୟା ସୁନ୍ଦର ଲଙ୍କା କାଣ୍ଡର ବ୍ୟବସ୍ଥା ।
ଏଥିରେ ଲଙ୍କାକାଣ୍ଡ କହିବାକୁ ମୁଁ ବାଳଇ
ସୁଢମୂନେ ମୁହିଁ ଏବେ ପର୍ବତ ଟାଳଇ ।
ରାମ ରାବଣର ଯେବେ ହୋଇବ ସମର
ଅସାଧକ କଥା ଏବେ ଅଶ୍ରୁତ ଅଗୋଚର ।
ଦେଖିଲା ଲୋକ ଏହା କହିତେ ନ ପାରି
ମୁହିଁ କେମନ୍ତେ କହିବି ମାନବ ତନୁଧରି ।
ଭୁଣି ମନେ ବିଚାରି ମୁଁ ପଞ୍ଚମ କାଣ୍ଡକଲି
ରାମ ଲକ୍ଷ୍ମଣ ସୀତାଙ୍କୁ ଭେଟାଇ ନ ପାରିଲି ।
ଏହି ସକାଶୁ ବିକଳ ହେଉଛି ମୋର ଚିତ୍ତେ
ଗହନ ଏ ଲଙ୍କାକାଣ୍ଡ କହିବି କେମନ୍ତେ ।
ମୋତେ ଏବେ କହିଦେବେ ପ୍ରଭୁ ଜଗନ୍ନାଥ
ତେବେ ମୁଁ ଗାଇବି ଯେ ଲଙ୍କାକାଣ୍ଡ ଅର୍ଥ ।
ଏତେକହି ଶ୍ରୀପୁରୁଷୋତ୍ତମ ସେହୁ ଗଲା
ଗୁଣ୍ଡିଚ୍ଚ ଘରେ ଜଗନ୍ନାଥଙ୍କୁ ଦେଖିଲା ।
ଆଗରେ ବଳଦେବ ଜ୍ୟେଷ୍ଠ ହଳଧର
ମଧ୍ୟରେ ବିଜେ ସୋଭଦ୍ରା ସଙ୍ଗେ ସହୋଦର
ଶୁଦ୍ଧ ସୁବର୍ଣ୍ଣ ଶଙ୍ଖ ଚକ୍ର ଲେଖନବାହେ
ବାମପାଖେ ଜଗନ୍ନାଥ କରନ୍ତ ବିଜୟେ ।
ମୁକୁଟ କୁଣ୍ଡଳ ନାନା ଅଳକା ସୋହେ ତାର
ଅପୂର୍ବ ପରଂବ୍ରହ୍ମ ମଞ୍ଚରେ ଅବତାର ।
ମନୋହର ନାସିକା ଯେ ମଧୁର ମୂରତ
ଅମୃତ ର ଲୋଚନରେ ସୁବର୍ଣ୍ଣର ଜ୍ୟୋତ ।
ସୁସଞ୍ଚ ସୁନ୍ଦର ଦଶେ ଆନନ୍ଦ ଅଧର
କପୋଳରେ ସୋହେ ଛଟା ଚନ୍ଦ୍ରମା ମଣ୍ଡଳ
ଶିରରେ କିରୀଟ ସୋହେ ଦେବରାଜ
ଝଟ ଝଟ ଶ୍ରୀମୁଖ ଦିହାନ୍ତେ ଦିବ୍ୟ ତେଜ ।
ଢଳୁଳ ଲୋଚନା ଜାଣି ଅଧର ନୟନ
ଅନୁରାଗେ ମେଘ କି ଉଦୟେ ଗଗନ ।
କରୁଣାକର ମାର ଝର ହୋଏ ବୃଷ୍ଟି
ତେଣୁକରି ସୃଷ୍ଟି ହୋଇଲା ନବ ସୃଷ୍ଟି ।
ଶୁଣ ହେ ସୁଜନେ ଲଙ୍କାକାଣ୍ଡର ଏହୁକଥା
ପାର୍ବତୀ ଆଗେ ଏହା କହିଲେ ପଞ୍ଚ ମଥା ।
ମୁଁ ତାହା ବଖାଣିବି ଜଗତଜନ ହିତେ
ରାମଚନ୍ଦ୍ର ନାମକୁ ସୁମରିବା ନିମନ୍ତେ ।
ସୁନ୍ଦରାକାଣ୍ଡ ଯହୁଁ ହୋଇଲା ସମାପତ
ଉମା ବୋଇଲେ ତୁମ୍ଭେ ଶୁଣିବା ଶୂଳହସ୍ତ ।
ସମୁଦ୍ରକୁ ତରିଣ ଗଲେକ ଶ୍ରୀରାମ
ସୁବଳୟା ଗିରିପରେ କଲେକ ବିଶ୍ରାମ ।
ରାବଣେଶ୍ବର ବାର୍ତ୍ତା ପାଇଲାଟିକ ତାହା
କେବଣ ପ୍ରକାରେ ତାହା ମାଇଲା ବଂଶବାହା।
ଏକଥା ସଞ୍ଚପି ମୋତେ କହ ହି ପୁରାରି
ମୋହର ଅଙ୍ଗ ପାତକ ଯାଉ ଶୂଳଧାରୀ ।
ରାମର ମହିମା ଯେ ଦେବଙ୍କୁ ଅଗୋଚର
ଶୁଣିଣ ଶରଧା ହେଲା ବହୁତ ମନର ।
ସଦାଶିବ ବୋଲନ୍ତି ଶୁଣ ଗୋ ଭଗବତି
ଶୁଣ ତୁ ସାବଧାନରେ ଦାଶରଥି କୀର୍ତ୍ତି ।
ସାଗରେ ସେତୁବନ୍ଧ ବାନ୍ଧି ଗଲେ ପାରିହୋଇ
ସୁବଳୟାରେ ବିଜେ କଲେ ଯେ ରଘୁସାଇଁ
ରାବଣର ଆଗରେ କହିଲେ ଯାଇ ଚର
ଶୁଣ ଦେବ ପ୍ରତାପୀ ରାଜାଧି ରାଜେଶ୍ବର ।

ଶ୍ରୀରାମ ଲକ୍ଷ୍ମଣ ନାମେ ଦୁଇ ଜଟାଧାରୀ
ପର୍ବତ ଖେଦିଣ ସେଯେ ପୋତିଲେ ସିନ୍ଧୁବାରି
ସୁବଳୟା ଗିରିରେ ରହିଲେ ଦେବ ଆସି
ସୈନ୍ୟଙ୍କର ଗହଳରେ ତରୁଶିଳ ନ ଦିଶି ।
ବିଭୀଷଣ କଢ଼ାଇ ଆଣିଲା ଦେବ ବାଟ
ତୋର ଭାଇବୋଲକୁ ବିଶ୍ୱାସ ଯାନ୍ତି ଆଟ ।
ଶୁଣି ରାବଣେଶ୍ୱର ଚକିତ ହୋଇଲା
ମହୋଦର ମୁଖ ଚାହିଁ ରାବଣ ବୋଇଲା ।
କି କି ବାରତା ଆଣିଣ କହୁଅଛୁ ଚର
ଭଲକରି ଏହାକୁ ତକାଇଣ ପଚର ।
ଶୁଣିଣ ମହୋଦର ଧୂମ୍ରାକ୍ଷ ବେନି ବୀର
ଚରକୁ ଚାହିଁଣ ସେ ବୋଲନ୍ତି ଉତ୍ତର ।
ରାଜାର ଅବଧାନ ବାରତା କିସ କହ
ତାହା ଶୁଣି ଡରରେ କମ୍ପୁଅଛି ଦେହ ।
ଆଗରେ କର ଯୋଡ଼ିଣ କହେ ପୁଣ ପୁଣି
ଶୁଣ ଦେବ ଠାକୁର ଲଙ୍କାର ଚୂଡ଼ାମଣି ।
ଶ୍ରୀରାମ ଲକ୍ଷ୍ମଣ ବେନି ଦଶରଥ ସୁତ
ଯାହାଠାରେ ଶରଣ ପଶିଲା ତୋରଭ୍ରାତ ।
ବାଳିକି ମାରି ଦେବ ସୁଗ୍ରୀବ ରାଜ୍ୟଦେଲା
ତୋର ଉପରକୁ ଦେବ କଟକାଇ କଲା ।

---

ଅସଂଖ୍ୟ କପି ତାର ଅଛନ୍ତି ଅନେକ
ଏକ ଏକ ଏକ ନାମଧରି କହିବି କେତେକ
ପର୍ବତ ଖେଦିଣ ସେ ପୋତିଲେ ସିନ୍ଧୁଜଳ
ଅଚଳାହୋଇଣ ପାରିହୋଇଲେ ତେତେବଳ
ସେନାଙ୍କର ଗହଳରେ ନଦିଶେ ପୁଣ ଭୂଇଁ
ଇନ୍ଦ୍ର ଉପବନ ଯାଏ ମାଡ଼ିଣ ପୁଣ ରହି ।
ନୀଳନାମେ ସେନାପତି ଅଟେ ଆଗୁଆଣି
ସୁବଳୟା ଗିରିରେ ବିଜେ ରଘୁମଣି ।
ଏହିକ୍ଷଣି ଦେବ ଦେଖି ଅଇଲଇ ମୁହିଁ
ଆକାଶ ମାର୍ଗ ଦିଶୁଛି ନଦିଶଇ ଭୂଇଁ ।
ଅପ୍ରମିତ ବଳ ତାର ନ ଯାଇ କଳଣା
ହେଦେବ ରାଜ୍ୟତୋର କରହେ ସମ୍ଭାଳଣା ।
ଶୁଣିଣ ଲଙ୍କପତି ହୋଇଲା ବିସ୍ମୟ
ଇତଜିତକୁ ରାଇ ବୋଇଲା ଲଙ୍କରାୟ ।
ଦୂତଠାରୁ ବାରତା ଶୁଣିଲଟିକି ଏବେ
ସିନ୍ଧୁପାରି ହୋଇଣ ଅଇଲା ଯତି ଯେବେ ।
ବାଳିକି ମାରିବା କଥା ଅଟଇ କି ସତ
ସୁଗ୍ରୀବର ବାଳିର ଅଟଇ ଭଗାରି ତ ।
ସେ ଏବେ ମନ୍ଦ କହିଲା ଶ୍ରୀରାମର ପାଶ
ଛେଡ଼େ ରାଜାକୁ ଯତି ଯେ କଲା ପ୍ରାଣେନାଶ
ପରୀକ୍ଷା ନିମନ୍ତେଣ ଭେଦିଲେ ସପ୍ତଶାଳା
ଦୁନ୍ଦୁଭି ଦୈତ୍ୟର ହାଡ଼ ଚରଣେ ଉଡ଼ାଇଲା
ଦେଖି ଋକ୍ଷକପି ତାଙ୍କୁ ଭୟରେ ସେବାକଲେ
ତପସ୍ୱୀ ବୋଲିକୁ ସତ ମଣିଣ ଅଇଲେ ।
ସମୁଦ୍ରେ ବନ୍ଧ ସେଯେକଲେ କେବଣପ୍ରକାରେ
ଏକଥାକୁ ମାୟାମୁହିଁ ବୁଝଇ ଅଭ୍ୟନ୍ତରେ ।
ପ୍ରଶସ୍ତ ବୋଲଇ ଦେବ ଏକଥା ଅଟେ ସତ
ସୈନ୍ୟଙ୍କର ମୁଖରବ ଶୁଭୁଛି ବହୁତ ।
ସୁବଳୟା ପର୍ବତରେ ରହିଲେ ବଳଆସି
ତରସ୍ତ ହୋଇଣ ଛନ୍ତି ଲଙ୍କାପୁର ବାସୀ ।
ହେଦେବ ଦଶଗ୍ରୀବ ନକର ଭ୍ରମେ ହେଳା
ଦେଖ ସେ ଅଇଲେ ତରିଣ ସିନ୍ଧୁବେଳା ।
ମନୁଷ୍ୟ ଯୋଗ୍ୟତାରେ କି ଏହା ସେକରିପାରି
ଅସୁରଙ୍କ ସଙ୍ଗରେ ଋକ୍ଷକପି ଯୁଦ୍ଧକରି ।
ସାମାନ୍ୟ ପ୍ରାୟେ ଏକଥା ନମଣ ଗୋସାଇଁ
ଗଡ଼ର ଭିତରେ ନଷ୍ଟେ ପଶିବେ ଧସାଇ ।
ଶୁଣିଣ ରାବଣେଶ୍ୱର ମନ୍ତ୍ରୀକୁ ହକାରି
ଏକାନ୍ତ କରିଣ ତାକୁ କହେ ପ୍ରିୟକରି ।
ତୁମ୍ଭେତ ଶୁକ ସାରଣ ମୋହର ବିଶ୍ୱାସ
ସର୍ବଦା ସେବାକରିଣ ଅଛ ମୋର ପାଶ ।
ଅନେକ ଭୋଗ କଲ ଯେ ଲଙ୍କାଗଡ଼ରେଥାଇ
ତୁମ୍ଭ ଦୁହିଁଙ୍କ ଠାରେ ମୋର ମାୟା ନାହିଁ ।
ସ୍ୱର୍ଗ ମଞ୍ଚ ପାତାଳ ମୁଁ ଜିଣିଲଇଁ ହେଳେ
ସୁରଗଣ ଖଟିଛନ୍ତି ଦେଖ ମୋ ପାଦତଳେ ।
ଦେଖଯାଇ ଶ୍ରୀରାମର ଅଟନ୍ତି କେତେ ସୈନ୍ୟ
ଗହଳ ତ ଶୁଭୁଅଛି କରନ୍ତି ଗରଜନ ।
ଚଉଦ ଭୁବନରେ ଯେତେକ ଦିବ୍ୟନାରୀ
ବେଶରେ ତ ଅଛନ୍ତି ସମସ୍ତେ ମୋହରି ।
ଧ୍ରୁବ ମଣ୍ଡଳ ପର୍ଯ୍ୟନ୍ତ ମୁଁ ଉପରକୁ ଗଲି
ପାତାଳ ବଇକୁଣ୍ଠେ ନାରାୟଣଙ୍କୁ ଦେଖିଲି ।
ବ୍ରହ୍ମାର ପ୍ରସାଦେ ମୋର ସମ୍ପଦ ବଢ଼ିପଣ
ଯେବେ ସେଧାତା ମୋତେକରିବେ ଭଣଭଣ

ମନୁଷ୍ୟ ଭଲ୍ଲୁ ଆଦି ଆବର ଋକ୍ଷକପି
ସେମାନେ ମୋତେ ଦେଖି କମ୍ପୁଅଛନ୍ତି ଖିନ୍ତ
ସାମାନ୍ୟ ଭରସା ନ ଜଣିଲେ ସିନ୍ଧୁ ପାଣି
ସୁବଳଯ୍ୟା ଗିରିରେ ଅଛନ୍ତି ଆସି ପୁଣି ।
ଏବେ ଏକ୍ଷଣି ତୁମ୍ଭେ ଯିବ ବେନିଜନ
ଦେଖିବ ଶ୍ରୀରାମର ଅଟଇ କେତେ ସୈନ୍ୟ ।
ବାନର ଶରୀର ଧରି ଯିବ ମାୟାକରି
ବୁଝିବ କେତେବଳ ଆଣିଛି ଜଟାଧାରୀ ।
କେବଣ କାର୍ଯ୍ୟେ ଅଇଲେ କେତେକ ସାହସ
ଦେବଙ୍କୁ ଅଜୟ ଏତ ଅଟଇ ମୋର ଦେଶ
କେମନ୍ତେ ଯୁଝିବ ସେ କାହାକୁ ସଙ୍ଗେ ଘେନ
ଏ ବାରତା ତୁମ୍ଭେ ଯାଇ ବୁଝିଆସ ବେନ ।
ଶୁଣି ଶୁକ ସାରଣ କରନ୍ତି ନମସ୍କାର
ତକ୍ଷଣେ ନବରୁ ଯେ ହୋଇଲେ ବାହାର ।
ସର୍ବ ପ୍ରହରକେ ସେ ଲଙ୍କାରୁ ଚଳିଗଲେ
ଇନ୍ଦ୍ର ଉପବନେ ଯାଇ ପ୍ରବେଶ ହୋଇଲେ ।
କପିରୂପ ଧରି ସେ ଥାଟରେ ବୁଲନ୍ତି
ନୀଳ ସେନାପତିଙ୍କି ପ୍ରଥମେ ଦେଖନ୍ତି ।
ଆଗୁଆଣି ଦଣ୍ଡରେ ଅଛଇ ସେହୁ ବୀର
ସଙ୍ଗରେ ସତବାଳି ସୈନ୍ୟ ତା ଅପାର ।
ମହାମେଘ ଜାଣିଣ ଦିଶେ ତାର କାୟେ
ତେଜ ତାର ଲାଗିଅଛି ବ୍ରହ୍ମଲୋକ ଯାଏ ।
ବୀର ତୂର ବଜାଇଣ ଜଗଇ ପାହାରି
ଟମକ ନିଶାଣରେ କମ୍ପଇ ବସୁନ୍ଧରୀ ।
ଶୁକ ସାରଣ ବେନି ଦେଖନ୍ତି ବଳ ମାନ
କେଉଁଠାରେ ନ ରହି ଚଳନ୍ତି ଘନ ଘନ ।
ସୁବଳଯ୍ୟା ପର୍ବତର ଉପରେ ଯାଇ ଉଠି
ଦେଖିଲେ କପିମୟ ଦିଶୁଅଛି ସୃଷ୍ଟି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲେ ସେ ଯାଇଁ
ହରଷ ନବର କରି ଅଛନ୍ତି ରଘୁସାଇଁ ।
ଚଉପାଶେ ବେଢିଣ ଅଛଇ ପାଟେଶି
ମଧ୍ୟରେ ଉଆଣ କରି ନବରତ୍ନ ପୁରି ।
ପର୍ଣ୍ଣକୁଟୀ ପ୍ରାୟ ଦିଶେ ଏକଇ ମଣ୍ଡପ
ମୃଗଛାଲ ଉପରେ ବସିଛନ୍ତି ଶ୍ରୀରାମ ନୃପ ।
ଧନୁଶର ଧରିଣ ଲକ୍ଷ୍ମଣ ଜଗି ବସି
ଦେଖି ଶୁକ ସାରଣ ପଳାଇ ଗଲେ ଖସି ।

ବିଚାରନ୍ତି ମନେ ମନେ ଏ ନୁହନ୍ତି ମନୁଷ୍ୟ
କପି ରୂପଧରି ଏ ଯେ ଅଛନ୍ତି ବିଦଶ ।
ମେରୁର ଶିଖରେ ଯେହ୍ନେ ଇନ୍ଦ୍ର ବସି ଥାନ୍ତି
ଶ୍ରୀରାମ ଲକ୍ଷ୍ମଣ ସେହ୍ନ ସଞ୍ଜାତ ଦିଶନ୍ତି ।
ଏବେ ବିଚାରିଣ ଚଢ଼ୁଁ ହୋଇଲେ ବାହାର
ବାମ ପାଶେ ବସିଛି ଦେଖିଲେ ସୁଗ୍ରୀବର ।
ଠଣା ପଡ଼ିବ'ସି ମାନେ ଅଛନ୍ତି ଉଜାଗରେ
ଉପାୟ ସେ କରୁଛନ୍ତି ଯେ ଯାହା ପ୍ରକାରେ ।
ଦନ୍ତୁଡ଼ ଜଳେ ନିରନ୍ତରେ ସେ ସଜଳସଗୁଣ୍ଡି
କେଜାଣି ଏ ମେଦିନୀ ନ ଅଳକାପ୍ରାଏ ମଣ୍ଡି ।
ଦକ୍ଷିଣ ପାଶେ ଅଙ୍ଗଦ ଜାମ୍ବେବ ଅଛନ୍ତି
ଶ୍ରୀରାମଙ୍କ ଆଜ୍ଞାରେ ସେ ପାଖ ରହିଛନ୍ତି ।
ଦ୍ୱାରାର ଘାଏ ଜଗତ ଆନୃପ ବଶଇ
ବାଜଣା ବଜାଇ ବିଭୀଷଣ ବୁଲଇ ।
ହନୁମନ୍ତ କଞ୍ଚଣ ଗନ୍ଧମାଦନ
ମରୁତ କେଶରୀ ପୁଣ ସୁଷେଣ ଚନ୍ଦନ ।
ଏମାନଙ୍କୁ ଦେଖିକରି ଲୁଚନ୍ତି ମନ୍ତ୍ରୀ ବେନି
ବିଭୀଷଣ ଜଣାଇଲେ ଅସୁର ତନୁ ଘେନି ।
ବାନରଙ୍କୁ ବୋଇଲେ ଏହାଙ୍କୁ ବେଗେଧର
ଏ ମାୟା କପିଙ୍କୁ ତୁମ୍ଭେ ଉପ୍ରୋଧ ନ କର ।
ଶୁଣିଣ ବାନରମାନେ କୋପକରି ଧାଇଁ
ବନର ଲଟିରେ ତାଙ୍କୁ ବାନ୍ଧିଲେ ନଠାଇ ।
ବାନ୍ଧିଣ ରଖିଲେ ତାଙ୍କୁ ଅତି ଯତନ କରି
ଅରୁଣ ପ୍ରକାଶନ୍ତେ ଫିଟିଲା ତମିର ।
ସେ ମାୟାକୁ ଚେତଣ ଯେ ଉଠିଲେ ରଘୁବୀର
ନିତ୍ୟକର୍ମ ବିଧିମାନ ସାରିଲେ ତତ୍ପର ।
ସୂର୍ଯ୍ୟ ଉଦୟ କାଳେ ପ୍ରାତଃ ସ୍ମରନ୍ତି
ଏ ସମୟେ ବିଭୀଷଣ ହନୁ ଦର୍ଶନ କରନ୍ତି ।
ମହେନ୍ଦ୍ର କୁମୁଦ ଚନ୍ଦନ ପନଶିଳ
ଗନ୍ଧମାରଦନ ଯେ ବସନ୍ତ ନଳନୀଳ ।
ସୁଗ୍ରୀବର ଅଙ୍ଗଦ ଜାମ୍ବବ ସତବାଳୀ
ଶରଭ ସେନାପତି ଶତେ ଯୂଥ ସେନାପତିମିଳି
କେଶରୀ ଗବାଏ ଗବାକ୍ଷ ଦଧିମୁଖ
ଡ଼ାଳମ୍ବ ସେନାପତି ଆବର କାଳମୁଖ ।
ଏମାନେ ସର୍ବେ ଦର୍ଶନ କଲେ ପୁଣ ଯାଇ
ବିଭୀଷଣ ଜଣାଏ ଶ୍ରୀରାମ ମୁଖ ଚାହିଁ ।

ଶୁଣ ଦେବ ବ୍ରହ୍ମାଣ୍ଡ ଠାକୁର ଅଧିପତି
ଅପୂର୍ବ କଥାଏକ ହୋଇଲା ଆଜ ରାତି ।
ଲଙ୍କା ଗଡ଼ର ରାଜନ ଅଟଇ ରାବଣ
ତାର ବେନିମନ୍ତ୍ରୀ ନାମ ଶୁକ ଯେ ସାରଣ ।
କପିରୂପ ଧରିଣ ଆମ୍ଭସୈନ୍ୟରେ ବୁଲୁଥିଲେ
ଭଲଯୋଗେ ମୋହର ଛାମୁରେ ପଡ଼ିଲେ ।
ମୁହିଁ ତାଙ୍କୁ ଧରାଇଣ ଆଣିଛି ଦେବ ଏବେ
ଶୁଣିକରି ହସନ୍ତି ଯେ ପ୍ରଭୁ ରାମଦେବେ ।
କେଉଁଠାରେ ଅଛନ୍ତି ଯେ ବେଗେ ଘେନଆସ
ବୁଝିବା ସେ କେମନ୍ତେ ଉଜାର ବିଶ୍ୱାସ ।
ଶୁଣିକରି ବିଭୀଷଣ ହନୁକୁ ବୋଇଲେ
ଅଣାଅ ଦୁଇବନ୍ଦୀଙ୍କି ଶ୍ରୀରାମଆଜ୍ଞାଦେଲେ ।
ହନୁମନ୍ତ ଶୁଣି ବେଗେ ପେଷିଦେଲେ ବୀର
ଘେନଆସ ବେଗେଯାଇ ମାୟା ଯେ ବାନର
ତତକ୍ଷଣେ ଦୂତେ ସିଂହଦ୍ୱାରୁ ଗଲେ
ବାହାରେଥାଇ ବନ୍ଦୀଙ୍କି ଆଣସେ ବୋଇଲ
ଯେଉଁମାନେ ରଖିଥିଲେ ଶୁଣିଲେ ସେ ବାଣୀ
ଉଠି ସଜ ହୋଇଣ ବୋଲନ୍ତି ବୀର ପୁଣି ।
ନଗୁଡ଼ ବନ୍ଧନରେ ଅଛନ୍ତି ତାଙ୍କୁ ବାନ୍ଧି
ଶ୍ରୀରାମଙ୍କ ଛାମୁରେସେ କଲେନେଇ ବନ୍ଦୀ ।
କନକ ମୃଗଛାଲେ ବସିଛନ୍ତି ଶ୍ରୀରାମ
ରାଜୀବ ଲୋଚନ ଯେ ମଧୁର ମୂର୍ତ୍ତି ଶ୍ୟାମ ।
ଶିରରେ ଜଟାଭାର ଶ୍ରୀଅଙ୍ଗେ ଅଳଙ୍କାର
କଷା ବସନ ପନ୍ଧର ସନ୍ନ୍ୟାସୀଙ୍କ ମାଳ ।
ଲଲାଟରେ ବିଭୂତି ତିଳକ ତିନରେଖା
ଛାମୁରେ ଜମ୍ବେବ ସୈନ୍ୟ କରୁଛନ୍ତି ଦେଖା
ସୁଗ୍ରୀବର ଉପରେ ଆଉଜଛନ୍ତି ପ୍ରଭୁ
ଅଙ୍ଗଦର କରରେ ସେ ଦେଇଛନ୍ତି ବାହୁ ।
ଶ୍ରୀପୟର ଚିପୁଅଛି ପବନ କୁମର
କର୍ଣ୍ଣରେ କହୁଅଛି ରାବଣ ସହୋଦର ।
ଥୋକାଏକ ଦୂରେ ଯେ ଅଛନ୍ତି ସଉମିତ୍ରୀ
ଶସ୍ତ୍ରମାନ ଯତ୍ନା ଦେଉଛନ୍ତି ମହାକ୍ଷତ୍ରୀ ।
ମନ୍ତ୍ର ପୋଥି ଘେନିଣ ସୁଷେଣ ମନ୍ତ୍ରୀଉଭା
ଗଜ ଗବ ଗବଳ ଶ୍ରୀରାମଙ୍କର ସଙ୍ଗ ।
ଢ଼ାଳମ୍ବ ପବନ କାଞ୍ଚଣ କେଶରୀ ସହିତେ
ବଡ଼ ଅବକାଶେଛନ୍ତି କୌଶଲ୍ୟାଙ୍କ ସୁତେ ।
ବୃଷକପି ବଳ ଯେ ଅଛନ୍ତି ପଟୁଆରି
ଦେବତାଏ ଥାନ୍ତି ଯେହ୍ନେ ଛାମୁରେ ଉଭାରି
ଅଷ୍ଟ ସେନାପତି ଯେ ଶ୍ରୀରାମଚନ୍ଦ୍ରରାଏ
ଏହି ସମୟରେ ବନ୍ଦ ଆଳକୁ ନଏ ।
ଦେଖିକରି ରଘୁନାଥ ହସିଣ ବୋଲନ୍ତି
ତୁମ୍ଭେ ପରା ରାବଣର ଅଟ ବେନିମନ୍ତ୍ରୀ ।
ହଇ ବୋଇଲେ ସେ ବେନିକର ଯୋଡ଼ିକରି
ଦମ୍ଭ ହୋଇ କହ କଥା ବୋଲଇ ରାବଣାରି
ଆସିଛ କିମ୍ପା ତୁମ୍ଭେ ପେଷିଅଛି କଏତ
ଆମ୍ଭ ଆଗେ କହ ତୁମ୍ଭେ ସ୍ୱରୂପ ସିଦ୍ଧାନ୍ତ ।
କରଯୋଡ଼ି କହନ୍ତି ରାବଣ ମନ୍ତ୍ରୀ ବେନି
ଶୁଣିବା ହେଉ ଦେବ ଅଯୋଧ୍ୟା ନୃପମଣି ।
ଲଙ୍କାର ନୃପତି ଅଟେ ବିଶ୍ରବାର ସୁତ
ଶୁକସାରଣ ମନ୍ତ୍ରୀଆମ୍ଭେ ଅଟୁଯେ ତାରଦୂତ
ସେ ଆମ୍ଭଙ୍କୁ ପେଷିଲାଯେ ସୈନ୍ୟ କଳିବାକୁ
ତୁମ୍ଭ ଦୁଇ ଭାଇଙ୍କର ପ୍ରତିଜ୍ଞା ବୁଝିବାକୁ ।
କେତେ ସାହସ ଅଟେ କେତେ ବଳବୁଦ୍ଧି
ଯେବଣ ପ୍ରକାରେ ସେ ତରିଲେ ବାରିନିଧି ।
ଏକଥା ଜାଣି ଯାଇ କହିବୁ ଦଶଶିରି
ଶୁଣିଣ ବୋଲନ୍ତି କୋଦଣ୍ଡ ରୂପଧାରି ।
ତୁମ୍ଭେ ଶୁକ ସାରଣ ଅଟଭାଇ ବେନି
ଏଥିକୁ ଆସିଅଛ ରାଜାର ଆଜ୍ଞା ଘେନି ।
ତୁମ୍ଭର ଯେ ନିଜ ସ୍ୱରୂପ ଏବେ ଧର
କାହିଁକି ଶରୀର ଗୋପ୍ୟ କରିଛ ତୁମ୍ଭର ।
ଶୁଣିଣ ଶୁକ ସାରଣ ନିଜ ରୂପଧରି
ଦେଖଏବେ ମାୟା ମୋତେ କଲ ତଗଶରି
ବନ ପର୍ବତରେ କି ଲୁଚିଅଛି ମୁହିଁ
ବୀରକୁ ପେଷିଛି ସେ କଳ ଯିବା ପାଇଁ ।
ଦେଖ ସିନ୍ଧୁତରି ମୁଁ ଅଇଲି ତାର ଘର
ଏକଥା ନଜାଣେ କି ସେ ପେଷୁଅଛି ବୀର ।
ନେଇଥିଲା ଲୋକଙ୍କୁ ହରିଛି ମୋର ଥାଟ
ଅନ୍ଧ ଯେହ୍ନେ ବୁଲୁଥାଇ ଗୋହରିବାଟ ।
ମେଘନାଦ ପାଟେଶ୍ୱ ରାଜନ କୋଣ ଉଛ
ମଞ୍ଚକୁ ସ୍ୱର୍ଗସ୍ଥାଯେ ସ୍ୱର୍ଗକୁ ଡରେ ମଞ୍ଚ ।
ସେଥିରେ ସ୍ୱର୍ଗଲୋକ ନଦରେ ଭାଳୁସୈନ୍ୟ
ଏହା କମ୍ପା ବିଚାରି ନକରେ ଦଶାନନ ।

ଯେହୁ ଶତ୍ରୁ ତାହାର ହେଲେ ସିନ୍ଧୁପାର
କେମନ୍ତେ ପେଶିଲା ସେ ମନ୍ତ୍ରୀଙ୍କି ଦୂତକରି ।
ତାର କେଉଁ କଥା ସେ ମନରେ ନ ବିଚାରି
ଆଉ କେଉଁ କଥା ସେ ମନରେ ଅଛି ଧରି ।
ମନ୍ତ୍ରୀକି ପେଷିଲା ତାର ନ ଜାଣିମା ପଣେ
ଜଣାଗଲା ବୁଦ୍ଧି ବଳ ଅକାରଣ ଏଣେ ।
ଏତେ ବଡ ନୃପତିର ଇତର ପୁଣ ନାହିଁ
ମନ୍ତ୍ରୀ ସ୍ବର ହେବାର ବିଧିରେ ନ ଚଳଇ ।
ରାଜାର ବିଶ୍ବାସ ମନ୍ତ୍ରୀ ଅଟନ୍ତି ଅମନାତ୍ୟ
ଅମନାତ୍ୟଙ୍କୁ ଛାଡିଲେ ସେ ରାଜାହୋନ୍ତି ନଷ୍ଟ
ବିଭୀଷଣ କହଇ ଯୋଡ଼ିଣ ବେନିକର
ଶୁଣଦେବ ଶ୍ରୀରାମ ହେ ତ୍ରୈଲୋକ୍ୟ ଈଶ୍ବର ।
ସନ୍ଥପ୍ରାଣୀମାନଙ୍କର ନୁହଇ ଏବିଧି
ରାବଣଙ୍କୁ ଗ୍ରାସିଛି ନିଶ୍ଚୟ କାଳ ବ୍ୟାଧି ।
ପ୍ରକୃତ ଅନ୍ତର ସେ ଯେ କହେ ଆନୁଆନ
ସୀତାଙ୍କୁ ନେଲାବେନୁ ଛାଡ଼ିଲା ତାର ଜ୍ଞାନ ।
ନୋହିଲେଆନକମ୍ପାଇଁମୋଠାରେକୋପକଲା
ଡ଼ଗର ନ ପେଷି ମନ୍ତ୍ରୀମାନଙ୍କୁ ପେଶିଲା ।
ଏ ଯେ ଶୁକ ସାରଣ ଅଟନ୍ତି ମନ୍ତ୍ରୀ ତାର
ବିହସ୍ପତି ବୁଦ୍ଧି ଅଟେ ଏହାଙ୍କର ।
ସର୍ବଦା କାଳେ ଏମାନେ ରାଜାର ବିଶ୍ବାସ
ନିଷ୍ଟିନ୍ତ ହୋଇଣ ଖଟିଥାନ୍ତି ତାର ପାଶ ।
ଏତେ ନ ଜାଣିବା ପଣ କମ୍ପା ସେ ଏହାକଲା
ଏମନ୍ତ ପ୍ରାଏ ମନ୍ତ୍ରୀ ଏଥକୁ ବରଗିଲା ।
ତୁମ୍ଭେ ଦେବ ବିଚାରତ ଏହାକୁ କସକରି
ମୋହର ବିଚାର ଯ୍ବାକୁ ପକାଇବା ମାରି ।
ତୁମ୍ଭେ ଦେବ ଏହାକୁ ଯେ ଓପ୍ରୋଧ ନକର
ଏମାନେ ବିଶ୍ବାସ ଯେ ଅ ନ୍ତ ରାବଣର ।
ଯାଙ୍କ ବୁଦ୍ଧିବଳେ ରାଜା ଭୁଞ୍ଜେ ଲଙ୍କାଦେଶ
ଭଲଯୋଗେ ପଡ଼ିଛନ୍ତି ଆମ୍ଭର ଏ ଭେଟ ।
ବାହୁଡ଼ି ନଯାନ୍ତୁ ଏଯେ କରିବା ପ୍ରାଣେନାଶ
ଏମାନେ ଜାଇଁ ଗଲେ ନାହିଁ ଆମ୍ଭଙ୍କୁ ଯଶ ।
ଆମ୍ଭ ବଳ କଳ ଯାଇ ରାଜାଙ୍କୁ କହିବେ
ଶୁଣିକରି ଅସୁରେ କପିଙ୍କି ଆହାବବେ ।
ବିଭୀଷଣ ମୁଖରୁ ଏସନ ବାଣୀ ଶୁଣି
ହସିଣ ବୋଲନ୍ତି ପ୍ରଭୁ ରଘୁକୁଳମଣି ।

ଏହାକୁ ମାଇଲେ ଯେ ହେବପୁଣ କସ
ଏଣେ କ ଶତ୍ରୁ ମୋର ହୋଇବ ପ୍ରାଣନାଶ ।
ସେହି ସିନା ନ ଜାଣି କଲା ଦୁଷ୍ଟପଣ
ଦୂତଙ୍କୁ ବଧିବାରତ ନୁହଇ କାରଣ ।
ବହୁ କାଳ ମନ୍ତ୍ରୀ ସିନା ମଧ୍ୟସ୍ଥ ପଣକରି
ଜାଣିମାରି ଲୋକେ କ ଦୂତ ବଧକରି ।
ରାଜା କ୍ଷମା ଦାନ ଏତ ଖାଇଣ ବଞ୍ଚନ୍ତି
ସେ ଯହିଁକ ପେଶନ୍ତି ସେ ତେଣିକ ଯାଆନ୍ତି ।
ରାବଣର ମନ୍ତ୍ରୀ ଯେହୁ ମୋହର ଅଟେଲୋକ
କମ୍ପାଇ ମୁଁ ନାଶକରିବ ସେବକ ତ ।
ଏକଥାକୁ ଶୁଣି ବିଭୀଷଣ କହି
ସୀତାଙ୍କୁ ଖୋଜିବା ପାଇଁ ହନୁମନ୍ତ ଯାଇ ।
ମାଇଲେ ବାନ୍ଧିଲେ ତାକୁକୁଟିଲେନାନାରୂପେ
ଆମ୍ଭେ ଜବା ଛାଡ଼ ଦେବା ଯିବେ ସେସୁପଥେ
ଦୁଷ୍ଟଙ୍କୁ ନାଶକରି ରଖିବା ଯେବେ ସନ୍ଥ
ତେବେ ସିନା ଆମ୍ଭର ହୋଇବ ବହୁ ଯଶ ।
ଏକଥା ଶୁଣି ଶ୍ରୀରାମ ବୋଲନ୍ତି ନୋହେ ଭଲ
ଏମାନଙ୍କୁ ଛାଡିଦେଲେ ବହୁତ ଯଶଅଛି ।
ଛାଡ଼ ଛାଡ଼ ବିଭୀଷଣ ଦୁଇ ମନ୍ତ୍ରୀ ଯାନ୍ତୁ
ବେଗେ ଦଶକନ୍ଧଙ୍କୁ ବାରତା କହନ୍ତୁ ।
ତାର ବୁଦ୍ଧିବଳେ ସେହୁ କରିବ ସମର
ମୁହିଁ ରହିଲି ଆସି ସୁବଳ ଗିରିପର ।
ଥାଟ ତାର ଧ୍ବସ୍ଥାବନା କରୁ ଲଙ୍କ ସାଇଁ
ଯେଉଁଦିନ ଯୁଝିବ ସେ ଘଟିଆଉ ନାହିଁ ।
ଶୁଣି ଶୁକ ସାରଣ ଯେ ନମସ୍କାର କଲେ
ହେଦେବ ଜନ୍ମରକ୍ଷିଲୁ ବୋଲିଣ ବୋଇଲେ ।
ଅନେକ ଜନ୍ମର ପାତକ ଯେତେ ଥିଲା
ତୁମ୍ଭର ଦର୍ଶନରେ ସମସ୍ତ କ୍ଷୟ ଗଲା ।
ହେଦେବ ଈଶ୍ବର ହେ ଜଗତର ପତି
ଆମ୍ଭେ ବେନିଜନ୍ମ ହେବୁ ତୁମ୍ଭର ବଶବର୍ତ୍ତୀ ।
ରାବଣ ସେବକ ଆମ୍ଭେ ତାର ବୋଲ କରୁ
ତୁମ୍ଭର ବଳକୁ ଆମ୍ଭେ ମନରେ ଜାଣିଲୁ ।
ହେ ରଘୁନାଥ ଆମ୍ଭେ ଅଟୁ ହେ ନିର୍ମଖି
ତୁମ୍ଭେ ରଖିଲେ ଅମ୍ଭଙ୍କୁ ଆମ୍ଭେ ହେବୁ ସୁଖି
ଦଶଶିର ଅଜ୍ଞାନେ ସୀତାଙ୍କୁ ନେଲା ହରି
ଯେଉଁ ବାଟ ନାଶଯିବ ସେହିବାଟେ ପଡ଼ି ।

ବିଭୀଷଣ ପରା ଭାଇକୁ ଘଉଡ଼ାଇ ଦେଲା
କେବଣ ବାଟେ ତାକୁ କି ବୁଦ୍ଧି ବଳିଲା ।
ନିଶ୍ଚୟ ଲଙ୍କାଗଡ଼ରେ ନ ବର୍ତ୍ତିନ୍ତି ପ୍ରାଣୀ
ଏତେକହି ପାଦେପଡ଼ି ଶୋଇଲେ ମନ୍ତ୍ରୀମଣି ।
ଉଠ ଉଠ ବୋଲିଣ ବୋଲନ୍ତି ରଘୁବୀର
ଉଠିଣ କରଯୋଡ଼ି ବୋଲନ୍ତି ବେନିଜନ ।
ପ୍ରସନ୍ନରେ ତାହାଙ୍କୁ କହିଲେ ରଘୁମଣି
ବିଭୀଷଣକୁ ଲଙ୍କାରେ ରାଜା ଆମ୍ଭେ କଲୁ ପୁଣି
ତୁମ୍ଭେ ବେନିଜନ ପୁଣି ହୋଇବ ତାର ମନ୍ତ୍ରୀ
ଏତେକହି ଶ୍ରୀରାମ ପାଟ ତାଙ୍କ ଶିରେ ବାନ୍ଧନ୍ତି
ବିଭୀଷଣ ଥିବାଯାଏ ଥିବ ତୁମ୍ଭେ ବେନି ମନ୍ତ୍ରୀ
ଶୁଣି ଶୁକ ସାରଣ ଯେ ଚରଣେ ନମନ୍ତି ।
ହେଉବୋଲି ହେବେକ ଶିରେ ଧରି ନେଲେ
ବେଗେ ଯାଅ ବୋଲିଣ ଶ୍ରୀରାମ ଆଜ୍ଞାଦେଲେ
ଶ୍ରୀରାମଙ୍କ ଆଜ୍ଞାରେ ଋକ୍ଷ କପିମାନେ
ତାହାଙ୍କର ବନ୍ଧନ ଫେଡ଼ିଲେ ତତକ୍ଷଣେ ।
ବାହୁଡ଼ନ୍ତି ବେନିମନ୍ତ୍ରୀ ଓଲଗି ମେଲାଇ
ଲଙ୍କା ଗଡ଼ରେ ସେ ପଶିଲେ ଧସାଇ ।
ନର ନରନାରୀ ଦେଖିଣ ପଚାରନ୍ତି
କେଣେ ଯାଇଥିଲଆସିଲଫେରିକରିବେନିମନ୍ତ୍ରୀ
କେବୋଲନ୍ତିଶ୍ରୀରାମରସୈନ୍ୟଦେଖିଯାଇଥିଲେ
ତାହାର ଗଡ଼ରେ ଦେଖି ଏଥକୁ ଅଇଲେ ।
ବିଧାତାର ସହିତେ ସକଳ ସୁରଗଣ
ଏହି ସମୟେ ମିଳିଲେ ଶୁକ ଯେ ସାରଣ ।
ରାବଣକୁ ଦେଖିଣ ଶୋଇଲେ ପାଏପଡ଼ି
ପୁଣ ଉଭା ହୋଇଲେ ଶିରେ କରଯୋଡ଼ି ।
ଦେଖିଣ ଦଶଗ୍ରୀବ ଆସ ଆସ ବୋଲି ରାଇ
ତକ୍ଷଣେ ପ୍ରଣସ୍ତକୁ ଏକାନ୍ତକୁ ନେଇ ।
ବ୍ରହ୍ମାଙ୍କୁ ବନ୍ଦିଣ ଯେ ବୋଲେ ଦଶଶିର
ଶୁଣ ଶୁଣ ପିତାମହ ଜଗତ ଈଶ୍ୱର ।
ଦଶରଥ ନନ୍ଦନ ଶ୍ରୀରାମ ଜଟାଧାରୀ
ଋକ୍ଷ କପି ଧରିଣ ସେ କେଲେ ସିନ୍ଧୁ ପାରି ।
ସୁବଳସ୍ଥା ପର୍ବତରେ ରହିଲେ ଆସିକରି
ତାଙ୍କର ବଡ଼ ଭରସା ଯୁଝିବେ ବୋଲିକରି ।
ତାହାରି ମୋହର ଯୁଦ୍ଧ ସରିବାର ଯାଏ
ତୁମ୍ଭେ ଦେବତାଏ ନ ଆସିବଟି ଲଙ୍କାଏ ।

ରାମ ଲକ୍ଷ୍ମଣ ଋକ୍ଷ କପିଙ୍କି ମାରିବି
ଅଯୋଧ୍ୟାରେ ଯାଇଣ ଅଭିଷେକ ହେବି ।
ସୁଗ୍ରୀବର ବିଭୀଷଣ ହେଉଇବେ ପ୍ରାଣେନାଶ
ସେଦିନ ଆସିବ ତୁମ୍ଭେ ସକଳ ବିବଶ ।
ଏବେ ଆସି ଅନର୍ଥ ହୋଇବ ଆସି କାଳି
ଯାଅ ତୁମ୍ଭେ ଦେବତାଏ ଯେ ଯାହାର ଆଳି
ଏହାଶୁଣି ସୁରଗଣେ ଆନନ୍ଦ ହୋଇଲେ
ଅନ୍ତରୀକ୍ଷ ମାର୍ଗରେ ସେ ବେଗେ ଚଳିଗଲେ
ବିଧାତା ବୋଇଲେ ତୁମ୍ଭେ ଶୁଣ ଦଶଶିର
ଆପେ ତୁ ଶତ୍ରୁ ହେଲୁରେ ଶ୍ରୀରାମଚନ୍ଦ୍ରଙ୍କର ।
ଶ୍ରୀରାମ ଲକ୍ଷ୍ମଣ ତୋ ହସ୍ତେ କେବେ ହତ
ନୋହିଲେ ଶ୍ରୀରାମ ଲକ୍ଷ୍ମଣମାରିବେତୋବଂଶତ
ନ ପାରିଲେ ଦୁଇଭାଇ ନିଶ୍ଚୟ ନାଶଯିବ
ଦୁଇ ଭାଇଙ୍କର ଗୋଟିଏ ନ ରହିବ ।
ଏ ଗଡ଼ରେ ବିଭୀଷଣ ନୃପତ ତପ ହେବ
ନୋହିଲେ ରାମ ଅଯୋଧ୍ୟା ଦେଶ ଛାଡ଼ିଯିବ ।
ଏତେ ବୋଲି ବିଧାତା ଯେ ସ୍ୱର୍ଗପୁର ଗଲେ
ସୁଧର୍ମାସଭାରେ ଯାଇ ପ୍ରବେଶ ହୋଇଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ଈଶାନ
ମନ୍ଦୋଦରୀ ବିଭୁର କେମନ୍ତେ କରେ ପୁଣ ।
ଈଶ୍ୱର ବୋଇଲେ ମୁଁ ଯେ କହୁଛି ସଙ୍ଗାତ
ରାମ ସୈନ୍ୟ ଘେନି ରହେ ସୁବଳ ପର୍ବତ ।
ମନ୍ଦୋଦରୀ ଆଗରେ ଯେ ଦାସୀଗଣ କହି
ଶ୍ରୀରାମ ରହିଲେ ଲଙ୍କା ଉତ୍ତର ଯେ ବାହି ।
ଶୁଣି କରି ମନ୍ଦୋଦରୀ ବିସ୍ମୟ ହୋଇଲା
ନିଶ୍ଚଳ ଆସନ କରି ନାରଦଙ୍କୁ ସୁମରିଲା ।
ତକ୍ଷଣେ ନାରଦ ମିଳିଲେ ତାର ଆଗେ
ବୋଇଲେ ଗୋ ସୁମରଣା କଲକିମ୍ପା ଏବେ
ସୁବର୍ଣ୍ଣ ଝରୀରେ ରାଣୀ ବାସଜଳ ନେଇ
ମୁନିଙ୍କ ଚରଣ ଯେ ଧୋଇଲା ଚନ୍ଦ୍ରମୁହିଁ ।
ସୁବର୍ଣ୍ଣର ଆସନରେ ନେଇଣ ବସାଇଲା
ଶ୍ରୀରାମ ଲକ୍ଷ୍ମଣ ଅଇଲେ ବୋଲିଣ କହିଲା ।
ନାରଦ ବୋଇଲେ ତୁ ଶୁଣ ମହାସତୀ
ଯାହାକହିଥିଲୁପୂର୍ବେଆମ୍ଭେହୋଇଲାଏବେଟିକ
ଦେଖତ ରାମ ଲକ୍ଷ୍ମଣ ସୈନ୍ୟ ଘେନିଆସି
ବିଭୀଷଣ ମହାତମା ଶରଣ ଯାଇ ପଶି ।

କାଲି ପ୍ରଥମ ଯୁଦ୍ଧ ହୋଇବ ସେ ପୁଣ
କାଲିଠାରୁ ଗଣୁଥିବୁ ସତର ଯେ ଦିନ ।
ସତର ଦିନରେ ତୋର ସ୍ୱାମୀ ନାଶଯିବ
ସାତଦିନରେ ତୋର ଦିଅର ମରିବ ।
ଚଉଦ ଦିନେ ପୁତ୍ର ନାତି ତୋ ଯିବେ ନାଶ
ରାବଣ କୁମ୍ଭକର୍ଣ୍ଣର ନ ରହିବ ଅଂଶ ।
ଏତେ କହି ନାରଦ ସ୍ୱର୍ଗପୁର ଗଲେ
ମନ୍ଦୋଦରୀ ରାଣୀ ଚିନ୍ତା କରିଣ ରହିଲେ ।
ଏଥୁ ଅନନ୍ତରେ ଯେ ପାର୍ବତୀ କହେ ବାଣୀ
ଜନକର ନନ୍ଦନୀ ଶୁଣିଲେଟିକି ପୁଣି ।
ଈଶ୍ୱର ବୋଇଲେ ସେଯେଅଶୋକବନେଛନ୍ତି
ବାମଚକ୍ଷୁ ଡେଇଁଲା ସେଦିନ ଶୁଭକେଶୀ ।
ରାତ୍ରରେ ସ୍ୱପନ ଦେଖିଲା ସଖୀ ପୁଣ
ହାଉରେ ଶ୍ୱେତଗଜ ଚୁଡ଼ା ଯେ ଦୁଇ ପୁଣ ।
ପୂର୍ବ ଦିଗକୁ ସେ କରିଛନ୍ତି ମୁଖ
ଶ୍ୱେତ ବର୍ଣ୍ଣ ଦିଶୁଛନ୍ତି ଦଶରଥ ସୁତ ।
ଶ୍ୱେତ ପୁଷ୍ପମାଳା କଣ୍ଠେ ଶ୍ୱେତଜାମା ପାଗ
ଶ୍ୱେତ ହସ୍ତୀ ପିଠିରେ ବିଜେ ରାମ ଦେବ ।
ସୁବର୍ଣ୍ଣ କଙ୍କଣ କଣ୍ଠରେ ହାରବଳି
ବାହାରେ ବାହୁଟି ଶୋହେ କଣ୍ଠରେରତ୍ନମାଳ
ଏମନ୍ତ ବେଶ ଯେ ହୋଇଣ ରାମଭଦ୍ର
ରାବଣ ସଙ୍ଗରେ ସେ କରୁଛନ୍ତି ଯୁଦ୍ଧ ।
ରାବଣର ଗଳାରେ ରଙ୍ଗ ପୁଷ୍ପ ମାଳ
ରଙ୍ଗ ପାଗ ରଙ୍ଗ ପତାକା ରଙ୍ଗ ରଥ ଚଢ଼ି ।
ଦକ୍ଷିଣ ଦିଗକୁ ସେ କରଇ ଗମନ
କେତେବେଳେ ରାମସଙ୍ଗେ କରେ ଯୁଦ୍ଧ ପୁଣ
ଏମନ୍ତ ସ୍ୱପନ ଯେ ଦେଖିଲେ ଜାନକୀ
ପିଛିଲା ପହରରେ ଯେ ଥିଲାକ ସେ ରାତ ।
ଉଠିଲେ ସୀତାୟା ବସିଲେ ବେଶ ହୋଇ
ଉଚ୍ଚହସ୍ତୀ ଉପରେ ଯୁଦ୍ଧ କରେ ଯାଇ ।
ଏମନ୍ତ ସ୍ୱପନ ଯେ ଦେଖିଲି ଏହିମଣି
ତାହା ଶୁଣି ତ୍ରିଜଟା କହେ ମୃଦୁବାଣୀ ।
ଶୁଣ ଗୋ ତ୍ରୈଲୋକ୍ୟ ମାତ ମୋହରବଚନ
ରାମ ଲକ୍ଷ୍ମଣ ସୁଗ୍ରୀବ ମୋର ପିତାପୁଣ ।
ଅଙ୍ଗଦ ହନୁମନ୍ତ ପଞ୍ଚାଶ ଯୂଥପତି ସେନ
ମହା ମହା ମଲ୍ଲ ଯେ ଅନେକ ସଇନ୍ୟ ।

ସମୁଦ୍ରରେ ବନ୍ଧ ବାନ୍ଧି ଅଇଲେ ରାମପୁଣ
ଏମାନେ ସମସ୍ତେ ଯେ ଅଛନ୍ତି ସଙ୍ଗେ ଜାଣ ।
ସୁବଳସ୍ଥା ଗିରିରେ ଅଛନ୍ତି ଆସିକରି
ରାବଣ ଦେଖିବାକୁ ମନ୍ତ୍ରୀକ ଥିଲା ସ୍ଥଳ ।
ଦୁଇମନ୍ତ୍ରୀଙ୍କୁ ପିତାମୋର ବନ୍ଦୀ କରିଥିଲା
ରାମଚନ୍ଦ୍ର କହିବାରୁ ମନ୍ତ୍ରୀଙ୍କ ଛାଡ଼ିଦେଲା ।
ଆଜଦିନ ସମ୍ଭାଳ କରିବେ କାଲି ଯୁଦ୍ଧ
ସ୍ୱପନ ଦେଖିବା କଥା ହୋଇବ ସୁଯୋଗ ।
ଏତେ ବୋଲି କଥା ଯେ ହୋଇଲେଦୁଇଜଣ
ସକଳ ଅସୁରୀ ଯେ ଉଠିଲେ ସେହିକ୍ଷଣ ।
ଏହି ସମୟରେ ଆସି ପାହିଲା ରଜନୀ
ପୂର୍ବଦିଗେ ଉଦେ ଆସି ହେଲେ ଦିନମଣି ।
ଶୁଣିଣ ପାର୍ବତୀ ଯେ ବୋଲନ୍ତି ଦେବ ଶୁଣ
ରାବଣ ମନ୍ତ୍ରୀ ଦୁହେଁ ଲଙ୍କାକୁ ଗଲେ ପୁଣ ।
ଏଥୁ ଅନନ୍ତରେ ରାବଣ କହିଲା ଯେ ଜାଣ
ତୁମ୍ଭେ ଦେବତାମାନେ ଯାଅ ଯା ନିଜସ୍ଥାନ ।
ତାହାଶୁଣି ସୁରଗଣେ ଆନନ୍ଦ ହୋଇଲେ
ଅନ୍ତରୀକ୍ଷ ମାର୍ଗରେ ସ୍ୱର୍ଗକୁ ଚଳିଗଲେ ।
ଜାଣିଲେ ରାବଣେଶ୍ୱର ମରିବ ନିଶ୍ଚିତ
ପ୍ରୀତି କଥାମାନ ସର୍ବେ କହିଲା ବଇତ ।
ପ୍ରକୃତ ଗଢ଼ିଲା ପୂରିଲା ତାର କାଳ
ଏବେ ଆମ୍ଭେ ସୁଖରେ ବସିବା ସ୍ୱର୍ଗ ଆଳ ।
ଦୁଷ୍ଟପ୍ରାଣୀମାନେ ଯେବେ କହନ୍ତି ଶାନ୍ତକଥା
ଅନୁମାନରେ ଜାଣିବ ମରଣ ବ୍ୟବସ୍ଥା ।
କ ଅବ. କର୍ମ ଯେ ହେବ ପରାପତ
ଦୁଷ୍ଟଜନ ଶାନ୍ତ ହେଲେ ଅଟେ ଦୁଇମତ ।
ସୁଜନଜନମାନେ କହିଲେ ମନ୍ଦବାଣୀ
ଜାଣିବ ବିନାଶ ହୋଇବ ସେହି ପୁଣି ।
ଜାଣିବ ଶୁଭକର୍ମ ପ୍ରାପତ ହୋଇଲା
ସୁବୁଦ୍ଧି କଥାମାନ ଦୁଷ୍ଟ ଯେ କହିଲା ।
ଏ କଥା ସୁରଗଣେ ବିଚାରିଲେ ଜାଣି
ଆଜ ସମ୍ପଦ କେତେ ରାବଣ ଅର୍ଜେ ପୁଣି ।
ଛଳପୁର କହିଣ ସୀତାଙ୍କୁ ନେଲା ହରି
ଥୋକେକ ଦିନ ରାବଣ ବ୍ରହ୍ମାଣ୍ଡେ ଅଧିକାରୀ ।
ଛପନ ଦଣ୍ଡୀ ଯୁଗକୁ ସେ ପାଇଲା ଆୟୁଷ
ଶ୍ରୀରାମର ବାଣରେ ଏବେ ହେବ ପ୍ରାଣେନାଶ

ଏତେ ବିଚାର ଦେବେ ଗଲେ ନିଜସ୍ଥାନ
ଯାବନ୍ତ କହିଲେ ଶୁଣ ହେ ଷଡାନନ ।
ଦେବଙ୍କୁ ଲଙ୍କପତି କପଟେ ପଠାଇ
ଆବର ଯେତେ ଲୋକ ଦେଖାକ ଅଢ଼ଆଇ ।
ଇନ୍ଦ୍ରଜିତ ପ୍ରଶସ୍ତ ହେଲେ ପାଇ ବେନ
ଏକାନ୍ତରେ ବିଚାର କରେ ତାଙ୍କୁ ଘେନ ।
ବୋଇଲା ଦେବତାଏ ଅଟନ୍ତି ମୋର ବାଘ
ନଗରୁ ବାହାର କରି ଦେଲି ଯେମୋରବୁଦ୍ଧି
ଏଥି ଥିଲେ ନାନାକଥା ମାନ ସେ ଜାଣିବେ
ଉପାୟେ ଯେ ମୋହର ଶତ୍ରୁଙ୍କୁ ଜଣାଇବେ ।
ଯୁଦ୍ଧ ସରିବା ଯାଏ ସ୍ୱର୍ଗପୁରେ ଥାନ୍ତୁ
ରାମ ଲକ୍ଷ୍ମଣ ବଧ ହୋଇଲେ ଏଥିକୁ ଆସନ୍ତୁ
ଇନ୍ଦ୍ରଜିତ ବୋଇଲା ଯେ ଯେଝ ବେନକର
କେଉଁକଥା ନ ଜାଣ ହେ ତୁମ୍ଭେ ଦଶଶିର ।
ଋକ୍ଷ କପି ଗୁଡକୁ କମାଇ ତୁଚ୍ଛ ଜନ୍ତୁ
ତୁମ୍ଭ ବଳ ସଂଗ୍ରାମରେ ଅଟେ ମହାମେରୁ ।
ଯଦ୍ୟପି ଆଜ୍ଞା ହଏ ତୁମ୍ଭେ ଦେବ ମୋତେ
ରାମଲକ୍ଷ୍ମଣ ମାରିବି ଋକ୍ଷକପି ଯେତେ ।
ଏବେ ଶୁକ ସାରଣ ଆଣିଲେକ ବାରତା
ସେ କଥା ଅବମାନ ହେଉ ଦଶମଥା ।
କଥାମାନ ବୁଝିଣ କରିବା ନା କାର୍ଯ୍ୟ
ଶୁଣିକରି ବୋଇଲେ ଅସୁରକୁଳ ରାଜ ।
କହୋ ଶୁକ ସାରଣ କେବଣ ବାରତା
ଜ ଜ ତୁମ୍ଭେ ଦେଖି ଆସିଲ କହ ସେକଥା ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲଟିକ ଯାଇ
କେତେ ବଳ ଘେନିଣ ଆସିଛି ରଘୁସାଇଁ ।
ସୁଗ୍ରୀ ବିଭୀଷଣ ଛନ୍ତି କେତେକ ବିଶ୍ୱାସ
ତାଙ୍କର ବିଶ୍ୱାସ କଥା କହ ମୋର ପାଶ ।
ଶୁଣିକରି ମନ୍ତ୍ରୀବର କହେ କରଯୋଡ଼ି
ଶୁଣଦେବ ଲଙ୍କାର ଈଶ୍ୱର ଦଶଗିର ।
ତୁମ୍ଭର ଆଜ୍ଞାକୁ ମାନ ଆମ୍ଭେ ଚଳିଗଲୁ
କପିରୂପ ଧରିଣ ଆଟରେ ବୁଲିଲୁ ।
ପ୍ରଥମରେ ଦେଖିଲୁ ଯେ ନୀଳ ସେନାପତି
ଶତବାଳୀ ବୀର ପୁଣ ଅଛି ତାର ଜତ ।
ସୈନ୍ୟ ଗହଳରେ ନ ଦିଶଇ ପୁଣ ଭୁଇଁ
କ୍ଲାନ୍ତି ହୋଇଣ ପୁଣ ସର୍ବେ ଥିଲେ ଶୋଇ

ଆମ୍ଭେ ଦେଖନଜନ ସୁବଳୟାକୁ ଚଳିଗଲୁ
ସୈନ୍ୟ ସେନାପତିଙ୍କୁ ସେଠାରେ ଦେଖିଲୁ ।
ଅପୂର୍ବ ନବରେ ଯେ ଅଛନ୍ତି ରାମପୁଣ
ଧନୁଶର ଧରିଣ ଯେ ଜଗଇ ଲକ୍ଷ୍ମଣ ।
ସୁଗ୍ରୀବ ହନୁମନ୍ତ ଯେ ଜାମ୍ବବ ସୁଷେଣ
ବହୁତ ବିଶ୍ୱାସ ତୋର ଭାଇ ବିଭୀଷଣ ।
ଋକ୍ଷକପି ବଳତାର କଳନା ନ ଯାଇ
କ ଜାଣିକ ମେଦମାଙ୍କ ହୋଇଛନ୍ତି ଗୁଇ ।
ଇନ୍ଦ୍ରୋପବନ ମାଡ଼ି ରହିଛନ୍ତି ସଇନ
ଆଠ ଘଣ୍ଟେ ପଣି ନପାରିଲୁ ସୈନ୍ୟ ଚିହ୍ନି ।
ଶତେ ଯୋଜନ ଦୀର୍ଘ ପଞ୍ଚାଶ ଯୋଜନ ପ୍ରତ
ସୈନ୍ୟ ପୂରିବାରେ ଆଉ ନଦିଶଇ ପୃଥ୍ୱୀ ।
ସ୍ୱଚଳୟା ପର୍ବତ ଯେ ହୋଇଛି ନବାଞ୍ଚ
ଗାଲୁ ବାନର ଯେ ହୋଇଣ ସୁସଞ୍ଚ ।
ବନ୍ଧ ବିଶଶ ଯୋଜନ ଲମ୍ବ ପୁଣ ହୋଇ
ଦଶଯୋଜନ ଓସାର ବାଲି ତହିଁରେପଡ଼ିଛଇ
ଦେବଙ୍କୁ ଦେହ ସୈନ୍ୟ ଅଛନ୍ତି ଲଗାଲଗି
ନପୂଣ ଚେଷ୍ଟେ ବନ୍ଧ ଅଳପଯାଏ ଭାଗି ।
କେ ବାଟକୁ ଦୁଡ଼ଣ ଆଡେ ହୋଇଛନ୍ତି
କେ ବୋଲନ୍ତି ସେତୁ ସୈନ୍ୟ ନହାଇ ଆସନ୍ତି
ଅପ୍ରମିତ ବଳ ତାର ନ ପାରିଲୁ କଳି
ଋକ୍ଷ କପିମାନେ ସେ ଏକକୁ ଏକ ବଳି ।
କେବଣ ଗାଲୁ ପର୍ବତ ସମାନ ଦିଶନ୍ତି
ଟିଙ୍କପକ୍ଷୀ ସମାନେ ରୋମ ପୁଲକାନ୍ତି ।
ନଖାକ୍ରନ୍ତରୁ ଯେ ସାମାନ୍ୟ କପିମାନେ
ପକ୍ଷୀ ନ ଥାଇ ସେମାନେ ଉଡନ୍ତି ଗଗନେ ।
କାହାରି ହସ୍ତରେ ସେତୁ ନୁହନ୍ତି ନବାଣ
ପାଷାଣ ବୃକ୍ଷ ମାନ ସେ କରେଛନ୍ତି ଧରି ।
ଦେବ ଅସୁରେ ସେ ନୁହନ୍ତି କେବେବଧ
ଅସ୍ତ୍ରଶସ୍ତ୍ର ନାହିଁ ନଖଦନ୍ତ ଯେ ଆୟୁଧ ।
ଇନ୍ଦ୍ରଙ୍କର ବଜ୍ରକୁ ସେ ନ କରନ୍ତି ଭୟ
ଗର୍ଜନ କରନ୍ତି ଯେ ଆଷାଢ଼ ମେଘପ୍ରାୟ ।
ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତେ ଆକାଶେ ଝପିଯାନ୍ତି
ସମୁଦ୍ର ଭିତରକୁ ଶୂନ୍ୟରେ ଝାମ୍ପଦ୍ୟନ୍ତି ।
କପିଙ୍କର ରାଜା ସେ ଯେ ଅଟେ ସୁଗ୍ରୀବର
ଅଯୋନି ସମ୍ଭୂତ ସେ ଯେ ସୂର୍ଯ୍ୟର କୁମର ।

ସଂଗ୍ରାମ କଲେ ଇନ୍ଦ୍ରଙ୍କୁ ସେ ପାରନ୍ତି ଜିଣି
ହୁତଆ ହୁତକ ସେ ଉଦୟେ ଧରଣୀ ।
ବାଳିରୁ ସମ୍ଭୂତ ସେ ଅଙ୍ଗଦ ନାମେ ବୀର
ଯୁବରାଜ ହୋଇଅଛି ଥାଟରେ ତାହାର ।
ସମସ୍ତ କାର୍ଯ୍ୟ ସେହୁ ପାରେ ନର୍ଭ କର
ରଣରେ ସମାନ ତାକୁ ନାହାନ୍ତି କେହୁ ସରି
ନଳବୋଲିଣ ଦେବହେ ଯେବଣ ସେନାପତି
ଉପାଡ଼ି ପାରଇ ସେ ତୁମ୍ଭର ଲଙ୍କାଗୋଟି ।
ବଧାଘାତେ ମେରୁ ପର୍ବତ ଚୂର୍ଣ୍ଣ ହୋଇ
ତାହାକୁ ସଂଗ୍ରାମେ ଦେବ ସରିସମ ନାହିଁ ।
ହନୁମନ୍ତ ପ୍ରତିଜ୍ଞା ପ୍ରତ୍ୟକ୍ଷେ ଦେଖିଅଛ
ହେଦେବ ଆବର ତୁମ୍ଭେ କେବଣ କଥାପୁଚ୍ଛ
ସୁଷେଣ ବୈଦ୍ୟଙ୍କର ଅସଂଖ୍ୟ ଅଟେ କଥା
ତାହାର ହାତେ ଅଛି ଯେଉଁ ଔଷଧି ପୋଥା
ସେ ମନ୍ତ୍ରର ବଳେ ସେ ଜଗତପାରେ ଜିଣି
ବାଦରେ ବୃହସ୍ପତି ହାରିବେ ତାକୁ ପୁଣି ।
ଜାମ୍ବବ ଋକ୍ଷମନ୍ତ୍ରୀ ବୁଦ୍ଧିରେ ଶକତା
ବଧାତାର ବଳେ ସେ ବିଖ୍ୟସ୍ତ ବ୍ରହ୍ମବେତ୍ତା ।
ନଳନାମେ ସେନାପତି ଯେବଣ ଅଟେ ବୀର
ତାର ମନ କଲେ ଶୋଷି ପାରଇ ସାଗର
ସଂଗ୍ରାମରେ ସମ୍ମୁଖରେ ମିଳନ୍ତା କେହି ନାହିଁ
ଅନର୍ଗଳ ତୋଡ଼ିର ବାନ୍ଧଣ ଅଛି ସେହି ।
ଗନ୍ଧମାର୍ଦ୍ଦନ ବୀର ଅଟଇ କାଳକେତୁ
ଦେଖିଲେ ଶତ୍ରୁର ଘଟେ ନଷ୍ଟେ ମୃତ୍ୟୁ ।
ତାରକ୍ଷ ସେନାପତି ସେଯେ ବୀରଙ୍କର ବୀର
ପବନ ସମାନେ ବଳ ଅଟଇ ତାହାର ।
କାଞ୍ଚଣ ମହାବୀର ଶତ୍ରୁର ଅଟେ କାଳ
ଶତ୍ରୁ ବୋଲି ଶୁଣିଲେ ସେ ହୁଅଇ ଅନ୍ତବଳ
ଡ଼ାଳମ୍ବ ମହାବୀର ଅଟଇ ଅସ୍ବର୍ଗଳ
ପର୍ବତ ଫୋପାଡ଼ିଣ ପାତେ ଆପଣା ଶିର ।
ମହେନ୍ଦ୍ର ବୀର ମହୀ ପାରଇ ଲେଉଟାଇ
ଯାହାକୁ ନାଗଦେବତା ଦେଖିଲେଭୟପାଇ
କୁମୁଦର ମହିମା କଳନା ନ ଯାଇ
ସଂଗ୍ରାମରେ ପଶିଲେ ସୁରଙ୍କୁ ଜିଣଇ ।
ବଳମୁଖ ମହିମା ଅତି ଅଗୋଚର
ଅଗ୍ନିର ତେଜ ହରଜେ ତାହାର ଶରୀର ।

ପ୍ରଳୟ ସମୁଦ୍ର ପ୍ରାୟ ଗର୍ଜନ କରଇ
ତରଙ୍ଗ ଲହରୀ ଦେଖି ଯାହାକୁ ଡରଇ ।
କାଳମୁଖ କାଳଯମ ସେ ପ୍ରତ୍ୟକ୍ଷ
ହଣେ ମତ୍ତଗଜ ବୋଲାଏ ଧୂମାକ୍ଷ ।
ସଞ୍ଜିବଣୀପୁତ୍ରୁଆସିଜନ୍ମହୋଇଛିଅଦତ୍ୟରସୁତ
ତିନଦିନ ଯୁଝିଲେ ସେ ନୁହେଁ କଳକ୍ଷିପ୍ତ ।
ସରମେକୁସଙ୍ଗେତୋରକେହୁଯୁଝିନପାରିବେ
ଯୁଝିଲେ ଅବଶ୍ୟ ସେ ପବଣ ହରାଇବେ ।
ଦଧନ ମହିମା ଦେବ କେ କହି ପାରିବ
ବନଗିରି ଚୂର୍ଣ୍ଣା ହୁଏ ପାଦଘାତେ ଦେବ ।
ପୃଥ୍ୱୀ କମ୍ପଇ ହେଲେ ଯାର ମୁଖନାଦେ
ଭୁଷ୍ଟ ହସ୍ତୀବଳେ ସେ ହଂଶ ଯୁଣ ଲମ୍ବେ ।
ବସନ୍ତ ସେନାପତି ଯେ ବୀରବରବାନା
ରଣେ ଜିଣି ପାରଇ ବବଧ ହୋଇ କନା ।
ଗବୟ ବୋଲିକରି ଯାର ନାମ ହୋଇ
ତାହାରସଙ୍ଗେ ଯୁଝିଲେ ନିଶ୍ଚୟ ମୃତ୍ୟୁହୋଇ
ତାର ନାମ ଶୁଣିଲେ କମ୍ପେ ବସୁମତୀ
ଯାନାମ ଧରନ୍ତେ ମଥା ନଟେକେ ବାସୁକୀ ।
ସାରସ କଥାତ ଅଟେ ଅଗୋଚର
ଶତ୍ରୁ ହୋଇଣ କଏ ମିଳବ ସମ୍ମୁର ।
ପାରସାର ମହିମା ଶୁଣିମା ଲଙ୍କସାଇଁ
କେ ପ୍ରାଣ ପାଇବ ତା ସଙ୍ଗେ ଯୁଝିଲେହିଁ ।
ଶରଭ ସେନାପତି ଯେ ଅଟେ ମହାବୀର
ଯାର ଭୟେ ବାସୁକ ନ ଟେକଇ ଶିର ।
ସଂଗ୍ରାମରେ ସେହୁ ଜଗନ ଜିଣି ପାରଇ
ହେଦେବ ତାହାକୁ କେହି ଜିଣି ନପାରଇ ।
ଶତବଳୀ ବୋଲିଯେ ବାନରଙ୍କ ସେନାପତି
ଦିଗପାଳଙ୍କୁ ଜିଣି ପାରଇ ଶତେ ଥାନ୍ତି ।
ମଲ୍ଲ ମହାମଲ୍ଲିତ ଅନେକ ବଳିଆର
ନାମ ଧରିଣ କେତେ କହିବି ଦଶଶିର ।
ଆସ୍ଥସେନା ପଞ୍ଚିଶ ଯୂଥପତି ମହାମଲ୍ଲ
ଉତ୍ତର ହିମାଳୟୁ ଯାଏ ଲାଗିଛନ୍ତି ବଳ ।
ଦକ୍ଷିଣ ଦିଗୁ ଶତେ ସେନାପତି ଆଏ
ଅଠର ମହାମଲ୍ଲି ତାଙ୍କର ସଙ୍ଗେ ଥାଏ
ନଳଗିରି ଠାବରୁ ଦକ୍ଷିଣ ପରିଯନ୍ତେ
ଅଠର ପଦ୍ମ ବାନର ଧାଇଁଲାଗିଅଛନ୍ତେ ।

ପୂର୍ବ ଦିଗରୁ ଆସେ ଆଠ ସେନାପତି
ମଲ୍ଲିମହ ମଲ୍ଲ ନବସହସ୍ର ତାଙ୍କ ସଙ୍ଗରେଅଛନ୍ତି
ଉତ୍ତର ଦିଗରୁ ଦଶ ସେନାପତି ଜାଣ
ତାଆଗେ ପଦ୍ମ ସେନ ବାନର ଆସେ ପୁଣ ।
ବତିଶ ପଦ୍ମଭାଲୁ ତାଙ୍କ ସଙ୍ଗରେ ଥାଏ
କାଶି ପର୍ଯ୍ୟନ୍ତ ଧାଡ଼ି ଲାଗିଣ ଛନ୍ତି ରାଏ ।
ପନ୍ଦର ସହସ୍ର ଯେ ମଲ୍ଲ ମହାମଲ୍ଲ
ଉତ୍ତର ଦିଗୁ ଆସନ୍ତି ଏତେ ସୈନ୍ୟ ବଳ ।
ପଶ୍ଚିମ ଦିଗୁ ସେନାପତି ଯେ ପନ୍ଦର
ପନ୍ଦର ସହସ୍ର ଯେ ମଲ୍ଲ ମହାବୀର ।
ଅଶି ପଦ୍ମ ଭାଲୁ ଶତେପଦ୍ମ ଯେ ବାନର
ଅସ୍ତଗିରି ପର୍ଯ୍ୟନ୍ତ ଲାଗିଛନ୍ତି ଧାଡ଼ି ।
ବାଇଶି କୋଶ ଓସାର ଅଟେ ବନ୍ଦିଠାଣ
ସୁବେଳପାର ଉତ୍ତରକୁ ବାଇଶି କୋଶ ଜାଣ
ଲାଗିଛି ଗହଳ ଯେ ଶବଦ ଶୂନ୍ୟନାହିଁ
ରଡ଼ି କରୁଛନ୍ତି ସେ ଯେ ଲଙ୍କାଗଡ଼କୁ ଚାହିଁ ।
ନ ପୁଣ ସେ କୂଳକୁ ଉପାଡ଼ି ଘେନଯାନ୍ତି
ପାଟେଶ୍ୱ ଓଡ଼ଇଁକ ପୁଣ ଗଡ଼ରେ ପଶନ୍ତି ।
ରାମ ଲକ୍ଷ୍ମଣ ଅଟନ୍ତି ନର୍ଧୂମ ଅଗ୍ନିପ୍ରାୟେ
ବିଷ୍ଣୁ ଅବତାର ମଣ୍ଡେ ହୋଇଲେ ନଷ୍ଟପ୍ରାୟେ ।
ସ୍ୱୟଂ ରୁଦ୍ର ଅଟନ୍ତି ଶ୍ରୀରାମ ସାନ ଭାଇ
ତାର ଶର ସମ୍ଭାଳିବାକୁ ଭାଜନ କେହିନାହିଁ
ଜଗତ ଦହି ପାରଇ ସେହି ଅଗ୍ନିଶରେ
ମେରୁ ପର୍ବତ ଉପାଡ଼େ କୋପଭର ହେଲେ
ଶ୍ରୀରାମ ଦୟାଳୁ ଅଟନ୍ତି କ୍ରୋଧ କେବେନାହିଁ
ବଡ଼ାଇ ପ୍ରତାପୀ ଯେ ସୁମିତ୍ରା ପୁତ୍ର ହୋଇ ।
ସୁଗ୍ରୀବ ହନୁମନ୍ତ ଏକୁ ଏକ ବଳି
କେହୁ ତାଙ୍କର ସୈନ୍ୟ ପାରିବ ଯେ କଳି ।
କଥା ହେଉଛନ୍ତି ଯେ ସାତପାଞ୍ଚ ମେଳେ
ବୋଲନ୍ତି ରାମ କର୍ମା ଅଛନ୍ତି ମଉନରେ ।
କହିଲେ ତ ଗଡ଼ରେ ଆମ୍ଭେ ଯେ ପଶନ୍ତୁ
ଗୋଟି ଗୋଟି ଅସୁର ଧରିଣ ଆଣନ୍ତୁ ।
କେବୋଲଇ ଆସିବକ ଜଣେକେଏକେଏକେ
କେବୋଲଇ ନଅଣ୍ଡିଲେ ମାରିବା ସ୍ତ୍ରୀଲୋକେ
କେ ବୋଲଇ ବାଳକ ନ ରଖିବା ଆଜ
କେ ବୋଲଇ ବୁଢ଼ାଙ୍କୁ ମାରି ନ ଥୋଇବା ଆଜ

କେହୁ ବୋଲଇ ଯୁବା ସ୍ତ୍ରୀ ରାଣୀମାନଙ୍କର
ଧରି କରି ରମଣ କରିବା ନକର ।
ବନଗଣ ସାଗର ଉତ୍ତର ପାଶଯାଏ
ଏହିପରି କଥାମାନ ଥାଟ ଯାକ ହୁଏ ।
ଏ ଠଙ୍କ ଗହଳରେ ନ ଦିଶେ ଦଶ ଦିଶ
ଯେଉଁଠାକୁ ଯାଉ ଆମ୍ଭେ ସେଠାରେ ବିଶେଷ
ବିଭୀଷଣ ହନୁମାନ ରାତରେ ବୁଲୁଥାନ୍ତି
ଉକାସି ଦେଇଣ ସେ ଦାଉଣ୍ଡି ବଜାନ୍ତି ।
ଯାଉ ଯାଉ ଆମ୍ଭଙ୍କୁ ସେ ଦେଖିଲେ ସେବାଟେ
ଦୂରରୁ କୁମ୍ଭର ଭାଇ କହିଲା ଯେ ଆଣ୍ଟେ ।
କେ କେରେ ତୁମ୍ଭେ ଥାଟ ଭିତରେ ବୁଲୁଥାଅ
ହନୁମନ୍ତକୁ ପେଷିଦେଲ ଏହାଙ୍କୁ ଧରିନଅ ।
ରାତରେ ଆମ୍ଭଙ୍କୁ ବନ୍ଧନ କରିଣ ଥୋଇ
ରାତ ପାହିବାରୁ ରାମ ଛାମୁରେ ଦେଲେ ନେଇ
ଦେଖିଣ ପଚାରିଲେ ରଘୁକୁଳ ସାଇଁ
କହିଲୁ କଥାମାନ ଯାଇଥିଲୁ ଯହିଁପାଇଁ ।
ବିଭୀଷଣ ତାହାଙ୍କୁ ଅନେକ କହିଲା ପେଡ଼
ରାମଚନ୍ଦ୍ର ବୋଇଲେ ତାଙ୍କୁ ଛାଡ଼ିଦିଅ ବୋଲି
ତେବେ ଆମ୍ଭେ ପ୍ରାଣ ପାଇ ଅଇଲୁ ଗୋସାଇଁ
ତାଙ୍କ ସଙ୍ଗେ ଯୁଦ୍ଧ କଲେ ତୁମ୍ଭଙ୍କୁ ଯଶ ନାହିଁ
ଅକାରଣେ ମରିବା କରିଲେ ହେବ ସନ୍ଧି
ଦେଖ ହେଲେଣି ପାରି ସାହେର ଜଳଧି ।
ତାଙ୍କ ସଙ୍ଗେ ଦ୍ୱନ୍ଦ୍ୱ ଏବେ ନକର ଲଙ୍କପତି
ଅକାରଣେ ସୈନ୍ୟବଳ ନ ମରା ନୃପତି ।
ରାବଣ ବୋଇଲା ତୁମ୍ଭେ ମନ୍ତ୍ରୀ ଦୁହେଁ ଶୁଣ
ମୋତେ ଡରାଇବାକୁ ତ ଆସିଛ ରାମଗଣ ।
ମନ୍ତ୍ରୀ ହୋଇ ତୁମ୍ଭ ଦେହେ କିଛିହିଁ ଜ୍ଞାନନାହିଁ
ମୋର ସଙ୍ଗେ ଯୁଝିବାକୁ କିଏ ସେ ଅଛି ମର୍ତ୍ତ୍ୟ
ନ ଜାଣିବା କଥା ତୁମ୍ଭେ କହୁଛ ଦୁହେଁ ପୁଣି
ଅନେକ ଥର ମୁଁ ଯେ ଇନ୍ଦ୍ରକୁ ଅଛି ଜିଣି ।
ମୋହର କଥାମାନ ନାହିଁକି ତୁମ୍ଭେ ଜାଣି
ବରଧି ବୋଲାଏ ଦିଗପାଳ ଚୂଡ଼ାମଣି ।
ତ୍ରୈଲୋକ୍ୟ ଦିଗବନେ କରି ମୁଁ ଜିଣିଲି
ରୁଦ୍ର ସମ୍ମୁଖେ କପିଳାସ ଉପାଡ଼ିଲି ।
କିଏ ବା ମୋର ହସ୍ତେ ପ୍ରାଣ ପାଇନାହିଁ
କିଏ ବା ନ ଡରଇ ମୋହର ମୁଖ ଚାହିଁ ।

ଏମୋର କଣ୍ଟକଅଟେ ଦେବଲୋକଙ୍କୁଅଜୟ
ମୋତେସେ ଡରନ୍ତିସର୍ବେମୋହରନାହିଁଭୟ
ମୋହର ମନ୍ତ୍ରୀ ହୋଇଣ ମୋର ବଳ ନିନ୍ଦୁ
ରାମ ଲକ୍ଷ୍ମଣ ଯଣ୍ଡିକ ବଡ଼ କରି ବନ୍ଦୁ ।
ସଚରାଚର ମଧ୍ୟ ଯେ ସପତ ସାଗର
ମୋରକୋପହେଲେବେଳେହୋନ୍ତିଅରହର ।
ସୃଷ୍ଟି ସଂହାର ମୁଁ କରଇ ନିମିଷକେ
କେଉଁଜ ନଦେବମୋତେସଂସାରତ୍ରୈଲୋକ୍ୟ
ଏତେ କହି ଲଙ୍କପତି ଭିତର ପୁର ଗଲା
ଏ ମନ୍ତ୍ରୀ ଦୁହିଁଙ୍କି ଦୂର କରରେ ବୋଇଲା ।
ରାବଣ ବାର୍ତ୍ତା ଶୁଣି ଅନ୍ତରାଳ ତଉ
ଛନଛନ ମନ ତାଙ୍କ ହେଲା ବିପରୀତ ।
ତୋଟାପୁର ନଗରରେ ହେଲା ବେଗ ଯାଇ
ପଞ୍ଚାଶ ଯୋଜନ ଉଚ୍ଚର୍ଗ ଅଛି ହୋଇ ।
ସାତପୁର ମେଢ଼ ଯେ ସୁବର୍ଣ୍ଣମୟ କମ
ନବରତ୍ନ ଖଞ୍ଜି ଅଛି ଅମୂଲ୍ୟ ଆୟୋଜନ ।
କସ୍ତୁରୀର ଚିତ୍ରମୟେ କର୍ପୂରର ଗୁଣ୍ଡି
ବିବିଧ କୁସୁମରେ ସେ ପୁର ଅଛି ମଣ୍ଡି ।
ନେତ ପାଟ ପଟମ୍ବ ଯେ ନାନା ବସ୍ତ୍ରମାନ
ଚଉକ ବାର୍କିଆ ଚାର ବିଶେ ଶୋଭାବନ ।
ମର୍କତର ଓଗରେ ମାଳମଣି ଖୂଣ
ଲୁର୍ବିନ୍ଦର ଘୋଟାପଟା ଯୋଡ଼େ ବଇଡୂର୍ଯ୍ୟ
ମାଣିକ୍ୟର ଖମ୍ବ ଯୋଡ଼େ ସ୍ଫଟିକ ପାବଚ୍ଛ
ଗଜମୋତି ଝରା ଲମ୍ବଇ ଚଉପାଖ ।
ସପତ ପୁର ହୋଇଣ ଶୋଭା ସେ ବିଶନ୍ତି ।
ବେଳକାଳ ଜାଣିଣ ଯୁବତୀ ଖଟିଛନ୍ତି ।
ମରଡ଼ର ନବରେ ଯୋହଳ ସବୁଠାରେ
ରାବଣ ବସିବା ଠାବେ ବୃନ୍ଦୁଆମାନ ଉଡ଼େ
ବିବିଧ ବର୍ଣ୍ଣେ ବୃନ୍ଦୁଆମାନ କଲେ ଠୂଳ
କେଉଁଠାରେହେମଗିରିକାହିଁଭେଖଟଦୋଳ
କେବଣ ପୁରରେ ତାର ଭୂମିଶେଯ ମୂଚୁଳି
କେଉଁଠାରେପଲଙ୍କକେଉଁଠାରେଖଟଦୋଳି
ବିବିଧ ପୁରମାନ ଯେ ଅତି ଶୋଭାବନ
ପୁରମାନଙ୍କରେ ମେଢ଼ ଶୁଦ୍ଧ ଯେ ସୁବର୍ଣ୍ଣ ।
ତହିଁରେ ବିଜୟ ଯେ କଲେ ଦଶଶିର
ଉପର ପୁରକୁ ବେଗେ ଗଲା ଧାଇଁକାର ।
ଚଉକତିକ ପୁଣ ସେ ବୁହଁଇ ନରେଶ
ଦେଖିଲା କପିମୟେ ଘୋଟିଣଛନ୍ତି ପୃଥ୍ୱୀ ।
ବନଗିରି ପର୍ବତ ସମୁଦ୍ର ନ ଦିଶଇ
ବାନର ଭାଲୁ ଯେ ଚଉଦିଗେ ଘୁରଇ ।
ଲଙ୍କା ଉପବନେ ଯେ ସୁବେଳ ପର୍ବତ
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମେ ସମସ୍ତ ।
ଦେହକୁ ଦେହ ଲାଗିଅଛନ୍ତି ଯଇନ
କଳକଳା ଶବଦ ନାଦେ ପୂରିଛି ମେଦିନୀ ।
କେବଣଠାରେ କପି ସିନ୍ଦୂର ବର୍ଣ୍ଣ ଦିଶି
କେଉଁଠାରେ ହରିତାଳ ବର୍ଣ୍ଣରେ ପ୍ରକାଶି ।
ମେଘଖଣ୍ଡ ପ୍ରାୟେ କେହି ଦିଶୁଛନ୍ତି କଳା
କେବଣଠାରେଦର୍ପଣପ୍ରାୟେଦିଶେ ଧୋର ।
କାହିଁରେ ତାରାଗଣଛନ୍ତି ଉଦେ ହୋଇ
କେଉଁଠାରେ ଶଶୀଧର ଅଛନ୍ତି ପୁଣ ଉଇଁ ।
କେଉଁଠାରେ କୁହୁକକେଉଁଠାରେଜଳମୟେ
କେଉଁଠି ଦିଶୁଅଛି ଅତି ଅସମ୍ଭବ ଏ ।
ରାବଣ ଦେଖିଣ ଯେ ନ ସ୍ଥିରଇ କଛି
କ ଜାଣି ତଇଳରେ ପଡ଼ିଅଛି ମାଛି ।
ଧାଇଁକାରେ ରାବଣ ମେଢ଼ରୁ ଓହ୍ଲାଇଲା
ଆସ୍ଥାନ ନବରେ ଯାଇ ଅବକାଶ ହେଲା ।
ଇନ୍ଦ୍ରଜିତ ପ୍ରଶସ୍ତ ଅଛନ୍ତି ବେନଜନ
ଦେଖି ପ୍ରଣାମ କରି ଉଭା ହେଲେ ପୁଣ ।
ଖଟଦୋଳ ବାର୍କିଆରେ ବିଜେକଲେ ଯାଇ
ରାଜା ଆଜ୍ଞା ଦେଲେ ଇନ୍ଦ୍ରଜିତ ମୁଖ ଚାହିଁ ।
ଶାର୍ଦ୍ଦୋଳକୁ ହକାରିଣ ଆଣ ମୋର ପାଶ
ଆଉ କେହି ନ ଆସିବେ ଦ୍ୱାରୀଙ୍କି କହିଆସ
ଶୁଣି ଇନ୍ଦ୍ରଜିତବୀର ଗଲାକ ତଡ଼ିତ
ଶାର୍ଦ୍ଦୋଳ ନାମ ଧରି ଡାକେ ଚଉକତ ।
ଡାକ ଶୁଣି ଓଗର ବେଗେ ଚଳିଗଲା
ମେଘନାଦ ସମ୍ମୁଖରେ ସେ ପ୍ରବେଶ ହୋଇଲା
କୁମର ବୋଇଲେ ତୋତେ ନୃପତିଆଦେଶ
ଏକାନ୍ତେକହିବେତୋତେ ବେଗ ହୋଇଆସ
ଦ୍ୱାରୀକ କହିଲା ଭିତରକୁ ନପିବେ କେହି
ଘୁଞ୍ଚ ନଦେବୁ କାହାକୁ ରାଜାର ଆଜ୍ଞାହୋଇ
ଏତେ କହିଣ ପୁଣ ଭିତର ପୁର ଗଲା
ନୃପତି ସମ୍ମୁଖେ ଯାଇ ଓଗର କହିଲା ।

ପ୍ରଣାମ କରି ଶାର୍ଦ୍ଧୋଳ ବେଗେ ଭୂମି ଲୋଟି
ଶିରେ ହାତ ଦେଇ ଅଛଇ କର ଯୋଡ଼ି ।
ରାବଣ ବୋଇଲା ମୋର ସନ୍ନିଧିକୁ ଆସ
ଶୁଣିଣ ଶାର୍ଦ୍ଧୋଳ ଯେ ମିଳିଲା ରାଜାପାଶ ।
ଦଶକନ୍ଧ କହିଲେ ତାକୁ ମଧୁର ବଚନ
ଇନ୍ଦ୍ରଜିତ ପ୍ରଶସ୍ତ ଅଛନ୍ତି ଦେବଜନ ।
ଏ ମୋର ବିଶ୍ୱାସ ଯେ ଏକ ମନ୍ତ୍ରୀ ଜାଣ
ଏହାର ଜାନୁରେ ମୁଁ ଦିଅଇ ସୀମସ୍ଥାନ ।
ସ୍ୱଭର ବୋଲ ମୁଁ ଯେ ନ କରଇ ଆନ
କୁମ୍ଭ ସମାନେ ଏହାକୁ ମଣଇ ସମାନ ।
ଗୁପତ କଥାମାନ ମୁଁ ଏହାକୁ ପୁଚ୍ଛଇ
ଏହାକୁ ମୋର ଦୟା ତ ଅନେକ ଅଛଇ ।
ଯେତେଦିନ ମୁଁ ଲଙ୍କାରେ ରାଜା ହୋଇଥିବି
ତେତେଦିନ ଏହାର ମୁଁ ଅଭାବ ନ ଦେଖିବି
ଏବେ ଦେଖ ମୋତେ ଆସି ପଡ଼ିଲା ବିପତ୍ତି
ଋକ୍ଷ ମର୍କଟଙ୍କୁ ମୋର ଲାଗିଲା ଏବେ ଖ୍ୟାତି ।
ରାମ ଲକ୍ଷ୍ମଣ ଦୁହେଁ ମାନବ ଜଟାଧାରୀ
ପର୍ବତେ ବନ୍ଧ ବାନ୍ଧି ହୋଇଲେ ସିନ୍ଧୁପାରି ।
ତାହାର ବଳ ଏବେ ତୁ ଜାଣିଆସ ଯାଇ
ଆନ ଲୋକ ବୋଲକୁ ମୋର ପ୍ରତେ ନାହିଁ
ଶୁକ ସାରଣ ଯହୁଁ କହିଲେ ମୋତେ ଭଣ୍ଡ
ତାଙ୍କର କଥାକୁ ମୁଁ ଯେ ମଣିଲି ବିଖଣ୍ଡ ।
ଏହିକ୍ଷଣି ଦେଖିଯାଇ ଜାଣିଆସ ପୁଣ
ତୋହର କଥାକୁ ସତ କରିବି ମୁଁ ଜାଣ ।
ଏହାଶୁଣି ଇନ୍ଦ୍ରଜିତ ପ୍ରଶସ୍ତ ବୋଲନ୍ତି
କୁମ୍ଭର ଆଜ୍ଞା କେହୁ ଲଙ୍ଘିବ ଲଙ୍କପତି ।
ଯାଅ ଯା ଏହିକ୍ଷଣ ଆସ ଯା ବଳକଳ
ଏହାଶୁଣି ବୋଇଲା ରାବଣ ମହାବଳୀ ।
ଯାଅ ହେ ଶାର୍ଦ୍ଧୋଳ ହୋକର ମୋର କାର୍ଯ୍ୟ
ତୋର ଅଇଲେ ମଣୋହି ହେବ ମୋର ଆଜ
ଶୁଣିକରି ଶାର୍ଦ୍ଧୋଳ ଯେ କହେ କରଯୋଡ଼ି
ଯାଉଅଛୁ ଏବେ ବୋଲି ବେଗେ ସେ ବାହୁଡ଼ି
ନବର ଭିତରୁ ତାର ବାହାରି ଅଇଲା
ଶ୍ରୀରାମର ସୈନ୍ୟ ସେ ଯେ ଜାଣିବାକୁ ଗଲା ।
ଲଙ୍କାଗଡ ଭିତର ଦୁଆରେ ଯେ ଯାଇ
ବାହାର ସୀମାନ୍ତକୁ ଦୃଷ୍ଟିରେ ଦେଲା ଚାହିଁ ।

ଇନ୍ଦ୍ର ଉପବନ ସୁବଳୟା ଯେ ପର୍ବତ
ଯେତେକ ସୈନ୍ୟ ପୂରି ଅଛନ୍ତି ଅପ୍ରମିତ ।
ସୈନ୍ୟ ଦେଖି ଭୟ କରି ପାଚେରିହାରଉଠି
କପି ଲଙ୍କ ମଧ୍ୟରେ ଦିଶୁନାହିଁ କିଛି ।
ଶତେ ଯୋଜନ ସିନ୍ଧୁ ବଢାଇ ଶତ ଯୋଜନ
ଜମ୍ବୁଦ୍ୱୀପକୁ ନଜର କଲାକ ସେ ପୁଣ ।
ଲଙ୍କାଗଡ ଚଉକତି ଅଛି ଯେତେ ଦେଶ
ସେତେଦୂରକୁ ଦୃଷ୍ଟି ଦେଲା ଶାର୍ଦ୍ଧୋଳ ବିଶେଷ
ଏତେ ଦୂର ନିର୍ଘଣ୍ଟରେ ରହି ଯେ ଅଛନ୍ତି ବଳ
ଏଥିର ଭିତରେ ତେତେକ ସୈନ୍ୟ ଯେ ଗହଳ
ବନ୍ଧ ଶହେ ଯୁଣ ବିଳଶି କୋଶ ପ୍ରତି
ଆସିବାର ବେଳେ ଯେ ଦେଖି ଯନ୍ତ୍ରାଯନ୍ତ୍ର ।
ଗହଳ ସରିଲା ପର୍ଯ୍ୟନ୍ତ ଆସୁଛନ୍ତି ରହି
ସିନ୍ଧୁର ଉପର କୂଳ ଦିଶୁଛି ଧୂମ୍ରମୟି ।
ଶାର୍ଦ୍ଧୋଳ ଦେଖିଣ କଲା ମନେ ମହାଭୟେ
ଏ ମନ୍ତ୍ର ପଢ଼ିଣ କପୋଳେ ଧୂଳି ଦିଏ ।
ଲକ୍ଷେ ଯୋଜନର ଲୋକ ପାରଇ ସେ ଚିହ୍ନି
ଏମନ୍ତ ମନ୍ତ୍ର ଯେ ଅଛଇ ମନେ ଘେନି ।
ସେ ମନ୍ତ୍ରକୁ ନାରଦ ଶାର୍ଦ୍ଧୋଳେ କହିଥିଲେ
ଯେବଣ ଦିନ ତାକୁ ପ୍ରସନ୍ନ ଋଷି ହେଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବ ହର
ଶାର୍ଦ୍ଧୋଳକୁ କିମ୍ପା ନାରଦ ଦେଲେ ବର ।
ଈଶ୍ୱର ବୋଇଲେ ଶୁଣ ହେ ପାର୍ବତୀ
ଯେତେବେଳେ ଶାର୍ଦ୍ଧୋଳର ବୟସ ସରିଲାଟି
ତପସ୍ୟା କଲା ଯାଇ ଭାର୍ଗବୀ ନଦୀ ତୀରେ
ଶତେ ବର୍ଷ ପର୍ଯ୍ୟନ୍ତେ ତପ ମହାଘୋରେ ।
ନାରଦ ମହାଋଷି ଏକ ଦିନକରେ
ପ୍ରବେଶ ହେଲେ ଯାଇ ତାହାର ଆଗରେ ।
ଦେଖିକରି ଶାର୍ଦ୍ଧୋଳ ଯେ ମହାତୋଷ ହେଲା
ନିଶ୍ଚଳ ଆସନରୁ ବେଗେ ସେ ଉଠିଲା ।
ଅଳଟ ପଙ୍ଖା ଘେନି ନାରଦଙ୍କୁ ବିଞ୍ଚି
ସନ୍ତୋଷ ହୋଇଣ ଯେ ବୋଇଲେ ଦେବଋଷି
ବୋଇଲେ ଶାର୍ଦ୍ଧୋଳ ହୋ ମୋର ବୋଲ ଶୁଣ
ତୁ କିମ୍ପା ତପ କରୁ ନଦୀକୂଳେ ପୁଣ ।
ଶାର୍ଦ୍ଧୋଳ ବୋଇଲା ତୁମ୍ଭେ ଶୁଣ ମୁନିବର
ମୋହର ମନରେ ଯାହା କରିଛି ବିସ୍ତର ।

ସ୍ମରିଲେ ଲକ୍ଷେ ଯୁଣ ଦଶିବ ନେତ୍ର ତୋର
ବାନର ମନୁଷ୍ୟ ଦେବ ଅସୁର ଚନ୍ଦ୍ର ପର ।
ତରୁଲତା ଜୀବଜନ୍ତୁ ଗିରି କନ୍ଦର ଯେତେ
ସମସ୍ତ ଚିହ୍ନିବ ଲକ୍ଷେ ଯୋଜନ ପରିଯନ୍ତେ ।
ସୈନ୍ୟବଳ କଳେବ ତିନପୁରେ ମୁହିଁ
ଏହି ବର ମୋତେ ଦେବ କହୁଛୁ ଗୋସାଇଁ
ନାରଦ କୋଇଲେ ଅସ୍ତୁ ହେଉ ହେ ଶାର୍ଦ୍ଦୋଳ
ବର ଦେଇ ବ୍ରହ୍ମମୂର୍ତ୍ତି ଗଲେ ସ୍ୱର୍ଗପୁର ।
ଗଲା ବେଳରେ ମୁନି ମନ୍ତ୍ର କହିଗଲେ
ସେ ମନ୍ତ୍ରକୁ ଶାର୍ଦ୍ଦୋଳ ମନରେ ରଖିଲେ
ସେହି ମନ୍ତ୍ରକୁ ନାରଦ ମନରେ ସୁମରି
ରାବଣ କହିବାରୁ ସେ ଆସେ ଦେଖି କରି ।
ପାଚେରୀ ଉପରେ ଉଠିଣ ଅନାଇଲା
ସୈନ୍ୟଙ୍କୁ ଦେଖିଣ ସେ ମନରେ ଭୟ କଲା ।
ସେହି ମନ୍ତ୍ର ପଢ଼ିଣ କପୋଳେ ଧୂଳି ଦେନ
ଲକ୍ଷେ ଯୋଜନର ଲୋକ ପାରଇ ସେ ଚିହ୍ନି
ସେହି ମନ୍ତ୍ର ଶାର୍ଦ୍ଦୋଳକୁ ନାରଦ କହିଥିଲେ
ଯେବଣ ଦିନ ତାକୁ ପ୍ରସନ୍ନେ ବର ଦେଲେ
ତୁହି ସ୍ମରଣରେ ସକଳ ପୁର ଯିବୁ
ବନ ଗିରି ସିନ୍ଧୁ ଭୂ ସକଳ ବୁଲିବୁ ।
ଗୁପତ ପ୍ରକଟ ଯେ ଜାଣିବୁ ଯେମନ୍ତେ
ମୁହିଁ ପ୍ରସନ୍ନତରେ ବର ଦେଉଅଛି ତୋତେ ।
ଯେଉଁ ଅଶ୍ୱ କପୋଳରେ ଭ୍ରମର ଶିଖା ଥିବ
ସେ ଅଶ୍ୱକୁ ଦେଖିଲେ ଯେ ମନ୍ତ୍ର ସିଦ୍ଧ ହେବ
ସେ ଅଶ୍ୱର ଲଦିକୁ ଯେ ଆଣିବୁ ତଡନ୍ତ
ବସ୍ତ୍ରେ ଧରି ତାହାକୁ ତୁ ତପୁଡ଼ିବୁ ଧାତ ।
ତମ୍ବାର ପାତ୍ରେ ଲୁହା ଯତନେ ଥୋଇବୁ
ମରିଚ ଲବଙ୍ଗ ଦେଇ ରଞ୍ଜନ ଘୋଟିବୁ
ନୟନେ ଦେଲେ ଅନ୍ଧାର ଆଲୁଅ ଦିଶଇ
ତୋହମନ ଯେତେବେଳ ରଞ୍ଜନ ଦେନ ଯାଇ
ଆବର ମନ୍ତ୍ର ବାବୁ ତୋ ବାମପାଦ ଧୂଳି
ସୂର୍ଯ୍ୟଙ୍କୁ ସୁମରିଣ ତୋ ନୟନେ ଦେବୁ ବୋଲି
ଲକ୍ଷେ ଯୋଜନର ତୁ ଜାଣିବୁ ବାରତା
ଆବର ଶାର୍ଦ୍ଦୋଳ ହୋ ଜାଣିବୁ ସର୍ବକଥା
ଶ୍ୱେତ ଅରଖ ଗଛ ପୂର୍ବ କତି ମୂଳ
ଶୁକ୍ଳ ଅଙ୍ଗାରନ୍ତ ଶିଖର ଯେ ଡାଳ ।
ଗୋରଚନା କୁଙ୍କୁମ କର୍ପୂର ଏକସଙ୍ଗେ
ସମସ୍ତଙ୍କୁ ମିଶାଇ ଦଳିବୁ ଏକଯୋଗେ ।
ତୈଳୋକ୍ୟଯାକ ବଶ ହୋଇବ ତେବେ ତୋତେ
ମଦନର ପ୍ରାୟେ ତୋତେ ଦିଶିବେ ସମସ୍ତେ
ଏବେ ଏହି ପଦାର୍ଥ ଘେନ ହୋ ଶାର୍ଦ୍ଦୋଳ
ବଞ୍ଚିଣି ଘେନ ମୋତେ ତୁହି କଲୁ ଶୀତଳ ।
ଏହି ମନ୍ତ୍ର ବଳରେ ସକଳ ପୁର ଯାଇ
ନାନା ଦେଶ ବାର୍ତ୍ତା ତୁହି ସେ ଜାଣିବଇଁ ।
ଏତେ କହି ନାରଦ ସ୍ୱର୍ଗପୁର ଗଲେ
ଶାର୍ଦ୍ଦୋଳ ଉଠି ସେଠାରୁ ଲଙ୍କାକୁ ଅଇଲେ
ରାବଣର ସେହି ବନୁ ହୋଇଲା ଚଟର
ଯେଣିକସେ ଯେତେ ଯାଏସେ ଶାର୍ଦ୍ଦୋଳଚାର
ଶ୍ରୀରାମ ଲକ୍ଷ୍ମଣ ଦେଖି ଆସବାର ପୁଣ
ଶାର୍ଦ୍ଦୋଳକୁ ଡାକି ଯେ ଭେଦିଲା ରାବଣ ।
ରାବଣ ବୋଲନ୍ତେ ସେ ବହନ ହୋଇଗଲା
ମେଢ଼ରେ ଚଢ଼ିଣ ସୁର ଦିଗକୁ ଚାହିଁଲା ।
ନାରଦ ଦେଇବା ପଦାର୍ଥ ନୟନରେ ଦେନେ
ପାଚେରୀ ଉପରେ ଯେ ଉଠିଲା ବହନେ ।
କୋଳରୁ ତାହାର ବସ୍ତ୍ର ଫେଡ଼ି ଦେଲା
ନୟନରେ ଉଚାଟ ରଞ୍ଜନ ରଞ୍ଜିଲା ।
ଶ୍ରୀରାମଙ୍କର ସୈନ୍ୟ ଯେ ଋକ୍ଷକପିବଳ
ବନ ପର୍ବତ ପୂରି ସେ ଦିଶିଲେ ସକଳ ।
ଇନ୍ଦ୍ର ଉପବନ ଗଡ଼ର ପାଛୁଣ
ସୁବଳୟା ପର୍ବତ ଦିଶେ ସେ ଆକାଶ ।
ବନ୍ଧର ଉପର ଯେ ସିନ୍ଧୁ ଉତ୍ତର କୂଳ
ମାଲ୍ୟବନ୍ତ ପର୍ବତେ ସେ ଅନନ୍ତ କପିବଳ
ବିନ୍ଧ୍ୟଗିରି ପର୍ବତକୁ ଦେଲା ସେ ଅନାଇ
ସୈନ୍ୟଙ୍କର ଗହଳରେ ନ ଦିଶେ ପୁଣ ଭୂଇଁ
ବନ୍ଧଠାରୁ ଋଷ୍ୟମୂକ ବୋଲିଣ ସେ ଚାହିଁ
ସୈନ୍ୟ ପୂରିବାରେ ଯେ ନଦିଶେ ବନଭୂଇଁ
ଗୋଦାବରୀଠାରୁ ନୀଳଗିରି ଯେ ପର୍ବତ
ଏଥିରେ ଋକ୍ଷ କପି ଅନନ୍ତ ଅନେକ ।
ପଦ୍ମଲଭ ଶୟନରୁ ପଞ୍ଚଧାର ଗିରି
ମହେନ୍ଦ୍ର ଗିରିଠାରୁ ବଳ ତାଙ୍କର ପୂରି ।
କିଷ୍କିନ୍ଧ୍ୟା କଟକକୁ ଆସନ୍ତା ଆସୁଅଛି
ଜାବେଷ ବୋଲିଣ ଯେ ନଷ୍ଟ ଭଟ୍ଟୁବଶି ।

ମଲ୍ଲାର କର୍ଣ୍ଣାଟ ଯେ ଅଟଇ ଦେଶ କାଞ୍ଚି
ଏମାନଙ୍କରେ ସୈନ୍ୟ ହୋଇଣ ସଞ୍ଚାସଞ୍ଚି ।
କଳିଙ୍ଗ ଗୁର୍ଜୁରାଟ ପଶ୍ଚିମ ସିନ୍ଧୁ କୂଳ
ହୁଡ଼ାହୁଡ଼ ନାହିଁ ରହିଛନ୍ତି କପିବଳ ।
କିଏ ଗଜ ପ୍ରାୟେକ ପର୍ବତ ଶରୀର
ନଖାକୁଳ କପି ଦିଶନ୍ତି ପଟାନ୍ତର ।
ଦେଖିଣ ଶାର୍ଦ୍ଦୋଳ ଶୀଘ୍ର ପାଦପରୁ ଖସି
ଗଡ଼ର ଭିତରକୁ ସେ ବାହୁଡ଼ିଣ ଆସି ।
ରାଜ ନଗର ଭିତରେ ହୋଇଣ ଯାଇ
ଦେଖିଲା ଜଗତିରେ ବସିଛି ଲଙ୍କସାଇଁ ।
ପାୟେ ପଡ଼ି ଶୋଇଣ ସେ ଉଠିଲକ ଧାଡି
ବେନି କରଯୋଡ଼ି ଗଲା ନୃପତିର କତି ।
ଇନ୍ଦ୍ରଜିତ ପ୍ରଶସ୍ତ ଅଛନ୍ତି ଏହୁ ବେନି
ଶାର୍ଦ୍ଦୋଳକୁ ଧେନ ହୋଇଲେ ଜାଣ ଚିନ
ଲଙ୍କପତି ବୋଇଲେ ହାଦେ କେବଣ ବାରତା
କହ ହୋ ଶାର୍ଦ୍ଦୋଳ ତୁ ଦେଖିଲୁ କେଉଁ କଥା
କେବଣ କ କ କଥା ଦେଖି ତୁ ଅଇଲୁ
କସ କଥାମାନ ତୁ ଦେଖିଣ ବାହୁଡ଼ିଲୁ ।
ଶାର୍ଦ୍ଦୋଳ କହଇ ସେ ଯୋଡ଼ିଣ ବେନିକର
ଶୁଣ ଦେବ ପ୍ରତାପୀ ରାବଣ ଲଙ୍କେଶ୍ୱର ।
ଏ ତୋହର ଆଜ୍ଞା ପ୍ରମାଣେ ଦେବ ଗଲି
ନଗ୍ରର ବାହାରେ କପି ରୂପ ମୁଁ ଧଇଲି ।
ଦେଖିଲି ସୈନ୍ୟ ତାର ଅପ୍ରମିତ ଅଟଇ
କେ ଅଛି ଗଣନ ଦେବ ତାହା ଥାଟକଳବଇଁ ।
ଇନ୍ଦ୍ର ଉପବନଠାରୁ ସୁବଳ ପରବତ
ନଗ୍ରର ଉତ୍ତର ଦିଗ ବାହାର ସୀମାନ୍ତ ।
ବନ୍ଧ ଖଟେଯୁଣ ତାର ସିନ୍ଧୁ ତ୍ରିବେଣୀ କୂଳ
ମାଲ୍ୟବନ୍ତ ଗିରି ସେ ଯେ ମାହେନ୍ଦ୍ର ଶୟଳ ।
ପଶ୍ଚିମ କନାଉଜ ସାହେର କୂଳ ଜାଣି
ଚନ୍ଦ୍ରଗିରି ସୀମା ଲାଗି ଅଛଇ ସଇନି ।
ଋଷ୍ୟମୂକ ପର୍ବତ ଆବର ବେଲବନ
ବିନ୍ଧ୍ୟ ଗିରି କନ୍ଦର କିଷ୍କିନ୍ଧ୍ୟା ଆୟତନ ।
ଦେବଗିରି କର୍ଣ୍ଣାଟ କାଞ୍ଚି କୁରୁବେଣି
ମହେନ୍ଦ୍ର ଗୋଦାବରୀ ସେ ଯେ ଆବର ଉଜାଣି
ସୈନ୍ୟଙ୍କର ଗହଳରେ ନ ଦିଶେ ପୁଣ ଭୂଇଁ
ଶ୍ରୀରାମଙ୍କ ସୈନ୍ୟକୁ ସମାନ କେହି ନାହିଁ ।

ହେ ଦେବ ଦଶଶିର ତେ ଭୁଲିଣ ନ ମର
ଦେବଲୋକେ ଅଜେୟ ଅଟନ୍ତି ରଘୁବୀର ।
ଶୁଣିଣ ରାବଣେଶ୍ୱର ତରସ୍ତ ହୋଇଲା
ତକ୍ଷଣେ ଦୈତ୍ୟ ଆମ୍ଭରେ ବହୁଭୟ କଲା ।
ଇନ୍ଦ୍ରଜିତ ବୋଲେ ଶୁକ ସାରଣ ମନ୍ତ୍ରୀ ରାଇ
ବେଗେ ଥାଟ ସଜକର ବେନି ମନ୍ତ୍ରୀ ଯାଇ ।
ରାଜତ ମାହେନ୍ଦ୍ର ଯେତେକ ଯୁଦ୍ଧକାରୀ
ବେଗ ହୋଇ ଆସନ୍ତୁ ବୋଲେ ଦଶଶିରୀ ।
ଶୁଣଗୋ ପାର୍ବତୀ ଶାର୍ଦ୍ଦୋଳ କଥା ଏବେ
ସୈନ୍ୟ କଳନା ପାଦପେ ଉପରେ ସେ ଥିବେ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେବିଶ୍ୱବାସ
ସୁବଳ ଗିରିରେ ରହେ ଶ୍ରୀରାମ ସୈନ୍ୟଯାକ
ଶ୍ରୀରାମ ଲକ୍ଷ୍ମଣ ଯେ କ କ ବିଚାର କଲେ
ଏ କଥାକୁ ବୁଝାଇ କହ ମୋତେ ଭଲେ ।
ଈଶ୍ୱର ବୋଇଲେ ସେ ଦୁଇ ଭାଇ ପୁଣ
ସୁବଳ ଗିରିରେ ରହିଲେ କରିସ୍ଥାନ ।
ଶୁକ ସାରଣ ସୈନ୍ୟ କଳନ କରି ଆସି
ରାବଣର ଆଗରେ କହେ ସେ ବିଶେଷି ।
ତାଙ୍କର କହିବାରେ ବୋଧ ସେ ନୋହିଲା
ଶାର୍ଦ୍ଦୋଳକୁ ଭେଦିଣ ସୈନ୍ୟକଳନ ଗଲା ।
ରାବଣର ଆଗରେ କହିଲେ ଯାଇ ଚର
ଚିତ୍ତରେ ଭସ୍ମକରିଣ ସାଧେ ତାର ବଳ ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ପୁଣି
ନଳ ଚନ୍ଦନକୁ ଡ଼କାଇ ପାଶେ ଆଣି ।
ରଘୁନାଥ ବୋଇଲେ ତାଙ୍କୁ ତୁମ୍ଭେ ଦୁଇଜଣ
ଲଙ୍କାଗଡ଼ ଭିତରକୁ ଯିବ ଏହିକ୍ଷଣ ।
ଅଶୋକ ବନେ ଯାଇଣ ହେବ ପରବେଶ
ସୀତା ଅଛିକି ନାହିଁ ଦେଖିବ ସନ୍ଦେଶ ।
ମାସକ ତଳରେ ହନୁମନ୍ତ ଦେଖିଥିଲା
ସେଠାରେ ଅଛିକି ନାହିଁ କେବଣ କତନେଲା
ଶୁଣିଣ ନଳ ଚନ୍ଦନ ବେଗେ ଚଳିଗଲେ
ଉତ୍ତର ଦ୍ୱାର ବାଟେ ବେଗେଣ ପଶିଲେ ।
ଅଶୋକ ବନରେ ସେ ହେଲେ ପ୍ରବେଶତ
ଦେଖିଲେ ସେଥିରେ ଅଛନ୍ତି ଅନେକଅସୁରୀତ
ସୁବର୍ଣ୍ଣ ମଣ୍ଡପରେ ବସେ ଦେବୀ ସୀତା
ପାଖରେ ଅଛନ୍ତି ତାର ଅସୁରୀ ଅନେକତା ।

ତ୍ରିଜଟା ବସିଅଛି ବାମ ପାରୁଶରେ
ଶ୍ରୀରାମ ଅଇଲକଥା କହନ୍ତି ହରଷରେ ।
ଏହି ସମୟରେ ଯେ ଶ୍ରୀରାମ ଦୂତ ମିଳି
ଦେଖିଣ ଜାନକୀ ବଚନ କହେ ଫେଡ଼ି ।
ବୋଇଲେଦେଖ ତ୍ରିଜଟା ଏଦୁଇଜଣକଏସେ
ମର୍କଟର ପ୍ରାୟେତ ଦିଶନ୍ତି ହରଷେ ।
ତ୍ରିଜଟା ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ
ତୁମ୍ଭର ଦୂତ ତୁମ୍ଭଠାକୁ ଆସେ ପୁଣି ।
ଏ ସମୟେ ନଳ ପ୍ରବେଶ ହେଲା ଯାଇ
ଚିହ୍ନିଲା ଶ୍ରୀ ରାମର ଘରଣୀ ଅଟେ ଏହି ।
ଚନ୍ଦନ ବୋଇଲା ଏତ ପ୍ରତ୍ୟକ୍ଷ କମଳା
ନୋହିଲେକିଶ୍ରୀରାମଚନ୍ଦ୍ର ସମୁଦ୍ରେବାନ୍ଧେଭେଳା
ଏମନ୍ତ ବିଚାରି ସେ ମନରେ ଦୁହେଁ ଖଳି
ଜାନକୀ ଆଗେ ଉଭା ଦୁହେଁ ମହାବଳୀ ।
ତାଙ୍କୁ ଦେଖି ତ୍ରିଜଟା ଯେ ବଚନ କହନ୍ତି
କେଉଁଠାରୁ ତୁମ୍ଭେ ଦୁହେଁ ବହନ ଆସିଲଟି
ନଳ ବୋଇଲେ ଆମ୍ଭେ ଶ୍ରୀରାମର ଦୂତ
ଜାନକୀଙ୍କି ଦେଖିବାକୁ ପେଷିଲେ ରଘୁନାଥ
ଶୁଣିଣ ତ୍ରିଜଟା ବୋଲେ ଏଠାରେସୀତାନାହିଁ
କେବଣ ଦେଶର ସେ ଅଟେ ରଘୁସାଇଁ ।
ଚନ୍ଦନ ବୋଇଲା ସେ ଅଯୋଧ୍ୟା ଦେଶରାଜା
ଦଶରଥ ନନ୍ଦନ ସେ କୌଶଲ୍ୟା ତନୁଜା ।
ପିତା ସତ୍ୟପାଳି ସେ ଯେ ବନକୁ ଅଇଲେ
ପଞ୍ଚବଟୀ ବନରେ ସେ ସୀତାଙ୍କୁ ହରାଇଲେ ।
ରାବଣ ନାମରେ ସେ ବିଶ୍ରବାସୁତ ସେହି
ଜାନକୀଙ୍କି ଚୋରାଇ ଆଣିଲା ସେ ଯାଇ ।
ନ ଦେଖି ଶ୍ରୀରାମ ଲକ୍ଷ୍ମଣ କିଷ୍କିନ୍ଧ୍ୟାକୁ ଗଲେ
ସୁଗ୍ରୀବର ସଙ୍ଗେ ରାମ ମଇତ୍ର ହୋଇଲେ ।
ମଇତ୍ରଛଳ ରାମ ବାଳିକି କଲେ ହତ
ଋକ୍ଷକପି ଦଳ ଘେନି ଲଙ୍କାକୁ ଆଗତ ।
ଘୃରଦ୍ଧଗକୁ ଦୂତ ପେଷିଲେ ଦାଶରଥି
ଦକ୍ଷିଣକୁ ଆସିଥିଲା ପବନର ବସ୍ତି ।
ସମୁଦ୍ର ଡେଇଁଣ ସେ ଲଙ୍କାକୁ ଅଇଲା
ସୀତାଠାବ କରିଣ ରାମଙ୍କୁ କହିଲା ।
ଏହି ସମୟରେ ରାବଣର ସାନଭାଇ
ବିଭୀଷଣ ଶରଣ ପଶିଲା ପୁଣଯାଇ ।

ତାହାକୁ ଶରଣ ଯେ ରଖିଲେ ରୂପଧାରୀ
ଲଙ୍କା ଗଡରେ ରାଜା କରିବେ ବୋଲିକରି ।
ତହୁଁ ସିନ୍ଧୁ ଜଳରେ ବାନ୍ଧିଲେ ସେତୁବନ୍ଧ
ସୁବଳସ୍ଥା ଗିରିରେ ପ୍ରବେଶ ରାମଚନ୍ଦ୍ର ।
ଦୁଇଦିନ ହେଲା ସେ ଯେ ଅଛନ୍ତି ସେଠାରେ
ବୋଇଲେ ଜାନକୀ ଅଛନ୍ତି କେଉଁଠାରେ ।
ଦେଖି ଆସ ବୋଲି ଆମ୍ଭଙ୍କୁ ଦେଲେ ଭେଦ
ବୋଇଲେ ଅଶୋକ ବନେ ଅଛି ରହି ନଧି ।
ଆମ୍ଭରତ ପୂର୍ବରେ ଦେଖାନାହିଁ ତାଙ୍କୁ
ଏଥିର ସକାଶେ ଆମ୍ଭେ ବିସ୍ମିତ ମନକୁ ।
ରାମର ଘରଣୀ ପ୍ରାୟ ଦିଶନ୍ତି ଏହୁ ପୁଣ
ତ୍ରିଜଟା ବୋଇଲେ ଅଟନ୍ତି ମୋରମାତାଜାଣ
ନଳ ବୋଇଲେ ତୁମ୍ଭେ କାହାର ନନ୍ଦନ
ତ୍ରିଜଟା ବୋଇଲେ ମୁଁ ବିଭୀଷଣର ଦୁଲଣୀ ।
ଦଶରଥ ପୁଅର ମୁଁ ଅଟଇ ଦୁହିତା
ଧର୍ମରେ ଦ'ଶରଥି ଅଟନ୍ତି ମୋର ପିତା ।
ଜାନକୀ ବୋଇଲେତୁମ୍ଭେ ରାମର ଯେବେଦୂତ
ରାମରଠାରୁ ଯେବେ ଆଣିଛ ସନ୍ତକ ।
ଚନ୍ଦନ ବୋଇଲା ସେ ଦେଇଛନ୍ତି ଯାହା
ପ୍ରତ୍ୟକ୍ଷରେ ଦେଖ ତୁମ୍ଭେ ତ୍ରୈଲୋକ୍ୟରମାଆ
ଏତେ ବୋଲିନଳବେଗେଅମଳାଣବସ୍ତ୍ରଦେଲା
ଯେଉଁବସ୍ତ୍ର ଅନୁସୂୟା ସୀତାଙ୍କୁ ଦେଇଥିଲା ।
ଜାନକୀ ନେଇଣ ଯେ ଦେଖିଲା ବସ୍ତ୍ର ବେଗେ
ଅଳଙ୍କାର ଏହି ବସ୍ତ୍ର ପକାଇଥିଲି ସଙ୍ଗେ ।
ଜାନକୀ ବୋଇଲେ ତୁମ୍ଭ ନାମ ଅଟେ କିସ
ଏ ଶାଢ଼ୀକି କିଏ ଦେଲା କହିବେ ବିଶେଷ ।
ନଳ ଚନ୍ଦନ ଏମନ୍ତ ବାଣୀ ଶୁଣି
ଚରଣ ତଳରେ ଲୋଟିଲେ ବେଗେ ପୁଣି ।
ବୋଇଲେ ଏଶାଢ଼ୀ ତୁମ୍ଭେ ପକାଇଲାବେଳେ
ଅଳଙ୍କାରବାନ୍ଧିପକାଇଲ ଋଷ୍ୟମୂକପର୍ବତରେ
ସୁଗ୍ରୀବ ସଙ୍ଗେ ଆମ୍ଭେ ପାଞ୍ଚଜଣ ଥିଲୁ
ଏ ଶାଢ଼ୀ ଅଳଙ୍କାର ଅମ୍ଭେ ସାଇତିରଖିଥିଲୁ
ଶ୍ରୀରାମଙ୍କୁ ଦେଖି ଦେଲୁ ତାହା ନେଇ
ଦେଖି ରଘୁନାଥ ଶୋକ ବହୁତ କରଇ ।
ଏବେ ଆମ୍ଭଙ୍କୁ ଭେଦିଣ କହିଲେ ବାଣପୁଣ
ବୋଇଲେ ଏ ବସ୍ତ୍ର ଦେବ ଜାନକୀରେ ପୁଣ

ଜାନକୀ ବୋଇଲେ ତୋହର ନାମଟି ଯେକସ
ନଳ ବୋଇଲା ମୋର ନାମ ଯେ ପ୍ରକାଶ ।
ପଥର ଛୁଇଁଲେ ମୁଁ ସେ ଭାସଇ ଜଳେ ଜାଣ
ଦେବତା ଏବସ୍ତୁରମୋତେଗୋବରଦେଲେପୁଣ
ଜାନକୀ ବୋଇଲେ ତୁ ମର୍କଟ ଜନ୍ମ ପୁଣି
ତୁ ଛୁଇଁଲେ ପାଷାଣ ଭାସଇ କି ଜାଣି ।
ନଳ ବୋଇଲେ ମାତା ଶୁଣ ମୋର ବାଣୀ
ଯୁବା କାଳରେ ମୁହିଁ ମତ୍ତହେଲି ପୁଣି ।
ଋଷିଙ୍କର ଗଣ୍ଡିଲି ମୁଁ ଜଳରେ ପକାଇ
ଏହାଦେଖି ଋଷି ମୋତେ କୋପେଶାପଦେଇ
ବୋଇଲ ଆମ୍ଭ ଆୟୁତେ ପକାଉ ସିନ୍ଧୁ ଜଳେ
ଆଜଠାରୁ ଛୁଇଁଲେ ଭାସିବ ଭେଳା ତୋଲେ
ମୁନଙ୍କର ବଚନ ଯେ ଅନ୍ୟଥା ନୋହିଲା
ଯାହାକୁ ଛୁଇଁଲେ ସେ ଜଳରେ ଭାସିଲା ।
ମୋହାତେ ଛୁଆଇଁନେଇ ବାନ୍ଧିଲେସେତୁବନ୍ଧ
ଶୁଣ ଗୋ ଜନନୀ ତୁମ୍ଭେ ଦଇବର ଫାନ୍ଦ ।
ମୋହର ସଙ୍ଗରେ ଏ ଆସିଛି ଚନ୍ଦନ
ବୀର ପଦ୍ମ କପିରେ ଏ ଅଟେ ରାଜାପୁଣ ।
ଏ ଚନ୍ଦନ ଦେଶ ଅଟେ ହେମଗିରି ଜାଣ
ସୁଗ୍ରୀବର ରାଜାର ଏ ଅଟବ ବନ୍ଧୁ ପୁଣ ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ରାମଙ୍କର ବସ୍ତ୍ରମୁଦ ତାଙ୍କର ହସ୍ତେ ଦେଲେ ।
ବୋଇଲେ ହନୁମନ୍ତ ମୋତେ ମୁଦି ଦେଲା
ମୋହର ମଥାମଣିକି ସେହୁ ଘେନଗଲା ।
ସେ ପବନ ନନ୍ଦନ ଆସିଛି ଟିକି ପୁଅ
ନଳ ବୋଇଲେ ଶ୍ରୀରାମର ଦାସ ସେହୁ ଜାଣ
ଜାନକୀ ବୋଇଲେ ଯାଇ କହଇ ବୃପଧାରୀ
ପକ୍ଷକ ଭିତରେ ଯେହ୍ନେ ମରଇ ଦଶଶିରୀ ।
ତ୍ରିଜଟା ବୋଇଲେ ମୋର ପିତାଙ୍କୁ କହିବ
ତ୍ରୈଲୋକ୍ୟର ଠାକୁରାଣୀ ଅଛନ୍ତି ସର୍ବଶୁଭ ।
ଶୁଭ ଅଗ୍ନିରେ ସ୍ନାନ ସେ କରେ ପ୍ରତିଦିନ
ଦେଖିଣ ଅସୁର ସର୍ବ କଲେ ଭୟ ମନ ।
ରାବଣହିଁ ଭୟ କରି ଭରସି ନ ପାରି
ଲଙ୍କାଗଡ଼ ଲୋକଙ୍କର ଚିତ୍ତରେ ଭୟଙ୍କର ।
ଶୁଣି ନଳ ଚନ୍ଦନ ନମସ୍କାର କଲେ
ଫେରି ଯାଉ ଅଛୁଁ ମାତ ବୋଲିଣ କହିଲେ

ପୂର୍ବଦ୍ୱାରେ ବାଟରେ ସେ ହୋଇଲେ ବାହାର
ଦେଖିଲେ ଯେ ଋକ୍ଷସିଂହ ବସିଛି ଦୁଆର ।
ଭୟ କରି ହାରୀ ଯେ କିଛିହିଁ ନ କହିଲା
ନଳ ଚନ୍ଦନ ଆସିବାରୁ ହାର ସେ କଳିଲା ।
ସେଠାରୁ ଦୁଇଜଣ ଅଇଲେ ଖର କରି
ପ୍ରବେଶ ଆସି ସୁବଳୟା ଗିରି ।
ଦେଖିଲେ ଶ୍ରୀରାମ ବିଜେ ମୃଗ ଛାଲ ପରେ
ଲକ୍ଷ୍ମଣ ଧନୁ ଧରି ବସିଛି ପାଶରେ ।
ସୁଗ୍ରୀବ ବିଭୀଷଣ ବସିଛନ୍ତି ପୁଣ
ପଞ୍ଚାଶ ଯୂଥପତି ଅଛନ୍ତି ଆଗେ ଜାଣ ।
ହନୁମନ୍ତ ଚାପଇ ଯେ ଶ୍ରୀରାମ ଚରଣ
ଏହି ସମୟରେ ଆସି ନଳ ଯେ ଚନ୍ଦନ ।
ଶ୍ରୀରାମଙ୍କ ପାଶରେ ମିଳିଲେ ବେଗେ ଜାଣ
ଆନନ୍ଦ ହୋଇଲେ ତାଙ୍କୁ ଦେଖି କପିସୈନ୍ୟ
ଦୂରରୁ ଦେଖି ଦୋହେଁ ଚରଣେ ଲୋଟିଗଲ
ଉଠ ଉଠ ବୋଲିଣ ଶ୍ରୀରାମ ତାଙ୍କୁ ବୋଲି ।
କିସ ଦେଖିଲ ବାବୁରେ ଲଙ୍କା ଗଡ଼େ ଯାଇ
ଅଶୋକ ବନରେ କି ଅଛି ବଇଦେହି ।
ଚନ୍ଦନ ବୋଲେ ତୁମ୍ଭ ଆଜ୍ଞାରେ ଚଳିଗଲୁଁ
ଉତ୍ତର ଦୁଆରେ ଯାଇଁ ପ୍ରବେଶ ହୋଇଲୁଁ ।
ଧସାଇ ପଶିଲୁ ଯେ ଗଡ଼ର ଭିତରେ
କିଛି ନ କହିଲେ ଯେ ଦ୍ୱାରପାଳ ତାରେ ।
ସେ ବୋଇଲେ ଏ ଯେ ଅଟନ୍ତି ରାମଦୂତ
ରାବଣ ଠାକୁ ଶ୍ରୀରାମ ପେଷିଲେ ଏହାନ୍ତ ।
ଦୂତଙ୍କୁ ନବୋଧିବାର ନୁହଇ ଆମ୍ଭର ଭଲ
ହନୁମନ୍ତ ପ୍ରାଏଟି ଏହି ଦେବଟି ପୁଣ ମାଡ଼ି ।
ହନୁମନ୍ତ ଭୟରେ କଥା ଯେ ନ କହିଲେ
ସେଠାରୁ ଆମ୍ଭେ ଯେ ବୁଲିଲୁ ଧୀରେ ଧୀରେ
ମଧୁବନରେ ପଶି ଅଶୋକ ବନେ ଗଲୁ
ଜନକ ମଣ୍ଡପରେ ସୀତାଙ୍କୁ ଦେଖିଲୁ ।
ସେ ମଣ୍ଡପ ଗୋଟି ଅଟେ ଅତି ବିଚକ୍ଷଣ
ମାଆଙ୍କ ଆୟତନରେ ସ୍ୱର୍ଣ୍ଣ ପ୍ରଭି ପୁଣ ।
ଚଉରି ପାଶେ ଅସୁରୁଣୀ ବସିଛନ୍ତି ବେଢ଼ି
ମଧ୍ୟରେ ତୁମ୍ଭ ନାରୀ ଚନ୍ଦ୍ରକାନ୍ତି ପରି ।
ତ୍ରିଜଟା ବୋଲିଣ ତାଙ୍କ ସଙ୍ଗରେ ଏକଜଣ
ଅଳପ ବୟସ ନବଯୁବା ରୂପ ପୁଣ ।

ଅପୂର୍ବ ସୁନ୍ଦରୀ ସେ ଶ୍ୟାମଳବର୍ଣ୍ଣ ଦେହୀ
ବୁଦ୍ଧିବଳେ ଜଣନ୍ତି ତାହାକୁ ନାହିଁ କେହି ।
କହିବାର ଶକ୍ତିରଯେ ତାହାର ଠାରେ ଅଛି
ଦେବାସୁର ନରକୁ ଦଣ୍ଡିକେ ମୋହେ ସେହି ।
ଆମ୍ଭଙ୍କୁବୋଇଲେତୁମ୍ଭେକେବଣ ଦେଶୁଆସ
ଗଛର ମର୍କଟ ପରାଏ ଆମ୍ଭକୁ ତୁମ୍ଭେ ଦିଶ ।
ଏବନକୁ ପୁରୁଷ ନ ଆସେ ଆଉ ପୁଣ
ତୁମ୍ଭେ କମ୍ପା ଏବନକୁ ଆସିଲ ନଜାଣିଣ ।
ମାସକ ତଳରେ ପୁଣ ହନୁ ଆସିଥିଲା
ଗଛ ଭାଙ୍ଗି ଅନେକ ଯେ ଅସୁର ମାଇଲା ।
ଲଙ୍କାପୋଡ଼ା ଦେଇଣ ଏଠାରୁ ସେହୁଗଲା
ସେହି ହନୁ ପ୍ରାଏ ତୁମ୍ଭେ ଦିଶୁଅଛ ପରା ।
ଆମ୍ଭେତାକୁ ବୋଇଲୁ ଶ୍ରୀରାମରଆମ୍ଭେ ଦାସ
ସେ ବୋଇଲେ ଏଠାରେ କ ସନ୍ଦେଶ ।
ଆମ୍ଭେତାଙ୍କୁବୋଇଲୁ ସେଆମ୍ଭର ଠାକୁରାଣୀ
ଦେଖିବାକୁ ଆସିଅଛୁ ଶୁଣ ଗୋ ତରୁଣୀ ।
ଆମ୍ଭେ ବୋଇଲୁ ତୁମ୍ଭ ଜନନୀ କାହିଁଅଛି
ସେବୋଇଲେଦେଖତୁମ୍ଭେମୋ ମାତା ଏହିଟି
ଦଶରଥ କୁଳ ବଧୂ ଜନକ ଦୁହିତା
ଲକ୍ଷ୍ମଣଙ୍କ ଭାଉଜ ଶ୍ରୀରାମଙ୍କ ବନିତା ।
ଆମ୍ଭେବୋଇଲୁତୋରକରୁଯେମାତା ହେଲା
ତ୍ରିଜଟାବୋଇଲେମୋତେପାଳକଝିଅ କଲା
ଏ ବଚନ ଶୁଣିଣ ଯେ ହସିଲେ ଜାନକୀ
ବୋଇଲେକି ସନ୍ତକ ଦେଇଛନ୍ତି ଦାଶରଥି ।
ଅମଳାଣ ଶାଢ଼ୀ ଯେ ନେଇଣ ଆମ୍ଭେଦେଲୁ
ଏଥିରେଅଳଙ୍କାରବାନ୍ଧିମାଏପକାଇଦେଇଥିଲୁ
ଋଷ୍ୟମୂକ ପର୍ବତେ ସୁଗ୍ରୀବ ଯେ ଥିଲେ
ସେହି ପଦାର୍ଥକୁ ସେହି ସମ୍ଭାଳି ରଖିଲେ ।
ତେଣୁ ଶ୍ରୀରାମ ସଙ୍ଗେ ହୋଇଲେ ମଇତ୍ର
ତୁମ୍ଭ ଅଳଙ୍କାର ସବୁ ରଖିଲେ ନେଇତ ।
ଦେଖିଣ ଜାନକୀ ମନରେ ପ୍ରତେତ ଗଲେ
ତୁମ୍ଭର ବସ୍ତ୍ର ମୁଦ ଆମ୍ଭର ହସ୍ତେ ଦେଲେ ।
ବୋଇଲେ ରାବଣର ମାରନ୍ତୁ ବେଗେ ବଂଶ
ତେବେଯେ ମନ ମୋର ହୋଇବ ସନ୍ତୋଷ
ମୋହରଦୋଷଦେଖିମୋତେ ଶାସ୍ତି ଦେବେ
ଶତ୍ରୁମାର ନର୍ଭୟ ହୁଅନ୍ତୁ ଦେବ ଏବେ ।

ଏତେକ କହି ମୁଦ ଶ୍ରୀରାମ ହସ୍ତେ ଦେଲେ
ଦେଖିକରି ରାମଦେବ ସନ୍ତୋଷ ହୋଇଲେ ।
ବୋଇଲେକେତେଦୁଃଖରେଅଛିମୋସଙ୍ଗାକୁଣି
ନଳ ବୋଲଇ ତ୍ରିଜଟା ସାହା ତାଙ୍କୁ ପୁଣି ।
ଶୁଣିଣ ଶ୍ରୀରାମ କ୍ଷଣରେ ହାତଦେଇ
ସ୍ୱାଗର ବାର୍ତ୍ତା ସେ ପାଇଣ ତୁନ ହୋଇ ।
ଏଥୁ ଅନନ୍ତରେ ଯେ ପାବଂଷ କହେ ପୁଣ
ଦଶଶିର ଆଜ୍ଞାଦେଲେ ମନ୍ତ୍ରିଙ୍କି ଚାହିଁଣ ।
ଥାଟ ମୋର ସଜକର ବୋଲିଣ ବୋଇଲା
ସେଠାରୁ ସେକଥା ମୋତେ କହଦେବ ଭଲା
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସଙ୍ଗାକୁଣି
ଥାଟ ସଜକର ବୋଲି ଆଜ୍ଞାଦେଲେ ପୁଣି ।
ତକ୍ଷଣେ ମେଘନାଦ ହାରୀକ ଆଜ୍ଞା ଦେଲା
ନୃପତି ଅବକାଶ ବୋଲିଣ ବୋଇଲା ।
ଆସନ୍ତୁ ବେଗେ ସୈନ୍ୟ ବିଳମ୍ବ ନକର
ବାହାର ଲୋକଙ୍କୁ ନରୋଧ ଏବେକର ।
ବାହାରେ ଅଛନ୍ତି ବ୍ୟଗ୍ରରେ ହକାର
ଶୁକ ଶାରଣ ଘେନି ଆସନ୍ତୁ ସତ୍ୱର ।
ସନ୍ତୋଷ ମନରେ ଆଜ୍ଞାଦେଲେ ଲଙ୍କାସାଇଁ
ବୋଇଲେ ଘେନିଆସ ସକଳସୈନ୍ୟସାଇ ।
ଶୁଣିକରି ଦ୍ୱାରପାଳ ବାହାରକୁ ଗଲା
ରାଜା ଅବକାଶ ଏବେ ହୋଇଛି ବୋଇଲା ।
ଆସବେଗେସୈନ୍ୟତୁମ୍ଭେନରୋଧହେବଦ୍ୱାର
ଏତେ ବୋଲି ଯାଇ ଶୁକଶାରଣମନ୍ତ୍ରୀବର ।
ନଯୋଗର ଲୋକମାନେ ବେଗହୋଇ ଆସ
ଯୋଦ୍ଧା ରାଉତ ପାତାନ୍ତ ବେଗହୋଇ ଆସ
ପାତ୍ରମନ୍ତ୍ରୀଅମାତ୍ୟ ମନ୍ତ୍ରୀଗଣମାନ
ବଡ଼ ଅବକାଶ ଅବଧାନ ଦଶାନନ ।
ଆଜ୍ଞା ହୋଇଲା ଏବେ ଦର୍ଶନ ଆସି କର
ଶୁଣି ସନ୍ତୋଷେ ସୈନ୍ୟ ପଶିଲେ ଭିତର ।
ପ୍ରାପ୍ତେ ପଡ଼ି ଶୋଇଣ ଦର୍ଶନ ଆସିକଲେ
ଯେ ମୋହର ଆନରୂପେ ପଟୁଆର ବଳେ ।
ରାଉତ ମାହୁନ୍ତ ଅଟେ ଯେ ପଏକାର
ବିଶ୍ୱାସ ଯୋଦ୍ଧାମାନେ ଅଛନ୍ତି ଅପାର ।
ଶୁକ ଶାରଣ ମନ୍ତ୍ରୀ ବେନ ଯେ ଅଛନ୍ତି
ମେଘନାଦ ଯମଘଣ୍ଟା ପ୍ରଶସ୍ତହିଁ ଛନ୍ତି ।

ମହୋଦର ମହା ପାରୁଷ ଆବର ଧୂମାକ୍ଷ
କାକାକ୍ଷ କୁକ୍ତୁପାକ୍ଷ ମହେନ୍ଦ୍ର ଲୋହିତାକ୍ଷ ।
କାଳଘଣ୍ଟ ଯମ ଘଣ୍ଟ ବୀର ଭଦ୍ରସୁର
ଅଜଏ ଅମଏ ଯେ ଯୋଦ୍ଧ ସେ ସାଗର ।
କାଳ ଘଣ୍ଟ କାପାଳି ବୀରଘଣ୍ଟ ଯମଦାଢ଼
ସାହେଜ ବୀର ପାଶୀହ କୁଣ୍ଡଳ ଯମଦାନ୍ତ ।
କୁମ୍ଭ କୁକୁମ୍ଭ ମହା ନାଦ କାଳକେତୁ
ଚଟକଇ ବଇରି ବ୍ରହ୍ମାଣ୍ଡକ ସୈନ୍ୟକେତୁ ।
ଦେବପତି ମନ୍ଥଧର ଅଶ୍ୱଙ୍କ ଯହୋତା
ନାମଧରି ସେମାନଙ୍କୁ କେ କରିବ ଗଣିତା ।
ସୈନ୍ୟଙ୍କ ଗହଳ ତହିଁ କଳଣା ନ ଯାଇ
ଲଙ୍କପତି ବୋଇଲା ଯେ ସମସ୍ତଙ୍କୁ ଚାହିଁ ।
ରଥି ମହାରଥି ମାନେ ଯେତେ ତୁମ୍ଭେ ଅଛ
ଏକ ଏକ କରେ ଜିଣି ପାର ସ୍ୱର୍ଗଲୋକ ।
ଯୋଦ୍ଧା ମାହୁନ୍ତ ରାଉତ ଦେଖାକଲେ ତହିଁ
ଏତେ କାଳେ ଅପୂଜଏ ଥିଲା ମୋତେ କାହିଁ
ମୋହର ପ୍ରସାଦେ ତୁମ୍ଭେ ଭୁଞ୍ଜ ହୋ ବହୁତ
ସ୍ୱର୍ଗରେ ବସଇ ମୁଁ ଦେବତାଙ୍କ ଜିତ ।
ଯାନ ସୁକାସନ ମାନ ମତ୍ତଗଜ ଚଢ଼ି
ବେଦଶାସ୍ତ୍ର ମାନ ଆଗମ ପୁରାଣ ପଢ଼ି ।
ନବରତ୍ନ ମାଳୀ ସୁବର୍ଣ୍ଣ ଅଙ୍ଗେ ଯଡ଼ି
ଆନ ଆନ ଅଳଙ୍କାର ବଳସ ଷୋଳ ଘଡ଼ି ।
ଚନ୍ଦ୍ରବଦନ ସୁବର୍ଣ୍ଣମାନ ଯେ ଭୋଗକର
ଦ୍ୱଚନ୍ଦ ଚନ୍ଦ କର୍ମ ଯେ ତୁମ୍ଭମାନଙ୍କର ।
ସମରେ ନିସଙ୍ଗ ତୁମ୍ଭେ ସମସ୍ତେ ଯେ ଅଛ
ଆଳସ ନକର ତୁମ୍ଭେ ମୋର ପାଦେ ଖଟ ।
ଯମକୁ ଜିଣିଲା ହେତୁ ଭୟ ନାହିଁ ତେଣୁ
ଏତେକ ଐଶ୍ୱର୍ଯ୍ୟ ପାଇଅଛ ଏଣୁ ।
ତହିଁକି ଉବୁରତ ନାହିଁ ଅନ୍ୟ ଲୋକ
ସ୍ୱପନରେ ଅନଦ୍ରା ମୋତେ ଦିବସ ନାହିଁ ଶୋକ
କି ବୁଦ୍ଧି କରିବା ଏବେ କହ ହେ ବହୁର
ନର ବାନର ଯେ ମୋତେ ହୋଇଲେ ବଇରୀ
ଏସନକ ବହୁର ଶୁଣା ଯେ ନଥିଲା
ସେତ ଆସି ମୋର ପୁରେ ସେରନ୍ତା ହୋଇଲା
ଋକ୍ଷ କପିମାନେ ବନ ଗହନରେ ଥାନ୍ତି
ମନୁଷ୍ୟଙ୍କୁ ଦେଖିଲେ ସେ ପଳାଇଣ ଯାନ୍ତି ।

ସେମାନେ ଆସି ଏଥିରେ ତରିଲେ ମହାଜଳ
ମାଡ଼ି ବସିଲେ ଆସି ସୁବଳପୁ ଯେ ସ୍ଥଳ ।
ରାମ ଲକ୍ଷ୍ମଣ ନାମରେ ଦୁଇ ଜଟାଧାରୀ
କରେ ଶସ୍ତ୍ରଧରି ମୋତେ ଲୋଡ଼ୁଛନ୍ତି ମାରି ।
ସେ ଆମ୍ଭରେ ଉକ୍ଷପାକ ଅଟନ୍ତ ଯୁବତେ
ଏତେକ ଦମ୍ଭ ସେ ଯେ ହୋଇଲେ କେମନ୍ତେ
ଭୟ ନକରି ସେ ଯେ ତରିଲେ ସିନ୍ଧୁ ପାଣି
ଅତହିଁ ଝଞ୍ଜାଳ ମୋତେ କରୁଛନ୍ତି ପୁଣି ।
ତୁମ୍ଭେମାନେ ଏହା ବୁଝ ହୋ କେମନ୍ତ
ଅକାଳେ ଶତ୍ରୁ ଆସିହେଲା ଉପଗତ ।
ରାବଣ ମୁଖରୁ ଏସନକ ବାକ୍ୟ ଶୁଣି
ଦଇତ୍ୟେ ପ୍ରତିଜ୍ଞା ଯେ କରନ୍ତି ଶିରଧୁଣି ।
ହେ ଦେବ ଦଶକନ୍ଧ ଏମନ୍ତ କଥା କହ
ଏହି ବ୍ରହ୍ମାଣ୍ଡରେ ତୋତେ କଏ ସେବନ୍ତପ୍ରଭୁ
ଚଉଦ ଭୁବନରେ ଇନ୍ଦ୍ର ଅଧିପତି
ସେ ଆସି ବସନ୍ତି ତୋର ଦ୍ୱାରପାଳ କତି ।
ବ୍ରହ୍ମ ପିତାମହ ଜଗତ ତାତ ହୋଇ
ରହେ ପ୍ରହରେ ଥାଇ ବେଦ ମଷ ଘୋଷଇ ।
ସଦାଶିବ ତୋତେ ପ୍ରସନ୍ନେ ବର ଦେଲେ
ଏକାମାତ୍ର ବିଷ୍ଣୁ ତୋତେ ପ୍ରସନ୍ନ ନୋହିଲେ
ସେହି ଯାତାଳେ ଯେବେ ଭେଟ ହୋଇଲେ କି ତାତେ
ଅନୁଗ୍ରହ କରେ କରୁଣାମୟ ତତେ ।
ଦଶଦିଗ ପାଳେ ଅଟନ୍ତ ତୋତେ ବଶ
ତୋତେ ସେବା କରନ୍ତି ଦେବତା ତ୍ରିଦଶ
ଏ ମହୀ ମଣ୍ଡଳେ ବୀର ଯେତେକ ନୃପତି
ତୁମ୍ଭର ଚରଣେ ସେ ଅଟନ୍ତ ବେଶ୍ୟାବୃତ୍ତି ।
ଷଷ୍ଠୀଙ୍କର ସଲ ସେ ଅଟନ୍ତ ତୋର ଯାନ
ସାରଥି ବହିଲେ ସେ ଚଳଇ ବଡପନ ।
ଅମୋଘ ସହସ୍ର ଯେ ପ୍ରତାପ ତୋର କର୍ମେ
ଯମ ଦେବତାକୁ ତୁହି ଜିଣିଲୁ ସଂଗ୍ରାମେ ।
ବନ୍ଧୁକ ସମ୍ପଦ ଆଣି ଲଙ୍କାରେ ଠୁଳ କଲୁ
ଛପନ ଦଣ୍ଡା ଯୁଗକୁ ଆୟୁଷ ପାଇଲୁ ।
ପ୍ରାକର୍ମେ ସକତା ତୁ ଯେ ବଳରେ ବଳବନ୍ତା
ଜଦେକ ପଣେ ତୋର ଅଟଇ ସୋରତା ।
ତ୍ରୈଲୋକ୍ୟରେ ଅଜଏ ତୁ ଅଟହେ ଗୋସାଇଁ
କେ ତୋହର ହସ୍ତରେ ପ୍ରାଭବ ପାଇନାହିଁ ।

କମ୍ପାଇ ବିମୁଖ ତୁମ୍ଭେ ହେଉଛ ଦଶଶିର
ଶାରଙ୍କର ଉପରେ ତୁମ୍ଭେ ବୋଲ ଅମଙ୍ଗଳ ଶାର
ଋକ୍ଷକପି ବାନର ମାନବ ଜଟାଧାରୀ
ଯୁଝିଲେ ଜାଣିବା ସିନା ତାହାଙ୍କୁ କେତେ ସର
ସିନ୍ଧୁ ତରିବାରୁ ଦେବ ନକର କିଛି ଚିନ୍ତା
ଆଜ୍ଞା ତୁମ୍ଭେ ବେଗେ ଦିଅ ମନ୍ଦୋଦରୀ କାନ୍ତା
ଶଲ୍ୟ ମର୍କଟ ତାର ଯେତେକ ବଳବନ୍ତ
ସେହି ଆମ୍ଭଙ୍କୁ ଜୟ ଯେ କରିବେ ଲଙ୍କାପତି ।
ଏହିକ୍ଷଣି ସମସ୍ତଙ୍କୁ ପକାଇବୁ ମାରି
ଯେତୁ ପରିଘାଇବ ସେ ତାକୁ ଅଧିକାରି ।
ଅଯୋଧ୍ୟା କିଷ୍କିନ୍ଧ୍ୟା ଯେ କରିବୁ ଉତ୍ସନ୍ନ ଗଣି
ବସୀନରେ ନ ରଖିବୁ ଯେତେକ ଚତୁର୍ଦ୍ଦିଶି ।
ନ କରସି ହେଳା ତୁମ୍ଭେ ଯିବୁ ଏହିକ୍ଷଣି
ଦଶଗ୍ରୀବ ସନ୍ତୋଷ ହୋଇଲା ତାହା ଶୁଣି ।
ଅନପକାରି ହସି ସମାଧି ସେତୁକରି
ବଚନ ମଧୁର ଯେ ଦିଅଇ ଦଶଗିରି ।
ଯାହା ସେ କହିଲ ହେ ଅଟେ ଏହୁ ସାଧ୍ୟ
ଆଗକରି କମ୍ପା ଆମ୍ଭେ କରିବା ଯେ ବାଦ ।
ଏବେଟି ଆମ୍ଭେ କବାଟ ପାଡ଼ିଣ ରହିଥିବା
ନଗର ବାହାରେ ଆମ୍ଭେ ଗୋଟିଏ ନ ରହିବ
ସୁବଳସ୍ଥା ପର୍ବତରେ ଆମ୍ଭର ଭବନାହିଁ
ବାହୁଡ଼ ପଳାନ୍ତୁ ସିନା ଦନା କେତେ ରହି ।
ଉଣ୍ଡିଣ ତପୁସି କପିବଳ ଆଣିଅଛି ରାଇ
ଲଙ୍କାଗଡ଼କୁ ଜୟ କରିବ ବୋଲି କହି ।
ଅନ୍ନ ବ୍ୟଞ୍ଜନ ମାନ ଭୁଞ୍ଜିବା ସାର ଦ୍ରବ୍ୟ
ଯେଉଁ ଦ୍ରବ୍ୟ ଖାଇବା ଦେବଙ୍କୁ ଦୁର୍ଲ୍ଲଭ ।
ଏକଥା ଶୁଣିଣ ବାନର ବୋଧ ହେଲେ
ବନର ଜନ୍ତୁମାନେ ଗୋଡ଼ାଇ ଅଇଲେ ।
ଭୁଞ୍ଜିବା ଯୁଝିବା କଥା ସେ ଏକଇ ମଣନ୍ତି
ମରିବା ଜୀଇଁବା କଥା ସେମାନେ ଜାଣନ୍ତି ।
ଏବେ ଆମ୍ଭେ ଚାରିଦ୍ୱାର ନିରୋଧ କରିବା
ତାହା ଅପଚୟ କଥାମାନ ତ ଜାଣିବା ।
ବ ହୁଡ଼ ଗଲେ ପଛେ ବାହୁଡ଼ ସେ ଯାନ୍ତୁ
ନ ନ ବାହାର କରିବା ଜାଣି ମାତାଙ୍କ ହେତୁ
ଆହାର ନ ପାଇଣ ତୁଟଇ ସିନା ପ୍ରାଣ
ଛାଡ଼ିବେ ଆମ୍ଭେ ଯାଇ ପଛେ କରିବା କାରଣ
ନିରେଖ କରି ପୁଣ ମାରିବା ହତ ସୁଖେ
ତେବେ ପ୍ରାଣ ପାଇବଟି ପଡ଼ିଲେ ଆମ୍ଭ ମୁଖେ ।
ଶୁଣିଣ ସୈନ୍ୟବଳ ହୋଇଲେକ ଶାନ୍ତ
ରାଜାଙ୍କୁ ବିବିଧ ପ୍ରକାରେ ସେ କଲେ ଭକ୍ତି ।
ହେ ଲଙ୍କାପତି ତୁମ୍ଭେ ନ ଜାଣିମ ଜସ
ତୁମ୍ଭେ ହେ ମହାବଳ ଅଟ ସର୍ବଜ୍ଞ ପୁରୁଷ ।
ଭୂତ ଭବିଷ୍ୟ ସୁକୃତ ବ୍ରତମାନ ଜନ
ଜନ୍ମ ହୋଇଅଛ ସକଳ ଗୁଣ ଘେନ ।
ଯାହା ସେ ଆଜ୍ଞା ଦେଲ ଅଟଇ ଯୁକତେ
ଏହି ବୁଦ୍ଧି ଜାଣି ତୁମ୍ଭେ ଜିଣିଲ ଜଗତେ ।
ଦିଅସି ଆଜ୍ଞା ଦେବ କବାଟ ପାଡ଼ନ୍ତୁ
ରାତ୍ର ଦିବସରେ ସେ ନିରୋଧ କରିଥାନ୍ତୁ ।
ଏମନ୍ତ ବଚନ ସେ ଶୁଣି ଲଙ୍କାରାଏ
ବେଗଭରେ ତାହାର ସେତନୁ ଉଲସାକାୟେ
ବାମ କରରେ ଜଣ ଆଜ୍ଞ ପୁଣି ପୁଣି
ଚନ୍ଦ୍ର ଉଦୟ ଖଡ୍ଗ ଦକ୍ଷିଣ କରେ ଘେନ ।
ପ୍ରହସ୍ତକୁ ବୋଇଲେ ସେ ନଇକେଶ ଘର
ସେ ତୋହର ଭଗ୍ନୀ ଅଟେ ସେ ମୋହର ଆଉ
ସର୍ବଦା କାଳେ ମୁଁ ଯେ ତୋହର ବିଶ୍ୱାସ
ମୋହର କଥା ତୋତେ ନୋହେକରେ ପ୍ରାସ
ଏବେ ଷାଠିଏ କୋଟି ରଥ ସଙ୍ଗେ ଘେନ
ପୂର୍ବଦ୍ୱାର ଜଗିଥିବୁ ଦିବସ ରଜନୀ ।
ପାଚେରି ଉଠେଇଁ ବାନରେ ଗଡ଼ିଲେ ପଶନ୍ତି
ତୋହର ଥିଲେ ମୋର ଯେ ତାକୁନାହିଁ ଭ୍ରାନ୍ତି
ଦୁଇ ଅସୁର ଦୁଇପଦ୍ମ ହସ୍ତ ବାଳ
ଦଶପଦ୍ମ ପଦାତି ଘେନିଣ ତୁଅ ସଜ ।
ଯାଅ ତୁ ପ୍ରହସ୍ତ ହୋ ଏହି ଅନୁକୂଳେ
ଏତେ କହି ଦେଲା ଅଳଙ୍କାର ଚନ୍ଦ୍ରହାରେ ।
ଶାଢ଼ୀମୁଣ୍ଡେ ବାନ୍ଧିଣ ଯେ ପ୍ରହସ୍ତ ସେନାପତି
ନଗରୁ ବାହାରିଲା ପ୍ରଚଣ୍ଡ ସୂର୍ଯ୍ୟଜ୍ୟୋତି ।
ସୁବର୍ଣ୍ଣମୟ ରଥରେ ବସିଲାକ ଯାଇ
ପୂର୍ବଦ୍ୱାର ଚଳଦେଲା ରାଜା ଆଜ୍ଞାପାଇ ।
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ
ଇନ୍ଦ୍ରଜିତକୋଇ ରାଏ ହକାରେ ବେଗେ ଆସ
ଶାଢ଼ୀ ଚନ୍ଦନ ମାଳା ପୁଷ୍ପ ଭୂଷଣ ସେହିବେଳ
ପଶ୍ଚିମ ଦ୍ୱାର ବାବୁ ରଖ ଯା ବୋଇଲା ।

ଯେତେ ଚୋରଉଛା କାବୁଡେଡେସୈନ୍ୟନଅ
ଢ଼େଇଁଣ ପଶିବେ ସେ ଯେ ଜନ୍ତିକ ଜଗିଥାଅ
ଶୁଣି ଇନ୍ଦ୍ରଜିତ ବୀର ଓଳଗ ବେଗେ ହେଲା
ବଣ୍ଡାଇ ସମ୍ମୁଖେ ସେ ବେଗ ଚଳିଗଲା ।
ଶଙ୍ଖ ଜମ୍ବୁ ହସ୍ତୀର କନ୍ଧରେ ଆରୋହି
ପଶ୍ଚିମ ଦ୍ୱାର ବୀର ନରୋଧ କଲାଯାଇ ।
ପାରୁଷ ମହୋଦର ର ଦୁଇ ତନୟେ
ଏମାନଙ୍କୁ ଡାକାଇ ରାଜା ଆଜ୍ଞାଦିଏ ।
ତୁମ୍ଭେ ଦୁଇ ଭାଇ ଯେ ଅଟ ମହାବୀର
ଦକ୍ଷିଣ ଦ୍ୱାର ଯାଇ ନରୋଧ ବେଗେ କର ।
ଇନ୍ଦ୍ରଜିତ ମାଗି ତୁ ସଙ୍ଗରେ ସୈନ୍ୟ ନଅ
ଜେଉଁଣ ପଶିବେ ସେତନ୍ତିକ ଜଗିଥାଅ ।
ଶୁଣିଣ ଇନ୍ଦ୍ରଜିତ ଓଳଗ ବେଗେ ହେଲା
ଏତେ ବୋଲିଣ ଶାଢ଼ୀଚନ୍ଦନ ପୁଷ୍ପ ଦେଲା
ଯାଅ ଯାଅରେ ବାବୁ ବୋଲିଣ ଆଜ୍ଞାଦେଲା
ହରଷ ମନରେ ଇନ୍ଦ୍ରଜିତ ଚଳିଗଲା ।
ଶୁଣିଣ ପାରୁଷ ମହୋଦର ଚଳେ ପୁଣି
ନଗରୁ ବାହାର ହେଲେ ରାଜା ଆଜ୍ଞା ଘେନି
ଅଶ୍ୱପରେ ବିଜେକରି ଧରାଇ ଦଣ୍ଡଛତ୍ର
ଦକ୍ଷିଣ ଦିଗକୁ ସେ ଗଲେ ବେନିଭ୍ରାତ ।
ଆପଣେ ଦଶଗ୍ରୀବ ବିଚାର କରେମନ
ମୁହିଁ ଏବେ ବୁଦ୍ଧି ଯେ କରିବି କେମନ ।
ଉତ୍ତର ଦ୍ୱାରେ ଅଛି ଯେ ମୋହର ବଇରି
ମୁହିଁ ଏବେ ସେ ଦ୍ୱାର ରଖିବି ଯତ୍ନକରି ।
ଶୁକ ସାରଣ ମନ୍ତ୍ରିକ ବୋଲେ ସେହୁ ରହିଁ
ଉତ୍ତର ଦ୍ୱାରକୁ ଏବେ ଯାଉଅଛି ମୁହିଁ ।
ଡେରା ବାଡ଼ି ଏବେ ସେ ପଡ଼ିବ ଏହିକ୍ଷଣି
ମଣ୍ଡାଅ ସୈନ୍ୟ ଯେ ବେଗେ ଯାନ୍ତୁ ପୁଣି ।
ହାଙ୍ଗୀ ସଜ କରିଣ ବେଗେ ଘେନି ଆସ
ଏତେ ବୋଲି ବାର୍କି ଆରୁ ଓହ୍ଲାଏ ଦଶାସ୍ୟ
ସୁକାସନରେ ରାଏ ବିଜେ କଲା ଯାଇ
ସଠର ଉପରେ ସେହୁ ଶ୍ୱେତ ଛତ୍ର ଧରାଇ ।
ମଙ୍ଗଳ ଗୁଜରି ରାଗେ ଶୁଭେ ଶଙ୍ଖଧ୍ୱନି
ନିଶାଣର ଶବ୍ଦେ ଯେ କମ୍ପଇ ମେଦିନୀ ।
ଢୋଲ ଦମା ଟମକ ନିଶାଣ ଶଙ୍ଖ ବାଜେ
ସ୍ଥାଖରେ ରଞ୍ଜିତ ମାତ୍ତନ୍ତ ଗଜ ସାଜେ ।

ପଞ୍ଚଶ ସହସ୍ର ସଙ୍ଗରେ ଅଛନ୍ତି ମହାଯୋଦ୍ଧା
ସମସ୍ତେ ସଂଗ୍ରାମରେ ଅଛନ୍ତି ପ୍ରସିଦ୍ଧା ।
ପଦାତିକରନ୍ତରେ କଳଣା ନ ଯାଇ
ପାଦରେଣୁ ଉଡନ୍ତେ ଗଗନ ନ ଦିଶଇ ।
ଅଶ୍ୱଙ୍କର ଏସଁାରବ ହସ୍ତୀଙ୍କ ଗର୍ଜନ
ଇତରେ ଥାଇ ସେହୁ କରନ୍ତି ସ୍ତବପୂଣ ।
ରଥଙ୍କର ଘୋଷା ଯେ ପାଦାନ୍ତିକ ଡାକ
ଚହଳରେ ଘେନଅଛି ସଂସାର ତ୍ରୈଲୋକ୍ୟ ।
ଉତ୍ତର ଗଡଦ୍ୱାରେ ବିଜେ ରାଜା ଯାଇ
ଆଜ୍ଞା ଦେଲା ଦ୍ୱାରପାଳଙ୍କୁ ସେ ରାଇ ।
ବୋଇଲା କଳରେ ବେଗକରି କବାଟ
କଳଣି କଳରେ କରଛାନ୍ତି ମନ୍ତ୍ରି ତୁମ୍ଭେ ହଟ
ଅନର୍ଗଳ କଳଣି କଳ ଝିଣ୍ଟିକ ଆଉଯାଅ
ଅଚଳ ପଥର ପୁଣ ଆଉଯାଇ ଥାଅ ।
ଲୁହାର ଶଙ୍କୁଳ ଖମ୍ବରେ ନେଇଣ ଲଗାଇ
ଯେ ଯାହାର ଖଞ୍ଜରେ ସଜାଡ଼ି ଛାହା ନେଇ
ଟେବଗ କରି ସଞ୍ଚରେ ତପତ ତବଣ
ରଙ୍କ ଗୁଳ ବାନ୍ଧରେ ବେଗେ ଯାଇ ପୁଣ ।
ସାଙ୍ଗି ସାବେଳ ଯେ ଖଣ୍ଡା ତିକ୍ଷଶର
ଏହା ଘେନି ବେଗେ ଉଠ ପାଚେରୀ ଉପର
ନିସୁଣି ଲଗାଅରେ ବେଗେ କରି ଆଣି
କୋସକରେ ଥୁଆଏ ପଡ଼ିଅଛି ଛୁଟିକଣି ।
କନକ ଶିରୀ ଉପରେ ଜଣେ କେତେ ରହି
ପାଞ୍ଚସ ପଦାନ୍ତରେ ରଖିବ ବାଙ୍ଗମୁହି ।
ଲାଙ୍ଗୁଳକେ ଗୁଣ୍ଡିବ ଦଶ ଦଶ ହାତ
ଦୁଇ ବୈରି ରହିବ ଏହୁ ଲାଙ୍ଗୁଳର ଜତ ।
ବନ୍ଧା ବାଟୋଳ ହାବେଳ ବେଗକରି ସାଜ
ବଳିଦ୍ୱାରେ ଥିବେ ମୋରମତ ଯେ ମଏ ଗଜ
ରାହରେ ବସି ଦୁଳା ଜାଳିବ ନିଶ୍ଚିନ୍ତରେ
ଭରିକରି ରଖ ଖଦ ତେଲ ଅଲଗାରେ ।
ହରିଡାଳ ଜଦଘାର ବେଗେ ସେ ଅଣାଅ
ଲୁହାର ନଳମାନ ବେଗେ ସେ ଗଡାଅ ।
ଗୁରିଶଟି ବାନ୍ଧିଣ ଶଗଡ ସଜକର
ଚଳନ୍ତି ମାରିବାକୁ ବେଗେ ସେ ବୁହା ପଥର
ଗୋରୁଚମ ଦଉଡ଼ି ପକାଅ ବେଗେ ଆଣି
ସେଥାଖକୁ ଓହଳାଅ ବେଡରେ ବାନ୍ଧି ପୁଣି

ଚଉଦଣ୍ଡରେ ବେଢ଼ାଇ ରକ୍ଷଣ ବସିଥିବ
ଯେ ଯାହାର ସହସ୍ର କ୍ଷଣେ ହେ ନ ଛାଡ଼ିବ ।
ଉଙ୍କାସି ନ ଦେବ ବନଜୀବ ସେମାନଙ୍କୁ
ନିର୍ବନ୍ଧ କରିଥିବ ତୁମ୍ଭେ ଯେ ତାଙ୍କୁ ।
କୁଣ୍ଡ ନ ଶୁଝିବ ଯେ ନ ଡ଼ାକିବ ଆରଣି
ନିରୋଧି ରହିଥିବ ଯେ ଯାହା ସ୍ଥାନେ ପୁଣି ।
ଉଠ ସମ୍ବାଦ କରିବ ଯେ ଯାହାର ଇଚ୍ଛା
ଏସନ କରିଣ ଯେ ସୁଗ୍ରୀବେ ଦେଲେ ଶିକ୍ଷା ।
ଆଜ୍ଞା ପାଇଣ ଆନନ୍ଦ ହେଲେ ସର୍ବଜନ
ସାଧନ୍ତି ରାଜା ଆଜ୍ଞାରେ ବଧି ଯେ ବିଧାନ ।
ସୁରକ୍ଷିତ କରିଣ ସେ ବାଣ୍ଟିଲେ ସଇନ୍ୟ
ଯେ ଯାହାର ବସାରେ ରହିଲେ ଠାବ ଘେନ
ଆପଣେ ଦଶଗ୍ରୀବ ଯେ ନଗର ଭିଆଇ
ଉତ୍ତର ଗଡଦ୍ୱାରେ ରହିଲେ ସେହୁ ଯାଇ ।
ପ୍ରହସ୍ତ ସେନାପତି ରହିଲା ସିଂହଦ୍ୱାର
ଦକ୍ଷିଣ ଦ୍ୱାରେ ରହିଲେ ପାତ୍ରଶ ମହାବୀର ।
ପଶ୍ଚିମ ଦ୍ୱାର ଇନ୍ଦ୍ରଜିତ ଆବୋରିଲା ଯାଇଁ
ମାଛି ଗଳିଯିବାର ଛିଦ୍ରରେ ବାଟ ନାହିଁ ।
ଯହୁଁ ସେ ଗଡ଼ର ପାଡ଼ିଲା ଦ୍ୱାରମାନ
ଶୁଣ ଗୋ ଶାକମ୍ଭେଶ୍ୱ କହନ୍ତି ଈଶାନ ।
ସୁବେଳସ୍ଥା ପର୍ବତରେ ଅଛନ୍ତି ରଘୁବୀର
ତାହାଙ୍କୁ ବାରତା କହେଶ୍ୱର ଯେ ସତ୍ୱର ।
ଶୁଣ ଦେବ ବ୍ରହ୍ମାଣ୍ଡ ଠାକୁର ଈଶ୍ୱର
ଲଙ୍କାରୁ ବାର୍ତ୍ତା ଦେବ ଆଣିଲେ ସତ୍ୱର ।
ଦଶଗ୍ରୀବ ରାଏ ଯେ ଏମନ୍ତ ବିସ୍ତରିଲା
ରଥଗଜ ଅଶ୍ୱ ଯେ ସୁଶୃଙ୍ଖଳ କଲା ।
ମଉଳା ପ୍ରହସ୍ତକୁ ପୂର୍ବ ଦ୍ୱାରେ ଯେ ରଖାଇ
ପଶ୍ଚିମ ଦ୍ୱାରେ ଇନ୍ଦ୍ରଜିତକୁ ରଖାଇ ।
ପାତ୍ରସ ମହୋଦର ଦକ୍ଷିଣ ଦ୍ୱାରେ ଯାଇ
ଆପଣେ ଉତ୍ତର ଦ୍ୱାରେ ରହିଲେ ଲଙ୍କସାଇଁ
ନଉବଦ ହୋଇଣ ଯେ ଅଛନ୍ତି ଭିତରେ
ଗୋଟିଏ କେହିଆଉ ନ ରହିଲେ ବାହାରେ
କବାଟ ପାଇଣ ସେ କଳଲେ ନିଅତ
ଶୁଣିକରି ଶ୍ରୀରାମ ଯେ ହୋଇଲେ ଚକିତ ।
ବିଭୀଷଣ ମୁଖକୁହିଁ ଶ୍ରୀରାମ ବୋଲନ୍ତି
କେବଣ ଚରିତ କୁ ଜାଣୁ ହୋ ଲଙ୍କପତି ।

କାହିଁକି ଗଡଦ୍ୱାର ପାଡ଼ିଲା ରାବଣ
ଏକଥା ତାହାର ଯେ ନ ଜାଣିଲି ପୁଣ ।
ତ୍ରୈଲୋକ୍ୟ ଜିଣିଲା ସେ କେବଣ ଗୁଣେ ପୁଣ
ଏକଥା ମାନ ମୋତେ ଲାଗୁଛି ଅବଷଣ ।
କି ଅବା ଜାନକୀଙ୍କ ବାହୁଡ଼ାଇ ଦେବ
ନୋହିଲେ କି ମନରେ ବିଚାର ତାର ଥିବ
ଭୟ ନାହିଁ କୋଲଣ ବୋଲିବା କେମନ୍ତେ
ଦ୍ୱାର ପଡ଼ିଲା ସେ କେବଣହିଁ ମତେ ।
ବିଭୀଷଣ କହଇ ଶ୍ରୀରାମ ବାଣୀ ଶୁଣି
ଶୁଣିମା ହେ ଦେବଦେବ ରଘୁକୁଳ ମଣି ।
ସବୁଠାରେ ଏକଥା ଅଛି ହୋ ଦାଶରଥି
ଶତ୍ରୁ ଉପଗତରେ ଗଡ଼ଦ୍ୱାରେ ପାଡ଼ନ୍ତି ।
ଆପଣାର ବଳରେ ଆପଣା ବଳକଳ
ଦ୍ୱାର ପାଡ଼ି ଆପଣା ରାଜ୍ୟକୁ ରକ୍ଷାକରି ।
ସଜହୋଇଣ ଯେ କରନ୍ତି ଯୁଦ୍ଧପୁଣ
ଏମନ୍ତ ଲୋକ ଅଟଇ ପାରିବାର ଜାଣ ।
ତୁମ୍ଭେତ ଦେଖିନାହଁ ଯୁଦ୍ଧର ଛନ୍ଦ ପୁଣି
କେତେ ଛନ୍ଦେ ରାବଣ କରିବ ଅରେଣି ।
ହୋଇ ଯେ ଗଡ଼ଦ୍ୱାର ପାଡ଼େ ଲଙ୍କପତି
ନିଶ୍ଚୟ ଦେବ ଯେ ଜାଣ ମନେ ଭ୍ରାନ୍ତି ।
ବିଚାରିଲା ଗଡରେ ପଶନ୍ତି ଆସିବଳ
ତେଣୁ ସେ ଦ୍ୱାର ଦେଇ ଜଗିଣ ଛନ୍ତି ଗାଢ଼
ଭୟ ନ ଥିଲେ ସେ ଦ୍ୱାର କମାଇ ଦଅନ୍ତା
ସେନାପତି ପେଷିଣ ସେ ଗଡ଼ରେ ବସିଥାନ୍ତା
ଏହିପ୍ରାଏ ଏ ସଂଗ୍ରାମରେ ଜଣେ ଜନପୁର
ଏହିରୂପେ ମାୟା ସେ କରଇ ଅପାର ।
ଭୟ ବୋଲି ତାହାର ବୋଲଇ ରଘୁବୀର
ମାୟାରେ ଦୁଆର ପାଡ଼ୁଛି ଲଙ୍କେଶ୍ୱର ।
ନିଶ୍ଚୟ ସମ୍ବାଦ କରାଏ ଲଙ୍କପତି
ଯହୁଁ ଦେଖିଲା ତୁମ୍ଭର ଅକଳ ବଳଛନ୍ତି ।
ବିଚାରିଣ କାର୍ଯ୍ୟ ତୁମ୍ଭେ କର ରଘୁସାଇଁ
ଏ ଘାନ୍ତ ସମରରେ ଜୟ ତାକୁ ନାହିଁ ।
ଶୁଣିକରି ଶ୍ରୀରାମ କ୍ଷଣରେ ହସ୍ତଭରି
ଏହି ବିଚାର କଲେ କି ଯିବୁ ଦଶଶିର ।
ନତାରା ଯୋଡ଼ ହେଲେ କି ସ୍ଥିର ଦେବଯମ
ବାଇ କି ବାତୁଳ ତୁରେ ହେଲୁ କରେ ରାମ

ଗଡ଼ ଗ୍ରହଣ ଯେବେ ପଳାଇଣ ଯିବ
ମୋହର ନାଗର ତାକୁ ଚୋରାଇ ଖାଇବ ।
ସ୍ତ୍ରୀ ବୋଲଣ ସେ ଯେ ହୋଇଥିଲା ଠାଣି
ଏବେ କମ୍ପା କବାଟ ଦେଉଛୁ ବଂଶପାଣି ।
ଏମନ୍ତ ବିସ୍ମର କଲେକ ଶତ୍ରୁ ହୋଏ ସାଧି
କେଉଁ ବିଧାତା ତାହାକୁ ଦେଉଛୁ ଏ ବୁଦ୍ଧି ।
ଆଉକ କରିଅଛୁ ଜୀବନକୁ ଆଶ
ସୀତାଙ୍କୁ ଆଣିଲା ବୋଲୁଁ ମଲାଣି ଦଶାଈଶ ।
ଏତେ ତାର ଜୀବନ ନଷ୍ଟତେ ଅଛୁ ପୂରି
ମୋର ହାତେ ମୃତ୍ୟୁତାର ଲେଖିଛୁ କୃଶଧାରୀ
ମୁହିଁ ଏବେ ଜାଣିଲି ପୂରିଲା ତାର କାଳ
ଅବଶ୍ୟ ପ୍ରାଣ ତାର ଯିବ ଯମଆଳ ।
ଏତେବୋଲି କ୍ରୋଧ ଯେ ହେଲେ ରାମରାଏ
ଦେହ ଦିଶିଲା ତାଙ୍କର ରକ୍ତବର୍ଣ୍ଣ ପ୍ରାଏ ।
ଶୁଣିଲ ଟିକ ହୋ ହେମବନ୍ତର ଦୁଲଣୀ
ଶ୍ରୀରାମ ଚରିତ ଏ ଅମୃତମୟ ବାଣୀ ।
ପାର୍ବତୀ ବୋଇଲେ ଦେବ ଶୁଣ ବିଶ୍ୱବାସ
ସ୍ୱରଦ୍ୱାର ପାଡ଼ ଯେ ରାବଣ ମନତୋଷ ।
ମନ୍ଦୋଦରୀ ଜାଣିକରି କିସ ବିଚାରିଲା
ଏହା ମୋତେ ସଞ୍ଚପି କହଦେବ ପରା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ଦାସୀ ପରିବାରି କହେ ରାଣୀକି ବେଗେଯାଇ
ଶୁଣ ଗୋ ମହାଦେଈ ରାଜାର ପାଟରାଣୀ
ତୁମ୍ଭ ନୃପତି ବିଚାର କଲେ ଏବେ ଶୁଣି ।
ସ୍ୱରକ୍ଷାଗ କରିଣ ସୈନ୍ୟକୁ ବାଣ୍ଟି ଦେଲେ
ସ୍ୱର ଦ୍ୱାର ପକାଇ ଚେତରେ ରହିଲେ ।
ସିଂହଦ୍ୱାରକୁ ଗଲା ଯେ ପ୍ରଶସ୍ତ ସେନାପତି
ମୁକୁଟ ବନ୍ଧା ସଙ୍ଗରେ ବତିଶ ଲକ୍ଷ ପଦାତି ।
ଯେତେକ ଲୋକ ଘେନ ସିଂହଦ୍ୱାର ଜଗିଅଛି
ଦକ୍ଷିଣ ଦ୍ୱାରକୁ ପାରାକ୍ଷ ସେନାକୁ ପେଶନ୍ତି ।
ପନ୍ଦର କୋଟି ମୁକୁଟ ବନ୍ଧା ପଚାଶ ପଦାତି
ଏତେକ ବଳ ଘେନିଣ ଦକ୍ଷିଣ ଦ୍ୱାରେ ଛନ୍ତି ।
ପଶ୍ଚିମ ଦ୍ୱାରକୁ ଗଲା ଇନ୍ଦ୍ରଜିତ ପୁଣ
ଦଶକୋଟି ମୁକୁଟ ବନ୍ଧା ରାକ୍ଷସି କୋଟିଜାଣ
ପଶ୍ଚିମ ଦ୍ୱାରକୁ ଯେ ଇନ୍ଦ୍ରଜିତ ଜଗି
ଉତ୍ତର ଦ୍ୱାରକୁ ରାଜା ଆପଣେ ସେ ଜଗି ।

ପଚାଶ କୋଟି ମୁକୁଟ ବନ୍ଧା ସଙ୍ଗେ ଯୋଧି
ଏତେ ବୋଲି ଲଙ୍କାଈଶ ସେ ଦ୍ୱାର ନିରୋଧି
ଏମନ୍ତ ପ୍ରକାରେ ସ୍ୱରଦ୍ୱାର ସେ ପଡ଼ିଲା
ବାହାରକୁ ଯିବାକୁ ବାଟ ସେ ନ ରହିଲା ।
ମନ୍ଦୋଦରୀ ବୋଇଲା ଏ ସ୍ୱେରଙ୍କର ମତି
ବାହାର ତ ରଘୁନାଥ ସୈନ୍ୟ ଘେରିଛନ୍ତି ।
ଯୁଦ୍ଧ ନ କରି କମ୍ପା ପକାଏ ସ୍ୱରଦ୍ୱାର
କହିଲାର କଥା ସେ ନ କଲା ମୋହର ।
ଦେଖିବା ପାରିବାରି ପଣ ଯେ ଏଠାରେ
କେ କାହାକୁ ଜିଣିମ ଦେଖିବା ପ୍ରାନ୍ତରେ ।
ରଘୁନାଥର ଏବେ ଯେ ଅଛଇ ଧର୍ମବଳ
ଆଗକରି ଏହା ସିନା କଲକ ଏ ଗୋଳ ।
ଏତେ ବୋଲି ମନ୍ଦୋଦରୀ ମନରେ ବିଚାରିଲା
ନାରଦଙ୍କ କଥା ନଷ୍ଟେ ହୋଇବ ବୋଇଲା ।
ପାର୍ବତୀ ବୋଇଲେ ଦେବ ଶୁଣ ହେପ୍ରାଣନାଥ
ସୀତା ଶୁଣୁଥିଲେ ଆସିବାର ତାଙ୍କକାନ୍ତ ।
କେମନ୍ତ ବିଚାର ସେ କରେ ଶଶିମୁଖୀ
ଏହା ମୋତେ ସଞ୍ଚପି କହକେ ପ୍ରାଣପତି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ବରୀ
ଶ୍ରୀରାମ ଆସିବାରୁ ସୀତା ମନରେ ଖୁସିକରି ।
ତ୍ରିଜଟାକୁ ବୋଇଲେ ଶୁଣରେ ପ୍ରାଣସଖି
ସ୍ୱରଦ୍ୱାର ରାବଣ ନିରୋଧ କିସପାଇଁ ।
ତ୍ରିଜଟା ବୋଇଲେ ବଳପଶିବେମେଲିହେଲେ
ଏହା ବିଚାରି ନିରୋଧ କଲା ସ୍ୱରଦ୍ୱାରେ ।
ବିଭୀଷଣ ଯୁଦ୍ଧ ଯେ କରିବ ଲଙ୍କାପାଳ
ଏହିପରି ଛନ୍ଦରେ ଜଣିଛି କେତେବଳ ।
ସୀତାୟା ବୋଇଲେ ତାରଯେତେଦିନକର୍ମଥିଲା
ଏବେ ତାକୁ ବିଧାତା ଦୁର୍ବଳ ହୋଇଲା ।
ତ୍ରିଜଟା ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ
ଆଜୁ ସତର ଦିନରେ ଜଣାଯିବ ପୁଣି ।
କେତେ ଜିଣିବ କେତେ ଯମପୁର ଯିବ
ଦେଖିବ ଚିନ୍ତା ଏବେ ନକର ମାତ ଏବ ।
ଜାନକୀ ବୋଇଲେ ତୋତେ ପଚାରୁଛି ମୁହିଁ
କେମନ୍ତେ ଜାଣିଲୁ ସତର ଦିନ ଯୁଦ୍ଧ ହୋଇ
ତ୍ରିଜଟା ବୋଇଲେ ଦିନେ ପିତାପୁରି ମୋର
କଳହ ଋଷି ପ୍ରବେଶ ହୋଇଲେ ସେଠାର ।

ପିତା ପଚ୍ଚାରିଲେ ତୁମ୍ଭେ ଶୁଣ ମୁନିବର
ମଞ୍ଚରେ ଅମର ହୋଇଅଛି କେଉଁ ନର ।
ସେ ବୋଇଲେ ଋଷିକୁଳେ ଅମର ମାର୍କଣ୍ଡ
ଅସୁର କୁଳେ ବଳୀମଧ୍ୟେ ଦୈତ୍ୟ ପ୍ରଚଣ୍ଡ ।
ବାନର କୁଳରେ ହନୁମାନ କୁଳରେ ଜନ୍ମେବ
ମାନବ କୁଳରେ ଅଛନ୍ତି ଭଗୀରଥ ନୃପ ।
ପିତା କହିଲେ ଏହା କହ ତେ ବୁଝାଇ
ଋଷି ବୋଇଲେବଳ ଯାହାଲେ ଅମରହୋଇ
ହନୁମନ୍ତ ଅମର ଚ୍ଛର ଯୁଗରେ ପୁଣ
ମାର୍କଣ୍ଡ ଅଟନ୍ତି ସେ କଳ୍ପଋଷି ପୁଣ ।
ଗଙ୍ଗାଙ୍କୁ ଭଗୀରଥ ଆଣି ହୋଇଲେ ଅମର
ସ୍ୱଦେହ ଘେନି ସ୍ୱର୍ଗରେ ବାସକଲେ ତାର ।
ତୋତେ ଯେ ଅମର ପଦ ଦଇବ ଦେଇଗଲା
ଏତେ କଥା ଆମ୍ଭେ ଜାଣିଛୁ ବଣବାର ବଳା
ଚ୍ଛର ଯୁଗରେ ଯୁଦ୍ଧ କେମନ୍ତେ ପ୍ରକାରେ
ଏହା ମୋତେ ବୁଝାଇ କହ ହେ ମୁନିବରେ
ଋଷି କହିଲେ ସତ୍ୟଯୁଗରେ ମଂସାସୁର
ଚଉଦ ଦିନରେ ଦେଖା ମାଇଲେ ଦୈତ୍ୟବାର
ତ୍ରେତୟା ଯୁଗରେ ରାମ ଅବତାର ପୁଣ
ରାବଣ ନାଶଯିବ ସେ ତାଙ୍କ ହସ୍ତେ ଜାଣ ।
ସତର ଦିନ ଯୁଦ୍ଧହେବ ଲଙ୍କାଗଡ଼େ
ଦ୍ୱାପରେ ଅବତାର ହୋଇବ ମର୍ତ୍ତ୍ୟପୁରେ ।
ଭାରତ ଯୁଦ୍ଧହେବ ହସ୍ତିନା ନଗରେ
ଅଠରଦିନ ଯୁଦ୍ଧ କୁରୁ ପାଣ୍ଡବରେ ।
ଛନବରଷପାଞ୍ଚବରଷସାତବରଷଅନନ୍ଦନହେବ
ଏକଥା ପୁଣ ପ୍ରମାଣ ଅଟଇ ଧ୍ରୁବ ।
ଚଉଦ ରାଜାରେ କଳଯୁଗ ହେବ ଶେଷ
ଏତେ କହି ମୁନି ଯେ ଗଲେ ସ୍ୱର୍ଗବାସ ।
ତାଙ୍କଠାରୁ ମୁହିଁ ଯେ ଶୁଣିଥିଲି ଜାଣ
ଏତେ କହି ବିଜଟା ଯେ ତୁନି ହେଲେ ପୁଣ ।
ଏଥୁ ଅନନ୍ତରେ ଯେ ପାବଣି ଦେଖି କହି
ଦୂତ ଠାରୁ ଶୁଣି ଯେ ଶ୍ରୀରାମ କ୍ରୋଧ ହୋଇ
ଶ୍ରୀରାମ କସ କଲେ କହ ମୋତେ ଏବେ
ଶୁଣିକର ମନମୋର ଧୀର ହେଉ ତେବେ ।
ଈଶ୍ୱର ବୋଲନ୍ତି ଶୁଣ ମନଦେଇ
ଶ୍ରୀରାମର କଥା ତୁ ଶୁଣ ତୋଷ ହୋଇ ।

ଏତେ ବୋଲି ଶ୍ରୀରାମ ସୁଗ୍ରୀବର ମୁଖରୁଣ୍ଡି
ଶୁଣିଣ କପିବର ମଥାରେ ହାତଦେଇ ।
ଶ୍ରୀରାମ ବୋଇଲେ ହୋ କପିବର ଶୁଣ
ଯୂଥପତିମାନଙ୍କୁ ରୁହାଇ ଏବେ ଆଣ ।
ସେ ଯେବେ କବାଟ ଦେଲେ ଗଡ଼େ ପଶି
ଏଥିରେ ଆମ୍ଭେମାନେ କ କରିବା ବସି ।
ଗୁଳ ଏବେ ଚାରି କଟକ ବେଢ଼ିବା
ସଜ ହୁଅନ୍ତୁ ସୈନ୍ୟ ଯେତେ ଅଛନ୍ତି ଅବା ।
ଶୁଣିଣ ସୁଗ୍ରୀବର ଦୂତକୁ ପଠାଇ
ସେନାପତିମାନଙ୍କୁ ଆଣିଲା ହକରାଇ ।
ଶ୍ରୀରାମ ଚରଣେ ଦର୍ଶନ ସାରେ କଲେ
ଦୂରନ୍ତୁ ପଡ଼ି ସାର ପାଏ ପଡ଼ଣ ଶୋଇଲେ ।
ନାଳ ସମବଳ ଯେ ସଜସ୍ତ ସେନାପତି
ସୁଷେଣ ତାରାକ୍ଷ ଯେ ଅଙ୍ଗଦ ମାରୁତି ।
ବଳମୁଖ କାଳମୁଖ କଞ୍ଚଣ ସୁଶୋଭନ
ଧୂମ୍ରାକ୍ଷ ପାରସ କୁମୁଦ ଚନ୍ଦନ ।
ଜମ୍ବେବ ଶତବାଳ ଦୁନ୍ଦଭ କୁରୁସାର
ଶଙ୍ଖ ସେନାପତି ଗଜସ୍ତ ନାମେ ସାର ।
ଗନ୍ଧମାଦନ ଯେ ପନଶିଳ ସାଏ
ଏମାନଙ୍କୁ ଗୁହିଁଣ ବୋଇଲେ ରାମରାୟେ ।
ଯେ ଯାହାର ଅଙ୍ଗ ବଳ ସଙ୍ଗେ ଘେନିଯିବ
ଏହିକ୍ଷଣି ଗଡ଼େ ଜେଉଁଣ ପଶିବ ।
ସୁଗ୍ରୀବତ ସଙ୍ଗତେ ନଳ ନାଳ ଚନ୍ଦନ ଯାଅ
ଗନ୍ଧ ମାଦନ ସତ ବଳ ଥାଅ ।
ପୂର୍ବଦ୍ୱାରେ ଅଛି ଯେ ମଲ୍ଲ ତାହାର
ସମସ୍ତ ସେନାପତି ଅଟଇ ବଳଆର ।
ସେ ଦ୍ୱାରକୁ ମଇନ୍ଦ ଓଗାଳ ବେଗେ ଯାଇଁ
ଆଜ୍ଞା ହୁଅନ୍ତୁ ଗଡ଼େ ସୈନ୍ୟ ପଶନ୍ତୁ ଜେଉଁ ।
ଅଙ୍ଗଦକୁ ହକାରି ବୋଇଲେ ରାମ ଦେବ
ତୋର ସଙ୍ଗେ ସଜସ୍ତ ସେନାପତି ଥିବ ।
ଗ୍ରାଳଂବ କେଶରୀ ଦଧିମୁଖ ବଳ ଘେନ
ସେ ଯାହାର ଅଙ୍ଗବଳ ଘେନନ୍ତୁ ସଇନ ।
ଏହାକୁ ଘେନିଣ ଦକ୍ଷିଣ ଦ୍ୱାରେ ଯାଅ
ନବନ୍ଧ କରିଣ ତୁମ୍ଭେ ଗଡ ବେଢ଼ିଥାଅ ।
ରାବଣର ତନୟ ଯେ ପାରୁସ ମହୋଦର
ଦକ୍ଷିଣ ଦ୍ୱାରରେ ସେହୁ ଅଛି ମହାସାର ।

ଯାବତକୋଟି ପାବାନ୍ତ ମୁକୁଟ ବନ୍ଧାଜାଣ
ଏହାଙ୍କୁ ଘେନ ଦ୍ୱାର ପାଡ଼ନ୍ତୁ ଜାଣ ।
ତାହାଙ୍କୁ ଆଗୋଳ ମୋହର ବୋଲକରି
ପାତେଶ୍ୱ ତେଇଁଶ ସୈନ୍ୟ ପଶନ୍ତୁ ଆମ୍ଭର ।
ଏତେ କହି ଶ୍ରୀରାମ ହନୁମନ୍ତଙ୍କୁ ଚାହିଁ
ପଶ୍ଚିମ ଦ୍ୱାରକୁ ତୁହି ଯାଅ ବେଗ ହୋଇ ।
ବସନ୍ତ ବୃଷଭ ଯେ ମହେନ୍ଦ୍ର ସାରସ
ସଜ ହୋଇଣ ସୈନ୍ୟ ବେଗେ ଆସ ।
ପଶ୍ଚିମଦ୍ୱାରକୁ ତୁମ୍ଭେ ଆବୋରି ବେଗେଯାଇଁ
ଇନ୍ଦ୍ରଜିତ ସେ ଦ୍ୱାରକୁ ଜଗିଅଛି ଯାଇ ।
ଗଡ଼ ବେଢ଼ିଣ ତୁମ୍ଭେ ଦ୍ୱାର ମାଡ଼ି ବସ
ସୈନ୍ୟଙ୍କୁ ବୋଲେ ତୁମ୍ଭେ ପାତେଶ୍ୱତେଇଁଶ
ଆପେ ତୁ ହନୁମନ୍ତ ଦ୍ୱାର ମାଡ଼ି ବସ ଯାଇ
ଜାଣିଣ କର୍ମ କର ଇନ୍ଦ୍ରଜିତଟି ସେହି ।
ଆମ୍ଭେ ଲକ୍ଷ୍ମଣଙ୍କୁ ଘେନି ଉତ୍ତର ଦ୍ୱାରେ ଯାଇ
କେବଣ ମୂର୍ତ୍ତି ରାବଣ ତାହାଙ୍କୁ ଦେଖିବଇଁ ।
ଶୁଣିଣ ହନୁମନ୍ତ ସୁଗ୍ରୀବର ପାଶେ ଗଲେ
ଶ୍ରୀରାମଙ୍କ ଆଜ୍ଞା ଶୁଣି ଶିରରେ ଦେଲେ କର
ବୋଇଲେ ଏହିକ୍ଷଣି ବେଢ଼ିବୁ ଯାଇ ଲଙ୍କା
ସେ ଯେ ଦାନବଙ୍କୁ ନାହିଁ ଆମ୍ଭର ଶଙ୍କା ।
ଆଜ୍ଞାଦେଲେ ରାବଣକୁ ଆଣିବୁ ଆମ୍ଭେ ଧରି
ଅସୁର ଦଳକୁ ଆମ୍ଭେ ପକାଇବୁ ମାରି ।
ଶ୍ରୀରାମ ଚନ୍ଦ୍ର ବୋଇଲେ ହେ ଗଜଯାକ ବେଭ
ମିଛରେ ଦଇତ ଯେ ବୋଲାଉଛି ଗାଢ ।
ଆଜ ସେ ଜାଣିମାନା ପ୍ରତିଜ୍ଞା ଯାକ ତାର
ଗଡର ଭିତରୁ ଯେବେ ହୋଇବ ବାହାର ।
ତେବେ ସିନା ବୁଝିବା ବଡ଼ କେହୁ ସାନ
ସଜ ହୋଇଣ ଯାଅ ସର୍ବେ ବୋଲେରଘୁନାଥ
ଯୂଥପତିମାନେ ଶୁଣି ସଜ ହୋଇଯାନ୍ତି
ମାରୁତି ଚାହିଁଣ ଶ୍ରୀରାମ ବଚନ ବୋଲନ୍ତି ।
ଅଠର କ୍ଷୌହିଣି ପୁଣ ରାବଣର ବାଦ୍ୟକାର
ରଥ ଘଗ କରିଣ ବାଣ୍ଟୁଛି ଦଶଶିର ।
ଆମ୍ଭର ବାଦ୍ୟକାର ସଜକର ପୁଣ
ବତିଶ କ୍ଷୌହିଣି ବାଜଣା ବାଜୁ ଏବେ ଜାଣ ।
ଆଠ କ୍ଷୌହିଣୀ ଲେଖାଏ ବାଣ୍ଟି କରି ଦିଅ
ଦ୍ୱାରମାନଙ୍କରେ ଶବଦ ଘୋର ହିଅ ।

କଂସାଳ ଘଣ୍ଟି ତୁରୀ ଯେ ଶୃଙ୍ଗ ରାମତାଳି
ବଜାନ୍ତୁ ସବୁ ବାଦ୍ୟରୁ ସେ ବାଦ୍ୟ ଉଚ୍ଛୁଳି ।
ଢୋଲ ଟମକ ଯେ ନିଶାଣ ଶଙ୍ଖ ବମ
ସେଥିରୁ ରାମତାଳି ଉଗୁଳ ଶୁଭବ ଉତ୍ତମ ।
ଅଷ୍ଟ ସେନାପତି ଯେ ତୁମ୍ଭେ ପଚାଶ ଯୂଥପତି
ବୀର ମହାବୀରମାନେ ଯେତେ ଅଛନ୍ତି ।
ସବୁଙ୍କର ଆଗରେ ଦେବେ ରାମତାଳି
ଶୁଣିକରି ଦୈତ୍ୟଙ୍କର ଦର୍ପ ହେଉ ଦଳି ।
ଶ୍ରୀରାମଚନ୍ଦ୍ର ବଚନ ଶୁଣି ହନୁମନ୍ତ
ଟହ ଟହ ହୋଇଣ ସେ ହସିଲା ତୁରିତ ।
ସୁଗ୍ରୀବ ଯାଇଣ ମହାରଣାଙ୍କୁ ଆଜ୍ଞା ଦେଲେ
ରାବଣ ଟମକନିଶାଣଘଣ୍ଟି ଘାଗୁଡ଼ି ଏବେକଲେ
ଦୁନ୍ଦୁଭି ବୀରଗଙ୍ଗ ଡେମ୍ପା ଯେ ନାଗର
ଆମ୍ଭର ତକ୍ଷଣେ ରାମତାଳିଆଅ ବେଗେ ଭରି
କରତାଳି ହୁଳହୁଳି କଂସାଳ ଘୋଷମାନ
ଭିଆଣ କରି ସଙ୍ଗ ଦେଲା ବିଶ୍ୱକର୍ମା ପୁଣ ।
ନିଶାଣ ବାଦ୍ୟମାନଙ୍କରେ ବାନ୍ଧିଲେପାଟସୂତା
ସମତୁଲ କରିଣ ଘେନିଲେ ମସ୍ତମତା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବବର
ବିଶ୍ୱକର୍ମା ସଜାଡ଼ିଲା ନିଶାଣ କରତାଳ ।
ସେ ବିଶ୍ୱକର୍ମା ପୁଣି କେଉଁଠାରୁ ଆଇଲା
ଏକଥା କହ ମୋତେ ଦେବାଧି ଦେବ ହର
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସିଂହବାହନା
କିଷ୍କିନ୍ଧ୍ୟା କଟକ ନଅ ଯୋଜନ ଅଟେ ପୁଣି
ଗ୍ରାସ ପାଟଣ ଯେ ମଧ୍ୟର ଏକ ନଗ୍ରପୁର
ଏଥିରେ ଯେତେ ଅଛନ୍ତି ବିଶ୍ୱକର୍ମାଙ୍କର ଘର
ସହସ୍ରେକ ବାହାଣୀ ଘେନିଣ ସୁଗ୍ରୀବର
ବିସ୍ତର କରିଣ ସେ ଆଣିଛି ସଙ୍ଗତର ।
ବାଦ୍ୟକାର ଆଣିଛି ସେ ବତିଶ କ୍ଷୌହିଣି
ରଜକାର ଆଣିଛି ସେ ବତିଶ କ୍ଷୌହିଣୀ ।
ଲମ୍ବାହାତା ପଞ୍ଚାଶ କମାର ଚାରିଶ
ନାପିତ ଅଣାଇଛି ସଙ୍ଗରେ ବିଶେଷ ।
ହଟାରି ବଜାରି ହାଟୁଆ ବାଟୁଆ ପୁଣ
ସମସ୍ତ ସଙ୍ଗେ ଆଣିଛି ସୁଗ୍ରୀବ ରାଜନ ।
ଶୁଣିଣ ପାର୍ବତୀ ଦେବୀ ମନେ ତୋଷ ହେଲେ
କଥାଏ ପ୍ରସ୍ତାବ ବୋଲିଣ ବୋଇଲେ ।

ଲଙ୍କାଗଡ଼ ଅଟଇ ଯେ ଆଠକୋଶ ପୂଣ
ସ୍ବର ପାଖେ ସ୍ବର ଦ୍ୱାର କରିଛୁ ତିଆଣ ।
ଦୁଆରମାନଙ୍କ କଥା ବୁଝାଇ ମୋତେ କହ
ସ୍ବଣଦ୍ୱାରେ କ ରଖିଛୁ ବସବାର ପୁଅ ।
ଈଶ୍ୱର ବୋଇଲେ ଯେତେବେଳେ
ଲଙ୍କାଗଡ଼ ହେଲା
ବିଧାତା ଇସିଣ ସେ ଗଡ ନିର୍ଭାକଲା ।
ତେତେବେଳେସ୍ବରପାଖେପାତେଣିବେଢ଼ାଇଲା
ସ୍ବରପାଖେ ସ୍ବରଦ୍ୱାର ଚଣ୍ଟିରେ ନିର୍ଭାକଲା ।
ଦଶଯୁଣ ଉଚ ଯେ ପାଚେରୀ ପାର୍ଶ୍ୱ ପୁଣ
ତିନିଯୁଣ ପ୍ରସ୍ତ ଯେ ଓସାର ତୁମ୍ଭେ ଜାଣ ।
ପନ୍ଦର ଯୁଣ ଉଚ ଦୁଆରମାନ ହୋଇ
ଯୁଣକେ କବାଟ ଗୋଟିଏ ଲଗାଇ ।
ଦୁଆରକେ ପନ୍ଦର କବାଟ ତୁମ୍ଭେ ଜାଣ
ଅଷ୍ଟଧାତୁରେ କବାଟ ତିଆର କରି ପୁଣ ।
ପ୍ରଥମେ ସିଂହଦ୍ୱାର ତିଆର ପୁଣକଲା
ରତ୍ନ ସିଂହ ଦୁଇଗୋଟି ସେଦ୍ୱାରେ ଲଗାଇଲା
ପାଞ୍ଚଦ୍ୱାରେ ଛୁଟିକଣି ସିଙ୍କୁଳ ଲଗାଇ
ଝିଞ୍ଜିରି ଯନ୍ତ୍ରକଳଣି ଅର୍ଗଳ ମାନ ଥୋଇ ।
ଏରୂପେ ସିଂହଦ୍ୱାର ବଣିଛୁ ନିର୍ଭାପୁଣ
ସେହି ପ୍ରାୟେ ଦକ୍ଷିଣ ଦ୍ୱାର ନିର୍ଭାଜାଣ ।
ରତ୍ନରେ ବସାଇଛୁ ଭୁଜଙ୍ଗ ଅଶ୍ୱ ଦୁଇ
ଜୀବନ୍ୟାସ କଲା ସଞ୍ଜିବନୀ ମନ୍ତ୍ର ଦେଇ ।
ଏହିରୂପେ ପଶ୍ଚିମଦ୍ୱାର ନିର୍ଭାକଲା
ହାର୍ଦୋଳ ଦୁଇଗୋଟି ରତ୍ନରେ ବସାଇଲା ।
ସଞ୍ଜିବନୀ ମନ୍ତ୍ର ଦେଇ ଜୀବନ୍ୟାସ କଲା
କାଳଯୁଗେ ପ୍ରମାଦ ପଡ଼ିଲେ ଗଜକୁ ବୋଲଇ
ସେଠାରୁ ଉତ୍ତରଦ୍ୱାରେ ହେଲା ପରବେଶ
ରତ୍ନ ହସ୍ତୀ ଦୁଇ ଯେ ବସାଏ ନେଇ ସେଠ
ମନ୍ତ୍ରଦେଇ ଜୀବନ୍ୟାସ କଲାକ ଦଇବ
ବୋଇଲେଶଙ୍କର ଉପଗତେ ତୁମ୍ଭେଗର୍ଜ୍ଜନକରିବ
ଦକ୍ଷିଣଦ୍ୱାର ଅଶ୍ୱକୁ କହିଲା ପୁଣ ଯାଇ
ଯୁଦ୍ଧ ଦେଖି ହସିବ ତୁମ୍ଭେ ହୁଙ୍କେ ଥାଇ ।
ସିଂହକୁ ଦେଖି ତୁମ୍ଭେ ଦେଖିବ ଯେବେ ରଣ
ବିକ୍ରମ ମୂର୍ତ୍ତି ହୋଇ କରିବ ଯୁଦ୍ଧ ପୁଣ ।
ଏତେ କହି ବିଧାତା ଉତ୍ତର ପୁର ଗଲା
ବାଆଷଠି ଦଣ୍ଡକରି ଲଙ୍କାକୁ ତିଆରିଲା ।

କଢ ବକଢ ଯେ ପାଟଶାଳ ମଣ୍ଡପ
ଦେଉଳ ଅଟାଳି କୂପ ବାପୀ କଣ୍ଠ ରୂପ
ବାଗ ବଗିଚ୍ଚ ଯେ ପୁଷ୍କରଣୀ ଘଟତ
ଏ ରୂପେ ସେ ଗଡକୁ ବିଧାତା କଲା ଯାଇ
ପଶ୍ଚରିଲୁ ଯାହା ଏବେ ଶୁଣିଲୁ ଗୋ ପୁଣ
ଏମନ୍ତ ପ୍ରକାରେ ଗଡ଼ ତିଆଣ ଅଟେ ଜାଣ
ପାର୍ବତୀବୋଇଲେ ରାମସୈନ୍ୟକୁ ଆଜ୍ଞାଦେଲେ
ସେ କଥା ସଞ୍ଚପି କହ ମୋତେ ଭଲେ ।
ବାଦ୍ୟର ନିଶାଣ ଶ୍ରୀରାମ ଉଆଇଲେ
କେବଣ ସଜରେ ସେ ଲଙ୍କାସନ୍ଧି ଗଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଦକ୍ଷଙ୍କରସୁତ
ସମକୁଳ କରିଣ ସେଷଣ ମସୃମତା ।
ଦୁନ୍ଦୁଭିରେ ଧଉଣ ବଜାଇଲେ ଉଚକରି
ଅପୂର୍ବ ବାଦ୍ୟନାଦେ କମ୍ପେ ବସୁନ୍ଧରା ।
ସବୁ ବାଦ୍ୟକୁ ସିନା ରାମ ତାଳ ଟାଣ
ରାମତାଳ ବାଦ୍ୟଶୁଣି ଉସୁକଲା ରାବଣ ।
ଶ୍ରୀରାମର ଦଣ୍ଡରେ ଯନ୍ତ୍ର ବାଜିଲା ପୁଣ ବାଦ୍ୟ
ସ୍ୱର୍ଗେ ଥାଇ ଆନନ୍ଦ ହୋଇଲ ସୁରସିଦ୍ଧ ।
ଏଥୁ ଅନନ୍ତରେ ଯେ ବିବିଧ ବାଜଣା॥
ସଜହୋଇ ଆସଇ ଯେ ସୁଗ୍ରୀବର ରଣା ।
ସର୍ବାଙ୍ଗେ କୁସୁମ ଶୋହେ କଣ୍ଠେ ରତ୍ନହାର
ଶିରରେ ମୁକୁଟ ତାର କର୍ଣ୍ଣରେ କୁଣ୍ଡଳ ।
ବାହେଣ ବାହୁଟି ଶୋହେ କଙ୍କଣ ଘାଗବଳ
ହୃଦରେ ଶୋହଇ ରତ୍ନ ମୁକୁତାର ମାଳ
ଭୁଜରେ ଶାରନେତ ଉଡେ ଫରଫର॥
ଚରଣରେ ନୂପୁର ଅନର୍ଗଳ ତୋଡର ।
ନେତପାଗ ବାନ୍ଧି ମାଲକାନ୍ଥ ଅଙ୍ଗେଭିଡ଼ି
ହୃଦରେ ଉପରଣ ମାଧବ ପାଗ୍ରେଡ଼ ।
କଟିରେ କଟି ମେଖଳା ବାମରେ ଜମଦାଢ଼
ଏହି ପ୍ରାଏ ବେଶ ହେଲା ସୁଗ୍ରୀବର ଗାଢ଼ ।
କପୋଳେ କସ୍ତୁରୀ ଚିତା ଦଶେ ଆଡବୋଲ
କଟି ତଟରେ ଶୋହେ ମୁକୁତାର ଝର ।
ଫରହର ନିଶ ଯେ ନିଃଶ୍ୱାସ ବାଏ ଉଡ଼େ
କପୋଳେ ଭୃକୁଟି ମାଳ ଅତି ଯତ୍ନେ ଗାଢେ
ନଳ ନୀଳ ଗନ୍ଧ ମାଦନ ଶତବଳ
ସଜହୋଇ ଅଇଲେ ବୀରବେ ମହାବୋଳ ।

ଗନ୍ଧ ମାଦନ ବୀର ହୋଇଲେ କାହେଣୀ
କଣ୍ଠରେ ଲମ୍ବାଇ ପଦ୍ମରାଗ ମଣି ।
ଭିନ୍ନ ଭିନ୍ନରେ ମାଳ ଖଞ୍ଜିଲେକ ନେଇ
ଚଞ୍ଚରାଗ ମୁକ୍ତାମାଳ କଣ୍ଠରେ ଅଛି ଲଭ ।
କର୍ଣ୍ଣରେ ତଡ଼କ ମୁକୁତା ମଣିହର
ସେବତୀ ଫୁଲମାଳ ଲମ୍ବାଏ ନେଇ ଗଳା ।
କପୋଳରେ ଗନ୍ଧ ଦେଇ ହେଲେ ଠିଆ ଛଡ଼ା
କନ୍ଧରେ ଲମ୍ବାଏ ସେହୁ ସୁବର୍ଣ୍ଣ ପଇତା ।
ମକର କୁଣ୍ଡଳ ବେନିକର୍ଣ୍ଣରେ ତାରଶୋହେ
ନୀଳବସ୍ତ୍ର ପିନ୍ଧି ନୀଳ ଦୋପଟ୍ଟା ସଜହୁଏ ।
ସର୍ବାଙ୍ଗେ ଗଣ୍ଡି ଅଛି ମୁକ୍ତାର ଗନ୍ଧ
ପିଠିକି ପଡ଼ିଅଛି ଓହଳ ଚୂଳବନ୍ଧ ।
ନଳମୋଢ଼ ବାହାର ହୋଇଲା ସେହୁବୀର
ଦେଖି କରି ଆନନ୍ଦ ହୋଇଲେ ରଘୁବୀର ।
ନୀଳ ସେନାପତି ବେଶ ହୋଇଥାଏ
ବସନ୍ତର ଅତନ ତାହାକୁ ଶୋଭାପାଏ ।
ଉପରେ ପଟମୀ ମାଗ୍ଗେଣ୍ଡା ଦୋପଟ୍ଟା
ଘଣ୍ଟ କୁଞ୍ଚକରି ଆଦର ସେ ଯେ ବେଢ଼ା ।
ସର୍ବାଙ୍ଗେ କସ୍ତୁରୀ ଶୋହେ କାଖରେ ଜୁଆଦ
କର୍ଣ୍ଣରେ କାନଫୁଲ ବାହାରେ ନବହବ ।
କରରେ କଙ୍କଣ ଶୋହେ ଅଙ୍ଗୁଷ୍ଠିରେ ମୁଦ
ଅସୁରି କଣ୍ଠଅର ଗର୍ଭଶିରେ ବାନ୍ଧ ।
ଲଲାଟେ ସିନ୍ଦୂର ଚିତା ମୟୂର କଣ୍ଠମାନ
ଶିରରେ ଟୋପର ପୁଣି ଅଟେ ଝଟପଟ ।
ତାମ୍ବୁଳ ଭୁଞ୍ଜିଣ ସେ ଚଳେ ଗେଲ ଗେଲ
କପିକୁଳରେ ସେ ଯେ ଅଟେ ମହାମଲ୍ଲ ।
ଦେଖିଣ ଶ୍ରୀରାମ ଯେ ହୋଇଲେ ସନ୍ତୋଷ
ନଳ ସେନାପତି ସାଜଇ ଦିବ୍ୟ ବେଶ ।
ଅଙ୍ଗରେ ଲେପିଲ୍ଲ ସେ କୃଷ୍ଣ ଅଗ୍ରଗୁଣ୍ଡୀ
ରଙ୍ଗଣୀର କୁସୁମ ସେ ହୋଇଲ୍ଲକ ମଣ୍ଡି ।
କପୋଳରେ ଚନ୍ଦନ ଲେପନ ବୀରକଲ୍ଲ
ସରୁଝୀନ ନେତ ଯେ ପାଟକ ପିନ୍ଧିଲ୍ଲ ।
ଉପରେ ଦୋପଟ୍ଟା କୁଞ୍ଚିଣ କମ ପାଟ
ନବରତ୍ନ ମାଳା ଯେ ଶୋହେ କଣ୍ଠତଟ ।
ହୃଦରେ ପଦକ ଶୋହେ ହୀରାର କୁଣ୍ଡଳ
କର୍ଣ୍ଣକୁ ଶୋଭାପାଏ ମାଣିକ୍ୟ କୁଣ୍ଡଳ ।

କେତକୀ ପାଖୁଡ଼ାକୁ କୁସୁମେ ଗର୍ଭବର୍ତ୍ତି
କେଶ ଲଂଘଣ ତାର ପିଠିକି ଅଛି ପଡ଼ି ।
ଭୁଜର ମୂଳେ ତାର ନେତପ ବାହାର
ବାମ ଚରଣରେ ଶୋହେଅନର୍ଗଳ ତୋଡର
ବାହାରେ ବାହୁଟି କଙ୍କଣ ତାଡ଼ତୋଷ
ଗଳାରେ ଲମ୍ବଅଛି କଦମ୍ବ ପୁଷ୍ପମାଳା ।
ଯାଇଫଳ ଶ୍ଵେବାଇ ଆସେ ମହାବୀର
ଦେଖିକରି ଆନନ୍ଦ ଯେ ହେଲେ ରଘୁବୀର ।
ସତବଳ ସେନାପତି ମିଳଲେକ ଆସି
ଶିରରେ ଛଇମୟେ ଟୋପର ଅଛି ଖୋଷି ।
ଉପରେ ଚୂଡ଼ାଇ ଅଛି ସେ ଶ୍ୱେତ ପାଗ
ଅଙ୍ଗେ ମାଡ଼ି ବୋଲିଣ ସୁନ୍ଦର ଦିଶେ ଅଙ୍ଗ ।
କପୋଳରେ ଗନ୍ଧ ଛଟା ଠିଆ ଆଡ଼କେଶ
ମୁକ୍ତାର କୁଣ୍ଡଳ ଶ୍ରବଣେ ଖଞ୍ଜିଲ୍ଲ ।
ବସନ୍ତ ପତନ ପାଗ ଯେ ଭଡ଼କରି
ଉପରେ ଦୋପଟ୍ଟା ମାଧବୀ ଉଗୁଳ ।
ଚଞ୍ଚଚାପ ସରି ଯେ କଣ୍ଠରେ କଣ୍ଠିମାଳ
ଚନ୍ଦ୍ରମଣ୍ଡଳ ପଦକ ଲମ୍ବେ ବକ୍ଷସ୍ଥଳ ।
ଦାଢ଼ିରେ କସ୍ତୁରୀ ଘଷିଣ ମୁଖପାଇ
ନଣ ଆଉଁସଇ ସେ ଦର୍ପଣ ଚନ୍ଦ୍ରକାନ୍ତି ।
ମାଣିକ୍ୟ ପଡ଼ିଲ୍ଲ କଙ୍କଣ ବେଣିକରେ
ଦେଖି କରି ପ୍ରଶଂସା ସୁଗ୍ରୀବ ତାକୁ କରେ ।
ଅଙ୍ଗଦ କୁମର ଯେ ହେଲେ ବୀରବେଶ
କେଶରେ ସାଜୋଇଲ୍ଲ ନାଗେଶ୍ୱର ପୁଷ୍ପ ।
ସରୁଝୀନ ବାସ ପିନ୍ଧେ ମହାବୀର
ଶିରରେ ରତ୍ନହାର ଖଞ୍ଜିଲେ ଚନ୍ଦ୍ରଶେଖର ।
ସରୁଆଗ ପତନ ଖଞ୍ଜିଲ୍ଲ ପୁଣ ତାହା
ମଣିମୟ ମୁକୁଟ ଭୂଷଣ କପିନାହା ।
ପିଠିରେ ପାଟ ଖୁଞ୍ଚାଲମ୍ବାଏ କେତେ କେତେ
ଚନ୍ଦନ ସିନ୍ଦୂର କପୋଳେ ଛଟାକରି ।
ଚନ୍ଦ୍ର ସୂର୍ଯ୍ୟ ସାକ୍ଷାତରେ ଅଟଇ କର୍ଣ୍ଣଫୁଲ
ତଥିପରେ ଶୋହଇ ମୁକୁତା ଅମୁଲ୍ୟ ।
ମାଣିକ୍ୟ ମୁକୁତା ସେ କଲ୍ଲ ଛନସରି
ସେହି ମାଳ ଅଙ୍ଗଦ କଣ୍ଠରେ ଅଛି ଭରି ।
ପୋଏଲାର ସଙ୍ଗରେ ଯେ ଅଟେ ସୁନାକମ
ଝୁମ୍ପ ମୋତି ଝରି ଲମ୍ବଇ ଅନୁପମ ।

ସନ୍ଧ୍ୟାରେ ଅଛଇ ସେ ବୃନ୍ଦ ନାୟକ
ସତଦଳ ପ୍ରାୟେକ ହୃଦରେ ପଦକ ।
ମାଣିକ୍ୟର କେଶର ପୁଷ୍ପ ଶୁଦ୍ଧ ସୁନା
ଝିଂଗର ବଗେଲ ପାଖୁଡ଼ା ହୋଇଛନା ।
ସୁନାର ପଦକ ହୃଦରେ ଲମ୍ବାଇ
ଆବର ବହୁଧ ବର୍ଣ୍ଣେ ଅଲଙ୍କାର ଲଇ ।
ପିଠି ପରେ ଓହଳଛୁ ଶ୍ୱେତ ଗୁଞ୍ଜମାଳ
ବାହେଣ ବାହୁଟି ଚୋଡ଼ର ଶିକୁଳ ।
ମୁକୁତା ଝୁମ୍ପଣ ସେ ବିଭୂତି ଅଙ୍ଗେ ଘଷି
ଗାଲଟିଣ ପିନ୍ଧଛୁ ଶୁକ୍ଳ ପଟମା କାଛି ।
ଫରହର ଲାଞ୍ଜ ସେ ସାଜଟଇ ତଳେ
ଦୋଷଡ଼ାରେ ପାଟଫୁଲମାନ ପୁଣି ଲୁଚେ ।
ନେତ ଗୋଟିଏ ସେ ଅଣ୍ଟାରେ ଅଛି ଭିଡ଼
ଉପରେ କଟି ମେଖଳା ନବପ୍ରଦେ ଜଡ଼ ।
ମଣିଶିଳ ଗୁଣ୍ଡ ସେ ସେ ହୋଇଅଛୁ ଘଷି
ସଜବ ସେନାପତ୍ତ ମିଳଗଲ୍ଲ ଆସି ।
ଶିରରେ ସୁବାସ କୁସୁମ ଅଛୁ ନାଲ
କଣ୍ଠରେ ମୁକୁତା ସତେ ସଗ ହୋଇ ।
କଣ୍ଠରେ ତାଉକ ସେ ସୁବର୍ଣ୍ଣର ଫେର
ଚରଣରେ ଲଗାଇଛୁ ଆନର୍ଗଳ ଚୋଡ଼ର ।
କରରେ କଙ୍କଣ ବାହୁଟି ବଦ ମାଳ
କପୋଳେ ଗନ୍ଧ ଶୋହେ ସର୍ବାଙ୍ଗେ କସ୍ତୁରୀ ।
ଉଲଟ ପାଲଟ କାଛେଣି କଚ୍ଛଣ କରେ ଛନ୍ଦ
ପାଗରେ ଜରଜର ଆମୋଦେ ପୁଣି ଗନ୍ଧ ।
ଶୁକଳ ବସନ ସେ ଦୋଷଡ଼ା ବେଢ଼ାଇ
ଅଙ୍ଗଦ ପାଶକୁ ସେ ସଙ୍ଗ ହୋଇଣ ଯାଇ ।
ଡ଼ାଳିମ୍ବ ନାମେ ବୀର ଯେ ସର୍ବାଙ୍ଗେ ବିଭୂତି
ଜାଣିଣ ପଟାନ୍ତର ଶରଦଚନ୍ଦ୍ର କାନ୍ତି ।
କପୋଳେ ହରିତାଳ ଛିତା ଶୋଭାବନ
ସୁବର୍ଣ୍ଣର କୁଣ୍ଡଳ ଶୋହେ ବେନକର୍ଣ୍ଣ ।
କେଶକୁ ସାମଳି ସେ ଗଣ୍ଠିକରି ବାନ୍ଧ
ଉପରେ ମଲ୍ଲୀ ଫୁଲ ଗୋଟି ଗୋଟି ଛନ୍ଦ ।
ଗୁଞ୍ଜାର ପୁଞ୍ଜ ମାଳ ସେ ମସ୍ତକେ ଶୋଭାବଣି
ଡାଳିମ୍ବ ବର୍ଣ୍ଣ ନେତ ପଟମା ପିନ୍ଧି ଆସି ।
ଉପରେ ନେତ ପାଗ ଦୋଷଡ଼ା ଶୋଭାବଶେ
ବଦାମୁଦ ବାହୁଟି ଭୂଷଣ କରି ଆସେ ।

ଦକ୍ଷିଣ ଜାନୁରେ ବାନ୍ଧଛୁ ଘଣ୍ଟିମାଳ
ଦେଖିଣ ସନ୍ତୋଷ ସେ ହୋଇଲେ ରଘୁବୀର
କେଶରୀ ନାବୀର କେଶରେ ଫୁଲ ଖଞ୍ଜି
ବସନ୍ତ ବର୍ଣ୍ଣ ଟୋପର ଅଛି ସେ ଶିରେ ବାନ୍ଧ
ସର୍ବାଙ୍ଗ ଆଭରଣ ବଣେ ଝଟ ଝଟ
ପହ୍ନରଣ ସେ ଯେ କରିଛୁ ରଙ୍ଗପାଟ ।
ଉପରେ ବେଢ଼ାଏ ରଙ୍ଗପାଟ ଯେ ଦୋଷଡ଼ା
ସୁବର୍ଣ୍ଣର ପିତୁଳି ମୁକୁତା ଝୁମ୍ପା ଝରା ।
କପୋଳେ ଅଳକା ପନ୍ତି ଦରିଦ୍ରା ବନଜାଣି
କଣ୍ଠରେ ସତେ ସଞ୍ଜ ଯେ ଲମ୍ବଇ ରତ୍ନମଣି ।
ଗନ୍ଧ ବାସ ଲଂବାଇ ଦାଢ଼ି ଛନ୍ଦ କଲ
ବେନକରେ ଲଗାଇଲ ବେନି ରତ୍ନମାଳା ।
କର୍ପୂର ଖାଇଣ ବୀର ସଗ୍ରମକୁ ଆସି
ନଶ ଆଉଁସା ଦେଖି ରାମଚନ୍ଦ୍ର ଆସି ।
ଦଧିମୁଖ କାଳିମୁଖ ମିଳିଲେ ପୁଣ ଯାଇ
ହୃଦରେ ରତ୍ନପଦକ ଅଛି ଯେ ଲଗାଇ ।
ବାହେଣ ବୀର ନେତ ଫରହର ଉଢ଼େ
ଅନର୍ଗଳ ଚୋଡ଼ର ଯେ ବାନ୍ଧିଣ ଅଛି ଗାଢ଼େ
କରେ କଟି ମେଖଳା ସବୁଜର ପାଗ
ଗର୍ଜନ କରେ ବୀର କ ଜାଣି ମତ ନାଗ ।
ରକ୍ତ ଚନ୍ଦନ ଯେ କପୋଳରେ ଛିତା
ଚୁଲାଅନା ଗଙ୍ଗା ଯେ ଶିରରେ ଶୋଭିତା ।
ଦୁଇ କରରେ ରତ୍ନ କଙ୍କଣ ଅଟେ ସ୍ଥିର
ସୁବାସ ପଦାର୍ଥ କପୋଳରେ ଛନ୍ଦ କରି ।
ଲବଙ୍ଗ ସ୍ନେହାଇଣ ବାହାସ୍ଫୁଟ ମାରେ
ଶ୍ରୀରାମଙ୍କୁ ପ୍ରଣମିଣ ଯୋଡ଼ଇ କର ଶିରେ ।
ହନୁମନ୍ତ ବୀର ଯେସନ ହୋଇ ଆସେ
ସିନ୍ଦୂର ଶୋଭାବନ ଯେରୂପ ତା ବକାଶେ ।
କସ୍ତୁରୀର ଛିତା ଯେ କପୋଳେ ବସଇ
ଶ୍ରବଣେ କୁଣ୍ଡଳ ନବରତ୍ନ ସେ ଦିଶଇ ।
କେଶପରେ କୁସୁମ ପାଟଳି ଧୂର ଫୁଲ
ତା'ରପରେ କୁଙ୍କୁମ ଯେ ଝଟକ ପ୍ରକାର ।
ସୁବର୍ଣ୍ଣ ଗୁଣରେ ଯେ ମୁକୁତା କେଉ କେଉ
ନବରତ୍ନ ଝରା ସେ ଅଛଇ ଆବୋର ।
ରଙ୍ଗ ଶୁକ୍ଳ ପାଟଫୁଲ ଯେ ଅଛି ବାନ୍ଧି
ପିଠିରେ ନେଇଣ ପକାଇଅଛି ଛନ୍ଦି ।

ହୀରାର ଦର୍ପଣ ସୂର୍ଯ୍ୟର ଜ୍ୟୋତି ଜାଣି
ହନୁମନ୍ତଙ୍କୁ ଶୋଭାପାଏ ଏହି ବେଶ ପୁଣି ।
ନବରତ୍ନେ ଖଞ୍ଜି ଅଛି ସତେସରି ମାଳ
ତେଣୁ ସେ ମାରୁତି ସୁନ୍ଦର ଦିଶେ ଫେର ।
ବ୍ରହ୍ମ ଜାତି ହୀରା ପ୍ରାୟେ ଝଟକେ ପଦକ
ନାନାରତନରେ ସେଯେ ବସିଣ ଅଛି ଦେଖ
ଗଜମୋତି କେଶର କୁରୁବିନ୍ଦ ପାଟି
ପଦ୍ମରାଗ ମାଣିକ ମୁକ୍ତା ଉଜ୍ଜୁଟି ।
ସୁରି ପାରୁଶରେ କ୍ଷୁଦ୍ର କ୍ଷୁଦ୍ର ମୋତି ଝରା
ମଧ୍ୟରେ ନାୟକ ସେ ଯେ ବ୍ରହ୍ମଜାତି ହୀରା ।
ପଦ୍ମରାଗ ମାଣିକ୍ୟ ମର୍କତ ଅଛି ଝଳ
ସେହି ଅଳଙ୍କାର ହୃଦେଲଗାଏ ମହାବଳୀ ।
କଟି ମେଖଳାରେ ଶୋଭେ ସୁବର୍ଣ୍ଣର ଘଣ୍ଟି
ମାଳ କାଛେଣି ଛନ୍ଦରେ ହୃଦକଳା ଆଣ୍ଟି ।
କାମେଣ ସାର ନେତ ଉଡେ ଫରହର
ଜାନୁରେ ସାର ଘଣ୍ଟି ଓଢ଼ଣି ତୋହର ।
ବାହାରେ ବାହୁଟି କଙ୍କଣ ତାଡ଼ ବଳା
କଙ୍କଣ ଶବଦ ଶୁଭେ ରୁଣଝୁଣ ପରା ।
ଲାଞ୍ଜ ଅଗ୍ରେ କୃଷ୍ଣ ଚାମର ଅଛି ମଣ୍ଡି
ଦ୍ୱିଷମ ସମରେଯେ ଶତ୍ରୁଙ୍କୁ ମାରେ ଦଣ୍ଡି ।
କର୍ପୂର ମରିଚ ଯେ ତାମ୍ବୁଳ ସଙ୍ଗେ ଖାଇ
ନଶ ମୋଡ଼ି ସାର ସଜ ହୋଇ ଆସଇ ।
ଶ୍ରୀରାମ ଚରଣେ କରେ ନମସ୍କାର
ଦେଖିଣ ଆନନ୍ଦ ହେଲେ ରଘୁକୁଳ ସାର ।
ବସନ୍ତ ସେନାପତି ମିଳିଗଲା ଆସି
ସର୍ବାଙ୍ଗରେ କସ୍ତୁରୀ ହୋଇଅଛି ଘସି ।
କପୋଳରେ କସ୍ତୁରୀ କୁଙ୍କୁମ ଯେ ଛଟା
ବନ୍ଧୁକ କୁସୁମରେ କାବେରୀ ଶୋଭିତା ।
କାଳିଆ ବସ୍ତ୍ର ଧାରଣ କି ଶୋଭେ ପୁଣଜାଣ
ପିଠି କଟକ ତାର ଲମ୍ବି ଅଛି ବେଣୀ ।
କର୍ଣ୍ଣରେ ମୁକୁତା ଶୋଭେ ଆଡ଼କେରି ଫୁଲ
କଣ୍ଠରେ ମୋତିମାଳ ଅପୂର୍ବ ଅମୂଲ୍ୟ ।
ମାଧବୀ ସଲକାନ୍ତି ସେ ମାଳଛନ୍ଦେ ଭିଡ଼ି
ଦୁଇବାହୁ ମୂଳରେ ନେତ ଯେ ଦୁଇଭିଡ଼ି ।
ଲାଞ୍ଜର ଅଗ୍ରେ ବାନ୍ଧିଛି ଯେତେ ଚାମର
ଚରଣେ ନୂପୁର ଯେ ଶବଦ ମଞ୍ଜୁଳ ।

ଶ୍ରୀରାମଙ୍କ ସମ୍ମୁଖେ ମିଳିଲେକ ଯାଇ
ଦେଖିକରି ଆନନ୍ଦ ହେଲେ ରଘୁକୁଳସାଇଁ ।
ମହେନ୍ଦ୍ର ମହାବୀର ଯେ ନାଲବସ୍ତ୍ର ପିନ୍ଧି
ଉପରେ ଦୋଷଡ଼ା ପିନ୍ଧୁଆ ଶାଢ଼ୀ ବାନ୍ଧି ।
ଉଙ୍ଗ ପାଞ୍ଚ ଭୂଷଣ ଯେ ସର୍ବାଙ୍ଗେ ସୁନ୍ଦର
ନବରତ୍ନେ ଜଡ଼ିତ ଯେ କୁଣ୍ଡଳ କର୍ଣ୍ଣର ।
କସ୍ତୁରୀର କୁଣ୍ଡଳ ଉପରେ ଆଡ଼ କେସ
କଣ୍ଠରେ ଶତେସରି ମୁକୁତାର ଝରା ।
କେଶ ବାନ୍ଧିଅଛି ଯେ ମାଳତୀ ଲମ୍ବାଇ
ବଡ ବଳୟ ବାହୁଟି ହୃଦରେ ଅଛି ସେହି ।
କଟିରେ କଟିସୂତ୍ର ନବରତ୍ନେ ଖଞ୍ଜି
ନାଲମନ୍ଦ ମାଣିକ୍ୟ ଲଗିଛି ପୁଞ୍ଜି ପୁଞ୍ଜି ।
ଜାନୁରେ ସାର ଘଣ୍ଟି ବାନ୍ଧିଣ ସାର ଆଏ
ଦେଖିଣ ହରଷ ଯେ ହେଲେ ଶ୍ରୀରାମରାଏ ।
ଦୁର୍ବନ୍ଦ ଅଇଲା ମୁକୁଳା କରି କେଶ
ବାଳ ଅଗ୍ରେ ଗୁନ୍ଥି ଅଛି ଫୁଲଯେ ଗୟେଶ ।
ପିଠିରେ ରଙ୍ଗ ଦର୍ପଣା ଚାମର ଅଟେବେନ
ସର୍ବାଙ୍ଗରେ ହରିତାଳ ଘଷି ଅଛି ବେନ ।
କଣ୍ଠରେ ହୀରା କଡ଼ି ସେ ବିଜୁଳି ବିରାଜେ
ମେଘର ଗର୍ଜ୍ଜନ କି କରନ୍ତି ଗଳଗାଜେ ।
କପୋଳର ଟିକାକ ଚନ୍ଦ୍ରମା ସଦୃଶ
କର୍ଣ୍ଣରେ ଲୁକଇଛାର ବସନ୍ତ ନାମେ ପୁଷ୍ପ ।
ବଡ ମୁଦ୍ଧ ବଳୟ କଙ୍କଣ ଭଲ ଶୋଭେ
ସଜହୋଇ ସାରଯେ ଶ୍ରୀରାମ ପାଶେ ଆଏ
ସାହସ ସେନାପତି ଅଇଲେ ସେ ଯେ ପୁଣ
କରରେ ରୁଣଝୁଣ ଶୁଭୁଛି କଙ୍କଣ ।
ପଦ୍ମରେ ନୂପୁର ବାଜେ ଝମଝମ
କପାଳ ପାଟିରେ କସ୍ତୁରୀ କଳା କମ ।
ସର୍ବାଙ୍ଗରେ ବଳ୍ପିତ କର୍ଣ୍ଣରେ ଉତ୍ପଳ
ଗଳାରେ ମୁକୁତାର ସତେ ସରି ମାଳ ।
ଗଳାରେ ମନ୍ଦାର କୁସୁମ ଫୁଲମାନ
ଜଟେ ଗିରିରେ ଦିଶେ କି କଶ୍ୟପ ନନ୍ଦନ ।
ବାମ ଜାନୁରେ ନେଇ ସାର ଘଣ୍ଟା ବାଜେ
ଗୁଳିବାର ଧ୍ୱନି ଶୁଭଇ ସ୍ୱଚ୍ଛନ୍ଦେ ।
ବାହେଣ ବାହୁଟି କଙ୍କଣ ବଡ ମୁଦ୍ଧ
ଅଇଲି ଜଟଶୋଧନ ନେତବାହେ ବାନ୍ଧି ।

ଶ୍ରୀରାମର ସମ୍ମୁଖରେ ବୀର ମିଳିଲେ ବେଗେଯାଇ
ଦେଖିଣ ଆନନ୍ଦ ହେଲେ ରଘୁକୁଳ ସାଇ
ଜାମ୍ବବ ସୁଷେଣ ତାରକ୍ଷ ତିନିଜଣ
ଏହାଙ୍କୁ ଚାହିଁ ସ୍ୱାମୀ ବୋଇଲେ ବଚନ ।
ଗୁରୁଭାଗ କରିଣ ବାଣ୍ଟିଲେ ସଇନ
ଯାଆନ୍ତୁ ଯୂଥପତି ଯେ ଯାହା ସୈନ୍ୟ ଘେନ
ସମୁଦ୍ର ପାରି ହୋଇଣ ଯେତେକ ଆସିଛନ୍ତି
ବେଗ ବେଗ ଯାଇଣ ଲଙ୍କାର ଚଉକତି ।
ଆବର ବଳ ଅଇଲେ ପୁଣ ପଛେ ଥାନ୍ତୁ
ବସା କରିଣ ହାଟ ଆ ବଜାରିମାନେ ଥାନ୍ତୁ ।
ଉଜାର ତମ୍ବୁହତା ସେବକ ଲୋକମାନେ
ଏମାନେ ବସାରେ ଯେ ଥାଆନ୍ତୁ ବାଦ୍ୟମାନେ
ଯିବା ଲୋକେ ଯାଆନ୍ତୁ ଆସିବା ଆସନ୍ତୁ
ଆଗ ପଛ ନ ବିଚାରି ସମସ୍ତେ ଚଳନ୍ତୁ ।
ଶୁଣିଣ ଋକ୍ଷରାଏ ଯୋଡ଼େ ବେନକର
ଶୁଣ ଦେବ ଶ୍ରୀରାମ ହେ ଜଗତ ଈଶ୍ୱର ।
ପଶ୍ଚିମ ସମୁଦ୍ର ପର୍ଯ୍ୟନ୍ତ ଲାଗି ଅଛନ୍ତି ଥାଟ
ଆସିବାର ଗହଳରେ ନଦଶେ ପୁଣ ବାଟ ।
ମାଲ୍ୟବନ୍ତ ପର୍ବତ ସେ ଋଷ୍ୟମୁକ ଲାଇ
ସୈନ୍ୟଙ୍କର ଗହଳରେ ନଦିଶେ ବନଭୂଇଁ ।
କିଷ୍କିନ୍ଧ୍ୟା ନଗ୍ର ବର୍ଦ୍ଧଗିରି ଯେ ପର୍ବତ
ଏଥିରେ ଋକ୍ଷକପି ଅଛନ୍ତି ବହୁତ ।
କୃଷ୍ଣା ବେଣୀ ଗୋଦାବରୀ ତୁଙ୍ଗଭଦ୍ରା କ ଦେଖି
ଅକଳନ୍ତ ସୈନ୍ୟ ସେ ଅଛନ୍ତି ଏଥି ପୂରି ।
ଦକ୍ଷିଣ କୂଳୁ ସେତୁବନ୍ଧ ଶତେ ଯୁଣ
ଏଥିରେ ସୈନ୍ୟ ଦେବ ଅଛନ୍ତି ଅପ୍ରମାଣ ।
ସେମାନେ ଅଇଲେ ପୂର୍ବକ ଦଶଦିଶ
ଠାବ ନ ପାଇବେ ଶୁଣ ହେ ରଘୁଶିଷ୍ୟ ।
ଏବେ ଯେତେବେଳେ ଆଜକୁ ଆସିଛନ୍ତି
ଚଉ ବେଢ଼ିବାକୁ ଏ ଯାଆନ୍ତୁ ରଘୁପତି ।
ଶତେକ ଯୁଣ ପ୍ରତି ଶତେକ ଯୁଣ ଦୀର୍ଘ
ସୁବଳ ଗିରିରେ ଯେ ଅଟେ ହେ ରାଘବ ।
ଏଥିରେ ଥିଲା ଲୋକ ବେଢ଼ନ୍ତୁ ଗଡ଼ ଯାଇ
ପଛଥାଟ ଅଇଲେ ରହନ୍ତୁ ଏଥି ରହି ।
ସେନାପତି ମାନଙ୍କର ସଙ୍ଗରେ ସୈନ୍ୟ ଯାନ୍ତୁ
ଯେ ଯାହାର ବାଣ୍ଟରେ ଯାଇଣ ରହନ୍ତୁ ।
ଏ କଥା ଶୁଣିଣ ଶ୍ରୀରାମ ତୋଷ ହେଲେ
ଏ ବାଗରେ ରହନ୍ତୁ ଶ୍ରୀରାମ ଆଜ୍ଞା ଦେଲେ ।

---

ଏଥୁ ଅନନ୍ତରେ ଶାକମ୍ବରୀ ଶୁଣ
ସୁଗ୍ରୀ କୋଳ କଲେ ରାମଙ୍କୁ ଯାଇ ପୁଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ବିଶ୍ୱନାଥ
ଗୁରୁଭାଗକୁ ରାମ ବାଣ୍ଟିଲେ ପୁଣ ଥାଟ ।
ସ୍ୱର୍ଗରେ ଦେବତା ଏ ବିଚାର କରନ୍ତି
ସୁବଳ ଗିରିରେ ଯେ ସମସ୍ତେ ଠୁଳହୋନ୍ତି ।
ଏହା ମୋତେ ବୁଝାଇ କହ ଶୂଳଧାରୀ
ମୋର ମନ ସନ୍ତୋଷ ହୋଇବ ଏଣୁକରି ।
ଈଶ୍ୱର ବୋଇଲେ ସେ ରାବଣ ଆଜ୍ଞାରେ
ସକଳ ଦେବତା ଯେ ଗଲେ ସ୍ୱର୍ଗପୁରେ ।
ସୁଧର୍ମା ସଭାରେ ବସିଲେ ସର୍ବେ ଯାଇ
ବିଚାର କରନ୍ତି ସେ ଏକ ମୁଖ ହୋଇ ।
ବୋଲନ୍ତି ରାମଚନ୍ଦ୍ର ମାରିବେ ରାବଣ
କପିବଳ ସୈନ୍ୟତ ବହୁତ ଅଟେ ପୁଣ ।
ମାସେ ପରିଯନ୍ତେ ଗିରି ଗହଳେ ଦେବଠଣା
ଦୈତ୍ୟଗଣ ତ ଛୁଇଁବେ ନଷ୍ଟହେବେ ପ୍ରତିଜଣା
ଫଳମୂଳ ଖାଇବାକୁ ଉପାୟେ ଆମ୍ଭେକରି
ତେବେ ସିନା କପିବଳ ଦୈତ୍ୟଙ୍କୁ ସଂହାରି
ଏତେ ବିଚାରି ମାତାଙ୍କୁ ସୁମରଣା କଲେ
ଗୋମାତା ଆସିଣ ଯେ ସମ୍ମୁଖରେ ପୁଣହେଲେ
ବିଧାତା ବୋଇଲେ ଶୁଣ ତ୍ରୈଲୋକ୍ୟର ମାତ
ସୁବଳ ଗିରିକି ତୁମ୍ଭେ ଚଳିବ ତୁରିତ ।
ସବୁଠାରେ ତୋର ଷୀର ହୋଇବ ବିସ୍ତୃତ
ଫଳ ମୂଳ ପତ୍ର ସବୁ ହୋଇବ ଅମୃତ ।
ତୁମ କପି ସୈନ୍ୟ ସବୁ କରିବେ ଭୋଜନ
ଖାଲଖଣା ଦେଖି ତୁ ଯେ କରିବୁ ଆଉ ପୂର୍ଣ୍ଣ
ଛକଣ ରଖିବୁ ସବୁ ଖାଲ ଯେ ଠିକରେ
ସଙ୍କେତ କହିବୁ ମ ତ ହନୁମନ୍ତ ବୀରେ ।
ଶୁଣିଣ ଗୋମାତା ବେଗେ ଶୂନ୍ୟରେ ଚଳିଗଲେ
ସୁବଳ ଗିରିରେ ସେ ଯେ ପ୍ରବେଶ ହୋଇଲେ
ସ୍ତନ ପାଖକୁ ବୁଲିଣ ଷୀର କଲେ ବୃଷ୍ଟି
ସେତୁବନ୍ଧ ପରେ ମାଲ୍ୟବନ୍ତ ପରେ ଉଠି ।
ଷୀର ଭରଷନ୍ତେ ସର୍ବେ ହୋଇଲେ ଅମୃତ
ଦେବମାତା ବାହୁଡ଼ିଲେ ସୁବଳ ପର୍ବତ ।

ହନୁକୁ ଡାକଲେ ସେ ଗୁପତ କହିଲେ
ଫଳ ମୂଳ ପତ୍ରସବୁ ଅମୃତ ହୋଇଲେ ।
ଖାଲ ଖଣାରେ ଚକଣ ଅଛୁ ତୁରେ ଜାଣ
ସଭଙ୍କୁ କହିବୁ ତୁ ବୁଝାଇଣ ପୁଣ ।
ହନୁମନ୍ତ କହିଲ ତୁ କେଉଁଠାରୁ ଆସି
ଦଇତୁଣି ପ୍ରାପ୍ତେ ତ ମୋ ମନରେ ଲାଗୁଅଛି
ଗୋମାତାବୋଇଲେମୋତେଦେବତାଏଭେଦ
ଫଳ ମୂଳ ପତ୍ର ଡାଳ ଅମୃତ ସମ୍ପଦ ।
ଖାଲ ଖ । ଚକଣ ରଖିଲ ତୁଲକରି
ରାତ୍ରରେ ବହୁତ ପାପ ଜ ନବରେ ଘେରି ।
ମୂର୍ଚ୍ଛିତ ଗୋମାତା ଅଟେ ସୁରଭି ଯେ ଜାଣ
ଏତେ କହି ସୁରଭି ଯେ ଗଲେ ନିଜସ୍ଥାନ ।
ସେଠାରୁ ଯେ ଯୋଗମାତା ବେଗେ ଚଳିଗଲା
ଦେବତାଙ୍କ ସମୁରେ ଯାଇ ପ୍ରବେଶ ହୋଇଲା
ସୁରଭି ବୋଇଲା ସବୁ କଲି ମୁଁ ଅମୃତ
ମାଲ୍ୟବନ୍ତଠାରୁ ସୁବେଳ ଗିରି ପରଯନ୍ତେ ।
ଚକଣ ରଖିଣ ମୁଁ ହନୁମନ୍ତକୁ କହିଲି
ଛଡ଼ାଦେଇ ମୂର୍ଚ୍ଛି ପୁଣ ସ୍ୱର୍ଗକୁ ଅଇଲି ।
ଶୁଣିଣ ଦେବତାଏ ସନ୍ତୋଷ ହୋଇଲେ
ହନୁମନ୍ତ ଯାଇଣ ଶ୍ରୀରାମ ସମୁରେ କହିଲେ ।
ଶୁଣ ଦେବ ଠାକୁର ତ୍ରୈଲୋକ୍ୟ ଦାଶରଥି
ସ୍ୱର୍ଗରୁ ଗୋମାତା ପୁଣ ଆସିଣ ଥିଲ ଏଥି ।
ମାଲ୍ୟବନ୍ତ ଠାରୁ ସେ ଯେ ସୁବେଳ ପରଯନ୍ତେ
ଡାଳ ମୂଳ ପତ୍ର ଫଳ ଅମୃତ ସମସ୍ତେ ।
ଥିକ ଦୃଷ୍ଟି କରି ମୋତେ କହିକରି ଗଲା
କପିଗଣଙ୍କୁ ସେ ଯେ ଆହାର ପୁଣ ଦେଲା ।
ଆଉର କଥାଏ ମୋତେ କହିଲା ହେ ରାଘବ
ବୋଇଲା ଯେ ରାତ୍ରେ ପୁଣ ଅନ୍ଧାର ହୋଇବ
ବହୁତ ହୁଳା ପାପ ଯେ କରିବାକୁ ପୁଣ
ଚକଣ ମୁଁ ରଖିଗଲି ଖାଲ ଖଣାରେ ଜାଣ ।
ରାତ୍ରରେ ବହୁତ ହୁଳା ପାପ ଯେ କରିବେ
ଦୈତ୍ୟମାନେ ମାୟାଟି ଜାଣନ୍ତି କୁଟ ଭାବ ।
ଶୁଣିଣ ଶ୍ରୀରାମଚନ୍ଦ୍ର ବେଗେ ଉଠିଗଲେ
ଠାବେ୨ ଖାଲଖଣାରେଚକଣଲାଗେଦେଖିଲେ
ବୋଇଲେ ଦୁଷ୍ଟ ଦନୁଜର ନପହନ୍ତ ଦେବେ
ନୋହିଲେ କ ସୁରଭି ଆସିଲ ଏଥେ ଏବେ

ରଜାକର ଲମ୍ବହତା ମହାରଣା ଯେ ବଳାଇ
ସମସ୍ତଙ୍କୁ ସୁଗ୍ରୀବର ଆଣିଲା ହକାରି ।
ବୋଇଲା ବହୁତ ପାପ ହୁଳା ସଜାଡ଼ିବ
ଖାଲ ଖଣା ମାନଙ୍କରୁ ଚକଣ ଆଣିଦେବ ।
ଅନ୍ଧାର ହୋଇଲେ କପି ଘେନପିବେ ଆସି
ହେଳା ନ କରିବ ତୁମ୍ଭେ କହିଲୁ ବିଶେଷି ।
ଏଥିଅନ୍ତରରେ ତୁମ୍ଭେ ଶୁଣ ମୋ ଗଭିର
ଆଉର କଥାଏ ସ୍ୱର୍ଗେ ଦେବତାଏ ବସ୍ତିର ।
ବୋଇଲେ ଯେ ଆଜଠାରୁ ସତର ଦିବସ
ଏ ଲଙ୍କାଗଡ଼ରେ ଯୁଦ୍ଧ ହୋଇବ ବିଶେଷ ।
ତେବେ ସେ ରାବଣେଶ୍ୱରର ହୋଇବ ମରଣ
ବିଭୀଷଣ ରାଜା ହେବେ ସେ ଗଡ଼କେ ପୁଣ ।
ଅସୁର ବାନର ଏଥି ମରିବେ ବହୁତ
ଯୁଦ୍ଧ ସରିଲେ ଶ୍ରୀରାମ ହେବେ ଷମା ନାଥ ।
ଦୈତ୍ୟବଳ ଖାଇବାକୁ ବିଭୀଷଣ ଯେ କହିବ
ତସ୍ମାକୁ ପୁରୁଷ ଶ୍ରୀରାମ ଦୈତ୍ୟଙ୍କୁ ଖାଆଇବ
ବେଳହୁ ଉପାଏ ଆମ୍ଭେ କରିଥିବା ପୁଣ
ଏତେବୋଲି ବ ସେଲକ୍ଷ୍ମି କଲେ ସୁମରଣା ।
ମଂସାସୁର ଦଳଣୀ ଯେ ପ୍ରବେଶ ହୋଇଲେ
ଦେଖିଣ ଯେ ବଜ୍ରଧର ତାହାଙ୍କୁ କହିଲେ ।
ଲଙ୍କାଗଡ଼ ଠାକୁ ତୁମ୍ଭେ ବେଗେ ଚଳଯାଅ
ଚଉଷଠି କୋଟି ଯୋଗିନୀ ତୁମ୍ଭର ସଙ୍ଗେ ନିଅ
ଯେତେକ ଅସୁର ଶ୍ରୀରାମ କରିବେ ଯେ ନାଶ
ଯୋଗିନୀକ ପଠାଅ ଏବେ କରନ୍ତୁ ତାଙ୍କୁ ଗ୍ରାସ
ବାନର ବଳଙ୍କୁ ତୁମ୍ଭେ ନ ଖାଇବ ପୁଣି
ଅମୃତ ଯେ ତୁମ୍ଭେ ହସ୍ତେ ନେଇଥାଅ ପୁଣି ।
ଅମୃତ ସିଞ୍ଚିଣ ତାଙ୍କୁ ଜିଆଇଣ ଦେବ
ଏତେବୋଲି ବୁଝାଇ କହିଲେ ତାଙ୍କୁ ସର୍ବ ।
ଅମୃତ ଘେନିଣ ଦେବୀ ବେଗେ ଚଳିଗଲେ
ସୁବେଳସ୍ଥା ଗିରିରେ ପ୍ରବେଶ ହୋଇଲେ ।
ଚଉଷଠି ଯୋଗିନୀକ ୬୪ ସୁମରଣା କରି
ସମସ୍ତେ ମିଳିଲେ ଯାଇ ସୁବେଳସ୍ଥା ଗିରି ।
ସକଳ କଥା ଦେବୀ ବୁଝାଇ କହିଲା
ବାନର ଖାଇବେ ଦୈତ୍ୟ ଖାଇବେ ଯେ ସବୁ
ଶୁଣିଣ ପାବତୀ ଦେବୀ ସନ୍ତୋଷ ହୋଇଲେ
ସୈନ୍ୟ ଗୁରିଙ୍ଗ ଗମ ସେଠାରୁ କ କଲେ ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବନ୍ତ
ସୁଗ୍ରୀବରଙ୍କୁ ଆଜ୍ଞା ଦେଲେ ଦାଶରଥି ।
ଶୁଣିକରି ସୁଗ୍ରୀବର ହୋଇଲେ ବିନତ
ମୋଠାରେ ସନ୍ତୋଷ ତୁମ୍ଭେହୁଅ ରଘୁପତି ।
ହେ ମହତ ଅଭିମାନ ଫେଡ ଯେ ମୋହର
ମୁହିଁ ଆସି କର୍ମେ ଲାଗିଅଛୁ ଯେ ତୁମ୍ଭର ।
ସୀତାପତି ବୋଇଲେ ପ୍ରତିଜ୍ଞା ତୁ ଯେ କଲୁ
ଏତେକ ପରୀକ୍ଷା ଯେ ଶୋଧନ ଅଇଲୁ ।
ସିନ୍ଧୁ ତରିଲଇଁ ମୁଁ ପୂର୍ବର ପୁଣ୍ୟ ବଳେ
ଶତ୍ରୁର ଦ୍ୱାରେ ଆସି ହୋଇଲଇଁ ଠୁଳେ ।
ସେ ରାକ୍ଷସ ଆମ୍ଭେ ଯେ ବାନର ମନୁଷ୍ୟ
ଏକଥା ଆମ୍ଭର ଯେ ବଡାଇ ସାହସ ।
ଦେବେ ବଶବର୍ତ୍ତୀ ଯେ ଅଟନ୍ତି ଯାହାକୁ
ଆମ୍ଭର କର୍ମରେ ଶତ୍ରୁ ପାଇଲଇଁ ତାଙ୍କୁ
ସ୍ୱରୀ ହୋଇଁଣକେମନ୍ତେଯେହୋଇବନସତ
କଟକାଇ କଲ ବୋଲି ଜାଣିଲେ ସମସ୍ତ ।
ବାହୁଡିଲେ ଏଠାରୁ ପାଇବା ବଡ ଲଜ୍ଜା
ଅସୁରେ ହୋଗ ମୋହର କରିବେ ଉପହାସ ।
ସୂର୍ଯ୍ୟବଂଶରେ କଳଙ୍କ ଲାଗିବ ବହୁତ
ଉପହାସ ମୋତେ କରିବେ ଜଗତ ।
ବିଭୀଷଣ ବାପୁଡା ହେବ ବଡ ଦୁଃଖୀ
ମୁହିଁ ଆଉ କାହିଁ ଯେ ଦେଖିବ ଚନ୍ଦ୍ରମୁଖୀ ।
ସୀତାଙ୍କୁ ନନେଲେ ମୁଁଯେ ଅଯୋଧ୍ୟା ନଯିବ
ଅରଣ୍ୟେ ପଶି ମୁଁ ଯେ ପ୍ରାଣ ହରାଇବ ।
ମୋହର ମଲେ ଯେ ଲକ୍ଷ୍ମଣ ନ ବଞ୍ଚିବ
ଏକା ହୋଇ ଘରକୁ କେବେହେଁ ନ ଯିବ ।
ଚଉଦ ବର୍ଷକୁ ଭ୍ରାତ କଷ୍ଟ କରିଗଲା
ଅନେକବନଲେମୁଁ ଯେ କରିବ ବୋଇଲା ।
ଭ୍ରାତ ଗଲେ ପୁଣ ଯେ ନ ବର୍ତ୍ତେ ଶତ୍ରୁଘନ
ଆଉକା ଜୀବନ ଧରିବେ ମାତା ଗଣ ।
ଜନମା ଗଲେ ମୋର ସରିବଟି କୁଳ
ସୂର୍ଯ୍ୟବଂଶପୃଥିବୀରେ ନୋହିବେ ମହୀପାଳ ।
ତୁମ୍ଭେତ ସୂର୍ଯ୍ୟ ପୁତ୍ର ରକ୍ଷାକର ମୋତେ
ତୋହର ପ୍ରସାଦେ ମୁଁ କରିବ ଯେମନ୍ତେ ।
ରାବଣ ମାରି ଯେବେ ଲଙ୍କା ପାରେ ଧ୍ୱଂସି
ତେବେ ସେ ପାଇବା ନା ସୀତା ଶୁଭ୍ରକେଶୀ
ସମ୍ପତ୍ତିକ ଘେନଣ ମୁଁ ଯେବେ ଅଯୋଧ୍ୟା ଯିବ
ନୋହିଲେ ଅଯୋଧ୍ୟାରେ ପ୍ରାଣମୁଁ ହାରିବ ।
ଦୁଃଖକାଳେ ମିତ୍ର ମୋତେ ହୋଇବ ସାହା
ତୁମ୍ଭେ କି ନ ଜାଣ କହିବ ମୁଁ କାହା ।
ଏମନ୍ତେ ରଘୁନାଥ ବଚନ କହନ୍ତି
ପାର ଯେବେ କାର୍ଯ୍ୟ ହେ କର କପିପତି ।
ଅସମୟ କାଳରେ ମୁଁ ଆଶ୍ରେକଲି ତୋତେ
ଏ ଶୋକ ସମୁଦ୍ରରୁ ଉଦ୍ଧର ଧରି ମୋତେ ।
ଶୁଣିଣ ସୁଗ୍ରୀବର ପୁଲକେ ପୂର୍ଣ ଅଙ୍ଗ
ଗଦଗରେ ଅଧର କାମୋଡ଼ି କଲା ଭଙ୍ଗ ।
ଅଙ୍ଗଦ ବୋଇଲା ଶୁଣ ଦେବ ସ୍ୱାମୀ
ତ୍ରୈଲୋକ ନାଥ ହୋଇ ତାଟକା କମ୍ପାପୁଣି
ତୋହର ଆଜ୍ଞାରେତ ସକଳେ ଅଛନ୍ତି ।
ସ୍ୱର୍ଗରେ ଦେବତା ଏ ତୋତେ ପ୍ରଶଂସନ୍ତି ।
ଦେଖ ଦେବତା ଏ କରନ୍ତି ସୁଧାବୃଷ୍ଟି
ଗୋମାତାକୁ ପଠାଇ ଦେଲେକ ପରମେଷ୍ଟି
ତ୍ରୈଲୋକ୍ୟର ମାତା ଆସି କ୍ଷୀର ବୃଷ୍ଟି କଲା
ସୁବଳସ୍ଥଠାରୁ ମାଲ୍ୟବନ୍ତ ଗିରିପର ।
କୋଶଳର ଗଛ ମନ୍ଦର ମଉଜାଣ
ଏକଥା ବିସ୍ମର ନକର ରଘୁବୀର ।
ବାପ ତୁମ୍ଭର ତାଟକା ହୋଇପରେ ମଲେ
ଚଉଦ ବରଷ କମ୍ପା ରାଜତ୍ତ ନ କଲେ ।
ମୁନିଙ୍କ ପାଖରେ କମ୍ପା ନରଖେସେହୁ ପ୍ରାଣ
ଜଣାଇଲା ତୁମ୍ଭ ପିତା ଅଟନ୍ତି ଅଜ୍ଞାନ ।
ତୁମ୍ଭେ ଏବେ ସ୍ୱାମୀ ପ୍ରତିଜ୍ଞାବନ୍ତ ହେଲ
ପିତାଙ୍କର ସତ୍ୟ ନିଷ୍ଠପୁ ପାଳଣ କରିଲ ।
ବନକୁ ଆସି ଏବେ ହରାଇଲ ଯୁବତୀ
ହଜବାର ପଦାର୍ଥ ମିଳଇ କର୍ମେଟି ।
ପ୍ରତିଜ୍ଞା କରି ସୁଗ୍ରୀବ କସ୍କିନ୍ଧ୍ୟାଦେଲେଏବେ
ମୃଗୁଣୀ ବୈକୁଣ୍ଠ ତଳ ଚ୍ଛେଳ ଗଲା ସ୍ୱର୍ଗେ ।
କରିଛତ ସତ୍ୟବ୍ରତ ରାବଣ ମାରିବାକୁ ।
ଲଙ୍କାରେ ବିଭୀଷଣକୁ ରାଜା କରିବାକୁ ।
ତାଟକା ହୋଇଣ ତୁମ୍ଭେ କହୁଛେ ବଚନ
ଆମ୍ଭମନ ଜାଣିବାକୁ କହୁଛକଥା ପୁଣ ।
ରାବଣ ମାରିବାକୁ ସତ୍ୟ କରିଅଛ
ଏବେ କମ୍ପା କାହୁଁପ ହୁଅ ଦଶରଥ ବତ୍ସ ।

ସର୍ବଦା ବୁଲୁଛନ୍ତି ରାବଣ ଲୋକତ
ଛେଦଭେଦ କହିବେ ସେ ଲଙ୍କାରେ ଯାଇତ
ଯେତେବେଳ ଲାଗିଛନ୍ତି ତୁମ୍ଭର ନୃପଧାରା
ନ ସରିବେ ଶତେକ ବରଷ ଯୁଦ୍ଧ କରି ।
କାହିଁପାଇଁ ଆଜ୍ଞାଦେବ ହେଉନାହିଁ ମୋତେ
ଲଙ୍କାକୁ ଉପାଡ଼ି ଆଣନ୍ତି ମୁ କ୍ଷଣତେ ।
ନେଇ ମୁ ପକାଇବି ସମୁଦ୍ର ଭିତରେ
ନୋହିଲେ ଥୋଇବି ନେଇ ଅଯୋଧ୍ୟାପୁରେ ।
ବାପର ପ୍ରାଏ ଏବେ ଚିନ୍ତା ଯେ ତୁମ୍ଭର
ଶତ୍ରୁ ଠାରେ ଉପ୍ରୋଧ ଅଛୁକ ରଘୁବର ।
ଯେବେ ତେବ ଶାନ୍ତି ତୁମ୍ଭେ ହୋଇବ ଆପଣ
କେମନ୍ତେ ରାବଣ ଆଜ ମରିବ ଯେ ପୁଣ ।
ତିନିପୁର ସଲ ଯେ କେମନ୍ତେ ପୁଣି ଯିବ
ବିଧାତା ବାସୁକୀଠାରୁ ଚିନ୍ତା ଯେ ଗୁଡ଼ିବ ।
ଅଙ୍ଗଦ ବଚନ ଶୁଣି ଶ୍ରୀରାମ ହସିଲେ
ଶୁଣରେ କୁମରମଣି ବୋଲିଣ ବୋଇଲେ ।
ରାବଣ ତ ମହାବଳ ଅଟଇରେ ପୁଣ
କବାଟ ପଡ଼ିଲା କସ ବସ୍ତୁର କରି ।
ଅଙ୍ଗଦ ବୋଇଲା ତୁମ୍ଭେ ଶୁଣ ଦେବପୁଣ
ହନୁମନ୍ତ ସୀତାଙ୍କୁ ଯେ ଖୋଜିଗଲା ଜାଣ ।
ଅଶୋକ ବଣିକେ ସେ ମିଳିଲାକ ପୁଣି
ଦେଖିଲା ଜନକଜେମା ସେଥିରେ ଅଛି ଜାଣି
ତୋଠାକୁ ଭାଙ୍ଗିଣ ସେ ସୈନ୍ୟ ନାଶ କଲା
ଲଙ୍କାପୋଡ଼ି ଦେବାରୁ ଅଙ୍ଗାରମଏ ହେଲା ।
ସେ ଦ୍ୱାର ରାବଣ ଯେ କବାଟ ଅଛି ପାଡ଼ି
ବିସ୍ମରିଲା ଏହିରୂପେ ଯୁଗମୋ ହେବ ପୁରି ।
ଶୁଣିଣ ଶ୍ରୀରାମ ଯେ ମନରୁ ଗଲା ଚିନ୍ତା
ବୋଇଲେ ଏବେହୋ ପାଇଲି ଭେଦକଥା ।
ବୋଇଲେ ଅଙ୍ଗଦରେ ବାଳତୋତେଜାଣିକଲା
ନୋହିଲେକ ବନଗାବ ତୋତେ ସାଧିହେଲା
ଏବେ ପୁତ୍ରମଣିରେ ମୋର ବୋଲକର
ଲଙ୍କାଗଡ଼ ଚାରିଦ୍ୱାର ଚାରିପାଖ ବୁଲ ।
କେଉଁଦ୍ୱାରେ କେଉଁରୂପେ କରିଛି ନିରୋଧ
କାହାର ଦ୍ୱାରେ କସ ଅଛି ଯେ ବିରୋଧ ।
ଏମାନ ତୁ ଦେଖିଆସି ଶୀଘ୍ରରେ କହିବୁ
ତେବେ ସୈନ୍ୟନେଇ ଆମ୍ଭେସେଠାକୁଯିବୁ

ଏତେ ବୋଲି ଶ୍ରୀରାମ କହିଲେ ଯହୁଁ ବାଣୀ
ଶୁଣିଣ ଅଙ୍ଗଦ ପାଦେ ପଡ଼ିଲାକ ପୁଣି ।
ଗମନ କରିଗଲା ସେ ପବନରୁଁ ବେଗେ
ଉତ୍ତରଦ୍ୱାରେ ମିଳିଲା ଯାଇଣ ସରାଗେ ।
ଦେଖିଲାକ ଦୁଆର ପକାଇ ଅଛି ପୁଣ
ନବନିରେ କଳଣ କଛି ପୁଣ ଜାଣ ।
ଦୁଆର ପାଖରେ ଦୁଇ ଗଜ ଛନ୍ତି
ରତ୍ନମଏ ମୁକୁଟ ଶିରରେ ବସାଜନ୍ତି ।
ଶ୍ୱେତବର୍ଣ୍ଣ ଦିଶନ୍ତି ଗଜଦୋହେଁ ପୁଣ
ଦେଖିଣ ଅଙ୍ଗଦ ଯେ ଚଳିଗଲା ଜାଣ ।
ସେଠାରୁ ପୂର୍ବଦ୍ୱାରେ ହେଲା ପରବେଶ
ଦେଖିଲା ଦ୍ୱାର ଯେ ପଡ଼ିଛି ବିଶେଷ ।
ଯନ୍ତ୍ରରେ କବାଟ ଦେଇ ପାଡ଼ିଛି କଳଣ
ଦୁଇପାଖେ ଦୁଇସିଂହ ବସିଛନ୍ତି ପୁଣି ।
ରତ୍ନମଏ ସିଂହ ଯେ ହରିଦ୍ରାବର୍ଣ୍ଣ ପୁଣ
ରତ୍ନସିଂହ ବସିରଲା ହୃଦରେ ତାର ଜାଣ ।
ଏହି ଶ୍ରୀରାମ ଦୂତ ଚାରିପାଶେ ବୁଲେ
ଦ୍ୱାରମାନ ଦେଖିଯାଇ କହିବ ରାମଠାରେ ।
ସେଠାରୁ ଅଙ୍ଗଦ ଯେ ଦକ୍ଷିଣଦ୍ୱାର ଗଲା
କବାଟ ପଡ଼ିଅଛି ସେଠାରେ ଦେଖିଲା ।
ଦୁଇଗୋଟି ଅଶ୍ୱ ଯେ ଦୁଇପାଖରେ ଛନ୍ତି
କଥା ନକହି ହସିଲା ପ୍ରାଏକ ଦିଶନ୍ତି ।
ସେଠାରୁ ଅଙ୍ଗଦ ଯେ ବେଗେ ଚଳିଗଲା
ପଶ୍ଚିମଦ୍ୱାରେ ଯାଇଣ ପ୍ରବେଶ ହୋଇଲା ।
ଦେଖିଲା ଦୁଇପାଖେ ଦୁଇଯେ ଶାର୍ଦ୍ଦୂଳ
ବସିଛନ୍ତି ଯେସନେ ବଳସ୍ୱା ଆକାର ।
ଦ୍ୱାର ସେ ପକାଇଛି ଦ୍ୱାରିକ ବାଟନାହିଁ
ସୁବର୍ଣ୍ଣ ବର୍ଣ୍ଣ ଦିଶନ୍ତି ଶାର୍ଦ୍ଦୂଳ ଯେ ଦୁଇ ।
ଦେଖିଣ ଅଙ୍ଗଦ ଅଇଲେ ଖଉକରି
ଲଙ୍କା ଚାରିପାଶ ସେ ଛ'ଘଡ଼ିରେ ଫେରି ।
ସୁବେଳ ଗିରିରେ ପ୍ରବେଶ ଯାଇଁ ହେଲା
ରାମଙ୍କୁ ଦେଖି ସେ ଗଡ଼ାଗଡ଼ି ଶୋଇଲା ।
କରଯୋଡ଼ି ଯାଇଣ ପାଶରେ ପୁଣ କହେ
ଲଙ୍କାର ଚାରିପାଶେ ବୁଲିଲି ଦେବରାଏ ।
ଉତ୍ତରଦ୍ୱାର ଦେଖିଲି ପଡ଼ିଛି କବାଟ
ପିମ୍ପୁଡ଼ି ଯିବାକୁ ଯେ ଭିତିରେ ନାହିଁ ବାଟ

ରତ୍ନରେ ଦୁଇହସ୍ତୀ ଦୁଇପାଖରେ ଛନ୍ତି
ମୋତେ ଦେଖି ହସ୍ତୀମାନେ ହୁଦାହୁଦ ହୋନ୍ତି
ସେଠାରୁ ମୁହିଁ ଯେ ଚଳିଗଲି ଖରକରି
ପୂର୍ବଦ୍ୱାରେ ଯାଇ ମୁଁ ମିଳିଲି ମନସରି ।
ସେଠାରେ ଦେଖିଲି ଯେ ରତ୍ନସିଂହ ପୁଣି
କବାଟ ପକାଇଛି ମୁଁ ଦେଖିଲି ତତକ୍ଷଣି ।
ସେଠାରୁ ଦକ୍ଷିଣଦ୍ୱାରେ ମିଳିଲି ମୁହିଁ ପୁଣ
ଦୁଇପାଖେ ଦୁଇ ଅଶ୍ୱ ରଖିଛି ଦୈତ୍ୟ ଜାଣ
କବାଟ ପଡ଼ିଅଛି ପତଙ୍ଗେ ବାଟ ନାହିଁ
ସେ ମାନ ଦେଖିଣ ମୁଁ ଗଲି ପଥ ବାହି ।
ପଶ୍ଚିମ ଦ୍ୱାରେ ଯାଇ ହେଲି ପରବେଶ
ଦେଖିଲି ଦୁଇ ପାଖେ ଦୁଇ ବ୍ୟାଘ୍ର ବିଶେଷ ।
ମୋତେଦେଖି ଶାର୍ଦ୍ଦୂଳମୁହକ ହସାଦେଲେ
ରାମଦୂତ ଅଙ୍ଗଦ କୁ ବୋଲିଣ ବୋଇଲେ ।
କବାଟ ପଡ଼ିଛି ମୁଁ ଦେଖିଲି ସେ ଦୁଆର
ଜଳା କବାଟି ସେ ରଖିଛି ଉପର ।
ସେଠାରୁ ଦେଖି ଦେବ ଅଇଲି ମୁଁ ଖରେ
ଶୁଣିମା ହେଉ ଦେବ କହିଲି ଗ୍ରମୁରେ ।
ଶୁଣିଣ ଶ୍ରୀରାମ ଯେ ବୋଇଲେ ତୁମ୍ଭେ ଯିବ
ଦ୍ୱାରମାନଙ୍କୁ ଆଗ ଜରିଣ ନାଶିବ ।
ଶୁଣିଣ ସମସ୍ତେ ଯେ ସନ୍ତୋଷ ମନ ହେଲେ
ଗଉର ଆଗରେ ଏହା ଈଶ୍ୱର କହିଲେ ।
ଏଥୁ ଅନନ୍ତରେ ଶୁଣଗୋ ଶୁଣ ହୈମବନ୍ତୀ
ସୁଗ୍ରୀବକୁ ଆଜ୍ଞାଦେଲେକ ଦାଶରଥି ।
ଆଜ୍ଞାପାଇ ରାଜନ ହେଲେ ଯେ ତରଙ୍ଗ
ରଗେଣ ଅଧର କାମୋଡ଼ି କଲକ ରଙ୍ଗ ।
ବାହାସ୍ଫୋଟ ମାରିଣ ସେ ହେଲେ ଆଗୁସାର
ବୋଇଲେ ନ ହେଲ ତୁମ୍ଭେ କୌଶଲ୍ୟା ଦୁଲାଳ
ସେ ଘୋର ଅସୁର ନିଲକ୍ଷଣ ଦୈତ୍ୟ
ସେହି ତୁମ୍ଭ ଆଗେ ପଡ଼ିବ ଅବଶ୍ୟତ ।
ପ୍ରାଣ ଘେନ ସେହୁ କେଉଁଆଡେ ଯିବ
ତୋହର ମହିମା ଯେ ଜାଣନ୍ତି ସୁରଦେବ ।
ରାବଣ ମାରିଣ ସୀତା ମୁଁ ଦେବି ଆଣି
କାଞ୍ଚେ ଦୟା ତୁମ୍ଭର ଥିବ ହେ ରଘୁମଣି ।
ଶାରଙ୍କୁର ଛନ୍ଦରେ ବାଜଇ ବାଜଣା
ବାହାତୋଳି ଗର୍ଜଇ ସୁଗ୍ରୀବ କପିରଣା ।

ଶ୍ରୀରାମ ଚରଣ ନେଇ ଶିରପରେ ଲଦ
ଶ୍ରୀକରେ ଆପଣେ ତୋଳନ୍ତି ଦୟାନିଧି ।
ଉଠ ଉଠ ମଇତ୍ର ହେ ମୋର କାର୍ଯ୍ୟକର
ଅଭିମାନ ସମୁଦ୍ରରୁ ଉଦ୍ଧର ମୋତେ ଧର ।
ଏତେକହି କୋଳକରି ଚୁମ୍ବନ ଦିଅନ୍ତି
ଶତ୍ରୁକୁ ଜୟକରି ବୋଲିଣ ବୋଲନ୍ତି ।
ଏ ସମୟେ ରାମଙ୍କ ଦକ୍ଷିଣ ଚକ୍ଷୁ ଡେଇଁ
ବସ୍ତୁଇନ୍ତି ପ୍ରାପତ 'ମୋତେ ହେବ ବୈଦେହୀ
ଏଥୁଅନନ୍ତରେ ଯେ ସୁଗ୍ରୀବର ରାଏ
ଶୁଭଲଗ୍ନ ଦେଖିଣ ସେ ପବନ୍କୁ ଉହ୍ଲାଏ ।
ନଳନୀଳ ଗନ୍ଧମାର୍ଦ୍ଦନ ଶତବଳ
ସୈନ୍ୟ ଅପ୍ରମିତ ଯେ ଶୁଭଇ ଚହଳ ।
ଘନ ଘନ ନିଃଶ୍ୱାସ ଘୋର ବାଦ୍ୟ ବାଜେ
ଢୋଲ ଦମା ଝମକ ନିଷାଣ ଗଳଗାଜେ ।
ଜଳା ଧଳା ଛତ୍ର ଧରାଇ କପିରାଜେ
ଚଳନ୍ତେ ଆକାଶରେ ଲୁଚିଗଲେ ସୂର୍ଯ୍ୟେ ।
ଅଷ୍ଟସେନା ପଞ୍ଚଶ ଯେ ଯୂଥପତି ଗଲେ
ବୀର ମହାବୀର ଯେ ସମସ୍ତେ ଚଳାଇଲେ ।
ସୈନ୍ୟଙ୍କ ମୁଖ ରବେ ସାଗର ଉଚ୍ଛୁଳି
ଗଗନ ନ ଦିଶଇ ଯେ ଚରଣର ଧୂଳି ।
କଳକଳା ଶବଦ ଶୁଭଇ କୋଳାହଳ
ସପତ ଦ୍ୱୀପ କି ହୋଇଲା ମହାଗୋଳ ।
ପ୍ରଳୟ କାଳରେ କି ଅଗ୍ନି ଜଳ ଆସେ
ସୈନ୍ୟମାନେ ଚଳିବାରେ ଗଗନ ନ ଦିଶେ
ଦଲଦଲ ମେଦିନୀ କମ୍ପଇ ପାଦରେ
ଶଙ୍ଖ ମହୁରି ଭେରି ଶୁଭଇ ସବୁରେ ।
କନଡ଼ା ରାଗରେ ସେ କରଇ ଆଳାପ
ଦୁମ୍ଭ ଦୁମ୍ଭ ଶବଦ ଶୁଭଇ ଜଳ ଧାପ ।
ଘୋଡ଼ଙ୍ଗର ଚମକ ସ୍ୱର୍ଗକୁ ବୋଲି ଶୁଭେ
ଧର ଧର ମାର ମାର ଶୁଭଇ ସବୁରେ ।
ବାଦ୍ୟ ଘଣ୍ଟ ଘାଗୁଡ଼ି ମୁଖରବ ଗୋଳ
ଗହଳରେ ଶୋଭାପାଏ ସେ ମଞ୍ଚ ମଣ୍ଡଳ ।
ଖେମଟା ନାଚ ନାଚି ଦିଅନ୍ତି ବାମତାଳ
ପୁଞ୍ଜି ପୁଞ୍ଜି ହୋଇଣ ଯାଆନ୍ତି କରି କେଳି ।
ଛଗ ମାରି ଫେରି କରି ଆଗରେ ସେ ଯାନ୍ତି
ଗଲି ଗଲି ବୋଲି କେ ଆସନ୍ତେ ବୋଲନ୍ତି ।

ଗାଲତୂର ବଜାଇଣ ଗେଲେଗେଲେ ଗ୍ଲେଲେ
ଜୟମାରି କେହୁଯେ ବୋଲେ ମାରେମାରେ
ବେହକୁ ଦେଖ ଲଗିଣ ବାହାରନ୍ତି ଝାଳ
ସ୍ମରବେ ବୈଶାଖ ମାସ ଅଟେ ଖରକାଳ ।
ରୋହିଣୀ ନକ୍ଷତ୍ର ଅଟେ ରୋହିଣୀ ଯେ ତିଥି
ରାମଚନ୍ଦ୍ର ରାଶିକ ସାଧକ ତିର ହୋଇଅଛୁ ।
ଅର୍କବାର ଅଟେ ସିଦ୍ଧ ଯେ କରଣ
ସେଦିନ ରଘୁନାଥ ଆରମ୍ଭ କଲେ ରଣ ।
ହୁଳହୁଳ ରାମତାଳ ହରି ବୋଲ ଡାକ
ଗହଳରେ ଲଙ୍କାଗଡ଼େ ପଡ଼ଇ ଚମକ ।
ସୁଗ୍ରୀବର ଆଗହୋଇ ପୂର୍ବଦ୍ୱାରେ ଯାଇ
ଦର୍ଷା ଧାରା ପରିଏକ ସେ ନଗଲେ ବହି ।
ପୂର୍ବ ଦ୍ୱାରେ ସୈନ୍ୟ ଲାଗିଲେ ପୁଣ ଯାଇ
କଳକଳା ଶବଦରେ ଉଲ୍କାପାତ ମହି ।
ଦୁଇଶତ ଯୋଜନ ଦୀର୍ଘ ପ୍ରସ୍ଥ ଦୁଇସସ୍ର
ଥାଟ ପୂରିବାରେ ଯେ ନଦଶେ ସିନ୍ଧୁତଟ ।
ସଙ୍ଗରେ ଷର୍ଦ୍ଦୀଦଳ ଗନ୍ଧମାର୍ଦ୍ଦନ ସତଦଳ
ପାଳକୁ ସେନ ମାଡ଼ି ବସିଲ ସୁଗ୍ରୀବର ।
ପାଟେଶ୍ୱର ଛଳରେ ମିଳଇ ବେଗେଯାଇ
ପାର୍ବତୀଙ୍କ ଆଗରେ କହିଲେ ଉମାସାଇଁ ।
ଶୁଣଗୋ ପ୍ରାଣ ପ୍ରିୟା ପ୍ରମାଣ ଏହୁବାଣୀ
ସାମ ବେଦରୁ ସମ୍ଭୂତ ବଖାଣ କରେ ଆଣି ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣଗୋ ଈଶାନ
ସୁଗ୍ରୀବର ଗଲ ଯେ ପୂର୍ବଦ୍ୱାରକୁ ପୁଣ ।
ପୂର୍ବ ଦ୍ୱାରରୁ କସ କଲେ ରାଜେଶ୍ୱର
ଏହା ମୋତେ ବୁଝାଇ କହିବା ଆହେ ହର
ଈଶ୍ୱରବୋଇଲେତୋତେବୁଦ୍ଧିରେସରିନାହିଁ
ସେ କଥା ତୋର ଆଗେ କହିବାରେ ସହି ।
ଯେତେବେଳେ ସୁଗ୍ରୀବର ବସିଲ ଦ୍ୱାରମାଡ଼ି
ରତ୍ନସିଂହ ଦୁଇଗୋଟି ଛାଡ଼ିଲେ ସିଂହରଢ଼ି ।
ଦେଖିଣ ସୁଗ୍ରୀବର କ୍ରୋଧରେ ପ୍ରଚଣ୍ଡ
ଆକ୍ରୋଶି ଚାପୋଡ଼େ ମାଇଲ ସିଂହମୁଣ୍ଡ ।
ପ୍ରାଣ ଛାଡ଼ି ସିଂହ ପଡ଼ିଲା ଭୂମିଗତେ
ଆରେକ ସିଂହ ଗର୍ଜି ଉଠିଲା ତ୍ୱରିତେ ।
ଉଠି ସିଂହକୁ ପୁଣି ଧଇଲା ସୁଗ୍ରୀବର
ମାଲ ଯୁଦ୍ଧ ଦୁହେଁ ଯେ କଲେ ମହାପର ।

ଧରାଧରି ହୋଇଣ ଭୂମିରେ ଗଡ଼ିଯାନ୍ତି
ମୁଣ୍ଡକୁ ମୁଣ୍ଡ ହେ ଯେ ମରାମରି ହୋନ୍ତି ।
ବାହାକୁ ବାହାଛନ୍ଦ ଗୋଡ଼କୁ ଗୋଡ଼ଛନ୍ଦ
ହୁଆକୁ ହୁଆ ଲଗାଇ କରନ୍ତି ମହାଯୁଦ୍ଧ ।
ଦେଖିଣ ନଳ ନୀଳ ଋଷ୍ୟ ଏ ତାକୁ ପୁଣମାର
ପ୍ରାଣ ଛାଡ଼ି ସିଂହ ଯେ ଛାଡ଼ିଲା ପୁଣ ରଢ଼ି ।
ଯେତେବେଳେ ସିଂହ ପଡ଼ିଲେ ବେନପୁଣି
ବେତେଗୋଟିନ ପୁରୁଷ ବାହାରି ହେଲେପୁଣି ।
ପୁଷ୍ପକ ବେନରଥ ଚଢି କରି ଗଲେ
ବେନଗୋଟି ପୁରୁଷ ଗମନ କଲେସ୍ୱର୍ଗପୁରେ
ଶୁଣିକରି ପାର୍ବତୀ ଈଶ୍ୱରେ ପଚାରିଲେ
ବିପରୀତ କଥାଏ ଯେ କହିଲ ବୋଇଲେ ।
ରତ୍ନସିଂହ ଦୋହେଁ ଲଙ୍କା ପୂର୍ବଦ୍ୱାରେଥିଲେ
କାହାରେ ଶାପପାଇ ସେ ଲଙ୍କାରେରହିଲେ
ତୁମ୍ଭମୁଖୁ ପାଇ ମୁ ଯେ ପଇବ ସନ୍ଦେଶ
ସଂଶୟ ନ ରଖି କହ ମୋର ମନ ତୋଷ ।
ଉମାଙ୍କ ବଚନରେ କହେ ଶୂଳପାଣି
ଶୁଣଗୋ ପ୍ରାଣପ୍ରିୟା ସିଂହଙ୍କର ବାଣୀ ।
ବହୁତ ଦିନର ଏଯେ ପୁରାତନ କଥା
ସତ୍ୟଯୁଗେ ଶତ ମୁଖ ନାମରେ ବିଧାତା ।
ପ୍ରଚଣ୍ଡ ପବନ ବୋଲିଣ ଏକ ବାତ
ପୂର୍ବେ ସେ ମେରୁ ସଙ୍ଗରେ କଲେକ ଅନର୍ଥ ।
ମେରୁ ବୋଇଲା ମୁ ଯେ ସବୁଠୁଁ ଅଟେ ବଡ
ପବନ ବୋଇଲା ମୁ ଯେ ସବୁଠୁ ଗାଢ଼ ।
ମେରୁ ବୋଇଲା ମୁ ଯେବେ ପୃଥିବୀ ମଧ୍ୟଗତେ
ସପତ ଦୀପ ପୃଥ୍ୱୀ ପଡ଼ିବ ରସାଗତେ ।
ପବନ ବୋଇଲା ମୁଯେବେନବହିବିମେଦିନୀ
ସ୍ଥାବର ଜଙ୍ଗମ କୀଟ ନରହିବେ ଦେହଯୋନି
ଯାବତ ଜନ୍ତୁକ ବର୍ତ୍ତିବେ ତିନିପୁର
ତ୍ରୈଲୋକ୍ୟ ଭୁବନରେ ହେବ ଦଣ୍ଡଧର ।
ସମସ୍ତଙ୍କର ମୁ ଯେ ଅଟେ ଜୀବଦାନ
ଭୁ ଶଫୂଳ କାହିଁ ମୋହ ସଙ୍ଗରେ ଗର୍ଜନ ।
ଯେବେ ମୋ ଠାରୁଁ ବଡ଼ ଅଟୁ ଗିରିବର
ଅଣରୂଣ ବହିବ ମୁ ରହିବୁକ ସ୍ଥିର ।
ଶୁଣି ମେରୁ ବହୁତ ପ୍ରତିଜ୍ଞା ଯେ କଲା
ତା । ପରାକ୍ରମ ଦେଖା ବୁଝିବା ବୋଇଲା ।

ଏତେ ବୋଲି ମେରୁ ନବଖଣ୍ଡ ପୃଥ୍ୱୀରେଣ
ଅଚଳ ହୋଇ ରହିଲା ଚଉଦ ଖଣ୍ଡ ପୁରପୁଣି
ପ୍ରଚଣ୍ଡ ପବନ ଯେ ବହିଲା ଅଣରୁଣ
ବନଗିରି କନ୍ଦର ସମସ୍ତେ ଗଲେ ନାଶ ।
ଜଳଜନ୍ତୁ ଆବର ସ୍ଥଳ ସର୍ବଜନ୍ତୁ
ଭୂଲାକୃତ ପ୍ରାୟେ ଜନ୍ମିଲେ ସର୍ବ ହେତୁ ।
ଦେଖିଣ ବିଧାତା ଯେ ମେରୁଙ୍କୁ କଲେ ସ୍ତୁତି
ବୋଇଲେ ତୋର ଯୋଗରୁ ପୃଥ୍ୱୀନାଶଯାନ୍ତି
ବ୍ରହ୍ମା ବୋଇଲେ ତୁମ୍ଭ ମାନଙ୍କଠାରୁ ଜାଣୁ
ସୃଷ୍ଟିବେ ବଳ ତୁ ଯେ ପୃଥ୍ୱୀ ଜଳମାନୁ ।
ଏବେ ହୋ ମେରୁତୁମ୍ଭେ ବଚନ ମୋରହେନ
ମନ ନିପୁଣ ହେଉ କଶ୍ୟପ ନନ୍ଦନ ।
ଶିଖରୁ ଖଣ୍ଡେ ଝିଙ୍କ ପଡ଼ୁ ମହୀଗତ
ତେବେ ସେ ମରୁତ ଗୁଣ୍ଡ ତାର ଆଗ ।
ମେରୁ ବୋଇଲା ଝିଙ୍କ ପଡ଼ିବ କେମନ୍ତରେ
ସମସ୍ତେ ଉପହାସ୍ୟ କରିବେ ଦେବମୋରେ ।
ବଳିବ ବୋଇଲେ ଆମ୍ଭେ ଜାଣୁ ଅଛୁ ସବୁ
ଅସୁର ହାତରେ ଖଣ୍ଡେ ଝିଙ୍କ ତୁ ପଡ଼ିବୁ ।
ଶୁଣିକରି ମେରୁ ଯେ ଶିଖର ଦେଲେ ଛାଡ଼ି
ସତ୍ୟ ବଚନ ପବନ ରହିଲା ନବେଢ଼ି ।
ଦୁଇଶତ ଯୋଜନ ହୋଇଣ ଓସାର
ପବନ ଉଡ଼ାଇଣ ନେଲା ଧାଡ଼ିକାର ।
ସମୁଦ୍ର ମଧ୍ୟରେ ସେ ଯେ ପକାଇଲେ ନେଇ
ସେ ମେରୁ ଶିଖଖଣ୍ଡି ଲଙ୍କାଖଣ୍ଡ ହୋଇ ।
ଅଷ୍ଟରତ୍ନେ ନବାଙ୍ଗ ଅଟଇ ମେରୁ ଗାଏ
ତେଣୁକରି ଲଙ୍କାଗଡ଼ ହେଲା ରତ୍ନମୟେ ।
ତାହା ଦେଖି ବେଦବର ସନ୍ତୋଷ ହୋଇଲେ
ପବନ ଦେବତାଙ୍କୁ ପ୍ରବୋଧି କହିଲେ ।
ଯେବଣ ଶିଖଖଣ୍ଡି ପବନ ନେଲେ ଭାଙ୍ଗି
ତହିଁରୁ ଦୁଇଖଣ୍ଡି ପଡ଼ିଲା ସିଂହ ବେଗି ।
ଶତେମୁଖା ବ୍ରହ୍ମା ତାକୁ ଶାବନ୍ୟାସ କଲା
ଲଙ୍କାଗଡ଼ ପୂର୍ବଦ୍ୱାରେ ନେଇଣ ସ୍ଥାପିଲା ।
ବୋଇଲେ ଏ ଲଙ୍କାଗଡ଼େ ଯେତେ କାଳଥିବ
ସହସ୍ରେ ଯୁଗ ଏଥିରେ ଋଷି ରାଜାହେବ ।
ଋଷିର ଉତାରୁ ଦେବତା ରାଜା ପୁଣ
ସେହି ଭୋଗ କରିବ ସହସ୍ରେ ଯୁଗ ଜାଣ ।

ଦେବତା ଉତାରୁ ଅସୁର ରାଜା ହେବ
ରାବଣେଶ୍ୱର ବୋଲିଣ ନାମହେ ବୋଲାଇବ
ସେହି ଭୋଗ କରିବ ତ୍ରେତୟ ଯୁଗପୁଣି
ତ୍ରେତୟ ଯୁଗ ମଧ୍ୟରେ ମରିବ ବଂଶପାଣି ।
ତିନପୁର ସାଧିଣ ଦେବତା ହରିନେବ
ଦେବତାଙ୍କୁ ଖଟାଇ ପାଖେ ସେ ରଖିବ ।
ତେବେ ସେ ବାସୁଦେବ ହୋଇବେ ଜନମ
ଦେବଙ୍କ ହିତେ ରାବଣକୁ ମାରିବେ ଶ୍ରୀରାମ ।
ତାହାଙ୍କ ଦୂତ ହସ୍ତେ ତୁମ୍ଭର ପ୍ରାଣ ଦେବହତ
ସେତେବେଳ ତୁମ୍ଭେ ଆସିବ ସ୍ୱର୍ଗପଥ ।
ଏତେ କହି ବିଧାତା ବର ତାକୁ ଦେଲା
କପିନାଥ ଶ୍ରୀରାମ ବୋଲେ ତାହାଙ୍କୁ ନାଶକଲା
ବିମାନରେ ବସିଦୁହେଁ ଗଲେ ସ୍ୱର୍ଗପୁର
ଦେଖିଣ ପୂଜା ତାହାଙ୍କୁ କଲେ ବଜ୍ରଧର ।
ଶୁଣିଲଟିକ ଗୋ ଉମା ଏସନକ କଥା
ସତ୍ୟ ଯୁଗର ଏହୁ ପୁରାତନ ପୋଥା ।
ଶୁଣିକରି ସନ୍ତୋଷ ହୋଇଲେ ଗଉରୀ
ରାମାୟଣ ଚରିତ ଏ କହିଲୁ ତ୍ରିପୁରି ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେଢ଼ଗବାସ
ଏଥୁ ଅନନ୍ତରେ କଥା କହନ୍ତେ ପ୍ରକାଶ ।
ସେଠାରୁ ଯେ ଶ୍ରୀରାମ କଲେ ପୁଣ କିସ
ଏହା ମୋତେ ସଞ୍ଚିପି କହ ହେ ବିଶ୍ୱବାସ ।
ଗୌରୀ ବଚନେ ହସି କହେ ପଞ୍ଚ ମଥା
କହିବା ତୁମ୍ଭେ ଶୁଣ ଗୋ ଶ୍ରୀରାମ ବାରତା ।
ଶୁଣ ଗୋ ପାର୍ବତୀ ତୁମ୍ଭେ ଏଥୁ ଅନନ୍ତରେ
ସୁବଳ ଗିରି ଉପରେ ଅଛନ୍ତି ରଘୁବୀରେ ।
ଅଙ୍ଗଦ କୁମରଙ୍କୁ ରାଇଣ ବୋଲନ୍ତି
ତୋର ପ୍ରତିଜ୍ଞା ବାବୁରେ ବୁଝିବା ଏ ରାତ୍ରି ।
ରାବଣକୁ ମାରି ମୋତେ ସୀତାଙ୍କୁ ଆଣିଦେବୁ
ତେବେ ସେ ବୀରବର ପୁତ୍ର ବୋଲାଇବୁ ।
ହେଉ ବୋଲି ବୋଲିଣ ଅଙ୍ଗଦ ଆଗସରି
ଅଳ୍ପ ହେତେ ତାହାକୁ ଶ୍ରୀରାମ କୋଳକରି ।
ମୁଖେ ଚୁମ୍ବ ଦେଇଣ ବୋଲନ୍ତି ବାବୁ ଯାଅ
ଯେମନ୍ତେ ପ୍ରାପତ ମୋତେ ଜନକ ରଜାଝିଅ
ଶୁଣିକରି ବାଳି ସୁତ ଶିରେକର ଦେଇ
ଯାଉଅଛି ବୋଲିଣ ସେ ଚରଣ ବଢ଼ାଇ ।

ସଉରି ସେନାପତି ସଙ୍ଗରେ ତାହାର
ଡାଳଂବ କେଶରୀ ଯେ ଦଧିମୁଖ ବୀର ।
ସୈନ୍ୟଙ୍କର ଗର୍ଜନ ପ୍ରଳୟ ସିନ୍ଧୁ ଜାଣି
ସ୍ଥଳ ସ୍ଥଳ ବୋଲିଣ ବୋଲନ୍ତି ପକ୍ଷୁଆଣି ।
ଦେଖିଣ ଉଲ୍ଲସାଇ ସେ ଆସନ୍ତି ବୀରମାନେ
ଚରଣର ଧୂଳି ସେ ଯେ ଉଡ଼ଇ ଗଗନେ ।
ଝମକ ନାଗରା ଢୋଲ ବାଜେ ବିକରାଳ
ଖେମଟା ଛନ୍ଦରେ ସେ ବାଜଇ ମର୍ଦ୍ଦଳ ।
ମୃଙ୍ଗ ଖେଣ୍ଡଙ୍ଗ ଯେ ବାଜେ ବସନ୍ତ ଖେଚରି
ହୁଳହୁଳି ଶବଦରେ ଚମକେ ଲଙ୍କାପୁରୀ ।
ସ୍ୱରଛନ୍ଦ ଧରାଇଣ ଚଳେ ତାର ସୁତ
କି ଜାଣି ବଶିଲା ଲଙ୍କା ଗଡ଼କୁ ଜାଳମତ ।
ଆଠକ୍ଷୌଣି ବାଦ୍ୟକାର ତାଙ୍କର ସଙ୍ଗେଗଲେ
ଦକ୍ଷିଣ ଦ୍ୱାରେ ଯାଇଁ ପ୍ରବେଶ ହୋଇଲେ ।
ପୂର୍ବ ଦ୍ୱାର ନିକଟରେ ଗଲେ ସୈନ୍ୟ ପୁଣ
ତୁମ୍ଭେ ଗୋ ପାର୍ବତୀ ତାର ଗୁଣ ଶୁଣ ।
ସୈନ୍ୟର ଗହଳରେ ନ ଦିଶେ ପୁଣ ଭୂଇଁ
ଦକ୍ଷିଣ ଦ୍ୱାରେ ଅଙ୍ଗଦ ପ୍ରବେଶ ହେଲେଯାଇଁ
ଦେଖିଲା ଅଶ୍ୱ ଦୁଇ ଦ୍ୱାର ଦୁଇ ପାଖେ
ଅଙ୍ଗଦକୁ ଦେଖିଣ ଅଶ୍ୱ ବେଗେ ହ୍ରେଂସେ ।
ଅଙ୍ଗଦ ଉଠି ତାକୁ ବିଧାଏ ମାଇଲା
ଖୋସର ଘାତରେ ଯେ ପୃଥିବୀ କମ୍ପିଲା ।
ଦେଖିଣ ବାଳି ସୁତ ଗୋଇଠାଏ ମାରି
ଅଙ୍ଗଦ ଉପରେ ନାଚେ ଅଶ୍ୱ ଯେ ପ୍ରହାରି ।
କ୍ରୋଧରେ ଅଙ୍ଗଦ ମାଡ଼ ଯେ ବସିଲା
ପଛ ଗୋଡ଼ ଧରିଣ ଚିରି ଯେ ତାକୁ ଦେଲା ।
ତତକ୍ଷଣେ ପ୍ରାଣ ଛାଡ଼ିଲା ହୟ ବୀର
ଆର ଅଶ୍ୱପରେ ଚଢ଼ିଲା ସତ୍ୱର ।
ସେହି ଅଶ୍ୱ ଡାଳଂବକୁ ଘେନିଣ ଉଡ଼ିଲା
ସ୍ଥଳଶି ଯୋଜନ ଉର୍ଦ୍ଧ୍ୱକୁ ସେ ଗମିଲା ।
ଦେଖିଣ ଅଙ୍ଗଦ ଯେ ବିସ୍ମୟି ଗଲା ପୁଣି
ଅଶ୍ୱିନୀମାନ ପାଖେ ମିଳିଲା ତତକ୍ଷଣି ।
ଦୁଇ ମୁଖ ପ୍ରହାରନ୍ତେ ପ୍ରାଣ ତାର ଗଲା
ସୁବର୍ଣ୍ଣ ବିମାନ ଆସି ଦୁଆରେ ଲାଗିଲା ।
ସ୍ୱଦେହ ତେଜିଣ ଦୁଇ ଅଶ୍ୱ ଗଲେ
ଆଦିତ୍ୟ ମଣ୍ଡଳରେ ପ୍ରବେଶ ଯାଇଁ ହେଲେ ।

ଶୁଣିକରି ପାର୍ବତୀ ବୋଲନ୍ତି ବଚନ
ଏ ଦୁଇ ଅଶ୍ୱ ଜାତ କେଉଁଠାରେ ପୁଣ ।
ଈଶ୍ୱର କହିଲେ ବ୍ରହ୍ମା ଆଗରେ ଜାଣ
ସ୍ୱର୍ଗର ବିଶ୍ୱକର୍ମା ଗଢ଼ିଲା ତତକ୍ଷଣ ।
ସେ ଦ୍ୱାରେ ବସାଇଲେ ଶକ୍ତି ମୁଖ ବ୍ରହ୍ମା
ଜୀବନ୍ୟାସ କରିଣ ସେ ଦ୍ୱାରେ ରଖେ ସୀମା
ବୋଇଲେ ଦୁଇସସ୍ତ ଛପନ ଯୁଗରେ
ଶ୍ରୀରାମ ଅବତାର ଅସୁର ମାରିବାରେ ।
ଏ ଲଙ୍କାଗଡ଼କୁ ଯେ ଆସିବେ ଦାଶରଥି
ତାଙ୍କ ଆଜ୍ଞାରେତୋତେ ମାରିବେଅଙ୍ଗଦକ୍ଷଣି
ତେତେବେଳେ ତୁ ଯେ ମୁକ୍ତ ହୋଇଯିବୁ
ସ୍ୱର୍ଗ ବିନ୍ଦୁ ଆସିଣ ତୁ ବାହାନ ହୋଇବୁ ।
ଏବେ କହି ବିଧାତା ସେଠାରୁ ଚଳିଗଲେ
ଦକ୍ଷିଣ ଦ୍ୱାରକଥା ଶୁଣିଲ ଦେବୀ ଭଲେ ।
ଶୁଣିଣ ଗଉରୀ ଯେ ବୋଲନ୍ତି ଦେବ କହ
ହନୁମନ୍ତଠାରେ ଶ୍ରୀରାମର ଅଟେ ସ୍ନେହ ।
ଶୁଣିଣ ଈଶ୍ୱର କହନ୍ତି ସନ୍ତୋଷରେ
ଶ୍ରୀରାମର କଥା ତୁମ୍ଭେ ଶୁଣ ଗୋ କର୍ଣ୍ଣରେ ।
ଏଥୁ ଅନନ୍ତରେ ଯେ ରଘୁକୁଳ ନାଥ
ହନୁମନ୍ତ ପିଠିରେ ରାମ ନେଇ ଦେଲେ ହସ୍ତ
ଯାଅ ଯାଅ ମାରୁତି ତୁ ପଶ୍ଚିମ ଦ୍ୱାର ଲାଗ
ବସନ୍ତ ସେନାପତି ଯେ ଯାଉ ତୋର ସଙ୍ଗ ।
ମହେନ୍ଦ୍ର ଦୁର୍ବିନ୍ଦ ସାରସ ପୁଣ ଯାନ୍ତୁ
ସୈନ୍ୟକୁ ହୋଇ ଗଡ଼ରେ ଡେଇଁଣ ପଶନ୍ତୁ ।
ଇନ୍ଦ୍ରଜିତ ଅଛନ୍ତି ବିସ୍ତର କାର୍ଯ୍ୟ କରି
ଷଣ୍ଡିଙ୍କର ଉପରେ ବୋଲାଏ ବୀରବର ।
ରାବଣକୁ ମାରିଣ ସୀତା ଦେବ ମୋତେ
ଅନେକ ଆଶା ମୁଁ ଯେ କରିଅଛି ତୋତେ ।
ସମୁଦ୍ର ଡେଇଁଣ ଯେ ସୀତାକୁ ଠାବକଲୁ
ଦେବ ଅଜୟ ଗଡ଼ ଅଗ୍ନିରେ ଧ୍ୱଂସିଲୁ ।
ଏବେ ଯଶ ବାବୁରେ ପ୍ରସାଦ ତୋତେ ହେଉ
ଆନନ୍ଦରେ ସୁକଲ୍ୟାଣ କରନ୍ତି ରାମ ରାହୁ ।
ଯାଅ ବୀର ବେଗେ ସୀତାଙ୍କୁ ବେଗେ ଆଣ
ଦଶଗ୍ରୀବ ରାଜାର ଘେନସି ପରାଣ ।
ଶୁଣିକରି ହନୁମନ୍ତ ଶ୍ରୀରାମ ପାଦେ ପଡ଼ି
ଉଠିଣ ଉଭା ହୋଇ ଶିରେ କର ଯୋଡ଼ି ।

ଶ୍ରୀରାମ ସୁମରି ସେ ଚରଣ ବନ୍ଦାଇ
ବସନ୍ତ ସେନାପତି ଯେ ଘନ୍ଟରେ ଗୋଡ଼ାଇ ।
ମହେନ୍ଦ୍ର ଦ୍ୱିବିଦ ଯେ ସଙ୍ଗତରେ ଯାନ୍ତି
ସୈନ୍ୟଙ୍କର ଗହଳରେ ହୋନ୍ତି ଯନ୍ତା ଯନ୍ତି ।
ଗରିଷ୍ଟ ବାନରେ ଯେ ଅଛନ୍ତି ରାମ ସଙ୍ଗେ
ଉଲ୍ଲସିତ ହୋଇଣ ଧାମନ୍ତି ରଣ ରଙ୍ଗେ ।
କଳକଳା ରାବ ଯେ ଦଶଦଶ ପୂରି
ମାଳଶ୍ରୀ ରାଗେ ଗୀତ ଗାଆନ୍ତି ନୃତ୍ୟକରି ।
ଝଁଞ୍ଜାଳ ଝଁମ ଝଁମ ମର୍ଦ୍ଦଳ ଦମି ଦମି
ଘଣ୍ଟମାନେ ଟଣ ଟଣ ଘାଗୁଡ଼ି ଝିମି ଝିମି ।
ଆଦ୍ୟ ଆଷାଢ଼ ଜ ଦ୍ରୋଣ ମେଘସାଜ
ଦୁଲୁ ଦୁଲୁ ଦମାଳୁ ନିଷାଣ ବାଦ୍ୟ ବାଜ ।
ରାମ ତାଳି ମାରି ବଜାଇ ଚଳଗଲେ
ଆଠ ଷଷ୍ଟି ବାଦ୍ୟକାରି ଅଛନ୍ତି ତାଙ୍କକୁଳେ
ହରିବୋଲ ଶବଦ ଦେଇଣ ଚଳଗଲେ
କଳ କଳା ଶବଦରେ ସିଂହରଡ଼ି ଦେଲେ ।
ନବଖଣ୍ଡ ମେଦ୍ଦିନୀ ହୋଇଲା ଟଳ ଟଳ
ଦ୍ରବୀଭୂତ ହେଲେ ଯେ ସପତ ସାଗର ।
କି ଅବା ଯୁଗ ପ୍ରଳୟ ହୋଇଲାକି ଆସି
ଏ ମର୍ତ୍ତ୍ୟ ମଣ୍ଡଳକି ହୋଇବ ଭସ୍ମରାଶି ।
ପଶ୍ଚିମ ଦ୍ୱାରେ ଯେ ଲାଗିଲା ମାଡ଼ଯାଇ
ହନୁମନ୍ତ ଦେଖିଲା ଦ୍ୱାରେ ଉଭାହୋଇ ।
ଦୁଇ ପାଖରେ ଦୁଇ ଶାର୍ଦ୍ଦୁଳ ବସିଛନ୍ତି
ମାରୁତିକି ଦେଖିଣ ଗର୍ଜନ କରନ୍ତି ।
ଗର୍ଜନ ଘାଏ ସୈନ୍ୟ ଅଲଗା ହୋଇଗଲେ
ହନୁମନ୍ତ ଦେଖି ତାକୁ ଆଗୁସାର ହେଲେ ।
ବଧାଏ ମାଇଲେ ତାକୁ ପବନର ସୁତ
ମହାବଳ ତେଉଁ ଧରେ ମାରୁତିର ହସ୍ତ ।
ବାମହସ୍ତେ ହନୁମନ୍ତ ଧଇଲା ତାହାକୁ
ଫୋପାଡ଼ ଦେଲେ ସେ ସମୁଦ୍ର ଭିତରକୁ ।
ସମୁଦ୍ର ଭିତରେ ପଡ଼ି ପ୍ରାଣ ତାର ଗଲା
ଆର ଶାର୍ଦ୍ଦୁଳ ହନୁମନ୍ତକୁ ଧରିଲା ।
ଗଡ଼ା ଗଡ଼ି ପଡ଼ାପଡ଼ି ଭୂମିରେ ହୁଅନ୍ତି
ସେହି ବ୍ରହ୍ମାନନ୍ଦନ ଏ ପବନର ବର୍ତ୍ତି ।
ନଖ ମୁଖ ନାସିକା ଏଦାରେ ମହାବଳ
ରକ୍ତରେ ଜର୍ଜର ମାରୁତି ଶରୀର ।
ଦେଖିଣ ପବନ ସୁତ କ୍ରୋଧ ମନହେଲା
ଦୁଇ ଗୋଡ଼ଧରିକରିଫୋପାଡ଼ ବେଗେଦେଲା
ସୁବଳ ଗିରିରେ ପଡ଼ିଲା ବେଗେ ଯାଇ
ଯେଉଁଠାରେ ରଘୁନାଥ ଅଛନ୍ତି ଯେ ରହି ।
କୋଡ଼ିଏ ଉଡ଼ା ଗୁଡ଼ା ଶିଳାରେ ପଡ଼ିଲା
ପଡ଼ିବା ଠାବରେ ସେ ଯେ ପ୍ରାଣ ଛାଡ଼ିଗଲା ।
ତାଶ୍ୱରବିଦ୍ୟାଧରଆସିପଶ୍ଚିମଦ୍ୱାରେଶୋଭା
ଦୁଇ ଶାର୍ଦ୍ଦୁଳ ଦୁତି ରୂପ ଧରିଣହେଲେଉଭା
ବୋଇଲେ ହେ ଶ୍ରୀରାମ ଦୁତ ଆମ୍ଭବାଣୀ ଶୁଣ
ଯେତେବେଳେ ହେଲା ଏ ଯେ ଲଙ୍କାଗଡ଼ପୁଣ
ତେତେବେଳେ ହେମଗିରି ଉପରେ ବିଧାତା
ଜମ୍ବୁନଦ ସୁନାଆରେ ନିର୍ମାଣ କଲା ଧାତା ।
ପବନ ବଳରେ ଯେ ଆମ୍ଭଙ୍କୁ ଆଣିଲା
ଲଙ୍କାଗଡ଼ ପଶ୍ଚିମ ଦ୍ୱାରେ ସେ ରଖିଲା ।
ଜୀବନ୍ୟାସ ମନ୍ତ୍ରଦେଇ ଆମ୍ଭଙ୍କୁ କହିଲା
ବାସୁଦେବ ଜନ୍ମ ହେବେ ସୂର୍ଯ୍ୟବଂଶେ ପର ।
ଏଗଡ଼େ ଦୈତ୍ୟ ରାଜା ରାବଣ ଯେ ଥିବ
ତ ହାକୁ ମାରିବା ପାଇଁ ବଜପ୍ରେ ରାଘବ ।
ତେତେବେଳେ ତୁମ୍ଭେ ଦୁହେଁ ପାଇବକାରଣ
ତୁମ୍ଭଙ୍କୁ ମାରିବ ପୁଣି ପବନ ନନ୍ଦନ ।
ତେତେବେଳେ ତୁମ୍ଭେ ଦୁହେଁ ସ୍ୱର୍ଗପୁରୀ ଯିବ
ଦୁର୍ଗାର ବାହାନ ହୋଇ ନିଶ୍ଚିନ୍ତେ ରହିବ ।
ଏତେ କହି ବିଧାତା ସେଠାରୁ ଚଳଗଲେ
ଏବେ ମାଇଲୁ ଆମ୍ଭେ ଯିବୁ ସ୍ୱର୍ଗପୁରେ ।
ଏତେ କହି ଦୁଇଜଣ ରଥରେ ବସିଲେ
ଜୟ ଦୁର୍ଗା ପାଶକୁ ବହନ ଚଳଗଲେ ।
ଦେଖି ତାର ସପତଣି ନିଶ୍ଚିନ୍ତେ ରଖିଲା
ତାଙ୍କର ଉପରେ ବସି ସକଳ ଭ୍ରମିଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବବର
ଶ୍ରୀରାମଚନ୍ଦ୍ର ପାଖରେ ଯେ ପଡ଼ିଲା ଶାର୍ଦ୍ଦୁଳ
ଶ୍ରୀରାମ ଦେଖିକରି କସ ଯେ ବୋଇଲେ
ସେ କଥା ବୁଝାଇ ମୋତେ କହ ଭଲେ ।
ଈଶ୍ୱରବୋଇଲେହନୁଫୋପାଡ଼ଦେଲାବେଳେ
ଶାର୍ଦ୍ଦୁଳ ପଡ଼ିଲା ଯାଇ ଶ୍ରୀରାମ ପାଦତଳେ
ନୟନେ ଦେଖି ଶ୍ରୀରାମ ଜଂମେବ ପଚ୍ଛରି
ଏ କେବଣ କଥା ତୁମ୍ଭେ କହ ହେ ବସ୍ତିରି ।

ଜାମ୍ବବ ବୋଇଲେ ବିଭୀଷଣଙ୍କୁ ସତ୍ୱର
ଏହି କଥାମାନ ଅଟେ ତାହାଙ୍କୁ ଗୋଚର ।
ଶୁଣିଣ ଶ୍ରୀରାମ ବିଭୀଷଣଙ୍କୁ ପୁଚ୍ଛିଲେ
କରଯୋଡ଼ି ବିଭୀଷଣ ଆଗରେ ଉଭାହେଲେ
ବୋଇଲେ ଲଙ୍କାଗଡର ପଶ୍ଚିମ ଦ୍ୱାରେ ପୁଣ
ଏ ଶାର୍ଦ୍ଦୋଳକୁ ବଧାଇ ରକ୍ଷିଗଲା ଜାଣ ।
ଏହାଙ୍କର କାଳ ଆସି ପ୍ରବେଶ ହୋଇଲା
ପବନ ନନ୍ଦନ ସଙ୍ଗେ ଏହୁ ଯୁଦ୍ଧକଲା ।
ମାରୁତି ଚୋପାଡ଼ ଦେବାରୁ ପଡ଼ିଲା ଏଥିରେ
ପ୍ରାଣ ଛାଡ଼ି ଏହୁ ଯେ ଚଳେ ସ୍ୱର୍ଗପୁରେ ।
ଶୁଣିକରି ରଘୁନାଥ ସନ୍ତୋଷ ହୋଇଲେ
ପାବଞ୍ଚ ଶୁଣନ୍ତେ ତାଙ୍କ ମନ ସ୍ଥିର କଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଜସ୍ତି
ସୁବେଳ ଗିରି ଉପରେ ଶ୍ରୀରାମ ବଜେ କରି ।
ଚାରି ଭାଗ କରିଣ ବାଣ୍ଟିଲେ ସୈନ୍ୟବଳ
ତିନଭାଗ ଚଳିଗଲେ ତିନ ଯେ ଦ୍ୱାର ।
ପଶ୍ଚିମ ଦ୍ୱାରେ ସେ ଲାଗିଲେ ନଳଯାଇ
ପାଚେରି ପାଖେ କଳକଳା ରାବଦେଇ ।
ଶାର୍ଦ୍ଦୋଳକୁ ମାରିଦ୍ୱାରେ ମାଡ଼ି ବସେ ହନୁମନ୍ତ
କି ଅବା ସୃଷ୍ଟିର ହିଂସ୍ର କୃତାନ୍ତ ।
ତିନ ଦ୍ୱାରେ ଯହୁଁ ପୂରିଲେ ତାରବଳ
ସିଂହ ଘୋଷ କଣି ଶୁଭିଲା ମୁଖ ଗୋଳ ।
ସୁବେଳସ୍ଥ ଗିରିରେ ଅଛନ୍ତି ରଘୁସାଇଁ
ଆଜ୍ଞାଦେଲେ ସ୍ୱାମୀ ବିଭୀଷଣଙ୍କୁ ଯେ ପୁଛି ।
ଏବେ ଆମ୍ଭେ ଉତ୍ତର ଦ୍ୱାରକୁ ଚଳିଯିବା
ଥୋକାଏ ବଳ ସେ ଆଗରେ ବରଗିବା ।
ଏତେ ବୋଲି ସ୍ୱାମୀ ହୋଇଲେ ବେଗେ ସଜ
ଦମା ଦୁନ୍ଦୁଭି ଯେ ବଜାନ୍ତି ଶାରବାଦ୍ୟ ।
ସର୍ବାଙ୍ଗରେ ଶ୍ରୀରାମ କର୍ପୂର ହେଲେ ମାଖି
ସୁଷେଣ ବିଭୀଷଣ ଅଛନ୍ତି ଦୁହେଁ ସାଥି ।
ରାମଙ୍କ ପାଶେ ଲକ୍ଷ୍ମଣ ଆଣିଲେ ଯେ ପାଟ
ତାହାଙ୍କୁ ପୁଛିଣ କହେ ଦଶରଥ ସୁତ ।
କସ୍ତୁରୀର ଟିକା ଯେ କପୋଳେ ଶୋଭାଦିଶେ
ନିର୍ମଳ ଆକାଶରେ କି କଳାମେଘ ଦିଶେ ।
ଶିରରେ ନାନା ବନ୍ଧରେ ବାନ୍ଧିଛନ୍ତି ପାଟ
ସକଳ ସୈନ୍ୟ ଚଳିଁ ହୋଇଣ ମୁସଟ ।

ଜାନକୀର ଥିବା ଯେ ଅମଳାଣ ଶାଢ଼ୀ
କଟିପରେ ଶ୍ରୀରାମ ଯତ୍ନକରି ଭିଡ଼ି ।
କର୍ଣ୍ଣେ ତଂବା କୁଣ୍ଡଳ ରୁଦ୍ରାକ୍ଷର ମାଳ
ବାହୁ ମୂଳେ ଶୋଭେ ପୁଣି ବୃନ୍ଦଆ ମାଳ ।
ସୀତାର ମଣି ଗୋଟି ହୃଦରେ ଅଛି ପଡ଼ି
ବକ୍ଷ ସ୍ଥଳରେ ତାଙ୍କୁ ଯେ କରିଛନ୍ତି ମାଳି ।
ପ୍ରଭାତ କାଳରେ କି ସୂର୍ଯ୍ୟ ଉଇଁ ଆସେ
ବକ୍ଷୁରେ କଉସ୍ତୁଭ ପରାଏ ସେହୁ ଦିଶେ ।
ଶ୍ୟାମଳ ସୁନ୍ଦର ଅଟେ ମଧୁର ମୂରତି
ଅନନ୍ତକୋଟି ବ୍ରହ୍ମାଣ୍ଡରେ ସେହି ସେଅଧିପତି
ସଂଗ୍ରାମକୁ ସଜ ସେହୁ ବାମକରେ ଧନୁଧରି
ଦୁଇ କନ୍ଧରେ ଛନ୍ତି ସେ ଅକ୍ଷୟ ତୋଣଧରି
କଟୀରେ କମ ଦାଢ଼ ଉଡ଼ଇ ଗାଭ ନେତ
ଅଙ୍ଗ ଜାକ ଖଣ୍ଡା ଅଟଇ ସବୁ ଶ୍ୱେତ ।
ଶତ୍ରୁ ସାଧକ ଖଣ୍ଡାଧରି ଦର୍ଶିଣ କରେ
ଲକ୍ଷ୍ମଣଙ୍କ ସଜହେଲେ ସେହି ପରକାରେ ।
ଧୂମାକ୍ଷ ବଳମୁଖ କାଳମୁଖ ବୀର
ପବନ ନନ୍ଦନ ଯେ ମହେନ୍ଦ୍ର ମହାବୀର ।
ସୁନାସ ସୁସୋଦନ ଗବଏ ଗବାକ୍ଷ
ଜାମ୍ବବ ସପତବାଳି ସୁଷେଣ ତାରକ୍ଷ ।
ଯେ ଯାହା ଅନୁରୂପରେ ହୋଇଲେ କାଛେଣି
କାହା ଶିରେ ଟୋପର କାହା ଶିରେ ବେଣୀ
କେହୁ ପାଗ ବାନ୍ଧିଅଛି କେ ଖୋସିଅଛି ଖୋସା
କାହା କପାଳରେ ଅଛି ଚନ୍ଦନର ରେଖା ।
କେହୁ ରଙ୍ଗମାଟି କେ କସ୍ତୁରି ବିଲେପନ
କାହାର ହସ୍ତରେ ଶୋଭେ ସୁବର୍ଣ୍ଣ କଙ୍କଣ ।
କେ ପାଟ ପତନି ପିନ୍ଧେ କସ୍ତୁରୀର ଜାଲି
କେବଣ ବୀର ସର୍ବାଙ୍ଗେ ବୋଳିହୁଏ କାଳି ।
କୁନ୍ତଳ ବର୍ଣ୍ଣ କେହୁ ସତ୍ୱରଇ ପଗଡାନ୍ତି
କାଳ ଡ଼ଂବ ବସ୍ତ୍ର ବେଶରେ ନେଇବାନ୍ଧି ।
କାହାର ପିଠିରେ ଲଂବେ ଚୂଟ ବନ୍ଧ
କିଏ ସେ ଦାଢ଼ିପରେ ଲେପିଅଛି ଗନ୍ଧ ।
କେ ରାମରେ ରାମର ମଣ୍ଡି ଯେ ହୋଇଛି
କେହୁ ହୁଳହୁଳି ଦେଇ ଆଣ୍ଟରେ ଉଡ଼ୁଛି ।
କାହାର ଶ୍ରବଣରେ ଟେକ ହୋଇ ସୁନା
କାହାର କଣ୍ଠେ ମାଳ ମୁକ୍ତା ରଞ୍ଜନା ।

କାହାର ହାତରେ ଅଛି କଙ୍କଣ ପଟେ
କରତାଳ ମାରିଣ କରୁଛନ୍ତି ନାଟେ ।
କାହାର ନାସା ଯେ ଛତେ ଫରନ୍ଥଇ
ନାଭିମୂଳ ଯାଏ ତାର ଲଗିଅଛି ଥୋଡ଼ ।
ବିଭୀଷଣ ବୀର ଯେ ଅଇଲ ସଜହୋଇ
ତା ଶରୀରେ ରନ୍ନ ହୋଇଣ ଅଛି ଘୁଇ ।
ଶିରରେ ମଲ୍ଲି ଫୁଲ ବାନ୍ଧିଅଛି ଛନ୍ଦେ
ଇନ୍ଦ୍ର ଗୋବନ୍ଦ ପାଟେକ ବାନ୍ଧିଣ ଅଛି ବନ୍ଧେ
ମୁକ୍ତାର ପ୍ରାୟେକ ବିଶଇ ସୁସନ୍ଧି
ତଥିର ଉପରେ ଯେ ନେଇଅଛି ଛନ୍ଦ ।
କର୍ଣ୍ଣରେ କର୍ଣ୍ଣଫୁଲ ମୁକୁତା ସତେସରି
ନାନାବର୍ଣ୍ଣ ପଦକ ହୃଦରେ ଅଛି ଭରି ।
ସର୍ବାଙ୍ଗରେ କସ୍ତୁରୀ କପୋଳେ ଗୁରିଚତା
ଚନ୍ଦନବନ୍ଧେ ଖଞ୍ଜିଣି କରିଛି ପଇତା ।
ବାମକରେ ବୀରକେଙ୍କ ମାଣିକ୍ୟ ଝିବଂମାଳି
ନବରତ୍ନେ ଶୋଭେ କଟିରେ ମେଖଳି ।
ବାମକରେ ଯମଦାଢ଼ ଶ୍ୱେତ ଚାମର ଧରେ
ଶବଦ କରୁଅଛି କଙ୍କଣର ସେତେ ।
ବାହୁଟିର କମ ଯେ ଅଛି ଅନୁପମ
କି ଜାଣି ପଟାନ୍ତର ପୌର୍ଣ୍ଣମୀ ଚନ୍ଦ୍ର ।
ସଦାଶିବର ନେତ୍ର ଯେ ଶିରରେ ବୀରବାନ୍ଧି
ଦେବାଙ୍ଗ ପାଟେକ ଦୋହଡ଼ା କରି ଛନ୍ଦ ।
ଅଙ୍ଗୁଷ୍ଠିରେ ମୁଦି ନବରତ୍ନେ ଝଳି
ଚରଣେ ତୋଡ଼ର କି ମିଥୁନ ଝଳୁଳି ।
ନେପୁର ଯୁଗଳ ଚଳନ୍ତେ ଝମଝମ
ଦେଖିଣ ଶ୍ରୀରାମ ଯେ ହୋଇଲେ ଶ୍ରୀରାମ ।
ଧର୍ମକୁ ସୁମରିଣ ଘଟଙ୍କୁ ଓହ୍ଲାଇଲେ ରାମ
ମଙ୍ଗଳ ଆଳତି ନଂମେବ କଲେ ପୁଣ ।
ଗୋଚରନା ତତା ଯେ ସିନ୍ଦୂର ଟୋପିଅଙ୍ଗେ
କଲ୍ୟାଣ କଲେ ମନ୍ତ୍ରୀ ଯୋକଣ କୁରଙ୍ଗେ ।
ଆଗରେ ଦଧିମାଛ ପୂର୍ଣ୍ଣକୁମ୍ଭ ଶ୍ରୀଫଳ
କଦଳୀ ଗୁରିଗଛ ଆବର ସତେ ତାଳ ।
ଶ୍ୱେତ ପାରୁଆ ବନହଂସ ନାନାବର୍ଣ୍ଣେ ପକ୍ଷୀ
ଶ୍ରୀରାମ ଅନୁକୂଳ କଲେ ତାହା ଦେଖି ।
ସୁଷେଣ ତାରକ ଯେ ହେଲେ ଆଗୁଆଣି
ନାଗର ଟମକ ଘାଏ କମ୍ପଇ ଧରଣୀ ।

ଦମା ଦାଉଣ୍ଡୀ ଢୋଲ ବାଦ୍ୟ ଘୋର ରେଳ
ଝମ ତାଳ ତାଳ ଯନ୍ତ୍ର ବେଣୁ ବୀଣାସ୍ୱର ।
ଧୁମୁରା ଧୁମ୍ବୁ ଧୁମୁରା ଭେରୀ କଂସାଳ ମର୍ଦ୍ଦଳ
ମୃଦଙ୍ଗ ଶଙ୍ଖ ଭେରି ଶବଦ ବହଳ ।
ଢୋଲ ଦମାଲୁ ଘୁଙ୍ଗୁରୁ କୁଣ୍ଡଳ ଘଣ୍ଟି ପଡ଼ା
ଘୋସର ବଡ଼ କାଠ ଟୋପଡ଼ାଯୋଡ଼ାଯୋଡ଼ା
ମାଳବ ରାଗରେ ବଜାଇ ମହୁରି
ଶବଦ ସୁସ୍ୱରେ ଆକାଶ ପଥ ପୂରି ।
ଶ୍ରୀରାମ ଚଳନ୍ତେ ଚଳନ୍ତି ସଇନ
ଦଳ ଦଳ ହୋଇଣ କମ୍ପଇ ମେଦିନୀ ।
କି ଅବା ଆକାଶ କି ପଡ଼ିବ ଏହିକ୍ଷଣି
ରାସାନ୍ତକେ ପୃଥିବୀ ପଡ଼ିବ ମେଦିନୀ ।
ଦୃଷ୍ଟ କପି ବୀରେ ସୁବଳସ୍ୱାରେ ଥିଲେ
ହନୁମ ଗର୍ଭ କରିଣ ତଳକୁ ଓହ୍ଲାଇଲେ ।
ବୃକ୍ଷର ଉପରେ ଯେଉଁ କପି ବସିଥିଲେ
କେତେ ଶିଳା ଉପରୁ ଡେଇଁଣ ପଡ଼ିଲେ ।
କେତେ ରଙ୍ଗ ଦେଇଣ ହେଲେ ଆଗୁସାର
କେ ବୋଲନ୍ତି ଧର ଧର ଅସୁର ମାରିମାର
ଆଟେ ଚଳନ୍ତେ ଉଡ଼ିଲା ତୃଣ ଧୂଳି
ମୁଖ ରାବ ଶବଦରେ କୁରୁମ ଉଛୁଳି ।
ଗର୍ଜ୍ଜର ଶବଦରେ ନିଶାଣ ଟାଣ ବାଜେ
ବ୍ରହ୍ମାଣ୍ଡର ଯାତନା କି ଏହିକ୍ଷଣି ଭାଙ୍ଗେ ।
ଚୁଲ ଚୁଲ ଆସ ଆସ ଆଡ଼ ଆଡ଼ ଧାମ
ଯେ ଯାହା ସଙ୍ଗତରେ ବେଗେ ଧରି ନାମ
କି ଅବା ସଙ୍ଗରେ ବନ ପର୍ବତ ଚଳଇ
ହନୁମ ସିଂହ ପ୍ରାଏ ଯେ ଦିଶନ୍ତି ବେନିଭାଇ ।
ସେନାପତି ମାନେ ଯେ ମତ୍ତ ଗଜ ପ୍ରାଏ
ସ୍ୱର୍ଗେ ଉଷଭ ଯେ ହେଲେ ଦେବତାଏ ।
ବ୍ରହ୍ମା ସହିତରେ ଯେ ଶଚୀର ପ୍ରାଣନାଥ
କୁବେର ପାରୁଛି ଯେ ଅଗ୍ନି ନଇରୁତ ।
ରବିଚନ୍ଦ୍ର କୁବେର ଯମ ବୃହସ୍ପତି
ଦଣ୍ଡଧର ପାଳେ ଆନନ୍ଦେ ଦେଖନ୍ତି ।
ଗୁରମେଘ ଅଠର ଖଣ୍ଡ ଅଷ୍ଟବସୁ
ବସୁ ବସି ଦେବାଙ୍କୁ ଲଙ୍କାଗଡ଼ ଦିଶୁ ।
ନବଗ୍ରହ ସିଦ୍ଧ ଚାରେକ ମହାମୁନି
ସନକାଦି ଋଷି ଯେ ବ୍ରହ୍ମଜ୍ଞାନ ମୁନି ।

ବାର ଆଦିତ୍ୟ ଷୋଳ ଚନ୍ଦ୍ରମା ସହିତେ
ନବଗ୍ରହ ବରୁଣ ସପତ ମରୁତେ ।
ଗନ୍ଧର୍ବ କିନ୍ନର ଯେ ଯକ୍ଷଗଣ ମିଳି
ଅପସରା କିନ୍ନରୀ ମିଳି ବିଦ୍ୟାଧରୀ ।
ଏକାଦଶ ରୁଦ୍ର ସର୍ବେ ମରିଚ କଶ୍ୟପ
ଭୃଗୁ ଗାର୍ଗେବ ଯେ ସହିତେ ସୁର ନୃପ ।
ଧ ମଧାମ ଶବଦ ଶୁଭଇ ଚଉପାଶେ
ଶ୍ରୀରାମ ସମର ଦେଖିବାକୁ ସର୍ବେ ଆସେ ।
ତ୍ରୈଲୋକ୍ୟରଶତ୍ରୁ ନାଶ ହୋଇବନିଶ୍ଚେଜାଣ
ରଘୁନାଥ ପ୍ରସାଦରେ ହୋଇବ ଉଦ୍ଧାରଣ ।
ଏକକୁ ଆରେକ ରାଇଣ ବସନ୍ତି
ଶୂନ୍ୟରେ ଥାଇଣ ଶ୍ରୀରାମ ମୁଖକୁ ନିରେଖନ୍ତି
ଧନ୍ୟ ଧନ୍ୟ ଶ୍ରୀରାମ ହେ ଧନ୍ୟ ପୀତାଂବର
ସଂସାରର ବଇରିକି ବେଗକରି ମାର ।
ନୋହିଲେ ଯେ ସ୍ୱର୍ଗରେ ନପାରୁ ଦେବେରହି
ତୁମ୍ଭେ ନ ରଖିଲେ ଦେବ ଆନରେରକ୍ଷାନାହିଁ
ବିଶ୍ରବା ନନ୍ଦନ ଯେ ହେଲା ଆମ୍ଭ ଶତ୍ରୁ
ତୁମ୍ଭେ ଦେବ ନାରାୟଣ ଦେବତାଙ୍କର ହେତୁ
ଏ ବ୍ରହ୍ମାଣ୍ଡ ଯେ ଅଟେ ଖେଳ ଘର
ବାରେ ବାରେ ଉଦ୍ଧର ତୁମ୍ଭେଆମ୍ଭଙ୍କୁଚକ୍ରଧର
ବିଷମ ଶତ୍ରୁ ମାରିଣ ରୁହାଅ ତୁମ୍ଭ ଦାନା
ଦେବତାଏ ଡାକନ୍ତି ରଖ ଦେବ କନା ।
ଆକୁଳେ ଦେବତାଏ ବହୁ ସ୍ତୁତି କଲେ
ଶ୍ରୀରାମଙ୍କୁ ଦେଖିଣ ଚିନ୍ତା ହରାଇଲେ ।
ବହୁର ଆମ୍ଭେ ଅଛୁ ତୁମ୍ଭଙ୍କୁ ଆଶ୍ରେକରି
ବିଧାତାର କସ ବିସ୍ତରି ମନେ ଧରି ।
ଯଦ୍ୟପି ରାବଣ ଯେ ନୋହିବ ପ୍ରାଣେ ନାଶ
ନିଶ୍ଚୟେ ଦେବତାଏ ଛାଡ଼ିବୁ ସ୍ୱର୍ଗବାସ ।
ରାବଣ ଥିଲେ ଯେ ନ ପାରୁ ଦେବ ରହି
ରସାତଳେ ନିଶ୍ଚେ ପଡ଼ିବ ଏ ମହୀ ।
ସଚରାଚର ମହୀ ଦଇତ ଭାଙ୍ଗିଣ
ଯେବେ ରାମ ରାବଣକୁ ନ ପାରିବେ ମାରିଣ ।
ଏସନକ ବୋଲିଣ ଭଜନ୍ତି ସୁର ଲୋକେ
ରମ୍ଭା ଅପସରା ବେଦନ କରି ଶୋକେ ।
ବସନ୍ତ ମେନକା ଉର୍ବଶୀ ତିଆରନ୍ତି
କହନ୍ତି ସଦାଶିବ ଶୁଣ ଗୋ ପାର୍ବତୀ ।

ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାୟେ
ଲଙ୍କାର ଉତ୍ତର ଦ୍ୱାରେ ସେ ଯାଇଣ ହୋଏ
ସୈନ୍ୟ ଘେନି ନିରନ୍ତରେ ପୂରିଲେ ପୁଣମହୀ
କେତେ ଦିନେ ସଞ୍ଚପି ପାରିବ ମୁଁ ଯେ କହି ।
ପାଚେରି ପାଖରେ ଯାଇ ଲାଗିଲେକ ବଳ
ଗଡ଼ ଦ୍ୱାରପାଖରେ ଯେ ପଡ଼ିଲା ଚହଳ ।
ଆପଣେ ଶ୍ରୀରାମ ଉତ୍ତର ଦ୍ୱାରେ ମିଳନ୍ତି
ବାମରେ ବିଭୀଷଣ ଦକ୍ଷିଣେ ଋକ୍ଷପତି ।
ଆଗରେ ତାରକ୍ଷ ସୁଷେଣ ବେନିବୀର
ପଛରେ ଲକ୍ଷ୍ମଣ ଯେ ସହୋଦର ତାର ।
ବୀର ମହାବୀର ମାନେ ଅଛନ୍ତି ବହୁତ
ଯୂଥପତିମାନେ ଅଛନ୍ତି ଅପ୍ରମିତ ।
ପୂର୍ବରେ ସୁଗ୍ରୀବର ଯେ ପଶ୍ଚିମେ ଅଙ୍ଗଦ
ଦକ୍ଷିଣେ ହନୁମନ୍ତ ଉତ୍ତରେ ରାମଚନ୍ଦ୍ର ।
ଏଥୁ ଅନନ୍ତରେ ଗୋ ଶୁଣ ଗୌରୀ ପୁଣି
ଉତ୍ତର ଦ୍ୱାରେ ଉଭା ଯେ ରଘୁକୁଳ ମଣି ।
ଦେଖିଲେ ଦ୍ୱାର ପାଖରେ ଦୁଇଗୋଟି ହସ୍ତୀ
ଧୂସର ଧୂସର ବର୍ଣ୍ଣ ସେ ଯେ ଶୁକ୍ଳବର୍ଣ୍ଣ ମୂର୍ତ୍ତି ।
ଶ୍ରୀରାମଙ୍କୁ ଦେଖିଣ ସେ କାୟା ବିସ୍ତାରିଲେ
ମେଘନାଦ ପାଚେରିର ସମାନ ହୋଇଲେ ।
ଦେଖି ଶ୍ରୀରାମ ବିଭୀଷଣଙ୍କୁ ପଚାରି
କମ୍ଭୁଜ କଥାଏ ଯେ କହ ହେ ବିସ୍ତରି ।
କରଯୋଡ଼ି ବିଭୀଷଣ କହଇ ବଚନ
ଶତେମୁଖା ବ୍ରହ୍ମା ଯେ ରଚିଲେ ଲଙ୍କାପୁଣ ।
ପୂର୍ବ ଦ୍ୱାରେ ସିଂହ ଦକ୍ଷିଣ ଦ୍ୱାରେ ଅଶ୍ୱ
ପଶ୍ଚିମଦ୍ୱାରେ ଶାର୍ଦ୍ଦୂଳଉତ୍ତରେହସ୍ତୀଦେଖ
ଏମାନଙ୍କୁ ବିଧାତା ଜୀବନ୍ୟାସ କଲା
ଦ୍ୱାରଦ୍ୱାରେ ଥୋଇଣ ପାଚେରୀ ବେଢ଼ାଇଲା ।
ବୋଇଲେ ଦୁଇସହସ୍ର ଛପନ ଯୁଗଯାଏ ଥିବ
ରାବଣ ମାରିବାକୁ ଶ୍ରୀରାମ ଆସିବ ।
ତେତେବେଳେ ତୁମ୍ଭ ରୂପ ପ୍ରକାଶିବ
ଶ୍ରୀରାମ ସୈନ୍ୟ ସଙ୍ଗେ ସମର କରିବ ।
ତେବେତୁମ୍ଭଙ୍କୁମାରିବେରାମସୈନ୍ୟଯେଯୁଦ୍ଧରେ
ମୃତ୍ୟୁପାଇ ତୁମ୍ଭେ ଆସିବ ସ୍ୱର୍ଗପୁରେ ।
ରାମ ବୋଇଲେ ରାବଣ ଛପନ ଯୁଗ ଭୋଗ
ଆଉ ଦୁଇ ସହସ୍ର ଯୁଗ କେତେ କଲା ଭୋଗ ।

ବିଭୀଷଣ ବୋଇଲା ଶୁଣିବା ରାମରାଏ
ସହସ୍ର ଯୁଗ ପର୍ଯ୍ୟନ୍ତ ଦେବତା ରାଜାହୋଏ ।
ଋଷିମାନେ ସହସ୍ର ଯୁଗ ଭୋଗ କଲେ
ସେଠାରୁ ଦୈତ୍ୟବଳ ଲଙ୍କାକୁ ଭୋଗହେଲେ
ଏବେ ତୁମ୍ଭେ ବିଜୟ କଲ ହେ ରାମରାଏ
ଏ ଦୁଇ ହସ୍ତୀକି ମାର ଦଶରଥ ପୋଏ ।
ଶୁଣିକରି ରାମଚନ୍ଦ୍ର ସୁଷେଣ ରାଇଲେ
ଚାରିଦ୍ୱାର ବୁଲି ଆସ ବୋଲିଣ ବୋଇଲେ ।
ପୂର୍ବଦ୍ୱାରେ ସିଂହ ଦକ୍ଷିଣ ଦ୍ୱାରେ ଅଶ୍ୱ
ପଶ୍ଚିମ ଦ୍ୱାରେ ଶାର୍ଦ୍ଧୋଳ ଅଛନ୍ତି ବିଶେଷ
ସୁଗ୍ରୀବ ହନୁମନ୍ତ ଅଙ୍ଗଦକୁ ପଚାରିବୁ
ସିଂହ ଅଶ୍ୱ ଶାର୍ଦ୍ଧୋଳ ମାଇଲେଟିକି ସବୁ ।
ତୁ ଅଇଲେ ଆମ୍ଭେ ହସ୍ତୀକି ମାରିବା ନିଷ୍ଟେ
ଶୁଣିଣ ସୁଷେଣ ଯେ ବେଗ ହୋଇଯାଏ ।
ପଶ୍ଚିମ ଦ୍ୱାରେ ଯାଇଁ ମିଳିଲେ ଦୂତ ବେଗେ
ହନୁମନ୍ତକୁ ବୋଇଲା ଶୁଣ ତୁ ସରାଗେ ।
ଏଦ୍ୱାରେ ଦ୍ୱାରୀ କିଏ ଥିଲା ପୁଣ ରହି
ସେ ବୋଇଲେ ଶାର୍ଦ୍ଧୋଳ ଦୁଇଗୋଟି ରହି
ସୁଷେଣ ବୋଇଲେ ଯେ କେଣିକିଏବେଗଲେ
ହନୁମନ୍ତ ବୋଇଲେ ଆମ୍ଭର ହସ୍ତେ ମଲେ ।
ସୁଷେଣ ବୋଇଲେ ତାର ପିଣ୍ଡ ଅଛି କାହିଁ
ହନୁମନ୍ତ ବୋଇଲା ଦେଲି ମୁଁ ଫୋପଡ଼ାଇ ।
ମୋହର ସଙ୍ଗତରେ ବିରଡ଼ ଯୁଦ୍ଧକଲା
ଫୋପାଡ଼ି ଦିଅନ୍ତେ ସିନ୍ଧୁ ମଧ୍ୟରେ ପଡ଼ିଲା ।
ଆରେକକୁ ଫୋପଡ଼ାଇ ଦେଲି ଆଣ୍ଟିକରି
ସୁବେଳ ଗିରିରେ ପଡ଼ିଲା ଶବ ତାହାରି
ଶୁଣିଣ ସୁଷେଣ ଯେ ସେଠାରୁ ଚଳିଗଲା
ଦକ୍ଷିଣ ଦ୍ୱାରେ ଯାଇଁ ତୁରିତେ ମିଳିଲା ।
ଅଙ୍ଗଦ ବୋଇଲା ଯେ ଦୁଇ ଅଶ୍ୱ ଥିଲେ
ମୋହ ସଙ୍ଗେ ଯୁଝନ୍ତେ ସେ ପ୍ରାଣ ନ ପାଇଲେ
ସୁଷେଣ ବୋଇଲେ ଯେ ପିଣ୍ଡ ତାର କାହିଁ
ଅଙ୍ଗଦ ବୋଇଲା ଦେଖ ତୁ ରେ ଭାଇ ।
ଦେଖିଲା ସୁଷେଣ ପଡ଼ିଅଛନ୍ତି ଅଶ୍ୱ ବେନି
ହଲଦୀବର୍ଣ୍ଣ ଦିଶନ୍ତି ସୁନାକୁତ ଜିଣି ।
ସେଠାରୁ ସୁଷେଣ ବହନ ଚଳିଗଲା
ପୂର୍ବ ଦ୍ୱାରରେ ଯାଇ ସେ ପ୍ରବେଶ ହୋଇଲା

ସୁଗ୍ରୀବର ପାଶରେ ଓଳଗ ମେଲଇଲା
ବୋଇଲା ଶୁଣ ଦେବ ଖଡ଼ଗର ବଳା ।
ଏ ଦ୍ୱାରକୁ ତୁମ୍ଭେ ଯେ ଅଇଲ ସୈନ୍ୟସେନ
ଏ ଦ୍ୱାରେ ଦ୍ୱାରୀ କିଏ ଥିଲା କେତୁ ପୁଣି ।
ସୁଗ୍ରୀବର ବୋଇଲେ ଋକ୍ଷସିଂହ ଦୁଇ
ଏ ଦ୍ୱାରେ ଥିଲେ ସେ ଦ୍ୱାରପାଳ ହୋଇ ।
ମୋହର ସଙ୍ଗରେ ଯୁଦ୍ଧ ସେତୁ କଲେ
କର୍ମର ଅବଳେ ସେ ପ୍ରାଣ ହରାଇଲେ ।
ସୁଷେଣ ବୋଇଲା ତାଙ୍କ ପିଣ୍ଡ କିସ କଲ
ସୁଗ୍ରୀବର ବୋଇଲା ପଡ଼ିଛି ଦେଖ ସାର ।
ସୁଷେଣ ଦେଖିକରି ବେଗେ ଚଳିଗଲା
ଉତ୍ତର ଦ୍ୱାରେ ଯାଇ ପ୍ରବେଶ ହୋଇଲା ।
ଶ୍ରୀରାମକୁ ଦେଖିଣ ସେ ଗଡ଼ବାଳି ଶୋଇ
ଚାରିଦ୍ୱାରେ ବୁଲିଣ ଆସିଲି ଦେବ ମୁହିଁ ।
ପଶ୍ଚିମ ଦ୍ୱାର ଶାର୍ଦ୍ଧୋଳ ମାଇଲା ହନୁମନ୍ତ
ଅଙ୍ଗଦ ମାଇଲା ଦକ୍ଷିଣ ଦ୍ୱାର ଅଶ୍ୱ ।
ସିଂହ ଦ୍ୱାର ସିଂହ ସେ କପିରାଜା ମାରି
ସବୁ ଦେଖିଣ ଦେବ ଅଇଲି ମୁହିଁ ଫେରି ।
ଶୁଣିଣ ଶ୍ରୀରାମଚନ୍ଦ୍ର ସନ୍ତୋଷ ହୋଇଲେ
ସୁଷେଣ ଜମ୍ବେବକୁ ହକାରି ବୋଇଲେ ।
ମାର ହସ୍ତୀ ଦୁଇଜଣ ତୁମ୍ଭେ ଏ ପାପୀ କାୟା
ଯେ ବଢ଼ାଇଛନ୍ତି ଉଙ୍ଗେ ତାଙ୍କର ଏ ମାୟା ।
ଶୁଣିକରି ଦୁଇଜଣ ଦୁଇହସ୍ତୀ ଧରି
ମେଘ ଗର୍ଜ୍ଜନ ପ୍ରାୟେ ଶବଦ ତାଙ୍କରି ।
ଦୁଇଜଣ ଯାଇଣ ଧରିଲେ ଦନ୍ତବେଗେ
ଶୂନ୍ୟରେ ଟେକି ହସ୍ତୀ ଗମନ କଲେ ବେଗେ
ସମୁଦ୍ର କୂଳକୁ ଯେ ଲଙ୍କାଗଡ଼ ପୁଣ
ଯୁଣେକ ଗ୍ରହଣ ରହିଛି ପୁଣ ଜାଣ ।
ତ୍ରିଶକୋଶ ବାଟ ଯେ ଶୂନ୍ୟରେ ଘେନଗଲେ
ସମୁଦ୍ର କୂଳେ ଯାଇ ପ୍ରବେଶ ହୋଇଲେ ।
ଦେଖିଣ ଜଂମେବ ସୁଷେଣ ବିଚାରନ୍ତି
ହସ୍ତୀକି ଆମ୍ଭେ ଯେ କେନ ମାରିବା ଏଥି ।
ଯେବେ ହସ୍ତୀ ଆମ୍ଭଙ୍କୁ ସମୁଦ୍ରେ ପକାଇବେ
ଶ୍ରୀରାମ ଲକ୍ଷ୍ମଣ ନିନ୍ଦନ ମଣିବେ ।
ଏତେ ବିଚାରି ଦୁହେଁ ଗ୍ରହିଲେ ଦୁଇଦନ୍ତ
ଦୁଇବାର ଉଳକୁ ଯେ ଓଢ଼ଇଲେ ତୁରିତ ।

ଦୁର୍ମ୍ମୁଖଙ୍କର ଗୋଡ଼ ଯେ ଧଇଲେ ଦୋହେଁପୁଣ
ଗୋଡ଼ ଓଟାରିଣ ନ ପାରିଲେ ହସ୍ତୀ ଜାଣ ।
କନ୍ଧରେ ଗୋଡ ଦେଇଣ ଦନ୍ତ ଉପାଡ଼ିଲେ
ସେହି ଦନ୍ତରେ ସେହି ହସ୍ତୀକି ମାଇଲେ ।
ପ୍ରାଣ ଛାଡ଼ିଗଲା ରହିଲା ପିଣ୍ଡ ପଡ଼ି
ଗର୍ଜ୍ଜନର ଘାଏ ଯେ ଲଙ୍କାଗଡ଼ ପୂରି ।
ସ୍ୱର୍ଗରୁ ବିମାନ ଆସିଲା ତତକ୍ଷଣ
ବିମାନରେ ଉପରେ ବସିଲେ ବେନିଜନ ।
ରାମ ଲକ୍ଷ୍ମଣଙ୍କୁ ନମସ୍କାର କଲେ
ସୁଷେଣ ଜଂମେବ ଯେ ତାହାଙ୍କୁ ପଚ୍ଛରିଲେ
ବୋଇଲେ ତୁମ୍ଭେ ଦୁଇଜଣ ଅଟ କିସ
କାହିଁପାଇଁ ଲଙ୍କାଦ୍ୱାରେ କରିଥିଲ ବାସ ।
ସେ ବୋଇଲେ ରାମଦୂତେ ଶୁଣ ମୋ ବଚନ
ଶତେମୁଖା ବିଧାତା ରଚିଲା ଲଙ୍କା ପୁଣ ।
ଆମ୍ଭଙ୍କୁ ରଖିଗଲା ଦ୍ୱାରରେ ତୁମ୍ଭେ ଜାଣ
ବୋଇଲା ରାମ ଆସିବେ ମୃତ୍ୟୁ ହେବ ଜାଣ ।
ରାମ କହିବାରେ ପୃଥପତିଙ୍କ ହସ୍ତେପ୍ରାଣଦେବ
ତେବେ ତୁମ୍ଭେ ସ୍ୱର୍ଗପୁରକୁ ଚଳିଯିବ ।
ଜଂମେବ ବୋଇଲେ ତୁମ୍ଭେ କେଉଁଠାରୁ ଆଣ
ନାଭବଳ ବୋଇଲେ ଇନ୍ଦ୍ରର କଥା ଶୁଣ ।
ଐରାବତ ପର୍ବତେ ପାଷାଣ ରୂପେ ଥିଲୁ
ବ୍ରହ୍ମା ଯେଉଁସ୍ଥାନେ ଥିଲେ ସେ ସ୍ଥାନକୁ ଗଲୁ
ବିଶ୍ୱକର୍ମା ଡ଼କାଇ ଆମ୍ଭଙ୍କୁ ନିର୍ମ୍ମିକଲା
ଜୀବନ୍ୟାସ କରିଣ ସେ ସଙ୍ଗରେ ଆଣିଲା ।
ଲଙ୍କାର ଉତ୍ତର ଦ୍ୱାରେ ଆମ୍ଭଙ୍କୁ ରଖିଥିଲା
ସ୍ୱର୍ଗକୁ ଯିବାର ଯେ ସଙ୍କେତ କହିଲା ।
ଏତେ କହି କରି ସେ ଗଲେ ସ୍ୱର୍ଗପୁର
ଐରାବତ ସଙ୍ଗରେ ହେଲେ ସେହୁ ମେଳ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଗୋ ଈଶ୍ୱର
ସ୍ଥିର ତଥା ଯେହୁ ଶୁଣେ ମୁକ୍ତ କର୍ଣ୍ଣଦ୍ୱାର ।
ସେଠାରୁ ଶ୍ରୀରାମ କି କଲେ କହ ପୁଣି
ଈଶ୍ୱର ବୋଇଲେ ଶୁଣ ଗୋ ସଙ୍ଗାତୁଣି ।
ଶ୍ରୀରାମଚନ୍ଦ୍ର ସୈନ୍ୟ ବେଢ଼ାଏ ଚଉକତି
ଭିତରେ ଥାଇ ତାହା ଜାଣିଲା ଲଙ୍କପତି ।
ଏହି ସମୟରେ ସ୍ଥିର ଯାଇ କହି
ଶୁଣ ଦେବ ଦଶଗ୍ରୀବ ତ୍ରୈଲୋକ୍ୟର ସାଇଁ ।

ପୂର୍ବଦ୍ୱାରେ ସୁଗ୍ରୀବର ଦକ୍ଷିଣେ ଅଙ୍ଗଦ
ପଶ୍ଚିମରେ ହନୁମନ୍ତ ଉତ୍ତରେ ରାମଚନ୍ଦ୍ର ।
ରାମ ଆଜ୍ଞାଦେବାରୁ ରହିସିଂହ ମାରି
ରହି ଅଶ୍ୱ ଦୁର୍ମୁଖଙ୍କ ଅଙ୍ଗଦ ନାଶ କରି ।
ପଶ୍ଚିମ ଦ୍ୱାରେ ଶାର୍ଦ୍ଦୋଳ ମାଇଲେ ହନୁମନ୍ତ
ଉତ୍ତର ଦ୍ୱାରେ ହସ୍ତୀକି ମାରିଏ ରଘୁନାଥ ।
ଶୁଣିକରି ରାବଣ ମନରେ ଚିନ୍ତାକଲା
ବିଧାତା ବାମ ହେଲା ମନରେ ବିଚାରିଲା ।
ମନେ ବିଚାରିଲା ଗଲା ଯେ ମୋର ଶିର
ଶ୍ରୀରାମ ଅଟନ୍ତି ପ୍ରତ୍ୟକ୍ଷେ ଦେବହରି ।
ପରମ ଲକ୍ଷ୍ମୀ ଅଟନ୍ତି ଜନକ ଦୁହିତା
ମୋହର ପାଇଁ ଜାତ କଲା ଯେ ବିଧାତା ।
ଯହିଁ ମୁଁ ଦେବତାଙ୍କୁ ଅନେକ କଷ୍ଟ ଦେଲି
ଋଷି ବିପ୍ରଙ୍କ ଠାରେ ଦ୍ରୋହ ମୁଁ ଅର୍ଜ୍ଜିଲି ।
ସୀତାଙ୍କୁ ହରି ଆଣିଲି କାମରେ ବଶ ହୋଇ
ତାହାଙ୍କୁ ଭୋଗକରି ନ ପାରିଲି ମୁହିଁ ।
ଏବେ ତ ସଂଗ୍ରାମ ନିକଟ ଆସି ହୋଏ
କେଉଁଣ ବୁଦ୍ଧି ମୁଁ କରିବ ଉପାୟେ ।
ଯଦ୍ୟପି ଶ୍ରୀରାମ କରିବେ ମୋତେ ହତ
ଜାନକୀଙ୍କ ସଙ୍ଗରେ ନୋହିଲି ମୁଁ ଗତାଗତ ।
ମରିବଇଁ ଯେବେ ମୁହିଁ ହରିବଇଁ ସୀତା
ଦୁଇ କୁଳକୁ ଏବେ ହୋଇଲି ନିରାଶତା ।
ଏତେ ବୋଲି ବିସ୍ମୟେ ହୋଇଣ ବସିଲି
ଭଲଚିନ୍ତି ବୁଦ୍ଧି ଏକ ପାଇଲା ଦଶଶିର ।
ବୋଇଲା ଅନ୍ୟ ମାର୍ଗରେ ନୁହେଁ ତାକୁ ହରି
ସାକ୍ଷାତରେ ଲକ୍ଷ୍ମୀ ସେହି ଜନକ କୁମାରୀ ।
ଆନପ୍ରକାରେ ତାରି ନ ବଳଇ ମତି
ବୋଲିବ ଆଜ ତୋର ନାଶଗଲା ପତି ।
ରାମ ଲକ୍ଷ୍ମଣ ସହିତେ ସେନାବି ବେନିଶିର
କୋଦଣ୍ଡ ଧନୁରେ ତାକୁ ମାରଇଥିବ ଶର ।
ତେବେ ଅବା ପ୍ରତେ ସେ କରିବ ସ୍ନେହ ମୁହିଁ
ଆନପ୍ରାୟେ ଭୋଗ ମୁଁ କରି ନ ପାରଇ ।
ଏସନକ କଥା ଯେ ବିଚାରିଣ ରାବଣ
ଦୈତ୍ୟ ଦୁଇ ଗୋଟିକି ହାଣିଲା ତତକ୍ଷଣ ।
ଦୁଇ ମୁଣ୍ଡ ସେହିକ୍ଷଣି ମାୟା ଉଆଇଲା
ରାମ ଲକ୍ଷ୍ମଣ ମୁଣ୍ଡ ସଞ୍ଜାତ ହରିଲା ।

ବିଦ୍ୟୁଜ୍ଜିହ୍ୱା ବୋଲନ୍ତି ସେ ଏକଇ ଦେବ୍ଭୃତା
ତାହାଙ୍କୁ ବୋଇଲା ତୁହ୍ମ ମୁଣ୍ଡ ଘେନତ ।
ଆପଣାର ଧନୁ ଯେ ମାୟାରେ ଭିଆଇଲା
ଶ୍ରୀରାମର କୋଦଣ୍ଡ ପ୍ରାୟେକ ଦଶିଲା ।
ସୈନ୍ୟଙ୍କୁ ବୋଇଲା ଆରେ ଦ୍ୱାର ଜଗିଥାଅ
ଦ୍ୱାର ଗୁଡ଼ି ତୁମ୍ଭେରେ କେଣିକ ନ ଯାଅ ।
ଅଶୋକ ବଣିକରୁ ଆସଇ ଏତ୍ପକ୍ଷଣି
ଏତେ କହି ବେଗେଯେ ଚଳେ ବଂଶପାଣି ।
ମଧୁବନରେ ଯାଇ ସେ ହେଲା ପରବେଶ
ଝାଳ ଝିମି ଝିମି ବହେ ଖର ନିଃଶ୍ୱାସ ।
ରାମ ଲକ୍ଷ୍ମଣଙ୍କର ଘେନଣ ଦେନଶିର
କୋଦଣ୍ଡ ଧନୁରେ ତ ବୁ କରାଇଣ ଭାର ।
ଅଶୋକ ବଣିକରେ ପଶିଲା ବେଗେ ଯାଇ
ଜଗଣ୍ଠର ଉପରେ ଅଛନ୍ତି ସୀତା ଶୋଇ ।
ସହସ୍ରେ ଅସୁରୀ ଯେ ଦୁଅନ୍ତି କଥାମାନ
ଏସନକ ସମୟରେ ମିଳିଲା ରାବଣ ।
ବିଜଟା କହିବାରୁ ଉଠିଲା ଜାନକୀ
ଶିର ନୁଆଁଇଣ ବସିଲେ ମହାସତୀ ।
ବିଜଟା ସହିତେ ଯେ ଉଠିଲେ ରାକ୍ଷସୀ
ଶିରେ କର ଦେଇଣ ଉଭା ସେ ତତକ୍ଷଣି ।
ଦୈତ୍ୟର ହାତରୁ ମୁଣ୍ଡ ନେଲା ଦଶଶିର
ଭୂମିରେ ଥୋଇଣ କହେ ଧୀର କର ।
ଶୁଣ ତୁ ଶଶୀମୁଖି ଗୋ ଜନକ ଦୋହିତା
ସିନ୍ଧୁ ପାରି ହୋଇଣ ଅଇଲେ ତୋର ଭର୍ତ୍ତା ।
କାଲି ଆସି ସୁବଳ ଗିରିରେ ପ୍ରବେଶ
ମୁହିଁ ଆଜ୍ଞାଦେଲି ମୋ ପୁତ୍ରଙ୍କୁ କଲା ନାଶ ।
ଇନ୍ଦ୍ରଜିତ କୁମର ଅଟଇ ମୋର ସାର
କୁପାଣ୍ଟରେ ମାଇଲା ତୋ ସ୍ୱାମୀ ବିଅର ।
ଦେଖ ସଖି ଏବେ ରାମ ଲକ୍ଷ୍ମଣଙ୍କର ମୁଣ୍ଡ
ଆବର ଦେଖ ତୋର ସ୍ୱାମୀର କୋଦଣ୍ଡ ।
ଏବେ ପ୍ରତେ ଗଲୁଟି ଶୁଦ୍ଧ ସୁବର୍ଣ୍ଣ ଗାତ୍ରୀ
ଦୁଃଖସି ମାଜଣା ଗୋ ଶରଦ ପଦ୍ମନେତ୍ରୀ ।
ଶ୍ରୀରାମ ଲକ୍ଷ୍ମଣ ଯେ ମାନବ ଶରୀର
ଆମ୍ଭେ ଦୈତ୍ୟମାନେ ଅଟୁ ମହାବୀର ।
ଦେବତା ଏ ଭୟକରି ସେବାକଲେ ମୋତେ
ଏକାଙ୍ଗ କ୍ଷତ୍ରୀ ମୁ ହୋ ଅଟଇ ଯୁଗତେ ।

ସେ କାହିଁ ଜାଣିବେ ଯୁଦ୍ଧର କଥ ରୀତ
ଏ ରାମ ଉପର ବଂଶେ ଅରଣ୍ୟେକ ନୃପତି ।
ଭୟକରି ମୋତେ ସମାଦାନ ଦ୍ୟନ୍ତି
ଏ ରାମ ଲକ୍ଷ୍ମଣ ବ ଜୁଝ ନ ଜାଣେପ୍ରଣକଲୁ
ମୋତେ ଜଣିବ ବୋଲି ଧାଇଁ ସେ ଆସିଅଛୁ
ମୋହର ବଳବୀର୍ଯ୍ୟ ସେ ନ ଜାଣନ୍ତି ଭଲୁ ।
ଏବେ ପ୍ରାଣ ଦେଲା ସେ ଯେ ଧାନୁଜଙ୍କୁ ଘେନି
ସତ କହିବା ନିମନ୍ତେ ଅଇଲି ମୁ ଘେନ ।
ଭର୍ତ୍ତା ବିଅରଙ୍କୁ ତୁମ୍ଭେ ଭଲ କରି ଚିହ୍ନ
ଏବେ ଦୃଷ୍ଟି କରିଣ ହୁଅ ଗୋ ଏକମନ ।
ଦେଖ ଦେଖ ଦେବୀ ଗୋ ରୁଣ୍ଡ ସବ ଚିହ୍ନା
ଆଉ କାହିଁ ପାଇବୁ ତୋହର ନିଜ କାନ୍ତା ।
ଆଶା କଡ଼ାଇଲେ ଶରୀରକୁ ହେବ ରୋଗ
ମୋତେ ଘେନିଣ ଏବେ କର ବୈଭୋଗ ।
ଶ୍ରୀରାମ ମାନବ ଯେ ନ ଜଣେ ରତିରସ
ବୃଦ୍ଧି ନାହିଁ ପୁଣି ଯେ ଅଇଲା ବନଦେଶ ।
ମୁହିଁଟି ଦେବତା ପୁଣ ଏବେ ଧାଧିକଲି
ତଥିବ ଭୁବନରେ ନପତି ହୋଇଲି ।
ତୁ ମୋର ମନୋହାରୀ ହୃଅସିରେ ସତି
ମୋର ବହୁତ ଶ୍ରଦ୍ଧାରେ କରିଅଛୁ ଚକ୍ଷୁ ।
ଉଠ ଉଠ ସଖିରେ ନୁହସି ବିସ୍ମୟେ
ହରଷ କାଳରେ ସଖି ନୁହ ତୁ ବିସ୍ମୟେ ।
ମୁହିଁ ମହାରାଜା ଆଶା ତୋତେ କଲି
ତେରମା ସହେଲା ତୋତେ ହରିଣ ଆଣିଲି ।
ନିମା ତୁ ମଉନ ହୋଇଲୁ ବୃଦ୍ଧମୁହିଁ
ଭୋଗଭୁଞ୍ଜିବାର ବୟସ ଅଟଇତୋର ଏହି
ଦିବ୍ୟ ଅଳଙ୍କାର ବେଢ ଗୋ ଏବେକର
ସର୍ବସମ୍ପତ୍ତି ତୋ ହୋଇଲା ଏବେ ତୋର ।
କର୍ପୂର ତାମ୍ବୁଳ ଗୋ ମିଶାଇ ଏବେ ଭୁଞ୍ଜ
ମନ ଜାଣିମନୋହରିଗୋ ଯେମନ୍ତେ ଇଚ୍ଛାଭୁଞ୍ଜ ।
ତିନକୋଟି ପଞ୍ଚଶ ସହସ୍ର ମୋର ରାଣୀ
ଅନୁବ୍ରତେ ଖଟିଥିବେ ତୋ ଚରଣେ ପୁଣି ।
ଯେଉଁସବୁ ମାନେ ତୋ ବୋଲ ନ ମାନବେ
ତାହାଙ୍କୁ ମାରିବ ଗୋ ନିୟମ କଲି ଏବେ ।
ମୟଦୈତ୍ୟର ଦୁହିତା ଯେ ମନ୍ଦୋଦରୀ ସଙ୍ଗ
ସେ ମୋର ରମଣୀ ଯେ ଅଟେ ପ୍ରିୟବନ୍ତ ।

ଶଙ୍ଖାସୁର ଦୈତ୍ୟ ଯେ ପ୍ରତାପୀଶ୍ୱର ଥିଲା
ତାହାର ଦୁହିତା ଲୀଳାବତୀ ସତୀ ।
ସେହି ମୋର ଘରେ ହୋଇବ ପାଟରାଣୀ
ମଂସାସୁର ଦୈତ୍ୟ ଦୁହିତା ଅଛି ପୁଣି ।
କୁମ୍ଭ ନିକୁମ୍ଭ ନାମେଣ ବେନି ବୀର
ତାଙ୍କ ଦୁଇଝିଅ ଅଛନ୍ତି ମୋର ପୁର ।
ଜଳନ୍ଧର ତ୍ରିପୁର ଏ ସଂସାରେ ବଡ଼
ତାଙ୍କର ଦୁହିତାମାନେ ଅଛନ୍ତି ମୋର ପୁର
ନାରକା ସ୍ୱୟମ୍ଭର ଲବଣ ଗୋସିଂହ
ଏମାନଙ୍କ ଦୁହିତା ଅଛନ୍ତି ମୋର ସଙ୍ଗ ।
କଶ୍ୟପ ହିରଣ୍ୟ ବୈଲୋଚନ ବାଣାସୁର
ଏମାନଙ୍କ ଦୁହିତାଙ୍କୁ ହରି ଯେ ମୋହର ।
ମୋହ ମନ୍ତ୍ରେ ସଖିକଲୁ ଯେ ଅଚେତନ
ତୋତେଦେଖି ତାଙ୍କୁ ନକଲେ ମୋର ମନ ।
ଯନ୍ତର ସାରଥୀ ହୋଇ ଏତେକାଳ ଥିଲୁ
ଅରଣ୍ୟେ ବୁଲି ଯେତେ କଷ୍ଟରେ ବଞ୍ଚିଲୁ ।
ସୁଖ ଭୋଗ ରମଣ ନ ପାଇଲୁ ଲେଶ
ନଡ଼ପତ୍ରପ୍ରାୟେତୋରଶୁଖିଲ ଦିଶେ କେଶ ।
ମାଜଣା ନୋହିବାରୁ ଶରୀରେ ମିଳିଅଛି
ବସ୍ତ୍ରହୀନ ହେଲୁ ଗୋ କମଳଦଳ ନେତ୍ରୀ ।
ଅଳତାବିହୁନେ ତୋର ଚରଣଦିଶେ ଊଣ ।
କଜ୍ଜଳ ବିହୁନେ ଗୋ ନୟନ ଦିଶେ ସୋଣା
ଅଳକା ବିହୁନେ ଗୋ କପାଳ ଦିଶେ ଶୂନ୍ୟ
କାଚ ମଲ୍ଲିକଡ଼ୀ ନାହିଁ ତୋର ବେନିକର୍ଣ୍ଣ ।
ବାହାରେ ବାହୁଟି ଗୋବନ୍ଦ ମୁଦ ନାହିଁ
ହସ୍ତୁ ରତ୍ନଚୂଡ଼ି ଫୋପାଡ଼ି ଦେଲୁ ତୁହି ।
ଗୋଡ଼ରେ ନୂପୁର ଝୁଣ୍ଟିଆ ବଳା ନାହିଁ
ଏତେ ଭୂଷଣମାନ ମଣ୍ଡିଗୋ ହୁଅ ତୁହି ।
ଅମଳାଣ ଶାଢ଼ୀ ପିନ୍ଧ ବେଗେ ବେଶ ହୁଅ
ଭୁଜଙ୍ଗସୁଲବାକ୍ୟଂଆରେ ନଷ୍ଟହୋଇଗୁଅ
ଏବେ ସୁନ୍ଦରୀ ଗୋ ମୋହର ବୋଲକର
ଶ୍ରୀରାମ ଲକ୍ଷ୍ମଣଙ୍କୁ ମନରୁ ତୋର ପାଶୋର ।
ଯଦ୍ୟପି ଲୋଡ଼ିବୁ ପାଇବୁ ଆଉ କାହିଁ
ଏଜନ୍ମେତୋହରତାହାରଭେଟ ଆଉ ନାହିଁ
ପୂର୍ବକର୍ମ ଯୋଗେ ସେ ଭୁଞ୍ଜିଲା ଜଟାଧାରୀ
ରାକ୍ଷସଙ୍କର କରରେ ସେ ହୋଇଲା ସଂହାର ।

ଯେତେ ଧନକୁ ସେ ଆୟୁଷ ପାଇଥିଲା
ପୂର୍ବ କର୍ମ ଯୋଗେ ସେ ଭୋଗକରି ଗଲା ।
ପୂର୍ବ ତପ ଫଳେ ମୁଁ ହୋଇଥିଲି ଜନ୍ମ
ମୋ ହସ୍ତ ଧରନ୍ତି ସେହୁ ତାର ପୂର୍ବ ପୁଣ୍ୟ ।
ଏପୁରରେ ଠାକୁରାଣୀ ହୁଅଗୋ ଦେବୀସୀତା
ଏତେକାଳେ ସୁଖତୋତେଦେଲାଯେଣବିଧାତା
ଏ ବୟସରେ ତୋର ସୁଖ ଶିରୀ ହେଲା
ସାଧୁସାଧିବିଧାତାତୋତେଭଲ ଠାବ ଦେଲା
ଯେମନରେ ଇଚ୍ଛାତୋର ଭୁଞ୍ଜ ଏବେ ବାଳ
ଶୁଣି ଶୋକ କଲା ଯେ ଜନକ ଋଷି ଦୁଲାଳୀ
ଆଗରେ ଦେଖିଲା ଯେ ଶ୍ରୀରାମ ମୁଣ୍ଡଗୋଟି
ପୁଷ୍କରିଣୀ ଜଳରେ ଯେସନେ ପଦ୍ମ ଫୁଟି ।
ଲକ୍ଷ୍ମଣର ମୁଣ୍ଡ ଯେ ସୁବର୍ଣ୍ଣ ପଦ୍ମ ଜାଣି
ଦକ୍ଷିଣ ଉରପରେ ତାଡ଼ଇ ହସ୍ତବେନି ।
ମଲି ମଲି ବୋଲିଣ ଦେବୀ ସାଉଁଟଇ ଧୂଳି
ଆହା ପ୍ରାଣନାଥ ମୋର ପ୍ରାଣର ସଙ୍ଗାଳି ।
ଝର ଝର ଲୁହ ପଡ଼ୁଅଛି ତଳେ
ଦେଖିଣ ମହାସତୀ ରୋଦଇ ବିକଳେ ।
ଆହା ସ୍ୱାମୀ ମୋର ଯେ ପ୍ରାଣ ଅଟ ସାଇଁ
ତୋର ଚକ୍ଷୁ ମୋରଯେ ଆନ କେହି ନାହିଁ ।
ସୁଗନ୍ଧ ନାସିକା ତୋର ପଦ୍ମ ପୁଷ୍ପ ଜାଣି
ନୟନ ଯୁଗଳ ଯେ ଅଟେ ନୀଳମଣି ।
ଧନ୍ୟ ଧନ୍ୟ ରାଘବ ଅଟୁ ଯେ ଭ୍ରୂହ ଶ୍ରେଷ୍ଠ
ନାଗବନ୍ଧ ଛନ୍ଦେ ଅଟଇ ଗୁ ରୁପଟ ।
ସୁରଙ୍ଗ ଅଧର ତୋର କସ୍ତୁରୀରେଖ ଦାଢ଼ି
ଫଣିବର ନିଃଶ୍ୱାସ ପବନେ ଯେ ଉଡ଼ି ।
ଟେକ କୁଣ୍ଡଳ ତୋର ଶ୍ରବଣ ଯେ ଶୋଭେ
ଏଖଣ୍ଡକପୋଳ ତୋର ଜଗଜ୍ଜନ ମୋହେ ।
ଅଯୋଧ୍ୟା ରାଜ୍ୟ ଯେ ପଡ଼ିଲୁ ଏବେ ଛାଡ଼ି
ଚଉଦ ବରଷ ତୁ ବୁଲିଲୁ ବନମାଡ଼ି ।
ଏବେଯେଅସୁରଙ୍କର ହସ୍ତରେ ପ୍ରାଣଦେଲୁ
ମୋର ସ୍ନେହ ପାଇଁକି କାହିଁକି ଅଇଲୁ ।
ତୋହର ଜୀଇଥିଲେ କୋଟିଏ ନାରୀଛନ୍ତି
କିପାଇଁ ଅଜ୍ଞାନପଣ କଲ ହେ ରଘୁବୀର ।
ମୁହିଁ ବ୍ରହ୍ମକୃଣୀ ହୀନ ଯେ କର୍ମ କଲି
ନିୟମ କରାଇ ତୋତେ ସତ୍ୟ କରାଇଲି ।

ମୋହର ବଚନେ ଅନ୍ୟେ ନକରିବ ନାଶ
ସେଥିପାଇଁ ଗୋଡାଇ ଅଇଲୁ ରଘୁପାଶ ।
ମୁହିଁ ନିଲକ୍ଷଣୀ ପାପିଷ୍ଠ ଶୂଣ୍ଡାକୃଣୀ
ମୋତେ କମ୍ପା ଆଶା ବଢ଼ାଇଲ ରଘୁମଣି ।
ଅଯୋଧ୍ୟା ନଗରେ ତୋର ଅଛନ୍ତିବନ୍ଧୁଗଣ
ସେ ଆଶା ଗୁହ୍ଣ ସ୍ୱାମୀ ପଶିଲ ଆମାର୍ଗେଣ ।
ଦୈତ୍ୟଙ୍କର ମାୟା ଯେ ଜାଣି ନ ପାରିଲ
ବାଳକ ମାରିବାର ପ୍ରାୟେକ ଜାଣିଲ ।
ତୁ ଯେ ନାଶ ଗଲୁ ଧରଣୀର ନିମନ୍ତେ
ଲକ୍ଷ୍ମଣଙ୍କୁ ମରାଇଲୁ କେବଣ ନିମନ୍ତେ ।
ମୋହର ଗୁଣ ଘେନି ଅଇଲ ଯେ ଗୋଡାଇ
ଅକାରଣେ ସୁମିତ୍ରା ନନ୍ଦନ ନାଶଯାଇ ।
ରାବଣକୁ ଗୃହିଣ ବୋଲନ୍ତି ମହାସତୀ
ତୁହେ। ମହା ପାପିଷ୍ଠ ଅଟୁରେ ଲଙ୍କପତି ।
ପୁରୁଷହତ୍ୟା ବୋଲିଣତୋତେ ଯେସମ୍ଭାଳିଲ
ନୋହିଲେ କି ତୁରେ କରନ୍ତୁ ଏଡ଼େଭଳି ।
ଶ୍ରୀରାମ ତୋର ବଇରି ମାଇଲେ ମାଇଲୁ
ଲକ୍ଷ୍ମଣ କୁମରକୁ କମ୍ପାଇ ନାଶକଲୁ ।
ଏହାର ଗ୍ୟାନେ ତୋତେଦୋଷ କଲା ନାହିଁ
ଅକାରଣେ ଏହାକୁ ବଧିଲୁ କିସପାଇଁ ।
ଏହାର ଭାଇ ଯେ ଅଯୋଧ୍ୟାରେ ପୁଣ ଅଛି
ଭାଇ ମଲା ବୋଲିଣ ପାରିବ କରେ ମୂର୍ଚ୍ଛି ।
ତୋହର ଉପରକୁ ବାହିବ ଯମଦଣ୍ଡ
ଭୁଅହସ୍ତରେ ମଲେତୋ ଭରଯା ହେବ ରଣ୍ଡ
ଏ ଲଙ୍କା କଟକ ଅବଶ୍ୟ ବିଧ୍ୱଂସିବ
ଏହିକ୍ଷଣି ସୁଗ୍ରୀବରକୁ ଘେନିଣ ଆସିବ ।
ହନୁମନ୍ତ ଥିଲେ ତୋର ସରିବ ସବୁ ଶିରା
ବିଭୀଷଣର ତୁରେ ମୂଳ ଯେ ବଇରି ।
ସେ ତୋତେ ଉରନ୍ତି ନଚିନ୍ତନ୍ତି ଭଲ
ତାଙ୍କ ଯୋଗରୁ ତୁ ଯେ ମରିବୁ ଲଙ୍କମଲ୍ଲ ।
ଏବେ ବୋଲ କରରେ ଦଶଶିର ମୋର
ମାରି ଶ୍ରୀରାମ ଉପରେ ପକାଅମୋ ଶରୀର ।
ଶ୍ରୀରାମ ଯେ ପ୍ରାଣ ପଞ୍ଜରି ମୋର ଅଙ୍ଗ
ତୁଯେବେ ଅନିମିତରେ ଛାଡ଼ିଲୁ ମୋର ସଙ୍ଗ
ଆଉ ଥାଇ ପୁଣ କରିବ ମୁହିଁ କିସ
ଆଜହୁଁ ଅନ୍ଧାର ଯେ ଦିଶିଲା ଦଶଦିଶ ।

ସ୍ୱାମୀ ହତେ ମୁ ଯେ ନ ବଞ୍ଚିବି ବଂଶପାଣି
ଚନ୍ଦ୍ରହାସ ଖଡ୍ଗରେ ପକାଅ ମୋତେ ହାଣି ।
ସ୍ୱାମୀର ଶତ୍ରୁ ତୁରେ ମୋହର ବଇରି
ମୁ କମ୍ପା ନୟନେ ଦେଖିବି ତୋର ଶିରୀ ।
ସ୍ୱହସ୍ତରେ ବଧ ଯେ କଲୁରେ ମୋରପତି
ମୋତେ ଦେଖିବାର ନୁହଇ ଯୁକତି ।
ସ୍ୱାମୀମରିବାରୁ ମୁହିଁଯେ ବିଧବା ଏବେହେଲି
ପୂର୍ବରେ ମୁନିମାନଙ୍କର ବଚନ ଶୁଣିଥିଲି ।
ପିତା ଘରକୁ ମୋର ଆସନ୍ତି ଯେତେ ଯତି
ସେବୋଲନ୍ତିବିଧବାଗୋ ନୋହିବୁ ମହାସତୀ
ତାହାଙ୍କର ବଚନ ହୋଇଲା ଏବେ ମାୟା
ଏକାଗ୍ର କରି ଏବେ ଭୁଞ୍ଜିନୁ କୈକେୟୀ ।
ମନ୍ଥରା ବୋଲେ ସେ ଯେ ଏତେକ ଭିଆଇଲା
ତାହାର ପ୍ରସାଦେ ଏବେ ସ୍ୱାମୀମୋର ମଲା
ଗୁରୁଜନମାନଙ୍କୁ ମୁ କ ବୋଲି ବୋଲିବି
ମନ୍ଦ ହୋଇଲେତ ସ୍ୱାମୀକି ନ ପାଇବି ।
ଲକ୍ଷ୍ମଣ ମୁଣ୍ଡ ଗୃହିଁ ଦେବୀ ଯେ ପୁଣି କାନ୍ଦ
ଧିକ ଧିକ ବୋଲିଣ ବିଧାତାକୁ ନିନ୍ଦ ।
କମ୍ପାଇ ବିଧାତାରେ ଏତେ କର୍ମ କଲୁ
ସୁମିତ୍ରା ନନ୍ଦନକୁକୁ ଦୈତ୍ୟ କମ୍ପାଇମାଇଲୁ
ଶ୍ରୀରାମ ଯେ ତୋହର ଅଟେ ନା ବଇରି
ସେହିପାରିଲେତୋତେ ଯେପ୍ରାଣେଯାନ୍ତାମାରି
କେତେକେ ଧର୍ମ ତୋଠାରେ ନ ପଶଇ ମନ୍ଦ
ଏବେ କେତେକେ ପୁଣ୍ୟରେ ନକଲା ଦଶସ୍କନ୍ଧ
ପରର ଘରଣୀକି ଏବେ ଆଣିଲୁ ହେରାଇ
ମାୟା ଛନ୍ଦରେ ମୃଗ ଦେଲୁରେ ପଠାଇ ।
ଗୁମ୍ଫରେ ମନ ତାଙ୍କର ସମର ନ କଲୁ
ଅବିଶ୍ୱାସି ହୋଇ ତୁହି ପାତକ ଅର୍ଜିଲୁ ।
ଭଗ୍ରବାରୁଷିର ତୁ ଅଟୁରେ ତନୟେ
ବ୍ରହ୍ମପୁତ୍ର ବୋଲିଣ କଲି ମୁହିଁ ଭୟେ ।
ଯମଦଣ୍ଡ ଘେନିଣ ତୁ ନ କଲୁ ସମର
ଜାଣିଲି ଦୈତ୍ୟ ତୁରେ ଅଟୁରେ ନିଶାଚର
ଏତେ ବୋଲିଣ ଦେବୀ ରୋଦନ୍ତି ପୁଣିପୁଣି
ରାବଣ ବୋଇଲାଯେ ବଚନ ତାର ଶୁଣି ।
ଆବର ସୁନ୍ଦରିଗୋ ନକର ତୁହି ଶୋକ
କର୍ମ ଜଣନ୍ତା ନାହିଁଯେ ଏ ତିନ ଲୋକ୍ୟ

ଯେତେ କାଳ ସେହୁ ଆୟୁଷ ପାଇଥିଲ
କର୍ମାନୁସାରେ ଭୋଗକର ଯେ କହିଗଲ ।
ଆଜ ଲେଉଟିଲେ ତୁମେ ପାଇବୁ ଆଜକାହିଁ
ଏବେ ସ୍ନାନ ଭୋଜନ ବେଗ କର ଯାଇ ।
ବେଶ ବସନ ଗୋ ହୁଅ ତୁ ଉଲ୍ଲତ
ମୁହିଁ ଅଛୁ କାମରେ ଯେ ଭୋଳ ହୋଇମତ ।
ଏମନକ ସମୟରେ ପବନ ବେଗେ ଗଲ
ଜାନକୀର କର୍ଣ୍ଣରେ ଯାଇଣ କହିଲ ।
ବୋଇଲ ସତ୍ୟ କମ୍ପା ତୁ କରୁଛୁ କାରୁଣ୍ୟ
ରାବଣେଶ୍ୱର ମାୟା କରିଛି ତୋତେ ପୁଣ ।
ମାୟାରେ ଶ୍ରୀରାମ ଲକ୍ଷ୍ମଣ ବେନ ମୁଣ୍ଡ
ତୋତେ ଭେଟିବା ପାଇଁ ଆଣିଛି ଦଶକନ୍ଧ ।
ଏତେ କହି ପବନ ଯେ କହି କରିଗଲ
ଶୋକ ତେଜ ସୀତା କୋପଭର ହେଲ ।
ଅଗ୍ନି ପ୍ରାୟେକ ଜଳ ଉଠେ ତା ଶରୀର
ବୋଇଲ ରାବଣରେ ଅଟେ ଏ ମାୟା ତୋର
ସତର ଦିନରେ ତୋର କୁଳ କ୍ଷୟ ଯାଇ
ଦୁଇଭାଇଙ୍କର ଅଂଶ ଗୋଟିଏ ନ ରହଇ ।
ଅଠର ଦିନ ତୋ ଭରିଯାକୁ ଆନେଦେଇ
ଏ ଲଙ୍କାରେ ବିଭୀଷଣ ଯେ ରାଜାହେଇ ।
ଏତେ ବୋଲି ଦେବୀ କ୍ରୋଧରେ ଶାପଦେଲ
ଶୁଣିଣ ରାବଣ ଦେହୁ ଶିରୀ ଛାଡ଼ିଗଲ ।
ଏସନକ ସମୟରେ ଅଇଲ ପୁଣ ଚର
ଶୁଣ ଦେବ ରାବଣ ପ୍ରତାପି ଲଙ୍କେଶ୍ୱର ।
ଶ୍ରୀରାମଚନ୍ଦ୍ର ଯେ ସୁବଳୟାରେ ଥିଲେ
ଚାରି ଦ୍ୱାରକୁ ସେ ଯେ ସୈନ୍ୟ କରିଗଲେ ।
ପୂର୍ବରେ ସୁଗ୍ରୀବର ଯେ ପଶ୍ଚିମେ ମାରୁତି
ଅଙ୍ଗଦ ଆବୋରିଲ ଦକ୍ଷିଣ ଦ୍ୱାର କତି ।
ଆପଣେ ରଘୁନାଥ ଉତ୍ତର ଦ୍ୱାର ଅଛି
ସଙ୍ଗତରେ ସଖା ଯେ ସୁମିତ୍ରାର ବହି ।
ଭାଇ ବିଭୀଷଣ ତୋର ଅ ଇ ଆଗୁଆଣି
ସୈନ୍ୟ ଅପ୍ରମିତ ଯେ କେ ପାରିବ ଗଣି ।
ସହସ୍ର ପୁର କରିଣ ସୈନ୍ୟ ବଢ଼ିଛନ୍ତି
ପାଚେରି ଉପରେ ଯାଇଁ କପି ଯେ ରଡ଼ଦ୍ୟନ୍ତି
ଏହିକ୍ଷଣି ଗଡ ସେ ଯେ କରିବେ ଧୂମାନ୍ତ
ଅସଂଖ୍ୟ ସୈନ୍ୟ ଦେବ ଶ୍ରୀରାମଙ୍କ ଥାଟ ।

ନ କର ବିଳମ୍ବ ଦେବ ବେଗକର ଆସ
ହିରଛୁର ଘାଏ ଦେବ କମ୍ପେ ଦଶଦିଶ ।
ଆଜ ଦଣ୍ଡକରେ ଦେବ ଭାଙ୍ଗିବେ କଟକ
ନାରଖାର ହୋଇବ ଯେବେ ତୋହର ଲଙ୍କ
ଚରର ମୁଖରୁ ରାଜା ଏସନ ବାକ୍ୟ ଶୁଣି
ତାହା ଶୁଣି ସଂକୋଚ ତାକୁ ଲାଗିଲାକ ପୁଣି ।
ଜାଣ ଖଣ କଥା ଯେ ସୀତାଙ୍କୁ କହୁଥିଲ
ତାହା ଛାଡ଼ି ପୁଣ ଯେ ବାହୁଡ଼ିଣ ଗଲ ।
ମାୟା ଧନୁ ମାୟା ମୁଣ୍ଡ ସଙ୍ଗରେ ସେ ଆଣଇ
ତୋଠାଦ୍ୱାରେ ପକାଇ ନବରେ ପଶଇ ।
ଉତ୍ତର ଗଡଦ୍ୱାରେ ହେଲ ପରବେଶ
ଏଥୁ ଅନନ୍ତରେ ଶୁଣ ଗୋ ବିବ୍ୟରସ ।
ମାୟା ମୁଣ୍ଡ ଯେଉଁଣ ସୀତାଙ୍କୁ ଭଣ୍ଡୁଥିଲ
ଏସନ ସମୟରେ ଚର ବାର୍ତ୍ତା ନେଇଦେଲ ।
ସ୍ୱାମୀ ବାଣୀ ଶୁଣି ସୀତା ଆନନ୍ଦ ମନର
ଛନ୍ଦ ହୋଇଲ ପବନ ଦେବତା କହିବାର ।
ମୁଖ ବିକଶିଲ ଯେହ୍ନେ ପୂର୍ଣ୍ଣମୀର ଚନ୍ଦ୍ର
ସୀତଯା ବୋଇଲେ ନାଶ ଯିବ ଦଶ କନ୍ଧ ।
ତ୍ରିଜଟା ଜାନକୀ ତହିଁ ହେଲେ ଠାରା ଠାରି
ଏସନ ସମୟେ ବାହୁଡ଼ିଲେ ଦଶଶିର ।
ସୀତାର ସଙ୍ଗରେ ସେ ଅଟଇ ମିତଣୀ
ଅନେକ ବିଶ୍ୱାସ ତାକୁ ଯାଆନ୍ତି ରାଜରାଣୀ ।
ସେ ବୋଇଲେ ସଖିରେ ଶୁଣିଲୁଟିକି କଥା
ମ ୟାରେ ଫାନ୍ଦ ତୋତେ ଫାନ୍ଦିଲ ଦଶମଥା
ଅସୁରମାନଙ୍କ ମାୟା ନ ଜାଣୁଟିରେ ନାରୀ
ଏମନ୍ତ ବିଚ୍ଛେଦ ହାତେ କରନ୍ତି ସେହୁ ପାରି
ପ୍ରତ୍ୟକ୍ଷରେ ଆଣିଣ ଦେଖାଇଲ ଶିର
କନ୍ଧରୁ ତୁଟି ଗଳ ଯେ ପଡୁଛି ରୁଧିର ।
ତୁ ଦେଖି ସ୍ୱାମୀ ବିଅର ପ୍ରାୟେକ ମଣିଲୁ
ତେଣୁ ଗୋ ମହାସତ୍ୟ ଅନେକ ରୋଦିଲୁ ।
ଏବେ ତୁ ପ୍ରତ୍ୟକ୍ଷେ ଦେଖିଲୁ ସଙ୍ଗାତୁଣୀ
ଚରର କହିଲେ ଯେ ଏସନକ ବାଣୀ ।
ସ୍ୱାମୀ ବିଅର ତୋର ଗଡ଼ ବେଢ଼ିଛନ୍ତି
ଋକ୍ଷକପି ପାଚେରି ଡେଇଁଣ ପଶନ୍ତି ।
ଟମକ ନିଶାଣ ଗୋଳ ଶୁଭୁଅଛି ତହିଁ
ତାହା ଦେଖି ଚରର ଆସିଲା ବେଗେ ଧାଇଁ

ବାଉଚା ପାଇ ରାବଣ ହୋଇଲ ବଶାଦ
ସଭରେ ବାହୁଡ଼ିଣ ଗଲ୍ ଦଶକନ୍ଧ ।
ପାତେସାଙ୍କେରିଲେ ବୋଲି ବାହୁଡ଼ିଲେଧାଇଁ
ଶୁଣି ପରମ ସନ୍ତୋଷ ହେଲେ ମହାସାଇଁ ।
ପାତେସାଙ୍କେରିଲେବୋଲିଚଳଗଲେବେଗେ
ଅସୁରମାନେ ସକୁନ୍ଦନେଭଣ୍ଡନ୍ତିଏହିବାଗେ
ନୋହିଲେ ସୁବର୍ଣ୍ଣର ମୃଗ କାହିଁଅଛି
ଦଶମୁଣ୍ଡ ଲୁଚିଲ ତପସ୍ୱୀ ରୂପ ଗଛି ।
ଭିକ୍ଷା ମାଗି ଆସିଣ ବଳେ ଧରନେଇ
ଅସୁର ହୋଇଣ ନାନା ଉପାୟ ଜାଣଇ ।
ମାୟାବଳେ ଜାଣିକରି ହୋଇବ ପୁଣ କସ
କର୍ମକୁ ଜଣା ନାହିଁ ବ୍ରହ୍ମାଣ୍ଡ ବିଦଶ ।
ଯେବଣ କାଳେ ମୁଁ ସ୍ନେ ପିତାଙ୍କର ଥିଲି
ମୁନିମାନେ କହନ୍ତି ତାଙ୍କଠାରୁ ଶୁଣିଲି ।
ବୋଲନ୍ତି ଜାନକୀର ବଧବା ଯୋଗ ନାହିଁ
ଲକ୍ଷେକ ଲକ୍ଷଣ ଅଛି ଏହା ଡହିଁ ।
ସର୍ବଗୁଣେ ସୁଲକ୍ଷଣୀ ସମଦନ୍ତ ପନ୍ତି
ସୁରଙ୍ଗ ଅଧର ଅଟେ ସ୍ୱଚ୍ଛ ଶୁଭ୍ରକେଶୀ ।
ପଲ୍ଲବ ଶ୍ରବଣ ଶୀତଳ ମରୁତ
ସମତୁଲ୍ ଲଲାଟ ସୁତ କଳା ବୃତ ।
କୁମ୍ଭ କଣ୍ଠ ବୃଷାଳ ରୁଚିର ହୃଦୟ
ସୁଗାଢ଼ ନୟନ ଲାବଣ୍ୟ ରସମୟ ।
କମଳ ଲୋଚନ କଣ୍ଠ କଉସ୍ତୁଭ ରଜ
ଧ୍ରୁକର୍ମୀ ସୁବଳିତ ସୁରଙ୍ଗ ବେନିଭୁଜ ।
ବସ୍ତାର ବକ୍ଷସ୍ଥଳ କୋମଳ ଘନ ଗୋଟି
ଗମ୍ଭୀର ନାଭି ଯେ ସିଂହାସନ ପ୍ରାୟେକଟି ।
ଗଜକନ୍ଧ ରୁଚିର ଯୁଗଳ ସ୍ୱଚ୍ଛ ପିଠି
ଆରକ୍ତ ରସନା ଯେ ଉଲ୍ଲକ ଘର୍ଘ ଦୃଷ୍ଟି ।
ମଧ୍ୟରେ ରୋମାବଳୀ ତାଗପନ୍ତି ଜାଣି
ଉର ଜଙ୍ଘ ଜାନୁ ଯେ ପଦ୍ମଗର୍ଣ୍ଣି ଜାଣି ।
ବିପୁଳ ପୁଲକ ଯେ ମନ୍ଦମନ୍ଦ ଗତି
କର ପାଦ ତଳପା ଡାଳିମ୍ବ କଢ଼ି ଗୋଟି ।
ବହୁର ଅଙ୍ଗୁଷ୍ଠି ଯେ ଚମ୍ପାକଢ଼ି ଭଳି
ଯାଇ କୁସୁମ ପ୍ରାୟେ ନଖର ଯେ ବଉଳ ।
ପଦ୍ମର ଅଙ୍ଗୁଷ୍ଠି ଅଶୋକ କଢ଼ିସମ
ସେବନ୍ତି କଡ଼ିକ ଲକ୍ଷ ଅନୁପମ ।
ଅତି ପୃଥୁଳ ନୋହିବ ଅତି ଉଚ୍ଚ
ଆଗକୁ ଉଭିବ ଯେ ପଛକୁ ବଶେ ସଞ୍ଚ ।
ଅତି ଚଞ୍ଚଳନେ ହିବ ନୋହିବ ଶୀତଳଅତି
ଆବୃତ ଅଟଇ ଯେ ଜଅତ ପ୍ରକୃତ ।
ସୁଲକ୍ଷେଣ ଅଙ୍ଗ ଯେ କମ୍ପମାନ ନୋହେ
ସମସଞ୍ଚ କପୋଳକ ମନ୍ଦସ୍ମ ଜ୍ୟୋତି ସାହେ
ପାଦର ତଳପା କ ମାଣିକ୍ୟର ସ୍ଥଳ
ବାକ୍ୟ ସୁଲଳିତ କର୍ଣ୍ଣେସେ ପଶିଲ ।
କୁଚ ଅଗ୍ର ପର୍ଯ୍ୟନ୍ତ ଅପତ ଗୁ ସଙ୍ଗେ
ଲକ୍ଷେକ ସୁଲକ୍ଷଣ ଜାନକୀଦେହେ ସାଜେ ।
ଅଲକ୍ଷଣ ନ ବହଇ ଜନକୀ କମଳିଣି
ଗଡ଼ ଗଡ଼ ଶବଦ ଶୁଭଇ ଏହୁ ବଣୀ ।
କୁରଙ୍ଗ ଲୋଚନ ଯେ ନୁହଇ କାକର୍ଣ୍ଣି
ପିଙ୍ଗଳ କବେର ଯେ ନୁହଇ କୃଷ୍ଣଓର୍ଷ୍ଣି ।
ଉଲଟ ଡମ୍ବରୁ ତାର ଅଖଣ୍ଡିତ ଭୁଲତା
ମାନଚ୍ଛନ ବନାଶେ ବାସି ପୁତ୍ର ଜତା ।
ଅତି ଯେବେ ଉଚ୍ଚ ପୁଣ ଅଭ୍ରବର୍ତ୍ତ ଜାଣୁ
ଉଲ୍ଲେକ ରସନା ପୁଣି ପ୍ରସନ ହୋଏ ତେଣୁ
ଗଳାକୁ ଘସନ୍ଧ ଯେ ବଶିବ କଣ୍ଠମାଳ
ଏଣୁ ସ୍ୱାମୀ ଦେବର ଘାନନ୍ଧଅନ୍ତି ସେହୁକାଳ
କମଳ ଉରଜ କୁରଙ୍ଗ ଡହିଁ ଘନବାସେ
କଅବା ଉରଜ ଘାର୍ଘ ଟି ତେଣୁ ବଶେ ।
ଅତି ଖିନେ ରୂପେକ ଅନରୂପେ ବାହୁବେନି
ନଚର ବୃଷାଳ ଜାତି ଅଟେ ସେ ପଦ୍ମିନୀ ।
ଉତ୍ତମ ନିତମ୍ବ ଯୁଗଳ ପୁଲକ
ହରି ଅଭ୍ୟାସେ ନଅ ନାଶଇ ଯାମେଳକ ।
ନାଭିମୂଳେ ଅସ୍ତିରେ ବେଣୁ ଯାହାର ବଶେ
ଫୁଫୁକାର ଧ୍ୱନି ମୁଖର ଅଙ୍ଗ ସେ ।
ହୃଦର ସରଳ ଯେ ବାମ ହୃଦେ ପଡ଼ି
ଆଲୋକତ ଚମଦ୍ଧ ଅବଶ୍ୟ ଗୁଡ଼ପଡ଼ି ।
ଉରକୁ ଆଉଜଇ ନିତମ୍ବ ଯୁଗଳ ନାଳ
ଜାନୁ ଯୁଗଳକେଣ ନାସଇ ସ୍ୱାମୀକୁଳ ।
ଉଭା ହୋନ୍ତେ ବାମଚରଣ ତୁଳେ ନୋହେ
କନିଷ୍ଠ ଅଙ୍ଗୁଷ୍ଠି ଯେ ଭୂମିରେ ଉଭାହୋଏ ।
ନକ୍ଷତ୍ର ଦଶଇ ସିନ୍ଦୂର ଯେ ସାନ ଓଳି
ଦଶନର ମୂଳେ ଦଶଇ ଗୋରଚନା କଳ ।

ତାଙ୍କର ଉପରେ ଯେ କାକର ପାଦଚିହ୍ନ
ଊର୍ଦ୍ଧ୍ୱ କେଶର ଗତି କୁହନ୍ତି ପଣ୍ଡିତେ ଭିନ୍ନ
ବିଶାଳ ପିଠିରେ ତା ଅଧର ସରୁ ହୋଏ
ଅତିହିଁ ଦସ୍ୟାକୁ ସେ ଅତିହିଁ ଆଣ୍ଠ ଜୋଡ଼େ
ଦନ୍ତର ଦନ୍ତଣ ଅତି ଆହାନକଜ ହୁଅନ୍ତି
ଘର୍ଘ ହୋଇଣ ଅବାଜେ ପୃଥୁଳ ସେ ହୁଅନ୍ତି
ସ୍ଥୂଳନ୍ତେଣ ଚରଣ ପୂଟଇ ଉଡ଼ାଗ୍ରର
କାମେମା ଅକାମେନ ପୁରୁଷ ଖାନ୍ତି ନାରୀ ।
ଘାତଳ ଶରୀର ସେ ଯେ ପାତାଳ କବେର
ଚରଣ ଘାତ ବାଜେ ମେଦ୍ଧମାରେ ଯାହାର
ସ୍ନାହାନେ ଅପୀରତ ଅସ୍ନାହାନେ ତୋଷ
ଜାଣିବ ଯୁବତୀର ବିଧବା ହୋଏ ଦୋଷ ।
ଅତି ଲମ୍ବ କବେର ଅତି ଯେ ସ୍ଥୂଳ ବୁଦ୍ଧି
ଅଧିକ ବୁଦ୍ଧିବନ୍ତ ଅତିହିଁ କୁବୁଦ୍ଧି ।
ସୁବେଶ ଅସରଧା ମଳଣ ଯାର ଇଚ୍ଛା
ଦସ୍ୟାକୁ ପ୍ରତିଜ୍ଞାବନ୍ତ କୃପଣ ଯାର କକ୍ଷା ।
ଫଳ ପୁଷ୍ପଙ୍କର ନାମ ଯଦି ପୁଣି ହୋଇ
କଅବା ନାମ ତୋର ହୋଇବ ନାନା ନଈ
ପର୍ବତର ନାମ ଯାର ହୋଇବ ଯୁବତୀ
ଅବଶ୍ୟ ତାହାର ଯେ ନାଶ ହୋଏ ପତି ।
ଯଦି ବଡମ୍ବଣ ଅଶୋଭର ନାମ ହୋଇ
ଯେ ଯୁବତୀ ନଷ୍ଟସ୍ଥ ଅବଶ୍ୟ ଗୁରସ୍ତ ଖାଇ ।
ସର୍ବାଙ୍ଗରେ ରୋମାବଳ ପାଦ ଯେ କଟିତଟ
ଉଲତା ଯୁଗଳ ଯେବେ ଦିଗୁଣ ଥିବ ଶ୍ରେଷ୍ଠ
ତାକନ୍ତେ ଶୁଭଇ ଯେ ପୁରୁଷର ବାଣୀ
ସେ ବାମା ବିଧବା ହୋଇବ ବୋଲି ଜାଣି ।
ସୀତାର ଏତେ ତହିଁ ଅଲକ୍ଷଣ ନାହିଁ
ସର୍ବ ସୁଲକ୍ଷଣ ଅଛି ଯେ ଏହାର ତହିଁ ।
ଅପୂର୍ବ ସୁନ୍ଦରୀ ଏବେ ଅପାପୀ ଶରୀର
ଆବର କଥା ଏକ ଅଛଇ ଏହାର ।
ବାମକର ସ୍ଥଳରେ ଗୋ ଲକ୍ଷଣମାନ ଦେଖ
ମୃତ୍ୟୁ ନୋହିବ ଅପୂର୍ବ ଲକ୍ଷଣମାନ ରେଖ ।
ଏସନକ ବୋଲିଣ ବୋଲନ୍ତି ତପୀମାନେ
ତେଣୁ ସେସପ୍ରତେ ଯେ ନଯାଏ ମୋରମନେ
ସମାନ ବୁଦ୍ଧିକ ଦେଖିବା ଦୈତ୍ୟଙ୍କର
ମାୟାରେ ପରଲୋକ ଜାଣିଲି ସେ ଅସୁର

ଦଶରଥ ନନ୍ଦନ ଯେ ଅପାପୀ ମହାତମ
ଦେଖିକରି ଦର୍ପ ଯେ ଛାଡ଼ିଲେ ପର୍ଶୁରାମ ।
ମାରୀଚର ମାତା ତାଡକ ରାକ୍ଷସୁଣୀ
ବାଟେ ଯାଉଁ ଯାଉଁ ତାକୁ ଭେଟିଲେ ରଘୁମଣି
ଦୁଷ୍ଟପଣ ଦେଖିଣ ନାରକେ ମାଇଲେ
ସ୍ତ୍ରୀ ବୋଲି ତାକୁ ଯେ ଉପ୍ରୋଧ ନ କଲେ ।
ଇନ୍ଦ୍ର ଯେବଣ ଧନୁରେ ନପାରେ ଗୁଣଦେଇ
ସଂସାରଭିତରେ ଯେତେକ ଅଛନ୍ତି ଦେହବହି
ଦଶ ଦିଗପାଳ ଯେ କୁହନ୍ତି ଗର୍ଜନ
ଦେଖି ଗର୍ବ ଛାଡିଲି ସୁଧର୍ମା ଯେ ରାଜନ ।
ଆଠଶତ ବୀରହୋଇଯାହାକୁ ବୋହୁଥନ୍ତି
ଦେଖିକରି ବୀରମାନେ ଭୟଙ୍କରି ଯାନ୍ତି ।
ସେ ଧନୁ ରଘୁନାଥ ଭାଙ୍ଗି ଯେ ପକାଇଲେ
ବାର ବରଷ ଦିନେ ଏତେ କର୍ମ କଲେ ।
ବିଶ୍ୱାମିତ୍ରର ଯାଗ ଯେ ରଖିଲେ ପୁଣିହେଲେ
ଅନେକ ଦୈତ୍ୟବଳ ମାଇଲେ ଭୁଜବଳେ ।
ଶାପରେ ଅହଲ୍ୟା ଯେ ପାଷାଣ ହୋଇଥିଲି
ଶ୍ରୀରାମ ପାଦଲାଗି ନିଜ ଶରୀର ପାଇଲି ।
ପିତାସତ୍ୟ ପାଳଣ ବନରେ ବାସକଲେ
ଖର ଦୂଷଣ ତ୍ରିଶିରକୁ ଯମପୁରକୁ ପେଷିଲେ
କିଷ୍କିନ୍ଧ୍ୟା କଟକରେ ବାଳିକି ବଧକଲେ
ସୁଗ୍ରୀବ ରାଜ୍ୟଦେଇ ମାଲ୍ୟବନ୍ତରେ ରହିଲେ
ଏବେ ସିନ୍ଧୁ ବାନ୍ଧି ସୁବଳସ୍ୟା କଲେ ବିଜେ
ଋକ୍ଷ କପିଙ୍କର କୁଳେ ସୁଗ୍ରୀବର ରାଜେ ।
ଜାଣନା ହନୁମନ୍ତ ଯେତେକ କୃତ୍ୟକଲି
ଲଙ୍କାଗଡ ପୋଡ଼ିଣ ଅକ୍ଷୟ ସଂହାରିଲି ।
ଏକଥାମାନ କି ମନେ ତାର ନାହିଁ କିଛି
ଏଡ଼େ ଗଡ଼ ବେଢ଼ିଣ ଅଛନ୍ତି ରଘୁବଂଶୀ ।
ଡଗରର ମୁଖରୁ ସିଦ୍ଧ ବାରତା ଯେ ପାଇ
ତେବେ ସେ ବାହୁଡ଼ି ଗଲି ଲଙ୍କାଯାଇଁ ।
ଏବେ ସେ କଥା ଗୋ ପାଇଲି ପୁଣ ତହିଁ
ମୂର୍ଖ ରାବଣ କଥାରେ କର୍ମ ଅଛି ଦେହି ।
ଭଲେ କହିଲି ଗୋ ଟମକ ବାଜୁଅଛି
ଚଉକତି ଗଡରେ ବେଢ଼ିଲେ ରଘୁବଂଶୀ ।
ଏବେ ଜାଣିମା ନା କେହୁ ଉଚ୍ଚମାତ
ରାମ ରାବଣ ଯୁଦ୍ଧ ଦେଖିବ ପ୍ରତ୍ୟକ୍ଷ ।

ସଂଗ୍ରାମ ନକରିତରେ ତୁଳବା କେହ୍ନ ଗରୁ
ହାଣ ଅପଚଯ୍ୟେ ଯେ ଏହ୍ନଠାରୁ ସରୁ ।
ମୂର୍ଛି ଆଶା କରିଅଛୁ ଅଟଇ ବଡ଼ ଦୁଃଖ
ପ୍ରାଣ ମୋର ଯାଉ ଯେ ସ୍ୱାମୀର ଦୁଃଖଦେଖି
ତ୍ରିଜଟା ଶାନ୍ତରେ ଜାନକୀ ସଙ୍ଗେ କଥା
ବୋଇଲେ ଜାନକୀ ଗୋ ଶୁଣ ମୋର ମାତା
ଅସୁରଙ୍କର ମାୟା ଜାଣି ତୁ ନ ପାରୁ
ମିଛ କଥା ଦେଖିଲେ ରୋଦନ ତୁ କରୁ ।
ତ୍ରୈଲୋକ୍ୟ ଠାକୁରାଣୀ ତୋତେ କେଅଛୁସରି
ତୁ ଯାହା କହିଲୁ ରାବଣ ଆଗେ ଆଗସରି ।
ସେ କଥା ନିଶ୍ଚୟେ ହୋଇବ ଏବେ ସତ୍ତି
ସବର ଧନେ ମରିବ ନିଶ୍ଚୟ ଲଙ୍କପତି ।
ପୁତ୍ରନାତି ବନ୍ଧୁ ତାର ସଙ୍ଗରେ ଯିବେ
ପକ୍ଷକରେ ଏହା ଗୋ ଦେଖିବୁ ଦେବୀ ଏବେ
ନାନା କଥା ଦେବୀ ଏବେ କହିବ ରାବଣ
ମରିବା ବେଳ ଆସି ହୋଇଲା ଏବେ ପୁଣ ।
ସ୍ୱାମୀ ତୁଅର ତୋର ମାରିବେ ଅସୁର
ଅଳପ ଦିନ ତୁ ଗୋ ମନ ସ୍ଥିର କର ।
ଏତେ ବୋଲି ତ୍ରିଜଟା ସୀତାଙ୍କୁ ସମ୍ଭାଳିଲା
ଦଶରଥ ବଧୂ ଯେ ଆନନ୍ଦ ମନ ହେଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପ୍ରାଣନାଥ
ରାମ ଆସିବାରୁ ମନ୍ଦୋଦରୀ କେମନ୍ତ କଲାଚିତ୍ତ
ଈଶ୍ୱର ବୋଇଲେ ତାକୁ ନାରଦ କହିଥିଲେ
ତୋର ସ୍ୱାମୀ ନାଶଯିବ ରାମର ବାଣରେ ।
ସେ କଥା ମନରେ ରାବଣ ନାରୀ ଧରି
ଏବେ ଶୁଣିଲାଗଡ଼ରଦ୍ୱାରପାଶେ ସୈନ୍ୟଘେରି
ଧଇବ ସୁମରିଣ ମନରେ ଚିନ୍ତା କଲା
ବିଧାତା ଯୋଗ ମୋତେ ପ୍ରବେଶ ହୋଇଲା
ଏତେ ବୋଲି ରାଣୀ ମନରେ ଚିନ୍ତା କରି
ଏମନ୍ତ ସମୟରେ ଶୁଣ ଶାକମ୍ବରୀ ।
ସୀତାର ପାଶରୁ ଦୁଇଗୋଟି ରାକ୍ଷସୁଣୀ
ମନ୍ଦୋଦରୀ ପାଶରେ ପ୍ରବେଶ ହେଲେ ପୁଣି ।
ନମସ୍କାର କରିଣ ଚରଣେ ସେ ଲୋଟିଲେ
ମନ୍ଦୋଦରୀ ଦେଖିଣ ପାଶକୁ ହକାରିଲେ ।
ବୋଇଲେ ଦାସୀମାନେ ଶୁଣ ମୋ ବଚନ
ଶ୍ରୀରାମ ରାଣୀ ଯେ କ କରୁଛନ୍ତି ପୁଣ ।

ଅସୁରୀ ବୋଇଲେ ସେ ଅଛନ୍ତି ଦୁଃଖେ ରହି
ସ୍ୱାମୀ ତୁଅର ତ ଅଇଲେ ସିନ୍ଧୁପାର ହୋଇ
ସାଗରେ ବନ୍ଧବାନ୍ଧି ସୁବେଳସ୍ଥାରେ ଥିଲେ
ସୈନ୍ୟ ଘେନି ଲଙ୍କାଗଡ଼କୁ ସେ ବେଢ଼ିଲେ
ଗର୍ଜନ ପ୍ରାୟେ ସ୍ଥିର ହେଲା ସିନ୍ଧୁ ଜଳ
ଚାରିଦ୍ୱାର ଘେରି ହେଲେ ଦଶରଥ ବାଳ ।
ପୂର୍ବଦ୍ୱାରେ ସୁଗ୍ରୀବର ଦକ୍ଷିଣେ ଅଙ୍ଗଦ
ପଶ୍ଚିମଦ୍ୱାରେଆବୋରି ରହିଲେପବନଆତ୍ମଜ
ଉତ୍ତରଦ୍ୱାରେ ଦୁଇ ଭାଇ ବିଜେ କଲେ ଯାଇ
ଯେଉଁଦ୍ୱାରେ ତୋରସ୍ୱାମୀ ଅଛୁଯେଏବେରହି
ଏଥୁଅନନ୍ତରେ ଶୁଣ ଗୋ ମନ୍ଦୋଦରୀ
ପୂର୍ବଦ୍ୱାର ସିଂହକୁ ସୁଗ୍ରୀବର ରଜା ମାରି ।
ଦକ୍ଷିଣଦ୍ୱାର ଅଶ୍ୱକୁ ମାଇଲା ବାଳିସୁତ
ପଶ୍ଚିମଦ୍ୱାର ଶାର୍ଦ୍ଦୂଳକୁ ମାଇଲା ହନୁମନ୍ତ
ଉତ୍ତରଦ୍ୱାର ହସ୍ତୀକି ଜମ୍ବେବ ନାଶ କଲା
ତୁଅର ବିଭୀଷଣ ଶ୍ରୀରାମଙ୍କୁ କହିଲା ।
ବୋଇଲା ଚାରିଦ୍ୱାରେ ବିଧାତା ଥିଲା ରଖି
ମୋତେ ରଜା କରିବାରୁ ଦ୍ୱାର ନିରମାଣି ।
ଶ୍ରୀରାମଚନ୍ଦ୍ର ବୋଇଲେ ରାବଣେଶ୍ୱର ମରୁ
ତୋର ଅଭିଷେକ ଚାରିଦ୍ୱାର ଦେବ ଭରୁ ।
ବୋଇଲେ ଏହିରୂପ ଚାରିଦ୍ୱାର କରି
ରଖି ଯିବି ମୁଁ ଯେ ଚନ୍ଦ୍ର ସୂର୍ଯ୍ୟ ଥିବାପରି ।
ଶୁଣିଣ ବିଭୀଷଣ ସନ୍ତୋଷ ମନହେଲା
ଚରଣେ ଗଡ଼ିପଡ଼ି ଶୋଇଣ ଉଠିଲା ।
ଏଥୁଅନନ୍ତରେ ଶୁଣ ଗୋ ରାବଣର ନାରୀ
ତାହା ଦେଖି ତୋର ସ୍ୱାମୀ ବିସ୍ମର ମନେକରି
ରାମ ଲକ୍ଷ୍ମଣ ସାଦୃଶ୍ୟରେ କରିଣ ଦୁଇମୁଣ୍ଡ
ରକ୍ତ ଝରି ଝରି ଯେ ବହୁଛି ପ୍ରଚଣ୍ଡ ।
ମାୟାରେ କୋଦଣ୍ଡ ତୁଆଣ ପୁଣ କଲା
ସୀତାସ୍ଥା ଆଗରେ ସେ ଯାଇଣ ମିଳିଲା ।
ମାୟା ମୁଣ୍ଡ ମାୟା ଯେ କୋଦଣ୍ଡ ଦେଖାଇଲା
ଦେଖିଣ ଜାନକୀ ଯେ ଅନେକ ଶୋକକଲା ।
ତୋହର ସ୍ୱାମୀ ତାହାକୁ ହସି ଯେ କହିଲା
ମାଇଲି ରାମ ଲକ୍ଷ୍ମଣ ବୋଲିଣ କହିଲା ।
ଏବେ ତୁ ଘରଣୀ ମୋର ହୁଅଟି ଗୋଭଲେ
ଶ୍ରେଷ୍ଠ ରାଣୀହୋଇବୁ ଶିରୀ ଭୋଗ ଅଳଙ୍କାରେ

ଆୟୁ ଅଳଙ୍କାର ଶଯ୍ୟାରେ ତୋର ଯେନ
ମାଗଣା ନୁହଁ ବେଗେ ନକର ଖେଦ ମନ ।
ଖଟ ଦୋଳି ପଲଙ୍କ ତୁଳିପରେ ବିଜେକର
ସକଳ ରାଣୀ ମୋର ଖଟନ୍ତୁ ତୋ ପୟର ।
ବିବସ ଶୃଙ୍ଗାର ଜାଣି ଯେ ନାହିଁ ସଖି
ଏବେ ଭୋଗ କର ହୋ ବିପୁଳ ସମ୍ପତ୍ତି ।
ଏ ବଚନ ରାୟେ ଯହୁଁ କହିଲା ସଖାକ
ଶୁଣିଣ କ୍ରୋଧଭର ହୋଇଲେ ଜାନକୀ ।
କ୍ରୋଧରେ ଜଳଇ ଅଗ୍ନି ତେଜ ଯେନ
ବୋଇଲେ ରାବଣରେ ମୋହର ଶୁଣ ବାଣୀ
ସତର ଦିନେ ନାଶ ଯିବୁରେ ହାଦେ ପୁଣି
ଦୁଇ ଭାଇଙ୍କ ଅଂଶ ଗୋଟିଏ ନ ରହିବ
ଥାଅ ଜାଣି ।

ବିଭୀଷଣ କୁମର ତୁମ୍ଭର କ୍ରିୟା ଯେ କରିବ
ତେବେ ତୁମ୍ଭେମାନେ ରେ ଜଳଟି ପାଇବ ।
ପୁତ୍ର ବଧୂମାନେ ତୋର ଯିବେ ଯମପୁର
ଦୁଇଭାଇ ମରିବ ନ ଦେଖିଣ କୁମର ।
ଆଣ୍ଠୁ କୁଡ଼ା ହୋଇଣ ତୁମ୍ଭେ ଯମପୁର ଯିବ
ତୋର ରାଣୀମାନଙ୍କୁ ବିଭୀଷଣ ନେବ ।
ନ ବୁଝି ମାୟାମୃଗ ମୋର ଆଗେ ଦେଲୁ
ଏ ବୁଦ୍ଧି ମାନ କେଉଁଠାରୁ ତୁ ଶିଖିଲୁ ।
ମାୟା ମୃଗ ପ୍ରାୟେ କି ମଣିଲୁ ଲଙ୍କପତି
ସତର ଦିନ ଅନ୍ତେ ଆସିଲେ ଜାଣିବା
ତୋର ଗତି ।

ଶ୍ରୀରାମ ଶର ତୋତେ ଖାଇବ ଲଙ୍କପତି
ଏମନ୍ତ ବଚନ ଯେ କହିଲେ ଜନକ ଦୁହିତ ।
ଏମନ୍ତ ସମୟରେ ଦୂତେକ ଅଇଲା
ଗଡ଼ ଡେଇଁ କପି ପଶିଲେ ବୋଲି ବୋଇଲା
ଶୁଣିଣ ତୋର ସ୍ୱାମୀ ବେଗେ ଚଳିଗଲା
ଜାନକୀ ବୋଇଲେ ରାବଣ ବଶେ ଏବେମଲା
ଏମନ୍ତ ବଚନ ଯେ ଅସୁରୀଠାରୁ ଶୁଣି
ମନ୍ଦୋଦରୀ ମନରେ ବିଚାର କଲା ପୁଣି ।
ବୋଇଲା ନାରଦ କହିଣ ମୋତେ ଗଲେ
ସେକଥା ନିଷ୍ଟୟେ ହୋଇଲା ଆସି ଏବେଭଲେ
ଏତେ ବୋଲିଣ ରାଣୀ ନାରଦ ସୁମରିଲେ
ପାତାଳ ପୁରରେ ଥାଇ ନାରଦ ଯେ ଥିଲେ
ଜାଣିଲେ ନାରଦ ସୁମରିଲେ ରାଣୀ ମୋତେ
ମନେ ବିଚାରି ଅଇଲେ ମହର୍ଷି ତୁରିତେ ।
ଲଙ୍କାଗଡ଼ରେ ଆସି ହୋଇଲେ ପ୍ରବେଶ
ରାଜାର ଅନ୍ତଃପୁରେ ମନ୍ଦୋଦରୀ ପାଶ ।
ବୋଇଲେ କମ୍ପା ତୁମ୍ଭ ସୁମରଣା କଲୁ
ପାତାଳ ପୁରକୁ ଯେ ଆମ୍ଭେ ଯାଇଥିଲୁ ।
ରାଣୀ ବୋଇଲା ତୁମ୍ଭେ କପାଇଁ ଯାଇଥିଲ
ସ୍ୱର୍ଗ ଛାଡ଼ିଣ କମ୍ପା ପାତାଳେ ବିଜେ କଲ ।
ନାରଦ ବୋଇଲେ ତୁମ୍ଭେ ଶୁଣ ଲଙ୍କରାଣୀ
ସେକଥା ତୋର ଆଗେ କହିବାକ ପୁଣି ।
ପାତାଳପୁର ରାଜା ଯେ ଅଟଇ ବାସୁକି
ନଗାଦିକ ଯେଣ ସେ ଯେ ସେପୁର ନୃପତି ।
ସେ ରାଜାର ଦୁହିତା ଦୁଇଗୋଟି ଜାଣ
ବେଲାବଳି ନାଗବଳୀ ଦୋହେଁ ଯେ ଝିଅପୁଣ
ବାର ବରଷ ହେଲା ଜନ୍ମ ତାହାଙ୍କର
ସେହିକେଁ ପିତାଙ୍କୁ କହିଲେ ବିନକର ।
ବୋଇଲେ ପିତା ଆମ୍ଭେ କି କରିବୁ କୁହ
ବିଷ୍ଣୁ ଦେବତାରେ ଅଟଇ ବଡ଼ ସ୍ନେହ ।
ବାସୁକୀ ବୋଇଲେ ତୁମ୍ଭେ ତପ ଯେ କରିବସି
ତପ ସିଦ୍ଧ ହୋଇଲେ ବିଷ୍ଣୁ ଯେ ସ୍ୱୟଂ ଆସି
ଶୁଣିଣ ଦୁଇକନ୍ୟା ସନ୍ତୋଷ ପୁଣ ହେଲେ
ମୋତେ ସୁମରଣା ମନରେ ସେହି କଲେ ।
ସେ ସକାଶୁ ମୁହିଁ ଗଲଇ ପାତାଳପୁର
ପ୍ରବେଶ ହୋଇଲି ଯେ ତାଙ୍କର ନଗର ।
ମୋତେ ଦେଖିଣ ବାଳୀ ଆନନ୍ଦ ହୋଇଲେ
ଚରଣ ଧୋଇ ଦିବ୍ୟ ଆସନ ମୋତେଦେଲେ
ଷଡ଼ ଅର୍ଘ୍ୟରେ ପୂଜା କଲେ ଦୁଇ ବାଳୀ
ବୋଇଲେ ଶୁଣ ତୁମ୍ଭେ ଆମ୍ଭର ଗୁହାରି ।
ବିଷ୍ଣୁଙ୍କୁ ଲଭିବା ଆଶେ ତପ କଲୁ ଆମ୍ଭେ
ଏକଥା ବିଚାରି ଆମ୍ଭଙ୍କୁ କହ ମୁନି ତୁମ୍ଭେ ।
ଆମ୍ଭେ ବୋଇଲୁ ତୁମ୍ଭେ ବାଳକରୂପେ ଥାଅ
ଦ୍ୱାପର ଯୁଗ ଅନ୍ତେ ବର ଯେ ତୁମ୍ଭେ ପାଅ ।
ରାମକୃଷ୍ଣ ଜନମ ହୋଇବେ ଦ୍ୱାପରେ
ମଧୁପୁରରେ ଜନ୍ମିଣ ବଢ଼ିବେ ଗୋପପୁରେ ।
ଷୋଳ ସହସ୍ର ଗୋପକନ୍ୟା ସଙ୍ଗେ ପ୍ରୀତିକରି
ତାଙ୍କୁ ଛାଡ଼ି ମଥୁରା ଯିବେ ନରହରି ।

କଂସକୁ ମାରିଲେ ପୃଥ୍ୱୀ ହେବ ସ୍ଥିର
ଏଗାର ବର୍ଷ ଦୁଇମାସେ ମାରିବ କଂସାସୁର ।
ତେର ବର୍ଷ ଷଷ୍ଠ ମାସ ମଥୁରାରେ ରହିବେ
ପୁଣ ସମୁଦ୍ର ଭିତରେ ଦ୍ୱାରକା ବସାଇବେ
ସେଠାବରେ ରହିବେ ଦେବକୀର ପୁଣ
ବସୁଦେବ କୋଳେ ହେବେ ଦୁଇ ଯେନନ୍ଦନ
ଧୃତରାଷ୍ଟ୍ର ଶତେ ପୁତ୍ର ମାନଗୋବନ୍ଧ କୁଳେ
ପଣ୍ଡୁଙ୍କର ଜାତ ହେବେ ପାଞ୍ଚ ପୁତ୍ର ଭଲେ ।
ବାସବର ପୁତ୍ର ଅର୍ଜୁନ ନାମ ହେବ
ଦୁଷ୍ଟକୃଷ୍ଣ ନାମ ଯେ ସେହୁ ବୋଲାଇବ ।
ଯୁଧିଷ୍ଠି ଦେବ ହେ କରିବେ ରାଜସୁ ଯାଗ
ଅର୍ଜୁନ ପିତାକୁ ତୋର ବରିଣ ଆଣିବ ।
ଧନୁହଲେ ପୃଥ୍ୱୀକ ଧରିବ ସେହୁ ପୁଣ
ସେ ତୋହର ସ୍ୱାମୀ ହେବ ଗୋ ବାଳ ଜାଣ
ନାଗାର୍ଜୁନ ବୋଲି ତୋହର ହେବ ପୁତ୍ର
ଯୁଗେ ଯୁଗେ ତୋହର ଅମର ହେବ ଗାତ୍ର ।
ଏ ବାଳର ଗୁରୁସ୍ତ ହୋଇବ ହାଦେ ସାମ
ପବନର ରେତରେ ହୋଇ ଯେ ଥିବ ଜନ୍ମ
ତୋଠାରୁ ବାଳାବଳ ପୁତ୍ର ହେବ ଜାତ
ସେକାଳେ ଭାରତ ଯୁଦ୍ଧ ହେବ ବପଘାତ ।
ତେତେକାଳ ପର୍ଯ୍ୟନ୍ତ ବାଳକ ହୋଇଥିବ
ସେ ଜନ୍ମ ହୋଇଲେ ତୁମ୍ଭେ ଜନ୍ମଯେହୋଇବ
ଶୁଣିଣ ସନ୍ତୋଷ ଯେ ହେଲେ ଦୁଇ ବାଳ
ତପସ୍ୟା କଲେ ସେ ଦୁହେଁ ବିଷ୍ଣୁ ମନ୍ତ୍ର ଧରି
ସେଠାରୁ ଆମ୍ଭେ ଯେ ବହନ ଚଳଗଲୁ
ନାଗରାଜା ଆଗରେ ପ୍ରବେଶ ଯାଇ ହେଲୁ ।
ଦେଖିଣ ନାଗରାଜା ନମସ୍କାର କଲା
ପାଦାର୍ଘ୍ୟ ଦେଇଣ ଆସନେ ବସାଇଲା ।
ବୋଇଲା ଦାଶରଥି ହୋଇଲେ ଯେ ଜାତ
କଷ୍ଟା ସେ ନ ମାରନ୍ତି ରାବଣ ନାମେ ଦୈତ୍ୟ
ଆମ୍ଭେ ବୋଇଲୁ ଅଳପ ଦିନରେ ମାରିବେ
ଏକୋଇଶ ଦିନେ ଯେ ରାବଣ ନାଶିବେ ।
ଏତେ କହି ଆମ୍ଭେ ଯେ ହୋଇଲୁ ବାହାର
ଏହି ସମୟରେ ସୁମରଣା ଯେ ତୋହର ।
ଜାଣିଣ ଆମ୍ଭେ ଯେ ଅଇଲୁ ପଥବାହି
ଜମ୍ବୁଦ୍ୱୀପ ମଣ୍ଡଳରେ ଦେଖିଲୁ ଆମ୍ଭେ ରହି

ଲଙ୍କାଗଡକୁ ଯେ କୋଡ଼ିଏ ସସ୍ର ପୁଣ
ହେମଗିରିଠାରୁ ଲାଗିଛନ୍ତି ପୁଣ ।
ରକ୍ଷକପି ଭଲ୍ଲୁକ ଯେ ତାଙ୍କ ସୈନ୍ୟବଳ
ସମସ୍ତଙ୍କ ତୁଣ୍ଡରେ ଶୁଭଇ ମାର ମାର ।
କେ ବୋଲେ ଲଙ୍କାଗଡେ କେତେଦିନହେବା
କେ ବୋଲେ ଶ୍ରୀରାମଙ୍କୁ ନୟନେ ଦେଖିବା ।
ତଳେ ରକ୍ଷ ମର୍କଟ ଉପରେ ଆମ୍ଭେ ଆସୁ
ଲଙ୍କାଗଡ଼ ପର୍ଯ୍ୟନ୍ତ ସୈନ୍ୟ ଆମ୍ଭେ ଦେଖୁ ।
ଏବେ ଆମ୍ଭେ ଦେଖିଲୁ ପଶନ୍ତି ଗଡ଼େ ବେଢ଼ି
ପୂର୍ବଦ୍ୱାରେ ଶ୍ରୀରାମ ଯେ କରିଛି ସୈନ୍ୟବାଢ଼ି
ପୂର୍ବଦ୍ୱାର ଚକାଇ ଯେ ତୋ ସ୍ୱାମୀ ଅଛନ୍ତି
ପ୍ରଥମ ଯୁଦ୍ଧ ଆଜ ଯେ କରିବ ରଘୁବଂଶୀ ।
ଏଠାରୁ ଦିନ କୁ ରେ ଗଣୁଥିବୁ ସତୀ
ଅଠର ଦିନରେ ମରିବ ତୋର ପତି ।
ସେହିଦିନ ବିଭୀଷଣ କୋଳରେ ଅଭିଷେକ
ଲଙ୍କାଗଡ଼ ପାଟରାଣୀ ହେବୁ ତୁରେ ଶ୍ରେଷ୍ଠ ।
ଏତେ କହି ନାରଦ ଯେ ସ୍ୱର୍ଗପୁର ଗଲେ
ମନ୍ଦୋଦରୀ ରାଣୀ ମନେ ଆନନ୍ଦ ହୋଇଲେ
ବିଚାରିଲେ ଅବଶ୍ୟ ଯେ ମରିବ ମୋର ପତି
ମୁହିଁ ହେବ ପ୍ରୀତ ଯେ ଦିଅରେ ଭକତ ।
ଦିଅର ସଙ୍ଗେ ମୋର ବହୁତ ଦିନ ଯିବ
ଶ୍ରୀରାମ ଆଜ୍ଞାରେ ପୁଣି ସଖାବ ହୋଇବ ।
ଏମନ୍ତ ବିଚାର କରି ମନରେ ତୋଷ ହେଲା
ଯାହା ପଚାରିଲ ଏବେ ଶୁଣ ତୁ ଗୋ ଭଲ ।
ଶୁଣିଣ ସନ୍ତୋଷ ଯେ ପାର୍ବତୀ ମନେ ହେଲେ
ଏକଥା ତାଙ୍କ ଆଗେ ପଞ୍ଚମଥା କହିଲେ ।
ଏଥିଅନନ୍ତରେ ଶୁଣ ହେ ଦିବ୍ୟ ରସ
ସାଧୁଜନେ ଏବେ ନ ଦେଖମା ମୋର ଦୋଷ
ନୀଳଗିରି ଜଗନ୍ନାଥ ସୁଦୟା ମୋତେ କଲେ
ତେଣୁ ଏ ଗ୍ରନ୍ଥ ମୋ ହୃଦରେ ପ୍ରସରିଲେ ।
ବଳରାମ ଦାସ ମୁଁ ଯେ ଶ୍ରୀହରି ସେବକ
ଶୁଣିଣ ଉପହାସ ନ କର ସୁଜ୍ଞଲୋକ ।
ଶ୍ରୀରାମ ଚରିତ୍ର ଏ ଯେ ଅମୃତ ରସପାନ
ତେଣୁକରି ଶରଧା କଲଇ ମୋର ମନ ।
ମାୟାରେ ସଂସାର ଏ ଯେ ଶରୀର ନସ୍ଥିତ
ବାସୁଦେବ ମହିମା କହିବାକୁ ମୋର ମତି ।

ବିସ୍ମରଇ ମନରେ ମୋର ଦଣ୍ଡିବ ଜନ୍ମପତି
ଯହୁଁ ମୁଁ ପାଖରେ ହୋଇଲି ଜନ୍ମ ଗତି ।
ତେଣୁକରି ଆଶ୍ରେ ମୁଁ ଯେ କଲି ଜଗନ୍ନାଥ
ଦୁଃଖର ସୁଖ ଦେବେ ଶଙ୍ଖ ଚକ୍ର ହସ୍ତ ।
ବିଷ୍ଣୁର ପ୍ରସାଦୁଁ ମୁଁ ଯେ ହେବି ନର୍କୁପାର
ଦାସ ବତ୍ସଳ ବାନା ଯେ କରୁଣା ସାଗର ।
ପୁରାଣ ପୁରୁଷୋତ୍ତମ ନୀଳଗିରି ବାସୀ
ଶ୍ରୀ ଜଗନ୍ନାଥେ ଶରଣ ମୁଁ ବଳରାମ ଦାସଟି ।
ଏଥୁଅନନ୍ତରେ ସୁଜ୍ଞଜନେ ଶୁଣ
ପାର୍ବତୀ ଆଗରେ ଯେ କହନ୍ତି ହରପୁଣ ।
ରାବଣ ଯେ ସୀତାଙ୍କୁ ମାୟାରେ ଭଣ୍ଡିଥିଲା
ଡଗର ବାରତାରେ ବାହୁଡ଼ି ବେଗେ ଗଲା ।
ଯାନ୍ତେଣ ଶୁଣିଲା ଯେ ବହୁତ ବିପରୀତ
ନଗର ନରନାରୀ ଭୟରେ ଆଚମ୍ବିତ ।
ଗହଗହ ଶବଦ ଯେ ଶୁଭଇ ଚହଳ
ସ୍ଥଳ ଦେଖି ବୋଲିଣ ପଡ଼ଇ ହାଲହୋଳ ।
କେ ବୋଲେ ପାଟେଶ୍ୱରୀ ଉଠିଲେଣି କପି
ଖାଲି ମର୍କଟ ବଳ କେ ପାରି ସଞ୍ଚପୀ ।
ପରାକ୍ରମ କରଣ କେହୁ ଆସଇ ଧାଇଁ
ଏତେକ ଭରସା ଯେ ପାଇଲେ କାହିଁ ।
କିମ୍ପାଇଁ ଜୀବନକୁ ସେ ନ କରନ୍ତି ଶ୍ରଦ୍ଧା
କିମ୍ପାଇଁ ଏହାକୁ ନ କରଇ ଶଙ୍କ ବାଧା ।
ଏତେକ ଅପୂର୍ବ ଯେ ଦେଖାତ ନଥିଲା
ଅଶ୍ରୁତ କଥା ଏବେ ଲୋଚନେ ଦେଖାଇଲା
କେ ବୋଲଇ ରାବଣ କି କଲା ଅନୀତି
କହିଁକି ପ୍ରାଭବ ଅବା ହହିଲା ଲଙ୍କପତି ।
ନୋହିଲେ କେତେ ଯୁବତୀ ଏହାର ପୁଣକାହିଁ
ପର ଯୁବତୀକି ସେ କେଁ ଆଣିଲା ହରିଇ ।
ନରେଖ ଦେଶାନ୍ତର ବୋଲିଣ ହରିଲା
ରାଜା ହୋଇଣ ଏ ଯେ ପାପକୁ ନ ଡରିଲା ।
କାଳେ ଜଣାଗଲା ସେତ ଶ୍ରୀରାମ ଘରଣୀ
କି ବୁଦ୍ଧି ହରିଣ ଆଣିଲା ବଂଶପାଣି ।
ଧାର୍ମିକ ପୁରୁଷ ଯେ ଶ୍ରୀରାମଚନ୍ଦ୍ର ରାୟେ
ପିତାର ସତ୍ୟ ପାଳଣ ବନବାସ ଯାଏ ।
କେଶ ଗୁଡ଼ିଲା ସେ ଯେ ଜଟା କୌପିନିବନ୍ଧ
ସପଲେଖି ଦେଖିଣ ଖାଇର ଆଗେ କହି ।

ବିପରୀତ ବଚନ ପଶିଲା ତାର ମନେ
ତତକ୍ଷଣେ ଆସେଇଲା ପୁଷ୍ପକ ବିମାନେ ।
ମାୟାରେ ସୁବର୍ଣ୍ଣ ମୃଗେକ ଦେଖାଇଲା
ଲୋଭରେ ଶ୍ରୀରାମ ଯେ କୁରଙ୍ଗ ମାରିଗଲା ।
ଏକା ହନୁମନ୍ତ ଲଙ୍କା ଅଙ୍ଗାର ମଧ୍ୟେ କଲା
ସେହିଦିନରୁ ଏହାର ସମ୍ପତ୍ତି ସରିଲା ।
ହରି ଆଣିକରି ଏବେ ନକଲା ଯେ ଭୋଗ
ଜଣାଗଲା ଏକଥା ଏହାକୁ ବଡ଼ ରୋଗ ।
ସେ ସତୀ ଅଟଇ ଯେ ଅଗ୍ନିର ସମପୁଣ
ଯାହାର ବସନ ଅଗ୍ନି ଧୂଏ ପ୍ରତିଦିନ ।
ପକ୍ଷକରେ ଦିନେ ସେ ଯେ କରଇ ଭୋଜନ
ଅନ୍ନ ନ ଛୁଇଁ ଯେ ଫଳମୂଳ ପୁଣ ।
ଏମନ୍ତ ନାରୀକି କି ରାବଣ ଛୁଇଁବ
ନ ଜାଣିଣ ବୃଥାରେ ପଡ଼ିଲା ଲଙ୍କଦେବ ।
ବଳମାନ କଲେତ କରିବ ଭସ୍ମରାଶି
ଡରିଣ ରାବଣ ଯେ ନ ପାରେ ଛରସି ।
ଏବେ ଆଜ କପଟ ହୋଇଲେ ହେବ ନାଶ
ଯାହା ସେ ବିଧାତା ସେ ଲେଖିଛି ଅବଶ୍ୟ ।
ଆପଣେ ଯେ ଅରଜ ଅଛନ୍ତି ଲଙ୍କସାଇଁ
ଏଥିରେ ରାବଣ ହୋଷ ଶ୍ରୀରାମର ଦୋଷନାହିଁ
ଧର୍ମରେ ସମୁଦ୍ରରେ ବନ୍ଧ ବାନ୍ଧି ଆସି
ଏବେ ଗଡ଼ ବେଢ଼ିଣ ବସିଲା ଆହ୍ୱୋଶି ।
ପାଟେଶ୍ୱରୀ ତେଇଁଣ ପଶିବେ ଏହିକ୍ଷଣି
ଏ ବାରତା ପୁଣିକି ନ ଜାଣେ ବଂଶପାଣି ।
କେ ବୋଲଇ ଜମ୍ମା ଗୋ ଏମନ୍ତ ବିସ୍ମର
ନ ଜାଣିମା ଲୋକପ୍ରାଏ ମନରେ ବୋଧ ଧର
ଚଉଦ ଭୁବନର ଅଟଇ ଅଧିପତି
ଇନ୍ଦ୍ର ବସଇ ଯାର ଦ୍ୱାରପାଳ ଜାତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜିଣିଲେ ତିନିପୁର
ମୁଖ ଦେଖି ପଳାଅ ଭୟରେ ଦେବାସୁର ।
ପୁଷ୍ପକ ବିମାନ ଯେ ଗମଇ ତିନିପୁର
ଉପରେ ସେବା କରନ୍ତି ଯାହାକୁ ସୁରନର ।
ଇନ୍ଦ୍ରଜିତ ବୋଲିଣ ତନୟ ଯାହାର
ଲକ୍ଷ ମର୍କଟକୁ ଭୟ ଅଛଇ ତାହାର ।
ଭାଇ କୁମ୍ଭକର୍ଣ୍ଣ ମହଳା ପ୍ରଶସ୍ତ ବୀର
ଘୋର ବାନରଙ୍କ ତା ସଙ୍ଗେ କରିବେ ସମର ।

ଏଭୁ ଏକ ଅସୁର ପାଇନ୍ତି ଦେବ ବଳ
ଋକ୍ଷ ବାନର କି ତାଙ୍କର ସଙ୍ଗେ ମିଳ ।
ଅଞ୍ଜନା ନନ୍ଦନଙ୍କୁ କେହୁ ନ କରେ ଜୟେ
ଯାହାର ବାଳ ଅଟେ ସଂଗ୍ରାମେ ଅଜୟେ ।
ଏ କିସ ଋକ୍ଷ କପି ମାନବ ଜଟାଧାରୀ
ଏହିକ୍ଷଣି ସଭିଏଁ ହୋଇବେ ସଂହାର ।
ରାବଣ ଲ ଏହାଙ୍କୁ ସଂଗ୍ରାମେ ଗଣଇ
ମନକଲେ ତ୍ରିଦଶ ଦେବଙ୍କୁ ସେ ଜିଣଇ ।
ହେଲେ ଅଯୋଧ୍ୟାକୁ ଯେ ଗଲ ଲଙ୍କପାଳେ
ରାମର ଅଯୋଧ୍ୟା ସେଯେ ଜିଣିଣ ଥିଲବେଳେ
ସେ କଥା ନ ଜାଣି ଯେ ଆଇଲ ଏ ତପସ୍ୱୀ
ଆପଣା ସୁଖେ ଆସି ଯମର ଘରେ ପଶି ।
ଜାଣିବା ସିନା ପଳାଇ କେବଣ ବାଟେଯିବ
ବନ ଜୀବ ଲୋକ୍କୁ ଏ ଯେତେକ ମରାଇବ ।
ଭଣ୍ଡି ଣ ଆଣିଛୁ ଯେ ବନ ଜୀବମାନ
ସେ କେହ୍ନେ ଜାଣିବେ ଯେ ଯୁଦ୍ଧର ବିଧାନ
ସହସ୍ର ଦେଖିଲେ ସେ ହୋଇବେ ନିସତ
ଉଶ୍ବାସ ବଳ ଯେ ଅଟନ୍ତି ସେ ସମସ୍ତ ।
ଏହିକ୍ଷଣି ଡ଼ରାଇଲେ ପଳାଇବେ ଡ଼େଇଁ
ସମୁଦ୍ର ପାରି ହୋଇଣ ଯିବେ ସେ ପଳାଇ ।
ଏକଥାକୁ ରାବଣ କରଇ କର୍ଣ୍ଣ ଘାତ
ଶୁଣବର ରାଜନ ଅଟେ ମନ୍ଦୋଦରୀ ପତି ।
ଏମନ୍ତ ଜନଙ୍କୁ ହାଦେ ସବୁକ ହୁଅନ୍ତି
ରୁଦ୍ର ବୋଇଲେ ତୁମ୍ଭେ ଶୁଣ ଗୋହେମବନ୍ତ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଶଙ୍କର
କଥାଏ ପଚ୍ଛାରିବ କହ ମୋ ଆଗର ।
ଏଥୁଅନନ୍ତରେ ସେ ଯେ ଦଶାନନ ରାଏ
ଅଶୋକ ବନିନରୁ ବାହାର ହୋଇଯାଏ ।
ଲଙ୍କର ଗଡଦ୍ୱାରେ ମିଳନକ ଯାଇଁ
ବସ୍ତ୍ରସୂ ହୋଇଲ ପୁଣ ପାଚେରୀକି ସେ ଚଢ଼ି
ଗୁଳ୍ଳ ମର୍କଟ ଯେ ପାଚେରୀ ଉପରେ
କେ କଲେ କାଙ୍ଗୁଳ ଭିକର ଘରଦ୍ୱାରେ ।
କେହୁ ଛୁଟିକଣି ଉପରେ ମାଡ଼ବସି
ଜଳରେ ଅସୁରଙ୍କୁ ବ୍ରହ୍ମାନ୍ତ ଆହୋସି ।
କମଳର ଶିରାପରେ ବୁଲଣ କେ ଦେଖନ୍ତି
ଅସୁରଙ୍କୁ କଞ୍ଚତ ପ୍ରାଏ ଯେ ମଣନ୍ତି ।

ନଗ୍ରକୁ ଗୁହ୍ଣିଣ ପ୍ରଶଂସା କରନ୍ତି ସେ ବହୁତ
ବାବୁ ଏ କଟକ ଏ ବାରସ୍ୱର୍ଗ ମତ ।
ସ୍ୱର୍ଗପୁର ସମାନ ଯେ ନୃତ୍ଇ ଏହାକୁଟି
ବିବିଧ ପ୍ରକାରେ ଘରମାନ କରିଛନ୍ତି ।
ସୁବର୍ଣ୍ଣର କଳସ ପାତାଙ୍ଗ ନାନା ବର୍ଣ୍ଣ
ଅଷ୍ଟରନ୍ଧ୍ରେ ମଣ୍ଡର ବଣେ ଅନୁପମ ।
ହ୍ରଦନଦୀ ପାର୍ଶ୍ୱେ ଯେ ପୋଖରୀ ସରୋବର
କୂପ ବାମ୍ପୀ ଶାମୁକ ଅଛୁ ଯେ ଅପାର ।
ପୁଷ୍ପତରୁ ଫଳ ଯେ ବିବିଧ ସ୍ୱାଦମାନ
ରଥ ଗଜ ଅଶ୍ୱ ଯେ ଅପ୍ରମିତ ସୈନ ।
ପୁତ୍ର ଭାରିଯା ଯେ କୁଟୁମ୍ବ କୁଳବଧୂ
ତାହାଙ୍କର ଆଶା ଯେ ଗୁଡ଼ିଲ କେଉଁ ସାଧୁ
ବିଷ ଖାଇ ମରିବାକୁ କର୍ମା ଯେ ଶ୍ରଦ୍ଧାକଲ
ପାଷାଣ ପକାଇ କର୍ମା ମଞ୍ଜିଲ ଯେ ପାଣିଲ ।
ଅଗ୍ନିର ଭିତରେ ସେ ପଶିଲ କିସ ପାଇଁ
ସର୍ପର ମୁଖରେ କର୍ମା ହସ୍ତକୁ ଭରଇ ।
ସୀତାଙ୍କୁ ଆଣିବାର କି ସାମାନ୍ୟ ଭରସା
ସମୁଦ୍ରେ ବନ୍ଧ ବାନ୍ଧିଣ ତରିବାକୁ ଆଶା ।
ଏବେ ସେ ଶରଣ ପଶିଲେ ଜୀବନେ ଥିବ
ନୋହିଲେ ସଗୋଷ୍ଠ ସହିତେ ନାଶଯିବ ।
କେ ବୋଲଇ ଆହୋ କିଛିହିଁ ନ ଜାଣ
ଜଗତର ଶତ୍ରୁ ଯେ ଅଟଇ ରାବଣ ।
ଦେବତାୟେ ଏହାର ହରିଣ ନେଲେ ବୁଦ୍ଧି
ସଂସାର ଯାକକୁ ଯେ ଅଟେ କାଳ ବ୍ୟାଧି ।
ନଷ୍ଟେ ନାରଖାର ଯେ ଏପୁର ହୋଇବ
ବିଭୀଷଣ ରାଜା ହୋଇ ଏପୁର ଭଳସିବ ।
ଏ ପୁରେ ଯେତେ ନାରୀ ସବୁ ହେବେ ରଣ୍ଡ
ଯେତେ ପୁରୁଷଛନ୍ତି ରାମକାଟିବେ ସ୍ୱାଙ୍କମୁଣ୍ଡ
ଏ ନଗ୍ର ରାମଚନ୍ଦ୍ର କରିବେ ଧୂଳି ପାଂଶ
ନାରଖାର ହୋଇବ ଯାହାର ଯେଉଁବାସ ।
ଦେଖିଲ ପଣ୍ଡପକୁ ସମସ୍ତ ଭଙ୍ଗିବୁ
ପୁନର୍ବି ଏପୁର ଯେ ବିଭୀଷଣକୁ ଦେବୁ ।
ଏସନ ବୋଲିଣ ରାମ ସୈନ୍ୟ ବିଚରନ୍ତି
ନଗ୍ରକୁ ଗୁହ୍ଣିଣ ସେ ଉପରେ ବିହରନ୍ତି ।
କେହୁ ରଡ଼ି ଦେଇଣ ଖତାଇ ହୁଅନ୍ତି
କେହୁ ଖଣ୍ଡ ଦୂରରେ ବେଢ଼ି ଯେ ପାଡ଼ନ୍ତି ।

ଲଙ୍କାର ଲୋକଙ୍କୁ ସେ ଦେଖିଣ ହସନ୍ତ
ଆଖି ଲଟା ମାଉଣ ସେ ମାଡ଼ଣ ବସନ୍ତ ।
ଶୁଣିକରି ପାବଂଶ ଯେ ପଚାରନ୍ତି ପୁଣ ·
ପାଟେଶ୍ୱର ପାଖେ ଘର ଅଟେ ପୁଣ ।
ଈଶ୍ୱର ବୋଇଲେ କହିବା ତାହା ଶୁଣ
ପଶ୍ଚିମ ବାହାରେ ରାବଣ ଘର ଜାଣ ।
ଦକ୍ଷିଣ ବାହାରେ କୁମ୍ଭକର୍ଣ୍ଣ ରହି
ଇନ୍ଦ୍ରଜିତ ଘର ପୂର୍ବ ବାହାରେ ଅଟଇ ।
ଉତ୍ତର ବାହାରେ ବିଭୀଷଣ ପୁର ଅଟେ
କହିବା ତୋର ମନକୁ ଯେଉଁ ରୂପେ ଅଟେ
ମନ୍ତ୍ରୀମାନଙ୍କର ଏହି ଉତ୍ତରରେ ପୁର
ଦଶକୋଟି ସେନାପତି ଅଟନ୍ତି ବାହାର ।
ବାର କୋଟି ପଦାନ୍ତ ସେ ବାହାରେ ଘର
ଦୁଇକୋଟି ଗଜ ଦଶ କୋଟି ଅଶ୍ୱସାର ।
ଷୋଳ ଗୋଟି ଦାଣ୍ଡ ହେ ଅଟେ ସେହୁ ବାହି
କଢ ବକଢ ଯେ ଦୁଇ ସହସ୍ର ହୋଇ ।
ମଧ୍ୟରେ ଦୁଆର ସେ ଉତ୍ତର ବାହାନ
ସେଠାରୁ ଅଟେ ଘର ବିଭୀଷଣର ପୁଣି ।
ଶତେକ ନାରୀ ଯେ ବିଭୀଷଣର ପୁଣ
ରାଣୀ ଗୋଟିକରେ ଉଆସ ଗୋଟିଏ ଜାଣ ।
ଦାଣ୍ଡ ମୁଣ୍ଡରେ ଘର ଶତେକ ଖୁଆଡ଼
ଶତେ ବଖରା ଯାକ ଅଟଇ ନଗ୍ରତ ।
ଶତେ ନାରୀଠାରୁ ଜାତ ଶତେ ପୁତ୍ର ପୁଣି
ଜଣକେ ଶତେ ବଖରା ଖୁଆଡ଼ ନିର୍ମାଣି ।
ଦାଂଣ୍ଡ ମୁଂଡ଼ ପୁତ୍ରଙ୍କର ଲାଗିଅଛି ଘର
ଏକ ଦାଂଡ଼ ଅଟଇ ଯେ ପିତା ପୁତ୍ରଙ୍କର ।
ପୁତ୍ର ଗୋଟିକରେ ଦଶ ସହସ୍ର ସୁତ
ତାଙ୍କ ପାଇଁ ଖୁଆଡ଼ ଦଶ ବଖରା ଆଯୁତ ।
ସେହି ଦାଂଡ଼ ଗୋଟିକରେ ଅଛନ୍ତି ପୁଣ ରହି
ଶତେ ନାରୀଙ୍କର ଶତେ ଦୋହିତା ଯେ ତହିଁ
ନାତୁଣୀ ଦୁଇକୋଟି ପୁତ୍ର ଗୋଟିକରେ
ପୁଅ ଗୋଟିକରେ କଢ ଗୋଟିଏ ଲେଖାଏଁ
ବିଭୀଷଣ ସନ୍ତାନର ଏ ରୂପେ ଘର ଦାଂଡ଼
ଧାଡ଼କ ଧାଡ଼ ଲାଗିଛି ଚୌରଣି ଦାଂଡ଼ ।
ତୋଟା ବଗିଚା ଯେଝାରେ ଘର ସମୀପରେ
ନାନାଫୁଲ ନାନାଫଳ ରୋପିଣଛନ୍ତି ହେଳେ

ସେଠାରୁ ମନ୍ତ୍ରୀ ଗଜ ଅମନାତ୍ୟ ବଳ
ପାଜ ପଦାନ୍ତ ଯେ ଅଛନ୍ତି ସକଳ ।
ସହସ୍ର କଢକ ଯେ ବାର କୋଟି ଦାଂଡ
ପୂରି ରହିଛନ୍ତି ଲଙ୍କା ପଞ୍ଚକତି ଖଂଡ ।
ପଶ୍ଚିମ ଦିଗରେ ଯେ ରାବଣର ଘର
ତିନକୋଟି ପଞ୍ଚାଶି ରାଣୀ ଅଟେ ତାହାର ।
ରାଣୀ ଗୋଟିକରେ ଦଶ ଖୁଆଡ଼ ତ ଜାଣ
ଏହି ରୂପେ ସବୁରାଣୀ ଉଆସ ଅଟେ ପୁଣ ।
ଗୋଟିଏ ଦାଂଡ଼ରେ ଯେ ସବୁଛନ୍ତି ରହି
ପୁତ୍ର ବଧୂମାନଙ୍କର ଗୋଟିଏ ଦାଂଡ ହୋଇ
ଦୋହିତାମାନଙ୍କର ଅଟଇ ଏକ ଦାଂଡ
ନାତୁଣୀ ବୋହୂଙ୍କର ଏରୂପେ ଲେଖା ଖଂଡ
ନାତୁଣୀ ମାନଙ୍କର ଗୋଟିଏ ଦାଂଡ ଜାଣି
ନାତୁଣୀ ଜୁଆଁଇଟି ସେନାପତିରେ ଗଣି ।
ଏ ରୂପେ ରାଜଦଂଡ଼ ଯେ ଅଟଇ ତାଙ୍କର
ଦାଂଡ଼ରେ ସୁବର୍ଣ୍ଣର ତୋରଣ ଅପାର ।
ଜେଝା ସୀମା ବାଡ଼ରେ ବଗିଚାମାନ କରି
ଫୁଲ ଫଳରେ ନଡ଼ିଆ ଗୁଆ ଧାଡ଼ି ଧାଡ଼ି ।
ଅଶ୍ୱ ଗଜ ପଦାନ୍ତ ସେନାପତିମାନେ
ବାର ଦାଂଡ଼ ଦୁଇ ସସ୍ର କଢ ବକଢ ଜାଣେ
ଏଥିରେ ସବୁଙ୍କର ଅଟଇ ଘରଦ୍ୱାର
ଘର ବାଡ଼ମାନଙ୍କରେ ସମସ୍ତେ ତତ୍ପର ।
ଦକ୍ଷିଣ ଦିଗରେ ଇନ୍ଦ୍ରଜିତର ଉଆସ
ଲକ୍ଷେ କୋଡ଼ିଏ ସହସ୍ର ଅଛନ୍ତି ରାଣୀ ହଂସ ।
ଦଶ ଖୁଆଡ଼ ଲେଖାଏଁ ସମସ୍ତଙ୍କ ଘର
ଘରବାଡ଼ିମାନଙ୍କରେ ନାନା ବର୍ଣ୍ଣେ ଫୁଲ ।
ଗୋଟିଏ ଦାଂଡ଼ ସେ ଯେ ଅଛନ୍ତି ଆବୋରି
ସୁବର୍ଣ୍ଣର ତଉଁରି ବସିଛି ଧାଡ଼ି ଧାଡ଼ି ।
ଆଉ ଦାଂଡ଼ ପୁତ୍ରଙ୍କର ଦୁଇଶତ ଘର
ବଗିଚା ଫୁଲ ବାଡ଼ ବାଗନା ତାଙ୍କର ।
ନାତିନାତୁଣୀଙ୍କର ଏକ ଦାଂଡ ହୋଇ
ବଗିଚା ଫୁଲ ଫଳ ବନରେ ମନମୋହି ।
ସାତଶ ଘର ନାତି ଅଟେ ଯେ ତାଙ୍କର
ତିନଦାଂଡ଼ ଅଛନ୍ତି ଆବୋରି ମହାବୀର ।
ପଦାନ୍ତ ଅଶ୍ୱଗଜ ସେନାପତି ପୁଣ
ଷୋଳର କୋଡ଼ିଏ ଅଛନ୍ତି ମୁକୁଟ ବନ୍ଧା ଜାଣ ।

ଦୋହରେ ଦାଣ୍ଡ ଯେ ଅଛନ୍ତି ଆବୋର
କନ୍ଧ ବନ୍ଧ ତାଙ୍କର ସହସ୍ର ଘର ।
ପୂର୍ବ ଭାଗରେ ଯେ କୁମ୍ଭକର୍ଣ୍ଣ ଘର
ଲକ୍ଷେକ ବନିତା ଯେ ଅଟଇ ତାହାର ।
ଦୁଇ ସହସ୍ର କୁମର ପାଞ୍ଚ ସହସ୍ର ନାତି
ତିନି ଦାଣ୍ଡ ଆବୋର ଯେ ସେହି ରହିଛନ୍ତି ।
ମଣ୍ଡପ ଧାଡ଼ି ଧାଡ଼ି ତିନି ଯେ ଦାଣ୍ଡରେ
କାଗଜା କରିଛି ଯେ ସବୁଙ୍କ ବାଡ଼ରେ ।
ପାଞ୍ଚ ଖୁଆଡ଼ି ଲେଖାଏଁ ପ୍ରମାଣ ଏ ଘର
ଲକ୍ଷେକ ବନିତା ଅଟନ୍ତି ତାହାର ।
ଦୁଇ ସହସ୍ର କୁମର ପାଞ୍ଚ ସହସ୍ର ନାତି
ତିନି ଦାଂଡ ଆବୋର ସେହି ରହିଛନ୍ତି ।
ମଂଡ଼ପ ଧାଡ଼ି ଧାଡ଼ି ତିନି ଯେ ଦାଂଡ଼ରେ
କାଗଜା କରିଛି ଯେ ସବୁଙ୍କ ବାଡ଼ରେ ।
ପାଞ୍ଚ ଖୁଆଡି ଲେଖାଏଁ ପ୍ରମାଣ ଏ ଘର
ବଡ଼ ଦାଂଡକୁ ବାରଣ ଗଳିଅଛି ଚଉଁର ।
ପନ୍ଦରୁ ସହସ୍ର ସେନାପତି ପଦାତି ଅପାର
ରଥଗଜ ଅଶ୍ୱ ସାରେଣୀ ସମସ୍ତଙ୍କ ଘର ।
ଶତେ କୋଶ ଶାଳ ବନ ଏହି ବଗେ ପୁଣ
ଏ ବନରେ ମଂଡପ କୋଷେକ ଆୟତନ ।
ପନ୍ଦର ଯୁଣ ଲମ୍ବ ମଂଡପର ଦୀର୍ଘ
ଚହିଁରେ ଶୟନ ଯେ କରନ୍ତି ରାଘବ ।
ବରଷକରେ ଥରେ ନିଦ୍ରାରୁ ଉଠଇ
ବରଷକ ଆହାର ଏକଦିନକେ ଖାଇ ।
ଛଡ଼ି ବନ ଉହାଇ ଚେତାରେ ସେ ପୁଣ
ଲକ୍ଷେ ଯୁବତୀଙ୍କ ସେ କରଇ ରମଣ ।
ବିପୃଷ୍ଠ ହୋଇଲେ ନିଦ୍ରା ଯେ ମାଡ଼ଇ
ବିଭୀଷଣ କତର ନବର ମୁଂଡ଼େ ହୋଇ ।
ଉତ୍ତର ବାହାରେ ପିଅଶାଳ ବନ
ଘର କୋଶରେ ଯେ ଅଟଇ ପ୍ରମାଣ ।
ପଶ୍ଚିମର ଦ୍ୱାରେ ଯେ ଗବଂ ଧୁର ଅଟେ
ପୂର୍ବଦ୍ୱାରେ ଶାଳବନ ତୋଟା ବଟିଛନ୍ତି ।
କେଉଁଠାରେ କରି ଅଛି ସାଧକ ଆଖଡ଼ା
କେଉଁଠାରେ ନୃତ୍ୟଘରକରିଛି ଯୋଡ଼ାଯୋଡ଼
ହାଡ଼ଆ ଖାଇବା ଘର ମର୍ଦ୍ଦନକୁ ପୁଣ
ବଉସାକୁ କାଚ ବାଡ଼ କରିଛି ନିର୍ବାଣ ।

କେଉଁଠାରେ ତ୍ରିଶୁବନ କାର୍ତ୍ତିରେ ଅଶୋକ
କେଉଁଠାରେ ନାନାଯାକ ମଧୁବନ ଯାକ ।
କେଉଁଠାରେ ଚନ୍ଦନ ଅଛି ଗୁଆମାଳମାଳ
କେଉଁଠାରେ ପିପଳ ମଉଚ ଯାଇଫଳ ।
କେଉଁଠାରେ ନାରକେଳ ନାନାବର୍ଣ୍ଣେ ଅଛି
ସେ ବନମାନଙ୍କରେ ମଂଡପ ତୋଳିଅଛି ।
ଆପଣା ବନର ଯାଏ ଯେପିଛି ବନପୁଣ
ଦେବତା ରହିବାକୁ କୋଡ଼ିଏ ଘର ଜାଣ ।
ମେଢ଼ ମଂଡପ ଯେ ଜଗତି ଅଟାଳ
ଦୁଇଶ କୋଶ ପର୍ଯ୍ୟନ୍ତେ ଅଛି ଗଢ଼କର ।
କୂପ ବାପୀ ପୋଖରୀ କଣା ସରୋବର
ଲେଖିବାକୁ ଅଗୋଚରଅସଂଖ୍ୟନୋହେମୋର
ଧନରତ୍ନ ଭଂଡାର ଶତେ କେ ଶ ପୁଣି
ଅଲ୍ଲ କଥାମାନ କହିତ ନୋହେ ବାଣୀ ।
ଆଠ କୋଶ ମୂଳକ ଗଡ଼ ଯେ ଉଚର
ତିନି ପୁରୁ ପଦାର୍ଥ ନେଇଣ କଲ୍ପ ଠୁଳ ।
ବିଶ୍ୱକର୍ମା ଯାହାର ବୋଲରେ ପୁଣଥାଇ
ଚତୁର୍ମୁଖ ବ୍ରହ୍ମା ଯାର ଆଜ୍ଞା ନ ଲଙ୍ଘଇ ।
ସେଠାରେ କେଉଁ ଦ୍ରବ୍ୟ ଅପୂର୍ବ ଗୋ ସଖି
ଶୁଣିମା ସକାଶେ ଅଛି କହେ ଜପଲେଖି ।
ପାବଣ୍ଣି କୋଇଲେ ତୁମ୍ଭେ ଶୁଣ ଦେବବାଣୀ
ଋକ୍ଷକପି ପାଚେଶିରେ ରାବଣକୁ ଦେଖି ।
କସ ଆଜ୍ଞା ଦେଲ ମୋତେ କହିଦେବ ତୁମ୍ଭେ
ଗମନ ମ ଶୁଣିଲେ ମୁକ୍ତ ହେବ ଏବେ ।
ଶୁଣିଣ ଈଶ୍ୱର କହନ୍ତି ତାହା ଶୁଣ
ତୋର ମନ ସନ୍ତୋଷ ହେବ ଏବେ ପୁଣ ।
ଋକ୍ଷକପି ବଳ ଯେ ପାଚେଶି ପରେ ଥିଲେ
ଘର ଦ୍ୱାରକୁ ରାମ ଦୃଷ୍ଟି କରିଗଲେ ।
ହୋଇଲେ ପାଚେଶି ଡେଇଁଣ ପଶ ଗର୍ଜ୍ଜେ
ଘରଦ୍ୱାରେ ଋକ୍ଷକପି ଚଢ଼ିଲେ ପାଚେଶିରେ
କଳକଳ ରାବ ଯେ ଶୁଭେ ବଳଗଳ
କୋପେଣ ଆଜ୍ଞା ଦେଲ ରଘୁବୀର ବାଳ ।
ସୈନ୍ୟକୁ ସ୍ୱୁଝିଣ ବୋଲଇ ଲଙ୍କସାଇଁ
ମାର ଋକ୍ଷକପି ଯେ ସାବଧାନ ହୋଇ ।
ଯେତେକ ପାଚେଶି ଉପରେ ଉଠିଛନ୍ତି
ଯେମନ୍ତ ଉବୁରଣ ଟାଖାଟିଏ ନ ପାନ୍ତି ।

ତେସନ କରିଣ ଯୁଦ୍ଧ କର ଇନ୍ଦ୍ର
ଘ୍ବରି ଦ୍ୱାରକୁ ଦୂତ ପଠିଆଅ କହ୍ନି ।
ଓପ୍ରଧ ଘୁଞ୍ଚିଲେ ନ ରହନ୍ତି ଶ୍ରୀରାମର ସୈନ୍ୟ
ସାମାନ୍ୟ ଭରସା କରେ ଡ଼ାଳର ଜୀବମାନ
ଶ୍ରୀରାମ ଭରସାରେ ପାଚେରି ଉଠନ୍ତି
ଯେମନ୍ତେ ଜବୁର ଗୋଟିଏ ନ ଯାନ୍ତି ।
ଅସୁରମାନଙ୍କୁ ଦେଖ କିଛି ନାହିଁ ଖାତି
ନଖଙ୍କ ହୋଇଣ ଦେଖ ପାଚେରି ଉଠୁଛନ୍ତି
ସୁବଳଯ୍ଯା ପର୍ବତରୁ ଘୁଞ୍ଚିଆସ ଯାଇ
ମୋହର ବୋଲରେ ରେ ଦହନ ଯାଅ ଧାଇଁ
ଶୁକ ସାରଣ ସେନାପତିମାନଙ୍କୁ ସେ କହି
ବଇତେ ବାନରଙ୍କୁ ମାରନ୍ତି ଗୋଡ଼ାଇ ।
ଶୁଣିଣ ସେନାପତି ସୈନ୍ୟକୁ ଆଜ୍ଞା ଦ୍ୟନ୍ତି
ମାର ଋକ୍ଷକପି ଯେ ଗୋଟିଏ ଯେ ନବର୍ତ୍ତି ।
ଶୁଣିଣ ଅସୁର ଯେ ଯୁଦ୍ଧ ଆରମ୍ଭିଲେ
ପାଚେରି ଉପରୁ କପିଙ୍କି ସେ ମାଇଲେ ।
କଏ ସେ ଛୁଟିକଣି ପଥର ମାରନ୍ତି
କେହୁ କରବାଳେ ଧନୁଶର ଯେ ବହନ୍ତି ।
ସାଙ୍ଗୀ ସାବେଳ କେହୁ ଲର୍ଙ୍କିଆ ପ୍ରହାରନ୍ତି
କେହୁ ଖଣ୍ଡ୍‌ଶୂଲ ଘେନଣ ମାରନ୍ତି ।
କେ ବୋଲଇ ମାର କେ ବୋଲଇ ଧର
କେ ବୋଲଇ ଏହାଙ୍କର ଜଭ ଯେ ଉପାଡ
କେ ବୋଲଇ ଏହାଙ୍କର ଧଳ ଖୋଳ ଆଖି
କେ ବୋଲଇ ମାର ହେ ଓପ୍ରଧ ଉପେକ୍ଷି ।
ଏହି ସମୟରେ ଖସିଲେ କପି ସୈନ୍ୟମାନେ
ଧର ଧର ବୋଲନ୍ତେ ଉଠିଲେ ଗଗନେ ।
ଲେଉଟି ନଜ ଦାଣ୍ଡରେ ପଶିଲେ ଶୁଣଯାଇ
ଅସୁରେ ସଂଗ୍ରାମ ଯେ କରନ୍ତି ବୋବ ଦେଇ
ଛୁଟିକଣି ମାରନ୍ତି ମାରନ୍ତି ଖଣ୍ଡ୍‌ଶୂଲ
ଆବର ବଜ୍ରବାଣ କେହୁମାରେ ପଥର ।
ହାବେଳ ବଜ୍ରବାଣ ମାରନ୍ତି ତଡ଼ ବଡ଼
କ ଜାଣି ଆଷାଢ଼ ମାସରେ ମେଘ ଘଡ଼ଘଡ଼ ।
ଶ୍ରାବଣ ବରଷା ଜାଣି ଜନ୍ତୁ କାଣ୍ଡପଡ଼
ଦଉଡ଼ କାଟନ୍ତେ ଯେ ଅନେକ କପି ପଡ଼ ।
ଛପଛ ଚିକଣ ଯେ ପକାନ୍ତି ଘନ ଘନ
ଦେଖିଣ ଅପସରିଲେ ଋକ୍ଷକପି ସୈନ୍ୟ ।

ଘ୍ବନ୍ଧି ଦ୍ୱାର କବାଟ ଫେଡ଼ିଲେ ଅସୁର
ଧରି ଋକ୍ଷ କପିଙ୍କି ମାରନ୍ତି ଅପାର ।
ଯହୁଁ ସେ ଋକ୍ଷ କପି ଭଙ୍ଗିଣି ପାଇଲେ
ଥୋକାଏକ ମଲେ ଥୋକେ ପଳାଇଣ ଗଲେ
ଲେଉଟି ଦନୁଜେ ଲଙ୍କାକୁ ଅଇଲେ
ଆନନ୍ଦରେ ଅସୁରେ ଯେଘୋର ରଡ଼ଦେଲେ
ଏସନକ ହୋଇଣ ଯେ ହୋଇଲା ସମର
ଯାଇଣ ଜଣାଇଲେ ନୃପତି ଆଗର ।
ଶୁଣ ଦେବ ରାବଣ ଏ ଯୁଦ୍ଧର କାହାଣୀ
ବଡ଼କଥା ଏକ ଯେ ହୋଇଲା ଏହିକ୍ଷଣି ।
ଯେତେକ କପି ପାଚେରି ଉପରେ ଉଠିଥିଲେ
ଥୋକାଏ ପଡ଼ିଲେ ଥୋକେ ପଳାଇଣ ଗଲେ
ସଂଗ୍ରାମ କରିଣ ଯେ ନ ପାରନ୍ତି ପୁଣକିଛି
ସ୍ବଭାବେ ପାପ ଆତ୍ମା ଅଟନ୍ତି ପଶୁଜାତି ।
ଭଣ୍ଡିଣ ତପସୀ ଯେ ଆଣିଛି ତାହାନ୍ତ
ସେ ଯେତେକ ଜାଣିବେଟି ବୁଦ୍ଧିର ବୃତ୍ତାନ୍ତ ।
ନସତ ହୋଇଣ ଯେ ପଳାନ୍ତି ଏଣେ ତେଣେ
କେତେ ଭଳ ଲୋକ ରହି ପାରନ୍ତି ପୁଣରଣେ
ସଭିଏ ଦୁଲଆ ହେବ ଗୋଟିଏ ଦମ୍ଭନାହିଁ
ଯେତେବେଳେ ପାଚେରିରେ ପଡ଼ିଥିଲେତହିଁ
ଧର ଧର ମାର ମାର ବୋଲନ୍ତେପଳାଇଲେ
ଆମ୍ଭେ ବେଢ଼ିଲାବେଳକୁ ଗୋଟିଏନରହିଲେ
ଥୋକେମରି ଥୋକେ ଏଥୁଁ ପଳାଇଣ ଗଲେ
ଥୋକାଏ ପାଚେରି ଉପରୁ ପଡ଼ି ମରିଗଲେ ।
ଗଡ ବେଢ଼ିଣ ଯେ ଅଛନ୍ତି ତାର ଲୋକେ
ତାହାଙ୍କର ସଙ୍ଗତରେ ପଶିଲେ ଯାଇଥୋକେ
ନେଞ୍ଚ ଆଜ୍ଞା ଦେବ ମନ୍ଦୋଦରୀ ସାଇଁ
ରାମକୁ ଗଡ଼ୁ ଯେ ଛଡ଼ାଇ ଦେବୁ ଯାଇଁ ।
ତାର ମନେ ଯେ ଗଡ଼ ବେଢ଼ିଛନ୍ତି
ଆଟ ଭାଙ୍ଗିବାର ସେ ନ ଜାଣନ୍ତି କିଛି ।
ଶୁଣିଣ ଲଙ୍କପତି ଯେ ହେଲା ହସ ହସ
ବୋଇଲା ବାବୁରେ ତୁମ୍ଭେ କଲ ଅପଯଶ ।
କେମନ୍ତ ହୋଇ କପି ବେଢ଼ିଛନ୍ତି ଗଡ
ଜାଣିମାନା ଶ୍ରୀରାମର ଥାଟକେତେଛନ୍ତି ଗାଢ଼
ଦେଖିଲେ ସିନା ପ୍ରତେ କରିବ ମୋର ମନ
ଜାଣିମା ଜଟାଧାରୀର କେତେ ବଡପଣ ।

ଏତେ କହି ପୁଷ୍ପକ ବିମାନ ସୁମରିଲା
ତତ୍‌କ୍ଷଣେ ମହାଯାନ ଉପରେ ବସିଲା ।
ରତ୍ନବରରେ ବିଜୟ କଲା ଲଙ୍କପତି
ରାଜାଧିରାଜ ପଣରେ ଧରାଇଲା ଛତି ।
ଲକ୍ଷେକ ରାଜାଙ୍କୁ ଜିଣିଲା ସେ ଶତେବାର
ତେଣୁ ଲକ୍ଷେଛତ୍ର ଧରାଏ ଦଶଶିର ।
ଲକ୍ଷେକ ମାଳାକାର ଅଛନ୍ତି ଛନ୍ତି ଧରି
ଲକ୍ଷେକ ଚାମର ଯେ ଧରନ୍ତି ଲକ୍ଷେନାରୀ ।
ଲକ୍ଷେକ ବିଜୁଣୀ ବିଜୁନ୍ତି ଘନ ଘନ
ଲକ୍ଷେକ ଶଙ୍ଖ ଯେ ଶୁଭେ ଅବିଛିନ ।
ଲକ୍ଷେକ ରସିକା ଘୁମୁରେ ନୃତ୍ୟକରି
ବଢ଼ାଇ ସମ୍ମୁଖରେ ବିଜେ ଦଶଶିରି ।
ଘଣ୍ଟିରେ ଘାଗୁଡ଼ି ଯେ ବାଜେ ସ୍ବଚ୍ଛନ୍ଦ
ମନ୍ତ୍ରୀ ଗଣଙ୍କୁ ଘେନଣ ବିଜେ ଦଶକନ୍ଧ ।
ନାନା ଅସ୍ତ୍ର ଶସ୍ତ୍ର ଯେ ଅଛଇ ତାର ପାଶ
ଆପଣେ ହୋଇଣ ଅଛଇ ବୀରବେଶ ।
ଦଶଶିର ଦଶ ମୁକୁଟ ମଣିମୟେ
ନବରତ୍ନ କୁଣ୍ଡଳ କର୍ଣ୍ଣକୁ ଶୋଭାପାଏ ।
କଣ୍ଠରେ ମୁକୁତା ମାଣିକ୍ୟ କଣ୍ଠମାଳି
ବିବିଧ ପଦକ ଯେ ଲମ୍ବେ ବକ୍ଷସ୍ଥଳ ।
ବସନ୍ତ ପାଟରେ ମର୍କତ ଲଗି ସିନା
ମୁକୁତା ମାଳ ଶୋଭେ ଚନ୍ଦ୍ରର ଜୋଛନା ।
ଚରଣେ ଅନର୍ଗଳ ତୋଡ଼ର ବୀରକେତ
ଗଦାଏ ଧରି ଅଛି ନାମ ଧୂମ ଖେତ ।
ଫରହର କଣ ଯେ ଦିଶଇ ବଦନ
ଦାଢ଼ିକୁ ହଲାଇଣ କହଇ ଦଶାନନ ।
ଦେଖିବ ତପୁସିରେ କେତେକ ପରଛନ୍ଦ
ହସ୍ତୀ ଘୋଡ଼ାନାହିଁ ଯେ କେବଣ ଆୟୁଧ ।
କସ କସ କଥା ସେ ଜାଣନ୍ତି ଜାଣିମା
ଉର୍ଦ୍ଧ୍ବରେ ଥାଇ ତାର ସଇନ ଗଣିମା ।
ଶୁଣିଣ ପାତ୍ରମନ୍ତ୍ରୀ ମଥାରେ ହାତଦେଲେ
ହେଉଦେବ ଏକଥା ଅଟଇ ବୋଇଲେ ।
ଶୁଣିଣ ଦଶାନନ ପରମ ସୁଖ ପାଇ
ରଥକୁ ବୋଇଲା ଭୁରେ ଉଠ ଉଚଭୁଇଁ ।
ସହସ୍ରେ ଯୋଜନ ଯାଏ ବପରକୁ ଯିବୁ
ତେବେ ଆମ୍ଭେ ଉର୍ଦ୍ଧ୍ବେ ଥାଇ ଜଗଡଦେଖିବୁ ।

ଶ୍ରୀରାମ ବଳ ଯେ ବୁଝିବା କେତେ ମାନ
ଆଜ୍ଞା ପାଇଣ ଯେ ଉଠିଲା ଦେବଯାନ ।
କି ଅବା ଭୂଅରେ ଜଗତ ଉଠିଗଲା
ସୁନାର ପୁରୁଷ ନଳ ପ୍ରଭେ ଯେ ହୋଇଲା ।
ନାନାବାଦ୍ୟ ନିରନ୍ତରେ ବାଜେ କୋଳାହଳ
ଯୁବତୀମାନଙ୍କର ଯେ ହୁଳହୁଳି ଗୋଳ ।
ଲକ୍ଷେକ ଶଙ୍ଖ ଶବଦ କରେ ଠାଣ
ସୁରଗିରି ଚମକ ଯେ ବାଜଇ ନିଶାଣ ।
ସହସ୍ରେ ଯୁବତୀ ଯେ କୁସୁମ ବୃଷ୍ଟି କଲେ
ଲକ୍ଷେ ଶ୍ବେତ ଚାମର ଧରିଣ ଉଭାହେଲେ ।
ପାରିଜାତ ପୁଷ୍ପରେ ମଣ୍ଡିଅଛି ଯାନ
ଉଦେଗିରିରୁ ଆସେକି କଶ୍ୟପ ନନ୍ଦନ ।
ଘଣ୍ଟି ଯେ ଘାଗୁଡ଼ି ବାଜଇ ଶୂନ୍ୟପଥ
ନେତର ତରଳ ଉଡ଼େ ମହାସନ୍ଥ ।
ଦେବତାଏ ସ୍ବର୍ଗ ପୁରରୁ ଗଲେ
ରାବଣ ଢଗଢଗେ ଶୂନ୍ୟ ପୁରେ କଲେ ।
ସହସ୍ରେ ଯୋଜନରେ ରହିଲା ରଥଯାଇ
ରାବଣ ଆଶ୍ଚର୍ଯ୍ୟ ହେଲା ମନ୍ତ୍ରୀ ମଣ୍ଡଳକୁ ଚାହିଁ ।
ପୃଥିବୀ ପୂରିଅଛି ଋକ୍ଷ କପିବଳ
ଲଙ୍କାଗଡ଼ ସେତୁବନ୍ଧ ଉତ୍ତର ଯେ କୂଳ ।
ଗଡ଼ର ଉତ୍ତର ଦ୍ବାରେ ରାମ ଲକ୍ଷ୍ମଣ ଦଳ
ପୂର୍ବରେ ସୁଗ୍ରୀବର ସୈନ୍ୟ ସଙ୍ଗତର ।
ସହସ୍ର ପୁର କରି ସୈନ୍ୟଛନ୍ତି ଜଗି
ନବନ୍ଦେ ରହିଛନ୍ତି ଦେହକୁ ଦେହ ଲାଗି ।
ସହସ୍ର ପୁର କରି ବେଢ଼ିଛନ୍ତି କପିବଳ
ନାନା ବର୍ଣ୍ଣରେ ବାଦ୍ୟ ବାଜଇ ତହଳ ।
ପଶ୍ଚିମରେ ହନୁମନ୍ତ ପୂର୍ବରେ ସୁଗ୍ରୀବର
ଦକ୍ଷିଣେ ଅଙ୍ଗଦ ଯେ ବାଳିର କୁମର ।
ଉତ୍ତରେ ଶ୍ରୀରାମ ଲକ୍ଷ୍ମଣ ବେନିଭାଇ
ବିଭୀଷଣ ସୁଷେଣ ଜାମ୍ବବ ଅଛଇ ।
ଶ୍ରୀରାମ କରେ କୋଦଣ୍ଡ ଯେଘୁବା କାଣ୍ଡକାଣ୍ଡି
ଦେଖିକରି ପ୍ରଶଂସା ଯେ କରେ ଲଙ୍କମଣି ।
ଧନ୍ୟ ଧନ୍ୟ ରଘୁନାଥ ଧନ୍ୟ ରଘୁବଂଶ
ଏ ପୁତ୍ର ଉପୁଜାଇଲା ବିଷ୍ଣୁ ଅଂଶ ।
ଲକ୍ଷ୍ମଣଙ୍କୁ ପ୍ରଶଂସା କରେ ପୁଣ ପୁଣି
ସ୍ବୟଂ ରୁଦ୍ର ଜନ୍ମକ ହୋଇଲେ ଏ ଧରଣୀ ।

ଏପୁଣ ଜନ୍ମ କଲ କରଣ କେଉଁ ତପ
ଏବେ ଏ ନାଶଯିବ କଲେ କେଉଁ ପାପ ।
ଏତେ ବୋଲଣ ପୁଣ ବିଭୀଷଣକୁ ପୁଚ୍ଛି
ବୋଇଲା ଚଣ୍ଡାଳରେ ଅଛୁ ତୁ ମୋର ଭାଇ
ଶତ୍ରୁର ପାଦେ ତୁରେ ପଶିଲୁ ଶରଣ
ଏହାର ହୋଇଲେ ରାମ ସମୁଦ୍ର ତରଣ ।
ଦେଖିଣ ମନ ମୋର ହେଉଅଛି ରୋଷ
ଏ କୃତ୍ୟ ହୋଇଲା ସବୁ ଏହାର ଏ ଦୋଷ
ମାରିବଇଁ ଗଦା ଯେ ଛେଦିବଇଁ ମୁଣ୍ଡ
ତପୁସି ଦୁଇଗୋଟି ଯେ ହୋଇଯିବେ ଖଣ୍ଡ ।
ଏସନକ ବିଚାର ଯେ କରଇ ଲଙ୍କମଣି
ଛତ୍ରର ଛାଇରେ ଯେ ଅନ୍ଧାର ଧରଣୀ ।
ଜଳର ନିକଟରେ ଜ୍ୟୋତିବଳ ଶିଖା
ଦିଗପାଳ ସମାନରେ ଅଟେ ଦଶମୁଖା ।
ଅପୂର୍ବ ଦେଖିଣ ପୁଚ୍ଛିଲେ ରଘୁପତ
ଶ୍ରୀରାମ ବିଚାରନ୍ତି ଏ କେବଣ ଖ୍ୟାତ ।
ଶୂନ୍ୟରେ କପାଇଁ ଲୁଚିଲେ ଆଦିତ୍ୟ
ଛାୟା ପ୍ରାୟେ ଦିଶିଲକ ଜଗତ ଯାକ ।
ବରଷା କାଳ ନୁହେ ଯେ ମେଘ ନାହିଁ ଶୂନ୍ୟ
କେମନ୍ତ କଥା ଏ ଯେ କହହେ ବିଭୀଷଣ ।
ବିଭୀଷଣ ବୋଇଲା ଶୁଣିମା ରାମ ରାୟେ
ଏହିଟି ରାବଣ ଦେବ ବିଶ୍ରବା ତନୟେ ।
ପୁଷ୍ପକ ଯାନ ଚଢ଼ି ସେ ଶୂନ୍ୟରେ ଅଛିରହି
ତୁମ୍ଭର ସୈନ୍ୟକୁ ଦେଖ କଳିବାର ପାଇଁ ।
ଲକ୍ଷେକ ରାଜାଙ୍କୁ ସେ ଜଣେ ବାହୁବଳେ
ଲକ୍ଷେକ ଛତ୍ର ସେ ଟେକାଇ ଶିରପରେ ।
ଲକ୍ଷେକ ଢଞ୍ଚଣୀ ଯେ ଲକ୍ଷେକ ଚାମର
ଲକ୍ଷେକ ଆଢ଼େଣି ସେ ଧରାଏ ସତ୍ୱର ।
ଲକ୍ଷେକ ବୈରଖ ଲକ୍ଷେକ ନିଶାଣ
ଲକ୍ଷେକ ନୃତ୍ୟକାରୀ ସଙ୍ଗରେ ଜଡ଼ ପୁଣ ।
ଲକ୍ଷେକ ଫୁଲ ଗନ୍ଧ ମଣ୍ଡିଛନ୍ତି ଯାନରେ
ଲକ୍ଷେକ ବାଦ୍ୟ ଯେ ବାଜେ ତା ଆଗରେ ।
ଲକ୍ଷେକ ଶଙ୍ଖ ଲକ୍ଷେ ମହୁରୀର ଧ୍ୱନ
ଲକ୍ଷେ ଡମ୍ଫ ନାଗରା ଆଗରେ ବାଜେ ପୁଣି
ଲକ୍ଷେକ ଅପସରା ଆଗରେ ଛନ୍ତି ବସି
ଲକ୍ଷେ ଲକ୍ଷେ ସୁବର୍ଣ୍ଣରେ ଦୀପ ଏ ଦେଶ ରାଶି ।
ଲକ୍ଷେକ ଦିହୁଡି ଜଳେ ଲକ୍ଷେକ ଚନ୍ଦ୍ରାତପ
ଧରିଣ ଉଭା ରାବଣ ଆଗରେ ସ୍ୱରୂପ ।
କୁବେର ଯାନ ସେ ଯେ ଅଟଇ ମାୟାଙ୍ଗ
ତିନପୁର ଲୋକ ସେ ତହିଁରେ ଯିବେ ଜନ ।
ମାୟା ଅସୁର ଏ ଯେ ସବୁଦିନରେ ମନ୍ଦ
ନାନା ଉପାୟରେ ଜାଣଇ ଏହୁ ଛନ୍ଦ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ମାୟାରେ ଜିଣିଲା
ତେଣୁ ଏ ତିନପୁର ଏହାରେ ବଶକଲା ।
ଶ୍ରୀରାମ ବୋଇଲେ ଯାନ ଯେବେ କୁବେରର
କେଉଁଠାରୁ ଜାତ ହେଲା କହ ମୋ ଆଗର
ବିଭୀଷଣ ବୋଇଲା ଶୁଣିମା ଦେବ ହେଜ
ଆଲୁର ଉପର ବଂଶେ ପୌଲସ୍ତୀର ପ୍ରଭୁ ।
ଯୁବା କାଳରେ ସେ ଯେ ମେରୁ ହୋଟକୁଗଲା
ଷାଠିଏ ଗଣ୍ଡା ଯୁଗ ସେଥିରେ ତପକଲା ।
ମେରୁ ଯେ ପ୍ରସନ୍ନ ହେଲେ ତାଙ୍କୁ ପୁଣ
ଚଉଦ ପୁର କରି ପୁଷ୍ପକ ନାମେ ଯାନ ।
ମୁନଙ୍କର ଗୋଚରରେ ଆଣିଣ ସେହୁ ଦେଲା
ଚଉଦ ଭୁବନ ଏଥିରେ ରହିବ ବୋଇଲା ।
ନବଖଣ୍ଡ ମେଦିନୀ ଯେ ସପତ ସାଗର
ତିନପୁର ସହିତେ ଶୁଣ ମୁନିବର ।
ଦିନକର ମଧ୍ୟରେ ଏ ବୁଲିବ ବିମାନ
ବାର ଆଦିତ୍ୟ ଯେ ଷୋଳ ଚନ୍ଦ୍ରମା ପୁଣ ।
ଏତେ ଆୟୁତନେ ଗମିବ ଏହି ଜାଣ
ଏକଥା ପ୍ରମାଣ ଯେ ଅଟେ ରଘୁରାଣ ।
ଯହିଁକି ବୋଲିବ ତହିଁକି ପୁଣ ଯିବ
ଏହିକଥା ତାହାକୁ କହିଲେ ମେରୁଦେବ ।
ଯାନ ଘେନିଣ ମୁନି ଅଇଲେ ତହୁଁ ବେଗ
ଏହି ପ୍ରାୟେ ଯାନ ଅଟେ ହେ ରାଘବ ।
ସଚରାଚର ପୃଥ୍ୱୀ ସେ ଘଡ଼କେ ବୁଲିଲେ
ଲଙ୍କା ଗଡ଼ରେ ଆସି ପ୍ରବେଶ ହୋଇଲେ ।
ସତ୍ୟସେ ଯୁଗ ଏ ଗଡ଼େ ହେଲା ରାଜାପୁଣ
ବିଶ୍ରବା ଋଷି ଜାତ ତାହାର କୁଳେଣ ।
ବିଶ୍ରବା ଋଷିଠାରୁ କୁବେର ଜାତ ହେଲେ
ଶତେ ଷାଠିଏ ବରଷ ସେ ରାଜ୍ୟପଣ କଲେ ।
ତାହାଙ୍କୁ ପୌଲସ୍ତୀ ସମର୍ପି ଦେଲେ ଯାନ
ତାହଲ ସେ ହୋଇଲେ ଦିଗପାଳ ପୁଣ ।

ସ୍ୱାମୀର ଭଣ୍ଡାର ଯେ ଯନ୍ତ୍ରଁ ସେ ଡାକୁଦେଲେ
ରାବଣେଶ୍ୱର ଯେ ଏ ଗଡେ ରାଜାହେଲେ ।
କୁବେରକୁ ଜିଣିକରି ଆଣିଲେ ସେ ଯାନ
ଏ ବିମାନେ ବସି ଜିଣେ ଚଉଦ ଭୁବନ ।
ସେ ଯାନ ଚଢ଼ିଣ ଶୂନ୍ୟରେ ଅଛି ଇନ୍ଦ୍ର
ଛତ୍ର ଟେକାଇବାରେ ମେଦିନୀ ହେଲା ଘାଇ ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ବୁଝିବାରେ ତୋର ବଳ ହଣରେହସ୍ତଦେଲେ
ବିଭୀଷଣ ବୋଇଲା ଏ ଜାଣେ ବଡ଼ ଛନ୍ଦ
ଏ ସମୟେ ଗଦା ଏ ମାଇଲା ଦଶକନ୍ଧ ।
ସୂର୍ଯ୍ୟ କି ଆକାଶରୁ ଖସିଲା ପ୍ରାୟେ ଦିଶି
କି ଅବା ଉସାନ୍ତଲେ ମେଦିନୀ ସିବ ପଶି ।
ଶୂନ୍ୟ ପୁରୁଷକି ଆସଇ ଚ୍ୟୁତ ହୋଇ
କି ବା ଅଗ୍ନି ଦେବତା ଜଳି ସେ ଆସଇ ।
ଛତ୍ରଙ୍କର ଗୁଳରେ ଅନ୍ଧାର ହୋଇଥିଲା
ଅସ୍ତଭେଦ ହୁଅନ୍ତେଣ ତିମିର ତୁଟିଲା ।
ପବନ ଦେବତା ପ୍ରସନ୍ନ ଥିଲେ ହୋଇ
ସେ ଗଦା ମନ୍ତ୍ରଣ ମାଇଲା ଲଙ୍କସାଇଁ ।
ସହସ୍ରେ କିରଣର ଅଗ୍ନିର ଝଗୁଳ
ଶ୍ରୀରାମଙ୍କର ଥାଟେ ଯେ ପଡ଼ିଲା ହାଲହୋଳ
ପଶ୍ଚିମ ଦ୍ୱାରେ ହନୁମନ୍ତ ପୁଣ ଥିଲା
ଶତେ ଯୋଜନ ଉର୍ଦ୍ଧ୍ୱକୁ ସେହୁ ଉଡ଼ିଗଲା ।
ରାବଣର ଗଦାକୁ ସେ ଯାଇଣ ଧଇଲା
ଦୁଇଖଣ୍ଡ କରିଣ ଭାଙ୍ଗି ଯେ ପକାଇଲା ।
ବାହୁଡ଼ି ବୀର ତଳେ ଆସିଣ ମିଳିଲା
ଭଗ୍ନ ଗଦା ରାବଣ ଗଡ଼କୁ ଫିଙ୍ଗିଦେଲା ।
ଗଦାଘାଏ ଅସୁର ମଲେ ଶତତିନ
ଇନ୍ଦ୍ରଜିତ ଦେଖି ନିବର୍ତ୍ତି ହେଲା ପୁଣି ।
ରାଣୀହଂସମାନେ ଶୂନ୍ୟକୁ ଚାହୁଁଥିଲେ
ଗଦା ଭାଙ୍ଗିବାର ହନୁ ପ୍ରତ୍ୟକ୍ଷେ ଦେଖିଲେ
ଦେଖିଣ ଦୁଇଦଳ ଆଶ୍ଚର୍ଯ୍ୟ ହୋଇଲେ
ବିଭୀଷଣକୁ ଚାହିଁ ଶ୍ରୀରାମ ବୋଇଲେ ।
ଛତ୍ରଙ୍କର ଶୀତଳ କି ରଥଙ୍କର ଘାଇ
ହେନକର ଯୋଡ଼ିଣ ବିଭୀଷଣ କହଇ ।
ଲକ୍ଷେକ ରାଜା ପୁଣ ମଞ୍ଚପୁରେ ଜାଣ
ଏହାଙ୍କୁ ଜିଣି ଲକ୍ଷେ ଛତ୍ର ଆଣିଛି ରାବଣ ।

ସେ ଛତ୍ର ଗୁଳରେ ହେନ୍ତୁ ଉହାଡ଼ିଲା ସୂର୍ଯ୍ୟ
ପୁଷ୍ପକ ବିମାନ ସେ ଅଟେ ବ୍ରମରାଜେ ।
ଛତ୍ରିରେ ବସିଥିଲେ ଜଗତ ପାରେ ଜିଣି
ରୋଗ ଶୋକ ନ ବାଧଇ ଶୁଣହେ ରଘୁମଣି
ସେ ରଥରେ ବସିଣ ଯେ ରାବଣ ନିଶ୍ଚିନ୍ତେ
ଗଦା ମାଇଲା ଦେବଙ୍କୁ ମନ୍ତ୍ରର ଅଭ୍ୟାସେ ।
ମୋତେ ମାରିବ ବୋଲି ଗଦା ସେ ମାଇଲା
ଯେଣୁ ତୁମ୍ଭ ସଙ୍ଗରେ ମୋତେ ଯେଦେଖିଲା ।
ଧନ୍ୟ ସେବକ ଶ୍ରୀରାମ ହନୁ ତୋର ପୁଣ
ଅନ୍ତହେବେ ଚଳିଗଲା ଗଗନ ମାର୍ଗେଣ ।
ଜାଣିଣ ଗଦାକୁ ସେ ଧରିଣ ଭାଙ୍ଗିଦେଲା
ଏମନ୍ତ ଉପାୟ ତ ଦେଖା ଯେ ନଥିଲା ।
ଏ ଘାନ୍ତ ଗଦା ଛାର ହୋଇଲା ହେନଖଣ୍ଡ
ଲଜ୍ୟା ପାଇଲା ଯେ ଦେଖି ଦଶମୁଣ୍ଡ
ଶୁଣିଣ ଶ୍ରୀରାମ ଯେ ତୀକ୍ଷଣ ଶର ସନ୍ଧି
ସବୁ ଛତ୍ର କାଟି ପକାଅ ବୋଲି ସନ୍ଧି ।
ଗୁଣରୁ ଗୁଡ଼ଦ୍ୟନ୍ତେ ପବନୁ ବେଗେ ଗଲା
ଲକ୍ଷେ ଛତ୍ର ଛେଦଣ ବାହୁଡ଼ି ଅଇଲା ।
ଶ୍ରୀରାମ ତୋଣରେ ହେଲା ପରବେଶ
ଛିଡ଼ିଣ ଛତ୍ରମାନେ ପଡ଼ିଲେ ଦଶଦେଶ ।
ତାରାଗଣ ଚ୍ୟୁତ କି ହୋଇଲେ ଏକାବେଳେ
କି ଅବା ଭୂମି ଯେ ପଡ଼ିବ ଉସାତଲେ ।
ଅନେକ ଛତ୍ରଛତି ପର୍ବତେ ଯାଇ ପଡ଼ି
ଥୋକେ ଛତ୍ର ସମୁଦ୍ରେ ଯାଇ ବୁଡ଼ି ।
ଥୋକାଏ ବନସ୍ତରେ ଥୋକାଏ ମେଦିନୀ
ସାର୍ଥ୍ୟ କରିଣ ତାହା ସଞ୍ଚିଲେ ପଦ୍ମଯୋନି ।
ତେଣୁ ଯେ ଖାରତ ରହିଲା ଯୁଗେ ଯୁଗେ
ରାବଣର ନିତ ବୋଲିଣ ବୋଲିବେ ।
ପୁଣି ଶ୍ରୀରାମ ଯେ ନାରାଚ ଦୁଇ କାଢ଼ି
ଗୁଣରେ ବସାଇ ବନ୍ଧିଲେ ଯତ୍ନକରି ।
ବୋଇଲେ ଆଲଟ ଚାମର ବେଗେ ଛେଦ
ଦେଖିଣ ଲଜ୍ଜା ଯେ ପାଇଲା ଦଶକନ୍ଧ ।
ସେ ଶରୁ ବାହାରନ୍ତେ ନାରାଜ ବେଗେ ଗଲା
ଆଲଟ ଚାମରକୁ କାଟି ପକାଇଲା ।
ଫେରିଆସି ତୋଣରେ ପ୍ରବେଶ ହେଲା ବେଗ
ପୁଣି ଏକ ନାରାଚ ପେଷିଲେ ରାମରାଜ ।

ଯେତେକ ଅଣ୍ଡେଣୀ ଡ଼କାଇ ପୁଣ ଥିଲ
ନାରଜର ଘାୟେ ଯେ ସମସ୍ତ ଛିଡ଼ିଗଲ ।
ଲକ୍ଷ୍ମଣ ଯେ ନାରଜ ବନ୍ଧଲେକ ଟାଣି
ବିମାନର ପୃଷ୍ଠକୁ ପକାଇଲେ ଜାଣି ।
ଏଥୁଅନନ୍ତରେ ଯେ ଦଶାନନ ରାୟେ
ଅଇହର ହୋଇ କମ୍ପଇ ତାର କାୟେ ।
ଶୁକ ସାରଣ ଯେ ବୋଲନ୍ତି ଦେବ ଶୁଣ
ଶ୍ରୀରାମ ସନ୍ଧଲେ ଯେ ବ୍ରହ୍ମବାଣ ପୁଣ ।
ଆଲଟ ଚାମର ଆଡ଼େଣୀ ଛତ୍ର ପୁଣି
କାଟି ପକାଇଲେ ମନୁ ବେଗେ ଜାଣି ।
ଲକ୍ଷ୍ମଣ ଗୋଟିଏ ଯେ ଶର ପୁଣି ବିନ୍ଧିଲ
ପୁଷ୍ପକ ବିମାନ ପୃଷ୍ଠ ଉଡ଼ାଇଣ ଦେଲ ।
ବିଚିତ୍ର ସଗ୍ରାମ ସେ ଜାଣନ୍ତି ରଘୁନାଥ
ତୋର ଗଦା ଏବେ ଭାଙ୍ଗିଲ ହନୁମନ୍ତ ।
ନୋହିଲେକ ଏକା କାଣ୍ଡକରେ ବାଳି ମଲ
ସପତ ଶାଳାକୁ କି ଏକା ବାଣକେ ଛେଦିଲ
ଅବୋଧ ଋକ୍ଷକପି ବୋଧ ତାକୁ ଦେଲେ
ପର୍ବତ ଉପାଡ଼ି ସେତୁ ସାଗର ବାନ୍ଧଲେ ।
ସାମାନ୍ୟ ଈଶ୍ବ ସେ ଯେ ନୁହନ୍ତି ଦେବହାଦେ
ଦେଖ ଋକ୍ଷକପି ବେଢ଼ିଛନ୍ତି କେତେ ।
ଶୁଣିଣ ଲଙ୍କମଣି ବିସ୍ମୟ ମନ ହୋଇ
ନିଜ ନବରକୁ ସେ ବାହୁଡ଼ି ବେଗେଯାଇ ।
କି ଅବା ମେରୁଗିରି ଖସିଲ ଗଗନୁ
ମଞ୍ଚ ପୁରକୁ କି ଅଇଲ ଦେବରାନୁ ।
ଏସନ ସମୟରେ ଶୁଣ ଗୋ ଭଗବତି
ଦକ୍ଷିଣ ଦ୍ୱାରେ ଯେଥିଲ ଅଙ୍ଗଦ ନାମେଷର୍ଦ୍ଧି
ପଞ୍ଚାଶ ଯୋଜନ ସେ ଉଡ଼ିଣ ପୁଣ ଗଲ
ରାବଣର ରଥରେ ଯାଇଣ ବସିଲ ।
ରାବଣକୁ ଦେଖିଣ ସେ ମାଇଲ ବିଧାଏ
ମୁଟେ ପକାବନ୍ତେ ସେ ଘୁମାଏ ଲଙ୍କରାଏ ।
ଦଶ ହାତୁ ଦଶ ଧନୁ ଛଡ଼ାଇ ଘେନଗଲ
ପବନହୁଁ ବେଗରେ ତଳରେ ଆସି ହେଲ ।
ଦୁଇଦଳ ଲୋକ ଦେଖିଲେ ତାହା ଡୋଳେ
ଆଶ୍ଚର୍ଯ୍ୟ ହୋଇଲେ ସ୍ୱର୍ଗର ଦିଗପାଳେ ।
ଏମନ୍ତ ସମୟରେ ପୂର୍ବଦ୍ୱାରେ ପୁଣ
ସୁଗ୍ରୀବର ଦେଖିଥିଲ ଯେ ଏହା ପୁଣ ।
ଦେଖିଲା ବିମାନ ସ୍ୱର୍ଗରୁ ଖସି ଆସି
ବିସ୍ମିଲ ମୂର୍ଚ୍ଛିତ ଏକା ରହିଲ ଏଥି ।
ମୋତେ ନନ୍ଦା କରିବେ କୋଦଣ୍ଡ ରୂପଧାରୀ
ଏତେ ବୋଲି ରାଜନ ବିସ୍ମୟ ଗଣ୍ଡକରି ।
କୋଡ଼ିଏ ଯୋଜନ ଉପରକୁ ଉଠିଗଲ
ରାବଣର ଯାନରେ ଯାଇଣ ବସିଲ ।
ବୋଇଲ ରାବଣରେ ବାଳିର ଭାଇ ମୁହିଁ
ତୁ ପରା ରାମର ସୀତାଙ୍କୁ ଆଣିଲୁ ଚୋରାଇ ।
ଏତେ ବୋଲି ସୁଗ୍ରୀବର ମାଇଲ ନେଇମୁଟେ
ରାବଣ ମାଇଲ ଯେ ବିଧାଏ ଭୁରତେ ।
ଗଡ଼ାଗଡ଼ି ମରାମରି ଲାଗିଲେ ଦୁଇଜଣ
ସୁଗ୍ରୀବରକୁ ମାଡ଼ି ବସିଲ ରାବଣ ।
ଯାନ ଯେ ଖସି ଆସୁଛି ବେଗ ହୋଇ
ସୁଗ୍ରୀବର ତଳେ ଯେ ପଡ଼ିଅଛି ଶୋଇ ।
ଶୋଇବା ଠାବରେ ଉପୟେ ସେ କଲ
କୋଳକୁ ଧରି ତାର ନାଟେକ ମାଇଲ ।
ନିଶ୍ୱାସ ଭରରେ ବାଜନ୍ତେ ରାବଣ ମୋହଗଲ
ଲେଉଟି ସୁଗ୍ରୀବର ମାଡ଼ିଣ ବସିଲ ।
ଦଶ ମୁଣ୍ଡରୁ ଦଶ ମୁକୁଟ ସେ କାଢ଼ିଲ
ମୁକୁଟ ଘେନିଣ ପୂର୍ବ ଦ୍ୱାରରେ ମିଳିଲ ।
ଦୁଇଦଳ ଲୋକେ ଦେଖିଲେ ତାହା ପୁଣ
ରାମ ଲକ୍ଷ୍ମଣ ଯେ ବିଭୀଷଣ ଜାଣ ।
ସନ୍ତୋଷ ହେଲେ ରାମ ହସିଲେ ଋକ୍ଷକପି
ରାବଣ ମୋହ ତେଜ ଉଠିଲ ତଜାତ ।
ବିସ୍ମିଲ ମନରେ ଆଜ କିମ୍ପା ହୋଇଲ
ଯଶଶିରି ମୋର ନଷ୍ଟପ୍ରାୟ ସରିଲ ।
ଏମନ୍ତ ସମୟେ ପ୍ରବେଶ ହେଲା ରଥ
ଲଙ୍କାଗଡ଼ରେ ପ୍ରବେଶ ହେଲା ଦଶମାଥ ।
ସଭା କରିବାକୁ ଯାଇ ବସିଲ ଆସନେ
ଇନ୍ଦ୍ରଜିତକୁ ରାଇ ଆଣିଲ ତତକ୍ଷଣେ ।
ପ୍ରଶସ୍ତ ସହିତେ ଅମାତ୍ୟ ଗଣ ଚୁହିଁ
ବିରସ ବଦନରେ କହଇ ଲଙ୍କସାଇଁ ।
ଶୁଣ ହୋ ଅପୂର୍ବ ଏ ଶ୍ରୀରାମର ଖତ
ଏକା ବାଣକରେ ମୋର ଛେଦିଲ ଲକ୍ଷେଛତ୍ର
ଆହୁରି ପୁଣ ସେହି କାଣ୍ଡକେ ମାଇଲ
ଆଲଟ ଚାମର ଆଡେଣି ଛେଦି ପକାଇଲ ।

କୋପରେ ଗଦାଏ ଯେ ମାଇଲ ପୁଣ ମୁହିଁ
ହନୂମନ୍ତ ତାହା ଧଇଲା ବେଗେ ଯାଇ ।
ତେତେ ଶସ୍ତ୍ର ମୋର ବ୍ୟର୍ଥ ଗଲା ପୁଣ
ଅମୋଘ ଶସ୍ତ୍ର ଧରି ଭାଙ୍ଗିଲା ହନୂମାନ ।
ମୂର୍ଚ୍ଛା ବୃକ୍ଷ ପ୍ରାୟେ ଯାନ ଗଗନୁ ଖସିଲା
ମନରେ ମୋହର କଛୁ ସକ୍ଷ ନ ରହିଲା ।
ପୂର୍ବଦ୍ୱାରୁ ସୁଗ୍ରୀବର ଡେଇଁଣ ପଡ଼ିଲା
ଶତେ ଯୋଜନରେ ଯାଇ ରଥରେ ବସିଲା
ଦଶ ମୁକୁଟ ମୋର ନେଲା ସେ ଛଡ଼ାଇ
ଦୁଇ ମୁଥ ପ୍ରହାର କଲା ମୋତେ ସେହି ।
ଘାଏ ଘୁମାଇଲି ମୁହିଁ ତାହାର ମାଡ଼ରେ
ବାଳି ସମାନରେ ଅଟେ ବଳଆରେ ।
ବାଳିର କୁମର ସେ ଦକ୍ଷିଣ ଦ୍ୱାରେ ଥିଲା
ସେ ଡେଇଁ ଯାଇଣ ମୋ ରଥରେ ବସିଲା ।
ଦୁଇବଧା ନେଇ ମାଇଲା ବକ୍ଷସ୍ଥଳେ
ଘାଏ ଘୁମାଇଲି ମୁଁ ଯେ ଅଚେତା ଶଯାରେ
ଦଶ ହାତୁ ଦଶ ଧନୁ ନେଲା ସେ ଛଡ଼ାଇ
ତାଠାରୁ ବଳବନ୍ତ ପୁଣ କେହି ନାହିଁ ।
ଏବେ ପୁଣ କିସ ବୁଦ୍ଧି କରିବ ଯେ ମୁହିଁ
କେ ରାମ ଲକ୍ଷ୍ମଣକୁ ମାରିବଟି ଯାଇ ।
ଶୁଣିଣ ଇନ୍ଦ୍ରଜିତ ବୋଲେ ପୁଣି ହସି
ତୁମ୍ଭେ କମ୍ପା ଏ କଥାକୁ ଚିନ୍ତାକର ବସି ।
କଅବା ଆମ୍ଭ ବଳ ଜାଣିବା ନିମନ୍ତେ
ଏକଥାମାନ କହୁ ହୋ ବଶଙ୍ଗାର ସୁତେ ।
ସ୍ୱର୍ଗର ଦେବତାଏ ନୂହନ୍ତି ତୋତେ ସରି
ଏ କିସ ମାନବ ଯେ ଦୁଇ ଜଟାଧାରୀ ।
ଛଳ ଛୁଣ୍ଡାଇଲେ କି ତୁମ୍ଭଙ୍କୁ ହୋଏ ଜାଣି
ଶୁଖିଲାର ବାଏଁଶକୁ ପକାଇଲା ହାଣି ।
ସେ କଥା ଘୁରକୁ ଦେବ ନ କରସି ଚିନ୍ତା
ଶୁଣିଣ ସନ୍ତୋଷ ଯେ ବଶଙ୍ଗାର ପୁତା ।
ଏହି ସମୟେ ମିଳଲେ କୁତଘନ ଦୂତ
ଶୁଣ ଦେବ ରାବଣ ହେ ମନ୍ଦୋଦରୀ କାନ୍ତ ।
ପୂର୍ବଦ୍ୱାର ଚରିତ ଶୁଣହେ ଲଙ୍କାପତି
ଯାହା ସେ ଦେଖିଣ ମୁଁ ଅଇଲି ତଡ଼ତ ।
ସୁଗ୍ରୀବର ବୋଲିଣ ବାଳିର କନିଷ୍ଠିତ
ପୂର୍ବଦ୍ୱାର ଆସିଣ ଓଗାଳେ ତୁରିତ ।

ରତ୍ନ ସିଂହ ଦୁଇ ରହୁ ଦେଲେ ତାକୁ ଗୁହିଁ
ଖୋପେଣ ମୁଥେକ ମାଇଲା ତାକୁ ନେଇ ।
ମାଡଘାତେ ରତ୍ନସିଂହ ଦୁଇଗୋଟି ମଲେ
ପୁଷ୍ପକ ରଥ ଚଢ଼ି ସ୍ୱର୍ଗପୁର ଗଲେ ।
ବଳରେ ବଳିଷ୍ଠ ଅଟଇ ସୁଗ୍ରୀବର
ଏହିକ୍ଷଣି ପ୍ରାକର୍ମ ଯେ ଦେଖିଲୁ ତାହାର ।
ଲଙ୍କାର ଶିରୀ ଦେବ ଆଜଠୁ ହତ ହେଲା
ମର୍କଟ ହୋଇଣ ସେ ଏତେ କୃତ୍ୟ କଲା ।
ଏ କଥା ଆଗରୁ ଶୁଣିଛୁ ରାବଣ ବୋଇଲା
ଅନ୍ତର୍ଗତେ ରାମକୁ ବହୁତ ଭୟ କଲା ।
ଏଥୁଅନନ୍ତରେ ଶୁଣ ହେମବନ୍ତର ନନ୍ଦଣୀ
ରାବଣ ଛଳ ଯତ୍ନ ଛେଦିଲେ ରଘୁମଣି ।
ଉପୁରେ ଦଶଗ୍ରୀବ ବାହୁଡ଼ିଣ ଯାନ୍ତେ
ଗବାକ୍ଷକୁ ଗୁହିଁଣ ବୋଲନ୍ତି ସୀତାକାନ୍ତେ ।
ଦକ୍ଷିଣ ଦ୍ୱାର ଯାଅ ଅଙ୍ଗଦ ଘେନ ଆସ
ଶରଭ ସେନାପତିକ ହକାରିକୁ ପାଶ ।
ଡ଼ାଳମ୍ବ କେଶରୀଏ ତିନପ୍ରେ ଥିବେ ରହି
ଦ୍ୱାର ନ ଛାଡ଼ିବେ ଆସ ଯା ତାଙ୍କୁ କହି ।
ଅଙ୍ଗଦକୁ ବେଳବୁ ସମ୍ବାଦ ମୋତେ ଯାଇ
କେଶରୀ ଡ଼ାଳମ୍ବ ଶରଭ ତିନ ଥାଇ ।
ଶୁଣିକରି ଗବାକ୍ଷ ଶିରେ କର ଦେଲା
ଦକ୍ଷିଣ ଦ୍ୱାରେ ଥାଇ ତକ୍ଷଣେ ମିଳିଲା ।
ପଶ୍ଚିମ ଦ୍ୱାରବାଟେ ଗଲା ପଥ ବାହି
ଅଙ୍ଗଦକୁ ଆଣିଲା ଶ୍ରୀରାମ ଆଜ୍ଞାପାଇ ।
ଡ଼ାଳମ୍ବ କେଶରୀ ଶରଭ ସେନାପତି
ଏମାନଙ୍କ ଦ୍ୱାରେ ଛାଡ଼ି ଅଇଲେ ତଡ଼ିତ ।
ଅଙ୍ଗଦକୁ ଘେନଣ ଶ୍ରୀରାମପାଶେ ମିଳି
ନମସ୍କାର କରିଣ ଶୋଏ ଗଡ଼ଘାଲି ।
ଉଠି ଉଭା ହୋଇଣ ଯୋଡ଼େ ବେନିକର
ଅଙ୍ଗଦକୁ ଗୁହିଁଣ ବୋଇଲେ ରଘୁବୀର ।
ତୁରେ କୁମରମଣି ଯିବୁ ଏହିମଧ୍ୟ
ଏ ମୋହର ଆଜ୍ଞା କୁ କହିବୁ ବଂଶପାଣି ।
ସୀତାଙ୍କୁ ଘେନିଣ ବେଗେ ଶରଣ ଆସି ପଶୁ
ଜୀବନକୁ ଆଶାଥିଲେ ତୋର ସଙ୍ଗେ ଆସୁ ।
ମୋହର ଦୋଷଟି ନାହିଁ ଯେ ଏଥର
ଅବଶ୍ୟ ତାହାର ମୁଁ ଯେ ଛେଦିବ ଦଶଶିର

ସଗୋତ୍ର ସହିତେ ବଂଶ ବଗମାନ
କୁଳାପ୍ରାୟ କରିମୁଁ ଯେ ଛେଦିବ ବନ୍ଧନ ।
ମେଢ଼ ମଣ୍ଡପ ଦେଉଳ ନାଶଯିବେ
ଗୋବ୍ରାହ୍ମଣ ସ୍ତ୍ରୀ ଯେ ଅନେକ ମରିବେ ।
ସେ ପାପକୁ କରତା ଅଟେ ଦଶଶିର
ଯଦ୍ୟପି ସୀତାଙ୍କୁ ନ ଦେବ ମୋହର ।
ସୀତାଙ୍କୁ ପଞ୍ଚବଟିରୁ ଆଣିଲ ହରାଇ
ମୁହିଁବୋଲୁଛିମୋର ସୀତାଙ୍କୁ ଦେବାପାଇଁ ।
ଏବେ ମୋର ପତ୍ନୀଦେଲେବାହୁଡ଼ି ମୁଁ ଯିବି
ତାର ସଙ୍ଗେ ଆଉ ଯେ ବିବାଦ ନୋହିବ ।
ପୀରତି କରିବ ଯେ ତାରଭୁଲେ ମୁହିଁ
ଜନେକ ଦ୍ରବ୍ୟତାକୁ ଯେ ଦେଉବାହୁଡ଼ାଇ ।
ନ ଦେଲେ ନ ଯାଇ ମୁଁ ଏକଥା ମୋର ସତ୍ୟ
ଅବଶ୍ୟ ତାହାକୁ ମୁଁ କରିବ ପ୍ରାଣେ ହତ ।
ସାକ୍ଷୀ ହୋଇଥାନ୍ତୁ ମୋତେ ଋକ୍ଷକପିବଳ
ଋକ୍ଷକପିବଳ ଶୁଣିଥାଅଛି ସକଳ ।
ଏତେ କହି ରାମ ଅଙ୍ଗଦକୁ ପେଷି
ବାଳିର ତନୟେ ପ୍ରସନ୍ନ ମନେ ହସି ।
ଯାଉଛ ବୋଲି ସେ ଯେ କଲେ ସନମତ
ଶ୍ରୀରାମଙ୍କୁ ସ୍ତୁହିଁ ଶିରେ ଦେଲେ ହସ୍ତ ।
ଆଜ୍ଞା ପାଇଣ ସେ ଯେ ଗଗନେ ଉଡ଼ିମିଳ
ଚାଳିଶ ଯୋଜନ ଉପରକୁ ଉଡ଼ିଗଲା ।
ଧୀର ଧୀର ହୋଇଣ ଯେ ଖସଇ ଗଗନୁ
ଉଦୟଗିରିପରୁ ଖସଇ ଯେହ୍ନେ ଭାନୁ ।
ଲଙ୍କାଗଡ଼ ଭିତରେ ହେଲା ପରବେଶ
ଯେଉଁଠାରେ ଆସ୍ଥାନ କରିଛି ଦଶାନନ ।
ଏକେ ଏକେ ଅସୁରେ କରନ୍ତି ପ୍ରତିଜ୍ଞା
ଅଙ୍ଗଦବୋଲେରାବଣ ଘେନହୋମୁଠାଆଜ୍ଞା
ରାମଚନ୍ଦ୍ର ଧରଣୀକି ନେଇଣ ସମର୍ପିବୁ
ସୀତାଙ୍କୁ ଦେଇ ପାଦେ ଶରଣ ପଶିବୁ ।
ତେବେ ତୁ ଲଙ୍କାରେ ଥିବୁ ସୁସ୍ଥ ହୋଇ
ନୋହିଲେନଷ୍ଟେତୋତେମାରିବେରଘୁସାଇଁ ।
ତୁହି ଏବେ ନ ଜାଣି ଅଜ୍ଞାନ ପଣ କଲୁ
କାଳସର୍ପ ମୁଖରେ ଅଙ୍ଗୁଳି ଭରିଲୁ ।
ଜଳନ୍ତା ଅଗ୍ନିରେ ତୁ ପଶିଲୁ କିସ ପାଇଁ
ସେଦୋଷକ୍ଷମାତୋତେ କଲେ ରଘୁସାଇଁ ।
ଏବେ ଆଜ୍ଞା ଘେନ ଶରଣ ପଶଯାଇ
ଜାନକୀଙ୍କି ଘେନିଆସ ଚାନ୍ଦୋଳା ବସାଇ ।
ଇନ୍ଦ୍ରଜିତ ସହିତରେ ସମସ୍ତେ ସଜ ହୁଅ
ଦେଖିବୁ ପରମବ୍ରହ୍ମ ଦଶରଥ ପୁଅ ।
ତାହାଙ୍କ ନାରାଜରେ ବାଳିବୀର ମଲା
ସୁଗ୍ରୀବର ରାଜା ହୋଇ କିଷ୍କିନ୍ଧ୍ୟା ବଳସିଲା
ସୀତାର ନିମନ୍ତେ ବୁଲିଲେ ବନଘୋର
ଋକ୍ଷକପି ଘେନିଣ ପୋତିଲେ ସାଗର ।
ସେ ରାମର ପ୍ରତିଜ୍ଞା ରଖିବଳେ ଥାଉ
ସୀତାଙ୍କୁ ଦେଇ ଶରଣ ପଶ ଲଙ୍କ ରହୁ ।
ଶୁଣିଣ ଦଶଶିର କୋପେ ପରଚଣ୍ଡ
ବିଂଶ ଲୋଚନରେ କି ବଳେ ମାର୍ତ୍ତଣ୍ଡ ।
ନାଶାକୁ ଫୁଲାଇଣ କହଇ ପୁଣ ରାଗେ
ବୋଇଲାକୁ ସ୍ଥାନଜନ୍ତୁ କହୁଛୁ ମୋର ଆଗେ
ଯାହାକୁ ଦେଖିଲେ ସେ ରେ ଅନେକ ପାପ
ହୋଇ
ସୁବର୍ଣ୍ଣର ଦାନ ଦେଲେରେ ସେଥିରେ
ଦୋଷ ଯାଇ
ଏ କୁଲକ୍ଷଣ କପିକି କେହୁ ପେଶୁଥିଲା
ଏତେବଡ଼ ସଭା ମୋର ଅପ୍ରତିଷ୍ଠ ହେଲା ।
କେଉଁଠାରୁ ଅଇଲା ଏ କହେ କିସ କିସ
ଏ ବଚନ ଶୁଣି ଯେ କହେ ବାଳି ଶିଷ୍ୟ ।
ତୁହି ଏବେ ରାବଣରେ ଜାଣିବୁ ସିନା କାହୁ
ସାବଧାନରେ ଶୁଣରେ ଅଇଲି ମୁଁ ଯହୁଁ ।
ଅଯୋଧ୍ୟାର ନୃପତି ଦଶରଥ ସୁତ
ସ୍ୱୟଂ ନାରାୟଣ ତାଙ୍କନାମ ରଘୁନାଥ ।
ପଞ୍ଚବଟି ବନରୁ ଆଣିଲୁ ଯାର ନାରୀ
ସେଠାରେ ଶ୍ରୀରାମଯେ ପିତାକୁ ମୋର ମାରି
ମୁହିଁ ସେ ବାଳିର ରେ ତନୟ ଅଙ୍ଗଦ
ତୁ କାହୁଁ ମୋତେରେ ଜାଣିବୁ ଦଶକନ୍ଧ ।
ତୁ ଏବେ ନାରାୟଣର ହୋଇଛୁ ଶତ୍ରୁ ପୁଣ
ମରିବାରକାଳତୋରନିକଟ ହେଲା ଜାଣ ।
ପୂର୍ବକଥାମାନ ତୋର ମନୁ ପାଶୋରିଗଲା
ଜିଅନ୍ତ କାଳରେତୋତେବୁଧିତାବାମହେଲା
ମୁହିଁ ଏବେ ତୋତେରେ ଚହ୍ନି ନ ପାରିଲି
ସ୍ୱାମୀର ଆଜ୍ଞାରେ ମୁ ଯେ ଏଥକୁ ଅଇଲି ।

ରାମ ଆଜ୍ଞା ଦେଲେ ମୋତେ ରାବଣକୁ କହ
ଶରଣ ପଶିଲେରେ ରଖିବେ ତୋର ଦେହ ।
ସେ କଥା ଶୁଣି ମୁଁ ଯେ ଅଇଲ ପୁଣ ଏଥ
ମନରେ ମୋର ଭ୍ରାନ୍ତିରେ ଶୁଣ ଦଶମାଥ ।
ରାବଣ ନାମରେ ଛନ୍ତି ଅନେକଟି ରାଜେ
ମୁହିଁ ତୋତେ ମଣିଲିରେ ସୀତାହରିବା ପ୍ରାଏ
ଶୁଣିଣ ଲଙ୍କପତି ବୋଲେ ପୁଣ ରୋଷେ
କେବଣ କେବଣ ରାବଣ ଅଛନ୍ତି କେଉଁ ଦେଶେ
ତୁ ଜାଣିବାରେ ଅଛନ୍ତି କେତେକ ରାବଣ
କହସି ବାନରରେ ଶୁଣିବା ତୋ ବଚନ ।
ଅଙ୍ଗଦ ବୋଇଲାରେ ମୁଁ ଜାଣଇଁ ଯାହା
ଏକମନେ ତୁହି ଶୁଣ କହିବଇଁ ମୁଁ ତାହା ।
ସହସ୍ର ଅର୍ଜ୍ଜୁନପୁରେ ରାବଣ ବନ୍ଧ ଥିଲା
କାଳେ ତାକୁ ପଉଲସ୍ତି ମୁକୁଳାଇ ନେଲା ।
ସେ ସହସ୍ର ଅର୍ଜ୍ଜୁନକୁ ପର୍ଶୁରାମ ମାରି
ସେ ପର୍ଶୁରାମ ରାମଚନ୍ଦ୍ରରେ ଗଲା ହାରି ।
ମୋ ରାମ ତୋର ପୁର ବେଢ଼ି ରହିଛନ୍ତି
ମୋତେ ସେ ଦୂତପଣେ ଏଥକୁ ପେଷିଛନ୍ତି ।
ଆହୁରି ରାବଣ କଥା ଶୁଣ ଏବେ କର୍ଣ୍ଣେ
ଗଦାମାଡ଼ ବସିଥିଲା ତାକୁ ପାତାଳ ଭୁବନେ
ଦୟାକରି ବାମନ ଗଦା କାଢ଼ି ଦେଲେ
ଆହୁରି ରାବଣେ ଯମକୁ ସମରେ ହାରିଲେ ।
ଆରେକ ରାବଣ କପିଳାସ ତୋଳିଥିଲା
ସଦାଶିବଙ୍କର ଗୋଡ଼ ବାଜନ୍ତେ ମରୁଥିଲା ।
ନରେଖି ଦେଖିଣ ତାକୁ ଜୀଆଇଲେ ମହାଦେବ
ଆହୁରି କଥାଏ ତୁ ଶୁଣରେ ଦଶଗ୍ରୀବ ।
ଆରେକ ରାବଣ କିଷ୍କିନ୍ଧ୍ୟା କଟକକୁ ଗଲା
ତର୍ପଣରୁ କାଳେ ଯାଇଁ ବାଳିକି ଧଇଲା ।
କାଖରେ ଯାକି ତାକୁ ଚତୁଃସମୁଦ୍ରେ ସ୍ନାନକରି
କିଷ୍କିନ୍ଧ୍ୟାରେ ମିଳଣ କାଢ଼ିଲା ଦଶଗିରି ।
ଦଶମୁଣ୍ଡ ଦେଖି ମୁଁ ବାନ୍ଧ ଖେଳୁଥିଲି
ସେହି ଅଙ୍ଗଦ ମୁଁରେ ନ ଚିହ୍ନୁ ଦଶଗିରି ।
ଆରେକ ରାବଣ ହରି ଆଣିଅଛି ସୀତା
ତୁ କେଉଁ ରାବଣ ହେ କୁହ ଦଶମଥା ।
ଏକ ରାବଣକୁ ରମ୍ଭା ଅପ୍ସରୀ ଦେଲେ ଶାପ
ଏକ ରାବଣ ନନ୍ଦିକେଶ୍ୱର ହେଲେ କୋପ ।

ତା ଶାପରେ ରାବଣ ମରିବ ନିଅତ
ଆହୁରି କଥାଏ ତୁ ଶୁ ହେ ନୃପନାଥ ।
ଏକ ରାବଣ ଯେ ଅଯୋଧ୍ୟାପୁର ଗଲା
ଆରଣ୍ୟକ ରାଜାର ସଙ୍ଗରେ ଯୁଦ୍ଧକଲା ।
କପଟ ଯୁଦ୍ଧରେ ସେ ଯେ ମାଇଲା ତାହାକୁ
ମରିବାର ବେଳେ ଶାପ ଦେଲା ରାବଣକୁ ।
ମାୟା ଯୁଦ୍ଧ କରି ମୋତେ କଲୁ ନାଶ ଯେବେ
ମୋ ବଂଶରେ ନାଶ ତୁହି ହୋଇବୁଟି ତେବେ
ଏତେକାଳ ଶ୍ରୀରାମ ସେ ବଂଶେ ହେଲେ ଜାତ
ସେହି ମୋତେ ନୃପତି ହେ ପେଷିଛନ୍ତି ଦୂତ
ଆରେକ ରାବଣ ଯେ କୁବେର ସଙ୍ଗେ ଯୁଝି
ଅନେକ ଦୁଃଖ ସେ ଯେ ଦେଲାକ ନ ବୁଝି ।
ସେ ବୋଲଇ ମୁଁ ଯେ ଅଟେ ତୋ ଜ୍ୟେଷ୍ଠ ଭାଇ
ମୋରେ ତୁହି ହିଂସା କଲୁଟିରେ ସାବତ ଗୁଣ ବହି
ଏ ମୋହର ଶାପ ତୋତେ ହେଉରେ ପ୍ରାପତ
ତୁହି ମଲାବେଳେ ତୋତେ ଛାଡ଼ୁ ତୋର ଭ୍ରାତ
ସେ କଥା ଫଳିଲା ଏବେ ବିଭୀଷଣ ଗଲା
ଆଗରେ ଶତ୍ରୁ ତୋର ଉପଗତ ହେଲା ।
ଆରେକ ରାବଣର ଶାପ ଦେଲା ବେଦମତୀ
ତାକୁ ବଳତ୍କାର କରନ୍ତେ କୋପ କଲେ ସତୀ ।
ସେ ବୋଇଲେ ଚଣ୍ଡାଳଟେ କହିଲୁ ମନ୍ଦକଥା ।
ଏଡ଼େ ତପ ମୋର ହୋଇଲା ଅନ୍ୟଥା ।
ଏ ଦେହ ନରଖିବି ଅଗ୍ନିରେ ଝାସ ଦେଲେ
ମରିବାର କେବଳ ଶାପ ଦେଇକରି ଗଲେ ।
ବୋଇଲେ ଏହିକ୍ଷଣି କରନ୍ତି ତୋତେ ନାଶ
ସ୍ତ୍ରୀ ହୋଇ ପାଇବି ପୁ ରୁଷ ହତ୍ୟାଦୋଷ ।
ମୋହର ଯୋଗକୁ ତୁ ପଶ୍ଚାତେ ମୃତ୍ୟୁ ପାଅ
ଏତେ କହିଣ ଦେବୀ ଦହନ କଲେ ଦେହ ।
ସେହି ବେଦମତୀ ହେଲେ ଜନକ ଘରେ ଜାତ
ଯାହାକୁ ତୁ ଆଣିଲୁଟିରେ ତୋର ମୃତ୍ୟୁପଥ ।
ତାର ନିମନ୍ତେ ରାମ ବେଢ଼ିଲେ ତୋର ପୁର
ବାଳିର ନନ୍ଦନ ସେ ହୋଇଅଛି ସ୍ଥିର ।
ଶରଣ ପଶ ଏବେ ଜାନକୀଙ୍କି ଦେଇ
ନୋହିଲେ ତୋହର ବାକୁ ପ୍ରାଣ ନ ରହଇ
ଯେତେକ ରାବଣ ସେ ରହିଥିଲେ ଛନ୍ତି
ତୋତେ କେହି ସମାନ ନୁହନ୍ତି ଲଙ୍କପତି ।

ସହସ୍ରମୁଖା ରାବଣ ଧଲଙ୍କାରେ ଅଛନ୍ତି
ତୋର ସଙ୍ଗେ ମରିବ ତୋର ମିତ୍ର ଗୋଟି ।
ଆଉରେକ ରାବଣ ଅଛି ଯେ କୁମ୍ଭ ଶୃଙ୍ଗ
ଅଲଙ୍କା ଦେଶରେ ଅଟେ ସେ ରାଜାପୁଣ ।
ଶତେମୁଖା ରାବଣ ଅଟେ ତାର ନାମ
ସେହି ନାଶଯିବନ୍ତି ତୋର ସଙ୍ଗେ ପୁଣ ।
ମଦନ କନକପୁରେ ମହା ଯେ ରାବଣ
ସେହି ନାଶଯିବରେ ତୋହର ହେତୁ ପୁଣ ।
ରାବଣ ହୋଇକରି ଗୋଟିଏ ନ ରହିବେ
ଶୁଣ ତୁ ଲଙ୍କପତି ଶ୍ରୀରାମ ମାରିବେ ।
ଆହୁରି ରାବଣରେ କେଉଁ କାର୍ଯ୍ୟ ଅଛି
ଯେହୁ ହରାଇ ଆଣିଲୁ ସୀତା କମଳାକ୍ଷୀ ।
ସେହି ନଷ୍ଟରୁ ମରିବ ଶରଣ ନ ପଶିଲେ
ଜାଇଥିବ ଏବେ ସେ ମୋର ବୋଲ କଲେ ।
ଦଶମୁଖା ରାବଣରେ ବହୁତ କାର୍ଯ୍ୟକରି
ଶୁଣି ଦଶଗ୍ରୀବ ଯେ କମ୍ପାଇ ଥରହର ।
ରାବଣ ବୋଇଲା ତୁ ଶୁଣରେ ଅଙ୍ଗଦ
ଧଲଙ୍କା ରାବଣ କମ୍ପା ମରିବ କହ ଭେଦ ।
ଅଲଙ୍କାଗଡ ରାବଣରେ ମରିବ କମ୍ପାଇଁ
ମହାରାବଣ ପିତା ନାତି ମୋର ହୋଇ ।
ଏମାନେ କମ୍ପାଇ ମରିବେ କହ ତୁ ମୋତେତ
ଶ୍ରୀରାମର ଶତ୍ରୁ ଏ ଯେ ନୁହନ୍ତି ସେମାନେତ ।
ଅଲଙ୍କାଗଡ଼ ତ ଅଟେ ଶତଯୁକ୍ଷ
ସମୁଦ୍ର ଭିତରେ ଅଟେ ତାର ଗଡ଼ ପୁଣ ।
ସେହି ରାବଣ ଅଟେ ଶତମୁଖା ପୁଣ
ଲକ୍ଷେକ କୁମର ପାଞ୍ଚଲକ୍ଷ ନାତି ଜାଣ ।
ବତିଶ କ୍ଷଉଣୀ ଯେ ଅଟେ ତାର ବଳ
ଷୋଳକୋଟି ସେନାପତି ଅଟଇ ତାହାର ।
ତିରିଶ କୋଶ ଉଚ୍ଚ ପାଚେରି ଗଡ ତାର
ଚାରି ପ୍ରତି କୋଣରେ ଆଠକୋଶ ବେଢ଼ ।
ନୀଳବର୍ଣ୍ଣ ପାଚେରି ଗଡ଼ ନୀଳବର୍ଣ୍ଣ
ସେଥିରେ ଯେତେ ଘର ସବୁ ନୀଳବର୍ଣ୍ଣ ।
ଅସୁରେ ନୀଳବର୍ଣ୍ଣ ମଣ୍ଡପ କୂପ ବାପୀ
ନୀଳ ପର୍ବତ ପ୍ରାଏ ସେ ପୁର ଶୋଭା ଦିଶି ।
ଲକ୍ଷେ ବତିଶ ସହସ୍ର ରାଣୀ ତୋର ପୁଣ
ସମସ୍ତେ ନୀଳବର୍ଣ୍ଣ ଶୁଣ ଦେଇ ମନ ।

ଧଲଙ୍କାରେ ନାମରେ ଯେଉଁ ପୁର ଗୋଟି
ଆଠଶକୋଶ ପାଚେରି ଶୁକ୍ଳ ବର୍ଣ୍ଣ ସେଠି ।
ଧବଳ ବର୍ଣ୍ଣ ସବୁ ମଣ୍ଡପ ଅଟ୍ଟାଳି
ଧବଳ ବର୍ଣ୍ଣ ଦୈତ୍ୟ ସମସ୍ତେ ସେ ପୁରି ।
ସାମାନ୍ୟ କଳା ମାଳା ସେ ପୁରେ ଆଉ ନାହିଁ
ସହସ୍ରମୁଖା ରାବଣ ସେ ପୁରେ ଅଛି ରହି
ପଞ୍ଚାଶ କ୍ଷଉଣୀ ଯେ ଅଟେ ତାର ବଳ
ମୁକୁଟ ବନ୍ଧା ସେନାପତି ବାଇଶି କୋଟି ତାର
ତିନି ଶତ କୁମର ସତରଶ ନାତି
ଚନ୍ଦ୍ରମା ଉଠିଲା ପ୍ରାଏ ଦିଶେ ପୁର ଜ୍ୟୋତି ।
ମହିରାବଣ ବୋଲି ଯେ ରାବଣରେ ବୋଲୁ
ଇନ୍ଦ୍ରଜିତ କୁମର ନାତି ମୋର ହେଲୁ ।
ବସ୍ତ୍ରାଳଶ କୁମର ଦୁଇଶ ଅଶୀ ନାତି
ବାର କ୍ଷଉଣୀ ବଳ ଅଟେ ତାର ନିତି ।
ନବକୋଟି ମୁକୁଟ ଧରା ସେନାପତି
ତାହାର ଅଟନ୍ତି ଶୁଣ ଶତେକ ଯୁବତୀ ।
ରଙ୍ଗବର୍ଣ୍ଣ ପୁର ଯେ ଅଟେ ତାର ଜାଣ
ମାଣିକ୍ୟ ବର୍ଣ୍ଣ ହୋଇଛି ସବୁ ଦେଶ ଜାଣ ।
ସେହିପୁରର ନାମ ମାଳାଜ୍ୟୋତି ଜାଣ
ତପସି ଦୁଇଗୋଟି ଅଟନ୍ତି ସେହୁ ଜାଣ ।
ସୁରୂପା ତାର ଆଣିଲୁ ତାହାକୁ ମାରିବ
ଅଯୋଧ୍ୟାରେ ରାଜା ଇନ୍ଦ୍ରଜିତକୁ କରାଇବ ।
ସୈନ୍ୟକୁ ରାବଣ ସେ ବୋଲେ କୋପକରି
ଏ ନଲକ୍ଷଣ କପିଙ୍କ ଝଙ୍କାଇଦେ ମାରି ।
ଶ୍ରୀରାମ ବାପ ଏହାର କରୁ ଯୁଦ୍ଧକୁ ରକ୍ଷା
ଏ ଘର କପି ଗୋଟାକରେ ବହୁତ ଦକ୍ଷା ।
ତପସି ଦୁଇ ବାପୁଡା ଉଳଗିବମାନେ
ଏହାଙ୍କର କଥାକୁ ଡରଇ ଦଶାନନ ।
ବାଳ ଏହାର ବାପ ତାହାଙ୍କୁ ଯତି ମାରି
ଏ ପାପିଷ୍ଠ ପିତାର ବଇରି ସେବା କରି ।
ମାରିଲେ ଚଣ୍ଡାଳକୁ ନ ଚାହିଁ ଏହା ମୁଖ
ଦେଖିଲେ ହରଣ ହେବ ଦିନକର ସୁଖ ।
ସ୍ୱରୂପ ସିଦ୍ଧାନ୍ତ ଯେ କହଇ ନତ ହୋଇ
ତପସିଙ୍କ ରେ କହୁଛି ବଡ଼ ଯେ ଅଟଇ ।
ଏହିଠାରେ ମାରି ଯୁଦ୍ଧକୁ ନକର ଉପ୍ରୋଧ
ଉଣ୍ଟାସକଳେରେଯୁଦ୍ଧକୁକେବେହେଁନୋହେସାଧ

ଜାଣିକି ହନୁମାନ ଯେତେ ହନ୍ଦ୍ୱ କଲ
ବିଶ୍ୱାସ କରିବାରେସେ ଲଙ୍କାକୁ ପୋଡ଼ିଦେଲ
ଏ ସ୍ଥାନ ଜୀବଙ୍କୁ ପୋଷିଲେ ନ ମାନନ୍ତି
ଧରି ବାନ୍ଧଥିଲେ ଏ ଯାବତାରେ ଥାନ୍ତି ।
ହାତରୁ ଫିଟିଲେ ଯେ ଧାଇଲେ ନ ଉହାଇ
ଏ ପାପିଷ୍ଠ ମନ୍ଦପଣ କହୁଲେ ନ ସରଇ ।
ନଖରେ ଛିଣ୍ଡାନ୍ତି କାମୋଡ଼ନ୍ତି ସେ ଦନ୍ତେ
ଯନ୍ତି ସଙ୍ଗ ଏହୁଟରେ ପାଇଲେ କେମନ୍ତେ ।
ମାରରେ ବେଗକରି ନ ଥୁଅ ଯ୍ୱାଙ୍କୁ କ୍ଷଣେ
ଶୁଣିଣ ଆହୋଶି ଯେଧାଇଁଲେ ଦୈତ୍ୟଗଣେ
ସହସ୍ରେ ଅସୁର ଯେ ଅଟନ୍ତି ଗରେଷ୍ଟ
ଅଙ୍ଗଦ ଉପରେ ପ୍ରହାର କଲେ ସୃଷ୍ଟି ।
ସହସ୍ରେ ବଧା ଫେଡ଼ାଇଲ ବାଳ ସୁତ
ବୋଇଲ ରାବଣରେ ଅର୍ଜିଲୁ କାଳ କୃତ୍ୟ ।
ଶୁକ ସାରଣ ମନ୍ତ୍ରୀ ତୋର ଗଲେ ଥାଟକଳ
ଦେଖିକରି ତାଙ୍କୁ ଦୟା କଲେ ଯେ ଶ୍ରୀହରି ।
ତୁ ତାହାଙ୍କର ଲୋକଙ୍କୁ ଅକାରଣେ ମାରି
ପାପ ପୁଣ୍ୟ କଥା ତୁରେ କଳୁନ୍ଥି ନ ବସ୍ତୁରି ।
ଏହି ସମୟରେ ସହସ୍ରେ ମଲବଳ
କାୟମାନ ପର୍ବତର ତୁଲ ।
ଅଙ୍ଗଦକୁ ନବନ୍ଧେ ଧଇଲେ ଯତ୍ନ କରି
ସୂର୍ଯ୍ୟଦେବତାଙ୍କୁ ଯେସନ୍ତେ ମେଘ ଯେ ଉହାଡ଼ି
ଅଙ୍ଗଦ ବୋଇଲାରେ ରାବଣ ଏବେ ଶୁଣ
ମୋତେ ବୋଲୁ ତପସ୍ୱି ମୋରି ବାପ ପୁଣ ।
ତୋ ବାପ ବଣବା କରେ ରଖିପାରେ ତତେ
ମୃତ୍ୟୁଁ ବସୁରିଲେ ରେ ନ ଜାଉ କଦାଚତେ ।
ଏତେ କହି ଅଙ୍ଗଦ ଯେ ବଢ଼ାଇଲ କାୟେ
ଉପରକୁ ବଢ଼ିଣ ଯେ ଗଲ ଯୁଣ ଶବେ ।
ଷଠିଏ ଷାଠିଏ କୋଶ ଦେନ ବାହାକଲ
ଆହୋଶିଲ ମାଲଙ୍କୁ ଦୁଇକରରେ ଧଇଲ ।
ଦୁଇ ଭାଗକରି ବାଣ୍ଟିଲ ସହସ୍ରେ ସହସ୍ରେକ
କ ଜାଣିକ ମିଳଲେ ଦାନବ ଗ୍ରହଯାକ ।
ସହସ୍ରେକ ଅସୁରଙ୍କ କେଶ ବାମକରେ
ଆଉ ସହସ୍ରେକ ମାଲଙ୍କୁ ଦକ୍ଷିଣ କରେଧରେ
ବାଳଧରି ଝିଙ୍କି ଯେ ଦେଲ ଦୁଇଘାନ୍ତି
ସହସ୍ରେକ ମାଲେ ଯେ ରୁଧିର କଲେ ବାନ୍ତି ।

ଦୁଇ ସହସ୍ର ମାଲଙ୍କୁ ଦୁଇହସ୍ତରେ ଘାଡ
ଜଗତି ଉପରେ ନେଇ ସମସ୍ତଙ୍କୁ ଜାଡ ।
ରାବଣକୁ ଘୃଣିଣ କଲ କୋପ ଦୃଷ୍ଟି
କ୍ରୋଧରେ ରାବଣ ଯେ କହୁରେ କଥାଗୋଟି
ମୋତେ ମାୟା କଲେ କରେ କୁ କଣିପାରିବୁ
ଖର ଦୂଷଣ ତ୍ରିଶିର ଲାଉକ ପାଇବୁ ।
ଆବର ସଙ୍ଗତରେ ଚଉଦସହସ୍ର ବଳ
ଶ୍ରୀରାମଙ୍କର ବାଣେ ତାଙ୍କର ପୂରିଲଟି କାଳ ।
ନାସା ଶ୍ରବଣ ଛେଦନ ତୋର ଯେ ଭଉଣୀ
ସେକଥା କଲେଟି ରଘୁକୁଳ ମଣି ।
ତୋତେ ମାରିବେ ବୋଲି ସେପ୍ରତିଜ୍ଞାକରିଛନ୍ତି
ତେଣୁ ତୋତେ ରାବଣର ଗ୍ରହିଲ ଏ ଶାନ୍ତି ।
ନୋହିଲେ ମୁଣ୍ଡତୋର ମୋଡ଼ନ୍ତି ରେ ଧରି
ସ୍ୱାମୀର ଆଜ୍ଞାକ ରେ ବଅର୍ଥ କରିପାରି ।
ଭୁଲିକ ଜୀବନରେ ପାଆନ୍ତୁ ପୁଣ ଆଜ
ନୋହିଲେ ତୋତେ ମୁଁରେ ମାରିଥାନ୍ତି ରାଜ ।
ଦଶଶିର ମୋଡ଼ ତୋର ପକାନ୍ତି ଉବତଳେ
କଥା ରହିଥାନ୍ତାରେ ଏ ମହୀମଣ୍ଡଳେ ।
ଏହିରୂପେ ମାରନ୍ତି ବୋଲିଣ ଉଡିଦେଲ
କେତେ ଅସୁରଙ୍କ ବେକ ମୋଡ଼ ପକାଇଲ ।
ମୃତ୍ୟୁ ପିଣ୍ଡମାନ ଆସି ପଡ଼ିଲେ ଯେ ତଳେ
ରାବଣକୁ ଧଇଲ ଅଙ୍ଗଦ ବାହୁବଳେ ।
ମାଲଯୁଦ୍ଧ ଦୁହେଁ ଯେ ଜଗତିପରେ କଲେ
ଧରାଧରି ହୋଇଣ ତଳରେ ପଡ଼ିଲେ ।
ମରାମରି ଧରାଧରି ହୋନ୍ତି ବେନବୀର
ମୋ ପିତା ଅଟେ ବାଳକରେ ଭୁବଶବା କୁମର
ସମସ୍ତେ ଦୈତ୍ୟଦଳ ଯେଦେଖନ୍ତି ଉଭାହୋଇ
ପୁତ୍ର ଇନ୍ଦ୍ରଜିତ ଅଛନ୍ତି ପାଶେ ରହି ।
ବାଳିର କୁମର ଯେ ରାବଣକୁ ଧରି
ଦୁଇମୁଥ ମୁର୍ଦ୍ଧ୍ନରେ ପ୍ରହାର ବେଗେ କରି ।
ଘା ଏ ଘୁମାଇଲ ଯେ ମନ୍ଦୋଦରୀ ସାଇଁ
ଦେଖିଣ ଅଙ୍ଗଦ ଯେ ମନରେ ବସୁରଇ ।
ଦୁଇହସ୍ତରେ ବେକ ଧଇଲ ତାହାର
ଫୋପାଡ଼ ଦ୍ୟନ୍ତେ ବେଗେ ପଡ଼ିଲ ଅନ୍ତଃପୁର
ଯେଉଁଠାରେ ରାଣୀବଂଶ କରନ୍ତି ବସ୍ତୁର
ସେହିଠାରେ ରାବଣ ପଡ଼ିଲ ତତ୍‌କାଳ ।

ମନ୍ଦୋଦରୀ ରାଣୀ ତୋଳିଣ ବେଗେ ଧରେ
ନିଳାବଣ୍ଟ ବୋଲି ରାଣୀ ସିଞ୍ଚେ ଜଳପରେ ।
ଆଉ ରାଣୀହଂସମାନେ ଘଷନ୍ତି ପାଦ ଦେହ
ଚେତା ପାଇ ରାବଣ ହଜାଇଲା ମୋହ ।
ମନ୍ଦୋଦରୀ ରାଣୀ ବୋଲେ ଏ କେବଣ ରୀତ
ଦଶଗ୍ରୀବ ବୋଲଇ ଶୁଣ ଗୋ ପ୍ରିୟବତୀ ।
ବାଳିର କୁମର ଯେ ଅଙ୍ଗଦ ନାମେ ବୀର
ଶ୍ରୀରାମ ଦୂତ ହୋଇ ଅଇଲା ମୋ ପୁର ।
ଅନେକ କଥା ମୋତେ କହିଲା ଛଳାଇ
ହୋଇଲା ସୀତାଦେଇ ଶରଣ ପଶ ଯାଇ ।
ମୁହିଁବୋଇଲି ସୀତାଙ୍କୁ ମୁଁ ନଦେବିକଦାଚିତେ
ଆଗମୋତେ ମାରି ପଛେ ନେଉ ରଘୁନାଥେ
କ୍ରୋଧଭରେ ମୋତେ ମୁଥେକ ପ୍ରହାରିଲା
ମୋର ଦେକ ଧରି ସେ ଫୋପଡ଼ାଇ ଦେଲା
ଏତେ ବୋଲି ରାବଣ ଉଠିଣ ବେଗେଗଲା
ରାବଣକୁ ଫିଙ୍ଗିଦେଇ ଅଙ୍ଗଦ ପସୁରିଲା ।
ଜଗତିର ଖମ୍ବକୁ ଧରି ବୀର ବଳେ
ଜଗତୀରେ ଉଠିଲା ଯାଇଣ ତତକାଳେ ।
ଉପର ରହୁଗନ୍ଧ ଧରିଣ ଉଠିଗଲା
ଗଗନ ପଥରେ ସେ ଧଇଁଣ ବହମିଲା ।
ଶାର୍ଦ୍ଦୂଳକୁ ବକ ଯେହ୍ନେ ଧରିଣ ଉଠଇ
ଚନ୍ଦ୍ରୁଁ ଶତେଗୁଣ ଯେ ବାନର ଚନଇ ।
ଦୁଇଶତ ଯୋଜନ ଯେ ଉଡ଼ିଲା ଉପରକୁ
ଧୀର ଧୀର ହୋଇଣ ସେ ଖସଇ ତଳକୁ ।
ଶ୍ରୀରାମ ଯେ ଲଙ୍କାର ଉତ୍ତରଦ୍ୱାରେ ଛନ୍ତି
ସୈନ୍ୟ ସହିତେଣ ଉପରକୁ ଦୃଷ୍ଟି ଦ୍ୟନ୍ତି ।
ଜ୍ୟୋତିର୍ମୟ ତେଜ ବିକାଶେ ଗଗନେ
ସ୍ୱର୍ଗେ ଥାଇ ପ୍ରଶଂସା ଯେ କରନ୍ତି ସୁରଗଣେ
ଶ୍ରୀହରିଙ୍କ କନ୍ଧେ ବହି ଗରୁଡ଼ ଯେହ୍ନେତେଜ
ତେସନେକ ପଟାନ୍ତର ବାନର ଆତ୍ମଜ ।
ସୁଧର୍ମା ସଭାନକ ଆସଇ ଗଗନୁ
କଅବା ମଞ୍ଚକୁ ଅଇଲେ ଦେବ ଭାନୁ ।
ଧିର ଧିର ହୋଇଣ ଅଇଲା ତାର ସୁତ
ପ୍ରଳୟ କାଳରେ କି ଉଦୟେ ଧୂମକେତୁ ।
ଜଗତୀର ସ୍କନ୍ଧ ଯେ ଅଛଇ ବୀର ଧରି
ମସ୍ତକ ଉପରେ କି ଦିଶଇ ଉଦେଗିରି ।

ନେତର ଚରାଳ ଯେ ଉଡ଼ଇ ଫରହର
ହବମ ଗତିବରି ଉଡ଼ଇ ମହାବୀର ।
ଲଙ୍କାର ଲୋକେ ଯେ ଉର୍ଦ୍ଧ୍ୱକୁ ଦୃଷ୍ଟି ଦ୍ୟନ୍ତି
ଶ୍ରୀରାମର ଦୂତ ଏ ଯେ ବୋଲିଣ ବୋଲନ୍ତି ।
ପ୍ରୀତି ହୋଇବ ବୋଲି ଯେ ଏଥକୁ ଆସିଥିଲା
କଥା ନ ରହିବାରୁ ସେ ବାହୁଡ଼ି ଏଥୁ ଗଲା ।
ଦୁଇସହସ୍ର ମାଲଙ୍କର ମୋଡ଼ିଲା ଏ ମୁଣ୍ଡ
ଏବେ ଯେନ ଚଳଇ ଜଗତୀ ସ୍କନ୍ଧଖଣ୍ଡ ।
ରାବଣକୁ ମାରିବ ବୋଲିଣ ମନକଲା
ସ୍ୱାମୀର ଦୋରେହା ବୋଲିଣ ଛାଡ଼ିଦେଲା ।
ଦେଖ ଧୂମ୍ର କେତୁପ୍ରାଏ ଗଗନେ ଦିଶଇ ।
ସ୍ୱର୍ଗର ଚନ୍ଦ୍ର ଯେହ୍ନେ ମଞ୍ଚକୁ ଆସଇ ।
ବାବୁ ରାମଚନ୍ଦ୍ରରେ ମହିମା ତୋର ଧନ
ଏକେ ଏକେରେ ଜିଣିପାରନ୍ତି ମେଦିନୀ ।
ହନୁମନ୍ତ ନାମରେ ଆରେକ ଆସିଥିଲା
ସୁବର୍ଣ୍ଣମୟେ ଲଙ୍କା ଅଙ୍ଗାର କରିଗଲା ।
ଅକ୍ଷୟ କୁମର ଯେ ଜମ୍ବୁମାଳିକ ମାରି
ଆବର ଅନେକ ଅସୁର ଗଲା ଯେ ସଂହାରି
ସବୁଙ୍କରି ମୁଖରେ କାଳି ଲଗାଇଲା
ମଧୁବନ ଭାଙ୍ଗିଣ ସୁଖେ କେ ଏଥୁଗଲା
ଏବେ ଅଇଲା ଯେ ମୂଠା ଆଜ୍ଞା ଘେନ
ଦୁଇସହସ୍ର ମାଲଙ୍କର ମୋଡ଼ିଲା ମୁଧୂନ ।
ଦଶଗ୍ରୀବକୁ ଏ ଯେ ଫୋପାଡ଼ି ପୁଣ ଦେଲା
ଅନ୍ତଃପୁର ମଧ୍ୟେ ଲଙ୍କପତି ଯେ ପଡ଼ିଲା ।
ମେଢ଼ର ସହିତେ ଏ ଯେ ଉଠାଇ ଘେନଗଲା
କେହି ତାହାକୁ କିଛି କରି ଯେ ନ ପାରିଲା ।
ଏସନକ ବୋଲିଣ ବୋଲନ୍ତି ଲଙ୍କାଜନ
ଏଥୁଅନନ୍ତରେ ବାଳି ନନ୍ଦନ ଯେ ପୁଣ ।
ରବି ତଳରେ ଝମ୍ପ ହୋଇଲକ ଯାଇଁ
ଶ୍ରୀରାମଙ୍କୁ ଓଳଗଇ ପାଏ ପଡ଼ଶୋଇ ।
ଜଗତିସ୍କନ୍ଧ ଥୋଇ ଉଠିଲା ବେଗ ଧାତି
ଅଙ୍ଗଦକୁ ପୁଚ୍ଛିଣ ବୋଲନ୍ତି ଦାଶରଥି ।
ଏ କିସ ପଦାର୍ଥରେ ପାଇଲୁ ବଳା କାହିଁ
ଦେଖିଲୁ କରେ ବଳା ମନ୍ଦୋଦରୀ ସାଇଁ ।
ହୋଇ ଦେବ ବୋଲିଣ ବୋଇଲା ବାଳିସୁତ
ତୁମ୍ଭର ଆଜ୍ଞାରେ ଦେବ ଦେଲ ଯେ ମୁହିଁଦୂତ

ଗଗନେ ଭ୍ରମିଣ ଗଲି ସେ ଲଙ୍କାପୁରୀ
ଦେଖିଲି ଆସ୍ଥାନରେ ବିଜେସ୍ୟ ଦଶଶିର ।
ମନ୍ତ୍ରୀ ଅମାତ୍ୟ ସହିତେ ବନ୍ଧୁଜନ
ଆସ୍ଥାନ କରି ବସି ଅଛନ୍ତି ଦଶାନନ ।
ତୁମ୍ଭର କଥାକୁ ମୁଁ କହିଲି ତାର ଆଗେ
ନିଜାନ୍ତକଥାକୁ ସେ ମଣିଲା ବଇରାଗେ ।
ଲଙ୍କପତି ବୋଇଲାରେ ଏହାକୁ ଧରି ମାର
ନିର୍ଜନ ହୋଇ ଯତି ମୋଠାକୁ ପେଶେ ଚୋର ।
ମୋର ସଙ୍ଗେ ଯୁଝିବାକୁ ଅଇଲା ଏତେ ଦୂର
ଯୁଦ୍ଧକୁ ନ ପାରିବାରୁ ନିର୍ଜନ ଥିବ ତାର ।
ଖରଯାକୁ ଆଣିଲି ତାକୁ ମୁଁ ମାରିବି
ଅଯୋଧ୍ୟାରେ ମୋ ପୁତ୍ରକୁ ରାଜା କରାଇବି ।
ତେବେ ସିନା ଜାଣିବେ ସୁର ଲୋକମାନେ
ମୋହର ପାଦତଳେ ଖଟିବେ ଦେବଗଣେ ।
ଏହାର ପ୍ରାପ୍ୟେ କେତେ ଯତି ଛନ୍ତି ପୁଣ
ଏ ଯତିର ମାଉଁସକୁ ଖାଇବି ପୋଡ଼ିଣ ।
ମୋର ମୁଖରୁ ଜବୁରି ଯିବେ କି ଦୁଇଭାଇ
ଦୁଇଜନ ମୋହର ଆହାର ହେବେ ସେହି ।
ସେନାପତିଙ୍କି ମୋ ପୁତ୍ରେ କରିବେ ଆହାର
ଲକ୍ଷପତି ବଳଙ୍କୁ ଖାଇବେ ଦୈତ୍ୟ ମୋର ।
ନୋହିଲେ ମୋତେ ଯେବେ ଖାଇବେ ରାଘବ
ତିନକୋଟି ପଚିଶ ସହସ୍ର ରାଣୀ ମୋର ନେବ
ପୁତ୍ର ନାତି ମୋର ବନ୍ଧୁଜନ ଘେନ ସଙ୍ଗେ
ସମସ୍ତଙ୍କୁ ନେବ ମୁଁ ଭଉଁଙ୍ଗ ନାହିଁ ଅଙ୍ଗେ ।
ତାହାର ମାଆକୁ ଯେବେ ବାପ ନେଇଅଛି
ମୋହର ଠାକୁ କମ୍ପା ଯଣ୍ଡ ଦୂତ ପେଶୁଅଛି ।
ଏତେ ବେଳେ ଲକ୍ଷୋଧ ଯେ ହେଲା ମୋରଠାରେ
ଦୁଇ ସହସ୍ର ମାଲଙ୍କୁ ବୋଇଲା ମାର ଯାରେ
ଦୁଇ ସହସ୍ର ମାଲ ମୋର ସଙ୍ଗରେଯୁଦ୍ଧକଲେ
କର୍ମର ଅବଳେ ସେ ପ୍ରାଣ ହରାଇଲେ ।
ରାବଣ ସହିତେ ମାରିବାକୁ ମୁଁ ମନକଲି
ତୁମ୍ଭ ଆଜ୍ଞା ନ ଥିବାରୁ ତାକୁ ମୁଁ ନ ମାଇଲି ।
ତାହାକୁ ଧରି ଫୋପାଡ଼ି ଦେଲି ଯେ ମୁହିଁ ପୁଣ
ପଡ଼ିଲା ରାଣୀହଂସ ପୁରରେ ସେହି ଜାଣ ।
ସେହି ବସିବା ଜଗତିର ଅଟେ ଏହି ସ୍ଥଳ
ଦେଖାଇବାକୁ ମୁଁ ଏହା ଆଣିଛି ରଘୁଲାଳ ।
ରାବଣ ମୂର୍ଖ ଯେ ନୁହଇ ରାଘବେ
ଜାଣିଲି ତାହାକୁ ମୁଁ କାଳଘୋଟେ ଏବେ ।
ପ୍ରୀତିରେ ମୁଁ କହିଲି ଯେ ମନେ ଅଣହିତ,
ବୋଇଲା ପାଇଲାରପଦାର୍ଥ ନଦେଇକଦାଚିତ
ତୁମ୍ଭେ ନର ବାନର ଭୟ ଦେଖାଅ ମୋତେ
ତୁମ୍ଭେ ଘୁଚ ହୋଇକରେ ମାରିବ ମୋହରେ
ଯୁଦ୍ଧକୁ ନ ପାରରେ ପ୍ରୀତି ଇଚ୍ଛା କରି
ଆଜିକ ପ୍ରାଣ ତୁମ୍ଭର ରଖିବ ଦଶଶିର ।
ଦେବତାଙ୍କୁ ଦଳିଲି ଏହି ଭୁଜ ଦର୍ପେ
ଏତେ କହି ବାହୁ ଯେ ବସ୍ତାରିଲା କୋପେ ।
ଦନ୍ତ ରେକଟି କରି ବୋଇଲା ଶିରଝୁଣି
ମୁଁ ଦୁଷ୍ଟଙ୍କ ଭୟ ନକଲି ହୋ ରଘୁମଣି ।
ଯୁପୋଡ଼େ ମାରିଥିଲେ ହରାନ୍ତା ସେହି ପ୍ରାଣ
ଯହୁଁ ତୋର ଆଜ୍ଞା ନଥିଲା ରଘୁରାଣ ।
ଆହୁରି କଥାଏ ଯେ ଶୁଣ ମନ ଦେଇ
ହନୁମନ୍ତ ମାଡ଼ି ତ କଳନା ନ ଯାଇ ।
ଯେଉଁଠାକୁ ଯିବ ଦେବ ତାହାରି ସଙ୍ଗେଣି
ବୃଦ୍ଧ ବାଳକ ସ୍ତ୍ରୀ ପୁରୁଷ ସର୍ବେ ପୁଣି ।
ଶୁଣିଣ ଦାଶରଥି କାଳମୁଖକୁ ଆଜ୍ଞାଦେଲେ
ପୂର୍ବଦ୍ୱାରୁ ସୁଗ୍ରୀବରକୁ ଘେନଆସ ବୋଇଲେ
ନଳ ନୀଳ ଗନ୍ଧମାଦନ ଶତବଳ
ତାହାଙ୍କୁ କହି ବାକୁ ହୋ ଏଠାରୁ ନଚଳ ।
ଶ୍ରୀରାମର ଆଜ୍ଞାରେ କେହିତ ନ ଯାଅ
ନବର୍ନ୍ଧ କରିଣ ଯେ ଦ୍ୱାର ଜଗିଥାଅ ।
ଏତେକହି ତାହାଙ୍କୁ ସୁଗ୍ରୀବରଙ୍କୁ ଘେନଆସ
ଶୁଣିଣ କାଳମୁଖ ଯେ ହୋଇଲା ହରଷ ।
ଶିରେ କର ଦେଇଣ ଯେ ପଛକୁ ଘୁଞ୍ଚଗଲା
ଶ୍ରୀରାମଙ୍କ ଛାମୁରୁ ଗଗନେ ଭ୍ରମିଲା ।
ପୂର୍ବଦ୍ୱାରେ ଯାଇଣ ସେ ମିଳିଲା ତତକ୍ଷଣ
ଦେଖିଲାକ ବସି ଅଛଇ ରୋମା ପତି ।
ନମସ୍କାର କରିଣ କହିଲା ସେ ବାରତା
ବୋଇଲା ଦେବମୋତେ ପେଷିଲେଜଗନ୍ନିତା
ବେଗେ ତୁମ୍ଭେ ହେ ସେନାମାନଙ୍କୁ ଘେନି
ଏମାନେ ବସିଥିବେ ଗଡ଼ ଯେ ଦ୍ୱାରମାଡ଼ି ।
ଶୁଣିଣ ସୁଗ୍ରୀବର ନଳ ନୀଳକୁ ସେ ହକାରି
ଦ୍ୱାର ଜଗିଥାଅ ବୋଲିଣ ଆଜ୍ଞା କରି ।

ଉତ୍ତର ଦ୍ୱାରକୁଇଁ ବେଗେ ଚଳିଗଲା
ଶ୍ରୀରାମଙ୍କ ପାଶରେ ପ୍ରବେଶ ଯାଇଁ ହେଲା ।
ସଙ୍ଗତରେ ଲକ୍ଷ୍ମଣ ଅଛଇଁ ଅଙ୍ଗଦଳ
ଉଡ଼ନ୍ତ ପଡ଼ନ୍ତ ଛନ୍ଦ ଭ୍ରମର ବଉଳ ।
ଶ୍ରୀରାମଙ୍କ ସମ୍ମୁଖରେ ସେ ମିଳିଲେ ବେଗେଯାଇଁ
ଧାତିକାରେ ଉଠିଲେ ଘ ଏ ପଡ଼ ଶୋଇ ।
ମଥାରେ ହାତ ଦେଇଣ ନିକଟକୁ ଗଲେ
ଶ୍ରୀରାମ ବୁଝିଣ ସୁଗ୍ରୀବଙ୍କୁ ଆଜ୍ଞା ଦେଲେ ।
ପୁଣ ତୁମ୍ଭେ ମିତ ହେ ରାବଣର ବଧନ
ଆମ୍ଭେ ଯେ ପେଷିଲୁ ବାଳିର ନନ୍ଦନକୁ ପୁଣ
ବୋଇଲୁ ରାବଣ ଯେ ନଜାଣିବା ପଣ କଲା
ପ୍ରିୟବସ୍ତ ହରିଯାକୁ ବେଗ୍ରଇ ଘେନ ଗଲା ।
ସେ ଦୋଷ ନ ଧରଇ ସୀତାଙ୍କୁ ମୋରଦେଉ
ତାହାର ମୋହର ଯେ ପୀରତି ରହୁଥାଉ ।
ଏସନ ବୋଲିଣ ଯେ ପେଷିଲ ଅଙ୍ଗଦ
ସେ କଥାକୁ କହ ଯେ ବୋଇଲ ଦଶକନ୍ଧ ।
ସେ କଥା ଶୁଣନ୍ତେ ମିତ ସାବଧାନ ହୋଇ
କହରେ ଭ୍ରମର ଯାହା କହିଲା ଲଙ୍କସାଇଁ ।
ଅଙ୍ଗଦ ବୋଇଲମୁହିଁଯେତୁମ୍ଭର ଆଜ୍ଞାରେଗଲି
ଆସ୍ଥାନ କରିଅଛି ରାବଣକୁ ଯେ ଦେଖିଲି ।
ଏ ତୁମ୍ଭର ଆଜ୍ଞା ମୁଁ ଯେ କହିଲି ଜାବତ
ବୋଇଲ ଆଜ୍ଞା ଦେଇଛନ୍ତି ରଘୁନାଥ ।
ଯେବଣ ଦୋଷ କଲୁରେ ନଧରେ ତାହାରାମ
ଜାନକୀକ ଦେଲେ ଯେ ଫେରିଯିବେନଜଗ୍ରାମ
ଏକଥା ଶୁଣି ମନେ ବୁଝିଲା ପୁଣି ଖଙ୍ଗ
ଯଷ୍ଟି ପ୍ରହାରେ ଯେହ୍ନେ ଗର୍ଜଇ ଫଣଙ୍ଗ ।
ଡାଢ଼ି ଧରି ପ୍ରତିଜ୍ଞା ସେ କଲାକ ପୁଣି ପୁଣି
କାଲି ଭକ୍ଷକପି ଯେ ପକାଇବ ହାଣି ।
ତୁମ୍ଭେମାନେ ଏ ସ୍ଥାନରୁ ଯିବକ ପ୍ରାଣଘେନ
ସଂଗ୍ରାମକରିବବୋଲିପ୍ରତିଜ୍ଞାକରିଥିଲସସ୍ରଯୋନ
ଶୁଣିଲା ସୁଗ୍ରୀବର ଅଙ୍ଗଦ କହନ୍ତେ
ହାହା ଫୁଲିଇଣ ବୋଇଲା ରାମା କାନ୍ତେ ।
ହେ ରାମ ତୁମ୍ଭେ ଆଜ ହସ୍ତର ନ କରତ
ମରିବା ପ୍ରାଣୀକି ଅମୃତ ଲାଗେ ବିଷ ।
ଧର୍ମ ପୁରୁଷ ତୁ ଯେ ଧର୍ମକୁ ଜାଣିଲୁ
ଦଣ୍ଡସାମ ବେଦତ ତର୍କରେ ଜାଣିଲୁ ।

ସେ ଯେ ମୂର୍ଖ ପ୍ରାଣୀ ଅଟଇ ସେ ଦନୁଜ
ସୁବୁଦ୍ଧି ଆସେ ତାକୁ ନୁହେ ହେ ଦେବରାଜ
ଏତେତବୋଲି ଗାର ଯେ ଗର୍ଜଇ ପୁଣ ପୁଣି
ହଅସି ଦେବ ଆଜ୍ଞା ହେ ରଘୁକୁଳମଣି ।
ରାବଣ ଦଶମୁଣ୍ଡ ମୋଡ଼ିବ ଭୁଜବଳେ
କଥା ରହିଥାଉ ଏ ମସ୍ଥ ମଣ୍ଡଳେ ।
ବାହାସ୍ଫୋଟ ମାରିଣ ମୋଡ଼ିଲା ପୁଣ ନଶ
ପ୍ରଖର ପବନ ପ୍ରାୟେ ବହିଲା ନିଃଶ୍ୱାସ ।
ବେଳକୁ ବେଳ ପ୍ରତିଜ୍ଞା କଲା ସେ ଶିରଧୂଣି
ଗର୍ଜନ ନାଦକରି ଉଠଇ କପିମଣି ।
ଲଙ୍କା କ ଉପାଡ଼ି ପକାଇବ ସେ ସାଗରେ
ସହସ୍ର ରାକ୍ଷସଙ୍କୁ କ ପେଷିବ ଯମପୁରେ ।
ବେଳକୁବେଳ କୋପ କଲାକ ସୁଗ୍ରୀବର
ଚଗ୍ର ମାନ ବସିବ କ ଯାଇ ଜଗତି ଉପର ।
ଗ୍ଳନଷ୍ଟି ଯୋଜନ ଉପରକୁ ଯେ ଉଠିଗଲା
ଶୂନ୍ୟେ ରହିଣ ସେ ଯେ ଲଙ୍କାକୁ ଗ୍ରହିଁଦେଲା
ଦେଖିଲା ଆସନେ ବସିଛି ଲଙ୍କସାଇଁ
ଧୀର ଧୀର ହୋଇଣ ଶୂନ୍ୟର ସେ ଖସଇ
ଦେଖିକରି କ୍ରୋଧ ଯେ କଲାକ ସୁଗ୍ରୀବର
ଚଗ୍ରଏ ମାରି ବସିଲା ଜଗତି ଉପର ।
ରାବଣକୁ ଆସ୍ଥାନରୁ ପେଲିଦେଲା କପିପତି
ଆସ୍ଥ ନଉ ପରେ ବସିଲା କୋପ ସେକରିମତି
ଦେଖିଣ ରାବଣ ଯେ ହୋଇଲା ବିସ୍ମୟେ
ମର୍କଟ ଯୋଗରୁ ମୋର ଲଙ୍କା ଗଲା ଷୟେ
ଏବୁଷଣି ମୂଠା ଆଜ୍ଞା ଘେନ ମର୍କଟେ ଅଇଲା
ଦୁଇସସ୍ର ମାଳଙ୍କରମୁଣ୍ଡ ମୋଡ଼ିଣ ଫିଙ୍ଗିଦେଲା
ମୋଟେ ଫୋପାଡ଼ି ଯେ ଦେଲାକ ବାହୁବଳେ
ପଡ଼ିଲ ମୁଣ୍ଡି ଯାଇଣ ଅନ୍ତଃପୁର ପୁରେ ।
ଜଗତି ରହୁଚାଳ ଘେନଣ ଉଡ଼ିଗଲା
ପୁଣି ମର୍କଟେ ଆସ୍ଥାନମୋର ମାଡ଼ିଣ ବସିଲା
ଏତେକ ହଟାରି ଷଣେ ହୋଇଲା ଚକିତ
ବୋଇଲା କପି କାହୁଁରେ ମିଳିଲୁ ତୁ ଏଥି ।
କପି ବୋଇଣ ମୋରରେ ଆସ୍ଥାନେ ବସିଲୁ
ଏ ମହାପ୍ରଷ୍ଠ ମୋର ଅପ୍ରତିଷ୍ଠା କଲୁ ।
ସୁଗ୍ରୀବ ବୋଇଲାରେ ନ ଚିହ୍ନିଲୁ ମୋତେ
ମୋର ଭାଇକାଖେ ଯାକ ନେଇଥିଲାତୋତେ

ଅଙ୍ଗଦଠାରୁ ତୋହର ମୁଁ ଦେଲି ଯେମୁକୁଳାଇ
ତୁ ଦଶମୁଖ ମୋହଠାରେ ଚଢ଼ିବୁ କାହିଁପାଇଁ
ମେ ହର ନାମଟିରେ ଅଟଇ ସୁଗ୍ରୀବର
ଶ୍ରୀରାମର ଆଜ୍ଞାଥିଲେ ମୋଡ଼ପକାନ୍ତି ଦଶଶିର
ଏତେ କହି ସୁଗ୍ରୀବର ଗର୍ଜନ ନାଦକଲା
ରାବଣ ଦଶମୁଣ୍ଡ ମୁକୁଟ ଧରଣ ଉଚ୍ଛୁଡ଼ିଲା ।
ଆଣ୍ଟୋଣି ଦଶ ମୁକୁଟ ଝିଙ୍କିଲା ଭୁଜବଳେ
ଫିଟାଇ ପକାଇଲା ଦଶମୁକୁଟ ଜଗତ୍ତାରତଳେ
ଦେଖିଣ ରାବଣ ଯେ କ୍ରୋଧରେ ଅନ୍ତରାଳ
ଧାଇଁଣ ଧଇଲା ଯେ ସୁଗ୍ରୀବର ବାଳ ।
ସୁଗ୍ରୀବର ତାର ବାଳ ଧଇଲା ଭୁଜବଳେ
ଦୁହେଁ ଧରାଧରି ହେଲେ ଜଗତ୍ତାର ତଳେ ।
ମାଲବନ୍ଧେ ଦୁହେଁ ପଡ଼ଣ ଗଡ଼ଯାନ୍ତି
ନଖ ଦନ୍ତ ଘାଏ ଯେ ହୃଦୟୁ ବିଦାରନ୍ତି ।
କେହୁ ତଳେ କେହୁ ଉପରେ ପୁଣ ପଡ଼ି
ମୁଣ୍ଡରେ ମୁଣ୍ଡମାରି ଯେହୁଅନ୍ତି କେ ଡାକୋଡ଼ି
ବଜ୍ରସମ ମୁଥ ଯେ ମାରନ୍ତି ବଧାଘାତ
ପେଟକୁ କେହୁ ଯେ ପ୍ରହାରନ୍ତି ନାତ ।
ବଚଶ ମାଲ ବନ୍ଧାଣ ଲଗିଲେ ରେମାକାନ୍ତ
ସ୍ବର୍ଗରେ ଥାଇଣ ଦେଖନ୍ତି ଅମର ସମସ୍ତ ।
ବାକୁ ସୁଗ୍ରୀବରରେ ମହିମା ତୋର ଧନ
ରାବଣ ସଙ୍ଗରେ ଯୁଝି ବନ୍ଧାଣ ଗତି ଶେଷ ।
ସାମାନ୍ୟ ଗତି ତୁମ୍ଭେ ଅଟ ଯେ ବେନବୀର
ଏମନ୍ତ ବୋଲି ପ୍ରଶଂସା କରନ୍ତି ଦେବାସୁର ।
ଦୁହିଁଙ୍କର ଯୁଦ୍ଧ ଯେ ଦେଖିଣ ଅସୁରେ
ଚକିତ ହୋଇଣ ରୁହାନ୍ତି ହେ ଯାହାରେ ।
ରାବଣକୁ ମାଡ଼ି ଯେ ବସିଲା ସୁଗ୍ରୀବର
କୋପେଣ ଭର୍ତ୍ସନା ଯେ କଲାକ ଅପାର ।
ବୋଇଲା ପାମର ସୁମର ତୋର ଇଷ୍ଟ ଯେ
ଦେବତା
ସୁମର ପାମରରେ ତୋହର ମାତା ପିତା ।
ବେଣ୍ଟୁବେଳ କୋପ ଯେ କଲାକ ସୁଗ୍ରୀବର
ବୃକୋଦର ମୁଷ୍ଟିପ୍ରାଏ ହଣଇ ଶରୀର ।
କୋପରେ ସୁଗ୍ରୀବର କରଇ ସିଂହରଡ଼
ମେରୁର ଉପରେ କ ମନ୍ଦର ପଡେ
ଝଡ଼ ।

ଆଣ୍ଟୋପି ବଜ୍ରମୁଥ ମାଇଲା ନେଇ ତୋଳ
ଝରଝର ଦଶବଦନୁ ରୁଧିର ପଡ଼େ ଗଳ ।
କୋପରେ ଗର୍ଜି ଯେ ଉଠିଲା ଦଶଶିର
ଲେଉଟାଇ ମାଡ଼ିଣ ବସିଲା ସୁଗ୍ରୀବର ।
ବୁକୁରେ ଆଣ୍ଠୁ ଭର ଦେଇଣ ରାବଣ
ଆଣ୍ଟୋପି ବଜ୍ରମୁଥ ମାଇଲା ବଦନ ।
ପୁଣି ଲେଉଟାଇ ମାଡ଼ିଣ ବସିଲା ରେମାପତି
ବେଜରେ ହାତ ଦେଇ ମୁଥେ ମାଇଲାତଡ଼ତି
ଏସନେକ ଯୁଦ୍ଧ ଦେଖିଣ ଦଇତେ
ଶସ୍ତ୍ରମାନ ଘେନ ଯେ ମିଳିଲେ ଅଗତେ ।
ଇନ୍ଦ୍ରଜିତ ପ୍ରହସ୍ତ କାଳଘଣ୍ଟାବୀର
ମାହୋଦ୍ର ସିଂହ କୁରଙ୍ଗ ଅଟେ ଯେ ମହାବୀର
ବଜ୍ରଦଂଷ୍ଟ୍ର ଅକମ୍ପନ ଧୂମାକ୍ଷ ମହାବୀର
ଯମଘଣ୍ଟକୁ ମିଶି ଯେ ମିଳିଲେ ସକଳ
ଏମାନେ ଆସିଣ ମିଳିଲେ ସସ୍ତ୍ର ଘେନ
ମାରମାର କପିକି ବୋଲିଣ କଲେ ଘୋର
ରଡ଼ଧ୍ୱନ ।
ଏଥୁଅନନ୍ତରେ ଶୁଣ ଗୋ ସଙ୍ଗାତ୍କୁ
ସୁଗ୍ରୀ ଯିବାରୁ ଅଙ୍ଗଦକୁ ଶ୍ରୀରାମ କହେ ବାଣ
କପି ରାଜାର ସଙ୍ଗତେ ଯୁଝିବେ ଦୈତ୍ୟବଳ
ଏକା କପି ରାଜା ହେ ଯେ ସକଳ ଅସୁର ।
ପଶ୍ଚିମ ଦ୍ୱାରକୁ ତୁ ବହନ ଚଳିଯିବୁ
ହନୁମନ୍ତକୁ ଏକଥା ଯେ ବୁଝାଇ କହିବୁ ।
ସୁଗ୍ରୀବର ଯେତେବେଳେ ଦେବାକ
ସିଂହରଡ଼
ଗହଳ ଚେତେବେଳ ଶୁଭିବ ଲଙ୍କାପୁରୀ ।
ଲଙ୍କା ଗଡରେ ଦୁହେଁ ହେଇଣ ପଶିବ
ଅସୁରଙ୍କୁ ମାରିଣ ରାଜାଙ୍କୁ ରକ୍ଷାଦେବ ।
କାଳବେଳ ଜାଣିଣ ଆସିବ ବେଗେ ପୁଣ
ଶୁଣିଣ ଅଙ୍ଗଦ ଯେ ଚଳିଲା ବହନ ।
ହନୁମନ୍ତର ପାଶରେ ପ୍ରବେଶ ହୋଇଲା
ମୁଠା ଆଜ୍ଞା ଘେନ ଯାଇଥିଲି ଯେ ବୋଇଲା ।
ଏବେ କପିରାଜା ଯାଇଛନ୍ତି ତାର ପାଶ
ରାମ ଭେଦଦେଲେମୋତେ ତୋହରଯେପାଶ
ବୋଇଲେ ଯେ ସିଂହରଡ଼ ଗହଳ ଶୁଭିଲେ
ତୁମ୍ଭେ ଦୁହେଁ ପାଚେରୀ ଡେଇଁବ ସଭିରେ ।

ଅସୁରକୁ ମାରଣ ରଜାକୁ ରୂଳଦେବ
ଦୈତ୍ୟକୁ ଉପ୍ରୋଧ ଯେ କିଛି ହିଁ ନ କରବ ।
ଏମନ୍ତ ସମୟେ ଯେ ଶୁଭିଲା ଗହଳ
ଅଙ୍ଗଦ ହନୁମନ୍ତ ଗଲେ ଯେ ସତ୍ୱର ।
ପାଚେରି ଡେଇଁଣ ସେ ଲଙ୍କାଗଡ଼ରେ ହେଲେ
ରାବଣ ପୁରେ ଯେ ସୁଗ୍ରୀବକୁ ଭେଟିଲେ ।
ପୁଅ ନାତି ତାର ଯେ ଦେଖିଣ ଯୁଦ୍ଧ ପୁଣ
ସପ୍ତ ମାନ ଘେନଣ ଆରମ୍ଭ କଲେ ରଣ ।
ଧାଇଁଣ ହନୁମନ୍ତ ଇନ୍ଦ୍ରଜିତକୁ ଧରି
ଦୁଇବଧା ମାଇଲା ମସ୍ତକରେ ଯେ ତାହାର ।
ବାଳ ଧରି ଦଶ ଯୋଜନ ଉଠିଗଲା
ବାମ ହସ୍ତରେ ତାର କେଶକୁ ଧଇଲା ।
ଡାହାଣ କରରେ ସେ ମାଇଲା ମୁଥ ଝୁରି
ଇନ୍ଦ୍ରଜିତ ହନୁକୁ ମାଇଲା ନାଡ ଧରି ।
ଶୂନ୍ୟରୁ ଖସିଣ ସେ ତଳରେ ପଡ଼ିଲେ
ଦୁହେଁ ଗଡ଼ାଗଡ଼ି ଯେ ମାଲ୍ଲଯୁଦ୍ଧ କଲେ ।
ଇନ୍ଦ୍ରଜିତ ମାଡ଼ି ଯେ ବସିଲା ହନୁମନ୍ତ
ଗର୍ଜଇ ବୀର ଯେ ମାରୁତି ଉପରେତ ।
ଶ୍ରୀରାମ ସୁମରି ହନୁ ଇନ୍ଦ୍ରଜିତକୁ ଲେଉଟାଇଁ
ପଛ ଆଣ୍ଠୁ ମୂର୍ଦ୍ଧନ ଉପରେ ଲଗାଇ ।
ମାଇଲା ଦୁଇ ମୁଥ ଅଗ୍ନି ସେ ତେଜ ଜାଣି
ଯାଏ ଘୁମାଇଲା ଇନ୍ଦ୍ରଜିତ ବୀରମଣି ।
ହନୁମନ୍ତ ତାହାକୁ ଛାଡ଼ିଣ ପୁଣ ଗଲା
ମହୀରାବଣକୁ ଯାଇଣ ସେ ଧଇଲା ।
ଦୁଇମୁଥ ମାରିଣ ଫୋପାଡ଼ି ଦେଲା ରଗେ
ପ୍ରହସ୍ତକୁ ଧଇଲ ଯାଇଁ ଅଙ୍ଗଦ ସେ ବେଗେ
ଦୁଇଗୋଡ଼ ଉଠାଇ ମାରିଣ ସେ ବସିଲା
ଦୁଇବଧାମାରନ୍ତେ ସେଯେଅଚେତାପୁଣହେଲା
ଦୁଇଗୋଡ଼ ଧରିଣ ବୁଲାଏ ତାର ଠାଣେ
ଫୋପାଡ଼ି ଦେଲା ତାକୁ ପଡ଼ିଲା ମଧୁବନେ ।
ଆଉ ଯେତେକ ବଳ ତାହାର ପାଶେ ଥିଲେ
ଅଙ୍ଗଦ ହନୁମନ୍ତ ସମସ୍ତଙ୍କୁ ଯେ ମାଇଲେ ।
ଅଙ୍ଗଦ ହନୁମନ୍ତକୁ ଦେଖିଣ ସୁଗ୍ରୀବର
ରାବଣକୁ ଛାଡ଼ିଣ ଶୂନ୍ୟେ ଗଲାକ କପିବୀର ।
ରାବଣ ମୁକୁଟ ସେ ଯେ ଘେନିଣ ହସ୍ତରେ
ଗଗନେ ଭ୍ରମିଣ ଗଲାକ ଧାତକାରେ ।

ପଞ୍ଚାଶତ ଯୋଜନ କରିଣସେ କାୟାବିସ୍ତାରିଲା
ଦେଖିଣ ତରସ୍ତ ଯେହୋଇଲେ ଲଙ୍କାଲୋକେ
ଆଶ୍ଚର୍ଯ୍ୟ ହୋଇଣ ବୃଦ୍ଧେଁ ଯେ ଛନ୍ତି ଥୋକେ
କେ ବୋଲେ ଶୂନ୍ୟରେତ ଖେଳନ୍ତପରବଶେ
ଚନ୍ଦ୍ରମଣ୍ଡଳ ପ୍ରାୟେ ଆକାଶରୁ ଖସେ
କେ ବୋଲେ ଏହୁ ବୀର ବାଳିର ଅଟେ ଭାଇ
ଏତେକ କପି ସୈନ୍ୟ ଯେ ଆଣିଅଛି ଏହି
ଅଙ୍ଗଦ ମୁଠା ଆଜ୍ଞା ଘେନ ଯେ ଆସିଥିଲା ।
ତାହା ଶୁଣି ରାବଣ ଯେ ବହୁତ କୋପ ହେଲା
ସେ ଯାଇଁ କହିଲା ଶ୍ରୀରାମ ଆଗରେ ।
ତାହା ଶୁଣି ଏହୁ ଯେ ଅଇଲ ବେଗରେ
ରାବଣ ସଙ୍ଗରେ ଅନେକ ଯୁଦ୍ଧ କଲା ।
ଦଶଶିରରୁ ରତ୍ନ ମୁକୁଟ ଘେନିଗଲା
ଦିଗବିଜେ ବେଳେଥରେ ନେଇଥିଲାଯେମୁକୁଟ
ଏବେଥରେ ଛଡ଼ାଇ ନେଲେ ରମାକାନ୍ତ
ଧନ୍ୟ ଧନ୍ୟ ରାମଚନ୍ଦ୍ର ଧନ୍ୟରେ ତୋରପିତା
ଧନ୍ୟ ରାମଚନ୍ଦ୍ର ତୋର ଗର୍ଭଧାରୀ ମାତା ।
ଏତେ ସୈନ୍ୟ ତୋହର ଯେ କତନଅଇଲେ
ନାନା ବନ୍ଧୁମାନେ ଆସିଣ ସେବାକଲେ ।
ଏତେକ ବୋଲିଣ ବୋଲନ୍ତି ଲଙ୍କାଜନେ
ଶୂନ୍ୟରେଖେପି ଆସଇ ସୁଗ୍ରୀବରଯେରାଜନେ
ରତ୍ନ ମୁକୁଟକୁ ସେ ଯେ ଘେନଛି ହସ୍ତରେ
ଧୀର ଧୀର ହୋଇଣ ଖସଇ ସୁଗ୍ରୀବରେ ।
ଶ୍ରୀରାମ ସମ୍ମୁଖରେ ସେ ଯେ ମିଳିଲେକ ଯାଇ
ରତ୍ନମୁକୁଟ ଥୋଇଣ ଉଳଗି ବେଗେ ହୋଇ
ଉଠି ପଛଘୁଞ୍ଚା ଯେ ଦଅଇ ସୁଗ୍ରୀବର
ମସ୍ତକ ଉପରେ ଦେଲା ଯେ ନେଇ କର ।
ଶତେଗୁଣ ସେ ଯେ ଉପରକୁ ଉଡ଼ିଗଲା
ଶ୍ରୀରାମ ବୋଇଲେ ଆସ ହେ ଆସ ମିତ ।
ଏକାହୋଇ ଯିବାର ଯେ ବୁଝଇ ହଡ଼ତ
ସୈନ୍ୟସଙ୍ଗରେ ସାହା ହେ କିଛି ହିଁ ନନେଲ
ଶତ୍ରୁର ପୁରରେ ଯାଇ କେବଣ କୃତ୍ୟକଲ ।
ସୁଗ୍ରୀବର ବୋଇଲା ଶୁଣିମା ରଘୁନାଥ
ତାହାର ସଙ୍ଗରେ ଯୁଦ୍ଧ ହେଲା ଯେ ଅପ୍ରମିତ
ତୁମ୍ଭର ଆଜ୍ଞା ନାହିଁ କେମନ୍ତେମାରିବୁଯେତାକୁ
ତେଣୁକରି ଉପ୍ରୋଧ କରୁଛୁ ତାହାକୁ ।

ହୋଇଲେ ଦଶମୁଣ୍ଡ ପକାନ୍ତି ତାର ମୋଡ଼ି
ଲଙ୍କାଗଡ ତାର ଆଜ ପକାନ୍ତି ଉପାଡ଼ି ।
ଏଥୁଅନନ୍ତରେ ଶୁଣ ହେ ନୃପଧାମ୍ବି
ଅଙ୍ଗଦ ହନୁମନ୍ତ ମିଳଲେ ବେଗକରି ।
ଇନ୍ଦ୍ରଜିତକୁ ହନୁମନ୍ତ ଅନେକ ମାଡଦେଲା
ଦଶମୁଣ୍ଡ ପରଯତ୍ନେ ତାକୁ ଧଇଣ ଗଡ଼ିଲା ।
ନଚେଷ୍ଟ ହୋଇଲା ପଡ଼ି ଇନ୍ଦ୍ରଜିତ ବୀର
ତାକୁ ଛାଡ଼ି ଦେଲା ଯେ ମାରୁତି ମହାବୀର ।
ତାହାର କୁମର ଯେ ମହାବଳ
ତାକୁଧରି ବୁଲାଇଲା ସହସ୍ରେ ବେଗପୁଣ ।
ଫୋପାଡ଼ି ଦଅନ୍ତେରେ ପଡ଼ିଲା ଅନ୍ତଃପୁରେ
ଆଉ ଅସୁରମାନେ ଯୁଦ୍ଧ ଯେ ତା ସଙ୍ଗରେ ।
ଅଙ୍ଗଦ କୁମର ଯେ ତାହାର ପଛେ ଗଲା
ପ୍ରହସ୍ତକୁ ଧଇଣ ଅନେକ ମାଡ଼ ଦେଲା ।
ଚେତାପାଇ ପ୍ରହସ୍ତ ପଳାଇଲା ଡରେ
ରାବଣ ଉଠିଗଲା ଭିତରି ଯେ ପୁରେ ।
ଏଥୁ ଅନନ୍ତରେ ଯେ ଅଙ୍ଗଦ ହନୁମନ୍ତ
ଯୁଦ୍ଧକୁ ଛାଡ଼ିକରି ସେ ଯେ ଚଳଲେ ତୁରିତ ।
ଅଶୋକବନରେଯାଇ ପ୍ରବେଶହୋଇଗଲେହେଲେ
ସୁବର୍ଣ୍ଣ ମଣ୍ଡପ ଜଗତପରେସୀତାକୁ ଦେଖିଲେ
ବଜପ୍ୟେ କରିଛନ୍ତି ଶ୍ରୀରାମଙ୍କର ଶରଣୀ
ସହସ୍ରେ ଅସୁରୀ ଯେ ପାଖରେ ଛନ୍ତି ପୁଣି ।
ହିଜଟା ବୋଇଲେ ଶୁଣହେ ଠାକୁରାଣୀ
ହନୁମନ୍ତ ସଙ୍ଗରେ ଏକଇ କପି ପୁଣି ।
ଜାନକୀ ବୋଇଲେସେ ଯେଜୁହଇମୋରଚକ୍ଷୁ
ପଗ୍ଭରିଲେ ଜାଣିବା କେଉଣ ଅଟେ କନା ।
ଦେଖିଣ ହନୁମନ୍ତ ଓଳଗି ବେଗେ ଶୋଇ
ଉଠିଣ ଉଭାହୋଇ ଶିରରେ କରଦେଇ ।
ଅଙ୍ଗଦ ଗଡ଼ସାଲି ଶୋଇଲା ପାଦତଳେ
ଉଠିଣ କର ଦେଲା ମସ୍ତକ ଉପରେ ।
ଜାନକୀ ବୋଇଲେ ତୁମ୍ଭେ ଶୁଣହେ ମାରୁତି
ତୋର କଥା ସତ ଯେ ଘଟିଲା ଏ ଭାନ୍ତି ।
ମାରରେ ରାବଣକୁ ସତ୍ବରେ ମୋରକଣ୍ଟ
ଉଦ୍ବୋଧ ନ କରନ୍ତୁ ଦଶରଥଙ୍କର ସୁତ ।
ଏ ଜଣକ କାଏରେ କହ ପବନର ତନୁ
ହନୁମନ୍ତ ବୋଇଲା ଶୁଣ ପଗ୍ଭରିଲ ଯେଣୁ ।

ସୁଗ୍ରୀବର ପୁତୁରା ଏ ଯେ ବାନର କୁମର
ସବୁଙ୍କର ଉପରେ ଯେ ଅଟଇ ସରଦାର ।
ଅଙ୍ଗଦ ନାମଗୋଟି ଗୋ ଏହାରଟି ଜାଣ
ଏହାର ପିତାକୁଟି ମାଇଲେ ରଘୁରାଣ ।
ସୁଗ୍ରୀବର ସଙ୍ଗରେ ମଇତ୍ର ହୋଇଲେ
କିଷ୍କିନ୍ଧ୍ୟାରେ ରାଜା ପୁଣ ତାକୁ କଲେ ।
ଏହାକୁ ଯୁବରାଜ ଶାନ୍ତି ଯେ ରାମ ଦେଲେ
ଏହାରମାତାତାଙ୍କୁସୁଗ୍ରୀବର ତଳେଟେରଖିଲ
ଶୁଣିଣ ଜାନକୀ ସେ କହନ୍ତି ଉତ୍ତର
ଏ ବଗ୍ଭର କମ୍ପା କଲେ କୋଦଣ୍ଡ ନୃପଧର
ବାନରରାଜା କେଉଁ ଯେ ପାତକ କରି ଥିଲା
କେଉଁ ଦୋଷେ ମାଇଲେ ଯେ ଦଶରଥ ବଳା
ହନୁମନ୍ତ କହଇ ଯେ କରଯୋଡ ପୁଣ
ସୁଗ୍ରୀବର ଅଟଇ ଯେ ସାନ ଭାଇ ଜାଣ ।
ତାହାର ଭାରିଯା ରୋମା ନାମେ ବାଳୀ
ତାହାକୁ ରମଣ କଲା ବାଳି ଯେ ବଳେ ଧରି
ସେ ଦୋଷରେ ଶ୍ରୀରାମ ବାଳକ ନାଶକଲେ
ତାହାର ଭାରିଯାକୁ ସଙ୍ଗରେ ଗଣିଲେ ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲା
ଧର୍ମରେ ନନ୍ଦନ କୁଳରେ ହେଲୁ ବଳା ।
ଶୁଣିଣ ଅଙ୍ଗଦ ଗଡ଼ସାଲି ଶୋଇ
ଉଠିଣ କରଯୋଡ ବଚନ କହଇ ।
ଶୁଣ ଗୋ ଜନନୀ ମୋତେ ଦେଲୁ ଏକବର
ଲଙ୍କାଗଡ଼ ଜପ୍ୟେ କରି ଯିବୁ ସେ ନଜ ଘର ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ମାରିଣ ରାବଣକୁ ଜପ୍ୟେ କରରେବୋଇଲେ
ଯା ଅବା ଯେମନ୍ତ ଯାଉ କଥ ହେ ବଗ୍ଭର
ରାବଣ ମଲେ ସରଇ ଛନପୁର ସଲ ।
ମେଲାଣି ମାଗି ସେଠାରୁ ଦୁଇଜଣ ଗଲେ
ଗଲାବେଳେ ସୀତା ତାହାଙ୍କୁ କହିଲେ ।
ବୋଇଲେ ଅସୁର ଜା ନ୍ତି ବଡମାୟା
ତରକରେ କାର୍ଯ୍ୟ କରିବ ପୁଣି ଏହା ।
ସେଠାରୁ ଅଙ୍ଗଦ ହନୁମନ୍ତ ଯେ ଗଲେ
ଗୁଳଷି ଯୋଜନ ଲେଉଁ କାୟା ବଢ଼ାଇଲା ।
ଉପରକୁ ଉଡ଼ିଗଲେ ଛତିଶି ଯୋଜନ
ଦେଖିଣ ଲଙ୍କା ଲୋକେ ହୋଇଣ ଉଦ୍ବମନ ।

ବୋଇଲେ ରାବଣ ଯେ ମନ୍ଦକର୍ମ କଲୁ
ଏକା ଦେଖି କମ୍ପା ମାରଣ ନ ଆସିଲୁ ।
ଏବେତ ଶ୍ରୀରାମ ନଷ୍ଟେ ମାରିବେ ରାବଣ
ପାଚେରି ବେଢ଼ିଣ ଅଛନ୍ତି ଯେ କପିସୈନ୍ୟ
ଶରଯାକୁ ମାରି ପଠିଆଇଲୁକ ଦୂତ
ସେ କଥାକୁ ଆଜ୍ଞା ଯେ କଲା ଦଶମାଥ ।
ତେଣୁକରି ସୁଗ୍ରୀବର କର୍ଣ୍ଣ ହିୟାର ସାଇଁ
କ୍ରୋଧରେ ଅଇଲା ସେ ଯେ ପାଚେରିକଡ଼େଇଁ
ରାବଣ ସଙ୍ଗରେ ବହୁତ ଯୁଦ୍ଧ କଲା
ଦଶ ମୁକୁଟ ଦଶ ଶିରରୁ ଘେନିଗଲା ।
ତାହାର ପଛରେ ଅଇଲା ହନୁମନ୍ତ
ଇନ୍ଦ୍ରଜିତକୁ ଧଇଲା ବଳକୃତ୍ୟ ।
ହୁଧା ମୁଥ ମାରି ବାଳକୁ ଧଇଲା
ଦଶଯୁଣ ପରିଯନ୍ତେ ଶୂନ୍ୟକୁ ଘେନିଗଲା ।
ତହୁଁ ତଳେ ପକାଇଣ ଫିଙ୍ଗିଦେଲା
ଅଚେଷ୍ଟା ହୋଇଣ ପୁଣ କୋଶକେ ପଡ଼ିଲା ।
ତାରପଛେ ଅଇଲା ଅଙ୍ଗଦ ବାନର ଦୁଲାଳ
ଗାଢ଼ି କରି ପ୍ରସ୍ତକୁ ଧଇଲା ବୀରବର ।
ମୁଥା ହୁଧାବାଜନ୍ତେ ଅଚେତାଦଶଗ୍ରୀବ ଶଳା
ତାକୁ ଧରି ଅନେକ ସେ ମାଡ଼ହିଁ ମାଇଲା ।
ଅନେକ ମାଇଲା ସେ ଯେ ହୋଇଲେ ନର୍ବଳ
ମନ୍ଦରାବଣକୁ ମାଇଲା ଯେ ହନୁମନ୍ତ ବୀର ।
ମାରିକରି ଗଲେ ସେ ଯେ ଏ ଦୁଇବୀର ପୁଣ
ଦୁଆର ପକାଇ ଯେ କଲ୍କ କ କାରଣ ।
ଏତେବୋଲୁ ଦୈତ୍ୟ ଯେ ହୁଅନ୍ତି କୁହାକୁହି
ଶୂନ୍ୟରୁ ଖସିଲେ ଧିରେ ଅଙ୍ଗଦ ହନୁ ଦୁଇ ।
ଅଙ୍ଗଦ ପ୍ରବେଶ ଦକ୍ଷିଣ ଦ୍ୱାରେ ହେଲା
ହନୁମନ୍ତ ପଶ୍ଚିମ ଦ୍ୱାରରେ ମିଳିଲା ।
ଦେଖିଣ ରଘୁନାଥ ହୋଇଲେ ହରଷ
ଆମ୍ଭେ ଦଶାନନକୁ ଯେ ମାରିବୁ ଅବଶ୍ୟ ।
ସମ୍ମୁଖରେ ଯୁଦ୍ଧ ଯେବେ କରିବ ଦଶମଥା
ଏକାକାଣ୍ଡକରେ ମୁଁ ଛେଦିବି ତାର ମଥା ।
ଏହାଶୁଣି ସୁଗ୍ରୀବର ବୋଲଇ ବଚନ
କମ୍ପାଇ ଚଳା ତୁମ୍ଭେ କରହେ ରଘୁରାଣ ।
ଦଅ ଆଜ୍ଞା ସ୍ୱାମୀ ସୈନ୍ୟ ଗଡ଼ ଡେଇଁ ପଶୁ
ଆଜଠାରୁ ଅସୁରଙ୍କୁ ମୃତ୍ୟୁ ପୁରେ ପେଶୁ ।

ଶୁଣିକରି ରଘୁନାଥ ଆମନ୍ତ୍ରିଲେ ଧନୁ
କଟକକୁ ଗୁହିଁଣ ପୁଲକ କଲେ ତନୁ ।
ସୁଗ୍ରୀବକୁ ବୋଇଲେ ମିତ ପୂର୍ବଦ୍ୱାରେ ଯାଅ
ପାଚେରି ଡେଇଁଣ ଲଙ୍କା କଟକ ଭଙ୍ଗାଅ ।
ଦେଖିଲ ମଣ୍ଡପ ଯେ ଅଟାଳ ନଗର
ନେତର ଚରାଳ ଉଡ଼ଇ ପନ୍ତି ପନ୍ତି ।
ଯାଅ ମିତ ବେଗେ ହେମାର ହୋ ଆଜ୍ଞାଦେଣ
ତୋହର ପ୍ରସାଦେ ଭୋଗ କରଇ କାମିନୀ ।
ଅଙ୍ଗଦକୁ ଡ଼ାକାଇ ବୋଇଲେ ପୁଣ ଯାଅ
ଦକ୍ଷିଣ ଦ୍ୱାର ଭୁ ଯେ ନିରୋଧି ଜଗିଥାଅ ।
କବାଟ ଭାଙ୍ଗିଣ ଯେ ପାଚେରି ଡେଇଁପଶ
ଉଜାଡ଼ି କରି ବାବୁ ସୁବର୍ଣ୍ଣମୟ ଦେଶ ।
ଯାଅରେ ହନୁମନ୍ତ ପଶ୍ଚିମଦ୍ୱାର ହେଇଁ
ହନୁମନ୍ତ ନ ଜାଣଇଁ ତାହାକୁ ଯାଅ କହି ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ଗଡ଼ ଡେଇଁବାକୁ ଆଜ୍ଞା ଦେଲେ ରଘୁପତି ।
ପ୍ରଥମ ଯୁଦ୍ଧ ଏଠାରୁ ହେବ ତୁମ୍ଭେ ଜାଣ
ଜାନକୀର କଥା ଏବେ କର୍ଣ୍ଣ ଦେଇ ଶୁଣ ।
ଅଙ୍ଗଦ ହନୁମନ୍ତ ଦେଖିଣ ଅଇଲେ
ଶ୍ରୀରାମଙ୍କ ଆଗରେ ସେ କଥା ନ କହିଲେ ।
ଜାନକୀ ବୋଇଲେ ଗୋ ତ୍ରିଜଟା ଏବେ ଶୁଣ
ଶ୍ରୀରାମ ଦଧ୍ୟାନ୍ତୁ ଯେ ଅଟନ୍ତି ବଡ଼ ପୁଣ ।
କରୁପେ ଆମ୍ଭ କଥା ଶ୍ରବଣେ ଶୁଣିବେ
ତେବେ ସିନା ଶାନ୍ତି ଘୁଡ଼ଗରି ସେ ହୋଇବେ
ପାଚେରି ଡେଇଁକରି କେ ଯିବ ତାଙ୍କ ପାଶ
ମୋହର କେହୁ ଯାଇ କହିବ ସନ୍ଦେଶ ।
ଏତେବୋଲି ଦେଖୀ ଯେ ମନରେ ଭାଳେଣି
ପବନ ନନ୍ଦନ ଯେ ପାଶରେ ଥିଲା ପୁଣି ।
ମର୍କଟ ଗୋଟିଏ ହୋଇଣ ଛୁଡ଼ାହେଲା
କ ସନ୍ଦେଶ ଦେବ ବୋଲିଣ ବୋଇଲା ।
ଜାନକୀ ବୋଇଲେ ବାବୁ ଅଇଲୁ କେଉଁଠାରୁ
ବାନର ବୋଇଲା ମୁଁ ଯେ ଅଇଲି ଏ ମେଳରୁ
ଗଡ଼ ଦେଖିବାକୁ ଆସିଥିଲି ଏଥି
ଏବେ ମୁଁ ଯାଉଅଛି ଶ୍ରୀରାମଚନ୍ଦ୍ର ପାଶ ।
ଶୁଣିଣ ଜାନକୀ ସନ୍ତୋଷ ମନ ହେଲେ
କାଗଜ ଖଣ୍ଡିକରେ ଚିଟାଉ ଲେଖିଲେ ।

ଆପଣା ଅଶ୍ରୁ ଜଳରେ ମୁଦକଲେ ପୁଣ
ବୋଇଲେ ମୁଠା ଆଜ୍ଞା ଅଟଇ ଏହୁ ଜାଣ ।
ଶ୍ରୀରାମଙ୍କ ହସ୍ତରେ ଦେବୁ ଏହା ନେଇ
ବୋଲବୁ ଦାସୀ ତୋର ଅଛଇ ଏହା ଦେଇ
ସେନଣ କପିବୀର ବେଗେ ଚଳଗଲ
କପି ରୂପ ଛାଡ଼ିଣ ଅସୁର ସେହି ହେଲା ।
ଶ୍ରୀରାମର ଆଗରେ ହେଲ ପରବେଶ
ସମସ୍ତେ ଅଛନ୍ତି ଯେ ରଘୁନାଥ ପ ଶ ।
ଅସୁରକ ଦେଖିଣ ସମସ୍ତେ ନିର୍ବିକାର
ଦେଖୁ ଦେଖୁ ପବନ ମୃଗ ଯେ ଶରୀର ।
ମୃଗରୂପ ଛାଡ଼ିଣ ହୋଇଣ ଶାର୍ଦ୍ଦୂଳ
ସେରୂପ ଛାଡ଼ିଣ ହୋଇଲ ବାନର ।
ବାନର ରୂପ ଛାଡ଼ିଣ ହସ୍ତୀଏ ହୋଇଲା
ହସ୍ତୀରୂପ ଛାଡ଼ିଣ ସେ ସାପରୂପ ହେଲା ।
ସାପରୂପ ଛାଡ଼ିଣ ଶୃଗାଳ ରୂପ ଧରେ
ଦେଖୁ ଦେଖୁ ପବନ ନାନା ଯେ ରୂପଧରେ
ଶଶା ଗୋଟିଏକ ହୋଇଲା ସେହୁ ଜାଣ
ଦେଖିଣ ସମସ୍ତେ ଯେ ଚାଟକା ହେଲେ ପୁଣ
ଶ୍ରୀରାମ ବୋଇଲେ ହୋ କେତେଯେରୂପହେଉ
କାହିଁକ ଆସିଛୁ ବଚନ ତୁ ନ କହୁ ।
ଠେକୁଆ ବୋଇଲାତୁମ୍ଭେ ହେନହେମୁଠା ଆଜ୍ଞା
ଶ୍ରୀରାମ ବୋଇଲେ ଏ ଯେ କାହାର ପ୍ରତିଜ୍ଞା ।
ଶଶା ବୋଇଲା ତୁମ୍ଭେ ଶୁଣ କହିବ ପୁଣ
ଅଯୋଧ୍ୟାଦେଶ ରାଜା ଦଶରଥ ଯେ ଜାଣ ।
ତାହାର କୁଳବଧୂ ଜ୍ୟେଷ୍ଠ ଯେ ଜାନକୀ
ଦେଇଅଛି ଆଜ୍ଞା ଯେ ଶୁଣ ହେ ଦାଶରଥି ।
ବୋଇଲା ଶ୍ରୀରାମଙ୍କୁ ଦେବୁ ମୋ ସନ୍ଦେଶ
ବୋଲବୁ ଶ୍ରୀରାମ ଅଟଇ ତୁମ୍ଭ ବଂଶ ।
ବାପକୁ ମାଇଲ ତୁମ୍ଭ ଭାରିଯା ନେଲହରି
ଏତେ ଶତ୍ରୁକୁ କମ୍ପା ଯେ ରଖିଛ ନ ମାରି ।
ଏତେବୋଲି ମୁଦ ହାତଙ୍କି ଦେଇଣ ସମର୍ପିଲା
ଧରିଣ ଶ୍ରୀରାମ ଯେ ଅଙ୍ଗଦ କରେ ଦେଲା ।
ଅଙ୍ଗଦ ଯେ ଫେଡ଼ି ନପାରେ ଚିହ୍ନି କରି
ଜାମ୍ବେବଙ୍କର ଦେଲାକ ନେଇକରି ।
ଜାମ୍ବେବ ନେଇକରି ଲକ୍ଷ୍ମଣ ହସ୍ତେ ଦେଲେ
ଲକ୍ଷ୍ମଣ ମୁଦ୍ରେ ଲଗାଇ ଚିହ୍ନି ଯେ ନପାରିଲେ

ଲକ୍ଷ୍ମଣ ନେଇ ଶ୍ରୀରାମ ଚରଣେ ଥୋଇଲେ
ଦେଖିଣ ଶ୍ରୀରାମ ଯେ ଚମତ୍କାର ହେଲେ ।
ବୋଇଲେ ତୁମ୍ଭେମାନେ କେସ ମ୍ୟାକୁ ମଣ
ସମସ୍ତେ ବୋଇଲେ ଚିହ୍ନି ନପାରିଲୁ ପୁଣ ।
ଶୁଣିଣ ଶ୍ରୀରାମ କରେ ଧଇଲେ ଚଟାଇ
ଚିହ୍ନିଣ ମୁଦ ଯେ ଫିଟାଏ ରାମରାହୁ ।
ବୋଇଲେ ସମସ୍ତେ ହେ ଶୁଣ ଏହୁ ଭାଷା
ଜାନକୀ ଦେଇଛ କରିଣ ମୋତେ ଆଶା ।
ପଢ଼ନ୍ତି ଶ୍ରୀରାମ ଯେ ଶୁଣନ୍ତି ସର୍ବଜନ
ଜାନକୀର ଶ୍ରୀରାମଙ୍କ ଚରଣେ ପ୍ରଣାମ ।
ଚଣ୍ଡାଳ ରାବଣ ପଞ୍ଚବଟୀରୁ ଆଣିଲା
ଅଶୋକ ବନରେ ରଖି ଅନେକ ଶାସ୍ତି ଦେଲା
ଜୀବନ ରହିଛି ତୁମ୍ଭର ଆଶାରେ
ପବନ ଅଗ୍ନି ଦୁହେଁ ଜଗନ୍ତି ମୋ ଶରୀରେ ।
ରାବଣକୁ ମାରିବାକୁ ଭୟ ଯେବେ କର
ଗଲାନେକ ହସ୍ତରେ ଦେବଟି ଖବର ।
ପୁରୁଷ ହତ୍ୟା ଯେବେ କରିବ କଷ୍ଟେ ମୁହିଁ
ଲଙ୍କା ଭସ୍ମ କଲଟି ମୋହର ଦୋଷ ନାହିଁ ।
ବ୍ରହ୍ମାଣ୍ଡ ଠାକୁର ହୋଇଣ ମନ୍ଦ କର
ପିତା ଶତ୍ରୁ ବଇରୀ ପେଶ ଦୂର ।
ରାବଣକୁ ମାରି ଦୋଷ ମୋହର ହରିର
ଦେବତାଙ୍କ ଶତ୍ରୁ ଏ ଯେ ଅଟେ ଦଶଶିର ।
ଏହାକୁ ମାରିବା ପାଇଁ ଦେବେକରି ସ୍ତୁତି
ତୁମ୍ଭରନୁ ଅନ୍ୟରେ ନମରେ ଲଙ୍କପତି ।
ସ୍ତୁତି ଭାଷାରୁ ଦେବତାଏ ନୋହି ସ୍ଥିର
ଏ କଥାକୁ ତୁମ୍ଭେ ହରିର ମନେ କର ।
କେସ ମୁଁ କହିବ ତୁମ୍ଭର ଦାସୀ ହୋଇ
ଅନେକ କଟାଳ କରଇ ଲଙ୍କସାଇଁ ।
ତୁମ୍ଭ ଦୁଇଭାଇ ଶିର ମୋଠାରେ ଦେଖାଇଲା
ରାମ ଲକ୍ଷ୍ମଣ ମାଇଲି ବୋଲିଣ ବୋଇଲା ।
ଅନେକ ଉପାୟ ଜାଣଇ ଦଶଶିର
ଦେବତାଙ୍କୁ ଜିଣିଲା ମାୟାର ପ୍ରକାର ।
ତୁମ୍ଭଙ୍କୁ ଜିଣିବ ବୋଲି କରିଛି ଉପାୟେ
ସତର ଭଜନେ ମଣିବ କହିଲେ ଦେବତାଏ ।
ତୁମ୍ଭ ପ୍ରଭୁପଣ ରହିବାକୁ ମୋର ମନ
ନୋହିଲେ ଭସ୍ମ କଲଟି ଏ ଲଙ୍କା ଭୁବନ ।

ତୁମ୍ଭେ ଦେବ ଅଟ ଜମ୍ବୁଦ୍ୱୀପ ମୌଡମଣି
ତୁମ୍ଭେ ଚରଣେ ମୁଁ କରୁଛୁ ବନ୍ଦନ ।
ଏତେବୋଲି ଶ୍ରୀରାମ ଶ୍ରୀମୁଖ ଫାଣ୍ଡିଲେ
କ୍ରୋଧରେ ଜରଜର ରଘୁନାଥ ହେଲେ ।
ଆକାଶରେ ଶିର ଲାଗିଲା ଯାଇଁ ପୁଣ
ଦୁଇଚକ୍ଷୁ ଦିଶିଲା ଚନ୍ଦ୍ର ସୂର୍ଯ୍ୟ ଜାଣ ।
ଦେଖିଣ ସୈନ୍ୟବଳ ଭୟ ମନ କଲେ
ଲକ୍ଷ୍ମଣ ସୁଣ୍ଡରେ ଯେ ଚରଣରେ ଦଳେ ।
ସାମାନ ରୂପ ହୋଇଣ କହନ୍ତି ଶ୍ରୀରାମ
ହୋଇଲେ ନିଜରୂପ ଦେଖାଅ ଶଶା ପୁଣ ।
ଶୁଣିକରି ଶଶା ଯେ ସେ ରୂପ ତେଜ୍ୟା କଲା
ନିଜ ସ୍ୱରୂପ ପବନ ହୋଇ ଦେଖାଇଲା ।
ଶ୍ରୀରାମ ବୋଇଲେ ତୁଯେ ଚଳ ସୀତା ପାଶ
କହିବୁ ଜାନକୀକି ମୋହର ସନ୍ଦେଶ ।
ବୋଲିବୁ ଅଳପ ଦିନ ଦୁଃଖ ଥାଅ ସହି
ସତଅ ଦିନେ ରାବଣ ଗୁଡ଼ିକ ନଷ୍ଟେଁ ଦେହି
ଶୁଣିଣ ପବନ ସେ ବେଗେ ଚଳିଗଲା
ଜାନକୀର ପାଖରେ ପ୍ରବେଶ ହୋଇଲା ।
ସକଳ ବୃତ୍ତାନ୍ତ ସେ କହିଲା ବୁଝାଇ
ଏଥୁ ଅନନ୍ତରେ ଶୁଣ ଗୋ ପ୍ରାଣସହି ।
ଅଙ୍ଗଦ ସୁଗ୍ରୀବରକୁ ଶ୍ରୀରାମ ଆଜ୍ଞାଦେଇଥିଲେ
ଶ୍ରୀରାମର ଆଜ୍ଞା ସେ ଯେ ଶିରରେ ଘେନିଲେ
ଶୁଣିଣ ସୁଗ୍ରୀବର ଅଙ୍ଗଦ ଦୁହେଁ ଗଲେ
ଯେ ଯାହାର ବଣ୍ଠାରେ ଯାଇଣ ଆବୋରିଲେ
ବାଳିର କୁମର ହନୁମନ୍ତକୁ ଗଲା କହି
ଗଡ ହେଇଁ ପଶ ହେ ଶ୍ରୀରାମ ଆଜ୍ଞାଦେଇ ।
ଶୁଣିଣ ହନୁମନ୍ତ ଦେଲାକ ସିଂହ ରଡ଼ି
କି ଜାଣି ମେରୁ ପର୍ବତ ପଡ଼ିଲା ତଳେ ଝଡ଼ି
ବସନ୍ତ ମହେନ୍ଦ୍ର ଯେ ଦୁର୍ବନ୍ଦ ସାରସ
ଏହାଙ୍କୁ ରୁହିଁ ବୋଲଇ ପବନର ଶିଷ୍ୟ ।
କବାଟ ଭାଙ୍ଗି ବା କି ପାଟେଶ୍ୱ ଡେଇଁବା
କେବଣ ପ୍ରକାରେ ଆମ୍ଭେ ଗଡରେ ପଶିବା
ଶୁଣିଣ ବସନ୍ତ ମହେନ୍ଦ୍ର ସାରସ ଏ ତିନି
ଦୁର୍ବନ୍ଦ ସହିତେ ଯେ ବୁଝିଜଣ ପୁଣି ।
ହୋଇଲେ କବାଟ ଯେ ଭାଙ୍ଗିବା ଏହିକ୍ଷଣି
ଆଉ କିସ ବସିଛୁ ହୋ କପି କୁଳମଣି ।

ଏତେ ବୋଲି କବାଟରେ ଲାଗିଲେ ମୁଞ୍ଚବୀର
ପବନ ନନ୍ଦନ ଯେ ଧାଇଲା କୋପଭର ।
ବଜ୍ର ସମାନ ବିଧାଏ ମାଇଲା ପୁଣ ନେଇ
ଅଗ୍ନି ଜଳ ଉଠିଲା ଯେ ପ୍ରଜ୍ୱଳିତ ହୋଇ ।
ନର୍ଘାତ ରଡ଼ି ପ୍ରାଏ ଶୁଭିଲା ଶବଦ
ଶୁଣିଣ ନଗ୍ର ଲୋକେ ହୋଇଲେ ଚବଦ ।
ବଜ୍ର ଉପରେ କି ବଜ୍ର ଯେ ଯାଇ ପଡ଼ି
ତେସନକ ସୃଷ୍ଟି ଯେ କବାଟେ ପହୁଡ଼ି ।
ନବଖଣ୍ଡ କଳଣି ଯେ ଯନ୍ତ୍ର ମହାଛନ୍ଦ
ଛତିଶ କବାଟ ଯେ କରିଛି ବନ୍ଦକନ୍ଦ ।
ଇନ୍ଦ୍ରଦେବତା ଯାହାର ଆଜ୍ଞାରେ ପୁଣ ଥାଇ
କୁଳିଶ କବାଟ କି ତାକୁ ବଡ଼ ହୋଇ ।
ତ୍ରିଶୂଳ ଆଉଯାଇ ଯେ କବାଟ ଅଛି ମେଲି
ପୁଣି ହନୁମନ୍ତ ଯେ ହୁଆ ଲଗଇ ପେଲି ।
ପଥର ଆଉଯାଇ ଅଚନ୍ତ ମହାଗାଢ଼େ
ଦ୍ୱାର ନିରୋଧ ଯେ କରିଛି ସେ ନିବଢେ ।
ପଞ୍ଚ ସେନାପତି ଯେ ଏକଇ ମନ ହୋଇ
ବଢାଦେଇ ଠେକିଲେ ଯେ ହୁଆଇରି ଦେଇ
ନ ଚଳଇଁ କବାଟ ଯେ ମେରୁର କଳା ଜାଣି
ବାହା ଦଣ୍ଡ ହନୁମନ୍ତ ମାଇଲା ବେଗେ ଆଣି
ବାବୁ ସେ କବାଟରେ ନୋହିଲା ପୁଣ କିଛି
କୋପରେ ବାହୁଡ଼ିଲା ପବନର ବର୍ଣ୍ଣି ।
ଦୁର୍ବନ୍ଦ ମହେନ୍ଦ୍ର ବସନ୍ତ ସାରସ
ଏହାଙ୍କୁ ରୁହିଁ ବୋଲେ ପବନର ଶିଷ୍ୟ ।
ଥାଉ ଏ କବାଟ ଯେ ପଶିବାକ ଡେଇଁ
ସୈନ୍ୟଙ୍କୁ ରୁହିଁଣ ଯେ ବୋଲେ ଶବଦାଇ ।
ଉଠରେ ପାଟେଶ୍ୱକ ନକର କିଛି ଭୟେ
ଆଜ ଧରି ମାରିବା ଦଶାନନ ରାଏ ।
ପୁଣି ଋକ୍ଷକପି କିଛି କଲା ରାବ ଦେଲେ
ଖେପି ଯାଇଁ କମଳ ଶିରରେ ବସିଲେ ।
ଚୁରି ଦ୍ୱାରଙ୍କର ସେ ଯେ ଲାଗିଲେ ବଳଯାଇଁ
ରାକ୍ଷସେ ଘୋର ଯୁଦ୍ଧ ଆରମ୍ଭ କଲେ ତହିଁ ।
ହାତେ ଓହଳାଇଣ ବାନ୍ଧିଲେ ଯାହା
ଦଉଡ଼ି କାଟିଣ ଯେ ପକାଇ ଦେଲେ ତାହା
ଲେଣ୍ଡି ପଥର ଯେ ମାରନ୍ତି ଅବଛିନ୍ନ
ବଜ୍ରବାଣ ହାବେଳ ନାରାଚ ଖଣ୍ଡବାଣ ।

ଛପନ ଛକଣ ଯେ ପକାନ୍ତି ଜଡାଚେଲ
ଏମନ୍ତ କୁପାଞ୍ଜ ଯେ କରିଛୁ ଲଙ୍କମଲ୍ଲ ।
ଅଚଳ ପଥର ପକାଇ ଦ୍ୟନ୍ତି ଫିଙ୍ଗିଣ
କୁଳଅା ଉହାଡ଼େ ଥାଇ ବନ୍ଧନ୍ତି ସେ ଯେବାଣ
ବାଜନ୍ତି ରଣଗୋଳ ଦୁଇଦଳ ଥାଟ
ଜହୁଳ ପଡ଼ୁଛୁ ଯେ ତେଡ଼େ ବଡ଼ ଗଷ୍ଟ ।
ସ୍ଥଳଷି କୋଶ ଯେ ପାଚେଶି ଉଚ ହୋଏ
ଦୁଇ କୋଶ ଓସାର ସବୁହିଁ ରତ୍ନମୟେ ।
ତହିଁରେ ଋଷକପି ଯେ ପୂରିଲେ ପୁଣ ଯାଇଁ
କାଣ୍ଡ ଖଣ୍ଡା ବଜ୍ରହାବେଳ ତାହିଁକ ଭୟନାହିଁ
ଛପନ ଛକ୍ କଣକୁ ନ କରନ୍ତି ଚିନ୍ତା
ମହା ମହାବୀରମାନେ ଅଟନ୍ତି ବଳବନ୍ତା ।
ଏକକୁ ଆରେକ ସେ ଅଟନ୍ତି ରଣ ରଙ୍କା
ପଥର ପଡ଼ିବାକୁ ନ କରେ କେହି ଶଙ୍କା ।
ପୂର୍ବ ଦ୍ୱାରରେ ପୁଣ ସୁଗ୍ରୀବର ଯେ ଥିଲା
ଥାଟକୁ ଘେନ ଗଡ଼େ ଡେଇଁଣ ପଶିଲା ।
ଦକ୍ଷିଣ ଦ୍ୱାରରେ ଥିଲ ଯେ ବାଳି ସୁତ
ବଳ ଘେନିଣ ଗଡେ ପଶିଲ ତୁରିତ ।
ରଘୁନାଥ ଉତ୍ତର ଗଡଦ୍ୱାରେ ଥିଲେ
ସୈନ୍ୟଙ୍କୁ ଡ଼କାଇଣ ଶ୍ରୀରାମ ଆଜ୍ଞା ଦେଲେ ।
ଗଡ଼ ଡେଇଁ ପଶିଣ ଅସୁର ବଳ ମାର
ରତ୍ନମୟ କଟକ ବେଗେ ପୁର କର ।
ଶୁଣିଣ ଋଷକପି ଶାଳ ଶିଳଧରି
ଡେଇଁଣ ପଶିଲେ ସୁବର୍ଣ୍ଣମୟ ପୁରୀ ।
ଡାକନ୍ତି ଅସୁରରେ ସଭିଏ ଆଜ ମଲ
ରାବଣର ସଟୋଣ ସହିତେ ନାଶଗଲ ।
ଏତେ ବୋଲି ରଡ଼ି ଯେ ଛାଡନ୍ତି ଘନଘନ
ସ୍ୱରଦ୍ୱାରେ ପଶିଲେ ଶ୍ରୀରାମଙ୍କ ସୈନ୍ୟ ।
ବନ୍ଧ ଭାଙ୍ଗିଲେ ଯେହ୍ନେ ପଶେ ବଢ଼ିପାଣି
ଶ୍ରୀରାମଙ୍କର ସୈନ୍ୟ ତେସନ ଗଡ଼ ଜାଣି ।
କେବଣ ଅସୁରରେ ଧରି କପିଙ୍କ ସଂହାରି
କେବଣ ଋଷକପି ଦୈତ୍ୟଙ୍କୁ ଧରି ମାରି ।
ମାଲ ଯୁଦ୍ଧ କରିଣ କେହି ଗଡାଗଡ଼ ହୋନ୍ତି
କେ ବଧା ଗୁ ରୁଡ଼ା କାହାକୁ କେ ମାରନ୍ତି ।
କେ ତୋଟି ରେକେଟିଣ ଝୁଣନ୍ତି ଶରୀରି
କେ ବୁକୁ ବିଦାରି ଅନ୍ତ କରନ୍ତି ବାହାର ।

ଉକଟେ ଜରଜର କାହାର ବେନ ହାତ
ଗୁ ରୁଜ ବାଜିଣ ଭାଙ୍ଗିଲ କାହାର ପୁଣି ମାଥ
କାହାର ଗୋଡ଼ ଯେ ଆସନ୍ତେ ଝୁଣ୍ଟିଲ
ନସତ ହୋଇଣ କେହୁ ସଂଗ୍ରାମରେ ପୁଟିଲ ।
କାହାକୁ ଗୋଡ଼ାଇ କେହୁ କଣ୍ଠେ ଧରି
କେ ରଖ ବୋଲନ୍ତି ରକ୍ଷକ ନାହିଁ ତାରି ।
କାହାର ପିଠିରେ କେହୁ ମାରନ୍ତି ପାଦ ଘାତ
ପଡ଼ି ଉଠି ନ ପାରେ କେ ମନରେ ଭୟଭୀତ
ଘନ ଘନ ରଡ଼ି ଯେ ଛାଡନ୍ତି କୋପଭରେ
କେ ସହସ୍ର ପଡ଼ନ୍ତି କାହାର ଉପରେ ।
ଦୁଇ ଦଳର ମଧ୍ୟରେ ବଜାଇ ବାଦ୍ୟମାନ
ମୁଖ ରବ ଶବଦ ପ୍ରଳୟ ଗରଜନ ।
ହନୁମନ୍ତ ପାଚେଶି ଉପରେ ଉଡ଼ିଲା
ଗଡ଼ର ଭିତରକୁ ଡେଇଁ ସେ ପଡ଼ିଲା ।
ଧୂମ୍ରକେତୁ ଗଦାୟେ ଯେ ଧରିଣ ଥିଲା ହସ୍ତ
ତାହା ବଶ୍ୱଷଣକୁ ଯେ ମାରିଲ ଦଶମାଥ ।
ସେ ସହସ୍ର ହନୁ ଯେଣ୍ଡ଼ିଗଗନୁ ଘେନଥିଲା
ସେ ଗଦା ଘେନ ହନୁ ସଂଗ୍ରାମେ ପଶିଲା ।
ଯମ ଦେବତା କ କାଳଦଣ୍ଡ ଧରେ
ଦେଖିଣ ହନୁ ଯେ ପଳାନ୍ତି ପ୍ରାଣ ଡରେ ।
ପାଞ୍ଚଶ ଯୂଥପତି ଯେ ଏକ ଏକ ଯୋଧ
ବଚନ ସଂଗ୍ରାମ ଯେ ଜାଣନ୍ତି କୂଟ ବୁଦ୍ଧି ।
ମହା ମେଘ ଜାଣି ଋଶଭ ଦନୁଜଙ୍କର କାୟେ
ଶାର୍ଦ୍ଦୂଳ ପଡ଼ିଲେ କି ଉତ୍ତମ ସିଂହ ଧାଏଁ ।
ଅସୁରଙ୍କୁ ଧରିଣ ଯେ କଣ୍ଠେ ପୁଣ ତୋଳ
କାହାକୁ ପାଦରେ ମର୍ଦ୍ଦଣ କଲ ଧୂଳି ।
ହସ୍ତୀଙ୍କର ଉପରେ ଯେ ହସ୍ତୀଙ୍କି କଚଡ଼ଇ
ରଥର ଉପରେ ନେଇ ରଥ ଯେ ପିଟଇ ।
ଅସୁରଙ୍କ ଚରଣ ଧରିଣ ଧଷି ସେ ବୁଲାଇ
ଏକରି ଉପରେ ଆରେକ କଚଡ଼ିଇ ।
ସ୍ୱର ସେନାପତି ମାରୁତି ସଙ୍ଗେ ଥିଲେ
ଏହି ଅନ ରୁପରେ ଦୈତ୍ୟଙ୍କୁ ମାଇଲେ ।
ଏକାକର ସୈନ୍ୟ ଯେ ପଳାଇ ଗଲେ ଡରେ
ଯହୁଁ ସେ ମାରୁତି ଦେଖିଲେ ଲଙ୍କାପୁରେ ।
ରାବଣ ଯେ ଜଗତି ଆସ୍ଥାନରେ ଥିଲ
ଯହୁଁ ସେ ଅଙ୍ଗଦ ଜଗତି ରୁଳ ନେଲ ।

ଦୁଇ ସହସ୍ର ମାଲଙ୍କର ମୁଣ୍ଡ ଯେ ମୋଡ଼ିଲା
ଲଙ୍କାର ରାଜା ଦେଖିଣ ଲଜ୍ୟା ସେ ପାଇଲା
ଏମନ୍ତ ସମୟରେ ଅଇଲା ସୁଗ୍ରୀବର
ରାବଣ ସଙ୍ଗେ ଯୁଦ୍ଧ କଲା ସେ ଅପାର ।
ତହୁଁ ସେ ବିମୁଖ ଯେ ହୋଇଲା ଲଙ୍କପତି
ବିସ୍ମୟେ ହୋଇଣ ଭାଳଇ ତାର ମତି ।
ଏମନ୍ତ ସମୟେ ଯେ ଅଇଲା ହନୁମନ୍ତ
ଇନ୍ଦ୍ରଜିତର ସଙ୍ଗେ କଲାକ ଅନର୍ଥ ।
ଏମନ୍ତ ସମୟେ ଯେ ଅଇଲା ବାଳି ସୁତ
ପ୍ରହସ୍ତକୁ ଧରିଣ ସେ ମାଇଲା ଅନେକ ତ ।
ଏ ତିନିଜଣ ଯିବାରୁ ବହୁର କରେ ସେ ତ
ବିସ୍ମୟ ହୋଇଣ ଭାଳଇ ତାର ଚିତ୍ତ ।
ଇନ୍ଦ୍ରଜିତ ସହିତେ ଯେ ମନ୍ତ୍ରୀଗଣ ସୁତ
ଏସନ ସମୟେ କପି ପଶିଲେ ଗଡ଼ର ।
ଦୂର ଜଣାଇଲା ଦେବ ଶୁଣିବା ଦଶାନନ
ଗଡ଼ ଡେଇଁ ପଶିଲେ ଋକ୍ଷ କପି ସୈନ୍ୟ ।
ଶ୍ରୀରାମ ଆଜ୍ଞାରେ ସେ ଯେ ଡେଇଁଲେପାଚେରି
ନଗ୍ରେ ପଶିଣ ସେ ଯେ କଲେ ହୁରିଯୁରି ।
ସମ୍ଭାଳ କର ଏବେ ଭଣ୍ଡାର ଦ୍ରବ୍ୟମାନ
ଋକ୍ଷ କପି ଅସୁରେ ନୁହନ୍ତି ଭାଜନ ।
ଚାରିଦ୍ୱାରେ ଦେବ ହେ ରକତ ନଦୀ ବହେ
ଅସୁର ମରଣ ଯେ କୁଢ଼ କୁଢ ଯେ ହୋଏ ।
ଶୁଣିଣ ଦଶାନନ ବିସ୍ମୟେ କରି ମନ
ଇନ୍ଦ୍ରଜିତ କୁମର ଅଛଇ ସନ୍ନିଧାନ ।
ତାହାକୁ ବୋଇଲାରେ ଦ୍ୱାର ତୋର ରଖ
କେତେକପିପଶିଲେରେ ଯାଇଁଭୁବେଗେଦେଖ
ମାର ଋକ୍ଷ କପିଙ୍କିରେ ନିଃସଂଶୟ କରି
ସାମାନ୍ୟ ଭରସା କରେ ଡେଇଁଲେ ପାଚେରି
ଭୟ ନ କରି ସେ ଯେ କଟକେ ପଶିଲେ
ଅକାରଣେ ମୋର ସୈନ୍ୟଙ୍କୁ ନାଶକଲେ ।
ଯାଅରେ ଇନ୍ଦ୍ରଜିତ ତୁ ରେ କଥାମାନ ବୁଝ
ଦୟା ନ କରି ବାବୁରେ ଉଗ୍ରୋଧ ରୁଚି ଯୁଝ
ପ୍ରହସ୍ତକୁ ବୋଇଲା ବେଗେ ତୁ ଯାଅସି
ଶ୍ରୀରାମର ସୈନ୍ୟ ଯେ ପକାଅ ସବୁନାଶି ।
ଦକ୍ଷିଣ ଦ୍ୱାରକୁ ସେ ପେଶିଲା ପୁଣ ତାର
କର ହେ ସଂଗ୍ରାମ ଯେ କଟୁହିଁ ନ ବିଚାର ।

ଶୁଣିଣ ଇନ୍ଦ୍ରଜିତ ପ୍ରହସ୍ତ ବେଗେ ଗଲେ
ଯେ ଯାହାର ବାଣ୍ଟକୁ ବେଗେ ସେ ଧାଇଁଲେ
ଦିବ୍ୟରଥ ଚଢ଼ିଣ ଇନ୍ଦ୍ରଜିତ ବୀର
ସୈନ୍ୟ ମାରିବାକୁ ହୋଇଲା ଆଗୁଁସାର ।
ହନୁମନ୍ତକୁ ଦେଖିଣ ସେ ଇନ୍ଦ୍ରଜିତ ବୀର
ରଥବର କଲା ହନୁମନ୍ତର ଆଗର ।
ଇନ୍ଦ୍ର ଗରୁଡ଼ କରେ ହୋଇଲେ ଭେଟାଭେଟି
ଧାଇଁଣ ହନୁମନ୍ତ ଗଦା ଯେ ନେଇ ପିଟି ।
ରଥରେ ପଡ଼େତେକ ପଡ଼ିଲା ବଜ୍ରଘାତ
କି ଅବା ସ୍ୱର୍ଗରୁ ଯେ ପଡ଼ିଲା ନକ୍ଷତ୍ର ।
ଭାଜିଣ ରଥବର ହୋଇଲା ଖଣ୍ଡ ଖଣ୍ଡ
ଇନ୍ଦ୍ରଜିତ ସମ୍ଭାଳି ପାତିଲା ଭୁଜଦଣ୍ଡ ।
ବାମକରେ ଗଦା ଯେ ପଡ଼ିଲା ବେଗେ ଯାଇ
ଦକ୍ଷିଣକରେ ଗଦା ଧଇଲା କୋପ ହୋଇ ।
ଛଡ଼ାଇକରି ତାଠାରୁ ହନୁମନ୍ତ ନେଲା
ଦେଖିଣ ଇନ୍ଦ୍ରଜିତ ସେ ନାରାଚ ପେଷିଲା ।
ଶୁକଳ ମୁନ ଯେ ଦିଶୁଅଛୁ ଫାଳ
ରତ୍ନ ଜଡ଼ିଲା ପ୍ରାଏ ଯେ ଦିଶଇ ତାର ବେଢ଼
ଗଣ୍ଠିମାନଙ୍କରେ ଯେ ସୁବର୍ଣ୍ଣର ଲେଖନ
ଶ୍ୟାମଳ ଚଢ଼ାଇଭୁ ପକ୍ଷୀ ଯେ ଚନ୍ଦ୍ରୀ ବିତପନ
ପାଟସୂତାରେ ତାଗ ଯେ ପକାଇ ଅଛୁ ଛନ୍ଦ
ପୋଏକାର ମୁଗୁସ ଗୁଣରେ ଯୋଡି ବାନ୍ଧି ।
ପେଶନ୍ତେ ନାରାଚ ଯେ ବେଗେ ଚଳଗଲା
ଝଟକ ବିଜୁଳି ଯେସନ୍ତେ ଗଗନେ ପଶିଲା ।
ଗଦାଛେଦ ବୋଲିଣ ହନିଲା ବେଗେ ଟାଣି
ଅମୋଘ ଶରକୁ ସେ ହାଣି ପକାଇ ପୁଣି ।
ଦୁଇଖଣ୍ଡ କରିଣ ସେ ହାଣି ପକାଇଲା
ଇନ୍ଦ୍ରଜିତ କ୍ଷୌଣୀରେ ଯାଇଣ ସମ୍ଭାଇଲା ।
ହନୁମନ୍ତ ହାତରେ ଥିଲା ଯେବଣ ଖଣ୍ଡ
ତାହା ନେଇ ମାଇଲା ଯେ କପିକୁଳ ଷଣ୍ଢ ।
କୁମର ଅଙ୍ଗରେ ଯାଇଁ ବାଜିଲା ଭଗ୍ନ ଗଦା
ଘାଏ ଘୁମାଇଲା ଯେ ଅସୁର କୁଳ ଯୋଧା ।
ଭୂପୃଷ୍ଠ ପଡ଼ିଣ ଯେ ବାହୁଡ଼ି ଉଠାଯାଇ
ଆଉ ଖଣ୍ଡ ହନୁମନ୍ତ ମାଇଲା ନିଠାଇ ।
ଦୁହେଁ ଭେଟାଭେଟି ଯେ ହେଲେ ଅଧବାଟେ
ଦୁହେଁ ଏକ ହୋଇଣ ଗଲେ ଯେ ସୁରବାଟେ

ଦେଖିଣ ବିଧାତା ଯେ ଅନେକ ପୂଜାକଲ
ପ୍ରସନ୍ନ ହୋଇଣ ପୁଣ ପବନକୁ ସେଯେଦେଲ
ନିଜ ଅସ୍ତ୍ର ପାଇଣ ପବନ ମହାବଳ
ବୋଲଇ ଶ୍ରୀରାମ ଯେ ଦୈତ୍ୟଙ୍କୁପାରିବାକଉଶଳ
ଏହୁ ଗଦାରେ ଯେ ରାବଣ ଶିର ଥିଲ
ଅସମ୍ଭବ ନୋହିଲେ କି ସେ ଅସ୍ତ୍ର ଛାଡ଼ିଦେଲ
ସକଳ ଦେବତାଗଣ ହୋଇଲେ ହରଷ
ଏଥୁଅନନ୍ତରେ ଶୁଣିମା ବିର୍ଯ୍ୟରସ ।
ଯହୁଁ ଇନ୍ଦ୍ରଜିତ ସସ୍ତ୍ର ଗଲ ଯେ ଉଧ୍ୱଂଇଁ
ରଣ ଛାଡ଼ି ଦୁହେଁ ଉବଦ ସେ ଯେ ହୋଇ ।
ହନୁମନ୍ତ ବୋଇଲା ଏଯେ ଅଟେ ଯେହ୍ନପରାତ
ଦେବତାଙ୍କର ଶସ୍ତ୍ର ତ ବୁଝନ୍ତୁ ଦଇତ ।
ଉଦ୍ରୋଧେ ଦେଇଥିଲେ ଏବେ ଯେଷେନଗଲେ
ଭଲ ଦେବତାଏ ଯେ ଖୋଜିଣ କାର୍ଯ୍ୟକଲେ
ଏସନେକ ବୋଲ ଶୁଣି ସେହ୍ନାଙ୍କୁ ସଙ୍ଗେଘେନି
ପବନହୁଁ ବେଗେ ସେ ଧାଇଁଲ ପାବନି ।
ଭଗ୍ନରଥ ଉପରେ ଇନ୍ଦ୍ରଜିତ ଥିଲ
ଏହାଙ୍କର ଆସନ୍ତେ ହତାଶ ଗତି କଲ ।
ମତ୍ତଗଜ ଉପରେ ଚଢ଼ିଲା ବେଗେ ଯାଇଁ
ଦୁବନ୍ଦ ବଧାଏକ ମାଇଲା ପୁଣ ନେଇ ।
ହସ୍ତୀର ଦେହରେ ବସିଲ ତାର ହସ୍ତ
ମାତଳ ବୁଲାଇଲା ପବନର ନର୍ଘାତ ।
ତେଇଁଣ ଇନ୍ଦ୍ରଜିତ ଅଲଗେ ଯାଇଁ ବସି
ସେ ଗଜକୁ ଯାଇଣ ସେ ଧରିଲା ଆକ୍ଷୋଶି ।
ଥୋରହସ୍ତେ ଓଟାରି ପଛକୁ ଛାଡ଼ିଦେଲ
ଜାଣିଣ ଇନ୍ଦ୍ରଜିତ ଯେ ଆଡେ ହୋଇଗଲ ।
ଭୂମିରେ ମିଳିଲ ଯେ ବାମକରେ ଧନୁ
ଦେଖି ପଳାଇଲ ବୀରବର ହନୁ ।
ମେଘନାଦ ବୀର ଯେ ପଛକୁ ଗଲା ଘୁଞ୍ଚି
ଦୁବନ୍ଦ ବଧାଏ ଯେ ମାଇଲା ନେଇ ସଞ୍ଚି ।
ଦଇତ ବଞ୍ଚାଇଲା ଅଙ୍ଗ ଢାଳିଦେଇ
ବସନ୍ତ ସେନାପତି କୋପ ମୁଖ ହୋଇ ।
ପାଞ୍ଚ ସେନାପତିଙ୍କ ମଧ୍ୟରେ ଇନ୍ଦ୍ରଜିତ
ମେଘର ଭିତରେ ଯେହ୍ନେ ରହିଲା ଆଦିତ୍ୟ ।
ଅଙ୍ଗବଡ ଖଣ୍ଡା କାଢ଼ିଣ ବୀର ମାରି
ଦେଖିଣ ଦୁବନ୍ଦ ଯେ ଦୁଇହାତରେ ଧରି ।

ଚଢ଼ାଇ ସସ୍ତ୍ର ଯେ ପକାଇଲ ଭାଙ୍ଗି
ଯମ କରଣ କି ପୋଛିଲେ ତାର ପାଞ୍ଜି ।
ଦେଖିକରି ଇନ୍ଦ୍ରଜିତ କଲା ମହାଭୟେ
ଶ୍ରୀରାମ ସୈନ୍ୟ ସମସ୍ତେତ ବଶନ୍ତୁ ହସ୍ତୁମୟେ
ଏଥୁଅନନ୍ତରେ ଯେ ଶୁଣିବା ରସବାଣୀ
ଲଙ୍କା ବିଧ୍ୱଂସନ୍ତି ଯେ ଶ୍ରୀରାମ ସଇନ ।
ପାରସ ମହୋଦର ରାବଣେଶ୍ୱର ସୁତ
ଦେଖିଣ ହାରକୁ ଯେ ପେଶିଲ ଏହାନ୍ତ ।
ଅଙ୍ଗଦ ସଙ୍ଗରେ ସେ ବହୁତ ଯୁଦ୍ଧକଲେ
ଶ୍ରାବଣ ବରଷା ଜାଣି ନାରାଜ ବରଷିଲେ ।
ତାରାଗଣ ଜାଣିଣ ହାନନ୍ତି ନାରାଜ
ଦେଖିଣ ଧାଇଁଲେ ବାଳିର ଆତ୍ମଜ ।
ଅଶ୍ୱାସ୍ତତରୁ ଏକ ଉପାଡ଼ି କରେ ଧରି
ଅଙ୍ଗଦ ପିଟିଲ ଯେ ମହାକୋପ କରି ।
ଥୋକାଏକ ବଳ ଯେ ହୋଇଲେ ତହୁଁ ହତ
ଶଙ୍କରି ସେନାପତି କଥା ଯେ ଅପ୍ରମିତ ।
ଜାମ୍ବୁବୃକ୍ଷ ଉପାଡ଼ି ମନ୍ଥିଲ ବେଗେ ବଳ
ମନ୍ଦର ପର୍ବତ ଯେହ୍ନେ ମନ୍ଥଇ ମହାଜଳ ।
ଉଦ୍ରୋଧ ଛାଡ଼ିଣ ଯେ ଧାଇଁଲେ କୋପଭରେ
ଅନେକ ଅସୁର ଭଜିଲେ ସମରେ ।
କେଶରୀ ଓଳମ୍ବ ଯେ ଦଧିମୁଖ ତିନି
ପାଞ୍ଚଜଣ ହୋଇଲେ ଅଙ୍ଗଦକୁ ଘେନି ।
ଶାର୍ଦ୍ଦୂଳ ପଲରେ କି ସିଂହ ଖେଦା ଖେଦି
ରଣରଙ୍ଗ ସ୍ଥାନରେ ବହେ ରକ୍ତ ନଦୀ ।
ମାଉ ମାରି ଶବ୍ଦ ଯେ ଶୁଭଇ ଚଉପାଶ
ଦେଖିଣ ଲଙ୍କା ଲୋକେ ମନରେ ମହାହାସ ।
ସ୍ୱପନର କଥା ପ୍ରାଏକ ମଣିଛନ୍ତି
ଅପୂର୍ବ ଯୁଦ୍ଧମାନ ଦେଖିଣ ଝୁରନ୍ତି ।
ଅନେକ ଲୋକ ତହୁଁ କ୍ଷୁଧା କୋହ୍ନ ହୋଇ
ନିଃଶ୍ୱାସ ଛାଡନ୍ତି କେହୁ ଆକାଶକୁ ଚାହିଁ ।
କେ ବୋଲଇ ଦଇବରେ କେଣିକି ପଳାଇବୁ
ଅକାରଣ କଥ ରେ ସଭିଏ ମରିବୁଁ ।
ଖେ ହନ୍ତି ବିଧାତା ଏହା ସେ ଭିଆଇଲୁ
ଅକଣ୍ଟକ ପୁରକୁ ବାନରେ ଧ୍ୱଂସିଲୁ ।
ରାବଣକୁ କହନ୍ତି ଯେ ବୃଷ କପିମାନେ
ଏ ହେଙ୍ଗ୍ରେଦିକ ବଧାଭାରେ କଲୁ କି କେସନେ

ବଡ଼ ଉପଦ୍ରବ ହୋଇଲା ପୁଣ ଆଜ
ଅକାରଣ ମାଙ୍କଡ଼ ଯେ ଭାଙ୍ଗନ୍ତି ଏଡ଼େ ରାଜ୍ୟ ।
ଉପୁଜିତ ନାହିଁ ତାଙ୍କର କପି ଲକ୍ଷଣ
ମାନବ ଶରୀର ଯେ ତପସ୍ୱୀ ଦୁଇଜଣ ।
ଆଶ୍ୱାସନା କରନ୍ତେ ଆସ୍ଫୋଟେ ପୁଣ ଆସି
କେ ବୋଲଇ ମାରରେ ସଂଗ୍ରାମରେ ପଶି ।
ଏସନକ ବୋଲି ବୋଲି ଥୁଅନ୍ତେ ନଗ୍ର ଜନ
ଦେଖୁ ଦେଖୁଁ ମାଡ଼ି ଯେ ପଡ଼ୁଛନ୍ତି ସୈନ୍ୟ
ଦଳିତେ ଏକ ଆରକେ ପାଏ ଯେ ନ ଛାଡ଼ନ୍ତି
ଶ୍ରୀରାମର ସୈନ୍ୟକୁ ଯେ ନଘାଇ ଯୁଝନ୍ତି ।
କୋଳ ଧରିଣ କେହୁ ଯେ ଧାଇଁଣଯାନ୍ତି ଆଗେ
ରହି ଯୁଦ୍ଧ କରନ୍ତି କେ କପିଙ୍କର ଆଗେ ।
ମାରନ୍ତି କେହୁ ଯେ ଭୁଷଣ୍ଡି ଶକତି
ଶୁ ଚୁଳ ଘେନଣ କେହୁ ରଣରେ ଧାପଦ୍ୟନ୍ତି
ବାଜନ୍ତି ଖଣ୍ଡ ଶର ପିଟନ୍ତି ନେଇ ଗଦା
ଭଜିଲେ କପିବଳ ଦୁଇ ହାତ ଯୋଧା ।
ଥାଟର ସେନାପତି ରହ ବୋଲି ଧାଇଁ
ଶ୍ରୀରାମର କାର୍ଯ୍ୟ କରସିରେ ଯାଇ ।
ଶୁଣିଣ ଋକ୍ଷକପି ପାଲଟି ପୁଣ ବେଗେ
କଳକଳା ରବ ଦେଇ ଧାଇଁଲେ ଅତିରାଗେ
ନ ଘୁଞ୍ଚନ୍ତି ପାଏ ଯେ ନ ପାରନ୍ତି ବଳି
ଦୁଇବଳ ମିଶିଣ ହୋଇଲେ ମହାମର ।
ଟମକ ନିଶାଣ ଯେ ବାଜେ ନିରନ୍ତରେ
ଘର ଦ୍ୱାର ଭାଙ୍ଗିଣ କପିକଳେ ଚୁରେ ।
ଦେଉଳ ମଣ୍ଡପ ଯେ ଜଗତିର ଚୂଳ
ତରୁ ବୃକ୍ଷ ଉପରେ ନ ଥୋଇଲେ ଡାଳ ।
ନର୍ଦ୍ଧ୍ୟା ମାରୁତି ଯେ ଧର୍ମ ତହିଁରେ ସାକ୍ଷୀ
ଦେବତା ଏ ସୁଫଳ କଲେ ହେ ବେନ ଆଖି
ସୁଗ୍ରୀବର ରାଜା ଯେ ପୂର୍ବଦ୍ୱାରେ ଥିଲେ
ପାଚେରୀ ଡେଇଁଣ ସେ ଭିତରେ ପଶିଲେ ।
ସଙ୍ଗତେ ଗନ୍ଧମାଦନ ନଳ ନୀଳ
ସୈନ୍ୟ ଅପ୍ରମିତ ଯେ ଋକ୍ଷକପି ବଳ ।
ପକ୍ଷୀ ପ୍ରାଏ ହୋଇଣ ଉଡ଼ି ସେ ଅଇଲେ
ମେଡ଼ ମଣ୍ଡପ ଯେ ଜଗତି ନାଶ କଲେ ।
ଅଟ୍ଟାଳି ମେଢ଼ମାନ ଯେ ପକାଇଲେ ଭାଙ୍ଗି
ସବୁଙ୍କ ଶରୀରୁ ଝାଳ ବହୁଛି ଯେ ଯୁଝି ।

ମାର ମାର ଶବଦ ଶୁଭେ ହାଲ ହୋଳି
ନଳନୀଳ ଘାଏ କମ୍ପିଲ ମହିଆଳି ।
ଶତବଳ ଗନ୍ଧମାଦନ ଏ ଯେ ଦୁଇ
ପଶିବା ମାତ୍ରକେ ଏ ଅସୁରେ ନ ରହଇ ।
ସୁଗ୍ରୀବର ରାଜା ଯେ ଧରିଣ ଅଛି ବୃକ୍ଷ
ଅତିବଳ ପଥରେ ଧରିଣ ବାମହସ୍ତ ।
ଅନେକ ସୈନ୍ୟ ସେ ଯେ ମାଇଲା କରି ରଣ
ଦେଖିଣ ପ୍ରଶସ୍ତ ମାଇଲା ଖଣ୍ଡ ବାଣ ।
ଛିଡ଼ିଗଲା ବୃକ୍ଷ ଯେ ହୋଇ ବେନଖଣ୍ଡ
ଧାଇଁଲା କିଷ୍କିନ୍ଧ୍ୟା ରାଏ କୋପରେ ପ୍ରଚଣ୍ଡ ।
ରଥରେ ଉଠି ତାର ବଧାଏ ମାଇଲା
ସାରଥି ବାଜଧରି ପୋପାଡ଼ି ଦେଲା ।
ତଳେ ପଡ଼ି ସାରଥି ହାରିଲା ପ୍ରାଣକୁ
ହସ୍ତରେ ଧଇଲା ପୁଣି ସେ ପ୍ରଶସ୍ତ ବାଳକୁ ।
ଗଳ ପକାଇଲା ଯେ ଦଇତ ବଡ଼ ବେଗେ
ଏସନେକ ରଣ ହୋଇଲା ନାନାରଙ୍ଗେ ।
ଉତ୍ତର ଦ୍ୱାରେ ଯେ ଅଛନ୍ତି ରାମ ରାହୁ
ଋକ୍ଷବାନର ରାଇଣ ଆଜ୍ଞାଦେଲେ ସେହୁ ।
ଶ୍ରୀରାମଙ୍କ ଆଶିରେ ପଧଲେ କପି ବୀର
ମାର ମାର ଶବଦ ଶୁଭେ ମହାଘୋର ।
ସମସ୍ତେ ବୃକ୍ଷଧରି ନାହାନ୍ତି ଶୂନ୍ୟ ହସ୍ତ
ସଂଗ୍ରାମ କରିବାକୁ ଧାଇଁଲେ ହୋଇ ମତ୍ତ ।
ବୀର ମହାବୀର କହିଲେ ନ ସରି
କାଳମୁଖ ବସନ୍ତ ପବନ କେଶରୀ ।
ଚନ୍ଦନ ଗବାକ୍ଷ କଞ୍ଚଣ ସୁସୋଦନ
ବଳମୁଖ ଶତବାଳ ମହେନ୍ଦ୍ର ପବନ ।
ସମର କରନ୍ତି ସେ ଅସୁରଙ୍କ ସଙ୍ଗେ
ହୁଳହୁଳି ଦେଇଣ ନାଚନ୍ତି ନାନାରଙ୍ଗେ ।
କଠୋର ମାରୁତି ଯେ ମାରନ୍ତି ବିକରାଳ
କେ ଅନ୍ତକାଢ଼ି ଗଳାରେ କରୁଛନ୍ତି ମାଳ ।
କେହୁ କରେ ମୂଡପିଣ୍ଡ ଘେନିକରି ଧାଇଁ
ମୋଡ଼ିବାର ପିଣ୍ଡକେ ଧରିଣ ଫିଙ୍ଗିଦେଇ ।
ଶତେ ଯୋଜନ ଲଙ୍କା ପୂରିଲେ ଚଉଦିଶି
ଘରେ ଘରେ କେହୁ ଯେ ପୁରେ ପୁରେ ପଶି
ପୂର୍ବଦ୍ୱାର ବାନରେ ପଶ୍ଚିମ ଦ୍ୱାରେ ଗଲେ
ଉତ୍ତର ସୈନ୍ୟ ଯାଇଁ ଦକ୍ଷିଣେ ସମ୍ଭାଇଲେ ।

ସ୍କନ୍ଧଦ୍ୱାର ସୈନ୍ୟ ଯେ ମିଶିଣ ଏକ ହୋଇ
ସବୁରି ଶରୀର ରଙ୍ଗବର୍ଣ୍ଣ ଯେ ଦିଶଇ ।
ଅଙ୍ଗଦ ଯେ ହନୁମନ୍ତ ସୁଗ୍ରୀବ ଶତବଳ
ଜାଳମ୍ବ କେଶରୀ ଦଧି ମୁଖ ନଳନୀଳ ।
ଗନ୍ଧମାର୍ଦ୍ଦନ ରମଣ ଧୂମାକ୍ଷ ଚନ୍ଦନ
ଗବୟେ ଗବାକ୍ଷ ବଳମୁଖ କାଳଞ୍ଜନ ।
ଶରଭ ଶର ସେତୁ ଦଧିମୁଖ ବୀର
ଏମାନେ ରଣେ ପଶି ମାରନ୍ତି ଅସୁର ।
ମହେନ୍ଦ୍ର ମହାବୀର ତାଳବୃକ୍ଷେ ଧରି
ଉପାଡ଼ିଣ ବୀର ଧାଇଁଲା ଶୀଘ୍ରକରି ।
ଦେଖିଣ ଇନ୍ଦ୍ରଜିତ ବିନ୍ଧିଲା ନାରାଜ
ଛେଦିଲାକ ବୃକ୍ଷ ଦେଖିଲା କପିରାଜ ।
ଧାଇଁଣ ବିଧାଏ ମାଇଲା ବେଗେ ନେଇ
ପଞ୍ଚଶ ଯୂଥପତି ମିଳିଲେ ବୋବଦେଇ ।
କେ ପାଦେ ପ୍ରହାରେ କେ ଗୁରୁଦାଘେନମାରି
କେହୁ ବୃକ୍ଷ ଧରିଣ ପିଟଇ ଆଗସରି ।
ମେଘନାଦ ବଞ୍ଚାଏ ତାହା ବିଚିତ୍ର ଗତିକରି
କୋପରେ ବାଳସୁତ ଧାଇଁଲା ଆଗସରି ।
ହନୁମନ୍ତ ଆସିଣ ଧଇଲା ତାର ଧନୁ
ଶୂନ୍ୟ ହସ୍ତ ହୋଇଲା ଯେ ରାବଣର ତନୁ ।
ଲଙ୍ଗୋଡ଼େ ମାଇଲା ଯେ କିଷ୍କିନ୍ଧ୍ୟାର ପତି
ଅଙ୍ଗ ଢ଼ାଳଦେଇ ବଞ୍ଚାଇଲା ଦଶବାର ନାତି
ସମ୍ଭାଳି ଇନ୍ଦ୍ରଜିତ ପଛ କରିଣ ସେ ଗଲା
ଦେବ ଦଳନ ନାମରେ ବିମାନ ସୁମରିଲା ।
ହୋମରୁ କାଢ଼ି କରି ଯେ ରଖିଥିଲା ରଥ
ତତକ୍ଷଣେ ଆସିଣ ହୋଇଲା ଉପଗତ ।
ତହିଁରେ ଆରୋହିଲା ରାବଣର ସୁତ
ସୁସ୍ଥାନ ପାଇଣ ବସିଲା ସେ ଦଇତ ।
ସହସ୍ରେ ଅଶ୍ୱ ଯେ ଯୋଚିଅଛି ଯାନେ
ମନ୍ତ୍ରେଣ ଚଳଇ ସେ ସାରଥି ବହନେ ।
ଦିଗ ଦହନ ଚରାଳ ଉଡ଼େ ଫରହରି
ଯାହାକୁ ଦେଖିଲେ ଡ଼ରେ ବଜ୍ରଧର ।
ତହିଁରେ ବସିବାର ହୋଇଲାକ ଯେ ଶସ୍ତା
ପିଠ ହୋଇଲେ ତାର ଦଶ ସସ୍ର ମଏମନ୍ତା ।
କାକାକ୍ଷ କୁଳୁପାକ୍ଷ ସମଏ ଦୁରସୁର
ଅଧମ ଧୂମାକ୍ଷ ବିକଟ ମହୋଦର ।

ପ୍ରକାଶ ଯେ ମହୀରାବଣର ବୀର ଆଏ
ସୁଖା ବୃମୁଖାଯେ କାଠ ଘଣ୍ଟାରାଏ ।
ବକାସୁର ମହାସୁର ପ୍ରଚଣ୍ଡ ପ୍ରହଲାଦ
ବଜ୍ରମୁଷ୍ଟି ମହାକାୟ କାକାକ୍ଷ ଏକପାଦ ।
ଗୁଣ ଟଙ୍କାର କରି ଯେ ନାରାଜ ବୃଷ୍ଟି କଲେ
ଶୂନ୍ୟପକ୍ଷ ଗୋଟି ଯେ ନାରାଜେ ନିରୋଧିଲେ
ସ୍ୱର୍ଗର ଦେବତାଏ ହୋଇଲେ ଚକିତ
ଅପୂର୍ବ ସମର ଯେ କଲାକ ଇନ୍ଦ୍ରଜିତ ।
ଶ୍ରୀରାମ ସୈନ୍ୟଙ୍କୁ ଆଚ୍ଛୋଦିଲେକ ଯହୁଁ
ଅଙ୍ଗଦ ଧଇଲା ଯେ ବେଗକରି ତହୁଁ ।
ତାହାର ପଛେ ପୁଣି ଅଛୁ ହନୁମନ୍ତ
ପିଠିକି ରଖା ଅଛି କିଷ୍କିନ୍ଧ୍ୟା ନରନାଥ ।
ମତ୍ତକୁଳା ମତ୍ତଗଜ ପ୍ରାଏକ ସେ ଦିଶନ୍ତି
ଦେଖିଣ ଅସୁରେ ସେ ନାରାଜ ପହୁଡ଼ନ୍ତି ।
ଯାଏ ନ ଯୁଝନ୍ତି ସେ କପିକୁଳ ମଲ୍ଲ
ମନ୍ତ୍ରିଣ ମେଘନାଦ ମାଇଲା ତୀକ୍ଷ୍ଣ ଶଲ୍ୟ ।
ସଞ୍ଜଗ ସେନାପତି ଧଇଲା ବେଗେ ଯାଇଁ
ସେହି ସହସ୍ର ଧରି ତାକୁ ମାଇଲା ନଠାଇ ।
ଦେଖିଣ ମେଘନାଦ ପ୍ରତି ଅସ୍ତ୍ର କଲା
ବାମନ ସୁମରି ଯେ ଛେଦଣ ପକାଇଲା ।
ଡେଇଁଣ ହନୁମନ୍ତ ବସିଲା ତାର ରଥେ
ମହତ ପଥର ଯେ ଧରିଥିଲା ହସ୍ତେ ।
ନେଇଣ ହନୁମନ୍ତ ତାହାକୁ ମାଇଲା
ଦେଖିଣ ରାବଣ ସୁତ ବେଗେ ନିବାରିଲା ।
ବାହୁଡ଼ି ହନୁମନ୍ତ ଭୂମିରେ ଯାଇ ମିଳି
ବ୍ୟାଘ୍ର ପାଶୁ ଯେସନେ ପଳାଇ ଯାଏ ଛେଳି
ଅସୁର ଶୂନ୍ୟ ହସ୍ତ ହନୁକୁ ଦେଖି ହାସି
ସୁଗ୍ରୀବର ରାଜା ସଂଗ୍ରାମେ ଆସି ପଶି ।
ବୃକ୍ଷ ଧରି ପହୁଡ଼ଇ ସୁଗ୍ରୀବର ଘେନ
ପ୍ରାଣଛୁଡ଼ ଦଇତେ ଲେଟନ୍ତି ଧରଣୀ ।
ଏକା ପ୍ରହାରକେ ଦଶ ହଂଶ ନାଶି
ତାହାର ପାଶରେ କେହି ନ ପାରନ୍ତି ପଶି ।
ହନୁମନ୍ତ ଏସନ ପ୍ରକାରେ ଯୁଦ୍ଧକରି
ଅନେକ ଦଇତବଳ ପକାଇଲା ମାରି ।
ଅଙ୍ଗଦର ଯୁଦ୍ଧ ଏସନ ପ୍ରକାରେ
କେଶରୀ ମହିମା କହିଲେ ନ ସରେ ।

ବେଳ ବୃକ୍ଷ ଉପାଡ଼ିଣ ଧଇଲେକ ଯହୁଁ
ସଂଗ୍ରାମ ଛାଡ଼ି ଦୈତ୍ୟେ ପଳାଇଲେ ତହୁଁ ।
ଦଧିମୁଖ ବଳମୁଖ କାଳମୁଖ ତିନ
ରଣ ରଙ୍ଗ କରୁଛନ୍ତି ଶାଳ ଶିଳ ଘେନ ।
ଗବୟେ ଗବାକ୍ଷ ଧୂମାକ୍ଷ ଶତବଳ
ପବନ ମହେନ୍ଦ୍ର ଦୁର୍ବନ୍ଦ ପନଶିଳ ।
କଞ୍ଚଣ ଶରକେତୁ ଡ଼ାଳମ୍ବ ଚନ୍ଦନ
ସାରସ ପାରସ ଯେ ଗନ୍ଧମାଦନ ।
ଅସୁରଙ୍କୁ ଏମାନେ ପକାଇଲେ ନପାତି
ଝାଳରେ କଦନ ହୋଇଲେ ତରୁଶିଷି ।
ସବୁଙ୍କର ଶରୀର ରଙ୍ଗବର୍ଣ୍ଣ ଦିଶି
ଯେସନେ କଳାମେଘେ ଅରୁଣ ପ୍ରକାଶି ।
ସେହୁ ଯେ ଦୈତ୍ୟବଳ ଭଙ୍ଗୁଣି ପାଇଲେ
ପ୍ରକାଶ ସେନାପତିଙ୍କ ଯାଇଣ ଆଶ୍ରେକଲେ ।
ଆଠ ସମ୍ଭାଳଣ ସେ ଅନେକ ଯୁଦ୍ଧ କଲା
ଜଳବୃଷ୍ଟି ପରାଏ ନାରାଜ ବନ୍ଧିଲା ।
ଘଡ଼ଘଡ଼ ପରାଏ ଶୁଭଇ ଗୁଣ ନାଦ
ନାରାଜର ତେଜକ ଆହ୍ଳାଦ ।
ହାକଣ ପ୍ରକାଶ ଯେ ବନ୍ଧ ପୁଣି ପୁଣି
ଅନେକ ଋକ୍ଷକପି ପକାଇଲା ହାଣି ।
ବାନରଙ୍କ ରୁଧିରେ ବହେ ରକ୍ତ ନଦୀ
ନୀଳ ସେନାପତି ଦେଖିଣ ହୁରୁ ଭେଦି ।
ଅତିବଡ଼ ପଥର ଧଇଁଲା କୋପଭରେ
ଯାଇଣ ପଡ଼ିଲା ସେ ପ୍ରକାଶ ହୃଦୟରେ ।
ରକତ ଉଦ୍‌ଗାରି ଛାଡ଼ିଲା ଦୈତ୍ୟ ପ୍ରାଣ
ଧରଣୀରେ ପଡ଼ିଲା ରହ୍ମବର ଛାଡ଼ିଣ ।
ଧୂମାକ୍ଷ ସେନାପତି ଧାଇଁଣ ତଡ଼ନ୍ତି
ହନୁମନ୍ତ ତାହାକୁ ଓଗାଳିଲା ଧାନ୍ତି ।
ବୃକ୍ଷେକ ଧରିଣ ସେ ପିଟିଲା କୋପଭରେ
ଦେଖିଣ ଦନୁଜ ଯେ ଛେଦିଲା ଖଣ୍ଡ୍‌ଶରେ ।
ଧାଇଁଣ ମାରୁତି ଯେ ବୃପୋଡେ ମାଇଲା
ରଥଛାଡ଼ି ସେ ଯେ ଧୂମାକ୍ଷ ପ୍ରାଣଗଲା ।
ବଜ୍ରଦନ୍ତ ସଇନ ଯେ ମାଇଲା ଅନେକ
ଦୂରରୁ ଦେଖିଲା ତାକୁ କିଷ୍କିନ୍ଧ୍ୟା ନାୟକ ।
ତାଳବୃକ୍ଷ ଗୋଟିଏ ଯେ ଧରିଣ ଥିଲା କରେ
ଦେଖିଣ ବଜ୍ରଦନ୍ତ ହକାରି ତାର ଶରେ ।

କୋପରେ ସୁଗ୍ରୀବର ପିଟିଲା ବେଗେ ଶିଳ
ରଥ ଛାଡ଼ିଣ ଦୈତ୍ୟ ପଳିଲା ମହାତଳ ।
ପ୍ରାଣଗଲା ତାର ଯେ ପ୍ରାର୍ଥିବ ଦେହ ଛାଡ଼ି
ଅନେକ ଦନୁଜ ଯେ ପଡ଼ିଲାକ ମାଡ଼ି ।
ସିଂହରଡ଼ି ଦେଇ ସେ କିଷ୍କିନ୍ଧ୍ୟାର ରାଏ
ଅସୁରର ଶସ୍ତ୍ର ଯେ ମର୍ଦ୍ଦଇ ପାଦ ଘାଏ ।
କାହାକୁ ରୂପେ ଡେ଼ ଯେ କାହାକୁ ନାଡେମାର
କୋପରେ କେଶ ଧରିଣ ସେ ତାକୁ କଚାଡ଼ି ।
ଦେବତାଏ ପ୍ରଶଂସା କରନ୍ତି ସ୍ୱର୍ଗେ ଥାଇ
ଧନ୍ୟ ଧନ୍ୟ ତୁ ଯେ କିଷ୍କିନ୍ଧ୍ୟାର ସାଇଁ ।
ଅସଂଖ୍ୟ ସମର ଯେ କରଇ ସୁଗ୍ରୀବର
ପିଠିକି ରକ୍ଷାଅଛି ଯେ ପବନ କୁମର ।
ଡାହାଣରେ ଅଙ୍ଗଦ ବାମରେ ନଳନୀଳ
ଶତ୍ରୁ ସେନାପତି ଯେ ଆବର ପନଶିଳ ।
ଯେ ଯାହାର ସୁଖରେ ସେ କରନ୍ତି ସମର
ଯାହାକୁ ମାରନ୍ତି ସେ ଯେ ଯାଏ ଯମପୁର ।
ଅତିହିଁ ପ୍ରବଳ ଦେଖିଲେ ଯହୁଁ ଘରେ
ଦୃଧସ ଧାଇଁଲା ଯେ ଘେନିଣ ପଥରେ ।
ଦେଖିଣ ଦୁର୍ବନ୍ଦ ଯେ ନଗାଳେ ତାକୁ ଯାଇଁ
ଦୁହେଁ ରହିଅଛନ୍ତି ଯୁଝିଲା କେହି ନାହିଁ ।
ଶାଳତରୁ ଏ ଯେ ଦୁର୍ବନ୍ଦ ଆଣିଥିଲା
ବୃଦ୍ଧଂସର ଉପରେ ନେଇଣ କଚାଡ଼ିଲା ।
ଦେଖିଣ ଦନୁଜ ଯେ ପାତିଲା ଦେହ ନେଇ
ଅଙ୍ଗେ ବାଜି ପଥର ଗଲାଦୂର ହୋଇ ।
ଯେଝା ପଥର ପଶି ବାହାର ରକତ
ଗଗରେ ଉପରକୁ ଡେଇଁଲା ଦଇତ ।
ଯେବଣ ମୁଦ୍‌ଗର ହସ୍ତରେ ଧରିଥିଲା
ଦୁର୍ବନ୍ଦ ଉପରେ ସେ ନେଇଣ ପିଟିଲା ।
ଦେଖିଣ ଦୁର୍ବନ୍ଦ ଟେ଼ ମାଇଲା ନେଇ ମୁଥ
ଭଜିଣ ମୁଦ୍‌ଗର ହୋଇଲା ନବଖଣ୍ଡ ।
ଦେଖିଣ ଦୈତ୍ୟବୀର ଯେ ହୋଇଲାକମ୍ପମାନ
ବେ ଇଲା ସଂଗ୍ରାମରେ ନୁହଇ ଏ ଯେ ସାନ ।
ଏତେ ବୋଲି ପୁଣ ମାଇଲା ଶୂଳଘେନ
ଦୁର୍ବନ୍ଦ ଆଡ଼ି ହୃଅନ୍ତେ ପଡ଼ିଲା ମେଦିନୀ ।
ଧାଇଁଣ କପିବୀର ସାଉଁଟି ଧରେ ତାହା
ଦୈତ୍ୟକୁ ମାଇଲା ହଲାଇ ବେନ ବାହା ।

ବୃଧ୍ୱଂସର ଉପରେ ପଡ଼ନ୍ତି ବେଗେ ଯାଇଁ
ସର୍ପ ଯେହ୍ନେ ଗର୍ତ୍ତରେ ପଶଇ ପକାଇ ।
ବୁକୁରେ ବାଜଣ ଯେ ପିଠିକି ବାହାର
ଦେହଛୁଡ଼ ପ୍ରାଣ ଯେ ଗଲାକ ଶୂନ୍ୟର ।
ଏଥୁ ଅନନ୍ତରେ ଶୁଣ ଗୋ ଉମା ତୁହ୍ମି
ଜଗଖରେ ଥାଇଣ ରାବଣ ସମର ଦେଖଇ ।
ତାହାରସୈନ୍ୟଙ୍କୁ ସେଯେବୋଇଲା ଲଙ୍ଘସାଇଁ
ମାରରେ ଋକ୍ଷକପି ସେ ସାବଧାନ ହୋଇ ।
ଯେତେକ ପାଟେଶ୍ୱ ଉପରେ ଡେଇଁ ପଶି
ଯେମନ୍ତେ ଉବୁର ଯେ ଗୋଟିଏ ନ ଯାନ୍ତି ।
ତେସନକ କଣଣ ଯୁଝରେ ତୁମ୍ଭେ ରହି
ସୁର ଦ୍ୱାରକୁ ଦୂତ ପଠିଆଅରେ କହି ।
ଉଗ୍ରୋଧ ଛୁଡ଼ଲେ କହନ୍ତି ଅନୁଆନ
ସାମାନ୍ୟ ଭରସାକରେ ଡାଳର ଜୀବମାନ ।
ଦେଖିଣ ଇନ୍ଦ୍ରଜିତର ନସ୍ତ୍ରରେ ଆଉ କଚ୍ଛୁ
ଏମନ୍ତ ସମୟରେ ଦଶରଥଙ୍କ ବହ୍ନି ।
ଶତବାଳକବୋଇଲେକୁଯେବହନହୋଇଯାସି
ଆମ୍ଭର ସୈନ୍ୟଙ୍କୁ ତୁ କଢ଼ାଇ ଆଣସି ।
ସୂର୍ଯ୍ୟଅସ୍ତ ହୋଇବ ଯେ ହୋଇବ ନଶାକାଳ
ରହୁ ଆଜ ସମର ବୋଇଲେ ରଘୁବାଳ ।
ସନ୍ଧ୍ୟା ସୁମରଣ ଯେ ସୁବଳସ୍ଥାକୁ ଯିବା,
ଏକା ବଳକରେ କ ଶତ୍ରୁକୁ ଜିଣିବା ।
ବସ୍ତୁର କାର୍ଯ୍ୟ ଆମ୍ଭେ କରିବା ସେ ଉଚିତ
ସାମାନ୍ୟ ଶତ୍ରୁ ଏଯେ ନୁହଇ ଦଇତ ।
ନାମ ଶୁଣିଣ ଯାଇ ଜଗଦେ ଡରନ୍ତି
ଯାହାର ଭୟେ ଇନ୍ଦ୍ର ବଜ୍ର ନ ଧରନ୍ତି ।
ଯୋଗରେ ମରଣ ଯେ ପାଇବ ଏତେ ବୀର
ଏକଥା ପ୍ରମାଣ ଜାଣି ଥାଅଛି ସ୍ମରି ।
ଏଥୁ ଅନନ୍ତରେ ଶୁଣ ଗଉଗ୍ନି ଏବେ
ପଞ୍ଚଶ ସେନାପତି ପଶ୍ଚିମ ଦ୍ୱାରେ ଏବେ ।
ରାବଣର ଅଠର ପୁଅ ଯେ ରଣେ ଗଲେ
ନବପୁଅ ପଡ଼ିଲେ ରଣର ମଧରେ ।
ସୁଗ୍ରୀବର ବୋଇଲା ହନୁମନ୍ତଙ୍କୁ ଝୁଣ୍ଟି
ବେଳ ଅସ୍ତହୋଇଲାରେକରର ଏବେଇହି ।
ମାର ଇନ୍ଦ୍ରଜିତକୁ ସତୁରେ ଆଜହନ
କାଲି ପ୍ରଭାତେ କରିବା ରଣପୁଣ ।

ଶୁଣିଣ ହନୁମନ୍ତ ସିଂହରଡ଼ ଦେଲା
ଇନ୍ଦ୍ରଜିତ ପରେ ଯାଇଁ ସେ ବସିଲା ।
ତେତିଶକୋଟି ଦେବତା ସୁମରେ ସେତୁମନେ
ଦେବଦଳନ ରଥକୁ ମାଡ଼ିଲା ଚରଣେ ।
ଭୂମିର ଭିତରେ ରଥ ଯେ ଗଲା ଗଳି
ବସିଥିବ ଯାଏ ରଥ ଯେ ଗଲା ଗଳି ।
ଦେଖିଣ ଇନ୍ଦ୍ରଜିତ ବିସ୍ମୟ ମନ ହେଲା
ରଥର ଉପରୁ ଭୂମିକି ସେ ଡେଇଁଲା ।
ଶୁକଳ ବର୍ଣ୍ଣ ହସ୍ତୀ ଉପରେ ଯାଇଁ ବସି
ଦେଖିଣ ଦୈତ୍ୟବଳ ମନରେ ହେଲେ ହାସି
ହନୁମନ୍ତ ରଥର ଉପରେ ବସିଲା
ପାତାଳେ ପଶି ରଥଯେ ଚାହିଁ ସେ ଲଭିଗଲା
ଏମନ୍ତ ସମୟରେ ସୂର୍ଯ୍ୟ ଅସ୍ତ ହୋଇ
ଇନ୍ଦ୍ରଜିତକୁ ବେଢିଲେ ପଞ୍ଚଶସେନାପତିଯାଇଁ
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତ
ଶ୍ରୀରାମ ଯେ ଦୂତ ଆଠକୁ ବରଗନ୍ତି ।
ଶ୍ରୀରାମ ଆଜ୍ଞାରେ ସେ ଯେ ହନମଣି ଗଲା
ଅନ୍ତରୀକ୍ଷେ ଯାଇଣ ସେସୈନ୍ୟଙ୍କୁ ଡ଼ାକଦେଲା
ଆହେ। ଋକ୍ଷ କପିମାନେ ଶ୍ରୀରାମ ଆଜ୍ଞା ଶୁଣ
ଆଜ୍ଞା ଦେଲେ ମୋତେ ରଘୁକୁଳ ରାଣ ।
ମୂର୍ଚ୍ଛି ଶତବାଳ ଯେ ଆସିଅଛୁ ନେଇ
ଆବର ଯୁଦ୍ଧ ତୁମ୍ଭେ ନକର ଏବେ କେହି ।
ସନ୍ଧ୍ୟା ସୁମରିବେ ଯେ ରଘୁକୁଳ ନାଥ
କାଲିରାଏ ପାହିଲେ ଭେଟହୋଇବେଦଶମାଥ
ଆହେ ବୀରମାନେ ଯେ ସୁଗ୍ରୀବର ରାଏ
ଆସ ହେ ରଣ ଛୁଡ଼ ଶ୍ରୀରାମ ଆଜ୍ଞା ଦିଏ ।
ଆହେ ହନୁମନ୍ତ ଅଙ୍ଗଦ ତୁମ୍ଭେ ଶୁଣ
ରାଘବ ଅଜ୍ଞାଦେଲେ ନକର ଏବେ ରଣ ।
ବାହୁଡ଼ା ହଳଯେ ସୁବଳସ୍ଥାକୁ ଦାଶରଥି
ଋକ୍ଷକପି ଗୋଟିଏକେ ନରହ ଆଉ ଏଥି ।
ଶୁଣିଣ ସୁଗ୍ରୀବର ଅଙ୍ଗଦ ହନୁମନ୍ତ
ରହ ରହ ବୋଲିଣ ବୋଇଲେ ସନ୍ତତ ।
ବୀର ମହାବୀର ସେଯେ ମଲ୍ଲ ମହାମଲ୍ଲ
ସେହ୍ନା ସେହ୍ନାପତି ଯେ ବୋଲନ୍ତି ଭଲ ଭଲ
ବେଢ଼ିଥିଲେ ସେ ଯେ ଇନ୍ଦ୍ରଜିତ ବୀରକୁ
ଛୁଡ଼ ବାହୁଡ଼ିଲେ ସେ ଶତବାଳ ବୋଲକୁ ।

ଗଗନରେ ପକ୍ଷୀପ୍ରାଏ ବସମିଲେ
ଲଙ୍କାଗଡ଼ ଭିତରେ ଗୋଟିଏ ନ ରହିଲେ ।
ଯେଉଁ ବାଟେ ଯେଉଁ ବୀର ଯେ ପଶିଲେ
ସେହିଦ୍ୱାର ବାଟରେ ସେହିଯେ ପୁଣ ଗଲେ
ଅମଙ୍ଗଳ କରିଣ ଗଲେ ଯେ ଲଙ୍କାପୁରୀ
ଶତବାନ ଯାଇଣ କହିଲ ରଘୁପଧାରୀ ।
ଶିରେ କର ଦେଇଣ ବୋଲଇ ଦେବ ଶୁଣ
ଯାହା ସେ ଦେଖିଲୁଁ ଦେବ ଅପୂର୍ବ ଯେ ରଣ
ଲଙ୍କାଗଡ଼ ଯାକ ଯେ ମଡ଼ା ପଡ଼ିଅଛୁ
କ୍ରୀଡ଼ା କରୁଅଛନ୍ତି ଶୃଗାଳ ଗୃଧ୍ରପକ୍ଷୀ ।
ଶୁଣିଣ ହନୁମନ୍ତ ଅଙ୍ଗଦ ନଳନୀଳ
ଏହାଙ୍କର ଦୂତ ଯେ ହୋଇଲେ ଦୈତ୍ୟବଳ
ବେଢ଼ିଥିଲେ ସୈନ୍ୟ ମଧ୍ୟରେ ଇନ୍ଦ୍ରଜିତ
କଷ୍ଟସ୍ତେ ତାହାକୁ ଦେବ କରନ୍ତେ ଆଜ ହତ
ଏସନେକ ବେଳରେ କହିଲ ତାକୁ ଯାଇ
ଘୁଞ୍ଚିଣ ତାକୁ ବାହୁଡ଼ି ଅଇଲେ ଗୋସାଇଁ ।
ମୋହର ନଗଲେ ଯେ ନ ଆସନ୍ତେ ଆଜ
ଶୁଣିଣ ସନ୍ତୋଷ ହେ ହୋଇଲେ ରାମରାଜ ।
କଥା ହୁଅନ୍ତେ ପୁଣି ଯେ ହସିଲେ ଥାଟକୁଳ
ବୀରଙ୍କର ବାଦ୍ୟରେ ଶୁଭଇ ତହଳ ।
ହନୁମନ୍ତ ଅଙ୍ଗଦ ଅଇଲେ ଏକ ହୋଇ
ପୂର୍ବଦ୍ୱାରୁ ଅଇଲେ କଷ୍କିନ୍ଧ୍ୟାର ସାଇଁ ।
ଛତ୍ର ଚାମର ଯେ ଉଡ଼ଇ ନିରନ୍ତର
ସବୁଙ୍କର ଶିରରେ ରକତ ଜରଜର ।
ଶ୍ରୀରାମର ଚରଣେ ନମସ୍କାର କଲେ
ଦେଖିଣ ରଘୁନାଥ ଯେ ଉଠ ଉଠ ବୋଲେ
ଉଭା ହୋଇଣ ସେ ଗୋଡ଼ନ୍ତି କେନକର
ବୋଲନ୍ତି କମ୍ପାଆମ୍ଭଙ୍କୁ ଅଣାଇଁଲହେରଘୁବୀର
ଇନ୍ଦ୍ରଜିତକୁ ବେଢ଼ି ଯେ ଥିଲୁ ଚଉପାଶ
ଆଜ ତାକୁ ଆମ୍ଭେ କରିଥାନ୍ତୁ ପ୍ରାଣେ ନାଶ ।
ଅଙ୍ଗଦ ବୋଇଲ ଶୁଣ ହେ ରଘୁପଧାରୀ
ଅଚରତ କଥାଏ ଆଜ ଦେଖିଲୁ ତାହାର ।
ଇନ୍ଦ୍ରଜିତର ଦେବଦଳନ ରଥ ଥିଲ
ସୁମରିବା ମାତ୍ରକେ ସେ ଶୂନ୍ୟରୁ ଅଇଲ ।
ସେ ଯାନରେ ବସିଣ ଅନେକ କରି ମାର
ଦେଖିଣ ହନୁମନ୍ତ କ୍ରୋଧ ମନରେ ଧର ।

ସେ ରଥର ଉପରେ ଯାଇଣ ବସିଲ
ଚରଣଭରା ଦେଇଣ ତଳକୁ ମାଡ଼ିଦେଲ ।
ପାତାଳଗାମି ହେଲ ସେ ରଥ ତତକ୍ଷଣ
ଡେଇଁଣ ଇନ୍ଦ୍ରଜିତ ଗଲକ ବେଗେ ପୁଣ ।
ଶ୍ୱେତନାଗ ଉପରେ ଡାକେ କଲ ଯାଇଁ
ସମସ୍ତେ ବେଢ଼ିଲୁ ତାକୁ ମାରିବାର ପାଇଁ ।
ଶୁଣିଣ ରଘୁନାଥ ସନ୍ତୋଷ ମନ ହେଲେ
ଜଣାଯାଇଛୁ ହନୁମନ୍ତ ବାରତା କେଲବେଳେ
ଇନ୍ଦ୍ରଜିତକୁ ସଂହାର ଭିତରକୁ ଯାନ୍ତୁ
ଆଜର ମଧ୍ୟରେ ଯେ ଶତ୍ରୁ ସଂହାରନ୍ତୁ ।
ରାବଣକୁ ମାରଣ ଆଣନ୍ତୁ ଆଜ ସୀତା
ଶୁଣିଣ ଟହଟହ ହସନ୍ତି ଜଗଜିତା ।
ବୋଇଲେ ଅସ୍ତବେଳ ହୋଇଲ ପୁଣି ଆସି
ପରଦେଶରେ କମ୍ପା ରହି ଯେ ଥିବା ନିଶି ।
ଚଳ ଏବେ ଆମ୍ଭେ ସୁବଳସ୍ଥାକୁ ଯିବା
ରଜନୀ ଶେଷକରି କାଲି ଯେ ଯୁଝିବା ।
ଆସିଥାଇ ଯେବେରେ ଯେତେ ବନରେ ପାର
ଆରତ ହୋଇ କାର୍ଯ୍ୟ କରିତ ନପାର ।
ଉଣା ଶତ୍ରୁ ନୋହେ ସେ ଯେ ଦଶାନନବୀର
ଯାର ନାମ ଶୁଣିଲେ ଡରନ୍ତି ଦିଗପାଳ ।
ଶୁଣିଣ ସୁଗ୍ରୀବର ମଥାରେ ହସ୍ତ ଦେଲ
ହେଉ ଦେବ ବୋଲିଣ ସେହି ଯେ ବୋଇଲ
ଆଜ୍ଞା ଦିଅ ବଳ ସେ ବେଗେ ଚଳଯାନ୍ତୁ
ଗଡ଼ର ସୀମାନ୍ତରେ ଗୋଟିଏ ନଥାନ୍ତୁ ।
ନୀଳ ଯେ ପଛୁଆଣି ଆଗରେ ବିଭୀଷଣ
ବାମପାଶେ ଅଛୁ ଯେ ସୁଗ୍ରୀବର ରାଣ ।
ଦକ୍ଷିଣରେ ଜମ୍ବେବ ଯେ ମଧ୍ୟରେ ରାମରାମ୍ଭେ
ହନୁମନ୍ତ କନ୍ଧରେ ବିଜେ କରିଥାଏ ।
ଲକ୍ଷ୍ମଣ ଅଙ୍ଗଦର କନ୍ଧରେ ଆସି ବସି
ବୈକୁଣ୍ଠ ଭୁବନେ କି ହରି ହର ବସି ।
ଉତ୍ତର ଅଭିମୁଖରେ କରନ୍ତି ଗମନ
କାଦେଗିରିରୁ ଆସେକ କଶ୍ୟପ ନନ୍ଦନ ।
ବିବିଧ ବାଦ୍ୟମାନ ସୁସଞ୍ଚରେ ବଜାନ୍ତି
ଛତ୍ର ଚାମର ଯେ ଉଡ଼ନ୍ତି ପନ୍ତି ପନ୍ତି ।
ଯିବାରବେଳରେ ସେଯେ ଘୁରିରାଗରେଗଲେ
ଆଣିବାର ବେଳରେ ଏକମେଳରେ ଅଇଲେ

ମଙ୍ଗଳ ଗୁଜର ଙ୍ଗେ ବାଜଇ ମହୁରି
ନାଚନ୍ତି ବାଟରେ ଯେ ଦେଇଣ ଗ୍ରମତାଳି ।
ରଣରେ ଜିଣାପତ୍ର ଅଛନ୍ତି ଯେ ହୋଇ
ସୁରନର ଅସୁରଙ୍କୁ ଭୟ ତାଙ୍କର ନାହିଁ ।
ଶ୍ରୀରାମ ଆନନ୍ଦ ଯେ ହୋଇଲେ ତାହା ଦେଖି
ମନେ ବିଚାରନ୍ତି ପ୍ରାପତ ହେବ ସଖି ।
ହୁଳହୁଳି ଦିଅନ୍ତି ବାନରଗଣ ପୁଣି
ଗାଲତୁରି ବଜାଇ ନାଚନ୍ତି ବାଟେ ଜାଣ ।
ଶୁଭେ ଯାଇ ସୁବଳଯା ଗିରିରେ ପ୍ରବେଶ
ଶ୍ରୀଜଗନ୍ନାଥ ଶରଣ ମୁଁ ଯେ ବଳରାମ ଦାସ ।
ନବରେ ପ୍ରବେଶ ଯେ ହେଲେ ରାମ ସାଇଁ
ହନୁମନ୍ତ କନ୍ଧରୁ ଓହ୍ଲାଇଲେ ଗୋସାଇଁ ।
ଲକ୍ଷ୍ମଣ ଅଙ୍ଗଦର କନ୍ଧରୁ ଓହ୍ଲାଇଲେ
ଶ୍ରୀରାମ ଚରଣରେ ନମସ୍କାର କଲେ ।
ସୁଗ୍ରୀ ଜାମ୍ବେବ ଯେ ବିଭୀଷଣ ହନୁମନ୍ତ
ସେନା ସେନାପତିମାନେ ଅଛନ୍ତି ସଙ୍ଗତ ।
ନୀଳକୁ ଗୁହିଁଣ ଯେ ବୋଲନ୍ତି ରଘୁସାଇଁ
ସୈନ୍ୟଙ୍କୁ ଦିଅକନ୍ତ ପର୍ବତେ ଉଠନ୍ତୁ ଯାଇ ।
ଫଳ ମୂଳ ଆହାର କରନ୍ତୁ ବେଗେ ପୁଣ
ପାଣିଖାଇ ସମସ୍ତେ ତୋଷ ହୋନ୍ତୁ ପୁଣ ।
ଶୁଣିଣ ନୀଳ ଯେ ବେଗେ ଚଳିଗଲା
ସମସ୍ତ ସୈନ୍ୟଙ୍କୁ ଯେ ଗୁହିଁଣ ବୋଇଲା ।
ପର୍ବତରେ ଉଠିଣ ଖାଅରେ ଫଳମୂଳ
ପାଣି ଖାଇ ସମସ୍ତେ ଆତ୍ମା ଯେ କର ସ୍ଥିର ।
ଦୁଇ ଘଡ଼ି ଭିତରେ ତୁମ୍ଭେ ସାରରେ ଜଞ୍ଜାଳ
ଚଉପାଶେ ଜଗି ତୁମ୍ଭେ ନିଶ୍ଚୟ ବଳ ।
ଶୁଣିଣ ରକ୍ଷପାଳୁ ବେଗେ ଚଳିଗଲେ
ଯେଉଁଠାରେ ସେହୁ ବସିଣ ତୋଷ ହେଲେ ।
ଦୁଇଘଡ଼ି ଭିତରେ ହୋଇଲେ ନିବୃତ୍ତ
ଗୁରିପାଖେ ବେଢ଼ିଣ ରହିଲେ ଋକ୍ଷକପି ।
ନୀଳ ସେନାପତିକି ଆଜ୍ଞା ଦେଲେ ରଘୁସାଇଁ
ଆଗେ ଆଗୁଆଣି ଦଣ୍ଡରେ ରହ ତୁମ୍ଭେ ଯାଇ
ବାମରେ ହନୁମନ୍ତ ଯେ ପଖା ରଖିଥାଅ
ଡାହାଣ ପାଶକୁ ବିଭୀଷଣ ଯାଇ ରହୁ ।
ଜାମ୍ବେବକୁ ଗୁହିଁଣ ବୋଲନ୍ତି ରଘୁନାଥ
ଲେଖାକର ଏବେ ଅଇଲେ କେତେ ଥାଟ ।
ସୁଷେଣ ବୋଇଲେ ଯେ ଶ୍ରୀରାମ ମୁଖ ଗୁହିଁ
ଅସଂଖ୍ୟ ବଳ ବୋଇଲେଆଜଯେ ପାରହୋଇ
ଇନ୍ଦ୍ର ଉପବନ ଠାରୁ ଲଗିଛନ୍ତି ବଳ
କେ ତାହା ପଥ ଯେ କହିବ ରଘୁବୀର ।
ନିତ୍ୟ ଏହି ରୂପେ ଯେ ଆସୁଣ ଥିବେ ଥାଟ
ପୂର୍ବ ଉଆଣ ମେ ଅଟଇ ରଘୁନାଥ ।
ଯେବେ ମନ୍ତ୍ରୀ ପୋଥି ଧରିଅଛୁ ମୋର ଚହିଁ
ଏହାର ପ୍ରମାଦରେ ଜାଣଇଁ ସବୁ ମୁହିଁ ।
ଆଗକର ବ୍ରହ୍ମବେଦ ଏ ମନ୍ତ୍ରୀ କାଢ଼ିଲି
ସ୍ୱମାତ୍ରୁଣ ସମର ଏତେକ ବାଢିଲି ।
ଏ ତୋହର ଚରିଛ ଏ ପୁରାଣରେ ଅଛି
ଶୁଣି ପରମ ତୋଷ ହେଲେ ରଘୁବଂଶି ।
ଆଜ୍ଞାଦେଲେ ଆଜ ଅଇଲେ ଯେତେବଳ
ଆଗୁଆଣି ଦଣ୍ଡକୁ ଏହାଙ୍କୁ ନେଉ ନୀଳ ।
ଜାମ୍ବେବ ବୋଇଲେ ଶୁଣ ଦେବ ଏବେ
ବାଇଶିଟି ଦଧିମୁଖ ବାନର ଆସେ ଏବେ ।
ବାରକୋଟି ଭାଲୁ ଚଉଦକୋଟି ସିନ୍ଦୂରମୁଖା
କାଳମୁଖା ତେଇଶି କୋଟି ଏଗାର କୋଟି
ଶଙ୍ଖମୁଖା ।
ଧବଳ ବାନର ଯେ ବତିଶ କୋଟି ଆସେ
ନିପଣ୍ଡ କଳା ବାନର ଉଣିଶି କୋଟି ମିଶେ
ଏମନ୍ତେ ଶତେ ତେତିଶ କୋଟିଆଜରସୁମାର
ପଞ୍ଚଶ ଯୂଥପତିକି ବୋଇଲେ ରୂପଧାରୀ ।
ତୁମ୍ଭେ ଯାଇଣ ବେଗେ ନିତ୍ୟ କର୍ମ ସାର
ଫଳ ମୂଳ ଭୁଞ୍ଜିଣ ଯାହା ସ୍ଥାନରେ ବିହର ।
ପ୍ରଥମ ଯୁଦ୍ଧ ଯେ ହୋଇଅଛି ଜାଣ
ଅସୁର ଛନ୍ଦମାୟା ଜାଣନ୍ତି ବିଚକ୍ଷଣ ।
ଶୁଣି ସେନାପତି ଯେ ନିତ୍ୟକର୍ମ ସାରି
ଫଳ ମୂଳ ଭୁଞ୍ଜିଣ ଚଳିଲେ ବେଗକରି ।
ଯେ ଯାହାର ବଣ୍ଟାରେ ନିସ୍ତନ୍ତ୍ରେ ରହିଲେ
ଯେତେକ ସଇନ ସେ ଦିନ ଆସିଥିଲେ ।
ନୀଳ ସେନାପତି ତାହାଙ୍କୁ ଘେନିଗଲା
ସୁବଳଯା ପାଞ୍ଚପୁଣ ଅନ୍ତେ ଠଣାଦେଲା ।
ଏଥୁଅନନ୍ତରେ ରବି ଅସ୍ତ କାଳେ
ଯୁଦ୍ଧ ସଜ ଉଲ୍ଲଗେ ଯେ ଦେବନପା କୂଳେ ।

ଲକ୍ଷ୍ମଣ ସହିତେ ଅଷ୍ଟ ସେନାପତି
ରୁଧିର ଛଡ଼ାଇଣ ସ୍ନାହାନ କରନ୍ତି ।
ଶ୍ରୀରାମ ଲକ୍ଷ୍ମଣ ଚହିଁ ସ୍ମରିଲେ ସନ୍ଧ୍ୟା
ଆଗରେ ପଡ଼ିଥାଉ ଅଛନ୍ତି ସବୁ ଯୋଦ୍ଧା ।
ହନୁମନ୍ତ ଅଙ୍ଗଦ କେଶରୀ ସୁଷେଣ
ଜାମ୍ବେବ ସୁଗ୍ରୀବର ରାଜା ବିଭୀଷଣ ।
ସମସ୍ତ ସୈନ୍ୟ ସମ୍ମୁଖ ହୋଇ ଚଳିଗଲେ
ଆନନ୍ଦେ ଶ୍ରୀରାମ ପୟରେ ଭଜେ କଲେ ।
ସ୍ୱର୍ଗରେ ଅପସରା ହୁଳହୁଳି ଦେଲେ
ସୁବେଳପ୍ସା ଶିଖରେ ଯାଇପ ମିଳିଲେ ।
ସୈନ୍ୟଙ୍କୁ ଚହିଁଣ ସେ ମେଲାଣି ରାମ ଦେଲେ
ଯେ ଯାହାର ବସାରେ ସଇନ ରହିଲେ ।
ସୁବେଳପ୍ସା ଶିଖରେ ସେବଣ ନବର
ଚହିଁରେ ଭଜେକଲେ କୌଶଲ୍ୟା କୁମର ।
ଲହଡ଼ା ମାନେ ଯେ ଉଆର ଥିଲେ ହୁଳା
ଭାଲଖଣାରୁ ଚକଣ ହୋଇଥିଲା ବେଳା ।
ରଜନୀ ହୁଅନ୍ତେ ଲଗିଲା ସେହୁ ହୁଳା
ସଜଳସ ଗୁଣ୍ଡିରେ ଲଗିଲା ଦୀପ ମାଳା ।
କନ୍ଦମୂଳ ମଣୋହି କଲେ ରଘୁବୀର
ଆଶ୍ରୋବନ ସାରଣ ଭୁଞ୍ଜିଲେ କଷାଫଳ ।
ଲକ୍ଷ୍ମଣ ମଣୋହି ଯେ ସାରିଲେ ସେହୁପରି
ସେନା ସେନାପତି ସେ ସୁଗ୍ରୀବ ଦଣ୍ଡଧାରୀ ।
ବିଭୀଷଣ ହନୁମନ୍ତ ବାଳର ତେଜସ୍ୱୀ
କନ୍ଦମୂଳ ଭୁଞ୍ଜିଣ କଥାମାନ କହି ।
ସ୍ୱର୍ଗର ବିଧାନ ଶ୍ରୀରାମର ମହିମା
କପିଙ୍କର ସାହସ ଅସୁରଙ୍କ ଗାରିମା ।
କଟକର ବଡ଼ପଣ ରାବଣ ପ୍ରତାପ
ଅଙ୍ଗଦ ଦୂତ ହେବାର ସୁଗ୍ରୀବର ଧାପ ।
ଛତ୍ର ଛିଣ୍ଡାଇବା ହନୁମନ୍ତ ନେବା ଗଦା
ଲଙ୍କାଲୋକଙ୍କ ବିକଳ ସେନାପତିଙ୍କ ବାଧା ।
ଇନ୍ଦ୍ରଜିତ ବେଢ଼ ପଡ଼ିବା ଯୁଦ୍ଧ ଘୋର
ହନୁମନ୍ତ ବସନ୍ତେ ରଥ ପଶିଲ ପାତାଳର ।
ସୀତା ହରଣ ଦଶାନନର ମରଣ
ଭୁଞ୍ଜିବାର ବେଳରେ କରନ୍ତି ବିସ୍ମରଣ ।
ଉଦରଭରି ପୂର୍ଣ୍ଣେ ଆଞ୍ଚେ ବନ କଲେ
କଷାଫଳ ଭୁଞ୍ଜିଣ ସନ୍ତୋଷ ହୋଇଗଲେ ।

ରାତ୍ର ପାଞ୍ଚ ଘଡ଼ିରେ ସରିଲା ଭୋଜନ
ସମସ୍ତେ ମିଳିଲେ ଯାଇ ଶ୍ରୀରାମ ପାରୁଶେଣ ।
ଏଥୁଅନନ୍ତରେ ବୋଲନ୍ତି ଭଗବନ୍ତି
କଥା ଏ ପରୁଶିବ ଶୁଣ ହେ ଶୁକପତି ।
ପ୍ରଥମ ଦିନ ଯୁଦ୍ଧ ଯେ ଲଙ୍କାଗଡ଼ରେ ହେଲା
କେତେବେଳେ ମଲେ ଯେ କଳନା ନ ଗଲା
ଚାରିଦ୍ୱାର ନ ଫିଟଇ ହେଇଁଣ ପଶିଲେ
ଉତ୍ତର ଦ୍ୱାରେ ଶ୍ରୀରାମ ଲକ୍ଷ୍ମଣ ରହିଲେ ।
ଦୁଇ ଆଡ଼ରୁ କେତେ ଯେ ବଳ ମଲେ ପୁଣି
ଏକଥା ବୁଝି ମୋତେ କହ ହେ ଦେବ ଜାଣି
ଈଶ୍ୱର ବୋଇଲେ ଶୁଣ ଗୋ ଏବେ ତାହା
ମାରିବାର ଚରିତ କହିବ ତୋତେ ତାହା ।
ଶ୍ରୀରାମ ବୋଇଲେ ଜାମ୍ବେବଙ୍କୁ ଚହିଁ
ଦୁଇଆଡ଼ୁ ଏବେ କେତେ ବଳଯେ ନାଶଯାଇ
ଶ୍ରୀରାମ ବାଣୀ ଶୁଣି କହନ୍ତି ଜାମ୍ବେବ
ଶୁଣ ଦେବ ରାଘବ ପ୍ରଥମ ଯୁଦ୍ଧ ଭାବ ।
ଋକ୍ଷକପି ବାନର ବାରଲକ୍ଷ ମଲେ
ଅସୁର ବଳ ଆଜ ଷାଠିଏ କୋଟି କ୍ଷୟଗଲେ
ରାବଣ ନବପୁତ୍ର ହୋଇଲେ ଆଜ ନାଶ
ସୂର୍ଯ୍ୟ ଅସ୍ତ ହୁଅନ୍ତେଣ ଭାଜିଲା ଯୁଦ୍ଧରସ ।
ଶୁଣିଲୁଟିକ ଗୋ ମନସ୍ଥିର କରି
ଏବେ ଶ୍ରୀରାମ ଯାହ କଲେ ଶୁଣ ଗୋ ଗଉରୀ
ସୁଗ୍ରୀବଙ୍କୁ ଚହିଁଣ ବୋଲନ୍ତି ରାମବାଣ
ବେଗେ ପାଅ ମିଳି ବିଭୀଷଣଙ୍କୁ ଘେନ ଆସ
ନିଦ୍ରା ଆକର୍ଷଣ କଲାକ ଆସି ମୋତେ
ତୁମ୍ଭେମାନେ ଯାଅ ସେନାପତିଙ୍କ ଅଗ୍ରତେ ।
ଯେ ଯାହାର ବସାରେ ରହ ହେ ତୁମ୍ଭେଯାଇ
ଅଙ୍ଗଦ ବୁଲୁ ରାତ୍ରରେ ବାଜଣା ବଜାଇ ।
ତୁମ୍ଭେ ଆଜ ସଂଗ୍ରାମେ ହେ ଶ୍ରମ ଯେ ପାଇଲ
ଆଗଭର ହୋଇଣ ଅସୁରଙ୍କୁ ମାଇଲ ।
ଏବେ ସୁଖ ପାଇଣ ବେଗେ ନିଦ୍ରାଯାଅ
ରାତ୍ର ନ ପାହୁ ବେଗେ ଯେ ଧମକ ଦିଆଅ ।
ଆଜ ସେ ରାବଣଙ୍କୁ ନୋହିଲା ପୁଣ ଜୟେ
କାଲି ବିଷମ ସମର ଜଳିବ ଲଙ୍କାରେ ଏ ।
ସଜ ହୋଇଣ ଆନ୍ତେ ଯେ ଏହିଠାରେ ଥିବା
ତଥ୍ୟ ବାର୍ତ୍ତା ପାଇଲେ ଚଳକୁ ଉଠାଇବା ।

କହେ ବିଭୀଷଣ ଅଟେ କି ଏହି କଥା
ସାମାନ୍ୟ ଶତ୍ରୁ ମୋତେ ନୋହେ ଦଶମଥା ।
ବିସ୍ତରଣ କାର୍ଯ୍ୟ ଯେ କରିବା ଆମ୍ଭେ ଯାଇ
ବଳସ୍ତାର ହୋଇଲେ କି ଅମଡ଼ା ମାଡ଼ଯାଇ
ଶୁଣିଣ ସମସ୍ତେ ହେ ମଥାରେ ହସ୍ତ ଦେଲେ
ଏ ଦେବ କେଉଁ କଥା ନ ଜାଣ ବୋଇଲେ
ତୋହର ମନ କଲେ ବନକେ ମାରି ପାରି
ସାଧୁପଣରୁ ସିନା ଏମନ୍ତ ବିସ୍ତର ।
ଆଜ ଯେ ଆପଣେ ଆଣିଲ ବଳକାଡ଼ି
ଅସୁରେ ଭଜନ ନୁହନ୍ତି ଆଗ ବଢ଼ି ।
ଶ୍ରୀରାମ ବୋଇଲେ ବାବୁରେ କେଉଁର
ଥିବା ।
ଅକେଉର କଥାକୁ କେବେହେଁ ନ ଯିବା
ଏଥିଲାଗିରୁ ଧର୍ମଦେବତା ଇଚ୍ଛାକରୁ
ମୋହର ନ ଯୋଗଇଲେ ମୋତେ ଯେ
ପଚ୍ଛେ ମାରୁ ।
ମୁହିଁତ ତାର ସଙ୍ଗରେ ନ କଲି ଆଗେ କଳି
ଅକାରଣେ ହାନ କଲା ବଂଶଇ ମଉଳି ।
ଏବେ ଜାନକୀକି ପାଇଲେ ମୁଁ ଯେ ଯିବି
କମ୍ପାଇ ତାର କୁଳେ ମୁଁ ଅପ୍ରୀତି ହୋଇବି
କାଲି ହେଲେ ପୁଣ ଯେ ହନୁମନ୍ତ ଯାଉ
ସୀତା ଦେଇଣ ସୁଖେ ଯେ ଥାଉ ଲଙ୍କ ରାଜୁ
ମୂର୍ଖପଣରେ ଅବା ନ ଜାଣି ଆଣିଲା
ସେ ଦୋଷ ନ ଘେନଇଁ ଶ୍ରୀରାମ ଆଜ୍ଞା ଦେଲା
ଶୁଣିଣ ସୁଗ୍ରୀବର କହଇ କରଯୋଡ଼ି
ଦୂତଗଲେ କଳହ କରୁଛି ଦଶଗିରି ।
ଜାନକୀ ଦେହରେ ହୋଧ ହୋଇଅଛି ପୁଣ
ଦୂତବରଗିବାରୁ ଜାନକୀ ପାଏ ଅବଗୁଣ ।
ଦେବତା ବିସ୍ତରନ୍ତି ରାବଣ କେବେ ମରୁ
ପବନ ଦେବତା ଦୂତ ଜାନକୀଙ୍କ ଠାରୁ ।
ଶଶାରୁପ ଧରଣ କାରତା ପୁଣ ଦେଲା
ରାବଣ ମରିବାକୁ ବିଧାତା ଶ୍ରଦ୍ଧାକଲା ।
ନୋହିଲେ କି ଦେବତାଏଆସନ୍ତେ ଦୂତପଣେ
ଜାଣିଣ କାର୍ଯ୍ୟ କରହେ ରଘୁକୁଳ ରଣେ ।
ଏତେ ବୋଲି ସମସ୍ତେ ମଥାରେ ହସ୍ତଦେଲେ
ତୋହରେ ସେ ଏକଥା ଯେହୁଅଇବୋଇଲେ

ରଘୁନାଥ ବୋଇଲେ ଶୁଣହେ ତୁମ୍ଭେ ପୁଣ
ଛିନବାର ଧର୍ମକୁ ଯେ ତକାଇବା ପୁଣ ।
ରାତର ଅର୍ଦ୍ଧରେ ସେ ସଭିଲ ଭଲେଣି
କୃଷ୍ଣାଜିନ ସ୍ଥଳରେ ଯେ ପହୁଡ଼େ ରଘୁମଣି ।
ଧନୁଶର ଧରିଣ ଜଗଇ ସଉମିତ୍ରି
ନିଦ୍ରାରେ ଅଚେତନ ଯେ ହୋଇଲେରଘୁପତି
ସେନାପତିମାନେ ଯେ ଯାହାରେ ଗଲେ
ବାଜା ବଜଣାଇ ଯେ ଅଙ୍ଗଦ ବୁଲିଲେ ।
ଠଣା ପଡ଼ିହାରି ଯେ ଆକାଶେ ରବଦ୍ୟନ୍ତି
ଋକ୍ଷକପି ନିଶ୍ଚିନ୍ତ ହୋଇଣ ନିଦ୍ରାଯାନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଲଙ୍କଗଡ଼ ରାବଣ ଯେ ଅଛଇ ଦଶଗିରି ।
ନବ ସେନାପତି ପଡ଼ିଲେ ବୋଲିକରି ପୁଣି
ମହାବିସ୍ମୟ ଯେ ହୋଇଲେ ବଂଶପାଣି ।
ନିଃଶ୍ୱାସ ଛାଡ଼ିଣ ଯେ କୋପେ ଗରୁଚର
ଭସ୍ମମନ କରିଣ ସେ କରଇ ବିସ୍ତର ।
ସାମାନ୍ୟ ଭରସା କରି କପିସୈନ୍ୟ
ଏ ମୋହର ପାରିବାର ବଧିଲ ଆଳନ୍ଦନ ।
ଯେବଣ ଯୁଦ୍ଧରେ ହରାଇଲେ ଆଜପ୍ରାପ
ତାହାଙ୍କ ମୁଖ ଦେଖିଲେ ଡରନ୍ତି ସୁରଗଣ ।
ଜଗତେ ଅଜୟ ସେ ମହିମା ଅପ୍ରମିତ
ଋକ୍ଷକପି ହାତରେ ସେ ହୋଇଲେ ହତ ।
ଅନେକ ସୈନ୍ୟ ମୋର ଯେଅକାରଣେମଲେ
ରଥିହସ୍ତୀ ସୈନ୍ୟ ଯେ ଅନେକ କ୍ଷୟଗଲେ ।
ନଗ୍ରମାନ ଭଜ ଡ଼ିଲେ ଭାଙ୍ଗିଲେ ଦିବ୍ୟପୁର
ଅପୂର୍ବ ପଦାର୍ଥମାନ ସେ ସବୁକଲେ ଯୁର ।
ଗୁଳଣ କୋଣ ଭଇ ଦୁଇହାଣ ଓସାର
ତାହା ଡେଇଁଲେ କେମନ୍ତେ ଭଲୁକ ବାନର
ଏଡେକ ଗଡ଼ମୋର ହେଲେଣ କଲେ ନାଶ
ଇମ୍ପାଇଦେବତାଏମୋତେହୋଇବେପୁଣହସ
ଲୋକଙ୍କ ମୁଖରେ ଅପଖ୍ୟାତ ପାଇଲି ଅପାର
ଉପହାସ କରିବେ ମୋତେ ସକଳ ନୃପବର
ନୃପ ରଘୁନାଥ ଯେ ମ ରଇ ମତେବେଳେ
ଏତେ ସୁଖ ଭୋଗ ଯେ ଗଲକ ବିଫଳେ ।
କମ୍ପାଇ ସୀତାକୁ ମୁଁ ଯେ ଆଣିଲି ହରାଇ
କେବଣ ଯୁବତୀ ଅବା ମୋର ପୁରେ ନାହିଁ

ସାମାନ୍ୟ ପ୍ରାଣ୍ୟେ ମଣିଣ ଭରସାରେ ମୁଁ ଗଲି
ଏବେ ବିଭୀଷଣ ଯେ ସନ୍ତୋଷ ନାଶକଲି ।
କି ବୁଦ୍ଧି କରିବ ଯେ ସିଦ୍ଧି କେଉଁ କତି
କେମନ୍ତେ ମାରିବ ରାମ ଲକ୍ଷ୍ମଣ ବେନ ତି ।
କେବେ ସେ ସୀତାଙ୍କୁ ଯେ ରମିବ ସୁଖପାଇ
ଏ ସମୟେ ଇନ୍ଦ୍ରଜିତ ଦର୍ଶନ କଲା ଯାଇଁ ।
ପାଏ ପଡ଼ି ଶୋଇଣ ଉଠିଲା ତୁରନ୍ତ
ସୁତମୁଖ ଚାହିଁଣ ବୋଇଲା ଲଙ୍କପତି ।
ପ୍ରକାଶ ବଜ୍ର ଧନୁ ଅସ୍ତ୍ର ଅକ୍ଷନ୍ତ୍ର ଏଯେ କାହିଁ
ଧୂମାକ୍ଷ ଧ୍ୱଂସ ଏ ଯେ ନଇଲେ କପାଇଁ ।
ମେଘନାଦ ବୋଇଲେସେ ଯେ ପଡ଼ିଲେସମରେ
ଶୁଣିଣ କୋପ ମୁଖରେ ଚାହିଁଲା ଦଶଶିରେ ।
ବୋଇଲା ତୁ କରେ ନ ଥିଲୁ ରଣେ ପଶି
ଋକ୍ଷକପି ଗଲେ ଯେ ଅସୁର ବଳ ନାଶି ।
ମହା ମହାବୀର ବୋଲାଉ ଯେ ଥିଲୁ
ଯୁଦ୍ଧ କାଳେ ବାନା ଯେ ବିରଧୁ ଗୁଡ଼ିଲୁ ।
ଇନ୍ଦ୍ରଙ୍କୁ ଜିଣିଲୁ ତୁମ୍ଭେ ସେ କାଳମାନରେ
ସେ କଥା ମାନ ଏବେ ଯେ କେଉଁ କତିଗଲେ
ସାମାନ୍ୟ ଲଜ୍ୟାକରେବୋଲିବେଲେକେମନ୍ତେ
ଏ ବ୍ରହ୍ମାଣ୍ଡ ମୁଁ ଯେ ସାଧିଲି ଏକାଳେ ।
ପାତାଳେ ପଶି ମୁଁ ଯେ କରଇ ରଣଗୋଳ
ସମ୍ପଦମାନ ତହୁଁ ଯେ ମୁଁ ଆଣିଲି ସକଳ ।
ସ୍ୱର୍ଗରୁ ଦେବଗଣ ଆଣିଲି ମୁଁ ଧରି
ମର୍ତ୍ତ୍ୟଲୋକରେ କେହୁ ଯେ ଅଛି ମୋତେସରି
ଏକାର ବେଳରେ ପୃଣିହିଁ ଏକାକଲି
ଏବେ ନର ବାନର ଏହାଙ୍କୁ ହାରିଲି ।
ମୁହିଁ ଯେବେ ସମରେ ଥାଆନ୍ତି ଉଭାହୋଇ
ନବସେନାପତି ମୋର ପଡ଼ନ୍ତେ କି ସେହି ।
ନର ଲୁଚି ହୁଅନ୍ତା କମ୍ପା ମୋହର ମନ୍ଦପଣ
ବଲୁବଲେ ମର୍କଟେ କରିବେ କି ରଣ ।
କାଲେ ଆସିଣ ଏତେ ଦୂରକୁ କଥା ଗଲା
ଦିଗପାଳ ସମାନ ମୋର ନବ ଯେ ବୀର ମଲା
ଏବେହେଳ କଲେ ମୋର ହୋଇବ ପୁଣିମନ୍ଦ
ମୁହିଁ ଯାଇ ଆପଣେ କରିବି କାଲି ଦ୍ୱନ୍ଦ୍ୱ ।
ଶ୍ରେଷ୍ଠା ଅପାରଗବନ୍ତ ନୁହେ ମୁଁ ଯେ କିଛି
ଏ ସଂସାରେ ମୋତେ କେହୁ ପ୍ରତିକକ୍ଷ ଅଛି ।

ଶ୍ରୀରାମ ଲକ୍ଷ୍ମଣ ଯେ ଅରଣ୍ୟ ରାଜାବଂଶ
ସେ ପୁଣ ମୋହର ହାତରେ ହେବ କୁଳକ୍ଷୟ
ଏହୁ ବାଳକ ପୁଣ ଯେ ଜାଣଇ କିସ ଯୁଦ୍ଧ
କାଲି ପ୍ରଭାତେ ମୁଁ ଯେ କରିବି ତାକୁ ବଧ ।
ଏତେ ବୋଲି ଶୁକ ସାରଣ ମନ୍ତ୍ରୀ ଚାହିଁ
ଆଜ୍ଞାଦେଲେ ସେ ମନ୍ଦୋଦରୀ ସାଇଁ ।
ଦିଆଅଘୋଷଣା ତୁମ୍ଭେରେ ଯାଅ ଲଙ୍କାପୁରୀ
କାଲି ରାମଲକ୍ଷ୍ମଣ ମାରିବି ସମର କରି ।
ହାତୀ ରଥ ପାଦାନ୍ତ ରାଉତବଳ ଯେତେ
ସଭିଏ ସଜହୋଇଣ ଆସିବେ ପ୍ରଭାତେ ।
ଦେଖନ୍ତୁ ମୋର ସମର ପାସୋର ଯାଉ ଦୁଃଖ
ସମସ୍ତେକ ପରିଯନ୍ତେ ପାଆନ୍ତୁ ଏବେ ସୁଖ ।
ମୋହର ଶତ୍ରୁକୁ ସେ ମୁହିଁ ଯେ ମାରିବି
କାଲିଯାଇ ଘୋର ସଂଗ୍ରାମ କରିବି ।
ଏତେ ବୋଲି ଲଙ୍କପତି ଶାର୍ଦ୍ଦୋଳ ଡ଼କାଇଲା
ତତକ୍ଷଣେ ଶାର୍ଦ୍ଦୋଳ ଯେ ଆସିଣ ମିଳିଲା ।
ଦଶଶିର ଛାମୁରେ କଲାକ ଦର୍ଶନ
ପାଏ ପଡ଼ି ଶୋଇଣ ଯୋଡ଼ିକର ପୁଣ ।
ରାବଣ ବୋଇଲା ଶୁଣ ତୁ ମୋର ବାଣୀ
କେତେ ଯେ ବଳ ମଲେ ଆଜର ଯୁଦ୍ଧେ ପୁଣି
ଶାର୍ଦ୍ଦୋଳବୋଇଲା ଦେବଶୁଣ ହେ ଧୀରକରି
ବାରକୋଟି ବଳ ଯେ ଶ୍ରୀରାମର ମରି ।
ଷାଠିଏ କୋଟିବଳ ପଡ଼ିଲେ ତୋ ଆଜର
ସେନାପତି ପଡ଼ିଲେ ଚାରି କୁମର ପାଞ୍ଚବୀର ।
ମୋର ଜାଣିବାରେ ଏତେକବଳ କ୍ଷୟେ
ଶୁଣିଣ ରାବଣ ବିରସ ମନ ହୋଏ ।
ଏହାଶୁଣି ରାଏ ଯେ ଭିତର ପୁରେ ଗଲା
ମଣିମା ମଣିମା ବୋଲି ଖୁଣ୍ଟିଆ ଡ଼ାକ ଦେଲା
ତିନ ଅବକାଶରେ ବିଜେ ଲଙ୍କପତି
ମନ୍ଦୋଦରୀ ରାଣୀ ଯେ ଦର୍ଶନକଲା ଆସି ।
ଭିତରେ ନୃପବର ଯେ ସନ୍ଧ୍ୟା ସୁମରିଲା
ଦଶଘଡ଼ି ରାତ୍ରରେ ମଣୋହି ରାଏ କଲା ।
ଶୋଇବା ମନ୍ଦିରେ ବିଜେ କଲା ରାଏ ଯାଇଁ
ରତ୍ନଖଟ ଉପରେ ପହୁଡ଼ ଲଙ୍କସାଇଁ ।
ପାଦମଞ୍ଜାଳଇ ଯେ ରାଣୀ ମନ୍ଦୋଦରୀ
ଆବର ସଙ୍ଗରେ ଅନେକ ପରିବାରୀ ।

ମହାଦେଈ ମାନେ ଯେ ଖଣ୍ଡିଛନ୍ତି ପାଶ
ଏସନକ ସମୟେ ଯେ ହୋଇଲା ଅବକାଶ ।
ଏଥୁ ଅନନ୍ତରେ ଯେ କୁମର ମେଘନାଦ
ଲାଜରେ ମଥା ପୋତି ଯେ ହୋଇଲା ତବଦ
ଯହୁଁ ରାବଣେଶ୍ୱର ଭିତର ପୁରେ ଗଲା
ଇନ୍ଦ୍ରଜିତ ତାର ମନ୍ଦିରକୁ ବିଜେ କଲା ।
ସେନାପତିମାନେ ଯେ ସାହାରେ ଗଲେ
ନଗରେ ଦୋଣାଧୁକୁ ଶୁକଶାରଣ ବୋଇଲେ
ଢଅ ହୋ ଘୋଷଣ ଯେ ସଜହୋନ୍ତୁ ଆଠ
ସଂଗ୍ରାମେ ଯେ ଯିବାକୁ ବଳ ଯେସନେ ମୁରାଠ
ତହୁଁ ଶଳେ ଗୁଣରେ ହୋଇବେ କାଛେଣି
ସିଂହଦ୍ୱାରେ ସେ ରହିବେ ନ ପାଇ ରଯୁଣୀ
ଆଜ୍ଞାଭ୍ରଷ୍ଟ ହୋଇଲେ ମୁଣ୍ଡ ଯେ ହେବକାଠ
ଏସନକ ଘୋଷଣ ଦେଲେକ ଲଙ୍କରାଷ୍ଟ୍ର ।
ଶୁଣି ନଣାପତି ଯେ ଢଆଏ ଡାକଣ୍ଡି
ଶୁଣିଣ ନଗ୍ରଲୋକେ ହୋଇଲେ ଆଉଣ୍ଡି ।
ଏକକୁ ଆରେକ ହୁଅନ୍ତି ପୁଛା ପୁଛି
କମ୍ପାଇ ଦାଣ୍ଡରେ ଧେଣ୍ଡୁରା ଫେରୁଅଛି ।
ଶୁଣିମା ଲୋକେ ବୋଇଲେ ରାଏ ସୈନ୍ୟସାଜ
ଆପଣେ ଦଶଗ୍ରୀବ ଯିବକାଲ ଯୁଦ୍ଧି ।
ଯହୁଁ ସେ ରୁଷକପି ଉପଦ୍ରବ କଲେ
ହେଲା ଯୁଦ୍ଧ କରନ୍ତେ ବହୁତ ଯୁଦ୍ଧକଲେ ।
ମାନବ ଜଟାଧାରୀ କପି ନଲକ୍ଷଣ
ସାମାନ୍ୟ ଭରସା କ ପଶିଲେ ଗଡ଼େ ପୁଣ ।
ଛିନ୍ନ ଛନ୍ଦ କରିଣ ଦେଶ ଉଜାଡ଼ିଲେ
ବେଲ ବୁଡନ୍ତେ ପୁଣ ଗୋଟିଏ ନ ରହିଲେ ।
ଭଲ ତରକରେ ଆଠ କାଢ଼ିନେଲା ଯତି
ଦଶଗ୍ରୀବକୁ କେ ଅବା ନ କରଇ ଖ୍ୟାତି ।
ଏସନେକ ବୋଲିଣ ବୋଲନ୍ତି ନଗ୍ରଜନ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ବିଧାନ ।
ନିଶିଅର୍ଦ୍ଧ ହୁଅନ୍ତେ ଲୋକେ ଗଲେ ନିଦ୍ରା
ଧେଣ୍ଡୁରା ଫେରାଇଣ ଦୋଣାଧୁ କଲତେଜ୍ୟା
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବହର
ନବକୋଟି ଦେବୀ ଯେ ଗଲେ ମଞ୍ଜପୁର ।
ଚଉଷଠି ଯୋଗ୍ନୀ ସଙ୍ଗରେ ସେ ଘେନ
ସୁବଳମ୍ବା ଗିରିରେ ରହିଥିଲେ ପୁଣି ।

ଜାଣିଣ ବିଧାତା ତାହାଙ୍କୁ ପେଷିଥିଲା
ମରିବା ଅସୁର ତୁମ୍ଭେ ଭକ୍ଷିବ ବୋଇଲା ।
ସେ କଥା କସ ହେଲା କହ ଦେବ ମୋରେ
ଶୁଣିଣ ଶୂଳପାଣି କହନ୍ତି ହରଷରେ ।
ଚଉଷଠି କୋଟି ଯୋଗ୍ନୀ ନବକୋଟି ଦେବୀ
ସୁବଳମ୍ବା ପର୍ବତରେ ବାସେଲ ଥିଲା ଜାତି ।
ଦୁଇବଳ ଯହୁଁ ନିଦ୍ରାରେ ଅଚେତନ
ବାସେଲ ଘେନ ଚଳିଲା ତାହାର ବଳ ପୁଣ ।
ଲଙ୍କାଗଡ଼ ଭିତରେ ଯାଇଁଣ ପଶିଲା
ଅନେକ ଅସୁର ମରିଛନ୍ତି ମେ ଦେଖିଲା ।
ଅସୁର ଗୋଟିକୁ ରୁଣ୍ଡ ଯୋଗିନ୍ ପୁଣ
ଘଡ଼ିକ ଭିତରେ ଭୁଞ୍ଜିଲେ ଦେବୀଗଣ ।
ରୁଧିର ପାନ କରିଣ ମାଂସକୁଁ ଭକ୍ଷିଲେ
କଳକଳା ରାବ ଦେଇ ଗରୁଜି ଅଇଲେ ।
ସୁବଳମ୍ବା ପର୍ବତେ ରହିଲେ ଲୁଚିଦେଇ
ଶୁଣିଣ ତୋଷ ଏବେ ହେଲୁଟି ଗୋ ତୁହି ।
ପାର୍ବତୀ ବୋଇଲେ ଯେ ରୁଷକପି ବଳ
ସେ ପୁଣ କସ କଲେ କହ ହେ ଶୂଳଧର ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ଦେବତାଗଣମାନେ ଯେ ପେଷିଲେ ଶୁକମନ୍ତ୍ରୀ
ଲଙ୍କା ଗଡ଼କୁ ବୋଲି ଦେବ ଯେ ମନ୍ତ୍ରୀଗଲେ
ସଞ୍ଜିବନୀ ମନ୍ତ୍ର ପଢ଼ି ପାଣି ଯେ ମନ୍ତ୍ରିଲେ ।
ଏତାର ପୁଣ ଉଚ୍ଚରେ ରହିଲା ମନ୍ତ୍ରୀ ପୁଣ
ଜୀବନ୍ୟାସ ପାଣି ସିଞ୍ଚିଲେ ଉପରେଣ ।
ଅମୃତବୃଷ୍ଟି ଯେ କଲେକ ତହିଁରେ
ଉଠିଣ ରୁଷକପି କସିଲେ ତତକାଳେ ।
ଗୁଡ଼ିଲ ଲୋକଙ୍କର ଲଗିଲା ଗଣ୍ଡିମୁଣ୍ଡ
ଦେବତାଗଣ ହରଷ କଲେ ଯେ ଏତୁ ରଙ୍ଗ
ବାରକୋଟି ରୁକ୍ଷ କପି ଜୀବନ ପାଇଲେ
ଯୁଦ୍ଧମାନ ଆଜ କହି ଲଙ୍କାରେ ନ ଦେଖିଲେ
ମୋହଗଲା ପରାଏ ଯେ ମାଲୁମ ହେଲା ତାଙ୍କୁ
ଉପର ଶବଦ ଯେ ଶୁଭିଲା କର୍ଣ୍ଣକୁ ।
ଯୁଦ୍ଧ ତେଜିଣ ବଳ କୁମର ଯେ ଗଲେ
ସୁବଳମ୍ବା ପର୍ବତେ ଶ୍ରୀରାମ ବିଜେ କଲେ ।
ତୁମ୍ଭେ ଏବେ ଚଳହେ ନରହ ଯଣେ ଏଥ
ଶୁଣିଣ ରୁକ୍ଷ କପି ହୋଇଲେ ଉସତ ।

ହୁଁକାର ନାଦକରି ଯେ ବେଗେ ଚଳିଗଲେ
ପାଚେରି ଡେଇଁ ସୁବଳସ୍ତ୍ୱା ଭଳରେ ମିଳିଲେ
ନଳ ସେନାପତି ଯେ ଆଗୁଆଣି ଥାଟେ ଥିଲା
ଆଗରେ ସୈନ୍ୟ ଦେଖି ତାହାଙ୍କୁ ପଚ୍ଚରିଲା ।
ସେ ବୋଇଲେ ଆମ୍ଭେଯେ ଲଙ୍କାଗଡ଼ରେଥିଲୁ
ଯୁଦ୍ଧ ନ ଦେଖିବାରୁ ଆମ୍ଭେ ପଳାଇ ଅଇଲୁଁ
ଶୁଣି ନଳ ସେନାପତି ସନ୍ତୋଷ ହୋଇଲା
ସୁବଳ ଗିରିରେ ଫଳ ମୂଳ ଭୁଞ୍ଜ ସେବୋଇଲା
ଶୁଣି ଋଷକପି ଯେ ପର୍ବତକୁ ଗଲେ
ଫଳ ମୂଳ ଖାଇଣ ଜଳଟି ପିଇଲେ ।
ଶୁଣିଲୁଟି କ ଗୋ ମନରେ ତୋଷହୋଇ
ଯାହା ପଚ୍ଚରିଲୁ କହିଲି ଆଗୋ ସହି ।
ଏଥୁଅନନ୍ତରେ ଯେ ପାର୍ବତୀ କହେ ପୁଣ
ପ୍ରଥମ ଯୁଦ୍ଧ ସେ ଏମନ୍ତ ପ୍ରକାରେଣ ।
ଇନ୍ଦ୍ରଜିତ ଦେବ ଦଳନ ରଥ ଚଢ଼ି
ଯୁଦ୍ଧ କରିଥିଲା ଯେ ସୈନ୍ୟର ସଙ୍ଗେ ମିଳି ।
ହନୁମନ୍ତ ହସ୍ତର ରଥକୁ ଚୁପି ହେଲା
ସେ ରଥ ଭୂମିରେ ପାତାଳଗାମୀ ହେଲା ।
ସେ ରଥ ପୁଣି ଟିକି ପାଇଲା ଇନ୍ଦ୍ରଜିତ
ଏହା ମୋତେ ଝଞ୍ପି କହ ହେ ପ୍ରାଣନାଥ ।
ଈଶ୍ୱର ବୋଇଲେ ତୁମ୍ଭେ ସାବଧାନେ ଶୁଣ
ଇନ୍ଦ୍ରଜିତ ନବରେ ମିଳିଲା ଯାଇଁ ପୁଣ ।
ସ୍ନାହାନ ସାଧିଣ ଯେ ସନ୍ଧ୍ୟା ସୁମରିଲା
ନିକୁମ୍ଭିଳା ବଟ ତଳକୁ ବେଗେ ଗଲା ।
ନିକୁମ୍ଭିଳା ବଟତଳ ଯାଇଁଣ ହୋମ କଲା
ଦେବ ଦଳନ ରଥ ଯେ ବେଗେଣ ବାହାରିଲା
ରଥ ଘେନିଣ ଯାଇ ମିଳିଲା ନଗପୁରେ
ଶୁଣିଲୁଟିକ ଗୋ ଯାହା ପଚ୍ଚରିଲୁ ମୋତେ ।
ପାର୍ବତୀ ବୋଇଲେ ଯେ କଥାଏ ମୋରମନେ
ପଡ଼ିଲା ଦେବ ଏବେ ଶୁଣ ହେ ସାବଧାନେ ।
ଅଶୋକ ବନରେ ଯେ ଜାନକୀ ଛନ୍ତି ରହି
ଯୁଦ୍ଧକଥା ପୁଣ ଜାଣିଲେଟି କ ସେହି ।
ଈଶ୍ୱର ବୋଇଲେଶ୍ରୀରାମଯେ ଗଡ଼ବେଢ଼ିଥିଲେ
ଜାନକୀର ଦୂତ ହୋଇଣ ପବନ ଯେ ଗଲେ
ଶଶା ରୂପଧରି ରାମ ଆଗରେ କହିଲା
ମନରେ ଆନନ୍ଦ ଶ୍ରୀରାମ ଭିତରେ କରିଥିଲା ।

ବୋଇଲେ ଘଡରେ ଡେଇଁ ଲଙ୍କଗଡ
ଶ୍ରୀରାମର ବୋଲରେ ଗଡ ଡେଇଁଲେକପିଦଳ
ଲଙ୍କାପୁର କଷଣ ଦୈତ୍ୟଙ୍କୁ ନାଶ କଲେ
ଅଶୋକ ବନ ପୁଣ ମଧ୍ୟରେ ରହିଲେ ।
ରଣଗୋଳ ଧଡ଼ଳ ନ ମିଳେ ଆଉ ବାଟ
କୋଳାହଳ ଶବ୍ଦେ ଚମକେ ଲଙ୍କବସ୍ତି ।
ଜାନକୀ ଆଗରେ ପୁଣ ତ୍ରିଜଟା କହିଲେ
ସ୍ୱାମୀଆଜ୍ଞାରେଚୋରକପି ଦୈତ୍ୟଙ୍କୁ ମାଇଲେ
ରାବଣ ବୃହପୁତ୍ର ପାଞ୍ଚ ସେନାପତି
ଆଜ ରଣେ ପଡ଼ିଲେ ଗୋଶୁଣ ତୁ ଦେବୀସୁଷ୍ଟି
ଜମ୍ଭେ କହଣ ସ୍ୱାମୀ ଯେ ସୁବଳସ୍ତ୍ୱା ଗଲେ
ଋଷକପି ବାନର ଗଡ଼ରୁ କାଢ଼ିନେଲେ ।
ଶୁଣିଣ ସନ୍ତୋଷ ଯେ ଜାନକୀ ମନେ ହେଲେ
ଯାହା ପଚ୍ଚରିଲୁ ତୋତେ କହିଲି ବୋଇଲେ
ପାର୍ବତୀ ବୋଇଲେ କଥା ଏଣିକି ହେଲା କସ
ଏହା ମୋତେ ଫେଡ଼ିଣ କହ ହେ ଦିଗବାସ ।
ଈଶ୍ୱର ବୋଇଲେତୁମ୍ଭେ ଶୁଣ ଗୋଶାକମ୍ବରୀ
ଲଙ୍କାଗଡେ ନିଶାରେ ଡେଙ୍ଗୁରା ଯେ ଫେରି
ଏଥୁ ଅନନ୍ତରେ ଯେ ରଜନୀ ହୋଏ ଶେଷ
ପଣ୍ଡୁର ବର୍ଣ୍ଣ ଯେ ଦିଶିଲା ଦଶ ଦିଶ ।
ଦେବତାଙ୍କର ଆଳେ ଶୁଭିଲା ଶଙ୍ଖ ଧ୍ୱନି
ରାବଣ ହସ୍ତର ଯେ ପାହିଲା ରଜନୀ ।
ଏତେ ବୋଲି ଶଯ୍ୟା ସେ ଯେ ଗୁଡ଼ିଣ ଉଠିଲା
ମୃଦୁସୂଳକ ରାଇ ରାବଣ ଆଜ୍ଞା ଦେଲା ।
କେବୋଲେ ଟମକସେ ଦେବାକୁଯାଇବୋଲ
ସଜ ହୋଇ ଆସନ୍ତୁ ମଲ୍ଲ ଯେ ମହାମଲ୍ଲ ।
ଆଜ୍ଞାପାଇ ମୃଦୁସୂଳ ବେଗେ ଚଳିଗଲା
କୋଳଅଦ୍ୱାରେଯାଇଁଣ ପ୍ରବେଶବେଗେହେଲା
କେବଣ ଖଣ୍ଡିଆ ହୋଇଅଛ ହେ ଦୁଆରେ
ଆଜ୍ଞାଦେଲେ ପୁଣି ଯେ ଦଶାନନ ଯାରେ ।
ଟମକ ବିଆଅ ଥାଟ ଯେ ସଜହେଉ
ଆଜ୍ଞାଦେଲା ପୁଣ ଯେ ରାଜା ବଂଶବାହୁ ।
ଏହା ଶୁଣି ଉଗର ହ ରପାଳ ମୁଖଗଲା
ଟମକ ବିଆଅ ରାଜା ପୁଣ ଯେ ଆଜ୍ଞାଦେଲା ।
ଟମକ ଶୁଣିଷ ଯେ ଆସନ୍ତୁ ବେଗେ ସୈନ୍ୟ
ଯୁଦ୍ଧକୁ ସଜ ହୋଇଣ ଆସନ୍ତୁ ବହନ ।

ନୃପତିଙ୍କର ଆଜ୍ଞାରେ ଯେ ମୃଦୁସ୍ୱନ କହିଗଲ
ବଜାଅ ନାଗରା ବୋଲି ଖୁଣ୍ଟିଆ ଡାକଦେଲ
ଶୁଣିଣ ଟମକିଆ ଯେ ଟମକ ବଜାଇଲା
ଟମକ ଘୋଷଣ ସେ ନଠାଇ ପିଟିଲା ।
ସୁରଗିରି ଚମକେ ଯେସନ ନିଶାଣ
ବିକଟାଳ ହୋଇଣ ବାଜିଲା ପୁଣ ଠାଣ ।
କୋଟିଏକ ବଜ୍ର ପଡ଼ିଲେକ ଏକ ହୋଇ
ଦେବେ ଭୟକଲେ ଯେ ସ୍ୱର୍ଗପୁରେ ଥାଇ ।
ସୁବଳସ୍ଥା ଗିରିକି ଶବଦ ଶୁଭିଲା
ପୃଥ୍ୱୀ ଦେବୀ ଶୁଣିଣ ବିକଳେ ରବଦେଲ ।
ନିଦ୍ରା ଭାଙ୍ଗିଲା ଯେ ଉଠିଲେ ରାମ ଦେବ
ସୁମିତ୍ରାନନ୍ଦନ ଯାଇ ଦର୍ଶନ କଲା ବେଗ ।
ରାଘବ ବୋଇଲେ ଆଜ ଯେ ଆସିବ ରାବଣ
ସଂଗ୍ରାମକୁ ସଜ ଯେ ହେଉଛି ସତ୍ୟ ଜାଣ ।
ଏତେ ବୋଲିଣ ରାମ ହନୁମନ୍ତକୁ ଚାହିଁ
ଜାଣିଣ ପାବେନ ଯେ ମଥାରେ ହାତଦେଇ ।
ସୁଗ୍ରୀବର ଅଙ୍ଗଦ ଦର୍ଶନ ଯାଇଁ କଲେ
ବିଭୀଷଣ ସୁଷେଣ ସେହୁ ସେ ଅଇଲେ ।
ଚନ୍ଦନ କୁମୁଦ ଯେ ଗବାକ୍ଷ ସାରସ
ମନର ହରଷରେ ମିଳିଲେ ରାମପାଶ ।
କେଶରୀ ମରୁତ ଯେ ରମଣ ଶରଭ
ଡ଼ାଳମ୍ବ ଦ୍ୱିବନ୍ଦ ଦର୍ଶନ ଆସକରି ।
ମହେନ୍ଦ୍ର ପବନ ଆବର ଶତବଳି
ନଳ କାଳମୁଖ ଦଧିମୁଖ ପନସିଳ ।
ସମସ୍ତେ ପଟୁଆରେ ଅଛନ୍ତି ଜଗିହୋଇ
ନିତ୍ୟକର୍ମ ବିଧାନ ଯେ କରନ୍ତି ରଘୁସାଇଁ ।
ଟମକ ବାଜିବାର ପଛରେ ସେହୁ କଥା
ନୀଳ ଦର୍ଶନ କଲା ଭୂମିରେ ଦେଇ ମଥା ।
ଶିରରେ କର ଦେଇଣ କହଇ ଉତ୍ତର
ଶୁଣ ଶ୍ରୀରାମ ଈଶ୍ୱର ଅଯୋଧ୍ୟା ଠାକୁର ।
ରାବଣ କଟକେ ଦେବ ବାଜଇ ନିଶାଣ
ମୁଖରାବ ଶବଦ ଶୁଭେ ଅପ୍ରମାଣ ।
ଧାଁ ଧାଁ ଆସ ଆସ ପଡ଼ୁଅଛି ହରି
ଏହୁ ଗୋଳ ରାବରେ ଶୁଭଇ ଲଙ୍କାପୁରୀ ।
କେବଣ କଥାଏ ଯେ ଅଟଇ ଗୋସାଇଁ
ଠଣା ଗୁଡ଼ ଦେବ ତୁମ୍ଭେ ଅଇଲ ବେଗ ହୋଇ

ଶ୍ରୀରାମ ବୋଇଲେ ବାଜା ଏବେ ହେଉଅଛି ବାଜ
ଲଙ୍କପତି ଚତୁରଙ୍ଗ ବଳ ହେ ଅଛି ସାଜ ।
ନିଶାଣ ବାଜିବା ବେଳୁ ଭାଜିଲା ମୋର ନିଦ
ଆପଣେ ଦଜ ଆଜ ହେଉଅଛି ଦଣ୍ଡକନ୍ଧ ।
କରିବ ସମର ସେ ଯେ ମାରିବ ସଇନ
ଜାଣିବା କେମନ୍ତେ ଆଜ ଯିବା ପ୍ରାଣ ଘେନ ।
ଶୁଣିଣ ନୀଳସେନା କହେ ଯେ ଉତ୍ତର
ହେ ଦେବ ରଘୁନାଥ ଶୁଣ ମୋ ବିସ୍ତର ।
କାଲି ରାତିରେ ଦେବ ହୋଇଲା ଚମତ୍କାର
ଆଟବଳ ଶପ୍ତନ କଲେ ସେ ଆସୁର ।
ରାବଣର ବଳ ନର୍ଜନ ପୁଣ ହେଲେ
ତେତେବେଳର କଥା ଯେ ଏମନ୍ତ ହୋଇଲେ
ଯେତେସୈନ୍ୟଆମ୍ଭର ଯେ ଗଡ଼ରେପୂରିଥିଲେ
ନିଶା ରାବରେ ସୁବଳ ଗିରିକି ଅଇଲେ ।
ପଶ୍ୱରଲରୁ ବୋଇଲେ ଲଙ୍କାଗଡ଼େ ଥିଲୁ
ମୋହେ ପଡ଼ିଥିଲୁ ଆମ୍ଭେ ଚେତନା ପାଇଲୁଁ
ଦେଖିଲୁ ଯୁଦ୍ଧ ରଙ୍ଗ ଗଡ଼ରେ ନାହିଁ କଛି
ଶୂନ୍ୟରୁ ଶବଦ ଯେ ଶୁଭିଲା କର୍ଣ୍ଣେ ଆସ ।
ସେଠାବରୁ ଆମ୍ଭେ ଯେ ଅଇଲୁ ବେଗେ ପୁଣ
ଏତେ ବୋଲି ବୋଇଲେ ସକଳ ସଇନ ।
ମୁଁ ବୋଇଲି ତୁମ୍ଭେମାନେ ଗିରି ଉପରେ ଥାଅ
ଫଳ ମୂଳ ଭୁଞ୍ଜିଣ ସୁସ୍ଥକର ଦେହ ।
ଶୁଣିଣ ଜମ୍ବେବ ଯେ ଶ୍ରୀରାମଚନ୍ଦ୍ର ଚାହିଁ
ବୋଇଲେ ଏକଥା ମାନ କେମନ୍ତ ଅଟଇ ।
ଜମ୍ବେବ ବୋଇଲେ ଦେବ ତୁମ୍ଭେ କି ନଜାଣ
ବୋଇଲେ ପ୍ରକାଶ ମୁଁ କରିବ ତାହା ପୁଣ ।
ଶ୍ରୀରାମ ବୋଇଲେ ଜାଣିବା କହ ଏବେ
ଶୁଣିକରି ମନ୍ତ୍ର ପୋଥି କାଢ଼ିଲେ ଜମ୍ବବେ ।
ବୋଇଲେ ସେ କଥା ଶୁଣିମା ରଘୁପତି
ଚଉଷଠି ଯୋଗିନୀ ସୁବଳସ୍ଥାରେ ଅଛନ୍ତି ।
କାଟିଲର ମୁଣ୍ଡକୁ କ ସେଳ ଯୋଡ଼ଦେବ
ସକଳ ସୈନ୍ୟ ତୁମ୍ଭର ଶତ୍ରୁ ଖାଆଇବ ।
ରାବଣ ଯୁଦ୍ଧରେ ଖାଇବେ ତୁମ୍ଭବଳ
ମରିବେ ଦୈତ୍ୟଗଣ ଉଶ୍ୱାସ ମଣ୍ଡଳର ।
ଶ୍ରୀରାମ ବୋଇଲେ କମ୍ପଇ କମ୍ପା ମଣ୍ଡ
ଜମ୍ବେବ ବୋଇଲେ ଦେବ ସେକଥା ଶୁଣକୁହ

ରାବଣ ଦୈତ୍ୟଙ୍କର ଗୃହମଣ୍ଡାରେ ପୁଣ
ନାରଚମାନ ତିଆରି କରିଅଛନ୍ତି ଜାଣ ।
ସେଥିର ଶବଦରେ ଚମକେ ମେଦିନୀ
ଶୁଣିଣ ସନ୍ତୋଷ ହୋଇଲେ ରଘୁମଣି ।
ଏତେ ବୋଲି ରାମ ହନୁମନ୍ତଙ୍କୁ ଚାହିଁ
ଲଙ୍କାଗଡ଼ ଭିତରକୁ ଯାଅ ବେଗ ହୋଇ ।
ରାବଣର ଆଗରେ କହିବୁ ମୋର ବାଣୀ
ଏ କାଣ୍ଡ ଦେଇ ଚହ୍ନାଇ ଦେବୁ ଲଙ୍କମଣି ।
ବୋଲିବୁ ସୀତା ନେଇଣ ସମର୍ପ ମୋରପାଶ
ନୋହିଲେ ଏକ୍ଷଣରେ ଯିବୁ ପ୍ରାଣେ ନାଶ ।
ଏ କାଣ୍ଡ ଗୋଟି ପୁଣ ତାଡ଼ିକା ବଧକଲା
ଖର ଦୂଷଣ ତ୍ରିଶିରା ପ୍ରାଣ ଏ ଖାଇଲା ।
ବାଳିରାଜା ଏହି ଶିରେ ହାରିଲାଟି ପ୍ରାଣ
ସୀତାଙ୍କୁ ନ ଦେଲେ ଏବେ ଖାଇବ ରାବଣ ।
ମୋର ବୋଲକର ଏବେ ଦିଅ ବାହୁଡ଼ାଇ
ଏତେ ବୋଲି ଶ୍ରୀରାମ କାଣ୍ଡ ତୋଳିଦେଇ ।
କର ଦୁଇ ପ୍ରସାରି ନେଲା ମାରୁତି
ସୁଷେଣଙ୍କୁ ଚାହିଁଣ ବୋଲନ୍ତି ରଘୁପତି ।
ଶ୍ରୀମୁଖ ଲେଖିଣ ହନୁର ହସ୍ତେ ଦିଅ
ପୁଣି ଆଜ୍ଞା ଦେଲେ ଧର୍ମଙ୍କୁ କଣି ଥାଅ ।
ଶୁଣିଣ ସୁଷେଣ କେ କାଗଜ ପଟେ ଲିହି
ବଚନ ଗଡ଼ିକରି ଶ୍ରୀମୁଖ ମୁଦ୍ରଦେଇ ।
ହନୁମନ୍ତ ହସ୍ତରେ ତାହା ନେଇ ଦେଲେ
ଶ୍ରୀରାମଙ୍କୁ ଓଳଗି ମାରୁତି ଚଳିଗଲେ ।
ଗରୁଡ଼ ଯେସନେକ ଗଗନ ମାର୍ଗେ ଯାଏ
ସୂର୍ଯ୍ୟ ଉଦୟରେ ଲଙ୍କାରେ ଯାଇ ହୋଏ ।
ହନୁମନ୍ତ ଯିବାରୁ ରାମ ଆଜ୍ଞାଦେଲେ
ସୁସ୍ଥ କର ଦେହ କପିଙ୍କି ବୋଇଲେ ।
ଆଜର ସମର ହୋଇବ ଟାଳୁ ଜାଣ
ଫଳମୂଳ ଭୁଞ୍ଜିଣ ସଜ ଜେ ହୁଅ ପୁଣ ।
ଶୁଣିଣ କପିବଳ ସବଟେ ଉଠିଲେ
ଫଳ ମୂଳ ଜଳ ଭୁଞ୍ଜିଣ ତୋଷ ହେଲେ ।
ସେନାପତି ମଲ୍ଲ ମହାମଲ୍ଲ ଯେ ଜାଣ
ସେ ଯାହା ନିତ୍ୟକର୍ମ ସାରିଲେ ବେଗେ ପୁଣ
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ହନୁମନ୍ତ ମିଳିଲା ଯାଇଁ ଲଙ୍କାପୁରୀ ।

ଦେଖିଲା ରାବଣ ଯେ କରଇ ନିତ୍ୟକର୍ମ
ହନୁମନ୍ତଙ୍କୁ ଚାହିଁଣ ଧଇର୍ଯ୍ୟ କଲା ଭ୍ରମ ।
ଦୁଇକୋଶ ଉହାର ଜଗଣ୍ଡି ପରେ ଥିଲା
ପବନ ତନୟେ ଯେ ମନରେ ବିଚାରିଲା ।
ଏଥେ ଉଠିକରି ଯେ ନ ଘେନଣ ପ୍ରଭୁ ଆଜ୍ଞା
ଏଲେଥାଇ କହିବ କି ପ୍ରଭୁର ପ୍ରତିଜ୍ଞା ।
ଏତେ ବୋଲି ଲଞ୍ଜ ଦେଲାକ ତେକାଇ
ରାବଣର ସମାନରେ ବସିଲା ପୁଣ ଯାଇ ।
ବୋଇଲା ଶ୍ରୀମୁଖ ଘେନ ତୁ ଦଶଶିର
ଆଜ୍ଞାଦେଲେ ତୋତେ ଯେ ରଘୁକୁଳ ବୀର ।
ଧର୍ମଙ୍କୁ ଚିହ୍ନ ମୋତେ ପେଷିଲେ ରଘୁମଣି
ଶୁଣି କୋପ କରିଣ ବୋଲଇ ବଂଶପାଣି ।
ଋକ୍ଷ ମର୍କଟଙ୍କର ତପସ୍ୱୀ ଦୁଇରାଜା
କେବଣ ଗୁଣେ ତାଙ୍କୁ କରେ ପାଦ ପୂଜା ।
ସେ ପୁଣ ଶ୍ରୀମୁଖରେ କାଟଇ ନାକ ଗୁଣ୍ଡ
ଚହିଁକ ଆଡ଼ତିଆରେ କହେ ଯେକଥା ବଢ଼ି ।
ନାଲ୍ଲଜ ଜୀବନ ଯେ ଅଟଇ ଭୁମ୍ବର
ନ ପାରି ଯୁଦ୍ଧକୁରେ ଗାରିମା ଗରୁଡର ।
ପିତାଙ୍କୁ ମାରି ତାର ଭାରିଯା ଆଣିଲଇ
ତେବେ ସେ ନାଲ୍ଲଜର ଅଛୁ ଯେ ପ୍ରାଣରହି ।
ବିଧାତାଙ୍କ ମୃତ୍ୟୁ ଯେ ମୋର ହାତେ ହେଲା
ନାଲ୍ଲଜ୍ଜ ଘଣ କଲେ କରେ ଜୀବନ ପାଏଭଲ
ଜୀଇବାକୁ ଆଶାଥିଲେ ଫେରିଣ ବେଗେ ଯାଉ
ନୋହିଲେ ଲୋକ ହୋଇଣ ମୋହପୁରେଥାଉ
ଅଳପ ହସିଣ ଯେ ଦଶାନନ କହି
କି କି ଲେଖିଅଛି ଯେ ପଢ଼ନା ତୁହି ।
ମୁଦଭାଙ୍ଗି ଶ୍ରୀମୁଖ ପଢଇ ହନୁମନ୍ତ
ସାବଧାନ ହୋଇଣ ଶୁଣ ହେ ଦଶମାଥ ।
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଶ୍ରୀରାମ ଅଧିକାରୀ
ମାନବେ ଜାତ ଏବେ ଯେ ଅସୁର ବଳମାରି
ଆମ୍ଭେ ପରମେଶ୍ୱର ଜଗତ ଜଗନ୍ନାଥ
ଶଙ୍ଖ ଚକ୍ରଗଦା ଶାରଙ୍ଗ ପଦ୍ମହସ୍ତ ।
ଆମ୍ଭେ ବ୍ରହ୍ମାଙ୍କୁରେ ନାଭିରୁ ଜାତକଲୁ
ଶଙ୍କର ନାମେ ରୁଦ୍ରଙ୍କୁ ପୁଣ ଈଶ୍ୱରପଦଦେଲୁ
ଆମ୍ଭେଟି ଇନ୍ଦ୍ରଙ୍କୁରେ ସ୍ୱର୍ଗରେ ଇନ୍ଦ୍ରକଲୁ
ଆମ୍ଭେ ସେ ସବଦାରେ ଶୂନ୍ୟମାର୍ଗେ ଥିଲୁ ।

ଆମ୍ଭେଟି ଅଟୁରେ ପବନ ହୁତାଶନ
ଆମ୍ଭେ କୁବେରଙ୍କୁ କଲୁ ଦିଗପାଳ ଜାଣ ।
ଆମ୍ଭେ ବରୁଣଙ୍କୁରେ ସପତ ସିନ୍ଧୁ ଦେଲୁଁ
ଆମ୍ଭେ ବୃହସ୍ପତିହୋଇ ଦେବଙ୍କ ଗୁରୁହେଲୁ
ଆମ୍ଭେ ନଇର୍ଋତଙ୍କୁରେ ଦିଗପାଳ କଲୁଁ
ଆମ୍ଭେଟି ଧ୍ରୁବ ନେଇଣ ଉପରେ ରଖିଲୁ ।
ଆମ୍ଭେ ବାସୁକିର ଶିରେ ଦେଲୁ ମସ୍ତ
ଆମ୍ଭର ଆଜ୍ଞାରେ ସଚରାଚର ରହି ।
ଅଷ୍ଟ ଅଇଶ୍ୱର୍ଯ୍ୟ ଯେ ଥାଇ ଆମ୍ଭ ବୋଲ
ଏହା ତୁ ଅବଜ୍ଞା ନ କର ଲଙ୍କମଲ୍ଲ ।
ଫଳଙ୍କର ସ୍ୱାଦ ପୁଷ୍ପଙ୍କର ଅଟେ ବାସ
ଆମ୍ଭେ ସେ ଭିଆଇଲୁରେ ଦେବତା ନିଦଶ
ଆମ୍ଭେ ସେ ସଂସାରରେ ଯେ ଅଟୁ ଅଧିପତି
ଆମ୍ଭେ ସେ ପ୍ରଳୟରେ ସୃଷ୍ଟି ଯେ କଲୁ ପୃଥ୍ୱୀ
ବରାହ ରୂପରେ ପୃଥ୍ୱୀ ଦନ୍ତରେ ଆମ୍ଭେ ଧରୁ
ଜଗତ ସଂସାର ଆମ୍ଭେ ସମ୍ଭାଳ ପୁଣ କରୁ ।
ପୃଥ୍ୱୀର ଭାରଭର ଆମ୍ଭେ ସେ ନିବାରୁଁ
ପ୍ରହଲ୍ଲାଦ କୁମରକୁ ସ୍ୱର୍ଗରେ ରାଜାକଲୁ ।
ବାମନ ରୂପେ ବଳିକି ପାତାଳେ ରଖିଲୁ
ପର୍ଶୁରାମ ରୂପେ ପୃଥ୍ୱୀ ନିକ୍ଷେତ୍ର ଆମ୍ଭେ କଲୁ
ଦୁଷ୍ଟ ନିବାରଣ କରି ସନ୍ଥ ଜନକୁ ପାଳିଲୁ
ପୃଥ୍ୱୀର ଭାର ଖଣ୍ଡନେ ଅବତାର ଦେଲୁଁ ।
ଏ ଯେ ସୂର୍ଯ୍ୟ ବଂଶରେ ଅଯୋଧ୍ୟା ମହୀପାଳ
ତିନିପୁର ଉପରେ ଆମ୍ଭେ ଯେ ଅଟୁ ସାର ।
ଭୁଜବଳ ପ୍ରାକର୍ମରେ ଅସୁର ବଳମାରୁ
ଦେବତାମାନଙ୍କର ପରମ କଷ୍ଟ ସାରୁ ।
ପିତାସତ୍ୟ ନିମନ୍ତେ ବନରେ ଆମ୍ଭେ ବୁଲୁ
ଗୋଦାବରୀ କୂଳେ ଆମ୍ଭେ ଆସିଣ ବସାକଲୁ
ମୋହର ଘରଣୀ କି ଚୋରାଇ ଆଣିଲୁ ଯାଇ
ସେ ଦୋଷକ୍ଷମା ତୋତେ କଲରେ ଲଙ୍କସାଇଁ
ଏବେ ହନୁମନ୍ତ ସଙ୍ଗେ ବେଗ ହୋଇଆସ
ସୀତା ଦେଇ ଚରଣେ ଶରଣ ବେଗେ ପଶ ।
ନୋହିଲେ ଯେଉଁକାଣ୍ଡ ନେଇ ଯେ ଅଛି ହନୁ
ସେ କାଣ୍ଡେ ବିନାଶ କରିବ ତୋର ତନୁ ।
ଦଶଦିଗକୁ ତୋର ଦଶ ଯେ ମୁଣ୍ଡବଳି
ହୃଦଖଣ୍ଡ ତୋର ଖାଇବ ମହୀଆଳି ।

ବିଭୀଷଣ ନୃପତି ହୋଇବ ଲଙ୍କପୁରୀ
ଏକଥାରେ ଦୋଷ ଯେ ନାହିଁଟି ମୋହର ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ବନ୍ଧୁ ପୁତ୍ରନାତି
ସମସ୍ତେ ଆଗେ ମରିବେ ତୁ ମରିବୁ ପଛକତି
ପାଣି ଦେବାକୁ ଆଉ ଗୋଟିଏ ନ ରଖିବି
ଦୁଇଭାଇଙ୍କ ବଂଶ ମୁଁ ନିର୍ମୂଳ କରିବି ।
ଶରଣ ନ ପଶିଲେ ଜୀବନ ଆଶା ଛାଡ଼
ଏତେ ସୁଖ ଛାଡ଼ି ତୁଟେର ଅମଡ଼ା ନମାଡ଼ ।
ମୁହିଁଟି ଶ୍ରୀରାମରେ ଲକ୍ଷ୍ମଣ ମୋ ସାନୁଜ
ରଘୁବଂଶରେ ଜାତ ତେଣୁ ରାମରାଜ ।
ସୀତା ବଲ୍ଲଭ ମୁଁ ଯେ ତେଣୁଟି ସୀତାପତି
ସୁନ୍ଦର ରୂପ ମୋର ମଧୁର ମୁରତି ।
କକୁସ୍ତ କୁଳରେ ଜାତ କାକୁସ୍ତ ନାମ ହେଣୁ
କରୁଣାସାଗର ମୁଁ ଯେ ଅଟଇ ସାଧେ ତେଣୁ
ଗୁଣରେ ପରିପୂର୍ଣ୍ଣ ମୁଁ ଯେ ଅଟେ ଗୁଣନିଧି
ବିପ୍ରଜନ ମୁନିଜନ ବୋଲନ୍ତି ସୁବିଧାତି ।
ମୁହିଁ ସେ ଧାର୍ମିକ ଯେ ବିବେକ ମୋତେ କହି
ରାଜାଙ୍କର ଉପରେ ରାଜେନ୍ଦ୍ର ବୋଲଇ ।
ସତ୍ୟକହିବାରୁ ମୁଁ ଯେ ତେଣୁ ସତ୍ୟ ଇନ୍ଦ୍ର
ଦଶରଥ ନନ୍ଦନ ମୁହିଁ ରାମଚନ୍ଦ୍ର ।
ସୁନ୍ଦର ଶ୍ୟାମଳ ଶାନ୍ତ ମୂର୍ତ୍ତି ଯେ ମୋହର
ତିନିପୁର ଲୋକେ ଯେ ନମନ୍ତି ମୋ ପୟର
ଅଭିରାମ ପୁରୁଷ ବୋଲନ୍ତି ମୁନିମାନେ ।
ରଘୁକୁଳ ତିଳକ ବୋଲନ୍ତି ସର୍ବଜନେ ।
ରାବଣାରି ନାମ ମୁଁ ଯେ ନ ବୋଲଇଯେମନ୍ତ
ତେଣୁସେସମ୍ଭାଳିବାକୁବୋଲୁ ଯେଅଛିତୋତେ
ତୁ ମୋତେ ସାମାନ୍ୟରେ ନ ବୁଝ ଦଶମାଥ
ଜଗତେ ବୋଲନ୍ତି ମୋତେ ଜାନକୀର କାନ୍ତ
ଏ ବୋଲ ନିଭାଙ୍ଗିଣ ଭାରିଯା ମୋତେ ଦେସି
ଲଙ୍କା ଭୁବନେ ତୁ ଯେ ନିଶ୍ଚିନ୍ତେ ହୋଇଆସି
ନୋହିଲେ ମୋର ସଙ୍ଗେ ସୁଖେ ଯୁଦ୍ଧକର
ମୁହିଁ ତ ରହିଅଛି ପଦାବନସ୍ତର ।
ଯେତେବେଳେ ଯୁଝିବୁ ପଠିଆ ମୋତେ କହି
ସୀତା ନ ଦେଲେ ତୋର ଜୀବନ ନପାଇ ।
ଯହୁଁ ହନୁମନ୍ତ ଶ୍ରୀମୁଖ ପଢ଼ିଗଲା
ଶୁଣିଣ ଦଶଗ୍ରୀବ ମହାକୋପ କଲା ।

ବୋଇଲରେ ନର ବାନର ଅଟ ତୁମ୍ଭେ
ଏ ବ୍ରହ୍ମାଣ୍ଡ ଭିତରେ ଯେଶ୍ରେଷ୍ଠ ଅଟୁ ଆମ୍ଭେ ।
ଦେବ ଦାନବ ବୋଲିଣ ଅଟନ୍ତି ବେନଭାଇ
ଦିତି ଅଦିତି ଯେ ଗର୍ଭଧାରୀଆଇ ।
କଶ୍ୟପ ଋଷି ରେତରୁ ହୋଇଲୁ ଆମ୍ଭେଜାତ
ସ୍ୱର୍ଗରେ ଦେବତାଏ ମଞ୍ଚରେ ଦଇତ ।
ବାଣ୍ଟି ମହୀ ଘେନିଲୁ ଯେ ଯାହାର ଇଚ୍ଛା
ବିବଧ ଭୋଗ କରୁ ଯେ ଯାହାର ବାଞ୍ଛା ।
ଆମ୍ଭଭୟେ ସ୍ୱର୍ଗରେ ଦେବତା ନ ରହନ୍ତି
ଆମ୍ଭଙ୍କୁ ସବୁ ଦିନରେ ଦେବତା ଡରନ୍ତି ।
ଆମ୍ଭେ ରାଜା ଅଟୁରେ ସପ୍ତ ଦ୍ୱୀପ ମଧ୍ୟ
ଆମ୍ଭେତ ରାଜାମାନଙ୍କୁ ମଞ୍ଚରେ ଅଛୁ ଥୋଇ
ଅନେକ ଅସୁର ଯେ ମହୀରେ ଥିଲେ ପୁଣି
ନିଜ ଭୁଜ ବଳରେ ପୃଥ୍ୱୀ କ ଜିଣି ।
ମାଇକା ଅଜା ମୋର ଯେ ସୁମାଳି ଦଇତ
ସ୍ୱର୍ଗରେ ପଶିଣ ଯେ ଜିଣିଲା ପୁରୁହୂତ ।
ବିଦ୍ୟୁତ କେଶା ବୋଲି ତାହାର ତନଏ
ଚଉଦ ଭୁବନେ ସେ ଯେହୋଇଲାକ ରାଏ ।
ତାହାର ନନ୍ଦନ ମାଳି ସୁମାଳି ଦୈତ୍ୟବୀର
ମାଲ୍ୟବନ୍ତଙ୍କୁ ଘେନଣସେଯେହୋଇଲାମହାବଳ
ଯେବଦା କାଳେ ଆମ୍ଭେ ନାରାୟଣର ବଇରୀ
ମାଳି ମାଲ୍ୟବନ୍ତଙ୍କୁ ମାଇଲେ ଶ୍ରୀହରି ।
ପାତାଳେ ସୁମାଳି ପଶିଲା ପୁଣ ଯାଇ
ନିଜକେଶ୍ୟାନାମରେ ଝିଅଟେଯେବିଶ୍ରବାକୁଦେଇ
ତାଠାରୁ ତିନି ପୁତ୍ର ହୋଇଲୁ ଆମ୍ଭେ ଜାତ
ମୋହର କର୍ମ ମୁଁ ଯେ ସାଧିଲି ଜଗତ ।
ରାଜ୍ୟରେ ରାଜ୍ୟେଶ୍ୱରୀ ଅଟଇ ମନ୍ଦୋଦରୀ
ଏକାଏ ଭୋଗ ମୁଁ ଯେ କରଇ ଧରଣୀ ।
ବ୍ରାହ୍ମଣ କୁଳରେ ମୁଁ ଯେ ହୋଇଲଇଁ ଜାତ
ଧନପତି କୁବେର ଅଟଇ ମୋର ଭ୍ରାତ ।
ସାନୁଜ କୁମ୍ଭକର୍ଣ୍ଣ ବଇରୀ କୁଳ କାଳ
ଇନ୍ଦ୍ର ଦେବତାଙ୍କୁ ଜିଣିଲା ମୋର ବାଳ ।
ସହିତେ ଦଶଶିର ବହଇ ବଂଶପାଣି
ଦୈତ୍ୟଙ୍କରଠାରୁ ମୁଁ ଯେଅନେକମାୟାଜାଣି
କାମରୂପି ହୋଇଣ ସକଳ ପୁର ଯାଇ
ଅନେକ ରତ୍ନ ଧନ ମୁଁ ଆଣିଣ ସଞ୍ଚଇ ।
ଅଜେୟ ଲଙ୍କାଗଡ ଯେ ସମୁଦ୍ର ତଉକତ
ରଥ ଗଜ ଅଶ୍ୱ ମୋର ଅନେକ ପାଦାନ୍ତ ।
ଏତେ କଳମାନ ମୋର କେଉଁ କତ ଗଲା
ଶ୍ରୀରାମ ଜଟାଧାରୀ ପୁଣି ଶ୍ରୀମୁଖମୋତେ ଦେଲା
ଆଉତଥା ପଣରେ ମାଙ୍କଡେ ପୁଣ ଆସି
ଜଟାଧାରୀ ଶିର ଶିମାନ୍ତ କହେ ବସି ।
ତୁକାର ସିଦ୍ଧାନ୍ତ ଯେ କହଇ ମୂଢ଼ା ମୋତେ
ଦଇବ ଅବଳ ଆସି ହୋଇଲାକ ଏତେ ।
ଇନ୍ଦ୍ର ଦେବତାଙ୍କୁ ମୁଁ ଖଟାଇଲିପାଦତଳେ
କପିଳାସ ପର୍ବତ ମୁଁ ଯେ ଉପାଡ଼ିଲି ହେଳେ
ଶୂନ୍ୟପୁର ସହିତରେ ମୁଁ ଯେ ତିନପୁର ଗଲି
ବ୍ରହ୍ମାଣ୍ଡର ସମ୍ପଦ ମୁଁଯେ ଲଙ୍କାରେ ଠୁଳକଲି
ଏବେ ନାରଖାର ହେଲା ମୋର କର୍ମସ୍ଥାନେ
ସ୍ୱପ୍ନରେ ମିଳାଇଲିମୋର ଯୋଡାଳଜୀବମାନେ
ତପସ୍ୱୀ ରଜାପଣରେ କଟାଏ ଶ୍ରୀମୁଖ
ଏହା ଶୁଣିବାରେ ମରିବା ବଡ ଦୁଃଖ ।
କେଉଁଠାରେ ବସି ଶିଖିଲ ତୁମ୍ଭେ ଏହା
ଆପଣେ ଆପଣେ ଯତି ବୋଲାଇ ନରନାହା
ବାପ ବାହାର କରି ଦେଲା ଅଧର୍ମପଣ ଦେଖି
ବନକୁ ଅଇଲା ରାଜ୍ୟଭାର ଯେ ଉପେକ୍ଷି ।
ପଶୁ ଜନଙ୍କ ସଙ୍ଗରେ ଫଳମୂଳ ଖାଏ
ଭାଲୁ ମର୍କଟ ଲେଖିଏ ସଙ୍ଗରେ ଘେନ ଆଏ ।
ଆରମ୍ଭ ହୋଇ ଯତି ଯୁଦ୍ଧକୁ ଆସିଣ ଅଛଇ
ମିଛରେ ରାଜପଣରେ ଶ୍ରୀମୁଖ ବାଟଇ ।
ଏମନ୍ତ ପ୍ରକାରେ ଘେନଣ ସିବ ସୀତା
ମୁଞ୍ଚିକ ନଜାଣଇ ହେ ତାହାର ଯେତେକଥା
ଏତେବୋଲି ସେ ଯେ ବୋଲଇ ଦଶଶିରୀ
ଭଲା ଯତି ତୁମ୍ଭଙ୍କରେ ଅଛୁ ବଶ୍ୟକରି ।
କନ୍ଦମୂଳ ମନ୍ତ୍ରିଣ କରେ ତୁମ୍ଭଙ୍କୁ ଖୁଆଇଲା
ତେଣୁ ସେ ତାହାଙ୍କର ପଛରେ ଗୋଡାଇଲ
ଭିଖାରୀ ବୋଲକୁରେ ମରିବାପାଇଁ ଆସ
ଏ ପୁରେ ଯେ ପଶଇ ସେଯାଇ ପ୍ରାଣେ ନାଶ
ସେ ଭ୍ରାନ୍ତ ଅଇଲୁ ଯେ ଧର୍ମରେ ସାର ଗଲୁ
ଆଉ କମ୍ପା ନଲଜରେ ଏଥକୁ ଅଇଲୁ ।
ହନୁମନ୍ତ ବୋଇଲା ଯେ ଅଇଲା ଯହିଁପାଇଁ
ଶ୍ରୀରାମ ଯେ ତୋତେ ଶ୍ରୀମୁଖଛନ୍ତ ଦେଇ । ୬

ତାଙ୍କ କହିବାର ଯେ ଆତୁର କଥା ଅଛି
ଯେବେ ତୁ ନଦେଖିବୁ ହୋ ସୀତା କମଳାକ୍ଷୀ
ଅବଶ୍ୟ ପ୍ରାଣ ତୋର ହାରିବୁ ଲଙ୍କସାଇଁ
ଏକାନ୍ତ ଦେଇଥିଲେ ତୋତେ ଚହ୍ଲାଇ
ନେବାପାଇଁ ।
ଏବେ ଚହ୍ଲି ଥାଅରେ ସେତେବେଳେ
ନୋହିବୁ ତୁ ବଣା ।
ସେହି ନୟମ କରିଛନ୍ତି ତୋତେ
ଶୁଣରେ ରାବଣା ।
ଧର୍ମକୁ ଜିଣିବାକୁ ପେଷିଲେ ତୋର ପାଶେ
ସଂଗ୍ରାମେ ପ୍ରାଣ ତୁରେ ହାରିବୁ ଅବଶେଷ ।
ଶୁଣିଣ ଲଙ୍କପତି ହେ ମହାକୋପ କଲା
ଆଜ ଯୁଦ୍ଧରେ ଜାଣିବା ବୋଲିଣ ବୋଇଲା ।
ତୁମ୍ଭଙ୍କୁ ମୁଁ କ୍ଷଣରେ ଉଡ଼ାଇ ସଂଗ୍ରାମରେ
ଯାଇଣ କହ ତୋର ଶ୍ରୀରାମ ଆଗରେ ।
ମାଙ୍କଡ଼ ଭଲୁକରେ ଆଣିଅଛୁ ଯେତେ,
ସେହି ଜନ୍ତୁଙ୍କୁ ମୁଁରେ ନମାରେ କଦାଚିତେ
ଆପଣେ ଦୁଇଭାଇ ହୋଇଥାନ୍ତୁ ସଜ
ଏହା ଯାଇଁ କହିବୁରେ ଆଜହିଁ ଦେଉ ଯୁଦ୍ଧ ।
ଯେ ଯାହାକୁ ମାରିବରେ ସେହି ସେ ରଣଜିତ
ମାରିଣ ପଛେ ନେଉ ତାହାର ବନିତା ।
ମୁଁ ଯେବେ ଜିଣିବି ସୀତାକୁ କରିବି ଘରଣୀ
ହାରିଲେ ତିନଶ ଯେ ପଞ୍ଚାଶ ସହସ୍ର ରାଣୀ
ନେଉ ପୁଣି ।

ତାର ଗୋଟିଏ ରାଣୀକ ମୋର ଏତେକବଦଳ
ସତ୍ୟକଲ କଥାଏ ଯେ ମୋଠାରୁ ଶୁଣ
ମଏଦୈତ୍ୟ ଝିଅ ଯେ ମନ୍ଦୋଦରୀ ପୁଣ ।
ପ୍ରଥମ ବରଣ ଯେ ବାଳକ ସେହୁ କଲା
ବିଶ୍ରସ୍ତ କନ୍ୟା ଆସି ମୋତେ ଯେ ବରିଲା ।
ଶତେକ ବରଷ ଯେ ହୋଇଲା ପୁଣ କାଳ
ବିଧାତା ଆସିଣ ଭାଙ୍ଗିଲା ଆମ୍ଭ ମେଳ ।
ମୋତେକନ୍ୟା ଦେଇଣ ତାହାଙ୍କୁ ବୋଧକଲା
କାଳେ ସେ ମନ୍ଦୋଦରୀ ମୋହର ପୁଣ ହେଲା
ସେହି ରୂପରେ ଶ୍ରୀରାମ ଯେ ସିବାକଣେ ପୁଣ
ପାଇଲା ପଦାର୍ଥ କରେ ନେବକ ମୋର ଆଜ

ମୋତେ ଭଲ ହୋଇଲାରେ ଶ୍ରୀରାମ ଅଇଲା
ଦୁଇଭାଇଙ୍କ ମାଇଲେ ମୋର ସବୁ ଗଲା ।
ଶୁଣିଣ କର୍ମିଲା ଯେ ହନୁମନ୍ତର କାପେ
ବହୁରଇ ଶ୍ରୀରାମ ଯେ କମ୍ପାଇଁ ପଠିଆଏ ।
ନମାରନ୍ତି ଦୁଷ୍ଟଙ୍କ କରନ୍ତି କ୍ଷମା ଦୟା
ଦୟାନିଧି ସାଗର ବୋଲାଏ ରାମର କାୟା ।
ରାବଣ ବୋଇଲା ଆଜ ତୋ ସଙ୍ଗେ ନାହିଁହାର
ଶ୍ରୀରାମ ଲକ୍ଷ୍ମଣଙ୍କୁ ବୋଲିବୁ ବେଗେ ହୁଅ ସଜ
ଯାଅସି କପିରେ ନମାରଇ ପୁଣ ତୋତେ
ସଂଗ୍ରାମେ ମାରିବି ରାମ ଲକ୍ଷ୍ମଣ ସହିତେ ।
ଏତେ ବୋଲି ସନ୍ଧ୍ୟା ଯେ ମୁମର ଉଚ୍ଚହୋଇ
ସ୍ଥାନରେମେହଉଦଣ୍ଡ ବୋଲିମନ୍ତ୍ରୀକଆଜ୍ଞାଦେଇ
ଶୁକ ସାରଣ ଦୁହେଁ କହନ୍ତି କରଯୋଡ଼
ଆଜ୍ଞାଦେଲେ ଥାଟ ଯେ ସିବେ ଆଗ ବଢ଼ି ।
ସିଂହଦ୍ୱାରେ ରହିଣ ଅଛନ୍ତି ସମସ୍ତେ
ସଜହୋଇ ଅଛନ୍ତି କୁମର ଇନ୍ଦ୍ରଜିତେ ।
ରାବଣ ବୋଇଲମୋର ସବୁଯେ ସୈନ୍ୟଥାଉ
ସମ୍ମୁଖ ହୋଇଣ ମୋର ସଙ୍ଗେ ସଙ୍ଗେ ଯାଉ
ଏଥୁଅନନ୍ତରେ ଯେ ହନୁମନ୍ତ ବୀର
କରେଣ ଧରିଅଛି ଯେ ଖଣ୍ଡ ନଖେ ଶର ।
ସୁବଳରେ ଗମିଣ ଯେ ଗଲା ତତକ୍ଷଣ
ଭେଟିଲା ସୁବଳସ୍ଥ ଗିରିରେ ରାମଗଣ ।
ପ୍ରଣମ୍ୟ କରିଣ ଯେ ଶିରେ କର ଦେଲା
ଯେ ବିଧି ବିଧାନ କରିଣ ସେ ଲଗିଲା ।
ଶୁଣ ହେ ରଘୁନାଥ ଯେ ଅଯୋଧ୍ୟାର ସ୍ୱାମୀ
ତୁମ୍ଭର ଆଜ୍ଞାରେ ମୁଁ ଗଲଇଁ ଲଙ୍କାଭୂମି ।
ସନ୍ଧ୍ୟା କରୁଥିଲା ଯେ ଭେଟିଲି ଲଙ୍କପାଳ
ନ ଦେଖିଲା ଶ୍ରୀମୁଖ କହିଲା ଅତ୍ୟୁଗ୍ର ।
ମୋତେ ସେ ବୋଇଲା ଶ୍ରୀମୁଖ ତୁହିପଢ଼ଜନା
ଜା କ ଲେଖିଅଛି ଯତ୍ତ ତାହା ସେ ଶୁଣିମା ।
ତାହାର ପଢ଼ିବାକୁ ମୁଁ ଯେ ପେଶିଲି ଶ୍ରୀମୁଖ
କାଣ୍ଡି ଦେଖାଇଲି ଯେ ନ ଭରେ ଦଶମାଥ ।
ଶ୍ରୀମୁଖ ଶୁଣିଣ ବହୁତ କୋପ କଲା
କମ୍ପାଇଁ ଜାନକୀରେ ଦେବଇଁ ବୋଇଲା ।
ଯୁଦ୍ଧକୁ ନ ପାରିଲେ ଯେ ନେକପଣେ ରହୁ
ଅସୁରୁଣୀ ଗୋଟାଏ ଏଥିରୁ ବାଛ ହେଉ ।

ବଳଥିଲେ ମୋ ସଙ୍ଗେ କରି ଯୁଦ୍ଧ ପୁଣ
ନସତ ହେଲେ କରେ ସରିବ ମୋରଧନ ।
ତାହାର ପିତା ରାଜ୍ୟ ଘୋଷ ଯେଣୁ ନାହିଁ
ନିର୍ଲଜ ପଣରେ ବଞ୍ଚି ଯେ ଅଛି ସେହି ।
ଲାଜ ନ ମାଡ଼ଇ ଭେଦଇ କେତେ ଦୁତ
ଉପର ବାପ ମଲ ମୋହର ଯେ ହସ୍ତ ।
ସାକ୍ଷାତେ ଭାରିଯାକୁ ଆଣିଲି ମୁଁ ଯେ ହରି
ଶୁଆ ସାରି ପରାଏ ଯେ ଅଛଇ ବନ୍ଦ କରି ।
ବିଧାତା ପୁରୁଷ ମୋତେ ମନା କରି ଗଲା
ରାମକୁ ମାରି ତାରନାରୀ ଭୋଗକରିବୁବୋଇଲା
ବିଧାତାର ବଚନକୁ ମୁଁ ଅଛଇ ଦୃଢ଼କରି
ତୋର ଆଗରେ ସତ୍ୟ ମୁଁ କହୁଅଛି ଯେହ୍ନରି
ଶ୍ରୀରାମ ମାରି ସୀତାକୁ କରିବି ଘରଣୀ
ନୋହିଲେ ତିନକୋଟି ପଞ୍ଚାଶ ସହସ୍ର ନାରୀ
ନେଉ ରଘୁମଣି ।

ମୋତେ ମାଇଲେ ମୋର ରାଣୀଯାକ ନେଉ
ତାକୁ ମାରି ସୀତା ଭୋଗ କରିବ ଲଙ୍କରାହୁ ।
ଏବେ ଯାଇଁ ହନୁ ହୋ ଶ୍ରୀରାମଙ୍କୁ କହ
ଦଶରଥର ପିତା ଯେ ଏଣିତେଣିଆ ପୁଅ ।
ଅନେକ ଯୁଦ୍ଧ କାଲି କରିଗଲା ପୁଣି
ସତରଦିନ ଯୁଦ୍ଧ ରାମାୟଣ ଜାଣି ।
ସତରଦିନେ ଯେହୁ ଯାହାକୁ ଜିଣିବ
ଅଠରଦିନେ ରାଜ୍ୟ ତାହାର ହୋଇବ ।
ଏତେବୋଲି ଯୁଦ୍ଧକୁ ହୋଇଲା ସେ ସଜ
ମୋତେ ବୋଇଲା ସଜହୋଇ ଆସଇରାମରାଜ
ତାରଠାରୁ ଶୁଣି ଦେବ ଅଞ୍ଜନି ବାହୁଡ଼ି
ଶୁଣିଣ ଶ୍ରୀରାମ ବାମକରେ ନିଶମୋଡ଼ି ।
ଥାଟ ସେ ସଜହୁଅନ୍ତୁ ଦିଅ ହେ ଘୋଷଣ
ଏମନ୍ତ ବୋଲିଣ ଯେ ବୋଇଲେ ରଘୁରାଣ ।

ଜାଣିବା ରାବଣର ଆଜ ଯୁଦ୍ଧରେ ବଳ
କେମନ୍ତେ ଯୋଦ୍ଧା ଅଟେ ଲଙ୍କପାଳ ।

କେମନ୍ତେ ରଖଇ ତାକୁ ବିଶବା ନାମେ ବାପ
ଆମ୍ଭେପିତା ଏଣି ତେଣିଆରେ ହେଲୁ ଜାତ ।

ମୂର୍ଚ୍ଛିତ ମାଜବରେ ଅଟେ ଜଟାଧାରୀ
ଏହୁଠାରୁ ଜାଣିବା ହାନ ଅପଚୟେ କାହାର

ଶୁଣିଲଟିକ ହୋ ଅଷ୍ଟସେନାପତିମାନେ
ମହା ମହାମଲ୍ଲ ପଞ୍ଚଶ ଯୂଥପତିଗଣେ ।
ଆବର ଶୁଣିଲଟିକ ହୋ ସୁଗ୍ରୀବ ବୀରପଣ
ଲକ୍ଷ୍ମଣ ସାନୁଜରେ ଶୁଣିଲୁଟିକ ପୁଣ ।
ସୁଗ୍ରୀବକୁ ରୁହିଁଣ ବୋଲନ୍ତି ମିତଶୁଣ
ଥାଟ ସଜ ହୁଅନ୍ତୁ ଦିଆଅ ଘୋଷଣ ।
ଏତେ ବୋଲି ରାମ ଉଠିଲେ ଆସ୍ଥାନୁ
ବାମଭୁଜେ ଅଛି ଅଗସ୍ତି ଦେଲା ଧନୁ ।
ପର୍ଶୁରାମ କୋଦଣ୍ଡେ ଶ୍ରୀରାମ ଗୁଣଦେଲେ
ପଇତା କରି ତାହା ଅଙ୍ଗେ ଲଗିହେଲେ ।
ଦୁଇ କନ୍ଧରେ ଯେ ଅକ୍ଷୟ ତୋଣ ଭିଡ଼ି
ଦୋଷଡ଼ା କଲେ ପୁଣି ସୀତାଙ୍କ ପାଟଶାଢ଼ୀ ।
ଅତି ସୁବେଶରେ ବାନ୍ଧି ରୁଣ୍ଡି ଜଟା
ଉପରେ ବାନ୍ଧିଲେ ଯାଇ ଫୁଲ ଗୋଟାଗୋଟା
କଣ୍ଠରେ ଶୋହଇ ତୁଳସୀ କାଠମାଳା
ମାଳ ଉପ୍ପଳ ଜାଣି ଶୋହେ ବେନ ଡୋଳା ।
ଆଭରଣ କେଶରୀ ବଉଳ ପୁଷ୍ପ ମାଳ
ତିନସରି ହୋଇଣ ଲମ୍ବେ ବକ୍ଷସ୍ଥଳ ।
ତହିଁପରେ ଶ୍ୱେତପୁଷ୍ପ ମାଳେକ ଯେ ଲାଇ
ବୈକୁଣ୍ଠେ ବିଜୟ କି ଲକ୍ଷ୍ମୀଦେବୀର ସାଇଁ ।
ସୀତାର ମଣିଗୋଟି ହୃଦରେ ପ୍ରକାଶେ
ନାରାୟଣ କଣ୍ଠରେ କୌସ୍ତୁଭ ମଣି କସେ ।
କର୍ଣ୍ଣରେ ତମ୍ବାର କୁଣ୍ଡଳ ଝଟକନ୍ତି
କର୍ପୂର ଗୁଣ୍ଡି ଯେ ଅଙ୍ଗରେ ଲେପନଛନ୍ତି ।
ସତାଇଶି ବରଷ ଏଗାର ମାସ ଅଟଇ ବୟସ
କୋଟିଏ କନ୍ଦର୍ପ କି ହୋଇଅଛି ଦୃଶ୍ୟ ।

## ଦ୍ୱିତୀୟ ଭାଗ

ବାହେଣ ବୀର ନେତ ଉଡ଼େ ଫରହର
ଅଙ୍ଗ ଡ଼ାବ ଖଣ୍ଡା ଅଛି ପାଖ ଯେ କଟିର ।
ଦକ୍ଷିଣ କରର ଯେ ମୂର୍ଦ୍ଧନା ଅଙ୍ଗୁଷ୍ଠି
ତହିଁରେ ଶ୍ରୀରାମ ଖଞ୍ଜି ମଣି ମୁଦ୍ର ଗୋଟି ।
ବାମକରେ ଶରକୁ ସେ ଘୁଟେଣ କରି ବାନ୍ଧି
କା ଦେବ ସଜ କି ଜଗତଜନ ସାଧି ।
କସ୍ତୁରୀ ରେଖ ପ୍ରାୟେ ଦାଢ଼ି ତାଙ୍କର ପୁଣ
ନୀଳମଣି କିରଣ କି ଦିଶେ ଛନ୍ନଛନ୍ନ ।

କପାଳରେ କସ୍ତୁରୀ ତିଳକ ସୁରୁଚିରା
କର୍ଣ୍ଣ କରିଣ ଅଣ୍ଟାରେ ଖୋସିଲେ ପଇତା ।
ସୂର୍ଯ୍ୟମଣ୍ଡଳ ଜାଣି କପୋଳ କସ୍ତୁରୀ ଚିତା
ଶାରଦର ମଣ୍ଡଳ ଯେ ଅସରଳା ସୂତା ।
ଗୋରଚନା ଚିତା ଯେ ଯତ୍ନେ ବନାଇଲେ
ଶତ୍ରୁକୁ ମାରିଣ ଉଭା ହୁଅସି ବୋଇଲେ ।
ସ୍ତୁପ ନାଗଜ କ ସେ ଦକ୍ଷିଣ କରେ ଧରି
ପାଦ ବଢାଇଲେ ସେ ପବନ ବେଗ କରି ।
ଲକ୍ଷ୍ମଣ ଯେ ଏହି ରୂପେ ହୋଇଣେ ସଜ
ଦମା ଦୁନ୍ଦୁଭି ଯେ ବାଜେ ପଖାଉଜ ।
ଟମକ ନିଶାଣ ଯେ ଶବଦ ଗର୍ଜ୍ଜୁ ଟାଣ
ଶଙ୍ଖ ମହୁରୀ ଯେ ତହିଁ ବାଜେ ଅପ୍ରମାଣ ।
ସୁଗ୍ରୀବର ରାଜା ହେ ବେଗେ ସଜ ହୋଏ
ହନୁମନ୍ତ ବିଭୀଷଣ ସଙ୍ଗରେ ଗୋଡ଼ାଏ ।
ସୁଷେଣ ତାରାକ୍ଷ ଗବୟ ନଳ ନୀଳ
କୁମୁଦ ଯେ ଧୂମାକ୍ଷ ବସନ୍ତ ପନଶିଲ ।
ଜାଳମ୍ବ ଚନ୍ଦନ ଯେ କାଳଞ୍ଜନ ବୀର
ଶତବଳ ହନୁର ପବନ ପିଅର ।
ସାରାସ ପରାସ ଯେ ମହେନ୍ଦ୍ର ଗବାକ୍ଷ
କାଳମୁଖ ଦଧିମୁଖ ଆବର ପନସ ।
ଜମ୍ଭେକ ଯେ ଶତବାଳି ଗନ୍ଧମାଦନ
ଦୃଢନ ସମ୍ପାତି ଯେ ଆବର ଶୁଚଶୋଦନ ।
ରମଣ ଯେ ଶରଭେଶ୍ଚ ଶଙ୍ଖ ସେନାପତି
ଦେଖିଣ ଯେ ରଘୁନାଥ ମନେ ବିସ୍ମରନ୍ତି ।
ଜାଣିବା ସଂଗ୍ରାମ ଭୂମିରେ ଆଜ କଥା
ବହୁ କାଳର ଖଣ୍ଡୀ ଅଟେ ଦଶମଥା ।
ସମସ୍ତ ସଇନ ସଜ ହୋଇଣ ଅଇଲେ
ଶ୍ରୀରାମଙ୍କୁ ଦେଖିଣ ମଥାରେ ହସ୍ତଦେଲେ ।
ଶ୍ରୀରାମ ଆଜ୍ଞାଦେଲେ ପର୍ବତେ ଦଣ୍ଡେ ରହ
ଆମ୍ଭର ଆଜ୍ଞା ପାଇଲେ ତଳକୁ ଓହ୍ଲାଅ ।
ଆସିବ ଆଜ ଯେବେ ଲଙ୍କାର ଅଧିପତି
ବଣ୍ଟିରଣ ଯୁଝିବାର ମିଳଇ ସୁଗତି ।
ଏତେ ଜଣ ଶ୍ରୀରାମ ଯେ ଖଣ୍ଡେ ଦୂର ଗଲେ
ପର୍ବତ ଉଠି ସ୍ଥାନରେ ଯାଇଣ ରହିଲେ ।
ସେ ନ୍ୟ ନିରନ୍ତରେ ଅଛନ୍ତି ଚଉକତ
ହରମର୍ଷଙ୍କ ପ୍ରାୟେ ହସନ୍ତି ରଘୁପତି ।

ଦକ୍ଷିଣ ଦିଗକୁ ସେ ମୁଖ କରି ଗୃହେଁ
ଦିଶୁଛି ଲଙ୍କା କଟକ ସେତୁ ଯେ ରତ୍ନମୟେ ।
ଚହ୍ଲି ଚରାଳ ଯେ ଉଡ଼ଇ ପରବର
ଏଥୁଅନନ୍ତରେ ତହୁଁ ଦଶାନନ ବୀର ।
ମଇଲାଣ ଜଗଣ୍ଡରେ ବସେ ବେଗେ ଯାଇ
ଅପ୍ରମିତ ବଳ ସେଯେ ଦେଖେ ଲଙ୍କସାଇଁ ।
ବସ୍ତୁ ସ୍ୱ ମନ କରିଣ ମନ କରେ ଶାନ୍ତ
ମରିବାକୁ ତାହାର ମନରେ ନାହିଁ ଭ୍ରାନ୍ତ ।
ସ୍ୱଭାବେ ଅସୁର ସେ ବିଶେଷେ ମହା ଦୁଷ୍ଟ
ଅପ୍ରମିତ ବଳ ଦେଖିଣ ମନରେ ବଡ଼ହୃଷ୍ଟ ।
ଇନ୍ଦ୍ରଜିତ କୁମର ଦର୍ଶନ ଯାଇ କଲା
ପାଏ ପଡ଼ ଶୋଇଣ ମଥାରେ ହସ୍ତ ଦେଲା ।
ଅପୂର୍ବ କାଛେଣି ସେଯେ ହୋଇଣ ଅଛି ବୀର
ମୁକୁଟ କୁଣ୍ଡଳ ଯେ ଶୋହଇ କର୍ଣ୍ଣ ମୂଳ ।
ଚାଟର କଷଟି ସେ ଯେ ଅଛୁ ପାଗ ବାନ୍ଧ
ମସ୍ତକକୁ ସୁନ୍ଦର ଦିଶେ ସୁବର୍ଣ୍ଣର ଧୋତି ।
କଣ୍ଠରେ ମୁକୁତା ଶୋହେ ସୁରସର ମାଳ
ନବରତ୍ନ ପଦକ ଶୋହେ ବକ୍ଷସ୍ଥଳ ।
ବଜ୍ର ଘୋଟାଣ ସେନା ଚିରାଳ ନାନାକମ
ଦର୍ପଣ ସ୍ୱମର ମଣ୍ଡିତ ଅନୁପମ ।
ହାତରେ ଶୋଭିତ ଯେ ଶୋହଇ ବଜ ଜାଲି
ମୁକୁତାର ମାଳ ଯେ କେଜାଣି ଗୋଟିମଣ୍ଣି ।
କଟିରେ କଟିମେଖଳା ନାନା ବର୍ଣ୍ଣେ ଶୋହେ
ତାହାଣେ ଯମ ଦାଡ ପାଗରେ ରତ୍ନମୟେ ।
ଅଇଲ ଧ୍ୱଂସନ ବାନା ଉଡେ ଫରହର
ବାମ ଚରଣେରେଶୋହେ ଅନର୍ଗଳତୋଡ଼ର
ଦକ୍ଷିଣ ଜାନୁରେ ଯେ ବୀରଗଣ ବାନ୍ଧ
ପୟରେ ଗୁଲନ୍ତେ ସେ ଯେ ହକଗଳ ବାଜ
ଇନ୍ଦ୍ରଗୋବିନ୍ଦ ପାଟ ମେ ପୁଷ୍ପରାଗ କାନ୍ତି
ସେପାଟ ପହୁଉଛୁ ବିଶିବାର ନାତି ।
ପୟରେ ନୂପୁର କଟୀରେ କଙ୍କିଣି
ହଡ଼ମୁଦ ବାହୁଟୀ ନାନା ଆଭରଣୀ ।
ମକର ଧ୍ୱଜ ପ୍ରାଏ ଦିଶଇ ସୁନ୍ଦର
ବେହୋଲାଯୁଦ୍ଧରେ ସେ ଜିଣିଲା ପୁରନ୍ଦର ।
ଏହିମତି ସଜହୋଇ ବାନର ବଳ ମାରି
ଦେଖିଣ ପରମ ତୋଷ ହେଲା ଦଶଗିରି ।

ନରାନ୍ତକ ଦେବାନ୍ତକ ଦୁଇଭାଇ ଆଏ
ତାହାଙ୍କୁ ଗୃହ୍ଣଣ ଯେ ସନ୍ତୋଷ ଲଙ୍କରାଏ ।
ମହୋଦର ମହାପାରୁଶ ବୀର ଦେଖି
ଅନେକ ଆନନ୍ଦ ଯେ ହୋଇଲା ବଂଶ ଆଖି
କୁମ୍ଭ ନକୁମ୍ଭ ଦେବଦତ୍ତ ତିନ ପୁଣି
ସିଂହ ତୁରଙ୍ଗ ଯେ ଅଇଲେ ଭାଇ ବେନି ।
କାକାକ୍ଷ ଯୁକ୍ତପାକ୍ଷ ଅଜଏ ଅମଏ
କଙ୍କଧଙ୍କ ଶାର୍ଦ୍ଦୋଳ ଧୁମାକ୍ଷ ସେ ଆଏ ।
ସୁନାସୀର ଯମ ଦାଢ଼ ଯମଘଣ୍ଟ ବୀର
କାଳଘଣ୍ଟ ମହିରାବଣ ବକାସୁର ।
ଏକପାଦେ ଆଏ ଯେ ହରିଗ୍ରୀବ ରାଜ
ଅଲେପି ସଲେପି ଯେ ନାଦ ମହାନାଦ ।
ଲୋହପାଦ କଳାପାଦ ଗୃହଣ ବିସ୍ତରଣ
ଏହାଙ୍କର ସଜଦେଖି ହରଷ ରାବଣ ।
ବୋଇଲା ଆଜ କୁମ୍ଭର ଜାଣିବାକ ବଳ
ମାରିବ ମୁଁ ରିକ୍ଷକପି ଦଶରଥ ବାଳ ।
ତେବେ ସେ ମହିମା ଯେ ରହିବ ତିନପୁର
ସ୍ୱର୍ଗରେ ବସିଲେ ଯେହ୍ନେ ଦେବତା ସଙ୍ଗର
ତାଙ୍କ ସଙ୍ଗେ ସମର କଲେ ଯେ ଦନ୍ତ ଖାଇ
ନୋହିଲେ ରିକ୍ଷକପି କେଣନ୍ତା କ ନାହିଁ ।
ଇନ୍ଦ୍ରଜିତ ଉତ୍ତର ନ ଦେଲା ତାହାଶୁଣି
ଲାଜରେ ମଥା ପୋତି ଉଭା କୁମର ମଣି ।
ଆବର ଯୋଦ୍ଧାମାନେ ଯେ କରନ୍ତି ପ୍ରତିଜ୍ଞା
କୁମ୍ଭ ଆଜ୍ଞାରେ ଦେବ ପାରୁ ସେ ଜିଣି ବ୍ରହ୍ମା
ଏ କେସ ବାନର ରିକ୍ଷକପି ଅଟେ ଘୋର
ହେ ଦେବ ଏ କଥାକୁ କହୁଛନ୍ତି ନ ଡରର ।
ସମର ଭୂମିରେ ଶୁଣି ଜାଣିବଟି ଆଜ
ଆଗହୁଁ କହିଲେ ଯେ ହୋଇବ କେସ କ ଯଂ
ଶୁଣିକରି ଲଙ୍କରାଏ ପରମ ତୋଷ ମତି
ସେନାପତିମାନଙ୍କୁ ସେ ହକାରିଲା କତି ।
ତୁମ୍ଭେ ପଞ୍ଚାଶ କୋଟି ମୁକୁଟ ବନ୍ଧା ଯୋଦ୍ଧା
ଏକେ ଏକେ ପୃଥ୍ୱୀ କରି ପାରନ୍ତି ସୋଧା ।
ଯୋଧାକେ ଦଶସସ୍ର ରଥୀ ଥିବ ଘେନି
ରଥୀକେ ଦଶଗଜ ସଙ୍ଗରେ ନେବ ପୁଣି ।
ଦଶ ମତ୍ତଗଜରେ ଶତେ ମାତଙ୍ଗ ଥିବ
ମାତଙ୍ଗରେ ପଞ୍ଚ ରାଉତ ରକ୍ଷିଥିବ ।

ରାଉତକେ ପଏକାର ସହସ୍ର ଥିବ ଜଗି
ରଣରେ ପିଠି ନ ଦେବ ନ ଆସିବ ଭାଗି ।
ମୁହିଁ ବଳେ କରିବ ଇନ୍ଦ୍ରଜିତକୁ ଘେନ
ବୃନ୍ଦେ ବୃନ୍ଦେ ହୋଇ କାଟୁଥିବ ଯେ ସଇନ
ଅଠର ଗଣ୍ଡା କୁମର ତେରଶତ ନାତି
ଜଣେ ଜଣେ ଘେନଥିବ ସସ୍ର ସସ୍ର ହସ୍ତୀ
କୋଟିଏକୋଟିଏ ସେଥିରେଥିବେ ଯେପଦାତି
ସହସ୍ର ସହସ୍ର ହୋଇଣ ଅଶ୍ୱ ଥିବେ ଜତି
ପଦ୍ମେ ପଦ୍ମେ ପଏକାର ଶରଣ ପଶିବେ
ଭିନ୍ନ ଭିନ୍ନ ହୋଇ ସେ ସମର କରିବେ ।
ଯେତେବେଳେ ସେ ଯତି ରିକ୍ଷକପି ଘେନି
ବିଭୀଷଣ ସହିତେ ଆସିବେ ଭାଇ ବେନି ।
ମଧ୍ୟରେ ପଶିଲେ ମାରିବ ପୁଡ଼ିଆଇ
ଯାହା ପାଖକୁ ଯିବ ମାରିବ ବେଢ଼ଦେଇ ।
ଗୋଳ ଯୁଦ୍ଧ କରିଣ ମାରି ତୁମ୍ଭେ ହାଥେ
କେ ପ୍ରାଣ ପାଇବ ପଡ଼ିଲେ ଆମ୍ଭ ମୁଖେ ।
ଏତେ କହିଣ ଉଠି ପିନ୍ଧେ ସେହୁ ଗନ୍ତା
ବଜ୍ର ଗୋଟି ଗନ୍ତା ଯେ ଲାଏ ବଳବନ୍ତା ।
ବିଂଶ ଭୂଜରେ ଧଇଲା କୋଡ଼ିଏକ ବାଣ
ଘେନିଣ ଝମଜମ କରେ ସେ ରାବଣ ।
ସୁରଙ୍ଗିଣୀ ପାଟ ଯେ ହୀରାର ଦର୍ପଣ
ମୁକୁତାର ମେଖଳା ଚନ୍ଦ୍ରର କିରଣ ।
ତାହାର ଉପରେ ଯେ ନବରତ୍ନ ଜାଲ
ବର୍ତ୍ତୁଳ ମୁକୁତା ଯେ ଶତେସରି ମାଳ ।
ହିବଧ ପଦକ ଯେ ଲମ୍ବଇ ବକ୍ଷସ୍ଥଳ
ବ୍ରହ୍ମାର ଅକ୍ଷତ ବୋଲି ଯେବଣ ମଣିମାଳ ।
ଲଙ୍କାପୋଡ଼ ଦିନ ଯେ ବିଶ୍ୱକର୍ମା ଆଣିଥିଲା
ରାବଣ ହସ୍ତରେ ସେ ଭେଟି କରିଦେଲା ।
ସେ ମୋହ ମଣି ଯେ ଭୂଷଣ ଲଙ୍କସାଇଁ
ଦେବ ଦାନବଙ୍କୁ ଯେ ଭୟ ତାର ନାହିଁ ।
ଅଲଙ୍ଗଲ ତୋଡର ବାନ୍ଧେ ଦୁଇ ପାଦେ
ଚରଣକୁ ଶୋଭକଣେ ନୂପୁରର ନାଦେ ।
କଟିରେ କଟି ମେଖଳା ଦକ୍ଷିଣେ ଯମଦାଢ଼
ନେତକୁ ଉଡାଇଲା ବଇରି ବିଭଣ୍ଡର ।
ଦଶଶିରରେ ଦଶ ମୁକୁଟ ମଣି ମସ୍ତେ
ଦଶବଦନରେ ତାମ୍ବୁଳ ଭୁଞ୍ଜେ ଲଙ୍କରାଏ ।

ଶ୍ରବଣର କୁଣ୍ଡଳ ଝଳକ ଜ୍ୟୋତି ଜାଣି
ଲଲାଟରେ ଝଟଝଟ ଲମ୍ବଇ ନାନା ମଣି ।
କେଶ ଖାଞ୍ଜୋଇଣ ବାନ୍ଧିଲା ଶିରେ ଗଣ୍ଠି
ଆନୁଆନ ପାଟପାଗ ବନ୍ଧିଲା ପୁଣି ଶୋଭି ।
ଫରହର ନିଃଶ୍ୱାସ ଯେ ବାୟୁ ପ୍ରାୟେ ଉଡ଼େ
ରହି ଭ୍ରୁକୁଟି ମାଳେକ ଶୋଭିବନ ଭଲେ ।
କପାଳରେ କସ୍ତୁରୀ ଶୋଭେ ତଳେ ତଳେ

ଗୋଉରଚନା ଛଟା

ନୟନର ତେଜ କବା ଜଳେ ଅପ୍ରମିତା ।
ଦାଢ଼ି ଫୁଲାଇଣ ସେ ଯେ ଖୋଜଇ ନିଃଶ୍ୱାସ
ପୁଷ୍ପକ ରଥରେ ଯାଇ ବଜେ ଦଶାଈଶ ।
ଲକ୍ଷେକ ଶଙ୍ଖ ଯେ ତର୍ହିଁ ସ୍ୱରେ ଘନ ଘନ
ଇନ୍ଦ୍ରଜିତ ଚଢ଼ିଲା ଯେ ଦେବଦଳନ ଯାନ ।
ଯେ ଯାହାର ଯାନ ଆରୋହି ପୁଣ ଯୋଏ
ସେନା ସେନାପତି ଯେ ଆଗୁଁସାର ହୁଏ ।
ନରାନ୍ତକ ଦେବାନ୍ତକ ହେଲେ ଆଗୁଆଣି
ପାଦଭରେ ଦଲ ଦଲ କମ୍ପଇ ମେଦିନୀ ।
ସୂର ଗିର ତମକଣ ବାଜିଲା ନିଶାଣ
ଢୋଲ ଦମା ଝମକ ଯେ ବାଜେ ଗରୁଡ଼ାଣ ।
ହସ୍ତୀଙ୍କର ଗର୍ଜନ ଘୋଡ଼ାଙ୍କ ହେ ସାରବ
ପଦାତିମାନଙ୍କର ମୁଖ ରବ ଶବ୍ଦ ।
ଫେର ଖଣ୍ଡା ଧନୁ ଧରି କରନ୍ତି ଟଙ୍କାର
ହସ୍ତୀଙ୍କର ଗର୍ଜନ ଯେ ଘୋଡାଙ୍କ ପାଗଡ଼ ।
ଚାଲନ୍ତି ଆଗ ବଢ଼ି ଯାଆନ୍ତି ପାଦଗତି
ଏକକୁ ଆରେକ ଯେ ଆଗ ସରି ଯାନ୍ତି ।
ଅସୁରଙ୍କର ସଇନ୍ୟ ପାରିବ କେହୁ କଳି
ଚିତ୍ରଗୁପ୍ତେ ନ ପାରିବେ କେବେ ଲେଖାକରି
ବଭୂତିରେ ଭୂଷଣ କେ ରଙ୍ଗମାଟି ମସ୍ତେ
ସର୍ବାଙ୍ଗେ ଚନ୍ଦନ ବୋଳି କେବଣ କରିଯାଏ
ଜାହାର ଶରୀରେ ହରିତାଳ ପୁଣି ଘଷି
ମଣିଶିଳ ଗୁଣ୍ଡିକ କେହୁ ହୁଏ ଲେପି ।
କେହୁ ଯେ ଶଙ୍ଖ ବର୍ଣ୍ଣ ବିକଟାଳ କାୟେ
କେହୁ ତଭୁଃସମ ଘେନ ରଣରଙ୍ଗେ ଧାଏଁ ।
କେହୁ ଲଡାପତ୍ର ଗୁଡ଼ାଇ ପୁଣ ଦେହେ
କେହୁ ଖ୍ଲିଯାଏ କେହୁ ପ୍ରଚଣ୍ଡରେ ଧାଏଁ ।

କେହୁ ବଜାଆଇ ଯେ ଯାଆନ୍ତି ତୂର୍ଯମାର
କେବଣ ଅସୁର ଯେ ଧାଏଁ କୋପ କରି ।
କେହୁ ଦାଢ଼ି ଧରିଣ ମୋଡ଼ଇ ପୁଣି ନଶ
ଦୁଇ ସ୍ୱର ମେଳ ହୋଇ ହୁଅନ୍ତି ହସ ହସ ।
କେହୁ ଚେ ହୁଳହୁଳି ଶାରଡାକ ଦ୍ୟନ୍ତି
କେହୁ ମାର ମାର ବୋଲି ଶବଦ କରନ୍ତି ।
କେହୁ ରଡ଼ି ଗୁଡ଼ିଣ କେ ଭୂମିରେ ଯାଇଗଡ଼େ
ଏକର ଉପରେ ଆରେକ ମାଡ଼ି ପଡେ ।
କାହାର ମାଲ କାଛେଣି ମାଳ ପଡ଼ି ଛନ୍ଦ
ପିଠି କତକ କାହାର ଲମ୍ବିଛି ଚୂଟବନ୍ଧ ।
କେହୁ ପାନ ଭୁଞ୍ଜେ କେହୁପୋଡ଼ା ମାଂସଖାଇ
କଏ ସେ ଘୁମୁ ଘୁମୁ ଘୁମୁରି ବଜାଇ ।
କେ କେଶ ଲମ୍ବାଇଣ ଲେଉଟାଏ ଆଖି
ସଙ୍ଗରୁ ଲୋକେ ପଳାନ୍ତି ତାହାର ରୂପଦେଖି
ବସିବା ଠାବରୁ କେ ନୃତ୍ୟ କରେ ଯାଇ
କେହୁ ଭଣ୍ଡ ଭବଷ୍ଟ କରଣ ଗୀତ ଗାଇ ।
କେହୁ ଦାନ୍ତ ଚିପିଣ କେହୁ କାଢ଼େ ଜଭ
ଉଡ଼ା ମାରିଣ କେହୁ ଯେ ପାଲଟି ରହିବ ।
କେହୁ ମାଲ କାଛରେ ଆସେ ଠଣା ଘେନ
କେହୁ ଗର୍ଜନ କରେ ସିଂହ ନାଦେ ପୁଣି ।
ଧନୁଶର ଖଡ଼ଗ ଅଛଇ ଜାହା କରେ
କେହୁ ଧରି ଅଛନ୍ତି ଦୁଃଖଦ ମୁଦ୍‌ଗରେ ।
କେହୁ ଭୁଷଣ୍ଡି କେହୁ ପରିଘ ଘେନ ଧାଏଁ
ଖଣ୍ଡା ଶାବେଳ କେହୁ ଯେ ଝମକାଇ ଯାଏ ।
କେହୁ ବଜ୍ର ବାଣ ଯେ ହାବେଳ ସଜକରି
ଛୁଟିକଣି ଧରି କେହୁ ଧାମେ ଆଗସରି ।
କେହୁ ରଣ ସ୍ୱୃପରୁ ଧରି ଘେନ ଯାନ୍ତି
କେହୁ ଲେନ୍ତ ପଥର ଧରିଣ ଧାମନ୍ତି ।
ଓଟର ପିଠିରେ ନିଶାଣ କେ କରେ ଗର୍ଜନ
ବିବିଧ ଛନ୍ଦରେ ଯେ ବାଜେ ବାଦ୍ୟମାନ ।
ଅଠର ଅକ୍ଷଉଣି ଯେ ବାଜେଣିଆ ଥାଟ
କେମନ୍ତେ ସ୍ୱର୍ଗକୁ ସେ ଜିଣିବେ ଦର୍ପିଷ୍ଟ ।
ପବନ ମେଘ ଯେମନ୍ତେ ଗଗନରେ ପୁରେ
ଅସୁରେ ଚଳନ୍ତେ ବସୁନ୍ଧରା କମ୍ପେ ଧୀରେ ।

ଉତ୍ତର ଦ୍ୱାରପାଳ ଦ୍ୱାର ଦେଉଡ଼ ଦେଲା
ସହୁଁ ସେ ନୃପତିର ପ୍ରମାଣ ପାଇଲା ।
ସେହି ଦ୍ୱାରରେ ଥାଟ ହୋଇଲେ ବାହାର
ସୁବଳସ୍ଥାରେ ଥାଇ ଦେଖିଲେ ରଘୁବୀର ।
ଅପ୍ରମିତ ସୈନ୍ୟ ଯେ ଆସେ ପୁଣ ମାଡି
ସ୍ୱର୍ଗପୁର ଢାଳେ ଯେସନେକ ଧାଡ଼ି ।
ତହୁଁ ଶତ ଗୁଣରେ ବଳଛନ୍ତି ଘୋଟି
ମୁଖରବ ଶବଦ ପୁରେ ନବ ସୃଷ୍ଟି ।
ଅତ ବାଳ ଅତ ବୃଦ୍ଧାଏ ନ ଆଇଲେ
ମାଇପେ ପିଲା ବୁଢା ଏମାନେ ଯେ ରହିଲେ
ତୁରଆ ଜୁରଆ ଯେ ଦେଖିଣ ଧାମନ୍ତ
ପଦାତକ ଭିତରେ ଗଉଡେ ଝଲକନ୍ତ ।
ଝୀକ ଝୀକ ହୋଇଣ ଦଶେ ଅସୁଆର
ରଙ୍ଗ ଲୁଗାମାନ ଯେ ଦଶଇ ଅପାର ।
ପଗ୍ସ ପାଗମାନ ଯେ ବସନ୍ତ ବର୍ଣ୍ଣ ଦଶି
କେହୁ ସୂର୍ଯ୍ୟ ବର୍ଣ୍ଣ କେ ବଭୂତ ଅଙ୍ଗେ ଘର୍ଷି
ବାଗ ଦଉଡ଼ ଧରି କେ ଦେଖାଏ ଅଶ୍ୱ ଘାଟ
ଅଶ୍ୱମାନେ ଧାଇଁଲେ ନ ପାନ୍ତି କେହୁ ବାଟ ।
କେ ଖର ପୂରିଇଣ କରେ ମହାତମ
କୋନ୍ତ ଧରିଣ କେହୁ ଦଶେ ମହାଯମ ।
କେବଣ ଅଶ୍ୱ ଯେ ମଣ୍ଡି ଅଛି ପାଟ ନେତ
ଯାଅ ଯା ବୋଲନ୍ତି ସେ ନ ଦଶଇ ପଥ ।
ଦେଖନ୍ତି ଗ୍ରାମର ଯେ ହୋଇଣ ଉହାଡ଼
କେବଣ ଅଶ୍ୱମାନେ ଯାଉଛନ୍ତି ଉଡ଼ ।
ଯା ଦେବ ତୋଳଣ ସେ ତିନ ପାଦରେ ଯାନ୍ତି
କାହାକୁ ପାଇ କେହୁ ହୁଲହୁଲ ଦ୍ୟନ୍ତି ।
ମାର ମାର ବୋଲଣ ସମରେ ଯାଇ ପଶି
କେହୁ ଲଞ୍ଚ ଟେକନ୍ତି ଯେ ଦୁଇଗୋଡ଼ ଟେକି
ଅଶ୍ୱଙ୍କୁ କେହି ଜଗି ନ ପାରନ୍ତି ଯଥା
ଯୋଡ଼ିକ ଦେଖିଣ କେହୁ ଟେକି ଧାଏଁ ମଥା ।
ବଜ୍ରବାଣ ପଡ଼ନ୍ତେ କେହୁ ଟେକେ କାନ
ପଛକୁ ନାଚ କେହୁ ମାରନ୍ତି ଘନ ଘନ ।
ଲଞ୍ଚ ପିଟିଣ କେହୁ ଯେ ପଳାନ୍ତି ମାହୁନ୍ତ
କେହୁ ଝଙ୍କାଇଣ ଅଣ୍ଟା ବସନ୍ତି ଭୂଇଁତ ।
କେହୁ ଉଠି ପଳାନ୍ତି ପାଗଡ଼ ସୁସ୍ତ କୋହୁ
ପୃଥ୍ୱୀ ଦଲ ଦଲ ହୁଏ କେବଣ ଗଜ ଧାହୁଁ ।

ବାହାଇ ଘାଗୁଡ଼ି ଯେ ବାଜେ ରୁଣ ଝୁଣ
ଓହଳା ଘଣ୍ଟି ଯେ ବାଜେ ଟଣ ଟଣ ।
ପାଟ ଦଉଡ଼ି ବରଳ କାହାର କଣ୍ଠମାଳ
ବେଲଶି ପାଟ କାହାର ଶୋଭା ବକ୍ଷସ୍ଥଳ ।
ସୁବର୍ଣ୍ଣର ଶିଙ୍କୁଳ ହେମ କେଉଁ ବସା
କେବଣ ମାହୁନ୍ତେ ହସ୍ତୀ ଧରିଣ ପ୍ରଶଂସା ।
କେହୁ ମଥା ଉଜାଗର କପୋଳାର ଭୂଲ
ପଚ୍ଛଭାଗ ଗୋଟାକାର ଅଟଇ ଅମୂଲ୍ୟ ।
କାହାର କନ୍ଧରେ ବସିଲେ ସୁଖ ପାଇ
କେହୁ ଚାଲିବାରେ ମଥା ଫୁଲ ନ ଚଳଇ ।
ଖଳ ଖଳ ମୂତ ଯେ ଗଳଇ କାହାର
କେଉଁଠାରେ ପାଣିଖାଲ ସୁଝଙ୍କୁ ବାହାର ।
କାହାର କପୋଳରେ ଫୁଲ ଛୁଞ୍ଚନ୍ତି
କାହାର ଚଢାରେ କସ୍ତୁରୀ ଚିତା ଘନ୍ତି ।
ଅମର ସାଧିଣ କେ ଅଶ୍ୱ ଭାଗ ଭୁବା
ବାଲକୁବା ମାନ ଚାଲିବାରେ ନୂଆ ।
କେହୁ ପାଣ୍ଡୁର ଦଶନ୍ତି କେ ଦଶନ୍ତି କଳା
ଶ୍ୱେତ ଚାମରମାନ ଲମ୍ବେ କାହାର ଗଳା ।
କେହୁ ପ୍ରଶଂସେ ଅନେକ ବଳଙ୍କୁ ଅଳାଇଁ
ବନ୍ଧି ଯେସ୍ନେ ଚାଲନ୍ତି ଅତି ବ୍ୟଗ୍ର ଧାଇଁ ।
କେବଣ ମାହୁନ୍ତ ଚଉକରେ ବସି
ଗଜଦନ୍ତ ଧରି କେହୁ ହସ୍ତୀ କନ୍ଧେ ବସି ।
କେହୁ କମାଣ୍ଡଣ କେହୁ ଆଡ଼େଣି ସାଙ୍ଗ ଧରି
ଶାବେଳ ଲର୍କୀଆ କେ ଧରି ଆଗସରି ।
ପୁଣିହିଁ ଦଶିଲେ ଯେ ଅସୁଆର ଗଲେ
ସଭିଏ ଡ଼ାକ ପାଡ଼ନ୍ତି ମାର ମାର ବୋଲେ ।
ଘୋଡ଼ାଏ ଆଗ କାଖର ଗଉଡେ ଆଗସେହ୍ନା
କ ଜାଣି ପଟାନ୍ତର ଚନ୍ଦ୍ରର ଯୋଜନା ।
ନଟଘୋଡ ସଜମାନ ଦେଖିଲେ କରିବତ
ମାହୁନ୍ତେ ବସିଛନ୍ତି କନ୍ଧର ଉପର ।
ଅଭେଦ କବଚ ବଜ୍ର ସେହ୍ନା ଯେ ଟୋପର
ଗଜଦନ୍ତ ଆୟୁଧ ଯେ ବହୁଧ ପ୍ରକାର ।
ସୁବର୍ଣ୍ଣର ପାଟିଆ କା ମଥାରେ ଶୋଭିତ
ଗୁ ରୁଜ ଧରି ଅଛନ୍ତି କେବଣ ମାହୁନ୍ତ ।
ନ ସନ୍ତକ ଦେବାଙ୍ଗକର ଦଶି ପୁଣି ରଥ
ଆଗୁଆଣି ଦଣ୍ଡରେ ଛନ୍ତି କେବ ଭ୍ରାତ ।

ଗଣିତା ଆଗେ ଅଛି ସଙ୍କୁଳ ସହସ୍ର ରଥ
ତିନ କୋଟି ବୃନ୍ଦ ଯେ ଅଛି ମଏ ମତ୍ତ ।
କାକାକ୍ଷ ଯୁକ୍ତପାକ୍ଷ ଲୋହିତାକ୍ଷ ବୀର
ଏହାଙ୍କ ମୂଳେ ପାଞ୍ଚଶତ ଅସୁଆର ।
ସଙ୍ଗରେ ଅଙ୍ଗବଳ ବହୁତ ସଇନ
ବହୁତ ସମ୍ଭବରେ ଆସନ୍ତି ଥାଟ ସେନ ।
ପୁଣି ମହାରାବଣ ଦୁରନ୍ତ ଦିଶିଲା
ତିନଶତ ବୃନ୍ଦ ସୈନ୍ୟ ତାର ତୁଳେ ଭଲ ।
ମଧ୍ୟ ଦଣ୍ଡରେ ଯେ ଦିଶେ ଲଙ୍କପତି
ଶିର ଉପରେ ଯେ ଉଡ଼େ ସାରଜଣୀ ।
ପୁଷ୍ପକ ବିମାନ ଯେ ଚଳେ ଧୀର ଧୀର
ଦଶ ଧନୁ ଧରି ଯେ ଉଗ୍ର ଦଶଶିର ।
ଦଶଭୁଜେ ଦଶଶିର ଧରି ଅଛି ସେନ
ସଙ୍ଗତରେ ଅଙ୍ଗବଳ ଅନେକ ସଇନ ।
ଇନ୍ଦ୍ରଜିତ ଅମଏ ସମଏ ଏକ ପାଦ
ସିଂହ ଯେ ତୁରଙ୍ଗ ଅଙ୍କ ଧଙ୍କ ପ୍ରହ୍ଲାଦ ।
ଅଲେପି ମଲେପି ମୁଖା ଯେ ବିମୁଖ
ଶାର୍ଦ୍ଦୋଳ ତିନ ପାଦ ଦେବଦତ୍ତ ବଂଶମୁଖ
ଅଙ୍କ ଧଙ୍କ କାଳଘଣ୍ଟ ବାଳଘ୍ନୀ ପଞ୍ଚଶିର
ପୃଥ୍ୱୀ ଦେଖି ନ ସହଇ ଯେ ଏହାଙ୍କର ଭର
ସଭିଙ୍କେ ରଥବର ଚଳିଣ ଆଗେ ଛନ୍ତି
ପଦାତିକ ସୈନ୍ୟ ସେ କଳଣା ନ ଯାନ୍ତି ।
ଶୁକ ଶାରଣ ବେନି ମନ୍ତ୍ରୀ ଅଛନ୍ତି ରାଜାପାଶ
ତାଙ୍କ ସଙ୍ଗେ କଥା ଯେ ହୋଏ ଦଶାଈଶ ।
ରାଜାର ପଛରେ ଯେ ନବକୋଟି ହାତୀ
ପାଖରେ ଲାଗିଛନ୍ତି ଯେ ତେରଶତ ନାତି ।
ଦଶ ସହସ୍ର ସୈନ୍ୟବଳ ସହସ୍ରେ ଅଙ୍କୁଶ
ସମସ୍ତେ ମଣିମଏ ଦେବତା ଶତ୍ରୁଶ ।
ସମରାଜ ଥାଟ ଚଳାଶ ଦଶାନନ
ଢମକ ନିଶାଣ ଯେ ବାଜେ ବାଦ୍ୟମାନ ।
ପଞ୍ଚକୋଟି ତମ୍ବୁର ମେଦକ୍ଷେ ମର୍ଦ୍ଦଳ
ଶତେକ ଶଙ୍ଖ ଯେ ପଦ୍ମେକ ତରଳ ।
ପରାର୍ଦ୍ଧେକ କାହାଳ ଯେ ବାଜେ ଶଙ୍ଖ ଭେରୀ
ବାଦ୍ୟ ନାଦ ଶବଦରେ ବସୁନ୍ଧରା ପୂରି ।
ଉଦଣ୍ଡ ବିମଳ ଆଲମ୍ବ ପନ୍ତି ପନ୍ତି
ସୁବର୍ଣ୍ଣ ଉସାଣିଳା ପ୍ରାୟେକ ଦନ୍ତାସନ୍ତି ।

ଧୂଳି ଉଡ଼ିବାରେ ଯେ ନ ଦିଶେ ତପନ
ସ୍ୱର୍ଗରେ ବିସ୍ମରୁଛନ୍ତି ବସି ଦେବଗଣ ।
ଏହି ସେ ଲଙ୍କପତି ଜଗତେ ବଳଆର
ଏହାର ମହିମାକୁ ତଦନ୍ତ ନ କର ।
ଶ୍ରୀରାମ ମନ ପୁଣ ଯେ ଭାଜନ୍ତି ଏହା ଦେଖି
ଋକ୍ଷକପି ପଳାବନ୍ତି ସମର ଉପେକ୍ଷି ।
ନ ପୁଣ ରଘୁନାଥ ନ ପାରନ୍ତି ଜିଣି
ସ୍ୱର୍ଗେ ଦେବତାଙ୍କର ଏସନ ଭାଳେଣି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତି
ସହୁଁ ଦୈତ୍ୟବଳଙ୍କୁ ଯେ ଦେଖିଲେ ରଘୁପତି
ସୁବଳ ପର୍ବତେ ଥାଇ ଦେଖନ୍ତି ରଘୁନାଥ
ଶ୍ରୀରାମ ବୋଲନ୍ତି ଶୁଣ ହେ ବାଳିସୁତ ।
ଆପଣେ ଲଙ୍କପତି ପଶିଲା ଆସି ରଣେ
ଆମ୍ଭେ ଏଥିରେ ଥିବା କେବଣ କାରଣେ ।
ପର୍ବତରୁ ଓହ୍ଲାଇଯାନ୍ତୁ ଯେ ବେଗେ ଥାଟ
ଅସୁରଙ୍କ ସଙ୍ଗରେ ହୋନ୍ତୁ ପୁଣି ଭେଟ ।
ମଲ୍ଲ ମହାମଲ୍ଲ ବୀରମାନେ ଯାନ୍ତୁ
ମଧ୍ୟମ ସ୍ଥାନକୁ ଦୈତ୍ୟେ କେବେ ନ ଆସନ୍ତୁ
ସେନାପତିମାନେ ଯେ ସଭିଏ ତୁମ୍ଭେ ଯାଅ
ସୈନ୍ୟକୁ ପିଠି ଦେଇ ତୁମ୍ଭେ ଯୁଝୁଥାଅ ।
ଭୟ କରିଣ ତୁମ୍ଭେ ପଳାଇ ନ ଆସ
ପାରନ୍ତୁ ନ ପାରନ୍ତୁ ଦୈତ୍ୟଙ୍କ ସାହସ ।
ଅନେକ ମାୟା ସେ ଜାଣନ୍ତି କୂଟ ଛନ୍ଦ
କୁମନ୍ତ୍ରରେ ଜଗତ ସାଧେ ଦଶକନ୍ଧ ।
ଅଙ୍ଗଛନ୍ଦରେ ଯୁଦ୍ଧ କରିବା ବୋଲି କୋପେ
ସ୍ଥମୁରେ ମିଳି ସଂଗ୍ରାମ କରିବ କାହା ବାପେ
ଆମ୍ଭେ ଏବେ ଏଠାରେ ଥିବା କାହିଁପାଇଁ
ଏତେ ବେଳରେ ସୁସ୍ଥ ଆମ୍ଭର ପୁଣ କାହିଁ ।
ଋକ୍ଷକପିମାନେ କି ଜାଣନ୍ତି ଯୁଦ୍ଧ ରୀତି
ବିଶେଷେ ଅସୁରଙ୍କୁ ସମସ୍ତେ କରେ ଭୀତି ।
ତହିଁକି ଅଗ୍ରଜ ଯେ ସଂଗ୍ରାମେ ଗୁଣ ହୋଏ
ମହାକୋପେ ଆପଣେ ଅଇଲା ଲଙ୍କରାୟେ ।
କହୋ ସୁଗ୍ରୀବର ଅଟଇ ଠିକ ଏହୁ
ରଣରେ ରଣରଙ୍କା ବୋଲାଏ ବଂଶବାହୁ ।
ଦେଖ ଏ ଦୈତ୍ୟବଳ ପ୍ରଳୟ ସିନ୍ଧୁ ଜାଣି
ପାତାଳ ଫରଫର ଲହରି ପ୍ରାୟେ ପୁଣି ।

ନାନାଶସ୍ତ୍ର ମାନେ ଯେ ଫରିଖଣ୍ଡା ଦିଶେ
ଶସ୍ତ୍ରଙ୍କର ଝଲକ କି ଚନ୍ଦ୍ରର ସାଦୃଶେ ।
ରଥକୁ ଦେଖ ବୋଇତ ସଙ୍ଗରେ ସମାନ
ନେତର ଶରାଳ ଯେ ଦିଶେ ଘନଘନ ।
ରଥୀ ମହାରଥୀ ଅଟନ୍ତି ତୁରଙ୍ଗ
ଓଟବଳ ଆଦି ସେ କୁମ୍ଭୀର ବିରଙ୍ଗ ।
ଶବଦ ଶୁଭେ ସିନ୍ଧୁ ଗର୍ଜିବାର ଜାଣି
ମୁଖରବ ଶବ୍ଦ କି ସିନ୍ଧୁ ଘୋଷ ପୁଣି ।
ଚଳିବାରେ ବେଗ ଯେ ପବନ ପ୍ରାଏ ଗତି
ବରୁଣ ଦେବତା ପ୍ରାୟେ ଦିଶେ ଲଙ୍କପତି ।
ପୁଷ୍ପକ ବିମାନ ଯେ ଚଳେ ବିତପନ
ନେତର ଶରାଳ ଯେ ଉଡନ୍ତି ଘନ ଘନ ।
ରତ୍ନର କଳସ ଯେ ସୁବର୍ଣ୍ଣ ପିଚୁଳ
ଚନ୍ଦ୍ରକାନ୍ତ ଲମ୍ବେ ଯେ ମୁକୁତା ମାଳ ମାଳ ।
ପାରିଜାତକ ପୁଷ୍ପ ଯେ ଦିଶେ ରତ୍ନବର
ଆବର ବିବିଧ ଯେ ବସନ୍ତ ଚାମର ।
ସେବଣ ବିମାନ ଯେ ଛଡ଼ ଋତୁ ସୀମା
ଯହିଁରେ ବସିଥିଲେ ନ ବାଧେ କ୍ଷୁଧା ତୃଷ୍ଣା ।
ସୁବର୍ଣ୍ଣର କଙ୍କଣ ବାଜେ କଣି କଣି
ଘାଗୁଡ଼ି ରୁଣଝୁଣ ସୁସ୍ୱରେ ଶୁଭେ ପୁଣି ।
ଲକ୍ଷେ ଶ୍ୱେତ ଚାମର ମଣ୍ଡି ଅଛି ପାଶେ
ସମୁଦ୍ର ଭିତରେ କି ଚନ୍ଦ୍ରଉଇଁ ଆସେ ।
ଦେବ ଦଳନ ଯାନରେ ଚଢି ଇନ୍ଦ୍ରଜିତ
ନାଗୁଡି ଶକ୍ତି ସେ ଧରି ଅଛି ତାର ହସ୍ତ ।
ଆବର ଯୋଦ୍ଧାମାନେ ଯେ ଅଛନ୍ତିପାଶେବଢ଼ି
ଦୁଷ୍ଟ ସୈନ୍ୟମାନେ ଯେ ପଡ଼ୁଛନ୍ତି ମାଡ଼ି ।
ମେଦିନୀ ଦଲ ଦଲ ନ ଦିଶଇ ଭୂଇଁ
ରାବଣକୁ ଚାହିଁଣ କହନ୍ତି ରଘୁସାଇଁ ।
ଏହି ଯେ ଦିଶୁଅଛି ପରା ହେ ଲଙ୍କପତି
ସାଧୁ ସାଧୁ ମହିମା ସ୍ୱାର ପୌଲସ୍ତିର ନାତି
ଏତେ ଭୋଗ ସମ୍ପଦ ଦେଲୁରେ କମ୍ପାପେଲ
ମୋହର ଘରଣୀକି ତୁ କମ୍ପା କଲୁ ଚୋର ।
ଆଜତ ଜାଣିବାରେ ଧର୍ମ ଯେବେ ସତ
ଏତେ କହି ପବଂକୁ ଓହ୍ଲାଇ ରଘୁନାଥ ।
ରାବଣକୁ ଦେଖିଣ ଶ୍ରୀରାମ ଆଗସରି
ରକ୍ଷକପି ଧାମନ୍ତେ କମ୍ପେ ବସୁନ୍ଧରା ।

ବତିଶ ଷଉଣି ଯେ ବାଜଇ ନିଶାଣ
ସମୁଦ୍ର ଲହରୀ କି ସ୍ଥିର ହେଲା ପୁଣ ।
ସୁରଗିରି ଟମକେ ବଜାଏ ଲଙ୍କେଶ୍ୱର
ସ୍ୱର୍ଗରେ ଦେବତାଏ କମ୍ପିଲେ ଥରହର ।
ହୁଳହୁଳି ଦେଇ କପି ହୋଇଲେ ବାହାର
କେହୁ ଡ଼ିଏଁ କେହୁ ନାଚେକେହୁ ନୃତ୍ୟସାର
ପହିଲେ ରଙ୍ଗବର୍ଣ୍ଣ ଦ୍ୱିତୀୟେ ଶୁକଳ
ତୃତୀୟେ ନୀଳବର୍ଣ୍ଣ ଚତୁର୍ଥେ କଳା ସାର ।
ଚାରିବର୍ଣ୍ଣରେ ବାହାର ହେଲେ ଯେ ମର୍କଟ
ଦଶଯୁଣ ପାର୍ଶରେ ଚଳେ ଶ୍ରୀରାମର ଥାଟ ।
ଆଠ ଗଳବେଳରେ ଶ୍ରୀରାମଙ୍କୁ କହି
ମାରିବ ମାରୁଣି ଯେ ମାରିବାକୁ ଭୟେ ନାହିଁ
ମଲେତ ଯାଇବେ ତହିଁ ମୋର ଥାଟ
ଦେଖିଲ କାଲି ଯାଇଣ ଅଇଲେ କପିଶ୍ରେଷ୍ଠ ।
ଶୁଣିଣ ବାନରେ କଳକଳା ରାବ ଦେଲେ
ହୁଙ୍କାର ନାଦ ଦେଇଣ ଯୁଦ୍ଧକୁ ବାହାରିଲେ
ସମସ୍ତେ ତରୁଶିଳ ଯେ ଧରିଛନ୍ତି କରେ
କଳଙ୍କଳା ରାବ ଯେ ଏକୁ ଆରେକରେ ।
କେହୁ ପାଦେ ଧାମନ୍ତି ଯେ କେହୁ ଶୂନ୍ୟେଉଡ଼
ଆକାଶରେ ଖେପି କେହୁ ଦିଏ ସିଂହରଡ଼ ।
ଏକକୁ ପଛ କରିଣ ଆରେକ ଆଗେ ହୋନ୍ତି
କେହୁ ଚିରା ମାରିଣ ନଖରେ ହସ୍ତ ଦ୍ୟନ୍ତି ।
ବିବିଧ ଛନ୍ଦରେ ଯେ ବାଜେ ବାଜାମାନ
ପାଦର ରେଣୁରେ ଲୁଚିଲେ ଗଗନ ।
ଦଶଦିଗ ଅନ୍ଧାର ଯେ ପ୍ରଳୟ କାଳ ଜାଣି
ଅଣଚାଶ ବାୟୁ ପ୍ରାଏ ଶୁଭେ ଘୋର ଧ୍ୱନି ।
ଜଗତ ଦହି ଆସେ କି ଦେବତା ହୁତାଶନ
ବାସୁକି ଗୁଡ଼ଳକି ଧରଣୀକି ଜାଣ ।
ବ୍ରହ୍ମ ପ୍ରଳୟକି ହୁଏ ନବସୃଷ୍ଟି
ମହାର୍ଣ୍ଣବ ଜଳକି ସପତସିନ୍ଧୁ ଘୋଟି ।
କି ଅବା ଧରଣୀ ଯେ ପଡ଼େ ରସାତଳେ
ବାରହ ଆଦିତ୍ୟକି ଉଇଁଲେ ଉଦତଳେ ।
କି ଅବା ଷୋଳ ଯେ ଚନ୍ଦ୍ର ବିକାଶିଲା
ସଂସାର ଚଉପଟକି ଅନ୍ତର ହୋଇଲା ।
ଜଗତର ଜନ୍ତୁକି ଏକାବେଳେ ମଲେ
କି ଅବା ଆନ ସୃଷ୍ଟି ଯେ ବ୍ରହ୍ମା ରଚାଇଲେ

ଯେଣୁ ସେ ଏତେକ ଯେ ହେଲା ଉତପାତ
ଭାଙ୍ଗି ଣ ପଡ଼ିବ କ ମେରୁ ପର୍ବତ ।
ଦେବେ ପ୍ରଶଂସା କରନ୍ତି ସ୍ୱର୍ଗପୁରେ ଥାଇ
ପିତାମହ ବୋଇଲେ କହୁଁ ଭୟ ନାହିଁ ।
ଏହି ଯୁଗରେ ଏ ଅପୂର୍ବ ଯୁଦ୍ଧ ଗୋଟା
ଶ୍ରୀରାମର କୋପାନଳେ ଦହନହେବ ଗୋଟା ।
ତେବେ ଏ ଚଉଦ ଭୁବନ ସ୍ଥିର ହୋଇ
ନିଶ୍ଚିନ୍ତରେ ସ୍ୱର୍ଗରେ ଦେବତା ଥିବେ ରହି ।
ରାବଣ ସଙ୍ଗେ ଶ୍ରୀରାମ ପ୍ରଥମେ ଯୁଦ୍ଧ କଲେ
କଳ୍ପତରେ ଶ୍ରୀରାମ ତାହାକୁ ଜିଣିଲେ ।
ସଦାଶିବ କହନ୍ତି ହେ ପାର୍ବତୀ ଶୁଣନ୍ତି
ଶ୍ରୀରାମ ରାବଣକୁ ଯେମନ୍ତେ ଜିଣନ୍ତି ।
ବାଲ୍ମିକ ମୁନି ଯେ ଏହା ଜାତକଲେ
ସରସ୍ୱତୀଙ୍କ ପ୍ରସନ୍ନ ଗ୍ରନ୍ଥ ପ୍ରସରିଲେ ।
ବ୍ରହ୍ମାର ବଚନରେ ପୂର୍ବର ହେତୁ ପାଇ
ସାମବେଦରୁ ଏହା କାଢ଼ିଲେ ଉମାସାଇଁ ।
ପଞ୍ଚଶସହସ୍ର ସୈନ୍ୟ ସହିତ ହନ ଯୁଦ୍ଧ
ସୁଜ୍ଞଜନମାନେ ଏହା ଭଲକରି ବୁଝ ।
ବେନବଳ ତହୁଁ ହେଲେ ପୁଣି ଭେଟ
ବେନ ନନ୍ଦୀ ସଂଗ୍ରାମ ପ୍ରାଏ ଦଣ୍ଡେ ଥାଟ ।
ଯହିଁରେ ସେନାପତି ଶ୍ରୀରାମ ଦଶକନ୍ଧ
ଋକ୍ଷକପି ଦୈତ୍ୟଙ୍କର ଲାଗିଲା ବଡ ଦ୍ୱନ୍ଦ୍ୱ ।
କଳକଳା ରବଦେଇ ଉଠେ କପିଦଳ
ଧାଇଁଣ ପଡ଼ିଲେ ସେ ଦୈତ୍ୟ ଅର୍ଗଳେ ।
କେହୁ ମାରେ ଶସ୍ତ୍ର ଘେନ କେ ବୃକ୍ଷ ଧରିପିଟି
ପଛକୁ ନ ଘୁଞ୍ଚନ୍ତି ଯେ ଆଗକୁ ପୁଣି ଉଠି ।
ଶାଳଶିଳ ପଡିଲେ କେହୁ ଯାନ୍ତି ସହି
ଖଡ଼ଗ ଧରିଣ କେ ମାରେ ରେଷ କହି ।
ମୁଣ୍ଡେ ମୁଣ୍ଡ ମାରିଣ ହେଲେ ମିଶାମିଶି
ଦେହ ଜନ୍ତାଜନ୍ତି ହୋଇଣ ଠେସାଠେସି ।
ମାର ମାର ହାଣ ହାଣ ଶୁଭଇ ଚହଳ
ଢକ୍କଟାଳ ହୋଇଣ ବାଜଇ ମର୍ଦ୍ଦଳ ।
ବାଜିଲା ରଣଗୋଳ ଦୁଇଘଡ଼ି ଯାଏ
ଆକାଶରେ ଥାଇତାହା ଦେଖନ୍ତି ଦେବତାଏ
ରୁଧିରରେ ନଈ ଯେ ବହଇ ଚଉକତି
ବୁଡ଼ବୁଡ଼ ହୋଇଣ ମଡ଼ା ପଡ଼ୁଛନ୍ତି ।

କବନ୍ଧ କୋଟି କୋଟି ତହିଁରେ ନାଚନ୍ତି
ଟହ ଟହ ହୋଇଣ ସମସ୍ତେ ହସନ୍ତି ।
ତିନିତାଳ ଉତ୍ସର୍ଗରେ ବହେ ରକ୍ତ ନଈ
ଦେଖିକରି ଅସୁରେ ହୋଇଲେ ଯେ ରାଗି ।
ପଚ୍ଚଶ କୋଟି ମୁକୁଟ ବନ୍ଧା ଯୋଦ୍ଧା ଥିଲେ
ରଥଗଜ ଅଶ୍ୱ ଘେନି କରି ସେ ଧାଇଁଲେ ।
ଋକ୍ଷକପିଙ୍କ ମାଡ଼ି ପଡ଼ିଲେ ଥାଟ ଆସି
ଜଳ ବୃଷ୍ଟି ପ୍ରାୟେକ ନାରଜ ବରଷି ।
ସହିଲେ ବାନର ବିଷମ ଘାତ ପାଇ
ଶର ମହାଶର ଓଗାଳେ ତାକୁ ଯାଇ ।
ଏକେ ଏକେ କପି ଯେ ସଂଗ୍ରାମରେ ଜିତା
ସୈନ୍ୟଙ୍କୁ ସମ୍ଭାଳିଣ ଯୁଦ୍ଧେ ହେଲେ ମତ୍ତ ।
ସଂଗ୍ରାମକୁ ତାହାଙ୍କର ନାହିଁ ଟିକେ ଡର
ଆଧାର ଲୋଭରେ ଯେସନ୍ତେ ଧାଏଁ ମାଛରଙ୍କା
କରନ୍ତି ସଂଗ୍ରାମ ଯେ ନ ଘୁଞ୍ଚନ୍ତି ପାଏ
ଅସୁରଙ୍କ ମାରୁଣିକ ନ କରନ୍ତି ଭୟେ ।
ଅଗ୍ନିରେ ପଶିବାକୁ ସଞ୍ଚାର ଯେସନ୍ତେ ମନ
ତେସନେକ ପଟାନ୍ତର ଉତ୍ପଳ ସୈନ୍ୟ ।
ଧରାଧରି ମରାମରି କୋଡାକୋଡ଼ି ମୁଣ୍ଡ
ହାଆକୁ ହାଆ ଦେଇ ବାହାକୁ ବାହାଦଣ୍ଡ ।
ହସ୍ତକୁ ହସ୍ତ ଦେଇଣ ପେଟକୁ ନାଭ ମାରି
କେହୁ ଶିଳା ବୃକ୍ଷ ଯେ କେହୁ ଶସ୍ତ୍ର ଧରି ।
ବିଷମ ଘାତ ପାଇ ସେ ନୁହନ୍ତି ବିଷମ
କେହୁ ସେ ରୁଧିରଂ ଉଦ୍‌ଗାରେ ଅବଛିନ୍ନ ।
ରଥ ଗଜ ଅଶ୍ୱ ଯେ ପଦାତି ସଇନ
ଋକ୍ଷକପିଙ୍କର ସଙ୍ଗେ ହେଲେ ଅନ୍ୟଅନ ।
ମାହୁନ୍ତେ ମାରନ୍ତି ଗଜରେ ଶର ବିନ୍ଧ
ରଥିମାନଙ୍କର ଯୁଦ୍ଧ ଏସନେକ ବିଧି ।
ପାଦାନ୍ତିଙ୍କର ଯୁଦ୍ଧକୁ ତୁଳଇତ ନାହିଁ
ଅଙ୍ଗଛଳେ ସମର କରନ୍ତି ପରିଘାଇ ।
କୋଳାହଳ ଶବଦ ଶୁଭେ ଚଉପାଶ
ଗହ ଗହ ଗହଳ ଶୁଭଇ ଆକାଶ ।
ପୁଣି ଘଡ଼ିଏ ପର୍ଯ୍ୟନ୍ତ ଲାଗିଲା ସମର
ବଢିଲକ ନଈ ଯେ ବହିଲା ରୁଧିର ।
ଟହଟହ ହସନ୍ତି କବନ୍ଧ ମନରେ
କୋଟି କୋଟି କବନ୍ଧ ନାଚିଲେ ନଈରେ ।

କୁଢ଼ କୁଢ଼ ହୋଇଣ ଆଉକ ମଲେ ବଳ
ଭେଳା ବାନ୍ଧ ଯେସନେ ପାରହୋନ୍ତି ବଳ ।
ନବଢ଼ ଅଠାର ନଳ ବରଷଲ ମେଘ
ପ୍ରଥମ ସମରୁ ଦୁଇଦଳ ଯେ ଐଶ୍ବର୍ଯ୍ୟ ।
ରାବଣର ଦଣ୍ଡ ଯେ ଶ୍ରୀରାମର ସଇନ
ଦୁହେଁ ସମ କଳ୍ପ ପୁଣି କେହ୍ନି ନୋହେ ହାନ
ମରଣକୁ ଭୟ ନାହିଁ ସାହସ ଅପାର
ଦୁଇଦଳ ସଇନ ରଣ ମହା ଘୋର ।
ଅସୁରେ ଋଷ କପି ମିଶାମିଶି ହୋଇ
ରଣରଙ୍ଗ ସ୍ଥାନରେ ପଶି ମୃତ୍ୟୁ ପାଇ ।
ରଥମାନ ଭଜଣ ହେଲା ଖଣ୍ଡ ଖଣ୍ଡ
ଗିରିବର ସମାନେ ପଡ଼ ହସ୍ତୀଦଣ୍ଡ ।
ଅସୁରେ ମରିବାର ଗଣିତ କେ ପାରି
ଅନେକ ସଇନ ଯେ ହୋଇଲେ ସଂହାରି ।
ମଧ୍ୟମ ଦଣ୍ଡରେ ଯେ ଥିଲା ଲଙ୍କାପୁରେ
ମୃଗପଲ ଦେଖିଣ ସାର୍ଦ୍ଦୂଳ ଯେହ୍ନେ ଧାଏଁ
କ୍ଷୀରସାଗରରେ କି ମନ୍ଦର ପର୍ବତ
ତେସନେକ ସଞ୍ଚାଡ଼ ଦଣ୍ଡାଇ ଦଇତ ।
ପୁଷ୍ପକ ବିମାନ ଯେ ଚଳେ ଘନଘନ
ଛତ୍ରିଁରେ ଯୋଚିଅଛି ସହସ୍ରେକ ଯାନ ।
ଶୁଣିଣ ପାର୍ବତୀ ଯେ ଈଶ୍ବରେ ପଚାରି
ପୁଷ୍ପକ ଯାନ କେତେ ଦୀର୍ଘ ପ୍ରସ୍ତ ସରି ।
ରାବଣ କେତେ ମୋଟ କହ ହେ ଦେବ ହର
ପର୍ବତ ପ୍ରାୟେ ଦିଶେ କେମନ୍ତ ପ୍ରକାର ।
ଈଶ୍ବର ବୋଇଲେ ଶୁଣ ଗୋ ହେ ମହନ୍ତି
କୋଶେକ ମୋଟ ଅଟେ ପୌଲସ୍ତ୍ୟରନାଡ଼ି
ଅର୍ଦ୍ଧକୋଶ ଲେଖାଏଁ ଅଟେ ବାହା ତାର
କୋଶେ ଦୀର୍ଘ ଅଟଇ ଉଚରେ ଯେ ଶରୀର
ବକ୍ଷସ୍ଥଳ ଦୁଇଗୁଣ ଓସାର ବୁକୁଭାଗ
ଅର୍ଦ୍ଧକୋଶ ଓସାର ଅଟଇ ଜାନୁ ଜଙ୍ଘ ।
ମାୟାର ବିମାନ ସେ ଅଟେ ପୁଷ୍ପଯାନ
ଦେବତା ବସିଲେ ହୁଏ ଲକ୍ଷେକ ଯୋଜନ ।
ଦଇତେ ଚଢ଼ିଲେ ଦଶ ଯେ ଜନ ଓସାର
ନର ବାନର ହୋଏ ପାଞ୍ଚଗୁଣ ସାର ।
ଯୁଦ୍ଧଭୂମିରେ ସେ ପାଞ୍ଚଗୁଣ ହୋଇ ରହେ
ଏମନ୍ତ ଗୁଣ ପୁଣ ଅଟେ ଯାନ ବହେ ।

ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶ୍ବର
କଥାଏ ପଚାରିବି କହ ମୋ ଆଗର ।
ଅସୁରଙ୍କ ଶସ୍ତ୍ର ମନ୍ତ୍ର ବଳେ ଆତଯାତ
ଦଇତେ ମନ୍ତ୍ର ଶିଖି ହୋଇଲେ ସିଦ୍ଧାନ୍ତ ।
ଋଷକପିମାନେ ଯୁଦ୍ଧକୁ ଯାନ୍ତି ପୁଣ
ତରୁ ଶିଳା ଧରିଣ କରନ୍ତି ଗମନ ।
ଦୁଇହାତେ ଏକ ଏକ ତରୁଶିଳ ନ୍ୟନ୍ତି
ଥରେ ମାରିଲେ ଆଉଥରକୁ ଭୁଗ୍ନ ହୋନ୍ତି ।
କେମନ୍ତେ ସେମାନେ କରନ୍ତି ରଣ ଗୋଳ
ଏକଥା ମୋତେ ବୁଝାଇ କହହେ ଦିଗମ୍ବର
ଈଶ୍ବରେ ବୋଇଲେ ସେ କଥା ଦେବା କଷ୍ଟ
ଯେତେବେଳେ ଦେବତାଙ୍କୁ ରାବଣ ଦୁଃଖଦେଲ
ତେତେବେଳେ ଦେବତା ବହୁରମନେକଲେ
ରାବଣ ମାରିବାକୁ କୂଟ ସେ ବାନ୍ଧିଲେ ।
ସର୍ବାଙ୍ଗ ମନ୍ତ୍ରପୋଥି ଜମ୍ବେବ କରେ ଦେଲେ
ଔଷଧ ମନ୍ତ୍ରପୋଥି ସୁଷେଣ ସମର୍ପିଲେ ।
ଆପଣା ବଳକୁ ନେଇ ଦେଲେ ହନୁମନ୍ତ
ଯେଉଁଠାକୁ ରାମ ଭେଦ ଯିବ ସେ ତୁରିତ ।
ଲକ୍ଷ୍ମଣ ପଥ ଏକା ନିଶ୍ବାସକେ ଯିବ
ପବନ ଦେବତା ତାହାକୁ ଯେ ସାହାହେବ ।
ନଳର ହସ୍ତରେ ସମୁଦ୍ର ପୋତା ହେବ
ସୁଷେଣ ଔଷଧରେ ଘା ଶୁଖିଯିବ ।
ଯେତେକ ତରୁ ସୁମରଣା କରିବେ କପିଗଣ
ତତକ୍ଷଣେ ମିଳୁଥିବ ତାହାଙ୍କ ହସ୍ତର ।
ଏସନକ ଭିଆଣ ଦେବତା ପୂର୍ବେ କଲେ
ଆପେ ଋଷ ମର୍କଟ ହୋଇଣ ଜନ୍ମିଲେ ।
ଶୁଣିକରି ହିଙ୍ଗୁଳା ସନ୍ତୋଷ ହୋଇଲେ
ଯୁଦ୍ଧର କଥା ମୋତେ କହ ହେ ବୋଇଲେ
ଈଶ୍ବର ବୋଇଲେ ଶୁଣ ଆଗେ ଶାକମ୍ଭରୀ
ଯୁଦ୍ଧକୁ ଆସଇ ଯେ କୋପେ ଦଶଗିରି ।
ଦଶଭୁଜେ ଦଶ ଧନୁ ଧରି ଲଙ୍କପତି
ପ୍ରଚଣ୍ଡ ନାରାଚ ବିନ୍ଧଇ କୋପମୂର୍ତ୍ତି ।
ଇନ୍ଦ୍ରଜିତ ସଙ୍ଗତେ ଅଶୀପୁତ୍ର କୁମର
ତେରଶତ ନାତି ମିଳି କରନ୍ତି ସମର ।
କୁମ୍ଭ ନିକୁମ୍ଭ କୁମ୍ଭକର୍ଣ୍ଣର ଶତେ ବସ୍ର
ବଜ୍ରାସୁରଲେହସ୍ତିରଣବହିରଣ ନାଦମାହାନବ

ଅମିତେପ୍ସୁ ସମତେପ୍ସୁ କାଳଦଣ୍ଡ ପ୍ରହରାଜ
ଏହିପରି ସଜ ହେଲେ ଅନେକ ଦନୁଜ ।
ଦେବଦଣ୍ଡ ମେଘଦଣ୍ଡ ଭୁରଙ୍ଗ ଦଣ୍ଡମୁଳେ
ଶାର୍ଦ୍ଦୋଳ ନିଶିର ପଶିଲେ ରଣଗୋଳେ ।
ଅଲେପି ସଲେପି ବୀରବର ଦେବାନ୍ତେକ
କାଳ ବିକାଳ ମହିରାବଣ ଅନ୍ତେକ ।
ଏମାନେ ଯୁଦ୍ଧ କରନ୍ତି ଯେ ଯାହାର ଇଚ୍ଛା
ବିନ୍ଧନ୍ତି ନାରାଜ କରିଣ ମନବାଞ୍ଛା ।
ସଂହାରଣ କାଳରେ ଯେସନେ ମେଘବୃଷ୍ଟି
ଉଲ୍କାପାତ ଶବଦ ଶୁଭଇ ନବସୃଷ୍ଟି ।
ତେମନ୍ତ କରି ଦୈତ୍ୟେ ବିନ୍ଧୁଛନ୍ତି ଶରୀ
ଦଶବଂଶ ଏକାବେଳେ ଛେଦନ୍ତି ବାନର ।
ଆପଣେ ଦଶଗ୍ରୀବ ସାବଧାନ ହୋଇ
ଋଷି ବାନରଙ୍କୁ ସଂହାରେ ଲଙ୍କସାଇଁ ।
ଦଶବାଣ ତୋଣରୁ କାଢ଼େ ଦଶଗ୍ରୀବ
ବିନ୍ଧଇ ନାରାଜ ହୋଇଣ କୋପବେଗ ।
ଗୁଣରେ ବସାନ୍ତେ ସହସ୍ରେ ରୂପଧର
ହସ୍ତରୁ ଗଲେ ଶର ଲକ୍ଷେ ଅବତରି ।
ପଡ଼ିବାର ବେଳରେ ମଭୁ ତେପୁଣ ହୋଇ
ଏମନ୍ତ ପ୍ରକାରେ ଶର ମନ୍ତ୍ରରେ ଚଳଇ ।
ଏକା ନାରାଜକରେ ସହସ୍ରେ ଲକ୍ଷ ନାଶି
ନିଃଶ୍ୱାସକେ ବାଣ ଦୁଇ ବେଳ ପେଷି ।
ଏମନ୍ତ ଘଡ଼ିଏ ଯୁଦ୍ଧ କଲା ଦଶଗିରି
ଏହି ପ୍ରକାରେ ସୈନ୍ୟ ଇନ୍ଦ୍ରଜିତ ମାରି ।
ପଡ଼ିଲେ ରଣରଙ୍ଗେ ଋକ୍ଷକପିମାନେ
ଦୈତ୍ୟଙ୍କୁ ଭାଜନ ନୋହି ଶ୍ରୀରାମର ସୈନ୍ୟେ
ରକ୍ତ ନଦୀ ଯେ ବହେ ସପ୍ତଧାର
ପୁଞ୍ଜା ପୁଞ୍ଜା ହୋଇଣ ଭସୁଛନ୍ତି ମଡା ।
ରକ୍ତ ନଦୀ ବହି ସମୁଦ୍ରେ ହେଲେ ମେଳା
କୋଟି କୋଟି କବନ୍ଧ ତହିଁରେ କରି ଲୀଳା
ଦଶଯୁଣ ପର୍ଯ୍ୟନ୍ତେ ମଡ଼ା କୁଢ଼ କୁଢ଼
ବେଡ଼ୁବେଳ ଦୈତ୍ୟବଳ ହୋଇଲେ ପ୍ରବଳ
ଅକଳିତ ଋକ୍ଷକପି ପଡ଼ିଲେ ମୃତ୍ୟୁ ପାଇ
ଯହୁଁ କୋପେ ସଂଗ୍ରାମେ କରେ ଲଙ୍କସାଇଁ ।
ପଞ୍ଚାଶକୋଟି ମୁକୁଟ ବନ୍ଧା ଯୋଦ୍ଧାମାନ
ତାହାଙ୍କର ବାଣେ ହତ ଶ୍ରୀରାମଙ୍କ ସୈନ୍ୟ ।

ଅଶସ୍ତୁରି କୁମର ତେରଶତ ନାଶି
ରଘୁନାଥ ସୈନ୍ୟଙ୍କୁ ମାଇଲେ ବିକୋଶି ।
ରଣଭଗ୍ନ ହୋଇଲେ ଶ୍ରୀରାମର ସୈନ୍ୟ
କି ଜାଣି ସଂଗ୍ରାମେ ଜଳନ୍ତା ହୁତାଶନ ।
ଭରସା ପାଇଣ ଧାମନ୍ତି ଯେବା ରଣେ ।
ବେନଖଣ୍ଡ ହୋଇଣ ପଡନ୍ତି ତତକ୍ଷଣେ ।
ଦେଖିଣ ଅପସରିଲେ ବୀର ମହାବୀର
ଗୋଡାଇ ପିଠିକତକ ବିନ୍ଧୁଛନ୍ତି ଶର ।
କୋପେ ଡାକନ୍ତିଅନ୍ତରେ ବାନରେ ଯିବକାହିଁ
ତପସ୍ୱୀର ବୋଲକୁରେ ଆସିଣ ଅଛ ଧାଇଁ ।
ଖାଇବାର ମଦ ଏବେ ସୁଝିବା ନୁହଇ
ରଣଭୂମିରେ ଯିବରେ ପ୍ରାଣକୁ ହରାଇ ।
ଏବେ ନିସତ ହେଲେରେ ହେବପୁଣ କିସ
ପରର ବୋଲକୁରେ ପାଇଛ ବିଶ୍ୱାସ ।
ଏତେ କହି ଉଠି ଯେ ଗୁଡ଼ନ୍ତି ଘନଘନ
ଅସମ୍ଭାଳ ହୋଇଣ ପଳାନ୍ତି ଶ୍ରୀରାମର ସୈନ୍ୟ
ପଛକୁ ବୁହିଁଲେ ଯେ ମୁଖେ ପଡ଼େ କାଣ୍ଡ
ନ ବୁହିଁଲେ ଲେକର ପିଠି ଖଣ୍ଡ ଖଣ୍ଡ ।
ଅସମ୍ଭାଳ ହୋଇ ସେ ପଳାନ୍ତି ରଣଛାଡ଼ି
ଏକକୁ ଆରେକ ଆଗଙ୍ଗେ ଗଲେ ମାଡ଼ି ।
ଦେଖିଣ ସୁଗ୍ରୀବର ବୋଇଲ ଆରେ ରହ
କାହାର ଭୟରେ ପଳାଅ ମୋତେ କହ ।
କପି ବୋଲନ୍ତି ଦେବ ରାବଣ ଆସିଅଛି
ଅନେକ ସୈନ୍ୟ ମାଇଲା ସଂଗ୍ରାମରେ ନାଶି ।
ଦେବେ ନ ସହନ୍ତି ଯାର ରଣଘାତ
ଆବର ସଙ୍ଗେ ତାର ପୁତ୍ର ଇନ୍ଦ୍ରଜିତ ।
ସେନାପତିମାନଙ୍କ କେ କରିବ ଲେଖା
ଦୈତ୍ୟଙ୍କର ତେଜ ଯେ ପ୍ରଳୟ ଅଗ୍ନିଶିଖା
ସେ ନୟଣେ ଯାଆନ୍ତି ମାରନ୍ତି ହାତ ସୁଝେ
ସମସ୍ତେ ମରୁଛନ୍ତି ପଡ଼ିଲେ ତାଙ୍କ ମୁଖେ ।
ଦେଖି ଋକ୍ଷକପି ଯେ ଆସନ୍ତି ପୁଣ କ୍ଷେପି
ଏକାନାରାଜକେ ପଡନ୍ତି ଲକ୍ଷେ ଲକ୍ଷେ କପି ।
ତୁମ୍ଭେ ଯେ ବାହୁଡ଼ି ଶ୍ରୀରାମଙ୍କୁ କହ
ରାବଣ ଆଗେ ଦେବଇନ୍ଦ୍ର ଯେନୋହେ ରହ
ସୁଗ୍ରୀବର ବୋଇଲେ ହୋଇଲ କରେ ଡାଇ
ଏହି ସ୍ତୁତିକଥା କରେ ପ୍ରଭୁଙ୍କ ଆଗେ କହି ।

ଆସ ଆସ ବାବୁରେ ନ କର କିଛି ଭୟେ
ଏଠାରୁ ପଳାଇଲେ ଯିବ କେଉଁ ଯାଏ ।
ମଲେ ତ ଶ୍ରୀରାମ ଆଣିବେ ଜିଆଇ
ଦେଖିଲେ କାଲି ଯୁଦ୍ଧରେ ପଡ଼ିଥିଲେ ଯେହି
ରାଡରେ ଜୀଇ ଅଇଲେ ଦେଖିଲ ତ ସର୍ବ
ଏ କଥାକୁ ଶଙ୍କା ନ କର କପିବୃନ୍ଦ ।
ସଂଗ୍ରାମରେ ପଡ଼ିଲେ ବହୁ ପୁଣ୍ୟ ପାଇ
ଯେତେବେଳେ ଶରୀର ପ୍ରାଣ ଛାଡ଼ି ଯାଇ ।
ଅତିବଡ଼ କଦମ୍ବ ବୃକ୍ଷେକ ଉପାଡ଼ିଲା
ଆସ ଆସ ବେଗେ ବୋଲି ରଡ଼ିଏ ଛାଡ଼ିଲା ।
ସଙ୍ଗତରେ ନଳନୀଳ ଜାମ୍ବ କେଶରୀ
ଚନ୍ଦନ ଗବୟେ ଯେ ଗବାକ୍ଷ ଶରଭ ।
ଶତବଳି ରମଣ ପବନ ମହେନ୍ଦ୍ର
ଦଧିମୁଖ କାଳମୁଖ କଞ୍ଜନ ଦୁବିଦ ।
ସଂଗ୍ରାମକୁ ଧାଇଁଲେ ଯେ ତରୁଶିଳ ଧରି
ପାଦଭରେ ଟଳଟଳ କମ୍ପେ ବସୁନ୍ଧରା ।
ପାଳଟିଣ ବଳ ଯେ ଧାଇଁଲେ ରାଜାଭୁଲେ
ଉଗ୍ର ତେଜ ହେଲେ ତାଙ୍କର ରାଜା ବୋଲେ
ବୀର ମହାବୀର ଯେ ମଲ୍ଲ ମହାମଲ୍ଲ
ସଂଗ୍ରାମର ଭୂମିରେ ପଶିଲେ କପିଦଳ ।
ଘଟ ଫୁଟିଲେ ଯେହ୍ନେ ମେଦନୀ ଜଳ ବୋଟି
କି ଅବା ସଂସାର ହେଲା ଅନ୍ୟ ସୃଷ୍ଟି ।
ସୁଗ୍ରୀବର ଧାମନ୍ତେ ରାମଚନ୍ଦ୍ର ଜାଣି
ସୈନ୍ୟ ଧାମନ୍ତ ଦେଖି ଧାଇଁଲେ ରଘୁମଣି ।
ଲକ୍ଷ୍ମଣ ଅଙ୍ଗଦ ଜମ୍ବୁବ ବିଭୀଷଣ
ହନୁମନ୍ତ ଯେ ଗନ୍ଧମାଦନ ସୁଷେଣ ।
କାଳମୁଖ ସମ୍ପାତି ବସନ୍ତ ପାରିଜାତ
ଧୂମ୍ରାକ୍ଷ ସୁଶୋଭନ ଗବାକ୍ଷ ପବନ ତ ।
କୁମୁଦ କାମୋଦ ଯେ ସୁରସେନ ବୀର
ଗନ୍ଧର୍ବ ବଳମୁଖ କେଶରୀ ପିଅର ।
ସୁସୋଦନ ଶତବଳି ସାରସ ପାରସ
ବଦ୍ଧ ଶରସେତୁ ମଳୟ ବସନ୍ତ ।
ଗଗନା ବମନା କପିଳସେନ ସୁତ
ମଲ୍ଲ ମହାମଲ୍ଲ ଯେ ଚଳନ୍ତି ଅପ୍ରମିତ ।
ମାର ମାର ଶବଦ ବଦନ୍ତି ଉଚ୍ଚ ସ୍ୱରେ
ମହୀ ଟଳମଳ ହୋଏ ତାହାଙ୍କ ପାଦଭରେ ।

ଋଷଭକର୍ଣ୍ଣ ସହିନ କଳନା ନ ଯାଇ
ଏକାବେଳକେ କଅଦା ବଢ଼େ ବେନ ନଈ ।
ବାଜିଲା ରଣଗୋଳ ଓହଦଳ ଥାଟ
ମୁଖରବେ ପୂରିଲା ଅନ୍ତରୀକ୍ଷ ବାଟ ।
ଯହୁଁ ସେ ଦୁଇଦଳ ହେଲେ ଭେଟାଭେଟି
ଯେ ଯାହାର ଆୟୁଧ ଘେନି ପିଟାପିଟି ।
ଧାଇଁଣ କପିଦଳ ପଶିଲେ ଧସାଇ
ହସ୍ତୀଙ୍କର ଉପରେ ବସିଲେ ଡେଇଁ ଯାଇ ।
ଦଶଦଂଶ ହୋଇଣ ମାହୁନ୍ତ ବଳ ଧରି
ତାହାଙ୍କର ଶସ୍ତ୍ର ଯେ ତାହାଙ୍କୁ ପ୍ରହାରି ।
ଘୋଡାପରୁ ରାଉତଙ୍କୁ ତଳରେ ପକାଇ
ରଥର ଉପରେ କପିଜନ୍ତୁ ରଡ଼ିଦେଇ ।
ରଥୀମାନଙ୍କୁ ମାଇଲେ ହୋଇ ଗଡ଼ାଗଡ଼ି
ହସ୍ତରୁ ଶସ୍ତ୍ରମାନ ପକାଇ ଉଝୁଡ଼ି ।
ସାରଥିଙ୍କ ମାରନ୍ତି ତଳରେ କଚାଡ଼ି
ଅଶ୍ୱଙ୍କୁ ପେଢ଼ଦେଲେ ପିଟାଇ ଦଉଡ଼ି ।
ହୁଳହୁଳି ଦେଇଣ କରନ୍ତି ରଣରଙ୍ଗ
ରାମତାଳି ବଜାଇଣ ନାଚନ୍ତି କପିବୃନ୍ଦ ।
ଅସୁରଙ୍କର ମାରନ୍ତେ କପି ନୋହେ ଭଙ୍ଗ
ହରିବୋଲ ଶବଦ କରନ୍ତି ଯୁଦ୍ଧ ଯାଗ ।
ହସ୍ତୀଙ୍କର ଉପରେ ମାହୁନ୍ତ ନାହାନ୍ତି
ପଲ ପଲ ହୋଇଣ ହସ୍ତୀ ଧାଇଁଛନ୍ତି ।
ଘଣ୍ଟି ଘାଗୁଡ଼ିମାନ ହୋଇଛନ୍ତି ସଜ
କୁଦା କୁଦା ହୋଇଣ ବୁଲନ୍ତି ମତ୍ତଗଜ ।
ଅଶ୍ୱ ପଳାଇଲେ ଯେ ସଂଗ୍ରାମେ ବଣାହୋଇ
ଯହୁଁ ସେ ତାଙ୍କ ପିଠିରେ ରାଉତ ନ ଥାଇ
ରଥ ଖଣ୍ଡ ଖଣ୍ଡ ଯେ ଅଖ ଚକ ଦଣ୍ଡା
ଋକ୍ଷକପିମାନେ ଯେ ଧରନ୍ତି କୋଡ଼ ଖଣ୍ଡା ।
ବେଳକୁ ବେଳ ଅଧିକେ ରଣ ଗୋଳ ହୁଏ
ଏକକୁ ଆରେକ ଯେ ନ ଧୁଅନ୍ତି ଘାଏ ।
ଯହୁଁ ସେ ଅଗୋଚର ହୋଇଲା ସମର
କୋପରେ ଦଶବାଣ ଧଇଲା ଦଶଶିର ।
ସୁଗ୍ରୀବକୁ ଦେଖି ହାଣିଲା ତଡ଼ିତ
ଦୁରୁ ଦେଖି ସେ ଶର ଛେଦିଲେ ରଘୁପତି ।
ପୁନରପି ମିହଳ ରଣକେତୁ ବୀର
ଅଗ୍ନିକେତୁ ରଶ୍ମିକେତୁ ଚନ୍ଦ୍ର ମୁଷ୍ଟି କୁମର ।

ଏମାନେ ଶ୍ରୀରାମଙ୍କୁ ବେଢ଼ିଲେକ ଯାଇ
ମେଳ ହୋଇଣ ଶରମାନ ମାରନ୍ତି ଭୁହାଇ ।
ହରଧର ଭୁଜେ ଅଶ୍ୱିନ କରେ ରଣ
ଚନ୍ଦନ ବଜ୍ରମୁଷ୍ଟି ସମର ଗନ୍ତୁ ଠାଣ ।
ପ୍ରଚଣ୍ଡ ସୁଗ୍ରୀବକୁ ଉଗାଳିଲା ଯାଇ
ଲକ୍ଷ୍ମଣ ଭୁଜେ ଭେଟ ପଡ଼ିଲେ ଲଙ୍କସାଇଁ ।
ମିହଘନର ଭୁଜେ ରମଣର ଯୁଦ୍ଧ
ନାହିଁ ନାହିଁ ପଞ୍ଚାନ୍ତର ତ୍ରିଭୁବନ ମଧ୍ୟ ।
ନଳକୁ ଦେଖି ଯେ ତପନ ଉଗାଳିଲା
ନୀଳ ସେନାପତି ମହାନାଦ ଯୁଦ୍ଧକଲା ।
ଇନ୍ଦ୍ରଜିତ ଅଙ୍ଗଦର ହୋଇଲା ଯେ ଭେଟ
ଐରାବତ ଗଜ ଯେସନେ ମେରୁର ନିକଟ ।
ପରମାର୍ଥ ସଙ୍ଗରେ ସମ୍ପାତି ଯୁଦ୍ଧ କଲା
ଜମ୍ବୋମାଳି ପୁହକୁ ହନୁ ଉଗାଳିଲା ।
କୁମ୍ଭ ନିକୁମ୍ଭ ସଙ୍ଗେ ଶତବଳର ସମର
ନରାନ୍ତେକ ସଙ୍ଗରେ ଜାମ୍ବବ ମନ୍ତ୍ରୀବର ।
ତାରାକ୍ଷବୀର ଯେ ପ୍ରବର ସଙ୍ଗେ ଯୁଝି
ଏକର ଆରେକରେ ନ ପଳାନ୍ତେ ଭାଜି ।
ଛଡ଼ି ସେନାପତି ଯେ ଦେବାନ୍ତକ ଭୁଜେ
କେଶରୀ କାଳଘଣ୍ଟ ଉଗାଳିଲେ ବଳେ ।
ଅକମ୍ପନ ଦଧିମୁଖ ଯେ କରନ୍ତି ସମର
ବଜ୍ରମୁଷ୍ଟି କାଳଞ୍ଜନ ସମର ମହାଘୋର ।
ବସନ୍ତ ଜମ୍ବୁପାକ୍ଷ ଦୁହେଁ ମରାମରି
ଶତବାଳ କାଳାନ୍ତକ ସଙ୍ଗରେ ଯୁଦ୍ଧକରି ।
ଧୂମ୍ରାକ୍ଷ ରମଣର ସମର ମହାଘୋର
ମହୋଦର ସଙ୍ଗତରେ ଯୁଝେ ଶତବଳ ।
ପିଙ୍ଗାକ୍ଷ ରମଣରେ ହେଲେ ପିଟା ପିଟି
ମକରାକ୍ଷସର ସଙ୍ଗେ ହେଲେ ଭେଟାଭେଟି
କେ ଶିଳ ମାରନ୍ତି କେ ବୃକ୍ଷ ପହରନ୍ତି
କେ କୁନ୍ତ ଖାଣ୍ଡେଳ କେ ମୁଦ୍‌ଗର ପିଟନ୍ତି ।
କେ ଗଧା ଗୁ ରୁଦା କେ ମାରୁଛନ୍ତି ନାତ
ମୁଣ୍ଡେ ମୁଣ୍ଡ ମାରି କେ କରେ ଶସ୍ତ୍ରଘାତ ।
ହୁଆକୁ ହୁଆ ଯେ ବାହାକୁ ବାହା ପେଲି
ଶିର ହତାହ ଦୁହେଁ ହେଲେ ଠେଲାଠେଲି ।
କେ ତଳେ ପଡନ୍ତି କେ ଉପରେ ଛନ୍ତି ବସି
କେ ଜଣକୁ ବେଢ଼ିଲେ ତିନଜଣ ଆସି ।

କେହୁ ଶସ୍ତ୍ର ଯେ କେହୁ ପରଶୁ ଘେନି ମାରି
କେ ଲେନ୍ତି ପଥର ମାରନ୍ତି ସେଷଭର ।
କେ ବୃକ୍ଷ ପିଟନ୍ତି କେ ପଥର ଫୋପାଡ଼ଇ
କାହାକୁ ଧରନ୍ତେ କେ ଅଙ୍ଗ ଢାଳଦେଇ ।
କ୍ଷଣକେ ପାଞ୍ଚବାଣ ଦଶ ହଂଶମସ୍ତେ
ରାମ ରାବଣର ଘୋର ଯୁଦ୍ଧ ହୋଏ ।
ମକରାକ୍ଷସ ସଙ୍ଗରେ କୁମୁଦ ବୀର ବେଣି
ରଣରେ ପଡ଼ିଲେ ଏ ରଣ ଯୁଦ୍ଧ ଘେନି ।
ଦେଖିଣ ଦେବାନ୍ତକ ମାରେ ଗଡର ଶୂଳ
ଦୂରରୁ ନବାରେ ତାହା ସୁମିହାର ବାଳ ।
ମକରାକ୍ଷସକୁ ଯେ କୁମୁଦ ଚଳେ ମାଡ଼ି
ଛଟି ନ ପାରି ଦନୁଜ ଗୁଡ଼େ ଘୋର ରଡ଼ି ।
ଧାଇଁ ଅଗ୍ନିକେତୁ ବୀର କୁମୁଦକୁ ଧରି
ପେଲି ପକାଇଲା ସେ ଅତି ରୋଷ କରି ।
ଜଡ଼ବନ୍ଧରେ ସେ ନୁହନ୍ତି ଛଡ଼ାଛଡ଼ି
ଖଣ୍ଡଦୂରରେ ଯାଇ ବେନି ବୀରେ ପଡ଼ି ।
ମୁକୁଳା ମତ୍ତଗଜ ମାରେ ପୁଣ ନେଇ
ମୁକୁନ୍ଦ ମକରାକ୍ଷସ ଦୁହେଁ ଯେ ପଳାଇ ।
ମହୋଦର ସଙ୍ଗରେ ଯୁଝେ ଶତବଳ
ଦୂରୁ ଦେଖି ତାହା ଧାଏଁ ଯେ ବୀର ନଳ ।
କାଳମୁଖ କେଶରୀ ସହିତେ ତିନଜଣ
ଦୈତ୍ୟର ସଙ୍ଗେ ଏ ବେଢ଼ି କରୁଛନ୍ତି ରଣ
ଶୂଳ ଧରିଣ ଯେ କୁଳଏ ବେନବାହା
ସୁଗ୍ରୀବର ବେଗେ ଯାଇଁ ଧଇଲେକ ତାହା ।
ଇନ୍ଦ୍ରଜିତକୁ ଦେଖି ସେ ମାରେ କମ୍ପିନାହା
ଦେଖିଣ ଇନ୍ଦ୍ରଜିତ ନିବାରିଲା ତାହା ।
ଅଙ୍ଗଦ ହନୁମନ୍ତ ସୁଗ୍ରୀବର ତିନି
ପଞ୍ଚଦଶ ହେଲେ ନଳ ନୀଳକୁ ସେ ଘେନି ।
ନିକୁମ୍ଭ ଉପରେ ଲାଗିଲେ ରଡ଼ି ଦେଇ
ଶ୍ରୀରାମଙ୍କୁ ଦେଖିଣ ଯେ ଇନ୍ଦ୍ରଜିତ ଧାଇଁ ।
ଅଙ୍ଗଦ ତାହାକୁ ଉଗାଳେ ଯାଇ ବଳେ
ସୁଗ୍ରୀବରକୁ ପ୍ରଶସ୍ତ ମାଇଲା ନେଇ ଶୂଳେ ।
ବଜ୍ରବାଣ ଘେନି ତାହା କାଟିଲେ ସଉମିତ୍ରି
ତିନପୁର ମଧ୍ୟରେ ତା ସମ ନାହିଁ କ୍ଷତ୍ରୀ ।
ବିଭୀଷଣ ମିହଘନ ସଙ୍ଗେ କରେ ଯୁଦ୍ଧ
ନାହିଁ ନାହିଁ ଭୁଲଇତ ତିନପୁର ମଧ୍ୟ ।

ଦୁହେଁ ଦୈତ୍ୟ ଜାଣନ୍ତି ବିବିଧ ମାୟାମାନ
ବିଶେଷତ ପୁଣ୍‌ଦୁହେଁ ଏକା ଆଖଡ଼ା ସାଧନ
ପରିଘ ଘେନ ମାରେ ମିହଘନ ବୀର
ବିଭୀଷଣ ଉପରକୁ ଅତି କୋପଭର ।
ଦେଖି ଗଗନକୁ ବିହଗମେ ଦୈତ୍ୟ ରାଏ
ଚେଡ଼େବଜ ଶସ୍ତ୍ରଗୋଟା ଭୂମି ବିନ୍ଧା ହୁଏ ।
ପୁଣ ବିଭୀଷଣ ଏ ଶକତିଏ ଧରି
ମିହଘନ ଉପରେ ମାରିଲା କୋପକରି ।
ଦେଖିଣ ଦଇତ ବୀର ଗଗନରେ ଉଡ଼ି
ଚେଡ଼େବଜ ଶକତି ଭୂମିରେ ଯାଇ ପଡ଼ି ।
ନରାନ୍ତକ ଜମ୍ବୁବ ଏ କରନ୍ତି ସମର
କରନ୍ତେ ଦଇତ ବିନ୍ଧେ ତୀକ୍ଷ୍ଣ ଶର ।
ମନ୍ତ୍ରୀବର ବଞ୍ଚାଇ ବିବିଧ ଗତି କରି
ଘନ ଘନ କରି ବେସେ ଚରୁଶିଳ ମାରି ।
ଉଲମ୍ବ ପ୍ରବଳ ଦୁହେଁ ହୋଇଲେକ ପିଠି
ଶତବାନ ଯାଇଁ ତାର ଉଅପରେ ଉଠି ।
ଅଙ୍ଗଦକୁ ଦେଖି କୋପେ ଦେବାନ୍ତକ ବୀର
ପବନୁ ବେଗକରି ବିନ୍ଧେ ତୀକ୍ଷ୍ଣ ଶର ।
ହୃଦୟରେ ବାଜନ୍ତେ ରୁଧିର ଧାର ବହେ
ଶତବାନ ବୃପୋତେ ମାରିଲା ଧାଇଁ କୋହେ
ତାହା ବଞ୍ଚାଇଣ ସେ ପିଟିଲା ଶୂଳ ଧରି
ଦେଖି କପିବୀର ବେଗେ ଗଗନେ ସଞ୍ଚରି ।
ପ୍ରଶସ୍ତ ସମ୍ପାତି ବେନି କରନ୍ତି ସମର
ଦେବତାମାନେ ପ୍ରଶଂସା କରନ୍ତି ଅପାର ।
କେଶରୀ ଦୁର୍ମୁଖ ବେନି ପଡ଼ି ଗଡ଼ଯାନ୍ତି
ମୁଣ୍ଡେ ମୁଣ୍ଡମାରିପ ହୃଦୟୁ ଜନ୍ତାଜନ୍ତି ।
ଆନନ୍ଦରେ ସଇନ ଦେଖନ୍ତି ସୁଖ ପାଇ
ତପନ ନଳ ସମର କଳନା ନ ଯାଇ ।
ତହିଁ ମୂର୍ଚ୍ଛିରେ ମହାନ୍ତ୍ର ସମର ଗୁରୁତର
ଦୁହିଁଙ୍କର ଶରୀର ଉକଟେ ଜରଜର ।
ଲକ୍ଷ୍ମଣ ଯେ ରାବଣ ସଙ୍ଗତେ ଯୁଝୁଥିଲେ
ଅଭେଦ କବଚ ତାର ନାରାଚେ କାଟିଲେ ।
ରାମଙ୍କେ ନାରାଜ ବନ୍ଧିଲେ ସଉମିତ୍ରି
ରୁଧିରେ ବିଲେପନ ଅସୁର କୁଳ ଷଣ୍ଢୀ ।
ମହାକ୍ରୋଧେ ଲକ୍ଷ୍ମଣଙ୍କୁ ବିନ୍ଧଇ ସେ ଶର
ଘନ ଘନ ଛେଦନ୍ତି ତା ସୁମିତ୍ରା କୁମର ।

ସହସ୍ରେକ ନାରାଜ ବନ୍ଧିଲେ ସଉମିତ୍ରି
ପ୍ରଚଣ୍ଡଶର କରି ତାହା ଛେଦିଲା ଲଙ୍କପତି ।
ପୁଣି ଲକ୍ଷେ ନାରାଜ ବନ୍ଧିଲା ବଂଶପାଣି
ହାତରୁ ନ ଫିଟୁ ତାହା ସଉମିତ୍ରି ହାଣି ।
ଏହା ଦେଖି ରାବଣ ଗର୍ଜଇ ଘନ ଘନ
ନାରାଜ ବନ୍ଧେ ତୁଷାର ବରଷା ସମାନ ।
ଶରମାନଙ୍କ ଗହଳେ ନ ଦିଶଇ ପଥ
ରାମଚନ୍ଦ୍ର ସଙ୍ଗରେ ଯୁଝଇ ଇନ୍ଦ୍ରଜିତ ।
ଆବରନ୍ତି ଅଗ୍ନିବେଲୁ ରଶ୍ମିକେଲୁ ବେନି
ସ୍ତୁତିଜଣ ହୋଇଲେ ଏ ସମସ୍ତକୁ ଘେନି ।
ସ୍ତୂପୂର୍ବ ଘନ ସନ୍ଧତେ ରାମଙ୍କୁ ବେଢ଼ିଛନ୍ତି
ଶ୍ରାବଣ ବରଷା ଜାଣି ନାରାଜ ବିନ୍ଧନ୍ତି ।
ଶରମାନଙ୍କ ଗର୍ଜନ ଧନୁର ଟଙ୍କାର
ଏମାନ ଶୁଭଇ ରଥ ଭୂମି ଅନ୍ଧକାର ।
କଞ୍ଚିତ ପ୍ରକାରେ ତା ଛେଦି ରଘୁସାଇଁ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଯାକୁ ସରିନାହିଁ ।
ଲୀଳାଯୁଦ୍ଧ କରିପ ଅସୁର ବଳ ମାରି
ଗଣ୍ଡି ମୂର୍ତ୍ତି ଦେଖି ଭ୍ରାତେ ଶଙ୍କର ଅଇରି ।
ଧନ୍ୟ ଧନ୍ୟ ଯୋଦ୍ଧା ତୁହି ଦଶରଥ ସୁତ
ତୋତେ ଯୁଦ୍ଧେ ସମାନ ନୋହିବେ ଶଚନାଥ
ମାନବ ହୋଇକରି ଅପୂର୍ବ ତୋର ଯୁଦ୍ଧ
ଏ ମୋର ସମର ଦେଖି ଉରନ୍ତି ବିବୁଧ ।
ଜଟାଧାରୀ ହୋଇ ତୁ ସମର ଏଡ଼େ ଜାଣୁ
ଛତର ଷଣ୍ଢୀ ପରାଏ ଆମ୍ଭେ ତୋତେ ମଣୁ ।
କେବଳ ଦେବତା ଏ ରୂପତେ ଅବତାର
ଏହି ଯୁଦ୍ଧ ମୋତେ ତ ଲାଗୁଛି ଅଗୋଚର ।
ମୋହର ସମାନରେ ପୁଣ ବୀର ସେନାପତି
ସମସ୍ତଙ୍କୁ ଜିଣିବାର ସମାନ କାରତି ।
ଏସନକ ବିସ୍ତର କରଇ ଇନ୍ଦ୍ରଜିତ
ଆବର ଯୋଦ୍ଧା ବିସ୍ତର କରନ୍ତି ସମର ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ
ଯୁଦ୍ଧର କଥା ଅଟଇ ଅଦ୍ଭୁତ ଅଶ୍ରୁତ ।
ଲକ୍ଷ୍ମଣ ଦଶାନନ ସମର ମହାଘୋର
ମାନବଙ୍କୁ ଅଶ୍ରୁତ ଦେବଙ୍କୁ ଅଗୋଚର ।
ତୀକ୍ଷ୍ଣ ଦଶ ନାରାଜ ବିନ୍ଧିଲେ ରାମ ଭାଇ
ଲଙ୍କପତି ଦଶ ଲଲାଟରେ ପଶିଲେ ଯାଇ ।

ଅସ୍ତ୍ର ଭେଦ ହୁଅନ୍ତେ ରୁଧିର ବାହାର
ଦଶବଦନ ଦିଶଇ ମହା ଭୟଙ୍କର ।
ହସନ୍ତି ସଉମିତ୍ରି ବିରୂପ ତାର ଦେଖି
କରେ କରେ ଚନ୍ଦ୍ରମୁଖୀ ଯିବୁ ଆଜ କାହିଁ ।
ଏହିକ୍ଷଣି ତୋହର ଛେଦିବଇଁ ଶିର
ଜାନକୀ ଆଣିମା ପ୍ରାପ୍ତ ମଣିଛୁ ଅସୁର ।
ମାୟାରେ ମୃଗେକ ତୁ ଦେଖାଇଲୁ ତେଣେ
ପ୍ରାଣ ହାରିଲା ସେତ ଶ୍ରୀରାମଙ୍କର ବାଣେ ।
ମାୟାରେ ସେ ମୃଗ ଲକ୍ଷ୍ମଣ ସୁମନ୍ତ
ତପସ୍ୱୀ ରୂପ ଧରି ଆଣିଲୁ ସୀତା ପଞ୍ଚ ଘେରି
ତେତେବେଳେଥିଲେଛୁହିଘେନନ୍ତତୋରପ୍ରାଣ
ଖଣ୍ଡଖଣ୍ଡ କରିତୋତେ ଖାଆନ୍ତା ମୋର ବାଣ
ଏତେ ବୋଲି ମହାବୀର ତିନ ବାଣ ଯୋଡି
ଧନୁର୍ବେଦ ପଢ଼ିଣ ବୀର ଛାଡିଲେ ଆମଣ୍ଡି ।
ଦେହେ ବାଜି ପଙ୍ଖୀଶର କୁଣ୍ଡଳକ କାଣ୍ଡ
ଗର୍ଜିଲେକ ଦଶମୁଖ କମ୍ପିଲା ବ୍ରହ୍ମାଣ୍ଡ ।
ଲଙ୍କାଗଡ଼ରେ ଚମକ ପଡ଼େ ପୁଣ ଯାଇ
ରାଣୀହଂସ ଚମକନ୍ତି ଚମକେ ଲଙ୍କଭୂଇଁ ।
ଏହା ଦେଖି ଇନ୍ଦ୍ରଜିତ ଶ୍ରୀରାମଙ୍କୁ ଛାଡ଼ି
ଲକ୍ଷ୍ମଣଙ୍କୁ ଶକତି ମାଇଲା ଆଗବଢ଼ି ।
ରାବଣ ଶୂଳେ ମାଇଲା ଏହି ସମୟରେ
ସଉମିତ୍ରି ସେ ଶର କାଟିଲେ ତୀକ୍ଷ୍ଣ ଶରେ ।
ଇନ୍ଦ୍ରଜିତ ଶକତିକି ସେ ଲଏ ନ ଜରି
ତେଣୁ ଶକତିକି ନ ପାରିଲେ ସେ ନିବାରି ।
ରାମଚନ୍ଦ୍ର ହିଁ ନାଗଜ ବନ୍ଧନ୍ତି ବହୁତ
ଶକତି ଛେଦିବାକୁ ନୋହିଲେ ସାମର୍ଥ ।
ନିବାରୁ ନିବାରୁ ଶର ଗଲାକ ବଳିଆଇ
ଲକ୍ଷ୍ମଣଙ୍କ ବକ୍ଷପଟେ ପଡ଼ିଲାକ ଯାଇଁ ।
ମୋହେ ଅଚେତନ ହେଲେ ରାମଚନ୍ଦ୍ର ଭାଇ
ଧନୁଶର ପକାଇଣ ଅବନୀରେ ଶୋଇ ।
ଏହା ଦେଖି ଦଶାନନ ହିମାନୁ ଉଦ୍ଧାଇଲା
ଲଙ୍କାକୁ ନେବବୋଲି ସେ ବହନ ତୋଳିଲା
ହାତକୁ ହାତ ଦେଇଣ ତାହାକୁ ତୋଳଇ
ନ ଟଳିବା ଦେଖି ପଞ୍ଚ ମନରେ ଭାଳଇ ।
ପ୍ରାକର୍ମ କରିଣ ପୁଣ ସେହି ଯେ ଧାଇଁଲା
କେବେହେଁ ତାହାକୁ ଯେ ତୋଳିଣ ନପାରିଲା

ସୁରପାଖୁ ବେଢ଼ିଣ ଧଇଲେ ଦଇତ
ଗୋଡ଼ ହାତ ଧରିଣ ତୋଳନ୍ତି ସେହି ତ ।
ନ ଟଳଇ ଅଚଳ ଯେ ସୁମିତ୍ରା କୁମର
ତା ଦେଖି ଚମତ୍କାର ହୋଇଲା ଲଙ୍କେଶ୍ୱର ।
ଆଉବେଳେ ଝିଙ୍କିଲା ଯେ ନପାରି ତୋଳି
ଆପଣେ ଆପଣେ ଯେ ମନେ ମନେ ଭାଳି ।
କୈଳାସ ପର୍ବତରୁ ହୋଏ ଏହି ଗରୁ
ମନୁଷ୍ୟ ରୂପରେ ଅବା ଜାତ ହେଲା ମେରୁ
ଏମନ୍ତ ବିଚାରି ଯେ ତୋଳେ ପୁଣି ପୁଣି
ଦେଖିଣ କୋପଭରେ ଧାଇଁଲେ ରଘୁମଣି ।
ମହା ତୀକ୍ଷ୍ଣ ନାରାଚେନ ବିନ୍ଧିଲେ ତଡ଼ିତ
ଦଶଶିରରୁ ମୁକୁଟ କାଟିଲେ ରଘୁପତି ।
ଦୂରୁଥାଇ ହନୁମାନ ଅନାଇଁଲା ତାହା
କୁଳରେ କଳିମାରି ଦେଲୁ ଆହା ଆହା ।
ରଘୁବଂଶ ସମ୍ବନ୍ଧ ନ ସାହିଲ ଦଇବ
କ୍ଷଣେ କମ୍ପା ଜୀବନ ଧରିବେ ରାମ ଦେବ ।
ଏତେ ବିଚାରିଣ ଧାଇଁ ବଧାଏ ମାଇଲା
ଦଶାନନ ପୃଷ୍ଠରେ ବାଜିଣ ମୋହିଗଲା ।
ଆଣ୍ଠୁ ମୁଖ ମାଡ଼ିଣ ପଡ଼ିଲା ମହୀତଳେ
ମେଘନାଦ ଧାଇଁଲା ଯେ ଏମନ୍ତ ବେଳେ
ବଜ୍ରସମ ଶୂଳେ ମାଇଲା କୋପକରି
କନ୍ଧରା ବାଣେ ତା ଛେଦିଲେ ରାବଣାରି ।
କ୍ରୋଧରେ ହନୁମନ୍ତ ଉଠିଲା ଗଗନେ
ଇନ୍ଦ୍ରଜିତ ରଥପରେ ବସିଲା ତତକ୍ଷଣେ ।
ଧ୍ୱଜପରେ ବସିଣ ରଥକୁ ଚାପିଦେଲା
ଦେବ ଦଳନ ରଥ ପାତାଳେ ପଶିଲା ।
ପାତାଳେ ପଶେ ଯହିଁ ଦେଖେ ଇନ୍ଦ୍ରଜିତ
ଡେଇଁଣ ଭୂମିକି ସେ ପଡ଼ିଲା କୁରିତ ।
ଆନରଥେ ଯାଇଣ ବସେ ବୀରମଣି
ଦେଖିଣ ସ୍ତମ୍ଭୀଭୂତ ଯେ ସକଳ ସଇନ ।
ପାତାଳରେ ପଶନ୍ତେ ହନୁ ଡେଇଁଗଲା
ପୁଷ୍ପକ ବିମାନର ଉପରେ ବସିଲା ।
ଦେବତାଙ୍କ ସୁମନ୍ତ୍ରଣ ରୂପେ ଦେବ ଯାନ
ଦେଖିଣ ହନୁମନ୍ତ ଡେଇଁଲା ବହନ ।
ଲକ୍ଷ୍ମଣ ପାଶରେ ଯାଇ ପ୍ରବେଶ ହୋଇଲା
ରାବଣେଶ୍ୱର ଯେ ମୋହରେ ପଡ଼ିଥିଲା ।

ସଚେତ ହୋଇଣ ସେହୁ ଉଭା ଯେ ହୋଇଲା
ପୁଷ୍ପକ ବିମାନ ନାହିଁ ପାଶରେ ଦେଖିଲା ।
ଇନ୍ଦ୍ରଜିତ ବୋଲେ ହନୁ ପାତାଳେ ଗୁପଇ
ଦଶାନନ ନୂଆ ଯାନ ପୁଣି ସୁମରଇ ।
ଭୂମିରୁ ବାହାରିଲା ପୁଷ୍ପକ ବିମାନ
ଦେଖିଣ ଦଶାନନ ହରଷିତ ମନ ।
ଋକ୍ଷକପି ଦେଖିଣ ଆଚମ୍ଭିତ ହେଲେ
ଦଇତେ ଦେଖିଣ ସନ୍ତୋଷ ହୋଇଲେ ।
ସମ୍ଭାଳ ହୋଇ ରାବଣ ରଥରେ ବସିଲା
ଦଶ କରରେ ଦଶ ଧନୁ ସେ ଧଇଲା ।
କରେ ଧନୁ ଶର ଯେ ବିନ୍ଧେ ଅନୁକ୍ଷଣେ
ଘନ ଘନ ତାହା ଯେ ଛେଦଇ ରଘୁନାନେ ।
ଇନ୍ଦ୍ରଜିତ ବୀର ଯେ ଶ୍ରୀରାମଙ୍କୁ ବିନ୍ଧେଶର
ଗାହାଳ ଦେଖି ବିସ୍ମୟରେ ପବନ କୁମର ।
ମନେ ମନେ ସେ ଯେ ହେଲା ବିରକତ
କେମନ୍ତେ ପ୍ରକାରେ ଲକ୍ଷ୍ମଣଙ୍କୁ ରଖିବତ ।
ମୁହିଁ ଏଠାରୁ ଲକ୍ଷ୍ମଣଙ୍କୁ ଘେନ ପୁଣ ଯିବ
ତୋଳି ନ ପାରିଲେ ଉପହାସ୍ୟକୁ ପାଇବ ।
ଏତେ ବିଚାରି ହୃଦ ମଧରେ କରେ ସ୍ତୁତି
ଜୟ ଜୟ ଲକ୍ଷ୍ମଣ ଅନନ୍ତ ମୂରତି ।
ବିଷ୍ଣୁ ନିଜ ଆତ୍ମା ତୁ ପରମବ୍ରହ୍ମ ଜ୍ଞାନ
ବ୍ରହ୍ମାଣ୍ଡର ଈଶ୍ୱର ତୁ ଦୁଃଖ ସୁଖ ଦାତା ।
ସର୍ବ ଗୁଣେ ପୂରିତ କରୁଣାମୟ ତନୁ
ତୁ ସେ ନାରାୟଣ ପରମ ରୂପ ଚିହ୍ନୁ ।
ଲକ୍ଷ ଲକ୍ଷ ଲକ୍ଷଣ ପୂରିତ ତବ ଅଙ୍ଗେ
ସଂସାର ଭାରଭର ବହୁ ତୁ ଶ୍ରୀଅଙ୍ଗେ ।
ତୋର ଆଜ୍ଞା ପ୍ରମାଣେ ବାସୁକି ନାମେ ଅହି
ତିଳ ମନ୍ଦା ପ୍ରମାଣେ ସଚରାଚର ବହି ।
ତୁମ୍ଭେ ନିରଞ୍ଜନ ଠୂଳଶୂନ୍ୟ ରୂପି
ପବନ ଆହାର ଦେବ ଯୋଗୀ ମହାତପୀ ।
ତୁମ୍ଭେ ଦେବ ଜଗତର ଅଟ ପିତାମାତା
ଅନନ୍ତ କୋଟି ବ୍ରହ୍ମାଣ୍ଡ କଣ୍ଠେ କରତା ।
ଭାବନାକୁ ଭାବେ ରୂପ ଅଭାବେ ଅପ୍ରୀତି
ଶତ କଇଁ ଶାନ୍ତ ଦେବ ନିର୍ମାୟା ମୁରତି ।
ଚେତନାର ଚଇତନ ଚେତନର ହେତୁ
ଯୋଗର ଧାରଣା ଦେବ ଯୋଗୀଙ୍କର ତତ୍ତୁ

ପ୍ରକୃତିର ପୁରୁଷ ତୁ ପୁରୁଷର ଜିୟା
ଲକ୍ଷ୍ମୀଦେବୀ ବାନ୍ଧବ ତୁ ନାରାୟଣ ପ୍ରିୟା ।
ଦେହରେତ ଅଗ୍ନିରୂପ ଅଗ୍ନିରେ ଅଟୁ ଶୋଷି
ପ୍ରାଣର ପବନ ରୂପ ଅଟୁ ଅବିନାଶି ।
ହୃଦୟର ବସୁଦେବ ମନର ତୁ ଗ୍ୟାନ
ତପିଙ୍କର ତପ ତୁହି ଗୁଣଙ୍କ ନିଧାନ ।
ମୁନିଙ୍କର ତଲସ୍ତୁ ଦେବ ଋଷିଙ୍କ ସାହସ
ପ୍ରଭୁଙ୍କର ପ୍ରଭୁ ତୁହି ଭୃତ୍ୟଙ୍କର ବଶ୍ୟ ।
ନାଗାନ୍ତକ ଦେବାନ୍ତକ ଯୋଗାନ୍ତକ ତିନି
ଇଅଁଳା ପିଅଁଳା ଶିଶୁମୁନା ନାଡ଼ି ଘେନି ।
ମୂଳ କମଳ ନାଳରେ ହଂସ ଯହିଁଚରି
ଯାହା ସେ ଯୋଗୀମାନେ ଯେ ଅଜପା ଆଚରି
ସେ ଶୂନ୍ୟ ପୁରୁଷଦେବ ରୂପ ରେଖ ନାହିଁ
ଅବ୍ୟକ୍ତ ବ୍ରହ୍ମ ପୁରୁଷ ଅଟୁ ତୁ ଗୋସାଇଁ ।
ସଂସାର ହିତରେ ଦେବ ମହୀଭାର ଧରୁ
ପରମ ପୁରୁଷ ଦେବ ଦୟା କଳ୍ପତରୁ ।
ନବ କୋଟି କମଳର ନବକୋଟି ପାଳ
ନିରାକାର ରୂପି ଦେବ ଶୂନ୍ୟ ଅରବିନ୍ଦ ।
ଜୟ ଜୟ ଅଯୋନି ସମ୍ଭୂତ ଦଶଇଶ
ପଲଙ୍ଗା ନାରାୟଣ ଜଣ୍ଣ ତୁ ବିଶ୍ୱବାସ ।
ମନ୍ତ୍ରଙ୍କର ପ୍ରଣବ ତୁ ପ୍ରଳମ୍ବର ଧୂନି
ଧୂନିର କାରଣ ତୋତେ ନୋହେ ଅନୁମାନ
ଜୟ ଜୟ ପରମ ପୁରୁଷ ଦେବରାଜ
ଲକ୍ଷଣବନ୍ତ ପୁରୁଷ ଶ୍ରୀରାମ ଅନୁଜ ।
ଦୈତ୍ୟବଳ ଦଳନରେ ଦେବତାଙ୍କ ଛଳେ
ଦଶରଥ ନନ୍ଦନ ହୋଇଲେ ଅବତଳେ ।
ରାମଚନ୍ଦ୍ର ଅନୁଜ ସୁମିତ୍ରା ଦେବୀ ସୁତ
ଅଗୋଚର ମହିମା ଉର୍ମିଳା ପ୍ରାଣନାଥ ।
ମୁଁ ତୋହର ଭୃତ୍ୟର ଭୃତ୍ୟ ପବନ ନନ୍ଦନ
ତୁ ସ୍ୱାମୀ ଲୀଳା ସମରେ ହରାଇଛୁ ଗ୍ୟାନ ।
ରାମ ସଙ୍ଗେ ଦଶାନନ ମେଘନାଦ ଯୁଦ୍ଧ
ମୁଁ ତୋତେ ନେବି ସ୍ୱାମୀ ସୁବଳ ଗିରି ମଧ ।
ତୁମ୍ଭେ ମୋତେ ପ୍ରସନ୍ନ ହୁଅ ବିଶ୍ୱନାଥ
ଭୃତ୍ୟ ବତ୍ସଳ ବିଜୟେ କର ମୋର ମାଥ ।
ଏତେ ସ୍ତୁତି କରି ବୀର ନମସ୍କାର କଲା
ମସ୍ତକେ ଧରିଣ ସୁବଳ ଗିରିକି ଚଢ଼ିଲା ।

ଜାମ୍ବେବ ସୁଗ୍ରୀବ ବେନି ସଙ୍ଗେ ତାର ଗଲେ
ଆବର ହିଁ ଅନେକ ସଇନ ଗୋଡ଼ାଇଲେ ।
ରାମଚନ୍ଦ୍ର ରାବଣ ସଙ୍ଗରେ ଯୁଝୁଛନ୍ତି
ନଶ୍ୱାସକେ କୋଟି କୋଟି ନାରାଚ ବର୍ଷନ୍ତି ।
ଅଗସ୍ତି ଦେଲା ଶର ରାମ ପୂରଇ କୋଦଣ୍ଡ
ମନ୍ତ୍ରିଣ ବିନ୍ଧିବାରେ କମ୍ପେ ଯେ ବ୍ରହ୍ମାଣ୍ଡ ।
ଗୁଡ଼ଦ୍ୟନ୍ତେ ଶର ପବନୁ ବେଗେ ଗଲା
ରାବଣେଶ୍ୱର ଦେଖିଣ ପ୍ରତିଶର କଲା ।
ଇନ୍ଦ୍ରଜିତ ପ୍ରତିଶର କଲା ଯେ ବହୁତ
ଶର ନ ମାନି ପଡ଼ିଲା ରାବଣ କଣ୍ଠରେ ତ ।
ଦଶଶିର କାଟି ଯେ ପକାଇଲା ତାର
ତଳରେ ନ ପଡ଼ ଶର ଲାଗିଲା ବେକର ।
ଦେଖିଣ ଶ୍ରୀରାମ ଯେ କ୍ରୋଧଭର ହେଲେ
କୋଟି କୋଟି ନାରାଜ ପୂରାଇ ବିନ୍ଧିଲେ ।
କୋଟିଏ ଦୈତ୍ୟ ବଳ ହେଲେ ବେନି ଖଣ୍ଡ
ଦେଖିଣ ରାବଣ ଯେ ହେଲା ପରଚଣ୍ଡ ।
ମନରେ ବିଚାରିଲା ଭାଇର ଛଳେ ଆଜ
ମୋହର ପ୍ରାଣ ନଷ୍ଟେ ନେବ ଏ ରାମ ରାଜ ।
ଏହା ବିଚାରୁ ରଣରୁ ବାହୁଡ଼େ ରାବଣ
ଶ୍ରୀରାମର ବାଣ ଦେଖି ମନରେ ଭୟ ପୁଣ ।
ଇନ୍ଦ୍ରଜିତକୁ ବୋଇଲା ନ କର ଆଜ ରଣ
ଭାଇ ଲକ୍ଷ୍ମଣ ତାର ପଡ଼ିଲକ ରଣ ।
କାଲ ଆସି ତପସ୍ୱୀକ କରିବା ପ୍ରାଣେ ନାଶ
ବେଳ ଅସ୍ତ ହୋଇଲା ବାହୁଡ଼ ଯିବା ଆସ ।
ଶୁଣିଣ ମେଘନାଦ ବାହୁଡ଼େ ପୁଣ ଧାତ
ଗୋଡ଼ାଇ ନାରାଜ ଯେ ବିନ୍ଧନ୍ତି ରଘୁପତି ।
ଶତେ ସହସ୍ର ହାତ ଯେବଣ ବିମାନ
ଶରମାର ଅଦୃଶ୍ୟ କରେ ରାମ ରଣ ।
ବାପ ପୁଅଙ୍କର କାଟିଲେ ସାରଥି
ଧନୁ ଶସ୍ତ୍ର ହସ୍ତରୁ କାଟିଲେ ଦାଶରଥି ।
ସଙ୍ଗରେ ଅଙ୍ଗଦ ସୁଷେଣ ନଳ ନୀଳ
ସୈନ୍ୟଙ୍କୁ ମାରନ୍ତି ସେ ଘେନି ତରୁଶିଳ ।
ବିଭୀଷଣ ଧାଇଁ ଯେ ହୋଇଣ ମହାରାଗ
ମାରଇ ଦୈତ୍ୟବଳ ଯେ ପଡ଼ଇ ତା ଆଗ ।
ମାର ମାର ଡାକ ଯେ ଦେଲେ ଋକ୍ଷ କପି
ଶ୍ରୀରାମ ନାରାଚ ବର୍ଷନ୍ତି କ୍ଷେପି ।

ଦୁଇ ରଥରୁ ପୁଣ ଚଗଳ କାଟିଲେ
ଚବଣ କୋଟି ମାହୁନ୍ତ ତହୁଁ କ୍ଷଏ ଗଲେ ।
କୋଟିଏକ ହସ୍ତୀ ଯେ ପଡ଼ିଲେ ରାମ ବାଣେ
ରଣ ଗ୍ରହ ଦଇତେ ପଳାନ୍ତି ଏଣେ ତେଣେ ।
ଚଉକତରେ ଉକତ ବହେ ନିରନ୍ତର
ପଛକୁ ନ ଚାହିଁଣ ପଳାଏ ଦଶଶିର ।
ଇନ୍ଦ୍ରଜିତ ସହିତେ କୁମ୍ଭ ନିକୁମ୍ଭ ବେନି
ନରାନ୍ତକ ଦେବାନ୍ତକ ଜମ୍ବୁପାକ୍ଷ ତିନି ।
ବିଦ୍ୟୁମାଳି ବକାସୁର କାକାକ୍ଷ ପ୍ରଶସ୍ତ
ପାରୁଶ ପ୍ରବର ମହାନାଦ ଯେ ପରମାର୍ଥ ।
ମିହଘନ ମହାପାରୁଶ ବିରୂପାକ୍ଷ
ଅଗ୍ନିକେତୁ ରଶ୍ମିକେତୁ ପାତୋଳ ଧମାକ୍ଷ ।
ଯଜ୍ଞକେତୁ ରଶ୍ମିକେତୁ ଅଶ୍ନିମା ପ୍ରଭବ
ବିଦ୍ୟୁମାଳି କ୍ରୋଧନ ମହାବୀରଭଦ୍ର ।
ମହୋଦର ମହା ପାରୁଶ ବଜ୍ରଶିର
ମହୀରାବଣ କାଳଞ୍ଜ ବିକଟ ବିଶିର ।
ପଞ୍ଚାଶ କୋଟି ମୁକୁଟ ବନ୍ଧା ଯୋଦ୍ଧାମାନେ
ତେରଶତ ନାତିଙ୍କୁ ଘେନି ଦଶାନନେ ।
ଉଛତ ମାହୁନ୍ତ ଯେ ପଏକାର ବଳ
ବାଜେଣାକାରୀ ଦେଖଣାକାରୀ ଯେ ସକଳ ।
ରକତରେ ଜରଜର ସବୁଙ୍କର କାୟ
କ୍ରୋଧଭରେ ନାରାଚ ବିନ୍ଧନ୍ତି ରାମ ରାୟ ।
ଘାଉଆ ହୋଇଣ ନାହାନ୍ତି ଆଉ ଜଣେ
ସ୍ୱର୍ଗରେ ପ୍ରଶଂସା କରନ୍ତି ଦେବଗଣେ ।
ପଳାନ୍ତି ଅସୁର ଯେ ପଛକୁ ନ ଚାହିଁ ।
ଲଙ୍କାଗଡ଼ ଭିତରେ ପଶିଲେ ପୁଣ ଧାଇ ।
ଉତ୍ତର ଦ୍ୱାର ବାଟରେ ବହୁତ ସୈନ୍ୟ ଗଲେ
ବାଟ ନ ପାଇବାରୁ ପୂର୍ବକୁ ପଳାଇଲେ ।
ଥୋକାଏକ ସୈନ୍ୟ ଯେ ପଶ୍ଚିମ ଦ୍ୱାରେ ପଶି
ସେ ଦ୍ୱାରେ ବିଭୀଷଣ ମାଇର ଆକ୍ରୋଶି ।
ଭୁଲ ଭୁଲ ବୋଲିଣ ଯେ ପଡ଼େ ଡାକମାନ
ମଡ଼ାମଡ଼ି ହୋଇଣ ଗଲେ ବହୁତ ସୈନ୍ୟ ।
କେ ଯୁଝିଣ ଯେ ନ ପାରେ ପୁଣ ଯାଇ
କୁମ୍ଭ ହୋନ୍ତି କଏ ମୁଣ୍ଡରେ ହାତ ଦେଇ ।
କେ ଝୁଣ୍ଟି ପଡ଼ନ୍ତେ ମଙ୍କଡ ମାଡ଼ିଗଲେ
କେହୁ ମଡ଼ାଙ୍କର ଭିତରେ ପଶିଲେ ।

ସେ ଦ୍ୱାର ଗହଳ ଦେଖିଲେ ଶ୍ରୀରାମ
ଉତ୍ତର ଦ୍ୱାରେ ବଜେସ୍ଥେ କଲେ ପୁଣ ରାମ ।
ମାରନ୍ତି ରାଉତ ମାହୁନ୍ତ ସେନାପତି
ପାଦାତି ହସ୍ତୀ ଘୋଡ଼ା ପଡ଼ନ୍ତି କୋଟି କୋଟି
ଉତ୍ତର ଦ୍ୱାରେ ବହେ ରକ୍ତନଦୀ
ଶତେ ହସ୍ତ ଓସାର ତିନତାଳ ଗମ୍ଭୀର ଭେଦ
ଦେଖିଣ ରାମଚନ୍ଦ୍ର ମନରେ ବିସ୍ମରିଲେ
ଶତ୍ରୁ ପଳାଇଲ ଦେଖି ନାରାଜ ସମ୍ଭାଳିଲେ ।
ରାବଣର ପୁତ୍ରେକ ପଛରେ ପୁଣ ଥିଲ
କଣ୍ଠ ମାରସୀ ବୋଲିଣ ତା ନାମ ଅଟେ ପରା
ବୋଇଲ ଶ୍ରୀରାମ ହେ। ଅଧର୍ମ କମାକରୁ
ପଳାଇଲ ଶତ୍ରୁକୁ ତୁ ଗୋଡ଼ାଇଣ ମାରୁ ।
ଆମ୍ଭେ ଅସୁରେ ସିନା ସବୁଦିନେ ଦୁଷ୍ଟ
ତୁମ୍ଭେ ନର ବାନରେ ଯେ ସବୁଦିନେ ଶାନ୍ତ
ରହୁ ଆଜ ସମର ନକର ସତ୍ୟ ନାଶ
ଆଜ ଦିନକରେ ତ ନୁହଇ ଯୁଦ୍ଧପୂଣଶେଷ ।
ରାବଣ ମଲେ ସିନା ଯୁଦ୍ଧ ଶେଷ ହେବ
ତୋହର ଶତ୍ରୁ ସିନା ଅଟେ ଦଶଗ୍ରୀବ ।
ଏତେ କହି କୁମର ଉତର ଗଡ଼ ଗଲ
ଉତ୍ତର ଗଡ଼ ଦ୍ୱାରୁ ଶ୍ରୀରାମ ବାହୁଡ଼ିଲ ।
ରକତ ନଦୀଠାରେ ପ୍ରବେଶ ହେଲେ ଆସି
ଏଥୁ ଅନନ୍ତରେ ଶୁଣ ଗୋ ଶଶିମୁଖି ।
ଦକ୍ଷିଣ ଦ୍ୱାରକୁ ଯେ ଅଙ୍ଗଦ ଯାଇଥିଲ
ଅନେକ ଋକ୍ଷକପି ସଙ୍ଗରେ ତାର ଥିଲ ।
ପାଞ୍ଚ ସେନାପତି ଯେ ମଲ୍ଲ ମହାମଲ୍ଲ
ଘେନଣ ମାରଇ ଯେ ବାଳିର କୁମର ।
ଦକ୍ଷିଣ ଦ୍ୱାର ପର୍ଯ୍ୟନ୍ତେ ଗୋଡ଼ାଇ ମାଇଲେ
ଗଡ଼ରେ ପଶନ୍ତେଣ ସେ ଫେରିଣ ଅଇଲେ ।
ତାଳକ ଉତ୍ସର୍ଗରେ ବହେ ଯେ ରକତ
ଶତେ ହାତ ଓସାର ନଦୀର ପ୍ରସ୍ତ ।
କୋଟି କୋଟି କବନ୍ଧ ନାଚେ ସେ ନଦୀରେ
ଏଥୁ ଅନନ୍ତରେ ଯେ ଶୁଣ ଦେବୀ ମୋରେ ।
ପଶ୍ଚିମ ଦ୍ୱାରେ ଯେ ବିଭୀଷଣ ମାରି
ସଙ୍ଗରେ ସାତ ସେନାପତି ଯେ ତାହାର ।
ଶତକେ ମଲ୍ଲ ଯେ ମହାମଲ୍ଲ ପୁଣ
ଋକ୍ଷକପି ସୈନ୍ୟ ଅବଳତ ଜାଣ ।

ଅନେକ ସୈନ୍ୟ ଯେ ମାରେ ସୈନ୍ୟବଳ
ଯହୁଁ ପଳାନ୍ତି ସେ ଅସୁରଙ୍କ ଦଳ ।
ଋକ୍ଷ କପିଦଳ ଯେ ସଙ୍ଗରେ ବହୁତ
ଦ୍ୱାରଠାରୁ ଫେରିଲେ ସକଳ ସୈନ୍ୟଥାଟ ।
ଉତ୍ତର ଦ୍ୱାର ବାଟରେ ଆସନ୍ତି କପିପଲ
ଦକ୍ଷିଣ ପଶ୍ଚିମ ଯେ ହେଲେ ଏକ ଠୁଳ ।
ଅଙ୍ଗଦ ବିଭୀଷଣ ଦୁହେଁ କଲେଜ ଦର୍ଶନ
ବୋଇଲେ ବାହୁଡ଼ିବାକେ କର ରାମ ରଣ ।
ବାଜଇ ବାଜଣା ଯେ ରାମତାଳି ଘୋର
ଶଙ୍ଖ ମହୁରି ଯେ ବାଜେ ନିରନ୍ତର ।
ହୁଳହୁଳି ବୋଲ ଶବଦ ଘୋର ଠାଣ
ନୃତ୍ୟକରି ବାହାରିଲେ କପିପଲ ପୁଣ ।
ବେଳଅସ୍ତ ହୋଇବାରୁ ଫେରିଲେ ରାମସୈନ୍ୟ
ଉତ୍ତରଗଡ଼ ଦ୍ୱାର ଫେରି ବିଜେକଲେ ଶ୍ରୀରାମ
ଅଷ୍ଟାଙ୍ଗ ଶରୀର ରକତେ ବୁଡ଼ିଛନ୍ତି
ରକତ ନଦୀକି ଶ୍ରୀରାମ ଚାହିଁଲେ ପାଲଟି ।
କୋଟି କୋଟି କବନ୍ଧ କରନ୍ତି ଲୀଳା ତହିଁ
ଶୋଣିତରେ ମଡ଼ାଭାସି ଯାଉଛନ୍ତି ତହିଁ ।
ବାମକରେ କୋଦଣ୍ଡ ଯେ ଦକ୍ଷିଣ କରେ ଶର
ସେନାପତିଙ୍କ ଘେନ ବାହୁଡ଼େ ରଘୁବୀର ।
ଲକ୍ଷ୍ମଣଙ୍କୁ ଦେଖିବାକୁ ଉଦବେଗ ମନ
ବିରସ ହୋଇଅଛି ଶ୍ରୀରାମ ବଦନ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତି
ମାରୁତି ଲକ୍ଷ୍ମଣଙ୍କୁ ନେଲ ସୁବଳ କରି ।
ଜମ୍ବେବ ସୁଷେଣ ସୁଗ୍ରୀବର ବୃଦ୍ଧ
ଲକ୍ଷ୍ମଣକୁ ମିଶାଇ ପାଞ୍ଚଜଣ ସରି ।
ସୁବଳ ଗିରିରେ ଯାଇ ପ୍ରବେଶ ହୋଇଲେ
ହଟାର ବଜାରି ଲମ୍ବ ହତା ଯେତେ ଥିଲେ ।
ଉଜକାରି ସେବାକାରି ସମସ୍ତେ ଦେଖନ୍ତି
ଶ୍ରୀରାମର ଭାଇକ ଦେଖି ବିକଳ ହେଉଛନ୍ତି ।
ଶକତି ଧୀରକରି କାଢ଼ିଲେ ଜମ୍ବେବ
ସୁଷେଣ ମନ୍ତ୍ର ପଢ଼ି ଫୁଙ୍କିଦେଲେ ବେଗ ।
ଜମ୍ବେବ ପତ୍ର ଆଣି ଘାଆରେ ଚପୁଡ଼ିଲେ
ଶୁଖିଗଲ ଘା ଯେ ଚିହ୍ନ ନ ଦେଖିଲେ ।
ନିଦ୍ରାରୁ ଉଠିଲ ପ୍ରାଏ ଉଠିଲେ ଲକ୍ଷ୍ମଣ
ବସିଣ ଅନାଇଲେ ଚାରି ଦିଗକୁ ପୁଣ ।

ପର୍ବତ ଉପରେ ଦେଖିଲେ ତରୁ ବୃକ୍ଷ
ଆଗରେ ଦେଖିଲେ ସୁଗ୍ରୀବ ଜାମ୍ବବନ୍ତ ।
ସୁଷେଣ ମାରୁତିକି ପୁଚ୍ଛିଣ ପଚାରିଲେ
ଆଜର ଯୁଦ୍ଧରୁ କମ୍ପା ଫେରିଣ ଅଇଲେ ।
କାହାନ୍ତି ମୋର ଜାନକୀବଲ୍ଲଭ ମୋତେ କହ
ମାରୁତି ବୋଲେ ଯୁଦ୍ଧରେଛନ୍ତି ଦଶରଥ ପୁଅ
ଲକ୍ଷ୍ମଣ ବୋଇଲେମୋତେକେ ଆଣିଲ ଏଠାର
ଜାମ୍ବବ ବୋଇଲେ ଶୁଣ ସୁମିତ୍ରା କୁମର ।
ଇନ୍ଦ୍ରଜିତ ଶକତିରେ ତୁମ୍ଭେ ଯେ ମୋହ ଗଲ
ତୁମ୍ଭଙ୍କୁ ମାରୁତି ଆଣିଲା ଏଠାବର ।
ଶକ୍ତି କାଢ଼ି ଦେଇ ଘାଆ ଶୁଖାଇଲୁ
ଏବେ ମୋହ ଆପଣେ ଛେଡ଼ିଣ ବସିଲୁ ।
ଲକ୍ଷ୍ମଣବୋଇଲେ ଇନ୍ଦ୍ରଜିତ କେଉଁଠାରେଅଛି
ହନୁମନ୍ତ ବୋଲେ ଶ୍ରୀରାମ ବାଣରେ ଯୁଝି ।
ପଳାଇଲେ ବାପପୋଏ ସୈନ୍ୟବଳ ଘେନ
ଶ୍ରୀରାମର ମାଡ଼କୁ ସମସ୍ତେ ଡ଼ରନ୍ତି ପୁଣି ।
ମୋହ ତୁମ୍ଭେ ଥିବାରୁ କ୍ରୋଧ ସୀତାକାନ୍ତ
ଅନେକ ଦୈତ୍ୟବଳ ସେହୁ କଲେ ହତ ।
ଶୁଣିକରି ଲକ୍ଷ୍ମଣ ଉଠିଲେ ବେଗ ହୋଇ
ସୁଗ୍ରୀବର ବୋଲେ ତୁମ୍ଭେନ ଯାଅ ଗୋସାଇଁ
ଏହିକ୍ଷଣି ଆସିବେ ଯେ ତ୍ରୈଲୋକ୍ୟର ସାଇଁ
ଲକ୍ଷ୍ମଣ ବୋଇଲେ ମାରୁତି ବେଗେ ଯାଅତୁହି
ମୋହର ଚିନ୍ତା ଶ୍ରୀରାମଙ୍କଠାରେ ଥିବ
ତୋରଠାରୁ ଶୁଣି ଶାନ୍ତ ହୋଇବେ ରାଘବ ।
ଲକ୍ଷ୍ମଣଙ୍କୁ ବୋଇଲେ ସୁଗ୍ରୀବର ପୁଣି
ବେଳ ଅସ୍ତ ହୋଇଲାଣି ଆସିବେ ଏହିକ୍ଷଣି ।
ଶୁଣିଣ ତୃପତି ହେଲେ ସୁମିତ୍ରା କୁମର
କ୍ରୋଧରେ ରଙ୍ଗବର୍ଣ୍ଣ ନେତ୍ର ଦିଶେ ତାର ।
ଲକ୍ଷ୍ମଣ କ୍ରୋଧ ହେବାରୁ ହନୁମନ୍ତ ଗଲା
ବାଟରେ ଶ୍ରୀରାମଙ୍କୁ ଦର୍ଶନ ଯାଇ କଲା ।
ଶ୍ରୀରାମ ବୋଇଲେ ଲକ୍ଷ୍ମଣଙ୍କୁ କିସ କଲୁ
ପ୍ରାଣର ସୋଦରକୁ ମୋ କାହିଁସେ ଛାଡ଼ିଲୁ ।
ମୋହ ତେଜିଲାଣିକି ଅଜ୍ଞାନ ଶରୀରେ
କେତେ ଘାଆ ହୋଇଛି ଶକତି ଟାଣରେ ।
ହନୁମନ୍ତ ବୋଇଲା କଠୋର ଘାଆ ନୁହେଁ
ଚେତା ହୋଇ ବସିଛନ୍ତି ସୁମିତ୍ରାଙ୍କ ପୋଏ ।
ଶଲ୍ୟ ଉପାଡ଼ି ଦେଲୁ ଅଳପ ବହିଥିଲା
ଜାମ୍ବବ ଲେପଦେଲା ସୁଷେଣ ପୂର୍ବିଲା ।
ଯୁଦ୍ଧକୁ ସଜମିଛି ଆସି ତ କଲେ ମନ
ଛଡ଼ାଇଲେ ସୁଗ୍ରୀବର ରାଜନ ତାଙ୍କୁ ପୁଣ ।
ଶୁଣିକରି ରଘୁନାଥ ସନ୍ତୋଷ ହୋଇଲେ
ଲେଉଟି କରିଣ ଲଙ୍କାଗଡ଼କୁ ପୃଚ୍ଛିଲେ ।
ବୋଇଲେ କାଲି ଜାଣିବାଟିରେ ଅସୁର
ସଗୋଷ୍ଠ ସହିତେ ମୁଁ ପେଷିବ ଯମପୁର ।
ଏତେ ବୋଲି ହନୁର କନ୍ଧରେ ବିଜେକଲେ
ଉତ୍ତର ଅଭିମୁଖରେ ସୁବଳକୁ ଗଲେ ।
ଗରୁଡ଼ ପୃଷ୍ଠରେ ଯେସନ୍ତେ ଦିଶେ ବିଷ୍ଣୁନାଥ
ହନୁମନ୍ତ କନ୍ଧରେ ତେମନ୍ତ ସୀତାକାନ୍ତ ।
ଋକ୍ଷକପିମାନେ ଏ ସମସ୍ତେ ସୁରଗଣ
ସିଦ୍ଧ ମନୁଜନ୍ତୁ ଲ ବାହୁଡ଼େ ରଘୁବୀଣ ।
ଋକ୍ଷକପି ସଇନ ପ୍ରଚଣ୍ଡ ତେଜ ମୂର୍ତ୍ତି
ସୁବଳ ପର୍ବତେ ବିଜେ କଲେ ରଘୁପତି ।
ପାଗ୍ଗେଟି ଅଇଲେ ଲକ୍ଷ୍ମଣ ସୁଗ୍ରୀବର
ଜାମ୍ବବଙ୍କ ସହିତରେ ମିଳିଲେ ସକଳ ।
ଦେଖି କରିଣ ସନ୍ତୋଷ ରଘୁକୁଳ ସାଇଁ
ହନୁମନ୍ତ କନ୍ଧରୁ ଓହ୍ଲାଇଲେ ଓହ୍ଲାଇ ।
ଲକ୍ଷ୍ମଣଙ୍କୁ କୋଳକରି କରନ୍ତି ରୋଦନ
ତୁ ମୋହର ପ୍ରାଣସଖା ସୁମିତ୍ରା ନନ୍ଦନ ।
ଯେତେବେଳେତୋତେ ଦୈତ୍ୟମାଇଲାଶକତି
ଅନ୍ଧାରମୟ ମୋତେ ଦିଶିଲା ବସୁମତୀ ।
ନାକ ବୁଡ଼ିଲେ ଯେସନ୍ତେ ତାଳୁରେ ପଶେପାଣି
ବୁଦ୍ଧି ନାଶଗଲା ମୋର ତେମନ୍ତ ମତ ଜାଣି
ସେ ପିତା ପୁତ୍ରେ ଅଟନ୍ତି ମହା ଋଷୀବର
ଚଉଦ ବ୍ରହ୍ମାଣ୍ଡ ହେଲେ ଜିଣିଲା ଅସୁର ।
ତପସ୍ୟା ବଳରେ ସେ ବଳସ୍ୱାର ଅତି
ଯାହା ସଙ୍ଗେ ସମରେ ହାରିଲା ସୁରପତି ।
ଗରିଷ୍ଠ ଦାନବ ସେ ତ୍ରିଭୁମହ ବନ୍ଧୁ
ବ୍ରହ୍ମାଣ୍ଡ ଭିତରେ ସେ ଅଟେ ହନ୍ତକାରୁ ।
ମାୟା କୁମନ୍ତମାନ ଯେ ଜାଣଇ ଅପାର
ଆଉ ବେଳେ ବାବୁରେ ନୋହିବୁ ଆଗୁସାର
ବିଭୀଷଣ ସଙ୍ଗରେ ତୁ ସମରକାଳେ ଥିବୁ
ଏହି ଯେଣେ ଯିବ ତୁହି ତେଣେ ଯିବୁ ।

ଜାଣୁ ନା ମିଛ ଘନ ମାଇଲୁ ଯେତ୍ତେ ଶର
ବିଭୀଷଣ ନୋହିଲେ ପୂରନ୍ତା ତାର କାଳ ।
ମାୟାକୁ ମାୟା ଜାଣେ ସେ ପୌଲସ୍ତିରନାତି
ଅସ୍ତ୍ର ନ ଅସ୍ତ୍ର ସେ ଗଲୁ ଚିହ୍ନଗତି ।
କାହାର ବେଳରେ ଯେ ମେଘଣହୋଏତାହା
ଅସୁରର ମାୟାକୁ ମୋହର ଧର୍ମ ସାହା ।
ଏବେ ଯିଉମିହିରେ ମୋହର ବୋଲେ ଥିବୁ
ଏକାରେ ତୁ ଇନ୍ଦ୍ରଜିତ ସଙ୍ଗରେ ନ ଯୁଝିବୁ ।
ତୋର ଯାଇଥିଲେରେ ମୋହର ସବୁ ଅଛି
ତୋହବନେ ମୋତେରେ ନ ଯୋଗାଏ କିଛି
ତୁ ମୋହର ଜୀବର ଧାରଣା ଅଟୁ ଭାଇ
ସୀତାକୁ ମୁରୁଛିଲି ମୁଁ ତୋର ମୁଖ ଚାହିଁ ।
ତୋତେ ଦେଖିଲେ ମୋର ଆମ୍ବାସ୍ଥିରହୋଇ
ତୁହିଭଲେ ଥିଲେ ମୋତେ ସମ୍ପଦ ମିଳଇ
ଯୁଦ୍ଧର ଭଙ୍ଗି ତୁରେ ନ ଜାଣୁ ଲକ୍ଷ୍ମଣ
ରାବଣ ନନ୍ଦନ ଇନ୍ଦ୍ରଜିତ ତାର ନାମ ।
ରାବଣରୁ ଅଧିକ ବୋଲନ୍ତି ତାକୁ ଲୋକେ
ତାହାସଙ୍ଗେ ଯୁଝିଲେ ମରିବ ମୁହିଁ ଶୋକେ
କହୁ କହୁ ଶ୍ରୀରାମର ବହେ ଅଶ୍ରୁଜଳ
ସେନା ସୈନ୍ୟମାନେ ସର୍ବେହୋଇଲେବିକଳ
ଏକଥା ଶୁଣି ଲକ୍ଷ୍ମଣର ଅରୁଣବର୍ଣ୍ଣ ନେତ୍ର
ଥର ଥର ହୋଇଣ କମ୍ପେ ତାର ଗାତ୍ର ।
ଦଣ୍ଡ ଦିଗକୁ ଚାହିଁ ସେ ବୋଲେ କୋପ କରି
ତୁମ୍ଭେ ମୋତେ ଡ଼ରଇ ଯେ ନକହ ଗୁଣଧାରୀ
କ୍ଷତ୍ରୀର ପୁଅ ମୁଁ ଯେ ଡ଼ରିବି କିମ୍ପା ରଣେ
ହାନି ଅପ୍ରତଏ ଯେ ଅଛଇ ପୁରାଣେ ।
ରାବଣର ଶୂଳ ଯେ ନବାରି କଲି ମୁହିଁ
ଇନ୍ଦ୍ରଜିତ ଶକତି ଯେ ମାରଇ ଆଡ଼େଇ
ତେଣୁ ମୁଁ ପ୍ରତି ଅସ୍ତ୍ର ନ ପାରିଲି କରି
ମୋ ସମ୍ମୁଖରେ ଥିଲେ ଶସ୍ତ୍ର ପାରନ୍ତା କି ଧରି
ଇନ୍ଦ୍ରଜିତ ବଂଶ ଯେ ମୋତେ ଲଗା ପୁଣ
ଆହୁରି ଦୁଇଥର ମୋହ ଯିବ ଜାଣ ।
ମହୀରାବଣ ମୋହ କରିବ ମୋତେ ଥରେ
ରାବଣ ମୋହ ମୋତେ କରିବାର ବେଳେ
ଇନ୍ଦ୍ରଜିତ ବଂଶ ମୁଁ ଯେ ନଶୋଧି ମାରିବି
ଏମନ୍ତ ପ୍ରତିଜ୍ଞା କଲେ ସଉମିତ୍ରୀ ଭାଇ ।

ଶ୍ରୀରାମ କହିଲେ ବାବୁରେ ସତ ମୁଁ କହିଲି
ମାୟାରେ ଅସୁରେ ଯେ ଜିଣନ୍ତି ବୋଇଲି ।
ଧର୍ମରେ ଆମ୍ଭେ ଯେବେ ଯୁଝିବାରେ ଥାଇ
ଛନ୍ଦପୁରେ ଆମ୍ଭଙ୍କୁ ଜିଣନ୍ତା କେହି ନାହିଁ ।
ଲକ୍ଷ୍ମଣ ବୋଇଲେ ସେ ଜାଣୁ ପଛେ ମାୟା
ମୁହିଁ ତ ସଂଗ୍ରାମରେ ବଦାରିବି ତାର କାୟା
ଇନ୍ଦ୍ରଜିତ ଯୁଦ୍ଧ ଯେ ହେଲା ମୋର ଭାଗେ
ପୁଣ ପୁଣ ପ୍ରତିଜ୍ଞା ଯେ କରେ ବୀର ରାଗେ
ଏବେ ଭେଟ ଅଡ଼ଲେକ ସେ ଯିବପ୍ରାଣଘେନ
ଏଥିକୁ ସାକ୍ଷୀ ଥାନ୍ତୁ ଚନ୍ଦ୍ର ସୂର୍ଯ୍ୟ ବେନ ।
ଇନ୍ଦ୍ରଜିତ ମାଥ ମୁଁ ଯେ ନ ଛେଦଇ ଯେବେ
ଏ ଧନୁ ଶରକୁ ମୁହିଁ ନ ବହଇ ତେବେ ।
ବିଭୀଷଣ ସୁଗ୍ରୀବ ଅଙ୍ଗଦ ହନୁମନ୍ତ
ନଳନୀଳ ସୁଷେଣ ତାରକ୍ଷ ଜାମ୍ବବନ୍ତ ।
ଗନ୍ଧମାଦନ ଯେ ଶରଭ ଶତବାଳି
ରଣରଙ୍ଗ ପୁଣ୍ୟେ ଯେତେକ ଅଛ ମିଳି ।
ଋଷକପି ସଇନ ତୁମ୍ଭେ ଥାଅ ଜାଣି
ଇନ୍ଦ୍ରଜିତକୁ ନ ଘାଲନ୍ତୁ ରଘୁକୁଳମଣି ।
ସତ୍ୟ ସତ୍ୟ ସତ୍ୟ ମୁଁ ଯେ କହୁଅଛି ହକ
ରାମାୟଣ ଯୁଦ୍ଧରେ ପ୍ରତିଜ୍ଞା ମୋର ଦେଖ ।
ବେନି ବଳ ମଧ୍ୟେ ମୁଁ କରିବି ଯେଉଁ ରୀତି
ସାକ୍ଷୀ ହୋଇ ଥାଅ ତୁମ୍ଭେ ପଚାଶ ଯୂଥପତି
ଇନ୍ଦ୍ରଜିତ ଯେବେ ଆଜ ଯୁଦ୍ଧକୁ ଆସଇ
ପୁଣି ସେ ଲେଉଟି ଆଉ ଘରକୁ ଯିବନାହିଁ
ସ୍ୱର୍ଗ ଦେବତାଏ ଯେବେ କରିବେ ତାକୁରକ୍ଷା
ତଥାପି ନ ବଞ୍ଚଇ ଦଶାନନ ବତ୍ସା ।
ଜାଣିବା ଇନ୍ଦ୍ରଜିତ ସେ ଜିଣିଲା କେଉଁରୂପେ
ଦଶଦିଗପାଳଙ୍କୁ ଜିଣିଲା କେଉଁ ଧାପେ ।
ମୋହର ହସ୍ତରେ ତାର ସରିବଟି ପ୍ରାଣ
ପୁତ୍ର ନାତି ବଂଶ ତାର ମାରିବି କାଟିଣ ।
ଲକ୍ଷ୍ମଣଙ୍କ ପ୍ରତିଜ୍ଞା ଶୁଣି ରାମ ହସି
ନତବଦ ହୋଇଣ ଅଛନ୍ତି ତରୁ ଶିଣି ।
ବିଭୀଷଣ ଜଣାଇଲା ଯୋଡ଼ି ବେନିକର
ଇନ୍ଦ୍ରଜିତ ନାମରେ ଡ଼ରନ୍ତି ସୁର ନର ।
କେହୁ ଧନୁ ଶସ୍ତ୍ର ଯେ ନ ପାରନ୍ତି ଘେନ
ବଡ଼ ମାୟା ଜାଣେ ଦଶଶିରର ମୁର୍ଦ୍ଧନ ।

ପଳାଇଛ ମନ ଯେ କରେ ଭୟ ପାଇ
ଏତେ ବଡ଼ ପ୍ରତିଜ୍ଞା ଯେ କେହୁ କରିନାହିଁ ।
ଯେବେ ବସୁବଳ ତୁମ୍ଭେ ମରିବ ଇନ୍ଦ୍ରଜିତ
ଲକ୍ଷ୍ମଣ ପ୍ରତିଜ୍ଞା ଯେ କଲେକ ବହୁତ ।
ବିଶେଷେ କ୍ଷତ୍ରିୟ ଯେ ଧର୍ମର ବିସ୍ତର
ଅଗତିକ ପଶିଲେ ସକଳ ନିଶାଚର ।
ମୂର୍ଖ ଯେ ସୋଦର ଅଟେ ତାହାଙ୍କର
ଅବେଗର ଦେଖିଣ ଅଇଲ ଅପମର ।
ତୁମ୍ଭେ ନ୍ୟାୟବନ୍ତ ହେବାରୁ ଋକ୍ଷକପି ସାହା
ତେଣୁ ସେ ବସ୍ତୁର କର ହେ ନରନାହା ।
ନିଷ୍ଟେ ମେଘନାଦକୁ ମାରିବେ ତୁମ୍ଭ ଭାଇ
ବ୍ରହ୍ମା ରୁଦ୍ର ହେଲେ ହେଁ ରଖନ୍ତା କେହି ନାହିଁ
ଯେବଣ ଶର ଯେ ଆଜ ମାରେ ଇନ୍ଦ୍ରଜିତ
ରାବଣକୁ ଦେଇଥିଲା ମନ୍ଦୋଦରୀ ତାତ ।
ପଞ୍ଚଭୁକ କରିଣ ସେ ବିଭା ସମୟରେ
ଶକତି ସମର୍ପିଲା ରାବଣ ହସ୍ତରେ ।
ପୂର୍ବରେ ପିତାମହ ଥିଲେ ତାକୁ ଦେଇ
ସେହି ଶକତି ଶଶୁର ଜ୍ବାଇଁକି ସମର୍ପଇ ।
ସମରେ ରାବଣ ଯେ ବଡ଼େ ବୀରପଣେ
ଅନେକ କ୍ଷତ୍ରିୟ ସେ ମାରେ ଅକାରଣେ ।
କାଳେ ସେ ସ୍ୱର୍ଗପୁରରେ ହୋଇଲା ସମର
ଇନ୍ଦ୍ରକୁ ଜିଣି ବୋଲାଏ ଇନ୍ଦ୍ରଜିତ ବୀର ।
ପ୍ରସନ୍ନ ହୋଇଣ ପିତା ପୁତ୍ରକୁ ପୁଣ ଦେଲା
ଆଜଠାରୁ ଏହି ଶସ୍ତ୍ର ବୁହସି ବୋଇଲା ।
ଏଯେ ସେ ଅଷ୍ଟାଙ୍ଗରେ ମାରେ ଯୁଦ୍ଧ କାଳେ
ପଡ଼ିଲା ଶକତି ଯେ ଲକ୍ଷ୍ମଣ ବକ୍ଷସ୍ଥଳେ ।
ଟିକିଏ ନ ଫିଟିଲା ମାଏସ ଓଡ଼ନଳ
ମେରୁ ଭେଦ ପାରଇଯେ ଦେହରେନକାଟିଲା
ଦେଖିଲ ଜାଣିଲ ଦେବକେବେହେଁ ନାହିଁପଣ
ନିଶ୍ଚୟ ନାଶଯିବ ରାବଣର ବଂଶ ।
ତହିଁଙ୍କ ଲକ୍ଷ୍ମଣ ପ୍ରତିଜ୍ଞା ଏବେ କଲା
ଦୂର ସନ୍ଦେଶ ମୋର ଯେ ମନକୁ ଅଇଲା ।
ଆଜର ଯୁଦ୍ଧରେ ମୁଁ ଦେଖିଲ ବିପରୀତ
ହନୁମନ୍ତ ରୂପେ ତଳକୁ ଦେବଦଳନ ରଥ ।
ପୁଷ୍ପକ ଯାନକୁ ତଳେ ମାଡ଼ି ଦେଲା
ପାତାଳକୁ ବିମାନ ଗମନ କରିଗଲା ।
ଯେଉଁ ବିମାନରେ ତିନପୁର ଲୋକ
ବସିବାକୁ ସ୍ଥାନ ଦେବ ସେହି ଯେ ପୁଷ୍ପକ ।
ମେରୁର ସମାନରେ ଅଟେ ସେହି ଯାନ
ହନୁମନ୍ତ ରୂପିଲେକ ପାତାଳକୁ ପୁଣ ।
ରାବଣ ସୁମରନ୍ତେ ବାହାର ହୋଇଲା
ଭୂମିକି ବିଦାରିଣ ସେ ଫୁଟି ବାହାରିଲା ।
ଆହୁରି କଥାଏ ଶୁଣ ପ୍ରଭୁ ରାମଚନ୍ଦ୍ର
ଲକ୍ଷ୍ମଣ ପଡ଼ିବାରୁ ରାବଣ ଆନନ୍ଦ ।
ରଥପରେ ପକାଇ ଲଙ୍କାକୁ ନେଇଥାନ୍ତା
ଜାନକୀ ଆଗରେ ନେଇଣ ଦେଖାନ୍ତା ।
ନେବା ନିମନ୍ତେ ସେ ରଥରୁ ଓହ୍ଲାଇଲା
ଟୋଳି ନପାରିବାରୁ ସେ ଆଶ୍ଚର୍ଯ୍ୟ ହୋଇଲା
ଏହି ସମୟରେ ହନୁ ମାଇଲା ବିଧାଏ
ସମ୍ଭାଳି ନ ପାରିଲା ତ ଦଶାନନ ରାଏ ।
ସେତେ କ୍ଷତ୍ରି ହୋଇଣ ଭୂମିରେ ମୋହଗଲା
ଲକ୍ଷ୍ମଣଙ୍କୁ ଘେନିଣ ମାରୁତି ଘେନଗଲା ।
ଏମାନ ଦେଖିବାରୁ ଡରିଲେ ବାପ ଘୋଏ
ପଳାଇଲେ ଆଜ ଯେ ନ ରହିଲେ କଏ ।
ଶୁଣିଣ ରଘୁନାଥ ମନରେ ହରଷ
ବୋଇଲେ ଏ କଥାମାନ ତୋହର ବିନାଶଣ
ଜମ୍ବେବର ପ୍ରସାଦରୁ ଜୀଇଁଲା ମୋର ଭାଇ
ସୁଗ୍ରୀବ ରାବଣକୁ ନେବ ଯେ ସଧାଇ ।
ଏ ଯୁଦ୍ଧକୁ ହନୁମନ୍ତ ମୋହର କବାଟ
ଅଙ୍ଗଦର ପ୍ରସାଦରୁ ପାଇବ ସଖୀ ଭେଟ ।
ନଳ ବିନା ଆଣିଲା ମୋ ଥାଟକୁ ସଜକରି
ସୁଷେଣ ଯେ ଗନ୍ଧମାଦ୍‌ନ ଶଙ୍କର ।
ସେନା ଯୂଥପତି ଯେ ଋକ୍ଷକପି ବଳ
ଯୁଦ୍ଧରେ ମାରିବେ ଯେ ଦଇତେ ଅନର୍ଗଳ ।
ଏତେ ବୋଲି ଶକତି ଯେ ଧରି ବାମ କରେ
ଅଙ୍ଗଦକୁ ଯାଚି ସେ ଦେଲେ ସ୍ନେହରେ ।
ରବି ଅସ୍ତ ହୁଅନ୍ତେ ସ୍ନାନ ଯାଇ କଲେ
ଦେବ ପିତୃ ତର୍ପଣ ସନ୍ଧ୍ୟା ସୁମରିଲେ ।
ନବରେ ପ୍ରବେଶ ହୋଇ ସାଂଭିଲେ ମଣୋହି
ଜଣି ବସିଲେ ଦେବ ସୁବଳସ୍ଥାରେ ରହି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାମଚନ୍ଦ୍ର ପହୁଡ଼ି ହେଲେ ନିଦ୍ରାଗତ ।

ଲକ୍ଷ୍ମଣ ସଙ୍ଗରେ ଯେତେ ସେନାପତି
ସ୍ନାହାନ ସାରିଲେ ଯାଇ ନଦୀରେ ତତ୍ପତି ।
ନିତ୍ୟକର୍ମ ସାରିଣ ସେ ନବରକୁ ଗଲେ
ମଣୋହିର ବିଧାନ ଯୂଥପତି କଲେ ।
ଲକ୍ଷ୍ମଣ ମଣୋହି ସାରିଣ କଲେ ଆଯୋଜନ
ରିକ୍ଷକପି ଭୁଞ୍ଜିଲେ ଯେ ଫଳ ମୂଳ ପୁଣ ।
ଯେ ଯାହା ବିଷୟରେ ଯେ ସେହୁ ତାହା ଖାଏ
ଯେମନ୍ତେ ଅମୃତ ଭୁଞ୍ଜିଲେ ତୋଷହୁଏ ।
ରିକ୍ଷକପିବଳ ଯେ ଭୁଞ୍ଜି ହେଲେ ତୋଷ
ନଦୀରେ ଆସିଣ ଯେ ଜଳ କଲେ ଗ୍ରାସ ।
ଶ୍ରୀରାମର ବଳ ଯେ ରହିଲେ ସୁସ୍ଥେ ପୁଣି
ସଜଳସଦୀପ ଲଗେ ଚଉପାଶେ ଜାଣି ।
ସୁବଳଗିରି ହେ ଦିଶେ ଆଲୋକମଣ୍ଡେ
ନନ୍ଦଘୋଷେ ଯେମନ୍ତେ ଜଗନ୍ନାଥ ରାସ୍ତେ ।
ଦ୍ୱିଗୀପୂ ଦିନ ଯୁଦ୍ଧ ଶୁଣି ହେଲଟିକ ତୋଷ
ଏହିମତେ ରାମାୟଣ ପୁରାଣର ରସ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦିଗାମ୍ବର
ରାବଣେଶ୍ୱର ଯେ ଗଲ ନିଜ ପୁର ।
କେବଣ ବିଷୟ ସେ କରେ ଦଶାଇଣ
ତାହା ମୋତେସଞ୍ଚପି କହ ହେ ଦିଗବାସ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତି
ଶ୍ରୀରାମ ସମ୍ମୁଖୁ ଯେ ଗଲ ଲଙ୍କପତି ।
ସୈନ୍ୟଙ୍କର ସହିତେ ମେଘନାଦ ବୀର
ମହିରାବଣ ଯୂକ୍ତପାକ୍ଷ ମହୋଦର ।
କାକାକ୍ଷ ଲୋହିତାକ୍ଷକମ୍ପକର ସ୍ୱନ
ନରାନ୍ତକ ଦେବାନ୍ତକ ଏ ବେନି ନନ୍ଦନ ।
କୁମ୍ଭ ନିକୁମ୍ଭ ଯେ ମୁଖା ଦୁର୍ମୁଖା
ସେନାପତିମାନଙ୍କୁ କରିବ କେହୁ ଲେଖା ।
ପଞ୍ଚାଶ କୋଟି ତାର ମୁକୁଟ ଯୋଦ୍ଧାମାନ
ରଥ ଗଜ ଅଶ୍ୱ ଯେ ପାଦାତି ସଇନ ।
ରଣଭଗ୍ନ ହୋଇଣ ସେ ପଳାଇଣ ଗଲେ
ଏଣେତେଣେ ପଳାଇଣ ଲଙ୍କାରେ ପଶିଲେ ।
ନଗର ନରନାରୀ ହୋଇଲେ ବିଷାଦ
ଏକକୁ ଆରେକ ଯେ କରନ୍ତି ସମ୍ବାଦ ।
ଦେଖ ଗୋ ସଜନି ପଳାନ୍ତି ଭୟପାଇ
ଜଣେ କେ ପଛକୁ ଲେଉଟି ନ ଚାହିଁ ।

ରକତ ଜର୍ଜର ସବୁଙ୍କର ଅଙ୍ଗ
ଏତେ ସନ୍ୟ ଗୋଟି ଯେ ହେଲେ ରଣରଙ୍ଗ
ବାହୁଡ଼ିଣ ଆଠ ପଶିଲେ ନିଜ ଦେଶେ
ଶ୍ରୀରାମ ଲକ୍ଷ୍ମଣ ରିକ୍ଷକପିଙ୍କର ହାସେ ।
ରାବଣ ଦ୍ୱାରୀଙ୍କୁ ଆଜ୍ଞାଦେଲା ଚାହିଁ
ଅମାତ୍ୟ ଗଣଙ୍କୁ ଆଣ ହକରାଇ ।
କେହି ଯେ କାହାର ଘରକୁ ନ ଯିବେ
ମୋହର ବଚନକୁ ସମସ୍ତେ ପାଳିବେ ।
ପୂର୍ବ ନାତି ସହିତରେ ରଥୀ ଯୋଦ୍ଧାମାନେ
ଆବର ପଦାତି ଅଛନ୍ତି ଯେତେ ସୈନ୍ୟେ ।
ସମସ୍ତେ ରହନ୍ତୁ ନା ଯାନ୍ତୁ କେହି ଜଣେ
ଶୁଣିଣ ଦ୍ୱାରୀମାନେ ଧାଇଁଲେ ତତ୍କ୍ଷଣେ ।
ବୋଇଲେ ରାଜା ଆଜ୍ଞା ଦେଇଛି ତୁମ୍ଭରେ
କେହି ଘରକୁ ନ ଯିବ ରହିବ ସିଂହଦ୍ୱାରେ ।
ଭିତର ସିଂହଦ୍ୱାରେ ସମସ୍ତେ ରହିବ
ରାଜା ଆଜ୍ଞା ପାଇରେ ଘରକୁ ତୁମ୍ଭେ ଯିବ ।
ଏସନେକ ବୋଲିଣ ଦ୍ୱାରୀ ଲଙ୍କେଶ୍ୱର
ନବରେ ପ୍ରବେଶ ହେଲ ଯାଇଁ ଦଶଶିର ।
ଆସ୍ଥାନରେ ବସିଲ ସେ ରଥରୁ ଓହ୍ଲାଇ
ରତ୍ନଖଟ ଦୋଳରେ ଯେ ବସେ ବେଗେଯାଇ
ସେନା ସେନାପତି ଯେ ରାଉତ ମାହୁନ୍ତ
ପୂର୍ବନାତି ସହିତରେ ପାତ୍ର ଅମାତ୍ୟ ।
ଏମାନଙ୍କୁ ଚାହିଁଣ ଯେ କହେ ଦଶାଗିର
ରିକ୍ଷକପି ମର୍କଟେ ସାରିଲେ ମୋର ଶରୀ ।
ଶ୍ରୀରାମ ତପସ୍ୱୀର ଯୁଦ୍ଧ ଅପୂର୍ବ
ଯାହା ମୁଁ ଦେଖିଲି ଆଜ ଯୁଦ୍ଧ ଅସମ୍ଭବ ।
ଜାଣିଲି ଶ୍ରୀରାମ ଯେ ଜଗତ ଜିଣିପାରେ
ତାହାର ପ୍ରାକର୍ମକୁ ଛୁହାଇ ନ ପାରେ ।
ଆଜ ସେ ମୋତେ ପୁଣି ଆକ୍ଷୋଣି ଯୁଦ୍ଧକଲା
ଶ୍ରାବଣ ବରଷା ପ୍ରାଏ ନାରାଚ ବରଷିଲା ।
ଦଶଶିର ମୋର ସେ ପକାଇଲା କାଟି
ତଳରେ ନ ପଡ଼ୁ ଶିର ଲାଗଇ କନ୍ଧରେଟି ।
ଶିର ଲଗିବାରୁ ସେ ହପାସ୍ତେ ପୁଣି କଲା
ଦଶଧନୁ ମୋହର କାଟି ପକାଇଲା ।
ଅଭେଦ କବଚ କାଟି ଶରୀର ପ୍ରାଣ ଭେଦ
ବିକଳରେ ଜୀବନ ମୋର ହୋଇଲା ଛେଦ ।

ମୁକୁଟ ଛଡ଼ାଇଲା କାଟିଲା ରଥ ଧ୍ୱଜ
ସାରଥି ମୁଣ୍ଡ କାଟିଲା ପୁଣି ରାମ ରାଜ ।
କ୍ଷତ୍ରୀଧର୍ମ ବିଦ୍ୟା ଯେ ଅଛି ତାର ଚର୍ଚ୍ଚି
ଧର୍ମରେ ମୁର୍ଚ୍ଛି ଆଜ ଅଇଲି ପ୍ରାଣ ପାଇ ।
ଧନ୍ୟ ଧନ୍ୟ ରଘୁନାଥ ଦଶରଥ ସୁତ
ମାନବ ଜନମ ହୋଇ ତୋ କଥା ଅପ୍ରମିତ ।
ବୟସ ହୋଇଛି ତୋତେ ଛବଶ ସତାଇଶ
ଆଜ୍ଞ ତୋର ଦର୍ପ ଏତେ ପ୍ରାନ୍ତେ ହେବୁକସ
ଜଟାଧାରୀ ହୋଇଣ ଏତେ ଯୁଦ୍ଧ ଜାଣୁ
ମାନବ ପରାଏ ଆମ୍ଭେମାନେ ତୋତେ ମଣୁ ।
ଏବେ ଜଣାଗଲା ତୁହି କ୍ଷତ୍ରୀଙ୍କର ସାର
ତ୍ରିପୁର ମଧ୍ୟେ ତୋତେ ନାହିଁ ପଟାନ୍ତର ।
ଯେତେକ ଅଛନ୍ତି ଏ ସଂସାରେ ଶସ୍ତ୍ରଧାରୀ
ତୋର ମୁଖୁ ଶବ୍ଦ ମାନେ ପଳାଇବେ ହାରି
ଧିକ ଧିକ ଧିକ କ୍ଷତ୍ରିମାନଙ୍କ ପ୍ରତଜ୍ଞା
ଆଷାଢ଼ ମାସ ମେଘ ଗର୍ଜନ ଗାରିମା ।
ସେ କାଳରେ ରଣଗୋଳ ଦେଖିଲେ ଅମର
ନଦଂଳ ଲୋକଙ୍କୁ ଏକା ପାରନ୍ତି ଏ ମାରି ।
ଆଜର କଥା ମୁଁ ଯେ ଦେଖିଲି ଧ୍ୱଂଶତୋଳେ
ବିଷମ ସମର ମୁର୍ଚ୍ଛା ପାଇଲି ଏତେକାଳେ ।
ଶ୍ରୀରାମ ଯେ ଜନ୍ତୁପତି ଆମ୍ଭେମାନେ ଜୀବ
ମୃଗପଲ ଦେଖିଲେ ଶାର୍ଦ୍ଦୂଳ ଯେସ୍ନେ ଭାବ ।
ଶ୍ୟାମଳ ସଙ୍ଗରେ ଯେସ୍ନେ ବକ ପକ୍ଷ ମିଳ
ବଜ୍ରକୁ ଡରି ଯେସନେ ପର୍ବତ ବିକଳ ।
କ୍ଷୀର ସମୁଦ୍ର ଯେସ୍ନେ ମନ୍ଥଇ ମନ୍ଦର
ତେସନ ପଟାନ୍ତର ମୁଁ ଦେଖିଲି ରଘୁବୀର ।
ଶୁଣିଣ ଇନ୍ଦ୍ରଜିତକୁ ଶର ଆଗସର
କର ଦୁଇ ଯୋଡ଼ିଣ କହେ ଆଦରେ ।
ତୁହି ସେ ବାହୁଡ଼ାଇ ଆଣିବୁ ଦେବ ଆଟ
ଆଜଠାରୁ ଶବ୍ଦୁ ତୋର ହୋଇଥାନ୍ତୁ ହତ ।
ଆମ୍ଭଙ୍କୁ ବାହୁଡ଼ାଇଲ ତୁମ୍ଭର ବିନା ଦୋଷ
ନୋହିଲେ ଶବ୍ଦୁ ତୋର ହୋଇଥାନ୍ତେ ନାଶ
ରାବଣ ବୋଇଲରେ ତୁ ନ ଜାଣୁରେ ବାବୁ
ମାୟାଯୁଦ୍ଧ କରି ମୁଁ ଜିଣିପାରେ ସବୁ ।
ଦେବ ଦାନବ ସଙ୍ଗରେ ଯୁଦ୍ଧ ମୁହିଁ କଲି
ଆଜ ଯେଉଁ ସମର ମୁଁ ଅପୂର୍ବ ଦେଖିଲି ।

ଲକ୍ଷ୍ମଣର ଶରରେ କୋପ ଯେ ଅଗ୍ନି ଜାଣି
ଇନ୍ଦ୍ରଦେବତାଙ୍କୁ ସେ ଜିଣିବେ ପାରେ ଜଣି ।
ଶକତି ବାଜ ଲକ୍ଷ୍ମଣ ମୋହେ ପଡ଼ିଥିଲା
ମୁହିଁ ତୋଳିବାରି ବେଳେମେରୁରୁ ଗରୁହେଲା
ହନୁମନ୍ତ ବିଧାଏ ମାରିଲା ମୋତେ ଆସି
ସେତେବେଳେମୋଦେହରେ ଚେତାଗଲାପଶି
ମୋତେ ମାରି ତୋହର ରଥକୁ ଚାପିଲା
ଦେବଦଳନ ରଥକୁ ଭୂମିରେ ଲୁଗ୍ଠିଲା ।
ପୁଣି ମୋର ରଥଧ୍ୱଜେ ବସି ହନୁମନ୍ତ
ପୁଷ୍ପକ ବିମାନ ଯେ ହୋଇଲା ମସ୍ତଗତ ।
ସ୍ମରଣା କରିବାରୁ ବାହାରି ହୋଇଲା
ହନୁମନ୍ତର ପ୍ରାକର୍ମ ଆଜ ଜଣାଗଲା ।
ମୁହିଁ ଲେଉଟିବାରୁ ଲକ୍ଷ୍ମଣକୁ ନେଲା
ବାନର ଗୋଟାକୁ ମୋର ବଳ ନ ପାଇଲା ।
ଏହି ସମୟରେ ଯେ ମିଳିଲା ଯାଇ ସ୍ୱର
ଶୁଣ ଦେବ ରାବଣ ଲଙ୍କାର ଈଶ୍ୱର ।
ଇନ୍ଦ୍ରଜିତ ଶକତିରେ ଲକ୍ଷ୍ମଣ ମୋହି ଗଲା
ହନୁମନ୍ତ ନେବାରୁ ସେ ଚେତା ପାଇଲା ।
ହୃଦୟକୁ ଭେଦ ନ ଥିଲା ଦେବଶର
ଅଳପ ଭେଦିଥିଲା ମାଂସ ଭିତର ।
ଜମ୍ବେବ ବୋଲିଣ ଯେ ଏକ ରକ୍ଷ ମନ୍ତ୍ରୀ
ଅସ୍ତ୍ର ଉପାଡ଼ିଣ ସେହି ଫୁଙ୍କିଲା ତତ୍ତ୍ୱତ ।
ମାୟାରୂପ ଧରିଣ ମୁଁ ଅନ୍ତରୀକ୍ଷେ ଥିଲି
ଲକ୍ଷ୍ମଣ ବଞ୍ଚିଲା ଦେବ ଦେଖି ମୁଁ ଅଇଲି ।
ଶୁଣିକରି ରାବଣ ଯେ ପୁତ୍ର ମୁଖ ଚାହିଁ
ଶୁଣରେ ମେଘନାଦ ଜଗତ୍ର ଜସ କହି ।
ଗୁରୁ ବୋଇଲା ଦେବ ବଞ୍ଚିଲା ଲକ୍ଷ୍ମଣ
ମୁହିଁ ଦେଖି ବାହୁଡ଼ି ଅଇଲି ଏହିକ୍ଷଣ ।
ହନୁମନ୍ତ ନେଲାବେଳେ ତାର ସଙ୍ଗେ ଗଲି
ଜୀଇଁବାର ଦେଖି ମୁଁ ଯେ ବାହୁଡ଼ି ଅଇଲି ।
ଏହିଟି ସତ୍ୟକଥା କେବେହେଁ ନୋହେମାୟା
ଶୁଣିଣ ଇନ୍ଦ୍ରଜିତର ପ୍ରଜ୍ୱଳିତ କାୟା ।
ରାଗରେ ଥରହର କମ୍ପେ ତାର ଦେହି
ଚମରେ ଖଡ଼ଗ୍ଧାଳ ଶଶିରୁ ଗଲା ବହି ।
ପିତାକୁ ଚାହିଁଣ ସେ ବୋଲେ କୋପ କରି
କାଲି ତୁମ୍ଭ ଶବ୍ଦୁକୁ ମୁଁ ପକାଇବି ମାରି ।

ଶ୍ରୀରାମ ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବର
ଅଙ୍ଗଦ ସଙ୍ଗତେ ଋକ୍ଷ କପି ବନଚର ।
ଗୋଟିଏ ନ ବର୍ତ୍ତିବେ ପ୍ରତିଜ୍ଞା ମୋର ଦେଖ
ଏ ମୋହର ବୋଲରେ ଚିନ୍ତା ଯେ ଉପେଖ
ଏ ବ୍ରହ୍ମାଣ୍ଡ ଭିତରେ ଦେବ ଯେ ଆବର
ତାହାଙ୍କର ରାଜା ଯେ ଅଟେ ବଜ୍ରଧର ।
କଞ୍ଚିତ ଯୁଦ୍ଧରେ ମୁଁ ଜିଣିଲି ଯାହାକୁ
ନାଗ ଫାଶେ ବାନ୍ଧିଣ ଆଣିଲି ତାହାକୁ ।
ନକର ଦେବ ଚିନ୍ତା ନୃହସି ବିସ୍ମୟେ
ରାଜ ପାଇଲେ ହୋଇବ ତୋହର ବିଜୟେ
ହେ ଦେବ ମାଜଣା ମଣୋହି ବେଗେ କର
ଯାଆନ୍ତୁ ସୈନ୍ୟମାନେ ଯେ ଯାହାର ପୁର ।
ଶୁଣିଣ ଲଙ୍କପତି ସମସ୍ୟା ନ ଦେଲା
ବାର୍କିଆ ହୋଣରୁ ଭିତର ପୁର ଗଲା ।
ହାର ଜଣି ରାବଣ ଭିତରକୁ ଗଲା
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକଦେଲା
ରାଣୀ ମହାଦେଇମାନେ ଦର୍ଶନ ଆସି କଲେ
ଶିରେକର ନବେଶିଣ ପ୍ରଣମ୍ୟ ହୋଇଲେ ।
ପାଏ ପଡ଼ ଶୋଇଣ ଶିରେ କର ଦେଇ
ଖଣ୍ଡେ ଦୂରେ ଅସୁସ ରହିଲେ ପୁଣ ଯାଇ ।
ମନ୍ଦୋଦରୀ କରେ ଦେଇ ରାଏ କର
ପ୍ରବେଶ ହୋଇଲା ଯାଇ ଭିତର ଜଗଘର ।
ମର୍ଦ୍ଦନ ମାଜଣା ନିତ୍ୟ ସନ୍ଧ୍ୟା ସେହୁ ସାର
ମଣୋହି ସାରିଣ ସନ୍ତୋଷ ଦଶଶିର ।
ନବ ରତ୍ନେ ନିର୍ମିତ ଯେ ଚନ୍ଦ୍ରଶାଳାପୁର
ଦେଖିଣ ପବନ ତହିଁ ବହେ ଧୀର ଧୀର ।
ବଡ଼ଭଡ଼ ନିରନ୍ତରେ ଜଳେ ପନ୍ତି ପନ୍ତି
ଖଟିଣ ଅଛନ୍ତି ଯେ ଅନେକ ଯୁବତୀ ।
ସୁବର୍ଣ୍ଣ ପଲଙ୍କରେ ଶୋଇଯାଇ ଅଛି ଶେଯ
ନିଦ୍ରାରେ ଅଚେତନ ହେଲା ଲଙ୍କରାଜ ।
ଏଥୁ ଅନନ୍ତରେ ପୁଣ ଇନ୍ଦ୍ରଜିତ ବୀର
ସହୁଁ ଦଶାନନ ବଜେ କଲା ଅନ୍ତଃପୁର ।
ସେହ୍ମା ସେହ୍ମାପତି ଅମାନତ୍ୟ ପାତ୍ର ଘେନ
ଆବର ସଙ୍ଗରେ ଶୁକସାରଣ ମନ୍ତ୍ରୀ ବେନ ।
ନବରୁ ବାହାର ହେଲେ ଯେ ଯାହାରେ
ମେଘନାଦ ପ୍ରବେଶ ହୋଇଲା ତାରପରେ ।

ଭଣ ରାଜପୁତ୍ରମାନେ ଯେ ଯାହାଘର ଗଲେ
ବିଶିଷ୍ଟ ହୁଅନ୍ତେ ଦୋସାଧ ନଗ୍ରେ ଗଲେ ।
ଏମନ୍ତ ସମୟରେ ଅମର ସ୍ୱର୍ଗପୁରେ
ଦେବତାଏ ଆସିଣ ମିଳିଲେ ଯେ ଯାହାରେ
ଇନ୍ଦ୍ର ବୃହସ୍ପତି ଯେ ପବନ ନଇଋତ
ଚନ୍ଦ୍ର ସୂର୍ଯ୍ୟ ବରୁଣ ଯେ କୁବେର ଚିତ୍ରରଥ ।
ନାରଦର ବିଶ୍ୱାବସୁ ବିଧାତା ପଦ୍ମଯୋନି
ସନକ ସନାତନ ଗନ୍ଧର୍ବ ସର୍ବ ଘେନି ।
ଏମନ୍ତ ସମୟେ ଦେବଗଣ ଆସି
ବିଚାର କରନ୍ତି ଯେ ଅମର ସ୍ୱର୍ଗବାସୀ ।
ଇନ୍ଦ୍ରଦେବ ବୋଇଲେ ଦେବତା ମୁଖ ଚାହିଁ
ଆଜର ଯୁଦ୍ଧ ମୁଁ ତ ଦେଖିଲି ଶୂନ୍ୟେ ରହି ।
ପାପି ଇନ୍ଦ୍ରଜିତ ସେ କେଡ଼େ ଧନୁର୍ଦ୍ଧର
ସେଉଁଶକ୍ତି ମାଇଲା ଲକ୍ଷ୍ମଣ ହୃଦୟର ।
ଈଶ୍ୱର ହୋଇଲେ ନ ଆନରେ ହୁଏ ସେହି
ନପୁଣ ରଘୁନାଥ ଅଥବା ବାହୁଡ଼ଇ ।
ଏହାଶୁଣି ବୃହସ୍ପତି ବୋଇଲେ ବଚନ
ଏକଥା ଗୁରୁକୁ ବିଚାର ନକର ମଘବାନ ।
ପୂର୍ବରେ ତୁମ୍ଭଙ୍କୁ ଯେ ବାନ୍ଧେ ମେଘନାଦ
ଶାପ୍ୟଦେଲେ ମୋଶରେଛେଦନ୍ତୁ ତୋରକନ୍ଧ
ସେହି କଥାମାନ ଯେ ନିକଟ ହେଲା ଆସି
ଏକଥାକୁ ବିଚାର କରହେ ସ୍ୱର୍ଗବାସୀ ।
ବୃହସ୍ପତି କହନ୍ତି ପିତାମହଙ୍କୁ ଚାହିଁ
କେବଣ ଚରିତ୍ର ଦେବ ଭଆଇ ଅଛ କହି ।
ବ୍ରହ୍ମା ବୋଇଲେ ଏବେ ଶୁଣ ମୋର ବାଣୀ
ସରସ୍ୱତୀ ଯାଅ ମଧ୍ୟ ପୁରକୁ ଏବେ ପୁଣି ।
ଏତେ ବୋଲି ବିଧାତା ଧ୍ୟାନରେସ୍ମୃତି କଲେ
ତତକ୍ଷଣେ ଆସି ଦେବୀ ସମ୍ମୁଖରେ ମିଳିଲେ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଶୁଣସିଗୋ ମାତ
ମଞ୍ଚପୁରକୁ ତୁମ୍ଭେ ଚଳିବ ତୁରିତ ।
କୁମ୍ଭକର୍ଣ୍ଣ ଶୋଇଛି ପୂର୍ବକୁ ମୁଖକରି
ତୁମ୍ଭେ ତା କଣ୍ଠରେ ବିଜେ କର ଶୀଘ୍ର କରି
ଯେମନ୍ତ ହତ ହୋଇବ ତାହାର ଯେ ଶିରୀ
ଉତ୍ତରକୁ କୁମ୍ଭକର୍ଣ୍ଣ ଶୋଇବ ଶିରକରି ।
ଆବର କଥା ଏ ଯେ କର ତୁମ୍ଭେ ମାତ
ଶ୍ରୀରାମ ପାଶକୁ ତୁମ୍ଭେ ଚଳିବ ତୁରିତ ।

ଇନ୍ଦ୍ର ଦେଲା ଦେବଶର ଲକ୍ଷ୍ମଣ ହସ୍ତରେ
ଏ ଶରକୁ ପେଶିବ ଲକ୍ଷ୍ମଣ ସଂଗ୍ରାମରେ ।
ତେବେ ସେ ଇନ୍ଦ୍ରଜିତ ହେବ ପୁଣ ହତ
ଏତେ କହି ଶର ଦେଲେ ଦେବୀଙ୍କର ହସ୍ତ ।
ବ୍ରହ୍ମାଙ୍କର ବଚନରେ ଚଳେ ମହାମାୟୀ
ସୁବଳଗିରି କପି ଦଳରେ ମିଳେ ଯାଇ ।
ଇନ୍ଦ୍ର ଦେଲେ ଯେବଣ ବାବଲ ନାମେ ଶର
ଗାଡ଼ରେ ଧରିଛୁ ଦେବୀ କରରେ ତାହାର ।
ଖୋଜ ଖୋଜ ଦେବୀ ଯେ ଦେଖିଲେ ଲକ୍ଷ୍ମଣ
ଉଜାଗରେ ବସି ଶର ସଜଖେ ହସ୍ତେଣ ।
ଲକ୍ଷ୍ମଣଙ୍କୁ ଦେଖି ଦେବୀ ହୋଇଲେ ତୃପତି
ବଦ୍ୟରୂପ ହୋଇ ମିଳେ ଲକ୍ଷ୍ମଣର କତି ।
ତାକୁ ଦେଖି ଲକ୍ଷ୍ମଣ ଜାଣେ ଏହି ଦେବୀ
ମନରେ ଭଜନ ଗାର ଦେବୀର ପାଦସେବି ।
ସରସ୍ୱତୀ ବୋଇଲେ ଶୁଣ ଶ୍ରୀରାମର ଭାଇ
ବ୍ରହ୍ମାଙ୍କର ବଚନରେ ଭେଟିଲି ତୁମ୍ଭଙ୍କୁହିଁ ।
ଇନ୍ଦ୍ର ଦେଇଛନ୍ତି ଯେ ବାବଲ ନାମେ ଶର
ଏହାକୁ ଯତ୍ନକର ସମ୍ଭାଳ ତୋଣର ।
ଏହି ଶରେ ମରିବଟି ଇନ୍ଦ୍ରଜିତ ବୀର
ଶର ଦେଇ ପେଶିଛନ୍ତି ମୋତେ ବେଦବର
ବୋଇଲେ ଲକ୍ଷ୍ମଣଙ୍କୁ କହିବ ତୁମ୍ଭେ ଯାଇ
ଏକା ହୋଇ ଥିବ ସେ ନିକାଞ୍ଚନେ ରହି ।
ଏତେକହି ଦେବୀନେଇଲକ୍ଷ୍ମଣ ହସ୍ତେଦେଲେ
ସେଠାରୁ ଦେବୀ ଯେ ଅନ୍ତର୍ଦ୍ଧାନେ ଗଲେ ।
ଶୂନ୍ୟରେ ଦେବୀ ଯିବାର ଲକ୍ଷ୍ମଣ ଦେଖିଲେ
ଇନ୍ଦ୍ରଜିତ ମରିବ ଯେଉଁ ଶର ଆଣିଥିଲେ ।
ଶର ନେଇ ଲକ୍ଷ୍ମଣ ଯତନେ ସମ୍ଭାଳିଲେ
ସୁନ୍ଦର କରିଣ ଶରକୁ ତୋଣରେ ରଖିଲେ ।
ସେଠାରୁ ଦେବୀ ଚଳିଗଲେ ଶୀଘ୍ର ହୋଇ
ଲଙ୍କା ଗଡ଼ନ୍ତର ପ୍ରବେଶ ହେଲେ ଯାଇଁ ।
କୁମ୍ଭକର୍ଣ୍ଣ ହୃଦରେ ପଶିଲେ ଦେବୀ ସୁଖି
ତତକ୍ଷଣେ ମହାବୀର ବସିଲେ ଯେ ଉଠି ।
ଚଉପାଶକୁ ବୀର ଚାହିଁଟି ଗୁହିଁଲା
ଉଦ୍‌ବେଗେ ପଲଙ୍କର ଉପରେ ଉଠିଲା ।
କନ୍ୟାମାନେ ସମସ୍ତେ ବେଢ଼ି ଶୋଇଥିଲେ
ସମସ୍ତେ ତରସ୍ତ ଯେ ହୋଇ ଆତ ହେଲେ ।
କୁମ୍ଭକର୍ଣ୍ଣ ବସ୍ତୁରେ ମୋ ପୂରିଲା ବରଷ
ମୋତେ ବେଗେ ଆଣିଦିଅ ତୁମ୍ଭେ ଗ୍ରାସ ।
ଶୁଣିକରି କନ୍ୟାମାନେ ବୋଲନ୍ତି ବଚନ
ଉଠିବାର ଦେବ ହେ ନୋହେ କଣ୍ଣଦନ ।
ସମ୍ବତ୍ସର ହେଲେ ଯେ ବେଳକ ତୁମ୍ଭେ ଉଠ
ନାନା ଭୋଜନ କଲେ ସନ୍ତୋଷ ହୋଏପେଟ
ଏଗାର ମାସ ଉତ୍ତାରୁ ଥୋକାଏ ଦିନ ହୋଇ
ନିଦ୍ରାତେଜ ଦେବ ହେ ଉଠିଲ କାହିଁପାଇଁ ।
ଶୁଣିଣ କୁମ୍ଭକର୍ଣ୍ଣ ପଲଙ୍କରେ ଚଢ଼ି
ଉତ୍ତର ଦର୍ଷଣକୁ ଶଯ୍ୟା ସେହୁ ପାଡ଼ି ।
ଉତ୍ତରକୁ ଶିରକରି ଶୋଏ କୁମ୍ଭକର୍ଣ୍ଣ
ଶୋଇବାର ଦେଖି ଦେବୀ ଚଳିଲେ ବହନ ।
ସ୍ୱର୍ଗରେ ଯାଇଁଣ ସେ ଯେ ଭେଟିଲେ ବିଧାତା
ସଂକ୍ଷେପି କରିଣ ଯେ କହିଲେ ସର୍ବକଥା ।
ଶୁଣିଣ ସାନନ୍ଦ ଯେ ହେଲେ ଦେବତାଏ
ବୋଇଲେ ସ୍ୱର୍ଗ ଏବେ ହୋଇବ ନିର୍ଭୟେ ।
ଏଥୁଅନନ୍ତରେ ଶୁଣ ଆଗୋ ମହାମାୟୀ
ଅର୍ଦ୍ଧ ଖସେ ଲଙ୍କାଗଡ଼ ନଶବଦ ହୋଇ ।
ଜ୍ୟେଷ୍ଠମାସ ଗୁଳୁଗୁଳି ବାହାରେ ଲୋକଛନ୍ତି
ଯୁଦ୍ଧର କଥାମାନ ସେ କୁହାକୁହି ହୋନ୍ତି ।
ବୃଦ୍ଧଗଣ୍ଡେକ ତହିଁରେ ଡ଼ାକେ ଆଣ୍ଠକରି
ଏତେକାଳେ ଖଳବଳ ହେଲା ଏହୁ ପୁରି ।
କେଉଁଠାରୁ ଯତି ଯେ ଅଇଲେ ପୁଣି ଏଥ
ମାଙ୍କଡ଼ ଗୁଡ଼ାଏ ଆସି କରନ୍ତି ଅନର୍ଥ ।
ଇନ୍ଦ୍ରଜିତ ବୀର ଏ ପୁରରେ ଥାଉ ଥାଉ ।
ଏତେ ଉପଦର୍ପ ଯେ ହୋଇଲା କହୁ କହୁ
ଏଥୁଅନନ୍ତରେ ଶୁଣ ଆଗୋ ଭଗବତୀ
ଶ୍ରୀରାମ ସୈନ୍ୟ ଯେ ନିଦ୍ରାରେ ଅସକତି ।
ଶୁଣିଲୁଟି କି ଗୋ ହିମଗିରିଜ ଦିନ ଯୁଦ୍ଧ
ଏମନ୍ତେ ରାମ ରାବଣର ଲାଗେ ପୁଣି ବାଦ ।
ପାର୍ବତୀ ବୋଇଲେ ଶୁଣ ସଦାଶିବ
ସକଳ ଦେବୀ ଯେ ଅଛନ୍ତି ଗିରିଜାଗ ।
ସେ ପୁଣି କସକଲେ କହିବା ହେଉ ମତେ
ଶୁଣିଣ ସଦାଶିବ କହନ୍ତି କୁରିତେ ।
ସମସ୍ତେ ନିର୍ଜନରୁ ଦେବୀ ଚଳିଗଲେ
ରଣଭୂମିରେ ସେ ଯାଇ ପ୍ରବେଶ ହୋଇଲେ

ଯେତେକ ଦୈତ୍ୟବଳ ମରିଥିଲେ ପୁଣ
ତାହାଙ୍କୁ ଭୋଜନ ଯେ କଲେ ଯୋଗ୍ନିଗଣ ।
ଦୈତ୍ୟଙ୍କୁ ଭୁଞ୍ଜି ଦେବୀ ସନ୍ତୋଷ ହୋଇଣ
ପ୍ରହରକ ଭିତରେ ସାରିଲେ ଭୋଜନ ।
ତହିଁ ଉତ୍ତାରୁ ସେହି ଯୋଗ୍ନିଗଣ
ସୁବଳଗିରିରେ ପ୍ରବେଶ ହେଲେ ପୁଣ ।
ଋକ୍ଷକପିପଲ ଯେ ପଡ଼ିଛନ୍ତି ତହିଁ
ଦେବତାମାନଙ୍କ ଅଂଶ ଶୁଣ ଦେବୀ ତୁହି ।
ପାର୍ବତୀ ବୋଇଲେ କପିସୈନ୍ୟ ପୁଣ
ଜୀଇଲେଟିକି ସେମାନେ କହ ମୋତେ ପୁଣ ।
ଈଶ୍ୱର ବୋଇଲେ ଯୋଗ୍ନି ଆସିବାରୁ
ରାହାସ୍ୱଜ ମନ୍ତ୍ରୀ ଯେ ପ୍ରବେଶ ସେଠାବରୁ ।
ସହସ୍ରେକ ସୈନ୍ୟବଳ ସଙ୍ଗତରେ ଘେନ
ରଣଭୂମି ମଧ୍ୟରେ ପ୍ରବେଶ ଶୁକ ପୁଣି ।
ଅଙ୍ଗବଳକୁ କହିଲେ ଗଣ୍ଡି ମୁଣ୍ଡ କର ମେଳ
ତତକ୍ଷଣେ ଅଙ୍ଗବଳ ଯୋଡ଼ିଲେ ସକଳ ।
ଅମୃତ ସିଞ୍ଚିଲେ ଶୁକ ନାମେ ମନ୍ତ୍ରୀ
କଳକଳା ଶବଦରେ ଉଠିଲେ କପି ବସି ।
ଦେଖିଲେ ରଜନୀ ଯେ ଯୁଦ୍ଧରେ କେହି ନାହିଁ
ସୁବଳସ୍ଥା ଗିରିରେ ଆଲୁଅ ଦିଶଇ ।
ରଣ ଯୁଦ୍ଧରେ ଆମ୍ଭେ ଗଲୁଇ ଯେ ମୋହ
ଦୁଇ ଆଡ଼ୁ ସୈନ୍ୟ ଗଲେ ଯେଯାହାରେକହ
ଏତେ ବୋଲି କପି ଯେ ସମସ୍ତେ ପୁଣ ଗଲେ
ସୁବଳସ୍ଥା ଗିରିପରେ ପ୍ରବେଶ ହୋଇଲେ ।
ଆଗୁଆଣି ଥାଟରେ ହେଲେ ଯେ ଅଙ୍ଗଦ
ଆଗୋଳଣ ତାଙ୍କୁ ଯେ କହିଲା ସମ୍ବାଦ ।
ଏତେବେଳ ଯାଏ କେଉଁଠାରେ ଥିଲେ
ନଷ୍ଟାଶକ୍ତି ହେଲା ଏ କପାଇଁ ନଇଲେ ।
ମଲ୍ଲ ମହାମଲ୍ଲ ଯେ କହିଲେ ଅଙ୍ଗଦରେ
ମୋହ ଯାଇଥିଲୁ ଆମ୍ଭେ ରଣର ଭୂମିରେ ।
ସହସ୍ରେକ ସଙ୍ଗରେ ଅଛନ୍ତି ଅଙ୍ଗବଳ
ଜଣେକ ଅଛଇ ଯେ ତହିଁରେ ସରଦାର ।
ସମସ୍ତଙ୍କୁ ଆଜ୍ଞାଦେଲେ ସେ ଯେ ଉଠାଇଲେ
ସମସ୍ତଙ୍କ ଶରୀରରେ ପାଣି ବରଷିଲେ ।
ଗଳୁଁ ଶତେ ଗୁଣରେ ହେଲୁ ବଳବାନ
ରହିଲୁ ରଣଭୂମିରେ କେହି ନାହିଁ ପୁଣ ।
ଏ ଦିଗରେ ଆଲୁଅ ଦେଖିଲୁ ତହିଁ ପୁଣି
ବିହ୍ୱରିଲୁ ସୁବଳସ୍ଥା ଗଲେ ରଘୁମଣି ।
ସେଠାବରୁ ସମସ୍ତେ ହୋଇଲେ ଏକମେଳ
ଏଠାକୁ ଆସିଲୁ ଶୁଣ ବାଳିର କୁମର ।
ଶୁଣିକରି ସନ୍ତୋଷ ଯେ ଅଙ୍ଗଦ ହୋଇଲା
ଗିରିକି ଯାଇଣ ଫଳ ଭୁଞ୍ଜରେ ବୋଇଲା ।
ଏଥୁ ଅନନ୍ତରେ ଶୁକ ଗଲେ ସ୍ୱର୍ଗପୁର
ସଙ୍ଗରେ ଅଙ୍ଗବଳ ଘେନ ତାହାଙ୍କର ।
ବିଧାତାର ଆଗରେ ଯାଇଣ କହିଲେ
ରଣ ଭଗ୍ନ କପି ଆଜ ଜୀବନ ପାଇଲେ ।
ଶଙ୍କର କହନ୍ତି ଗିରିଜା ଶୁଣ ତୁହି
ରାମାୟଣ ଯୁଦ୍ଧ ଯେ ଦୁଇଦିନ ହୋଇ ।
ପାର୍ବତୀ ବୋଇଲେ ଦେବ ଶୁଣ ମହେଶ୍ୱର
କଥା ଏ ପଚାରୁଛି କହ ମୋ ଆଗର ।
ହନୁମାରି ଅଇଲା ଯେ ରାବଣର ସୁତ
ଦୁଇଦିନ ଯୁଦ୍ଧରେ ପଡ଼ିଲେ କେତେ ପୁତ୍ର ।
କେତେ ନାତି ପଡ଼ିଲେ କହିବ ଠୁଳକରି
ଏକଥା ଶୁଣିବାକୁ ମନ ମୋର ଭାରି ।
ଈଶ୍ୱର ବୋଇଲେ ହନୁ ମାଇଲା ଏକ ପୁତ୍ର
ପ୍ରଥମ ଯୁଦ୍ଧରେ ପଡ଼ିଲେ ଦୁଇ ସୁତ ।
ଦ୍ୱିତୀୟ ଯୁଦ୍ଧରେ ନବ କୁମର ଯେ ପଡ଼ି
ବୟାଅଶି ନାତି ତାର ପଡ଼ିଲେ ମହାଆଳ ।
ସାତକୋଟି ସେନାପତି ଚୌଦସସ୍ର ହସ୍ତୀ
ବାରଲକ୍ଷ ଅଶ୍ୱ ବାଇଶି କୋଟି ପଦାତି ।
ରାଉତ ମାହୁନ୍ତ ଯେ ତେଉଦ ଲକ୍ଷ ମଲେ
ଏତେ ସୈନ୍ୟ ମରିବାରୁ ରଣ ଉପେକ୍ଷିଲେ
ଶ୍ରୀରାମଙ୍କର ବଳ ମଲେ ବାର ଲକ୍ଷ
ସମସ୍ତେ ଜୀଇଁଲେ ଦେବତାଙ୍କର ସୁପକ୍ଷ ।
ଉମା ବୋଇଲେ ରଣେ ରାବଣ ପୁତ୍ର ମଲେ
ବଧୂମାନେ ତାଙ୍କର କେମନ୍ତ ପୁଣ କଲେ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ନବ ପୁତ୍ରର ତିନଶ ସତୁରି ବଧୂ ପୁଣ ।
ବୟାଶି ନାତିଙ୍କର ନାତୁଣୀ ବଧୂ ଜାଣ
ଷୋଳଶ କୋଡ଼ିଏ ଯେ ଅଛନ୍ତି ପ୍ରମାଣ ।
ପତିନାଶ ଯିବାରୁ କ୍ରନ୍ଦନ ସର୍ବେ କଲେ
ରାବଣକୁ କହିଣ ଅଗ୍ନିରେ ଝାସ ଦେଲେ ।

ବଡ଼ ବଡ଼ ସେନାପତି ଋଷିଜାମାନେ ପୁଣ
ସେହି ଝାସଦେଲେ ତାହାଙ୍କ ସଙ୍ଗେ ଜାଣ ।
ପତିପତ୍ନୀ ହୋଇଣ ସର୍ବେ ସ୍ୱର୍ଗପୁର ଗଲେ
ରଣେ ପଡ଼ିବାରୁ ସେ ମୁକୁତି ଲଭିଲେ ।
ପାର୍ବତୀ ବୋଇଲେ କଥାଏ ମନେ ପଡ଼ି
ସେ କଥା ମୋର ଆଗେ କହିଦେବା ଫେଡ଼ି
ସ୍ୱର୍ଗର ଦେବତାଏ ଶୁକଙ୍କୁ କହିଦେଲେ
ଶ୍ରୀରାମଙ୍କର ସୈନ୍ୟ ଜିଆଅ ବୋଇଲେ ।
ଅନ୍ଧାର ନିବିଡ଼ରେ ଯାଆନ୍ତି ଶୁକ ମନ୍ତ୍ରୀ
ରଣମଧ୍ୟରେ ସେ ଯାଇ ପ୍ରବେଶ ହୁଅନ୍ତି ।
ଅନ୍ଧାରରେ କେମନ୍ତେ ଦିଶେ ତାଙ୍କୁ ପୁଣ
ସେକଥା ବିସ୍ତାରି ମୋତେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ତୁମ୍ଭଙ୍କୁ ସେକଥା କହିବା
ବିଧାତା ଶୁକଙ୍କୁ ଯେ ଦେଲେ ଏହି ଆଜ୍ଞା ।
ଚନ୍ଦ୍ରମଣି ସହସ୍ରେକ ଯେ ଆଣିଦେଲା
ଶୁକଙ୍କର କଣ୍ଠରେ ନେଇ ଲମ୍ବାଇଲା ।
ସେ ମଣି କଣ୍ଠରେ ଯେ ବିଜେ ଶୁକଙ୍କର
ରଣଭୂମି ଦିଶେ ଚନ୍ଦ୍ର ଉଇଁଲା ପ୍ରକାର ।
ଚାହିଁ କରି ଗଣ୍ଡି ମୁଣ୍ଡ ଲଗାଇଣ ଦ୍ୟନ୍ତି
ତହିଁର ଉପରେ ସେ ଅମୃତ ବରଷନ୍ତି ।
ତେବେ ସେ ଗତପ୍ରାଣ ପାଏ କପିଦଳ
ଶାକମ୍ଭରୀ ଶୁଣହେ ଏଥୁ ଅନନ୍ତର ।
ଚଉଷଠିକୋଟିଯୋଗିନୀବାଆନକୋଟିପିଶ୍ୱଶୁଣି
ନବକୋଟି ଦେବୀ ଯେ ସରଦାର ପୁଣି ।
ଏହାଙ୍କର ବର୍ଣ୍ଣ ଯେ ସୂର୍ଯ୍ୟ ଜ୍ୟୋତି ଜାଣ
ରଣ ଭୂମିରେ ପଶିଲେ ଦିଶେ ହେ ତରୁଣ ।
କରଣ ସକାଶରେ ତାହେ ଦୈତ୍ୟବଳ
ବାଛୁକରି ଭକ୍ଷନ୍ତି ସେ ଅସୁରର କୁଳ ।
କପିଦଳ ଛାଡ଼ିଣ ରକ୍ତ ମାଂସ ଖାନ୍ତି
ଦୈତ୍ୟଙ୍କର ମୁଧନ ଗୋଟିଏ ନ ରଖନ୍ତି ।
ଶୁଣିକରି ସନ୍ତୋଷ ହେଲେ ଶାକମ୍ଭରୀ ।
ମନ ସନ୍ତୋଷରେ ପଚ୍ଛିରେ ଜଗାମ୍ବରୀ ।
ଦୁଇଦିନ ଯୁଦ୍ଧ ଯେ କଲେ ଦୁଇଦଳ
ଏ ବାର୍ତ୍ତା ରାମରାଣୀ ଜାଣିଲେ ସକଳ ।
ଶୁଣିଣ ଜଟାଧାରୀ ମନରେ ତୋଷହେଲେ
ସନ୍ତୋଷ ମନରେ ପ୍ରିୟାକୁ କହିଲେ ।

ଜାନକୀ ଯେ ଅଶୋକ ବନରେ ଶୁଣୁଥିଲେ
ସୁମେଧା ଅସୁମ୍ଭୟାଇ ସ୍ୱାମୀରେ କହିଲେ ।
କାଲି ଯାଇଥିଲି ମୁଁ ରାବଣ ନଗର
ଉତ୍ତର ଦ୍ୱାରେ ରହିଲେ କୁମ୍ଭ ଗୁରସ୍ତ ଦଅର
ସୈନ୍ୟକୁ କହିଦେଲେ ଗଡ଼ରେ ପଶିଲେ
ରାବଣର ଦୁଇ ପୁତ୍ର ଗଡ଼ରେ ମାଇଲେ ।
ସେନାପତି ପାଦାନ୍ତ ମାହୁନ୍ତ ସିପାହୀ
ଘୋଡ଼ାହସ୍ତୀ ମଇଁଷି ଗୁଗଳଓଟକଇଁ ।
ଅନେକ ବଳ ଯେ ସଂହାରି ପୁଣ ଗଲେ
ତେଲ ଅସ୍ତ୍ର ହେବାରୁ ଗୋଟିଏ ନ ରହିଲେ
ଆଜ ଯେ ରାବଣ ସୈନ୍ୟଦଳ ଘେନ
ରାମର ସଙ୍ଗରେ ସେ ରଣକଲେ ପୁଣି ।
ଅନେକ ସୈନ୍ୟ କୁମ୍ଭର ଦଅର ମାଇଲା,
କ୍ରୋଧରେ ଇନ୍ଦ୍ରଜିତ ଶକତି ବିନ୍ଧିଲା ।
ଶକ୍ତି ବାଜିବାରୁ ଦିଅର ମୋହଗଲେ
ହନୁମନ୍ତ ରାବଣକୁ ବିଧାଏ ମାଇଲେ ।
ମୋହଯାଇ ରାବଣ ପଡ଼େ ଦୁଇ ଘଡ଼ି
ହନୁମନ୍ତ ରାଗରେ ବିମାନ ପରେ ଚଢି ।
ମାଡ଼ିଦେଲା ତଳେ ଯେ ପଶିଲା ବିମାନ
ଦେବଦଳନରେ ଯାଇଁ ଚଢେ ହନୁମାନ ।
ସେ ରଥ ରୂପନ୍ତେ ଯେ ପାତାଳପୁର ଗଲା
ଦିଅରକୁ କନ୍ଧେଘେନ ମାରୁତି ପଳାଇଲା ।
ସେଠାରୁ କୁମ୍ଭ ସ୍ୱାମୀ ହେଲେ ବଡ଼ରାଗି ।
ମାଇଲା ସେ ଦୈତ୍ୟବଳ ପଳାଇଲେ ଭାଗି ।
ଇନ୍ଦ୍ରଜିତ ରାବଣ ପଳାଇ ଅଇଲେ
ଉତ୍ତର ଦ୍ୱାର ଯାଏ ରାମ ଗୋଡ଼ାଇଲେ ।
ସିଂହଦ୍ୱାରେ ଯହୁଁ ପଶିଲେ ପୁଣିବଳ
ଲେଉଟିଲେ ଶ୍ରୀରାମ ସୁବଳଗିରି ପର ।
ଦୁଇଦିନ ଯୁଦ୍ଧ ହେଲା ଗୋ ଜାନକୀ
ହାରିଲା ରାବଣ ରାମଚନ୍ଦ୍ର ଜିଣିଲେଟିକି ।
ଶୁଣିକରି ଜାନକୀ କହନ୍ତି ବଚନ
ସଉମିତ୍ରି କଥା ନ ଜାଣିଲି ଆଜପୁଣ ।
ସେହରେ ଯେ ଗୋଡ଼ାଇ ଅଇଲା ଭାଇସଙ୍ଗେ
କେତେ ସେବା କରଇ ସେ ଦୁଇ ଜଣମଧ୍ୟେ
ସେହି ମୋର ସଖା ଯେ ଜୀବର ଜୀବନ
କେମନ୍ତେ ଖବର ମୁଁ ଶୁଣିବି ଲକ୍ଷ୍ମଣ ।

ଏତେ ବହି ଦେବୀ ବିଧାତା ସୁମରି
ଅଗ୍ନି ଦେବତା ଶ୍ରୀକାଳ ରୂପ ଧରି ।
ଜାନକୀର ଛାମୁରେ ହେଲେ ପୁଣି ଉଭା
ବୋଇଲେ ସୁମରଣୀ ମୋତେ ଆଜ୍ଞାଦେବା
ଲକ୍ଷ୍ମଣ ବାରତା ମୁହିଁ ଯେ ଆଣି ଦେବି
ମୋହର ନାମ ଗୋଟି ପଛନ୍ତେ କହିବ ।
ଶୁଣିକରି ଜାନକୀ ଅଶୋକ ମାଳା ଦେଲେ
ଘେନିଣ ଅଗ୍ନି ଦେବତା ବେଗେ ଚଳିଗଲେ
ସୁବେଳ ଗିରିରେ ଯାଇ ହେଲେ ପରବେଶ
ଯେଉଁଠାରେ ଅଛନ୍ତି ଦଶରଥ ଶିଷ୍ୟ ।
ଶ୍ରୀରାମଙ୍କ ମଢ଼ିଆ ଦ୍ୱାରରେ ଯାଇ ହୋଇ
ଦେଖିଲା ରାମ ଯେ ନିଦ୍ରାରେ ଛନ୍ତି ଶୋଇ
ଖଣ୍ଡେ ଦୂରରେ ଯେ ବସିଅଛନ୍ତି ଲକ୍ଷ୍ମଣ
ବାଛିଣ କାଣ୍ଡମାନ ସଜାଡ଼ି ରଖେ ପୁଣ ।
ଶ୍ରୀକାଳକୁ ଦେଖିଣ ବୁଝିଲେ ସଉମିତ୍ରି
ବୋଇଲେ ତୁ କିଏରେ ଆସିଲୁ ଏଥିକି !
ଶ୍ରୀକାଳ ଲକ୍ଷ୍ମଣଙ୍କ ଚରଣେ ଗଡ଼ିଗଲି
ଉଠିଣ ସେ ବଚନ କହେ ଟାଣ କରି ।
ସନ୍ଦେଶମାନ ଯେବେ ଉଚ ସଉମିତ୍ରି
ଚଉଦ ବରଷ ସେବା କରି ଯାକୁ ନିତି ।
ଲକ୍ଷ୍ମଣ ବୋଇଲେ କାହାର ଆଜ୍ଞା କହ
ଶ୍ରୀକାଳ ବୋଲେ ଶୁଣ ଦଶରଥ ପୁଅ ।
ରାବଣ ବନ୍ଦୀଘରେ ଅଶୋକ ବନେ ପୁଣ
ଶ୍ରୀରାମ ନାରୀ ଯେ ଜାନକୀ ନାମେ ଜାଣ ।
ସେ ତୋତେ ସନ୍ଦେଶ ଦେଇଛି ଏବେ ଘେନ
ଶୁଣିଣ ସଉମିତ୍ରି ଉଠିଲେ ତତକ୍ଷଣ ।
ଶ୍ରୀକାଳ ଅଶୋକ ମାଳା କରେ ଦେଲା
ସେ ମାଳାକୁ ଲକ୍ଷ୍ମଣ କଣ୍ଠରେ ଲମ୍ବାଇଲା ।
ଲକ୍ଷ୍ମଣ ବୋଇଲେ ସ୍ୱରୂପ ତୋର କହ
ଶ୍ରୀକାଳ ବୋଇଲା ମୁଁ ଅଟେ ଅଗ୍ନି ଦେବ !
ପବନ ଅଗ୍ନି ଆମ୍ଭେ ଦୁହେଁ ଅଛୁ କତି
ଯେଣିକି ପେଶେ ଜାନକୀ ଯାଉ ସେ ଝଟତି
ଶକ୍ତିଭେଦ ଶୁଣିକରି ତୋଠାକୁ ପେଶିଲେ
ଲକ୍ଷ୍ମଣଙ୍କୁ ଦେଖିଆସ ବୋଲିଣ ବୋଇଲେ
ଲକ୍ଷ୍ମଣ ବୋଇଲେ ଜାନକୀ ଆଗରେ କହିବୁ
ପଦର ଧନ ଆଉ ବକଳ ନୋହିବୁ ।

ଶୁଣିକରି ଶ୍ରୀକାଳ ବହନ ଚଳିଗଲା
ଜାନକୀର ଛାମୁରେ ଯାଇଣ ମିଳିଲା ।
ସକଳ କଥା ସେ କହେ ଜାନକୀ ଆଗରେ
ଶୁଣି ସୀତାୟୀ ସନ୍ତୋଷ ହୋଇଲେ ମନରେ
ଏଥୁଅନନ୍ତରେ ଯେ ରଜନୀ ଶେଷ ହୋଏ
ଦେବତାଙ୍କ ଆଳରେ ଶୁଭେ ଶଙ୍ଖମୟେ ।
ଶୟନରୁ ବେଗେ ଯେ ଉଠେ ଲଙ୍କପତି
ମାଜଣା ନିତ୍ୟକର୍ମ ସେ ସାରିଲା ତଡ଼ତି ।
ମଇଦାନ ଜଗଣ୍ଡରେ ହୋଇଲା ପ୍ରବେଶ
ଭିତରକୁ ଗଲେ ଯେ ସକଳ ରାଣୀ ହଂସ ।
ପ୍ରହରୁ ସେବକଙ୍କ ଯେ ଦର୍ଶନ ଆସିକଲେ
ଶୁକ ସାରଣ ବେନି ରଜାଙ୍କୁ ଭେଟିଲେ ।
ଇନ୍ଦ୍ରଜିତ ଦର୍ଶନ କଲକ ସଜ ହୋଇ
କୁମ୍ଭ ନିକୁମ୍ଭ ଯେ ଅଇଲେ ବେନିଭାଇ ।
ଶୁର୍ଖା ଦୁର୍ମୁଖା ଯେ ଅଳେପି ଅକେୟେ
ସଂଶିଖ ସନେପି ସୁମୁଖା ଆସି ହୋଏ ।
ବଜ୍ରଦଣ୍ଡ କଳଦଣ୍ଡ କାକାକ୍ଷ ଜନ୍ତୁପାକ୍ଷ
ପ୍ରଚଣ୍ଡ ଅଗ୍ନିକେତୁ ମୁଖା ବିରୂପାକ୍ଷ ।
ନରାନ୍ତକ ଦେବାନ୍ତକ କାଳଦଣ୍ଡ ବୀର
ରସକେତୁ ପୁହଧ୍ୱଜ ପ୍ରଥମ ନାମେ ବୀର ।
ବିଦ୍ୟୁମାଳୀ ବିଶ୍ୱକେତୁ ଅଶ୍ୱମା ପ୍ରଭାବ
ଜମଦଣ୍ଡ କାଳଦଣ୍ଡ ପାଟୋଳ ଏକପାଦ ।
ଅତିକାୟେ ମହାକାୟେ ପ୍ରଚଣ୍ଡ ସେନାପତି
ମହୀରାବଣ ମୂଳରେ ତେରଶତ ନାତି ।
ମେଘନାଦ ଜଣାଇଲା ଯୋଡ଼ି ବେନିକର
ଯୁଦ୍ଧକୁ ମୁଁ ଯିବି ଆଜ୍ଞା ଦିଅ ନୃପବର ।
ରାମ ଲକ୍ଷ୍ମଣଙ୍କୁ ମୁଁ ଆସିବି ଆଜ ନାଶି
ସୁଗ୍ରୀବର ବିଭୀଷଣ ଋକ୍ଷକପି ମିଶି ।
ଚଳା ସମୁଦ୍ରରୁ ଅସୁରେ ହୋଇ ପାର
ପୁଅଠାରୁ ବାଣୀ ଶୁଣି ବୋଲେ ଲଙ୍କେଶ୍ୱର
ଯଦ୍ୟପି ବଳା ତୁରେ ସଂଗ୍ରାମକୁ ଯିବୁ
ଲକ୍ଷ୍ମଣ ବୀର ସଙ୍ଗରେ ଏକା ନ ଯୁଝିବୁ ।
ସାମାନ୍ୟ ସନ୍ଧି ସେ ନୁହଇ ରାମଭାଇ
କଞ୍ଚିତ ନାରଙ୍ଗରେ ଜଗତ ପାରେ ଦହି ।
ଅଭେଦ କବଚ ସେ କଲା ଖଣ୍ଡ ଖଣ୍ଡ
ସେନା ଫୁଟିଣ ମୋର ଶଶିଲା ହେତେ କାଣ୍ଡ

ଘେମ କେ ନାଗଜ ସେ କରଣ ବନ୍ଧନ
ସଂଗ୍ରାମ ଭୂମିରେ ଯେ ଶରରେ ନବୋଧିଲ ।
ଅଗ୍ନିଜ୍ୱାଳା ଜାଣି ପଡ଼େ ତାତ ବାଣ
ଭେଣୁକର ତୋତେ ମୁଁ ତାଆରଇ ପୁଣ ।
ବସ୍ଥିର ସଂଗ୍ରାମ ତୁ କର ଆରେ ବାବୁ
ଲକ୍ଷ୍ମଣଙ୍କୁ ଗ୍ରହଣ ତୁ ଜଣିପାରୁ ସବୁ ।
ଶ୍ରୀରାମଙ୍କୁ ସଙ୍ଗମିହିଁ ଅଟେ ବଡ଼ବଗି
ଏକଥାରେ ଯୁଝିଯାଇ ଅଇଲି ମୁଁ ଭାଗି ।
ଇନ୍ଦ୍ରଜିତ ବୋଲେ ତାତ ଏମନ୍ତ କମ୍ପା କହୁ
ମୋହର ମହିମାକ ନ ଜାଣ ବଂଶବାହୁ ।
ଏହିକ୍ଷଣି ଶତ୍ରୁ ତୋର ଆସିବ ମୁଁ ସାଧି
ରକ୍ଷାକରି ନ ପାରିବେ ସ୍ୱର୍ଗେ ବବୁଧାଦ ।
ଏତେ କହି ପିତାଙ୍କୁ ଓଳଗି ମେଲ୍ଲଇ
ନିକୁମ୍ଭିଲ ବଟମୂଳେ ମିଳିଲେ ଯାଇ ।
ହୋମଘରେ ପ୍ରବେଶ ହୋଇଲେ ମହାବୀର
ଅଗ୍ନିରେ ହୋମକରି ସାରିଲେ ତତ୍ପର ।
ପାତାଳୁ ରଥବର ହୋଇଲା ବାହାର
ବହୁ ସ୍ତୁତି କାରୁ ସେ ଥିଲା ତଳପୁର ।
ରଥବର ଚଳନ୍ତେ କମ୍ପଇ ମେଦିନୀ
ସ୍ୱର୍ଗପୁରେ ବ୍ୟସ୍ତେ ହୋଇଲେ ସୁରମୁନି ।
ଛଅ ଆଲମ୍ବ ତେ ଧମଳ ଘଣ୍ଟ ଘଣ୍ଟ
ଭେସନଙ୍କ ପ୍ରାଏ ରଥବର ଯେ ଦିଶନ୍ତି ।
ସ୍ୱର୍ଗଙ୍କୁ ବୃତ୍ରାସୁର ଯେମନ୍ତେ ଗମଇ
ରାବଣର ନନ୍ଦନ ତେମନ୍ତ ଦିଶଇ ।
ସଙ୍ଗରେ ସୈନ୍ୟ ତାର ଅଛନ୍ତି ଅପ୍ରମିତ
ସେନାପତିମାନଙ୍କୁ କେ କରିବ ଅନ୍ତ ।
ରଥଗଜ ସବୁତେ ଉଦନ୍ତ ନ ଜାଣି
ଚଳନ୍ତେ ଦଲଦଲ କମ୍ପଇ ଧରଣୀ ।
ଛତ୍ରଙ୍କର ଆଲମ୍ବରେ ଧମଳ ଘଣ୍ଟଘଣ୍ଟ
ବିବିଧ ଛନ୍ଦରେ ସେ ବାଜଣା ବଜାନ୍ତି ।
ଘଣ୍ଟିର ଶବଦେ ଯେ ଘାଗୁଡ଼ି ମୁଖଗୋଳ
ଟମକ ନିଶାଣ ଯେ ବାଜେ କୋଳାହଳ ।
ମାର ମାର ଧ୍ୱନି ଯେ ଗଗନ ପଥପୁରେ
ମଙ୍ଗଳ ଅଷ୍ଟକ ଯେ ପଢ଼ିଲେ ଦ୍ୱିଜବରେ ।
ଘରେ ଘରେ ଉତ୍ସବ ଦ୍ୱାରେ ପୂର୍ଣ୍ଣକୁମ୍ଭ
ସ୍ୱର୍ଣ୍ଣଗଛ କଦଳୀ ନଟିକାଳ ଯେ ଆରମ୍ଭ ।
ଦଧିମାଛ ଘାସ ଦହୁଡ଼ ଦୁଳାପଢ଼
କାମଦେବ ଧ୍ୱଜପୁଞ୍ଜ ମନମଥ ରତି ।
ନାନା ଅଳଙ୍କାର ଆଭରଣ ଇନ୍ଦ୍ରଜିତ
ବାମଗୋଡ଼େ ଆବର୍ଜିଲ ତୋଡ଼ର ବୀରନେତ
ଶିରରେ ମୁକୁଟ କୁଣ୍ଡଳ ଝଟପଟ
ଝଦମୂଦ ବାହୁଟି ତୋଡର ରତ୍ନମାନ ।
କଙ୍କଣ କଙ୍କିଣି ଯେ ଶରୀର ମାଳଶୋଭେ
ବିବିଧ ପଦକ ଯେ ହୃଦରେ ଶୋଭାପାଏ ।
ଭିନ୍ନ ଭିନ୍ନ କରିଣ ରତ୍ନମାଳମାନ
କଣ୍ଠକୁ ଶୋଭାପାଏ ହୃଦ୍ୟ ସ୍ୱରକମ ।
ଫରହର ନିଃଶ୍ୱାସ କସ୍ତୁରୀରେଖ୍ ଜାଣି
ସର୍ବାଙ୍ଗ ବିଶେଷେ ଜଣେ ଅସୁର କୁଳମଣି ।
ବାମହସ୍ତରେ ବିଜୟା ନାମେ ଯେ କୋଦଣ୍ଡ
ଦକ୍ଷିଣ କରେ ଅଛଇ ଅକ୍ଷୟ ଶୋଣଖଣ୍ଡ ।
କଟିରେ ଭିଡ଼ିଅଛି ଶୋଣ ବେନି ପୁଣି
ଆନନ୍ଦରେ ଦେଖୁଛନ୍ତି ଲଙ୍କାର କାମିନୀ ।
ଧନ୍ୟ ଧନ୍ୟ ମେଘନାଦ ରାବଣ ତନୟ
ତୋହର ଥାନ୍ତେ ଶତ୍ରୁଙ୍କ ଉପଦର୍ପ ହୋଏ
ତପସ୍ୱୀ ଦୁଇଜଣ ରକ୍ଷକପି ଘୋର
ମରଣକୁ ତାଙ୍କର ନାହିଁ ଯେ ବିସ୍ତର ।
ଜଳନ୍ତା ଅଗ୍ନିରେ ସେ ପଶିଲେ ନ ଜାଣି
ଆଜନ୍ମକ ପ୍ରାଣ ପାଇବେ ସେ ପୁଣି ।
ଦେବେ ନ ସହନ୍ତି ଯାର ଶରଘାତ
ନର ବାନର କି ତହିଁକି ସାମର୍ଥ ।
ଏସନେକ ବିସ୍ତର କଲେ ପୁରଜନେ
ଉତ୍ତର ଗଡ଼ଦ୍ୱାରେ ବାହାରହୋନ୍ତି ସୈନ୍ୟ
ଶ୍ରୀରାମ ସୁବଳପ୍ରା ଗିରିରେ ଥିଲେ ଶୋଇ
ପ୍ରହରେ ରାତ୍ର ଥାଇ ଯେ ନିଦ୍ରା ନମାଡ଼ଇ ।
ଯୁଦ୍ଧର ବିଧାନ ଯେ ବିଷମ ହେଲ ଦେଖି
ରଘୁନାଥଙ୍କୁ ନିଦ୍ରା ନ ମାଡ଼ଇ ଆଖି ।
ଲଙ୍କାରେ ଟମକ ବାଜିଲା ଯେତେବେଳେ
ଶ୍ରୀରାମଙ୍କ ନିଦ୍ରା ଯେ ଭାଙ୍ଗିଲା ତେତେବେଳେ
ନିତ୍ୟକର୍ମ ସାରିଣ ସୁମରିଲେ ସନ୍ଧ୍ୟା
ଜାଣିଣ ଦର୍ଶନ କଲେ ସକଳ ଯୋଦ୍ଧା ।
ସୁଗ୍ରୀବ ବିଭୀଷଣ ଜମ୍ବୁବ ଶତବଳ
ଦ୍ୱିଜମଧ୍ୟରେ ବସି ରାମଚନ୍ଦ୍ର ଭଳ ।

ଲଙ୍କାରେ ଗହନ ଢମକ ନିଶାଣ
ପ୍ରହରେ ରାମ ଥାଉଁ ଯେ ଶୁଭିଲା ଏସନ ।
କାଲି ରାବଣ ଅପଚଏ ଯେ ପାଇଲା
କେବଣ କଥା ସେ ମନରେ ବିଚାରିଲା ।
ଏହି ସମୟେ ଆସି ଦର୍ଶନ କଲା ନୀଳ
ସଜ୍ଜସା ସେନାପତି ଆବର ଶତବଳ ।
ଶ୍ରୀରାମଙ୍କ ପୟରେ ପ୍ରଣମିତ ହୋଇ
ଛିଡ଼ା ହୋଇଛନ୍ତି କରେ କର ଦେଇ ।
ଶୁଣ ଦେବ ଈଶ୍ୱର ଅଯୋଧ୍ୟା ରଘୁନାଥ
ଶ୍ରୀମୁଖ ରାହିଁଣ ସେ କହନ୍ତି ସମସ୍ତ ।
ନୀଳ ସେନାପତି ଯେ କହଇ କରଯୋଡ଼ି
ହି ଶିରସ୍ତୁ ହିନ ଯୁଦ୍ଧ ଶୁଣ ରଘୁଧାରୀ ।
ଯେତେକ ତୁମ୍ଭ ବଳ ମରିଥିଲେ ରଣେ
ନିଶା ରାତିରେ ଜଇ ଉଠିଲେ ତତକ୍ଷଣେ ।
ଆଗୁଆଣି ଥାଟରେ ଅଙ୍ଗଦ ଥିଲା ଆଜ
ତାସଙ୍ଗେ ମୂର୍ହି ଯେ ଥିଲି ରଘୁରାଜ ।
ପଚାରିଲି ତାଙ୍କୁ ମୁଁ ଆସିବାର ବେଳେ
ସେ ବୋଇଲେ ରଣରେ ଥିଲୁ ଯେମୋହରେ
ଆମ୍ଭଙ୍କୁ ଗୁଡ଼ଣ ଅଇଲା ତୁମ୍ଭେ ପୁଣ
ସୁବଳସ୍ଥା ଗିରିକି କଲ ଯେ ଗମନ ।
ଏଥୁଅନନ୍ତରେ ପ୍ରହରେ ନିଶି ଥିଲା
ଲଙ୍କାର ଭିତରେ ଯେ ଚହଳ ଲାଗିଲା ।
ସୈନ୍ୟ ହେନ ବାହାର ହେଲେ ଇନ୍ଦ୍ରଜିତ
ସଙ୍ଗେ ତାର ବଳ ଯେ ଅଛନ୍ତି ଅପ୍ରମିତ ।
ଆଗୁଆଣି ଦାଣ୍ଡରେ ବାଜିଲା ଦେବ ଯୁଦ୍ଧ
ଶୁଣିକରି ରାମ ଯେ ତାହାକୁ ପ୍ରବୋଧ ।
ଅଙ୍ଗଦକୁ ବୋଇଲେ ତୁ ଆଗ ହୋଇ ଆସି
ମୂର୍ହି ସିବାଯାଏ ତୁ ଓଗଳ ଯୁଝସି ।
ରକ୍ଷ କପି ପଳାଇଲେ ସଙ୍ଗରେ କେହି ନାହିଁ
ତୁହି ଯୁଦ୍ଧ ସହିଣ ଆବୋରି ରହ ଯାଇ ।
ଶୁଣିକରି ବାଳିର କୁମର ଆଗ ସରି
ମସ୍ତକରେ ହାତ ଦେଇ ଆସେ ଅପସରି ।
ସଙ୍ଗରେ ନଳ ନୀଳ ଗନ୍ଧମାଦନ
ଗବଏ ଗବାକ୍ଷ ମହେନ୍ଦ୍ର ଚନ୍ଦନ ।
ପବନ ସୁତ କାଳଞ୍ଜନ ଯେ ପିଅର
ସଜ୍ଜସା ସେନାପତି ହନୁମାନ ବୀର ।
ତରୁ ଶିଳ ଧରି ସେ ଧାଏଁ ଉଗ୍ରମୂର୍ତ୍ତି
ପାଦଭରେ ଚଳ ଚଳ କମ୍ପେ ବସୁମତୀ ।
ପର୍ବତରୁ ଓହ୍ଲାଇ ଥୋକେଦୂର ଗଲେ
ରକ୍ଷ କପି ସୈନ୍ୟଙ୍କର ପଳା ଯେ ଦେଖିଲେ
ଅଙ୍ଗଦ ବୋଇଲା ହୋ କପାଇଁ ଭୟ କର
କପି ବୋଇଲେ ଦେବହେ ଅସଂଖ୍ୟ ସମର ।
ଆପଣେ ଇନ୍ଦ୍ରଜିତ କରେ ବଳ ନାଶ
ପବନରେ ଅଗ୍ନିଶ୍ୱାସ ପାଇଲୁଁ ଆମ୍ଭେ ତ୍ରାସ
ତୁହାଇଣ ଯୁଦ୍ଧ ଆଜ କରେ ପରିଘାଇ
ସୈନ୍ୟଙ୍କର ଭିତରେ ସେ ପଶନ୍ତି ଧସାଇ ।
କ୍ଷୀର ସମୁଦ୍ରେ ଯେହ୍ନେ ମନ୍ଥେ ଯେ ମନ୍ଦର
ରାବଣ କୁମର ମନ୍ଥେ ବଳଲ ଦ୍ରବସାତ ।
ଏହି ସମୟରେ ଯେ ରାମଚନ୍ଦ୍ର ରାଏ
ସଙ୍ଗତରେ ବିଭୀଷଣ ସୁଗ୍ରୀବର ଯାଏ ।
ଲକ୍ଷ୍ମଣ ହନୁମନ୍ତ ଯେ ଜମ୍ବୁବ ସୁଷେଣ
ତାରକ୍ଷ ସମ୍ପାତି ଶତବଳି କାଳଙ୍ଗନ ।
ଓ୍ୱାଳମ୍ବ ରମଣ ଯେ ବସନ୍ତ ପବନ
ତରୁଶିଳ ଧରି କେ କରନ୍ତି ଗରଜନ ।
ଅପ୍ରମିତ ଥାଟ ଯେ ନ ଦିଶେ ପୁଣ ସୃଷ୍ଟି
ବାଟରେ ଦୁଇଦଳ ହେଲେ ଭେଟାଭେଟି ।
ବାଜିଲା ରଣ ଗୋଳ ଥାଟର ଭିତରେ
ରଚ୍ଚାଇ ଯୁଦ୍ଧ କଲେ ଅସୁର ବାନରେ ।
ଏକକୁ ଆରେକ ଯେ ନ ଚିହ୍ନନ୍ତି ତାଏ
ବିଷମ ଘାତ ପାଇଣ ଶମନ କେହି ନୋହେ
ଇନ୍ଦ୍ରଜିତକୁ ଦେଖିଣ ଧାଇଁଲା ବାଳି ସୁତ
କରେ ଧରିଥିଲା ବୀର ମହନ୍ତ ପରବତ ।
ହେନ ବାହା ବୁଲାଇ ମାଇଲା କୋପକରି
ମେଘନାଦ ଛେଦିଲା ତା ପ୍ରତିଶର କରି ।
ପୁଣିହିଁ ବାବଲ ଶର ପେଶିଲାକ ଧାଡି
ଅଙ୍ଗଦର ଶରୀର ସେ କାଟିଲା ବିକୋଡି ।
କୋପେ ତୀକ୍ଷ୍ଣ ନାରାଚ ବନ୍ଧିଲା ପୁଣ ପାଞ୍ଚ
ବାଳିରଜାର ନନ୍ଦନ ବିନ୍ଧିଲା ପରପଞ୍ଚ ।
ଝର ଝର ରକତ ବହଇ ତାର ଦେହ
ପରଚ୍ଛେ ମାଇଲା ପୁଣ କରି ତରୁ କୋହ ।
ଘାତପାଇ ଅଙ୍ଗଦ ମାଇଲା ଶକତି
ନାରାଚରେ ଛେଦିଲା ବିଷ୍ଣୁବାର ନାତି ।

ମଏଦୈତ୍ୟ ଶସ୍ତ୍ର ହୋଇ ଗଲାକ ନିଧନ
ପୁଣ ଦଶବାଣ ହାନେ ରାବଣ ନନ୍ଦନ ।
ଅଙ୍ଗଦର ଶରୀର କାଟିଲା ଶର ମୁନେ
ଅଙ୍ଗଦ ସିଂହରଡ଼ି ଛାଡ଼ଇ ଘନେ ଘନେ ।
ହୁଣ୍ଠ ତାହା ଦେଖିଣ ଧାଇଁଲେ ସଉମିତ୍ରି
ଅଙ୍ଗଦଙ୍କୁ ଆବୋରି ରହିଲେ ମହାକ୍ଷତ୍ରୀ ।
ବୋଇଲେରେ ପାମର ତାହାକୁ କମ୍ପା ମାରୁ
ମୂର୍ଖ ଶଠ ଯେବେ ମୋତେ ଯୁଦ୍ଧେ ପାରୁ ।
ତେବେ ମିନା ପ୍ରତିଜ୍ଞାରେ ଜାଣିବା ତୋହର
ପାରୁ ଯେବେ ନାଞ୍ଚକୁ ସହସି ମୋହର ।
ଏତେ ବୋଲି ମହାବୀର ହାନିଲେ ପାଞ୍ଚବାଣ
ଆଦ୍ୟ ଆଷାଢ଼େ କି ଗର୍ଜଇ ମେଘ ଦ୍ରୋଣ ।
ମେଘନାଦ ଉପରେ ପଡ଼ିଲା କାଣ୍ଡ ଯାଇ
ସର୍ପ ଯେସନ୍ତେ ଗାତରେ ପଶଇ ପଳାଇ ।
ପାଞ୍ଚଧାରା ହୋଇ ବାହାରେ ରକତ
ଘାତପାଇ ଦଇତ ହେଲା ବଚଳତ ।
ହଣାଣତ ନାରାଚ ହାନିଲା କୋପେ ଧାଇଁ
ପବନହୁଁ ବେଗେ ତାହା କାଟିଲେ ସଉମିତ୍ରି
ନିରନ୍ତରେ ନାରାଚ ହାନନ୍ତି ରାମ ଭାଇ
ବରଷିଲାବେଳେ ଯେସନେ ବୃକ୍ଷ ନ ଦିଶଇ ।
ତେସନ ଦିଶଇ ଦେବଦଳନ ନାମେ ରଥ
କୁହୁଡ଼ି ପରାଏ ହୋଇ ଦିଶେ ଶରପଥ ।
ଅସଂଖ୍ୟ ଅଗୋଚର କରନ୍ତି ଯୁଦ୍ଧ ବେନି
ସୁରପୁରେ ପ୍ରଶଂସା କରନ୍ତି ସସ୍ତ୍ରଯୋନି ।
ସୁମିତ୍ରା ନନ୍ଦନ ଅନ୍ତରୀକ୍ଷେ ବାଣ ମାରି
ମନ୍ଦୋଦରୀ ନନ୍ଦନର ହୃଦୟ ବିଦାରି ।
କଳ ମେଘରେ ଯେସନେ ବିଜୁଳି ପୂରି
ଦିଶେ ମେଘନାଦର ସର୍ବାଙ୍ଗେ ରକତ ।
ଏହା ପରେ ଦିବ୍ୟ ଅସ୍ତ୍ର କଲା ଯେ ଅସୁର
ଲକ୍ଷ୍ମଣ ଛେଦିଲେ ତା କଞ୍ଚିତ ପ୍ରକାର ।
ଇନ୍ଦ୍ରଜିତ ଧନୁ ଯେ ନାରାଚ ସହିତେ
କାଟି ପକାଇଲେ ଯେ ସୁମିତ୍ରାଙ୍କ ସୁତେ ।
ଆନ ଧନୁ ଧରି ଦୈତ୍ୟ ମାୟାଯୁଦ୍ଧ କଲା
ଘୋରମେଘ ଘେନଣ ଗର୍ଜି ଆବୋରିଲା ।
ବିଜୁଳି ଘଡ଼ଘଡ଼ି ବରଷେ ଯେସନେ ପାଣି
କପଟ ବୋଲି ତାହା ସଉମିତ୍ରି ଜାଣି ।

ପବନାଶର ପେଷିଣ ତାହା ଉଡ଼ାଇଲେ
ଇନ୍ଦ୍ରଜିତକୁ ଚାହିଁଣ କୋପରେ ବୋଇଲେ ।
ମାୟା କଲେ କରେ ତୁହି ପ୍ରାଣ ଆଜ ପାଇ
କାହିଁ ତୁହି ଯିବୁ ଆଜ ଜାଣିବାରେ ଭାଇ ।
କାଲିର ପ୍ରାୟେ ଆଜରେ ନୁହଇ ପ୍ରତାପ
ଆନସେ ବାରତା ନେଇ ଦେବ ତୋର ବାପ
ଲେଉଟି ଦେଖିବୁ ତୁ କି ଯାଇ ଲଙ୍କପୁରୀ
ଏମନ୍ତ ବିଚାର କି ମନରେ ଅଛୁ କରି ।
ଏତେ ବୋଲି ସେ ହାନିଲେ ତୀକ୍ଷଣ ଶର
ଦେଖି ତାହା ନିକଳିଲା ରାବଣ କୁମର ।
ପ୍ରତିଅସ୍ତ୍ର କରିଣ ସହସ୍ର ବାଣ ମାରି
ଆସନ୍ତେ ସଉମିତ୍ରି ପାଞ୍ଚବାଣ ଧରି ।
ସହସ୍ରେକ ନାରାଚ ଛେଦିଲାକ ହେଳେ
ଦୁହିଁଙ୍କର ସଂର କଟେ ବେଢ଼ୁଦେଲେ ।
ଶସ୍ତ୍ର ଆତଯାତରେ ଦେହ ନ ଦିଶନ୍ତି
ବଜ୍ରାଘାତ ପ୍ରାୟେ ଧନୁ ଟଙ୍କାର କରନ୍ତି ।
ରାମ ଯେ ଅକମ୍ପନ ସଙ୍ଗରେ ଯୁଝୁଥିଲେ
ହନୁମନ୍ତ କହନ୍ତେ ସେ ଧାଇଁଣ ଅଇଲେ ।
ଜତୁପାକ୍ଷକୁ ଛାଡ଼ିଣ ସୁଗ୍ରୀବର ଆଏ
ନରାନ୍ତକକୁ ଛାଡ଼ିଣ ବିଭୀଷଣ ଧାଏଁ ।
ଅମର୍ଷ ଛାମୁରୁ ଯେ ଅଇଲା କେଶରୀ
ଦେବାନ୍ତକକୁ ଛାଡ଼ିଣ ଯେ ଧାଇଁଲା ଶଉରୀ ।
ନୀଳ ବାହୁଡ଼ିଲେ ଯେ ପରମାର୍ଥ ଆଗୁ
ଲକ୍ଷ୍ମଣ ଇନ୍ଦ୍ରଜିତ ସମର ବଡ଼ ଲାଗୁ ।
ନଳ ନୀଳ ସୁଷେଣ ଜମ୍ବେବ ଶତବାଳି
କାଳଞ୍ଜନ ଦଧିମୁଖ ଧୀମନ୍ତ ଆଗସରି ।
ଶରଶେକୁ ଗବଏ ଗବାକ୍ଷ ସୁଭାସ
ଚନ୍ଦନ ମହାନ୍ତ୍ର ଯେ ସାରସ ପାରସ ।
ଉଲାମ୍ବ ପବନ ବସନ୍ତ ସୁହୋଦର
ଯୁଝିଲା ଇନ୍ଦ୍ରଜିତ ଲକ୍ଷ୍ମଣ ସଙ୍ଗେ ପୁଣ ।
ରଣ ଛାଡ଼ି ଧାଇଁଲେ ଧରିଣ ଆୟୁଧ
ଦେଖିଣ ଅସୁର ଯେ ହୋଇଲା ଅଧୈର୍ଯ୍ୟ ।
ସୈନ୍ୟର ସହିତେ ରାମ ଏକ ମୁଖ ହୋଇ
ଲକ୍ଷ୍ମଣଙ୍କ ପିଠି ହୋଇଲେ ସର୍ବେ ଯାଇ ।
ଶ୍ରୀରାମ ଆସିବାର ଦେଖିଲା ଇନ୍ଦ୍ରଜିତ
ଲକ୍ଷେକ ନାରାଚ ସେ ହାନିଲା ତୁରିତ ।

ଲକ୍ଷ୍ମଣଙ୍କୁ ଲକ୍ଷେ ଯେ ସୁଗ୍ରୀବଙ୍କୁ ଶଏ
ବିଭୀଷଣଙ୍କୁ ସହସ୍ରେ ନାରାଚ ବାର କଏ ।
ଅଙ୍ଗଦଙ୍କୁ ପାଞ୍ଚ ଯେ ହନୁଙ୍କୁ ମାରେ ଦଶ
ପବନ ଗତି କରଣ ହନେ ରାବଣର ଶିଷ୍ୟ ।
ସୁନାସଙ୍କୁ ଦୁଇ ଯେ ଗବାକ୍ଷଙ୍କୁ ତିନ
ନଳଙ୍କୁ ଆଠ ବାଣ ହଣିଲା କରେ ଘେନ ।
ଜାଲମ୍ବୁଙ୍କୁ ଚାରି ଯେ ପନସଙ୍କୁ ବାର
କେଶରୀଙ୍କ ସାତ ମହେନ୍ଦ୍ରଙ୍କୁ ଯେ ଅଠର ।
ଦ୍ବିବଦଙ୍କୁ କୋଡ଼ିଏ କାଳଞ୍ଜନଙ୍କୁ ଚାରି
ସୁଷେଣ ମନ୍ତ୍ରୀଙ୍କ ସେ ଊଣେଇଶ ମାରି ।
ଜାମ୍ବବଙ୍କୁ ଚଉଦ ଶତବାଳିଙ୍କ ଛଅ
କୁମୁଦ ସାରସଙ୍କୁ ହନେ ନଅ ନଅ ।
ସମ୍ପ ତିଙ୍କୁ ଶଏ ଯେ ଶରଭକେତୁଙ୍କୁ ତେର
ବଳମୁଖଙ୍କୁ ବାଇଶି ଦଧିମୁଖଙ୍କୁ ସତର ।
ସୁନାସଙ୍କୁ ଚଉଦ କାଳମୁଖଙ୍କୁ ଦୁଇ
ସଉରୀଙ୍କ ପନ୍ଦର ନାରାଚ ଯେ ପେସଇ ।
ରୁମଣଙ୍କୁ ଚଉଦ ତାରା ପିତାଙ୍କୁ ସାତ କାଣ୍ଡ
ହାର୍କିଣ ହଣିଲା ଯେ ରାବଣ ପ୍ରଚଣ୍ଡ ।
ମଲ୍ଲ ମହାମଲ୍ଲଙ୍କୁ ଛଅ ଚାରି ମାରି
ଏକାବେଳକରେ ବାର ଏତେକ ପ୍ରହାରି ।
ଋକ୍ଷକପି ଯେତେକ ଯେ ରଣ ମଧ୍ୟେ ଥିଲେ
ନାରାଚେ ନାରାଚେ ଯେ ସର୍ବଙ୍କି ମାଇଲେ ।
ଅଗ୍ନି ପଡ଼ଲାକ ଅବା ଅନ୍ତରାଳ ହୋଇ
ଜୁଳୁଜୁଳୁକା ପୋକ କି ପଡ଼ଇ ରଣଭୂଇଁ ।
ତାରାଗଣ ସକଳ କି ଆକାଶରୁ ଖସି
ନାରାଚଙ୍କର ତେଜ ଯେ ତେସନ ପ୍ରାଏ ଦିଶି
ବେଲ ଘଡ଼ିକରେ ସେ ସଂଗ୍ରାମେ ପଶିଲା
ପ୍ରହରକ ମଧ୍ୟରେ ସେ ସୈନ୍ୟଙ୍କୁ ନାଶିଲା ।
ଅଙ୍ଗଦ ସଙ୍ଗତରେ ଘଡ଼ିଏ ଯୁଦ୍ଧ କଲା
ଲକ୍ଷ୍ମଣ ସଙ୍ଗେ ଯୁଦ୍ଧ ବେନିଘଡ଼ି ହେଲା ।
ସୂର୍ଯ୍ୟ ଦେବତା ଯେ ବୁଡ଼ିଲେ କାରଣ
ଅସ୍ତ ହୋଇଲେକ କଶ୍ୟପ ନନ୍ଦନ ।
ଅସୁରେ ନିଶାଚର ରାତ୍ରରେ ବଳୟାର
ସନ୍ଧ୍ୟାବେଳଯାଏ ଯୁଦ୍ଧ କଲେ ସେ ଅପାର ।
ଯେତେ ଶର କରନ୍ତି ଶ୍ରୀରାମ କଲେ ପ୍ରତିଅସ୍ତ୍ର
ଏଗାର ବାଣେ ଶ୍ରୀରାମ ଛେଦିଲେ ସମସ୍ତ ।

ଦେଖିଣ ଅସୁର ମୋହ ଶର ମାରି
ସମସ୍ତଙ୍କୁ ମୋହ କଲେ ଯେ ବେଗ କରି ।
ପୁଣି ତୀକ୍ଷ୍ଣ ଶର ମାରେ ଦୈତ୍ୟ ବୀର
ଅନେକ ସଇନ ସେ ମାରେ ଶ୍ରୀରାମର ।
ଯେବଣ ପରକାର ଦିଶେ ସୁର ପୁରୀ
ତହିଁ ଷଢେଗୁଣରେ ନାରାଚ ଘୋର କରି ।
ଘଡ଼ିକ ଭିତରେ ଶ୍ରୀରାମ ସୈନ୍ୟ ନାଶି
ଅନେକ ଋକ୍ଷକପି ରଣ ଭୂମିରେ ଲୋଟି ।
ସେନା ସେନାପତି ସକଳ ମହାମଲ୍ଲ
ଘାତପାଇ ଘୁମାଇଁ ପଡ଼ିଲେ କପିଦଳ ।
ପଚାଶ ଯୂଥପତି ହୋଇଲେ ସଂହାର
ଅଷ୍ଟସେନାଙ୍କୁ ଯେ ହକୋଟିଣ ମାରି ।
ବିଭୀଷଣ ଛାଡି ଯେ ହାରିଣ ରଣେ ଶୋଇ
ମୋହେ ଅଚେତନ ହୋଇଲେ ପୁଣ ତହିଁ ।
ସୁଗ୍ରୀବ ଅଙ୍ଗଦ ଯେ ପଡ଼ିଲେ ନଳ ନୀଳ
ଜାମ୍ବବ ସହିତରେ ସୁଷେଣ ଶତବଳ ।
ହନୁମନ୍ତ ତାରକ୍ଷ ଶ୍ରୀରାମ ସ୍ମରି ବେନି
କୋପରେ ଇନ୍ଦ୍ରଜିତ ନାଗଫାଶ ଘେନ ।
ମନ୍ତ୍ରିଣ ବାନ୍ଧିଲା ସେ ଗୁଣରେ ବସାଇ
ଭୟରେ ଦେବତାଏ ସ୍ୱର୍ଗରୁ ପଳାଇ ।
ବ୍ରହ୍ମାଣ୍ଡ କମ୍ପିଲା ଯେ ସପ୍ତସିନ୍ଧୁ ସ୍ଥିର
ଭୟରେ ବାସୁକି ଯେ ନ ଟେକଇ ଶିର ।
ଚଳିଲାକ ନାଗଜ ଯେ ଘୋର ଧ୍ୱନି କରି
ଯୁଗାନ୍ତେକ ଗଭୀର ଜିହ୍ୱା ଅଗ୍ରେ ଧରି ।
ବିକଟ ବିକରାଳ ଦିଶଇ ବଦନ
ଲହ ଲହ ଜିହ୍ୱା ତାରି ପ୍ରଚଣ୍ଡ ହୁତାଶନ ।
ଫୁ ଫୁ କାରି ଶବଦ କରେ ଘନ ଘନ
ପ୍ରଳୟ ମେଘ ପ୍ରାୟେ କରେ ସେ ଗର୍ଜନ ।
ଅଣଚାଶ ପବନ କି ଫୁ ଫୁ କାରି ଧ୍ୱନି
ନିଃଶ୍ୱାସର ବାତେ କି ପଡ଼ିବେ ସଇନ ।
ଫଣା ଟେକି ଗଗନୁ ସେ ଓହ୍ଲାଇ ପଡ଼ିଲା
ସ୍ୱର୍ଗ ମର୍ତ୍ତ୍ୟ ଦୁଇ ଯେ କୁଣ୍ଡରେ ନିରୋଧିଲା ।
ଶ୍ରୀରାମର ଉପରକୁ ପଡ଼େ ସେ ଧସାଇ
ଶସ୍ତ୍ରରେ ନିବାରିଣ ନ ପାରେ ରଘୁସାଇଁ ।
ଲକ୍ଷ୍ମଣଙ୍କ ଅଙ୍ଗରେ ପଡ଼େ ଅହିଶର
କଉଶଲ୍ୟା କୁମରଙ୍କୁ ବାନ୍ଧେ ସେ ନିରନ୍ତର ।

ଧନୁ ଶସ୍ତ୍ର ଘୃଡ଼ିଣ ପଡ଼ିଲେ ବେନିଭାଇ
ହୃଦରେ ବିସ୍ମରନ୍ତି ଆମ୍ଭେ ସେ ବିଷ୍ଣୁ ଦେହି ।
ଅସୁର ଯୋଗ୍ୟତାରେ କି ଆମ୍ଭଙ୍କୁ ପାରେନାଶି
ଜୟ କରିବ ଏହୁ ବାସୁକୀ ରାଜା ଫାଶି ।
ଏମନ୍ତ ବିଚାରିଣ ପଡ଼ିଲେ ଭାଇ ବେନି
ଅସ୍ତ୍ର ଭସ୍ମ କରଇ ନ ରଘୁଣଙ୍କୁ ଚହ୍ନି ।
ଇନ୍ଦ୍ରଜିତର ଉପ୍ପରେ ମନ୍ତ୍ରର ପ୍ରବଳେ
ଆସିଣ ଭିଡ଼ଇ ସେ ସଂଗ୍ରାମର କାଳେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ସେ ବାନ୍ଧେ ଯତ୍ନ କରି
ଦୁଇଭାଇ ଅଜ୍ଞାନେ ଶୋଇଲେ ବସୁନ୍ଧରୀ ।
ଯାହାଙ୍କର ବାହନ ଅଟଇ ଗରୁଡ଼
ସେହି ସ୍ୱାମୀ ଜାଣାନଲେ ଅଚେତନ ବଡ଼ ।
ଦେଖିଣ ଇନ୍ଦ୍ରଜିତ ଯେ ଶଙ୍ଖ ଧ୍ୱନି କରି
ବିଜୁରଇ ପ୍ରବେଶ ହୋଇଲା ଉମିରି ।
କାଲିର ପ୍ରଭାତରୁ ପିତା ମୋ ଆସି ଦେଖୁ
ନର ବାନରଙ୍କର ଭୟକୁ ଉପେକ୍ଷୁ ।
ରାଜ ପାଡ଼ିବା ଯାଏ ଥିବେ କି ସେହୁ ବୃଥା
ଏତେ କହି ବାହୁଡ଼େ ଯେ ବିଶ୍ରବାର ନାତି
ସେନାପତିମାନଙ୍କୁ ସେ ଘେନି ସଙ୍ଗତରେ
ବାହୁଡ଼ା ବିଜେ କଲା ବଜାଇ ସମ୍ଭବରେ ।
ଶରଦ ଚନ୍ଦ୍ର ଜାଣିଣ ବିରାଜେ ବଦନ
ଦେବଦଳନ ରଥରେ ଚଳେ ଘନଘନ ।
କୋଳାହଳ ଧ୍ୱନି ଯେ ଶୁଭେ ଚଉପାଶ
ରଣେ ଜୟ କରିଣ ଚଳେ ନିଜ ଦେଶ ।
ମହୋଦର ଧୂମ୍ରାକ୍ଷ ନରାନ୍ତକ ଦେବାନ୍ତକ
କୁମ୍ଭ ନିକୁମ୍ଭ ଯେ ମିହଘନ ବିରୂପାକ୍ଷ ।
ଅଲେପି ସଲେପି ଯେ ମୁଖା ଦୁରୁମୁଖା
ସିଂହ କୁରଙ୍ଗ ଯେ କାଳଖଣ୍ଡ ସୁମୁଖା ।
ବିଦ୍ୟୁମାଳି ଶତ୍ରାଜିତ ଅମଏ ହିଂଶିର
ମହାସୁରଙ୍କ ବଜ୍ରା ଧନୁଷ୍ଟ ମହ ବୀର ।
ରଥୀ ଯୋଦ୍ଧା ମହନ୍ତ ଯେ ପଦାତି ଆନନ୍ଦ
ବୀରତୂର ବାଦ୍ୟ ତହିଁ ବାଜଇ ସୁଛନ୍ଦ ।
ଛତ୍ର ଚାମର ଯେ ଉଡ଼େ ଫରହର
ବିହୁଡ଼ ଜଗହୁଳା ଜଳେ ନିରନ୍ତର ।
ଅପ୍ରମିତ ଆଟ ଯେ ଚଳେ ଧୀର ଧୀର
ସମ୍ଭ୍ରମରେ ଚଳଇ ସେ ରାବଣ କୁମର ।

ଲଙ୍କାଗଡ଼େ ଯାଇଣ ହୋଇଲା ବାରତା ।
ନରବାନର ସଂହାରି ଆସେ ଇନ୍ଦ୍ରଜିତା ।
ରାବଣ ଶୁଣିଲା ଯେ ପୁତ୍ରର ଯୁଦ୍ଧ ଘାତ ।
ଆସ୍ଥାନେ ବିଜେ କଲା ଆସିଣ ଲଙ୍କପତି ।
ଶୁକ ଶାରଣ ଯେ ଅନ୍ତନ୍ତ ମନ୍ତ୍ରୀ ବେନି
ସଞ୍ଚଳିଲା ପାଶ ମନ୍ତ୍ରୀ ଅମାତ୍ୟଙ୍କୁ ଘେନି ।
ରଜତ ମାହୁନ୍ତ ଯେ ରଥି ପଏକାର
ପାଞ୍ଚ କୋଶ ମାଡ଼ି ଯେ ଘଡ଼େ ପଟୁଆର
ଘନଘନ ସ୍ୱର ଯେ ବାରତ ଜଣାଇ
ଶୁଣି ଦେବ ପ୍ରତାପି ଲଙ୍କାଗଡ଼ ସାଇ
ମେଘନାଦ କୁମର ତୋ ସଂଗ୍ରାମକୁ ଗଲା
ଲକ୍ଷ୍ମଣ ସଙ୍ଗରେ ସେ ଅନେକ ଯୁଦ୍ଧ କଲା ।
ଋକ୍ଷକପି ବଳ ଯେ ସଂହାର କଲା ହେଳେ
ସେନାପତି ଯୂଥପତି ସଂହାରେ ଭୁଜବଳେ
ରାମ ଲକ୍ଷ୍ମଣଙ୍କୁ ସେ ନାଗ ଫାଶେ ବାନ୍ଧି
ବାହୁଡ଼ା ବିଜେକଲା ଶତ୍ରୁଙ୍କୁ ତୋର ସାଧି
ଶୁଣିଣ ଲଙ୍କପତି ପ୍ରସନ୍ନ ମୁଖ ହୋଇ
ଦୂତମାନଙ୍କୁ ଶାଢୀ ଯେ ରତ୍ନମାଳା ଦେଇ
ଅମାତ୍ୟଙ୍କୁ ଚାହିଁଣ ବୋଲେ ରାୟେ ହସି
ଶୁଣିଲଟିକି ଇନ୍ଦ୍ରଜିତ ଶତ୍ରୁ ସାଧି ଆସି ।
ସାଧୁ ପୁତ୍ର ମୋରରେ କୁଳର ପ୍ରଦୀପ
ହୋଇଲେ ତ ଆଜରେ ସାଧେ ସୁରନୃପ ।
ଯାଅଯାକୁମ୍ଭେବେଗେ ଶୁକଶାରଣ ମନ୍ତ୍ରୀବେନି
ପୁତ୍ରକୁ ମୋ ପାଛୋଟି ଆସ ଯାଇ ଘେନି ।
ମେଘନାଦ ମୁଖୁ ମୁଁ ଶୁଣିବି ଶତ୍ରୁ ହତ
ହେବେ ସେ ଭ୍ରାନ୍ତି ମୋ ଘୁଞ୍ଚିବ ନିଅତ ।
ଶୁଣି ଶୁକ ଶାରଣ ଗଲେକ ସୈନ୍ୟ ସେନ
ରାଜାର ଆଜ୍ଞାରେ ପାଛୋଟେ ମନ୍ତ୍ରୀ ବେନି ।
ଦେଖିଲେ କଟକରେ ପଶଇ ଇନ୍ଦ୍ରଜିତ
ସଙ୍ଗରେ ରଥଗଜ ସୈନ୍ୟ ଅପ୍ରମିତ ।
ବିହୁଡ଼ର ତେଜରେ ଆଲୁଅମୟ ଦିଶେ
ଦେବଦଳନ ରଥରେ ଚଢ଼ି ବୀର ଆସେ
ପ୍ରଶଂସା କରନ୍ତି ଲୋକେ ଆସନ୍ତେ ମେଘନାଦ
ତୋହର ବଞ୍ଚିଇଲୁ ଏତେକ ପ୍ରମାଦ ।
ଋକ୍ଷକପି ମାରିଣ ଯେ ନିଷ୍କଣ୍ଟକ କଲୁ
ଲଙ୍କାଗଡ଼ ଲୋକଙ୍କୁ ତୁ ସାବଧାନ ଦେଲୁ ।

କେ ବୋଲେ ବିଭୀଷଣ ହେ ଅକାରଣେ ମଲା
ଏଡ଼େ କୁଳ ଗୋଷ ସେ ଛାଡ଼ି ଜମା ଗଲା ।
କେ ବୋଲେ ଲଙ୍କା ଯେ ପୋଡ଼ିଲା ହନୁମନ୍ତ
ସେହି ମଲାଟିକ ମଧୁବନର ଧୂମାନ୍ତ ।
କେ ବୋଲଇ ଜଗତ ରୂଳ ଯେହୁ ନେଲା
ସେ ଦୁଷ୍ଟ କେମନ୍ତ ପ୍ରକାରେ କ୍ଷୟେ ଗଲା ।
କେ ବୋଲେ ରାବଣର ମୁକୁଟ ନେଇ ଯେହୁ
ତାକୁ ମାଇଲାଟି ଏ ଅସୁର କୁଳ ରାହୁ ।
ଦୁଇ ଯତି ପଡ଼ିଲେ ହେ କେମନ୍ତ ପ୍ରକାରେ
ଥିଲା ଲୋକ ବୋଲନ୍ତି ବାନ୍ଧଛି ଅହିଶରେ ।
ଶୁଣି ବିଭୀଷଣ ହନୁମନ୍ତ ବାଳିସୁତ
ରୁକ୍ଷକପି ବଳଙ୍କୁ ଯେ କଲା ଧୂମାକ୍ଷତ ।
କେମନ୍ତେ ସେ ରଣରେ ପଡ଼ନ୍ତି ସୁରଗଣେ
ଅଗ୍ନି ଦହଇ ଯେହ୍ନେ ଶୁଖିଲାର ଶୋଣେ ।
ତେସନ କରଣ ଯେ ଦହଇ ଇନ୍ଦ୍ରଜିତ
ଯକ୍ଷୀଙ୍କର ସାରବର ଯେ ରାବଣର ସୁତ ।
ଏହାର ଯୁଦ୍ଧରେ କ ରୁକ୍ଷକପି ଜାଣି
ତାହାର ନାରାଚ ଇନ୍ଦ୍ର ଦେବତା ନ ସହି ।
ଏମନ୍ତ ବୋଲାବୋଲି ହୁଅନ୍ତେ ଯାଉଯାଉ
କେହୁ ରୂଲ ରୂଲ ଯେ ବୋଲନ୍ତି ଧାଉଁଧାଉଁ ।
ନଗ୍ରରେ ଆନନ୍ଦ ଉତ୍ସବ ସର୍ବଜନ
ବାଟେ ଘାଟ ଏକବାର କରନ୍ତି ଯେ ପୂଣ ।
ଉତ୍ତର ସିଂହଦ୍ୱାରେ ରଥ ଲଗିଲାକ ଯାଇଁ
ଉତ୍ତରକୁ ମେଘନାଦ ଗଲା ଯେ ଓହ୍ଲାଇ ।
ଦେଖିଲା ଆସ୍ଥାନରେ ବସିଛି ଲଙ୍କପତି
ଦୂରରୁ ପ୍ରଣମ୍ୟକରି ଉଠିଲା ତଡ଼ିତ ।
ଶିରେ କର ଦେଇଣ ଭଡ଼ାଦଣ ଗଲା
ପୁଣି ପାଏ ପଡ଼ିଣ ଶୋଇଣ ଉଠିଲା ।
ରାୟେ ଆଜ୍ଞାଦେଲେ ଯେ ପାଶକୁ ମୋର ଆସ
ଆଜର ଯୁଦ୍ଧ ବାବୁରେ ଭୂଷି କଲୁ କସ ।
ଇନ୍ଦ୍ରଜିତ ବୋଇଲା ଶୁଣ ଲଙ୍କସାଇ
ବହୁତ କହିଲେ ଯେ ପ୍ରୟୋଜନ ହୋଇ ।
ଅସୁଭଙ୍କତ ଶତ୍ରୁଙ୍କୁ ଅଇଲି ଦେକ ମାରି
ଶ୍ରୀରାମ ଲକ୍ଷ୍ମଣ ଯେ କପି ଆଦି କରି ।
ସେ କାହିଁ ଜାଣିବେ ଯୁଦ୍ଧର ଯେ ରୀତି
ମାନବ ଶରୀର ସିନା ଅଟେ କେନ ଯତି ।
ଘଡ଼କରେ ସଂହାରି ମୁଁ ସବୁ ତାର ବଳ
କାଲି ଯାଇ ଆପଣେ ଦେଖିବେ ଲଙ୍କପାଳେ
ଶୁଣିଣ ଦଶାନନ ହୋଏ ଯେ ଆନନ୍ଦ
ମୁଖ ବିକାଶଇ ତାର ପୂର୍ଣ୍ଣିମାର ଚନ୍ଦ୍ର ।
ସିଂହାସନୁ ଉଠି ସେ ପୁତ୍ରକୁ କୋଳକଲା
ମନ୍ତ୍ରୀଗଣମାନଙ୍କୁ ସେ ଚାହିଁଣ ବୋଇଲା ।
ରାମ ଯେ ସମୁଦ୍ରରେ ବାନ୍ଧେ ସେତୁବନ୍ଧ
ଏବେ ଲଙ୍କାପଦାରେ ଲୋଟେ ତାର କନ୍ଧ ।
ନଗରେ ଉତ୍ସବ କରାଅ ତୁମ୍ଭେ ଯାଇ
ଦେବତାଙ୍କୁ ପୂଜା କରି ବିବିଧ ଭୋଗଦେଇ
ବ୍ରାହ୍ମଣରେ ଭୋଜନ ଦରିଦ୍ରେ ଭୋଜନ
ସଂଗ୍ରାମ ଭୂଇଁକି ସୀତାଙ୍କୁ ବେଗେ ଆଣ ।
ଦେଖୁ ବେନି ନେତ୍ରେ ସ୍ୱାମୀ ଦିଅର ମରଣ
ସୁଗ୍ରୀ ବିଭୀଷଣ ରୁକ୍ଷ କପିଙ୍କର ପ୍ରାଣ ।
ଭାଇ ଚଣ୍ଡାଳ ମୋର ରେ ଅକାରଣେ ମଲା
ଶତ୍ରୁକୁ ଦେଖିଣ ସେ ମୋତେ ଛାଡ଼ିଗଲା ।
ଏବେ ଜାଣିଲି ମୁଁ ତା ହୃଦରେ ମହାପାପ
କେବଣ ବାଣେ ତାକୁ ମାଇଲୁରେ ବାପ ।
ତାର ଅମର ଶରୀର ବ୍ରହ୍ମାର ବଚନରେ
ତାକୁ ମାଇଲୁ ବାପରେ କେବଣ ବାଣରେ ।
ଇନ୍ଦ୍ରଜିତ ବୋଲେ ହେ ନ ଜାଣ କଣଗିରି
ଧରି ମାଇଲେଟି ସିଧେ ହେଲେ ମରି ।
ବ୍ରହ୍ମଶର ଆଗରେ କେହୁଟି ଶର ନାହିଁ
ବାରକୋଟି ବ୍ରହ୍ମଶର ବନ୍ଧିଲି ଯେ ମୁହିଁ ।
ବ୍ରହ୍ମାମୋତେ ପ୍ରସନ୍ନରେଯେତେବେଳେଦେଲା
ରୁଦ୍ର ବିଷ୍ଣୁଙ୍କୁ ଛାଡ଼ି ମାରିବୁ ବୋଇଲା ।
ରାମ ଲକ୍ଷ୍ମଣ ହନୁକୁ ନ ମାରିଲି ସେ ଶର
ଆଉ ସବୁ ସୈନ୍ୟ ମଲେ ସେହି ଯେ ଶରର
ତେବେ ପ୍ରାଣ ହାରିଲେ ମଲ୍ଲ ମହାମଲ୍ଲ
ସବୁ ସୈନ୍ୟ ତକ୍ଷଣ ପଡ଼ିଲେ ମସ୍ତ ତଳ ।
ଶ୍ରୀରାମ ଲକ୍ଷ୍ମଣକୁ ଅହିଶର ମୁହିଁ ମାରି
ଢଳି ପଡ଼ିବାରୁ ମୁଁ ଅଇଲି ଯେ ଫେରି ।
ଅମର ହୋଇବା ଲୋକେ ତାର ସୁଖେ ଥିବ
ସଂଗ୍ରାମ କଲେ କି ଅନ୍ୟାୟ୍ୟ ପାରି ଯିବ ।
କୁଳ ଛାଡ଼ିଦେଲେ ସେ ଏଣୁ ଧର୍ମ ହାନି
ଶରଣ ପଶିଲା ସେ ହୋଇ ମହାଜ୍ଞାନୀ ।

ସ୍ୱହସ୍ତରେ ଆମ୍ଭଙ୍କୁ ସେ ପୁଣ ଶସ୍ତ୍ର ମାର
ବିଭୀଷଣ ଖୁଡ଼ୁତା ଲଗି ମୁଁ ଏତେସର ।
ତୁମ୍ଭେ କାଲି ପ୍ରଭାତରୁ ଦେଖିବନା ଯାଇ
ତିନଦିନ ସମର ହେଲା ଶରୀର ସୁସ୍ଥ ନାହିଁ ।
ସ୍ନାନ ଭୋଜନ ଏବେ ସାର ଲଙ୍କସାଇଁ
ଦେଖିଲେ ପ୍ରତେଯିବ କହିଲେ କପହୋଇ ।
ଶୁଣିକରି ଦଶଗ୍ରୀବ ହୋଇଲା ସନ୍ତୋଷ
ଯେଯାହାରେ ଯାଅବୋଲି ଦେଲସେଆଦେଶ
ଆପଣେ ଭିତରକୁ ସେ ବଜେ କରିଗଲା
ମାଜଣା ସାରିଣ ମଣୋହି ବଧି କଲା ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ବରୀ
ରଥୀ ସେନାପତି ପଦାନ୍ତି ଆଦିକରି ।
ଯେ ଯାହାର ପୁରକୁ ସମସ୍ତେ ପୁଣ ଗଲେ
ଭୋଜନ ସାରିଣ ଶୟନ ନିଶ୍ଚିନ୍ତରେ କଲେ ।
ଏଥୁଅନନ୍ତରେ ଯେ ରାବଣେଶ୍ୱର ପୁଣ
ମୃଦୁସ୍ୱର ପଠିଆଇ ଅଶୋକ ବନେ ଜାଣ ।
ତ୍ରିଜଟାକୁ ହକାରି ବୋଲେ ଲଙ୍କେଶ୍ୱର
ଏକଥା କହିବୁ ଯାଇ ସୀତାର ଆଗର ।
ପୁଷ୍ପକ ବିମାନରେ ବସାଇ ଘେନଯାଅ
ସଂଗ୍ରାମ ଭୂମିରେ ତାର ସ୍ୱାମୀକି ଦେଖାଅ ।
ଇନ୍ଦ୍ରଜିତ ନାରାଚରେ ପଡ଼େ ଋକ୍ଷ ହରି
ଦେଖି ପ୍ରତେ ଯାଉ ଏବେ ଜନକ କୁମାରୀ ।
ପୁଷ୍ପକର ଯାନରେ ଏବେ ଚଢ଼ି ଯାଅ
ବାହୁଡ଼ାଇ ଅଣାଇଣ ଅଶୋକବନେ ଥୁଅ ।
ଶୁଣି ଆଜ୍ଞାପ୍ରମାଣେ ଗଲା ଯେ ତ୍ରିଜଟା
ଯାଇଣ ପ୍ରବେଶ ହେଲା ମଧୁବନ ତୋଟା ।
ରାବଣ ଆଜ୍ଞାରେ ପୁଷ୍ପକଯାନ ଘେନ
ସୀତାଆଗେ କହେ ବିଭୀଷଣର ନନ୍ଦନୀ ।
ଶୁଣ ଜାନକୀ ଆଜ ସମରର କଥା
ଇନ୍ଦ୍ରଜିତ ନାମରେ ରାବଣର ପୁତା ।
ଘରିଯାଇ ସମର କଲା ରଣେ ପଶି
ଋକ୍ଷ କପିଦଳ ସବୁ ପକାଇଲା ନାଶି ।
ରାମ ଲକ୍ଷ୍ମଣ ସେ ନାଗଫାଶେ ବନ୍ଧ
ସୁଗ୍ରୀବ ବିଭୀଷଣ ପଡ଼ିଲେ ସର୍ବ ଯୋଧି ।
ହନୁ ଜାମ୍ବେବ ଅଙ୍ଗଦ ସହିତେ ନାଶ ଗଲେ
ଅଣ୍ଣଷ ଯୂଥପତି ଅଷ୍ଟ ସେନାପତି ମଲେ ।
ସ୍ୱାମୀର ସୈନ୍ୟ ତୋର ଅନେକ ପଡ଼ିଲେ
ଋକ୍ଷ କପି ହୋଇ ଯେ ଗୋଟିଏ ନବଞ୍ଚିଲେ ।
ରାବଣେଶ୍ୱର ମୋତେ ଆଜ୍ଞାଦେଲା ରାଇ
ତୁମ୍ଭଙ୍କୁ ଘେନଯିବି ମୁଁ ବିମାନେ ବସାଇ ।
ରଣଭୂମିରେ ତୁମ୍ଭର ସ୍ୱାମୀ ବଡ଼ପଣ
ନେତ୍ରେ ଦେଖିବ ମାତ ସ୍ୱାମୀଙ୍କ ମରଣ ।
ଆସ ଆସ ସୁନ୍ଦରୀଗୋ ରଥବରେ ବସ
ଶୁଣିକରି ବଇଦେହୀ ମନରେ କଲେ ହାସ ।
ନୟନରୁ ଅଶ୍ରୁଜଳ ବହେ ଅବିଚ୍ଛନ୍ନେ
ଫୁଇ ସୂତାରୁ ମୁକୁତା ପଡ଼ଇ ଯେସନେ ।
ଶୋକକୁ ସମ୍ଭାଳି ବୋଲେ ଭୂନମୂର୍ତ୍ତି
ରାମଙ୍କୁ ଜିଣିବାକୁ କେ ଭାଜନ ଅଛି ମହି ।
ଦେବେ ନପାରନ୍ତି ଯାକୁ ଅସୁରେ ତାକୁମାରି
ଅସମ୍ଭବ କଥାକୁ ସତ କରେ ଇନ୍ଦ୍ର ଝିଅ ।
ଏହି ସମୟରେ ପବନ ଯାଇ କହି
ଏକଥାକୁ ସମ୍ପ୍ରତେ ନକର ବଇଦେହୀ ।
ରାତି ଶେଷହେଲେ ଦେଖିବୁ ରାମଙ୍କୁ
ଲଙ୍କା ଧ୍ୱଂସ ଦେଖିବୁ କାଲି ପ୍ରଭାତକୁ ।
ନାଗଫାଶେ ବାନ୍ଧିଛୁ ସୈନ୍ୟସହ ମୋହେ
ଆଜ ନିଶିରେ ସମସ୍ତେ ତେଜମସ୍ତେ ହୋଏ ।
ଶୁଣି ଜାନକୀ ଯେ ମନରେ ତୋଷ ହୋଏ
ବିଚାରିଲେ ମନରେ ଅସୁର ମାୟାକସ୍ତେ ।
ଏତେ ବିଚାରି ମନରେ ଉଠେ ମହାସତୀ
ଚାଲ ଚାଲ ଦେଖିବା ଏ କେବଣ ରୀତି ।
ପୁଷ୍ପକ ବିମାନରେ ବିଜେକଲେ ଯାଇ
ରଥବର ଆନନ୍ଦ ହୋଇଲାକ ଗ୍ଲହିଁ ।
ମନରେ ବିଚାରିଲା ପାପ ଗଲା ମୋର
ପରମ ଲକ୍ଷ୍ମୀଙ୍କର ଲାଗିଲା ପୟର ।
ତ୍ରିଜଟା ସହିତେ ଯେ ସହସ୍ରେକ ନାରୀ
ମଧ୍ୟରେ ବସିଲେ ଯେ ଜନକ କୁମାରୀ ।
ତାରା ମଧ୍ୟରେ ଯେହ୍ନେ ପୌର୍ଣ୍ଣମୀର ଶଶୀ
ରାକ୍ଷସୀଙ୍କ ମଧ୍ୟରେ ତେସନେକ ବସି ।
ଉକତେ ଜରଜର ସବୁଙ୍କର କାୟେ
ନାନାବର୍ଣ୍ଣେ କପି ଯେ ଏକବର୍ଣ୍ଣ ହୋଏ ।
କାହାର ନିଃଶ୍ୱାସ ବହେ ଗୁ ଛୁଡର
କେହୁ ଚେତା ପାଇଣ ଉପାଡ଼ୁଛନ୍ତି ଶର ।

କେତୁ ଘାଆ ମୁଖରେ ଫୁଙ୍କନ୍ତି କଟାକ୍ଷି
ଧୀର ଧୀର ହୋଇ ସେ ହୋନ୍ତି ପୂଛା ପୁଚ୍ଛି
ଏକକୁ ଦେଖିଣ ସେ ଆରେକ ଉସତ
କେ ବୋଲନ୍ତି କେଉଁଠାରେଅଛନ୍ତି ରଘୁନାଥ
କେବଣ କପି ପୁଣି ନଚେଷ୍ଟ ହୋଇଥିଲେ
ଲୋକ ତୁଣ୍ଡ ଶୁଣିଣ ଉଠିଣ ବସିଲେ ।
ଏକ ଆରକରେ ଯେ ଉଶ୍ୱାସ ହୋନ୍ତି କାଏ
କେ ବୋଲନ୍ତି ମରିବାରୁ ଜିଇବା କ ଉପାୟେ
କେ ବୋଲନ୍ତି ଧନ୍ୟ ଷଣ୍ଢୀ ଧନ୍ୟ ଇନ୍ଦ୍ରଜିତ
ଏତେ ସୈନ୍ୟବଳ ଗୋଟି କଲୁରେ ନପାତ
ଦୁଇ ବୀର ପାଞ୍ଚ ଯେ ମେଳ ହୋଇଯାନ୍ତି
ଅଚେତା ଲୋକଙ୍କୁ ସେ ଚେତା କରାବନ୍ତି ।
ନାରାଚ ଉପାଡ଼ି ସେ ଫୁଙ୍କନ୍ତି ମନ୍ତ୍ର ପଢ଼ି
ଚୁମ୍ବକ ପଥର ହୋଖାଇ ଫଳା କାଢ଼ି ।
ହୋଇଲେ ସଜୀବ ଋଷ କପିବଳ
ଶୁଷେଣ ମନ୍ତ୍ରୀ ଆସିଣ ମିଳେ ଯେ ଶୂନ୍ୟର ।
ଅମୃତ ବରଷିଲେ ଶୂନ୍ୟରେ ସେହୁ ଥାଇ
ଯେତେ କପି ମରି ପଡ଼ିଥିଲେ ଶୋଇ ।
ସମସ୍ତଙ୍କ ଶରୀରେ ଭେଦିଲା ଅମୃତ
ଚେତାପାଇ ସର୍ବେ ଯେ ଉଠିଲେ ତୁରିତ ।
ଖଣ୍ଡ ଖଣ୍ଡ ହେବା କପି ଅଛନ୍ତି ପୁଣ ପଡ଼ି
ଗଣ୍ଡି ମୁଣ୍ଡ ଯୋଡ଼ିଲେ ଉଠିବେ ସେ ଲୋଡ଼ି
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଦଶପୁଣ ଆସ୍ତୃତନ କପି ଯେ ଶୂନ୍ୟେ ପୂରି ।
ସୁଗ୍ରୀବର ହନୁମନ୍ତ ଜମ୍ବେବ ସୁଷେଣ
ଅଙ୍ଗଦ ନଳ ନୀଳ ଯେ ଗନ୍ଧମାଦନ ।
କାଳାଞ୍ଜନ କାଳମୁଖ ସମ୍ପାତି ସାରସ
ଦଧିମୁଖ ବଳିମୁଖ କାଞ୍ଚଣ ପାରସ ।
କୁମୁଦ ରମଣ ଯେ ଶରଭ ସେନାପତି
ତାମ୍ରାକ୍ଷ ଗବଏ ଗବାକ୍ଷ ଉଠନ୍ତି ।
ତାରର ପିଅର ରୋମାର ଯେ ତାତ
ମୋହକୁ ତେଜିଣ ଯେ ଉଠିଲେ ସମସ୍ତ ।
ଶସ୍ତ୍ରକୁ ଉପାଡ଼ି ଫୁଙ୍କନ୍ତି ଘାଆ ମୁଖେ
ସ୍ୱର୍ଗରୁ ଅମୃତ ଖସେ ପାଆନ୍ତି ସର୍ବଶିଖେ ।
ଅମୃତର ପ୍ରସାଦରେ ଘାଆ କେଣେ ଗଲା
ଗଳୁଁ ଶତେ ଗୁଣରେ ପ୍ରାଣ ଯେ ହୋଇଲା ।
ରଘୁନାଥର ପାଶରେ ପ୍ରବେଶ ଯାଇ ହେଲେ
ପଞ୍ଚାଶ ଯୂଥପତି ଅଷ୍ଟସେନାପତିର କୁଳେ ।
ମଲ୍ଲ ମହାମଲ୍ଲ ଯେତେ ଆସିଥିଲେ
ଶ୍ରୀରାମଙ୍କୁ ଦେଖିଣ ସର୍ବେ ରୋଦନକଲେ ।
ବିଷର ଜ୍ୱାଳାରେ ଯେ ଶ୍ରୀରାମ ଥିଲେ ଶୋଇ
ଲୋକ ତୁଣ୍ଡ ଶୁଣିଣ ଉଠିଲେ ଚିଆଇଁ ।
ପଡ଼ିବାର ବେଳେ ଯେ ଶୁଷେଣ ମନ୍ତ୍ରୀ ପୁଣ
ରଣଭୂମିରେ ଯାଇ ମିଳିଲେ ତତକ୍ଷଣ ।
ବାସେଳକ ସୁମରଣ ମନରେ ସେହୁକଲେ
କପିରୂପ ଧରି ଯୋଗ୍ନୀ ରଣଭୂମିରେ ପଶିଲେ
ଗଣ୍ଡି ମୁଣ୍ଡ ଯୋଡ଼ିଣ ଦିଅନ୍ତି ତତକାଳ
ଅମୃତ ଦେଇ ଶୁଷେଣ ଯେ ବଞ୍ଚାନ୍ତି ସକଳ ।
ଦୁଇଘଡ଼ି ଭିତରେ ମରିବା ଲୋକ ଯିଏ
ମଲାର ଲୋକଙ୍କୁ ଭୁଞ୍ଜିଲେ ଯୋଗ୍ନୀସେନହେ ।
ଶୁଷେଣ ଗଲେ ସ୍ୱର୍ଗ ଯୋଗ୍ନୀ ଗଲେ ସ୍ୱବଳୟା
ସକଳ ଯେ କପିବଳ ପାଇଲେ ନିଜକାୟା ।
ରଣଭୂଇଁରେ କମ୍ପି ହେଲେ ତହୁଁ ଠୁଳ
ବିଷର ଜ୍ୱାଳାରେ ଯେ ଶୋଇଲେ ରଘୁବୀର
ଚେତା ପାଇ ଉଠି ଡଳିଲେ ଧରଣୀ
ସମ୍ଭାଳି ନ ପାରି ହୋଇଲେ ରାମ ତୁନି ।
ନାଗଫାଶ ନାରାଚ ବନ୍ଧିଛି ଯତ୍ନକରି
ନାଗର ଜ୍ୱାଳା ଶ୍ରୀରାମ ଦେହରେ ଅଛି ପୂରି ।
ଚରଣ ଠାରୁ ଛନ୍ଦି କଣ୍ଠ ପରିଯନ୍ତେ
ପୁଣ ପୁଣ ଉଡ଼ଇ ସଚେତ ହୁଅନ୍ତେ ।
ଦେହ ବାହା ନଗୁଡ଼ରେ ଗୁଡ଼ିଆଇ ଅଛି
ଏହି ପ୍ରାୟେ ବନ୍ଧନ ଯେ ସୁମିହାର ବସି ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁସାଇଁ
ଆମ୍ଭଙ୍କୁ ଏଥିରେ ମୃତ୍ୟୁ ଅଛଇରେ ଭାଇ ।
ଖଣ୍ଡି ଖଣ୍ଡି କରି କାଟିଲା ନିଜ ଦେହ
ଜମ୍ବେବ ମନ୍ତ୍ରୀ ହେ ଉପାୟେ ଥିଲେ କହ ।
ପ୍ରାଣ ଯାଉଅଛି ମୋର ନୁହେ ଏ ଦୁଃଖ ସହି
ନିର୍ଲଜ୍ଜ ଆତ୍ମା ମୋର ଅଛି କାହିଁପାଇଁ ।
ମନାକଲେଜାନକୀଯେଉଣିନାମେତେବୋଲେ
ଆମ୍ଭେ ଜମ୍ପା ଲଙ୍କାରେ ଦେଖିଲୁ ଏତେଦୂରେ
ପଞ୍ଚବଟି ବନରେ ଦଶଶିର ପଡ଼ିଥାନ୍ତା
ଲଙ୍କାରେ ଈଶ୍ୱର ଇନ୍ଦ୍ରଜିତ ହୋଇଥାନ୍ତା ।

ଏତେ ଦୁଃଖ କର୍ମା ସହିଲା ଆମ୍ଭ ଦେହ
ଏ ଘୋର ଦୈତ୍ୟ ଯେ ଆମ୍ଭଙ୍କୁ କଲା ମୋହ
କର ଲେଉଟାଇବାକୁ ସେ କରନ୍ତି ମନେମନ
ଚଳି ନ ପାରନ୍ତି ସେ ନିବଡ଼ ବନ୍ଧନ ।
କର ପାଦ ଦୁଇ ଯେ ବେଢ଼ି କଣୁଯାଏ
ଅହିନଲକ୍ଷଣ ଆମ୍ଭ ଶରୀର ବାନ୍ଧି ରହେ ।
ଲକ୍ଷ୍ମଣ ବୋଲନ୍ତି ଶୁଣ ରଘୁଧାରୀ
ଏହାର ସମଏ ଯିବଟି ହେଳ କରି ।
ଆମ୍ଭଙ୍କୁ ସମସ୍ତ ପଡ଼ିବ ଯେତେବେଳେ
ଏହାକୁ ବସ୍ଥା ନ କରିବା ରଘୁକୁଳେ ।
ଏତେବେଳେ ଏ ଶରର ବସ୍ଥା ଧର୍ମ ନାହିଁ
ପଛନ୍ତରେ ଜାଣିବା ଏ କେତେକ ବନ୍ଧହୋଇ
ଏ ବଚନ ଯହୁଁ ବୋଲନ୍ତେ ଲକ୍ଷ୍ମଣ
ଏଥୁଅନନ୍ତରେ ଗୋ ଶାକମ୍ବରୀ ଶୁଣ ।
ଶ୍ରୀରାମ ଯେ ଉଠିବାକୁ ପୁଣ ମନକଲେ
ଲକ୍ଷ୍ମଣର ଉପରକୁ ଆଉଜ ପଡ଼ଲେ ।
ଅନନ୍ତ ଶଯ୍ୟାରେ ଯେହ୍ନେ ନାରାୟଣ ଶୋଏ
ଶ୍ରୀରାମ ହିଶନ୍ତି ଯେ ତେସନକ ପ୍ରାୟେ ।
ଆକାଶରେ ଥାଇଣ ଦେଖନ୍ତି ଦେବୀ ସୀତା
କପାଳେ କର ମାରି ସ୍ୱମରେ ବିଧାତା ।
ଯୋଡ଼ି ମୋର ମୁଣ୍ଡ ମରଣେ ମୁହିଁ ଦୁଃଖୀ
ମୋ ସ୍ୱାମୀ ଦିଅରଙ୍କ ଏତେକଷ୍ଟ ଦେଖି ।
ବାବୁ ବିଧାତାରେ ଏହା ଆଣି କଲୁ
ରାଜ୍ୟ ସୁଖ ଛଡ଼ାଇ ବନନ୍ତେ ବୁଲାଇଲୁ ।
ଏତେଦୁଃଖ ଦେଇରେ ନପୂରେ ତୋରପେଟ
ସୁବାକାଳେ ଶ୍ରୀରାମଙ୍କୁ ଦେଲୁ ଏତେ କଷ୍ଟ ।
ଏବେ ମରାଇଲୁ ଯେ ଅସୁରଙ୍କର ହସ୍ତେ
ଏତେ ବଡ଼ପଣରେ ଆଣିଲୁ ଚଉମାଥେ ।
ମୋହର ପ୍ରାଣ କର୍ମା ଦେହେ ଥୋଇ
ଆମ୍ଭ ତିନଜଣଙ୍କୁ ତୁ କନ୍ଦରେ ଥାଅ ବହି ।
ଏତେ କହି ଦେବୀଯେ ପୃଥ୍ୱୀକି ଦେଲେଦୃଷ୍ଟି
ଦେଖିଲେ କପି ପୁର ରହିଛନ୍ତି ସୃଷ୍ଟି ।
ବୋଇଲେ ଶ୍ରୀରାମ ହେ ଧନ୍ୟ ତୁମ୍ଭର ପୁଣ୍ୟ
କାହୁଁ ଉଆଇ ଆଣିଲ ଏତେ ସୈନ୍ୟ ।
ମୂର୍ଚ୍ଛି ଥିବାକାଳରେ ଗୋଟିଏ ଯେ ନ ଥିଲେ
ଏବେ ଏତେବଳ ଯେ କାହୁଁ ସେ ଅଇଲେ

ହନୁମନ୍ତକୁ ଝୁଣ୍ଟିଣ ବୋଲେ ମହାସତୀ
ତୁମ୍ଭଥାଉଁ ବନ୍ଧନରେ ପଡଲେ ମୋରପତି ।
ଏକା ଏ ଲଙ୍କାଗଡ ଧୂମାନ୍ତି ତୁହି କଲୁ
ଅକ୍ଷୟେ ଜମ୍ବୁମାଳି ଦୁହିଁଙ୍କି ମାଇଲୁ ।
ଅନେକ ଦୈତ୍ୟଙ୍କୁ ତୁ କଲୁ ହୋ ନିପାତ
ଏବେ ବୁଦ୍ଧି ହରାଇଲୁ ଇନ୍ଦ୍ରଜିତ ହସ୍ତେ ।
ଶ୍ରୀରାମଙ୍କୁ ଝୁଣ୍ଟିଣ ବୋଲନ୍ତି ଶଶୀମୁଖି
ସୁକୁମାର ଶରୀରତ ହେଲା ଏବେ ଦୁଃଖୀ ।
ସୁମିତ୍ରା ଶନ୍ଦନ ଦେଖିଣ ପାସୋରିବେ
ଶାଶୁ ମୋର କଉଶଲ୍ୟା ନିଶ୍ଚୟେ ମରିବେ ।
ସେ ହୋଇବେ ଆଣ୍ଠୁକୁଡ଼ ମୁହିଁହୋଇବି ରଣ୍ଡ
କାହିଁଥିଲା ଆମ୍ଭଙ୍କୁ ଅକାଳ କାଳଦଣ୍ଡ ।
ଆହା ସ୍ୱାମୀ ମୋର ହେ ମଧୁର ମୂରତି
ତୁମ୍ଭର ବିନା ଆନରେ ନାହିଁ ମତି ।
ପ୍ରାଣକୁ ଧାରଣା ଯେ ମୋହର ତୁମ୍ଭେବିନା
ଅଳପ ହସି ମୋତେ କଥାକହ କନା ।
ମୁହି ନରମାଙ୍କୀ ଠାକୁର ଅଟ ତୁମ୍ଭେ
ଅଚେଷ୍ଟ ହୋଇଣ ଶୋଇଲ କର୍ମା ଏବେ ।
ଧର୍ମ ମିଥ୍ୟା ହୋଇବ ତୁମ୍ଭେ ନାଶଗଲେ
ଭ୍ରାନ୍ତିନାହିଁ ମୋର ମୁନିମାନଙ୍କର ବୋଲେ ।
ପିତା ଘରକୁ ମୋର ମୁନିମାନେ ଯାନ୍ତି
ବିଧବା ଲକ୍ଷଣ ତୋର ନାହିଁ ଯେ ବୋଲନ୍ତି
ତାଙ୍କର ବଚନ ଭ ହେବ ପୁଣ ମାୟା
ବୋଲନ୍ତି ବିଧବା ତୁ ଗୋ ନହେବୁ ସୀତୟା
ସେ କଥାମାନ ଏବେ ହେଉଅଛି ଆନ
କେମନ୍ତେ ମିଥ୍ୟା ନ କହନ୍ତି ମୁନିଜନ
ଏମନ୍ତ ଶୁଣିଣ ଯେ ବୋଲନ୍ତି ତ୍ରିଜଟୀ
ମୁନିମାନେ ମାଗୋ ନୁହନ୍ତି କପଟି ।
ସେ ଯାହା କହନ୍ତି ସେକଥା ଅଟେ ସତ
ବିଧବାର ପ୍ରାୟେ ତୁ ଗୋ ନହଉଛୁ ମାତ ।
ପୁଷ୍ପକ ରଥକୁ ବସି ହିଶେ ବଡ଼ ଶୋଭା
ଦଶହିଗରେ ଆନନ୍ଦ ହିଶେ ତୋର ପ୍ରଭା ।
ଶ୍ରୀରାମ ଯେବଣ ସ୍ଥାନେ ଅଛନ୍ତି ଯେ ଶୋଇ
ଜାନକୀଙ୍କି ତ୍ରିଜଟା ଦେଲ ସେ ଦେଖାଇ ।
ଦେଖ ତୁମ୍ଭର ସ୍ୱାମୀ ଯେ ନହିଶେ ମୃତପ୍ରାଏ
ସୁଲକ୍ଷଣୀ ସ୍ତ୍ରୀ ପ୍ରାଏ ହିଶୁଛୁ ଗୋ ମାଏ ।

ସ୍ୱାମୀ ମଲେ ପତ୍ନୀର କି ଏମନ୍ତ ଜୀବନହୋଇ
ଶୁଣି କହି ଆନନ୍ଦ ମନରେ ବଇଦେହୀ ।
ତ୍ରିଜଟା ବୋଇଲା ଶୁଣରେ ପ୍ରାଣସଖୀ
ସୈନ୍ୟବଳ ଯୂଥପତି ସମସ୍ତ ଦେଖିଲଇଁ ।
ରାମଲକ୍ଷ୍ମଣ ଦୁହେଁ ଗୋ ଅଛନ୍ତି ବନ୍ଧନ
ଏହିଲଗେ ସର୍ପମାନେ ପଳାଇଲେ ପୁଣ ।
ସକାଳେ ଶୁଣିବୁ ଯୁଦ୍ଧର ଚରିତ ପୁଣି
ଏତେବୋଲି ତ୍ରିଜଟା ବୋଧେ ଠାକୁରାଣୀ
ବାହୁଡ଼ି ଅଶୋକ ବଣିକେ ସେହିଗଲେ
ରଥୁ ଓହ୍ଲାଇ ଜଗତୀ ଉପରେ ବସିଲେ ।
ପୁଷ୍ପକ ଯାନକୁ ଯେ ରକ୍ଷା ଲୋକେ ନେଇ
ସହସ୍ର ଅସୁରୁଣୀ ସୀତାଙ୍କୁ ଜଗି ରହି ।
ରାତ୍ର ପାଞ୍ଚଘଡ଼ିଠାରୁ ନଶବଦ ଲୋକେ
ଶ୍ରୀରାମ ଯେ ରୋଦନ କଲେ ଗରୁ ଶୋକେ ।
ଶରର ଜ୍ୱାଳାରେ ଅସ୍ଥିର ତାଙ୍କ ଦେହ
କୋଳେ ଧରିବାକୁ ଯେ ଆନକେହି ନାହିଁ ।
କାଳସର୍ପ ବାନ୍ଧ ଯେ ଅଛି ଗୁଡ଼ଆଇ
ଛୁଇଁବାକୁ ରଜନ ତହିଁରେ କେହି ନାହିଁ ।
ଲକ୍ଷ୍ମଣଙ୍କ ଉପରକୁ ଆଉଜି ପଡ଼ିଥିଲେ
ରାଇକ ପ୍ରାୟ ହେବବୋଲି ତଳକୁ ଖସିଲେ
କର ଚରଣ ଦେହ ନ ପାରନ୍ତି ହଳି
ହାହାକାର କରନ୍ତି ରିକ୍ଷକପି ମିତ ।
ସୁଗ୍ରୀବର ଜମ୍ବେବ ସୁଷେଣ ହନୁମନ୍ତ
ଶ୍ରୀରାମଙ୍କୁ ପ୍ରବୋଧନା କରନ୍ତି ସେ ବହୁତ ।
ତୁମ୍ଭେ ଦେବ ବିକଳ ହେ ନୁହ ରଘୁପତି
ଅପୂର୍ବ ସଂଗ୍ରାମ କରେ ଦଶବୀର ନାତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜଣେ ତିନିପୁର
ଇନ୍ଦ୍ରଜିତ ନାମ ଯେ ଦେଲେ କୁଶଧର ।
ଯହୁଁ ଦେବତାଏ ନ ପାରିଲେ ବଳେ
ତେଣୁ ସେବାକଲେସେ ଦୈତ୍ୟର ପାଦତଳେ
ତୁମ୍ଭେ ଦେବ ଏବେ ଯେ ଆମ୍ଭାକୁ ସ୍ଥିରକର
ହାରିବା ଜିଣିବାଟି କ୍ଷତ୍ରୀଙ୍କ ବେଭାର ।
କ୍ଷତ୍ରୀଙ୍କର ମହିମାଟି ଏସନ ପୁଣି ହୋଏ
ଦୈତ୍ୟଙ୍କର ସଂଗ୍ରାମରେ ହାରେ ସୁରରାଏ
ତ୍ରିପୁରାରି ଶଙ୍କର କପଟେ ଯୁଦ୍ଧ କଲେ
ଦେବ ଦାନବଙ୍କୁ ଯେ କପଟେ ଜିଣିଲେ ।

ନାରାୟଣରୁ ଆନ ଯେ ନାହିଁ ବଳଆର
ଛନ୍ଦି ପଣ କରି ଯେ ମାଇଲେ ଅସୁର ।
ଏହି ରାବଣ ଯେ ବାଳିକ ହାରି ଅଛି
କବାଟ କବଚକୁ ଏ ଅଇଲା ପୁଣ ଘୁଞ୍ଚି ।
ସହସ୍ର ଅର୍ଜ୍ଜୁନ ଯାକୁ ବନ୍ଦୀ କରିଥିଲା
ଅଙ୍ଗଦ ହସ୍ତରେ କେତେ ଗଞ୍ଜଣା ପାଇଲା ।
କ୍ଷତ୍ରିମାନେ ରଣକଲେ ହାରନ୍ତି ଜିଣନ୍ତି
ନିଅତ ଆତୁର ଯେ ଖେଦ ନ ବୁହନ୍ତି ।
ଇନ୍ଦ୍ର ଦେବତାଙ୍କୁ ବାନ୍ଧି ଆଣିଛି ଏ ଦୈତ୍ୟ
ଫଉହର ବାନା ଯେ ଉଡ଼ାଏ ଇନ୍ଦ୍ରଜିତ ।
ସେକଥାକୁ ସଂକୋଚ ମନରେ କଲେ ଖେଦ
ଜୟ ଅଜୟ ଯେ ଅଛଇ ରଣ ମଧ୍ୟ ।
ତୁମ୍ଭେ ଦେବ ସାଷ୍ଟାମ ହୁଅ ରଘୁପତି
ତୁମ୍ଭ ଅଧଇର୍ଯ୍ୟେ ଆମ୍ଭେ ପାଉଅଛୁଁ ଭୀତ ।
ଶ୍ରୀରାମ ବୋଲନ୍ତି ମୁଁ ନପାରଇ ସହି
ଥରେ ଥରେ ମୋତେ ଯେ ଭିଡେ ପାପଅହି
ବାସ୍ତବି ବେଢ଼ା ଦେଖ ଗୁଡ଼ଆଇ ଅଛି
ତେଣୁ କରି ମୁଁ ନପାରଇ ନଛି ।
କି ବୁଦ୍ଧି କରିବ ଏବେ ଉପାୟ କେ ଜାଣ
ମନରେ ବିଚାର ଯେ କରେ ବିଭୀଷଣ ।
ଏ ଯେ ବିଷ୍ଣୁନାଥ ଅଟନ୍ତି ପ୍ରତ୍ୟକ୍ଷେ
ଯାଙ୍କର ବାହନ ଅଟେ ବନଚାର ପକ୍ଷେ ।
ସର୍ପେ ପଳାଇବେ ଯେ ଗରୁଡ଼ ଅଇଲେ
ନୁହନ୍ତି ନାରାୟଣ ଗରୁଡ଼ ନ ଆସିଲେ ।
ଯାଙ୍କର ସନ୍ତୁନ୍ୟ ଏବେ ଜାଣିବା ଏହିକ୍ଷଣି
ନୋହିଲେ ବୁଡ଼ି ମରିବ ସିନ୍ଧୁ ମହାପାଣି ।
ଏତେକ ବିଚାର ଯେ କରେ ମନେ ତାର
ଏକାଳେ ନାଗଫାଶ ନିଷ୍ଟୟେ ଯିବ ମାରି ।
ବ୍ରହ୍ମାର ମନ୍ତ୍ର ବଳରେ ରୁଦ୍ର ଅଂଶେ ନେଇ
ଜାତକଲେ ଯାକୁ ଉମା ଦେବୀ ସାଇଁ ।
ସବୁ ଶରକୁ ଯେ ପ୍ରତିଅସ୍ତ୍ର ଅଛି
ଏ ଶରକୁ ବିଧାତା ନକଲା ପୁଣ କିଛି ।
ପନ୍ନଗା ଶରକୁ ଗରୁଡ଼ ଅସ୍ତ୍ର କରେହିତ
ପର୍ବତାଶରକୁ ଯେ ବଜ୍ର ଅହିତ ।
ମେଘାକୁ ପବନ ହୁତାଶନକୁ ପାଣି
ଅନ୍ଧାରକୁ ଚନ୍ଦ୍ରମା ଭୁଜଙ୍ଗକୁ ଦିନମଣି ।

ଏକକୁ ଆରେକ ଯେ ଅଛୁ ପ୍ରତିକୂଳ
ଏ ପାଞ୍ଚଶସ୍ତ୍ର ଦେବ ଅଟେ ଯେ ଅମୂଲ୍ୟ ।
ବ୍ରହ୍ମଶରକୁ ଯେ ନାହିଁ ଅପସର
ଇନ୍ଦ୍ରର ବଜ୍ର ଦେବ ନବାର ନ ପାର ।
ପଶୁପତି ଦେଇଅଛୁ ପାଶୁପତ ଶର
ତହିଁକ କ ପ୍ରତିକୂଳ ନୋହବେ ରଘୁବୀର ।
ବିଷ୍ଣୁ ନାରାୟଣ ଶରକୁ ତୁଲ୍ୟ ନାହିଁ
ନସତ ହୋଇଲେ ସେ ରଖିବା ଗୋସାଇଁ ।
ଅନନ୍ତ ବାସୁକୀର ଅଟେ ନାଗ ଅସ୍ତ୍ର
ନମିଷକେ ବାନ୍ଧ ଯେ ପାରଇ ଅଶେଷ ।
ଏହାକୁ ପ୍ରତିକୂଳ ନାହିଁ ଦେବ କହୁ
ଶୁଣିକର ଶୋକହର ହେଲେ ରଘୁବଂଶି ।
ସେ ପକ୍ଷୀରାଜ ଯେ ଶ୍ରୀହରିର ବାସ
ରମ୍ୟକଦ୍ୱୀପରେ ଅଟେ ତାର ବାସ ।
ସେ କଦା ଆସିବ ମୋର ବ୍ୟାଧି ହର
ଇନ୍ଦ୍ର ଦେବତାଙ୍କୁ ସଂଗ୍ରାମେ ନ ପାର ।
କେ ତାକୁ କହିବ ସେ କଦା ଆସିବ ପୁଣି
ହନୁମନ୍ତ କହିଲ ଶୁଣ ହେ ରଘୁମଣି ।
ଦିଅସି ଆଜ୍ଞା ଦେବ ଆଣିବି ମୁଁ ଯାଇ
ରମ୍ୟକ ଦ୍ୱୀପକୁ ଦେବ ହେ ଦିଅ ପଥ କହି
ନ ଆସିଲେ ଆଣିବ ବଳେ ଧର
ଏହିକ୍ଷଣି ଗରୁଡ଼କୁ ଆଣିବ ବନ୍ଦୀକର ।
ଶ୍ରୀରାମ ବୋଇଲେ ସେଯେ ଅଟେକେତେଦୂର
ଜମ୍ବୁଦ୍ୱୀପ ବୋଇଲେ ଦେବ ଦୁର୍ଗମ ଅପାର
ଲବଣ ସମୁଦ୍ର ଯେ ଅଟେ ଲକ୍ଷେଯୂଣ
ଲକ୍ଷେଯୂଣ ଜମ୍ବୁଦ୍ୱୀପ ଘେରିଅଛୁ ପୁଣ ।
ଜମ୍ବୁଦ୍ୱୀପ ମଧ୍ୟରେ ଯେ ରାଜା ରହି
ଲକ୍ଷେକ ନଗର ଯେ ଏ ଦ୍ୱୀପ ବୋଲାଇ ।
ଛପନ କୋଟି ଜୀବ ଏଥିରେ ଜନ୍ମ ପୁଣ
ଅଠର କୋଟି ଗିରି ଦ୍ୱୀପେ ଠୂଳ ଜାଣ ।
ମଧୁପୁର ମଧ୍ୟରେ ଏହି ଲେଖା ହୋଇ
ସପତପୁରେ ଏରୂପେ ଶୁଣ ମନଦେଇ ।
ଦୁଇଲକ୍ଷ ଯୂଣ ଦେ ମଧୁର ସମୁଦ୍ର
କଞ୍ଚଣ ଦ୍ୱୀପ ସେ ଯେ ବୋଲାଏ ରାମଚନ୍ଦ୍ର ।
କଞ୍ଚଣ ଦ୍ୱୀପ ଦୁଇକୋଟି ଲକ୍ଷ ଯୂଣ
ଛପନକୋଟି ଜୀବ ଯେ ଅଛନ୍ତି ପୁଣ ।

ବତିଶକୋଟି ଗିରି ଲକ୍ଷେ ରାଜା ତହିଁ
ଲକ୍ଷେକ ନଗର ଯେ ସେ ଦ୍ୱୀପ ଅଟଇ ।
ରାଜ ଗୋଟିକରେ ଦୁଇଜଣ ଦେଶ
ଦୁଇଯୂଣ ଜଳରେ ଅଟେ ତାହାର ବାସ ।
ସେ ଦ୍ୱୀପ ସମୁଦ୍ର ପିବାରୁ ଯେ ହେଲେ
ଇକ୍ଷୁନାମେ ସମୁଦ୍ର ଅଟେ ମହାଜଳେ ।
ସେ ସମୁଦ୍ର ଅଟେ ଦେବ ସ୍ଥଳ ତିନିଲକ୍ଷ
କୁଶଦ୍ୱୀପକୁ ସେ ଯେ ବେଢ଼ିଛୁ ପ୍ରତ୍ୟକ୍ଷ ।
କୁଶଦ୍ୱୀପରେ ଦେବ ଦୁଇକୋଟି ରାଜା
ଧର୍ମବନ୍ତ ଦ୍ୱୀପ ସେ ପାଳନ୍ତି ଜନପ୍ରଜା ।
ଛପନକୋଟି ଜୀବ ତହିଁରେ ଜନ୍ମ ପୁଣ
ଛତିଶକୋଟି ଗିରି ସେ ଦ୍ୱିପେ ପ୍ରମାଣ ।
ତିନିଲକ୍ଷ ଯୂଣ ଯେ ସେ ଦ୍ୱୀପ ଆବୃତନ
ଏମନ୍ତେ ତିନି ସମୁଦ୍ର ତିନିଦିଗ ଜାଣ ।
ଏଥିର ଉପରକୁ ଶାକଳ୍ୟ ଦ୍ୱୀପ ସ୍ଥଳ
ଚ୍ଛରିଲକ୍ଷ ଯୂଣ ଯେ ବିସ୍ତାର ତାହାର ।
ଦୁଇଲକ୍ଷ ରାଜା ଯେ ଅଟନ୍ତି ସେଥିରେ
ଦୁଇଲକ୍ଷ ନଗ୍ର ସେ ଦ୍ୱୀପ ମଧ୍ୟରେ ।
ଅଠରକୋଟି ଗିରି ଛପନ କୋଟି ଜୀବ
ଏମନ୍ତେ ସେ ଦ୍ୱୀପର ଅଟେ ସବ୍ଭବ ।
ତହିଁ ଉତ୍ତରୁ ଯେ ଦଧିନାମେ ସମୁଦ୍ର
ଚ୍ଛରିଲକ୍ଷ ଯୂଣ ଯେ ଅଟେ ସେତୁ ଭେଦ ।
କନକ ଦ୍ୱୀପ ସେଥିରେ ଚ୍ଛରିଯୂଣ ପୁଣ
ଚ୍ଛରିଲକ୍ଷ ରାଜା ଯେ ତହିଁରେ ପ୍ରମାଣ ।
ଚ୍ଛରିଲକ୍ଷ ନଗ୍ର ଯେ ବାଇଶି କୋଟି ଗିରି
ଛପନ କୋଟି ଜୀବ ତହିଁରେ ଜନ୍ମ ପୂରି ।
ସେ ଦ୍ୱୀପଂର ସତ୍ୟ ଯେ ସବୁ ବନରେ ପୁଣ
ସମସ୍ତଙ୍କର କନକ ମଣ୍ଡପ ଘର ଜାଣ ।
ସେ ଦ୍ୱୀପକୁ ଯେ ସମୁଦ୍ର ଅଛୁ ଘେରି
ଦଶଲକ୍ଷ ଯୂଣ ବିସ୍ତାର ତାହାର ।
ଏଥି ଉତ୍ତରୁ ସୁରା ନାମରେ ସମୁଦ୍ର
ପାଞ୍ଚଲକ୍ଷ ଯୂଣ ସେ ଯେ ଅଟଇ ପ୍ରମାଦ ।
ସଲ୍ମଳ ନାମେ ଦ୍ୱୀପ ଯେ ସେ ସିନ୍ଧୁ ଉତ୍ତରୁ
ପାଞ୍ଚଲକ୍ଷ ଯୂଣ ସେ ଦ୍ୱୀପ ହନ୍ତକାରୁ ।
ସେ ଦ୍ୱୀପରେ ତିନିଲକ୍ଷ ରାଜା ଘର ପୁର
ଦୁଇକୋଟି ଗିରି ସେଥି ଅଟଇ ନଗର ।

ବାରଲକ୍ଷ ନଗ୍ର ଛପନକୋଟି ଜୀବ
ଏହିରୂପେ ସେ ଦ୍ୱୀପ ଅଟେ ସଦଭାବ ।
ସେ ଦ୍ୱୀପ ଉତ୍ତରୁ ଘୃତ ନାମେ ମହୋଦଧି
ଛଡ଼ ଲକ୍ଷ ଯୋଜନ ଅଟେ ତାର ସିଧି ।
ମଣ୍ଡଳାକାର ଘେନ ମିଶିଅଛି ବୁଲି
ଘୃତ ସମୁଦ୍ର ଯେ ଅମୃତ ପ୍ରାୟୁ ବୋଲି ।
ସେ ସମୁଦ୍ର ଉତ୍ତରୁ କ୍ଷୀର ସମୁଦ୍ର ଜାଣ
ସାତ ଲକ୍ଷ ଯୂଣ ଯେ ପ୍ରସ୍ତ ତାର ପୁଣ ।
ସେ ଦ୍ୱୀପେ ତେତିଶ କୋଟି ଦେବ ଘର
ସେ ଦ୍ୱୀପ ଅଟଇ ଯେ ବଇକୁଣ୍ଠ ପୁର ।
ରମ୍ୟକ ଦ୍ୱୀପକୁ ଘେରିଛି କ୍ଷୀର ଯେ ସାଗର
କ୍ଷୀର ସାଗର ମଧ୍ୟରେ ଶ୍ରୀହରିଙ୍କ ପୁର ।
କ୍ଷୀର ସାଗର ଅଟେ ସାତ ଯୂଣ
ସେଥି ଉତ୍ତରୁ ଅଗ୍ନି ସମୁଦ୍ର ଅଟେ ପୁଣ ।
ସେଥି ଉତ୍ତରୁ ଯେ ଅଟେ ମହାଶୂନ୍ୟ
ଏମନ୍ତ ପ୍ରକାରେ ହରି କରିଛି ଭିଆଣ ।
ରମ୍ୟକ ଦ୍ୱୀପରେ ସେ ଗରୁଡ଼ର ପୁର
ଯିବା ଆସିବାକୁ ଅଟେ ବଡ଼ ଦୂର ।
ଅନନ୍ତ ଶୟନ ଯେ ସେହିଠାରେ ପୁଣ
ସେହିଠାରେ ଅଛି ଯେ ବିନତା ନନ୍ଦନ ।
ରମ୍ୟକ ଦ୍ୱୀପରେ ଏକ ଗିରିବର
ସେହିସ୍ଥାନ ଅଟେ ଯେ ଗରୁଡର ଘର ।
ବାସୁଦେବ ସେବକ ସେତାହାଙ୍କ ପାଶେଥାଇ
ଅକଳତ ପଥ ଦେବ କଳତ ନ ପାରଇ ।
ଗାଏ କରି ଠୁଳରେ କହିବ ଏବେ ଶୁଣ
ସାତ ସମୁଦ୍ର ଅଟଇ ସାତଦ୍ୱୀପ ଜାଣ ।
ସାତ ସମୁଦ୍ର ଅଠାଇଶ ଲକ୍ଷ ଯୂଣ
ଏମାନଙ୍କ ଆୟତନ ହେଲା ଯାହା ପୁଣ ।
ଠୁଳରେ ଲେଖିଲେ ଛପନ ଲକ୍ଷ ହେଲା
ଏତେଦୂର ପଥ ହନୁ କେମନ୍ତ ଯିବ ପରା ।
ହନୁମନ୍ତ ଡେଇଁକି ନ ପାରଇ ଯାଇ
ମାରୁତ କହଇ ଦେବ ମୁହିଁ ଯେ ଯିବଇଁ ।
ଯୁଗ ଯୁଗାନ୍ତର ନାମ ରହିବ ତୁମ୍ଭର
ରମ୍ୟକ ଦ୍ୱୀପକୁ ଯାଇଥିଲା ହନୁ ବୀର ।
ଦୈତ୍ୟବଳ ଶୁଣିଲେ ଲଇଁବେ ତୋତେପୁଣ
ଦେବତାଏ ଭୟେ ଯେ କରିବେ ରାମ ରାଣ ।

ରାବଣ ନାଶଯିବ କଥା ରହିଥିବ
ଦେବତାଙ୍କ ସଙ୍ଗରେ ତୁମ୍ଭେ ଯେ ବିହରିବ ।
ସୁମରିଲେ ଜଗତ ଅଟଇ ତୋହର
କେହି ଅଛି ତୁମ୍ଭଙ୍କୁ ପର ଯେ ଅପର ।
ଶୁଣିକରି ଶ୍ରୀରାମ ମନରେ ତୋଷ ହେଲେ
ଉତ୍ତର ହେବ ପରା ବୋଲଣ ବୋଇଲେ ।
ମାରୁତ ବୋଇଲା ନୁହଇ ଏତେ ଦୂର
ଘଡ଼କରେ ଆଣିଦେବି ବିନତା କୁମର ।
ବିଭୀଷଣ ବୋଲେ ଦେବ ଯାଉ ଯେ ମାରୁତ
ଘେନ ଆସୁ ଦେବତା ଗରୁଡ ନାମେ ପକ୍ଷୀ ।
ଜମ୍ବେଦ ବୋଇଲେ ସଙ୍କେତ ତୁମ୍ଭେ ଦିଅ
ବେଗେ ଚଳିଯାଉ ଯେ ପବନର ପୁଅ ।
ଶୁଣିଣ ଶ୍ରୀରାମ ମନରେ ତୋଷ ହେଲେ
ଅମ୍ଭେତ ବାସୁଦେବ ମନରେ ବିସ୍ମରିଲେ ।
କୋଦଣ୍ଡ ଧରିଣ ଗୁଣଦେଲେ ପୁଣ
ଅଗ୍ନିଶର ଧରିଣ ବସାଏ ତତକ୍ଷଣ ।
ବୋଇଲେ ମାରୁତ ତୁ ଏ ଶର ସଙ୍ଗେ ଯାଅ
କୌଣସି ଭୟ ତୋର ମନରେ ନ ପାଅ ।
ଶୁଣିକରି ମାରୁତ ବେଗେ ସଜହେଲା
ଗଡ଼ଘାଲି ଶୋଇଣ ଶିରେ କରଦେଲା ।
ଶ୍ରୀରାମ ବୋଇଲେ ଶୁଣ ଅଗ୍ନିଶର
ଶୂନ୍ୟେ ଗମନ କରିବୁ ରମ୍ୟକ ଦ୍ୱୀପର ।
ବିନତା ନନ୍ଦନ ଗରୁଡ଼ ନାମେ ଜାଣ
ଗିରିପରେ ଅଛି ଶ୍ରୀହରି ଦାସ ପୁଣ ।
ସେ ଠାବରେ ପ୍ରବେଶ ହୋଇବୁ ତୁହି ଯାଇ
ତୋତେ ଦେଖିଲେ ସେ ଆସିବ ବେଗହୋଇ
ତୋହର ସଙ୍ଗରେ ମାରୁତ ଯାଇଥିବ
ମୋହର କଥା ମାନ ତା ଆଗେ କହିବ ।
ଏତେ କହି ଶର ଯେ ବିନ୍ଧେ ରାମ ରାଜ
ଗର୍ଜନ କରି ଶର ଧରେ ବଡ଼ ତେଜ ।
ଶରର ପଛରେ ହନୁମନ୍ତ ଚଳିଯାଏ
ବଗୁରିଣ ଶର ଶୂନ୍ୟରେ ଗମିଯାଏ ।
ପଛରେ ହନୁମନ୍ତ ଆଗେ ଅଗ୍ନିଶର
ଶୂନ୍ୟରେ ଗମନ କରନ୍ତି ଦୁଇବୀର ।
ଦକ୍ଷିଣ ଦିଗକୁ ଗମନ କରିଗଲେ
ସ୍ୱର୍ଗର ଦେବ ଦେଖି ତାଟକା ହୋଇଲେ ।

ବୋଇଲେ ରଘୁନାଥ ଲଙ୍କାଗଡ଼ରେ ପୁଣ
ଆମ୍ଭ ସକାଶରେ ସେ ହୋଇଲେ ବନ୍ଧନ ।
ଏମନ୍ତ ବଚନ ଯେ ଦେବତା ମାନେ କର
ଚଳଇ ମାରୁତ ଯେ ପବନ ପ୍ରାଏ ହେଉ ।
ସପ୍ତଦ୍ଵୀପ ସାଗର କ୍ଷଣ ଦଣ୍ଡରେ ଗଲେ
ରମ୍ୟକ ଦ୍ୱୀପରେ ପ୍ରବେଶ ହୋଇଲେ ।
ଶୂନ୍ୟରୁ ଖସିଲେ ତେଜ କର୍ମ ଯେନ
ସୁର ଗିରି ଉପରେ ପ୍ରବେଶ ହେଲେ ପୁଣି ।
ସୂର୍ଯ୍ୟ ଉଇଁଲା ପ୍ରାୟେ ଦଶେ ଅଗ୍ନି ତେଜ
ଗର୍ଜନ କରନ୍ତି ଯେସନେ ଉଡ଼ଙ୍ଗ ।
ଜାଇ ବନ୍ଧୁ କୁଟୁମ୍ବ ଯେତେ ଗରୁଡର ଥିଲେ
ଗର୍ଜନ ଶୁଣି ସର୍ବେ ଚମତ୍କାର ହେଲେ ।
ଉତର ନବରେ ଥିଲାକ ସେ ଖଗ
ତାହାର ଆଗେ ସ୍ତୁତି କହିଲେ ଯାଇଁ ବେଗ
ବସ୍ତୁର ତେଜ ପ୍ରାଏ ଦିଶୁଅଛି ଜଣେ
ସଙ୍ଗରେ ଅଗ୍ନିଶର ଅଛି ବନ୍ତପନେ ।
ପର୍ବତରେ ପରେ ବସିଲେ ଦେବ ଆସି
ଭୟ ପାଇ ଯେ ତଳକୁ ଗଲା ପକ୍ଷୀ ।
ଏହି ସମୟରେ ନାରଦ ଋଷି ପୁଣ
ବ୍ରହ୍ମା କହିବାରୁ ସେ କଲେକ ଗମନ ।
ପ୍ରବେଶ ହେଲେ ସେ ଗରୁଡ଼ ସ୍ଥମୁରେ
ଦେଖି ଚରଣରେ ଗରୁଡ଼ଉଲଗେ ଧାତକରେ
ନାରଦ ବୋଇଲେ ଶୁଣ ବିନତାର ସୁତ
ତୋହଠାକୁ ଅଇଲା ଯେ ପବନର ସୁତ ।
ଲଙ୍କାଗଡରେ ରାମ ରାବଣର ଯୁଦ୍ଧ
ଦୁଇ ଦିନ ଜିଣିଲେ ରଘୁକୁଳ ରାଜ ।
ତିନଦିନ ଯୁଦ୍ଧରେ ରାବଣର ସୁତ
ନାମ ଅଟଇ ଯେ ତାହାର ଇନ୍ଦ୍ରଜିତ ।
ଯୁଦ୍ଧରେ ସେ ପଶି ଅନେକ ବଳମାରି
ନାଗଫାଶେ ବାନ୍ଧିଛି ରାମ ଲକ୍ଷ୍ମଣ ଦୃଢ଼କରି ।
ତେଣୁ ଦୁଃଖ ପାଇ ଅଛନ୍ତି ଦଶରଥ ପୁଅ
ଜାମ୍ବବ କହିଲେ ଯେ ତୋହର ସଂଶୟ ।
ହନୁକୁ ପଠାଇ ଅଗ୍ନିଶର ସଙ୍ଗେ ଦେଲେ
ସେ ଆସି ତୋର ପୁରେ ପ୍ରବେଶ ହୋଇଲେ
ଚଳ ବେଗେ ତୁହି ଫିଟୁ ନାଗ ଫାଶ
ଉତ୍ତର ନକର ତୁ ଯେ ଯାଅ ତାଙ୍କ ପାଶ ।

ଶୁଣିକରି ଗରୁଡ଼ ବେଗେ ଉଠି ପୁଣ
କୋଦଣ୍ଡ ଶର ଧରି ପ୍ରବେଶ ଦ୍ୱାରେ ଜାଣ ।
ଗରୁଡ଼କୁ ଦେଖି ହନୁ ସାମାନ୍ୟ ରୂପ ହେଲା
ମାନ୍ୟ ଧର୍ମ କରିଣ ଚରଣେ ଉଲଗିଲା ।
ନାରଦ ସେଠାରୁ ପ୍ରବେଶଟି ଜାଣ
ପବନ ନନ୍ଦନ ଉଲଗେ ପାଦେ ପୁଣ ।
ହନୁମନ୍ତ ବୋଲେ ଶୁଣ ହରିଦାସ
ବେଗେ ଯିବାକୁ ରାମ ପେଷିଲେ ତୋରପାଶ
ନାଗ ଫାଶେ ବାନ୍ଧିଲା ଇନ୍ଦ୍ରଜିତ ବୀର
ଅତି ଦୁଃଖ ଦେଉଛି ଅଛି ନାମେ ଶର ।
ତୁମ୍ଭେ ଗଲେ ପ୍ରଭୁ ଯେ ପାଇବେ ଉଶ୍ବାସ
କହିବାକୁ ବେଳ ନାହିଁ ପବନର ଶିଷ୍ୟ ।
ଗରୁଡ ବୋଇଲା ମାରୁତିରେ ଶୁଣ
ମୁହିଁ ଯିବାକୁ ବାରୁ ଉଚୁତ ହେବ ଜାଣ ।
ସାତ ଘଡ଼ି ନଷ୍ଟି ବେଗ ପୁଣି ହେଲା ଆସି
ମୁହିଁ ଯାଉଁ ଯାଉଁ ଯେ ପହରେ ଯିବ ସତ ।
ଅନେକ ଦୁଃଖ ତ ପାଇବେ ବାସୁଦେବ
ପଛେ ଆମ୍ଭେ ଯିବା ଦୁହେଁ ହୋଇ ସଜ ।
ଅଗ୍ନିଶର ସଙ୍ଗରେ ଗରୁଡ଼ାଶର ଯାଉ
ନାଗଫାଶ ଶର ଦେଖିଲେ ପଳାଉ ।
ଏତେ କହିଣ ଗରୁଡ କୋଦଣ୍ଡେ ଗୁଣଦେଲା
ସହସ୍ରକୁ ସ୍ତୁତିଣ ବଚନ ବୋଇଲା ।
ଯାଅ ଶର ତୁରେ ଲଙ୍କାନାମେ ପୁର
ଶ୍ରୀରାମ ଲକ୍ଷ୍ମଣଙ୍କର ନାଗଫାଶ ହର ।
ନାଗ ଯେଣେ ପଳାଇବ ଗୋଡ଼ାଇବୁ ତେଣେ
ପ୍ରାଣେ ନ ମାର ତାକୁ ଧରିଆଣ ଏଣେ ।
ବାସୁଦେବ ଠାରେ ହେଲା ସେହି ଦୋଷି
ଯେଉଁଠାକୁ ସେହି ଯିବ ଆଣିବୁ ତୁ ଧ୍ୱଂସି ।
ଅଗ୍ନିଶରକୁ ବୋଇଲା ଉଠବେଗ ହୋଇ
ଶୁଣିଣ ଅଗ୍ନିଶର ଉଠିଲେ ତୋଷ ହୋଇ ।
ଗରୁଡ଼ାଖରକୁ ପେଷିଲେ ଗରୁଡ଼
ତତକ୍ଷଣେ ଦୁଇଶର ଚଳିଲେ ଶୂନ୍ୟର ।
ଦୁଇ ଦଣ୍ଡ ଭିତରେ ଲଙ୍କାରେ ପ୍ରବେଶ
ଦେଖିଣ ନାଗଫାଶ ମନରେ ପାଏ ତ୍ରାସ ।
ବସ୍ତୁରଲା ମନେ ଯେ କଷ୍ଟପ୍ରେ ନାଶଗଲା
ବୈଚିତ୍ର୍ୟର ବୋଲରେ ବାସୁଦେବଙ୍କୁ ବାନ୍ଧିଲି

ଗରୁଡ଼ାଶରକୁ ଯେ ଦେଖିଲା ଆକାଶରେ
ନାଗଫାଶ ପଳାଇଲା ଜୀବନ ହକଳେ ।
ଗରୁଡ଼ା ଶର ଯେ ପଛରେ ଗୋଡ଼ାଏ
ପାତାଳରେ ପଶିଲେ ପନଙ୍ଗା ଶର ସବେ ।
ଗୋଡ଼ାଏ ପଛରେ ଗରୁଡ଼ାଶର ପୁଣ
ଭୟ ପାଇ ଅହି ଯେ ପଳାଏ ବେଗେ ପୁଣ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ନାଗ ଫାଶ ବନ୍ଧନ ଶ୍ରୀରାମ ଦେହୁ ଯାନ୍ତି ।
ଉଶ୍ୱାସ ହୋଇଲା ରାମ ଲକ୍ଷ୍ମଣ ଶରୀର
ଏହି ସମୟରେ ଅଗ୍ନିନାମେ ଶର ।
ଭୁବନେ ଆସି ରହେ ଯେ ଶ୍ରୀରାମ କୋଣରେ
ଦେଖିଣ ଶାନ୍ତ ମୂର୍ତ୍ତି ରାମଚନ୍ଦ୍ର ବୀରେ ।
ଏଥୁ ଅନନ୍ତରେ ଗରୁଡ଼ ହନୁମନ୍ତ
ଆସିବାକୁ ସଜ ଯେ ହୋଇଲେ ତୁରିତ ।
ନାରଦ ମେଲାଣି ହୋଇ ସ୍ୱର୍ଗପୁର ଗଲେ
ଗରୁଡ଼ ରମ୍ୟକ ଦ୍ୱୀପରୁ ବାହାରିଲେ ।
ମାରୁତି ପଛରେ ଆଗରେ ଖଗପତି
ବ୍ରହ୍ମାଣ୍ଡ କମ୍ପିଲା ଯେ ଟଳଟଳ ପୃଥ୍ୱୀ ।
ଡେଣାର ଶବଦରେ ସପତ ପୁର ସ୍ଥିର
ସ୍ୱର୍ଗରେ ଦେବତାଏ କରନ୍ତି ହକ୍କାର ।
ଭଲରେ ହନୁମନ୍ତ ପାରିବା ପଣକଲୁ
ଲଙ୍କାକୁ ତୁହି ଆସି ସୀତାଙ୍କୁ ଠାବକଲୁ ।
ବରୁଣ ଭୁବନକୁ ତୁହି ପୁଣ ଗଲୁ
ବଳାକାରରେ ତାହାକୁ ଧରିଣ ଆଣିଲୁ ।
ଏବେ ରମ୍ୟକ ଦ୍ୱୀପକୁ ଗଲୁ ତୁହି ପୁଣ
ଗରୁଡ଼କୁ ସଙ୍ଗେ ଆଣୁ ପବନ ନନ୍ଦନ ।
ରାମାୟଣ ଯୁଦ୍ଧରେ ତୁ ଅଟୁରେ କବାଟ
ଏତେ ବୋଲି ପୁଷ୍ପବୃଷ୍ଟି କଲେ ସୁର ଶ୍ରେଷ୍ଠ
ହନୁମନ୍ତ ଗରୁଡ଼ ଯେ ବେଗେ ଚଳିଗଲେ
ଲଙ୍କାଗଡ଼ ପଦାରେ ପ୍ରବେଶ ହୋଇଲେ ।
ଡେଣାର ବାୟୁରେ ଯେ ଶବଦ ମହାଘୋର
ସପତ ସିନ୍ଧୁ ଲହରି ହୋଇଲା ଯେ ସ୍ଥିର ।
ଶ୍ରୀରାମ ବୋଇଲେ କି ଅଇଲା ଇନ୍ଦ୍ରଜିତ
ଆଜ ନିଶିରେ ଯୁଦ୍ଧ କରିବ ଅପ୍ରମିତ ।
ବିଭୀଷଣ ବୋଇଲା ଅଇଲା ଗରୁଡ଼
ଜାମ୍ବେବ ବୋଇଲେ ଅଇଲା ପବନ କୁମର ।

ରଘୁନାଥ ବୋଇଲେ ବହୁତ ଗୁଣ କଲା
ଶ୍ରୀହରିର ଦାସକୁ ଆମ୍ଭଙ୍କୁ ଭେଟାଇଲା ।
ଏମନ୍ତ ସମୟରେ ଗରୁଡ଼ ଆସି ହୋଏ
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଣ ଉଭା ହୋଏ ।
ମାରୁତି ଯେ ଗରୁଡ଼ ପଛଭାଗେ ଥିଲା
ଶ୍ରୀରାମଙ୍କୁ ଆସିଣ ଓଳଗ ମେଲାଇଲା ।
ମନେ ମନେ ଓଳଗ ହୋଇ ଖଗପତି
ମନରେ ବିଚାରିଲା ଏ ଅଟନ୍ତି ଶ୍ରୀପତି ।
ସ୍ୱୟଂ ନାରାୟଣ ଯେ ଅଟନ୍ତି ରଘୁନାଥ
ଏତେ ବିଚାରି ଗରୁଡ଼ ମନରେ ଉପତ ।
ଏଥୁ ଅନନ୍ତରେ ଶୁଣ ଗୋ ହବ୍ୟରସ
ସର୍ପ ପଳାଇ ଯାଇଥିଲା ନାଗଫାଶ ।
ଶ୍ରୀରାମ ଲକ୍ଷ୍ମଣ ଯେ ଉସତ ପୁଣ ହେଲେ
ଆଗରେ ଗରୁଡ଼ ଉଭା ପ୍ରତ୍ୟକ୍ଷେ ଦେଖିଲେ ।
ଖଗପତି ରାଏ ଯେ ମନରେ ବିଚାରିଲା
ଶ୍ରୀରାମଙ୍କୁ ଦେଖି ଯେ ନମସ୍କାର କଲା ।
ବୋଲଇ ଏଯୁଗେ ମୋତେ ଛାଡ଼ିଲ ନାରାୟଣ
ମୋର ସେବା ନୋହିଲା ଯେ ଶ୍ରୀରାମ ଚରଣ
ତୁମ୍ଭ ଦୟା ଥିବାରୁ ମୋଠାରେ ଗୃପଧାରୀ
ହନୁମନ୍ତଙ୍କୁ ଭେଟିଲ ମୋହର ଯେ ପୁରୀ ।
ଏ ଯୁଦ୍ଧେ ହନୁମନ୍ତ ଅଟେ ପୁଣ ସାର
ଘଡ଼କରେ ମିଳିଲା ସେ ରମ୍ୟକ ଦ୍ୱୀପର ।
ଘଡ଼କରେ ମୋର ସଙ୍ଗେ ଅଇଲା ପଳାଇ
ଅନ୍ୟ ଲୋକ ହେଲେଯେ ପଡ଼ନ୍ତାକେଣେଯାଇ
ମୋହର ଡେଣାବାତରେ ଧାରଣା ନ ସହଇ
ଚରୁଲତାମାନେ ଯେ ଗଗନେ ଉଡ଼ିଯାଇ ।
ସହସ୍ର ଯୋଜନ ଯେ ଅଟେ ମୋର ଡାଏ
ହନୁମନ୍ତ ହେଲା ପୁଣ ବାସ୍ତର ଯୋଜନସ୍ଥେ ।
ଦୁଇ ଯୁଣ ମୋତେ ବଳେ ହନୁବୀର
ହୋଇଲୁ ଏକ ସମାନେ ମହି ହେଲା ସ୍ଥିର ।
ଧୀର ଧୀର କରିଣ ଗମନ ଦୃଢ଼େ କଲୁଁ
ତୁମ୍ଭର ପାଶରେ ଆମ୍ଭେ ପ୍ରବେଶ ହୋଇଲୁ ।
ମୋଠାରେ ସୁଦୟା ଯେ ଥିବାରୁ ଦାଶରଥି
ଦର୍ଶନ କଲି ଆସି ତୁମ୍ଭର ଚରଣେଟି ।
ଏତେ ବୋଲି ଚରଣେ ଲୋଟେ ଖଗେଶ୍ୱର
ଦାଶରଥି ଯାଇଁଣ ଟେକିଲେ ବେଗର ।

ବୋଇଲେ ଖଗେଶ୍ବର ହେ ବିଷ୍ଣୁର ବାହନ
ମୋଠାରେ ସୁଦୟା କଲୁ ହୋ ତୁମ୍ଭ ପୁଣ ।
ଲଙ୍କାର ରାବଣ ମୋର ସଙ୍ଗରେ ବାଦହେଲା
ସୀତା ପର ଭାରିଯାକୁ ହରାଇ ଆଣିଲା ।
ମାଗିଲି ନ ଦେଲା ସେ ନକଲା ମୋର ବୋଲ
ବହୁତ ଦୁଃଖରେ ମୁଁ ଅଇଲି ତାର ପୁର ।
ଦୁଇଦିନ ଯୁଦ୍ଧ ସେ ଯେ ମୋର ସଙ୍ଗେ କଲା
ଶକତି ମାରିଣ ସେ ଏଠାରୁ ଚଳିଗଲା ।
ତାହାର ପୁତ୍ର ନାମ ଇନ୍ଦ୍ରଜିତ ପୁଣ
ଆଜର ଯୁଦ୍ଧକୁ ସେ ଆସିଲା ତତକ୍ଷଣ ।
ବାପ ହରାଇଲା ମୋ ଭାରିଯା ନାମେ ସୀତା
ପୁଅ ଦେଖ ଯୁଦ୍ଧରେ ହୋଇଛି ବଡ଼ମତା ।
ଦୂତକରି ପେଷିଥିଲି ହନୁମନ୍ତ ବୀର
ତାକୁ ଏହି ଶରରେ ବାନ୍ଧିଲା ସେ ଥର ।
ତାର ବୁଦ୍ଧିବଳେ ସେ ଯେ ପାରି ହୋଇଗଲା
ଲଙ୍କାର ହୁଇକତ ସେ ମୋ ଆଗେ କହିଲା ।
ଏବେ ଦେଖ ନାଗଫାଶେ ବାନ୍ଧିଛି ଦୁଇ ଭାଇ
ପାଞ୍ଚଘଡ଼ି ପର୍ଯ୍ୟନ୍ତେ ହକଳେ ଥିଲୁ ଶୋଇ ।
ଜମ୍ବେଦ ବିଭୀଷଣ ମୋ ଆଗେ କହିଲେ
ବାସୁଦେବଙ୍କ ବାହନ ଆସିଲେ ଯିବ ଭଲେ
ବୁଦ୍ଧି ମୋତେ ନ ସ୍ଫୁରଇ କହିବ କିସ ପୁଣି
ମାରୁତି ବୋଇଲେ ମୁଁ ଯିବ ଏହିକ୍ଷଣି ।
ଜମ୍ବେଦ ବୋଇଲେ ସେ ଯେ ଅଗମ୍ୟଯେପଥ
କ୍ଷୀରସିନ୍ଧୁ ଛଡ଼ି ଦ୍ୱୀପ ଡେଇଁଲେ ରମ୍ୟକଦ୍ୱୀପ
ଅଣଚାଶ ଲକ୍ଷ ଯୋଜନ ପୁଣ ଜାଣ
ଦୁର୍ଗମ ପଥ ଏତେ ଅଟେ ଦୂର ପୁଣ ।
ଏକଥା ଶୁଣିଣ ମୁଁ ମନରେ ବିଚାରିଲି
ମାରୁତି ସଙ୍ଗରେ ଅଗ୍ନିଶର ମୁଁ ଚାଳିଦେଲି ।
ରାମ ନାରାୟଣ ବୋଲି କହେ ହନୁମାନ
ମୋର ଦୁଃଖ ଦେଖିବାକୁ ଆସିଛୁ ତୁ ପୁଣ ।
ନାଗ ଫାଶୁ ତୁମ୍ଭ ମୋତେ ମୁକ୍ତ କରାଇଲୁ
ତୋର ସୁଖ ଥିବାକୁ ତୁ ଦେଖିଣ ଅଇଲୁ ।
ପବନ ନନ୍ଦନ ଏବେ ମୋତେ ଏହା କଲା
ତୁମ୍ଭଙ୍କୁ ଆଣିବାରୁ ମୋର ବ୍ୟାଧିଗଲା ।
ମୋହଠାରେ ବାବୁରେ ସୁଦୟା କରିଥିବୁ
ଆତ୍ମକାର୍ଯ୍ୟରେ ତୁମ୍ଭ ହେଳା ନ କରିବୁ ।

ଗରୁଡ଼ ବୋଇଲା ଦେବ ମୋ ବଚନ ଶୁଣ
ତୁମ୍ଭର କିଙ୍କର ମୁଁ ସଦା ଢନେ ଜାଣ ।
ମୋତେ କାହିଁ ପାଇଁ ଏକଥା ଦୟା ହେଲ
ଜାଇବାରୁ ମରିବାରୁ ମୋତେ ହୋନ୍ତା ଭଲ ।
ଏ କଥାକୁ ଶୁଣିଣ କହିଲେ ରଘୁସାଇଁ
ସଦା ଢନେମୋଠାରେତୋର ଉପକାରଥାଇ
ଗରୁଡ଼ ବୋଇଲା ଦେବଶୁଣିମା ହେଉମୋରେ
ଉତ୍ତୁର ହେବାକୁ ମୁଁ ଭାବୁଛି ମନରେ ।
ମୋହର ଗରୁଡ଼ ଶର ପେଷିଲ ଆଗକରି
ଅଗ୍ନିଶର ସଙ୍ଗରେ ଅଇଲା ସେ ଚଳି ।
ତାକୁ ଦେଖି ନାଗଫାଶ ପଳାଇଲେ ଡ଼ରେ
ଦୁହେଁ ପଶିଛନ୍ତି ଯେ ପାତାଳ ବିବରେ ।
ତୁମ୍ଭଙ୍କୁ ପରତେ ଶତେ ଗୁଣରେ ତାର ଶାନ୍ତି
ନାଗ ଫାଶକୁ ଗୋଡ଼ାଇ ଗରୁଡ଼ାଶର ଅଛି ।
ସେ ଶର ଅଇଲେ ତୁମ୍ଭେ ରଖିବ ହୋଣର
ଆଉ ଥରକୁ ଦେବ ନ ଥିବ ଡରର ।
ଏତେ କହି ଗରୁଡ଼ ବେଗେ ଚଳିଗଲା
ସ୍ୱର୍ଗପୁରେ ଯାଇଣ ପ୍ରବେଶ ହୋଇଲା ।
ଇନ୍ଦ୍ରକୁ ବୋଇଲା ଦିଅ ହେ ଅମୃତ
ଶ୍ରୀରାମର ସୈନ୍ୟଯାକ ରଣରେ ମୋହିତ ।
ଶୁଣିଣ ସୁର ରାଜ ବେଗେ ଚଳିଗଲା
ଭଣ୍ଡାରୁ ଅମୃତ ଆଣି ଗରୁଡ଼ ହସ୍ତେ ଦେଲା ।
ଅମୃତ ଘେନିଣ ଗରୁଡ଼ ବେଗେ ଆସି
ଶ୍ରୀରାମଙ୍କୁ ବେଗେ ସେ ଦର୍ଶନ କଲା ଆସି ।
ଅମୃତ ସେ କରେ ଧରି ସିଞ୍ଚିଲେକ ନେଇ
ପୁଣିହିଁ ଲକ୍ଷ୍ମଣଙ୍କ ପରେ ନଉଡ଼ଇ ।
ଶ୍ରୀରାମ ଉପରେ ନହୁଡ଼େ ସେହି ପୁଣ
ଗଜୁଁ ଶତେବଳ ଶ୍ରୀରାମ ଲକ୍ଷ୍ମଣ ।
ସୁଗ୍ରୀ ବିଭୀଷଣ ସହିତେ ସୈନ୍ୟମାନେ
ଆଉର ଯେତେ ଋକ୍ଷକପି ସୈନ୍ୟେ ।
ନଗ୍ରେପିଣ ସିଞ୍ଚିଲା ସେ ସବୁଙ୍କର ଦେହେ
ଚତୁଷ୍ଟିଳ ମାନଙ୍କର ଚେତକଲେ ଯେ ମୋହେ
ଗଜୁଁ ଶତେ ଗୁଣେ ହେଲା ତାହାଙ୍କର ବଳ
ସୁଗ୍ରୀ ବିଭୀଷଣ ଯେ ସହିତେ ନଳ ନୀଳ ।
ଅଙ୍ଗଦ କୁମୁଦ ସହିତେ ପାରସ
ହନୁମାନ ଗବୟ କେଶରୀ ସାରସ ।

ଶତଭୁଜ ସେନାପତି ଗବାକ୍ଷ ସୁଶୋଦନ
ସମ୍ପାତି ଦଧିମୁଖ ଗନ୍ଧ ମାଦନ ।
କଳମୁଖ ଶତବାଳ ପବନ ପାରିଜାତ
ଶରସେତୁ କରକେତୁ ମଳୟ ବସନ୍ତ ।
ତାରର ପିଅର ଦ୍ବିବଦ ଶତବଳ
ଦଧିମୁଖ ବଳମୁଖ ଯେନଣ ସକଳ ।
ଦେବତାଙ୍କ ସମାନରେ ଦିଶେ ତେଜମୟ
ଶ୍ରୀରାମ ଲକ୍ଷ୍ମଣ ଦିଶନ୍ତି ହରିହର ପ୍ରାୟ ।
ବସିଲ ଉଠିଲ ସମସ୍ତେ ହୋନ୍ତି ଜୟ
ଆଗରେ ବସାଇଲ ଗରୁଡ଼ର ପ୍ରଶ୍ନ ।
ଏଥୁଅନନ୍ତରେ ଗରୁଡ କହେ ବାଣୀ
ସବୁସୈନ୍ୟ ତୁମ୍ଭର ନିରୋଗ ହେଲେ ପୁଣି ।
ଅମୃତ ପ୍ରସାଦରେ ହେଲ ଶତବଳ
ଭାଗ୍ୟଥିଲ ମୋର ଯେ ଦେଖିଲି ବେନଡୋଳ
ତୁମ୍ଭର ସୁଦୟାରେ ତୁମ୍ଭଙ୍କୁ ଭେଟ ହେଲି
ଆଉଥରେ ଏଥିକୁ ଆସିବ ରୂପଧାରୀ ।
ମାର ଏ ଅସୁରଙ୍କୁ ଅଟନ୍ତି ବଡ଼ଦୁଷ୍ଟ
ତେବେ ସିନା ସରିବ ଦେବତାଙ୍କର କଷ୍ଟ ।
ତୁମ୍ଭଠାରେ ଦେବଙ୍କର ଅଛି ବଡ଼ ଆଶା
ରାବଣକୁ ମାଇଲେ ପାଇବ ପ୍ରଶଂସା ।
ଆଉଥରେ ମୁଁ ଯେ କରିବ ଦର୍ଶନ
ସେଠାରୁ ଏ ଯୁଗରେ ନୋହିବ ଭେଟ ପୁଣ ।
ଏ ଯୁଗ ଅନ୍ତରେ ଦ୍ୱାପର ପ୍ରବେଶ
ତୁମ୍ଭେ ଜାତ ହୋଇବ ମଧୁବନ ଦେଶ ।
କଂସ ଦୈତ୍ୟ ଡରରେ ବଢ଼ିବ ଗୋପପୁରେ
କ୍ରୀଡ଼ା କରିବ ଦେବ କାଳନ୍ଦ ହ୍ରଦରେ ।
ଷଡ୍‌ବନ ଭିତରେ କାଳଆ ନାଗ ଥିବ
ସେହି ନାଗ ତୁମ୍ଭର ଚରଣେ ଦଂଶିବ ।
ସେତେବେଳେ ସୁମରଣା କରିବ ଦେବମତେ
ଏ ଲକ୍ଷ୍ମଣ ହୋଇବେ ତୁମ୍ଭର ଜ୍ୟେଷ୍ଠଭ୍ରାତେ
ତୁମ୍ଭର ଚେତା ନ ଥିବ ବିଷର ଅଚେତନ
ବଳଦେବ କହିଲେ ସୁମରିବ ପୁଣ ।
ମୁଁ ଯାଇ ତୁମ୍ଭର ଖଣ୍ଡିବ କାଳକୂଟ
ସେ ଦିନ ତୁମ୍ଭର ଆମ୍ଭର ହେବ ଭେଟ ।
ରାବଣଶ୍ବର ସକାଶରେ ଦେବତା ଏ କହି
ଶତେକବର୍ଷ ଯୋଗରେ ବସିଲେକ ଧ୍ୟାୟୀ ।

ତେବେ ଦେବ ପ୍ରସନ୍ନ ହେଲେ ତାଙ୍କୁବଳେ
ବୋଇଲ ତୁମ୍ଭେଯାଅ ରାବଣମାରିବଇଁହେଲେ
ନ ଚଢ଼ିବ ଗରୁଡ଼ ନ ଧରିବ ଶଙ୍ଖଚକ୍ର
ଶାରଙ୍ଗ ଧନୁରେ ମୁଁ କରିବ ପ୍ରାଣେ ନାଶ ।
ଚତୁର୍ଦ୍ଧା ମୂର୍ତ୍ତି ଧରି ମୁଁ ଜନମ ହୋଇବ
ଅସୁର ବଳ ମୁଁ ଯେ ନଶୋଧ କରିବ ।
ଏତେ କହି ବଇକୁଣ୍ଠ ପୁର ଶୂନ୍ୟ କଲେ
ମୋତେବୈକୁଣ୍ଠଜଗାଇଅଯୋଧପୁରେଜନ୍ମିଲ
ଲକ୍ଷ୍ମଣ ଅଟେ ଅନନ୍ତ ଶତ୍ରୁଘନ ଅଟେ ଶଙ୍ଖ
ଭରତ ଅଟନ୍ତି ଚକ୍ର ତୁମ୍ଭେ ତ ଶ୍ରୀବତ୍ସ ।
ଜାନକୀ ଅଟନ୍ତି ଲକ୍ଷ୍ମୀ ସ୍ୱୟଂ କମଳମା
ସୀତା ନ ହରିଲେ ରାବଣ ନ ମରନ୍ତା ପୁଣି ।
ଚାରି ରାବଣକୁ ଚାରିଜଣ ଯେ ମାରିବ
ତେବେ ଏ ପୃଥ୍ୱୀ ଭର ନିଶ୍ୱାସ ହୋଇବ ।
ଶତେମୁଖ ରାବଣକୁ ମାରିବ ଶତ୍ରୁଘନ
ଏକମୁଖା ରାବଣକୁ ଲକ୍ଷ୍ମଣ ମାରେ ପୁଣ ।
ସହସ୍ରମୁଖା ରାବଣକୁ ଜାନକୀ ମାରିବ
ତୁମ୍ଭେ ଦଶାମୁଖକୁ ନାଶ ଯେ କରିବ ।
ଏବେ ଦଶମୁଖାକୁ କର ପ୍ରାଣେ ନାଶ
ଜାନକୀ ଘେନି ତୁମ୍ଭେ ଯାଅ ନିଜ ଦେଶ ।
ଆଜକୁ ଚୌଦଦିନେ ରାବଣ ନାଶଯିବ
ପାଞ୍ଚଦିନେ ଏକାମୁଖା ରାବଣ ମରିବ ।
ବାରଦିନେ ଶତେ ମୁଖା ରାବଣ ହେବ ହତ
ପାଞ୍ଚଦଶ ଦିନେ ସହସ୍ର ମୁଖାଇ ନିପାତ ।
ତେବେ ସେ ଦୈତ୍ୟବଳ ହୋଇବେଯେସ୍ଥିର
ଏକାଙ୍ଗ ଚକ୍ରବର୍ତ୍ତୀ ହେବ ରଘୁବୀର ।
ମୋହର ବଚନ ତୁମ୍ଭଙ୍କୁ ଅସ୍ତୁ ହେଉ
ଏତେକହି ବାହୁଡ଼ିଗଲେ ଖଗବାହୁ ।
ହନୁମନ୍ତ ବୋଇଲେ ଶୁଣ ହେ ରଘୁନାଥ
ଯୁଦ୍ଧ ସରିବାଯାଏ ଏ ଥିଲେ ହେବ ହତ ।
କାର୍ଯ୍ୟ ପଡ଼ିଲେ ଦେବ ନ ଆସେ ଏହିଟି
ମୋହର ଜାଲେଣି ଦେବ ଅଟେ ଯେ ଏତିକ
କହିଲେ ନ ରହିଲେ ବଳରେ ରଖିବଟି
ମୋ ଜମାରେ ଥାଉଦେବ ମତେ ଆଜ୍ଞାଦେବ
ଶ୍ରୀରାମ ବୋଲନ୍ତି ହନୁ ନ ବୋଲ ଏ ବାଣୀ
କୋପ କରିବଟି ଖଗପତି ପୁଣି ।

ଦେବତାଙ୍କ ମଧ୍ୟରେ ଅଟଇ ଏକଏକ
ଏହି ସେ ଗରୁଡ଼ ବିଷ୍ଣୁର ସେବକ ।
ଆପଦ କାଳରେ ଏ ରକ୍ଷା କଲା ମୋତେ
ମୁଁ ତାଙ୍କୁ ପ୍ରମାଦଟି ଚିନ୍ତିବି କେମନ୍ତେ ।
ଏଠାକୁ ଆସିବାକୁ କିଏ କହିଥିଲା
ଏଠାରୁ ଏଣିକ ଏ ଚିହ୍ନଟି ହୋଇଲା ।
ନ ବୋଲ ହନୁମନ୍ତ ଏସନ ସିଦ୍ଧାନ୍ତ
ଦଶରଥ ସମାନେ ଧର୍ମରେ ମୋର ତାତ ।
କହିଲଣି ଥରେ ଆଜ ଆସିବା ମନକୁ
କାର୍ଯ୍ୟ ପଡ଼ିଲେ ଯାଇ ଯେ ଆଣିବା ତାହାକୁ
ଯାଇ ଆସିବାରେ ତୁ ଦେଖିଲୁ ହନୁବୀର
ଏହାର ଘର ଦେଖିଲୁ ସୁରଗିରି ଉପର ।
ଶ୍ରୀରାମର ବଚନରେ ହନୁମନ୍ତ ପୁନ
ବିଭୀଷଣ ହରିର କରଇ ମନେ ପୁଣି ।
ନିଶ୍ଚୟେଁ ନାରାୟଣ ଅଟନ୍ତି ରଘୁନାଥ
ଶଙ୍ଖଚକ୍ର ଗଦା ଯେ ଧନୁ ସହସ୍ର ହସ୍ତ ।
ଗରୁଡ଼ କହିଲା ମୁଁ ଶୁଣିଲି ପ୍ରତ୍ୟକ୍ଷ
ଏହିଟି ନାରାୟଣ ଅକ୍ଷୟ ଅଚ୍ୟୁତ ।
ନୋହିଲେ କି ହନୁମନ୍ତ ରମ୍ୟକ ଦ୍ୱୀପ ଯାଇ
ପାଞ୍ଚଲକ୍ଷ ଯୁଣ ଘଡ଼ିକେ ହିଡମଇ ।
ରହିଲା ଘଡ଼ିଏ ଅଇଲା ଘଡ଼ିକରେ ।
ବିଷ୍ଣୁର ବାହନ ନୋହିଲେକଅନ୍ୟଶ୍ରୁରକରେ
ଭ୍ରାନ୍ତି ଫିଟିଲା ମୋର ହେଲି ଯେ ନିର୍ଭୀବି
ସୁଖେ ଭୋଗ କରିବି କନକମଏ ଭୂବି ।
ଏତେ ଭାଳ ପଡ଼େ ଶ୍ରୀରାମ ଚରଣ
ଅଙ୍ଗଦ ହନୁମନ୍ତ ସୁଗ୍ରୀବ ରାଜନ ।
ଜାମ୍ବେବ ଶତବାଳି ଶରଭ ସେନାପତି
ନଳନୀଳ କୁମୁଦ କାଳାଞ୍ଜନ ମୂର୍ତ୍ତି ।
ସୁଷେଣ ବୋଲି ଯେ କାଳମୁଖ ବୀର
ରମଣ ତାଳମ୍ବ ଯେ ହନୁର ପିଅର ।
ଶରସେନ୍ତୁ ଗବଏ ଗବାକ୍ଷ ସାରସ
ଦଧିମୁଖ କାଳମୁଖ ହଜଏ ସୁନାସ ।
ମହେନ୍ଦ୍ର ଦୁବିନ୍ଦ ଯେ ବସନ୍ତ ପବନ
ସୁଷେଣ ସମ୍ପାତ ଯେ ଗନ୍ଧମାରଦନ ।
ତରାଇ ପିଅର ଯେ ସୁଗ୍ରୀବର ଶଶୁର
ବାଳିର ଶଶୁର ଯେ ଋକ୍ଷକପି ବୀର ।

ସକଳ ସେନାପତି ପଡ଼ିଲେ ପ ଦତଳେ
ସୈନ୍ୟ ସହିତରେ ଓଲଗି ଶୋଇଲେ ।
ଶ୍ରୀରାମଙ୍କୁ ବର୍ଣ୍ଣିଣ ଯେ ପ୍ରଶଂସା କରନ୍ତି
ଏବେ ସେ ଆମ୍ଭର ଫିଟେ ମନ ଭ୍ରାନ୍ତି ।
ସ୍ୱୟଂ ନାରାୟଣ ତୁମ୍ଭେ ବଇକୁଣ୍ଠବାସୀ
ନୋହିଲେ ଗରୁଡ଼ କେମନ୍ତେ ଥିଲା ଆସି ।
ରାବଣ ନଲକ୍ଷ୍ମଣ କେବେକ ମାତର
ତୁମ୍ଭେ ଦେବ ନାରାୟଣ ଜଗତ ଈଶ୍ୱର ।
ବିଷ୍ଣୁ ଆଜ୍ଞା ଦେବ ଭାଙ୍ଗିବୁ ଲଙ୍କପୁରୀ
ଅସୁରଙ୍କ ସମ୍ପଦ କରିବୁ ହରି ଜୁରି ।
ରାବଣ ଇନ୍ଦ୍ରଜିତ କରିବୁ ପ୍ରାଣେ ନାଶ
ଏତେ ବୋଲି ରଡ଼ି ଛାଡ଼ିଲେ ଚଉପାଶ ।
ଚଳିଲେ ଧରି ସେ ଯୁଦ୍ଧକୁ ଆଗୁଁସାର
ଉଠି ଡାକଦ୍ୟନ୍ତି ଧର ଧର ମାର ମାର ।
ଲଙ୍କାର ଲୋକେ ଶୁଣି ହୋଇଲେ ବିସ୍ମୟେ
ନିଦ୍ରା ଭାଙ୍ଗିବାରୁ ଯେ ଉଠେ ଲଙ୍କାରାଏ ।
ରାତ୍ର ଅର୍ଦ୍ଧଠାରେ ହେଲେ ଅବକାଶ
ଇନ୍ଦ୍ରଜିତକୁ ସେ ହକାରିଲେ ପାଶ ।
ମନ୍ତ୍ରୀ ଅମାନାତ୍ୟ ମିଳିଲେ ପୁଣ ଯାଇ
ରାବଣ ପଚ୍ଚରଇ ପୁଷ୍ପମୁଖ ଚାହିଁ ।
କେଉଁଠେ ରାମ ଲକ୍ଷ୍ମଣ ହେଜ ଯତ ମଲେ
ଋକ୍ଷକପି ବଳ ସହିତେ କ୍ଷୟ ଗଲେ ।
ଏବେ କିସ ଗୋଳ ଶୁଭେ ମୁଖ ଧ୍ୱନି
ରାମ ଲକ୍ଷ୍ମଣ ବାନ୍ଧିଲି ମୁଁ ନାଗଫାଶେ ପୁଣି ।
ଏକଥାକୁ ହେ ଦେବ ତଥ୍ୟ କରି ଜାଣ
ହାନ ଅପଚୟେ କଥା ପରିମାଣ ।
ମଲାବେଳେ ଯେବେ ହେ ଛାଡ଼ିଲେ ସେ ରଡ଼ି
ନିଶ୍ଚୟେ ମରିଥିଲେ କହୁଛି କରଯୋଡ଼ି ।
ଚାର ଜଣାଏ ଦେବ ଏକଥା ଅଟେ ସତ
ଏହିକ୍ଷଣି ଦେଖି ମୁଁ ଅଇଲି ତୁରିତ ।
ଯେତେବେଳେଇନ୍ଦ୍ରଜିତ ନାଗଫାଶରେବାନ୍ଧିଲା
ପାଞ୍ଚଘଡ଼ି ରାତ୍ରଯାଏ ରାମ ଭୂମିରେ ଶୋଇଥିଲା
ଜାମ୍ବେବ ମନ୍ତ୍ରୀ ବୋଲେ ସେ ଉଠିଣ ବସିଲା
ଗରୁଡ଼ ଆସିଲେ ନାଗଫାଶ ଫିଟେ ଭଲା ।
ହନୁକୁ ପଠାଇଣ ଦେଲେ ରାମ ରାଜା
ହନୁ ଡାକ ଆଣିଲା ବିନତା ତନୁଜା ।

ଗରୁଡ ଆସିବାରୁ ନାଗ ପଳାଇଲେ
ଦେଖିଣ ପକ୍ଷୀରାଜ ବାହୁଡ଼ି ପୁଣ ଗଲେ ।
ସେ ଠାବରୁ ଚେତାପାଇ ଉଠିଲେ କପିବଳ
ଯୂଥପତିମାନେ ମଲ୍ଲ ମହାମଲ୍ଲ ।
ରାମ ଲକ୍ଷ୍ମଣଙ୍କର ନାଗଫାଶ ନାହିଁ
ଯୁଦ୍ଧ କରିବେ ବୋଲି ଅଛନ୍ତି ସଜହୋଇ ।
ଏ ବଚନ ଶୁଣିଣ ବୋଲେ ଦଶଶିର
ରାମ ଲକ୍ଷ୍ମଣ ନୁହନ୍ତି ମନୁଷ୍ୟ ଶରୀର ।
କେ ମୋର ବଇରିଙ୍କ ପାରିବ ଏବେ ସାଧି
କାହିଁ ଯିବ ଏବେ ମୁଁ କରିବ କସ ବୁଦ୍ଧି ।
ଭାଇ କୁମ୍ଭକର୍ଣ୍ଣ ମୋର ନିଦ୍ରାରେ ଅଛି ଶୋଇ
ସେହି ମାଇଲେ ମାରିବ ଆନକେ ଭାଜନନାହିଁ
ଏ ବଚନ ଶୁଣିଣ ଧୂମ୍ରାକ୍ଷ ଆଗସରି
କରପଦ ଯୋଡ଼ି ସେ କହେ ଉଗ୍ର ସ୍ୱର ।
ଜମାଇ କୁମ୍ଭକର୍ଣ୍ଣର ଭାଙ୍ଗିବ ହେ ନିଦ
ଏତିକ୍ଷଣି ତୁମ୍ଭର ମୁଁ ସାରିବ ବିଷାଦ ।
ଦିଅ ଶ୍ରୀ ଆଜ୍ଞା ମୋତେ ଯିବଇଁ ତଡ଼ିତ
ମାରିବ ରାମ ଲକ୍ଷ୍ମଣ ସେହି ବେନି ଯତି ।
ସୁଗ୍ରୀ ବିଭୀଷଣ ଯେ ଅଙ୍ଗଦ ହନୁମନ୍ତ
ଋକ୍ଷକପି ବଳ ମୁଁ କରିବ ନିପାତ ।
ଏବେ ଶୁଭଦିନ ଯୁଦ୍ଧ ମୋର ଭାଗେ ହେଲା
ଆଜ ମୁଁ ମାରିବି ସେ କୋଳିଣ ବୋଇଲା ।
ତୁ ଦେବ ଚିନ୍ତା ହେ ନ କର ଲଙ୍କସାଇଁ
ଶୟନ କର ତୁମ୍ଭେ ନିଜ ପୁରେ ଯାଇ ।
ରାବଣ ବୋଲେ ତୁରେ ସଂଗ୍ରାମେ ଗରିଷ୍ଠ
ରଣରେ ପ୍ରଶଂସା ତୋତେ କରନ୍ତି ସୁରଶ୍ରେଷ୍ଠ
ତୁ ମୋର ବାନ୍ଧବ ବିଶେଷ ସେନାପତି
ଫେଡ଼ି ପାରିବୁ କଲେ ବାକୁ ଏତେକ ବିପତ୍ତି
ଅକମ୍ପନ କ୍ରୋଧନ ତୋର ସଙ୍ଗେ ଯିବେ
ବଜ୍ରମୁଷ୍ଟି ପ୍ରଶସ୍ତ ତୋର ସଙ୍ଗେ ଥିବେ ।
ପ୍ରବର ବାହୁ ଯେ ଆବର ମହୋଦର
ପିଙ୍ଗାକ୍ଷ କୁମ୍ଭକ ଯେ ନିଶିଘ୍ନ ପ୍ରବର ।
ନରାନ୍ତକ ଦେବାନ୍ତକ ଯୁଗସୁର ଯାନ୍ତୁ
ଯେମନ୍ତେ ରାମ ଲକ୍ଷ୍ମଣ ମାରି ନ ବର୍ତ୍ତିନ୍ତୁ ।
ଶୁଣିଣ ହରଷହେଲେ ଅସୁରକୁଳ ବୀର
ମାରି ମାରି ଶବଦ ଶୁଭେ ନିରନ୍ତର ।

ଅଶ୍ୱଗଜ ପାଦାନ୍ତ ଚଢନ୍ତି ନୋହେ କର
ବାଦ୍ୟ ବାଜେ ତେଣେ ଯେ କମ୍ପେ ବସୁନ୍ଧରା
ଲକ୍ଷ ଲକ୍ଷ ବହୁଡ଼ି ଜଳେ ଚଢ଼କତି
ଦଣ୍ଡଛତ୍ର ଧରବନ୍ତି ବିମଳ ପନ୍ତି ପନ୍ତି ।
ଧୂମ୍ରାକ୍ଷ ସେନାପତି ଯେ ରଥବରେ ବସି
ଚଳିଁରେ ଯୋଚିଅଛି ଲକ୍ଷେକ ମଇଁଷି ।
କ୍ରୋଧନ ରଥରେ ସହସ୍ର ମତ୍ତବ୍ୟାଘ୍ର
ପ୍ରବର ବାହୁ ଯେ ଚଢ଼େ ମତ୍ତନାଗ ।
ଅକମ୍ପନ ବିମାନ ବାହିଲେ ଗୃଧ୍ରପକ୍ଷୀ
ବଜ୍ରମୁଷ୍ଟିର ରଥରେ ଶୃଗାଳ ଲକ୍ଷେ ଯୋଚି
ପରମାର୍ଥ ସେନାପତିର ଲୋହମୟେ ରଥ
ସହସ୍ର ଘୋଡ଼ା ଚଳିଁରେ ଯୋଚିଲା ସାମର୍ଥ ।
ମହୋଦର ରଥରେ ମଞ୍ଜାରୀ ଭୂରିକୋଟି
ପିଙ୍ଗାକ୍ଷ ବସିଲା ଯେ ହସ୍ତୀବର ପିଠି ।
ଅମୋଘ ଅସ୍ତ୍ରେକ ଯେ ଅଛି କରେ ଧରି
ଗଜେକ ଆରୋହି ସେ ନିଶିର ଆଗସରି ।
ନିକୁମ୍ଭ ରଥ ସେ ଅଟେ ନାଗଧ୍ୱଜ
ତାହା ବହିଅଛନ୍ତି ଯେ ସହସ୍ରେ ମତ୍ତଗଜ ।
ମକରାକ୍ଷସ ବୀର ରଥବରେ ବସି
ଯମଦେବତା ପ୍ରାୟେକ ସେହି ଦିଶି ।
ବିମାନ ବହିଛନ୍ତି ଯେ କାକପକ୍ଷିମାନେ
ଆଗସରି ରଥ ଯେ ଚଳେ ଘନଘନେ ।
ନରାନ୍ତକ ରଥରେ ସହସ୍ରେ ଅଶ୍ୱଆର
ସୂର୍ଯ୍ୟମଣ୍ଡଳ ଜିଣି ଦେବ ରଥବର ।
ପଶ୍ଚିମ ଦ୍ୱାର ବାଟରେ ବାହାର ହୋଇଯାନ୍ତି
ପିଠିପରେ ପଡ଼ିଣ ମାରିବା ବୋଲନ୍ତି ।
ଦ୍ୱାରପାଳମାନେ ଫେଡ଼ିଦେଲେ ଯେ କବାଟ
ରାତ୍ର ପ୍ରହର ଥାଇ ବାହାର ହେଲେ ଥାଟ ।
ଜଗତ ଆଲୁଅ ଦିଶେ ବହୁଡ଼ିର ଘାଏ
ରଣଭୂମିରେ ଥାଇ ଦେଖନ୍ତି ରାମରାଏ ।
ଅନ୍ଧଶରରୁ ଫିଟି ସୁବେଳଧ୍ୱାକୁ ଯାଉଥିଲେ
ଥାଟ ଦେଖିବାରୁ ସେ ବାହୁଡ଼ି ଆଇଲେ ।
ତୁହାଇ ସମର କରନ୍ତି ବେନିଦଳ
କୋନ୍ତ ଭଲ୍ଲ ଶକତି ପରଘ ଚଳୁଥିଲ ।
ଆତପତ ହେଉଛନ୍ତି ଲକ୍ଷ୍ମଣ ଶରମାନେ
କି ଜାଣି ଶୁଭେ ସେ ପକ୍ଷୀ ଗରଜନେ ।

ହାଣହାଣ ମାର ମାର ଡାକନ୍ତି ବେଗଭରେ
ଏକକୁ ଆରେକ କରି କେଧାଏଁ ଆଗଭରେ
ଝମକ କୋଳାହଳ ଶୁଭେ ଚଉକତି
ଶ୍ରୀରାମ ଦଣ୍ଡେ ଜନ୍ତୁଅଛି ସଜଳସ ବଥି ।
ହାତକେ ବଡ଼ବଡ଼ ଆରହାତରେ ଶିଳ
କାହା ହସ୍ତରେ ଢ଼ୁଲା ଆଉ ହସ୍ତରେ ବାଳ
ବଡ଼ବଡ ଘୋନଣ ଯେ ପିଟିପିଟି ହୋନ୍ତି
କେତୁ ସଜଳସ କାହାନ ଫିଙ୍ଗିଦ୍ୟନ୍ତି ।
କେତୁ ବୃକ୍ଷେ ପିଟେ କେ ଝଣ୍ଟାଇ ନେକେ
କେତୁ ମାର ମାର ବୋଲି ଉଚ୍ଚ କରି ଡ଼ାକେ
ଅସୁରେ ଅସୁରେ ହେଲେ ସେ ସଂହାର
ଋକ୍ଷକପି ବୀର ଯେ ହେଲେ ମରାମରି ।
ଶ୍ରୀରାମ ଲକ୍ଷ୍ମଣ ଯେ ହେଲେ ତହିଁ ବଣା
ହେଡ଼ରେ ପଡ଼ିଲେ ଯେ ସୁଗ୍ରୀବ କପିରଣା ।
ବିଭୀଷଣ ସୁବଳ ଗିରିକ ପଳାଇଲେ
ହନୁମନ୍ତ ଯାଇଁଣ ଲଙ୍କାପାଚେରି ଆଶ୍ରେକଲେ
ଅଙ୍ଗଦ ଲକ୍ଷ୍ମଣ ହେଲେ ଭେଟାଭେଟି
ସଉମିତ୍ରୀ ବସିଲେ ଯେ ବାଳିସୁତ ପିଠି ।
ନିରନ୍ତରେ ନାରାଚ ମାରନ୍ତି କୋପକରି
ନିଃଶ୍ୱାସକେ ଲକ୍ଷେ ଦନୁଜ ସଂହାରି ।
ଜମ୍ୱୁବ ଜାଣିଣ ମିଳିଲେ ତାର ପାଶ
ଶ୍ରୀରାମଙ୍କୁ ନ ଦେଖିଣ ଲକ୍ଷ୍ମଣ ହରଷ ।
ଗନ୍ଧମାଦନ ସୁଗ୍ରୀବ ଭେଟ ପାଏ
ତେବେ ସେ ସ୍ଥିର ଚିତ୍ତ କଲେ କପିରାଏ ।
ନଳ ନୀଳ କେଶରୀ ଭେଟିଲେ ବିଭୀଷଣ
ଗ୍ବରଜଣ ସଂଗ୍ରାମକୁ ବାହୁଡ଼େ ଲେଉଟିଣ ।
ସୁଷେଣ ଶତବାଳି କବଏ ଯେ ତିନି
ଗ୍ବରଜଣ ହୋଇଲେ ଶଙ୍କରିକ ଘେନି ।
ସଂଗ୍ରାମରେ ପଶି ଏ କରନ୍ତି ମହାଗୋଳ
ସୁଦୋଦନ ଡାଳମ୍ୱ ଆଦର ଶତବଳ ।
ହାତୀ ଦନ୍ତ ଭିତରେ ପଶିଣ ଗୋଳ କଲେ
ରାଗରେ ମତ୍ତଗଜ ବହୁତ ମାଇଲେ ।
ପବନ ପରାସ ଯେ ମଳୟ ସାରସ
ଅନେକ ଗଜ ଏ ଯେ ମାଇଲେ ରାକ୍ଷସ ।
ହନୁ ବଜ୍ରରଇ ହୋଇବ ବଡ଼ଗୋଳ
କେଉଁଠାରେ ଦେଖିବ ରାମଲକ୍ଷ୍ମଣ ବୀର ।

ସୁଗ୍ରୀବ ବିଭୀଷଣ ବାଳି ସୁତ ଜାମ୍ବ
ବଜ୍ରର ବଜ୍ରଣ ସୈନ୍ୟ ମାରେ ଭାଙ୍ଗି ଭାଙ୍ଗି
ରଥର ଉପରେ ନେଇ କଚ୍ଚଡଇ ରଥ
ହସ୍ତୀଙ୍କର ଉପରେ କଚଡେ ମଦମତ୍ତ ।
ଘୋଡ଼ାଙ୍କର ଉପରେ କଚ୍ଚଡ଼େ ଘୋଡ଼ାନେଇ
ଆପଣାର ସୈନ୍ୟଙ୍କୁ ଚାହିଁଣ ଗୁଡ଼ଦେଇ ।
ଶ୍ରୀରାମ ଲଙ୍କାର ଯେ ଉତ୍ତର ଦ୍ୱାର ଥିଲେ
ଅସୁରଙ୍କର ସୈନ୍ୟ ବହୁତ ନାଶକଲେ ।
ପଞ୍ଚଶ ଲକ୍ଷ ଯେ ପଡ଼େ ମତ୍ତହସ୍ତୀ
ତିରିଶ ସହସ୍ର ପଡ଼ିଲେ ମହାରଥୀ ।
ତିନିକୋଟି ଅଶ୍ୱ ଅଶ୍ୱଆରଙ୍କ ସହିତେ
ପାଦାନ୍ତି ଦୁଇ ବୃନ୍ଦ ନବ ଅହିବ୍ରତେ ।
ଏଗାର ବାଣେ ଶ୍ରୀରାମ ଏତେ ଦଳ ନାଶି
ଏକା ନିଃଶ୍ୱାସକେ ଶର ତିନିବେଳ ପେଶି ।
ଏମନ୍ତ ଦୁଇଘଡ଼ି ଯୁଝନ୍ତି ରଘୁସାଇଁ
ରକ୍ତନଦୀ ଘୋଟା ଯେ ବହେ ରଣଭୂଇଁ ।
ଉତ୍ତର ଦ୍ୱାରେ ସେ ବହେ ରକ୍ତନଦୀ ଧାର
ତିନିତାଳ ଗଭୀର ଯେ ଯୋଜନେ ଓସାର ।
ବାରଲକ୍ଷ କବନ୍ଧ ନାଚେ ସେ ନଦୀରେ
ମଡ଼ାମାନେ ଭାସୁଛନ୍ତି ଶୋଣିତର ଧାରେ ।
ଏଥିଅନନ୍ତରେ ଶୁଣ ଭଗବତୀ
ହନୁମନ୍ତ ସଂଗ୍ରାମ କରୁଥିଲେ ସେଥି ।
ମଡ଼ା ବୁଡ଼ ବୁଡ଼ ଯେ ଦିଶିଲେ ପୁଣ ଆଗେ
ରକତ ନଦୀ ବହିଲା ସମତୁଲ ଭାଗେ ।
ବିସ୍ମରିଲେ ଶ୍ରୀରାମ ଯେ ଲକ୍ଷ୍ମଣ ଏଣେ ଛନ୍ତି
ବୃକ୍ଷଶିଳା ଛେଷ୍ଟ ଏମାନେ ନୁହନ୍ତି ।
ଋକ୍ଷକପିଙ୍କର ଯେ ନୋହେ ଏହୁ କୃତ୍ୟ
ଶ୍ରୀରାମ ଲକ୍ଷ୍ମଣଙ୍କରୁ ଏମନ୍ତ ଚରିତ ।
ଏସନେକ ବିସ୍ମରି ଯେ ଖଣ୍ଡେ ଦୂର ଗଲା
ଅକମ୍ପନ ଶ୍ରୀରାମ ଯେ ଯୁଝନ୍ତି ଦେଖିଲା ।
ଧାଇଁ ପାଇଲା ସେ ଉଦମ୍ଭ ଅରୁଣ
ମାରୁତି ଜାଣିଲା ଏହି ସେ ଶ୍ରୀରାମ ରଣ ।
ଏତେ ବୋଲି ଧାଏଁ ପଥରେ ପୁଣ ଘେନି
ଅକମ୍ପନ ରଥରେ ମାଇଲା ପାବନି ।
ଖଣ୍ଡ ଖଣ୍ଡ ହୋଇଣ ଭଗ୍ନେ ରଥ ବର
ବିଧାଏ ମାଇଲା ସେ ଦୈତ୍ୟର ମୁଣ୍ଡର ।

ମଥା ପୋତିଣ ଯେ ସତ୍ୱେ ଦୈତ୍ୟ ତାହା
ଧାଇଁଣ ହନୁମନ୍ତ ଧଇଲା ବେନବାହା ।
ଧରାଧରି ହୋଇଣ ପଡ଼େ ବେନବୀର
ଦୈତ୍ୟ ବସିଲା ମାତ୍ର ହନୁର ହୃଦୟର ।
ତଳେଥାଇ ମାରୁତି ଧରେ ତାର ଚୋଟି
ସିଂହରଡ଼ ଦେଇଣ ବସେ ସେ ପାଲଟି ।
ବୁକୁରେ ବସିଣ ମୁଣ୍ଡରେ ମୁଣ୍ଡ ମାରି
ମଲା ସେ ଅକମ୍ପନ ରୁଧିର ଉଦଗାରି ।
ଦୈତ୍ୟର ପିଣ୍ଡଧରି ଫିଙ୍ଗେ କପିମଣି
ଫିଙ୍ଗିଦେଲା ତାହାକୁ କାଠ ଗଣ୍ଡ ଜାଣି ।
ଦେଖିଣ ଶ୍ରୀରାମ ହନୁମନ୍ତର କନ୍ଧେ ବସି
ଉଦେଗିରିରେ ମରତଣ୍ଡ କି ପ୍ରକାଶି ।
ପାହିଲା ରଜନୀ ଯେ ଦିଶିଲା ସବୁ ଥାଟ
ମଡାଙ୍କର ଗହଳେ ଚାଲିବାକୁ ନାହିଁ ବାଟ ।
ପରମାର୍ଥେ ସେନାପତିକି ଦୁଷ୍ଟ ମାଳ
ନିଘାତ କରିଣ ସେ ମାରେ ତରୁଶିଳ ।
ରଥର ସହିତରେ ସେ ହୋଇଲାକ ଧୂଳ
ତାହାକୁ ମାରି ବୀର ପାଡ଼େ ହୁଳହୁଳ ।
ଧୂମ୍ରାକ୍ଷ ସେନାପତି ମାରେ ନେଇ ଶୂଳ
କମ୍ପିତ ଗତିକରି ବଞ୍ଚାଏ ତାହା ବଳ ।
ଦୂରରୁ ହନୁମନ୍ତ ଦେଖିଲାକ ତାହା
କନ୍ଧରେ ବସିଛନ୍ତି ଜାନକୀର ନାହା ।
ପବନ ଉଦବେଗରେ ଅଇଲା ଖର କରି
ଧୂମ୍ରାକ୍ଷକୁ ରଥରୁ ଆଣେ ବାଳ ଧରି ।
ଝିଙ୍କା ଝିଙ୍କି କରିଣ ମାରେ ପୁଣ ନାଚେ
ପଡ଼ିଲା ସେନାପତି ଯେ ଦେଖିଲେ ସମସ୍ତେ
ଧୂମ୍ରାକ୍ଷମୃତ୍ୟୁ ପିଣ୍ଡକୁ ଗୋଡ଼ରେ ଫିଙ୍ଗିଦେଲା
ନିକୁମ୍ଭର ଉପରେ ଯାଇ ପଡ଼ିଲା ।
ବଜ୍ରଦ୍ରଂଷ୍ଟ୍ରକୁ ଯେ ଦେଖେ ସୁଗ୍ରୀବର
ଦେଖିଲା ଶାର୍ଦ୍ଦୋଳକ ମୃଗପଲକୁ ଧାଏଁ ଖର
ଝାମ୍ପି ପଡ଼ ଯେ ରଥକୁ ଭେଦ ଗଲା
ସମ୍ଭାଳି ନ ପାରି ଦୈତ୍ୟ ତଳରେ ପଡ଼ିଲା
ଅସମ୍ଭାଳେ ବଜ୍ରଦ୍ରଂଷ୍ଟ୍ର ପଡେ ଅଣ୍ଟୁ ଆଇ
ସୁଗ୍ରୀବର ବିଧାଏ ମାରେ ପୁଣ ନେଇ ।
ତାହା ସହିଣ ଯେ ଅସୁରକୁଳ ପତି
ମାଲ୍ବନ୍ତରେ ଯେ ପଡ଼ିଲେ ବେନକ୍ଷଣୀ ।
ତଳେ ପକାଇଣ ମାଇଲା ନେଇ ମୁଣ୍ଡ
ରକତେ ଜରଜର ଦିଶେ ପରଚଣ୍ଡ ।
ପୁଣିହିଁ ଦାନଇ ଯେ ମାରେ ଲେଉଟାଇ
ବୁକୁରେ ବସିଣ ନ ପାରେ କେବେ ରହି ।
ଦୁହେଁ ଜଣବନ୍ଧେ ଗଡ଼ାଗଡ଼ି ଯାନ୍ତି
ଏକାତକୁ ପ୍ରାଏ ବେନି ଯେ ଦିଶନ୍ତି ।
କୋପରେ ସୁଗ୍ରୀବର ଚପିଲା ତାର ଚୋଟି
ପ୍ରାଣ ଛାଡ଼ି ଦୈତ୍ୟ ବୀର ପଡେ ମସ୍ତିଲେଟି
ବଜ୍ରଦ୍ରଂଷ୍ଟ୍ର ଯହୁଁ ସେ ହେଲା ପ୍ରାଣେ ନାଶ
ଅସୁର ସଇନ ପାଇଲେ ମନେ ତ୍ରାସ ।
ଲକ୍ଷ୍ମଣର ନାରାଚ ଯେ ନ ପାରେ ପୁଣ ରହି
ବିଷମ ସମର ଯେ କଲେ ବେନିଭାଇ ।
ହୋଧନ ପ୍ରବର ଯେ ତିନହେଁ ରାଗିଗଲେ ।
ତ୍ରିଶିର ମହୋଦର ଭୟରେ ପଳାଇଲେ ।
ମକରାକ୍ଷସ ଯେ ଉଠେ ଗଲା ଭଜ
ବିଭୀଷଣ ଉଠାଲେ କୋପେଣ ଗଳଗାଜ ।
କାହିଁକି ପଳାଉଛରେ ପାମର ଦୁଷ୍ଟମାନେ
କାଳର ପରାଏରେ ନୋହେ ଆଜ ଦିନେ ।
ଶୁଣିଣ ପାଲଟିଲେ ସାତ ସେନାପତି
ନାରାଚ ବିନ୍ଧିଲେ ସେ କୋପରେ ଉଗ୍ରମୂର୍ତ୍ତି
ବିଭୀଷଣ ସଙ୍ଗରେ ସେ ଘୋର ଯୁଦ୍ଧ କଲେ
ଛେଉଲ ଚଉ କୋଣ୍ଡ'ସେ ନାରାଜ ମାଇଲେ
ଉଦୟ କାଳରେ ଯେହ୍ନେ ସୂର୍ଯ୍ୟ ଉଇଁଆସି
ଏକାରେ ବିଭୀଷଣ ତେସନ ପ୍ରାଏ ଦିଶି ।
ଶସ୍ତ୍ର ବଞ୍ଚାଇଲା ବୀର ବିଚକ୍ଷ ଗତିକରି
ତାଙ୍କର ଆୟୁଧରେ ତାଙ୍କୁ ଧରି ମାରି ।
ରାବଣର ସମାନରେ ଅଟେ ସେହୁ କ୍ଷଣୀ
ପ୍ରଥମ ବୟସରେ ସାଧେ ସେ ଧରଣୀ ।
ବେଳକୁ ବେଳ ଦୁହିଁଙ୍କର ବଢ଼େ ରଣଗୋଳ
କୋପରେ ଧାଇଁଲେ ଯେ ସୁମିତ୍ରାର ବାଳ ।
ଶ୍ରୀରାମର ସହିତେ ପଡ଼ିଲେ ଯହୁଁ ମାତ୍ର
ପଳାଇଲେ ଦଇତେ ବିଭୀଷଣକୁ ଛାଡ଼ି ।
ସୁଗ୍ରୀବର ଜମ୍ବେବ ସୁଷେଣ ଗୋଡ଼ାବନ୍ତି
ତରୁଶିଳ ଧରିଣ ସେ ଦୂରରୁ ଫୋପାଡ଼ନ୍ତି ।
ନଳ ନୀଳ ଗନ୍ଧମାଦନ ଶତବଳ
ଦୈତ୍ୟଙ୍କର ପଛରେ ପିଟେ ତରୁଶିଳ ।

ଗବଏ ଗବାକ୍ଷ ମଙ୍କହ୍ର ଚନ୍ଦନ
ଜାଳମ୍ବ ଶରସେଷ୍ଟୁ ସମ୍ପାତି ସୁଶୋବନ ।
ରାକ୍ଷସଙ୍କୁ ଗୋଡ଼ାଇ ମାରନ୍ତି ଡାକଦେଇ
ପଳାବନ୍ତି ଅସୁରେ ପଛକୁ ନ ଚାହିଁ ।
ଶ୍ରୀରାମଚନ୍ଦ୍ର ଯେ ହନୁମନ୍ତ ପରେ ଚଢ଼ି
ନାରାଚ ବର୍ଷନ୍ତି ଯେ ଧନୁର୍ବେଦ ପଢ଼ି ।
ଋକ୍ଷକପି ବଳ ଯେ ପ୍ରଚଣ୍ଡ ଉଗ୍ରମୂର୍ତ୍ତି
ତାହାଙ୍କର ପିଠିରେ ବଜେ ରଘୁପତି ।
ପଳାଇଣ ସୈନ୍ୟ ଯେ ପଶିଲେ ଲଙ୍କାଗଡ଼େ
ଏକବାଟେ ନ ପଶିଲେ ପଶିଲେ ଚାରିଦ୍ୱାରେ
ଲେଉଟି କରି ଚାହିଁଲେ ମୁଖରେ ପଡ଼େକାଣ୍ଡ
କାଣ୍ଡ ପଡ଼ିବାରୁ ସେ ହେଲେ ବେନଖଣ୍ଡ ।
ବାନରେ ଯେ ତରୁଶିଳ ପଦ୍ମଡ଼ନ୍ତି ନେଇ
ମରନ୍ତି ଦଇତେ ଯେ ଭୂମିରେ ଛେଚହୋଇ
ଗଡ଼ ଭିତରେ ପଶିଲେ ଋକ୍ଷକପି
ଶ୍ରୀରାମ ସଙ୍ଗରେ ପଶିଲେ ହୋଇ କୋପି ।
ହନୁମନ୍ତ ବୋଇଲା ହେ ନକର ତୁମ୍ଭେ ଖାନ୍ତି
ରହିଲ ଆମ୍ଭେ ଦେଖିବା ଯେ ଲଙ୍କାର ଆକୃତି
ଆଜ୍ଞାପ୍ରମାଣେ ଯେ ହନୁମନ୍ତ ଚଳେ ବେଗେ
ହନୁପଛେ ସୈନ୍ୟମାନେ ଅଛନ୍ତି ନାନାରଙ୍ଗେ
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଲକ୍ଷ୍ମଣ ବିଭୀଷଣ ମାରନ୍ତି ଦୈତ୍ୟବୀର ।
ଋକ୍ଷ କପିବଳ ଯେ ମାରନ୍ତି ତରୁଶିଳ
ବାଜିବାରୁ ଦୈତ୍ୟମାନେ ପଡ଼ୁଛନ୍ତି ତଳ ।
ପଳାନ୍ତି ସୈନ୍ୟମାନେ ଯେ ରଣଭଗ୍ନ ହୋଇ
ପଳାନ୍ତି ବାଟରେ ସୈନ୍ୟ ଯେ ପଳାଇ ।
ଅଙ୍ଗଦର ପରେ ବସି ଲକ୍ଷ୍ମଣ ବର୍ଷେ ଶର
ମଧୁବନେ ପଶିଲେ ସୁମିତ୍ରା କୁମର ।
ସଗର୍ବ ରଥିମାନେ ଆଗରେ ପଳାଏ
ଅଶୋକ ବନଠାରୁ ସିଂହଦ୍ୱାର ଯାଏ ।
ଲକ୍ଷ୍ମଣଶର ଯେ ପ୍ରଳୟ ଅଗ୍ନି ଜାଣି
ବାଜନ୍ତେ ଦୈତ୍ୟବଳ ପଡନ୍ତି ଧରଣୀ ।
ଅଶୋକ ବନରେ ପଶିଲେ ସଉମିତ୍ରୀ
ବିଭୀଷଣ ସୁଷେଣ ଜାମ୍ବବ ସଙ୍ଗେ ଛନ୍ତି ।
ମାରନ୍ତେ ଅସୁରେ ପଳାନ୍ତି ଏଣେତେଣେ
ପ୍ରବେଶ ହେଲେ ଯାଇ ସୀତାଙ୍କ ସନ୍ନିଧାନେ

ଜାନକୀ ବୋଇଲେ ଗୋ ତ୍ରିଜଟା ଏବେଶୁଣ
ଦୈତ୍ୟବଳ କମ୍ପାଇ ଗୋ ପଳାଉଛନ୍ତି ପୁଣ
ତ୍ରିଜଟା ବୋଇଲେ ଯେ ଆଗକୁ ଚାହାଁ କନା
ବାଳିସୁତ ପିଠିରେ ଶ୍ରୀରାମ ଭାଇ ଅନା ।
ତାହାଙ୍କର ପଛରେ ମୋହର ପିତା ଜାଣ
ତହିଁ ପଛେ ଭାଲୁ ମର୍କଟ ଛନ୍ତି ଜାଣ ।
ମାରନ୍ତି ଅସୁର ଏ ପଶିଣ ଗଡରେ
ଭୟରେ ଦୈତ୍ୟବଳ ପଳାନ୍ତି ଏ ବାଟରେ
ଏହି ସମୟରେ ଲକ୍ଷ୍ମଣ ଯାଇ ମିଳ
ଦେଖିକରି ଜାନକୀ ଉଠିଲେ ବେଗକରି ।
ତ୍ରିଜଟା ଉଠିଣ ବହନରେ ଗଲା
ପିତାର ଚରଣେ ଯାଇ ଓଳଗି ଶୋଇଲା ।
ବିଭୀଷଣ ବୋଇଲା ଉଠ ଲୋ ବେଗେ ବାଳ
ଲକ୍ଷ୍ମଣଙ୍କ ପାଦରେ ଯା କରି ଅଞ୍ଜଳି ।
ତ୍ରୈଲୋକ୍ୟ ଠାକୁର ଅଟେ ଶ୍ରୀରାମର ଭାଇ
ତାହାକୁ ଓଳଗିଲେ ଗତି ମୁକ୍ତି ହୋଇ ।
ଶୁଣିକରି ତ୍ରିଜଟା ଯେ ଲକ୍ଷ୍ମଣ ଚରଣେ
ଓଳଗି ଶୋଇଲା ସେ ପିତାର ବଚନେ ।
ଉଠିକରି କରଯୋଡ଼ି ତ୍ରିଜଟା ହୋଏ ଉଭା
ବିଭୀଷଣ ବୋଲେ ଦେବ ଏ ମୋର ତନୁଜା
ଜାନକୀଙ୍କର ସଙ୍ଗେ ଅଛି ଧାଈ ହୋଇ
ତ୍ରୈଲୋକ୍ୟ ଠାକୁରାଣୀ ଶୁଣନ୍ତି କର୍ଣ୍ଣ ଦେଇ ।
ଶୁଣି ଅଙ୍ଗଦ କାନ୍ଧରୁ ଓହ୍ଲାଏ ଲକ୍ଷ୍ମଣ
ଜାନକୀ ଚରଣେ ଶୁତିଲେ ତକ୍ଷଣ ।
ଉଠିଣ ଉଭା ହୋଇ ଶିରେ କର ଦେଇ
ମନ ଏବେ ସନ୍ତୋଷ ହେଲା କି ମହାମାଈ ।
ମନାକଲ ବେଳେ ଯେ ନ କଲ ମୋହର
ଏବେ ବନ୍ଦ ପଡ଼ିଲ ଅସୁରର ଘର ।
କେତେକେତେଲୋକମାନେନିଷେଧକଲେତହିଁ
ସେ କଥାକୁ ଦୂର ହେ କଲ ବଇଦେହି ।
ଗୁରୁଜନ ବୋଲନ୍ତି ଶାସ୍ତ୍ର ଯେମାନଙ୍କୁ
ତାହାଙ୍କର କଥା ଦୂର କରିଛ ମନକୁ ।
ସାନ ଯେବେ ମନା କରଇ ବଡ଼ ନ ରଖଇ
ସେ ପ୍ରାଣୀକି ଅବଶ୍ୟ ଦଇବ ଦଣ୍ଡଇ ।
ବୋଲନ୍ତି ସୀତାୟା ତୁମ୍ଭେ ଶୁଣ ହେ ଲକ୍ଷ୍ମଣ
ପୋଡ଼ାଭବରେ କେତେ ଲଗାଉଥାଅ ଚୂନ ।

ଏ ଦୈତ୍ୟମାନଙ୍କୁ ବାବୁ ବେଗକରି ମାର
ଏ କଷ୍ଟରୁ ମୋତେ ଯେ କାରେକ ଉଦ୍ଧର ।
ଶୁଣିକରି ଲକ୍ଷ୍ମଣ ଶିରେ କର ଦେଲେ
ଅଙ୍ଗଦ କନ୍ଧରେ ସେ ଯାଇଣ ବସିଲେ ।
ସେଠାବରୁ ଚଳିଗଲେ ସେ ବହନ
ଉତ୍ତରଦ୍ୱାରେ ପ୍ରବେଶ ହେଲେ ଯାଇ ପୁଣ ।
ଶ୍ରୀରାମଙ୍କୁ ଦେଖିଲେ ସେ ପଶିଛନ୍ତି ଗଡ଼େ
ରଘୁନାଥ ବୋଇଲେ ଥାଅ ଏହିଦ୍ୱାରେ ।
ଆଜ୍ଞା ପ୍ରମାଣରେ ରହିଲା ଅଙ୍ଗଦ
ଶ୍ରୀରାମର ସଙ୍ଗେ ଛନ୍ତି ସୈନ୍ୟ ଦଳବୃନ୍ଦ ।
ସୁଗ୍ରୀ ବିଭୀଷଣ ଅଷ୍ଟ ସେନାପତି
ଶ୍ରୀରାମଙ୍କ ସଙ୍ଗରେ ସମସ୍ତେ ଅଛନ୍ତି ।
ଲକ୍ଷ୍ମଣ ଧନୁଶର ଧରି କାଳମୂର୍ତ୍ତି
ଗଡ଼ର ଭିତରେ ଯେ ପଶିଲେ ରଘୁପତି ।
ନରାନ୍ତକ ଦେବାନ୍ତକ ହୋଧନ ଅକମ୍ପନ
ରଥବର ଚଢ଼ି ସେ ପଳାନ୍ତି ତତକ୍ଷଣ ।
ପ୍ରହାର ବାହୁ ସେ ପିଶୁଣ ମହୋଦର
ତ୍ରିଶିର ଖରର କଥା ଅତି ଅଗୋଚର ।
ଦେଖିଣ ବସୁରନ୍ତି ଯେ ଲଙ୍କାର ତରୁଣୀ
ରଥମାନ ଦିଶୁଅଛି ଝିଙ୍କପକ୍ଷୀ ଜାଣି ।
ଏହିଟି ଲଙ୍କାପୋଡ଼ା ଗୋଡ଼ାଇଛି ଗାର
ଦେଖ ଏଡେ ଦୁଷ୍ଟ ଶ୍ରୀରାମ କନ୍ଧେ ତାର ।
ଏହିଟି ବିଭୀଷଣେ ରାବଣ ଭାଇ ପୁଣି
ଲଙ୍କାରେରାଜାହେବବୋଲିଏଗୋଡ଼ାଇଛିଜାଣି
ବାନରଙ୍କ ରାଜା ଏ ଅଟେ ସୁଗ୍ରୀବର
ଜଗଣ୍ଡ ଝୁଲ ନେଲା ପୁତୁରା ଏହାର ।
ଏହି ସୁଗ୍ରୀବ ରାବଣ ସଙ୍ଗେ ଯୁଦ୍ଧ କଲା
ରତ୍ନମୁକୁଟ ଏ ପାଦରେ ମରଦିଲା ।
ଭାଲୁଙ୍କର ସରଦାର ଜାମ୍ବବତି ଏହି
କରେ ତରୁଶିଳ ଘେନିଣ ଏ ଧାଇଁ ।
କେଶରୀକ ଦେଖିଣ ବୋଲନ୍ତି ମୁଖପୋଡ଼ୁ
ଏଡ଼େ ବୃଦ୍ଧ ବୟସରେ ସମର ନ ଛାଡ଼ୁ ।
କେ ବୋଲଇ ଦେଖଏ ଶାଉରି ସେନାପତି
ବୃଦ୍ଧ ହୋଇ ତରୁଣ ପରାଏ ଏହା ଗତି ।
କେ ବୋଲଇ କେଶରୀ ଏ ହନୁମନ୍ତର ବାପ
ଷୋଳଶା ଭେଣ୍ଡିଆ ପରାଏ ଏହାର ଧାପ ।
ଚାହିଁ ବାରଲୋକମାନେ ଯେଚାହାଁଇଦେଉଛନ୍ତି
ଦେଖିକରି ଶ୍ରଦ୍ଧାରେ ଶତ୍ରୁଙ୍କୁ ତୋଷାନ୍ତି ।
କେ ବୋଲେ ଶ୍ରୀରାମଙ୍କର ଭାଇ ଏଥେ ନାହିଁ
କେ ବୋଲେ ଉତ୍ତରଦ୍ୱାରରେ ବସିଅଛିସେହି
କେ ବୋଲେ ଲଙ୍କାଗଡରେ ସେହି ପଶିଥିଲା
ମଧୁବନ ହୋଇ ଅଶୋକ ବନ ଗଲା ।
ଦିଅର ଭାଉଜଙ୍କର ପଡ଼ିଲେ ଭେଟ ଗୁଣ
ସେହି କାଟେ ଆମ୍ଭ ସୈନ୍ୟ ପଳାଇଲେଜାଣ
ଉତ୍ତର ଦ୍ୱାରେ ଯେ ପ୍ରବେଶ ହେଲା ଯାଇ
ଭାଇକ ଜଣାଇ ଶ୍ରୀରାମ ଆସିଛି ଗୋଡ଼ାଇ ।
ସାମାନ୍ୟ ଭରସା କି ଗଡ଼ରେ ପଶିଛନ୍ତି
ରାବଣଙ୍କୁ ଏହାଙ୍କର ଭୟ ନାହିଁ କିଛି ।
ଏସନେକ ବୋଲି ବୋଲି ହେଉଛନ୍ତିଲୋକେ
ଲକ୍ଷ୍ମଣଙ୍କୁ ଦେଖିବାକୁ ଧାମନ୍ତି କୌତୁକେ ।
ଅଙ୍ଗଦ କନ୍ଧରେ ଯେ ଛନ୍ତି ସଉମିତ୍ରୀ
କରେ କାଣ୍ଡ କୋଦଣ୍ଡ ବନ୍ଦମସର୍ପ୍ୟ ଜ୍ୟୋତି
ଶୁଦ୍ଧ ସୁବର୍ଣ୍ଣ ପରାଏ ଅଙ୍ଗ ତାର ଝଳ
ରକତେ ଜର୍ଜର ଫଗୁଖେଳ ପର ।
ଦେଖିବାର ଲୋକେ ଯେ ପ୍ରଶଂସା କରନ୍ତି
ସାଧୁ ସାଧୁ ଏ ଦୁଇ ଭାଇଙ୍କ ରୂପକାନ୍ତି ।
ସୀତାର ଦିଅର ଏ ଯେ ଶ୍ରୀରାମର ଭାଇ
କେଡେ ଧନୁର୍ଦ୍ଧର ଗୋ ଦେଖ ସର୍ବେ ଥାଇ
ସୀତାକୁ ଜଗିଣ ଏହି ଲକ୍ଷ୍ମଣ ଗାର ଥିଲା
ସେଠାରେ ରାବଣ ଯାଇ ମାୟାଯେ ଭୁଆଇଲା
ମାୟା ମୃଗ ଗୋଡ଼ାଇ ଗଲେକ ରାମରାଣ
ହାହା ଲକ୍ଷ୍ମଣ ବୋଲି ଶବଦ ଗରୁ ଟାଣ ।
ଛିନଗାର କାଟିଣ ଲକ୍ଷ୍ମଣ ଯହୁଁ ଯାଇ
ରାବଣ ଭେରାଇ ଆଣିବାର ଯୋଗାଇ ।
ଏବେ କମ୍ପା ଘରେ ୯୪ ଲୁଟିଣ ପଶିଛନ୍ତି
ଏ କଥାମାନ ସେହି କିଛି ନ ଜାଣନ୍ତି ।
କାଲି ଆସି କହିଲେ ମାଇଲା ସବୁ ବଳ
ମଲା ଲୋକେଦେଖିଆସି କଟକେକଲେଗୋଳ
ଧିକ ହେଉ ଏହାଙ୍କର ମାୟା ବୁଦ୍ଧିମାନ
ପଳାଇ ଯାଇ ଏବେ ପଶିବେ କେଉଁସ୍ଥାନ ।
ଏସନେକ ଭାଳେଣି ଭାଳନ୍ତି ସର୍ବ ଲୋକେ
ଭୟ ପାଇଣ ଯେ ପଳାଉଛନ୍ତି ଥୋକେ ।

ଏକକୁ ଆରେକ ପଛୁର ଧାମନ୍ତ
ହାଟ ବାଟ କଢ ଯେ ବିକଢ ଦେଖନ୍ତ ।
ପିଣ୍ଡାପରେ କେହୁ ଦେଉଳ ପରେ ଚଢ଼ି
ବୃକ୍ଷର ଉପରେ କେ ଦେଖୁଛନ୍ତ ରହି ।
କେ ବୋଲନ୍ତ ଶ୍ରୀରାମ ଗଡରେ ପଶିଛନ୍ତ
ଇନ୍ଦ୍ରଜିତ ରାବଣ ଏକଥା ନ ଜାଣନ୍ତ ।
କେ ବୋଲନ୍ତ ଆଜ ପାଞ୍ଚ ସେନାପତ ମଲେ
କେ ବୋଲନ୍ତ ବାନରେ ଯେହାଟ ଯୁଦ୍ଧକଲେ
କେ ବୋଲନ୍ତ ନଗ୍ରଏ ପୋଡ଼ିବେ ଏହିକ୍ଷଣି
ଲୁଟି ବାହାର କରିବା ଧନ ଦ୍ରବ୍ୟ ପୁଣି ।
ମୁଖରବ ଧ୍ୱନି ଦେଖ ନିଶାଣ ଶବଦ
ଶ୍ରୀରାମ ବନ୍ଧିବାର ଦେଖ ଗୁଣର ଶବଦ ।
ଶୁଣିଣ ହାଲହୋଳ ଯେ ପଡ଼ିଲ କଟକ
ଉଚ୍ଛୁଳ ପଡୁଅଛି କପିଙ୍କର ଡାକ ।
ଶ୍ରୀରାମ ବୋଇଲେ ଦେଖ ଦେଖଣାହାରିକ
ଏମାନେ ବୋଇଲେ ସୀତାଙ୍କୁ ଆଣଯାଇକ ।
ରାବଣର ପାପରେ ଏ ପାଉଛନ୍ତ ଦୁଃଖ
ଅଳପ ଦିନରେ ଏହୁ ପାଇବେ ବହୁ ସୁଖ ।
ରାଜଦାଣ୍ଡରେ ସୈନ୍ୟ ଯାଆନ୍ତ ପଳାଇ
ରାବଣ ନବରରେ ପଶିଲେ ସର୍ବେ ଯାଇ
ରଥୀ ହାତୀ ଅଶ୍ୱ ପଦାତି ସହିତେ
ରାଜାର ନବରରେ ପଶିଲେ ସମସ୍ତେ ।
ରୁଧିରେ ଜର୍ଜର ଦେହ ଖଣ୍ଡ ଖଣ୍ଡ
ସଭିଙ୍କର ଦେହରେ ଯେ ଲାଗିଅଛି କାଣ୍ଡ ।
ସନ୍ୟମାନେ ଯହୁଁ ରାଜା ନବରରେ ପଶି
ରାବଣ ନବରକୁ ଶ୍ରୀରାମ ଚାହିଁଲେକ ହାସି ।
ଅଷ୍ଟରତ୍ନେ ଜଡ଼ିତ ଅଟଇ ଯେ ପୁର
ଦେଖିଣ ଶ୍ରୀରାମ ପ୍ରଶଂସା ଅପାର ।
ସିଂହଦ୍ୱାରରୁ ଶ୍ରୀରାମ ବାହୁଡ଼ିଣ ଆସି
ଧନ୍ୟରେ ରାବଣ ତୋର ନଗ୍ର ଯେ ବିଶେଷି
ସୁଗ୍ରୀ ବିଭୀଷଣ ଅଛନ୍ତ ପଛୁଆଣି
ସନ୍ୟ ଅନ୍ତରରେ ଯେ କେ ପାରିବ ଗଣି ।
ସେନା ସେନାପତ ଯେ ମଲ୍ଲ ମହାମଲ୍ଲ
ଆଡେ଼ାଆଡେ଼ା ବୋଲିଣ ବୋଲନ୍ତ ଚାଲଚାଲ
ଶ୍ରୀରାମ ପ୍ରଶଂସା କରନ୍ତ ଲଙ୍କାଗଡ଼କୁ ଚାହିଁ
ଏତେ ସମ୍ପଦ ତୋରରେ ଯୋଗାଇଲା କାହିଁ

ନଗ୍ର ନରନାରୀମାନେ ସର୍ବେ ଶୁଣିଥାଅ
ସୂର୍ଯ୍ୟ ବଂଶରେ ମୁହିଁ ଦଶରଥଙ୍କ ପୁଅ ।
ପିତାଙ୍କର ଆଜ୍ଞା ପାଳ ବନବାସ କଲି
ଗୋଦାବରୀ କୂଳରେ ମୁହିଁ ରହିଥିଲି ।
ମାୟାରେ ମୃଗେକ ଯେ ଦେଖାଇ ତୁମ୍ଭ ରାଜା
ହରଇ ଆଣିଲଟି ମୋହର ଭାରିଯା ।
ଏକଇ ନାରୀ ବ୍ରତ ମୁହିଁ ଯେ ଅଛି ପାଳ
ଆନ ଯୁବତୀରେ ଶ୍ରଦ୍ଧା ନ ବଳେ ମୋହର
ହନୁକୁ ପଠାଇଲି ସୀତା ଖୋଜିବା ପାଇଁ
ମାରୁଥିଲ ଲଙ୍କରେ ଅଗ୍ନି ଜାଳ ଦେଇ ।
ନକଲା ବୋଲ ବିଭୀଷଣ ତୁଆରିଲେ
ତୁମ୍ଭେମାନେ ଏକଥାକୁ ସାକ୍ଷୀ ଥାଅ ଭଲେ ।
ଅଙ୍ଗଦ କୁମରକୁ ପେଷିଲି ପ୍ରୀତି ଅର୍ଥେ
ମାରୁଥିଲ ତାକୁ ଏ ସହସ୍ର ମାଲ ହସ୍ତେ ।
ଆଉଥରେ ହନୁ ହସ୍ତେ ମାଗି ପଠାଇଲି ।
ସେକଥାକୁ ନ ମାନ ହନୁକୁ ଦେଲ ଗାଳି ।
ହନୁମନ୍ତ ଆଗରେ ନିୟମ ପୁଣି କଲ
ଜିଣିଲେ ମୋତେ ସୀତା ନେବ ସେ ବୋଇଲ
ନ ଜିଣିଲେ ସୀତାକୁ କରିବ ମୁହିଁ ଭୋଗ
ମୁହିଁମଲେ ମୋର ରାଣୀ ହେବ ତାକୁ ଯୋଗ
ଏବେ ଯେ ହୋଇଥାଅ ତୁମ୍ଭେମାନେ ସାକ୍ଷୀ
ଦେଉ ମୋର ଭାରିଯା ଶରଦ ଚନ୍ଦ୍ରମୁଖୀ ।
ସମର ନ କରି ମୁଁ ଯିବି ଏହିକ୍ଷଣି
ନୋହିଲେ ତାର ମୁଣ୍ଡ ପକାଇବି ହାଣି ।
ଏତେବୋଲି ଶ୍ରୀରାମ ବିଜେ କରି ଗଲେ
ସୈନ୍ୟମାନଙ୍କୁ ଚାହିଁଣ ଚାଲ ଚାଲ ବୋଲେ ।
ଗୋଡ଼ାଇ ଦେଖନ୍ତ ସେ ଯେ ରାକ୍ଷସ ରାକ୍ଷସୀ
ସାଧୁ ଶ୍ରୀରାମ ବୋଲିଣ ବହୁତ ପ୍ରଶଂସି ।
ଲଙ୍କାଗଡରୁ ସେ ଯେ ହୋଇଲେ ବାହାର
ଲକ୍ଷ୍ମଣ ଥିଲେ ଯେ ଉତ୍ତର ଗଡ଼ ଦ୍ୱାର ।
ଶ୍ରୀରାମଙ୍କୁ ଦେଖି ମଥାରେ ହସ୍ତ ଦେଲେ
ଅଙ୍ଗଦ କାନ୍ଧରେ ବସି ଆଗ ହୋଇଗଲେ ।
ସନ୍ୟର ସହିତରେ ହେଲେ ଆଗୁଁସାର
ବିଭୀଷଣ ସହିତେ ଜମ୍ବୁବ ସୁଗ୍ରୀବର ।
କାଲର ଉପବାସ ଯେ ଆଜର ସାତଘଡ଼ି
ସୁବଳ ପର୍ବତକୁ ସେ ଗଲେ ଆଗ ବଢ଼ି ।

ଗହ ଗହ ଶବଦ ଶୁଭେ ଚଉପାଶ
ଦମା ଦୁନ୍ଦୁଭି ଯେ ବାଜେ ହଜଘୋଷ ।
ମଣ୍ଡାମାନେ ପଡ଼ିଛନ୍ତି ଆଗରେ ଦେଖିଲେ
ରଣରେ ମଲ୍ଲ କପି ଜଇବେ ସେ ଭଲେ ।
ଅନେକ ସୈନ୍ୟ ଯେ ସମରେ ପଡ଼ିଥିଲେ
ପଥଭଙ୍ଗି ଶ୍ରୀରାମ ସୁବଳଯ୍ୟାକୁ ଗଲେ ।
ସୁବଳଯ୍ୟାରେ ଯାଇଁ ହେଲେ ପରବେଶ
ହନୁମନ୍ତ କନ୍ଧରୁ ଉତୁରି ରଘୁଶିଷ୍ୟ ।
ଅଙ୍ଗଦ କନ୍ଧରୁ ଯେ ଉତୁରିଲେ ଲକ୍ଷ୍ମଣ
ଶ୍ରୀରାମଙ୍କୁ ଗୃହିଁଣ କଲେ ପ୍ରଦକ୍ଷିଣ ।
ନମସ୍କାର କରିଣ ଶିରେ କର ଦେଲେ
ପାଏ ପଡ଼ି ଶୋଇଣ ତଡ଼ିତ ଉଠିଗଲେ ।
ଶ୍ରୀରାମ ଶ୍ରୀଅଙ୍ଗରୁ ଓହ୍ଲାଇଲେ ସଜ
ଏହବିଧିରେ ନିତ୍ୟକର୍ମ ସାରେ ରାମରାଜ ।
ଦେବ ନଦୀରେ ପଶି ସ୍ନାହାନ ସାରନ୍ତି
ଦେବ ପିତୃ ତର୍ପଣ ସନ୍ଧ୍ୟା ସୁମରନ୍ତି ।
ଲକ୍ଷ୍ମଣ ସୁଗ୍ରୀବର ଅଙ୍ଗଦ ସହିତେ
ସେନା ସେନାପତି ଯେ ସୈନ୍ୟ ଅପ୍ରମିତେ ।
ସ୍ନାନ ସାରିଣ ଭୁଞ୍ଜନ୍ତି କନ୍ଦମୂଳ ପୁଣ
ମଣୋହିରେ ବଳଯ୍ୟେ କୌଶଲ୍ୟା ସୁତ ଜାଣ
ସୁପକ୍ୱ ଫଳମୂଳ ଲକ୍ଷ୍ମଣ ପରଷି
ସେନାପତିଙ୍କ ଘେନଣ ଶ୍ରୀରାମ ଭୁଞ୍ଜି ବସି ।
ମଣୋହି ସମ୍ପୂର୍ଣ୍ଣେ ଉଠିଲେ ରାମରାଏ
ଆଞ୍ଚୋବନ ବିଧି ଯେ ଲକ୍ଷ୍ମଣ କରାଏ ।
ଶ୍ରୀମୁଖ ପୋଛିଣ ଯେ ଭୁଞ୍ଜିଲେ କଷାଫଳ
ପଛେ ଭୋଜନ କଲେ ସୁମିତ୍ରାର ବାଳ ।
ଆଞ୍ଚୋବନ ସାରିଣ ଶ୍ରୀରାମ ପାଶେ ଆଏ
ସୁଗ୍ରୀବର ରଜା ଦଶ ନ ଆସି କଯ୍ୟେ ।
ବିଭୀଷଣ ଅଙ୍ଗଦ ଜମ୍ବେବ ନଳ ନୀଳ
ହନୁମନ୍ତ ସୁଷେଣ କୁମୁଦ ପନଶିଳ ।
ସଉଷ ଶତବାଳ ଡ଼ାଳମ୍ବ କଞ୍ଚଣ
ବସନ୍ତ ଚନ୍ଦନ ଯେ ପବନ ରମଣ ।
କାଳଞ୍ଜନ ଗବଏ ଗବାକ୍ଷ ମହେନ୍ଦ୍ର
ସାରାସ ପାରାସ ଯେ ଦୁହନ୍ଦ କୁହନ୍ଦ ।
ଦଶମୁଖ ବଳମୁଖ ପବନ କେଶରୀ
ତାହାର ପିଅର ଯେ ଦର୍ଶନ ଆସି କରି ।

ତୋମାର ପିଅର ଯେ ସଉଷ ସେନାପତି
ଗନ୍ଧମାରଦନ ଯେ ବିବିଧ ପ୍ରଭୃତି ।
ସମ୍ଭବେ ପଟୁଆର ଶ୍ରୀରାମର ସୈନ୍ୟ
ବିସ୍ତର କରୁଛନ୍ତି ଯୁଦ୍ଧର କଥାମାନ ।
ଶ୍ରୀରାମ ବୋଲନ୍ତି ତୁମ୍ଭେ ଶୁଣ ବିଭୀଷଣ
ଅପୂର୍ବ ଦେଖାଗଲା ଆଜର ଯେ ରଣ ।
ଯେଉଁମାନେ ରଣକୁ ଆସିଥିଲେ ସଜେ
ତାଙ୍କ ସଙ୍ଗେ ଯୁଝିଲେ ହାରିବେ ସୁରରାଜେ ।
ନୋହିଲେ କି ରାବଣ ସାଧେ ତିନପୁର
ଦେବରେ ଅଜୟ ଯେ ଅଟନ୍ତି ଅସୁର ।
ଯେବଣ ପାଞ୍ଚ ବୀରେ ପଡ଼ିଲେ ରଣେଆଜ
ଶୁଣିଲେ ଦଶଗ୍ରୀବ ପାଇବଟି ଲାଜ ।
ଆମ୍ଭର ସିବାର ସେ ମଣିବେ କେମନ୍ତ
କାସ କାସ ବସ୍ତୁର କରିବ ଇନ୍ଦ୍ରଜିତ ।
ସୁବର୍ଣ୍ଣମୟେ ଲଙ୍କା ଦେଖିଲୁ ଯେ ଆଜ
ଏତେ ସମ୍ପଦ ଭୋଗକରେ ଲଙ୍କରାଜ ।
କମ୍ପାଇ ବହି ତାକୁ କାଳ ବୁଦ୍ଧି ଦେଲା
ମୋହର ଘରଣୀକି ଏ ଚୋରାଇ ଆଣିଲା ।
ଧର୍ମ ନ ସହିବ ୟାକୁ ମରିବ ନିଅତ
ଏତେ କହି ଖଡ଼୍‌ଗ ଝମକାଏ ରଘୁନାଥ ।
ଏହି ସମୟରେ ତାର ପିତା ଆସି କହି
ତିନ ମେବନ୍ତ କପି ଅଇଲେ ପାର ହୋଇ ।
ସତ୍ତୁରିକୋଟି ବାଲ୍ଲି ହୋଇଲେ ପ୍ରବେଶ
ଏହା ଶୁଣି ରଘୁନାଥ ହେଲେ ହସ ହସ ।
ଆଜ୍ଞାଦେଲେ ରଘୁନାଥ ନଳକୁଇଁ ରହିଁ
ଅଇଲାର ଥାଟ ଉହାଡ଼ ତୁମ୍ଭେ ଯାଇ ।
ହେଉ ଦେବ ବୋଲିଣ ବୋଇଲା ଯେ ନଳ
ସୈନ୍ୟଙ୍କୁ ବୋଇଲା ସେ ଆଗଦଣ୍ଡେ ଚଳ ।
ଗ୍ରହି ପ୍ରହରେ ଆହାର କର ଫଳ ମୂଳ
ଏହା ଶୁଣି ଋଷକପି ଉଠି ଗିରିପର ।
ଯେ ଯାହାର ସୁଖେ ଫଳ ମୂଳ ଖାଇ
ଆଗୁଆଣି ଥାଟରେ ପ୍ରବେଶ ହେଲେଯାଇଁ ।
ସବୁଙ୍କର ଶରୀର ସୁନ୍ଦର ବର୍ଣ୍ଣମୟେ
ଋଷକପି ବୋଲିଣ ଚାରିଣ ନ ଯାଏ ।
ପାଞ୍ଚ ଯୂଣ ଅନ୍ତରେ ଠଣା ସେ ଯେ ଖେଳେ
ରଙ୍ଗ ପାଠ ଟେଭା ପ୍ରାଏ ଦୂରକୁ ଦଶିଲେ ।

ଶୁଣିଣ ପାର୍ବତୀ ଯେ ଈଶ୍ୱରେ ପୁଚ୍ଛାକଲେ
ଶ୍ରୀରାମଙ୍କର ସୈନ୍ୟଭୋଜନ ସୁଷ୍ଠେ କଲେ ।
କପିମାନେ ସମସ୍ତେ କଲେକ ଭୋଜନ
ଏହା ମୋତେ ସମ୍ପ୍ରତି କହ ହେ ତ୍ରିଲୋଚନ
ଈଶ୍ୱର ବୋଇଲେ ଯେ ଶୁଣ ମନଦେଇ
ସକଳ ଋକ୍ଷକପି ରାମ ଆଜ୍ଞାରେ ଥାଇ ।
ବୋଇଲେ ପ୍ରଭଞ୍ଜନ ଗିରିପରେ ଥିବ
ଫଳ ମୂଳମାନ ତୁମ୍ଭେ ସନ୍ତୋଷେ ଭୁଞ୍ଜିବ ।
ଆସିବା ଦିନଠାରୁ ଯିବା ପରିଯନ୍ତେ
ଫଳ ମୂଳ ଆହାର କରୁଥିବ ସୁଖେ ।
ମରିବାକୁ ଭୟ ଯେ ନ କରିବ କେହି
ମଲେ ଲୋକେ ରାବକୁ ଆସୁଥିବେ ଜିଇଁ ।
ଜାମ୍ବବକୁ ବୋଇଲେ ପାଞ୍ଜିରେ ଲେଖିଥିବ
ଗୋଟିଏ ଜଣା ନୋହିବେ ସଙ୍କେତ ରଖିବ ।
ଗଲାବେଳେ ମୋତେ କହୁଥିବେ ପୁଣ
କାହାର ପଞ୍ଝାରୁ ଜଣା ନୋହିବେ ଯେ ପୁଣ
ସୁଖମନରେ ସେମାନେ ସର୍ବେ ଆସିଛନ୍ତି
ମନର ସୁଖେ ଯିବେ ଯେଝା ଦେଶନଙ୍କ ।
ଏଥୁଅନନ୍ତରେ ଯେ ଦିନକର ଅନ୍ତେ
ସନ୍ଧ୍ୟା ସୁମରିଲେ ତହୁଁ ରଘୁକୁଳ ନାଥେ ।
କାଲିର ଜନଦ୍ୱାରେ ଅଳସ ରଘୁସାଇଁ
କନକ ମୃଗ ଛାଲରେ ପହୁଡ଼ିଲେ ଯାଇ ।
ଯେଯାହାର ବର୍ଣ୍ଣାରେ ରହିଲେ ସୈନ୍ୟମାନେ
ବାଜଣା ବଜାଇ ବୁଲେ ବାନର ନନ୍ଦନେ ।
ଏଥୁଅନ୍ତେ ଗିରିଜା ଶୁଣ ମନ ଦେଇ
ଯୋଗିନୀଗଣ ଭୋଜନ ବାସେଳ ଚଳଇ ।
କପିବଳ ଗୁଡଣ ସେ ଅସୁର ଭୁଞ୍ଜିଲେ
ରକ୍ତମାଂସ ଭକ୍ଷିଣ ମନରେ ତୋଷ ହେଲେ ।
ଯେତେ କପିପଲ ଯେ ବିଖଣ୍ଡ ହୋଇଥିଲେ
ସର୍ବଙ୍କି ଯୋଡ଼ିଦେଇ ରଣରୁ ଅଇଲେ ।
ସୁବଳ ଗିରିରେ ପ୍ରବେଶ ହେଲେ ଯୋଗିନୀ
ଶୁକ ମନ୍ତ୍ରୀ ମିଳିଲେ ଆସି ରଣଭୂମି ।
ଅମୃତ ସିଞ୍ଚିଣ କପିଙ୍କି ଜୀଆଇ ଦେଲେ
ଉଠିଣ କପିମାନେ ସୁବଳସ୍ଥା ଗଲେ ।
ନିଶ୍ଚିନ୍ତରେ ଭୋଜନ କଲେ ଫଳ ମୂଳ
ମନରେ ବିଚାରିଲେ ଏ ରାମ ଆଦିମୂଳ ।

ନୋହିଲେ କି ମଲାର ଆସନ୍ତେ ପ୍ରାଣପାଇ
ଏତେବୋଲି ନିଶ୍ଚିନ୍ତେ ନିଦ୍ରା ସର୍ବେ ଯାଇ
ଏଥୁଅନନ୍ତରେ ଶୁଣ ଗୋ ଗିରିଜା
ରାବଣ ଅଟଇ ଯେ ଲଙ୍କାଗଡ଼ ରାଜା ।
ତାର ସେନାପତିଙ୍କର ଶୁଣେ ସେ ଗର୍ଜ୍ଜଣି
ସିଂହଦ୍ୱାର ପରିଯନ୍ତେ ଅଇଲେ ରଘୁମଣି ।
ସୁଗ୍ରୀବ ବିଭୀଷଣ ସମସ୍ତ ସାହା ଘେନ
କଟକରେ ପଶିଣ ମାଇଲେ ସଇନ ।
ଶ୍ରୀରାମର ସାନଭାଇ ଅଟଇ ଲକ୍ଷ୍ମଣ
ପଶ୍ଚିମ ଦ୍ୱାରବାଟେ କଲା ସେ ଗମନ ।
ମଧୁବନରେ ପଶି ଅଶୋକ ବନେ ଗଲା
ଅନେକ ରାକ୍ଷସଙ୍କୁ ପ୍ରାଣରେ ମାଇଲା ।
ଦୁହେଁ ସଙ୍ଗହୋଇଣ ଉତ୍ତରଦ୍ୱାରେ ଗଲେ
ସୁବଳସ୍ଥା ଗିରିରେ ପ୍ରବେଶ ହୋଇଲେ ।
ଅନ୍ତଃପୁରରେ ରାବଣ ପହୁଡ଼ ଯେ ଥିଲା
ଡ଼ଗର ମୁଖୁ ଶୁଣି ନଅବକାଶ ହେଲା ।
ନରାନ୍ତକ ଦେବାନ୍ତକ ଦର୍ଶନ ଆସି କଲେ
କୁମ୍ଭ ନିକୁମ୍ଭ ଯେ ତ୍ରିଶିର ଅଇଲେ ।
ପ୍ରଗାରବାହୁ ଯୋଧନ ଯେ ମହୋଦର
ସମସ୍ତେ କାଣ୍ଡସରେ ଉକତେ ଜର୍ଜର ।
ରଥ ଗଜ ଅଶ୍ୱ ଯେ ରାଉତ ମାହୁନ୍ତ
ମିଶାମିଶି ଦେଖିଣ ବିସ୍ମୟରେ ଲଙ୍କନାଥ ।
କେମନ୍ତ ପ୍ରକାରେ ଏହୁ କହ ମୋର ଆଗ
ତ୍ରିଶିର ବୋଇଲା ରାମ କରିଛି ବଡ଼ ରାଗ ।
ଧୂମାକ୍ଷ ଅକମ୍ପନ ବଜ୍ରଦୃଷ୍ଟ ମଲେ
ରଥ ଗଜ ଅଶ୍ୱ ଯେ ଅନେକ କ୍ଷୟଗଲେ ।
ଆପଣେ ଶ୍ରୀରାମ ଲକ୍ଷ୍ମଣ ଭାଇବେନି
ବିଷମ ଗୋଳ କରି ମାଇଲେ ସଇନ ।
ଏକେ ଏକେ ଶର ଯେ ଅଗ୍ନିର ସମାନ
ଘୋରଯୁଦ୍ଧ ଆଜ ହେଲା ଦଶାନନ ।
ବିଭୀଷଣଙ୍କୁ ଆମ୍ଭେ ଯେ ବେଢ଼ି ମାରୁଥିଲୁଁ
ରାମ ଲକ୍ଷ୍ମଣଙ୍କୁ ଦେଖି ପଳାଇ ଅଇଲୁଁ ।
ପିଠି ପାଇ ଯତ୍ତ ଆସେ ପୁଣ ଖେଦି
ସନ୍ୟ ପଳାଇଲେ ଯେ ନିସ୍ତୁରେ ପୁଣ ବୁଢ଼ି
ଭାଙ୍ଗିବାର ଥାଟରେ ସିଂହ ଯେ ଶୃଗାଳ
ତେଣୁ ପଳାଇଲୁ ଯେ ଶୁଣ ଲଙ୍କପାଳ ।

ଶ୍ରୀରାମର ସୈନ୍ୟ ଯେ ସନ୍ନତେ ଗୋଡାଇଲେ
ହନୁମନ୍ତ କହନ୍ତେ ଶ୍ରୀରାମ ଲଙ୍କାରେ ପଶିଲେ ।
ତୋହର ସିଂହଦ୍ୱାରୁ ଗଲେ ସେ ବାହୁଡ଼ି
ଶୁଣି ରାବଣେଶ୍ୱର ହାଣଏ ଦଶ ଦାଢ଼ି ।
ନୟନ ବୁଲାଇ ସେ ବୋଲେ କୋପଭରେ
ଯତନେ ଯତି ଆସି ପଶେ ଏ ଗଡରେ ।
ବ୍ୟାଘ୍ରର ଘରକୁ ଆସଇ ଯେହ୍ନେ ଛେଳ
ମାରି ନ ପାରିଲରେ ବୋଲଅ ମହାବଳ ।
ବେଢ଼ି ନ ମାଇଲରେ ଅଇଲ ପଳାଇ
ଷେତ୍ରୀର ପୁଅ ହୋଇରେ କହୁଛ ବଳାଇ
ତୁମ୍ଭଙ୍କୁ ଆଶା କରିରେ ହେଲ ପୁଣ କସ
କୁମ୍ଭକର୍ଣ୍ଣ ଭାଇକି ମୋର ତୋଳ ଘେନଆସ ।
ଆନଲୋକ ହସ୍ତେ ଶତ୍ରୁନୋହେ ମୋ ନିବାରି
ପାଇଲ ଅପଚୟେ ହେଳା ଯୁଦ୍ଧ କରି ।
ଯେଉଁ ଯେଉଁମାନେରେ ପଡ଼ିଲେ ପାଞ୍ଚ ସେନ
ତୁମ୍ଭେ ରହି ଯୁଝିଲେ ନ ମରନ୍ତ ଜନା ।
ଛାଡ଼ି ପଳାଇଲ ରେ ସୈନ୍ୟ ମୋର ମଲେ
ତୁମ୍ଭଙ୍କୁ ଆଶ୍ରେକରିରେ ଏମନ୍ତପୁଣି ହେଲେ ।
ଯୁପାକ୍ଷ ମହୋଦର ଏ ଦୁହିଁଙ୍କି ଚାହିଁ
ବୋଲେ କୁମ୍ଭକର୍ଣ୍ଣକୁ ତୋଳ ଆଣ ଯାଇଁ ।
ଏସନେକ ସମୟରେ ଇନ୍ଦ୍ରଜିତ ବୀର
ଦର୍ଶନ କରିଣ ଯେ ଯୋଡ଼େ ବେନିକର ।
ନିର୍ଜନ ବନରେ ସେ ନିଶ୍ଚିନ୍ତରେ ଥିଲା
ଶ୍ରୀରାମ ଗଡେ ପଶିବାର ବାରତା ପାଇଲା ।
ଅଶ୍ୱଙ୍କୁ ଆରୋହି ସେ ତରି କସାକସି
କରେ ଧନୁ ଧରିଣ ସେ ସଂଗ୍ରାମକୁ ଆସି ।
ଉତ୍ତର ଗଡ଼ ଦ୍ୱାର ପରିଯନ୍ତେ ଗଲା
କାହାକୁ ନ ଦେଖି ସେ ବାହୁଡ଼ି ଅଇଲା ।
ଭସ୍ମକରିଣ ସେହୁ ଯେ ନ ଗଲା କାହାରିକୁ
କାହାର ଭସ୍ମ ଅଛି ନାହିଁ ମରଣକୁ ।
ସେହି ସମୟେ ଦର୍ଶନ ପିତାକୁ ଆସିକଲା
ପୁତ୍ରର ମୁଖ ଚାହିଁ ରାବଣ ବୋଇଲା ।
ଗଡରେ ପଶିଲା ଯତି ଘେନିଣ କପି ଦଳ
ତୁମ୍ଭେମାନେ ପୁଣରେ କେଉଁଠାରେ ଥିଲ ।
ଏମାନେ ପଳାଇଲେ ପାଞ୍ଚ ସେନା ନେଇ
ସହର ଦ୍ୱାରୁ ଯାଏ ଜଟିଆ ଆସଇ ।

ସାମାନ୍ୟ ଭରସା କରେଅଗ୍ନିରେ ଝାସଦେଲ
ମାଇଲେ ନ ମରନ୍ତି ସେ ନ ପଡନ୍ତି ଧରି ।
ସେହି ହେଲେ ଶାଗୁ'ଣା ଲଙ୍କା ଲୋକେ ମଡ଼ା
ନିର୍ଦ୍ଧ'ୟୁ ମାରୁଣି ସେ ମାରନ୍ତି କପି ମୋଢ଼ା ।
ନିର୍ଦ୍ଧ'ୟୁ ମାରୁନ୍ତି ଯେ ରାମ ଲକ୍ଷ୍ମଣରି
ଯେ ମୁଖେ ପଡଇ ତାଙ୍କର ପୁରେ କାଳ ।
ଇନ୍ଦ୍ରଜିତ ବୋଲେ ମୁଁ ମଢରେ ଶୋଇଥିଲି
ରାମ ଗଡ଼େ ପଶିବାର ବାର୍ତ୍ତା ମୁଁ ପାଇଲି ।
ଗଡଦ୍ୱାର ପରିଯନ୍ତେ ଗଲି କେହି ନାହିଁ
ଭେଟିଥିଲେ କି ଜଟିଆ ଯାଆନ୍ତା ପ୍ରାଣପାଇ ।
ରାବଣ ବୋଇଲା ମୁଁରେ ଜାଣଇ ସବୁ ବାବୁ
ଉପ୍ରୋଧ ଯୁଦ୍ଧମାନ କଲରେ ତୁମ୍ଭେ ସବୁ ।
ବିଭୀଷଣଠାକୁରେ ଏଠାରୁ ଲୋକେ ଯାଇ
ଛେଦ ଭେଦ କଥା ସବୁ ତାରି ଆଗେ କହି
ଦ୍ୱାରି ଦ୍ୱାର ଛାଡ଼ିଲା ସେ ଦୋରେହା ଅଟଇ
ମୋର ଭାତ ଖାଇ ବିଭୀଷଣକୁ ଖଟଇ ।
ଚନ୍ଦମୁଣ୍ଡିକି ଚାହିଁଣ ବୋଲେ ଲଙ୍କପତି
ଉତ୍ତର ଦ୍ୱାର ଦ୍ୱାରିକି ଆଣରେ ଭଡ଼ତି ।
ଆହୁରି କଥାଏ ଅଛିରେ ତାରି ତହିଁ
ଏହିକ୍ଷଣି ତାକୁ ରେ ଘେନଆସ ଯାଇ ।
ତତକ୍ଷଣେ ଚନ୍ଦମୁଣ୍ଡି ଧାଇଁକାରେ ଗଲା
ଉତ୍ତର ଗଡ଼ ଦ୍ୱାରିକି ଘେନିଣ ଅଇଲା ।
ରାଜାର ଛାମୁରେ ସେ କଲାକି ଦର୍ଶନ
ଦ୍ୱାରପାଳକୁ ଚାହିଁଣ ବୋଲେ ଦଶାନନ ।
କରେ କରେ ଧୂମକେଶା ଦ୍ୱାର କମ୍ପା ଛାଡ଼ୁ
ବିଭୀଷଣକୁ ରାଜା କରିରେ ମନେ ଲୋଡ଼ୁ ।
ଶ୍ରୀରାମଙ୍କୁ କମ୍ପାରେ ଗଡ଼ରେ ପୁରାଇଲୁ
ଦୂରରୁ ଦେଖି କମ୍ପାରେ କବାଟ ନ ପାଡ଼ିଲୁ ।
ଦ୍ୱାରପାଳ ବୋଇଲା ଶୁଣିମା ଗୋସାଇଁ
ସେନାପତିମାନେତୋର ଆସୁଥିଲେ ଯେପଳାଇ
ସୈନ୍ୟ ସନ୍ନତରେ ଯେ ହାତୀ ଘୋଡ଼ା ରଥ
ତାହାଙ୍କର ସଙ୍ଗତେ ପଶିଲେ ରଘୁନାଥ ।
କବାଟ ପାଡ଼ିଲେ ତୋର ସୈନ୍ୟ ନାଶଯାନ୍ତେ
ଶ୍ରୀରାମ ବାଣୁ ଯେ ଗୋଟିଏ ନବର୍ତ୍ତନ୍ତେ ।
ସେକଥାକୁ କୋପ ପୁଣ କରୁ ଯେ ଗୋସାଇଁ
ଏ ବଚନ ଶୁଣିଣ ବୋଲେ ଲଙ୍କସାଇଁ ।

କବାଟ ପଡିଥାନ୍ତା ସୈନ୍ୟ ନାଶ ଯାନ୍ତା
ଶତ୍ରୁର ଲୋକ ମୋର ଗଡରେ ପଶନ୍ତା ।
ନଗ୍ରେ ନ ପଶନ୍ତେ ନ ପାଅନ୍ତେ ଭେଦ ଛେଦ
ଆଜୁଁ ଦ୍ୱାରପାଳ ଯେ ହୋଇବ ବୀରଭଦ୍ର ।
ଏ ଧୂମକେଶାର ଶିର ବେଗ କରି ଛେଦ
ଏହାର ହେତୁ ଶତ୍ରୁ ପାଏ ବହୁ ଛିଦ୍ର ।
ଏହାର ହେତୁରୁ ସେ ପଶିଲେ ଧସାଇ
ଧର୍ମରେ ମୋ ନଗ୍ରରେ ପଶିଲେକ ଯାଇ ।
ଏ ଦୋରଜା ମାୟା କଲା ଧର୍ମରେ ମୁଁ ବଞ୍ଚିଲି
ନିଅବକାଶରେ ମୁଁ ନିଶ୍ଚିନ୍ତେ ଶୋଇଥିଲି ।
ଏବେ ଏହିକ୍ଷଣି ଯେ କାଟ ଏହାର ମୁଣ୍ଡ
ସେହିଗଡ଼ ଦ୍ୱାରରେ ଶୂଳଦଅ ମୁଣ୍ଡପିଣ୍ଡ ।
ଶୁଣିଣ ଚଣ୍ଡ ମୁଣ୍ଡି ଘେନିଣ ତାକୁ ଯାନ୍ତେ
ଧୂମକେଶା ବୋଲଇ ଶୁଣ ହେ ଲଙ୍କନାଥେ
ମୋହର ଶରୀରେ ଯେ ମାତ୍ରା କେବେଁ ନାହିଁ
କହିଥିଲେ ହାର ଯେ ପାଡ଼ିଥାନ୍ତି ମୁହିଁ ।
ବିନା ଦୋଷରେ ମୋତେ ନାଶୁଅଛ ପୁଣ
ଶ୍ରୀରାମର ବାଣେ ତୋର ବଂଶ ନାଶ ଜାଣ ।
ରଜା ହୋଇତୋର ଯେବେଦସ୍ୟୁଯେ ନୋହିଲ
ଆଜୁଁ ତୋର ଜନେ ତୁହି ମରିବୁ ବୋଇଲା
ସମସ୍ତେ ଆଗଯିବେ ତୁହି ଯିବୁ ପଛେ
ପୁତ୍ରବଧୂ ବନ୍ଧୁବର୍ଗ ନରହିବେ କଦାଚିତେ ।
ଏତେ କହି ଧୂମାକେଶା ବେଗେ ଚଳିଗଲା
ଉତ୍ତର ଦ୍ୱାରେ ଯାଇଁ ପ୍ରବେଶ ହୋଇଲା ।
ଚଣ୍ଡ ମୁଣ୍ଡି ତାହାର ସଙ୍ଗତରେ ଗଲା
ଧୂମକେଶା ମୁଣ୍ଡ କାଟି ଶୂଳ ତାକୁ ଦେଲା
ଏଥୁ ଅନନ୍ତରେ ଯେ ବେଳ ଶେଷ ହୋଏ
ସନ୍ଧ୍ୟା ସୁମରିବାକୁ ଉଠିଲେ ଲଙ୍କରାଏ ।
ଶୁକ ଶାରଣକୁ ଆଜ୍ଞାଦେଲା ସେହୁ ପୁଣ
ଲଙ୍କା କଟକରେ ମୋର ଦିଅ ଘୋଷଣ ।
ବିଭୀଷଣ ବନ୍ଧୁବର୍ଗ ରହିଛନ୍ତି ଯେତେ
ଗୋଟିଏ ନ ରହିବେ ଲଙ୍କାର ସୀମାନ୍ତେ
ଇନ୍ଦ୍ରଜିତ ବୋଲଇ ନୁହଇ ଏହି ଭଲ
ବିଭୀଷଣ ବନ୍ଧୁବର୍ଗ କହିଲେକ ଯାକୁ ମାର
ଯେ ତୋର ବନ୍ଧୁ ଯେ ବିଭୀଷଣର ଇଷ୍ଟ
ତାହାଙ୍କୁ କମ୍ପା ରାସ୍ତେ ଏମନ୍ତେ କରୁ ଚେଷ୍ଟ
ଏମନ୍ତେ ଆଜ୍ଞା ଦେଇଥିବୁ ଲଙ୍କପତି
ଗଡ଼ରୁ ବାହାର ହୋଇ ନ ଯିବେ କେହୁ ରାତି
ଦିବସେ ଯୁଝିବାକୁ ଲୋକମାତ୍ର ଯିବେ
ଦ୍ୱାରପାଳମାନେ ତାଙ୍କୁ ଚିହ୍ନିଣ ଛାଡ଼ିଦେବେ
ପୁତ୍ର ବୋଲ ରାସୁ ଯେ ସଜମତ କଲା
ସନ୍ଧ୍ୟା ସୁମରିବାକୁ ଯେ ଭିତର ପୁରେଗଲା ।
ଯେ ଯାହାର ପୁରକୁ ଗଲେ ପାତ୍ର ମନ୍ତ୍ରୀ
ସୈନ୍ୟ ସନ୍ନିତରେ ଯେ ପୁତ୍ର ନାତି ଯାନ୍ତି ।
ମାଜଣା ମଣୋହି ଯେ ଭିତରେ ରାସ୍ତେ ସାରି
ପଲଙ୍କେ ଖଟଇ ଯେ ରାଣୀ ମନ୍ଦୋଦରୀ ।
ନିଦ୍ରା ନ ମାଡଇ ଯେ ପଲୁରେ ପୁଣ ରାଣୀ
ତୁମ୍ଭେ କମ୍ପା କସ୍ତୁଯେ ହେଲ ଲଙ୍କମଣି ।
ରାବଣ ବୋଇଲା ମୁଁ ଯାହା ଅରଜିଲି
ଦୁଇପାଳ ଅରଜିଲି ପାଲେକ ଭୋଗକଲି ।
ସୀତାଙ୍କୁ ଆଣିଲି ମୁଁ ନୋହିଲା ପରାପତ
ଦ୍ୱନ୍ଦ୍ୱ ଅରଜିଲି ଯେ ହୋଇଲା ଉଲକୃତ୍ୟ ।
ମାଙ୍କଡ଼ ଭାଲୁ ଘେନିଣ ଦୁଇ ଜଟାଧାରୀ
କଳ୍ପ ବାନ୍ଧିଣ ସେ ଯେ ହେଲେ ସିନ୍ଧୁପାରି ।
ପୂର୍ବର ଯୁଦ୍ଧମାନ ତୁମ୍ଭେ ଜାଣ କିନା
ଆଜ ଏବେ ମୋର ପଡ଼ିଲେ ପାଞ୍ଚ ସେନା ।
ଅକମ୍ପନ ବଜ୍ରଦଂଷ୍ଟ୍ର ଆବର ଧୂମ୍ରାକ୍ଷ
ସେନାପତିମାନଙ୍କରେ ଅଟନ୍ତି ଏ ମୋକ୍ଷ ।
ତାହାଙ୍କୁ ମାରି ଯତି ସୈନ୍ୟଙ୍କୁ ଗୋଡ଼ାଇଲା
ଗଡ଼ ଭିତରେ ପଶିଣ ସୈନ୍ୟଙ୍କୁ ବିନାଶିଲା ।
ତେଣୁ ସେ ଖେଦ ଯେ ପାଏ ମୋର ମନେ
ଚିନ୍ତାଭରେ ନିଦ୍ରା ଯେ ନମାଡେ ନୟନେ ।
ଶୁଣି କର ଯୋଡ଼ିଣ ବୋଲେ ମନ୍ଦୋଦରୀ
ବାହୁଡାଇ ଦେବା ଭଲ ଜନକ କୁମାରୀ ।
ଯତି ବାପୁଡ଼ା ତା ସଙ୍ଗାକ ଘେନ ଯାଉ
ବଳଭିନ କନ୍ଦରେ ସେ ସୁଖେ ବନ ନେଉ ।
ତୁମ୍ଭେ ମହାରାଜା ଆଣିଣ ଶ୍ରଦ୍ଧା କରି
କେବଳ ସୁବର୍ଣ୍ଣ ଯେ ନାହାନ୍ତି ଭୂଷ ପୁରୀ ।
ନା ମୁଚ୍ଛିଣ ଯତି ଯେ ଆସିଣ ଯୁଦ୍ଧ କଲା
ଲୋକରେ ଅପକୀର୍ତ୍ତି ବହୁତ ଶୁଭିଲା ।
ଦେବା ଭଲ ବାହୁଡ଼ାଇ ଯାଉ ଜଟାଧାରୀ
ବନସ୍ତେ ଏକା ଦେଖି ଆଣିବା ତାର ନାରୀ ।

ଏବେ ଋକ୍ଷ ମର୍କଟ ଯେ ଯାହାରେ ଯାନ୍ତି
ସୁଗ୍ରୀ ବିଭୀଷଣ କେହି ଗୋଟିଏ ନ ଥାନ୍ତି ।
ପୁରକୁ ବରଗିଣ ରହିଲେ ଆଣିବା
ଏ କାଳରେ ମୋହର କଟକ ରୋକିବା ।
ରାବଣ ବୋଲେ ସଖିରେ ହେଲୁ କି ତୁ ବାଇ
ପାଇଲା ପଦାର୍ଥ କେ ଦେଉଛୁ ବାହୁଡ଼ାଇ ।
ସେ ଋକ୍ଷ କପିଙ୍କି ଯେ ନ କରେ ମୁଁ ଭୟ
ନ ଜାଣୁକି ବାନା ମୋର ସଂଗ୍ରାମେ ଅଜୟ ।
ଯେତେବେଳେ ମନ କରିବି ମାରିବ ମାଳିବ
ଶ୍ରୀରାମ ଲକ୍ଷ୍ମଣ ଋକ୍ଷ କପିଙ୍କି ସଂହାରିବ ।
ମାରିଲା ଇନ୍ଦ୍ରଜିତ ନାଗ ଫାଶ ବାଣ
ଧର୍ମରେ ଦୁଇ ଯତି ପାଇଲେ ପୁଣ ପ୍ରାଣ ।
କାଲଠାରୁ କୁମ୍ଭକର୍ଣ୍ଣକୁ ମୁଁ ତୋଳିବ
ନିମିଷକେ ରାମ ଲକ୍ଷ୍ମଣଙ୍କୁ ସଂହାରିବ ।
ସୁଗ୍ରୀବ ଅଙ୍ଗଦ ହନୁମନ୍ତ ନାଶଯିବେ
ବିଭୀଷଣ ପାମର କି ଜୀବନ ପାଇବେ ।
ମୋହର ମହିମା କି ନ ଜାଣରେ ସ୍ୱସ୍ତି
ଶତ୍ରୁକୁ ମାରିବି ମୁଁ ବଇଦେହି ପାଇଁ ।
କୁମ୍ଭକର୍ଣ୍ଣ ଯେବେ ଅଖଣ୍ଡେ ହେବ ହତ
ଇନ୍ଦ୍ରଜିତ ତିନଥର ଯୁଝିବ ନିଶ୍ଚିତ ।
ଇନ୍ଦ୍ରଜିତ ନ ପାରିଲେ ବୀରବାହୁ ଥରେ
ସ୍ଥୂଳଜଙ୍ଘ ପୁତ୍ର ମୋ ଯୁଝିବ ଏକାବେଳେ ।
ଏତେ ଲୋକ ଯେବେ ଯୁଦ୍ଧରେ ନ ପାରିବେ
ସପ୍ତଦିନ ଯାଏ ଯୁଦ୍ଧ କରିବି ମୁଁ ତେବେ ।
ମୁହିଁ ନ ପାରିଲେ ତ ସ୍ୱର୍ଗପୁର ଯିବି
ପଶ୍ଚିମ ଦ୍ୱାରେ ନାରାୟଣ ଦ୍ୱାରୀ ମୁଁ ହୋଇବି
ସୀତାଙ୍କୁ ବାହୁଡ଼ାଇ ଦେବା ଯେବେ ଶ୍ରୀରାମ
ଆଜହୁଁ ଗର୍ଜିବ ନା ମୋର ନିଜ ଗ୍ରାମ ।
ଦେବତାମାନେ କି ବୋଇବେ ମୋତେ ବଶ
ରାଜାମାନେ ଶୁଣିଲେ କରିବେ ଉପହାସ ।
ପୁଷ୍ପକ ଯାନକୁ ଯେ କୁବେର ଆସି ନେବ
ଯେ ଯାହା ଦେଇଛୁ ସେ ତାକୁ ଘେନିଯିବ ।
ଅପ୍ସରୀ କିନ୍ନରୀ ବିଦ୍ୟାଧରୀମାନେ ଯିବେ
ଭଲ ଭଲ ପଦାର୍ଥ ଲଙ୍କାରେ ନ ରଖିବେ ।
କନକ ଦଣ୍ଡ ଆସିଣ ବରୁଣ ଘେନି ଯିବ
ଚନ୍ଦ୍ର ଜମ୍ବା ମୋତେ ଆଉ ରାନ୍ଧି ପରଷିବ ।
ଅଗ୍ନି କର୍ମା ମୋର ଯେ ଧୋଇବଟି ବସ୍ତ୍ର
ଦେବତାମାନେ କେବେ ଯେ ଯାହାର ଅସ୍ତ୍ର ।
ଋକ୍ଷ ମର୍କଟ ପୁରକୁ କେଉଁ ଗୁଣେ ବାଟ
ସୀତାଙ୍କୁ ଦେଲେ ମୋର ଗର୍ଜି ଯିବ ଆଣ୍ଠ ।
ଶୁଣିଣ ମନ୍ଦୋଦରୀ ବୋଲଇ ବଚନ
ଏତେ ରାଜା ହୋଇ ତୁମ୍ଭେ ହୋଇଲ ଅଜ୍ଞାନ
ଦେଖିଛ ଜନକ ଘରେ ଶିବଧନୁ ଭାଙ୍ଗି
ଲକ୍ଷେ ରାଜାଙ୍କର ବଳ ରାମଚନ୍ଦ୍ର ଗଞ୍ଜି ।
ବିବାହ ହୋଇଣ ଯେ ଆଣଇ ମହାସତୀ
ବାଟରେ ପର୍ଶୁରାମ ଦର୍ପ କଲେ ଶାନ୍ତି ।
ପିତାଙ୍କର ସତ୍ୟ ପାଳି ବନକୁ ଅଇଲେ
ଚଉଦ ବରଷ ସେ ବନରେ ବିହରିଲେ ।
ଦୁଇଭାଇ ଥିଲେ ଯେ ପଞ୍ଚବଟୀ ବନ
ସେଠାରେ ଯୁଦ୍ଧ କରି ନ ମାରିଲ ପୁଣ ।
ସୀତାକି ଏକା ଦେଖିଣ ହରିଆଣିଲ
କେଉଁ ପାରିବାରୁ ପଣେ ଏକଥା ଯେ କଲ ।
ବଳୀ ଷଡ୍ଦ୍ୱୀପୁ ଅଟଇ ଜମ୍ବୁଦ୍ୱୀପେ ସାର
ତାକୁ ମାରି ଭରସା ପାଇଛି ରଘୁବୀର ।
ତାଙ୍କର ସୈନ୍ୟ ଘେନିଣ ସିନ୍ଧୁରେ ବନ୍ଧବାନ୍ଧି
ତୋହର ଏବେ ସମ୍ପଦ ସାରିବ ଅବଧି ।
ଶୁଣିକରି ରାବଣ ଯେ ମନ୍ଦୋଦରୀ ବାଣୀ
ହସିଣ ବୋଇଲା ଆଗୋ ଶୁଣ ସଙ୍ଗାତୁଣୀ ।
ଦେବତାମାନେ ଯେ ବାଳକ ନ ଖଟନ୍ତି
ପର୍ଶୁରାମଙ୍କୁ ଦେବତା ମାନ୍ୟ ନ କରନ୍ତି ।
ଜମ୍ବୁଦ୍ୱୀପ ମଧ୍ୟରେ ଯେତେ ରାଜା ପୁଣ
ଦେବ ଲୋକଙ୍କୁ ସେମାନଙ୍କର ଡର ଜାଣ ।
ସେ ସକାଶୁଁ ରାମ ଯେ ତାହାଙ୍କୁ ଜିଣିଲା
କାଳଯୁଗକୁ କଥା ତାଙ୍କର ନ ରହିଲା ।
ମୁହିଁ ଦେବତାମାନଙ୍କୁ ସାଧି କଲି ପୁଣ
ତିନପୁର ସାଧି କଲି ଏ ଭୁଜ ବଳେଣ ।
ଏଥି ସକାଶୁ ଲଜ୍ଜା ଅଟଇ ମୋତେ ବଡ଼
ସୀତାଙ୍କୁ ଦେଲେ ମୋର ଘାଙ୍ଗେ ପଣ ବଡ଼ ।
ପ୍ରାଣ ଗଲେ ଯାଉ ନ ଦେବି ପୁଣ ସୀତା
କାଳ କାଳକୁ ମୋହର ରହିଥାଉ କଥା ।
ପଛକେ ପୁରାଣରେ ମୋ କଥା ଥିବ ଲଗ୍ନ
ରାବଣେଶ୍ୱର ଥିଲା ଯେ କାହାକୁ ଲଙ୍କାନାଥ ।

ଶୁଣିଣ ମନ୍ଦୋଦରୀ ସନ୍ତୋଷ ହୋଇଲା
ଚୋର ବନ ଗଲେ କଥା ଜାଣିବା ବୋଇଲା
ସଂଗ୍ରାମର କାଳେ ଜାଣିବା କଏ ବଡ଼
ଶ୍ରୀରାମର ଏଠାରେ ନାହିଁ ତ ଘର ଦ୍ୱାର ।
ପଦାରେ ପଡ଼ି ସେ ବାନ୍ଧିଅଛୁ ଗଡ଼
ମାଙ୍କଡ଼ ଜୀବମାନେ ସେ ଭରସା ତାହାର ।
ଏତେ କହି ମନ୍ଦୋଦରୀ ହୋଇଲାକ ତୁନ
ପୁଣ ସେ ମଞ୍ଚାଳଇ ସ୍ୱାମୀର ପାଦବେନ ।
ନଦେ ଅଚେତନ ଯେ ହେଲେ ଲଙ୍କପତି
ଶୁଣିଲଟିକ ହେମବନ୍ତର ଦୁହିତା ।
ପାର୍ବତୀ ବୋଇଲେ ଏବେ ଶୁଣ ହେ ଈଶାନ
ଗରୁଡ଼କୁ ଆଣିବାକୁ ଗଲେ ହନୁମାନ ।
ସଙ୍ଗରେ ଅଗ୍ନିଶର ଘେନି ଚଳଗଲା
ରମ୍ୟକ ଦ୍ୱୀପରେ ଯାଇଁ ପ୍ରବେଶ ହୋଇଲା
ଶ୍ରୀରାମ ନାଗଫାଶ ବନ୍ଧନ ହେବାର
ଶୁଣିକରି ଗରୁଡ଼ ପେଶେ ତାର ଶର ।
ଗରୁଡ଼ାଶର ଦେଖି ନାଗଫାଶ ପଳାଇଲା
ସମୁଦ୍ରେ ପଶି ପାତାଳ ପୁରକୁ ଚଳଗଲା ।
ଗରୁଡ଼ାଶର ତାର ସଙ୍ଗରେ ଗୋଡ଼ାଏ
କେତେ ଦୂର ଗଲା ସେ ରହିଲା କେଉଁଠାଏ
ଗରୁଡ଼ ମାରୁତି ସଙ୍ଗ ହୋଇଣ ଆଇଲେ
ପାଞ୍ଚଲକ୍ଷ ଯୋଜନ କ୍ଷଣକେ ହରମିଲେ ।
ଶ୍ରୀରାମ ପାଦପଦ୍ମେ କଲେ ଦଣ୍ଡଶନ
ସ୍ୱଜମାନେ ଗଲେ ସେ ଯେ ଜନକା ନନ୍ଦନ
ସେ ଶର କିସ କଲା କହ ଦେବ ମୋତେ
ଶୁଣିଣ ତ୍ରିଲୋଚନ କହନ୍ତି ତୋଷ ଚିତ୍ତେ ।
ଗରୁଡ଼ ମହାତ୍ମା ଯେ ଶରକୁ ପେଷି ଦେଲେ
ଉତ୍ତର ହେବ ବୋଲି ସେ ମନରେ ବିଚାରିଲେ
ଅଗ୍ନିଶର ସଙ୍ଗରେ ଆଇଲା ତାର ଶର
ଆଇଲା ବେଳେ ଗରୁଡ଼ କହିଲା କରି ଖର ।
ଅସ୍ତ୍ର ଶରକୁ ତୁ ଯେ ଧରିଣ ଆସିବୁ
ସେ ଅସ୍ତ୍ରକ କେବେ ତୁ ନାଶ ନ କରିବୁ ।
ସେ ସକାଶୁଁ ଶର ଯେ ତାସଙ୍ଗେ ଗୋଡ଼ାଇଲା
ପାତାଳ ସମ୍ପୁରେ ତା ସଙ୍ଗରେ ପଶିଲା ।
ଅସ୍ତ୍ର ପଳାଇଲା ଗରୁଡ଼କୁ ଭୟ କରି
ଅଷ୍ଟକୁଳା ନାଗକୁ ସେ କହେ ବ୍ୟଗ୍ର କରି ।

ସେ ବୋଇଲେକା ସଙ୍ଗେକୁ ହେଲୁ ଯେବେ ଭଣ
ଅସ୍ତ୍ରବୋଲେ ମେଘନାଦ ପେଷେ ଦୃଢ଼କରି ।
ତାର ମନ୍ତ୍ର ବଳରେ ମୁଁ ଲକ୍ଷ୍ମଣଙ୍କୁ ବାନ୍ଧି
ଗରୁଡ଼ ଶର ଆସିଣ ମୋତେ ହେଲା ସନ୍ଧି ।
ଗରୁଡ଼ ଶରକୁ ଦେଖି ମୁହିଁ ପଳାଇଲି
ଗୋଡ଼ାଇଛି ସେଶର ମୋତେ ଖାଇବ ବୋଲି
କି ବୁଦ୍ଧି କରିବ ମୁଁ ଯେ ରହିବ କେଉଁଠାରେ
କେ ମୋତେ ରଖିବଟି ଜୀବନ ଗଲାବେଳେ ।
ଶୁଣିଣ ଅଷ୍ଟନାଗ ବୋଲନ୍ତି ବେଗେ ଯା ଯା
ଅନନ୍ତ ବାସୁକୀଠାରେ ଶରଣ ପଶ ଯା ।
ସେହି ତୋତେ ରଖିବେ ଆନରେ ନାହିଁଗତି
ଶୁଣି କରି ମୂଢ଼ ଅସ୍ତ୍ର ପଳାଇଲା ଧାଇଁ ।
ବାସୁକୀ ରାଜାଠାରେ ପ୍ରବେଶ ହୋଇଲା
ଶରଣ ରଖ ବୋଲି ଚରଣେ ପଡ଼ିଲା ।
ବାସୁକି ବୋଇଲେ ହେ କାହାକୁ ଭୟ ତୋର
ଅସ୍ତ୍ର ବୋଇଲା ମୋତେ ଗରୁଡ଼ ଅଟେ କାଳ
ରାବଣର ପୁତ୍ରନାମ ଅଟଇ ଇନ୍ଦ୍ରଜିତ
ଯୋଗବଳେ ତୁମ୍ଭଙ୍କୁ ତ ସେହିକଲା ତୋଷ
ତୁମ୍ଭେ ତାକୁ ପ୍ରସନ୍ନ ହେଲ ଦେବ ପୁଣ
ମୋତେ ସମର୍ପିଲ ତହିଁ ତା କରରେ ଜାଣ ।
ମୋତେ ରଖି ସେ ଯେ ଅନେକ ପୂଜାକଲା
ଦେବତାଙ୍କଠାକୁ ପେଷି ମୋତେ ବାନ୍ଧିଣ ଆଣିଲା
ଦଶରଥଙ୍କ ନନ୍ଦନ ଅଟନ୍ତି ଶ୍ରୀରାମ
ପିତା ସତ୍ୟରେ ସେଯେ ବନକୁ ଗଲେ ପୁଣ
ରାବଣ ଦଇତ୍ୟ ପୁଣ ମନରେ ବିଚାରିଲା
ଶ୍ରୀରାମ ଘରଣୀଙ୍କି ଚୋରାଇଣ ନେଲା ।
ଘରଜାଖୋଜନ୍ତେ ରାମ ସୁଗ୍ରୀବରକୁ ଭେଟିଲେ
ସୁଗ୍ରୀବର ଠାରୁ ରାମ ଦୃଷ୍ଟାନ୍ତର ଶୁଣିଲେ
ମୋତେ ରାଜ୍ୟ ବାହାର କଲା ମୋର ଭାଇ
ଜ୍ୟେଷ୍ଠ ଭାଇ ହୋଇ ଭ୍ରାତୃବୋଧକୁ ହରଇ
ଏକଥାରୁ ଶୁଣି ରାମ କର୍ଣ୍ଣରେ ଦେଲେ ହସ୍ତ
ସେ ମୋତାକୁ ନାଶକଲେ ଅଟଇ ଉଚିତ ।
ସୁଗ୍ରୀବର ସଙ୍ଗେ ରାମ ମଇତ୍ର ହୋଇଲେ
ମଇତ୍ର ଛଳରେ ରାମ ବାଳିକି ନାଶକଲେ ।
କିଷ୍କିନ୍ଧାରେ ସୁଗ୍ରୀବଠାରେ ଛତ୍ରସେଟେ ଭାଇ
ଅଙ୍ଗଦକୁ ଯୁବରାଜ କଲେ ରଘୁସାଇଁ ।

ଅଙ୍ଗଦଙ୍କୁ ପେଷି ସୁଗ୍ରୀ ସନ୍ୟ ସମ୍ଭାଳିଲେ
ଋଷକପିଙ୍କର ହସ୍ତେ ସମୁଦ୍ର ପୋତିଲେ ।
ରାବଣ ସଙ୍ଗରେ କଲେ ରଣଗୋଳ
ସୁବଳଗିରିରେ ବସା ଅଟେ ଶ୍ରୀରାମର ।
ସେହି ଶ୍ରୀରାମ ସୀତାଙ୍କୁ ଖୋଜିବାକୁ ପୁଣ
ହନୁମାନ ନାମେ କପି ଲଙ୍ଘିଲେ ଲଙ୍କା ଜାଣ
ଅଶୋକ ବନେ ସୀତାଙ୍କୁ କପି ଠାବ କଲା
ଯୁଦ୍ଧରେ ଦୈତ୍ୟଙ୍କୁ ଅନେକ ସଂହାରିଲା ।
ଇନ୍ଦ୍ରଜିତ ମୋତେ ପେଷିଲା ସେବେଳେ
ବାନ୍ଧିଥିଲି ହନୁମନ୍ତ ମୋହର ବଳରେ ।
ହନୁମନ୍ତ କଥା ଶୁଣି ଦୈତ୍ୟ ପ୍ରତେ ଗଲା
ହୋଣର ଭିତରେ ମୋତେ ସାଇତି ରଖିଲା
ରାମର ସଙ୍ଗେ ଦୈତ୍ୟ ଦୁଇ ଦିନ ଯୁଦ୍ଧକଲା
କେବେହେଁ ଶ୍ରୀରାମଙ୍କୁ ଜିଣି ନ ପାରିଲା ।
ତିନି ଦିନେ ଦୈତ୍ୟ ପେଷିଲା ମୋତେ ପୁଣ
ଶ୍ରୀରାମ ଲକ୍ଷ୍ମଣଙ୍କୁ କଲି ମୁଁ ବନ୍ଧନ ।
ମାରୁତିକି ପେଷିଦେଲା ଦଶରଥ ପୁଅ
ଗରୁଡ ଆସିଲେ ଫିଟିବ ସନ୍ଦେହ ।
ଶୁଣିଣ ମାରୁତି ଯେ ବେଗେ ଚଳିଗଲା
ପଞ୍ଚାଶଲକ୍ଷ ଯୋଜନ ଘଡ଼ିକେ ବହିମିଲା ।
ସୁରଗିରି ଉପରେ ଗରୁଡ଼ ଥିଲା ରହି
ରମ୍ୟକ ଦ୍ୱୀପ ଯେ ସେ ସ୍ଥାନକୁ କହି ।
ଶ୍ରୀରାମର ଆଜ୍ଞାବୋଲି ଗରୁଡ କହିଲା
ଶୁଣି ହନୁମନ୍ତ ବାଣୀ ବିନତାର ବଳା ।
ଆପଣାର ଶରକୁ ସେ ପେଷିଦେଲା ରାଗେ
ସେ ଶରକୁ ଦେଖିଣ ମୁଁ ପଳାଇଲି ବେଗେ
ସେ ଶର ମୋର ସଙ୍ଗେ ଗୋଡାଇ ଅଛି ପୁଣ
ସେ ସକାଶେ ତୋହର ଚରଣେ ଶରଣ ।
ମାରୁତି ଗରୁଡ଼କୁ ଘେନି ସେ ଅଇଲା
ଶ୍ରୀରାମ ଦର୍ଶନ କରି ଗରୁଡ଼ ଫେରିଗଲା ।
ଏମନ୍ତ ସମୟରେ ଗରୁଡ଼ାଶର ଯାଇ
ବାସୁକି ରାଜାଠାରେ ପ୍ରବେଶ ସେ ଯାଇ ।
ଭୟଙ୍କର ରୂପ ବସ୍ତାର ତାର ଯାତି
ଦେଖିଣ ନାଗବଳେ ପଳାଇଲେ ଫାଟି ।
ଶରକୁ ଦେଖିଣ ବାସୁକି ସ୍ତୁତି କଲା
ଜୟ ଗରୁଡ଼ାଶର ସମ୍ଭାଳ ବୋଇଲା ।

ଜୟ ଜୟ ଗରୁଡ଼ ହୋ ବିନତା ନନ୍ଦନ
ଜୟ ଜୟ ଗରୁଡ଼ ହୋ ବିଷ୍ଣୁର ବାହନ ।
ଜୟ ତୁ ଗରୁଡ଼ ହୋ ପକ୍ଷୀପରେ ରାଜା
ଜୟ ତୁମ୍ଭେ ଗରୁଡ଼ ହେ ସମ୍ଭାଳ ନାଗରାଜା
ମୋର ଅଙ୍ଗରେ ଚଳ ତୁ ହୋଇଣ ଯେ ତାଜା
ଶ୍ରୀରାମଙ୍କ ପାଶରେ ମିଳିବା ଶୀଘ୍ରେ ରାଜା ।
ବାସୁକି ବୋଇଲା ତୁ ଯେ ଆଜିକି ଏଥି ରହ
କାଲି ପ୍ରଭାତରୁ ଯିବା ସନ୍ଦେହ ନ ପାଅ ।
ଧରଣୀ ମୋହର ଶିରରେ ଅଛି ଦେଖ
ଗୁଡିଲେ ରସାତଳେ ପଡ଼ିବ ମହୀଯାକ ।
କହିଲେ ତୁ ପୁଣ ନ ଯିବୁ ତୁହି ଫେରି
ଉପାୟ କରିଣ ଯେ ରଖିବା ମହୀଆଜି ।
ଶୁଣିଣ ପକ୍ଷୀଶର ସନ୍ତୋଷ ହୋଇଲା
ବାସୁକି ରଜା ପାତ୍ର ମନ୍ତ୍ରୀକି ଡକାଇଲା ।
ବୋଇଲା ଖଗପତି ହୋ ପଡ଼ିଲୁକି ଏବେ
ରାବଣ ମାରିବାକୁ ବିଷ୍ଣୁ ଜନ୍ମ ହେବେ
ଲବଣର ଅଙ୍ଗତରେ ଶ୍ରୀରାମଙ୍କ ଯୁଦ୍ଧ
ସେହିଦିନ ଇନ୍ଦ୍ରଜିତ କରଇ ଯେ ଯୁଦ୍ଧ ।
ତିନିଦିନ ସମରେ ନାଗଫାଶ ମାରି
ଅନନ୍ତ ବାସୁଦେବଙ୍କୁ ବନ୍ଧନ ସେ କରି ।
ସେ ପ୍ରଭୁ ନାରାୟଣ ଗରୁଡ଼ ଆଣାଇଲେ
ଦେଖନ୍ତେ ଗରୁଡ଼କୁ ମୋ ଆୟୁଧ ପଳାଇଲେ
ଗରୁଡ଼ର ଶର ଯେ ଗୋଡାଇ ଅଇଲା
ମୋହଠାରେ ମୋର ଶର ଶରଣ ପଶିଲା ।
ଗରୁଡର କୋପରେ ଯେ ନାରାୟଣ ଧାଇଁ
ମୁର୍ଚ୍ଛିଗଲେ ସମ୍ଭାଳ ହେ ବସୁନ୍ଧରା ତାପ ।
ଏଥିକି ବହୁର ଯେ ତୁମ୍ଭେମାନେ କରି
ଧରଣୀକି ଧରିବ ବେଗେ ତାକୁ ବରି ।
ଶୁଣିଣ ପାତ୍ର ମନ୍ତ୍ରୀ ବୋଲି ଦେବ ଜାଣ
ମଞ୍ଚପୁର ଭିତରେଯେ ଜମ୍ବୁଦ୍ୱୀପ ବିଦ୍ୟମାନ ।
ଅଯୋଧ୍ୟା ନାମରେ ଅଟେ ତାର ପୁର
ଦଶରଥ ନୃପତିର ଚାରି ଯେ କୁମର ।
ପିତା ସତ୍ୟପାଳି ରାମ ଲକ୍ଷ୍ମଣ ବନେ ଗଲେ
ଭାରିଯା ସଙ୍ଗେ ନେଲେ ରାବଣ ଚୋରିକଲେ ।
ଚାରି ଦିନ ସମର ରାମ ରାବଣର
ଭରତ ଶତ୍ରୁଘନ ଅଛନ୍ତି ଅଯୋଧ୍ୟା ନାମପୁର ।

ଶ୍ରୀରାମ ଚଉଦ ବରଷ ଶେଷ ଦେଖି
ଭରତ ବିଚାରଇ ମନରେ ବସି ସେଠି ।
ଦେଶ ପରିମଳ ଦାଣ୍ଡ କଲେ ଉଜ
ଲକ୍ଷକ ଘର ଧବଳ କଲ ସେହୁ ସଜ ।
ଚାରିଗୋଟି ନବର ନାନା ଭଙ୍ଗିରେ ସେକଲ
ଚାରି ଭାଇ ରହିବାକୁ ସ୍ଥାନ ସେ ରଚିଲ ।
କୂଅ ଦେଉଳ ଯେ ଅଛାଳ ବାମ୍ପୀ ପୁଣ
ଆଠମାସଠାରୁ ଦୁତ କରଗେ ତୁମ୍ଭେ ଜାଣ ।
ରାଜାଙ୍କୁ ନିମନ୍ତ୍ରଣ ସେ ଦେଲକ ବିଚାରି
ପଞ୍ଚଶ ସହସ୍ର ଲୋକ ବରଗେ ଫୁଲ ଚନ୍ଦନ
ଦେଇକରି ।
ମାସକର ମଧ୍ୟରେ ଫେରିଣ ଗଲେ ଲୋକ
କାହିଁ କହିଲେ ଯାଇ ନ ଦେଖିଲୁ
ରାଜାମାନଙ୍କୁ ତ ।
ସ୍ୱୟମ୍ବରକୁ ରାଜାମାନେ ସର୍ବେ ଯାଇଛନ୍ତି
ସ୍ୱୟମ୍ବରେ ବଞ୍ଚିବାକୁ ଆମ୍ଭର ନୋହେ ଶକ୍ତି
ଶୁଣିଣ ଭରଥ ବୀର ଶତ୍ରୁଘନକୁ ଭେଦ ଦେଲ
ପିତାଙ୍କ ରଥ ଚଢ଼ିଣ ଶତ୍ରୁଘନ ଗଲ ।
ଉତ୍ତର ଦିଗରେ ପ୍ରବେଶ ଯାଇ ହେଲ
ଭରତର ପୁରେ ଯାଇ ତକ୍ଷଣେ ମିଳିଲ ।
ଦେଖିଲ ସେଠାରେ ସେ ସ୍ୱୟମ୍ବର ପୁଣ
ଛତିଶ ସହସ୍ର ରାଜା ଠୂଳରେ ଛନ୍ତି ଜାଣ ।
ସେ ରାଜ୍ୟ ଅଟେ ବୀରଭଦ୍ର ସୁରସେନ
ତାହାର ଦୁହିତା ନାମ କଳାବତୀ ଜାଣ ।
ସେ କନ୍ୟାକୁ ଅଟଇ ଏଗାର ସମ୍ବତ୍ସର
ସେ ରାଜା ସ୍ୱୟମ୍ବର କରିଛି ବିଚାର ।
ସେଠାରେ ଶତ୍ରୁଘନ ଦେଲେ ଗୁଆପାନ
ସବୁ ରାଜାଙ୍କୁ ଦେଇ ସେ କଲେକ ବରଣ ।
ବୋଇଲେ ସୂର୍ଯ୍ୟ ବଂଶରେ ଦଶରଥ ରାଜା
ଦେହ ତେଜ୍ୟାକରି ସ୍ୱର୍ଗେ ଗଲେ ମହାରାଜା
ତାଙ୍କର କୁମର ଯେ ଚାରିଗୋଟି ଜାଣ
ଜ୍ୟେଷ୍ଠ ରଘୁନାଥ କନିଷ୍ଠ ଶତ୍ରୁଘନ ।
ଭରତ ଲକ୍ଷ୍ମଣ ମଧ୍ୟମ ବୋଲି ଜାଣ
ପିତାସତ୍ୟ ପାଳିଣ ଶ୍ରୀରାମ ଗଲେ ବନ ।
ଚୌଦ ବର୍ଷ ଏ ଫାଲ୍‌ଗୁନକୁ ସମ୍ପୂର୍ଣ୍ଣ ହୋଇଲ
ରଘୁନାଥଙ୍କର ଅଭିଷେକ ହେବ ପର ।

ତୁମ୍ଭକୁ ନିମନ୍ତ୍ରଣ ହେ ଯେ ଅଯୋଧ୍ୟାକୁ ମିବ
ଆଷାଢ଼ଶୁକଳ ଦ୍ୱିତୀୟା ଦିନ ଥିବ ।
ସେ ଦିନ ଅଭିଷେକ ହେବେ ରାମ ରାଣ
ଏତେ କହିଣ ଶତ୍ରୁଘନ ଉଠିଲେ ବହନ ।
ଭରଥପୁର ରାଜା ବୋଇଲେ ତୁମ୍ଭେ ରହ
ସ୍ୱୟମ୍ବର ସରିଲେ ଏଠାରୁ ପୁଣ ଯାଅ ।
ଶତ୍ରୁଘନ ବୋଇଲେ ଶୁଣ ହେ ନୃପବର
ଏକ ବୃତ୍ତ ଅଛୁ ଆମ୍ଭେ ଚାରି ସହୋଦର ।
ସ୍ୱୟମ୍ବରେ ଆମ୍ଭର କିଛି କାର୍ଯ୍ୟନାହିଁ
ଏତେ କହି ଚଳିଗଲେ ଶ୍ରୀରାମର ଭାଇ ।
ପଶ୍ଚିମ ଦିଗରେ ପ୍ରବେଶ ଯାଇ ହେଲେ
ଲୋକଙ୍କର ମୁଖୁ ସେ ବାରତା ଶୁଣିଲେ ।
ଉଙ୍ଗବାଣ ଦେଶରେ ରାଜାମାନେ ଠୁଳ
ସେ ରାଜା ଦୁହିତା ପାଇଁ କରିଛି ସ୍ୱୟମ୍ବର ।
ସେ ରାଜାଙ୍କୁ ଶତ୍ରୁଘନ ନିମନ୍ତ୍ରଣ କଲେ
ଶ୍ରୀରାମ ଅଭିଷେକ ହେବେ ଯିବ ତୁମ୍ଭେଭଲେ
ସେଠାରୁ ଶତ୍ରୁଘନ ବେଗେ ଗଲେ ଚଳ
ରଥର ଉପରେ ବଜାଏ ମହାବଳୀ ।
ପୂର୍ବ ଭାଗରେ ସେ ହେଲେ ପରବେଶ
ତରଙ୍ଗାଳ ବୋଲିଣ ଗନ୍ଧର୍ବ ରାଜାଦେଶ ।
ସୁମନ୍ତ କୁମନ୍ତ ବୋଲି ଦୁହିତା ତାହାର
ସ୍ୱୟମ୍ବର କଲେ ରାଜା ନ ବରିଣ ବର ।
ସେଠାରେ ଶତ୍ରୁଘନ ନିମନ୍ତ୍ରଣ ରାଜାକରି
ବତିଶ ସହସ୍ର ସେଠାରେ ଥିଲେ ଦଣ୍ଡଧାରୀ
ନିମନ୍ତ୍ର କରି ସେଠାରେ ଶତ୍ରୁଘନ ରହି
ଅନ୍ତଃପୁର ମଧ୍ୟରେ ନିଶ୍ଚିନ୍ତ ଅଛି ଶୋଇ ।
ସେହି ବୀର ଆସିଲେ ଧରିବ ଧରଣୀ
ବାସୁଦେବଙ୍କର ଶଙ୍ଖ ଭରଥ ଯେ ଚକ୍ର ପୁଣି ।
ଶ୍ରୀରାମ ବାସୁଦେବ ଲକ୍ଷ୍ମଣ ଅନନ୍ତ
ଶ୍ରୀହରି ଠାରୁ ଚାରି ଭାଇ ରେ ସମ୍ଭୂତ ।
ଆଜର ନିଶିରେ ସେ ଫଳପୁରେ ଅଛି
ହରଷ କରି ତାକୁ ଆଣ କୃଷ୍ଣବର୍ଣ୍ଣି ।
ଏତେ କହି ପାତ୍ରମନ୍ତ୍ରୀ ଡ଼ାକେ ହକରି ନାଗ
ନଦ୍ରା ନାଗକୁ ବୋଇଲେ ଯାଅ ସ୍ୱାର ସଙ୍ଗ ।
ତରଙ୍ଗାଳ ରାଜାପୁରେ ଅଛି ଶତ୍ରୁଘନ
ହରଣ କରି ତାକୁ ଆଣ ହେ ବହନ ।

ହର ନାଗ ନଦ୍ରା ନାଗ ହୁଙ୍କେଁ ଚଳଗଲେ
ଉରଙ୍ଗାଳ ଦେଖେ ଶତ୍ରୁଘନଙ୍କୁ ଭେଟିଲେ ।
ଶୟନଶଯ୍ୟ ସହିତେ ଶତ୍ରୁଘନଙ୍କୁ ନେଲେହରି
ବାସୁକି ରାଜା ପୁରରେ ରଖିଲେ ଯତ୍ନକରି ।
ରଜନ ପାହିବାରୁ ଉଠିଲେ ସର୍ବଲୋକ
ଶତ୍ରୁଘନ ନଦେଖିଲେ ସଙ୍ଗରେ ଯେତେଥାଟ
ଲେଉଟି ରଥୀ ରଥ ପାଦାନ୍ତ ବେଗେ ଗଲେ
ସାତଦିନେଅଯୋଧ୍ୟାରେପ୍ରବେଶ ଯାଇହେଲେ
ଭରଥଙ୍କୁ ବୋଇଲ ତୁମ୍ଭ ଭାଇ କେଣେ ଗଲା
ସ୍ଵରଗରେ ରାଜା ନିମନ୍ତ୍ରଣ କରିଥିଲା ।
ଶୟନର ଠାରୁ କେଣେ ଗଲା ପୁଣ
ଶଯ୍ୟାଖଟ ନ ପାଇଲୁ ନ ଦେଖିଲୁ ଚିହ୍ନ ।
ଶୁଣିଣ ଭରତର ଚାଟକା ହୋଇଲା
କେଣେ ଗଲା ମୋର ଭାଇ କୋଳଣ ବେଦନା
ବଶିଷ୍ଠ ସୁମନ୍ତ ଯାବାଳି କଶ୍ୟପ
ବାମଦେବ ମିଳଣ ହେଲେକ ନବଋଷି ।
ବୋଇଲେ କିମ୍ପାଇଁ ହେ ଅଧୈର୍ଯ୍ୟ ହେଉ
କେଣେ ଗଲା ବାରତ ପାଇବା ଯହୁଁ ତହୁଁ ।
ପାଞ୍ଚଦିନରେ ଯେବେ ନ ଆସେ ତୋର ଭାଇ
ଲୋକ ପେଶି ଆମ୍ଭେ ଖୋଜିବା ଯହିଁ ତହିଁ ।
ବାମଦେବର ବୋଲନ୍ତେ ସମସ୍ତେ ସନ୍ତୋଷ
ଏଥୁ ଅନନ୍ତରେ ଶୁଣ ଭବ୍ୟରସ ।
ରଜନୀ ଶେଷ ହୋଇଲା ଉଠିଲେ ନାଗବଳ
ଶତ୍ରୁଘନ ଉଠିଣ ବସେ ଶେଯ ପର ।
ଦେଖିଲା ଅନ୍ତପୁର ଲୋକ କେହି ନାହିଁ
ରଥୀରଥ ପାଦାନ୍ତ କାହାକୁ ନ ଦେଖଇ ।
ଉଠିଣ ଜଗ୍ର ହୋଇ ହୁଙ୍କେଁ ବୁଲି ବଗେ
ନାଗବଳମାନେ ବସିଲେ ସବୁ ଆଗେ ।
ପଚ୍ଛରେ ଶତ୍ରୁଘନ ଏ କେବଣ ପୁର ଅଟେ
ନାଗ ବୋଇଲେ ଏ ବାସୁକି ରାଜା ଶ୍ରେଷ୍ଠେ ।
ଏହାର ନାମ ଗୋଟି ପାତାଳ ଯେ ପୁର
ଅନନ୍ତ ବାସୁକୀର ଏଥିଯେ ମନ୍ଦିର ।
ଏମନ୍ତ ସମୟରେ ପାଞ୍ଚ ମନ୍ତ୍ରୀ ଆସି
ଶତ୍ରୁଘନଙ୍କୁ ବୋଲେ ଉଠନ୍ତେ ରାଜାଟି ।
ରାଜାର ହୁକୁମ ଅଛି ବେଗେ ଏବେ ଚଳ
ଶୁଣିଣ ଶତ୍ରୁଘନ ଉଠିଲେ ବେଗେ ଖର

ବାସୁକି ରାଜା ପାଶରେ ହେଲେ ପରବେଶ
ପିତାର କୋଦଣ୍ଡ ଯେ ଧରିଛନ୍ତି ହସ୍ତ ।
ବାସୁକି ବୋଇଲା ଦଶରଥ ପୁଅ
ମୋତେ ତୁ ଖୋଜି କି ଅଇଲୁ ଏବେ କହ
ଶତ୍ରୁଘନ ବୋଇଲେ ଅଟେ ଦେବ ସତ
ମୋତେ କମ୍ପା ଅଣାଇଲ କହନ୍ତେ ସଙ୍କେତ
ବାସୁକି ରାଜା ବୋଲେ ଶୁଣ ରାମଭାଇ
ଧରଣୀ ଧର ତୁମ୍ଭେ ମୁଁ ଯିବି ସ୍ୱର୍ଗକୁଇଁ ।
ଗରୁଡ ରାଜା ଅଟେ ବିଷ୍ଣୁର ବାହନ
ରମ୍ୟକ ଦ୍ଵୀପରେ ଅଟେ ତାର ସ୍ଥାନ ।
ନାଗଙ୍କର ପରେ ସେ ଅଟେ ମହାବଳ
ମୋର ଠାକୁ ଦୂତ ସେଯେ ଅଛଇ ଭେକଜଣ୍ଡ
ତାର ଠାରେ ଭେଟ ହୋଇ ଆସିବଇଁ ଅଗେ
ତିନିଦିନ ଧରଣୀ ତୁ ଧରିବୁ ଧନୁହତେ ।
ସୂର୍ଯ୍ୟବଂଶ ରାଜା ତୁମ୍ଭେ ଭୟ କିଛି ନାହିଁ
ସ୍ନାହାନ ଭୋଜନ କରହୋ ବେଗ ତୁହି ।
କଥା ରହିଥାଉ ତୋର ଏ ମହୀମଣ୍ଡଳେ
ଦଶରଥ ତୁମର ଧନ୍ଵର ମହୀବଳେ ।
ଶୁଣିଣ ଶତ୍ରୁଘନ ସ୍ନାନ ବେଗେ କଲା
ଅମୃତ ଭୋଜନ କରି କୋଦଣ୍ଡ ଧଇଲା ।
ରାମ ନାମ ସୁମରିଣ ଯାଇ ମିଳେ ବେଗେ
ବାମଗୋଡ଼ବୃଦ୍ଧଆଙ୍ଗୁଠିଏ ସେ ସରାଗେ
ଧନୁହୂଳ ପରେ ମଣ୍ଡି ରହିଲା ନସ୍ତଳେ
ଦେଖିକରି ନାଗରାଜା ଆନନ୍ଦ ମନରେ ।
ସ୍ନାହାନ ସାରିଣ ସେ ଅମୃତ ପାନକଲା
ଅନ୍ତଃଶର ପେନ୍ଧିଣ ସେ ବେଗେ ଚଳିଗଲା ।
ଗରୁଡ଼ ଶର ଯେ ଆଗରେ ଆସେ ପୁଣ
ପଛରେ ନାଗରାଜା କରେ ଯେ ଗମନ ।
ପ୍ରହରେକ ସମୟେ ଯେ ବାହାର ହୋଇଲେ
ରମ୍ୟକ ଦ୍ଵୀପେ ଦଣ୍ଡଖଣ୍ଡରେ ଯାଇ ହେଲେ ।
ଗରୁଡ଼ ପୁରେ ପ୍ରବେଶ ହେଲେ ଯାଇ
ଦେଖିଣ ଗରୁଡ ଯେ ଓଳଗ ମେଲାଇ ।
ଗରୁଡ଼ ବୋଇଲେ ଅଇଲ କମ୍ପା ତୁମ୍ଭେ
ନାଗରାଜା ବୋଇଲେ ପଚାର ଆରମ୍ଭେ ।
ମୋହର ଶରକୁ ଯେ ତୋର ଶର ଭେଡ
ଭୟରେ ଶର ମୋର ପଳାଏ ଯେ ହେବ ।

ମୋରଠାରେ ଯାଇଣ କହେ ତୋର ଶର
ପକ୍ଷୀରାଜ ଆଜ୍ଞାରେ ଯିବ ସେ ସତ୍ୱର ।
ତୋର ଆଜ୍ଞା ମେଣ୍ଟିବାକୁ ନାହିଁ ତୋର ବଳ
ନାଗଙ୍କର ଉପରେ ତୁ ଅଟୁ ମହାବଳ ।
ଶୁଣିଣ ଗରୁଡ଼ ବୋଲେ ନାଗରାଜା ଶୁଣ
ତୁମ୍ଭର ଅନ୍ତରର ଅନ୍ୟାୟ କଲୁ ପୁଣ ।
ତ୍ରୈଲୋକ୍ୟ ଠାକୁର ଅଟନ୍ତି ଶ୍ରୀରାମ ରାଏ
ନବଜେ ବ ଛନ୍ଦ ସେ ଅଚଳ ହୋଇ ରହେ
ହନୁମନ୍ତ ନାମେ ଯେ ଏକ କପିବର
ରାମଚନ୍ଦ୍ର ପେଶିଲେ ସେ ଆସେ ମୋର ପୁର
ତାହାଠାରୁ ଶୁଣି ମୁଁ ଯେ ପେଶିଲି ମୋର ଶର
ବୋଇଲି ଅହିକୁ ତୁ ବେଗେ କରି ଧର ।
ମୋହର ହାମୁଯାଏ ଆଣିବୁ ତାକୁ ଧରି
କୋପରେ ମୋର ଶର ଗଲାକ ବେଗକରି
ମୋତେ ଘେନ ମାରୁତି ଯେ ଲଙ୍କାଗଡ଼ ଗଲା
ଶ୍ରୀରାମକୁ ଦେଖିଣ ବହୁତ ସ୍ତୁତି କଲା ।
ମେଲାଣି ଦେଲେ ମୁଁ ଯେ ଅଇଲି ନିଜପୁର
ବୋଲଇ ନାଗରାଜା ନ ହୁଅଇ ଏ ବେଭାର
ସମସ୍ତ ଦେବତାଏ ମୋତେ ଯେ ଭେଟିଲେ
ଦୈତ୍ୟମାରି ମେଦିନୀ ଭିଶ୍ୱାସ କରି ଭଲେ
ମେଦିନୀ ଧରିବା ଲୋକ ଆଣ ବାନ୍ଧିକରି
ସାହା ଭରସା ନାହିଁ ହେ ମୋହର ବିସ୍ମରିଲି
ଦେବତା ପାଞ୍ଚ ମୋତେ ବଳକୁ ପେଶିଦେଲେ
ଅସୁର ଘରେ ନେଇ କମଳାଙ୍କୁ ବନ୍ଦୀକଲେ
ଅସୁରଙ୍କୁ ଭରଣ ସେ ଦେଇଛନ୍ତି ଶସ୍ତ୍ର
ଶସ୍ତ୍ରମାନେ ନିଦାରୁଣ କରୁଣ ଅଛନ୍ତିତ ।
ମୋହର କିଛୁ ତହିଁବଳ ନାହିଁହୋ ପକ୍ଷୀରାଜ
ମୋ ପିତା ସମାନେ ଉପକାରୀ ତୁହୋ ଆଜ
ଏବେ ଯାଇ ଶ୍ରୀହରି ପାଶରେ ତୁମେ ଥାଅ
ମୋତେ ମନେ କରୁଥିବ ବିନତାର ପୁଅ ।
ଏତେ ବୋଲି ଦେବେ ଯେ ମେଲାଣି ମୋତେ
ଦେଲେ
ତହୁଁ ମୁଁ ନିଜପୁର ଅଇଲି ଯେ ଭଲେ ।
ଏବେ ଚାଲ ଲଙ୍କାଗଡ଼କୁ ବେଗେ ଯିବା
ତୁମ୍ଭଠାରୁ କଳଙ୍କ ଶାନ୍ତ କରାଇବା ।
ଏତେ ବୋଲି ବେନିଜନ ବେଗେ ଚଳିଗଲେ
ସପ୍ତସାଗର ପକ୍ଷୀ ଘାତରେ କମ୍ପିଲେ ।
ମାତଙ୍ଗ ନଗିରେ ପ୍ରବେଶ ସୁବଳପ୍ୟା
ଯେଉଁଠାରେ ଅଛନ୍ତି କମଳା ଦେବୀପ୍ରିୟା ।
ପକ୍ଷୀଘାତେ ଚଳିଲତା ଚମକିଲେ ପୁଣ
ସକଳ ଋକ୍ଷକପି ଚିଆଇଁଲେ ଜାଣ ।
ସକଳ ଋକ୍ଷକପି ଉଠି ସେ ବସିଣ
ପଞ୍ଚଶ ଯୂଥପତି ଅଷ୍ଟ ସେନା ଜାଣ ।
ମଲ୍ଲ ମହାମଲ୍ଲ ଯେ ଉଠିଲେ ତକ୍ଷଣ
ଜାମ୍ବେବ ହନୁମନ୍ତ ସୁଗ୍ରୀବ ବିଭୀଷଣ ।
ଏମାନେ ଉଠିଣ ବିଚାର କଲେ ଚିତ୍ତ
ବୋଇଲେ ମାୟାବନ୍ତ ଅଟଇ ଇନ୍ଦ୍ରଜିତ ।
ଆଜର ନଗିରେ ଯେ କରିବ ସମର
ସୈନ୍ୟବଳ ସଙ୍ଗେ ଘେନି ଅଇଲା ତାହାର
ରହଳ ଶୁଣିଣ ଯେ ଅଇଲେ ରାମରାଣ
କି ଅଦ୍ଭୁତ ବୋଲିଣ ବିଚାରନ୍ତି ମନ ।
ବିଚାରିଲେ ରାବଣ ପାଇଛି କାଲି ଦାଉ
ସେଥିର ସକାଶୁ ଆସଇ ବଂଶବାହୁ ।
ଏମନ୍ତେ ବିଚାରନ୍ତି ଶ୍ରୀରାମ ମନର
ଶୂନ୍ୟରୁ ଖସି ଆସେ ବିନତା କୁମର ।
ସାମାନ୍ୟ ଚପଧରି ପର୍ବତେ ମିଳିଲା
ବାସୁକିକ ସଙ୍ଗେ ଘେନି ଶ୍ରୀରାମ ପାଶେ ଗଲା
ଦେଖିଣ ଶ୍ରୀରାମ ଯେ ଆସନୁ ଉଠିଲେ
ପକ୍ଷିଙ୍କର ରାଜା କମ୍ପା ଅଇଲା ବିଚାରିଲେ
ମାନ୍ୟ ଧର୍ମ କଲେ ଗରୁଡ଼େ ଦଶରଥ ପୁଅ
ଶ୍ରୀରାମ ବୋଇଲେ ପକ୍ଷୀରାଜା ଏହୁକଏକଥ
ଗରୁଡ଼ ବୋଇଲେ ଶୁଣିମା ରାମରାଜ
ନାଗଫାଶରେ ବନ୍ଧନ କଲା ଶ୍ରୀରାମ ଆତ୍ମଜ ।
ମୋର ଠାକୁ ମାରୁତି ଗଲା ଯେ ଆଜ୍ଞାଘେନି
ଉତ୍ତର ହେବ ବୋଲି ବିଚାର କଲି ପୁଣି
ଅଗ୍ନିଶର ସଙ୍ଗରେ ମୋ ଶରକୁ ଭେଦି
ଆସିବା ବେଳରେ ମୁଁ ଯେ ଶରକୁ ଥିଲପରି
ବୋଇଲି ଶରକୁ ଧରଣ ଆଣିବୁ
ପ୍ରାଣରେ ନ ମାର ଆଣି ମୋର ପାଶେଦେବୁ
ମୋହର ଆଜ୍ଞାରେ ଯେ ପାଳିଲା ମୋର ଶର
ଅଗ୍ନିଶର ପଳାଇଲା ଗୋଡ଼ାଏ ପଛର ।
ପାତାଳ ପୁରରେ ଯାଇ ପ୍ରବେଶ ହୋଇଲା
ଧରଣୀ ଧରିଛି ଯେ ବାସୁକି ଦେଖିଲା ।

ମୋହର ନାମ ଯେ ଶୁଣିଲା ନାଗରାଜା
ଅହିଶର ଘେନିଣ ପ୍ରକଟଣ ମୋର ଶଯ୍ୟା ।
ନିଦ୍ରାରୁ ଉଠି ମୁଁ ଯେ ନାଗରାଜା ଦେଖି
ଦୁଇଜଣ ସଙ୍ଗେହୋଇ ଅଇଲୁ ଏଥିକି ।
ଶୁଣିଣ ଶ୍ରୀରାମ ଯେ ମନରେ ହେଲେ ତୋଷ
ବାସୁକି ମାନ୍ୟଧର୍ମ କଲେ କୌଶଲ୍ୟା ଶିଷ୍ୟ ।
ଦୁଇଜଣ ବସିବାକୁ ଆସନ ପୁଣ ଦେଲେ
ପଚାଶ ଯୂଥପତି ଅଷ୍ଟ ସେନା ଯେ ବସିଲେ ।
ସୁଗ୍ରୀବ ବିଭୀଷଣ ହନୁମନ୍ତ ଜମ୍ବେବ
ଲକ୍ଷ୍ମଣଙ୍କୁ ଡାକିଣ କହିଲେ ରାଘବ ।
ବୋଇଲେ ଏ ଗରୁଡ଼ ଅଟେ ପକ୍ଷୀରାଜ
ନାଗ ଫାଶ ଫିଟାଇ କଲା ଯେ ଧଇର୍ଯ୍ୟ ।
ଏହାର ଶର ଯେ ବାସୁକି ଆସେ ଧରି
ବାସୁକି ଅଟଇ ଯେ ଧରଣୀ ଅଧିକାରୀ ।
ଲକ୍ଷ୍ମଣ ବୋଇଲେ ଦେବ ଏକଥା ଅଟେମିଛ
ଅନନ୍ତ ବାସୁକୀର ମସ୍ତେ ଯେ ଅଛି ମାଥ ।
ବାସୁକି ରଜା ଯେବେ ଏଥିକୁ ଅଇଲା
ସପତ ଦ୍ୱୀପ ପୃଥ୍ୱୀ କେ ମଥାରେ ଧଇଲା ।
ଛାଡ଼ିଲେ ରସାତଳରେ ପଡ଼ନ୍ତା ମେଦିନୀ
କି ରୂପେ ନାଗରାଜା ଅଇଲା ଏଥେ ପୁଣି ।
ଏକଥା ଅପସନ୍ଦ ହୋଇଲା ଦେବ ଏବେ
ମାୟାର କଥାମାନ କହ ହେ କେଉଁ ଭାବେ
ଲକ୍ଷ୍ମଣଠାରୁ ଏ ବଚନ ଶୁଣିଣ ଯେ ଅହି
ବୋଇଲା ମୋହଠାରୁ ଶୁଣ ହେ ଦୁଇଭାଇ ।
ଗରୁଡ଼ ଶର ମୋର ଶରକୁ ଗୋଡ଼ାଇଲା
ମୋର ଶର ମୋରଠାରେପ୍ରବେଶ ହୋଇଲା
ପକ୍ଷୀରାଜା ଶର ବୋଇଲା ଏବେ ବୁଲ
ଅନେକ ଶରକୁ ଯେ ରଖିଲ ମୋର ପୁର ।
ପାବ ମନ୍ତ୍ରୀ ଡକାଇ ବିଚାର ଯେ କଲି
ଶର ଗଲେ ନାଶ ହେବ ବୋଲିଣ ବୋଇଲି
ମନ୍ତ୍ର ବଳେ ଦୈତ୍ୟ ଯେ ବାନ୍ଧିଲା ନାରାୟଣ
ସେ ସବାଶୁ କୋପ କଲା ପକ୍ଷୀରାଜ ପୁଣ ।
ମୁର୍ଚ୍ଛିଗଲେ ଶର ମୋର ହୋଇବ ପୁଣରକ୍ଷା
ଧରଣୀ ଧରିବ କଏ ମୋତେ ତାକୁ ଦେଖା
ସୁମନ୍ତ ବୋଇଲା ଦେବ ମଞ୍ଜ ଯେ ପୁରରେ
ଜମ୍ବୁଦ୍ୱୀପ ମଣ୍ଡଳରେ ଅଯୋଧ୍ୟା ନଗରେ ।

ଦଶରଥ ରାଜା ଅଟଇ ସୁରପୁଷ
କନିଷ୍ଠ ଶତ୍ରୁଘନ ଯେ ଜ୍ୟେଷ୍ଠ ରଘୁନାଥ ।
ଭରତ ଲକ୍ଷ୍ମଣ ଅଟନ୍ତି ମଧ୍ୟମାନ
ପିତା ସତ୍ୟ ପାଳିଣ ଶ୍ରୀରାମ ଗଲେ ବନ ।
ଭାଇ ଭାରିଯା ସଙ୍ଗରେ ନେଇ ପୁଣ ଗଲେ
ଭାରିଯାକୁ ରାବଣ ହେରାଇ ପୁଣ ନେଲେ ।
ବୈର ଧରି ଶ୍ରୀରାମ କରନ୍ତି ସମର
ଦୁଇ ଭାଇ ରହିଲେ ଲଙ୍କା ଯେ ଗଡର ।
ଭରତ ଶତ୍ରୁଘନ ଅଯୋଧ୍ୟାରେ ଥିଲେ
ରାମ ଆସିବେ ବୋଲି ଭରତ ବିଚାରିଲେ ।
ନଅତ ସମ୍ପୂର୍ଣ୍ଣ ହୋଇଲା ସମ୍ବତ୍ସର ଚଉଦ
ଅଭିଷେକ ହୋଇବେ ଆସିଣ ରାମଦେବ ।
ଶତ୍ରୁଘନଙ୍କୁ ଭରତ କହିଲା ଭାଇରେ ଶୁଣ
ଲକ୍ଷେ ରାଜା ବରଣ କର ତୁ ନିମନ୍ତ୍ରଣ ।
ଆଠମାସରେ ପୁଣ ଆସିବେ ରାମଚନ୍ଦ୍ର
ଶୁଣିଣ ଶତ୍ରୁଘନ ଥାଟ ଯେ କଲା ସଜ ।
ପିତାର ରଥେ ଚଢ଼ି ଦିଗ ବିଜେ କଲା
ଚବଶ ସହସ୍ର ରାଜା ଉତ୍ତରେ ବରିଲା ।
ଚବଶ ସହସ୍ର ରାଜା ଦକ୍ଷିଣେ ବରିଣ
ମନେ ମନେ ବିଚାର କରଇ ଶତ୍ରୁଘନ ।
ପୂର୍ବଦିଗ ରାଜାଙ୍କୁ ବରଣ କରି ଗଲା
ବାଇଶି ସହସ୍ର ଯେ ସମ୍ପୂର୍ଣ୍ଣ ହୋଇଲା ।
ପାଞ୍ଚମାସ ଦଶଦିନ ବରଣ ରାଜା କରି
ରେଙ୍ଗାଳ ଦେଶରେ ନିଷ୍ଟନ୍ତେ ଦଣ୍ଡଧାରୀ ।
ରଜନୀରେ ନିଶ୍ଚିନ୍ତେ ଶୟନ ସେହି କଲା
ପ୍ରଭାତରେ ନିଜ ରାଜ୍ୟେ ଆସିବ ବିଚାରିଲା ।
ଏମନ୍ତ ସମୟରେ ମୋହର ମନ୍ତ୍ରୀ କହି
ଶତ୍ରୁଘନ ଆସିଲେ ଧରି ସେହି ମନ୍ତ୍ରୀ ।
ଶୁଣିଣ ନାଗଦଳ ବେଗେ ଚଳିଗଲେ
ସଢ଼ି ଘରରୁ ଶତ୍ରୁଘନଙ୍କୁ ହେରାଇ ଆଣିଲେ
ଧରଣୀ ଧଇଲେ ସେ ଯେ ଧନୁ ହେଲେ ପୁଣ
ତାର ଶିରେ ମନ୍ତ୍ର ଦେଇ ଅଇଲି ମୁଁ ଯାଣ ।
ଆରଦିନ ପ୍ରଭାତରେ ରାଜାକୁ ନ ପାଇ
ରଥ ଗଜ ପଦାନ୍ତି ଘେନିଣ ଚଳିଯାଇ ।
ଭରଥଠାରେ ଯାଇ କହିଲେ ଥାଟବଳ
ବହୁତ ଶୋକକଲା କୈକେୟୀର ବାଳ ।

ବଶିଷ୍ଠ ବାମଦେବ କଶ୍ୟପ ସୁମନ୍ତ
ଏମାନେ କହିବାରୁ ହୋଇଲା ନବର୍ତ୍ତି ।
ଶୁଣିଣ ଲକ୍ଷ୍ମଣ ବୋଇଲେ ଭଲହେଲା
ଜାନକୀଙ୍କି ଘେରାଇ ରାବଣ ଆସିଲା ।
ରାଇଜ ଘେରାଇ ନେଲା ନାଗରାଜା
ଝିଅର ରାଇଜଙ୍କର ଏକାଇ ରାଣି ପୂଜା ।
ରାଇଜ ବଳରେ ଝିଅର ଧରେ ମନ୍ତ୍ରୀ
ରାଇର ସକାଶୁଁ ଭରଥ ଦେବ ବନ୍ଧି ।
ଜାନକୀର ସକାଶୁ ରାମ ଲକ୍ଷ୍ମଣଙ୍କର ଯୁଦ୍ଧ
ଆମ୍ଭେ ମାରିବୁ ରାବଣ ସେ ମାରିବ ନାଗରାଜ
ଶୁଣିଣ ଶ୍ରୀରାମ ଯେ ହସିଲେ ଟହ ଟହ
ବହୁରିଲେ ଲକ୍ଷ୍ମଣ ଦେହେ ଉପୁଜିଲା କୋହ
ଗରୁଡ ବାସୁକିଙ୍କି ଶ୍ରୀରାମ ବୋଇଲେ
ଯାଅ ନିଜପୁର ଯେ ଦୟା ରଖିବ ମୋହରେ
ଶୁଣିଣ ଗରୁଡ଼ ଯେ ଶର ସମର୍ପିଲା
ଏ ଶରକୁ ଯତ୍ନରେ ରଖ ହେ ବୋଇଲା ।
ଯେବେ ଅନ୍ଧଶର ଭେଦିବ ଦେବ କେହୁ
ଏଶର ଜଳେ ଫେରିଯିବ ହେ ଦୁରହୁ ।
ଦେଖିବ ବାସୁକି ଅନ୍ଧଶରକୁ ଯେ ନେଲା
ଲକ୍ଷ୍ମଣଙ୍କ ହସ୍ତରେ ନେଇଣ ସମର୍ପିଲା ।
ବୋଇଲା ଏ ଶରର ନାମ ଯେ ନାଗଫାଶ
ଅସମୟୁ ପଡ଼ିଲେ ଛାଡ଼ିବୁ ତୁ ସୁମିତ୍ରାର ଶିଷ୍ୟ
ଗରୁଡ ବୋଇଲା ଶ୍ରୀରାମଚନ୍ଦ୍ର ଶୁଣ
ଏ ଜନ୍ମରେ ଦେଖା ଏତିକ ମୋର ପୁଣ ।
ବୈକୁଣ୍ଠ ପୁର ମୁଁ ଯେ ଜଗିଣ ରହିଲି
ମନେ ସୁମରଣା ନ କରିବ କହିକରି ଗଲି ।
ଏତେ ବୋଲି ଗରୁଡ଼ ଅମୃତ ଆଣି ଦେଲା
ଆପଣେ ଭୁଞ୍ଜି ସମସ୍ତଙ୍କୁ ଦିଅ ହେ ବୋଇଲା
ରାହ ପାହିଲେ ସମର ହେବ ପୁଣ ଠାଣ
ରାବଣର ଭାଇ ଯୁଝିବ କୁମ୍ଭକର୍ଣ୍ଣ ।
ଶୁଣିଣ ଶ୍ରୀରାମ ଯେ ଅମୃତ ପାନକଲେ
ଲକ୍ଷ୍ମଣ ସୁଗ୍ରୀବର ବଣିଷଣେ ଭୁଞ୍ଜିଲେ ।
ଅଷ୍ଟସେନା ପଞ୍ଚଶ ଯୁଥପତିମାନେ
ସମସ୍ତେ ଅମୃତ ଭକ୍ଷିଲେ ତତକ୍ଷଣେ ।
ସୈନ୍ୟଙ୍କର ଉପରେ ଯେ ସିଞ୍ଚିଲେ ଅମୃତ
ଗର୍ଜ୍ଜୁଁ ଶତେ ଗୁଣରେ ଛାକର୍ମ ବଢ଼ିତ ।

ଏଥିଅନନ୍ତରେ ନାଗରାଜା ପୁଣି
ଶ୍ରୀରାମ ବୋଇଲେ ଯାଅ ହେ ତକ୍ଷଣି ।
ଭରଥ ଜାଣିଲେ କରିବ ପୁଣ ଦ୍ୱନ୍ଦ
କାହାରି ବୋଲ ସେ ନ ରଖିବ ମନ୍ଦ ।
ଶତ୍ରୁଘନ ଆମ୍ଭର ଅଟଇ ସାନଭାଇ
ସମସ୍ତଙ୍କ ଶ୍ରଦ୍ଧା ତାହାଠାରେ ଥାଇ ।
ସବୁଜେ ବାଳୁତ ସେ ନ ଜାଣଇ କିଛି
ମନ୍ତ୍ରୀ ଧରିବରୁ ଭାରା ସେ ପାଉଅଛି ।
ବେଗେ ତୁ ନାଗରାଜା ତାହାକୁ ଦେବୁ ଗୁହ
ବିଳମ୍ବ ନ କରିଣ ଯାଅ ତୁ ବାହୁଡ଼ ।
ଶୁଣିଣ ବାସୁକି ଗରୁଡ଼ ବେଗେ ଗଲେ
ଗଲାବେଳେ ବାସୁକି କହିଲା ରାମଠାରେ ।
ଏ ଜନ୍ମେ ଆଜଥରେ ମୋହର ଦେଖାଦେଲି
ମୋଠାରେ ଦୟା ରଖିଥିବଟି ରଘୁପତି ।
ଦ୍ୱାପର ଯୁଗରେ ଜନମ ତୁମ୍ଭେ ହେବ
ମଧୁପୁର ଯାଇଣ ଗୋପରେ ରହିବ ।
କଂସକୁ ମାରିଣ ହସ୍ତିନା ତୁମ୍ଭେ ଯିବ
ପଣ୍ଡୁର ନନ୍ଦନ ସଙ୍ଗରେ ମେଳ ହେବ ।
ରାଜସୂ ଯାଗ କରିବେ ଯୁଧିଷ୍ଠି ଯେ ରାଜା
ରାମକୃଷ୍ଣ ରୂପରେ ହୋଇଣ ଥିବ ଦୁଯା ।
ଯେତେବେଳେ ଅର୍ଜ୍ଜୁନ ଧନୁର ଧରଣୀ
ତେତେବେଳେଁଭେଟଯେ ହୋଇବ ରଘୁମଣି
ଏତେ ବୋଲି ବାସୁକି ଗରୁଡ଼ ବେଗେ ଗଲେ
ସ୍ୱର୍ଗର ଭୁବନେ ପ୍ରବେଶ ଯାଇ ହେଲେ ।
ତେତିଶକୋଟି ଦେବତା ଇନ୍ଦ୍ରପୁରେ ଅଛି
ରାବଣ ମଲବା କଥା ସମସ୍ତେ ବହୁରନ୍ତି ।
କୁମ୍ଭକର୍ଣ୍ଣ ଆଜ ଯେ ନିଦ୍ରାରୁ ଉଠିବ
ଶ୍ରୀରାମର ହସ୍ତରେ ପ୍ରାଣ ତାର ଯିବ ।
ଗରୁଡ଼ ବାସୁକଙ୍କି ଦେଖିଲେ ସବଦେବ
ହିନ୍ଧିଲେ ଏ ଦୁନ୍ଦି କମା ଏକ ଭଗ ।
ବୃହସ୍ପତି ବୋଇଲେ ଏ ଲଙ୍କାକୁ ଯାଇଥିଲେ
ଶ୍ରୀରାମକୁ ସନମାନ କରିଣ ଅଇଲେ ।
ଦେବରାଜା ବୋଇଲେ ଧରଣୀ କେ ଧଇଲା
ବୃହସ୍ପତି ବୋଇଲେ ଶ୍ରୀରାମର ଭାଇ ଧଇଲା ।
ସେଠାରୁ ଗରୁଡ଼ ଯେ ବହନ ଚଳଗଲା
ଉମ୍ପକ ଦ୍ୱୀପରେ ନିଜ ସ୍ଥାନରେ ରହିଲା ।

ବାସୁକି ସ୍ୱର୍ଗରୁ ଯେ ପାତାଳପୁର ଗଲା
ନିଜ ମନ୍ଦିରେ ଯାଇଣ ପ୍ରବେଶ ହୋଇଲା ।
ସ୍ନାହାନ ଭୋଜନ କଲାକ ଭୁରିଭେଣ ସେହୁ
ମସ୍ତୀକ ଧଇଲା ସେ ଶତ୍ରୁଘନ ଠାଇଁ ।
ଦୁଇରାହ ଛନ୍ଦାଦନ ଏଠାରେ ରହିଲା
କ୍ଷୀରମର ଭାଇ ଯେ ଧରଣୀ ଧରିଥିଲା ।
ସ୍ନାହାନ ଶଉଚ କଲାକ ଶତ୍ରୁଘନ
ଅମୃତ ଭୋଜନ କଲାକ ତହୁଁ ପୁଣ ।
ବେଳ ଅସ୍ତ ହୁଅନ୍ତେ ସନ୍ଧ୍ୟା ସୁମରିଲା
ପାଟ ଦୋଳି ପଲଙ୍କରେ ଶୟନ ଯାଇ କଲା
ବାସୁକି ଆଜ୍ଞାରେ ନାଗବଳ ଘେନଗଲେ
ଅଯୋଧ୍ୟା ନଗ୍ରରେ ନନ୍ଦ ଗ୍ରାମରେ ରଖିଲେ
ନିଦ୍ରା ଭାଙ୍ଗିଣ ଅଇଲେ ନାଗବଳ
ପାହିଲା ରଜନୀ ଯେ ଉଠିଲେ ସକଳ ।
ଦେବତା ଆଳେ ଶଙ୍ଖ ଶବଦ ଶୁଭିଲା
ଚେତା ପାଇଣ ଶତ୍ରୁଘନ ଯେ ଉଠିଲା ।
ଦେଖିଲା ଅଯୋଧ୍ୟା ଯେ ଅଟଇ ନନ୍ଦଗ୍ରାମ
ବିସ୍ମରିଲା ନାଗରାଜା ଉଆସ୍ତେ ଏହୁ କର୍ମ ।
ସେଠାରୁ ଉଠିଯାଇ ନବରେ ପଶିଲା
ଭରଥର ଆଗରେ ସ୍ୱର ବେଗେ ଜଣାଇଲା ।
ଅଇଲେ ଶତ୍ରୁଘନ ଭାଇ ଯେ ତୋହର
ରାହରେ ସେ ଶୋଇଥିଲେ ଦେଖନ୍ତେ ଉତର ।
ଶତ୍ରୁଘନ ଯାଇଣ ଭରତ ପାଶେ ହେଲା
ଦୂରୁ ଦେଖି ଶତ୍ରୁଘନ ଗଡ଼ଗାଳି ଶୋଇଲା ।
ଦେଖିଣ ଭରଥବୀର ଆନନ୍ଦ ମନ ହୋଇ
ଶତ୍ରୁଘନକୁ ସେ କୋଳ କଲା ଯାଇ ।
ବୋଇଲା ବାବୁରେ କେଣିକ ପୁଣଗଲୁ
ସୁବଦନ ହେଲା ବାରତା ନ ପାଇଲୁ ।
ଶତ୍ରୁଘନ ବୋଲେ ଦେବ ଶୁଣ ମୋ ବଚନ
ସକଳ ରାଜାଙ୍କୁ ମୁଁ ଯେ କଲି ନିମନ୍ତ୍ରଣ ।
ଫେରି ଆସିଣ ମୁଁ ଯେ ରାହରେ ଶୋଇଥିଲି
ଶୋଇବା ଠାବରୁ ଯେ ନାଗରାଜା ହରି ।
ଧରଣୀ ମୋତେ ନେଇଣ ଗରୁଡ଼ ପୁରେ ଗଲା
ଧନୁ ହରିଲେ ଧରଣୀ ରହିଲା ମୋରପାଶ ।
ତିନଦିନେ ନାଗରାଜା ଫେରିଣ ଅଇଲା
ଧରଣୀକି ଧରି ସେ ଯେମୋତେ ଛାଡ଼ିଦେଲା
ରାହରେ ତାର ବଳ ଏଠାରେ ଛାଡ଼ିଗଲେ
ସୁବର୍ଣ୍ଣ ପଲଙ୍କେ ଶୋଇଥିଲି ଭଲେ ।
ଶୁଣିଣ ଭରଥବୀର ଚାଟିତା ହୋଇଲା
ଶୟନ ଠାବରେ ପ୍ରବେଶ ଯାଇ ହେଲା ।
ଦେଖିଲା ସୁବର୍ଣ୍ଣ ପଲଙ୍କ ଖଟଦୋଳି
ଗଡୁଆଳି ଗଉଆ କଂସ ତାଟିଆ ଆଦିକରି
ସହସ୍ରେ ଗଉଆରେ ସୁବର୍ଣ୍ଣ ଅଛି ଭରି
ଦେଉଳ ଭିତରେ ରଖିଛି ସଜକରି ।
ଦେଖିଣ ଭରତ ଭଣ୍ଡାରେ ନେଇଣ ରଖି
ଶତ୍ରୁଘନଙ୍କୁ ବହୁତ ପ୍ରଶଂସାରେ ଲେଖି ।
ମାତାଗଣ ଶୁଣିଲେ ପୁହ ଧରଣୀ ଧରିଲା
ପାହ ମନ୍ତ୍ରୀ ବୋଇଲେ ଯେ କୁଳ ଉଦ୍ଧରିଲା
ରାଜ୍ୟ ଲୋକ ବୋଇଲେ ଆଣିଲେ ବହୁଧନ
ଭଣ୍ଡି ଘୋଷରେ ସମସ୍ତେ କଲେକ ଗମନ ।
ସ୍ନାହାନ ଭୋଜନ ଯେ ଦୁଇ ଭାଇ କଲେ
ସନ୍ଧ୍ୟା ସୁମରିଣ ନିଶି ଯେ ପୁହାଇଲେ ।
ଚମ୍ପକ ଦ୍ୱାଦଶୀ ଯେ ଆରଦନ ହୋଇ
ପୂର୍ବ ଦିଗର ରାଜା ଅଇଲେ ଚଳାଇ ।
ସ୍ୱରି ଦିନରେ ରାଜା ସ୍ୱର ଦିଗରୁ ଆସେ
ଅଯୋଧ୍ୟା ଗହଳ ଯେ ହୋଇଲାକ ବାସ ।
ପଚ୍ଚରିଲୁ ଭୁ ଯେ ଗିରିଜା ଦୁହିତା ଏବେ
ସନ୍ତୋଷ ହେଲୁଟିକି ଶୁଣିଣ ମନ ରାତେ ।
ପାର୍ବତୀ ବୋଇଲେ ଦେବ ଶୁଣ ହର
ରାବଣ ମନ୍ଦୋଦରୀ କି କରନ୍ତି ବିଚାର ।
ପଲଙ୍କରେ ଶୋଇଲା ଅଚେତା ହୋଇ ପୁଣ
ନିଶି ପାହିବାରୁ ଯେ ଉଠିଲା ରାବଣ ।
ଶୁଣିଣ ତ୍ରିଲୋଚନ ଯେ ବୋଲନ୍ତି ବଚନ
ଶୁଣ ଗୋ ଗଉରି କହିବା ତାହା ପୁଣ ।
ଏଥୁଅନ୍ତରେ ସେ ଯେ ରଜନୀ ପାହାନ୍ତି
ଦେବତାଙ୍କ ଆଳରେ ଯେ ଶଙ୍ଖଧ୍ୱନି ଦ୍ୟନ୍ତି
ନିଦ୍ରାଇ ଭାଙ୍ଗିଲା ଯେ ଚେତା ହେଲେ ପୁଣି
ଶଯ୍ୟାଛାଡ଼ି ଉଠିଲା ଯେ ଦଶଇ ମୁଧୂନି
ନିତ୍ୟକର୍ମ ଛାଡ଼ିଣ ବାହାରେ ଅବକାଶ
ମନ୍ତ୍ରୀ ଅମାତ୍ୟ ଯେ ମିଳିଲେ ତାର ପାଶ
କାଳାକ୍ଷ ଜୁନୁପାକ୍ଷ ମେଘନାଦ ସହୋଦର
ପରମାର୍ଥ ମିହଘନ ଜମ୍ବୁମାଳି କୁମର ।

ତାହାର ନାମ ଗୋଟି ଅଟେ ସିଂହନାଦ
ତପନ ସୁପୁଚ୍ଛ ଘନ ତପନ ପ୍ରହଗଜ ।
ବିରୂପାକ୍ଷ ଉସକେତୁ ଅଗ୍ନିକେତୁ ଆଏ
ଲୋହପାଦ ଜମ୍ବୁକେତୁ ଦର୍ଶନ ଆସି ହୟେ
ଚନ୍ଦ୍ରମୃଷ୍ଟି ବଦୁମାଳ ଅଶ୍ମନ ପ୍ରଭର
ହୋଧନ ପ୍ରଚଣ୍ଡ ପ୍ରଭର ବାହୁରସେଖର ।
ପିଶୃଣ ହିଶିର ଯେ ଏକପାଦ ମକରାକ୍ଷସ
ନରାନ୍ତକ ଦେବାନ୍ତକ କୁମ୍ଭେକ ବିରୂପାକ୍ଷ
ଅଲୋପି ସମନସ୍ତୁ ଅମସ୍ତେ ଯେ ସଲୋପି
କଙ୍କ ଧଙ୍କ ସିଂହ ଭୁରଙ୍ଗ ବେନି ଯେଆଏପାପି
କାଳଘଣ୍ଟା ଯମଘଣ୍ଟ ସେ ମସ୍ତୁରାବଣ
ମୁଖା ଦୁର୍ମୁଖା ଯେ ଗୁରଣ ବଗୁରଣ ।
ସେନା ସେନାପତିମାନେ ଦର୍ଶନ ଆସିକଲେ
ଜମ୍ବୁପାକ୍ଷକୁ ଚାହିଁଣ ରାବଣ ଆଜ୍ଞାଦେଲେ ।
ମହୋଦର ସଙ୍ଗତେ ଯାଅରେ ତୁମ୍ଭେ ବେନି
କୁମ୍ଭକର୍ଣ୍ଣକୁ ମୋର ଘୁମୁକୁ ଆସଘେନ ।
ସେହୁ ସେ କରିପାକ କରିବ ମୋର ହିତ
ଶୁଣିଣ ପୁନ୍ଦ ବେନି ଚଳଲେକ ତୁରିତ ।
କୁମ୍ଭକର୍ଣ୍ଣ ମନ୍ଦର ଦ୍ୱାରରେ ଯାଇ ହୋନ୍ତି
ଦ୍ୱାରପାଳଙ୍କୁ ଚାହିଁଣ ବଚନ କହନ୍ତି ।
ରାଜାର ଆଜ୍ଞାରେ ନେବୁଟି କୁମ୍ଭକର୍ଣ୍ଣ
ଭିତରକୁ କହି ପଠିଆଅ ଯେ ବହନ ।
ଯୁବତୀମାନେ ପାଶରୁ ଆଡ଼ ହୋଇଯାନ୍ତୁ
ଧାଇ ପରିବାସ ଯେ ଗୋଟିଏ ନ ରହନ୍ତୁ ।
ରାଜାର ଆଜ୍ଞାରେ ଦେବୁଟି ଏହିକ୍ଷଣି
ଭିତରକୁ ଯାଇ ତୁମ୍ଭ କହ ତତକ୍ଷଣି ।
ଏହାଶୁଣି ଦ୍ୱାରପାଳ ବେଗ ହୋଇଗଲା
ଆରଦ୍ୱାରେ ମୃଦୁସୁଲ୍ଲୀ ଆଗରେ କହିଲା ।
ରାଜାର ଆଜ୍ଞାରେ ଜମ୍ବୁପାକ୍ଷ ମହୋଦର
ନିଦ୍ରାରୁ ଉଠାଇ ନେବେ କୁମ୍ଭକର୍ଣ୍ଣ ବୀର ।
ଭିତରେ ଏହା ତୁମ୍ଭେ କହ ବେଗ ଯାଇ
ଯୁବତୀମାନେ ସମସ୍ତେ ଯିବେ ଆଡ଼ହୋଇ
ଶୁଣିକରି ମୃଦୁସୁଲ୍ଲୀ ଚଳିଲା ବେଗେ
ଜଣାଇଲା କୁମ୍ଭକର୍ଣ୍ଣ ଘରଣୀର ଆଗେ ।
ନୃପତି ଆଜ୍ଞାରେ କୁମ୍ଭକର୍ଣ୍ଣକୁ ତୋଳିବେ
ବହୁତ ଲୋକ ହୋଇଣ ନିଦ୍ରାରୁ ଭାଙ୍ଗିବେ

ଜମ୍ବୁପାକ୍ଷ ମହୋଦର ଅଛନ୍ତି ଦୁଆରେ
ତୁମ୍ଭେମାନେ ସମସ୍ତେ ଯିବ ଗୋ ଭିତରେ ।
ରାଜା ଆଜ୍ଞା ପ୍ରମାଣେ ନେବେ ଏହିକ୍ଷଣି
ଦେଖ ମୁଁ ଅଇଲଦ୍ୱାରେ ଅଛନ୍ତିସୈନ୍ୟସେନ
ଶୁଣିଣ ବିରୋଜା କନ୍ୟା ଉଠିଲା ତୁରିତ
ସଙ୍ଗତରେ ସପତଣୀ ଲକ୍ଷେକ ଅଛନ୍ତି ।
କେବଣ ଯୁବତୀ ଯେ ଚାମର ଥୋଇଗଲା
କେହୁ ଆଲଟ କେହୁ ବିଞ୍ଚଣା ଥୋଇଲା ।
କେହୁ ଯେ ଧୂପକାଠି ଥୋଇଲା ଧୀରକରି
କେହୁ ଚତୁଃସମ ଥୋଇଲା ଅପସରି
କେହୁ ଯନ୍ତ୍ର ଥୋଇଲା କେହୁ ଥୁଏ ତାଳ
କେହୁ ବଂଶୀ କେହୁ ଥୁଅଇ ମର୍ଦ୍ଦଳ ।
କେହୁ କଂସାଳ କେହୁ ବୀଣା ଗଲା ଥୋଇ
କେହୁ ଶଙ୍ଖ ଫୁଙ୍କା ଯେ ଥୋଇ ଆଡ଼ହୋଇ
କେହୁ ଯେ କନ୍ଦ ଖେଣ୍ଡି ଥୋଇ ଯେ ମୁହଗଲା
ସ୍ନାନ ବଟାରେ କେହୁ ବସନ ଘେରାଇଲା ।
କେବଣ ଯୁବତୀ ଯେ ଚନ୍ଦନ ଘୋଷିଥିଲା
ଫୁଲ ଥୋଇଣ କେହୁ ଯେ ଆଡ଼ ହେଲା ।
କେହୁ ଜୁସ ଖଣ୍ଡାଧରି ଆଡ଼ ହୋଇଯାନ୍ତି
କେ ପାଦ ମଞ୍ଜନକାରୁ ଘୁଞ୍ଚି ଆଡ଼ହୋନ୍ତି ।
କେ ପାଦ ଅଙ୍ଗୁଷ୍ଠି ଯେ ଫୁଟାଉଣ ଥିଲେ
କସ୍ତୁରୀ ଘସିବା ଲୋକେ ଆଡ଼ ହୋଇଗଲେ
ନିଦରୁ ଉଠିଲେ ଭୁଞ୍ଜିବା ଦ୍ରବ୍ୟମାନ
ନନ୍ତ କଥା ସଞ୍ଚା ଯେ କରନ୍ତି ବଧାନ ।
ଯେଉଁମାନେ ତାହା ଯେ ଭକ୍ଷଣ କରୁଥିଲେ
ଉପହାର ଦ୍ରବ୍ୟମାନ ଆଡ଼େ ଯେ କରିଗଲେ
ରତ୍ନ ଅଲଙ୍କାରମାନ ଯେହୁ ଘେନୁଥିଲେ
ଥିବାର ଲୋକଙ୍କୁ ସେ ଜଗାଇଣ ଗଲେ
କୁମ୍ଭକର୍ଣ୍ଣ ଅଚେଷ୍ଟା ନ ଜାଣଇ କିଛି
ଶୁଦ୍ଧ ସୁବର୍ଣ୍ଣ ପଲଙ୍କରେ ସେ ଶୋଇଛି
ଗଜଦନ୍ତ ପଟା ଯେ ମାଣିକ୍ୟ ଖେରା ସ୍ତିର
ମାଳାର ଝରଣ ଯେ ପଲଙ୍କରେ ପୂରି ।
ମୁକୁତାର ଝରା ଯେ ବଜଲା କାଠମ୍ବରା
ସୁବର୍ଣ୍ଣର ଶିକୁଳ ଯେ କର୍ମାଇ ଯୋଡ଼ାଯୋଡ଼ା
ପାଟର ବେଲରି ଯେ ବୈଡୂର୍ଯ୍ୟ ନେତ ଜ୍ୱଳ
ନାଗେଶ୍ୱର କେଶର ଯେ ମୁଣ୍ଡର ମୂଚଳ ।

ଛଟନ୍ଦ ଝୀନବାସେ ଶୋଯାଇଅଛୁ ଶେଯ
ସୁଗନ୍ଧ କର୍ପୂର ଯେ କର୍ପୂରର ରଜ ।
ଚଉକନ୍ତ ସ୍ଥିଷ୍ଣ ଯେ ଛଟନ୍ଦ ପାଟ ଟେରା
ସିନ୍ଧୁଆର ବୃନ୍ଦୂଆ ନବରତ୍ନେ ଝରା ।
ଭଷ୍ମ ନ ହୋଇଣ ଯେ ଶାଇ ଅଛୁ ଶୋଇ
ହେତୁ ମନ୍ତ ଜ୍ଞାନ ଯେ କହୁଛନ୍ତି ତାଇ ନାହିଁ ।
ଛଅଁ ଚଉଦନ ହୃଦର ପଦ୍ମେ ଛନ୍ଦ
ପରମ ହଂସ ଜାଣି ମୂଳ କମଳ ଭେଦ ।
ସୋଲହ ଡମ୍ବରୁ ନଶ୍ବନେ ରୁହାଇଲ
ଏମନ୍ତ ପ୍ରକାରେ ଜାଗ୍ରତ କରି ଥିଲ ।
ଷଡ଼ଚକ୍ର ଭେଦି ଯେ ହାଟେହାଳେ ପବନ
ତିନି ପଦ୍ମ ଫିଟାଇ ଭଷ୍ମ ଯେ ଶୟନ ।
ମହା ଯୋଗନିଦ୍ରା ଯେ ହଣବାର ବଳ
ଯାଇଣ ଦେଖିଲେ ମନ୍ଦୋଦର ଜନ୍ତୁପାଷ ।
ସୈନ୍ୟ ସହିତରେ ଦେଖନ୍ତି ଦିବ୍ୟପୁର
ସାଧୁ ସାଧୁ ପ୍ରଶଂସା କରନ୍ତି ଅସୁର ।
ଜରିବର ଉପରେ ଅଛଇ ଶାର ଶୋଇ
ନେଲେ ନସ୍ତେପନ୍ତି ଯେ ବଦନକୁ ଗୃହି ।
ନିଶ୍ବାସ ଘାତେ ଉଡ଼ଇ ଉପର ଚୂଳ
ନଜାଣି ପବନ ବନ୍ଧେ ପ୍ରଳୟର କାଳ ।
ଉଠ ଉଠ ବୋଲିଣ ବୋଲଇ ମନ୍ଦୋଦର
ଆଜ୍ଞା ଦେଇଅଛୁ ତୋର ଜ୍ୟେଷ୍ଠ ସହୋଦର
ଶତ୍ରୁ ଉପଗତ ଯେ ହୋଇଅଛୁ ଆସି
ନିଦ୍ରାତେଜି ଭୁଞ୍ଜ ହେ ଭାଇର ପାଶେ ଆସି ।
ନ ଶୁଣଇ କୁମ୍ଭକର୍ଣ୍ଣ ନ ଭାଙ୍ଗଇ ନିଦ
ସହସ୍ରେ ଲୋକ ଯାଇ ମଞ୍ଚାଳନ୍ତି ପାଦ ।
ଅଙ୍ଗୁଷ୍ଠି ପୁଟାଇଣ ଗାବନ୍ତି କେହୁ ଗୀତ
ବାଜଣା ବଜାଇ କେହୁ କରନ୍ତି ନୃତ୍ୟ ।
ଚକ୍ଷୁଃସମ ଲେପନ୍ତି ଶୀତଳ ପାଣି ଉଠୁ
କର୍ଣ୍ଣ ପାଖରେ କେହୁ ଠମକ ନେଇପିଟୁ ।
ଘୋଡ଼ାଙ୍କର ହେଷାରବ ହସ୍ତୀଙ୍କ ଗର୍ଜନ
ଉଠ ଉଠ ବୋଲିଣ ଡ଼ାକନ୍ତି ସର୍ବଜନ ।
ଗହ ଗହ ଶବଦ ସିନ୍ଧୁ ଘୋଷ ଜାଣି
କୁମ୍ଭକର୍ଣ୍ଣ ଚଅଁଇ ଉଠିଲ୍ଲ ତାହା ଶୁଣି ।
ଦେଖି ସମସ୍ତେ ଦୂରରୁ ଅପସରି ଗଲେ
ପା ଏ ପଡ଼ି ଶୋଇଣ ମଥାରେ ହସ୍ତଦେଲେ ।

କରେ ଚକ୍ଷୁ ମଳିଣ ବୋଲଇ ମହାବୀର
ଏତେ ନିଦ୍ରା କମାଇଁରେ ଭାଙ୍ଗିଲ ମୋହର
କେବଣ କାର୍ଯ୍ୟ ଏବେ ପଡ଼ିଅଛୁ କହ
ଏ ବ୍ରହ୍ମାଣ୍ଡ ଭିତରେ କେ ଅଛୁ ମୋରେରହ
କାହାକୁ ସଂହାରି ଯେ ନ ପାରଇ ମୁହିଁ
ଏ ଯୋଗନିଦ୍ରାରୁ ମୋତେ ତୋଳିଲ କମାଇଁ
ଚନ୍ଦ୍ର ସୂର୍ଯ୍ୟ ସହିତରେ ଗ୍ରହଗଣମାନ
ପୃଥ୍ବୀରେ ପକାଇ କି କରିବି ଦହନ ।
ମେରୁ ସହିତେ କି ଉପାଡ଼ିବି ବସୁନ୍ଧରା
ପିଇ ଶୁଖାଇବି କି ସପତ ସିନ୍ଧୁ ବାରି ।
ବିଧାମାରି ମେରୁଗିରି କରିବି କି ଧୂଳି
ଗୋଇଠା ମାରିଣ କରେ ଭାଙ୍ଗିବି ମହୀଆଳି
କର୍ଣ୍ଣ ନ ପୂରୁ ଉଠିଲେ ମୃତ୍ୟୁ ମୋତେ ହୁଏ
ଧାତା କହିବାରୁ ଯେ ଜାଣଇ ଲଙ୍କରାଏ ।
ଏବେ ଏହିକ୍ଷଣି ଆହାର ମୋତେ ଦିଅ
କସ କାର୍ଯ୍ୟେ ତୋଳି ଅଛପତେ ମୋତେକହ
ଇସ୍ତ କରିଣ କେହି ସମସ୍ୟା ନ ଦ୍ୟନ୍ତି
ଶାଳିଅନ୍ନ ନାନା ଯେ ବ୍ୟଞ୍ଜନ ପରଷନ୍ତି ।
ପିଠ ପଣା ପଇଡ଼ କଦଳୀ ଦୁଧସର
ଦୈତ୍ୟ ବୋଲେ ଆମିଷ ଆଣ ମୋ ଗ୍ରାମୁର
ପଲଙ୍କେ ଥାଇ ଭୁଞ୍ଜଇ ନାନାଦ୍ରବ୍ୟ ମାନ
ଗଜ ଘୋଡ଼ା ମଇଷି ଦିଅନ୍ତି ବହନ ।
ସହସ୍ରେ ସହସ୍ରେ ମୃଗ ଶୂକର ଖାଇଲ୍ଲ
ଦୁଧ ମଦ୍ୟ ରକତ ଅନେକ ପିଇଲ୍ଲ ।
ଲକ୍ଷ ଲକ୍ଷ କରି ଦେଲେ ଛାଗଳ ମେଷ ଓଟ
ଖାଇକରି କୁମ୍ଭକର୍ଣ୍ଣ ପୂର୍ଣ୍ଣକଲ୍ଲ ପେଟ ।
ଆଚ୍ଚୋବନ ସାରିଣ ଉଠିଲ୍ଲ ହରଷ
ଚକ୍ଷୁଃସମ ଘେନିଣ ପିନ୍ଧିଲ୍ଲ ଝୀନବାସ ।
ନାନା ଅଳଙ୍କାରେ ସେ ହୋଇଲ୍ଲ ଭୂଷଣ
କଷଠ କୁଣ୍ଡଳ ହାର କୁଣ୍ଡଳ କଙ୍କଣ ।
ତାମ୍ବୁଳ ଭୁଞ୍ଜିଣ ଯେ ଚ଼ଲଇ ଧୀର ଧୀର
ପୃଥ୍ବୀ କମ୍ପମାନ ସେ ଚ଼ଲନ୍ତେ ତାହାର ।
ଗ୍ରାମୁରେ ସମସ୍ୟା ଦିଅନ୍ତା କେହି ନାହିଁ
ମତ୍ତଗଜ ସମାନରେ ନିଅନ୍ତି କଢ଼ାଇ ।
ଆଗରେ ବଜାଇ ଯେ ବାଜଣା ନିରନ୍ତର
କେ ବଂଶୀ ବଜାଇ କେ ଢ଼ାଳଇ ଚ଼ାମର ।

ପିଙ୍ଗଳ ବର୍ଣ୍ଣ ହୋଇ ଦଶଇ ତାର କାୟ
କେଶ ନଖ ଦାଢ଼ି ସବୁ ଉକଟ ପରସ୍ପ ।
ନଜ ନବରୁ ଦୈର୍ଘ୍ୟ ହୋଇଲା ବାହାର
ଗଗନ ମାର୍ଗରେ ଶିର ଲଗଇ ତାହାର ।
ରାଜବାଣ୍ଟେ ଯାଆନ୍ତେ ଦେଖୁଛନ୍ତି ଲୋକେ
ଏବେ ଯେ ଦୁଃଖ ଯିବ ବୋଲୁଛନ୍ତି ଥୋକେ
ଘଣ୍ଟେ କଏବାର କରନ୍ତି ଆଗ ମିଳ
ଆନନ୍ଦେ ଯୁବତୀମାନେ ଦ୍ୟନ୍ତି ହୁଳହୁଳ ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଯଜ୍ଞଶେଷେ
ବ୍ରାହ୍ମଣେ ମିଳଣ ଯେ କରନ୍ତି ବେଦଘୋଷେ
ନାକୁପାକ୍ଷକୁ ଚାହିଁଣ ବୋଲଇ କୁମ୍ଭକର୍ଣ୍ଣ
ଦେଖ ଭାଜିଲା ପରାଏ ଦଶଇ ବିବର୍ଣ୍ଣ ।
ଶୁଣିଣ ନାକୁପାକ୍ଷ ଯୋଡ଼ଇ ବେନକର
ଶୁଣ ଦେବ କୁମ୍ଭକର୍ଣ୍ଣ ଅସୁର ଈଶ୍ୱର ।
ଶ୍ରୀରାମ ଲକ୍ଷ୍ମଣ ବୋଲି ଦୁଇ ଜଟାଧାରୀ
ସୀତା ନାମରେ ତାହାର ଘରଣୀ ସୁନ୍ଦରୀ ।
ଅଯୋଧ୍ୟାର ରାଜା ଦଶରଥ ସୁତ
ଅରଣ୍ୟକୁ ଅଇଲେ ପାଳଣ ପିତା ସତ୍ୟ ।
ପଞ୍ଚବଟୀ ବନରେ ମାସ କରିଥିଲା
ସୂର୍ପଣଖାର ନାସା ଶ୍ରବଣ ଛେଦିଲା ।
ଖର ଦୂଷଣ ତ୍ରିଶିରା ଏ ତିନି ଜନ
ପରିବାରେ ଯୁଝିଲା ଅସୁର ବଳ ସେନ ।
ଯତିର ନାରାଚରେ ସମସ୍ତେ ନାଶଗଲେ
ଗୋଟିଏ ବଳ ସେଥିରୁ ବାହୁଡ଼ି ନଗଲେ ।
ସର୍ପଣଖା ଆସିଣ କହିଲା ବାରତା
କୋପେ ଯାଇ ଦଶାନନ ଆଣିଲା ତା ସୀତା ।
ସୁବର୍ଣ୍ଣର ମାୟା ମୃଗେକ ଦେଖାଇଲା
ଲକ୍ଷ୍ମଣ ଜଗାଇ ରାମ ମୃଗମାରି ଗଲା ।
ଉଚ୍ଚର ଦେଖିଣ ଲକ୍ଷ୍ମଣ ଚାଲିଗଲେ
ଶ୍ରୀରାମର ପାଖରେ ପ୍ରବେଶ ହୋଇଲେ ।
ଏକା ହୋଇଣ ଯେ ଥିଲା ତାର ନାରୀ
ରାଇ ତୋର କପଟରେ ହୋଇଲା ଭିକାରୀ
ଫଳମୂଳ ଭିକ୍ଷା ଦେବା ବେଳରେ ଆଣିଲା
କାଠରେ ଗରୁଡ଼ ପୁଷ୍ପକୁ ଛଣିଲା ।
ଅଶୋକ ବନରେ ଆଣିଣ ଅଛୁ ଥୋଇ
ତ୍ରିଜଟା ମୂଳରେ ଯେ ଅସୁରୀ ଜଗାଇ ।
ଛମି ନ ପାରଇ ଯେ ରମ୍ଭାର ଶାପ ଜାଣି
ଘରରେ ବଶ ଯେ ନୋହିଲା ସେ ତରୁଣୀ ।
ପ୍ରତିଦିନରେ ଅଗ୍ନି କରଇ ସ୍ନାହାନ
ଦେଖିଣ ଉପୁକଳା ତୋ ଭାଇ ଦଶାନନ ।
ଆହାର ନ ଖାଇ ଯେ ଧରିଅଛୁ ଦେହ
ଦଶଗ୍ରୀବ ତାକୁ ଯେ ବଢ଼ାଇ ସନ୍ଦେହ ।
ଆଣିବା ଦଶ ମାସରେ ମାଙ୍କଡ଼େ ଆସିଥିଲା
ମଧୁବନ ତୋଟା ଯେ ହେଳେ ଭଜାଡ଼ିଲା ।
କଙ୍କର ଗଣ ଯେ ପେଶିଲା ତୋର ଭାଇ
ସବୁ ନାଶ କଲା ଏକଇ କପିହୋଇ ।
ଶାଳକଗଣେ ପେଶନ୍ତେ ସମସ୍ତ ମାଇଲା
ପାଞ୍ଚ ସେନାପତି ଯେ ପ୍ରାଣରେ ହରାଇଲା ।
ଜମ୍ବୁମାଳ ଅକ୍ଷୟ କୁମର ଯୁଝିଗଲେ
କପିର ସଙ୍ଗେ ଯୁଝି ସମସ୍ତେ ପ୍ରାଣଦେଲେ ।
ଇନ୍ଦ୍ରଜିତ ପୁଣ ଯେ ଆଣିଲା ତାକୁ ବାନ୍ଧି
ମାୟାବାନର ସେଯେ ଭୂମିରେ ପଡ଼ି କାନ୍ଦି ।
ମାଇଲେ ନ ମଲା ସେ ହାଣିଲେ ନ କାଟଇ
କୋପେ ରାବଣ ଲାଉଳଙ୍କୁ ପୋଡ଼ଦେଇ
ସେହି ଅଗ୍ନି ଘେନିଣ ପୋଡ଼ିଲା ଲଙ୍କାପୁରୀ
ଶ୍ରୀରାମକୁ ବାରତା ଦେଲା ସିନ୍ଧୁ ହୋଇ ପାରି
କୁମ୍ଭକର୍ଣ୍ଣ ପଚାରଇ ଜକ୍ରପାକ୍ଷକୁ ଚାହିଁ
ଯତି ମର୍କଟ ଯେ ଭେଟ ହେଲେ କାହିଁ ।
ଏକଥା ଶୁଣିଣ ମୋତେ ଲାଗିଲା ହରଷେ
ତସ୍କର କହ କଥା ଯେସଣେ ମୋ ପ୍ରତ୍ୟେୟେ
ଜକ୍ରପାକ୍ଷ କହଇ ଶୁଣିମା ମହାରାଏ
ଏ ତୋହର ଶ୍ରୀମୁଖେ କହିବି ସନ୍ଦେହେ ।
ଯତି ଯେ ମାୟାମୃଗ ମାରି ଯାଇଥିଲା
କୁରଙ୍ଗୀ ମାରିଆସି ମଢ଼ିଆରେ ସେ ହେଲା
ଘରଣୀ ନ ପାଇ ବୁଲିଲା ଚଉକତି
ଋଷ୍ୟମୂକ ପର୍ବତରେ ଭେଟିଲା ମାରୁତି ।
ବାଳି ନୃପତି ଯେ କଷ୍କିନ୍ଧ୍ୟାର ରାଜ୍ୟେ
ସାନୁଜ ଭାଇ ତାର ସୁଗ୍ରୀବର ଯେ ହୋଏ ।
ଜ୍ୟେଷ୍ଠ କନିଷ୍ଠ ଯେ ହୋଇଲେ ମରାମରି
ସୁଗ୍ରୀ ନ ପାରି ଋଷ୍ୟମୂକରେ ପଶେ ଡରି ।
ସୁଗ୍ରୀବ ସଙ୍ଗେ ଯତି ହୋଇଲା ଯାଇ ଭେଟ
ଦୁହେଁ ମଇତ୍ର ହୋଇ ସେ ଭୁଜାଭୁଜି କଷ୍ଟ

ତହୁଁ ଯାଇ ଯନ୍ତ ବାଳିକ ବଧ କଲା
କିଷ୍କିନ୍ଧ୍ୟା କଟକେ ସୁଗ୍ରୀବରକୁ ରାଜାକଲା ।
ରୁଷି କପି ଘେନଣ ଯେ ସୁଗ୍ରୀବର ସଙ୍ଗେ
ଶ୍ରୀରାମ ଲକ୍ଷ୍ମଣଙ୍କ ସଙ୍ଗରେ ଗୋଡ଼ାଏ ।
ସ୍ତ୍ରୀଉଦ୍ଧରକୁ ଯେ ପେଶିଲା ଦୂତମାନ
ଦକ୍ଷିଣକୁ ଅଇଲା ଯେ ପବନ ନନ୍ଦନ ।
ସୀତାଠାବ କରଣ ସେ ବାରତା ଘେନଗଲା
ଲଙ୍କାଦୈତ୍ୟ ବଳମାନ ସେ ସବୁ କଳିଲା ।
ଶୁଣି ଜଟାଧାରୀ ଯେ ହୋଇଲା ହରଷ
ଲଙ୍କାଗଡକୁ ଆସିବା ଭାଳଇ ମାନସ ।
ବିଭୀଷଣ ଭାଇ ତୋର ପଶିଲା ଶରଣ
ତଆରଲେ କୋପ ଯହୁଁ କଲାକ ରାବଣ ।
ସମୁଦ୍ରେ ବନ୍ଧ ବାନ୍ଧିଣ ସେହୁ ପାରି ହୋଇ
ସୁବଳସ୍ଥା ପର୍ବତ କଟକରେ ରହି ।
ଜ୍ୟେଷ୍ଠମାସଅମାବାସ୍ୟାଦିନ ସେ ଧାଡ଼ିଦେଇ
ସହସ୍ରେ ପୁର ଚଉଣ ଲଙ୍କାକୁ ବେଢ଼ିଦେଇ
ପୂର୍ବ ଦ୍ୱାର ଜଗିଆ ଯେ ଅଟନ୍ତି ଦ୍ୱାରପାଳ
ସିଂହଦ୍ୱାର ସିଂହକୁ ମାଇଲା ସୁଗ୍ରୀବର ।
ବାନର କୁମର ଯେ ଅଙ୍ଗଦ ନାମେ ବୀର
ଦକ୍ଷିଣଦ୍ୱାର ଅଗ୍ନି ଯେ ମାଇଲା କରି ଚୂର
ପଶ୍ଚିମ ଦ୍ୱାର ଶାର୍ଦୋଳକୁ ହନୁମନ୍ତ ମାରି
ଉତ୍ତର ଦ୍ୱାର ହସ୍ତୀକ ନଳ ଯେ ବଧକରି ।
ଭାଇ ତୋର ସୈନ୍ୟ ଯେ ଥାଟ ଘେନଗଲା
ଗଦା ମାରନ୍ତେ ତାହା ଯେ ହନୁମନ୍ତ ନେଲା
ହାଙ୍କିଣ ରଘୁନାଥ ବନ୍ଧିଲେ ଏକକାଣ୍ଡ
ଲକ୍ଷେକ ବୀର ଛତ୍ର ଯେ ହୋଇଲାକ ଖଣ୍ଡ ।
ବାହୁଡ଼ି ଭାଇ ତୋର ଅଇଲା ନିଜପୁରୀ
ମାଙ୍କଡ଼ଙ୍କ ଅଇଲା ଯେ ମୁଠା ଆଜ୍ଞାଧରି ।
ତାହାକୁ ଲଙ୍କପତି ଯେ ବଳରେ ମାରୁଥିଲା
ମାରିବା ଲୋକଙ୍କୁ ମାରି ଜଗତୀ ବୁଲନେଲା ।
ସେଦିନ ଯୁଦ୍ଧ ଯେ କଲେକ ଅପ୍ରମିତ
ପାଚେରୀ ଡେଇଁ କପି ପଶିଲେ ବହୁତ ।
ସୁରଦୁଆରେ ପଶିଲେ ସେହୁ ସୁରସେନା
ସେଦିନ ଇନ୍ଦ୍ରଜିତ ମରିଥାନ୍ତା ସେ ଜନା ।
ଧର୍ମରେ ପଳାଇଲେ ଯେ ସମସ୍ତେ ଅସୁରଗୁଡ଼
ହନୁମନ୍ତ ନାମେ କପି ପଡ଼ିଲା ଯେ ମାଡ଼ି ।

ସେଦିନର ଯୁଦ୍ଧ ଏତେକେ ରହିଲା
ବେଳଅସ୍ତ ହୁଅନ୍ତେ ଥାଟ ସେ କାଢ଼ିନେଲା
ଆରଦିନ ସେ ଯେ ପେଶିଲାକ ଚୋର
ଶ୍ରୀମୁଖ ଆଣିଥିଲା ପବନ କୁମର ।
କାଣ୍ଡ ଦେଖାଇଣ ଯେ ସୀତାଙ୍କୁ ମାଗୁଥିଲା
ପ୍ରୀତ ନରହିବାରୁ ସେ ବାହୁଡ଼ି ପୁଣ ଗଲା ।
ତାହାର ଯାଆନ୍ତେ ଆପଣେ ଦଶଶିର
ଚତୁରଙ୍ଗ ବଳଘେନି ହୋଇଲେ ବାହାର ।
ରୁଷ କପିଙ୍କର ସଙ୍ଗେ ବହୁତ ଯୁଦ୍ଧକଲା
ଦୁଇକଟିରୁ ସେଯେ ଅନେକ ସୈନ୍ୟମଲା ।
ଲକ୍ଷ୍ମଣ ନାମରେ ଯେ ତାହାର ସାନଭାଇ
ଇନ୍ଦ୍ରଜିତ ଶକତି ମାଇଲା ତାହାକୁଇଁ
ସେ ଘାଏ ଘୁମାଇଁ ଯେ ପଡ଼ିଲା ଧରଣୀ
ହନୁମନ୍ତ ରଥରେ ବସିଲା ଯାଇ ପୁଣି ।
ଦେବଦଳନ ରଥକୁ ପାତାଳେ ରୁପିଦେଲା
ଇନ୍ଦ୍ରଜିତ ଅନ୍ୟ ଯେ ରଥ ଆରୋହିଲା ।
ପୁଣି ହନୁମନ୍ତ ପୁଷ୍ପକ ଯାନପରେ ବସି
ମାଡ଼ିଦ୍ୟନ୍ତି ବିମାନ ତଳେ ଗଲା ପଶି ।
ସୁମରନ୍ତେ ରଘୁବର ବାହାର ହୋଇଲା
ରଥରେ ବସି ରାବଣ ଅନେକ ଯୁଦ୍ଧକଲା ।
ଭାଇ ଛଳରେ ଶ୍ରୀରାମ ମାରେ ବାଣ ପୁଣ
କାଟି ପକାଇଲା ଦଶ ଯେ ମୁଣ୍ଡ ପୁଣ ।
ତଳେ ନପଡ଼ି ଯେ ମୁଣ୍ଡ କନ୍ଧରେ ଲାଗିଲା
ଯଶ କରି ଦଶଗିରି ବାହୁଡ଼ି ଅଇଲା ।
ଭାଇକ ବଞ୍ଚାଇଲା କେବଣ ଯେ ମତେ
ଆରଦିନ ସମରେ ପଶିଲା ଇନ୍ଦ୍ରଜିତେ ।
ରୁଷକପିବଳ ଯେ ବହୁତ ନାଶକଲା
ନାଗଫାଶରେ ଦୁଇଭାଇଙ୍କୁ ବାନ୍ଧିଲା ।
ଶିର ନ ଛେଦିଲା ଯେ ମୃତ୍ୟୁ ପିଣ୍ଡ ହୋଇ
ଫେରିଣ ଇନ୍ଦ୍ରଜିତ ନବରେ ଆସି ମିଳି ।
ଯତି ଯେ ମାରୁତି ଭେଦିଲା ତତକ୍ଷଣ
ଗରୁଡ଼କୁ ଘେନଣ ଅଇଲା ହନୁମାନ ।
ଗରୁଡ଼ ଆସନ୍ତେ ଯେ ନାଗ ପଳାଇଲେ
ଦୁଇଭାଇ ସେଠାରୁ ସଚେତ ହୋଇଲେ ।
କାଲି ଗଲାସନ୍ଧରେ ପୁଣ ଯେ ରଣ କଲେ
ବୀର ସେନାପତି ଯେ ତିନପୁରୁ ମଲେ ।

ଧୂମ୍ରାକ୍ଷ ଅକମ୍ପନ ବଜ୍ରଦୃଷ୍ଟ କ୍ଷଏଗଲେ
ଅନେକ ସୈନ୍ୟ ଯେ ଶ୍ରୀରାମ ନିବାରିଲେ ।
ଆଠବର୍ଗଙ୍କ ପଳାଇବାରୁ ଗୋଡ଼ାଏ ପୁଣ ସଙ୍ଗ
ମାଇଲ ଦୈତ୍ୟବଳ ପଛରେ ହକେ.ନ୍ତି ।
କଟକରେ ପଶିଲ ଯେ ମାଙ୍କଡ଼େକ ଚଢ଼ି
ସିଂହଦ୍ୱାରଠାରୁ ସେ ଗଲକ ବାହୁଡ଼ି ।
ଶୁଣିଣ ଭାଇ ଚୋର ମନରେ ଖେଦକଲ
ଯହୁଁ ତାର ସୈନ୍ୟ ସେ ସଙ୍ଗୁଡ଼ ଦେଖିଲ
ତୋତେ ଆଶ୍ରେ କରିଛୁ ସେ ଗୃତକ ବୃତ୍ତାନ୍ତ
ଚେଣୁ ତୋଳିଲୁଁ ତୋତେ ବଡ଼ୋଜାରକାନ୍ତ
ଶୁଣି କୁମ୍ଭକର୍ଣ୍ଣ ଯେ ଉଠଇ ସିଂହରଡ଼ି
ପ୍ରଳୟ କାଳେ କ ମାଇଲ ଘଡ଼ଘଡ଼ି ।
ସନ୍ନିଧିର ଲୋକ ଯେ ତରସ୍ତ ହେଲେ ଶୁଣି
ଏଇତ ପ୍ରତିଜ୍ଞା କରଇ ଶିର ଧୁଣି ।
ବୋଇଲ ଏମନ୍ତରେ ହୋଇଣ ଅଛୁ କଥା
ଶୁଣିକରି ଆମ୍ଭାକୁ ମୋର ଲାଗୁଛି ବଡ଼ବ୍ୟଥା
ହାଇର ଆଗକୁ କମ୍ପାନର ଭୁଷ୍ଟ ହସ୍ତେ ଯିବ
ରାମ ଲକ୍ଷ୍ମଣଙ୍କର ମୁଣ୍ଡ ଘେନିଣ ଆସିବ ।
ତେବେ ସେ ନିବୃତ୍ତି ହେବ ଲଙ୍କସାଇଁ
ମନ୍ଦୋଦରିବୋଇଲ ଦେବ ଶୁଣହେଗୋସାଇଁ
ଏବେ ଯାଇ ରାଜାକୁ ଦର୍ଶନ ଯାଇ କର
ପଛେ ଯାଇ ରାମ ଲକ୍ଷ୍ମଣ କପି ମାର ।
କୁମ୍ଭକର୍ଣ୍ଣ ଶୁଣିଣ କଲକ ସନମତ
ଆଜ ରହିଲ ଏବେ ଦେଖିବା ବେନ ଭ୍ରାତ ।
ଏତେ ବୋଲି କାୟା ବଢାଇଲ ରଗେ
ଚଳନ୍ତେ ଯେ ବାରଭୁର ବାଜୁଅଛି ଆଗେ ।
ଲଙ୍କାର ପାଚେରି ଯେ ଅଟେ ଦଶଯୁଣ
ଦୁଇ କୋଶ ଉପାର ଯେ ଅଛଇ ପ୍ରମାଣ ।
ତାହା ଲଙ୍ଘି ଦେଲ ଯେ ବାହାର ପୁଣ ହଟି
ଦେଖି ଠଣା କପିଏ ପଳାଇଲେ ଝାସି ।
ନଠାଇ ଯୁଝନ୍ତେ ଯେ ଯୁଦ୍ଧକୁ ଅଇଲେ
ଭୟଘାତ ଦେଖିଣ ଯେ ଘୁଞ୍ଚି ପଳାଇଲେ ।
ସିଂହରଡ଼ି ଦେଲରୁ ସେ ଥିଲେ ତରକ
ଏବେ ପଳାଇଲେ ଯେ ବଢ଼ିବା ତାର ଦେଖି
ଲକ୍ଷ ମେବକ୍ଷ କପି ସାତ ମେବକ୍ଷ ଭକ୍ଷ
ସ୍ଥିର ଭଲ କର୍ଣ୍ଣ ସେ ଯେ ଦିଶନ୍ତି ପ୍ରତ୍ୟକ୍ଷ ।

ଦଣ୍ଡ ଭଙ୍ଗା କପି ଯେ ତାହାକୁ ବୋଲି ଜାଣ
ବାଡ଼ ନବଜ ଯେ ବୋଲନ୍ତି ମଲ ମଲ ପୁଣ
ସେମାନେ ପଳାଇଲେ ସେ ସେନାପତିଙ୍କ ଗୃହ
ରହ ରହ ବୋଲନ୍ତେ ବିପଥ ଗଲେ ମାତ୍ର ।
ଶ୍ରୀରାମ ଯେ ରଥରେ ଉନଦ୍ର ହୋଇଥିଲେ
ରବ ପାଇବାରୁ ସେ ଶଯ୍ୟାରୁ ଉଠିଲେ ।
ନିତ୍ୟକର୍ମ ସାରିଣ ସୁମରି ପୁଣ ସନ୍ଧ୍ୟା
ଆଗରେ ପଟୋଆରି ଅଛନ୍ତି ସବୁଯୋଦ୍ଧା ।
ଏସନ ସମୟରେ ଶୁଭିଲ ରଣଗୋଳ
ଜୟ ଜୟ ବୋଲିଣ ବୋଲନ୍ତି ରଘୁବାଳ ।
ଥାଟ ଭାଙ୍ଗିଲେ ବୋଲି ସେ ଦୂରକୁ ଚାହିଁଲେ
ଅପୂର୍ବ ଦେଖିଣ ବିଭୀଷଣକୁ ପଚାରିଲେ ।
ମଧ୍ୟାହ୍ନ ମେଘପ୍ରାୟେ ଦିଶଇ ଯେ କସ
ସୂର୍ଯ୍ୟ ଅସ୍ତ ହୋଇଲେକ ମ୍ବହରେ ଦିବସ ।
ଲଙ୍କାର ଭିତରେତ ଦିଶୁଅଛି ମେରୁ
ଆଗେତ ନ ଥିଲକ ଏତେବଡ଼ ତରୁ ।
ପ୍ରସାଦ ଅଟାଳ ଯେ ମେଘ ଏ ନୁହଇ
ଇନ୍ଦ୍ରଧନୁ ବୋଲନ୍ତାଇ ଛତ୍ରବ ନୁହଇ ।
ଏମନ୍ତ ବିସ୍ମୟ ଯେ କରନ୍ତି ରଘୁସାଇଁ
ଦେଖିକରି ସର୍ବଜନ ଆଶ୍ଚର୍ଯ୍ୟ ହୁଅଇ ।
ବିଭୀଷଣ ବୋଇଲ ଶୁଣିମା ରଘୁବୀର
ସାବଧାନେ ଶୁଣ ଦେବ ଏଥିର ବିସ୍ମୟ ।
ମେରୁ ବୋଲିଣ ଦେବ ଯାହାକୁ ବୋଲୁ ତୁମ୍ଭ
ଏ ସେ କୁମ୍ଭକର୍ଣ୍ଣର ମୁକୁଟ ଦିଶଇ ।
ରାବଣର କନିଷ୍ଠ ଏ ବଇରିକୁଳ କାଳ
ସାବଧାନ ହୋଇଣ ଶୁଣ ହେ ରଘୁବାଳ ।
ତ୍ରୈଲୋକ୍ୟରେ ବଳଆର ଏହାକୁ ସମନାହିଁ
ଏହାକୁ ଦେଖିଲେ ଦେବେ ସ୍ୱର୍ଗ ଛାଡ଼ିଯାଇ ।
ଋଷିବିପ୍ର ପ୍ରଜାମାନଙ୍କର ସଲ
ରାବଣ କୁମ୍ଭକର୍ଣ୍ଣ ଦୁଷ୍ଟ ସେ ମହାମଲ୍ଲ ।
ଯେବଣକାଳେ ଏହାକୁ ବାର ଯେ ବରଷ
ବାଳୁକ ବୁଦ୍ଧି ଧରିଣ ବୁଲଇ ଦଶଦିଶ ।
ହସ୍ତୀ ଘୋଡ଼ା ଗୋରୁ ଯେ ପ୍ରଜାଜନ ଖାଇ
ଶତେ ବରଷରେ ଭୁଞ୍ଜା ହୋଇଲକ ମହୀ ।
ଅସ୍ଥି କୂଡ଼ କୂଡ଼ ଯେ ବନ ପର୍ବତ ଦେଖ
ଯେ ମନୁଷ୍ୟେ ରହିଲେ ଅବଶେଷ ।

ଇନ୍ଦ୍ର ଦେବତାଙ୍କୁ ଗୁହାରି କଲେ ଯାଇ
କୁମ୍ଭକର୍ଣ୍ଣ ଭୟ ଦେବ ହୋଇଲ ଗୋସାଇଁ ।
ସୃଷ୍ଟି ସକଳ ଦେବ ଛାଡ଼ି କୂତ କୂତ
ଜୀବଜନ୍ତୁ ଧରିଣ ଖାଇଲା ଏବେ ମୂତ ।
ନକୁଛ କରିବା ଯେ ପଳାଇ ଠାବ ନାହିଁ
ସପତ ଦ୍ୱୀପରେ ଅସୁର ବୁଲଇ ଗୋସାଇଁ ।
ଶୁଣିଣ ସୁନାସୀର ଯେ ପାଇଲା ମନେ ଖଙ୍ଗ
ଦକ୍ଷଥିବା ଯାକେ ଯେସନେ ଗର୍ଜଇ ପନଙ୍ଗ ।
ହୋଇଲେ ଅସୁର ଯେ ପ୍ରବଳ ବଡ଼ ହୋନ୍ତି
ଧର୍ମକୁ ଛାଡ଼ିଣ ଯେ ଅନ୍ୟାୟ କରନ୍ତି ।
ବଜ୍ରମାରି ତାର ଯେ ଘେନବଇଁ ପ୍ରାଣ
ଐରାବତକୁ ଯେ ସଜକରି ଆଣ ।
ଶୁଣିଣ ଗନ୍ଧର୍ବେ ଯେ ଆଣିଲ ମହାଗଜ
ଚଳିଲ ଶଚୀସ୍ୱାମେ ମନେ କରି ଖଙ୍ଗ ।
ଅମୋଘ ବଜ୍ରଶର ଦକ୍ଷିଣ କରେ ଧରି
ଯେବଣ ଶର ଘାତରେ ବୃତ୍ରାସୁର ମରି ।
ଅସୁର ଦଇତକୁ ଯେ ମାଇଲ ତାହାଘେନ
ପର୍ବତମାନଙ୍କ ପକ୍ଷ ପକାଇଲ ହାଣି ।
ଗରୁଡ଼କୁ ପିଟିଲ ବିଷମ ମହାରଣେ
ତାହା ଧରିଲ ଏବେ ଜଗତ କାରଣେ ।
ସଙ୍ଗରେ ଗନ୍ଧର୍ବ ବଳ ଅଛନ୍ତି ବହୁତ
ଶିରରି ଉପରେ ଯେ ଉଡ଼ଇ ଶାରନେତ ।
ଲକ୍ଷେକ ସ୍ୱମରି ଯେ ପଡ଼ଇ ଚଉପାଶେ
କୁମ୍ଭକର୍ଣ୍ଣକୁ ଭେଟିଲ ଉତ୍ତର କୁରୁଦେଶେ ।
ପ୍ରଜାଜନ ଖାଇଣ ସେ ବୁଲଇ ମେଦିନୀ
ଘନ ଘନ ଶବଦ ଶୁଭଇ ଉଠେ ଧ୍ୱନି ।
ଗନ୍ଧର୍ବବଳ ଘେନ ଓଗାଳେ ଯାଇ ଇନ୍ଦ୍ର
ବଜ୍ର କରେ ଧରିଣ ବୋଇଲ ଆରେ ମନ୍ଦ
କମ୍ପାଇ ସୃଷ୍ଟି ମୋରରେ କରୁଅଛୁ ନାଶ
ଏହିକ୍ଷଣି ତୋତେରେ ପ୍ରେଷିବି ଯମପାଶ ।
ଏତେ ବୋଲିଣ ସେ ଯେ ହସ୍ତୀର ଦନ୍ତ ଧରି
ହେଳେଣ ଉପାଡ଼ିଲ ଯେ ଲୀଳାଗତି କରି ।
ରକତେ ଜରଜର ମେରୁରୁ ଗଙ୍ଗା ପଡ଼ି
ଢଳଲେ ଐରାବତ ଯେ ଛାଡ଼ଇ ସିଂହରଡ଼ି ।
ଗଜର ଦନ୍ତକୁ ଉପାଡ଼ି କୁମ୍ଭକର୍ଣ୍ଣ
ଇନ୍ଦ୍ରର ଉପରେ ନେଇ ପିଟିଲ ବହନ ।

ବିଷମ ଘାତ ପାଇଣ ସୁରପତି ମନ
ଜାଣିଣ ଗଜରାଜ ଯେ ଇନ୍ଦ୍ରଙ୍କୁ ଘେନଗଲ ।
ବ୍ରହ୍ମାଙ୍କର ସ୍ଥାନରେ ସେ ପକାଇ ନେଇ
ଦେଖିଣ ଚକିତ ଯେ ସାହସୀ ଦେବୀ ସାଇଁ
ହସ୍ତୀ କହିଲା ଯେ ଯୁଦ୍ଧର ବିଧାନ
ଦେଖିଣ ଚକିତ ଯେ ଚତୁର ବଦନ ।
ମନେ ବିଚାରଇ ଯେ କରିବ ପୁଣ କିସ
ଏ ତୋର ଜୀବନରେ କେ ନେଲା ଯମପାଶ
କୁମ୍ଭକର୍ଣ୍ଣର ଘାଏ ଯେ ଜଗତ ଗଲା ନାଶ
ଏତେ ବିଚାରି ବିଧାତା ହୋଇଲା ପୁଣ ବଶ
ଯଦ୍ୟପି ପ୍ରାଣ ତାହାର ମାରିବଇଁ ଆଜ
ବଶ୍ରଦ୍ରୋହ କଲେତ ନୁହଇ ଭଲକାର୍ଯ୍ୟ ।
ଉପାୟ କରିଣ ହରିବ ଯାର ବଳ
ଏତେବୋଲି ଶାପଦେଲା ତ୍ରୈଲୋକ୍ୟପାଳ ।
ହୋଇଲା ନିଦ୍ରାତୁରେ ଯା ଅ କୁମ୍ଭକର୍ଣ୍ଣ
ଯେତେକାଳେ ତୋହର ଥିବଟି ଜୀବନ ।
ସୁଖ ଭୋଗ ସମ୍ପଦ ନ ପାଇବୁ କାହିଁ
ତେବେ ସେ ସ୍ଥିରହୋଇବ ସପ୍ତଦ୍ୱୀପା ମହୀ
ଏତେବୋଲି ପିତାମହ ବଜ୍ରଧାରୀ କର୍ଣ୍ଣେ
ସାଉଧୃତ ମନ୍ତ୍ର ଯେ କହିଲେ ତାର କର୍ଣ୍ଣେ ।
ଯେବଣ ମନ୍ତ୍ରରେ ଜଗତ ତ୍ରାଣ ପାଇ
ସାମବେଦ ଉତପନ୍ନ ହୋଇଅଛି ସେହି ।
ସେ ମନ୍ତ୍ର ଇନ୍ଦ୍ର କର୍ଣ୍ଣରେ କହିଲେ ବେଦପତି
ଉଠିଣ ଶଚୀଶଏ ପ୍ରଚଣ୍ଡ ସୂର୍ଯ୍ୟଜ୍ୟୋତି ।
ବ୍ରହ୍ମାର ତଆରନ୍ତେ ଯେ ନିଜପୁରେ ଗଲା
ଏଥୁ ଅନନ୍ତରେ ଯେ କେତେଦିନ ଗଲା ।
ରାବଣ କୁମ୍ଭକର୍ଣ୍ଣ ଯେ ସହିତରେ ମୁହିଁ
ଭରତା ମଣ୍ଡଳରେ ତପ କଲୁ ଯାଇ ।

ପ୍ରସନ୍ନ ହୋଇ ଆସିଣ ବ୍ରହ୍ମା ଯେ ବରଦେଲା
ରାବଣକୁ ତୋଷେ ରକ୍ଷସ ଇନ୍ଦ୍ରକଲା ।
ମୋତେ ବୋଲିଲେ ବିଷ୍ଣୁ ରେଭକତହୁଅ
ଏ ତନୁ ଘେନଣ ତୁରେ ଯୁଗେ ଯୁଗେ ରହ
କୁମ୍ଭକର୍ଣ୍ଣ ଯେ ବର ଦେବାର ବେଳେ
ନିଦଣ ଦେବତାଏ କହିଲେ ସକଳେ ।
ହେ ପିତ ମହ ତୁମ୍ଭେ ନକର ଅମାନ୍ତ
କୁମ୍ଭକର୍ଣ୍ଣର ଘାତରେ ନରହିବ ପୃଥ୍ୱୀ ।

ଦୁଷ୍ଟଲୋକଙ୍କୁ ଦେବ ନକର ସନମାନ
ଶୁଣିଣ ଆଖ୍ୟାଦେଲେ ଚତୁର ବଦନ ।
ସରସ୍ୱତୀଙ୍କ ହକାରି କହିଲେ ଦେବଗଣ
ତୁମ୍ଭେ ବୁଧମାତା ଆମ୍ଭର ବୋଲ ଶୁଣ ।
ତୁହି ଯେ ବେଗ ହୋଇଣ ଏହିକ୍ଷଣି ଯିବୁ
କୁମ୍ଭକର୍ଣ୍ଣ କଣ୍ଠରେ ବିଜୟ କରିବୁ ।
ତତକ୍ଷଣେ ବୁଧମାତା ବେଗହୋଇ ଗଲା
ଦୈତ୍ୟର କଣ୍ଠରେ ଯେ ଯାଇଣ ବସିଲା ।
ପିତାମହ ବୋଇଲେ ମାଗରେ ବଳା ବର
ନିଦ୍ରାଯିବ ବୋଲିଣ ବୋଇଲା ଅସୁର ।
ଅସ୍ତୁ ହେଉ ବୋଲିଣ ବୋଇଲେ ଦଇବ
ପୁଣ ଆଜ୍ଞା ଦେଲେ ଯେ ବ୍ରହ୍ମା ସଦାଶିବ ।
ବୋଇଲେ ବରଷକରେ ଥରେ ତୁ ଉଠିବୁ
ବରଷକର ଆହାର ସେଦିନ ଭୁଞ୍ଜିବୁ ।
କଣ୍ଠ ନ ପୂରୁ ବାବୁରେ ଉଠିବୁ ତୁ ଯବ
ପ୍ରାଣରେ ନାଶଯିବୁ କହିଲଟି ବୁଦ୍ଧି ।
ଏତେକହି ପିତାମହ ବ୍ରହ୍ମଲୋକେ ଗଲା
ଶୁଣନ୍ତେ ରଘୁନାଥ ବିଭୀଷଣ କହିଲା ।
ବର ପାଇଣ ଯେ ଅଇଲ ତିନିଭାଇ
ବିଧାତା ବଚନରେ କୁମ୍ଭକର୍ଣ୍ଣ ନିଦ୍ରାଯାଇ ।
ସମ୍ବତ୍ସର ପୂରିଲେ ଉଠଇ ଏକଦିନ
ସ୍ନାହାନ ଭୋଜନ ଯେ ବିଧି ବିଧାନ ।
ଅବଶିଷ୍ଟେ ଦାନ ଯେ ଦିଅଇ ନଗ୍ର ଫେରି
ଦେବତାଙ୍କୁ ଭୋଗଯେ ଦିଅଇ ତୋଷକରି ।
ଲକ୍ଷେନାରୀଙ୍କ ସଙ୍ଗରେ ରମଣ କେଳିକରେ
ଆନନ୍ଦ ହୋଇଣ ତାହାର ମନରେ ।
ପୁଣ ନିଦ୍ରାଯାଏ ଯେ ଖଟିଣଥାନ୍ତି ନାରୀ
ରାତ୍ର ଦିବସରେ ଯେ ଥାନ୍ତି ସେବାକରି ।
ପୁଣ ବର୍ଷକରେ ଉଠଇ ଏକଦିନ
ବ୍ରହ୍ମାର ବଚନେ ଗଲା ଛପନ ଯୁଗ ଜାଣ ।
ଏହି କଣ୍ଠରେ ଯେ ଏତେଦିନ ଗଲା
ଏବେ କୁମ୍ଭକର୍ଣ୍ଣ କଣ୍ଠ ନ ପୂରୁ ଉଠିଲା ।
ଏଗାର ମାସେ ପକ୍ଷେ ଅଟଇ ଗଣିତା
ମୁହିଁ ଶୁଣିଅଛୁ ଯାହା କହିଛୁ ବିଧାତା ।
ନିଶ୍ଚୟ କୁମ୍ଭକର୍ଣ୍ଣ ହୋଇବ ପ୍ରାଣେ ନାଶ
ଏବେ ଅନେକ ସୈନ୍ୟ କରିବଟି ନାଶ ।

ବଳବନ୍ତ ପଣରେ ନାହିଁ କେ ତାକୁ ସମ
ମୁଖଦେଖି ଭୟ ତାକୁ କରଇଟି ଯମ ।
ଉଠନ୍ତା ବୃଷଭ ଯେ ପଥ ଦେଖିଲେ ଜାଣି
ଏବେ ସେ କୁମ୍ଭକର୍ଣ୍ଣକୁ ବୁଝିଲେ ପରମାଣି ।
ସାବଧାନ ହୋଇଣ ଏହାକୁ କର ଯୁଦ୍ଧ
ଭେଦେବ ଏହାକୁ ତୁମ୍ଭେ ସାମାନ୍ୟ ନ ବୁଝ
ଶୁଣିଣ ଦାଶରଥି ଅଳପ ହୋଇ ହସି
ଜାଣିବା କୁମ୍ଭକର୍ଣ୍ଣ ଯୁଦ୍ଧରେ ଯେବେ ପଶି ।
ଏତେ ବୋଲି ଶ୍ରୀରାମ ନଳକୁ ସୁହାନ୍ତ
ସୈନ୍ୟ ନ ପଳାନ୍ତୁ ବୋଲିଣ ଆଜ୍ଞା ଦ୍ୟନ୍ତ ।
ମୁହିଁ ଯେ ଦୈତ୍ୟକୁ କରିବି ପ୍ରାଣେ ନାଶ
ଋକ୍ଷ କପିବଳ ଯେ ନ ପାନ୍ତୁ ମନେ ତ୍ରାସ ।
ଯେ ଯାହାର ଆୟୁଧ ଯେ କରେ ଧରିଥାନ୍ତୁ
ରାକ୍ଷସ ଅଇଲେ ମୋର ସଂଗ୍ରାମ ଦେଖନ୍ତୁ ।
ଶୁଣିଣ ଋକ୍ଷକପି ଯେ ଭରସା ପାଇଲେ
ପର୍ବତ ଉପରେ ଲଙ୍କା ଗଡ଼କୁ ଚାହିଁଲେ ।
ଏଥୁ ଅନନ୍ତରେ ଯେ ପଚ୍ଛରେ ଭଗବନ୍ତ
କଥାଏ ରହିଲା ମୋତେ କହ ହେ ଧୂର୍ଜଟି ।
ରାବଣ କୁମ୍ଭକର୍ଣ୍ଣ ଯେ ବିଭୀଷଣ ବୀର
ତପସ୍ୟା କରିବାକୁ କେମନ୍ତେ ଆଗୁସାର ।
କାହାଠାରୁ ମନ୍ତ୍ର ଶିଖିଣ ଜପକଲେ
ଏହା ମୋତେ ସଞ୍ଚପି କହହେ ଦେବଭଲେ
ଈଶ୍ୱର ବୋଇଲେ ସେଯେ ବିଶ୍ରବା ଋଷିସୁତ
ଋଷି ଶିଖାଇଲେ ଯାବତ ବେଦବନ୍ତ ।
ଶିଖିଣ ତେତା ହୋଇଲେ ତିନିଭାଇ
ବିଧାତା ମୂଳ ବୋଲି ତପସ୍ୟା କଲେ ଯାଇ
ହୋମ କରିଣ ସେ ମନାଇଁ ଚତୁର୍ମଥା
ତେବେ ସେ ବଳବାନ ହୋଇଲେ ସାମର୍ଥା ।
ବଳ ପ୍ରାକର୍ମରେ ତିନିପୁର ଜିଣି
ନବଖଣ୍ଡ ମେଦିନୀ ସପତ ଦ୍ୱୀପ ପୁଣି ।
ଏହାକୁ ସାଧିକରିଣ ମନରେ ତୋଷହେଲେ
ଶୁଣିଲ ଗଉରୀ ଗୋ ମନ ସନ୍ତୋଷରେ ।
ଗଉରୀ ବୋଇଁଲେ ଦେବ ଏଠାରୁ ବସହେଲା
କୁମ୍ଭକର୍ଣ୍ଣ କଥାତ ଶ୍ରୀରାମ କର୍ଣ୍ଣରେ ଶୁଣିଲା ।
ଏଥୁ ଅନନ୍ତରେ ଯେ କୁମ୍ଭକର୍ଣ୍ଣ ବୀର
ପ୍ରବେଶ ହୋଇଲା ଆସି ରାଜ ସିଂହଦ୍ୱାର ।

ଇନ୍ଦ୍ରଜିତ ସହିତରେ ଯେତେକ ତର୍କିଥିଲେ
ପ୍ରଣମ୍ୟ କରି ଆସି ପାଶ୍ୱେଟି ହେଲେ ।
ଜଗଥିର ତଳେ ଯାଇ କୁମ୍ଭକର୍ଣ୍ଣ ଚେତାଇ
ନିଜସ୍ଥଳ କରଣ ପାଏ ପଡ଼ି ଶୋଇ ।
ଉଠିଣ ଉଗ୍ର ହୋଇ ପହଣ୍ଡ୍ର ଦୂର ଗଲା
ପୁଣି ପାଏ ପଡ଼ି ଶୋଇ ଉଠିଲା ।
ନିକଟକୁ ଯାଇଣ ଯୋଡ଼ିଇ ବେନିକର
ଦେଖିଣ ସିଂହାସନୁ ଉଠିଲା ଦଶଶିର ।
ଭାଇକି କୋଳ କରିଣ ମୁଖରେ ଚୁମ୍ବଦେଲା
ନେଇଣ ତାର ନିଜ ଆସନେ ବସାଇଲା ।
କୁମ୍ଭକର୍ଣ୍ଣ ବଞ୍ଚଇ ଯେ ଘେନିଣ ବଞ୍ଚିଣି
ମଣ୍ଡନରେ ସମସ୍ୟା ନଢ଼ଏ ବଂଶପାଣି ।
ନିଶବଦ ହୋଇଣ ଅଛନ୍ତି ସର୍ବଜନ
କର ଦୁଇ ଯୋଡ଼ିଣ କହଇ କୁମ୍ଭକର୍ଣ୍ଣ ।
ହେ ଦେବ ଦଶଗ୍ରୀବ ରେ କାହିଁର ରାମପତି
କାହାର କୁମର ସେ କାହାକୁଳେ ଉତ୍ପତ୍ତି ।
ତୋହର ବଇରି ସେ ଯେ ହୋଇଲା କମ୍ପାଇ
ଏହା ମୋତେ ସଞ୍ଚପି କହ ମନ୍ଦୋଦରୀ ସାଇଁ
ସମୁଦ୍ର ଲଙ୍ଘିଣ ସେ ଯେ ଆସେ କେଉଁମତେ
ବିଭୀଷଣ ଶରଣ ପଶିଲା କେମନ୍ତେ ।
ସୁବଳଗିରିରେ ସେ ରହିଲା କେମନ୍ତେ ଆସି
କସ କସ ଯୁଦ୍ଧ ଯେ ଜାଣଇ ତପସ୍ୱୀ ।
ଭାଇର ବଚନେ ଯେ ବୋଲଇ ଦଶଶିର
ଅଯୋଧ୍ୟା କଟକରେ ଦଶରଥ ନୃପବର ।
ତାହାର ପୁତ୍ରନାମ ରାମଲକ୍ଷ୍ମଣ ବେନି
ବନବାସ କଲେ ଯେ ଭାରିଯା ସଙ୍ଗେ ଘେନି ।
ସୂର୍ପଣଖାର ଯେ କାଟିଲେ ନାକ କାନ
ଖର ଦୂଷଣ ତ୍ରିଶିର ମାଇଲେ ବହୁସୈନ୍ୟ ।
ତାହା ଶୁଣି କରି ମୁଁ ଯେ ଗୁପତରେ ଗଲି
ରାମ ଲକ୍ଷ୍ମଣ ନଥିଲେ ସୀତାଙ୍କୁ ଆଣିଲି ।
ଭାରିଯାକୁ ନ ପାଇ ବୁଲିଲେ ଦୁଇ ଯତି
ଋଷ୍ୟମୂକ ପର୍ବତରେ ସୁଗ୍ରୀବରକୁ ଭେଟି ।
ବାଳି ଡରେ ସେହୁ ପର୍ବତେ ଲୁଚିଥିଲା
ଶ୍ରୀରାମ ସଙ୍ଗରେ ସେ ମଇତ୍ର ହୋଇଲା ।
ମଇତ୍ର ଛଳେ ଶ୍ରୀରାମ ବାଳିକି ବଧକଲେ
ଦୁନ୍ଦୁଭିର ହାଡକୁ ଚରଣେ ଉଡ଼ାଇଲେ ।

କିଷ୍କିନ୍ଧ୍ୟାରେ ସୁଗ୍ରୀବକୁ କଲେ ସେ ନୃପତି
ତାହାର ସୈନ୍ୟ ଘେନି ଅଇଲା ହାଦେ ପତି
ହନୁମନ୍ତ ନାମେ ତାର ଅଇଲା ଏକାସ୍ୱର
ସେ ଆସି ଉପଦର୍ପ କଲା ଯେ ଅପାର ।
ମଧୁବନ ଭାଙ୍ଗିଣ ଲଙ୍କାକୁ ଗଲା ଦହି
ଜମ୍ବୋମାଳି ଅକ୍ଷୟ କୁମାରକୁ ମୃତ୍ୟୁ ଦେଇ ।
ଅନେକ ସୈନ୍ୟ ସଂହାରି ଏଥୁ ଗଲା
ଶ୍ରୀରାମ ଚଉପିକ ବାରତା କହିଲା ।
ଶୁଣିଣ ଜଟାଧାରୀ ପର୍ବତେ ସିନ୍ଧୁ ପୋତି
ବିଭୀଷଣ ଶରଣ ପଶିଲା ପ୍ରାଣପତି ।
ଗଡ଼ ବେଢ଼ି ମୋର ଯେ ଛକ ଛିଣ୍ଡାଇଲା
ପାଞ୍ଚସେନାପତି ଯେ ପ୍ରଥମେ ମାଇଲା ।
ଆରଦିନ ସମବନ୍ତ ସାଜ ମୂର୍ଚ୍ଛି ଗଲି
ବେଳ ଅସ୍ତ ପର୍ଯ୍ୟନ୍ତେ ଅନେକ ଯୁଦ୍ଧକଲି ।
ଇନ୍ଦ୍ରଜିତ କୋପରେ ଯେ ମାଇଲା ଶକତି
ସେ ଅସ୍ତ୍ର ବାଜନ୍ତେଣ ନମଲା ସାନପତି ।
ଆରଦିନ ପୁଣି ଯେ ଇନ୍ଦ୍ରଜିତ ଗଲା
ବ୍ରହ୍ମଝିପି ତାର ସମସ୍ତ ନାଶକଲା ।
ନାଗଫାଶେ ବାନ୍ଧିଲା ରାମ ଲକ୍ଷ୍ମଣର କାଏ
ହନୁମନ୍ତ ଡାକି ଆଣିଲା ବିନତାର ପୋଏ ।
ଆରଦିନ ବାର ସେନାପତି ଗଲେ ଧାଇଁ
ଯୁଦ୍ଧ କରିବେ ବୋଲି ମନରେ ସେ ନିବାଇ
ଧୂମ୍ରାକ୍ଷ ପରମାର୍ଥ ବଜ୍ର ଅକମ୍ପନ
ସଂଗ୍ରାମେ ନାଶଗଲେ ଏହୁ ଯେ ପାଞ୍ଚଜଣ ।
ପାଞ୍ଚପୁତ୍ର ମରିବାରୁ ରାଜିଲେ ମୋରଥାଟ
ଗୋଡ଼ାଇଣ ଯତି ଯେ ପଶିଲା ଲଙ୍କ ବାଟ ।
ମୋହର ସିଂହଦ୍ୱାରୁ ବାହୁଡ଼ି ପୁଣ ଗଲା
ନରବାନର ମୋତେ ଯେ ଏତେ ଦୁଃଖଦେଲା
ତୁ ମୋହର ସଖା ଯେ କହିଲି ମୁହିଁ ତୋତେ
ଏ ଶୋକ ସମୁଦ୍ରୁ ଉଦ୍ଧରି ଧର ମୋତେ ।
ଏହା ଶୁଣି କୁମ୍ଭକର୍ଣ୍ଣ ବୋଲଇ ବଚନ
ହୀନ ବୁଦ୍ଧି କମ୍ପା ତୁ କଲୁ ହେ ଦଶାନନ ।
ଏକାଥିଲା ବେଳେ ଯେ ମାରି ନ ପାରିଲୁ
ଯତିର ଭାରିଯା ଯେ ସଖିକ ଦ୍ରୋହ କଲୁ ।
ବିଧାତା କହିଥିଲେ ତୋତେ ଯେ ଏକଥାରୁ
ସୀତା ହରିଲେ ମୃତ୍ୟୁ ପାଇବୁ ଲଙ୍କାଗାର ।

ଏବେ ସେ ବନ ଶାଖା ପାଇଲା ସେ ବସ୍ତୁତ
ହେ ଲଙ୍କପତି ତୁ ଯେ କଲୁ ମନ୍ଦ କୃତ୍ୟ ।
ବାଳକ ମାଇଲା ବୋଲି ଯେବେ ତୁମ୍ଭ ଜାଣୁ
ସୁହ୍ମା ଛୁଦ୍ର ହୋଇଲେକ ତାକୁ ହାଦେ କଣୁ
ତୋହର ଶ୍ରୀରାମ ଯେ ନୃହନ୍ତି ପ୍ରାଣେ ନାଶ
ବାଳକ ମାଇଲା ବୋଲି ମୋ ମନରେ ହାସ
ଏବେ ଯାଇ ମୁହିଁ ଯେ କରିବି ନଷ୍ଟେ ରଣ
ଜୟେ ନାହିଁ ମୋତେ ଯେ ମୋହ ତହିଁ ଶୁଣ
ଏଗାର ମାସ ପନ୍ଦର ଦିନ ଯେ ମୋହର
ବରଷ ସମ୍ପୂର୍ଣ୍ଣ ନୁହେଁ ତୁ ବିସ୍ମର ମନର ।
ବିଧାତା ଯେ ମୋତେ କହିଅଛୁ ପୁଣି
କଣ୍ଠରେ ନ ଉଠିଲେ ମରିବୁ ଦୈତ୍ୟମଣି ।
ତୋତେ ଲେଖିବେଳେ ଯେ ଜାତର କାନ୍ଥପରେ
ସୀତାଙ୍କୁ ହରିଲୁ ମରିବୁ ସେକାଳେ
ବରଷ ନ ପୂରିଲା ଅକଣ୍ଠରେ ମୁଁ ଉଠିଲି
ତେଣୁ ବିଧାତା ଦୋଷ ଯେ ନରଖି ମାନିଲି
ତୁମ୍ଭେ ଯେ ସ୍ବେଚ୍ଛାଇ ଆଣିଲ ଯତନାଶ
ବିଧାତାଙ୍କୁ ନିନ୍ଦିବାକୁ ବାଞ୍ଛ ନାହିଁ ତୋର ।
ଧର୍ମ ତାହାଠାରେ ଅଛୁ ହେ ବଳେକର
ଛଟେ ସିନ୍ଧୁପୋତ ହୋଇଲା ଯେବେ ପାର
ବନଗାଦମାନେ ଯେ ବିଶ୍ୱାସ ତାକୁ ଗଲେ
ଋଷକପିମାନେ ଯେ ପର୍ବତ ଉପାଡ଼ିଲେ ।
ଅସୁରଙ୍କ ତୁଳେରେ ଯୁଝିତ ଶରଧା
ଶୁଣି କୋପ କରି ବୋଲଇ ଦଶମୁଣ୍ଡ ।
ନସତ ହୋଇଲୁ ଯେବେଶତ୍ରୁର ସୈନ୍ୟଦେଖି
ପଳାଅ ଘରେ ପ୍ରଶଂସା ଉପେକ୍ଷି ।
ବିଭୀଷଣ ଗାଇବ କରି ଭେଟା ପଣେ
ତୁହେ ଘଇ ପଳାଅ ଏଣେ ତେଣେ ।
ରାବଣର କୋପ ଦେଖିଣ ମନ୍ଦୋଦର
ଶୁଣିଣ ଦଶଗ୍ରୀବ ଯେ ବୋଲଇ ଉତ୍ତର ।
ଭସ୍ମ କରି ପଡ଼ଳୁ ଘୁଞ୍ଚିଲା ମନ୍ଦୋଦର
କାହାର ବୋଲି ତୁ କରିବୁ ନୃପବର ।
କୁମ୍ଭକର୍ଣ୍ଣ ବୋଇଲା କୁଳକୁ ଲାଜକଲୁ
ପତିର ଘରଯାକୁ ସ୍ବେଚ୍ଛାଇ ଆଣିଲୁ ।
ତ୍ରିଷ୍ଣ ସ୍ବେର ନାମ ଯେ ବହିଲୁ ପୃଥ୍ୱୀମଧ୍ୟେ
ଜୀବା ଆଉ ଭଲରେ ବୋଲିବେ ସୁରସିଦ୍ଧେ

ବିଭୀଷଣ ଚଣ୍ଡାଳରେ ସ୍ଥାନ ବୁଦ୍ଧି କଲା
ଶତ୍ରୁର ଚହିଁ ଯାଇଁ ଶରଣ ପଶିଲା ।
ସେହି କୁଳ ଘୋଷକୁ କରାଇଲା ଲାଜ
ଶତ୍ରୁର ସଙ୍ଗତେ ତାକୁ ସଂହାରିବ ଆଜ ।
କେତେ ମାଣ ତାକୁ ମାରନ୍ତୁ ଏହିକ୍ଷଣି
ଧର୍ମରେ ଅନ୍ୟାୟ ହୋଇବ ମୋର ପୁଣି ।
ବନ୍ଧୁବଗ ନାତି ପୁତ୍ର ଯେ ନାଶ ଯିବେ
ମନ୍ଦର ବେଳକୁ ତୋର ଗୋଟିଏ ନଥିବେ ।
ଜାଣୁ ଜାଣୁ ହୁତାଶନେ ପଡ଼ିଲୁ ଲଙ୍କରାଏ
ଅନଗ୍ଧ ବାରଦନେ ଲୋଟିବ ତୋରକାୟେ
ମୁହିଁ ଯେବେ ଲେଉଟି ଆସିବରେ ଆଜ
ତେବେ ରାମ ଲକ୍ଷ୍ମଣ ପାଇବେ ମୃତ୍ୟୁଭେଦ ।
ନୋହିଲେ ଆଜଯେବେ ଯିବଟି ମୋତେମାର
ତେବେ ତୋ ମୁଣ୍ଡକୁ ଖାଇବ ମହୁଆଳ ।
କହିଲା ଲେକକୁ କରୁ ଯେ ବଡ଼କୋପ
ବଦନ ମନ୍ଦଦୋଷକ ନେବ ଆନ ଲୋକ ।
ଏତେ ବୋଲି ଗର୍ଜନ ନାଦକଲା
ତୋର ମୋର ଦେଖାରେ ଏତିକ ହୋଇଲା
ସୈନ୍ୟ ସେନା ତୋର ସମସ୍ତେ ଥାଆନ୍ତୁ
ମୋହର ସଙ୍ଗତରେ ଗୋଟିଏ ନ ଥାନ୍ତୁ ।
ମୋହର ପୁତ୍ର ନାତି ଯେ ମୋର ସଙ୍ଗେଯିବେ
ପାରିଲେ ବାହୁଡ଼ିବେ ନ ପାରିଲେ ମରିବେ
ମୋର ବଳ ଦେଖ ମୁଁ ଯେ କରିବ ସମର
ଋଷକପି ସେନ୍ୟ ଯେ ମାରିବ ଅପାର ।
ଶ୍ରୀରାମକୁ ଯେବେ ଜଗତେ କେ ରଖନ୍ତୁ
ମାରିବ ମାରିବ ଆଜ କହୁନାହିଁ ଭ୍ରାନ୍ତ ।
ଆଜନ୍ତୁ ସୀତା ଭୋଗ ହୋଇବ ତୋହର
ନୋହିଲେ ବାରଦନେ ମରିବୁ ନକର ।
ଏତେ ବୋଲି ଶତେ ଯେ ପୁତ୍ର ଅଣାଇଲା
ନବ ସହସ୍ର ନାତିକ ଡକାଇ ଆଣିଲା ।
କୋଇଲା ସଜ ହୋଇ ମୋ ସଙ୍ଗେ ରଣେସ୍ଥଳ
ଶୁଣିଣ ପୁତ୍ରନାତି ସଜ ବେଗ ହେଲେ ଭଲ ।
ଏତେ ବୋଲି ବାଞ୍ଛଣା ଯେ ବେଗେ ପକାଇଲା
କରେ ଶୂଳ ଧରିଣ ସିଂହରଥ ବେଲା ।
ପୃଥ୍ୱୀ କମ୍ପିଲା ଯେ ଝଡ଼ିଲେ ପର୍ବତ
ଆକାଶରୁ ବେଗବେଗ ଚଳିଲେ ଆଦିତ୍ୟ ।

ଦେବତାଏ ଜାଣିଲେ କୁମ୍ଭକର୍ଣ୍ଣ ଉଠ
ଆଜ ବାନରମାନଙ୍କୁ ପଡ଼ିବ ବିଷମ ଧାଡ଼ ।
ସମୁଦ୍ର ଲହରି ଯେ ହୋଇଲାକ ସ୍ଥିର
ତହିଁବେଳ ପୁଣି ଯେ ଗର୍ଜିଲା ଅସୁର ।
ଆସ୍ଥାନର ଲୋକେଯେ ଶୁଣିତରସ୍ତ ହୋଇଲେ
ନିଶ୍ଚୟେ ଋକ୍ଷ କପି ମରିବେ ବୋଇଲେ ।
କୁମ୍ଭକର୍ଣ୍ଣ ପ୍ରତିଜ୍ଞା ଯେ କରେ ଶିର ଧୁଣି
ଶୁଣିଣ ସମସ୍ତେ ଆନନ୍ଦ ହୋଇଲେକ ପୁଣି ।
ଶୁଣିଣ ଦଶାନନ ଯେ ସନ୍ତୋଷ ହୋଇଲା
ରତ୍ନ ଜଡ଼ିତ ବହୁତ ଆୟୁ ମାନ ଦେଲା ।
ମୁକୁଟ କୁଣ୍ଡଳ ଯେ କଣ୍ଠ ହରପଦ
ମଣିଗଣ କଙ୍କଣ କରଣ ଛନ୍ଦ ଛନ୍ଦ ।
ହୃଦୟକୁ ପଦକ କଣ୍ଠକୁଇଁ ହାର
ବାହୁମୂଳେ ତାଡ଼ ଯେ ସରଳ ରତ୍ନସାର ।
କରରେ କଙ୍କଣ ଯେ ଅଷ୍ଟରତ୍ନ ମୁଦ
ତାଇଆ ମେଘେ ଯେହ୍ନେ ବିଜୁଳି ଆଗୁଢ ।
କଟିରେ କଟି ମେଖଳା ଯମଦାଢ଼ ନେଇ
ପଦରେ ନୂପୁର ଯେ ରତ୍ନରେ ଜଡ଼ିତ ।
ପର୍ବତ ସମାନେ ଯେ ଦିଶଇ ତାର କାୟେ
ଉଠିଣ ବୈଡ଼ୂର୍ଯ୍ୟର ନଜପୁର ଯାଏ ।
ବଜ୍ରଜାଳା ରାଣୀକ ଯେ ଡ଼ାକିଲା ତାର ପାଶ
ବୋଇଲା ମୋଠାରୁ ତୁମେ ଶୁଣ ଗୋସନ୍ଦେଶ
ରାବଣ ଜ୍ୟେଷ୍ଠଭାଇ ମୋତେଯେ ତୋଳିନେଲା
ଶ୍ରୀରାମ ସଙ୍ଗରେ ଯୁଦ୍ଧରେ ବୋଇଲା ।
ପୁତ୍ରନାତି ଘେନିଣ ଯାଉଛି ଯୁଦ୍ଧକରି
ଅଧର୍ମ ବିଗୁର ଯେ କରିଛି ଦଣ୍ଡଧାରୀ ।
ଯତ ଭାରିଯାକୁ ସେ ଯେ ହେରାଇ ଆଣିଲା
କହିଲାକୁ ମୋତେ ଯେ ବହୁତ କ୍ରୋଧକଲା
ଯେବେ ମୁଁ ଧର୍ମରେ ଆସିବ ଉତ୍ତର
ତେବେ ଯେ କୁଳଧର୍ମ ରହିଲା ମୋହର ।
ନୋହିଲେ କାରୁଣ୍ୟ ଯେ ନ କରିବୁ ଆଉ
ଲକ୍ଷେ ସପତ୍ନୀ ଘେନିଣ ତୁ ସଙ୍ଗେ ଯାଉ ।
ପୁତ୍ରଙ୍କର ଭାରିଯା ନାତୁଣୀ ବଧୂମାନ
ଏମାନଙ୍କୁ ସଙ୍ଗେ ଘେନି ଝାସଦେବୁ ପୁଣ ।
ରହିଲେ କଷ୍ଟ ହେବ ଗଲେ ସ୍ୱର୍ଗ ଭୋଗ
ଏହାଶୁଣି ମହାଦେଈ କହଇ ଯେ ବେଗ ।

କମ୍ପାଇ ଏହା ତୁମ୍ଭେ କହିଲ ଯେ ପୁଣ
କଣ ନ ପୂଛୁଣୁ ମୁଁ ଯେ ଉଠିଲି ଗୋଜାଣ ।
ଧାତାକହିଥିଲା ସମ୍ମୁଖରେ ବେଳେକଉଠିବୁ
କଣ ନ ପୁଛୁ ଉଠିଲେ ନିଶ୍ଚୟ ମରିବୁ ।
ସେହିକଥା ହେଲୁ କରି କହିଲି ତୋ ଆଗ
ଏତେ କହି କୁମ୍ଭକର୍ଣ୍ଣ ଚଳିଗଲା ବେଗ ।
ପୁତ୍ର ନାତି ସଜ ହୋଇ ଆଗରେ ବାହାର
ପଛରେ କୁମ୍ଭକର୍ଣ୍ଣ ଚାଲଇ ଧୀର ଧୀର ।
ପର୍ବତ ସମାନରେ ରୂପ ଯେ ଜ୍ୟୋତି କାୟେ
କରେଶୂଳ ଧରିଣ ସଂଗ୍ରାମକୁ ଧାଏଁ ।
ଘରଘର ନାଶା ଯେ ନିଃଶ୍ୱାସେ ଯାଏ ଉଡ଼ି
ପଦ ହୁଣ୍ଡିକେ ଅରେ ଯେ ଗୁଡ଼େ ସିଂହରଡ଼ି ।
ନବରୁ ବାହାର ଯେ ହୋଇଲା ବୀରବାଏ
ଯାନ୍ତେଣ ଟଳ ଟଳ କମ୍ପିଲା ଲଙ୍କାଏ ।
ମହାମେଘର ପ୍ରାୟେ ଦିଶଇ ରାକ୍ଷସ
ଦେଖି ଲଙ୍କା ଲୋକେ ଯେ ହୋଇଲେ ହରଷ
ବିଚାରନ୍ତି ମନରେ ସେ ଶତ୍ରୁ ନାଶ ଯିବ
ଏହାମୁଖେ ପଡ଼ିଲେ କେ ଜୀବନ ପାଇବ ।
ଆଗରେ କୁମ୍ଭକର୍ଣ୍ଣ ପଛରେ ପୁତ୍ରନାତି ପୁଣ
ସାରଥି ମିଳିଲା ଯାବରହୁବର ଘେନିଣ ।
କରେ ଶୂଳ ଘେନିଣ ସଂଗ୍ରାମକୁ ଧାଇଁ
ସେ ରଥରେ ବସିଲା ରାବଣର ଭାଇ ।
ଉତ୍ତର ଗଡଦ୍ୱାରେ ହୋଇଲା ବାହାର
କୋଟିଏ ସୂର୍ଯ୍ୟମଣି ଯେ ବଦନ ତାହାର ।
ବାନରେ ପଳାଇଲେ ମହାଭୟ ପାଇ
ସେନାପତି ମାନଙ୍କୁ ପେଷିଲା ରଘୁସାଇଁ ।
ଆପଣେ ସମରକୁ ଆସନ୍ତି ପଛେ ପଛ
ଏଥୁଅନନ୍ତରେ ଯେ ବଶବାର ବସ୍ତ୍ର ।
ସଂଗ୍ରାମେ ପଶିଣ ଯେ ଶରବୃଷ୍ଟି କଲା
ଆରେ ଆରେ ବୋଲିଣ ଅଙ୍ଗଦ ଓଗାଳିଲା
ହନୁମନ୍ତ ମିଳିଲା ଏସନକ ବେଳେ
ତାକୁ କୁମ୍ଭକର୍ଣ୍ଣ ନାରଜ ପେଷେ ଭଲେ ।
କାଣ୍ଡ ବଞ୍ଚାଇଣ ଯେ ଦୁଇ କପି ଗାରେ
କରେ ଧରିଥିଲେ ଯେ ପଥରେ ପଥରେ ।
ଦୁହେଁ ଏକାବେଳେ ପିଟିଲେକ ନେଇ
ଭଙ୍ଗିଲା ଯେ ରଘୁବର ଖଣ୍ଡ ଖଣ୍ଡ ହୋଇ ।

ଭୂମିଗତ ହୋଇଲା ହଣବା ତନୟେ
ଧନୁ ପକାଇଣ ସେ ସିଂହ ରଡ଼ି ଛଏ ।
କରେ ଶୂଳ ଧରିଣ ମାଇଲା ସେହୁ ବେଗେ ।
ଋକ୍ଷକପି ମାନେ ସେ ନ ରହିଲେ ଆଗେ
ହନୁମନ୍ତ ଅଙ୍ଗଦ ରହିଲେ ଏହୁ ବେନି
ଦଇତକୁ ପିଟିଲେ ଯେ ଗଛେ ଗଛ ଘେନି ।
କୁମ୍ଭକର୍ଣ୍ଣ ଦେହରେ ବାଜିଣ ଭାଜିଗଲା
ଘାଆ ପାଇଣ ଅଙ୍ଗଦ ଭୂମିରେ ଲୋଟିଲା ।
ଖଣ୍ଡେ ଦୂରେ ଅଙ୍ଗଦ ଜ୍ଞାନ ହାରି ଶୋଇ
ମୋହ ଯାଇ ବୀର ସେ ପଡ଼ିଲା ଘୂମାଇଁ ।
ଯହୁଁ ସେ ଅଙ୍ଗଦ ହନୁମନ୍ତ ମୋହଗଲେ
ଧାଇଁଣ କୁମ୍ଭକର୍ଣ୍ଣ ପଶିଲା କପିଦଳେ ।
ଦେଖିଣ ଉଗାଳିଲେ ପାଞ୍ଚ ସେନାପତି
ପାଞ୍ଚହେଁ ପାଞ୍ଚବୃକ୍ଷ କରରେ ଧରିଛନ୍ତି ।
ଗବାକ୍ଷର ମୂଳରେ ଅଛନ୍ତି ପାଞ୍ଚଜଣ
ତାଙ୍କ ଉଗାଳିଲେ ସେ ରହିଲେ କୁମ୍ଭକର୍ଣ୍ଣ ।
ମତ୍ତଗଜକୁ ଯେସନେ ଶାର୍ଦ୍ଦୋଳ ଘେରନ୍ତି
ଦଇତ ଆଗରେ କପି ତେସନ ହଣନ୍ତି ।
ତାହାଙ୍କର ପଛରେ ଅନ୍ତଇ ସଇନ
ଯେ ଯାହାର ଆୟୁଧ କରରେ ଛନ୍ତି ଘେନି ।
ପାଞ୍ଚସେନାପତି ତାଙ୍କୁ ଉଗାଳିଣ ଥିଲେ
ପାଞ୍ଚ ବୃକ୍ଷ ଧରିଣ ପାଞ୍ଚ ସେ ମାଇଲେ ।
ଦୈତ୍ୟର ଦେହରେ ବାଜି ଭାଜିଲା ତରୁଶିଳ
ପୁଣିହିଁ ପାଞ୍ଚବୀରେ ଧଇଲେ ପଥର ।
ରାକ୍ଷସର ଅଙ୍ଗରେ ପଡ଼ୁଡ଼ିଲେ ନେଇ
ଭାଜିଲା ତରୁଶିଳ ଯେ ଖଣ୍ଡଖଣ୍ଡ ହୋଇ ।
କୋପେ କୁମ୍ଭକର୍ଣ୍ଣ ପିଟିଲା ନେଇ ଶୂଳ
ପାଞ୍ଚ ସେନାପତି ଯେ ପଡ଼ିଲେ ମହୀ ତଳ ।
ସେମାନେ ପଡନ୍ତେ ପଳାନ୍ତି ସର୍ବଦଳ
ଗୋଡାଇଣ ପାଦରେ ମର୍ଦ୍ଦଇ ଅନର୍ଗଳ ।
ଶ୍ରୀରାମର ଆଜ୍ଞାକରି ରହିଲେ ସଇନ
କରେ ତରୁଶିଳ ନ ପାରନ୍ତି ଘେନି ।
ଶ୍ରୀରାମ ବୋଇଲେ ହେ ଶୁଣ କପିରାଜ
ଅନେକ ସମର କରିବ ଦୈତ୍ୟଆଜ ।
ସୈନ୍ୟ ଘେନିଣ ତୁମ୍ଭେ ଉଗାଳ ଆଗେ ଯାଇ
ମୁହିଁ ଯାଉଅଛି ଧନୁରେ ଗୁଣ ଦେଇ ।

ଶୁଣିଣ କପିରାଜ ଧାଇଁଲା କୋପଭରେ
ହକାରିଲ ବଡଜ ତରୁ ଯେ ଶିଳକରେ ।
ରାଜାର ଧାମନ୍ତେ ଯେ ଧାମନ୍ତି ଋକ୍ଷ କପି
ଏକକୁ ଆରେକ ହେ ଶୂନ୍ୟରେ ଯାନ୍ତି କ୍ଷେପି
ବଜ୍ର ବାଜିଲେ ଯେସନେ ପଳାଏ ବନ୍ଧପାଣି
ଧାମନ୍ତି କପିପଲ ତେସନକ ଜାଣି ।
କୁମ୍ଭକର୍ଣ୍ଣ ଦେହରେ ଉଠିଲେ ସର୍ବେ ଧାଇଁ
ଧରିଣ ଗିଳଇ ପ୍ରଚଣ୍ଡ ଉଗ୍ର ମୂର୍ତ୍ତି ।
କେହୁ ନାକ କାନରେ ଯେ ଦୁଅନ୍ତି ବାହାର
ଶୂଳ ଘେନିଣ ବୀର କରଇ ପ୍ରହାର ।
କାହାକୁ ପାଦରେ ଯେ ମରଦ କଲା ଧଳ
କାହାକୁ ଉପରକୁ ପକାଇ ଦିଏ ତୋଳି ।
ଲଉଁ ପଡ଼ିଣ କାହାକୁ ଭେକଟଇ ଦାନ୍ତେ
କାହାର ଉପରେ ଯେ ପିଟଇ ନେଇ କୁନ୍ତେ
କାହାକୁ ମାରେ ଗଦା କାହାକୁ ମାରେ ବଧ
କାହାକୁଗୋଇଠାମାରେ କାହାକୁ ମାରେଖୁନ୍ଦ
ଏମନ୍ତ ବାରଲକ୍ଷ ମାଇଲା ସଇନ
ସୁଗ୍ରୀବର ଉଗାଳିଲା ଶାଳବୃକ୍ଷ ଘେନ ।
ମୁକୁଟ କୁଣ୍ଡଳ ଯେ ଗଳାରେ ରତ୍ନହାର
ଛିଣ୍ଡାଇ ପକାଇଲା ସୁଗ୍ରୀବର ବୀର ।
ଦେଖିଣ କୁମ୍ଭକର୍ଣ୍ଣ ଯେ ମନରେ ବିଚାର
ଏହାକ ସୁଗ୍ରୀବର ବାନର ଦଳର ।
ସେ ବେଳରୁ ଆର ରୂପ ହୋଇଲାଣି ଆନ
ଏହାର ଭରସାରେ ଅଇଲେ ରଘୁନାଥ ।
ବାଳକ ମାରିଣ ଏହୁ ରାଜା ହୋଇଅଛି
ଆଜ ଏହାର ଯମ ନଷ୍ଟପୁ ପାଞ୍ଜି ପୋଛି ।
ଏତେକ ବିଚାରି ଯେ ପର୍ବତ ଘେନ ମାରି
ବୃକ୍ଷ ଆଡିଣ ତା କପିରାଜ ସମ୍ଭାଳି ନପାରି ।
ବୃକ୍ଷ ଭଜ ଦେହରେ ବାଜିଲା ସହସ୍ର
ଘାଏ ଘୂମ ଇଣ ପଡ଼ିଲା ସୂର୍ଯ୍ୟ ଶିଷ୍ୟ ।
ଧାଇଁଣ କୁମ୍ଭକର୍ଣ୍ଣ ମେଳରୁ ତାକୁ ତୋଳି
ମାତା ଯେସନେ ଶୁଅକୁ ଧରଇ କୋଳକରି ।
ଜଗ୍ରନ ହୋଇ ସେ ଯେ ସୁଗ୍ରୀବ ପଡ଼ିଥିଲା
ହୃଦରେ ଧରି ତାକୁ କୁମ୍ଭକର୍ଣ୍ଣ ଘେନଗଲା ।
ବିସ୍ମର କରଇ କ୍ଷଣ ହୋଇଲା ଯେ ମୋର
ବାନରଙ୍କର ରାଜା ଏ ଅଟଇ ସୁଗ୍ରୀବର ।

ରାବଣଙ୍କର ଆଗରେ ଦେବଇଁ ଏହା ନେଇ
ଭ୍ରାନ୍ତ ହୁଅ ଏବେ ଯେ ମନ୍ଦୋଦରୀ ସାଇଁ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ କରିବି ପଛେ ନାଶ
ପ୍ରଥମ ସମରେ ହୋଇଲା ମୋତେ ଯଶ ।
ଏତେ ହରିବରଣ ଶୀଘ୍ର ବାହୁଡ଼ିଲା ଧାଇଁ
ହିଆରେ ଲଗାଇଣ ଅଛଇ କପିମନ୍ତ ।
ଦକ୍ଷିଣ ମୂର୍ତ୍ତି ହୋଇଣ ଚଳଇ ଘନ ଘନ
ହାହାକାର କରନ୍ତି ଯେ ଋକ୍ଷକପି ସୈନ୍ୟ ।
ଶ୍ରୀରାମର ମଇନ୍ଦ ଏ ସୁଗ୍ରୀବର ସମ୍ଭେ
ଏହ କୁଁ ଦଇତ ଯେ ଘେନିଣ ପଳାଏ ।
ବନ୍ଦୀରେ ପଡ଼ିଲା ଏବେ ଆମ୍ଭ ବାନର ପତି
ହୋହଦେଇ ଗୋଡ଼ାନ୍ତି ଦୈତ୍ୟର ପଦାତି
ହନୁମନ୍ତ ଅଙ୍ଗଦ ମୋହରେ ପଡ଼ିଥିଲେ
ଶବଦ ଶୁଣିଣ ସେ ଚେତନା ପାଇଲେ ।
ଗନ୍ଧମାର୍ଦନ ଯେ ନଳ ସେନାପତି
ଋଷଭ ଗବାକ୍ଷ ଯେ ଉଠିଣ ବସନ୍ତି ।
ରାଜାଙ୍କୁ ନେଲା ବୋଲି ଧାମନ୍ତି ସମସ୍ତ
ଆଗ ହୋଇ ଅଛନ୍ତି ଅଙ୍ଗଦ ହନୁମନ୍ତ ।
ସୈନ୍ୟ ଯେ ଚଳବାରେ କଳଣା ନ ଯାଇ
କଜାଣି ମେଦନୀ ଯେ ହୋଇଗଲେ ଗୁଇ ।
ଜମ୍ବେବ ଜାଇ ଯାଇ ଶ୍ରୀରାମକୁ ଜଣାଇଲା
ଶ୍ରୀରାମ ନ ଜାଣନ୍ତି ସୁଗ୍ରୀବ ଘେନିଗଲା ।
ଶୋଦେବ ରଘୁନାଥ ହେ କୁମ୍ଭକର୍ଣ୍ଣ ବୀର
ଧରି ନେଉଅଛି ଯେ ମୈନ୍ଦଙ୍କୁ କୁମ୍ଭର ।
ଶୁଣିଣ ଦାଶରଥି ମନରେ କାତର
ବିଭୀଷଣଙ୍କୁ ବୁଝିଣ ବୋଲନ୍ତି ରଘୁବୀର ।
ଯାଅ ହେ ଲଙ୍କପତି ସୁଗ୍ରୀବରକୁ ଦେଖ
ଯେମନ୍ତେପାରି ବାବୁରେ ଛଡ଼ାଇବେଗେରକ୍ଷ
ଲକ୍ଷ୍ମଣ ଆସିବାକୁ ମୁଁ ଅଛଇ ବାଟଚାହିଁ
କୁମ୍ଭର ପଛେ ପଛେ ଯାଉଅଛି ମୁହିଁ ।
ଏତେବୋଲି ଶ୍ରୀରାମଯେ ଦକ୍ଷିଣେଦୃଷ୍ଟିଦେଲେ
ବଷ୍ଟୁ ତେଜ ସୁଗ୍ରୀବର ଅଙ୍ଗରେ ପ୍ରକାଶିଲେ
ପୁଣ ଶ୍ରୀରାମ ଧନୁରେ ଦେଲେ ଗୁଣ
କେତେହେଁ ଦୂରେ ସେ ଯେ ଦେଖିଲେଲକ୍ଷ୍ମଣ
ଅପ୍ରମିତ ବଳ ତେ ତାହାଙ୍କ ସଙ୍ଗେ ଛନ୍ତି
ହର୍ଷନ କଲେ ଆସିଣ ସୁମିତ୍ରାର ବର୍ଷୀ ।

ଶ୍ରୀରାମ ବୋଲନ୍ତି ଶୁଣିଲୁ କରେ ଭାଇ
କୁମ୍ଭକର୍ଣ୍ଣ ଦୈତ୍ୟ ଯେ ସୁଗ୍ରୀବ ଘେନଯାଇଁ ।
ଶୁଣିଣ ସଉମିତ୍ରୀ କୋପରେ ପରଚଣ୍ଡ
ଏହିକ୍ଷଣି ଦୈତ୍ୟର କାଟିବ ଯାଇ ମୁଣ୍ଡ ।
ଏସନକ ବୋଲନ୍ତେ ଆସନ୍ତି ଋକ୍ଷ ସୈନ୍ୟ
ଏକକୁ ଅନେକ ଜଣିଣ ଯାନ୍ତି ପୁଣ ।
ଉଠିଣ ଧାମନ୍ତି ଯେ ଆପଣେ ରଘୁନାଥ
ରଡ଼ ଦେଇ କପି ଯେ ଧାମନ୍ତି ଯୁଥ ଯୁଥ ।
ଜମ୍ବେବ ଶତବାଳ ଯେ କାଳଞ୍ଜନ ବୀର
ନଳ ସହିତରେ ଯେ ହନୁର ପିଅର ।
ସାରସ ପାରସ ଯେ ମହେନ୍ଦ୍ର ଦୁବନ୍ଦ
ପଞ୍ଚଣ ଯୂଥପତି ଯେ ଚଳଲେ ଏକବୃନ୍ଦ ।
ମାର ମାର ବୋଲିଣ ଡାକନ୍ତି ଉଚସ୍ୱରେ
ପୃଥିବୀ କମ୍ପିଲା ଯେ ସଇନ ପାଦଭରେ ।
କୁମ୍ଭକର୍ଣ୍ଣର ଦୂଇକରେ ଯେ ଲାଗିଛନ୍ତି ବଳ
ମୁଖ ରାବ ଶବଦରେ ଶୁଭଇ ଚହଳ ।
ହନୁମନ୍ତ ଅଙ୍ଗଦ ଅଛନ୍ତି ଲଗାଦେଇ
ସିଂହ ରଡ଼ ଦେଇଣ ବଳତ ଚଳଯାଇ ।
ତାରର ତନୟ ଯେ ମାରୁତିକ ପୁଚ୍ଛି
ଏବେ କୁମ୍ଭକର୍ଣ୍ଣ ଆମ୍ଭ ରାଜାଙ୍କୁ ନେଉଅଛି ।
ଲଙ୍କାରେ ପ୍ରବେଶ ହୋଇବ ଯେତେବେଳେ
ସୁଗ୍ରୀବର ଜାଣ କ ରହିବ ସେତେବେଳେ
ଏମନ୍ତ ଓଗାଳିଣ ସେ ସେନମା ଛଡ଼ାଇ
କେତେଦୂର ଯାକେ ଯେ ଥିବାକ ଗୋଡ଼ାଇ
ଋଷମ ଘାତପାଇ ଅଚେତନ କପିରାଜ
ରାମାୟଣ ସମରେ କରଇବା ଲାଜ ।
ଏହାର ଜ୍ୟେଷ୍ଠ ଭାଇ ମୋହର ପିଅର
ତିନି ଭୁବନରେ ତାକୁ ବୋଲନ୍ତି ବଳଆର ।
ଏହି କୁମ୍ଭକର୍ଣ୍ଣ ଅଗ୍ରଜ ଦଶଗିର
ବାଳିର ହାତେ ସେ ଯେ ଥିଲାକ ବନ୍ଧପଡ଼
ମଇନ୍ଦ ହୋଇଣ ସେ ଯେ ପ୍ରାଣଇଁ ଘେନିଆସି
ତାହାର ଥିଲେ ଦୈତ୍ୟକୁ ପକାନ୍ତି ବିନାଶି ।
ବାବୁ ବଧାତାରେ ଏକାକେ ସେ ଯେ ନାହିଁ
ଅକାଳବନ୍ତ ଯେ ତାହାକୁ କଲା ବହି ।
ଏବେ ରେ ହନୁମନ୍ତ କରିବା କେମନ୍ତ
ଦୈତ୍ୟରହସ୍ତରୁ କେମନ୍ତେଆସିବ ସାନତାତ

ହନୁମନ୍ତ ବୋଇଲା ଭୁରେ ଆସୁଥାଅ ଏବେ
ଆମ୍ଭେ ଋକ୍ଷ ରଜାକୁ ଛଡ଼ାଇବାରେ ଯେବେ
ଲାଜ ପାଇବଟିରେ କପି କୁଳପତି
ନିନ୍ଦା କରିବେ ତାଙ୍କୁ ସକଳ ନୃପତି ।
ଲଙ୍କାଗଡ଼ ପର୍ଯ୍ୟନ୍ତେ ଗୋଡ଼ାଇ ପୁଣ ଯିବା
ସେଠାରୁ ବଳଲେ ପଛେ ଗୋଡ଼ାଇ ଆଣିବା
ଏସନକ ବୋଲିଣ ହୁଙ୍କାର ସେ କରନ୍ତି
କୁମ୍ଭକର୍ଣ୍ଣ ଦୁଇପାଖରେ ସେ ଚଳନ୍ତି ।
ମଲ୍ଲ ମହାମଲ୍ଲ ଯେ ଋକ୍ଷ କପି ସୈନ୍ୟ
ମାର ମାର ଡାକ ଯେ ହୁଅନ୍ତି ଅବଛନ୍ନ ।
ପଛୁଆଣି ଦଣ୍ଡରେ ଯେ ଅଛନ୍ତି ରାମରାଏ
ସୁଗ୍ରୀବର ଘେନିଣ ଚଳଇ ଦନୁଜ ରାଏ ।
ଲଙ୍କାଗଡ଼ ଭିତରେ ଦୈତ୍ୟ ପଶିଲା ପୁଣଯାଇ
ଅସୁର ଅସୁରୀ ହେ ଆଶ୍ଚର୍ଯ୍ୟ ହେଲେ ଚାହିଁ ।
କେ ବୋଲଇ କାହାକୁ ଆଣୁଅଛୁ ଧରି
କେ ବୋଲଇ ସୁଗ୍ରୀବ ଏ ବାନର ଅଧିକାରୀ
କେ ବୋଲଇ ଏବେ ଗୋ କୁମ୍ଭକର୍ଣ୍ଣ ବୀର
ଏଡ଼େ ହନ୍ଦ୍ୱ ଗୋ ହେଲେଣ କଲା ସ୍ଥିର ।
ସୁଗ୍ରୀବର ପଡ଼ନ୍ତେ ସରିଲା ତାଙ୍କ ଶିରୀ
ଶ୍ରୀରାମ ଲକ୍ଷ୍ମଣ ଯେ ଅଣିକ ଏହୁ ଧରି ।
ରଜାର ନିଧନରେ ଦଳ ଯେ ପଳାଇବେ
ଶ୍ରୀରାମ ଲକ୍ଷ୍ମଣ ଯେ ରହି ନ ପାରିବେ ।
ଏସନେକ ଭାଳେଣି ଖଳଲେ ଲୋକେ ଚାହିଁ
କପିରାଜ ଚେତନା ପାଇଲା କୋଳେଥାଇ ।
ମନେ ବିଚାରଇ ଯେ କରିବ ବୁଦ୍ଧି କିସ
ଶତ୍ରୁଙ୍କର ମୁଖରେ ପାଇଲି ଉପହାସ ।
ଏବେ ବଇତ କରୁପେ ହେବ ହତ
ତେବେ ସେ କୀରତି ରହିବ ଜଗତ ।
ଏତେ ବିଚାରି ଶ୍ରୀରାମ ସୁମରିଲା
ତତକ୍ଷଣେ ବଳ ଅଙ୍ଗେ ପ୍ରବେଶ ହୋଇଲା ।
ଏସନ ବିଚାରି ଯେ ସାମାନ୍ୟ ରୂପ ହୋଇ
ଧାଇଁପଡ଼ି ବଦନରୁ ନାସିକା କାମୋଡ଼ଇ ।
ଦୁଇ ହସ୍ତରେ ଯେ ଧରିଣ ଦୁଇ କାନ
ଛିଣ୍ଡାଇ କାମୋଡ଼ି ବଳେ ଉଡ଼ିଲା ଗଗନ ।
ଶ୍ୟାମଳ ପକ୍ଷୀ ଯେହ୍ନେ ମାଂସ ଘେନିଯାଇ
କପିକୁଳ ପତି ତେସନ ଦିଶଇ ।

ମୁଖରେ ନାସିକା ଶୋଭେ ଦୁଇହାତେ କାନ
ଦେଖିଣ ହରଷ ଯେ ଅଙ୍ଗଦ ହନୁମାନ ।
ସେନା ସେନାପତି ଉପରକୁ ପୃ [illegible] ଚାହିଁ
ବାହୁଡ଼ ଗାଳିଟି ଯେ ଧାଇଁଲେ ଆଗହୋଇ ।
ଋକ୍ଷ କପିମାନେ ଯେ ହୋଇଲେ ଉସତ
ବୋଇଲେ ଅଇଲେ ଯେ ଶ୍ରୀରାମଚନ୍ଦ୍ର ମିତ ।
ରକତ ଝରଝର ପଡ଼ୁଅଛି କ୍ଷିତି
କପି ଘେନି ଆସଇ ଋକ୍ଷଙ୍କର ପତି ।
କେ ବୋଲଇ ଓଷ୍ଠ ଯେ କାମୋଡ଼ିଅଛି ରାଗେ
ତେଣୁ ସେ ରୁଧିର ଯେ ପଡ଼ଇ ଭୂମିଭାଗେ ।
କେ ବୋଲଇ ଅବା ସେ ଘାଉଆ ହୋଇଲା
ଆସି ପାରିଲା ଏବେ ଭଲହିଁ ହୋଇଲା ।
ଏସନକ ବିଚାର କରନ୍ତି ସୈନ୍ୟମାନେ
ଗଗନରେ ହରଷଇ ଆଦିତ୍ୟ ନନ୍ଦନେ ।
ଆସନ୍ତେ ଶ୍ରୀରାମଙ୍କୁ ଭେଟିଲା ଅର୍ଦ୍ଧବାଟେ
ଆକାଶରୁ ଖସିଣ ନମଇଁ ପାଦପୃଷ୍ଠେ ।
କୁଣ୍ଡରୁ ଧୋଇଲା ବେଗେ ନାସାର ମାଂସ
ହେନ କର୍ଣ୍ଣ ତଳେଥୋଇ ଉଭା ସୂର୍ଯ୍ୟଶିଷ୍ୟ ।
ରାମଚନ୍ଦ୍ର ପଚାରନ୍ତି ସୁଗ୍ରୀବରକୁ ଚାହିଁ
ଏସନକ ପଦାର୍ଥ ପାଇଲ ମିତ କାହିଁ ।
ସୁଗ୍ରୀବର ବୋଲନ୍ତି କୁମ୍ଭକର୍ଣ୍ଣର ନାକ କାନ
ଦେଖାନ୍ତି ହନ୍ତେ ଏହା ଆଣିଲି ରଘୁନାନ ।
ଏ ତୋହର ଆଜ୍ଞାରେ ମୁଁ ଗଲି ଦେବ ଯୁଝି
ଦଇତକୁ ଭେଟି ମୁଁ ପାଇଲି ରଣ ମହିଁ ।
ସ୍ୱାତ ସେନାପତି ପଡ଼ିଲେ ତାର ଶୂଳେ
ବୃକ୍ଷେକ କରେ ଧରି ମୁଁ ଉଗ କଲି ବଳେ ।
କୋପେ ପରିଘା ମାଇଲା ମୋତେ ଆଣି
ବୃକ୍ଷଘେନ ତାହା ସମ୍ଭାଳ ନ ପାରିଲି ରଘୁମଣି
ବୁକୁରେ ପଡ଼ିଲା ମୋର ବଜ୍ର ସମ ଘାତ
ତରୁଣିଲ ପଡ଼ାଇ ମୁଁ ହୋଇଲି ଅଚେତ ।
ହୃଦରେ ଯାକିଣ ମୋତେ ବଳେ ଘେନିଗଲା
କେତେବେଳେ ଉରରୁ ଚେତନା ବସିଲା ।
କୋଳେ ଥାଇ ତାର ଚେତନା ପାଇଲି
ଦନ୍ତଘେନ ବେିତର ନାସିକା ଛିଣ୍ଡାଇଲି ।
ଦୁଇ ହସ୍ତରେ ଛିଣ୍ଡାଇଲି ଦୁଇକର୍ଣ୍ଣ
ହେଲେ ଘେନ ତାହା ମୁଁ ଉଡ଼ିଲି ଗଗନ ।

ମନରେ ବିଚାରିଲା ବୀର ହନୁମନ୍ତ
ଶ୍ରୀରାମ ଆଜ୍ଞାରେ ଗଲା ଲଙ୍କା ହୋଇ ଦୂତ ।
ହେଲେ ଜିଣିଗଲା ଲବଣ ସିନ୍ଧୁ ପାଣି
ଖୋଜିଣ ଠାବକଲା ସୀତା ଠାକୁରାଣୀ ।
ମଧୁବନ ଭାଙ୍ଗିଣ ଅକ୍ଷୟ କ୍ଷୟକଲା
ମହା ମହା ବୀରଦୈତ୍ୟଙ୍କୁ ଯେ ନିବାରିଲା ।
ଆବର ଲଙ୍କାଗଡ଼ ଜାଳିକ ଧୂମ୍ରାକ୍ଷତ
ତେଣୁ ସେ ଅସୁରଙ୍କ ଦର୍ପ କଲା ହତ ।
ମୁଦ୍ରିକା ଦେଇଣ ଯେ ଆଣିଲା ମଥାମଣି
ତେଣୁ ସମ୍ପ୍ରତେ ଗଲେ ଯେ ରଘୁମଣି ।
ମଣିରୁ ସଂକେତ ଦେବ ପାଇଲେ ନିକର
କଟକାଇ କଲେ ଦଶାନନର ଉପର ।
ସେତୁବନ୍ଧ ବାନ୍ଧିଣ ସୈନ୍ୟକଲେ ପାର
ସୁବେଳସ୍ଥାରେ ଗଡ଼କଲେ ରଘୁଣାର ।
ମୁଠା ଅଙ୍ଗଦ ଯେନ ସେ ତାରସୁର ତନୟ
ତୁମ୍ଭର ଆଜ୍ଞା ବୋଲିଣ ରାବଣେ କହିଲା ।
ପ୍ରୀତି ନ ପାଇଣ ସେ ପାଇଲା ଅପଯଶ
କୋପରେ ହତକଲା ମାଲ ଦେଜ ସସ୍ତ ।
ରାବଣ ମୁଖରୁହିଁ ହୋଇଲା ପରଚଣ୍ଡ
ବୋଇଲା ଏହିକ୍ଷଣି ମୋଡ଼ନ୍ତୁ ଦଶମୁଣ୍ଡ ।
ସ୍ୱାମୀର ଆଜ୍ଞା ନାହିଁ ବୋଲିଣ ବାହୁଡ଼ିଲା
ଦେଖିବା ନିମନ୍ତେ ଜଗତ୍ର ଭୂଲ ଆଣିଲା ।
ମୁହିଁ କୋପଭରେ ଶୂନ୍ୟକୁ ଉଡିଗଲି
କୋପରେରାବଣଥିବାସ୍ଥାନ ଉପରେ ବସିଲି
ଦଶଶିରୁ ଦଶମୁକୁଟ ତାର କାଢ଼ି
ଭୂଲୁରେ ନାତମାର ଆସିଲି ବାହୁଡ଼ି ।
ଏବେ ତୋର ଆଜ୍ଞାତେ ପଶିଯାଇ ରଣେ
ଅନେକ ରକ୍ଷକପି ଥିଲେ ମୋ ଗହଣେ ।
ମଲ୍ଲ ମହାମଲ୍ଲ ଯେ ବୀର ଜଗତ୍ରେଠି
କୁମ୍ଭକର୍ଣ୍ଣ ଶୂଳରେ ଛଡ଼ିଲେ ମହୀଲେଟି ।
ଦେବ ଶସ୍ତ୍ର ଘାଏ ଯେ ଜ୍ଞାନ ମୁଁ ହରାଇଲି
କୁମ୍ଭକର୍ଣ୍ଣ ନିଅନ୍ତେ ଚେତା ମୁଁ ପାଇଲି ।
ତୁମ୍ଭର ନାମକୁ ସୁମରିଲି ହୃଦୟରେ ।
ବୁଦ୍ଧିବଳ ପ୍ରାକର୍ମହୋଇଲା ତେତେବେଳେ
ମନରେ ବିଚାରିଲି ଦଇବର ଯୋଗ
ଅସୁରର ହାତେ ମୋର ଥିଲା ଏତେ ଭୋଗ

କେ ଆନ କରିବ ପୂର୍ବର ଯେ ଭବିଷ୍ୟ
ତୋହର ଆଗ୍ରେ ମୁଁଯେ ଅଟଇ ସୂର୍ଯ୍ୟଶିଷ୍ୟ
ତୁ ମୋହର ଠାକୁର ଅଟ ଦଶରଥ ସୁତ
ତୋର ଆଜ୍ଞାଦେଲେ ଜିଣି ପାରଇ ଜଗତ ।
କୁମ୍ଭକର୍ଣ୍ଣ ଧରିନିଅନ୍ତେ ମୁଁ ଲଙ୍କ ପୁର ଗଲି
ଦେଖିବାନିମନ୍ତେ ତେବ ଏହାସେ ଆଣିଲି ।
ଏତେକହି ସୁଗ୍ରୀବର ମଥାରେ ହାତଦେଲା
ଶ୍ରୀରାମଙ୍କୁ ଚାହିଁଣ ଅନେକ ସ୍ତୁତି କଲା ।
ଶୁଣିଣ ଶ୍ରୀରାମ ଯେ ସୁଗ୍ରୀବ କୋଳକଲେ
ଅନେକ ପୁରୁଷାର୍ଥ କଥା ସେ କହିଲେ ।

ସାଧୁ ସାଧୁ କ୍ଷତ୍ରୀ ତୁ ଯେ କପିକୁଳ ପତି
ଯାହାସେ କଲହେ ମିତ ଅଦୃଷ୍ଟି ଅଶ୍ରୁତି ।
କୁମ୍ଭକର୍ଣ୍ଣକୁ ଜଗତରେ ବୋଲନ୍ତି ବଳୟାର
ଦେହ ଦିଶଇ ତାର ସାମାନ୍ୟ ଗିରିବର ।
ଦେବତାଏ କମ୍ପନ୍ତି ଯେ ତାର ନାମ ଶୁଣି
ତାହାର ଦର୍ପ ଆଜ ଦଳିଲୁ କପିମଣି ।
ଧନ୍ୟ ଧନ୍ୟ କପି ତୁମ୍ଭେ ଅଟ କେଳାଘର
ଉଣା ବୋଲିଣ ଯେ ବୋଲିବା କାହାକୁହିଁ ।
ଏତ ଦିଶଇ ପର୍ବତ ସମାନେ ନାକ କାନ
ଏହାଯେନ ଭଗନେ ମିତ ଉଡ଼ିଲ କେସନ ।
ଏତେ ବୋଲିଣ ଶ୍ରୀରାମ ପୁଣ କଲେକୋଳ
ପାଦ୍ୟେପଡ଼ ଶୋଇଲସେ କିଷ୍କିନ୍ଧ୍ୟାଭୂପାଳ ।
ଗୁରୁଜନମାନେ ଯେ ମିଳଣ ସ୍ତୁତି କଲେ
ଋକ୍ଷକପି ସମସ୍ତେ ହୁଳହୁଳି ଦେଲେ ।
ଜୟେ ଜୟେ ଶବଦ ଯେ କରନ୍ତି ଋକ୍ଷବର
ବାଜଇ ବୀର ତୁର ଯେ ଶଙ୍ଖ ମହୁରୀ ।
ଛନ୍ଦ ଚାମର ହେ ଉଡଇ ପନ୍ତ ପନ୍ତ
ସୈନ୍ୟ ଗହଳରେ ହୁଅନ୍ତି ଜନ୍ତାଜନ୍ତ ।
ଶ୍ରୀରାମ ବୋଇଲେ ହେ ମିତ ଏବେ ଶୁଣ
ସୁପନେଖିର ମୁଁ ଯେ କାଟିଲି ନାକ କାନ ।
ତାହାର ଭଉଣୀ ଯେ ଅଟଇ ପୁଣ ସେହି
ଖାଇର ନାକ କାନ ଆଣିଲୁ ଯେ ତୁହି ।
ଭାଇ ଭଉଣୀ ସେ ଦେଖାଦେଖି ହେବେ
ରାଜ୍ୟଲୋକେ ଦେଖି ଉପହାସ କରିବେ ।
ସେନାପତିମାନେ ଯେ ମଲ୍ଲ ମହାମଲ୍ଲ
ଗଡ଼ରେ ପଶିଣ ତୁମ୍ଭେ କରହେ ଚହଳ ।

ରାମଚାଳ ଦେଇଣ ଯେ ହୁଳହୁଳ ଦେବ
ନୃତ୍ୟଗୀତ କରଣ ଯେ ଖେମଟା ନାଚବ ।
ଯେଉଁରୂପେ କୁମ୍ଭକର୍ଣ୍ଣ ଆସିବ ଯେ ଫେରି
ଦେବଙ୍କର ଭୟ ଯିବ କୁମ୍ଭକର୍ଣ୍ଣ ମରି ।
ଏମନ୍ତ ଉପାୟମାନ ତୁମ୍ଭେ ଯାଇକରି
କପିବଳ ଶ୍ରୀରାମଠାରୁ ଶୁଣି ଚଳିଲେ ସକଳ ।
ଗଡ଼ରେ ପଶିଣ ଯେ ବଅନ୍ତି ରାମଚାଳ
ନାଚନ୍ତି ଖେମଟା ରାଗେ ନୃତ୍ୟ ଗୀତ କରି ।
ଏଥିଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ପଚାରନ୍ତି ତାରଧଙ୍କେ କେତେବେଳେ ଆଏ ।
ସୁଗ୍ରୀବ ବୋଇଲା ଦେବ ଶୁଣ ମୋର ବାଣୀ
କୁମ୍ଭକର୍ଣ୍ଣ ରାବଣର ହୋଇଲା କାଳ ପୁଣି ।
ରାବଣର ସୈନ୍ୟବଳ ନ ଆଣିଲା ସଙ୍ଗେ
ଆପଣାର ପୁତ୍ରନାତି ସେନ ଆସେ ରଙ୍ଗେ ।
ଶତେ କୁମର ତାର ଶତେ ରଥଚଢ଼ି ଆସେ
ନବସହସ୍ର ନାତିତାର ଚଢିଣ ନାଗଶେଷେ
ନାନାବଳ ସେନ କୁମ୍ଭକର୍ଣ୍ଣ ଆସେ ବଳେ
ବୋଲଇ ସର ମୋତେ ଏ ମହୀମଣ୍ଡଳେ ।
ବାଉଛର ଉଡ଼ାଇ ଯେ ରଣରେ ପଶିଲା
ଏବେ ଲଜ୍ୟାପାଇଲା ସେ ଦଶବାର କଲା ।
ଶ୍ରୀରାମ ବୋଇଲେ ଶୁ ହୋ ବିଭୀଷଣ ଶୁଣ
କେତେକ ତରୁଣୀଅଟେ କୁମ୍ଭକର୍ଣ୍ଣର ପୁଣ ।
କେତେଯେ ନାତୁଣୀବଧୂ କେତେ ବଧୂତାର
ଏହା ମୋତେ ସମ୍ପତି କହ ହେ ଲଙ୍କାବୀର ।
ବିଭୀଷଣ ବୋଇଲ ଯେ ଯୋଡ଼ି ବେନକର
ବଡ଼ ପାଟରାଣୀତା ବଜ୍ରୋଯାନାମେ ସାର ।
ତାହାର ଲକ୍ଷେ ପୁଣ ଅଟନ୍ତି ସପତଣୀ
ତାଙ୍କଠାରୁ ଶତେପୁତ୍ର ଜାତ ରଘୁମଣି ।
ଶତେ କୁମରଙ୍କର ଶତେ ଲକ୍ଷ ନାରୀ
ଅଇବ୍ରୁତେନାତିଙ୍କର ଲକ୍ଷେ ମନୋହାରୀ ।
ତିନକୂଳେ ତିନଲକ୍ଷ ଶୁଣ ରଘୁଧାରୀ
ବାରକୋଟି ହୋଇବାଯେ ଅଟଇ ତାହାର ।
ଶୁଣିଣ ତୋଷହେଲେ କୌଶଲ୍ୟାଙ୍କ ସୁତ
ଲକ୍ଷ୍ମଣଙ୍କୁ ବୋଇଲେ ଶୁଣ ଆରେ ଭ୍ରାତ ।
ହେ ରଘୁବେଗେ ପୁତ୍ରନାତି ମୋରବେଗେ କୁମ୍ଭକର୍ଣ୍ଣ
ଆଜ ତାର ବଂଶ ଆମ୍ଭେ କରିବା ନିଧନ ।

ଶୁଣିଣ ସନ୍ଧଧରୀ ହରଷ ହୋଇଲେ
ଅଇଲେ ଜାଣିତଆଜ ବୋଲଣ ବୋଇଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ଶ୍ରୀରାମଙ୍କ ସୈନ୍ୟ ଯେ ରହିଲେ ବେଗ ପୂରି ।
ରାମକପି ସବୁହେ ହୁଳହୁଳ ଦେଲେ
ରାମଚାଳ ଦେଇଣ ଉଚ୍ଚରେ ବୋବାଇଲେ ।
ଜୟ ଜୟ ଶବଦ ଯେ କଲେ ଋଷବନ୍ତ
ବଜାଇଲେ ବୀରତୂରୀ ଶଙ୍ଖ ଯେ ମହୁରୀ ।
ଚିହ୍ନ ବେଗିକମାନ ଉଡ଼ଇ ଫନ୍ଦ ଫନ୍ଦ ।
ସୈନ୍ୟର ଗହଳରେ ହୁଅନ୍ତି ଜନ୍ତାଜନ୍ତ ।
କେତେଣ ଋଷକପିଙ୍କେ ନାଚନ୍ତି ହରଷେ
ବଜାନ୍ତି ତାଳବୀଣା ମର୍ଦ୍ଦଳ ଗୀଇରସେ ।
କେହୁ ବର୍ଜିଣୀ ଧ୍ୱଜ ଯେ ବଅନ୍ତି ଘନଘନ
କେହୁ ଚର୍ମ ମାରି .. ଉଡ଼ନ୍ତି ଗଗନ ।
କେବଣ ଋଷକପି ଧାମନ୍ତି ଆଗସରି
ଠ..ମାନ ଧରି କେ ରହନ୍ତି ଆବୋରି ।
କେହୁ ଯେ ଆଗସରି ବୋଲନ୍ତି ମାର ମାର
କରେ ଧରିଅଛୁ କେ ମହତ ପଥର ।
ଅତି ବଡ଼ ବୃକ୍ଷେକ ଅଛୁ କେହୁ ଧରି
କେବଣ ଋଷକପି ବୋଲନ୍ତି ହରିହରି ।
କେ ବୋଲେ ସୁଗ୍ରୀବର ଆମ୍ଭର ଠାକୁର
ଆଜ ଯେ କୁମ୍ଭକର୍ଣ୍ଣ ଦର୍ପ କଲ ଚ୍ୟୁର ।
ଏତେବୋଲି ସୈନ୍ୟ ଯେ ହୁଅନ୍ତି ହରଷ
ସ୍ୱର୍ଗରେ ଥାଇ ଦେଖନ୍ତି ସକଳ ଦେବଶ ।
ବୋଲନ୍ତି କୁମ୍ଭକର୍ଣ୍ଣ ଯେ ମରିବ ଏଥାନ୍ତି
ଏତେବୋଲି ଦଶଧନ୍ୟମାନ ଏ ଗ୍ରାଜନ୍ତି ।
ଏଥୁଅନନ୍ତରେ କୁମ୍ଭକର୍ଣ୍ଣ ବୀର
ନାସିକା ଶ୍ରବଣ ଯହୁଁ ନେଲା ସୁଗ୍ରୀବର
ଲଜ୍ୟା ପାଇଲା ଯେ ରାବଣର ଭାଇ
ବୋଲଇ ଦଶଗ୍ରୀବକୁ ଭେଟିବି କେମନ୍ତେ ଯାଇ ।
ପ୍ରତିଜ୍ଞା କରିଣ ଯେ ଅଇଲି ଶତ୍ରୁ ମାରି
କବୋଲିବୋଲିବେ ମୋତେ ନଗରନାରୀ
ଜଗତେ ଉପହାସ୍ୟ ପାଇବି ପୁଣ ଆଜ
ଦେଖିଲେ କି ବୋଲିବ ଲଙ୍କାକୁଳରାଜ ।
ଆଜ୍ଞ ଯାଇଣ ମୁଁ ଯେ ଗୁହିଁବ କାହାମୁଖ
ଏ ଦୁଃଖ ସହିବାର ମରଣୁ ବଡ଼ଦୁଃଖ ।

ଏମନ୍ତ ସମୟରେ ଯେ ଋଷକପି ମିଳି
ରାମତାଳ ମାରିଣ ପାଡନ୍ତି ହୁଳହୁଳି ।
ନୃତ୍ୟରଙ୍ଗ କରିଣ ନାଚନ୍ତି ଖେମଟା
ଇନ୍ଦ୍ରଣୀ କାହିଁ ତୋର ଡ଼ାକଣ ରୂପଦେଖା ।
ପଛଆଡେ ତାଳମାରି ଆଗେ କରନ୍ତି ନୃତ୍ୟ
ଦେଖିଣ କୁମ୍ଭକର୍ଣ୍ଣ ହୋଇଲା କୋଧଚିତ୍ତ ।
ପୁହନାଥଙ୍କ ବୋଲେ ମାରରେ କପିପଲ
ଶୁଣିଣ ପୁହନାଥ କରନ୍ତି ସମର ।
କାହୁଡ଼ିଣ ଦୈତ୍ୟ ଯେ ଆସଇ ପୁଣ ଫେରି
ଦେଖିଣ ଋଷକପି ପଳାଇଲେ ଡରି ।
ଶତେ କୋଶ ଆକୃତିରେ ବଢ଼ାଇଲା କାୟା
ପନ୍ଦର ପନ୍ଦର କୋଶ ଜଙ୍ଘ ଦେଖନ୍ତି ହା ।
ତନଧାର ହୋଇଣ ବହଇ ରକତ
ଜଜାଣି ଦିଶଇ ଯେ ସିନ୍ଦୂର ପରବତ ।
ସଂଗ୍ରାମ ମଣ୍ଡଳେ ବୀର ପଶିଲେକ ଯାଇ
ମେରୁ ପରବତ କି ଦିଶଇ ତାର ଦେହ ।
ରାଗରେ ଉଡ଼ ଯେ ଗୁଡ଼ଇ ଘନ ଘନ
ପାଦରେ ମରଦଇ ଶ୍ରୀରାମର ସୈନ୍ୟ ।
ଶତ ଶତ କରିଣ ଦଅଇ ସେହୁ ଗିଳି
ନାକ କାନବାଟେ ସର୍ବେ ପଡ଼ନ୍ତି ବାହାରି ।
ଚଞ୍ଚକନ୍ତରୁ ସୈନ୍ୟ ପଳାନ୍ତି ଖୁଣ୍ଟିକରି
ରାଗରେ କୁମ୍ଭକର୍ଣ୍ଣ ଦେଉଅଛି ଗାଳି ।
କାହାକୁ ପାଦେମାରି ମରଦ କଲା ଧୂଳି
କାହାକୁ ଫୋପାଡେ ସେ କାହାକୁନାତେମାରି
ବାନରଙ୍କୁ ବୋଲଇ ତୁମ୍ଭ ଶ୍ରୀରାମ ଏବେକାହିଁ
ତୁମ୍ଭେ ଛାନଜନ୍ତୁ ବଧିବାରେ ପ୍ରୟୋଜନନାହିଁ
ଏସନେକ ବୋଲିଣ ଧାମଇଁ ମହାରଣେ
ଦୁଇ ପାଖେ ପୁହନାଥ ଲାଗିଛନ୍ତି ତେଣେ ।
ଶ୍ରୀରାମକୁ ଭେଟିଲେ ଯେ ଶ୍ରୀରାମର ସୈନ୍ୟେ
ଦେଖିଣ ଶ୍ରୀରାମ ଯେ ବିଚାରକଲେ ମନେ ।
କୁମ୍ଭକର୍ଣ୍ଣବେଳେ ତପସ୍ୟାରେକେତେପ ଫଳିଲୁ
ମରିବା ପାଇଁ ସିନ୍ଧୁ ତରିଣ ଆଇଲୁ ।
ମୋହର ହାତେ ତୋର ଅଟଇ ନିଦାନ
ହରିହର ବ୍ରହ୍ମା ଯେ କରି ନ ପାରିବେ ଆନ
ଆଜ ତୋର ପ୍ରାଣରେ ଯେ ନେବ ଏହିକ୍ଷଣି
ଏତେକହି ଦୈତ୍ୟ ଯେ ଧାଇଁଲା ଶିରଧୁଣି ।

ସୈନ୍ୟ ପଳାଇଲେ ଗର୍ଜନ ନାଦ ଶୁଣି
ସୁଗ୍ରୀ ହନୁ ଜମ୍ବେବ ଅଙ୍ଗଦ ଛନ୍ତି ରହି ।
ଗନ୍ଧମାଦନ ଯେ ପଛରେ ବିଭୀଷଣ
ହୋଇଲା ଦେଖିଲେ ଗାଳିଦେବ ଯେକୁମ୍ଭକର୍ଣ୍ଣ
ସେନା ସେନାପତିମାନେ ଅଛନ୍ତି ସମସ୍ତେ
ସୈନ୍ୟଙ୍କୁ ଶୁଣି ବୋଲନ୍ତି ଶ୍ରୀରାମର ଭ୍ରାତେ ।
ନ କର ଭୟ ତୁମ୍ଭେ ଋଷକପିମାନେ
ଅସୁରର ଦେହ ଅଟେ ପର୍ବତ ସମାନେ ।
ତାହାର ଉପରେ ଉଠରେ ବେଗ ଯାଇ
ରତ୍ନ ଅଳଙ୍କାର ସବୁ ଆଣରେ ଛିଣ୍ଡାଇ ।
ଆମ୍ଭେ ଅଛୁ ଏବେରେ ନକର ତୁମ୍ଭେ ଭୟେ
ଶୁଣିଣ ଋଷକପି ଉରସାମାଳ ପାଏ ।
କୋପରେ ଶ୍ରୀରାମ ଲକ୍ଷ୍ମଣଙ୍କୁ କହେ
ବେଗରେ ବାଣ ଯେ ବିନ୍ଧନ୍ତି ରାମଭାଏ ।
କୁମ୍ଭକର୍ଣ୍ଣ ଉପରେ ପଡ଼ିଲା ଯାଇ ଶର
ଘାଆ ପାଇଣ ଦୈତ୍ୟ ଯେ ମାଇଲା ମୁଦ୍‌ଗର
ତୀକ୍ଷ୍ଣ ନାରାଚେ ତାହା ଯେ ଛେଦିଲେଶ୍ରୀରାମ
ବଡ଼ଏ ସଂଗ୍ରାମ ଯେ ହୋଇଲା ଅବିଶ୍ରାମ ।
ଲକ୍ଷ ଲକ୍ଷ ନାରାଚ ଯେ ବିନ୍ଧନ୍ତି ଦୁଇଭାଇ
କାଣ୍ଡ କାଟିବେ ଦେହ ଯେ କଲେ ଚାଳଣି
କ୍ରୋଧରେ କୁମ୍ଭକର୍ଣ୍ଣ ଯେ ଆକ୍ରୋଶି ଧଇଲା
ଋଷକପି ସୈନ୍ୟ ଯେ ଅନେକ ଖାଇଲା ।
ଶ୍ରୀରାମ ଲକ୍ଷ୍ମଣ ଯେ ସୈନ୍ୟଙ୍କୁ ଡାକ ଦ୍ୟନ୍ତି
ଦୈତ୍ୟର ପାଶକୁ ତୁମ୍ଭେ ନଯାଅ ଏଥାନ୍ତି ।
ଧରିଣ କୁମ୍ଭକର୍ଣ୍ଣ ଯେ ପରିଘ ପୁଣ ମାରି
ବାୟୁବ୍ୟ ଅସ୍ତ୍ରେ ତାହା ଶ୍ରୀରାମ ନିବାରି ।
କୁବେର ଅସ୍ତ୍ର ଯେ ମାଇଲେ ଦାଶରଥି
ଦକ୍ଷିଣ ଭୁଜ ତାର ଛିଣ୍ଡି ପଡ଼ିଲା ପୃଥ୍ବୀ ।
ସହସ୍ରେ ବାନରଙ୍କର ଉପରେ ପଡ଼ିଲା
କୋପରେ କୁମ୍ଭକର୍ଣ୍ଣ ବୃକ୍ଷେକ ଉପାଡ଼ିଲା ।
ବାମ କରରେ ତାହା ଧେନିଣ ଯୁଦ୍ଧକରି
ଅନେକ ଋଷକପି ଯେ ପକାଇଲା ମାରି ।
ଦେଖିଣ ବାବଲ ଯେ ପେଷିଲେ ରଘୁସାଇଁ
ବାମଭୁଜ ତାର ପକାଇଲେ ଛିଣ୍ଡାଇ ।
କ୍ରୋଧରେ ବିଶ୍ବରୂପ ହୋଇଲେ ରାମରାଘ୍ବେ
ମୁକୁଟ ଲାଗିଲା ଯାଇ ସୂର୍ଯ୍ୟର ରଥପାଏ ।

ଚନ୍ଦ୍ର ସୂର୍ଯ୍ୟ ଦୁଇ ଯେ ନୟନ ଦଶିଲେ
ବଗପାଳେ ଶରୀର ଦେଖିଣ ଭୟକଲେ ।
କୁମ୍ଭକର୍ଣ୍ଣ ଦେଖିଣ ବଶ୍ବର କରେ ମନେ
ଏ ଯେ ବାସୁଦେବ ମାଝବେ ମୋତରଣେ ।
ନିଶ୍ଚୟ ବୈକୁଣ୍ଠ ପ୍ରାପତ ମୋତେ ହେଲା
ଭଲରେ ଭାଇ ଚଣ୍ଡିଣ ଜାନକୀ ଆଣିଲା ।
ସେନାପତିକପିମାନଙ୍କୁ ଶ୍ରୀରାମସାମାନ୍ୟମୂରତି
କୁମ୍ଭକର୍ଣ୍ଣକୁ ଶ୍ରୀରାମ ଦେଖାଇ ନିଜ ମୂର୍ତ୍ତି ।
ଏଥିଅନନ୍ତରେ ଶୁଣଗୋ ଶାକମ୍ଭରୀ
କୁମ୍ଭକର୍ଣ୍ଣ ପୁତ୍ରମାନେ କରରେ ଅସ୍ତ୍ରଧରି
ଶତେକ କୁମ୍ଭ ଯେ ନବ ସହସ୍ର ନାତି
ବହନ୍ତେ ନାରାଜ ଯେ ବରଷାଧାର ପ୍ରତି ।
ଦେଖିଣ ଲକ୍ଷ୍ମଣ ଯେ ଅନୁଜ ଶର କଲେ
ସମସ୍ତଙ୍କ ନାରାଜ ଯେ ଛେଦି ପକାଇଲେ ।
ବାଦଲ ଶର ଶତେ ଯେ ପେଷିଲେ ଲକ୍ଷ୍ମଣ
ଶତେ ରଥୀ ରଥ କାଟି ସାରଥି ମାରେପୁଣ
ପୁଣି ବଜ୍ରଶର ଶତେ ଯେ ପେଷିଲେ
ଶତେ ଭାଇଙ୍କର ଶିର କାଟି ପକାଇଲେ ।
ଗୋଟିଏ ଭାଇ ସେଥିରୁ ଉବୁରି ରହିଲା
ବିଭୀଷଣ ଲକ୍ଷ୍ମଣର କର୍ଣ୍ଣରେ କହିଲା ।
କୁମ୍ଭକର୍ଣ୍ଣର ଯେ ଶତେକ ପୁତ୍ର ଜାଣ
ଅନେଶ୍ବତ ମଲେଟି ଗୋଟିଏ ରଖେ ପୁଣ ।
ଏହାକୁ ନ ମାର ରଖ ହେ ବେଳ ସ୍ବାମୀ
ଶୁଣିଣ ଲକ୍ଷ୍ମଣ ସନ୍ତୋଷ ହେଲେ ପୁଣି ।
ପିତାର ମରଣ ଯେ ଦେଖିଲେ ପୁତ୍ରମାନେ
ନଠାଇ ଯୁଦ୍ଧକଲେ ଲକ୍ଷ୍ମଣର ସଙ୍ଗେ ।
ମାରନ୍ତି ଚେଲ ଚକ୍ର ଯେ ଗଦା ମୁଦ୍ଗର
ବେଢ଼ିଲେ ଲକ୍ଷ୍ମଣକୁ କଲେ ଶତେ ପୁର ।
ଦେଖିଣ ଯୂଥପତି ଯେ ମଲ୍ଲ ମହାମଲ୍ଲ
ସେନା ସେନାପତି ଯେ ମିଳିଲେ ସକଳ ।
ଅଙ୍ଗଦ ହନୁମନ୍ତ ସୁଷେଣ ନଳନୀଳ
ଗନ୍ଧମାଦନ ଯେ ହନୁର ପିଅର ।
ମାଇଲେ ଅସୁରଙ୍କୁ ଧଇଣ ଯାଇ ହାଲେ
ମତ୍ତହସ୍ତୀମାନଙ୍କୁ ଧରି ମାଇଲେକ ବଳେ ।
ଲକ୍ଷ୍ମଣ ଯେ ବାଦଲ ଶର ବେନି କାଟି
ଏ ଜା ଶରକରେ ଯେ ଶତେ ଲେଟି ।

ଦୁଇ ଘଡ଼ିରେ ମଲେ ନବସହସ୍ର ନାତି
ଗୋଟିଏ ନ ବଞ୍ଚିଲେ ସବେ ପଡ଼ିଲେ ପୃଥ୍ବୀ
ଦେଖିଣ ଲକ୍ଷ୍ମଣ ଯେ ସନ୍ତୋଷ ମନହେଲେ
ଶ୍ରୀରାମଙ୍କ ପାଶରେ ଯାଇଣ ମିଳିଲେ ।
ଯୂଥପତିମାନେ ମିଳିଲେ ଶ୍ରୀରାମ ପାଶରେ
ଅଙ୍ଗଦ ହନୁମନ୍ତ ଅଷ୍ଟସେନା ସହିତରେ ।
ଭାଜିଲେ ଦୈତ୍ୟବଳ ରଣଗୋଳ ଘୁଡ଼କରି
କୁମ୍ଭକର୍ଣ୍ଣ ପଛରେ ରହିଲ ଆହୋଶ ।
ଅନେଶ୍ବତ ପୁତ୍ର ଯେ କୁମ୍ଭକର୍ଣ୍ଣ ମଲେ
ନବସହସ୍ର ନାତି ଯେ ଠୂଳରେ ନାଶଗଲେ ।
ନବସହସ୍ର ହସ୍ତୀ ଯେ ଶତେକ ରଥବର
ଶତେକ ସାରଥି ମଲେ ଯେ ତାହାଙ୍କର ।
ଗୋଟିଏ କୁମର ଯେ ବରତ ଧହେତାରେ
ବିଭୀଷଣ ରଖିଲ କହିଣ ଲକ୍ଷ୍ମଣରେ ।
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ରସ୍ବୟେ
କ୍ରୋଧରେ ଜରଜର ତନୁ ତାଙ୍କର ହୋଏ
ପୁଣ ଅର୍ଦ୍ଧଚନ୍ଦ୍ର ଯେ ପେଷିଲେ ରଘୁମଣି
ଦୁଇଚରଣ ତାହାର ପକାଇଲେ ହାଣି
ସ୍ବର ଡ଼ାଳ ଛିଡ଼ନ୍ତେ ପଡ଼ିଲା ଦୈତ୍ୟତଳେ
ହୁଙ୍କୁରିଣ ସୈନ୍ୟ ଯେ ଖାଇଲା ସେହୁ ବଳେ
ବିକଟାଳ ବଦନ ଯେ ଲହଲହ ଜିହ୍ବ
ତାହାର ଆଗରୁଯେ ସୈନ୍ୟପଳାଇଲେସର୍ବ
ଘୋର ରବ କରଣ ଗର୍ଜଇ ଘନଘନ
ଅପୂର୍ବ ଦେଖିଣ ଯେ ରୂଷ୍ଟିଲେ ଋକ୍ଷସୈନ୍ୟ ।
କେ ପଟରେ ବାଦଲ ପେଷିଲେ ରାମରାଜ
କୁଣ୍ଡରେ ପୂରାଇଲେ ଯେ ଅନେକ ନାରାଜ ।
ଶିର ଛେଦିବେ ବୋଲି ଯେ କରନ୍ତି ବିଚାର
କୋପରେ ବିନ୍ଧିଲେ ଅତିବଡ଼ ଖଷଣରେ ।
ଅର୍ଦ୍ଧଚନ୍ଦ୍ର ଆକାର ଯେ ସୂର୍ଯ୍ୟର କିରଣ
ମନ୍ତ୍ରିଣ ବିନ୍ଧିଲେ ଯେ ରଘୁକୁଳରାଣ ।
ସେହି କାଣ୍ଡ କୁମ୍ଭକର୍ଣ୍ଣ ଉପରେ ପଡ଼ିଲା
ଦାଢ଼ ମୋଡ଼ି ହୋଇଣ ସେ ବାହୁଡ଼ି ଅଇଲା
ଦେଖିଣ ରଘୁନାଥ ଦେବହୁ ଟାଳ ଗଲା
ଗରିଷ୍ଠ ଦାନବ ବୋଲି ମନେମନେ ଭାଳି ।
ତାଙ୍କୁ ମାଇଲେ ଶ୍ରୀରାମ ଯେବଣ ଶରେ
ସେବାଣ ବିନ୍ଧିଲେଯେ ଶ୍ରୀରାମ କୋପଭରେ

କୁମ୍ଭକର୍ଣ୍ଣ ଉପରେ ପଡ଼ିଲା ଶର ଯାଇଁ
ଭେଦ ନ ପାରିଣ ଶର ଅଇଲା ପଳାଇ ।
ଦେଖିଣ ରଘୁନାଥ ଯେ ଆଶ୍ଚର୍ଯ୍ୟ ହୋଇଲେ
ଧନ୍ୟରେ କୁମ୍ଭକର୍ଣ୍ଣ ବୋଲିଣ ପ୍ରଶଂସିଲେ ।
କମ୍ପା ଦେବତାଏ ନ କରିବେ ଯାକୁ ଖିତ
ଏଡ଼େ ଏଡ଼େ ନାରାଚମାନ ଉପୁଡ଼ି ପଡ଼ନ୍ତି ।
କୁମ୍ଭକର୍ଣ୍ଣ ବୋଇଲା ତୁ ଶ୍ରୀରାମ ଅଜ୍ଞାନ
ଆନ ଦୈତ୍ୟପ୍ରାୟେ ତୁ ମଣିଲୁ ମୋତେ ସାନ
ବାଳି ଖରଦୂଷ କବନ୍ଧଙ୍କୁ ନାଶ କଲୁ
ତାଙ୍କର ପ୍ରାୟେ କରିଣ ମୋତେ ତୁ ବୁଝିଲୁ
ଏ ତିନିପୁର ମୁଁ ଯେ ଜିଣିଲଇଁ ହେଳେ
ବଜ୍ର ପରୀକ୍ଷା ଯେ କରିଛି ବକ୍ଷ ସ୍ଥଳେ ।
କଞ୍ଚିତ ନାରାଚରେ ମାରିତ ଲୋଡ଼ୁ ମୋତେ
ଆଜ ଯେ ଆହାର ମୁଁ କରିବଇଁ ତୋତେ ।
ଏତେ ବୋଲିଣ ଯେ ରଘୁଇଁ ଆଗସର
ସମ୍ପୂର୍ଣ୍ଣ ଚନ୍ଦ୍ରକୁ ଯେହ୍ନେ ରାହୁ ଯେ ଆବୋର
ଲକ୍ଷ୍ମଣ ବୋଇଲେ ଆରେ ଅଙ୍ଗଦ ଏବେଶୁଣ
ଆମ୍ଭର ସୈନ୍ୟଙ୍କୁ କଢ଼ାଇ ବେଗେ ଆଣ ।
ଅକାରଣ ଯୁଦ୍ଧରେ ମରିବେ କିସପାଇଁ
ନାରାଚ ଉପୁଡ଼ି ପଡ଼େ ଦେଖୁଣ ଅଛଇ ।
ଦେଖ ଏ ଦନୁଜର ଅପୂର୍ବ ସାହସ
ଆମ୍ଭର ଭାଗ୍ୟେଥିଲେ ଏ ହୋଇବପ୍ରାଣେନାଶ
ଏସନକ ବେଳରେ ବୀର ଯେ କୁମ୍ଭକର୍ଣ୍ଣ
ପ୍ରଳୟ ଅଗ୍ନି ଜାଣି ବୁଲଏ ନୟନ ।
ଦେଖିଣ ରଘୁନାଥ କୋପରେ ଥରହର
ବାଳିକି ବଧିଲା ଶର ଧଇଲେ ରାମକର ।
ଗୁଣରେ ବସାଇଣ ଧଇଲେ ଆଗସର
ଚଳିଲା ନାରାଚ ଯେ ଘୋର ନାଦକରି ।
କୁମ୍ଭକର୍ଣ୍ଣ ଉପରେ ପଡ଼ିଲା ବେଗ ଯାଇ
ଭେଦ ନ ପାରିଣ ଶର ଅଇଲା ପଳାଇ ।
ଦେଖିଣ ଠହ ଠହ ହସଇ ଦଇତ
କେତେ ଅସ୍ତ୍ର ଅଛି ତୋର କହରେରଘୁନାଥ
ଆଜ ସେ ଜାଣିମା ତୋର ବୀର ଶୂରପଣ
କେବଣ ବାଣେ ମୋତେ ମାରିବୁ ରଘୁରାଣ ।
ଯୁଦ୍ଧି ଆସିବା ବେଳେ ନୟମ ଭୁଞ୍ଜି କଲୁ
ପୂର୍ବ ଜାତି ମୋହର ଲକ୍ଷ୍ମଣ ଭାଗେ ଦେଲୁ ।

ବାଚ ଯେ ପୂର୍ବ ଜନ୍ମ ମାଳଲା ମୋହର
ଶତେକ ପୁତ୍ରକୁ ରଖିଲା ଏକସାର ।
ବିଭୀଷଣ କହିବାରୁ ଭାଇ ତୋ ସନ୍ତୋଷ
ନିଯୁକ୍ତି କରିବାକୁ ରହିଲମୋର ଅଂଶ ।
ମାରିବେଗେମୋତେରେନମାଇଲେ ତୁ ମଲୁ
ତୋହର ଆଉ ପୁଣି ଅନ୍ୟାୟ ଆଚରିଲୁ ।
ଏତୋହର ସୈନ୍ୟ ଯେ କରିବ ଆଜନାଶ
ଗୋଟିଏ ନ ଥୋଇବରେ ଭୁବନ ନିଦଶ ।
ଶୁଣିଣ ରଘୁନାଥ ନସ୍ତୁରେ ବୁଦ୍ଧି କରି
ସପତଶାଳା ଛେଦିବା ଶର ସେ ଗୋଟିବାଛି
ଗୁଣରେ ବସାଇ ଯେ ନାରାଚ ଛାଡ଼ିଦେଲେ
ଆଷାଢ଼ ମାସ ମେଘ ଗର୍ଜନ ପ୍ରାୟେ କଲେ ।
ଦୈତ୍ୟର ଗଳାରେ ସେ ପଡ଼ିଲା ପୁଣଯାଇ
ମୁଣ୍ଡ ମୋଡ଼ି ହୋଇଣ ପଡ଼ିଲାକ ଭୂଇଁ ।
ଯେବଣନାରାଚସପତବାଙ୍କରେସପ୍ତଶାଳାଫୁଟି
ପର୍ବତରେ ଭେଦିଣ ପାତାଳକୁ କଣ୍ଟି ।
ବଳପୁରେ ଭୁମି ନକଳ ଅଇଲା
ପୁଣବ୍ଧ ପର୍ବତେ ପଶି ଲେଉଟି ଅଇଲା ।
ସେ କାଣ୍ଡର ମୁନ ଯେ ହୋଇଲା ପୁଣମୋଡ଼
ଲଙ୍କରେ ନଇଁଲା ଶର ଭୁମିରେ ଅଛି ପଡ଼ି ।
ଏ ଜିଁଟିଣ ଲକ୍ଷ୍ମଣ ରଖିଲେ ରାମ ହୋଣେ
ଖର ଦୂଷଣକୁ ମାଇଲେ ଯେଉଁବାଣେ ।
ନେମକାଣ୍ଡ ମାଇଲେଯେ ହୋହିଲା ତାରକଛି
ଗତେଣ ରଘୁନାଥ ନାରାଚେ ପୁଣ ବାଛି ।
ଇନ୍ଦ୍ରର ଅସ୍ତ୍ର ଯେ ଗୁଣରେ ବସାଇଁ
ଦୈତ୍ୟର କଣ୍ଠ କାଟ ବୋଲିଣ ରାମ କହି ।
ଚଳିଲା ନାରାଚ ଯେ ଘୋରନାଦ କରି
ପ୍ରଖର ପବନରେ କମ୍ପଇଁ ବସୁନ୍ଧରା ।
କୁମ୍ଭକର୍ଣ୍ଣ କଣ୍ଠରେ ପଡ଼ିଲା ଶର ଯାଇଁ
ରଘୁଇଁ କାଟୁଅଛି ବଇରାଗ ପାଇ ।
ବେକରୁ ଛିଡ଼ିଣ ଯାନ୍ତେ ପଡ଼ିଲା ଦୈତ୍ୟମୁଣ୍ଡ
ରଘୁଇଁ ଡେଇଁଣ ଯେ ପଡ଼ିଲା ପ୍ରଚଣ୍ଡ ।
ବେକ ଛିଡ଼ିଲେ ମୁଣ୍ଡଯେ ବାହାରିନପଡ଼ଇ
ମୁଣ୍ଡରେ ପ୍ରାଣ ତାର ଦଇବ ରଖିଲଇ
ଦେଖିଣ ଋକ୍ଷକପି ଯେ ପଳାଇଲେ ଡରେ
ଜଣେ ନ ରହିଲେଯେ ଦୈତ୍ୟର ଆଗରେ ।

ତେକ୍ଷଣ ଶ୍ରୀରାମ ଯେ କଳୁଷ ଶର ମାରି
ଦୁଇ ଫାଳ କରି ମୁଣ୍ଡ ପକାଇଲେ ଶରି ।
ପବନା ଶର ପେଶି ଫାଳେ ଉଡ଼ାଇଣଦେଲେ
ଅନ୍ଧକ ବନରେ ନେଇଣ ପକାଇଲେ ।
ଆରଫାଳ ପୁଣ ଯେ ନେଲାକ ଉଡ଼ାଇ
ଝଳନ୍ଦର ବନରେ ପଡ଼ିଲା ପୁଣ ଯାଇ ।
ଦେବ ଛୁଡ଼ନ୍ତେ ଯେ ପଡ଼ିଲା ଦୈତ୍ୟ ପିଣ୍ଡ
ଜୟ ଜୟ କରିଣ ସକଳ କପି ଝୁଣ୍ଡ ।
ଦୁଇସସ୍ର ବାନର ମାଡ଼ି ପଡ଼ିଲା ତାରକାୟେ
ଲଙ୍କାର ପାଚେରୀ ଭଗିଲା ମୁଣ୍ଡର ଘାୟେ ।
କୋଶକେ ପାଚେରୀ ଯେ ଭଙ୍ଗିଣ ହେଲାଚୂର
ଚଳ ଚଳ ହୋଇ ସେ କମ୍ପିଲା ବସୁନ୍ଧରୀ ।
ସମୁଦ୍ର ଲହରି ଯେ ହୋଇଲାକ ସ୍ଥିର
ଡ଼ରିଣ ହେତୁ ହେଲ ପଳାଏ ସମୀର ।
ଦେଖିଣ ଋକ୍ଷକପି ହୁଳହୁଳି ଦେଲେ
ରାକ୍ଷସର ଉପରେ ଡେଇଁଣ ନୃତ୍ୟକଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବନ୍ତ
ବିଶ୍ରବା ଋଷିର ଯେ ବୀର୍ଯ୍ୟରେ ଉତପତ୍ତି ।
ବ୍ରହ୍ମ ବୀର୍ଯ୍ୟରେ ଜାତ ସାମବେଦରୁ ବଡ଼ୁ
କନ୍ଧେ ତାର ପଢନ୍ତ ଯଜ୍ଞ ଯେ ସ୍ୱସ୍ତ ଗରୁ ।
ତେଣୁକରି ବ୍ରହ୍ମହତ୍ୟା ଶ୍ରୀରାମେ ଲାଗିଲା
ଚଉଦଗ ରଙ୍ଗମୟ ତାହାଙ୍କୁ ଦିଶିଲା ।
ଶ୍ରୀରାମ ବୋଇଲେ ସୌମିତ୍ରୀ ଏବେ ଶୁଣ
ରଙ୍ଗମୟ ପୃଥିବୀ ଦିଶିଲା ମୋତେ ପୁଣ ।
ଯେଣିକ ଚାହିଁଲି ତେଣେ ଦିଶିଲା ରଙ୍ଗବର୍ଣ୍ଣ
ଦିଗ ନ ଦିଶେ ଯେ ନ ଦିଶେ ପଥ ପୁଣ ।
ଏମନ୍ତ ସମୟରେ ଦେବତାଗଣ ସ୍ୱର୍ଗେ
ଜୟ ଜୟ ଧ୍ୱନି ଯେ କରନ୍ତି ସରାଗେ ।
ବିଧାତା ବୋଇଲେ ଶ୍ରୀରାମଙ୍କୁ ଯୋଡ଼ିକର
ବ୍ରହ୍ମବୀର୍ଯ୍ୟରେ ଜାତ କୁମ୍ଭକର୍ଣ୍ଣ ବୀର ।
ତେଣୁକରି ବ୍ରହ୍ମହତ୍ୟା ଆଗୋଳେ ଶ୍ରୀରାମରେ
ପବନ ଏବେ ଯାଇଣ କହୁ ଯେ କର୍ଣ୍ଣରେ ।
ପବନଙ୍କୁ ରାଇ ଆଜ୍ଞା ଦେଲେକ ବିଧାତା
ଶ୍ରୀରାମର କର୍ଣ୍ଣେ କହ ଏ ସନ୍ଦେଶ କଥା ।
ଶୁଣିଣ ପବନ ଦେବ ବେଗ ଚଳିଗଲା
ଶ୍ରୀରାମଙ୍କ କର୍ଣ୍ଣମୂଳେ ଯାଇଣ କହିଲା ।

ଆପଣାର ନାମ ତିନିଥର ଯେ ଉଚ୍ଚାର
ତେବେ ରଙ୍ଗ ତମିଷରୁ ହୋଇବାକ ପାର ।
ଶୁଣି ଶ୍ରୀରାମ ମନରେ ସନ୍ତୋଷ ହୋଇଲେ
ଆପଣାର ନାମକୁ ଯେ ସୁମରଣା କଲେ ।
ବୋଇଲେ ହେ ମହାପାପ ନଜାଣୁକମୋତେ
ଅନନ୍ତ ଶୟନ ନାମ ଅଟଇ ଯେ ଶତେ ।
ମଧୁକୈଟଭକୁ ଯେ ମାଇଲି ଭୁଜବଳେ
ମଧୁସୂଦନ ନାମ ବହିଲି ଦେବଆଳେ ।
ପୁଣି ନାଶ କଲି ମୁଁ ଶୁମ୍ଭରେ ପାତକ
ସିଂହପଦ ବହିଲି ମୁଁ ଶୁଣରେ ପାତକ ।
ବାସୁଦେବ ନାମ ବହି ଧଇଲି ମୁଁ ଧନୁ
ଶାରଙ୍ଗ ଧନୁଧର ଦୈତ୍ୟ ନିବାରିଲି ତେଣୁ
ଏବେ ଶ୍ରୀରାମ ରୂପରେ ହୋଇଲି ଜନମ
ରାବଣ ମାରି ସୁଖ ଦେଲି ଦେବଗଣ
ଏଥିର ସକାଶୁ ଆମ୍ଭେ ସ୍ୱୟଂ ନାରାୟଣ
କମଳ ଜାତ ହୋଇଣ ପଢ଼ନ୍ତି ବଦରେଣ ।
ଆମ୍ଭଠାରେ ବ୍ରହ୍ମ କର୍ମା କରୁ ଯେ କଟାଳ
ଆମ୍ଭେଟି ସଜ ନା କଲୁ ଜଗତ ସଂସାର ।
ଆମ୍ଭେଟି ଦେବତା କଲୁ କଲୁ ଦୈତ୍ୟଗଣ
ଛପନ କୋଟି ଜୀବ ସ୍ଥାବର ଜଙ୍ଗମ ।
ଚଉଦ ବ୍ରହ୍ମାଣ୍ଡ କରି ତିନିପୁର କଲୁ
ସପତ ସାଗର ଯେ ସପତ ଦ୍ୱୀପ କଲୁ ।
ପାପପୁଣ୍ୟ ଆମ୍ଭେ ସିନା କଲୁ ହୋ ବିଖ୍ୟାତ
କୁ କର୍ମା ପାପରତ ଆମ୍ଭଙ୍କୁ ବଳବନ୍ତ ।
ଶୁଣିଣ ବ୍ରହ୍ମହତ୍ୟା ଘୁଞ୍ଚିଣ ପୁଣ ଗଲା
ଶ୍ରୀରାମ ନୟନକୁ ନିର୍ମଳ ଦିଶିଲା ।
ଶ୍ରୀରାମ ବୋଇଲେ ତୁମ୍ଭେ ଯୂଥପତି ଶୁଣ
ରାମତାଳି ଦେଇ ନୃତ୍ୟ ଗୀତ କରି ପୁଣ ।
ଲଙ୍କାଗଡ଼ଠାରୁ ଯେ ସୁବଳସ୍ଥା ଯାଏ
ପଙ୍କ୍ତି ପଙ୍କ୍ତି ନାଟ କର ପାପଯାଉ କ୍ଷୟେ ।
ଶୁଣିଣ ସୈନ୍ୟବଳ ଧାଡ଼ି ଲାଗିଗଲେ
ଖେମଟା ନୃତ୍ୟକରି ତାଳତୁଷି ଦେଲେ
ହୁଳ ହୁଳ ଦେଇଣ ରାମତାଳି ମାରି
ଦୁଇପାଖେ ଋକ୍ଷ କପି ମଝିରେ ଦାଣ୍ଡକରି ।
ଆଗରେ ଯୂଥପତି ମଲ୍ଲ ମହାମଲ୍ଲ
ପଛରେ ଅଷ୍ଟସେନା ଅଛନ୍ତି ସକଳ ।

ଯୁଦ୍ଧରେ ବଜୟେ ଶ୍ରୀରାମ ଲକ୍ଷ୍ମଣ ଦୁହେଁ
ବଡଦାଣ୍ଡେ ଜଗନ୍ନାଥେ ଯେମନ୍ତ ବଜୟେ ।
ଇନ୍ଦ୍ରଜୟ କରିଣ ଶ୍ରୀରାମ ବାହୁଡ଼ିଲେ
ଦଶରଥ ନନ୍ଦନ ହନୁକନ୍ଧରେ ଚଢ଼ିଲେ ।
ଲକ୍ଷ୍ମଣ ଅଙ୍ଗଦର କନ୍ଧରେ ହେଜେକରି
ହରିହର ଗମନ ପ୍ରାୟେକ ବିଶନ୍ତି ରାବଣାରି
ଉତ୍ତର ମୁଖ ହୋଇ ସେ କରନ୍ତି ଗମନ
ସମ୍ମୁଖ ହୋଇଣ ଯେ ଚଳନ୍ତି ଦୁଇଜଣ ।
ବିଭୀଷଣଙ୍କୁ ପୃଚ୍ଛିଣ ବୋଲନ୍ତି ରଘୁବୀର
କୁମ୍ଭକର୍ଣ୍ଣ ପଡ଼ିଲା ଯେ ସୋଦର ତୋହର ।
ବିଭୀଷଣ ବୋଲେ ଦେବ ତୁମ୍ଭ ଯେ ମୋବନ୍ଧୁ
କମାଇଁ ଅକାରଣେ ସତ୍ୟ ଯେ ମୋର ନନ୍ଦୁ
ତୁମ୍ଭେ ଦୟାକୁ ପୁରୁଷ ଜଗତ କଲ ଜାତ
ମୋହର ବଇରୀ ପୁଣ ଅଟନ୍ତି ଦଇତ ।
ମୋହର ମନରେ ଦେବ ଭ୍ରାନ୍ତି କରିଥିଲି
ଆଜହୁଁ ମୁଁ ଏବେ ନିସ୍ତର ପୁଣ ହେଲି ।
ଆବର ଇନ୍ଦ୍ରଜିତ ହାବଡ଼ରେ ଅଛି
ତାହାର ମନେ ରାବଣ ନ ଯୋଗାଏ କିଛି ।
ଶୁଣିଣ ରଘୁନାଥ ଯେ ହୋଇଲେ ପ୍ରହରଷ
ସୁବଳଗିରି ପରବତେ ହୋଇଲେ ପ୍ରବେଶ ।
ହନୁମନ୍ତ କନ୍ଧରୁ ଉତୁରି ରଘୁସାଇଁ
ଅଙ୍ଗଦ କନ୍ଧରୁ ଲକ୍ଷ୍ମଣ ଓହ୍ଲାଇ ।
ଶ୍ରୀରାମଙ୍କୁ ଓଳଗ ହୋଇଲେ ବେଗେଯାଇ
ଦେବନଦୀ କୂଳରେ ମିଳିଲେ ସୀତାସାଇଁ ।
ସଜ ତ ଲାଗି ହେଲେ ଯେ ଦେବନଦୀ କୂଳେ
ମାଜଣା ହୋଇଲେ ଯେ ଶ୍ରୀରାମ ସେଠାରେ ।
ସୁଗ୍ରୀବର ସଙ୍ଗରେ ଲମ୍ବହଡା ଯାଇଥିଲେ
ରାମ ଲକ୍ଷ୍ମଣଙ୍କୁ ସେ ମାଜଣା ବଧିକଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଅଷ୍ଟସେନାପତି
ମଲ୍ଲ ମହାମଲ୍ଲ ଯେ ପଚାଶ ଯୂଥପତି ।
ସମସ୍ତେ ମଦନ ମାଜଣା ଆଜ ହୁଅ
ଋକ୍ଷକପି ସଙ୍ଗତେ ସମସ୍ତେ ସୁସ୍ଥେ ରହ ।
ଶୁଣିକରି ଋକ୍ଷକପି ବେଗେ ଚଳିଗଲେ
ଖାଲ ଖଣା ଡକଣ ଶରୀରେ ଲଗାଇଲେ ।
ସ୍ନାନ ସାରିଣ ସର୍ବେ ଫଳ ମୂଳ ଖାଇ
ସ୍ନାନପୂଜା ଆହାରରେ ଉଦର ତୋଷହୋଇ
ଯୂଥପତିମାନେ ପୁଣ ମଲ୍ଲ ମହାମଲ୍ଲ
ଅଷ୍ଟସେନାପତି ମାଜଣା ପୁଣ ହେଲେ ।
ସୁଗ୍ରୀବ ବିଭୀଷଣ ଜାମ୍ବବ ହନୁମନ୍ତ
ମାଜଣା ହୋଇ ସ୍ନାନ କଲେ ସେ ତ୍ୱରିତ ।
ଶ୍ରୀରାମ ସ୍ନାନ କରନ୍ତି ଯାଇ ଜଳେ
ଲକ୍ଷ୍ମଣ ସ୍ନାନ କଲେକ ନଦୀରେ ।
ଦେବ ପିତୃତର୍ପଣ ଯେ ସନ୍ଧ୍ୟାପାଠ ପଢ଼ି
ଏମନ୍ତ ସମସ୍ତେ ବେଳ ହୋଏ ତେଇଘଡ଼ି ।
ନିଜ ପୁରରେ ଆସିଣ ମଣୋହି ସାରିଲେ
ଶ୍ରମ ପା'ଇ ଶ୍ରୀରାମ ଯେ ଶଯ୍ୟାରେ ପହୁଡ଼ିଲେ
ଲକ୍ଷ୍ମଣ ସୁଗ୍ରୀବର ଜାମ୍ବବ ବିଭୀଷଣ
ହନୁମନ୍ତ ଅଙ୍ଗଦ ନଳ ନୀଳ ଯେ ସୁଷେଣ ।
ସେନାପତିମାନେ ଯେ ଭୋଜନ ସାରିଲେ
ଋକ୍ଷ କପିବଳ ଭୁଞ୍ଜି ନିଶ୍ଚିନ୍ତେ ଶୋଇଲେ ।
ଏଥୁ ଅନନ୍ତରେ ରାବଣର ଆଗେ
ଚରବର ଯେ ବାରତା ନେଇ ଦେଲା ବେଗେ
ଶୁଣ ଦେବ ଦଶଗ୍ରୀବ ଅସୁର କୁଳପତି
କୁମ୍ଭକର୍ଣ୍ଣ ବୀରକୁ ମାଇଲା ଦେବ ପତି ।
ଅନେକ ସମର ଯେ କଲା ତୋର ଭାଇ
ରାମରେ ମିଳିବାକୁ ଗର୍ଜନ କେହ୍ନକାହିଁ ।
ଅଷ୍ଟ ସେନାପତିଙ୍କ ମାଇଲେ ଯୁଦ୍ଧସ୍ଥରେ
ଋକ୍ଷକପି ପଳାଇଲେ ପ୍ରାଣର ବିକଳେ ।
ସୁଗ୍ରୀବର ଓଗାଳନ୍ତେ ପରଘ ସେ ମାଇଲା
ବାନରେନ୍ଦ୍ର କପିରାଜା ଅଚେତ ପୁଣ ହେଲା ।
ବଳେ ଭାଇ ତୋର ଯେ ଆଣିଲା ଚାଳୁଧରି
ସିଂହା ଯେସନ୍ତେ ପୁଅକୁ ଧରେ କୋଳକରି ।
ସିଂହରଡ଼ି ଦେଇଣ ଯେ ବାହୁଡ଼ି ଆଇଲା
ପଛରେ ଯୂଥପତି ଗୋଡ଼ାଏ ହୋଇ ତୋର
ଅଷ୍ଟସେନା ସଙ୍ଗତେ ଋକ୍ଷକପି ବଳ
ତୋର ଭାଇକି ଗୋଡ଼ାଇ ଆଇଲେ ସକଳ ।
ଭାଇ ତୋର ସୁଗ୍ରୀବରକୁ ଧରି ଆସୁଥିଲା
ଥୋକାଏକ ବେଳରେ ସେ ଚେତନା ପାଇଲା
ଧାଇଁପଡ଼ି ନାସା ଯେ କାମୋଡ଼ିଲା ଦନ୍ତେ
ଦୁଇ ଯେ ଶ୍ରବଣ ଛିଣ୍ଡାଇଲା ହସ୍ତେ ।
ଛନକେ ଖେଳିଣ ଯେ ଗଗନେ ଚଳିଗଲା
ଲଜ୍ୟାପାଇ ଭାଇ ତୋର ବାହୁଡ଼ି ପୁଣ ଗଲା

ବୃଷ କପିବଳ ଯେ କ୍ରୋଧରେ କଲା ନାଶ
ସୈନ୍ୟ ସବୁ ପଳାଇଲେ ଶ୍ରୀରାମ ଯନ୍ତ ପାଶ ।
ଗଦା ମୁଦ୍‌ଗରେ ସେ ବହୁତ ଯୁଦ୍ଧକଲା
ଦୁଇଭୁଜ ଦୁଇ ଯେ ଚରଣ କାଟିଲା ।
ଇନ୍ଦ୍ରର ଖଷ୍‌ଣଶରେ କାଟିଲା ପୁଣ ମୁଣ୍ଡ
ଶତେକ ପୁତ୍ର ତାର ଯୁଦ୍ଧରେ ହେଲେ ରୁଣ୍ଡ
ଲକ୍ଷ୍ମଣ ସାନଭାଇ ଯେ ଅନେକ ସୁତ ମାରି
ଗୋଟିଏ ପୁଅ ସେଥି ଅଇଲା ଉବୁରି ।
ନବ ସହସ୍ର ନାତି ତାର ପୁଣ ଯେ ଯୁଦ୍ଧକଲେ
ଲକ୍ଷ୍ମଣର ହସ୍ତରେ ପ୍ରାଣ ସେ ହରାଇଲେ ।
ଶତେକ ରଥ ସେ ଯେ ନବ ସହସ୍ର ହସ୍ତି
ହନୁମନ୍ତ ଅଙ୍ଗଦ ପକାଇଲେ ଧ୍ୱଂସି ।
ସତକ ଅଇଲା ବେଳେ ଫେରି ଜାଣ
ହରୀଷଣ ରୁହାଇଲେ କହ୍ଣ ଲକ୍ଷ୍ମଣ ।
ଶୁଣିଣ ଦଶାନନ ଯେ ସ୍ତବଦ ହୋଇଲା
ଘଡ଼ିଏ ପରିଯନ୍ତେ ସମସ୍ୟା ନଦେଲା ।
ପୁଣି ପଶ୍ଚରେ ଭୁରେ କହିଲୁ ପୁଣି କସ
ଆଜ ବେଳେ ଶୁଣଇଁରେ ଭାଇର ପ୍ରାଣ ନାଶ
ସ୍ବର ଜଣାଇଲା ପଡ଼ିଲା କୁମ୍ଭକର୍ଣ୍ଣ
ଶୁଣିଣ ଦଶାନନ କୋପ ନଳ ପୂର୍ଣ ।
ଭାଇ ଭାଇ ବୋଲିଣ କାନ୍ଦିଲା ଉଚସ୍ବରେ
ସ୍ନେହ ଦଶଗ୍ରୀବ ଯେ ଗୁଣ ସେ ସୁମରେ ।
ଆରେ ଆରେ କୁମ୍ଭକର୍ଣ୍ଣ କେଣେ ଗୁଡ଼ି ଗଲୁଁ
ଅସମୟ ଦେଖି ମୋତେ ଗୁଡ଼ି ପଳାଇଲୁଁ ।
ଭାଇ ମୋର କୁମ୍ଭକର୍ଣ୍ଣ ବଇରି ଧୂମକେତ
କେଣେ ଲୁଚିଇଲୁରେ ବଇରି ସାରକେତ ।
ଭୟଙ୍କର ରୂପ ତୋର ମହାଭୟ ରୂପୀ
ରୂପ ଦେଖି ତୋର ଯେ ସୁରଗଣ କମ୍ପି ।
ସ୍ବର୍ଗକୁ ଅଙ୍ଗୁନ ଯେ ହରଧୂ ଅଟେ ତୋର
ପାତାଙ୍ଗ ହଗଣ୍ଡ ବାନାତୋରଭଡ଼େଫେରଫେର
ମଞ୍ଚରେ ମହାପ୍ରଭୁ ଯେ ଭୁଦ୍ଧ ସେ ବୋଲାଉ
ଅଇସ୍ବଗଣକୁ ଯେ ଦେଖିଲେ ମୃତ୍ୟୁ ଦେଉ ।
ଏକା କରିଣ ଭୁରେ ଗଲୁ ମୋତେ ଗୁଡ଼ି
ମୁହିଁ ଏଥି ମନ୍ଦରେ ଶୋକ ଜଳରେ ବୁଡ଼ି ।
ନଦ୍ରାରୁ ଉଠିରେ ନୋହିଲୁ ବିପୁତ୍ତି ପୁଣ
ତୋହର ମହିମା ଯେ ବଖ୍ୟାତ ତ୍ରିଭୁବନ ।

ଯେବଣ ବେଳରେ ଭୁରେ ଉଠୁ ନଦ୍ରାଗୁଣ
ଦୁଃଖୀ ଦରିଦ୍ରଙ୍କର ଯେ କଷ୍ଟ ଦେଉଫେଡ଼ି ।
ମାଗନ୍ତା ଜନମାନଙ୍କୁ ତୁ କରନ୍ତୁ ନରାଶ
ଆରେଭାଇ ମୋର ତୁ ଭାଙ୍ଗିଲୁ ପ୍ରତିଆଶ ।
ତୋତେତୋଳବ ବୋଲିମୁଁ ଶନ୍ଦ କୁଚଦୁଆଇ
ବାହୁଡ଼ି ନ ଆସିଲୁ ତୁ ଏକାବେଳେ ଯାଇ ।
ତପସ୍ବୀ ନଲକ୍ଷଣ ଯେ ମାଇଲା ପୁଣ ତୋତେ
ଏକଥା ଆଶ୍ଚର୍ଯ୍ୟ ଯେ ଲାଗିଲକ ମୋତେ ।
ବାଳ କାଳରେ ତୁ ଯେ ଜିଣିଲୁ ବଜ୍ରଧର
ହସ୍ତ ପ୍ରଶଂସାକଲେ ଯେ ସମରଦେଖିତୋର
କୋପକଲେ ସଂସାର ତୁ କରିପାରୁ ଧୂଳ
ବ୍ରହ୍ମାଣ୍ଡ ଭିତରେ ତୁ ରେ ଅଟୁ ମହାବଳୀ ।
ତୋ ତହୁଁ ବଡ଼ ମୁଁ ନଦେଖେ ଭାଇ କାହିଁ
ତପସ୍ବୀ ତୋତେ କେମନ୍ତେ ମାଇଲାରେ ଭାଇ
ରୁଦ୍ରଶରେ ଶୂଳ ତୋର ନଥିଲା କରେ ଜଇ
କଅବା ନଥିଲା କ ଅଗ୍ନି ମୁଦ୍‌ଗର ।
ବ୍ରହ୍ମା ଶକତି ନଥିଲୁ କରେ ଘେନ
ଯାହା ପ୍ରହାର କରି ଜିଣିଲୁ ପୁରନ୍ଦର ।
ପ୍ରସନ୍ନ ହୋଇ ସହସ୍ର ଯେ ଦେଲାକ ଖମଣ୍ଡା
ସେ ସମୟେ ତୋର ହସ୍ତେନଥିଲାକରେଖଣ୍ଡା ।
ନୈଋତ ପରି ଘନ ଥିଲୁ କରେ ଘେନ
କେଉଁ ବାଟେ ଯତି ତୋତେ ମାଇଲାରେତାହା
ଭଇରବ ରଡ଼ି ତୁ ନଦେଲୁ କରେ ବାବୁ
ଏକାବେଳେ ଗଜଥିଲେ ମାରିଥାନ୍ତେ ବଳସବୁ
କଟାକ୍ଷ ନୟନରେ ନ ଚାହିଁଲୁ ନକ
ଇନ୍ଦ୍ରଭଳ ଲୋକ ଯେ ଡରନ୍ତି ତୋତେ ଦେଖି
ସବୁ କଥାମାନ ଏବେ ନଷ୍ଟଲକୁ ଗଲା
ତପସ୍ବି ନଲକ୍ଷଣ ମୋର ଭାଇକୁ ମାଇଲା ।
କୋହ କୋହ ହୋଇଣ କାନ୍ଦେ ଦଂଶପାଣି
ନୟନୁ ଅଶ୍ରୁଜଳ ପଡ଼େ ଯେ ବୋହି ପୁଣି ।
ବୋଧ କରନ୍ତି ଯେ ପ୍ରସସ୍ତ ଇନ୍ଦ୍ରଜିତ
ଶୁକଶାରଣସହୋଦର ସେନାଯେଦେବାନ୍ତେକ
ପୁତ୍ର ନାତି ସହିତରେ ସମସ୍ତ ସୈନ୍ୟମାନ
ରାଜାର ବେଦନ୍ତେ ହକଳ ସର୍ବଜନ ।
କର୍ଣ୍ଣରେ କୁହାକୁହି ଯେ ହେଉଛନ୍ତି ଜନେ
କେ ବୋଲଇ ଯେବେ ପଡ଼ିଲା କୁମ୍ଭକର୍ଣ୍ଣେ ।

ଘାଟ ହୋଇଲଣି ସେ ଏଣିକ କଥାମାନ
ଇନ୍ଦ୍ର ପ୍ରାୟେ ଏବେ ବଶୁନାହିଁ ପୁଣ ।
ଯତ୍ତ ଆହାର ବସେ ରକ୍ଷ କପି ଗାଡ଼
କୁମ୍ଭକର୍ଣ୍ଣ ପଡ଼ିବାରୁ ସରିଲା ସବୁ ବଳ ।
କେ ବୋଲଇ ଏକା ସେ ଇନ୍ଦ୍ରଜିତ ଥାନ୍ତେ
ତାହାକୁ ନ ଡରଇ ମନ୍ଦୋଦରୀ କାନ୍ତେ ।
କେବଣ କେବଣ ଦୈତ୍ୟ ନାହାନ୍ତି ସେ ଏଥି
ଅଯୋଗେ ଅବା ମୃତ୍ୟୁ ସେ ଥିଲା ତାର ହସ୍ତି
ଏକର କହନ୍ତେ ସେ ଆରେକ ଭିନ୍ନ ହୋଇ
କୁହେଁକ ଏକଥା ସେ ଯେ ବୋଲଣବୋଲଇ
ଏଥୁ ଅନନ୍ତରେ ସେ ଯେ ଦଶାନନ ରାୟେ
ଭାଇଗୁଣ ସୁମରି ଅନେକ ଶୋକ କଯ୍ୟେ ।
ପୁଣ ହୃଦୟରେ କୋଡ଼ଇ ବେନ ହସ୍ତ
ଆହାରେ କୁମ୍ଭକର୍ଣ୍ଣ ମୋତେ କଲରେଅନାସ୍ତ
ଅତିକାୟକୁ ରହିଁଣ ବୋଲଇ ରେ ବାବୁ;
ଯତର ହସ୍ତରେ ମୋର ସରିଲା ବୁଦ୍ଧିସବୁ ।
ନରାନ୍ତକ ଦେବାନ୍ତକ ବିଶିରା ଯେ ତିନ
ମହାପାରୁଶ ମହୋଦର ଅଛଯେ ତୁମ୍ଭେବେନ
ଦଶଗ୍ରୀବ ବୋଇଲା ହେ। ତୁମ୍ଭେମାନେ ଥାଇ
ତପୁସୀ ନଳକ୍ଷଣ ମୋଇଗୋଷ ଯାଉଅଛୁଦହି
ଆଜହୁଁରେ ଜୟେ ତାଙ୍କୁ ହୋଇଲାରାମଦେବ
ପୁର୍ବ କଥାମାନ ଆଜ ନ ଘଲେ ଦଶଗ୍ରୀବ ।
ପୁଣି ମହାପାରୁଶ ଯୋଡ଼ଇ ବେନକର
ହେଦେବ ଲଙ୍କେଶ୍ୱର ଶୋକ ଯେ ନ କର ।
ଶତୃଛିଦ୍ର ଯେବେ ଯେ ପାଇବେ ଏହିକ୍ଷଣି
ବଅସି ଆଜ୍ଞା ଦେବ ଅସୁର କୁଳମଣି ।
ଦେଖ ମୋର ପ୍ରତଜ୍ଞା ମାୟା ବୁଦ୍ଧି ବଳ
ସ୍ୱର୍ଗରେ ଯେସ୍ନେ ପଶି କଲି ଭଣଗୋଳ ।
ଶ୍ରୀଇନ୍ଦ୍ରଜିତ ସହିତେ ଇନ୍ଦ୍ରକୁ ଜିଣିଲ
ଯମର ତହଗୁ ପ୍ରଭୁ ବନ୍ଦୀ ମୁହିଁ କଲି ।
ଅଗ୍ନି ଦେବତା ସହିତେ ନ ଘଟେ ଘୁଞ୍ଚାଇଲି
ରଥରେ ପକାଇଣ ଲଙ୍କାକୁ ଆଣିଲି ।
ତୋହର ବଚନରେ ଛାଡ଼ଦେଲି ତାକୁ
କ୍ଷମା ବରିର ନ କରୁ ସେ କଥା ମନକୁ ।
କୁମ୍ଭକର୍ଣ୍ଣ ପଡ଼ିଲା ଯେ ପୁରିଲା ତାର କାଳ
ନଦ୍ରାଗିବା ଲେକର ଯେ କସ ଥାଇ ବଳ ।
ବିଦ୍ୟା ଯେ ଅସାଧ ପୁଣ ଯାସୋର ଗଳବୁଦ୍ଧି
ସେ କାହିଁ ଜାଣନ୍ତା ଯେ ସମରର ବଧି ।
ସର୍ବଦା ଅଳସ ଏଣେ ବ୍ୟାଧି ତାର ଥାଇ
ବେଳକାଳ ଜାଣିଣ ସେ ଆହାର ନ ଖାଇ ।
ନିଦ୍ରାସ୍ଥାନ ଲେକଙ୍କୁ ଯେ ଜୟେ ଅଛୁ କାହିଁ
ତୋହର ନ ଥିଲେ ଦେବ ପୂଜା ତାକୁ ନାହିଁ
ପଡ଼ିଲା କୁମ୍ଭକର୍ଣ୍ଣ ପୂର୍ବର ମନ୍ଦ ଶୋକ
ଏକଥାକୁ ଆଜ ଦେବ ନ କରିବା ଶୋକ ।
ଦେଖ ଆଜ୍ଞାଦେବ ବଅସି ଏହିକ୍ଷଣି
ରାମ ଲକ୍ଷ୍ମଣ ମାରିତୋର ଗ୍ଛମୁରେଦେବଆଣି
ରକ୍ଷ କପିବଳ ନ ଥୋଇବ ଏକଜଣ
ଶୁଣିଣ ରାବଣ ବୋଲଇ ଶୋକ ସମ୍ଭାଳଣ ।
ସତେ କି ମୋହର ତୁମ୍ଭେ ଫେଡବ ଅଭିମାନ
ମହାପାରୁଶ ବୋଲେ ତୁମ୍ଭେ ସମ୍ଭାଳହୁଅପୁଣ
ବସ୍ତି ଯେନ ଲେଚକ ପୋଛଇ ଇନ୍ଦ୍ରଜିତ
ଅମୋହ ମଣି ପ୍ରସାଦେ ସ୍ଥିର କଲା ଚିତ୍ତ ।
ରାବଣ ବୋଇଲା ସେହୁ ନେଲାକ ବଳପ୍ରାଣ
ମୋତେ ସେ ଡରନ୍ତି ସେ ଦିଗପାଳ ମାନ ।
ବାଳକାଳରେ ତୁ ଯେ ଜିଣିଲୁ ବଜ୍ରଧର
ବସ୍ତି ପ୍ରଶଂସା କଲେ ଦେଖି ସମର ତୋହର
କୋପକଲେ ସଂସାରରେ କରିପାରୁ ଧୂଳି
ବ୍ରହ୍ମାଣ୍ଡ ଭିତରେ ତୁ ଯେ ଅଟୁ ମହାବଳୀ ,
ତୋ ତହୁଁ ବଡ ମୁଁ ଯେ ନଦେଖେରାଇକାହିଁ
ତପୁସି ତୋତେ କେମନ୍ତେ ମାଇଲାରେ ଭାଇ
ଛୁଦ୍ରଇ ଶୂଳ ତୋର ନ ଥିଲା କରେ କର
କି ଅବା ନଥିଲା କି ଅଗ୍ନି ମୁଦ୍ଗର ।
ବ୍ରହ୍ମାର ଶକତି କି ନ ଥିଲୁ କରେ ଘେନ
ଯାହା ପ୍ରହାର କରି ଜିଣିଲୁ ପୁର ତିନ ।
ବିଶେଷ ମୃତ୍ୟୁପଣର କଠୋର ହୃଦୟ
ତତକ୍ଷଣେ ଛାଡ଼ିଲା ସେ ଶୋକ ମାୟା ମୋହ
ଏକେ ସେ ଦୈତ୍ୟଙ୍କର ବିଶେଷ କ୍ଷତିପଣ
ଗଲା କଥାକୁ ଭାଳିବା ଅଟଇ ଅକାରଣ ।
ପଣ୍ଡିତ ଗୁଣ ଘେନ। ଏମନ୍ତ ବରିର
ମହାପାରୁଶକୁ ବୋଇଲା ଦଶଶିର ।
ବୃଦ୍ଧ ଭ୍ରାତ ତୁମ୍ଭେରେ ମୋହର କାର୍ଯ୍ୟକର
ଶ୍ରୀରାମ ଲକ୍ଷ୍ମଣ ଯେ ରକ୍ଷ କପିମାର ।

ଏ ଶୋକ ସମୁଦ୍ରରୁ ଉଦ୍ଧର ଧର ମୋତେ
ସ୍ୱର୍ଗରେ ଇନ୍ଦ୍ରବନାରେ କରବ ନେଇତୋତେ
ସରାନ୍ତକ ଦେବାନ୍ତକ ମହୋଦର ଯାନ୍ତି
ଅତିକାୟେ ତ୍ରିଶିର ତୋର ସଙ୍ଗେ ଥାନ୍ତି ।
ତୁମ୍ଭେ ପଡ଼ିରଥି ଅଛ ଯେ ରଣକତା
ତୁମ୍ଭର ପ୍ରସାଦେ ମୁଁ ଭୋଗ କରିବ ସୀତା ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରି
କୁମ୍ଭକର୍ଣ୍ଣ ଗଲାବେଳେ ବୁଝାଏ ତାର ନାରୀ
ବୋଇଲା ଯୁଝିବାକୁ ଯାଉଣ ଅଛି ମୁହିଁ
ଜିଇଲେ ଭଲ ହେଲା ନଇଲେ ଜାଣ ତୁହି ।
ରାମ ନାରାୟଣ ଯେବେ ସେ ହୋଇଥିବେ
ଅବଶ୍ୟ ମୋର ପ୍ରାଣ ଆଜ ସେହୁ ନେବେ ।
ମୋହର ନିଧନ ଯେବେ ଶୁଣିବୁ ସୁନ୍ଦରି
ମୋର ସଙ୍ଗେ ସଖି ଗଲେ ତରିବୁ ଗୋ ନାରୀ
ବଧୂସାନ ବଧୂମାନ ସକଳ ସଙ୍ଗେ ଘେନ
ସମୁଦ୍ରେ ପଶିବୁ ତୋତେ କହୁଛି କାମିନୀ ।
ଏତେ କହି କୁମ୍ଭକର୍ଣ୍ଣ ରଣ ଭୂମି ଗଲା
ଶ୍ରୀରାମର ହସ୍ତେ ସେହୁ ନିଧନ ହୋଇଲା ।
ରାବଣ ଶୁଣିଣ ପୁଣ ବହୁ ଶୋକକଲା
ବଡ଼ୋଡ଼ା ଆଗରେ ଧାଇଁ ଯାଇ ସେ କହିଲା
ଶୁଣିଣ ବଡୋଜା କନ୍ୟା ସପତ୍ନି ତାଙ୍କ
ବଧୂମାନେ ଅଇଲେ ଯେ ଶାଶୁର ନିକଟ ।
କୁମ୍ଭକର୍ଣ୍ଣ ରାଣୀ ବୋଲେ ସର୍ବେ ହୁଅ ସଜ
ସ୍ୱାମୀକାର୍ଯ୍ୟ କରିବା ହୋ ଗ୍ରହିବା ଆମ୍ଭା ଆଜ
ଅମଳାଣ ବାସ୍ତ ପିନ୍ଧି ସର୍ବେ ସଜ ହେଲେ
ସମସ୍ତଙ୍କୁ ଡାକ ପାଶେ ବଚନ କହିଲେ ।
ସୁର କୁମ୍ଭର ନାରୀ ସହସ୍ରେମାନଙ୍କୁ ରଖିଣ
ଚଳଲେ ସମସ୍ତେ ସିନ୍ଧୁ ତୀରକୁ ଯେ ପୁଣ ।
ସହସ୍ରେ ତିନିଲକ୍ଷ ଯେ ତାହାର ତରୁଣୀ
ପଶିଲେ ସମୁଦ୍ରେ ଯାଇ ସ୍ୱାମୀ ଗୁଣ ଗୁଣି ।
ଯେଝା ସ୍ୱାମୀ ତାଙ୍କ ନାରୀ ସଙ୍ଗେ ଘେନିଗଲେ
ବୈକୁଣ୍ଠ ପୁରେ ଯାଇ ପ୍ରବେଶ ହୋଇଲେ
ଆପଣାର ବଂଶ ଘେନି କୁମ୍ଭକର୍ଣ୍ଣ ବୀର
ଶ୍ରୀହରି ପାଟଣାରେ ଜ୍ୟୋତି ନାମେ ପୁର ।
ନିଶ୍ଚିନ୍ତ ହୋଇଣ ସେ ରହେ ବୀର ଯାଇ
ପଶ୍ଚିମ ଦ୍ୱାର ବୀର ଆବୋରେ ସେ ଯାଇ ।

ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଶ୍ରୀରାମର ନାରୀ ଯେ ସୀତା ଅଟେ ପୁଣ ।
କୁମ୍ଭକର୍ଣ୍ଣ ମରିବାର ଜାଣିଲେଟିକ ସେହି
ଏକଥା ଦେବ ମୋତେ କହ ହେ ବୁଝାଇ ।
ଈଶ୍ୱର ବୋଇଲେ ତୁମ୍ଭେ ମନଦେଇ ଶୁଣ
ସେକଥା ତୋର ଆଗେ କହିବା ପ୍ରମାଣ ।
ପାଞ୍ଚଦିନ ଯୁଦ୍ଧରେ ସେ ମଲା କୁମ୍ଭକର୍ଣ୍ଣ
ଆସିଥିଲେ ଅଶୁରୀ ଯେ ରାବଣ ପୁରେଣ ।
ଶୁଣିଲେ ସେ ରାବଣର ଭାଇ କୁମ୍ଭକର୍ଣ୍ଣ
ଆଜ ରଣେ ତାହାକୁ ଯେ ମାଇଲେ ଶ୍ରୀରାମ
ଶୁଣିକରି ଅସୁରୀ ଯେ ଲେଉଟି ବାହୁଗଲେ
ତ୍ରିଜଟାର ଆଗରେ ବାରତା କହିଲେ ।
ଆମ୍ଭଠାରୁ ଶୁଣ ବିଭୀଷଣର ଦୁଲଣ
ତୋହର ଯେ ବଡ ବାପ କୁମ୍ଭକର୍ଣ୍ଣ ମଲ ।
ଅନେଶ୍ୱତ ପୁଅ ନବ ସହସ୍ର ନାତି ତୁଲେ
ଶ୍ରୀରାମ ଲକ୍ଷ୍ମଣ ଯେ ମାଇଲେ ଭୁଜବଳେ ।
ରାବଣ କରଇ ଶୋକ ଶୁଣି ଭାଇ କଥା
ଦେଖିଲୁ ଶୁଣିଲୁ ଆମ୍ଭେ ଅଦ୍ଭୁତ ଯେ କଥା ।
କୁମ୍ଭକର୍ଣ୍ଣର ଲକ୍ଷେ ନାରୀ ବଧୂ ତୁଲେ
ନାତୁଣୀ ବଧୂ ଅଟେ ଲକ୍ଷେକ ସେଥିରେ ।
ସୁତ କୁମ୍ଭବୋଲି ରହେ ଗୋଟିଏ ନନ୍ଦନ
ମାତା ତାର ସୁରଭି ବଳସର ଝିଅ ପୁଣ ।
ସେ ପୁତ୍ରର ସହସ୍ରେ ଭାରିଯା ଅଟେ ଜାଣି
ଏହା ଘେନିଣ ରହେ ସେହୁ କୁମରମଣି ।
ଆଉ ସର୍ବେ ସମୁଦ୍ରେ ଯାଇଣ ପଶିଲେ
ସ୍ୱାମୀ କାର୍ଯ୍ୟକରିଣ ସ୍ୱାମୀର ସଙ୍ଗେ ଗଲେ ।
ଶୁଣିଣ ତ୍ରିଜଟା ନାରୀ ଉଠିଲେ ବହନ
ସୀତାର ଚରଣେ ଯାଇ ଓଳଗିଲ ପୁଣ ।
ବୋଇଲା ମୋ ବଡବାପ ହୋଇଲାପ୍ରାଣେହତ
ଆଜ ରଣେ ମାଇଲେ ଯେ ଦଶରଥ ସୁତ ।
ଯାଉଅଛୁ ନଦୀରେ ମୁଁ ସ୍ନାହାନ କରିବ
ଏତେବୋଲି ତ୍ରିଜଟାଯେ ଚଳେ ବେଗିବେଗି
ସ୍ନାନ ନ କରିଣ ସୀତା ପାଶରେ ପ୍ରବେଶ
ଭଗବତୀ ବୋଇଲେ ଶୁଣିବା ପ୍ରାଣନାଥ ।
ରାବଣ ନାରୀ ତିନିକୋଟି ଯେ ପଞ୍ଚାଶ
କୁମ୍ଭକର୍ଣ୍ଣ ମରିବାରୁ ମନରେ ହରଷ ।

ଶୁଣିଲଟିକ ସେହୁ ଆଜ କୁମ୍ଭକର୍ଣ୍ଣ ମଲ
ମନ୍ଦୋଦରୀ ଶୁଣିକରି କମ୍ପ ସେ ହୋଇଲା ।
ରୁଦ୍ରଦେବ ବୋଇଲେ ଯେ ଧାଇ ଜଣାଇଲେ
ଦଅର ଯେ କୁମ୍ଭକର୍ଣ୍ଣ ମଲା ଯେ ଏବେ ଭଲେ
ମନ୍ଦୋଦରୀ ବୋଇଲା ପାଞ୍ଚଦିନ ଯୁଦ୍ଧ ହେଲା
ଆହୁରିତ ବାରଦିନ ପ୍ରମାଣ ରହିଲା ।
ନାରଦ ଯେ ମୋତେ କହିଛନ୍ତି ପାଞ୍ଚଥର
ସତର ଦିନରେ ସ୍ୱାମୀ ମରିବ ତୋହର ।
ଏତେ ବିଚାରି ମନେ କାହାକୁ ନ କହିଲା
ଆପଣା ସୁଖରେ ସେହୁ ଭୁଞ୍ଜ ଯେ ହୋଇଲା
ଶୁଣିଲେ ପାର୍ବତୀ ଯେ କହିଲେକ ହର
ସୁବଳୟା ଗିରିରେ ଯେ ଶ୍ରୀରାମର ଘର ।
ପ୍ରତିଦିନ ଋଷକପି ରାବରେ ବଅନ୍ତି
ସେଦିନ ରାବରେ ଯେ ହୋଇଲା କେଉଁସ୍ଥିତି ।
ଈଶ୍ୱର ବୋଇଲେ ତୁମ୍ଭେ କର୍ଣ୍ଣ ଡେରି ଶୁଣ
ଦୁଇ ଘଡ଼ି ନିଶି ଯହୁଁ ହୋଇଲା ପ୍ରମାଣ ।
ବାସେନ ଖେନଣ ଯେ ଯୋଗୀବଳ ଗଲା
ବାହୁଣ ଅସୁର ବଳ ନସୁମ ସେ କଲା ।
ଶୁକ୍ର ମନ୍ତ୍ରୀ ସ୍ୱର୍ଗରୁ ଆଇଲେ ତତକ୍ଷଣ
ଅମୃତ ସିଞ୍ଚଣ ଋଷକପି ଜଣାଇଣ ।
ଜୀଇ ଋଷକପି ଯେ ସୁବଳୟା ଗଲେ
ଯୋଗିନ ବଳ ଖେନଣ ବାସେନ ଚଳିଗଲେ
ଶୁକ୍ର ମନ୍ତ୍ରୀ ସ୍ୱର୍ଗକୁ ଯେ ଚଳି ପୁଣ ଯାଏ
ରଣ ଭୂମିରେ ପଡ଼ି କୁମ୍ଭକର୍ଣ୍ଣ ପିଣ୍ଡ ରହେ ।
ଶାକମ୍ବରୀ ବୋଇଲେ ଏବେ ଏହିକଥା ଜାଣି
ଦଶଗ୍ରୀବ ଆଜ୍ଞା ଦେଲା ଇନ୍ଦ୍ରଜିତରେ ପୁଣି ।
ଈଶ୍ୱର ବୋଇଲେ ତୁମ୍ଭେ ସାବଧାନେ ଶୁଣ
ଦଶଗ୍ରୀବ ଆଜ୍ଞାରେ ଯେ ବୁଢ଼ରାଇ ପୁଣ ।
ଶୁଣିକରି ସଜ ଯେ ହୋଇଲେ ବୁଢ଼ରାଇ
ଅତିକାୟେ ତ୍ରିଶିରା ଯେ ହରଷେ ଚଳିଯାଇ
ସଙ୍ଗରେ ତାଙ୍କର ସୈନ୍ୟଯେ ସପ୍ତକୋଟିରଥୀ
ପଞ୍ଚାଶ କୋଟି ଅଶ୍ୱ ତିରିଶ କୋଟି ହସ୍ତୀ ।
ପଦ୍ମେକାର ସୈନ୍ୟ ଯେ ଅଟଇ ଅଗଣିତା
ଛଅ ସେନାପତି ସେ ସଂଗ୍ରାମରେ ଜିତା ।
ରାବଣକୁ ନମସ୍କାର କରିଣ ଚଳିଗଲେ
ସିଂହଦ୍ୱାର ବାଟରେ ବାହାରି ସେହୁ ହେଲେ

ନରାନ୍ତକ ଦେବାନ୍ତକ ତିଣି ଦୁଇହସ୍ତୀ
ମହାରୁଣ ମହୋଦର ହୋଇଲେ ଦୁହେଁ ରଥୀ
ତ୍ରିଶିରା ଅତିକାୟ ଅଟନ୍ତି ଆଶୁଆର
ଇନ୍ଦ୍ରର ଆଦିତ୍ୟ ଜିଣି ତେଜ ତାହାଙ୍କର ।
ମୁକୁଟ କୁଣ୍ଡଳ ସୋହେ ନାନା ଅଳଙ୍କାର
ହୃଦରେ ସୋହେ ତାଙ୍କର ବିବିଧ ମଣିହାର
ତାଡ଼ ସିଙ୍କଳ ସେ ଯେ ମୁଦି ବତପନ
ପାଦରେ ନୂପୁର ଯେ ତୋଡ଼ର ମଣିଗଣ ।
ରଙ୍ଗରେଖ ମାନ ଯେ ଲଗାଇଲେ ଛଡ଼ରଥ
ବଜ୍ରଧରିଣ ସେ ଉଠିଲେକ ଧାତି ।
କେହୁ ଉରେ କସେ କେହୁକ ମାୟୁଣ କରେ
କେହୁ ଶୂଳ ଶକ୍ତି ଯେ ଖଣ୍ଡା କେହୁ ଧରେ ।
ଶିରରେ ଟୋପରେଯେ ଘୁଟେଣି କେହୁଭଟେ
କେହୁ ସେ ଘନ ଘନ ସିଂହରଡ଼ି ଘୁଣ୍ଡେ ।
କେ କଣ ମୋଡ଼ଇ ଯେ ସଂଗ୍ରାମେ ଆଗୁସାର
କେବଣ ଦୈତ୍ୟ ପୁଙ୍ଖ କରନ୍ତି ଅପାର ।
ଗଜ ଯେ ଯୂଥ ଯୂଥ ହୟ ଯେ ପଲପଲ
ରଥୀ ଯେ ଝିଙ୍କ ଝିଙ୍କ ବୋଲନ୍ତି ରୁଳ ରୁଳ
ପଦାତି ସଇନଙ୍କର ମୁଖରବ ଧ୍ୱନି
ସାରଙ୍ଗର ଶବଦରେ ପୂରିଛି ମେଦିନୀ ।
ଯାଉନ୍ତେ ବିହରନ୍ତି ଲଙ୍କାପୁର ବାସୀ ।
ଏ ଅବା ପାରିବେ ହୋ ଋଷକପି ନାଶି ।
ରାବଣର ସମାନ ଏ ଅଟନ୍ତି ଛଡ଼ ରଥୀ
ଜାଣନ୍ତି ସଂଗ୍ରାମେ ସେ ବିଷମ କୂଟରୀତି ।
ଦୂତ ଦଶଗ୍ରୀବ ଏହାଙ୍କୁ ପଠାନ୍ତରି
ଖୁଡ଼ୁତାର ଛଳେ ଯେ ହୁଅନ୍ତି ଆଗୁଁସାର ।
ଏହାଙ୍କୁ ପଠିଆଇ ଯେ ନିଶ୍ଚିନ୍ତ ହୁଅ ପିତା
ଏହୁ ଷଣ୍ଡଯୋଦ୍ଧା ସେ ସଗ୍ରାମରେ ଜିତା ।
ଏହାଙ୍କର ଆଗରେ ଯେବେ ପଡ଼ିବେ ଶତ୍ରୁ
ନାରାଜର ଘାଏ ସେ ହୋଇଲ ପୁଣ ବଧ ।
ଏସନକ ବୋଲି ଲୋକେ ପ୍ରଶଂସା କରନ୍ତି
ପୂର୍ବଦ୍ୱାରବାଟେ ସୈନ୍ୟବାହାରହୋଇଯାନ୍ତି
ବିହୁଡ଼ି ଚନ୍ଦ୍ର ଧାପ ଯେ ହୁଳା ନିରନ୍ତର
ପଦା ଭୂମିବାଟ ଯେ ଦିଶବ ହାଲୋଳ ।
ଏଥୁଅନନ୍ତରେ ଶୁଣ ଗୋ ହୈମବନ୍ତି
ସନ୍ଧ୍ୟା ସମୟରେ ଯେ ରାମଚନ୍ଦ୍ର ଉଠି ।

ଘୁଞ୍ଚିଲେ ପୂର୍ବଦ୍ୱାରେ ବଳଶାଳୀ ଆନେକ
ହୋଇଲେ ଅଷ୍ଟସେନାଏ ଯୂଥପତି ବଳ ।
ଘୋର ମନ୍ତ୍ର ପ୍ରକାଶେ ରାବଣ କୋପମନ
ଯୁଦ୍ଧ କରିବାକୁ ସୈନ୍ୟ ଆସୁଛନ୍ତି ପୁଣ ।
ଚଳ ତୁମ୍ଭେ ସମସ୍ତେ କର ସେ ଯାଇ ରଣ
ସନ୍ଧ୍ୟା ସୁମର ଆମ୍ଭେ ଯାଉଛୁ ରଥେ ପୁଣ ।
ବହୁତ ତୁଳା ସଙ୍ଗେ ଚନ୍ଦ୍ର ଦୀପ ନଅ
ଉଦ୍ବୋଧ ନ କରିଣ ନଦୀନ ମାଡ଼ ଦଅ ।
ଶୁଣିଣ ଋଷି କପି ଯେ ସଜ ହୋଇଗଲେ
ଦୁଇଦଳ ଯାଇଣ ଭେଟାଭେଟି ହେଲେ ।
ମୂର୍ଚ୍ଛା ହେବା ଦେଖିଣ ସେ ଯୁଝିଯାନ୍ତି ପାଏ
କାହାର ସଂଗ୍ରାମକୁ ଭଲାଛେ ନାହିଁ ଭୟେ
ସନ୍ଧ୍ୟା ସମର ଶ୍ରୀରାମ ବିଜୟ ଆସିକଲେ
ଚନ୍ଦ୍ର ଉଦୟ କରଣ ଭୂମିମଧ୍ୟରେଦେଖିଲେ
ମୁଖରବ ଶବଦ ଶୁଭିଲା ରଣଗୋଳ
ରାମଚନ୍ଦ୍ର ହକାରିଲେ ବାନର ଦୂଳନ ।
ଯାଅରେ କୁମର ଅସୁର ବଳ ମାର
ଗାଢ଼ଯୁଦ୍ଧ ହୋଇଲେ ମୋଠାକୁ ପେଷ ବୀର
ଶୁଣିକରି ତାରସୁତ ଚଳେ ବୃକ୍ଷ ଧରି
ସଂଗ୍ରାମକୁ ଧାଇଁଲା ସେ ଅତି ବେଗ କରି ।
ପଛରେ ଗୋଡ଼ାଇଲେ କୁମୁଦ ମହେନ୍ଦ୍ର
ଗବଏ ଗବାକ୍ଷ ଯେ ପବନ ଦୁବନ୍ଦ ।
ଶରଭ ସେନାପତି ଯେ ତାରର ପିଅର
କେଶରୀ ଜାମ୍ବବନ୍ତ ଯେ ଶତବାନ ବୀର ।
ଅପ୍ରମିତ ସଇନ୍ୟ ଯେ ମାର ମାର ଡାକେ
ସ୍ୱର୍ଗେ ଥାଇ ଆନନ୍ଦ ହେଲେ ସ୍ୱର୍ଗଲୋକେ
ମିଶାମିଶି ହୋଇ ରଣଗୋଳ କଲେ
ଋକ୍ଷକପି ଶିଳା ବୃକ୍ଷ ଧରିଣ ମାଇଲେ ।
ରାକ୍ଷସେ ବିବିଧ ଆୟୁଧ କରେ ଧରି
ମୁଖରବ ଶବଦରେ କୁରୁମ ଉଚ୍ଛୁଳ ।
ବାନର କୁମର ଯେ ଧାଇଁଲା ଅତି ବେଗେ
ଯାଇଣ ମିଳିଲା ସେ ନରାନ୍ତକର ଆଗେ ।
ଅତିବଡ ଶାଳବୃକ୍ଷ କରେ ଧରିଥିଲା
ଦୈତ୍ୟଙ୍କର ଉପରେ ସେ ନେଇଣ ପିଟିଲା ।
ସେ ତରୁ ଫୋପଡ଼ାଇଲା ସେ ରାବଣ ତନଏ
ଶକ୍ତି ମାଇଲା ସେ ନବରତ୍ନ ମୟେ ।

ପାକୁଳି ଜ୍ୟୋତି ହୋଇଣ ଗଲାସେହୁ ଶସ୍ତ୍ର
ବାନରେଣ ମୋହେ ପଡ଼ିଲା ବାଳିସୁତ ।
ଚେତାପାଇ ଅଙ୍ଗଦ ବହନ ଉଠିଲା
ଉଠିକରି ବାଳିସୁତ ବଧାସ୍ତେ ମାଇଲା ।
ନରାନ୍ତକ ହୃଦରେ ଯାଇଣ ବାଜିଲା
ଛେଡ଼େଦୈତ୍ୟଗୋଟାଯେସମ୍ଭାଳନ ପାରିଲା
ରକ୍ତ ଉଦ୍‌ଗାରିଣ ପଡେ ସେ ଧରଣୀ
ଧରଣୀରେ ପଡ଼ିଣ ପ୍ରାଣ ଛାଡ଼େ ପୁଣି ।
ଦଇତ୍ୟ ପଡ଼ନ୍ତେ ମୂରୁଛା ମଉହସ୍ତୀ
ଧାଇଁକରି ଥୋରହସ୍ତ ଧରେ ସେ ଚଢ଼ନ୍ତି ।
ବଳେ ଧରନ୍ତେ ଗଜ ଛାଡ଼େ ସିଂହରଡ଼ି
ନରାନ୍ତକ ଉପରେ ମୃତ୍ୟୁପିଣ୍ଡ କରୁଡ଼ି ।
ଦୁଇହସ୍ତୀ ଜାଣି ସେ ବଳଇ ଏକ କାଏ
ଦେଖିକରି ତ୍ରିଶିର ଦେବାନ୍ତକ ଧାଏଁ ।
ମହୋଦର ସହିତେ ଯେ ଅଙ୍ଗଦକୁ ବେଢି
ବାଜନ୍ତି ନାରାଚ ଯେ ଛାଡନ୍ତି ସିଂହରଡ଼ି ।
ଶରେ ଶରେ ସେହୁ କଲେ ଯେ ଅନ୍ଧାର
ଶସ୍ତ୍ରର ତେଜରେ ଯେ ନବତ ଅନ୍ଧାର ।
ବାଳିସୁତ ଅଙ୍ଗରେ ଯାଇଣ ବାଣପଡ଼ି
ଅବଛନ୍ନେ ରୁଧିର ବହେ ଅଙ୍ଗବୁଡ଼ି ।
କୋପଭରେ ତାରସୁତ ପଥର ଧରିଲା
ଦେବାନ୍ତକ ଉପରେ ନେଇଣ କରୁଡ଼ିଲା ।
ଅଙ୍ଗ ଢ଼ାଳି ଅଙ୍ଗଦ ବଞ୍ଚାଇଲା ତାହା
ରାଗରେଅଙ୍ଗଦବୀର କାମୋଡ଼େ ବେନବାହା
ଯାଇଣ ଦେବାନ୍ତକ ହସ୍ତୀର ଦନ୍ତଧରି
କୋପଭରେ ହସ୍ତୀଦନ୍ତ ଦେଲାକ ଉପାଡ଼ି ।
ଗଜର ବାମଦନ୍ତ ଦକ୍ଷିଣ ହସ୍ତେ ଧରି
ଦୈତ୍ୟକୁ ପିଟିଲା ସେ ଘୋରରବ କରି ।
ଅଙ୍ଗରେ ବାଜନ୍ତେ ଦୈତ୍ୟପାଏ ବଡବ୍ୟଥା
ତ୍ରିମିଟେ ପର୍ଯ୍ୟନ୍ତ ଦୈତ୍ୟ ନ କହିଲା କଥା
ପରିଘ ସେହିକ୍ଷଣ ଦୈତ୍ୟ ପିଟିଲାକ କୋହେ
ବାଜନ୍ତେ ଅଙ୍ଗଦବୀର ପଡ଼ିଗଲା ମୋହେ ।
ଏହାଦେଖି ହନୁମନ୍ତ ଧାଇଁଲେକ ବେଗେ
ଅଙ୍ଗଦକୁ ଆବୋରି ରହିଲା ଦୈତ୍ୟ ଆଗେ
ପର୍ବତ ସେହିକ୍ଷଣ ବୀର ଉଠାଇ ମାଇଲା
ଦେବାନ୍ତକ ହସ୍ତୀର ସହିତେ ପ୍ରାଣଗଲା ।

ମୃତ ଶବ ହେବା ହୋଇ ପଡ଼ନ୍ତିକ ତଳେ
ମୋହତେଜି ଅଙ୍ଗଦ ଉଠିଲା ତେତେବେଳେ
ଏଥୁ ଅନନ୍ତରେ ସେ ଯେ ମହୋଦର ମାଳ
କରନ୍ତି ସମର ଯେ ଦେଖନ୍ତି ଦେବବଳ ।
ଅନେକ ନାରାଚ ସେ ବିନ୍ଧିଲା ଦଇତ
ନଳର ସର୍ବାଙ୍ଗରୁ ବହିଲା ରକତ ।
ଝିଙ୍କପକ୍ଷୀ ପ୍ରାୟେକ ଦିଶିଲା କପି ଶୋଭା
ଆଘାତ ପାଇଣ ସେ ଯେ ପ୍ରକାଶିଲା ଆଭା ।
ବିଷମ ଗଣ୍ଡକର ମାରିଲା ଶିଳା ବେଗେ
ପ୍ରାଣ ଛାଡ଼ିଣ ଦଇତ ପଡ଼ିଲା ଭୂମିଭାଗେ ।
ଦେଖିକରି ବିଶିର ଯେ ଆଶ୍ଚର୍ଯ୍ୟ ହୋଇଲା
କୋପମୁଖ ହୋଇଣ ସେ ଶକତି ଧଇଲା ।
ଦେଖିକରି ହନୁମନ୍ତ ଦେଇ ସିଂହରଡ଼ି
ଦୈତ୍ୟର ହସ୍ତରୁ ଶକ୍ତି ନେଲାକ ଉଝୁଡ଼ି ।
ଦୁଇଖଣ୍ଡ କରି ବୀର ଭାଙ୍ଗି ପକାଇଲା
ଦେଖିଣ ବିଶିର ଯେ ଖଡ଼ଗ ଧଇଲା ।
ହସ୍ତ ଟେକନ୍ତେଣ ଦୈତ୍ୟ ଧଇଲା ମାରୁତି
ଛଡ଼ାଇଣ ଘେନଗଲା ପବନଙ୍କ ଗତି ।
ସେହି ଖଡ଼ଗକୁ ତୋଳି ମାଇଲା ମାରୁତି
ଦୈତ୍ୟର ବେକ ଛାଡ଼ିଣ ପଡ଼ିଲାକ ଧାତି ।
ଖଣ୍ଡେ ଦୂରେ ଯାଇଣ ପଡ଼ିଲା ତା ମୁଣ୍ଡ
ଅସିପଦ ଧରିଣ ମାରୁତି ପରଚଣ୍ଡ ।
ବିଶିର ପଡ଼ନ୍ତେ ମହାପାରୁଶ ଦେଖିଲା
ସୈନ୍ୟ ମାରିବାରଦେଖି କୋପରେଧାଇଁଲା
କରେ ଧରିଥିଲା ଯେ କାଳମୁଖା ଗଦା
ଦେଖି ଋଷଭ ଆବୋରି ଦୁଇହାତ ଶେଧା ।
ମହାପାରୁଶ ବୀର ଯେ ମାରେବେଗେତୋଳି
ଦୁଇହାତେ ଧଇଲା ଋଷଭ ମହାବଳୀ ।
ସେହି ଗଦା ଧରିଣ ଆଚ୍ଛୋଟି ପିଟିଲା
ମହାପାରୁଶର ଯେ ମୂର୍ଦ୍ଧନ ଫାଟିଗଲା ।
ପଡ଼ିଲାକ ଦୈତ୍ୟବୀର ଇନ୍ଦ୍ରଧନୁ ଜାଣି
ତଳତଳ ହୋଇଣ କମ୍ପଇ ମେଦିନୀ ।
ଭାଇଙ୍କର ନିଧନ ଦେଖିଣ ଅତିକାୟେ
କରେ ଧନୁ ଧରିଣ ଦିବ୍ୟ ଅସ୍ତ୍ରଚୟେ ।
ଅପ୍ରମିତ ବଳ ଯେ ମାଇଲା ଦଇତ
ଶ୍ରୀରାମଙ୍କର ସୈନ୍ୟଯେ ଭୟରେ ତରସ୍ତ ।

ଜଳନ୍ତା ହୁତାଶନ ଜାଣି ତାର ଶର
ରଣଭଣ ହୋଇଣ ଯେ ପଳାନ୍ତି ବାନର ।
ରହରହ ବୋଲନ୍ତେଯେ ନରହିଲେ କେହି
ଦିବ୍ୟ ଅସ୍ତ୍ର ତେଜ ଯେ ନ ପାରିଲେ ସହି ।
ଦେବତାମାନେ ଭୟେ ଯେ ପଳାଏ ଯହିଁକି
ପଳାନ୍ତି ଋଷ କପିଏ ସମର ଉପେକ୍ଷି ।
ହନୁମନ୍ତ ଅଙ୍ଗଦ ନ ପାରେ ପୁଣ ସହି
ଅସୁରଅସ୍ତ୍ର ତେଜରେ ନପାରେ କେହି ରହି
ଅଷ୍ଟ ସେନାମାନେ ଯେ ପାଇଲେ ଭଙ୍ଗୁଣୀ
କୋପରେ ଦଶବୀର ବନ୍ଧେ ଶିରବେଣି ।
ଯୂଥପତିମାନେ ଯେ ପଛଘୁଞ୍ଚା ଦେଲେ
ଯହୁଁ ସେ ଅଗୋଚର ସମର ଦେଖିଲେ ।
ସୁଷେଣ ଜମ୍ବେବ ଯେ ଭାଜିଲେ ବିଭୀଷଣ
ଅତିକାୟେ କରଇ ଯେ ଅଗୋଚର ରଣ ।
ଭାଦ୍ରବ ମାସରେ କି ଆଦିତ୍ୟ ଉଦୟେ
ତେସନକ ତେଜ ଯେ ରାବଣ ତନୟେ ।
ନାରାଜକେ ଲକ୍ଷେ ସେ ମାରେ ଋଷକପି
ନିଶ୍ୱାସକେ ମାରଇ ଲକ୍ଷେ ନାରାଜ କୋପ ।
ଖଣ୍ଡ ଖଣ୍ଡ ହୋଇଣ ଉଚ୍ଛେଡ଼ ତରୁଷ୍ଣିନ
ଶକତିର ଘାୟେ ନାଶ ହୋଇଲେ ସକଳ ।
ଏକା ରଥୀ କରେ ମର୍ଦ୍ଦିଲା ତେତେବଳ
ଗୋଡ଼ାଇ ମାଇଲା ସେ ଅସୁର ଆବୁର୍ଗଳ ।
ଛାମୁନେତ ମିଳଣ ଯୁଝିବ କେହି ନାହିଁ
ରହ ରହ ବୋଲନ୍ତେ ନ ରହିଲେ କେହି ।
ଦିବ୍ୟ ଅସ୍ତ୍ର ତେଜ ଯେ ନପାରେ କେହି ସହି
ଭାଜିଲେକ ସୈନ୍ୟ ଯେ ଛିନ୍ନଭିନ୍ନ ହୋଇ ।
ଦେବତାମାନେ ଭୟେ ପଳାନ୍ତି ଯହିଁକି
ପଳାଇଲେ ଋଷକପିମାନେ ଯେ ଉପେକ୍ଷି ।
ରାମରେ ଶରଣ ପଶିଲେ ଋଷକପି
ହେଦେବତୋହରସୈନ୍ୟପଡ଼ିଲେ ବହୁତଟି
ରାବଣର ତନୟ ପ୍ରଳୟ ଅଗ୍ନି ଜାଣି
ଏତେ ଥାଟ କ୍ଷୁମ୍ବର ପକାଇଲା ହାଣି ।
କ୍ଷୀର ସାଗର ଯେସନେ ମନ୍ଦର ମନ୍ଥଇ
ସେଥିରୁ ଉଗ୍ରଳ ତେଜ ଦଇତ ଦିଶଇ ।
ଶୁଣିଣ ଶ୍ରୀରାମ ଯେ ଲକ୍ଷ୍ମଣ ବେନଭାଇ
ବେଷଭରେ ବାହାରିଲେ ଧନୁଶର ବହି ।

ସୈନ୍ୟକୁ ପଛ କରିଣ ଆପଣେ ଆଗହୋନ୍ତି
ଦେଖିଲେକ ଦୈତ୍ୟ ଆସୁଛି ବଳମନ୍ତି
କଳା ମେଘ ପ୍ରାୟେ ଦିଶଇ ତା ଶରୀର
ପବନରୁ ବେଗେ ଯେ ଚଳେ ରଘୁବର ।
ଦେଖିଣ ଶ୍ରୀରାମ ଲକ୍ଷ୍ମଣ ବେନଭାଇ
ରାମଙ୍କୁ ପଛକରି ଲକ୍ଷ୍ମଣ ଆଗ ହୋଇ ।
ଛନ୍ଦ ନାରାଚ ଯେ ଅନନ୍ତ କରେ ଧରି
ଦୈତ୍ୟଙ୍କୁ ଦେଖିଣ ଯେ ଲକ୍ଷ୍ମଣ ଆବୋରି ।
ଦୈତ୍ୟବୀର ବୋଇଲାକୁ କୋହରେ ଗର୍ଜନ
କେଉଁଠାରେ ଅଛି ତୋର ରାମ ଭାଇ ପୁଣ ।
ତୋତେ ମାଇଲେ ପୁଣ ଧର୍ମ ହେବ ହାନି
ଉପହାସ କରିବେ ଜଗତ ଲୋକ ପୁଣି ।
ବାଳୁତ ବୟସ ତୁରେ ନ ଜାଣୁ ଯୁଦ୍ଧରୀତି
ମୋତେ ସମାନ ଯେ ନୋହେ ସୁରପତି ।
ବହୁ ଦ୍ରୋହ କଲେରେ ଅନେକ ପାପ ପାଇ
ଆଡ଼ ହୋଇ ଯାଅ ତୁ ରାମଙ୍କୁ ଦେଖାଇ ।
ତାହାଙ୍କୁ ଦେଖିଲେ ଆଜ ପେଷିବି ଯମପୁର
ଶୁଣିଣ ଲକ୍ଷ୍ମଣ ଯେ ବିନ୍ଧିଲେ ତୀକ୍ଷ୍ଣ ଶର ।
ଆସନ୍ତେଣ ଦେଖି ଯେ ଛେଦେ ସେହୁକାଣ୍ଡ
ଦେଖିଣ ସଉମିତ୍ରୀ ହୋଇଲେ ବିଖଣ୍ଡ ।
ପୁଣି ପଞ୍ଚବଂଶ ଯେ ବିନ୍ଧିଲେ ନାରାଜ
ହେଳେଣ ନିବାରିଲା ରାବଣ ତନୁଜ ।
ସେହି ଶର ନାଶି ଯେ କୋଟିଏ ବାଣବିଧ
ଅନ୍ତରେ ନାରାଚ ଆସଇ ପଥରୁଦ୍ଧ ।
ଲକ୍ଷ୍ମଣ ଛେଦିଲେ ତାହା ପ୍ରତିଅସ୍ତ୍ର କରି
ଦୁହିଁଙ୍କର ଶରଘାତେ କମ୍ପେ ବସୁନ୍ଧରୀ ।
ନାରାଜଙ୍କର ଗର୍ଜନ ଗୁଣର ଟଙ୍କାର
ହାକିଣ ବିନ୍ଧିବାର ଶବଦ ମହାଘୋର ।
ଦେଖଣାହାରୀ ହୋଇଣ ବିହନ୍ତି ଦୁଇସୈନ୍ୟ
ସ୍ବର୍ଗରେ ସାଧୁ ସାଧୁ କରନ୍ତି ଦେବଗଣ ।
ଦୈତ୍ୟ ବିଚାରଇ ଏତ ଅଂଇ ବଡ ଷଣ୍ଢି
ଏହାର କଣ୍ଠ ଆଜ ଲୋଟିବ ଧରଣୀ ।
ଏତେ ବିଚାରିଣ କାଂଶିକା ଶର ମାରି
ଭିନ୍ନ ଦେଲା ଶରରେ ଲକ୍ଷ୍ମଣ ନିବାରି ।
ଶ୍ରୀରାମର ଭାଇ ହୃଦରେ ପୁଣ ଚିନ୍ତ
ଜଣଜଣ ଅସୁରେ ଅନୁଆନ ହେନ୍ତି ।

ଏକକୁ ଏକ ଯେ ଛା ଅନନ୍ତ ମହାବଳୀ
ପୃଥିବୀ ସାଧି କଲେ ଏ ଦେବତାଙ୍କୁ ଦଳି ।
ଏତେ ବିଚାରିଣ ବିନ୍ଧଇ ପାଞ୍ଚଶର
ଶରବାଜ ବେଢ଼େ ଫୁଟିଲା ଦୈତ୍ୟର ।
କୋପରେ ଅତିକାୟେ ଗର୍ଜନ ଘନଘନ
କୋଟିଏ ବାଣ ମାର କନକ ଆଗ୍ରଧନ ।
ମନ୍ତ୍ର ବଳରେ ଶରଚଳେ ଅତିବେଗେ
କୋଟିଏ ଚନ୍ଦ୍ରକ ଉଡ଼ିଲେ ଭୂମିଭାଗେ ।
ଦେଖିଣ ସଉମିତ୍ରୀ ଯେ କୋପ ମନେ କରି
କଞ୍ଚିତ ନାରାଚରେ ସହସ୍ର ନିବାରି ।
ଦେଖିଣ ଅସୁର ଯେ ପାଇଲା ମନେ ଖଙ୍କ
ଧନୁର୍ବେଦ ପଢ଼ି ସେ ବିନ୍ଧିଲା ନାରାଜ ।
ଲକ୍ଷ୍ମଣ ନିବାରଇ ସେ ପବନହୁଁ ଖରେ
ଛନ୍ଦିବାକେ ନାରାଜ ଛନ୍ଦେ ଶରଜବାରେ ।
ଏମନ୍ତ ଅବସ୍ଥାମେ ଯେ କରନ୍ତି ସମର
ଦୈତ୍ୟବୀର ପେଷିଲା ମନ୍ତ୍ରିଣ ଏକଶର ।
ଲକ୍ଷ୍ମଣ ଉପରେ ପଡ଼ିଲା ଶର ଯାଇ
ଘାଆ ପାଇଲେ ଯେ ଶ୍ରୀରାମଙ୍କର ଭାଇ ।
ରୋମକେ ନାରାଜ ବିନ୍ଧନ୍ତି ଦୁହେଁ ଭଞ୍ଜି
ଏ ପ୍ରକାରେ ସମର କରନ୍ତି ନଠାଇ ।
ଦେଖିକର ଅତିକାୟେ ମହାଯୁଦ୍ଧ କଲା
ସ୍ବର୍ଗ ମର୍ତ୍ତ୍ୟ ପାତାଳ ଯେ ଶରରେ ରୁନ୍ଧିଲା ।
ଶର ତେଜେ ଅନ୍ଧାର ନ ଦିଶଇ କିଛି
କଅବା ରଜନୀରେ କୁହୁକ ଘୋଟିଛି ।
ଦେଖିଣ ଶ୍ରୀରାମ ଭାଇ ସୂର୍ଯ୍ୟଅସ୍ତ୍ର କଲେ
କୁହୁକ କେଣେ ଗଲା ଜଗତ ଦିଶିଲେ ।
ଲକ୍ଷ୍ମଣ ବୋଇଲେ ଶୁଣ ତୁ ଅସୁର
ମାୟାକଲେ କରେ ଜିଣିବୁ ନିଶାଚର ।
ଏହିକ୍ଷଣି ପ୍ରାଣ ମୁଁ ଘେନିବି ନିଶ୍ଚିନ୍ତେ
ଡିମପୁରେ କେହିଯେ ନରଖିବେ ତୋତେ ।
ଏହୁଁ କହୁଁ ବୀର ଯେ ବିନ୍ଧନ୍ତି ଶର
ଘଡ଼ଘଡ଼ ଜାଣିଣ ଶବଦ ଶରଙ୍କର ।
ରାବଣର ତନୟେ ଯେ ହେଲେ ଆଗୁସର
ଛେଦିଲେ ନାରାଜ ଯେ କରିଣ ପ୍ରତିଶର ।
ଜଗି ପ୍ରହ୍ଳଣ ଯେ ହୋଇଲା ଦିବସ
ବିହନ୍ତି ନାରାଜ ଯେନକରି ଅଳସ ।

ବେଳକୁ ବେଳ ସମର ବୁଦ୍ଧିଙ୍କର ଟାଣ
ମନେ ମନେ ବିସ୍ମିତ ହୁଅନ୍ତି ଲକ୍ଷ୍ମଣ ।
କେମନ୍ତେ ବଳସାର ଯୋଦ୍ଧା ଜୀବନ
ଇନ୍ଦ୍ରଜିତ ଶରକୁ ଏହା ଶର ଅଟେ ଟାଣ ।
ଏହି ସମୟରେ ପବନ କର୍ଣ୍ଣରେ କହି
ବ୍ରହ୍ମ ଅସ୍ତ୍ର କଲେ ଏ ଅସୁର ନାଶ ଯାଇ ।
ଶୁଣିକରି ସଉମିତ୍ରୀ ହରଷ ବଦନ
ଧନୁର୍ବେଦ ପ୍ରକାଶିତ କଲେକ ସନ୍ଧାନ ।
ମନ୍ତ୍ରିଣ ପେଷିଲେ ସେ ତେଜ ସମୁଖ ହୋଇ
ହସ୍ତରୁ ଫିଟିଲା ଶର ବେଗେ ଚାଲିଯାଇ ।
ଅତିକାୟ ଉପରେ ସେ ପଡ଼ିଲାକ ବେଗେ
ବକ୍ଷସ୍ଥଳ ବହିଣ ରୁଧିର ଖାଏ ବେଗେ ।
ପିଠିଆଡ଼କୁ ସେ ଯେ ବାହାର ହୋଇଲା
ଲକ୍ଷ୍ମଣଙ୍କ ହାତରେ ଯାଇଣ ସନ୍ମୁଖିଲା ।
ପ୍ରାଣଯାନ୍ତେ ଦୈତ୍ୟ ସେ ପଡ଼ିଲା ଧରଣୀ
ଦେଖିକରି ଆନନ୍ଦ ହୋଇଲେ ରଘୁମଣି ।
ବୋଇଲେ ହନୁମନ୍ତ ଅଙ୍ଗଦ ବେଗେ ଚାଲ
ଯୂଥପତି ମଲ୍ଲ ମହାମଲ୍ଲ କପି ଦଳ ।
ଯେତେକ ସୈନ୍ୟ ଯେ ଆସିଛନ୍ତି ପୁଣ
ହସ୍ତୀ ଘୋଡ଼ାଏ ସେ କରନ୍ତୁ ନିବାରଣ ।
ଗହଳ ଗର୍ଜିଲେ ଉତ୍ତର ଲଙ୍କସ୍ୱେ
ଏତେ ବୋଲିଣ ଆଜ୍ଞା ଦେଲେ ରାମସ୍ୱେ ।
ଚାଲିଲେ କପିଦଳ ଧାଇଁଲେ ଅସୁର
ଗୋଟିଏ ଦୈତ୍ୟକୁ ପାଞ୍ଚ ସାତ କପି ବୀର
ପଞ୍ଚାଶ କୋଟି ଯେ ଅଶ୍ୱ ଆସିଥିଲେ
ଘଡ଼ିକର ଭିତରେ ମୃତ୍ୟୁ ସେ ପାଇଲେ ।
ତିରିଶକୋଟି ପଦାତି ଚଉଦ କୋଟି ହସ୍ତୀ
ତାହାଙ୍କୁ ଘଡ଼ିକରେ କଲେ ମୃତ୍ୟୁ ଗତି ।
ଆଉ ଯେତେ ଥିଲେ ସେ ପଳାଇଲେ ଭୟେ
ସ୍ୱର୍ଗର ଦେବତାଏ ହରଷ ମନ ହୋଏ ।
ରାମ ବାହୁଡ଼ି ଗଲେ ସେ ରଣ ଜୟ କରି
ସୁବେଳସ୍ଥା ପର୍ବତେ ବିଜୟେ ରାବଣାରି ।
ସଜ ଉଲଗି ହୋଇଣ ସନ୍ଧ୍ୟା ସୁମରିଲେ
ମହୋଷଧି ସାଧିଣ ସେ ରଜନୀ ବଞ୍ଚିଲେ ।
ଯୂଥପତିମାନଙ୍କୁ ସେନା ସଙ୍ଗେ ଘେନ
ପାଦ ପଖାଳିଣ ଫଳମୂଳ ଖାଏ ପୁଣି ।

ବୃକ୍ଷ କପି ବଳ ସେ ପର୍ବତେ ଉଠିଲେ
ଫଳମୂଳ ଖାଇ ସେ ଯାହାରେ ସୁସ୍ଥହେଲେ ।
ଅଗୁଆଣି ଥାଟରେ ଚାଲିଲେ ନଳନୀଳ
ମଙ୍ଗଳସ୍ତ ଗୁଣ୍ଡି ହାଳ କରନ୍ତି ଉଜ୍ଜ୍ୱଳ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ବର
[illegible] ସରୋଷ ସନ୍ଧି ହୋଇଲେ ସଂହାର ।
ସୈନ୍ୟ ପଳାଇ ଯାଇଣ ଲଙ୍କାରେ ପଶିଲେ
ରଣରେ ଭଗ୍ନ ପାଇଣ ଶୋଭା ନ ପାଇଲେ
ନଗର ନରନାରୀ ହାହାକାର କରି
ଶତେ ଯୋଜନ ଲଙ୍କା ହୋଇଲା ହାଲହୋଳ
ରାବଣ ଛାମୁରେ ଯାଇ ଜଣାଇଲା ଚର
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର ।
ତୋର ଯେଉଁ ଷଡ଼ପୁତ୍ର ସଂଗ୍ରାମକୁ ଗଲେ
ରଣରେ ଯାଇ ସେହି ସଂଗ୍ରାମ ପୁଣ କଲେ ।
କପିର ଅବଳେ ସେ ହରାଇଲେ ପ୍ରାଣ
ଶୁଣିଣ ରାବଣ ଯେ ହେଲା କ୍ରୋଧ ମନ ।
ଉଦବଦ ହୋଇଣ ତଳ ପଡ଼ିଲା ଆସନୁ
ଟଙ୍କଶିଉଳ ଯେସନ୍ତେ ଦର୍ଶନ କଲେ ଘନୁ ।
ମଉଳା ପ୍ରଶସ୍ତ ଧରେ ଯାଇ ତୋଳି
ପୁତ୍ରଙ୍କୁ ରାବଣ ଶୋକେ ସୁମରଣା କରି ।
ବୋଇଲା ପୁତ୍ରରେ ସମରେ ଧୂମ ଖେଳ
ଶତେ ଶତେ ତୁମ୍ଭର ଅଟନ୍ତି ବନିତା ।
ଏବେ ତୁମ୍ଭେ ତାଙ୍କୁ କାହାକୁ ଗଲ ଦେଇ
କୁମ୍ଭକର୍ଣ୍ଣ ଖୁଡ଼ୁତା ନେଲାକ କଢ଼ାଇ ।
ଅକ୍ଷୟ କୁଇର କି କତିକ ତୁମ୍ଭେ ଗଲ
ଅସମୟ ଦେଖି ବଳା ଗୁଡ଼ ପଳାଇଲ ।
ଆରେ ନରାନ୍ତକ କେମନ୍ତେ ତୁରେ ମଲୁ
ନରାନ୍ତକ ଛପୁବୋଲି ତୁ ଜାତ ହୋଇଥିଲୁ ।
ନରାନ୍ତକ ବୋଲି ନାମ ଦେଲଇଁଟି ତୋତେ
ଆଉ ଦେବତାମାନେ ଡରିବେ କମ୍ପାମୋତେ
ମହା ପାରୁଶର ସେ ମହିମା ଅପାର
ମହାମହାବଳୀ ତୋତେ ହୋଇଲେ କାତର
ଆରେ ମହୋଦର କେଣେ ଗଲୁରେ ବାବୁ
ତୋହର ଉଦରେ ଭରି ପାରୁ ସବୁ ।
ଏମେ ସେ ବୃକ୍ଷ କପି ମାଇଲେରେ ତୋତେ
ହାରିତା ଦେଇ କି ପଠାଇଲୁ ମୋତେ ।

ଆରେ ଆରେ ବିଶିଖ ତୁ କେତେବେଳୁ ବାଟ
ଏଗାରଥର ଜିଣିଲୁ ଦେବଲୋକଙ୍କୁ ତ ।
ସ୍ତ୍ରୀଙ୍କର ବଦନ ପ୍ରାୟେ ତୋର ମୁଖଗୋଟି
ବିଶିଖ ନାମ ତୋତେ ଦେଲେ ପରମେଷ୍ଠି ।
ଅନ୍ତକାୟେ କାର୍ଯ୍ୟରେ ପଡ଼ିଲୁ ଆଜ ରଣେ ।
କେତେକୁ ବଧ ହେଲୁଟିରେ ଆନଲୋକବାଟେ
ବ୍ରହ୍ମଶସ୍ତ୍ର ପୁଣ ଯନ୍ତ ପାଇଲା କାହିଁ
କେଣେ ପଳାଇଲୁ ମୋତେ ଦୁଃଖଦେଇ ତହିଁ
ଅହରୀକ ଶର ନ କଲୁକ ରେ ବାବୁ
ସେ ବାଣ ବନ୍ଧଲେ ତୁ ଜାଣି ପାରୁ ସବୁ ।
ମାୟାବୃଦ୍ଧି ମାନ ରେ କେଣେ ତୁମ୍ଭର ଗଲା
ବାବୁ ବଧାତାରେ ମୋହର ପୁତ୍ର ମଲା ।
ଆଜକ ଯନ୍ତ ତୋତେରେ ପାଣ୍ଡବମୂର୍ତ୍ତି ଜିଣି
ରାମଲକ୍ଷ୍ମଣଙ୍କୁ କେ ମାରିଦେବ ଆଣି ।
ଏ ମୋହର କଷ୍ଟ ଯେ କେ ଜାଣିବ ପାର
ଭାଇ ପୁତ୍ର ବଇରୀକ କେ ମାରିବ ମୋର ।
ଶୁଣିଣ ଇନ୍ଦ୍ରଜିତ କହେ କରଯୋଡ଼ି
କମ୍ପାଇ ରୋଦନ ତୁ କରୁ ଶୋକଜଳେ ବୁଡ଼ି
ମୁହିଁ ତୋର ଶତ୍ରୁକୁ ଦେବଇଁ ସଂହାର
କେତେ ଜିଣିନାହିଁ ମୁହିଁ ସୁର ପୁରୀ ।
ପାତାଳକୁ ଯାଇ ମୁଁ ଜିଣିଲି ଶତେବାର
ମୃତ୍ୟୁଲୋକେ କେହୁ ସହନ୍ତାନାହିଁ ମୋର ଶର
ଦେବତାମାନଙ୍କୁ ମୁଁ ଖଟାଏ ପାଦତଳେ
ମାତଳର ପୁତ୍ରକୁ ମାଇଲି ଭୁଜବଳେ ।
ସ୍ୱର୍ଗର ଧର୍ମଦମାନ ମୁହିଁ ଦୂର କଲି
ଅପ୍ସରସା ବିଦ୍ୟାଧରୀ ଲଙ୍କାକୁ ଆଣିଲି ।
ଦେବତାମାନଙ୍କର ଆଣିଲି ଭଣ୍ଡାର
ତେଣୁ ଶୋଭବନ ବଣେ ଏତୁ ଲଙ୍କାପୁର ।
ଜଳପତି ମୋତେ ଦେଖି ଭୟ କରଇ
ମୋହର ରଣ ଦେଲେ ଯମ ନ ମେଣ୍ଟଇ ।
ମୋର ଆଗେ ଅଗ୍ନିଦେବ ଡରଇ ମଳନ
ବ୍ରହ୍ମାଣ୍ଡ ଯାକ ମୁଁ ମଣଇ ତୃଣ ।
ମୋହର ସମାନରେ ବ୍ରହ୍ମାଣ୍ଡେ ନାହିଁ ଯଣୀ
ଏକାକେ ଭୋଗକରି ମୁଁ ପାରଇ ଧରଣୀ ।
ଚନ୍ଦ୍ରସୂର୍ଯ୍ୟ ମୋତେ ଯେ ବୃତ୍ତକଥା କହି
ତେଣୁ ସେ ଗଗନରେ ଯାନ୍ତି ଉଦେହୋଇ ।
ପବନ ବହଇ ଯେ ମୋହର ଆଜ୍ଞାଦେଲେ
ଦୃଢ଼ପ୍ରତ୍ତ ରାହୁଗୁରୁ ମୋତେ ଭୟକଲେ ।
ପୃଥ୍ୱୀ ଖଣ୍ଡ ଖଣ୍ଡ କରିପାରେ ମୁହିଁ
ଆକାଶ ଛିଣ୍ଡାଇଣ ପକାଇପାରେ ମହୀ ।
ଶ୍ରୀରାମ ଲକ୍ଷ୍ମଣ ଯେ ଋକ୍ଷକପି ଘୋର
ଏକଥା ରସ୍ୟେ ତୁମ୍ଭେ କହୁ ନ ବସ୍ୱର ।
ଏହିକ୍ଷଣି ଯାଇ ତୋର ଶତ୍ରୁ ସଂହାରିବ
ଲଙ୍କାର ଲୋକଙ୍କୁ ମୁଁ ଅଭୟ ବର ଦେବ ।
ଶୁଣିଣ ଦଶଗ୍ରୀବ ହୋଇଲା ସନ୍ତୋଷ
ଅଶ୍ରୁଜଳ ପୋଛଇ ଘେନଣ ଦୀର୍ଘନିଶ୍ୱାସ ।
ସାସ୍ତ୍ରାମ ହୋଇଣ କହେ କଥାମାନ
ହେ ପୁତ୍ରରେ ଶତ୍ରୁ ଦେଖିଲି ମୋତେ ସାନ
ମୁହିଁ ପୁଣି ଜାଣଇରେ ତୋହର ମହିମା
ଇନ୍ଦ୍ରକୁ ଜିଣିଣ ଯେ ଲୁହାଇଲ ସୀମା ।
ଋକ୍ଷ ବାନର ଯେ ତପସ୍ୱୀ ଦୁଇଜଣ
ଜପେ ନୋହିଲୁ ମୋତେ ତ ଏହାଙ୍କର ରଣ
ଅନ୍ତକାୟୁ ପଡ଼ିଲା ଯେ ଲକ୍ଷ୍ମଣର ବାଣେ
ଶୁଣିତାକୁ ଆଶ୍ଚର୍ଯ୍ୟ କହିଲେ ସୁରଗଣେ ।
ରାତ୍ର ଦିବସରେ ପୁଣ ସେତୁ ଯୁଦ୍ଧ କଲା
ବ୍ରହ୍ମଶରେ ଯନ୍ତ ମୋର ପୁତ୍ରକୁ ମାଇଲା ।
କେତେ କେତେ ବୀର ପୁତ୍ର ସେନାପତି ଗଲେ
ପାଣ୍ଡବାର ଭାଇ ମୋର କୁମ୍ଭକର୍ଣ୍ଣ ମଲେ ।
ତୁମ୍ଭେ ଦୁଇ ପୁତ୍ରରେ ଏକା ଅଛ ମୋର
ତୁ ଯେବେ ଅଭିମାନରୁ କରିବୁଟି ପାର ।
ଋଷ୍ଟ ଯଉଡ଼ବାର ବନ୍ଧ ରସ୍ ଥାଏ
ଇନ୍ଦ୍ରଜିତକୁହିଁ ଦେଲାକ ଲଙ୍କରାୟେ ।
ଶ୍ରୀଭୂଷଣ କୁଣ୍ଡଳ ମୁକୁଟ ରତ୍ନସାର
ହୃଦରେ ପଦକ ସୋହେ ପାଦରେ ନୂପୁର ।
ବାହୁମୂଳେ ତାଡ଼ ବଳୟ ମୁଦ ସୋହେ
ଭୁଜକୁହିଁ ସରଳ ବାହୁଟିମାନ ଦିଏ ।
କରରେ କଙ୍କଣ ସୋହେ ଅଙ୍ଗୁଷ୍ଠିରେ ମୁଦି
ବାହାରେ ବାହୁଟି ସୋହେ ଅଷ୍ଟରହେ ସିଦ୍ଧି
କଟିରେ କଟି ମେଖଳା ଚରଣେ ନୂପୁର
ଦେବାଙ୍ଗ ଲସନ ଦେଲା ବିବିଧ ପ୍ରକାର ।
ବସନ୍ତ ବର୍ଣ୍ଣରେ ମଲ୍ଲି ଶତେସର ମାଳା
ଆପଣେ ଲୁଟି ଲଗାଏ ଇନ୍ଦ୍ରଜିତ ଗଳା ।

କର୍ପୂର ବୋଳହୋଇ ବସନ୍ତ ପିନ୍ଧିଲ ସବଟେ
ରଥ ଗଜ ଅଶ୍ୱ ପଦାତି ନେଲେ ସଙ୍ଗେ
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉର
ରାବଣର ଛଡ ପୁତ୍ର ଦେବଙ୍କ ଅନ୍ତର ।
ଛଡଦିନ ଯୁଦ୍ଧରେ ସେ ହେଲେ ପ୍ରାଣ ନାଶ
ତାଙ୍କର ସଙ୍ଗରେ ପୁତ୍ର ପଡ଼ିଲେ ଅନେକ ।
ଛଡ଼ ଭାଇଙ୍କର ଯେ ଛଅଶ ଅଟେ ନାରୀ
ଶତେ ଭାଇଙ୍କର ଦଶ ସହସ୍ର ଯେ ସ୍ତିରୀ ।
ସ୍ୱାମୀନାଶ ଶୁଣିଣ ସମସ୍ତେ ସଜହେଲେ
ଅମଳାଣ ବସ୍ତ୍ର ପିନ୍ଧ ବାହାର ହୋଇଲେ ।
ପଶ୍ଚିମ ସମୁଦ୍ରରେ ଦେଲେ ଯାଇଁ ଝାସ
ସ୍ୱାମୀମାନଙ୍କ ସଙ୍ଗରେ ଚଳିଲେ ସ୍ୱର୍ଗବାସ ।
ଏହି ସମୟରେ ସୀତା ପାଶରେ ଅସୁରୀ
ରାବଣର ପୁରକୁ ସେ ଆସିଥିଲା ଫେରି ।
ଶୁଣିକରି ଲେଉଟି ସେହୁ ବେଗେ ଚଳିଗଲେ
ଜାନକୀର ଆଗେ ବାରତା କହିଲେ ।
ତୁମ୍ଭ ଦଅର ଲକ୍ଷ୍ମଣ ଆଜ ଯୁଦ୍ଧ କଲା
ରାବଣର ଛଡ଼ପୁତ୍ର ନାଶ ସେ ମାଇଲା ।
ତାହାଙ୍କର ନାରୀମ ନେ ସମୁଦ୍ରରେ ପୁଣ
ଝାସ ଦେଇ ହରାଇଲେ ଯେ ଯାହାର ପ୍ରାଣ
ବୀରପୁତ୍ର ତାର ଶତେ ନାଶ ପୁଣ ମଲେ
ଘୋଡ଼ାହାତୀ ବଳ ଆଉ କଳଣା ନ ଗଲେ
କୁମ୍ଭକର୍ଣ୍ଣ କରିବାରୁ ବପୁ ତାର କ୍ଷୟେ
ଇନ୍ଦ୍ରଜିତ ବପୁ ତାର ଅଛଇ ଥୋକାଏ ।
ଶୁଣିକରି ଜାନକୀ ମନରେ ତୋଷ ହେଲେ
ଛଡ଼ଦିନ ଅନ୍ତେ ଏଗାରଦିନ ଯେ ରହିଲେ ।
ସତର ଦିନରେ ଯେ ରାବଣ ହେବ ହତ
ସେହିଦିନ ବିଭୀଷଣ ବାନ୍ଧବ ଯେ ନେତ ।
ଏତେ କହିଲଣ ଶ୍ରୀରାମ ପାଃ ରାଣୀ
କାହାକୁ ନ କହି କିଛି ବସିଅଛନ୍ତି ପୁଣି ।
ଏଥୁଅନନ୍ତରେ କଥା ହୋଇଲା ଏସନ
ରଜନୀ ଯେ ଦୁଇଘଡ଼ି ଆସିହେଲା ପୁଣ ।
ସୁବଳ ଗିରିରେ ଯେ ଦେବୀଗଣ ଥିଲେ
ବାସେନକ ସୈନସଙ୍ଗେ ରଣଭୂମି ଗଲେ ।
ମଦ ମାଂସ ଭକ୍ଷଣ ଯେ କଲେକ ଦୈତ୍ୟ
କୁମ୍ଭକର୍ଣ୍ଣ ସହିତରେ ଖାଇଲେ ସମସ୍ତ ।

କପିପଲ ଗୁଡ଼ ସେ ଯେ ଅସୁରବଳ ଭକ୍ଷି
କଳକଳା ରବଦେଇ ଅଇଲେ ଲେଉଟି ।
ଆସିଣ ଯେ ଯୋଗିନୀଗଣ ସୁବଳସ୍ଥାରେ ରହେ
ସ୍ୱର୍ଗରୁ ସେ ଶୁକ୍ରମନ୍ତ୍ରୀ ରଣଭୂମିରେ ହୋଏ
ଅମୃତ ସିଞ୍ଚଣ ଋକ୍ଷକପି ଜୀଆଇଲେ
ଉଠି କରି କପିପଲ ସୁବଳସ୍ଥା ଗଲେ ।
କପିପଲ ଯିବାରୁ ଶୁକ୍ର ଦେବ ଯାଏ
ସ୍ୱର୍ଗରେ ମିଳନ୍ତେ ରାତ୍ର ପ୍ରହରେକ ହୋଏ ।
ସେଠାରୁ ଗୋ ଶାକମ୍ବରୀ ଶୁଣିମା ବଚନ
ପିତାବୋଲେ ଇନ୍ଦ୍ରଜିତ ସଜହେଲା ପୁଣ ।
ତେତେବେଳେ ହୋଇଲଣି କଣବାଡ଼ି ରାତି
ଯୁଦ୍ଧକୁ ବାହାରିଲା ସେ ଦଶବାର ନାତି ।
ଓଳଗ ମେଲାଇଣ ଚଳିଲା କୁମର
ନିକୁମ୍ଭିଳା ବଟତଳେ ମିଳିଲା ନିଶାଚର ।
ବୃକ୍ଷର ମୂଳରେ ଯେ ଅଛି ହୋମଗାତ
ଅଗ୍ନି ଜଗି ରହିଛନ୍ତି ବ୍ରାହ୍ମଣ ଯେ ଶତ ।
ଆପଣେ ମେଘନାଦ ମିଳିଲାକ ଯାଇ
ବ୍ୟାଘ୍ରଚରେ ବସିଲା ସେ ଶୁଚିବନ୍ତ ହୋଇ ।
କଳାଛେଳି ରୁଧିରେ ଆହୁତି ସମର୍ପିଲା
ପୂର୍ବେ ଯେଉଁ ମତେ ତାକୁ ବିଧାତା କହିଥିଲା
ସେହୁ ମନ୍ତ୍ର ବିଧିରେ ସେ ପୂଜେ ହୁତାଶନ
ତହୁଁ ଜାତ ହେଲା ଦେବଦର୍ନ ନାମେଯାନ
ଅକ୍ଷୟ ତୋଣ ଦିବ୍ୟଅସ୍ତ୍ର ଉତପତ୍ତି
ସେ ରଥରେ ଥୋଇଲା ଯେ ଦଶବାର ନାତି
ଦଗଦହନ ଚପଳ ରଥରେ ମଣ୍ଡିଲା
ଯେଉଁ ରିପୁମାନଙ୍କର ଗରବ ଗଞ୍ଜିଲା ।
ଅକ୍ଷୟ ତୋଣ ବିଜୟାଧନୁ ନାରାଚ ଶରାସନ
କନ୍ଧତଟେ ଶୋଭାଇ ଅକ୍ଷୟ ବେନି ତୋଣ
ବୀରବେଶ ହୋଇଁ ସେ ବହୁ ପ୍ରତିଜ୍ଞା କରି
ରଥବର ଚଢ଼ିଲା ଯେ ଇନ୍ଦ୍ରର ଅରି ।
ରଥ ଗଜ ଅଶ୍ୱ ଯେ ପଦାତି ଲେଖାନାହିଁ
ଦେବେ ଭୟକଲେ ଯେ ସ୍ୱର୍ଗପୁରେ ଥାଇ ।
ଚଳନ୍ତେ ମେଦିନୀ ଯେ କମ୍ପେ ପାତାଳରେ
ମଙ୍ଗଳ ଆରମ୍ଭ ଯେ ସବୁଙ୍କର ଘରେ ।
ଘଣ୍ଟେ କଏବାର ଯେ ବ୍ରାହ୍ମଣେ ବେଦପଢ଼ି
ଭାଧରେଣ୍ଡୁ ଉଡ଼ନ୍ତେ ସେ ଗଗନ ଢାଙ୍କି ।

ଅଲମ୍ବ ପାଟଛଳ ବଲମ୍ବ ପନ୍ତ ପନ୍ତ
ବଢ଼ଧ ଜଳରେ ସେ ବାଜଣା ବଜାନ୍ତ ।
ନଗର ନରନାରୀ ଡାକନ୍ତ ଯଶ ହୋଇ
ଶ୍ରୀରାମ ଲକ୍ଷ୍ମଣ ଋକ୍ଷକପି କ୍ଷୟ ଯାଇ ।
କୁମ୍ଭକର୍ଣ୍ଣ ଶତ୍ରୁକୁ ଆସରେ ଅଜ ନାଶି
ରଣଜୟ କରଣ ଲଙ୍କାରେ ଦୁଅସି ।
ଏସନେକ ବୋଲଣ କଲ୍ୟାଣ ବାଞ୍ଛାକଲେ
ପଶ୍ଚିମ ଦ୍ୱାରବାଟେ ବାହାରହୋଇଗଲେ ।
ସୂର୍ଯ୍ୟ ଉଦୟ ବେଳେ କଲେ ଯାଇ ଠଣା
ରଣଜୟ ହେବ ବୋଲି ବଜାନ୍ତ ବାଜଣା ।
ଶ୍ରୀରାମ ଯେ ସୁବଳୟା ଗିରିରେ ରହିଥିଲେ
ନଦ୍ଧାରୁ ଉଠିଣ ନିତ୍ୟକର୍ମ ଯେ ସାରିଲେ ।
ବଳରାମ ଦାସ ଶ୍ରୀରାମ ଚରଣେ ଶରଣ
ପ୍ରଥମ ଖଣ୍ଡ ଏଠାରେ ହୋଇଲା ସମ୍ପୂର୍ଣ୍ଣ ।
ହର ଗଉରୀ ସମ୍ବାଦ ଲଙ୍କାକାଣ୍ଡ ବାଣୀ
ସାଧୁଜନମାନେ ଯେ ଭରିବେ ଏହା ଶୁଣି ।
ମୂଢ଼ଜନ ମୂର୍ଖ ଯେ ଅଟେ ଦ୍ୱିଜ ପାମର
ଅଜ୍ଞାନେ ଲେଖିଲି ମୁଁ ଦୋଷ ମୋ ନଧର ।

—୦—

ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇବ
ଲେଖନକାରର ଦୋଷ ନ ଧରିବ ।
ଯଥାଽଦର୍ଶ ତଥା ଲେଖନ
ଇତି ଶ୍ରୀ ଦାଣ୍ଡିରାମାୟଣେ ଲଙ୍କାକାଣ୍ଡେ ପ୍ରଥମଖଣ୍ଡେ ସମାପ୍ତଂ

❀ ❀ ❀

# ଦ୍ୱିତୀୟ ଖଣ୍ଡ

## ଶ୍ଳୋକଃ

**ବେଦେ ରାମାୟଣେ ଚୈବ ପୁରାଣେ ଭାରତେ କଥା**
**ଆଦୌ ପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।**

ଏଥୁ ଅନନ୍ତରେ ଯେ ଶୁଣିବା ସାଧୁପ୍ରାଣୀ
ପାର୍ବତୀଙ୍କ ଆଗରେ କହନ୍ତି ଶୂଳପାଣି ।
ଶ୍ରୀରାମ ଯେ ସୁବଳୟା ଗିରିରେ ରହିଥିଲେ
ନଦ୍ଧାରୁ ଉଠିଣ ନିତ୍ୟକର୍ମ ଯେ ସାରିଲେ ।
ଏସନକ ବେଳରେ ଯେ ଶୁଭିଲା ନିଶାଣ
ଶୁଣିଲେ ଆଗୁଆଣି ଥାଟଯାଗ ପୁଣ ।
ଇନ୍ଦ୍ରଜିତ ଆସିଅଛି କହନ୍ତି ବୃରଗଣ
ବାରତା ପାଇ ଶ୍ରୀରାମ ଧନୁରେ ଦେଲେ ଗୁଣ
ଲକ୍ଷ୍ମଣକୁ ଧରିଣ ଧାଇଁଲେ ଅନ୍ତଖରେ
ବିଭୀଷଣ ସୁଗ୍ରୀବର ଅଛନ୍ତି ସଙ୍ଗରେ ।
ତାହାଙ୍କ ଆଗରେ ଯେ ଅଛି ହନୁମନ୍ତ
ଶ୍ରୀରାମଙ୍କ ବାମପାଶେ ଅଛି ତାର ସୁତ ।
ଡାହାଣେ ଜାମ୍ବେବ କେଶରୀ ଦ୍ୱିବିଦ
ପଛରେ ଶତବାଳି ମହେନ୍ଦ୍ର କାମୋଦ ।
ପବନ ଶରସେନ୍ତୁ ଯେ ଧାରସ ପାରସ
ଗନ୍ଧମାଦନ ଯେ ବଜ୍ରଦେ ସୁଜସ ।
ଧର୍ମାତ ବବଧ ଯେ ସଞ୍ଜର ଶତବଳ
ଦଧିମୁଖ ବଳିମୁଖ କଞ୍ଚଣ ପନସିଲ ।
କାଳମୁଖ କୁମୁଦ ଚନ୍ଦନ କାଳଞ୍ଜନ
ନଳନୀଳ ଗବାକ୍ଷ ଋମଣ କାମୋଦନ ।
ସୈନ୍ୟ ଯେ ଅପ୍ରମିତ କଳନା ନ ଯାଇ
କ ଅବା ସୈନ୍ୟରେ ମେଦିନୀ ଯାକ ଘୁଇ ।
ଚତୁଶିଳ ଘେନିଣ ସଭିଏଁ ବଳବନ୍ତା
ରଣରେ ମରିବାକୁ ଯେ ନକରେ କେହି ଚିନ୍ତା ।
ଏକକୁ ଆରକେ ଯେ ଆଗହୋଇ ଯାନ୍ତି
ପଛେ ସେ ଆପଣେ ଧାଇଁଲେ ରଘୁପତି ।
ଆଗୁଆଣି ଦଣ୍ଡରେ ଥିଲା ଯେ ବୀର ମାଳ
ତାହାକୁ ପିଠିପଟ ହେଲେ ଯାଇ ଦଳ ।

ପାଦାନ୍ତ ସୈନ୍ୟ ସଙ୍ଗରେ ଯାଇଁ ଯୁଦ୍ଧକଲେ
ଶାଳଶିଳ ଧରିଣ ଦୈତ୍ୟଙ୍କୁ ମାଇଲେ ।
ଆଗଭର ହୋଇଣ ଅସୁରବର ଯୁଝି
କଦଳୀ ବନ ଯେହ୍ନେ ବାତଘାତେ ଭାଜି ।
ତେସନକ ଯାଇଣ ପଡ଼ିଲେ ଦୁଇଦଳ
କାହାର ଶିରରୁ ବହେ ରୁଧିର ଖଳ ଖଳ ।
ଋକ୍ଷକପି ଦଳ ଯେ ତରୁ ଶିଳ ମାରି
ଅସୁରେ ଯେ ଶସ୍ତ୍ର ଘେନଣ ପ୍ରହାରି ।
କୋପରେ ଦୁଇଦଳ ହେଲେ ମିଶାମିଶି
ସାଧୁ ସାଧୁ ବୋଲଣ ସ୍ୱର୍ଗରେ ପ୍ରଶଂସି ।
ଅସୁରେ ମାରୁଛନ୍ତି କାଣ୍ଡ ଖଣ୍ଡା ଧରି
କେହୁ କରବାଳ ଉଞ୍ଚାଇ ହାଦେ ମାରି ।
କେହୁ ଶୂଳ ଧରିଣ ମାରେ ପୁଣ ପୁଣି
ପରଘର ଘାଆରେ କେହୁ ଲୋଟନ୍ତି ଧରଣୀ ।
ରହିଣ ସମର ଯେ କରନ୍ତି ଦୁଇଦଳ
ଶକତି ବାଜି ଫୁଟେ କାହାର ବକ୍ଷସ୍ଥଳ ।
କାହାର ହୃଦୟରେ ଖଣ୍ଡାଶର ଫୁଟି
ଗୁରୁଜବାଜି କାହାର ମୃଧୁନା ଗଲା ଫାଟି ।
କେ କାହାକୁ ଖୁନ୍ଦାମାରେ ଯେ କାହାକୁ ବିଧା
କେ କାହାକୁ ଲାତ ମାରିଣ କରେ ପଦା ।
ନଢ଼ଂସୁ ମାରୁଣି ଯେ ଉପ୍ରୋଧ ତହିଁ ନାହିଁ
ଋକ୍ଷକପିମାନେ ଯୁଦ୍ଧ କରୁଛନ୍ତି ରହି ।
ବୃକ୍ଷମାନେ ପିଠିରେ କଟନ୍ତି ତୋଟି
ଦୈତ୍ୟଙ୍କର ସହସ୍ର ଘେନ ଦଇତକୁ ପିଟି ।
କାହାକୁ ପଥର ଯେ ମାରନ୍ତି ବୁଲାଇ
ପ୍ରାଣଛାଡ଼ି ଦୈତ୍ୟ ଭୂମିରେ ପଡ଼େ ଯାଇ ।
କପିଏ ଘୋଡ଼ା ଚଢ଼ିଣ କମାଯୁଣ ମାରି
ଅସୁରଙ୍କ ଉପରେ ବହନ୍ତି ଖାର ଧରି ।
ଦଶହଂଶ ବାନରେ ଯେ ହସ୍ତୀରେ ଉଠନ୍ତି
ମାହୁନ୍ତ ମାନଙ୍କୁ ଯେ ତଳକୁ ପକାନ୍ତି ।
କଳକଳା ରବଦେଇ ଉପରେ ଯାଇ ଉଠି
ନାନା ଶସ୍ତ୍ରମାନ ଭାଙ୍ଗନ୍ତି ଯାଇ ଲୋଟି ।
କେବଣ ଗଜର ଉପରେ ପାଞ୍ଚସାତ
ବକଳ ହୋଇଣ ଯେ ପଳାନ୍ତି ମଯୂମତ ।
ହସ୍ତୀଙ୍କର ମସ୍ତେ ସେ ଦନ୍ତରେ ଉକୁଟାଇ
ଲଲଟରି ଆପଣାର ଘଷନ୍ତି ସେହୁ ନେଇ ।

ଅଙ୍କୁଶରେ କେହୁ ଯେ ଗଜମୁଣ୍ଡ ହାଣି
ଗର୍ଜିଣ ମାତଙ୍ଗ ଯେ ଧାମନ୍ତି ଏଣେତେଣି ।
ଘାଗୁଡ଼ି ଶିଙ୍କୁଳ ମାନ ସବୁ ସଜ ହୋଇ
ବୁଲନ୍ତି ମତ୍ତଗଜ କୁଦା କୁଦା ହୋଇ ।
ଶ୍ରୀରାମର ସୈନ୍ୟ ଯେ ଏକମୁଖ ହୋଇ
ନାଗଜ ପଶିବାକୁ ଭୟ ତାଙ୍କର ନାହିଁ ।
ଖଣ୍ଡା ଯେ ଶାବେଳ ହାଲକ ନ ଜରନ୍ତି
ଶତେ ଶତେ ହୋଇ କପି ରଥରେ ଉଠନ୍ତି
ମଣ୍ଡିଣି ବସ ଯେହ୍ନେ ତାର ପାଟମାନ
କେହୁପିନ୍ଧି ମୁଣ୍ଡରେ କେହୁ ପିନ୍ଧିଇନେଇପୁଣ
ଶାଢ଼ୀ ପାଇ ଅଇଲର ପ୍ରାୟେକ ହସନ୍ତି
ଗରୁ ହେବାରେ ରଥ ଚଳି ନ ପାରନ୍ତି ।
ରଥୀଙ୍କର ବାଳ ଧରି କପି ଯାଇ ବସେ
ଢ଼ଢ଼ଧ ମାଡ଼ମାରନ୍ତି ସେହୁ ଅତି ରୋଷେ ।
ବୃକ୍ଷ ବଦାରିଣ କାହାର ଅନ୍ତ କାଡି
ପ୍ରାଣଯାନ୍ତେ ବଇର୍ଯ୍ୟ ଯୁଡ଼ନ୍ତି ସିଂହ ରଡ଼ି ।
ପାଞ୍ଚସାତ ମିଳଣ ଦୈତ୍ୟକୁ ବେଢ଼ନ୍ତି
ତାହାଙ୍କ ଖଣ୍ଡା ଘେନି ତାହାଙ୍କୁ ମାରନ୍ତି ।
ସାରଥିମାନଙ୍କୁ ଯେ ବାଳଧରି ନ୍ୟନ୍ତି
ତଳରେ ପକାଇଣ ବକୋଡ ମାରନ୍ତି ।
ତାହାଙ୍କର ମାରନ୍ତେ କପ ଏ ନୋହେ କଛି
ନଶନ୍ତି ହ ଚପକାଇ କେହୁ ଯେ ହସୁଛି ।
ଦୁଇଦଳ ସଂଗ୍ରାମ ଦେବଙ୍କୁ ଦୁର୍ଲ୍ଲଭ
ଗର୍ଜନରେ ରାମଭାଳ ଶୁଭଇ ସୁଲଭ ।
ମାରି ମାରି ଶବଦରେ ଗଗନପଥ ପୂରି
ଦୁଇଦଳ ବାଦ୍ୟରେ କମ୍ପଇ ବସୁନ୍ଧରୀ ।
ପାଦଘାତେ ମେଦିନୀ ଡ଼ଳ ଡ଼ଳ ହୋଏ
ମୃତ୍ୟୁପିଣ୍ଡ ମାନ ପଡ଼ି ଭୂମିରେ ଗଡ଼ଯାଏ ।
ନଳନୀଳ ଅଙ୍ଗଦ ସୁଷେଣ ହନୁମନ୍ତ
ହସ୍ତୀ ରଥୀ ଘୋଡ଼ା ସେ ମାଇଲେ ବହୁତ ।
ଯଉରି ସେନାପତି ଅନେକ ଯୁଦ୍ଧକଲେ
କଶାଘାତେ ରଥ ସେ ଭାଙ୍ଗି ପକାଇଲେ ।
ତାହାସର ରଣ ଯେ ଅତି ଅଗୋଚର
ଶ୍ରୀରାମ ମାଇଲେ ଯେ ଅନେକ ନିଶାଚର ।
ଲକ୍ଷ୍ମଣ ସଂହାରିଲେ ଅନେକ ଦଇତ
ହନୁମନ୍ତ ମାରୁଣିକ ସାକ୍ଷୀ ଦେବଲୋକ ।

ଅଙ୍ଗଦର ଘୁମୁରେ ପଡ଼ିଲେ ନ ବର୍ତ୍ତିନ୍ତି
ଗନ୍ଧମାଦନ ଯେ ରାକ୍ଷସବଳ ସନ୍ଧି ।
ଦଧିମୁଖ ଅନେକ ରଣଗୋଳ କଲା
ଏକା ଏ ଦଶସହସ୍ର ମାହୁନ୍ତ ମାଇଲା ।
ଏଣେତେଣେ ଢେଙ୍କିଁ ସେ ବାଳଧରି ନେଇ
ମୁଣ୍ଡମାନ ମୋଡ଼ିଣ ତଳକୁ ପକାଇ ।
ଡାଳଜମ୍ବ ମାଇଲା କୋଟିଏ ସୁଆର
ପବନର କଥା ସେ ଅତି ଅଗୋଚର ।
ଲଙ୍ଗୁଡ଼ରେ ଗୁଡ଼ାଇ ରଥରେ କଚାଡ଼ଇ
ତରଣ୍ଡି ସୈନ୍ୟବଳ ବକୋଟି ମାରଇ ।
ତିନଖର୍ବ ପାଦାନ୍ତ ପକାଇଲା ଦନ୍ତି
ସୈନ୍ୟମାନେ ପଳାଇଲେ ନ ପାରିଲେ ସନ୍ତି
ସୁଗ୍ରୀବର ରଣରେ ଧନ୍ଦଳ ଗୋଳ କଲା
ଦୁଇଲକ୍ଷ ହସ୍ତୀ ସେ ମାରି ପକାଇଲା ।
ଏକର ଉପରେ ଆରେକ ନେଇ ପିଟି
ଏକାବେଳେ ଦୁଇ ଗଜ ପଡ଼ି ମଲେ ଲୋଟି ।
ସାରସ ମାଇଲା ସେ ଅଯୁତେ ହୟବର
ସହସ୍ରେ ଅସୁର ପାଞ୍ଚସହସ୍ର କରିବର ।
ଜମ୍ବୁବର ମହିମା କଳନା ନ ଯାଇ
ସଙ୍ଗରେ ଅଛି ତାର ଧୂମ୍ରାକ୍ଷ ନାମେ ଭାଇ ।
ସୁଲକ୍ଷି ସହସ୍ର ସେ ମାଇଲା ମତ୍ତହସ୍ତୀ
ଋକ୍ଷ ଦୁଇଭାଇ ଯେ ଅସୁରବଳ ମନ୍ଥି ।
ସୁଷେଣର କଥା ଯେ କହିଲେ ନ ସରି
କୋଟି ପାଦାନ୍ତ ସେ ପକାଇଲା ମାରି ।
ବିଭୀଷଣ ମାଇଲା ଚଉଦ କୋଟି ରଥୀ
ଦଶସହସ୍ର ଅସୁର ତେରସହସ୍ର ହସ୍ତୀ ।
ଆବର ଦୁଇବୃନ୍ଦ ମାଇଲା ଅଶ୍ୱଆର
ଉପ୍ରୋଧ ଯୁଦ୍ଧ ଯେ ନୁହଇ ଦୁଇକୁଳ ।
କାଞ୍ଚଣ ପାଦାନ୍ତ ଲକ୍ଷେକ ନାଶକଲା
ଏକଭଳି ଲୋକ ସେ ଅନେକ ମାଇଲା ।
ନଳସଂହାରିଲା ନଅସହସ୍ର ହାଥୀ
ନୀଳର ହାତେ ମଲେ ଚଉଦସହସ୍ର ରଥୀ ।
ଏହି ପ୍ରମାଣରେ ଅନେକ ନାଶଗଲେ
ଦୁଇକଟକୁ ସୈନ୍ୟ ଅନେକ ପଡ଼ିଲେ ।
ଋକ୍ଷ କପି ରାକ୍ଷସ ବହୁତ ହସ୍ତୀ ଘୋଡ଼ା
ରୁଧିର ନଈରେ ଯେ ଭାସନ୍ତି ହସ୍ତୀ ଘୋଡ଼ା ।

କୋଟି କବନ୍ଧ ନାଟଣ କଲେ ଲୀଳା
ରକତ ନଦୀରେ ଭାସୁଛନ୍ତି ଭେଳା ।
ସାତତାଳ ପଡ଼ି ଓସାର ନଇହାତ
ସମୁଦ୍ରରେ ରକ୍ତପାଇ ହୋଇଲା ମିଶ୍ରିତ ।
ଇନ୍ଦ୍ରଜିତକୁ ଭେଟିଲେ ଅଙ୍ଗଦ ହନୁମନ୍ତ
ନଳନୀଳ ସୁଷେଣ ଜମ୍ବେବ କପନ୍ତ ।
ଅଷ୍ଟସେନା ଆଗୋଳିଲେ ମିଳି ବୃକ୍ଷ ଧରି
ଏକକୁ ଆରେକ ମାରନ୍ତି ଯେତଉଡ ।
ଏକାବେଳକେ ସେ ପିଟିଲେ ସାତବୃକ୍ଷ
ନାରଚେ ନିବାରେ ତା ରାବଣିର ବକ୍ଷ ।
ପୁଣି ଅଷ୍ଟସେନା ମାରନ୍ତେ ନେଇ ଶିଳା
ହେଲେ ନିବାରିଲା ତାହା ଦୈତ୍ୟ ଅର୍ଗଳା ।
ମାୟାଯୁଦ୍ଧ କରଣ ଅନ୍ଧକାର କଲା
ଖଡ଼ଗଖଡ଼ି ମାରଣ ପଥର ବରଷିଲା ।
ଚଉବଂଶ କୋଟି ବାନର ମୋହଗଲେ
ଦେଖି ରଘୁନାଥ ଚମତ୍କାର ହେଲେ ।
ଶ୍ରୀରାମଙ୍କୁ ପଛକରି ଧାଇଁଲେ ସଉମିତ୍ରି
ସମରେ ଭେଟ ଯେ ହୋଇଲେ ଦୁଇକ୍ଷତ୍ରୀ ।
କୋପରେ ଇନ୍ଦ୍ରଜିତ ପାଞ୍ଚବାଣ ମାରି
ଲକ୍ଷ୍ମଣ ଛେଦିଲେ ତାହା ଗୁପ୍ତଶର କରି ।
ସଉର ନାରାଚେ ଯେ ପେଷିଲା ଇନ୍ଦ୍ରଜିତ
ହେଲେ ନିବାରିଲା ତାହା ଶ୍ରୀରାମର ଭ୍ରାତ ।
ସହସ୍ରେକ ନାରାଚ ଛାଡ଼ିଲା ରାବଣି
ପ୍ରତିଅସ୍ତ୍ର କରଣ ଲକ୍ଷ୍ମଣ ତାହା ହାଣି ।
ଲକ୍ଷେ ନାରାଚ ଯେ ଇନ୍ଦ୍ରଜିତ ପେଷି
କଙ୍କପତ୍ରବାଣେ ଲକ୍ଷ୍ମଣ ପକାଇଲେ ନାଶି ।
ବେଳୁବେଳ ସମର ହେଲା ମହାଘୋର
ଦୁଇକ୍ଷତ୍ରି ଅଟନ୍ତି ସମରେ ଅନର୍ଗଳ ।
ଏକକୁ ଆରକେ ଯେ ହାଣିଣ ଛାଡ଼ନ୍ତି
କୁହୁଡ଼ି ପଡ଼ିବା ପ୍ରାୟେ ଶର ବରଷନ୍ତି ।
ଦଶଲକ୍ଷ ନାରାଚ ଛାଡ଼ିଲେ ରୋଷବନ୍ତ
ସ୍ୱର୍ଗମର୍ତ୍ତ୍ୟ ପାତାଳ ହେଲା ପୂର୍ଣ ପୁଣ ।
ଦିଗ ନ ଦିଶଇ ସୁଖାନ୍ତବ ସନ୍ଧ୍ୟାକାଳ
ଅସ୍ତଗିରିକି ଚଳିଲେ କଶ୍ୟପର ବାଳ ।
ରାତି ଘଡ଼ିଏ ହେଲା ସମର ମହାଘୋର
ରୁଧିରେ ବିଲେପନ ହେଲେ ଦୁଇବୀର ।

ଦୁର୍ଜ୍ଜଙ୍କର ଶରୀରେ ରକ୍ତଲୁଣୀ ପ୍ରାୟେ ଜଳା
ଘାଏଣ ନରକନ୍ତ ରାବଣର ବଳା
ଲକ୍ଷ୍ମଣ ବୋଇଲେ ଯେ ଶୁଣ ଇନ୍ଦ୍ରଜିତ
କେତେ ତୁ ସଂଗ୍ରାମରେ ବୋଲାଉ ବଳବନ୍ତ
ଏବେ ତୁ ନସତରେ ହେଉଛୁ କାହିଁପାଇଁ
ବାହୁଡ଼ ବାପକୁ ତୁ ରେ ଦେଖିବୁ କି ଯାଇଁ ।
ଏତେକହି ବେଗରେ ଶତେବାଣ ମାରି
ଇନ୍ଦ୍ରଜିତର ଦେହକୁ ପକାଏ ବିଦାରି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବନ୍ତ
ଲକ୍ଷ୍ମଣ ଇନ୍ଦ୍ରଜିତ ଦୁହେଁ କୋପମୂର୍ତ୍ତି ।
ଆଖି ନ ପିଛୁଳୁ ପଡ଼େ ଆସି ଲକ୍ଷେ କାଣ୍ଡ
ମେଘନାଦ ଶରୀର ହେଲା ଖଣ୍ଡ ଖଣ୍ଡ ।
କୋପରେ ଦୈତ୍ୟ ପୁଣି ମାରେ ବ୍ରହ୍ମଶର
ଦେଖିଣ ପଳାଇଣ ବିଭୀଷଣ ବୀର ।
କେଶକୁ ମୁକୁଳା କରି ଛାଡ଼ିଲା ଧନୁଶର
ଯାଇଣ ଲୁଚିଲା ସୁବଳଯୁଆର ଉପର ।
ଦେବତାଏ ଆକୁଳ ହୋଇଲେ ସ୍ୱର୍ଗପୁରେ
ଶ୍ରୀରାମ ଲକ୍ଷ୍ମଣ ଯେ ପଡ଼ିବେ ବ୍ରହ୍ମଶରେ ।
ଜାଣିଣ ବେଦପତି ପବନେ ବେଗେ ପେଷି
ଅହିକୁ ମୁକ୍ତ କରନ୍ତୁ ଶ୍ରୀରାମ କହସି ।
ଶୁଣିକରି ମରୁତ ଅଇଲା ତଡ଼ିତ
କହିଲା ଶ୍ରୀରାମଙ୍କ ଦକ୍ଷିଣ କର୍ଣ୍ଣ କତି ।
ଶୁଣିଲେ ଶ୍ରୀରାମ ଲକ୍ଷ୍ମଣେ ବେନଭାଇ
ହନୁମନ୍ତ ଶୁଣିଲା ଶ୍ରୀରାମ ପାଶେ ଥାଇ ।
ଇନ୍ଦ୍ରଜିତ ବ୍ରହ୍ମଶର ପେଶିଲାର ବେଳେ
ତିନିଜଣଯାକ ସ୍ତୁତି କଲେ ଏକାବେଳେ ।
ହେ ବ୍ରହ୍ମଶର ତୁମ୍ଭେ ପିତାମହ ତେଜ
ଆମ୍ଭଙ୍କୁ ରକ୍ଷାକର ଏବେ ତୁମ୍ଭେ ଆଜ ।
ମୁହିଁ ଅନମିତ୍ତରେ ନ କରୁଅଛୁ ରଣ
ମୋହର ଭାରିଯା ହରି ଆଣିଛି ରାବଣ ।
ମାଗି ମୁଁ ଅଇଲାରୁ ପେଶୁଅଛି ତୋତେ
ବରୁଣ ଅନୁଗ୍ରହ କରସି ହେ ମୋତେ ।
ମୁହିଁତ ନାରାୟଣ ମାନବେ ଅବତାରି
ଉଶ୍ୱାସ ନୋହିବ ମସ୍ତ ନମାଇଲେ ନିଶାଚର
ତୁହି ଯେ ବ୍ରହ୍ମଶର ନ ଜାଣୁ କି ମୋତେ
ମୋହର ଶରୀରୁ ଜାତ ହୋଇଅଛୁ ତୋତେ ।

ଅନନ୍ତ କୋଟି ବ୍ରହ୍ମାଣ୍ଡେ ମୁହିଁ ଅଧିପତି
ରାବଣ ହରି ଆଣିଛି ମୋହର ଯୁବତୀ ।
ବଜ୍ରକରି ବଜ୍ର ଯେ ମୁଁ ବ୍ରହ୍ମ ବୋଲାଇ
ତୋହର ନାମ ବ୍ରହ୍ମ ଅସ୍ତ୍ର ମୁଁ ଦେଲଇଁ ।
ଏମନ୍ତେ ଦୁଇଭାଇ କଲେକ ସେ ସ୍ତୁତି
ସାନଧ୍ୟରେ ଥାଇଣ ଶୁଣଇ ମାରୁତି ।
ହନୁମନ୍ତ ବିଚାରଇ ଶ୍ରୀରାମ ନାରାୟଣ
ଅନନ୍ତ ପୁରୁଷୋତ୍ତମ ଅଟନ୍ତି ଲକ୍ଷ୍ମଣ ।
ମୋତେ କମ୍ପା ଏଥେ ଯେ ହୋଇବ ମରଣ
ମୁହିଁ ଏହାଙ୍କର ପାଦେ ପଶିଛି ଶରଣ ।
ଏସନକ ଭାକ୍ତ ଯେ ଇନ୍ଦ୍ରଜିତ ବୀର
ମନ୍ତ୍ରପଢି ବେଗେ ଯେ ପେଶେ ବ୍ରହ୍ମଶର ।
ଶ୍ରୀରାମ ଲକ୍ଷ୍ମଣଙ୍କ ଉପରେ ଶର ପଡ଼ି
ଅଜ୍ଞାନରେ ବେନଜନ ଧନୁଶର ଛାଡ଼ି ।
ହନୁମନ୍ତ ସହିତେ ଚଳଲେ ତିନଜଣ
ସୁଗ୍ରୀବର ଜାମ୍ବବ ତାରକ୍ଷ ସୁଷେଣ ।
ନଳ ନୀଳ ଗନ୍ଧମାଦନ ମୋହଗଲେ
କୁମୁଦ ମହେନ୍ଦ୍ର ସେ ଦୁର୍ମଦ ପଡ଼ିଲେ ।
ଦଧିମୁଖ ବଳମୁଖ ଢାଳମ୍ବ ସେ ଢାଳନ୍ତି
ମେଘନାଦ ଶରରେ ମୋହେଣ ପଡ଼ନ୍ତି ।
କାଳଞ୍ଜନ କଞ୍ଚନ ବିବଧ ସତଦଳ
କାଳମୁଖ କେଶରୀ ବାଳୀର ଦୁଲାଳ ।
ତପନ ସୁଯୋଧନ ତାରାର ପିତା ଜନ
ସୁଗ୍ରୀବର ଶଶୁର ଆବର ଶତବାଳୀ ।
ବସନ୍ତ ପବନ ସମ୍ପାତି ଦୁଏ ତିନ
ଅଚେତନ ହୋଇ ପଡ଼ିଲେ ମେଦିନୀ ।
ଗୋଲାଙ୍ଗୁଳା ବଳ ଯେ ହୋଇଲେ ଖଣ୍ଡଖଣ୍ଡ
ଇନ୍ଦ୍ରଜିତ ପେଶିଲା ଅକାଳ କାଳ କାଣ୍ଡ ।
କାଳମୁଖ କପି ଯେ ନିରନ୍ତରେ ପଡ଼େ
ସତୁରି କୋଟି ଭାଲୁ ବାଗିଲେ ଯମଦାଢ଼େ ।
ଖଡ଼ଗରେ କାଟିଲା ଅନେକ ରକ୍ଷ କପି
ଶୂଳଘାତେ ପାଞ୍ଚଶର ମସ୍ତରେ ପଡ଼ନ୍ତି ।
ତଣ୍ଡମାରି ଛିଣ୍ଡାଇଲେ କୁମ୍ଭେକ ଯେ ସାତ
ପରିଘରେ ମାଇଲା ସହସ୍ରେ ଅକ୍ଷୁହିତ ।
କୋପରେ ମୁଦ୍ଗର କୋପରେ ମାଇଲା
ଅଷ୍ଟାଦଶ ପଦ୍ମ ବାନର ତେଣେ ମଲା ।

ଗଦାରେ ମାଇଲା ଷାଠିଏ କୋଟି ତ
ବଜ୍ରରେ ମାରେ କପି ପଞ୍ଚାଶ ସମୂତ ।
ତୀକ୍ଷ୍ଣ ନାରାଚରେ ଅନେକ ଗଲୁ ସେନାଶିଳା
ତିନ କୋଟି ଗୋଲଙ୍ଗୁଳା କ୍ଷଣକେ ମାଇଲା
ହର ନାମ ଋଷି ଯେ ମାଇଲା କୋପକରି
ସିନ୍ଦୂର ବର୍ଣ୍ଣ କପି ପଡ଼ିଲେ ସସ୍ତ୍ରୁବି ।
କାହାକୁ ଦୁଇଶର କାହାକୁ ପାଞ୍ଚଶର
ତିନବାଣ ବାଜିଲା କାହାର ବକ୍ଷର ।
କାହାକୁ ସାତ ଯେ କାହାକୁ ଦଶ ମାରି
କୋଡ଼ିଏ ନାରାଚ ଯେ କାହାକୁ ପ୍ରହାରି ।
କାହାକୁ ପଚଶ ଯେ କାହାକୁ ତିରିଶ
କ୍ରୋଧଭରେ ଛନ୍ଦଇ ସେ ରାବଣର ଶିଷ୍ୟ ।
ଗୁଣ ନାଦ ଶବଦ ଘଡ଼ଘଡ଼ି ଜାଣି
ଘଡ଼ିକରେ ଶ୍ରୀରାମର ସୈନ୍ୟ ପକାଇଲା ହାଣି
କେତୁ ଘାଇଆ ହୋଇ ଥୋକେ ଦୂର ଯାନ୍ତି
ଖାଇଁ ମାରିଣ କେତୁ ଅଜ୍ଞାନ ହୁଅନ୍ତି ।
କେତୁ ଏକଠାବରୁ ନ ପାରେ ଚଳି ଘାଏ
କେତୁ ଆଣ୍ଠୁଭରା ଦେଇ ବୁକୁରେ କୋଡ଼ହୁଏ
କେତୁ ଯାଉ ଯାଉ ଯେ ପଡ଼େ ମୁଖ ମାଡ଼ି
କେତୁ ଯେ ଢକଳରେ ଝଏ ସିଂହରଡି ।
କେ ବୋଲଇ ମୋତେ ରେ ରଖିକନା ଭାଇ
କେ ବୋଲଇ ମଲରେ ମୁଁ ଗୀଇବତ ନାହିଁ ।
କେ ବୋଲଇ ମାଆଲେ କେ ବୋଲଇ ବାବୁ
ଏକାଣ୍ଡ ଘୁଡ଼ ଆମ୍ଭେ ସନ୍ଧପାରୁ ସବୁ ।
କେ ବୋଲଇ ପ୍ରାଣ ଯେ କଣ୍ଠା ଅଛି ରହି
ଏ ପରମ ସୁଖ ସେ ପରମ କଷ୍ଟ ସହି ।
କେତୁ ବଦନେ ରକ୍ତ ସେ ପକାନ୍ତି ଉଦ୍‌ଗାରି
କେତୁ ନିଜ କରକୁ କପାଳରେ ମାରି ।
କେତୁ ଢକଳରେ ବିଧାତା ସୁମରି
ଆଣ ଆଣ ବୋଲି ସେ ଢକଳେ ନାମଧରି ।
କାଣ୍ଡକୁ କାଢ଼ନ୍ତେ ଯେ ଭଙ୍ଗିରହେ ଫାଳ
ମଲି ମଲି ବୋଲି କେତୁ ଅତ୍ୟନ୍ତ ଢକଳ ।
କେ ବୋଲେ ସାମରରେ ମାଇଲୁ ଇନ୍ଦ୍ରଜିତ
ଏତେ ସୈନ୍ୟ ଗୋଟାରେ କଲୁ ତୁ ନିପାତ
ଅବଶ୍ୟ ମରିବୁ ରେ ଏତେକଷ୍ଟ ଦେଲୁ
କରିତାବାସୁଦେବଙ୍କରେଦୋରେହାହୋଇଲୁ

ନସ୍ତୟ ଲକ୍ଷ୍ମଣ ହସ୍ତେ ମରିବୁ ନସ୍ଚିତ
ତିନିଦିନେ ଯାହାକଣ୍ଠକୁ ଦଶଗ୍ରୀବ ସୂତ ।
ବାପଚୋର ମନବେଳେ ଗୋଟିଏ ନ ଥିବ
ସୂର୍ଯ୍ୟନାଥ ସହିତରେ କାହାକୁ ନ ଦେଖିବ ।
ତାହାଶୁଣି ଦୈତ୍ୟବୀର ଝଣ୍ଟଳକ କାଣ୍ଡ
ଗାଇଥିବା ଲୋକଙ୍କୁ ସେ କଲା ଖଣ୍ଡ ଖଣ୍ଡ ।
ଅନେକ ନାରାଚ ଯେ ଝଣ୍ଟଳକ କପି
ନିଶବଦ ହୋଇଣ ପଡ଼ନ୍ତି ଚହିଁ କପି ।
ଗାବନ୍ତା ହୋଇଣ ଯେ ଜଣେ ଚହିଁରେ ନାହିଁ
ବିଭୀଷଣ ଏକାକେ ଯାଇଛି ପଳାଇ ।
ରାତ୍ର ପ୍ରହରକେ ସକଳ ସୈନ୍ୟ ମାରି
ପୁଣ ବିଚାର କରେ ଇନ୍ଦ୍ରର ଅରି ।
ଶ୍ରୀରାମ ଲକ୍ଷ୍ମଣ ଯେ ସୁଗ୍ରୀବ ବିଭୀଷଣ
ଅଙ୍ଗଦ ହନୁମନ୍ତ ଯେ ଜାମ୍ବବ ସୁଷେଣ ।
ନଳନୀଳ ଗନ୍ଧମାଦନ ସହିତେ
ଉତ୍ତମ ଋକ୍ଷକପି ପଡ଼ିଅଛନ୍ତି ଏଥେ ଯେତେ ।
ଏହାଙ୍କର ମୁଣ୍ଡ ମୁଁ ଯେ ପକାଇବି କାଟି
ପୁଣ ବଞ୍ଚିଣ ଏ ରଣହିଁ କରନ୍ତି ।
ଏବେ ସେ ନ ମାଇଲେ ବଞ୍ଚିବେ ପ୍ରଭାତ
ଏମନ୍ତ ବିଚାରି ମନେ କରେ ଇନ୍ଦ୍ରଜିତ ।
ଚନ୍ଦ୍ର ହାସ ଖଡ଼ଗ ହସ୍ତେ ଅଛି ଧରି
ରଥରୁ ଓହ୍ଲାଇ ବିଷମ ଗତି କରି ।
ସୁମରଣା କରଇ ସେ ଦଇବ ବିଧାତା
ତକ୍ଷଣେ ଉତପତ୍ତି ହୋଇଲେ ବ୍ରହ୍ମମାତା ।
ପିତାମହ ବୋଇଲେ ତୁ ଏହିକ୍ଷଣି ଯିବୁ
ଇନ୍ଦ୍ରଜିତ କଣ୍ଠରେ ଯାଇଣ ବସିବୁ ।
ଯେମନ୍ତେ ରାମ ଲକ୍ଷ୍ମଣଙ୍କୁ ସେ ନ ମାରି
ମାରିବ ବୋଲି ଖଣ୍ଡା ଧରିଛି ଦୃଢ଼କରି ।
ଋକ୍ଷକପିମାନଙ୍କୁ ସେ ଯେମନ୍ତେ ନ ମାରଇ
ଦେବେ ଯେ ଆକୁଳ ହୁଅନ୍ତି ସ୍ୱର୍ଗେ ରହି ।
ଦେବଙ୍କର ଆକୁଳ ଶୁଣିଣ ସରସ୍ୱତୀ
ବୋଇଲେ କମ୍ପାଇ ଢକଳ କରି ମତି ।
ମନେ କଛି ନ ବିଚାର ମୁଁ ଯାଉଛି ପୁଣ
ଲେଉଟି ଯିବ ଏବେ ରାବଣ ନନ୍ଦନ ।
ସରସ୍ୱତୀ ବୋଇଲେ ଶୁଣ ହେ ଦଇବ
ବ୍ରହ୍ମଶରକୁ ସ୍ତୁତି କଲେକ ରାମଦେବ ।

ନ ମାନଲ ବ୍ରହ୍ମଶର ଘୋଷିଲକ ସୈନ୍ୟ
ରାମ ଲକ୍ଷ୍ମଣ ଦୁହିଁଙ୍କି କଲା ସେ ନଉନ ।
ଅଚେତ ହୋଇଣ ଅଛନ୍ତି ଦେବରାଜ
ଯାହାର ପ୍ରସାଦେ ତୁମ୍ଭେ ଭୁଞ୍ଜ ସ୍ୱର୍ଗଭୋଗ ।
ତୁମ୍ଭର ସକାଶେ ସେବେ ଏତେ ଦୁଃଖ ସହି
ଶର ତୋର ନର୍ଦ୍ଦ୍ୟା ଟଯ କଲକ କମ୍ପାଇ ।
ଚେତାହେଲେ ଶ୍ରୀରାମର ତୋରପରେ କ୍ରୋଧ
ଏହିଲଗେ ପେଷିବ ସେ ତାହାର ଆୟୁଧ ।
ନାରାୟଣ ଶର ତୋର ଆଗେ ନୁହେଁ
ନାଶଯିବ ତୋଇ ଶର ବକ୍ସର ହୃଦୟେ ।
ଶୁଣିଣ ବିଧାତା ଯେ ବୃଦ୍ଧମାତାଙ୍କୁ କହି
ଇନ୍ଦ୍ରଜିତ ଯିବାକୁ.କୁ ଯିବୁ ବ୍ୟଗ୍ରହୋଇ ।
କୋଳକୁ ବେଗେ ପଳା କହୁଛନ୍ତି ପିତା
ନଗଲେ ତୁ ଶ୍ରୀରାମରେ ହରାଇବୁ ଚେତା ।
ଏହିଲଗେ ଶ୍ରୀରାମ ଯେ କରିବେ ତୋତେନାଶ
ବିଧାତାର ପୁରେ ଚଳ ନକର ଅଳସ ।
ଜାମ୍ବବର ପାଶେ ଯାଇ କହିବୁ କର୍ଣ୍ଣରେ
ହେମଗିରି ପର୍ବତକୁ ପେଶ ହନୁମାରେ ।
ମହୌଷଧି ହନୁମାର ଆଣିବ ଯାଇ ବେଗି
ଦେବତାଙ୍କ ସମାନେ କର୍ପିବଳ ଯେ ସବର୍ଗି
ପଶ ଗନ୍ଧ ଘେନଲେ ସମସ୍ତେ ହେବେ ଠାଣ
ଏମନ୍ତ ବଚନ ଯେ କହେ ଧାତା ପୁଣ ।
ଏହିକ୍ଷଣି ବୁଦ୍ଧି ଭୁହ ଦେବୁ ଯେ ଏସନ
ଶୁଣିକରି ସରସ୍ୱତୀ ଚଳେ ତତକ୍ଷଣ ।
ଇନ୍ଦ୍ରଜିତ କଣ୍ଠରେ ବଜେକଲେ ଯାଇ
ଦଇତ ବକ୍ତ୍ରରେ ରାମଚନ୍ଦ୍ର ମୁଖରୁହିଁ ।
ମନର ପ୍ରାଣୀତ ଅଟନ୍ତି ବେନଭାଇ
ମୋହର ନାରାଚରେ ସମସ୍ତେ ନାଶଯାଇ ।
ମଲାଲୋକକୁ ମାରିବାର ନୁହେଁ ଯେ କାରଣ
ମୃତ୍ୟୁପିଣ୍ଡ ଛୁଇଁଲେ ହେବ ବିଡ଼ମ୍ବନ ।
ଜଗତରେ ଅପକୀର୍ତ୍ତି ପାଇବଇଁ ମୁହିଁ
ପ୍ରାଣଗଲା ଲୋକକୁ ମାରିବା ନ ଯୋଗାଇ ।
ନ ହୁଇ ବେଭାର ଏ ଯେ ଯତିଙ୍କ ପୁରାଣ
କେଳକ ମାରିଣ ମୁଁ ଅଛଇ ବ୍ରହ୍ମବାଣ ।
ଦେବାଶସ୍ତ୍ର ମାନବଙ୍କୁ କଲି ନ ବିଗ୍ନ
ଆଉତାଙ୍କୁ କେମନ୍ତେ ମୁଁ ମାରିବ ଖଡ୍ଗ ଧରି

ଯେବଣ ଶରେ ମୁରାସୁର ନ ବର୍ତ୍ତିନ୍ତି କାହିଁ
ଆଉନକ ଜୀବନ ଯେ ପାଇବେ ପୁଣ ଏହି ।
ସ୍ୱାନକର୍ମ କ୍ଷତ୍ରୀ ଯେ କଳରେ ସର୍ବକାଳେ
ଇନ୍ଦ୍ରଙ୍କୁ ଜିଣିଲଇଁ ଯେବଣକ ବେଳେ ।
ଧରି ମୁଁ ଆଣିଲି ନକଲି ପ୍ରାଣେ ନାଶ
ହତଆୟୁଧ ହେଲବେଳେମାଇଲେବଡଦୋଷ
ଧନୁଶର ପକାଇ ଏ ହରାଇଛନ୍ତି ପ୍ରାଣ
ପ୍ରଭାତରୁ ଆସିଣ ଦେଖୁ ଲଙ୍କାରାଣ ।
ରାଜପୁତ୍ର ହୋଇଣ ମୁଁ ଛୁଇଁବି କେଡ଼େ ମଡା
ଅନେକ କ୍ଷତ୍ରୀ ମୁଁ ଯେ ମାରିଛୁ ବଡ଼ ମଡ଼ ।
ଏବେ କମ୍ପା ମୁଁ ଯେ ଅଧର୍ମ ବୁଦ୍ଧି କରି
ଏତେକହି ଇନ୍ଦ୍ରଜିତ ବାହୁଡ଼ିଲା ଫେରି ।
ରଥବରେ ବସିଣ କରେ ଖଡ୍ଗ ଜିଣି
ସିଂହନାଦ ଦେଇଣ ବାହୁଡ଼ା ବଜେ ପୁଣି ।
ଘୋର ତୂର ନାଦ ଯେ ଠମକ ବଆଇଲା
ରଣ ଜୟୂକରି ମନେ ଆନନ୍ଦ ହୋଇଲା ।
ରାତ୍ର ପାଞ୍ଚଘଡିକରେ ବାହୁଡ଼ାଏ ଥାଟ
ଶୁଣି ଲଙ୍କା ଲୋକଙ୍କର ହୋଇଲା ମୁରାଟ ।
ରଣ ଜୟେ କରିଣ ଆସନ୍ତି ସଇନ
ବିଚିତ୍ର ଗତି କରନ୍ତି କରେ ଶସ୍ତ୍ର ଘେନ ।
ଦହୁଡ଼ି ଜଗନ୍ତୁଲା ଜନେ ନିରନ୍ତରେ
ପଶିଲା ଇନ୍ଦ୍ରଜିତ କଟକ ଭିତରେ ।
ଉବୁରା ଉବୁରି ହୋଇ ଦେଖନ୍ତି ଲୋକମାନେ
ସାଧୁ ସାଧୁ ଶବଦ ଶୁଭେ ଅବଚ୍ଛନ୍ନେ ।
ଏକକୁ ଆରେକ ପଚ୍ଛରନ୍ତି ଆସି
ମାନତ ସଞ୍ଚରଭେ ହେଲେ ମିଶାମିଶି ।
କନ୍ଧ ବିକନ୍ଧରେ ଯେତେକ ଲୋକଥିଲେ
ସମସ୍ତେ ଇନ୍ଦ୍ରଜିତକୁ ଦେଖିଣ ଅଇଲେ ।
ଏକକୁ ଆରେକ ଯେ ଡ଼ାକନ୍ତି ଯୁବତୀ
ରଣ ଜୟେ କଲା ଆଜ ବିଶବାର ନାତି ।
ଇନ୍ଦ୍ରଜିତ ବଳରେ ହୋଏ ଶତ୍ରୁ ସାଧି
ଅନେକ ଜାଣଇ ସେ ମାୟା ଛନ୍ଦ ବୁଦ୍ଧି ।
ରାମ ଲକ୍ଷ୍ମଣ ସହିତେ ଋକ୍ଷ କପିବଳ
ମାରିଣ ଆସୁଅଛି ରାବଣ ଦୁଲାଳ ।
ଭଣଜୟୁ କାଳରେ କେମନ୍ତେ ଦଶେ ମୁଖ
ଦେଖିକରି ସ୍ୱର୍ଗ ଆଜ ପାସୋରିବା ଦୁଃଖ ।

ମଲ୍ଲ ଲୋକମାନଙ୍କର ଦୁଃଖ ପାସୋରିବା
ବସି ଭଜୁଥାଇ ସିନା ଆମ୍ଭେ ଯେ ମରିବା ।
ଏଣ୍ଡେ ଭୟ ଛଡ଼ାଇଲା ବୀର ଇନ୍ଦ୍ରଜିତ
ଏତେକହି କାମିନୀଏ ଧାମନ୍ତି ତୁରିତ ।
ରାଜଦାଣ୍ଡେ ଦାଣ୍ଡେ ଦେଖନ୍ତି ଇନ୍ଦ୍ରଜିତ ଯାହିଁ
କେ ବୋଲେ ଏ ରୂପତ ଅଇଲା ଏବେକାହିଁ
ଶତ୍ରୁକୁ ସଂହାରି ଏବେ ବିଜିଲା ଶ୍ରୀବନ୍ତ
ରକ୍ଷାକଲା ବାବୁ ଅସୁଷ ଅସୁର ସମସ୍ତ ।
ଧନ୍ୟ ଧନ୍ୟ ତୋର ଏହୁ ଯୁବାକାଳ ମୂର୍ତ୍ତି
ଦେଖାହିଁ ନଥିଲା ଯେ ଶୁଣିଲା ନାହିଁ ପୃଥ୍ୱୀ ।
ଏ ବ୍ରହ୍ମାଣ୍ଡ ଭିତରେ ତୁ ଅଟୁ ବଳବନ୍ତା
ଆଜ ଘୋର ଚିନ୍ତା ଯେ ଗୁଡ଼ିବ ଦଶମଥା ।
ଏସନ ବୋଲିଣ ବୋଲନ୍ତି ସକଳ
ଏକକୁ ଆରକେ ଧାମନ୍ତି ଆଗୁସାର ।
ଖଣ୍ଡା ତୁଲାଇଣ କେହୁ ଫେରିଯାନ୍ତି
ଭଣ୍ଡା ପାଞ୍ଚ ଯାଇ ଠଣା କରିଣ ରହନ୍ତି ।
ଯେ ଯାହାର ଶସ୍ତ୍ର କରେ ଝଁମକାନ୍ତି
ଶ୍ରୀରାମ ଲକ୍ଷ୍ମଣ ଆଜ ମାଇଲୁଁ ବୋଲନ୍ତି ।
ଲୋକେ ପଚାରନ୍ତି ରାମ ଲକ୍ଷ୍ମଣ କେଉଁମଲା
ଥିଲାଲୋକେ ବୋଲେ ବ୍ରହ୍ମଶରେ ନାଶଗଲା
ତିନବେଳା ପରିଯନ୍ତେ ପେଖେ ପୁଣ ପୁଣି
ଘଡ଼ିକରେ କେତେଣ୍ଡର ପକାଇଲା ହାଣି ।
କାଲି ପ୍ରଭାତରୁ ସର୍ବେ ଦେଖିକନା ଯାଇଁ
କହୁଁ କହୁଁ ଲୋକମାନେ ଆସୁଛନ୍ତି ଧାଇଁ ।
ରାବଣ ଆଗରେ ଯାଇ ଜଣାଇଲା ଚାର
ରଣଜୟେ କଲେ ପ୍ରଭୁ କୁମ୍ଭର କୁମର ।
ବ୍ରହ୍ମଶର ମାରିଣ ସକଳ ସୈନ୍ୟ କାଟି
ଶ୍ରୀରାମ ଲକ୍ଷ୍ମଣ ଆଦ ଭୂମିରେଣ ଲୋଟି ।
ଶୁଣିଣ ଲଙ୍କପତି ହରଷ ହୃଦୟେ
ଇନ୍ଦ୍ରଜିତ ପ୍ରବେଶ ଏସନ ସମୟେ ।
ପାଏପଡ଼ି ଶୋଇଣ ମଥାରେ ହାତ ଦେଲା
ବୋଇଲା ଆଜ ଦେବ ଶତ୍ରୁ ତୋର ମଲା ।
ଗୋଟିଏ ହୋଇ ଦେବ ପ୍ରାଣରେ ଜୀଇ ନାହିଁ
ରାହ ପାହିଲେ ତୁମ୍ଭେ ଆପଣେ ଦେଖଯାଇଁ ।
ଆମ୍ଭର ସୈନ୍ୟବଳ ପଡ଼ିଲେ ବହୁତ
କୋପରେ ବ୍ରହ୍ମଶର ପେଷିଲେ ମୁଁ ତାତ ।
ତିନବେଳ ଯାଏ ମୂର୍ଚ୍ଛି ସେହି ବୀର କଲି
ତେବେ ଯାଇଁ ଋକ୍ଷକପି ସୈନ୍ୟ ସଂହାରିଲି ।
ରାବଣ ବୋଇଲା କର୍ମା କଲୁ ଏଣ୍ଡେ କୃତ୍ୟ
ଋକ୍ଷ କପିମାନଙ୍କୁ କଲୁ ବ୍ରହ୍ମଅସ୍ତ୍ର ।
ଦେବ ମାନବ ଦଇତ ଗନ୍ଧର୍ବ କନ୍ନର
ରୁଦ୍ର ଇନ୍ଦ୍ର ବିଦ୍ୟାଧର ଦଶଦିଗପାଳ ।
ଦେଖିଲେ କାତର ହୁଅନ୍ତି ଯେଉଁ ବାଣ
ଋକ୍ଷ କପିମାନଙ୍କୁ କଲୁ ତୁ ସେ ବାଣ ।
ଏଡେ ଛର୍ଦ୍ଦୀହୋଇ ତୁହି ଅଦେଖର କଲୁ
ସ୍ୱାନ ଜନ୍ତୁମାନଙ୍କୁ ବ୍ରହ୍ମଶର ମାଇଲୁ ।
ମେଘନାଦ ବୋଲେ ସେମାନେ ନୋହିମାନ
ମର୍କଟ ଭାଲୁଙ୍କର ହୋଏ କି ଏମାନ ।
ମାନବର ହାତରେ କୁମ୍ଭକର୍ଣ୍ଣ ମଲ
ଯେବଣ ସମର ଆଜ କଲା ଜଟାଧାରୀ ।
ନୋହିଲେ ମୁଁ ଆସି ନ ପାରନ୍ତି ଘର
ତେଣୁକରି କହୁଅଛି ଶୁଣ ହେ ପିଅର ।
ତିନ ଭୁବନରେ ମୁଁ ଅନେକ ଯୁଦ୍ଧକଲି
କେଉଁଣସି ସଂଗ୍ରାମ ଏଥିକୁ ନୋହେ ସରି ।
ଶ୍ରୀରାମ ଲକ୍ଷ୍ମଣ ହୋଇ ଯେବଣ ଭାଇବେନି
ରଣରେ ପଶିବେ ଯେବେ ଧନୁଶର ଘେନି ।
ରୁଦ୍ର ଇନ୍ଦ୍ର ବ୍ରହ୍ମାକୁ ଜିଣିବେ ବେନଭାଇ
ବ୍ରହ୍ମଶର ନ ହାଲେ କି ଆନରେ ନାଶଯାଇ
ଶତ୍ରୁଙ୍କୁ ମାରିବାର ଭାଇଙ୍କର ଛଳେ
କୁମ୍ଭକର୍ଣ୍ଣ ସୋଦର ତୋହର ବଧକଲେ ।
ଲଙ୍କାଗଡ଼ ଭାଙ୍ଗିଲେ କୁମ୍ଭର ଅଭିମାନ
ନଗ୍ର ନରନାରୀଙ୍କର ବିକଳରେ ପୁଣ ।
ତେଣୁ ମୁଁ ଧର୍ମ ଅଧର୍ମ ବିଚାର ନକଲି
ବ୍ରହ୍ମଶର ପେଷିଣ ଶତ୍ରୁ ସଂହାରିଲି ।
ଶୁଣିକରି ଦଶାନନ ସନ୍ତୋଷ ହୋଇଲା
ସିଂହାସନରୁ ଉଠି ପୁତ୍ରକୁ କୋଳକଲା ।
ମୁଖରେ ଚୁମ୍ବ ଦେଇଣ ବସାଇଲା କତି
ସେହି ମଲ ମୋରେ ନିଦ୍ରା ହେବ ଆଜରାତି
ଅଧର୍ମ ନ କଲେ ପୁତ୍ର ନମରନ୍ତା ସେଯେ ଯ[illegible]
ଏକା ଅଛୁ ଲଙ୍କାପୋଡ଼ା କପି ଯେ ମାରୁତ ।
ହାରିଷଣ ସହିତେ ପଡ଼ିଲେଟିକ ସବୁ
ଇନ୍ଦ୍ରଜିତ ବୋଲେ ପିତା ସକାଳେ ଦେଖିବୁ

ରାବଣ ବୋଇଲା ସେହୁ ଅମର ବର ପାଇ
କେମନ୍ତେ ତାହାକୁ ରେବଳା ମାଇଲୁ କୁହ ଯାଇ
ଇନ୍ଦ୍ରଜିତ ବୋଲେ ପିତା ଧଷଣ ମାଇଲେ
ସିଦ୍ଧ ହୋଇଲେ ସେହୁ ନ ରହଇ ଭଲେ ।
ତାହା ମୁଖେ ସେହୁ ଅମର ହୋଇଥିଲା
ମୋହର ମାରନ୍ତେ ସେ ସେହୁ ପୁଣ ମଲା ।
ସଂଗ୍ରାମ ମଣ୍ଡଳେ ଯେତେ ସୈନ୍ୟଛନ୍ତି ମରି
ବ୍ରହ୍ମଶସ୍ତ୍ର ଘାଏ ଅଙ୍ଗ ଗୋଟିଏ ନ ଉବୁରି ।
ଏବେ ବେଗେ ମାଜଣା ମଣୋହି ଯାଇଁକରି
ସୈନ୍ୟଙ୍କୁ ଆଜ୍ଞା ଦିଅ ଯାନ୍ତୁ ଯେଖାଘର ।
ରାତ୍ର ପାହିବାରୁ ସେ ଯେ ସଂଗ୍ରାମେ ପଶିଲେ
ବେଳ ଅସ୍ତ୍ର ପରସନ୍ତେ ଅନେକ ଯୁଦ୍ଧକଲେ ।
ଅନେକ ସମର ଆଜ କରିଛନ୍ତି ଲୋକ
ଆଜଠାରୁ ସରିଲା ଯେ ସବୁଙ୍କର ଶୋକ ।
ଶୁଣିକରି ଦଶାନନ ହେଲକ ମେଲାଣି
ଆପଣେ ଭିତରକୁ ବିଜେ ଲଙ୍କାମଣି ।
ମାଜଣା ମଣୋହି ସେ ରାବଣ ପହୁଡ଼ିଲା
ଇନ୍ଦ୍ରଜିତ କୁମର ଯେ ବାହାରେଣ ଥିଲା ।
ଅମାତ୍ୟଗଣ ଘେନ ନଗରକୁ ଗଲା
ଆପଣା ନଗରରେ ଯାଇଁ ପ୍ରବେଶ ହୋଇଲା ।
ଆଜ ଯେ ନିଶ୍ଚିନ୍ତରେ ଶୋଇବୁ ବୋଇଲେ
ରାତ୍ର ପାହିଲେ ଆସିବ ତୁମ୍ଭେ ଯେ ସତ୍ୱରେ ।
ସ୍ନାନ ଭୋଜନ ସାରି ସେ ନିଶ୍ଚିନ୍ତରେ ଶୋଇ
ଏଥୁଅନନ୍ତରେ ଯେ ରାତ୍ର ଅର୍ଦ୍ଧ ହୋଇ ।
ଇନ୍ଦ୍ରଜିତ ସଙ୍ଗରେ ସରସ୍ୱତୀ ଥିଲା
ଇନ୍ଦ୍ରଜିତ ଶୋଇବାରୁ ରଣଭୂମିକି ଗଲା ।
ବ୍ରହ୍ମାଙ୍କର ବ୍ରହ୍ମଶରକୁ ଦେବୀ ଦେଲେ ଯୁହାଁ
ବୋଇଲେ ନାରାୟଣଙ୍କୁ ନ ଛାଡ଼ିଲୁ କୁହ ।
ଏବେତ ମରଣ ଆସି ହୋଇଲା ତୋହର
ଯାରଠାରୁ ଜାତ ତୋର ସେ ଏହାଉକଙ୍କର
ନାରାୟଣ ସୂତକ ଯେ ନ ମାନିଲୁ କୁହ
ବ୍ରହ୍ମାମୋତେ ଛେଦଦେଲେ ଯାଅ ତୁ ପଳାଇ
ଜାଣିଥାଅ ତୋର ପ୍ରାଣ ଶ୍ରୀରାମ ହାତେ ଜାଣ
ବ୍ରହ୍ମା ରଖି ନ ପାରିବେ କଲେ ସେହୁ ପଣ ।
ଶୁଣିଲେ ଦେବୀର ବାକ୍ୟ ଛାଡ଼ିଲେ ଯେ ଶର
ରଣଭୂମି ଛାଡ଼ିକରି ପଳାଇଲେ ଖର ।

ବିଧାତାର ଗ୍ରାମୁରେ ପ୍ରବେଶ ହେଲେ ଯାଇ
ଦେଖିଲେ ବିଧାତା ଯେ ଧିକାର କରଇ ।
ଅସୁରଙ୍କ ହସ୍ତେ ଉଚ୍ଚ ପ୍ରତାପ ତୁମ୍ଭର
ନାରାୟଣ ସୁମରିଲେ ତୋତେକାକୁ ସ୍ତବେଶ୍ୱର
ନ ଛାଡ଼ିଲୁ ବାସୁଦେବ ମରିବାକୁ ଇଚ୍ଛା
ଶ୍ରୀରାମ ବିଚାରିଲେ ମୁଁ ଯେ କରିନପାରିବ ରକ୍ଷା
ଯାଅ ଯାଅ ଏବେରେ ମୋର ପଛେ ରହ
ଶୁଣିକରି ଶରମାନେ ଲୁଚିଇଲେ ଦେହ ।
ଏଥୁ ଅନନ୍ତରେ ତୁଗୋ ଶୁଣ ଭଗବନ୍ତ
ସରସ୍ୱତୀ ସେଠାରୁ ଚଳିଲେ ଝଟିତ ।
ଜମ୍ୱେବ ସୁଷେଣ ଯାଇ କହିଲେ ତୁରିତ
ବ୍ରହ୍ମଶର ଗଲାଣି ବ୍ରହ୍ମାଙ୍କର ପୁରେ ତ ।
ବାଣଘାଏ ଅଚେତା ହେଲୁ ମନ୍ତ୍ରୀବର
ହନୁମନ୍ତକୁ ଭେଦ ବେଗେ ଶ୍ୱେତ ପର୍ବତର
ଶୁଣିଣ ଜମ୍ୱେବ ମନ୍ତ୍ରୀ ସଚେତ ହୋଇଲେ
କହିଣ ସରସ୍ୱତୀ ସ୍ୱର୍ଗପୁର ଗଲେ ।
ବ୍ରହ୍ମଶର ଯିବାରୁ ସୈନ୍ୟ ହେଲେ ଚେତନା
ରଣ ଗୋଳ ନାହିଁ ଆଜ ନଶବଦ ସେନା ।
ଯେତେବେଳେ ବ୍ରହ୍ମଶର ଛାଡ଼ି କରି ଗଲା
ପବନର ଘାତେ ତାଙ୍କ ଅଜ୍ଞାନ ଖଣ୍ଡିଲା ।
ସରସ୍ୱତୀ କହିବାର ଛାଡ଼ିଲେ ବ୍ରହ୍ମଶର
ବିଚାରିଲେ ପରଂବ୍ରହ୍ମ ହୋଇଛୁ ଅବତାର ।
ଶ୍ରୀରାମ ଯେ ବ୍ରହ୍ମଶରେ ଅଜ୍ଞାନ ହୋଇଥିଲେ
ବ୍ରହ୍ମଶର ଯିବାରୁ ଚେତନା ପାଇଲେ ।
ଚଳି ନ ପାରନ୍ତି ସେ ବିଷମ ଶର ମୋହେ
ନ କହନ୍ତି କଥା ଯେ ଚେତନା ଅଛି ଦେହେ
ଶ୍ରୀରାମ ଲକ୍ଷ୍ମଣ ହନୁମନ୍ତ ଯେ ସଇନ
ବ୍ରହ୍ମଶର ଛାଡ଼ିକରି ସ୍ୱର୍ଗକୁ ଗଲା ପୁଣି ।
ଯିବାବେଳରୁ ସୈନ୍ୟ ହରାଇଛନ୍ତି ଜ୍ଞାନ
ସସ୍ତ୍ର ଭେଦ ଛାଡ଼ିଲା ସବୁଙ୍କ ଦେହୁ ପୁଣ ।
ସୁଗ୍ରୀବର ସହିତେ ଯେତେକ ଋକ୍ଷହରି
ସର୍ବଙ୍କ କାଣ୍ଡ ଥିଲା ଯେ ଭିନ୍ନ ଭିନ୍ନ କରି ।
ବିଭୀଷଣ ଜାଣିଣ ଆଗହୁଁ ପଳାଇଲା
ଯେତେବେଳେ ଇନ୍ଦ୍ରଜିତ ବ୍ରହ୍ମଶର କଲା ।
ରାବଣର ଭାଇ ଯେ ମନରେ ବିଚାରିଲା
ଦେବଦାନବେ ଏ ଶସ୍ତ୍ରେ ନବର୍ତ୍ତାନ୍ତି ଭଲା ।

ଶ୍ରୀରାମ ଲକ୍ଷ୍ମଣ ଏ ଯେ ଅଟନ୍ତି ବିଷ୍ଣୁକାୟେ
ଏହାଙ୍କର ଜୀବନଯେ ନ ହରିବ ଶସ୍ତ୍ରଘାଏ ।
ଋକ୍ଷକପି ସୈନ୍ୟ ଯେ ନ ବଞ୍ଚିବେ କେହି
ମୁହିଁ ଯାଇ ପଳାଇ ରଖିବି ମୋର ଦେହି ।
ଏ ବ୍ରହ୍ମଶସ୍ତ୍ର ଯେ ଅଟେ ଏକ ଆତ୍ମା
ନିଶ୍ଚେ ହୋଇଣ ରଖନ୍ତି ମହାତ୍ମା ।
ସଂଗ୍ରାମ ଛାଡ଼ିଣ ପଳାଇଲେ ଦୟାକର
ଏମନକ ନିର୍ମାଣ କରିଛି କୁଶଧାରୀ ।
ଏତେ ବିଚାରି ବୀରଯେ ପଳାଇ ବେଗେଗଲା
ଶହସ୍ର ପଳାଇଣ ମୁକୁଳା କେଶକଲା ।
ନିଶ୍ଚେ ହୋଇଣ ରଖିଲା ତାର ପ୍ରାଣ
ତାହାକୁ ମାର ଛାଡ଼ିଲା ସେହିଯେ ବ୍ରହ୍ମବାଣ ।
ସୁବଳୟା ପର୍ବତରେ ଲୁଚି ବସିଥିଲା
ବିଗମ ରଣଗୋଳ ମାରୁଣି ଦେଖିଲା ।
ଶ୍ରୀରାମ ଲକ୍ଷ୍ମଣ ଯେ ଋକ୍ଷକପିଙ୍କୁ ମାରି
ବାହୁଡ଼ିଲା ମେଘନାଦ ଯେ ରଣଜୟ କରି ।
ଗଡ଼ର ଭିତରେ ସେ ପଶିଲା ତେତେବେଳେ
ଶବଙ୍କୁ ବିଭୀଷଣ ଓହ୍ଲାଇ ତେତେବେଳେ ।
ଋକ୍ଷକପିବଳ ବେଳହୁଁ ଦେଖି ପୁଣ
କେବଳ ମର୍କଟ ନିହାତି ପାଏ ପ୍ରାଣ ।
କେହି ଛଟପଟ ଯେ କେ ଚବଦ ହୋଇଅଛି
ଜଣକୁ ଜଣ ଲୁହିଁ ବିଭୀଷଣ ପୁଚ୍ଛି ।
କେହି ଜୀଇଅଛରେ ବାକୁ ଯେ ପୁଣ ଏଥ
ମୁହିଁ ଯେ ବିଭୀଷଣ ହୋଇଲି ନିରେଖ ତ ।
ମାୟା ଯୁଦ୍ଧରେ ମୁଣ୍ଡା ଯେ ସମସ୍ତ ମାଇଲା
ବନଜୀବନଙ୍କୁ ସେ ବ୍ରହ୍ମଅସ୍ତ୍ର କଲା ।
ଅହଙ୍କାରର ସମର କଲା ସେହି ପାପ
କେଉଁଠାରେ ଅଛନ୍ତି ସେ ରଘୁକୁଳନୃପ ।
ଲକ୍ଷ୍ମଣ ସୁଗ୍ରୀବର ଯେ ହନୁମନ୍ତ କାହିଁ
ମୁଁ ଏବେ ପଳାଇ ପଶିବି କେଉଁଠାଇଁ ।
ଯାହାକୁ ମୁଁ ଆଶ୍ରେକଲି ଛାଡ଼ିଲି ଭରସା
ଆଜ ଜୀବନକୁ ଅଛି କି ମୋର ଆଶା ।
ଆହେ ଋକ୍ଷ କପିମାନେ ହେ କଥା ନ କୁହ
ସ୍ୱାମୀଙ୍କର କୁଶଳ ବାରତା ମୋତେ କୁହ ।
କମ୍ପାଇ ଅଜ୍ଞାନ ହୋଇଣ ଯେ ପଡ଼ିଅଛ
କେଉଁଠାରେଅଛନ୍ତି ଶ୍ରୀରାମଲକ୍ଷ୍ମଣ ବେନବୀର

ଜଣେ କେ କହକଥା ସମସ୍ତେ ଅଚେତା
ଏକାବେଳେ ତୁମ୍ଭଙ୍କୁ ହେ ଛାଡ଼ିଲା ବିଧାତା ।
ଏହା ମହାବୀର ତୁମ୍ଭେ ଅଟ ମହାଯୋଧ
କାଳକୁ ଜିଣିଣ ଯେ ହରାଇଲ ବୁଦ୍ଧି ।
ମୁହିଁ ଯେ ଅସ୍ତ୍ରେ ଆସି କଲାଟି ତୁମ୍ଭନ୍ତ
ଲକ୍ଷ୍ମୀ ଦେବତା ଅଟନ୍ତି ମୋର ସୀତାକାନ୍ତ ।
ରାବଣର ସଙ୍ଗେ ମୁଁ ଯେ ହୋଇଲି ବଇରି
ଏଥ ପାଇଁଲେ ଦେଖିବାକୁ ଆସିବ ଦଶଶିର
ଖୋଜିଣ ମୋତେଯେ କରିବ ମୋତେ ନାଶ
କେବଣ ଦଇବ ଯେ ଛଡ଼ାଏ ମୋର ଆଶ ।
ଏତେ ବୋଲି ବୀର ଯେ କରଇ ରୋଦନ
ନୟନରୁ ଅଶ୍ରୁଜଳ ପଡ଼େ ଘନଘନ ।
ଆହା ଶ୍ରୀରାମ ବୋଲିଣ ଉଚ୍ଚରେ ରୋଦଇ
ଋକ୍ଷକପି ଜାଣିଲେ ଏ ରାବଣର ଭାଇ ।
ଭଲ ବଞ୍ଚିଲା ଏ ଯେ ଜାଣିଲା କେମନ୍ତେ
ଦୈତ୍ୟଙ୍କର ମାୟା ଯେ ଜାଣନ୍ତି ଦୈତ୍ୟେ ।
ଏହି ଜୀଇବାର ହେଲା ବଡ଼ କାର୍ଯ୍ୟ
ଅନେକ ବିଧାନ ଯେ ଜାଣେ ଦୈତରାଜ ।
ଏତେ ବିଚାରି କପି ଯେ ସମସ୍ୟା କରନ୍ତି
ତଳ ନ ପାରି ହାଙ୍କିଣ ବଚନ ବୋଲନ୍ତି ।
ଶୁଣ ହେ ବିଭୀଷଣ ତୁମ୍ଭେ ଅଛ ଜୀଇ
ଜାଣ୍ଡୁ ଘାଆରେ ଆମ୍ଭେ ଯେ ଉଠିଣ ନ ଯାଇ
ଶୁଣିଣ ବିଭୀଷଣ ବାହୁଡ଼ି ପୁଣଆସି
ହାତଧରି କପିଙ୍କି ତୋଳଇ ଅକର୍ଷି ।
ସହସ୍ର ହେଙ୍ଗୁଳାଇ ପୁଜଇ ଲଙ୍କପତି
ଟେଟାପାଇ କପିମାନେ ଉଠିଣ ବସନ୍ତି ।
ଏକକୁଣ୍ଡ ଶୁଣିକରି ଉଠଇ ଆରେକ
ପ୍ରାଣରେ ନାଶଗଲେ ସଇନ ଅନେକ ।
ଦୁଇଚାରି ହୋଇଣ ଯାଆନ୍ତି ଥାଟ ଖୋଜ
ମଲା ଜୀଇଲା କେହି ଯାଉଛନ୍ତି ହେଜ ।
ଏକକୁ ଆରେକ ସେ ନାମ ଧରି ଘଇ
ଜୀବଥିଲା ଋକ୍ଷକପି ଜୀଇଁଣ ବସଇ ।
ବିଭୀଷଣ ପଚ୍ଛରେ ଶ୍ରୀରାମ କାହିଁଛନ୍ତି
ପ୍ରାଣ ହାରିଲେକି ଜୀବନରେ ସେ ଅଛନ୍ତି ।
ଯେହି ଜାଣିଥିଲେ ସେକହିଲେ ତାର ଆଗେ
ଶ୍ରୀରାମଙ୍କୁ ରାବଣ ମାରିବ କେଉଁ ବାଗେ ।

ସାକ୍ଷାତେ ନାରାୟଣ ଅଟନ୍ତି ରାମରାୟେ
ସହସ୍ର ଭୈରବ କି ତାହାଙ୍କର କାୟେ ।
ଶାଇ ଅଛନ୍ତି ଶ୍ରୀରାମ ଲକ୍ଷ୍ମଣ ଭାଇବେନ
ତାହାଙ୍କ ସମାନ କେ ଅଛନ୍ତି ପୁରୁ ତିନ ।
ଶୁଣିଣ ଆନନ୍ଦ ଯେ ହୋଇଲେ ବିଭୀଷଣ
ଭେକଲ ବୃତକ କି ପାଇଲେ ବାରି ଜାଣ ।
ହରଷ ଚିତ୍ତରେ ଯେ ତହୁଁ ଚଳିଗଲେ
ପଞ୍ଚଶ ଯୂଥପତିକ ପାଇ ସେ କହିଲେ ।
ଜାଳମ୍ବ କେଶରୀ ମହେନ୍ଦ୍ର ଦୁର୍ବନ୍ଦ ପାରାସ
ସାରସ ଚନ୍ଦନ ଗବୟ ଗବାକ୍ଷ ।
ସଉରି ସେନାପତି ତାହାର ପିଅର
ହବଧ ସମ୍ପାତି ଯେ ରମଣ ମହାବୀର ।
ରମଣ କୁମୁଦ ଯେ କୁନ୍ଦ ପନଶିଲ
ଗନ୍ଧମାଦନ ଯେ ହନୁର ପିଅର ।
ଅଙ୍ଗଦ ହନୁମନ୍ତ ବଳମୁଖ ସୁଷେଣ
ଦଧିମୁଖ ଋଷଭ ଶ୍ରୀରାମ ଲକ୍ଷ୍ମଣ ।
ଜମ୍ବବ ଶତବଳି ସୁଗ୍ରୀବ ଶଶୁର
ଗବୟେ ଗବାକ୍ଷ ଯେ କିଷ୍କିନ୍ଧ୍ୟା ଈଶ୍ୱର ।
ଜଣେ ଜଣେ ନରେପି ଚାହିଁଲ ଦୈତ୍ୟରାୟେ
ନାମ ଧରିଣ ସେ ବାହୁଙ୍କ ବୋବାଏ ।
ଆହାରେ ଦଇବ ତୁ ଏହା ଭିଆଇଲୁ
ଋକ୍ଷକପି ଲେଖିଲେ ତ କର୍ମା ମରାଇଲୁ ।
ପରଉପକାରୀ ଅଟନ୍ତି ହାଦେ ଏହି
କେହି କ୍ଷମାଦାନ ନ ଦେଲେ ଏହାଙ୍କୁହିଁ ।
ଶ୍ରୀରାମ ବଚନକୁ ଏମାନେ ପ୍ରତେଗଲେ
ରଘୁନାଥ ସଙ୍ଗତରେ ଗୋଡ଼ାଇ ଅଇଲେ ।
ଏବେ ପ୍ରାଣ ଦେଲେ ଯେ ଇନ୍ଦ୍ରଜିତ ଶରେ
ନିଶ୍ଚିନ୍ତ ହୋଇଣ ଏ ଶୋଇଲେ ଭୂମିରେ ।
ସ୍ୱର୍ଗମର୍ତ୍ତ୍ୟ ପାତାଳ କ୍ଷଣକେ ପାରେ ଜିଣି
ସେ ବୀରମାନେ ଯେ ପଡ଼ିଲେ ବେଳଜାଣି ।
ଆହେ ସୁଗ୍ରୀବର ବାନରଙ୍କ ଅଧିପତି
ଅଚେତ ହୋଇ କର୍ମା ତୁ ଶୋଇଲୁ ଧରଣୀ
ରାବଣର ସଙ୍ଗତେ ଯେ ମାଲଯୁଦ୍ଧକଲୁ
ଦଶ ମୁକୁଟ ତାହାର ପାଦରେ ମର୍ଦ୍ଦିଲୁ ।
କୁମ୍ଭକର୍ଣ୍ଣର ନାସାକର୍ଣ୍ଣ କଲୁ ହତ
ସେହିସଂଗେ ପ୍ରାଣ ତୋର ଘେନିଲେ ଦଇତ ।

ବାବୁରେ ନଳ ନୀଳ ଗନ୍ଧମାଦନ
ବୀରପଣ ଗୁଡ଼ିଣ ହେଲ ହତଜ୍ଞାନ ।
ମହେନ୍ଦ୍ର ଦୁର୍ବନ୍ଦ ଯେ ଗବୟେ ଗବାକ୍ଷ
କଞ୍ଚନ କାଳମୁଖ କାଳଞ୍ଜନ ପାରାସ ।
ଅଙ୍ଗଦ କୁମରକୁ ମୁହିଁଣ ବାହୁନ
ଏକାରେ ଅଇଲୁ ଯେ ଜଗତ ରୂଳବେଣ ।
ଦୁଇସସ୍ର ଦୈତ୍ୟଙ୍କର ମୋଡ଼ିଲୁ ଯେ ମୁଣ୍ଡ
କାହିଁଥିଲ ତୋତେରେ ଅକାଳ ଶୂଳଦଣ୍ଡ ।
ଆହେ ଜମ୍ବବ ତୁମ୍ଭେ ଋକ୍ଷକପିଙ୍କର ମନ୍ତ୍ରୀ
ସମସ୍ତେ ପୂଜା ତୋତେ କରୁଥାନ୍ତି ନିତି ।
ସୁଷେଣଙ୍କୁ ଘେନିଣ ପଡ଼ିଲେ ରଣଭୂଇଁ
ଶତବଳି ସେନାପତି ଯେ ଜ୍ଞାନଭ୍ରଷ୍ଟ ହୋଇ ।
ମାୟା ଯୁଦ୍ଧ ଦେଖିଣ ତରକ ନ ଯାଇ
ଏଡ଼େ ଏଡ଼େ ବୀର ଯେ ପଡ଼ିଣ ମୋହଯାଇ ।
ଏତେକହି ବୀର ଯେ ଖଣ୍ଡେ ଦୂର ଗଲେ
ରାମ ଲକ୍ଷ୍ମଣ ହନୁମନ୍ତକୁ ଦେଖିଲେ ।
କପୋଳେ କରମାରି ପଡ଼ିଲେ ଭୂମିତଳେ
ଅନେକ ରୋଦନ ଯେ କଲକ ବିକଳେ ।
ଆହା ସ୍ୱାମୀ ମୋର ହେ କରୁଣା ବାରିନିଧି
ତ୍ରୈଲୋକ୍ୟ ଭିତରେ ତୁ ଅଟୁ ମହାଯୋଧି ।
ଦୈତ୍ୟଶରେ ଗୁଡ଼ିଲ ଧନୁଃଶର
ଭାଇଙ୍କ ସଙ୍ଗେ ଘେନ ଅଜ୍ଞାନ ରଘୁବୀର ।
ଆହେ ହନୁମନ୍ତ ଯେ ପବନର ସୁତ
ଏକାକି ଲଙ୍କାଗଡ଼କୁ କଲୁ ଧୂମ୍ରାକ୍ଷେତ ।
ଅକ୍ଷୟ କୁମାର ଜମ୍ବୋମାଳୀଙ୍କ ସଂହାରି
ସମୁଦ୍ର ଜଳ ତରିଲୁ ବିକ୍ରମ ଗତିକରି ।
ଏବେ ବୁଦ୍ଧି ହରାଇଲୁ ଇନ୍ଦ୍ରଜିତ ବାଣେ
ସେ କେଳ କଥାମାନ ଗଲା ତୋର କେଣେ
ବିଭୀଷଣ ବଚନ ଶୁଣି କପିମଣି
ମୋହେ ଥାଇଣ ତାହା ହନୁମନ୍ତ ଜାଣି ।
ସ୍ୱପନ ଥାଇଣ ତାହା ମଣଇ କୁନହୋଇ
ପୁଣି ମନେ ମନେ ଯେ ମାରୁତି ବିଚାରଇଁ ।
ନୁହଇ ସ୍ୱପନ ଏ ତ ବିଶ୍ରବାର ସୁତ
ଲଙ୍କାଗଡ଼େ ଅଛୁ ଆମ୍ଭେ ଶ୍ରୀରାମ ସଙ୍ଗତେ ।
ଦଶାନନ ତନୟ ଏ ଇନ୍ଦ୍ରଜିତ ବୀର
ସେ ଆମ୍ଭଙ୍କୁ ମାଇଲା ପେଷି ବ୍ରହ୍ମଶର ।

ଜ୍ଞାନହାରଣ ଆମ୍ଭେ ପଡ଼ନ୍ତୁ ସର୍ବଜନ
ବିଭୀଷଣ କୁଣ୍ଡସ୍ଥାନେ ଶୁଭୁଛି ବଚନ ।
ଏତେହଳ ହନୂମାର ତାହାରେ ଚିହ୍ନିଲା
ବିଭୀଷଣକୁ ଦେଖି ସେ ଆନନ୍ଦ ହୋଇଲା ।
ମୋହଛେଳ ବିରସେ ଚେତାହୋଇ ବସି
ଦେଖିଲେକ ବିଭୀଷଣ ପିଠି କି ଆଉଁସି ।
ସ୍ନେହଭର ହୋଇଣ ହନୂକୁ କୋଳକଲା
ଏବେମୋରଦେହେପ୍ରାଣ ପଶିଲା ବୋଇଲା ।
ଦେଖ ଋକ୍ଷ କପିଏ ସଭିଏଁ ଆଜମଲେ
ଇନ୍ଦ୍ରଜିତ ବ୍ରହ୍ମଶରେ ସଭିଙ୍କୁ ମାଇଲା ।
କି ବୁଦ୍ଧି କରିବା ଏବେ କହସିରେ ବାବୁ
ଦେଖ ରଣରେ ସୈନ୍ୟ ପଡ଼ିଛନ୍ତି ସବୁ ।
ହନୂମନ୍ତ ବୋଇଲା କରିବା ଏବେ କିସ
ଦେଖ ଅଚେତନ ଯେ ଦଶରଥ ଶିଷ୍ୟ ।
ଅଷ୍ଟସେନା ସହିତେ ପଞ୍ଚାଶ ସେନାପତି
ମଲ୍ଲ ମହାମଲ୍ଲ ସୁଗ୍ରୀବର ପ୍ରଭୃତି ।
ଅଙ୍ଗଦ କୁମର ଚେତନା ଦେହେ ନାହିଁ
ବାବୁରେ ଇନ୍ଦ୍ରଜିତ ଗଲା ବଳ ବହି ।
ବିଭୀଷଣ ବୋଇଲା ଲଗା ଏବେ ହୁଳା
ମଲ ଜୀଇବାର ଖୋଜ କରିବା ଶଙ୍ଖୋଳା ।
ଏସନକ ବିହ୍ୱଳ ଉଦ୍ଭଟ ହୁଳା ଧରି
ମଲ୍ଲ ମହାମଲ୍ଲ ସର୍ବେ ସୈନ୍ୟ ତଥ୍ୟକରି ।
ଗଣିବାରେ ସତଷଷ୍ଠି କୋଟିବଳ ମଲେ
ତିନବେଳ ବ୍ରହ୍ମଅସ୍ତ୍ରେ ଜୀଇବେକ ଭଲେ ।
ଚଳି ନ ପାରନ୍ତି ଯେ ଜୀବନ ଅଛି ରହି
ଛଟପଟ ହେଉଛନ୍ତି କାଣ୍ଡ ଘାଆ ପାଇ ।
ସତଷଷ୍ଠି କୋଟିବଳ ସେହିଣ ଯୁଦ୍ଧେମଲେ
ବିଭୀଷଣ ମହାତ୍ମା ଯେ ମହାଚିନ୍ତା କଲେ ।
ବିସ୍ମରଣ ଜାମ୍ବବଙ୍କ ପାଶରେ ପ୍ରବେଶ
ଆହେମନ୍ତ୍ରୀବରବୋଲଜାଣେଦୈତ୍ୟଈଶ ।
କମାଇ ଋକ୍ଷକପି ହୋ ହୋଇଲ ଅଜ୍ଞାନ
କେଣେଗଲା ତୋର ବଳ ବୁଦ୍ଧିମାନ ।
ଘରେ ଶୋଇଲାର ପ୍ରାୟେ ନିଶ୍ଚିନ୍ତହୋଇଲୁ
ଏତେବଡ଼ ଅଇଶ୍ୱର୍ଯ୍ୟ କେମନ୍ତେ ପାଇଲୁ ।
ଉଠ ଉଠ ମହାମନ୍ତ୍ରୀ ଆଟ ଶିରେମଣି
ସୁବୁଦ୍ଧିବୋଲିତ ତୋତେ ତ୍ରିପୁରେଜାଣି ।

ବିଭୀଷଣ ବଚନରେ ଜାମ୍ବବ ମନ୍ତ୍ରୀ ତେଜ
ମନରେ ବିସ୍ମରି ସେ ଯେ ସ୍ଥିର କଲା ମତ ।
ହୃଦରେ ବିଚାରଇ ଅଟଇ ବିଭୀଷଣ
ଇନ୍ଦ୍ରଜିତର ଶରେ ଯେ ନୋହିଲା ମରଣ ।
ଦୈତ୍ୟଙ୍କରମାୟାଯେଦୈତ୍ୟଙ୍କୁ ନ ଲାଗଇ
ଏହି ଜୀଇବାରୁ ଭାଗ୍ୟ ଆମ୍ଭର ଅଟଇ ।
ଦେହକୁ ସ୍ଥିର କରିଣ ଜାମ୍ବବ ବୋଲନ୍ତି
ଶୁଣହୋ ବିଭୀଷଣ ଅସୁରକୁଳ ପତି ।
ଯହିଁପାଇଁ ବାବୁରେ ହନୂମନ୍ତକୁ ଖୋଜ
ଜୀବନେ ଅଛନ୍ତି କି ପବନ ଆତ୍ମଜ ।
ବିଭୀଷଣ ବୋଇଲା ଯେ ଏକଜଣେ ଥାଇ
କିସ କରିବ ଯେ ଏକ ଜଣେ ରହି ।
ସତଷଠୀ କୋଟି ଯେ ଋକ୍ଷଗଣ ମଲେ
ଆଉଯେତେ ସୈନ୍ୟ ଘାଆରେମୋହଗଲେ
ରାମ ଲକ୍ଷ୍ମଣ ସୁଗ୍ରୀବ ସହିତେଣ ଖୋଜ
ଜୀଇଅଛନ୍ତିକି ହୋ ପବନ ଆତ୍ମଜ ।
ଶୁଣିଣ ବିଭୀଷଣ କହେ ମଥାଚରେ
ପଡ଼ିଛନ୍ତି ବୀରମାନେ ବିଷମ ଶରଘାତେ ।
ଏକା ସ୍ୱେ ହନୂମନ୍ତ ଯେ କରିବ ପୁଣ କିସ
ଜାମ୍ବବ ବୋଇଲେ ଶୁଣ ଦଶଙ୍କାର ଶିଷ୍ୟ ।
ହନୂମନ୍ତ ଥିଲେ ଜୀଇବେ ସବୁ ସୈନ୍ୟ
ସ୍ୱେମନ୍ତେ ମୋଠାରେ ଅଛି ଯେ ବିଧାନ ।
ଜାମ୍ବବର ମୁଖରୁ ଏମନ୍ତ ବାକ୍ୟ ଶୁଣି
ହନୂମନ୍ତ ପ୍ରଣାମ କରେ ଶିର ଧୁଣି ।
ହେ ଋକ୍ଷକପି ବୀର ମୋତେ ଆଜ୍ଞାଦେବା
ଭଅର୍ଥେ ଯାଉଛି ତ ଶ୍ରୀରାମଙ୍କ ସେବା ।
ଏବେ କି ବୁଦ୍ଧି ଅଛି ମୋତେ ବାବୁ କହ
ସ୍ୱାମୀଙ୍କଉବକଳଦେଖିନସହେମୋର ଦେହ
ଜାମ୍ବବ ବୋଇଲେ ତୁ ଶୁଣ ହନୂମନ୍ତ
ଏହିକ୍ଷଣି ଯିବୁ ହେମଗିରି ପର୍ବତ ।
ଅମର ମହୌଷଧି ଯେ ବୃକ୍ଷ ଅଛି ତହିଁ
ତୋ ହେତୁ ଆସିବ ପବନ ତନୟୀ ।
ସେ ଗିରିବର ପୂର୍ବଦିଗେ ଯେଉଁ ଶୃଙ୍ଗ
ତହିଁର ପୂର୍ବଭାଗ ଆରେକ ଗିରିଶୃଙ୍ଗ ।
ତହିଁର ପୂର୍ବ ଭାଗରେ ବହଇ ସୁରସରି
ସେହି ନଦୀ ଉପରେ ବିଜେ ତ୍ରିପୁରାରି ।

ତହିଁର ପାଖରେ ଅଛୁ ଯେବଣ ବୃକ୍ଷ
ସର୍ବତରୁ ଉପରେଯେ ଅଟେ ସେହୁ ମୁଖ୍ୟ ।
ଅତିବଡ ମୋଟ ସେ ତାଳର ବର୍ତ୍ତାପର୍ଶ
ବରଷକେ ଥରେ ତାକୁ ବ୍ରହ୍ମାଦି ଏ ଅର୍ଘ୍ୟ ।
ସେ ବୃକ୍ଷ ଆଣିଲେ ଜୀଇବେ ସର୍ବେଟି
ପ୍ରତ୍ୟକ୍ଷେ ଧନ୍ୱନ୍ତରୀ ଅଟଇ ଅମୃତଟି ।
ତହିଁର ଉତ୍ତରଭାଗେ ଅଛୁ ଯେଉଁ ବୃକ୍ଷ
ସେବୃକ୍ଷମୂଳେବାଞ୍ଛାକଲେହୋନ୍ତିଜନେମୋକ୍ଷ
ତହିଁର ଉପରେ ଅଛୁ ଯେବଣହିଁ ତରୁ
ଅଷ୍ଟଧାତୁ ଜାତ ହୁଏ ଯେ ସେଥିରୁ ।
ପୂର୍ବରୁ ଅଛଇ ଯେ ଏସନ ବିଧାନ
ମଧ୍ୟଗଛରୁ ପତର ଯେବେ ଗୁଡ଼ିଏ ଆଣ ।
ବେଗେ ସେଥିରୁ ପତର ଆଣ ଯା ହନୁମାନ
ତେବେ ସେ ବଞ୍ଚିବେଟି ଶ୍ରୀରାମ ଲକ୍ଷ୍ମଣ ।
ଅଳସ ନକର ବାବୁରେ ବେଗେଯାଇ ଆସ
ରାତ୍ର ପାହିଲେ ଲଙ୍କପତି ଆସିବ ଅବଶ୍ୟ ।
ଶୁଣିଣ ହନୁମନ୍ତର ପୁଲକଇ କାୟେ
ଶ୍ରୀରାମ ସୁମରି ଯେ ଗଗନମାର୍ଗେ ଯାଏ ।
ଉତ୍ତରମୁଖ ହୋଇ ଉଡ଼ି ସେ ବୀର ଗଲା
କ୍ଷଣକରେ ହେମବନ୍ତରେ ପ୍ରବେଶ ହୋଇଲା
ପବନ ଦେବତା ଯେ ନେଲାକ ଉଡ଼ାଇ
ମହୌଷଧିର ସ୍ଥାନରେ ମିଳେ ବୀର ଯାଇ ।
ପ୍ରଳୟବାତ ଜାଣି ଶୁଭିଲା ଶବଦ
ଶୁଣିକରି ରକ୍ଷାଳେକେ ହୋଇଲେ ତବଦ ।
ଧାଇଁଆସି ଦେବେ ଦେଖି ଯେ କପିବୀର
ବୋଇଲେ କାହିଁର ତୁରେ ଅଟୁ ରେ ବାନର
ଦେବଙ୍କ ଆଶ୍ରମରେ ତୁ ପଶିଲୁ କିସପାଇଁ
କି ତୋହର ଜ୍ଞାନ ଗୋଚର ମେଳା ନାହିଁ ।
ପ୍ରାଣର ଆଶା ତୁ କି ଛାଡ଼ିଲୁ କରେ କପି
ଏ ପୁଣ୍ୟସ୍ଥାନେ କେମନ୍ତେ ପଶିଲୁରେ ପାପି
ଏତେକହି ମାଇଲେ ଢେଲତଡ଼ି କୋପ
ସହସ୍ର ମାନ ସମ୍ଭାଳି ବୋଲେ ହନୁମନ୍ତ ।
ନଜାଣିଣ ତୁମ୍ଭେ ଯୁଦ୍ଧ ଆରମ୍ଭ କରୁଛ
କଥାମାନ କହ୍ମା ଯେ ପଚ୍ଛରି ନ ବୁଝୁଛ ।
ଦେବତାଙ୍କ ଆଶ୍ରମ ଏ ହେମବନ୍ତ ଗିରି
କପିରୂପ ଧରି ମୁଁ କେମନ୍ତେ ଠାବକରି ।

ଏ କଥାମାନ ନବୁଝି ସଂଗ୍ରାମେ ତୁମ୍ଭେ ପଶ
ମୁହିଁ ଯେ ଶ୍ରୀରାମଙ୍କର ଅଟେ ନିଜ ଦାସ ।
ଇନ୍ଦ୍ରଜିତ ବ୍ରହ୍ମଶସ୍ତ୍ର ଲଙ୍କାରେ ମାଇଲା
ଋକ୍ଷକପି ବଳଙ୍କୁ ସେହୁ ସଂହାରିଲା ।
ରାମ ଲକ୍ଷ୍ମଣ ଯେ ହେଲେ ହତଜ୍ଞାନ
ଋକ୍ଷକପି ଜାମ୍ବବ ଜହ୍ନବେ ମୋର କର୍ଣ୍ଣ ।
ମହୌଷଧି ନେବାକୁ ପେଷିଛନ୍ତି ମୋତେ
ବିରୋଧ ନକର ମୋତେ ଯିବି ମୁଁ ତୁରିତେ
ଶୁଣିକରି ଦେବସୈନ୍ୟ ବାହୁଡ଼ିଣ ଗଲେ
ଯେତୋହର ଇଚ୍ଛାରେ ନିଅସି ବୋଇଲେ ।
ସେମାନେ ଗଲରୁ ହନୁ ମନରେ ବିଚାରି
ଜାମ୍ବବଙ୍କ କଥା ନ ପାରିଲି ଧରିକରି ।
ଅମର ମହୌଷଧି ଦେଖିଲା ମୋରନାହିଁ
ତାଙ୍କୁ ପଚ୍ଛରିଥିଲେସେ ଦିଅନ୍ତେ ଦେଖାଇ ।
ଏବେ କିସ ବୁଦ୍ଧି କରିବି ଏ ସ୍ଥାନ
ରାତ୍ର ପାହିଲେତ ନହୋଇ ପ୍ରୟୋଜନ ।
ଜାମ୍ବବ ବଚନେ ଶୃଙ୍ଗ ନେବି ମୁଣ୍ଡିଆଇ
ବିଳମ୍ବନୋହିବ ମୋର ଯିବିବେଗହୋଇ ।
ଏତେକହି ବୀର ଯେ ଗୋଡ଼ାଏ ପୁଣ ମାରି
ପର୍ବତରୁ ଶୃଙ୍ଗଖଣ୍ଡେ ପଡ଼ିଲାକ ଝଡ଼ି ।
ଧରିଣ ହନୁମନ୍ତ ବସାଇଲେ ଶିରେ
ଦକ୍ଷିଣକୁ ମୁଖକରି ଚଳଇ ସତ୍ୱରେ ।
ଲକ୍ଷସହସ୍ର ଯୋଜନ କ୍ଷଣକରେ ଆସି
ଲଙ୍କାଗଡ ସଂଗ୍ରାମର ମଣ୍ଡଳରେ ପଶି ।
ମହୌଷଧି ପବନରେ ଉଠିଲେ ତରୁଣଶି
ଗନ୍ଧଶତେଗୁଣରେ ହେଲେ ତେଜରାଶି ।
ସତଷଠି କୋଟିବଳ ସେଦିନ ଯୁଝେମଲେ
ଆହୁରି ଦୁଇପଦ୍ମ କପି ଯେ ବଞ୍ଚିଲେ ।
ବ୍ରହ୍ମଶସ୍ତ୍ର ଘାଏ ଯେ କପି ପଡ଼ିଛନ୍ତି
ଅଷ୍ଟସେନା ଆବର ପଞ୍ଚିଶ ଯୂଥପତି ।
ଉଠିନପାରନ୍ତି ବିଷମ ଘାଆ ପାଇ
ଏ ସମୟେ ହନୁମନ୍ତ ମିଳିଲାକ ଯାଇ ।
ଯହିଁରେ ରଘୁନାଥ ମୋହେ ପଡିଛନ୍ତି
ପର୍ବତ ଘେନିଯାଇ ମିଳିଲା ତହିଁ ମାରୁତି ।
ଜାମ୍ବବ ବୋଇଲେ ଅଇଲୁ କରେ ବାବୁ
ତହିଁସିନା ସଭିଙ୍କି ଜୀବଦାନ ଏବେଦେବୁ ।

ଆଣବାକୁ ମହୌଷଧି ଦିଅ ମୋର ହସ୍ତେ
ଏଣେ ସୁସ୍ଥ ହୋଇବେ ରଘୁକୁଳନାଥେ ।
ହନୁମନ୍ତ ବୋଇଲା ମୁଁ ଯେ ଗଛ ନ ଚିହ୍ନିଲି
ପର୍ବତରୁ ଶୃଙ୍ଗଖଣ୍ଡେ ଉପାଡ଼ି ଆଣିଲି ।
ପୂର୍ବରେ ମହୌଷଧି ଚିହ୍ନିଲି ମୋର ନାହିଁ
ମୁଣ୍ଡରେ ମୁଁ ମୁଣ୍ଡାଇ ଆଣିଲି ଦୁଃଖସହି ।
ଭ୍ରାନ୍ତ କରିଣ ମୁଁ ଯେ ଆଣିଲି ପର୍ବତ
ଋକ୍ଷମନ୍ତ୍ରୀ ଶୁଣିଣ ହୋଇଲେ ଉସତ ।
ଧୀରେଧୀରେ ହୋଇଣ ଉଠିଲେ ଆଣ୍ଠୁ ଆଉ
ବଳହୋଇଲା ମହୌଷଧିରଯୋଛନାଯେ ପାଇ
ହନୁମନ୍ତ ମୁଣ୍ଡରୁ ପର୍ବତ ଓହ୍ଲାଏ ବିଭୀଷଣ
ଏହି ସମୟରେ ଉଠିଲେ ସୁଷେଣ ।
ଦୁଇମନ୍ତ୍ରୀ ଯାଇଣ ଚିହ୍ନିଲେ ଧନ୍ୱନ୍ତ୍ରୀ
ନମସ୍କାର କରିଣ ପ୍ରଦକ୍ଷିଣ ସେ କରନ୍ତି ।
ତତକ୍ଷଣେ ମହୌଷଧି ପତ୍ର ଛିଣ୍ଡାଇଲେ
ଜାମ୍ବବ ନେଇଣ ସୁଷେଣ ହସ୍ତେ ଦେଲେ ।
ଦୁଇହସ୍ତରେ ମଞ୍ଜାଳିଲେ ସେ ତଣ୍ଡତ
ଶୀଘ୍ରେ ଚଳିଗଲେ ଶ୍ରୀରାମଚନ୍ଦ୍ର କତି ।
ଅଶ୍ୱିନୀ କୁମାରଙ୍କୁ ସୁମରେ ସୁଷେଣ
ନାସନେଇଣ ଦେଲେ ଶ୍ରୀରାମ ନାସାରେଣ ।
ଅତିବଳ ପାଇଣ ଉଠିଲେ ରଘୁସାଇଁ
ପୁଣି ସେ ଲକ୍ଷ୍ମଣଙ୍କ ନାସାରେଦେଲେନେଇ
ତତକ୍ଷଣେ ସଞ୍ଜୀବି ଉଠିଲେ ନିଦ୍ରାତେଜି
ଗନ୍ଧୁ ଶତେଗୁଣରେ ଶରୀର ବହଜ ।
ସୁଗ୍ରୀବର ନାସାରେ ଶୁଙ୍ଘାଇଲେ ନେଇ
ଜାମ୍ବବ ଶୁଙ୍ଘିଲେ ସୁଷେଣ ଶୁଙ୍ଘାଇ ।
ଅଙ୍ଗଦର ନାସାରେ ନେଇଣ ନାସ ଦେଲେ
ଏହି ବିଧିରେ ଅଷ୍ଟ ସେନାଏ ଶୁଙ୍ଘିଲେ ।
ପଞ୍ଚିଶ ଯୂଥପତି ଯେ ପାଇଲେକ ନାସ
ପ୍ରାଣ ପାଇଣ ଉଠିଲେ ଶ୍ରୀରାମଙ୍କ ଦାସ ।
ସବୁଙ୍କର ପଛରେ ଶୁଙ୍ଘିଲେ ହନୁମନ୍ତ
ସୈନ୍ୟଙ୍କୁ ଶବଦାଇଯେବୋଲେଜାମ୍ବବନ୍ତ
ଅମର ମହୌଷଧି ଯେ ସମସ୍ତେ ଶୁଙ୍ଘିଥାଅ
ଗନ୍ଧୁ ଶତେଗୁଣରେ ବଳବାନ ହୁଅ ।
ଶୁଣିଣ ସମସ୍ତ ସୈନ୍ୟ ଉବୁର ଉବୁର
ଏକର ହାତରୁ ଯେ ଆରେକ ନିଅନ୍ତି ଧରି ।

ଶୁଙ୍ଘିଣ ବାହୁଡ଼ାଇଦ୍ୟନ୍ତି ଆରେକରକରେ
ସବୁବଳ ଶୁଙ୍ଘିଲେ ଯେ ଘଡ଼ିକ ଭିତରେ ।
ବାହୁଡ଼ାଇ ଆଣିଣ ହନୁର ହସ୍ତେ ଦେଲେ
ଜାମ୍ବବ ମନ୍ତ୍ରୀତାହାଯେଆପଣେ ଖାଇଲେ ।
ସୈନ୍ୟ ନଷ୍ଟିଲରେ ଯେ ପ୍ରଳୟଅଗ୍ନି ଜାଣି
ବିଭୀଷଣଙ୍କୁ ବୁଝିଣ ବୋଲନ୍ତି ରଘୁମଣି ।
କହୋ ଲଙ୍କପତି ହେ ଆମ୍ଭେ ପୁଣ ମଲୁ
ଇନ୍ଦ୍ରଜିତରବ୍ରହ୍ମଶରରେସମସ୍ତେମୋହଗଲୁ ।
ଧନ୍ୟ କ୍ଷତ୍ରୀବର ଯେ ଅଟେ ମେଘନାଦ
ନୋହିଲେକିଇନ୍ଦ୍ର ସଙ୍ଗେ କଲେକ ବିବାଦ ।
ଯେତେ କ୍ଷତ୍ରୀ ଅଛନ୍ତି ସେ ବ୍ରହ୍ମାଣ୍ଡ ଭିତର
ତାହାରମୁଖ ଦେଖି ଯେ ହୋଇବକାତର ।
ସୁର ସିଦ୍ଧଗଣେ ନୁହନ୍ତି ତାକୁ ସରି
ଏ ମର୍ତ୍ତ୍ୟମଣ୍ଡଳେ ତାର ନାମ ଧରିଲେ ଡ଼ରି ।
ଆହେ ସୁଗ୍ରୀବର ହେ ଜାମ୍ବବ ସୁଷେଣ
କୁହୁଡ଼ଡ୍ରାସ୍ତ୍ରେକ ସେ ହେ ବନ୍ଧନକ ଜାଣ ।
ଦଶଦିଶ ଅନ୍ଧାର ଯେ ଦିଶିଲାକ ମୋତେ
ଏଥିକରେ ଲକ୍ଷ୍ମଣ ଭଆରଛି ତୋତେ ।
କ୍ଷତ୍ରୀ ଧର୍ମ ରଖିଲା ମୋ ଶିର ନ ଛେଦିଲା
ଏଡ଼େବଳଗୋଟାସେମୋରକ୍ଷଣକେନାଶଗଲା
ହନୁମନ୍ତ ନ ଥିଲେ ନପାନ୍ତେ କେହି ପ୍ରାଣ
କେମନ୍ତେ ରକ୍ଷା ହୁରେ ହେଲୁ ବିଭୀଷଣ ।
ରାବଣର ଭାଇ ଯେ ଜାହେ ଯୋଡ଼ିକର
ଯେତେବେଳେ ଇନ୍ଦ୍ରଜିତ ମାଇଲା ବ୍ରହ୍ମଶର ।
ଜାଣିଲି ସୁରଦେବେ ନ ବର୍ଜନ୍ତି ଏ ବାଣେ
ଶ୍ରୀରାମ ଲକ୍ଷ୍ମଣ ହନ୍ତୁ ନ ମରନ୍ତି ଏଣେ ।
ଋକ୍ଷକପି ଗୋଟିଏ ଯେ ନ ବଞ୍ଚିବେ କେହି
ମୂର୍ଚ୍ଛି ପଳାଇଲେଯେ ରଖିବମୋର ଦେହି ।
ଏତେ ବିଚାରି ଦେବ ମୁଁ ସଂଗ୍ରାମ ଉପେକ୍ଷିଲି
ଶସ୍ତ୍ର ପକାଇଦେଇ ମୁଁ କେଶମୁକୁଳା କଲି
ସୁବଳସ୍ଥା ପର୍ବତରେ ଉଠିଲି ନେଦବସାବ
କେବଳ ପ୍ରାଣ ମୁଁ ରଖିଲି ସେଥିପାଇଁ ।
ଯେତେବେଳେ ମେଘନାଦ ବାହୁଡ଼ିଏଥିଗଲା
ସକଳ ସୈନ୍ୟଙ୍କୁ ନାଶି ଲଙ୍କାରେ ପଶିଲା ।
ତେବେସେ ସୁବଳସ୍ଥାରୁ ମୁଁ ଅଇଲି ଓହ୍ଲାଇ
ଦେଖିଲି ଋକ୍ଷକପି ଗୋଟିଏ ଜାଉନାହିଁ ।

ମୋର ଭୁଣ୍ଡ ଶୁଣିଣ ଉଠିଲା ହନୁମନ୍ତ
ପୁଣିହିଁ ଚେତନା ପାଇଲେ ଜାମ୍ବୁବନ୍ତ ।
ମହୌଷଧି ଆଣିବାକୁ ପେଷିଲେ ପାବନ
ଦୁଇଘଡ଼ି ଭିତରେ ଅଇଲା ହନୁ ଘେନ ।
ଦେଖ ଏ ହେମକନ୍ତ ପର୍ବତ ଶୃଙ୍ଗ ଖଣ୍ଡ
ବହି ଆଣିଲା ଏହାର କ ବୋଲିବା ମୁଣ୍ଡ ।
ଏମନ୍ତେ ଏକଜଣେନଥିଲେଦେବ ସର୍ବେ ମଲ
ବାବୁହନୁମନ୍ତରେତୋତେକେହିନୁହେଁ ସରି
ଜାମ୍ବୁବ ବୋଇଲେ ବାବୁ ଶୁଣରେ ମାରୁତି
ଦେବତାଙ୍କ ମହୌଷଧି ନ ଥାଉ ପୁଣ ଏଥି ।
ଏଥି ଥିଲେ ଅସୁରେ ଖାଇବେ ବାଆଳଗି
ହେମଗିରିକି ତଳକୁନକର ହେଲା ବେଗି ।
ଯେ ଯାହାର ଆଶ୍ରମ ତହିଁରେ ଥୁଅ ନେଇ
ଶ୍ରୀରାମବୋଇଲେମନ୍ତ୍ରୀତୋତେକହେଦୟାନାହିଁ
ଗଲା ଅଇଲା ତ ପୁଣିହିଁ ସେହି ଯିବ
ତୁମ୍ଭେ ସିନା ଏ କଥା କହି ସେ ପାରିବ ।
ମୋହର ବୋଲିବାକୁ ଭରସା ପାଉନାହିଁ
ହନୁମନ୍ତ ବୋଇଲା ଯେ ଶ୍ରୀରାମ ମୁଖ ଚାହିଁ ।
ତୁମ୍ଭେ କର୍ମୀ ଏମନ୍ତ ବୋଇଲ ରଘୁପତି
ତୁମ୍ଭ ଚରଣେ ମୁଁ ଅଟେ କେଶ୍ୟ ବୁଦ୍ଧି ।
ସୀତାଙ୍କୁ ଆଣିବାପାଏ ବନ୍ଧାମ ମେ ଭେଳାହିଁ
ରାବଣ ମଲେ ସୁଖ ପାଇବ ଗୋସାଇଁ ।
ଏବେ ମୁ ଏହିକ୍ଷଣି ପର୍ବତ ଘେନିଯିବ
ହେମକନ୍ତ ଗିରିରେ ମୁ ଥୋଇଣ ଆସିବ ।
ଜାମ୍ବୁବ ବୋଇଲେହନୁବେଗେ ଥୋଇଆସ
ତୁ ଆସିଲେ ସ୍ୱର୍ଗପୁର ଯିବଟି ଅବଶ୍ୟ ।
ଇନ୍ଦ୍ରଙ୍କ ଭୁବନୁ ଯାଇ ଅମୃତ ଆଣିବୁ
ଯୁଗେ ଯୁଗେ କଥା ଯେ ତୁ ସିନା ରଖିବୁ ।
ଆହୁରି କଥାଏ ତୁ ହୋ ହନୁମନ୍ତ ଶୁଣ
ହେମଗିରିକି ଯେ ତୁ ଯିବୁ ଏହିକ୍ଷଣ ।
ହେମଗିରିରେ ମହୌଷଧି ରଖିବୁ ତୁ ହନନ
ଅଳକାପୁରେ ଶଙ୍କରଙ୍କୁ କରିବୁ ଦର୍ଶନ ।
ସେଠାବରୁ କୁବେର ପୁରକୁ ଚଳିଯିବୁ
ନଳକୁ ସଙ୍ଗେ ଘେନି ସ୍ୱର୍ଗପୁର ଯିବୁ ।
ଇନ୍ଦ୍ରଙ୍କୁ ବୋଲିବୁ ପିତା ଅମୃତ ମୋତେଦିଅ
ବ୍ରହ୍ମଶରେ ଶ୍ରୀରାମ ଯେ ହୋଇଛନ୍ତି ମୋହ ।
ଅମୃତ ଘେନିଣ ତୁମ୍ଭେ ଆସ ଯେ ତୁରିତ
ଶୁଣିଣ ଶ୍ରୀରାମ ଯେ ହୋଇଲେ ବିଚଳିତ ।
ବୋଲନ୍ତି ମନ୍ତ୍ରୀ ହନୁକୁ କେତେ ଦୁଃଖଦେଉ
ଜାମ୍ବୁବ ବୋଇଲେ ଦେବ ଶୁଣିବାମହାପ୍ରଭୁ
ରାମାୟଣ ଯୁଦ୍ଧକୁ ଯେ କବାଟ ହନୁମନ୍ତ
ହନୁମନ୍ତ ନ ଗଲେ କେହି ନୁହନ୍ତି ସାମର୍ଥ ।
ବାଟରେ ଜଗଇ ଯେ ପବନ ତାର ପିତା
ସ୍ୱର୍ଗରେ ଦେବତାଙ୍କୁ କିଛି ନାହିଁ ଚିନ୍ତା ।
ଶୁଣିଣ ହନୁମଂତ ସଂତୋଷ ହୋଇଲା
ଏହିକ୍ଷଣି ଯାଇ ମୁ ଆସିବ ବୋଇଲା ।
ଏତେବୋଲି ଶ୍ରୀରାମଙ୍କୁ ପ୍ରଦକ୍ଷିଣ କଲା
ପର୍ବତ ଶିରରେ ଘେନି ଗଗନମାର୍ଗେ ଗଲା ।
ଉତ୍ତରମୁଖ ହୋଇ ଚଳଇ ଘନଘନ
ମୁହୂର୍ତ୍ତିକେ ଗଲା ଚାରି ସହସ୍ର ଯୋଜନ ।
ପୂର୍ବସ୍ଥାନେ ଶୃଙ୍ଗକୁ ଥୋଇଲା ସତ୍ୱରକରି
ବାହୁଡ଼ି କୁବେର ପାଶେ ଗଲା ବେଗକରି ।
କୁବେରବୋଇଲେ ହୋମାରୁତି ବେଗେଶୁଣ
ରାମାୟଣ ଯୁଦ୍ଧ କିସ ହୋଇଲାକ ପୁଣ ।
ହନୁମଂତ ବୋଲେ ଇନ୍ଦ୍ରଜିତ କଲା ବ୍ରହ୍ମଶର
ତୋହର ପୁତ୍ରକୁ ପର ଇନ୍ଦ୍ରଜିତ ମାର ।
ସାତଦିନ ଯୁଦ୍ଧରେ ବ୍ରହ୍ମଶର କଲା
ପାଞ୍ଚଦିନେ ଭାଇ ତୋର କୁମ୍ଭକର୍ଣ୍ଣ ମଲା ।
ମୁ ଏବେ ସ୍ୱର୍ଗକୁ ଅଇଲି ଶ୍ରୀରାମର ବୋଲେ
ଅମୃତନେଲେ ସୁସ୍ଥହେବେ ସୈନ୍ୟଦଳେ ।
ଶୁଣିଣ କୁବେର ନଳକୁ ସଙ୍ଗେ ଦେଲା
ଗନ୍ଧର୍ବଙ୍କ ପୁରେ ସେ ପ୍ରବେଶ ହୋଇଲା ।
ଅପୂର୍ବ ପୁରମାନ ଦେଖି ତହିଁ ମଧ୍ୟେ
ଚନ୍ଦ୍ର ସୂର୍ଯ୍ୟ ପୁର ଦେଖି ଚଳଇ ସାନନ୍ଦେ ।
ଦେବତାଙ୍କ ପୁରମାନ ଆନନ୍ଦେ ଦେଖଇ
ଧୀର ଧୀର ହୋଇଣ ତହୁଁ ଚଳିଯାଇ ।
ତେତିଶକୋଟି ଦେବତାଙ୍କ ପୁରଦେଖେପରା
ଉଜଳାରେ ସେହିପୁର ଘଣେ ବଡ଼ତୋରା ।
ତହୁ ଯାଇ ସୁଧର୍ମା ସଭା ତଳରେ ମାରୁତି
ଦେଖିଲା ସକଳଦେବେବସି ସଭା କରୁଛନ୍ତି ।
ଦେବତାଙ୍କୁ ନମସ୍କାର କଲା ହନୁମଂତ
ଲୋଟାଳିଶୋଇଲାସେଦେବଙ୍କ ପାଦତଳ ।

ଦଇବବୋଇଲେତୁମ୍ଭେଶୁଣହୋଦେବ ରାଜା
ଅମୃତ ପାଇଁ ଆସିଛି ପବନ ତନୁଜା ।
ଶ୍ରୀରାମ ବ୍ରହ୍ମଶରେ ନିର୍ବଳ ଛନ୍ତି ହୋଇ
ଅମୃତ ଦିଅ ମାରୁତି ଯାଉ ବେଗ ହୋଇ ।
ଦେବତାଙ୍କ ଉପକାରୀ ପବନ କୁମାର
ରାମାୟଣ ଯୁଦ୍ଧରେ ଅଟେ ଏହୁ ସାର ।
ଶୁଣିକରି ଦେବଇନ୍ଦ୍ର ସଭାରୁ ଉଠିଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ତାଙ୍କ ସଙ୍ଗେ ହନୁମନ୍ତ ଗଲା ତତପର
ଭଣ୍ଡାରୁ ଅମୃତ ଅଣାଏ ପୁରନ୍ଦର ।
ଦେଖିଣ ଇନ୍ଦ୍ରାୟଣୀ ଇନ୍ଦ୍ରଙ୍କୁ ପଚାରିଲେ
କପିହୋଇ ସ୍ୱର୍ଗକୁ କେମନ୍ତେ ଆଇଲେ ।
ଦେବରାଜା ବୋଇଲେ ଏ ପବନ ନନ୍ଦନ
ତୁମ୍ଭର ପୁତୁର ଏ ଅଟଇ ହନୁମାନ ।
ରାବଣକୁ ମାରିବାକୁ ଶ୍ରୀରାମ ମର୍ତ୍ତ୍ୟେ ଜାତ
ସାତଦିନ ସମରେ ନିର୍ବଳ ରଘୁନାଥ ।
ବ୍ରହ୍ମଶର ମାଇଲା ରାବଣ ତନୟେ
ଅମୃତ ନେବାପାଇଁ ଭେଜିଲେ ରାମରାୟେ ।
ଶୁଣିକରି ଶଚୀଦେବୀ ଅର୍ଘ୍ୟସ୍ଥାଳ ଆଣି
ବନ୍ଦାପନା କଲେ ମାରୁତି ଶିରେ ପୁଣି ।
ଦେଖିଣ ହନୁମନ୍ତ ପରମ ତୋଷ ହେଲା
ଶଚୀଦେବୀ ଚରଣେ ଓଳଗି ହୋଇଲା ।
ଇନ୍ଦ୍ରାୟଣୀବୋଇଲେବାବୁତୁମେମୋର ପୁଅ
ସ୍ଥିର ଯୁଗରେ ତୁମେ ଚିରଞ୍ଜୀବ ହୁଅ ।
ଶ୍ରୀରାମଙ୍କର କାର୍ଯ୍ୟ କରରେ ବାବୁ ବେଗେ
ରାବଣ ମଲେ ଦେବେପାଇବେ ଅଇଶ୍ୱର୍ଯ୍ୟ
ଏତେକହି ଶଚୀଦେବୀ ଭିତରକୁ ଗଲେ
କନକ କୁମ୍ଭରେ ଇନ୍ଦ୍ର ଅମୃତଆଣିଦେଲେ ।
ସୁଧର୍ମା ସଭାକୁ ମାରୁତି ବେଗେ ଗଲା
ସ୍ଥିରପାଖ ବୁଲିଣ ପ୍ରଦକ୍ଷିଣ କଲା ।
ଓଳଗ ହୋଇଣ ସକଳ ଦେବତାଙ୍କୁ
ଚଳିଲା ଖରକରି ସଂଗ୍ରାମ ମଣ୍ଡଳକୁ ।
ଦେବ ପୁରରୁ ଯାଇ ଶୂନ୍ୟରେ ମିଳିଲା
ଲଙ୍କାଗଡ଼ ସଳଖରେ ଶୂନ୍ୟରେ ଖସିଲା ।
ରଣହେବା ଭୂମିରେ ପ୍ରବେଶ ହେଲାପାଇଁ
ଅମୃତ ଥୋଇ ଶ୍ରୀରାମ ପାଦେ ଓଳଗଇ ।

ଦେଖିଣ ଶ୍ରୀରାମ ମନରେ ହେଲେ ତୋଷ
ବଡ଼ ଉପକାର କଲା ପବନର ଶିଷ୍ୟ ।
ଜମ୍ବେବ ସୁଷେଣ ଆସି ଅମୃତ ଧଇଲେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ପ୍ରଥମରେ ଦେଲେ ।
ସୁଗ୍ରୀବର ବିଭୀଷଣ ଅଷ୍ଟ ସେନାପତି
ହନୁମନ୍ତ ଜମ୍ବେବ ପଚାଶ ଯୂଥପତି ।
ସେଉତ୍ତାରୁ ସୈନ୍ୟ ସର୍ବେ ଭୁଞ୍ଜିଲେ ଅମୃତ
ଗତ ଶତେଗୁଣରେ ହେଲେ ବଳବନ୍ତ ।
ଏଥୁଅନ୍ତରେ ତୁମ୍ଭେ ଶାକମ୍ଭରୀ ଶୁଣ
ଶ୍ରୀରାମ ଲକ୍ଷ୍ମଣ ସୈନ୍ୟ ହେଲେ ବଳବାନ ।
ଗତ କଥାମାନ ଯେ ସ୍ୱପନ ପ୍ରାୟେ ଗଲା
ଯୁଦ୍ଧକୁ ଆସୁସାର ସମସ୍ତେ ହେଲେ ପର ।
ହନୁମନ୍ତ ବୋଇଲା ଶୁଣିମା ଏବେ ସ୍ୱାମୀ
ସୈନ୍ୟବଳ ନପାତି ମାଇଲା ଦୈତ୍ୟ ପୁଣି
ଜାନକୀ ଅଶୋକ ବନରେ ଛନ୍ତି ରହି
ଅସୁରୀମାନେ ତାଙ୍କୁ ଏ କଥା ଥିବେ କହି ।
ମନଦୁଃଖେ ବଇଦେହୀ ଚିନ୍ତାରେ ବସିଥିବେ
ଏଥୁ ଜଣେ ଯାଇ ଯେ ବାରତା କହିବେ ।
ତେବେ ତୋଷହେବେ ଯେ ଦଶରଥ ବଧୂ
ମାରୁତିକି ପ୍ରଶଂସା କରନ୍ତି ସାଧୁ ସାଧୁ ।
ଶୁଣିଣ ଶ୍ରୀରାମ ବୋଇଲେ ହେଉ ବାବୁ
ତାରାର ପିଅରକୁ ଡାକିଲେ ଶ୍ରୀରାମ ପ୍ରଭୁ ।
ବୋଇଲେହେପିତାମକରବଦନ ହୋଇ ଯିବ
ଜାନକୀର ପାଶରେ ପ୍ରବେଶ ହୋଇବ ।
ବୋଲିବଶ୍ରୀରାମଲକ୍ଷ୍ମଣ ସୈନ୍ୟବଳ ଯେତେ
ସମସ୍ତେ ସୁଖରେ ଅଛନ୍ତି ନିଶ୍ଚିନ୍ତେ ।
ଅସୁରେହାଲହୋଳକରିଥିବେମଲେ ବୋଲି
ଏକଥାକୁ ସତ ଯେ ନ କରିବ ଭଳି ।
ଏତେକହି ତାଙ୍କୁ ବୋଧି ଦେବେ ଆସ
ବାରତା ନ ପାଇ ସୀତା ମରିବ ଅବଶ୍ୟ ।
ଶୁଣିତ ତାରାର ପିତା ବେଗେ ଚଳିଗଲା
ଘାଟେଶ ହୋଇଁ ଅଶୋକବନରେ ମିଳିଲା ।
ଦେଖିଲା ମଣ୍ଡପ ପରେ ବସିଛି ବଇଦେହୀ
ତଳକୁ ମଥାପୋତି କାନ୍ଦୁଛି ବସି ସେହି ।
ହରିନର ବଧାଁତାରେ କେତେକଷ୍ଟ ଦେଲୁ
ନିର୍ଲଜ ଜୀବନକନ୍ୟା ମୋଶିରରେ ରଖିଲୁ ।

ଏହି ସମୟରେ ତାହାର ପିଅର
ପ୍ରବେଶ ହେଲେ ଯାଇ ଜାନକୀ ଛାମୁର ।
ଜାନକୀ ଦେଖିଣ ମନରେ ବିଚାରଇ
ଦୈତ୍ୟମାନଙ୍କରକଥାକେବେହେଁସତ୍ୟନୋହି
ସୈନ୍ୟଯାକମଲେଶ୍ରୀରାମଲକ୍ଷ୍ମଣଗଲେକ୍ଷତ
ଏବେ ମୋର ସ୍ୱାମୀର ମିଳିଲେ ଆସି ଦୂତ
ମୁଖଟେକ ଜାନକୀ ଯେ ଦୂତକୁ ସମ୍ଭାଷିଲେ
କେଉଁଠାରୁଅଇଲୁବେଗେକହମୋତେଭଲ
ତାରର ପିଅର ବୋଲଇମାତଶୁଣମୋରବାଣୀ
ବାଳିର ଶଶୁର ତାରର ପିଅର ମୁହିଁ ଜାଣ ।
ସୁଗ୍ରୀବର ଶ୍ରୀରାମ ସଙ୍ଗେ ମଇତ୍ର ହୋଇଲେ
ଲଙ୍କାପୁର
ସାତଦିନ ସମର ହୋଇଲା ମହାଘୋର ।
ଇନ୍ଦ୍ରଜିତ କାଲି ଆସି ବ୍ରହ୍ମଶର କଲା
ସକଳ ସୈନ୍ୟଙ୍କୁ ଶରରେ ମୋହକଲା ।
ଘଡ଼କେ ଚେତା ପାଇଲେ ସର୍ବଦଳ
ମଲେ ସର୍ବେ ବୋଲି ଦୈତ୍ୟେ
ଶବଦ କଲେ ଗୋଳ ।
ସେଥିର ସକାଶରୁ ଶ୍ରୀରାମ ମୋତେ ପେଷି
ବୋଇଲେ ଜାନକୀଙ୍କି ତୁ କହିବ ଆସି ।
ଚିନ୍ତାକରି ଥିବେ ମୋ ଜନକ କୁମାରୀ
ଏତେକକହି ମୋତେ ପେଷିଛନ୍ତି ବୃପଧାରୀ ।
ଜାନକୀବୋଇଲେଦୈତ୍ୟେଜାଣନ୍ତିମାୟାଗୁନ୍ଦ
ଦେଖିକରି ଦୈତ୍ୟଙ୍କୁ କରନ୍ତୁ ରାମ ବଧ ।
ଶୁଣିକରି ତାର ପିତା ଫେରିଣ ଅଇଲା
ଶ୍ରୀରାମର ପାଶରେ ପ୍ରବେଶ ହୋଇଲା ।
ନମସ୍କାର କରିଣ କହିଲା ସୀତା କଥା,
ଶୋକଭରେ ଜାନକୀ ତଳକୁ ପୋତି ମଥା ।
ମୋତେ ଦେଖି ଜାନକୀ ଆନନ୍ଦ ହୋଇଲେ
ଦୈତ୍ୟଙ୍କୁ ମାରନ୍ତୁ ଶ୍ରୀରାମ ହସିଣ କହିଲେ ।
ଶୁଣିଣ ଶ୍ରୀରାମ ଯେ ମନରେ ତୋଷହେଲେ
ଜମ୍ବେବ ଅଙ୍ଗଦ ହନୁମନ୍ତକୁ ଚାହିଁଲେ ।
ଦେଖିଲେ ଆସି ରଜନୀ ତିନପ୍ରହର ହେଲା
ମନରେ ବିଚାର କଲେ କୌଶଲ୍ୟାର ବଳା ।
ଦେଖିଣ ଅଷ୍ଟସେନାଏ ଶିରରେଦେଲେକର
ହୋଇଲେଘେଦେବ ଆଜ୍ଞାକସଯେ ବିଚାର ।

ଆମ୍ଭେ ମନାଇ ବୋଲିଣ ରାବଣ ନଷ୍ଟିନ୍ତ
ଲଙ୍କାରେ ପଶି ଆମ୍ଭେ ମାରିବା ଅସୁରନ୍ତ ।
ଗଡ଼ଖାଲ ପୋଡ଼ଦେବା ଭାଙ୍ଗିବାକ କବାଟ
ହୋଇବଲେ କେମନ୍ତେ ସେମନ୍ତରବଯେ ଦୁଷ୍ଟ ।
ଯେ ଯାହାର ମନ୍ଦିରେ ନଷ୍ଟିନ୍ତେ ଶୋଇଛନ୍ତି
ଏମନ୍ତବେଳେ ପଶି ମାରିବା ନପାନ୍ତି ।
ସୁଗ୍ରୀବର ମନକୁ ଯୋଗାଇଲା ଏହି କଥା
ହସିଣ ସମତ କଲେ କୌଶଲ୍ୟାଙ୍କ ସୁତା ।
ଏହି ସମୟରେ ଶୁଣ ଗୋ ଭଗବତୀ
ବାସେଳ ଥିଲା ସୁବଳ ପର୍ବତର କନ୍ତ ।
ଚଉଷଠିକୋଟିଯୋଗିନୀବାନକୋଟିପିଶୁଣୀ
ନବକୋଟି ଦେବୀ ଯେ ସରଦାର ଧୁଣି ।
ସମସ୍ତେ ଅମଳାଣ ଶାଢ଼ୀଛନ୍ତି ପିନ୍ଧି
ଫୁଲରଭାମ ନସର୍ବେଜୁଡ଼ାରେଛନ୍ତି ବାନ୍ଧି ।
ଦିବ୍ୟ ଅଳଙ୍କାରମାନ ଆଭରଣ ହୋଇ
ପାହୁଡ଼ନୁପୁର ଚୂଡ଼ି ତାଡ଼ଲାଇ ।
ପର୍ବତରୁ ବାହାର ହେଲେ ଦେବୀଗଣ
ଆଲୋକ ଦଶିଲାକ ରଣଭୂମି ପୁଣ ।
ଦେଖିକରିଶ୍ରୀରାମସୈନ୍ୟପଳାଇଠୁଳହେଲେ
ରାବଣ ଅଇଲାବୋଲି ମନରେ ବିଚାରିଲେ ।
ଶ୍ରୀରାମ ଉଠିଣ ଯେ ଚାହିଁଲେ ପଶ୍ଚିମକୁ
ମାତୃଣ ଆସୁଛନ୍ତି ଭୟ ଯେ ନାହିଁ ତାଙ୍କୁ ।
ଶ୍ରୀରାମବୋଇଲେହନୁ ଅଙ୍ଗଦ ବେଗେ ଯାଅ
ଦଶଗ୍ରୀବ ହୋଇଥିଲେବାରତାମୋତେଦିଅ
ଶୁଣିଣ ଅଙ୍ଗଦ ହନୁମନ୍ତ ଗଲେ
ବାସେଳଙ୍କ ଆଗକରି ଯାଇଣାଭେଟିଲେ ।
ବାସେଳ ବୋଇଲେ କରେ ଅଇଲ ଦୁଇଭାଇ
ଆମ୍ଭର ସଙ୍ଗେ ଯୁଦ୍ଧ କରିବ କରେ ରହି ।
ଆମ୍ଭେଯେ ଦେବୀଗଣଜାଅନ୍ତା ମନ୍ଦ ଖାଇ
ରଣଭୂମି ହୁଡ଼ିକରି କାହିଁକ ନ ଯାଉ ।
ଯୋଗିନୀକବୋଇଦେବୁମ୍ଭେଏହିଠାରେ ଥାଅ
ଶ୍ରୀରାମ ଲକ୍ଷ୍ମଣଙ୍କର ମୁଁ ଚାହିଁଆସେ ମୁହଁ ।
ଏତେବୋଲି ବାସେଳ ବେଗହୋଇ ଯାଏ
ଅଙ୍ଗଦ ହନୁମନ୍ତ ପଛରେ ଗୋଡ଼ାଏ ।
ଶ୍ରୀରାମ ପାଶରେ ଦେବୀ ହେଲେ ପରବେଶ
ନମସ୍କାର କଲା ମନରେ ହୋଇ ତୋଷ ।

ଶ୍ରୀରାମଙ୍କୁ ବୋ'ଇଲା ମୋହଠାରୁ ଶୁଣ
ସମସ୍ତେ ହେଲଟିକ ଶୋଣ ସବୁ ସୈନ୍ୟ ।
ଆଉ କମ୍ପା ରଣଭୂମିକି ଅଛ ଜଗି
ତୁମ୍ଭର ଅକାର୍ଯ୍ୟ ହେବ ଯାଅ ଏଥୁ ବେଗି ।
କ୍ଷମାବାନ ଦେଇ ନାହିଁ ଋକ୍ଷକପିବଳ
ଶ୍ରଦ୍ଧାରେ ତୁମ୍ଭର ସଙ୍ଗେ ଆସି ହେଲେ ମେଳ
ଶତ ଶତ କୋଟି ଆଜ କପି ରଣେ ମଲ
ଘାହିଲେ ଉଜନ୍ମ ଆଉ ନବଞ୍ଚିବେ ହର ।
ବାଛୁଣ ଦୈତ୍ୟ ଆମ୍ଭେ କରିବୁ ଆହାର
ଋକ୍ଷକପି ଗଣ୍ଡିମୁଣ୍ଡ ଯୋଡ଼ିବୁ ସତ୍ୱର ।
ଦେଖିବ ଯେବେ ତୁମ୍ଭେ ଆଗହୋଇ ଯାଅ
ରଣଭୂମି ମଧ୍ୟରେ ଗୋଟିଏ ନ ରହ ।
ଦେବାଙ୍କଠାରୁ ଶୁଣି ଶ୍ରୀରାମ ସନ୍ତୋଷ
ବାସେକ ବୋଇଲ ତୁମ୍ଭେ ଶୁଣ ସୀତାଈଶ ।
ବେଦବର ଆମ୍ଭଙ୍କୁ ଆଗହୁଁ ଭେଦଦେଲ
ଦୈତ୍ୟଙ୍କୁ ଖାଅ କପି ଜୀଆଅ ବୋଇଲ ।
ସାତଦିନ ସମର ଆଜକୁ ତୋର ହେଲ
ଯେତେ ସୈନ୍ୟ ମରନ୍ତି ସହରେ ଜୀଏ ପର
ଦୁଇଖଣ୍ଡ ହେଲ କପି ଯୋଡ଼ ଦେଇ ଯିବୁ
ଶୁକ୍ର ମନ୍ତ୍ରୀ ଆସିଣ ଜୀଆଇ ଦିଏ ସବୁ ।
ଶୁଣିଣ ଶ୍ରୀରାମ ମାରୁତିକି ଆଜ୍ଞାଦେଲେ
ସକଳ ସୈନ୍ୟ ତହୁଁ ବାହାର କରି ନେଲେ
ପଶିଲେ ଯୋଗିନୀବଳ ଭକ୍ଷିଲେ ଦୈତ୍ୟଙ୍କୁ
ରକ୍ତମାଂସ ଖାଇଣ ବୋଧିଲେ ଆତ୍ମାକୁ ।
କପିପଲ ଛାଡ଼ିଣ ଦୈତ୍ୟ ନଶୋଧିଲେ
ହସ୍ତୀ ଘୋଡ଼ା ପାଦାନ୍ତ ଗୋଟିଏ ନ ରଖିଲେ
ସନ୍ତୋଷ ହୋଇଣ ଯୋଗିନୀ ପିଷ୍ଟୁଣି ଗଲେ
ସୁବଳ ଗିରିରେ ଯାଇ ପ୍ରବେଶ ହୋଇଲେ ।
ନବକୋଟି ଦେବା ଯେ ରଣଭୂମିରେ ରହି
ଗଣ୍ଡିମୁଣ୍ଡ ଯୋଡନ୍ତି ହଣାଦେଖି ତହିଁ ।
ଏହି ସମୟରେ ତହିଁ ଶୁକ୍ର ମନ୍ତ୍ରୀ ମିଳେ
ମୃତ୍ୟୁ ସଞ୍ଜିବନୀ ପଢି ପାଣି ମନ୍ତୁରିଲେ ।
ସମର ଭୂମିରେ ସିଞ୍ଚିଲେ ତାହା ନେଇ
ଉଠିଣ ଋକ୍ଷକପି ଦେବେ ଜୀଇ ପାଇ ।
ଅମୃତ ପୁଣି ମନ୍ତ୍ରୀ ସିଞ୍ଚିଲେ ଉପରେ
ଭୂଷାର୍ତ୍ତି ହୋଇ ସୈନ୍ୟ କରନ୍ତି ଆହାରେ ।

ଆକାଶ ମାଗକୁ ଯେସନ୍ତେ ବୃତକ ଭକ୍ଷଇ
ଅମୃତକୁ ତେମନ୍ତରେ ଋକ୍ଷକପି ଖାଇ ।
ଅମୃତ ଆହାରେ କପି ହେଲେ ବଳବାନ
ରଡ଼ିକରି ଧାଇଁଲେ ସେ ଲଙ୍କାଗଡ଼େ ପୁଣ ।
କେଣେ ଗଲେ ରାମବୋଲିପାଚେରୀତଳେରହି
ଶୁକ୍ରମନ୍ତ୍ରୀ ଜୀଆଇଣ ସ୍ୱର୍ଗେ ଚଳିଯାଇ ।
ନବକୋଟି ଦେବା ସୁବଳସ୍ଥା ଗିରି ଗଲେ
ଶ୍ରୀରାମ ଦେଖିଣ ବିସ୍ମର ମନେ କଲେ ।
ବୋଇଲେ ଏ ଦେବକୃତ ହୋଇଅଛି ପୁଣ
ନିଶ୍ଚୟେ ରାବଣବଂଶ ନାଶିଯିବ ପୁଣ ।
ଯୂଥପତିମାନେ ବାଡ଼ହୋଇ ରହିଥିଲେ
ମଲ୍ଲେକ ଜୀଇବାର ପ୍ରତ୍ୟକ୍ଷେ ଦେଖିଲେ ।
ବିସ୍ମରିଲେ ବାସୁଦେବ ଅଚିନ୍ତ ଶ୍ରୀରାମ
ଏଥର ଆମ୍ଭ ମନୁ ଛାଡ଼ିଗଲା ଭ୍ରମ ।
ମଲେତ ଜୀଇବା ଆମ୍ଭେ ରଣଇଁ କରିବା
ମରିବାକୁ ନସତ କପାଇଁ ଆଉ ହେବା ।
ସାତଦିନ ସମର ସରିଲା ଏବେ ପୁଣ
ଆଠଦିନ ଅନୁକୂଳ କରିବା ଯେ ରଣ ।
ଏମନ୍ତ ବିସ୍ମରିଣ ସମସ୍ତେ ସଜ ହେଲେ
ଯୁଦ୍ଧକୁ ଯିବାକୁ ସେହୁ ଆଗୁଁସାର ହେଲେ ।
ସାଜ ସାଜ ସୈନ୍ୟ ବୋଲି ପଡ଼ିଲାକ ଡାକ
ଧାମନ୍ତ ଋକ୍ଷକପି ହୋଇଣ ଉଚ୍ଛୁକ ।
ହାତରେ ତରୁଶିଳ ବକଶଳ ମୁଷ୍ଟି
ସଜଳସ ଗୁଣ୍ଡିରେ ଲଗାଇଲେ ବନ୍ଧି ।
ଶ୍ରୀରାମ ଲକ୍ଷ୍ମଣ ଯେ ସୁଗ୍ରୀବର ସଙ୍ଗେ
ବାଟ କଢାଇଣ ବିଭୀଷଣ ଯାଏ ।
ଗଡଉତ୍ତର ଦ୍ୱାରେ ଜଗିଲେ ଯାଇଁବଳ
କବାଟ ଭାଙ୍ଗିବାକୁ ନ ପାଇଲେ ବଳ ।
ଶ୍ରୀରାମ ଆଜ୍ଞାଦେଲେ ସୁଗ୍ରୀବଙ୍କୁ ତହିଁ
ଗଡରେ ପଶନ୍ତୁ ସୈନ୍ୟ ପାଚେରୀକୁ ଡେଇଁ
ତେଣେ ଥାଇ କବାଟକୁ ଫେଡ଼ ସେ ଦିଅନ୍ତୁ
ଗଡରେ କପି ପଶି ଅସୁର ମାରନ୍ତୁ ।
ଶୁଣି କପିରାଜା ବୋଲେ ହନୁମନ୍ତ ଯାଅ
ସଙ୍ଗତରେ ପଚାଶ ଯୂଥପତି ନିଅ ।
ଅଷ୍ଟସେନା ଆବର ବୀରମହାବୀର
ସୈନ୍ୟବଳ ଘେନ ଗଡକର ନାରଖାର ।

ଶୁଣିଣ ହନୁମନ୍ତ ଋକ୍ଷକପି ସେନ
ହଟହଗଡ କରି ଗଗନେ ହହମି ।
ପାଟେଶ୍ୱର ଉଚ ଯେ ଅଟଇ ଦଶଯୁଣ
ଦୁଇକୋଶ ଓସାର ହଟକ ଉସାଣ ।
ତାହାକୁ ଡେଇଁ କପି ପଶିଲେ ଭିତରେ
ଶିଳାବୃକ୍ଷ ଦହୁଡ଼ି ସବୁରି ହସ୍ତରେ ।
ଯୁଥପତିମାନେ ପଶିଲେ ଗଡ଼ଡେଇଁ
ବାହାର ଲୋକଙ୍କୁ ସେ କବାଟ ଦେଲେଫେଇ
ହନ୍ତ ଗର୍ଜିଲେ ଯେହ୍ନେ ଘନେ ବଡ଼ିପାଣି
ଋକ୍ଷକପିବଳ ଯେତେକ ସୈନ୍ୟ ପୁଣ ଜାଣି
ଶ୍ରୀରାମ ଲକ୍ଷ୍ମଣ ଯେ ସହିତେ ଗଡ଼େ ପଶି
ଶତେଯୁଣ ଲଙ୍କା ବେଢ଼ିଲେ ଋକ୍ଷକପି ।
ଅସୁରେ ନଜାଣନ୍ତି ଯେ ନଷ୍ଟ ହେଉଛନ୍ତି ଶୋଇ
ଡରଭୟ ତାଙ୍କର କାହାକୁ ପୁଣ ନାହିଁ ।
ହଣ୍ଡରଲେ ଶତ୍ରୁ ଯେ ଆମ୍ଭର ହେଲେ ହତ
ଇନ୍ଦ୍ରଜିତ ନାଗଡରେ ପଡ଼ିଲେ ସମସ୍ତ ।
ଏସନକ ବସ୍ତୁରଣ ନଷ୍ଟକ୍ଲନ୍ତ ସେ ଯେ ହେଲେ
ଏସନ ସମୟେ ସୈନ୍ୟ ଗଡରେ ପଶିଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିପୁରାରି
କଥାଏ ରହିଲା ମୋତେ ହେ କହ ହରିହର ।
ତାରଭ ପିଅରଙ୍କ ଯେ ରାମର ଦୂତପଣେ
ସୀତାଙ୍କୁ କହି ସନ୍ଦେଶ ଫେରିଲେକ ଏଣେ
ବ୍ରହ୍ମଶର କରିବାରେ ବଶବାର ନାତି
ଆଗହୁଁ ଏହାଜାଣି ଥିଲେଟିକି ସଙ୍ଗ ।
ରୁଦ୍ରଦେବ ବୋଇଲେ ଶୁଣ ଗୋ ମନଦେଇ
ଋକ୍ଷଅସୁରା ଜଣେ ରାବଣପୁରେ ଯାଇ ।
ସେଠାରେ ଶୁଣିଲା ରାମଲକ୍ଷ୍ମଣ ବେନିମଲେ
ସୈନ୍ୟବଳ ଶ୍ରୀରାମର ସବୁ ନାଶଗଲେ ।
ସେଠାରୁ ଯେ ଅସୁରୁଣୀ ଆସିଲା ବହନ
ଜାନକୀର ଛାମୁରେ କହିଲା ଯାଇ ପୁଣ ।
ଶୁଣ ଗୋ ଜାନକୀଦେବୀ ଶ୍ରୀରାମ ତୋରମଲେ
ଋକ୍ଷକପିବଳ ଯେ ଲକ୍ଷ୍ମଣ କ୍ଷୟ ଗଲେ ।
ଇନ୍ଦ୍ରଜିତ ନାଗଡରେ ପଡ଼ିଲେ ସବୁ ସୈନ୍ୟ
ସୁଗ୍ରୀବର ସହିତରେ ଅଙ୍ଗଦ ହନୁମାନ ।
ଋକ୍ଷକପି ଜମ୍ବେକ ଯେ ସହିତେ କ୍ଷୟଗଲେ
ରାଜାଙ୍କର ଭାଇପୁଣି ବିଭୀଷଣ ମଲେ ।

ସମସ୍ତେ ଶୋଇଲେ ଗୋଟିଏ ଜୀଇ ନାହାନ୍ତି
ଶୁଣିକରି ବଇଦେହୀ ଶୋକଭର ହୁନ୍ତି ।
ଆହାମୋର ସ୍ୱାମୀ ବୋଲି ରଡେ ଉଚ୍ଚସ୍ୱରେ
ଦୁଇବାହୁ ନେଇଣ ସେ କୋଢ଼ିଲେ ବୁକୁରେ
ପ୍ରାଣନାଥ କମ୍ପାଇ ଅଇଲ ତୁମ୍ଭେ ଧାଇଁ ·
ତୁମ୍ଭେ ମରି ନ ଥିଲେ କେତେ ଭାରଯାମିଳଇ
ମୋହର ପାମରୀ ପାଇଁ ଅଇଲ ଗୋସାଇଁ
ମୁଁ ପାପୀ ଅଇଲି ପ୍ରଭୁ ବାଟରେ ବସାଇ ।
ତୁମ୍ଭେ କମ୍ପା ପ୍ରାଣନାଥ ହେ ନଜାଣିଲତାହା
ମୁହିଁ ହୀନ ପାମରୀକ ବଢାଇଲ ସ୍ନେହା ।
ଅଯୋଧ୍ୟା ରାଜ୍ୟରେ ଯେ ରାଜା ସୂର୍ଯ୍ୟବଂଶ
ତୁମ୍ଭେ ମନକଲେ କେତେ ମିଳେ ରାଣୀହଂସ
ରାଜାମାନେ ଯାଚଣ ତୁମ୍ଭଙ୍କୁ ଝିଅ ଦ୍ୟନ୍ତେ
ସୈନ୍ୟ ସମ୍ଭାର ଘେନିଣ ସେବା କରୁଥାନ୍ତେ
ସେ କଥାକୁ ଛାଡ଼ି ତୁମ୍ଭେ ଆସିଲ ବନପାଇଁ
ଅକାରଣେ ତୁମ୍ଭ ଜୀବନ ହରାଇଲ ଗୋସାଇଁ
ପାପିଷ୍ଠ ଇନ୍ଦ୍ରଜିତ ଯେ ହେଉ ଶିରଚ୍ଛେଦ
ସ୍ୱାମୀଙ୍କ ମୋହର ଯେ କଲା ସସ୍ତ୍ରଭେଦ ।
ଦେବଙ୍କୁ ଶର ଯେ ମନୁଷ୍ୟଙ୍କୁ ମାରି
ମାୟାଯୁଦ୍ଧେ ଦିନା ତୁ ଶ୍ରୀରାମଙ୍କୁ ମୋହକରି ।
ଧର୍ମର ସଂଗ୍ରାମେ ତୁ ନ ପାରିଲୁ ମାରି
ଲକ୍ଷ୍ମଣ ଛାମୁରେତୁନାହୁଁ କେତେବେଳେହାରି
ସେହି ଲକ୍ଷ୍ମଣ ତୋହର ମୁଣ୍ଡ ଏବେ କାଟୁ
ରାବଣର ଗେଲ ଯେ ଗରବ ଗୋଟି ତୁଟୁ ।
ତ୍ରିଜଟା ବୋଇଲେ ତୁମ୍ଭେ କହିଲତ ଭଲ
ମେଘନାଦ ନାଶରେତ ବଅର ତୋରମଲ
ଇନ୍ଦ୍ରଜିତକୁ କେଉଁ ଲକ୍ଷ୍ମଣ କରିବଟି ନାଶ ।
କେହ୍ନେ ଗୋଜାନକୀଗୋ ବୋଲୁଛ ଏସନ୍ଦେଶ
ବଇଦେହୀ ବୋଇଲେ ଯେ ଶୁଣଗୋ ତ୍ରିଜଟା
ଅଦଭୁତେ ବାହାର ତ ହେଲା କଥା ଗୋଟା
ମୁହିଁ ସେ ସଙ୍ଗ ମୋର ଆନରେ ନାହିଁ ମତ ।
ଲକ୍ଷ୍ମଣହିଁ ମାରିବେ ଯେ ବଣଢୋର ନାତି ।
ଦୁଇଦିନ ଛାଡ଼ି ତିନଦିନରେ ମରିବ
କାଲି ପ୍ରଭାତୁଁ ମୋସ୍ୱାମୀ ବଅର ଯେ ଦେଖିବ
ଯେବେ ଚଉଦ ବରଷ ନେହକୁ ନାହିଁ ନିଦ
ସଉମିତ୍ରୀ ବାଣରେ ମରିବ ମେଘନାଦ ।

ସମ୍ବସ୍ତର ବେଣ୍ଡବାସ ନାହିଁ ଯେ ଆହାର
ଇନ୍ଦ୍ରଜିତକୁ ମାରିବେ ଯେ ମୋହର ଦେଅର ।
ପୁଣ ନାତି ମାରି ତାର କୁଳ ବୁଡ଼ାଇବେ
ଲକ୍ଷେ ବତଶ ନାଶ ତାର ସମୁଦ୍ରେ ପଶିବେ
ଶ୍ରୀରାମ ବିଚ୍ଛେଦ ଦିନୁ ନାହିଁ ରତିରେ ସ୍ନେହ
ମୋର ମନ ଯାଉ ହୁଅଇ ବିରହ ।
ରାବଣ ପୁତ୍ରକୁ ଶ୍ରୀରାମ ଭାଇ ମାରୁ
ଲଙ୍କା ଲୋକଙ୍କର ଉତପାତ ସରୁ ।
ଚଉଦ ବରଷ ଯାର ନିଦ୍ରା ମୈଥୁନ ନାହିଁ
ମେଘନାଦ ଜୀବନ ପାଇବ ଆଉ କାହିଁ ।
ଶୁଣିକରି ତ୍ରିଜଟା ଯେ ବୋଇଲା ବଚନ
ଗୁରସ୍ତ ଦେଅର ସଙ୍ଗେ ତୁମ୍ଭେ ଅଇଲ ବନ ।
ମନ ନ ବଳଇ କି ଦେଅର ନ କହଇ
ଶୁଣିକରି ଜାନକୀ ବୋଲନ୍ତି ଶୁଣ ସହି ।
ଏ ସ୍ବରଭାଇକ ଆମ୍ଭେ ସ୍ବର ଯେ ଭଉଣୀ
ସତ୍ୟକରି ଅଛୁଁ ଆମ୍ଭେ କୁଳପାପ ହେଣ ।
ତୁମ୍ଭେ ନାଶନ କରିବଆମ୍ଭେ ନବଳାଇବୁଆଣ
ଏକଥାକୁ ଯେ ଲଙ୍ଘିବସେ ଧର୍ମରେ ଯିବନାଶ
ସେ ସକାଶୁଁ କାହାର ଗୋ ନ ଟେକଇ ମନ
ସହଜେ ମୋର ସ୍ୱାମୀ ଅଟନ୍ତି ନାରାୟଣ ।
ଲକ୍ଷ୍ମଣ ଅଟନ୍ତି ସାକ୍ଷାତରେ ଯେ ଈଶ୍ୱର
ତୁମ୍ଭେମାନେ ବୋଲ ମଳେତା ସ୍ୱାମୀ ଦେଅର
ଲକ୍ଷ୍ମଣ ଯେତେବେଳେ ଅଇଲେ ବନକୁ
ଭାରିଯାକୁ କହିଲେ ମୁଁ ଯାଉଛି ବିଦେଶକୁ ।
ଶ୍ରୀରାମ ଆମ୍ଭର ପ୍ରଭୁ ଜାନକୀ ଠାକୁରାଣୀ
ପିତା ସତ୍ୟପାଳି ସେ ବନକୁ ଗଲେ ପୁଣି ।
ଶୁଣିକରି ତାର ନାରୀ ବଚନ କହିଲା
ଆଜଠାରୁ ମୋର ପୁଷ୍ପବନ୍ତୀ ବନ୍ଦ ହେଲା ।
ଚଉଦ ବରଷ ଗଲେ ହେବ ପୁଷ୍ପବନ୍ତୀ
ନପୁଂସକ ହୋଇଥିବ ତୁମ୍ଭେ ପ୍ରାଣପତି ।
ତୁମ୍ଭଙ୍କୁ ଦେଖି ମୁଁ ଯେ ପୁଷ୍ପବନ୍ତୀ ହେବ
ତୁମ୍ଭଙ୍କୁ ଦେଖିଲେ ମୋର ଚିତ୍ତ ଯିବ ଦ୍ରବ ।
ଏମନ୍ତ ପ୍ରକାରେ ଗୋ ଦେଅର କଥା ଶୁଣ
ନପୁଂସକ ଲକ୍ଷଣ ତା ଦେହରେ ଅଛି ଜାଣ
ମୋତଠାରେ ସେବାକରେ ଅନୁକ୍ଷଣେ ମତି
ଭାରିଯାର କଥା କହିଲେ ସେହି ଯେ ହସନ୍ତି ।
ହାସ୍ୟରସେ କହିଲେ ସେ ପାଏମନେ ଦୁଃଖ
ସେଦନ ଯେ ଲେଶମାତ୍ରେ ନରହେମୋରପାଖ
ଏହାଶୁଣି ତ୍ରିଜଟା ଯେ ସନ୍ତୋଷ ହୋଇଲା
ଯତିର ଭାରିଯା ସେ ଗୋ ସଖି ବୋଲାଇଲା ।
ଏମନ୍ତ ସମୟେ ତାର ପିତା ମିଳେ ଆସି
ଶୁଣିଣ ଜାନକୀ ଯେ ମନରେ ହେଲେ ତୋଷି
ବଇଦେହୀ ବୋଇଲେ ଗୋ କେଉଁଠାରୁଆଏ
ତାର ପିତା ବୋଇଲେ ଗୋ ଶ୍ରୀରାମ ପଠାଏ
ଇନ୍ଦ୍ରଜିତ ମୋହଣରେ ସବୁଙ୍କୁ ମୋହିଲା
ହନୁମନ୍ତ ଚେତିଥାଇ ହିମାଳୟକୁ ଗଲା ।
ଅମର ଯେ ମହୌଷଧି ଦେଲା ଆଣି ପୁଣ
ସମସ୍ତେ ଯେ ସୁସ୍ଥ ହୋଇ ବସିଛନ୍ତି ଜାଣ ।
ହନୂମନ୍ତ ବୋଇଲା ସୀତଯ୍ୟା କାନ୍ଦୁଥିବେ.
ଦୁତ ଜଣେ ବରଗିଲେ ସ୍ଥିର ସେ ହୋଇବେ
ସେ ସକାଶୁଁ ଶ୍ରୀରାମମୋତେପେଷିଦେଲେପୁଣ
ଏତେ କହି ଦୁତ ଯେ ଚଳିଗଲା ତତକ୍ଷଣ ।
ତ୍ରିଜଟା ବୋଇଲା କଥା ଅଟଇ ସତ ତୋର
ଇନ୍ଦ୍ରଜିତ ମରିବାର ହୋଇଲା ନିକର ।
ଏସନକ ସମୟରେ ବାଜେ ରଣ ଗୋଳ
ମାର ମାର ଧର ଧର କୁଣ୍ଡର ଚହଳ ।
ସୀତୟା ବୋଇଲେ ଯେ ଏ କସ ତୋବାଳ
ଲଙ୍କାର ଭିତରେ ଏତ ଶୁଭୁଛି ହାଲହୋଳି ।
ଶ୍ରୀରାମ ଲକ୍ଷ୍ମଣ ମଲେ ଆଉ ଶତ୍ରୁ କାହିଁ
ରାତ୍ର ତନ ପ୍ରହରେ ଗୋଳ ଶୁଭୁଛି କମାଇଁ ।
ଲୋକ ପଠାଆଇଣ ସେ ଜାଣିଲେ ବାରତା
ଅପୂର୍ବ କଥାଏ ଆଜ ଶୁଣ ଦେବୀ ସୀତା ।
ଶ୍ରୀରାମ ଲକ୍ଷ୍ମଣ ଯେ ଉଠି କପିବଳ
ଗଡ଼େ ଡେଇଁ ପଶିଣ ଯେ କଲେ ରଣଗୋଳ
ଦହୁଡ଼ ଦୁଳା ତେଜରେ ଆଲୁଅ ଦିଶନ୍ତି
ନଷ୍ଟପ୍ରେ ଅସୁରବଳ ମାରିବେ ଏକାନ୍ତ ।
ତୁମ୍ଭେ ମହାସତୀ ଗୋ ବଚନେ ବୋଲ ତାହା
ତତକାଳେ ଫଳିଲା ଗୋ ଦେଖିଲୁ ଆମ୍ଭେତାହ
କୁ ଗୋ ରାମ ନାରୀ ଆମ୍ଭଙ୍କୁ ଦୟାକର
ଅନେକ ଦୋଷ ଆମ୍ଭର ସେକଥା ନ ଧର ।
ଏତେକହି ସମସ୍ତେ ପଡ଼ିଲେ ପାଦତଳେ
ଉଠ ଉଠ ବୋଲି ଦେବୀ ହରଷରେ ବୋଲେ

ନ ଘେନଇ ଦୋଷ ମୁଁ ସମସ୍ତ କଲ୍ କ୍ଷମ
ଭୃତ୍ୟର ଭକତି ଦେଖି ପ୍ରସନ୍ନ ହେଲେ ରାମ ।
ଏଥୁଅନନ୍ତରେ ଯେ ରାମଚନ୍ଦ୍ର ରାୟେ
ଚାରିଦ୍ୱାରକୁ ସୈନ୍ୟ ଯେ ବାଣ୍ଟିଣ ପଠାଏ
ଉତ୍ତରେରହିବାଲୋକେ କବାଟଫେଡ଼ିଦେଲେ
ଦ୍ୱାରପାଳମାନଙ୍କୁ ସେ ବିକୋଳି ମାଇଲେ ।
ମହା ଗଜମାନେ ଯେ ଆରୋହିଲେ ରହି
ତାଙ୍କୁ ବେଢ଼ିଲେ କପି ଯେ ଶତେପୂରିହୋଇ
ପିଠି ଉପରୁ ମାହୁନ୍ତ ଧରିଣ କଢ଼ିଲେ
ଅଙ୍କୁଶରେ ହସ୍ତୀଙ୍କର ନୟନ ଖୋଳିଲେ ।
ଅଙ୍କୁଶରେ ହାଣନ୍ତେ କପାଳ ଖଣ୍ଡ ଖଣ୍ଡ
ଗର୍ଜନ କରିବାରେ କମ୍ପଇ ବ୍ରହ୍ମାଣ୍ଡ ।
ବିକଳ ହୋଇଣ ଗଜ ପଳାଇଣ ଯାନ୍ତି
ଗୋଡ଼ାଇ ଋକ୍ଷକପି ଅନେକ ମାରନ୍ତି ।
ଥୋକାଏକ ଦୂରେ ସେ ଯେ ମାରନ୍ତିପ୍ରାଣହରି
କପିମାନେ ବାହୁଡ଼ିଲେ ମତ୍ତଗଜ ମାରି ।
ଚାରିଦ୍ୱାର ଯହୁଁ ଫିଟିଲା କବାଟ
ଅବକ୍ଷଣେ ପଶୁଛନ୍ତି ଶ୍ରୀରାମର ଆଟ ।
ବିଭୀଷଣ ବୋଇଲା ଯେ ଶୁଣ ରଘୁବୀର
ସଜହୋଇ କୋଦଣ୍ଡ କାଣ୍ଡ ତୁମ୍ଭେ ଧର ।
ଚାରିଦ୍ୱାର ଜଗିବାକୁ ଯୂଥପତି ଯାନ୍ତୁ
ଋକ୍ଷକପି ଲଙ୍କାରେ ଯେ ଘର ଏ ପୋଡନ୍ତୁ
ନୋହିଲେ ବିଚ୍ଛେଦ ପୁଣ ପାଇବା ଗୋସାଇଁ
ଆମ୍ଭର ନେହ ଏହା ଦେଖିଲା ପୂର୍ବେ ନାହିଁ ।
ଲମ୍ପା ଭୁଜ ହୋଇବା ଯେ ମହାରଣେ ପଶି
ଅସୁର ନିଶାଚରେ ମାରିବେଟି ଗ୍ରାସି ।
ନଗ୍ର ପୋଡ଼ିଦେଲେ ଯେ ଦିଶିବ ବାଟମାନ
ଅଚିହ୍ନା ଯୁଦ୍ଧ କରିବେ ଋକ୍ଷକପିଗଣ ।
ରାମଚନ୍ଦ୍ର ବୋଇଲେ ଯେମନ୍ତେ ଶତ୍ରୁ ମରି
ଜନର ବେଳରେ କ କଲ୍ୟାଣ ବାଞ୍ଛାକରି ।
ରାବଣକୁ ମାଇଲେ ଲଙ୍କାରେ ହେବ ଦୟା
ଯେତେ ବୁଦ୍ଧିକଲେ ଆମ୍ଭେ ସବୁ ହେବମାୟା ।
ଦଅ ବେଗେ ଘରପୋଡ଼ି ମାରିବା ଅସୁର
ବିବିଧ ପଦାର୍ଥମାନ ସବୁ କର ଦୂର ।
ଏତେ କହି ଧନୁରେ ଗୁଣ ସେହୁ ଦେଲେ
ତୂଣକୁ ଯେ ସଜକରି ନାରାଚ ଗୁଡ଼ିଦେଲେ

ବଡ ବଡ କପିମାନେ ଚାରିଦ୍ୱାରେ ଗଲେ
ଶ୍ରୀରାମଙ୍କୁ ପିଠିକରି ଲକ୍ଷ୍ମଣ ଆଗରେ ।
ଶ୍ରୀରାମ ବୋଇଲେ ଯେ ଲଙ୍କା ପୋଡ଼ିଦଅ
ପଳାଇବେ ଦୈତ୍ୟ ନିର୍ବନ୍ଧେ ଜଗିଥାଅ ।
ଏମନ୍ତ କହନ୍ତେ ପୁଣି ଉଠିଲା ପୁଣ ହୁରି
ଚାରିଦ୍ୱାରେ ଅଗ୍ନି ଲଗାଇଲେ ଋକ୍ଷହରି ।
ସେଦିନ ଜ୍ୟେଷ୍ଠମାସ ସପ୍ତମୀ ରାତି
ଜହ୍ନବୁଡ଼ ରାତି ଆସି ହୋଇଲା ପାହାନ୍ତି ।
ପିଢ଼ାମାନଙ୍କର ତୃଣ ସବୁ ଅଛି ଶୁଖି
ସେତେବେଳେ ଅଗ୍ନିଦେବ ହୋଇଛନ୍ତିସୁଖି
ରାବଣ ଗଡ଼ରେ ମୁନି ନ କରନ୍ତି ଯାଗ
ସେ ସକାଶୁ ଅଗ୍ନିଙ୍କର ଲଙ୍କାକୁ ବଡ଼ ରାଗ ।
ଦଶଗ୍ରୀବ ମୁଖଦେଖି ଅଗ୍ନି ଡରିଲଇ
ମନ ଇଚ୍ଛାରେ କଟକ ଭୋଗ ସେ କରଇ ।
ଯେତେବେଳେ ଋକ୍ଷକପି ଲଗାଇବେ ଯୁଇ
ପ୍ରଳୟ ଅନଳ ପ୍ରାୟ ଲଙ୍କାକୁ ଦହଇ ।
ଏ ଘରକୁ ସେଘର ବଢାଇ ଦିଏ ଜିଭ
ତେତେବେଳେ ପବନ ହେଲେ ବଳଭିଦ ।
ଚାରିକତିରେ ନିଆଁ ହେଲେ ବିକରାଳ
ଚଡଚଡ଼ ହୋଇଣ ଯାଉଅଛି ଜଳ ।
ସୁଖରେ ଏବେ କଟକ ଭୋଗ ସେ କରଇ
ଯେତେବେଳେ ଋକ୍ଷକପି ଲଗାଇଲେ ଜୁଇ
ଚଡ଼ଚଡ଼ ହୋଇ ନିଆଁ ଉତ୍ପାତ ହୋଇଲା
ମଡ଼ମଡ଼ ଶବଦେ ଖାଇଣ ଧାଇଁଲା ।
ଚାରିକତି ଅଗ୍ନି ଯେ ଲଗେ ବିକରାଳ
ଶବଦ କରିଣ ସେ ଯାଉଅଛି ଜଳ ।
ନିଶ୍ଚିନ୍ତରେ କଟକ ଭୋଗ ସେ କରଇ
କପିମାନେ ସବୁଘରେ ଲଗାଇଲେ ଜୁଇ ।
ଋକ୍ଷକପିମାନେ କଳକଳା ରାବଦେଲେ
ଚାରିଦ୍ୱାରେ ସେହି ଯେ ଅଗ୍ନି ଲଗାଇଲେ ।
ବୀରତୂର ବାଦ୍ୟ ଯେ ବଜାନ୍ତି ବାଜଣିଆ
ପ୍ରଳୟ ଅଗ୍ନି ଜାଣିଣ ଜଳୁଅଛି ନିଆଁ ।
ଅସୁରେ ନିଶ୍ଚିନ୍ତେରେ ମନ୍ଦିରେ ଶୋଇଲେ
ମହାଗୋଳ ଶୁଣି ଉଠି ଯେ ବସିଲେ ।
ନଗ୍ରବାସୀଲୋକେ ଯେ ପିଢ଼ାରେ ଉଠିଚାହିଁ
ବୋଇଲେ କଟକ ତ ଆସେ ଅଗ୍ନି ଦହି ।

କେବଣ ପ୍ରକାରେ ଏ ସ୍ୱରକଣ୍ଠ ଜନ
ମୁଖସବ ଶବଦରେ ସାହେର ଉହ୍ଲନ ।
କେବୋଲଇଉପାୟେ ସେଣାଇଲେ ରଘୁନାଥ
କେ ଆନ ଏତେ କର୍ମ କଣ୍ଠପାରେ ଏଥ ।
କେ ବୋଲଇ ମେଘନାଦ ବ୍ରହ୍ମଅସ୍ତ୍ର କଲ
କାଲ ଦେଖି ଅଇଲୁ ସେ ସମସ୍ତେ ହେ ମଲ
ପୁଣି ସେ ପ୍ରାଣ ଆଜ ପାଇଲେ କେମନ୍ତେ
କେବୋଲଇ ଉପାୟେସେ କଲେକଯେସାଂତେ
ମାଇଲେ ନ ମରନ୍ତି ଶ୍ରୀରାମ ଲକ୍ଷ୍ମଣ
ବୈଦ୍ୟହୁଁ ଆଣ୍ଟଅଣ୍ଟେ ତାଙ୍କର ଶରୀର ପୁଣ
ଆନ କେହ୍ନ ନୁହନ୍ତି ସେହ୍ନ ସେ ଅଟନ୍ତି
ଆଜ ସେ ଅସୁରଙ୍କୁ ମାରିବେ ନିଦୋତି ।
ଗ୍ରୀସଦ୍ୱାର ବାଟରେ ପଶିଲେଣି ସୈନ୍ୟ
ଅନେକ ଠାବରେ ଯେ ଜଳେ ହୁତାଶନ ।
ଶୁଭୁଡ ଅଛୁ ଏବେ ତାଙ୍କର ସମତାଳ
ଋକ୍ଷକପିଙ୍କର ଏ ଶୁଭେ ହାଲ ହୋଳ ।
ପଳାଅରେ ବାବୁ ଘରଦ୍ୱାର ଛାଡ଼ି
ଗଡ଼ର ସ୍ୱରକଣ୍ଠ ଦେଉଛନ୍ତି ପୋଡ଼ି ।
ହନୁମନ୍ତ ଦେଲରୁ ଏ ଘାନ୍ତି ହେବ ବଡ଼
ସୈନ୍ୟବଳ ମାରି ଲଙ୍କା କରିବେ ଉଜାଡ଼
ଏତେ କହିଣ ଲୋକେ ଅନ୍ତସଳ ଚଉ
ଛାଡ଼ିଲେ ପୁତ୍ରବଧୂ ଆବର ଧନବଉ ।
ପଡ଼ିଉଠି ପଳାନ୍ତି ସେ ପ୍ରାଣର ବିକଳେ
କପିଙ୍କି ଦେଖିଣ ସେ ଯାନ୍ତି ଯମଆଳେ ।
ଏକକୁ ଆରେକ ସେ ଡ଼ାକନ୍ତି ନାମଧରି
କେତାହାକୁ ଧରିବାରେ ପଳାନ୍ତି ଛୁଅଡ଼ିକରି
କେ ବୋଲନ୍ତି ମଲି ବାବୁ ରଖ ରଖ ଆହେ
କେବୋଲଇଗୋସାଇଁକୁହେ ନହଁପ୍ରାନୁହେଁ
କେବୋଲଇଆସରେକେବୋଲଇଏଣେଗଲି
କେହୁ କୂପ ଭିତରେ ପଶନ୍ତେ ସେହୁମଲି ।
ଦେଉଳେ କେ ଉଠିଲେକାହାକୁମାରେଝାଁକି
ଧୂମର ଘାଏ କେହୁ ପଳାନ୍ତି ଓହ୍ଲାଇ ।
କେ ଗଛଉପରେଉଠିଲେ ଡାଳଘଙ୍ଗିମଲେ
ପଳାଉପଳାଉକାହାକୁକୁକୁର କାମୋଡ଼ିଲେ
କେବୋଲଇବାବୁରେ କେ ବୋଲଇ ନନା
କେ ବୋଲଇ ମୋତେ ସମ୍ଭାଳ ନଅକନା ।

କେ ବୋଲଇ ରଖ ହେ କେବୋଲଇ ମଲି
କେବେ ଲଇବଧାତାହୋମୁଁକେବଣପାପକଲି
କେବୋଲଇତାତ ଯେ କେ ବୋଲଇ ଆଈ
କେବୋଲଇ ମୁଁଯେ ଠଣାରେ ଥିଲି ଶୋଇ
ଋକ୍ଷକପିମାନଙ୍କର ବିକରାଳ ମୁଖ
ଆଜହୁଁ ସରିଲା ବାବୁରେ ଏ ଜନ୍ମର ସୁଖ ।
ମାଇଲେ ପଳାଇଲେଯେ ପୁଅଝିଅ ଛାଡ଼ିକରି
ଏକୁଡ଼ଶାଳ ପୁଅକୁ କେ ନେଇ ନପାରି ।
କେହୁ ସେ ଧନ୍ୟଦ୍ରବ୍ୟ ଛାଡ଼ିଣ ପଳାନ୍ତି
ତରତରହୋଇ କେ ପୁଅକୁ ଝିଅକୁଛାଡ଼ିଯାନ୍ତି
କେହୁ ପେଡ଼ି କାଖରେ କାନ୍ଧରେଘେନଯାନ୍ତି
ଏମନ୍ତ ପ୍ରକାରେ ସେ ଲାଗିଲାକ ଭ୍ରାନ୍ତି ।
କେହୁ ଭୂଆସୁଣୀର ସ୍ୱରସ୍ତ ପଣତ ନ ଛାଡ଼ି
ଧସ୍ତଧରି ହୋଇଣ କେହୁଯାଆନ୍ତି ଉଠି ପ
କେ ବୋଲଇ ବାବୁ ହେ ଏହ୍ନିବାଟେ ଯିବା
କପିଙ୍କର ଛାମୁରେ ପଡ଼ିଲେ ମରିବା ।
କେ ବୋଲଇ ପିଡ଼ାରେ ଲାଗିଲା ନିଆଁ ଆସି
କେହୁ ପ୍ରାଣ ବିକଳରେ ପୋଖରୀରେ ପଶି
କାହାମୁଣ୍ଡ ବୋଝ କେହୁ ଛଡାଇଘେନଗଲା
ଅନ୍ଧକାରେ ଖାଲୁଙ୍କ ପ୍ରାୟେ କେ ଡ଼ରିଇଲା ।
ମାଙ୍କଡଙ୍କ ଭୟେ କେହୁ ଡ଼ରରେ ଡ଼ାକଇ
ହାଉହାଉ ହୋଇଣ କେଭୂମିରେ ଗଡ଼ଇ ।
କପି ଅଇଲେବୋଲିକେ ପଳାଉଛନ୍ତିଡ଼ରେ
ବୁଜ୍‌ନାମାନ ପକାଇଯାଆନ୍ତି ବାଣ୍ଡ୍ରରେ ।
ଥେଣ୍ଟା ଗଣ୍ଠି ଆମାନେ ତାହା ଘେନ ଯାଉଛନ୍ତି
ତାକତରକ ମଣି ଜଗ ପୁଣିଛନ୍ତି ।
ଲୋକେପଡ଼ିଣବହୁତ ଦ୍ରବ୍ୟ ବୋହ୍ନି ନେଲେ
ଆପଣାରାଜ୍ୟ ଲୋକେ ପଶିଣଗୋଳକଲେ ।
ଶତେ ଯୋଜନ ଲଙ୍କା ହେଲା ହାଲହୋଳ
ରାବଣକୁ ଲଙ୍କାଲୋକ ଦେଉଛନ୍ତି ଗାଳି ।
କେ ବୋଲନ୍ତି ସୀତାଙ୍କୁ ଆଣିଲା କାସ ପାଇଁ
କେତେ ସୁବର୍ଣ୍ଣ ତାହାର ଲଙ୍କା ପୁରେନାହିଁ
କେ ବୋଲଇ ଏହାର ସରିଲାଣି ଜ୍ଞାନ
ସୋଦର ଭାଇ ଏହାର ପଡିଲା କୁମ୍ଭକର୍ଣ୍ଣ ।
ଛୁଆଁ ଛୁଆଁ ଏହାର ବାରପୁତ୍ର ମଲେ
ସେନାପତି ସଇନ ଅନେକ କ୍ଷୟଗଲେ ।

ଶତେକ କୁମର ଯେ ନବସସ୍ର ନାତି
କୁମ୍ଭକର୍ଣ୍ଣର ବଂଶ ଏବେ ହୋଇଲା ନିପାତ ।
ଏହା କଥା ହୃଦର ନ କରେ ଦଶଶିରା
ଜଣାଗଲା ରାବଣର ସରିଲା ଆୟୁଁ ଶିରା ।
ଇନ୍ଦ୍ରଜିତ ଯୋଗରୁ ଭରସା ଯାର ହୋଏ
ସୀତାଙ୍କୁ ନ ସମର୍ପଇ କଥା ଦଶାନନରାୟେ ।
କେ ବୋଲଇ ଦେଖ ଗୋ ଏବେ ପରମାଦ
ନିକଟେ ମରିବ ଯାର ପୁତ୍ର ମେଘନାଦ ।
ଆଜର ଗୋଳ ଗୋ ଭଲରେ ନିକ ଯିବ
ଯିସ ତସ ହୋଇଣ କଥାଏ ଯେ ରହିବ ।
ଏସନେକ ହୋଇଣ ବିକଳ ସର୍ବଜନ
ରାବଣ ନଅରରେ ଲାଗେ ହୁତାଶନ ।
ହତନ ଘରମାନ ଯେ ଯାଉଅଛି ପୋଡ଼ି
ମନ୍ଦୋଦରୀ ରାଣୀ ଯେ କାନ୍ଦେ ଶିରକୋଡ଼ି ।
ତିନକୋଟି ପଞ୍ଚାଶ ଯାହାର ମହାଦେଈ
ଝଁଡ଼ା ପରବାଶ ଯେ ମୁଦୁସୁଲ ଧାଈ ।
ଯୋଇଲି ପରବାଶ ଯେ ଦାସୀଗଣମାନ
ଦଶଗ୍ରୀବ ରାଣୀମାନେ କରନ୍ତି ରୋଦନ ।
ଗୋଳମାଳ ଶୁଣି ଯେ ଉଠେ ଲଙ୍କାପତି
ବାହାରରେ ଅବକାଶ ହୋଇଲା ତୁରିତ ।
ଆଗରେ ଦଶଲକ୍ଷ ଦିହୁଡ଼ି ହୁଳା ଜାଳି
ଅମାନାତ୍ୟ ଗଣଙ୍କୁ ରାଇଣ ଯେତୁ ଭାଳି ।
କେବଣଇଁ କଥାଏ ଯେ କେବଣଇଁ ଗୋଳ
କହାଇଁ କଟକ ମୋର ଦହଇ ଅନଳ ।
ମନ୍ତ୍ରୀମାନେ କହିଲେ ଶ୍ରୀରାମ ଗଡ଼େ ପଶିଛନ୍ତି
ଏଡ଼େବଡ଼ ଲଙ୍କାଗଡ଼ ଆପେ ଉଜାଡ଼ନ୍ତି ।
କାଲି ପରା ଇନ୍ଦ୍ରଜିତ ମାଇଲା ବ୍ରହ୍ମଶରେ
ପୁଣି ଜୀବ ଅଇଲେ ସେ କେବଣ ପ୍ରକାରେ ।
ଏହା କହି ଦଶଗ୍ରୀବ ଛାଡ଼ଇ ନିଃଶ୍ୱାସ
ହୋଇଲା ଅସୁରକୁଳ ନିଶ୍ଚୟ ଗଲେନାଶ ।
ରାଜପୁତ୍ର ମୋହର ଯୁଦ୍ଧକୁ ଯେତୁ ଗଲେ
କୁମ୍ଭକର୍ଣ୍ଣ ସହିତରେ କାହୁଡ଼ି ନଇଲେ ।
ଆସ୍ତର ମାଇଲେ ସେ କେବେହେଁ ନ ମରନ୍ତି
ସବରେ ଜୀଇ ଆସି ସମର କରନ୍ତି ।
ଏବେ ଯେ କିସ ବୁଦ୍ଧି କରିବି ପୁଣ ମୁହିଁ
ସୀତାଙ୍କୁ ନେଇଣ ମୁଁ ଲୁଚାଇବି କାହିଁ ।
ନ ପୁଣ ଋଷକପି ଯେବଣ ତାଙ୍କୁ ଯାନ୍ତି
ଏତେ କହି ଦଣ୍ଡସସ୍ର ଅସୁର ଉପମନ୍ତ୍ରୀ ।
ଯାଅ ଯାଅ ଅଶୋକ ବନକୁ ରକ୍ଷା କର
ଶ୍ରୀରାମ ସୈନ୍ୟ ଯେମନ୍ତେ ନ ପଶି ସେଥିର ।
ଶତେପୁର ଜଣଣ ବେଢ଼ି ଜଗିଥିବ
ଆଜ୍ଞାଭ୍ରଷ୍ଟ କଲେ ତୁମ୍ଭେ ପ୍ରାଣେ ନାଶଯିବ ।
ଶୁଣିକରି ନିଶାଚରେ ତତକ୍ଷଣେ ଗଲେ
ଅତିଯତ୍ନେ ଅଶୋକ ବନକୁ ରଖିଲେ ।
ସୈନ୍ୟଙ୍କୁ ପେଷିଦେଇ ଆପଣେ ଦଶଶିରା
ମନ୍ତ୍ରୀ ଅମାନାତ୍ୟଙ୍କୁ ସେ ଘେନକରିଛନ୍ତି ।
କେମନ୍ତେ ଶ୍ରୀରାମଙ୍କୁ ଜଣିବା ପ୍ରାଣେ ନାଶ
ମାନବ ହୋଇ ତାହାର ଏତେକ ସାହସ ।
ଏସନେକ ହସ୍ତରନ୍ତେ ବାଟେ ରଣ ଗୋଳ
ପଳାନ୍ତି ଲଙ୍କା ଲୋକେ ପ୍ରାଣର ବିକଳ ।
ଗଡ଼ରୁ ବାହାରିଲେ ଚାରିଦ୍ୱାର ବାଟେ
କପିରୂପ ହୋଇଣ ପଶିଲେ ରାମ ଆଟେ ।
ଦେଖିଲେ ବାନରଙ୍କର ବୀର ଶୂର ପଣ
ଆପଣେ ଯୁଝୁଛନ୍ତି ଶ୍ରୀରାମ ଲକ୍ଷ୍ମଣ ।
ସୁଗ୍ରୀବର ଜମ୍ବେବ ଅଙ୍ଗଦ ହନୁବୀର
ବିଭୀଷଣ ସୁଷେଣ ଯେ ତାରର ପିଅର ।
ଗନ୍ଧ ମାଦନ ଯେ ସଉରି ଶତବଳି
ଡାଳମ୍ବ ପବନ କୁନ୍ଦ କାମୋଦ ନଳନୀଳ ।
ସୁଯୋଧନ ସମ୍ପାତି ମରୁତ ଚନ୍ଦନ
ବିବଧ ଘନସିଳ ଋମଣ କାଳଞ୍ଜନ ।
ପୁରଶେତୁ ଗବୟେ ଗବାକ୍ଷ ରୋମାପିତା
ମହେନ୍ଦ୍ର ଦୁନ୍ଦ ବଳମୁଖ ବଳବନ୍ତା ।
କାଳମୁଖ କଞ୍ଚଣ ସାରସ ପାରସ
ଦଧିମୁଖ ଡାଳମ୍ବ ବସନ୍ତ ସୁଜସ ।
ସଂଗ୍ରାମେ ଧନ୍ଦୋଳ ଯେ କରନ୍ତି ଆରସରି
ଅସୁରେ ଶସ୍ତ୍ର ଧରି ପିଟନ୍ତି ଆଗକରି ।
ଏକର କହନ୍ତି ସେ ଧାଇଁଲେ ଆରେକ
ମାର ମାର ବୋଲିଣ ଶୁଭୁଅଛି ଡାକ ।
ଏତେ ଭରସା କରେ ରାବକାଳେ ଆସି
ଘରମାନ ପୋଡ଼ିଦେଲେ ଗଡ଼ଭିତରେ ପଶି
ଋଷକପି ହୋଇଣ ଏତେ ସେମାନଙ୍କରବର୍ଣ୍ଣ
ମଣ୍ଡୁକା ଉଗାଳିଲା ଆସିଣ କାଳସର୍ପ ।

ସିଂହର ମଧ୍ୟରେ କରେ ପଶିଲା ମଞ୍ଜା'ସ୍ତ
ଟେକା ମାରିଣ କରେ ପର୍ବତ ଲୋଡ଼ ଚୂର ।
ଓପ୍ରୋଧ କରନ୍ତେରେ ମାଡ଼ିଣ ଏହୁ ପଢ଼ି
ଉଶ୍ବାସ କରନ୍ତେ ଭରସା ପାଇ ବେଲେଧାଡ଼ି
ହାଲ ଇନ୍ଦ୍ରଜିତ ଛେଦୁଥିଲା ଶିର
ଆମ୍ଭେ ବୋଇଲୁ ମନ୍ଲୋକଙ୍କୁ ନ ମାର ।
ମୁଣ୍ଡ ଛିଡ଼ିଣ ଥିଲେ କରନ୍ତେ ପୁଣ ଜସ
ଏ ଘାନ୍ତ ସମରେ ଜଣିବେ ତନ୍ତୁ ଶିଷ୍ୟ ।
ଏତେ ବୋଲି ଅସୁରେ ଧାପନ୍ତ ଶସ୍ତ୍ରଧର
କେତୁ ସେ ମତ୍ତଗଜ ଆରୋହଣ କରି ।
ଶ୍ରୀରାମ ନାରଚରେ ଦାନବ ଦଳ ମଲେ
ପାର୍ଥିବ ଦେହ ଛାଡ଼ିଣ ସ୍ବର୍ଗପୁର ଗଲେ ।
ଏହି ପରକାରେ ଯେ ଲକ୍ଷ୍ମଣ ଯୁଦ୍ଧକଲେ
ରଜତନସା ଗଡ଼ ଉତରେ ବୁହାଇଲେ ।
ଗଡ଼ର ରୁଧିର ନଦୀ ସମୁଦ୍ରେ ମିଶିଲେ
କୋଟି କୋଟି କବନ୍ଧ ଯେ ନଦୀରେ ନାଚଲେ
ଆଶ୍ଚର୍ଯ୍ୟ ହୋଇଣ ଦେଖନ୍ତି ସର୍ବଜନେ
ଠହ ଠହ ହୋଇଣ ହସନ୍ତି ମୁଣ୍ଡମାନେ ।
ରକ୍ତରେ ନଦୀ ପୂରିଣ ବହିଲାକ ତହିଁ
ମଡାମାନେ ପଡ଼ିଛନ୍ତି କୁତ କୁଢ଼ ହୋଇ ।
ଋକ୍ଷକପି ରାକ୍ଷସଙ୍କ ମଡା ମିଶାମିଶି
ପାଦଘାତେ ଭୂମିରେ ହୁଅନ୍ତି ଘଷାଘଷି ।
ଶ୍ରୀରାମର ମୁଖରେ ଯେ ଟୋପି ଟୋପି ଝାଳ
ଶରୀରରୁ ଶ୍ରମଝାଳ ବହେ ଖଳ ଖଳ ।
ରକତେ ଜର ଜର ଦୁଇଭାଇ କାୟେ
ଅରୁଣ ଦେବତାଯେହ୍ନେରକ୍ତିମାଜ୍ୟୋତିମୟେ
ପ୍ରଶଂସା କଲେ ଲଙ୍କାଲୋକେ ଧନ୍ୟହେଶ୍ରୀରାମ
ହୋଲି ପିଚକାରେ ଖେଳଇ ଯେହ୍ନେ କାମ
ଅବଶ୍ରାମେ ଯୁଝନ୍ତି ପୁଚିବାକୁ ନାହିଁ
ଜନ୍ମ ହୋଇଛନ୍ତି ଏ ଦୈତ୍ୟ ଦଳିବାପାଇଁ ।
ବାବୁ ତୁମ୍ଭେ ରାମ ହେ ଲକ୍ଷ୍ମଣ ଭାଇ ବେନି
ଦୈତ୍ୟ ନାଶିବାକୁ ଜାତ ହୋଇଛ ମେଦନୀ ।
କି ଅବା ଚନ୍ଦ୍ର ସୂର୍ଯ୍ୟ କି ଅବା ହରିହର
ଜାନକୀ ଦେବୀ କାନ୍ତ ଆରେକ ଦେବର ।
କେମନ୍ତ ଇନ୍ଦ୍ରଜିତ ଏହାଙ୍କୁ ମାଇଲା
ହୋଲନ୍ତି ଲଙ୍କାଲୋକ ଦୈତ୍ୟଙ୍କୁ ନାଶ କଲା
ଦେଖ ରଣରଙ୍ଗରେ ଏ ମାରନ୍ତି ସଇନ
କାମଦେବ ବିଜୟ କି ବସନ୍ତ ରତ୍ନୁ ଘେନ ।
ବଜ୍ରଘାତ ଜାଣିଣ ଏ ଯେ ନାରାଚ ଧନ୍ତି
ଅସୁରେ ସମୁଦ୍ର ଏ ମନ୍ଦର ହୋଇଛନ୍ତି ।
ଏସନକେ ବୋଲିଣ ବସ୍ତୁରନ୍ତି ଲୋକେ
ଇଷ୍ଟବନ୍ଧୁ ସୁମରିଣ କାନ୍ଦୁଛନ୍ତି ଥୋକେ ।
ଯହୁଁ ସେ ରାକ୍ଷସବଳ ପାଇଲେ ଭଙ୍ଗୁଣି
ସେହ୍ନାସେହ୍ନାପତିମାନେଯେଧାଇଁଲେତାହାଶୁଣି
କୁମ୍ଭ ନିକୁମ୍ଭ ଆଦି ଉଲ୍କ ମହାବୀର
ବିରୂପାକ୍ଷ ବିଦ୍ୟୁମାଳି କାକାକ୍ଷ ଅସୁର ।
ଏ ଛଡ଼ରଥୀ ଯୁଦ୍ଧ ଆବୋରିଲେ ଆସି
ଛଡଗୋଟି ରାହୁ କି ସଂଗ୍ରାମରେ ପଶି ।
ଉଭର ଗଡ଼ ହାରୁ ଆସୁଛନ୍ତି ଖେଦି
ଏକା ନାରଜକେ ଲକ୍ଷେ ଲକ୍ଷେ କପି ଛେଦି
ଅନ୍ଧାର ରଜନୀ ଯେ ନ ଦିଶଇ ପଥ
ପରସ୍ପରେ ଯୁଦ୍ଧ ସେହୁ କରନ୍ତି ବଳତ ।
ଆପଣାର ସୈନ୍ୟ ଯେ ଯାନ୍ତି ଆଗସରି
ଋକ୍ଷକପି ସୈନ୍ୟ ଦେଖିଲେ ସେ ଯେ ମାରି
ମର୍କଟ ଭଲ୍ଲୁ ନିଜ ସୈନ୍ୟ ସେହୁ ଚିହ୍ନି
ଦୈତ୍ୟଙ୍କୁ ମାରନ୍ତି ଯେ ଶାଳବୃକ୍ଷ ଘେନି ।
ସୁଗ୍ରୀବର ଅଙ୍ଗଦ ସୁଷେଣ ଜମ୍ବୁବନ୍ତ
ଏହାଙ୍କର ଯୁଦ୍ଧ ଯେ ଦେଖନ୍ତି ସୀତାକାନ୍ତ ।
ଜମ୍ବୁବ ଯେ ବିଭୀଷଣ ଗନ୍ଧମାଦନ
ରଣଭଣ କରିଣ ମାରନ୍ତି ଦୈତ୍ୟ ସୈନ୍ୟ ।
କୁନ୍ଦ କାମୋଦ ଯେ ବଳମୁଖ ଶତବାଳି
ଏହାଙ୍କର ଘାଏ ସେ ପଡ଼େ ହାଣୋହୋଳି ।
ଚନ୍ଦନ ବସନ୍ତ ଯେ ସାରସ ପାରସ
ଅନେକ ରାକ୍ଷସ ଯେ କଲେ ପ୍ରାଣେ ନାଶ ।
କେଶରୀ ଗବୟେ ଗବାକ୍ଷ ଶରଭେରୁ
ଅସୁରଙ୍କୁ ଦେଖିଲେ ସେ ଦେଉଛନ୍ତି ମୃତ୍ୟୁ ।
କାଳମୁଖ ବଳମୁଖ କଞ୍ଜଣ କାଳଞ୍ଜନ
ପରିଘାଇ ଯୁଝିଣ ମାଇଲେ ପୁଣ ସୈନ୍ୟ ।
ଡାଳମ୍ବ ତାରକ୍ଷ ପୈ ରୁମାର ପିଅର
ଏହାଙ୍କର ମ ରୁଣି ଅଛ ଅଗୋଚର ।
ତାଟର ପିଅର ଯେ ଦୁଇପୁଚ୍ଛ ଘେନ
ବେଷଭରେ ସଂହାରଇ ଅନେକ ସଇନ୍ୟ ।

ସମ୍ପାତି ସବଧ ନଳ ନୀଳ ଶରଭଳ
ଦୈତ୍ୟଙ୍କର ସଙ୍ଗରେ କରନ୍ତି ମହାଗୋଳ ।
ଏକଠାବ ହୋଇଣ ସୁଷେଣ ବୀରମାନେ
ଦେଖାଦେଖି ସଂଗ୍ରାମରେ କରନ୍ତି ଉନ୍ମେଷନେ
ଶ୍ରୀରାମ ଲକ୍ଷ୍ମଣଙ୍କର ଅବଶ୍ରାମ ଯୁଦ୍ଧ
ଯହିଁ ନାହିଁ ପଟାନ୍ତର ତ୍ରିଭୁବନ ମଧ୍ୟ ।
କେତେ ହସ୍ତୀ ପଡ଼ିଲେଣି ତଦନ୍ତ ନ ଜାଣି
ଅଶ୍ୱ ପଦାତି କେତେ କେ ପାରିବ ଗଣି ।
କବନ୍ଧ କେତେ ନାଚନ୍ତି ତହିଁରେ ନାହିଁଲେଖା ।
ବ୍ରହ୍ମାଣ୍ଡ ମଧ୍ୟରେ ଶ୍ରୀରାମ ଧନୁର୍ଦ୍ଧର ଏକା ।
ପ୍ରହରକ ସବ ଥାଇଁ ସମର ଆସି କଲେ
ଜନଗାଡ଼ ପରଯନ୍ତେ ବିଶେଷ ଯୁଝିଲେ ।
ସାଇ ଲକ୍ଷ୍ମଣର ସେ ପାଇଛନ୍ତି ପିଠି
ଏଙ୍କୁ ଏକ ନାରଜ ବନ୍ଧନ୍ତି ବଜ୍ର କୋଟି ।
ଅସୁର ନ ଭାଜିଲେ ବିଷମ ଗୋଳ ଦେଖି
ଦୁଇକୁଳ ପୁଷ୍ଟକୁ ସେ ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ।
ଦୁଇକୁଳ ପୁଣି ସେ ସମର କରୁଥିଲେ
ଅନ୍ଧାରରେ ଶ୍ରୀରାମ ତାଙ୍କୁ ବାରି ନ ପାରିଲେ
ଫସର ଫାଟିଣ ସେ ଉଇଁଲେ ଅରୁଣ
ଦୂରରୁ ଦେଖିଲେ ତାଙ୍କୁ ଶ୍ରୀରାମ ଲକ୍ଷ୍ମଣ ।
ଦେଖିକରି ରଥୀମାନେ ଧାଇଁନ୍ତି ଅତିବେଗେ
ଅଙ୍ଗଦ ମହାବୀର ଓଗାଳେ ତାଙ୍କୁ ଆଗେ
ଶରବୃଷ୍ଟି କଲେ କେ ପରିଘ ଘେନି ମାରି
ବ୍ୟଥା ପାଇ ବାଳସୁତ ବୃକ୍ଷକରେ ଧରି ।
ଉଞ୍ଚାଇ ବିଦ୍ୟୁମାଳର ଉପରେ ପିଟିଲା
ଖଡଗ ଘେନିଣ କରେ ଦୈତ୍ୟ ସେ ବାହୁଲା
ଧାଇଁଣ ଅଙ୍ଗଦ ଖଣ୍ଡାହିଁ ଝାଡ଼ିଲା
ଝମକାଇ ଉଞ୍ଚାଇ କୋପରେ ପିଟିଲା ।
ବିଦ୍ୟୁମାଳର ସେ ଛୁଟିଲାକ ମୁଣ୍ଡ
ଭୂମିରେ ପଡ଼ିଲା ସେ ହୋଇଣ ଖଣ୍ଡ ଖଣ୍ଡ ।
କରଡ ପକାଇଲା ଗୋଡ଼ରୁ ମୁଣ୍ଡଯାଏ
ଦିଶଇ ଅସୁର ବିକଟାଳ କାୟେ ।
ବିଦ୍ୟୁମାଳ ପଡ଼ିଲା ଦେଖିଲେ ଆଉମାନେ
ସୈନ୍ୟଙ୍କୁ ଦେଖିଣ ସେ ଧାଇଁଲେ ବହନେ ।
ଉଲ୍ଲୁକ ବିଘ୍ନକେତୁ ବିରୂପାକ୍ଷ ତିନ
ବାଳର ପୁତ୍ରକୁ ଏ ବନ୍ଧଣ ଛନ୍ତି ଚିହ୍ନ ।

ଅତି ଘୋର ସମରରେ ବନ୍ଧୁ ଛନ୍ତି ଶର
ବେତ୍ରବେଳ ସମର ହୋଇଲା ମହାଘୋର ।
ମହେନ୍ଦ୍ର ଦ୍ୱିବିଦ ସେ ସୈନ୍ୟ ମାରୁଥିଲେ
ଭ ଜାଙ୍କୁ ଦେଖିଣ ସେ ଧାଇଁଣ ଆଇଲେ ।
ଦୁଇ ମଲ୍ଲାଙ୍କ ପିଠି ପାଇ କପିବୀର
ତିନଙ୍କେ ତନକ ସେ କରୁଛନ୍ତି ସମର ।
କୋପଭରେ ପରିଘ ବିଘ୍ନକେତୁ ଧରି
ବୁଲାଇ ଅଙ୍ଗଦକୁ ମାଇଲା କୋପକରି ।
ବାଳର କୁମର ଅଙ୍ଗଦ ଫେରାଇଲା ତାହା
ପଟ୍ଟଚେକ ଧରି ସେ ମାରେ କପି ନାହା ।
ଦୈତ୍ୟଙ୍କର ଉପରେ ସେ ପଡ଼ିଲା ଯାଇଁଶିଳ
ପ୍ରାଣହାରି ଦୈତ୍ୟେ ସେ ପଡ଼ିଲେ ଭୂମିରେ ।
ଦେଖିଣ ବିରୂପାକ୍ଷ ସେ ମାରିଲାକ ଶୂଳ
ଆସି ପଡ଼ିଲା ସେ ଅଙ୍ଗଦ ବକ୍ଷସ୍ଥଳ ।
ବୁକୁରେ ବାଜିଲା ସେ ଭାଜିଲା ଚେତେ ଶୂଳ
ଟଳଟଳ ହୋଇ ହସେ ବାଳର ଦୁଲାଳ ।
ଆରେ ଆରେ ଦଇତ ମୁଁ ହସେ ଅଙ୍ଗଦ
ସାନବେଳେ ମୁହିଁ ବାନ୍ଧିଥିଲି ଦଶକନ୍ଧ ।
ବାଳିରଜା ପୁତ୍ରବୋଲି ନଜାଣୁ କରେମୋତେ
ଏବେକ୍ଷଣି ଯମଘର ପେଶିବି ମୁଁ ତୋତେ ।
ଶୁଣିକରି ବିରୂପାକ୍ଷ ମାରେ ବଜ୍ରମୁଷ୍ଟି
ଅଙ୍ଗଦର ମୁଣ୍ଡେ ବାଜ ଅଗ୍ନି ଜଳି ଉଠି ।
ଘୁମାଇ ପଡ଼ିଲା ପୁଣି ବାଳର କୁମର
ଦେଖିଣ ବିରୂପାକ୍ଷ ମାରେ ଆସିବାର ।
ଖଣ୍ଡା ନ ବାଜୁ ସେ ଧାଇଁଲା ଦ୍ୱିବିଦ
ଉଲ୍ଲୁଡ଼ ପକାଇଲା ସେ ଲାଗିଲା ମଲ୍ଲଯୁଦ୍ଧ ।
ଧରାଧରି ହୋଇଣ ସେ ପଡ଼ିଲେ ଯାଇ ତଳ
ନିବିଡ଼ ବନ୍ଧନ ସେ କଲେ ବେତ୍ରବେଳ ।
ଉପରେ ପଡ଼ଇ କେ ପଡ଼େ ଭୂମିତଳେ
ଦୁଅନ୍ତି ଗଡ଼ାଗଡ଼ି ସେ ସୈନ୍ୟର ଭିତରେ ।
ମହେନ୍ଦ୍ରକୁ ମାରୁ ସେ ସୈନ୍ୟର ଭିତର
ଦୁହିଙ୍କର ଶରୀର ରକତେ ଜର ଜର ।
ନଖଘାତେ ଛିଣ୍ଡାଛିଣ୍ଡି ମରମରି ହୋନ୍ତି
ମୁକୁଟ ମୁଣ୍ଡମାରି ହଥାକୁ ଜନ୍ତାଜନ୍ତି ।
ତାହାର ସୋଦର ସେ ଦସ୍ଥିବ ମନରେ
ଦୈତ୍ୟର ତର୍ଣ୍ଣିକ ସେ ମୋଡେ ବାମକରେ

ଘାତପକାଇ ଯେ ବୁକୁରେ ଗୋଡ ଦେଲା
ଡ଼ାହାଣ ବାହୁ ତଳେ ସେ ଗଳ ପକାଇଲା ।
ହୁଆ ଭଙ୍ଗ ଦେଇଣ ସେ ପାଇଲା ଲେଉଟାଇ
ମୁଣ୍ଡରେ ବଧା ଏକ ମାରିଲା ପୁଣି ନେଇ ।
ଫାଟିଲାକ ମୁଧୂନ ଗଲା ତାର ପ୍ରାଣ
ଚେତଣ ଉଠିଲା ସେ ଅଙ୍ଗଦ କପିଗଣ ।
ଦେଖିଲା ବରୁପାକ୍ଷ ପଡ଼େ ମୃତ୍ୟୁ ହୋଇ
ହାତରେ ଧରି ଦୃଢ଼ଧନୁ ଯାଉଅଛି ଧାଇଁ ।
ଉଲ୍କ ଉପରେ ନେଇ ପକାଇ ତାହାକୁ
ଦେଖିଣ ଅସୁରବଳ ବୋଲନ୍ତି ଆହାକୁ ।
ଦୈତ୍ୟ ତାକୁ ଦେଖିଣ ବାଆନେ ବାଣପେଷି
ବାହୁଡ଼ି ମୃତ୍ୟୁ ପିଣ୍ଡ ଭୂମିରେ ପଡ଼େ ଆସି ।
ପଞ୍ଚାଶ ନାରାଚ ଯେ ପେଷିଲା ଦଇତ
ଦେଖିଣ ମହେନ୍ଦ୍ର ବୀର ଧାଏଁ ଯେ କୁପିତ ।
ବାଟରେ ବାଣ ଆସିଣ ଦଶଖଣ୍ଡ କଲା
ବାହୁଡ଼ି ଅସୁର ଉପରକୁ ସେ ପଡ଼ିଲା ।
ବଟିକ ଗତ କରିଣ ଭୂମିରେ ଉଭା ହୋଇ
ଉଲ୍କ ମହାବୀର ବଳକ୍ଷୀଣ ହୋଇ ।
ତୀକ୍ଷ୍ଣ ନାରାଚେକ ଯେ ବହେ ବୀର ଟାଣି
ଧାଇଁଲା ମହେନ୍ଦ୍ର ଯେ ପବନୁ ବେଗ ଜାଣି ।
ହାତରୁ ନ ଯାଉ ତାହାର ଛଡ଼ାଇ ଘେନଗଲା
ଆଣ୍ଠୁ ଭଙ୍ଗ ଦେଇଣ ସେ ବେନଖଣ୍ଡ କଲା ।
ପୁଣି ଉଲ୍କ ବୀର ପରିଘ ଘେନି ମାରି
ମୁଣ୍ଡ ନେଇ ମହେନ୍ଦ୍ର ପାତିଲା ଆଗସରି ।
ମଥାରେ ବାଜିଣ ସେ ଆୟୁଧ ଭାଜିଗଲା
କୋପଭରେ ଦୈତ୍ୟବୀର ଶର ବୃଷ୍ଟି କଲା ।
ହାତରୁ ଘେନିଣ ସେ ଅଙ୍ଗଦ ମହଲା
ଅଣ୍ଟାଳ କରିଣ ବୃକ୍ଷ କରରେ ଧଇଲା ।
ଉଲ୍କର ଉପରେ ସେ ପିଟିଲାକ ନେଇ
ପଡ଼ିଲା ରାକ୍ଷସ ସପତ ଖଣ୍ଡ ହୋଇ ।
ଦେଖିଣ ଅସୁର ସୈନ୍ୟ ପଳାଇଣ ଗଲେ
ଜଳ ଅକଳରଠାରେ ଶରଣ ପଶିଲେ ।
ବାରତା ପାଇଣ ସେ ଯେ ଧାଏଁ ଦୁଇଭାଇ
କାଳ କୃତାନ୍ତକ ପ୍ରାୟେ ଦିଶୁଛନ୍ତି ସେହି ।
ଗଦା ଶକତି ଯେ ମାରନ୍ତି ମୁଦ୍ଗର
ଚକ୍ର ଛଡ଼ ଶୂଳ ଯେ ନାନା ଶକତି ଶର ।
ଦେଖିଣ କିଷ୍କିନ୍ଧ୍ୟା ଠାକୁର ବେଗେ ଧାଇଁ
ଅଡବଡ଼ ପଥର ଅଛି ସେ ମୁଷ୍ଟି ଆଇ ।
ନିକୁମ୍ଭର ଉପରେ ଯେ ପେଷେ କପିସାଇଁ
ଦୁରନ୍ତୁ ଦେଖି ତାହା ଅସୁର ନିବାରଇ ।
ବାବନ ବାଣେ ତାହା ଛେଦିଲା ଦଇତ
ମହାଘୋର ସମର ସେ କଲା ଅପ୍ରମିତ ।
ନିକୁମ୍ଭ ବୋଇଲେରେ ଆମ୍ଭର ତୁ ବଇରି
ଏହିକ୍ଷଣି ତୋତେ ମୁଁ ପେଷିବି ଯମପୁରୀ ।
ଏତେ ବୋଲିଣ କୋନ୍ତ ସେ ମାଇଲା କଠାଇ
ଅଧା ବାଟରେ ଶର ଯେ ଧଇଲା ତାର ସାଇ
ଦୁଇଖଣ୍ଡ କରିଣ ସେ ଭାଙ୍ଗି ପକାଇଲା
କୋପରେ ନିକୁମ୍ଭ ଦୈତ୍ୟ ଅନେକ ଯୁଝିଲା
ଅହାରମସ୍ତ ଯେ ଦଣ୍ଡେ ରଣଭୂଇଁ
ଏକକୁ ଆରେକ ଯେ ନ ଚିହ୍ନନ୍ତି କେହି ।
କୁହୁଡ଼ିର ପ୍ରାୟେ ଯେ ବରଷୁଛନ୍ତି ଶର
ଧାଇଁଣ ନିକୁମ୍ଭ ରଥେ ଉଠେ ସୁଗ୍ରୀବର ।
ଦୈତ୍ୟର ହାତରୁ ଧନୁ ଛଡ଼ାଇ ଘେନିଲା
ବେନଖଣ୍ଡ କରିଣ ସେ ଭାଙ୍ଗି ପକାଇଲା ।
ସାଧୁ ସୁଗ୍ରୀବର ବୋଲି ସ୍ୱର୍ଗରେ ପ୍ରଶଂସି
ରାକ୍ଷସକୁ ଘେନି ସେ ତଳେ ପଡ଼େ ଆସି ।
ଦୁହେଁ ମାଲଦନ୍ଦରେ ଗଡ଼ାଗଡ଼ି ହୋନ୍ତି
ଟଳକସ ବନ୍ଧାଣ ସେ ଦୁହେଁ କରନ୍ତି ।
ମରମରି ଧରାଧରି କୋଡ଼ାକୋଡ଼ି ହୋନ୍ତି
ଅସୁରକୁ ଘେନିଣ ଉଠେ ବେମାପତି ।
ନିକୁମ୍ଭ ଦଇତ ଗୋଡ ଧରି ବୁଲାଇଲା
ଗଗରେ ସୁଗ୍ରୀବର ଧରି ଫୋପାଡ଼ିଲା ।
ନିକୁମ୍ଭ ଦୈତ୍ୟ ଯାଇଁ ସମୁଦ୍ରେ ପଡ଼ିଲା
ମହାଜଳ ମଧ୍ୟେ ପଡ଼ି ନାଶ ସେ ନୋହିଲା ।
ସଂଗ୍ରାମକୁ ଧାଇଁଲା କରିଣ ମହାରୋଷ
କ୍ଷଣକରେ ମିଳିଲା ସୁଗ୍ରୀବର ପାଶ ।
ନଦସୋଉଁ ସୁଗ୍ରୀବର ମାରେ ନେଇ ମୁଷ୍ଟି
ବାଜିଣ ଦେହେ ତାର ଅଗ୍ନି ଜଳ ଉଠି ।
କୋପଭରେ ସୁଗ୍ରୀବର ମାରେ ନେଇ ମୁଣ୍ଡ
ନିକୁମ୍ଭର ମୁଧୂନ ହେଲା ବେନି ଖଣ୍ଡ ।
ଜୀବନ ହାରିଣ ଦୈତ୍ୟ ପଡ଼ିଲା ଧରଣୀ
ଦେଖି କୁମ୍ଭକ ଧାଇଁଲା ପରବେକ ଘେନି ।

ଦୁରୁଦେଖି ହନୁମନ୍ତ ଓଗାଳିଲା ଆସି
ରହୁ ଦୁଇଗୋଟି କଲା ସଂଗ୍ରାମରେ ପଶି ।
କୁମ୍ଭ ଦଇତ ଯେ ପରଘ ଘେନି ମାରି
ଛେଉଁ ପଡ଼ି ହନୁମନ୍ତ ବେଗେ ତାହା ଧରି ।
ସମ୍ଭାଳି ନ ପାରିଲା ପଡ଼ିଲା ଆସି ଦେହେ
ଆନଜନ ହୋଇଲେ ପଡିଥାନ୍ତେ ମୋହେ ।
ବଜ୍ରରୁ ଆଣ୍ଠ ଅଟଇ ହନୁମନ୍ତ ବୀର
ଅଙ୍ଗରେ ବାଜଣ ଶସ୍ତ୍ର ହୋଏ ଶତେଚୂର ।
ପଲସି ହନୁମନ୍ତ ଚଧାଏ ମାଇଲା
କୁମ୍ଭକ ଦଇତ ପଡ଼ିଣ ମୋହଗଲା ।
ତତକ୍ଷଣେ ଚେତ ଉଠି ଧାଏଁ ଅନ୍ତଖରେ
ବଜ୍ରସମ ମୁଥେ ମାରେ ହନୁର ଉପରେ
ମୋହରେ ପଡ଼ିଲା ସେ ଯେ ପବନର ସୁତ
ଅଚେତା ଦେଖିକରି ଧାଏଁ ଯେ ଦଇତ ।
ମାରୁତିକି ତୋଳିଣ ରଥରେ ପକାଇଲା
ବାହୁଡ଼ାଇ କରି ରଥ ଶୀଘ୍ରେ ବାହୁନେଲା ।
ମହେନ୍ଦ୍ର ଦୁର୍ବନ୍ଦ ମହୀରେ ପଡ଼ିଥିଲେ
ଅଙ୍ଗଦ ସହିତରେ ଚେତଣ ଉଠିଲେ ।
ସୁଗ୍ରୀବର ସୁଷେଣ ଜାମ୍ବବ ନଳ ନୀଳ
ହନୁମନ୍ତେ ନେଲା ବୋଲି ଧାଇଁଲେ ସକଳ
ଋକ୍ଷକପି ସୈନ୍ୟବଳ ଅଗାଳିଲେ ଆଗେ
ଦେଖିଣ ଦୈତ୍ୟ ଶର ହାଣେ ଅତିରାଗେ ।
ହନୁମନ୍ତ ଚେତା ପାଇ ଉଠିଣ ବସିଲା
ଦଇତକୁ ରଥପୋଡ଼େ ଆହୋଣି ମାଇଲା ।
ପଡ଼ିଲା କୁମ୍ଭବୀର ରଥର ତଳରେ
ସୁଗ୍ରୀବ ଗୋଇଠାଏ ମାଇଲା ସେ ବେଳରେ
ପଡ଼ିଲା କୁମ୍ଭକ ଦୈତ୍ୟ ରକତ ଉଦ୍‌ଗାରି
ମହୀରେ ପଡ଼ିଲା ଜୀବନକୁ ହାରି ।
ଏଥୁ ଅନନ୍ତରେ ଯେ ଖରର ତନୟେ
ଋକ୍ଷକପି ବଳ ଯେ ବହୁତ ନାଶ କଲ୍ୟେ ।
ଏକା ନାରାଜକରେ ଶତେ ଶତେ ଛେଦ
ବାତେ ରମ୍ଭା ବୃକ୍ଷ ପ୍ରାୟେ ଆସୁଅଛି ଖେଦ ।
ସୈନ୍ୟବଳ ପଳାଇଲେ ତାର ଶର ଘାଏ
ଗର୍ଜନ ନୋହିଲେ ତାକୁ ଅଙ୍ଗଦ ସୁଗ୍ରୀବେ
ହନୁମନ୍ତ ଜାମ୍ବବ ଆଡ଼ ହୋଇ ଯାଏ
ତାହାର ସମର ଯହୁଁ ଦେଖି ଅପ୍ରମେୟେ ।

ଅଷ୍ଟସେନ୍ହା ଭାଜଲେ ଭାଜଲେ କପିପଲ
ପଚାଶ ସେନାପତି ଗୃହାନ୍ତ ଜଳ ଜଳ ।
କାଳ ଅଗ୍ନି ଜାଣି ଦହେ ଋକ୍ଷକପି ସୈନ୍ୟ
ରଘୁବର ଟଳଇ ତାହାର ଘନ ଘନ ।
ଦୁରୁ ଦେଖି ଶ୍ରୀରାମ ଓଗାଳିଲେ ଆସି
ରହୁ ଯେହ୍ନେ ଓଗାଳଇ ଦେଖି ପୂର୍ଣ୍ଣ ଶଶୀ ।
ଶ୍ରୀରାମ ରୂହିଁଣ ବୋଲେ ସେ ଦଇତ
ତୋହର ଶରେ ପଡ଼ିଲା ମୋହର ଜନ ତାତ
ମୂର୍ଖ ମକରାକ୍ଷ ଯେ ପିତା ମୋର ଖର
ଆଜ ତୋତେ ଯତରେ ପେଷିବ ଯମପୁର ।
ଶ୍ରୀରାମ ବୋଲନ୍ତି କେ ଜାଣଇ ତୋର ବାପ
ଜନ୍ମାଇ ଦୈତ୍ୟ ଆଗରୁ କହୁଅଛୁ ଧାପ ।
ଯୁଦ୍ଧକଲେ ସିନାରେ ଜାଣିବା ବଡ଼ ସାନ
ରାକ୍ଷସ ଜାତି ତୁମ୍ଭେରେ ବଢ଼ାଇ ଅଗ୍ୟାନ ।
ପିତା ଯେବେ ତୋହର ମୋହର ହସ୍ତେ ମଲା
ତୋହର ହାତରେ ମୋର ଜସ ହେବ ପରା
ବାପକୁ ନ ଦେଖି ତୁହି ଦଣା ହୋଇଅଛୁ
ତେଣୁ ବା ସଂଗ୍ରାମରେ ମୋତେ ଆସି ପୁଚ୍ଛୁ
ଦେଖିବୁ ସଂଗ୍ରାମରେ ପଡ଼େ ତୋ ପିଅର
ସେହିଦିନଠାରୁ ଦେଖା ନାହିଁଟି ମୋହର ।
ଏବେ ଏହିକ୍ଷଣି ବାବୁରେ ପଠାଇବା ତୋତେ
ତୁହିଯେବେ ବଳାରେ କହିଲୁ ଆସି ମୋତେ
ବାପ ସଙ୍ଗେ ଚଉଦ ସସ୍ତ୍ରବଳ ଦେଖାଯାଇଁ
ଯମର ନଗରରେ ତୁହି ମୃତ୍ୟୁଦେହ ପାଇ ।
ସେହିଠାରେ ଯାଇ ତୁରେ ଇଷ୍ଟବନ୍ଧୁ ଚାହ୍ନ
ମୁଣ୍ଡ ଗଣ୍ଡି ତୋହର କରିବା ଭିନ୍ନ ଭିନ୍ନ ।
ଏହାଶୁଣି ତିନକାଣ୍ଡ ବନ୍ଧିଲା ଅସୁର
ଶ୍ରୀରାମ ଛେଦିଲେ ତାହା କଞ୍ଚିତ ପ୍ରକାର ।
ଖରର ତନୟ ଯେ ମାଇଲା ଦଶବାଣ
ବାହଲେ ଛେଦିଲେ ତାହା ରଘୁ କୁଳରାଣ ।
ଅନ୍ୟୋ ଅନ୍ୟେସମର ଯେ କରନ୍ତିମହାଘୋର
ଏକଶର ପେଶନ୍ତେ ଯେ ଆରେକ ଆଗୁଁସାର
ଦୁଇସ୍ତିର ପାଞ୍ଚ ସେ ଯେ ଦଶହଂଶ ଶସ୍ୟେ
ଏଣି ତେଣିକି ନାରାଜ ଆକଯାଉ ହୁଏ ।
ମହାଘୋର ସମର ଦେଖିଣ ଶ୍ରୀରାମ ଚତୁର
ହେଳା ଯୁଦ୍ଧକଲେଯେଦୈତ୍ୟଙ୍କୁ ନୋହେମାର

ଇନ୍ଦ୍ରଜିତ ସମାନେ ଏ ଅଟେ ଧନୁର୍ଦ୍ଧର
ବଜ୍ରଘାତ ପରାୟେ ଅଟେ ଘୋର ଶର ।
ଏତେ କହି ରାମାୟୁଣ ଦିବ୍ୟ ଅସ୍ତ୍ରକଲେ
ରଣଭୂମି ଗୋଟା ଅନ୍ଧାରମୟ କଲେ ।
ସହସ୍ରେକ ବାଣ ଯେ ପେଷିଲେ ରଘୁପତି
ଦୈତ୍ୟର ଶରୀର ସେ କାଟିଲେ ବିକୋଟି ।
ତକ୍ଷଣ ନାରାଚମାନ ଯେ ଶରୀରେ ଭେଦିଛନ୍ତି
ଆନନ୍ଦରେ ରାକ୍ଷସମାନଙ୍କର ରୁଧିର ପିବନ୍ତି ।
ବିକଟାଳ ହୋଇଣ ଖରର ତନୟେ
ଶସ୍ତ୍ରମାନ ଛେଦିବାକୁ ଦିବ୍ୟ ଅସ୍ତ୍ରଜୟେ ।
ଶସ୍ତ୍ରଙ୍କର ତେଜ ଯେ ହାନେଲ ଦିଶଇ
ପୁଣିହିଁ ବାନବ ଅନେକ ଶହସ୍ର ପେଶଇ ।
ତକ୍ଷଣ ନାରାଚ ଯେ ପେଷିଲେ ରଘୁପତି
ଅସୁରର ଧନୁଶର କାଟିଲେ ବିକୋଟି ।
କୋପରେ ଅସୁର ଯେ ଶକତି ଯେନ ମାରି
ରାମଚନ୍ଦ୍ର ଛେଦିଲେ ତା ପ୍ରତିଶର କରି ।
ଅଧାଚନ୍ଦ୍ରବାଣ ସେ ପେଷିଲେ ରଘୁମଣି
ମକରାକ୍ଷସ ବୀରକୁ ପକାଇଲେ ହାଣି ।
ବେକଠାରୁ ଛିଡ଼ିଣ ହୋଇଲା ଦେହଖଣ୍ଡ
ପ୍ରାଣ ଛାଡ଼ିଣ ଦୈତ୍ୟ ପଡ଼ିଲା ଭୂଖଣ୍ଡ ।
କଣ୍ଠର ସନ୍ଧିରୁ ମୁଣ୍ଡଗଲା ଛିଡ଼ି
ମାରିବା ବେଳେ ଦୈତ୍ୟଦେଲା ସିଂହରଡ଼ି ।
ପଡ଼ିଲେ ରାବଣର ଷଡ଼ ସେନାପତି
ପଳାଇଲେ ଅସୁର ପ୍ରାଣକୁ କରି ଭୀତି ।
ବିଭୀଷଣ ଜଣାଇଲା ଶୁଣ ରାମରାଣ
ଏତିକ ହେଉ ଦେବ ଆଜଦିନ ରଣ ।
କାଲିର ଦିବସ ରହ ଆଜ ଘଡ଼ି ସାତ
ଦୁଇ ଆଉ ସୈନ୍ୟବଳ ପଡ଼ିଲେ ବହୁତ ।
ରହିଲ ବାହୁଡ଼ା ବିଜୟେ କରିବା ଗୋସାଇଁ
ଆଜଯେଉଁ ରଣହେଲା ଦେଖିଲା ମୋର ନାହିଁ
କୁମ୍ଭ ନିକୁମ୍ଭ ମକରାକ୍ଷସ ମଲେ ସର
ଜଲ୍ଲୂକ ବହୁପାଷ ତାମ୍ରକେତୁ ମଲା ।
ପଦାତି ବଳରୁ ଦେବ ଅଧେ କ୍ଷୟଗଲେ
ଆଜକୁ ଆଠଦିନ ହୋଇଲା ଯୁଦ୍ଧ ଭଲେ ।
ବାହୁଡ଼ି ଯିବା ଦେବ ନ କର ମନେ ଖେଦ
ଏତେ କହି ବିଭୀଷଣ ପଡ଼ିଲା ପଦପାଦ ।

ଶ୍ରୀଅଙ୍ଗକୁ ଶ୍ରମ ହେଲା ବହୁତ ଗୋସାଇଁ
କାହାର ସଙ୍ଗେ ଯୁଝିବ ଦୈତ୍ୟ କେହି ନାହିଁ
ଦେଖ ଦେଖ ଯେ ଯାହାରେ ପଳାଇପଶୁଛନ୍ତି
ଶୁଣିକରି ଶ୍ରୀରାମ ପରମ ତୋଷ ହୋନ୍ତି ।
ଉଠ ଉଠ ବୋଲି ବିଭୀଷଣକୁ ବୋଲନ୍ତି
ଋକ୍ଷକପିମାନେ ଯେ ହୁଳହୁଳ ଦ୍ୟନ୍ତି ।
ବାହୁଡ଼ା ବିଜେ ସ୍ୱାମୀ କଲେ ରଘୁନାଥ
ବିଜୟସିଂହ ମୂର୍ତ୍ତି କୋଦଣ୍ଡ କାଣ୍ଡ ହସ୍ତ ।
ହନୁମନ୍ତ କନ୍ଧରେ ବିଜୟ ଗୋସାଇଁ
ବୋଇଲେ ଆମ୍ଭର ସୈନ୍ୟ ଆଣ ବାହୁଡ଼ାଇ
ଏହାଶୁଣି ବିଭୀଷଣ ହେଲା ଆଗୁଆଣି
ପଛରେ ବିଜୟ କଲେ କପିକୁଳମଣି ।
ବାମପାଶେ ଜାମ୍ବବ ଡାହାଣେ ସୁଷେଣ
ଆଗରେ ବାଜୁଅଛି ଠମକ ନିଶାଣ ।
ସପ୍ତସେନାପତିଏ ପଛରେ ଅଛନ୍ତି
ମଲ୍ଲ ମହାମଲ୍ଲ ତାଙ୍କ ପଛରେ ଆସନ୍ତି ।
ପଟୁଆର ହୋଇଣ ଶ୍ରୀରାମ ଆଗରେ ଅଛନ୍ତି
ରଣଜୟ କରିଣ ସକଳେ ବୁଲେ ଯାନ୍ତି ।
ସବୁଙ୍କର ଶରୀର ରକତେ ରଙ୍ଗମୟ
ବିଭୀଷଣଙ୍କୁ ଚାହିଁ ପୁଚ୍ଛନ୍ତି ରାମରାୟେ ।
କହେ। ଲଙ୍କପତି କାହିଁ ଇନ୍ଦ୍ରଜିତ ବୀର
ଅଜିତ ବାପ ପୋଏ ନୋହିଲେ ବାହାର ।
ଧନ୍ୟ କୁ ରାବଣ ଅର୍ଜିଲୁ ଏତେ ଶିରୀ
ସମ୍ପତ୍ତି ହରାଇଲୁ ହୀନ ବୁଦ୍ଧି କରି ।
ଏତେ ବୋଲି ପଛକୁ ଚାହାନ୍ତି ରଘୁଶିରି
ଲଙ୍କାଗଡ଼ ମଧ୍ୟେ ଧୂମମୟ ଦିଶି ।
ଶ୍ରୀରାମ ବୋଇଲେ ଆହେ ଶୁଣ ବିଭୀଷଣ
ଯେଉଁଘର ପୋଡ଼ିଗଲା ଛଡ଼ାଏ ରାବଣ ।
ମେଘନାଦ ସହିତରେ ସର୍ବେ ଲାଗିଛନ୍ତି
ତାହାଙ୍କ ମନେ ଆମ୍ଭଙ୍କୁ ଭୟ ନ କରନ୍ତି ।
ଏବେ ସେ ଶୁଣିବ ପୁତ୍ରମାନେ ମଡ଼ିବାର
ହସ୍ତୀ ଅଶ୍ୱ ପଦାତି ସୈନ୍ୟ ମରିବାର ।
ସକଳେ ପଳାଇଲେ କହିବେ ବାରତା
ଜୟ ଜୟ ବିସ୍ମର କରିବେ ପୁତ୍ର ପିତା ।
ବିଭୀଷଣ ବୋଇଲା ତୁମ୍ଭର ଗଲା ଜୟ
ଜାଣୁ ଜାଣୁ ଖାଇଅଛି କାଳକୂଟ ବିଷ ।

ଏବେ ରାଜନେ ତାଙ୍କୁ ବୁଦ୍ଧି ଅଛି କାହିଁ
ବିଭୀଷଣ ବଚନେ ବୋଲନ୍ତି ରଘୁସାଇଁ ।
ବୁଦ୍ଧି ଅଛି ତାର ସମର୍ପିବ ଯେବେ ସୀତା
ସୁଖରେ ଲଙ୍କା ଭୋଗ କରିବ ଦଶମଥା ।
ନୋହିଲେ ପ୍ରାଣ ତାର କେବେ ନ ରହିବ
ଜାନକୀ କୋପରେ ବଂଶ ଦହ୍ୟଁହୋଇବ ।
ହେଉ ଦେବ ବୋଲିଣ ବୋଲନ୍ତି ବିଭୀଷଣ
ଏଥୁ ଅନନ୍ତରେ ଯେ ଶାକମ୍ବରୀ ଶୁଣ ।
ଉତ୍ତର ଦ୍ୱାରେ ମିଳି ବୋଲନ୍ତି ଶ୍ରୀରାମ
ନାହାନ୍ତି ପଞ୍ଚଶ ଯୂଥପତି ଲକ୍ଷ୍ମଣ ।
ଆସନ୍ତୁ ସଉମିତ୍ରୀ ବିଶ୍ରାମିବା କ୍ଷଣ
ଏହାଶୁଣି ଗଡ଼ଦ୍ୱାରେ ରହିଲେ ସର୍ବ ପୁଣ ।
ପଶ୍ଚିମ ଦ୍ୱାରକୁ ଯେ ଲକ୍ଷ୍ମଣ ଯାଇଥିଲେ
ଶ୍ରୀରାମ ଗଲେଣି ବୋଲି ବାରତା ପାଇଲେ
ବୀର ଜଣାଇଲା ଉତ୍ତର ଗଡ଼ଦ୍ୱାରେ
ବୋଇଲେ ଲକ୍ଷ୍ମଣଙ୍କୁ ଆଣଯା ସତ୍ୱରେ ।
ଋକ୍ଷକପିଦଳ ଯେ ବାହାର କରି ନ୍ୟନ୍ତି
ତୁମ୍ଭେ ଗଲେ ସୁବଳସ୍ଥା ଯିବେ ରଘୁପତି ।
ଏହି ସମୟରେ ଯେ ଗବାକ୍ଷ ବୀର କହି
ଶୁଣ ଦେବ ଲକ୍ଷ୍ମଣ ଶ୍ରୀରାମଙ୍କ ଭାଇ ।
ଅଶୋକ ବନରେ ଯେ ସୀତାଛନ୍ତି ରହି
ରାବଣ ଶରରେ ଯେତକିଁ ମାସ୍ଥା ଅଛିଭ୍ୟାଇ
ବାରଲକ୍ଷ ଦୈତ୍ୟଯେ ଲଗାଲଗି ହୋଇ ।
ବିଚାରନ୍ତି ରାମଚନ୍ଦ୍ର ସୀତାଙ୍କୁ ଘେନଯାଇ ।
ଶୁଣିକରି ସଉମିତ୍ରୀ ଅଙ୍ଗଦରେ କହି
ପଞ୍ଚଶ ଯୂଥପତିକ ଡକାଇଲେ ରାମଭାଇ ।
ସଙ୍ଗହୋଇ କରି ବୀର ସେ ବାଟରେ ଯିବା
ତାହାଙ୍କୁ ମାଇଲେ ରାମଚନ୍ଦ୍ରଙ୍କୁ ଭେଟିବା ।
ଏତେକହି ମେଳହୋଇ ବାହାରହୋଇଗଲେ
ଅଶୋକବନେ ଯାଇଣଦୈତ୍ୟଙ୍କୁ ଭେଟିଲେ
ଧନୁରେ ଗୁଣ ଦେଇ ଶ୍ରୀରାମ ଭାଇ
ଦୈତ୍ୟବଳବୀରପାଶେଅଛନ୍ତିବେଢ଼ିଦେଇ ।
ବାବଲଗାଷ୍ଣଶରଯେ ତୋଣରୁ କାଢ଼ିଲେ
ମନ୍ତ୍ରିଣ ଦୈତ୍ୟଙ୍କୁଯେ କ୍ରୋଧରେ ବିନ୍ଧିଲେ
ପଞ୍ଚଶ ଯୂଥପତି ମାରନ୍ତି ତରୁଶିଳ
ଦୈତ୍ୟବେଢ଼ି ଶରବୃଷ୍ଟି କରନ୍ତି ଅପାର ।
ଲାଗିଲା ରଣଗୋଳ ଧନ୍ଦୋଳ ହୋଇଠାଣ
କ୍ରୋଧରେ ଜରଜର ସୁମିତ୍ରା ନନ୍ଦନ ।
ବଜ୍ରଶର ପୂରାଇ ବିନ୍ଧିଲେ ଟାଣିକରି
ସହସ୍ରେକ ଶର ଯେ ପେଷିଲେ ରାଗକରି ।
ମାରନ୍ତି ଯୂଥପତି କରିଣ ଗର୍ଜନ
ଲକ୍ଷ୍ମଣର ଶରକୁ ଛେଦନ୍ତି ପୁଣ ପୁଣ ।
ବାରଲକ୍ଷ ଦୈତ୍ୟଯେ ଘଡ଼ିକେ ନକାଶିଲେ
ରଣଛାଡ଼ି ଦୈତ୍ୟଯେ ପଳାଇଣ ଗଲେ
ଭାଜିଲା ରଣଗୋଳ ପକାଇଲେ ବଳ
ରକ୍ତ ନଦୀ ଗୋଟା ବହେ ସେ ବନର ।
ଦୈତ୍ୟଙ୍କର ମାରୁଣି ତ୍ରିଜଟା ଦେଖୁଥିଲେ
ଜାନକୀ ଦେଖିଣ ଯେ ମନରେ ବିଚାରିଲେ ।
ଭଲ ଯୁଦ୍ଧ ଆଜ ସ୍ୱାମୀ ଦିଅର ମୋରକଲେ
ବାରଲକ୍ଷ ଦୈତ୍ୟଯେ କ୍ଷଣକେ ନାଶଗଲେ
ଲକ୍ଷ୍ମଣବୋଇଲେ ବାବୁ ଅଙ୍ଗଦ ଏବେଶୁଣ
ପଳାଇଲା ଲୋକଙ୍କୁ ନମାର ଆଉ ପୁଣ ।
ପଞ୍ଚଶ ଯୂଥପତି ସଙ୍ଗତରେ ଘେନ
ସୀତା ଥିବା ଠାବରେ ପ୍ରବେଶ ହେଲେପୁଣି
ଦେଖିଣ ଅସୁସ୍ଥ ଯେ ଅନେକ ଭୟକଲେ
ସୀତାଙ୍କ ଚରଣରେ ଶରଣ ପଶିଲେ ।
ଲକ୍ଷ୍ମଣବୋଇଲେ ତୁମ୍ଭେ ଶୁଣଗୋଦାଇକୁଣି
ରାବଣର ଆଗରେ କହିବ ତୁମ୍ଭେ ପୁଣି ।
ବୋଲିବ ଶ୍ରୀରାମତୋତେ କହିଛନ୍ତି ଜାଣ
ତୋତେ ମାରି ସୀତାଙ୍କୁ ଘେନଯିବେ ପୁଣ ।
ଏତେକହି ସତ୍ୟ କରି ଅଛନ୍ତି ଶ୍ରୀରାମ
ଆମ୍ଭଙ୍କୁ କହିଗଲେ କହିବ ତୁମ୍ଭେ ଜାଣ ।
ଜାନକୀଙ୍କି ଲକ୍ଷ୍ମଣ ନମସ୍କାର କଲେ
ଯୂଥପତିମାନେଯେ ଚରଣେ ଲୋଟିଲେ ।
ବଇଦେହୀ ବୋଇଲେ ଦୀର୍ଘାୟୁ ହୋଇଥାଅ
ଦୈତ୍ୟବଳ ମାରିଣ ମୋତେ ଏଠାରୁନଅ ।
ଶୁଣିଣ ଲକ୍ଷ୍ମଣ ଯେ ଅଙ୍ଗଦ କନ୍ଧେ ବସି
ଉତ୍ତର ଗଡଦ୍ୱାରେ ରାମଙ୍କୁ ଭେଟେ ଆସି ।
ଲକ୍ଷ୍ମଣଙ୍କୁ ଦେଖିଣ ଶ୍ରୀରାମଚନ୍ଦ୍ରପୁଣ
ପଚାରନ୍ତି କମ୍ପାଇ ରହିଲ ପଛେ ଜାଣ ।
ଲକ୍ଷ୍ମଣ ବୋଇଲେଦେବ ପଶ୍ଚିମଦ୍ୱାରେଥିଲୁ
ତୁମ୍ଭର ବାରତା ପାଇ ବେଗେଣ ଆଇଲୁ ।

ହାଟବଣା ହୋଇଣ ଅଶୋକ ବନେ ଗଲୁ
ଜନକର ଦୁହିତାଙ୍କୁ ମଣ୍ଡପେ ଦେଖିଲୁ ।
ହାରଲକ୍ଷ ଦୈତ୍ୟ ଯେ ରାବଣ ଜଗାଇ
ଆମ୍ଭେ ନେଇଯିବା ବୋଲି ମନରେ
ଧୋକା ହୋଇ ।
ସୈନ୍ୟଙ୍କୁ ମାରିଣ ଆମ୍ଭେ ଅଇଲୁ ତୁମ୍ଭ ପାଶ
ଏଥିଅନ୍ତେ ଶ୍ରୀରାମ ଶୁଣିଣ ହେଲେ ତୋଷ ।
ଉତ୍ତରଦ୍ୱାରେ ସର୍ବେମେଳ ହେଲେପୁଣ
ଗଡ଼ ଭିତରୁ ସୈନ୍ୟ କଢ଼ାଇ ବହନ ।
ରାମସଙ୍ଗେ ଚଳିଯାଇ ସୁବେଳସ୍ଥା ହୋନ୍ତି
ହନୁମନ୍ତ କାନ୍ଧରୁ ବେଗେ ସେ ଓହ୍ଲରନ୍ତି ।
ଅଙ୍ଗଦର କାନ୍ଧରୁ ଓହ୍ଲରେ ଲକ୍ଷ୍ମଣ
ନମସ୍କାର କରି ଶ୍ରୀରାମଙ୍କୁ କରନ୍ତି ପ୍ରଦକ୍ଷିଣ ।
ଧନୁଶର ତୋଳିଣ ନଳହସ୍ତେ ଦେଲେ
ହୋଣ ଦୁଇ କାଢ଼ି ତଳରେ ଥୋଇଲେ ।
ଅମଳାଣ ବସ୍ତ୍ର ଯେ ହୋଣ ଧନୁଶର
ସବୁ ସମ୍ଭାଳିଲା ନେଇ ତାହାର ପିଅର ।
ଶ୍ରୀରାମ ଲକ୍ଷ୍ମଣ ଦେବନଘାଟରେ ସ୍ନାନକଲେ
ନିତ୍ୟକର୍ମ ସାରିଣ ସନ୍ଧ୍ୟା ସୁମରିଲେ ।
ପିତୃତର୍ପଣ ସାରିଣ ଜଳପାନ ଦେଲେ
ଅଷ୍ଟ ସେନାପତି ଯେ ସ୍ନାନ ପୁଣି କଲେ ।
ଦେବନଘାଟରେସ୍ନାନସାରିସୈନ୍ୟବଳସହିତେ
ଯେଯାହାର ନିତ୍ୟକର୍ମ ସାରିଲେ ତୁରିତେ ।
ସୁବେଳସ୍ଥା ଗିରିକି ସମସ୍ତେ ଚଳିଗଲେ
ରାମ ଲକ୍ଷ୍ମଣ ଯେ ଭୋଜନ ତହୁଁ କଲେ ।
ମଲ୍ଲ ମହାମଲ୍ଲ ଯେ ଯୂଥପତିମାନେ
ସ୍ନାହାନ ଭୋଜନ ଯେ କଲେକ ବହନେ ।
ଏସନ ସମୟେ ଋକ୍ଷକପି କୋଟିଏ ଯେ ଦଳ
ହାରାକ୍ଷଫଳ ଥୋଇ ଦର୍ଶନକଲେକ ସକଳ
ସୁଗ୍ରୀବର ଜ୍ଞାଏଁ ଯୋଡ଼ିଣ ହେଳକର
ହେମଗିରିରୁ ସୈନ୍ୟଦେବ ଅଇଲେ ସତ୍ୱର
ଶ୍ରୀରାମ ପଚାରନ୍ତି ଭଲୁଙ୍କ ମୁଖ ଚାହିଁ
କସ କସ ବାରତା ଶୁଭେ ତେଣେ ଯାଇ ।
ଭଲୁକବୋଲେ ଦେବ ନଜାଣୁ ଆମ୍ଭେ କିଛି
ଯାଆନ୍ତା କେହୁ ନାହିଁ ଆସନ୍ତା ଆସୁଅଛି ।
ସ୍ୱଷ୍ଟଦନ ତଳେ ଦେବ ରଡ଼ଏ ଶୁଭୁଥିଲା
ଥିପ୍ପ ନ ଜାଣୁ ଦେବ କେହୁ ଯେ ନ କହିଲା

ହସିଣ ରଘୁନାଥ ଜମ୍ବୁବରେ କହି
କୁମ୍ଭକର୍ଣ୍ଣର ରଡ଼ି ମନ୍ତ୍ରୀ ଶୁଭିଲା ମନ୍ତ୍ରୀତହିଁ ।
ଧନ୍ୟ ଧନ୍ୟ କୁମ୍ଭକର୍ଣ୍ଣ ତୋହର ଜୀବନ
ଏତେ ଦୂରକୁ ତୋର ଶୁଭିଲା ଗର୍ଜନ ।
ଶ୍ରୀରାମ ବୋଇଲେ ଯାର ଶୁଭିଲା ରଡ଼ଘୋଷ
ତାହାକୁ ମାଇଲୁ ଆମ୍ଭେ ସଂଗ୍ରାମେ ବିଶେଷ ।
ରାବଣର ଭାଇ ସେ ଯେ ନାମ କୁମ୍ଭକର୍ଣ୍ଣ
ଏତେ ଦୂରକୁ ଶୁଭିଲା ତାର ରଡ଼ି ଜାଣ ।
ଶୁଣି ଜଭ କାମୁଡ଼ିଲେ ଋକ୍ଷକପିମାନେ
ଦୁଇହସ୍ତ ନେଇଣ ଲଗାଇଲେ ହେଳକର୍ଣ୍ଣେ ।
ଋକ୍ଷକପି ବୋଇଲେ ଶୁଣ ଦେବ ପୁଣ
ଅଯୋଧ୍ୟାର ଗଡ଼ତଟେ ଅଇଲୁ ଏବେ ଜାଣ
ସେ ଦେଶରେ ରାଜାଯେ ପାଦୁକା ନାମେ ନାଥ
ଯୁବରାଜା ସେଥିରେ ଦଶରଥ ସୁତ ।
ତାଙ୍କ ନାମ ଭରତ ଅଟଇ ତୁମ୍ଭେ ଜାଣ
ତାହାର ସାନଭାଇ ଶତ୍ରୁଘନ ପୁଣ ।
ଥାଟରେ ରାଜା ହୋଇ ଅଛନ୍ତି ସେହିପୁଣି
ତାହାର ମାତା ନାମ କଳାବତୀ ଜାଣି ।
ରାଜ୍ୟର ଭଲମନ୍ଦ ବୁଝେ ସେ ତରୁଣୀ
ଦସ୍ମାଣୀକା ଅଟନ୍ତି ଯେ ଦଶରଥ ରାଣୀ ।
ଆମ୍ଭଙ୍କୁ ବାଟରେ ଭରତ ଓଗାଳିଲେ
ଲଙ୍କେଶ୍ୱରଜା ଅଛନ୍ତି ତୁମ୍ଭେ ଫେରସେ ବୋଇଲ
ଶତ୍ରୁଘନ ଭାଇ ବୋଲନ୍ତି କେଣେ ଯାଅ
ହଟ୍ଟକ୍ତ କରିଣ ତୁମ୍ଭେ ଆମ୍ଭର ଆଗେ କହ ।
ଥାଟରେ ସେନାପତି ସୁନ୍ଦର ନାମେ କପି
ସେ ବୋଇଲା କିଷ୍କିନ୍ଧ୍ୟା ଯାଉଛୁ ଆମ୍ଭେ କ୍ଷେପି
ବାନରେଶ୍ୱରଯେ ଅଟେ ସୁଗ୍ରୀବର
ଆମ୍ଭଙ୍କୁ ନିମନ୍ତ୍ରି ସେ କରିଛି ସତ୍ୱର ।
ଅନର୍ଥ ନକର ବାଟ ଛାଡ଼ିଦିଅ ତୁମ୍ଭେ
ଲଙ୍କେ ରାଜା ହେଲେ ମାରିଯିବୁଟି ଆମ୍ଭେ
ଶୁଣିଣ ଶତ୍ରୁଘନ ବୋଲେ ଦଣ୍ଡେ ରହ
କିଛି ଫଳମୂଳ ଖାଇ ଏଥିରୁ ତୁମ୍ଭେ ଯାଅ ।
ରାଜାଙ୍କ ଥାଟରେ ତୁମ୍ଭେ ପାଇବ ପ୍ରଶଂସା
ଏତେକହି ରାଜାପୁତ୍ର ନଦରେ ଗଲେ ଏକା
ଜନନୀକି ଯାଇ ତାର କହିଲା ଏଯାକ
ଜନନୀ ବୋଇଲେ ତାଙ୍କୁ କର ସନମାନ ।

ଜନମାର ବୋଲେ ସେହୁ ସୁଗ୍ରୀବକୁ ଫଳ ଦେଲା
ପାଚିଲା ପଣସ ଆମ୍ବ ଆମ୍ଭଙ୍କୁ ଖୁଆଇଲା ।
ଖାଇଣ ସନ୍ତୋଷ ଆମ୍ଭେ ସମସ୍ତେ ହୋଇଲୁ
ଅଯୋଧ୍ୟାର ବାଣ୍ଟବାଟେ ସମସ୍ତେ ଆଇଲୁଁ ।
ଧବଳ ପୁରଗୋଟି ଅଛଇ ସେହି ଜାଣ
ଲକ୍ଷେ ଚହ୍ନିଁରେ ଅଛନ୍ତି ଯେ ପୁଣ ।
ହସ୍ତୀ ଘୋଡ଼ା କେତେ ଯେ କଳନା ନଯାଇ
ଭୁଣ୍ଡର ନାଦଘାତରେ କଥା ନ ଶୁଭଇ ।
ବାରଯୁ[illegible] ସେଥିରେ ପଥ ଯାଏ ପଡ଼ି
ଲକ୍ଷେ ଛତ୍ର ଟେକିବାରେ ସୂର୍ଯ୍ୟଙ୍କୁ ଓଡ଼ାଡ଼ି
ଧନ୍ୟ ଧନ୍ୟ ପୁର ସେ ଅଛେ ଜମ୍ବୁଦ୍ୱୀପେ
ଦୂରକୁ ଦିଶଇ ଚନ୍ଦ୍ର ଜଳିଲା ପ୍ରତାପେ ।
ସେ ପୁରକୁ ଦେଖି ଆମ୍ଭେ ଆଇଲୁ ଯେ ଚଳି
ପାଦୁକା ରାଜାର ନାମ କୁଣ୍ଡରେ ସର୍ବେ ଧରି
ଶୁଣିକରି ରଘୁନାଥ ଲକ୍ଷ୍ମଣରେ କହି
ସେବେଳେ ପାତାଳ ଅହିଯାହା ଯାଇଥିଲା କହି
ଆମ୍ଭର ସକାଶୁଁ ତାକୁ ଭରତ ଅଣାଇଲା
ଲକ୍ଷେରାଜା ଆଣି ବଡ଼ ଦୁଃଖ ସେ ପାଇଲା ।
ହୋଇଲା ପରମକଷ୍ଟ ଆମ୍ଭଙ୍କରେ ବଡ
ରାବଣକୁ ନ ମାରିଲେ କଥା ହେବ ଗାଢ଼ ।
ଲକ୍ଷେରାଜାକମାନଆଜ ବୋଲକରବେମୋର
ରାବଣ ମଲେ ଦେବଙ୍କ ଦୁଃଖ ଯିବ ଦୂର ।
ରାଜା ଦୈତ୍ୟବାନର ଯେ ଦେବତା ବୃଷ୍ଟବର୍ଣ୍ଣ
ସମସ୍ତେ ରହିବେ ରାଜାର ବୋଲେ ପୁଣ ।
ଏତେକହି ଶ୍ରୀରାମ ଯେ ବେଦନ କରନ୍ତି
ଏଥୁ ଲେଉଟି ଯାଇ ଦେଖିବା ମାତାଙ୍କୁଟି ।
ଭଲରେ ଜନମ ତୋତେ କାଶିରାଜା କଲା
ଲଙ୍କାଗଡ଼େ ତୋ ବାରତା ଶୂନ୍ୟରୁ ଶୁଭିଲା
କୁଳଧର୍ମ ରଖିଲୁ ଯେ ସୂର୍ଯ୍ୟବଂଶ ରାଣୀ ।
ଲକ୍ଷ୍ମଣ ବୋଲେ ରଘୁନାଥଙ୍କ ବାଣୀ ଶୁଣି ।
ଶତ୍ରୁଘ୍ନ ସମାନରେ ଭାଇ ନ ମିଳଇ
ବାସୁକୀର ବୋଲରେ ସେ ଧରଣୀ ଧରଇ ।
ତିନଭୁବନ ଧରଣୀକି ଧାରଣ ରହିଲା
ସୂର୍ଯ୍ୟବଂଶେ ଜାତି ସେ ଯୁଗକୁ ରଖିଲା ।
ଶ୍ରୀରାମ ବୋଇଲେ ମାଆ ତାର ଦେହେନାହିଁ
ଅଭିଷେକ ହେବ ବୋଲି ଲକ୍ଷେରାଜା ରାଇ ।
ବାରତା ଶୁଣିଲେ ପୁଣ ଆସଇଟି ଏଥ
ଲକ୍ଷେରାଜା ଘେନିଣ ସେ ଆସିବ ତୁରିତ ।
ମୂର୍ଚ୍ଛି ଯିବ ବୋଲିଣ କରିଛୁ ରାଜ୍ୟ ଭଜ
ବାରତା କହିଛୁ ମୋତେ ଗବାକ୍ଷ ଯେ ଆଜ
ଏତେବୋଲି ଶ୍ରୀରାମ ଲକ୍ଷ୍ମଣ ବେନିଭାଇ
ମନରେ ସନ୍ତୋଷ ହୋଇ ନଳକୁ ଡକାଇ ।
ଆପଆଣି ଥାଟରେ ରହନ୍ତୁ ଏହି ବଳ
ରଘୁନାଥ ଆଜ୍ଞାରେ ଘେନିଣ ଚଳେ ନୀଳ ।
ଫଳମୂଳ ଭାଙ୍ଗିଣ ସେ ଆଗେ ଠଣାକଲା
ଯୁଝିବା ଥାଟସବୁ ସୁବେଳେ ସୁସ୍ଥଇଲା ।
ଆଜ୍ଞାପ୍ରମାଣେ ଚଳିଲେ ଋକ୍ଷକପି ବଳ
ପାଞ୍ଚସୁ ଣରେ ନେଇ ଠଣଦେଲା ନୀଳ ।
କୁମ୍ଭକର୍ଣ୍ଣ ଦେହ ନେଇ ତାଙ୍କୁ ଦେଖାଇଲା
ଶ୍ରୀରାମ ଏ ଅସୁରକୁ ମାଇଲେ ବୋଇଲା ।
ଦେଖିକରି ଋକ୍ଷକପି ହୋଇଲେ ହରଷିତ
ରଘୁନାଥଙ୍କ ପ୍ରଶଂସା କରନ୍ତି ବହୁତ ।
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ସ୍ନାନ ସନ୍ଧ୍ୟା ସାରି ସେହୁ ଜଳରେ ବଜସ୍ତେ
ଫଳମୂଳ ଭୋଜନ କଲେକ ଦାଶରଥି
ଲକ୍ଷ୍ମଣ ଯେ ବିଭୀଷଣ ସର୍ବ ସେନାପତି ।
ଅଷ୍ଟସେନା ସହିତ ଯେ ଋକ୍ଷକପି ବଳ
ଯାହାକୁ ଯିସ ଯୋଗାଏ ଭୁଞ୍ଜନ୍ତି ସକଳ ।
ଆଚମନ ସାରିଲେ ଯେ ଶ୍ରୀରାମ ଗୋସାଇଁ
ଗୁଆକୋଳି ଫଳ କଷା ଅର୍ଥରେ ନେଇ ଖାଇ
ବିଭୀଷଣକୁ ରାଇଣ ବୋଲନ୍ତି ରଘୁନାଥ
ଲଙ୍କାର ନୃପତି ଶୁଣ ମୋହର ଚରିତ ।
ଆଠଦିନ ଯୁଦ୍ଧ ଯେ ଆଜକୁ ପୁଣ ହେଲା
ଦେବଙ୍କ ପ୍ରସାଦେ ଆମ୍ଭ ଥାଟ ପାଏ ଭଲା ।
ରାବଣର କେତେ ସୈନ୍ୟ କ୍ଷୟ ଗଲେ ପୁଣ
ବିଶେଷ କହଇ ଯେ ଶୁଣିବା ଆପଣ ।
ନବଲକ୍ଷ ଅଶ୍ୱ ମଲେ ହସ୍ତୀ ବାରକୋଟି
ସତର ଯେ ପଦ୍ମ ମଲେ ତାହାର ପାଦାନ୍ତ ।
ନାତିଦୁଇଶତ ମଲେ ପୁତ୍ର ଯେ ଅଠର
ସେନାପତି ମଲେ ଦେବ ସାତକୋଟି ତାର
ଭାଇ କୁମ୍ଭକର୍ଣ୍ଣ ମଲେ ପୁରୁଷ ଦୁଇଶତ
ଆଠଦିନେ ଏତେବଳ ହୋଇଲେ ନିପାତ ।

ଆଜ ଇନ୍ଦ୍ରଜିତ ଦେବ ଆସିବ ଗୋସାଇଁ
ଶୁଣିଣ ଶ୍ରୀରାମ ଯେ ନଣରେ ହସ୍ତ ଦେଇ ।
ସମର ଯୋଗେ ଶ୍ରୀରାମ ନିଦ୍ରାରେ ଆସକତ
ଶଯ୍ୟା କରିଥିଲେ ବେଗେ ସୁମିତ୍ରାର ସୁତ ।
କନକ ମୃଗସ୍ଥଳରେ ଅମଳାଣ ଶାଢ଼ୀ
ବେଗେଣ ଶ୍ରୀରାମଚନ୍ଦ୍ର ଶଯ୍ୟାରେ ପଡ଼ିଲ୍ଲି ।
ହନୂମନ୍ତ ଯାଇ ପାଦ କରେ ମଞ୍ଜାଳନ
ଲକ୍ଷ୍ମଣ ଜଙ୍ଘରେ ଶ୍ରୀରାମ ଦେଇ ସୀମସ୍ଥାନ ।
ସେହ୍ଲା ସେହ୍ଲ ପଣ୍ଡିମାନେ ପାରୁଶେ ଅଛନ୍ତି
ଗତ ଯୁଦ୍ଧକଥାମାନ ବିସ୍ତର କହନ୍ତି ।
ଏସନ ସମୟରେ ବିଜଳି ଶ୍ରୀରାମଙ୍କ ପଦ
ଦର୍ଶନ କରନ୍ତି ଆସି ସମ୍ପାତି ବୃଦ୍ଧ ।
ସୁଗ୍ରୀବର ବିଭୀଷଣ ସମ୍ପାତି ଗବାକ୍ଷ
ବଳିମୁଖ ଗନ୍ଧମାଦର୍ନ ବିରୂପାକ୍ଷ ।
ପାଞ୍ଚଶତ ଯୂଥପତି ଯେ ଦର୍ଶନ ଆସିକଲେ
ରିକ୍ଷକପି ବଳପୁଣି ପଟୁଆର ହେଲେ ।
ନାନାକଥା ମାନ ସେ କୁହାକୁହି ହୋନ୍ତି
ସଦାଶିବ ବୋଲନ୍ତି ଶୁଣ ଗୋ ହେମବନ୍ତି ।
ଏଥୁଅନନ୍ତରେ ଦଶାନନ ଅଗ୍ରତ
ଚର ଜଣାଇଲା ଯୋଡ଼ି ବେନିହସ୍ତ ।
ଶୁଣ ଦେବ ଦଶଗ୍ରୀବ ପ୍ରତାପୀ ଲଙ୍କେଶ୍ୱର
ଶ୍ରୀରାମ ଲକ୍ଷ୍ମଣ ଦଶରଥଙ୍କ କୁମର ।
ଛଡ଼ିପୁଅ ଆଜ ସେ ଗଲା ଦେବ ମାରି
ବିଷମ ଯୁଦ୍ଧ କଲେକ ଜଟାଧାରୀ ।
କୁମ୍ଭ ନିକୁମ୍ଭ ମକରାକ୍ଷସ କ୍ଷୟେଗଲେ
ବିରୁପାକ୍ଷ ବଜ୍ରକେତୁ ଉଲ୍କକ ପଡ଼ିଲେ ।
ହାତୀ ରଥୀ ଘୋଡ଼ା ପାଦାନ୍ତି ଲେଖାନାହିଁ
ଦୁଇକୋଟି ସେନାପତି ଆଜକ୍ଷୟେ ଯାଇ ।
ରକ୍ତ ନଦୀଏ ଦେବ ତହିଁ ଗଲା ବହି
ଅନେକ କବନ୍ଧ ଯେ ନାଚଲେ ରଣଭୂଇଁ ।
ଶୁଣିଣ ରାବଣେଶ୍ୱର ବିକଳ ହୋଇଲା
ପୁତ୍ରମାନଙ୍କୁ ସୁମରି ବହୁଶୋକ କଲା ।
ବୋଇଲା ବାବୁରେ କୁମ୍ଭ ନିକୁମ୍ଭ ବେନି
ଖୁଡୁତା କୁମ୍ଭକର୍ଣ୍ଣ କୁମ୍ଭଙ୍କୁ ଗଲା ଘେନି ।
ଦେବେଣ ଅଜେୟସେ ମାନବ କେଉଁେ ମାତି
କସ କସ ଭେଳକ ଜାଣଇ ଜଟାଧାରୀ ।

ମୁଖ ଦେଖିଲେ ତାର ନୁହଇ ସହସ୍ର ଧରି
ସେହି କଷ୍ଟେ ଜିଣି ପାରଇ ଜନପୁରୀ ।
ଏବେ କସ ବୁଦ୍ଧି ଯେ କରିବଇଁ ମୁହିଁ
ବୋଇଲେ ରାବଣ ଇନ୍ଦ୍ରଜିତ ମୁଖରୁହିଁ ।
ମୋପୁତ୍ର ଦେଖିଲୁଟିକ ଶ୍ରୀରାମ ସାହସ
ବ୍ରହ୍ମଅସ୍ତ୍ର କଲୁଟିକ ଯୋଡ଼ିଲେ ପ୍ରାଣେନାଶ ।
ତୋହର ପରି କ୍ଷତି ଅନେକ ଯୁଦ୍ଧ କଲୁ
କେବଣ ପ୍ରକାରେ ତାଙ୍କୁ ମାରି ନ ପାରିଲୁ ।
ସ୍ୱର୍ଗରେ ପଶିଣ ତୁ ଜିଣିଲୁ ତିନିଥର
ବୃଦ୍ଧି ହରାଇଲୁକରେ ମାନବ ହସ୍ତର ।
ରିକ୍ଷକପିମାନେ ମୋତେ ଦୁଃଖ ଦେଉଛନ୍ତି
ମାନବ ଦୁଇଜଣ ମୋ ସଗୋତ୍ର ନାଶନ୍ତି ।
ଦେଖିବା ଯୁଦ୍ଧ ଏହା ଶୁଣିବାକୁ ଲାଜ
ବ୍ରହ୍ମାଣ୍ଡ ଭିତରେ ମୁଁ ହେବାଧି ଦେବରାଜ ।
ଯତି ଦୁଇଜଣ ମୋତେ ଏତେ ଦୁଃଖ ଦେଲେ
ତାହାଙ୍କର ମୁଖ ଦେଖି ଦୈତ୍ୟେ ଭୟେକଲେ
କପିଏ ନ ମରନ୍ତି ଆମ୍ଭର ମାଇଲେ
ପୁଣି ପ୍ରାଣ ପାଆନ୍ତି ସେ ରଜନୀ ପାହିଲେ ।
ଯାଅରେ ମେଘନାଦ ରଘୁବଳ ନାଶ
ଶ୍ରୀରାମ ଲକ୍ଷ୍ମଣ ମୁଣ୍ଡ ହାଣି ଘେନିଆସ ।
ମୁହିଁ ସେ ଜାଣଇ ତୋର ବୀର ଶୂରପଣ
ଦେବଙ୍କୁ ଅଗୋଚର ତୋର କରିବାର ରଣ
ହେଲା ଯୁଦ୍ଧ କଲେରେ ନ ମରଇ ବୈରୀ
ଶତ୍ରୁ କୁନାଶକଲେ ବୀରବୋଲିତୋତେବୋଲି
ଦସ୍ୟା ଉଗ୍ରୋଧରେ ତୁ ନ କର ସମର
ନର ଗୁଣ ଅଟନ୍ତି ରାମଲକ୍ଷ୍ମଣ ବେନିବୀର ।
ସୁଗ୍ରୀ ହନୂମନ୍ତ ଯେ ନୁହନ୍ତି ପୁଣ ସାନ
ଖୁଡୁତା ବିଭୀଷଣ ଯେ ବାଳିର ନନ୍ଦନ ।
ଜାମ୍ବବ ସୁଷେଣ ନୁହନ୍ତି ଶୁଣ ପନ୍ଥ
ଏମାନେ ଅନ୍ତରେ ଶ୍ରୀରାମର କଞ୍ଚ ।
ନଳନୀଳ ଗନ୍ଧମାର୍ଦନ ସେନାପତି
ଏମାନେ ଅଟନ୍ତି ସେ ଦୁର୍ନ୍ତ କ୍ୟୋତି ।
ପଞ୍ଚଶ ଯୂଥପତି ଆବର ଅସ୍ତ୍ରସେହ୍ଲା
ଇନ୍ଦ୍ର-ଦେବତାଙ୍କୁ ସେ କରନ୍ତି ଗଣନା ।
ରିକ୍ଷକପି ବଳ ଯେ ଏକୁ ଏକ ଯୋଧ
ଜାଣନ୍ତି ସଂଗ୍ରାମ ବିଷମଣର ସନ୍ଧ ।

ଏହାଙ୍କର କୁଳେ ହସ୍ତର ଯୁଦ୍ଧ କର
ଶତ୍ରୁକୁ ମାଇଲେ ଆଜ ମରଣାନ୍ତ ମୋହର ।
ଆଜ ନ ମାରିଲେ ନଷ୍ଟେ ଗୁଡ଼ିବ ପରାଣ
ସୋଦର ଶାଖାମୋର ଯେ ପଡ଼ିଲେ କୁମ୍ଭକର୍ଣ୍ଣ
ରଥ ଗଜ ପଦାତି ଅନେକ କ୍ଷୟକଲେ
ପୁଅ ଯେ ପୁତୁରା ମୋର ପ୍ରୀତିଲୋକ ମଲେ
ଏତେବଡ଼ ଦୁଃଖେ ଯେ ପାସୋରିକ ତୋରେ
ସମସ୍ତେ ଜାଅନ୍ତି ତାର ହନୁମନ୍ତ ଥିଲେ ।
ଆଜ ଚରର ମୁଖରୁ ପାଇଲି ବାରତା
ହେମବନ୍ତକୁ ଗଲା ଯେ ପବନର ସୁତା ।
ଔଷଧ ଆଣିଣ ସେ ଶ୍ରୀରାମ ଜୀଆଇଲା
ଜମ୍ବୁବ ମନ୍ତ୍ରୀ ତାର ଉପାୟ ଭିଆଇଲା ।
ଶୁଣିଣ ଇନ୍ଦ୍ରଜିତ ପିତାର ଖରବାଣୀ
ବୋଇଲା ପିତାତୁମ୍ଭେ ସବୁଦିନରେ ମନ୍ଦପୁଣି
ବିଧାତାଚହପଟରେ ତୋତେ ଯେଲେଖିଦେଲା
ସୀତା ହରିଲେ ତୁ ମରିବୁ ବୋଇଲା ।
ଜନକ ରାଜାଘରେ ପରା ଶିବଧନୁ ଥିଲା
ଛୁଇଁବା ମାତ୍ରକେ ତୋର ପ୍ରାଣହତ ହେଲା ।
ପଳାଇ ଆଇଲୁ ତୁ ନ ପାରିଲୁ ତୋଳି
ବାରବର୍ଷ କାଳେ ଶ୍ରୀରାମ ତାହାଧରି ।
ସେ ରାମ ଛାଡିଯାକୁ ତୁ ହେରାଇ ଆଣିଲୁ
ଏକା ଦେଖି ତାକୁ କମ୍ପାଇ ନ ମାଇଲୁ ।
ଏବେ ସାହା ବଳ ଯେ ପା..ଣ ଅଛୁ ପୁଣି
ଭଉଣୀସୂର୍ପଣଖା ବୋଲେପଡ଼ିଲୁ ତୁହି ଜାଣି
ଖର ଦୂଷଣ ତ୍ରିଶିରା ମରାଇ ତୁହି ପୁଣ
ତୋର ବଂଶ ମରାଇବ ଶକୁନ ସେହି ଜାଣ ।
ବିଭୀଷଣ କହନ୍ତେ ତାକୁ କୋପ କଲୁ
ରାଜ୍ୟ ବାହାର ତାକୁ କରାଇଣ ଦେଲୁ ।
କୁମ୍ଭକର୍ଣ୍ଣକୁ ଉଠାଇଲୁ କଣ ଯେ ନ ପୂରିଣ
ସେହି ନାଶଗଲା ବନ୍ଧୁବର୍ଗ ସଙ୍ଗେ ଘେନିଣ
ରଣଯୋଗ କରିଣ ସ୍ୱର୍ଗପୁରେ ଗଲା
ସ୍ତିରିଯା ବଧୂମାନଙ୍କୁ ସଙ୍ଗେ ନେଲା ।
ଅଜଅଛୁ ଯାହା ପାଇବୁ ନା ତାହା ପୁଣି
ଦଶରଥ ନନ୍ଦନ ଯେ ଅଟନ୍ତି ନାରାୟଣ
ନୋହିଲେକହନୁମନ୍ତ ସପତସାଗରଡେଇଁଗଲା
ଗରୁଡ଼କୁ ଆଣି ନାଗପାଶ ଫିଟାଇଲା ।

ଏବେ ହେମଗିରିକି ଚଳଗଲା ଖରେ
ମଉଷଧି ଆଣିଲା ଦୁଇଘଡ଼ି ଭିତରେ ।
ଅନ୍ୟଲୋକହୋଇଥିଲେହେମପରେଯାନ୍ତାଜଡ଼ି
ଶରୀରୁ ମାଂସ ପଡ଼ି ଯାନ୍ତା ଝଡ଼ି ।
ଅଠର ଗଣ୍ଡା କୁମର ତୋର ତେରଶହନାତି
ଆଗେ ଏମାନେ ଗଲେ ତୁ ଯିବୁ ପଛକତି ।
ତୋହର ଉପରେ ପୁଣକେତେ ଦୈତ୍ୟଥିଲେ
ଚିରଜୀବୀ ହୋଇଣ ଗୋଟିଏ ନ ରହିଲେ ।
ଅଠରଗଣ୍ଡା ଯୁଗ ବଳ ଯେ ଭୋଗକଲା
ସାତଗଣ୍ଡା ଯୁଗ ସ୍ୱର୍ଗରେ ରାଜା ହେଲା ।
ଦମ୍ଭାକ୍ଷ ଦାନବ ଯେ ସଂସାରେ ଅଟେଖ୍ୟାତା
ତାକୁ ପାତାଳେ ସ୍ଥାନ ଦେଲା ଯେ ବିଧାତା
ଏମନ୍ତ ସମୟେ ଅସୁରୀ ଦଶଜଣ
ଅଶୋକବନକୁ ଆସି ପ୍ରବେଶ ହେଲେ ପୁଣ
ରାବଣ ଚରଣରେ ଓଳଗି ବେଗେହେଲେ
ଶୁଣ ଦେବ ଦଶଗ୍ରୀବ ବୋଲିଣ 'ବୋଇଲେ
ଆଜ ଗଡ ଭିତରେ ଶ୍ରୀରାମ ପଶିଥିଲେ
ଅନେକ ସୈନ୍ୟ ତୋର ମାରି ନାଶକଲେ ।
ସାତଘଡ଼ି ବେଳରେ ଲେଉଟିଯାଏ ପୁଣ
ଉତ୍ତର ଗଡ଼ଦ୍ୱାରେ ରହିଲେ ରାମରାଣ ।
ଲକ୍ଷ୍ମଣ ଭାଇ ତାର ପଶ୍ଚିମଦ୍ୱାରେ ଥିଲା
ସଙ୍ଗରେ ଯୂଥପତି ଘେନିଣ ବାହୁଡ଼ିଲା ।
ଅଶୋକବନ ବାଟେ କଲା ସେ ଗମନ
ଦେଖିଲା ସୈନ୍ୟବଳ ଅନନ୍ତ ତୋର ପୁଣ ।
ଧନୁଶର ଧରି ଯୁଦ୍ଧ ମାଇଲା ବକୋତି
ପଞ୍ଚସସ୍ର ଯୂଥପତି ପଥର ପହୁଡନ୍ତି ।
ବାରଲକ୍ଷ ସୈନ୍ୟ ତୋର ଖଡ଼କରେ ମଲେ
ଦଶ ପାଞ୍ଚ ଥିବାରୁ ଭୟରେ ପଳାଇଲେ ।
ଜାନକୀଙ୍କ ଦେଖିଣ ଲକ୍ଷ୍ମଣ ଓଳଗିଲେ
ମୋରକଷ୍ଟ ଦେଖବୋଲି ସୀତାୟା ବୋଇଲେ
ଲକ୍ଷ୍ମଣ ବୋଇଲେ ଆଉ ଅଳପ ଦିନ କଷ୍ଟ
ଦଶଦିନେ ରାବଣ ବଂଶ କରିବୁଁ ହତ ।
ରାବଣକୁ ମାଇଲେ ତୁମ୍ଭଙ୍କୁ ଏଥୁ ନେବୁ
ଧନୁଶର ଛୁଇଁ ରାମ ନିୟମକଲେ ତେଣୁ ।
ଆମ୍ଭେ ନେବାପାଇ ରାବଣ ଜଗାଏଦୈତ୍ୟ
ରାବଣ ମାଇଲେଆମ୍ଭେ ନେବୁଯେ ନିଶ୍ଚତ ।

ସେ ଆଣିଲା ଟେକଇ ଆମ୍ଭେ ନେବୁ କବଳେ
ଶତ୍ରୁ ମାଇଲେ କଥା ରହିବ ମହୀତଳେ ।
ଆମ୍ଭଙ୍କୁ ବୋଇଲେ ତୁମ୍ଭେ ବେଗ ହୋଇଯିବ
ରାବଣର ଆଗରେ ଯାଇଣ ଜଣାଇବ ।
ବୋଲି ବଡତୋଟେମାଇଲେସୀତାଙ୍କୁସେନେବେ
ମନ୍ଦୋଦରୀ ରାଣୀକ ତୋ ଅନ୍ୟବର ଦେବେ
ଏତେ ବୋଲି ଲକ୍ଷ୍ମଣ ବାହାର ହୋଇଗଲେ
ଆମ୍ଭେମାନେ ଆସିଲୁ ଜଳ ବାବୁ ଭଲେ ।
ରାବଣ ବୋଇଲା ତୁମ୍ଭେ ଜଗି ବସିଥାଅ
ମୋତେ ମାଇଲେ ପଛେ ହାରଯା ତାଙ୍କୁ ଦଅ
ଶୁଣିକରି ଅସୁରୀଏ ଫେରି ଚହୁଁ ଗଲେ
ଜାନକୀ ଆଗରେ ଯାଇଁ ସକଳ କହିଲେ ।
ରାବଣ ବୋଇଲାରେ ଶୁଣ ପୃଥମଣି
ଯେତେକଥା କହିଲୁରେ ସବୁ ସତ ପୁଣି ।
ଶ୍ରୀରାମ ଯେ ବିଷ୍ଣୁରେ ଅଟଇ ପ୍ରମାଣ
ତାହାର ହସ୍ତେ ମଲେ ପାଇବା କାରଣ ।
ରଣରେ ପୁଷ୍ଟିଲେ ନର୍କରେ ସେ ପଡ଼ଇ
ରଣଯୋଗ କରି ମଲେ ସ୍ୱର୍ଗରେ ସ୍ଥାନ ପାଇ
ଶୁଣିଣ ଇନ୍ଦ୍ରଜିତ କର୍ମେ କୋପଭରେ
କରଯୋଡ଼ି କହଇ ପିତାର ଆଗରେ ।
ଶ୍ରୀରାମ କାର୍ଯ୍ୟ ଆନରେ ନାହିଁ କିଛି
ଯେଉଁଦିନୁ ଆଣିଲୁ ସୀତା କମଳାକ୍ଷି ।
ସେଦିନୁ ଚିନ୍ତାକରି ଥିଲେ ରଘୁବୀର
କାମପୀଡ଼ା କରୁଅଛି ଯେ ତାହାର ଶରୀର ।
ବେଳୁବେଳ ତାପ ମୂରଛରେ ତାର ଆଶ
ପ୍ରିୟବସ୍ତୁ ନାରୀର ନ ପାଇ ମୁହାଁସ ।
ବିଚ୍ଛେଦ ହୁଅନ୍ତେଣ ବହୁତ କାମେସବଳ
ଅବଚ୍ଛିନ୍ନେ ତାହାର ଅଙ୍ଗମାନ ଗଳ ।
ହାଡ଼ ମାଂସ ତାର ରକ୍ତମାନ ଶୁଖି
ବିରହଜ୍ୱରେ ସେ ଯେ ହୋଇଥାଏ ଦୁଃଖୀ ।
ଗତପ୍ରାୟେ ନୁହଇ ତାର ଏବେ ବଳ
ଏବେ ଯୁଦ୍ଧ କରେ ସେ ଯେ ପ୍ରାଣର ବିକଳ
ଝଟେ ଧନୁ ଧରିଣ ସଂଗ୍ରାମେ ସେହୁ ପଶି
ଅକୁଷସ୍ତ ହୋଇଲାଣି ହାରଯା ଝଟେଶି
ଶ୍ରୀରାମ ଚିନ୍ତାରେ ଲକ୍ଷ୍ମଣ ତରୁ ହାର
ହୋଇଲେ ଦେହ ତାର ଯେ ଯାଉଅଛି ସଡି
ହାରଯାବୁ ନପାଇ ହାରିବ ଏବେ ପ୍ରାଣ
ଏତେବୋଲି ଲକ୍ଷ୍ମଣ ଝଳଇ ଅନୁକ୍ଷଣ ।
ଭଳ ଭଳ ସୁମିତ୍ରା ନନ୍ଦନ ସ୍ୱାନପ୍ରାଣ
ବେନ ଭାଇ ଧନୁ ନ ପାରନ୍ତି ଧରଣ ।
ବ୍ରହ୍ମଅସ୍ତ୍ର କଲି ମୂର୍ଚ୍ଛି ଯେତେବେଳେ
ନାରାୟଣ ଅସ୍ତ୍ରରେ ଛେଦନ୍ତା ତେତେବେଳେ
ନାଗଫାଶ ବେଳେ ଗରୁଡ଼ାଣରେ ଝବାରନ୍ତା
ଦୁଃଖପାଇଁ କମ୍ପା ହନୁ ଏତେଦୂର ଯାନ୍ତା ।
ଲୋକ ଲକ୍ଷକୁ ସେ ଯେ ସଂଗ୍ରାମେ ପଶନ୍ତ
ସେତୁ ନ ଆସିଲେ ଯେ କପିଏ ନ ଆସନ୍ତ ।
ଯହୁଁ ସେ ଭଙ୍ଗର ସଂଗ୍ରାମେ ଥାନ୍ତି ପଶି
ତାହାଙ୍କର ଯୋଦ୍ଧାଗଣ ଅଛୁ ସତ୍ତ୍ୱ କସ
ସୁଗ୍ରୀବର ବୋଲଣ ବୋଇଲୁ ଦେବ ଯାହା
ମୂର୍ଚ୍ଛିଳ ସଂଗ୍ରାମରେ ଗଣଇ ତାତ ତାହା ।
ବାଳିର ତନୟ ଯେ ଅଟଇ ଅଙ୍ଗଦ
ଖୁଡ଼ୁତା ପୁରୁଷଙ୍କର ଉପୁଜୁ ଅଛୁବାଦ ।
ସୁଗ୍ରୀବର ବୋଇଲେ ମୁଁ ଯେ ବାଳିକମରାଇଲି
ତାହାର ଧନ୍ୟରାଜ୍ୟ ହାରଯା ଭୋଗକଲି ।
ଅଙ୍ଗଦକୁମାର ଝଟେ ସଂହାରିବ ମୋତେ
ପିତା ଶତ୍ରୁ ମୁହିଁ ଯେ ଅଟଇ ଯୁକତେ ।
ରାଜ ଦିବସରେ ସେ ବିଷ୍ଟର କରେ ଏହା
ତେଣୁକରି ନିର୍ବଳ ଯେ ଅଟେ କପିନାହା ।
ଶ୍ରୀରାମଙ୍କ ଡ଼ରେ ସଂଗ୍ରାମେ ପଶିଥାଇ
ଧରି ଆଣୁଥିଲା ତୋର କୁମ୍ଭକର୍ଣ୍ଣ ଭାଇ ।
ଧର୍ମରେ କପିବୀର ଖସିଣ ପଳାଇଲା
ତାହାର ସଙ୍ଗରେ ମୋର ଯୁଦ୍ଧ ଯେ ଅଛୁଜଲା
ଅଙ୍ଗଦ ଦିବାନିଶି ଯେ ଚିନ୍ତୁଥାଇ ବସି
ନ ପୁଣ ସୁଗ୍ରୀବର ପକାଏ ମୋତେ ନାଶି ।
ପିତାଙ୍କୁ ମରାଇଲା ଯେ ହିଂସାପୁଣ ଧରି
ବାଳିର ପୁତ୍ର ବୋଲି ମୋତେ ହିଂସା କରି ।
ଏତେ ବୋଲି ଝଳଇ ଯେ ବାଳିର ତନୟେ
ହାଡ଼ ଥାଉଁ ଥାଉଁ ମାଂସ ଶୁଖିଯାଏ ।
ପ୍ରାଣର ବିକଳରେ ସଂଗ୍ରାମେ ପଶିଥାଇ
ଯଣଶିଖ ଥାଉ ତାର ଆୟୁଷ କ୍ଷୟେ ଯାଇ ।
ବୁଝି ବଳ ନାଶଗଲା କୁଳଶୀଳର ପଣେ
ମୋହର ସ୍ଥମୁରେ ସେ ମିଳିବ ମହାରଣେ ।

ବିଭୀଷଣଙ୍କୁ ମୁଁ ଯେ ସମରେ ନଗଣଇ ତାତ
ଶତ୍ରୁରେ ଶରଣ ଯେ ପଶିଲ୍ଲ ତୋ ଭ୍ରାତ ।
ପୂର୍ବରେ ତାହାର ବଳ ଥିଲକ ବହୁତ
ଏବେ ଭାଇ ତୋର ଯେ ହୋଇଲ୍ଲ ନିସତ ।
ସର୍ବଦା ଶରୀରେ କି ବଳ ବପୁ ଥାଇ
ଘଣଶିରା ଆୟୁଷ ହରିଲ୍ଲ ତୋର ଭାଇ ।
ଜମ୍ବୁକ ମନ୍ତ୍ରୀ ବୃଦ୍ଧ ତାହାର କିସ କାର୍ଯ୍ୟ
ଆମ୍ଭମାନେ ସବୁ ଯେ ଅଟନ୍ତି ଧଇର୍ଯ୍ୟ ।
ଏକା ହନୁମନ୍ତକୁ ମାଇଲେ ଯୁଦ୍ଧ ସରି
ଅକ୍ଷୟ କୁମାରକୁ ଗଲ୍ଲ ସେହୁ ମାରି ।
ଲଙ୍କାଗଡ଼ ପୋଡ଼ି ଅଙ୍ଗାର କରି ଗଲ୍ଲ
ବିଚିତ୍ର ପୁର ମାନ ସେ ଅଗ୍ନିରେ ଦହିଲ୍ଲ ।
ଆଜ ପୋଡ଼ିଦେବାର ତାହାର ସିନା ବୁଦ୍ଧି
ଆମ୍ଭମାନେ ମନ୍ତ୍ରୁ ହନୁମାନ ସେ ଔଷଧି ।
ତାହାକୁ ମାରିବି ଆଜ ଏ ମୋହର ସତ୍ୟ
ପୁଣ ପୁଣ ପ୍ରତିଜ୍ଞା କରଇ ଇନ୍ଦ୍ରଜିତ ।
ଆଜ ସଂହାରିବି ମୁଁ ଯେ ରିକ୍ଷ କପି ବଳ
ରଖିଣ ନ ପାରିବେ ଯେ ସମସ୍ତ ଦିଗପାଳ ।
ଶ୍ରୀରାମ ଲକ୍ଷ୍ମଣ ଅଙ୍ଗଦ ସୁଗ୍ରୀବର
ଏହାଙ୍କର ରକ୍ତ ଖାଇବ ମୋର ଶର ।
ଏହା ଶୁଣି ଲଙ୍କପତି ଉଠି କୋଳକଲ୍ଲ
ଦିବ୍ୟବସ୍ତ୍ର ବହୁତ ଅଳଙ୍କାର ଦେଲ୍ଲ ।
ଯାଅରେ ବାବୁ ବେଗେ ସଜ ହୋଇ ଆସ
ତୋହର ଅଇଲେ ମୁହିଁ ହେବ ଅବକାଶ ।
ଶୁଣି ମେଘନାଦ ମୁଣ୍ଡେ ହସ୍ତ ଦେଲ୍ଲ ପୁଣ
ମାରିବ କପି ବଳ ବହୁ ପ୍ରତିଜ୍ଞା କରେ ଜାଣ
ସିଂହଦ୍ୱାରେ ଆସିଣ ବସିଲ୍ଲ ସେହୁ ରଥ
ସେନାପତିମାନେ ଅଛନ୍ତି ବହୁତ ।
ରଥୀଯୋଦ୍ଧା ପାଦାନ୍ତି ଯେ ଗଣି ନ ପାରି
ବୀର ତୁର ଶବଦେ କମ୍ପଇ ବସୁନ୍ଧରୀ ।
ଉଦଣ୍ଡ ଆଳମ୍ବ ଯେ ବିଳମ୍ବ ପନ୍ତପନ୍ତି
ପଶ୍ଚିମଦ୍ୱାରବାଟେ ଯେ ବାହାରି ହୋଇଯାନ୍ତି
ସୁବଳ ଗିରିରେ ଅଛନ୍ତି ରଘୁପତି
ଯୋଦ୍ଧାମାନେ ସବୁ ପଟୁଆରି ଛନ୍ତି ।
ଆଟ ଦିଶିଲ୍ଲ ଯେ କହିଲେ କପି ଯାଇ
ଅସୁରେ ସଂଗ୍ରାମକୁ ଅଇଲେ ଗୋସାଇଁ ।

ଆଜ ସେନାପତି ଯେ ଅଛୁ କେହୁ ହୋଇ
ଏତେ ବେଳଯାଏ ଯେ ନ ଦିଶେ ପୁଣ ସେହି
ଶୁଣିଣ ରଘୁନାଥ ସୁଗ୍ରୀବ ଆଜ୍ଞା ଦେଲେ
ଆମ୍ଭ ସୈନ୍ୟ ସର୍ବଙ୍କୁ ଓହ୍ଲାନ୍ତୁ ବୋଇଲେ ।
ଆଗୁଆଣି ଦଣ୍ଡରେ ଠଣାକରି ମରାମରି
ପଛରେ ଯିବା ଆମ୍ଭେ କଥାନ୍ତ ବିଚାରି ।
ଶ୍ରୀରାମ ଆଜ୍ଞାରେ ଯେ ସୁଗ୍ରୀବର ରାୟେ
ନାମ ଧରିଣ ସେହୁ ଯେ ଯୁଦ୍ଧକୁ ପଠାଏ ।
ଶୁଣିଣ ଧାଇଁଲେ ସେ ରିକ୍ଷକପି ବଳ
ସମସ୍ତଙ୍କ ହାତରେ ଅଛୁ ତରୁଶିଳ ।
ଏକକୁ ଆରେକ ଯେ ଯାଉଛନ୍ତି ଝେପି
ଅସୁରକୁ ଯାଇ ଭେଟ ଖାଇଲେ ମୁଣକପି ।
ରୁଣ୍ଡୁଝୁଣ୍ଡୁ ଶବଦରେ ବାଜିଲ୍ଲ ମରାମରି
ସମରେ ପଶିଧାଇ ମାରନ୍ତି ଆଗସରି ।
ହସ୍ତରେ ପିଟାପିଟି ଯେ ଗୋଡ଼ରେ ଯାନ୍ତି ମାଡ଼ି
ଧଡ଼ଧ ବନ୍ଧେ ପଡ଼ି ହୋନ୍ତି କୋଡ଼କୋଡ଼ି ।
ଖଡ଼ଗ ବାଜନ୍ତେଣ ଧରନ୍ତି କପି ଯାଇ
ଶକତି ପରିଘରେ ପଛକୁ ପିଟିଦେଇ ।
କାଣ୍ଡ ପଡ଼ନ୍ତେଣ ନକରେ ମନେ ଶଙ୍କା
ଦୁଇବଳ ଲୋକେ ହୋଇଣ ରଣ ରଙ୍କା ।
ସିଂହ ରଡ଼ି ଦେଇଣ ସମରେ ଯୁଝେଯାଇ
କ୍ଷଣେ ନିସତ ନୁହନ୍ତି ପୁଣ କେହି ।
ଘଡ଼ିଏ ପର୍ଯ୍ୟନ୍ତେ ବାଜିଲ୍ଲ ସମର
ସମସ୍ତଙ୍କ ଦେହ ଯେ ରକ୍ତରେ ଜଜର ।
ରାବଣ ସୈନ୍ୟ ଯେ ମାଇଲେ ବକୋଟି
ଶ୍ରୀରାମର ସୈନ୍ୟ ବିଜରାଳ ମୂର୍ତ୍ତି ।
ଭାଜିଲେ ଅସୁରେ ଯେ ଦେଲେ ପଛଘୁଞ୍ଚା
କାକରଡ଼ିରେ ଯେସନେ ପଳାଦନ୍ତି ପେଚ୍ଚା ।
ବେଳୁବେଳ ନିସତ ହୋଇଲେ ସେ ଦନୁଜ
ରିକ୍ଷକପିଙ୍କ ଦେଖି ଡରିଲେ ଦନୁଜ ।
ସହି ନ ପାରି ମାଡ଼ ବାହୁଡ଼ି ପୁଣ ଗଲେ
ତେଡେଥାଟଗୋଟା ସେ କମ୍ପିତେ ପଳାଇଲେ
ଲଙ୍କାଲେ ପଶନ୍ତେ ଦେଖିଲ୍ଲ ଇନ୍ଦ୍ରଜିତ
ଦୁହିଁ ମାଜନା କରଇ ମହିରାବଣର ତାତ
କମ୍ପାଇ ପଳାଅରେ କାହାକୁ ଭୟ ପାଇ
ଅସୁରେ ବୋଇଲେ କପି ମାରନ୍ତି ଗୋଡ଼ାଇ

ଗଡଦ୍ୱାର ପରଯନ୍ତେ ଲଗା ସେ ଦେଇଛନ୍ତି
ଆଜରେ ଯୁଦ୍ଧରେ ଦେବ ରଖାଇ ଯୁଝନ୍ତି ।
ଶୁଣିଣ ଇନ୍ଦ୍ରଜିତ ଜଣରେ ହସ୍ତଭର
ଆଜ ମୁଁ ଋକ୍ଷକପି ପକାଇବି ମାରି ।
ମୋର ପଛକଟରେ ଥାଇଣ ଯୁଦ୍ଧ ଦେଖ
ବାଇଜ ବାତୁଳରେ ସଂଗ୍ରାମ ଉପେକ୍ଷ ।
ଏହିରୂପେ ଶତ୍ରୁ ଯେ ଦେଖିଲା ନଜର
ନସତ ହୋଇଲେକରେ ଲଙ୍କାର ଦୈତ୍ୟପୁଣ
ଋକ୍ଷ ମର୍କଟ ଦେଖିଣ ତୁମ୍ଭେ ପଳାଉଛ
ମୁହିଁ ଆପଣେ ଯେ ଦେଖିଲି ପ୍ରତ୍ୟକ୍ଷ ।
ଏତେ ବୋଲିଣ ସାର ପଥ ଧୂଆଁଇଲା
କୃତାନ୍ତ ଦେବତାଙ୍କ କୋପେ ବଜେ କଲା ।
ହାର ବାହାର ହୁଅନ୍ତେ ଦେଖିଲ କପି ଦଳ
ଅସୁରଙ୍କୁ ଗୋଡ଼ାଇ ଯେ ମାରନ୍ତି ସକଳ ।
ଯହିଁ ସେ ମେଘନାଦର ବସିଲା ପୁଣି ରଥ
ଧାଇଁଣ କପିମାନେ ମାଇଲେ ପରବତ ।
କଣ୍ଟକଣରେ ଛେଦିଲ ଇନ୍ଦ୍ରର ଅରି
ଦୁଇବଳ ସୈନ୍ୟ ଯେ ହୋଇଲେ ମରାମରି
ମେଘନାଦକୁ ପିଠିସେ ପାଇଲେ ବଉତ
ଅନେକ ବାନର କଲେକ ଶସ୍ତ୍ରଘାତ ।
ଅଭିମାନ ପାଇଣ ବହୁତ ଯୁଦ୍ଧ କଲେ
ରଣରେ ମରିବାକୁ ନସତ ନୋହିଲେ ।
କଠୋର ମାରୁଣି ସେ ମାରନ୍ତି ପରଘାଇ
ଦୁଇବଳଙ୍କର ଯେ ଉତ୍ପ୍ରୋଧ ଯୁଦ୍ଧ ନାହିଁ ।
ବେଳୁବେଳ ସମର ହୋଇଲା ଅମରଷ
ରାକ୍ଷସ ମାରନ୍ତେ ଭାଜିଲେ ଚତୁଶିଷ୍ୟ ।
ପଳାଇଣ ମନକଲେ ଶ୍ରୀରାମର ସୈନ୍ୟ
ସୁବଳଯ୍ୟାରେ ଥାଇଣ ଦେଖନ୍ତି ରଘୁନାଥ ।
ବଗଦହନ ଚରଳ ବସିଲା ଯେ ଏବେ
ଆପଣେ ଇନ୍ଦ୍ରଜିତ ଅଇଲା ପୁଣ ଯେବେ ।
ତାହାର ସମ୍ମୁଖରେ କି ଋକ୍ଷକପି ସରି
ଏହିକ୍ଷଣି ବଳମୋର ପକାଇବ ମାରି ।
ଯୂଥପତିମାନେ ଏବେ ତୁମ୍ଭେ ବେଗେ ଯାଅ
ଗାଢ଼ ଯୁଦ୍ଧ ହୋଇଲେ ଲକ୍ଷ୍ମଣ ପଠାଅ ।
ଆଜ୍ଞା ପାଇଣ ବେଗେ ଧାଇଁଲେ ଅଷ୍ଟସେନା
ସାର ମହାବୀର କେତେ କରିବ ଗଣନା ।

ଗନ୍ଧମାଦନ ଯେ ଗବୟ ଗବାକ୍ଷ
ନଳ ନୀଳ ସହିତରେ ଧାଇଁଲେ ଚତୁଶିଷ୍ୟ ।
ଇନ୍ଦ୍ରଜିତକୁ ସେ ଯେ ଓଗାଳିଲେ ଯାଇ
ପିଟିଲେ ଚତୁବୃକ୍ଷ ସେ କୋପମୁଖ ହୋଇ ।
ଦେଖିଣ ମେଘନାଦ ଛେଦିଲା ତକ୍ଷଣରେ
ଷାଠିଏ ବାଣ ସେ ପୁଣ ମାଇଲା କୋପରେ
ବିକୋତ କରି ଦେହରେ ଭିନକୋଡ଼ ଭାଣ୍ଡ
ପଡ଼ିଣ ରୁଧିର ଯେ ବହଇ ପ୍ରଚଣ୍ଡ ।
କୋପେ ଇନ୍ଦ୍ରଜିତ ଯେ ଘୋର ଯୁଦ୍ଧ କଲା
ଅଶୀ କୋଟି ମର୍କଟ ନିଃଶ୍ୱାସକେ ମାଇଲା ।
ଏମନ୍ତେ ସଂଗ୍ରାମ ଘଡ଼ିଏ ଘୋଳ କଲା
ଜଣକେ ପାଞ୍ଚକାଣ୍ଡ ଲେଖାଏ ମାଇଲା ।
ଶ୍ରୀରାମ ଥାଟ ଯେ ପଳାଇଲା ଦଳ
କେତେ ମଲା କେତେ ଯେ ଉକଟେ ଲେଟଗାଳ
କେତେ ମଲା କେତେ ଯେ ଘା ପାଇଣ ମଲା
କେବଣ ଋକ୍ଷକପି ପଛକୁ ନ ଚାହିଁଲା ।
କେ ବୋଲଇ ମଲି ହେଲି କେ ବୋଲଇ ଭଜା
କେ ବୋଲଇ ମୁହିଁ ଯେ ମରୁଅଛି ଏକା ।
କେ ବୋଲେ ଭାଣ୍ଡଘାରେ ଜଳୁଅଛି ଗାଇ
ଘୁରକୋଡ଼ସେ ନ୍ୟପଳାଇଲେଛିନ୍ନଛଦହୋଇ
ଭହରହ ବୋଲିଣ ସେ କପିଙ୍କ ଡାକଦ୍ୟନ୍ତି
ପଳାନ୍ତି ଋକ୍ଷକପି ପଛକୁ ନ ଚାହାଁନ୍ତି ।
ବିମୁଖ ହୋଇଣ ପଳାନ୍ତି ଏଣେ ତେଣେ
ଶ୍ରୀରାମ ଲକ୍ଷ୍ମଣ ଯେ ପଶିଲେ ଆସି ରଣେ ।
ଦୂରରୁ ଦେଖିଲେ ଯେ ଆସଇ ଇନ୍ଦ୍ରଜିତ
ପବନେ ମେଘ ଯେହ୍ନେ ଚଳଇ ତୁରିତ ।
ତେସନେ ସଞ୍ଚାରେ ଚଲେ ଇନ୍ଦ୍ରର ଅରି
ଋକ୍ଷକପି ବଳ ସେ ଯେ ଆସୁଅଛି ମାରି ।
ଲକ୍ଷ୍ମଣ ବୋଇଲେ ଦେବ ଶୁଣିବା ଦାଶରଥି
ଆଜମତେ ପ୍ରତିକାର ନାହିଁ ଦେବ ଏଥି ।
ବ୍ରହ୍ମଶର କରିଣ କି ମାରିବଇଁ ବଳ
ଯଦି ଆଜ୍ଞାଦେବ ହେ କୌଶଲ୍ୟା ଦୁଲାଳ ।
ଶ୍ରୀରାମ ବୋଇଲେ ଏ ଯେ ନୁହଇ ଉଚିତ
ଯେମନ୍ତେ ମରିବ ଏ ପାମର ଇନ୍ଦ୍ରଜିତ ।
ସେ ବୁଦ୍ଧି ଏବେ ଚିନ୍ତା କରିବାରେ ବାବୁ
ମେଘନାଦ ମଲେ କଥା ସରଇରେ ସବୁ ।

ପାଣି ଶୁଖିଗଲେ ଯେ ବନ୍ଧରେ କସ କରି
ଇନ୍ଦ୍ରଜିତ ମଲେ ଯେ ସୈନ୍ୟରେ କସ କରି
ଅପୂର୍ବ ଯୁଦ୍ଧ ଏବେ ଜାଣଇ ମହାବୀର
ଏହାକୁ ମାରିବାକୁ ବୁଦ୍ଧି ସେ ଏବେ କର ।
ଦେଖ କାଳ ଦେବତା ପରାୟେ ଆସୁଅଛି
ଏହା ପ୍ରାଣ ଥିଲେ ମୋତେ ଯଶ ନାହିଁ କିଛି
ଶ୍ରୀରାମ କହନ୍ତେ ଲକ୍ଷ୍ମଣ ବୀର ମନେ ଖଙ୍ଗ
ବୋଇଲେ ଏହାକୁଲେଯେ କରିବରଣରଙ୍ଗ
ଏହିକ୍ଷଣି ଇନ୍ଦ୍ରଜିତ ଦେବ ମୂର୍ଚ୍ଛା ମାରି
ଆଗ ହୋଇଲା ବୀର ଯେ ଧନୁଶର ଧରି ।
ଲକ୍ଷ୍ମଣଙ୍କୁ ଦୂରରୁ ଦେଖି ଇନ୍ଦ୍ରଜିତ
ସଂଗ୍ରାମ ଗୁଡ଼ି ବୀର ବାହୁଡ଼େ ତୁରିତ ।
ମନେ ବିସ୍ମରିଲା ଅଇଲେ ଦୁଇବୀର
ଏରଥରେ ଥିଲେ ମୁଁ ଏହାଙ୍କୁ ଜିଣିନପାରଇ
ଦେବଦଳନ ରଥ ଘେନି ମୁଁ ଯୁଝିବି
ଅକ୍ଷୟ ତୋଣ ବାଣରେ ସବୁଙ୍କୁ ବିନାଶିବି
ଏହା ବିଚାରି ବାହୁଡ଼ିଲା ଦୈତ୍ୟଈଶ
ବେଗେ ପ୍ରଶନ୍ତି ଯେ ରାମଚନ୍ଦ୍ର ପାଶ ।
ମାରି ଋକ୍ଷକପି ସୈନ୍ୟ ମୁଁ ଆସିବି ଏହିକ୍ଷଣି
ବୋଲିଣ ଭେଟିଲା ଯାଇ ବିଂଶପାଣି ।
ରଥରୁ ଓହ୍ଲାଇଣ ସେ ନମସ୍କାର କଲା
ପୁତ୍ର ମୁଖ ଚୁମ୍ବିଣ ରାବଣ ବୋଇଲା ।
କେବଣଚରିତ୍ରବାବୁରେହୋଇଲାକିଆଜରଣେ
ଏକାହୋଇ ବାହୁଡ଼ିଲୁ କେବଣ କାରଣେ ।
ଇନ୍ଦ୍ରଜିତ ବୋଇଲାଯେମୁଁ ଅନେକଯୁଦ୍ଧ କଲି
କଥାଏ କହିବାକୁ ଦେବ ବାହୁଡ଼ି ଅଇଲି ।
ନିକୁମ୍ଭିଳ ବଟତଳରଯେ କାଢ଼ିବଇଁ ରଥ
ଆବର ବିସ୍ମୟରେ କି ତୁମ୍ଭେ ଦଶମଥା ।
ଶ୍ରୀରାମ ଲକ୍ଷ୍ମଣଙ୍କର ସମର ମହାଘୋର
ବ୍ରହ୍ମ ଅସ୍ତ୍ରମାନେ ତାଙ୍କର କାଟନ୍ତିଯେ ଶର ।
ଅନେକଋକ୍ଷକପିଚ୍ଛେଦହୋଇଲେଆଜରଣେ
ଭଲ ଭଲ ଯୋଦ୍ଧାଏ ପଡ଼ିଲେ ଯମବାଣେ ।
ବୁଦ୍ଧିଏ ମୋର ଅଛି ଶୁଣିମା ଗୋସାଇଁ
ମାୟାକରି ଜାନକୀ ମାରିବି କି ନେଇ ।
ନିରସ ହୋଇଣ ସେ ଯେ ବାହୁଡ଼ି ଯାଉଛନ୍ତି
ଆନବୁଦ୍ଧି କଲେ ଜୟ ନାହିଁ ହେ ଲଙ୍କପତି

ଦଶାନନ ବୋଲଇ ଏ ମିଳନ ବିଚାର
ମାୟାର ଭଣ୍ଡାର ତୁରେ ମୋର କୁମର ।
କରସି ଉପାୟ କେଉଁମତେ ଶତ୍ରୁଯାଉ
ବଳରେ ନ ପାରିଲେ ବୁଦ୍ଧିରେ ହରାଉ ।
ଏହା ଶୁଣି ମେଘନାଦ ଅଇଲା ତତ୍ତତ
ଅଶୋକ ବଣିକଟେ ପ୍ରବେଶ ହୋଇଲାଧାଇଁ
ଅର୍ଦ୍ଧବାଟରେ ରହିଣ ବୁଦ୍ଧି ଏ ଭିଆଇଲା
ଜମ୍ବୁମାଳ ପୁତ୍ରକୁ ସେ ହକାରି ଆଣିଲା ।
ବୋଇଲା ତୁ ଏହିକ୍ଷଣି ବୁଦ୍ଧି ଏକ କରି
ମାୟାରେ ଭିଆଇଦେବୁ ଜନକ କୁମାରୀ ।
ନଖ ମୁଖ ନାସିକା ହୋଇବ ସର୍ବ ସେହି
ଯେସନେକ ରୂପଗୁଣ ଅଟଇ ବଇଦେହୀ ।
ବେଗକରି ଆଣିଣ ସେ ସମର୍ପି ମୋର ଆଗ
ଶୁଣିଣ ସେ ସିଂହନାଦେ ଚଳିଗଲା ବେଗ ।
ଆପଣାର ଭଗ୍ନି ଯେ ସୁକାନ୍ତି ନାମେ ନାରୀ
ତାହାକୁ ଘେନିଣ ଦୈତ୍ୟ ଆକାଶରେ ଚଳି
ସେ ନାରୀ ଅଟଇ ମକରାକ୍ଷର ବାମା
ନାହିଁ ନାହିଁ ପଟାନ୍ତର ଦେବାକୁ ଉପମା ।
ଭାଇଭଗ୍ନି ଦୁହେଁ ରଥଚଢ଼ି ଗଲେ
ଜମ୍ବୁଦ୍ୱୀପ ପ୍ରୟାଗ ତୀର୍ଥରେ ମିଳିଲେ ।
ଗଙ୍ଗା ଯମୁନା ତହିଁ ସଙ୍ଗମ ନଦୀ ବେନି
ଗୁପତରେ ସରସ୍ୱତୀ ଏମନ୍ତେ ନଦୀ ତିନି ।
କାମେଶ୍ୱର ତୀର୍ଥ ବୋଲି ପୁରାଣରେ କହି
ମନାସିଣ ବାସ ଦେଲେ ସେହି ଦେହପାଇ ।
ଏହା ଜାଣି ସିଂହନାଦ ଭଗ୍ନି ଘେନିଗଲା
ପବିତ୍ର ସ୍ଥାନରେ ଯାଇ ପ୍ରବେଶ ହୋଇଲା ।
ମାଧବ ଦେବତାଙ୍କୁ ପ୍ରଦକ୍ଷିଣ କରି
ବୋଇଲା ଯହିପାଇଁ ଅଇଲୁ ଦେବହରି ।
ସେ କାର୍ଯ୍ୟ ସିଦ୍ଧି ହେଉ ତୁମ୍ଭର ପ୍ରସନ୍ନେ
ଏତେବୋଲିସେଠାରୁଚଳିଲେ ବେନିଜନେ ।
ତିନି ନଦୀ ମଧ୍ୟରେ ଅଛଇ ଅକ୍ଷବେଢ
ତହିରେ ବସି ବିଧାତା ତପ କଲେ ସିଦ୍ଧି ।
ସେ ଜଳେ ସ୍ନାନ କଲେ ଭାଇଭଗ୍ନି ଦୁଇ
ସିଂହନାଦ କହଇ ସୁକାନ୍ତି ମୁଖଚାହିଁ ।
ତୁଗୋ ମନେ ମନାସିଣ ଏହି ଜଳେ ପଶ
ଶ୍ରୀରାମ ସଖ୍ୟପ୍ରାୟେ ହୋଇବୁ ସାଦୃଶ ।

ତୋତେଦେଇଲଙ୍କାଲୋକମାନେସୁଖୀହେବେ
ନୋହିଲେଅସୁରେଯେ ସମସ୍ତେ କ୍ଷୟିବେ
କୁହି ପୁଣ ଶ୍ରୀରାମର ହୋଇବୁ ଘରଣୀ
ଅଯୋଧ୍ୟା କଟକେ ବୋଲାଇବୁ ପାଟରାଣୀ ।
ଏହା ଶୁଣି ସୁକାନ୍ତ ସନମତ କଲା
ସୀତାରୂପ ହେବ ବୋଲି ମନେ ମନାସିଲା ।
ଗଙ୍ଗାକୁ ସୁମରି ଯମୁନା ଜଳେ ଝାସି
ବାହୁଡ଼ି କୂଳେ ପ୍ରବେଶ ହୋଇଲା ରକ୍ଷସୀ ।
ପ୍ରତ୍ୟକ୍ଷେ ଜାନକୀ ହେଲା ଶ୍ରୀରାମ ଘରଣୀ
ରୂପ ଯୌବନ ପୂର୍ଣ୍ଣ ଜାତି କମଳିନୀ ।
ଦେଖିଣ ସିଂହନାଦ ହରଷ ହୋଇଲା
ଭଗ୍ନିକ ବସାଇ ରଥେ ଲଙ୍କାଗଡ଼େ ଗଲା ।
ଅସୁରେ କାମରୂପୀ ପାରନ୍ତି ସେ ଯାଇ
ଘଡ଼ିକର ଅର୍ଦ୍ଧରେ ଯାଇଣ ଆସଇ ।
ମାୟାସୀତା ଭ୍ୟାଇ ମେଘନାଦପାଶେ ଦେଲା
ଦେଖିଣ ଦଇତ୍ୟ ମହା ଆନନ୍ଦ ହୋଇଲା ।
ରଥରେ ବସାଇଣ ସଂଗ୍ରାମକୁ ଚଳ
ମୁଖ ଘୋଡି ରଥରେ ବସିଛି ମାୟାବାଳୀ ।
ଅଶୋକ ବପିନରୁ ଅଇଲ ପାରି ହୋଇ
ଲଙ୍କା ଲୋକମାନଙ୍କୁ ବୋଲଇ ଶବଦାଇ ।
ଏହି ସୀତାର ପାଇଁ ହୋଇଲା ଏତେ ଦ୍ୱନ୍ଦ
ହସ୍ଥିର ନ କଲା ମୋର ପିତା ଦଶକନ୍ଧ ।
ପରର ଯୁବତୀକ ଆଣିଲା ଚୋରଇ
ମୁହିଁ ଏବେ ତାହାକୁ ଦେଉଛି ବାହୁଡ଼ାଇ ।
ନଗ୍ର ନରନାରୀ ତୁମ୍ଭେ ସର୍ବେ ଥାଅ ଶୁଣି ।
ବୋଲୁଥାଅ ଅନ୍ୟାୟୁଯେ କଲା ବଂଶପାଣି ।
ଏବେ ଏଠାରୁ ରହିଲା କଳି ଦ୍ୱନ୍ଦମାନ
ଏତେ ବୋଲି ରଥ ବାହିଯାଏ ଘନଘନ ।
ବାଟରେ ଆସୁ ତାକୁ ଜଣାଇଲା ଚର
ଶୁଣ ଦେବ ଇନ୍ଦ୍ରଜିତ ରାବଣ କୁମର ।
ତୁମ୍ଭେ ଯୁଦ୍ଧ ଛାଡ଼ିଣ ଗଲ ଆଡ଼ହୋଇ
ସମସ୍ତ ସୈନ୍ୟ ତୋର ଲକ୍ଷ୍ମଣ ମାରେ ରହି
ଶୁଣିଣ ଇନ୍ଦ୍ରଜିତ ପ୍ରଜ୍ଜ୍ୱଳିତ ରାଗେ
ମାୟା ସୀତାଦେବୀ ବସିଅଛି ତାର ଆଗେ ।
ତଳକୁ ମୁଖଘୋଡି କାନ୍ଦୁଅଛି ସୀତା
ରାମନାମ ସୁମରଇ ଜନକ ଦୁହିତା

ନଗ୍ର ନରନାରୀ ଦେଖି ହା-ହା-କାର କରି
ସାତ ପଞ୍ଚନାରୀ ଦେଖି ଦୁଅନ୍ତି ବଦନ ।
ରଥପରେ ବସିଅଛି ରାବଣ ନନ୍ଦନ
ଦେବଦତ୍ତ ସାରଥି ବାହାଇ ଘନଘନ ।
ଗଡ଼ରୁ ବାହାର ହୋଇ ସଂଗ୍ରାମରେ ପଶି
ଦେଖିଣ ଋକ୍ଷକପି ପଳାଇଲେ ହାସି ।
ହନୁମନ୍ତ ଉଗାଳିଲା ଶିଳାବୃକ୍ଷ ଧରି
ମେଘନାଦ ଛେଦେ ତାହା କଞ୍ଚିତ ଶରକରି
କୋପରେ ପବନ ତନୟ ଥରହର
ବରଷଣ ପ୍ରାଏ କରି ବରଷେ ପଥର ।
ଇନ୍ଦ୍ରଜିତ ଶରୀର ଯେ ନ ବାଜଇ ଘେଣେ
ଘନଘନ ରାବଣ ଜେଦଇ ତୀକ୍ଷ୍ଣବାଣେ ।
ମେଘନାଦ ବୋଇଲା ସେ ହନୁମନ୍ତକୁ ଶୁଣି
ତୁମ୍ଭର ଆମ୍ଭର ଯୁଦ୍ଧ ହୋଏ ଯାହିଁ ପାଇଁ
ଏହି ସୀତା ମଲେରେ ସରେ ସବୁ ଭଲ
ଅକାରଣେଆମ୍ଭେକର୍ମା କରିରେଥିବାଗୋଳ
ଏତେବୋଲିମାୟାସୀତାରଧରିଲାସେହିକାଳ
ତୋଳିଣ ମାରିଲା ସେଯେ ପ୍ରଚଣ୍ଡ କରବାଳ
ମୁଣ୍ଡ ଗଣ୍ଡି ହୋଇ ନାରୀ ପଡ଼ିଲକ ତଳେ
ଋକ୍ଷକପି ବେଦନ କଲେ ଯେ ବିକଳେ ।
ହନୁମନ୍ତ ଦେଖି ସେଯେ ହେଲା ଜ୍ଞାନଭ୍ରଷ୍ଟ
ଅଚେତନେ ପଡ଼ିଲା ସେଯେ ପବନରସୁତ ।
ଦୁଇହାତ ବୁକୁରେ କୋଡ଼ଇ ଘନଘନ
ନୟନରୁ ଅଶ୍ରୁଜଳ ବହେଯେ ସେହି ପୁଣ ।
ରାଗରେ ବାନରଯେ ମାଇଲେ ତରୁଶିଳା
ନାରଜରେ ନବାରଇ ମନ୍ଦୋଦରୀର ବଳା ।
ଶିର ଝୁଣିଣ ଯେ ପ୍ରତିଜ୍ଞା ଘୋର କଲା
ତୁମ୍ଭଙ୍କୁ ଯୁଦ୍ଧରେ ନ ମାରଇ ସେ ବୋଇଲା
ଯେବଣ କାଣ୍ଡ ମୁ ଐରାବତକୁ ସନ୍ଧଇ
ସେହି ନାରାଜ କରେ ତୁମ୍ଭଙ୍କୁ ବନ୍ଧଇ ।
ଲାଜ ପାଇବ ନା ମୋହର ତୀକ୍ଷ୍ଣଶର
ମୁହିଁ ଅବା କେମନ୍ତେ କରିବ ପ୍ରହାର ।
ଅଷ୍ଟସେନା ତୁମ୍ଭେରେ ଋକ୍ଷକପିମାନ
ଲକ୍ଷ୍ମଣ କୁମରତ ବୟସରେ ସାନ ।
ଏମାନଙ୍କୁ ନ ମାରଇରେ ଷଣ୍ଢୀବର ହୋଇ
ଇନ୍ଦ୍ରଜିତ ନାମା ଏଯେ ମୋହର ଅଟଇ ।

ଯେବଣ ଶ୍ରୀରାମ ବୋଇଲେ ବନ୍ଧ ବାନ୍ଧ
ଏହୁବାଣରେ ତାରରେଛେଦବ ନଷ୍ଟେ କନ୍ଧ
ଶ୍ରୀରାମଙ୍କୁ ଲେଉଡ଼ଇ ଆନରେ କାର୍ଯ୍ୟ ନାହିଁ ।
ନଯୂନ ତରଟିଣ ବୋଇଲା କୋପେ ରୁହିଁ ।
ଦେଖିଣ ପଳାଇଲେ ଯେ ଋକ୍ଷକପି ସୈନ୍ୟ
ରହବୋଲି ଡାକଲା ସେ ହନୁମାନ ପୁଣ ।
ଖିଲୁ ମର୍କଟ ଯେ ଲଗିଲେ ତାର କଣ୍ଠ
ଅନେକ ବଳ ସେନଣ ମାଇଲା ମାରୁତ ।
ଚରୁଶିଳ ପେଷିଲେ ସୀତାର ଅଙ୍ଗମାନେ
ମାର ମାର ଡ଼ାକ ଦ୍ୟନ୍ତ ଅବଛନ୍ନେ ।
ହନୁମନ୍ତ ବୋଇଲାରେ ଶୁଣରେ ଇନ୍ଦ୍ରଜତ
ଅବଧ ବଧିବାକୁ ବଳଲା କେମ୍ଳେ ଶଠ ।
ଏଡ଼େ ମନ୍ଦ କର୍ମାରେ କଲୁ ତୁ ଦଇତ
ସ୍ତ୍ରୀହତ୍ୟା ଦୋଷରେ ଲଗିବ ତୋତେ ତ
ଧର୍ମ ଅଧର୍ମରେ କଛୁ ତୁ ନ ଜାଣୁ
ଅଦୋଷୀ ସୀତା ମସ୍ତକ କମ୍ପାଇରେ ହାଣୁ ।
କେବଣ ପୁଣ୍ୟେ ତୁମ୍ଭଙ୍କୁ ପ୍ରାପତ ଏତେ ଶିରୀ
ଏ ବୁଦ୍ଧି ଚଣ୍ଡାଳରେ କେବେହେଁ ନକର ।
ଏତେ ବୋଲିଣ ହନୁ ପର୍ବତେ ପୁଣ ଧର
ତିନବେଳ ବୁଲାଇ ମାଇଲା କୋପକର ।
ଇନ୍ଦ୍ରଜତ ରଥରେ ବାଜଣ ଗିରି ଯାଇ
ଦେଖିଣ ମେଘନାଦ ଗଲକ ପଳାଇ ।
ପଥର ବାଜ ଇନ୍ଦ୍ରଜତ ରଥ ଭାଜିଗଲା
ଭୂମିରେ ଉଭା ହୋଇଲା ରାବଣର ବଳା ।
ପକାଇଲେ ରାକ୍ଷସେ ପ୍ରାଣକୁ କର ଖଣ୍ଡ
ଏକକୁ ଆରେକ ଯେ କେହି ନ ରୁହାନ୍ତ ।
ଗୋଡ଼ାଇ ବାନରେ ମାଇଲେ ପଛେ ପୁଣ
ଦେଖିଣ ରୁହାଇଲା ଯେ ପବନ ନନ୍ଦନ ।
ପାଦଗତ ହୋଇଣ ଇନ୍ଦ୍ରଜତ ବୀର
ବାମକରେ କୋଦଣ୍ଡ ଦକ୍ଷିଣକରେ ଶର ।
ରୁହିଁଲା ମେଘନାଦ ରଣ ଯେ ଭୂମିକ
ଗୋଟିଏ ଅସୁର ନାହାନ୍ତ ଆଉନକ ।
ଅନେକ ଅସୁର ଯେ ଲଙ୍କାରୁ ଅଇଲେ
ଗଲବେଳକୁ ଏବେଯେ ଅଳପ ଫେରିଗଲେ
ଯହୁଁ ସେ ହନୁମନ୍ତ କପିଙ୍କି ରୁହାଇଲା
କୁମର ମେଘନାଦ ଲଙ୍କାରେ ଲଶିଲା ।

ପିତାର ଆଗେ ଯାଇ କହିଲା ବାରତା
ଛେଦେବ ଦଶାନନ ମାଇଲ ମାୟା'ସୀତା ।
ତରୁଶିଳ ପକାଇଣ ପଳାଇଲେ ଋକ୍ଷଶିଷ୍ୟ
ଯହୁ ସେ ସୀତାର ବଧ ଦେଖିଲେ ପ୍ରତ୍ୟକ୍ଷ ।
ରହ ପାହିଲା ବେଳକୁ ଗୋଟିଏ ନ ଥିବେ
ଏବ୍ବକ୍ଷଣି ସିନ୍ଧୁ ସେ ପାରହୋଇ ଯିବେ ।
ସୀତା ମଲାବେଳୁ ତାଙ୍କର ସରଲଣି ଯୁଦ୍ଧ
ଆଉକ ସଂଗ୍ରାମ କରିବାକୁଅଛୁ ତାଙ୍କରସାଧ
ଶୁଣିଣ ଦଶଗ୍ରୀବ ହୋଇଲା ସନ୍ତୋଷ
ମଣୋହିରେ ବଜେକଲା ଦଶଦ୍ୱାର ଶିଷ୍ୟ ।
ଇନ୍ଦ୍ରଜତ ବାହୁଡ଼ିଗଲା ତାର ପୁରେ
ପଦାତି ସେନାପତି ଗଲେ ସେ ଯେଝାରେ ।
ଶୁଣିମା କାହାଣୀ ଗୋ ଏଥୁ ଅନନ୍ତରେ
ଋକ୍ଷକପି ଅଛନ୍ତୁଯେ ରଣର ଭୂମିରେ ।
ସମର ଭୂମିରେ ଦୈତ୍ୟ ସୀତାଙ୍କୁ ଗଲାହାଣି
ସତପ୍ରାୟେ ତାଙ୍କୁ ଯେ ହନୁମନ୍ତ ମଣି ।
ଯୁଦ୍ଧ ରହିବାରୁ ସେ ବାହୁଡ଼ିଣ ଗଲା
ଶ୍ରୀରାମ ଛାମୁରେ ଯାଇ କହିବ ବୋଇଲା ।
ଏତେକ ହନୁରୁ ସେଯେ ଅଇଲା ପାବନ
ନଯୂନୁ ଝର୍ଝର ଲୁହ ପଡ଼ଇ ଅବଗା ।
ସୀତାଙ୍କୁ ମାରିବାର ରାଘବ ନ ଜାଣନ୍ତି
ଜମ୍ବେବ ଋକ୍ଷମନ୍ତ୍ରୀକ ରାଇ ଆଜ୍ଞାଦ୍ୟନ୍ତି ।
ଇନ୍ଦ୍ରଜତ ସଙ୍ଗରେ ହନୂମନ୍ତର ଯୁଦ୍ଧ
ଆଜକର୍ମା ପଳାଇଲା ରାବଣ ଆତ୍ମଜ ।
ଯାଅ ଋକ୍ଷକପି ହେ ସେକଅାମାନ ବୁଝ
ଇନ୍ଦ୍ରଜତକୁ ସମାନ ନୁହନ୍ତି କପିଋକ୍ଷ ।
ଏକାକେ ମାରୁତ ତା ସଙ୍ଗରେ ଯୁଝିଇ
ସୈନ୍ୟ ସେନ ଯିଠି ହୁଅ ତାକୁ ଯାଇ ।
ଶୁଣିକର ଜମ୍ବେବ ସୈନ୍ୟସେନଗଲା
ହନୂମନ୍ତ ଆସୁଅଛି ବାଟରେ ଦେଖିଲା ।
ଜମ୍ବେବକୁ ରୁହିଁଣ ମାରୁତ ବୋଲଇ
ଶ୍ରୀରାମଙ୍କର ସୈନ୍ୟ ଗୋଟିଏ ଜାଇନାହିଁ ।
ପ୍ରିୟବନ୍ଧ ଭାରଯା ସୀତା ତାହାଙ୍କର ମଲା
ପାମର ଇନ୍ଦ୍ରଜତ ହାଣି ପକାଇଲା ।
ଶୁଣିଣ ମନ୍ତ୍ରୀବର ଆଶ୍ଚର୍ଯ୍ୟ ହୋଇଲେ
ଦୁଇଦଳ ସେନଣି ସୁବଳଧ୍ୟାକୁ ଗଲେ ।

ବୁଝନ୍ତି ତାହାଙ୍କୁ ଯେ ଶ୍ରୀରାମଚନ୍ଦ୍ର ଦେଖି
ବିସ୍ମରିଲେ ଏହାଙ୍କ ମୁଖ ତ ଅଛୁ ଶୁଖି ।
ନିକଟରେ ଜାମ୍ବୁବ ଜଣାଇଲ ଯାଇଁ
ଇନ୍ଦ୍ରଜିତ ଜାନକୀଙ୍କି ମାଇଲା ଗୋସାଇଁ ।
ରଣ ଭୂମିରେ ଭ୍ରମୁଛ ପଡ଼ିଛନ୍ତି ରାଣୀ
ମାରୁତି ଦେଖିକରି ଆଇଲା ଏହିକ୍ଷଣି ।
ଶୁଣିକରି ରାମଚନ୍ଦ୍ର ଢଳିଣ ପଡ଼ିଲେ
କି ଅବା ଶରୀରୁ ପ୍ରାଣ ଛାଡ଼ିଗଲା ଭଳେ ।
ତୋଳିକରି ଧଇଲେ ଯେ ସୁମିତ୍ରା ନନ୍ଦନ
ମୁଖେ ପାଣି ସିଞ୍ଚିଲେ ସୁଗ୍ରୀବ ରାଜନ ।
ଜାମ୍ବୁବ ସୁଷେଣ ଯେ ଆଶ୍ୱାସନା କରି
ହନୁମନ୍ତ ବସିଲା ଚରଣ ଦୁଇ ଧରି ।
ବାଳିର ତନୟେ ଯେ ଗନ୍ଧମାଦନ
କୋମଳ ପଦ ସେବନ୍ତି ଘନ ଘନ ।
ସେନାପତି ଯୂଥପତି ସମସ୍ତେ ବିକଳ
ଋକ୍ଷକପି ସୈନ୍ୟ ସର୍ବେ ହୁଅନ୍ତି ଆକୁଳ ।
ଶ୍ୱେତନାଗ ଯେସନେ କାଟିଗୁଡ଼ ଯାଇ
ତେସନ ପଟାନ୍ତର ଦିଶନ୍ତି ରଘୁସାଇଁ ।
ଚେତନା ପାଇ ଶ୍ରୀରାମ କରନ୍ତି ସନ୍ତାପ
କେ ଜନ୍ମ ପୂର୍ବରେ ମୁଁ କଲି କେଉଁ ପାପ ।
ରାଜବେଶ ଛାଡ଼ିଣ ମୁଁ ବନବାସ କଲି
ଯୁବାକାଳେ ମୁଁ ଯେ ଘରଣୀ ହରାଇଲି ।
ଚଣ୍ଡାଳ ଦୈତ୍ୟ ବନ୍ଦୁ ଆଣିଲା ଚୋରିକରି
ଜକ୍ରୋଧ ଛାଡ଼ିଣ ମୋ ସଖୀକି ଗଲା ମାରି ।
ଆହା ଆହା ଜାନକୀ ଗୋ ଜନକଦୁହିତା
ସର୍ବଗୁଣେ ସୁନ୍ଦର ତୋ ନାମ ଅଟେ ସୀତା ।
ଚମ୍ପାପୁଷ୍ପ ପରାଏ ଯେ ତୋହର ବଦନ
ପାଶରେ ତୋର ମଳିନ ଦିଶଇ ସୁବର୍ଣ୍ଣ ।
ଚନ୍ଦ୍ରମଣ୍ଡଳ ପରାୟେ ଦିଶେ ତୋର ମୁଖ
ଚନ୍ଦ୍ରମଣ୍ଡଳ ଯୁଗଳ କି ଅବା ରେହମସ୍ୟ ।
ରୁଚିର କେଶ ତୋର ଗୋ ସୁଲଳିତ ଖୋସା
ଶ୍ରବଣ ସୁନ୍ଦର ତୋ ସୁଚାରୁ ସୁଗନ୍ଧନାସା ।
ବନ୍ଧୁକ ଅଧର ତୋର ଦର୍ଶନ ଗଜମୋତି
ଡାହାଣାବର୍ତ୍ତି ଶଙ୍ଖତନ୍ତ ଯେ ଆକୃତି ।
ବୃଶାଳ ହୃଦୟ ତୋର ବେନି ପଦ୍ମନାଳ
ସୁନ୍ଦର ଯୌବନ ଗଳାରେ ମୋତିମାଳ ।
ମଧ୍ୟା ଫଙ୍କାଣ୍ଡି ଯେ ବିଷମ ସିଂହଠାଣି
ବିସ୍ତାର କଟି ଭୁଜ ଯେ ସିଂହାସନ ଜାଣି ।
ଗଜରାଜ ଲାଭ ଯେ ପଦ୍ମପଦ୍ମ ତୋର ପେଟ
ଆଗକୁ ସୁନ୍ଦର ସଖୀ ପଛକୁ ମୁରାଟ ।
ଉଲଟ କଦଳୀ ଜାଣି ଅଟେ ବେନିଜାନୁ
ପାଦତୋର ରଙ୍ଗବର୍ଣ୍ଣ ଅଳତା ନିନ୍ଦନୁ ।
ବିଚିତ୍ର ବସ୍ତ୍ର ଯେ ବିବିଧ ଅଳଙ୍କାର
ତ୍ରିଭୁବନରେ ତୋତେ ନାହିଁ ପଟାନ୍ତର ।
ପ୍ରାଣସଖୀ ତୁ ଅଟୁ ଗୋ ବଇଦେହୀ
ବନସ୍ତକୁ ଗୋଡ଼ାଇ ଅଇଲେ ସ୍ନେହେ ତୁହି ।
ଅଳପ ହସିଣ ତୁ କହୁ ଯେ ଧୀରକରି
ସୁରତି ମାଗୁ ମୋର ଚରଣ ଦୁଇ ଧରି ।
ହେମକୁଚ ଲଗାଇ ତୁ କୋଳ କରୁ ମୋତେ
ଏବେ ଆଉ ସଖିରେ ପାଇବି କାହୁଁ ତୋତେ
ପ୍ରେମର ନୟନେ ମୋତେ ବନ୍ଦକରି ସ୍ୱତ୍ତ୍ୱ
ସ୍ୱାଇ ଜାଣିଣ ମୋତେ ସେବାକରୁ ଥାଉ ।
ମୁହଁାସ ଲଗାଇ ମୋତେ କେଉଁ କତିଗଲୁ
ଯୁବାକାଳେ ମୋତେ ତୁହି ଏତେ କଷ୍ଟଦେଲୁ
ସଖୀ ସଖୀ ବୋଲିଣ ରୋଦନ୍ତି ଉଚ୍ଚସ୍ୱରେ
ବେନି ଭୁଜ ନେଇଣ କୋଡ଼ନ୍ତି ହୃଦୟରେ ।
ଆହା ମୋର ଘରଣୀ ଗୁଣର ଗୁଣନିଧି
ମୋହର ମନ କାର୍ଯ୍ୟତ ନୋହିଲା ପୂର୍ଣ ସିଦ୍ଧି
ମରିବି ମରିବି ମୁହିଁ ଜୀବନେ ନାହିଁ ଆଶ
କେଉଁ ବିଧି ଛଡ଼ାଇଲା ମୋହର ମୁହଁାସ ।
ରାଜାର ବଧୂ ତୁହି ରାଜାର ଦୁଲଣୀ
ମୁହଁାସ ଲଗାଇ କେଣେ ଗଲୁ ସଙ୍ଗାତୁଣୀ ।
ପ୍ରାଣର ବଲ୍ଲଭ ମୋ କେଉଁକତି ଗଲୁ
ଚଣ୍ଡାଳ ଦୈତ୍ୟ ହସ୍ତରେ ପ୍ରାଣ ତୁହି ଦେଲୁ
ଗାଢ଼ ଆଲିଙ୍ଗନ ତୁ ଗୋ ନ ସହୁ ଭବାନୀ
ଏବେ କେମନ୍ତେ ସଇତ ହାଣିଲା ଖଡ୍ଗଘେନି
ମୁହିଁ ପାମର ତୋତେ ନ ପାରିଲି ରଖି
ନରକ ପ୍ରାଣୀର ପ୍ରାୟେ ମଲା ମୋର ସଖି ।
କାହିଁ ଏବେ ଯିବ ପଶିବି ପୁଣ କାହିଁ
କେ ମୋହର ସୀତାପ୍ରୀକୁ ଦେବ କି ଦେଖାଇ
ବାବୁ ଦଇବରେ ମୋତେ ଲାଗିଲୁ ବିବେ
ଦେଶ ଛାଡ଼ିଲି ସାବତ ଜନନୀ ପ୍ରସାଦେ ।

ଫଳ ମୂଳ ଖାଇଣ ବନସ୍ତେ ରହିଲ
ଏତେ କଷ୍ଟ ସହି ପୁଣ ସୁଖ ନ ପାଇଲ ।
ଧରଣୀ ରାବଣ ମୋର ଆଣିଲା ଲେଉଟାଇ
ଏବେ ତାର ପୁତ୍ର ମାରଗଲା ମୋର ସାଇଁ ।
ସଖିର ମୁଖ ଦେଖି ନ କଲା ଉପ୍ରୋଧ
କେମନ୍ତେ ଚଣ୍ଡାଳ ଦୈତ୍ୟ କଲୁ ସ୍ତ୍ରୀବଧ
ଆକେ ଜମ୍ବେଦ ମୋତେ ଦେଖାଅ ପ୍ରାଣସଖୀ
କେଉଁଠାରେ ପଡ଼ିଅଛି ଶରଦଚନ୍ଦ୍ର ମୁଖୀ ।
ଦେଶ ଛାଡ଼ିଣ ମୋତେ ବନସ୍ତେ ସେବାକଲ
ଏବେ ସେ ଦୈତ୍ୟହାତରେ ସଂହାରହୋଇଲ
ଆଖି ପୁରାଇଣ ଥରେ ଦେଖିବି ମିତ୍ରାଣୀ
ଏ ଯୁଗଳୁ ମୋହର ଯାଉଛି ସଙ୍ଗାତୁଣୀ ।
ଏତେ ବୋଲି ରାମଚନ୍ଦ୍ର ଉଠି ଉଭା ହୋଇ
ଜାନକୀ ପଡ଼ିଥିବା ଠାବକୁ ବୋଲି ଯାଇ ।
ଦେଖିଲେ ରଣଭୂମିରେ ପଡ଼ିଅଛି ନାରୀ
ଧାଇଁଣ ଶ୍ରୀରାମ ଧଇଲେ କୋଳକରି ।
ମୃତପିଣ୍ଡ ଆଣିଣ ବସାଇଲେ କୋଳେ
ଗୁଣମାନ ବାହୁନ ରୋଦନ୍ତି ବଚନେ ।
ଜାନୁ ଯୌବନ ଯେ ହୃଦୟ ଛଟିକଣ୍ଠ
ଆଣ୍ଠୁ ଗଣ୍ଠି କର ଚରଣ ନାଭିତଟ ।
ସର୍ବାଙ୍ଗ ଆଉଁଷନ୍ତି ସ୍ନେହଭାବ ଯେନ
କାମକଳାରେ କୁଶଳ ଅଟୁରେ ଭାବମା ।
ଏ ବାହୁଯୁଗଳ ଯେନ ମୋତେ କୋଳକରୁ
ଏହି ନଖମାନରେ ମୋର ଦେହ ଚିରୁ ।
ଏହି କୁଚଯୁଗଳ ଲଗାଉ ମୋର କରେ
ଏ ଯୁବା ବୟସ ତୋର ଗଲାକ ନଷ୍ଟରେ ।
ଅରଣ୍ୟ ମାଳଞ୍ଚ ପ୍ରାପ୍ତେକ ଭୁଞ୍ଜି ହେଲୁ
ମୋତେ ଯେନ ଭୁଞ୍ଜି ଭୋଗକରି ନ ପାରିଲୁ ।
ନିରାଶ ହୋଇଣ ସଖୀ ଗୃହଣ ମୋ ଆଶ
ମୁଁ ତୋ ଆଶ କରିଥିଲି ରେ ସଙ୍ଗାତ ।
ରାବଣ ମାରିଣ ତୋତେ ଅଯୋଧ୍ୟାପୁର ନେବି
ତୋହର ଯୌବନ ସୁଖରେ ବିଳସନ୍ତି ।
ଚିତ୍ରକୂଟ ପର୍ବତେ କହିଲୁ ମୋତେ ଯାହା
ରାଜପୁର ଗଲେ ମୁଁ ଯେ ଆଚରନ୍ତି ତାହା ।
ଏକଥା ନଷ୍ଟପ୍ରାୟ ହୋଇଲା ସଖୀ ଏବେ
ଦୈତ୍ୟର ହସ୍ତରେ ମୃତ୍ୟୁ ପାଇଲୁ ତୁ ଯେବେ ।
ପିଠିକରି ଶୋଇଲେ ଯେ ମୋତେ ତୁ ପ୍ରିୟା
ଏବେ ସେ କାହାକୁ ଗୋ ସମର୍ପିଗଲୁ ହିଆ ।
ଜୁଡ଼ା ବାନ୍ଧିଣ ଯେ ଦେଖାଉ ନିତ୍ୟ ମୋତେ
ଅଶୌଚ ହେଲେ ଗୋ ଧୋଉ ଅଗ୍ନି ପାଶେ
ଏବେ କେମନ୍ତେ ଗୋ ମୁଁ ତୁଟିବି ତୋତେ
ସତ୍ୟ କରାଇଣ ଯେ ଅଛୁରେ ସଖି ମୋତେ ।
କହିଲର ବୋଲି ଯେ ନ ଭାଙ୍ଗୁ ମୋହର
କେତେ ଗୁଣ ସଖିରେ ବାହୁନିବି ତୋର ।
ଅଳତା ଘେନିଣ ଛାମୁକୁ ମୋର ଆସୁ
ଚରଣ ଅଙ୍ଗୁଷ୍ଠିକ ମୁଖକରି ବସୁ ।
ସୁନ୍ଦର ଲକ୍ଷଣ ଯେ ଦିଶଇ ମୁଖ ତୋର
ହସି କୋଳକରି ଚୁମ୍ବ ଦେଉ ଯେ ଅଧର ।
ଚରଣ ଯୁଗଳେ ଉପନ୍ଦ୍ରେ ବସୁ ନଶି
ଏକଥା କେମନ୍ତେ ପାସୋରିବି ଗୁ ଭ୍ରୂକେଶୀ
ଏ ତୋର ସୁନ୍ଦର ଯେ ସୁକୁମାର ଅଙ୍ଗ
ଏହା ଘେନିଣ ମୁଁ ଯେ କରନ୍ତି ସୁଖଭୋଗ ।
ଏବେ ମୋର ଶ୍ରଦ୍ଧା ସାରିଣ କାହା ତୁଲେ
ମୃଗମାରି ଯିବି ଗୋ ମୁଁ କାହାର ବୋଲେ ।
କାହାର ତୁଲେ ଏବେ ଖେଳିବି ମୁଁ ପଶାଖେଳି
କେତକୀ ଫୁଲ ଘେନ ଖୋସିବି କାହା ଖୋସା ।
ଚନ୍ଦନ ଘଷିବି ଯେ କାହାର ଶ୍ରୀଅଙ୍ଗେ
ଏକାନ୍ତେଣ ଲୀଳା ଗୋ କରିବି କାହା ସଙ୍ଗେ
ଅଗ୍ରୁ ଘୋରି କାହା ନେତ୍ରେ ଦେବି ମୁଁ କଜ୍ଜଳ
କସ୍ତୁରୀ ଲେପିବି ମୁଁ କାହାର ବକ୍ଷସ୍ଥଳ ।
ଗନ୍ଧ ଘେନ କାହାର ମୁଁ ମଣ୍ଡିବି ଅଳତା
କାହାର କପାଳେ ଦେବ ସିନ୍ଦୂରର ଟିକା ।
କାହାକୁ ଅମଳାଣ ପିନ୍ଧାଇବି କାଛ
କାହାକୁ ଅଳଙ୍କାର ମଣ୍ଡିବି ମୁଁ ବାଛ ।
କେ ମୋହର ମନକୁ ଜାଣି ପରଷିବ
କେହୁ ଚତୁଃସମ ମୋର ଅଙ୍ଗରେ ଘଷିବ ।
କୋପ କରିଥିଲେ ସଖି ନ କହୁ ତୁ କଥା
ସମସ୍ୟା ପାଇବା ଯାଏ ପୋତିଥାଉ ମଥା ।
ମୁଁ ହସି କହିଲେ ଗୋ ତୁହି ହସି କହୁ
ହରଷ କାଳେ ମୋତେ ବିରସ ନ କରାଉ ।
ସୁକୁମାର ଦେହ ତୋର ଶୀତଳକୁ ଉଷ୍ମ
ଉଷ୍ମକୁ ଶୀତଳ ତୁ ଅମୂଲ୍ୟ ପ୍ରତିମ ।

ଗ୍ରୀଷ୍ମକୁ ଶୀତଳ ଶୀତକୁ ଉଷ୍ମ
ହସିକଥା କହନ୍ତେ ଅମୃତ ହେବ ପୁଣ ।
ତୋତେ ଚିହ୍ନିଲେ ତପ ଘୁଣ୍ଡନ୍ତି ବ୍ରହ୍ମମୁନି
ତୋହର ଭାବ ସନ୍ଧି ନ ପାରିଲେ ବେଦ ।
ଉଷ୍ମ କରାଇଲୁ ମୋତେ ମଧୁଶଯ୍ୟ
ଅଗ୍ନି ଦେବତା ତୁ ଯେ ଛୁଇଁଲୁ ନିଜ ଭୁଜେ
ଏକକଇ ଆରେକ ନୋହିବା ଛଡ଼ାଛଡ଼ି
ତୁମ୍ଭ ବିନା ଆଗକର ଗଲୁ ମୋତେ ଛାଡ଼ି ।
ମୁହିଁ ତୋତେ କ୍ଷଣେ ମୂର୍ଚ୍ଛି ନ ପାରଇ ସହି
ଦାରୁଣ ହୃଦୟ ତୋର ଜଣାଗଲା ବଇଦେହି
ସ୍ୱପନ ନିଧିପ୍ରାଏ କେଉଁ କଣ୍ଡଗଲୁ
ଯୁବାକାଳେ ମୋତେ ଏତେ କଷ୍ଟଦେଲୁ ।
ଚଉଦମାସ ହେଲା ତୋତେ ଦଇତ ଆଣିଲା
ଚଉଦ ଯୁଗ ପ୍ରାଏ ମୋତେ ହେ ଲାଗିଲା ।
ଯୋଡ଼ୁ ଯୋଡ଼ୁ ଜୀବନ ଶରୀରୁ ଯାଉଛାଡ଼ି
ଭେଲେ ଯମ ଦେବତା ମୋ ଜୀବନ ନିଅ କାଢ଼ି
ଏବେ କାହା ଲୋଭ ଥିବ ମୁହିଁ ଏଥି
ଯଶ ଶିଖା ମୋହର ହରିଲା ଦଶମାଥ ।
କି ବୁଦ୍ଧି କରିବ ମୁହିଁ ଯୋଡ଼ୁ ମୋର ମୁଣ୍ଡ
ସୀତସ୍ୱାର ପିଣ୍ଡ ଗୋଟି ଦେଖିଲି ବେନଖଣ୍ଡ
ଏହା ଦେଖି ପ୍ରାଣ ମୋ ନଯାଏ କାହିଁପାଇଁ
କେବଣ ଭୋଗ କରିବ ଏଥେ ଥାଇ ।
ସଖି ମାଧବୀ ତୁମ୍ଭ ଅଙ୍କୁରେ କାମିନୀ
ଇନ୍ଦ୍ରଜିତ ତୋତେ ଗୋ ପକାଇଲା ହାଣି ।
ଏହା କର୍ମେ ମୋହର ଅର୍ଜିଲା ବ୍ରହ୍ମମୁହିଁ
ଏତେ ଶୋକ କରି ରାମ ଟଳିପଡ଼ି ମହୀ ।
ଦେଖିକରି ସଉମିତ୍ରି ଧରି ପୁଣ ତୋଳି
ସବୁଙ୍କର ନୟନରୁ ଅଶ୍ରୁଜଳ ଗଳି ।
ହାହାକାର କରନ୍ତି ଋକ୍ଷ କପିଗଣ
ଏତେ କଷ୍ଟ ପାଇବାର ହେଲା ଅକାରଣ ।
ଜାମ୍ବେବ ବୋଇଲେ ସ୍ୱାମୀ ଶୁଣ ରଘୁନାଥ
ଶୋକ ସମ୍ଭାଳକର ବୁଝିବା ତଦନ୍ତ ।
ଦେବତାଙ୍କ ଈଶ୍ୱର ତୁମ୍ଭେଅଟହୋ ଗୋସାଇଁ
ମୋହର ମନକୁ ତ ପ୍ରତେ ଏ ଯାଉନାହିଁ ।
ମାୟାବୀ ଅସୁର ଏ ଅଟଇ ବୁଦ୍ଧିବନ୍ତ
ଛନ୍ଦ କଥାମାନ ସେ ଜାଣଇ ବହୁତ ।
ଚଉଦ ଗଣ୍ଡା ଯୁଗ ଭୋଗ ଏହୁ କଲା
ମାୟାଛନ୍ଦ ନ ଥିଲେ କେମନ୍ତେ ତରନ୍ତା ।
ଦେବତାଙ୍କୁ ଜିଣିଲା ନାଗବଳ ଜିଣି
ଲକ୍ଷେ ରାଜାଙ୍କଣି ଲକ୍ଷେ ଛତ୍ର ଟେକେ ପୁଣି ।
ସାହେବ ଭିତରେ ଏହୁ କରିଅଛୁ ଘର
ଚଉଦ ଭୁବନ ପଦାର୍ଥ ଠୁଳ ଯାର ।
ମୋହର ମନକୁ ଆସେ ଛନ୍ଦ ଏହୁ କଥା
ଗାଢ଼ ଯୁଦ୍ଧ ଦେଖି ମାୟା କଲା ଦଶମଥା ।
ନିଶ୍ଚୟ ବୁଝିବା ଆମ୍ଭେ ବିଚାର କରିବା
ମରିଥିଲେ ତୁମ୍ଭନାରୀ ଜିଆଇଣ ଦେବା ।
ହନୁ ମରିଥିଲେ ମୋହର ବୁଦ୍ଧି ନାହିଁ
ପବନ ସୁତ ଥିଲେ ଜିଆଇଣ ଦେବ ମୁହିଁ ।
ରାମାୟଣ ଯୁଦ୍ଧକୁ ପବନ ସୁତ ମୂଳ
ଯେତେ କଥାମାନ ହେବ ଜାଣିବ ସକଳ ।
ଶ୍ରୀରାମ ବୋଇଲେ ତୁମ୍ଭେ ହୋଇଲକ ବାଇ
ଏହି ଜନକ ସୁତା ଅଟେ ବଇଦେହି ।
କହେ ହନୁମନ୍ତ ଏ ଅଟଇ କି ସୀତା
ତୁମ୍ଭ ବିନା ଦେଖିଅଛୁ ଜନକ ଦୁହିତା ।
ଶୁଣି ହନୁମନ୍ତ କହେ ଯୋଡ଼ି ବେନି କର
ନୁହଇ ମାୟାଦେବ ଜାନକୀ ନିକର ।
ଏସନକ ସମୟରେ ବିଭୀଷଣ ରାଏ
ଅସୁର ବଳ ସଂହାରୁ ଥିଲା ସେ ଏକାଏ ।
ବାରତା ପାଇଲା ସେହୁ ସୀତା ଶିର ଛେଦ
ରଣ ଛାଡ଼ି ଧାଇଁଲା ସେ ହୋଇଣ ବିଷାଦ ।
ଶ୍ରୀରାମ କାନ୍ଦବାରେ ସମସ୍ତେ କାନ୍ଦୁଛନ୍ତି
ମାୟା ସୀତାକୁ ସର୍ବେ ବେଢ଼ିଣ ଅଛନ୍ତି ।
ବିଭୀଷଣକୁ ଦେଖି ବୋଲନ୍ତି ଲକ୍ଷ୍ମଣ
ଏତେ ବାଗେ ବିଧାତା ବିହିଲା କଷଣ ।
ତାହାର ପାଇଁ ଏଡ଼େ ସଂଗ୍ରାମ ହୋଇଲା
ସେ ଜନକ ଦୁହିତାକୁ ତୋ ପୁତୁର ମାଇଲା ।
ସ୍ତ୍ରୀବଧ ବୋଲି ମନେ ନ କଲା ସେଭୟେ
କେମନ୍ତେ ଆନେ ତାକୁ ଜରିଲେ ଦେବତାଏ
ଶୁଣିଣ ବିଭୀଷଣ ହୋଇଲା ଚକିତ
ବୋଇଲା ପାମରରେ କଲୁ ମନ୍ଦ କୃତ୍ୟ ।
ସଂଗ୍ରାମକୁ ନ ପାରି ଉପାୟେ ଏହା କଲୁ
ଯୁବତୀ ଶିରେମଣିକ ମାରି ପକାଇଲୁ ।

ଶ୍ରୀରାମ ବୋଇଲେ ହୋ ଭରଯା ମୋର ମନ
ସୁବୁଦ୍ଧିମାନ ମୋର ଏହିଠାରୁ ଗଲା ।
ପ୍ରିୟବନ୍ଧୁ ଭରଥାକୁ ମୂର୍ଛିବ କେମନ୍ତେ
ଦେଖ ଏ ଅମଲାଣ ଶାଢ଼ୀର ପଣତେ ।
ଫଳମୂଳ ଗୁଡ଼ାଏ ବାନ୍ଧଣ ଥୋଇ ଥାଇ
ନମିଳନ୍ତା ଦିନକୁ ସେ ଆଗକୁ ଥୋଇ ଥାଇ ।
ରାଜାର ଝିଅ ହୋଇ ଘରଣୀ ପଣ ଏତେ
ତାର ଗୁଣମାନ ମୁହିଁ ବାହୁନିବି କେତେ ।
ଏଡେ ମୁହାଁସ ମୋର ଛଡାଇ କେହୁ ନେଲା
ମେଘନାଦ ଚଣ୍ଡାଳ ଏହା ମୋତେ କଲା ।
ଏବେ ସେ ଜଣାଗଲା କଥାର ତଦନ୍ତ
ସୀତା ସଙ୍ଗେ ରାବଣ ନୋହିଲା ମେଳ କୃତ୍ୟ
ହେଗକରି ଥିଲେ ସେ ଯେ ନପାରନ୍ତା ମାରି
ରମିଲା ନାରୀଙ୍କୁ ଉପ୍ରୋଧ ସବୁଙ୍କର ।
ଯହୁଁ ସେ ଜାନକୀ ନଦେଲା ତାକୁ ଅଙ୍ଗ
ତେଣୁ ସେ ଜାନକୀର ଛାଡ଼ିଲା ସ୍ନେହଭାବ ।
ବଞ୍ଚିରଲା ଏ ନାରୀ ଥିଲେ ମୋ କାର୍ଯ୍ୟ ବସ
ଏ ସୀତା ଯେବେ ମୋତେ ନୋହିବ ବିଶ୍ୱାସ
ମାରି ଦେବ ଏହାକୁ ନ ନେଇ ଜଟାଧାରୀ
ନିରାଶ ହୋଇ ଶ୍ରୀରାମ ଯାଉ ଫେରିକରି ।
ଶୁଣିକରି ବିଭୀଷଣ ଉପରକୁ ଚାହିଁ
ବଞ୍ଚିରଲା ସତେ କି ଅଟେ ବଇଦେହୀ ।
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ବରୀ
ଅସୁରୀଏ ଆସିଥିଲେ ରାବଣର ପୁରୀ ।
ଶୁଣିଲେ ମାୟା ଜାନକୀ ଇନ୍ଦ୍ରଜିତ ମାରି
ଶ୍ରୀରାମ ଲକ୍ଷ୍ମଣ ସୈନ୍ୟ ଘେନି ଶୋକକରି ।
ଶୁଣିକରି ଅସୁରୀଏ ବେଗ ହୋଇ ଗଲେ
ତ୍ରିଜଟା ଜାନକୀ ଆଗେ ବାରତା କହିଲେ ।
ବୋଇଲେ ଆଜର ଯୁଦ୍ଧ ଗୋ ବାରତା
ଛନ୍ଦରେ ଇନ୍ଦ୍ରଜିତ ମାଇଲା ମାୟା ସୀତା ।
ଯୁଦ୍ଧ ଛାଡ଼ି ତୁମ୍ଭ ସ୍ୱାମୀ ବସି କାନ୍ଦୁଛନ୍ତି
ଲକ୍ଷ୍ମଣ ସହିତେ ସୈନ୍ୟ ସମସ୍ତେ ରୋଦନ୍ତି ।
ଶୁଣି ଜାନକୀ ବୋଇଲେ ଭଲ କଥା ହେଲା
ଯୁଦ୍ଧକୁ ନ ପାରି ଏବେ ଉପାଏ ରଞ୍ଜିଲା ।
ଶ୍ରୀରାମ ଲକ୍ଷ୍ମଣମୁଣ୍ଡବାପ ମୋତେଦେଖାଇଲା
ତାର ପୁଅ ଶ୍ରୀରାମଙ୍କୁ ଭେଳକି ଲଗାଇଲା ।

ମାୟା ସୀତା ମାରି ମୋର ସ୍ୱାମୀଙ୍କୁ କନ୍ଦାଏ
ପବନଦେବତା ଏବେ ମୋର ଦୂତ ହୋଏ ।
ଜାଣି ପବନ ଦେବତା ଆଗେ ଉଭା ହେଲେ
ଦେଖିକରି ଜାନକୀ ଉତ୍ତର କହିଲେ ।
ବେଗ ହୋଇ ଯାଅ ହେ ମରୁତ ଦେବ ତୁମ୍ଭ
ବ୍ରହ୍ମାଣ୍ଡ ଠାକୁରଙ୍କୁ କହିବ ତୁମ୍ଭେ ଯାଇ ।
ବୋଲିବ ସବୁ ଶୁଭେ ସତୀ ତୁମ୍ଭର ଅଛି
ମାୟା ସୀତା ମାରିଗଲା ରାବଣର ବଷ୍ଟି ।
ଏତେ ବୋଲି ଜାନକୀ ହସ୍ତରୁ ମୁଦି କାଢି
ମରୁତ ହସ୍ତରେ ଦେଖା ଦେଲେ ବେଗକରି ।
ଘେନି ପବନ ଦେବତା ବେଗେ ଚଳିଗଲା
ଲଙ୍କାଗଡ଼ ଡେଇଁବାରୁ ମାୟା ରୂପ ହେଲା ।
ଶାର୍ଦ୍ଦୂଳ ରୂପ ଗୋଟି ହୋଇଲା ପବନ
ଶ୍ରୀରାମର ପାଶେ ଯାଇଁ ପ୍ରବେଶ ବହନ ।
ଶାର୍ଦ୍ଦୂଳକୁ ଦେଖିସୈନ୍ୟ ଭୟ ମନେପାଇ
ଶ୍ରୀରାମ ଛାମୁରେ ସେ ଶାର୍ଦ୍ଦୂଳ ମିଳେ ଯାଇ
ପବନ ବୋଇଲା ତୁହୋ ଶୁଣ ରୂପଧାରୀ
ମୁଠା ଆଜ୍ଞା ଆଣିଛୁ ମୁଁ ଘେନ କର ତୋଳ ।
ଲକ୍ଷ୍ମଣ ବୋଇଲେ କାହାର ଆଜ୍ଞା କହ
ଶାର୍ଦ୍ଦୂଳବୋଇଲାସେକମଳାଦେବୀରସନ୍ଦେଶ
ଲକ୍ଷ୍ମଣ ବୋଲନ୍ତି କେହୁ ଅଟନ୍ତି କମଳା
ଶାର୍ଦ୍ଦୂଳ ବୋଇଲା ବାସୁଦେବଙ୍କ ଅବଳା
ଲକ୍ଷ୍ମଣ ବୋଇଲେ ନାରାୟଣଙ୍କ ନାରୀ
ବୈକୁଣ୍ଠପୁରେ ସେହୁ ଅଛନ୍ତି ବାସ କରି ।
ଶାର୍ଦ୍ଦୂଳ ବୋଇଲା ସେହୁ ଜନମ ଲଭିଲେ
ଦଶରଥ ଘରେ ବାସୁଦେବ ଜନମିଲେ ।
ଦାନବ ମାରିବା ପାଇଁ ମାନବ ଅବତାର
ନାମ ତାଙ୍କର ଶ୍ରୀରାମ ଶୁଣ ତୁରେ ବୀର ।
ଏହାର ଭରଯା ଅଟେ ସୀତା ନାରୀ
ଦଶାନନ ତାହାଙ୍କୁ ଅଛଇ ବନ୍ଦିକରି ।
ଆଜ ଯୁଦ୍ଧେ ପୁତ୍ର ତାର ଇନ୍ଦ୍ରଜିତ ବୀର
ମାୟା ସୀତା ଗୋଟିଏ ମାଇଲା ରଣରେ ।
ମୃତ୍ୟୁ ପିଣ୍ଡ ଧରି ରାମ କରନ୍ତି କାରୁଣ୍ୟ
ଖବର ପାଇ ସତୀ ମାତ ପେଷି ପୁଣ ।
ନିଶ୍ଚିନ୍ତ ହୋଇ ସତୀ ଅଶୋକ ବନେ ଅଛୁ
ମାୟା କଥାକୁ ଶୋକକର ଦୂରକରି ବସି ।

କାଲି ବନ ଭିତରେ ମାରିବ ଇନ୍ଦ୍ରଜିତ
ଘେନ ତୁମ୍ଭେ ମୁଠା ଆଜ୍ଞା ଦିଅ ମୁଁ ଉଚିତ
ଶୁଣିକରି ସଉମିତ୍ରୀ ତକ୍ଷଣେ ଉଠିଲେ
ଶାର୍ଦ୍ଦୂଳ କରରୁ ମୁଠା ଆଜ୍ଞାକୁ ଘେନଲେ
ଶାର୍ଦ୍ଦୂଳ ବୋଇଲେ ତୁମ୍ଭେ ଶୁଣହେ ଲକ୍ଷ୍ମଣ
ଚିହ୍ନାଅ ଶ୍ରୀରାମଙ୍କୁ ତୁମ୍ଭେ ବସ୍ତ୍ର ମୁଦ ପୁଣ ।
ମୋର ପୁତ୍ର ହନୁମନ୍ତ ସୀତାଙ୍କୁ ଦେଇଥିଲ
ମଥାମଣି ନେଇକରି ଶ୍ରୀରାମଙ୍କୁ ଦେଲ ।
ଶୁଣିକରି ଶ୍ରୀରାମଙ୍କୁ ଦେଲେ ଯେ ଲକ୍ଷ୍ମଣ
ବସ୍ତ୍ର ମୁଦ ଦେଖି ଶ୍ରୀରାମ ଲଗାନ୍ତି ଚିହ୍ନେଣ ।
ଶାର୍ଦ୍ଦୂଳ ବୋଇଲା ତୁମ୍ଭେ ଶୁଣ ରଘୁବନୂ
ଶ୍ରୀରାମବାସୁଦେବତାଙ୍କ କୋଳରେ ଥିବୁ ତେଣୁ
ଯୁଗେ ଯୁଗେ ପୁତ୍ର ତୁମ୍ଭେ ହୋଇବୁ ଅମର
ବିଭୀଷଣ ରାଜା ହେବ ପାଷକ ଭିତର ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣହିଶାର୍ଦ୍ଦୂଳ
କପଟେ କି ଦୈତ୍ୟ ତୁମେ ଆସ ମୋ ଠାର
ପବନ ବୋଇଲେ ଦେବ ରାବଣକୁ ମୋର ଭୟ
ଜାଣିଲେ ସେ ଶାସ୍ତି ଦେବ ବିଶବା ତନୟ
ପବନ ଦେବତା ମୁଁ ଯେ ସୀତାର ପାଶେ ଅଛୁ
ବିଧାତା ଜଣାଇଲା ମୋତେ ଦଶରଥବଂଶି
ବୋଇଲେ ଜାନକୀ ଯାହା କରିବ ତୋହର
ଅତି ବ୍ୟଗ୍ରେ ଯେ କଥା କରିବୁ ସତ୍ୱର ।
ସେସକାଳେ ମାୟା ରୂପେ ତୋରଠାକୁ ଆସି
ଶ୍ରୀରାମ ବୋଇଲେ ନିଜରୂପ ତୋ ଦେଖାସି ।
ଶୁଣି ଶାର୍ଦ୍ଦୂଳ ରୂପ ତେଜ୍ୟା କଲା ପୁଣ
ଦେବତା ସ୍ୱରୂପ ସେ ଧଇଲା ତତକ୍ଷଣ ।
ଦେଖିଣ ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଜାନକୀ ମୋହର ଜୀବନରେ ଅଛି ବୋଇଲେ
ଅନ୍ତର୍ଦ୍ଧାନ ହୋଇଣ ପବନ ବେଗେ ଗଲା
ସୀତାର ପାଶରେ ଯାଇ ପ୍ରବେଶ ହୋଇଲା
ପବନର ପଛେ ଯେ ତ୍ରିଜଟା ବୋଇଲା
ଅସୁରୁଣୀଏ ଡାକିଣ ବଚନ କହିଲା ।
ପିତାକୁ କହିବୁ ମୋର ତୁମ୍ଭ ବେଗେ ଯାଇ
ବୋଲିବୁ ମାୟାରେ ସୀତା ମାରେ ଦୈତ୍ୟସାଇଁ
ଶୁଣିଣ ଅସୁରୀ ଯେ ବେଗେ ଚଳିଗଲା
ଲଙ୍କାଗଡ଼ ବାହାରନ୍ତେ କପିରୂପ ହେଲା

ବିଭୀଷଣ ପାଶରେ ପ୍ରବେଶ ହେଲାଆସି
ବୋଇଲାସୀତା ତ୍ରିଜଟା ମୋତେ ଚହନ୍ତି ପେଷି
ଯହୁଁ ସେ ଲଙ୍କାରେ ଖବର ସୀତା ମଲା
ପବନ ଦୂତ ହୋଇ ସୀତାର ଅଇଲା ।
ମୋତେବୋଇଲେକୁଯେପଗରେବେଗେଯାଅ
ପିତାର ଆଗରେ ବାରତା ଯାଇ କହ ।
ଇନ୍ଦ୍ରଜିତ ମାୟା ସୀତା ହାଣି ପୁଣଗଲା
ତେଣୁ ହନୁମନ୍ତ ବାରତା କହିଲା ।
ବିକଳ ହୋଇଲେ ଯେ ଲଙ୍କା ନରନାରୀ
ସୀତା ସଙ୍ଗରେ ଯୁଝିଲେ ଅନେକ ଅସୁରୀ ।
ହସିଣ ଗଡ଼ାଗଡ଼ି ହୋଇଣ ଖେଳିଲେ
ଯୁଝି ନପାରି ଗୋ ଏମନ୍ତ ବୁଦ୍ଧି କଲେ ।
ସୀତସ୍ନା ତ୍ରିଜଟା ଗୋ ଭାବିଲେ ଦୁଇଜଣ
କେମନ୍ତେ ବାରତା ପାଇବେ ଶ୍ରୀରାମଲକ୍ଷ୍ମଣ
ନ ପୁଣ ପ୍ରାଣନାଥ ପ୍ରାଣଘାତକ ହୋଇ
ମାୟାର କଥାକୁ ଯେ ସତେ ସ୍ଥଳେ ଯାଇ ।
ଏତେ ଭାଳିଣ ଯେ ପବନକୁ ଦେଲେ କହି
ପବନ ପଛରେ ମୋତେଦେଲେକପଠିଆଇ
ପବନ କଥାହାବେ ସତେ ସେ ନଯିବେ
ମୋତେ ପ୍ରତେ ଯିବାରୁ ପଠିଆଇଲେସବେ
ପୁଣ ଆଉ କଥାଏ କହିଲେ ତ୍ରିଜଟା
ବୋଇଲେ ପିତାକୁ ମୋର କହିବୁ ଯେଏକ
ନିକୁମ୍ଭିଳା ବଟତଳେ ସେହୁ ହୋମ ପୁଣ
ତହିଁରୁ ବାହାରିବ ଦେବଦଳନ ବିମାନ ।
ତହିଁରେ ବସିଲେ କେହି ନ ପାରିବେ ଜିଣି
ସେଥିନ ଉପାୟ ତୁମ୍ଭେ କରିବ ଯେ ପୁଣି ।
ମାୟା ସୀତାକୁ ଯେ ମାଇଲା ଇନ୍ଦ୍ରଜିତ
ମୋର ତାତ ଅଗ୍ରତେ କହିବୁ ତୁରିତ ।
ଏତେବୋଲି ଅସୁରୀ ବିଭୀଷଣକୁ ଯେ କହି
ଧାଇଁକାରେ ସେଠାରୁ ବାହୁଡ଼ିଲା ସେହି ।
ନିଜ ରୂପ ଧରିଣ ଅଇଲା ବେଗକରି
ଅଶୋକ ବନରେ ପ୍ରବେଶ ସେ ଅସୁରୀ ।
ସୀତସ୍ନା ତ୍ରିଜଟା କହିଲା କାମିନୀ
ଶୁଣିଣ ସୀତା ହରଷ ଆଦର ରକ୍ଷାସୁଣୀ ।
ପବନ ଦେବତା ସୀତାର ପାଶେ କହି ।
ମୁଦ ଦେଇ ଶ୍ରୀରାମଙ୍କୁଯେ କହିଲା ବୁଝାଇ ।

ଶୁଣିକରି ଜାନକୀ ସନ୍ତୋଷ ହୋଇଲେ ।
ଶ୍ରୀମୁଖ ପ୍ରକାଶଇ ଚନ୍ଦ୍ରମା ପ୍ରାୟେ ଭଲେ ।
ଯହୁଁ ବିଭୀଷଣ ମାୟା ବାରତା ଜାଣିଲା
ଆନନ୍ଦ ମନ ହୋଇ ଶ୍ରୀମୁଖରେ ଜଣାଇଲା ।
କରଯୋଡ଼ି ଜଣାଏ ଶୁଣହେ ରଘୁପତି
ଗୁଡ଼ଗୁଡ଼ ମୃତ୍ୟୁପିଣ୍ଡ ନୁହେ ତୁମ୍ଭ ସତୀ ।
ପବନ କହିବାର ନୁହେ ପୁଣି ମାୟା
ମୋର ଦୁହିତାର ଦାସୀ କହିଗଲା ତାହା ।
ଦୈତ୍ୟଙ୍କ ଚରିତ ତୁମ୍ଭେ ନ ଜାଣ ରଘୁମଣି
ମାୟାରେ ସୀତୟା କରି ପକାଇଲା ହାଣି ।
ଘୋର ଯୁଦ୍ଧ ଦେଖିଣ ତରକ ପୂଣ କଲା
କେମନ୍ତେ ଆନେ ଚଉଦ ବ୍ରହ୍ମାଣ୍ଡ ଜିଣିଲା ।
କୁପାଞ୍ଚ କୁବୁଦ୍ଧି ମନ୍ତ୍ର ଜାଣଇ ବହୁତ
ସୀତାଙ୍କୁ ମାରିବାକୁ କି ଗର୍ଜନ ଦଇତ ।
ଅଗ୍ନିର ତେଜ ଉଗ୍ରନ ତୁମ୍ଭ ନାସ
ଦେବ ଦାନବ ଯାହାକୁ ଛୁଇଁତ ନପାରି ।
ମାୟାର କଥା ଏହୁ ଜାଣଇ ଗୋସାଇଁ
ଶୋକ ସମ୍ଭାଳ ବୋଲନ୍ତି ରଘୁକୁଳ ସାଇଁ ।
କହେ ବିଭୀଷଣ ଏକଥା କହ ସତ୍ୟ
ଏବେ ହୋଇଥିବ ଜନକ ଦୋହିତ ।
କମ୍ପାଇ ରାବଣ ସଙ୍ଗେ ସମର କରିବା
ଋକ୍ଷକପି ଲେକ୍ଷ୍ଏ କମ୍ପାଇ ମରାଇବା ।
ବାହୁଡ଼ି ଯିବା ଭୁଲ ତଥ୍ୟ ବୁଝିକରି
ବିଭୀଷଣ ବୋଲଇ ଶୁଣହେ ରାବଣାରି ।
ପବନ ଦେବତା କହିବା କଥା ସତ
ସୀତା ଘର ପେଷିବାର ନୁହଇ ଯେ ମିଛ ।
ଅବଧାନ ହେଉ ଏବେ ଦେବ ରଘୁନାଥ
ମାୟା ଝଟକରେ ଭଣ୍ଡିଗଲା ସେ ଦଇତ ।
ଜଗିବା ଅସୁରୀ ଆସି କହିଗଲା ମୋତେ
ଶୁଣିଣ ଶ୍ରୀରାମ ପ୍ରତେ ନକଲେ କଦାଚିତେ ।
ମାରୁତିକ ହକାରି ଶ୍ରୀରାମ ବୋଲନ୍ତି
ଅଶୋକ ବନକୁ ଯାଇ ବୁଝିସି ତତ୍ତ୍ୱ ।।
ଶୁଣିକରି ହନୁମନ୍ତ ବେଗେ ଚଳିଗଲା
ଅଶୋକ ବନରେ ଯାଇ ପ୍ରବେଶ ହୋଇଲା
ଦେଖେ ରାମରାଣୀ ବସିଛନ୍ତି ମଣ୍ଡପରେ
ଅସୁରୀଏ ବେଢ଼ିଛନ୍ତି ଘର ପାରୁଶରେ ।

ଦେଖିକରି ସୀତାଯେ ମନେ ମନେ ହସେ
ତ୍ରିଜଟାକୁ ସୀତଯ ବୋଲେ ହନୁ ଆସେ ।
ଦୂତଙ୍କଠାରୁ ସଙ୍କେତ ନେଲେ ରୂପଧାରୀ
ହନୁ ଦେଖିଗଲେ ସତ କରିବେ ରାବଣାରି ।
ତ୍ରିଜଟା ବୋଇଲେ ଶୁଣ ପବନର ସୁତ
ଅଶୋକ ବନକୁ କମ୍ପା ଅଇଲ ତୁରିତ ।
ସୀତାଙ୍କୁ ଇନ୍ଦ୍ରଜିତ ହାଣି ପକାଇଲା
ସୀତା ଏହିଠାରୁ ଅନ୍ତର ହୋଇଗଲା ।
ଯେ ଯାହାର ପୁରକୁ ଯାଅ ତୁମ୍ଭେ ଏବେ
ଯୁଦ୍ଧକରି ନପାରିବ ଦୈତ୍ୟଙ୍କର ସଙ୍ଗେ ।
ଶୁଣିକରି ମାରୁତି ଓଲଟ ବେଗେ ହୋଇ
ଲେଉଟିଣ ମାରୁତି ଆସେ ଉଣଭୁଇଁ ।
ଦାଶରଥିଙ୍କ ପାଶରେ ହେଲା ପରବେଶ
ବୋଲଇ ରଘୁନାଥହେ ଦୂତଙ୍କ କଥା ସତ ।
ତ୍ରିଜଟା ଜାନକୀର କରୁଣଛନ୍ତି ହାସ୍ୟ ।
ମୋତେ ଦେଖିଲାକୁ ସେ କଲେ ଉପହାସ ।
ବୋଲଇ ଇନ୍ଦ୍ରଜିତ ମାୟା ସୀତା ମାରି
ନିକୁମ୍ଭିଲ ବଟତଳେ ହୋମ ଯାଇ କରି ।
ଦେବଦଳନ ରଥ ସେଥିରୁ ବାହାରିବ
ସୁରନର ହେଲେ ଯେ ଜିଣି ନ ପାରିବ ।
ରଥ ନ ବାହାରୁ ମାରରେ ବେଢ଼ିକରି
ମୋତେ ଛୁଇଁବାକୁରେ ନାହାନ୍ତି ତନପୁରୀ ।
ବିନେକ ରାବଣ ଯେ ଏଠାକୁ ଆସିଥିଲା
କୁକାର ଭାଷା ମୋତେ ବହୁତ କହିଲା ।
ଅଗ୍ନିରେ ପଶନ୍ତେ ମୁଁ ଯେ ବାହୁଡ଼ି ସେହୁଗଲା
ସେହିଦିନ ରାବଣ କଣ୍ଡକଣ୍ଡ ଗଲା ।
ଏ ବଚନ ଶୁଣିଣ ମୁଁ ଫେରିଣ ଅଇଲି
ଶୁଣିଣ ଶ୍ରୀରାମ ଯେ ମନରେ ପୁଣି ଗ୍ଲାନି ।
ମାୟା ସୀତା ମୃତ୍ୟୁ ପିଣ୍ଡ ଚହ୍ନିବା ବୋଲନ୍ତି
ଭଲରେ ଅସୁର ଘା ଗଢ଼ିଲୁ ଏକ ଧାତ ।
ଦୁଇ ଯଉବନ ସୁବର୍ଣ୍ଣ କୁମ୍ଭ ଜାଣି
ଅମୃତ ପୁରାଇ କି ମର୍କତ ଢ଼ାଙ୍କୁଣି ।
ପୂର୍ବର କଥାମାନ ସୁମରି ପରଶଂସି
ବୋଲନ୍ତି ଏହା ମୁଁ ଯେ ନପାରିଲି ବିଧ୍ୱଂସି ।
ଏତେକପଦାର୍ଥ ମୋତେ ନୋହିଲାକ ଭୋଗ
ଏସନେକ ପୂର୍ବେ ଯେ ଅଛଇ କର୍ମଯୋଗ ।

ସର୍ବ ସୁଲକ୍ଷଣୀ ଯେ ଅବଗୁଣ ନାହିଁ
ଶିରଚ୍ଛେଦନ ଦୋଷ ପାଇଲା କାହିଁପାଇଁ ।
ପୂର୍ବେ ଚିତ୍ରକୂଟେ ଥିଲୁ ଯେବଣ କାଳେ
କାକପକ୍ଷୀ ଧଇଲା ଯେ କ୍ଷୁଧାର ବଳଲେ ।
ସୀତା ଯେ କସ୍ତୁରୀ ମାଂଏସ ବାଛୁଥିଲା
କାକର ଅଣ୍ଟେ ଯେ ସ୍ତନରେ ବାଜିଲା ।
ଅବଗୁଣ ହୋଇ ଏତକ ମାତ୍ର ଅଛୁ
ଅନ୍ୟ ଖୁଣିବାକୁ ନାହିଁ ସେ ଦେହେ କଛୁ ।
ଆବର ଅଧର କାମୋଡ଼ି ଅଛୁ ଅଣ୍ଟ ଘେନ
ନରେକ୍ଷି ଦେଲେ ଶ୍ରୀରାମ ଯୌବନ ବାତପୂର୍ଣ୍ଣି
ବିଭୀଷଣଙ୍କୁ ବୋଇଲେ ସଙ୍କେତ ମାନ ନାହିଁ
ମୃତ୍ୟୁପିଣ୍ଡ ଗୁଡ଼ିଲେ ଯେ ଶ୍ରୀରାମ ଗୋସାଇଁ ।
ଉଠପାଇ ଦେଖିଲେ କାଟିବାର ମୁଣ୍ଡ ଗୋଟି
ଝର ଝର ବହଇ ରକ୍ତ ବେକ ତଣ୍ଟି ।
ଅଧର ନରେଖିଣ ବୁଝାନ୍ତି ସୀତାସାଇଁ
କାକପକ୍ଷିର ଅଣ୍ଟ ଘାତ ବାଜ ନାହିଁ ।
ନୁହଇ ସୀତାୟେ ଯେ ବୋଲନ୍ତି ରାମଚନ୍ଦ୍ର
ସଜ୍ଜନ ନାହିଁ ବୋଲି ମନରେ ହେଲେ ଦନ୍ଦ
ଶୁଣିଣ ଆନନ୍ଦ ହୋଇଲେ କପିବଳ
ସୁଗ୍ରୀବର ବିଭୀଷଣ ଅଙ୍ଗଦ ନଳ ନୀଳ ।
ହନୁମନ୍ତ ଜାମ୍ବୁବ ସଭିଏ ସେନାପତି
ଶୁଣିଣ ତାରକ୍ଷ ଯେ ସଭିଏ ପ୍ରଭୃତି ।
ଦଧିମୁଖ କାଳମୁଖ କଞ୍ଚଣ ସାରସ
କୁମୁଦ କାଳଞ୍ଜକ ପବନ ପାରସ ।
କୁନ୍ଦନ ସେ ଯେ ଦୁର୍ବାନ୍ଧ ଚନ୍ଦନ
ଗବୟ ଗବାକ୍ଷ ସେ ଗନ୍ଧମାରଦନ ।
ତାଳମ୍ବ ବସନ୍ତ ଯେବଣ ପନଶିଳ
ସିତବାନ କାଳମୁଖ ସାରସ ଶତବଳ ।
ଆନନ୍ଦ ହୋଇଲେ ରାମଙ୍କର ବାଣୀ ଶୁଣି
ସେ ସତ୍ୟ ବୋଇଲୁ ପୁଣି ଜନକ ଦୁଲଣୀ ।
ବିଭୀଷଣ ବୋଇଲା ଶୁଣ ହେ ରଘୁନାଥ
ମୁଁ ଯାହା କହିଲି ସେ ଯେ ଅଟଇ ଯଥାର୍ଥ ।
ମେଘନାଦ ବଳେ ତାହାକୁ ହୋଏ ମାରି
ସାକ୍ଷାତ ସାଧବୀ ସେ ଯେ ଜନକ କୁମାରୀ ।
ଶ୍ରୀରାମ ହୋଇଲେ ମୋହର ନାରୀ ପରି
କଲ୍ପରୂପେ ଦୈତ୍ୟ ଯେ କାଟିଲା ସତ୍ତ୍ୱକରି ।

ହଦିଲି ବିଧାତା କି ଇନ୍ଦ୍ରଜିତ ହେଲା
ଅବଶ୍ୟାସି ଦୈତ୍ୟ ଏ ଯେ ମାଇଲେ ବୋଇଲା
ମୁଁ ଯେ ମାଗି ପଠିଆଇ ଜାନକୀ ଦିଏ ବୋଲି
ଏହିରୂପେ ମାୟାକରି ବଅନ୍ତା ପାନ୍ତ ଫେରି
ହନୁମନ୍ତ ବୋଇଲା ଶୁଣିମା ଦେବରାମ
ସୀତାୟେ ଦେଖିବାକୁ ଗଲି ଯେ ମୁହିଁ ପୁଣ ।
ସୀତାୟେ ବୋଲେ ହନୁ ସବୁ ଅଟେ ମାୟା
ପ୍ରଥମ ଯୁଦ୍ଧବେଳେ ମୋତେ ରାବଣ କଲାଏହା
ଶ୍ରୀରାମ ଲକ୍ଷ୍ମଣକାଣ୍ଡ ମୋତେ ସେ ଦେଖାଇଲା
ଅନେକ ଶୋକ ଯେ ମୋଠାରୁ ଜାତହେଲା
ବୋଇନ୍ତି ରାମ ଲକ୍ଷ୍ମଣ ପକାଇଲି ମାରି
ଦୁହିଁଙ୍କ ମୁଣ୍ଡ ଆଣିଲି ତୁ ଦେଖୁ ସୁନ୍ଦରୀ ।
ଏମନ୍ତ ସମୟରେ ଶ୍ରୀରାମ ଦୂତ ମିଳି
ଦୂତକୁ ଦେଖି ରାବଣ ପଳାଇଲା ଡରି ।
ଏବେ ସ୍ୱାମୀକ ମୋର ମୋ ରୂପ ଦେଖାଇଲା
ଆମ୍ଭ ଦୁଇଜଣଙ୍କୁ ଶୋକ ଯେ କରାଇଲା ।
ଶୁଣିଣ ଶ୍ରୀରାମ ଯେ ଶୋକରେ ହାତ ମାରି
ନଷ୍ଟପ୍ରାୟେ ରାବଣରେ ମରିବୁ ବଂଶ ମାରି ।
ବିଭୀଷଣ ବୋଇଲା ଶୁଣ ହେ ନୃପଧାରୀ
ରୂଳ ସୁବଳୟା ଯିବା ଯେ ବେଗକରି ।
ବେଳ ଅସ୍ତ ହେଲା ଏ ସ୍ଥାନେ କମା ଥିବା
ପର୍ବତକୁ ଗଲେ ନିତ୍ୟ କର୍ମ ଯେ ସାରିବା ।
ଏ ମୃତ୍ୟୁ ପିଣ୍ଡ ଯେ ପଡ଼ିଥାଉ ଏଥି
ବିଭୀଷଣ ଠାରୁ ଶୁଣି ବୋଲନ୍ତି ରଘୁନାଥ ।
ଜାନକୀ ରୂପ ଏ ହୋଇଲା ସମକୁଳ
ଏହାକୁ ନେଇ କରି ସାଗର ମଧ୍ୟେ ମେଲ ।
ଏ କମା ଅକାରଣେ ପଡ଼ିଥିବ ଏଥି
ଏତେ ବୋଲି ବାହୁଡ଼ା ବିଜୟେ ରଘୁନାଥ ।
ମାୟାସୀତା ନେଲେ ଯେ ଅଙ୍ଗଦ ହନୁମନ୍ତ
ସମୁଦ୍ର କୂଳରେ ପକାଇବା ନମିତ୍ତ ।
ସ୍ୱର୍ଗରେ ଦେବତାଏ କଲେକ ବିଚାର
ମାୟା ସୀତା ଗଲେ କଥା ହେବ ସାର ।
ଏମନ୍ତ ବିଚାର ଶୁକମନ୍ତ୍ରୀକି ଭେଟିଲେ
ଗଣ୍ଡିମୁଣ୍ଡ ଯୋଡ଼ିଣ ଜାଆଅ ବୋଇଲେ ।
ଶୁଣିକରି ଶୁକ ଯେ ବେଗେ ଚଳିଗଲେ
ଅଙ୍ଗଦ ହନୁମନ୍ତ ପାଶରେ ମିଳିଲେ ।

ବୋଇଲେ ଗଣ୍ଡି ମୁଣ୍ଡ ଥୁଅରେ ବେଗେଟେକି
ଅଙ୍ଗଦ ନେଲେଟି ତୁ ଯାଅ ରଜାଆଗେ ।
ହନୁମନ୍ତ ଏହାଙ୍କୁ ଏଠାରୁ ନେଇଯିବ
ସନ୍ଧ୍ୟା କଟକରେ ତକ୍ଷଣ ଅଇବ ।
ଅଙ୍ଗଦ କୁମାରଙ୍କୁ ବୋଇଲେ ଦେବସୁତ
ତାହାର ଆଗରେ ତୁ ନ କହିବୁ ସୂତ ।
ଏଠାରେ ଦେବକାର୍ଯ୍ୟ ଅଛଇଁ ବହୁତ
ଶୁଣିକରି ଅଙ୍ଗଦ ସେ ଚଳିଲା ତ୍ୱରିତ ।
ଗଣ୍ଡି ମୁଣ୍ଡ ଯୋଡ଼ିଣ ଦେଲା ହନୁମନ୍ତ
ମୃତ୍ୟୁ ସଞ୍ଜୀବନୀ ପଢ଼ିଲେ ସେ ଦେବ ସୁତ ।
ଶାବନ୍ୟାସ କରିଣ ଅମୃତ ଖୁଆଇଲେ
ଜାନକୀର ତୃଷ୍ଣା ସେ ଅଟଇ ହେତୁ ହେଲେ ।
ହନୁମନ୍ତକୁ ବୋଇଲେ ଏହାକୁ ତୁହି ନଅ
ଅଙ୍ଗଦ ଜାନକୀ ହାତଠାରେ ନେଇ ଦିଅ ।
ବୋଲିବୁ ଏହାଙ୍କୁ ତୁ ଯତନେ ଥୋଇଥିବୁ
ଶ୍ରୀରାମ ଅଇଲେ ସୀତାସଙ୍ଗେ ସମର୍ପିବୁ ।
ଶୁଣିଣ ହନୁମନ୍ତ କନ୍ଧେ ବସାଇଲା
ଆକାଶ ମାର୍ଗରେ ସେ ହନୁମନ୍ତ ଗଲା ।
ପ୍ରବେଶ ହୋଇଲା ସେ ସନ୍ଧ୍ୟା କଟକରେ
ହସ୍ତିକି କରିଣ ଚଳିଗଲା ସେ ତତରେ ।
ତାହାର ସମ୍ମୁଖେ ଯାଇ ମିଳିଗଲା ବେଗେ
କନ୍ଧରୁ ଓହ୍ଲାଇଲା ମାଆ ସୀତାଙ୍କୁ ବେଗେ
ବୋଇଲା ଜନନୀଗୋ ଏହାଙ୍କୁ ଥୋଇଥିବୁ
ଶ୍ରୀରାମ ଅଇଲେ ସୀତା ସଙ୍ଗରେ ସମର୍ପିବୁ ।
ଶୁଣିଣ ତାରାମଣି ମନରେ ତୋଷହେଲା
ଯୁଦ୍ଧର କଥା ବାବୁ କହରେ ମୋତେ ଭଲା
ହନୁ ବୋଇଲା ଯୁଦ୍ଧ ଅତି ବଳବନ୍ତ
ନବଦଳ ଆଜକୁ ହୋଇଲା ଯୁଦ୍ଧ.ମାତ ।
ଶୁଣିଣ ଅଙ୍ଗଦ ଜନନୀ ପୁଣ କହି
ଦକ୍ଷରକ୍ଷ କପି କେତେ ଯେ ମଲେ ତହିଁ ।
ହନୁମନ୍ତ ବୋଇଲା ଅନେକ ସୈନ୍ୟମଲେ
ଲଙ୍କାଗଡ଼ରେ ସୈନ୍ୟ କଳିତ ନୁହେଁ ହେଲେ
ଆମ୍ଭର ସୈନ୍ୟ ଯେ ମରନ୍ତି ନତି ଯାହା
ଶ୍ରୀରାମଙ୍କ ପ୍ରସାଦରେ ଜିଅନ୍ତି ସର୍ବେ ତାହା ।
ଏତେକହି ହନୁମନ୍ତ ବେଗେ ଚଳିଆସେ
ଦୁଇଘଡ଼ି ମଧ୍ୟରେ ଶ୍ରୀରାମ ପାଶେ ମିଶେ ।
ସୁବଳଗିରିରେ ରାମ ପ୍ରବେଶ ହୋଇଲେ
ଦେବନଦୀରେ ପଶିଣ ସ୍ନାନ ବେଗେ କଲେ
ସମସ୍ତ ସୈନ୍ୟ ସ୍ନାନକରି ରୁଧିର ଛଡ଼ାଇଲେ
ରାଜପୁତ୍ରମାନେ ଯେ ସନ୍ଧ୍ୟା ସୁମରିଲେ ।
ନିଜ ନିଜରେ ଶ୍ରୀରାମ ହୋଇଲେ ପ୍ରବେଶ
ଫଳ ମନୋହର ସାରିଣ ଦଶରଥ ସୁତ ।
ଆଚମନ ସାରିଣ ଭୁଞ୍ଜିଲେ କଷାଫଳ
ନିଦ୍ରାରେ ଆଶକତ ଯେ ଦଶରଥ ବାଳ ।
ମୀଳ ଆଗୁଆଣି ଜଗିବାକୁ ଗଲେ ଠଣା
ବିଭୀଷଣ ବୁଲଇ ବଜାଇ ବାଜଣା ।
ସୁଗ୍ରୀବର ଜମ୍ବୁକ ଅଙ୍ଗଦ ହନୁମନ୍ତ
ଆଠ ପଟ୍ଟ କରି ଜଗିଛନ୍ତି ସୀତାକାନ୍ତ ।
ଲକ୍ଷ୍ମଣ ଧନୁ ଧରି ଜଗଇ ପାହାରି
ନିଦ୍ରାରେ ଅଚେତନ ଅଯୋଧ୍ୟା ଦଣ୍ଡଧାରୀ ।
କୃଷ୍ଣାଜିନ ଶଯ୍ୟାରେ ଅମଳାଣ ଶେଯ
ତହିଁରେ ଶୋଇଲେ ଦଶରଥ ତନୁଜ ।
ନିଦ୍ରାରେ ରଘୁନାଥ ଦେଖିଲେ ସ୍ୱପନ
ଶ୍ୱେତଗଜ ଆରୋହୀ ଅଛନ୍ତି ରଘୁନାଥ ।
ଶିରରେ ଶ୍ୱେତ ଛତ୍ର ଝଟେ ଫରଫର
ଶ୍ୱେତ ପୁଷ୍ପମାଳ ଲମ୍ବଇ ହୃଦପୁର ।
ଶ୍ୱେତବସ୍ତ୍ର ପରିହରଣ ସର୍ବାଙ୍ଗେ ଚନ୍ଦନ
ସୁବର୍ଣ୍ଣ ଥାଳରେ ଅନ୍ନ କରନ୍ତି ଭୋଜନ ।
ଶ୍ୱେତ ପର୍ବତ ଉପରେ ଶ୍ରୀରାମ ଛନ୍ତି ଉଠି
ଶ୍ୱେତମେଘ କରଇ ଶୀତଳ ଜଳବୃଷ୍ଟି ।
ଶୀତଳ ପବନ ମାରୁତ ଦେବ ବହେ
ସମସ୍ତ ସୈନ୍ୟମାନ ଶ୍ୱେତବର୍ଣ୍ଣ ହୁଏ ।
ସୁବର୍ଣ୍ଣମୟ ଦେଖା ସେ ନବସୃଷ୍ଟି
ଶ୍ୱେତ ଚାମର ଯେ ପଡ଼ଇ ଗୋଟି ଗୋଟି ।
ଶିରରେ ବାନ୍ଧିଛନ୍ତି ଶୁକ୍ଳ ଝୀନବାସ
ମୁକୁତା ଜାଲବାସ ହୋଇଛି ଚଉପାଶ ।
କସ୍ତୁରୀ ଲେପନ ଯେ କରନ୍ତି ସେନାମାନେ
ଶ୍ୱେତ ରତ୍ନମାନ ଯେ ଶିରରେ ଶୋଭିବନେ
ସ୍ୱର୍ଗର ବିଦ୍ୟାଧରୀ ଗାନ୍ଧାର ସଙ୍ଗେ ଗୀତଗାନ୍ତି
ସୀତାଙ୍କୁ କୋଳେଧରିଣ ଅଭିଷେକ ହୋନ୍ତି
ଶ୍ୱେତ ଅଶ୍ୱମାନ ଆଗରେ ଛନ୍ତି ଘେନ
ଡ଼ାହାଣବର୍ତ୍ତିକ ଶଙ୍ଖ ଆଗରେ ଶୁଭେ ଧ୍ୱନ

ସୈନ୍ୟ ସଂହା ସଙ୍ଗରେ ସାଏକ ବାଦ୍ୟକାର
ସାମବେଦ ଅଧ୍ୟୟନ କରନ୍ତି ଦ୍ୱିଜବର ।
କର୍ପୂର ଗୁଣ୍ଡି ସେ ସିଞ୍ଚନ୍ତି ସୈନ୍ୟମାନେ
ଶ୍ୱେତ ଲହୁ ଭୂଷଣ ଶରୀର ଶୋଭବନେ ।
ଏସନେକ ସ୍ୱପନ ଦେଖିଲେ ସୀତାପତି
ନିଦ୍ରା ଗୁଡ଼ି ସେ ସେ ଉଠିଲେ ତଭତ ।
ଲକ୍ଷ୍ମଣଙ୍କୁ କହିଲେ ସେ ସ୍ୱପନର ବୃତ୍ତାନ୍ତ
ସଉମିତ୍ରୀ ବୋଇଲେ ତୁମ୍ଭେ ଶୁଣିବା ରଘୁନାଥ
ତ୍ରୈଲୋକ୍ୟରେ ଈଶ୍ୱର ହୋଇବ ତୁମ୍ଭେ ଏକ
ଅଳପ ଦିନରେ ଆମ୍ଭେ ଜିଣିବାତ ଲଙ୍କା ।
ଆଜର ସଂଗ୍ରାମେ ଆମ୍ଭେ ପାଇବା ପୁ ଯଶ
ଇନ୍ଦ୍ରଜିତ ରାବଣ ହେବ ନିଶ୍ଚେ ଧ୍ୱଂସ ।
ଏତିକ୍ଷଣି ସ୍ୱପନ ଦେଖିଲି ହାଦେ ଯାହା
ଶୁଣିମା ସାବଧାନେ କହଇ ମୁଁ ତାହା ।
ରାବଣର ତନୟେ ସେ ମହିଷି ବାହନ
ଗଳାରେ ରଙ୍ଗ ପୁଷ୍ପ ମାଳେକ ଆଭରଣ ।
ରଙ୍ଗବସ୍ତ୍ର ପରିହରଣ ତଇଲେ ଜର୍ଜର
ପଶ୍ଚିମ ଦିଗକୁ ସେ ଗମନ ତାହାର ।
ଏସନେକ ସ୍ୱପ୍ନ ମୁଁ ଦେଖିଲି ଗୋସାଇଁ
ନୟନକୁ ମୋହର ନିଦ୍ରା ଟେଡ଼େ ନାହିଁ ।
ଅଳପ ନିଦ୍ରା ସେ ଆସୋଶେ ମୋତେ ନିକ
ଭେଣ୍ଟୁକରି ସ୍ୱପନ ମୁଁ ଦେଖିଲି ଏତିକ ।
ହିସ୍ରଇ ମନରେ ମରିବ ଇନ୍ଦ୍ରଜିତ
ଶୁଣିଣ ସନ୍ତୋଷ ସେ ହୋଇଲେ ରଘୁନାଥ ।
ଏଥୁଅନନ୍ତରେ ଶୁଣ ଗୋ ଗଉରୀ
ବେଳ ଅସ୍ତ ହେବାରୁ ଆଇଲେ ସୁବଳଗିରି ।
ଅନେକସୈନ୍ୟ ସେ ଲଙ୍କାଗଡ଼ଭିତରେମଲେ
ବାହାର ରଣ ଭୂମିରେ ଅନେକ କ୍ଷୟ ଗଲେ
ସବୁକରି ରୁକ୍ଷକପି ମଲେ ଯାହା ପୁଣ
ଲେଖାରେ ସେଠୁଳ ହେଲେ ଅଠରପଦ୍ମଜାଣ
ଦୈତ୍ୟବଳ ମଲେ ଷାଠିଏ କୋଟି ତାର
ରକ୍ତ ନଦୀଏ ସେ ବହିଲା ଛିନଧାର ।
ପ୍ରହରେକ ନିଶି ସେ ହୋଇଲା ଯହୁଁ ପୁଣ
ଯୋଗିନ୍ନି ପିଶାଚୀଗଣଭେନଦୁର୍ଗାବାହାରତକ୍ଷଣ
ରଣଭୂମିରେ ପଶିଲା ଯାଇଣ ବାସେନ
ମଲା ଦୈତ୍ୟମାନଙ୍କୁ ସେ ଦେଉଛନ୍ତି ଗିଳି ।

ବାଛୁଣ ସେ ଦୈତ୍ୟବଳ କଲେକ ଭୋଜନ
ଗଣ୍ଡି ମୁଣ୍ଡ ଲଗାଇଲେ ରୁକ୍ଷକପିଗଣ ।
ତଳ ହୋଇଯିବା କପିଙ୍କି ସଳଖିକର ରଖେ
ସେଠାରୁ ଲଙ୍କାଗଡ଼ ଭିତରେ ପଶେ ସୁଖେ ।
ଦୈତ୍ୟବଳ ବାଛୁଣ ନିଶ୍ଚିନ୍ତେ ରଖିଲେ
ରୁକ୍ଷକପିମାନଙ୍କୁ ସକଖେ ରଖିଲେ ।
ତଳା ଛୁଣ୍ଡା କଟା ସେ ଯୋଡ଼ିଲେ ତତକ୍ଷଣ
ରକ୍ତ ଶୋଷିଣ ମାଂସ କଲେକ ଭୋଜନ ।
ସେଠାରୁ ଦେବୀଗଣ ବହନ ହୋଇ ଆଇଲେ
ସୁବେଳଗିରିରେ ପୁଣ ପ୍ରବେଶ ହୋଇଲେ ।
ଏଥୁଅନନ୍ତରେ ସେ ଶୁକ୍ରଦେବ ପୁ
ଅମୃତ ସିଞ୍ଚିଲେ ନେଇ ରଣଭୂମିରେଣ ।
ରଣଭୂମିରେ କପି ଛପନ୍ନ ମରିଥିଲେ
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରପାଇଁ ଜୀଇଣ ଉଠିଲେ ।
ଅମୃତ ପଡ଼ିବାରେ ହୋଇଲେ ବଳବାନ
କିଳିକିଳା ରାବ ଦେଇ ଚଳନ୍ତି ବେଗେଣ ।
ସୁବଳସ୍ଥା ଗିରିରେ ପ୍ରବେଶ ହୋଇଲେ
ସକଳ କପିଙ୍କର ନିଦ୍ରା ସେ ଦେଖିଲେ ।
ନଦୀରେ ପଶିଣ ସ୍ନାନ କଲେକ ବେଗେ
ଫଳ ମୂଳ ଆହାରେ ଭୁଞ୍ଜିଲେ ସେହିଲଗେ
ସେଠାରୁ ଶୁକ୍ରମନ୍ତ୍ରୀ ଲଙ୍କାଗଡ଼ ପଶେ
ମୃତ୍ୟୁ ସଞ୍ଜିବନୀ ପାଣି ସିଞ୍ଚିଲେ ହରଷେ ।
ଜୀବନ୍ୟାସ ମନ୍ତ୍ର ପଢ଼ି ସିଞ୍ଚିଲେ ଯହୁଁ ପାଣି
ଚେତାପାଇ ରୁକ୍ଷକପି ଉଠିଲେ ସେହିକ୍ଷଣି ।
ସେଠାରୁ ଶୁକ୍ରଦେବ ଅମୃତ ବରଷିଲେ
ତତକ୍ଷଣ କପିଗଣ ବଳବାନ ହେଲେ ।
ହାରପଦ୍ମ କପି ସେ ସମଦଣ୍ଡ ଘେନ
ଦକ୍ଷିଣ ଦ୍ୱାରେ ପ୍ରବେଶ ହୋଇଲେ ସଇନ ।
ହାସ୍ୟକ ମାରିଣ ଦ୍ୱାରକୁ ଫେଡ଼ିଦେଲେ
ସେହିଦ୍ୱାର ବାଟରେ ବାହାର ହୋଇଗଲେ
ସୁବଳଗିରିରେ ହୋଇଲେ ପ୍ରବେଶ
ରୁଧିର ଜଡ଼ାଇ ସ୍ନାନ କଲେ ସେ ତୁରିତ ।
ଫଳ ମୂଳ ଭୁଞ୍ଜିଣ ସୁସ୍ଥକଲେ ଦେହ
ନିଦ୍ରା ଆଶକତରେ ଶୋଇଲେ ସବେ ସ୍ନେହ
ଶୁକ୍ରଦେବ ସେଠାରୁ ସ୍ୱର୍ଗପୁର ଗଲେ
ଏଥୁଅନନ୍ତରେ ଶୁଣ ଗୋ ଦେବୀ ଭଲେ ।

ନଦନ୍ଦନ ସମସ୍ତ ହୋଇଲେ ସମ୍ପୂର୍ଣ୍ଣ
ଦଶନ୍ଦନ ଯୁଦ୍ଧେ ରାମ ଦେଖିଲେ ସ୍ୱପନ ।
ଏମନ୍ତ ସମୟରେ ପ୍ରହର କ୍ଷୋଏ ରାତି
ସୁବନ୍ଦଗଣଙ୍କୁ ସେ ପୁଚ୍ଛିଲେ ରଘୁପତି ।
ନିତ୍ୟକର୍ମ ବିଧାନ ସାରିଲେ ବେଗକରି
ଦର୍ଶନ କଲେ ଆସି କିଷ୍କିନ୍ଧ୍ୟା ଦଣ୍ଡଧାରୀ ।
ଜାମ୍ବବ ହନୁମନ୍ତ ଅଙ୍ଗଦ ଆଇଲେ
ଅଷ୍ଟସେନା ଆସିଣ ଦର୍ଶନ ବେଗେ କଲେ ।
ପଞ୍ଚାଶ ଯୂଥପତି ମିଳିଲେ ତତ୍ତତ
ସଜଳସ ଗୁଣ୍ଡିରେ ଜଳଇ ଚହ୍ନି ବତୀ ।
ରାତ୍ର ପ୍ରହରେ ଥାଇଁ ସେ ହୋଇଲେ ଉଜାଗର
ବିଭୀଷଣଙ୍କୁ ପୁଚ୍ଛିଣ ବୋଲନ୍ତି ରଘୁବୀର ।
କହୋ ଲଙ୍କାପତି ଏବେ କହିବା ପୁଣ କସ
ଇନ୍ଦ୍ରଜିତ କୁମର କେମନ୍ତେ ଯିବ ନାଶ ।
ତାହାକୁ ଦେଖିଲେ ମୋର ପଳାନ୍ତି ସଇନ
ଯୂଥପତି ଯୁଝନ୍ତି ଶାଳଶିଳ ଘେନ ।
ସେନାପତି ଦେଖିଲେ ଆଡ଼ ହୋଇଯାନ୍ତି
ବୀର ଯୋଦ୍ଧାବୀରମାନେ କେହି ନ ରହନ୍ତି ।
ଲକ୍ଷ୍ମଣ ସଙ୍ଗେ ତା ନୁହଇ ସାମରଥ
ମୋତେ ବୁଝେମାନେତ ନ ହଅ ଯୁଝିତ ।
ତୁହି ଯେ ବିଭୀଷଣ ଏକାରେ ଯୁଦ୍ଧକରୁ
ଇନ୍ଦ୍ରଜିତ ବୀର କେମନ୍ତେ ଏବେ ମରୁ ।
ଧନ୍ୟ ଧନ୍ୟ ସ୍ତ୍ରୀ ତୁରେ ମେଘନାଦ
ବୀରଧୂ ବୋଲଇ ତୋର ଇନ୍ଦ୍ରଜିତ ପଦ ।
ଦେବଦାନବମାନବହାରିଗଲେତୋତେରଣେ
ସମସ୍ତ ଦେବତାଙ୍କର ସସ୍ୱ ତୋର ହୋଇଣେ
ହେଲ ଯୁଦ୍ଧରେ ତୁ ଚଉଦ ପୁର ଜିଣି
ଯମର ପାଞ୍ଜିରେ ତୁମ୍ଭ ଲେଖା ନୋହୁ ପୁଣି ।
ତୋତେ ନ ମାରିଲେ ଯଶ କରେନାହିଁମତେ
ବାହୁଡ଼ି ଯିବ ଭସ୍ମ କରି ଏକା ତୋତେ ।
ତ୍ରିଷକର୍ଣ୍ଣି ଲୋକ୍ୱେ ମରାଇବ କାହିଁପାଇଁ
ତୋହର ମଲେ ମୋତେ ଯଶ ଏଥି ହୋଇ
ଶ୍ରୀରାମଙ୍କ ବିମୁଖ ଦେଖି ବିଭୀଷଣ
କର ଯୋଡ଼ିଣ ବୋଲଇ ଶୁଣ ହେ ରାମାୟଣ
ତୋର ସୈନ୍ୟ ବଳତ ଗୋଟିଏ ମଞ୍ଜିନାହିଁ
ହବସେ ମଲେ ରାତ୍ରରେ ଆସୁଛନ୍ତି ଜୀଇ ।

ମାୟାବୀ ପୁରୁଷ ତୁ ବହୁତ ମାୟା ଜାଣୁ
କେବଳ ଲୋକ ଜାଣିବାକୁ ପୁଚ୍ଛୁଅଛୁ ତେଣୁ
ନହନ୍ଦନ ଯୁଦ୍ଧରେ ରାବଣର ପୁଣ
ଦାରକୋଟି ଅଶ୍ୱ ଗଜ ମଲେ ଜାଣ ।
ସେନାପତି ସାତକୋଟି ନୈକୋଟି ପଦାତି
ପୁଅ ମଲେ ଦଶ ଯେ ପୁରୁଷମଲେ ନାତି ।
ଏହାଙ୍କର ଚିହ୍ନମାନ ରଣଭୂମିରେ ନାହିଁ
ଏକା କୁମ୍ଭକର୍ଣ୍ଣ ରହିଣ ଅଛି ଶୋଇ ।
ଶୁଣିଣ ଶ୍ରୀରାମ ବୋଇଲେ ହବୁ ମିଛ
ମଲେ ଲୋକମାନେ ଜୀଇବାର କି ସତ ।
ବିଭୀଷଣ ବୋଲେ ଇନ୍ଦ୍ରଜିତ ତପ କଲା
ବାରବର୍ଷ ପର୍ଯ୍ୟନ୍ତ ଆହାର ଛାଡ଼ିଲା ।
ବାରବର୍ଷ ପର୍ଯ୍ୟନ୍ତେ ନ କଲା ମୈଥୁନ
ନିଦ୍ରାହିଁ ନାହିଁ ତାର ଏତେକାଳ ଦିନ ।
ଇନ୍ଦ୍ର ନଗ୍ରହଣେ ଅନେକ ତପ କଲା
ପ୍ରସନ୍ନ ହୋଇଣ ପିତାମହ ବର ଦେଲା ।
ଦେଇଣ ପଛେ ବିଧାତା ମନେ ବିସ୍ମରିଲା
ବୋଇଲା କୁମରରେ କଥା ଏ ଶୁଣ ଭଲା ।
ମନେ ରଖିଥିବୁ ବାବୁ ମୋହର ଉତ୍ତର
ମର୍ତ୍ତ୍ୟପୁରେ ଦେହବନ୍ତ ନୋହେ କେହୁ ଚିର
ବାର ବରଷରେ ନିଦ୍ରା ମୈଥୁନ ଆହାର
ତେଜ୍ୟା ଯେହୁ କରିଥିବ ମୃତ୍ୟୁ ତା ହସ୍ତର ।
ଏ କଥାକୁ କୁମରରେ ରଖିଥିବୁ ମନ
ଏତେକହି ପିତାମହ ଗଲେ ସ୍ୱର୍ଗସ୍ଥାନ ।
ତେଣୁ ସେ ଦୈତ୍ୟବୀର ଜିଣିଲା ଇନପୁର
ପ୍ରଥମରେ ଧରି ଆଣିଲା ବଜ୍ରଧର ।
ବ୍ରହ୍ମାର ବଚନ ପୁଣି କେ କରିବ ଆନ
ଏତେ ବଚନେ ନର୍ଦ୍ଦଇ ଇନ୍ଦ୍ରଜିତ ପୁଣ ।
ଯାହାର ହାତରେ ଦେବ ମଣଜ ଇନ୍ଦ୍ରଜିତ
ତାହାର ଆଗରେ ଦେବ କହିଲ ମୁଁ ସତ୍ୟ ।
ବଡ଼ାଇ ଦୁର୍ଲ୍ଲଭ କଥା ନ ମରେ ଦଇତ
ଶୁଣିକରି ବିଷାଦ ହୋଇଲେ ରଘୁନାଥ ।
ବିଭୀଷଣର ମୁଖ ପୁଚ୍ଛିଣ ବୋଲନ୍ତି
ଅସମ୍ଭବ କଥାତ କହିଲ ଲଙ୍କପତି ।
ନିଦ୍ରା ମୈଥୁନ ଯେ ଆହାର ତିନକଥା
ଏହା ପାଳିବାକୁ କେ ଅଛଇ ସାମରଥା ।

ଯେବଣ ବିଷ୍ଣୁ ଦେବତା ପୃଥିବୀକ ସର୍ଜିଲ
ସେହି ପୁଣି କାଳେ ଯେ ଲକ୍ଷ୍ମୀଙ୍କି ଭୋଗକଲ
ବ୍ରହ୍ମାର ଚହୁଁ ହାଦେ ଅଟଇ କେତେ ବଡ଼
ସଚଳାଚଳ ଯାର ଅଟଇ ଖେଳଘର ।
ବିଷ୍ଣୁର ନାଭିକମଳୁ ହୋଇଲ ସେ ଜାତ
କୀଟ ବ୍ରହ୍ମ ପର୍ଯ୍ୟନ୍ତେ ରଚିଲ ଜଗତ ।
ସେହି ପୁଣ କାଳେ ସ୍ତ୍ରୀରେ ବଶଗଲ
ଜଗତ ପିତା ହୋଇ ଛାଡ଼ି ନ ପାରିଲ ।
ଈଶ୍ୱର ଦେବତା ଅଟଇ ମହାତ୍ମା
ଯୋଗବଳରେ ସେହୁ ବିଷ୍ଣୁଙ୍କୁ ଅଛି ଘେନ ।
ଏତେଡ଼େ ଯୋଗାରୁଢ଼ ପୁରୁଷ ସ୍ତ୍ରୀ ବଶ ଗଲ
ପାର୍ବତୀ ରୂପ ଦେଖିଣ ମଦନେ ବଶହେଲ ।
ଇନ୍ଦ୍ର ଅଟଇ ଦେବତାଙ୍କ ଅଧିପତି
ତାହାକୁ ବଡ଼ କେହୁ ଅଛଇ ଏହୁ ପୃଥ୍ୱୀ ।
ସେହୁ ପୁଣ ଯେ ସ୍ତ୍ରୀରେ ବଶ୍ୟାବୃତ୍ତି
ଶଚୀଙ୍କ ଘେନଣ ଯେ ଭୋଗ ବିଳସନ୍ତି ।
ଚନ୍ଦ୍ରସୂର୍ଯ୍ୟ ଗ୍ରହତାରା ଛନ୍ତି ଆଦଯେତେ
ଏମାନେ ସ୍ତ୍ରୀ ଭୋଗ କରନ୍ତି ସମସ୍ତେ ।
ଆହାର ନିଦ୍ରା ମୈଥୁନ ସବୁଙ୍କର ଭୋଗ୍ୟ
କେବଣ ମହାତ୍ମା ଛାଡ଼ିବ ତାହା ଆଗ ।
ଏତେଡ଼ ଏତେଡ଼େ ଦେବତା ସ୍ତ୍ରୀ ଭୋଗ କରନ୍ତି
ମାନବ ମାନଙ୍କରେ ମୁକ୍ତି ନ ପାରନ୍ତି ।
ଏତେକ ବ୍ରତ ଯେ ପାଳିଲି ମୋର ନାହିଁ
ଶବ୍ଦବାଧା ଯେ ଖଣ୍ଡିବ ମୁହିଁ କାହିଁ ।
ନିଦ୍ରାହିଁ ଖଣ୍ଡିଲି ଯେ ନାହିଁ ମୋର ପିଣ୍ଡ,
ଟିକଏ ଉତ୍ତର ହେଲେ ଭ୍ରମ ଯେ ଦଏ ମୁଣ୍ଡ
ଏ ତିନି କଥା ଯେ ପାଳିଲି ମୋର ନାହିଁ
ମୋତେକାହିଁ ଯଶ ଯେ ବୋଇଲେ ରଘୁସାଇଁ
ବିଭୀଷଣ ବୋଇଲ ଶୁଣିମା ଦେବ ବାଣୀ
କହୁଛି ମୁହିଁ ଯେ ଶୁଣ ରାବଣ ପୁଣି ।
ସହସ୍ରମୁଖ ରାବଣର ଅଳଙ୍କାରେ ଘର
ଯମ ଈଶ୍ୱର ଦେଇଛି ତାକୁ ବର ।
କାଳଫାଶ ଆଣିଛି ଯମର ହସ୍ତରୁ
ପାଶୁପତ ଆଣିଛି ଈଶ୍ୱରଙ୍କ ଠାରୁ ।
ଅକ୍ଷୟ ଅମରବର ପାଇଅଛି ପୁଣ
ତ୍ରିସାହସ୍ରେ ମରିବ କହିଲେ ଶଙ୍କର୍ଷଣ ।

ସହସ୍ରେ କୁମର ତାର ଅଠରସହସ୍ର ନାତି
ସେନାପତି ଅଟନ୍ତି ତାହାର ବାରକୋଟି ।
ଦୁଇଶତ ଯୋଜନ ଅଟଇ ଗଡ଼ ତାର
ବଡ଼ ଧୂଅ ନାମ ଯେ ଗୁମାପା ନାମେ ପୁର ।
ତାହାର ମଇଷ ଯେ ଶତମୁଖ ରାବଣ
ଏହି ସମୁଦ୍ରରେ ଅଟଇ ଘର ପୁଣ ।
ଅଲଙ୍କା ନାମରେ ଅଟଇ ଘର ତାର
ତିନିଶତ ଯୋଜନ ଯେ ଗଡ଼ର ବିସ୍ତାର ।
ଚାରିପାଶେ ସମୁଦ୍ର ବେଢେକ ଅଛି ବୁଲି
ଆରବେଢ଼ ପର୍ବତ ତହିଁର ପାଶେ ଘେରି ।
ତହିଁ ପାଖରେ ନଦୀ ବେଢ଼ିଅଛି ତହିଁ ପୁଣ
ଭିତରେ ଲଙ୍କା ଗଡ଼ର ନିର୍ମାଣ ଯେ ଜାଣ ।
ତିନି ସହସ୍ର ପୁତ୍ର ତାର ବାର ସହସ୍ର ନାତି
ଈଶ୍ୱର ବରରେ ସେ ହୋଇଣ ଭୂପତି ।
ମରିବାକୁ ବାଟ ଯେ ଈଶ୍ୱର କହିଗଲେ
ଧରଣୀ ଧରିବ ଯେହୁ ମାରିବ ତୋତେବଳେ
ଏକ ମୁଖା ରାବଣର କଥା ଏବେ ଶୁଣ
ଦଶମୁଖା ରାବଣର ଅଟଇ ନାତି ପୁଣ ।
ସୁଲଙ୍କା ଜ୍ୟୋତି ପୁରେ ଅଟଇ ତାର ଘର
ତିନିଗୋଟି ପାଚେରି ଯେ ସମୁଦ୍ର ଭିତର ।
ବତିଶ କୁମର ତାର ସାତଶ ନାତି ଜାଣ
ଅଠରକୋଟି ସେନାପତି ଅଟଇ ପ୍ରମାଣ ।
ବିଧାତାଠାରୁ ବର ପାଇ ଯେ ଅଛି ଜାଣ
ବାପକୁ ମାରିବ ଯେହୁପୁତ୍ରମରିବତାହାତେପୁଣ
ଦଶମୁଖା ରାବଣତ ଲଗିଛି ତୁମ୍ଭ ସଙ୍ଗେ
ମେଘନାଦ କଥା ଶୁଣି ହେଉଛ ଅଦମ୍ଭେ ।
ଏହାଶୁଣି ଶ୍ରୀରାମ ଯେ ହୋଇଲେ ଚାଟକା
ବୋଇଲେ ବିଭୀଷଣକୁ ଲଗିଲ ମୋତେଶଙ୍କା
କୁହୋ ମଇଷ ହାଦେ ଅଛୁନା ପ୍ରତିପାଳି
ନାହିଁ ବୋଇଲେ ଯେ କିଷ୍କିନ୍ଧ୍ୟା ଦଣ୍ଡଧାରୀ ।
ଅଙ୍ଗଦ ହନୁମନ୍ତ ସୁଷେଣ ସହିତେ
ଅଷ୍ଟସେନା ପଞ୍ଚଶ ଯୂଥପତି ଯେତେ ।
ଏମାନେ ନାସ୍ତି ଯେ କଲେକ ସମସ୍ତେ
ବୋଇଲେ ଏ ଅସମ୍ଭବ କଥା ଅଟଇଯୁକତେ
କେ ଛାଡ଼ିପାରେ ନିଦ୍ରା ମୈଥୁନ ଆହାର
ନିଶ୍ଚୟେ ମାରିବ ଏ ରାବଣ କୁମର ।

ଧାତାବର କାହିଁ ସେ ହୋଇବ ଅମାତ
କେବଳ ମହାତମା ସେ ପାଳିଥିବ ଏଥି ।
ଯୂଥପତିମାନଙ୍କର ଏ ବଚନ ଶୁଣି
ମନେ ମନେ ଭଲ ବୋଲନ୍ତି ରଘୁମଣି ।
ଜମ୍ବେବ ମୁଖ ଚାହିଁ ବୋଲନ୍ତି ରଘୁନାଥ
କେମନ୍ତେ ମରିବ ମନ୍ତ୍ରୀ ରାବଣର ପୁତ୍ର
କିସ ଉପାୟ ସେ ଜିଣିବା କହୁର ଏବେ
ଏକଥା ଶୁଣିଣ ମୋରେ ଲାଗିଲା ଅସମ୍ଭବେ
ତୁମ୍ଭେ ମନ୍ତ୍ରୀ କହିଲ ଯେ ଯୁଗର ବାରତା
ପୋଥିକରୁହିଁଲେ ଦଶେ ଲକ୍ଷେଯୋଜନ କଥା
ଶୁଣିଣ ଜମ୍ବେବ ମନ୍ତ୍ରୀ ଯୋଡ଼ନ୍ତି ବେନିକର
କମ୍ପା ମନରେ ବ୍ୟଥା ଯେ ପାଉଛ ରଘୁବୀର
ତୋହର ସାନୁଜ ଅଟଇ ଲକ୍ଷ୍ମଣ
ଏ ତିନ ଦ୍ରବ୍ୟ ଅଛି ସେହୁ ସେ ପାଳଣ ।
ସକଳ ବ୍ରତ ତୋର ଭାଇ ଅଛି ପାଳି
ତେଣୁ ପତିଜ୍ଞା କରଇ ସେହୁ ଦୃଢ଼କରି ।
ଜମ୍ବେବ କହନ୍ତେ ଯେ ହସିଲେ ରଘୁନାଥ
ମିଥ୍ୟା ବଚନ ମୋତେ କହିଲ ହେ ପଣ୍ଡିତ
ଏତେ ଗୁଣ କାହିଁ ଲକ୍ଷ୍ମଣର ଅଙ୍ଗେ ଅଛି
ନିଦ୍ରା ମୈଥୁନ କାହିଁ ଖଣ୍ଡିବ ସୁମିତ୍ରାରବର୍ଣ୍ଣି
କନ୍ଦମୂଳ ଗ୍ରାସ ଯେ କରଇ ମୋର ଭାଇ
ଆଗକରି ନ ଖାଇ କି ମୋତେ ସେ ପରଷଇ
ମୈଥୁନ କଥା ସେ ଯେ ଅଛଇ ପ୍ରତିପାଳି
ଏ ଦୁଇ କଥାତ ସମ୍ପ୍ରତେ ମୁଁ ନ କହି ।
ନ ଜାଣି ମନ୍ତ୍ରୀବର ଯେ କହିଲ କିପାଇଁ
ଆହାର ନିଦ୍ରା ତ ପାଳନ ଏହାର କାହିଁ ।
ଜମ୍ବେବ ବୋଇଲେ ଦେବ ନ କହ ଏମନ
ଶାସ୍ତ୍ରକୁ ନିନ୍ଦା ଯେ ନ କର ରଘୁଜାନ ।
ଏତେ ଗୁଣ ତୋର ସାନୁଜଠାରେ ଅଛି
ସ୍ୱର୍ଗରୁ ଇନ୍ଦ୍ର ଜାଣି ବର ଦେଇଅଛି ।
ପରସ୍ପର ରଘୁନାଥ ଦୁର୍ଲ୍ଲଭ କଥା ଏଟି
ଜମ୍ବେବଙ୍କ ମୁଖରୁ ଶ୍ରୀରାମ ଶୁଣିଲେ ପୋଥି ।
କହସି ସଉମିତ୍ରୀରେ ସ୍ୱରୂପ କାହାଣୀ
ଶୁଣିଣ ଲକ୍ଷ୍ମଣ ଯେ ହରଷ ମନେ ପୁଣି ।
କରଯୋଡ଼ି ସେ ଯେ କହଇ ସଉମିତ୍ରୀ
ଏ ତିନ ବ୍ରତ ମୁଁ ଯେ ପାଳିବ ରଘୁପତି ।

ରାଜ୍ୟରୁ ଯେତେବେଳେ ବାହାର ହୋଇଲି
ମୋହର ପ୍ରିୟାଙ୍କୁ ଯେ କହିବ ବୋଲି ଗଲି
ସତ୍ୟ କରାଇଲା ମୋହର ପ୍ରିୟବତି
ଆହାର ମୈଥୁନ ନକରିବ ହେ ପ୍ରାଣପତି
ବହୁତ ଯଶ ତୁମ୍ଭଙ୍କୁ ମିଳିବଟି ଏଥି
ମୋହର ବଚନ ପାଳିଥିବ ପ୍ରାଣପତି ।
ମୁଁ ବୋଇଲି କେମନ୍ତେ ସରିବ ମୋର ଦିନ
ସେ ବୋଇଲା ମୋଠାରୁ ନଅଛେ ବିଦ୍ୟାପୁଣ
ଏତେ ବୋଲି ଔଷଧ ଆଣି ମୋତେ ଦେଲା
କାର୍ଯ୍ୟନଭାଁହେଲେକ୍ଷୁଧାନିଦ୍ରାହେବସେବୋଲା
ମୋତେ ଦେଖିଲେ ମୈଥୁନଗତି ହେବଇଚ୍ଛା
ଏମନ୍ତ ବୋଲି ଦେଇ ବଳି ମନ ବାଞ୍ଛା ।
ଶୁଣିଣ ଶ୍ରୀରାମ ବୋଇଲେ ଯେବେ ସତ
ଔଷଧ ଦେଖିଣ ଯିବା ଯେ ପ୍ରତ୍ୟକ୍ଷ ।
ଶୁଣିଣ ଲକ୍ଷ୍ମଣ ଅଞ୍ଚଳୁ ବେଗେ କାଢି
ସୁବର୍ଣ୍ଣ ଓଉଁଳିଆ ଦେଖିଲେ ରୂପଧାରୀ ।
ବୋଇଲେ ବିଧାତା କେବଳ ଅଛି ଭାଇ
ଆହୁରି କଥା ଏ ଯେ ପଚାରୁଛି ଭାଇ ।
ଆହାର ନିଦ୍ରାକୁ ତୁ କେମନ୍ତେ ଗଲୁ ପୁଣ
ଲକ୍ଷ୍ମଣ ବୋଇଲେ ନିଦ୍ରାବତୀକି କଲି ଧ୍ୟାନ
ବୋଇଲି ଶ୍ରୀରାମ ବନ ଯାଉଛନ୍ତି ମୋର
ବନସ୍ତରେ ମୁହିଁ ଯେ ହୋଇବି ଉଜାଗର ।
ଯେତେ ବନସ୍ତରେ ମୁହିଁ ଯେତେ କାଳ ଥିବ
ମୋତେ ନିଦ୍ରା ଆଳସ୍ୟ ନ କରିବୁଟି ଦେବୀ
ତେଣୁ ପ୍ରବୋଧନା ଯେ ହୋଇଲେ ନିଦ୍ରାବତୀ
ନିଦ୍ରା ମୋତେ ନୁହଇ ଯୁଣ୍ଡ ହେ ଦାଶରଥି
ତୋହର ଚରଣ ରେଣୁକୁ ଆଶ୍ରେକରି
ଉଜାଗରେ ତୁମ୍ଭ ପାଖେ ଖଟେ ରୂପଧାରୀ ।
ବୋଇଲେଯେ ଆଗକରି ଖାଇଦେଉ ମୋତେ
ମୁଁ ଛାର ଭୁଞ୍ଜିବି କି ନ ଦେଇଣ ତୋତେ ।
ଅରଣ୍ୟକୁ ପେଷ ମୋତେ ଫଳମୂଳ ଆଣି
ତୁମ୍ଭଙ୍କୁ ସମର୍ପଣ କରଇ ରଘୁମଣି ।
ମଣୋହି କରାଇ ଆଉ ଯେତେ ଅବଶେଷ
ସେ ନିର୍ମାଲ୍ୟ ଭୁଞ୍ଜଇ ଶୁଣିମା ରଘୁଶିଷ୍ୟ ।
ତୋହର ଶ୍ରୀଚରଣେ ଆଶ୍ରେକରି ଥାଇ
ବେଳହୁଁ ତିନବ୍ରତ ପାଳିଅଛି ମୁହିଁ ।

ମୂର୍ଚ୍ଛି ତାହାର ଅଟଇ ଅଜସ୍ର ଜସ୍ ଜାଳ
ସମରେ ମାରିବ ନଷ୍ଟେ ରାବଣର ବାଳ ।
ଏହା ଶୁଣି ରାମଚନ୍ଦ୍ର ହରଷ ହୁଅନ୍ତି
ବୋଲକର ଲକ୍ଷ୍ମଣଙ୍କୁ ଚୁମ୍ବନ ଦିଅନ୍ତି ।
ଏ ମୋହର ଭାଗ୍ୟ ଭକ୍ତ୍ର୍ଲ ରବ ବଂଶ
ତୋହର ହସ୍ତରେ ନଷ୍ଟେ ମରିବ ରାକ୍ଷସ ।
ପୂର୍ବରୁ ବିଧାତା ଏସନେକ ଭ୍ୟାଇ
ରାକ୍ଷସଙ୍କ ସଙ୍ଗରେ ଆମ୍ଭର ବାଦ ହୋଇ ।
ପୋଡ଼୍ ମୋର ଜୀବନ ନଯାଏ କାହିଁପାଇଁ
ଆହାର ନ ଖାଇଣ ବଞ୍ଚିଛୁ ମୋର ଭାଇ ।
ମୂର୍ଚ୍ଛି ଚଣ୍ଡାଳ ପୃଣି ନ ହୁଅଇ ଯାତ
ଖାଇକର ହଏ ବୋଲି ପ୍ରତେ କରିଅଛୁ ।
ଏକାଳେ ଉପକାର ହୋଇଲୁକ ମୋତେ
ତୁ ମୋହର ପଞ୍ଚପ୍ରାଣ ଅଟରେ ଯୁକତେ ।
ହିଗ୍ରୁରିଣ ଯୁଦ୍ଧ ତୁହି କରରେ ଲକ୍ଷ୍ମଣ
ଯାଅ ତୋର ବହୁମାନ ଖଣ୍ଡନ୍ତୁ ଗଜାନନ ।
ଗଉର ନନ୍ଦନ ତୋତେ ଯୁଦ୍ଧେ ଦୟାକରି
ଏ ତୋହର ହସ୍ତରେ ଏସନ କାମୀ ଶୁଣି ।
ଶ୍ରୀରାମ ମୁଖରୁ ଏସନ ବାଣୀ ଶୁଣି
ଲକ୍ଷ୍ମଣ ପ୍ରତଜ୍ଞ ଯେ କରନ୍ତି ଶିର ଟୁଣି ।
ଯେତେ ଜପ ତପ ହାଦେ ଇନ୍ଦ୍ରଜିତ କଲା
ବ୍ରହ୍ମାଣ୍ଡ ଭିତରେ ସେ ସମସ୍ତ ଜଣିଲା ।
ଆଜ ତାର ଜୀବନ ହରିବଇଁ ମୂର୍ଚ୍ଛି
ନସୂମ କରୁଅଛୁ ଧନୁଶର ଛୁଇଁ ।
ଯେବଣ ବ୍ରହ୍ମା ତାକୁ ଦେଇଅଛୁ ବର
ସେ ଆସି ରଖିଲେ ଆଜ ମାରିବ ଅସୁର ।
ଏତେ କହି ସଜ ହେଲେ ଶ୍ରୀରାମ କନିଷ୍ଠ
ଅକ୍ଷୟ ହୋଣ ବେଳ ଉଡ଼ିଲେ କନ୍ଧ ତଟ ।
କରେ କାଣ୍ଡ କୋଦଣ୍ଡ ଦକ୍ଷମ ସିଂହ ମୂର୍ତ୍ତି
ଦେଖିଣ ଆନନ୍ଦ ହେଲେ ରଘୁକୁଳ ପତି ।
ବିଭୀଷଣଙ୍କୁ ବୋଇଲେ ଶୁଣ ଲଙ୍କପତି
ଲକ୍ଷ୍ମଣ ସଙ୍ଗରେ ତୁମ୍ଭେ ଯାଅବେ ତଡ଼ିତ ।
ସଉମିତ୍ର ଯାନ ଯେ ନ ଜାଣେ ଯୁଦ୍ଧଭଙ୍ଗି
ତୁମ୍ଭେ ଦୁଇଜଣ ଯେ ହୋଇବ ଏକସଙ୍ଗି ।
ନଳନୀଳ ସୁଷେଣ ଯୁଝିବେ ପରିହାଇ
ସୁଗ୍ରୀବର ଜମ୍ଭେବ ପଶା ଖେଳବେ ଯାଇଁ ।

କେଶରୀ ଗନ୍ଧମାଦନ ପଛେ ଥିବେ ରକ୍ଷ
ସଉର ଶତବଳ ସୈନ୍ୟ ଆଣିବେ କଢାଇ
ଦଧିମୁଖ କାଳମୁଖ ଥାଟ ଓଗାଳବେ
ବଜମନ୍ତ ଅଙ୍ଗଦ ଏ ବେଢି ପକାଇବେ ।
ଓାଳମ୍ବ ବସନ୍ତ ଯେ ସାରସ ପବନ
ଗବସ୍ୟ ଗବାକ୍ଷ କୁମୁଦ ସୁଶୋଦନ ।
ଏହୁ ଆଠ ବୀର ଯେ ମାରିବେ ସଇନ
ସାରସ କଞ୍ଚଣ ଏ ଅଲଗେ ଥିବେ ପୁଣି ।
ଚନ୍ଦନ ସମ୍ପାତ ଦେନ ମାଡ଼ ନ ପଡ଼ିବେ
ଗାଢ଼ ଯୁଦ୍ଧ ହୋଇଲେ ଏଯାଇଁ ଧାବୋଡ଼ିବେ
ହିବିଧ ଶତବାଳ ଉହାଡ଼ରେ ଥିବେ
ସୈନ୍ୟ ଆଗ କରିଣ ପଛରେ ଯୁଝିବେ ।
ତୋତେ ହୋ ବିଭୀଷଣ ଲଗିଲା ମୋର ଭାଇ
ଗାଢ଼ଯୁଦ୍ଧ ହୋଇଲେ ତୁ ଆଣିବୁ କଢାଇ ।
ଗଉରୁ ବାହାର କରି ଆଣିବ ମେଘନାଦ
କଟକ ଭିତରେ ପଶି ନ କର ପ୍ରମାଦ ।
ସମସ୍ତ ରକ୍ଷକପି ତୁମ୍ଭର ସଙ୍ଗେ ଯାନ୍ତୁ
ଅଳପ ସଇନ ଯେ ମୋହର ସଙ୍ଗେ ଥାନ୍ତୁ ।
ତୁ ହୋ ବିଭୀଷଣ କରିବୁଟିକ ଯୁଦ୍ଧ
ଦୈତ୍ୟଙ୍କର ମାୟାମାନ ଦଧୈତ୍ୟ ସିନା ବୁଝ
ଏତେ ବୋଲି ରାମଚନ୍ଦ୍ର ଉଠି ଉଭା ହୋନ୍ତି
ସଉମିତ୍ରିଙ୍କ କୋଳ କରିଣ ଭିଆରନ୍ତି ।
ବାବୁ ଲକ୍ଷ୍ମଣ ତୁହିଁରେ ମୋର ବୋଲେ ଥିବୁ
ଆଗଭର ହୋଇଣ ମେଘନାଦକୁ ଯୁଝିବୁ ।
ମୋହର ଶପଥ ତୋତେ ଜାନକୀର ରଣ
ବିଭୀଷଣ ପଛେ ଧାଇ ଯୁଝିବୁ ଲକ୍ଷ୍ମଣ ।
ଜାଣୁଛି ମେଘନାଦ ଯେବଣ ଶର ଛନ୍ଦଇ
ଆଖି ନ ପିଛୁଡ଼ ସ୍ୱର୍ଗ ମର୍ତ୍ତ୍ୟ ସେ ଛନ୍ଦଇ ।
ରଣ ଗୋଳ କରିଣ ମାରିଲେଟି ପୁଣ
ସେ କଥାକୁ ଭୁଲି ତୁ ଯେ କରିଥିବୁ ମନ ।
ଯାଅ ତୋତେ ଧୂର୍ଜଟୀ ଦେଇ ଧର୍ମସିନ୍ଧି
ହେଲେ ଜଣ ଅସ ବାକୁ ଇନ୍ଦ୍ରଜିତ ଋଷି ।
ପରିମୁଣ୍ଡା ତୋହର ଯାଇ କନା ବାକୁ
ତୋହର ଜାଇଥିଲେ ମୋହର ଅଛୁ ସବୁ ।
ନ ପୁଣ ତୁ ରଣ ଦେଖି ଆଗ ହୋଇ ଧାଇଁ
ଇନ୍ଦ୍ରଜିତ ଅନ୍ଧାର କରଇ ବୁହୁଁ ବୁହୁଁ ।

ଶତ୍ରୁକୁ ଦେଖିଲେ ଘୋର ସମର କରଇ
ଶୂଳଶକ୍ତି ଗଦା ଏକାବେଳେ ଯେ ପେଶଇ ।
ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ସମର କରଇ
ଇନ୍ଦ୍ରଜିତ ଯୁଦ୍ଧକୁ କେହି ସର୍ଜନ ନାହିଁ ।
ଅନେକ ମତେ ଶ୍ରୀରାମ ତଆରିଣ କହି
ମୁହିଁ ତୋତେ ମୂର୍ଚ୍ଛି ନ ପାରଇ ଆରେ ଭାଇ
ପୁଣିହିଁ ବୋଲନ୍ତି ଯେ ରଘୁକୁଳ ସାଇଁ
ତୋତେ କମ୍ପା ବରଗିରେ ଏଥି ଥିବ ମୁହିଁ
ସୈନ୍ୟ ଘେନଣ ମୁହିଁ ହୋଇର ପଛେ ଯିବ
ଏକା ହୋଇ ଏଠାରେ କମ୍ପାଇ ମୁଁ ଥିବ ।
ବିଭୀଷଣ ବୋଇଲା ଶୁଣହେ ରଘୁବୀର
ରାସ ପ୍ରହରେକ ଯେ ଅଛଇଁ ଆହର ।
ନିଶବଦ ହୋଇଣ ଏଥିରୁ ଆମ୍ଭେ ଯିବା
ଲୁନ ହୋଇ କବାଟ ଦ୍ୱାରରେ ରହିଥିବା ।
କବାଟ ଫିଟିଲେ ଆମ୍ଭେ ପଶିବା ଝସାଇ
ଆନ ପ୍ରକାରେ ଯଶ ନାହିଁ ହେ ଗୋସାଇଁ ।
ଶବଦ ଶୁଣିଲେ ଜାଣିବ ମେଘନାଦ
ବ୍ରହ୍ମା ତାକୁ ଦେଇଅଛି ଯେବଣ ମନ୍ତ୍ର ପଦ ।
ନିକୁମ୍ଭିଳା ବଟ ତଳେ କରଇ ସେ ହୋମ
ରଥେକ ଉପୁଜଇ ଦେବଦଳନ ନାମ ।
ତହିଁରେ ବସିଣ ଯେବେ ସମର କରିବ
ଅକ୍ଷୟ ହୋଣ ବାଣେ ସୈନ୍ୟ ବିନାଶିବ ।
କାଲି ଯେଉଁ ମାୟା ସୀତାକୁ ଗଲା ମାରି
ଏ ବୁଦ୍ଧି କପଟ ମନ ଅଟଇ ତାହାରି ।
ଯେତେବେଳେ ଲକ୍ଷ୍ମଣ ଆଗୁସାରି ହେଲେ
ବିସ୍ମରି ବାହୁଡ଼ିଲା ରାବଣ କୁମରେ ।
ଭାଳିଲା ଏ ରଥେ ଥିଲେ ନ ପାରିବ ଜିଣି
ସମସ୍ତ ସଂହାରିବ ହୋମରୁ ରଥ ଆଣି ।
ଏମନ୍ତ ବିସ୍ମରି ସେ ତରକ କରିଗଲା
ଉପାୟ କରିଣ ମାୟା ସୀତା ସେ ମାରିଲା ।
ସେ ରଥରେ ଚଢ଼ି ଯେ ଅଇଲା ଦୁଇବେଳ
ନାଗଫାଶରେ ବାନ୍ଧିଣ କଲା ସେ ରଣଗୋଳ
ବ୍ରହ୍ମଅସ୍ତ୍ର କଲାଟି ସେହି ରଥେ ଚଢ଼ି
ଅନେକ ବଳ ତୋର ଯେ ମାରିଲା ଏକ ଘଡ଼ି
କାଲି ସେ ବିମାନ ଚଢ଼ି ନ ଥିଲା ପୁଣ ମନ୍ତ୍ର
ଜପ ଛନ୍ଦ କରିଣ ବାହୁଡ଼ି ଗଲା ତହୁଁ ।

ଏବେ ଆମ୍ଭେ ପାଟେଶ୍ୱ ପାଶରେ ଲାଗିଥିବା
କବାଟ ଫିଟାଇଲେ ଭିତରେ ପଶିବା ।
ଇନ୍ଦ୍ରଜିତ ନଗର ବେଢ଼ିବା ଧାତିକାରେ
ନଗରେ ପଶି ଯୁଦ୍ଧ କରିବା ଯେ ଯାହାରେ ।
ନିକୁମ୍ଭିଳା ବଟ ତଳକୁ ନ ପାରିବ ଯାଇ
ତେବେ ତାହାକୁ ଆମ୍ଭେ ମାରିବା ରଘୁସାଇଁ
ଶୁଣିକରି ରାମଚନ୍ଦ୍ର ହୋଇଲେ ହରଷ
ବିଭୀଷଣଙ୍କୁ ପ୍ରଶଂସା କରନ୍ତି ରଘୁଶିଷ୍ୟ ।
ସାଧୁରେ ଲଙ୍କପତି ସାଧୁରେ ତୋର ହିଆ
ଜାଣିଲୁ ତୁ ମହାତ୍ମା ଅଟୁ ପୁଣ୍ୟଦେହା ।
ସୋଦର ଭାଇକି ମରାଇଲୁ ମୋହ ପାଇଁ
ବନ୍ଧୁବର୍ଗ ମଲେଟି ଭାଳିବା ତୋର ନାହିଁ ।
ଏବେ ପୁତୁରାକୁ ତୁହି ଯାଉଅଛୁ ମାରି
ଏ କଥାମାନ ଆଗରେ ନୁହଇନା କରି ।
ଏହା ଶୁଣି ବିଭୀଷଣ ଚରଣେ ଲୋଟି ଗଲା
ଆପଣେ ରଘୁନାଥ ଧଇଲେ ତାକୁ ତୋଳା ।
ବୋଇଲେ ବିଭୀଷଣରେ ଛୁଇଁଛି କୋଦଣ୍ଡ
ତୋତେ ରାଜା କଲେ ମୋର ସବୁଠାକୁ ଦଣ୍ଡ
ତିନପୁର ଲୋକେ ତୋତେ ପ୍ରଶଂସା କରିବେ
ମୋର ମାନ ଉଦ୍ଧାରରୁ ତୋର ଲାଭ ହେବେ
ଏମନ୍ତ ବୋଲି ଉଡ଼ିଲେ ଅକ୍ଷୟ ହୋଣ ବେନି
ପାଦ ବଢ଼ାଇଲେ ସେ ଅନୁକୂଳ ଘେନି ।
ଜାମ୍ବେବ ସୁଷେଣ ମଙ୍ଗଳ ପାଠ ପଢ଼ି
ପାହିବାକୁ ରଜନୀ ଅଛଇ ବେନିଘଡ଼ି ।
ନବମୀ ତିଥି ହେବ ପାହିଲେ ପ୍ରଭାତ
ରବିବାର ସେଦିନ ଅଶ୍ୱିନୀ ନକ୍ଷତ୍ର ।
ଶ୍ରୀରାମ ରାଶିକ ସାଧକ ତାର ହୋଇ ,
ବୃଷଭ ଚନ୍ଦ୍ର ବୋଲି ଜାମ୍ବେବ ମନ୍ତ୍ରୀ କହି ।
ଲକ୍ଷ୍ମଣଙ୍କୁ ପ୍ରଶସ୍ତ ଅଟଇ ସେ ଦିନ
ଶୁଣିଣ ଶ୍ରୀରାମ ଯେ ଆନନ୍ଦ ମନେ ମନ ।
ପର୍ବତରୁ ଓହ୍ଲାଇଲେ ବିହ୍ବଡ଼ ଲଭାଇ
ପଥ ବାହି ଯାନ୍ତି ସର୍ବେ ନିଶବଦ ହୋଇ ।
ଲଙ୍କା ଗଡ଼ର ପାଟଣ ହୋଇଲେ ପ୍ରବେଶ
ଅରୁଣ ଉଦେ ହେଲେ ଦିଶିଲା ଦଶଦିଶ ।
ପାହିଲା ରଜନୀ ଫିଟିଲା କବାଟ
ଝସାଇ ପଶିଲେ ଯେ ଶ୍ରୀରାମର ଠାଟ ।

ଉତ୍ତର ଗଡ଼ଦ୍ୱାରେ ପଶିଲେ ଢ଼ସାଇ
ଶିଳାବୃକ୍ଷ ଧରିଣ ଋକ୍ଷକପି ଧାଇଁ ।
କୋଟିଏ ରାକ୍ଷସ ସେ ଦ୍ୱାର ଜଗିଥିଲେ
ଆଗୁଆଣି ଦଣ୍ଡ ସେ ଗୁମ୍ଫୁରେ ପଡ଼ିଲେ ।
ବାଜିଲ ରଣଗୋଳ ସଂଗ୍ରାମ ଧନ୍ଦୋଳ
ଧର ଧର ମାର ମାର ମୁଖରୁ ଚହଳ ।
ଶବ୍ଦସ୍ୱେ ମରମର ବୃକ୍ଷରେ ପିଟାପିଟି
ଋକ୍ଷ ମର୍କଟ ଅସୁର ରଣରେ ଲୋଟାଲୋଟି ।
ଲଙ୍କାର ଦଇତ ପାଇଲେ ବାର୍ତ୍ତା ଯେଣୁ
ଏକୁ ଆରେକ କଥା ପଚ୍ଛୁରନ୍ତି ତେଣୁ ।
କେ ବୋଲଇ ଗଡ଼ରେ ପଶିଲେ ଋକ୍ଷକପି
ଉତ୍ତର ଗଡ଼ଦ୍ୱାରେ କାଲିହୁଁ ଥିଲେ ଛପି ।
କୁଣ୍ଡ ନ ଶୁଭଇ ସେ ବାଜଣା ନ ବାଜଇ
କବାଟ ଫଟିବାରୁ ପଶିଲେ ଝସାଇ ।
ଠଣା ରକ୍ଷା ଦୈତ୍ୟ ସଙ୍ଗରେ ଯୁଦ୍ଧ କଲେ
ଦୁଇଆଡ଼ ବଳରୁ ଅନେକ ସୈନ୍ୟ ମଲେ ।
ଆଜ ନଗ୍ର ପୋଡ଼ିଣ କରିବେ ଧୂମାନ୍ତ
ଆପଣେ ଆସିଣଯେ ଅଛନ୍ତି ସୀତାକାନ୍ତ ।
ଗଡରେପଶିବେବୋଲି ଲୋକେଯେ କହିଲେ
ବିଭୀଷଣ ବୁଦ୍ଧିରେ ରାଘବରୁ ଅଇଲେ ।
କରାଳ ବଦନ ବିଅନ୍ତି କପିମାନେ
ଦେଖ ଦେଖ ଖେପିଆସୁଅଛନ୍ତି ଗଗନେ ।
ଏକର କହନ୍ତେ ଆରେକ ପୁଣ ଜାଣି
ଉତ୍ତରଗଡ଼ ଦ୍ୱାରେ ବାଜିଲ ହଣାହଣି ।
ନଗ୍ର ନରନାରୀ ହୋଇଲେ ବିକଳ
କୁହାକୁହି ହୋଇଣ ରହିଛନ୍ତି ସକଳ ।
ପିଣ୍ଡାପରେ ଉଠିଣ ରହିଛନ୍ତି କେହୁ ପୁଣ
କେହୁ ବୃକ୍ଷେ ଉଠିଣ ଦେଖୁଛନ୍ତି ରଣ ।
ପ୍ରସାଦ ଅଟାଳି କେହୁ ମେଢ଼ରେଥାଇ ଚାହି
ଭଳର ଲୋକଙ୍କୁ ଦେଖିଲେ କଥା କହି ।
ହୋଇଲେ ହାଲହୋଳ ଶଏ ପୁଣ ଲଙ୍କା
ଖାଲୁ ମର୍କଟକୁ ଯେ ଜମ୍ବୁକ କଲେ ଶଙ୍କା ।
ସାଜ ସାଜ ବୋଲିଣ ପଡ଼ିଲା ଡାକମାନ
ସାଜିଲେ ରଥ ଗଜ ଚତୁରଙ୍ଗ ସୈନ୍ୟ ।
ଧାଇଁଲେ ଜଙ୍ଗ ଧଙ୍ଗ ତୁରଙ୍ଗ ବାଜି ବୀର
ଅଳେପି ସଳେପି ଦେବଦଉ ଆଦିକରି ।
ଉତ୍ତର ଗଡ଼ ଦ୍ୱାରେ ନରୋଧ ବାରେ କଲେ
ପଛେ ଥାଇ ଶ୍ରୀରାମ ପଶିତ ନପାରିଲେ ।
ଲକ୍ଷ୍ମଣ ବିଭୀଷଣ ଅଙ୍ଗଦ ହନୁମାନ
ସୁଗ୍ରୀବର କେଶରୀ ସୁଷେଣ ଜାମ୍ବବାନ ।
ଶରଭ ଶତବାଳ ଗନ୍ଧମାଦନ
ଗବୟ ଗବାକ୍ଷଯେ ମହେନ୍ଦ୍ର ସୁସୋଦନ ।
କୁନ୍ଦ କାମୋଦ ଦୁବନ୍ଦ ପବନ ପନଶିଳ
ବିବିଧ ସମ୍ପାତି କାଳମୁଖ ନଳନୀଳ ।
ଏମାନେ ଚଳଗଲ ବହୁତ ସୈନ୍ୟସେନ
ଶ୍ରୀରାମ ଅଛନ୍ତି ପଛେ ସଙ୍ଗତେ ସେନାଶନ ।
ଡ଼ାଳମ୍ବ ଚନ୍ଦନ ଆବର ଶତବାଳ
ଋକ୍ଷ କପିସୈନ୍ୟ କେ ପାରିବ ବଳି ।
ଗଡ଼ର ବାହାରେ ଯେ ରହିଲେ ଦାଶରଥି
ଆଗେ ଓଗାଳିଲେ ଯାଇ ଦୈତ୍ୟ ସାତରଥୀ
ଦୈତ୍ୟବଳ ଗହଳ ଯେ କଳନା ନ ଯାଇ
ଶ୍ରୀରାମ ସଙ୍ଗତେ ଯୁଦ୍ଧ କରନ୍ତି ସାତଭାଇ ।
ଭିତରେ ପଶିଲେ ଯେ ସୁମିତ୍ରାର ବାଳ
ମହାଘୋର ସଂଗ୍ରାମ ବଢ଼ିଲା ବେଳୁବେଳ ।
ଇନ୍ଦ୍ରଜିତ ପୁରକୁ ବୋଲିଣ ଧାଡ଼ିଦେଲେ
ବାଟେ ଆସି ଅନେକ ଅସୁର ଓଗାଳିଲେ ।
ଦେଖିଣ ହନୁମନ୍ତ ଧାଇଁଲା ଆଗସରି
ରାକ୍ଷସଙ୍କୁ ମାଇଲା ଯେ ଶିଳା ବୃକ୍ଷ ଧରି ।
ଅଙ୍ଗଦ ଜାମ୍ବେବ ସୁଷେଣ ସୁଗ୍ରୀବର
ଏମାନେ ଦୈତ୍ୟବଳ ମାଇଲେ ଅପାର ।
କେଶରୀ ଦୁବନ୍ଦ ଯେ ରଣଗୋଳ କଲେ
ବିଭୀଷଣ ମାରୁଣିରେ ଅନେକେ କ୍ଷୟ ଗଲେ ।
ସଭର ସେନାପତି କେଶରୀ ନଳନୀଳ
ସାରସ କୁନ୍ଦ କାମୋଦ ପବନ ପନଶିଳ ।
ଦଧିମୁଖ କାଳମୁଖ ବଳିମୁଖ ତିନ
ଅସୁରଙ୍କୁ ମାରନ୍ତି ଶିଳା ବୃକ୍ଷ ଘେନ ।
ଡରିତେ ନ ଘୁଞ୍ଚନ୍ତି ବିଷମ ଘାତ ପାଇ
ଯେ ଯାହାର ଶବ୍ଦସ୍ୱ ମାରନ୍ତି ପରିଘାଇ ।
ଦୁଇବଳ ମିଶିଣ ଅନେକ ଯୁଦ୍ଧ କଲେ
ଦୁଇଘଡ଼ି ପରିଯନ୍ତେ ସେଠାରେ ରହିଲେ ।
ଦୈତ୍ୟଙ୍କର ପ୍ରବଳ ଦେଖିଣ ରାମ ଭାଇ
ଦିବ୍ୟ ଅସ୍ତ୍ର କରିଣ ଯୁଝନ୍ତି ପରିଘାଇ ।

ଅନେକ ଅସୁର ଯେ ମଲେ ତାଙ୍କରବାଣେ
ବଳଲେ ରାକ୍ଷସେ ପଳାନ୍ତି ଏଣେତେଣେ ।
ଇନ୍ଦ୍ରଜିତ ଆଗରେ କହନ୍ତି ଯାଇ ଚାର
ଗଡ଼ରେ ପଶିଅଛି ଲକ୍ଷ୍ମଣ କୁମର ।
ଅସୁର ସୈନ୍ୟ ତୋର ମାଇଲା ବହୁତ
ଋକ୍ଷକପି କରନ୍ତି ବିଷମ ଅନର୍ଥ ।
ଶୁଣିଣ ମେଘନାଦ ହୋଇଲେକ ସଜ
ସୁବର୍ଣ୍ଣମୟ ରଥ ଚଢ଼ିଲା ତନୁଜ ।
ଦିବ୍ୟ ଅସ୍ତ୍ର ଘେନିଣ ସଂଗ୍ରାମେ ପଶିଲା
ଘେନିଲା କାଳ ସର୍ପ କି ମଣ୍ଡୂକୀ ଭେଟିଲା ।
ନାରାଚକେ ଋକ୍ଷକପି ଲକ୍ଷ ଲକ୍ଷ ମାରି
ଶ୍ରୀରାମ ବଳ ସେ ପକାଏ ସଂହାରି ।
ଲଙ୍କାଗଡ଼ ଦାଣ୍ଡରେ ରକ୍ତ ନଦୀ ବହେ
ଋକ୍ଷ କପିବଳଙ୍କୁ ଅଗ୍ନି ଜାଣି ଦହେ ।
ସେ ରକ୍ତ ନଦୀରେ ନାଚଲେ କବନ୍ଧ
ହସନ୍ତି ଟହଟହ ମନର ଆନନ୍ଦ ।
ଦୂରନ୍ତୁ ଦେଖିଲେ ସେ ସୁମିତ୍ରାର ସୁତ
ବିଭୀଷଣଙ୍କୁ ବୋଇଲେ ଅଇଲା ଇନ୍ଦ୍ରଜିତ ।
ସେନାପତିଙ୍କି ଓହାଡ଼ି ଧାଇଁଲେ ଆଗସରି
ମେଘନାଦ ସମ୍ମୁଖରେ ଯାଇଣ ଭେଟି ପଡ଼ି ।
ଏକକୁ ଆରେକ ସେ ଦେଖିଣ ଶରଯୋଡ଼ି
ମର୍ମ ସ୍ଥାନମାନଙ୍କୁ ସେ ବିନ୍ଧୁଛନ୍ତି ପାଞ୍ଚି ।
ସହସ୍ରେକ ବାଣ ଯେ ବିନ୍ଧିଲା ଇନ୍ଦ୍ରଜିତ
ହେଳେ ନିବାରିଲେ ତାହା ସୁମିତ୍ରାରସୁତ ।
ଲକ୍ଷେକ ବାଣ ଯେ ବିନ୍ଧିଲା ରାବଣି
ପ୍ରତି ଅସ୍ତ୍ର କରିଣ ଲକ୍ଷ୍ମଣ ତାହା ହାଣି ।
କୋଟିଏ ବାଣ ସେ ଯେ ବିନ୍ଧିଲା ଇନ୍ଦ୍ରଜିତ
ଦେଖିଣ ନିବାରିଲେ ତାହା ଶ୍ରୀରାମଙ୍କଭ୍ରାତ ।
ଲକ୍ଷ୍ମଣଙ୍କୁ ଇନ୍ଦ୍ରଜିତ ପେଶଇ ପୁନଃ ଶର
ଛେଦଇ ପ୍ରତିଅସ୍ତ୍ର କରିଣ ସେ ବୀର ।
କେତେ ବେଳ ସମର ଯେ ବଢ଼ିଲା ଅନେକ
ସ୍ୱର୍ଗରେ ଥାଇଣ ଯେ ଦେଖନ୍ତି ସୁରଲୋକ ।
ଆଶ୍ଚର୍ଯ୍ୟ ହୋଇଣ ଦେଖନ୍ତି ସୁରଗଣ
ଧନ୍ୟ ଧନ୍ୟ ଇନ୍ଦ୍ରଜିତ ଧନ୍ୟ ତୁ ଲକ୍ଷ୍ମଣ ।
ଧନ୍ୟ ଧନ୍ୟ କ୍ଷତ୍ରୀ ଅଟରେ ତୁମ୍ଭେ ବେନି
ତ୍ରିପୁରେ ଉତ୍ତମ ମହିମା ତୁମ୍ଭର ପୁଣି ।
ନାହି ନାହି ଘଟାନ୍ତର ବ୍ରହ୍ମାଣ୍ଡ ଭିତରେ
ଧନ୍ୟ ଧନ୍ୟ ଅସ୍ତ୍ର ଅଛି ତୁମ୍ଭର ହସ୍ତରେ ।
ଏସନେକ ବୋଲିଣ ବୋଲନ୍ତି ସୁରଗଣ
ଲକ୍ଷ୍ମଣଇନ୍ଦ୍ରଜିତ ଯୁଦ୍ଧ ବଡ଼ ଟାଣ ।
ଦୁହିଁଙ୍କର ଶରୀରରୁ ଯେ ରକ୍ତ ବହୁଅଛି
ଶକ୍ରଜିତ ବୋଲେ ଶୁଣ ସୁମିତ୍ରାର ବତ୍ସ ।
ଯୁବା କାଳରେ ସ୍ତ୍ରୀ ଭୋଗ ତୁ ପାସୋରିଲୁ
ମରିବା ପାଇଁ ମୋହର ସମ୍ମୁଖରେ ପଡ଼ିଲୁ ।
ତୁ କାହିଁ ଜାଣିବୁରେ ଯୁଦ୍ଧର ଚରିତ
ନ ଜାଣି ହୁତାଶନରେ ପଶିଲୁ ବାତୁଳ ।
ମୁହିଁ ସେ ମେଘନାଦ ନ ଜାଣୁକି ମୋତେ
ବିଭୀଷଣ ଖୁଡ଼ୁତା କି କହିନାହି ତୋତେ ।
ଶତେକ ବେଳ ମୁହି ଜିଣିଲି ସୁର ଆଳ
ମୋହର ମୁଖ ଦେଖି ଡରନ୍ତି ଦିଗପାଳ ।
ମେରୁ ପର୍ବତକୁ ମୁ କରିପାରଇ ଧୂଳ
ସ୍ୱର୍ଗପୁର ଆଣିଣ ଥୋଇବି ମହୀଆଳ ।
ପୃଥିବୀ ବିଦାରିବି ନାରାଚର ଘାଏ
ସପ୍ତସିନ୍ଧୁ ଶୁଖାଇବାକୁ ମୋହର ବଳ ଯାଏ
ପାତାଳ ଭୁବନ ମଞ୍ଚକୁ ଆଣି ମୁଁ ପାରଇ
ଏହିକ୍ଷଣି ତୋତେରେ ନାରକେ ସିଂହାରଇ
ମୋହର ମୁଖେ ପଡ଼ିଲେ କେଉଁଜନ ଯିବ
ଦେବତାଏ ରଖିଲେ ଜୀବନ ନ ପାଇବ ।
ଲକ୍ଷ୍ମଣ ବୋଇଲେ ତୁହି ଶୁଣରେ ରାବଣି
ମୁହି ତୋ ବଳ ପୁଣି ଅଛଇଁରେ ଜାଣି ।
ଜନମ ହୋଇଲେ ଅବଶ୍ୟ ନାଶଯାଇ
ଥିର ହୋଇ ଏଥିରେ ଗୋଟିଏ କେହିନାହି
ଏହୁ ସଂସାର ଯେତେ ସର୍ଜିଲ ଦଇବ
ପ୍ରଳୟ କାଳରେ ପୁଣ ସେହୁ ନାଶ ଯିବ ।
ଚନ୍ଦ୍ର ସୂର୍ଯ୍ୟ ଦୁହେଁରେ ଆତଯାତ ହୋନ୍ତି
ଯେ ଯାହାର ବେଳ ସେ ଭୋଗକରି ଯାନ୍ତି ।
ଶୀତ ବରଷାରେ ଗ୍ରୀଷମ ଋତୁ କାଳ
ଆତଯାତ ହୁଅନ୍ତି ଯେ ଯାହାର ବେଳ ।
ଦିବସ ସଞ୍ଜଲେରେ ରାତ୍ର ପୁଣି ହୋଇ
ରାତ୍ର ହୋଇ ଦେଖ ପୁଣ କାଳକ ନଥାଇ ।
ପୁଣିହି ଦିବସରେ ପୁଣିହି ରାତ୍ର ହୋଏ
ବାର ତିଥି ନକ୍ଷତ୍ର ମାସ ପକ୍ଷ ଯାଏ ।

ଦ୍ୱୀପକେ ସମୁଦ୍ରେ ଅଟେ ସମୁଦ୍ରେକ ଦ୍ୱୀପେ
ଜମ୍ବୁଙ୍କର ନାମ ହୋଏ ନାମକେ ସ୍ୱରୂପେ ।
ମର୍ତ୍ତ୍ୟପୁରେ ଜନମି ସମସ୍ତ ନାଶ ଯାଇ
ସାର ହୋଇ ଏ ସଂସାରେ କଥା ଏକ ନାହିଁ
ସ୍ତ୍ରୀ ପୁରୁଷ ସତ ମିଛ ଧର୍ମ ଅଧର୍ମ ଅଛି
ଆତଯାତ ଜନମ ମରଣ ଗସ୍ତଗଛି ।
ଏକା ହୋଇ ପଦାର୍ଥେ ଏଥିରେ କିଛି ନାହିଁ
ବେଦ ବଚନ ଏଥିରେ ବେଦମତ ହୋଇ ।
ଶାସ୍ତ୍ରାର୍ଥ ପରମାର୍ଥ ଏହୁ ଦୁଇ ମତ
ସତ୍ୟ ତ୍ରେତା ଦ୍ୱାପର କଳି ଆତଯାତ ।
ନଶ୍ଚଳ ହୋଇକରି କଥାଏ ଏଥି ନାହିଁ
ହାନି ଅପଚୟେ ସବୁଠାରେ ଥାଇ ।
ପୃଥ୍ୱୀ ଆପ ତେଜ ବାୟୁ ଆଦର ଆକାଶ
ଏମାନେହେଁ ଯାନ୍ତି ପୁଣି ସେ ଯାହାର ପାଶ
ପୃଥିବୀକୁ ମେରୁଗିରି ଧାରଣା ଅଟଇ
ମାଟି ବାଲି ପଥର ଅଟଇ ଏହୁ ମଧ୍ୟ ।
ମାଟିରୁ ବାଲି ଜାତ ବାଲିରୁ ଶିଳା ହୋଇ
ସତ ରଜ ତମ ତିନଗୁଣ ସମ ନୋହି ।
ଉଦୟ ସନ୍ଧ୍ୟା ମଧ୍ୟାହ୍ନ ଏହୁ ତିନ କାଳ
ଆତଯାତ ହେଉଛନ୍ତି ସେ ଯାହାର ବେଳ ।
ଭୂ କରେ ଚର ହୋଇବୁ ବସ୍ତୁରୁ ଅସୁର
ଏ ପୃଥ୍ୱୀର ନାମରେ ଅଟଇ ମୃତ୍ୟୁ ପୁର ।
ଏଥେ ଜାତ ହୋଇଲେ ଅବଶ୍ୟ ପ୍ରାଣହାର
ଭୁବୋଇଲେ ମୋତେ କେହି ନପାରିବେ ମାରି
ପୂର୍ବର ଭାଗ୍ୟ ଥିଲା ସମସ୍ତ ଭୋଗ କଲୁ
ମରିବାର ବେଳେ ମୋର ସମ୍ମୁଖରେ ପଡ଼ିଲୁ ।
ଆଜ ସେ ଜାଣିମା ତୋହର ଷର୍ଦ୍ଦିପଣ
ବାଞ୍ଛ ନାରଚରେ ସେବନ ପରାଣ ।
କଥା କହୁଛନ୍ତି ସେ ବନ୍ଧୁଛନ୍ତି ଶର
ଏମନ୍ତ ସମୟରେ କାଳଞ୍ଜ ଅସୁର ।
ଉଥେକ ଆବେଶ ସେ ପଶିଲା ସମର
ରକ୍ତ ପ୍ରାୟେ ଦିଶଇ ତାହାର ଶରୀର ।
ଋକ୍ଷ କପି ବଳ ସେ ଆସୁଅଛି ମାରି
ନିଃଶ୍ୱାସକରେ ପୁଣି କୋଡ଼ିଏ ସଂହାରି ।
ଦେଖିଣ ବିଭୀଷଣ ଧାଇଁଲା ଅତି ବେଗେ
ଲୁହରେ ମିଳିଲା ଯାଇଁ କଳଞ୍ଜ ଦୈତ୍ୟ ଆଗେ

ଦୁଇ ଦୈତ୍ୟଙ୍କର ଲାଗିଲା ପୁଣ ଯୁଦ୍ଧ
ସ୍ୱର୍ଗରେ ଥାଇଣ ଦେଖନ୍ତି ବିବୁଧ ।
ଭୁହୁଡ଼ି ପ୍ରାୟେକ ସେ ବନ୍ଧୁଛନ୍ତି ବାଣ
ଏକ ଏକ ନାରାଚ ଶବଦ ଗର୍ଜ୍ଜ ଟାଣ ।
ବଜ୍ରଘାତ ଜାଣିଣ ଶୁଭଇ ଗୁଣ ଘୋଷ
ନାରାଚଙ୍କ ତେଜ ସେ ବଜ୍ରର ସଦୃଶ ।
ଲକ୍ଷ୍ମଣ ଇନ୍ଦ୍ରଜିତର ଯୁଦ୍ଧ ଅପ୍ରମିତ
ସ୍ୱର୍ଗରେ ଥାଇଣ ଦେଖନ୍ତି ପୁରୋହିତ ।
ଭୁହୁଡ଼ି ପ୍ରାୟେକ ସେ ଦିଶଇ ରଣ ଭୁଇଁ
ଏକକୁ ଆରେକ ଚହ୍ନିନ୍ତା କେହି ନାହିଁ ।
ସାତ ଅସ୍ତ୍ର ବାଛିଣ ବିନ୍ଧିଲା ଇନ୍ଦ୍ରଜିତ
ଦେଖିଣ ନିବାରିଲେ ସୁମିତ୍ରାର ସୁତ ।
ଅକ୍ଷୟ ବସ୍ତ୍ର ସେ ପିନ୍ଧିଲେ ରାମ ଭାଇ
ସହିବ ଅସ୍ତ୍ରେ ଅପୂର୍ବ ପ୍ରତି ଅସ୍ତ୍ର ଦେଇ ।
ଦୁଇ ଅସ୍ତ୍ର ବାଟରେ ହୋଇଲେ ଭେଟାଭେଟି
ହାଦୋଡ଼ା ବାଜିଣ ସେ ଅଗ୍ନି ଜଳି ଉଠି ।
ନିର୍ଘାତ ପ୍ରାୟେ ସେ ଶବଦ ଶୁଭିଲା
ସହସ୍ର ତେଜରେ ସୂର୍ଯ୍ୟ କିରଣ ଲୁଚିଲା ।
ଦୁଇ ଅସ୍ତ୍ର ଗର୍ଜି ସେ ପଡ଼ିଲେ ଭୂମିତଳେ
ଉଲ୍କାପାତ ଯେସନେ ହୁଅଇ ପ୍ରଳୟ କାଳେ
ଏସନେକ ସମୟେ ଋଷଭ ସୁଷେଣ
ଯାଇଣ ବେଢ଼ିଲେ ସେ ଯେ ରାବଣ ନନ୍ଦନ
ସଙ୍ଗର ସେନାପତି ସେ ଶତବାଳି ମାଳ
ମହେନ୍ଦ୍ର ବୃହନ୍ଦ ହନୁମନ୍ତର ପିଅର ।
ଗବଏ ଗବାକ୍ଷ ସେ ଗନ୍ଧମାଦନ
ଦଧିମୁଖ କାଳମୁଖ କଞ୍ଚଣ ସୁଶୋଭନ ।
କୁନ୍ଦ କାମୋଦ ଆଦର ଶରସେତୁ ମାଳ
ଧାଇଁଲେ ଋକ୍ଷକପି ଧରି ତରୁଶୀଳ ।
ଇନ୍ଦ୍ରଜିତ ରଥରେ ବେଢ଼ିଲେ ସାର ଯାଇ
ଘୃଣ ଅଶ୍ୱକୁ ମାରି ଦେଲେ ସେ ପକାଇ ।
ଚକ୍ଷୁର ମଟକରେ ବାହୁଡ଼ିଲେ ପୁଣି
ସାରଥିକ ଲକ୍ଷ୍ମଣ ସେ ପକାଇଲେ ହାଣି ।
ବିରଥି ହୋଇଲା ସେ ଯେ ରାବଣର ସୁତ
ଲକ୍ଷ୍ମଣଙ୍କୁ ଭର୍ତ୍ସିଣ ବୋଲଇ ଇନ୍ଦ୍ରଜିତ ।
କ୍ଷଣେ ରହିଥାଅ ମୁଁ ଆସଇ ସଜହୋଇ
ପିତା ନ ଜାଣଇ ଆଜ ଆସଇ ତାକୁ କହି ।

ସୈନ୍ୟଙ୍କ ସଙ୍ଗରେ ତୁ ଯେ ଯୁଝୁଥାଅ ବୀର
ବିରଥୀ ହୋଇଲି ମୋର ନାହିଁ ରଥବର ।
ଏତେ ବୋଲିଣ ଭଗ୍ନ ରଥରୁ ଓହ୍ଲାଇଲା
ସୈନ୍ୟଙ୍କର ସଙ୍ଗରେ ଲକ୍ଷ୍ମଣ ଯୁଦ୍ଧକଲା ।
ବିଷମ ସମର ଯେ କରଇ ରାମଭାଇ
ପଳାଇଲେ ଦୈତ୍ୟ ଯେ ପଛକୁ ନ ଚାହିଁ ।
ଦୈତ୍ୟଙ୍କର ପଳାନ୍ତେ ରାବଣ ସୁତ ତିନ
ତିନିରଥ ଚଢ଼ିଣ ଆଇଲେ ବେଗେ ଜାଣି ।
ଯମଜିତ ନାଗଜିତ ଦେବଜିତ ତିନ
ଲକ୍ଷ୍ମଣଙ୍କ ପାଶରେ ପ୍ରବେଶ ହେଲେ ପୁଣି ।
କରନ୍ତି ସମର ସେ ଅତି ବଡ଼ ଟାଣ
ବୋଲନ୍ତି ଶ୍ରୀରାମ ଭାଇକରେ ମାରିବା ଏକ୍ଷଣ
ଏତେ ବୋଲି ତିନ ବୀର ଅସୁର ଶର କଲେ
ନାରାୟଣ ଅସ୍ତ୍ରେ ତାହା ଲକ୍ଷ୍ମଣ ନିବାରିଲେ
ବଜ୍ର ଶର ପେଷିଲେ ଶ୍ରୀରାମର ଭାଇ ପୁଣ
ତିନଙ୍କର ତିନଶରେ ମୁଣ୍ଡ ହାଣିଲେ ତକ୍ଷଣ ।
ତିନିରଥୀ ପଡ଼ିବାରେ ଦୈତ୍ୟବଳ ଲାଗି
ମାଇଲେ ରାମ ଭାଇ କ୍ରୋଧ ହୋଇ ବେଗି ।
ଏକା ଶରକରେ କୋଟିଏ ଲେଖାଏଁ କାଟି
କୋଡ଼ିଏ ଶର ଯେ ମାଇଲେ ଲେଉଟି ।
ବହିଲା ରକ୍ତ ନଦୀ ତିନତାଳ ଉଚ୍ଚରେ
ନାଚିଲେ କବନ୍ଧେ ଯେ ହରଷ ମନରେ ।
ଏଥୁଅନନ୍ତରେ ଯେ ଶୁଣିମା ଦିବ୍ୟରସ ।
ପାର୍ବତୀ ପଚାରିଲେ ଶୁଣିମା ଦିଗବାସ ।
ଇନ୍ଦ୍ରଜିତ ଜନ୍ମାଇ ବାହୁଡ଼ିଗଲା ପୁଣ
ଅସୁର ସୈନ୍ୟ ଜନ୍ମାଇ କଲା ସେ ରଣଭଣ
ଏହା ମୋତେ ସଞ୍ଚିପି କହିବା ଦିଗବାସ
ଆଦିଅନ୍ତ କରିଣ ଯେ ଶୁଣିମା ଦିବ୍ୟରସ ।
ଉମାର ବଚନରେ କହନ୍ତି ଶୂଳପାଣି
ଶୁଣ ପ୍ରାଣପ୍ରିୟା ଗୋ ରାମାୟଣ ବାଣୀ ।
ଲକ୍ଷ୍ମଣର ଯୁଦ୍ଧ ଯହୁଁ ଦେଖିଲା ଇନ୍ଦ୍ରଜିତ
ବିଚାରିଲା ଆଜ ତ ହୋଇଲା ବିପରୀତ ।
ଏବେ ବୁଦ୍ଧି ମୁଁ ଯେ କରିବି ପୁଣ କିସ
ସଂଗ୍ରାମେ ଯତିର ଆଜ ବଢ଼ଇ ସାହସ ।
ପୂର୍ବେ ବେଦବର ଦେଲେ ଯେବଣ ମନ୍ତ୍ରର
ସେ ରଥେ ଚଢ଼ିଣ ଏବେ କରିବି ସମର ।

ସଂଗ୍ରାମ ଭୂମିରୁ ଯେ ଅତିବେଗେ ଯାଇଁ
ଯାଗ ଆରମ୍ଭ କଲା ଶୁଚିବନ୍ତ ହୋଇ ।
ଏମନ୍ତ ବେଳେ ବୀର ପଶିଲା ଯାଗଶାଳେ
ପ୍ରବେଶ ହେଲା ଯାଇଁ ନିକୁମ୍ଭିଳା ବଟତଳେ
ଦୂତ ପେଷିଣ ସେ ଯେ ଆଣିଲା ହୋମବିଧି
ଯେସନେକ ପୂର୍ବେ ଧାତା କହିଣ ଅଛୁ ସିଦ୍ଧି
ମହାଅନଳ ଜାଳିଣ ବ୍ରହ୍ମାଙ୍କୁ କଲା ଧ୍ୟାୟେ
ହୋମରେ ଘୃତ ଢାଳଇ ସେ ଜଳଧାରପ୍ରାୟେ
ଅଗ୍ନି ଦେବତା ଘୃତ ପାଇ ବିକରାଳ ମୁର୍ତ୍ତି
ମେଷ ଛାଗଳ ଦେଇ ସେ ଅଗ୍ନିକି କରେ ଭକ୍ତି
ବସିଲେକ ମହାତମା ଯୋଗ ରୂପ ଧ୍ୟାଇ
ଯେସନେ କରେ ପୂର୍ବେ ଧାତା ଥିଲେ କହି
ଏକ ଅକ୍ଷର ବୀଜ କୁଣ୍ଡରେ ସମ୍ପାତି
ସେ ମନ୍ତ୍ର ପଢ଼ଇ ସେ ବିଶ୍ରବାର ନାତି ।
ଏସନକ ସମୟରେ ବିଭୀଷଣ ବୀର
କାଳଞ୍ଜନ ଦୈତ୍ୟ ସଙ୍ଗେ ସମର ମହାଘୋର
ଅବିଶ୍ରାମ ଯୁଦ୍ଧ ସେ ହୋଇଲା ବେଳୁବେଳ
ସ୍ୱର୍ଗେ ଦେଖି ପ୍ରଶଂସା କରନ୍ତି ଆଖଣ୍ଡଳ ।
ଆମୋଦମୁଦ୍‌ଗର ପେଷିଲା କାଳଞ୍ଜନଦୈତ୍ୟ
ଦୈତ୍ୟର ମୁଦ୍‌ଗର ବିଭୀଷଣ ଛେଦିଲା ତୁରିତ
ପୁଣିହିଁ ବିନ୍ଧିଲା ବେଗେ ଅର୍ଦ୍ଧଚନ୍ଦ୍ର ବାଣ
ସୂର୍ଯ୍ୟବର୍ତ୍ତିକେ ଚର୍ମରେ ଛେଦିଲା ବିଭୀଷଣ ।
ପୁଣ ପୁଣ ଶର ଯେ ବିନ୍ଧଇ ନିରନ୍ତର
ଦିବ୍ୟ ଅସ୍ତ୍ରେ ତାହା ଛେଦଇ ବିଭୀଷଣ ବୀର
କୋପରେ ବିଭୀଷଣ ବ୍ରହ୍ମଶର ଧଇଲା
ମନ୍ତ୍ର ପଢ଼ି ଦୈତ୍ୟର ଉପରେ ପେଷିଲା ।
କାଳଞ୍ଜନ ଉପରେ ପଡ଼ିଲା ଶର ଯାଇଁ
ରଥରୁ ତଳେ ପଡ଼ିଲା ଦୁଇଖଣ୍ଡ ହୋଇ ।
କାଳଞ୍ଜନକୁ ଛାଡ଼ିଣ ବିଭୀଷଣ ବଡ଼ରାଗ
ସୈନ୍ୟକୁ ମାଇଲା ସେ ଜାଣି ମହାନାଗ ।
ବାଉଲକ୍ଷ ଦନୁଜବଳ ନିବାରି ସେହୁ ହେଲେ
ତେଣେ ଦୈତ୍ୟବଳ ପଳାନ୍ତି ବିକଳେ ।
ଇନ୍ଦ୍ରଜିତ ବାହୁଡ଼ନ୍ତେ ବିଭୀଷଣ ଗଲା
ସଂଗ୍ରାମ ଉପେଖନ୍ତେ ଲକ୍ଷ୍ମଣ ପାଶେ ହେଲା
ବିଭୀଷଣ ବୋଇଲା ଶୁଣ ଶ୍ରୀରାମର ଭ୍ରାତ
ଏତେବେଳେ ଛାଡ଼ ଜନ୍ମା ଦେଲା ଇନ୍ଦ୍ରଜିତ ।

ନିକୁମ୍ଭିଳା ବଟତଳେ ହୋମ ଯୋଗାଡ଼ୁଅଛି
ଦେବଦଳନ ରଥେକ ହୋମରୁ କାଢୁଛି ।
ସେ ରଥରେ ବସିଲେ ସେ ଜିଣିବା ଜଗତ
ବ୍ରହ୍ମାଙ୍କର ଆଜ୍ଞା ଏ ଅଟଇ ପୁଣି ସତ୍ୟ ।
ସେ ରଥେ ବସି ସେହୁଁ ଦୁଇବେଳ ଅଇଲା
ନାଗପାଶେ ବାନ୍ଧି ପୁଣ ବ୍ରହ୍ମଅସ୍ତ୍ର କଲା ।
ବେଳେକ ପିତାସଙ୍ଗେ ପଶିଲେ ଗଲା ଯୁଝି
ଶକ୍ତି ମାରିଣ ସେ ଯେ ଯଶ କଲା ସେଥି ।
ହନୁମନ୍ତ ସେ ରଥ ପାତାଳେ ରଖିଦେଲା
ଦେବଦଳନ ରଥକୁ ପାତାଳେ ପୂରାଇଲା ।
ପୁଣି ସେ ବିମାନ ସୁମରିଲେ ଆସେ
ଦେବଦଳନ ରଥ ହୋମ କଲେ ବଶେ ।
ଏବେ ମୋର ବୋଲ ତୁମ୍ଭେ କର ସନ୍ନିମର୍ଜି
ନ ଜାଣକ ଇନ୍ଦ୍ରଜିତ ଅଟେ କେଡ଼େ ଛଳୀ ।
କଞ୍ଚିତ ନାରକେ ଜଗତ ଦହି ସେ ପାରଇ
ସେ ରଥେ ବସିଲେ ତାକୁ କେହି ନ ଜିଣଇ
ଏବେ ନିଶ୍ଚୟେ ରଥେ କରିବ ଉପଗତ
ଯଜ୍ଞରେ ବସିଅଛି କୁମର ଇନ୍ଦ୍ରଜିତ ।
ରଥ ଉପଗତ ନୋହୁ କର ହେ ଅନତ
ପାରିଲେ ଭଗ୍ନ ତାର କର ହେ ଯଜ୍ଞରଥ ।
ଶୁଣିଣ ଲକ୍ଷ୍ମଣ ହନୁ ଅଙ୍ଗଦକୁ କହି
ଯାଅ ବାବୁରେ କାର୍ଯ୍ୟ କର ବେଗ ହୋଇ ।
ଆଜ୍ଞାପାଇ ହନୁ ଅଙ୍ଗଦ ଯେ ଗଲେ ବହନ
ନିକୁମ୍ଭିଳା ବଟ ତଳେ ଜଳଇ ହୁତାଶନ ।
ମଣ୍ଡନରେ ବସିଅଛି ରାବଣ ନନ୍ଦନ
ଦେଖିଣ କୋପକଲେ ଅଙ୍ଗଦ ହନୁମାନ ।
ମଳମୂତ୍ର କଲେ ସେ ଯେ ବଟସ୍ଥରେ ବସି
ହୁତାଶନରେ ପଡ଼ନ୍ତେ ଅଗ୍ନି ମଳିନ ହସି ।
ରଥର ପାତାଙ୍ଗ ଯେ ବାହାର ହୋଇଥିଲା
ମଳମୂତ୍ର ପଡ଼ନ୍ତେ ପାତାଳେ ପଶିଲା ।
ବଟରୁ ଡ଼ାଳେ ସେ ଯେ ଭାଙ୍ଗିଲା ହନୁମନ୍ତ
ଧୂମ ନିବାରିଣ ସେ ଯେ କଲାକ ଅନାର୍ଥ ।
ଏସନକ ସମୟେ ତାର ରକ୍ଷା ଲୋକମାନେ
ଇନ୍ଦ୍ରଜିତ ଆଗରେ କହିଲେ ବହନେ ।
କାହାକୁରହିଁ ହେସ୍ୱାମୀ ଭାଙ୍ଗିଲେତୋରହୋମ
ନିକୁମ୍ଭିଳା ବଟ ଭାଙ୍ଗିଣ କଲେ ସେ ନିଧନ ।
ଚକ୍ଷୁ ଫେଡ଼ିଣ ସେହୁଁ ଚାହିଁଲା ମେଘନାଦ
କପିଙ୍କ ଗର୍ଜନରେ ଧରଣୀ ସ୍ତବଧ ।
ଲଙ୍କାପୁରେ ହାଳହୋଳ ପଡ଼ିଲା ବହୁତ
କେ ବୋଲେ କେଣିକି ଗଲା ଇନ୍ଦ୍ରଜିତ ।
କାଲି ଯେ ସଂଗ୍ରାମରେ ପ୍ରତିଜ୍ଞା କରିଥିଲା
ସୀତାଙ୍କୁ କେଶ୍ନେ ମାରି ସଂଗ୍ରାମେ ଜିଣିଲା ।
ବୋଇଲା ରାବ ପାହିବାକୁ ଗୋଟିଏ ନଥିବେ
ବାନରେ
ଏବେ ତ ଉପଦ୍ରବ କରନ୍ତି କଟକରେ ।
ରାବଣଙ୍କ ଲକ୍ଷ୍ମଣ ପକାଇଲାଣି ମାରି
ରକ୍ତନଦୀ ବହଇ ସବୁ ଦାଣ୍ଡ ପୂରି ।
ପଦାତି ସେନାପତି ଗଣନା ନ ଯାଇ
ଦୁଇଶତ ଯୁବୁରା ମାଇଲା ରାମଭାଇ ।
ଯୁଦ୍ଧର ବେଳେ କି ଗୋଟାଏ ସେହୁ କାଣ୍ଡ
ଏତେବେଳେ ଯୁଦ୍ଧ କଲେ କି ସମ୍ଭାଳ ।
ଯିବ ଲଙ୍କାଖଣ୍ଡ
ଏସନ ଶବଦ ସେହୁଁ ଶୁଣିଲା ଦନୁଜ
ମନରେ ଗରୁଡ଼ଖଙ୍ଗ ରାବଣ ଆତ୍ମଜ ।
ହନୁମନ୍ତ ଅଙ୍ଗଦକୁ ଦେଖିଲା ଇନ୍ଦ୍ରଜିତ
ବିଭୀଷଣ ପେଷିବାର ଜାଣିଲାକ ତଥ୍ୟ ।
ଚଣ୍ଡାଳ ଖୁଡ଼ୁତା ମୋର କହିଲା ମୃତ୍ୟୁଭେଦ
ଏତେ ବିଚାରି ମନେ ବାହୁଡ଼େ ମେଘନାଦ ।
ଦିବ୍ୟ ରଥେକ ଆଣି ସାରଥି ସାଧିଦେଲା
ତହିଁରେ ମହାବୀର ବିଜେ ଯାଇଁ କଲା ।
ସେହୁ ରଥବର ଯେ ସବୁ ହୀରାମୟେ
ନବରତ୍ନ ଜଡ଼ିତ ସିନ୍ଦୂର ପରାୟେ ।
କାଳକେତୁ ଧ୍ୱଜ ବହନ ତରଳ
ଦେଖିଲେ ଭୟଭଳ ହୋଇବେ ଅନ୍ତରାଳ ।
କରେ ଧନୁ ଧରି ସେ ପଶିଲା ଆସି ରଣେ
ଶ୍ରୀରାମଙ୍କ ସୈନ୍ୟ ପଳାଇଲେ ଏଣେ ତେଣେ
ନୟନ ଭବଟିଲା ଦର୍ଶନ ରୂପି ରାଗେ
ଦେଖି କପିଦଳ ନ ରହିଲେ ତାର ଆଗେ ।
ବିଭୀଷଣ ଚାହିଁଣ ବୋଲଇ ଇନ୍ଦ୍ରଜିତ
ଧିକ ଧିକ ହେଉ ତୋର ନିଲଜ ଜୀବନତ ।
ଛଳୀହୋଇ ତୁରେ କହିବାକୁ ଭୟ କଲୁ
ଶତ୍ରୁର ତହିଁ ଯାଇରେ ଶରଣ ପଶିଲୁ ।

ସୁକେଶୀ ଦଇତୁଣୀର ଗର୍ଭରୁ ସମ୍ଭୂତ
ମାଳି ସୁମାଳି ରତନ ଏ ମାଲ୍ୟବନ୍ତ ।
ମାଳି ମାଲ୍ୟବନ୍ତଙ୍କୁ ଶ୍ରୀହରି ନାଶ କଲେ
ସୁମାଳି ପଳାଇ ଯାଇ ପାତାଳେ ପଶିଲେ ।
ତାହାଙ୍କର ଦୁହିତା ଯେ ଅଟେ କଇକେଶୀ
ତାହାକୁ ବିଭାହେଲେ ବିଶ୍ରବା ମହାଋଷି ।
ମୋଠାରୁ ତିନିପୁତ୍ର ହୋଇଲେ ତୁମ୍ଭେ ଜାତ
ମାତାର ଅଂଶ ସେନଣହୋଇଲେ ଦଇତ ।
ଜ୍ୟେଷ୍ଠଭାଇ ରାବଣ ଜିଣିଲା ନ୍ତନପୁର
କଟକ କଲା ଆସି ସମୁଦ୍ର ଭିତର ।
ଚଉଦ ଭୁବନୁ ଯେତେ ଧନ ବସ୍ତୁ ଆଣି
ଲଙ୍କାଗଡ଼ରେ ଠୁଳ ସେ କଲା ଦଶଶିରି ।
କୁମ୍ଭକର୍ଣ୍ଣ ଭାଇ ତାର ନିଦ୍ରା ଭୋଗକଲା
ସବୁ ସମ୍ପଦ ତୋତେରେ ରାବଣ ସମର୍ପିଲା ।
ଅକଣ୍ଟକ ରାଜ୍ୟ ତୁରେ ଭୋଗ କରୁଥିଲୁ
ଅସମୟ ଦେଖି ପୁଣ ଗୁଡ଼ ପଳାଇଲୁ ।
ଶତ୍ରୁର ସଙ୍ଗରେ ଥାଇ କୁଟୁମ୍ବ ଛିଦ୍ର ବହୁ
ଏତେକ ପାପ ଆତ୍ମା କେବଣ ଗୁଣେବହୁ ।
ବିଶ୍ୱାସ ଘାତକ ତୁରେ ଅଟୁରେ ଚଣ୍ଡାଳ
ଏତେକ ନିର୍ଲଜ୍ଜ ତୁରେ ଜୀଇଁବୁ କେତେକାଳ
ଧର୍ମଶାସ୍ତ୍ର ପୁରାଣ ଶୁଣିନାହୁଁ କରେ କର୍ଣ୍ଣେ
ସୋଦରଦ୍ରୋହକଲେଯେମନ୍ତ ହୋନ୍ତି ଜନେ
ଏକା ଜଣେ ଜୀଇରେ କୁଟୁମ୍ବ ମରାଇଲୁ
ଆପଣେ ନମାରି ପର ହସ୍ତରେ ଶାସ୍ତି ଦେଲୁ
ମୁହିଁ ତୋର ପୁତୁରରେ ମୋତେ ମନ୍ଦପାଞ୍ଚୁ
ମହିଆ ଭାଇ କୁମ୍ଭକର୍ଣ୍ଣରେ ମଲାମୋରହେତୁ
ଲଙ୍କାଗଡ଼ରେ ରାଜା ହୋଇବୁ ବୋଲି ପାଞ୍ଚୁ
ତେଣୁକରି ପାପିଷ୍ଠରେ କୁଟୁମ୍ବ ମନ୍ଦପାଞ୍ଚୁ ।
ରକ୍ଷ କପିମାନଙ୍କୁ ତୁ ପାଇଣ ଅଛୁ ସାହା
ତପସୀଦୁଇଜଣଙ୍କରତୁହେଲୁଡାହାଣ ବାହା
କୁଟୁମ୍ବ ଛେଦଭେଦ କହିକୁ ମରାଇଲୁ ବଂଶ
ଏଧନ୍ତ ବୁଦ୍ଧି କର୍ମାରେ କଲୁତୁ କାଳପାଂଶ
ନ ଜାଣୁ କି ରାବଣର ଶିର ଶୂରପଣ
ଚକ୍ଷୁରେଖ ଦେଖିନାହିଁ କରେ ମୋରରଣ ।
ସଂଗ୍ରାମଭୂମିରେମୁଁରେ କାହାକୁ ଅଛି ହାରି
ଏ କଥାକୁ ହେତୁ କର୍ମା ନ କଲୁ ବିଚାରି ।

ଆଜ ତୋର ଜୀବନ ପେଷିବ ଯମଆଳ
କରେ ଶସ୍ତ୍ରଧରି ଝମକାଏ କରବାଳ ।
ବିଭୀଷଣ ବୋଇଲା ଶୁଣ ତୁରେ ପୁଷ
ମୁହିଁ କର୍ମାଇ ନାଶ କରିବି କୁଳଗୋଷ ।
ଆପଣାର ଦୋଷକୁରେ ନ ବିଚାରୁ ପୁଣ
ଶ୍ରୀରାମଙ୍କର ଚରଣୀକରେ ଆଣିଲେ କେସନ
ଏତେ ଏତେ ମନ୍ଦପଣ ତୁମ୍ଭର କେଣେଗଲା
ରମ୍ଭାକୁ ହାରିଲେ ନଳକୁବେର ଶାପଦେଲା
କଇଳାସ ଉପାଡ଼ିଲେ ନନ୍ଦଯେ ଦେଲେଶାପ
ବୁଝିନାହୁଁ କରେ ଏହା କରିଛୁ ତୋରବାପ
ଅଯୋଧ୍ୟାରେ ମାରିଥିଲେ ଶ୍ରୀରାମ ଉପରିବଂଶ
ସେବୋଇଲେମୋରବଂଶେହେବୁକୁପ୍ରାଣନାଶ
ବେଦମତୀ କନ୍ୟା ପୁଣ ତପ କରୁଥିଲା
ପିତା ଚଣ୍ଡାଳ ତୋର ତାହାକୁ ଧଇଲା ।
ବିଡମ୍ବ ନ କହିବାରୁ ଶାପଦେଲା ସତୀ
ବୋଇଲା ମୋହର ଯୋଗୁମାରିବୁ ଲଙ୍କପତି
ଏବଚନ କହିଦେଇ ଅଗ୍ନିରେ ଝାସଦେଲେ
ସେହିବେଦମତୀଦେଖିଏବେଜାନକୀହୋଇଲେ
ଜ୍ୟେଷ୍ଠଭାଇ କୁବେର ଦେଲା ପୁଣି ଶାପ
ଯେଣୁ ହୃଦୟରେ ତାହାକୁଚିନ୍ତିଲୁତୁମ୍ଭେପାପ
ସେବୋଇଲେମୁଁ ଯେବେତୋର ଜ୍ୟେଷ୍ଠଭାଇ
ମୋତେ ତୁ ହିଂସାକଲୁ ସାବତ୍ତ ଗୁଣବହି ।
ତୁମ୍ଭଙ୍କୁ ବିପତ୍ତି ନଷ୍ଟେ ପଡ଼ିବାରବେଳେ
ଭାଇ ଛଡ଼ାଛଡ଼ିରେ ହୋଇବ ସେକାଳେ ।
ସେହି କଥାକୁ ମୁ ଜାଣିଅଛି ହେତୁ କରି
ଯେତେ ଶାପ ତୁମ୍ଭର ସମସ୍ତ ସୁମରି ।
ଶ୍ରୀରାମ ଚରଣୀକରେ ଆଣିଲି ଭେଟାଇ
ମୁହିଁ ଜାଣି ଏବେ ମରିବ ଲଙ୍କସାଇଁ ।
ବ୍ରହ୍ମା କହିଥିଲେ ଯେ ନ ହରିବୁ ସୀତା
ଆପଣେ ଶ୍ଳୋକ ପତ୍ର ଲେଖିଛିତୋର ପିତା
ଏବେପାସୋରିଲତାହା ହେତୁ ତୁମ୍ଭରଥାଉ
ମୋତେ ମାରି ଧାଇଁଲରେ ଭଲ କଥାକହୁ ।
ଛିଆରିଲବୋଲି ମୋର ତେତେହେଁ ନକଲ
ଲଙ୍କାଗଡ଼ରୁ ମୋତେ ବାହାର କରିଦେଲ ।
ଭଲହେଲାସେ କଥାରେଯୋଗାଇଲାମୋତେ
ତୁମ୍ଭର ମନ୍ଦ ମୁଁ କର୍ମା ଚିନ୍ତିବ ଅନମିତେ ।

ନିଦ୍ରାଯିବା ଲୋକ ଯେ କୁମ୍ଭକର୍ଣ୍ଣ ପୁଣ
ଅହୋରାତ୍ର ତୋଳିଲ ଯୁଦ୍ଧକୁ ତୁମ୍ଭେ ପୁଣ ।
ପିତା ତୋର ଜାଣିଥିଲା ବ୍ରହ୍ମା-ଦେଲ ବର
କଣ୍ଠ ନ ପୂରୁ ଉଠିଲେ ମରିବ ନିକର ।
ଏବେ ତୋର ପିତା ଯେ ତାହାକୁ ତୋଳିଲା
ଜାଣୁ ଜାଣୁ ତାହାକୁ ସ୍ୱହସ୍ତେ ବଧ କଲା ।
ଅଧର୍ମପଣ ତୁମ୍ଭର ଯହୁଁ ସେ କହିଲ
ତେଣୁ ତୋ ପିତା କ୍ରୋଧନ୍ତି ହୋଇଲା ।
ଏକାଥରେ ଯାଇଣ ଫେରି ନ ଆସିଲ
ପୁତ୍ରନାତି ସଙ୍ଗତରେ ଜୀବନ ଚଳିଗଲା ।
ଭାରିଯା ବଧୂ ତାର ସଙ୍ଗରେ ଗଲେ ପୁଣ
ଦେଖୁଦେଖୁ ପୁତ୍ର ତୁରେ ହେଉଛୁ ଅଜ୍ଞାଣ
ଏବେ ବାପ ପୋଏ କି କରି ପାରିବ ଆଜ
କରୁଣା ସାଗର ଯେ ଅଟନ୍ତି ରାମରାଜ ।
ସୀତାଙ୍କୁ ହାତୁରେ ସମର୍ପିବ ଆଣି
ଶରଣ ପଶିଲେ ନ ମାରିବେ ରଘୁମଣି ।
ବାପ ପୋଏ ଭଜନ କରି ପାରିବ ଏହା କରି
ନୋହିଲେ ଦୋଷ ଏଥିରେ ନାହିଁଟି ମୋହର
ମୁହିଁ ଏବେ ତୁମ୍ଭଙ୍କୁ କହିଲି ସ୍ନେହଭାବେ
ମୋତେ କହି ପାରିବୁ ମୁଁ କହିଲି ଏ ଯୋଗେ
ଶ୍ରୀରାମଚନ୍ଦ୍ର ମୋହର ପ୍ରାଣର ଅଧିକାରୀ
ତାହାଙ୍କ ଆଜ୍ଞାରେ ମୁଁ ତୋତେ ପାରଇ ମାରି
ପୁତ୍ର ବୋଲିଣ ପୁଣ ପାପକୁ ଭୟ କରଇ
ନୋହିଲେ ତୋର ମୁଣ୍ଡ କାଟି ମୁଁ ପାରଇ ।
ସମରେ ପଶିଲେ ପୁଣି ଏଥିରେ ଦୋଷ ନାହିଁ
ଗୋବ୍ରାହ୍ମଣ ହୋଇଲେ ଯୁଦ୍ଧରେ ମାରଇ ।
ପିତାକୁ ପୁତ୍ର ମାଇଲେ ରଣରେ ଦୋଷନାହିଁ
ପୃଥ୍ୱୀ ଯେ ଭିଆଇ ଅଛି ଭବିଷ୍ୟ କହେସେହି
ଶୁଣି ଇନ୍ଦ୍ରଜିତ ମନରେ ତୋଷ ହେଲ
ପିତାଙ୍କୁ କହିଲେ ମୋର ରାଗହେବେ ପର ।
ତାର ମନେ ବିସ୍ମର ନ କଲା ଦଶଶିରା
କହିଲେ ଏହିକ୍ଷଣି ବଇରାଗ ମୋତେ କର ।
ଏତେବୋଲି ଖଡଗ ପକାଇଲା ତୋଳି
ଶୁଣି ଇନ୍ଦ୍ରଜିତ କୋପ ହୋଇଲା ପ୍ରଜ୍ୱଳ ।
ଗ୍ଳଣି ନାରଜ ବନ୍ଧିଲା କୋପମନା
କ୍ଷେପିଣ ଆସନ୍ତି ଶର ଝଳୁଳ ଜ୍ୟୋଛନା ।

ଦେଖିଣ ସଉମିତ୍ରି ବିଶ୍ୱାଷଣେ ପଞ୍ଚକରି
ତାର ଶସ୍ତ୍ର ଛେଦିଲେ ବାବଲ କରେ ଧରି ।
ଏ ସମୟେ ହନୁମନ୍ତ ଉଗାଳିଲା ଯାଇଁ
ଅତି ବଡ ପଥରେକ ମାଇଲା ନିଠାଇ ।
ବ୍ରହ୍ମବାଣ ଦେଖିଣ ଛେଦିଲା ଇନ୍ଦ୍ରଜିତ
ଦୂରୁ ଦେଖି ଧାଇଁଲେ ସୁମିତ୍ରାର ସୁତ ।
ଧନୁ ଉଞ୍ଚାଇଲେ ଲକ୍ଷ୍ମଣ ଆଗେ ମିଳି
ଏ ସମୟେ ଅସ୍ତ ଯେ ହୋଇଲେ ଅଂଶୁମାଳି
ସନ୍ଧ୍ୟା ପ୍ରହରରେ ପ୍ରବେଶ ପ୍ରଥମ ରଜନୀ
ସ୍ୱର୍ଗେ ଥାଇ ପୁଣ ଯେ ଭାଳନ୍ତି ସୁରମୁନି ।
ଗନ୍ଧର୍ବ ଯକ୍ଷଗଣ ରାଇଲେ ଦୁଇ ବଳ
ବୋଇଲେ ତୁମ୍ଭେ ଲଙ୍କା ଭୁବନକୁ ଚଳ ।
ଲକ୍ଷ୍ମଣ ଇନ୍ଦ୍ରଜିତ ସମର ଗରୁ ଟାଣ
ଦୈତ୍ୟ ନିଶାଚର ଆଜ କରିବ ମହାରଣ
ରକ୍ଷ ମର୍କଟ ପୁଣ ନିପାତ ହୋଇବେ ଆଜ
ତ୍ରୈଲୋକ୍ୟର ଶତ୍ରୁ ଯେ ଅଟଇ ମେଘନାଦ
ଇନ୍ଦ୍ର ସହିତରେ ତୁମ୍ଭେ ଦେବେ ସର୍ବେ ଯାଅ
ଶ୍ରୀରାମର ଭାଇକି ଅନ୍ତରୀକ୍ଷେ ଜଗିଥାଅ ।
ବ୍ରହ୍ମାଙ୍କର ଆଜ୍ଞାରେ ଅଇଲେ ସୁରଗଣ
ଦେଖିଲେ ଦୁହିଙ୍କ ଯୁଦ୍ଧ ଅତି ଅପ୍ରମାଣ ।
ଯେସନେ ବାସବ ବୃତ୍ରାସୁର ସଙ୍ଗେ ଯୁଝି
ସୁରଗଣମାନେ ତେସନକ ପ୍ରାୟେ ବୁଝି ।
ଲଙ୍କାଗଡ଼ ନରନାରୀ ଦେଖନ୍ତି ସମସ୍ତ
ଦୁଇବଳ ଲୋକ ସେଥିରେ ହୋଇଲେ ମଧ୍ୟସ୍ଥ
ଲକ୍ଷ୍ମଣ ଇନ୍ଦ୍ରଜିତ ସମର ଗୁରୁତର
ମୁଷଳ ଧାର ପ୍ରାୟେ ଯେ ବର୍ଷନ୍ତି ଶର ।
ଏକର ପେଶନ୍ତେ ଆରେକ ତାହା ନାଶି
ରଣଭୂମି ଗୋଟା ଯେ କୁହୁକମୟ ଦିଶି ।
କେବଣ ଶର ଗୋଟା ଅଗ୍ନିର ତେଜକାନ୍ତି
କେବଣ ଶସ୍ତ୍ର ଗୋଟା ଅର୍ଦ୍ଧ ଚନ୍ଦ୍ର ଜ୍ୟୋତି ।
କେବଣ କାଣ୍ଡ ଶକ୍ତି ସୂର୍ଯ୍ୟର ପ୍ରକାଶ
କେବଣ ଶସ୍ତ୍ର ଗଗନେ କମ୍ପାଇ ଦଶଦିଶ ।
କେବଣ ଶର ପବନନ୍ତୁ ବେଗେ ଆସି
ଏକକୁ ଏକଶର ଦୂଅନ୍ତି ପେଷା ପେଷି ।
ବରଷଣ ପ୍ରାୟେ ଦିଶନ୍ତି ଶରମାନ
ବେଳକୁବେଳ ଯୁଦ୍ଧ ସେ ବଢ଼ିଲା ଆକୁଆନ

ଶାର୍ଙ୍ଗିଣ ବନ୍ଧାବନ୍ଧି ଗ୍ରାଜଣ ଶର ମାରି
ଅପୂର୍ବ ସଂଗ୍ରାମ ଯେ କହିବ କେତ୍ତ ପାରି ।
ନବଖଣ୍ଡ ମେଦିନୀ ହୋଇଲା ଟଳମଳ
ଶସ୍ତ୍ରଙ୍କ ଶବଦ ଯେ ଗର୍ଜନ ମେଘମାଳ ।
ବଜ୍ର ଜ ମାଇଲା ପ୍ରାୟେ ଶସ୍ତ୍ରଙ୍କ ଆଘାତ
ଦୁହିଙ୍କର ଶରୀର ସେ ସର୍ବାଙ୍ଗ ରକତ ।
ଏକ ଦୁଇ ଚାରି ପୁଣ ଦଶବିଂଶ ବାଣ
ଏକକୁ ଏକ ଯେ ସମର ଗନ୍ତୁଟାଣ ।
ଶଏସହସ୍ର ଲକ୍ଷେ କୋଟିଏ ବାଣ ବନ୍ଧି
ମର୍ଦ୍ଧେ ସେ ଦକ୍ଷେ ନାଗର ସନ୍ଧାସନ୍ଧି ।
ନିଃଶ୍ୱାସର ତେଜ ଯେ ବେନ୍ତ ବେଳ ଆନ
ସହିବାକୁ ଆନ ଯୋଦ୍ଧା ନୁହନ୍ତ ଭାର୍ଜନ ।
ରଜନୀ ପାଇ ସୂର୍ଯ୍ୟଦେବତା ହେଲେ ତେଜ
ଦେବତା ବାହୁଡ଼ିଲେ ପାଇଲେ ପୁଣ ଲାଜ ।
ଦୁହିଙ୍କର ସମର ଯେ ବେନ୍ତ ବେଳ ପାଇ
ଲୁହାଡ଼ର ପ୍ରାୟେ ନାଗର ବଜନ୍ତ ପଶିଯାଇ
ଏକକୁ ଆରେକ ସେ ନ ଯୁଝନ୍ତ ରଣେ
ସ୍ୱର୍ଗପୁରେ ଥାଇଣ ଦେଖନ୍ତ ସୁରଗଣେ ।
ଇନ୍ଦ୍ରଜିତର ରଥ ଚଳଇ ଘନ ଘନ
ରତ୍ନବରେ ଯୋଚିଣ ଅଛଇ ଲକ୍ଷେ ଯାନ ।
ଏଗ ଦହନ ଶିରଲ ଜଡ଼ଇ ଫରହର
ବ୍ରହ୍ମଜାତି ହୀରରେ ନିର୍ମାଣ ରତ୍ନବର ।
ଦିବ୍ୟବେଶ ହୋଇଛି ଯେ ରାବଣ କୁମର
ଅବଶ୍ରାମ ସମର କରଇ ମହାଘୋର ।
ପାଦଗତି ହୋଇଣ ଲକ୍ଷ୍ମଣ ଯୁଦ୍ଧ କରି
ରଥ ପାହ୍ୱେ ବେଳ ହୋଇଲା ଦୁଇଘଡ଼ି ।
ଅଙ୍ଗଦ କୁମର ମିଳିଲା ଲକ୍ଷ୍ମଣଙ୍କର ଆଗେ
କରପଦ ଯୋଡ଼ିଣ କହଇ ସେହୁ ବେଗେ ।
ଏ ମୋହର କନ୍ଧେ ବିଜେ କରିବା ଗୋସାଇଁ
ପାଦଗତିରେ କେତେ ଯୁଝିବ ପଶିଯାଇ ।
ଦେଖ ଯାନ ତାର ଚଳଇ ଘନ ଘନ
କ୍ଷଣେ କ୍ଷଣେ ସେହୁ ଯେ କରଇ ଆଧାନ ।
ମୋହର କନ୍ଧରେ ବସିଲେ ଗମିବ ତାରପାଶ
ଦେଖ ଯାନ ତାହାକୁ ଚଳଇ ଘୋରହାସ ।
ନିଃଶ୍ୱାସକେ ବାଣ ସେ ଯେ ବନ୍ଧିଲା କୋଟି
ଖଗମାନର୍ଗେ ସେ ଅଇଲକ ଘୋଟି ।

ଲକ୍ଷ୍ମଣ ବୋଇଲେ ଭୁଜ୍ଝ ଶୁଣରେ କୁମର
କନ୍ଧରେ ବସିଲେ ଯୁଦ୍ଧ ନୁହଇ ବେଭାର ।
ବୃଷଭ ରୂପ ଅଙ୍ଗଦ ଧରି ବେଗ ତୁହି
ପିଠିରେ ବସି ଯୁଦ୍ଧ କରିବ ଯେ ମୁହିଁ ।
ଈଶ୍ୱରଙ୍କ ଯୁଦ୍ଧଗତି କରିବା ଆଜ ପୁଣ
ତେବେ ସେ ବଧ ହୋଇବ ରାବଣ ନନ୍ଦନ
ଶୁଣିଣ ତାରାସୁତ ବୃଷଭ ରୂପ ହେଲା
ଈଶ୍ୱରଙ୍କର ଯେହ୍ନେ ମହା ବୃଷଭ ପରା ।
ଦେଖିଣ ଦୁଇଦଳ ଆଶ୍ଚର୍ଯ୍ୟ ହୋଇଲେ
ଭଲରେ ଜଟାଧାରୀ ବୋଲିଣ ବୋଇଲେ ।
ଅଙ୍ଗଦ ପିଠି ଉପରେ ବିଜୟେ ଲକ୍ଷ୍ମଣ
ପବନରୁ ଅଙ୍ଗଦ ଚଳଇ ତକ୍ଷଣ ।
ତୁରିତେ ମିଳିଲେକ ଇନ୍ଦ୍ରଜିତ ରଥ ଆଗେ
ଦେଖିଣ ସଉମିତ୍ରି ହରଷ ସରାଗେ ।
ଅଙ୍ଗଦ ପିଠିରେ ଲକ୍ଷ୍ମଣ ବସି ତୁଷ୍ଟି
ନିମିଷକେ ବାଣ ପେଷିଲେ କୋଟି କୋଟି ।
ଗଗନ ପଥ ନିରୋଧ କଲା ଶର ପୀଡ଼ା
ତିଳାର୍ଦ୍ଧ ଶର ପଥ ନୋହିବ ଏଗ ଛଡ଼ା ।
ଦୁହିଁଙ୍କର ଧନୁରୁ ଯେ ଛୁଟିଲାଣି ଗୁଣ
କ୍ଷନ୍ତ ବୋଲି ନ କରଇ ବଳେମଳର ରଣ ।
ବାବୁ ସେ ଧନୁର୍ଦ୍ଧର ପରୀକ୍ଷା ଚର୍ମି ଭଲ
ଯେବଣ ବିଶ୍ୱକର୍ମା ନିର୍ମାଣ ତାକୁ କଲା ।
ଇନ୍ଦ୍ରଜିତ ରଥପରେ ଶର ପଡ଼ୁଅଛି
ଝିଙ୍କପକ୍ଷୀ ପରାୟେ ଦୂରକୁ ଦିଶୁଅଛି ।
ଶ୍ରୀରାମଚନ୍ଦ୍ର ଭାଇ ବନ୍ଧିଲେ ଲକ୍ଷେକାଣ୍ଡ
ମେଘନାଦ ଶରୀର ହୋଇଲା ଖଣ୍ଡ ଖଣ୍ଡ ।
କୋପରେ ଶକ୍ରଜିତ ତିନବାଣ ଘେନ
ମନ୍ତ୍ରିଣ ବନ୍ଧିଲା ଶର କରେ ଘୋରଧ୍ୱନ ।
ଅଗ୍ନି ପ୍ରାୟେ ତିନମୂର୍ତ୍ତି ହୋଇ ଚଳି ଆସି
ଲକ୍ଷ୍ମଣଙ୍କ ଲଲାଟରେ ଶର ଯାଇଁ ପଶି ।
ତିନଧାର ହୋଇ ରୁଧିର ବହୁଯାଏ
ମେରୁ ଗିରିରୁ ଯେସନେ ଗଙ୍ଗାଦେବୀ ବହେ
ପୁଣି ଇନ୍ଦ୍ରଜିତ ବିଶ୍ୱାସଣେ ପାଞ୍ଚଶର ମାରି
କେଡ଼େବଡ଼ କ୍ଷତୀ ମୋହେ ପଡ଼ିଲକ ଢଳି
ହନୁମନ୍ତକୁ ପଞ୍ଚାଶ ମାଇଲା ପୂରଇ
ବାଜନ୍ତେ କପିମଣି ଶୋଇଲା ମୋହ ଯାଇଁ

ସୁଗ୍ରୀବଙ୍କୁ ଦଶ ଅଙ୍ଗଦକୁ ଏଗାର
ଗନ୍ଧମାଦନ ସାରସଙ୍କୁ ହାଣେ ବାରବାର ।
ଜମ୍ବେବକୁ ଦୁଇ ସୁଷେଣକୁ ଚ୍ଚରି
ଶତବଳକ ବଂଶ ଦଶଜାନକୁ ପାଞ୍ଚ ମାରି ।
ବଳମୁଖକୁ ବିନ୍ଧିଲା ତିନିଶର ଘେନି
ଏମନ୍ତ ଘନ ଘନ ପେଶଇ ରାବଣି ।
ମୟନ୍ଦକୁ ପଚିଶ ଦ୍ବିବିଦକୁ ତିରିଶ
କାଳଞ୍ଜନକୁ ଅଠର ପବନକୁ ଦଶ ।
ଋମଣକୁ ଚଉଦ ତାର ପିତାକୁ ତିନି
ସୁଗ୍ରୀବର ଶ୍ୱଶୁରକୁ ଚାରିବାଣ ପୁଣି ।
ଗବୟକୁ ଆଠ ଗବାକ୍ଷକୁ ସତର
କାଳମୁଖକୁ ଚଉଦ ପାରସକୁ ତେର ।
ବଳମୁଖକୁ ପନ୍ଦର ସାରସକୁ ଚାରି
ସବୁ ଋକ୍ଷ କପିଙ୍କି କାଣ୍ଡେ କାଣ୍ଡେ ମାରି ।
ଏକା ଇନ୍ଦ୍ରଜିତ ଦଳିଲା ଏତେକେ ବଳ
ଶ୍ରୀରାମ ସୈନ୍ୟ ସର୍ବେ ହୋଇଲେ ବିକଳ ।
ଯୂଥପତିମାନେ ସବୁ ମୋହଗତେଜ ଛଟି
ଲକ୍ଷ୍ମଣଙ୍କ ଲଲାଟରେ ତିନିବାଣ ଫୁଟି ।
ମେରୁରୁ ଗଙ୍ଗା ଯେସନେ ବହେ ଝରି ଝରି
ସଉମିତ୍ରି ଲଲାଟରୁ ବହଇ ରୁଧିର ।
ବିକଳେ ଲକ୍ଷ୍ମଣ ତାହା ପୋଛି ମନେ କରି
ନପୁଣ୍ଡ ବାଣ ଆସି ପଡ଼ଇ ବୋଲି ଡରି ।
ମୁଖ ବୁଡ଼ ରୁଧିରେ ହୃଦରେ ପଡ଼ଇ
କୁଣ୍ଡରେ ପଶଣନ୍ତେ ଥୂ ଥୂ କରିଣ ପକାଇ ।
ଶ୍ରୀରାମର ବଳ ସର୍ବେହେଁ ଭଙ୍ଗମସ୍ତେ
ଦେଖିଣ ସଉମିତ୍ରୀ ଆତଙ୍କ ମନେ ହୁଏ ।
ବଣ୍ଣଗଣ ବୋଇଲା ନ ଛାଳ ଆରେ ବାବୁ
ଆଟଯାକ ତୋହର ଗାଇଁଲେଣି ସବୁ ।
ଶ୍ରୀରାମ ଅଇଲେଣି ଦଶିଲେଣି ସୈନ୍ୟ
ବନ୍ଧନୁ ନାଗର ଏବେ ନ କର ବିମନ ।
ମୂର୍ଚ୍ଛି ଅଛୁ କୁମ୍ଭର ପିଠି କଟକ ରକ୍ଷା
ଇନ୍ଦ୍ରଜିତ ନ ମାଇଲେ ନ ରହିବ କକ୍ଷା ।
ସୁଗ୍ରୀବର ହନୁମନ୍ତ ସର୍ବେହେଁ ଭୋଉଛନ୍ତି
ଅନେକ ପକ୍ଷ ବାକୁରେ ପାଇବୁ ଏଥାନ୍ତି ।
ନ ପୋଛ ରକତ ଏବେ ବହୁଯାଉ କନା
ଦୈତ୍ୟକୁ ମାଇଲେ ଔଷଧ ଦେଇ ଦିନା ।
ସେନା ଯୂଥପତି ଯେ ଅଛନ୍ତି ତୋର ପଛ
ସଭୁଙ୍କର ହାତରେ ଅଛଇଁ ଶିଳା ବୃକ୍ଷ ।
ଆଜ ପାଞ୍ଚ ବାଣ ବାବୁ ବନ୍ଧୁ କନା ରହି
ରାକ୍ଷସ ଯେତେ ବାଣ ମାରୁଛି ଉହ ସହି ।
ବିଭୀଷଣ ବଚନେ ଲକ୍ଷ୍ମଣ ବଳପାଇ
ଅଙ୍ଗଦକୁ ବୋଇଲେ ତୁ ଚଳ ବେଗହୋଇ
ଗର୍ଜି ଉଠିଲା ଅଙ୍ଗଦ ବାହା ନାଦ ଦେଇ
ଅପୂର୍ବ ସମର ଯେ କରଇ ସମ ହୋଇ ।
କୁହୁଡ଼ିର ପ୍ରାଏ ନାଷ୍ଟଜ ବରଷଇ
ଶୂନ୍ୟରେ ଦେବଗଣ ଅଛନ୍ତି ତାକୁ ଚାହିଁ ।
ଘନ ଘନ ଛେଦଇ ତାହା ରାବଣ କୁମର
ଶ୍ରାବଣ ବରଷା ଜାଣି ବର୍ଷୁଛନ୍ତି ଶର ।
କୋପରେ ସଉମିତ୍ରି ହାଣ୍ଡ ତିନିବାଣ
ଚଳିଲେ ନାଗର ଶବଦ ଗରୁ ଠାଣ ।
ମେଘନାଦର ହୃଦୟରେ ପଡ଼ିଲା ଶରଯାଇ
ସେନା ଫୁଟିଣ ତାର ଦେହରେ ଶରପାଇ ।
ଆଘାତରେ ଇନ୍ଦ୍ରଜିତ ବୀର ହୋଇଲା ନସତ
ସର୍ପସ୍ତ୍ରକ ବାଣ ପୁଣ ବନ୍ଧିଲା ବଇତ ।
ଦେଖିଣ ଦୈତ୍ୟଶର ଲକ୍ଷ୍ମଣ ନିବାରି
ଅପେଣ ସୂଚୀମୁନା ସାତକାଣ୍ଡ ଧରି ।
ଗୁଣରେ ବସାଇ ପୁଣ ବନ୍ଧିଲେକ ତଡ଼ିତ
ମେଘନାଦର ଦେହ ସେ କାଟିଲେ ବିକୋଡ
ଯେତେକ ଅସୁର ବଳ ରଣମଧ୍ୟେ ଥିଲେ
କ୍ଷଣକରେ ପାଞ୍ଚବାଣେ ସନ୍ଧାଣ ବିନ୍ଧିଲେ ।
ରଣଗୋଳ ଧାନ୍ଦୋଳ ଯେ ହେ ଇନ୍ଦ୍ରଦୁହିଁଙ୍କର
ଲଙ୍କାର ଦାଣ୍ଡରେ ବହଇ ରକ୍ତନଦୀ ପୂରି ।
ଧାଉଁ ଧାଉଁ ହୋଇଣ ନାଚିଲେ କବନ୍ଧ
ଲଙ୍କା ନର ନାରୀ ଦେଖି ହୋଇଲେ ଚବଦ
ସ୍ୱର୍ଗର ଦେବତାଗଣ ସାଧୁ ସାଧୁ କଲେ
ଧନ୍ୟ ଧନ୍ୟ ଲକ୍ଷ୍ମଣ ବୋଲିଣ ବୋଇଲେ ।
ଆଣ୍ଟେରେ ଡାକଦେଲେ ଦୈତ୍ୟକୁ ବେଗେଣ
ତେବେ ସେ ଅମ୍ବର ରଖିବ ବଡ଼ ପଣ ।
କୋପରେ ସଉମିତ୍ରୀ କୁବେରଶର ପେଷି
ଇନ୍ଦ୍ରଜିତ ହୃଦୟରେ ଶରଯାଇ ପଶି ।
ବ୍ୟଥା ପାଇଲା ସେ ଏବେ ରାବଣ କୁମର
କୋପେ ବାଉଶରପେଷିଲା ସେ ଲକ୍ଷ୍ମଣଉପର

ଦୁରନ୍ତି ଦେଖିଣ ତା ଲକ୍ଷ୍ମଣ ନିବାରିଲେ
ସହସ୍ରେ ବାଣ ମାରେ ଇନ୍ଦ୍ର ଅରିର ଭଳେ ।
ପ୍ରତିଶର କରିଣ ଲକ୍ଷ୍ମଣ ବୀର ଛେଦ
ଦୁହିଁଙ୍କର ଶରରେ ଅଛଇ ଶରଭେଦ ।
ଅପୂର୍ବେକ ନାରାଚ ବନ୍ଧିଲା ଇନ୍ଦ୍ରଜିତ
ଦେଖି ଦୂତ ପଳାଇଲେ ସଇନ୍ୟ ସମସ୍ତ ।
କୋଟିଏକ ସୂର୍ଯ୍ୟଙ୍କ ଏକରୂପ ଧରି
ପବନାସ୍ତ୍ରେ ତାହା ସଉମିତ୍ରି ନିବାରି ।
ଦୁଇଶତହସ୍ତଙ୍କର ଲଗିଣ ପୁଣ ବାଦ
ଉଡ଼ାଇ ପବନ ପକାଇଲା ସମୁଦ୍ର ମଧ ।
ପୁଣିହିଁ ଶକ୍ରଜିତ ବନ୍ଧିଲା ଚଣ୍ଡଶର
ଶତହସ୍ତ ପଡ଼ିଲା ଆସି ଲକ୍ଷ୍ମଣ ହୃଦର ।
ଶ୍ରୀରାମ ଭାଇ ଯେ ଯେ ଶସ୍ତ୍ରରେ ବ୍ୟଥା ପାଇ
ଖଣ୍ଡେ ନାରାଚକେ ପୁଣ ଗୁଣରେ ବସାଇ ।
ଇନ୍ଦ୍ରଜିତ ଉପରକୁ ବିନ୍ଧିଲେ ପୁଣ ଟାଣି
ପଡ଼ିଲକ ନାରାଚ ଯେ ଅଗ୍ନିଜ୍ୱାଳା ଜାଣି ।
ମନେ ବିଚାରଇ ଯେ ଅଟଇ ବଡ଼ ଯୋଦ୍ଧି
ଦୁଇଜନ ଏକରାତ୍ର ଯୁଝିଲେଣି ଏଥି ।
କଣ୍ଟକର ଯୁଦ୍ଧେ ଜିଣିପାରେ ମୁଁ ଧନ୍ୱୀ
ଭୂତଳରେ ଜନ୍ମ ମୃତ୍ୟୁ ପାଇଣ ଅଛି ଯେତେ ।
ତ୍ରିପୁରରେ ଯୁଦ୍ଧ ଯେ ଅଛଇ ମୁହିଁକରି
ତ୍ରିଦଶ ଦେବଗଣ ସହିତେ ଆଦିକରି ।
କାହାର ସଂଗ୍ରାମକୁ ଯେ ନଥିଲା ମୋର ଶ୍ରାନ୍ତି
ବଡ ସଂଗ୍ରାମ ମୋ ସଙ୍ଗେ କଲାକ ଏହୁ ଯୋଦ୍ଧି
ଅଗ୍ନିକଣିକା ଜାଣି ପଡ଼ଇ ଯାର ବାଣ
ସ୍ୱର୍ଗମର୍ତ୍ତ୍ୟ ପାତାଳରେ ଘୋଟାଇ ତତକ୍ଷଣ ।
ଧନ୍ୟ ଧନ୍ୟ ଯୋଦ୍ଧି ତୁରେ ଶ୍ରୀରାମର ଭାଇ
ଯୋଦ୍ଧି ପଣରେ ତୋତେ ଆନକେ ସରିନୋହି
ମୁହିଁ ଇନ୍ଦ୍ରଜିତ ଯେ ଜଗତେ ମହାବଳ
ଆଉର ଯୋଦ୍ଧି ନପାରେ ମୋହର ସଙ୍ଗରେ ମିଳ
ମନୁଷ୍ୟ ହୋଇ ଏହାର ଏଡ଼େକ ସାହସ
କିଅବା ମାୟାରୂପରେ ଜନମ ଦିଗବାସ ।
ଏତେ ବିଚାରିଣ ବୀର ଭାଳଇ ମନେମନ
କେମନ୍ତେ ଏହାକୁ ମୁଁ ଯେ କରିବି ନିଧନ ।
ଏତେ ବିଚାରି ବୀର ଯେ ପବଟା ବାଣମାରି
ବଜ୍ରଶର ଘେନିଣ ତାହା ଲକ୍ଷ୍ମଣ ନିବାରି ।

ପୁଣ ଶତେ ବାଣ ଯେ ମାରିଲେ ଦଇତ
ପାଞ୍ଚବାଣେ ତାହା ଯେ ଲକ୍ଷ୍ମଣ କଲେ ହତ
ସହସ୍ରେ ବାଣ ସେ ଯେ ମାରିଲା ବଇରଗେ
ସଉମିତ୍ରି ତାହା ଯେ ଛେଦ ପକାଇଲାବେଗେ
ସେ ଶର ଛେଦ ପୁଣ ପେଷିଲେ ଶତେ ଶର
ଦୂତ ତାହା ଦେଖିଲା ରାବଣ କୁମର ।
ଏକଇ ନାରାଚ କରେ ଛେଦିଲା କଉଣପ୍ରା
ଦେଖି ଶ୍ରୀରାମ ଭାଇ କଲ ଗରୁଡପ ।
ସହସ୍ରେକ ଶର ଯେ ପେଷିଲେ ସଉମିତ୍ରି
ଇନ୍ଦ୍ରଜିତ ଉପରେ ପଡ଼ିଲା ଶର ଖସି ।
ଘାଆ ପାଇଲା ଯେ ରାବଣ କୁମର
ଲକ୍ଷ୍ମଣଙ୍କୁ ଗଦାଏ କଲାକ ପ୍ରହାର ।
ଦୂତ ଦେଖି ସଉମିତ୍ରି ପ୍ରତିଶର କଲେ
ପ୍ରତିଶର କରିଣ ଛେଦ ପକାଇଲେ ।
ରାବଣ ତନୟେ ଯହୁଁ ପାଇଲାକ ଲାଜ
ଶୂଳ ଧରି ମାରିଲା ଅସୁରକୁଳ ରାଜ ।
ସେ ଶୂଳକୁ ରାମଭାଇ ଲୀଳାଗଣ୍ଡ କରି
କଞ୍ଚ ଶରେ ତାହା ପକାଇଲେ ନିବାରି ।
ଦେଖି କୋପେ ଇନ୍ଦ୍ରଜିତ କମ୍ପେ ଥରହର
ପବନ ଗତିକରି ଚଳଇ ରଥବର ।
ଘନ ଘନ କରି ଗୁଡ଼େ ସିଂହ ରଡ଼ି
ଶୁଣିକରି ବୃକ୍ଷକପି ପଳାଇଲେ ଗୁଡ଼ି ।
ଭୟଙ୍କର ରୂପ ଯହୁଁ ଦେଖିଲେ ତାହାର
ଧନୁ ଧରି ଲକ୍ଷ୍ମଣ କୋପରେ ଗରୁତର ।
ଅଙ୍ଗଦ ବୀର କାୟା ବଢ଼ାଇଲା ବେଗେ
ଚନ୍ଦ୍ରକୁ ରହୁପ୍ରାୟେ ମିଳଇ ତାରଆଗେ ।
ଯହୁଁ ସେ ଲକ୍ଷ୍ମଣ ବୀର ହେଲେ ଆଗୁଁସାରି
ମନ୍ତ୍ରିଣ ଶକ୍ତି ମାରିଲା ରାବଣ କୁମର ।
ଦୂରୁଦେଖି ସଉମିତ୍ରି ଅର୍ଦ୍ଧଚନ୍ଦ୍ର ପେଷି
କାଟେ ଆସୁ ସେ ଶକତି ପକାଇଲେ ନାଶି ।
ପୁଣି ମାୟା ଯୁଦ୍ଧକଲା ରାବଣ କୁମର
କ୍ଷଣେ ଶବ୍ଦ ପେଷିଣ ହେ କଲା ଅନ୍ଧକାର ।
ମହାଘୋର ସଂଗ୍ରାମ କଲା ମହାବଳୀ
ଦେଖିଣ ଲକ୍ଷ୍ମଣ ବୀର ମନେ ମନେ ଭାଳି ।
ସାମାନ୍ୟ ଯୋଦ୍ଧି ଏ ଯେ ନୁହଇ ରାକ୍ଷସ
ମାୟାରେ ଜିଣିଲା ଏହୁ ଭୁବନ ତ୍ରିଦଶ ।

ଦେବତାଏ ରଣେ ତାଙ୍କୁ ନ ପାରିଲେ ସହି
ଇନ୍ଦ୍ରଙ୍କୁ ପ୍ରୀତି କରିଣ ସେବାକଲେ ରହି ।
ଏତେ ବୋଲି ନାରାଚ ବର୍ଷନ୍ତି ଘନ ଘନ
ଦୂରରୁ ନବାରେ ତାଙ୍କୁ ରାବଣ ନନ୍ଦନ ।
ପୁଣି ସେ ଦିବ୍ୟଅସ୍ତ୍ର ବର୍ଷିଲା କୋପଭରେ
ପଡ଼ିଲା ନାରାଚ ଯାଇ ଲକ୍ଷ୍ମଣ ଉପରେ ।
ବିଭୀଷଣଙ୍କୁ ଚାହିଁ କହିଲେ ସଉମିତ୍ରି
ଏହୁ ମେଘନାଦ ଅଟଇ ବଡ଼ କ୍ଷତ୍ରୀ ।
ମହାଘୋର ସମର ଜାଣଇ କୂଟ ଛନ୍ଦ
ଏହାଙ୍କୁ ସାମାନ୍ୟ ତ ନୁହଇ ଦଶକନ୍ଧ ।
ବିଭୀଷଣବୋଇଲେତୁମ୍ଭେ ମୋତେ ନ ଚାହିଁ
ଜାଣଟିକି ପ୍ରତିଜ୍ଞା କରିଣ ଅଛୁ ଯାହା ।
ମାର ଏବେ ଇନ୍ଦ୍ରଜିତ ପେଷ ତୀକ୍ଷ୍ଣବାଣ
ଏହାଶୁଣି ଆଗଭର ହୋଇଲେ ଲକ୍ଷ୍ମଣ ।
ସରସ୍ଵତୀ ଯେବଣ ଶର ଦେଇଥିଲି
ବେଗେ ସେ ଶରସ୍ତମ୍ଭକୁ ତୋଣରୁ କାଢ଼ିଲେ ।
ଇନ୍ଦ୍ର ଦେଲା ବାବଲକୁ ଗୁଣରେ ବସାଇଲେ
ଶ୍ରୀରାମ ସୁମରିଣ ନାରାଚ ଛାଡ଼ିଲେ ।
ବଜ୍ରଘାତ ପ୍ରାୟେ ତାର ଶୁଭିଲା ଶବଦ
ଶିର ଛିଡ଼ି ତଳରେ ପଡ଼ିଲା ମେଘନାଦ ।
ସ୍ଵର୍ଗେ ଥାଇ ଦେବତାଏ ଜୟ ଜୟ କଲେ
ଅପସରାମାନେ ଶ[illegible]ନ୍ୟ ହୁଳହୁଳି ଦେଲେ ।
ଇନ୍ଦ୍ରର ବଦନ ଯେ ଫୁଟିଲା ପଦ୍ମ ଜାଣି
ଲୋମ ଟାଙ୍କୁରାଇ କରେ ବଜ୍ର ଯେବେ ଛୁଇଁଣି ।
ଆନନ୍ଦରେ ନିଃଶ୍ଵାସ ଛାଡ଼ଇ ଘନଘନ
ଦୁଃଖ ସରିଲା ବୋଲି ଆନନ୍ଦ ମନେ ମନ ।
ପଦ୍ମଯୋନି ସହିତେ ସକଳ ସୁରେଶ
ଯେତେବେଳେ ଇନ୍ଦ୍ରଜିତ ଛାଡ଼ିଲା ପରାଣ ।
ସ୍ଵର୍ଗ ମଣ୍ଡାଇଣ ଯେ କରନ୍ତି ବେହରଣ
ଦୁନ୍ଦୁଭି ବଜାଇ ନୃତ୍ୟକଲେ ଦେବଗଣ ।
ଅପସରା କନ୍ନରା ଅମର ବିଦ୍ୟାଧରୀ
ଦିବ୍ୟବେଶ ହୋଇଣ କରଷ ଚାହେଁ ଫେରି
ଗନ୍ଧର୍ବ ହରଷ ହେଲେ ଖଗଗଣେ ମିଳି
ଗହଳ ଧନ୍ଦୋଳ ଯେ ଅମର ସ୍ଵର୍ଗପୁରୀ ।
ସୁଗନ୍ଧ ଗନ୍ଧ ଘେନିଣ ବହଇ ପବନ
ଦିଗପାଳେ ମିଳିଣ ଯେ କଲେ ସନମାନ ।

ସାଧୁରେ ଲକ୍ଷ୍ମଣ ତୁ ସାଧୁ ସଉମିତ୍ରୀ
ବ୍ରହ୍ମାଣ୍ଡ ଭିତରେ ତୋତେ ସମ ନାହିଁ କ୍ଷତ୍ରୀ
ଏ ଯେ ମେଘନାଦ ରାବଣେଶ୍ଵର କୁମର
ଚଉଦ ଭୁବନରେ ଅଟଇ ବଳୀୟାର ।
ନିଦ୍ରା ମଇଥୁନ ଯେ ଯେ ନ କଲା ଆହାର
ବାର ବରଷ ଉପରେ ପାଇଲା ପୁଣ ବର ।
ତ୍ରୈଲୋକ୍ୟ ଜିଣିଲା ସେ ଯାର ଶୁରପଣେ
ଏବେ ସେ ନିଧନ ହୋଇଲା ତୁମ୍ଭ ବାଣେ ।
ସାଧୁ ଲକ୍ଷ୍ମଣ ବୋଲି ଶୁଭିଲା ସ୍ଵର୍ଗେ ବାଣୀ
ପୁଣ ପୁଣ ପ୍ରଶଂସା କରନ୍ତି ସୁରମୁନି ।
ଅତି ଆନନ୍ଦେ ଦେବେ କଲ୍ୟାଣ ବାଞ୍ଛାକଲେ
ସଉମିତ୍ରି ଶିରରେ କୁସୁମ ବରଷିଲେ ।
ଲଙ୍କାପୁରଲୋକେ ଚାଟକା ହେଲେ ଦେଖି
ବିଷାଦ ହୋଇଲେ କଥା କହୁ ନାହିଁ ମୁଖି ।
ଯେତେବେଳେ ଇନ୍ଦ୍ରଜିତ ପଡ଼ିଲାକ ରଣେ ।
ହୁଳହୁଳି ଦେଇ ନାଚଲେ କପିଗଣେ ।
ଋକ୍ଷ କପିମାନେ ସର୍ବେ ରଣଭୂମି ଧାଇଁ
ବୋଇଲେ ଶ୍ରୀରାମଙ୍କୁ ଜଣାଇବା ଯାଇଁ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭେରୀ
ସ୍ଵର ଜଣାଇଲା ଯାଇ ଇନ୍ଦ୍ରଜିତ ପୁରୀ ।
ପୁତ୍ରମାନଙ୍କୁ ତାହାର କହିଲା ବାରତା
ଏଗାର ଭାଇ ଘେନି ପଡ଼ିଲା ତୋହର ପିତା
ମେଘନାଦର ଦୁଇଶତ ଉତ୍ତର ଶତେ ପୁତ୍ର
ଏଗାର ଭାଇଙ୍କର ଶସ୍ତ୍ର ଦଶ ପୁତ୍ର ।
ତିନଶତ କୁମର ରଥ ଚଢ଼ି ବେଗେ
ପ୍ରବେଶ ହେଲେ ଆସି ଲକ୍ଷ୍ମଣଙ୍କ ଆଗେ ।
ବୋଇଲେରେଜଟାଧାରୀ ଯିବଏବେ କେଉଁଣେ
ପିତାଙ୍କୁ ଆମ୍ଭର ବଧିଲୁ ତୁମ୍ଭ ଜାଣେ ।
ତୋତେ ମାଇଲେ ଆମ୍ଭର କୁଳଗୋଷ ଛିଣ୍ଡି
ପିତାରୁଣ ଶୁଝିବୁ ତୋତେ ଅମ୍ଭେ ଖାଇ ।
ସମ୍ପୂଜିତ ଉମ୍ପୂଜିତ କଳ୍ପା କରୁଣ ଜିତ
ଉଡ଼ାଜିତ ଚନ୍ଦ୍ରାଜିତ ସୂର୍ଯ୍ୟଜିତବୃହସ୍ପତିଜିତ
ଅନୁପତିଜିତ ନଳଜିତ ଗନ୍ଧର୍ବଜିତ
ଶତେଜିତ ନାମ ଦେଇଥିଲା ଇନ୍ଦ୍ରଜିତ ।
ବ୍ରହ୍ମପାଳ ସୁରପାଳ କଳ୍ପରବ ପାଳ
ଅଶ୍ଵିନିକୁମାରପାଳସର୍ବଜ୍ଞପାଳସଉରବପାଳ

ଶତେପୁତ୍ର ନାମ ଯେ ଦେଉଛୁ ବାଛୁ ବୀର
ଏହୁ ଶତେ କୁମର ଅଟନ୍ତି ପିତାବଳ ।
ମହୀରାବଣ ସୁରରାବଣ ଏ ଦୁହେଁ ଅଟେ ବଡ଼
ସେହିଜ ଏ ଦୁହେଁ ନାହାନ୍ତି ଲଙ୍କାଗଡ଼ ।
ଭାଇକେ ଦଶପୁତ୍ର ଏଗାର ଭାଇଙ୍କ ସମାନ
ଶତେ ଦଶ ଭାଇଏ ଅଟନ୍ତି ବଳବାନ ।
ଏ ରୂପେ ତିନିଶତ ଦଶ ଯେ ଉତ୍ତର
ରଥେ ରଥେ ଚଢ଼ିଣ ସେ ହୋଇଲେ ବାହାର
ରଙ୍ଗ କଳା ଧଳା ନୀଳ ସେ ହଳଦି
ଏରୂପେ ରଥମାନ ଚଢ଼ିଣ ରଥ ସାଜ ।
ରଣ ଭୂମିରେ ସର୍ବେ ହୋଇଲେ ପରବେଶ
ଦେଖିକରି ଲକ୍ଷ୍ମଣ ହେଲେ ହର୍ଷ ହସ ।
ହନୁକୁ ବୋଇଲେରେ ଯୂଥପତି ଶୁଣ
ଯାହା ମୁଖରେ ସେହୁ ପଡ଼ିବ ମାରି ପୁଣ ।
ପିତାଙ୍କ ସଙ୍ଗରେ ଯେମନ୍ତେ ଭେଟ ହୋଇ
ଦୈତ୍ୟଙ୍କୁମାରିପକାଇଲେଇନ୍ଦ୍ରଜିତନାମଯାଇ
ଶୁଣିଣ ଯୂଥପତି ଶାଳ ଶିଳ ନେଇ
ମାରି ଏକେ ଶାଳଶିଳ ଘେନିଣ ସଇନ ।
ଶତେକ ପୁତ୍ର ଇନ୍ଦ୍ରଜିତର ପୁଣ
ବିଭୀଷଣଙ୍କୁ ଯାଇ ଘେରିଲେକ ପୁଣ ।
ଦୁଇଶତ ଦଶଜରେ କୁମର ଜାଣ
ଲକ୍ଷ୍ମଣର ଚଉପାଶେ ଘେରି ଦେଲେ ପୁଣ ।
ଢେଲକଣ୍ଟ ଗଦା ଶକ୍ତି ଶୂଳ କୋନ୍ତ ମାରି
ଦୁରୁ ଦେଖି ସଉମିତ୍ରି ପକାଇ ନିବାରି ।
ବିଚାରିଲେ ଆଜ ତ ହୋଇବ ବଡ଼ରଣ
ସମୁଦ୍ରପ୍ରାୟେ ମୋତେଘୋଟିଲେ ଦୈତ୍ୟଗଣ
ଏଠାରେ ମାୟାଯୁଦ୍ଧ ଆଜ ମୁଁ କରିବି
ଏହାଙ୍କୁ ମାରି ଶ୍ରୀରାମ ଦର୍ଶନ କରିବି ।
ବେଳ ଦୁଇପ୍ରହର ହୋଇଲା ପୁଣି ଆସି
ଏତେ ବୋଲି ସଉମିତ୍ରି ମନେ ଭାଳେ ବସି ।
ପବନ ଦେବତା ମନଭେଦ ଦେଇଥିଲେ
ତୋଣରୁ କାଢିଲେଶରକୁଗୁଣରେବସାଇଲେ
ବିଶ୍ୱାମିତ୍ର ସୁମରି ବାନ୍ଧିଲେ ଗୁଣ ଟାଣି
ଚଳଲକ ନାଗର କମ୍ପିଲ ମେଦିନୀ ।
ହମନ୍ତଙ୍କ ହାତରୁ କାଟିଲେ ଧନୁଶର
ରଥରେ ବସି ଦୈତ୍ୟ ବିହାନ୍ତି ଜଳଜଳ ।

ଏ ସମୟେ ସଉମିତ୍ରି କପଟରୁ ଗୁର୍ବି
କର୍ଣ୍ଣରେ ପବନ କହିଲେକ ଯାଇ ।
ବଜ୍ର ଶସ୍ତ୍ର ଚଉକମାର ଏକାବେଳେ ପୁଣ
ମୁଣ୍ଡ ଛିଡ଼ ସର୍ବଙ୍କର ପଡ଼ିଲେ ଜାଣ ।
ଶୁଣିଣ ଲକ୍ଷ୍ମଣ ବୀର ତୋଣରୁ ଶର କାଢ଼ି
ଶତେକ ନାରାଚ ଯେ ବସାଇ ବେନେ ବର୍ଦ୍ଧି ।
ମେଘ ଗରଜନ ପ୍ରାୟେ ଶବଦ ପୂର୍ଣ କଲା
ଶତେ କୁମର ମୁଣ୍ଡ ପାଇଁଣ କାଟିଲା ।
ପୁଣିହିଁ ପବନ ଯେ କହିଲେ କର୍ଣ୍ଣେ ଯାଇ
ଗରୁଡ଼ାଶର ବେଗେ ପେଶରେ ବାବୁ ତୁମ୍ଭ ।
ମୋହନା ଶର ଛୋଡ଼ ଏହିକ୍ଷଣି ଯିବ
ଶତେକ ନିଃଶ୍ୱାସରେ ଚେତନା ତାଙ୍କ ହେବ
ଚେତନା ପାଇଲେ ସେ କରିବେଟି ରଣ
ବେଗେ ବିନ୍ଧ ବାବୁରେ ଗରୁଡ଼ ଶର ପୁଣ ।
ଶୁଣିଣ ସଉମିତ୍ରି ସନ୍ତୋଷ ହୋଇଲା
ଶତେକ ଗରୁଡ଼ାଶର ବାଛିଣ କାଢ଼ିଲା ।
ଗୁଣରେ ବସାଇଣ ବିନ୍ଧେ ବେଗ କରି
ଶତେ କୁମର ଆଣ୍ଠୁଠାରୁ ଦୁଇଖଣ୍ଡ କରି ।
ପୁଣି ଦଶ କୁମର ପାଇଲେ ଚେତା ଜାଣ
ଅନେକ ଶସ୍ତ୍ର ସେ ମାଇଲେ ତତକ୍ଷଣ ।
କାଳଞ୍ଜନ ଶସ୍ତ୍ରରେ ଅନ୍ଧକାର ହେଲେ
ସ୍ୱର୍ଗ ମର୍ତ୍ତ୍ୟ ସପତପୁର ଲୁଚିଇଲେ ।
ମୁଖକୁ ମୁଖ ସେ ଯେ ହୋଇଲେ ଅଦୃଶ୍ୟ
ଶ୍ରୀରାମ ସୁମରି ଲକ୍ଷ୍ମଣ ପେଷେ ତାଙ୍କ ପାଶ ।
ପଳାଇଲେ ଯାମିନୀ ନ ରହିଲେ ତହିଁ
ପୁଣି ଶରବାଡ଼ କଲେକ ଦଶ ଭାଇ ।
ବାଦଲ ଶରେ ତା ଲକ୍ଷ୍ମଣ ନିବାରିଲା
ଅଗ୍ନିଶର ପେଶିଲା ପୁଣି ସେ ଦଶବଳା ।
ଜଳଧାର ଶରରେ ଲକ୍ଷଣ ନିବାରି
ଅସୁର ଶରକୁ ସେ ପେଷିଲେ ଛନ୍ଦ କରି ।
ବଜ୍ର ଶରେ ତାହା ଲକ୍ଷ୍ମଣ ନିବାରି
ଦେଖିଣ ଅସୁର ଯେ ବିଷାଦ ମନେ ଧରି ।
କଙ୍କପକ୍ଷୀ ଶର ବିନ୍ଧିଲେ ଯେ ଟାଣେ
ଧଙ୍କ ପକ୍ଷୀ ଶରେ ନିବାରି ଲକ୍ଷ୍ମଣେ ।
ମାୟାରେ କୁହୁଡ଼ି ସେ ପଥର ବରଷିଲେ
ପବନା ଶରେ ଲକ୍ଷ୍ମଣ ଉଡ଼ାଇଣ ଦେଲେ ।

ଦେଖିଣ ସଉମିତ୍ରୀ ମନରେ ଚମ୍କିଲେ
ବାସୁକୀ ଦେଲା ଜକୁସା ଶରକୁ ପେଷିଲେ ।
ଦଶଗଳଙ୍କର ଶିର ପକାଏ କରତ
ବାବଲ ଶର ପୁଣି ପେଷିଲେ ସଉମିତ୍ରୀ ।
ଦଶ ଭାଇଙ୍କର ଗୋଡ଼ ପକାଇଲେ ହାଣି
ବ୍ରହ୍ମଶର ବନ୍ଧିଲେକ ରାମଭାଇ ପୁଣି ।
ଗର୍ଜନ ନାଦ କରି ଶର ବେଗେ ଗଲା
ଦଶଭାଇଙ୍କର ଦେହ କାଟି ପକାଇଲା ।
ଦୁଇ ଦଶସ ଉଞ୍ଜର ମଲେ ଭାଇ ପୁଣ
କଣ୍ଟକ ନାରାଚେ ମାଇଲେ ଲକ୍ଷ୍ମଣ ।
ଦୁଇକୋଟି ସେନାପତି ଘାର ଛେଦିଲ ବଳେ
ଦଶ ନାରାଚ ମାଇଲେ ରାମଭାଇ ତକ୍ଷଣୀରେ
ବାରକୋଟି ପଦାନ୍ତ ଲୋଟିଲେ ଧରଣରେ
ପଳାଇଲେ ସୈନ୍ୟ ନ ରହି ତ୍ରାଶରେ ।
ବାମ ପାର୍ଶ୍ୱକୁ ଯେ ଚାହିଁଲେ ଲକ୍ଷ୍ମଣ
ବିଭୀଷଣ ସଙ୍ଗେ ଶତେ କୁମର ଲଗେ ପୁଣ ।
ଯୂଥପତିମାନଙ୍କୁ ଯେ ଅସୁରଶର କଲେ
ଋଷକପି ମୋହ ହୋଇ ପଡ଼ିଲେ ଶେଷରେ
ହନୁ ସୁଗ୍ରୀବର ବିଭୀଷଣ ତିନଜଣ
ଆଉସବୁ ଋଷକପି ମୋହରେ ଅଚେତନ ।
ଦେଖିକରି ବିଭୀଷଣ କ୍ରୋଧଭର ହେଲେ
ବ୍ରହ୍ମଶରେ ଶତେକ ନାରାଚ ପୁରାଇଲେ ।
ମନ୍ତ୍ର ପଢ଼ି ଶର ଗୁଡ଼ିଦେଲେ ବେଗେ
ଶତେଶିର ଛେଦ ଶର ଲେଉଟିଲା ବେଗେ
ପୁଣିହିଁ ବିଭୀଷଣ ପ୍ରତି ଅସ୍ତ୍ର କଲ
ବାରକୋଟି ପଦାନ୍ତ ସେ ହାଣି ପକାଇଲା ।
ପୁଣି ଅସୁରଶର ପେଷିଲାକ କୋଟି
କୋଟିଏ ପଦାନ୍ତ ମୁଣ୍ଡ ଭୂମିରେଣ ଲୋଟି ।
ପଳାଇଲେ ସୈନ୍ୟ ଯେତେ ରଣେପଶିଥିଲେ
ଗୋଟିଏ ରଣ ଭୂମିରେ କେହି ନ ରହିଲେ
ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବ ହନୁମନ୍ତ
ଚାରିଜଣ କେବଳ ରଣରୁ ଉବୁରିତ ।
ଦେଖିଣ ଲକ୍ଷ୍ମଣ ଯେ ଅନେକ ମନେ କ୍ଷୋଭ
ବିସ୍ମୟରେ ସକଳେ ମଲେ ହେଲା କେଉଁ ଲାଭ
ଲକ୍ଷ୍ମଣର କର୍ଣ୍ଣରେ ପବନ କହେ ଯାଇ
ତମୋହରେ ପଡ଼ିଲେ ସୈନ୍ୟଚନ୍ତା ନରକକୁହି

ଜୀବନ୍ୟାସ ଶର ତୁରେ ବନ୍ଧ ଲକ୍ଷ୍ମଣ
ମୋହ ଗଲାଲୋକେ ବେଗେ ଉଠିବେ ତକ୍ଷଣ
ଶୁଣିକରି ଦଶରଥ ସୁତ ମନେ ତୋଷ
ଜୀବନ୍ୟାସ ଶର ଯେ ସେ ପେଷିଲେ ଅଶେଷ
ଯୂଥପତି ସୈନ୍ୟବଳ ମୋହ ଚେତ ଉଠି
ସମସ୍ତେ ଲକ୍ଷ୍ମଣ ପାଶେ ହେଲେ ଏକଗୋଷ୍ଠି
ହୁଳହୁଳି ଦେଇଣ ମାଇଲେ ରାମଡାକ
ଲଙ୍କା ନଗ୍ର ଲୋକଙ୍କର ଶିର ଗଲା ଛୁଡ଼ି ।
ଲଙ୍କା ପୁରଣ ରକତ ନଦୀ ବହେ
ଦୁଇଧାରେ ଅଶୋକ ବନ ବାଟେ ଯାଏ ।
ମଧୁବନ ତୋଟା ନଦୀ ସଙ୍ଗରେ ହେଲା
ସମୁଦ୍ର ଭିତରେ ଯାଇଁ ରୂପ ଲୁଚାଇଲା ।
ଦୁଇଧାର ହୋଇଣ ଯେ ନାଚନ୍ତି କବନ୍ଧ
ଟହ ଟହ ହସନ୍ତି ଯେ ରକତ ନଦୀ ମଧ୍ୟ ।
ଦେଖିଣ ଜାନକୀ ପୁଣ ତ୍ରିଜଟାରେ ପୁଚ୍ଛି
ରକତ ନଦୀ ଦେଖ ବହିଆସୁଅଛି ।
ମୁଣ୍ଡମାନ ଏଥିରେ ନାଚି ହସ କରେ
ତ୍ରିଜଟା ବୋଇଲା ଯୁଦ୍ଧ ହୋଇଲା ଅପାରେ
ସ୍ୱାମୀ ତୋର ଅଛନ୍ତି ଯେ ଉତ୍ତର ଦ୍ୱାରେପୁଣ
ଯୂଥପତି ଘେନିଣ ଯେ ପଶୁଛି ଲକ୍ଷ୍ମଣ ।
ଦୁଇଜନ ଏକସଙ୍ଗି ହୋଇଲା ସମ୍ମୁଖି
ଇନ୍ଦ୍ରଜିତ ସଙ୍ଗେ ତୋ ଦିଅର ଯୁଝେ ପୁଣ ।
ତାହାଙ୍କର ସମରେ ଅନେକ ଲୋକ ମଲେ
ଶୋଣିକର ରକ୍ତନଦୀ ବହିଆସେ ଭଲେ ।
କବନ୍ଧ ନାଚନ୍ତି ପୁଣି ହସିଣ ଟହ ଟହ
ଲକ୍ଷ୍ମଣ ଇନ୍ଦ୍ରଜିତର ଯୁଦ୍ଧ ଅଜ କୋହ ।
ଅଷ୍ଟସେନା ପଞ୍ଚଶ ଯୂଥପତି ପୁଣ
ମୋର ପିତା ବିଭୀଷଣ ସଙ୍ଗରେ ଛନ୍ତି ଜାଣ
ଏହାଶୁଣି ଦେବୀମାନେ ବିକଳ ହୋଇଲେ
ଶ୍ରୀରାମଙ୍କୁ କହ ଲକ୍ଷ୍ମଣଙ୍କୁ ରଖନ୍ତୁ ବୋଇଲେ
ଏଥୁ ଅନ୍ତରେ ଶୁଣ ଗୋ ଭଗବତୀ
ରକତ ନଦୀ ଉତ୍ତର ଦ୍ୱାରେ ବହି ଯାନ୍ତି ।
ଉତ୍ତର ଗଡଦ୍ୱାରେ ହୋଇଲା ବାହାର
ଯାଇଁଣ ମିଶିଲା ସେ ସମୁଦ୍ର ମଧ୍ୟର ।
ଦୁଇ ଧାଡ଼ି ତଟରେ ନାଚନ୍ତି କବନ୍ଧ
ଦେଖିକରି ଶ୍ରୀରାମ ବିସ୍ମୟନ୍ତି ମଧ୍ୟ ।

ଦୁଇଦନ ଦୁଇରାତ୍ର ଆସି ପୁଣ ହେଲା
ଲକ୍ଷ୍ମଣର ବାରତା ଆମ୍ଭଙ୍କୁ ନ ମିଳିଲା ।
ଏମନ୍ତ ବୋଲି ଚିନ୍ତା କରନ୍ତି ରାମ ଦେବ
ଏଥୁ ଅନନ୍ତରେ ଯେ ଶୁଣ କଥା ଭାବ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପ୍ରାଣନାଥ
ଦୁଇ ଶତ ଦୁଇ ଯେ ଇନ୍ଦ୍ରଜିତର ସୁତ ।
ଦୁଇ ପୁତ୍ର ରହିଲେ ଦୁଇଶ ପୁତ୍ର ମଲେ
ଶତେ ଦଶ ପୁତ୍ର ଯେ ଏଗାର ଭାଇଙ୍କରେ ।
ଏହାଙ୍କର ନାମ ମୋତେ କହ ବିଲୋଚନ
ଶୁଣିକରି ସନ୍ତୋଷ ହୋଇବ ମୋର ମନ ।
ଈଶ୍ୱର ବୋଇଲେ ସେ କଥା ଦେବୀ କହି
ଏଗାର ଭାଇଙ୍କ ପୁତ୍ର ନାମ ଶୁଣ ତୁହି ।
କୋଠସୁର ବିକୋଠସୁର ଦେବସୁର ପୁଣ
ଏକ ଭାଇର ପୁତ୍ର ଏରୂପେ ପ୍ରମାଣ ।
ସୁରନାଗ ଅନନ୍ତ ନାଗ ଭୂମି ଜଣା
ଦୁଇ ଭାଇଙ୍କର ପୁତ୍ର ଏରୂପେ ଗଣନା ।
ନନ୍ଦା ସୁନନ୍ଦା ବିନନ୍ଦା କୁନନ୍ଦା କୁମର
ବୀର ପ୍ରବୀର ସୁବୀର ଇଷାନ କୌଶାନ ବୀର
ବାସେନ କୁବାସେନ ଜଣାବାସେନସୁବାସେନ
ଚାରି ଭାଇଙ୍କର ପୁତ୍ର ଏମନ୍ତ ନାମଭନ ।
ସିନ୍ଧୁ ଉପସିନ୍ଧୁ ପର୍ବତ ମହା ପର୍ବତ
ଗ୍ରୀବ ସୁଗ୍ରୀବ ଦେବ ଜଣାନର ଜଣାସୁତ ।
ଅସୁରଙ୍କର ନାମ ଗଣିତ କେହୁ କରୁ
ଏଗାର ଭାଇଙ୍କର ଏମନ୍ତେ ପୁତ୍ର ଗରୁ ।
ଶୁଣିକରି ପାର୍ବତୀ ବୋଇଲେ ତୁମ୍ଭେ କହ
ଲକ୍ଷ୍ମଣ ସୈନ୍ୟହେନ କେଣେ ସେ ବିଜୟ ।
ଈଶ୍ୱର ବୋଇଲେ ଶୁଣ ଲକ୍ଷ୍ମଣ ଚରିତ
ସେନା ଯୁଥପତି ବାହୁଡ଼ି ସମସ୍ତ ।
ଅସୁରଙ୍କୁ ମାରି ସର୍ବେ ମନେ ତୋଷ ହେଲେ
ଲକ୍ଷ୍ମଣଙ୍କୁ ଆଗକରି ଶ୍ରୀରାମ ପାଶେ ଗଲେ ।
ନଗର ବାହାରେ ରାମଚନ୍ଦ୍ର ଛନ୍ତି ରହି
ସାରଥି ଓଗାଳଲେ ପଶିତ ନ ଦେଇ ।
ତାଙ୍କର ସଙ୍ଗରେ ରାମ ଅନେକ ଯୁଦ୍ଧକଲେ
ଦୁଇ ଦିଗ ସୈନ୍ୟରୁ ଅନେକ ସୈନ୍ୟମଲେ
ଜଙ୍କ ଧଙ୍କ ଶିଙ୍ଗ ଭୁରଙ୍ଗ ଦେବଦତ୍ତ
ଅଲେପି ସଲେପି ଯେ ମଲେ ଚାରି ସାତ ।

ରାବଣର ତନୟେ ସଂଗ୍ରାମେ ବଳବନ୍ତା
ଏମାନଙ୍କୁ ଦେଖିଲେ ଇନ୍ଦ୍ର କରେ ଚିନ୍ତା ।
ଅପସରାମାନଙ୍କୁ ଏ ଭୋଗ କରନ୍ତି ବଳେ
ଅନ୍ୟାୟ ଆଚାର ଯେ କରନ୍ତି ସର୍ବକାଳେ ।
ଇନ୍ଦ୍ରଜିତ ସମାନରେ ଅଟନ୍ତି ତ ରଥୀ
ଚରଣ ଘଞ୍ଚାନ୍ତେ ଯେ ହଲଇ ବସୁମତୀ ।
ଶରବନ୍ତ ପଣରେ ଯେ ତିନପୁର ଜିଣି
ଏମାନଙ୍କ ବାହୁକୁ ଆଗ୍ରେ କରେ ବଂଶପାଣି
ଅନେକ ଭୋଗ ଯେ କରନ୍ତି ଅଭିଳାଷ
ଅଳଅଳ ଦୁନ୍ଦୁଭୀ ସଭିହେଁ ଗ୍ରହୁ ହଂସ ।
ନାନାବନୋଦେ ଏମାନେସେକ୍ରୀଡ଼ାକରୁଥାନ୍ତି
ଶତ୍ରୁ କେମନ୍ତେ ବୋଲିଣ କିଛି ନ ଜାଣନ୍ତି ।
ଝିଣ୍ଟିକାରେ ନିଜ ମନ୍ଦିରେ ଶୋଇଥିଲେ
ମୁଖ ଗୋଳ ଶୁଣିଣ ଧାଇଁଣ ଅଇଲେ ।
ସଙ୍ଗରେ ସୈନ୍ୟ ବଳ ଘେନିଣ ଅପ୍ରମିତ
ଚହାଣ ତାହାଙ୍କୁ ଆଗେ ଆଣେ ଜଡ଼ାଇତ ।
ସାତଭାଇ ସଭାରଥ ଅଛନ୍ତି ଅଛନ୍ତି ଆରୋହି
ଦ୍ୱାର ଆବୋରି ଶ୍ରୀରାମ ନ ଦେଲେ ପୁରାଇ ।
ରାହୁ ସାତ ଗୋଟାକ ସଂଗ୍ରାମୁ ଆସି
ତେସନେ ରୂପ ସେହୁ ସାତଜଣରେ ଦିଶି ।
ତାହାଙ୍କୁ ଦେଖି ଶ୍ରୀରାମ ଧଇଲେ ଧନୁଶର
ଡୁହାଇ ନାରାଜ ବିନ୍ଧିଲେ ରଘୁବୀର ।
ସାତ ସେନାପତି ଯେ ଓଗାଳଲେ ଯହୁଁ
ଭିତରେ ପଶି ସେ ଯେ ନ ପାରିଲେ ତହୁଁ ।
ମହାଘୋର ସଂଗ୍ରାମ ସେ କଲେକ ବହୁତ
ଅବଶ୍ରାମ ସମର ହେଲା ଅପ୍ରମିତ ।
ବିଦ୍ୟେ ରାତ୍ରେ ସମର ହେଲା ଅବଶ୍ରାମ
ନିଶିପାଇ ଅରୁଣ ପ୍ରକାଶେ ଆରମ୍ଭନ ।
ପ୍ରଥମ ସମରେ ପଡ଼ିଲା ଦେବଦତ୍ତ
ରାତ୍ର ଅଧଠାରେ ପଡ଼ିଲେ ଚାରି ଭ୍ରାତ ।
ଅରୁଣ ଉଦେବେଳକୁ ସଲେପି ନାଶଗଲା
ତିନଘଡ଼ି ବେଳଠାରେ ଅଲେପି ପଡ଼ିଲା ।
ଅସୁରଙ୍କୁ ମାରିଣ ଶ୍ରୀରାମ ବିଜୟାଳ
ଝର ଝର ଶିରରୁ ବହେ ଶ୍ରମଝାଳ ।
ଉକତ ଲାଗି ଶରୀର କରୁଅଛି ଜ୍ୱାଳା
ଉକତ ଲେପନରେଲୁଟେ ଶରୀର କଳା ।

ଶତବାଳ ବସନ୍ତ ତାଳଜଙ୍ଘ ଭିନ୍ନଜଣ
ଶ୍ରୀରାମ ସମାନେ ଯେ କଲେ ଯାଇ ରଣ ।
ଋକ୍ଷକପିମାନେ ଯୁଦ୍ଧ କଲେ ସେ ଅପାର
ରକତନଦୀ ତକ୍ଷଣେ ବହେ ଗଡ଼ଦ୍ୱାର ।
ଅସୁର ସୈନ୍ୟଙ୍କୁ ସଂହାରିଲେ ଦାଶରଥି
ଲକ୍ଷ୍ମଣଙ୍କୁ ନଦେଖି ବିକଳ ତାଙ୍କ ମତି ।
ଏମନ୍ତ ସମୟରେ ବେଳ ପାଞ୍ଚଘଡ଼ି
ପଶ୍ଚିମଦିଗରୁ ରକତ ନଦୀ ବଢ଼ି ।
ଉତ୍ତରଦ୍ୱାର ବାଟରେ ହୋଇଲା ବାହାର
ଦୁଇଧାଡ଼ି କବନ୍ଧ ନାଚନ୍ତି ନଦୀର ।
ହସନ୍ତି ଟହ ଟହ କବନ୍ଧ ହରଷ
ଦେଖିକରି ଶ୍ରୀରାମଚନ୍ଦ୍ର ମନରେ ହରଷ ।
ପୁଣ ପଚାରନ୍ତି ନପୁଣ ଇନ୍ଦ୍ରଜିତ ମାରେ
ବ୍ରହ୍ମା ଇନ୍ଦ୍ର ଦେବତା ଯାହାର କଙ୍କରେ ।
ପୁଣିହିଁ ବିଚାରନ୍ତି ମୋର ଭାଇକି ପୁଣ
ଏ ବ୍ରହ୍ମାଣ୍ଡ ଭିତରେ କେହୁ ଜଣନ୍ତା ଅଛିଜାଣ
ସଂସାରକୁ ଧାରଣା ଅଟେ ସେବଣ ଜନ
ଏ ରଣ ଜିଣିବ ଯେ ତାହାକୁ ଅଟେ ପୁଣ ।
ଯାହାର ନାମରେ ପ୍ରଳୟ ହୁଏ ସୃଷ୍ଟି
ଯାର ମହିମା କହି ନପାରେ ପରମେଷ୍ଠି ।
ତାହାକୁ ବିପଦ କି ଅଛି ଯହିଁ ତହିଁ
ଜଗତ ଭିତରେ ଧନୁ ଶସ୍ତ୍ର ଅଛି ବହି ।
ଅନନ୍ତ ପୁରୁଷୋତ୍ତମ ଅଟେ ବିଶ୍ୱନାଥ
ଅପାପୀ ପୁରୁଷ ପରଂବ୍ରହ୍ମ ପରମାର୍ଥ ।
ଜଗତ ବତ୍ସଳ ଯେ କରୁଣାମୟ ତନୁ
ବିଷ୍ଣୁର ଜୀବନ ଆତ୍ମା ପ୍ରକୃତ ଯାର ଜାନୁ ।
ନାରାୟଣ ପୁରୁଷର ସୋଦର ରେଖବର୍ତ୍ତି
ପଞ୍ଚାଶକୋଟି ବସୁନ୍ଧରା କୁଣ୍ଡଳ ଯାର କର୍ଣ୍ଣି ।
ଯାହାଙ୍କର ଲୋମ ଯେ ଅଟେ ମେରୁଗିରି
ଦୈତ୍ୟ ନିଲକ୍ଷଣ ଯେ ତାହାକୁ କସ କରି ।
ଏବେ ପ୍ରାଣନାଶ ସେ କରିବ ଇନ୍ଦ୍ରଜିତ
ଯଶକରି ମୋର ପାଶେ ମିଳିବ ତୁରିତ ।
ତାହାକୁ କସ ଅବା ଅଟଇ ଏହି ରଣ
ମୋତେ ଏକା ଭୟକରେ ମୋ ଭାଇ ଲକ୍ଷ୍ମଣ
ସମରେ ବ୍ରହ୍ମା ଇନ୍ଦ୍ର ଗଣନା ନ କରଇ
ଘଡ଼ିକରେ ଜଗତ ବହି ସେ ପାରଇ ।

ଏମନ୍ତ ବିଚାରୁ ରାମ ବେଳ ସାତ ଘଡ଼ି
ରକତ ନଦୀ ଉପରେ ଜୁଆରି ଆସେ ମାଡ଼ି ।
କବନ୍ଧ ଆନନ୍ଦରେ ନାଚନ୍ତି ହରଷେ
ଉତ୍ତର ଦ୍ୱାରେ ଶ୍ରୀରାମ ଦେଖନ୍ତି ହରଷେ ।
ଏହି ସମୟରେ ହସିଲେ ସୌମିତ୍ରି
ଶତ୍ରୁକୁ ସଂହାରି ପୁଣ ଆସେ ମହାକ୍ଷତ୍ରି ।
ରକତରେ ସର୍ବାଙ୍ଗ ଦିଶେ ରଙ୍ଗମୟେ
ଦୂରହୁଁ ଦେଖିଲେ ତାଙ୍କୁ ରାମଚନ୍ଦ୍ର ରାୟେ ।
ଋକ୍ଷକପି ଆସିବାରେ ପୁରେ ଲଙ୍କାକାଣ୍ଡ
ହୁଳହୁଳି ରାମଚାଳି ଶବଦ ପ୍ରଚଣ୍ଡ ।
ମେଘନାଦର ମୁଣ୍ଡ ଧରିଣ ହନୁମନ୍ତ
ପଛରେ ନୃତ୍ୟକରେ ପବନର ସୁତ ।
ଖେମଟା ରାଗରେ ଯେ ଗାଆନ୍ତି ନୃତ୍ୟମାନ
ନାଚନ୍ତି ଋକ୍ଷ କପି ଆନନ୍ଦ କରି ମନ ।
ରକତ ନଦୀ ଭିତରେ ଆସୁଛନ୍ତି ପଶି
ବୃଷଭ ଉପରେ ଲକ୍ଷ୍ମଣଛନ୍ତି ବସି ।
ଦୂରୁ ଦେଖି ଶ୍ରୀରାମ ବିଚାର କଲେ ମନ
ଭଇରବ ରୂପ ତ ଦିଶୁଛି ଲକ୍ଷ୍ମଣ ।
ସମସ୍ତେ ରଙ୍ଗମୟେ ଦିଶନ୍ତି ଆଠସୈନ୍ୟ
ବୃଷଭ ଗୋଟା ଚଢ଼ିଣ ମୋର ଭାଇ ପୁଣ ।
ଅସୁର ଅସୁରୁଣୀ ଦେଖିଣ ଭୟ କଲେ
ବିଶ୍ୱରୂପ ଦେଖିଣ ନୟନ ବୁଜିଲେ ।
ଉତ୍ତର ଗଡ଼ଦ୍ୱାରେ ପ୍ରବେଶ ଯହୁଁ ହେଲେ
ସମସ୍ତଙ୍କ ନେଇ ପଡ଼ିଲା ରାମଠାରେ ।
ଅଙ୍ଗଦର ପିଠିରୁ ଉତୁରି ଲକ୍ଷ୍ମଣ
ଧୀର ଧୀର ହୋଇ ପୁଣି କରଇ ଗମନ ।
ଫୁଟିଣ ମଣିମିଣୀ ଅଳସ ମତ ଗଲି
ଜୟ ହୋଇଲା ବୋଲି ଶ୍ରୀରାମଚନ୍ଦ୍ର ଭଣି ।
ଏହି ସମୟରେ ବିଭୀଷଣ ବୀର
ଲକ୍ଷ୍ମଣଙ୍କୁ ଆଗକରି କିଷ୍କିନ୍ଧ୍ୟା ଠାକୁର ।
ଜାମ୍ବୁବ ସୁଷେଣ ଅଙ୍ଗଦ ହନୁମନ୍ତ
ଗଡୁ ବାହାରହେବାରେ ଦେଖିଲେ ସୀତାକାନ୍ତ
ହସ୍ତରେ କାଣ୍ଡ କୋଦଣ୍ଡ ବିକରାଳ ମୂର୍ତ୍ତି
ଅନେକ ଅସୁର ଜନ ଲୋଟିଅଛି ପୃଥ୍ୱୀ ।
ଦେଖି ଆନନ୍ଦ ହୋଇଲେ ଋକ୍ଷକପିମାନେ
ସାଧୁ ସାଧୁ ଶବଦ ପଡ଼ଇ ଅବଚ୍ଛିନ୍ନେ ।

ମତ୍ତା ପଡ଼ଛନ୍ତି ଆସିବାକୁ ବାଟ ନାହିଁ
ଦେଖିକରି ବିଭୀଷଣ ଜିହ୍ୱା କାମୋଡ଼ଇ ।
ରଥଗଜ ଅଶ୍ୱ ଯେ ପାଦାନ୍ତି ଅଗଣିତ ।
ଏକାଳେ ଏତେସୈନ୍ୟ ମାଇଲେ ଇନ୍ଦ୍ରଜିତ
ସେନା ଯୁଥପତି ବୋଲନ୍ତି କଥା ବୁଝ
ଦୁଇ ଆଡ଼ ଦଳକୁ ନ ଅଣ୍ଟିଲା ଆଜ ଯୁଦ୍ଧ
ଶ୍ରୀରାମଲକ୍ଷ୍ମଣ ନୋହି ଆନ ଯେବେ ହୋନ୍ତା
ଏହୁ ସେ ବିଚ୍ଛେଦ ପୂର୍ବେ କେହୁ ପ୍ରାଣପାନ୍ତା
ଏମନ୍ତ ବୋଲି ଧାଇ ଶ୍ରୀରାମ ପାଶେ ମିଳି
ପାଏ ପଡ଼ି ଶୋଇଣ ରକତେ ଲୋଟଗାଳି ।
ଉଠି ଠିଆ ହୋଇଣ ଯୋଡ଼ିଲେ ବେନିକର
ବିଭୀଷଣ ବୋଇଲା ଶୁଣ ହେ ରଘୁବୀର ।
ତ୍ରୈଲୋକ୍ୟରେ ଲକ୍ଷ୍ମଣଙ୍କୁ ନାହିଁ ସରି ସତ
ବ୍ରହ୍ମାଣ୍ଡ ଭିତରେ ଏକା ଏହାଙ୍କୁ ଗଣିପାରି ।
ବ୍ରହ୍ମା ଇନ୍ଦ୍ର ରୁଦ୍ରଦେବ ଯେତେଛନ୍ତି ପୁଣ
କେହି ସହି ନ ପାରନ୍ତି ଇନ୍ଦ୍ରଜିତ ବାଣ ।
କାହାରି ହାତରେ ସେ ନୋହେ ପ୍ରାଣେବଧ
ରାମମେଣ୍ଢି ଯାହାର ନ ଯାଏ ସୁର ସିଦ୍ଧି ।
ସେହି ମେଘନାଦକୁ ମାଇଲା ତୁମ୍ଭ ଭାଇ
ଦେଖିବାର ଆଉପୁଣି ଶୁଣିମା ନ ଯୋଗାଇ
ଧନ୍ୟ ଧନ୍ୟ ସତି ତୁମ୍ଭେ ଅଟ ବେନିଭାଇ
ଦୈତ୍ୟବଳ ଦଳିବାକୁ ଜନ୍ମିଅଛ ମହୀ ।
କୁମ୍ଭକର୍ଣ୍ଣ ବଂଶ ତୁମ୍ଭେ କଲ ନିଶୋଧନ
ଇନ୍ଦ୍ରଜିତ ବଂଶ କଲେ ଲକ୍ଷ୍ମଣ ନିଧନ ।
ମେଘନାଦ ମରିବାରୁ ପୁଅ ତା ଆଇଲେ
ତିନିଶତରେ ଦୁଇଶତ କୁମର ନାଶଗଲେ ।
ସାତଭାଇ ଏଠାରେ ମାଇଲ ତୁମ୍ଭେ ଜାଣ
ଲକ୍ଷ୍ମଣ ତିନିଭାଇ ମାଇଲେ ସେଠାରେଣ ।
କାଳଞ୍ଜନ ଦୈତ୍ୟକୁ କଲ ମୁହିଁ ହତ
ଏଗାର ଭାଇଙ୍କର ଶଏ ଦଶ ପୁଅ ।
ସେହି ଆସିଣ ପୁଣ ଯୁଝିଲେ ମୋ ସଙ୍ଗେ
ଶତେ ପୁଅ ମାଇଲି ମୁଁ ବ୍ରହ୍ମଶର ତେଜେ ।
ଦଶପୁନ ବହୁତ ଅନର୍ଥ ଯେ କଲେ
ଯୂଥପତି ସୈନ୍ୟବଳ ସର୍ବଙ୍କୁ ମାଇଲେ ।
ବଜ୍ରଶରେ ସଉମିତ୍ରୀ ନାଶ କଲେ ତାଙ୍କୁ
ଦେଖିଲୁଯେ ଆଉ କେହି ନାହାନ୍ତି ପଛକୁ ।

ହନୁମନ୍ତ ମୁହିଁ ସୁଗ୍ରୀବର ତୁମ୍ଭ ଭାଇ
ଅଙ୍ଗଦ ରହିଲୁ ଯେ ଲକ୍ଷ୍ମଣ ଆଜ୍ଞା ପାଇ ।
ପବନ ବେଗ କହିଲେ ସଉମିତ୍ରୀ କର୍ଣ୍ଣେ
ଜୀବନ୍ୟାସ ଶରକୁ ପେଷିଲେ ଲକ୍ଷ୍ମଣେ ।
ସକଳ ସୈନ୍ୟବଳ ମୋହରେ ପଡ଼ିଥିଲେ
ଜୀବପାଇ ସମସ୍ତେ ଉଠିଣ ଆଇଲେ ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣଙ୍କୁ କୋଳକରି
ଆରେ ଭାଇ ପ୍ରାଣସଖା ଶତ୍ରୁକୁ ସଂହାରି ।
ଦେହକୁ ଅଉଁସି କାଢ଼ିଲେ କାଣ୍ଡମାନ
ସୁଷେଣକୁ ଚାହିଁଣ ବୋଲନ୍ତି ରଘୁରାଣ ।
ଇନ୍ଦ୍ରଜିତ ପଡ଼ିବାରୁ ହୋଇଲା ଏବେ ଭଲ
ନଷ୍ଟେ ଏଥର ମରିବ ରାବଣ ମହାମଲ୍ଲ ।
ବୁଦ୍ଧିବଳ ଛାଡ଼ାଉ ସରିଲାଣି ସବୁ
କେମନ୍ତରେ ଭାଇ ମୋର ଜୀଇବରେ ବାବୁ
ଏଣୁ ତେଣିକି ଦେଖ ଫୁଟିଣ ଅଛି ଶର
କପାଳର ଘାଆ ଏବେ ଅତି ଅଗୋଚର ।
ହୃଦରେ କାଣ୍ଡ ମାରକ ଏହାର ନାହିଁ ଗଣା
ଗାମର ତଇତ ଶରେ କାଟନ୍ତି ନସେନ ।
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁମନ୍ତ
ନଳନୀଳ ଗନ୍ଧମାଦନ ଜାମ୍ବୋବନ୍ତ ।
ସେନା ଯୂଥପତି ଆଦ ସକଳ ସଇନ
ସବୁରିଙ୍କ ଦେହରେ ଫୁଟିଛି କାଣ୍ଡ ପୁଣି ।
ଏତେ ଘାଆମାନଯେ କେମନ୍ତେ ଭଲହୋଇ
ଋଷକପି ବଳ ମୋର କେମନ୍ତ ଜୀଇବଇଁ ।
ସୁଷେଣ ବୋଇଲା ଦେବ ଶୁଣ ରଘୁମଲ୍ଲ
ଘଡ଼ିକ ଭିତରେ କରିବ ସବୁ ଭଲ ।
ଗୁଲ ଏବେ ସୁବଳଯ୍ୟା ପର୍ବତକୁ ଯିବା
ଚହିଁ ଯାଇଣ ବିଧି ବିଧାନ ସାରିବା ।
ହନୁକୁ ଚାହିଁଣ ଯେ ବୋଲନ୍ତି ଶ୍ରୀରାମ
ମୁଣ୍ଡ ଗୋଟାଏ କମ୍ପା ଧରିଛୁ ହସ୍ତେ ପୁଣ
ହନୁମନ୍ତ ବୋଇଲା ଏ ମେଘନାଦ ମୁଣ୍ଡ
ତୁମ୍ଭେ ଦେଖିବାକୁ ମୁଁ ଆଣିଛି ରଘୁରାଜ ।
ଶ୍ରୀରାମ ବୋଇଲେ ତାକୁ ଦିଅ ଫୋପଡ଼ାଇ
ମୃତ୍ୟୁପିଣ୍ଡ ଧରିବାର ଉଚିତ ନୁହଇ ।
ଶୁଣିକରି ହନୁମନ୍ତ ପକାଇ ଦେଲେ
ଅଙ୍ଗଦକୁ ଚାହିଁଣ ଶ୍ରୀରାମ ବୋଇଲେ ।

ଭଇରବ ବେଶ ତୁ ହୋଇଛୁ କୁମର
ଅଙ୍ଗଦ ବୋଇଲା ଆଜ ଅଟେ ଭାଗ୍ୟ ମୋର
ତ୍ରୈଲୋକ୍ୟଠାକୁର ମୋରଠାରେଦୟାକଲେ
ମହାବୃଷଭ ରୂପ ମୋତେ ସେ ଆଜ ଦେଲେ
ଏଥିର କଥା ଏବେ ଶୁଣ ହେ ନରନାଥ
ଲକ୍ଷ୍ମଣକୁ ଇନ୍ଦ୍ରଜିତ କହିଲା ବୃତ୍ତାନ୍ତ ।
ବୋଇଲା ତୁ ମୋତେରେ ମାରି ନ ପାରିବୁ
ବର ଦେଇ ବିଧାତା କହିଣ ଅଛି ସବୁ ।
ବୃଷଭ ଆରୋହି ତୋତେ ମାରିବେଶି ପୁରହର
ଏକଥା ପୂର୍ବରେ ତୁ ଥିବୁ ଲକ୍ଷ୍ୟକରି ।
ଶୁଣିକରି ସଉମିତ୍ରୀ ମୋତେ ଆଜ୍ଞା ଦେଲେ
ବୃଷଭ ଗୋଟିଏ ତୁ ହୁଅରେ ବୋଇଲେ ।
ତାଙ୍କଆଜ୍ଞାରେ ବୃଷଭରୂପ ହୋଇଲାମୋହର
ମୋର ପିଠିରେ ବସି ମାଇଲେ ରାବଣ କୁମର
ଶୁଣିଣ ରଘୁନାଥ ସନ୍ତୋଷ ହୋଇଲେ
ନିଜ ରୂପ ଧର ବୋଲିଣ ଆଜ୍ଞାଦେଲେ ।
ନିଜରୂପ ଅଙ୍ଗଦ ଧରେ ତତକ୍ଷଣ
ଦେଖିଣ ସନ୍ତୋଷ ହେଲେ ଋକ୍ଷକପି ସୈନ୍ୟ
ପୁଣି ଶ୍ରୀରାମ କଲେ ଯେ ବାହୁଡା ବିଜୟେ
ହନୁମନ୍ତ ସ୍କନ୍ଧରେ ବିଜୟେ ରାମରାୟେ ।
ଲକ୍ଷ୍ମଣଙ୍କୁ ସ୍କନ୍ଧେ ବହେ ତାଙ୍କର ତନୟେ
ଧୀର ଧୀର ହୋଇଣ ଉତ୍ତର ମୁଖ ଯାଏ ।
ସୁବଳ ପର୍ବତରେ ହେଲେ ପରବେଶ
ଦେବନଦୀ ତୀରରେ ମିଳିଲେ ରଘୁଶିଷ୍ୟ ।
ହନୁମନ୍ତ ସ୍କନ୍ଧରୁ ଉତୁରି ରଘୁସାଇଁ
ଅଙ୍ଗଦର ସ୍କନ୍ଧରୁ ଲକ୍ଷ୍ମଣ ଓହ୍ଲାଇ ।
ଶ୍ରୀରାମଙ୍କୁ ଓଳଗି ହେଲେ ଲକ୍ଷ୍ମଣ ବୀର
ସେନାପତି ଅଛନ୍ତି ସମସ୍ତେ ଆଗର ।
ସଜଳଗି ହୋଇଣ ସୁଷେଣ ହକାରି
କୋମଳ କରିକହନ୍ତି ଶୁଣି ସେ ନୃପଧାରୀ ।
କି ବୁଦ୍ଧି କରିବା ବାବୁ କହସି ଉତ୍ତର
ଶରଘାତେ ସଇନ୍ୟ ସଭିଏ କାତର ।
ସୁଷେଣ ବୋଇଲେ ଦେବ ହନୁମନ୍ତ ଯାଉ
ହେମବନ୍ତରୁ ଆଣିଣ ଔଷଧ ବେଗେ ଦେଉଁ
ଶୁଣିଣ ଶ୍ରୀରାମ ଯେ ହୋଇଲେ ଚକିତ
ଜାମ୍ବବ ବୋଇଲେ ଶୁଣ ଦେବ ରଘୁନାଥ ।

ସେ ଦିନର ମହୌଷଧି ଅଛି ମୋର ତହିଁ
ଆଗତ କଥା ଜାଣି ମୁଁ ଗୁପତେ ଅଛି ଥୋଇ
ଏତେ କହି ଗୁପତ ସ୍ଥାନକୁ ଚଳିଗଲେ ସ୍ତ୍ରୀ
ମହୌଷଧି ଆଣିଣ ଆଗରେ ଉଭା ହେଲେ ।
ଦେଖିକରି ରଘୁନାଥ ବହୁତ ପ୍ରଶଂସିଲେ
ଧନ୍ୟରେ ଜାମ୍ବବ ମନ୍ତ୍ରୀ ବୋଲିଣବୋଇଲେ
ଦେବ ନଦୀରେ ପଶିଣ କଲେକ ପ୍ରକ୍ଷାଳ
ଜାମ୍ବବ ହସ୍ତୁନେଲେ ସୁଷେଣ ନାମେ ବୀର ।
କୋମଳ ପଦାର୍ଥ ମଳିନ ହୋଇଅଛି
ଦେଖିଣ ଆନନ୍ଦ ଯେ ହେଲେ ରଘୁବଂଶୀ ।
ମର୍ଦ୍ଦିଣ ଶ୍ରୀରାମ ହସ୍ତରେ ଦେଲେ ନେଇ
ଶୁଙ୍ଘିଣ ରଘୁନାଥ ଅନେକ ବଳ ପାଇ ।
ଶସ୍ତ୍ର ଘାଆମାନ ଭଲ ହେଲା ତତକ୍ଷଣ
ଶ୍ରୀରାମ ହସ୍ତରୁ ଶୁଙ୍ଘିଲେ ଲକ୍ଷ୍ମଣ ।
ତେତେ ଘାଆମାନ ହେଲା ସବୁ ରୁଜ
ଗାତରୁ ଶତେଗୁଣେ ଶରୀର ବିରାଜ ।
ସୁଗ୍ରୀବର ବିଭୀଷଣ ଜାମ୍ବବ ସୁଷେଣ
ଅଙ୍ଗଦ ହନୁମନ୍ତ ଶୁଙ୍ଘିଲେ ନେଇ ପୁଣ ।
ବ୍ୟାଧି ନିବାରଣ ହେଲେକ ତେଜ ମୂର୍ତ୍ତି
ଏକର ହସ୍ତରୁ ପୁଣ ଆରେକ ଘେନି ଯାନ୍ତି ।
ଘଡ଼ିଇ ଭିତରେ ଯେ ଶୁଙ୍ଘିଲେ ସଇନ
ସମସ୍ତେ ବଳବନ୍ତ ତେଜବନ୍ତ ପୁଣି ।
ଅଷ୍ଟସେନା ପୁଣି ସେ ପଞ୍ଚଶ ଯୂଥପତି
ବ୍ୟାଧି ନିବାରଣ ଯେ ହୋଇଲେ ତେଜମୂର୍ତ୍ତି
ନାଚିଲେ ଋକ୍ଷକପି ସିଂହନାଦ ଦେଇ
ମେଘନାଦ ପଡ଼ିବାରୁ ଉସତ ମନ ହୋଇ ।
ଆଗରେ ଡାକ ଦିଅନ୍ତି ରାବଣ ବେଗେ ମରୁ
ଶ୍ରୀରାମର ବାଣରେ ହୃଦୟ ତାର ଫୋଡ଼ୁ ।
ଜାନକୀ ଘେନି ଶ୍ରୀରାମ ଅଯୋଧ୍ୟାକୁ ଯାନ୍ତୁ
ବ୍ରହ୍ମାଦି ଦେବତାଏ ସ୍ୱର୍ଗରେ ସୁଖେ ଥାନ୍ତୁ ।
ଏଯନେକ ବୋଲିଣ ବୋଲନ୍ତି ସଇନ
ଏଥୁଅନନ୍ତରେ ଯେ ରାମ ଲକ୍ଷ୍ମଣ ବେନି ।
ନିତ୍ୟକର୍ମ ସାରିଲେ ଦେବନଦୀ ତୀରେ
ସମସ୍ତେ ସ୍ନାନ କରନ୍ତି ଯାଇ ମହାଜଳେ ।
ଛୁଧାକୁ ଛଡ଼ାଇଣ ସନ୍ଧ୍ୟା ସୁମରିଲେ
ଦେବ ପିତୃ ତର୍ପଣ ସାରିଣ ବାହୁଡ଼ିଲେ ।

ବିଭୀଷଣ ସୁଗ୍ରୀବର ସହିତେ ସଇନ
ନିତ୍ୟକର୍ମ ସାରି ଅଇଲେ ବାହୁଡ଼ି ପୁଣି ।
ଶ୍ରୀରାମ ଲକ୍ଷ୍ମଣ ଅଇଲେ ଭାଇ ବେନ
ଯେ ଯାହା ଠାବରେ ରହିଲେ ସଇନ ।
ତିନ ପ୍ରହର ଯେ ହୋଇଲା ଆସି ବେଳ
ମଣୋହିରେ ବିଜୟେ କଉଶଲ୍ୟା ଦୁଲାଳ ।
କନ୍ଦମୂଳ ଆଣିଣ ଲକ୍ଷ୍ମଣ ପରଷିଲେ
ସେନାପତି ସଙ୍ଗେ ଘେନି ଶ୍ରୀରାମ ଭୁଞ୍ଜିଲେ ।
ମଣୋହି ସାରିଣ ଉଠିଲେ ରଘୁପଧାରି
ସୁବାସିତ ଜଳରେ ଆଞ୍ଚୋବନ ସାରି ।
କଷାଫଳ ଖାଇଣ ବସିଲେ ମୃଗଚ୍ଛାଲେ
ଶ୍ରୀରାମଙ୍କ ଉଚ୍ଛୁରୁ ଲକ୍ଷ୍ମଣ ଭୁଞ୍ଜିଲେ ।
ଉଦର ତୋଷିଣ ଆଞ୍ଚୋବନ ସାରି
ଶ୍ରୀରାମ ଚରଣେ ଦର୍ଶନ ଯାଇ କରି ।
ସୁଗ୍ରୀ ବିଭୀଷଣ ଜମ୍ବୁବ ଅଙ୍ଗଦ
ହନୁମନ୍ତ ସୁଷେଣ କେଶରୀ ଦୁବନ୍ଦ ।
ପବନ ସରସେକୁ ମହେନ୍ଦ୍ର ଗବାକ୍ଷ
ଦଧିମୁଖ ବଳମୁଖ ଡାଳମ୍ବ ଧମାକ୍ଷ ।
ସମ୍ପାତି ବିବଧ ସଉଘ ଶତବଳ
ଗନ୍ଧମାଦ୍ଦନ କାଳମୁଖ ନଳ ନୀଳ ।
ବସନ୍ତ ପନଶୀଳ ଚନ୍ଦନ ସାରସ
କାଳଞ୍ଜନ କୁନ୍ଦ ଶତବାଳ ସୁପାରୁଶ ।
ଦର୍ଶନ କରିଣ ସେ ପଚୁଆରି ଛନ୍ତି
ଯୁଦ୍ଧର କଥାମାନ କୁହାକୁହି ହୋନ୍ତି ।
ଶ୍ରୀରାମ ବୋଇଲେ ତୁରେ ଶୁଣ ବିଭୀଷଣ
ଆଗ ହୋଇ ତୁମ୍ଭେ ଗଲ ଭିତରେ ପଶିଣ ।
ଆମ୍ଭଙ୍କୁ ଓଗାଳଲେ ସାତ ସେନାପତି
ମେଘନାଦ ସମାନରେ ଅଟନ୍ତି ସେହୁଷର୍ଗୀ ।
ସୈନ୍ୟବଳ ସଙ୍ଗେଛନ୍ତି କଳନା ନ ଯାଇ
ଘଉ ନବେଧିଣ ସେ ଯୁଝିଲେ ପରିଘାଇ ।
ନାରାଜ ବୃଷ୍ଟି କରି ଦଳଲେ ସଇନ
ଡାଳମ୍ବ ବସନ୍ତ ଶତବାଳକ ମୁଁ ଘେନ ।
ଦିବସ ରାଶ ଆରଦନ ପାଞ୍ଚ ଦଣ୍ଡ
ଘୋର ସଂଗ୍ରାମ କଲ ସେମାନେ ତହିଁ ପଡ଼ ।
ସେ ସାତଜଣ ଯେ ଅଟନ୍ତି ବିଭୀଷଣ
ଅପୂର୍ବ ମଣିଲୁ ଆମ୍ଭେ ତାହାଙ୍କର ରଣ ।

ଶୁଣିକରି କରଯୋଡ଼ି ରାବଣର ଭାଇ
ବୋଲଇ ସେ ସାତ ଯାକ ପୃଥ୍ୱୀ ପାରନ୍ତି ଦହି
ରାବଣ ତନୟେ ଯେ ମନ୍ଦୋଦରୀ ସୁତ
ଆବର ପାଞ୍ଚଙ୍କର ତିନିଗୋଟି ସୁତ ।
ଯେବଣ କାଳେ ସ୍ୱର୍ଗ ଜିଣେ ଦଶଶିର
ଏ ସାତ କୁମରଯାକ ହେଲେ ଆଗସରି ।
ଗନ୍ଧର୍ବ ବଳଙ୍କ ସଙ୍ଗେ ସେହୁ ଯୁଦ୍ଧ କଲେ
ବେଢିଣ ପବନ ଦେବତାଙ୍କୁ ସେ ଧଇଲେ ।
ସୁରି ମେଘକୁଟସେ ଜିଣିଥିଲେ ବାନ୍ଧି
ଆକାଶେ ପୂରାଇଥିଲେ ଶରେ ଶର ସନ୍ଧି ।
ସେ ସାତରଥୀ ଦେବ ଏସନେକ କ୍ଷତ୍ରୀ
ଯେଉଁଠାକୁ ଗଲବେଳେ ସାତଜଣ ଯାନ୍ତି ।
ଭଲ ଦୁଇଭାଇ ତୁମ୍ଭେ ଥାଟ କଲ ନାଶ
ଶୁଣ ଦଶରଥବାଳ ହୋଇଲେ ହରଷ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେଶୁଣ ମୋର ବାଣୀ
ବାପ ପୁଅ ଉପକାର ଶୁଝି ନୋହେ ପୁଣି ।
ସୀତାଙ୍କୁ ଜଗଇ ମୋର କର୍ଣ୍ଣରେ କହଇ
ଜାନକୀର ଦୁତପଣେ ଏଠାକୁ ଆସଇ ।
ପିତାପ୍ରାୟେ ଉପକାର କରଇ ପବନ
ପୁତ୍ର ହନୁମନ୍ତର କହିବ କସ ଗୁଣ ।
ପାଶୋରିଲି କଥାମାନ ହେଜାଇ ଦିଏ ରଣେ
ଜନକର ଋଷିପ୍ରାୟେ ମୋତେ ଲାଗେ ଏଣେ
ବିଭୀଷଣ ଆମ୍ଭଙ୍କୁ ଉପକାର କଲ
ସୋଦର ମାରିବାରେ ଅଳସ ନ କଲ ।
ରାବଣର ପୁତେ ଯେ ନାତି ପୁଣ ଶତେ
ମେଘନାଦ ମରିବାରୁ ମାଇଲେ ତୁରିତେ ।
ଦୋହିତାରି ନାମ ଗୋଟି ଅଟଇ ବିକଟା
ମାତାପ୍ରାୟେ ପାଳନ୍ତି ଜାନକୀଠାରେ ସ୍ତୋତା
ଅସମାଳ ବେଳରେ ସମାଳ କରେ ସଖା
ଶୁଣିକରି ବୋଲ ତାଙ୍କୁ ଭଲେ ଦାଶରଥି ।
ଏଥୁଅନନ୍ତରେ ଶୁଣ ଲଙ୍କାଗଡ଼ କଥା
ଘୁରି ଜଣାଇଲା ଯାଇ ଶୁଣ ଦଶମଥା ।
ଇନ୍ଦ୍ରଜିତ କୁମର ତୋ ରଣରେ ପଡ଼ିଲା
ବିଭୀଷଣଙ୍କୁ ଘେନିଣ ଲକ୍ଷ୍ମଣ ମାରିଗଲା ।
ସବୁ ଭେଦ ତାଙ୍କୁ କହିଲା ତୋ ଭାଇ
ଶୁଣିକରି ଲଙ୍କାପତି ପଡ଼ ମୋହଯାଇ ।

ତତକ୍ଷଣେ ପାତ୍ର ମନ୍ତ୍ରୀ ତୋଳଣ ଧଇଲେ
ଶୀତଳ ଜଳ ଯେତନଣ ମୁଖ ପଖାଳିଲେ ।
ମନ୍ଦୋଦରୀ ପଙ୍ଖାସେନ ବଟଞ୍ଚ ଧୀର ଧୀର
ଅଗ୍ନିକେତୁ ରଶ୍ମିକେତୁ ତାଳନ୍ତି ଚାମର ।
ସେନାପତିମାନେ ସର୍ବେ ବସିଣ ଅଛନ୍ତି
ଏକକୁ ଆରେକ ପୁଣ ସମସ୍ୟା ନ ଦଅନ୍ତି ।
କ୍ଷଣକରେ ଚେତନା ଯେ ପାଇଲାକ ରାବଣେ
ବିଂଶ ଲୋଚନ ଲୁହ ଝାଳୁଣ ନ ରୁନ୍ଧେଁ ।
କାଳଖଣ୍ଡ ପ୍ରାୟ ତାର ହୋଇଅଛି ଦେହ
ଉଦ୍‌ବେଗ ମନରେ ରୋଦେ କୋହ କୋହ ।
ବୁକୁ ଦମ ଦମ ଝର ଯେ ନିଃଶ୍ୱାସ
ମୁଖରେ ନ ରହି ତାର ଉଡ଼ଇ ସାହସ ।
ବିଂଶ ନୟନରେ ଲୁହେଁ ଧୀର କର
ଉଚରେ କାନ୍ଦିଲା ତାର ପୁତ୍ର ନାମ ଧର ।
ଆହା କୁମରରେ ମେଘନାଦ ମୋର
ହରକୁ ବୋଲଉ ଇନ୍ଦ୍ରଜିତ ନାମ ତୋର ।
ଏ ବ୍ରହ୍ମାଣ୍ଡେ ତୋତେ କ୍ଷତ୍ରୀ ସମ ନାହିଁ
କେବଣ କଥା ତୁରେ ନକଲୁ ବାପ ତୁହି ।
ତୁହି ମଲୁ ବୋଲି ମୁଁ ଶୁଣିଲି ଏବେ କର୍ଣ୍ଣେ
ପ୍ରତେ ନକରେ ମୁହି ଯେ ନ ଦେଖି ନୟନେ
ପ୍ରଶସ୍ତକୁ ରୁହିଁ ରାଜା ବୋଇଲା ଯେ ପୁଣି
ସତେ କି ଯତି ମୋର ପୁତ୍ରକୁ ଗଲା ହାଣି ।
ସମୁଦ୍ର ଭିତରେ କେହୁ ଅଗ୍ନି ଲଗାଇଲା
ପବନକୁ କିଏ ସେ ଫାନ୍ଦରେ ବାନ୍ଧିଲା ।
ବ୍ରହ୍ମରାକ୍ଷସ ଠାରେ କେ ଲଗାଏ ପୁଣ ଭୂତ
ହଧା ମାରି ଚୂରିଲା କେ ମେରୁ ପରବତ ।
ହାତ ବଢ଼ାଇ ଚନ୍ଦ୍ର ସୂର୍ଯ୍ୟ କେ ଧଇଲା
ତପତ ଲୁହାକୁ କେ ଦନ୍ତରେ କାମୋଡ଼ିଲା ।
ବଜ୍ରବାଣ ମାଉ କେ ପାତେ ନେଇ ମୁଣ୍ଡ
ଅନଳ ପୂରଇ କେ ଭୁଜଙ୍ଗକ ତୁଣ୍ଡ ।
ଇନ୍ଦ୍ରଜିତ ସମ୍ମୁଖରେ କେ ରହି ଯୁଦ୍ଧ କଲା
କେଉଁ ଦେଶେ ଘର ତାର ପ୍ରାଣରେ ମାଇଲା
ଇନ୍ଦ୍ରଦେବତା ଠାରୁ ମନୁଷ୍ୟ ହେଲେ ବଡ଼
ଖାଇକେହୁ ପାରଇରେ ଚନ୍ଦ୍ର ସୂର୍ଯ୍ୟ ହାଡ଼ ।
ପହଁରକ ପାଣିରେ କି ନୋହିଲା ବୁଡ଼ଣା
କିଏ ସେ ମାଇଲା ମୋର କୁଳର ଦୁଲଣା ।

ଇନ୍ଦ୍ରଜିତ ପଡ଼ିବାର ସାମାନ୍ୟ କି କର୍ମ
ଜାଣିଲି ଏବେ ମୋତେ ଗ୍ରହିଲାକ ଧର୍ମ ।
ଦେବଦଳନ ରଥରେ ନଥିଲୁ କରେ ଚର୍ମ
ତର୍ଜ୍ଜିରେ ବସିଲେ ପୃଥିବୀ କଣ୍ଣୁ ଏକଖଣ୍ଡ ।
ବ୍ରହ୍ମଶସ୍ତ୍ର ତୁହି ନ କଲୁ କରେ ଧୃତ
ମାୟାରେ ସବୁଙ୍କୁ ଜିଣିଲୁ ବହୁତ ।
ଶ୍ରୀରାମର ଭାଇ ମୋର ପୁତ୍ରକୁ ମାଇଲା
ପୋଷିଲି କାଳକୁ ପୁତ୍ର କେଉଁ କତି ଗଲା ।
ସ୍ୱର୍ଗେ ଦେବତାଏ ଶୁଣି ହୋଇବେ ହରଷ
ଅପସରା ବିଦ୍ୟାଧରୀ କିନ୍ନରୀ ହେବେ ତୋଷ
ରାଜାମାନେ କମ୍ପାଇ ଡରିବେ ଯେ ମୋତେ
କୁବେରର ମୁଖ ମୁଁ ଚାହିଁବି କେମନ୍ତେ ।
କେଉଁଠାରେପଡ଼ିଛିପୁତ୍ରଦେଖାଅମେତେନେଇ
ଏତେକହି ସିଂହାସନୁ ଉଠେ ଲଙ୍କସାଇଁ ।
ଚାର ଜଣାଇଲା ରଣେ ପିଣ୍ଡ ଅଛି ପଡ଼
ମୁଣ୍ଡ ଯେ ହନୁମନ୍ତ ନେଇଥିଲା ତାର ।
ଶ୍ରୀରାମଙ୍କୁଦେଖାଇଉତ୍ତର ଦ୍ୱାରେ ପକାଇଲା
ଶୁଣିକରି ରାବଣ ଚାରକୁ ଆଜ୍ଞା ଦେଲା ।
ଇନ୍ଦ୍ରଜିତ ମୁଣ୍ଡ ନେଇ ଗଣ୍ଡି ପାଶେ ରଖ
ଶୁଣିକରି ଚାରମାନେ ଧାଇଁଲେ ସଲଖ ।
ଉତ୍ତର ଦ୍ୱାର ମୁଣ୍ଡ ବେଗେ ଆସେ ଘେନ
ଗଣ୍ଡି ପାଶେ ଥୋଇଲା ସେ ଛଡ଼ାହାତ ଜନ ।
କାନ୍ଦ କାନ୍ଦ ଦଶଗ୍ରୀବ ନବରୁ ବାହାର
ସୈନ୍ୟମାନେ ପଛରେ ଗୋଡ଼ାନ୍ତି ତାହାର ।
ରଣଦାଣ୍ଡେ ବେଗେ ମିଳେ ଯେ ରାବଣ
ପୁତ୍ରପଡ଼ିଛି ଯେଉଁଠାରେ ଦେଖେ ସେ ଯାଇଣ
ଧାଇଁଣ ପିଣ୍ଡ ଖଣ୍ଡ କୋଳକରି ଧରି
ଆହାପୁତ୍ର ବୋଲି ଯେ କାନ୍ଦେ ମୁଣ୍ଡ କୋଡ଼
ସର୍ବାଙ୍ଗ ସୁନ୍ଦର ତୋର ଯୁବା ଯେ ବୟସ
ମର୍ତ୍ତରେ ରସାଣ ତୁ କନ୍ଦର୍ପ ସଦୃଶ ।
ରୂପରେ ପଞ୍ଚାନନ ଗୁଣରେ ଗୁଣନିଧି
ବଡ଼ିମା ପଣରେ ମେରୁ ଗମ୍ଭୀର ପୟୋଧି ।
ଦାନେଣ ସତ୍ତା ତୁରେ ଖାଣ୍ଡେଣ ଗାରିମା
ଇନ୍ଦ୍ରକୁ ଜିଣି ସ୍ୱର୍ଗରେ ରୁହାଇଲୁ ସୀମା ।
ସର୍ବଗୁଣେ ସୁଲକ୍ଷଣ ଅଟୁରେ ମୋର ବଳା
ଶୁଖିଲା ସମୁଦ୍ରରେ ବୁଡ଼ାଇଲୁ ଭେଳା ।

ଗହନ ଅରଣ୍ୟରେ ଗୁଡ଼ିକରି ଗଲୁ
ଗଛରେଚଢ଼ାଇବାକୁରେ ମୂଳରୁ କାଟିଦେଲୁ
ତୋତେ ମୁଁ କରିଥିଲିରେ ଅନେକ ଭରସା
ବଞ୍ଚରଇ ପୁତ୍ରମୋର ଦେବଙ୍କୁ ଭରସା ।
ଅପୂର୍ବ ପୁରୁଷ ତୁରେ ସର୍ବଙ୍କ ଈଶ୍ୱର
ତୋହର ମହିମା ପୁଣ ବିଖ୍ୟାତ ତ୍ରିନପୁର ।
ବାଟରେବସାଇମୋତେରେକେଣେଗଲୁ ଗୁଡ଼ି
ଦେବତାର ହାତରୁ ମୋର ଜୀବନ ନେଲୁ କାଢ଼ି
ଅନର୍ଗଳ ତୋହର ତୋ ସାରଥିର ବାନା
ତପସ୍ୱୀ ବାଣରେ କେହ୍ନେ ପଡ଼ିଲୁ ନନ୍ଦନା ।
ମୁକୁଟ ମଣ୍ଡଳ ସହିତେ ମୁଣ୍ଡ ଦେଖି
ଅବିଚ୍ଛିନ୍ନେ ଅଶ୍ରୁଜଳ ବହଇ ବିଂଶ ଆଖି ।
ଫରଫର ଦାଢ଼ି ଯେ କସ୍ତୁରୀ ରେଖ ନଖ
ଇନ୍ଦ୍ରରେବଲେପନ ହେଲୁରେ ମୋରଶିଷ୍ୟ ।
ରଣରେ ପଶିଲେ ପିଠି ନ ଦେଉରେ ବାବୁ
ଏକାଳେ ଦୁଃଖ ମୋତେ ହେଲା ବଡ଼ ସବୁ ।
କୁମ୍ଭକର୍ଣ୍ଣ ପଡ଼ିଲା ଯେ ପୁତ୍ରମାନେ ମଲେ
ରଥ ଗଜ ଅଶ୍ୱ ପଦାତି ସଙ୍ଗେ ଗଲେ ।
ସ୍ୱାନ ଶତ୍ରୁ ମିଳଣରେ କଲା ଏଡ଼େ କର୍ମ
ବିଭୀଷଣଠାରୁ ଯେତେ ଶୁଣିଲା ମୋର ମର୍ମ ।
କୁଳର କଳଙ୍କ ହେଲୁରେ ପାପିଷ୍ଠ
ଏ ପରା ପୁତ୍ରଙ୍କୁ ପ୍ରାଣେ କଲୁ ନଷ୍ଟ ।
ଏମନ୍ତ ବୋଲିଣ ଯେ କାନ୍ଦେ ଦଶଶିର
ରାଜାର କାନ୍ଦନ୍ତେ କାନ୍ଦନ୍ତି ନର ନାରୀ ।
ଏହି ସମୟରେ ଜଣାଏ ପ୍ରଶସ୍ତ
ଏଗାର ପୁତ୍ର ତୋର ମଲେ ଆତୁରତ ।
ତିନିଶତ ଦଶ ହଜାର ନାତି ମଲେ
ବାର ପୁତ୍ରଙ୍କର ଏବେ କୁଳକ୍ଷୟ ଗଲେ ।
ଇନ୍ଦ୍ରଜିତର ଦୁଇ ଯେ କୁମର ଅଛନ୍ତି
ଶୁଣିକରି ଲଙ୍କାପତି ହେଲେ ସବିଦ୍ୟନ୍ତି ।
ଏହି ସମୟରେ ପୁଣ କହେ ମିତ୍ରଘନ
ଅକାରଣେ ରୋଦନ କର୍ମା କରୁ ଦଶାନନ ।
ଇନ୍ଦ୍ରଜିତ ମରିବାର ଜାଣିଲୁ ତୁ ରଣେ
ଆତୁର ସାତ ପୁତ୍ରକୁ ମାଇଲା ରାମବାଣେ ।
ପୁତ୍ରେକ କାଳଞ୍ଜିନକୁ ଘାଇ ତୋର ମାରି
ଇନ୍ଦ୍ରଜିତ ନାଶିକ ଲକ୍ଷ୍ମଣ ସଂହାରି ।
ଅକାରଣେ ରୋଦନ କରୁଛୁ ଦଶଶିରା
କହୁଛି ଶୁଣିମା ମୋର କଥାକୁ ଲୟେକର ।
ଅନ୍ଲେପି ସନ୍ଲେପି ତୋର କଙ୍କ ଧଙ୍କ ଗାର
ସିଂଘ ଭୁରଙ୍ଗ ଯେ ଦେବଦତ୍ତଇଁ କୁମର ।
ସାନସତି ସେ ନ୍ୟସେନ ଗଡ଼େ ପଶିଲା ଧସାଇ
ଅନେକ ସୈନ୍ୟତୋର ନାଶିଲା ସେହୁରହି ।
ବିଭୀଷଣ ଘାଇ ତୋର କାଳଚନ୍ଦ୍ରକୁ ମାଇଲା
ବ୍ରହ୍ମଅସ୍ତ୍ର କରି ସେ ଯେ ସୈନ୍ୟଙ୍କୁ ଦହିଲା ।
ସେ ସାତକୁମର ବଡ଼ ଯତି ହେଲେ ଭେଟ
ଦ୍ୱାର ଆବୋରିଣ ସେ ପାଡ଼ିଲେ କବାଟ ।
ସୈନ୍ୟସହ ଦ୍ୱେନଣ ଅନେକ ଯୁଦ୍ଧ କଲେ
ରଘୁନାଥ ବାଣେତୋର ସାତ ପୁତ୍ର ମଲେ ।
ଶୁଣିକରି ଦଶକନ୍ଧ ହୋଇଲା ଚକିତ
ହୃଦପଦ୍ମ ମଧ୍ୟେ ଶ୍ରୀରାମଙ୍କୁ ଡରେ ସେତ ।
ଅମୋଘ ମଣି ପ୍ରସାଦେ ଶୋକ ସଂହାରି
ବୋଇଲା ରାମ ଲକ୍ଷ୍ମଣଙ୍କୁ ପକାଇବି ମାରି ।
ଯେବଣ କାଳରେ ମୁଁ ସଂସାର ସାଧିକଲି
ସେକାଳେ ପୁତ୍ର ନାତିଙ୍କୁ ସଙ୍ଗରେ ନନେଲି ।
ମନ୍ଦୋଦରୀ ରାଣୀକି ମୁଁ ହୋଇଥିଲି ବର
ଚଉଦ ଭୁବନକୁ ଲଗିଲା ମୋର ପ୍ରଭା ।
ମଲେ ପୁତ୍ର ନାତିମୋର ମନରେ ନାହିଁ ଦଖ
ପୁତ୍ରକୁ ଦହନକରାଇ ପ୍ରତିଜ୍ଞା ମୋର ଦେଖ ।
ଏତେକହି ରାଏ ଯେ ଭିତର ପୁରେ ଗଲା
ମତ୍ତରାଜ ଆରୋହି ପ୍ରତିଜ୍ଞା ସେହୁ କଲା ।
ଥାଟ ସଜକର ବୋଲି ମନ୍ତ୍ରୀକି ଆଜ୍ଞାଦେଲା
ଅଶୋକ ବନିକୁ ସେ ବେଗେ ଚଳିଗଲା ।
ବୋଇଲା ଇନ୍ଦ୍ରଜିତ ମାଇଲା ମାୟା ସୀତା
ମୁହିଁ ସତେ ମାରିବି ଜନକ ଦୁହିତା ।
ମଧୁବନରେ ପଶି ହସ୍ତୀରୁ ଓହ୍ଲାଇଲା
କରେ ଖଡ଼ଗ ଧରି ଶୀଘ୍ରେଣ ଚଳିଗଲା
ସୀତା ସୁବର୍ଣ୍ଣ ଜଗତୀରେ ଥିଲେ ବସି
ବେଢ଼ି ଥିଲେ ତାଙ୍କୁ ସହସ୍ର ରାକ୍ଷସୀ ।
ନିକଟା ସହିତେ ପୁଣ ଦୂରରୁ ଅନାଇଁଲେ
କୋପଭରେ ରାବଣ ଅସୁଛି ବୋଇଲେ ।
ଶ୍ରୀରାମ ଲକ୍ଷ୍ମଣ ଆଜ ପଡ଼ିଲେକ ରଣେ
ସୀତାଙ୍କୁ ହରିବ ବୋଲି ଆସୁଛି ବତକ୍ଷଣେ ।

ଜାନକୀ ଆଗେ ତ୍ରିଜଟା କହେ ଯାଇ ପୁଣ
ଯଦ୍ଧେଁ ସେ ବେଗେବେଗେ ଆସଇ ରାବଣ ।
ଜାନକୀ ବୋଇଲେ ଗୋ ହେଲା ଉପଘାତ
ରଣରେ ମାଇଲା କରେ ମୋର ପ୍ରାଣନାଥ
ମନ୍ଥରୀର ଯୋଗୁଁ ମୋତେ ଏମନ୍ତ ହୋଇଲେ
କୈକେୟୀ ଶାଶୁମୋର ଏହା ଭିଆଇଲେ ।
ପୁଣ ଉଚ୍ଚରନ୍ତି ସୀତା ମନରେ କେବେ ରାମ
ଦେବାସୁର ନରେ ତ ନୁହନ୍ତି ତାଙ୍କ ସମ ।
ସାକ୍ଷାତେ ସେ ନାରାୟଣ ବ୍ରହ୍ମାଣ୍ଡ ଅଧିକାରୀ
ଜାତ ହୋଇଛନ୍ତି ସେ ଅସୁର ବଜ୍ର ମାରି ।
ଏତେ କହିଣ ଯେ ଦେଖି କ୍ରୋଧ ହୁଏ
ଭସ୍ମକରି ଦେବ କ ଜଣବା ତନୟେ ।
ସୀତା ବୋଇଲେ ଶ୍ରୀରାମ ସତ୍ୟ କରିଛନ୍ତି
ମୋହର ଶତ୍ରୁକୁ ମୁଁ ନିଶ୍ଚୟ ମାରିବି ।
ଏମନ୍ତ ଉଚ୍ଚରନ୍ତେ ନିକଟ ଲଙ୍କାରାଏ
ପ୍ରଚଣ୍ଡ ଖଡ୍ଗ ଧରିଣ ଆସି ଜଗ୍ଧ ହୁଏ ।
ସହସ୍ରେ ଅସୁରୀ ତେଜ ପ୍ରଳମ୍ବ କଲେ ଯାଇ
ସୀତା ବସିଛନ୍ତି ଯେ ବଦନ ଲମ୍ବାଇ ।
ରାବଣ ବୋଇଲା ଯେ ଆଣ ତାକୁ ଧରି
ମେଘନାଦକୁ ପାସୋରିବ ଏ ସୀତାକୁ ମାରି
ଇଷ୍ଟବନ୍ଧୁ କୁଟୁମ୍ବ ସମସ୍ତେ ନାଶଗଲେ
ଏ ହୋସ୍ତୀର ଯୋଗରୁ ମୋର ପୁତ୍ର ମଲେ ।
ଇନ୍ଦ୍ରଜିତକୁ ମାଇଲା ଏହାର ଦେଅର
ଆବର ସାତ ପୁତ୍ରକୁ ମାଇଲା ସ୍ବାର ବର ।
ଇନ୍ଦ୍ରଜିତ ସଙ୍ଗେ ପୁଣି ତିନପୁତ୍ର ମାରି
ତିନଥ ଦଶ ଉତ୍ତର ନାତିକ ନିବାରି ।
ଦଶଶତ ଯୁଦ୍ଧେ ମଲେ ବୟାଳିଶି ପୁତ୍ର
ସାତସେନାପତି ମୋର ହୋଇଲେ ନିପାତ ।
ଭାଇ ପୁତ୍ରଙ୍କ ମୋର ଅନେକ ନାଶଗଲେ
ପଦାତି ବଳ ମୋର ଛତିଶା ସରିଲେ ।
ହସ୍ତୀ ଅଠର ଲକ୍ଷ ଅଶ୍ବ ନବ କୋଟି
ମୁକୁଟବନ୍ଧା ସେନା ମଲେ ଚଉଦ କୋଟି ।
ମୋର ଏତେ ସୈନ୍ୟସ୍ଥ'ରଦଅରଗୁରୁସ୍ତମାରି
ଏହାକୁ ମାଇଲେ ମନସ୍ଥିରହେବ ମୋହର
ଏତେବୋଲି ଖଡ଼ଗ ଝମକାଏ କର
ଜାନକୀ ବୋଇଲେ ଆରେ ଶୁଣ ସୀତାସ୍ବେର

ଭୁଜବି ଡାକ ଆଣିଲୁ ରାମଙ୍କୁ ଯାଇ ପୁଣ
ତୋତେ ଡାକିବାକୁ କି ଆସେ ରାମଗଣ ।
ତାହାଙ୍କ ଭରଯାକୁ ତୁ ସ୍ବେଚ୍ଛାଇ ଆଣିଲୁ
ତ୍ରୋଳକଅଇଲାନ୍ନେକଙ୍କୁ ଅଗ୍ନିରେ ପୋଡ଼ିଦେଲୁ ।
ବୋଇଲୁ ଶ୍ରୀରାମ ସଙ୍ଗେ କରିବ ମୁଁ ଯୁଦ୍ଧ
ଜିଣିଲେ ତାର ଭାରିଯା ନେଉ ରାମଚନ୍ଦ୍ର ।
ଲେଉଟି ମୋତେ ମାରି ମୋ ଭାରିଯା ନେଉ
ନୋହିଲେ ଏହି ସୀତା ମୋତେ ଭୋଗଦେଉ
ଏମନ୍ତ ବଚନ ରେ ନିର୍ଲଜ୍ଜ କହିଲୁ ।
ଯୁଦ୍ଧକୁ ନପାରି ମୋତେ ମାରିତ ଆଇଲୁ ।
ତୋହର ପ୍ରାୟେ ଶ୍ରୀରାମ ନୁହନ୍ତି ନିର୍ଲଜ୍ଜ
ଦେଖୁଅଛୁ ନେସ୍ବେତୋର କରନ୍ତିକେତେଯୁଦ୍ଧ
ମୋତେ ନିଜନ କରି ପାଇଲୁ କରେ ଦୈତ୍ୟ
ଶ୍ରୀରାମ ମାରିବେ ବୋଲି ମୁଁ ହୋଇଛୁ ନିବର୍ତ୍ତି
ନୋହିଲେ ତୋ ଲଙ୍କା ମୁହିଁ ଭସ୍ମକରି ଥାନ୍ତି
ଆଜ୍ଞା ଯାଏ କରେ ରହିଥାନ୍ତି ଲଙ୍କପତି ।
ସ୍ତ୍ରୀକ ଦ୍ବେଷି କଲେରେ ପୁରୁଷେ ନାଶଯାନ୍ତି
ଦଇବର ଦଣ୍ଡ ତାକୁ ନିଶ୍ଚୟେ ପଡ଼େଟି ।
ଶୁଣିକରି ରାବଣ କୋପାନଳ ମୂର୍ତ୍ତି
ବୋଇଲା ତୋତେ ଆଜ ମାରିବଲେ ସଖି ।
ଷଣେ ମୁଁ ନ ଥୋଇବ ଆଣଲୋ ତାକୁ ଧରି
ତ୍ରିଜଟା ଉଆଇଲା ଚରଣ ତଳେ ପଡ଼ି ।
ହୋଦେବ ରାବଣ ତୁମ୍ଭେ ଲଙ୍କାର ଅଧିପତି
ଏ ସଖି ଅଟଇ ଦେବ ନିରେଖ ଯୁବତୀ ।
ରାମର ଲକ୍ଷ୍ମଣଙ୍କୁ ସୀତାର ଦେଖା ନାହିଁ
ଏତୁକ ବୋଇଲା ତୋର ପୁତ୍ର ମରିବାପାଇଁ ।
ଗୁପ୍ତ ଗୁପ୍ତ ରାସ୍ୱେ କୋପ ନ କର ଏବେ
ଅବଧ୍ୟ ବଧିଲେ ଅକାରଣ ଅଟେ ତେବେ ।
ଋଷିଜାଳେ ଜାତହୋଇ ହୋଇଲ ରାକ୍ଷସ
ପୁଣ ସେ ସ୍ତ୍ରୀହତ୍ୟା କଲେଣ ବଡ଼ ଦୋଷ ।
ଭୁବନ ଯୁଗତ ଏବେ ଶୁଣିମା ଗୋସାଇଁ
ରାମ ଲକ୍ଷ୍ମଣଙ୍କୁ ତୁମ୍ଭେ ମାରବେଗେ ଯାଇଁ ।
ପଛେ ସୀତାଙ୍କୁ ସେନଣ ବଇଭୋଗ କର
ଅବେ ସ୍ତ୍ରୀ ପ୍ରାଣୀ ଏ ସୀତା ଶୁଣ ନୃପବର ।
କୃଷ୍ଣ ଚତୁର୍ଦ୍ଦଶୀ ଅଟେ ଆଜ ଦିନ
ରୁଦ୍ରଙ୍କୁ ପୂଜା ତୁମ୍ଭେ କର ଯା ଦଶାନନ ।

ସେବାରେ ମନାଇଁ ହରଙ୍କୁ ମାଗ ବର
ତିନଶତେ ବରପାଇ ଶ୍ରୀରାମ ସଙ୍ଗେ ଯୁଦ୍ଧକର
ଶତ୍ରୁକୁ ସଂହାର ଦେବ ଭୋଗକର ସୀତା
ଶୁଣିକରି ପ୍ରବୋଧ ହେଲା ଦଶମଥା ।
ଧୀରକରି ଦଶଗ୍ରୀବ ବୁଝିଲା ସୃଷ୍ଟିଙ୍କି
ଅଗ୍ନି ପ୍ରାପ୍ତେ ଜନ୍ମୁଛି ସୀତାର ଦେହ କାନ୍ତି ।
ଦନ୍ତବ କ ସ୍ୱର୍ଗମର୍ତ୍ତ୍ୟ ପାତାଳ ତିନିପୁର
ଦେଖିଣ ରାବଣ ଭସ୍ମ କଲାକ ହୃଦପୁର ।
କୋପକୁ ସଂହାରିଣ ଏ ଅଇଲା କାହୁଡ଼ି
ନିଜ ନଗରେ ପ୍ରବେଶ ମଧ୍ୟମଣ୍ଡି ଗଜଚଢ଼ି ।
ମନ୍ତ୍ରୀ ଗଣମାନଙ୍କୁ ସେ ରାଇଣ ବେ ଇଲା
ଇନ୍ଦ୍ରଜିତ ଶବ ତୁମ୍ଭେ କଲ କେମନ୍ତ ପର ।
ଆବର ଏଗାର ପୁତ୍ର କର ଯା ଦହନ
ହେଉ ବୋଲିଣ ବୋଇଲେ ବଚନମନ୍ତ୍ରୀମାନ
ଦଶକନ୍ଧ ବୋଇଲା ମୋହର ବୋଲ ଶୁଣ
ହସ୍ତୀବ୍ୟୂହ କରିବା କାଲି ଆମ୍ଭେ ଜାଣ ।
ବାର ଲକ୍ଷ ହସ୍ତୀ ମୋର ଏକାବେଳେ ଯିବେ
ସମସ୍ତେ କଳାବର୍ଣ୍ଣ ଯେ ନୀଳବର୍ଣ୍ଣ ହେବେ ।
ମାହୁନ୍ତ ମାନେ ବସିବେ କଳାବର୍ଣ୍ଣ ଧରି
ପାଦାନ୍ତ ବାର କୋଟି କଳାବର୍ଣ୍ଣ ହେବି ।
ସେନାପତି ଛଅଗୋଟି ସଙ୍ଗରେ ଥିବେ ପୁଣ
ସବେଁ ରଥ ଚଢ଼ିଥିବେ ହୋଇଣ କଳାବର୍ଣ୍ଣ
ଛଅ ଗୋଟି ପୁତ୍ର ମୋର ରଥ ଚଢ଼ି ଯିବେ
ଶ୍ରୀରାମର ସୈନ୍ୟକୁ ଯେ ମାରି ପକାଇବେ ।
ରୁହି ପାଖେ ହସ୍ତୀ ପଦାନ୍ତ ବେଢ଼ିବେ
ମଧ୍ୟେ ପଶି ସେନାପତି ଧରିଣ ମାରିବେ ।
ରାମ ଲକ୍ଷ୍ମଣଙ୍କ ସଙ୍ଗେ ଯୁଝି ମୋର ପୁତ୍ର
ମଧ୍ୟରେ ପୂରାଇ ତାଙ୍କୁ ମାରିବେ ନଯୁତ ।
ଏତେବୋଲି ଶାଢ଼ୀ ଦେଲେ ମିନ୍ଦଘନଠାରେ
କାଲି ରାମ ଲକ୍ଷ୍ମଣଙ୍କୁ ମାର ବାବୁ ଭଲେ ।
ବୀରଭଦ୍ର କେତୁଭଦ୍ର ନଘନ ଘନଜିତ
ସଲ୍ଲଘନ ଯେନ ତୁରେ ଯିବୁ ମୋର ବାପ ।
ଶ୍ରୀରାମଙ୍କୁ ମାରି ତୁରେ ସଜ କରି ଆସ
ବ୍ୟୂହକଲେ ଅବଶ୍ୟ ସେ ହେବେପ୍ରାଣେନାଶ
ହେଉଦେବ ବୋଲିଣ ବୋଇଲେ ପାତ୍ରମନ୍ତ୍ରୀ
ଦଶକନ୍ଧ ବୋଲେଥାଟ ସଜହୋଏ ଯାନ୍ତି ।

କୃଷ୍ଣ ଚତୁର୍ଦ୍ଦଶୀ ଯେ ଅଟଇ ଆଜଦିନ
ମହାଦେବ ପୂଜା ମୁଁ ଯେ କରିବି ପ୍ରମାଣ ।
ତିନଦିନ ଶିବ ପୂଜ ରାମ ସଙ୍ଗେ ବାଦ
ସୈନ୍ୟ ସଜକରି ପୁତ୍ରେ ଯୁଝନ୍ତୁ ଯାଇ ଆଗ ।
ତିନଦିନ ଯୁଦ୍ଧ ଯେ କେବଳ ହେବ ମୋର
ହରିବେ ମନେ ଶତ୍ରୁ ଭଙ୍ଗିଲା ଏଥର ।
ଏତେକହି ଭିତରକୁ ଗଲା ଦଶଗ୍ରୀବ
ମାଜଣା ଦେଇ ଚନ୍ଦ ସାଜିଲା ସେ ବେଗ ।
ସେଠାରୁ ଚଳିଯାଇ ରୁଦ୍ରପୁରେ ମିଳି
ଧୂପ ଦୀପ ଦେଇଣ ରୁଦ୍ରଙ୍କୁ ପୂଜାକରି ।
ଏଥୁ ଅନନ୍ତରେ ଶୁ ଗୋ ଶୁଣ ହେମବନ୍ତୀ
ବାର ପୁତ୍ରଙ୍କୁ ଦହନ କଲେ ପାତ୍ର ମନ୍ତ୍ରୀ ।
ଯେଉଁରୂପେ ରାବଣ କହିଥିଲା ପୁଣ
ସେହିରୂପେ ସୈନ୍ୟବଳ ସଜହେଲେ ଜାଣ ।
ରାଣୀହଂସ ପୁରେ ଯାଇ ବାରତା ମିଳିଲା
ମନ୍ଦୋଦରୀ ସମୁରେ ରାଣୀ ଜଣାଇଲା ।
ଆଜଗଡ଼େ ପଶିଣ ଶ୍ରୀରାମ ଲକ୍ଷ୍ମଣ
ମାଇଲେ ଇନ୍ଦ୍ରଜିତ ସଙ୍ଗେ ବାରଭାଇ ଜାଣ
ଶୁଣିକରି ମନ୍ଦୋଦରୀ ରାଣୀ ଶୋକ କଲା
ବଧୂମାନଙ୍କ ପୁରକୁ ଦାସୀକ ଭେଦିଲା ।
ଶୁଣିକରି ଦାସୀମାନେ ଯେ ବିଷାଦହୋଇଲେ
ସ୍ୱାମୀ ସଙ୍ଗତରେ ଯିବାପାଇଁ ସଜ ହେଲେ ।
ମାଜଣା ସାରି ସମସ୍ତେ ହୋଇଲେ ସୁବେଶ
ଅମଳାଣ ବସ୍ତ୍ର ପିନ୍ଧି ହୋଇଲେ ହରଷ ।
ଇନ୍ଦ୍ରଜିତର ଅଟନ୍ତି ଦୁଇଲକ୍ଷ ନାରୀ
ଏଗାର ପୁତ୍ରଙ୍କର ଏଗାର ଲକ୍ଷ ସ୍ତ୍ରୀ ।
ଏହାଙ୍କର ତିନିଦଶ ପୁତ୍ର ମଲେ
ଜଣକରେ ଶତେନାରୀ ଅଟଇ ଯେ ଭଲେ ।
ଗୋଏ ତେର ଲକ୍ଷ ଏକତିରିଶ ହଜାର
ଚଳିଲେ ସେ ଲଙ୍କାଦାଣ୍ଡେ ସମୁଦ୍ରକୂଳର ।
ସମୁଦ୍ରରେ ପଶିଣ ସମସ୍ତେ ଝାସ ଦେଲେ
ଲଙ୍କାଗଡ଼ ନଇନାରୀ ବିକଳ ହୋଇଲେ ।
ପାର୍ବତୀବୋଇଲେ ତୁମ୍ଭେ ଶୁଣ ଗୋ ପଞ୍ଚମୁଖ
ଯେଉଁମାନେଝାସଦେଲେସେମାନେ କଲେକସ
ସେମାନେ ସ୍ୱାମୀଙ୍କ ଯାଇ ପାଇଲେଟିକଲେଟ
କେଉଁଠାରେରହିଲେମୋତେକହସେମୁରାଟ ।

ଈଶ୍ବର ବୋଇଲେ ନେବେ ସେକଥା କହିବା
ବାସୁଦେବ ଭୁବନ ବୈକୁଣ୍ଠ ପୁରେ ସେବା ।
ରାବଣ କୁମ୍ଭକର୍ଣ୍ଣ ହୋଇ ଅଟନ୍ତି ପୁଣ
ତାଙ୍କ ଦୋଷୁ ନ ଛଡ଼େଲେ ଅସୁର ହୋଇଣ
ସେବାକାରୀ ଲୋକପାଇଁ ପାଟଣାଏ ଅଛି
ଯେଉଁ ସେବା କରିଥାନ୍ତି ସେ ପୁରେ ରହନ୍ତି ।
କୁମ୍ଭକର୍ଣ୍ଣ ବଂଶ ଘେନି ସେଠାବକୁ ଗଲା
ବୈକୁଣ୍ଠ ପୁରେ ସେ ଯେ ପ୍ରବେଶ ହୋଇଲା
ରାବଣ ପୁତ୍ର ନାତି ସେହି ପୁରେ ରହେ
ଶ୍ରୀରାମଦେବଙ୍କ ସ୍ତ୍ରୀମାନେ ତାଙ୍କ ପାଶେଯାଏ ।
ଏଥୁଅନନ୍ତରେ ରଜନୀ ହୋଇଲା
ନବଘଡ଼ି ଅନ୍ଧାର ଯହୁଁ ଯାମିନୀ ହୋଇଲା ।
ବାନରଙ୍କ ଘେନି ଯୋଗୀ ଲଙ୍କାଗଡ଼େ ଗଲା
ଅସୁରଙ୍କ ରୁଧିରେ ସନ୍ତୋଷ ହୋଇଲା ।
ଯୋଗୀ ବଳ ଭକ୍ଷିଲେ ଯେ ଦୈତ୍ୟବଳ ବାଛି
ଦୁଇଘଡ଼ି ମଧ୍ୟରେ ସେ ନେଇଗଲି ଅସନ୍ତି ।
ତିନଘଡ଼ି ମଧ୍ୟରେ ଶୁକ୍ର ବିଜେ କଲେ
ଅମୃତ ସିଞ୍ଚିଣ ଋକ୍ଷ କପି ଜିଆଇଲେ ।
ଜୀବ ପାଇ ଋକ୍ଷକପି ଉଠି ସର୍ବେ ବସେ
ଦେବଙ୍କ ଅମୃତ ପଡ଼ିବାରୁ ବଳ ସେ ପ୍ରକାଶେ
ଉଠିକରି କପିବଳ ସୁବେଳସ୍ଥାକୁ ଗଲେ
ଶୁକ୍ରଦେବ ନେଇଗଲି ସ୍ବର୍ଗରେ ବିଜେକଲେ ।
ଏଥୁଅନନ୍ତରେ ଯାମିନୀ ସପ୍ତଘଡ଼ି
ଲଙ୍କପୁରେ ଗହଳ ଲାଗିଲା ସବୁଙ୍କରି ।
ପାତ୍ର ମନ୍ତ୍ରୀ ସର୍ବେ ହେଲେ ଜଜାଗର
ଥାଟ ବଳ ସଜକରି ରହିଲେ ଦୁଆର ।
ରଜନୀ ପ୍ରହରେ ଥାଉଁ ଫିଟିଲା କବାଟ
ବାହାର ହୋଇଲେ ଶୁଣି ଲଙ୍କାଗଡ଼ ଥାଟ ।
ଆଗୁଆଣି ଥାଟରେ ଯେ ମାଳ ପୁଣ ଥିଲା
ଶ୍ରୀରାମଙ୍କ ସମ୍ମୁଖରେ ସେ ବାର୍ତ୍ତା କହିଲା ।
ଲଙ୍କାଗଡ଼ ଥାଟ ଦେବ ବାହାର ହୋଇଲେ
ରଥ ହସ୍ତୀ ଆଜ ସାଜନ୍ତି ତୋର ପୁରେ ।
ଶ୍ରୀରାମ ବୋଇଲେ ବେଗେ ବିଭୀଷଣଙ୍କୁ ଆଣ
ନଳ ଆସି ଘେନିଗଲା ବିଭୀଷଣ ପୁଣ ।
ଶ୍ରୀରାମ ପାଶରେ ଯାଇଁ ବିଭୀଷଣ ମିଳି
ଦର୍ଶନ ସେ କରିଣ ଶୋଏ ପାଏ ମାଡ଼ି ।
ବୋଇଲେ ହୋବେଗେ ତୁମ୍ଭେ ଯାଇଁ ଯୁଦ୍ଧକର
ହସ୍ତୀମାନଙ୍କୁ ଧରି ଯୂଥପତି ମାର ।
ମଲ୍ଲ ମହାମଲ୍ଲ ତୁମ୍ଭେ ଯୂଥପତି ଭୁଲେ
ହସ୍ତୀଙ୍କ ମାରିବ ତୁମ୍ଭେ ନପିବ ଆନଠାରେ
ସେନାପତି ଡାକିଣ ଯେ ଆଜ୍ଞାଦେଲେ ରାମ
ରଥୀମାନେ ତୁମ୍ଭଙ୍କୁ ଲଗା ହେଲେ ଜାଣ ।
ହନୁ ଅଙ୍ଗଦ ସରଦାର ତୁମ୍ଭ ପରେ
ହସ୍ତୀବ୍ୟୂହ ରଥବ୍ୟୂହ ନିବାରଣ ତାରେ ।
ସୁଗ୍ରୀବର ବିଭୀଷଣ ପାଦାନ୍ତ ମାରିବେ
ରାବଣର ଛତ୍ର ମୁଣ୍ଡ ଆମ୍ଭଭାଗେ ଏବେ ।
ରୁକ୍ଷକପିବଳ ଗୋଟିଏ ନ ଯିବେ
ପର୍ବତେ ରହିଣ ସେ ଯୁଦ୍ଧ ଦେଖୁଥିବେ ।
ଏହାଶୁଣି ଯୂଥପତି ମଲ୍ଲ ମହାମଲ୍ଲେ
ଶ୍ରୀରାମର ଆଜ୍ଞାପାଇ ବେଗେ ଖରେ ଗଲେ
ସେନାପତିମାନଙ୍କୁ ଘେନିଣ ହନୁମନ୍ତ
ଅଙ୍ଗଦ କୁମର ସଙ୍ଗେ ଚଳିଲେ ତୁରିତ ।
ସୁଗ୍ରୀବ ବିଭୀଷଣ ଯେ ଶ୍ରୀରାମ ଲକ୍ଷ୍ମଣ
ସଜହୋଇ ବାହାର ହୋଇଲେ ତତକ୍ଷଣ ।
ଲାଗିଲାକାରଣଗୋଳ ବେଢ଼ିଲେ ଦୈତ୍ୟବଳ
ମଧ୍ୟରେ ରାମ ଯୋଦ୍ଧା ଯେ ସକଳ ।
ମାଇଲେ ସେ ହସ୍ତୀବଳ ଯୂଥ ମହାମଲ୍ଲ
ସେନାପତି ଲାଗିଲେ ରଥର ଉପର ।
ମାଇଲେ ସେ ଦୈତ୍ୟବଳ ଓପ୍ରୋଧ ନ କରି
ରଘୁନାଥ ଆଜ୍ଞାରେ ସେ ବଳ ସବୁଙ୍କରି ।
ବିଭୀଷଣ ସୁଗ୍ରୀବର ବିକ୍ରମ ନାରାଜ
କାଣ୍ଡକରେ ଶତେ ଶତେ ପଡ଼ିଲେ ଦନୁଜ ।
ତିନ ଘଡ଼ି ମଧ୍ୟରେ ଯେ ପାଦାନ୍ତ କ୍ଷୟ ଗଲେ
ଘୋର ପାଦାନ୍ତ ଯହୁଁ ଭୂମିରେ ପଡ଼ିଲେ ।
ହସ୍ତୀବାଡ଼ ପରେ ଯୂଥପତି ଧାଡ଼ି ଦେଲେ
ମାଇଲେ ସେ ହସ୍ତୀବେଢ଼ହୋଇ ଉଲ୍ଲଭରେ
ତିନଘଡ଼ିଠାରେ ହସ୍ତୀ ସର୍ବେ ଗଲେ ହତ
ପ୍ରହରକ ଠାରେ ରଥ ଲାଗେ ସେନାଯୂଥ ।
ରଥ ନେଇଟାଇ ପୁଣ ରଥୀଙ୍କି ଯେ ମାରି
କାଣ୍ଡ ଖଣ୍ଡା ନ ମାରିଣ ଜନ୍ମରୂପ ଧରି ।
ପ୍ରହରକ ଭିତରେ ଯେ ରଥ ସବୁ ଭାଙ୍ଗ
ରଥୀଙ୍କୁ ମାରିଣ ସେ ଦେଲେ ଜଳଗାଙ୍ଗ ।

ଏଥୁ ଅନନ୍ତରେ ତୁ ଗୋ ଶୁଣ ଶାକମ୍ଭରୀ
ରାବଣର ତିନପୁତ୍ର ରାମଙ୍କୁ ଯାଇଁ ଘେରି ।
ଲକ୍ଷ୍ମଣଙ୍କୁ ତିନପୁତ୍ର ଘେରିଲେ ସେ ଯାଇ
ଦେବ ଅସ୍ତ୍ରମାନ ସେ ମାଇଲେ ଭୁଲାଇ ।
ନଘାଇ ମାରି ସେ ଧନଙ୍କା ନାମେ ଶର
ବ୍ରହ୍ମଶରେ ନିବାରିଲେ ସୁମିତ୍ରା କୁମର ।
ଅଧାଚନ୍ଦ୍ର ଶର ସେ ବନ୍ଧିଲେ ତିନିଜଣ
ଅଗ୍ନିଶରେ ନିବାରିଲେ ସୁମିତ୍ରାଙ୍କର ବତ୍ସ ।
ବରୁଣର ଶର ଯେ ବନ୍ଧିଲେ ତିନଭାଇ
ସତେ କ ମଞ୍ଜ ପୁରକୁ ପଳାଇବ ଦଣ୍ଡ ।
ଯାମିନୀର ଶରକୁ ଯେ ଭେଦିଲେ ଲକ୍ଷ୍ମଣ
ଶୀତଳ ହୋଇ ଶର ଲେଉଟି ଗଲା ପୁଣ ।
ଅଗ୍ନିଶର ପୁଣ ମାଇଲେ ତିନଭାଇ
ଜଳଧାର ଶରେ ତାହା ଲକ୍ଷ୍ମଣ ନିବାରଇ ।
ପବନ ମୋହନାଶର ମାରେ ରାବଣ ତନଏ
ଅକ୍ଷୟ ଶରରେ ଲକ୍ଷ୍ମଣ ହତ କଲେ ।
ପୁଣିହିଁ ତିନଭାଇ ମେଘଶର କଲେ
ଜଳ ସଙ୍ଗେ ପଥର ମିଶାଇ ବରଷିଲେ ।
ପବନଶରେ ଲକ୍ଷ୍ମଣ ଦେଲେକ ଉଡାଇ
ଅସୁରଶର କଲ ରାବଣ ତନୟୀ ।
ଭଇରବ ଶରେ ଲକ୍ଷ୍ମଣ ନାଶକଲେ
ଅଗସ୍ତି ଦେବା ଶର କୋଦଣ୍ଡେ ପୁରାଇଲେ ।
ନାମ ହାର ସଞ୍ଜୀବନୀ ପେଷିଲେ ରାମଭାଇ
ତିନଭାଇଙ୍କର ବେକ ଛିଣ୍ଡିଣ ପଡ଼ଇ ।
ଅଗ୍ନିଶର ପେଶି ତିନରଥ ପୋଡ଼ିଦେଲେ
ସାରଥି ଅଶ୍ୱରଥ ସବୁତେ ଜଳଗଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତି
ମିହ୍ରଘନ ତିନଭାଇ ସଙ୍ଗତରେ ଘେନ୍ତି ।
ଶ୍ରୀରାମଙ୍କ ସଙ୍ଗତରେ କଲେକ ସମର
ଶରପେଷି ରଣଭୂମି କଲେ ଅନ୍ଧକାର ।
ଜଳଧାର ବାଣ ପେଷିଲେ ତିନଭାଇ
ଘୁରମେଘ ଘେନଣ ଜଳ ବରଷଇ ।
ପବନାଶରେ ଶ୍ରୀରାମ ଉଡାଇଣ ଦେଲେ
କୁହୁକ ଶର ପୁଣ ରାବଣ ପୁତ୍ରେ କଲେ ।
ସମର ଭୂମି ଯାକ କୁହୁକ ବରଷିଲେ
ସୂର୍ଯ୍ୟାବର୍ତ୍ତେକ ଶରେ ଶ୍ରୀରାମ ନିବାରିଲେ ।

ବ୍ରହ୍ମଶର ଭେଦିଲେ ତିନଭାଇ ପୁଣ
ନାରାୟଣାଶରେ ନିବାରିଲେ ରାମରଣ ।
ରାବଣ କୁମର ପୁଣି ନାଗଫାଶ ମାରି
ଗରୁଡ଼ ଶରେ ତାହା ଶ୍ରୀରାମ ନିବାରି ।
ଅସୁରଶର କଲେ ତିନଭାଇ ପୁଣ
ବ୍ରହ୍ମଶରେ ତାକୁ ନିବାରେ ରାମରଣ ।
ଅଧାଚନ୍ଦ୍ର ବାଣ ଯେ ପେଶେ ତିନଭାଇ
ବାବଲଶରେ ଶ୍ରୀରାମ ପଳାଇଲେ ଦଣ୍ଡ ।
ଦେଖିଣ ଶ୍ରୀରାମ ଯେ କୁବେରଶର କରି
ତିନଭାଇଙ୍କର ଶର କାଟିଲେ ଦୃଢକରି ।
ଦୁଇଭାଇଙ୍କର ଶିର ପଡ଼ିଲାକ ତଳେ
ମିହ୍ରଘନର ଶିର ଲାଗିଲା ବେକରେ ।
ମିହ୍ରଘନ ବୋଇଲେରେ ଶୁଣ ଜଟାଧାରୀ
ଆଜକ ମୋର ଆଗରୁ ଯିବୁ ତୁ ଉବୁରି ।
ତୋର ଶିର ନେଇ ମୋର ପିତାଙ୍କୁ ଦେଖାଇବ
ଭାଇମାନଙ୍କର ଦୁଃଖ ଆଜ ମୁଁ ପାସୋରିବ ।
ଏତେ ବୋଲି ଅପୂର୍ବ ବନ୍ଧେ ଖଡ୍ଗଶର
ଶ୍ରୀରାମ ଯେ ବ୍ରହ୍ମଶର ଭେଦିଲେ ତାରପର ।
ବେକକାଟି ବ୍ରହ୍ମଶର ଫେରିଣ ଅଇଲା
ତଳରେ ନ ପଡ଼ି ଶିର କନ୍ଧରେ ଲାଗିଲା ।
କ୍ରୋଧଭରେ ମିହ୍ରଘନ ବନ୍ଧୁଅଚ୍ଛି ଶର
ବାରମ୍ବାର ଛେଦନ୍ତି ତା କୌଶଲ୍ୟା ଦୁଲାଳ ।
ମହାକାଳ ଝରଧରି ମାଇଲା ଯେ ଦୈତ୍ୟ
ସାତଜଣ ଗୁଣ୍ଡିଣ ସମସ୍ତେ ମୋହିତ ।
ମଲ ମହାମଲ ଯୂଥପତି ସେନାପତି
ସମସ୍ତେ ଶୋଇଲେ ମୋହେ ଧରଣୀରକତ ।
ହନୁମନ୍ତ ଅଙ୍ଗଦ ଯେ ସୁଗ୍ରୀବର ପୁଣ
ବିଭୀଷଣ ଲକ୍ଷ୍ମଣ ଯେ ସୁଷେଣ ରାମରଣ ।
ଏହି ସାତଜଣ ଯେ ରହେ ରଣଭୂଇଁ
ଆଉ ସବେ ମୋହରେ ପଡ଼ିଲେ ଶୁଣ ଦୁହ ।
ପୁଣି ଶ୍ରୀରାମ ମାଇଲେ ତାଡ଼କ ବଧ ଶର
ବେକ ଛିଣ୍ଡନ୍ତେଣ ତଳେ ନପଡ଼େ ତାର ଶିର
ବେକରେ ଲାଗିଲା ଶିର ଯାଇ ବେଗେ ପୁଣ
ଶ୍ରୀରାମ ଦେଖିଣ ଯେ ହେଲେ ବିଚକ୍ଷଣ ।
ବାଳକ ମାଇଲା ଶର ଗୁଣରେ ବସାଇ
ମିହ୍ରଘନ ଶିର ସେ ଶରେ ଛିଣ୍ଡେ ଯାଇଁ ।

ଛେଳେ ନ ପଡ଼ୁ ଶିର ଲାଗିଲା ବେଳରେ
ଦେଖିକରି ଆଶ୍ଚର୍ଯ୍ୟ ହେଲେ ରଘୁବୀରେ ।
ଏମନ୍ତ ସମୟରେ ପବନ ଦେବ ଯାଇଁ
ଲକ୍ଷ୍ମଣର କର୍ଣ୍ଣରେ ଯେ ସ୍ଥିରକରି କହି ।
ସେ ଅସୁର ଅକ୍ଷୟ ଯେ ନୁହଇ ପୁଣ କ୍ଷୟେ
ସିଂହର ଉପରେ ଯେ ଚଢ଼ିବେ ରାମରାୟେ ।
ଭଇରବୀ ଶରଯେ ଧରି ମାରିବେ ନାଭିକି
ଏତେବେଳେ ମୃତ୍ୟୁ ପାଇବ ଅସୁରଟି ।
ଏତେକହି ପବନ ବେଗ ହୋଇ ଗଲେ
ଲକ୍ଷ୍ମଣ ଶୁଣିଣ ଯେ ହନୁକୁ ଡାକିଲେ ।
ବୋଇଲେରେ ମୋର ବୋଲକର ହନୁମନ୍ତ
ସିଂହରୂପ ମାୟାରେ ଧରନ୍ତୁ ତୁରିତ ।
ଶୁଣିକରି ହନୁମନ୍ତ ସିଂହରୂପ ହେଲା
ଶ୍ରୀରାମଙ୍କ ପାଶେ ଯାଇ ପ୍ରବେଶ ହୋଇଲା ।
ବୋଇଲା ହେ ଶ୍ରୀରାମ ମୋର କନ୍ଧେ ବସ
ଭଇରବୀ ଶରମାରି ଅସୁରକୁ ନାଶ ।
ଶୁଣିକରି ରୂପଧାରୀ ବସିଲେକ ଯାଇ
ଭଇରବୀ ଶରକୁ ଯେ କୋଦଣ୍ଡେ ପୂରାଇ ।
ଶରକୁ ମନ୍ତ୍ରିଣ ଛନ୍ଦିଲେ ରାମରାୟେ
ଗର୍ଜ୍ଜନକରି ଶର ଚଳନ୍ତି ଶୀଘ୍ରେ ।
ନାଭିର ମଣ୍ଡଳେ ଶର ପଡ଼ିଲା ଯାଇ ଶୀଘ୍ର
ପ୍ରାଣହେନି ପିଠିପାଖେ ବାହାରହେଲାବେଗ ।
ପଡ଼ିଲା ଯେ ଅସୁର ରଥରୁ ଛଳେଯାଇ
ଦେବତାଏ ଆନନ୍ଦ ହୋଇଲେ ସ୍ୱର୍ଗେ ଥାଇ
ଜମ୍ବୁରଣ ଯେତେକ ଯେ ଦୈତ୍ୟବଳ ଥିଲେ
ଲଙ୍କାର ଗଡ଼କୁଟି ସମସ୍ତେ ପଳାଇଲେ ।
ବାରତା କହିଲେ ଯେ ମଲେ ଛଡ଼ଖାଇ
ପଦାତି ସେନାଗଲେ ରଥୀ ଦେଲେ ଦହି ।
ହସ୍ତୀ ବଳ ସମସ୍ତେ ପଡ଼ିଲେ ରଣରେ
ଏଗାର ଦିନ ସମରେ ମଲେ ସର୍ବବଳେ ।
ଶୁଣିକରି ପାଞ୍ଚ ମନ୍ତ୍ରୀ ବିଚାରିକଲେ ମନ
ରାଜା ଯାଇ ବସିଛନ୍ତି ତପ ଜପ ସ୍ଥାନ ।
କି ବୁଦ୍ଧି କରିବା ଆମ୍ଭେ ବିଚାରିଣ କହ
ରାଜା ଶୁଣିଲେ ପୁଣି ମନରେ ହେବେ କୋହ
ବିରୂପାକ୍ଷ ମହୋଦର ସାରଣ କୁମର
ଏହାଙ୍କ ସଙ୍ଗେ ଛ'ପୁଷ ବୋଲନ୍ତି ଉତ୍ତର ।
ଆମ୍ଭେ ଆଠରାଇ ଜାଲ ସମରକୁ ଯିବୁ
ସାରେଣି ଅଶ୍ୱ ବ୍ୟୂହ କରିଣ ମାରିବୁ ।
ପଦାତି ବାରକୋଟି ଆମ୍ଭର ସଙ୍ଗେ ଯିବେ
ବାରକୋଟି ଅଶ୍ୱ ଯେ ଆମ୍ଭର ସଙ୍ଗେଥିବେ ।
ବାରକୋଟି ସାରେଣି ଓଟ ହେବେ ସଜ
ସେନାପତି ବାରକୋଟି ଥିବେ ଆମ୍ଭ ସଙ୍ଗ ।
ସମସ୍ତେ ରଙ୍ଗବର୍ଣ୍ଣ ହୋଇଥିବେ ପୁଣ
ଲଥୁ ବାର କୋଟିରେ ସେନାପତି ଜାଣ ।
ପ୍ରଭାତୁ ଯିବୁଁ ଆମ୍ଭେ ଥାଟ ସଜକରି
ଏତେକ କହି କୁମରେ ଗଲେ ଯେଝା ପୁର ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଶ୍ରୀରାମର ଯୂଥପତି ଲକ୍ଷେ ପଡ଼ିଛନ୍ତି ।
ମହାକାଳ ବାଣ ମାରି ଦୈତ୍ୟ ମୋହତଳ
ଛଡ଼ଜଣ ଗୁଡ଼ଣ ସଭିଙ୍କି ମୋହ କଲା ।
ଶ୍ରୀରାମ ବୋଇଲେ ମନ୍ତ୍ରୀ କି କରିବା କହ
କେମନ୍ତେ ବଞ୍ଚିବେ ମୋର ଯୂଥପତି ସ୍ନେହ ।
ଘଡ଼ି ଏତ ବେଳ ଅଛି ହୋଇବ ରଜନୀ
ଏମନ୍ତ କହି ଶ୍ରୀରାମ ମନରେ ଭାଳି ପୁଣି ।
ଜାମ୍ବବ ବୋଇଲେ ହନୁ ବେଗ ହୋଇଚାଲ
ତୋ ଲାଗି ଯୂଥପତି ଜୀଇବେ ସକଳ ।
ଋଷ୍ୟମୂକ ପର୍ବତକୁ ଏହିକ୍ଷଣି ଯିବୁ
ସେଉଁଠାରେ ସୁଗ୍ରୀବଘରହେଲେଟିଦେଖାବୁ ।
ଯେଉଁ ବୃକ୍ଷେ ସୁଗ୍ରୀବର ଅଞ୍ଜଳ ବନ୍ଧଇ
ସେହି ବୃକ୍ଷରୁ ପତର ଆଣ ବେଗେ ଯାଇଁ ।
ପରଶୁ କେଦାର ବୋଲି ସେ ବୃକ୍ଷର ନାମ
ସେଠାରେ ମିଳିଲେ ତୋରଯିବ ମାୟାଭ୍ରମ ।
ନିଜରୂପ ଧରଣ ତୁ ପତର ଆଣିବୁ
ପ୍ରାତନିଃଶ୍ୱାସରେ ତୁ ଏଠାରେ ଆସି ହେବୁ
ବାହୁଥର ନିଃଶ୍ୱାସରେ ବଞ୍ଚିବେ ସକଳ
ତେବେ ଆଜ ଯୁଦ୍ଧରୁ ଯେ ଯିବ ମହାକାଳ ।
ଏଥିରୁ ବଳିଲେ ନିଃଶ୍ଚେ ମରିବେ ସମସ୍ତେ
ଶୁଣିକରି ହନୁମନ୍ତ ଗଲାକ ତୁରିତେ ।
ତିନ ନିଃଶ୍ୱାସକେ ଋଷ୍ୟମୂକେ ହେଲେ ଯାଇଁ
ବୃକ୍ଷ ପତର ତୋଳିଲା ନିଃଶ୍ୱାସକେ ସେହି ।
ମାୟାରୂପ ଛାଡ଼ି ହନୁ ନିଜରୂପ ହେଲା
ସେଠାବରୁ ତତକ୍ଷଣ ଚଳିଣ ଆସିଲା ।

ସମର ଭୂମିରେ ତିନି ନିଃଶ୍ୱାସରେ ମିଳ
ପଥ ନେଇ ଜମ୍ବୁକ ନାଶ କରି ଧୀର ।
ଯୂଥପତି ସେନାପତି ସମସ୍ତ ନାଦେସ ଦେଲେ
ଚେତାପାଇ ସମସ୍ତେ ଉଠିଣ ବସିଲେ ।
ସମସ୍ତେ ସଙ୍ଗହୋଇ ସୁବଳସ୍ତା ଗଲେ
ଏ ସମୟେ ରଜନୀ ପ୍ରବେଶ ହୋଇଲେ ।
ଦେବନଦୀ କୂଳେ ରାମ ଲକ୍ଷ୍ମଣ ପ୍ରବେଶିଲେ
ନିତ୍ୟକର୍ମ ସାରିଣ ସନ୍ତୋଷ ହୋଇଲେ ।
ପିତୃ ତର୍ପଣ କରି ଜଳଦାନ ଦେଲେ
ସୁବଳସ୍ତା ଗିରିରେ ପ୍ରବେଶ ହୋଇଲେ ।
ଯୂଥପତି ସେନାପତି ଦେବନଦୀରେ ପଶି
ରୁଧିର ଛଡ଼ାଇଣ ସ୍ନାନ କରି ଆସି ।
ନିଜସ୍ଥାନ ମାନଙ୍କରେ ହୋଇଲେ ପ୍ରବେଶ
ଫଳ ମୂଳ ଭୁଞ୍ଜିଲେ ଚିତ୍ତକୁ ସନ୍ତୋଷ ।
ଏଥି ଉତ୍ତାରୁ ଶ୍ରୀରାମ ଫଳ ମୂଳ ଭୁଞ୍ଜି
ଆଚମନ ସାରିଣ କଷାଫଳ ଭୁଞ୍ଜି ।
ମୃଗଛାଲ ଉପରେ ଯାଇଣ ପହୁଡ଼ିଲେ
ଲକ୍ଷ୍ମଣ ଏ ପ୍ରକାରେ ଭୁଞ୍ଜିଣ ଆସିଲେ ।
ଧନୁଶର ଧରିଣ ହୋଇଲେ ଜଗାଗର
ସୈନ୍ୟସେନା ରହିଲେ ଯେ ଯାହା ସ୍ଥାନର ।
ଆସକତ ହୋଇ ସର୍ବେ ନିଦ୍ରାରେ ଅଚେତ
ଏ ସମୟେ ରଜନୀ ହୋଇଲା ଘଡ଼ି ସାତ ।
ବାସେନ ଦେବୀଗଣ ଯେନଣ ଚଳଗଲ
ଯୁଦ୍ଧ ଭୂମିରେ ମେଦ ମାଂସ ଭକ୍ଷିଲ ।
ସନ୍ତୋଷ ହୋଇ ଦେବୀ ପର୍ବତକୁ ଆସିଲେ
ସୈନ୍ୟବଳ ମରି ନାହାନ୍ତି ଜଚ୍ଛନ ଦେଖିଲେ ।
ଏଥୁ ଅନନ୍ତରେ ଶୁକ୍ରଦେବ ମିଳ
ଯୁଦ୍ଧଭୂମି ଦେଖିଣ ସୁବଳସ୍ତା ଚଳ ।
ଅମୃତ ଆଣି ସୈନ୍ୟ ଉପରେ ସିଞ୍ଚିଲେ
ଏଥୁ ଅନନ୍ତରେ ଶୁକ୍ର ସ୍ୱର୍ଗପୁରେ ଗଲେ ।
ରାତ୍ର ପ୍ରହରେ ଥାଇଁ ନିଦ୍ରାଭଙ୍ଗେ ଶ୍ରୀରାମର
ସେନ୍ୟ ସେନା ଆସି ମିଳଲେ ଛାମୁର ।
ଲଙ୍କାଗଡ ଚହଳ ଶୁଭିଲା ସେଠାକୁ
ବସ୍ତ୍ରବିଲେ ରାବଣ ଆସିବ ଯୁଦ୍ଧକୁ ।
ଏମନ୍ତ ସମୟେ ମନ୍ତ୍ରୀ ଶୁକ ଯେ ସାରଣ
ଛୁରଗୋଟି ଭେଦଦେଲେ ଗୁପତରେ ପୁଣ ।

ବିଭୀଷଣ ଠାରେ ଗୁର ସମସ୍ତ କହିଲା
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଅବଳା ।
ଶ୍ରୀରାମ ପାଶରେ ବିଭୀଷଣ ଯାଇ ମିଳେ
ଦେଖିକରି ଶ୍ରୀରାମ ତାହାଙ୍କୁ ପୁଛାକଲେ ।
କହୋ ଲଙ୍କାରାୟେ ଆଜ ଲଙ୍କାରେ ଚହଳ
ବାରବଳ ଯୁଦ୍ଧକୁ କି ଆସିବ ଲଙ୍କପାଳ ।
ଶୁଣିକରି କର ଯୋଡ଼ି କହେ ବିଭୀଷଣ
ଆଜ ଆଠସ୍ଥରେ ଯୁଦ୍ଧେ ଆସିବେ ଯେ ଶୁଣ
ବାରକୋଟି ପଦାତି ଛଡ଼କୋଟି ରଥୀ
ସାରେଣୀ ଓଟ ଆସିବେ ବାରକୋଟି ସେଥି
ନବକୋଟି ଅଶ୍ୱ ଆସିବେ ହୋଇ ଠୂଳ
ସବୁ ଥାଟ ରଙ୍ଗ ଆଜ ଦିଶିବେ ଯୁଦ୍ଧର ।
କାଲି ହସ୍ତୀ ରଥ ବ୍ୟୂହ କରିଥିଲେ ପୁଣି
ଆଜ ଅଶ୍ୱ ଓଟ ବ୍ୟୂହ କରିବେ ରଘୁମଣି ।
ଆଜଯୁଦ୍ଧ ସାରିଲେ କାଲି ଆସିବ ରାବଣ
ବିସ୍ତରିକୁ ବ୍ୟୂହକରି ମାରିବ ତୁମ୍ଭ ସୈନ୍ୟ ।
ଆଜ ସୈନ୍ୟ ନ ଯିବେ କାଲି ପର ହୋଇ
କାଲି ଯେତେ ଯାଇଥିଲେ ଆଜ ଯିବେସେହି
ବେଗେ ସଜ ହୁଅ ଦେବ ଯିବା ଗଡଦ୍ୱାର
ଗଡ଼ରୁ ବାହାରିଲେ ମାରିବା ସତ୍ୱର ।
ମେଳବ୍ୟୂହ ନକରୁ କରିବା ଆଜ ନାଶ
ତେବେ ତାହାଙ୍କର ବଳ ଭାଜିବ ମୂହାଁସ ।
ଶୁଣିକରି ଶ୍ରୀରାମ ମନରେ ତୋଷ ହୋଇ
ସଜହୁଅ ବୋଲି ଆଜ୍ଞାଦେଲେ ରଘୁସାଇଁ ।
ରାତ୍ରଥାଉଁ ନିତ୍ୟକର୍ମ ସାରିଲେ ବେନିଭାଇ
ଧନୁଶର ଧରିଣ ବାହାର ବେଗେ ହୋଇ ।
ଯୂଥପତି ସେନାପତି ସଙ୍ଗତରେ ନେଲେ
ସୈନ୍ୟବଳ ନଆସନ୍ତୁ ବୋଲିଣ ଆଜ୍ଞାଦେଲେ
ବିଭୀଷଣ ସୁଗ୍ରୀବର ସଙ୍ଗତରେ ଘେନି
ପର୍ବତୁ ଓହ୍ଲାଇ ଚଳିଲେ ଭାଇ ବେନି ।
ଯୂଥପତି ସେନାପତି ମଲ୍ଲ ମହାମଲ୍ଲ
ତରୁଶିଳ ଧରିଣ ହୋଇଲେ ଆଗୁଁସାର ।
ପ୍ରବେଶ ହୋଇଲେ ଯାଇଁ ପଶ୍ଚିମ ଗଡଦ୍ୱାର
ରଜନୀ ଶେଷହୋଇଲା ଉଦୟ ଭାସ୍କର ।
ରାବଣର ଅଷ୍ଟପୁତ୍ର ସଜ ହୋଇ ଆସି
ସମସ୍ତେ ରଙ୍ଗବର୍ଣ୍ଣ ରଥେ ରଥ ବସି ।

ଓଟ ଘୋଡ଼ା ପଦାତି ସେନାପତିମାନେ
ଦୁଆର ପିଟାଇଣ ବାହାର ତତକ୍ଷଣେ ।
ବିଭୀଷଣ ଶ୍ରୀରାମ ଲକ୍ଷ୍ମଣ ତିନିଜଣ
ଦୂରୁଦେଖି ଧନୁ ଧରି ବିନ୍ଧୁଛନ୍ତି ବାଣ ।
ଅଶ୍ୱ ଓଟ ପଦାତି ମାଇଲେ ଯୂଥପତି
ରଥୀମାନଙ୍କୁ ବେଢ଼ିଣ ମାଇଲେ ସେନାପତି
ଶ୍ରୀରାମ ଲକ୍ଷ୍ମଣ ବିଭୀଷଣ ତିନିଜଣ
ଅଗ୍ନିଶର ପେଷି ରଥ ଜାଳିଦେଲେ ପୁଣ ।
ଦୁଇଘଡ଼ି ମଧ୍ୟରେ ପଦାତି ବ୍ୟୂହ କଲେ
ତିନିଘଡ଼ି ଭିତରେ ଅଶ୍ୱବ୍ୟୂହ ମଲେ ।
ଯୂଥପତିମାନେ ଯାଇଁ ବେଢ଼ି ପକାଇଲେ
ଘଡ଼ିକ ଭିତରେ ତାଙ୍କୁ ବିକୋଟି ମାଇଲେ ।
ପ୍ରହରେକ ଠାରେ ଯେ ଯୁଝିଲେ ସେନାପତି
ଏକାବେଳେ ଅଗ୍ନିଶର ତିନିହେଁ ବିନ୍ଧନ୍ତି ।
ଭସ୍ମ କରିଦେଲେ ଯେ ଘଡ଼ିକ ଭିତରେ
ନବକୋଟି ରଥୀ ଯେ ପଡ଼ିଲେ ଭୂମିରେ ।
ଦେଖିକରି ଅଷ୍ଟପୁତ୍ର ପଶିଲେ ରଣର
କୋଟି କୋଟି କଣ୍ଟଣ ବିନ୍ଧୁଛନ୍ତି ଶର ।
ହନୁମନ୍ତ ଅଙ୍ଗଦ ଜାମ୍ବୁବ ନଳ ନୀଳ
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ ।
ସମସ୍ତେ ଏକ ମୁଖେ ରଣରେ ପଶିଲେ
ଓଟକୁ ଧରି ଅଶ୍ୱ ଉପରେ କଚାଡ଼ିଲେ ।
ପାଦଘାତେ ଅନେକ ପଡ଼ିଲେ ଓଟ ଘୋଡା
ଶିଳାବୃକ୍ଷ ମାରନ୍ତେ ପଡନ୍ତି ଯୋଡ଼ାଯୋଡା ।
ଘଡ଼ିକ ଭିତରେ ଅଶ୍ୱ ସାରେଣି କ୍ଷୟଗଲେ
ରଥୀ ପାଦାନ୍ତିଙ୍କରେଗୋଟିଏନରହିଲେ ।
ସୁଗ୍ରୀବର ହନୁମନ୍ତ ଜାମ୍ବୁବ ସୁଷେଣ
ରାବଣର ସ୍ୱର ପୁତ୍ର କଲେ ଏ ନିଧନ ।
ରଥମାନ ଚୂର୍ଣ୍ଣ କଲେ ଶତେଚୂର
ଶ୍ରୀରାମଚନ୍ଦ୍ର ଛେଦିଲେ ବିରୂପାକ୍ଷ ଶିର ।
ଲକ୍ଷ୍ମଣ ବ୍ରହ୍ମଶରେ ଉକ୍ଷ ଶାରକୁ ନିବାରି
ସୁଗ୍ରୀବର ଶୂଳଭକୁ ପକାଇଲା ମାରି ।
ବିଭୀଷଣ ସଙ୍ଗରେ କୌରଭ ଯୁଝୁଥିଲା
ଯୁଦ୍ଧ ଦେଖି ଶୂନ୍ୟରେ ସେ ବିମାନ ଟେକିଲା
ଅଙ୍ଗଦ ଧରିଣ ତାକୁ ଦୁଇଫାଳ କରି
ଅତି ଶୀଘ୍ରେ ଚଳିଲା ପବନକୁ ଗଞ୍ଜକରି ।

ଅଷ୍ଟଗୋଟା କୁମର ଯେ ରାବଣର ମଲେ
ଉବୁଟିଲା ସୈନ୍ୟ ସବୁ ପଳାଇଣ ଗଲେ ।
ସମର ସହିଲା ସାତ ଘଡ଼ି ମଧ୍ୟେ ଆଜ
ସୈନ୍ୟବାକଯିବାରୁ ଦ୍ୱାରପାଡ଼ିଲହୋଇସଜ ।
ଲଙ୍କାଗଡ଼ରେ ଚହଳ ଯେ ହୋଇଲା ଅପାର
ସବୁ ସୈନ୍ୟଙ୍କୁ ମାଇଲେ ଶ୍ରୀରାମଙ୍କର ବଳ ।
ଅନ୍ତଃପୁରେ ଖବର ପାଇଲା ଯାଇ ପୁଣ
ଚଉଦ କୁମର ରଣେ ଉଡ଼ିଲେ ଆଜ ଦିନ ।
ହସ୍ତୀ ଅଶ୍ୱ ପାଦ ନ୍ତି ଶାରେଣୀ ରଥୀ ମଲେ
ଶ୍ରୀରାମର ନାମ ଶୁଣି ଲଙ୍କାରେ ଡରିଲେ ।
ଗୋଟିଏ କୁମରକେ ସହସ୍ରେ ଲେଖାଏଁ ନାରୀ
ସମସ୍ତେ ସଜହେଲେ ଝାସ ଦେବେ ବୋଲି
ଶାଶୁମାନଙ୍କୁ କଣ୍ଟଣ ଡାଣ୍ଡରେ ବୁଲିଗଲେ
ସମୁଦ୍ର ଭିତରେ ପଶିଣ ଝାସ ଦେଲେ ।
ଏଥୁ ଅନନ୍ତରେ ଯେ ରାମଚନ୍ଦ୍ର ରାଏ,
ଯୂଥପତି ଘେନିଣ ସେ ସୁବଳସ୍ଥା ଯାଏ ।
ଦେବନଦୀ କୂଳରେ ହେଲେ ପରବେଶ
ଯୂଥପତି ଘେନିଣ ସ୍ନାହାନ କଲେ ସେତ ।
ନିତ୍ୟ କର୍ମ ସାରିଣ ତର୍ପଣ ବିଧି କଲେ
ଦେବତାଙ୍କୁ ଜଳ ଦେଇ ସୁବଳସ୍ଥା ଗଲେ ।
ଅମଳାଣ ବସ୍ତ୍ର ଯେ ପିନ୍ଧିଲେ ରାମରାଜ
ଅଜପା ମନ୍ତ୍ର ପଢ଼ି ତିଳକ ରେଖା ବେଗ ।
ଫଳମୂଳ ଆଣିଣ ନିଯୋଗ ଆଣି ଦେଲେ
ଶ୍ରୀରାମଙ୍କୁ ପତ୍ରରେ ଲକ୍ଷ୍ମଣ ପରଷିଲେ ।
ଭୋଜନ ସାରିଣ ଉଠିଲେ ରାମଦେବ
ହସ୍ତ ପଖାଳିଣ ଯେ ଉଠିଲେ ଦେବରାଜ ।
କଷାଫଳ ଆଣିଦେଲେ ସନ୍ତମିନ୍ତୀ
ଶ୍ରୀରାମ ଭୁଞ୍ଜିଲେ ଆନନ୍ଦ କରି ମତି ।
ମୃଗଚ୍ଛାଲ ଉପରେ ଶୋଇଲେ ଶ୍ରୀରାମ
ଯୂଥପତି ଘେନି ଲକ୍ଷ୍ମଣ କଲେକ ଭୋଜନ ।
ଭୋଜନ ସାରିଣ ଯୂଥପତି ପୁଣ
ଯେ ଯାହାର ସ୍ଥାନେ ଯାଇଁ କଲେକ ଶୟନ
ମେରୁ ଉହାଡ଼ରେ ହେଲେ ଅସ୍ତମାନ
ଶଯ୍ୟା ଛାଡ଼ିଣ ସେ ଉଠିଲେ ରଘୁଧାରୀ ।
ସନ୍ଧ୍ୟା ସୁମରିଣ ତର୍ପଣ ବିଧି କଲେ
ଦେବନଦୀ କୂଳେ ନିଜ ଆଶ୍ରମେ ମିଳିଲେ ।

ସୁଅପତି ଘେନିଣ ଚଳନ୍ତି ବଳୁର
କେତେ ଦିନେ ମିଳିବ ରାବଣ ନାମେ ପୁର ।
ବିଭୀଷଣଙ୍କୁ ପୃଚ୍ଛିଣ ବୋଲନ୍ତି ରାମ ରାଏ
ରାବଣର କେତେ ପୁତ୍ର ଅଛନ୍ତି କହିସ୍ୱେ ।
କରଯୋଡ଼ି ବିଭୀଷଣ କରନ୍ତି ଜଣାଣ
ଶୁଣିମା ହେଜି ମୋତେକ ମୋହଠାରୁ ପୁଣ ।
ବାରହଜାର ରାବଣର ଛପନ ପୁତ୍ର ମଲେ
ନାଅଣ ନାତି ଯେ ଆଜକୁ କ୍ଷୟ ଗଲେ ।
ଆହୁରି ଅଛନ୍ତି ଦେବ ଘୋରନ୍ତ ସେନାପତି
ଷୋଳଗୋଟା କୁମର ଶୁଣ ହେ ରଘୁପତି ।
ଛତିଶ କୋଟି ସେନାପତି ଆଜକୁ କ୍ଷୟ ଗଲେ
ଛତିଶ କୋଟି ସେନାପତି ଲଙ୍କାରୁ ରହିଲେ ।
ଦଶାଶତେ କୋଟି ଯେ ଅଟନ୍ତି ପାଦାନ୍ତି
ବାରହଜାର ବସୁନ୍ଧାଇଶି ପଦ୍ମ ସେ ମରନ୍ତି ।
ହସ୍ତୀମାନେ ଅଛନ୍ତି ଲକ୍ଷ ଅଶ୍ୱ ପଚାଇଶକୋଟି
ଶାରେଣୀ ଓଟ ମଲେ ଚହଦ ଲକ୍ଷ ସେଟି ।
ବାରଲକ୍ଷ ହସ୍ତୀ ପାଦାନ୍ତି ଛପନ କୋଟି
ପାଞ୍ଚ ଲକ୍ଷ ରହିଲେ ଶାରେଣୀ ଓଟଟି ।
ଆଜକୁ ଏଗାର ଦିନ ରାବଣ ମରିବାର
ପାଞ୍ଚ ଦିନ ଯୁଦ୍ଧ ଯେ ହେବ ଅତି ଘୋର ।
ଏମନ୍ତ ବଚନ ଯେ ବିଭୀଷଣ କହି
ଶୁଣିଲନ୍ତି ଶ୍ରୀରାମ ହରଷରେ ହସ୍ତ ଦେଇ ।
ଏମନ୍ତ ସମୟରେ ନିଦ୍ରା ଆସିମନ୍ତେ
ଶେଯ ପରେ ଶ୍ରୀରାମ ପହୁଡ଼ିଲେ ନିଶ୍ଚିନ୍ତେ ।
ଆଗୁଆଣି ଆଟରେ ରହିଲେକ ମିଳି
ନିଶ୍ଚିନ୍ତରେ ଶୟନ କଲେ ସର୍ବ ବଳ ।
ଅଙ୍ଗଦ କୁଳେ ବିଭୀଷଣ ହନୁମାନ ଚେତା
ଧନୁ ଧରି ଲକ୍ଷ୍ମଣ ଶ୍ରୀରାମ ପାଶେ ଏକା ।
ଏଥୁ ଅନନ୍ତରେ କ୍ରମେ ଶୁଣ ଗୋ ନାରଣ
ରାବଣ ହରଙ୍କୁ ପୂଜିବାକୁ ଇଚ୍ଛା ମନେକରି ।
ଧୂପ ଦୀପ ଦେଇ ସେ ଯେ ବସିଲା ନିଶ୍ଚଳେ
ଜପ କରନ୍ତି ସେ ବସୁଛି ମନରେ ।
ଗଣେଶ ଦୁର୍ଦ୍ଦୁର ଅରଖ ବେଲ ପତ୍ରି
ଗନ୍ଧ ଚନ୍ଦନ ଦେବାଙ୍କ ବସନ ପୂଜନ୍ତି ।
ମନ୍ଥ ଅନୁଷ୍ଠାନେ ହେ ଶିରେ ଜଡ଼ନ୍ତି
ଚମ୍ପା ପାଟେ ଚମ୍ପା ପୁଷ୍ପ କୁସୁମ ପୂଜନ୍ତି ।

କର୍ପୂର ଅଗ୍ର ଧୂଳ ଆଳତି ଧୂପ ଦେଲା
ପଦ୍ମ ଆସନରେ ବସି ଅଙ୍ଗନ୍ୟାସ କଲା ।
ଜପ ତପ କରିଣ ସୁମରଇ ମନ୍ତ୍ର
ଏ ମନ୍ତ୍ରକୁ ପଢ଼ିଣ ପୂଜେ ହେମବନ୍ତ ।
ଈଶ୍ୱରଙ୍କୁ ପୂଜେ ସେହି ପ୍ରିୟ ସ୍ତବ କରି
ଆତ୍ମା ସ୍ଥିର କରିଣ ମନ୍ତ୍ର ପଢ଼ିଣ ସୁମରି ।
ମନେ ମନେ ବାସପାଣି ସ୍ନାନ କରାଇଲା
ମୃତ୍ତିକା ବଶମୂର୍ତ୍ତି ସୁମରି ଧ୍ୟାୟେ କଲା ।
ରୁଦ୍ରଙ୍କ ପୂଜା କରିଣ ବହୁ ସ୍ତୁତି କଲା
ଶମ୍ଭୁକୁ ମୁଁ ସଦାଶିବ ବୋଲିଣ ବୋଇଲା ।
ତ୍ରିପୁରାରଙ୍କି ତୋଷେ ଧୂପ ଦୀପ ଦେଇ କରି
ସନ୍ତୋଷେପ୍ରଣମ୍ୟ କରେମନାସି ତ୍ରିପୁରାରି ।
ମନ୍ତ୍ର ପଢ଼ି ସାରିଲା ଅଭିଷେକ ବର୍ଦ୍ଧମାନ
ଭବାନୀ ପତି ଯେମନ୍ତେ ହୁଅନ୍ତି ପ୍ରସନ୍ନ ।
କଢ଼ ମହାକାଳଙ୍କ ମୁଖରେ ଭୂତମାନ
ସେମାନଙ୍କୁ ବଳି ଭୋଜ ଦେଲା ଦଶାନନ ।
ସେଠାରୁ ଶୀଘ୍ରେ ପୁଣ ପୂଜା ବିଧିସାରି
ରୁଦ୍ରଙ୍କୁ ପୂଜନ୍ତି କରେ ଦଶଶିର ।
ଶ୍ୱେତଦେବ ହେ ମହାଦେବ ଷଇଲେକ ନାହା
ମୂର୍ଦ୍ଧେ ତାଙ୍କୁ ବିଧାତା ଶିଖାଇଲା ଯାହା ।
ଶତେ ଅଷ୍ଟ ଉତ୍ତର ନାମକୁ ସୁମରିଲା
ବେଦକର ମସ୍ତକ ଉପରେ ଯୋଡ଼ିଲା ।
ଜୟ ଶିବ ଭବ ମହାଦେବ ଉମାକାନ୍ତ
ଜୟ ପାଶାଙ୍କୁଶ ଡମ୍ବରୁ ଶୂଳ ହସ୍ତ ।
ଧନୁର୍ବାଣ ଅଭୟ ବରଦ ମୃଗ କର
ଚନ୍ଦ୍ର ସୂର୍ଯ୍ୟ ଅନଳ ନୟନ ଯାହାର ।
ଜୟ ଦିଗମ୍ବର ପର୍ଶୁ ଚର୍ମ ଆଭରଣ
ପରମ ଈଶ୍ୱର ଦେବ ପରମ କାରଣ ।
ସର୍ବ ଗାବବାସୀ ଯେ ଦେବ ଶ୍ମଶାନ ବିହାରୀ
ପୃଥ୍ୱୀ ଅପ ତେଜ ବାୟୁ ଆକାଶ ରୂପ ଧରି
ଈଶାନ ପଞ୍ଚଶର ଦହନ ଯୋଗ ମୂର୍ତ୍ତି
ସ୍ଫଟିକ ବରଷିଇ କର୍ପୂର ଜିଣି କାନ୍ତି ।
ଜୟ ଜଟାଜୁଟ ଧରି ନାଗ ଭୂଷ ଧରି
ଜୟ ଧର ବାସୀ କାଶୀ ଈଶ୍ୱର ଗଙ୍ଗାଧର ।
ଜୟ ସ୍ଥିତି ଉତ୍ପତ୍ତି ପାଳନ ଅଧିକାରୀ
ଜୟ ମହାକାଳ ରୂପଧାରୀ କ୍ଷୟକାରୀ ।

ଜୟ ଭୂତ ରୂପ ଭୂତେଶ୍ୱର ଭୂତନନ୍ଦ
ଜୟ ମୃତ୍ୟୁଞ୍ଜୟ ଚନ୍ଦ୍ର ମଉଳ ସଦାନନ୍ଦ ।
ବିଭୂତି ଭୂଷଣ ନର ଶିର ଆଭରଣ
ମହାବୃଷଭ ରୂପୀ ଦେବ ବୃଷଭ ଆରୋହଣ
ଏ ପ୍ରକାରେ ବହୁତ ରୂପରେ ସ୍ତୁତି କଲା
ଲକ୍ଷେ ପ୍ରଣାମ କରି ସେବାରେ ମନାଇଲା ।
ତିନି ଦିନ ସେବାକରି ଘେନି ପରସାଦ
ପୂଜା ସାରି ବାହାରି ହେଲା ଗର୍ବ ଅର୍ଦ୍ଧ ।
ପୂଜାରୁ ଆସନ୍ତେ ପାତ୍ର ମନ୍ତ୍ରୀ ଜଣାଇଲେ
ହେ ଦେବ ଦୁଇ ଦିନରେ ଚୌଦ ଯୂଥ ମଲେ ।
ହସ୍ତୀ ଭୂଅ ଅଶ୍ୱ ଭୂଅ ତୋର ନାଶ ଗଲେ
ପାଦାନ୍ତ ସେନାପତି ଅନେକ କ୍ଷୟ ଗଲେ ।
ପୁଣି ଶାରେଣୀ ଭୂଅ ରଥ ଭୂଅ ହେଲା
ଆଠ କୁମର ସଙ୍ଗେ ସେହୁ ନାଶଗଲା ।
ଶୁଣି କରି ବିଷାଦ ହୋଇଲେ ନୃପତି
ହୃଦପଦ୍ମ ଭିତରେ ରାମଙ୍କୁ କଲା ସ୍ତୁତି ।
ଅନ୍ତଃପୁର ଭିତରକୁ ବିଜେକରି ଗଲା
ପୁତ୍ର ଶୋକରେ ସେଦିନ ମଣୋହି ନକଲା ।
ମନ୍ଦୋଦରୀ ରାଣୀପାଶେ ମିଳିଲାକ ଯାଇଁ
ବଦନ ପୋତି ବସି କାନ୍ଦଇ ମହାଦେଈ ।
ତାହାକୁ ପ୍ରବୋଧ କରି କହିଲା ବହୁତ
କହଇ ରଣେ ଯିନା ପଡ଼ିଲେ କ୍ଷତ୍ରି ପୁତ୍ର ।
ଅବଶ୍ୟ ମୃତ୍ୟୁ ସେ ପାଆନ୍ତି କାଳେ ପୁଣି
ଏ କଥାକୁ ଶୋଚନା ନକର ମନେ ରାଣୀ ।
ଅବଶ୍ୟ ଜନ୍ମ ହୋଇଲେ ପ୍ରାଣେ ମରି
ବ୍ରହ୍ମାଦି ଦେବତା ନର ଦୈତ୍ୟ ଆଦିକରି ।
ତୋର ମୋର ଥିଲେଗୋ ଅନେକ ପୁତ୍ରଅଛି
ଏଥିକୁ ଶୋଚନା ତୁ ନକର ମୃଗାକ୍ଷୀ ।
କାଲି ତୋର ବଇରିକି ଜୀବନେ ସଂହାରି
ସୁଖେ ଭୋଗ କରିବି ମୁଁ ଜନକ କୁମାରୀ ।
ନକର ଶୋକ ସୁନ୍ଦରୀ ମୋହର ଶପଥ
ତୋ ବିକଳ ଦେଖି ମୋ ଜୀବନ ଆରତ ।
ଏମନ ବୋଲି ରଜା ଗଲା ତହୁଁ ଚଳି
ବାହାରେ ଅବକାଶ ହୋଇଲା ମହାବଳୀ ।
ପାତ୍ର ଅମାତ୍ୟ ଦର୍ଶନ ଆସି କଲେ
ରଥୀ ଯୋଦ୍ଧା ପାଇକ ବହୁତ ମିଳିଲେ ।

ସ୍ତମ୍ଭରେ ତାର ଲକ୍ଷେ ଦିହୁଡ଼ି ଯାଏ ଜାଳି
ଘଣ୍ଟା ସ୍ୱନରେ ସେ ପକାନ୍ତି ପାଖେ ତାଳି ।
ପାତ୍ର ମନ୍ତ୍ରୀ ସଙ୍ଗେ ରାଜା କରଇ ବିଚାରି
କାଲି ମୁହିଁ କରିବଇଁ ବିଷମ ସମର ।
ରାମଚନ୍ଦ୍ର ଲକ୍ଷ୍ମଣ ଆଦିର କପି ସୈନ୍ୟ
ନାରାଚ ଅନଳେ ମୁଁ କରିବି ଦହନ ।
ତୁମ୍ଭେମାନେ କେହି ଆଜ ନୋହିବ ନିରତ
ସବୁ ଦିନେ ଏ ଦେହ ନ ଥିବ ଜୀବିତ ।
କ୍ଷତ୍ରି ପୁତ୍ର ହୋଇ ଯେବେ ଯୁଦ୍ଧକୁ ଡ଼ରଇ
ଇହଲୋକ ନିନ୍ଦାକଲେ ନର୍କରେ ପଡ଼ଇ ।
ଏତେ କହି ମହାରାଜା ଆସ୍ଥାନୁ ଉଠିଲା
ହେ ଦେବ ମଣିମା ବୋଲି ଖୁଣ୍ଟିଆ ଡାକଦେଲା
ଅନ୍ତଃପୁର ଭିତରକୁ ହୋଇଲା ପ୍ରବେଶ
ଦର୍ଶନ କଲେ ଆସି ସବୁ ରାଣୀହଂସ ।
ମନ୍ଦୋଦରୀ ରାଣୀ କିଛି ନ କହଇ କଥା
ଦେଖି ମନେ ବ୍ୟାକୁଳ ହୋଇଲା ଦଶମଥା ।
ମଣିମୟପୁରେ ଦିବ୍ୟ ମର୍କତ ମଣ୍ଡପ
ମହାଦେଈଙ୍କ ଘେନି ବସିଲା ତହିଁ ନୃପ ।
ଶୁଣ ଚନ୍ଦ୍ରବଦନୀ ଗୋ ଏକ ମନହୋଇ
ପୂର୍ବର କଥା ତୋତେ କହିବି ମୁହିଁ ସମ୍ପ ।
ମୋ ବାହାରେ ତାହା କେହି ନଜାଣନ୍ତି ଆନ
ଯାହା ଶୁଣି କ୍ଷୋଭ ନୋହିବ ତୋର ମନ ।
ପୂର୍ବ ଜନ୍ମେ ସଖୀ ମୁଁ ବିଷ୍ଣୁର ଦ୍ୱାରପାଳ
ଯେଉଁ ପୁରେ ବିଜେ କରିଥାନ୍ତି ଆଦିମୂଳ ।
ବିବିଧ ଭୋଗମାନ କରି ତହିଁ ବସି
ଯେଉଁ ପୁରେ ଇତର ପଶାଏ ସ୍ୱର୍ଗବାସୀ ।
ଭଗବାନ ଦ୍ୱାରପାଳ ପର୍ଣ୍ଣମହ ର ରଖୁଁ
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର କାହାକୁ ନ ରଖୁଁ ।
ଏକଦିନେ ମହାଲକ୍ଷ୍ମୀ ଦିବ୍ୟ ବେଶ ହୋଇ
ନାରାୟଣ ପାଶକୁ ଯାଆନ୍ତି ଛନ୍ଦମୂର୍ତ୍ତି ।
ବିଜୟକୁ ଘେନଣ ମୁଁ ଓଗାଳିଲି ଆଗେ
ବୋଇଲି ଗୋ ଋଷିମାନେ ଅଛନ୍ତି ପ୍ରଭୁ ସଙ୍ଗେ
ବ୍ରହ୍ମା ଆଦି ଦେବଗଣେ ସମସ୍ତେ ଅଛନ୍ତି
କେମନ୍ତେ ସେସ୍ଥାନେ ତୁମ୍ଭେ ପଶିବ ରୂପବତୀ ।
ଏକାନ୍ତ ସ୍ଥାନରେ ତୁମ୍ଭେ ସ୍ୱାମୀଙ୍କି ସେବିବ
ଉଦ୍ୟାନ ସ୍ଥାନକୁ ମାତ୍ର କେଉଁରୂପେ ଯିବ ।

ଏକଥା ଅନୁଚିତ ତୁ ମନରେ ବିଚାର
ଭଗବାନ କୋପ ହେବେ ମୋହର ଉପର ।
କମଳା କହନ୍ତି ସର୍ବ ଦେବତା ଋଷିମାନ
ଏମାନେ ଅଟନ୍ତି ସର୍ବେ ମୋହର ନନ୍ଦନ ।
ଏଥିରେ କିଛି ବିଚାର ନ କରିବ ତୁହି
ଦ୍ୱାର ଛାଡ଼ିଦିଅ ଏଥି ଦୋଷ ତୋର ନାହିଁ ।
ଆଜ ଗୁରୁବାର ମୁଁ ସମୁଦ୍ରେ ସ୍ନାନ କରି
ଦର୍ଶନ କରିବାକୁ ବହନ ଆଇଲି ।
ଚଣ୍ଡରୂପେ ଆଗେ ତୁ କଠୋର କର୍ମ କରୁ
ଦ୍ୱାର ଛାଡ଼ିଦିଅନ୍ତୁ ମୁଁ ଦେଖିବି ଜଗଦ୍‌ଗୁରୁ ।
ଏତେ ବୋଲି ମହାଲକ୍ଷ୍ମୀ ହେଲେ ଆଗଭର
କୋପମୁଖ ହୋଇଣ ମୁଁ ଓଗାଳିଲି ଦ୍ୱାର ।
କହିଲଇଁ ଏକଥା ଅଟଇ ଅନୁଚିତ
ଏକାନ୍ତରେ ହରି ପାଶ ତୁମ୍ଭର ଉଚିତ ।
ଏମନ୍ତ ବୋଲିଣ ମହାକୋପମୁଖ ହେଲି
ନୟନ କଟାକ୍ଷ କରି ଛାଡ଼ି ମୁଁ ନ ଦେଲି ।
ଦେଖି ମହାକ୍ରୋଧ ମନେ ଲେଉଟି କମଳା
କୋପମୁଖ ହୋଇକରି ସେହୁ ଶାପଦେଲା ।
ଆଜ୍ଞା ଦେଲା ଚଣ୍ଡାଳରେ ଏତେ କର୍ମ କଲୁ
ସ୍ୱାମୀର ସେବା ମୋର ବିଅର୍ଥ କରାଇଲୁ ।
ଅସୁର ବଦନ ତୁମ୍ଭ ଦୁହିଁଙ୍କର ହେଉ
ଏ ମୋହର ବଚନ ଯୁଗେ ଯୁଗେ ଥାଉ ।
ଯହୁଁ ଦେବୀ ଆମ୍ଭଙ୍କୁ ଏମନ୍ତ ଶାପ ଦେଲା
ତତକ୍ଷଣେ ଆମ୍ଭ ମୁଖ ଅସୁର ହୋଇଲା ।
ନାରାୟଣ ଛାମୁରେ ତା ଜଣାଇଲୁ ଯାଇଁ
ଗଦାତଳେ ପକାଇଣ ଗୋଇଲୁ କୋବାଇ ।
ଭଗବାନ ଆଜ୍ଞାଦେଲେ ଉଠ ବେଗେ ବୀର
ଦେବୀ ଶାପେ ବିକଟ ହୋଇଲା ତୁମ୍ଭ ଶିର
ଭକ୍ତଠାରେ ତାର ଯେବେ ଏତେ କୋପଅଛି
ଏଥକୁ ପରାଭବ ପାଇବ କମଳାକ୍ଷୀ ।
ତୁମ୍ଭଙ୍କୁ ପ୍ରତିକାର କରିବି ସିନା ମୁହିଁ
ନିଶ୍ଚିନ୍ତହୋଇ ତୁମ୍ଭେ ଏଠାରେ ଥାଅ ରହି ।
ସେ ଜୟ ବିଜୟ ତୁମ୍ଭେ ମୋହର ସେବକ
ଜୀବନରୁ ଅଟନ୍ତି ଅଧିକ ମୋର ଲୋକ ।
ଏହିରୂପେ କହି ମୋତେ ଅନେକ ବଚନ
ଭୃତ୍ୟବନ୍ଧୁ ସନ୍ତୋଷ କଲେ ମୋହର ମନ ।

ଏହିରୂପେ ତହିଁ ପୁଣ କେତେକାଳ ଗଲା
ଶୁଣ ଚନ୍ଦ୍ର ବଦନୀରେ ପୁଣ ଯେ ହୋଇଲା ।
ବ୍ରହ୍ମାଙ୍କର ନନ୍ଦନ ଅଟନ୍ତି ଚତୁସନ
ଋଷିଗଣ ମାନଙ୍କରେ ମହାବିଦ୍ୟମାନ ।
ନଗ୍ନେଶ୍ୱି ମାହୋଧୀ ନିରହଙ୍କାର ନିର୍ମାୟା
ମହା ସୂକ୍ଷ୍ମ ସମସ୍ତେ ଆନନ୍ଦ ମହାକାୟା ।
ଇଚ୍ଛାମୟ ବିହାରୀ ସମସ୍ତ ପୁରେ ଯାନ୍ତି
ଥରେ ସେ ଭଗବାନ ପୁରେ ପ୍ରବେଶନ୍ତି ।
ପଶ୍ଚିମ ଦ୍ୱାର ବାଟେ ପଶନ୍ତେ ମହାମୁନି
ବିଜୟଙ୍କୁ ଯେନି ଆଗେ ଓଗାଳିଲେ ବେନି ।
କହିଲୁ ହେ ମହାମୁନି ଆମ୍ଭ ବୋଲ ଶୁଣ
କମଳା ସଙ୍ଗତରେ ଏକାନ୍ତ ନାରାୟଣ ।
ପୁଣ ପଶ୍ଚିମ ଦ୍ୱାର ଏ ନୁହଇ ତୁମ୍ଭ ବାଟ
ଭଗବାନ ଜାଣିଲେ ଏକଥା ହେବ ଘାଟ ।
ବ୍ରହ୍ମଋଷି ହୋଇ ତୁମ୍ଭେ ବିପଥରେ ଚାଲ
ଏ ଚରିତ୍ର ତୁମ୍ଭମାନଙ୍କର ନୋହେ ଭଲ ।
ଯେତେ ମନାକଲୁ ତାହା ନ ଘେନିଲେ ଋଷି
ତପ ଗୁଣ ଘେନିଣ ସେ ବଳଆଇ ଆସି ।
ତାହାଦେଖି କୋପକରି ବୋଇଲୁ ଆମ୍ଭେବେନି
ଏତେ ବଡ ପଣ ତୁମ୍ଭେ ଦେଖାଉଛ ମୁନି ।
କୋଟି ବ୍ରହ୍ମାଣ୍ଡରେ ଯେଉଁ ପ୍ରଭୁ ଅଟେ ନାହା
ତପୋବନ୍ତ ହୋଇ ତୁମ୍ଭେ ଗୁଣନାହିଁ ତାହା ।
ଏତେ ବୋଲି ମୁନିଙ୍କ ଆଗରେ ଓଗାଳିଲୁଁ
ଜଳେ ପଶିଯିବେ ବୋଲି କବାଟ ପାଡ଼ିଲୁଁ ।
ଏହାଦେଖି ମୁନିମାନେ ମହାକୋପ କଲେ
ଆତ୍ମମୁଖ ଅନାଇ ଦୁଃସହ ଶାପ ଦେଲେ ।
କହିଲେ ଏ ବଇକୁଣ୍ଠ ଅଧିକାର ଘୁସି
ଅହିଂସା ବ୍ରତ ପ୍ରସାଦେ ଏପୁର କଲେ ହରି
ଏଥିରେ ତୁମ୍ଭେ ଆଇ ଏମାନ ଉପୁଯାଅ
ଏ ଦୋଷକୁ ତୁମ୍ଭେରେ ଅସୁର ଯେ ନ ପାଅ
ଶତେ ଜନ୍ମ ପରଯନ୍ତେ ଅସୁର ହୋଇବ
ତେବେସିନା ଏଦୋଷର ଫଳ ଭୋଗହେବ ।
ଏମନ୍ତ ବଚନେ ଶାପ ଦେଲେ ଚତୁସନ
ଅନ୍ତର୍ଯ୍ୟାମୀ ପୁରୁଷ ଜାଣିଲେ ଭଗବାନ ।
ସେ ସ୍ଥାନରେ ଦେବତାରବେଶ ହେଲେଆସି
କୋଟି ଚନ୍ଦ୍ର ସଦୃଶ ଅନଳ ତେଜ ରଶି ।

ମୁନି ମାନଙ୍କୁ ଅନାଇ ନମସ୍କାର କଲି
ହସି ଆଜ୍ଞା ତାହାକୁ ଦିଅନ୍ତି ଦଇତ୍ୟାରି ।
ତୁମ୍ଭେ ମହାମୁନି ମୋର ପ୍ରାଣର ସମାନ
ଅଲଙ୍ଘିତ ଅଟେ ମୋର ତୁମ୍ଭର ବଚନ ।
ବୈକୁଣ୍ଠ ନିତ୍ୟ ମୋର ସେବକ ହିଁ ନିତ୍ୟ
ଏହା ବିଚାରିଲେ ତୁମ୍ଭ ବଚନ ଅନିତ୍ୟ ।
ତୁମ୍ଭ କଥା ମୁହିଁ କରି ନ ପାରିବି ଆନ
ଦ୍ୱାରପାଳ ବିନା ମୋର ପୁର ହେବ ଶୂନ୍ୟ ।
ଏଥିକୁ ବିଚାରି ତୁମ୍ଭେ କହ ମୁନିବର
ଶତେଜନ୍ମ ଦୋଷ ତିନିଜନ୍ମେ ଯିବ ପାର ।
ଏହା ଶୁଣି ମୁନିମାନେ ଆନନ୍ଦ ହୋଇଲେ
ଆମ୍ଭଙ୍କୁ ଅନାଇ ଦୟାକରି ଆଜ୍ଞା ଦେଲେ ।
ତୁମ୍ଭପରେ ଭଗବାନ ଏଡ଼େ ଅନୁଗ୍ରହ
ଧନ୍ୟ ଧନ୍ୟ ପବିତ୍ର ବିଜୟ ଦେହ ।
ତିନି ଜନ୍ମେ ତୁମ୍ଭର ପାତକ କ୍ଷୟେ ଯାଉ
ଯେଉଁକଥା କରିବ ସେ ଯୁଗେଯୁଗେ ଥାଉ ।
ଏତେବୋଲି ଋଷିମାନେ ଅନ୍ତର୍ଦ୍ଧାନେ ଗଲେ
ପୁଣ ନାରାୟଣ ମୋତେ ହସି ଆଜ୍ଞାଦେଲେ
ବୋଇଲେବେନିଭାଇ ଭୟ ମନରେ ନଘେନ
ପୂର୍ବରୁ ତ ହୋଇଅଛି କମଳା ବଚନ ।
ତୁମ୍ଭ ପାଇଁ ମର୍ତ୍ତ୍ୟପୁରେ ହେବି ଅବତାର
ସ୍ତ୍ରୀହସ୍ତେ ସଂହାର ପାପୁଁ କରିବି ଉଦ୍ଧାର ।
ଏଯେ ଲକ୍ଷ୍ମୀ ତୁମ୍ଭଙ୍କୁ ନଜାଣି ଶାପ ଦେଲା
ତୁମ୍ଭେ ନ୍ୟାୟ କରିଲ ସେ ଏହା ନଜାଣିଲା ।
ଏଥିକୁ ପରାଭବ ପାଇବ କମଳାକ୍ଷୀ
ଭୃତ୍ୟଠାରେ ତାରଯେବେ ଏଡ଼େ ମାୟାଅଛି
ଏ ଯାଇଣ ମର୍ତ୍ତ୍ୟପୁରେ ଜନମ ହୋଇବ
ତୁମ୍ଭର ହସ୍ତରେ ପରାଭବକୁ ପାଇବ ।
ଆମ୍ଭେ ଯାଇ ହେବୁ ଦଶରଥ ଘରେ ଜାତ
ବଶିଷ୍ଠ ମହାଋଷିର ହେବ ତୁମ୍ଭେ ପୁତ୍ର ।
ପିତା ସତ୍ୟ ହେତୁ ଆମ୍ଭେ ବନସ୍ତକୁ ଯିବୁ
ଲକ୍ଷ୍ମଣ ଜାନକୀ ବେନି ସଙ୍ଗତରେ ନେବୁଁ ।
ମାୟା ରୂପେ ଦଣ୍ଡକାଅରଣ୍ୟ ନେବୁ ହରି
ଅଶୋକ ବଣିକରେ ରଖିବୁ ଯତ୍ନ କରି ।
ଆମ୍ଭେ ପୁଣି ସୁଗ୍ରୀବ ସଙ୍ଗେ ମିତ୍ର ହେବୁଁ
ବାଳିକି ମାରି ତାହାକୁ ନୃପତି କରିବୁ ।

ସାଗରେ ପର୍ବତରେ ବାନ୍ଧିବୁ ଆମ୍ଭେ ବନ୍ଧ
ଲଙ୍କାପୁରେ ଯାଇଣ କରିବୁଁ ଆମ୍ଭେ ଦ୍ୱନ୍ଦ୍ୱ ।
ମହା ଯୁଦ୍ଧ କରି ତୋର ଜୀବନକୁ ହରି
ତେବେ ପରାପତ ହେବ ବୈକୁଣ୍ଠ ପୁରୀ ।
ଏମନ୍ତ ଶାପ ମୋର ପୂର୍ବରୁ ଅଛି ସତ୍ୟ
ତେଣୁକରି ମୋର ଦେହେ ଶୋଚନା ନଥାଇ
ଏହା ଶୁଣି ମନ୍ଦୋଦରୀ ଚକିତ ହୋଇଲା
ନାରଦ ମୁନିଙ୍କ କଥା ମନରେ ସୁମରିଲା ।
ହୃଦପଦ୍ମ ମଧ୍ୟରେ ବିଚାରେ କଥାମାନ
ବିଚାରଇ କାହା ବଳେ ହୋଇବ ଏ ଆନ ।
ରାବଣର ବଦନୁ ଏମନ୍ତ କଥା ଶୁଣି
ଚମତ୍କାର ହୋଇଲେ ଯେ ସକଳ ତରୁଣୀ ।
ଏତେ କହି ମହାରାଜା ବାହାରକୁ ଆସି
ଯେ ଯାହାରପୁରରେ ରହିଲେ ଶୁଭ୍ରକେଶୀ
ସଦାନନ୍ଦ କହନ୍ତି ଶୁଣ ଗୋ ଗଉରୀ
ବାହାର ବିଜୟ ଯାଇ ରାବଣେଶ୍ୱର କରି ।
ପ୍ରକୃଷ୍ଟ ସେବକମାନେ ଖଟିଲେ ଆସି ପାଶ
ସେନାପତିମାନଙ୍କୁ କହଇ ଲଙ୍କାଈଶ ।
ରଣ ରାଜପୁତ୍ର ହେ ସମସ୍ତେ ତୁମ୍ଭେ ଶୁଣ
ମୁହିଁ କଲି କରିବି ଶ୍ରୀରାମ ସଙ୍ଗେ ରଣ ।
ତୁମ୍ଭେମାନେ ସମସ୍ତେ ମୋହର ବୋଲକର
ନସତ ହୋଇଲା ଲୋକ ଗଡରୁ ନ ବାହାର
ମୋହର ପଛରେ ଥାଇ ଦେଖ ଯୁଦ୍ଧ ସୁଖ
ଲଙ୍କାରୁ ବାହାର ନୁହ ହୋଇଣ ବିମୁଖ ।
ଏତେ ବୋଲି ରାଜା ଭିତରେ ବିଜେକଲା
ଦେଖିଣ ମୃଦୁସ୍ୱର ଧଇର୍ଯ୍ୟ ମଣାଇଲା
ନିଅବକାଶରେ ଯାଇ ବିଜୟେ ସେ କରି
ମନ୍ଦୋଦରୀ ସଙ୍ଗତେ ମିଳିଲେ ଧଙ୍ଗଡାରୀ ।
ଦିବ୍ୟ ରତ୍ନ ପଲଙ୍କ ଉପରେ ନେତ ଶେଯ
ବିଜୟେ କଲା ଲଙ୍କ ଅସୁରକୁଳ ରାଜ ।
ମନ ଛନ୍ନ ଛନ୍ନ ତାର ନ ମାନଇ ନିଦ
ବିଚାରଇ ନାଶ ନିଶ୍ଚେ ହୋଇବ ସମ୍ପଦ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ
ଦେବୀଗଣେ ଯେସନେ ବାହାର ଦାସେକ ।
ସୁବଳପ୍ରୀ ଗିରିରୁ ଅଇଲେ ବେଗ ହୋଇ
ରଣଭୂମିରେ ଦୈତ୍ୟ ରୁଧିର ମାଂସ ଖାଇ ।

ଦେଖିଲେ ଋକ୍ଷ କପି ନାହାନ୍ତି କେହି ମରି
ଦୈତ୍ୟଙ୍କୁ ଶେଷ କରି ସୁବଳସ୍ଥା ମିଳି ।
ପୁଣି ଶୁକ୍ରଦେବ ଯୁଦ୍ଧ ଭୂମିରେ ପ୍ରବେଶ
ଦେଖିଲେ ଋକ୍ଷ କପି ହୋଇନାହାନ୍ତି ନାଶ
ସେଠାରୁ ସୁବଳସ୍ଥା ଗିରିକୁ ଚଳିଯାଇ
ଶ୍ରୀରାମ ସୈନ୍ୟ ଉପରେ ଅମୃତ ସିଞ୍ଚିଦେଇ ।
ଅମରପୁରେ ଯାଇଁ ହୋଇଲେ ପରବେଶ
ଏଥୁ ଅନନ୍ତରେ ଯେ ରଜନୀ ହେଲ ଶେଷ ।
ପୂର୍ବ ଦିଗୁଁ ଉଦୟ ହୋଇଲେ ଛାୟା ପତି
ଶଯ୍ୟା ଛାଡ଼ି ଉଠିଲେ ଅସୁରକୁଳ ପତି ।
ବାହାରେ ନୃପବର ହୋଇଲେ ଅବକାଶ
ଅନ୍ତଃପୁରେ ରହିଲେ ସକଳ ରାଣୀହଂସ ।
ତଦୁତ୍ତରେ ମହାରାଜା ନିତ୍ୟକର୍ମ ସାରେ
ଭୃତ୍ୟଗଣ ସେବାକାରୀ ଅଛନ୍ତି ସଙ୍ଗରେ ।
ସ୍ନାହାନ କର୍ମ ସାରି ଶେଷ ସନ୍ଧ୍ୟା ସୁମରିଲ
ଦେବାର୍ଚ୍ଚନ ଭବରେ ବିଜୟ ଯାଇଁ କଲ ।
ଦେବତା ପୂଜାଦି କର୍ମ ସେ ସ୍ଥାନରେ ସାରି
ଆସ୍ଥାନ ଭବରେ ଯାଇଁ ବିଜେ ଦଣ୍ଡଧାରୀ ।
ମନ୍ତ୍ରୀ ଅମାତ୍ୟେ ଦରଶନ ଆସି କଲେ
ସେମାନଙ୍କ ମୁଖସ୍ବୁଁ ନରପତି ବୋଲେ ।
ଚତୁରଙ୍ଗ ସଇନ ବହନ ହୋନ୍ତୁ ସଜ
ଶ୍ରୀରାମ ଲକ୍ଷ୍ମଣଙ୍କୁ ରଣେ ସଂହାରିବି ଆଜ ।
ଶୁକ ଶାରଣ ବେନି କହନ୍ତି ଯୋଡ଼ିକର
ସଜ ହୋଇ ସଇନ ଅଛନ୍ତି ସିଂହଦ୍ୱାର ।
ଯେତେବେଆଜ୍ଞାହେବତୋର ଯିବେ ଆଗହୋଇ
ଶୁଣିଣ ସିଂହାସନରୁ ଉଠିଲା ଲଙ୍କସାଇଁ ।
ରତ୍ନପିଢ଼ା ଉପରେ ବିଜୟେ ଯାଇଁ କରି
ଯୁଦ୍ଧେ ସଜହୋଇବା ବସ୍ତ୍ର ମନେ ଧରି ।
ଯୁଙ୍ଗଡ଼ା ମେଜାପ ସଜ ହେବେ ଦରଶନକରେ
ଦେଖିକରି ଦଶମୁଖ ଆନନ୍ଦ ମନରେ ।
ବ୍ରହ୍ମନାଭ ସ୍ୱର୍ଣ୍ଣର ମୁକୁଟ ମଣିମୟେ
ତାହା ଉଷ୍ଣ କରିଟ ଭୂଷଣ ଲଙ୍କରାଏ ।
ରତ୍ନହାର ପଦକ ଯେ କୁଣ୍ଡଳ ଭୂଷଣ
ନାନା ରତ୍ନମାନଙ୍କରେ ହୋଇଛି ନିର୍ମାଣ ।
ଆଙ୍ଗୁଳେ ମୁଦ୍ରିକାମାନ ଭିନ୍ନ ଭିନ୍ନ ନାମ
କାଞ୍ଚି ମତ୍ସ୍ୟ କୂର୍ମ ପଦ୍ମାକାର ଅନୁପମ ।

ଏକସରି ଦୋସରି ତିନସରି ଚଉସରି
ଏରୂପରେ ହାରମାନ ଆଭରଣ କରି ।
ଉତ୍ତମରେ ଦୁଇମୁଖ ହୋଇଛି ଗୁଞ୍ଜିତ
ଏ ବସନ ଦଶମୁଖ ପିନ୍ଧିଲା କାଛିତ ।
ପୁଣି ସେ ଦିବ୍ୟ ଅଙ୍ଗ ସେହ୍ଲାକୁ ଅଙ୍ଗେଛାଇ
ରତ୍ନରେ ଖଚିତ କାଞ୍ଚିମାଳା ବାନ୍ଧଇ ।
ବଂଶକରେ ନାଇଲା ଜୋଡିଏ ବାରବାହୁ
ପୂର୍ଣ୍ଣିମାସୀ ଦିନ ଯେହ୍ନେ ସଜନ୍ତ ଏ ଚନ୍ଦ୍ର ।
ଦଶଶିରରେ ମୁକୁଟ ଘଟଣ ଭିନ୍ନ ଭିନ୍ନ
ମଣିଗଣ କିରଣ ବିରାଜେ ଛନ୍ନ ଛନ୍ନ ।
ଅନର୍ଗଳ ତୋଡ଼ର ଚରଣରେ ବାନ୍ଧେ
ଅକ୍ଷୟ ତୋଣ ଭିଡ଼ ବାଙ୍କନଳ କନ୍ଧେ ।
ବଜ୍ରମୟ କବଚ ଶ୍ରୀଅଙ୍ଗେ ଲଗିହୁଏ
ଦଶମୁଖେ ତାମ୍ବୁଳ ଭୁଞ୍ଜଇ ଲଙ୍କାରାଏ ।
ଦିବ୍ୟରତ୍ନ ନୂପୁର ଚରଣେ ଶୋଭାବନ
ଦଶ ଧନୁଶର ଆମଞ୍ଚଇ ଦଶାନନ ।
ରତ୍ନ ଖଡ଼ଉ ଉପରେ ବସେ ବେଶ ହୋଇ
ପୁରେହିତ ଆଳତିକ ଦେଖାଇଲେ ନେଇ ।
ମଣ୍ଡଳାକାରରେ ଦଶ ଲଲାଟେ ସିନ୍ଦୂର
ବିଂଶ ଭୁଜେ ଖାରବାନା ଉଷ୍ଣେ ପରିହର ।
ଦାଢ଼ିରେ ହାତଦେଇ ଆଉଁସଇ କେଶ
ଯୋଦ୍ଧାମାନଙ୍କୁ ଅନାଇ ହୁଅଇ ହସହସ ।
ବୋଲଇ ଆଜସିନା ଜାଣିବା ରାମବଳ
ମୋହର ନାରାଜ ନ ସହନ୍ତି ଦିଗପାଳ ।
କେତେ ପରାକ୍ରମ ଯନ୍ତି ଅଙ୍ଗେ ଅଛି ବଳି
କେମନ୍ତେ ଅଙ୍ଗେ ତାର ସହସ୍ର ନ କାଟଇ ।
ଆଜ ପରାକ୍ରମ ମୁହିଁ ଜାଣିବି ତାହାର
ମୋର ନାରାଜରେ ଯେବେ ନ ଛିଡ଼ିବ ଶିର ।
ଏତେବୋଲି ମହାରାଜା ହେମ ଟାଙ୍କୁରାଇ
ଏତେ ବୋଲି ପ୍ରତିଜ୍ଞା କରଇ ଲଙ୍କସାଇଁ ।
ମହାରାଜା ସଜେବେଳେ ବଜାଇ ବୀରତୂର
ଶଙ୍ଖଭେରୀ ମହୁରୀ ଆବର ସପ୍ତସ୍ୱର ।
ଲକ୍ଷେକ ସାଧବାନାରୀ ଅର୍ଘ୍ୟବେନ ଉଷ୍ଣ
ମହା ଗହଳ ହୋଇଛି ନୃପତିର ସଭା ।
ସାମ ବେଦ ଗାୟନ କରନ୍ତି ଦ୍ୱିଜବର
ଭାଟମାନେ କରନ୍ତି ଉତ୍ତମ ପଏକାର ।

ଗୋରଚନା ତିଳକ ଯେ ଶ୍ୱେତ ଦୁବସଙ୍ଗେ
ମହାରାଜା ଆନନ୍ଦେ ଦେଲେ ଜନ୍ତମାନଙ୍କେ ।
ଯୁଦ୍ଧ ସଜ ସାରି ଜଣାଇଲେ ବୈରୀ ସାଇଁ
ସୁର ସିଦ୍ଧଗଣେ ଆକାଶରେ ଭୟପାଇ ।
ସେନାପତିମାନଙ୍କୁ ରାବଣ ଆଜ୍ଞା ଦେଲା
ଥାଟ ଆଗେ ତୁମ୍ଭେ ଘେନ ଯାଅସି ବୋଇଲା
ଏହା ଶୁଣି ଆଗହେଲେ ମଲ୍ଲ ମହାମଲ୍ଲ
ସଏକାର ସଇନ ବୋଲନ୍ତି ଭୂଳ ଭୂଲ ।
ଦଶଲକ୍ଷ ମତ୍ତଗଜ ଦଶଲକ୍ଷ ରଥ
ତଉଦ ପରସୁଧ ସଙ୍ଗରେ ରାଜିତ ।
ସତୁରି କ୍ଷଉଣୀ ସଙ୍ଗେ ଅଛନ୍ତି ପାଦାନ୍ତ
ବାଜଣାର ଶବଦରେ କମ୍ପୁ ଅଛି କ୍ଷିତି ।
ଆଲମ୍ବ ପାଟଜସରେ ନ ଦିଶେ ସବିତା
ଧାମନ୍ତି ଅସୁର ଗଣ ହୋଇ ଉଣମତ୍ତ ।
ଅସଂଖ୍ୟ ସଇନ ସମ୍ପାଦିଛି ଲଙ୍କସାଇଁ
ଗଗନ ନ ଦିଶଇ ନ ଦିଶଇ ରଣଭୂଇଁ ।
ମଧ୍ୟ ଦଣ୍ଡ ଆସି ଦିଶିଲେ ସେନାଦଶ
ଉତ୍ତ୍ୱର ଜ୍ୟୋତି ଦିଶେ ଯେସନେ ଦିବସ ।
ହସ୍ତୀ କର୍ଣ୍ଣ ରଶ୍ମି କେତୁ ସ୍ୱରଣ ଭୂସ୍ୱରଣ
ହିରତ୍ତ୍ୱ ସଗ୍ରାଜ ହେସ୍ମ ଶିରପୁଣ ।
ଯଜ୍ଞକେତୁ କାଳକେତୁ ଆବର ସାରସ
ଇନ୍ଦ୍ରଜିତ ସେମାନେ ଅଟନ୍ତି ଗୁ ରୁହଂସ ।
ଏହାଙ୍କୁ ଦେଖି ଭୟ କରଇ ସୁରପତି
ଚରଣ ପକାନ୍ତେ ଭୟେ କମ୍ପେ ବସୁମତୀ ।
ଏହାଙ୍କର ପଛରେ ସୁପୁଷ୍ଟ ଧନଯାଇ
ପ୍ରଥମ ଶୂରକେତୁ ଏମନ୍ତେ ତିନଭାଇ ।
ଜମ୍ବୁମାଳୀ ପୁଷ୍ଟ ସିଂହନାଦ ମହାବୀର
ସ୍ଥୂଳଜଙ୍ଘ ସହିତରେ ହେଲେ ଏ ବାହାର ।
ଯମଘଣ୍ଟ କାଳଘଣ୍ଟ ଅଇଲେ ଖଲଦେନ
ମୁଖା ଦୁରୁମୁଖା ଯେ ତପନ ଏହୁ ତିନ ।
ସଙ୍ଗରେ ଦୈତ୍ୟମାଳ ଅଶ୍ୱନ ପ୍ରଭବ
ଏମାନଙ୍କର ମହିମା ଦେବଙ୍କୁ ଦୁର୍ଲ୍ଲଭ ।
ମହାମେଘ ଜାଣିଣ ଦିଶନ୍ତି ସେନାମାନ
ଅନୁମାନେ ବେଶମାନ ଧରି ଭିନ୍ନ ଭିନ୍ନ ।
ସ୍ୱରିଶତ ନାତି ସଙ୍ଗେ ଚଉଦ କୋଟି ଯୋଦ୍ଧା
ସମରକୁ ଧାମନ୍ତି ଏ କରିବେ ପୃଥ୍ୱୀ ସୋଧା
ଖୋଜିକରି ମାରିବେ ଏ ରାବଣ ବଇରି
ମହା ପ୍ରତିଜ୍ଞାରେ କରେ ଶସ୍ତ୍ରଛନ୍ତି ଧରି ।
ସମୁଦ୍ର ଲହରି ଜାଣି ରଥଗଜ ସୈନ୍ୟ
ମହାମେଘ ପରାଏ କରନ୍ତି ଗରଜନ ।
ବିକଟାଳ ବଦନ ଅସୁରେ ଭୟଙ୍କର
ଆଗଦଣ୍ଡେ ଅଛନ୍ତି ପାଞ୍ଚକୋଟି ଅସୁଆର ।
ବଜ୍ର ଘୋଟି ସେନା ଅଙ୍ଗେ କରେ ଜମାଯୁଣ
ନବରତ୍ନରେ ଖାଖର ସବୁରି ନିର୍ମାଣ ।
ତାହାଙ୍କର ପଛେ ପଛେ ମହାମତ୍ତ ଯୂଥ
ଗଜକୁମ୍ଭ ବନ୍ଧପରେ ବସିଛି ମାହୁନ୍ତ ।
ଗିରିବର ସମାନେ ଦିଶନ୍ତି ଗଜମାନ
ଅଗଣିତ ତାଙ୍କପଛେ ପଦାତିକାର ସୈନ୍ୟ ।
ତାହାଙ୍କର ପଛରେ ଅଛନ୍ତି ସବାରଥୀ
ବୀର ମହାବୀର ମଲ୍ଲ ମହାମଲ୍ଲ ଛନ୍ତି ।
ବଜ୍ରଘୋଟି ସେନାମାନ ସର୍ବାଙ୍ଗରେ ଲଇ
କନ୍ଧପରେ ଅକ୍ଷୟ ତୋଣିର ଶୋଭାପାଇ ।
କରରେ କାଣ୍ଡ କୋଦଣ୍ଡ ବିକରାଳ ମୂର୍ତ୍ତି
ଶ୍ରୀରାମଙ୍କୁ ଜିଣିବାକୁ ପ୍ରତିଜ୍ଞା କରନ୍ତି ।
ରାମଚନ୍ଦ୍ର ସୁବେଳ ପର୍ବତେ ଛନ୍ତିରହି
ନିଜସେନାପତି ପଠିଆଇଲେକ କହି ।
ହେ ଦେବ ଆଗୁଆଣି ଥାଟପଡ଼ି ଯୁଦ୍ଧହୋଏ
ଆଜଥାଟେ ସେନାପତି ହୋଇଛି ଲଙ୍କରାଏ ।
ରାତରେ ବିଭୀଷଣ ଆଗରେ ସ୍ଥିର କହି
ରାବଣ ବଡହୋଧ ଶ୍ରୀରାମ ପରେ ହୋଇ ।
ଚତୁରଙ୍ଗ ଦଳସେ ସାଜିଲାଣି ପୁଣ
...ଏ ପାହିଲେ ଯୁଦ୍ଧକୁ ଆସିବ ରାବଣ ।
ସେକଥା ବିଭୀଷଣ ଶ୍ରୀରାମେ କହିଥିଲେ ,
ଏବେ ନଳ ଆସିଣ ସମସ୍ତ କହିଲା ।
ସମଦଣ୍ଡ ବାହିଣ ଆସିଲା ରାବଣ
ଆଗୁଆଣି ଦଣ୍ଡରେ ବାଜିଲାଣି ରଣ ।
ଏହା ଶୁଣି ରାମଚନ୍ଦ୍ର ଉଠିଲେ ତୁରିତ
ଯେ ବିଧି ନିତ୍ୟକର୍ମ ସାରିଲେ ଦାଶରଥି ।
ଅତି ସୁଦୃଢ଼ କରି ବାନ୍ଧିଲେ ଜଟାଭାର
ବୀରବେଶ ହୋଇ ବିଜେ ରଘୁକୁଳ ବୀର ।
କନ୍ଧତଟେ ଭିଡ଼ିଲେ ଅକ୍ଷୟ ବେନି ତୋଣ
ବୈଷ୍ଣବ ଧନୁରେ ଚଢ଼ାଇଲେ ଗୁଣ ।

ସଇତହୋଇ ପରବେଶ ସୁମିତ୍ରାଙ୍କ ସୁତ
ଅଙ୍ଗଦକୁ ଅନାଇ ବୋଲନ୍ତି ସୀତାକାନ୍ତ ।
ସୈନ୍ୟସଙ୍ଗେ ବେନବୀର ଯାଅ ଆଗହୋଇ
ମୋହର ଯିବାଯାଏ ତୁ ଥିବୁ ଯୁଦ୍ଧ ସହି ।
ହନୁମାନେ ଆଜ୍ଞାଦେଲେ ଭୁଜ ବେଗେଯାଅ
ଗବଏ ଗବାକ୍ଷ ଗନ୍ଧମାଦନ ଧାଅଁ ।
ସାରସ ପାରସ ବଳମୁଖ ଯେ ଚନ୍ଦନ
ସଞ୍ଜର ସେନାପତି ପବନ କାଳଞ୍ଜନ ।
ବସନ୍ତ ମହେନ୍ଦ୍ର ଉପେନ୍ଦ୍ର ଶତବଳ
ଯେ ଯାହାରସେ ନ୍ୟସେନବେଗ ହୋଇ ଚଳ
ମାର ଦୁଷ୍ଟ ରାକ୍ଷସଙ୍କୁ ନ କରଣ ଭୟେ
ଆଜଧର ମାରିବାଟି ଦଶାନନ ରାଏ ।
ଶ୍ରୀରାମଙ୍କ ଆଜ୍ଞାରେ ଧାଇଁଲେ ଋକ୍ଷକପି
କରେ ତରୁଶିଳ ଧରି ଶୂନ୍ୟେ ଯାନ୍ତିକ୍ଷେପି ।
ଅସୁର ସଇନଙ୍କୁ ପାଇଲେ ଯାଇ ଭେଟ
ରୋଷଭରେ ମରାମରି ହେଲେ ଦୁଇଥାଟ ।
କପିଙ୍କର ଶିଳାବୃକ୍ଷ ଦଇତେ ଧନୁଶର
ଏକକୁ ଆରକେ ବୋଲୁଛନ୍ତି ମାରୁଁ ମାର ।
ଉତ୍ପ୍ରୋଧ ଘୁଡ଼ ଯୁଦ୍ଧ କରନ୍ତି ଦୁଇଦଳ
ପଚାରି ସମର କରନ୍ତି ସକଳ ।
ମୁଖଗୋଳ ଶବଦ ଆୟୁଧେ ପିଟାପିଟି
ମହାମହାବୀରେ ଯେ ପଡ଼ିଲେ ମଥାଲୋଟି ।
ହସ୍ତୀଘୋଡ଼ା ପାଦାନ୍ତି ରଥୀସେନା ପଡ଼ି
ବହୁତ ଋକ୍ଷକପି ହୋଇଲେ ମଡ଼ାମଡ଼ି ।
ପହର ପଚାଯନ୍ତେ ଲାଗିଲା ରଣଗୋଳ
ରକତରେ ନଦୀଟିଏ ବହିଲା ବହଳ ।
ବୃକ୍ଷ ଶିଳା ଶର ତହିଁ ଆତଯାତ ହୋଇ
ଗଗନରେ ଅଦୃଶ୍ୟ ହୋଇଲେ ସୂର୍ଯ୍ୟାସାଇଁ ।
ଅସୁରଦଳ ଯହୁଁ ଭୁହାଇ ଯୁଦ୍ଧକଲେ
ଅନେକ ଋକ୍ଷକପି ରଣରେ କ୍ଷୟଗଲେ ।
ଏସନକ ସମୟେ ପ୍ରବେଶ ଦାଶରଥି
ସଙ୍ଗତରେ ସହାୟ ଅଛନ୍ତି ସୌମିତ୍ରୀ ।
ବିଭୀଷଣ ଅଙ୍ଗଦ ଜମ୍ବୁବ ନଳନୀଳ
ଗାଳମ୍ବ ପବନ ହେ ଚନ୍ଦନ ଘନସିଲ ।
ଆଗରେ କପିସୈନ୍ୟ କଳନା ନ ଯାଇ
ରାମଚନ୍ଦ୍ର କହନ୍ତି ଲକ୍ଷ୍ମଣ ମୁଖଚାହିଁ ।

ଏ ମୋ ହର ବୋଲ ତୁମ୍ଭେ କର ସଉମିତ୍ରି
ଏଯେ ଦଶାନନ ମହାବଳସ୍ୱାର୍ଥ କ୍ଷତି ।
ପୁତ୍ରଶୋକେ ଆଜ ଏ କରିବ ମହାରଣ
ତୁମ୍ଭେ ଏହାସଙ୍ଗେ ଯୁଦ୍ଧ ନ କର ଲକ୍ଷ୍ମଣ ।
ଜାନକୀର ରାଣ ତୋତେ ଆମ୍ଭର ଶପଥ
ଆଜମୋର ବଚନକୁ ପାଳବ ହେ ଭ୍ରାତ ।
ଏହାଶୁଣି ସଉମିତ୍ରି କୋପେ ଥରହର
ରାମଚନ୍ଦ୍ରଙ୍କୁ ଚାହିଁଣ କହନ୍ତି ବୀରବର ।
ଏହାଯାହା ଆଜ୍ଞାମୋତେ ଦେଲ ରଘୁସାଇଁ
ଏଥିରୁ ଜୀଇବାରୁ ମରିବା ଭଲ ହୋଇ ।
ଶୁଣି ରାମଚନ୍ଦ୍ର ସ୍ୱାମୀ ବିଭୀଷଣକୁ ଚାହିଁ
ସୁଗ୍ରୀବ ହନୁମାନ ଯେ କେଶରୀଆଦି ଭାଇ ।
ବୋଲନ୍ତି ଲକ୍ଷ୍ମଣକୁ ଜଗିବ ତୁମ୍ଭେମାନେ
ଯେମନ୍ତେ ଏ ନ ଯିବେ ରାବଣସନ୍ନିଧାନେ ।
ଏ ସମୟେ ଦୈତ୍ୟବଳ ପଡିଲେକ ମାଡ଼ି
ଋକ୍ଷକପି ବଳମାନେ ପଳାଇଲେକ ଛାଡ଼ି ।
ଏହାଦେଖି ସଉମିତ୍ରି ମହାକୋପଭର
ବହନ ଧନୁଗୁଣେ ପୂରିଲ ତୀକ୍ଷ୍ଣଶର ।
ରହରହ ବୋଲିଣ ସେ ବହନ୍ତି ଆଗସର
ଆଜ ଦୈତ୍ୟବଳ ମୁଁ ଯେ ପେଶିବି ଯମପୁର
ଏହି ସମୟରେ ଅନଲେ ବାରପଦ୍ମ କପି
ସମସ୍ତେ ସିନ୍ଦୁର ମୁଖା ଆସୁଛନ୍ତି କ୍ଷେପି ।
ଦେଖିଲେ ରଣଗୋଳ ରାମରାବଣର
ଯୁଦ୍ଧରେ ପଶିଲେ ସେ ହୋଇଣ ଆଗୁସାର ।
ଋକ୍ଷ ମର୍କଟମାନେ ଯେ ଭଙ୍ଗୁଣି ପାଇଥିଲେ
ତରୁଶିଳ ଧରିଣ ସେ ଆଗକୁ ଧାଇଁଲେ ।
ଆପଣେ ରଘୁନାଥ ନାରାଜ କରେ ଧରି
ଗୁଣରେ ବସାଇଣ ବିନ୍ଧିଲେ କୋପକରି ।
ଅସୁରବଳଙ୍କୁ ସଂହାରନ୍ତି ଅଙ୍ଗଛଳେ
ମହାଘୋର ସମର କରନ୍ତି ଭୁଜବଳେ ।
ନିମିଷକେ ପେଷନ୍ତି ସେ ଲକ୍ଷେକ ନାରାଜ
ଲୁହଡ଼ି ପରାୟେ ଶର ବର୍ଷେ ରାମରାଜ ।
ଅଗୋଚର ସମର କରନ୍ତି ଦୁଇଦଳ
ଯେସନେ ମେଘମାଳେ ଘୋଟିଲା ମହାଜଳ ।
ପର ଆପଣା ଏ ଯେ ବାରି ନୁହଇ କିଛି
ଜାନକୀର ମଥାମଣି ଶ୍ରୀରାମ କଣ୍ଠେ ଅଛି ।

ତାର କୋଟାନ୍ତ ଘଟକ ହଜୁଳ ଘଳପ୍ରାପେ
ଦେବ ସଙ୍କଟରେ ଯେ ଅଦୃଶ୍ୟ ରାମରାଏ ।
ପବନରେ ବୃକ୍ଷଯେହ୍ନେ ହାଳଣ ପଡନ୍ତ
ମରିବାର ବେଳେ ଦୈତ୍ୟ ସେମନ୍ତ ଦିଶନ୍ତ
ଏମନ୍ତେ ଶ୍ରୀରାମ ଦୁଇଦଣ୍ଡ ଯୁଦ୍ଧକଲେ
ଦଶକୋଟି ରଥଯୋଧା ମାରିପକାଇଲେ ।
ଅଶୀ ସହସ୍ର ହସ୍ତୀ ତେଇରାଶି ସହସ୍ର ଅଶ୍ୱ
ପଞ୍ଚାଶକୋଟି ପାଦାନ୍ତ ପଡ଼ିଲେ ରାକ୍ଷସ ।
ଅପୂର୍ବ ସମର ଯେ ଦେବଙ୍କୁ ଅଗୋଚର
ଏହିକଥିରେ ମାଇଲେ ସୁମିତ୍ରା କୁମର ।
ବିଭୀଷଣ ସୁଗ୍ରୀବ ଆବର ଋକ୍ଷକପି
ନଳନୀଳ ଗନ୍ଧମାଦନ ଏ ପ୍ରଭୃତି ।
ଅଙ୍ଗଦ ଦୁର୍ବିଦ କୁନ୍ଦ ମହେନ୍ଦ୍ର କୁମୁଦ
ସାରସ ପାରସ ଶ୍ୱେନ ଶତବଳ ଗନ୍ଧ ।
ଗବଏ ଗବାକ୍ଷ ଶରଭେଣ୍ଡୁ ଶତବାଳି
ଋକଜେ ଜରଜର ରଣରଙ୍ଗେ କେଳି ।
କେଶରୀ ପବନ ପନଶିଳ ପାରିଜାତ
ଏ ଯୁଦ୍ଧକରି ମାଇଲେ ଅନେକ ଦଇତ ।
ବସନ୍ତ ସମ୍ପାତି ଯେ ଚନ୍ଦନ କାଳିଞ୍ଜନ
ଯୁଦ୍ଧକରି ମାଇଲେ ଅନେକ ସଇନ ।
ଘୋରଯୁଦ୍ଧ କରିଣ ଅସୁର ବଳ ଦଳି
ରଥ ଗଜ ଅଶ୍ୱସବୁ କରୁଡ଼ନ୍ତ ତୋଳି ।
ପବନର ନନ୍ଦନ ଅନେକ ଯୁଦ୍ଧକଲେ
ବେନି କୋଟି ରଥ ସେ ତୋଳି କରୁଡ଼ିଲେ ।
ପଞ୍ଚାଶକୋଟି ହସ୍ତୀ ଷୋଳଶଲକ୍ଷ ଅଶ୍ୱ
ମହାଘୋର ଯୁଦ୍ଧେ ମାଇଲେ ପବନର ଶିଷ୍ୟ
ସୁରପୁରେ ପ୍ରଶଂସା କରନ୍ତି ଦେବଗଣ
ଧନ୍ୟ ଧନ୍ୟ ତୋରବୀରପଣ ହନୁମାନ ।
ଆନବଳେ ନୋହିବ ଏମନ୍ତ ଯୁଦ୍ଧକରି
ଭଗବାନ ଅଂଶେ ତୋର ଦେହେଅଛି ପୂରି
ବେନ୍ତୁବେଳ ଯୁଦ୍ଧେ ମତ୍ତ ପବନନନ୍ଦନ
ଅସମ୍ଭାଳ ହୋଇଣ ପଳାନ୍ତି ଦୈତ୍ୟସୈନ୍ୟ
ସୈନ୍ୟନାଶଯାନ୍ତେ ତା ଦେଖିଲେସେନାପତି
ହକାରନ୍ତି ସମରେ ଅଇଲେ ଦୁଇପତି ।
ମାର ମାର ତାହାଙ୍କୁ ନକର କିଛି ଭୟେ
ପଛେ ଆସୁଛନ୍ତିଟି ଦଶାନନ ରାଏ ।

ଏତେବୋଲି ଧାଇଁଲେ ଶୀଘ୍ରଗତିକରି
ଏକୁଆରେକ ନାରାଜ ହାଣନ୍ତି ମନସରି ।
ଏହାଦେଖି ଆଗକୁ ଧାଇଁଲେ ରାମରାଣ
ଧନୁର୍ଗୁଣେ ବସାଇଲେ ଖଣ୍ଡଦଶବାଣ ।
ପେଷିଲେକ ନାରାଜକୁ ମନ୍ତ୍ରିଣ କଟକେ
ଚଳିଲେ ଦଶଶର ଚକ୍ଷୁର ଟମକେ ।
ଦଶସେନାପତିଙ୍କର ଶିରକାଟି ଖରେ
ପ୍ରବେଶ ହୋଇଲ ଆସି ଶ୍ରୀରାମ ତୋଣରେ
ଲକ୍ଷଣ ସନ୍ଧତେ ତାହା ଜାଣି ନପାରିଲେ
ପଛେଁ ସେ ମୁଣ୍ଡମାନେ ତଳରେ ନପଡ଼ିଲେ ।
ସାରଥି ଏହା ନ ଜାଣି ବାହଇ ବିମାନ
ଟେକଟେବେଳେ ଉପରୁ ପଡ଼ନ୍ତି ମୁଣ୍ଡମାନ ।
ଦେବଗଣ ନ ଜାଣନ୍ତି ଛିଡ଼ିଲା ନ ଛିଡ଼ିଲା
ପଛେଁ ସେ ମୁଣ୍ଡମାନ ଭୂମିରେ ନପଡ଼ିଲା ।
ତାହାଦେଖି ସମସ୍ତେ ହୋଇଲେ ଆଶ୍ଚର୍ଯ୍ୟ
ପ୍ରଶଂସନ୍ତି ଧନ୍ୟ ଧନ୍ୟ ରଘୁବଂଶ ରାଜ ।
ଧନ୍ୟଧନ୍ୟ ରାମଚନ୍ଦ୍ର ତୁମ୍ଭର ବୀରପଣ
ଦେଖି ନପାରିଲୁଁ ତୁମ୍ଭେ ହାଣିଲ ଯେଉଁବାଣ
ଧନ୍ୟ ସେ ନାରାଜ ତାକୁ ପ୍ରତିଶର ନାହିଁ
ମୁଣ୍ଡମାନ ଛିଡ଼ିଏବେ ପଡ଼ୁଛନ୍ତି ମହୀ ।
କୁମ୍ଭାର ଯେହ୍ନେ ଚକ୍ରରେ ଘଟାଦି ନିର୍ମାଣଇ
ଛେଦନକରେ ତାହାକେବେହେଁ ଜଣାନୋହି
ଚେଧନକ ପ୍ରାଏ ତୁମ୍ଭେ ମାଇଲ ଦଶଶର
ଏବେଯେ ସେହି କନ୍ଧରୁ ଛିଡ଼ୁଅଛି ଶିର ।
ଏଥୁଅନନ୍ତରେ ଉମା ଶୁଣ ରସବାଣୀ
ସେନାପତିମାନଙ୍କୁ ମାଇଲେ ରଘୁମଣି ।
ପଡ଼ିଲେକ ସଂଗ୍ରାମରେ ଦଶସେନାପତି
ହସ୍ତୀକର୍ଣ୍ଣ ସ୍ତୁଳକେତୁ ବିରାକ୍ଷ ପ୍ରଭୃତି ।
ଦ୍ୱିପୃଶିର ସଙ୍କୁନ ଯେ ବଜ୍ରଦଂଷ୍ଟ୍ରବୀର
ଦୁମଦ ଶତ୍ରୁଜିତ ବିରୂପାକ୍ଷ ଅସୁର ।
ଏମାନେ ଷଣ୍ଡି ପଣରେ ରାବଣ ସମାନ
ଲୀଳାଯୁଦ୍ଧେ ଏହାଙ୍କୁ ମାଇଲେ ଦେବରାମ ।
ଏହାଙ୍କର ସଙ୍ଗରେ ଅନେକ ସୈନ୍ୟମଲେ
ରାବଣକୁ କହିବାକୁ ଚରମାନେ ଗଲେ ।
ଆର ସେନାପତି ସୈନ୍ୟ ଯୁଦ୍ଧ କରୁଛନ୍ତି
ଦଶମୁଖ ଆଗେଯାଇଁ ଡ଼ଗର କହନ୍ତି ।

ହେଉଦେବ ହେ ଦଶାନନ ଦୈତ୍ୟକୁଳ ସାଇଁ
ଦଶସେନାପତି ଯୁଦ୍ଧେ ପଡ଼ିଲେ ଗୋସାଇଁ ।
ହେଉଦେବ ଏବେ ତୋହର ସମ୍ମୁଳ ସଇନ
ରାମଚନ୍ଦ୍ର ସଙ୍ଗେ କେହି ନୁହନ୍ତି ସମାନ ।
ରଥଗଜ ଅଶ୍ୱ ପାଦାନ୍ତି ଲେଖାନାହିଁ
ଦୈତ୍ୟଙ୍କ ରୁଧିରେ ବହଇ ଦେବ ନଈ ।
ଏହାଶୁଣି ତବଦ ହୋଇଲା ଲଙ୍କପତି
ମନେ ରାମଚନ୍ଦ୍ରଠାରେ କଲା ମହାଖ୍ୟାତି ।
ସଜହୋଇ ନବରତ୍ନ ହାତେ ରହିଥିଲା
ଅମାବଇ ଜଗତ୍ରୁ ମୁଁ ଯିବଇଁ ବସ୍ତୁଭଳ ।
ନଷ୍ଟଚନ୍ଦ୍ର ସେଦନର ଅର୍ଦ୍ଧ ହେଉଗହୁଏ
ଛଳିଁଥାଇ ସଇନ ପେଶଇ ଲଙ୍କସ୍ୱଏ ।
ଏସନ ସମୟେ ଯାଇଁ ଜଣାଇଲା ଚର
ଶୁଣିଲାକ ରାବଣ ସୈନ୍ୟର ଅପହାର ।
ଘୋରଚିନ୍ତା କରଇ ସେ ମନେ ମନେ ଭାବ
ଶତେଜୟୁଣ ଲଙ୍କାରେ ପଡ଼ିଲା ହାଲହୋଳ ।
ଯହୁଁ ସେ ବାରତା ପାଇଲେ ଲୋକେ ମଲେ
ଯେ ଯାହାର ଇଷ୍ଟବନ୍ଧୁ ସୁମରି ଶୋକକଲେ
କେବୋଲଇ ମାମୁଁ ପିତା କେବୋଲଇ ଦାଦ
ଋକ୍ଷମର୍କଟଙ୍କ ସଙ୍ଗେ ଅକାରଣେ ବାଦ ।
କେବୋଲଇ ସ୍ୱାମୀ କେବୋଲଇ ଅଜାପିତା
କେ କପୋଳେ କରମାର ସୁମନ୍ତ ବଧାତା ।
କେବୋଲଇ ପୋଡ଼ୁ ରାଜ୍ୟ ଏଠାବଡ଼ୁ ଯିବା
ଆଜ ଏଥିରେ ରହିଲେ ନଷ୍ଟଯେ ନାଶଯିବା
ଅନମିତେ ଅର୍ଜିଣି ଅର୍ଜିଲା ଦଶଶିର
ଆଣି ଭୋଗକରି ନପାରିଲା ସେତୁ ନାଶ ।
କେବୋଲଇ ବଇଦେହୀ ଅତ୍ୟନ୍ତ ସୁନ୍ଦର
ଛତୁଁ ତ ଅଧିକନାଶ ଅଛନ୍ତି ଏହାର ।
କେହୁ ବୋଲେ ରାମଚନ୍ଦ୍ର ବିଷ୍ଣୁ ଅଂଶେ ଜାତ
ସାକ୍ଷାତରେ ମହାଲକ୍ଷ୍ମୀ ଜନକ ଦୋହିତ ।
କେହୁ ବୋଲେ ଦଶାନନ ଜଗତ ବଇରି
କପଟରେ ବଧାତା ହରିବ ଏହା ଶିରି ।
ମାୟାବୁଦ୍ଧି ଯେ ଥିଲା ଏହାର କାହିଁ ଗଲା
ଯେଉଁ ମାୟାରେ ଏ ଦେବଗଣଙ୍କୁ ଜିଣିଲା ।
ନରବାନର ଗ୍ରାସକୁ ନ ପାରିଲୁ ଜିଣି
କମ୍ପାଇ ଆଣିଲୁ ଆନେ ଶ୍ରୀରାମ ଘରଣୀ ।

ପୋଡ଼ୁ ପୋଡ଼ୁ ଏ ଦୁଃଖକୁ ନଦେଖିବା ଆଉ
ସଗୋଷ୍ଠ ମରାଇ ଏକା ଥାଉ ବଂଶବାହୁ ।
ଖାଇକରି ଆମ୍ଭେମାନେ କରିବା ଏଥିକସ
ରାଜ୍ୟ ଏବେ ରଣ ମଧ୍ୟେ ଦେବା ସର୍ବେ ଝାସ
ପରର ରମଣୀକି ଚୋରାଇ ଆଣିଲା
ତହିଁର ଫଳରୁ ସିନା ଏମାନ ହୋଇଲା ।
ଧନ୍ୟ ଧନ୍ୟ ରଘୁନାଥ ବଂଶ ତୋର ପିତା
ଧନ୍ୟ ତୋତେ ଉଦରେ ଧରିଲା ଯେଉଁମାତା
ଧନ୍ୟ ଧନ୍ୟ ସୁନ୍ଦର ତୁ ଯୁବା କାମ ମୂର୍ତ୍ତି
ତୋତେ ବହିଅଛି ଏହୁ ଧନ୍ୟ ଧନ୍ୟ କ୍ଷିତି ।
ତିନପୁରେ ନାହିଁ କେହି ତୋହର ସରିଏ
ଧନ୍ୟ ତୋର ନାରାଚ ଅସୁର ରକ୍ତଖାଏ ।
ଦୁଇଭାଇ ତୁମ୍ଭେ ଅଟ ମହାଧନୁର୍ଦ୍ଧର
ଦଣ୍ଡକାରଣ୍ୟେ ମାଇଲ ଅନେକ ଅସୁର ।
ଖର ଦୂଷଣ ତ୍ରିଶିରା ଖାବନେ ମାଇଲ
ନାସାକର୍ଣ୍ଣ ଛେଦ ସୂର୍ପଣଖିକ ଦଣ୍ଡିଲ ।
ଏବେ ଆସି ଏ ପୁରେ ଉଆଇଅଛ ଏହା
ଋକ୍ଷ ମର୍କଟରୁ ଅନ୍ୟ ସଙ୍ଗେ ନାହିଁ ସାହା ।
ମହାଭୋକୀ ପିରୁଶୁଣି ଅଟଇ ଜାନକୀ
ଦୈତ୍ୟଙ୍କୁ ଖାଇବ ବୋଲି ଅଇଲା ଏଥିକି ।
ଏହାଙ୍କୁ ଖାଇଲେ ତାର ନହାଇ ପେଟପୂର
ବଂଶ ସୈନ୍ୟ ଖାଇ ସେ ଖାଇବ ଦଶଶିର ।
ଏହାକୁ ସ୍ନେହେ ଧାତା ଅଭୟେ ବରଦେଲା
ଦୁଷ୍ଟପଣ ନ ସହି ଏ ବୁଦ୍ଧି ଉଆଇଲା ।
ମହାତପେ ମନାଇ ଏ ବର ଅଛି ପାଇ
କେବାସୁରେ ନଷ୍ଟେ ଜିଣି ନପାରିବେ କେହି
ଜାଣିଲେ ଏ କାହାର ହାତରେ ନ ମରିବ
ତେଣୁକରି ଅବତାର ହୋଇଲେ ମାଧବ ।
ଦେବ ଅଂଶେ ଜାତ ହେଲେ ଋକ୍ଷକପିମାନେ
ତେଣୁକରି ବିନାଶ ଏ ନୁହନ୍ତି ରଣେ ।
ଜାଣନ୍ତିକି ହନୁମାନ ଯାହା କରିଗଲା
ଅକ୍ଷୟକୁମାର ଜମ୍ବୁମାଳୀ ମାଇଲା ।
ଲଙ୍କାପୋଡ଼ି ସୀତାକଥା କହିଲା ରାମଙ୍କୁ
ତେଣୁକରି କଟାକାଇ କଲ ସେ ଏଥକୁ ।
ଋକ୍ଷକପି ବଳରେ ଜୟ ହୋଇପାରେ ବନ
ଏହା କମ୍ପା ବନ୍ଧୁର ନଜରେ ଦଶକନ୍ଧ ।

ଦଶାନନ ହୀନଦଶା ସମୟକୁ ଜାଣି
ନୋହିଲେ କ ଗିରବର ନ ବୁଝିଲ ଗାଣି ।
ଏସନେକ ବୋଲଣ ବୋଲନ୍ତି ପୁରଜନ
ଶୁଣିକର ମହାକ୍ରୋଧ ହୋଇଲ ଦଶାନନ ।
ମତ ଜନମତ ତୁମ୍ଭେ ଯାଅ ବେନଖରେ
ଚତୁପାଶ୍ୱେ ସାଜବେନେ ଅଛ ଯେତେବୀରେ
ସୈନ୍ୟଙ୍କୁ ଆଦେଶ ଋକ୍ଷକପିବଳ ମାର
ସମସ୍ତେ ଥାଇ ଦେଖିବ ଆଜଯୁଦ୍ଧ ମୋର ।
ନଗ୍ରଲୋକଙ୍କର ଯେତେ ଦୁଃଖ ପାଶୋରାଇ
ତେବେସେପ୍ରତାପେଲଙ୍କେଶ୍ୱର ମୁଁ ବୋଲାଇ
ଦଶକୋଟି ବଳ ସଙ୍ଗତରେ ତାର ଥିଲେ
ଯୁଦ୍ଧକୁଯାଅ ବେଗେ ରାବଣ ଆଜ୍ଞାଦେଲେ ।
ଆପଣେ ରତ୍ନମୟେ ବିମାନେ ବସିଅଛି
ଆଠଶତ ତୁରଙ୍ଗ ସେଥିରେ ଅଛିଯୋଚି ।
ହିରଣ୍ୟକଶିପୁ ପ୍ରାଏ ଶରୀର ଦିଶଇ
ଚଳଯାନ୍ତେ ମେଦିନୀ ଯେ ତଳକୁ ଲସଇ ।
ବିକଟାଳ ଛନ୍ଦେ ଯେ ଟମକ ନିଶାଣ
ଭେରିତୁରୀ ଶବଦ ଶୁଭଇ ଅପ୍ରମାଣ ।
ପୃଥ୍ୱୀଦେବୀ ଟଳଟଳପର୍ବତ ଥରହର
ଆକାଶରେ ନକ୍ଷତ୍ର ଖସଇ ଦିନକର ।
ରଥଙ୍କର ଘୋଷ ଯେ ଅଶ୍ୱଙ୍କ ମୁଖଧ୍ୱନି
ହେଳ ଘେନୁଅଛି ଏହୁ ଜଗତ ମେଦିନୀ ।
ଛତ୍ରଦଣ୍ଡ ଆଲମ୍ବ ବିମଳ ପନ୍ତ ପନ୍ତହୋଇ
ଦେଖି ଲଙ୍କା ଲୋକମାନେ ବିସ୍ମରନ୍ତି ରହି ।
ବିସ୍ମରନ୍ତି ଆଜ ନଷ୍ଟେ କଥାଏ ହୋଇବ
ଏକା ଯେ ଯୁଦ୍ଧ ବିଜୟେ କରୁଛି ଦଶଗ୍ରୀବ
ଏମନ୍ତରେ ଏକୁ ଆରେ ବଚନ କହନ୍ତି
ମଙ୍ଗଳ ବିଧାନମାନ ଆରୋପ କରନ୍ତି ।
ଦ୍ୱାରେ ପୂର୍ଣ୍ଣକୁମ୍ଭ ଦିବ୍ୟ ପୁଷ୍ପବାସ ଦେଇ
ସୁବାସ କୁସୁମ ତଥିଉପରେ ଲମ୍ବାଇ ।
ଗୁଣ୍ଡପାଶେ ସୁନ୍ଦର କଦଳୀ ଗୁରଚଛି
କୁମ୍ଭବେନ ପାଶରେ ସୁବର୍ଣ୍ଣ ବୋହିମାଛି ।
ସଧବା ନାରୀମାନେ ଘେନଣ ଅର୍ଘ୍ୟସ୍ଥାଳ
ପ୍ରଦୀପ କରେ ଘେନ ଦିଅନ୍ତି ହୁଳହୁଳ ।
ସୁଜ୍ଞ ଦ୍ୱିଜବର ଚହିଁ ସୁସ୍ୱରେ ବେଦ ପଢ଼ି
ଘଟଜଉତିଷେ ଜଣାନ୍ତି ଶୁଭଘଡ଼ି ।

ଉତ୍ତର ଗଡ଼ଦ୍ୱାରେ ବାହାର ହେଲେଥାଟ
ଋକ୍ଷମର୍କଟଙ୍କୁ ସେ ପାଇଲେଯାଇ ଭେଟ ।
ଶ୍ରୀରାମ ସୈନ୍ୟସଙ୍ଗରେ ଦୈତ୍ୟ ଯୁଝୁଥିଲେ
ଶାଳଶିଳ ପଡନ୍ତେ ବିମୁଖ ହୋଇଲେ ।
ନସତେ ହୋଇ ସର୍ବେ ଗୁଡ଼ିଲେ ସମରକୁ
କାଳଦେବତା ପରାଏ ମଣିଲେ ଶ୍ରୀରାମଙ୍କୁ ।
ଭଜପଲାବନ୍ତେ ତାଙ୍କୁ ଦେଖିଲା ରାବଣ
ଆଶ୍ୱାସନା ବଚନେ କରଇ ତିଆରଣ ।
ଆସଆସ ବାପରେ ସମର ମୋର ଦେଖ
ଯେତେଦୁଃଖ ପାଇଛ ତାହାକୁ ଉପେଖ ।
ଶୁଣିଣ ଦୈତ୍ୟ ସୈନ୍ୟ ଧାଇଁଲେ ବଳପାଇ
ରାମଚନ୍ଦ୍ର ବୋଇଲେ ଅଇଲା ଲଙ୍କସାଇଁ ।
ପୁତ୍ରଶୋକେ ଆଜ ଏ କରିବ ମହାରଣ
ଆସ୍ଥ ପଛକତ ତୁମ୍ଭେ ଥିବ ହୋ ଲକ୍ଷ୍ମଣ ।
ଦିଗପାଳେ ଯାହାସଙ୍ଗେ ଯୁଦ୍ଧକଲେ ହାରି
ଯା ପୁଅ ସଙ୍ଗେ ଯୁଦ୍ଧେ ହାରିଲେ ବଜ୍ରଧାରି
ସେ ଇନ୍ଦ୍ରଜିତ ସମରେ ହୋଇଅଛି ବଧ
ତାରଶୋକେ ଅବଶ୍ୟ କରିବ ମହାଯୁଦ୍ଧ ।
ସ୍ୱୟମ୍ଭୁବର ପ୍ରସାଦେ ଏ ଅଜୟେ ଦନୁଜ
କେହି ସହି ନ ପାରନ୍ତି ଏହାର ନାରଜ ।
ଏସନେକ ଲକ୍ଷ୍ମଣଙ୍କୁ କହନ୍ତେ ଶ୍ରୀରାମ
ଦୈତ୍ୟବଳ ଆସି କଲେ ବିଷମ ସଂଗ୍ରାମ ।
ଦେଖି ଆଗଭର ହେଲେ ରଘୁବଂଶ ସାଇଁ
ଯୂଥପତିଙ୍କ ମଧ୍ୟେ ଲକ୍ଷ୍ମଣ ରଖାଇ ।
ଦେଖି ତାହା ହନୁମାନ ଜାମ୍ବବ ସୁଷେଣ
ସୁଗ୍ରୀବ ନଳନୀଳ ସହିତେ ବିଭୀଷଣ ।
ଶ୍ରୀରାମ ଋକ୍ଷକପିମାନଙ୍କୁ ଆଜ୍ଞାଦେଲେ
ରାବଣର ଆଗେ ତୁମ୍ଭେ ଯାଅସି ବୋଇଲେ ।
ମଲ୍ଲ ମହାମଲ୍ଲମାନେ ଯାଅ ବେଗ ହୋଇ
ଆମ୍ଭର ଆଗକୁ ତାକୁ ଆଣସି କଢ଼ାଇ ।
ଏହା ଶୁଣି ଋକ୍ଷକପି ସମସ୍ତେ ଧାଇଁଲେ
କଳକଳା ସିଂହନାଦ ଘଡ଼ିମାନ ଦେଲେ ।
ହାତେ ତରୁଶିଳ ମହାବିକରାଳ ମୁଖ
ମାରମାର ବୋଲନ୍ତି ଯେ ଏକକୁ ଆରେକ ।
ଯେଣୁ ତାଙ୍କୁ ରଘୁନାଥ ଅଛନ୍ତି ଆଜ୍ଞାଦେଇ
ତେଣୁ ତାହାଙ୍କର ମନେ ଭୟ କିଛି ନାହିଁ ।

ଦଶାନନ ବିମାନ ଉପରେ ଯାଇଁ ଉଠି
ମହାକ୍ରୋଧେ ଚଳୁଥିଲ କଲେନେଇ ଦୃଷ୍ଟି ।
ଦେଖି ଦଶାନନରାଏ ମହାକୋପ କଲ
ଦଶଭୁଜେ ଧନୁଧରି ନାରାଚ ବନ୍ଧିଲ ।
ଘୋରରଡ଼ି ଦେଇ ପୁଣ ଟଙ୍କାର କରଇ
କୋପେ ରୁହିଁ ବାନରଙ୍କୁ ବଚନ କହଇ ।
ହୀନଜୀବ ତୁମ୍ଭେହାନ ଲଭକୁ ନଜାଣ
ଏହିକ୍ଷଣି ସର୍ବେ ତୁମ୍ଭେ ହରାଇବ ପ୍ରାଣ ।
ଏତେବୋଲି ରାବଣ ବନ୍ଧିଲା ତୀକ୍ଷ୍ଣଶର
ବେନଖଣ୍ଡ ହୋଇଗଲେ ପଡ଼ିଲେ ବାନର ।
ଯେତେଋକ୍ଷକପି ରଥପରେ ଉଠିଥିଲେ
ରାବଣର ନାରାଚ ସେ ସହି ନପାରିଲେ ।
ଯୁଝି ପଳାଇଣ ସେ ପଶିଲେ ନଜଥାଟେ
ସେନାପତିମାନେ ଆସି ଓଗାଳିଲେ ବାଟେ ।
ପୁଚ୍ଛନ୍ତି ସେ କପିବର ମୁଖକୁ ଅନାଇ
କହ କାହାହେତୁ ତୁମ୍ଭେ ଅଇଲହ ପଳାଇ ।
କପିମାନେ କହନ୍ତି ରାବଣ ମହାବୀର
ସହି ନ ପାରିଲୁଁ ଆମ୍ଭେ ତାହା ତୀକ୍ଷ୍ଣଶର ।
ସେନାପତିମାନେ ବୋଲନ୍ତି ରେ ଆସଭାଇ
ଏହିକ୍ଷଣି ଦେଖିଣ ମାରିବା ଲଙ୍କସାଇଁ ।
ଶୁଣିକରି ପାଳଟିଲେ ଋକ୍ଷକପିବଳ
ଅସୁରଙ୍କୁ ମାରନ୍ତି ସେ ଘେନ ତରୁଶିଳ ।
ସେନା ଯୂଥପତିମାନେ ଧାଇଁଲେ ଆଗସରି
ପାଦଭରରେ ଟଳଟଳ କମ୍ପଇ ବସୁନ୍ଧରୀ ।
ଏହାଦେଖି ଦଶଗ୍ରୀବ ବିଚାରଇ ମନେ
ମୋହର ସଙ୍ଗେ ସମର କରିବେ ଏମାନେ ।
ସାମାନ୍ୟ ଲଜ୍ଜା ଏ ବିଧାତା ମୋତେ ଦେଲ
ମେଘନାଦ ମରନ୍ତେ ଭରସା ଏତେହେଲ ।
ବ୍ରହ୍ମାଣ୍ଡରେ ମୋତେ କେହି ସମସରି ନାହିଁ
ମୋହର ପ୍ରତିଜ୍ଞାମାନ ନ ଜାଣନ୍ତି ଏହି ।
ମୋରମୁଖ ଦେଖିଲେ ଡ଼ରଇ ଜନ୍ତୁପତ
ଋକ୍ଷକପି ଛାର ଆଗରେ ଲଢନ୍ତି ।
ସାମାନ୍ୟ ଭରସାକି ବୋଲିବା ଏହାଙ୍କର
ଏହିକ୍ଷଣି ସମସ୍ତେ ଯିବେ ଯମପୁର ।
ଭାଇପୁଅ ବନ୍ଧୁ ସୈନ୍ୟଯେବେ ମୋରମଲେ
ମୋର ତହୁଁବଳ ପ୍ରାକର୍ମ କି କାଢିନେଲେ
ନ ଜାଣି ଏ ଋକ୍ଷକପି ଆସନ୍ତି ଧାଇଁ
ତିନପୁରେ ବାନାମୋର ଅଟଇ ବିଜୟୀ ।
ଅଗ୍ନିରେ ନ ପଡ଼ଇ ମୁଁ ନ ବୁଡଇ ଜଳେ
ଯୁଦ୍ଧେ ନ ହାରଇକ ନ ଛୁଡଇ କରବାଳେ
ଦେବଦାନବ ଯକ୍ଷ କନ୍ନରେ ନୋହେ ନାଶ
ମସ୍ତକ କାଟିଲେ ମୁଁ ନୋହିବ ବିନାଶ ।
ଏହିକ୍ଷଣି ପକାଇବି ପୃଥ୍ୱୀ ଉସାଡଲେ
ସୁରପୁର ନେଇ ମୁଁ ରଖିବି ପାତାଳେ ।
ମେରୁଗିରି ଚୂରି ମୁଁ କରିବି ମସିଗୁଣ୍ଡା
ଏ ଚଉଦ ଭୁବନେ ଅଗ୍ରଣି ମୋରଝଣ୍ଡା ।
ମୋହସଙ୍ଗେ ଯୁଝିବେ ଏ ହୀନଜୀବମାନ
ଋକ୍ଷକପି ଛାରସିନା ଅଟନ୍ତି ଅଜ୍ଞାନ ।
ତୁଚ୍ଛଦୈତ୍ୟପ୍ରାୟେ ମୋତେ ବୁଝିଛିରଘୁନାଥ
ଏହିକ୍ଷଣି ସମସ୍ତଙ୍କୁ କରିବି ମୁଁ ହତ ।
ଏତେବୋଲି ଧନୁରେ ବନ୍ଧିଲ ତୀକ୍ଷ୍ଣବାଣ
ବେଗେମନ୍ତ୍ରୀ ବନ୍ଧିଲ ଶବଦ ଚଉଠାଣ ।
ସେନାପତିଙ୍କର କରେ ଯେତେ ଶସ୍ତ୍ରଥିଲା
ନିଃଶ୍ୱାସକେ ରାବଣ କାଟି ପକାଇଲା ।
ଆଗ ହୋଇଥିଲେ ବେନ ଗନ୍ଧମାଦନ
ଅଠର ଶର ତାଙ୍କୁ ବିନ୍ଧିଲା ଦଶାନନ ।
ନଳକୁ କୋଡ଼ିଏ ଗବାକ୍ଷକୁ ପଞ୍ଚତିଂଶ
ଦ୍ୱିବିଦେ ମବୃଶ ବିନ୍ଧେ ଋଷଭେ ତିରିଶ ।
ପବନକୁ ବୃକଣ ସାରସେ ଅଣବୃଶ
ଗବୟକୁ ସତୁରି ଯେ ଅଙ୍ଗଦେ ପଞ୍ଚବିଂଶ ।
ତାରକ୍ଷକୁ ତିନ ପନଶିଲେ ଅଠମାର
ସୁଷେଣ ଉପରେ ଷାଠିଏ ନାରାଚ ପ୍ରହାର ।
ଦଶକାଳ ବୃଦ୍ଧକୁ ମାଇଲା ଦଶଶର
ଧୂମ୍ରକ୍ଷକୁ ଅଶୀ ପ୍ରଦ୍ୟୁମ୍ନକୁ ସେ ଏଗାର ।
କେଶରୀ କୁମୁଦକୁ ଯେ ଷାଠିଏ ଷାଠିଏ
ମହେନ୍ଦ୍ରକୁ ବୃକଶ ବିନ୍ଧିଲା ଲଙ୍କରାଏ ।
ବସନ୍ତ ସେନାକୁ ସେ ଚଉଦ ବାଣମାରି
କାଳମୁଖ ଉପରେ ସେ ପ୍ରହାରେ ସତୁରି ।
ଡାନମ୍ବକୁ ଅଶୀ ଶତବାଳକ ସେ ଶଏ
ପ୍ରଭବକୁ ପାଞ୍ଚବାଣ ବିନ୍ଧେ ଲଙ୍କରାଏ ।
ହବଧକୁ ପଞ୍ଚଦଶ ଷୋଳ କଞ୍ଚଣକୁ
ଡ଼ାକହାକ ନାରାଚ ବନ୍ଧଇ ଉପରକୁ ।

ସମସ୍ତେ ଋକ୍ଷକପିଙ୍କ ଭିନ ଭିନ କାଣ୍ଡ
ପୁଣ ପୁଣ ପେଶଇ କୋଧରେ ପ୍ରଚଣ୍ଡ ।
ଘନଘନ ସିଂହନାଦ କରେ ଦଶଶିର
ସଙ୍କଟ ମଧ୍ୟରେ ଶ୍ରୀରାମ ସୈନ୍ୟଙ୍କୁ ସଂହାରି ।
କ ହାପୃଷ୍ଠେ କାହା ଶିରେ ଚରଣେ କାହାର
ସମସ୍ତଙ୍କ ଶରୀର ରୁଧିରେ ଜରଜର ।
କାହାଚକ୍ଷୁରେ କାହା ଲଲାଟ କାହାପେଟେ
ଘାତପାଇ ବାନରେ ପଳାନ୍ତି ଛଟପଟେ ।
ଥୋକାଏ ସୈନ୍ୟ ଆଉ ନପାରିଲେ ଚଳି
କାହାର ଶରୀରେ ଏଣେତେଣେ କାଣ୍ଡଗଳି ।
ସେମାନଙ୍କ ଦେହରୁ ଜୀବନ ଗଲାଛାଡ଼ି
ଥୋକାଏ ବାନର ସୈନ୍ୟ ମଲେ ମଡ଼ାମଡ଼ି ।
ଶ୍ରୀରାମରେ ଶରଣ ପଶିଲେ ଯାଇ ବଳ
ଦେଖିକରି ଧାଇଁଲେ ଯେ କିଷ୍କିନ୍ଧ୍ୟା ଭୂପାଳ
ଏକା ଏ ଅସୁରବଳ ସଂହରୁ ଏ ଥିଲା
ନଳନୀଳ ଗଜବାରୁ ଦେଖି ସେ ଧାଇଁଲା ।
ଦକ୍ଷିଣ ହସ୍ତେ ତାର ଅଛଇ ଗିରିବରେ
ଅଛିବଡ଼ ଶାଳବୃକ୍ଷ ଧରି ବାମକରେ ।
ଆସନ୍ତେ ଦଇତସୈନ୍ୟ ପଳାନ୍ତି ଏଣେତେଣେ
ଦେଖି ବିରୁପାକ୍ଷ ଧାଇଁ ଓଗାଳିଲା ରଣେ ।
ସୁଗ୍ରୀବର ଉପରେ ତୀକ୍ଷ୍ଣଶର ବୃଷ୍ଟି କଲା
ମୁଣ୍ଡପୋତି କପିରାଜ ସମସ୍ତ ସହିଲା ।
ରୋମମୂଳେ ନାରାଜ ପଶିଣ ରକ୍ତଆନ୍ତି
ରଣଭୂମି ଅନ୍ଧକାର କେହି ନ ଦିଶନ୍ତି ।
ମହାକୋପେ କପିରାଜା ତରୁଶିଳ ଧରି
ଦୁଇ ଆୟୁଧକୁ ଏକା ବେଳକେ ପ୍ରହାରି ।
ବିରୁପାକ୍ଷ ଛେଦିଲା ତା ବାଣେ ନାରାଜ
ମହାଲଜ୍ୟା ପାଇଲା ବାନର କୁଳରାଜ ।
ହନମିଣ ଗତିକରି ସେ ପର୍ବତେ ମାଇଲା
ବିରୁପାକ୍ଷ ରଥ ଶତେଖଣ୍ଡ ହୋଇଗଲା ।
କୋପଭରେ ରଥଅଶ୍ୱଙ୍କୁ ରଥବଧୀ ମାରି
ସେହାତେ ଘୋଡ଼ାମାନେ ଶୋଇଲେ ପ୍ରାଣହାରି
ସାରଥିକ ରଥଗୋଡେ ମାରି ମୁଣ୍ଡକାଟି
ରଥଛାଡ଼ି ପିଣ୍ଡ ତାର ମହୀପରେ ଲୋଟି
ବିରଥି ହୋଇକରି ସେ ବିରୁପାକ୍ଷ ବୀର ।
ନାଗକେଳ ବନ୍ଧିଲା ସେ ମତ୍ତଗଜକାର

ଧାଇଁଲାକ କରିବର ଘୋରନାଦ କରି
ଧାଇଁବେଗେ କପିରାଜ ଦନ୍ତବେନ ଧରି ।
କପୋଳରେ ନଧାଏ ମାଇଲା ସେହୁ ନେଇ
ପ୍ରାଣଛାଡ଼ି ସେକ୍ଷଣି ପଡ଼ିଲା ସେ ଭୂଇଁ ।
ଦେଖି ବିରୁପାକ୍ଷ ବେଗେ ଧାଇଁଲା ଧନୁସଙ୍ଗେ
ରଣଭୂମି ଅନ୍ଧକାର କଲାକ ନାରଜେ ।
ଅତର୍କି ମହାଯୁଦ୍ଧ ଦେଖିଲେ କପୀଶ୍ୱର
ଛଡ଼ାଇଣ ଶୃଙ୍ଗ ପକାଇଲେ ଧନୁଶର ।
ଗଦାଏକ କରେ ଧରି ବିରୁପାକ୍ଷ ଧାଏଁ
ତାହାବେଗେ ଉଛୁଳ ପକାଏ କପିରାଏ ।
ସେକାଳେ ସୁଗ୍ରୀବର ମହାଶିଳ ଘେନି କରେ
ବୁଲାଇଣ ପିଟିଲେ ସେ ଦଇତ ଉପରେ ।
ଶତେଖଣ୍ଡ ହୋଇଗଲା ମହତ ପଥର
ଟହ ଟହ ହୋଇଣ ହସଇ ନିଶାଚର ।
ମହାଲଜ୍ୟା ପାଇଲା କ ରୋମାଦେବୀ ସାଇଁ
ଉବୁର ରଥପୋଡ଼େକ ମାଇଲା କୋପେନେଇ
ବିରୁପାକ୍ଷ ମସ୍ତକେ ପଡ଼ିଲା ବଜ୍ରଘାତ
ପ୍ରାଣଛାଡ଼ି ଭୂମିରେ ପଡ଼ିଲା ଦଇତ ।
ପ୍ରତକ୍ଷ୍ୟରେ ନୟନେ ତା ଦେଖିଲା ରାବଣ
ବନ୍ଧୁରଇ ସୁଗ୍ରୀବର ବାଳ ସରି ଯାଣ ।
ମତ ଦଇତକୁ ସେହୁ ପାଶକୁ ରାଇଲା
କପି ନଲକ୍ଷଣ ଦେଖ ଏଡ଼େ କର୍ମ କଲା ।
ତୁ ମୋହର ଗ୍ରାଇମମ ତୋତେ କଲି ଆଣ
ଋକ୍ଷ ମର୍କଟଙ୍କୁ ତୁହି ବେଗ କରି ନାଶ ।
ଶୁଣି ମତବୀର ବେଗେ ଧୂଆଁଇଲା ରଥ
ତାହାଦେଖି ପଳାଇଲେ ବାନର ସମସ୍ତ ।
ଗୋଡ଼ାଇଣ ନାରାଜ ବର୍ଷଇ ମତବୀର
ଗିରିବର ସମାନ ତା ଏକୁ ଏକ ଶର ।
ଅନଳ ପ୍ରାଏକ ଦିଶେ ଶସ୍ତ୍ରଙ୍କର ତେଜ
ଦେଖିତାହା ବେନବଳ ହୋଇଲେ ଆଶ୍ଚର୍ଯ୍ୟ
ମତଗଜ ଯେସନେକ ପଦ୍ମବନ ଭଙ୍ଗେ
ଏକାକେ ରାମଚନ୍ଦ୍ର ସଇନ ଗଞ୍ଜେ ।
ପଡ଼ିଲେକ ଋକ୍ଷକପି ନବଞ୍ଜନ ହୋଇ
ଦେଖି ସୁଗ୍ରୀବର ରାଜା ମହାକ୍ରୋଧେ ଧାଇଁ ।
ମହାଶାଳ ତରୁବର କରେ ଶୋଭାପାଇ
ଧାଇଁଛୁ ସୁଗ୍ରୀବର ଘୋର ରଡ଼ି ଦେଇ ।

ମତଦଇତ୍ୟ ସମୁରେ ପଡ଼ିଲେ ଯାଇଁ ଭେଟି
ଯେସନେ ଅଇରାବତ ମେରୁର ନିକଟ ।
କୋପେ କପିରାଜ ପ୍ରହାରିଲେ ଧରି ତରୁ
ନାରଜେ ନବାରିଲ ଦଇତ ତାହା ଦୁରୁ ।
କର୍ଷି ହ୍ୟାର ଠାବୁର ପିଟିଲା ନେଇଶିଳ
ଦେଖି ତାହା ଛେଦିଲା ଦଇତେ ମହାବଳ ।
ଅନ୍ୟ ଅନ୍ୟ ସମର ସେ କଟଲେକ ବହୁତ
ମହାକ୍ରୋଧରେ ଧାଇଁଲେ ଆଦିତ୍ୟର ସୁତ ।
ଖୁରଧାର ପ୍ରହାରି ମାଇଲେ ଅଶ୍ୱରଥ
ସାରଥିର ମୁଣ୍ଡମୋଡ଼ି ନଳରେ କରୁଡ଼ି ।
ବିରଥି ହୋଇଲା ସେ ମତ ମହାବୀର
ରଥବରୁ ଓହ୍ଲାଇଣ ଶୂଳଧରି କର ।
ବାନରଙ୍କ ନୃପତି ଯେ ଶୂନ୍ୟ ହସ୍ତରେ ଥିଲ
ଭଗ୍ନରଥ ଉପରୁ ସେ ଘଣ୍ଟଣେ ଆଣିଲ ।
ଦୁହେଁ ମେଲ ମେଳ ହେଲେ ରଣରଙ୍ଗସ୍ଥାନେ
ଏକାବେଳେଦୁହେଁ ପ୍ରହାରିଲେଅନ୍ୟୋଅନ୍ୟେ
ମତବୀର ଶୂଳ ସୁଗ୍ରୀବର ଦେହେ ବାଜି
ଖଣ୍ଡ ଖଣ୍ଡ ହୋଇଣ ସେ କ୍ଷଣେ ଗଲା ଭାଜି ।
କପିରାଜ ପରିଘ ବକ୍ଷସ୍ତ ଦେହେ ପଡ଼ି
ଦାନ୍ତମୋଡ଼ି ହୋଇଣ ସେ ପଡ଼ିଲକ ଜଡ଼ି
ହତ ଆୟୁଧ ହୋଇସେ ଗୁହନ୍ତି ଏଣେତେଣେ
ବହୁଜାତି ଶସ୍ତ୍ରମାନ ପଡ଼ିଅଛି ରଣେ ।
ଦୁଇବୀରେ ଖଣ୍ଡା ଫଳା ଘେନି ଯୁଦ୍ଧ କଲେ
ନାନାଯାତି ବଳାଣରେ ମନରେ ଘାଞ୍ଚିଲେ ।
ଫଳାଧରି ବୁଡ଼ିଣ ରହିଲେ ବାମପାଶେ
ଟେକାଟେକ ପାଞ୍ଚେଣୀ ଘାଞ୍ଚନ୍ତି ଅମର୍ଷେ ।
ମନମୁନ ଦୁହିଁଙ୍କି ଏକତ୍ର କରିଛନ୍ତି
ଅଗୋଚର ବୁଦ୍ଧି ଦୁହେଁ ସାଧନେ ଅଟନ୍ତି
ଦୁହଙ୍କର ପଛରେ ବାଜଇ ବୀରତୁର
କେ ଜେଣ ଯେସନ୍ତେ କେଉଁଣ୍ଡି ଯାଇ ଦୂର
କେଉଁଛିଦ୍ର ଦେଖିଣ ପେଶନ୍ତି କରବାଳ
ରଣଝଣ ଖଡ଼ଗ ଶୁଭଇ ଘରିତାଳ ।
ଖରତର ନିଃଶ୍ୱାସ ଯେ ଦମ ଦମ ବୁଲୁ
ଜେନ ପଶି କେହିମାରି ନ ପାରେ କାହାକୁ ।
ମତ ମହାବୀର ଭୂମିରେଣ ପାଦ ମାରି
ଘାତ ପାଇଲା ପରାଏ ସୁଗ୍ରୀବ ବକ୍ଷର ।

ଯାବଦନ୍ତେ ରଖିଲେ ଭୂମିରେ ଉରାଦେଇ
ମୁଣ୍ଡ ଦଶନ୍ତେଣ ଦୈତ୍ୟ ପିଟିଲା ନଠାଇ ।
ଶୁଣି ତା ସୁଗ୍ରୀବ ରାଜା ପଳାଦେଇ ଆଡ଼
ଖଣ୍ଡା ବାଜଣ ଧଣ୍ଡାସିକଲା ଗଲା ଛିଡ଼ି ।
ନାହିଁ ନାହିଁ ବୋଲିଣ ଯେ ପିଟିଲେ ସୁଗ୍ରୀବର
ବଞ୍ଚାଇ ନ ପାରି ଯେ ପଡ଼ିଲା ବାନର ଉପର
ମୁକୁଟ କୁଣ୍ଡଳ ସହିତେ ଶିର ଛିଡ଼ି
ଜୀବନ ଯାନ୍ତେ ମତ ପଡ଼ିଲା ଘୋର ରଡ଼ି ।
ରାମଚନ୍ଦ୍ର ଆନନ୍ଦ ହୋଇଲେ ତାହାଶୁଣି
ରାବଣ ପେଷିଲା ଉନମତକୁ ହକାରି ।
ଦେଖ ଦେଖ ତୋର ଭାଇ ପଡ଼ିଲା କେମନ୍ତ
ଭୁନ ହୋଇ ଦେଖ ଅଛୁ ଏତେ ତୋର ଗତ
ମହୋଦର ଜ୍ୟେଷ୍ଠଭାଇ ପ୍ରତ୍ୟକ୍ଷ ଅଟେତାତ
ଶୁଣି ରୋଷଭରେ ଯେ ଧାଇଁଲା ଉନମତ ।
ଦୁରହୁଁ ଦେଖିଲା ତାହା କପିକୁଳ ପତି
ପରିଘ ଘେନିକରି ଧାଇଁଲା ଶୀଘ୍ରଗତି ।
ଉନମତ ରଥପରେ ପିଟିଲେକ ନେଇ
ରଥ ଗୁଡ଼ି ଦୈତ୍ୟବୀର ଗଲକିମ୍ପିଳାଇ ।
ପରିଘ ବାଜି ହୋଇଲା ଯାନ ଖଣ୍ଡ ଖଣ୍ଡ
ଛେଚି ହୋଇଗଲା ରଥ ସାରଥିର ମୁଣ୍ଡ ।
ଭୂମି ପରେ ଉନମତ ଛିଡ଼ା ହୋଇଥିଲା
ଦେଖି ସୁଗ୍ରୀବର ରାଜା ବଧାଏ ମାଇଲା ।
ଉନମତ ହୃଦୟରେ ବାଜିଲାକ ଯାଇଁ
ଅଗ୍ୟାନ ହୋଇବୀର ଭୂମିରେ ମୋହଯାଇ ।
ବୁଲୁହାଡ଼ି ଝାଡ଼ିଣ ଦେହରେ ହାତପରି
ଆକର୍ଷି ସେ ପରାଣ ଲିଙ୍ଗକୁ ଘେନ ଆସି ।
ଗର୍ଜିକରି ଉନମତ ପଡ଼ିଲକ ତଳେ
ଦଶାନନ ଦେଖିଲା ତା ଏମନକ ବେଳେ ।
ସାରଥିକ ବୋଇଲା ତୁ ମୋର ମୁଖ ଚାହାଁ
ଶ୍ରୀରାମ ଲକ୍ଷ୍ମଣ ପାଶକୁ ରଥ ମୋର ବାହା
ରଘୁବଂଶ ନାଥଙ୍କୁ କରିବ ଆଜ ହତ
ଯାହାର ସଖା ଅଟଇ ସୁମିତ୍ରାର ସୁତ ।
ହନୁମାନ ଅଙ୍ଗଦ ଜମ୍ବୁବ ନଳନୀଳ
ସେନା ଯୁଥିପତି ଆଦ ରିକ୍ଷକପି ଦଳ ।
ବିଭୀଷଣ ସହିତେ ଯାହାକୁ ହୋନ୍ତି ସଖା
ସେ ରାମଚନ୍ଦ୍ର କାହିଁ ବହନ ମୋତେ ଦେଖା

ଏତେ କହି କ୍ରୋଧଭରେ କର୍ମେ ଥରହର
ଦଶଭୁଜେ ଧନୁତାର ଦଶଭୁଜେ ଶର ।
ସାରଥି ରଥବର ବାହୁଇ ଧାଡକାର
ଯେଉଁ ରଥରେ ଯୋଚିଛି ସହସ୍ରେ ହୟବର
ପବନହୁଁ ବେଗ ତାର ଯାନ ଚଳଗଲା
ରାମଚନ୍ଦ୍ର ସମ୍ମୁଖରେ ଯାଇ ରାବଣେଶ୍ୱର ହେଲା
ଦେଖି ରଘୁନାଥ ଲକ୍ଷ୍ମଣଙ୍କୁ ପୁଚ୍ଛାଇଲେ
ଧନୁର୍ଗୁଣେ ଶରଯୋଚି ଆଗକୁ ଧାଇଁଲେ ।
ଯୂଥପତିଙ୍କର ମଧ୍ୟେ ରହିଲେ ଲକ୍ଷ୍ମଣ
ଧନୁର୍ବେଦ ପଢ଼ିଣ ଚାହନ୍ତି ରାମବାଣ ।
ସହସ୍ରେକ ନାରାଚ ସନ୍ଧିଲେ ଦାଶରଥି
ଅର୍ଦ୍ଧଶର ଯେଣୁ ତା ଛେଦିଲା ଲଙ୍କପତି ।
ପୁଣି ରାମଚନ୍ଦ୍ର ବେନିସହସ୍ର ବାଣ ମାରି
କଞ୍ଚିତ ନାରାଚେ ତାହା ରାବଣ ନବାରି ।
ଦଶସହସ୍ର ବାଣ ବିନ୍ଧିଲେ ଦାଶରଥି
ପାଞ୍ଚଶର ପେଶି ତା ଛେଦିଲା ଲଙ୍କପତି ।
ଦେଖି ମହା କୋପମନ ରଘୁବଂଶ ରାଜ
ପେଶିଲେ ସେ ମହାକୋପେ ଲକ୍ଷେକ ନାରାଜ
ହାତରୁ ନ ଫିଟୁ ତା ଛେଦିଲା ଦଶଶିର
ଦେଖି ତାହା ରଘୁନାଥ କୋଟିଏ ବାଣମାରି
ନାରାଜକେ କାଟି ପକାଇଲା ଦଶାନନ
ବେଳୁ ବେଳ ସମର ଲାଗିଲା ଅନ୍ୟୋଅନ୍ୟ
ମହାଘୋର ଧନ୍ଦୋଳ ହୋଇଲା ଯୁଦ୍ଧଘୋର
ଶସ୍ତ୍ର ଆଘାତରେ ରଣ ଦିଶେ ଅନ୍ଧକାର ।
ଗୁଣ ଟଙ୍କାର ଶୁଭଇ ଘଡ଼ଘଡ଼ି ଜାଣି
ନାରାଜ ପଡ଼ଇ ଘୋର ଜଳବୃଷ୍ଟି ପାଣି ।
ସହସ୍ରାଙ୍କ ତେଜ ଯେହ୍ନେ ଝଟକେ ବିଜୁଳି
ଯେସନେକ ଗଗନେ ଉଦୟେ ତାରାବଳି ।
ଏକକାଳେ ଆରେକ ସେ ଡାକି ଶର ସନ୍ଧି
ଦୁହିଁଙ୍କର ନାରାଚେ ଗଗନ ପଥ ରୁନ୍ଧି ।
ଦଶ ସହସ୍ର ନାରାଚ ବିନ୍ଧେ ଲଙ୍କସାଇଁ
ସୂର୍ଯ୍ୟ ଦେବତା ଖସି ପଡ଼ିଲେ ଯେହ୍ନେ ଭୁଇଁ
ଜଗତ ଛନ୍ନ ଛନ୍ନ ଦିଶଇ କାଣ୍ଡ ତେଜେ
ରଘୁନାଥ ଛେଦିଲେ ତା କଞ୍ଚିତ ନାରାଜେ ।
ଦେଖିଣ ଲଙ୍କପତି ବିନ୍ଧିଲା ଦଶବାଣ
ଚଳିଲେ ଶରମାନେ ଶବଦ ଗଡୁ ଟାଣ ।

ରାମଚନ୍ଦ୍ର ଶରୀରେ ପଶିଲା ଯାଇ ଶର
କୋପେ ପାଞ୍ଚ ନାରାଚ ବିନ୍ଧିଲେ ରଘୁବର ।
ରାବଣର ଲଲାଟରେ ପଡ଼ିଲାକ ଯାଇ
ଘାତ ପାଇ କମ୍ପିଲା ଅସୁରକୁଳ ସାଇଁ ।
ବଜ୍ରଶୂଳ ପିଟେ ନେଇ ଶ୍ରୀରାମ ଉପରେ
ରାମଚନ୍ଦ୍ର ସ୍ୱାମୀ ତା ଛେଦିଲେ ପ୍ରତିଶରେ ।
ଦେଖିକର ଶଙ୍କା ପାଇଲା ବଂଶଭୁଜ
ଭୁଷାର ବୃଷ୍ଟି ପ୍ରାୟେ ସେ ବିନ୍ଧିଲା ନାରାଜ ।
ଅଗ୍ନି କଣିକା ପ୍ରାୟେ ଗଗନୁ ପଡ଼େ ଶର
ଘନ ଘନ ଛେଦନ୍ତି ତା ରଘୁକୁଳ ବୀର ।
ଯହୁଁ ସେ ସଂଗ୍ରାମ ହେଲା ଅତି ଅପ୍ରମିତ
ସହି ନ ପାରିଲେ ତାହା ସୁମିତ୍ରାଙ୍କ ସୁତ ।
ଶ୍ରୀରାମ ଯେ ତାହାଙ୍କୁ ଲୁଚାଇ ଥୋଇଥିଲେ
ଯୂଥପତିଙ୍କର ମଧ୍ୟେ ଥିବଟି ବୋଇଲେ ।
ବିଭୀଷଣ ଗୋଚରେ ଅଛନ୍ତି ତାଙ୍କୁ ଦେଇ
ଆଜ ଯୁଦ୍ଧ ନ କରିବ ଆମ୍ଭରାଣ ଭାଇ ।
ଆପଣେ ଧନୁଶର ଘେନିଣ ରଣେ ପଶି
ଦଶାନନ ସଙ୍ଗରେ ଯୁଝନ୍ତି ରଘୁଶିଷି ।
ଘୋର ସମର ଯହୁଁ ବଢ଼ିଲା ବେଳୁବେଳ ।
କୋପରେ ସଉମିତ୍ରି ହୋଇଲେ ଅସମ୍ଭାଳ
ଧନୁଶର ଧରିଣ ଧାଇଁଲେ ଆଗଭରେ
ସୁଗ୍ରୀବାଦି ସେନାପତି ଅଛନ୍ତି ସଙ୍ଗରେ ।
ଆରେ ଆରେ ବୋଲିଣ ପଶିଲେ ଅସିରଣେ
ଦେଖି ଦୈତ୍ୟବଳ ପଳାବନ୍ତି ଏଣେ ତେଣେ
ରାମଚନ୍ଦ୍ର ଆଗରେ ମିଳିଲେ ସଉମିତ୍ରି
ତାହା ଦେଖି ମନେ ହସୁରନ୍ତି ଦାଶରଥି ।
ମହାଘୋର ସମର ହୋଇଲା ଅଗୋଚର
ଏମନ୍ତ ହରଷ ଆଗ ହୋଇଲେ ରଘୁବୀର ।
ଦୁଇଭାଇ ଏକମୁଖ ହୋଇ ଯୁଦ୍ଧ କଲେ
ମକର କୁହୁଡ଼ି ପ୍ରାୟେ ନାରାଚ ବରଷିଲେ ।
ଦଶାନନ ସାମର୍ଥ୍ୟ ଦୁହିଙ୍କ ଶର ଛେଦିଣ
ଯେତେଶର ଆସେ ତାହା ଉପରେ ନ ଭେଦ
କ୍ରୋଧଭରେ ଲକ୍ଷ୍ମଣ ବିନ୍ଧିଲେ ସୁବିଶର
ବେଗେ ନବାରିଲା ତାହା ଦଶାନନ ବୀର ।
ପାଞ୍ଚବାଣ ରାମଚନ୍ଦ୍ର ଉପରକୁ ପେଶି
ଭାଲି ଘେନ ତାହା ନିବାରିଲେ ରଘୁଋଷି ।

ଲକ୍ଷ ତୀକ୍ଷ୍ଣ ନାରାଚ ଶରାସନେ ସନ୍ଧି
ଧନୁର୍ବେଦ ପଢ଼ିଣ ସେ ରାମଚନ୍ଦ୍ରଙ୍କୁ ବନ୍ଧି ।
ସୁବର୍ଣ୍ଣର ଜ୍ୟୋତି ନନ୍ଦାକରେ ଶରମାନ
ଗର୍ଜି ଧାଇଁ ଆସନ୍ତି ସେ ଯେସନେ ପବନ ।
ରାବଣର ଅଙ୍ଗହେଁ ସେ ଛେଦି ନ ପାରିଲା
ମୁନମୋଡ଼ ହୋଇକରି ଲେଉଟି ଅଇଲା ।
ଦେଖିଣ ରଘୁନାଥ ଗନ୍ଧର୍ବ ଶର କରି
ବାହୁଡ଼ି ଅଇଲା ଶର ଭେଦି ସେ ନପାରି ।
ବାଇବା ଶର ପୁଣ ବନ୍ଧିଲେ ରଘୁମଣି
ଯାଇଁ ବେଗେ ସେ ନାରାଚ ଦଶାନନ ହାଣି
ଦଶଧନୁରେ ଯୋଚିଲା ଦଶସସ୍ର ଶର
ମନ୍ତ୍ରିଣ ବନ୍ଧିଲା ବେଗେ ଦଶାନନ ବୀର ।
ଅର୍ଦ୍ଧଚନ୍ଦ୍ର ନାରାଚେ ତା ଶ୍ରୀରାମ ନିବାରି
ଦେଖି ଦେବଗଣମାନେ ଧନ୍ୟ ଧନ୍ୟ କରି ।
ସୁଗ୍ରୀ ହନୁ ଅଙ୍ଗଦ ଆବର ବିଭୀଷଣ
ବୋଲନ୍ତି ହେ ଧନ୍ୟ ଧନ୍ୟ ରଘୁବଂଶ ରାଣ ।
ଧନୁର୍ଦ୍ଧର ମାନଙ୍କରେ ତୁମ୍ଭେ ଶିରୋମଣି
ଅପୂର୍ବ କଥାଏ ଦେବ କଲ ଏହିକ୍ଷଣି ।
ବ୍ରହ୍ମଶର ସମାନରେ ଦଶସସ୍ର ଶର
ଏକା ନାରାଚକେ ତାହା ଛେଦିଲେ ରଘୁବୀର
ପୁଣି ରାବଣେଶ୍ୱର ପେଶିଲା ମୁଦଗର
ପବନରୁ ବେଗେ ଅଇଲା ଅତି ଖର ।
ଛୁଦ୍ରଇନ୍ଦ୍ର ହୋଇଲେ ମରନ୍ତେ ଏବେ ସତ
ଦୁଇଦଳ ଲୋକେ ଗୃହି ହୋଇଲେ ଚକିତ ।
ଦେଖିଣ ରାମଚନ୍ଦ୍ର ଗନ୍ଧର୍ବାଣର କଲେ
ତେତେବେଳେ ଆୟୁଧ ନିବାରି ପକାଇଲେ ।
ଦେଖିଣ ଲଙ୍କପତି ତିମିର ଅସ୍ତ୍ର ପେଶି
ରଣଭୂମି ଅନ୍ଧକାର କରୁଛି ନ ଦିଶି ।
କଞ୍ଚୁକ ନାରାଚେ ଛେଦିଲେ ରଘୁବୀର
ମହାଯୁଦ୍ଧ ଆରମ୍ଭକଲା ଦଶଶିର ।
ରାମଚନ୍ଦ୍ର ଲକ୍ଷ୍ମଣ ବିନ୍ଧନ୍ତି କୋପେ ବାଣ
ଆବରନ୍ତି ନାରାଚ ବିନ୍ଧଇ ବିଭୀଷଣ ।
ଲୁହୁଡ଼ି ପରାଏକ ନାରାଚ ବରଷିବା
ବଜ୍ରନ୍ତୁଲ ଝଂକାରେ ଶରମାନ ଯିବା ।
ଏକା ଲଙ୍କପତି ତିନଜଣଙ୍କୁ ଯୁଝଇ
ଏହାଙ୍କର ଶର ତା ଶରୀରେ ନ ବାଜଇ ।

ହାତରୁ ନ ଫିଟୁ ନିବାରଇ ଘନ ଘନ
ଘାତବାଣ ବିନ୍ଧିଲ ସେ ସୁମିତ୍ରା ନନ୍ଦନ ।
ସାରଥିର ମସ୍ତକ ପକାଇଲେ ହାଣି
ପୁଣି ଦଶ ନାରାଚ ବିନ୍ଧିଲେ କୋପେ ଟାଣି
ରାବଣର ଶରୀରେ ଯାଇଁଣ ବାଜିଲା
ସେହିପୁଂଟି ଶରୀର ନାରାଚ ଭେଦିଲା ।
ମୂର୍ଚ୍ଛି ପର୍ଯ୍ୟନ୍ତ ଦଶାନନ ସ୍ଥିର ନହି
ମନେଭାବେ କ୍ଷତ୍ରିୟମ ଏହାଙ୍କୁ ମର୍ତ୍ତ୍ୟେ ନାହିଁ
ଏସନକ ସମୟେ ଧାଇଁଲେ ବିଭୀଷଣ
ପରିଘେକ ମାଇଲା ଘୋଡ଼ାଙ୍କ ଉପରେଣ ।
ଆଠଶତ ଅଶ୍ୱଙ୍କେଟି ପଡ଼ିଲେ ଧରଣୀ
ବିରଥି ହୋଇଲେକ ଅସୁର କୁଳମଣି ।
ପୁଷ୍ପକେ ରହିବରକୁ ସୁମରେ ତତକ୍ଷଣ
ଦେବରଥ ପରେ ଯାଇଁ ଆରୋହେ ରାବଣ
କୋପେ ବିଭୀଷଣ ପରେ ବିନ୍ଧିଲା ସେ ଶର
ନାରାଚେ ତା ନିବାରିଲେ ରଘୁକୁଳ ବୀର ।
ପୁଣି କୋପେ ଶତେଶର ବିନ୍ଧିଲା ରାବଣ
ଛେଦି ପକାଇଲା ତାହା ବୀର ବିଭୀଷଣ ।
ଲକ୍ଷ୍ମଣ ବିଭୀଷଣ ଏ କୋପମୁଖ ହୋଇ
ନାରାଚ ବିନ୍ଧନ୍ତି ରଥଚଳ ଯାଏ ଧାଇଁ ।
ସୁଗ୍ରୀବ କପିରାଜେ ମାଇଲେ ଦୁଇବୃକ୍ଷ
ପର୍ବତେକ ମାଇଲା ସେ ଅଞ୍ଜନାର ବତ୍ସ ।
ଅଙ୍ଗଦ ଶାଳତରୁ ଧରିଣ ବେଗେ ମାରି
ପଞ୍ଚବଂଶ ଯୁଥପତି ମାରନ୍ତି ବେଢ଼ିକରି ।
ଅଷ୍ଟସେନାପତି ମିଶି ଘୋର ଯୁଦ୍ଧ କଲେ
ଋକ୍ଷ କପିଦଳ ମିଶି ସମସ୍ତେ ଧାଇଁଲେ ।
ପର୍ବତ ତରୁଶିଳା ମାରନ୍ତି କୋପକରି
ବେଢ଼ରେ ପଡ଼ିଲେକ ନୃପତି ଦଶଶିରୀ ।
ରାମଚନ୍ଦ୍ର ଲକ୍ଷ୍ମଣ ବିନ୍ଧନ୍ତି ଘନ ଘନ
ବିଭୀଷଣ ନାରାଚ ବିନ୍ଧଇ ଅବଚ୍ଛିନ୍ନ ।
ମାର ମାର ବୋଲିଣ ଡାକନ୍ତି କପିଋକ୍ଷ
ବରଷଣ ପ୍ରମାଣେ ମାରନ୍ତି ଶିଳାବୃକ୍ଷ ।
ସମ୍ମୁଖେ ରହି ବାଣ ବିନ୍ଧଇ ବିଭୀଷଣ
ଦକ୍ଷିଣେ ଶ୍ରୀରାମ ବାମ ପାଶରେ ଲକ୍ଷ୍ମଣ ।
ସେନ ଯୁଥପତିମାନେ ବେଢ଼ିଣ ଅଛନ୍ତି
ଋକ୍ଷକପିମାନେ ବୃକ୍ଷ ଧରିଣ ପହୁଡ଼ନ୍ତି ।

ଧର ଧର ମାର ମାର ଶୁଭେ ଚଉପାଶ
ପ୍ରଳୟକାଳେ ଯେସନେ ଶୁଭେ ସିନ୍ଧୁ ଘୋଷ
ରାମଚନ୍ଦ୍ର ଲକ୍ଷ୍ମଣ ବିନ୍ଧନ୍ତି ଘନ ଘନ
ବିଭୀଷଣ ନାରାଚ ବିନ୍ଧଇ ଅବଚ୍ଛିନ୍ନ ।
ଘନ ଘନ ଦଶାନନ ଯେ ନାରାଚ ଛେଦଇ
ଯେତେଶର ଉବୁରଇ ସେଅଙ୍ଗରେ ଭେଦଇ
କୋଟି କୋଟି ଭଲ୍ଲୁକ ପର୍ବତ କରେ ଧରି
ଦଶାନନ ଉପରେ ସେ ନେଇଣ ପ୍ରହାରି ।
ବାନରମାନେ ପିଟନ୍ତି ନେଇ ଶାଳବୃକ୍ଷ
ସଭିଙ୍କି ଏକଲେ ଯୁଦ୍ଧକରେ ଦଶମୁଖ ।
କାହାରିହିଁ ଆୟୁଧ ତା ନବାଜଇ ଅଙ୍ଗେ
ସହଜେ ଲଙ୍କପତି କୁଶଳ ରଣରଙ୍ଗେ ।
ପୁଷ୍ପକ ରଥଚାରି ଚଳଇ ଘନ ଘନ
ଦଶଧନୁ ଧରିଣ ବିନ୍ଧଇ ଦଶାନନ ।
ଦଶ ଲକ୍ଷ ନାରାଚ ବିନ୍ଧିଲା କୋପକରି
ପଶିର ପବନରେ କମ୍ପିଲା ବସୁନ୍ଧରୀ ।
ଉଲ୍‌କାପାତ ପରାଏ ଦିଶଇ ଜଗତ
ଦେଖିଣ ଆଗଭର ହେଲେ ସୁମିତ୍ରାର ସୁତ ।
ଖେଳକରେ ବାବଲ ସେ କାଟି ପକାଇଲେ
ଦେଖିଣ ଦେବତାମାନେ ଧନ୍ୟ ଧନ୍ୟ କଲେ
ଏସନକ ସମୟରେ ବିଭୀଷଣ ବୀର
ଧନୁରେ ଯୋଗିଲା ସେ ବିଷମ ତୀକ୍ଷ୍ଣ ଶର
ମନ୍ତ୍ରିକରି ପେଶିଲା ଶବଦ ଗରୁଟାଣ
ଯାଇଣ ଭେଦିଲା ସେ ରାବଣ ହୃଦେଣ ।
ବ୍ୟଥାପାଇ ଦଶାନନ ସିଂହରଡି ଦେଇ
ଏସନକ ସମୟରେ ସଉମିତ୍ରି ଧାଇଁ ।
ବିମାନତଳଯାଏ ଗଲେକ ପେଲପଶି
ଲକ୍ଷ ଲକ୍ଷ କରି ତୀକ୍ଷଣ ନାରାଚ ବରଷି ।
ଦଶାନନ ଛେଦଇ ତା ପ୍ରତିଶର କରି
ବିଭୀଷଣ ଉପରେ ମାଇଲା ଶୂଳଧରି ।
କଣ୍ଠରେ ଛେଦିଲା ତା ବିଭୀଷଣ ବୀର
ସେନା ଯୂଥପତିମାନେ ବୋଲନ୍ତି ମାର ମାର
ମାୟାରଥ ଯେଣୁକରି ଚଢ଼ିଛି ଲଙ୍କପାଳ
କେତେବେଳେତଳେକେତେବେଳେଅନ୍ତରାଳ
ଦଶଭୁଜେ ଦଶଧନୁ ଅଛଇ ସେ ଧରି
ଚତ ଶୁ ଶରମାନ ବଞ୍ଚାଉଛି ଦଶଶିର ।

ବେଳୁବେଳ ସମର ଲାଗିଲା ମହାଘୋର
ରଥରେ ଉଠିଲେ ଯାଇଁ ଭଲ୍ଲୁକ ବାନର ।
କୋପେ ଓଟାରିଣ ସେ ଆଣନ୍ତି ଦେବଯାନ
ଉଛୁଡ଼ି ଘେନିଣ ସେ ଦେଲେ ଶସ୍ତ୍ରମାନ ।
ସେନା ଯୂଥପତିମାନେ ଧଇଲେ ରଥବର
ଛଡ଼ାଇ ଘେନଗଲେ ହାତରୁ ଧନୁଶର ।
ଲକ୍ଷ୍ମଣ ବିଭୀଷଣ କଟାଳି ବିନ୍ଧିଛନ୍ତି
ରାମଚନ୍ଦ୍ର ଅଗୋଚର ନାରାଚ ବିନ୍ଧନ୍ତି ।
ଏମନ୍ତେ ପ୍ରହରେକ ହେଲା ରଣଗୋଳ
ଆମ୍ଭାକୁ ମହାଭୟ ପାଇଲା ଲଙ୍କପାଳ ।
ଏସନେକ ସମୟେ ଲକ୍ଷ୍ମଣ ମହାବୀର
ସରସ୍ୱତୀ ଦେଲଶର ବସାଇ ଗୁଣର ।
ବନ୍ଧିଲେକ ବ୍ରହ୍ମମନ୍ତ୍ର ଚଳିଲ ଅନ୍ତଖରେ
ରାବଣର ଦଶଶିର ଛେଦିଲେ ତତ୍କାଳେ ।
ରୁଣ୍ଡଖଣ୍ଡେ ଖସିଣ ଶିର କନ୍ଧରେ ଲାଗିଲା
କ୍ରୋଧରେ ଦଶଶିର ପ୍ରଜ୍ୱଳିତ ହେଲା ।
ଏକଘନ ନାମେଣ ଧଇଲା ଶକତି
ପୂର୍ବେ ପ୍ରସନ୍ନେ ତାକୁ ଦେଇଥିଲେ ଦେବପତି
ସେ ଶକ୍ତି ମାଇଲେ ମରନ୍ତି ଦଶଦିଗପାଳ
ଯମଦେବତାର ଯେ ପୂରଇ ତେତେକାଳ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ତହିଁ ନୁହନ୍ତି ଭର୍ଜନ
ଯାରହୃଦେ ପଡ଼େ ତାର ନଥାଇ ଜୀବନ ।
କମାର ଯେତେକେ ଶସ୍ତ୍ର ଗଢ଼ିଣ ପାଣିଦେଇ
ତାକୁ ମାଇଲେକ ସେହି ଯେମନ୍ତେ ମରଇ ।
ତେସନେକ ଶକତି ବ୍ରହ୍ମାର ତହୁଁ ଜାତ
ବ୍ରହ୍ମାଙ୍କୁ ମାଇଲେ ହର ପାରଇ ଜୀବିତ ।
ଏକାଜଣକରୁ ଦୁଇଜଣ ନ ମାରଇ
ଏକଘନ ନାମ ତେଣୁ କରି ସେ ବୋଲଇ ।
ଅତିହିଁ ଘଞ୍ଚାଳ ପଡୁଁ ରାମଚନ୍ଦ୍ର କଲେ
ଲକ୍ଷ୍ମଣ ବିଭୀଷଣ ବିକୋତ ମାଇଲେ ।
ଆସ୍ତମେହ୍ଲା ଆବର ପଞ୍ଚଶ ଯୂଥପତି
ସୈନ୍ୟ ସହିତରେ ସେ ସୁଗ୍ରୀବ ପ୍ରଭୃତି ।
ବେଢ଼ି କରି ମାରନ୍ତି ଋକ୍ଷକପି ବଳ
ଅନେକତ ସମର ହୋଇଲା ବେଳୁବେଳ ।
କେଣୁ କରି ରାବଣ ଆତଙ୍କ ମନହେଲା
ବିଭୀଷଣ ନାରାଚକୁ ବଡ଼ ଭୟ କଲା ।

ରଥେ ଉଠି କପିମାନେ ଦିଅନ୍ତି ସିଂହରଡ଼ି
ଧରିବା ମନେକରି ଆଡ଼ାଡ଼ ନପାରି ।
ଅତିହିଁ କଠୋର ଯହୁଁ ହୋଇଲେକ ଗୋଳ
ତେଣୁକରି ବ୍ରହ୍ମଶକ୍ତି ଧଇଲା ଲଙ୍କପାଳ ।
ଅଗ୍ନି ଦେବତା ଯେହ୍ନେ ପ୍ରଳୟକାଳେ ଜଳି
ଧରି ବୁଲାଇବାରେ ସପତ ଦ୍ୱୀପ ଟଳି ।
ଦେବତାଏ ବିଚାରିଲେ ଆଜ ବିଭୀଷଣ ମଲା
ଶ୍ରୀରାମରେ ଶରଣ ପଶିଣ ନାଶଗଲା ।
ଆଜଠାରୁ ସରିଲା ଏହାର ଜୀବନ
ହାହାକାର କଲେ ଯେ ସକଳ ସୁରଗଣ ।
ଏପରି ଲୋକଙ୍କୁ ତ ମରଣ ଆଜ ଅଛି
କେମନ୍ତେ ଯମଦେବତା ଯାର ପାଞ୍ଜି ପୋଛି
ଏସନକ ବିଚାର କରନ୍ତି ସୁରପୁରେ
ବ୍ରହ୍ମଶକତି ଦ୍ରବଣ ଧରିଛି କରରେ ।
ବିଭୀଷଣକୁ ମାରିବ ବୋଲି ଜଣାଇଲା
ଏହାର ହେତୁରୁ ସିନା ଇନ୍ଦ୍ରଜିତ ମଲା ।
କୁଳକୁ ସଲ ମୋହର ଅଟେ ଏ ଚଣ୍ଡାଳ
ଶକତିମାରି ଏହାର ପୂରାଇବି କାଳ ।
ଜାଣି ସଉମିତ୍ରି ବିଭୀଷଣକୁ ପଛକଲା
ଆଗଭର ହୋଇଣ ସେ ନାରାଜ ବନ୍ଧିଲା ।
ଲକ୍ଷ ଲକ୍ଷ କରିଣ ବନ୍ଧିଲେକ ଶର
ଉକତେ ଜର୍ଜର ହୋଏ ଲଙ୍କେଶ୍ୱର ।
ବିମୁଖ ହୋଇଲା ସେ ଅସୁରକୁଳ ପତି
କୋପଭରେ ଝମକାଇ ଧଇଲା ଶକତି ।
ଲକ୍ଷ୍ମଣକୁ ବୋଇଲା ଆଡ଼ହୁଅରେ ପତି
ଚଣ୍ଡାଳ ବିଭୀଷଣକୁ ମାରିବ ଶକତି ।
ଏହାର ମରିବାରେ ଯେ ମୋହର ବଡ଼କାର୍ଯ୍ୟ
ଚଉଦ ଭୁବନେ ମୋତେ କରାଇଲା ଲାଜ ।
ମନୁଷ୍ୟ ହୋଇ ମାଉନ୍ତେ କ ମୋର ପୁହରାଇ
ଶରଣ ଯେବେ ଏ ନ ପଶନ୍ତା ତୁମ୍ଭ ଠାଇଁ ।
ଆଡ଼ହୁଅ ଲକ୍ଷ୍ମଣ ତୁ ସାମରଥ ନୋହୁ
ଏ କାଳ ଶକତିରେ ବିଭୀଷଣକୁ ଖାଉ ।
ଏ ବାଣ ମାଇଲେରେ ମରନ୍ତି ଦେବାସୁର
ପଡ଼ୁ ଏହି ଶକତି ବିଭୀଷଣର ଉପର ।
ମରୁ କାଳକଣ୍ଟକ ତୁ ଆଡ଼ହୋଇ ଯାସି
ଏକଥା ଶୁଣି ଲକ୍ଷ୍ମଣ ଆଗଭର ହୋଇ ଆସି
ବୋଇଲନ୍ତି ରାମଚନ୍ଦ୍ର ବାନାଅଟେ ଶରଲପଞ୍ଜର
ଏ ତୋହର ସହସ୍ର ସହିବା ଦଶଶିର ।
ଯେଣୁକରି ଶରଣ ପଞ୍ଜର ମୋର ବାନା
ତୋହର ଏ ସହସ୍ରକୁ ବର୍ଜନ ମୁହିଁ ସିନା ।
ଯେଉଁ ବ୍ରହ୍ମଶକତି ତୁ ଧରିଅଛୁ କରେ
ସେ ବ୍ରହ୍ମଙ୍କୁ ଜାତ ଆମ୍ଭେ କରିଅଛୁ ବେଳେ
ମାରି ମାରି ଶକତିରେ ଦେଖିବା କେଡ଼େଗ ତୁ
ତୋର ମନ କାସିବଳ ବ୍ରହ୍ମାଙ୍କୁ ଧାଡ଼ ମୋର
ନ କର ପ୍ରତିଜ୍ଞା ତୋର ପୂର୍ବକଥା ଘୁଡ଼
ଫେରିଣ କି ଲଙ୍କାଗଡ଼ ଦେଖିବୁରେ ମୂଢ଼ ।
କଞ୍ଚିତ ନାରାଜେ ତୋରରେ ଘେନବ ପରାଣ
ମୋତେ କସ କରିବ ତୋ ଶକତି ନଲକ୍ଷଣ
ଏତେ କହି ଲକ୍ଷ୍ମଣ ଯେ କୋଡ଼ିଏ ବାଣମାରି
ଲଙ୍କପତି ଶରୀର କାଟିଲେ ବିଦାରି ।
ନିଃଶ୍ୱାସକେ ମର୍ମ୍ମେ ବନ୍ଧିଲେ ଶତେଶର
ବିକୋଟି କାଟିଲା ଶର ରାବଣ ଶରୀର ।
ରୋମ ଗୋଟିକେ ନାରାଜ ଗୋଟିଏ ବନ୍ଧିଲା
କୋପରେ ଦଶକନ୍ଧ ଆକାଶୁଁ ଗର୍ଜ୍ଜିଲା ।
କହଇ ମୋହର ବୋଲ ଶୁଣରେ ଲକ୍ଷ୍ମଣ
ଅତ୍ୟନ୍ତ ସୁନ୍ଦର ସୁକୁମାର ତନୁ ତୁ ବିଚକ୍ଷଣ
ଏ ଦାରୁଣ ଶର ତୋତେ ମାରିବ କେମନ୍ତେ
ଏମନ୍ତ ଅଧର୍ମ ଧାତା ଲେଖିନାହିଁ ଶାସ୍ତ୍ରେ ।
ଅନ୍ୟଶର ଘେନ ତୋର ଦହିବ ଜୀବନ
ଆଡ଼ହୋଇ ଯାଅ ଘେନ ମୋହର ବଚନ ।
ଆଣ୍ଠରେ ଡାକଦେଲା ଦଗପାଳେ ଶୁଣ
ତେତିଶକୋଟି ଯେ ସହିତେ ଦେବଗଣ ।
ଚନ୍ଦ୍ରସୂର୍ଯ୍ୟ ପବନ ହେ ଥାଅ ସାକ୍ଷୀ ହୋଇ
ଏ ବ୍ରହ୍ମଶକତି କ ହେବ ସରି ନୋହି ।
ବିଭୀଷଣ ଶତ୍ରୁ ମୋର ତାକୁ ସହାରିବ
ବାଳକ ବୟସ ଲକ୍ଷ୍ମଣକୁ ନ ମାରିବ ।
ଏହିକଥା ଧର୍ମନୋହେ ମୁଁ ଲକ୍ଷ୍ମଣକୁ ନମାରଇ
ଆଡ଼ହୁଅ ଲକ୍ଷ୍ମଣ ବିଭୀଷଣକୁ ମାରଇ ।
ମତ୍ତ ଗର୍ବରେ ଲକ୍ଷ୍ମଣ ମୋତେ କହେ ରଣେ
ସାକ୍ଷୀହୋଇ ଥାଅ ତୁମ୍ଭେ ସକଳ ଦେବଗଣେ
ମୋହର ଶତ୍ରୁକୁ ତ ମୁହିଁ ମାରେ ଶର
ଶୁଣି ପ୍ରଜ୍ୱଳିତ ହେଲେ ସୁମିତ୍ରା କୁମର ।

ରାବଣର କଥାକୁ ନ ମାନିଲେ ଲକ୍ଷ୍ମଣ
ବୋଲନ୍ତିଦୈତ୍ୟରେମୋତେନୋହୁଁବଡ଼ଜଣ
ଏତେକହି ନାରାଚ ବିନ୍ଧନ୍ତି ନ ଶ୍ବାସକେ
ପଡ଼ିଲେ କାଣ୍ଡମାନ ଦଶକନ୍ଧ ମୁଖେ ।
ନାକ କାନ ଭୁରୁଣ୍ଡେ ଯେ ଆଖିରେ ଶର ଲାଗି
ବ୍ୟଥାପାଇ ରାବଣ ହୋଇଲା ମହାରାଗୀ ।
କରେ ଶକତି ଧରିଣ ବୁଲାଇଲା ତୋଳି
ବ୍ରହ୍ମାଙ୍କ ସନ୍ଧିତରେ କର୍ମେ ମନ୍ତ୍ରଆଳି ।
ଯେତେକ କପି ସେ ରଥରେ ଉଠିଥିଲେ
ଶକତିର ତେଜରେ ସେ ତଳରେ ପଡ଼ିଲେ ।
ଅଷ୍ଟ ସେନାପତି ଯେ ବୁଲିଲେ ଆଖିମାନ
ଗନ୍ଧର୍ବ ଯୂଥପତି ଯେ ହୋଇଲେ ଅଜ୍ଞାନ ।
ସୁଗ୍ରୀବ ବିଭୀଷଣ ତଳକୁ ମୁଖ କଲେ
ସଂଗ୍ରାମ ଛାଡ଼ିଣ ଯେ ସଇନ ପଳାଇଲେ ।
ରାମଚନ୍ଦ୍ର ବୋଇଲେଆଜ ହୋଇଲା ବିପରୀତ
ଆଜ ଏ ସହସ୍ର ମାରିବ ମୋର ଭ୍ରାତ ।
ଏତେ ପାପ ଲକ୍ଷ୍ମଣରେ ଅରଜିଲୁ କାହିଁ
ଏ ବ୍ରହ୍ମଶକତିକି ପ୍ରତି ଅସ୍ତ୍ର କାହିଁ ।
ପୃଥିବୀ ବିସ୍ତରିଲେ ଶ୍ରୀରାମ ମନରେ
ଦେବ ସୁର ନରେ ନିନ୍ଦା କରିବେ ମୋହରେ
ବୋଲିବେ ଶରଣପଞ୍ଜର ଅଟନ୍ତି ଶ୍ରୀରାମ
ବିଭୀଷଣକୁ ଶରଣ ରଖିଥିଲେ ପୁଣ ।
ଅସମୟ କାଳରେ ମରାଇଲେ ରାମରଣ
ଏହା କହିଲେ ଅବିଶ୍ବାସି ହେବ ମୂର୍ତ୍ତି ପୁଣ ।
ଏମନ୍ତ ବିସ୍ମର ଯେ କୋଟିଏ ବାଣ ପେଷି
ସଉମିତ୍ରି ଅନେକ ନାରାଚ ବରଷି ।
ଶକତିର ତେଜ ଯେ ପ୍ରଳୟ ଅଗ୍ନି ଜାଣି
ତେଜରେ ଦଶଦିଗ ଆଲୁଅ ମୟେ ପୁଣି ।
ବିହଙ୍ଗ ଆଗରେ ଯେମନ୍ତ ଜୁଳୁଜୁଳା ପୋକମାନ
ଶକତି ନିବାରିବାକୁ ଏ ଶରକ ଲାଜନ ।
ସ୍ବର୍ଗରେ ଦେବତାଏ ଯେ ହାହାକାର କରି
ଲକ୍ଷ୍ମଣ ମଲା ବୋଲି ଯେ ବିଧାତା ସୁମରି ।
ଘୋର ରବ କରିଣ ଚଳଇ ମହାଶସ୍ତ୍ର
ନିଶବଦ ହେଲେ ଦେଖି ଭୁବନ ବିଦଶ ।
ପ୍ରଚଣ୍ଡ ହୁତାଶନ କି ଶୂନ୍ୟରୁ ଉଡ଼ି ଆସି
ନିବାରି ନ ପାରିଲେ ସୁମିତ୍ରାର ବଂଶି ।

ଦେଖୁ ଦେଖୁ ଶକତି ପଡ଼ିଲା ଯାଇ ହୃଦେ
ହ ହାକାର ଧ୍ବନି ଘଟେ ସ୍ବର୍ଗପୁର ମଧ୍ୟେ ।
ସହସ୍ର ପଡ଼ନ୍ତେ ଲକ୍ଷ୍ମଣ ଜ୍ଞାନ ହାରି
ବିଷ୍ମରନ୍ତି ବନ୍ଧୁ ସଖା ମୂର୍ଚ୍ଛିତ ନ ମରି ।
ଶକ୍ତିକି ବୋଇଲେ ତୁରେ ହୃଦରେ ଫୁଟିବୁ
ସମସ୍ତଙ୍କୁ ଚମତ୍କାର ପରଚେ ଦେଖିବୁ ।
ମୋହର ହୃଦୟରେ ଚାଲୁଛ ପ୍ରାଚେ ଗଳ
ବାସୁକିର ଶିରେ ଯାଇଁ କଣ୍ଟିବୁ ଉଗାଳ ।
ନିଃଶ୍ବାସ ବହୁଥିବ ଆଗୁଥିବ ନାଡ଼ିକା
ଚେତନା ଚଇତନ ମୋର ଭୁଞ୍ଜୁଥିବ ଏକା ।
ରାଗ ନିବାରିବାପାଇଁ ଆମ୍ଭେ ହେଲୁ ଜାତ
ତ୍ରୈଲୋକ୍ୟରେ ଅପଯଶ ଶ୍ରୀରାମର ଭ୍ରାତ ।
ତୁ ବ୍ରହ୍ମଶକ୍ତି ମୋର ପ୍ରାଣକୁ ନ ହର
ନ ଜାଣି ମାଇଲା ମୋତେ ଅଜ୍ଞାନ ଅସୁର ।
ଏମନ୍ତ ବିସ୍ମରନ୍ତେ ହୃଦରେ ପଡ଼େ ଶକ୍ତି
ଭୁଜୁ ଫୁଟି ବାହାର ହୋଇଲେ ପନ୍ଥକତ ।
ବଳରେ ଲକ୍ଷ୍ମଣଙ୍କୁ ପକାଇଲା ତଳ ଶ୍ରୀ
ଧନୁଶର ଛାଡ଼ିଣ ଅଚେତା ମହାବୀର ।
ଭୂମି ଫୁଟି ଶକତି ପାତାଳେ ଭେଦିଲା
ବାସୁକିର ଫଣାରେ ଯାଇଣ କଣ୍ଟିଲା ।
ଦୁଷ୍ଟମେରୁ ପ୍ରାୟେକ ଦଶୁଛି ଶକତି
ଦେଖିକରି ସିଂହନାଦ ଦେଲା ଲଙ୍କାପତି ।
ରଥରୁ ଓହ୍ଲାଇ ଅଇଲା ଖର କରି
ଘେନି ଯିବ ବୋଲି ଜରି ମନରେ ବିସ୍ମରି ।
ସିଂହ ଯେସନେ ମତ୍ତହସ୍ତୀକି ଧରେ ରାଗେ
ତେମନ୍ତ ଲକ୍ଷ୍ମଣଙ୍କୁ ତୋଳିଲା ଅତିବେଗେ ।
ଦେଖିକରି ଶ୍ରୀରାମ ଆଗରେ ଓଗାଳିଲେ
ଲାଇକି ପଞ୍ଚକରି ନାରାଚ ବିନ୍ଧିଲେ ।
କୋପରେ ଲକ୍ଷ୍ମଣଙ୍କୁ ବିନ୍ଧନ୍ତି ରାମ ରଣ
ବାହୁଡ଼ି ତତ୍କ୍ଷଣେ ରଥେ ବସିଲା ରାବଣ ।
ଧନୁଶର ଧରିଣ ସମର ପୁଣ କଲା
ହେନ୍ତୁହେଲ ସମର ଅସଂଖ୍ୟ ହୋଇଲା ।
ରଘୁନାଥ ନାରାଚ ବିନ୍ଧନ୍ତି କୋପବହ୍ନି
ଘାଆ ପାଇ ବିକଳ ହୋଇଲା ଲଙ୍କସାଇଁ ।
ହେଳକରେ ରଘୁନାଥ ଲକ୍ଷେ କାଣ୍ଡ ମାରି
ନିଶ୍ବାସକେ ଶତେକଲ ପେଷନ୍ତି ଶ୍ବାପଧାରୀ ।

ଘଡ଼ିଏ ପରଯନ୍ତେ ଶର ବୃଷ୍ଟି କଲେ
ଲଙ୍କପତି ଶରର ବଦାର କାଟିଲେ ।
ଥୋକାଏ ଶର ନବାର କରଇ କଉଣପ
ଯହୁଁ ସେ କାଣ୍ଡ ଆସି ପଡ଼ିଲା ଅସଂଖ୍ୟ ।
ରଥ ଅଶ୍ୱ ଆଦି ସବୁଠାରେ କାଣ୍ଡ ଫୁଟି
କ୍ରୋଧଭରେ ହନୁମନ୍ତ ରଥ ଉପରେ ଉଠି ।
ରଥ ଧ୍ୱଜ ଉପରେ ବସିଲାକ ଯାଇଁ
ଶ୍ରୀରାମଙ୍କୁ ସୁମରି ରଥକୁ ଚାପି ଦେଇ ।
ଲଙ୍ଘାଯାଇ ଦେବଯାନ ପାତାଳେ ପଶିଲା
ଉଡ଼ିଇଣ ଦୈତ୍ୟ ସୁବର୍ଣ୍ଣ ରଥରେ ବସିଲା ।
ଦେଖିକରି ଯୂଥପତି ବେଗେ ସେ ଧାଇଁଲେ
ସୁବର୍ଣ୍ଣ ରଥକୁ ଲେଉଟାଇ ପକାଇଲେ ।
ସେଠାରୁ ଲଙ୍କପତି ପଳାଏ ପାଦଗତି
ସାରଥି ଆଣିଣ ଯାନ ଦେଲା ତାରକତି ।
ସେ ରଥେ ବସି ରାବଣ ପଳାଇଲା ଭାଙ୍ଗି
ହସ୍ତରିଲା ଉହ୍ୱଲେ ମୁଁ ଏ ମାରିବେ ଲାଗି ।
ଶ୍ରୀରାମ ତାର ପଛେ ଗୋଡ଼ାନ୍ତି ଅତିରାଗେ
ପାଲଟି ରାବଣ ନଉଛୁଲି ତାଙ୍କ ଆଗେ ।
ଡର ଡର ହୋଇଣ ପଳାଇଣ ଗଲା
ଲଙ୍କାଗଡ଼ର ଉତ୍ତର ଦୁଆରେ ପଶିଲା ।
ଶ୍ରୀରାମ ବାହୁଡ଼ିଲେ ଖଇରଠାରେ ମନ
ସଙ୍ଗରେ ଗୋଡାଇଛନ୍ତି ଋକ୍ଷକପି ସୈନ୍ୟ ।
ଧାତକାରେ ମିଳଲେ ଲକ୍ଷ୍ମଣ ସନ୍ନିଧାନ
ଦେଖି ବିଚଳିତ ହେଲେ ଶ୍ରୀରାମ ରାଜନ ।
ପଡ଼ିଛନ୍ତି ଲକ୍ଷ୍ମଣ ବୀର ବିଷମ ଶକ୍ତିଭେଦେ
ଋକ୍ଷକପି ମିଳିଲେ ଶ୍ରୀରାମ ସନ୍ନିଧେ ।
ସୁଗ୍ରୀବ ବିଭୀଷଣ ଯେ ଅଙ୍ଗଦ ହନୁମନ୍ତ
ନଳନୀଳ ସୁଷେଣ ତାରକ୍ଷ ଜାମ୍ବବନ୍ତ ।
ଅଷ୍ଟସେନା ଯୂଥପତିମାନେ ଯେ ଆସନ୍ତି
ଉବୁରା ଉବୁରି ହୋଇ ଲକ୍ଷ୍ମଣେ ଦେଖନ୍ତି ।
ଏସନ ସମୟରେ ଶ୍ରୀରାମ ପରବେଶ ।
ଦେଖିଣ ତାଙ୍କୁ ବାଟ ଛାଡ଼ିଲେ ଚଉଦିଗ ।
ଧନୁଶର ଦେଇ ରାମ ସୁଗ୍ରୀବର ହସ୍ତ
ଭୂତଳେ ବସି ଲକ୍ଷ୍ମଣଙ୍କୁ ତୋଳନ୍ତି ରଘୁନାଥ
ନ ଚଳିଲେ ସଉମିତ୍ରୀ ଶକ୍ତି ଅଛି ଫୁଟି
ପାତାଳ ପରଯନ୍ତେ ଶକତି ଅଛି କଣ୍ଟି ।

ଶକ୍ତିଧରି ଟାଳନ୍ତେ ଚଳନ୍ତି ମହୀଆଳ
ଚାହିଁକରି ଶ୍ରୀରାମ ହୋଇଲେ ବିକଳ ।
ବିଭୀଷଣଙ୍କୁ ବୋଇଲେ ଏ କେବଣ ଆକାର
ଜାହିଁପାଇଁ ନ ଉଠିଲା ସୁମିତ୍ରା କୁମର ।
ଶୁଣିକରି ବିଭୀଷଣ କହେ କରଯୋଡ଼ି
ତୁମ୍ଭେ କି ନ ଜାଣ ଦେବ ଏହା ରୂପଧାରୀ ।
ମନ୍ତ୍ରିଣ ଶକତି ମାରେ ଦଶାନନ ବୀର
ବ୍ରହ୍ମଶକତି ଏ ଯେ ଅଟେ ବଡ଼ଶର ।
ଲକ୍ଷ୍ମଣ ଦେହ ଫୁଟି ଫୁଟିଲା ବସୁମତୀ
ସେ ଶକ୍ତିକ ଟାଳରେ ଚଳଇ ନବସୃଷ୍ଟି ।
ଶତହସ୍ତ ଉପାଡନ୍ତେ ମନୁଷ୍ୟ ହୋଏ ତୋଳ
ଶୁଣିକରି ଶ୍ରୀରାମ ନୟନୁ ବହେ ବାରି ।
କୋହ କୋହ ହୋଇ ରାମରୋଦନ୍ତି ଭକଲେ
ଭାଇର ଗୁଣ ସୁମରି ନେତ୍ର ଲୁହ ଗଲେ ।
ଉଠି ବାବୁ ଲକ୍ଷ୍ମଣରେ କେଉଁ ପାପ କଲୁ
ଏ କାଳ ଶକ୍ତିର ମୁଖେ ପ୍ରାଣ ବୁଝି ଦେଲୁ ।
ନିରେଖ କରଣ ଭାଇ ଛାଡ଼ିଗଲୁ ମୋତେ
ଅନେକ ପ୍ରକାରେ ମୁଁ ଭିଆଣିଲି ତୋତେ ।
ଆଜ ତୁ ନ ଯୁଝିବୁ ଶପଥ ମୋହର
ମୋ ବଚନ ମେଣ୍ଟିବାରୁ ଏ ଦଶା ତୋହର
ଏବେ କିସ ବୁଦ୍ଧି କରିବି ଏଥି ଆଇଞ୍ଚି
ଅନାସ୍ତ ହୋଇଲି ମୁଁ ଯେ ଭାଇକି ହରାଇ ।
ଆହେ ସୁଗ୍ରୀବ ଆହେ ହନୁ ବିଭୀଷଣ
ଜାମ୍ବେବ ସୁଷେଣ ଆଦି ସମସ୍ତେ ହେଁ ଶୁଣ
କାହାର କିସ ବୁଦ୍ଧି ଅଛିରେ ବାବୁକହ
ଏ କାଳ ଶକତି ଯେନିକ ଦୁର୍ହିଙ୍କର ଦେହ ।
ଭାଇ ମୋର ନାଶଗଲେ ମୁହିଁ କି ଜୀଇବି
ଶତହସ୍ତ ଉପାଡ଼ି ଘାଆ କେତେକ ଦେଖିବି ।
ଶୁଣିଣ କପିବଳ ହୋଇଲେ ଆଗୁସାର
ବଳରେ ଉପାଡ଼ିବାକୁ ତାଙ୍କର ବଳର
ନିଃଶ୍ୱାସ ଧରିଣ ଯେ ଓଟାରିଲେ ଆଣ୍ଟେ
ନ ଚଳଇ ଶକତି ବାସୁକି ଶିର କଣ୍ଟେ ।
ପୁଣିହିଁ ହିଁକାହିଁକି ହୋଇଣ ଧରିଲେ
କେବଣ ପ୍ରକାରେ ଶକ୍ତି ତୋଳି ନ ପାରିଲେ
ଦେଖିଣ ରଘୁନାଥ ବୋଇଲେ ତୁମ୍ଭେ ଛାଡ଼
ଏ ଦେବ ଆୟୁଧ ଅଟଇ ଅତି ଗାଢ଼ ।

ଝିଙ୍କାଝିଙ୍କି ନକର ପ ରବ ଭାଇ ବ୍ୟଥା
ପୁତ୍ର ଶୋକରେ ମାରଣ ଗଲୁ ଦଶମଥା ।
ଯୂଥପତିମାନେ ଯେ ଧଇ ତା ମନ କଲେ
ସେମାନେ ବ୍ରହ୍ମଶକ୍ତିକୁ ଉପାଡ଼ି ନ ପାରିଲେ
ଶ୍ରୀରାମ କହିବାରୁ ସେମାନେ ଆଡ଼ ହେଲେ
ସୁଗ୍ରୀବର ହନୁମନ୍ତ ଜମ୍ବେବ ଧରିଲେ ।
ଅଙ୍ଗଦ ବିଭୀଷଣ ନଳ ନୀଳ ବୀର
ଗନ୍ଧମାଦନ ଯେ ହନୁର ପିଅର ।
ଗବୟ ଗବାକ୍ଷ ସଞ୍ଜର ଶତବଳ
ସମ୍ପାତି କାଳଞ୍ଜନ ତାଳଜମ୍ବ ପନଶିଳ ।
ଦଶକାଳ ବୃଦ୍ଧ ଆଦ ବିବଧ ସାରସ
ମହେନ୍ଦ୍ର ଦୁର୍ବନ୍ଦ ଯେ କୁମୁଦ ସାରସ ।
ସମସ୍ତେ ବେଢ଼ି କରି ଧଇଲେ ଶକତି
ମଲ୍ଲ ମହାମଲ୍ଲ ଅଷ୍ଟସେନା ଯୂଥପତି ।
କୋମଳ କରିଣ ଧରିଲେ ତଣ୍ଡି ମୁଷ୍ଟି
ଶକ୍ତିକି ଉପାଡନ୍ତେ ଚଳଇ ନବ ସୃଷ୍ଟି ।
ତିନ ଥର ହୁଁକାର ଧରିଲେ ଦୃଢ଼ ମନେ
ପର୍ବତ ନଟଳେ ଯେସନେ ବଡ଼ ସୁଚ ମୂନେ
ସମସ୍ତଙ୍କ ଶରୀରରୁ ବହିଲା ଶ୍ରମ ଝାଳ
ଦେଖିକରି ଆଶ୍ଚର୍ଯ୍ୟ ଯେ କୌଶଲ୍ୟା ବାଳ ।
ବୋଲନ୍ତି ଧନ୍ୟ ରାବଣ ମହିମା ତୋର ଧନ
ଏକାଦଶ ଗୋଟିକରେ ଫୁଟିଲା ଧରଣୀ ।
ଏତେ ବଡ଼ ବଳ ମୋର ନପାରିଲେ ଟାଳି
ଶହସ୍ର ଉପାଡନ୍ତେ ଚଳଇ ମହୀଆଳ ।
ଧନ୍ୟ ଧନ୍ୟ କ୍ଷତ୍ରୀ ତୁ ରେ ଅଟୁ ଲଙ୍କପତି
ଏତେ ବଡ଼ ପରାକ୍ରମେ କହିଅଛୁ ଶକ୍ତି ।
ଇନ୍ଦ୍ରଜିତ ପଡନ୍ତେ ଭରସା ପାଇଥିଲି,
ଆଜ ତୋ ସମର ଦେଖି ଭୟ ପୁଣି କଲି ।
ଏତେ କହି ରାମଚନ୍ଦ୍ର ଧଇଲେ ଶକତି
ଘୁଡ଼କରି ଉଭାହେଲେ ସେନା ଯୂଥପତି ।
ଭାଇର ବିକଳ ଦେଖି ବିକଳ ରଘୁନାଥ
ନୟନରୁ ଅଶ୍ରୁଜଳ ବହଇ ତୁରିତ ।
କ୍ରୋଧଭର ହୋଇ କହି ନ ପାରନ୍ତି ବାଣୀ
ଦୁଃଖରେ ଦୁଃଖି ହୋଇଅଛନ୍ତି ରଘୁମଣି ।
ବାମ ହାତ ଦେଲେ ନେଇ ଶକତିର ବେଢେ
ପ୍ରାସ ହେବ ଭାଇକି ନ ରଧନ୍ତି ଆଣ୍ଡେ ।

ଅବହେଳେ ଶକତିକି ଧରି ଘୁଡ଼ଦେଲେ
ପୂର୍ବେ ଯେହ୍ନେ ମନ୍ଦର ପର୍ବତ ଉପାଡ଼ିଲେ ।
ଶହସ୍ର ଉପାଡ଼ନ୍ତେ କମ୍ପଇ ମହୀଆଳ
ଦକ୍ଷିଣ ଦିଗକୁ ଯେ ଫିଙ୍ଗିଲେ ରାବଣାରି ।
ଅଳପ ଅଳପ କରି ଓଠାରି ଆଣିଲେ
ସ୍ୱର୍ଗପୁରେ ଦେବତାଏ ଜୟେ ଜୟେ କଲେ
ପଦ୍ମବନ ଯେସନେ ଭାଙ୍ଗଇ ମତ୍ତହସ୍ତୀ
ତେସନେ ଉପାଡ଼ିଲେ ଶକତି ସୀତାପତି ।
ମଧ୍ୟାହ୍ନ ଆଦିତ୍ୟ ଜିଣି ଶହସ୍ରର ତେଜ
କେନ ଖଣ୍ଡ କରିଣ ଭାଙ୍ଗିଲେ ଦେବରାଜ ।
ଦେଖିଣ ଦେବତାଏ ଜୟେ ଜୟେ କଲେ
ଆନରେ ଏ ଶହସ୍ର ନ ଉପୁଡଇ ବୋଇଲେ
ଏଥୁ ଅନନ୍ତରେ ଯେ ରାମଚନ୍ଦ୍ର ରାଏ
ଲକ୍ଷ୍ମଣଙ୍କୁ କୋଳକରି ମହାଶୋକ କଏ ।
ଗଳାରେ ଗଳା ବାନ୍ଧି ହୃଦରେ ହୃଦ ଛନ୍ଦ
ମହାଶୋକ ଭରେ ଯେ ରାମଚନ୍ଦ୍ର କାନ୍ଦ ।
ଆହାରେ ଦଇବ ଏହା ମୋତେ କିମ୍ପା କଲୁ
ଅଳ୍ପଅଳ ଭାଇ ମୋର ଏଡ଼େ କଷ୍ଟ ଦେଲୁ ।
ରାଜ ସୁଖ ତେଜିଣ ଅଇଲା ମୋର ସଙ୍ଗେ
ବାହୁଡ଼ି ନଗଲା ସେ କହିଲି ନାନା ରଙ୍ଗେ ।
କନ୍ଦମୂଳ ଫଳ ଖାଇ ମୋ ଭୁଲେ ବନେ ନେଲା
ଚଉଦ ବରଷ ପୁଣି ନିଦ୍ରା ସେ ନକଲା ।
ଘରରେ ଉଜାଗର ହୋଇଣ ଜଗିଥାଇ
ଦୁଃଖ କାଳକୁ ସଙ୍ଗାଳି ଅଟେ ମୋର ଭାଇ ।
ସାବତ ଜନନୀର ସେ ଅଟଇ ତନୟେ
ସ୍ନେହ ନବହଇ ଯେ କହୁ ଏଥାକାରେ ।
ଅର୍ଥ ରୟେ ବାଣ୍ଟନ୍ତି ଆବର ଭାଇମାନେ
ମୋତେ ଦୁଃଖ ମିଳିବାରୁ ଆସିଅଛୁ ବନେ ।
ଆରେ ମୋ ଭାଇ ଲକ୍ଷ୍ମଣ ଆରେ ମୋର ବା
କାହିଁ ପାଇଁ ଆସିଣ ଅଇଲୁ ଏତେ ପାଘ ।
ସର୍ବ ଗୁଣେ ସୁଲକ୍ଷଣ ଅଟେ ମୋର ଭାଇ
ଘରକୁ ଗଲେ ମୋତେ କହୋଲେ ଆଇ ।
ଲକ୍ଷ୍ମଣ କାହିଁ ମୋର ପଛରେ ଆସି
କହୋଲି କହିବ ମୁହିଁ ସୁମିତ୍ରାର ବସି ।
ଭୁହି ମଲେ ଜରେ ମୁଁ ଅଯୋଧ୍ୟାକୁ ଯାଇ
ଜାନକୀ ନେବାରେ ମୋର ପ୍ରୟୋଜନ ନାହିଁ

ଆଗମନେ କରିଥିଲେ ଭରତ ଯାଇ ବନ
ଭାଇ ଭରତଙ୍କ ବାପ ମାଆ ଥିଲେ ଯିନା ।
କେବଣ ଦଇବରେ ଲଗିଲୁ ମୋତେ ବାଦ
ରାଜ୍ୟ ଛଡ଼ାଇ ସାବତ ଜନନୀ ବନ ଭେଦ ।
ମୋହର ଭାର୍ଯ୍ୟା ତହୁଁ ଅସୁର ଆଣିଲା
ସଖା ସୋଦର ମୋର ଏପରି ଭାଇ ମଲା ।
ତିନଜଣ ଅଇଲୁ ଦୁଇଜଣ ଛାଡ଼ିଗଲ
ଅଗାଧ ସମୁଦ୍ରେ ମୋର ଭେଳା ବୁଡ଼ାଇଲ
ସୁକୁମାର ଶରୀର ତୋ ବିଷମ ଶର ଫୁଟି
ଏତେଘାଆକେମନ୍ତେରେ ସହିବ ଦେହଗୋଟି
ଚଉକୁ ମୋର ଜାଣିଣ ସେବା କରିଥାଉ
ଅଗମ୍ୟ ବିପିନରୁ ମୃଗ ମାରି ଦେଉ ।
ଚଉଦ ବରଷ ମୁଁ ବୁଲିଲି ଘୋରବନେ
ତୋହର ବିମୁଖ ମୁଁ ନ ଦେଖଇ ନୟନେ ।
ସୀତା ଗଲା ବନଠାରୁ ମୂର୍ଚ୍ଛି ହେଲି ବାଇ
ତୁହି ମୋତେ ଅନେକ ବିଆରୁ ଥାଉ ଭାଇ ।
ତୋକଥା ମନେପଡ଼ିଲେ ତୁଟଉ ଶୋକହୋଇ
ତୋମୁଖ ଦେଖିଲେ ଭାଇ ମୋର ଦୁଃଖଯାଇ
ଦୁଃଖକୁ ଦୁଃଖୀ ତୁ ସୁଖକୁ ଉପକାରୀ
ଅଯୋଧ୍ୟା କଟକରେ ତୁ ହୁଅନ୍ତୁ ଅଧିକାରୀ ।
ସାନୁଜ ଶତ୍ରୁଘନରେ ପାଳୁଣ ଅଛୁ ପୃଥ୍ୱୀ
ନରେଖ ଜନ ପ୍ରାଏ କଲୁରେ ଭାଇ ଏଥି
ଛେଦ ଭେଦ କଥାରେ ନଜାଣୁ ମୋର ଭାଇ
ବେଲକାଣି କଥା ମୋତେ ଦେଉଛେ ଶିଖାଇ
ସୀତାର ସ୍ୱୟମ୍ବର କାଳେ ଶିଖାଇଲୁ
ଶିର ନୁଆଁଇ ଧନୁ ନ ଧର ବୋଇଲୁ ।
ଏହିଠାରେ ଲକ୍ଷେ ରାଜା ଅଛନ୍ତି ସମସ୍ତେ
ନମସ୍କାର କଲି ପ୍ରାୟେ ମଣିବେ ଉଦ୍ଧାଥେ
ତାହା ଶୁଣି ବାମ କରେ ଧନୁ ମୁଁ ଧରଇ
ସନ୍ଦେହଲାଗିଲେମୋତେରେତୋତେପଚାରଇ
ସୀତା ହରିଲା ବାରିଧନ ଅଇଲା କବନ୍ଧ
ତୁହି ଯିବା ବାବୁରେ ଛେଦିଲୁ ତାର କନ୍ଧ ।
ସୂର୍ପଣଖା ନାସା ଶ୍ରବଣ ତୁହି ସେ କାଟିଲୁ
ଇନ୍ଦ୍ରଜିତ ପ୍ରାଏକ ତୁ ଝଷୀ ବିନାଶିଲୁ ।
ଦେବତାମାନଙ୍କୁ ତୁରେ ଅଭୟ ବର ଦେଲୁ
ଦେଖୁ ଦେଖୁ ଏବେ ତୁରେ ଜୀବନ ହରାଇଲୁ

ତୁ ଜୀବନ ହରାଇଲୁ ରାବଣର ହାତେ
ଏବେ ଦେହ ମୂର୍ଚ୍ଛିରେ ଧରିବ କେମନ୍ତେ ।
ତୋତେ ନଦେଖି ବାବୁରେ ସବୁ ପାଶୋରିବ
ରାବଣକୁ ମାରିବାର ବୁଦ୍ଧି ହରାଇବ ।
ମୋତେ ସେବା ବାବୁରେ କରୁ ଦିବା ନିଶି
ନିଦ୍ରାଗଲେ ମୂର୍ଚ୍ଛିରେ ଜଗିଣ ଥାଉ ବସି ।
ଏନଜାଣି କେ ମୋତେ ପରଷିବରେ ବାବୁ
ତୁହି କରିଥିଲେରେ ମୋତେସମ୍ପଦମିଳେସବୁ
ଦିଗପାଳ ସମାଜରେ ଅଟରେ ମୋର ଭାଇ
ଦେବାସୁର ନରରେ ଜଣନ୍ତା କେହି ନାହିଁ ।
ଏ ମଞ୍ଚ ମଣ୍ଡଳରେ ଥିଲେ ତୋତେ ମୃତ୍ୟୁ
ବିଶ୍ୱାମିତ୍ର ମୁନି କହିଣ ଥିଲେ ତତ୍ତ୍ୱ ।
ତାହାଙ୍କର ବଚନ ଏବେ ହେଲା ଆନ
ଜମାଇ ସବୁ କଥା ହେଲା ମିଛ ପୁଣ ।
ସୁଷେଣ ବୋଇଲ ପ୍ରଭୁ ହୋଇଲକ ବାଇ
ଚେତରହିତ ଯୁଦ୍ଧରେ କପି ଗୋଟିଏ ମରନାହିଁ
ଯୁଦ୍ଧ ସରିଲେକ ଜଅନ୍ତି ତୋର ପୁଣ
ଏରାମାୟଣ ଯୁଦ୍ଧରେତୋର ନମରିବେସୈନ୍ୟ
ଦେଖ ଏବେ ତୁମ୍ଭେ ହେ ନମରେ ତୁମ୍ଭ ଭାଇ
ମରିବାର ଲେଖକ ଏମନ୍ତ ନ ଦିଶଇ ।
ଆଣୁ ଗଣ୍ଡି ଭାଙ୍ଗିଣ କପି ତୋର ମଲେ
ରକତ ନଖରେ ପଡ଼ି ସମସ୍ତେ ଭସିଲେ ।
ଦୁଇଖଣ୍ଡ ତିନଖଣ୍ଡ ହୋଇଣ ଥାନ୍ତି ପଡ଼ି
ବଳ ହେଲା ସବୁଙ୍କୁ ଦେଖାମାନେ ଲେଉଡ଼ି ।
ଅମୃତ ସିଞ୍ଚିଣ ପୁଣ ଜିଆଇଣ ଦ୍ୟନ୍ତି
ଯୋଗିନୀବଳ ଆସିଣ ଅସୁର ଭକ୍ଷନ୍ତି ।
ଏ ପୁସ୍ତକେ ଲେଖାଅଛୁ ଶ୍ରୀରାମ ଏବେ ଶୁଣ
ରାମାୟଣ ଯୁଦ୍ଧରେ ନମରିବେତୋରସୈନ୍ୟ
କାହାରି କିଛି ନଖାନ୍ତି ହନୁମାନ ସାହା
ଏ ସକାଶେ ଦେବତାଏ ଅଟନ୍ତି ପ୍ରାଣପ୍ରିୟା
ଦେଖ ବଦନ ସୁନ୍ଦର ଭାଇ ନୟନ ଅଛି ବୁଝ
ଓଳମ୍ବ କୁସୁମ ଜାଣି ଅଧର ବିରାଜ ।
ଦେଖ ନାସିକା ଅଗ୍ର ଶ୍ରବଣ ନୟନ
ନବଉଡ଼ ମଣି ଦିଶେ ତା ସୁନ୍ଦର ବଦନ ।
ସର୍ବାଙ୍ଗ ସୁନ୍ଦର ଏ ସେ ସୁମିତ୍ରାର ସୁତ
ଶୁଣିକରି ଶ୍ରୀରାମ ହେଲେ ତୋଷଚିତ୍ତ ।

ଅଷ୍ଟାଙ୍ଗ ଶରୀରେ ଯାର ଦୁର୍ଗୁଣ ନାହିଁ କିଛି
ଶ୍ରୀରାମ ବୋଇଲେ ଅବଗୁଣ ଗୋଟିଏକ ଅଛି
ଦକ୍ଷିଣ ଭୁଜରେ ଦେଖ ଜନ୍ମରେ ନାଟିକା
ତେଣୁକରି ମୋତେ ରେ ଲଗୁଛି ଚାଟକା ।
ସୁଷେଣ ବୋଇଲେ ପ୍ରଭୁ ତହିଁକି ନ ଡର
ଅସ୍ତ୍ର ଶର ମରଣରେ ଏମନ୍ତ ବେଭାର ।
ସର୍ପଦଘାତ ଆବର ବଜ୍ରଘାତ ହେଲେ
ପ୍ରାଣ ଥାଇ ଶରୀରେ ନାଟିକା ନଚଳେ ।
କ୍ଷଣକରେ ପ୍ରାଣୀପୁଣ ଉଠନ୍ତି ଜ୍ଞାନ ପାଇ
ଅଦ୍ଭୁତ କଥା ଶୁଣି କେ ଜ୍ଞାନ ହାର ନାହିଁ ।
ରାଜାମାନେ ଦଣ୍ଡିବାକୁ ପ୍ରାଣୀଙ୍କି ଧରିନେଇ
ଶସ୍ତ୍ରଘାତ ହେବ ବୋଲି କର୍ଣ୍ଣରେ ଶୁଣଇ ।
ଆବର ଦୋଷେ କ ତନୁ ହେବ ଆନୁଆନ
ନାକତାଳକା ମୃ[illegible] ଏସନ ବିଧାନ ।
ନାଟିକା ନ ଚଳଇ ଯେ ପ୍ରାଣଥାଇ ରହି
କ୍ଷଣେ ସଞ୍ଚାର ହେଲେ ସେ ପ୍ରାଣି ଜୀବପାଇ ।
ସୁମିତ୍ରାନନ୍ଦନ ଦେହେ ଦେବ କିଛିନାହିଁଦୋଷ
ମନରେ ଏକମାତ୍ର କରିଛି ଭରସ ।
ଦେଖନ୍ତୁ ବୁକୁ ଫୁଟିଣ ଯାଇଅଛି ସସ୍ତ୍ର
ଏଥିକୁ ଭଳେଣି ତୁମ୍ଭେ ନ କର ରଘୁଶିଷ୍ୟ ।
ଏକଥା ଶୁଣି ଶ୍ରୀରାମ ଅନାଇଲେ ହୁଆ
ଅନ୍ଧାରରେ ଚିହ୍ନିଣ ନ ପାରେ ପୁଣ ତାହା ।
ବେଳଅସ୍ତ ହେଲବେଳେ ଶକତି ମାରିଗଲା
କାନ୍ଦୁ କାନ୍ଦୁ ପ୍ରଭୁ ଯେ ପ୍ରହରେ ହୋଇଲା ।
ଶ୍ରୀରାମ ବୋଇଲେ ହେ ଦହୁଡ଼ି ଜାଳ ଆଣ
ଦେଖିବ ଶକତିର କେତେଡ଼େ ଘାଆ ପୁଣ ।
ବୁକୁଠାରୁ ପିଠି ଯାଏ ଜଳା ଯେ ଦିଶଇ
ଘାଆ ଦେଖି ଶ୍ରୀରାମ ଅଧୈର୍ଯ୍ୟରେ ଚାହିଁ ।
ତତକ୍ଷଣେ ସଜଳମ ଗୁଣ୍ଡି ହୁଳା କଲେ
ରଘୁନାଥ ସମ୍ମୁଖରେ ନେଇଣ ଦେଖାଇଲେ ।
ଆଲୁଅ ଚରସରେ ଚାହିଁଲେ ଶରଘାତ
ବୁକୁଠାରୁ ପିଠି ଯାଏ ହୋଇଛି ମହାଗାତ ।
ଶଗଡ଼ ଚକରେ ଯେହ୍ନେ ଅଖ ଯେ ପଶଇ
ଏପାଖରୁ ସେ ପାଖକୁ ବଳଣ ଦିଶଇ ।
ଇଅଁଳା ପିଅଁଳା ଯେ ଷିଶୁମ୍ନା ନାଡ଼ି
ଭିନ୍ନ ଭିନ୍ନ ହୋଇଣ ଦିଶୁଅଛି ବାରି ।

କଳା ବୁକୁରେ ଆମ୍ବ ପିଳୋଷ୍ଠ ଫପସ
ତେଅଟିର ଘଟିକା ୪।୦ ଦେଖିଲେ ରଘୁଶିଷ୍ୟ
ମଲ ମଲ ବୋଲି ରାମବୁକୁରେ କୋଡ଼ହୋନ୍ତି
କେନ ଭୁଜକୁ ନେଇ ଶିରରେ ମାରନ୍ତି ।
ଦୁଇ ନେତ୍ରରେ ଦେଖନ୍ତି ପ୍ରାଣ ଲଙ୍ଗ ଗୋଟି
ଘାଆବାଟେ ରୁଧିର ବାହାର ଫୁଟି ଫୁଟି ।
ରାମଚନ୍ଦ୍ର ବୋଇଲେ ମଲଣି ମୋର ଭାଇ
ଏକଥା ଯାକ ମୋତେ କଲ କଇକେଇ ।
ମନ୍ଥରାର ବୋଲେ ଅଧର୍ମକୁ ସେ ନ ଡରିଲା
ହାତର ସୁନାକୁ ନେଇ ପାଦରେ ମରଦିଲା ।
ଭାଇର ଦୁଃଖ ମୁଁ ଯେ ନପାରେ ପୁଣ ଦେଖି
ଦୁଇଜଣଙ୍କୁ ମୁଁ ଦେଇ ହେଲି ନିରମାଖି ।
ଆଜି କ ଲକ୍ଷ୍ମଣ ମୋର ଜୀଇବ ଏଡ଼େବେଳ
ପୋଡ଼ୁ ପୋଡ଼ୁ ମୋ ଜୀବନ ଏହିକ୍ଷଣି ଯାଉ ।
ଶ୍ରୀରାମ କାନ୍ଦିବାରୁ କାନ୍ଦେ ବିଭୀଷଣ
କାନ୍ଦନ୍ତି ସୁଗ୍ରୀବ ଅଙ୍ଗଦ ସୁଷେଣ ।
ଜମ୍ବେବ ଶତବାଳ ଗନ୍ଧମାଦନ
ବସନ୍ତ ଦୁର୍ବିନ୍ଦ ଯେ କୁମୁଦ ଚନ୍ଦନ ।
ଋକ୍ଷକପି ସୈନ୍ୟ ଯେ ସମସ୍ତେ କାନ୍ଦନ୍ତି
ଶ୍ରୀରାମ ଲକ୍ଷ୍ମଣଙ୍କୁ ବେଢ଼ିଣ ଧରିଛନ୍ତି ।
ଶୋକକୁ ସମ୍ଭାଳି ସୁଷେଣ ଜଣାଇଲେ
ହେ ରାମ ଶୋକ ତୁମ୍ଭେ ନକର ବୋଇଲେ ।
ନ ମରିବେ ତୁମ୍ଭ ଭାଇ ଜୀଇବେ ନିଶ୍ଚିତ
ଯେବଣ ମନ୍ତ୍ର ପୋଥିଅଛି ମୋର ହସ୍ତ ।
ଏ ପୋଥି ପ୍ରସାଦରେ ଜୀଇବେ ଲକ୍ଷ୍ମଣ
ନିଦ୍ରାରୁ ଉଠିଲା ପ୍ରାଏ ଉଠିବେ ଏହିକ୍ଷଣ ।
ଏମନ୍ତ ବୋଲି ବୈଦ୍ୟ ମନ୍ତ୍ରୀ ପୋଥି ଫେଇ
ଦହୁଡ଼ିର ହାସରେ ପୋଥିକି ଅନାଇଁ ।
ପୃଷ୍ଠାକୁ ପୃଷ୍ଠାମାନ ଦେଲେ ଲେଉଟାଇ
ସତର ପୃଷ୍ଠା ଅନ୍ତରେ ଦେଖିଲା ପୃଷ୍ଠାପାଇ ।
ଯେବଣ ସହସ୍ରକୁ ଯେବଣ ମହୌଷଧି
ସାମ ଦେବରୁ ତାହା ଉପାଏ କରି ବିଧି ।
ବ୍ରହ୍ମଶକତିକ ଯେବଣଇଁ ରସ
ପଢ଼ିଣ ସୁଷେଣ ମନରେ ହେଲେ ତୋଷ ।
ଶ୍ରୀରାମଙ୍କୁ ବୋଇଲେ ଶୁଣ ହେ ଗୋସାଇଁ
ଲକ୍ଷ୍ମଣ ଘାଆକୁ ମହୌଷଧି ଅଛି ଯହିଁ ।

ଗନ୍ଧମାର୍ଦ୍ଦନ ନାମରେ ଏକଇ ଗିରିବର
ଏଠାରୁ ଚଉରାଶି ସସ୍ର ଯୋଜନ ଅଟେ ଦୂର
ପକ୍ଷୀ ଜନ୍ତୁମାନଙ୍କର ନ ପାଏ ସାହସ
କିଏ ସେ ଯାଇ ଆସିବ ବୃଦ୍ଧ ହେ ରଘୁଶିଷ୍ୟ
ତହିଁର ପୂର୍ବଭାଗେ ଉଦେଗିରି ଜାତ
ଦକ୍ଷିଣ ଆଉର ଶୃଙ୍ଗ ହିରାମଏ ଜ୍ୟୋତ ।
ସେଥିର ଉପରେ ଯେ ଅଟେ ଗିରିବର
ପଞ୍ଚାଶ ଯୋଜନ ଉସ୍ୱର୍ଗ ଶିଖ ତାର ।
ପଞ୍ଚାଶ ଯୋଜନ ଉଣ୍ଣର୍ଗୁ ବିଷାଳ ବୃକ୍ଷଗୋଟି
ସ୍ୱମଯ୍ୟୁରେ ବିଧାତା ସେସ୍ଥାନେ କରେଗୋଷ୍ଠୀ
ସବୁ ଦେବତାଙ୍କର ଚନ୍ତା ଜ୍ୱର ସେ ନାଶଇ
ଅମର ଫଳ ସେଥିରୁ ଭୁଞ୍ଜେ ଶତସାଇଁ ।
ଅଚ୍ଛୁସ୍ଥାନମାନ ସେଥିରେରହିରେ ନର୍ଗ୍ୱହୋଇ
ଦେବତାମାନେ ମିଳଣ ଗୋଷ୍ଠି କରେ ତହିଁ
ଅପସରା କନ୍ନରା ବିଦ୍ୟାଧରା ଆସନ୍ତି
ବ୍ରହ୍ମା ସେଠାରୁ ଆସନ୍ତେ ଗୋଟିଏ ନ ରହନ୍ତି
ମନ୍ତ୍ର ସାଧି ବ୍ରହ୍ମା ତହିଁକି ଆସଇ
ସେ ସ୍ଥାନେ ବସି ମନ୍ତ୍ର ଶିଖିଲେ ସିଦ୍ଧହୋଇ ।
ସେଥି ବସି ତପକଲେ ଦିଶେ ସ୍ୱର୍ଗପୁର
ଅତି ଯତନରେ ତାକୁ ରଖିଛି କୁଶଧର ।
ସେ ସ୍ଥାନକୁ ଜଗିଛନ୍ତି ଗନ୍ଧର୍ବ ତିନଗୋଟି
ଦେବାସୁର ତହିଁରେ ପୁରାଇ ନ ଦିଅନ୍ତି ।
ପଞ୍ଚଶମର୍ଦ୍ଦ ତସୈନ୍ୟତହିଁରେ ସର୍ବଦାଥାନ୍ତିରହି
ଆନ ଲୋକ ଦେଖିଲେ ଯୁଝିବେ ପରିଧାଇ
ସେ ଗୋଠା ଭିତରେ ଯେ ଅଟେ ବଡବୃକ୍ଷ
ଶୁଦ୍ଧ ସୁବର୍ଣ୍ଣର ପରାଏ ଦିଶେ ସେ ପ୍ରତ୍ୟକ୍ଷ ।
ପୀତବର୍ଣ୍ଣ ପ୍ରାଏ ଯେ ଦିଶେ ତାର ବର୍ଣ୍ଣ
ପ୍ରବାଳ ପୁଷ୍ପ ପ୍ରାଏକ ସମସ୍ତ ବୃକ୍ଷମାନ
ସେହି ବୃକ୍ଷରୁ ପତ୍ର ଲୋଟାଏ ଯେବେ ଆଣି
ତାହାକୁ ବୋଲି ହେବ ବିଶଲ୍ୟ କରଣି ।
ଏ ବ୍ରହ୍ମ ଶକତ କି ସେହି ମଉଷୋଧି
ସାମ ବେଦରୁ ମନ୍ତ୍ର ଯେ ଅଟେ ପରସିଦ୍ଧି ।
ରାତ୍ର ଥାଉ ଯେବେ ଆଣିବ ଯାଇଁକରି
ଏ ଘାଆ ବାସି ହେଲେ ଉରସି ନ ପାରି ।
ଅକ୍ଷମ ଶକ୍ତି ଘାଆ ଏ ବଡାଇ ଦୁର୍ଦ୍ଧର
ଗ୍ରସ୍ତ ପାହିଲେ ନ ବଞ୍ଚିବେ ଲକ୍ଷ୍ମଣ ମହାବୀର

ବୁଲୁ ପାଞ୍ଚ ଯିବ ସୂର୍ଯ୍ୟର ଅରୁଣ ପ୍ରକାଶେ
ଦଶଗ୍ରୀବ ଆସିବ ଯେ ପୁଣ ରାତ୍ର ଶେଷେ ।
ରଣଗୋଳ ହୋଇବ ହୋଇବ ପରମାଦ
ଶୁଣିକରି ରଘୁନାଥ ହୋଇଲେ ବିଷାଦ ।
ମନେ ବିଚାରି ଯେ ବୋଇଲେ ରାମରାଣ
ଭୁ ମନ୍ତ୍ରୀକହିଲୁ ଯେ ମୋତେକଥାରେଜଣିପୁଣ
ଲକ୍ଷେକ ଯୁଣ ଯେ ଅଟଇ ସେତ୍ତ ଦୂର
ରାତ୍ରଥାଉଁ କେ ଯାଇ ଆଣିବ ଅଛି ବୀର ।
ରାତ୍ର ପାହିଲେ ଲକ୍ଷ୍ମଣ କେବେ ନ ଜୀଅଇ
ଏସନେକ ବାକ୍ୟ ଋଷିମାନେ ଛନ୍ତି ଲହି ।
ଏକଥା ଶୁଣିଣ ଶ୍ରୀରାମ ଦ୍ୱିଗୁଣ ଶୋକ ଜାତ
ଆଉକି ଜୀଇବ ଯେ ଏ ମୋହର ଭ୍ରାତ ।
ସୁଷେଣବୋଇଲେ ଦେବଏହାଯେକମ୍ପାକେଲ
ଦୁଃସହଦୁର୍ଗମକୁ ଯେହନୁମନ୍ତକୁ ଭୁମ୍ଭେମେଲ
ତୁମ୍ଭେ କମ୍ପା ବିସ୍ମୟେ ହୋଇଣ ବିଚାର
ଯାଇ ଆସି ପାରଇ ସେ ହନୁମନ୍ତ ବୀର ।
ନ କରି ଚନ୍ତା ପ୍ରଭୁ ନ କର ଶୋଚନା
ଶତେ ଲକ୍ଷେ ଯୁଣ ହନୁ ଯାଇ ଆସି ସିନା ।
ନ କର ବିଳମ୍ବ ପଥ ଅଟେ ବହୁଦୂର
ଆଜ୍ଞା ବେଗେ ଦିଅ ପ୍ରଭୁ ପବନ କୁମର ।
ଶୁଣିକରି ରାମଚନ୍ଦ୍ର ହୋଇଲେ ମଉନ
ଲଜ୍ୟାଭରେ ବିଚାର କରନ୍ତି ମନେ ମନ ।
ଦୁଃସହ ସ୍ଥାନକୁ ମୁଁ ପେଶିବି କେମନ୍ତେ
ଅନ୍ନବସ୍ତ୍ର ନ ଦିଅଇ ସେବାକରେ ମୋତେ ।
ସବୁ ଝଞ୍ଜାଳ ଏହାକୁ ଆଗ ମୁଁ କହଇ
ମୋର ବୋଲେସୀତାଙ୍କୁ ଖୋଜିଲାସିନ୍ଧୁଡେଇ
ଲଙ୍କାଗଡ଼ ଦହିଣ ଅକ୍ଷୟେ କ୍ଷୟ କଲା
ପର୍ବତ ଯୋଡିଣ ସେତୁବନ୍ଧ ସେ ବାନ୍ଧିଲା ।
ଯୁଦ୍ଧକୁ ଆଗଭର ହୋଇଣ ରହିଥାଇ
ବଡ଼ ଉପକାରୀ ଅଟେ ପବନ ତନୟୀ ।
ନାଗଫାଶ ବେଳରେ ଗରୁଡକୁ ଆଣିଲା
ପଞ୍ଚାଶ ଲକ୍ଷ ଯୋଜନ ରାତ୍ରରେ ବିଜେମିଲା ।
ପୁଣି ହେମବନ୍ତରୁ ଆଣିଲା ମଉଷଧି
ତେଣୁ କ୍ଷୟ ଗଲା ମୋର ବ୍ରହ୍ମଶର ବ୍ୟାଧି ।
ରାତ୍ର ଉଜାଗର ହୋଇ ବୁଲୁଥାଇ ଥାଟ
ରାମାୟଣ ଯୁଦ୍ଧକୁ ସେ ଅଟଇ କବାଟ ।

ଏବେ ଏତେ ଦୂରକୁ କେମନ୍ତେ ବରଗିବ
ସେ ନ ଗଲେ ମୁଁ ଖାଇବ ନଷ୍ଟପ୍ରେ ନପାଇବ
ଉଭୟ ସଙ୍କଟରେ ଖଳନ୍ତି ରାମରାଏ
ସମସ୍ତ ଋକ୍ଷକପି ସମସ୍ୟା ନ ହୁଏ ।
କରଯୋଡ଼ି କରି ସେ ବୋଲଇ ହନୁମନ୍ତ
ମୋଠାରୁ ଦୟା କୁମ୍ଭେ ଗୁଡ଼ିଲ ସୀତାକାନ୍ତ ।
ଲକ୍ଷ୍ମଣ ପ୍ରାଏ ସ୍ୱର୍ଗୀ ହୋଇଛୁ ଶକ୍ତିଭେଦ
ଏଥିରୁ ଅଧିକ କ ଅଛଇ ପ୍ରମାଦ ।
କମ୍ପାଇ ଯାଅ ବୋଲି ନବୋଲ ଦେବମତେ
ତୁମ୍ଭ ଆଜ୍ଞାରେ ବ୍ରହ୍ମାଣ୍ଡ ଟମଇ କଣ୍ଠତେ ।
ଏଠାକୁ ଗନ୍ଧମାଦ୍ଧ'ନ ଅଟେ କେତେ ଦୂର
ଏହ୍ରକ୍ଷଣି ଔଷଧି ଆଣିବ ରଘୁବୀର ।
ତୁମ୍ଭ ଆଜ୍ଞାରେ ତ୍ରିଭୁବନ ଜିଣି ମୁଁ ପାରଇ
ବ୍ରହ୍ମାରୁଦ୍ର ଦେବଙ୍କୁ କାହାକୁ ନ ଡ଼ରଇ ।
ହିଅସି ଆଜ୍ଞାଦେବ କାହାକୁ ଭୟ ନାହିଁ
ଲକ୍ଷ୍ମଣର କଷ୍ଟ ଦେଖି ହକଳ ମୋର ଦେହ
ଶୁଣିକରି ରାମଚନ୍ଦ୍ର ଆନନ୍ଦ ହୋଇଲେ
ଖୁଭରେ ଯାଅ ବାବୁ ଆସ ଯେ ବୋଇଲେ
ବାଟରେ ରକ୍ଷା ମୋତେ ହିଅନ୍ତୁ ନାରାୟଣ
କ୍ଳେଶ ଖଣ୍ଡିବେ ତୋହର କମଳାରମଣ ।
ଶତ୍ରୁ ସଂହାରନ୍ତୁ ତୋର ଦେବ ଚକ୍ରଧାରୀ
ରାହ ନ ପାଡ଼ୁ ଔଷଧି ଆଣ ବେଗକରି ।
ଶୁଣିକରି ହନୁମନ୍ତ ମନରେ ହରଷ
ସେନା ଯୁଥପତି କଲେ ହନୁକୁ ଆଶ୍ୱାସ ।
ସାଧୁ ସାଧୁ ବୋଲିଣ ପ୍ରଶଂସା କରନ୍ତି
ସୁଗ୍ରୀବ ବିଭୀଷଣ ବହୁତ ଭିଆରନ୍ତି ।
ଜାମ୍ବେବ ବୋଇଲେ ତାକୁ ଶୁଣରେ ମାରୁତ
ଯେଉଁବାଟେ ଯିବୁ ପ୍ରମାଦ ତୋତେ ଅଛୁ ।
ଶ୍ରୀରାମ ସୁମରି ବାବୁରେ ତାର କାର୍ଯ୍ୟକର
ଉପ୍ରୋଧ ନ କରିବୁ ତୁ ପବନ କୁମର ।
ତେତିଶ କୋଟି ସିଂହର ଅଟେ ତୋର ବଳ
ଯାଅ ବାବୁ ବେଗରେ ପବନ ଦୁଲାଳ ।
ପୂର୍ବକାଳ ସୁମରି ଔଷଧି ଘେନି ଆସ
ଶତ୍ରୁ ମୁଖେ ଯେମନ୍ତେ ନ ପାଇବା ଉପହାସ ।
ସୁଦ୍ଧ ନାଡ଼ି ସେନାପତି ଖାଇ ସୈନ୍ୟ ମଲେ
ଏକଥା ରାବଣକୁ ଲଙ୍କା ନୋକେ ଭଲେ ।
ଆମ୍ଭର ସୈନ୍ୟରୁ ଯେବେ ଗୋଟିଏ ମରିବ
ତେବେ ସେ ଲଙ୍କାଗଡ଼େ ଚହଳ ପଡ଼ିବ ।
ଏମନ୍ତେ ମାରୁତିକ ଅନେକ ଭିଆରିଲେ
ଯାଇ ଆସ ବୋଲିକରି ଜାମ୍ବେବ କହିଲେ ।
ହସଇ ମାରୁତି ସେ ମନ୍ତ୍ରୀବର ବାଣୀ ଶୁଣି
ଆଗହୁଁ କହିଲେ ସେ ହୋଇବ କସ ପୁଣି ।
ଯାଇ ଆସି ସେ କରି ମୁଁ ପାରେ କାର୍ଯ୍ୟ
ତେବେ ସେ ରାବଣ ମୁଖେ ନପାଇବା ଲାଜ
ଏତେ ବୋଲି ଶ୍ରୀରାମଙ୍କୁ ନମସ୍କାର କଲା
ପଞ୍ଚାଶ ଯୋଜନ ଊର୍ଦ୍ଧ୍ୱକୁ ଉଠିଗଲା ।
ଉତ୍ତର ମୁଖ ହୋଇ କରଇ ଗମନ
ଯୋଗବଳ ଘେନି ଚଳେ ପବନ ନନ୍ଦନ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ଦୟା କରିଣ ମୋତେ କହ ହେ ତ୍ରିପୁରାରି
ରାହ ପାଞ୍ଚଘଡ଼ିରେ ହନୁମନ୍ତ ଗଲା
ଦେଖିଣ କାସେଳ ପର୍ବତକୁ ଓହ୍ଲାଇଲା ।
ଯୋଗିନୀ ଗଣ ଘେନିଣ ରଣ ଭୂମିରେ ମିଳ
ଅସୁରଙ୍କୁ ଭକ୍ଷିଣ କପିଙ୍କି କରେ ଠୁଳ ।
କାଟିଲା ମୁଣ୍ଡ କପିଙ୍କର ସେ ଲଗାଇ
ଜଳ ଦେଲା କପିଙ୍କି ସେ ସଳଖେ ଥକାଇ
ଅସୁର ଭକ୍ଷିଣ ସେ ଔଷଧି ପାନ କଲେ
ମୁଖମାନ ଧୋଇଣ ସେ ସୁବଳସ୍ୱା ଗଲେ ।
ଏଥୁ ଅନନ୍ତରେ ସେ ଶୁଣ ହଜେକଲେ
ସଞ୍ଜିବନୀ ମନ୍ତ୍ର ପଢ଼ି ପାଣି ସେ ସିଞ୍ଚିଲେ ।
ଜୀବପାଇ ସମସ୍ତେ ହେଲେ ପୁଣି ଚେତା
ଅମୃତ ସିଞ୍ଚନ୍ତେ ପୁଣ ହେଲେ ବଳବନ୍ତା ।
ନିଦ୍ରାରୁ ଉଠିଲା ପ୍ରାଏ ଉଠିଲେକ ପୁଣ
ଭୟଙ୍କର ରୂପ ଧରିଣ ଧାଇଁଲେ କପିଗଣ ।
ହୁଡ଼ୁଡ଼ି ହୁଳାରି ପାଶେ ହେଲେ ପରବେଶ
ଦେଖିଲେ ଲକ୍ଷ୍ମଣ ପଡ଼ିଛୁ ମୁର୍ଚ୍ଛାଗତ ।
ହକଳ ହୋଇଣ ସେ ସେଠାରେ ରହିଲେ
ଏଥୁ ଅନନ୍ତରେ ଶୁଣ ହେଶ ଭଲେ ।
ରଣ ଭୂମି ଗୋଟା ସେ ଶୁଭମନ୍ତ ହେଲା
ଭଲି ଭୂମି ପ୍ରାଏକ ସେ ଭୂମି ହସିଲା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଲଙ୍କାଗଡ଼ର କଥା ଶୁଣ ଆଗୋ ସ୍ୱସ୍ତୀ ।

ରାବଣ ସେ ଲକ୍ଷ୍ମଣକୁ ଶକ୍ତି ମାରି ଗଲା
ଶ୍ରୀରାମ ମାରନ୍ତେ ତାକୁ ଭୟରେ ପଳାଇଲା ।
ନିଜ ନଗରରେ ଯାଇଣ ହୋଇଲା ପରବେଶ
ଶତ୍ରୁକୁ ମାରିଲି ବୋଲି ମନରେ ହରଷ ।
ଚରକୁ ପେଷିଦେଲା ଶ୍ରୀରାମର ପାଶ
ଲକ୍ଷ୍ମଣ ମଲା କି ଜୀଇଲା ଦେଖି ଆସ ।
ଶୁଣି ଚର ବେଶାନ୍ତର ଗଲାକ ତତ୍ପର
ଗଡ଼ରୁ ବାହାରିଣ ଧାଇଁଲା କୋପ ମୂର୍ତ୍ତି ।
ଯାଇ ଋକ୍ଷକପିଙ୍କର ମଧ୍ୟରେ ପଶିଲା
ହନୁମନ୍ତ ଯିବାର ସେ ଦେଖିଣ ବାହୁଡ଼ିଲା ।
ଦଶଗ୍ରୀବ ଆଗରେ ଓଲଟେ ବେଗେ ଯାଇ
ଶୁଣ ଦେବ ଗଜନ ହେ ମନ୍ଦୋଦରୀ ସାଇଁ ।
ଲକ୍ଷ୍ମଣଙ୍କୁ ଶକ୍ତି ତୁମ୍ଭେ ମାରିଣ ଅଇଲ
ଶତ୍ରୁର ମୁଖେ ତୁମ୍ଭେ କାଳି ଲଗାଇଲ ।
ଶ୍ରୀରାମ ହକଳ ଯେ କହନ୍ତେ ନ ସରଇ
ଅତି ଶୋକଭରେ ଭାଇକି କୋଳରେ ଧରଇ
ବୁକୁରୁ ଶକ୍ତି କେହି ଉପାଡ଼ି ନ ପାରିଲେ
ସୁଗ୍ରୀ ବିଭୀଷଣ ଯେ ସମସ୍ତେ ଧଇଲେ ।
ହନୁମନ୍ତ ଅଙ୍ଗଦ କୋହିଲେ କେହି ସରି
ଶ୍ରୀରାମ ଉପାଡ଼ିଲେ ବାମକରେ ଧରି ।
ସୁଷେଣ ନାମରେ ତାର ଅଛି ଏକ ବୈଦ୍ୟ
ସେ ବୋଇଲା ଲକ୍ଷ୍ମଣଙ୍କୁ ଜୀଆଇବ ଆଜ ।
ଗନ୍ଧମାର୍ଦନ ପର୍ବତେ ଅଛଇ ଔଷଧି
ଯାଇଆସି ପାରିବାକୁ ଯେ ହନୁମନ୍ତ ଯୋଧି ।
ଶୁଣିକରି ଶ୍ରୀରାମ ଯେ ହରଷିତ ହୋଇଲେ
ପବନ ତନୟକୁ ରାଇ ଆଜ୍ଞା ଦେଲେ ।
ଉଲଗି ମେଲାଇ ହନୁ ବହନେ ଗଗନେ
ଏହିକ୍ଷଣି ଦେଖି ମୁଁ ଅଇଲି ଦଶାନନେ ।
ଶୁଣି ଲଙ୍କପତି ଯେ ହୋଇଲା ଆରତ
କାଳନେମି ବୋଲିଣ ଯେ ଏକଇ ଦଇତ ।
ଚାରିମୁଣ୍ଡ ତାର ଅଷ୍ଟଗୋଟି ଲୋଚନ
ଦୁଇଗୋଟି ବାହା ତାର ଚରଣ ଭିନ୍ନଭିନ୍ନ ।
ତାହାକୁ ରାବଣ ଯେ ବୋଲେ ଲଙ୍କସାଇଁ
ହନୁମନ୍ତ ଏବେ ଗନ୍ଧମାଦନକୁ ଅଛି ଯାଇ ।
ଔଷଧି ଆଣିଲେ ଯେ ଲକ୍ଷ୍ମଣ ଜୀଇବ
ତୁମ୍ଭର ଜୟ ବୁଦ୍ଧି ଅଛି ଭିଆଇବ ।

ଗନ୍ଧମାର୍ଦନ ପର୍ବତକୁ ପ ରିବକ ଯାଇ
ତହିଁର ପାଶରେ ଏକ ସରୋବର ଅଛଇ ।
ଶାପରେ ଦକ୍ଷ ଦୁହିତା କୁମ୍ଭୀର ରୂପ ଧରି
ସେହି ଜଳ ମଧ୍ୟେ ଅଛି ଶରୀର ଗୋପ୍ୟକରି
ତହିଁରେ ଯେ ପଶଇ ତାକୁ ସେହି ଖାଇ
ବ୍ରହ୍ମା ରୁଦ୍ର ଇନ୍ଦ୍ର ହେଲେ ଅବଶ୍ୟ ମରଇ ।
ପାରିବୁ କି ଉପାୟ କରିଣ ତହିଁ ଯାଇ
ହନୁକୁ ମାରିବୁ ତୁ ଜଳରେ ବୁଡାଇ ।
ରାତିର ଭିତରେ ଯେବେ ନ ଆସେ ପାବନି
ଲକ୍ଷ୍ମଣ ଜୀଆଇ ନ ପାରେ ପଦ୍ମଯୋନି ।
ଯାଅ ଏବେ ବାବୁରେ ବେଗେ ତୁ କାର୍ଯ୍ୟକରି
ଯେମନ୍ତେ ପାରି ବାବୁ ମର୍କଟକୁ ମାରି ।
ବିଳମ୍ବ ନ କର ତୁହି ଯାଅ ବେଗ ହୋଇ
ଅର୍ଦ୍ଧେକ ରାଜ୍ୟ ତୋତେ ଦେବି ମୁଁ ବଧାଇ
ଶୁଣି କାଳନେମି ଉଲଗ ମେଲାଇଲା
ବିହଙ୍ଗମ ଗତିକରି ଗଗନରେ ଗଲା ।
ହନୁମନ୍ତଠାରୁ ବେଗେ ଗଲା ସେ ରାକ୍ଷସ
ନିଜରୂପ ଛାଡ଼ିଣ ଯେ ଧରେ ଯତିବେଶ ।
ଗନ୍ଧମାର୍ଦନ ନଦୀପାଶେ ଗଣ୍ଡୁକୀରତଟେ
ଦେବ ଆଳ ତହିଁରେ ରଚିଲା କପଟେ ।
ସୁବର୍ଣ୍ଣର ଦେଉଳ ସ୍ଫଟିକ ମଣ୍ଡପ
ଉପରେ ଟଣାଇଲା ପୁଣ ଚନ୍ଦ୍ରାତପ ।
ପ୍ରାସାଦର ଉପରେ ଚକ୍ରଳ ଫରହର
ସୋମନାଥ ନାମେ ହିଜେ କରାଇ ଶଙ୍କର ।
ନନ୍ଦ ମହାକାଳ ଯେ ହନୁ ବୃଜ ହୋଇ
ଗଣେଶ କାର୍ତ୍ତିକେଶ୍ୱର କନ୍ଧରେ ବସାଇ ।
ଅନେକ ଯତନରେ ରଞ୍ଜିଲା ପୁଷ୍ପଫଳ
ଆପଣେ ହୋଇଲା ସେ ମାୟାରେ ଜଟିଳ ।
ଶାର୍ଦ୍ଦୂଳ ଛାଲ ମାଡ଼ିଣ ବିଭୂତି ଲେପନ
କର୍ଣ୍ଣେ ତମ୍ବା କୁଣ୍ଡଳ ରୁଦ୍ରାକ୍ଷ ଭୂଷଣ ।
କଟୀରେ କଷା କୌପିନ କାଖରେ ଅଧାରି
ସ୍ଫଟିକର ମାଳା ଗୋଟି ଘେନ ଜପକରି ।
ବାମକରେ କମଣ୍ଡଳୁ ଛଟାଟିଡ଼ା ଥୋଇ
ବସିଲା ଜଟାଯୁସ ମଉନ ବ୍ରତ ହୋଇ ।
ଆଗରେ ଗଣ୍ଡୁକୀ ନଦୀ ବହେ ଝରି ଝରି
ସେ ନଦୀର ଗର୍ଭରେ ଅଛଇଁ କୁମ୍ଭୀର ।

ତହିଁର ତଟେ ବସି ଜପ କରୁଅଛୁ ଦୈତ୍ୟ
ହନୁମନ୍ତ ଯାଆନ୍ତେ ଶୁଭଇ ବାହ୍ୱାନାଦ ।
ବନଗିରି କମ୍ପଇ ବାହ୍ୱାନାଦ ବାଏ୍ୟ
ପକ୍ଷି ତ୍ରାସ୍ୟ ହୋଇ ଗଗନେ ଉଡ଼ିଯାଏ ।
ଜାଣିଣ ଜଟାୟୁସ ଉପରକୁ ଦୃଷ୍ଟି
ସଜଳସଗୁଣ୍ଡି ଚଉପାଶରେ ଜଳଇ ।
ବିସ୍ମରିଲ ମୋର କାର୍ଯ୍ୟ ହୋଇବ ଏଠାରୁ
ଏହିବାଟେ ଯିବ ତ ପବନ କୁମର ।
ଏତେବୋଲି ବଇଠ ଉପରକୁ ଦୃଷ୍ଟି
ବିସ୍ମରିଲ ହନୁମନ୍ତ ଅଟଇ ସେ ଏହି ।
କରଟେକ ଡାକିଲା ଆସରେ ମାରୁତି
କ୍ଷଣକେ ବିଶ୍ରାମ କୁହି କରିଯାଅ ଏଥି ।
ଏ ସରୋବରୁ ପାଣିଖାଅ ତୋର ଶ୍ରମମୁଞ୍ଜି
ବଳ ଦର୍ପ ହୋଇବ ତୋର ଶତ୍ରୁ ଗଞ୍ଜି ।
ମାୟା ଯତିର ବାଣୀ ଶୁଣିଣ ହନୁମନ୍ତ
ବିସ୍ମରିଲ ମନେ ଏହୁ କେହୁ ତପୋବନ୍ତ ।
ଏକାନ୍ତ ସ୍ଥାନେ ବସି ତପ ଏ କରଇ
ପର ଉପକାରୀ ଏ ଧାର୍ମିକ ଅଟଇ ।
ଏ ମୋହର ଆସିବାର ଜାଣି ଯୋଗବଳେ
ଶ୍ରମ ପାଇବାର ମୋର ଜାଣଇ ଜଟିଳେ ।
ମୋର ହିତ ନିମନ୍ତେ ଡାକୁଛି ମୋତେ ପୁଣି
ବୋଲଇ ତୋ ଶ୍ରମଭଞ୍ଜୁ ଏଥୁ ପିଅପାଣି ।
ମୋହର ଝଗଡ଼ ମାନ ନ ଜାଣନ୍ତି ଋଷି
ସମ୍ବାଦ ନ କରିଗଲେ ହୋଇବି ମୁହିଁଦୋଷୀ
ଏତେଭାଳି ହନୁମନ୍ତ ଶୂନ୍ୟରୁ ଖସିଲା
ମୁନିର ପାଶରେ ଯାଇଁ ପ୍ରବେଶ ହୋଇଲା ।
ମାୟାଋଷି ଦେଖି ହନୁ ନମସ୍କାର କଲା
ହେମୁନି ମୁଁ ରହି ଏଥି ନ ପାରେ ବୋଇଲା
ଶ୍ରୀରାମ ରାବଣ ସମର ଘୋର କାଳେ
ଶକ୍ତି ଭେଦ ହୋଇଛନ୍ତି ସୁମିତ୍ରାର ବାଳେ ।
ମହୌଷଧି ନେବାପାଇଁ ପଠାଇଲେ ମୋତେ
ଗନ୍ଧମାଦ୍ଦନ ଗିରି ଏଠାକୁ ଅଛି କେତେ ।
ରାତ୍ର ନ ପାଉଁ ଗଲେ ହେବ ବଡ଼କାର୍ଯ୍ୟ
ଜାଣଟିକ ମହାମୁନି ସୁଗ୍ରୀବର ରାଜ ।
ତାହାର ଭଣୋଇ କେଶରୀ ନାମେ ବୀର
ମୋର ନାମ ହନୁମନ୍ତ ମୁଁ ତାହାର କୁମର ।
ଶ୍ରୀରାମ ସୁଗ୍ରୀବର ଅତ୍ୟନ୍ତ ମୈତ୍ର ହେବ
ଏହା ହନୁଠାରୁ ଶୁଣି ବୋଲେ ମାୟା ମୁନି ।
ବୋଲେ ଆସ ମାରୁତି ତପ ସ୍ଥାନ ତୁଅଁ
ପ୍ରାଣ ହାରିବୁ ନିଶ୍ଚୟେ ପବନର ପୁଅ ।
ଦେବତା ସଦନ ତପୀର ତୀର୍ଥ ସ୍ଥାନ
ଏକଥାକୁ ଅବଜ୍ଞା ନକର ହନୁମାନ ।
ଏହିଜଳେ ସ୍ନାନକରି ଶିବଙ୍କୁ ଆସି ଦେଖ
ଅନେକ ଜନ୍ମର ପାପ ତୁ ଉପେଖ ।
ଆସ ଆସ କପିମଣି ଆଜ୍ଞା ନ ଭଙ୍ଗ ପୁଣ
ଜନ୍ମେଣ ନଇବେ ପରମ ନ ଜାଣ ।
ତପି ବୋଲି ନ କଲେ ଜୀବନ ନ ପାଇବୁ
ଯହିପାଇଁ ଯାଉଅଛୁ ତୁ ତାକୁ ନ ପାଇବୁ ।
ଶୁଣିଣ ପବନ ସୁତ ତାହାକୁ ଭକ୍ତି କଲା
ଗଗନରୁ ଧୀରେ ଖସି ଭୂମିରେ ମିଳିଲା ।
ହନୁମନ୍ତ କରଯୋଡ଼ି ବୋଇଲା କହକସ
ଯତି ବୋଇଲା ତୁରେ ଏହିଜଳେ ପଶ ।
ସ୍ନାହାନ କରିଣ ଅସି ଦେଖିବୁ ଶଙ୍କର
ଏ ଦେହକୁ ଭୟରେ ନ କର ବାରମ୍ବାର ।
ଶୁଣିକରି ହନୁମନ୍ତ ପଶେ ଗନ୍ଧ ନଦୀ
ପାତାଳ ପରିଯନ୍ତେ ଗଣ୍ଡିଅଛି ଭେଦ ।
ସ୍ନାହାନ କରନ୍ତେଣ ଧଇଲା କୁମ୍ଭିରଣୀ
ହନୁର ଚରଣକୁ ଦୃଢ଼େ କାମୋଡ଼େ ପୁଣି ।
ଜଳରେ ବୁଡ଼ାବନ୍ତେ ସେ ମାରୁତି ଜାଣିଲା
ମାରୁତିର ଚରଣକୁ ଦୃଢ଼େ ସେ କାମୁଡ଼ିଲା ।
ଆପଣେ ହନୁବୀର ଧଇଲାକ ଆଣେ
ଟେକି ଆଣି କୁମ୍ଭିରଣୀକି ପକାଏ ନଦୀତଟେ
ଦୁଇଗୋଡ଼ ଧରିଣ ସେ ଚିରି ପକାଇଲା
ବୁକୁ ବିଦାରିଣ ସେ ଅନ୍ତ ବାହାର କଲା ।
ମଲା ସେ କୁମ୍ଭିରଣୀ ଘୋର ନାଦକରି
ପାର୍ଥିବ ରୂପ ଛାଡ଼ିଣ ନିଜ ରୂପଧରି ।
ଦକ୍ଷର କୁମାରୀ ରୂପେ ନିର୍ଜିତ ପୁଣି
ରୂପେ ଯୌବନ ଅତି ସୁନ୍ଦର ତରୁଣୀ ।
ଚନ୍ଦ୍ର ବଦନୀ ସେ କୁରଙ୍ଗୀ ଜିଣି ଆଖି
ହନୁମନ୍ତ ଆଶ୍ଚର୍ଯ୍ୟ ହୋଇଲା ତାହା ଦେଖି ।
ସେହି କନ୍ୟା ବୋଇଲା ଶୁଣରେ ମାରୁତି
ମୁହିଁ ହାଦେ କାଳ ସେ ଦକ୍ଷର ଦୁହିତା ।

ବ୍ରହ୍ମା ଯେ ପ୍ରୟାଗରେ ତପସ୍ୟା କରୁଥିଲେ
ମକର ମାସରେ ସେହି ସ୍ଥାନରେ ରହିଲେ
ସେ ପୁଣ୍ୟ ନଗ୍ରକ ମୁଁ ସ୍ନାନକୁ ଯାଇଥିଲି
ଜଳରେ ବୁଡ଼ିଣ ଧାତା ଚରଣ ଛୁଇଁଲି ।
ତାହା ଜାଣି ପିତାମହ କୋପେ ଶାପ୍ୟ ଦେଲ
ଯାଅ ଜଳଚର ରୂପ ହୁଅ ତୁ ବୋଇଲ ।
ଏ କଥା ଶୁଣି ମୁହିଁ କମ୍ପିଲି ଥରହର
ଜଳୁ ବାହାର ହୋଇ ଯୋଡ଼ିଲି ବେନକର ।
ଅନେକ କାରୁଣ୍ୟ ହୋଇ ବଚନ କହିଲି
ଶାପ୍ୟ ପାଇ ପ୍ରତିକାର ବଚନ ମାଗିଲି ।
ବ୍ରହ୍ମା ଆଜ୍ଞା ଦେଲେ ତୁ ଗୋ କଲୁ ମନ୍ଦକୃତ୍ୟ
ତପ ନାଶ ଗଲା ମୋର ସରିଲା ସୁକୃତ ।
ଗନ୍ଧମାର୍ଦ୍ଦନ ପର୍ବତ ପାଖେ ଗନ୍ଧ ନଗ୍ରୀ
ପାତାଳ ପର୍ଯ୍ୟନ୍ତେ ସେ ଗଣ୍ଡ ଅଛି ଭେଦି ।
ତହିଁରେ ତୁ କୁମ୍ଭୀରୀ ରୂପକୁ ଧରିଥିବୁ
ରାମଦୂତ ଦରଶନେ ମୁକ୍ତ ତୁ ଲଭିବୁ ।
ତାହାକୁ କହିଲି ମୁଁ ତ ପଶିଥିବ ଜଳେ
କେସନେକ ଜାଣିବ କେ ଯାଉଥିବ କୂଳେ ।
ଧାତା ବୋଇଲେ ଗୋ ପାଣିରେ ଯେହୁ ପଶି
ତାକୁ ଧରି ଆହାର କରିବୁ ଶୁ ଭୃକେଶୀ ।
ସେ ତୋତେ ବଳେ କୂଳରେ ମାରିବାକୁ ଆଣି
ରାମଚନ୍ଦ୍ର ସେବକ ସେ ଥିବୁ ତାକୁ ଜାଣି ।
ତେବେ ସେ ପାପ ହୋଇବାକ କ୍ଷୟେ
ପାଇବୁ ନିଜ ଦେହ ତୁ ଏ କଥା ନିଶ୍ଚୟେ ।
ସେହିଦିନୁ ବାସକରି ରହିଲି ଏ ଜଳେ
ଏ ମୋହର ପାପ ଦଶା ଗଲା ତୋର ଫଳେ
ଏ ମାୟା ମୁନି ଅଟଇ ଲଙ୍କାର ରାକ୍ଷସ
କୁଯୋଗବଳେ ଏକଥା ହୋଇଲା ମୋତେ ଦୃଶ୍ୟ
କାଳନେମି ଦୈତ୍ୟ ଏ ହୋଇଛି ଜଟାଧାରୀ
ରାବଣ ପେଷିଅଛି ମୋହର ପ୍ରାଣହାରି ।
ଏତେ କହି ଅପସରୀ ନିଜ ପୁରେ ଗଲା
ଧାଇଁ ହନୁମାନ ବେଗେ ଦୈତ୍ୟକୁ ଧଇଲା ।
ବୋଇଲାରେ ଭଣ୍ଡପଣ ଏଡ଼େ କର୍ମ କଲୁ
ବିଶ୍ୱାସ ଘାତକ ମୋତେ ମାରିବୁ ବସିଥିଲୁ ।
ଏତେ ବୋଲି ଚରଣ ଧରି ବୁଲାଇଲା
ସେ ମାୟା ଦେଉଳର ଉପରେ କଚାଡ଼ିଲା ।
କିର୍କି ଗଲା ପ୍ରାସାଦ ହାରିଲା ଦୈତ୍ୟ ପ୍ରାଣ
ଗଗନରେ ହନୁମାନ ଗଲା ବହମିଣ ।
ଗନ୍ଧମାର୍ଦ୍ଦନ ପର୍ବତେ ହୋଇଲା ପ୍ରବେଶ
ସୁଷେଣ କହିଥିଲେ ଯେବଣ ସନ୍ଦେଶ ।
ସେ ସ୍ଥାନେ ପ୍ରବେଶ ଯାଇଁ ହୋଇଲା ମାରୁତି
ପଲ୍ଲବଣ ଶରୀର ହୋଇଲା ଶାନ୍ତ ମୁର୍ତ୍ତି ।
ହନୁମନ୍ତ ବିଚାରଇ ଏ ଅଟେ ଦେବସ୍ଥାନ
ଅମୃତ ସମାନ ଏଥି ଅଛି ଫଳ ମାନ ।
ଏ ଅରଣ୍ୟେ ବିଧାତା ଅନ୍ତର୍ଦ୍ଧୀଡା କରେ
ଗ୍ରୀଷମ ସମୟରେ ଏ ବନେ ବିହରେ ।
ଧନ୍ୟ ଏ ବିଧାତା ତୁ କଲୁ କେଉଁ ତପ
ନାମକୁ ହୋଇଲୁ ତୁ ଜଗତର ବାପ ।
ବ୍ରହ୍ମା ପଦରୁ ପଦ ତ ଅଧିକା ଆଉ ନାହିଁ
କେବଣ ପୁଣ୍ୟେ ଏତେ ସମ୍ପଦ ଅଛୁ ପାଇ ।
ଏସନେକ ବିଚାରି ଜାଣିଲେ ରକ୍ଷା ଲୋକେ
ଭୂମିଗରୁ ଲାଗିଲା ବୋଲୁଛନ୍ତି ଥୋକେ ।
ଖୋଜକରି ଆସି ସେ ଦେଖିଲେ ହନୁମନ୍ତ
ତିନକୋଟି ଗନ୍ଧର୍ବ ଯେ ଧାଇଁଲେ ତୁରିତ ।
ମାରୁତିକ ବେଢ଼ିଲେ ସେ ସହସ୍ରେ ପୁରକରି
କାହିଁରୁ ବାନରରେ ପଶିଲୁ ଦେବପୁରୀ ।
ମରିବାକୁ ମନେ ଇଚ୍ଛାକାହିଁ କରେ ତୋର
କି କାର୍ଯ୍ୟେ ଏଡ଼େ ଦୁର୍ଗମେ ଅଇଲୁ ବାନର
ବ୍ରହ୍ମାର ଭୁବନ ଏହୁ ଦୁର୍ଲ୍ଲଭ ତମ ସ୍ଥାନ
ବ୍ରହ୍ମା ନ ବୋଇଲେ କେ ଆସିବ ଭର୍ଜ୍ଜନ ।
ତୁ ହୀନ ଜୀବନ କପି ପାମର ଅଟେ ଘୋର
କେମନ୍ତ ଠାବ କଲୁରେ ଅମିୟ ଭଣ୍ଡାର ।
ହନୁମନ୍ତ ବୋଇଲା ନ ଜାଣ କରେ ମୋତେ
ଆସିଅଛି ମୁହିଁ ଯେଉଁ କାର୍ଯ୍ୟର ନିମନ୍ତେ ।
ରାମ ରାବଣର ସମର ମହାଘୋର
ଶକ୍ତିଭେଦ ହୋଇଲେ ଯେ ସୁମିତ୍ରା କୁମର ।
ଔଷଧ ନେବାପାଇଁ ପେଷିଛନ୍ତି ମୋତେ
ତେଣୁକରି ପ୍ରବେଶ ହୋଇଲି ମୁହିଁ ଏଥେ ।
ରାତ୍ର ପାହିଲେଣ ନ ଗଇଲେ ସଉମିତ୍ରି
ଔଷଧ ନେବାକୁ ମୁଁ ଆସିଛି ତତ୍‌କ୍ଷଣେ ।
ବିରୋଧ ନକର ତୁମ୍ଭେ ମୋହର ବୋଲଶୁଣ
ଏଠାରୁ ଲଙ୍କାଗଡ ଛୟାସିସହସ୍ର ଯୁଣ ।

ରାହଥାନ୍ତି ନଗଲେ ନୋହିବ କିଛି କାର୍ଯ୍ୟ
ଯୁଦ୍ଧକୁ ମନକଲେ ମରିବେ ସର୍ବେ ଆଜ ।
ଶ୍ରୀରାମ ଦୂତ ମୁହିଁ ନ ଡ଼ରେ କୁମ୍ଭଙ୍କୁ ତ·
ଶୁଣିନାହିଁ ମୋ ନାମ ଅଟେ ହନୁମନ୍ତ ।
ବ୍ରହ୍ମଲୋକ ଦେବଲୋକ କରିବ ଏକସ୍ଥଳ
ଉପାଡ଼ି ପାରଇ ମୁଁ ସପ୍ତ ମହୀଆଳ ।
ନଘାତ ମାରୁଣି ମୁଁ ମାରିବ ଅଙ୍ଗ ଛଳେ ·
ପର୍ବତ ଯାକ ଉପାଡ଼ି ମୁହିଁ ନେବି ବଳେ ।
ଶୁଣିକରି ଗନ୍ଧର୍ବେ ଘାଇଲେ ମନେ ଖଙ୍ଗ
କାଳସର୍ପକୁ ଯେସନ୍ତେ ବେଢ଼ିଛନ୍ତି ଯାଇଁ ବେଙ୍ଗ
ଚନ୍ଦ୍ରହେଳ ନାରାଚ ଆବର କୁନ୍ତ ଗଦା
ହନୁମନ୍ତ ବୋଲଇ ମୋ ବେନହାତ ଯୋଥା
ଏତେ ବୋଲି ଲଙ୍ଗୁଡ଼ ବେଢ଼ାଇ ଦୃଢ଼କରି
ଗନ୍ଧର୍ବଙ୍କୁ ପିଟଇ ସେ ମହାକ୍ରୋଧ କରି ।
କର ଚରଣ ବଳରେ ଅନେକ ମାରଇ
ଏକଧରି ଆରେକ ଉପରେ କଚାଡ଼ଇ ।
ପାଦେ ମର୍ଦ୍ଦି କାହାକୁ କରଇ ମସିଧୂଳି
କାହାକୁ ଆକାଶକୁ ପିଙ୍ଗଇ ଘାରଡୋଳି ।
କଦଳୀ ବନ ଯେସନ୍ତେ ପବନେ ପଡ଼ଇ
ଏକାକେ ହନୁମନ୍ତ ଗନ୍ଧର୍ବଙ୍କୁ ସେ ଦଳଇ ।
ହନୁମନ୍ତ ଦେହରେ ଯେ ବଜ୍ର ତେଜ ଅଛି
ଦେବାସୁର ନରେ ତାହାକୁ ନୋହେ କିଛି ।
ଗନ୍ଧର୍ବଙ୍କ ମାଡେ ହନୁର ନୁହେ କିଛି ଶରୀର
ହେଚଯ୍ୟା ଯୁଗ ମଲ୍ଲ ନାମ ଅଟେ ଯାର ।
ଘଡ଼ିଏ ପରିଯନ୍ତେ ଲଗିଲା ମହାରଣ
ଭଙ୍ଗକରି ପଳାଇଲେ ଯେ ଗନ୍ଧର୍ବଗଣ ।
ହନୁମନ୍ତ ବୋଇଲା କରିବ କିସ ବୁଦ୍ଧି
କେବଣ ପ୍ରକାରେ ଏଥୁଁ ନେବି ମହୌଷଧି ।
ସମସ୍ତ ଗନ୍ଧର୍ବ ଯେବେ ଆସିବେ ମେଳହୋଇ
ତାଙ୍କ ସଙ୍ଗେ ଯୁଦ୍ଧ କଲେ ରାତ୍ରି ଯିବ ପାହି ।
ଔଷଧି ନ ଚହ୍ନଇ ପର୍ବତ ଉପାଡ଼ିବି
ଏଡ଼େ ଦୁର୍ଗମ ସ୍ଥାନରେ କମ୍ପାଇଁ ରହିବି ।
ଏତେ ବୋଲି ଗିରି ଶୃଙ୍ଗ ଧରିଣ ଝିଙ୍କିଲା
ନ ଭାଜିଲା ଶୃଙ୍ଗଯହୁଁ ପାଦଘାତ କଲା ।
ହୁଆ ଭରା ଦେଇଣ ଉଠିଲା ଆଣ୍ଠୁଆଇ
ଭାଙ୍ଗି ଦେଲା ପର୍ବତକୁ କ୍ରୋଧଭର ହୋଇ ।

ଦଶଯୁଣ ଉଚ୍ଚ ଯେ ସାତଯୁଣ ସ୍ଥୂଳ
ତୋଳିଣ ମଥାରେ ବସାଇଲା ମହାବଳୀ ।
ବିହଙ୍ଗମ ଗତିକରି ଆକାଶ ମାର୍ଗେ ଚଳ
ଦକ୍ଷିଣକୁ ମୁଖକରି ଯାଏ ଗିରି ଧରି ।
କହନ୍ତି ଗଉରୀ ତୁମ୍ଭେ ଶୁଣ ହେ ଈଶାନ
ରାବଣ ଜଟାସୁରକୁ ପେଷିଥିଲେ ପୁଣ ।
ଯିବାର ବେଳେ ହନୁ ତାହାକୁ ମାରିଗଲା
ସେ କଥା ରାବଣ ଜାଣିଲକ ନ ଜାଣିଲା ।
କହନ୍ତି ଶଙ୍କର ତାହା ଶୁଣ ଗୋ ଗଉରୀ
କାଳନେମି ମରନ୍ତେ ସ୍ବର ଗଲା ଫେରି ।
ଅନ୍ତରୀକ୍ଷେ ଲଙ୍କାଗଡ଼େ ଯାଇଣ ମିଳିଲା
ସେ କଥାକୁ ରାବଣ ଆଗରେ ଜଣାଇଲା ।
କରଯୋଡ଼ି ସ୍ବର ବୋଲେ ଶୁଣ ଲଙ୍କପତି
କାଳନେମି ଦୈତ୍ୟକୁ ମାଇଲା ମାରୁତି ।
ଗନ୍ଧନଦୀ ଭିତରେ ପଶିଣ ସ୍ନାନ କଲା
କୁମ୍ଭୀରୀ ତାହାକୁ ପୁଣ ଧରି ଦେଉଥିଲା ।
ବଳେ ହନୁ ଜଙ୍ଘ ଆଣି ମାଇଲା ତାହାକୁ
ପେଟଚିରି ବୁକୁ ଅନ୍ତକାଢ଼ି ଉପରକୁ ।
ସେ କୁମ୍ଭୀରୀ ଦେହରୁ ବାହାରି ଏକନାରୀ
ସୁରମୁନି ମୋହିନୀ ସେ ଅପୂର୍ବ ସୁନ୍ଦରୀ ।
ସେହି ନାରୀ କହିଲା ଏ ରାବଣର ଲୋକ
ମୋତେ ମାରିବାକୁ ଏବେ ମାୟା ରୂପଦେଖ
ତାରଠାରୁ ଶୁଣିବେଗେ ହନୁମନ୍ତ ଗଲା
କାଳନେମି ଦୈତ୍ୟକୁ ବାଳଧରି ନେଲା ।
ମାୟା ଦେଉଳ ଉପରେ ନେଇ କଚାଡ଼ିଲା
ମଲାବେଳେ ଜଟାସୁର ଦେହରୁ ପ୍ରାଣଗଲା ।
ଦୁହିଁଙ୍କି ମାରି ସେଠାରୁ ବେଗେ ଯାଇ ଚଳି
ଗନ୍ଧମାଦନ ପର୍ବତରେ ବେଗେ ଯାଇଁ ମିଳି
ଜାଣିକରି ଗନ୍ଧର୍ବେ ସମର ଆସି କଲେ
ହନୁର ମାରୁଣି ସେହୁ ସହି ନ ପାରିଲେ ।
ଭଙ୍ଗ ପଳାଇଲେ ହତ ଆୟୁଧ ହୋଇ
ଔଷଧି ହନୁମନ୍ତ ନ ଚହ୍ନେ ପୁଣ ତହିଁ ।
ଚହ୍ନି ନ ପାରିବାରୁ ଉପାୟେ ଯେ କଲା
ପର୍ବତ ଶୃଙ୍ଗ ଖଣ୍ଡେ ଭାଙ୍ଗି ପକାଇଲା ।
ଆସୁଅଛି ଏବେ ସେ ପର୍ବତ ମୁଣ୍ଡି ଆଇ
କୌଣସି କଥାକୁ ତାର ମନରେ ଭୟ ନାହିଁ

ଶୁଣିକରି ଲଙ୍କପତି ଉଦବେଗ ମନ
ଦଶହସ୍ର ରାକ୍ଷସଙ୍କୁ ରଇଲା ବହନ ।
ବୋଇଲା ଏହିକ୍ଷଣି ଯିବ ବେଗ ହୋଇ
ହନୁମନ୍ତ ଠାରୁ ଗିରି ଆଣିବ ଛଡ଼ାଇ ।
ପ୍ରାଣେମାରି ପାରିଲେ ହୋଇବ ପୁଣି ଭଲ
ପର୍ବତ ଛଡ଼ାଇଲେ ସେ କଥାଟି ଭଲ ।
ଆଜ୍ଞାମାନ ଚଳଲେ ଦଶ ସହସ୍ର ଦୈତ୍ୟ
କରେ ଧରି ଅଛନ୍ତି ଶୂଳ ତୀକ୍ଷ୍ଣ କୋନ୍ତ ।
ଉତ୍ତର ଦଗେ ଦୈତ୍ୟ ଗଗନ ମାର୍ଗ ଗଲେ
ଷାଠିଏ ସହସ୍ର ଯୋଜନେ ହନୁକୁ ଦେଖିଲେ
ଆଗରେ ଓଗାଳଣ କଲେ ମହାରଣ
ମାରୁତି ଜାଣିଲା ତାଙ୍କୁ ପେଷିଛି ରାବଣ ।
ଜମ୍ବେକ କହିଥିଲେ ବାଟେ ବହୁ ଦୁର୍ଗମ ଅଛି
ସେହିକଥା ମୋତେ ପ୍ରାପତ ହେଲା ଆସି ।
ଏତେ ବୋଲି ପର୍ବତ ଧରେ ଦୁଇକରେ
ଅସୁରଙ୍କୁ ମାରଇ ଦୁଇପାଦ ଭରେ ।
ଲଞ୍ଜରେ ଗୁଡ଼ାଇ ମାରେ ପୁଣି ନେଇ
ତାଙ୍କର ମାରୁଣିକି ଏହାର ଭୟ ନାହିଁ ।
ପ୍ରହରେ ପରିଯନ୍ତେ ହେଲା ତହିଁ ଗୋଳ
ହନୁ ପାଦଘାତରେ ପଡ଼ିଲେ ଦୈତ୍ୟବଳ ।
ଦେଖିଣ ଦେବତାଏ ଜୟ ଜୟ କଲେ
ଅନେକ ଏ ଯୁଦ୍ଧକରି ନ ପାରେ ବୋଇଲେ
ମୁଣ୍ଡରେ ପର୍ବତ ଅଛଇଁ ଦଶ ଯୁଣ
ଆକାଶ ମାର୍ଗରେ ସେ ଯାଏ ହନମିଣ ।
ପଥରେ ଆସିଣ ଶତ ଯେ ହେଲେ ଉପଗତ
ପ୍ରହରକେ ଦଶ ସହସ୍ର କଲା ଦୈତ୍ୟ ହତ
ପୃଥ୍ୱୀଭିତରେ ଅଛନ୍ତି ଯେତେ ବୀର
ଏହାର ମାରୁଣି ଯେ ଅତି ଅଗୋଚର ।
ଅନେକ ଗର୍ଜନ ଯେ ଏସନ ଗତିକରି
ଧନ୍ୟ ହନୁମନ୍ତ ତୋତେରେ କେହିନୋହିସରି
ଏତେ ବୋଲି ପ୍ରଶଂସା କଲେ ଦେବାସୁର
ଏଥୁଅନନ୍ତରେ ସେ ଯେ ହନୁମନ୍ତ ବୀର ।
ଦୈତ୍ୟଙ୍କୁ ମାରିଣ ଯେ ବିଚାର କଲେ ମନେ
ଏହାଶୁଣି ଆଉ ଥାଟ ପେଷିବ ଦଶାନନେ ।
କି ବୁଦ୍ଧି କରିବ ଯେ ହେଉଛି ଉଚ୍ଛୁର
ଆହୁରି ତ ଲଙ୍କାଗଡ଼ ଅଛି ବହୁଦୁର ।

ଏହିଠାରୁ ବାଟଗର୍ଜି ଯିବ ବିଚାରିଲା
ପଶ୍ଚିମ ମୁଖ ହୋଇ ଉଡ଼ିହାଣକୁ ଗଲା ।
ଖଣ୍ଡେ ଦୂର ଯାଇଣ ଉତ୍ତରକୁ ମୁଖ କଲା
ଘୁଂ ଘୁଂ ନାଦ କରିଣ ମାରୁତି ଚଳିଗଲା ।
ଦକ୍ଷିଣ ମୁଖେ ଆସନ୍ତେ ଅଯୋଧ୍ୟା ରାଜବସ୍ତି
ସେହି ରାଜ୍ୟ ସଳଖେ ଚଳେ ପବନର ସୁତ
ଦେଖିଲା ଅଯୋଧ୍ୟାରେ ଅତି ସେ ଗହଳ
ହାତୀ ଘୋଡ଼ା ପୂରିଛନ୍ତି ସୈନ୍ୟ ନିରନ୍ତର ।
ଏତେସେତେ ବୋଲି ରଥ କଳନା ନ ଯାଇ
ନଗ୍ରପୁର କୋଶେ ପରିଯନ୍ତେ ଘୁଇ ।
ବହୁତ୍ର ହୁଳାରେ ସେ ପୁର ଆଲୋକ ବଣେ
ଯାଅଯାଅ ଆସଆସ ଡାକ ପଡ଼େ ଚଉପାଶେ
ନଦୀ ପୋଖରୀ କୂଅ ବାମ୍ପୀ ସ୍ଥାନ ମାନ
ସେହିଠାରେ ପୂରିଣ ରହିଛନ୍ତି ସୈନ୍ୟ ।
ଖୁଣ୍ଟି ଆଏ ଡାକଦ୍ୟନ୍ତି ମଣିମା ମଣିମା
ଖଟଣିମାନେ ବୋଲନ୍ତି ଗୁହାରି ଶୁଣିମା ।
ନୃତ୍ୟକାରୀମାନେ ଯେ କରନ୍ତି ନୃତ୍ୟ ପୁଣ
ହୁଳହୁଳି ଶବଦ ପଡ଼େ ବିଚକ୍ଷଣ ।
ହସ୍ତୀଙ୍କର ଗର୍ଜନ ଘୋଡାଙ୍କର ହ୍ରେଷା
ହଟାରି ବଜାରି ମାନେ କରନ୍ତି ପ୍ରଶଂସା ।
ଲକ୍ଷେକ ହାଟ ଯେ ବସିଅଛି ବାଣ୍ଡେ
କଣାକଣା କରନ୍ତି ସର୍ବେ ମନର ଆନନ୍ଦେ ।
ଯେ ଯାହା ମାଗନ୍ତି ଦିଅନ୍ତି ବେଗକରି
ଆୟବ୍ୟୟ ସବୁ ପାଞ୍ଜିରେ ଲେଖାକରି ।
ଲୋକ ଘେନ ଶତ୍ରୁଘନ ବୁଲେ କଢ କଢ
ନେବା ଦେବା ଲୋକଙ୍କୁ ସେକହଇ ପ୍ରବୋଧି
ଶ୍ରୀରାମ ଆସିବେ ବୋଲି ପଡ଼ିଛି ଚହଳ
ପ୍ରଜାମାନେ ବୋଲନ୍ତି ଦେଖିବା ଆଦିମୂଳ ।
ଲକ୍ଷ୍ମଣ ସୀତା ଘେନିଣ ଶ୍ରୀରାମ କେବେ ଆସୁ
ଦେଖା ହେଲେ ଆମ୍ଭର ପାପ ଦଶା ଧ୍ୱଂସୁ ।
ଏମନ୍ତ ବିଚାର ଯେ କରନ୍ତି ଠାବେ ଠାବେ
ପ୍ରଜାମାନେ ସମସ୍ତେ ବିଚାରନ୍ତି ଭବେ ।
ଶ୍ରୀରାମଙ୍କୁ କରୁପେ କରିବା ଦର୍ଶନ
ସବୁଠାରେ ଶୁଣାଯାଉଅଛି ଶ୍ରୀରାମ ନାରାୟଣ
ଏହି ବିଚାର ହନୁମନ୍ତ ଯେ ଶୁଣିଲା
ଏହି ଅଯୋଧ୍ୟା କଟକ ମନେ ବିଚାରିଲା ।

ବହୁତ ରାଜା ଏଥିରେ ହୋଇଛନ୍ତି ଚୂର୍ଣ୍ଣ
ବାର ଯୁଣ ପର୍ଯ୍ୟନ୍ତ ଢେଣେ ସବୁ ମୁଣ୍ଡ ।
ରାମ ନାମକୁ ପୁଣି ସେ କରନ୍ତି ଭଜନ
ସମସ୍ତ ନାହିଁ ମୋତେ ଯୁଝିବାକୁ ପୁଣ ।
ଭରତ ସେ ନଗ୍ରରେ ବୁଲିପାଶେ ଫେରେ
ବଜ୍ର ବାଟୁଳି ଗୋଟି ସେ ଧରିଅଛି କରେ
ସେ ସଳଖେ ପବନ ଶୁଭେ ମହାଗୋଳ
ଖଳ ଖଳ ଦେହରୁ ବହେ ଶ୍ରମ ଝାଳ ।
ନନ୍ଦ ଗ୍ରାମ ସଳଖେ ଉପରେ ଉଡ଼ିଆସି
ଉପର ପର୍ବତ ଯେ ଚନ୍ଦ୍ରମା ପ୍ରାୟେ ଦିଶି ।
ତହୁଁ ଅଗ୍ନି ତେଜ ଦିଶଇ ଝଳେଳ
ମନରେ ବିଚାର କରେ ଦଶରଥ ବାଳ ।
ବୁଲିଣ ଆସିଛି ବୀର ଶ୍ରୀରାମର ଭାଇ
ନନ୍ଦ ଗ୍ରାମ ବୁଲିଣ କଟକାଇ କରେ ତହିଁ ।
ଉଡ଼ିଏ ରହି ତହିଁ ଅନ୍ଧାରୀ ହେଜେ ଜଳେ
ଗୁଳ୍ପିତ ବାଟୁଳି ସେ କରରେ ଘେନିଥିଲେ ।
ଭଲମନ୍ଦ ବୁଝିବାକୁ ନଗ୍ର ସେ ବୁଲିଯାଇ
ପବନରେ ହନୁମନ୍ତ ଉଦସି ଆସଇ ।
ପ୍ରଳୟ ପବନ ପ୍ରାଏ ଶୁଭଇ ଶବଦ
ଶୁଣିଣ କୈକେୟୀ ସୁତ ହୋଇଲା ତବଦ ।
ଉପରକୁ ଚାହିଁଣ ବିଚାର କରେ ମନେ
ଘୋର ଧ୍ୱନି ଏବେ ତ ଶୁଭୁଛି ଗଗନେ ।
କେଉଁ ବଳିଷ୍ଠ ଏ ପକ୍ଷୀ ଶୁଭେ ଏତେ ବଳ
କି ଅବା ଗରୁଡ଼ ଏ ବିନତାର ବାଳ ।
ଦେବ ଦାନବ କି ପିଶୁଣ ଉଡ଼ଙ୍ଗ
ଉଚ୍ଚୈଃଶ୍ରବା ଅଶ୍ୱ କି ଐରାବତ ଗଜ ।
ଗନ୍ଧର୍ବ କିନ୍ନର କି ଦୈତ୍ୟଗଣ ଅବା
କେବଣ ଦିଗପାଳ କି ଆପଣେ ମଘବା ।
ଦେଖିଲେ ଜାଣିବା ସେ କେବଣଇଁ ଜାତି
ବାଟୁଳି ମାଇଲା ଅଜ ନୃପତିର ନାତି ।
ଅଣଚୁଣ ପବନର ପ୍ରାଏ ଚଳଗଲା
ହନୁମନ୍ତ କପାଳରେ ଯାଇଁଣ ବାଜିଲା ।
ବଜ୍ରର ଉପରେ କି ମହାବଜ୍ର ପଡ଼ିଲା
ହନୁମନ୍ତ ଦେଲା ସେ ବିଷମ ସିଂହରଡ଼ି ।
ଜ୍ଞାନ ଭ୍ରଷ୍ଟ ହୋଇଣ ପଡ଼ିଲା ଭୂମିରେ
ପର୍ବତ ମୁଣ୍ଡି ଆଇ ପଡ଼ିଲା ଧକକେ ।

ଚେତନା ପାଇଣ ସେ ଶ୍ରୀରାମ ସୁମରି
ଉଠି ସଜ ହୋଇଲା ପର୍ବତ ଶିରେ ଧରି ।
ଭରତବୀର ବିଚାରନ୍ତି ଧନ୍ୟ ଏହାର ବଳ
ମୋ ବାଟୁଳି ବାଜନ୍ତେ ମରନ୍ତି ଦିଗପାଳ ।
ବାପୁଡ଼ା ଏ କେତେ ଏହାର ପ୍ରାଣ
ପକ୍ଷୀ ବହନରେ କରେ ଗଗନେ ପ୍ରୟାଣ ।
ପର୍ବତ ଗୋଟାଏ ତ ଅଛି ମୁଣ୍ଡି ଆଇ
କ୍ଷଣେ ମାତ୍ର କେବଳ ପଡ଼ିଲା ମୋହ ଯାଇ ।
ପୁଣି ତ ଉଠିଲାଣି କେଶିନ ଏ ଶିବ
ମୁଖ ତ ଦିଶୁଅଛି ମର୍କଟ ସ୍ୱଭାବ ।
ପଚାରିବ ବୋଲି ବୀର ନିକଟକୁ ଗଲା
କାହିଁକି ହୋ ମହାତ୍ମା ବୋଲିଣ ବୋଇଲା
ହନୂମାନ ପଚାରଇ କେତେ ଅଛି ଘଡି
ଭରତବୋଲେ ଆସିଲେଣି ଦଶଘଡ଼ି ନଶି ।
ଶୁଣିକରି ଉଦବେଗ ମନରେ ପାବନି
ଶତେ ଯୁଣ ପର୍ବତ ମୁଣ୍ଡରେ ଥିଲା ଘେନି ।
କୈକେୟୀର ନନ୍ଦନ ବୋଲଇ କୁହ ଶୁଣ
ଏତେ ତରତର ଉଠୁ କେବଣ କାରଣ ।
ହନୁମନ୍ତ ବୋଇଲା ମୁଁ ନ ପାରଇ ରହି
ଅବସରନାହିଁ ମୋତେତୋସଙ୍ଗେକଥାହୋଇ
ନୋହିଲେ କି କଥାରେ କହନ୍ତୁ ଆସିମୋତେ
କେତେ ବଳବାନ ଥିଲୁ ବୁଝନ୍ତି ମୁଁ ତୋତେ
ତୁ ପୁର ନିଲକ୍ଷଣରେ ମନୁଷ୍ୟ ହୀନଜାତି
ଏକା ବାଧାକରେ ପ୍ରାଣ ଘେନନ୍ତି ମୁଁ ଏଥି ।
ଯମଦେବତାଆଗରେ ପୋଷନ୍ତାତୋରପାଞ୍ଜି
ପାର୍ଥିବ ଦେହ ଗୁଡ଼ ଯାଆନ୍ତୁ ଆଜ ବାଦ ।
ଦଶଦିଗପାଳ ବ୍ରହ୍ମାରୁଦ୍ର ଇନ୍ଦ୍ରଦେବ
ଏମାନେ ହୋଇଥିଲେରେ ଯାଆନ୍ତେଯମଆଗ
ଶ୍ରୀରାମର ଭାଇ ଯେ ଲକ୍ଷ୍ମଣ ଶକ୍ତି ଭେଦେ
ମହୌଷଧି ନେଇ ମୁଁ ଯେ ଲଙ୍କାଗଡ଼ ମଧ୍ୟେ ।
ରାତ୍ର ପାଇଲେ ନ ବଞ୍ଚେ ଲକ୍ଷ୍ମଣ ମହାବୀର
ସଳଖ ବାଟ ଛାଡ଼ି ମୁଁ ଅଇଲି ଏତେ ଦୂର ।
ବାଟ ଛାଡ଼ି ଅଇଲି ମୁଁ ଏତେ ଦୂର ପଥ
ମୋତେ ଚାହିଁଥିବେ ବସି ରଘୁବଂଶ ନାଥ ।
ଶୁଣିଣ ଭରତ ବୀର ପୁଣି ହିଁ ବିଚାରି
କାହିଁର ରାମ ଲକ୍ଷ୍ମଣ କାହିଁରେ ଯୁଦ୍ଧକରି ।

କେ ମାଇଲା ଶକ୍ତି ତୁ କାହାର ସେବକ
କହ କହ ମହାତମା ଛୁଡ଼ୁ ମୋର ଧକ ।
ହନୁମନ୍ତ ବୋଇଲା ଅଯୋଧ୍ୟା ନାମେ ଦେଶ
ଦଶରଥ ରାଜା ଯେ ଅଟେ ସୂର୍ଯ୍ୟବଂଶ ।
ତିନ ରାଣୀଙ୍କ ଠାରୁ ତାଙ୍କର ଚାରି ପୁଅ ଜାତ
ରାମ ଲକ୍ଷ୍ମଣ ଯେ ଶତ୍ରୁଘନ ଭରତ ।
ଶ୍ରୀରାମ ଭାରିଯାର ନାମ ଅଟେ ସୀତା
ରୁଦ୍ର ଧନୁକୁ ବଳରେ ଭାଙ୍ଗିଲେ ଜଗତ୍ପିତା ।
ତାଡକା ମାରିଣ ଅହଲ୍ୟା ମୁକ୍ତ କଲେ
ବିଶ୍ୱାମିତ୍ର ମୁନି ଯେ ଯାଗ ଆରମ୍ଭିଲେ ।
ସେଠାରୁ ଶ୍ରୀରାମ ମିଥିଳାପୁର ଯାଇ
ସୀତାଙ୍କୁ ବିଭା ହୋଇଣ ଅଯୋଧ୍ୟା ବାହୁଡ଼ଇ
ବାଟରେ ପରଶୁରାମ ଦର୍ପକଲେ ନାଶ
ସାବତ ଜନନୀ ବୋଲେ ଗଲେ ବନବାସ ।
ଶ୍ରୀରାମ ଲକ୍ଷ୍ମଣ ସୀତା ତିନିଜଣ
ଶ୍ରୀରାମ ନ ଦେଖି ପିତା ଛାଡ଼ିଲେ ଜୀବନ ।
ଭରତ ନ ଦେଖିଲେ ଯେ ମାମୁଁଘରେ ଥିଲେ
ବାରତା ପାଇଣ ସେ ସତ୍ୱରେ ଆଇଲେ ।
ପିତାଙ୍କୁ ଦହନ କରି ରାମଙ୍କୁ ଆଣିଗଲେ
ପିତା ସତ୍ୟପାଳି ରାମ ବାହୁଡ଼ି ନଇଲେ ।
କୁଶବଟୁ ପାଦୁକା ଦେଲେ ଭରତ ହାତେ
ଆପଣେ ବହିରେ ଶ୍ରୀରାମ ଅରଣ୍ୟ ପର୍ବତେ ।
ଦଶବର୍ଷ ପର୍ଯ୍ୟନ୍ତେ ଅରଣ୍ୟେ ବାସକଲେ
ଗୋଦାବରୀ କୂଳରେ ପ୍ରବେଶ ଯାଇଁ ହେଲେ
ଅଗସ୍ତି ଋଷିଙ୍କର ମଠରେ ପ୍ରବେଶ
ଶ୍ରୀରାମଙ୍କୁ ଦେଖି ମୁନି ହୋଇଲେ ହରଷ ।
କୁଶଳ ପଚ୍ଛନ୍ତି ଶ୍ରୀରାମଙ୍କୁ ପୁଣ
ସକଳ କଥା ଶ୍ରୀରାମ କହିଲେ ମଣାଇଣ ।
ସେଠାରୁ ଋଷି ପୁଣି ଶ୍ରୀରାମଙ୍କୁ କହିଲେ
ଭରତ ରାଜା ନୋହିଲା ଅଯୋଧ୍ୟାରେ ଭଲେ ।
ମାତା ତାର ଲୀଳାବତୀ ରାଜ୍ୟ ସମ୍ଭାଳିଲେ
ଶତ୍ରୁଘନ ଅଟେ ରାଜା ହୋଇଣ ରହିଲେ ।
ଭରତର ସୁଖ ନାହିଁ ନ ଦେଖି ତୋତେ ପୁଣ
ପାଦୁକା ରାଜା ନାମରେ ହୁକୁମ କାଟେ ଜାଣ
ଶୁଣିକରି ଶ୍ରୀରାମ ପରମ ତୋଷ ହେଲେ
ପଞ୍ଚବଟି ବନରେ ଯାଇଣ ରହିଲେ ।

ତିନ ବରଷ ସେଥିରେ ସୁଖରେ ନେଲେ ଦିନ
ସୂର୍ପଣଖୀର ସେଠାରେ କାଟିଲେ ନାସାକର୍ଣ୍ଣ
ଖର ଦୂଷଣ ତ୍ରିଶିର ଚଉଦ ସହସ୍ର ବଳ
ଏକାଳେ ସଂହାରିଲେ କୌଶଲ୍ୟା ଦୁଲାଳ ।
ଜାଣି ତାହା ରାବଣ ଆଇଲା ମାୟା ରୂପେ
ମାୟାମୃଗ ଦେଖାଇଲା ଶ୍ରୀରାମ ସମୀପେ ।
ଜନକର ନନ୍ଦନୀ ଯେ ଦେଖିଲେକ ତାହା
ରଘୁନାଥଙ୍କୁ ମାଗିଲେ ହୋଇଣ ସେନେହା ।
ଶୁଣିକରି ରାମଚନ୍ଦ୍ର ଗୋଡ଼ାଇଲେ ତାଏ
ଅରଣ୍ୟରେ ବହୁତ ଦୂରକୁ ସେହୁ ଯାଏ ।
ନାରାଚ ପଡନ୍ତେ କୁରଙ୍ଗୀ ପ୍ରାଣ ଦେଲା
ମାରିବାର ବେଳରେ ଲକ୍ଷ୍ମଣ ସୁମରିଲା ।
ଏହା ଶୁଣି ସଉମିତ୍ରି ଗଲେକ ତଡ଼ିତ
ସମୟ ଜାଣି ଜାନକୀ ହରିଲା ଲଙ୍କପତି ।
ଶ୍ରୀରାମ ବାହୁଡ଼ି ଆସି ଦେଖିଲେ ପର୍ଣ୍ଣ ଘର
ସୀତାଙ୍କୁ ନ ପାଇଣ ବୁଲିଲେ ବନ ଘୋର ।
ଋଷ୍ୟମୁକ ପର୍ବତରେ ଭେଟିଲେ ଯାଇଁମୋତେ
ମୁହିଁଟି ହନୁମନ୍ତ କେଶରୀର ସୁତେ ।
ବାଳିରାଜା ଭାଇ ଯେ ସୁଗ୍ରୀବ ନାମେ ବୀର
ଡରେ ଲୁଚିଥିଲା ସେ ପର୍ବତ କନ୍ଦର ।
ତାହାର ସଙ୍ଗରେ ଶ୍ରୀରାମ ମଇତ୍ର ହୋଇଲେ
ମଇତ୍ର ଛଳେ ଶ୍ରୀରାମ ବାଳିକି ବଧକଲେ ।
କିଷ୍କିନ୍ଧ୍ୟା ନଗ୍ରରେ ସୁଗ୍ରୀବ ରାଜା କରି
ଚତୁର୍ମାସ୍ୟା ବଞ୍ଚିଲେ ମାଲ୍ୟବନ୍ତ ଗିରି ।
ଥାଟ ଭେଳ ସୁଗ୍ରୀବର ରାଜା ଯେ ଆସିଲା
ଚାରି ଦିଗକୁ ସେହିଦୂତ ବରଗିଲା ।
ମୁହିଁ ଯାଇ ଲଙ୍କାଗଡ଼େ ସୀତାଙ୍କୁ ଠାବକଲି
ଅନେକସୈନ୍ୟ ମାରି ତା କଟକପୋଡ଼ିଦେଲି
ବାହୁଡ଼ି ଶ୍ରୀରାମଙ୍କୁ ବାରତା ଦେଲି ଆଣି
ମୁଦଦେଇ ସୀତାଠାରୁ ଆଣିଲି ମଥାମଣି ।
ଦେଖିଣ ରଘୁନାଥ ଜାଣିଲେ ଶକୁନ
ସମୁଦ୍ର କୂଳକୁ ବୋଲି ଚଳିଲେ ରାମସୈନ୍ୟ
ସମୁଦ୍ରରେ ବନ୍ଧ ଯେ ବାନ୍ଧେ ବୀର ନଳ
ବରୁଣ ଦେବତା ଆସି କହିଣ ଗଲେ ଖଳ ।
ରାବଣର ଭାଇ ଯେ କନିଷ୍ଠ ବିଭୀଷଣ
ଶ୍ରୀରାମର ପଦ୍ମପାଦେ ପଶିଲା ଶରଣ ।

ସିନ୍ଧୁ ପାରି ହୋଇ ସେ ଲଙ୍କାଗଡ଼ ଗଲେ
ସୁବଳସ୍ତା ପର୍ବତରେ ବସା ଯାଇଁ କଲେ ।
ସେ ଦିନୁ ସମର କଲେ ସେ ବହୁତ
ରାବଣ ତନୟ ଯାର ନାମ ତା ଇନ୍ଦ୍ରଜିତ ।
ନାଗପାଶ ପେଷି ରାମ ଲକ୍ଷ୍ମଣ ବାନ୍ଧିଲା
ଗରୁଡ଼କୁ ମୁହିଁ ଆଣିବାରୁ ସେ କାର୍ଯ୍ୟକଲା ।
ତାହାର ଶର ଯେ ନାଗ ଫାଶକୁ ଆଣିଗଲା
ରାମ କଟକୁ ଯାଇ ଧରଣୀ ଧଇଲା ।
ଛିନ୍ନଦିନେ ନାଗଫାଶ ଗଲା ଯହୁଁ ପୁଣ
ପାଞ୍ଚଦିନରେ ଯାଇମଲା କୁମ୍ଭକର୍ଣ୍ଣ ।
ସାତ ଦିନରେ ସେହୁ ଯୁଦ୍ଧକୁ ଅଇଲା
ଯୁଦ୍ଧକୁ ନପାରି ପୁଣି ଉପାଏ ଭିଆଇଲା ।
ପୁଣି ବ୍ରହ୍ମଶର ଯେ ମାଇଲା ଏ ଘାନ୍ତ
ଋକ୍ଷକପି ବଳ ଯେ ମାଇଲା ହକୋଟି ।
ସେଥର ମୁହିଁ ହେମବନ୍ତ ପୁଣ ଗଲି
ମହଉଷଧ ନେଇ ମୁଁ ସୁଷେଣ ହସ୍ତେ ଦେଲି ।
ତେଣୁ ବଞ୍ଚାଇଲେ ସୁଷେଣ ସଇନ
ଗିରିଶୃଙ୍ଗ ରଖିବାକୁ ମୁହିଁଚଳି ପୁଣି ।
ପର୍ବତ ନିଜ ସ୍ଥାନେ ଥୋଇଣ ସ୍ୱର୍ଗଗଲି
ଇନ୍ଦ୍ରଙ୍କର ଭୁବନୁ ଅମୃତ ଆଣିଲି ।
ଦଶଦିନେ ଇନ୍ଦ୍ରଜିତ ଅଇଲା ଯୁଦ୍ଧକରି
ଲକ୍ଷ୍ମଣ ମାଇଲେ ତାକୁ ଗାଢ଼ ଯୁଦ୍ଧକରି ।
ପୁତ୍ରଶୋକେ ରାବଣ ଶକ୍ତି ମାରିଗଲା
ରାମ ମାରିବାରୁ ସେ ତୁଣ୍ଡ ପଳାଇଲା ।
ରଣରେ ପଡ଼ିଅଛୁ ଯେ ଶ୍ରୀରାମର ଭାଇ
ବ୍ରହ୍ମଶକ୍ତି ଯାଆରେ ଫୁଟିଅଛୁ ମଝି ।
ଶକ୍ତି ଉପାଡ଼ି ଶ୍ରୀରାମ କରନ୍ତି କାରୁଣ୍ୟ
କପିକୁଳରେ ବୈଦ୍ୟ ଯେ ଅଟନ୍ତି ସୁଷେଣ ।
ସେ ବୋଇଲେ ଦେବ ତୁ ଚିନ୍ତା ଯେ ନକର
ଗନ୍ଧମାଦନ ପର୍ବତ ଯେ ଏକଇ ଗିରିବର ।
ମୃତ୍ୟୁ ସଞ୍ଜିବନୀ ଅଛଇଁ ଦେବ ତହିଁ
ହନୁମନ୍ତ ବେଗେ ଯେବେ ଆସୁ ସେଥିଯାଇ ।
ଶୁଣିକରି ଶ୍ରୀରାମ ପେଷିଦେଲେ ମୋତେ
ବାଟରେ ଓଗାଳିମୋତେ ମାରୁଥିଲେଦୈତ୍ୟେ
ତାହାଙ୍କୁ ମାରିଯାଇ ପର୍ବତେ ମୁଁ ଯେ ହେଲି
ରକ୍ଷାପାଳଙ୍କର ଭୁଲେ ଯକ୍ଷ ମୁହିଁ କଲି ।

ପର୍ବତରୁ ଶୃଙ୍ଗ ମୁହିଁ ଉପାଡ଼ି ଆଣୁଛି
କେତେ ରାତି ଅଛି ମୁଁ ତୋତେ ପଚ୍ଛାରୁଛି ।
ରାତି ପାଇଲେ ନ ଜୀଏ ରାମ ଭାଇ
ବାସିରା ହୋଇଲେ ଔଷଧ ନ ଲାଗଇ ।
ବେଗେ ଯିବି ବୋଲି ମୁଁ ଗୁଡ଼ିଲି ସଳଖ ବାଟ
ବାହୁଡ଼ିବା ବେଳେ ପୁଣ ଅଗାଳିଲେ ଥାଟ ।
ତାହାଙ୍କୁ ମାରି ମୁଁ ଯେ ଏ ବାଟେ ଅଇଲି
ତୋହର ଉଞ୍ଚିତ ବାଟୁଳିରେ ମୋହ ଗଲି ।
ତୁ କେଉଁ ମହାତମା କହ ମୋତେ ସତ
କୋହ୍ଲିଲେ ମାରିବ ତୋତେ ଏଥି ପରବତ ।
ଶୁଣିକରି ଭରତର ଉଚେ ରୋହଦେଲା
କୈକେୟୀ ଜନନୀ ଜନ୍ମା ନମଲି ବୋଇଲା ।
ଏତେ ବୋଲି ଭରତ ପଡ଼ିଲେ ଟଳି
ସଙ୍ଗର ଲୋକମାନେ ଧଇଲେକ ତୋଳି ।
ଚେତାପାଇ ଭରତର କରଇ ରୋଦନ
ଆହା ଭାଇ ମୋର ତୁରେ ପାଇଲୁ କଷଣ ।
ହନୁମାନ ବୋଇଲା ତୁ ନବର୍ଣ୍ଣି ମୋତେ କହ
ଶ୍ରୀରାମ ଲକ୍ଷ୍ମଣ କରେ ଅଟନ୍ତି ତୋର ସ୍ନେହ
ଶୁଣିକରି ଭରତର ମନସ୍ଥିର କଲା
ଶ୍ରୀରାମଙ୍କ ଭାଇ ମୁଁ ବୋଲିଣ ବୋଇଲା ।
ଅଯୋଧ୍ୟା ଛାଡ଼ି ମୁଁ ରହିଲି ନନ୍ଦ ଗ୍ରାମ
ଶ୍ରୀରାମ ଗଲା ଦିନୁ ମୋର ଏଥିରେ ବିଶ୍ରାମ
କୈକେୟୀର ସୁତ ମୁଁ ରେ ଜାଣୁଛୁ ମୋତେ
ଭରତନାମ ମୋହର ଯେ ଅଟଇ ଯୁକତେ ।
କୌଶଲ୍ୟା କୈକେୟୀ ସୁମିତ୍ରା କ୍ଷେମେ ଛନ୍ତି
ପିତା ମୋର ଦଶରଥ ଜନନୀ ଲୀଳାବତୀ ।
ସେ ଜନନୀ ହେତୁରୁ ଆମ୍ଭେ ସୁଖୀ ପୁଣ
ଭାଇଙ୍କର କଥାଶୁଣି ମୋରନଗଲା କମ୍ପାପ୍ରାଣ
ପାତ୍ର ମନ୍ତ୍ରୀ ପରଜା ସୁଖରେ ଅଛନ୍ତି
ଶ୍ରୀରାମ ଆସିବାକୁ ଯେ ସମସ୍ତେ ବାଞ୍ଛିଛନ୍ତି ।
ଶ୍ରୀରାମ ଗଲା ଦିନୁ ମୋର ଯତି ବେଶ
ଜଟାକୁ ମୋର ଦେଖ ବଳ୍କଳ ମୋରବାସ ।
ଚଉଦ ବରଷ ହେଲା ମୁଁ ନ ପାଏ ବାରତା
କେତେ ଦୁଃଖ ମୋହଇକି ଦେଲାଯେବିଧାତା ।
ସୀତା ପରା ଯେ ଅସୁର ଘରେ ବନ୍ଦ
ଲକ୍ଷ୍ମଣ ଶକ୍ତିଭେଦ ଶ୍ରୀରାମଚନ୍ଦ୍ର କାନ୍ଦ ।

ଏକଥା ଶୁଣିଲି ମୁଁରେ ଶ୍ରବଣ ପଥ ହେନ
ସବୁକଥା ଅଗଣଲେ ମୋହର ଜନନୀ ।
ଏବେ ହନୁମନ୍ତ ରେ ଜଣାବ ମୁଁ କସ
ଜାଣିଲି ଶ୍ରୀରାମ ତୋର ଅଟନ୍ତି ବିଶ୍ୱାସ ।
ମୋହର କଥା ଏବେ ଶୁଣ ମହାବୀର
ଚଉଦ ବରଷ ଯେ ଶ୍ରୀରାମ କଲେ ଦୂର ।
ଜନନୀ ନିଜ ବଶ ପ୍ରଜାଙ୍କୁ ପାଳନ୍ତି
ଶତ୍ରୁଘନ ଭାଇ ମୋର ଭଲମନ୍ଦ ବୁଝନ୍ତି ।
ମୋର ଚିତ୍ତ ଚୈତନ୍ୟ ହୁମ ଜାନକୀ ଠାରେ
ଅସମ୍ଭବ ଅଜିଲ୍ଲ ଜନମ ମୋର ଠାରେ ।
ଚଉଦ ବର୍ଷ ଯହୁଁ ସମ୍ପୂର୍ଣ୍ଣ ମୁଁ ଦେଖିଲି
ରଘୁବରକୁ ଦୂତ ବହୁତ ଭେଦ ଦେଲି ।
ମୁଁ ବୋଇଲି ଆଇ ମୋର ସେ ହେବେ ଅଭିଷେକ
ଲକ୍ଷଲକ୍ଷ ରାଜା ବରଣ କରି ଆଣିଲି ମୁଁ ଦେଶ
ଦେଉଳ ମଣ୍ଡପ ବାପୀ ଯେ ପୋଖରୀ
ସମସ୍ତ ଭଜନ କରିଅଛୁ ଯେ ବହୁରି ।
ତୀର୍ଥ ଜଳମାନ ଯେ ଅଣାଇ ଅଛୁ ଥୋଇ
କହେ ରାଜା ଆଣିଣ ଠୁଳକଲି ମୁହିଁ ।
ତୋର ଠାରୁ ଏବେ ମୁହିଁ ଯେ ଶୁଣିଲି ବଚନ
କାଲି ଅନୁକୂଳ କରିବ ଲଙ୍କାରଠାରୁ ପୁଣ ।
ଲକ୍ଷେ ପ୍ରଜା ଘେନି ମୁଁ ଯିବି ଲଙ୍କାଗଡ଼
ଏବେ ଶୁଣିଲି ମୋର ଭାଇର ଯୁଦ୍ଧଗାଢ଼ ।
ଯାଅରେ ଭାଇ ମୋର ବେଗ ହୋଇ ବଡ଼ି
ତୋର ମୁଖୁଁ ସ୍ୱାମୀ ବାରତା ପାଉଡଭୁ ।
ଅସୁର ନିଲକ୍ଷଣ ଏବେ ଯେ ହେଉ ମୃତ୍ୟୁ
କାଲି ଅନୁକୂଳ ମୋର ନଷ୍ଟପୁ ଯେ ତତ୍ତ୍ୱ ।
ତିନଶତ ଯୋଜନ ଅଟେ ସିନ୍ଧୁକୂଳ
ଶତେ ଯୋଜନ ଚଉଡ଼ିକ ଅଟେ ଲଙ୍କାଗଡ଼ ।
ବାରିଦନେ ସେଠାରେ ହେବ ପରବେଶ
ଏତେ ବୋଲି ଭରତ କହଇ ସନ୍ଦେଶ ।
ଜଣାଇ ରଘୁନାଥ କରିଇଲେ ନିଜ
ଜଗତ ବହଇ ଯେ ତାହାଙ୍କ ନା..ଜ ।
ଅସୁର ନିଲକ୍ଷଣ ରାବଣେଶ୍ୱର କସ
ହନୁମନ୍ତ ବୋଇଲା ଶୁଣ କୈକେୟୀର ସୁତ ।
ସାମାନ୍ୟ ନୋହେ ସେ ଯେ ଲଙ୍କାର ଅଧିପତି
ଅଠର ଗଣ୍ଡା କୁମର ତେରଶତ ନାତି ।

ଆପଣେ ବିଂଶଭୁଜ ଅଟେ ଦଶଶିର
ଧନପତି ଭାଇ ତାର ଅଟଇ କୁବେର ।
ସାନୁଜ କୁମ୍ଭକର୍ଣ୍ଣକୁ ଷଣ୍ଢୀ ସମନାହିଁ
ପୁଅ ମେଘନାଦ ତାର ଜିଣିଲା ଶଚୀପାଇଁ ।
ଚଉଦ ଭୁବନରେ ଗମଇ ତାର ରଥ
ବ୍ରହ୍ମାର ନାତି ସେ ଯେ ବିଶ୍ରବାର ସୁତ ।
ସୁବର୍ଣ୍ଣ ମୟେ ଲଙ୍କା ସମୁଦ୍ର ଚଉକତି
ରଥଗଜ ଅଶ୍ୱ ତାର ଅନେକ ପାଦାନ୍ତି ।
ସ୍ୱର୍ଗର ଦେବତାଏ ଖଟନ୍ତି ତାର ପାଶ
ତିନକୋଟି ପାଞ୍ଚଶ ତାହାର ରାଣୀ ହଂସ ।
ବ୍ରହ୍ମାଣ୍ଡ ଭିତରେ ସେ ଏକ ବଳୟାର
ମାୟାକୂଟ ବୁଦ୍ଧି ଯେ ଜାଣଇ ଅପାର ।
ଦେବ ଦାନବରେ ଯେ ନାହିଁ ତାକୁ ମୃତ୍ୟୁ
ଚଉଦ କୋଟି ଅମର ଦେଲେ କୁଶକେତୁ ।
ଶ୍ରୀରାମ ସେ ତାହାର ଦର୍ପ ହରି ଯେ ପାରଇ
ଇନ୍ଦ୍ରଦେବ ଯାର ନାମ ଧଇଲେ ଡରଇ ।
ତୁ ତାକୁ ସାମାନ୍ୟ ନ ମଣରେ କରଇ
ରଣେ ନଗଲ୍ଲ ପାଇକ ବଡ଼ଟି ବୋଲଇ ।
ପଞ୍ଚାଖ କୋଟି ଅଛନ୍ତି ମୁକୁଟବନ୍ଧା ଯୋଦ୍ଧା
ଏକେ ଏକେ ପୃଥ୍ୱୀସେହୁ କରିପାରନ୍ତି ସୋଧ ।
କଣ୍ଠରେ ଅସୁର ପୁଣ ଜଣି ଏ ପାରଇ
ଛପନଗଣ୍ଡା ଯୁଗକୁ ଆୟୁଷ ଅଛି ପାଇ ।
ଶ୍ରୀରାମ ନାରାୟଣ ସ୍ୱୟଂ ବ୍ରହ୍ମରାଶି
ଦେବତାଙ୍କ ଛଳେ ମାନବେ ଜନ୍ମ ଆସି ।
ଦୈତ୍ୟ ମାତ୍ର ଉଶ୍ୱାସିବେ ମହାବୀର
ବ୍ରହ୍ମା ଭିଆଇଛୁ ଏହନେକ ପର ।
ଯେବଣ ଶକ୍ତି ରାବଣ ମାରିଅଛୁ ଆଜ
ଦେବଙ୍କୁ ଦୁର୍ଲ୍ଲଭ ମନୁଷ୍ୟେ ଅସମ୍ଭବ ।
ଇନ୍ଦ୍ରଜିତ ଯୁଦ୍ଧ ତ କହିଲେ ନ ସରି
କୁମ୍ଭକର୍ଣ୍ଣର ମହିମା ନୋହେ ପଟାନ୍ତରି ।
ଏକୁ ଏକ ରାକ୍ଷସ ଅଟନ୍ତି ମହାବୀର
କହିଲେ ନ ସରଇ ରାମାୟଣ ସମର ।
ଯିବ ବେଗ ହୋଇଣ ନ ପାରଇ ରହି
ରାମ ପାହିଲେ ଯେ ଲକ୍ଷ୍ମଣ ନ ବର୍ତ୍ତଇ ।
ଭରତ ବୋଇଲେ ଯେ ଶୁଣ ହନୁମନ୍ତ
ଏକଥା ନ ଜାଣିବେଟି ଜାନକୀର କାନ୍ତ ।

ମୁହିଁ ତୋତେ ବାଟୁଳରେ ମାଇଲି ନଜାଣି
ଜାହା ଆଗରେ ଏହା ନ କହିବୁ କପିମଣି ।
କ୍ଷତ୍ରୀମାନେ ମୋତେ ବୋଲିବେ କ୍ଷତ୍ରୀସାଧ
ବୋଲିବେ ଜସ ଯୋଦ୍ଧା କୈକେୟୀ ନନ୍ଦନ
ବାଟୁଳ ମାଇଲି ସେ ଯେ ବାନର ନମନ
ରଘୁବଂଶ କୁଳକୁ କଳଙ୍କ ହୋଇଲି ।
ଧିକ ଏହାର ବୁଦ୍ଧି ଧିକ କ୍ଷତ୍ରୀ ପଣ
କୈକେୟୀ ନନ୍ଦନ ଜୀବନ ଅକାରଣ ।
ଏସନକ ବୋଇଲେ ଖ୍ୟାଇବ ମୁହିଁ ଲଜ
ତେଣୁ ତୋତେ ଛଡ଼ାଉଇ ପବନ ଆତ୍ମଜ ।
ରାମ ନାରାୟଣ ବୋଲି ଜଗତେ ଜାଣନ୍ତି
ଦେଖିବେ ବୋଲି ଲକ୍ଷେ ନୃପତି ଆସିଛନ୍ତି ।
ଏମାନେ ଜାଣିଲେ ମୋର ସନ୍ଦେଶନମାନବେ
ଶ୍ରୀରାମ ମୋର ବଳ ତୁଚ୍ଛହିଁ ମଣିବେ ।
ସତ୍ୟକରି କହ ଯେ ନ କହିବୁ କାହିଁ
କହିଲେ ମୁହିଁ ନଷ୍ଟେ ମରିବି ବିଷ ଖାଇ ।
ଶ୍ରୀରାମ ଶୁଣିଲେ ମୋତେ କରିବେ ଧିକାର
ବହୁତ ଧିକାରିବ ମୋତେ ସୁମିତ୍ରା କୁମର ।
ବୋଲିବେ କୈକେୟୀ ପିତାଙ୍କୁ ସତ୍ୟକରାଇଲା
ଏହି ପୁଅ କେମନ୍ତେ ରାଜ୍ୟ କରନ୍ତା ପର ।
ଯେବେ ହନୁମନ୍ତ ତୁହି ଶ୍ରୀରାମ ସେବକ
ବାଟୁଳ ମାରିବା କଥା ନ ଜାଣିବେ
ଆନଲୋକ ।
ଶୁଣି ପବନସୁତ କୋପେ ଥରହର
ଭରତକୁ ବୋଇଲେ ତୁରେ ମୋ ଆଗେ
ସତ୍ୟକର ।
ମୋତେ ତୁହି ମାଇଲୁ ବୋଲି ନକହିବୁ କାହିଁ
କହିଲେ ଅବଶ୍ୟ ମରିବି ମୁଁ ବିଷ ଖାଇ ।
ବଜ୍ର ହୁଁ ଅଧିକ ଅଟେ ମୋହର ଶରୀର
ତୋ କଞ୍ଚା ବାଟୁଳରେ ମୋଦେହ ଅସ୍ଥିର
କ୍ଷତ୍ରିମାନେ ଶୁଣିଲେ କରିବେ ଉପହାସ
ବୋଲିବେ ଏତେ ଦୁର୍ବଳ ପବନର ଶିଷ୍ୟ ।
ଭରତର ବାଟୁଳରେ ପଡ଼ିଣ ମୋହ ଗଲା
କେମନ୍ତେ ବିଧାତା ଏହାକୁ ବଜ୍ରଅଙ୍ଗ କଲା
ଏକଥା ଶୁଣିଲେ ମୋତେ କ୍ଷତ୍ରୀ କରିବେ ଲାଜ
ଏକଥା ଶୁଣିବାରୁ ମରିବା ବଡ଼ କାର୍ଯ୍ୟ ।

ହେ ଭରତ ବୀର ତୁ ଯେବେ ଶ୍ରୀରାମର ଭାଇ
ମୋତେ ତୁ ମାଇଲୁ ବୋଲି ନକହିବୁ କାହିଁ
ମହା ମହାବୀରମାନେ ମୋତେ କରିବେ ହାନ
ତୋହର କଥା ମୋହର କଥା ନ ଜାଣିବେଟି ଆନ
ଏତେ କହି ହନୁ ଯେ ଗଗନ ମାର୍ଗେ ଗଲା
ପ୍ରହରେ ରାତ୍ର ଥାଉ ଲଙ୍କାରେ ମିଳିଲା ।
ରଣଭୂମି ଦେଖିଣ ଗଗନ ମାର୍ଗୁ ଖସି
ଲକ୍ଷ୍ମଣଙ୍କ କୋଳ କରିଣ ଶ୍ରୀରାମଚନ୍ଦ୍ର ବସି ।
ସେନା ଯୂଥପତି ସୁଗ୍ରୀବ ବିଭୀଷଣ
ଋକ୍ଷ କପିଗଣ ଯେ ଅଛନ୍ତି ଅପ୍ରମାଣ ।
ସ୍ନେହକ ଚଢ଼େଇ ଯୁ ଯେ୍ନ ସମସ୍ତେ ଗୃହିଁଛନ୍ତି
ହନୁ ଆସିବ ବୋଲି ଉପରକୁ ଅନାନ୍ତି ।
ଏସନକ ସମୟରେ ଶୁଭେ ମହାନାଦ
ଜୟେବ ବୋଇଲେ ଦେବକାର୍ଯ୍ୟ ହେଲା ସିଦ୍ଧ
ଏସନକ ସମୟେ ପବନ ତନଏ
ଗଗନରୁ ଖସି ଆସେ ଅଞ୍ଜନା ସୁତ ଏ ।
ଉଡନ୍ତା ପାରା ଯେହ୍ନେ ଗଗନେ ଉଡୁଥାଇ
ପାରେଇକ ଦେଖିଲେ ଯେହ୍ନେ ତଳକୁ ଖସଇ
କଅବା ଶୂନ୍ୟ ପୁ ରୁଷ ଚ୍ୟୁତ ହୋଇଥାଏ
ଗଙ୍ଗାର ଢେଉ ଯେହ୍ନେ ଜଳରେ ବୁଡ଼ାଦଏ
ମୀନକୁ ଦେଖିଲେ ଯେହ୍ନେ ଗରୁଡ଼ଜଳେ ବୁଡ଼େ
ତେସନକ ପ୍ରାୟେ ବୃହାନ୍ତ ନଦେଖିଲେ ।
କି ଅବା ଶ୍ୟାମଳ ମେଘ ଦେଲା ବକ ବୃଷ୍ଟି
ହସ୍ତୀ ଶୁଣ୍ଢ ଯେହ୍ନେ ପଡ଼ଇ ଆସି ଭୂଇଁ ।
ବଜ୍ର ବାଣ ପଥର କି ଗର୍ଜିଣ ଅଇଲା
କାଳସର୍ପ ଦେଖିଣ କି ଗରୁଡ଼େ ଧାଇଁଲା ।
ଇନ୍ଦ୍ରଦେବତା କି ମାରେ ବଜ୍ର ସୂଚି
ଋକ୍ଷ ମର୍କଟ ଯେ ହୁଅନ୍ତି ପୁଚ୍ଛା ପୁଚ୍ଛି ।
ଜୟେବ କହନ୍ତେ ଯେ ସମସ୍ତ ପ୍ରତେଗଲେ
ଧନ୍ୟ ଧନ୍ୟ ହନୁମନ୍ତ ବୋଲିଣ ବୋଇଲେ ।
ଏସନକ ସମୟରେ ପବନ କୁମର
ମୂ ଣ୍ଡରେ ଘେନିଅଛି ମହତ ଗିରିବର ।
ଶ୍ରୀରାମର ସମ୍ମୁଖରେ ହୋଇଲା ଆସି ଉଭା
ଅନନ୍ତ ଲସ୍ତକରେ ଯେହ୍ନେ ବସୁନ୍ଧରା ଶୋଭା
କରପଦ୍ମ ଦୁଇ ସେ ଯୋଡ଼ିଣ ପାବନ
ରାମନାମ ପଦକୁ କରୁଛି ସ୍ତୁତି ପୁଣି ।

ଦେଖିକରି ରଘୁନାଥ ହରଷ ହୋଇଲେ
ଅଇଲୁ କରେ ବାପ ବୋଲଣ ବୋଇଲେ ।
ତୋତେ ମୁଁ ନ ଦେଖି ବାବୁ ଅସ୍ଥିର ଜୀବନ
ଉତ୍ତର ଦିଗକୁ କରି ବସିଛୁ ବଦନ ।
ମୃତ୍ୟୁ ପ୍ରାଣୀକି ଔଷଧି ଦେଇ ପବନର ବହ୍ନି
ତୋହ ସକାଶେ ବାବୁରେ ଏକଥା ହୋଇଛି
ଆସ ଆସ ମାରୁତି ବିଶଲ୍ୟ କରଣୀ ବେଗିଆଣ
ତେବେ ବଞ୍ଚିବ ମୋ ସାନୁଜ ଲକ୍ଷ୍ମଣ ।
ହନୁମନ୍ତ ବୋଇଲା ଦେବ ଦୋଷ କ୍ଷମାକର
ଗଛ ନ ଚିହ୍ନି ମୁହିଁ ଆଣିଛି ଗିରିବର ।
ବାଟରେ ମୋତେ ବହୁତ ବିଘ୍ନ ଉପୁଜିଲା
ତୁମ୍ଭର ପ୍ରସାଦେ ମୋତେ ଧର୍ମ ରକ୍ଷାକଲା ।
ଶୁଣିକରି ଶ୍ରୀରାମ ଆଶ୍ୱାସନା କଲେ
ତୋହରେ ଏତେ କର୍ମମାନହୁଅଇ ବୋଇଲେ
ସୁଗ୍ରୀବ ରାଜା ଯେ ମୋତେ ଦୟା କଲେ
ଦୁଃଖୀ କାଳେ ମୋତେ ସୁପକ୍ଷ ହୋଇଲେ ।
ତୋହର ପ୍ରସାଦେ ଯେ ମୋହର ବଡ଼ ପଣ
ଲକ୍ଷ୍ମଣଙ୍କୁ ଜୀଆଇବେ ଜମ୍ବେବ ସୁଷେଣ ।
ହନୁମନ୍ତ ସୂର୍ଯ୍ୟବଂଶ ଉଦ୍ଧରି ଧଇଲା
ଏହାର ପ୍ରସାଦରେ ମୋର ଅଭିମାନ ଗଲା ।
ଅଙ୍ଗଦକୁମାର ମୋତେ ଉପକାରୀ ଅଟଇ
ଏତେ ସୈନ୍ୟ ବେଢ଼ଣ ମୋ ତଉଣେ ଖଟଇ
ନଳର ପ୍ରସାଦେ ମୁଁ ଅଇଲି ପାରି ହୋଇ
ସୁବୁଦ୍ଧି ପାଇଲି ମୁଁ ବିଭୀଷଣ ଠାଇଁ ।
ନୀଳ ସେନା ମୋର ଥାଟକୁ ଅଟେସେନାପତି
ଗନ୍ଧମାର୍ଦ୍ଦନ ହେତୁ ମୁଁ ପାଇଲି ଯୁବସ୍ତି ।
ସତର ସେନାପତି ଭରସାରେ ମୁଁ ଅଇଲି
ଶତବାନ ବୁଦ୍ଧିରେ ଯୁଦ୍ଧ ମୁଁ ଜୟ କଲି ।
ତାରାସୁତ ଠାରୁ ମୁଁ ପାଇଲି ଛେଦ ଭେଦ
ଗବଏ ଗବାକ୍ଷ ଅସୁରଙ୍କୁ ବଡ ଖେଦ ।
ମହେନ୍ଦ୍ର ଦ୍ୱିବିଦ ସେ ନ ହାରନ୍ତି ରଣେ
ଏହାଙ୍କୁଦେଖିଲେ ଦୈତ୍ୟପଳାନ୍ତିଏଣେତେଣେ
ଶରଭ ରମଣ ଢ଼ାଳମ୍ବ ସେ ପାରସ
ପନସ ବସନ୍ତ କୁମୁଦ ସାରସ ।
ସମ୍ପାତି ବବଧ ସେ ତାରର ପିଅର
ହେମାର ପିତା କଥାସବୁ ଦୁଃଖ ଅଗୋଚର

ବଳିମୁଖ କାଳମୁଖ କୁମ୍ଭ ଚନ୍ଦନ
ଗନ୍ଧମାଦନ ଯେ ପବନ କାଳଞ୍ଜନ ।
ଅଷ୍ଟସେନା ମୋର ଯେ ପଞ୍ଚଶ ଯୂଥପତି
ବୀର ମହାବୀର ଯେ ଅନେକ ଅଛନ୍ତି ।
ଏହା ପ୍ରସାଦେ ମୋର ହେଉଅଛି ଗୋଳ
ମଲ ମହାମଲ ଯେ ଋକ୍ଷ କପିବଳ ।
ସବୁଯଶ ମୋତେ ଯେ ହନୁମନ୍ତ ଦେଲା
ଲକ୍ଷେ ଯୋଜନୁ ଏ ଔଷଧି ଆଣିଲା ।
ଓହ୍ଲାଅ ପବନ ସୁତ ମୁଣ୍ଡରୁ ବେଗେ ଗିରି
କେତେବେଳଯାଏ ସେହୁ ମୁଣ୍ଡରେଥିବ ଧରି
ଆଶ୍ୱାସନା କରି ଅଷ୍ଟସେନାଏ ଧଇଲେ
ହନୁମନ୍ତର ମସ୍ତକୁ ଗିରି ଓହ୍ଲାଇଲେ ।
ଯେଉଁଣ ଋକ୍ଷକପି ଉଠିଲେ ଗିରିପରେ
ଅର୍ଦ୍ଧେକ ରହିଲା ଗିରି ସମୁଦ୍ର ଭିତରେ ।
ଏଥୁ ଅନନ୍ତରେ ସୁଷେଣ ମନ୍ତ୍ରୀବର
ଯମ୍ବେବ ମନ୍ତ୍ରୀଙ୍କ ସେ ବେଢ଼ଣ ସଙ୍ଗତର ।
ପର୍ବତରେ ଉଠି ଔଷଧି ଠାବ କଲେ
ପ୍ରତିକ୍ଷଣ କରିଣ ସେ ନମସ୍କାର କଲେ ।
ଓଳଗ ମେଲିଇଣ ସେ ହରଷ ହୋଇଲେ
ପଞ୍ଚଲେଚ ଏକ ଚଟୁଁ ଛିଣ୍ଡାଇ ଆଣିଲେ ।
ଦୁଇହାତେ ତାହା ମର୍ଦ୍ଦିଲେ ଆଣ୍ଟେ ଧରି
ଲକ୍ଷ୍ମଣ ନକଟକୁ ନେଲେ ଔଷଧି ବାରି ।
ରାମଚନ୍ଦ୍ର ଭାଇଙ୍କ କୋଳରେ ଛନ୍ତି ଧରି
ହୃଦୟକୁ ଚୁମ୍ବିଣ ଅଛନ୍ତି ରାବଣାରି ।
ସୁଷେଣ ବୋଇଲେ ଦେବ ଅଛଇଁ କଥାଏ
ଏକସ୍ତମୀ କ୍ଷୀର ଯେ ଏଥକୁ ଲୋଡ଼ା ହୁଏ ।
ମଣିଶିଳ ପଥରରେ ବାଟିବ ସେହୁ ନାସି
ଘାଆମୁଖେ ଲେପ ଦେଲେ ତକ୍ଷଣେ ସେପୁର
ସୁଷେଣ ଆକୁଳ ମନ ହୋନ୍ତି ରଘୁନାଥ
ମୋର ଦେହ ଶାଶୁ ଝିଅଲେଖାହେଲିଆଘାତ
ଲଙ୍କାଗଡ଼ ଉତ୍ତର ପାରୁଶେ ତାର ଘର
ତାର ବୋଲି ନାମତାକୁ ଦେଇଛି ବେଦବର
ମଣିଶିଳ ପଥର ଅଛି ତାର ଘର
ସେ ଶିଳ ସାଇତି ଯେ ରଖିଛି ନାରୀବର ।
ବିଭୀଷଣ କହିଲା ସଙ୍କେତ ବଚନ
ହନୁମନ୍ତ ଗଲେ ବେଗେ ଆସିବ ତକ୍ଷଣ ।

ଏଥୁ ଅନନ୍ତରେ ଯେ ପଚ୍ଛରେ ଶାକମ୍ବରୀ
କଥାଏ ମନେ ମୋର ପଡେ ତ୍ରିପୁରର ।
ଜନକର ଦୁହିତା ନାମ ତାହାର ସୀତା
ଲକ୍ଷ୍ମଣ ଶକ୍ତି ଭେଦରେ ପଡ଼ିଲା ସେ ବାର୍ତ୍ତା
ପଞ୍ଚମୁଖ ବୋଇଲେ ସେ କଥା ତୋତେ କହି
ଅସୁରୁଣୀ ଆସିଥିଲେ ରାବଣ ପୁରକୁଇଁ ।
ଶୁଣିଲେ ରାବଣଠାରୁ ଶକ୍ତିଭେଦ କଥା
ରାମ ଭାଇକ ମାଇଲା ଏକାଘନ ଶରଯଥା ।
ସାନ ଯନ୍ତ ଆଜଠାରୁ ଯମପୁର ଗଲା
ବଡ଼ ଯନ୍ତ ମଲେ ମୋତେ ଯଶ ହେବପରା ।
ଏହାଶୁଣି ଅସୁରୁଣୀ ଫେରଣ ଅଇଲେ
ତ୍ରିଜଟା ଆଗରେ ଏହା ଖବର କହିଲେ ।
ଶୁଣିକର ବଇଦେହୀ ବିକଳ ମନରେ
ତ୍ରିଜଟା ବୋଇଲେ ସଖି ସମ୍ଭାଳ ଗୋବାରେ
ଏତେକହି ତ୍ରିଜଟା ଯେ ବେଗ ହୋଇଗଲା
ତାର କନ୍ୟାଘରେ ଯାଇ ପ୍ରବେଶ ହୋଇଲା
ବୋଇଲେ ସୁନ୍ଦରୀ ତୁ କସ କରୁ ଶପୁ
ଲକ୍ଷ୍ମଣ ଶକ୍ତି ଭେଦ ଆଜହେଲା ଜାଣ ।
ଆଜ ଗୋ ସ୍ୱର୍ଗ ପ୍ରାପତ ହୋଇବକ ତୋତେ
କ୍ଷୀର କ ସ୍ରବିଲା ସ୍ତନେ କହଗୋ କନସ୍ତେ ।
ବୋଇଲା କ୍ଷୀର ମୋର ହୋଇଲାଣି ସ୍ତନେ
ହନୁମନ୍ତ ଅଇଲେ ମୁଁ ଯିବ ସେ ତକ୍ଷଣେ ।
ଦର୍ଶନ କରଣ ଶ୍ରୀରାମ ଯିବ ନଜ ସ୍ଥାନେ
ତୋର ମୋର ଦେଖାଟି ଏତିକବୋଲି ଜାଣ
ଶୁଣିକର ତ୍ରିଜଟା ବେଗେ ଲେଉଟିଲା
ସୀତାର ଆଗରେ ଆସି ଖବର କହିଲା ।
ବୋଇଲେ ଗୋ ସ୍ୱସ୍ତି ତୋର ଜୀଇବେଦଅର
ଅମର ମଉଷଧି ଆଣେ ପବନ କୁମର ।
ଏଥୁ ଅନନ୍ତରେ ତୁଗୋ ଶ୍ରୀରାମ କଥା ଶୁଣ
ବିଭୀଷଣ କହିବାରୁ ଜାଣିଲେ ଶ୍ରୀରାମ ।
ଶୁଣିଣ ରଘୁନାଥ ମାରୁତକ ବୃର୍ତ୍ତି
ଦେଖିକର ହନୁମନ୍ତ ମଥାରେ ହସ୍ତ ଦେଇ ।
ମୋଠାରୁ ବାଣୀଶୁଣହେ କୋଦଣ୍ଡ ରୂପଧାରୀ
ଯେଉଁଦନ ଲଙ୍କାକୁ ମୁଁ ଗଲି ଆଗକର ।
ଘରେ ଘରେ ପଶି ମୁଁ ସୀତାଙ୍କ ଖୋଜିଲି
ସୀତାର ସାଦୃଶେ ତାକୁ ସୁନ୍ଦର ଦେଖିଲି ।
ମୋତେ ଚହ୍ନିଣ ବୋଇଲା ସୀତା ଏଠେଁନାହିଁ
ଅଶୋକ ବନେ ରାବଣ ସୀତାଙ୍କୁ ଅଛି ଥୋଇ
ମୁଁ ବୋଇଲି ତୁ କମ୍ପା ହେଉଛୁ ଭବିଷ୍ୟ
ଯୁଦ୍ଧକାଳେ ତୋର ଏକସ୍ତନ ଗୋଟା କସ
ସେବୋଇଲି ଦେବତାଏ ମୋତେ ଛନ୍ତିଥୋଇ
ଲକ୍ଷ୍ମଣଙ୍କୁ ଶକ୍ତି ଭେଦୁଁ ଜାଆଇବ ମୂର୍ଚ୍ଛି ।
ତାଠାରୁ ଶୁଣି କରି ତାକୁ ପଚ୍ଛରିଲି
କେମନ୍ତେ ଯିବ ମୋତେ କହଗୋ ସୁନ୍ଦରୀ ।
ବୋଇଲା ତୁହିଯିବୁ ଗନ୍ଧମାର୍ଦନ ପର୍ବତକୁ
ତୋତେଶ୍ରୀରାମଭେଦ ଦେବେଔଷଧିଆଣିବାକୁ
ବିଭୀଷଣ କହିବାରୁ ତୁହିମୋତେ ନେବୁ
ଔଷଧି ବ ଟି ଧଅନ୍ତେ ଲକ୍ଷ୍ମଣ ଭଲ ହାବୁ ।
ସେ କଥା ମୋର ପଡ଼ିଲା ଏତେବେଳେ
କହିଲି ତୁମ୍ଭର ଆଗେ ମତ ସେହି ବୋଲେ
ଆଣିବ ତାରକୁ ଯାଇ ନକର ଦେବଚନ୍ତା
ଶୁଣିକର ହରଷ ହୋଇଲେ ଜଗତ୍ପିତା ।
ଆଜ୍ଞାପାଇ ମାରୁତ ବେଗେ ଚଳିଗଲା
ଲଙ୍କାର ଭୁବନେ ଯାଇ ପ୍ରବେଶ ହୋଇଲା ।
ସକଳ ସୁଖରେ ଥିଲେଟି ସେ ସୁନ୍ଦରୀ
ତ୍ରିଜଟା କହିବାରୁ ମନରେ ହେଜୁକରି ।
ତାକୁ ଯାଇ ଭେଟିଲା ହନୁମନ୍ତ ବୀର
ରଘୁନାଥଙ୍କ ଆଜ୍ଞା ତୁମ୍ଭେ ବେଗ ହୋଇଚଳ
ବିଭୀଷଣ କହିବାରୁ ଶ୍ରୀରାମ ଆଜ୍ଞା ଦେଲେ
ତାରକୁ ଘେନଆସ ବୋଲି ପେଷିଦେଲେ ।
ତୋହର ଗଲେ ଏଥୁଁ ଜୀଇବେ ସଉମିତି
ମଣିଶିଳ ଘେନ ଦେଖା ଉଠିଲା ଛଡ଼ିତ ।
ରଘୁନାଥ ଚରଣ ଦର୍ଶନ ଯାଇଁ କଲା
ଦେଖିଣ ରଘୁନାଥ ଆସତୋ ହୋଇଲା ।
ବିଶଲ୍ୟ କରଣୀ ଯେ ସୁଷେଣ ଆଣିଦେଲା
ସ୍ତନରୁ କ୍ଷୀର ଦୁହିଁଣ ତାହା ଯେ ବାଟିଲା ।
ଆପଣେ ରଘୁନାଥ ଲେପିଲେ ଔଷଧି
ଚେତନା ପାଇଲେ ଯେ ଲକ୍ଷ୍ମଣ ମହାଯୋଧି
ମୃତ୍ୟୁ ସଞ୍ଜିବନୀ ଯେ ସୁଷେଣ ହସ୍ତେ ଥିଲା
ସଉମିତି ନାସାରେ ନାସ ନେଇ ଦେଲା ।
ରସ ତପୁଣ୍ଡକେ ପବନ ନେଲା ବାସ
ଘାଆ ଶୁଖିଗଲା ଯେ ଗ୍ଲୁଡ଼ିଲା ଦେହ ତ୍ରାସ ।

ଗନ୍ଧୁ ଶତେ ଗୁଣେ ପାଇଲେ ସେ ପ୍ରାଣ
ବେନଚକ୍ଷୁ ମେଲଣ ଯେ ଉଠିଲେ ଲକ୍ଷ୍ମଣ ।
ଶ୍ରୀରାମଙ୍କ କୋଳରୁ ଉଠି ଉଭା ହେଲେ
କ୍ରୋଧ କଲି ବୋଲିଣ କରସେ ଯୋଡ଼ିଲେ ।
ଆନନ୍ଦ ହୋଇଣ ଯେ ଉଠିଲେ ରଘୁପତି
କୋଳକରି ଭାଇଙ୍କ ସେ ଚୁମ୍ବନ ଦିଅନ୍ତି ।
ପୁଣ ପୁଣ ଆଲିଙ୍ଗନ କରନ୍ତି ଗୋସାଇଁ
ଅନ୍ତଗାଢ଼େ ଭିଡନ୍ତି ହିଆରେ ହିଆ ଦେଇ ।
ରାମ ବୋଲନ୍ତି ବାବୁରେ ତୁମ୍ଭ ମରିଥିଲୁ
ସୁଷେଣର ପ୍ରସାଦେ ଏବେ ତୁ ଜୀଇଲୁ ।
ହନୁ ବହୁତ ଦୂରରୁ ଆଣିଲାକ ଗିରି
ଆମ୍ଭେ ସର୍ବେ ବସିଲୁ ଏଥିରେ ଶୋକକରି ।
ଏତେ ବୋଲି ଶ୍ରୀରାମ ସୁଷେଣ ମୁଖ ଚୁମ୍ବି
ତୋହର ପ୍ରସାଦରେ ଜୀଇଲା ମୋର ଭାଇ ।
କିସ ଦେଇ ତୋତେରେ ସୁଝିବି ଉପକାର
ଶୁଣିକରି ପଛକୁ ଘୁଞ୍ଚିଲେ ମନ୍ତ୍ରୀବର ।
ମଥାରେ ହସ୍ତ ଦେଇଣ ବୋଇଲେ ଗୋସାଇଁ
ମୋତେ କମ୍ପା ପ୍ରଶଂସା କର ହୋ ରଘୁସାଇଁ
ତୋହର ପୁଣ୍ୟରୁ ତୋଭାଇ ଯେ ପ୍ରାଣପାଏ
ମୋର କହିବା କଥାସିନାକହିବା କଥାନୁହେଁ
ହନୁମନ୍ତ ମହାତମାଙ୍କର ଉପକାର
ରାମାୟଣ ପୁଙ୍ଖରେ ସେହି ଯେ ବଳଆର ।
ଶ୍ରୀରାମ ବୋଇଲେ ଆଜ କରନ୍ତା କଏ ଏହା
ସବୁଠାରେ ମୋତେ ଯେ ହନୁମନ୍ତ ସାହା ।
ରାବଣକୁ ମାରି ଯେବେ ଅଯୋଧାକୁ ଯିବି
ପବନ ତନୟକୁ ମୁଁ କପାଳ ବଣ୍ଟା ଦେବି ।
ସବୁ ତହୁଁ ଉପକାରି ତାରା ମହାସତୀ କଲି
ମଣିଶିଳେ ବାଟି ଔଷଧି ଘାଆମୁଖେ ଦେଲା ।
ତେବେ ବଞ୍ଚିଲା ମୋ ଭାଇ ଲକ୍ଷ୍ମଣ
କେବଣ ପଦାର୍ଥ ଦେଇ ସୁଝିବି ଯାର ଋଣ ।
ଏତେକହି ରଘୁନାଥ ଗଲେ ତାକୁ ପାଶ
ମୁଣ୍ଡେ ହାତ ଥାରଦେଇ ଗୁଚିଲା ତାରଦୋଷ
ତକ୍ଷଣେ ପାର୍ଥିବ ଦେହ ସେ ଗୁଚିଲା
ନିଜ ତନୁ ଧରି କନ୍ୟା ଗୋଟିଏ ହୋଇଲା ।
କର ଦୁଇ ଯୋଡ଼ି ଶ୍ରୀରାମ ଆଗେ କହି
ହୁ ହୁ ଗନ୍ଧର୍ବର ମୁଁ ଦୁହିତା ଅଟଇ ।

ବ୍ରହ୍ମା ମୋତେ ଔଷଧି ବାଟିବା ପଣ ଦେଲେ
ମଣିଶିଳ ଆଣିଣ ସେ ମୋତେ ସମର୍ପିଲେ ।
ବୋଇଲେ ଔଷଧି ବାଟିବୁ ତୁମ୍ଭେ ନାରୀ
ଯେତେବେଳେ ଲୋଡ଼ା ଯେ ହୋଇବ ଯାହାର
ଏହା ଶୁଣି ମୁହିଁ ଯାଇ ସେଥିରେ ରହିଲି
ଇନ୍ଦ୍ର ଦେବତାଙ୍କ ପାଇଁ ଔଷଧି ବାଟିଲି ।
ମହୌଷଧି ବାଟିଣ ଶୁଙ୍ଘିଲି ହସ୍ତ ଆଣି
ଏତେକ ଶାପ ମୋତେ ଦେଲେ ବଜ୍ରପାଣି ।
ବୋଇଲେ ଔଷଧି ଶୁଙ୍ଘି କଲୁ ମନ୍ଦକୃତ୍ୟ
ମୋହର ଶାପ ତୋତେ ହେଉ ସରପତ ।
ଅସୁର ଘରେ ତୁ ଜାତ ହୁଅ ଯାଇ
ଏ ସ୍ୱର୍ଗପୁରରେ ତୋତେ ଘଡ଼ିଏ ନ ଥୋଇ
ଏ ବଚନ ଶୁଣି ମୁଁ କମ୍ପିଲି ଥରହର ହୋଇ
କର ପଦ ଯୋଡ଼ି ଇନ୍ଦ୍ର ସମ୍ମୁଖରେ ଜଣାଇ ।
ଶାପକୁ ମୁକତ ମୋତେ କରହେ ଗୋସାଇଁ
ଶୁଣିକରି ଜ୍ଞାନଦେଲେ ଶଚୀଦେବୀ ସାଇଁ ।
ବୋଇଲେ ତୁହି ହାଦେ ଲଙ୍କାରେ ଜନ୍ମହେବୁ
ଏକସ୍ତମ୍ଭୀ ତାର ବୋଲି ନାମ ବୋଲାଇବୁ ।
ତ୍ରେତୟା ଯୁଗରେ ସେ ବିଷ୍ଣୁ ହେବନ୍ତି ଜାତ
ରାବଣ ସଙ୍ଗେ ବହୁତ କରିବେ ଅନର୍ଥ ।
ଲକ୍ଷ୍ମଣ ବୋଲି ଭାଇ ତାର ଶକ୍ତିଭେଦ ହେବ
ଔଷଧି ବାଟିବାକୁ ତୋତେ ସେ ଲୋଡ଼ାଇବ
ତୁ ଆସି ଔଷଧି ବାଟିଣ ଲେପ ଦେବୁ
ଶ୍ରୀରାମ କର ଲାଗନ୍ତେ ଶାପରୁ ମୁକ୍ତ ହେବୁ ।
ତାଙ୍କର ବୋଲିରେ ମୁଁ ଲଙ୍କାକୁ ଅଇଲି
ମଣିଶିଳ ଘେନ ନଜପୁରେ ମୁଁ ରହିଲି ।
ସଉରଭ ବୋଲିଣ ଏକଇ ରାକ୍ଷସ
ତାହାର ଭାରିଯା ନାମ ଶକୁନ୍ତଳା ସେତ ।
ତାର ଗର୍ଭେ ଦୁଇ ଦୁହିତା ଜାତ ହେଲେ
ସୁନାସ ରାକ୍ଷସକୁ ମୋ ମାତା ଭଜା ହେଲେ ।
ତିନ ପୁରୁଷଙ୍କ ତଳରେ ମୁହିଁ ହେଲି ଜାତ
ମୋତେଦେଖି ମୋରନାମ ତାରାଦେଲେତାତ
କଛୁଦନ ଅନ୍ତରେ ଏକସ୍ତନ ମୋର
ଚଣ୍ଡୁକର ପିତା ମୋତେ ନବଇଲା ବର ।
ଏକସ୍ତମ୍ଭୀ ନାମମୋର ହୋଇଲା ସେଠାରୁ
ବିଭୀଷଣ ମଉସା ମୋହର ପୂର୍ବରୁ ।

ମୋ ମାତାର ଭଉଣୀ ଏହାଙ୍କର ଘରଯା
ଏହାର ଦୁହିତା ନାମ ତ୍ରିଜଟା ସୁରେଯା ।
ତୁମ୍ଭର ଘରଯା ଜାନକୀ ନାମେ ସ୍ପଷ୍ଟ
ଦେଖିଲି ବନରୁ ସେବା କରଇ ସେ ନିତ ।
ଏହି ସମୟରେ ଆସି ତ୍ରିଜଟା କହିଗଲା
ଲକ୍ଷ୍ମଣଶକ୍ତି ଭେଦ ଆଜଟି ହୋଇଲା ।
ସେହିକଥା ଚେତ ମୁଁ ସ୍ତନକୁ ଦୁହିଁଲି
କ୍ଷୀର ଦେଖିବାରୁ ତାରକଥା ସତକଲି ।
କହିକରି ସେହିକ୍ଷଣି ଗଲା ସୀତା ପାଶ
ଏହି ସମୟରେ ହନୁମନ୍ତ ସେ ପରବେଶ ।
ହନୁମନ୍ତ ଯିବାରୁ ମୁଁ ଅଇଲି ବେଗ ହୋଇ
ଏ ସମୟେ ସ୍ୱର୍ଗପୁରୁ ବିମାନ ଆସଇ ।
ରାମପାଦ ଲାଗି କନ୍ୟା ରଥରେ ବସିଲା
ବିମାନ ଚଳଯାନ୍ତେ ସ୍ୱର୍ଗରେ ମିଳିଲା ।
ଇନ୍ଦ୍ରଙ୍କର ଚରଣେ ଓଳଗି ହେଲା ଯାଇ
ଦେଖିକରି ଶଚସାଇଁ ପ୍ରଶଂସା କରଇ ।
ଇନ୍ଦ୍ରଠାରୁ ସନମାନ ପାଇଣ ସେ ପୁଣ
ସେବାରେ ରହିଲା ସେ ନିଜବୃତ୍ତି ଜାଣ ।
ଶୁଣ ଗୋ ଭଗବତୀ ଏଥୁ ଅନ୍ତରେ
ଯେବଣ କଥା କଲେ ଶ୍ରୀରାମ ସେଠାରେ ।
ଏସନକ ସମୟରେ ଋଷ କପିବଳ
ସର୍ବେତ ଉଠିଣ ସେ ଭୁଞ୍ଜନ୍ତି ସ୍ୱାଦୁଫଳ ।
ହରଷନ୍ତ ହନୁମାନ ଯାଇଥିଲା ଆଣି
ଅମୃତ ଫଳମୂଳ ଏଥୁଁ ଭୁଞ୍ଜିଲେ ପୁଣି ।
ଏତେ ବର୍ଷର ଗନ୍ଧମାର୍ଦ୍ଦନେ ବିହରନ୍ତି
ଗର୍ବୁଁ ଶତେଗୁଣ ବଳମାନ ସେ ହୁଅନ୍ତି ।
କଳକଳା ରବ ଯେ ଘୁଞ୍ଜନ୍ତି ଘନଘନ
ସୁଷେଣ ବୋଇଲେ ବାବୁ ଶୁଣ ହନୁମାନ ।
ଦେବତାଙ୍କ ପଦାର୍ଥ ଏ ଏଥିରେ ଜନ୍ମାଥିବ
ଜାଣିଲେ ପିତାମହ କୋପ ଯେ କରିବ ।
କାର୍ଯ୍ୟତ ସରିଲା ଏହା କୁ କୁ ନେଇଯାଅ
ଯେଉଁଠାରୁ ଆଣିଛୁ ସେହିଠାରେ ଥୁଅ ।
ଶୁଣି ପରମ ତୋଷ ପବନକୁମର
ଶ୍ରୀରାମ ଚରଣରେ କଲା ନମସ୍କାର ।
ବୋଇଲା ଭେଟଦେବ ହେ ଶୁଣ ରଘୁନାଥ
ଗଲାବେଳେ ବାଟେ ବିଘ୍ନ ହୋଇଲା ବହୁତ ।
ଆସିବାର ବେଳେ ବାଟ ଭଙ୍ଗି ମୁଁ ଅଇଲି
ଅଯୋଧ୍ୟା କଟକରେ ପ୍ରବେଶ ହୋଇଲି ।
ଦେଖିଲି ସେ କଟକ ଅତ୍ୟନ୍ତ ଗହଳ
ବାରଯୁଣ ପର୍ଯ୍ୟନ୍ତେ ଲାଗିଛି ଚହଳ ।
ହସ୍ତୀ ଘୋଡ଼ା ପାଦାନ୍ତ ଅନେକ ସୈନ୍ୟବଳ
କୂପ ବାମ୍ପୀ ନଈଆଦ ପୁଷ୍କରଣୀକୂଳ ।
ବାଟଘାଟ ଦାଣ୍ଡ ତହିଁ କାହିଁ ସ୍ଥାନ ନାହିଁ
ଝଡ଼ହଡ଼ ହୁଲାରେ ଯେ ଆଲୋକ ଝଣେ ମସ୍ତ ।
ଲକ୍ଷେକ ରଥ ତହିଁ ଚାଲିଲ ପନ୍ତ ପନ୍ତ
ଭୁଣ୍ଡିର ଗହଳେ କଥା ବୁଝିନୋହେ ସେଥି ।
ରାମ ଲକ୍ଷ୍ମଣ ଆସିବେ ବୋଲନ୍ତି ସର୍ବବାଣୀ
ସମସ୍ତଙ୍କ ଘରେ ଚନ୍ଦ୍ର ଭୂଷଣ ପୁଣି ।
ଦେଖିକରି ମନରେ ବିସ୍ମୟ କରିଲଇଁ
ଏ ଦେଶେ ଏତେ ଗହଳ ହୋଇଛି କମ୍ପାଇଁ
ରାଜପାଥ ଯିବାକୁ ମନରେ ମୋର ଡ଼ର
ରହି ବୁଝିବାକୁ ମୋର ନାହିଁତ ସଅଳ ।
ଏକଥା ବିସ୍ମରି ମୁଁ ଶୂନ୍ୟରେ ଆସେ ଗମି
ନନ୍ଦଗ୍ରାମ ସଳଖେ ହୋଇଲି ଦେବସ୍ୱାମୀ ।
ଅନ୍ଧାର ବଳସ୍ତେ ତୁମ୍ଭ ଭାଇ କରିଥିଲେ
ମୋହର ଗର୍ଜନ ସେ ଶୂନ୍ୟରେ ଶୁଣିଲେ ।
ଉପରକୁ ଗୁହିଁଣ ଶବଦ କଲେ ମୋରେ
ବୋଇଲେ କିଏ ତୁରେ ଯାଉଛୁ ଶୂନ୍ୟରେ ।
ମୋଠାରେ ଦେଖାହୋଇ ଯେବେତୁ ନଯିବୁ
ତଳକୁ ନ ଆସିଲେ ଶାପ୍ୟ ତୁ ପାଇବୁ ।
ତାଙ୍କର ବଚନକୁ ଡ଼ରିଲି ମୁହିଁ ପୁଣ
ପର୍ବତ ମୁଣ୍ଡି ଆଇ ତାଙ୍କପାଶରେ ହେଲିଜାଣ
ମୋତେ ଦେଖି ବଚନ ପ୍ରକାଶିଲେ ପୁଣି
ପର୍ବତ ମୁଣ୍ଡି ଆଇ କେଉଁଠେ ଯାଉଛୁ ବୀରମଣି
ମୁଁ ବୋଇଲି କଥାହେବାକୁ ନାହିଁତର
ଘେନିପାରିଲେ ନ ଜୀଏ ଲକ୍ଷ୍ମଣ କୁମର ।
ରାମ ରାବଣର ଯେ ଘୋର ଯୁଦ୍ଧ ହେଲା
ରାବଣ ଲକ୍ଷ୍ମଣକୁ ଶକ୍ତି ମାରିଗଲା ।
ଔଷଧ ପାଇଁ ମୁଁ ଯେ ଉବେଗିରି ଗଲି
ବାଟେ ଆସନ୍ତେ ବହୁ ଉତ୍ପାତ ଦେଖିଲି ।
ବଣାହୋଇ ଏବାଟେ ଅଇଲି ମୁହିଁ ପୁଣ
ରହିଥାଉଁ ମୁହିଁଗଲେ କାର୍ଯ୍ୟ ହେବ ଜାଣ ।

ଭରତ ବୋଇଲେ ରାମ ଲକ୍ଷ୍ମଣ କାହାପୁଅ
କାହିଁପାଇଁ ରାବଣ ସଙ୍ଗରେ ଯୁଦ୍ଧ କହ ।
ମୁଁ ବୋଇଲ ରାବଣ ସୀତାଙ୍କୁ ହରିନେଲା
ଜାଣିଣ ଶ୍ରୀରାମଚନ୍ଦ୍ର ସେଠାକୁ ଚଳିଗଲା ।
ତେରଦିନ ଯୁଦ୍ଧ ହେଲା ଆଜକୁ ତୁ ଜାଣ
ଲକ୍ଷ୍ମଣ ଶକ୍ତିଭେଦ ଅଙ୍ଗରେ ନାହିଁ ପ୍ରାଣ ।
ମୋଠାରୁ ଶୁଣିଣ ବୀର ଚଳିଣ ପଡ଼ିଲା
ଜନନୀ ନନ୍ଦନ ମୋର ଏତେ କଷ୍ଟ ଦେଲା ।
ଏତେ କହିଣ ବୀର କରଇ ରୋଦନ
ପର୍ବତ ଥୋଇଣ ତାକୁ ପ୍ରବୋଧ କଲି ପୁଣ ।
ମୋତେବୋଇଲେ ଭାଇ ଆସିବାକୁଯେମୋର
ଲକ୍ଷେ ରାଜା ବରଣ କରିଛି ଏହି ପୁର ।
ରାମଚନ୍ଦ୍ର ନାମଶୁଣି ସମସ୍ତେ ଅଇଲେ
ରାମ ନାରାୟଣ ବୋଲି ସମସ୍ତେ ଜାଣିଲେ ।
ସର୍ବତୀର୍ଥରୁ ସେ ଅଣାଇଛନ୍ତି ଜଳ
ରାମଚନ୍ଦ୍ର ଅଭିଷେକ ହେବେ ଏହି ପୁର ।
ଏତେକଥା କରି ମୋର ଅକାରଣ ହେଲା
ଭାଇମୋର ଶକ୍ତିଭେଦ ଜାନକୀ ବନ୍ଦିହେଲା ।
ଶ୍ରୀରାମ ଠାକୁରଙ୍କୁ କଷ୍ଟ ହେଲା ବଡ଼
ମୋତେ ମରଣ କମା ନୋହିଲା ହନୁବୀର ।
ସେ ବୋଇଲେବେଗେ ଯାଅଭାଇ ମୋରଗାଇ
ରାବଣକୁ ମାରିଣ ମୋର ବଞ୍ଚିଥାଉ ।
କାଲି ଅନୁକୂଳରେ ହୋଇଲା ମୋହର
ଲକ୍ଷେ ରାଜା ଘେନ ମୁଁ ଯିବି ଲଙ୍କାପୁର ।
ପର୍ବତ ମୁଣ୍ଡିଆଇ ମୁଁ ସେଠାରୁ ଅଇଲି
ଜାଣିବାପାଇଁ ତୁମ୍ଭ ଆଗରେ କହିଲି ।
ଶୁଣିକରି ରାମ ମନରେ ହେଲେ ତୋଷ
ବୋଇଲେ ଭାଇ ମୋଠାରେ କରିଛି ବିଶ୍ୱାସ
ଏତେକହି ହନୁ ବୀର ରାମପାଦେ ପଡ଼
ଯାଉଛି ବୋଲି ଆଜ୍ଞା ଦେଲେ କରଯୋଡ଼ ।
ଯୂଥପତିମାନେ ପର୍ବତ ମୁଣ୍ଡେ ଦେଲେ
ଶୀଘ୍ରରେ ଆସ ବାବୁରେ ଶ୍ରୀରାମ ବୋଇଲେ ।
ସୁଷେଣ ବୋଇଲେ ତୁରେ ହନୁମନ୍ତ ଶୁଣ
ଗିରିଥୋଇ ଅଳକାପୁର ଯିବୁ ଜାଣ ।
ଈଶ୍ୱରଙ୍କଠାରୁ ମାଗି ଆଣିବୁ ବିଭୂତି
ବୋଲିକୁ ଶ୍ରୀରାମ ସଙ୍ଗେ ରାବଣ ଯୁଦ୍ଧତି ।

ଲକ୍ଷ୍ମଣ ମାଗିଲେ ତାଳଧ୍ୱଜ ରଥ ଦେବ
ଅକ୍ଷୟ ପାଶୁପତ ସେ ରଥରେ ଥିବ ।
ଏତେ କହି କରି ଯେ ସୁଷେଣ ହେଲେ ତୁନି
ମନରେ ସନ୍ତୋଷ ଯେ ହେଲା କପିମଣି ।
ତିନିଘଡ଼ି ରାତ୍ର ଥାଉଁ ବୀର ଚଳିଗଲା
ଉତ୍ତର ମୁଖ ହୋଇ ସେ ଗଗନେ ବିଜେମିଲା ।
ରାବଣର ଆଗରେ କହିଲା ଯାଇ ଚର
ଶୁଣ ଦେବ ଠାକୁର ପ୍ରତାପୀ ଲଙ୍କେଶ୍ୱର ।
ଲକ୍ଷ୍ମଣକୁ ଶକ୍ତି ମାଇଲ ଗୋସାଇଁ
ଏତେ ବେଳଯାଏ ପଡ଼ିଥିଲା ମୃତ୍ୟୁ ପାଇ ।
ଗନ୍ଧମାର୍ଦ୍ଦନ ଗିରିକି ହନୁମନ୍ତ ଗଲା
ପର୍ବତ ଶୃଙ୍ଗ ଖଣ୍ଡେ ଉପାଡି ଆଣିଲା ।
ବିଶଲ୍ୟ କରଣୀ ଗଛ ଚିହ୍ନିଲେ ସୁଷେଣ
ନାସାରେ ନାସ ଦ୍ୟନ୍ତେ ନିଃଶ୍ୱାସବହେ ପୁଣ
ଏ ଲଙ୍କାଗଡ଼ରେ ସୁରେଖା ସୁରର ଦୁହିତା
ଏକସ୍ତ୍ରୀ ସେ ନାରୀ ତାକୁ ନେଲା ହନୁମନ୍ତା ।
ଏକସ୍ତ୍ରୀ ଯାଇଣ ବାଟେ ମହୌଷଧି
ହୃଦରେ ଲିପିବାରୁ ଉଠେ ମହାଯୋଧି ।
ସେହି ପର୍ବତ ବାହୁଡ଼ାଇ ନେଇଅଛି ଏବେ
ନେଇକରି ଥୋଇଣ ଆସିବ ସେହିଠାବେ ।
ଶୁଣିକରି ଲଙ୍କପତି କମ୍ପେ ଥରହର
ପୁଣ ସେ ରାଇଲା ଦଶସହସ୍ର ଅସୁର ।
ବୋଇଲା ଏହିକ୍ଷଣିରେ ବେଗହୋଇ ଯାଅ
ହନୁମନ୍ତ ଯାଉଅଛି ପଛରେ ଗୋଡ଼ାଅ ।
ପର୍ବତ ଗୋଟାଏ ସେ ମୁଣ୍ଡରେ ଅଛି ଧରି
କେମନ୍ତେ ଯୁଝିବ ସେ ଯେ ଶାଳ ଶିଳ ଧରି
ଛାଡ଼ି ନ ପାରିବ ସେ ଏମନ୍ତବେଳେ ମାର
ମହୌଷଧି ସହିତେ ପର୍ବତ ଚୂର କର ।
ଶୁଣିଣ ଦୈତ୍ୟବଳ ଯେଧାଇଁଲେ ଅତିବେଗେ
ସହସ୍ର ଧରିଣ ସେହୁ ଗମନ୍ତି ଶୂନ୍ୟମାର୍ଗେ ।
ହନୁକୁ ଦଶସହସ୍ର ଯୁଣରେ ଓଗାଳିଲେ
ଗଦା ଚେଲ ଚକ୍ର ଯେ ନାରାଚ ମାଇଲେ ।
ଡାକନ୍ତି ବାନରରେ ଆଜ ତୁ କାହିଁ ଯିବୁ
ନିଶ୍ଚେ ତୁ ଯମପୁର ଆଜରେ ଦେଖିବୁ ।
ଏତେ ବୋଲି ବେଢ଼ି ସେ ମାରନ୍ତି ଅସ୍ତ୍ରମାନ
ମାରୁତି ଜାଣିଲା ଏ ଯେ ରାବଣର ସୈନ୍ୟ ।

ଯେତେଗଲେ ମୂର୍ଚ୍ଛି ଜାଣୁ ଛୁ ରାବଣ
କେଣେ ପଳାଇବ ସେ ନ ଛାଡ଼ନ୍ତି ପୁଣ ।
ଦେବତାଙ୍କୁ ଜିଣିଲେ ସେ ଏହି ବୁଦ୍ଧିବଳେ
ଶ୍ରୀରାମଙ୍କୁ ହାରିଲେ ସେ କର୍ମର ଅବଳେ ।
ସାମାନ୍ୟ ଛନ୍ଦ କରେ ଜାଣିବା ତୋର ବୁଦ୍ଧି
ଏହି କୂଟରେ ସେ ତିନପୁର ସାଧି ।
ଏକା ଜଣକୁ ମୋତେ ପେଶିଲ୍ସ ଏତେ ଥାଟ
ନିମିଷକେ ଅଇଲେ ସୈନ୍ୟ ଏତେ ବାଟ ।
ଏତେ ବୋଲି ହନୁମନ୍ତ ଲାଞ୍ଜ ବେଢ଼ାଇଲା
ଦୁଇ ହସ୍ତରେ ପର୍ବତ ଦୃଢ଼ରେ ଧଇଲା ।
ପାଦରେ ଖୋଜାଏ ଯେ ମାରେ ଦୈତ୍ୟବଳ
ଲାଞ୍ଜରେ ଯହୁକର ଗୁଡ଼ାଇଲା ଶାର ।
ଏକର ଉପରେ ସେ ଆରେକ କଷ୍ଟି
ପ୍ରାଣ ହାରି ଦୈତ୍ୟ ସମୁଦ୍ର ଜଳେ ପଡ଼ି ।
ଯେବଣ ଅସୁରକୁ ସେ ଲାଞ୍ଜରେ ବାନ୍ଧିଥିଲା
ପାଣିଦ୍ରବ୍ୟ ସୂତାରେଜ ପୋଏଲା ଗୁନ୍ଥିଲା ।
ତାଙ୍କୁ ଫଟାଇଣ ପକାଏ ସିନ୍ଧୁ ଜଳେ
ଲୀଳା ଗତି କରିଣ ସେ ଗଗନରେ ଚଳେ ।
ଏକାଳେ ହନୁମନ୍ତ ସେଠାରୁ ଉବୁରିଲା
ରାବଣ ଆଗେ ବାରତା ଚର ଜଣାଇଲା ।
ଖେଦେବ ଲଙ୍କପତି ଯେତେ ବଳଗଲେ
ହନୁମନ୍ତ ହସ୍ତରେ ସମସ୍ତେ ପ୍ରାଣ ଦେଲେ ।
ମୁଣ୍ଡେ ଧରି ପର୍ବତ ପାଦରେ ଯୁଦ୍ଧକଲା
ଲାଞ୍ଜରେ ଗୁଡ଼ିଆଇ ସେ ସମୁଦ୍ରେ ବୁଡ଼ାଇଲା ।
ସୈନ୍ୟକୁ ସଂହାରି ଶୂନ୍ୟ ଗଲକ ହନମ
ଧର୍ମରେ ପଳାଇ ଅଇଲୁ ଆମ୍ଭେ ଜଣ ତିନ ।
ଏକଥା ଶୁଣି ରାବଣ ଛାଡ଼ିଲା ନିଃଶ୍ୱାସ
ବୋଇଲା ବିଧାତା ମୋର କୁଳ କଲା ନାଶ ।
ଏଥୁ ଅନନ୍ତରେ ଯେ ପବନ ତନୟେ
ଗନ୍ଧମାର୍ଦ୍ଦନ ପର୍ବତେ ଦୁଇ ଖଣ୍ଡରେ ପାଏ ।
ଯେଉଁଠାରୁ ଆଣିଥିଲ ମହୌଷଧି ଗିରି
ସେହିଠାରେ ପର୍ବତ ଥୋଏ ସ୍ଥିର କରି ।
ମାଡ଼ଖାଇ ହନୁହସ୍ତେ ଗନ୍ଧର୍ବେ ଯାଇଥିଲେ
ବିଧାତାଙ୍କ ଛାମୁରେ ଯାଇଣ ଜଣାଇଲେ ।
ବୈବିବୋଲେ ତୁମ୍ଭେ ମନ୍ଦକୃତ୍ୟ କଲେ
ସେହି ହନୁ ସଙ୍ଗେ କମ୍ପା ଯୁଦ୍ଧ ଆରମ୍ଭିଲ ।

ଶ୍ରୀରାମର ଭାଇ ପାଇଁ ଔଷଧ ନେବା ପାଇଁ
ଗନ୍ଧମାର୍ଦ୍ଦନ ପର୍ବତକୁ ଯାଇଥିଲ ସେହି ।
ଏବେ ତାହାକୁ ତୁମ୍ଭେ ଯେ ପଥ ଛାଡ଼ଦେବ
ଯେତେବେଳେ ଯିବତାକୁ ତୁମ୍ଭେ ସଙ୍ଗୋଳିବ
ଏ ବଚନ ଶୁଣି ଗନ୍ଧର୍ବେ ଲେଉଟିଲେ ଧାଇ
ଗନ୍ଧମାର୍ଦ୍ଦନ ପର୍ବତେ ଭେଟିଲେ ମାରୁତି ।
ଦେଖିଲେ ପର୍ବତ ଶୃଙ୍ଗ ଥୋଇଲେ ଯତ୍ନକରି
ଉପ୍ୱରେ ତୋଷ କଲେ ସମସ୍ତ ଅମରରି ।
ଗିରିକ ଓଲଟି ହନୁମନ୍ତ ଲେଉଟିଲା
ସେଠାରୁ ମାରୁତି ମନରେ ବିଚାରିଲା ।
ସୁଷେଣ କହିଛନ୍ତି ଯିବ ଅଳକାପୁର
ରହିଁଲ ଗନ୍ଧର୍ବେ ସେ ମିଳଲେ ତା ଆଗର ।
ବୋଇଲେ ମାରୁତିରେ ଦୋଷ କର କ୍ଷମା
ନ ଜାଣି ତୋ ସଙ୍ଗେ ଗୋଳ ଆମ୍ଭେକଲୁଅବା
ବିଧାତାଙ୍କର ଲୋକ ଆମ୍ଭେ ଏଥିରେଜଗିଥାଉଁ
ଯେଉଁଠାକୁ ଆଜ୍ଞା ଦ୍ୟନ୍ତି ସେଠାକୁ ଆମ୍ଭେଯଉ
ନଜାଣୁ ବାସୁଦେବର ତୁହି ଅଟୁ ଭକ୍ତ
ଶ୍ରୀରାମଚନ୍ଦ୍ର ବୋଲେ ଅଇଲୁ ତୁ ଏଥ ।
ଶ୍ରୀରାମ ନାରାୟଣ ଲକ୍ଷ୍ମଣ ଈଶ୍ୱର
ତୋର ସଙ୍ଗେ ଗୋଳ କରି ଗଲୁ ବ୍ରହ୍ମାପୁର
ତୋ ନାମ ଶୁଣି ବିଧାତା ଆମ୍ଭଙ୍କୁ ଗାଳଦେଲା
କପିଇନ୍ଦ୍ର ସଙ୍ଗେ କମ୍ପା ଗୋଳକର ଭଲ ।
ଏବେ ତୁମ୍ଭେ ତାରେ ହୁଅରେ ଭକତ
ଫଳମୂଳ ଦେଇ ତାକୁ କର ତୁମ୍ଭେ ଶାନ୍ତ ।
ତାଙ୍କଠାରୁ ଶୁଣି ଆମ୍ଭେ ଲେଉଟି ଅଇଲୁଁ
ଶ୍ରୀରାମ ଦୂତ ବୋଲି ଦର୍ଶନ ତୋତେ କଲୁ ।
ଆମ୍ଭଠାରେ ସୁପକ୍ଷ ହୁଅରେ ମାରୁତି
ଏଥୁ ଫଳ ଭୁଞ୍ଜି ହୁଅରେ ତୃପତି ।
ତୋହର ବଳଦେବ ଆମ୍ଭର ହେବ ସୁଖ
ଆମ୍ଭଠାରୁ ଦୁଃଖ ଛାଡ଼ ପବନର ବତ୍ସ ।
ଏତେ କହି ଗନ୍ଧର୍ବେ ଫଳମୂଳ ଦେଲେ
ମନ ଶ୍ରଦ୍ଧା କରିଣ ମାରୁତି ଭୁଞ୍ଜି ଇଲେ ।
ଏହି ସମୟରେ ବିଧାତା ଆସି ମିଳ
ସଞ୍ଜିବନୀ ଗଛର ପତ୍ର ବେଗେ ତୋଳ ।
ମଲା ଲୋକମାନଙ୍କ ନାକରେ ଶୁଙ୍ଘାଇଲେ
ମରିଥିବା ଗନ୍ଧର୍ବେ ଉଠିଣ ବସିଲେ ।

ମାରୁତ ଦେଖି ବଧାତ ଚରଣେ ଓଳଗିଲା
ଯାଉଅଛୁ ବୋଲିଣ ଯେ ବେଗେ ଲେଉଟିଲା
ହଇବ ବୋଲନ୍ତି ଶୁଣ ପବନର ସୁତ
ତୋର ହନ ଆଜକୁ ଯୁଦ୍ଧ ଅପ୍ରମିତ ।
ଆଉରି ବାଉହନ ଦୁଇ ଯେ ପ୍ରହର
ଯିବ ରାବଣ ଲଙ୍କାରେ ଗୁଡ଼ିବେ ଶରୀର ।
ଅକାଳତ ଯୁଦ୍ଧ ହେବ ତହିଁ ଆରଦନ
ରାମଚନ୍ଦ୍ର ଯିବ ରାଇ ଲଙ୍କାରେ ଠୁଳ ଜାଣ ।
ଯାଅ ଯାଅ ବାବୁରେ ଶ୍ରୀରାମ କାର୍ଯ୍ୟକର
ରାମାୟଣ ଯୁଦ୍ଧରେ କବାଟ ଭୁଜ ବୀର ।
ଶୁଣିକରି ମାରୁତ ବେଗେ ଚଳଗଲା
ଅଳକା ପୁରରେ ଯାଇଁ ପ୍ରବେଶ ହୋଇଲା ।
ବ୍ରହ୍ମା ଲେଉଟିଣ ଗଲେ ନଜ ପୁର
ଶିବ ସିଂହଦ୍ୱାରେ ମାରୁତ ମିଳିଲା ଯାଇଁ ଶର
ନନ୍ଦୀ ଭୃଙ୍ଗୀ ଯେ ପ୍ରଥମ ଦ୍ୱାରେ ଥିଲେ
କପିକି ଦେଖିଣ ପଚାରିଲେ ଭଲେ ।
କେଉଁଠାରୁ ଅଇଲୁ ତୁ କହ କପି ଗୁର
ମରିବୁ ଏହି ପୁରେ ନାହିଁ ତୋ ବଗ୍ଭର ।
ଏ ସଦାଶିବଙ୍କ ପୁର ଜନଜନ୍ତୁ ଯେ ନଆସେ
ତୁ କମ୍ପା ଏ ସ୍ଥାନରେ ହେଲୁରେ ପରବେଶ
ମାରୁତ ବୋଇଲା ମୁଁ ତ ଶ୍ରୀରାମଚନ୍ଦ୍ର ଦୂତ
ରାମ ରାବଣର ଯୁଦ୍ଧ ଅତ ଅପ୍ରମିତ ।
ଶ୍ରୀରାମ ପେଶିଛନ୍ତି ମୋତେ ଶ୍ରୀ ସଦାଶିବପାଶ
ମୋତେ ଗୁଡ ଦଅ ମୁଁ କହିବ ସନ୍ଦେଶ ।
ଶୁଣି ନନ୍ଦ ଭୃଙ୍ଗୀ ବୋଇଲେ ରହ ତୁହି
ସଦାଶିବ ଦେବତାଙ୍କୁ ପଚାରି ଆସୁ ଯାଇ ।
ନନ୍ଦ ମହାକାଳ ଯେ ବେଗେ ଚଳଗଲା
ସଦାଶିବଙ୍କ ଆଗରେ ଯାଇଣ ଉଭା ହେଲା ।
କରଯୋଡ଼ି କହିଲା ଶୁଣ ପଞ୍ଚାନନ
ଶ୍ରୀରାମ ବୋଲିଣ ଦଶରଥଙ୍କ ନନ୍ଦନ ।
ଜମ୍ବୁଦ୍ୱୀପେ ଭୂତଖଣ୍ଡେ ଅଯୋଧ୍ୟା ନାମେପୁର
ତହିଁରେ ଦଶରଥ ଅଟନ୍ତି ନୃପବର ।
ବଡପୁଅ ଶ୍ରୀରାମ ଯେ କନଷ୍ଠ ଶତ୍ରୁଘ୍ନ
ଲକ୍ଷ୍ମଣ ଭରତ ଯେ ଅଟନ୍ତି ମଧ୍ୟମାନ ।
ଶ୍ରୀରାମ ଲକ୍ଷ୍ମଣ ବନବାସ କଲେ ଯାଇଁ
ଦେବତାଙ୍କ ଛଳେ ବାସୁଦେବ ଜନ୍ମ ହୋଇ

ଦେବକୁଟ କରଣ ବନକୁ ଘେନଗଲେ
ରାବଣ ମାରିବାକୁ ଉପାୟ ଭିଆଇଲେ ।
ରାମର ଘରଣୀକି ରାବଣ ଘେନଗଲା
ବହି ଲେଖିଅଛି ଯାହା ସେ କଥା ଅର୍ଜିଲା ।
ଖରଯାର ଛଳେ କୋଦଣ୍ଡ ଗୃପଧାରୀ
ସମୁଦ୍ରରେ ବନ୍ଧ ବାନ୍ଧି ରାବଣ ସଙ୍ଗେ କଳି ।
ତୁମ୍ଭଠାକୁ ପେଶିଛନ୍ତି ହନୁନାମେ ବୀର
ଅଟକ ହୋଇଛି ତୁମ୍ଭର ସିଂହଦ୍ୱାର ।
ଶୁଣିଣ ତ୍ରିପୁରାରି ବୋଇଲେ ଆସ ଘେନ
ଶୁଣିଣ ଦ୍ୱାରପାଳ ବେଗେ ଆସେ ଶୁଣି ।
ହନୁମନ୍ତକୁ ଘେନ ଭିତର ପୁର ଗଲା
ଈଶ୍ୱର ପାର୍ବତୀଙ୍କ ଆଗରେ କହିଲା ।
କରପଦ ଯୋଡ଼ି ହନୁମନ୍ତ ଓଳଗେ
ପାଦତଳେ
ଉଠିଣ ଉଭା ହେଲେ ଈଶ୍ୱର ସମ୍ମୁଖେ ।
ସଦାଶିବ ବୋଇଲେ ହନୁମନ୍ତ ଶୁଣ
ରାମାୟଣ ଯୁଦ୍ଧରେ କସ ହେଲା ପୁଣ
ମାରୁତ ବୋଇଲା ଦେବ ହୋଇଲାଣି ଅଧା
ଶ୍ରୀରାମ ରାବଣର ଲଗିଛି ମାଲ ଯୋଦ୍ଧା ।
ରାବଣେଶ୍ୱର କାଲି ଶକ୍ତି ମାରିଗଲା
ଲକ୍ଷ୍ମଣଙ୍କର ଶରୀର ଫୁଟିଣ ପ୍ରାଣ ଗଲା ।
ସୁଷେଣ ପେଷିଲା ମୋତେ ଗନ୍ଧମାଦ୍ଦନ
ପର୍ବତକୁ
ସଞ୍ଜିବନୀ ଚଛ ମୁହିଁ ନେଲି ଯେ ଲଙ୍କାକୁ ।
ଚିହ୍ନି ନ ପାରିବାରୁ ପର୍ବତ ଶୃଙ୍ଗ ନେଲି
ଲକ୍ଷ୍ମଣ ଜୀଇବାରୁ ଲେଉଟି ଅଇଲି ।
ଆସିବାରବେଳେ ରାମ କହିଥିଲେ ମୋତେ
ରିଷ ହୋଇଯିବୁ ଈଶ୍ୱର ପାର୍ବତୀ ଅଗ୍ରତେ ।
ବୋଲିବୁ ବଜ୍ର ଦଭୂତ ଦେବେ ବେଗକରି
ଯେତେବେଳେ ଲକ୍ଷ୍ମଣ ତୁମ୍ଭ ନାମ ଧରି ।
ତେତେବେଳେ ତାଳଧ୍ୱଜ ରଥ ଗୁଳବେବ
ରଥ ଉପରେ ପାଶୁପତ ଅକ୍ଷଏ ତୋଣ ଥିବ
ଶୁଣିକରି ଈଶ୍ୱର ମନେ ତୋଷ ହେଲେ
ବଜ୍ର ଦଭୂତ ଆଣି ହନୁହସ୍ତେ ଦେଲେ ।
ବଜ୍ର କାଛଟାରେ ବାନ୍ଧିଲା ବୀରମଣି
ଈଶ୍ୱରଙ୍କୁ ଓଳଗି ବାହାର ହେଲା ପୁଣି ।

ଶିବପୁରେ ହନୁମନ୍ତ ବେଗେ ବାହୁଡ଼ିଲ
ରାତ୍ର ପାହାନ୍ତଆରେ ଲଙ୍କାରେ ହୋଇଲ ।
ଶ୍ରୀରାମ ଚରଣେ କଲା ନମସ୍କାର
ବୋଇଲା ବାଟରେ ମୋତେ ବେଢ଼ିଲେ ଅସୁର
ତୁମ୍ଭ ପ୍ରସାଦରେ ସବୁବଳ ମୁଁ ନାଶିଲି
ନିଜ ସ୍ଥାନେ ଗିରିବର ନେଇଣ ଥୋଇଲି ।
ଶୁଣିକରି ଶ୍ରୀରାମ ମନରେ ତୋଷ ହେଲେ
ରକ୍ଷ କପିବଳ ବେନି ସାଧୁ ସାଧୁ କଲେ ।
ସୁଷେଣ ବୋଇଲେ ଶୁଣ ମାରୁତି ତୁହି
ଅଳକା ପୁରକୁ ଗଲୁଟିକି ତୁହି ।
ହନୁମନ୍ତ ବୋଇଲା ମୁଁ ଅଳକାପୁର ଗଲି
ଈଶ୍ୱର ପାର୍ବତୀଙ୍କି ଯାଇଣ ଦେଖିଲି ।
ରାମଚନ୍ଦ୍ର ଆଜ୍ଞା ମୁଁ କହିଲି ତାଙ୍କଠାରେ
ବଜ୍ର ବିଭୂତି ସେ ଦେଲେ ମୋର କରେ ।
ବୋଇଲେ ରାମଙ୍କୁ ତୁମ୍ଭେ କହିବୁ ଯାଇଁ
ଶୀଘ୍ର ରାବଣ ମଲେ ଦେବ ସୁଖ ପାଇ ।
ମୁଁ ବୋଇଲି ଲକ୍ଷ୍ମଣ ସୁମରିବେ ତୋତେ
ତାଳଧ୍ୱଜ ରଥ ତୁମ୍ଭେ ଦେବଟି ତୁରିତେ ।
ସେ ବୋଇଲେ ଦେବଯାନ ଅଛି ସଜ ହୋଇ
ଅକ୍ଷୟତୂଣ ପାଶୁପତ ସେଥିରେ ଅଛିଥୋଇ
ଲକ୍ଷ୍ମଣ ସୁମରିଲା ବେଳେ ଆମ୍ଭେ ଦେବୁ ଶୂଳ
ଏତେ ବୋଲି ମୋତେ କହିଲେ ଦେବଶୂଳୀ
ଶୁଣିକରି ସୁଷେଣ ବେଗେ ଉଠିଲେକ
ହନୁମନ୍ତଠାରୁ ବିଭୂତି ଧଇଲେ ତୁରିତ ।
ରାମ ଲକ୍ଷ୍ମଣ ଅଙ୍ଗେ ବିଭୂତି ନେଇ ବୋଳ
ଅସ୍ତ୍ର ସେନାପତିଙ୍କି ନେଲା ବେଗକରି ।
ସତର ଯୂଥପତି ମଲ ମହାମଲ
ସମସ୍ତେ ବୋଳହେଲେ ଅଙ୍ଗରେ ତାଙ୍କର ।
ଋକ୍ଷକପି ବଳ ଯେ ସମସ୍ତେ ବାଣ୍ଟିନେଲେ
ଘଡ଼ିକର ସମୟରେ ସମସ୍ତେ ବୋଳହେଲେ
ତେଜସ୍ୱୀ ବୋଇଲେ ତୁମ୍ଭେ ରଣ ନିଶ୍ଚେତନ
ଜାନକୀ ଜାଣିଲେଟିକି ଲକ୍ଷ୍ମଣ ଭଲ ପୁଣ ।
ଶୁଣିକରି ଈଶ୍ୱର ବୋଲନ୍ତି ତୁମ୍ଭେ ପୁଣ
ସେ କଥା ତୁମ୍ଭ ଆଗରେ କହିଦେବା ପୁଣ ।
ତ୍ରିଜଟାଠାରୁ ଦେବୀ ଯେ ଶୋକକରି
ନିଶିର ଶେଷରେ କହନ୍ତି ସ୍ଥିରକରି ।

ଶୁଣ ଗୋ ତ୍ରିଜଟା ବିଭୀଷଣର ଦୁହିତ
ଲକ୍ଷ୍ମଣର ଭଲ ମନ୍ଦ ଜାଣି ତ ନ ପାରି ।
ଦୂତଯେବେ ଜଣେ ସେଠାବକୁ ଯିବ
ତେବେ ତଥ୍ୟ ବାରତା ପାଇଣ ଆସିବ ।
ବଅଇ ଉପକାର କେମନ୍ତେ ପାଶୋରିବ
ଯେତେହେବା କରିଥିଲ ତାହୁଁ ମୁଁ ଶୁଝିବ ।
ଏତେ ବୋଲି ଦେବୀ ଯେ ମନରେ ବିଚାରେ
ପବନ କପିରୂପ ଧଇଲେ ସତ୍ୱରେ ।
ଆଗରେ ଉଭାହୋଇଲେ ବେଗେହୋଇଯାଇ
ଦେଖିକରି ଜାନକୀ ତାହାକୁ ପୁଚ୍ଛଇ ।
କହ କପିବୀର ଲକ୍ଷ୍ମଣ କଥା କହ
ଜୀଇଲେଟିକେ ମୋର ସୁମିତ୍ରାଙ୍କର ପୁଅ ।
କପି ହୋଇଲେମୋତେ ସେ କଥା ଜଣାନାହିଁ
ଶକ୍ତି ଭେଦ ହେଲା ବେଳୁ ଅଛିଲଣି ମୂର୍ଚ୍ଛି ।
କେଉଁ ବିଚାର କରିବ ଇନ୍ଦ୍ରଜିତ ପିତା
ଶୁଣିବାକୁ ଆସିଥିଲି ଶୁଣ ଗୋ ଦେବୀମାତା ।
ଏବେ ମୁଁ ଯାଉଅଛି ଗୋ ଶ୍ରୀରାମର ପାଶ
ଶୁଣିଣ ଜାନକୀ ବୋଇଲେ ଶୁଣ ରାମ ଦାସ ।
ଲକ୍ଷ୍ମଣ ବାରତା ବେଗେ ଦେବୁ ଆଣି
ମୋର ଶୋକ ଶାନ୍ତକର ବେଗେ ଯାଅ ପୁଣି
ଶୁଣିକରି ପବନ ଯେ ଅତି ଖରେ ଗଲେ
ଶ୍ରୀରାମଙ୍କ ପାଶରେ ବେଗେ ସେ ମିଳିଲେ ।
କୃଷ୍ଣାଜିନ ମୃଗ ଗୋଟିଏ ସ୍ୱରୂପ
ଶ୍ରୀରାମ ମୃଗ ଦେଖି ମନରେ ବିସ୍ମିତ ।
ବୋଇଲେ ଏ ମୃଗଗୋଟି କେଉଁଠାରୁ ଆସେ
ଦେବତାଙ୍କ ରୂପ ମାୟାରେ ପ୍ରକାଶେ ।
ଓଳଗ ମେଲାଇ ମୃଗ ଶ୍ରୀରାମ ଆଗେ ଉଭା
ସର୍ବାଙ୍ଗ ସୁନ୍ଦର ଯେ ଦିଶଇ ତାର ଶୋଭା ।
ରାମଚନ୍ଦ୍ର ବୋଇଲେ ତୁ କର୍ମୀ ଏଣେ ଆସୁ
ରଣ ଭୂମିକି ଭୟ ନ ପାଇ କର୍ମୀ ପଶୁ ।
ସେ ମୃଗ ବୋଇଲା ମୁଁ ଅଇଲି ଯନ୍ତ୍ରିକ
ଦଶରଥ ବୋହୂ ସୀତା ପେଷିଲେ ଏଥିକ ।
ବୋଇଲେ ବଅର ମୋର ଅଚେନ୍ତ ଲକ୍ଷ୍ମଣ
ଶକ୍ତି ମାରି ତାଙ୍କୁ ଯେ ଅଇଲା ରାବଣ ।
ସଉମିତ୍ରୀର କୁଶଳ ବେଗେ ଦେଖି ଆସ
ଶୋକ ଜଳରୁ ବେଗେ ତୁ କର ଯେ ଉଦ୍ଧାର

ଲକ୍ଷ୍ମଣ ବୋଇଲେ ମୁଁ ଭଲ ହେଲଣି ଏବେ
ତାଙ୍କ ପାଦେ ଓଳଗିଣ କହିବୁ ତୁ ବେଗେ ।
ତ୍ରୈଲୋକ୍ୟ ଠାକୁରାଣୀ ଅଟନ୍ତି ଜାନକୀ
ମୋହଠାରେ ଦୟା ରଖିଥିବେ ସେ ସେହ୍ନି
ରାମଚନ୍ଦ୍ର ବୋଇଲେ ଯାଅ ବେଗହୋଇ
ତୁମ୍ଭେ କହିବ ଲକ୍ଷ୍ମଣ ବଞ୍ଚିଲେଣି ତହିଁ ।
ତୁ ଜାତରେ ମୃଗ ହୋଇ ମାନବ ଭାଷା କହୁ
ପବନ ବୋଇଲେ ଦେବ ଶୁଣ ରାମରାହୁ ।
ଅଗ୍ନି ପବନ ଆମ୍ଭେ ଅଟୁ ଦୁଇଜଣ
ବିଧାତା ଜଗାଇଲେ ଜାନକୀଙ୍କି ପୁଣ ।
ମୁଁ ପବନ ଦେବତା ଦୂତ ପଣେ ଆସଇ
ରାବଣ ଜାଣିବା ପାଇଁ ଏ ରୂପ ଧରଇ ।
ଏତେ କହି ପବନ ନିଜରୂପ ହେଲେ
ଦେଖିକରି ଶ୍ରୀରାମ ଯେ ହରଷ ହୋଇଲେ ।
ଫେରିଣ ଯାଇ ସେ ଅଶୋକ ବନେ ହେଲା
ଜାନକୀ ଯାଇ ଆଗରେ ପ୍ରବେଶ ହୋଇଲା ।
କପି ରୂପ ଧରିଣ ଆଗରେ ହେଲା ଉଭା
ବୋଇଲା ଜାନକୀ ଗୋ ଶୁଣ ରାମ ପ୍ରଭା ।
ଗନ୍ଧମାଦନ ପର୍ବତକୁ ହନୁମନ୍ତ ଗଲା
ଅମର ମହୌଷଧି ଛିଣ୍ଡି ଆଣିଲା ।
ବିଜଟାର ଭଉଣୀ ସେ ତାର ନାମେ କନ୍ୟା
ଏକସ୍ତ୍ରମା ଅଟଇଟି ବେଳହୁଁ ସେ ରାମା ।
ମଣିଶିଳ ତାହାର ପୁରେ ରଖିଥିଲା
ଔଷଧି ବାଟିବାକୁ ରାମ ପାଶେ ଗଲା ।
ବାଟିକରି ଘାଆରେ ଲେପ ଦେଲା ଯହୁଁ
ସଚେତ ହୋଇଣ ବୀର ଲକ୍ଷ୍ମଣ ବସେ ତହୁଁ
ଏବେ ସଜ ହେଲେଣି ସୁବଳୟା ଯିବେ
ପୁଣି ପରମ ତୋଷ ହେଲେଣି ଦେବୀ ଏବେ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
କଥାଏକ ମୋର ଆଗେ କହିଦେବା ପୁଣ ।
ବଜ୍ର ବଭୂତ ତୁମ୍ଭଠାରୁ ହନୁମନ୍ତ ନେଲା
ସେତେ ସୈନ୍ୟକୁ ଦେବ କେମନ୍ତେ ଅଣ୍ଟିଲା
ଈଶ୍ୱର ବୋଇଲେ ସେ ଅସରନ୍ତ ପୁଣ
ନବଖଣ୍ଡ ମେଦିନୀକ ଅଟଇ ସେ ଜାଣ ।
ଏଥୁ ଅନନ୍ତରେ ଯେ ଶୁଣିବା ଦିବ୍ୟରସ
ପାର୍ବତୀ ପଚ୍ଛରନ୍ତି ଶୁଣିମା ହରଦାସ ।

ହେଦେବ କଥାଏ ପଚ୍ଛରିତ କହିବ
ହନୁମନ୍ତ ଗଲା ଗନ୍ଧମାଦନ ପର୍ବତ ।
ବାଟରେ ବିଘ୍ନ ତାକୁ ଉପୁଜିଲା କହୁତ
ଏକାରାତ୍ରେ କେମନ୍ତେ ଆସିଲା ପରବତ ।
ରାବଣର ବ୍ରହ୍ମଶକ୍ତି ମାରିବା ସମୟେ
ବେଳ ତେର ଘଡି ଯେ ତେର ଲତା ହୋଏ
ଗାତ୍ରୁଡ଼ି ରାବଣ ଲଙ୍କାକୁ ଯହୁଁ ଗଲା
ଲେଉଟିଣ ଶ୍ରୀରାମର ଘଇର ପାଶେ ହେଲା ।
ଅସ୍ତ ହୋଇଲେ ଈଶ୍ୱର ଶ୍ରୀରାମ ରୋଦନ୍ତି
ରାଏ ପ୍ରହରକେ ଉପାଡ଼ିଲେ ବ୍ରହ୍ମଶକ୍ତି ।
ବହୁତ ଶୋକ କରନ୍ତେ ରଘୁବଂଶ ବୀର
ସୁଷେଣ କହନ୍ତି ନଯେ ଔଷଧ ବିରାର ।
ହନୁମନ୍ତ ଗମନ୍ତେ ଦେଢ଼ ପ୍ରହର ରାତି
ବାଟେ ଦୈତ୍ୟଙ୍କର ସଙ୍ଗେ ଯୁଝିଲା ମାରୁତ ।
ଜଟାସୁର କୁମ୍ଭୀର ଏହାଙ୍କୁ ସଂହାରିଲା
ତିନ ପ୍ରହର ରାତି ସେଠାରେ ହୋଇଲା ।
ଗନ୍ଧମାଦନ ପର୍ବତେ ହୋଇଲା ପାବନ
ରକ୍ଷା ଲୋକ ସଙ୍ଗେ ଯୁଦ୍ଧ କଲାକ ସେ ତହିଁ
ପୁଣିହିଁ ପର୍ବତ ଘେନି ଆସନ୍ତେ ଅସୁର
ହନୁମନ୍ତ ସଙ୍ଗେ ଯୁଦ୍ଧ କଲେ ସେ ଅପାର ।
ତହିଁ ମହାବୀର ଯେ ଉତ୍ତର ହଗେ ଗଲା
ଅଯୋଧ୍ୟା କଟକରେ ପ୍ରବେଶ ହୋଇଲା ।
ଭରତ ବାଟୁଳରେ ପଡ଼ିଲା ମୋହଯାଇ
ଚେତନା ପାଇ ଆସନ୍ତେ ଭୁତ ପଚ୍ଛରଇ ।
ତାହାର ଏହାର ବହୁତ ସମ୍ବାଦ ହୋଇଲା
ପହରକ ଭିତରେ କ ଏମନ୍ତ ହୋଇଲା ।
ଏହା ମୋତେ ସଞ୍ଚପି କହିବା ପ୍ରାଣନାଥ
ଏହୁକଥା ମୋତେ ତ ହେଲା ଆଚମ୍ବିତ ।
ଈଶ୍ୱର ବୋଇଲେ ଆଗୋ ଶୁଣ ହେମବନ୍ତ
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ ।
ଏହି ହେତଯ୍ୟା ଯୁଗରେ ଏହି ମର୍ତ୍ତ୍ୟପୁରେ
ବୈଷ୍ଣବୀ ବୋଲିଣ ଯେ ଜମୁନଦୀ ପରେ ।
ସେ ନଗ୍ରେ ବସ୍ତୁନାଥ ବୋଲିଣ ବ୍ରାହ୍ମଣେକ
ଭିକ୍ଷା ମାଗି ମାଗି ବଞ୍ଚିବେଇଲା ବ୍ରାହ୍ମଣୀ ଏକ
ସେହି ବ୍ରାହ୍ମଣର ଦେଖିଲେ ଧାର୍ମିକ ଯେ ପୁଣ
ଯାଚ ଦେଲା ତାହାକୁ ଦୁହିତା ପ୍ରଦାନେଣ ।

କେତେହେକ ଦିନେ ବ୍ରାହ୍ମଣର ଦ୍ରବ୍ୟ ନୋଇ
ବାଡ଼ି ବୃତ୍ତି କଣିଲ୍ ଅନେକ ମୁଖ୍ୟାଇ ।
କେତେଦିନେ ସେ ବ୍ରାହ୍ମଣୀ ହେଲା ରଜସ୍ୱଳା
ଭାଦ୍ରବ ମାସ ଅର୍କବାର ଏକାଦଶୀ ତିଥି ।
ବୈଧୃତି ନାମେ କରଣ ଯୋଗ ବିଷ୍ଟି ଘଡି
ଏହି ସମୟେ ବ୍ରାହ୍ମଣୀ ହୋଇଛି ରଜସ୍ୱଳା ।
ଏ ପାପ ଦୋଷକୁ ହାତେ ବ୍ରାହ୍ମଣ ଭାଳୁଥାଇ
ବ୍ରାହ୍ମଣୀ ମନରେ ବହୁତ ତାପ ପାଇ ।
ଏମନ୍ତେ କେତେକ ଦିନ ବହିଁ ଗଲା
ଦ୍ୱିଜବର ମାନଙ୍କୁ ସେ ଡାକି ପଚାରିଲା ।
ଲଗ୍ନ ଶୁଦ୍ଧି କରନ୍ତେ ପଡ଼ିଲା ଗ୍ରହଦୋଷ
ବ୍ରାହ୍ମଣ ବିଷ୍ଣୁ ଦାସ ମନରେ ପାଏ ତ୍ରାସ ।
ଏମନ୍ତେ ବ୍ରାହ୍ମଣ ଗୃହବାସ ବସିଥିଲା
ଏକ ଦିନେ ବ୍ରାହ୍ମଣୀ ଯେ ବଳକାର କରି ।
ମୂର୍ଖ ବ୍ରାହ୍ମଣ ଅବନ୍ଧ୍ୟା ସ୍ତ୍ରୀ ସଙ୍ଗେ ରମଣ କଲା
ସେହିଦିନ ରଜସ୍ୱଳା ଅବଳା ହୋଇଥିଲା ।
ସେହି ଦୋଷରୁ ବ୍ରାହ୍ମଣ ହୋଇଲାକ କୋଷ୍ଠି
କେତେକସମୟୁ ବ୍ରାହ୍ମଣ ହୋଇଲାପୂଣକୋଷ୍ଠି
ବ୍ରାହ୍ମଣୀ ବିଚାରେ ଏ ମୋହର ଗୁରସ୍ତ
ଛାଡ଼ିବାକୁ ମୋର ବଳବ କେମନ୍ତେ ଚିତ୍ତ ।
ଏତେ ବୋଲି ବ୍ରାହ୍ମଣୀ ଗୁରସ୍ତକୁ ପ୍ରତିପାଳଇ
ନିତି ପ୍ରତି ବ୍ରାହ୍ମଣକୁ ସେବା କରୁଥାଇ ।
ଗନ୍ଧ ଚନ୍ଦନ ଚତୁଃସମ ଲେପନ ଅନୁକ୍ଷଣ
ଗୁରସ୍ତକୁ ନିତି ସ୍ନେହେ ଦିଅଇ ଭୋଜନ ।
ଏହି ମତେ ପାଳିଲା ବରଷ ଯେ ଚାରି
ଅନ୍ୟ ପୁରୁଷରେ ଚିତ୍ତ ନ ବଳେ ତାହାରି ।
ଅନେକ ସୁଖ ଭୋଗ ଦିଏ ସେହୁ ନାରୀ
ବ୍ରାହ୍ମଣଯାହାଇଚ୍ଛାକରେବ୍ରାହ୍ମଣୀଦିଏ ଆଣିକରି
ଏହିମତି କେତେକ ଯେ ଦିନ ବହିଗଲା
ସେ ରୋଗୀ ବ୍ରାହ୍ମଣ ଦିନେ ମଣ୍ଡପେ ବସିଥିଲା
ସେ ନଗ୍ରକୁ ନାଟକାରୀ ଅଇଲେ ଯେ ପୁଣ
ରାଜାଆଗେ ମଣ୍ଡପେ ନାଟକଲେ ଜାଣ ।
ସେ ବେଶ୍ୟାଙ୍କୁ ଦେଖିଲା ଦୁର୍ବଳ ବ୍ରାହ୍ମଣ
ଚିତ୍ତ ଚଞ୍ଚଳ କଲା ଏହାଙ୍କୁ କରନ୍ତି ରମଣ ।
ଏବେ ସେହୁ କୋଷ୍ଠି କାମେ ଦ୍ୱିଗୁଣ ଅଟଇ
ବେଶ୍ୟାଙ୍କୁ ଦେଖି ବିପ୍ର ହୋଇଲାକ ବାଇ ।

ମୁଖ ଶୁଖାଇ ବିପ୍ର ଦ୍ୱାରେ ଅଛୁ ବସି
ମନ ଚିତ୍ତ ଚାରି ବେଶ୍ୟା ଅଙ୍ଗରେ ନବେଶି
ସତ୍ୟବନ୍ତୀ ନାରୀ ଯତ୍ନକରେ ତାଙ୍କୁ ଆଣି
ଅନ୍ନ ଭୁଞ୍ଜିବାକୁ ତାଙ୍କୁ କରଇ ଦଇନ ।
ଉଚ୍ଛୁର ହେଉଅଛୁ ଯେ ପଖାଳ ଚରଣ
ଅନ୍ନ ଭୁଞ୍ଜିବ ବେଗେ ସୁବେଦ ବ୍ରାହ୍ମଣ ।
ନ ଶୁଣଇ ବିପ୍ର ଯେ ନିଜ ପ୍ରିୟାର ବାଣୀ
ଗୁରସ୍ତକୁ ପୁଣ ପୁଣ ପଚାରେ ବ୍ରାହ୍ମଣୀ ।
କି ଦୋଷ ମୋହର ତୁମ୍ଭେ ଜାଣିବାକୁ ହେଲ
କେଉଁ କାର୍ଯ୍ୟେ ତୁମ୍ଭଙ୍କୁ ଯେ ଅନ୍ନ ନ ରୁଚିଲା
ବଚନ ନ କହ ଯେ ମଉନ କମ୍ପା ହୁଅ
କାହିଁକି ମନ ହେଉଛୁ ମୋତେ ଆଜ୍ଞା ଦିଅ ।
ବ୍ରାହ୍ମଣୀ ବଚନେ ଯେ କହଇ ଦ୍ୱିଜବର
ଯାହା ପଚାରିଲୁ ତୁହି ଶୁଣ ମୋ ଉତ୍ତର ।
ତୋର ଦୋଷ ନାହିଁ ଯେ ବ୍ୟାଧି ସଞ୍ଚରିଲା
ତେଣୁ ଅନ୍ନ ଖାଇବାକୁ ଚିତ୍ତ ନ ବଳିଲା ।
ବ୍ୟାଧି ଥିଲେ ଅନ୍ନ ଆଉ ରୁଚିବଟି କାହିଁ
ଶୁଣିଣ ବ୍ରାହ୍ମଣୀ ଯେ ପୁଣି ପଚାରଇ ।
କହ ସ୍ୱାମୀ ଅଧିକ କେବଣ ସେହୁ ବ୍ୟାଧି
କହିଁକି ଉପାୟ ଏବେ କରିବା ମଉଷଧି ।
ନ କହିଣ ବ୍ରାହ୍ମଣ ଯେ ଶୋଇଲା ମଉନେ
ମନ ଛନ୍ନଛନ୍ନ ନିଦ୍ରା ନ ମାଡ଼େ ନୟନେ ।
ନିଜପତ୍ନୀ ପୁଣ ପୁଣ ପଚାରଇ ତହିଁ
ମୋଠାରେ କମ୍ପା ଅନ୍ତର ଧରନ୍ତେ ଗୋସାଇଁ
ଯାହାଇଚ୍ଛା କରିବ ଦେବ ମୁଁ ଏହିକ୍ଷଣି
ନିଷ୍ଠୁର ବଚନ ଯହୁଁ କହିଲା ବ୍ରାହ୍ମଣୀ ।
ଲଜ୍ୟାତେଜି ବ୍ରାହ୍ମଣ ବଚନ ପ୍ରକାଶଇ
ସାବଧାନେ ଶୁଣ ତୁ ମୋହର ପ୍ରାଣ ସହି ।
ନାଟକାରୀମାନେ ଯେ ଗ୍ରାମକୁ ଆସିଛନ୍ତି
ତାଙ୍କ ଚହିଁକି ମୋହର ଯେ ବଳିଲାକ ମତି ।
ଏବେ କୋଷ୍ଠି ମୂର୍ତ୍ତି ନ ପାରଇ ଯାଇ
ତାଙ୍କୁ ଦେଖି ମୋହର ଚିତ୍ତ ଯେ ବଳଇ ।
ଏଥି ଲଜ୍ୟା ଗୋ ନ ପାଇ ମଦନ ଦାରୁଣ
ପଞ୍ଚଭୂତ ଆତ୍ମାରେ ବିନ୍ଧଇ ପଞ୍ଚବାଣ ।
ଆତ୍ମା ମୋର ବିକଳ ଯେ ମନ ଛନ୍ନଛନ୍ନ
ଏହି ସକାଶୁଁ ମୋତେ ନ ରୁଚଇ ଅନ୍ନ ।

ଭେଟ ଯେବେ ହେବ ମୁହିଁ ତାହାଙ୍କ ସଙ୍ଗତ
ତେବେ ଯେ ସଖୀ ମୋହର ରହିବ ଜୀବତ ।
ଏତେକନ୍ତେ ବ୍ରାହ୍ମଣୀ ବୋଇଲେ ତୁଗୋ ଶୁଣ
ଯାହା ତାହା କରିଣ ଗୋ ରଖମୋର ପ୍ରାଣ
ଏହାଶୁଣି ସନ୍ତୋଷ ହୋଇଲା ଯୁବତୀ
ବୋଇଲାଏକଥାକୁ କମ୍ପା ହେଉଛି ପ୍ରାଣପତି ।
ତୁମ୍ଭର କଥା ସ୍ୱାମୀ ପାଳିବ ନିକର
ଏବେ ଆସି ତୁମ୍ଭେ ଭୋଜନ ବେଗେକର ।
ଅବୋଧ ବୋଧିବ ମୁଁ ତୁମ୍ଭର ନିମନ୍ତେ
ମୁହିଁ ସେବା କରିବି ଯେ ତୁମ୍ଭର ଯେ ହିତେ
ଏବେ ତୁମ୍ଭେ ଭୋଜନ କରନ୍ତେ ଦେବ ସ୍ୱାମୀ
ଅବଶ୍ୟ ସେଠାକୁ ମୁଁ ଯିବି ତୁମ୍ଭକୁ ଘେନି ।
ଏତେକନ୍ତେ ବ୍ରାହ୍ମଣୀ ଭୁଞ୍ଜାଏ ତାକୁ ଅନ୍ନ
ଅନ୍ନଦେଇ ବ୍ରାହ୍ମଣୀ ନିଶାରେ ଗମନ ।
ନିତି ଯାଇ ତାହାଙ୍କର ଅଗଣା ପହଁରଇ
ଚନ୍ଦନ କର୍ପୂର ଗୋଳି ପିଡକା ମାରଇ ।
ପଥ ସଜାଡ଼ି ଆସିଣ କଲେ ସ୍ନାହାନ
ସ୍ୱାମୀଙ୍କ ସେବାକରି ଯେ କରଇ ରନ୍ଧନ ।
କେତେଦିନ ସେବା କରଇ ଏହିମତେ
ବେଶ୍ୟାମାନେ ବସ୍ତୁର ଯେ କରୁଥାନ୍ତି ନିତ୍ୟେ
କେବଣ ଆକାର ଏ ଅଟେ ବପସ୍ଥିତ
କେଉଁ ଜନ ସହଥାଉଁ କରୁଛି ଏମନ୍ତ ।
ଏକଦିନେ ଜଗିଣ ବସିଲେ ଚତୁସ୍ଥ
ସହଥାଉଁ ଚଳିଲା ଯେ ବ୍ରାହ୍ମଣର ନାରୀ ।
ଅଗଣା ପହଁରି ଛେଉ ପକାଇଲା ବେଳେ
ବେଶ୍ୟାମାନେ ତାକୁଯାଇଧଇଲେ କଟସ୍ଥଳେ
କଏ ତୁମ୍ଭେ କାହାର ଅଟ ଗୋ ଅବଳା
କି କାର୍ଯ୍ୟରେ ସେବା ଗୋ କରୁଛ ସୁଶୀଳା
ବ୍ରାହ୍ମଣୀବୋଲେ ମୋରକାର୍ଯ୍ୟରେ ତୁମ୍ଭସେବି
ତୁମ୍ଭେ ସତ୍ୟ କର ମୋତେ କରୁଣା କରିବା
ଯେବେ ଯାଇଥିଲ ତୁମ୍ଭେ ମୋହର ଗ୍ରାମକୁ
ମୋ ସ୍ୱାମୀ ଅପାରବନ୍ତ ଦେଖିଲା ତୁମ୍ଭଙ୍କୁ ।
କି ଦ୍ରବ୍ୟ ଦେବି ତୁମ୍ଭଙ୍କୁ କସ ଅପୂରୁବ
କେବଳ ତୁମ୍ଭଙ୍କୁ ଆଶା କରନ୍ତି ମୋ ଧବ ।
ସତ୍ୟକର ମୋତେ ତ କଥାଏ କହିବ
ତୁମ୍ଭେମାନେ ମୋତେ ଏବେ ପ୍ରତିଦାନ ଦେବ

ଏହି କାରଣେ ସେବା ତୁମ୍ଭଙ୍କୁ ଅଛୁ କରି
ସାବଧାନେ ଶୁଣିଲ ତ ବଚନ ମୋହର ।
ତୁମ୍ଭର ପ୍ରସାଦେ ମୋର ବଞ୍ଚିବ ବ୍ରାହ୍ମଣ
ବେଶ୍ୟାଏ ବୋଇଲେ ଏ ଆମ୍ଭର ପ୍ରମାଣ ।
ଏବେ ତୁ ସୁନ୍ଦରୀ ଗୋ ପତିକି ତୋର ଆଣ
ଆମ୍ଭର ସତ୍ୟ ଗୋ ନୋହିବାକ ଆନ ।
ତୋହର ସେବା ଆମ୍ଭେ ସୁଝିବୁ କେମନ୍ତେ
ସ୍ୱାମୀ ତୋ ବଞ୍ଚିବ ଯେବେ ଏଠାକୁ ଆସନ୍ତେ
ଯାହାକୁ ତାର ଇଚ୍ଛା କରୁ ତାକୁ ଭୋଗ
ଯାଇ କରି ସ୍ୱାମୀକି ତୋ ଘେନ ଆସ ବେଗ
ଏହା ଶୁଣି ବ୍ରାହ୍ମଣୀ ସେଠାରୁ ବେଗେ ଗଲା
ବ୍ରାହ୍ମଣେ ଭୁଞ୍ଜାଇ ସୁବେଶ ପୁଣି କଲା ।
ଆପଣେ ସୁବେଶ ଯେ ହୋଇଲା ବ୍ରାହ୍ମଣୀ
ବ୍ରାହ୍ମଣଙ୍କୁ କନ୍ଧେଘେନି ଚଳେ ଅନ୍ଧାର ରଜନୀ
ଶୁଣ ଗୋ ଗିରିଜା ତୁମ୍ଭେ ପୂର୍ବର ଏ ବାଣୀ
ସଙ୍କାଗିରି ନଗ୍ର ବୋଲି କରି ପରମାଣି ।
ଅମ୍ବିକା ଋଷିଙ୍କର ସେ ଏକଇ ଯେ ଶିଷ୍ୟ
ବାଳକଙ୍କ ସଙ୍ଗେ ସେହୁ କରଇ ଖେଳରସ
ଝିଣ୍ଟିକା ଗୋଟିକୁସେ ଅବୋଧେ ଦେଲେ ଶୂଳ
ଏମନ୍ତେ ଗଲା ତହିଁ କେତେହେଁକ କାଳ ।
ତପୂରେ ନିର୍ଜିତ ହୋଇଲା ବ୍ରହ୍ମଶିଷ୍ୟ
ମହାଯୋଗ ସେହୁ ପୁଣ କରଇ ଅଭ୍ୟାସ ।
ବ୍ରହ୍ମଋଷିରେ ଗଣିତା ହୋଇଲା ସେ ଯହୁଁ
ଚଉଦ ଭୁବନରେ ଗମଇ ସୁଖେସେହୁ ।
ଦିନେକ ସେ ନାଶକର ଭୁବନକୁ ଗଲା
ଦଣ୍ଡମଣ୍ଡ ଦେଖି କରି ମୁନି ପଚାରିଲା ।
କାହିଁପାଇଁ ଏମାନେ ଯେ ପାଉଛନ୍ତି ଦଣ୍ଡ
ମୋତେ ଏବେ ସାବଧାନେ କହ କାଳଦଣ୍ଡ
ଶମନ ବୋଇଲା ଏହୁ ଆଜନ୍ମର ପାପ
ଭୁଞ୍ଜୁଣି ଅଛନ୍ତି ମନେ ଘେନିଣ ସନ୍ତାପ ।
ଯେତେକ ପୁଣ୍ୟ କଲେ ପାପ କ୍ଷୟ ନୋହି
ପାପରେ ପୁଣ୍ୟ ଯେ କେବେ ନ ମିଶଇ ।
ପଦ୍ମପତ୍ର ମଧ୍ୟେ ଯେସନ୍ତେ ନ ରହଇ ଜଳ
ସେହି ପ୍ରକାରେ ପାପ ପୁଣ୍ୟର ବେଭାର ।
ଯେ ଯାହା ଅର୍ଜଇ ସେହି ଲେଖା ହୋଇଥାଇ
ସେହି ଅନୁକ୍ରମେ ସେ ଭୋଗ କରି ଯାଇ ।

ଶୁଣିକରି ମହାଋଷି ବିସ୍ମୟଇ ମନେ
ମୂର୍ଖ ତ ପୁଣି ପାପ କରି ନାହିଁ ଅଜ୍ଞାନେ ।
ମୂର୍ଖ ଯେବେ ଅଜ୍ଞାନେ ପାପ କରିଥିବ
ପାଞ୍ଜିରେ ଲେଖାଥିବ କରଣଙ୍କୁ ପୁଚ୍ଛିବ ।
ମହାଋଷି ବୋଲେ ଶୁଣ ତାହ ଯେ ଗୁପତେ
ସାବଧାନେ ଶୁଣ କହୁଅଛୁ ମୂର୍ଖ ତୋତେ ।
ଆମ୍ଭର ପାପ କିଛି ଅଛୁ କି ପାଞ୍ଜିରେ
ଫେଡ଼ି କରି କହ ତାହା ଆମ୍ଭର ଆଗରେ ।
ଋଷିଙ୍କର ବଚନରେ କହିଲେ କରଣେ
ଶୁଣ ହେ ବ୍ରହ୍ମ... ଏବେ ହୋଇ ସାବଧାନେ
ବାଳକାଳେ ଝିଣ୍ଟିକାକୁ ଦେଲ ଶୂଳ
ସେ ବୈତରଣୀ କଟକେ ହୋଇଛୁ କଟୁଆଳ
ସେହି ହେତୁ ତୁହି ଯେ ବସିବୁ ଯାଇଁ ଶୂଳେ
ତେବେ ମହାପତି ଭୁଥିବୁ କାଳେ କାଳେ ।
ଏ ବାହାରେ ପାପ ତ ଆଉ କିଛି ନାହିଁ
ଶୁଣି ବିସ୍ମୟ ଚିତ୍ତରେ ଉଠିଲ ତପ ଦେହି ।
ସେହି ନଗ୍ରରେ ଯାଇ ହୋଇଲ ପରବେଶ
ଦିନ ଶେଷ ଅନ୍ତେ ରଜନୀ ପ୍ରବେଶ ।
ମୁନିଙ୍କର ମନରେ ସେ ବିସ୍ମୟ କରଇ
ଝିଣ୍ଟିକା ଗୋଟିକର ମୁଁ ପାତକ ସୁଝିବଇଁ ।
ଏହି ଦେହରେ ମୂର୍ଖ ବସିବଇଁ ଶୂଳ
ଯାହା ବିହି ଲିହିଅଛି ମୋହର କପାଳ ।
ଏମନ୍ତ ଦେଖି ବ୍ରହ୍ମଶାପ୍ୟ ତାକୁ ଦେଲ
ଏ ଜନ୍ମେ ଶୂଳେ ଜୀବନ୍ତା ବସ ତୁ ବୋଇଲ
ଋଷି ଲୟେ କରି ବ୍ରହ୍ମଜ୍ଞାନ ଯେ ସାଧିବ
ବଇବର ମାୟା କେ ଜାଣି ତ ପାରିବ ।
ଏ ନଗ୍ର ବାହାରେ ଯେ ଅଟେ ଭାର ମଠ
ବସିଣ ପଢ଼ନ୍ତ ଯେ ବ୍ରହ୍ମଜ୍ଞାନ ପାଠ ।
ଏ ସମୟରେ ସେ ନଗ୍ରେ ତସ୍କର ଚୋରିକଲେ
ରାଜାର ଅନ୍ତଃପୁରୁ ପଦାର୍ଥ ବୋହି ନେଲେ
କଟକ ବାହାରେ ନେଇ ବାଣ୍ଟିଲେ ଧନସୁନା ।
ଦେଖିଲେ ବ୍ରହ୍ମଜ୍ଞାନେ ବସିଛି ମହାତମା ।
ଗ୍ରାମର ବାହାରେ ସେହି ମୁନିର ଗୁମ୍ଫରେ
ଦ୍ରବ୍ୟମାନ ସେହି ବାଣ୍ଟିଲେ ଯେ ଯାହାରେ
ଦେଖିଲେ ସେ ବ୍ରାହ୍ମଣ ମଉନେ ବସିଅଛି
ଦେଖିଣ ସେ ଚୋରଙ୍କର ନ ସ୍ଫୁରଇ କିଛି ।

ସମସ୍ତେ ଚିହ୍ନି ପୁଣ ବିସ୍ମୟ କରନ୍ତି
ଏହାକୁ କିଛି ନଦେଲେ ଆମ୍ଭର ନାହିଁ ଗତି
କାଲି ଏହୁ ନଗ୍ରେ ସେ ଯେ କହିବାକ ସତ
ଏତେଭାଳି ହେମଝର ଥୋଇଲେ ଅଗ୍ରତ ।
ଯେ ଯାହାର ମନେ ସେ ତସ୍କରମାନେ ଗଲେ
ନିଶି ପାହିଗଲା ପଛେ ନୃପତି ଜାଣିଲେ ।
ଦୋସାଧିଙ୍କୁ ରାଇଣ କହଇ ନୃପବର
ଚୋର କାହିଁ ଅଛି ଧରି ଦିଅ ମୋ ଗୁମୁର ।
ଆମ୍ଭର ଅଂତପୁରୁ ସେ ଚୋରିକରି ନେଲେ
ତୋହର ନଗିବାର ପାହାର କିସ ହେଲେ ।
କାହିଁ ଅଛି ଚୋରକୁ ଦିଅ ମୋର କତି
ନୋହିଲେ ପାଇବୁ ତୁ ଚୋରଙ୍କର ଶାସ୍ତି ।
ଆରକ୍ଷେ କଟୁଆଳ ଯେ ଶୋଧିକ ଚଉପାଶ
କାହିଁ ନ ପାଇଲା ସେ ଚୋରଙ୍କ ସନ୍ଦେଶ ।
କଟକ ବାହାରେ ସେ ବସିଛି ବ୍ରହ୍ମପତି
ଖୋଜ ଖୋଜ ପ୍ରବେଶ ହେଲା ତାର କତି ।
ଦେଖିଲା ରତ୍ନଝରି ଗୁମ୍ଫରେ ତାର ଅଛି
ମଉନ ବ୍ରତରେ ସେ ବ୍ରାହ୍ମଣ ବସିଛି ।
ଦେଖିଣ ଦୋସାଧୁ ଯେ ବୋଇଲ ଆରେ ଚୋର
କେଉଁ ବିଦ୍ୟାକୁ ହୃଦରେ କରୁଛୁ ବିଚାର ।
ରାଜାର ଅଂତପୁରୁ ନିଶାରେ ଚୋରିକଲୁ
ରାଜ ପାହନ୍ତରୁ ତୁରେ ତପସ୍ୱୀ ହୋଇଲୁ ।
ଏତେବୋଲି ଋଷିଙ୍କି ସେ ଘେନିକରି ଗଲା
ନୃପତି ଛାମୁରେ ମୁନିବରଙ୍କୁ ଭେଟିକଲା ।
ରତ୍ନଝରି ନେଇଣ ସେ ଦେଲାକ ଗୁମୁର
ବୋଲଇ ହେ ଦେବ ହେ ଅଟଇ ଏହୁ ଚୋର
ଦେଖିଣ ନୃପତି ସେ କୋପ ଯେ ବଢ଼ିଲା
ଜୀବଂତ ଏହାକୁ ଶୂଳ ଦିଅ ଯେ ବୋଇଲା ।
ବିଦ୍ଧିକଲା କର୍ମଫଳ ତକ୍ଷଣେ ଫଳିଲା
ଆଜ୍ଞାକାରୀ ଋଷିଙ୍କି ଯେ ବାଟରେ ଶୂଳଦେଲା
ଶୂଳ ଘେନି ମୁନିବର ନ ଛାଡ଼ିଲା ପ୍ରାଣ
ହୃଦ ପଦ୍ମ ମଧ୍ୟରେ ସୁମରେ ନାରାୟଣ ।
ସେହିଦିନ ସେହି ଯେ ରଜନୀର ମଧ୍ୟେ
ଦ୍ୱିଜକୁ ଘେନି ବ୍ରାହ୍ମଣୀ ଚଳଇ ରାହ ଅନ୍ଧେ
ଅନ୍ଧାର ବେଳରେ ସେହୁ ଜାଣି ନ ପାରିଲା
ବ୍ରାହ୍ମଣ ଘେନି ବ୍ରାହ୍ମଣୀ ସେଠାରେ ହୋଇଲା

ବ୍ରାହ୍ମଣର ଚରଣ ବାଜନ୍ତେ ଶୂଳେ ଯାଇ
ଚମକନ୍ତେ ତ୍ରାସ ଯେ ପାଇଲା ଭୟ ଦେହ ।
ବହୁତ ଆକୁଳ ମନ ହୋଇଲା ସେ ଯତି
ଶାପ୍ୟ ବହନ୍ତ ସେ ହୋଇଣ କୋପମୂର୍ତ୍ତି ।
ଋଷି ବୋଇଲେ ଯେହୁ ଆମ୍ଭଙ୍କୁ ହାବୋଡ଼ିଲା
ରବି ପାହିଲେ ଶିରକାଟ ହେଉ ଯେବୋଇଲା
ଯୁବତୀ ହୋଇଲେ ନାସା ଛେଦନ ସେ ହେଉ
ଏ ମୋହର ବଚନ ବ୍ୟର୍ଥ ଆଉ ନୋହୁ ।
ଶୁଣିଣ ବ୍ରାହ୍ମଣୀ ଯେ ସ୍ତମ୍ଭୀଭୂତ ହୋଇ
ସେ ଢଗକୁ ଶୁଣି ବୋଲଇ ରୁଦ୍ରମୂର୍ତ୍ତି ।
ମୂର୍ତ୍ତି ଯେବେ ମହାସତୀ ପତିବ୍ରତା ନାରୀ
ମୋହର ବଚନରେ ନ ପାଉ ଶର୍ବରୀ ।
ପ୍ରଭାତ ହୋଇଲେ ଯିବା ନାଶଯିବେ ପତି
ମୂର୍ତ୍ତି ବୋଲୁ ଅଛୁ ଯିବା ନ ପାଉ ଏ ରାତି ।
ତେଣୁକରି ସାତରାତ୍ର ସେଥିରେ ବହିଗଲା
ତିନରାତ୍ର ତିନଦିନ ଏକ ଯେ ରାତ୍ରହେଲା ।
ସେହିଦିନ ଗନ୍ଧମାର୍ଦ୍ଦନ ପର୍ବତ ଗଲା ହନୁ
ମଉଷଧି ଆଣିଲା ସେ ପବନର ସୂନୁ ।
ତୁ ଯାହା ପଚାରିଲୁ ଶୁଣିଲୁଟି ସହି
ଏଣୁକରି ରାତ୍ର ଯେ ବହୁତ ପୁଣ ହୋଇ ।
ପାର୍ବତୀ ପଚାରିଲେ ଶୁଣ ଦେବ ହର
କେବଣ କୃତ୍ୟ କଲେ ଯେ ବେଗୀ ଦ୍ୱିଜବର
କହସି ସ୍ୱାମୀ ମୋତେ ସୁଦୟା ସେ କରି
ସ୍ତ୍ରୀ ପୁରୁଷ ହତ୍ୟା ଦୋଷରୁ ଯିବ ମୁଁ ନସ୍ତରି ।
ପ୍ରିୟାର ବଚନେ ଯେ କହନ୍ତି ତ୍ରିପୁରାରି
ସାବଧାନେ ଶୁଣ ହେମବନ୍ତର କୁମାରୀ ।
ଚଉଦ ବ୍ରହ୍ମାଣ୍ଡରେ ଯେ ଲାଗିଲାକ ତ୍ରାସ
ଯେଣୁକରି ରଜନୀ ଯେ ନୋହିଲାକ ଶେଷ ।
ଅନେକ ଦୁଃଖ ଯେଣୁ ପାଇଲେ ଜନପ୍ରଜା
ଗୋରୁ ବ୍ରାହ୍ମଣ ଦେବତା ଅତିଥି ଅପୂଜା ।
ଅଗ୍ନିମୁଖେ ଯେଣୁ ଦ୍ୱିଜେ ନଦେଲେକ ଘୃତ
ସବୁଙ୍କର ଚଉ ହେଣୁ ହୋଇଲା ଆରତ ।
ଏମନ୍ତେ ବ୍ରହ୍ମାଙ୍କୁ ଯେ କହିଲେକ ଯାଇ
ବ୍ରହ୍ମା ଭଜେ କରି ଆସି ମଣ୍ଡଳ ଆରୋହି ।
ବଜ୍ରଧର ସକଳ ଦେବତା ସଙ୍ଗେ ଘେନ
ମୂର୍ତ୍ତି ଯାଇଣ ଥିଲା ଶୁଣ ଗୋ ଭବାନୀ ।

ସମସ୍ତେ ମେଳ ହୋଇଗଲେ ନାରାୟଣଙ୍କ ଠାକୁ
ନାରାୟଣଙ୍କୁ ଜଣାଇଲେ ରଖ ଯେ ଆମ୍ଭଙ୍କୁ ।
ଏମନ୍ତେ ସକଳ ଦେବତାମାନେ କହି
ବିଷ୍ଣୁ ବୋଇଲେ ପତିଭକ୍ତା ବଚନଆନ ନୋହି
ସେ ବ୍ରହ୍ମର୍ଷି ବଚନ ନୁହଇ ମେଣ୍ଟନ
ଦୁହିଁଙ୍କର କଥା ଯେ ସଙ୍କଟ ଅଟେ ଜାଣ ।
ଆଜ୍ଞାଦେଲେ ଆଣ ତାକୁ ବିମାନେ ବସାଇ
ତତକ୍ଷଣେ ବିମାନେ ବସିଣ ଚଳିଯାଇ ।
ଯତି ସତୀଙ୍କ ସଦନେ ପ୍ରବେଶ ହେଲେ ଯାଇ
ଦେବଜନଙ୍କୁ ନେଲେ ନାରାୟଣଙ୍କୁ ଚହିଁ ।
ବିଷ୍ଣୁ ଆଜ୍ଞା ପ୍ରମାଣରେ ଦୁର୍ବଳ ବ୍ରାହ୍ମଣ
ସେରୂପ ଘୁଡ଼ିଣ ହେଲେ ମୀନ ଯେ କେତନ
ପୁଷ୍ପକ ଆରୋହି ଯେ ଅମର ପୁର ଯାଅ
ଦେବତା ସମାନେଣ ପୂଜାବିଧି ପାଅ ।
ତତକ୍ଷଣେ ଦେବରଥ ହୋଇଲା ସନ୍ନିଧାନ
ବସିଣ ଅମରକୁ ଗଲେ ଦେବଜନ ।
ଆଜ୍ଞା ହେଲା ତୁମ୍ଭଙ୍କୁ ଦେବଜନେ ଯାଅ
ଅନେକ ଭୋଗ ପୂଜା ସ୍ୱର୍ଗପୁରେ ପାଅ ।
ସୁରପୁରରେ ତୁମ୍ଭର କୀରତି ରହିଥାଉ
ପତିଭକ୍ତା ପଣ ତୁମ୍ଭର ଯୁଗେ ଯୁଗେ ଥାଉ
ନାରାୟଣ ଆଜ୍ଞା ଦେଲେ ଶୁଣଗୋ ମହାସତୀ
ତୁମ୍ଭେ ଆଜ୍ଞା ଦିଅ ରଜନୀ ପାଉ ଯେ ତଡ଼ତି
ନାରାୟଣ କହିବାରୁ ବୋଇଲେ ଯେ ସତୀ
ବେଗେ ପାଉ ରଜନୀ ଯେ ଆମ୍ଭର ଜନ୍ମ
ସଫଳନ୍ତି ।
ସେ ସତୀ କହିବାରୁ ତିମିର ଛୁଟିଗଲା
ଜଗତଯାକ ସବୁ ହାଲୋଳ ଦିଶିଲା ।
ଏତେ କହି ସ୍ୱର୍ଗକୁ ଚଳିଲେ ସେହୁ ପୁଣ
ଏଥୁ ଅନନ୍ତରେ ଗଉରି ତୁମ୍ଭେ ଶୁଣ ।
ବ୍ରହ୍ମ ଯତି କରକୁ ଧରିଣ ଦେବବର
ଅମର ଭୁବନକୁ ସେ ଗଲେ ତତପର ।
ବ୍ରହ୍ମାଙ୍କର ସଙ୍ଗରେ ସେ ବସିଲେ ଆସ୍ଥାନେ
ତୋଷେ ବର ଦେଲେ ତାଙ୍କୁ ଚତୁର-
ବଦନେ ।
ବୋଇଲେ ଅମର ହୋଇ ଯୁଗେ ଯୁଗେ ଥାଅ
ଦେବର୍ଷି ସଙ୍ଗରେ ଗଣିତା ତୁମ୍ଭେ ହୁଅ

ଯହୁଁ ତିନଜଣଙ୍କର ମୁକତ ହୋଇଲ
ତତକ୍ଷଣେ ତହୁଁ ସ୍ୱର୍ଗ ଉଭଜମା ପାଇଲ ।
ଶୁଣିଲଟିକ ଗଉରୀ ବ୍ରହ୍ମାଙ୍କର କଥା
ତୁମ୍ଭ ମନୁ ମଧ୍ୟ ଗଲ ସେହୁ ପାପ ଗୋଟା ।
ପୁଣିହିଁ ପାର୍ବତୀ ଯେ ବୋଲନ୍ତି ତୁମ୍ଭେ ଶୁଣ
ସେ ଝିଣ୍ଟିକା କସ ହେଲା ମୋତେ କହ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ଗୌରିଜା ଗୋ ଶୁଣ
ସେଥିର କଥା ତୋତେ କହିଦେବା ପୁଣ ।
ସେ ଝିଣ୍ଟିକା ଗୋଟାଯେ ଶୂଳରେଜୀବନ୍ତାଥିଲ
ନାରାୟଣ ଆଜ୍ଞାରେ ସେ ଲୁଙ୍ଗେକ ହୋଇଲ
ସ୍ତ୍ରୀଯୁଗରେ ତାଙ୍କୁ ଝିଣ୍ଟିକାଶ୍ୱର ବୋଲି
ନରେ ସେବାକଲେ ନାରାୟଣ ଆଜ୍ଞା ପାଳି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଅଗ୍ନିକା ଋଷି ଗଲେ ଯେ ବ୍ରହ୍ମାଙ୍କର କତି ।
ଷୋଳଯୁଗ ଉତ୍ତାରୁ ସେ ସ୍ୱର୍ଗକୁ ଚଳିଗଲେ
ଲୀଳାବତୀ ସାଗପେଟରେ ଉପସ୍ଥିତ ହେଲେ
ଈଶ୍ୱର ପାର୍ବତୀଙ୍କର କଥା ହେବାକାଳେ
ପାର୍ବତୀ ଶୟନ ଶିବ ଜାନୁର ଉପରେ ।
ସାଗଡ଼ମ୍ବ ଭିତରେ ଋଷି ପରବେଶ
ଈଶ୍ୱର କଥା ଦେବଲୋକଙ୍କ ସମ୍ଭାଷ ।
ପାର୍ବତୀ ଚେତା ହେବାରୁ ଡ଼ମ୍ବରୁ ଚୁଆଗଲା
ବ୍ୟାସଦେବଙ୍କର ସୁତ ହୋଇ ସେ ଜନ୍ମିଲା ।
ସେହିଋଷି କହିଲେ ଶୁକଦେବ ଜାଣ
ତାଙ୍କଠାରୁ ଭାଗବତ ପୁରାଣ ଜାତ ପୁଣ ।
ପାର୍ବତୀବୋଇଲେ ଋଷିଙ୍କି ଅଦୋଷେଶୂଳଦେ
ସେହୁରାଜା ମଲାବେଳେ କେଉଁଗତି ହେଲା ।
ଈଶ୍ୱର ବୋଇଲେ ସେ କୁମ୍ଭୀପାକ ନର୍କେ
ଚଉଦ ମନୁ ପର୍ଯ୍ୟନ୍ତେ ରହିଲା ସେହୁ ଦୁଃଖେ
ଏବେପ୍ରତେ ଗଲୁକ ଶରଦଚନ୍ଦ୍ର ମୂର୍ତ୍ତି
ଶୁଣନ୍ତା ଲୋକର ପାପ ବ୍ୟାଧି ଯେ ନାଶଇ ।
ଶୁଣିଣ ପାର୍ବତୀ ଯେ କଲେ ନମସ୍କାର
ତୋଳିକରି ପ୍ରିୟାକୁ ଧଇଲେ ସେ କୋଳ ।
କହନ୍ତି ଗଉରୀ ଯେ ଶୁଣ ଯେ ଶୂଳହସ୍ତ
ଏଥୁଅନନ୍ତରେ ହେଲା କେବଣ ବୃତ୍ତାନ୍ତ ।
ବୋଲନ୍ତି ଶଙ୍କର ଶୁଣ ଗୋ ହେମବନ୍ତ
ସମର ଭୂମିରେ ଯେ ଥିଲେ ଦାଶରଥି ।

ସେନା ସେନାପତି ଋକ୍ଷ କପିକପିଯେତେବଳ
ପଟୁଆର କରି ଯେ ଅଛନ୍ତି ଚାମୁର ।
ତହୁଁ କେନଙ୍କଇ ସୁବଲସ୍ୱାକୁ ଆସନ୍ତ
ସୁଗ୍ରୀ ବିଭୀଷଣ ଆଦି ସମସ୍ତେ ଅଛନ୍ତି ।
ନିତ୍ୟକର୍ମ ସାରିଲେ ଦେବନଦୀ କୂଳେ
ସନ୍ଧ୍ୟା ସୁମରଣ ନିଜ ଆଶ୍ରମକୁ ଗଲେ ।
ଫଳମୂଳ ଭୋଜନ ସାରିଲେ ଦାଶରଥି
ସେନା ଯୂଥପତି ସୈନ୍ୟ ଯେତେକ ଅଛନ୍ତି ।
ସୁଗ୍ରୀ ବିଭୀଷଣ ଆଦି ଲକ୍ଷ୍ମଣ ଭୁଞ୍ଜିଲେ
ଶ୍ରୀରାମ ଭୋଜନ କରିଣ ଉଠିଲେ ।
ଗୁଆକୋଳ ଫଳକୁ କଷାଅର୍ଥେ ଖାଇ
କନକ ମୃଗଚ୍ଛଲେ ବସିଲେ ଗୋସାଇଁ ।
ଏଥୁ ଅନନ୍ତରେ ଯେ ଯୂଥପତିମାନେ
ଫଳମୂଳ ଭୋଜନ କଲେକ ବହନେ ।
ମଲ୍ଲ ମହାମଲ୍ଲ ଯେ ସୈନ୍ୟ ଯାକ ପୁଣ
ଯେ ଯାହାର ମୁଖରେ କଲେକ ଭୋଜନ ।
ଏଥୁ ଅନନ୍ତରେ ଯେ ମନ୍ଦୋଦରୀ କାନ୍ତ
କର୍ପୂର ତାମ୍ବୂଳ ସେବଣ ନିଜହସ୍ତ ।
ସ୍ଥୂଳଜଙ୍ଘ କୁମରକୁ ରାବଣ ଆଜ୍ଞାଦେଲେ
ଶକ୍ତିଭେଦରୁ ଏବେ ଲକ୍ଷ୍ମଣ ବଞ୍ଚିଲା ।
ରଘୁବଳ ବାବୁରେ କରି ତୁ ବିନାଶ
ମୂର୍ଖପ୍ରାୟ ମଲେ ମୋର ତୁହି ଅଛୁ ଶେଷ ।
କେତେରଣ ନାତିରୁ ସହସ୍ରେ ନାତି ମଲେ
ତିନିଶତ ନାତି ଆଉ ରହିଛନ୍ତି ଭଲେ ।
ପାଦାନ୍ତ ହସ୍ତୀ ଘୋଡା ଅନେକ କ୍ଷୟ ଗଲେ
ବାଇକୋଟି ମୁକୁଟ ବନ୍ଧା ଏବେ ମଲେ ।
ଏବେ ବୁଦ୍ଧିବାଟ ଆଉ ନଷ୍ଟରେ ରେ ବାବୁ
ରାମ ଲକ୍ଷ୍ମଣଙ୍କୁ ମାରି ଆସିବୁ କରେ ଯିବୁ ।
ଘେନଣ ଗୁଆପାନ ମାରିରେ ଋକ୍ଷ କପି
ଶୁଣିକରି ସ୍ଥୂଳଜଙ୍ଘ ହେଲା ମହାକୋପୀ ।
ସାନ ବୋଲି ସିନା ତା ନ ପେଷିଲୁ ମୋତେ
ଏବେ ଅକଣ୍ଟକ ରାଜ୍ୟ ଭୋଗ ଦେବ ତୋତେ
ସାନ ହୋଇ ବାମନ ବଳିକି ନାଶ କଲେ
ମୀନ ଅବତାର ହୋଇ ଶଙ୍ଖାସୁରକୁ ମାଇଲେ
ସାନ ହୋଇ ଶୂକର ରୂପେ ଧଇଲେ ମେଦିନୀ
ସାନ ହୋଇ ମନ୍ଦର ମନ୍ଥିଲେ ସିନ୍ଧୁ ପୁଣି ।

ସାନ ହୋଇ ଗରୁଡ଼ ନାରାୟଣଙ୍କୁ ବହନ୍ତି
ସାନସର୍ପ ଖାଇଲେକି ମନୁଷ୍ୟ ନ ମରଇ ।
ସାନ ହୋଇ ସୃଷ୍ଟି ଶିବ ଧନୁ ରୁଷ ମତ୍ତ ଭାଙ୍ଗି
ସାନ ବୋଲି ମୋତେ ତୁ ନ ପେଷିଲୁ ବେଗି
ଏତେବୋଲି ମହାବୀର ଘେନିଲା ଗୁଆପାନ
ନବରୁ ବାହାରି ହେଲା ଚଢ଼ି ଦିବ୍ୟଯାନ ।
ଅଗୋଚର ସୈନ୍ୟ ସଙ୍ଗେ କଳନା ନ ଯାଇ
ଅନେକ ସମ୍ଭବ ଯେ କରଣ ବାହାରଇ ।
ସଙ୍ଗତେ ସିଂହନାଦ ଅସୁର ବାହାର
ଜଟୋଦର ଚନ୍ଦ୍ରନେତ୍ର ବେନି ସହୋଦର ।
ଉଲୂକ ମୋଷକର୍ଣ୍ଣ ବାହାର ବୀରବେନି
ରଥ ଗଜ ଅଶ୍ୱ ସଙ୍ଗେ ଅନେକ ସଇନ ।
ସେନାସେନାପତିମାନେ ବାହାର ହୋଇଯାନ୍ତି
ଉଦଣ୍ଡ ଆଳମ୍ବ ଯେ ବିମଳ ପନ୍ଥ ଯନ୍ତି ।
ସୁରଗଣମାନେ ଯେ ସ୍ୱର୍ଗରେ ଥରୁଥାନ୍ତି
ଏହାଙ୍କୁ ଯୁଦ୍ଧେ ଆଜ ପେଷିଲା ଲଙ୍କପତି ।
ମହାଘୋର ସମର କରିବ ଏହୁ ଦୈତ୍ୟ
ପିତା ଅଭିମାନ ଘେନି ଯୁଦ୍ଧକୁ ଆଗତ ।
ଏସନେକ ବିଚାର କରନ୍ତି ଦେବାସୁର
ଉତ୍ତରଦ୍ୱାରେ ସୈନ୍ୟ ହୋଇଲେ ବାହାର ।
ଶ୍ରୀରାମ ଯେ ସୁବଳଗିରି ଶିଖରରେ ଛନ୍ତି
ସେନା ଯୁଥପତି ଯେ ଘେନିଣ ବସିଛନ୍ତି ।
ଏସନକ ସମୟରେ ବିଭୀଷଣ ପୁଣି ଥାଇ
ବିଭୀଷଣଙ୍କୁ ପଚାରନ୍ତି ଦଶରଥ ସୁତ ।
ଲଙ୍କାଗଡ଼ରୁ ସୈନ୍ୟ ତ ହୋଇଲେ ବାହାର
କି ଅବା ଆପଣେ ଆସୁଅଛି ଦଶଶିର ।
ଅପ୍ରମିତ ସୈନ୍ୟ ତ ଆସୁଛନ୍ତି ମାଡ଼ି
ଆଗୁଆଣି ଥାଟଯାକ ପଳାବନ୍ତି ଗୁଡ଼ି ।
ଯାଅ ଯା ନଳ ନୀଳ ଅଙ୍ଗଦ ହନୁମନ୍ତ
ଦସ୍ୟୁ ନକର ବାଲୁରେ ମାର ଅସୁରାନ୍ତ ।
ଶୁଣିଣ ଆଗ ହୋଇଲେ ଚାରି ସେନାପତି
ସୈନ୍ୟ ସଙ୍ଗେ ଘେନିଣ ଧାଇଁଲେ କୋପମୂର୍ତ୍ତି
ତରୁଶିଳା ଧରି କଳକଳା ରାବଦ୍ୟନ୍ତି
ପର୍ବତରେ ଥାଇ ଶ୍ରୀରାମ ଦେଖନ୍ତି ।
ରଣଭୂମି ମଧ୍ୟରେ ଦୁଇଦଳ ଭେଟ
ବାଜିଲା ରଣଗୋଳ ମିଶାମିଶି ଥାଟ ।
ରଣଝୁଣା ପଡ଼ ତାଳ ବାଜେ ରଣଗୋଳ
ବଜ୍ରବାଣ ଶକତି ଯେ ଆବର ମୁଷଳ ।
ପିଟାପିଟି ମରାମରି ହୁଅନ୍ତି ନଦାନ୍ତି
ଧରାଧରି କୋଡ଼ାକୋଡ଼ି ଗଡ଼ୁଗୋଡ଼ି ଯାନ୍ତି ।
ଏକକୁ ଆରେକ ଯେ ନ ଧୁଅନ୍ତି ପାଏ
ମାର ମାର ବୋଲିଣ ଡାକନ୍ତି ଗରୁକୋହେ
କେହୁ ଅନ୍ତରାଳେ ଧରନ୍ତି ତରୁ ଶିଳ
କେହୁ ଶସ୍ତ୍ର ଉଞ୍ଚାଇ ବୋଲନ୍ତି ମାର ମାର ।
ରୁଧିର ଧାର କାହା ଶରୀରରୁ ବହେ
ବିଷମ ଘୋର ସମର ଦୁଇଦଳ୍ପ ଯାଏ ।
ଋକ୍ଷକପି ବଳ ଯେ ମାଇଲେ ଶିଳ ତରୁ
ଭାଜିଲେ ରାକ୍ଷସ ବଳ ହନୁକୁ ଦେଖି ଦୂରୁ ।
ଅଙ୍ଗଦ ନଳ ନୀଳ ପଶିଲେ ଆସି ରଣେ
ତେଡ଼େ ରାକ୍ଷସବଳ ପଳାନ୍ତି ଏଣେତେଣେ ।
ସ୍ଥୂଳଜଙ୍ଘ ଶରଣ ପଶିଲେ ବେଗେ ଯାଇ
ଦେଖିକରି ସ୍ଥୂଳଜଙ୍ଘ ବୋଇଲେକ ସ୍ୱସ୍ତି ।
କମ୍ପାଇରେ ପଳାଅ ମୂର୍ଖ ଏଥି ଥାନ୍ତେ
ଋକ୍ଷ କପିବଳ ଆଜ ପିବେକ ଜୀବନ୍ତେ ।
ଧର ଧର ବୋଲିଣ ଧୁଆଏ ବେଗେ ରଥ
ଫିଟିକି ସୈନ୍ୟ ତାର ଅଛନ୍ତି ବହୁତ ।
ଉଲୂକ ମୋଷକର୍ଣ୍ଣ ମହାକର୍ଣ୍ଣ ସଙ୍ଗେ
ଜଟାସୁର ଚନ୍ଦ୍ର ନେତ୍ର ଧାଏଁ ରଣରଙ୍ଗେ ।
ସିଂହାସୁର ସହିତେ ଅଛନ୍ତି ଛଅରଥି
ପାଞ୍ଚଲକ୍ଷ ଅଶ୍ୱ ଯେ ଚଉଦ ସହସ୍ର ହସ୍ତୀ ।
ପଏକାର ସୈନ୍ୟ ଯେ ଗଣିବ କେହୁ ପାରି
ରଥି ମହାରଥି ଯେ ଧାମନ୍ତି ଆଗସରି ।
ମାର ମାର ଡାକ ଯେ ଶୁଭେ ଅନୁକ୍ଷଣେ
ଧାମନ୍ତି ଯେହ୍ନେ ଶୂନ୍ୟେ ଉଡ଼ନ୍ତି ମେଘମାନେ
ରାକ୍ଷସ କପି ଋକ୍ଷ ହୋଇଲେ ମିଶାମିଶି
ତରୁ ଶିଳ କାଣ୍ଡ ଖଣ୍ଡା ସମରେ ବରଷି ।
ସ୍ଥୂଳଜଙ୍ଘର ଶର ଯେ ପଡ଼େ ଅଗ୍ନି ଜାଣି
ଏକା ବାଣକରେ ଯେ ଲକ୍ଷେ କପି ହାଣି ।
ସପ୍ତରଥୀ ଏକମୁଖ ହୋଇ ଯୁଦ୍ଧକଲେ
ଶ୍ରାବଣ ବର୍ଷା ଜାଣି ଶର ବରଷିଲେ ।
ଖଣ୍ଡ ଖଣ୍ଡ କରିଣ କାଟିଲେ ଋକ୍ଷ ସୈନ୍ୟ
ଦେଖିଲେ ଦୂରୁ ଧାଇଁଲେ ଅଙ୍ଗଦ ହନୁମାନ

ନଳ ନୀଳଙ୍କୁ ଘେନ ହୋଇଲେ ଜଣଦୁଇ
ସ୍ଥୂଳଜଙ୍ଘଙ୍କୁ ଆବୋରି ତରୁ ଶିଳ ଧଇ ।
ଦେଖି ରାବଣ ତନୟେ ଶର ଯେ ପେଷିଲା
ନାରାଚରେ ତରୁ ଶିଳ ହେଲେ ନିବାରିଲା ।
ଚନ୍ଦ୍ରଜିତ ବୋଲଇ ଯେବଣ ସେ ବୀର
ବାଳି ନନ୍ଦନ ସଙ୍ଗରେ କଲା ସେ ସମର ।
ସ୍ଥୂଳଜଙ୍ଘ ନୀଳ ହୋଇଲେ ଭେଟାଭେଟି
ଜଟାସୁର ପାବେନ ସମର ବଣ୍ଟି ବଣ୍ଟି ।
ମହାକର୍ଣ୍ଣ ଉଭିଲା ନଳ ବୀର ଆଗେ
ଭଲ୍ଲୁକା ମୋକ୍ଷକର୍ଣ୍ଣ ଧାଏଁ ରଣରଙ୍ଗେ ।
ସିଂହସୁର ସହିତରେ ଏହି ତିନିଜଣ
ସୈନ୍ୟଙ୍କର ସଙ୍ଗରେ ସେ କଲେ ମହାରଣ ।
ଚନ୍ଦ୍ରଜିତ ବୋଲଇ ଯେବଣ ଅସୁର
ଅଙ୍ଗଦ ଉପରେ ମାଇଲା ମୁଦୁଗର ।
ମୁଣ୍ଡେ ବାଜନ୍ତେ ବାଳି ତନୟ ମୋହଗଲା
ପୁଣି ସଚେତ ହୋଇଣ ବଚନ କହିଲା ।
ମୁହିଁ ସେ ଅଙ୍ଗଦ ନ ଜାଣୁଛରେ ମୋତେ
ଏହିକ୍ଷଣି ଯମପୁର ପେଷିବଇଁ ତୋତେ ।
ଇନ୍ଦ୍ରବରେ ଉଠିଣ ସେ ମାରେ ବଜ୍ର ମୁଷ୍ଟି
ବାଜନ୍ତେଣ ଦୈତ୍ୟ ସେ ପଡ଼େ ମହୀ ଲୋଟି ।
ସଚେତ ହୋଇଣ ପୁଣ ବଧାଏ ମାଇଲା
ବାଳିର ତନୟ ତାହା ପେଲିଇଣ ଗଲା ।
ଦୁହେଁ ଜଣ ବଳରେ ଧରାଧରି ହୋନ୍ତି
ନିବିଡ଼ ଜଣ ବଳରେ ଗଡ଼ାଗଡ଼ି ଯାନ୍ତି ।
ଇନ୍ଦ୍ରବର ଆସି ଦୁହେଁ ପଡ଼ିଲେ ଭୂମିତଳେ
ବେଳୁବେଳ ସମର ହେଲା ମହାବଳେ ।
ଉପରେ ଦଇତ ତଳେ ବାଳି ସୁତ
ଅଙ୍ଗଦର ତୋଟିକି କାମୋଡ଼େ ଦଇତ ।
ହକଳରେ ଉଡ଼ି ସେ ଗୁଡ଼େ ବାଳିସୁତ
ପାଦ ଖସାଇଣ ସେ ଆସିଲା ଭୁଈତ ।
ଆଣ୍ଠୁ ଭରା ଦେଇଣ ପେଟକୁ ଦଳିଦେଲା
ସମ୍ଭାଳି ନ ପାରି ଦୈତ୍ୟ ତଳରେ ପଡ଼ିଲା ।
ଧାଇଁଣ ଅଙ୍ଗଦ ମାଡ଼ିବସେ ତାର ବୁକୁ
କୋପରେ ମୁଣ୍ଡ ସେ ମାଇଲା ମୁଣ୍ଡକୁ ।
ଚନ୍ଦ୍ରଜିତର ମୁଣ୍ଡ ହେଲା ବେନିଫାଳ
ଅଙ୍ଗଦ ମୁଣ୍ଡରୁ ରକ୍ତ ବହେ ଖଳଖଳ ।

ମଲା ସେ ରାକ୍ଷସ ଗଲା ତାର ପ୍ରାଣ
ଜଟାସୁର ହନୁର ହେଲା ଘୋରରଣ ।
ପବନ ତନୟ ମାରେ ତରୁବର
ନାରାଚେ ଦୈତ୍ୟ ବୃକ୍ଷ ଛେଦିଲା ସେ ତାହାର
ଦେଖିଣ ହନୁ ସେ ପର୍ବତେ ମାଇଲା
ଦୈତ୍ୟର ରଥ ଉପରେ ଯାଇଁଣ ପଡ଼ିଲା ।
ସ୍ୱଶରଥୀ ସେ ସାରଥୀ ଆପଣା ସହିତେ
ପ୍ରାଣ ହୁଡ଼ିକରି ପଡ଼ିଲା ଭୁଇଁତେ ।
ମହାକାଳ ନଳ ସେ ସମର କଲେ ପୁଣି
ନଳ ସେନାପତି ପିଟେ ବୃକ୍ଷ ଆଣି ।
କାଞ୍ଚିତ ନାରାଚେ ତାହା ଦଇତ ନିବାରି
କୋପରେ କପିବୀର ପର୍ବତେ ତାକୁ ମାରି ।
ତାହା ଦେଖି ଧାଇଁଲେ ଅଙ୍ଗଦ ହନୁମନ୍ତ
ରଥତଳରେ ସେ ପଶିଲେ ଭୁଈତ ।
ବଧା ମାରିଣ ସେ ମାରିଲେ ସ୍ୱଳ ଅଶ୍ୱ
ସାରଥିକ ମାଇଲେ ପବନର ସୁତ ।
ମହାକର୍ଣ୍ଣ ରଥେ ଉଠି ନଳ ତା ବାଳଧରି
ଖଡଗ ଛଡ଼ାଇଣ ବେଗେ ତାକୁ ମାରି ।
ବେକର ସନ୍ଧିରୁ ଛିଡ଼ିଗଲା ମୁଣ୍ଡ
ଡାହାଣ ହସ୍ତ ସହିତେ ବେକରୁ ଗଲା ମୁଣ୍ଡ ।
ଅନ୍ତରୀକ୍ଷ ହୋଇ ତଳରେ ପଡ଼େ ପିଣ୍ଡ
ନଳର ବାମ ହସ୍ତରେ ଅଛି ତାର ମୁଣ୍ଡ ।
ଦେଖିଣ ମହାବୀର ରଥରୁ ଓହ୍ଲାଇଲା
ଭୂମିରେ ମହାକର୍ଣ୍ଣ ମୁଣ୍ଡ ପକାଇଲା ।
ଅଙ୍ଗଦ ହନୁମନ୍ତ ନଳବୀର ତିନି
ସିଂହ ଭଲ୍ଲୁକ ସେ ମାରନ୍ତି ନଇନ ।
ନୀଳକୁ ବେଢ଼ିଅଛି ମଦକର୍ଣ୍ଣ ଦୈତ୍ୟ
ଋକ୍ଷ କପିବଳ ପିଟି ମାରନ୍ତି ଅପ୍ରମିତ ।
ଦୈତ୍ୟଙ୍କୁ ମୁଟିଂଲେ ସେ ଶାଳ ଶିଳ ଘେନି
ଦେଖିଣ ଅଙ୍ଗଦ ହନୁମନ୍ତ ନଳ ନୀଳ ତିନି ।
ଧାଇଁଣ ବାଳି ସୁତ ମଦକର୍ଣ୍ଣ ରଥେ
ବୃକ୍ଷେକ ପିଟିଲା ପୁଣି ମାରେ ସେ ପର୍ବତେ ।
ଦେଖିଣ ଅସୁର ଇନ୍ଦ୍ରବର ଗୁଡ଼ ଗଲା
ହନୁମନ୍ତକୁ ଦେଖିଣ ଶକତି ମାଇଲା ।
ପବନ ତନୟ ବୁକୁରେ ଶର ବାଜି
ନଳ ଧାଇଁଲା ସେ ହୋଇ ବଡ଼ ରାଗି ।

ଯେବଣ ଖଡ଼ଗ ସେ କରେ ଧରିଥିଲା
ମନ୍ଦକର୍ଣ୍ଣ ଉପରେ ତୋଳିଣ ପକାଇଲା ।
ଫେଡ଼ାଇଣ ଦୈତ୍ୟ ଯେ ତଳରେ ଗଲା ଗଳି
ହନୁମନ୍ତ ମାଇଲା ଶକତ୍ତି ଉଛୁଳି ।
ଅଙ୍ଗଦ ସହିତରେ ବେଢ଼ିଲେ ତିନବୀର
ମଧ୍ୟରେ ମନ୍ଦକର୍ଣ୍ଣ ହନେ ତୀକ୍ଷ୍ଣ ଶର ।
ନଳ ଧନୁ ତାର ଯେ ହର୍ଙ୍ଗି ପକାଇଲା
ଦକ୍ଷିଣ ଭୁଜ ତାର ଅଙ୍ଗଦ ଧଇଲା ।
ହନୁମନ୍ତ ଧଇଲା ବାମକର ତାର
ପାଦେ ପାଦେ ଧଇଲେ ଅଙ୍ଗଦ ହନୁବୀର ।
ସିଂହ ଗତି କରିଣ ନେଇ କପ୍ଟିଉନ୍ତ
ଖ୍ରିଡ଼ାଳ ଧରିଣ ତୋଳେ ଖ୍ରିହାନ୍ତ ।
ମନ୍ଦକର୍ଣ୍ଣ ଦୈତ୍ୟ ଯେ ରୁଧିର କଲା ବାନ୍ତ
କଣ୍ଠାଗ୍ରତ ପ୍ରାଣ ଯେ ହେଲା ଦୈତ୍ୟଗୋଟି ।
ହସ୍ତ ଗୁଡ଼ ଦେଇ ଦୁଇ ଗୋଡ଼ ଯେ ଧଇଲେ
ହୁଁକାର କରିଣ ଦୈତ୍ୟ ଯେ ଦୁଇଫାଳକଲେ
ଦୁହେଁ ଦୁଇଖଣ୍ଡ ଯେ ଧରିଣ ଧାମନ୍ତ
ସିଂହ ଦୈତ୍ୟ ଉପରେ ନେଇଣ କପ୍ଟଉନ୍ତ ।
ମୃତ୍ୟୁଞ୍ଜବ ବାଜନ୍ତେ ସଜିଲା ରତ୍ନବର
ଚଳାଇଲା ରାକ୍ଷସ ପବନୁ ବେଗେ ଖର ।
ଗୋଡ଼ାଇ ନଳ ଯେ ମାରେ ଖଣ୍ଡା ଘେନ
କଟିଭାଗ ଠାରୁ ତାର ପକାଇଲା ହାଣି ।
ପ୍ରାଣ ଗୁଡ଼ିଣ ସେ ଯେ ମଲା ସିଂହ ବୀର
ଉଲୂକ ନାମରେ ଯେ ଏକଇ ଅସୁର ।
ତାହାକୁ ତିନବୀରେ ମାଇଲେ ପୁଣ ଯାଇ
ଦେଖିକରି ନାରଜ ବନ୍ଦେ କୋପ ହୋଇ ।
ଆନର ବଳେ ଏ କର୍ମ ନୁହଇ ବୋଇଲା
ଆଜର ଯୁଦ୍ଧ ଯେ ହୋଇଲା ଏବେ ଭଲା ।
ନଳହସ୍ତ ଖଡ଼ଗ ସେ ପକାଇ କାଟି
ହନୁମନ୍ତଙ୍କୁ ବଜ୍ର ମୁଷଳରେ ପିଟି ।
ଅଙ୍ଗଦକୁ ଭୁଷଣ୍ଡି ଯେ ମାରେ କୋପଭରେ
ପଞ୍ଚବାଣ ମାଇଲା ସେ ନଳର ଉପରେ ।
ତାହା ଦେଖିଣ ବୀର ରଥେ ଉଠେ ଯାଇଁ
ଉଚ୍ଛୁଡ଼ିଣ ସହସ୍ର ଯେ ପକାଇଲା ଭୂଇଁ ।
ଦୁଇହସ୍ତ ଧଇଲେ ତାର ଅଙ୍ଗଦ ହନୁମନ୍ତ
ହାଲଧରି ନଳ ଯେ ଝିଙ୍କିଲା କୁରିତ ।

ଦୈତ୍ୟର କେଶ ଧରିଣ ପକାଏ ସେ ଭୂଇଁ
ହନୁମନ୍ତ ଅଙ୍ଗଦ ପଡ଼ିଲେ ଦୂରେ ଯାଇ ।
ଦେଖିଣ ଦେବତାଏ ଧନ୍ୟ ଧନ୍ୟ କଲେ
ଆନର ବେଳେ ଏହୁ ନୁହଇ ବୋଇଲେ ।
ଅଙ୍ଗଦ ସଙ୍ଗରେ ହନୁ ଦୈତ୍ୟ ତିନଜଣ
ତୋଳି ପକାଇଲେ ସାମାନ୍ୟ କରେ ଜାଣ ।
ଧନ୍ୟ ତୁହି ହଛଳ କପିର ଅଟୁ ବଳା
ନୋହିଲେ ସମୁଦ୍ରେ କ ପଥର କଲୁ ଭେଳା ।
ଏସନ ପ୍ରଶଂସା ଯେ କରନ୍ତି ସୁରଗଣ
ଏଥୁ ଅନନ୍ତରେ ଗୋ ଦେବୀ ତୁମ୍ଭେ ଶୁଣ ।
ଉଲୂକ ଭୂମିରେ ପଡ଼ିଲା ପୁଣ ଯାଇ
ହନୁମଂତ ଅଙ୍ଗଦ ସହିତେ ମୋହ ଯାଇ ।
ଦେଖିଣ ନଳ ବୀର ମନରେ ହେଲା ରୋଷ
ବୋଇଲା ନଷ୍ଟହେବୁ ମୁହିଁ ଆଜ ହେଲୁ ନାଶ ।
ଏହି ସମୟରେ ଉଠିଲେ ତିନବୀର
ଦୈତ୍ୟଙ୍କୁ ଓଗାଳିଲେ ପବନ କୁମର ।
ପଛରେ ଅଙ୍ଗଦ ଯେ ମାରେ ପୁଣ ନାତେ
ଅଙ୍ଗଦକୁ ପେଲିଦେଲା ପୁଣ ସେହି ଦୈତ୍ୟେ
ପୁଣି ତାର ସୁତ ହଧାଏ ତାକୁ ମାରି
ହନୁମଂତ ମାଇଲା ବିଧୋଡ଼େ କୋପକରି ।
ମୁର୍ଚ୍ଛନା ଫାଟିଣ ଉଲୂକ ପ୍ରାଣ ଗଲା
ଦେଖିଣ ସ୍ଥୂଳଜଙ୍ଘ ଅସୁର ଶସ୍ତ୍ର କଲା ।
ନଳ ଯେ ଓଗାଳିଲା ଆସି ତାକୁ ରଣେ
ହାକିଲେ କପିବୀରେ ବିଷମ ତୀକ୍ଷ୍ଣବାଣେ ।
ହନୁମଂତକୁ ଷାଠିଏ ଅଙ୍ଗଦକୁ ଷୋଳ
ପାଞ୍ଚବାଣେ ମୋହ ଯେ ଗଲା ବୀର ନଳ ।
ରିକ୍ଷକପି ବୀରଙ୍କୁ କାଣ୍ଡେ କାଣ୍ଡେ ମାରି
ହୁଁକାର ହାନଇ ସେ ଯେ କୋପ ମୁଖକରି ।
ପଳାଇଲେ ଋକ୍ଷକପି ବିଷମ ଘାତ ପାଇ
ରକ୍ଷ ରକ୍ଷ ବୋଇଲେ ଯେ ନରହିଲେ କେହି
ଅସୁରଙ୍କୁ ପଠିଆଇ ଗୋଡ଼ାଇ ମାରନ୍ତି
ଏକାକେ ସ୍ଥୂଳଜଙ୍ଘ ଥାଟ ଗଲା ମଣ୍ଡି ।
ମୋହ ତେଜିଣ ହନୁ ଅଙ୍ଗଦ ନଳ ଉଠି
ସ୍ଥୂଳଜଙ୍ଘକୁ ଯାଇ ଆଗରେ ଓଗାଳିଲେଟି ।
ଅସୁର ଶର କରଂତେ ପଛଧୁଆ ଦେଲେ
ତାହାର ଆଗରେ କେହି ରହି ନ ପାରିଲେ

ସୈନ୍ୟ ସମ୍ଭାଳଣ ସେତୁସମର ସାଜନ୍ତି
ନାଗଜର ଘାଆ କେହ୍ନ ସହ୍ନ ନ ପାରନ୍ତି ।
ବଇତର ରଥବର ଚଳେ ଘନ ଘନ
ଭଜଣ ପଳାଇଗଲେ ଶ୍ରୀରାମର ସୈନ୍ୟ ।
ପଞ୍ଚ ଗୁଳଣ କୋଟି ଯେ ଋଷବଳ ମାରି
ଏକାକେ ସ୍ଥୂଳଜଙ୍ଘ ଯେ ଯାଉଅଛି ପେଲି ।
ସୁବଳସ୍ଥା ଗିରିଯାଏ ନେଲା ଘାର ଖେଦ
ଏକା ନାଗଜକରେ ଲକ୍ଷେକପି ଛେଦ ।
ଶ୍ରୀରାମ ବୋଇଲେ ତ ଭାଜଲେ ମୋରବଳ
ପଳାଇଲେ ଯଦ ମୋର ଅଙ୍ଗଦ ନଳ ନୀଳ ।
ଗୁଲ ହେ ବଭୀଷଣ ଗୁଲ ସୁଗ୍ରୀବର
କଅବା ଆପେ ଆସିଛି ଦଶବା କୁମର ।
ଏତେବୋଲି ଶ୍ରୀରାମ ଆପଣେ ସଜ ହୋନ୍ତି
ବେନ ଖୋଣ କଷିଣ ଧନୁରେ ଗୁଣ ଦ୍ୟନ୍ତି ।
ଲକ୍ଷ୍ମଣଙ୍କ ସହ୍ନତେ ସୁଷେଣ ଶତବଳ
ଜମ୍ବେବ ସାରସ ପରସ ନଳ ନୀଳ ।
ଶତବାଳ ଋଷଭ ସମ୍ପାତି ମହେନ୍ଦ୍ର
ଗବଏ ଗବାକ୍ଷ ଆଦ ମହେନ୍ଦ୍ର ଦ୍ବିବଦ ।
ଗନ୍ଧମାଦନ ଯେ ସଞ୍ଜରି ସେନାପତି
ତରୁ ଶିଳ ଧରିଣ ଧାଇଁଲେ ଉଗ୍ରମୂର୍ତ୍ତି ।
ତାରର ପିଅର ଯେ ସୁଗ୍ରୀବଙ୍କ ଶ୍ୱଶୁର
ଋମଣ କାଳଞ୍ଜନ ଦଧିମୁଖ ବୀର ।
ଧାମନ୍ତି ବୀରେ ଯେ ତରୁ ଶିଳ ଧରି
ରାମ ଲକ୍ଷ୍ମଣ ବେନ ଧାଇଁଲେ କୋପକରି ।
ଭାଜିଲା ବଳ ଯେ ପର୍ବତେ ଉଠେ ଯାଇଁ
ସ୍ଥୂଳଜଙ୍ଘ ନାଗଜ ବନ୍ଦେ ଘନକାଇ ।
ସୁବଳ ଶିଖରେ ଯେ ଉଠାଇଲା ଯାନ
ଅଙ୍ଗଦ ହନୁମନ୍ତ ଗୋଡ଼ାଇଛନ୍ତି ପୁଣ ।
ଦେଖିକରି ଋଷକପି ଧାଏଁ କୋପମୂର୍ତ୍ତି
ଆଗରେ ଲଗାଳଲେ ପଚଶ ଯୂଥପତି ।
ଅସୁରଙ୍କୁ ଦେଖି ତରୁ ଶିଳ ସେ ମାରନ୍ତି
ଅଷ୍ଟସେହ୍ନା ସହ୍ନତରେ ସୁଗ୍ରୀବ ପ୍ରଭୃତି ।
ଋଷ କପିବଳ ଯେ ଭିତରେ ଗଲେ ପଶି
ତରୁ ଶିଳ ମାରି ସେ କଞ୍ଚିତେ ବନାଶି ।
ହନୁ ଅଙ୍ଗଦ ଯେ ଦୁହେଁ ଭଙ୍ଗୁଣି ପାଇଥିଲେ
ତୁମକୁ ଦେଖିକରି ସେ ପାଲଟି ଧାଇଁଲେ ।

ନଳ ନୀଳ ସହ୍ନତେ ଯେ ଅଷ୍ଟ ସେନାପତି
ଆବୋରି ସୁଗ୍ରୀବର ଯେ ଉଗାଳଲେ ଧାତି ।
ରାବଣର ପୁତ୍ର ଯେ ବନ୍ଧେ ଅକ୍ଷୟ ଶବାଣ
ଛେଲ ଚନ୍ଦ୍ର ଗଦା ଯେ ପେଶେ ଗରୁଡ଼ବାଣ ।
ଭୁଷଣ୍ଡି ମୁଦ୍‌ଗର ମୁଷଳ କରବାଳ
ଅଦ୍ଧଶ୍ଚାମେ ବନ୍ଧଇ ସେ ରାବଣ ଦୁଲାଳ ।
ଭେଟେସୈନ୍ୟଗୋଠାକୁଯେ ନରେଖବଗଇଲା
ପର୍ବତ ଉପରେ ଆଣି ରଥବର କଲା ।
ଶ୍ରୀରାମକୁଳେଡ଼େ ସେଯେ ଆନରେକାର୍ଯ୍ୟନାହିଁ
ଆଗରେ ଉଗାଳଲେ ଯେ ରଘୁକୁଳସାଇଁ ।
ଲକ୍ଷ୍ମଣ ବଭୀଷଣ ଯେ ବନ୍ଧଲେ ନାରାଜ
ଦେଖିଣ ନବାରେ ଯେ ରାବଣ ତନୁଜ ।
ତିନଙ୍କର ଶସ୍ତ୍ରକୁ ନବାରେ ଏକା ଜଣେ
ଘଡ଼ିଏ ପରିଯନ୍ତେ ବାଜଲା ତହିଁ ରଣେ ।
ଗଦା ଏକ ଧରିଣ ବଭୀଷଣ ମାରି
ଦଇତ ଛେଦିଲା ତାହା ବାବଲ ଶର କରି ।
ବଭୀଷଣକୁ ଦେଖିଲା ସ୍ଥୂଳଜଙ୍ଘ ବୀର
ତୁମେ ତୁମେ ନାଗଜ କଲକ ପ୍ରହାର ।
ଏହ୍ନାର ସକାଶେ ଯତି ସଗୋତ୍ର କଲା ନାଶ
ରାବଣ ମରଇ ଲଙ୍କେ ହୋଇବ ନରେଶ ।
ଏତେ କହିଣ ବୀର ଯେ କରଇ ସଂଗ୍ରାମ
ଦେଖିଣ ଆଗଭର ହୋଇଲେ ଶ୍ରୀରାମ ।
ବଭୀଷଣକୁ ପଛକରି ହୋଇଲେ ସେ ଆଗ
କୋପେ ଶସ୍ତ୍ରଧର ଯୁଦ୍ଧ କଲେ ଦୈତ୍ୟ ସଙ୍ଗ ।
ଦେଖିଣ ସ୍ଥୂଳଜଙ୍ଘ ମାଇଲାକ ଶୂଳ
ଦଶରଥି ବାଣେ ଛେଦିଲେ ରଘୁକୁଳ ବାଳ ।
ଶାହସେ ନବାରିଣ ଦିବ୍ୟାଶସ୍ତ୍ର କଲେ
ସ୍ଥୂଳଜଙ୍ଘ ନବାରିଲା ଅସୁରଶରରେ ।
କୋପେ ଦାଶରଥି ମାଇଲେ କ ନଶର
ବାବଲ ଶରେ ତାହା ନବାରି ଅସୁର ।
କୋପେ ସ୍ଥୂଳଜଙ୍ଘ ଗଦାଏ ପୁଣ ମାରି
ଅନ୍ତରରେ ତାହାକୁ ଶ୍ରୀରାମ ନବାରି ।
ସେ ଶରକୁ ନବାରି ପେଷିଲେ ଦଶବାଣ
ଦୁହ ଦେଖି ନବାରିଲା ରାବଣ ନନ୍ଦନ ।
ଦେଖିଣ ରାମଚନ୍ଦ୍ର ମନେ ମନେ ଗୁଣି
ଗରିଷ୍ଠ ଦାନବ ଏ ଅଟଇ ମହାବଳୀ ।

ଇନ୍ଦ୍ରଜିତ ସମାନରେ ଅଟେ ବଳସାର
କୋହଲେ କ ସୈନ୍ୟଖେଦିଆସେ ଏତେଦୂର
ଏମନ୍ତ ଭାଳି ମନରେ ବିନ୍ଧୁଛନ୍ତି ଶର
ଏକକୁ ଆରେକ କେ ବୋଲନ୍ତି ମାର ମାର ।
ଅଶ୍ୱତ୍ଥାମା ସମର କରନ୍ତି ବେନି ଯତି
ସ୍ୱର୍ଗରେ ଦେବତାଏ ଦେଖିଣ ପ୍ରଶଂସନ୍ତି ।
ବୋଲନ୍ତି ଧନ୍ୟଯୋଦ୍ଧା ଅଟନ୍ତି ବେନିଯଶୀ
ସମାନ ହେବାକୁ ନାହିଁ ଏ ତିନି ଧରଣୀ ।
ଏକୁ ଏକ ଶର ଚଡେ ମୁଷଳ ସମାନେ
ଗଦାଖଣ୍ଡ ପରିଘ ଶବଦ ଗରୁ ଟାଣେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ରାଘବ
ଅସୁରଙ୍କର ସଙ୍ଗରେ ଅନେକ ଯୁଦ୍ଧ କଲେ ।
କୋପେ ରଘୁନାଥ ଯେ ପେଷିଲେ ଘାତଶର
ଚନ୍ଦ୍ରଲୁକ ନାରାଚ ଶବଦ ଗୁରୁତର ।
ସ୍ଥୂଳଜଙ୍ଘ ଉପରେ ପଡ଼ିଲା ଯାଇଁ ଶର
ଘାଆ ପାଇଲା ସେ ଯେ ରାବଣ କୁମର ।
କୋପରେ ସ୍ଥୂଳଜଙ୍ଘ ବୋଲଇ ବଚନ
ଆଜ ମୁଁ ତୋର ଯତରେ ନେବଇ ଜୀବନ ।
ଏମନ୍ତ ବୋଲିଣ ବୀର ତିନିବାଣ ମନ୍ତ୍ରି
ରାମଚନ୍ଦ୍ର ଉପରକୁ ବିନ୍ଧିଲା ସେ ସନ୍ଧି ।
ଘୋରନାଦେ ନାରାଚ ବେଗେ ଚଳିଗଲା
ଶ୍ରୀରାମ ଉପରେ ଯାଇଣ ପଡ଼ିଲା ।
ଘାଆ ପାଇ ରଘୁନାଥ ବୋଲନ୍ତି ବଚନ
ସାଧୁରେ ଅସୁର ତୁମ୍ଭ ଧନ୍ୟ ତୋ ଜୀବନ ।
ବିଭୀଷଣ ଲକ୍ଷ୍ମଣ ବିନ୍ଧୁଛନ୍ତି ଶର
ତିନିଙ୍କ ଯୁଝଇ ଏକା ରାବଣ କୁମର ।
କୋଟି କୋଟି ନାରାଚ ବିନ୍ଧୁଛନ୍ତି ଇନ୍ଦ୍ର
କେହି କାହାକୁ ତହିଁରେ ଜଣନ୍ତା ସେ ନୋହି
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜମ୍ପଇ ଶର ଘାତେ
ବିବସରେ ଭଜମାନ ଘୋଟଇ ଜଗତେ ।
ଅନେକ ମାୟା ଯୁଦ୍ଧ ସ୍ଥୂଳଜଙ୍ଘ କଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଶରରେ ନିରୋଧିଲା ।
ମାୟାକୁ ମାୟା ଜାଣନ୍ତି ରଘୁକୁଳ ସାଇଁ
ଶର ପ୍ରତିଶର କରି ନିବାରି ପକାଇ ।
କୋପଭରେ ବୋଲନ୍ତି ରାକ୍ଷସ ତୁରେ ମୂର୍ଖ
ଲଙ୍କାଯାଇ ଆଜ କ ଭେଟିବୁ ଦଶମୁଖ ।

ଏମନ୍ତ ସମୟରେ ଲକ୍ଷ୍ମଣ କ୍ରୋଧ ମନ
ଅକ୍ଷୟ କୋଣକୁ ସେ ଧଇଲେ ବହନ ।
ସୁମରି ନାରାଚ ବିନ୍ଧିଲେ ଟାଣିକରି
ସାତଲକ୍ଷ ମତ୍ତହସ୍ତୀ ପକାଇଲେ ମାରି ।
ବାରଲକ୍ଷ ଅଶ୍ୱ ଏକାବେଳେ ନାଶକରି
ଚଉଦଲକ୍ଷ ପଦାତି ସମରେ ନାଶ କରି ।
ତିନିକୋଟି ସେନାପତି ହାରିଲେ ତହିଁ ପ୍ରାଣ
ଅକ୍ଷୟ କୋଣ ଲକ୍ଷ୍ମଣ ବିନ୍ଧନ୍ତି ଘନ ଘନ ।
ରକ୍ତନଦୀ ଗୋଟାଏ ବହିଲା ସେଠାରେ
ମାଳ ମାଳ କବନ୍ଧ ନାଚନ୍ତି ହରଷରେ ।
ସାତଡ଼ାକ ବଢ଼ିଲେ ବହିଲା ଉକତ
ମଧ୍ୟରେ ରକ୍ତନଦୀ ଦ୍ୱଇପାଶ ଥାଟ ।
ବହିଲା ରକ୍ତନଦୀ ସିନ୍ଧୁରେ ମିଶିଲା
ଘଡ଼ିକେ ଲକ୍ଷ୍ମଣ ଏତେକ ସୈନ୍ୟ ନାଶକଲା
କ୍ରୋଧରେ ଧନୁର୍ବେଦ ଶ୍ରୀରାମ ସୁମରି
ଅଗ୍ନିଶର ବାହାର କଲେ ରାବଣାରି ।
କୋପରେ ରାମ ଯହୁଁ ଅଗ୍ନିଶର କଲେ
ରଥ ସହିତେ ଦଇତେ ଜଳି ପୁଣ ଗଲେ ।
ପଡ଼ିଲା ସ୍ଥୂଳଜଙ୍ଘ ପଡ଼ିଲେ ଦୈତ୍ୟବଳ
ଗୋଡ଼ାଇ ଲକ୍ଷକପି ପିଟନ୍ତି ଉରୁଶିଳ ।
ଥୋକେ ମଲେ ଥୋକେପୁଣ ପଳାଇଣଗଲେ
ଲଙ୍କାଗଡ଼ ଭିତରେ ଯାଇଣ ପଶିଲେ ।
ଗଡ଼ଦ୍ୱାରୁ ମର୍କଟ ଭାଲୁ ବାହାରନ୍ତି
ସୂର୍ଯ୍ୟ ଅସ୍ତ ହୋଇଲା ଯେ ଆଚ୍ଛାଦିଲା ରାତି ।
ରାମ ଲକ୍ଷ୍ମଣ ବାହୁଡ଼ି ଘେନି ସୈନ୍ୟବଳ
ଦେବନଦୀ କୂଳରେ ହେଲେ ଯାଇଁ ଠୁଳ ।
ଯୂଥପତି ସେନାପତି ମଲ୍ଲ ମହାମଲ୍ଲ
ଖାଲ ଖଣ୍ଡା ସବୁ ଯେ କଲେ ସମତୁଲ ।
ଛାଉଣି ଲଗାଇ ସୈନ୍ୟବଳ ସ୍ନାନ କଲେ
ଯୂଥପତି ସୈନ୍ୟ ମଲ୍ଲ ମହାମଲ୍ଲ ରୁଳେ ।
ସୁଗ୍ରୀବର ବିଭୀଷଣ ସେନାପତି ଘେନି
ଦେବ ନଦୀରେ ସ୍ନାହାନ କଲେ ସର୍ବେ ପୁଣି
ସ୍ନାନ ସାରି ଶ୍ରୀରାମ ଲକ୍ଷ୍ମଣ ସନ୍ଧ୍ୟା କରି
ବିଭୀଷଣଙ୍କୁ ତହିଁ ପୁଚ୍ଛନ୍ତି ଧନୁଧାରୀ ।
ତୁ ହୋ ବିଭୀଷଣ ଯେ ବୁଝିଲୁ କିସ କଥା
ଅତି କୋପେ ଏହାକୁ ପେଷିଲା ଦଶମଥା ।

ଧନ୍ୟ ଧନ୍ୟ ଦୈତ୍ୟ ସେ ଅଇଲା ଅତିଦୂର
ରଥ ଟେକି ଆଣିଲା ସୁବେଳଯୁ ଉପର ।
କସ ନାମ ଅଟେ ତାର ସେ କାହାର ସୁତ
ଶୁଣିକରି ବିଭୀଷଣ ଯୋଡ଼େ ବେନିହସ୍ତ ।
ଶୁଣ ଦେବ ଶ୍ରୀରାମ ହେ ବ୍ରହ୍ମାଣ୍ଡ ଠାକୁର
ଯାର ନାମ ସ୍ଥୂଳଜଙ୍ଘ ଦେଇଛି ଦଶଶିର ।
ଏ ସ୍ଥୂଳଜଙ୍ଘକୁ ଦେବ କ୍ଷତ୍ରୀ ସମ ନାହିଁ
ଲଙ୍କାର ଭିତରେ ଦେବ ଏ ଥାନ ଅଟଇ ।
ରାବଣ ତନୟ ଇନ୍ଦ୍ରମଣି ଗର୍ଭ ଜାତ
ମାଇକା ଅଜା ଏହାର ରକ୍ତବୀର୍ଯ୍ୟ ଦୈତ୍ୟ
ଇନ୍ଦ୍ରଜିତ ସମାନେ ଏ ଅଟେ ଧନୁର୍ଦ୍ଧର
ବ୍ରହ୍ମଶର ସମାନେ ଯାର ଏକୁ ଏକ ଶର ।
ଦେବ ଦାନବେ ଯେ ନ କଲେ ତାକୁ ନାଶ
ତୁମ୍ଭେ ତାକୁ ମାରିଲ ଦଶରଥ ଶିଷ୍ୟ ।
ଏ ପୁତ୍ରକୁ ରାବଣ ଅନେକ ଆଶା କରି ଥିଲା
କ୍ଷତ୍ରି ପଣ ଦେଖି ଯାକୁ ସଂଗ୍ରାମେ ପେଶିଲା ।
ଯହୁଁ ସେ ଇନ୍ଦ୍ରଜିତ ଯିବ ଲଙ୍କ ରଣେ
ଜକରବାବୋଲି ସ୍ଥୂଳଜଙ୍ଘକୁ ପେଶିଲାରାବଣେ
ତୁମ୍ଭେଦେବ ତାହାକୁ ଯେ କଞ୍ଚିଲ କଲନାଶ
ଆଉ ଗ୍ଳବ୍ଦନ ରହେ ଦୈତ୍ୟର ସାହସ ।
ଶାରବାହୁ ମହାରାବଣ ଯେବେ ମରି
ତେବେ ଏକା ରାବଣ ଯୁଝିବ ସଙ୍ଗେ ତୋର
ଆମ୍ଭମାନଙ୍କୁ ଦେବ ଗଣନା ମୋର ନାହିଁ
ଏହି ପ୍ରାଏ ବିଭୀଷଣ କହିଲା ମଣାଇ ।
ଶୁଣିଣ ରଘୁନାଥ ହେଲେ ହସ ହସ
ନିଜ ଜବରେ ଯାଇଣ ହେଲେ ପରବେଶ ।
ଶ୍ରୀପଦ୍ମର ପଖାଳିଲେ ଯେ ଭିତରକୁ ଗଲେ
ଲକ୍ଷ୍ମଣ ଫଳମୂଳ ଆଣିଣ ପରଷିଲେ ।
ମନୋହ୍ନ ସମ୍ପୂର୍ଣ୍ଣରେ ଆଚାମ୍ବନ ସାରି
ଗୁଆ କୋଳ ଫଳକୁ ସାରନ୍ତି ରାବଣାରି ।
ଲକ୍ଷ୍ମଣ ସହିତରେ ସେନା ଯୂଥପତି
ଫଳମୂଳ ମନୋହ୍ନ ସାରିଲେ ତତ୍ପିତ ।
ଯେ ଯାହାର ବସାରେ ରହିଲେ ତରୁ ଶିଷି
ନିଦ୍ରାରେ ଅଚେତନ ହୋଇଲେ ରଘୁଶିଷି
କୁମ୍ଭକର୍ଣ୍ଣ ସ୍ଥଳରେ ଯତ୍ନେ ସେ ସାଇଁ
ଧନୁଶର ଘେନି ଜଗି ବସେ ଲକ୍ଷ୍ମଣ ତହିଁ ।
ନୀଳ ଆଗୁଆଣି ରଖିଲେ ସେ ପଖା
କାଳଣା ବଜାଇ ବିଭୀଷଣେ ବୁଲେ ଏକା ।
ସୁଗ୍ରୀବର ରଜା ରଖେ ସିଂହଦ୍ୱାର
ପଶ୍ଚିମ ଦ୍ୱାରେ ରହିଲା ବାଳିର କୁମର ।
ତାହାଙ୍କ ପାଖ ରଖଇ ଜାମ୍ବୁବ ମନ୍ତ୍ରୀ ରାଏ
ସେନା ଯୂଥପତି ନିଶ୍ଚିନ୍ତ ହୋଇ ଶୁଏ ।
ରକ୍ଷ କପିବଳ ଯେ ନିଦ୍ରାରେ ଅଚେତନ
ଏଥୁ ଅନନ୍ତରେ ଶୁଣ ବିଧାନ ଯେ ପୁଣ ।
ଶ୍ରୀରାମ ସୈନ୍ୟ ଯହୁଁ ନିର୍ଜନ ପୁଣ ହେଲେ
ଦେବୀଙ୍କ ଘେନ ବାସେନ ସଙ୍ଗେ ଚଳଗଲେ
ରଣ ଭୂମିରେ ସେ ହେଲେ ପରବେଶ
ଭକ୍ଷିଲେ ଦୈତ୍ୟବଳ ମନରେ ହରଷ ।
ମନର ସନ୍ତୋଷରେ ଭୋଜନ ବେଗେ କଲେ
ହସ୍ତୀ ଘୋଡ଼ା ପାଦାନ୍ତ ସମସ୍ତ ଭକ୍ଷିଲେ ।
ଋକ୍ଷକପି ବେଢ଼ି ଯେତେ ମାରିଥିଲେ ଦୈତ୍ୟ
ଗଣ୍ଡିରେ ମୁଣ୍ଡ ଲଗାଇ କଲେ ସେ ସଳଖ ।
ଦଳ ହେବା କପିଙ୍କ ସଳଖ କରି ରଖି
ରୁଧିର ପାନ କରି ସେ ପର୍ବତକୁ ଆସି ।
ସ୍ୱର୍ଗରୁ ଶୁକ୍ରଦେବ ନିଶାରେ ଅଇଲେ
ମୃତ୍ୟୁ ସଞ୍ଜୀବନୀମନ୍ତ୍ର ରଣଭୂମିରେ ଉଚ୍ଚାରିଲେ
ଅମୃତ ସିଞ୍ଚିଲେ ସେ ତିନଥର କରି
ଜୀବପାଇ ଋକ୍ଷକପି ଉଠିଲେ ଗୋଳକରି ।
ଗର୍ଭୁ ଶତେ ଗୁଣରେ ହେଲା ତାଙ୍କର ବଳ
ପନ୍ତପନ୍ତହୋଇଣ ଦେବନଗରେ ହେଲେଠୁଳ
ଖାଲି ଖଣାରେ ଚକ୍ଷୁ ଲଗାଇ ସ୍ନାନକଲେ
ପର୍ବତକୁ ଯାଇଣ ଫଳମୂଳ ସେ ଭୁଞ୍ଜିଲେ ।
ସୈନ୍ୟର ସଙ୍ଗେ ପୁଣ ସୁଖେ ନିଦ୍ରା ଗଲେ
ଶୁକ୍ରଦେବ ସ୍ୱର୍ଗପୁରେ ଯାଇଣ ବିଜେକଲେ
ତେତେବେଳେ ହୋଇଲା ଯେ ପାଞ୍ଚଘଡ଼ି ରାତି
ବିଶାଖା ଅସୁରୀ ସଙ୍ଗେ ପାଞ୍ଚଜଣ ଘେନିଛନ୍ତି ।
ରାବଣ ମନ୍ଦିରକୁ ଆସିଣ ସେ ଥିଲେ
ସ୍ଥୂଳଜଙ୍ଘ ମାରିବାର ଖବର ଶୁଣିଲେ ।
ଲେଉଟି ଅଶୋକ ବନରେ ହେଲେ ଯାଇଁ
ବୋଇଲେ ସୀତାଙ୍କୁ ଗୋ ଶୁଣ ଏବେ ବୁଝି ।
ତେରବ ଦିନ ଆଜ ସମର ହୋଇଲା
ଆଜ ଯୁଦ୍ଧେ ରାବଣର ସାନ ପୁତ୍ର ମଲା ।

ଶୁଣିକରି ଜାନକୀ ବିଜଟା ତୋଷ ହେଲେ
ଲକ୍ଷ୍ମଣକୁ ମାରଥିଲା ଛପୁତ୍ର ତା ମଲେ ।
ରାବଣ ନଗ୍ରେ ଚମକ ପଡ଼ିଲାକ ଭଲେ
ସ୍ଥୂଲଜଙ୍ଘ ମିଶିକଣ୍ଠ ଛଅପୁତ୍ର ମଲେ ।
ତାହାଙ୍କର ଛତ ସହସ୍ର ନାରୀ ଯେ ଶୁଣିଲେ
ସ୍ୱାମୀଙ୍କର ମରଣ ଶୁଣି ସର୍ବେ ବାହାରିଲେ ।
କ୍ଷୀଣବସ୍ତ୍ର ପିନ୍ଧିକରି ହେଲେ ସେ ଭୂଷଣ
ସର୍ବେ ଏକମନ ହୋଇ ବାହାରିଲେ ଜାଣ ।
ବଡ଼ହୁଡ଼ ହୁଳା ଲଗାଇ ଚଳିଲେ ଦାଣ୍ଡରେ
ପୂର୍ବ ଦ୍ୱାର ବାଟେ ଗଲେ ସମୁଦ୍ର କୂଳରେ
ସମୁଦ୍ରକୁ ଓଲଗି ହେଲେ ସର୍ବ ନାରୀ
ବାରିଣଧି ସୁମରି ଝାସିଲେ ସୁନ୍ଦରୀ ।
ଗୁହ୍ଣ ପ୍ରାଣସର୍ବେ ସ୍ୱର୍ଗପୁର ଗଲେ
ସ୍ୱାମୀମାନଙ୍କର ସଙ୍ଗେ ସ୍ୱର୍ଗରେ ବସିଲେ ।
ଏଥୁ ଅନନ୍ତରେ ଉମା ଶୁଣ ଯେ ବିଧାନ
ସ୍ୱର ଅଣାଇଲା ଦଶାନନ ସନ୍ଧାନ ।
ସ୍ଥୂଲଜଙ୍ଘ କୁମର ତୋ ରଣରେ ପଡ଼ିଲା
ଉଲୂକ ମହାକର୍ଣ୍ଣ ଚନ୍ଦ୍ରାଜିତ ମଲା ।
ସିଂହାସୁର ଜଟାସୁର ମଲେ ଛଡ଼ବୀର
ରଥଗଜ ଅଶ୍ୱ ଯେ ଅନେକ ଅସୁର ।
ଶୁଣିଣ ଦଶାନନର ଉଡ଼ିଲା ସାହସ
କାଳସର୍ପ ମୁଖୁ ଯେହ୍ନେ ବହଇ ନିଃଶ୍ୱାସ ।
ଘଡ଼ିଏ ପର୍ଯ୍ୟନ୍ତେ ମଉନ ହୋଇଲା
ଆସ୍ଥାନରୁ ଉଠିକରି ଅନ୍ତଃପୁର ଗଲା ।
ମୃଦୁସ୍ୱର ପଟହ ମଣାଇ ଘେନି ଗଲେ
ରାଣୀ ମହାଦେଈମାନେ ଗୁମ୍ଫରେ ମିଳିଲେ ।
ବସ୍ତ୍ରସ୍ନତହେ ଘରେ ହୋଇଲେ ଅବକାଶ
ମନ୍ଦୋଦରୀ ରାଣୀଙ୍କି ସେ ହକାରିଲା ପାଶ ।
ତୋଠାଉର ଜଗଣ ମର୍କତ ମଣ୍ଡପ
ରାଣୀ ମହାଦେଈ ଘେନି ବିଜେ ଲଙ୍କ ନୃପ ।
ଲୋକଙ୍କୁ କାଢ଼ାଇ ନେଇ ଏକାନ୍ତ ଭଲେଣି
ପାଟ ମହାଦେଈଙ୍କ କହଇ ବଂଶପାଣି ।
ବୋଇଲା ସଖି ମୁଁରେ କରିବି ପୁଣ କିସ
ଶ୍ରୀରାମ ଲକ୍ଷ୍ମଣ ମୋର ବଂଶକଲେ ନାଶ ।
କୁମ୍ଭକର୍ଣ୍ଣ ପ୍ରାଏକ ପଡ଼ିଲା ମୋର ଭାଇ
ଏକା ସିଂହ ଭଡ଼ରେ ଜଗତ ପାରେ ଦହି ।

ତପସ୍ୱୀର ହାତେ ଗୋ ତେଡ଼େବୀର ମଲା
ଇନ୍ଦ୍ରଜିତ କୁମର ସହିତେ କ୍ଷୟ ଗଲା ।
ସୁରଗଣେ ଯାହାର ନ ମେଣ୍ଟନ୍ତି ଆଜ୍ଞା
ତିନିପୁରେ ଯାହାର ବିଦିତ ପ୍ରତିଜ୍ଞା ।
ଅକ୍ଷୟକୁମର ପୁଣ ଜମ୍ବୁମାଳି ମଲା
ଅକଣ୍ଟକ ରାଜ୍ୟ ମୋର ଏବେ କ୍ଷୟେ ଗଲା ।
ପୁତ୍ରଯାକ ମଲେ ତେରପୁତ୍ର ଛନ୍ତି ଏବେ
ଦୁଇଶତ ନାତିଛନ୍ତି ଆଉ ମଲେ ସର୍ବେ ।
ପଞ୍ଚାଶକୋଟିସେନାପତିରୁ ଚବିଶକୋଟିମଲେ
ରଥିମାହନ୍ତ ଅଠରକୋଟି କ୍ଷୟ ଗଲେ ।
ହସ୍ତୀମଲେ ଚବିଶ ଲକ୍ଷ ଅଶ୍ୱ ନବକୋଟି
ତିନି ଲକ୍ଷ ନାଶ ଗଲେ ସାରେଣୀ ଓଟଟି ।
ବାଜନ୍ତରି ପଡ଼ିଲେ ଚବିଶ ଖଉଣି
ଚଉଦ ପଦ୍ମ ମଲେ ଯେ ପାହାନ୍ତ ମୋରପୁଣି
ବଧୂମାନେ ମୋର ମଲେ ଷାଠିଏ ଲକ୍ଷ ପୁଣ
ନାତୁଣୀ ବଧୂ ମଲେ ତେର ଲକ୍ଷ ଜାଣ ।
ଦାସୀଧାଈ ପରିବାରୀ ଅଶୀଲକ୍ଷ ମଲେ
ଭାଇବଧୂ ଲକ୍ଷେ ଦାସୀ ଦୁଇଲକ୍ଷ ଗଲେ ।
ପୁତୁରାବଧୂ ମୋର ମଲେ ବାରଲକ୍ଷ
ଜୁଆଇଁ ମଲେ ଦୁଇ ସହସ୍ର ଏକଶତ ।
ଝିଆରୀ ଜୁଆଁଇରୁ ଯେ ମଲେ ସହସ୍ରେକ
ଝିଅ ଝିଆରୀ ମଲେ ତିନିସହସ୍ର ଦୁଇଶ ।
ଏତେସୈନ୍ୟ ଚଉଦ ଦିନରେ ନାଶଗଲେ
ଯେ ଯାହାର ବଂଶ ଘେନି ସ୍ୱର୍ଗକୁ ଚଳିଗଲେ
ଏକା ହୋଇ ରହିଲି ଗୁଡ଼ିଗଲେ ସମସ୍ତେ
ସୀତା ଫେଡ଼ି ଦେବାକୁନବଲେ ମୋରଚିତ୍ତେ
ମରିବି ପଛେ ସ୍ୱର୍ଗୀରେ ହୋଇବି ନିଜନ
ଦେବତାଏ ଖଟାଇ ହୋଇବେ ପଛେ ପୁଣ
ଯେଯାହାଇଦେଇଛନ୍ତିଗୋସମସ୍ତେଘେନିଯିବେ
ପାରିବାର ପଣ ମୋର ଦଣ୍ଡକେ ଲୁଚ୍ଛଇବେ
ଅବଶ୍ୟ ଯେଉଁ ଦିନରେ ହୁଅନ୍ତ ମରଣ
ଏତେବେଳେ ମଲେମୋତେ ହୋଇବକାରଣ
ପୁରାଣରେ ନାମ ମୋର ରହିବରେ ସଖୀ
ରାମାୟଣ ଯୁଦ୍ଧକୁ ସମସ୍ତେ ପରଶଂସି ।
ରାବଣ ଯେ ଶ୍ରୀରାମ ଭାରିଯା ହେରିକଲା
ଶ୍ରୀରାମଙ୍କ ହସ୍ତେ ମରି ସ୍ୱର୍ଗପୁର ଗଲା ।

ମନେ ବିଚାରଇ ବାସୁଦେବ ଅବା ରାମ
ଏହାଙ୍କର ହସ୍ତେମଲେବୈକୁଣ୍ଠେ ମୋରସ୍ଥାନ
ନୋହିଲେ ମୋତେ ଏଥିରେ ରଣେକେହସରି
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଋଷକପି ଧରି ।
ଗଲୁ ମର୍କଟକୁ ଦେଖି ଡରିଲେ ଅସୁର
ଏ ବଡ଼ ବିଚିତ୍ର କଥା ସଂଶୟ ମନେ ମୋର
ଗଲା ବିଭୀଷଣ ଛାଡ଼ିଗଲା ମୋତେ ଏବେ
ତାହାର ହେତୁରୁ ମୋର ନାଶଗଲେ ସର୍ବେ
ଶତ୍ରୁରେ ଶରଣ ପଶି ଛେଦ ଭେଦ କହି
ତାରଠାରୁ ଶୁଣି ରାମ ମୋର ଗୋପ ଦହି ।
ଜାନକୀ ହୋଇଲା ମୋତେ ଅନ୍ତକୋଷ୍ଠବ୍ୟାଧି
ଅକାରଣେ ନାଶଗଲା ଏତେକ ସମୃଦ୍ଧି ।
ସ୍ଥୂଳଜଙ୍ଘ ଋଷିକ ମୁଁ ପେଷିଲି ଭୁବନେ
ସେହି ମନ୍ତ୍ର ଶୁଣି ଦେଖ ରାମଶର ଘାତେ ।
ବୁଦ୍ଧି ଏବେ ବଶୁନାହିଁ କରିବ ମୁଁ କିସ
ଅନ୍ଧାର ଦିଶୁଅଛି ମୋତେ ଦଶଦିଶ ।
ଏବେ କଥା ଏକ ବିଚାରୁଛି ମୋର ମନେ
ଋଷିସମ ନାହିଁ ମୋତେ ଚଉଦ ଭୁବନେ ।
କାଲି ମୁହିଁ ଚତୁରଙ୍ଗ ବଳ ଘେନିଯିବି
ରାମ ଲକ୍ଷ୍ମଣ କପିସବୁ ସଂହାରିବି ।
ମାରି ନ ପାରିଲେ ଝାସ ଦେବି ମୁଁ ରଣରେ
ଏକଥା ଶୁଣ ସଖୀରେ କହିଲି ତୋ ଆଗରେ
ମନ୍ଦୋଦରୀ ବୋଲେ ତୁମ୍ଭେ ଆପେତ ପ୍ରଶଂସ
ବିଭୀଷଣ ଭାଇକ ବାହାର କଲ ଦେଶ ।
ନିଆଶା ହୋଇ ବାବୁ ସେ ଶ୍ରୀରାମ ଆଶ୍ରେକଲା
ବିଷ୍ଣୁଙ୍କୁ ସେ ଆଶ୍ରେକରି ଅମର ହୋଇଲା ।
ଦିଅରି ମୋ ଶ୍ରୀରାମଙ୍କୁ କରିଛି ଭରସା
ଅମର ହୋଇବ ଏବେ ନିକଟାର ପିତା ।
ଲଙ୍କାଗଡ଼େ ନୃପତି ହୋଇବାର ମୂଳ
ବିଷ୍ଣୁଙ୍କରଠାରେ ତାର ମନ ଯେ ମିଳ ।
ମନ୍ଦୋଦରୀ ମୁଖରୁ ରାବଣ ଶୁଣିଲା
ମନରେ ସେ ଗହ୍ଁକରି ବିସ୍ମର ଉଠିଲା ।
ଏକଥା ଶୁଣି ରାବଣ ଭିତରୁ ଅଇଲା
ସୁବର୍ଣ୍ଣ ଜଗତୀରେ ଯାଇଁଣ ବିଜେକଲା ।
ଚଉଦ ଦିନ ଯୁଦ୍ଧ ଏଠାରୁ ସରିଲେ
ପାର୍ବତୀଙ୍କ ଆଗେ ଏହା ଈଶ୍ୱର କହିଲେ ।

ଲଙ୍କାକାଣ୍ଡ ଏଥିରୁ ଅର୍ଦ୍ଧେକ ହେଲା ଶେଷ
ଶ୍ରୀରାମେ ଶରଣ ମୁଁ ଯେ ବଳରାମ ଦାସ ।
ଜାନକୀ ବିଳାସ ଯେ ଅଟନ୍ତି ମୋର ମୂଳ
ଚଉଦଖଣ୍ଡ ଯୁଦ୍ଧକଳି ମୁହିଁ ଠୂଳ ।
ଆଜ ତେର ଦିନରେ ରାବଣ ନାଶଯିବ
ତେବେ ଦେବତାଙ୍କର ହେବ ଶୁଭଶୁଭ ।
କହନ୍ତି ଗଉରୀ ଶୁଣ ହେ ତ୍ରିଲୋଚନ
ମନ୍ଦୋଦରୀ ଜାଣିଥିଲା ଶ୍ରୀରାମ ନାରାୟଣ ।
ରାବଣର ଆଗରେ ନ କହିଲା ସେହି
ଶଙ୍ଖଚକ୍ରଧାରୀ ଯେ ଅଟନ୍ତି ରଘୁସାଇଁ ।
କହନ୍ତି ଉମାପତି ଶୁଣ ହେ ଗଉରୀ
ମନ୍ଦୋଦରୀ ଦୋଷ ତୁମ୍ଭେ ବାଛୁଛ କିପରି ।
ଯେଉଁ କାଳରେ ରାବଣ ଜନ୍ମହିଁ ଲଭିଲା
ଷଠୀଯାଇ ରାବଣର କପାଳେ ଲିହିଥିଲା ।
ଜନକ ନନ୍ଦିନୀ ଅଟେ ଦେବୀ ସୀତା
ସୀତାଙ୍କୁ ହରିଲେ ରାବଣ ମୃତଗତା ।
ଆରେକ କପାଳରେ ଲେଖିଦେଲେ ବିହି
ରାମହସ୍ତେ ମଲେ ଯେ ବୈକୁଣ୍ଠ ପୁର ଯାଇ ।
ରାମ ନାରାୟଣ ବୋଲି ରାବଣ ଜାଣିଅଛି
ସୀତାଙ୍କୁ ହରି ଆଣିଲା ଦଣ୍ଡକାରୁ ବାଛି ।
ସେହିଦିନଠାରୁ ମନ୍ଦୋଦରୀ ବୁଝାଇଲା
ଦଶବାର ସୁତ ତାର କଥା ନ ମାନିଲା ।
ବୋଇଲା ମୁହିଁ ଏଥିରେ ଅଟେ ଋଷିବର
ମୋତେ କେ ଋଷିସମ ଅଛି ଏ ପୃଥ୍ୱୀର ।
ମନ୍ଦୋଦରୀ ବୋଇଲା ଶୁଣ ହେ ଲଙ୍କପାଣି
ନାରଦ ଋଷି ମୋତେ କହିଛନ୍ତି ପୁଣି ।
ସୀତାଙ୍କୁ ହରିଲେ ଯେ ରାବଣ ମରିବ
ସୀତା ନ ହରିଲେ ଅମର ହୋଇଯିବ ।
ସେକଥାକୁ ହେତୁକରି ଶୁଣହେ ରାବଣ
ପରସ୍ତ୍ରୀ ହରିଲେ ବଡ଼ ଅକାରଣ ।
ଯଦ୍ୟପି ପରସ୍ତ୍ରୀ ହରିବ ବଂଶପାଣି
ବଂଶତାର ନାଶଯିବେ କୁଳଗୋତ୍ର ପୁଣି ।
ପରସ୍ତ୍ରୀ ହରଣ ଅଟେ ବଡ ମନ୍ଦ
ଏତେ ହୃଦରେ କିମ୍ପା ପଶିଛ ଦଶକନ୍ଧ ।
ବିଷ୍ଣୁଠାରେ ଯେଉଁମାନେ ଭକ୍ତିରେ ସୁଜାଣ
ସେମାନଙ୍କୁ ବୋଲନ୍ତି ମନୁଷ୍ୟେ କାରଣ ।

ମାଣିକ ଯେ ଗଉଡୁଣୀ ମନରେ ଭାବଇ
ଚତୁର୍ଦ୍ଧାମୁରତିକ ସେ ବାଟରେ ଭେଟିଲା ।
ସେ କୁମର ଯେମନ୍ତେ ମିଳାଇ ଭାବରେ
କଥାକୁ ଉତ୍ତର ସେ ପାଇଲା ସେହିଠାରେ ।
ଭାବଗ୍ରାହୀ ଜଗନ୍ନାଥ ଜାଣିଲେ ତାର ମନ
ବାରୁପାରୁ ନ ଓହ୍ଲାଇଲେ ଭଗବାନ ।
ଏହି ମନେ ରାବନାକୁ ଦେଖିଲା ପଦ୍ମନେତ୍ର
ଆମ୍ଭେ ଚାଲ ଏବେ ନାଥ ଦେଖିବା ରଘୁସୁତ
ରାବଣ ବୋଇଲେ ଶୁଣ ମନ୍ଦୋଦରୀ ରାଣୀ
ଏ ବଚନ ମୋତେ ତୁ କହୁ କମ୍ପା ପୁଣି ।
ଶ୍ରୀରାମ ବୋଲଣ ତୁ ଯାହା ବୋଲୁ ତୁଣ୍ଡେ
ସେହି ରାମହସ୍ତେ ମଲେ ବସିବ ସ୍ୱର୍ଗ ଖଣ୍ଡେ
ମୁହିଁ ଯିନା କେତେ ପାପ ଅର୍ଜିଅଛି ସତ୍ୟ
ରାମ ହସ୍ତେ ମଲେ ପାପରୁ ହେବ ମୁକ୍ତ ।
ମନ୍ଦୋଦରୀ ବୋଇଲା ଶୁଣ ଲଙ୍କମଣି
ଯେତେ କଥା ମୁଁ କହିଲି ଅକାରଣ ପୁଣି ।
ଏ ପୃଥ୍ୱୀରେ କେତେ କେତେ ବଳିଷ୍ଠ ନଥିଲେ
ବସ୍ତୁଙ୍କୁ ନ ଚିହ୍ନି ଆପଣେ ନାଶଗଲେ ।
ପୁତ୍ର ନାତି ମରାଇ ସବୁଙ୍କୁ କଲେ ଦୂର
ମୋତେ ଛାଡ଼ିକରି ତୁମ୍ଭେ ଯିବ ଯମପୁର ।
ମୋହର ଦୋଷ ନାହିଁ କହୁଅଛି ମୁହିଁ
ଦଶଦିଗପାଳମାନେ ସାକ୍ଷୀଥାଅ ରହି ।
ଯେତେବାଗେ କହିଲି ମୋ କଥା ନକଲ
ମୋର ଦୋଷ ନ ବାଛିବ ମହାରୁ ଜନେ ଭଲ
ଜୟ ଜୟ ଜଗନ୍ନାଥ ନୀଳଗିରି ସାଇଁ
ରତ୍ନ ସିଂହାସନେ ବସେ ଚତୁର୍ଦ୍ଧାରୂପହୋଇ
ପାଟେଶ୍ୱରୀ ମେଘନାଦ ଯେ ବୃକ୍ଷପାଶରେଘେରି
ବଡ଼ଦେଉଳରେ ନାଥ ବଜେଯେ ତୁମ୍ଭେ କରି
ସେଥି ଉତ୍ତରୁ ଯେ କୁଟୁମ ଦେବତା ଜାଣ
ପାଟମହାଲକ୍ଷ୍ମୀ ରାଣୀ ବିମଳା ସଙ୍ଗେ ପୁଣ ।
ସରସ୍ୱତୀ କଳକାଙ୍କୁ ସଙ୍ଗରେ ଘେନ ପୁଣ
କଳପବଟ ରୋହିଣୀ କୁଣ୍ଡ ଅଛି ଜାଣ ।
ଦକ୍ଷିଣରେ ମହୋଦଧି ମାରଇ ଲହରୀ
ବାମପାଶେ ମାରକଣ୍ଡ ଋଷିଙ୍କ ସ୍ଥାନ ଘେରି ।
ପଛରେ ଲୋକନାଥ ଆଗରେ ବେଲେଶ୍ୱର
ଦୂରଦେଶେ ଭୁବନେଶ୍ୱର ବସନ୍ତି ସେହିପୁର ।

ସିଂହଦ୍ୱାରେ ଦେବତାଏ ପଶନ୍ତି ଦରଶନେ
ପଶ୍ଚିମ ଦ୍ୱାର ବାଟେ ଯାଆନ୍ତି ସ୍ୱର୍ଗସ୍ଥାନେ ।
ପତିତପାବନ ମୂର୍ତ୍ତି ସିଂହଦ୍ୱାରେ ଉଭା
ଛପନକୋଟି ଜୀବ ଦର୍ଶନ ପାଏ ଶୋଭା ।
ପଙ୍କଜଦଳ ଲୋଚନ ଭିତରେ ବସିଥାନ୍ତି
ଦର୍ଶନେ ପ୍ରସନ୍ନହୋଇ ବର ଯାଚି ଦିଅନ୍ତି ।
ବଳରାମ ଦାସ ବଡ଼ଦାଣ୍ଡ ସିଂହଦ୍ୱାରେ
ଛତାଗୋଟି ପୋତି ସେ ବସେ ସବୁକାଳେ ।
ପ୍ରଭାତରୁ ଦର୍ଶନ କରଇ ଦେବହରି
ରାମାୟଣ ସମ୍ପୂର୍ଣ୍ଣକୁ କରଇ ଗୁହାରି ।
ପାଞ୍ଚକାଣ୍ଡ ସମାପତ ଛଡକାଣ୍ଡ ଅଧା
ସାରିବାକୁ ମନରେ ମୁଁ କରିଛି ଶରଧା ।
କର୍ଣ୍ଣେବସି ଜଗନ୍ନାଥ କହିଲେ ମୋତେବାଣୀ
ବୋଇଲେ ସମ୍ପୂର୍ଣ୍ଣକର ରାମାୟଣ ପୁଣି ।
ତଉଦ ଖଣ୍ଡ ଯୁଦ୍ଧ ଏବେ ତ ସରିଲା
ଆରବାର ଖଣ୍ଡକୁ ଆରମ୍ଭ ହୋଇଲା ।
କାରଦନ ଭିତରେ ମରିବ ଦଶକନ୍ଧ
ଅମୃତ ରସ ଏଥିରେ ଲାଗିବ ରଣ ଯୁଦ୍ଧ ।
ଦୁଷ୍ଟ ରାବଣ ହୋଇବେ ପ୍ରାଣେ ହତ
ଅନେକ କଥା ଏଥି ହୋଇବ ଉପଜାତ ।
ଏହା ଶୁଣି ପାର୍ବତୀ ବୋଇଲେ ମୋତେ କହ
ଦୁଷ୍ଟ ରାବଣ ମରିବାରେ ଶୁଣିମାରେ ସ୍ନେହ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ସଙ୍ଗାତୁଣୀ
ଲଙ୍କାଗଡ ରାବଣ ଦଶାନନ ପୁଣ ।
ତାହାର କୁମର ଯେ ଇନ୍ଦ୍ରଜିତ ବୀର
ଏଭମିଣୀ ତାହାର ଛେଦିଲେଟି ଶିର ।
ତାହାର କୁମର ନାମ ମନ୍ତ୍ରୀ ଯେ ରାବଣ
ସାତଗଣ୍ଡା ଯୁଗ ସେହି ଭୋଗ କଲା ଜାଣ ।
କେଉଁଠି ଲଙ୍କା ବୋଲିଣ ଏକଇ ଗଡ ତାର
ନଈଲା ନାମେ ରାକ୍ଷସ ତହିଁ ଥିଲା ଘର ।
ତାହାକୁ ଦଶାନନ ସମରେ ନାଶକଲା
ତିନବରଷ ଛମାସେ ସେ ଗଡ଼ ଜିଣିଲା ।
ସେହି ଗଡ଼େ ନାତିକ ଭଲ ରାଜା ପୁଣ
ତାହାର ନାମ ଅଟଇ ମନ୍ତ୍ରୀ ଯେ ରାବଣ ।
ତିନଗଣ୍ଡା ଯୁଗ ଅନ୍ତରେ ରାଜା ହେଲା
ଷୋଳଯୁଗ ସେହି ସେ ନିଶ୍ଚିନ୍ତେ ଭୋଗକଲା

ଯେତେବେଳେ ନୃପତି ହୋଇଲା ସୁଲଙ୍କାରେ
ଚଉଦବରଷ ସେହୁ ବସେ ତପସ୍ୟାରେ ।
ଜାନୁ ଜଙ୍ଘ ବସିଣ ଘୋର ତପକଲା
ଚଉଦ ବରଷେ ବ୍ରହ୍ମା ତାକୁ ବର ଦେଲା ।
ବୋଇଲେ କୁମରରେ ଅଜେୟ ହୋଇବୁ
କାହାର ହସ୍ତରେ ଯେ ଭୁବି ନ ମରିବୁ ।
ବାରବରଷ ଯେହୁ ନପୁଂସକରେ ଥିବ
ତାହାର ଭାରିଯା ବାରବରଷେ ଯୁବା ହେବ
ଈଶ୍ୱର ପାର୍ବତୀ ମାନବେ ଜନ୍ମ ହେବେ
ତେବେ ସିନା କୁମର ତୋତେ ସେ ମାରିବେ
ଏତେ କହି ବେଦଦଳନ ରଥ ଦେଲେ
ଏ ରଥରେ ଥିଲେ ନ ତୁମରିବୁ ବୋଇଲେ ।
ପଦ୍ମବ୍ୟୂହ ମନ୍ତ୍ର ତାର କର୍ଣ୍ଣରେ କହିଲେ
ଏମନ୍ତ ପଡ଼ି ବ୍ୟୂହରେ ଭେଦିବୁ ବୋଇଲେ ।
ଦେବ ନାଗ ମାନବ ବ୍ରହ୍ମା ବିଷ୍ଣୁ ହର
ଏ ମାନଙ୍କୁ ନମାଇଲେ ନଗ୍ରୁଢ଼େ ଏହୁ ଶର ।
ଏ ଶରକୁ ପ୍ରତିଶର ମେଘ ବରଷଣ
ଆକାଶରେ ଜଳରେ ହେବ ଭସ୍ମ ପୁଣ ।
ହରଣ କରିବୁ ଯେବେ ମନରେ ବସ୍ତୁର
ପଦ୍ମ ଗୋଟିକରେ ତିନିଜଣ ନେବୁ ହରି ।
ଯେଉଁଠାକୁ ବିସ୍ମରିବୁ ସେହିଠାକୁ ଯିବେ
ଏତେବୋଲି ଯଶୋବନ୍ତ ଗଲେକ ଦଇବେ ।
ବରପାଇ ଏକମୁଖା ରାବଣ ଉଠିଲା
ବ୍ରହ୍ମାଙ୍କର ବଳରେ ସେ ବଳମାନ ହେଲା ।
ଏଥୁ ଅନନ୍ତରେ ପଚ୍ଛରନ୍ତି ଭଗବନ୍ତ
ସୁଲଙ୍କା ଗଡ଼ ଦେବ କେତେକ ଆକୃତି ।
ଈଶ୍ୱର ବୋଲନ୍ତି ତୁମ୍ଭେ ମନ ଦେଇ ଶୁଣ
ସୁଲଙ୍କା ଗଡ଼ରେ ରଜା ମନ୍ତ୍ରୀ ଯେ ରାବଣ ।
ଯେତେବେଳେ ବିଧାତା ସେ ଗଡ଼ ରଚିଲା
ଶତେକ ଯୋଜନ ବିସ୍ତାର ପୁଣ କଲା ।
ଗ୍ରାମ ଚାରିପାଶେ ବିନ୍ଧ୍ୟ ପର୍ବତ ବେଢ଼ିଲା
ମାଳ ଜଙ୍ଗଲ ଚାରିପାଶରେ ଘେରଇଲା ।
ଚାରିପାଶେ ସାଗର ତହିଁ ପାଶେ ଝାଡ଼
ତାରପାଶେ ଘେରିଅଛି ପାଚେରିଏ ଗାଡ଼ ।
ପାଞ୍ଚଯୁଣ ଉଚ୍ଚ କୋଣେ ଓସାର ପୁଣ ହୋଏ
ପକ୍ଷୀମାନ ଉପରେ ଉଡ଼ିଣ ନ ଯାଏ ।

ସେ ପାଚେରି ଗୋଟା ଯେ ଜ୍ୟୋତିକାଚପୂଣ
ଧବଳ ବର୍ଣ୍ଣରେ ସେହୁ ହୋଇଛି ନିର୍ମାଣ ।
ଚାରିଗୋଟା ଦ୍ୱାର କରିଛି ଗଡ଼କୁ
ସିଂହଦ୍ୱାର କରିଅଛି ପୂର୍ବର ଆଡ଼କୁ ।
ରତ୍ନସିଂହ ଦୁଇଗୋଟି ସେ ଦ୍ୱାରେ ବସାଇ
ଜମ୍ବୁନଦ ସୁବର୍ଣ୍ଣରେ ନିର୍ମାଣ କରାଇ ।
ଶୀବନ୍ୟାସ କରିଣ ସେ ଦୁଆରେ ଅଛି ଥୋଇ
ପଶ୍ଚିମ ଦ୍ୱାରେ ଦୁଇ ବୃଷଭ ରଖାଇ ।
ଉତ୍ତର ଦ୍ୱାରେ ମୃଗ ସୁବର୍ଣ୍ଣ ଆକାର
ଦକ୍ଷିଣ ଦ୍ୱାରେ ମୟୂର ରଖିଛି ଅସୁର ।
ସକୁର ଯୁଣ ପର୍ଯ୍ୟନ୍ତ ନଗ୍ର ପୁର ରଚି
ଅଷ୍ଟ ପାଟକ ଜାତି ଅସୁର ତହିଁଛନ୍ତି ।
ସାତ ଲକ୍ଷ ଗଣିତା ସେଥିରେ ଘର ପୁଣ
ଗଧ ପୋଷିଅଛି ବୟାଳିଶ ଲକ୍ଷ ଜାଣ ।
ସେ ଗଡ଼ରେ ଶମ୍ଭୁ ଲିଙ୍ଗ ଚାଳିଶ ସହସ୍ର
ବିଷ୍ଣୁ ପ୍ରତିମା ସହସ୍ରେ ଦେବୀ ଯେ ସହସ୍ର ।
ସୁଦେବୀ ବୋଲି ପୁଣ ଗ୍ରାମ ଯେ ଦେବତୀ
ପନ୍ଦରଜଣ ମେଣ୍ଢିଆ ଦିଏ ତାକୁ ନିତି ।
ପାଞ୍ଚଦିନେ ସାତଦିନେ ପକ୍ଷେ ଗୁଡ଼
ଲଙ୍କାଗଡ଼େ ପରବେଶ ହୋଏ ରଥ ଚଢ଼ି ।
ପିତାମାତା ସଙ୍କୋଳ ଯାଏ ନିଜ ପୁର
ଚଉଦ ଦିନ ତଳେ ଆସିଥିଲା ଅସୁର ।
ଯୁଦ୍ଧ ଦେଖି କରି ସେହୁ ନିଜ ରାଜ୍ୟ ଗଲା
ପିତା ମରିବାର ପୁଣି ଖବର ପାଇଲା ।
ରଥ ଚଢ଼ି କୁମର ମିଳିଲା ଆସି ଲଙ୍କା
ପିତା ମାତାଙ୍କୁ ନଦେଖି ମନେ କଲା ଶଙ୍କା ।
ରାବଣ ଘୁମୁରେ ଯାଇଁ ପ୍ରବେଶ ହୋଇଲା
ନାତିକି ଦେଖିକରି ରାବଣ ଶୋକ କଲା ।
ବୋଇଲା ତୋ ପିତାମାତା ଗଲେମୋତେଗୁଡ଼
ସାନ ଯନ୍ତ ତୋହର ପିତାକୁ ଗଲା ମାରି ।
ସୁଷେଣ ବୋଲିକରି ବୈଦ୍ୟ ତାର ଅଛି
ହନୁମନ୍ତ ନାମେ କପି ପବନର ବତ୍ସ ।
ନାଗଫାଶ ବେଳରେ ରମ୍ୟକ ଦ୍ୱୀପ ଗଲା
ଗରୁଡ଼କୁ ଆଣିଣ ଯନ୍ତକ ଜିଆଇଲା ।
ବ୍ରହ୍ମଶର ବେଳେ ହେମଗିରିରୁ ଔଷଧି
ଆଣି ରାମ ଲକ୍ଷ୍ମଣଙ୍କୁ ଜିଆଏ ତାର ବୁଦ୍ଧି ।

ଏକଘନ ମାରିବାରେ ଲକ୍ଷ୍ମଣ ଯନ୍ତ ମନ୍ଦ
ଗନ୍ଧମାଦ୍ଦନ ପର୍ବତକୁ ହନୁମନ୍ତ ଗଲା ।
ଦଶ ସହସ୍ର ବଳ ଯେ ପଠାଇଲି ମାରି
ତାଙ୍କୁ ମାରି ମାରୁତ ଯେ ଗଲା ବେଗ କରି ।
ଔଷଧ ଆଣିବା ବେଳେ ଦଶ ସହସ୍ର ବଳ
ପୁଣି ଭେଦଦେଲି ମାରିବେ କରି ଗୋଳ ।
ଦେଖିଣ ପାବନୀ ଯେ ସମସ୍ତ ମାଇଲା
ଫେରି ଆସି କରି ମୋର ଆଗରେ କହିଲା ।
ଲକ୍ଷ୍ମଣଙ୍କୁ ଜିଆଇଲେ ଔଷଧ ଦେଇଣ ।
ସ୍ଥୂଳଜଙ୍ଘ କକାକୁ ତୋର ଭେଦିଲି ରଣେପୁଣ
ସେହି ଜଣ ଗଲା ପଡ଼ିଲା ରଣେ ପୁଣି
ଏବେ କସ କରିବ ମୁଁ କରୁଛି ଭାଳେଣି ।
ଶୋଇବାସ୍ତୁ କୁମରକୁ ଆଣିବା ମୋ ହସ୍ତର
ଭଲବେଳେ ଥଇଲୁରେ କୁମର ମୋହର ।
ଲକ୍ଷ୍ମଣ ସୁଷେଣ ହନୁମନ୍ତ ନେବୁ ହରି
ଶ୍ରୀରାମଙ୍କୁ ମୋର ବାଣ ପକାଇବ ମାରି ।
ସେ ତିନଜଣ ଅଟନ୍ତି ତୋ ପିତା ବଇରି
କ ରୂପେ ମାରିବ ମୋରବୁଦ୍ଧି ଯେ ନଷ୍ଟ କରି
ମହୀରାବଣ ବୋଇଲା କରିବା ଏକ କୂଟ
ଷଟେମୁଖା ରାବଣ ଅଟେ ତୋର ମିତ ।
ତାହାକୁ କହିଣ ଯେ ଭେଦିବା ଅଯୋଧ୍ୟାକୁ
ମୁଁହି ହରିନେବ ଯେ ଏ ତିନ ଜଣକୁ ।
ମାୟାଛଳ କରିଣ ମାରିବ ଯେ ପୁଣ
ଅଯୋଧ୍ୟାରେ ଶତେମୁଖ ମାରୁ ଦୁଇଭାଇଜାଣ
ତିନଠାରେ ଯୁଦ୍ଧ ହେଲେ ଗୋଳମାଳ ଯାଉ
ଏକାକେ ଶ୍ରୀରାମ ଯେ ତୋହରୁ ହାତେ ଥାଉ
ଶୁଣିଣ ରାବଣ ମନ ତୋଷକଲା ଜାଣି
ମୁଖ ହକାଶିଲା ଚନ୍ଦ୍ରମା ପ୍ରାଏ ପୁଣି ।
ରାବଣ ବୋଇଲା ତୁରେ ବେଗେହୋଇ ଯାଅ
ଅଲଙ୍କାକୁ ଯାଇଣ ତୁ ମୋ ମିତକୁ କହ ।
ଏ ସକଳ ଚରିତ ତୁ ଜଣାଇ କହିବୁ
ଅଯୋଧ୍ୟାକୁ ଭେଦିଦେଇ ବେଗେ ତୁ ଆସିବୁ
ଶୁଣିଣ ମହୀରାବଣ ରଥ ବେଗେ ଚଢ଼ି
ଗଗନ ମାର୍ଗରେ ରଥ ଚଳାଏ ବେଗକରି ।
ପ୍ରବେଶ ହୋଇଲା ଦଶଘଡ଼ି ରାତ୍ରଠାରେ
ଅଲଙ୍କା ଗଡ଼ରେ ସେହୁ ପଶିଲା ସତ୍ୱରେ ।

ଦଶଗ୍ରୀବ ନଗରେ ପ୍ରବେଶ ହେଲା ଯାଇଁ
ଜାଣିଲା ଛକରେ କଦ୍ୱା ଯାଇଛୁ ଲଙ୍କସାଇଁ ।
ଖୁଣ୍ଟିଆକୁ ଡକାଇ ବାରତା କହିଲା
ରାବଣର ନାତି ମୁଁ ଆସିଛୁ ବୋଇଲା ।
ଖୁଣ୍ଟିଆ ବୋଇଲା ରାଜା ନିଦ୍ରାରେ ଅଚେତନ
ରଜନୀ ପ୍ରଭାତରେ ଦେଖିବ ତୁମ୍ଭେ ପୁଣ ।
ଶୁଣିଣ ମହୀରାବଣ ସିଂହଦ୍ୱାରେ ରହି
କେତେବେଳ ଉତ୍ତାରେ ରଜନୀ ଗଲା ପାହି ।
ନିଦ୍ରାରୁ ଉଠି ରାବଣ ଜଗତରେ ବସି
ଖୁଣ୍ଟିଆ ଜଣାଏ ଶୁଣ ଦଶବାର ବସି ।
ଦଶମୁଖା ରାବଣ ଲଙ୍କାଗଡରେ ଘର
ବେଲାରେ ଅଟଇ ସେ ମଇଷ ତୁମ୍ଭର ।
ତାର ନାତି ମହୀରାବଣ ନାମେ ଯାର
ଏକ ମୁଖା ରାବଣର ସୁ ଲଙ୍କାରେ ଘର ।
ତିନ ପ୍ରହର ରାତ୍ରରେ ଏଠାକୁ ପ୍ରବେଶ
ମୋତେବୋଇଲା ତୋ ରାଜାକୁକହଯାସନ୍ଦେଶ
ଆମ୍ଭେ ବୋଇଲୁ ରଜନୀପାହିଲେଦେଖାହେବୁ
ଶୁଣି କରି ରହିଲା ଯେ ରାବଣର ତନୁ ।
ଆଜ୍ଞା ହେଲେ ଦେଖା ସେ ହୋଇବ ଆସିପୁଣ
କାହିଁପାଇଁ ଆସିଛି ସେ କେବଣ କାରଣ ।
ମିତର ଖବର ଜଣାନାହିଁ ଏବେ ଶୁଣ
ସେ କମନ୍ତେ କାଉଁ ନେଇ ଅଇଲା ମୁଁ ଜାଣ
ଶୁଣିକରି ପଡ଼ିଆରି ବେଗେ ଘେନଗଲେ
ରାବଣ ଆଗରେ ନେଇ ଉଭା କରାଇଲେ ।
ଦେଖିକରି ରାବଣ ଆସନେ ବସାଇଲା
କୁଶଳ ବାରତା ଯେ ତାହାକୁ ପୁଚ୍ଛିଲା ।
ମହୀରାବଣ ବୋଲେ ତୁ ଶୁଣ ଦେବରାଏ
ମଇଷକୁ ଏବେ ତୋର ଦେଲା ଅସମୟେ ।
ଶ୍ରୀରାମ ଲକ୍ଷଣ ଯେ ଭରତ ଶତ୍ରୁଘନ
ଦଶରଥ ରାଜାଙ୍କର ସେହି ସେ ନନ୍ଦନ ।
ଜମ୍ବୁ ଦ୍ୱୀପ ମଧ୍ୟରେ ଭରଥ ଖଣ୍ଡକରେ
ଅଯୋଧ୍ୟା ନାମେ ଦେଶ ଅଟେ ସେ ନଗରେ
ଦଶରଥ ରାମକୁ ରାଜା କରିବାକୁ ମନ
କୈକେୟୀ ରାଣୀ ରାଜାକୁ ସତ୍ୟକଲେ ପୁଣ ।
ଭରତ ମୋ ରାଜାହେବ ରାମ ଯିବ ବନ
ପିତାଙ୍କର ସତ୍ୟପାଳ ଶ୍ରୀରାମ ଲକ୍ଷ୍ମଣ ।

ଜନକର ଦୁହିତା ଶ୍ରୀରାମ ବନିତା
ତାହାର ନାମ ଗୋଟି ଅଟେ ହାଦେ ସୀତା ।
ତାଙ୍କୁ ଘେନି ବେନି ଭାଇ ବନବାସ କଲେ
ତେର ବରଷ ପଞ୍ଚବଟୀ ବନରେ ରହିଲେ ।
କୁମ୍ଭ ମିଶ ଭଉଣୀର ନାମ ସୁର୍ପଣଖା
ଖର ଦୂଷଣ ତ୍ରିଶିର ସଙ୍ଗରେ ତାର ଶାଖା ।
ଜମ୍ବୁ ଦ୍ୱୀପ ମଧ୍ୟରେ ଅଲଙ୍କା ନାମେ ପୁରୀ
ତହିଁ ଖର ଦୂଷଣ ତ୍ରିଶିର ଘର କରି ।
ଅପର ସହସ୍ର ବଳ ସଙ୍ଗରେ ଘେନଠୁଳ
ରଜାମାନଙ୍କୁ ମାଇଲେ ଘେନି ଦୈତ୍ୟବଳ ।
ସୂର୍ପଣେଖି ପଞ୍ଚବଟୀ ବନେ ବୁଲୁଥିଲା
ଶ୍ରୀରାମ ଲକ୍ଷ୍ମଣ ଦେଖି ତାଙ୍କ ପାଶେ ଗଲା ।
ସୁରସ୍ତ କରିବାରେ ତାର ବଳିଲା ମନ
ତାହାକୁ ନାସ୍ତି କଲେ ଶ୍ରୀରାମ ଲକ୍ଷ୍ମଣ ।
ନିଜରୂପ ଦେଖାଇ ତାହାଙ୍କୁ ଡରାଇଲା
କୋପେ ଲକ୍ଷ୍ମଣ ତା କାନ ନାକ କାଟିଲା ।
କାନ୍ଦକରି ସୂର୍ପଣେଖା ଚାଲିଗଲା ପୁଣ
ଭାଇଙ୍କର ଆଗରେ ଗୁହାରି କଲା ଜାଣ ।
ତାହାର ଛଳେ ଖର ଦୂଷଣ ତ୍ରିଶିର
ଅଠର ସହସ୍ର ବଳ ସେ ଘେନିଗଲେ ତୋର
ରାମ ଲକ୍ଷ୍ମଣ ସଙ୍ଗରେ ଯୁଦ୍ଧ ଯାଇ କଲେ
ଶ୍ରୀରାମ ବାଣେ ସୈନ୍ୟ ସହିତେ ମଲେ ।
ସୂର୍ପଣେଖା କେବଳ ଅଇଲା ଯେ ଫେରି
ରାବଣକୁ କହିଲା ସକଳ କଥା ତାରି ।
ଶୁଣିକରି ରାବଣ ରଥ ଚଢ଼ିଗଲା
ଦୁଇଭାଇ ନଥିବା ବେଳେସୀତାଙ୍କୁ ହରିକଲା
ନେଇ ଅଶୋକ ବନେ ଯତ୍ନ କରି
ସୀତାଙ୍କୁ ଭୋଗ କରିବାକୁ ଇଗରାବଣହୋଏସରି
ଅଗ୍ନିରେ ସେହି ସୀତା କରଇ ସ୍ନାହାନ
ତା ଦେହ ଛୁଇଁବାକୁ ଅଛି କେ ଭାଜନ ।
ରାମ ଲକ୍ଷ୍ମଣ ସେଠାରୁ ଘରଣୀ ନ ପାଇଲେ
କିଷ୍କିନ୍ଧ୍ୟା କଟକେ ଯାଇ ପ୍ରବେଶ ହୋଇଲେ
ବାଳିକି ମାରି ସୁଗ୍ରୀବକୁ ରାଜା କଲେ
ଋକ୍ଷ କପିବଳ ଥାଟ ସେ ଯାଇଁ ଆଣିଲେ ।
ଚାରିଦଗ ଖୋଜିବାକୁ ବରଗିଲେ ଦୂତ
ସୀତାଙ୍କୁ ଖୋଜି ଲଙ୍କାକୁ ଆସିଲା ହନୁମନ୍ତ ।

ଅଶୋକ ବନରେ ସେ ସୀତାଙ୍କୁ ଠାବକଲା
ମହାବନତୋଟା ଭାଙ୍ଗି ସୈନ୍ୟଅନେକମାଇଲା
ଲଙ୍କାକୁ ସେ ପୋଡ଼ିଦେଇ ରାମଙ୍କୁ କହିଲା
ତାଠାରୁ ଶୁଣି ଶ୍ରୀରାମ କଟକାଇ କଲା ।
ପର୍ବତ ବୁହାଇ ସେତୁ ବନ୍ଧାଇଲା
ସୁବଳୟା ଗିରିରେ ଠଣା ଆସ୍ଥା କଲା ।
ରାବଣ ପୁତ୍ରକୁ ଘେନି ଅନେକ ଯୁଦ୍ଧ କଲେ
ଶ୍ରୀରାମ ଲକ୍ଷ୍ମଣ ବାଣେ ବହୁତ ସୈନ୍ୟ ମଲେ
ଦ୍ୱିତୀୟ ଦିନ ଯେ ମୋର ପିତା ଗଲା ପୁଣ
ନାଗଫାଶେ ବାନ୍ଧିଲା ସେ ଶ୍ରୀରାମ ଲକ୍ଷ୍ମଣ ।
ହନୁମନ୍ତ ନାମରେ ପବନର ସୁତ
ରମ୍ୟକ ଦ୍ୱୀପୁ ଆଣିଲା ବିନତାର ସୁତ ।
ଗରୁଡ଼କୁ ଦେଖି ସର୍ବେ ପଳାଇଲେ
ନାଗଫାଶୁ ଫିଟିବାରୁ ସୁବଳୟା ଗିରି ଗଲେ
ପାଞ୍ଚଦିନେ କୁମ୍ଭକର୍ଣ୍ଣ ଉଠି ଯୁଦ୍ଧ କଲା
କର୍ମର ଅବଳେ ରାମ ବାଣେ ପ୍ରାଣ ଦେଲା ।
ଷଣଦିନେ ମୋ ପିତାକୁ ମାଇଲା ଯତ ପୁଣ
ତେର ଦିନ ଯୁଦ୍ଧେ ଗଲା ତୋ ମଇଷ ରାବଣ
ଲକ୍ଷ୍ମଣେ ଶକ୍ତି ମାରି ଅଇଲା ଫେରିଣ
ଗନ୍ଧମାର୍ଦ୍ଦନ ପର୍ବତେ ଗଲା ହନୁମାନ ।
ଅମର ଔଷଧି ଆଣି ସୁଷେଣକୁ ଦେଲା
ସୁଷେଣ ଲେପ ଦଅନ୍ତେ ଲକ୍ଷ୍ମଣ ଜିଇଲା ।
ଆଉଦିନ ସ୍ଥୁଳଜଙ୍ଘ ଯୁଦ୍ଧକୁ ପୁଣଗଲା
ବଡ଼ଯତ୍ନ ତାହାକୁ ଅଗ୍ନିଶରେ ଦହିଲା ।
ଚଉଦ ଦିନ ଯୁଦ୍ଧ ଏଠାରୁ ସରିଲା
ହସ୍ତୀ ଘୋଡ଼ା ପାଦାନ୍ତ ଅନେକ କ୍ଷୟେ ଗଲା
ପିତା ମୋର ମରିବାର ସ୍ୱର ମୋତେ କହେ
ଶୁଣିକରି ଶୋକେ ମୁଁ ଅଇଲି ଲଙ୍କା ଯାଏ ।
ରଥ ଚଢ଼ି ଲଙ୍କା ଗଡେ ହୋଇଲି ପ୍ରବେଶ
ପିତା ମାତା ନ ଦେଖି ହେଲି ରଜା ପାଶ ।
ମୋତେ ଦେଖି ନୃପତି ଅନେକ ଶୋକକଲା
ବୁଝାଇ କହିବାରୁ ନିବର୍ତ୍ତି ହୋଇଲା ।
ମୁଁ କହିଲି କଥାଏ କରିବା ଛନ୍ଦ କୂଟ
ମେଳ ଭାଙ୍ଗିଲେ ଆମରି କରିବ ମୁବଟ ।
ହାଲ ତାର ଲକ୍ଷ୍ମଣ ବୈଦ୍ୟ ଯେ ସୁଷେଣ
ହନୁମନ୍ତ ଯୁଦ୍ଧରେ କବାଟ ତାର ପୁଣ ।

ଏ ତିନିଜଣଙ୍କୁ ମୁଁ ହରଣ କରିନେବି
ସୁଲଙ୍କା ଗଡ଼ରେ ଯୁଦ୍ଧ କରିଣ ମାରିବି ।
ଶ୍ରୀରାମ ସଙ୍ଗରେ ଯୁଝି ଏକାଏ ତୁ ମାର
ସେ ମଲେ ସୈନ୍ୟ ତାର ବାହୁଡ଼ିବେ ଲଙ୍କାପୁର
କୁମ୍ଭ ଭାଇ ତାରଠାରେ ଶରଣ ପଶିଲା
ଛେଦ ଭେଦ କହି କରି ବଂଶ ମରାଇଲା ।
ରାମଙ୍କୁ ଆଗେ ମାରି ବିଭୀଷଣଙ୍କୁ ପଛେ ମାର
ତେବେ ତୋହଠାରୁ ଶତ୍ରୁ ଯିବଟିକା ନୃପବର
ରାବଣ ବୋଲଇ ତୁହି ମୋର ବୋଲ ଶୁଣ
ଭରତ ଶତ୍ରୁଘ୍ନ ଛନ୍ତି ଅଯୋଧ୍ୟାରେ ପୁଣ ।
ଖବର ପାଇଲେ ସେ ଆସିବେ ଲଙ୍କାଗଡ଼
ମୋର ସଙ୍ଗେ ଯୁଦ୍ଧ ସେହୁ କରିବେ ଅପାର
ଅଲଙ୍କାଗଡ଼ରେ ମୈତ୍ର ମୋର ଅଛି
ତାର ଠାକୁ ଯାଅ ତୁହି ଇନ୍ଦ୍ରଜିତ ବସି ।
କହିବୁ ମିତକୁ ମୋର ବୁଝାଇ କରିଣ
ଦଶଗ୍ରୀବ ମାଇଲେ ରାମ ଆହାବିବ ପୁଣ ।
ଦୈତ୍ୟଙ୍କ ନାମ ଶୁଣିଲେ ଖୋଜିଣ ମାରିବ
ସୁରଭାଇଙ୍କୁ ମାଇଲେ ଆମ୍ଭ ଶତ୍ରୁ ଯିବ ।
ଦରିଆ ଭିତରେ ଯେହୁ ବାନ୍ଧେ ବନ୍ଧ ପୁଣ
ସେହି ପୁଣି ନ ମାରି କି ରଖିବ ଦୈତ୍ୟଗଣ ।
ତୁମ୍ଭେ ଅଯୋଧ୍ୟାରେ ମୋର ଶତ୍ରୁଘ୍ନ ଭରଥ
ମୋହର ଆଗେ ଏବେ ହେଲେ ରଘୁନାଥ ।
ନାଭିର ଭାଗରେ ଯେ ଲକ୍ଷ୍ମଣ ଉହିଲା
ଏତେକହି ମିତତୋର ମୋତେ ଭେଦଦେଲା
ଶୁଣିଣ ଶତେଗ୍ରୀବ ବୋଲଇ ବଚନ
ଏକାହେଁକି କମା ନ ମାଇଲେ ରାମରାଣ ।
ଅରଣ୍ୟ ଭିତରେ ସାହାବଳ ତାର ଥିଲା
ଜୀବନରେ ନମାରି ତା ନାଶ ହେବର କଲା ।
କ୍ଷତ୍ରୀ ହୋଇ ଅଧର୍ମ କଲଟି ତୁମ୍ଭେ ପୁଣ
ଶୂଳଶିପୁଗ ଭୋଗ କଲ ମୁହିଁ ଜାଣ ।
ତିନିଯୁଗ ପରିଯନ୍ତେ ଦେବତା ଧରି ଆଣି
ପାଦତଳେ ଖଟାଇଲ ଯୁଦ୍ଧେ ଜିଣି ପୁଣି ।
ପବନ କହିବାରୁ ସେ କଥା ବସ୍ତୁରିଲ
ଅଧର୍ମ ହେବ ବୋଲି ମୁଁ ତାକୁ ଛାଡ଼ିଦେଲି ।
ଜମ୍ବୁଦ୍ୱୀପକୁ ମୁଁ ଦିଗ୍ ବିଜୟେ କରିଗଲି
ଲକ୍ଷେ ରାଜାଙ୍କୁ ବାହୁବଳରେ ଜିଣିଲି ।
ମୋତେ ତିନି ରାଜାମାନେ ଭଜିଲେ ବନ୍ଧୁପଣ
ଷାଠିଏ ସହସ୍ର ରାଜା ଦୁହିତା ଦେଲେଁ ପୁଣ ।
ତାଙ୍କୁ ଛାଡ଼ି ଦେଇଣ ପାତାଳପୁର ଗଲି
ପାଞ୍ଚ ସହସ୍ର ରାଜା ମୁଁ ପାତାଳେ ଜିଣିଲି ।
ବାସୁକି କହିବାରୁ ତାହାକୁ ଛାଡ଼ିଦେଲି
ମୁହିଁ ଧର୍ମରେ ଥିବାରୁ କେହି ନାହିଁ ବୈରୀ ।
ସ୍ୱରୁ କଥାରେ ମନ୍ଦ ଅଟେ ତୋର ପିତା
ବଳଦେଲା ବିଧାତା ଯେ ପାଞ୍ଚଇ ଅହନ୍ତା ।
ଦେବତାଙ୍କୁ ବନ୍ଦୀକରି ଖଟାଏ ପାଦତଳେ
ସୁନ୍ଦରୀ ସ୍ତ୍ରୀ ଦେଖି ହରେ ବଳାତ୍କାରେ ।
ଇନ୍ଦ୍ରଙ୍କ ବନ୍ଧକରି ତାଠାରୁ ଦାନ ଆଣି
ଦେବସ୍ତ୍ରୀମାନଙ୍କୁ ଅବଳା କଲା ପୁଣି ।
ଈଶ୍ୱର ଦେବତା ଯେ ଅଟେ ବିଷ୍ଣୁ ସଙ୍ଗ
ତାର ସଙ୍ଗେ ବମନ ହୋଇ ଯୁଦ୍ଧ ରଙ୍ଗ ।
ଏବେ ମାନବ ବିଷ୍ଣୁ ସଙ୍ଗରେ ଲଗିଲା
ମରିବାରୁ ଅସୁର କୁଳକୁ ଲଜଦେଲା ।
ଯେଉଁ ରାମ ସିନ୍ଧୁରେ ବାନ୍ଧିଲା ଭେଳା
ସବୁ ଅସୁର ମାରିବେ ଦଶରଥ ବଳା ।
ଭଲରେ କୁମତ ମୋତେ ବାରତା କହିଲୁ
ବେଳହୁଁ ଉପାୟ କରି ରାମକୁ ନ ମାଇଲୁ ।
ଯାଅ ଯା କୁମରରେ କହିବୁ ଅଜାକୁ
ଆଜ ସ୍ୱରିଦିନ ମୁହିଁ ଯିବି ଅଯୋଧ୍ୟାକୁ ।
ଜମ୍ବୁଦ୍ୱୀପ ଅର୍କ ତୀର୍ଥକୁ ମୁହିଁ ଯିବି
ସୁବଟ ମୂଳରେ ବସି ହୋମ ମୁଁ କରିବି ।
ପବନଦେବତା ମୋତେ ବରଛନ୍ତି ଦେଇ
ତିନି ଦିବସରେ ମାୟା ବିମାନ ବାହାରଇ ।
ସେଥିରେ ବସିଲେ ଜାଣନ୍ତା ନାହିଁ ମୋତେ
ଏହିଲାଗେ ଜମ୍ବୁଦ୍ୱୀପ ଯିବି ମୁଁ କୁରିତେ ।
ଏତେ କହି ଶତେଗ୍ରୀବ ମନ୍ତ୍ରୀଙ୍କ ଡାକିଲା
ସୁବୁଦ୍ଧି କୁବୁଦ୍ଧି ମନ୍ତ୍ରୀ ଦୁହିଁଙ୍କୁ କହିଲା ।
ମିହିର ଅସମୟୁ ସମସ୍ତ କହିଲା
ହୋମର ସାମଗ୍ରୀ ତୁମ୍ଭେ ଆଣାଅ ବୋଇଲା ।
ରଥରେ ବସିଲା ବେନି ମନ୍ତ୍ରୀ ସଙ୍ଗେ ଘେନି
ଅର୍କ ତୀର୍ଥକୁ ସେହି ଗଲା ତତକ୍ଷଣି ।
ଶତେ ଯୋଜନ ସିନ୍ଧୁ ପ୍ରହରେକ ପାରିହେଲା
ଜମ୍ବୁଦ୍ୱୀପରେ ଯାଇ ପ୍ରବେଶ ହୋଇଲା ।

ଏଥୁ ଅନନ୍ତରେ ଏକମୁଖା ଯେ ରାବଣ
ରଥ ଚଢ଼ି ଗମନ କଲା ସେଠୁ ପୁଣ ।
ସାତ ଘଡ଼ିଠାରେ ଲଙ୍କାରେ ପ୍ରବେଶ
ଦେଖିଲା ଦଶଗ୍ରୀବ ହୋଇଛି ଅବକାଶ ।
ଭିତରେ ପଶିଣ ଦର୍ଶନ ଯାଇ କଲା
ପାଦେ ପଡ଼ି ଶୋଇଣ ମଥାରେ ହସ୍ତ ଦେଲା
ବୋଇଲା ତୁମ୍ଭ ଆଜ୍ଞାରେ ଅଲଙ୍କା ମୁଁ ଗଲି
ଦୁଇଘଡ଼ି ରାତ୍ର ଥିଲା ପ୍ରବେଶ ହୋଇଲି ।
କେବଳ ଉଦୟକୁ ଉଠିଲା ତୋର ମିତ
ଦର୍ଶନ କରିଣ ମୁହିଁ କହିଲି ବୃତ୍ତାନ୍ତ ।
ଶୁଣିଣ ତୁମ୍ଭ ମିତ ତୁମ୍ଭଙ୍କୁ ନିନ୍ଦା କଲା
ଏକା ରାମ ଥିଲାବେଳେ କମ୍ପାଇ ନ ମାଇଲା
ନାରୀ ଚୋରି କରିବାରୁ ଅଧର୍ମ ବୋଲାଇଲା
ଦେବଙ୍କୁ ତୁ ଜଳକଲୁ ତୋତେ ସେନନ୍ଦାକଲା
ପବନ ଦେବତା ମୋତେ ବର ଦେଇଛନ୍ତି
ଅର୍କ ବଟତଳେ ହୋମ କରିବ ବୋଲିଛନ୍ତି ।
ସେ ହୋମକୁଣ୍ଡୁ ଯେଉଁ ବିମାନ ବାହାରିବ
ସେ ବିମାନେ ବସିଲେ ତ୍ରିଭୁବନ ଜିଣିବ ।
ହୋମ ବିଧାନ ଘେନି ଜମ୍ବୁଦ୍ୱୀପକୁ ଗଲା
ଗଲା ବେଳରେ ସେହି ମୋତେ ତ କହିଲା ।
ବୋଇଲା ରାତ୍ରିଦିନେ ମୁଁ ଅଯୋଧ୍ୟାକୁ ଯିବ
ତିନଦିନେ ହୋମରୁ ମୁଁ ବିମାନ କାଢ଼ିବ ।
ସେ ବିମାନେ ବସିଣ ମୁଁ ଅଯୋଧ୍ୟାକୁ ଯିବ
ଭରତ ଶତ୍ରୁଘନଙ୍କୁ ମୁଁ ଅବଶ୍ୟ ମାରିବ ।
ମୋହର ଇଚ୍ଛା ନ ଥିଲା ଯିବାକୁ ହେ ପୁଣ
ସମୁଦ୍ର ଭିତରେ ରାମ ବାନ୍ଧିଲେ ବନ୍ଧ ଜାଣ ।
ସବୁ ଦୈତ୍ୟ ବଳ ସେ ମାରିବ ଖୋଜିକରି
ସବୁଠାରୁ ଯିବ ସେ ସିନ୍ଧୁରେ ବନ୍ଧକରି ।
ରାଜାର ସେ ପୁଅ ହୋଇ ଅସୁର ମାରିବ
ତେଣୁକରି ଯିବାର ଅଟଇ ମୋର ଭାବ ।
ଏମନ୍ତ ବୋଲିଣ ଜମ୍ବୁଦ୍ୱୀପ ଗଲା ଚଳି
ସେହି ଯିବାରୁ ମୁଁ ଆସି ତୋ ଆଗେ କହିଲି
ରାବଣ ବୋଇଲା ମୋର ଆଜ ଯୁଦ୍ଧ ନାହିଁ
ବୀରବାହୁ କୁମରଙ୍କୁ ଅଣାଇବି ମୁହିଁ ।
ତୁହି ଏବେ ମୋର ବୋଲ କରଇ କୁମର
ଅଲଙ୍କା ଗଡ଼କୁ ତୁହି ଯିବୁଟି ସତ୍ୱର ।
ସହସ୍ର ମୁଖା ରାବଣ ସେ ଗଡ଼ରେ ଅଛି
ବହୁକାଳରୁ ମୁଁ ତା ସଙ୍ଗେ ମଇତ୍ରି ।
ତାହାକୁ କହିବୁଟି ମୋହର ସନ୍ଦେଶ
ବୋଲିବୁ ତୁମ୍ଭର ମିତ୍ର ଏବେ ହେଲେ ନାଶ
ମାନବ ରାଜା ହୋଇ ଦୈତ୍ୟରାଜାକୁ ବିନାଶି
ଅସୁର କୁଳକୁ ବଡ଼ ନିନ୍ଦା ଆସୁଅଛି ।
ତୁମ୍ଭେ ଲଙ୍କାଗଲେ ରାମ ଲକ୍ଷ୍ମଣ ମରିବେ
ତୁମ୍ଭଠାକୁ ମୋତେ ପେଷିଛନ୍ତି ଦଶଗ୍ରୀବେ ।
ଏତେ କହି ମିତକୁ ମୋର ଘେନି ଆସ
ଯେ ଯାହା କହିବ ମୋତେ କହିବୁ ସନ୍ଦେଶ
ଏହା ଶୁଣି ମହୀରାବଣ ଲେଉଟିଲା
ଦେବ ଦଳନ ରଥ ଚଢ଼ି ଅଲଙ୍କାକୁ ଗଲା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାଳମ୍ବରି
ଭିତର ପୁରେ ରାବଣ ଥିଲା ବିଜେକରି ।
ବାହାର ଜଗତିରେ ଆସିଣ ବସିଲା
ଶୁକ ସାରଣ ମନ୍ତ୍ରୀ ଦୁହିଁଙ୍କି ଡ଼କାଇଲା ।
ଏକାନ୍ତେ ଭଲଇ ମନ୍ତ୍ରୀଙ୍କ ସଙ୍ଗେ ଘେନି
କି ବୁଦ୍ଧି କରିବି ମୁହିଁ କହ ମନ୍ତ୍ରୀ ବେନି ।
ଶୁଣି ଶୁକ ସାରଣ ଯୋଡ଼ି ବେନିକର
ହେ ଦେବ ଭୂପତି ହେ ପ୍ରତାପୀ ଲଙ୍କେଶ୍ୱର
ନ କରିବ ମନ ଦେବ ଉପାଏ କହିବା
ବୀରବାହୁ କୁମର ତୋହର ଅଣାଇବା ।
ମହୀରାବଣ ଯିବାରୁ ଶତେ ଗ୍ରୀବ ପୁଣ
ଅଯୋଧ୍ୟା ଯାଇ ଯୁଝିବ କରିଛି ସେ ମନ ।
ମହୀରାବଣ ଅଲଙ୍କାରୁ ଫେରିଣ ଆଇଲେ
ହନୁ ସୁଷେଣ ଲକ୍ଷ୍ମଣ ହତ ନେବ ଭଲେ ।
ସେ ତିନିଙ୍କ ତାର ପୁରେ ପ୍ରାଣରେ ମାରିବ
ପଦ୍ମବ୍ୟୂହ କରିଣ ତାହାକୁ ହରିନେବ ।
ବୀରବାହୁ କୁମରକୁ ଅଣାଇବା ପୁଣ
ଯୁଦ୍ଧ ରହିଲେ ରାମ କରିବ ତୋ ଜାଣ ।
ଦିନେ ଆସି ବୀରବାହୁ ତା ସଙ୍ଗେ ଯୁଦ୍ଧକରୁ
ଆରଦିନେ ମହୀରାବଣ ପଛେ ହରୁ ।
କଣି ଘାଟେ ବୀରବାହୁ ରାମ ଲକ୍ଷ୍ମଣଙ୍କୁ
ଯମରେ ଜଣନ୍ତା କେହି ନାହାନ୍ତି ତାହାକୁ ।
ଇନ୍ଦ୍ରଜିତ ଠାରୁ ସେହି ଅଟଇ ବଳବନ୍ତା
ତପୋବଳେ ବଳିଷ୍ଠ ବସ୍ତୁର ଦକଟା ।

ସେହି ଷର୍ବିବର ଏହାକୁ ଜଣନ୍ତା ।
ଅନ୍ୟ ଲୋକରେ ରାମ ଲକ୍ଷ୍ମଣ ନୁହନ୍ତି ହତ୍ୟା ।
ନ କର ଡେର ହେଲା ଶ୍ରେଣ ବେଗେ ଘୂର
ତାକ ଆଣନ୍ତୁ ବେଗେ ବୀରବାହୁ କୁମର ।
ଶୁଣିଣ ଲଙ୍କପତି ହରଷ ହୋଇଲା
ଶାର୍ଦ୍ଧୋଳ ନାମେ କୁମର ହକାରି ଆଣିଲା ।
ବୋଇଲା ଶାର୍ଦ୍ଧୋଳକୁରେ ବେଗହୋଇଯିବୁ
କପିଳାସ ଯାଇ ବୀରବାହୁକୁ ଭେଟିବୁ ।
ମୁହିଁ କହିଲି ବୋଲି କହିବୁ ତାହାକୁ
ଯେମନ୍ତେ ଆସିବ ସେହୁ ଘେନିଆସ ତାକୁ ।
ଆଜ୍ଞାପାଇ ଶାର୍ଦ୍ଧୋଳ ଶିରେ କରିଦେଲା
ଓଳଗ ମେଲ୍ଲଇ ସେ ଗଗନେ ଉଭମିଲା ।
ଦୁଇ ଦଣ୍ଡରେ ମିଳିଲା କପିଳାସେ ଯାଇଁ
ଦେଖିଲା ପର୍ବତ ସ୍ଥଳ ସୁନ୍ଦର ଅଟଇ ।
ସେଥିପରେ ବସି ତପକରେ ବୀରବାହୁ
ତାହା ପାଶେ ପ୍ରବେଶ ହେଲା ଯୁହୁଁ ଯୁହୁଁ ।
ଦେଖିଲା ବସିଛି ବୀର ନିଶ୍ଚଳ ଆସନ
ପବନ ନିରୋଧି ଜପୁଅଛି ବ୍ରହ୍ମଜ୍ଞାନ ।
ନିର୍ଭୟ ହୋଇ ବୀର ନିକଟକୁ ଗଲା
ନପୁଣ କୋପ ମୋତେ କରଇ ଉଚ୍ଚରିଲା ।
ବିନୟ ହୋଇ ବୀର ଯୋଡ଼ଇ ବେନିକର
ବୀରବାହୁ ମୁଖ ଚାହିଁ କହେ ଧୀର ଧୀର ।
ହେ ବୀରମଣି ତୁ ରେ କେତେ ତପକର
ରାଜ୍ୟ ଉପତ୍ତି ପଡ଼ିଲା ସେକଥା ନ ବିଚାର ।
ତୋହର ପିଅର ଯେ ଲଙ୍କାର ଅଧିପତି
ସେ ମୋତେ ପେଷିଛି ତୋହର ଯେ କତି ।
ତପ ଛାଡ଼ ବେଗରେ ଯିବା ବେଗ ହୋଇ
ଆଜ୍ଞା ଦେଇଛନ୍ତି ମୋତେ ମନ୍ଦୋଦରୀ ସାଇଁ
ତୁମ୍ଭ ଯିବାକୁ ନୃପତି ଅଛି ବାଟ ଚାହିଁ
ତୁମ୍ଭେ ଦୁଃଖ ବିନାଶିବ ଲଙ୍କାଗଡ଼ ଯାଇ ।
ନକର ହେଳାରେ ବାବୁ ବେଗେ ତପ ଛାଡ଼
ଶତ୍ରୁ ଉପଗତ ହୋଇ ବେଢ଼ିଅଛି ଗଡ଼ ।
ଅନେକ ବିନୟୀ ହୋଇ କହେ ଚାଟୁଆଇ
କେବେ ତପ ତାର ସେ ନ ପାରିଲା ଛଡ଼ାଇ
ପୁଣି ବିନୟୀ ହୋଇ କହିଲା ଅନେକ
ଆରେ ବୀରମଣି ତୁ ଲଙ୍କାକୁ ଯାଇ ଦେଖ ।

ଇନ୍ଦ୍ରଜିତ ସହିତରେ ସୋଦର ନାଶଗଲେ
ଟୁଡ଼ୁଡ଼ା କୁମ୍ଭକର୍ଣ୍ଣ ବନ୍ଧୁବର୍ଗ ମଲେ ।
ତଞ୍ଜକନ୍ତି ରଘୁବଳ ଛନ୍ତି ଗଡ଼ ବେଢ଼ି
ଦେଶ ଘୋଷ ଉପାଡ଼ି ଲଙ୍କା ଦେଲେ ପୋଡ଼ି
ଶୋକ ସାଗରେ ବୁଡ଼ିଅଛି ନରସାଇଁ
ତୁମ୍ଭ ବୀରମଣିରେ ଉଦ୍ଧାର କର ଯାଇ ।
ଉଠ ଉଠ ବାବୁରେ ବେଗେ ଛାଡ଼ ଲୟେ
ଏତେ କହି ଶାର୍ଦ୍ଧୋଳ ତୁନି ହୋଇ ରହେ
କିଛି ନ ଶୁଣଇ ବୀର ମଉନେ ବସିଅଛି
କେବଳ ପାଦ ପଦ୍ମରେ ଚିତ୍ତ ଯେ ବୁଡ଼ିଛି ।
ବୋଇଲା ତୋର ଯେ କରିବାର କିସ
ଦେଖୁ ଦେଖୁ ଲଙ୍କାଗଡ଼ ଏବେ ଗଲା ନାଶ
ଧନ ଜନେ ନିମନ୍ତେ ପ୍ରାଣୀ ତପ କରୁଥାନ୍ତି
ଅତି ଦୁଃଖ ପାଇଲେରେ ସେ କଥା ଛାଡ଼ନ୍ତି ।
ତାଙ୍କ ଧନ ସମ୍ପଦରେ ଦେଖୁ ଦେଖୁ ଗଲା
ତପ କରିବାରେ ପ୍ରୟୋଜନ କିସ ହେଲା ।
କୁପୁରୁଷଙ୍କ ବେଭାର ଏସନକ ମତି
ସନ୍ଥ ପ୍ରାଣୀମାନଙ୍କୁରେ କହନ୍ତି ଅଗ୍ୟାତ ।
ଏମନ୍ତେ କଟୁକରି ବୋଲେ ଅନେକ ବାଣୀ
କିଛି ନ ଶୁଣଇ ତା କୁମର ବୀରମଣି ।
ନିରାଶ ହୋଇ ଦୂତ ନିଃଶ୍ୱାସ ପକାଇଲା
ବାହୁଡ଼ିଣ ଲଙ୍କାକୁ ଚଳିଗଲା ।
ଲଙ୍କପତି ବସିଅଛି ଦର୍ଶନ କଲା ଯାଇ
ପାୟେ ପଡ଼ି ଶୋଇକରି ଉଠେ ସେ ବିନୋଇ
ହେ ଦେବ ଲଙ୍କେଶ୍ୱର ଶୁଣହେ ଗୋସାଇଁ
ତୁମ୍ଭେ ଯାହା କହିଥିଲ କହିଲି ମଣାଇ ।
କେବେହେଁ ନ ଭାଙ୍ଗିଲା ତାର ତପ ଗୋଟି
ନିରାଶ ହୋଇଣ ଦେବ ଅଇଲି ଲେଉଟି ।
ଶୁଣି ଲଙ୍କପତି ମନେ ବିଷାଦ ହୋଇଲା
କବୁନ୍ଧ କଣ୍ଠ ରେ ବୋଲିଣ ବିସ୍ମରିଲା ।
ପୁଣି ବୋଇଲା ଶୁକ ସାରଣ ମୁଖ ଚାହିଁ
ତୁମ୍ଭେ ଦୁଇ ଜଣରେ ଯାଅ ବେଗ ହୋଇ ।
ମୋହର ବୋଇଲା ବୋଲି ଆଣ ମୋ ପୁତକୁ
ନୋହିଲେ ଆପେ ଯାଇ ଆଣିବି ତାହାକୁ ।
ଆଜ୍ଞା ପାଇ ବେନି ମନ୍ତ୍ରୀ ବାହାର ହୋଇଲେ
ରଥବରେ ବସିଣ ଯେ ଗଗନେ ଉଭମିଲେ ।

ଦୁଇ ଘଡ଼ିରେ ଯାଇ ସେ କପିଳାସ ପୁରୀ
ଯେଉଁଠାରେ ବୀରବାହୁ ବସିଛି ତପକରି ।
ସେ ସ୍ଥାନେ ମିଳିଲେ ଯାଇ ବେନି ମନ୍ତ୍ରୀବର
ଦେଖିଲେ ତପ କରୁଛି ବୀରବାହୁ କୁମର ।
ବହୁ ପ୍ରଶଂସା ତାକୁ କରନ୍ତି ପୁରସ୍କାର
ଧନ୍ୟ ଧନ୍ୟ ତୋହର ପିଅର ଗର୍ଭଧାରୀ ।
କଷ୍ଟ ରେ ଉକତି ତୁରେ ହୋଇଲୁରେ ବାଳ
ତୋତେ ସମାନରେ ନୁହନ୍ତି ଦିଗପାଳ ।
ଏବେ ଚାଲ ବାବୁରେ ଲଙ୍କାଗଡ଼ ଯିବା
ରାଜା ଆଜ୍ଞା ଦେଇଛିରେ ଦର୍ଶନ କରିବା ।
ବହୁତ ବିପତ୍ତିରେ ପଡ଼ିଛି ରାବଣକୁ
ସୁପୁତ୍ର ବୋଲିଣ ଆଶା କରିଛି ତୁମ୍ଭଙ୍କୁ ।
ହେଳା ତୁ ନ କର ବାବୁ ଉଠ ଚାଲ ଯିବା
ଶତ୍ରୁକୁ ମାରିଣ ପରେ ତପ ଆରାଧିବା ।
ଦେଖ ତୋର ପିତାର ବିପତ୍ତି କାଳ ଯେତେ
ନପ୍ତ ନରନାରୀ ବନ୍ଧୁ କୁଟୁମ୍ବ ସହିତେ ।
ସେମାନଙ୍କ ବିପତ୍ତି ଦେଖି ତୁରେ ଯାଇ
ଯେମନ୍ତେ କ୍ଷତ୍ରି କୂଳରେ ଜାତ ହେଲୁ ତୁହି ।
ଏବେ ଆମ୍ଭଙ୍କୁ ତୋର ପିତା ପେଷିଦେଲା
ମୋର ପୁତ୍ର ବେନି ଆସ ବୋଲିଣ ବୋଇଲା
ତୁହି ଯେବେ ନଯିବୁରେ ଆମ୍ଭର ବୋଲରେ
ଆପଣେ ବିଜେ କରି ଆସିବ ଲଙ୍କେଶ୍ୱରେ ।
ଏମନ୍ତେ ବହୁତ ମୋତେ କହିଲେ ମନ୍ତ୍ରୀବେନି
ଏକଥାକୁ ନ ଶୁଣି ବସିଛୁ ହୋଇ ତୁନି ।
ଶୁଣି ବୋଲୁଛନ୍ତି ତାକୁ ବେନି ମନ୍ତ୍ରୀବର
ପିତା ତୋର ରାବଣରେ କଲା ଅବେଭାର ।
ଜନକର ନନ୍ଦନୀକି ହେରାଇ ଆଣିଲା
ତେଣୁ ସେ ଶ୍ରୀରାମ ତୁମ୍ଭ ବଂଶ ନାଶ କଲା ।
ଆମ୍ଭଙ୍କୁ ପେଷିଲେ ରାଏ ତୁମ୍ଭଙ୍କୁ ନେବାପାଇଁ
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଯୁଦ୍ଧ କର ଯାଇ ।
ଶୁଣିଣ ବୀରବାହୁ ରାମନାମ ଗୋଟି
ଧ୍ୟାନ ଛାଡ଼ି ବୀରବାହୁ ଚାହିଁଲା ଲେଉଟି ।
ବୀରବାହୁ ପଚାରଇ କେ ତୁମ୍ଭେରେ ଅଟ
କେବଣ କାରଣେ ମୋହର ପାଦେ ଖଟ ।
ଶ୍ରୀରାମ ନାମ ଗୋଟି ଅମୃତ ମୟେ ରସ
ରାମନାମ ଶୁଣାଇ ମୋ ତପକଲ ନାଶ ।

କାହିଁକି ଆସିଅଛ କହରେ ଆମ୍ଭଙ୍କୁ
କିସ ଉପକାର ମୁଁ ଯେ କରିବି ତୁମ୍ଭଙ୍କୁ ।
ତାର ଠାରୁ ଶୁଣିଣ କହିଲେ ମନ୍ତ୍ରୀ ବେନି
ଶୁକ ସାରଣ ଆମ୍ଭେରେ ତୁ ଏବେ ନ ଚିହ୍ନି
ରାଜା ପେଷି ଦେଲେରେ ତୁମ୍ଭଙ୍କୁ ନେବାକୁ
ରାମ ଲକ୍ଷ୍ମଣ ସଙ୍ଗେ ଯୁଦ୍ଧ କରିବାକୁ ।
ବୀରବାହୁ ବୋଲେରେ ଶ୍ରୀରାମ ପୁଣ ନଧ
ତାଙ୍କ ସଙ୍ଗେ ପିତା ମୋ କେମନ୍ତେ ହେଲାବାଦ
କେଉଁପରି ଅଇଲେରେ ଶ୍ରୀରାମ ଲକ୍ଷ୍ମଣ
ସେ କଥା ସତ କହ ହେ ଶୁକ ସାରଣ ।
କହନ୍ତି ମନ୍ତ୍ରୀ ବେନି ଶୁଣସିରେ ବାଳ
ଦଶରଥ ନାମରେ ଅଯୋଧ୍ୟା ମହୀପାଳ ।
ବିଷ୍ଣୁ ଅଂଶେ ଜାତ ତାର ଚାରି ଯେ ନନ୍ଦନ
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ ।
ପିତା ସତ୍ୟ ପାଳି ରାମ ବନବାସ କଲେ
ଜାନକୀ ଲକ୍ଷ୍ମଣ ତାଙ୍କ ସଙ୍ଗେ ଗୋଡ଼ାଇଲେ
ଗୋଦାବରୀ କୂଳରେ ରହିଲେ ବସାକରି
ନିଷ୍ଟି କରେ ରହି ଚହିଁ କାଳ ନେବ ହରି ।
ସୂର୍ପଣଖା ତାହାକୁ କେମନ୍ତେ ଠାବ କଲା
ଗୃହସ୍ଥ କରିବ ବୋଲି ତାହାକୁ କହିଲା ।
ଏକଥା ଶୁଣି ଲକ୍ଷ୍ମଣ ଶ୍ରବଣ ଛେଦିଲା
ବେଗେ ଚହୁଁ ସୂର୍ପଣଖା ବାହୁଡ଼ିଣ ଗଲା ।
କାନ୍ଦକରେ କହେ ଯାଇ ଭାଇର ଆଗରେ
ଖର ଦୂଷଣ ତ୍ରିଶିରା ଗଲେ ଚହୁଁ ଖରେ ।
ଚଉଦ ସହସ୍ର ବଳ ସଙ୍ଗତେ ଘେନିଗଲେ
ଶ୍ରୀରାମ ବାଣରେ ସମସ୍ତେ ନାଶ ଗଲେ ।
ସୂର୍ପଣଖା ବୋଇଲା ରାବଣ ଆଗେ ଯାଇ
ତାରଠାରୁ ଶୁଣି କ୍ରୋଧେ ଗଲା ଲଙ୍କସାଇଁ ।
କନକ ମୃଗ ଗୋଟିଏ କଲକ ମାୟାରେ
ମୃଗକୁ ଦେଖି ଶ୍ରୀରାମ ମାରିବାକୁ ଗଲେ ।
ତାହାଙ୍କର ଭାରିଯା ସୀତା ନାମେ ସତୀ
ତାଙ୍କୁ ହେରାଇ ଆଣିଲା ତୋ ବାପ ଲଙ୍କପତି
ରଥପରେ ବସାଇଣ ଲଙ୍କାକୁ ଆଣିଲା
ଅଶୋକ ବନରେ ରଖି ଅସୁରୀ ଜଗାଇଲା ।
ଭେଟକରି ନ ପାରେ ଜନକର ସୁତା
ଅଗ୍ନିରେ ଶୁଦ୍ଧ ସ୍ନାନ ପକ୍ଷବେ କରେ ସୀତା

ମୃଗ ମାରି ଶ୍ରୀରାମ ଲକ୍ଷ୍ମଣ ବାହୁଡ଼ିଲେ
ପ୍ରାଣର ବଲ୍ଲଭଙ୍କୁ ନ ଦେଖି ଶୋକ କଲେ ।
ଜଟାୟୁସ ଠାରୁ ରାମ ବାରତା ପାଇଲେ
ସୁଗ୍ରୀବର ସଙ୍ଗେ ରାମ ମଇତ୍ର ହୋଇଲେ ।
ମଇତ୍ର ଛଳେ ରାମ ବାଳୀଙ୍କି ପ୍ରାଣେ ମାରି
ସୁଗ୍ରୀବ କଷ୍ଟ ହ୍ୟାରେ କଲେ ଦଣ୍ଡଧାରୀ ।
ମାଲ୍ୟବନ୍ତେ ରହି ଚତୁର୍ମାସ୍ୟା ଯେ ବଞ୍ଚିଲେ
ହନୁମନ୍ତ ନାମରେ ବାନରଙ୍କୁ ପେଷିଲେ
ସୀତାଙ୍କ ଠାବକରି ମଧୁବନ ସେ ଭାଙ୍ଗିଲା
ପାଞ୍ଚ ସେନାପତିଙ୍କ ଯେ ହନୁ ମାଇଲା ।
ଅକ୍ଷୟକୁ ମାରି ଲଙ୍କାଗଡ଼ ପୋଡ଼ିଦେଲା
ସିନ୍ଧୁ ପାରି ହୋଇ ରାମେ ବାରତା କହିଲା ।
ଅକଳିତ ବଳ ଘେନ ଅଇଲେ ରାମରାଣ
ଶ୍ରୀରାମରେ ବିଭୀଷଣ ପଶିଲା ଶରଣ ।
ନୃପତି କରିବେ ବୋଲି ତାଙ୍କୁ ଦେଲେ ଶାଢ଼ୀ
କପି ସୈନ୍ୟ ଘେନ ରାମ ସମୁଦ୍ରେ ବନ୍ଧିକଣ୍ଡି ।
ସୁବଳସ୍ତା ପର୍ବତରେ କଟକ ସେ କଲେ
ତୁମ୍ଭ ପିତାଠାରୁ ସେ ଶ୍ରୀମୁଖ ଲେଖିଦେଲେ ।
ସୀତା ମାଗିବାରୁ ତୋର ପିତା କ୍ରୋଧ ହେଲା
ବୋଇଲା ମୋ ସଙ୍ଗେ ଯୁଦ୍ଧ ଯତି କରୁପରା ।
ଗଡ଼ ବେଢ଼ି ବହୁତ ଅସୁର ମାଇଲା
ପୁଣି ଆଜଥରେ ସେ ସୀତାଙ୍କୁ ମାଗିଗଲା ।
ପାଞ୍ଚଦିନେ କୁମ୍ଭକର୍ଣ୍ଣ ଖଣ୍ଡିତାକୁ ମାରି
ଦଶ ଦିନେ ତୋର ଭାଇ ଇନ୍ଦ୍ରଜିତ ମରି ।
ତେରଦିନେ ପିତା ତୋର ବ୍ରହ୍ମଶକ୍ତି ମାରି
ଲକ୍ଷ୍ମଣ ସେହିଠାରେ ପଡ଼ିଲା ପ୍ରାଣହାରି ।
ସୁଷେଣ କହିବାରୁ ସେ ହନୁମନ୍ତ ଗଲା
ଅମର ଔଷଧି ଗନ୍ଧମାଦନୁ ଆଣିଲା ।
ଘୋରି ଲେପ ଦେବାରୁ ଲକ୍ଷ୍ମଣ ଉଠିଲା
ଚଉଦ ଦିନେ ସ୍ଥୂଳଙ୍ଘ ସଂଗ୍ରାମରେ ମଲା ।
ତେରଶ ନାହିରୁ ବାଜ ଉଦ୍ଧିଲେ ଦୁଇଶ
ବାସ୍ତବ କୁମରରୁ ରହିଲେ ତୋର ଶେଷ ।
ପଞ୍ଚାଶକୋଟି ସେନାପତିରୁ ଚଉଦଶକୋଟିମଲେ
ବନ୍ଧୁ କୁଟୁମ୍ବ ତୋର ସମସ୍ତେ କ୍ଷୟ ଗଲେ ।
ତୋତେ ଆଶାକରି ଯେ ଅଛି ଲଙ୍କରାୟେ
ଶୋକ ସମୁଦ୍ରେ ବୁଡ଼ିଛି ଶୁଣ ହେ ବୀରରାୟେ

ଆସ ବୀରମଣି ହେ ଚାଲ ବେଗେ ଯିବା
ରାଜାଙ୍କୁ ଭେଟି ପଛେ ଶତ୍ରୁ ବିନାଶିବା ।
ଶୁଣି ବୀରବାହୁ ଯେ ବଚନ ବୋଇଲା
କହେ ମନ୍ତ୍ରୀବର ତୁମ୍ଭେ କ ବାଇ ହୋଇଲ ।
ସେ ଯେ ରଘୁନାଥ ସେ ସ୍ୱୟଂ ନାରାୟଣ
ତାଙ୍କୁ ଜିଣିବାକୁ କଏ ଅଛିରେ ଭୁବନ ।
ନ ଜାଣି ପିତା ମୋର ଆଣିଲା ତାର ନାରୀ
ଜାଣୁ ଜାଣୁ କାଳକୂଟ ଭକ୍ଷିଲା ଦଣ୍ଡଧାରୀ ।
ସ୍ୱୟଂ ବିଷ୍ଣୁ ନାଥ ସେ ଯେ ବୈକୁଣ୍ଠକରତା
ମୋହର ଠାକୁର ସେ ପଞ୍ଚଭୂତ ବରଦାତା ।
ମୁହିଁ ଜୟ କରିବାରେ ଯାଇ ମନ୍ତ୍ରୀ ବରେ
ଗଲେ ମୁହିଁ ନାଶ ହେବ ଶ୍ରୀରାମର ଶରେ ।
ମୁହିଁ ନ ବର୍ତ୍ତିବ ନ ବର୍ତ୍ତିବେ ଲଙ୍କପତି
ଅକାରଣେ ବୁଡ଼ାଇଲେ ଏତେକ ସମ୍ପତ୍ତି ।
ଶୁଣ ଶୁକ ସାରଣ ତୁମ୍ଭେ ସୁବୁଦ୍ଧି ପଣ୍ଡିତ
ନ ଜାଣ କି ପରଂବ୍ରହ୍ମ ଅନନ୍ତ ରଘୁନାଥ ।
ଶୁକ ସାରଣ ବୋଇଲେ ଶୁଣସିରେ ପୁତ୍ର
କେମନ୍ତେ ଜାଣିଲୁ ଯେ ପରମବ୍ରହ୍ମ ରୂପ ।
ପିତା ତୋର ଜାଣୁ ଜାଣୁ ସୀତା ହରିନେଲା
ନାରାୟଣଠାରେ ସେହୁ ଦୋରେହା ହୋଇଲା ।
ବିଧାତାର ବଚନ ମେଣ୍ଟିଲା ତୋର ପିତା
ବଂଶ ମରାଇ ଯେ କରିଛି ସେହୁ ଚିନ୍ତା ।
ବୀରବାହୁ ବୋଇଲା ମୁଁ ଜାଣିଲି ପ୍ରଶନରେ
ଈଶ୍ୱର ପାର୍ବତୀ ଯେ କହିଲେ ମୋହରେ ।
ଶୁଣିକରି ମନ୍ତ୍ରୀ ବେନି ସନମତ କଲେ
ପୂର୍ବଦିନ କଥା ତୁମ୍ଭେ କହିଲ ବୋଇଲେ ।
ଯେଦିନ ଦିନୁ ହନୁ ଲଙ୍କାକୁ ଅଇଲା
ମଧୁବନ ଭାଙ୍ଗିକରି ଅକ୍ଷୟ ମାଇଲା ।
ଜମ୍ବୋମାଳି ମୂଳରେ ପାଞ୍ଚ ସେନାପତି
କିଙ୍କର ଗଣ ସହିତେ ମାଇଲା ମାରୁତି ।
ତାହା ଦେଖି ମେଘନାଦ ଗଲା ବେଗ କରି
ନାଗଫାଶେ ହନୁକୁ ଆଣିଲା ବାନ୍ଧିକରି ।
ଗୁମୁରେ ଦ୍ୟନ୍ତେ ରାବଣ ବହୁ କୋପ କଲା
ବେଗେ ହାଣ ଏହାକୁରେ ବୋଲିଣବୋଇଲା
ତାହା ଶୁଣି ବିଭୀଷଣ ଯୋଡ଼େ ବେନିକର
ଦୂତ ଅବଧ ତ ଦେବ ଏହାକୁ ନ ମାର ।

ବହୁତ ଅଧର୍ମ ଦେବ ବଢ଼ିବ ରାଜ୍ୟକୁ
ମହାରାଜା ହୋଇ ନିନ୍ଦା ନ କର କୁଳକୁ ।
ଶୁଣି ବିଭୀଷଣ ବାଣୀ ରାଜା ସେ କୋପକଲା
ଏଥକୁ କିଛି ତୁରେ ନ ବୋଲ ବୋଇଲା ।
ଅକ୍ଷୟ କୁମରକୁ ରେ ମାଇଲା ଏହୁ ଘୋର
ଦେଖୁ ଦେଖୁ ଆଗସର କହୁରେ ପାମର ।
ବିଭୀଷଣ ବୋଇଲା ହୋଇଲା କଥା ମନ୍ଦ
ନାରାୟଣ ଦୂତ ଏ ଯେ ଅଟଇ କପି ଷଣ୍ଢ ।
ଜଣକରେ ତୋର ଯେ ଏତେ ସୈନ୍ୟନାଶେ
ଲାଜ ନ ମାଡ଼ଇରେ ମାରୁ ତାକୁ ତୁ ସେ ।
ପ୍ରହରକେ ଦେଖିବୁ ତୁରେ ବାନରର କୃତ
କେତେଶାସ୍ତି ଦେବ ତୋ ତେରେରାମଚନ୍ଦ୍ରଦୂତ
ଏତେ କହି ବିଭୀଷଣ ହୋଇଲାକ ତୁନି
ରାବଣବୋଲେ ଏ ମୁଣ୍ଡକୁ ହାଣ ଖଡ଼ଗଘେନି
ମାଇଲେ ନ ମଲା ଏ ଯେ ପବନ କୁମର
ଖଣ୍ଡା ଶୂଳ ଶକତି ଗଦା ମୁଦ୍ଗର ।
ନ କାଟେ ଶସ୍ତ୍ରରେ ତାର ବଜ୍ରସମ ଜାଣି
ଲାଙ୍ଗୁଡ଼ରେ ବସ୍ତ୍ରବାନ୍ଧି ଲଗାଇଲେ ବହ୍ନି ।
ବନ୍ଧନ ଫେଡନ୍ତେ ସେ ଗଗନେ ବିଜେକଲା
ସେହି ଅଗ୍ନିରେ ଲଙ୍କାଗଡ଼ ପୋଡ଼ିଦେଲା ।
ସୀତାଙ୍କୁ ଠାବକରି ଗଲା ସିନ୍ଧୁ ଡେଇଁ
ଶ୍ରୀରାମରି ଆଗରେ ବାରତା ଦେଲା ନେଇ ।
ସମୁଦ୍ରର କୂଳରେ ରହିଲେ ଯାଇ ଥାଟ
ସେଠାରେ ବିଭୀଷଣ ମଥାରେ ଭିଡ଼ି ଥାଟ ।
ବନ୍ଧ ବାନ୍ଧି ସାଗର ପାରି ହୋଇଗଲେ
ଅଷ୍ଟ ସୈନ୍ୟ ଯୁଥପତି ସଙ୍ଗରେ ଅଇଲେ ।
ସୁବଳୟାରେ ପ୍ରତିବଶ ହେଲେ ରଘୁସାଇଁ
ଅପ୍ରମିତ ଥାଟ ବଳ କଳନା ନ ଯାଇ ।
ଅଷ୍ଟସେନା ଆବର ପଞ୍ଚାଶ ଯୁଥପତି
ମଲ୍ଲ ମହାମଲ୍ଲ ଅପ୍ରମିତ ଯେ ଅଛନ୍ତି ।
ପର୍ବତ ସମାନରେ ଶରୀର ତାହାଙ୍କର
ପ୍ରତିଜ୍ଞା କରନ୍ତି ଧରି ଆଣିବେ ଦୁରାଚାର ।
ତାହା ଜାଣି ପିତା ତୋର ହୃଦେ କୋପକଲା
ବଳକଳ ଆସବୋଲି ଆମ୍ଭଙ୍କୁ ପେଷିଲା ।
ଆମ୍ଭେ ବେନି ମନ୍ତ୍ରୀ ଯେ ମାୟା ରୂପେ ଗଲୁ
କପିରୂପ ଧରିଣ ସୈନ୍ୟରେ ବୁଲୁଥିଲୁ ।
ଦେଖିଣ ବିଭୀଷଣ ଆମ୍ଭଙ୍କୁ ଠାବକଲା
ବାନ୍ଧିନେଇ ଶ୍ରୀରାମର ସମ୍ମୁଖେ ସମର୍ପିଲା ।
ଦୂତ କଟ କରି ସେ କହିଲା ଶ୍ରୀରାମଙ୍କୁ
ଏହି ମନ୍ତ୍ରୀ ରାବଣର ଚିହ୍ନାଅ ଏହାଙ୍କୁ ।
ଦେଖିଲୁଁ ଶ୍ରୀରାମ ଅଟେ ପରଂବ୍ରହ୍ମ ମୂର୍ତ୍ତି
ଅଖିଳ କୋଟି ବ୍ରହ୍ମାଣ୍ଡକୁ ଲାଗୁଅଛି ଜ୍ୟୋତି
ପରମ ଦୟାଳୁ ଶ୍ରୀରାମ କରୁଣା ବାରିନିଧି
ପରମାନନ୍ଦ ପୂରୁଷ ସକଳ ଗୁଣେ ସିଦ୍ଧି ।
ଦୁର୍ବାଦଳ ଶ୍ୟାମଳ ମଧୁର କାନ୍ତି ମୂର୍ତ୍ତି
କୃତାର୍ଥ ହୋଇଲୁ ଆମ୍ଭେ ଦେଖି ଦୁଇମନ୍ତ୍ରୀ ।
ନିର୍ଭୟ ହୋଇ ଆମ୍ଭେ ଗଡ଼ିଗଲୁ ଶୁଣ
ହୃଦ ପଦ୍ମ ଭିତରେ ଶ୍ରୀରାମଙ୍କୁ କଲୁ ସ୍ତୁତ ।
ଜାଣିଲେ ଦୟାନିଧି ସେ ରଘୁକୁଳ ବୀର
ଶ୍ରୀମୁଖରେ ଆଜ୍ଞାଦେଲେ ଆହେ ମନ୍ତ୍ରୀ ଉଠ
ଉଠି ଜୟହୋଇ ଆମ୍ଭେ ରହିଲୁ ସମ୍ମୁଖେ
ଆଜ୍ଞାଦେଲେ ବନ୍ଧନ ଫେଡ ଏହାଙ୍କରେ ।
ଏ ଯେବେ ରାବଣ ମନ୍ତ୍ରୀ ଆମ୍ଭର ଏ ଲୋକ
ଏହାଙ୍କୁ ବିଭୀଷଣ ହେ ନକର ତୁମ୍ଭେ କୋପ
ଏକ ବୋଇଲେ ରାବଣ ସୀତା ନେଇଥିକଲିଆଣ
ଏହାଙ୍କର କିଛି ଦୋଷ ନାହିଁ ହେ ବିଭୀଷଣ
ନ ଜାଣିବା ପଣେ ରାଜା ମନ୍ଦକୃତ୍ୟ କଲା
ପ୍ରିୟବନ୍ଧ ମାରୁଥା ମୋର ହେଇରାଇ ଆଣିଲା ।
ଏବେ ବୋଲୁଛି ତାକୁ ସମର୍ପ ମୋରକାନ୍ତା
ସୁଖରେ ଭୋଗକରୁ ଲଙ୍କାଗଡ଼ସିଂହା ।
ନୋହିଲେ କାଟିବ ତାର ଏହାଇ ମଣ୍ଡଳ
ଦଶଦିଗେ ଦଶମୁଣ୍ଡ ଦେବି ବଳାବଳୀ ।
ଏହିକଥା ମୋର ସତ୍ୟ ଅବଶ୍ୟ କରିବ
ପଚୋଷ ସହିତରେ ମୁଁ ତୋଟିଏ ନଛୋଡ଼ିବ
ଏତେକହି ଅଳପ କୋପିଲେ ରଘୁସାଇଁ
କି ଅବା ଆକାଶ ତେଜ ହୋଇଲା ଘୂର୍ଣ୍ଣଯାଇ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ନୟନେ ଜଳୁଅଛି
ଦେଖି ଆମ୍ଭେ ଭୟ ପାଇ ହେଲୁ ମୂର୍ଚ୍ଛାପୂର୍ଚ୍ଛି
ଜାଣିଲୁ ଭଗବାନ ଏ ପରମାନନ୍ଦ ପୁରୁଷ
ନିଶ୍ଚେ ଏ ନାଶଗଲା ରାଜା ଦଶାନନ ।
ଆଜ୍ଞା ପ୍ରମାଣ ଏହୁ ବନ୍ଧନ ଫେଡ଼ି ଦେଲେ
ଯାଅବୋଲି ଶ୍ରୀରାମଯେ ଶ୍ରୀମୁଖେ ଆଜ୍ଞାଦେଲେ

ଆଜ୍ଞା ପ୍ରମାଣେ ଆମ୍ଭେ ଗଡ଼ଡ଼େଇଁ ଗଲୁ
ରାଜା ଆଗରେ ସମସ୍ତ ବାରତା କହିଲୁ ।
ସେହି ତ ଦୟାନିଧି ଦୟା ଆମ୍ଭଙ୍କୁ କଲେ
ରାବଣ ଦୂତ ବୋଲି ଆମ୍ଭଙ୍କୁ ଛାଡ଼ିଦେଲେ ।
ଏତେଶ୍ରେଷ୍ଠିକ ଧର୍ମ ଯେ ଅଛଇଁ ତାଙ୍କ ଠାଇଁ
ସ୍ୱୟଂ ନାରାୟଣ ଭଗବାନ ଅଟନ୍ତି ସେହି ।
ଶୁଣି ବୀରବାହୁ ଆଖିକରେ ଥନ ଥନ
ଉଠି ଶୁକସାରଣଙ୍କୁ କଲା ଆଲିଙ୍ଗନ ।
ତୁମ୍ଭେ ପୁଣ୍ୟ ଆତ୍ମା ହେ ଶ୍ରୀରାମ ଦେଖିଅଛ
ତୁମ୍ଭର ପାତକମାନ ସକଳ ଖଣ୍ଡି ଅଛ ।
ଲଙ୍କାଗଡ଼ ଯିବ ଶ୍ରୀରାମ ଦର୍ଶନ କରିବ
ତାହାଂକର ଶରେ ମଲେ ବୈକୁଣ୍ଠେ ବସିବ
ଏତେକହି ବୀରଯାଇ ରଥରେ ବସିଲା
ସଙ୍ଗେ ବେନି ମନ୍ତ୍ରୀଙ୍କୁ ଘେନି ଲଂକା ଚଳିଗଲା ।
ପ୍ରବେଶ ହୋଇଲେ ସେ ନଗର ସିଂହଦ୍ୱାରେ
ଡଗର ଜଣାଇଲା ରାଜାର ଛାମୁରେ ।
ଶ୍ୱେଦେବ ବୀରବାହୁଙ୍କୁ ଆଣିଲେ ମନ୍ତ୍ରୀବେନି
ଶୁଣି ମନେ ଆନନ୍ଦ ହେଲା ଲଂକମଣି ।
ରଥରୁ ଓହ୍ଲାଇ ବୀର ଚାଲିଲେ ଧୀରେ ଧୀରେ
ଶୁକ ସାରଣ ଅଛନ୍ତି ତା ବେନି ପାଶରେ ।
ଯେତେଦୂର ଠାରୁ ଯେ ଲଂକମଣି ଦେଖିଲା
ନିଜଗ୍ଲାନି କରି ବୀରବାହୁ ଯେ ଖୁନ୍ଦିଲା ।
ଉଠି ଦଣ୍ଡ ଗଲା ବୀରବାହୁ ପୁଣି
ଶିରେ କରଦେଇ ପୁଣ ଲୋଟଇ ଧରଣୀ ।
ଉଠ ଉଠ ବାବୁ ବୋଲି ବୋଲଇ ନୃପତି
ମୋହର ସନ୍ନିଧିକୁ ଆସରେ ତଡ଼ିତି ।
ବୀରବାହୁ ଧୀରେ ଚାଲି ନିକଟକୁ ଗଲା
ଶିରେ ବେନିକର ଦେଇ ପାଶେ ଉଭାହେଲା
ରାଜାମୁଖ ଚାହିଁ ବୀରବାହୁ ପଚାରଇ
ରାଜ୍ୟ ନାରଖାର ଅସୁନ୍ଦର ତ ଦିଶଇ ।
କାହିଁର ରାମ ସେ ଯେ କାହିଁର ସୁଗ୍ରୀବର
ଅକାରଣେ କମ୍ପା ଶତ୍ରୁ ହୋଇଲେ ଆମ୍ଭର ।
ବିଭୀଷଣ ଖୁଡ଼ୁତା କମ୍ପାଇ ଛାଡ଼ିଗଲେ
ଭାଲୁ ମର୍କଟ କମ୍ପା ଲଙ୍କାକୁ ବିଧ୍ୱଂସିଲେ ।
ଏକଥା ସଂଚପି ମୋତେ କହନ୍ତେ ଗୋସାଇଁ
ମନରେ ତୁମ୍ଭର ତ କିଛି ସୁଖ ନାହିଁ ।

ଶୁଣିଣ ଲଙ୍କପତି କହଇ ଉତ୍ତର
ଦଶରଥ ନାମରେ ଅଯୋଧ୍ୟା ଦଣ୍ଡଧର ।
ତାହାଙ୍କର ତନଏ ରାମ ଲକ୍ଷ୍ମଣ ବେନି
ଦଣ୍ଡକା ଅରଣ୍ୟେ ଥିଲେ ଜାନକୀଙ୍କ ଘେନି ।
ସୂର୍ପଣଖା ବାରତା କହିଲା ମୋତେ ଯେଣୁ
ଜାନକୀଙ୍କ ହରି ମୁଁ ଆଣିଲିଟି ତେଣୁ ।
ଘରଣୀ ନ ପାଇ ଯତି ବନେ ବୁଲୁଥିଲା
ବିଭୀଷଣ ଖୁଡ଼ୁତା ତୋ ଶରଣ ପଶିଲା ।
ସମୁଦ୍ରରେ ବନ୍ଧ ବାନ୍ଧି ସୁବେଳସ୍ଥାରେ ରହି
ସେହିଦିନୁ ଅନେକ ସମର କଲେ ସେହି ।
ଇନ୍ଦ୍ରଜିତ ନାଗଫାଶେ ବାନ୍ଧିଲା ଦୁଇ ଯତି
ପୁଣି ବ୍ରହ୍ମଶର କଲା ନ ମଲେ ଦୁହିଁଟି ।
ମୁଁ ମାଇଲି ଏକଘନ ଲକ୍ଷ୍ମଣ ମରିଥିଲା
ଔଷଧି ଆଣି ହନୁମନ୍ତ ଜିଆଇଲା ।
ମାଇଲେ ସେ ନ ମରନ୍ତି କେବଣ ବୃତ୍ତାନ୍ତ
ସେହି ମାରିବାରେ ମୋର ମରନ୍ତି ସମସ୍ତ ।
ଭାଇ ମୋର କୁମ୍ଭକର୍ଣ୍ଣ ପୁତ୍ର ଇନ୍ଦ୍ରଜିତ
ମହା ମହା ବୀରମାନେ ପଡ଼ିଲେ ବହୁତ ।
କେବଳ ବୀରପଣରେ ମୁହିଁ ମାତ୍ର ଅଛି
ତୋହର ବାହୁକୁ ମୁଁ ଆଶା କରିଅଛି ।
ଯାଅ ବାବୁ ବେଗେ ତୁ ରିପୁବଳ ମାରି
ମୋହର ହୃଦରୁ ତୁହି ତାପ ଦୂର କରି ।
ଶୁଣିଣ ବୀରବାହୁ ବୋଲଇ ଉତ୍ତର
ଶୁଣ ଦେବ ପିଅର ପ୍ରତାପୀ ଲଙ୍କେଶ୍ୱର ।
ପର ଯୁବତୀକୁ ତୁମ୍ଭେ ହେରାଇ ଆଣିଲ
ଏଡ଼େ ଅନ୍ୟାୟ କଥା କମ୍ପାଇ ତୁମ୍ଭେ କଲ ।
ତପି ଜପିମନେ ଯେ ତପ କରୁଥାନ୍ତି
ବନବାସ କରି ଫଳ ମୂଳ ଯେ ଭକ୍ଷନ୍ତି ।
ତାଙ୍କର ଭାରିଯା ତାଙ୍କୁ କରିଥାନ୍ତି ସେବା
ସେହିମାନେ ଆମ୍ଭର ହେ ଗୁରୁ ଅଟେ ବାବା
ତାଙ୍କୁ ହରି ଆଣିବାର ବଡ଼ହିତ ଅନ୍ୟାଏ
ଏସନେକ ବଚ୍ଛର କଲ ହେ ଲଙ୍କରାଏ ।
ସମସ୍ତଙ୍କୁ ଘେନି ଏବେ ସଙ୍ଗରେ ଚଳିଲୁ
ବୈକୁଣ୍ଠ ପୁରେ ଏବେ ନିଶ୍ଚେ ଠାବ କଲୁ ।
ଜାଣିଲି ମୁହିଁ ତୁମ୍ଭେ ସୁବୁଦ୍ଧି ସୁହୃଦେକ
ଜଗତରେ ନିନ୍ଦା ତୁମ୍ଭେ କରାଇଲ ତାତ ।

ଏଣୁ କହେ ଲଙ୍କପତି ଶୁଣରେ କୁମର
ସବୁକାଳେ ଅଟଇ ଅନ୍ୟାୟ କଥା ମୋର ।
ଦେବକ୍ରିଶ ସକ୍ଷସମାନଙ୍କ ନାୟିକା
ବଳେହର ଆଣି ରୁଣ୍ଡ କଲି ଏକା ।
ଅନ୍ୟାୟ କରି ମୁଁ ଏତେକ ସମ୍ପଦ ଅର୍ଜିଲି
ଛପନଗଣ୍ଡା ଯୁଗକୁ ଆୟୁଷ ପାଇଲି ।
କାହିଁକି କୁମର ମୋର ତେରଷଠି ନାତି
ମୁକୁଟବନ୍ଧା ମୋରରେ ପଞ୍ଚାଶ କୋଟି ରଥୀ
ତିନକୋଟି ପଞ୍ଚାଶ ସହସ୍ର ମହାଦେଈ
ଝିଅ ମୁଦୁସୁଲି କେତେ କଳନା ନ ଯାଇ ।
ମୋରକୁମର ତୁ ଯେବେ ମୋ ବୋଲକରିବୁ
ଶ୍ରୀରାମ ଚର୍ହିକ ତୁ ଯୁଝିଣ ନଯିବୁ ।
ପୁତ୍ର ନାତି ସମସ୍ତେ ନାଶ ଗଲେ ମୋର
ତୁହି ଏକା ବର୍ତ୍ତିଥାଅ କୁମର ମୋହର ।
ଗଲେ ତୁହି ନାଶଯିବୁ ଶ୍ରୀରାମର ବାଣ
ଜାଣିଥାଅ ରଘୁନାଥ ସ୍ୱୟଂ ନାରାୟଣ ।
କହଇ ବୀରବାହୁ ଯୋଡ଼ି ବେନକର
ମୁହିଁ ଜାଣେ ରାମଚନ୍ଦ୍ର ତୈଲୋକ୍ୟ ଈଶ୍ୱର
ତେଣୁ ଶ୍ରୀରାମ ଶରେ ମରିବଇଁ ମୁହିଁ
ଆଜ୍ଞାଦିଅ ଶ୍ରୀରାମ ସଙ୍ଗେ ଯୁଦ୍ଧ ମୁଁ କରଇ ।
ପିତାର ଆଜ୍ଞା ମାତୋ ମୁଁ ଭଙ୍ଗିବି କେମନ୍ତେ
କରିବି ମୁହିଁ ସମର ଆଜ୍ଞା ଦିଅ ମୋତେ ।
ମୁହିଁ ମରିବାରେ ମୋର ପିତା ଯେବେ ନାଶ
ତାହନାମେ କୁମର ରହିବ ତୋର ଶେଷ ।
ତୋର ସଙ୍ଗେ ପଞ୍ଚାଶ ସହସ୍ର ମାତାଗଣ
ବିଭୀଷଣ ଚରଣେ ଖଟିବ ତୁମ୍ଭେ ଜାଣ ।
ତିନକୋଟିମାତାମୋର ସମୁଦ୍ରେ ଦେବେଝାସ
ପିତାଙ୍କର ସଙ୍ଗରେ ଯେ ଯିବେ ସ୍ୱର୍ଗବାସ ।
ଏତେକହି ବୀରମଣି ଭ୍ରାତୃ ପଡ଼ି ଶୋଇ
ଆଜ୍ଞାମୋତେ ଦିଅ ମାଏ ବୋଲିଣ ବୋଲଇ
ଉଠବାବୁ ବୀରରେ ବୋଲେ ମହାଦେଈ
ଯେ ତୋହର ଇଚ୍ଛାରେ କର ବାବୁ ଯାଇ ।
ଉଠି ବୀରବାହୁ ଯେ ନମସ୍କାର କଲି
ରାମନାମ ହୃଦେ ଘୋଷି ଚରଣ ବଢ଼ାଇଲି
ଆପଣା ନିଜ ମନ୍ଦିରେ ହେଲି ପରବେଶ
ବେଗେ ଅଣାଇଲି ଡ଼ାକି ନିଜ ରାଣୀ ହଂସ ।

ଲକ୍ଷେ ରାଣୀ ଆସି ତାଙ୍କ ପାଶେ ପରବେଶ
ସ୍ୱାମୀଙ୍କର ଚରଣେ ଖଟିଲେ ରାଣୀହଂସ ।
ଉଠି ଶିରେ କରଯୋଡ଼ି ସର୍ବେ ଉଭାହେଲେ
ବୀରବାହୁ ବୋଲେଏଥି ଶୁଣ ତୋ ତୁମ୍ଭେଭଲେ
କପିଳାସ କନ୍ଦରେ ତପ କରୁଥିଲି ମୁହିଁ
ରାଜାଘେନଆସିଲେମୋତେମନ୍ତ୍ରୀକପଠିଆଇ
ମୋତେ ବୋଲେ ରାମସଙ୍ଗେ କର କୁଅମର
ପିତାଙ୍କର ଆଜ୍ଞା ମୁଁ ଭଙ୍ଗିବି କ ପ୍ରକାର ।
ତାହାଙ୍କର ଅର୍ଜିଲି ଶରୀର ଅଟେ ମୋର
ଯ ଉଛି ଶ୍ରୀରାମ ସଙ୍ଗେ କରିବ ସମର ।
ପୁତ୍ରମାନେ କୁମର ରାମବାଣେ ହତ
ରାମସଙ୍ଗେ ଯୁଝିନ୍ତେ ମୁଁ ଯିବି ସ୍ୱର୍ଗ ପଥ ।
ମୋହର ମରଣ ଗୋ ଶୁଣିବ ଯେତେବେଳେ
ସମୁଦ୍ରରେ ଝାସ ଦେବ ତେତେବେଳେ ।
ତୁମ୍ଭେ ଯିବାଯାଏ ମୁଁ ଶୂନ୍ୟରେ ଥିବି ରହି
ତୁମ୍ଭେ ଗଲେ ସଙ୍ଗ ହୋଇ ଯିବା ସ୍ୱର୍ଗ କହିଁ ।
ଅଚଳା ନବରେ ଯାଇ ଜଣ୍ଟିଲେ ରହିବା
ନାରୀଙ୍କ ମନ ବୋଧିଲି ରାବଣ ତନୁଜା ।
ବାହାରେ ପ୍ରବେଶ ଯାଇ ହେଲି ବୀରବର
ସାରଥି ମଣ୍ଡିଦେଲି କବଚ ରତ୍ନବର ।
ଏଥୁ ଅନନ୍ତରେ ବୀର ସଜହୋଇ ଗଲି
ଅଭୟ ପଦ୍ମକୁ ହୃଦରେ ସୁମରିଲି ।
ଶିରରେ ଜରି ଟୋପର ରତ୍ନ ପାଗମଏ
ବେନ ପୟରେ ଖଞ୍ଜିଲି ଅଭେଦ ଯୋଡ଼ାଏ
ପ୍ରଚଣ୍ଡ କରବାଳ ଯମଦାଢ଼ ବାନ୍ଧିଲି
କଟିରେ ରତ୍ନ କଟାରି ସଯତ୍ନେ ଖୋସିଲି ।
ବେନ କନ୍ଧରେ ଅଛି ଅକ୍ଷୟେ ବେନ ତୋଣ
କୋଦଣ୍ଡ ସମାନେ ଧନୁ ଧଇଲି କରେଣ ।
ଦୁଃଖୀ ଦରିଦ୍ରଙ୍କୁ ସେ ବହୁତ ଦାନଦେଲି
ଅନ୍ନ ବସ୍ତ୍ର ସହିତେ ଅନେକ ବଳୋହିଲି ।
ସୁବର୍ଣ୍ଣ ମିଶାଇ ସେ ମାଣିକ୍ୟ କଲି ବୃଷ୍ଟି
ଶଙ୍ଖ ଆଳେ ଶାନ୍ତ ଚଣ୍ଡି ପଢନ୍ତେ କୋଟିକୋଟି
ଚତୁରଙ୍ଗ ଦଳ ସଜ ହୋଇଲେ ପନ୍ତ ପନ୍ତ
ରଥ ଗଜ ଅଶ୍ୱ ଯେ ଅସଂଖ୍ୟ ପାଦାନ୍ତ ।
ଏସନେକ ସମୟରେ ବାଜିଲି ମଙ୍ଗଳ
ଦଧି ମତ୍ସ୍ୟ ପୂର୍ଣ୍ଣକୁମ୍ଭ ଚୂତପତ୍ର ନଟକାଳ ।

ନାରୀଗଣେ ହୁଳହୁଳି ଦିଅନ୍ତି ଅପାର
ଚଣ୍ଡୀ ପୂଜେ ମଙ୍ଗଳ ପଢ଼ନ୍ତି ବାରମ୍ବାର ।
ଏହି ସମୟରେ ବୀର ରଥରେ ବସିଲା
ଅମଙ୍ଗଳକାଣ୍ଡ ସେହି ବହୁତ ଦେଖିଲା ।
ଅନୁକ୍ଷଣେ ସ୍ଫୁରୁଅଛି ତା ବାମ ନୟନ
ଥରଗଲା ହୃଦୟ ମନ ତା ଛନ୍ନ ଛନ୍ନ ।
ଗୃଧ୍ର ପକ୍ଷୀ ମାଂସ ଖଣ୍ଡେ ଘେନିଣ ଉଡ଼ଇ
ତାହା ଦେଖି ବୀରବାହୁ ମନେ ବିଚାରଇ ।
ଏତେ ଅଶୁଭ ଦେଖିଲେ ହେବ ଅପଯଶ
ଅବଶ୍ୟ ମୁଁ ଶ୍ରୀରାମର ବାଣେ ହେବି ନାଶ ।
ଏ ଯେଉଁ ଅମଙ୍ଗଳ ପରମ କାରଣ
ଶ୍ରୀରାମର ହାତରେ ଯାଉ ମୋର ପ୍ରାଣ ।
ଏତେ ବୋଲି ବୀରବାହୁ ଶଙ୍ଖ ଧ୍ୱନି କଲା
ରାମନାମ ହୃଦେ ଘୋଷି ରଥରେ ବସିଲା ।
ବାଜିଲା ବୀରତୂର୍ୟ ଢମକ ନିଶାଣ
ଢୋଲ ଦାମ ମହୁରୀ ମର୍ଦ୍ଦଳ ବଂଶୀ ଜାଣ ।
କଂସାଳ ଝଞ୍ଜାଳ ଯେ ବାଜେ ଅପ୍ରମେୟ
ଡ଼ାହାଣାବର୍ତ୍ତିକ ଶଙ୍ଖ ଶୁଭେ ଜୟେ ଜୟେ
ଘୋଡ଼ାଙ୍କର ହ୍ରେଷାରବ ହସ୍ତୀଙ୍କ ଗର୍ଜ୍ଜନ
ପାଦାନ୍ତ ଚଳନାରେ ପୂରିଛି ଗଗନ ।
ଉତ୍ତର ଗଡ଼ଦ୍ୱାର ଫେଡ଼ିଲେ କବାଟ
ବାହାର ହେଲେ ସେ ଦ୍ୱାରେ ଅପ୍ରମେୟ ଥାଟ
ଦେଖିଣ ଠଣାଲେକେ ହେଲେ ଖଳବଳ
ଆଜ ବଜେକର ଦେଖ ଅଇଲା ଲଙ୍କପାଳ ।
ସୈନ୍ୟ ଗହଳ ଯେ କଳନା ନ ଯାଇ
ଥରଗଲ ହୋଇ ବୀରଥୂର ଯେ ବାଜଇ ।
ଏହି ସମୟରେ ଯେ ବୀରବାହୁ ବୀର
ମନ୍ଦର ଗିରି ସମାନେ ଦିଶେ ରଥ ତାର ।
ତାଙ୍କୁ ଦେଖି ଋକ୍ଷକପି ସୈନ୍ୟ ଭୟ କଲେ
ନୀଳ ସେନାପତି ଗୁଡ଼ିଏ ପଳାଇଲେ ।
ଶ୍ରୀରାମଙ୍କ ଆଗରେ ଜଣାଇ ବାରତା
ବୀରକେ ଆସିଅଛି ପ୍ରଚଣ୍ଡ ବଳବନ୍ତା ।
ସୂର୍ଯ୍ୟର ତେଜ ପ୍ରାୟେ ଦିଶେ ତେଜ ତାର
ଅପ୍ରମେୟ ଥାଟ ଏ ଲଙ୍କାରୁ ବାହାର ।
ଦେଖିକରି ଠଣାଲେକେ ପଛଘୁଞ୍ଚା ଦେଲେ
ଆଗଭର ହୋଇ ଦେବ ଗୋଟିଏ ନରହିଲେ

କେବଳ ନୀଳ ସେନାପତି ଅଛି ରହି
ହେଦେବ ଆପେ ହଜେ କରିବା ରଘୁସାଇଁ
ଶୁଣି ରଘୁନାଥ ପୁଚ୍ଛନ୍ତି ବିଭୀଷଣକୁ
କହୋ ଲଙ୍କପତି ତୁମ୍ଭେ ଜାଣ କି ତାହାକୁ ।
ବିଭୀଷଣ ଜଣାଏ ଯୋଡ଼ି ବେନିକର
ହେଦେବ ଅଟେ ଏହୁ ବୀରବାହୁ କୁମର ।
ବିଷ୍ଣୁର ଭକତ ଏହୁ ବଳେ ବଳୀଆର
ଇନ୍ଦ୍ରଜିତ ସମାନେ ଅଟେ ଧନୁର୍ଦ୍ଧର ।
କଇଲାସ କନ୍ଦରେ ଏ ତପ କରିଥିଲା
ବିଷ୍ଣୁ ପାଦେ ଚିନ୍ତଣ ଅନେକ କାଳଗଲା ।
ଏବେ ଦେଖ ରାବଣ ତାହାକୁ କଲା ଆଣ
ହେଦେବ ରଘୁନାଥ ଏ ପୁଣ ଯିବ ନାଶ ।
ଶୁଣିକରି ରାବଣାରି ହେଲେ କ୍ଷଣେ ତୁନି
କହନ୍ତି ସେ ଯେବେ ମୋତେ କରିବ ଦର୍ପିମା
ନ କର ବିନାଶ ତାକୁ ନୋହେ ତା ମରଣ
ଶସ୍ତ୍ର ଘେନି ଯୁଦ୍ଧକଲେ ନଷ୍ଟେ ମୁଁ ପରାଣ ।
ଏତେ କହି ଶ୍ରୀରାମ ଧନୁରେ ଦେଲେ ଗୁଣ
ଯାଅ ଯାଅ ଅଷ୍ଟସେନା ଘେନି ବିଭୀଷଣ
ଆଗହୋଇ ଏ ରଥକୁ ଓଗାଳ ହୋ ଯାଇ
ଘୂଲ ହୋ ମଇଥ ହଁ କରିବା ଏଥିପାଇଁ ।
ଆଜ୍ଞାପାଇ ଥାଟ ବଳ ହୋଇଲେ ବାହାର
ଘୂଲ ଘୂଲ ମାର ଡାକ ପଡ଼େ ନିରନ୍ତର ।
ଅଙ୍ଗଦ ଯେ ହନୁମନ୍ତ ଜମ୍ବେଦ ସୁଷେଣ
ଦଧିମୁଖ କାଳମୁଖ ବଳମୁଖ ଋମଣ ।
ଗନ୍ଧମାର୍ଦ୍ଦନ ଯେ ଦୃବିନ୍ଦ ପନଶୀଳ
ସାରଥ ପାରସ କୁନ୍ଦ କାମୋଦ ନଳ ନୀଳ ।
ବିବଧ ସମ୍ପାତି ଯେ ଡ଼ାଳମ୍ବ କେଶରୀ
ଗବୟ ଗବାକ୍ଷ ସୁଶୋଦନ ଆଦିକରି ।
ସୁନାଶ ଶରସେନ୍ଦ୍ର ମଳୟ ବସନ୍ତ
କାଞ୍ଚନ କାଳଞ୍ଜନ କୁମୁଦ ପ୍ରଭୃତି ।
ମହେନ୍ଦ୍ର ପାଟୋଳ ପବନ ପାରିଜାତ
ଅଷ୍ଟ ସେନାପତି ଯୂଥପତି ଯେ ସମସ୍ତ ।
ବୀର ମହାବୀର ଯେ ମଲ୍ଲ ମହାମଲ୍ଲ
ଭେରେକାର କରିଣ ଧାଇଁଲେ କପିଦଳ ।
ପର୍ବତରୁ ଓହ୍ଲାଇଲେ ଶ୍ରୀରାମଙ୍କ ଦଣ୍ଡ
ହେଳ ଘେନୁଅଛି ଯେ ପୃଥିବୀ ନବଖଣ୍ଡ ।

ଆଗୁଆଣି ଦଣ୍ଡରେ ପଡ଼ିଲେ ଯାଇ ଭେଟ
ଅନ୍ୟ ଅନ୍ୟ ସଂଗ୍ରାମ ଲାଗିଲେ ବେନି ଥାଟ ।
ଖଡ୍‌ଗଶର ଶକତି ଲଙ୍କିଆ ଶାବେଳୀ
ମୁଷଳ ଭୁଷଣ୍ଡୀ ବାଣ ମାରନ୍ତି ହାବେଳୀ ।
କେହିଁ କେହିଁ କପିମାନେ ଗିରି ଧରି ପିଟି
କେହୁ ବୃକ୍ଷ ପହୁଡ଼ଇ କେହୁ ବଜ୍ରମୁଷ୍ଟି ।
ଝନ ଘଡ଼ଘାଏ ବାଜିଲା ରଣଗୋଳ
ପାଏ ନ ଦୁଷ୍ଟିଣ ଯୁଝନ୍ତି ବେନି ଦଳ ।
ଏସନେକ ସମୟରେ ଅଷ୍ଟ ସେନାପତି
ମାର ମାର ବୋଲିଣ ସଂଗ୍ରାମେ ପଶନ୍ତି ।
ପର୍ବତ ଶିଳା ବୃକ୍ଷ ଧରି ସେ ମାରନ୍ତି
କାହାକୁ କସୁଡ଼ିଣ ପାଦେ ମରଦନ୍ତି ।
ଯେତେ ସୈନ୍ୟ ଆସିଥିଲେ ମଲେ ରାବଣର
ତାହା ଦେଖି ବୀରବାହୁ ଟେକ ରହୁବର ।
ସଂଗ୍ରାମମଣ୍ଡଳେ ବୀର ପଶିଲେକ ଆସି
ଦେଖି ସେନାପତିମାନେ ପଡ଼ିଲେକ ତ୍ରାସି ।
ରହ ରହ ବୋଲି ଯେ ବିଭୀଷଣ ବୋଇଲା
ଖୁଡ଼ୁତାକୁ ଦେଖି ବୀର ରଥୁଁ ଓହ୍ଲାଇଲା ।
ଶସ୍ତ୍ର ରଖି ବୀରବାହୁ କଲା ପ୍ରଦକ୍ଷିଣ
ପାଦେ ପଡ଼ି ଶୋଇ ନମସ୍କାର ପୁଣ ପୁଣ ।
କେ ତାତ ତୋହର ଜନ୍ମ ଅଟଇ ଯେ ଧନ
ଧନ୍ୟ ଧନ୍ୟ ଜାତକଲେ ପିଅର ଜନନୀ ।
ସ୍ୱୟଂ ନାରାୟଣଙ୍କର ପାଦ ସେବା କଲୁ
ପରଂବ୍ରହ୍ମ ରୂପକୁ ନୟନେ ଦେଖିଲୁ ।
ଏ ତୁମ୍ଭର ଭାଗ୍ୟ ହେ କହିବ ମୁଁ କେତେ
ଶ୍ରୀରାମଙ୍କୁ ଦର୍ଶନ କରାଇ ଦେଇ ମୋତେ ।
କଥାଏ ମାଗିବି ସତ୍ୟ କରିବ ହେ ତାତ
ମୋ ଜନମାମାନେ ହେବେ ଯେମନ୍ତେ ତୁମ୍ଭ ଭୃତ୍ୟ
ମୁହିଁ ଶ୍ରୀରାମ ଶରେ ପାଇବି ମରଣ
ସ୍ୱର୍ଗପୁର ଗଲେ ମୁଁ ଯେ ପାଇବି କାରଣ ।
ତୁମ୍ଭ ରଘୁନାଥ ନ ମାରି ମୋତେ ପୁଣ
ମରମ କହି ମୋର ମରାଇବ ପ୍ରାଣ ।
ଏ ମା ଗୁଣି ତୁମ୍ଭଙ୍କୁ ମାଗୁଛି ହେ ତାତ
ନ କଲେ ନିଷ୍ଟୟ ତୋତେ କରିବ ପ୍ରାଣଘାତ
କହିଲି ମୋର ବଧ ଦୋଷ ଗଲା ମୋର
ସପ୍ତଯୁଗ ତପସ୍ୟାରୁ ମୋତେ ପାରିକର ।

ତୁମ୍ଭେ ମୋର ପିତା ହେଳନ୍ତି ନମୋତେକର
ଏତେ କହି ନମସ୍କାର ପାଦେ କଲା ତାର ।
ଏହା ଶୁଣି ବିଭୀଷଣ କହେ ମୃଦୁ ବାଣୀ
ଶୁଣ ବାବୁ ବୀରବାହୁ କୁମର ଚୂଡ଼ାମଣି ।
ତୁ ବୋଲିବୁ ସଂଗୋହ ଗୁଡ଼ିଲା ଆମ୍ଭର
କହୁଛି ଦୋଷ ମୋର ନାହିଁରେ କୁମର ।
ଅନ୍ୟାୟ ଦେଖି ତୋହର ପିତାକୁ ଭଆରିଲି
ଜନକ ନନ୍ଦିନୀକ କଥା ଆଣିଲୁ ବୋଇଲି ।
କାହୁଡ଼ାଇ ଦେବାକୁ ନ କରିବା ହଠ
ଏକଥା ନ ଶୁଣି ତୋର ପିତା କଲା କ୍ରୋଧ
ଗୋଇଠାଏ ମାରିମୋତେ ଫୋପଡ଼ାଇଦେଲା
ଏ ଗଡ଼ୁ ଯାକୁ ବାହାର କରରେ ବୋଇଲା
ଆଜ୍ଞାପାଇ ଦୂତ ମୋତେ କଲେ ବାହାର
ସେହିକ୍ଷଣି ଦଶଦିଗ ଦିଶିଲା ଅନ୍ଧକାର ।
ଶ୍ରୀରାମଙ୍କ ଚରଣେ ଆସି କଲି ସେବା
ଏକଥା ମୋର ଦୋଷ ନାହିଁଟିରେ ବାବା ।
ଶ୍ରୀରାମଙ୍କୁ କହି ମୁହିଁ ଦୂତ ବରଗିଲି
ସୀତା ଫେରାଅ ବୋଲିଣ ବୋଇଲି ।
ଦୂତଙ୍କର ସଙ୍ଗରେ ଯୁଦ୍ଧ ଆରମ୍ଭିଲେ
ଦୁଇଥର ଦୂତ ଯାଇ ଫେରିଣ ଅଇଲେ ।
ଶତେକ ଘରିଯା ମୋ ବନ୍ଧଣି କୁମର
ଏହାଙ୍କୁ ବନ୍ଦିଶାଳେ ରଖିଛି ପିତା ତୋର ।
କେତେ ନାତି ମୋର ପରିବାର ଯେତେ
ସମସ୍ତଙ୍କୁ ବନ୍ଦୀଶାଳେ ରଖିଛି ଯୁକତେ ।
ଭାଇବୋହୁ ଆଗରେ କହଇ ତୋର ତାତ
ତୋ ପତିକୁ ମାରି ତୋତେ ଘରିଯା କରଇତ
ପୁତ୍ର ବଧୂ ନାତି ତାର ନ ଶୋଧି ମାରିବ
ବିଭୀଷଣ ବଂଶ ମୁହିଁ ଗୋଟିଏ ନ ରଖିବ ।
ତିନିଦିନେ ବେଳେଏ ଖାଇବାକୁ ବନ୍ଧଘରେ
ତୋହର ଜନମରେ ଦୟାକରେ ତାରେ ।
ଏତେ ଅଧର୍ମୀକି ବିହି କେମନ୍ତେ ରଖିବ
ରଘୁନାଥ ବାଣ ତାର ମାଉଁସ ଖାଇବ ।
କୁମର ବୋଇଲା ତାତ କର୍ମରୁ ଏ ବାଣୀ
ପୂର୍ବରେ ବରତୋତେ ଦେଇଛନ୍ତି କୁଶପାଣି ।
ବିଷ୍ଣୁର ଭକତ ହୋଇ ଅମର ତୁ ହେବୁ
ତୁମ୍ଭେ ତରିପିବ ସ୍ୱାମୀ ମୋତେ ହେଁ ତାରିବୁ

ଏ କଥାକୁ କଏ ସେ ଅନ୍ୟଥା କରିବ
ଶ୍ରୀରାମ ଚରଣେ ମୋତେ ଦର୍ଶନ କରାଇବ ।
ଏ ମୋହର ସତ୍ୟ ଯେ କହୁଅଛି ଜାଣ
ଦାଶରଥି ନାରାଜରେ ହରାଇବ ପ୍ରାଣ ।
ନୋହିଲେ ସକଳ ମୁଁ ବିନାଶିବ ସଇନ
ଋକ୍ଷକପି ଗୋଟିଏ ନ ଥୋଇବ ମେଦିନୀ ।
ଅଙ୍ଗଦ ହନୁ ସୁଗ୍ରୀବର ଯେ ସହିତେଣି
ନଳ ନୀଳ ସୁଷେଣ ଜମ୍ବେବ ଆଦି ଯେତେ ।
ଖଣ୍ଡ ଖଣ୍ଡ କରି ସବୁଙ୍କର କାଟିବି ଯେ ମୁଣ୍ଡ
ପଞ୍ଚାଶ ଯୂଥପତିଙ୍କ ନାଶ ହେବେ ରଣ୍ଡ ।
ତାହା ଶୁଣି ହନୁମନ୍ତ କୋପଭର ହୋଇ
କନ୍ଦୁର ପର୍ବତମାନ ଉପାଡ଼େ ସେ ଯାଇ ।
ରେ ରେକାର ହନୁ ଗର୍ଜଇ କହୁ କହୁ
କେତେ ପ୍ରତାପ କରୁରେ ରାକ୍ଷସ ବୀରବାହୁ ।
ନ ଜାଣୁ ବିଲଙ୍କା ଗଡ଼ ଧ୍ରୁମାନ୍ତ ବାନାମୋର
ଏହି ପର୍ବତେ ତୋତେ କରିବି ମୁଁ ଚୂର ।
ଶୁଣି ବୀରବାହୁ ଯାଇ ରଥରେ ବସିଲା
ହନୁମନ୍ତ ସୁହିଁଣ ବଚନ ବୋଇଲା ।
ମୋହର ଭୁଲେ ତୁରେ ନୋହୁଟି ରାଜନ
କେଉଁଠାରେ ଛନ୍ତି ତୁମ୍ଭ ଶ୍ରୀରାମ ରାଜନ ।
ତୁମ୍ଭ ଗୁରୁଙ୍କୁ ମୁହିଁ କ ଷଣ୍ଢୀ କରି ଗଣି
ଲକ୍ଷ୍ମଣ ସହିତେ ସୁଗ୍ରୀବର ନୃପମଣି ।
ଏହା ଶୁଣି ମରୁତ କମ୍ପଇ ଥରହର
ପର୍ବତ ପ୍ରହାରେ ବୀରବାହୁର ଉପର ।
କଞ୍ଚତ ଶରେ ତାହା ଅସୁର ନିବାରିଲା
ହନୁମନ୍ତକୁ ବଜ୍ର ବାଟୂଳ ମାଇଲା ।
ବଜ୍ରର ଉପରେ କ ପଡ଼େ ବଜ୍ରାଘାତ
ଘାଏ ଘୁମାଇଲା ଯେ ପବନର ସୁତ ।
ତାହା ଦେଖି ଉଗାଳିଲା ବାଳିର କୁମର
ପର୍ବତେକ ମାଇଲେ ରାଜା ସୁଗ୍ରୀବର ।
ଅଷ୍ଟସେନା ଆବର ପଞ୍ଚାଶ ଯୂଥପତି
ମହା ମହାବୀରେ ତାହାର ଚଉକତି ।
ମାରନ୍ତି ଶିଳା ବୃକ୍ଷ ଶ୍ରାବଣ ବର୍ଷା ଜାଣି
ଖଣ୍ଡ ନାରାଚେ ତାହା ଛେଦଇ ବୀରମଣି ।
ଚେତାପାଇ ହନୁବୀର ପୁଣିହିଁ ଧାଇଁଲା
ରେ ରେକାର ଶବଦେ ପୃଥ୍ୱୀ କମ୍ପାଇଲା ।

ରଥର ଉପରେ ବୀର ବସିଲାକ ଯାଇଁ
ବୀରବାହୁ ରଥ ପାତାଳେ ପଶଇ ।
ଦେଖି ବୀରବାହୁ ଅନ୍ୟ ରଥରେ ବସିଲା
ଭଲ ବୀର ହନୁମନ୍ତ ବୋଲି ସେ ବୋଇଲା ।
ଲାଗିଲା ସଂଗ୍ରାମ ସେ ଯେ ଉଭବଳ ଆଟ
ଶ୍ରୀରାମଙ୍କ ସଇନ୍ୟ ତେଜରେ ମୁରାଟ ।
ଅସୁର ସଇନ୍ୟ ଯେ ପଛଘୁଞ୍ଚା ଦେଲେ
ଦେଖି ବୀରବାହୁ ଚହିଁ ଦିବ୍ୟ ଅସ୍ତ୍ର କଲେ ।
ତେଜ ତାର ଘୋଟିଲା ଯେ ଗଗନ ମେଦିନୀ
ଦେଖି ସେନାପତିମାନେ ଘୁଞ୍ଚିଲେ ସଇନ୍ୟ ।
ବିଭୀଷଣ ସହିତରେ ଯେତେବଳ ଥିଲେ
ବୀରବାହୁର ନାରାଚ ସହି ନ ପାରିଲେ ।
ଏ ସମୟେ ଲକ୍ଷ୍ମଣ ହେଲେ ଆଗୁସାର
ହେ ଶ୍ରୀରାମ ଆଜ୍ଞା ଦିଅ ମାରିବି ଅସୁର ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ଲକ୍ଷ୍ମଣ
ଏ ବୀରବାହୁ ତୁମ୍ଭରେ ନୁହେଁ ନିବାରଣ ।
ବିଷ୍ଣୁର ଭକତ ସେହୁ ମହା ବଳବନ୍ତ ।
ତା ସଙ୍ଗେ ସମରେ ତୁ ନୋହୁ ସାମରଥ ।
ମୁହିଁ ଭୟୁ କରଇ ସେ ବିଷ୍ଣୁ ଭକ୍ତ ଯେଣୁ
ଭାଗ୍ୟଥିଲେ ଭ୍ରାତରେ ବର୍ତ୍ତିବ ଆଜ ଏଣୁ ।
ସଉମିତ୍ରୀ ବୋଇଲେ ଯେ ରୋଷଭର ହୋଇ
କରିବ ଅସୁର ଆଜ୍ଞା ଦିଅ ହେ ଗୋସାଇଁ ।
ଏହି କି ଇନ୍ଦ୍ରଜିତ ଠାରୁ ହେବ ବଳୀୟାର
ଏକା ନାରାଚକରେ ଛେଦିବି ଏହା ଶିର ।
ଏମନ୍ତ କହି ବୀର ଶିରର କର ଦେଲା
ଗୁଣ ଟଙ୍କାରି କରିଣ ଯୁଦ୍ଧକୁ ଧାଇଁଲା ।
ରେରେକାର କରିଣ ଉଗାଳିଲେ ଯାଇ
ଦେଖିକରି ବୀରବାହୁ ମନେ ବିଚାରଇ ।
ଏହିତ ବୀର ଲକ୍ଷ୍ମଣ ଶ୍ରୀରାମ ସାନଭାଇ
ନବ ଯଉବନ କାମ ସ୍ୱରୂପ ଅଟଇ ।
ବିଷ୍ଣୁର ତେଜ ଏହାର ଶରୀରରେ ଅଛି
ଦେଖି ମୋର ନୟନତ ଆନନ୍ଦ ହେଉଛି ।
ଏ ସମୟେ ଆସିଣ ଲକ୍ଷ୍ମଣ ଉଗାଳିଲା
ରାବଣ ନନ୍ଦନ ଦେଖି ବଚନ କହିଲା ।
କାହାର ନନ୍ଦନ ଅଟ ତୁମ୍ଭେ କହମୋତେ
ଯୁଦ୍ଧ କରିବା ବୟସ ନୁହଇ ଯୁକତେ ।

ଷରଚେ ଦେଇ ପୃଷ୍ଠରେ ଯତ୍ନେ କର ରଣ
ଯେତେ ଅଛୁ ପ୍ରାକର୍ମ ତୁମ୍ଭର ଦେଖେ ପୁଣ ।
ତାହା ଶୁଣି ସୁମିତ୍ରା ନନ୍ଦନ କହେ ବାଣୀ
ଦଶରଥ ନାମରେ ଅଯୋଧ୍ୟା ନୃପମଣି ।
ତାହାର ନନ୍ଦନ ଯେ ରାମଚନ୍ଦ୍ର ରାଏ
ଯେଉଁ ରାମ ତୁମ୍ଭର ବଂଶ କଲେ କ୍ଷୟେ ।
ତାଙ୍କର ସାନୁଜ ମୁଁ ନାମ ଲକ୍ଷ୍ମଣ ବୀର
ମୂର୍ଚ୍ଛିତ ମାଇଲି ତୁମ୍ଭ ଜ୍ୟେଷ୍ଠ ସହୋଦର ।
ତୁ ଆଜ କେତେ ପଡ଼ନ୍ତୁ ଯିବୁ ଆଜ କାହିଁ
ଭ୍ରାତ ଇନ୍ଦ୍ରଜିତ ଆଜ ନେବଟି କଢାଇ ।
ଶୁଣିଣ ବୀରବାହୁ ବୋଲେ ଆହେ ବୀର
ମୋହର ବଚନ ଘେନ ଯତ୍ନେ ଯୁଦ୍ଧ କର ।
ତୁମ୍ଭେ ଯବ ଲକ୍ଷ୍ମଣ ଶ୍ରୀରାମର ଶାଖା
ଆଗେ ମୋତେ ନେଇକ୍ତୁ ଶ୍ରୀରାମଚନ୍ଦ୍ର ଦେଖା
ନୋହିଲେ ଶରୀର ତୋର କରିବ ଖଣ୍ଡ ଖଣ୍ଡ
ଏହି ଭୂମିରେ ତୋର ଲୋଟିବ ଯେ ମୁଣ୍ଡ ।
ତୁହି ବୋଲ ଶ୍ରୀରାମ ଯେ ଅଟନ୍ତି ମୋର ଶାଖା
ତିନିଭୁବନରେ ଲଗିଛି ଯାର ରୂପ ରେଖା ।
ସମସ୍ତ ଠାକୁର ଅଟନ୍ତି ରାମ ପୁଣ
ସ୍ୱୟଂ ନାରାୟଣ ସେ ବ୍ରହ୍ମାଣ୍ଡ କାରଣ ।
ତୋହର ବଳରେ ମୋତେ ନପାରିଲେ ମାରି
ସ୍ପଷ୍ଟ ତୁ ଲକ୍ଷ୍ମଣରେ ଦେଖା ରୂପଧାରୀ ।
ଶୁଣିଣ ସଉମିତ୍ରୀ ପ୍ରଜ୍ୱଳିତ ଅଙ୍ଗ
ଯଷ୍ଟି ପ୍ରହାରେ ଯେସନେ ଗର୍ଜଇ ପନଗ ।
କୋପେ ଲକ୍ଷ୍ମଣ ବୋଇଲେଯେ ବୀରବାହୁକୁ
ତୁହି କି ସର୍ଜନ ମୋର ସଙ୍ଗେ ଯୁଝିବାକୁ ।
କଞ୍ଚିତ ନାରାଜ ମୋର ସମ୍ଭାଳି ନପାରେ
କାଟିବ ମସ୍ତକ ତୋର ମୁହିଁ କ୍ଷଣକରେ ।
ଶୁଣି ବୀରବାହୁ ଯେ ବୋଲଇ ଉତ୍ତର
ମୋହର ଯୁଦ୍ଧକୁ ସର୍ଜନ ନୋହୁ ବୀର ।
ଅଳ୍ପ ବୟସରେ ନ ଜାଣୁ ଯୁଦ୍ଧ ଭାବ
ତୋତେ ଜିଣିଲେ ମୋତେ କେଉଁ ଯଶହେବ
ସେ କଥା ଶୁଣି ଲକ୍ଷ୍ମଣ କୋପଭର ହେଲ
କ୍ଷଣେ ପାଞ୍ଚ ନାରାଚ ଗୁଣରେ ବସାଇଲ ।
ଟେରେକାର କରି ବୀର ବିନ୍ଧିଲ ଯେ ଟାଣି
ରାବଣର ନନ୍ଦନ କଞ୍ଚିତ ଶରେ ହାଣି ।

ପୁଣିହିଁ ଶତେ ନାରାଚ ବିନ୍ଧିଲେ ଲକ୍ଷ୍ମଣ
ପଞ୍ଚବାଣେ ଛେଦିଲା ତା ରାବଣ ନନ୍ଦନ ।
ସହସ୍ରେ ଅଯୁତେ ଲକ୍ଷେ ଲକ୍ଷେ ବାଣ
ଡାକ ହାକ କରି ଯେ ବିନ୍ଧନ୍ତି ବେନଜଣ ।
କହୁ କହୁ ସଂଗ୍ରାମ ଅପ୍ରମିତ ହେଲା
ରଣଭୂମି ଗୋଟା ଯେ ଅନ୍ଧାର ଦିଶିଲା ।
ବୀରବାହୁ କଞ୍ଚିତ ଯେ ନାରାଜରେ କାଟି
ପୁଣିହିଁ ଲକ୍ଷେ ଶର ମାଇଲା ଲେଉଟି ।
ଲକ୍ଷ୍ମଣ ବିନ୍ଧନ୍ତି ଯେ ଅନର୍ଯ୍ୟାପ୍ତ ଶର
କୁହୁକ ଶରକୁ ଯେ ବିନ୍ଧିଲା ଅସୁର ।
ବେନି ଜନଙ୍କର ଶର ପ୍ରଚଣ୍ଡ ଜ୍ୱାଳାବଳୀ
ଗଗନରେ ଅନ୍ଧାର ହେଲେ ଅଂଶୁମାଳୀ ।
ଧନ୍ୟ ଧନ୍ୟ ବୋଲି ପ୍ରଶଂସେ ବୀରବାହୁ
ଧନ୍ୟରେ ଲକ୍ଷ୍ମଣ ବୋଲିପ୍ରଶଂସେ ବୀରବାହୁ
ସୁର ଅସୁରଙ୍କ ସଙ୍ଗେ ଅନେକ ଯୁଦ୍ଧ କଲି
ଏସନକ ଯୁଦ୍ଧ ମୁଁ ହେ କାହିଁ ନ ପାଇଲି ।
କହିକରି ବୀରବାହୁ ବିନ୍ଧୁଅଛି ଶର
ବାଣକରି ପ୍ରଜ୍ୱଳିତ ପ୍ରଳୟ ଜଳଧର ।
ସେନା ଯୂଥପତି ଆଡ଼ ହୋଇଣ ରହିଲେ
ବେନି ଦଳଙ୍କର ଥାଟ ଛବଦ ହୋଇଲେ ।
ଗଗନେ ଘୋଟିଲା ଶର ଚନ୍ଦ୍ର ସୂର୍ଯ୍ୟ ଜାଣି
ରାମନାମ ସୁମରି ଯେ ବିନ୍ଧେ ବୀରମଣି ।
ଲକ୍ଷ୍ମଣ ବିଚାରି ଏ ତ ସାମାନ୍ୟ ନୁହଇ
ଇନ୍ଦ୍ରଜିତ ଠାରୁ ଯୋଦ୍ଧା ଗରିଷ୍ଠ ଅଟଇ ।
ଏହି ସମୟରେ ଯେ ରାବଣ ତନୟେ
ଗୁଣେ ଶର ବସାଇଲା ଅମୋଘ ଗୋଟିଏ ।
ରାଘବଙ୍କୁ ସୁମରି ଯେ ବିନ୍ଧେ ବୀରମଣି
ଗଗନେ ଘୋଟିଲା ଶର ଚନ୍ଦ୍ର ସୂର୍ଯ୍ୟ ଜିଣି ।
ଶର ଛେଦିବାକୁ ଶର ପେଷେ ରାମଭାଇ
ନିବାର ନହୋଇଲା ଯେ ଅଇଲା ବଳଆଇ ।
ଲକ୍ଷ୍ମଣର ହୃଦୟରେ ମୋହଶର ପଡ଼ି
ହୃଦରେ ବାଜିଣ ଶର ପଡ଼ିଲା ଉପୁଡ଼ି ।
ଘାଏ ଘୂରାଇଲେ ଯେ ଲକ୍ଷ୍ମଣ ମହାବୀର
ଅଥାସ୍ଥାମ ହୋଇଣ ପଡ଼ିଲେ ଭୂମିର ।
ଦେଖି ସେନାପତିମାନେ ଆଗେ ଉଗାଳିଲେ
ଟେରେକାର କରିଣ ପଥର ବରଷିଲେ ।

ପଞ୍ଚଶ ସୂ ଅଗସ୍ତ ମଲ୍ଲ ମହାମଲ୍ଲ
ସାରବାହୁକୁ ସେ ଯେ ବେଢିଲେ ସକଳ ।
ବୃକ୍ଷ ପର୍ବତ ଯେ ମାରନ୍ତି କୋଟି କୋଟି
ସାରବାହୁର ହୃଦରେ ଅନ୍ଧକାର ଘୋଟି ।
କେହୁ ସାରବାହୁ ରଥ ଧରିଣ ବସିଲେ
ଆହ୍ୱାଦ ନପାରି ସେ ପଛ ଘୁଞ୍ଚିଗଲେ ।
କେହୁ ରଥ ଚକକୁ ଧରନ୍ତି ବଳଆଇ
ମନେ ମନେ ବଖାରନ୍ତି ଦେବାଯେଲେଜିଟାଇ
ସ୍ମଳଣ ନପାରିଣ ସାରେ ଆସନ୍ତି ଲେଉଟି
ମନ୍ଦର ସମାନରେ ବଡେ ରଥ ଗୋଟି ।
ସେନାପତିମାନେ ଯେ ମାରନ୍ତି ପଥରଘାଇ
କଛି ନ ବାଜଇ ସାରବାହୁ ଦେହେ ଯାଇ ।
ଏସନେକ ସମୟେ ଜାମ୍ବେବ ଜଣାଇଲେ
ଶ୍ରୀଦେବ ରଘୁନାଥହେ ଲକ୍ଷ୍ମଣ ମୋହଗଲେ
ଶୁଣିକରି ଶ୍ରୀରାମ ଯେ ଧାଇଁଲେ ବେଗଳେ
ପ୍ରବେଶ ହୋଇଲେ ଯାଇ ସଂଗ୍ରାମ ମଣ୍ଡଳେ ।
ସୁଷେଣ ଲକ୍ଷ୍ମଣଙ୍କୁ କୋଳ କରିଥିଲେ
ମୋହ ଭେଳ ସଞ୍ଜିବିନି ଉଠିଣ ବସିଲେ ।
ଉଠି ଉଗ୍ର ହୋଇ କରେ ଧନୁଶର ଧରି
ଏସନେକ ସମୟରେ ପ୍ରବେଶ ରୂପଧାରୀ ।
ରହ ରହ ବୋଲିଣ ଶ୍ରୀରାମ ଆଜ୍ଞା ଦେଲେ
ସବୁ ଯୋଦ୍ଧାମାନେ ଯୁଦ୍ଧ ଛାଡ଼ିଣ ରହିଲେ ।
ସାରବାହୁ ଦେଖିଲା ଶ୍ୟାମଳ ଦୂର୍ବାଦଳ
ମନେ ବିଚାରିଲା ଏ ବୈକୁଣ୍ଠ ଆଦିମୂଳ ।
ଦକ୍ଷିଣେ ସୁଗ୍ରୀବର ବିଭୀଷଣ ରହେ
ବାମ ପାରୁଶେ ଛନ୍ତି ସୁମିତ୍ରା ତନୟେ ।
ଜାମ୍ବେବ ସୁଷେଣ ଯେ ଅଙ୍ଗଦ ହନୁମନ୍ତ
ନଳନୀଳ ଗନ୍ଧମାଦନ ଯେ ବସନ୍ତ ।
ତ୍ରାଳମ୍ବ କେଶରୀ ଯେ ସାରଣ ପାରସ
ଦଧିମୁଖ କାଳମୁଖ ବଳ ଯେ ସୁନାସ ।
ଦୁନ୍ଦଭ ପନଶୀଳ ଶରଭ ସେନ ପତି
ଗବଏ ଗବାକ୍ଷ ଯେ ବନଧ ସମ୍ପାତି ।
ଶରସେତୁ ଶତବାଳୀ ସେତୁ ଯେ ନନ୍ଦନ
କୁନ୍ଦ କାମୋଦ ଯେ ମହେନ୍ଦ୍ର କାଳଞ୍ଜନ ।
ଏମନ୍ତେ ସମସ୍ତେ ଯେ ଅଛନ୍ତି ଆଜସରି
ପର୍ବତ ତରୁ ଶିଳ ଅଛନ୍ତି କରେ ଧରି ।

ଶ୍ରୀରାମଙ୍କୁ ଦେଖି ସାର ରଥରୁ ଓହ୍ଲାଇଲା
ଧନୁ ଶସ୍ତ୍ର ଥୋଇଣ ଯେ ଭୂଣମିତ ହେଲା ।
ଶ୍ରୀରାମର ମୁଖକୁ ଚାହିଁ ପୁଣ ପୁଣି
ପ୍ରଲମ୍ବିତ ହୋଇଣ ସେ ଲୋଟଇ ଧରଣୀ ।
ଉଠି ଉଗ୍ର ହୋଇଣ ଶିରରେ କର ଦେଲା
ନମସ୍ତରିଲ ନମସ୍ତରିଲ ବୋଲିଣ ବୋଇଲା ।
ରଘୁନାଥ ମୁଖ ଚାହିଁ କରେ ସେ ବନ୍ଦନ
ଆନନ୍ଦ ମନରେ ସାର କରୁଅଛି ସ୍ତୁତ ।
ନମସ୍ତେ ନମସ୍ତେ ରଘୁନାଥ ଚୂଡ଼ାମଣି
ନମସ୍ତେ ନମସ୍ତେ ଦେବ କୋଦଣ୍ଡ ପାଣି
ନମସ୍ତେ ନମସ୍ତେ ଦେବ ଦଶରଥ ସୁତ
ନମସ୍ତେ ନମସ୍ତେ ଦେବକୌଶଲ୍ୟା ଗର୍ଭଜାତ
ନମସ୍ତେ ନମସ୍ତେ ଦେବ ଜାନକୀ ପ୍ରାଣବନ୍ଧୁ
ନମସ୍ତେ ନମସ୍ତେ ଦେବ କରୁଣାମୟ ସିନ୍ଧୁ ।
ଦୂର୍ବାଦଳ ଶ୍ୟାମଳ ଯେ ମଧୁର ମୂରତି
ନବୀନ ବୟସ ପ୍ରଭୁ ସୁନ୍ଦର ମୂରତି ।
ସ୍ୱୟଂ ବିଶ୍ୱନାଥ ଲକ୍ଷ୍ମଣ ଯାର ଶାଖା
ଚଉଦ ଭୁବନକୁ ଲଗିଣ ଅଛି ଶିଖା ।
ସୁଗ୍ରୀବର ମାନ ଉଦ୍ଧାରଣ ଯାର ନାମ
ବିଭୀଷଣେ ଶରଣ ରକ୍ଷଣ ଯାର କାମ ।
ସତ୍ୟବନ୍ତ ନାୟକ ଯେ ସଜ୍ଜନ ପାଳୁ
ଦୁଃଖୀଜନ ନାଥ ଶାଖା ପରମ ଦୟାଳୁ ।
ଜୟ ଜୟ ଶ୍ରୀରାମ ହେ ପରମ ବ୍ରହ୍ମ ରୂପେ
ଯେଉଁ ନାମ ଧଇଲେ ନ ଲଗେ କାଳଭୟେ ।
ଶ୍ରୀରାମ ନାମ ଗୋଟି ଅକ୍ଷୟ ବାରାନିଧି
ଶ୍ରୀରାମ ନାମ ଗୋଟି ଏ ଅଣିମା ଅଷ୍ଟନିଧି ।
ଜୟ ଜୟ ଶ୍ରୀରାମ ଖର ଦୂଷଣ ପ୍ରାଣହାରୀ
ଜୟ ଜୟ ରଘୁନାଥ ଅସୁରନ୍ତ ମାରି ।
ଜୟ ଜୟ ରଘୁନାଥ ତ୍ରୈଲୋକ୍ୟ ଚୂଡ଼ାମଣି
ଜୟ ଜୟ ରଘୁନାଥ ପ୍ରସନ୍ନ ଚୂଡ଼ାମଣି ।
ଯେଉଁ ରାମନାମ ଗୋଟି ତାରକାମନ୍ତ୍ରସାର
ସେ ନାମ ତାରକ ଜପି ହୁଅନ୍ତି ଅମର ।
ଯେଉଁ ଚରଣ ଲଗିଣ ଅହଲ୍ୟା ତରିଲା
ଯେଉଁ ଚରଣ ଲାଗି ହନୁ ଅଜାମର ହେଲା ।
ଶ୍ରୀରାମ ନାମ ଗୋଟି ହୃଦନ୍ତରେ ଭାବ
ଯେତେକାଳ ଶରୀରେ ଜୀବନ ଧରିଥିବ ।

ଶୁଣନ୍ତୁ ପାର୍ବତୀ ଯେ କହନ୍ତି ଈଶ୍ୱର
ଅନେକ ସ୍ତୁତି କଲା ଯେ ରାବଣ କୁମର ।
ପାଦେ ପଡ଼ି ଶୋଇଣ କ୍ଷିତିରେ କର ଦେଲା
ମୋହର ଶିରକୁ କାଟି ପକାଅ ବୋଇଲା ।
ତୁମ୍ଭର ହସ୍ତରେ ମଲେ ମୁକତି ପାଇବ
ନିଶାଚର ଜନ୍ମରୁ ମୁଁ ଉଦ୍ଧାର ପାଇବ ।
ଏହା ଶୁଣି ଦୟାନିଧି ରଘୁକୁଳପତି
ହୃଦପଦ୍ମେ ସନ୍ତୋଷ ହେଲେ ଦାଶରଥି ।
ଦୟାକୁ ପ୍ରଭୁ ଶ୍ରୀରାମ କହନ୍ତି ମୃଦୁବାଣୀ
ତୋତେ ମୁଁ ଚିହ୍ନି ପାରଇ ବୃଷ୍ଟି ଭକ୍ତ ପୁଣି
ତୋତେ ବାଣ ବିନ୍ଧିବାକୁ ନୁହଇ ମୋରଚିତ୍ତ
ତୁହି ମହାବୀରରେ ସୁଜ୍ଞାନୀ ପଣ୍ଡିତ ।
ହୃଦରେ ସ୍ତୁତି କରି ତୋଷିଲୁ ମୋର ମନ
ତୁହି ତ ପଞ୍ଚ ପ୍ରାଣ ମୋ ଜୀବର ଜୀବନ ।
ତୋହଠାରୁ ମୋହର ଭଗତ ଅନ୍ୟ ନାହିଁ
ଯେ ମୋହର ଭଗତ ବାନ୍ଧବ ଅଟଇ ।
ନ କରିବ ରଣ ବାବୁ ନମାରିବ ରାବଣ
ଲଙ୍କାଗଡ଼େ ବାବୁରେ ତୋତେଦେବିରାଜପଣ
ନ ଦେବ ସୀତା ମୁହିଁ ବାହୁଡ଼ି ଏଥୁ ଯିବି
ନୋହିଲେରେବଳା ତୋରପାଖରେରହିଥିବି
ତା ଶୁଣି ବୀରବାହୁ ବୋଲଇ ବଚନ
ହେଦେବ ଶ୍ରୀରାମ ରଘୁକୁଳର ନନ୍ଦନ ।
ତୁମ୍ଭର ଆଜ୍ଞାକୁ କିଏ କରିବ ଅପ୍ରମାଣ
ବ୍ରହ୍ମା ଇନ୍ଦ୍ର ସହିତେ ଚନ୍ଦ୍ର ସୂର୍ଯ୍ୟ ଜାଣ ।
ଯେତେବେଳେ ବିଭୀଷଣେ ଶରଣ ପଶିଲା
ଲଙ୍କାଗଡ଼େ ରାଜା କରିବାକୁ ଆଜ୍ଞା ହେଲା ।
ସେହି ଆଜ୍ଞା ଗୋଟି କେ କରିବ ଆନମତ
ପ୍ରତିଜ୍ଞା ସମୁଦ୍ର ସତ୍ୟବାଚା ଯେ ନାଥକ ।
ଲଙ୍କାଗଡ଼େ ରାଜପଣେ ମୋହର କାର୍ଯ୍ୟନାହିଁ
ସ୍ୱର୍ଗରେ ଇନ୍ଦ୍ରପଦ ମୋତେ ନ ଯୋଗାଇ ।
ତୁମ୍ଭର ଶର ମୋର ମସ୍ତକ କାଟିବ
ଶ୍ରୀରାମ ନାମ ଧରି ମୋହର ପ୍ରାଣ ଯିବ ।
ଆନ ବରରେ ମୋହର ପ୍ରୟୋଜନ ନାହିଁ
ଏହି ବର ମୋତେ ଯେ ହେଉ ହେଗୋସାଇଁ
ଶୁଣି କରି ରଘୁନାଥ ବୋଲନ୍ତି ଉତ୍ତର
ବିଭୀଷଣକୁ ଦେବି ମୁଁ ଅଯୋଧ୍ୟା ନଗର ।
ନକରିବି ଯୁଦ୍ଧ ମୁଁ ଯେ ନ ମାରିବି ତୋତେ
ଭକତଙ୍କ ବନ୍ଧୁ ମୁଁ ଯେ ଅଟଇ ଯୁଗତେ ।
ତୁ ଯେ ଭକତ ମୋର ଅଟୁରେ ଅଧୀନ
ତୋହଠାରେ ମୋ ଡର ନାହିଁରେ ବଡପଣ ।
ଶୁଣି କରି ବୀରବାହୁ ମନେ ବିସ୍ମରଇ
ଏ ଯେ ପରମ ଦୟାଳୁ ରଘୁକୁଳ ସାଇଁ ।
ନକରିବ ଯୁଦ୍ଧ ଯେବେ ନ ମାରିବେ ମୋତେ
ଭକତ ଭାବଗ୍ରାହୀ ଏ ଅଟନ୍ତି ଯୁଗତେ ।
କହିବି ନିନ୍ଦା ବାଣୀ ମୋର ଦୋଷ ନାହିଁ
ଯେମନ୍ତେ ମୋର ଶିର ଛେଦନ୍ତି ରଘୁସାଇଁ ।
ବୀରବାହୁ ବୋଇଲା ଶୁଣ ହେ ଦେବ ରାମ
ଚନ୍ଦ୍ର ଦେବତାର ମୁହିଁ ଅଟଇ ପୁତ୍ର ପୁଣ ।
ଧର୍ମ ଦେବତା ପୁତ୍ରକୁ ପିତା ମୋର ଗଲା
ନମସ୍କାର ହୋଇଣ ଚରଣେ ସେବା କଲା ।
ସେଠାବେଳେ ପ୍ରବେଶ ହୋଇଲି ମୁହିଁ ଯାଇ
ମନେ ମନେ ହସିଲି ଧର୍ମକୁ ଅନାଇ ।
ମୋତେ ଦେଖି ନିରଞ୍ଜନ ଶାପ ଯେ ଦିହଲେ
ନିଶାଚରେ ଜନ୍ମ ହୁଅ ବୋଲିଣ ବୋଇଲେ
ଲଙ୍କାଗଡ଼ରେ ତୁ ହେବୁ ରାବଣ କୁମର
ଜନ୍ମ ହୋଇ ରହିବୁ ସାତଗଣ୍ଡା ଯୁଗ ପର ।
ସାତ ଯୁଗ ପରିଯନ୍ତେ ତପସ୍ୟା କରିବୁ
ଶ୍ରୀରାମର ବାଣେ ତୁହି ପରାଣ ହାରିବୁ ।
ତେବେ ନିଜ ପୁର ଆସିବୁ କୁମର
ଏତେବୋଲି ବର ମୋତେଦେଲେଯେଅମର
ଏହା ଶୁଣି ମୁହିଁ ଯେ ଲଙ୍କରେ ଜନ୍ମହେଲି
ଏକୋଇଶ ଯୁଗପାଏ ବୀରପଣ କଲି ।
ସେହିଠାରୁ ଜ୍ଞାନ ମୋର ହେଲା ଦେବ ପୁଣ
ତପ କଲି କପିଳାସ କନ୍ଦରେ ଯାଇଣ ।
ସ୍ତୁତି କରିଲା ମୋତେ ରାମ ନାମ ପୁଣ
ତପ ମୋର ସିଦ୍ଧି ହେଲା ମୁଁ ଜାଣିଲି ପୁଣ ।
ତୁମ୍ଭର ହସ୍ତେ ମଲେ ଶାପୁଁ ପାରିହେବି
ଅଚଳା ସ୍ୱର୍ଗ ସ୍ଥାନ ପରାପତ ହୋଇବି ।
ନୋହିଲେ ସମସ୍ତଙ୍କୁ ମୁଁ କରିବି ପ୍ରାଣେନାଶ
ଏତେ କହି ବୀରବାହୁ ହୋଇଲେକ ତୋଷ ।
ଲେଉଟି ବୀରବାହୁ ବାହୁଡ଼ି ବିଜେ କଲା
ରଥପରେ ବସି ଧନୁ ଶରହସ୍ତ ଧଇଲା ।

ବୋଇଲେ ହେ ଦାଶରଥି ଧନୁ ଶସ୍ତ୍ର ଧର
ବ୍ୟଗ୍ରରେ ମୋରମସ୍ତକ ଛେଦ ହେରଘୁବୀର
ନୋହିଲେଟି ମାରିବି ସହିତ ସମଦଣ୍ଡ
ସେନାପତିମାନଙ୍କୁ ମୁଁ କରିବି ଖଣ୍ଡ ଖଣ୍ଡ ।
ଅଙ୍ଗଦ ହନୁମନ୍ତ ଜମ୍ବୁବ ନଳନୀଳ
ବିଭୀଷଣ ସୁଗ୍ରୀବର ସଙ୍ଗତେ ମହୀପାଳ ।
ତୁମ୍ଭ ଦୁଇ ଭାଇଙ୍କି କରିବି ଆଜ ନାଶ
ଏ ଲଙ୍କାଗଡ଼ରେ ତୁମ୍ଭେ ହୋଇବ ବିନାଶ ।
ତାହା ଶୁଣି ହନୁମନ୍ତ ପ୍ରଜ୍ୱଳିତ ହୋଇ
ଏ କପଟ ଅସୁରକୁ ବିଶ୍ୱାସ ନ ଯାଇ ।
ମ ର ଏ ମୂଢକୁ ଏ ମାୟାବୀ ଅସୁର
କେତେ ବାଗେ ଏହିକ୍ଷଣି ବଚନ କହେ ତାର
ଭଲ ହୋଇଲା ଏ ସେନ ନଉଡ଼ିଲା
ଆହାର ନ ପାଇ ଏ ରଥରେ ବସିଲା ।
ହନୁମନ୍ତ ବୋଲେ ପ୍ରଭୁ ହୋଇଲକ ବାଇ
ଦୟାକଲେ ଅସୁର ଉଠୁଛି ଉଚ୍ଛେଇଁ ।
ଉଚିତ ହୋଇ କରି ଏ ରଥରେ ବସଇ
ପାଦଗାମୀ ତୁମ୍ଭେ କମ୍ପା ହେଉଛୁ ରାଘବଗ୍ରାମ୍ଭ ।
ଦେଖଣାହ ଖ ଲୋକେ ଦେଖନ୍ତି ସ୍ନେହକରି
ନ ମାରୁଛ ତାକୁ ପ୍ରଭୁ ଦୟାକୁ ଘଣକରି ।
ମାରି ମାରି ବୋଲଣ ଡ଼ାକେ ଉଚ୍ଚସ୍ୱରେ
ପର୍ବତେକ ଧରି ସେ ଧାମେ କୋପଭରେ ।
ରାମ ପଚ୍ଚରନ୍ତି ବିଭୀଷଣ ମୁଖ ଚାହିଁ
କ ହୋ ଲଙ୍କପତି ଏ କେବଣ ଅଟଇ ।
କସ ଏ ଉପଗତ ଜାଣ କ ବିଭୀଷଣ
ଅସୁରଙ୍କର ମାୟା ଅସୁରେ ହେ ଜାଣ ।
ବିଭୀଷଣ ବୋଇଲେ ପ୍ରଭୁ ଧର ଧନୁଶର
ମାର ଏ ଦୈତ୍ୟକୁ ଦେବ ଓପ୍ରୋଧ ନକର ।
ଶୁଣିଣ ଶ୍ରୀରାମ ସେ କୋଦଣ୍ଡ କାଣ୍ଡ ଧରି
ଅଧର କାମୋଡ଼ ପ୍ରଭୁ ଗୁଣ ଟଙ୍କାର କରି ।
ହନୁ ପର୍ବତ ଧରି ଆଗରେ ଉଭା ହେଲା
ବୀରବାହୁ ଉପରେ ନେଇଣ କଚାଡ଼ିଲା ।
ତା ନିବାରିଲା ସେ ରାବଣ ତନୟେ
ବାଳର ଭୂମର ବୃକ୍ଷେ ପିଟିଲାକ ନେଇ ।
ତିନ ନାରାଚରେ ସେ ଛେଦେ ବୀରବାହୁ
ଋକ୍ଷଗଣମାନେ ସର୍ବେ ମେଳ ହେଲେ ତହୁଁ ।
ଶିଳା ବୃକ୍ଷ ପଥର ମାରିଲେ ଅନୁକ୍ଷଣ
ରାବଣର ନନ୍ଦନ ତା କାଟେ ତତକ୍ଷଣ ।
ହୁଁକାର ଶବଦ ସେ ମେଘ ଘଡ଼ଘଡ଼
ସମସ୍ତେ ଶିଳାବୃକ୍ଷ ମାରନ୍ତି ଆଗେ ବେଢ଼ି ।
ବହୁତ କଟାଳ ଦେଖି ରାବଣ କୁମର
ଅନର୍ପ୍ୟାପ ଶର ସେ ବିନ୍ଧଇ ସେ ଅସୁର ।
ନଳ ନୀଳ ଗନ୍ଧ ସେ ମାଦ୍ଦ୍ରନ ସୁଷେଣ
ଗବୟ ଗବାକ୍ଷ ତାରାକ୍ଷ ସେ ସୁଶୋଭନ ।
ଦଧିମୁଖ କାଳମୁଖ ବଳମୁଖ ତିନ
ଅଙ୍ଗଦ ହନୁମନ୍ତ ମହେନ୍ଦ୍ରକୁ ଘେନ ।
ସାରସ ପାରସ ସଉରି ସେନାପତି
କୁନ୍ଦ କାମୋଦ ସେ ଦୁର୍ବିନ୍ଦ ପ୍ରଭୃତି ।
କେଶରୀ ପନଶିକ ସେ ମଳୟ ଚନ୍ଦନ
ମାରନ୍ତି ବୃକ୍ଷଶିଳା କରନ୍ତି ଗରଜନ ।
ଅଷ୍ଟସେନା ଆବର ପଚଶ ଯୂଥପତି
ବୀର ମହାବୀର ସେ ସମସ୍ତେ ଅଛନ୍ତି ।
କେହୁ ରଥ ଉପରେ ଉଠିଲେକ ଯାଇ
କେହୁ ରଥ ପତାକା ସେ ପକାଏ ଛିଣ୍ଡାଇ ।
ଘଡ଼ିଏ ପରିଯନ୍ତେ କଲେ ମହାରଣ
ସଭୁଙ୍କୁ ବାରଇ ସେ ରାବଣ ନନ୍ଦନ ।
ତେଜକରେ ଋକ୍ଷ କପି ଅଟେ ବଳଆର
ଦେବ ଦାନବରେ ସେ ସେ ଜୁଝଇ ସମର ।
ଶ୍ରୀ ରଘୁ ନନ୍ଦନ ସେ ବିଷ୍ଣୁ ତେଜ ହୋନ୍ତି
ତାଙ୍କୁ ଦେଖି ଋକ୍ଷକପି ଭରସା କରନ୍ତି ।
ଏ ମୋଡ଼ାକୁ ମୁହିଁ ହେଲା ଯୁଦ୍ଧେ ନ ପାରିବ
ଓପ୍ରୋଧ କଲେ ଆଜ ଏହାକୁ ନ ଜିଣିବ ।
ଏମନ୍ତ ବିଚାରି ବୀର ଦିବ୍ୟ ଅସ୍ତ୍ର କଲା
କହୁ କହୁ ଋକ୍ଷ କପି ବଳରେ ଭୋଟିଲା ।
ପଡ଼ିଲେ ଋକ୍ଷକପି ଠବଠାବ ହୋଇ
ମହାବାତେ ଉଦ୍ୟାନ ଯେସନେ ନାଶଇ ।
ଯୂଥପତିମାନେ ସେ ଘାଏ ଘୂମାଇଲେ
ଅଷ୍ଟ ସେନାପତି ଆଦ ପଛ ଘୁଞ୍ଚା ଦେଲେ ।
ଦେଖିକରି ଧାଇଁଲେ ରଘୁକୁଳ ସାଇଁ
ଅନେକ ନାରାଚ ପେଶିଲେ ରଘୁସାଇଁ ।
ବୀର ବାହୁ ମୁଖେ ଚୁମ୍ବ ଦେଇ ବାହୁଡ଼ିଲା
ବିଷ୍ଣୁ ଭକ୍ତ ବୋଲି ତାର କଛୁ ନ ନୋହିଲା

ଶ୍ରୀରାମ କୋପେ ବାଣ ଛାଡ଼ନ୍ତି ପୁଣ ପୁଣି
ବୀରବାହୁ ମନରେ ଚିନ୍ତଇ ରୂପ ଘାଣି ।
ଶ୍ରୀରାମ ସୁମରି ବୀର ଛାଡ଼ିଲା ତୀକ୍ଷ୍ଣ ବାଣ
ଶ୍ରୀଚରଣେ ପଡ଼ି ଶର କଲା ପ୍ରଦକ୍ଷିଣ ।
ରଘୁକୁଳ ତିଳକ କ୍ରୋଧେ ପରଚଣ୍ଡ
ଟାଣିଣ ଛାଡ଼ିଲେ ଦେବ ଅନର୍ଯ୍ୟାପ କାଣ୍ଡ ।
ବୀରବାହୁ ଚିନ୍ତଇ ଯେ ଶ୍ରୀରାମ ଗୋସାଇଁ
ଛାଡ଼ଇ ନାରାଚ ମନେ କିଛି ଭୟ ନାହିଁ ।
କୁହୁଡ଼ି ବରଷା ଜାଣି ଛାଡ଼ନ୍ତି ରଘୁନାଥ
କହୁଁ କହୁଁ ବେଳୁ ବେଳ ଯୁଦ୍ଧ ଅପ୍ରମିତ ।
ଦେବେ ଦେଖୁ ଅଛନ୍ତି ଶୂନ୍ୟ ପୁରେ ଥାଇ
ବୀରବାହୁ ରଘୁନାଥ ଯୁଝୁଛନ୍ତି ରହି ।
ଶ୍ରୀରାମ ବିଚାରନ୍ତି ଏ ଅଟଇ ମହାବୀର
ବିଶେଷ ବିଷ୍ଣୁ ଭକ୍ତ ଅଟେ ଏ ଅସୁର ।
ହେଳା ଯୁଦ୍ଧ କଲେକୁ ଏହାକୁ ହୁଏ ଜିଣି
ଏତେ କହି ଦିବ୍ୟ ଅସ୍ତ୍ର କଲେ ରଘୁମଣି ।
ଭୂମି ଗଗନ ଶର ପଥେ ନିରୋଧିଲେ
ଅନେକ ଶର ବୃଷ୍ଟି ରଘୁନାଥ କଲେ ।
ତାହା ଦେଖି ବୀରବାହୁ ହରଷେ ଯୁଦ୍ଧ କଲା
ଆକାଶ ପୂରି ଗୋଟା ନାରଚେ ପୂରେଇଲା ।
ଗଗନରେ ଅଦୃଶ୍ୟ ହୋଇଲା ଅଂଶୁମାଳ
ବୀରବାହୁ ନାରାଚ ପ୍ରଚଣ୍ଡ ହିଷାବଳ ।
ବିଜୁଳି ଝଟକ ଜାଣି ଶରଙ୍କର ତେଜ
ବୀରଙ୍କ ଉପରେ ବୀରମଣି ରଘୁରାଜ ।
ହେନ ବୀରଙ୍କ ଯୁଦ୍ଧ ହୁଏ ମହାଘୋର
ଦେବଙ୍କୁ ଦୁର୍ଲ୍ଲଭ ଯେ ମାନବେ ଅଗୋଚର ।
ନାନା ବର୍ଣ୍ଣରେ ବାଣ ଛାଡ଼ନ୍ତି ହେନବୀର
ଗରୁଡ଼ ଶର ବଜ୍ର ବାଟୁଳି ମହାକାଳ ।
ଜଳଧାର ବାବଲ ଅମୋଘ ଶକତି
ଶୂଳ ଶକ୍ତି ବଜ୍ର ଶକ୍ତି ମହାକାଳ ଶକ୍ତି ।
ନାଗଫାଶ ମହାପାଶ କାଳାନଳ ପାଶ
ହିମୁନା ଅଧାଚନ୍ଦ୍ର ବଜ୍ର ଯେ ଚଡ଼କ ।
ହେଲ ଚକ୍ର କାତି ଯେ ଗଦା ମୁଦୁଗର
ଗୁ ଛୁଜ ଲକ୍ଷିଆ ଜଷ୍ଟି କୋନ୍ତ ଅସିବର ।
ଏମନ୍ତେ ଅନେକ ବାଣ ମାରନ୍ତି ପଶଧାଇ
କେହ୍ନି କାହାକୁ ନେ ଅନ୍ଧାରେ ଦିଶୁନାହିଁ ।

ଶୁଭଇ ଗୁଣ ଘୋଷ ନାରାଚ ଗର୍ଜନ
ପ୍ରଳୟ ମେଘ ଜାଣି ଶବଦ ଗରୁଟାଣ ।
ମନକେ ସୂତ୍ରରେ ବୀର ନାମ ରାମ ଗୋଟି
ବୀରବାହୁ ରାମସ୍ମରି କରେ ଶର ବୃଷ୍ଟି ।
ଏମନ୍ତେ ଅନେକ ଯୁଦ୍ଧ ତହିଁରେ ହୋଇଲା
ସ୍ୱପ୍ନ ଜେ ଦିବସ କିଛି ବାରଣ ନ ଗଲା ।
ଯେତେ ଶର ଛାଡ଼ିଲା ବୀରବାହୁ ବୀର
ବାଜିଣ ବ୍ୟଥା କଲା ଶ୍ରୀରାମ ଶରୀର ।
ଶ୍ରୀରାମ ଛାଡ଼ୁଛନ୍ତି ଯେତେ ବାଣ କୋପେ
ବୀରବାହୁ ଦେହେ ପୀଡ଼ା ପାଉ ନାହିଁ ଅପେ
ଭକତ ବୋଲି ଶ୍ରୀରାମ ମାୟା ପ୍ରକାଶନ୍ତି
ଭକତ ବତ୍ସଳ ସେହୁ ଭକତରେ ପ୍ରୀତ ।
ଦେଖୁ ଦେଖୁ ରାମଚନ୍ଦ୍ର ହୋଇଲେ ଅଜ୍ଞାନ
ତାହା ଦେଖି ବୀରବାହୁ ଚିନ୍ତା କରେ ମନ
ଆହା ପ୍ରଭୁ ବୋଲି ଧନୁ ଶସ୍ତ୍ର ପକାଇଲା
ରଥରୁ ଓହ୍ଲାଇ ବୀର ପ୍ରଣମିତ ହେଲା ।
ପାଏ ପଡ଼ି ଶୋଇଣ ଉଠି ଉଭା ହୋଇ
ଥିରେ କରଦେଇ ବୀର କହଇ ବିନୋୟୀ ।
ମୋ ପ୍ରଭୁ ଶ୍ରୀଚରଣେ ଦ୍ରୋହ କର୍ମ କଲି
ମାୟାରେ ପଡ଼ି ମୁହିଁ ବୋରେହା ହୋଇଲି ।
ରାମ ନାମ କୁଣ୍ଡେ ଧରି ବୀର କରେ ଶୋକ
ପୟରେ ଶିର ଦେଇ ନେତ୍ରୁ ବହଇ ଲୋତକ
ତା ବିନୟ ଦେଖି ହୃଷ୍ଟ ହେଲେ ରଘୁନାଥ
ଶ୍ରୀ ଚରଣେ ପଡ଼ିଣ ଅଛଇଁ ବୀରବାହୁତ ।
ପୁଣି ଉଭା ହୋଇଲା ବୀର କରଯୋଡ଼ି
ଶ୍ରୀରାମ ବଦନ ଚାହିଁ ସ୍ତୁତି ବଚନ ପଢ଼ି ।
ଜୟ ଜୟ ରାବଣ ହେ ଅନନ୍ତ ମୂରତି
ଜୟ ଜୟ ପରମାନନ୍ଦ ଦେବ ଜ୍ୟୋତି ।
ଜୟ ଜୟ ରଘୁନାଥ ବଇକୁଣ୍ଠବାସୀ
ଜୟ ଜୟ ରଘୁନାଥ କମଳା ବିଳାସୀ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ଶିରୋମଣି
ତୁମ ନାମ ଶୁଣି ଡରେ କାଳଦଣ୍ଡ ପାଣି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଖୁରଖାନ
ସର୍ବ ଘଟରେ ପୂରି ଅଛହେ ଦେବସ୍ୱାମୀ ।
ଦଧିରୁ ଘୃତ ଯେହ୍ନେ ତିଳରୁ ତେଲ ଜାଣି
ପୁଷ୍ପରେ ପରିମଳ କାଷ୍ଠରେ ବହ୍ନ ।

ସଚରାଚର ବ୍ରହ୍ମାଣ୍ଡେ ସ୍ଥୂଳ ସୂକ୍ଷ୍ମ ମସ୍ତ
ସର୍ବଠାରେ ପରିପୂର୍ଣ୍ଣ ଦେବଙ୍କେ ତୁମ୍ଭକାୟେ ।
ଅଗୋଚର ଅରୂପ ବର୍ଣ୍ଣଇ କେ ତୋର ଶୋଭା
କୋଟି ସୂର୍ଯ୍ୟ କୋଟି ଚନ୍ଦ୍ରନଞ୍ଜନ ଯାର ପ୍ରଭା ।
ନିରଞ୍ଜନ ନିରାକାର ଅକ୍ଷୟ ଅବ୍ୟୟ
ମହତତ୍ତ୍ୱ ସେ ଅହଙ୍କାର ତ୍ରିଗୁଣ ଗୁଣ ମୟ ।
ପଞ୍ଚଭୂତ ପଞ୍ଚ ପ୍ରାଣ ଇନ୍ଦ୍ରିୟ ମନରୂପୀ
ଜୀବ ପରମ ଅନ୍ତେ ବାହାରେ ଅଛି ବ୍ୟାପୀ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିରୂପ ଧରୁ
ଜଳ ସ୍ଥଳ ଅନଳ ଭୂମି ସେ ମହାମେରୁ ।
ଲାବଣ୍ୟ ଯେ ଗୁଣ ରାଶି ପରମ ପୁରୁଷ
ଜଗତ ଜନ ମୋହନ ହେ ଜାନକୀ ବିଳାସ ।
ଦୂର୍ବାଦଳ ଶ୍ୟାମଳ ହେ ମଧୁର ମୂରତି
ମୋହର ଠାକୁର ହେ ତୁମ୍ଭେ ଦାଶରଥି ।
ସୁଜ୍ଞଜନମାନେ ନିତି ରାମନାମ ଘୋଷ
ରାମନାମ ପଦଘୋଷେ ବଳରାମ ଦାସ ।
ଶୁଣନ୍ତୁ ଶାକମ୍ବରି ଯେ କହନ୍ତି ଈଶ୍ୱର
ଅନେକ ସ୍ତୁତି କରେ ଯେ ବୀରବାହୁ କୁମର
ହେ ସ୍ୱାମୀ ରଘୁନାଥ ମୁଁ ମନ୍ଦକୃତ୍ୟ କଲି
ତୁମ୍ଭ ଶ୍ରୀଚରଣେ ମୁଁ ଦୋରେହା ହୋଇଲି ।
ମୋର ମସ୍ତକ ଦେବ ପକାଅ ବେଗେ କାଟି
ଏତେ ବୋଲି ବୀରବାହୁ ପାଦତଳେ ଲୋଟି
ତୁମ୍ଭ ନାମ ଶୁଣି ମୁଁ ତପସ୍ୟା ତେଜ୍ୟାକଲି
ରଘୁନାଥ ହସ୍ତେ ମଲେ ବୈକୁଣ୍ଠ ଯିବି ବୋଲି
ମାତା ଭାରିଯାକୁ ମୁହିଁ କହିଲି ଯାଇ ପୁଣ
ବହୁତ ଶୋକ କଲା ଜନନୀ ଶୁଣିଣ ।
ମୁଁ ବୋଇଲି ତୋର ମୋର ଏତିକ ଯେ ଦେଖ
ବିଭୀଷଣ ପିତା ମୋର ହେବ ତୋ ପ୍ରାଣସଖା
ମୋହର ନାରୀମାନଙ୍କୁ ବୁଝାଇ କହିଲି
ମୁହିଁ ମଲେ ରାମ ଶରେ ଝାସ ଦେବ ବୋଲି
ଆନନ୍ଦ ମନରେ ସେ ଅଛନ୍ତି ମୋତେ ରହିଁ
ତୁମ୍ଭେ ମୋତେ ବେଗେ ମାର ରଘୁକୁଳସାଇଁ
ମୋର ପିତା ଆଗରେ ମୁଁ କହୁଅଛି ସତ୍ୟ
ଗଲେ ମୁହିଁ ନ ଆସିବି ମୋହର ନିସୂତ ।
ଏତେ ବୋଲି ବୀରବାହୁ ଚରଣେ ଲୋଟିଲେ
ଉଠ ଉଠ ବୋଲି ଶ୍ରୀରାମ ଆଜ୍ଞାଦେଲେ ।

ଉଠି ଜହ୍ନୁଙ୍କୋଇ ବୀର ରହେ ଅପସରି
ଧର୍ମ ନିରଞ୍ଜନ କଥା ନମେଣ୍ଡ ରୂପଧାରୀ ।
ଶ୍ରୀରଘୁନନ୍ଦନ ବୋଲେ ଶୁଣ ହେ ବୀରବାହୁ
ତୁ ମୋହର ଭକତ ନାମରେ ତୋତେ ଆଉ
ଯେଉଁ ଯୁଦ୍ଧ ଆଜ ତୁରେ କଲୁ ମୋରସ୍ୱେଳେ
ନାହିଁ ନୋହିବ ନା ମୋନେ ଏ ମହୀମଣ୍ଡଳେ
ଧନ୍ୟ ତୋର ପିତା ଧନ୍ୟ ତୋହର ଜନନୀ
ଧନ୍ୟ ଜଣେ ଜନ୍ମକଲେ ଶୂର ଅଗ୍ନି ସେନି ।
ଧନ୍ୟ ମୋତେ ଲୁହି ବଶ କଲୁରେ କୁମର
ଏବେ ସ୍ତୁତିକରି ମନ ହରିଲୁ ମୋହର ।
ମାଗ ମାଗ ବର ଯେ ତୋହର ଇଚ୍ଛା
ଶୁଣିକରି ବୀରବାହୁ ପଛକୁ ଦେଲା ଘୁଞ୍ଚା ।
ଶୁଣିକରି ବୀରବାହୁ ପଛଘୁଞ୍ଚା ଦେଲା
ଶିରରେ କର ଦେଇଣ ବିନୀତ ହୋଇଲା ।
ବୋଇଲା ହେ ଦେବ ତୁମ୍ଭକଥାରେସତ୍ୟନାହିଁ
ବିଭୀଷଣ ଆଗେ ଯାହା କହିଲ ଗୋସାଇଁ ।
ସେ କଥା କି ମନୁ ଏବେ ପାସୋଡ଼ହୋଇଲା
ବର ଦେବ ବୋଲି ମୋର ପ୍ରସନ୍ନ ମନହେଲା
ଯେଉଁ ବର ଦେବ ତୁମ୍ଭେ ତାରେ ସତ୍ୟକର
ସତ୍ୟ ନ ଲଙ୍ଘିବ ତୁମ୍ଭେ କାନ୍ତ ଜାନକୀର ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ମନ ହେଲେ
ତ୍ରିବାର ମୁଁ ସତ୍ୟକଲି ମାଗରେ ବୋଇଲେ
ବୀରବାହୁ ବୋଲେ ତୁମ୍ଭେ ସେନାପତି ଶୁଣ
ମଲ୍ଲ ମହାମଲ୍ଲ ବୀର ଯେତେ ଅଛ ଜାଣ ।
ଯେତେକ ସୈନ୍ୟତୁମ୍ଭେ ଅଛ ହେ ଋକ୍ଷକପି
ଲକ୍ଷ୍ମଣ ବିଭୀଷଣ ହନୁ ଅଙ୍ଗଦ ସୁଗ୍ରୀ ନଳ ।
ତୁମ୍ଭେ ଦଶଦିଗପାଳ ମୋର ବାଣୀ ଶୁଣ
ମୋତେ ଦୟା କରୁଛନ୍ତି ରଘୁକୁଳ ରାଣ ।
ଯାଚି ବର ଦେଲେ ମୋତେ ଦଶରଥ ସୁତ
ମୁଁ ଯାହା ମାଗିବି ମୋତେ ନୋହିବେ ଅସତ
ହେ ମହାପ୍ରଭୁ ମୋତେ ଦେବ ଏହି ବର
ମୋହର ଶିର ଛେଦନ କରିବ ରଘୁବୀର ।
ଅନ୍ୟବରେ ମୋରକାର୍ଯ୍ୟ ନାହିଁହେରଘୁନାଥ
ତୁମ୍ଭ ହସ୍ତେ ମଲେ ମୁଁ ହୋଇବି ମୁକତ ।
ମୋହର ଇଚ୍ଛା ନାହିଁ ସ୍ୱର୍ଗ ଇନ୍ଦ୍ର ପଦେ
ସପତ ଦ୍ୱୀପରେ ସିନା ଏକ ନାରାୟଣେ ।

ନାହିଁ ଇଚ୍ଛା ମୋର ଯେ ଲଙ୍କାରେ ଅଧିପତି
ତୁମ୍ଭେ ରଘୁନାଥ ହେ ମନେ ନ କର ଖିତି ।
ତୁମ୍ଭର ପାଦ ପଦ୍ମେ ନିଷ୍ଠତେ ରହିବ
ତୀକ୍ଷ୍ଣନାରାଚ ପେଶିତୁମ୍ଭ ହସ୍ତେମୋ ପ୍ରାଣଯାଉ
ଏହି ବର ବିନୁ ଆନ ବରରେ କାର୍ଯ୍ୟନାହିଁ
ନିସ୍ତାର ହୋଇ ନିଜପୁରଯିବି ହେ ଗୋସାଇଁ
ତାହାଶୁଣି ଦୟାନିଧି କମଳା ବିଳାସ
ବୟାକର ବୋଇଲେ ଯାଶକୁ ମୋର ଆସ ।
ଭାଇ କି ବାତୁଳ ତୁରେ ହେଲୁ ଚୂଡ଼ାମଣି
ଛୋର ମଗ ପୁଣ କି ଶରେ ହୁଏ ହାଣି ।
ଶର ଛନ୍ଦିବାକୁ ମୋର ହସ୍ତ ନ ଚଳଇ
ଭକତ ଶିରୋମଣି ମୋ ରାବଣ ତନୟି ।
ମୋ ଭାଇ ଲକ୍ଷ୍ମଣଠାରୁ ଅଧିକ ଅଟୁ ତୁହି
ଜନକ ନନ୍ଦିନୀଠାରେ ମୋର କାର୍ଯ୍ୟନାହିଁ ।
ଯେମୋର ଭକତଅଟେ ସେମୋତେବଡ଼ବାଣ
ତୁହିତ ସୁଜ୍ଞାନୀ ପଣ୍ଡିତ ବିଚକ୍ଷଣ ।
କେତେବାରେ କହିଲି ତୁ କରୁଛୁ ବୀରମଣି
ପ୍ରୟୋଜନ ନାହିଁ ମୋର ଜନକ ନନ୍ଦିନୀ ।
ନମରୁରାବଣ ପଛେକାର୍ଯ୍ୟମୋର ନୋହୁଏଣେ
ବିଭୀଷଣକୁଅଯୋଧ୍ୟାଦେଇ ପଶିବିଘୋରବଣେ
କହୁଛି କୁମରମଣି ମାଗ ଜନା ବର
କହୁଁ କହୁଁ ଦୈବ୍ୟବାଣୀ ଅବଜ୍ଞା ନକର ।
ଶୁଣିକରି ସ୍ତମ୍ଭୀଭୂତ ହୋଇଲେ ସର୍ବଜନ
ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବ ରାଜନ ।
ହନୁମନ୍ତ ଅଙ୍ଗଦ ଜାମ୍ବେବ ସୁଷେଣ
ନଳ ନୀଳ ଗବୟ ଗବାକ୍ଷ ରମଣ ।
ଗନ୍ଧ ମାଦନ ଦ୍ୱିବିଦ ପନଶିଳ
ହବଧି ସମ୍ପାତି ଶତବାଳି ଶତବାଳ ।
ସଞ୍ଚରି ସେନାପତି ଡ଼ାଳମ୍ବ କେଶରୀ
ମରୁତ ପବନ କଞ୍ଚଣ ଆଦିକରି ।
ପଚ୍ଛୁଆରେ ଅଛନ୍ତି ଏ ରାମ ମୁଖ ଚାହିଁ
ରାବଣ ନନ୍ଦନ ଆଗେ ଅଛି ଉଭା ହୋଇ ।
ବୀରବାହୁ ବୋଲେ ଦେବ ଦାଶରଥି ଶୁଣ
ବିଭୀଷଣ ସଙ୍ଗେ ସତ୍ୟ କରିଛ ତୁମ୍ଭେ ପୁଣ
ହୋଇଲଇ ବୀରବାହୁ ଧରିବ ଯେ ଶସ୍ତ୍ର
ନିଶ୍ଚୟ ମାରିବ ମୁଁ କହୁଛି ନିଶ୍ଚିତ ।

ପୁଣି ହେ ଲନ୍ତ ମୋତେ ବର ଏବେ ମାଗ
ସର୍ବ ସୈନ୍ୟ ଆଗେ ସତ୍ୟକରିଅଛ ଦେବ ।
ମାଗିଲା ବର ମୁହିଁ ଦେବଇ ନିଶ୍ଚୟ
ଏବେ ମୋ କଥାକୁ ଆନ ନକର ରଘୁନାଥ ।
ମୋର ବଚନ ଘେନ ମୋତେ ବେଗେ ମାର
ଧର୍ମ ଦେବା ଶାପରୁ କର ହେ ଉଦ୍ଧାର ।
ସ୍ୱର୍ଗେ ଦେବେ ଥାଇଣ ଭାଳନ୍ତି ମନରୁ
ନ ପୁଣ ଶ୍ରୀରାମ ନ ମାରନ୍ତି ଅସୁରକୁ ।
ପରମ ଦୟାଳୁ ସେ କରୁଣାସାଗର
ଭକତ ଜନ ନିମନ୍ତେ ବହନ୍ତି ଶରୀର ।
ଏଥୁ ଅନନ୍ତରେ ଯେ ଶୁଣ ଭଗବତୀ
ରାବଣର ଭାରିଯା ଯେ ମନ୍ଦୋଦରୀ ସତୀ ।
ମନେ ବିଚାରଇ ମୋର ଦୁଇପୁତ୍ର ମଲେ
ବୀରବାହୁ ମହାନାଦ ଅଛନ୍ତି ମୋର ଭଲେ ।
ବୃଦ୍ଧପୁତ୍ର ଗର୍ଭ ମୋର ହୋଇଲେ ଯେ ଜାତ
ଇନ୍ଦ୍ରଜିତ ଅକ୍ଷୟ ଗଲେ ସ୍ୱର୍ଗପଥ ।
ବୀରବାହୁ ଯାଇଅଛି ରାମ ସଙ୍ଗେ ଯୁଝି
ମରିବ କି ଉବୁରିବ ଦୁଇକଥା ବୁଝି ।
ଏତେ ବିଚାରିଣ ନାରୀ ଶଙ୍କିତ ହୋଇଲା
ନାରଦ ଋଷିଙ୍କି ମନେ ସୁମରଣ କଲା ।
ତତ୍‌କାଳେ ନାରଦ ସ୍ୱର୍ଗପୁରୁ ଆସି
ରାବଣର ଅନ୍ତଃପୁରେ ପ୍ରବେଶ ହେଲେ ଆସି
ମନ୍ଦୋଦରୀ ଦେଖିଣ ନମସ୍କାରକଲା
ବୋଇଲା ତୁମ୍ଭର କଥା ସବୁ ତ ଭେଟିଲା ।
ବିଭୀଷଣ ତୋତେ ଘେନ ବସିବ ଯେ ପାଟ
ରାଣୀମାନଙ୍କ ମଧ୍ୟରେ ହେବୁ ତୁହି ଶ୍ରେଷ୍ଠ ।
ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ଲଙ୍କାରେ ତୁ ଥିବୁ
ଆନ ସୃଷ୍ଟି ହେଲବେଳେ ସ୍ୱର୍ଗପୁର ଯିବୁ ।
ମନ୍ଦୋଦରୀ ବୋଇଲ ଯେ ଏକଥା ଅଟେ ସତ
ବୀରବାହୁ କୁମରକୁ ପେଷିଲେ ତା'ର ତାତ
ମରିବ କି ଲେଉଟିବ ଏହା ମୋତେ କହ
ଶୁଣି ବୋଇଲେ ଯେ ବ୍ରହ୍ମାଙ୍କର ପୁଅ ।
ପୁଅହୋଇ ତୋରକେବଳ ମହାନାଦ ରହିବ
ବୀରବାହୁ କୁମର ତ ଆଗ ନାଶ ଯିବ ।
ବିଷ୍ଣୁର ଭକ୍ତ ସେ ଅଟଇ ପ୍ରମାଣ
ଯାଚକରି ବର ତାକୁ ଦେଲେ ନାରାୟଣ ।

କେବେହେଁ ସେକଥା ନ କଲୁ ତୋ କୁମର
ସ୍ୱର୍ଗକୁ ଯିବ ବୋଲି ନିଶ୍ଚିତ ତାହାର ।
ରାମର ଭକତ ତୋର ହୋଇଛି କୁମର
କଥାଏ ସତ୍ୟ ଯେବେ ଗୋ କରନ୍ତୁ ବିଚାର ।
ବୀରବାହୁର ସାତ କୁମର ଜାତ ହେଲେ
ଷଡ଼ପୁତ୍ର ନାଶ ଗଲେ ଯୁଦ୍ଧରେ ସେ ଭଲେ ।
ସୁବାହୁ ବୋଲିଣ ଅଛି ତାହାର କୁମର
ତାକୁ ଯେବେ ଭେଦିପାରୁ ତା ବାପ ପାଶର
ତେବେ ଅଭୟ ବର ପାଇବ ତୋର ନାତି
ସୁଲଙ୍କା ଗଡ଼ରେ ସେ ହୋଇବ ନୃପତି ।
ମହାନାଦ କୁମର ଲଙ୍କାରେ ଯୁବରାଜା
କୁମ୍ଭକର୍ଣ୍ଣ ପୁଅ ହେବ ଲଙ୍କାଗଡ଼େ ରାଜା ।
ତୋର ଭକ୍ତି ପଣେ ନାତିପୁତୁରା ହେବେ ରାଜା
ଖାଇଥିଲୁ ଯାକ ତୋରେ ପ୍ରଶଂସା ତାର ଯା
ମହୀରାବଣ ବଂଶ ଗୋଟିଏ ନ ରହିବେ
ଶତେମୁଖା ରାବଣ ବଂଶନାଶ ଯିବେ ।
ଆହୁରି କଥାଏ ତୋତେ କହିବା ଗୋ ସତ୍ୟ
ଦଶଦିନେ ଜାଣିବେ ଏ ତିନି ନୃପତି ।
ଶୁଣି ମନ୍ଦୋଦରୀ ମନ ଉଦବେଗ ହେଲା
ସୁବାହୁ ନାତିକି ତାର ଡକାଇ ଆଣିଲା ।
ବୋଇଲାରେ ବେଗ ହୋଇ ଯିବୁ ରଣଭୁଇଁ
ଶ୍ରୀରାମ ଚରଣେ ଶରଣ ପଶ ଏବେ ଯାଇ ।
ପିତା ଆଜ ଜାଣିଯିବେ ମାତା ଯିବେ ସତ୍ୟ
ପିତାର ଭକତ ପଣେ ଜାଣେ ଥିବୁ ବର୍ତ୍ତି ।
ଏତେବେଳେ ନ ଗଲେରେ ନଷ୍ଟେ ନାଶଯିବୁ
ଶରଣ ପଶ ଅଲଙ୍କା ନୃପତି ହୋଇବୁ ।
ଶୁଣିକରି କୁମର ଯେ ବେଗେ ସଜ ହେଲା
ଲକ୍ଷେ ଜନମାଙ୍କି ପାଇଁ ନମସ୍କାର କଲା ।
ମନ୍ଦୋଦରୀ ଚରଣେ ଲୋଟିଲା ବୀରମଣି
ଉଠିଣ ମୁନି ଚରଣେ ହୋଇଲା ପ୍ରଣାମି ।
ନାରଦ ବୋଇଲେ ତୁରେ ବେଗେ ହୋଇ ଚଳ
ଶ୍ରୀରାମେ ଶରଣ ପଶ ସମର ମଣ୍ଡଳ ।
ଶୁଣିଣ ଶୁକ୍ଳରଥ ଆରୋହି ସୁବାହୁ
ଯେସନେକ ଚନ୍ଦ୍ରରଥ ଧଣେ ଦାଉ ଦାଉ ।
ନମସ୍କାର କରି ରଥ ବେଗେ ଚଳାଇଦେଲା
ପିତାର ପାଶରେ ଯାଇ ପ୍ରବେଶ ହୋଇଲା ।

ନାରଦ କହିକରି ଚଳିଲେ ସ୍ୱର୍ଗପୁର
ସୁବାହୁ ନମିଲା ଯାଇ ଶ୍ରୀରାମ ପୟର ।
ଶିରେ କର ଦେଇ ଉଠି ଲକ୍ଷ୍ମଣ ପୟର
ଗଡ଼ାଗଡ଼ି ଶୋଇଲା ବୀରବାହୁ କୁମର ।
ସେଠାରୁ ଉଠିଣ ବିଭୀଷଣ ପାଶେ ଗଲା
ଚରଣରେ ଯାଇ ପୁତ୍ର ନମସ୍କାର କଲା ।
ସେହିଠାରୁ ଯାଇ ପିତା ଚରଣ ନମଇ
ସୁଗ୍ରୀବର ଚରଣରେ ଶୁଏ ଲମ୍ବ ହୋଇ ।
ଦେଖି ସେନା ଯୂଥପତି ମଲ୍ଲ ମହାମଲ୍ଲ
ବୀର ମହାବୀର ସୈନ୍ୟ ସମସ୍ତେ ବିସ୍ମର ।
ଶ୍ରୀରାମ ବୋଇଲେ ତୁ ରେ ଶୁଣ ବୀରବାହୁ
ଏ କୁମର ଷୋଟିଏ କଏ ଅଇଲକ କାହୁଁ ।
ବୀରବାହୁ ବୋଲେ ଶୁଣ ଦେବ ରଘୁବୀର
ଲକ୍ଷେକ ଭାରିଯା ଯେ ଅଟଇ ମୋହର ।
ସାତଗୋଟି ସୁତ ମୋର ହୋଇଥିଲେ ଜାତ
ଷଡ଼ଗୋଟି ପୁତ୍ର ନାଶ ହନୁମାନ ହସ୍ତ ।
ସୁବାହୁ ବୋଲିଣ ପୁତ୍ର ଗୋଟିଏ ଉବୁରି
ଲକ୍ଷେକ ବସ୍ତୁ ନାମ ନତ୍ୟେ ସେ ସୁମରି ।
ମୋର ସଙ୍ଗେ ଯିବ ବୋଲି ଆସିଅଛି ପୁଣ
ଶୁଣିଣ ତାଟକା ହେଲେ କୌଶଲ୍ୟା ନନ୍ଦନ ।
ବିଭୀଷଣଙ୍କୁ ବୋଇଲେ କ ବୁଦ୍ଧି ତୁମ୍ଭର
ନିରୁତିଣ ମୋର ଆଗେ କହ ନୃପବର ।
ବିଭୀଷଣ କର ଯୋଡ଼ି କହଇ ବଚନ
ମହୀରାବଣ ନାମେ ଇନ୍ଦ୍ରଜିତର ନନ୍ଦନ ।
ସୁଲଙ୍କାରେ ରାଜପଣ କରିଅଛି ସେହି
ବଡ଼ ଅଧର୍ମି ଅଟେ ତାଠାରେ ଦୟା ନାହିଁ ।
ତାର ବଂଶ ନିପାତ କରିବେ ଲକ୍ଷ୍ମଣ
ଦେବତାଙ୍କଠାରୁ ଯେ ଶୁଣିଛି ଏମାନ ।
ଲକ୍ଷ୍ମଣ ବାନ୍ଧନ୍ତୁ ପାଟ ସୁବାହୁ ଶିରର
ଏକମୁଖା ରାବଣ ଦେଶେ କରିବା ନୃପବର ।
ବିଷ୍ଣୁ ଯାହା ଲେଖିଅଛି କେ କରିବ ଆନ
ପାଞ୍ଚଦିନ ତଳେ ନାରଦ କହିଗଲେ ପୁଣ ।
ସୁବାହୁକୁ ରାଜା କରି କରେ ଧନୁ ଧରି
ବୀରବାହୁ କୁମରକୁ ବେଗେ ନାଶ କରି ।
ପାଞ୍ଚ ଦିନ ଯୁଦ୍ଧ ମହୀରାବଣ କରିବ
ସଗୋତ୍ର ସହିତେ ତାକୁ ଲକ୍ଷ୍ମଣ ମାରିବ ।

ରୁଦ୍ର ଇନ୍ଦ୍ର ବ୍ରହ୍ମା ଆଦ ରକ୍ଷି ନ ପାରିବେ
ଅନେକ ମୁନିଗଣ ଖାଇଲା ତପସ୍ୱୀଗେ ।
ଶୁଣିକରି ରାମଚନ୍ଦ୍ର କୋପଭର ହେଲେ
ଉଠରେ ଲକ୍ଷ୍ମଣ ବାନ୍ଧ ଶାଢୀ ଏହା ଶିରେ ।
ସଉମିତ୍ରୀ ବୋଲେ ଦେବ ତୁମ୍ଭେ ପିତା ମୂଳ
ମୋତେ କସ ଆଜ୍ଞା ହେଉଅଛୁ ରଘୁବାଳ ।
ଶ୍ରୀରାମ ବୋଇଲେ ବାବୁ ତୁ ରାଜା କରାଇବୁ
କାଳଯୁଗକୁ କଥା ତୁହି ଯେ ରହାଇବୁ ।
ଶୁଣି କରି ଲକ୍ଷ୍ମଣ ବୀର ଉଠି ବେଗେ
ସୁଷେଣକୁ ଆଜ୍ଞା ଦେଲେ ଯାଅ ସିନ୍ଧୁ ଲଗେ
ତୀର୍ଥ ଜଳ ବେନିଆସ ସମୁଦ୍ରରୁ ଯାଇ
ଶୁଣିଣ ସୁଷେଣ ମନ୍ତ୍ରୀ ବେଗେ ଗଲା ଧାଇଁ ।
ତୀର୍ଥରୁ ଜଳ ଆଣି ଲକ୍ଷ୍ମଣ ଆଗେ ଦେଲା
ସୁବାହୁ ଶିରେ ନେଇ ଲକ୍ଷ୍ମଣ ଢାଳିଲା ।
ଅମଳାଣ ଶାଢୀ ଆଣି ବାନ୍ଧିଲେ ତା ଶିର
ସୁଲଙ୍କା ନୃପତି ହେଲା ସୁବାହୁ କୁମର ।
କପିଗଣେ ହୁଳହୁଳି ରାମଚାଳ ଦେଲେ
ଯୂଥପତି ସେନାପତି ଅର୍ଘ୍ୟ ବଢାଇଲେ ।
ଶ୍ରୀରାମ ଅଭୟବର ଦେଲେ ତାକୁ ପୁଣ
ବିଭୀଷଣ ସଙ୍ଗେ ତୋର ହୋଇବ ମରଣ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାକେ ନିଶ୍ଚିନ୍ତରେ ଥିବୁ
ନୂଆ ସୃଷ୍ଟି ହେଲେ ତୁହିରେ ମରଣ ପାଇବୁ
ନିଶ୍ଚିନ୍ତରେ ରହିଲା ସେ ସୁବାହୁ କୁମର
ବିଷ୍ଣୁ ନାମ ଜପିବାରୁ ପାତକ ଦୂର ତାର ।
ଶ୍ରୀରାମ ବୋଇଲେ ତୁମ୍ଭେ ବିଭୀଷଣ ଶୁଣ
ସୁଲଙ୍କାର ନୃପତି ସଙ୍ଗରେ ରଖ ପୁଣ ।
ଦଶକନ୍ଧ ମଲେ ଏ ଯେ ଏହା ରାଜ୍ୟ ପିବ
ଯାଅ ଦୁଇ ଜଣ ସୁବଳସ୍ଥାରେ ରହିବ ।
ଆଜ୍ଞା ପାଇ ବିଭୀଷଣ ସୁବାହୁ ଚଳିଗଲେ
ବୀରବାହୁ ମନରେ ଆନନ୍ଦ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସ୍ୱର୍ଗରେ ଦେବତାମାନେ କରୁଛନ୍ତି ମେଳ ।
ଯେଉଁରୂପେ ବୀରବାହୁର ହୋଇବ ମରଣ
ସେ କଥାକୁ ବଧାତା କରିଛି ବିସ୍ତରଣ ।
ପୁଣି ବିନତି କରଇ ରାବଣ ତନୟୀ
ଦୟାକରି ତାକୁ ନିକ ନ ମାରେ ରଘୁସାଇଁ ।
ବ୍ରହ୍ମା ବୋଇଲେ ମାଗୋ ସରସ୍ୱତୀ ଯାସି
ଶ୍ରୀରାମ କଣ୍ଠରେ ତୁମ୍ଭେ ବିଜେ କର ଆସି ।
ଯେମନ୍ତେ ବୀରବାହୁକୁ ମାରିବେ ରଘୁମଣି
ତେମନ୍ତ ବିସ୍ମର ଯାଇ କରରେ ଦୂତିଣୀ ।
ପୁଣି ଆଜ୍ଞା ଦେଲେ ଧାତା ଖଳ ପୁରୁଷକୁ
ତୁମ୍ଭେ ଯାଅ ଲଙ୍କାର ସଂଗ୍ରାମ ମଣ୍ଡଳକୁ ।
ବୀରବାହୁ ଦେହରେ ଯାଇଣ ବେଗେ ପଶ
ଯେମନ୍ତେ ଶ୍ରୀରାମଙ୍କୁ କରଇ ଅମରଷ ।
ଆଜ୍ଞା ପାଇ ବେଗେ ଖଳ ସରସ୍ୱତୀ ଗଲେ
ବେନି ଜନଙ୍କ ହୃଦରେ ବେଗେ ବିଜେ କଲେ
ବୀରବାହୁ ହୃଦେ ସତ୍ୱେଁ ପଶିଲାକ ଖଳ
ମନେ ମନେ ବିସ୍ମରଇ ଅସୁର ମହାମଲ୍ଲ ।
ଏହୁ ଯେ ରଘୁନାଥ ମାରିବେ ମୋତେ
ସ୍ତୁତି ବଚନ ଏବା କରିବି ମୁଁ କେତେ ।
ମାରିବଇଁ ବାନର ଭଲ୍ଲୁକ ସଇନ
ଏତେ ବିସ୍ମରିଲା ସେ ଅସୁର କୁଳମଣି ।
କରିବଇଁ ସ୍ତୁତି କଟୁ ବଚନ କହିବି
ତେବେ ମୁଁ ଶ୍ରୀରାମର ହାତୁଟେ ପ୍ରାଣ ଦେବି ।
ଏତେ ବିସ୍ମରି ବୀରବାହୁ ବାହୁଡ଼ିଲା
ରଥବରରେ ବସି ଧନୁ ସଦସ୍ତ୍ର ଧଇଲା ।
ବିଭୀଷଣ ସୁବଳସ୍ଥା ଗିରି ଯାଇଥିଲେ
ସୁବାହୁକୁ ଘେନି ରାଜା ବାହୁଡ଼ି ଅଇଲେ ।
ଶ୍ରୀରାମ ଆଗରେ ଆସି ହେଲା ବୀରବର
ଦେଖିଲା ନେତ୍ରରେ ବୀରବାହୁ ଯେ କୁମର ।
ରେ ରେ କରିଣ ଗର୍ଜଇ ପୁଣ ପୁଣି
ମାରିବଇଁ ଭଲ୍ଲୁକ ବାନର ସଇନ ।
ସୁଗ୍ରୀ ବିଭୀଷଣ ହନୁ ଅଙ୍ଗଦ ସହିତେ
ଅଷ୍ଟସେନା ପଚଶ ଯୂଥପତି ଯେତେ ।
ନ ଥୋଇବ ବୃଷପତି ଶ୍ରୀରାମ ଲକ୍ଷ୍ମଣ
ଏତେ ବିସ୍ମରି ମନେ ଗୁଣ ଟଙ୍କାର କରେପୁଣ
ହନୁ ନାସାରେ ହସ୍ତ ଦେଇଣ ହସିଲା
ହସ୍ତଯୋଡ଼ି ଏହୁ ଯୋଦ୍ଧା କେତେ କହୁଥିଲା ।
ଶ୍ରୀରାମଙ୍କ ମୁଖ ଦୃଷ୍ଟି କହେ ଯେ ମାରୁତି
ଦେଖ ଦେଖ ଆହେ ପ୍ରଭୁ ତୁମ୍ଭ ଭକତ ସତି
ଏ ଘୋର ମାୟାବୀ ଯେ ପାମର ଅସୁର
ବିଶ୍ୱାସ ଏହାକୁ ଯେ ନ କର ରଘୁବୀର ।

କେତେ କହୁଥିଲ ଏ ସେ କୁଟ ଛନ୍ଦ ମଧ୍ୟେ
ହୃଦେ ମାୟା ରଖି ଏ ତ କରଇ ଭଣ୍ଡାପେ ।
ସେଣୁ ଏ ଥାଟ ଆମ୍ଭର ଗହଳ ଦେଖିଲ
ଆହ୍ଵାନ ନ ପାଇ ପୁଣ ଏ ପଥରେ ବସିଲ ।
ଲକ୍ଷ୍ମଣର ମନକୁ ସେ ଗଲା ଏହି କଥା
ସତ ହୋ ମାରୁତି ତୁ କହିଲୁ ଯେଉଁ କଥା ।
ଅସୁର ନଳକ୍ଷଣକୁ ଦେବ କର୍ମା ଉପ୍ରୋଧଜତ
ଶୁଣି କରି ରଘୁନାଥ କହନ୍ତି ଉତ୍ତର ।
କେତେ ବର ଯାଚିଲୁ ନ ନେଲା ବୀରବାହୁ
ପୃଥ୍ଵୀକୁ ରାଜା କରି ନାଶ ହେଲା ସେହୁ ।
ମରିବ ବୋଲି ବୀର ବରିଛି ନିଶ୍ଚିତ
ତୁମ୍ଭେମାନେ ଅବଗୁଣ ଧରୁଛନ୍ତ ଚିତ୍ତ ।
ବୀରବାହୁ ମଲ୍ଲବେଳେ ଦେଖିବଟି ତାର
ସୈନ୍ୟଙ୍କୁ ବୋଇଲେ ଏଥର ବେଢିକରିମାର
ତାହା ଶୁଣି ରାମ କପି ଧାଇଁଲେ କୋପଭର
ରେ ରେ କାରକରି ବେଢେ ସ୍ଥରଯୋପାନର
ପର୍ବତ ଶିଳା ବୃକ୍ଷ ପଡୁଛଲେ ନେଇ
ହେଲେ ନବାରିଲ ତାହା ଶ୍ରବଣ ତନୟ ।
ଘୋର ଯୁଦ୍ଧ ଦେଖି ରାମ ଧନୁଶର ଧରେ
କୋପଭରା ହୋଇଣ ସେ ଧାଇଁଲେ ଆଗରେ
ଲକ୍ଷ୍ମଣକୁ ନାରାଚ ସେ ହାଣେ ବୀରବାହୁ
ଆରେ ଆରେ ତପସ୍ଵି ତୁ କେତେ ଗର୍ବ କହୁ
ଏହିକ୍ଷଣି ମୁଣ୍ଡ ତୋର କାଟିବି ତୁରିତେ
ବାଳକ ବୋଲି ଉପେକ୍ଷା କରିଥିଲି ତୋତେ
ପଡ଼ନ୍ତୁ ଆଗେ ମୋର ସିନ୍ଧୁ ଆଜ କାହିଁ
ଏ କନ୍ଦରେ ଅଯୋଧ୍ୟା ଦେଖିବୁ କେଉଁ ଯାଇ
ସେ କଥା ଶୁଣି ଲକ୍ଷ୍ମଣ ମହାକ୍ରୋଧ ହେଲେ
ହାଦୋଡ଼ା ବଜ୍ରବାଣ ସେ ଓଟାରି ବିନ୍ଧିଲେ ।
ପଡ଼ିଲା ଉଡେ ବଜ୍ର ସମ ଜାଣି ଶର
ଘଡଘଡ ଶବ୍ଦରେ ବାହୁଡେ ଉହୁକର ।
ଡାକନ୍ତି ଲକ୍ଷ୍ମଣ ମୋହଠାରେ ପଳାଉଛ କାହିଁପାଇଁ
ତୁ ଆଜ ବାପକୁ ତେବେ ଦେଖିବୁରେ ଯାଇ
ଶୁଣିକରି ବୀରବାହୁ କୋପଭର ହେଲା
ଗଗନ ମଣ୍ଡଳରେ ଶର ପୂରାଇଲା ।
ବିଭୀଷଣ ଲକ୍ଷ୍ମଣ ସେ କୋପଭର ହୋଇ
ଶ୍ରୀରାମଚନ୍ଦ୍ର ଧାଇଁଲେ ଭାଇଙ୍କ ପିଠି ଆଇ ।

ବାମ ଭାଗରେ ଛନ୍ତି ଲକ୍ଷ୍ମଣ ବିଭୀଷଣ
ଥାଟ ଘେନି ବେଢିଛନ୍ତି ସୁଗ୍ରୀବ ରାଜନ ।
ସେ ଯାହାର ଆୟୁଧ ପଡୁଛନ୍ତି ନେଇ
ନିଃଶ୍ଵାସ ଛାଡିବାକୁ ବିଶ୍ରାମ ଆଉ ନାହିଁ ।
ଧନ୍ୟରେ ବୀରବାହୁ କରେ ମହାରଣ
ଏତେ ଶରକୁ ସେ ନିବାରେ ଏକା ଜଣ ।
ଶ୍ରୀରାମ ଧନୁ ଧରି ବରଷନ୍ତି ତୀକ୍ଷଣ ଶର
ବିଭୀଷଣ ଲକ୍ଷ୍ମଣ କୋପରେ ଥରହର ।
ଏମନ୍ତେ ଅନେକ ଯୁଦ୍ଧ ହେଲ ବେଳୁବେଳ
ରଣମାରେ ଯୁଦ୍ଧ ସେହି କଲେ ସେ ଅପାର ।
ମହାଘୋର ଯୁଦ୍ଧ ସେ କଲେ ଅନ୍ଧକାର
ମହାଘୋର ସଂଗ୍ରାମରେ ହେଲା ନିଶିଅନ୍ଧାର
ଶରବୃଷ୍ଟି କରନ୍ତେକେହି କାହାକୁନଦିଶିଲେ
ଲକ୍ଷ୍ମଣ ବିଭୀଷଣ ଅଙ୍ଗଦ ହନୁ ବଣାହେଲେ ।
ମକରାକ୍ଷସ ଦୈତ୍ୟ ଅମର ଅନ୍ତକ
ଲକ୍ଷ୍ମଣର ସଙ୍ଗେ ଯୁଦ୍ଧ କଲେ ସେ ଅନେକ ।
ସମସ୍ତ ଅସମସ୍ତ ଦେଖି ସହୋଦର
ବିଭୀଷଣ ଉଗାଳି କଲାକ ସମର ।
ହନୁ ରହିଲା ବଜ୍ର କପଟ ଆଗେଣ
ବଜ୍ର କପଟ ସଙ୍ଗେ ଅଙ୍ଗଦ କରେ ରଣ ।
ସୁଗ୍ରୀବର ଯାଇଁ ଅଗ୍ନିକେତୁ ଉଗାଳିଲା
ରଶ୍ମିକେତୁ ସଙ୍ଗରେ ଜାମ୍ବେବ ଯୁଦ୍ଧକଲା ।
ଶତ୍ରୁଜିତ ଶମ୍ବାଜିତ ସଙ୍ଗେ ମିଳି ନଳ
ଯମଦାଢ଼କୁ ରଣେ ଉଗାଳିଲା ଶତବଳ ।
ନୀଳ ରାଜାକୁ ଭେଟିଲା ଗନ୍ଧମାଦନ
ଲବଣ ସଙ୍ଗେ ସମର ମଳୟ ଚନ୍ଦନ ।
ଲୋହିତାକ୍ଷ ସଙ୍ଗରେ ସୁଷେଣ ମହାମନ୍ତ୍ରୀ
ଏମନ୍ତେ ଯୁଦ୍ଧ ବାଣ୍ଟିଲେ ଛତିଶ ଯୁଥପତି ।
ଅନ୍ଧାର ରାତିରେ ଯୁଦ୍ଧ ହୋଇଲା ଅପାର
ଦେବଙ୍କୁ ଦୁର୍ଲ୍ଲଭ ସେ ମାନବେ ଅଗୋଚର ।
ଶ୍ରୀରାମଙ୍କର ସଇନ ପଡିଲେ ଅନେକ
ଅସୁର ପଡ଼ିବାରେ ଗଣିତା ନୁହେ ଲକ୍ଷ ।
ରକ୍ତନଈ ଗୋଟିଏ ବହିଲା ରୁଧିର
କୁଣ୍ଡ କୁଣ୍ଡ ମଣ୍ଡା ଯେ ପଡ଼ିଲେ ଅପ୍ରମିତ ।
ଏହିମତେ ଯୁଦ୍ଧକରୁ ରଜନୀ ପାହିଲା
ପୂର୍ବଦିଗେ ଦିନକର ତେଜ ପ୍ରକାଶିଲା ।

ବଞ୍ଚିଲ ଦଶବଗ ଯେ ଯାହା ଅଛି ଚିହ୍ନି
ଶ୍ରୀରାମର ଅଛି ଯେ ବଚନେ ଯେସନ୍ତେ ବନ୍ଧି ।
ବୀରବାହୁ ବୀରବର ଶ୍ରୀରାମ ସଙ୍ଗେ ଯୁଦ୍ଧ
ଧାଇଁଲେ ଅସୁରଙ୍କୁ ଘୁଡ଼ିଣ କପି ଯୂଥ ।
ମହାଯୁଦ୍ଧ କରଇ ଯେ ରାବଣ କୁମର
ଦେଖିକରି ଧାଇଁଲ ଅଙ୍ଗଦ ହନୁବୀର ।
ଶତ୍ରୁଜିତ ଯୁଦ୍ଧ ଛାଡ଼ି ଧାଇଁଲ ବୀର ନୀଳ
ଯାଇଣ ଉଠିଲ ବୀରବର ରଥବର ।
ନଟଳଇ ରଥ ମହାଗିରି ପ୍ରାୟେ ହୋଇ
ରଥ ଧ୍ୱଜ ପତାକା ଯେ ପକାଏ ଛିଣ୍ଡାଇ ।
ଶ୍ରୀରାମ ଯେ ଅନେକ ଦିବ୍ୟ ଅସ୍ତ୍ର କଲେ
ବୀରବାହୁ ଅଭେଦ କବଚ କାଟିଲେ ।
ଗର୍ଜନ କରେ ବୀର ପ୍ରଚଣ୍ଡ ସିଂହ ଜାଣି
ମନେମନେ ଚିନ୍ତା ଯେ କରେ ରଘୁମଣି ।
ଅଷ୍ଟସେନା ଆବର ପଚାଶ ଯୂଥପତି
ବେଢ଼ିଣ ବୃକ୍ଷ ଶିଳା ସମସ୍ତେ ମାରନ୍ତି ।
ଏକାକେ ବୀରବାହୁ କରଇ ମହାରଣ
ସମସ୍ତଙ୍କର ଶର ଯେ ଛେଦଇ ଘନ ଘନ ।
ଧନ୍ୟ ଧନ୍ୟ ପ୍ରଶଂସା କରନ୍ତି ସୁରଗଣ
ଏକା ଯୋଦ୍ଧା ସଙ୍ଗେ ଯୁଦ୍ଧକରଇ ଏକାଜଣ
ଶ୍ରୀରାମ ଯେବେ ଏହାକୁ ନାଶ ନ କରନ୍ତି
ରସାତଳେ ନଷ୍ଟପ୍ରାୟ ପଡ଼ିବ ବସୁମତୀ ।
ଏତେ ବୋଲି ଦେବ ହେ କୁହାକୁହି ହୋନ୍ତି
ବୀରବାହୁ କୁମରକୁ ବାଛି ଚାହିଁଥାନ୍ତି ।
ଶୁଣ ତୁମ୍ଭେ ପାର୍ବତୀ କହନ୍ତି ସଦାନନ୍ଦ
ଏମନ୍ତେ ବୀରବାହୁ କଲା ଅନେକ ଯୁଦ୍ଧ ।
ପାଞ୍ଚ ଦିବସ ପାଞ୍ଚ ରାତ୍ର ବହିଗଲ
ରାବଣ ନନ୍ଦନ ଶ୍ରୀରାମ ସଙ୍ଗେ ଯୁଦ୍ଧ କଲ ।
ଶ୍ରୀରାମ ବିଚାରନ୍ତି ଏ ଅଟେ ବଡ଼ଜଣ
ଏହାକୁ ଜିଣିବାକୁ କେ ଅଛି ଆନଜନ ।
ଏତେ ବିଚାରି ରାମ ଆପଣା ନାମ ଧରି
ରାମ ତାରକ ମନ୍ତ୍ର ହୃଦରେ ସୁମରି ।
ମନେ ବିଚାରିଲେ ମୂର୍ତ୍ତି ଅଟେ ସର୍ବ ପୁଣ
ଉତ୍ପତ୍ତି ସ୍ଥିତି ପ୍ରଳୟ ସବୁ ମୋର ଜାଣ ।
ସଚରାଚର ବ୍ରହ୍ମାଣ୍ଡେ ମୂର୍ତ୍ତି ତ କର୍ତ୍ତା
ଏ ସ୍ଥୂଳ ଅସୁର ଯେ କେତେଢ଼ ବଳବନ୍ତା ।
ରଖିଲେ ରଖିବି ମୁଁ ନାଶିଲେ ନାଶଇ
ବଚନ କହିବାରୁ ମୁଁ ଉପ୍ରୋଧ କରଇ ।
ଏତେ ବିଚାରି ରାମ ତେଜ ବିକାଶିଲେ
ଦେଖିକରି ବୀରବାହୁ ମନରେ ଭୟକଲେ ।
ଶ୍ରୀରାମ କୋପରେ ବିନ୍ଧନ୍ତି ବଜ୍ରଶର
ପଡ଼ିଲ ବୀରବାହୁ ହୃଦୟ ଉପର ।
ନ ଭେଦ ହୃଦୟରେ ଶର ଲେଉଟି ଆଇଲ
ଟହଟହ ହୋଇ ବୀରବାହୁ ଯେ ହସିଲ ।
ଏ ଛାର ରାବଣ ମୋତେ ମାରୁଛି ରଘୁବୀର
ରଖିଛ ଯେବେ ତୁମ୍ଭ ବନ୍ଧ ହେ ବ୍ରହ୍ମଶର ।
ଏ ଶରମାନଙ୍କରେ ମୋତେ ମାରିହୋଇ
ସଂଗ୍ରାମରେ ମୁଁ ଇନ୍ଦ୍ରଦେବଙ୍କୁ ନ ଗଣଇ ।
ବନ୍ଧ ହେ ବ୍ରହ୍ମଶର ନକର ଦେର ହେଳ
ଏତେ କହି ବୀର ଯେ ବନ୍ଦେ ମହାକାଳ ।
ଶ୍ରୀରାମ ପ୍ରତିଶର କଲେ ନୀଳବାଣ
ଦେନ ଶସ୍ତ୍ରଙ୍କର ଶବଦ ଅଟେ ଗରୁଟାଣ ।
ପ୍ରଳୟ କାଳରେ ଯେସନ୍ତେ ମେଘ ଘଡ଼ଘଡ଼
କି ଅବା ମେରୁ ଗିରି ପଡ଼ୁଅଛି ଝଡ଼ ।
ସମସ୍ତ ସାଗର କି ଘୂର୍ଣ୍ଣୀଭୂତ ହେଲ
କି ଅବା ମହୀ ରସାତଳରେ ପଡ଼ିଲ ।
ବେଣ୍ଟ ବଳ ଥାଟ ଯେ ଚକିତ ହୋଇଲେ
ଶରଙ୍କର ଗର୍ଜନରେ ଦଶଦିଶ ହାଟହାଳଲେ
କୋଟିଏ ବନକର ଉଦୟେ ଗଗନ
ଦେଖି ଭୟ ପାଇଲେ ଅମର ସୁରଗଣ ।
ବିଧାତା ଦେଖିଲେ ଶଙ୍କରଙ୍କର ଜ୍ୟୋତି
ଅନେକ ବିନସ୍ତି ହୁଏ ବେଦପତି ।
ଆହେ ମହାକାଳ ତୁମ୍ଭେ ବ୍ରହ୍ମ ଯେ ଶକତି
ଆହେ ନୀଳବାଣ ବିଷ୍ଣୁ ତେଜର ଶକତି ।
ତୁମ୍ଭର ତେଜକୁ ନିକ ଏ ମହୀମଣ୍ଡଳ
ନଷ୍ଟପ୍ରାୟ ସଂସାର ତ ପଡ଼ିବ ରସାତଳ ।
ନ କର କୋପ ତୁମ୍ଭେ ପ୍ରଚଣ୍ଡ ରୂପ ତେଜ
କରୁଛି ବିନତି ମୋର ବଚନ ତୁମ୍ଭେ ହେଜ
ଏତେ ବାଗେ ବିଧାତା ବିନୋଇ କହିଲେ
ତୁମ୍ଭେ ଦାଶରଥି ହେ ଅସୁର ମାରି ହେଲେ
ଦେବ ଇନ୍ଦ୍ର ଆଦିକରି କର ଯୋଡ଼ି କରି ;
ଦେବଙ୍କ ବିନତି ଶୁଣି ମନରେ ବିସ୍ମରି ।

ଶାନ୍ତ ହୋଇ ରହିଲେ ନିଜରୂପ ଘେନ
ଦେବତାଙ୍କ ବଚନେ ପ୍ରଚଣ୍ଡ ସହସ୍ର ଯୋନ ।
ଯେ ଯାହାର ହୋଣରେ ସମ୍ଭାଇଲେ ଯାଇ
ଦେଖିକରି ରଘୁନାଥ କୋପଭର ହୋଇ ।
ଅଧାଚନ୍ଦ୍ର ବାଣ ଯେ ପେଶେ ରାବଣାରି
ଅସୁର ଦେହକ ଫଡ଼ ବାଣ ପଡ଼ିଲା ଭୂଇଁ ।
ଶ୍ରୀରାମ ପେଶିଲେ ଦିବ୍ୟବାଣ ସହସ୍ର କୋଟି
ରାବଣର ନନ୍ଦନ ଯେ ପକାଇଲା କାଟି ।
କୋପେ ଶ୍ରୀରାମ ପେଶିଲେ ବଜ୍ରବଳି ଶର
ବାଣ ଯାଇ ପଡ଼ିଲା ବୀରବାହୁର ଉପର ।
ଶରଘାତରେ ବୀର ବିରକ୍ତ ହୋଇଲା
ଶ୍ରୀରାମ ସୁମନ୍ତ୍ ପୁଣି ଶର ବୃଷ୍ଟି କଲା ।
କୁବେର ଅସ୍ତ୍ରକୁ କେ ପେଶିଲେ ରଘୁବୀର
ଗୁଣ ଚଢ଼ାଇଲେ ପ୍ରଭୁ କୋଦଣ୍ଡ ରୂପଧାର ।
ଉପୁଡ଼ ପଡ଼ିଲା ବାଜ ଅସୁର ହୃଦୟର
ଦେଖିକରି ରଘୁନାଥ କରନ୍ତି ବିସ୍ମର ।
ହସିକରି ବୀରବାହୁ କହନ୍ତି ଗୋସାଇଁ
ଏ ଶରମାନଙ୍କରେ ମୋର ମୃତ୍ୟୁ ନାହିଁ ।
ଅଛି ଯଦି ବ୍ରହ୍ମଶର ପେଶ ବେଗ କରି
ନୋହିଲେ ମୋଠାରୁ ହେ ନ ଯିବ ଉଦ୍ଧରି ।
ଶୁଣିକରି ରଘୁନାଥ କୋପଭର ହୋଇ
ବିଭୀଷଣ ମୁଖକୁ ଚାହିଁଲେ ରଘୁସାଇଁ ।
ବିଭୀଷଣ ବୋଇଲେ ଶୁଣିବା ରଘୁନାଥ
ବ୍ରହ୍ମଶର ନ ପେଶିଲେ ନ ମରେ ଦଇତ ।
ଯେବଣ କାଳରେ ଧାତା ଏହାକୁ ବର ଦେଲା
ବ୍ରହ୍ମଶରେ ତୋର ପ୍ରାଣ ହାରିବୁ ବୋଇଲା ।
ଅନ୍ୟବାଣେ ତୋର ମୃତ୍ୟୁ ନାହିଁରେ କୁମର
ଯେ ମାରିବ ତୋତେ ସେ ନିଶ୍ଚୟ ଚକ୍ରଧର ।
ନାରାୟଣ ସ୍ୱରୂପ ସେ ନିଶ୍ଚେ ଚକ୍ରଧାରୀ
ଅବତାର ହେବେ ସେ ଅସୁରବଳ ମାରି ।
ତାହା ଶୁଣି ରଘୁନାଥ ଧଇଲେ ବ୍ରହ୍ମଶର
ଗୁଣେ ବସାଇଲେ କୋଦଣ୍ଡ ରୂପଧର ।
ଜାଣିଲା ବୀରବାହୁ ମରଣ ମୋର ହେଲା
ବିଷ୍ଣୁ ହସ୍ତେ ମୋର ମୃତ୍ୟୁ ମନରେ ହୃଷ୍ଟ ହେଲା
ଶ୍ରୀରାମ ନାମଗୋଟି ଧରୁଅଛି ତୁଣ୍ଡେ
ଗଗନ ମଣ୍ଡଳ ଯାକ ସେ ପୂରାଇଲା କାଣ୍ଡେ ।
ଲକ୍ଷ୍ମଣ ତା ନିବାରିଲେ ସ୍ତୁତି ଅସ୍ତ୍ର କରି
ରାମଚନ୍ଦ୍ର ବ୍ରହ୍ମଶର ପେଶେ ରୋଷ କରି ।
ନାରାଚ ଚଳିବାରେ ଯେ ଭୁବନ କମ୍ପିଲା
କୋଟିଏ ସୂର୍ଯ୍ୟ କି ଅବା ଉଦୟ ହୋଇଲା
ପଡ଼ିଲା ନାରାଚ ବୀରବାହୁ ହୃଦୟର
ପ୍ରାଣ ଛାଡ଼ିଣ ବୀର ପଡ଼େ ଯେ ମହୀର ।
ରାମ ନାମ ଧରିଣ ପ୍ରାଣ ଛାଡ଼ିଗଲା
ସ୍ୱର୍ଗରୁ ବିମାନ ଆସି ସେଠାରେ ମିଳିଲା ।
ପୁଷ୍ପକ ଯାନରେ ବୀରବାହୁ ଯେ ବସିଲା
ଦିବ୍ୟ ମୂର୍ତ୍ତି ଧରି ବେଗ ଗଗନେ ବିଜେମିଲା ।
ଅପୂର୍ବ ବିମାନେ ସେ ବିଜେ କରିଗଲା
ଦୁନ୍ଦୁଭି ଶଙ୍ଖଧ୍ୱନି ବାଦ୍ୟ ଯେ ବାଜିଲା ।
ଜୟ ଜୟ ଶବଦ ଶୁଭେ ଆକାଶରେ
ଦେବେ ପୁଷ୍ପ ବୃଷ୍ଟି କଲେ ଶ୍ରୀରାମର ଶିରେ ।
ବୃନ୍ଦାରକେ ସମସ୍ତେ ସୁଧର୍ମା ସଭା କରି
ଆନନ୍ଦ ଦିଗପାଳେ ବ୍ରହ୍ମାଙ୍କୁ ବେଢ଼ି କରି ।
ଇନ୍ଦ୍ର ରୁଦ୍ର ଚନ୍ଦ୍ର ଯେ ବରୁଣ କୁବେର
ମରୁତ ନୈଋତ ଆବର ଯେ ବୈଶ୍ୱାନର ।
ଯମ ଧର୍ମ କିନ୍ନର ଗନ୍ଧର୍ବ ଆଦି କରି
ଅଷ୍ଟବସୁ ବିଷ୍ଣୁ ଦେବା ଗ୍ରହ ଆଦି କରି ।
ଅପସରା କନ୍ୟାରା ଯେ କରନ୍ତି ନୃତ୍ୟ ଗୀତ
ସୁଧର୍ମା ସଭା ମଣ୍ଡାଇ ବିଜେ ପୁରୋହିତ ।
ଦେବଗଣଙ୍କ ଆନନ୍ଦ କହି ତ ନ ପାରି
ବୀର ବାହୁକୁ ଯେଣୁ ମାରିଲେ ରାବଣାରି ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ବୀରବାହୁ ଗଲା ଯେ ରଥ ଚଢ଼ି ଧାତି ।
ସୁଧର୍ମା ସଭାଠାରେ ହେଲା ପରବେଶ
ଦେବଙ୍କୁ ନମସ୍କାର କଲା ଚନ୍ଦ୍ରଦେବତା ଶିଷ୍ୟ
ସେଠାରୁ ନିଜପୁରେ ପ୍ରବେଶ ହୋଇଲା
ଜନନୀ ପିତାଙ୍କର ଚରଣେ ଓଳଗିଲା ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ରଣରେ ଜୟକଲେ ଯେ ରଘୁକୁଳ ଶିରୀ ।
ବୀରବାହୁ ମରିବାର ଦେଖିଲେ ଦୈତ୍ୟବଳ
ପଳାଇଲେ ରଣରୁ ହୋଇ ଅସମ୍ଭାଳ ।
ପଞ୍ଚଶ ଯୂଥପତି ବୀର ମହାବୀର
ଗୋଡ଼ାଇ ମାରିଲେ ସେ ଅନେକ ଅସୁର ।

ଗଡ଼ଦ୍ୱାର ପରଯନ୍ତେ ପାଏଡ଼ା ପଡ଼ିଗଲ
ଅସୁରସୈନ୍ୟ କେତେ ପଡ଼ିଲେଗଣିତା ନ ଗଲ
ରାମଚନ୍ଦ୍ର ଆଜ୍ଞା ଦେଲେ ରାକ୍ଷସଙ୍କୁ ସ୍ୱହିଁ
ଆମ୍ଭର ସୈନ୍ୟବେଗେ ଆଣହେ ଲେଉଟାଇ
ନସଙ୍ଗ ହେଲ ଲୋକଙ୍କୁ ମାରିଲେ କେଉଁଫଳ
ପାଞ୍ଚଦନ ହେଲ ଯେ ଫୁଟିଲଣି ବଳ ।
ଆଜ୍ଞାପାଇ ରାକ୍ଷସ ଯେ ସୈନ୍ୟ ଫେରାଇଲ
ରଘୁନାଥଙ୍କ ଚରଣେ ଦର୍ଶନ ଯାଇ କଲ ।
ବୀରବାହୁ କୁମର ସୁବାହୁ ନାମେ ବୀର
ଶ୍ରୀରାମଙ୍କ ଚରଣେ ଶରଣ ତାହାର ।
ବୀରବାହୁ ପଡ଼ିବାରୁ ତାକୁ ଦୟାକରି
ସୁଲଙ୍କା ଗଡ଼ରେ ତାକୁ କଲେ ଦଣ୍ଡଧାରୀ ।
ପିତା ମରିବାରୁ ସେ କୁମରମଣି ପୁଣ
ପିଅର ପାଶେ ଯାଇ କରଇ ରୋଦନ ।
ଶ୍ରୀରାମ ବୋଇଲେ ତୁହି କମ୍ପା କର ଶୋକ
ପିତାକୁ ତୋହର ମୁହିଁ ଜୀଆଁଇ ଦେବଦେଖ
ଅମର ବର ଯାଚିଲି ନ ନେଲ ତୋ ପିଅର
ମରିବ ବୋଲି କରି ମୋ ସଙ୍ଗେ କଲାଗୋଳ
ଏବେ କିମ୍ପା ରୋଦନ କରୁଛୁ ଦୁର୍ବଳ
ସେ କଥା ମୋହ ଆଗେ କହନ୍ତେ ସତ୍ୱର ।
ସୁବାହୁ ବୋଇଲା ସେ ପିତା ଅଟେ ମୋର
ତାହାର ମରଣ ଦେଖି ମୋ ଦେହ ବିକଳ
ଦୟା ମୋତେ କର ହେ କୋଦଣ୍ଡ ରୂପଧାରୀ
ଅଗ୍ନି ଲଗାଇଣ ମୁଁ ପିତାକୁ ଦେବ ଜାଳ ।
ଶୁଣିକରି ଶ୍ରୀରାମ ସୈନ୍ୟଙ୍କୁ ଆଜ୍ଞା ଦେଲେ
କାଷ୍ଠ ଆଣିକରି ଜାଳ ଦିଅରେ ବୋଇଲେ ।
ଶୁଣିଣ କପିଗଣ ଆଣି କାଷ୍ଠ ବହି
ଜୁଇ ଲଗାଇଥୋଇଲେ ବୀରବାହୁକୁ ନେଇ ।
ମୁଖାଗ୍ନି ସୁବାହୁ ଦେଲା ନେଇ ତାରେ
ଅଗ୍ନିରେ ଦହ୍ୟ ହେଲା ରାବଣ କୁମରେ ।
ମାରୁତି କନ୍ଧରେ ବିଜେ କଲେ ରାମରାଣ
ଅଙ୍ଗଦର କନ୍ଧରେ ବିଜୟେ ଲକ୍ଷ୍ମଣ ।
ବାହୁଡ଼ା ବିଜୟେ ଦେବ କଲେ ରାବଣାରି
ଧୀରେ ଧୀରେ ଚଳିଲେ ରଣ ଜୟ କରି ।
ଆଗରେ ରଘୁନାଥ ପଛରେ ଲକ୍ଷ୍ମଣ
ଦକ୍ଷିଣରେ ଋକ୍ଷକପି ବାମରେ ସୁଷେଣ ।

ଯୂଥପତିମାନେ ଚଳନ୍ତି ପଟୁଆର
ବୀର ମହାବୀର ଯେ ଅଛନ୍ତି ଆବୋରି ।
ବାଜଇ ବାଜଣା ଯେ ରଣ ଜୟ ତୁରୀ
ପୃଥିବୀ ଚଳୁଅଛି ଚଳନ୍ତେ ଋକ୍ଷ ହରି ।
ରାମତାଳ ନୃତ୍ୟଗୀତ କରନ୍ତି ଆଗେ ମିଳି
ହୁଳହୁଳି ରାମତାଳି ଦିଅନ୍ତି ପୁରଃସରି ।
ସୁବଳୟା ପର୍ବତରେ ପ୍ରବେଶ ଯାଇଁ ହେଲେ
ଦେବନଦୀ କୂଳରେ ରଘୁନାଥ ଯେ ରହିଲେ
ହନୁମନ୍ତ କନ୍ଧରୁ ଓହ୍ଲରି ରାମରାଣ
ଅଙ୍ଗଦ କନ୍ଧରୁ ଓହ୍ଲରି ଲକ୍ଷ୍ମଣ ।
ଦେବ ନଦୀ ତୀରରେ ସ୍ନାନ ବିଧି ସାରି
ସନ୍ଧ୍ୟା ସୁମରିଲେ ଅଯୋଧ୍ୟା ଦଣ୍ଡଧାରୀ ।
ବାହୁଡ଼ି ସୁବଳୟ ପର୍ବତେ ବିଜେ କଲେ
ସେନା ଯୂଥପତି ନିତ୍ୟକର୍ମ ଯେ ସାରିଲେ ।
ବୀରମହାବୀର ଯେ ମଲ୍ଲ ମହାମଲ୍ଲ
ସୈନ୍ୟ ଆଦି ସ୍ନାନ କଲେ ସେ ନଦୀର ।
ସମସ୍ତେ ଆସି ସୁବଳୟାରେ ମିଳିଲେ
ଯେ ଯାହା ସୁଖେ ଫଳମୂଳ ଆନନ୍ଦେ ଭୁଞ୍ଜିଲେ
ରାମଚନ୍ଦ୍ର ଫଳମୂଳ ମଣୋହି ସାରିଲେ
ସେନା ସେନାପତି ଆଦି ସମସ୍ତେ ଭୁଞ୍ଜିଲେ ।
ଅଞ୍ଚୋବନ ସାରିଣ କଷାଫଳ ଖାଇ
କୃଷ୍ଣାଜିନ ସ୍ଥଳରେ ବିଜେ ରଘୁସାଇଁ ।
ସୁଗ୍ରୀବର ହନୁମନ୍ତ ଅଙ୍ଗଦ ଲକ୍ଷ୍ମଣ
ସମସ୍ତେ ଫଳମୂଳ ଭୋଜନ ସାରିଣ ।
ଏକମେଳ ହୋଇଣ ସମସ୍ତେ ବସନ୍ତି
ଯୁଦ୍ଧର କଥାମାନ କୁହାକୁହି ହୁଅନ୍ତି ।
ସୁବାହୁ କୁମରକୁ ଶ୍ରୀରାମ ଆଜ୍ଞା ଦେଲେ
ବିଭୀଷଣ ସଙ୍ଗେ ଫଳ ଭୁଞ୍ଜସି ବୋଇଲେ ।
ଶୁଣିକରି ବିଭୀଷଣ ସୁବାହୁ ଭୁଞ୍ଜିଲେ
କୁମର ବୋଲେ ମୋ ପିତା ଆଜ ଠାରୁ ମଲେ
ଭୋଜନ ସାରିଣ ଦୁହେଁ ଅଞ୍ଚୋବନ କଲେ
କଷାଫଳ ଖାଇଣ ଗମନେ ମିଳିଲେ ।
ବହୁତ ନିରନ୍ତରେ ସଜନଙ୍କ ଗୁଣ୍ଡି
ଅବା ଅବଗାହେ ହୋଇଅଛୁ ମଣ୍ଡି ।
ଜାମ୍ବବ ବୋଇଲେ ଆହେ ଶୁଣିବା ଗୋସାଇଁ
ଆଜର ସୈନ୍ୟ ଯେତେ ଅଇଲେପାରିବୋଲି

ବତିଶ କୋଟି ଋକ୍ଷ ଛପ୍ପନକେ କୋଟି କପି
ତୁମ୍ଭର ପକ୍ଷେ ସୈନ୍ୟ ଆଇଲେ ଦେବ କ୍ଷେପି
ସମସ୍ତ ସୈନ୍ୟ ଆସି ଦର୍ଶନ ପାଦେ କଲେ
ଶ୍ରୀରାମ ପଚ୍ଛିଲେ କେଉଁଠାରୁ ଆଇଲେ ।
ଜାମ୍ବବ ବୋଇଲେ ଏ ଆଇଲେ ପୂର୍ବରୁ
ଐଶାନ୍ୟ କୋଣରୁ ଯେ ଗଙ୍ଗାର ତଟରୁ ।
ଶ୍ରୀରାମ ବୋଇଲେ ଯେ ଯୂଥପତି କାହିଁ
ଶଜରା ସେନାପତି ଆଗରେ ଜଣା ହୋଇ ।
ରାମଚନ୍ଦ୍ର ବୋଇଲେ ଉତ୍ତର ତୁମ୍ଭେ କହ
ଆଜ ଦିନ ପର୍ଯ୍ୟନ୍ତେ କେଉଁଠାରେ ଥିଲ ।
ସେନାପତି ବୋଇଲେ ଦେବ ବୈଶାଖ ମାସରେ
ବାରତା ମିଳିଲା ଯାଇଁ ମୋହର ପାଶରେ ।
ଖୋଜ ନେଉ ଏକ ଠାବ କରି ଦେବ ଆସି
ଅଯୋଧ୍ୟା ନଗରେ ଅଇଲୁଁ ଆମ୍ଭେ ପଶି ।
ଜମ୍ବୁଦ୍ୱୀପ ମଣ୍ଡଳରୁ ଲକ୍ଷେକ ରାଜନ
ସମସ୍ତେ ଏକମେଳ ଅଯୋଧ୍ୟା ଭୁବନ ।
ସେଦିନ ସେଠାରେ ରହି ପ୍ରଭାତେ ଅଇଲୁ
ସତର ଦିନରେ ଆସି ତୁମ୍ଭଙ୍କୁ ଭେଟିଲୁ ।
ଶୁଣିକରି ରାମଚନ୍ଦ୍ର ମନ ସନ୍ତୋଷ କଲେ
ଭରତ ରାଜା ରାବଣ କରିଛି ବିଚାରିଲେ ।
ଆଜ୍ଞା ଦେଲେ ରଘୁନାଥ ନୀଳ ମୁଖ ଚାହିଁ
ଆଗୁଆଣି ଦଣ୍ଡରେ ହନୁ ଅଛି ଯାଇ ।
ଆଜ୍ଞା ପରମାଣେ ନୀଳ ସେନା ଘେନିଗଲା
ପାଞ୍ଚଯୁଣ ଠଣା ଯେ ମୁଣ୍ଡରେ ରହିଲା ।
ବିଭୀଷଣଙ୍କୁ ଚାହିଁ ବୋଲନ୍ତି ରଘୁସାଇଁ
ଗାରବାହୁ କଥା ଯେ ଅଗୋଚର ଅଟଇ ।
ଯେ ଯୁଦ୍ଧ କଲା ସେ କେବେ ଦେଖାନାହିଁ
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣର ଏ ଗରିଷ୍ଠ ଅଟଇ ।
ତାହା ଶୁଣି ବିଭୀଷଣ ଯୋଡ଼େ ବେନିକର
ଆଜଠାରୁ ଶରେ ହେବ ପୂର୍ବ ଆଶା ତାର ।
ତିନପୁଅ ମଲେ ଆଜ ନାତି ଯେ ବାଆଳେ
ଦଶପୁଅ ରହିଲେ ପାଞ୍ଚ ସେନାପତି ପୁଣେ ।
କାଲି ଯୁଦ୍ଧରେ ନାତି ଯେ ହେବେ ପରବେଶ
ଶୁଣିକରି ରାମ ପୁଣ ମନରେ ହରଷ ।
ବୋଇଲେ ଏକଥା ଯେ କାହାଠାରେ ଅଛି
ଏକମୁଖା ରାବଣକୁ ମାରିବ କେ ନିଜ ।

କେମନ୍ତେ ସୁବାହୁ ତହିଁ ହେବ ଯେ ରାଜନ
ଏ କଥାରେ ମୋର ନୁହେଁ ପରସନ୍ନ ।
ଏହାଶୁଣି ସଜମିନୀ ବୋଲେ ଦେବ ସ୍ୱାମୀ
ମୁହିଁ ତାକୁ ମାରିବି ଚିନ୍ତା ନ କର ଦେବପୁଣି
ଯେତେ କଥା ବିଭୀଷଣ କହିଲା ପୁଣ ଏଥେ
ସେ କଥା ମାନିଲ ଦେବ କହୁଅଛି ତତେ ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ତୁ ଯାହା କହିଲୁ ଭଲ ସେ କଥା ସତ୍ୟରେ ।
ଏମନ୍ତ ବୋଲିଣ ଯେ ନଶରେ ହସ୍ତ ଦେଲେ
କାହିଁପିବୁ ସୀତାଙ୍କର ବୋଲିଣ ବୋଇଲେ
ଏଥର ପଡ଼ିଲେ କରେ ନେଉଟି ଆଉପିବୁ
ନଷ୍ଟେ ତୋର ମୁଣ୍ଡକୁ ଭୂମିରେ ଲୋଟାଇବୁ
ଶୁଣିକରି ବିଭୀଷଣ ଯୋଡ଼େ ବେନିକର
ତୁମ୍ଭେ ଦେବ ତୈଲୋକ୍ୟ ଈଶ୍ୱର ରଘୁବୀର
ତୁମ୍ଭ ପାଦେ ବୋଲେହା ହୋଇଲା ଯେଣୁକରି
ପ୍ରାଣ ହରିଲା ତାହାର କାଳ ଦଣ୍ଡଧାରୀ ।
ଏହି ଲଙ୍କାପତି ଯେ ଜିଣିଲା ଜଗତ
ତୁମ୍ଭର ଶରରେ ତାର ମରଣ ନିଯୁତ ।
ରାମଚନ୍ଦ୍ର ଆଜ୍ଞାଦେଲେ ଶ୍ରମ ପାଇଆଜ
ଯେ ଯାହାର ବସାରେ ଯାଇ ବଞ୍ଚ ।
ମୋ ଦେହରେ ଅଳସ ନିଦ୍ରା ମାଡ଼ୁଅଛି
ଆଜକୁ ପାଞ୍ଚ ଦିବସ ନିଦ୍ରା ନାହିଁ କରୁଛି ।
ଆଜ୍ଞା ପାଇ ଯେ ଯାହାର ଚଳିଲେ ସମସ୍ତେ
ବାଜଣା ବଜାଇ ବୁଲେ ବାଳିରାଜା ସୁତେ ।
କନକ ମୃଗ ଛାଲରେ ଅମଳାଣ ଶାଢ଼ୀ
ରଘୁକୁଳ ତିଳକ ନିଦ୍ରାରେ ପହୁଡ଼ି ।
ଧନୁଶର ଧରି ଜଗି ବସି ସଜମିନୀ
ନଗର ନରନାରୀ ସମସ୍ତେ ଦେଖନ୍ତି ।
ଗାରବାହୁ ପଡିବାର ବାରତା ପାଇଲେ
ଶ୍ରୀରାମଙ୍କର ସଇନ ଗୋଡ଼ାଇ ମାଇଲେ ।
ଚାର ଜଣାଇଲା ଯାଇଁ ରାବଣ ଛାମୁର
ଶୁଣ ଦେବ ମହାରାଜା ଶୁଣିବା ମୋ ଉତ୍ତର ।
ଗାରବାହୁ କୁମର ତୋ ଗଲା ଯୁଦ୍ଧ କରି
ଶ୍ରୀରାମ ବ୍ରହ୍ମଶରେ ପକାଇଲା ମାରି ।
ଶୁଣିକରି ରାବଣ ସ୍ତମ୍ଭୀଭୂତ ହେଲା
କି କହିଲୁ ଆଉଥରେ କହରେ ବୋଇଲା ।

ସ୍ବର ଜଣାଇଲ ଦେବ ପଡ଼ିଲା ବୀରବାହୁ
ରାମଚନ୍ଦ୍ର ବ୍ରହ୍ମଶର ବନ୍ଧିଲେକ ଯହୁଁ ।
ଶୁଣିକରି ରାବଣ ବହୁତ ଶୋକ କଲା
ଶ୍ରୀରାମଙ୍କୁ ହୃଦରେ ବହୁତ ଭୟ କଲା ।
ପୁଣି ସ୍ବର ଜଣାଇଲା ରାବଣ ଅଗ୍ରତେ
ହେ ଦେବ ଲଙ୍କେଶ୍ବର ଶୁଣିବା ବିପରୀତେ ।
ବୀରବାହୁ କୁମରର ସପତ ନନ୍ଦନ
ଷଡ଼ଗୋଟା କୁମର ମଲେ ରଣେ ପୁଣ ।
ସାନ ନନ୍ଦନ ଦେବ ସୁବାହୁ ବୋଲି ଯେହୁ
ପିତା ମରିବାର ସେ କର୍ଣ୍ଣରେ ଶୁଣିଲା ଯହୁଁ ।
ରଥେକ ଚଢ଼ିଣ ସମର ଭୂଇଁ ଗଲା
ରଘୁନାଥ ଚରଣରେ ଶରଣ ପଶିଲା ।
ସାନୁଜ ଜଟାଧାରୀ ଉଠିଲେକ ପୁଣ
ପାଟେକ ବାନ୍ଧିଲା ସୁବାହୁ ମସ୍ତକେ ନେଇଣ ।
ବୋଇଲେ ସୁଲଙ୍କାରେ ରାଜା ମୁଁ କରିବି
ମହୀରାବଣ ବଂଶ ମୁଁ ନିଶ୍ଚୟ ମାରିବି ।
ଶୁଣିକରି କୋପଭର ହୋଇଲା ରାବଣ
ମହୀରାବଣ ମାରିବାକୁ କେହୁ ଅଛି ପୁଣ ।
ଏତେ କହି ଭିତରକୁ ଗଲା ଲଙ୍କ ରାୟେ
ମୃଦୁସୁନ୍ଦରୀମାନେ ଆସି ପଦଣ୍ଡ ମଣାଏ ।
ମନ୍ଦୋଦରୀ ରାଣୀ ଆସି ଦରଶନ କଲା
ରାଣୀ ହସ୍ତ ଧରି ରାୟେ ଏକାନ୍ତକୁ ଗଲା ।
ଶୁଣରେ ସୁନ୍ଦରୀ ମୋର ସମ୍ପତ୍ତି ନାଶ ଗଲା
ଶ୍ରୀରାମ ତପସ୍ବୀ ମୋର ସଗୋଷ୍ଠ ମାରିଲା ।
ନିସତେ ପେଷିଲି ବୀରବାହୁ କୁମରକୁ
ବ୍ରହ୍ମଶରେ ରାମ ପୁଣ ମାରିଲେ ତାହାକୁ ।
ପୁତ୍ର ନାତି ଭାଇ ବନ୍ଧୁ ସମସ୍ତେ ମୋର ମଲେ
ଦେବତାଏ ବସ୍ତୁରି ଏହା ମୋତେ ଜଲେ ।
ଏବେ ରାମ ଲକ୍ଷ୍ମଣଙ୍କୁ ପକାଇବି ମାରି
କାଲି ମହୀରାବଣ ତା ସଙ୍ଗେ କରୁ କଳି ।
ଯେବେ ମହୀରାବଣ ପାରିବ ତାଙ୍କୁ ମାରି
ତେବେ ଭୋଗକରିବି ତ୍ରୈଲୋକ୍ୟ ବସୁନ୍ଧରୀ ।
ମହୀରାବଣ ମଲେ ଯୁଦ୍ଧକୁ ମୁହିଁ ଯିବି
ରାମ ଲକ୍ଷ୍ମଣ ଦୁହିଁଙ୍କି ମାରିଣ ଆସିବି ।
ନୋହିଲେ ଯେହ୍ନେଯେବେମାରିଲେମୋତେପୁଣ
ବିଷ୍ଣୁଙ୍କ ବୈକୁଣ୍ଠ ପୁରେ ବସିବି ଯାଇଣ ।

ପୂର୍ବେ ପିତାମହ ମୋତେ କହିଛନ୍ତି ଯାହା
ଏବେବରେ ସୁନ୍ଦରୀ ତୋତେ କହୁଅଛି ତାହା
ପ୍ରସନ୍ନ ହୋଇ ବିଧାତା ମୋତେ ବର ଦେଲା
ଅଷ୍ଟାଙ୍ଗ ତପ ତୁ ରେ କରସି ବୋଇଲା ।
ଯେବେ ଶଙ୍କ ଉପଗତ ହୋଇବ ଦଶମାଥ
ଯାଗକରି ଅଗ୍ନିରୁ ତୋଳିବୁ ଯେଉଁ ରଥ ।
ଏତେ ବୋଲିଣ ମୋ କର୍ଣ୍ଣେ ଦେଲେ ମନ୍ତ୍ର
ସେ ମନ୍ତ୍ରକୁ ଶିଖି ମୁହିଁ କରିଛି ନିଯୁତ ।
ଆହୁରି କଥାଏ ତୁ ଶୁଣ ଗୋ ସୁନ୍ଦରୀ
ବୀରବାହୁ କୁମର ଯେ ଅଟଇ ତୋହର ।
ରାମ ସଙ୍ଗେ ଯୁଦ୍ଧ କରୁ ରଣରେ ପଡ଼ିଲା
ତା କୁମର ସୁବାହୁ ଧାତକାରେ ଗଲା ।
ପିତା ମରିବାର ଦେଖି ପଶିଲା ଶରଣ
ସାନ ଯତି ତାର ମୁଣ୍ଡେ ଛାଡ଼ି ଦେଲା ପୁଣ ।
ମହୀରାବଣ ମାରି ସୁଲଙ୍କା ଦେବ ତୋତେ
ଏମନ୍ତ ପ୍ରତିଜ୍ଞାଯତ୍ତ କରିଛି ସଙ୍କେତେ ।
ମୋତେ ମାରି ଲଙ୍କା ବିଭୀଷଣଙ୍କୁ ସେ ଦେବ
ଦୁଇ ଭାଇ ଦୁଇକଥା ବିସ୍ତରିବେ ଏବ ।
ଦେଖିବା ତାହାର ଯେ ବୀର ଶୂର ପଣ
କାଲି ମହୀରାବଣ ରଣକୁ ଯାଉ ପୁଣ ।
ଏତେ ବୋଲି ନୃପ ବାହାରେ ଅବକାଶ
ପାତ୍ରମନ୍ତ୍ରୀ ଅମାତ୍ୟ ମିଳିଲେ ତାର ପାଶ ।
ଦେଖିଣ ନୃପତି ତାଙ୍କୁ ଦେଲା ପରମାଣ
ଯାଗର ମାତ ସବୁ ଯେ ବେଗ କରି ଆଣ ।
ଆଜ୍ଞା ପ୍ରମାଣେ ମନ୍ତ୍ରୀ ଆଣିଲେ ସବୁ ବହି
ଏଥୁଅନନ୍ତରେ ତୁହି ଶୁଣ ଗୋ ପ୍ରାଣସହି ।
ବୀରବାହୁ ନିଜ ନାରୀ କର୍ଣ୍ଣରେ ଶୁଣିଲେ
ଧାଇଁ ମୃଦୁସୁନ୍ଦରୀ ଯେନ ବାହାର ହୋଇଲେ ।
ଚନ୍ଦ୍ରାଦୀପ ବହ୍ନି ସଙ୍ଗରେ ଯେ ତାଙ୍କର
ଆଉ ଦୁଇ ଭାଇଙ୍କ ନାରୀ ଯେ ବାହାର ।
ବାଆନେ ନାତିର ପୁଣି ନିଜ ନାରୀମାନେ
ତାଙ୍କ ସଙ୍ଗ ଚଳିଗଲେ ଉଦ୍‌ବେଗ ମନେ ।
ସମୁଦ୍ରତରେ ପଶିଣ ଝାସ ସର୍ବେ ଦେଲେ
ଅମୂଲ୍ୟ ବିମାନ ପରେ ବସିଣ ସ୍ବର୍ଗରେ ।
ଯେଯାହାରସ୍ବାମୀପାଶରେପ୍ରବେଶହେଲେଯାଇ
ନିଶ୍ଚିନ୍ତେ ନବରେ ରହିଲେ ସର୍ବେ ତହିଁ ।

ଏଥୁ ଅନନ୍ତରେ ଗୋ ଶୁଣ ଭଗବତ
ଅଶୋକ ବନେ ଅଛୁ ସୀତା ଶ୍ରୁ ଭୁକେଶୀ ।
ସହସ୍ର ଅସୁରୀ ଜଗି ତାହାଙ୍କୁ ରହିଲେ
ପାଞ୍ଚଶତ ଅସୁରୀ ନଗ୍ରକୁ ଯାଇଥିଲେ ।
ବୀରବାହୁ ମରିବାର ଜାଣିଲେ ବାରତା
ଅଶୋକବନେ ପ୍ରବେଶ ଅସୁରୀ ସଙ୍ଗେବିଶାଖା
ତ୍ରିଜଟା ବୋଇଲା ମାତା ଗୋ ବୀରବାହୁ ମଲା
ବୀରବାହୁ କୁମରକୁ ତୋ ଢଅର ରାଜା କଲା ।
ରାଜା ହୋଇ ସୁବାହୁ ଯେ ରହିଲା ନିଷ୍ଟଳେ
ଏଥୁ ଅନନ୍ତରେ ଶୁଣ ଗୋ ମାତା ଧୀରେ ।
ବାସେଳୀ ଯେ ସୁବଳସ୍ଥା ଗିରି ପରେ ଥିଲା
ଚଉଷଠି ଯୋଗ୍ନୀ ସେନ ବାହାର ହୋଇଲା ।
ରଣ ଭୂମିରେ ପୁଣି ସେ ହେଲା ପରବେଶ
ଘୋଡ଼ା ହସ୍ତୀ ବାଛୁଣ ଅସୁରଙ୍କୁ କଲେ ଗ୍ରାସ
କପିଙ୍କି ଛାଡ଼ିଣ ଦନୁଜମାନଙ୍କୁ ଭୁଞ୍ଜିଲେ
ବାନରମାନଙ୍କୁ ସର୍ବ ଶୁଭରେ ରଖିଲେ ।
ଛୁଡ଼ିବାର କପିଙ୍କି ଯେ ଗଣ୍ଡି ମୁଣ୍ଡ ଯୋଡ଼ି
ବଳ ହେଲା କପିଙ୍କି ସଜାଡ଼େ ଧାଡ଼ି ଧାଡ଼ି ।
ସେଠାରୁ ସୁବଳସ୍ଥା ଗିରିକ ଦେବୀ ଗଲେ
ପନ୍ଦର ଦିନ ଯୁଦ୍ଧରେ ରୁଧିର ପାନ କଲେ ।
ସନ୍ତୋଷ ହୋଇଣ ଦେବୀ ଯେ ବୋଲନ୍ତି ପୁଣ
ଯୁଗେ ଯୁଗେ ଥାଆନ୍ତୁ ଆମ ଶ୍ରୀରାମ ଲକ୍ଷ୍ମଣ ।
ଦେବୀଗଣ ଯିବାରୁ ଇନ୍ଦ୍ରଦେବତା ଅଇଲେ
ମୃତ୍ୟୁ ସଞ୍ଜିବନୀ ପାଣି ରଣ ଭୂମିରେ ସିଞ୍ଚିଲେ
ଶରୀରେ ଜୀବନ ଯେ ପଶିଲା କପିଙ୍କର
ଅମୃତ ବୃଷ୍ଟି କଲେ ଇନ୍ଦ୍ର ମୁନି ତହିଁରେ ।
ଉଠିଲେ ସର୍ବ କପି ପୁଞ୍ଜି ପୁଞ୍ଜି ହୋଇ
ପ୍ରବେଶ ହେଲେ ସୁବଳସ୍ଥା ଗିରି ପରେ ଯାଇ
ଫଳମୂଳ ଖାଇଣ ସନ୍ତୋଷ ହୋଇଲେ
ଆସିବାର କପିମାନେ ନିଜକୁ ପଚ୍ଛରିଲେ ।
କି ହେ ସେନାପତି ଏ କେଉଣ ଚରିତ
ଏତେ ନଶାରେ କପି ଆସୁଣଛନ୍ତି ଏଥ ।
ନୀଳ ବୋଇଲେ ତୁମ୍ଭେ ଶୁଣ ଋଷବଳ
ଯେତେକ ସୈନ୍ୟବାକୁ ମଲେ ଏ ରଣରୁ ।
ରାଘବରେ ତାହାଙ୍କୁ ଦେବତାମାନେ ଜୀଆଁଇ
ଅକ୍ଷୟ ରାମଙ୍କ ସୈନ୍ୟ କ୍ଷୟ ଏଥିରେ ନାହିଁ

ନାରାୟଣ ମୂର୍ତ୍ତି ଯେ ଅଟନ୍ତି ଶ୍ରୀରାମ
ଅସୁର ମାରିବା ପାଇଁ ହୋଇଛନ୍ତି ଜନ୍ମ ।
ଏଥୁ ଅନନ୍ତରେ କହେ ପାର୍ବତୀ ଦେବୀ ପୁଣ
କଥାଏ ଦେବ ମୋର ମନେ ପଡ଼ିଲା ଜାଣ ।
ଲକ୍ଷ୍ମଣର ବୀର ପୁଣ ଶକ୍ତି ଭେଦ ହେଲା
ସୁଷେଣ କହିବାରୁ ହନୁମନ୍ତ ଗଲା ।
ଗନ୍ଧମାଦନ ପର୍ବତ ଆଣିଲା ଶରେ ବହି
ଔଷଧ ନ ଚିହ୍ନି ବାରୁ ଅଇଲା ଗିରି ବହି ।
ବାଟେ କଳଙ୍କ ସକାଶରେ ବୁଲି ଗଲା
ଅଯୋଧ୍ୟା ବାଟରେ ଆସନ୍ତେ ଦେଖିଲା ।
ଲକ୍ଷେ ରାଜା ସେଥିରେ ହୋଇଛନ୍ତି ଠୁଳ
ରାମ ଅଭିଷେକ ହେବବୋଲି କରିଛନ୍ତି ମେଳ
ସେ ରାଜ୍ୟରେ ଭରତ ଅଟେ ଯୁବରାଜା
ଅନ୍ଧାର ହଜେ କରି ସବୁଙ୍କୁ କଲେ ତେଜ୍ୟା ।
ଏହି ସମୟରେ ଯେ ପବନ କୁମର
ଶୂନ୍ୟରେ ଶବଦ ଯେ କରଇ ତାହାର ।
ଶବଦ ଜାଣିଣ ଯେ ଭ୍ରତବୀର ଜାଣ
ବଜ୍ର ବାଟୁଳିଏ ଯେ ମୋତେ ଗଗନେଣ ।
ମୋହ ଯାଇ ପଡ଼ିଲା ତଳରେ ଆସି ବୀର
ରାମ ନାମ ସୁମରି ଉଠେ ତତକାଳ ।
ଭରତ ପଚ୍ଛରିଲା ତୁମ୍ଭେ ଅଟ କଏ
ରାମ ନାମ ସୁମରିଲେ ଯିବୁ କେଉଁଠାଏ ।
ସେ ବୋଇଲେ ଲଙ୍କ ରେଛନ୍ତି ଶ୍ରୀରାମ ଲକ୍ଷ୍ମଣ
ଜାନକୀ ହରିଲା ନେଇ ଲଙ୍କାର ରାବଣ ।
ତାର ସଙ୍ଗରେ ଯୁଦ୍ଧ ଅଟେ ବଳଆର
ଶକ୍ତିଭେଦେ ପଡ଼ିଛନ୍ତି ଲକ୍ଷ୍ମଣ କୁମର ।
ଏତେ କହି ବୀର ଯେ ଲଙ୍କାକୁ ଅଇଲା
ଭରତ ଶୁଣି ପୁ[illegible]କ ବିସ୍ମୟ କଲା ।
ପାର୍ବତୀଠାରୁ ଶୁଣିଣ ଈଶ୍ୱର କହନ୍ତି
ହନୁମନ୍ତଠାରୁ ଶୁଣି ଭରତ କୋପମୂର୍ତ୍ତି ।
ସେଠାରୁ ଶୁଣିଣ ଭ୍ରତ ନବରକୁ ଗଲା
ଗୁରୁ ପଠାଇ ଗୁରୁ ମନ୍ତ୍ରୀଙ୍କି ଡକାଇଲା ।
ଖଣ୍ଡିଆକୁ ପେଷିଣ ବଶିଷ୍ଠ ମୁନି ଆଣି
ପାତ୍ରମନ୍ତ୍ରୀମାନେ ମିଳିଲେ ବେଗେ ଜାଣି ।
ସାମନ୍ତମାନଙ୍କୁ ସେ ଡ଼କାଇ ଆଣିଲେ
ଶତ୍ରୁଘ୍ନଙ୍କୁ ଡାକିଣ ବେଗରେ ଆଣିଲେ ।

କନକ ମଣ୍ଡପରେ ବସିଲେ ବେଗେ ଯାଇ
ଭରତ ଶୋକ କରଇ ସମସ୍ତଙ୍କୁ ଚାହିଁ ।
ବଶିଷ୍ଠ ବୋଇଲେ ହେ ଭରତ ଏବେ ଶୁଣ
କମ୍ପାଇ ଶୋକ ତୁମ୍ଭେ କର ଅକାରଣ ।
ଶୋକ ସମ୍ଭାଳ ତୁରେ ଶୁଣ କେଉଁ କଥା
ଜାଣିବା କେଉଁ କଥାରେ ତୁମ୍ଭଙ୍କୁ ଲାଗେବ୍ୟଥା ।
ଲକ୍ଷେ ରାଜା ଅଇଲେ ଆଜ୍ଞ କେ ଅଛନ୍ତ
ସେ କଥା ଶୁଣିଲେ ଆମ୍ଭେ କରିବା ବିବେକ ।
ଭରତ ବୋଇଲେ ମୋର ଜନମର ପୁଣ
ତାହାର ସକାଶୁ ମୋତେ କେତେ ଦୁଃଖଜାଣ
ପିତା ମଲେ ମୋର ଭାଇ ବନେଗଲେ ପୁଣ
ଚଉଦ ବରଷ ପୂରି ନ ସରେ ମୋ ଦିନ ।
ଶ୍ରୀରାମ ଆସିବାକୁ ଉତ୍ସବ ମୁଁ କଲି
ଜମ୍ବୁଦ୍ୱୀପ ରାଜାଙ୍କୁ ଆମନ୍ତ୍ରଣ କଲି ।
ଶ୍ରୀରାମ ଅଇଲେ ମୋତେ ହେବେ ପରସନ୍ନ
ପୂର୍ବ ଦୋଷମାନ ନ ଧରିବେ ରାମାପୁଣ ।
ଏମନ୍ତ ବିଚାରି ମୁଁ ସକଳ ଭିଆଇଲି
ଏବେ ମୁଁ କେଉଁ କଥାରେ ସୁଖ ନ ପାଇଲି ।
ଜାନକୀଙ୍କ ଘେନ ରାମ ବନବାସ କଲେ
ଲକ୍ଷ୍ମଣ ଭାଇକ ରାମ ସଙ୍ଗତରେ ନେଲେ ।
ତେରବର୍ଷ ଦୁଇମାସ ଏଥିରେ ବହିଗଲା
ନିଶ୍ଚିନ୍ତରେ ଶ୍ରୀରାମ ବନରେ ବିହରିଲା ।
ଲଙ୍କାର ଅସୁର ଯେ ଅଟଇ ରାବଣ
ସମୁଦ୍ର ଭିତରେ ତାର ଗଡ ଅଟେ ପୁଣ ।
ଅକ୍ଷୟ ଅସୁର ସେ କ୍ଷୟ ପୁଣ ନୁହେ
ପ୍ରତାପୀ ସେ ଅସୁର ତିନପୁର ଜୟେ ।
ତେତିଶ କୋଟି ଦେବଙ୍କୁ ଖଟାଏ ପାଦତଳେ
ସେ ଅସୁର ଲାଗିଅଛି ମୋ ଭାଇ ସଙ୍ଗରେ ।
ଗୋଦାବରୀ କୂଳରୁ ସେ ଜାନକୀ ହରିନେଲା
ଅଶୋକ ବନରେ ସେ ନେଇଣ ରଖିଲା ।
ସୀତାଙ୍କୁ ନ ଦେଖିଣ ରାମଚନ୍ଦ୍ର ବାଇ
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ହେଲେ ଯାଇଁ
ସେ ରାଜ୍ୟରେ ରାଜା ଯେ ବାଳୀ ସୁଗ୍ରୀବର
ବଳବନ୍ତ ପଣରେ ସେହି ଅଜ୍ରାମର ।
ତାହାର ସାନ ଭାଇ ଯେ ଅଟେ ସୁଗ୍ରୀବର
ତାହାକୁ ଭାଇ ଭାଗ ନ ଦେଲା ଜ୍ୟେଷ୍ଠ ତାର

ମାରି କରି ଘଉଡେ ଦେଲା ତାକୁ ବାରେ
ସେ ଯାଇ ରହିଲା ସେ ପର୍ବତ କନ୍ଦରେ ।
ସହସ୍ର ବରଷ ସେ ସେଥିରେ ରହିଲେ
ରାମଚନ୍ଦ୍ର ସେଠାରେ ପ୍ରବେଶ ହୋଇଲେ ।
ସେହି ଦୁଃଖୀ ହୋଇଣ ସେ ବନସ୍ତେ ଥିଲା ରହି
ତାହାକୁ ଭେଟ ଯାଇ ପାଇଲେ ରଘୁସାଇଁ ।
ଦୁଇ ଜଣଯାକ କଥା ହୋଇବାରୁ ପୁଣ
ମଇତ୍ର ହୋଇଲେ ସେଠାରେ ଦୁଇଜଣ ।
ସୁଗ୍ରୀବର ବୋଇଲେ ଶୁଣ ଦେବରାୟେ
ତୁମ୍ଭର ଭାରିଯାକୁ ତ ରାବଣ ଘେନଯାଏ ।
ମୋହର ଭାରିଯାଙ୍କୁ ବାଳି ଭୋଗ କଲା
ଶୁଣିଣ ରାମଚନ୍ଦ୍ର ମନରେ କ୍ରୋଧ ହେଲା ।
ବାଳି ସଙ୍ଗେ ଯୁଦ୍ଧକରି ପ୍ରାଣରେ ବଧିଲେ
ସୁଗ୍ରୀବରକୁ ରାଜା କଲେ କିଷ୍କିନ୍ଧ୍ୟାରେ ।
ବାଳିର କୁମରକୁ ଯୁବରାଜ କଲେ
ତାହାର ଶିର ପରେ ହାସ ଟେକାଇଲେ ।
ବାଳିର ଭାରିଯା ଯେ ତାରା ନାମେ ସତୀ
ସୁଗ୍ରୀବର ତଳେ ତାକୁ ରଖିଲେ ରଘୁପତି
ପାଟରାଣୀ କରି ତାକୁ ନିଶ୍ଚିନ୍ତେ ରଖିଲେ ।
ସତୀର ସଙ୍ଗରେ ତାକୁ ଗର୍ଭିତାପୁଣ କଲେ ।
କପିବଳଙ୍କୁ ସବୁ ଅଙ୍ଗଦ ଆଣିଲେ
ଚାରି ଦିଗକୁ ରାମ ଦୂତ ବରଗିଲେ ।
ଲଙ୍କା ଗଡ଼କୁ ଯେ ଗଲା ହନୁମନ୍ତ
ସୀତାଙ୍କୁ ଠାବ କରି ଯୁଝିଲା ଅନେକ ।
ରାବଣର କୁମର ଅକ୍ଷୟକୁ ମାଇଲା
ପଚାଶ ସେନାପତି ମାରି ଲଙ୍କା ପୋଡ଼ି ଦେଲା
ଲେଉଟି ଆସି କରି ରାମଙ୍କୁ କହିଲା
କପି ଫଉଜ ଘେନ ସୁଗ୍ରୀବର ଗଲା ।
ସମୁଦ୍ର ଭିତରେ ଯାଇ ବନ୍ଧ ବନ୍ଧାଇଲା
ସେଥିରୁ ସୈନ୍ୟବଳ ସୁଖରେ ଚଳାଇଲା ।
ଲଙ୍କା ଗଡରେ ଯାଇ ହେଲେ ପରବେଶ
ସୁବଳୟା ପର୍ବତେ ଶ୍ରୀରାମ କଲେ ବାସ ।
ରାବଣ ସଙ୍ଗରେ ଯୁଦ୍ଧ ଆରମ୍ଭ ସେ କଲେ
ବାଷଠି କୁମର ଏଗାରି ସେନାପତି ମଲେ ।
ହସ୍ତୀ ଘୋଡ଼ା ପଦାତି କଳନା ନ ଯାଇ
ପଚିଶ କୋଟି ସେନାପତି ତାହାର ଅଟଇ ।

ଚଉଦଶ କୋଟି ଯେ ମଲେଣି ସେନାପତି
ଚଉଦଶ କୋଟି ବାକି ଅଛନ୍ତି ଯୋଦ୍ଧା ରଥୀ ।
ଦଶକୋଟି କୁମର ଶତେ ପଚାଶ ସେନାପତି
ଯୁଦ୍ଧ କରିବାକୁ ଯେ ଏତେକ ଛନ୍ତି ବର୍ତ୍ତି ।
ତାହାର ବଡ ପୁଅ ଇନ୍ଦ୍ରଜିତ ବୀର
ତିନ ଦିନେ ନାଗ ଫାଶ ଶର ବନ୍ଧେ ବୀର ।
ହନୁମନ୍ତ ନାମେ ବୀର ରମ୍ୟକ ଦ୍ୱୀପେ ଗଲା
ସାତ ଦ୍ୱୀପ ପାରି ହୋଇ ଗରୁଡ଼ ଆଣିଲା ।
ତେବେ ସେ ନାଗଫାଶ ଗଲାକ ପଳାଇ
ଗରୁଡ଼ର ଶର ତାକୁ ନେଲାକ ଧରାଇ ।
ନାଗଫାଶ ଯାଆନ୍ତେ ବାସୁକି ରାଜା ଗଲା
ସପତ ଦ୍ୱୀପ ପୃଥ୍ୱୀ ଶତ୍ରୁଘ୍ନ ଯେ ଧଇଲା ।
ରାବଣର ଭାଇ ଯେ ଅଟେ କୁମ୍ଭକର୍ଣ୍ଣ
ପରୁଷ ପୂର୍ଣ ଲକ୍ଷ୍ମର୍ଗ ଅଟେ ସେହୁ ଜାଣ ।
ପାଞ୍ଚଦିନରେ ତାକୁ ମାରିଲେ ରୂପଧାରୀ
ରାବଣର ପୁଅ ଇନ୍ଦ୍ରଜିତ ଯେ ମାୟା କରି ।
ବ୍ରହ୍ମଶର ବନ୍ଧିବାରୁ ସମସ୍ତେ ମୋହଗଲେ
ଜମ୍ବେବ ବୈଦ୍ୟ ହନୁମନ୍ତକୁ ପେଶିଲେ ।
ହେମ ଗିରିରୁ ମହୌଷଧି ନେଲା ହନୁମନ୍ତ
ନାସ ଦେବାରୁ ସେ ଯେ ଜିଇଲେ ସମସ୍ତ ।
ପୁଣି ହନୁମନ୍ତ ସ୍ୱର୍ଗ ପୁର ଗଲା
ଦେବତାଙ୍କ ଠାରୁ ଯେ ଅମୃତ ଆଣିଲା ।
ଖାଇବାରୁ ସମସ୍ତେ ହେଲେକ ବଳବାନ
ନବ ଦିନେ ଇନ୍ଦ୍ରଜିତ ମାୟାକଲା ପୁଣ ।
ମାୟା ସୀତା ଗୋଟିଏ ଆଣିଣ ମାଇଲା
ଦଶ ଦିନେ ଲକ୍ଷ୍ମଣ ହସ୍ତରେ ସେ ମଲା ।
ତେର ଦିନେ ରାବଣ ଗଲା ଯେ ଯୁଦ୍ଧକୁ
ପୁତ୍ର ଶୋକ ଲକ୍ଷ୍ମଣକୁ ମାରିଲା ବ୍ରହ୍ମ ଶକ୍ତିକୁ ।
ଶରୀର ଫଟି ଯାଇ ପାତାଳ ଫୁଟିଲା
ବାସୁକୀର ଫଣାରେ ଯାଇଣ ବାଜିଲା ।
ସେ ଶରକୁ ରାମ ବାମ କରରେ ଉପାଡ଼ି
ରଘୁବଂଶ ମୋହଗତ ହେଲେ ରୂପଧାରୀ ।
ଭାଇକି ଦେଖିଣ ସେ ଅନେକ ଶୋକକଲେ
ସୁଷେଣନାମରେବୈଦ୍ୟ ରାମକୁବୋଧଦେଲେ
ବୋଇଲେ ତୁମ୍ଭ ଭାଇକି ଜିଆଇ ମୁଁ ଦେବି
ଗନ୍ଧମାଦ୍ଦନ ପର୍ବତକୁ ହନୁକୁ ଦେଲେ ଭେଦ

ଲକ୍ଷେ ଯୋଜନ ପଥ ଯେ ଗନ୍ଧମାଦନ
ପାଞ୍ଚଦଣ୍ଡ ରାତ୍ରଠାରେ କଲାକ ଗମନ ।
ଦ୍ରୁତପ୍ରବଳ ରାତ୍ରେ ସେଠାରେ ପ୍ରବେଶ
ଔଷଧ ନ ଚିହ୍ନି ପର୍ବତେ ବହି ଆଣେ
ସେ ବିଶେଷ ।
ଅଯୋଧ୍ୟା ବାଟେ ମାରୁତି କଲାକ ଗମନ
ଅନ୍ଧାର ଦିନେ ମୁଁ ଯେ କରିଥିଲି ପୁଣ ।
ଶବଦ ଶୁଣି ଉପରକୁ ମୁହିଁ ଲକ୍ଷ୍ୟ କଲି
କିଏ ତୁମେ ମହାତମା ବୋଲିଣ ଡ଼ାକିଲି ।
ମୋର ଡ଼ାକ ଶୁଣିଲା ଯେ ଶ୍ରୀରାମର ଦାସ
ବଳବନ୍ତ ବୋଲି ତାକୁ ମୁଁ ଯେ ଦେଲି ତ୍ରାସ ।
ବୋଇଲି ବ୍ରହ୍ମା ବିଷ୍ଣୁ ମହେଶ୍ୱର ରାଣ
କିସ ସେ ମୋତେ ଭେଟ ଦେଇଯାଅ ଶୁଣ ।
ରାମ ନାମ ତୁଣ୍ଡେ ଧରି ତଳକୁ ଖସିଲା
ତୁମ୍ଭ କିଏସେ ରେ ବାବୁ ମୋତେ ପଚାରିଲା ।
ମୁଁ ବୋଇଲି ଅଯୋଧ୍ୟା ଦଶରଥ ପୁଅ
ସେ ବୋଇଲା କେଉଁ ପୁଅ ମୋତେ ତୁ
ବେଗେ କହ ।
ମୁଁ ବୋଇଲି ଚାରିପୁତ୍ର ଅଟନ୍ତି ତାଙ୍କର
ବନବାସ ଗଲେ ରାମ ଲକ୍ଷ୍ମଣ ନାମେ ବୀର
ଭରତ ଶତ୍ରୁଘ୍ନ ରାଜ୍ୟରେ ଆମ୍ଭେ ଅଛୁ
ମାରୁତି ବୋଇଲା ବାବୁ ଆମ୍ଭେ ପୁଛୁ ।
କିମ୍ପାଇ ରାମ ଲକ୍ଷ୍ମଣ ବନବାସ କଲେ
ଜ୍ୟେଷ୍ଠ ପୁତ୍ର ହୋଇ କିମ୍ପାଇ ସେବନେଗଲେ
ମୁଁ ବୋଇଲି ମୋହର ଜନନୀ କୈକେୟୀ
ପିତାକୁ ମୋହର ସତ୍ୟ କରାଇଲା ହୁଆ ।
ରାମ ବନ ଯିବେ ମୋର ଭ୍ରାତ ହେବ ରାଜା
ତାର ବଚନକୁ ସତ୍ୟ କଲେ ମହାରାଜା ।
ଅଜାଘରେ ଥିଲି ମୁହିଁ ରାମ ଗଲେ ବନ
ରାମ ଯିବାରୁ ବନ ପିତା ତେଜିଲେ ଜୀବନ ।
ମୁହିଁ ଆସି ଶ୍ରୀରାମଙ୍କୁ ଅଣିବାକୁ ଗଲି
ଚିତ୍ରକୂଟ ପର୍ବତରେ ଯାଇଣ ଭେଟିଲି ।
ଯେତେ ହାତେ କହିଲି ମୁଁ ନ ଆସିଲେ ରାମ
କଠାଉ ଯୋଡ଼ିକା ଦେଇ ବୁଝି ଦେଲେ ଶ୍ରୀରାମ
ବୋଇଲେ ଚଉଦ ବରଷ ପୂରିଲେ ମୁଁ ଯିବି
ପିତାଙ୍କର ସତ୍ୟ ଅରଣ୍ୟେ ବୁଲିବି ।

ଯେହେତୁ ଏ ପୁରରେ ରାମ ପାଦୁକା ରାଜନ
ଚଉଦ ବରଷ ଯେବେ ମାସ ହୋଇଲା ସମ୍ପୂର୍ଣ୍ଣ
ରାମ ରାଜା ହେବେ ବୋଲି ମନେ ବିଚାରିଲି
ଲକ୍ଷେ ରାଜା ରାବଣ ମୁଁ ଆଣିଣ କରିଲି ।
କଣ୍ଟ ପାଇଲା ଏବେ ହେଲା ଷଡମାସ
କନ୍ୟା ନ ଆସିଲେ ସ୍ୱାମୀ ମୋ ମନେ ହରଷ
ମାରୁତି ବୋଇଲା ମୋତେ ତୋର ନାମ କିସ
ମୁଁ ବୋଇଲି ମୋର ନାମ ଭରତ ଯେ ବିଶେଷ
ସେ ବୋଇଲା ହୃଦୟେ କୁ ଧରିଲୁ ରାମ ନାମ
ନୋହିଲେ ତୋତେ ଆଜ ନେଇଥାନ୍ତା ଯମ
ଆଦ୍ୟ ପ୍ରାନ୍ତ କରି ମୋତେ କହିଲସ୍ୱାମୀ କଥା
ପର୍ବତ ମୁଣ୍ଡାଇ ଗଲା ପବନର ସୁତା ।
ତେତେବେଳୁ ଦେବ ମୋର ଅଜ୍ଞାନ ହୋଇଲା
କୈକେୟୀ ଜନମାମୋର ଏତେକ କହିଆଇଲା
ଶ୍ରୀରାମଙ୍କ ମନ ଶାନ୍ତ ହେବାର ନିମନ୍ତେ
ଚଉଦ ବରଷ ତପ କରଇ ହୃଦଗତେ ।
ଜନନୀ ଦୋଷରୁ ମୋର ପିତା ନାଶ ଗଲା
ବଇକୁଣ୍ଠ ଠାକୁର ମୋ ଦେଶାନ୍ତର ଗଲା ।
ଏବେ ଜାନକୀ ହରି ନେଲାଟି ରାବଣ
ରାମ ନାରାୟଣ ବୋଲି ତା ସଙ୍ଗେ ଯୁଦ୍ଧ ପୁଣ
ଲଜ୍ୟା ହେବ ବୋଲି ଅଯୋଧ୍ୟାକୁ ନଆସିଲେ
ଦୁଷ୍ଟ ଖଳ ଚେନ ସେ ଅସୁର ବଧ କଲେ ।
ମେ ଠାରେ କ୍ରୋଧ ଯେବେ ନୁହନ୍ତେ ଶ୍ରୀରାମ
ଅଯୋଧ୍ୟାକୁ ଦୂତ ସେ ପେଷିଥାନ୍ତେ ପୁଣ ।
କି ବୁଦ୍ଧି କରିବ ଏବେ କହ ତୁମ୍ଭେ ବୁଦ୍ଧି
ସେଠାରେ ଶ୍ରୀରାମ ଯେପରି ନୁହନ୍ତି କ୍ରୋଧି ।
ବଶିଷ୍ଠ ବୋଇଲେ ତୁମ୍ଭେ ନଭାଳ ଯେ ପୁଣ
ରାଜାଗଣ ଘେନି ଚଳ ଲଙ୍କା ଯେ ଭୁବନ ।
ଶ୍ରୀରାମଦେଖିଲେତୋତେ ସନ୍ତୋଷହୋଇବେ
ବହୁତ ପ୍ରଶଂସା ତୋତେ ରାଘବ କରିବେ ।
ଭରତ ବୋଇଲେ ସିବାବାଟ ମୋତେ କହ
ସୁବିଶତ ଯୋଜନ ଦୂର ଯେ ଲଙ୍କାରାଷ୍ଟ୍ର ।
ଝାଡ଼ ଜଙ୍ଗଲ ବାଟ ଅଟେ ବଡ଼ ଦୂର
ବଶିଷ୍ଠବୋଇଲେଚଉଦଦିନେ ମିଳିବସେଠାର
ଲକ୍ଷଣ ସହସ୍ର କଟୁରିଆ କୁରାଢ଼ିଆ ଯିବେ
ବନପୁଟ ଉପାଡ଼ି ଲଟି ଯେ କାଟିବେ ।
ଦଶ ସହସ୍ର କୋଦାଳିଆ ଚଞ୍ଚିର ପଛେଥିବେ
ମୂଳ ଖୁଣ୍ଟା ତାଡ଼ି ବାଟ ସଫାଇ କରିବେ ।
ବଢ଼ାଇ ବନ୍ଧାଣି ଯେ ପାଞ୍ଚ ସହସ୍ର ଯିବେ
ଭଙ୍ଗା ଭୁଠା ଅସଜ ସଜ ସେ କରିବେ ।
ପଥୁରିଆ ଛେଦକାର ଯିବେ କୋଡ଼ିଏ ସହସ୍ର
୫ଗଡ଼ ବଳଦ ଯିବେ ଲକ୍ଷଣ ସହସ୍ର ।
ଚଉଷୁଣେ କୂଅ ବାମ୍ପୀ କିବାଇବେ ତୁରିତ
ପାକମନ୍ତ୍ରୀ ଖାଇବାର ସାମଗ୍ରୀ ଅଣାଅ ତୁରିତ
ଶୁଣିଣ ପାକ ମନ୍ତ୍ରୀ ବେଗେ ଚଳିଗଲେ ।
ଧେଣ୍ଡୁରା ଫେରାଇ ସବୁ ସଜବାଜ କଲେ
ଲକ୍ଷେ ହଜାର ଲକ୍ଷଣ ସହସ୍ର ଶଗଡ଼ ବଳଦ
ଦଶସହସ୍ର କୋଦାଳିଆ ସଜିଲେ ବେଗ ।
କମାର ବଢ଼େଇ ଛେଦକାର ପନ୍ଦର ସହସ୍ର
ଉଜ ଜାରି ଲମ୍ବହତା ହେଲେ ଦୁଇଯେସହସ୍ର
ବଶିଷ୍ଠ ବୋଇଲେ ଶତ୍ରୁଘନକୁ ଯେ ସୃଷ୍ଟି
ରଥ ଚଢ଼ି ଏହିକ୍ଷଣି ଯାଅରେ ବାବୁ ତୁହି ।
ଗୁହ ନାମେ ଶବର ପୁରରେ ମିଳିବୁ
ରାମ ରାବଣ ଯୁଦ୍ଧ ତାହା ଆଗରେ କହିବୁ
ଲକ୍ଷେକ କନ୍ଧ ଲକ୍ଷେ ୬ ଶବର ସେ ସେନ ।
ବେଗ ହୋଇ ଆସବୋଲି ଆସିବୁ ସଙ୍ଗେ ସେନ
କଟୁରି ଟାଙ୍ଗିଆ କାଣ୍ଡ ଧାନୁକ ଭେଣ୍ଡିଆ
ରମାପୁଣ ଯୁଦ୍ଧେ ତାର ଯେମନ୍ତେ ଯୋଗେଇବ ।
ସେ ଆସିଲେ ଲଟାକଟି ବାଟ ଓଳାଇବ
ଜାତିରେ ଶବର ତାକୁ ଗୋଚର ସବୁଠାବ ।
ଦାଲିର ଭିତରେ ତାକୁ ବେଗେ ଘେନିଆସ
ପରବନ ଅନୁକୂଳ ହେବ ଲଙ୍କାଦେଶ ।
ଶୁଣିକରି ଶତ୍ରୁଘନ ବାହାର ହୋଇଲା
କଣିଅର ରଥରେ ଯାଇଣ ବସିଲା ।
କଳା ଧଳା ଛତ୍ର ଯେ ଆଡ଼େଣୀ ତରାସ
ଚମ୍ପର ମୟୂର ଝାଲ ଆଗରେ ବିଶେଷ ।
ଶଙ୍ଖ ମହୁରୀ ମର୍ଦ୍ଦଳ କାହାଳୀ ବାଣାତ.ଳ
ଟମକ ଢୋଲଙ୍କ ବାଦ୍ୟ ବଜାଇ କୋଳାହଳ
ଘୁଙ୍ଗୁ ଭେରି ନୃତ୍ୟକାରୀ ଆଲମ୍ବ ପାଟଛତ୍ର
ବୀର ବାଦ୍ୟ ବାଜଇ ବାହାର ରାମଭ୍ରାତ ।
ସୁମନ୍ତ୍ର ନନ୍ଦନ ସାରଥି ରୂପେ ପୁଣ
ଆଠ ଅଶ୍ୱ ନେଇ ରଥେ ଯୋଚିଲେକ ପଣ ।

ବୀରବର ବେଶ ଯେହ୍ନୋଇଣ କୁମର
ରଥର ପରେ ବସି ବାହୁଲ ରଘୁବୀର ।
ଦଶ ଯୁଣ ପଥ ପ୍ରହରକେ ଗଲେ
ଗଙ୍ଗାକୂଳେ ଯାଇ ବେଗେ ପ୍ରବେଶହୋଇଲେ
ଗୁହ ନାମେ ଶବର ନଗ୍ରରେ ପରବେଶ
ବାଦ୍ୟନାଦ ଶବଦରେ ପୂରଇ ଆକାଶ ।
ସେ ନଗ୍ର ନରନାରୀ ପ୍ରବେଶ ହେଲେ ପୁଣ
ରଥର ଉପରେ ବସିଅଛଇଁ ଶତ୍ରୁଘନ ।
କୋଟିଏ ମଦନ ପରାୟୁ ତେଜରାଶି
ଦେଖିଣ ସର୍ବ ଜନେ ତାଙ୍କୁ ପରଶଂସି ।
ଗୁହ ନାମେ ଶବର ଆଗରେ ସ୍ତୁତି କହି
କେଉଁଠାରେ ରଜା ଆସି ଅଛୁ ତୋର ତହିଁ
ଏକଥା ଶୁଣି ଶବର ରଜା ବସ୍ତୁନିଲ
କାଣ୍ଡ କୋଦଣ୍ଡ ଧରି ସେହୁ ଯେ ବାହାରିଲ
ରଥର ଉପରେ ବସିଛନ୍ତି ରାମଭାଇ
ତାଙ୍କ ଚରଣେ ଓଳଗି ଉଭା ହେଲ ଯାଇଁ ।
ବୋଇଲ ଆଜକୁ ଚଉଦ ବରଷ ହୋଇଲ
ରାମ ଗଲ ଦିନୁଁ ତୁମ୍ଭଙ୍କୁ ଦେଖା ନ ମିଳିଲ ।
ବଡ଼ ଭାଗ୍ୟ ଅଟଇ ମୋହର ଆଜଦିନ
ମୋ ପୁରେ ବିଜେ କଲେ ସୂର୍ଯ୍ୟବଂଶ ରାଜନ
ରଥପରୁ ଓହ୍ଲାଅ ହେ ସାନୁଜ ବେଗେ ତୁହି
କିସ ଅର୍ଥେ ଅଇଲ ହେ ରାମଚନ୍ଦ୍ର ଭାଇ ।
ଶ୍ରୀରାମ ଅଇଲେ କି ବନବାସୁଁ ପୁଣ
କିସ ବାରତା ସ୍ୱାମୀ କହ ଶତ୍ରୁଘନ ।
ରଥରୁ ଓହ୍ଲାଇ ବେଗେ ଆସ ହେ ବହନ
ଏତେ ବୋଲି ଶବର ଲୋଟଇ ପାଦେ ପୁଣ
ଶତ୍ରୁଘନ ବୋଇଲେ ଉଠ ଉଠ ବୀର
ଲକ୍ଷେ ରଜା ଅଇଲେ ଅଯୋଧ୍ୟା ନଗର ।
ଶ୍ରୀରାମ ଅଭିଷେକକୁ ନିମନ୍ତ୍ରି ରଜା ଆଣି
ଆଜ ପରଯନ୍ତେ ନ ଆସିଲେ ରାମ ପୁଣି ।
ଆଜକୁ ଚଉଦ ବରଷ ଷଡ଼ମାସ ହେଲ
ବାରତା ନପାଇଲୁଁ ଶ୍ରୀରାମ କେଣେଗଲ ।
କାଲି ଗଲ ରାତରେ ଖବର ମିଳିଲ
ଶ୍ରୀରାମର ଘରଣୀକି ରାବଣ ଚୋରିକଲ ।
ଶ୍ରୀରାମ ଲକ୍ଷ୍ମଣ ଯାଇଥିଲେ ମୃଗମାରି
ଏହି ସମୟରେ ରାବଣ ଜାନକୀକଲ ଚୋରି ।
ନ ପାଇ ଶ୍ରୀରାମ କିଷ୍କିନ୍ଧ୍ୟା ପରବେଶ
କିଷ୍କିନ୍ଧ୍ୟାରେ ବାଳିକି ଶ୍ରୀରାମ କଲେ ନାଶ ।
ବାଳିର ଭାଇ ସୁଗ୍ରୀବର ବୋଲି ଜାଣ
ଶ୍ରୀରାମ ପାଦେ ଶରଣ ପଶି ମିତ ଶୁଣ ।
ରାବଣ ନେଇଛୁ ବୋଲି କହିଲ ବାରତା
କପିବଳ ଘେନି ବାହାର ସୁଗ୍ରୀବ ବଳବନ୍ତା
ଋଷ କପି ହାହା ପାଇ ରାମ ବାହାରିଲେ
ପର୍ବତ ବହିଣ କପି ସମୁଦ୍ର ପୋତିଲେ ।
ଲଙ୍କା ଗଡ଼ରେ ରାମ ହେଲେ ପରବେଶ
ଅନେକ ଯୁଦ୍ଧ କରି ମାରିଲେ ତାରବଂଶ ।
ପୁତ୍ର ଶୋକେ ରାବଣ ଶକତି ମାରିଲ
ଲକ୍ଷ୍ମଣ ଦେହେ ବାଜନ୍ତେ ସଉମିତ୍ରୀପ୍ରାଣଗଲ
ଶ୍ରୀରାମଙ୍କର ଶୋକ ଯେ ଲକ୍ଷ୍ମଣ ମରିବାରୁ
ଜମ୍ବୁବ ନାମେ ଦୈତ୍ୟ କହିଲ ହେଠାରୁ ।
ଶୋକ ନ କର ରାମ ଭାଇକି ଜିଆଇ ଦେବ
ଏତେକହି ବୈଦ୍ୟରାଜ ହନୁକୁ
ବେଗେ ପେଷି ।
ଗନ୍ଧମାର୍ଦ୍ଦନ ପର୍ବତକୁ ହନୁ ଗଲ
ଲକ୍ଷେ ଯୁଣ ପଥ ପ୍ରହରକେ ବିଜେମିଲ ।
ଔଷଧ ନ ଚିହ୍ନିଣ ପର୍ବତ ଉପାଡ଼ି
ଅଯୋଧ୍ୟା କଟକ ବାଟେ ଶୂନ୍ୟରେ
ଯାନ୍ତେ ଉଡ଼ି ।
ଦଶ ଘଡ଼ି ନିଶି ଯେ ଯେତେବେଳେ ପୁଣ
ଅନ୍ଧାରି ବିଜୟେ କରିଅଛୁ ଭରତ ଜାଣ ।
ମହା ଘୋର ଶବଦ ଯେ ଶୂନ୍ୟରେ ଶୁଭିଲ
କି ଶବ୍ଦ ଏ ବୋଲି ଭରତ ମନେ ବିଚାରିଲ ।
ଶୂନ୍ୟକୁ ଚାହିଁଣ ସେ ବୋଲଇ ବଚନ
କେଉଁ ମହାତମା ଶୂନ୍ୟେ ଯାଉଅଛ ପୁଣ ।
ତୁମ୍ଭଙ୍କୁ ବଇନ ମୁଁ ଯେ କରୁଛୁ ତଳେ ଥାଇ
କେଉଁ ମହାତମା ତୁମ୍ଭେ ଯାଅ ଚିହ୍ନା ଦେଇ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସବୁରି ପରେ ବଡ
ତାଙ୍କଠାରୁ ଦେବତାଏ ଆଉ ନାହାନ୍ତି ଗାଢ଼
ତାହାଙ୍କର ଆଣ ତୋତେ ଆସ ହେ ତଳକୁ
ନ ଆସିଲେ ଶାପ ମୁହିଁ ଦେବି ଯେ ତୁମକୁ ।
ଏତେ କହି ଭରତ ବୀର ଉଚେ ଡ଼ାକ ଦେଲ
ଦେବତାଙ୍କ ଆଣ ଶୁଣି ହନୁ ଲେଉଟିଲ ।

ଜଳରେ ଆସିଣ ବୀର ହେଲା ପରବେଶ
ମୁଣ୍ଡରେ ମୁଣ୍ଡିଆଇ ଅଛୁ ପର୍ବତ ବିଶେଷ ।
ହନୁମନ୍ତ ବୋଲେ ତୁରେ କମ୍ପା ଟାଣରେ ଡ଼ାକିଲୁ ।
ମୋତେ ଯେବେ ତୁ ଡ଼ାକିଲୁ ଆଜ ନଷ୍ଟେ ମଲୁଁ ।
ତୋତେ ମୁହିଁ ମାରି ରେ ଯିବି ଏହିକ୍ଷଣି
କମ୍ପାଳ ମୋତେ ଡାକିଲୁ ତୋରକହ ବାଣୀ
କେଉଁ କୁଳେ ଜାତ ତୁରେ ତୋ ନାମ ଅଟେ କସ
ବେଗ କହି ନ କହିଲେ ପ୍ରାଣରେ ଯିବ ନାଶ ।
ଶୁଣିଣ ଭରତ ବୀର କହଇ ବଚନ
ରଘୁବଂଶେ ଜାତ ମୁଁ ଦଶରଥଙ୍କ ନନ୍ଦନ ।
ତିନି ମାତାଠାରୁ ଆମ୍ଭେ ଚାରିପୁତ୍ର ଜାତ
ଶ୍ରୀରାମ ଲକ୍ଷ୍ମଣ ଶତ୍ରୁଘ୍ନ ବୋଲି ଭରତ ।
ଜ୍ୟେଷ୍ଠ ଅଟେ ଶ୍ରୀରାମ କନିଷ୍ଠ ଶତ୍ରୁଘନ
ଭରତ ଲକ୍ଷ୍ମଣ ଆମ୍ଭେ ଅଟୁ ଯେ । ମଧ୍ୟମ ପୁଣ ।
ମୋହର ନାମ ଭରତ ଶୁଣ ହେ ମାରୁତି
ରାମଙ୍କୁ ରାଜ୍ୟ ଦେବାକୁ ପିତାଙ୍କର ତୋଷମତି ।
ମାତା ମୋର କୈକେୟୀ ବିରୋଧ ପୁଣକଲେ
ରାମ ବନ ଯାଉ ବୋଲି ସତ୍ୟ କରାଇଲେ
ଲକ୍ଷ୍ମଣ ଜାନକୀ ଘେନି ବନକୁ ଗମନ
ରାମ ବନଗଲେ ପିତା ହେଲେ ଯେ ନିଧନ ।
ଚଉଦ ବରଷକୁ ରାମ କଣ୍ଟକ କଲେ
ଛମାସ ବଳିଲା ରାମ କାହିଁକି ନ ଆସିଲେ ।
ରାମ ଅଭିଷେକ ହେବାକୁ ଲକ୍ଷେ ରାଜା ଅଣାଇଲି
ମାସେ ହେଲା ରାଜାଙ୍କର ମୁଁ ଆର୍ଦ୍ଦୋଳ ସହିଲି ।
କେତେଣ ରହିଲେ ସ୍ୱାମୀ ଯେ ନ ଗଲା ମୋତେ ଜଣା
ଏଥିର ସକାଶେ ତୋତେ ନସ୍ମର ମୋର ସିନା ।
ଜାଣୁ କରେ ମାରୁତି କୁ ରାମଚନ୍ଦ୍ରଙ୍କୁ
ତୋ ଠାରୁ ଶୁଣି ସନ୍ତୋଷ ହେବ ମୋର ବପୁ ।
ତାହାଙ୍କ ସକାଶୁ କ୍ଷୀଣ ମୋହର ଯେ ଦେହ
କେମନ୍ତେ ମୁଁ ଦେଖିବି ସ୍ୱାମୀଙ୍କି ମୋତେ କହ ।
ହନୁମନ୍ତ ବୋଇଲା ଶୁଣ କୁହି ଏବେ
ରାମ ରାବଣଙ୍କ ଯୁଦ୍ଧ ଲଙ୍କାଗଡ଼ ମଧ୍ୟେ ।
ରାବଣର ପୁତ୍ର ନାତି ପଦାତି ରଥୀ ମଲେ
ଅନେକ ରାକ୍ଷସ ସୈନ୍ୟ ଶ୍ରୀରାମ ବଧକଲେ
ତେଣୁକରି ରାବଣ କୋଶଭର ଜାଣ
ବ୍ରହ୍ମ ଶକ୍ତି ମାଇଲା ଲକ୍ଷ୍ମଣ ଉପରେଣ ।
ଶକ୍ତି ବଜ୍ରେଣ ଯେ ରାମ ଭାଇ ମଲେ
କୋଦଣ୍ଡ ଧ୍ୱଜଧାରୀ ଅନେକ ଶୋକ କଲେ ।
ସୁଗ୍ରୀବର ରାଜାଙ୍କର ଯେ ସୁଷେଣ ନାମେ ମନ୍ତ୍ରୀ ।
ସେ ବୋଇଲେ ଲକ୍ଷ୍ମଣକୁ ଜୀଆଇ ଦେବି ମୁଁ ଟି ।
ଔଷଧ ପାଇଁ ପେଷିଲେ ଗନ୍ଧମାର୍ଦ୍ଦନ ଗିରିକି
ଶ୍ରୀରାମର ହୁକୁମେ ମୁଁ ଗଲି ଯେ ସେଥିକି ।
ଦେବତା ଏ ମୋର ସଙ୍ଗେ ବହୁତ କଳିକଲେ
ଅନେକ ପ୍ରକାରେ ଯେ ଯୁଦ୍ଧ ଆରମ୍ଭିଲେ ।
ଗନ୍ଧର୍ବଗଣ ମୋର ହସ୍ତରେ ମଲେ ପୁଣ
ଗିରିକି ଉପାଡ଼ି ମୁଁ ଆଣିଲି ବେଗେଣ ।
ବାଟରେ ନ ଗଲି ମୁଁ ଯେ ମରିବି ବୋଲି ଗୋଳ
ବାଟଘାଟି ଆସିଲି ମୁଁ ଦଶରଥ ବାଳ ।
ରାମନାମ ନ ଧରିଲେ ମାରନ୍ତି ତୋତେ ଆଜ
ଲକ୍ଷେ ରାଜଙ୍କୁ ମୁଁ ଯେ କରନ୍ତି ଦହିଯ୍ୟ ।
ରାମ ପୁଣ ଯୁଦ୍ଧ ସଙ୍ଗେ ହୋନ୍ତି ତୁମ୍ଭେ ସହି
ରାତ୍ର ଯେବେ ପାହିଯିବ ଲକ୍ଷ୍ମଣ ନ ବଞ୍ଚିଲ ।
ରାବଣକୁ ମାରି ରାମ ଅଯୋଧ୍ୟା ଆସିବେ
ରାମାୟଣ ଯୁଦ୍ଧ ରାବଣ ମଲରୁ ସରିବେ ।
ଏତେ କହି ହନୁମନ୍ତ ଗଗନେ ଚଳିଗଲା
ଖବର ଶୁଣି ଭରତ ଅନେକ ଶୋକକଲା ।

ପାତ୍ରମନ୍ତ୍ରୀ ସାମନ୍ତ ବଶିଷ୍ଠ ଋଷି ପୁଣ
ଭରତଙ୍କୁ ପ୍ରବୋଧ କରି କହନ୍ତେ ତଆରଣ
ବୋଇଲେ ରାମାୟଣ ଯୁଦ୍ଧ ଯେବେ ଟଣ
ଲକ୍ଷେ ରାଜା ଘେନ ଲଙ୍କାକୁ କରିବା ଗମନ
ବହୁତ ପଞ୍ଚରୁଷ ଶ୍ରୀରାମ କରିବେ
ରାମାୟଣ ଯୁଦ୍ଧ ଦେଖି ସମସ୍ତେ ନିସ୍ତରିବେ ।
ଭରତଙ୍କୁ ପ୍ରବୋଧି ମୋତେ ପେଶିଲେ ତୁମ୍ଭପାଶ
ଗୁହ ନାମେ ଶବରକୁ ବେଗେ ତୁ
ଘେନ ଆସ ।
ସେ ଆସିଲେ ଲଢା ଯେ ଜଙ୍ଗଲ ହେବ କଟା
ପଛରେ ସୈନ୍ୟବଳ ଯିବେ ଯେ ପାଲଟା ।
ଶୁଣିଣ ଶବର ରାୟ ସନ୍ତୋଷ ହୋଇଲା
ସ୍ନାନ ଭୋଜନ କରି ଯିବା ସେ ବୋଇଲା ।
ରାମ ରାବଣ ଯୁଦ୍ଧ ଦେଖିବା ଆମ୍ଭେ ପୁଣ
ସ୍ୱାମୀଙ୍କ ଦେଖିଲେ ମୁକତି ପାଇବା କାରଣ ।
ଶବର ରାୟ ହକ୍କରି ଦୂତ ବରଗିଲା
କହ ଶବର ଯେତେ ଡକାଇ ଅଣାଇଲା ।
ଲକ୍ଷେକ କହ ଲକ୍ଷେ ଶବର ଯେ ଜାଣ
ତତକ୍ଷଣେ ପ୍ରବେଶ ଆସି ହେଲେ ପୁଣ ।
ଶବର ରାୟ ବୋଇଲେ ତୁମ୍ଭେ ସର୍ବେ ଶୁଣ
ରାମ ରାବଣର ଯୁଦ୍ଧ ଲଙ୍କାରେ ହେଲା ଜାଣ
ସଜ ହୋଇ ଆସରେ ଲଙ୍କାଗଡ଼ ଯିବା
ଯୁଦ୍ଧ କରି ମଲେ ଆମ୍ଭେ ସ୍ୱର୍ଗରେ ବସିବା ।
ଯଦି ଯୁଦ୍ଧ ସରିଥିବ ରାମରେ ହୋଇବାଭବୁପି
ପରଂବ୍ରହ୍ମ ମୂର୍ତ୍ତିରେ ଦେଖିବା ବ୍ରହ୍ମ ରାଶି ।
ଟାଙ୍ଗିଆ କଟୁରି ଶର କାଣ୍ଡ ଯେ ବାଉଁଶ
ତୁମ୍ଭେ ବେଗେ ସଜ ହୋଇ ଆସ ମୋର
ପାଶ ।
ଶୁଣିଣ ସୈନ୍ୟବଳ ବେଗେ ଚଳିଗଲେ
ତିନ ସଜ ହୋଇ କରି ତୁରିତେ ଅଇଲେ ।
ଶବର ରାୟ ବୋଇଲେ ବେଗେଯାଅ ଚଳ
ଅଯୋଧ୍ୟା କଟକରେ ସମସ୍ତେ ହେବା ମେଳ
ଶୁଣି କରି ସୈନ୍ୟବଳ ସଜ ହୋଇଗଲେ
ବେଣୁ ବଂଶୀ ମର୍ଦ୍ଦଳ ବାଟରେ ନୃତ୍ୟକଲେ
ଗାଲ ତୁରୀ ହୁଳହୁଳି ରାମତାଳି ପୁଣ
ଶବଦ କରିଣ ସୈନ୍ୟ ଚଳିଲେ ପଥ ଜାଣ ।

ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ବରୀ
ଖଟଣୀଙ୍କି ସଙ୍ଗେ ଘେନି ଶତ୍ରୁଘନ ସ୍ନାନକରି
ସୂପକୁ ପଦାର୍ଥ ଆଣି ଶବରି ଥୋଇଲା
ପାଚିଲା କଦଳୀ ଆମ୍ବ କନ୍ଦମୂଳ ଦେଲା ।
ପଣସ ସପୁରି ଯେ ନବାତ କର୍ପୂର
ନାନା ବର୍ଣ୍ଣରେ ଫଳ ଦେଲା ସେ ଅପାର ।
ସବୁ ଫଳରୁ ଗୋଟିଏ ଗୋଟିଏ ସାଉଲେ
ଭୁଞ୍ଜିଣ ଶତ୍ରୁଘନ ମନରେ ତୋଷ ହେଲେ
ଭୋଜନ ସାରିଣ ଆଚମନ କଲେ
କଷାଫଳ ଭୁଞ୍ଜି କରି ରଥରେ ବସିଲେ ।
ଗୁହ ନାମେ ଶବର ପୁତ୍ରକୁ ଡାକିଲେ
ରାଜ୍ୟ ତୁ ସମ୍ଭାଳିବୁରେ ବୋଲିଣ ବୋଇଲେ
ପରଦଣ୍ଡ ନେଇଁ ରୂପେ ନ ପଶେ ରାଜ୍ୟରେ
ଶତ୍ରୁଙ୍କୁ ଦୃଷ୍ଟି ହେବୁ ପରଜା ଶୀତଳେ ।
ଏତେ କହି ବୀର ହସ୍ତୀ ଅଣାଏ ତୁରିତ
ମସ୍ତ ମତ୍ତ ଗଜ ଉପରେ ଚଢ଼ିଲା ଯେ ସୁତ ।
ବୀର ବେଶ ହୋଇ ସେ କମାୟୁଣ ଧରିଲା
ଶତ୍ରୁଘନ ଆଗରେ ସେ ପଛରେଣ ଗଲା ।
ରାତ୍ର ପାଞ୍ଚଘଡ଼ିଠାରେ ଅଯୋଧ୍ୟା ପରବେଶ
ଭରତଙ୍କୁ ଦର୍ଶନ କଲା ନରେନ୍ଦ୍ରର ଶିଷ୍ୟ ।
ଭରତ ବୋଇଲେ ଭାଇ ସୁଲଭ ମୋ ବେଶ
ଲକ୍ଷେ ରାଜା ଆମନ୍ତ୍ରିଲି ଶ୍ରୀରାମ ଅଭିଷେକ
ଏବେ ମୁଁ ଶୁଣିଲି ଭାଇର ରାବଣ ସଙ୍ଗେ କଳି
ଲକ୍ଷ୍ମଣଙ୍କୁ ଅସୁର ମାରିଲା ଶକ୍ତି ବଳି ।
କାଲିରାତ୍ରେ ମୋତେ ହନୁମନ୍ତ କହିଗଲା
ଡାଳର ମାଙ୍କଡ଼ ନେଇ ଭାମଙ୍କୁ ବିଧ୍ୱଂସିଲା
ଏବେ କହି ରୋଦନ କରେ ଭରତ ବୀର
ଗୁହ ନାମେ ଶବର ବୋଇଲେ ହୁଅ ସ୍ଥିର ।
ଲଙ୍କାକୁ ଯିବା ଯେମନ୍ତେ ବିଚାର ଏବେ କର
ତେବେ ଶ୍ରୀରାମରେ ଆମ୍ଭେ ପାଇବାପୁରସ୍କାର
ଶୋକ ସମ୍ଭାଳି ଭରତ ବୋଲଇ ଆମ୍ଭର ଭାଇ
ଷୋଳଶତ ଯୋଜନ ଏଥିକୁ ଲଙ୍କାଭୂଇଁ ।
ଝାଡ଼ ଜଙ୍ଗଲ ଅଟଇ ପଥର ପାହାଡ଼
ବୁଦ୍ଧି ନ ସ୍ଫୁରଇ ମୋତେ ଅଟଇ ମହାଗାଳ
ତୁ ଭାଇ ମୋତେ ଯେବେ କଢ଼ାଇବୁ ବାଟ
ତେବେ ଆମ୍ଭେଲଙ୍କାରେ ଶ୍ରୀରାମେହେବାଭେଟ

ଶୁଣିକରି ଗହ୍ଵ ବୀର ସୀତାଙ୍କର କଲ
ଚଉଦ ବନରେ ବାଟ ଯିବା ସେ ବୋଇଲା
ଶୁଣି କରି ଭରତ ବୀର ଜଟିଳ ବଚନ
ଶବରକୁ କୋଳ କଲା ସୂର୍ଯ୍ୟବଂଶ ନାନ ।
ମନ୍ତ୍ରୀକି କହିଣ ତାହ୍ନ ଖୋରାକ ଦିଆଇଲା
ସୈନ୍ୟ ସେନ ଶବ ପାହାନ୍ତରେ ରହିଲା ।
ଏଥୁଅନନ୍ତରେ କଥା ହୋଇଲାକ ଯିସ
ସାବଧାନେ ଶୁଣ ତୁମ୍ଭେ ନ କର ସନ୍ଦେଶ ।
ସେଠାରୁ ଭରତବୀର ବେଗେ ଚଳିଗଲ
ଘର ପଠିଆଇ ବଶିଷ୍ଠ ଅଣାଇଲା ।
ଚରଣେ ନୋହିଣ ଭରତ କହେ କରଯୋଡ଼ି
ଅଇଲେ ଶବର ମୋତେ କହୁହେବୋଧକରି
ବୋଇଲା ମୁଁ ଜଙ୍ଗଲ କଟାଇ ସେନଯିଅ
ଚଉଦ ବନେ ଶ୍ରୀରାମଙ୍କ ଭେଟ କରାଇବ ।
ଏତେ କହି ଶବର ଅଗରେ ଉଭାହେଲା
ରଜନୀ ପାହିଲେ ଲଟା କାଟିବି ବୋଇଲା ।
ତୁମ୍ଭର ମନକୁ ହେ ପାଏ କିସ ପୁଣି
ଏ କଥା ବସ୍ତୁର ମୋତେ କହ ବ୍ରହ୍ମଜ୍ଞାନୀ ।
ବଶିଷ୍ଠ ବୋଇଲେ କିଛି ନ ବସ୍ତୁର ତୁହି
ଲକ୍ଷେ ରାଜା ଆରୋହିକ ସଭାଙ୍କରେ ମୁହିଁ ।
ସୁରଶ୍ରୀକ ସେନଣ ତୋ ସଙ୍ଗେ ମୁହିଁ ଯିବି
ଯେ ଯାହା ମନ କରିବ ତାହାକୁ ମୁଁ ଦେବି
ଶତ୍ରୁଘନ ଥାଉ ହୋ ଅଯୋଧ୍ୟା ନଗ୍ରରେ
ସୈନ୍ୟବଳ ତୋହର ଥାଆନ୍ତୁ ଏ ପୁରେ ।
ଲକ୍ଷେ ରାଜା ଯିବେ ସୈନ୍ୟ ସେନଣ ତାଙ୍କର
ଲମ୍ବହତା କମାର ବଢ଼େଇ ଛେଦକାର ।
କୋଦାଳିଆ ଖଗଡ଼ ବଳଦ ଆଦିକରି
କାଲିର ଭିତରେ ଏ ସମସ୍ତେ ଯିବେ ଚଳି ।
ପରବନ ପ୍ରଭୁଙ୍କୁ ଆମର ଅନୁକୂଳ
କୁଠାରି ବଜାରି ଯିବେ କାଲିର ଭିତର ।
ଏତେ କହି ବଶିଷ୍ଠ ଭିତରକୁ ଗଲେ
ସୁମନ୍ତ ଭରତ ରଜନୀରେ ଯେ ବୁଲିଲେ ।
ଖଗଡ଼ ବଳଦ ଲମ୍ବହତା ଉଜକାରି
କୋଦାଳିଆ ଛେଦକାରି କୁଠାରି ବଜାରି ।
ସମସ୍ତଙ୍କୁ ସଜ କରି ରାତରେ ଆସିଲେ
ଛିଅ ମଥା ଦହିଲୁଣ ମୃଗବରି ଗଡ଼ଙ୍ଗରେ ।

କୋଡ଼ିଏ ଯୁଣ ପ୍ରଥମ ବନରେ ସରିବ
ଦ୍ୱିତୀୟ ବନ ତିରିଶ ଯୁଣଯାଏ ଯିବ ।
ଏହି ରୂପେ ଭରତବୀର କଣ୍ଠ ପୁଣ ଦେଲା
ସୈନ୍ୟ ଯାଉଥିବା ଯାଏ ରହିବ ହୋଇଲା ।
ସୈନ୍ୟ ଶେଷ ହୋଇଲେ ଆଗକୁ ତୁମ୍ଭେଯିବ
ଦଣ୍ଡପୂର୍ଣ ଅନ୍ତରେ ବନାର ପୁଣ ଦେବ
ଗୁହନାମେ ଶବରକୁ ଜାକଣ କହିଲେ
କୂଅ ବାମ୍ପୀ ଲଟା ଲୋଡେ ଲଗିଲରେଭଲେ
ଗୁଆ ପାନ ଦେଇ ଭରତ ଶବର ମନ ତୋଷି
ନିଜ ମନ୍ଦିରରେ ବୀର ପ୍ରବେଶ ହେଲା ଆସି ।
ବଶିଷ୍ଠଙ୍କୁ ଦେନ ଅନ୍ତଃପୁରେ ବୀର ଗଲ
ଧାଇ ମୃଦୁସୁଲ ଦ୍ୱାର ଭରତ କହିଲା ।
ସକଳ ମାତାଙ୍କୁ ମୋର ଜାକ ସେନ ଆସ
ଶୁଣି ମୃଦୁସୁଲ ଭିତରେ ପ୍ରବେଶ ।
ଜନନୀମାନଙ୍କୁ ଯାଇ କହିଲେ ବଚନ
ତୁମ୍ଭ ପୁତ୍ର ଡାକୁଛନ୍ତି ଆସ ଗୋ ବହନ ।
ଶୁଣିକରି ଜନନୀମାନେ ଯେ ଅଇଲେ
ଭରତ ଆଗରେ ଅସି ସମସ୍ତେ ମିଳିଲେ
ଶତ୍ରୁଘନ ଭରତ ଡକାଇ ଆଣି ଭରତ
ଜନନୀମାନଙ୍କର ଚରଣେ ପ୍ରଣମିତ ।
କରଯୋଡ଼ି ଚରଣେ ଲମ୍ବ ହୋଇ ଶୋଇ
କଉଶଲ୍ୟା ବୋଲନ୍ତି ଶୁଣରେ ବାଳ ପୋଇ ।
ଲକ୍ଷେ ରାଜା ଅଣାଇ କରି ତ ଅଛୁ ଠୁଳ
ଏବେ କେଉଁ କଥାପାଇଁ ବନଜ ତୋହର ।
ରାମ ନ ଆସିବାରୁ କି ମନରେ ଚିନ୍ତା ତୋର
ଆଜକୁ ତେବଦ ବରଷ ଗଲା ମୋ କୁମର ।
କଷ୍ଟ କରି ଗଲା ଚୌଦ ବରଷେ ଆସିବ
ଛମାସ ବଳିଗଲା ଆସୁଥିବ ମୋ ନିଧି ।
ତୋର ଭାଇ କେତୁ ଅଟେ ଲକ୍ଷ୍ମଣର ରାଣୀ
ଗୁରସ୍ତ ଗଲା କାନ୍ତ ଅପୁଷ୍ପିକ ସେ ପୁଣି ।
ରାମ ଲକ୍ଷ୍ମଣ ଆସିବାରି ତାର ଠାରୁ ଚିହ୍ନ
ପୃଚ୍ଛିଲଣି କାଳ ସତ୍ୟ ସରିଲଣି ପୁଣ ।
ମୁହିଁ ଯାଉଅଛୁ ବାବୁ ତାହାର ଉଦନ
ପଚାରିଲେ ସେ କହି ସଙ୍କେତ ମୋତେ ପୁଣ
ଏମନ୍ତ ବୋଲିଣ ମେ କୌଶଲ୍ୟା ଚଳିଲେ
ଉର୍ମିଳା ନବରେ ଯାଇ ପ୍ରବେଶ ହୋଇଲେ

ଦେଖିଣ ଲକ୍ଷ୍ମଣ ନାରୀ ଉଠିଲେ ତକ୍ଷଣ
ଗଡ଼ ଘାଲି ଶୋଇଲେ ଯେ ଶାଶୁଙ୍କ ଚରଣ ।
କଉଶଲ୍ୟା ବୋଇଲେ ଗୋ ସୁଲକ୍ଷଣୀ ହୁଅ
କଥାଏ ପଚାରିବି ମାତ ବେଗକରି କହ ।
ଲକ୍ଷ୍ମଣ ତାଙ୍କ ବେଳରେ ସତ୍ୟ ଯାହା କଲ
ସେ କଥା ସଙ୍କେତ ଏବେ କେମନ୍ତେ ବୁଝିଲ
ଜନକର ଦୁହିତା କହନ୍ତି କରଯୋଡ଼ି
ଠାକୁରଙ୍କ ମାତା ତୁମ୍ଭେ ମନରେ କମ୍ପା ଶୁଣ
ଠାକୁର ଯିବାର ଚୌଦ ବରଷେ ଷଡ଼ମାସ
ପକ୍ଷେ
ଠାକୁରଙ୍କୁ ବିରୋଧ ଯେ ପଡ଼ିଲ ଅନେକେ ।
ଆଉରି ମାସେ ଗଲେ ରାଜ୍ୟକୁ ଆସିବେ
ସେଥିର ସଙ୍କେତ ଯେ ମୁଁ କହୁଛି ତୁମ୍ଭରେ ।
ଯେତେବେଳେ ସ୍ୱାମୀ ମୋର ଠାକୁରଙ୍କସଙ୍ଗେ
ଗଲେ
ମୋତେ କହି ଯିବାକୁ ମୋ ପୁଚ୍ଛାକୁ ଆଇଲେ
ସେତେବେଳେ ସତ୍ୟ ଆମ୍ଭେ ଦୁଇଜଣ କଲୁଁ
ଆମ୍ଭ ସତ୍ୟ ପାଳିବା ମନରେ ବିଚାରିଲୁଁ ।
ଚଉଦ ବରଷ ଯାଏ ମୁଁ ଅସ୍ପୃଷ୍ଟକରେ ଥିବି
ତୁମ୍ଭ ଆସିବା ଆଗମ ଦେଖି ପୁଷ୍ପବତୀ ହେବି
ଏ କଥା ଶୁଣି ମୋର ସ୍ୱାମୀ ବଚନ କହିଲେ
ମୁହିଁ ନପୁଂସକ ତୋ ହୋଇଣଥିବି ଭଲେ ।
ତିନି ପକ୍ଷ ଥିବ ମୁଁ ଯେ ଆସିବାକୁ ପୁଣ
ସେତେବେଳେ ପୁଷ୍ପବତୀ ତୁହି ହେବୁ ଜାଣ ।
ଆଜ ପରିଯନ୍ତେ ମୁଁ ନୋହିଲି ରଜସ୍ୱଳା
ଜାଣିଲି ମୋ ସ୍ୱାମୀଙ୍କ ବିରୋଧ ପଡ଼ିଲା ।
ଗଲ ପରଦିନ ବେଳ ପ୍ରହରେ ପୁଣ ଥିଲା
ମୋହର ସୁବର୍ଣ୍ଣ କାନ୍ତି ମଳିନ ଦିଶିଲା ।
ବିଚାରିଲି ଅସମ୍ଭବ କଥା ମୋତେ ହେଲା
ଚତୁର୍ଦ୍ଧା ମୂର୍ତ୍ତିଙ୍କ ସଙ୍ଗେ ଥାଇଁ ବିପରୀତଦିଶିଲା
ଆରଦିନ ସକାଳୁ ମୁଁ ଉଠିଲୁ ନିଦ୍ରାରୁ
ଉଜ୍ଜ୍ୱଳ ଦିଶିଲା ଚୂଡ଼ ଦେଖିଲେ ନେତ୍ରରୁ ।
ଏବେ ଦେହ ପୁଲକିତ ଲାଗୁଛି ମୋହର
ଦୁଇ ଚାରିଦିନେ ରଜସ୍ୱଳା ହେବ ମୋଶରୀର
ଆଜ ରାତ୍ରରେ ସ୍ୱପନ ମୁହିଁ ତ ଦେଖିଲି
କଉଶଲ୍ୟା ରାଣୀଙ୍କ ସହିତ କଥା ହେଲି ।

ମୋତେବୋଇଲେ ଗୋ ମାତଚିନ୍ତାକୁ ନକର
ଦିନ ଗଣୁଥାଅ ମାସକେ ସ୍ୱାମୀ ଆସିବେ
ତୋହର ।
ରାମ ରାବଣର ଯେ ହେଲା ବଡ଼ ଯୁଦ୍ଧ
ଜାନକୀ ହରାଇଲା ଲଙ୍କାର ଦଶଗ୍ରୀବ ।
କାଲିକୁ ତୋର କାଳ ଶକତି ମାରିଗଲା
ତୋ ସ୍ୱାମୀ ଦେହରୁ ପୁଣ ପ୍ରାଣ ଛାଡ଼ିଗଲା ।
ସୁଷେଣ ନାମେବ ଯେ ବୈଦ୍ୟ ଥିଲେ ଜାଣ
ହନୁନାମେ ବୀରକୁ ପେଶେ ତତକ୍ଷଣ ।
ଅମର ମୌଷଧି ଗନ୍ଧମାର୍ଦ୍ଦନରୁ ନେଲା
ଲେପ ଦ୍ୟନ୍ତେ ତୋର ସ୍ୱାମୀ ଝାଇଣ ଉଠିଲା
ସ୍ୱପନରେ ମୁହିଁ ତାଙ୍କୁ କହିଲି ବଚନ
ବୋଇଲି ଠାକୁରଙ୍କର ନାହାନ୍ତି ସୈନ୍ୟପୁଣ
କି ରୂପରେ ଯୁଦ୍ଧ କଲେ ବ୍ରହ୍ମାଣ୍ଡ ଠାକୁର
ସେ ବୋଇଲେ କପିବଳ ସହା ଯେ ଅପାର
ଏତେ କହି ଅନ୍ତର୍ଦ୍ଧାନେ ଚଳିଗଲେ ମୁନି
ମୋର ନିଦ୍ରା ଭାଙ୍ଗିଗଲା ପାହିଲା ରଜନୀ ।
ଶୁଣିଣ କୌଶଲ୍ୟା ଆଖି ଥନ ଥନ କଲେ
ବ୍ରହ୍ମାଣ୍ଡ ଠାକୁର ମୋ ପୁତ୍ର କେମନ୍ତେ
ସେ ହଲେ ।
ମୋତେ ମାଲୁମ ନୁହେଁ ମୋହ ପୁତ୍ର କଥା
ତୁ କେମନ୍ତେ ଜାଣୁ ସେହି ସୃଷ୍ଟି ଯେବରତା
ଉର୍ମିଳା ବୋଇଲା ଗୋ ସେଥିରେ କଥା ଅଛି
ପିତା ଘରେ ଥିଲୁଁ ଆମ୍ଭେ ଦୁଇ ଯେ ମୃଗାକ୍ଷି
ଦିନକରେ ଅଇଲେ ଅଗସ୍ତି ମହାମୁନି
ଦେଖି ତାଙ୍କୁ ନମସ୍କାର କଲି ମୁଁ ପାଦେ ପୁଣି
ଠାକୁରାଣୀଙ୍କି ବୋଇଲେଏକମଳାଦେଖାସାର
ଏହାଙ୍କର ବର ଅଟନ୍ତି ତୈଲୋକ୍ୟ ଠାକୁର
ରାମାୟଣ ଯୁଦ୍ଧ ପାଇଁ ହୋଇଛନ୍ତି ଜାତ
ଅଳପ ଦିନେ ପୁଣି ଯିବ ଏହା କଷ୍ଟ ।
ମୋତେ ବୋଇଲେ ତୋର ସ୍ୱାମୀ ଯେଅନନ୍ତ
ବାସୁଦେବଙ୍କ ସଙ୍ଗେ ହୋଇଛନ୍ତି ଜାତ ।
ସାକ୍ଷାତରେ ଈଶ୍ୱର ଯେ ଅଟେ ଏହା ବର
ସୀତା ଏଗାର ଦିନେ ଜନମ ଏହାଙ୍କର ।
ରାମ ଲକ୍ଷ୍ମଣ ଦୁଇ ଭାଇ ଏକା ଦିନରେ ଜାତ
ତୁମ୍ଭଙ୍କୁ ସେ ଦୁଇଭାଇ ବର ଗୋ ଦୁହିତ ।

ଏତେ କହି ମୁନି ଯେ ନିଜ ସ୍ଥାନ ଗଲେ
ମୁନିଙ୍କ କହିବା କଥା ଆମ୍ଭଙ୍କୁ ହେଲା ଭଲେ
ସେ ହନୁ ଜାଣଇ ମୁଁ ଯେ ଠାକୁର ତୁମ୍ଭ ପୁଅ
ଠାକୁରାଣୀ ଅଟନ୍ତି ଜନକ ବଡ଼ ଝିଅ ।
ଶୁଣି କରି କଉଶଲ୍ୟା ମନରେ ବିସ୍ମରିଲେ
ରାମନାମ ସୁମରି ସ୍ୱାମୀ ମୋ ପ୍ରାଣହରାଇଲେ
ଏତେ ବୋଲି କାହୁଡ଼ିଲେ ରାମ ନିଜ ମତ
ଭରତର ପାଶରେ ଯାଇ ହେଲେ ଉପଗତ ।
ବୋଇଲେ ପୁତ୍ର ତୁରେ ଯେଉଁ କଥା କହୁ
ରାବଣ ହରି ନେଲା ମୋର ଜ୍ୟେଷ୍ଠ ବୋହୂ
ଶ୍ରୀରାମ ଲକ୍ଷ୍ମଣ ଯେ କପିବଳ ଘେନ
ରାବଣର ପୁତ୍ର ନାତି ମାରିଲେ ସେ ପୁଣି ।
ଅଠର ଗଣ୍ଡା କୁମର ଛେଉ ଶତ ନାତି
ସେଥିରୁ ଦଶ ପୁତ୍ର ପର୍ଯ୍ୟଶ ନାତି ବର୍ଣ୍ଣି ।

ରଥରେ ବସାଇ ସେ ଜନକ ଝିଅ ନେଲା
ଜାନକୀର ଦେହରେ ଯେ କ୍ରୋଧ ଜନମିଲା ।
ଦାବାନଳ ଅଗ୍ନି ପ୍ରାପ୍ତ ହେବେ ରାବଣକୁ
ଅଶୋକ ବନରେ ନେଇ ରଖିଲା ତାହାଙ୍କୁ ।
ସ୍ୱଭବନ ସଖି ଯେ ଅଗ୍ନିରେ କରେ ସ୍ନାନ
ଲଙ୍କାର ଅସୁର ଯେ ଡରିଲେ ଦେଖି ପୁଣ ।
ପରହନ ଶକ୍ତି ଲକ୍ଷ୍ମଣଙ୍କୁ ରାବଣ ମାରିଗଲା
ଭାଇ ମଲାବୋଲି ଶ୍ରୀରାମ ବହୁତ ଶୋକ କଲା
ହନୁ ଆସି କରି ନେଲା ଅମର ମହୌଷଧି
ଲେପ ଦେବାରେ ଉଠିଲା ଲକ୍ଷ୍ମଣ ଗୁଣନିଧି
ମୋତେ ତୁ କିସ ବାରତା କହିବୁ କୁମର
ଜନକ ରାଜାର ଝିଅ ଯେ କହିଲେ ସକଳ
ତପସ୍ୟା ବଳ ତୋରରେ ସଫଳ ହୋଇଲା
ଶ୍ରୀରାମେ ବିଶ୍ୱାସ ହେବାରୁ ଅହଲ୍ୟା ଭବଗଲା
ଚଳଯା ଲଙ୍କାକୁ ଦେଖ ରାମାୟଣ ଯୁଦ୍ଧ
ସ୍ୱର୍ଗର ଦେବ ଦେଖିଣ ମନେ କଲେ ସଧ ।
ଲକ୍ଷେ ରାଜା ଘେନ ବେଗେ ଚଳଯାଅ ବାବୁ
ଯେବେ ଶ୍ରୀରାମଠାରେ ଭକତ ହୋଇବୁ ।
ଶୁଣିକରି ଭରତ ଗାର ଚରଣେ ଲୋଟିଲା
କାଲି ପ୍ରଭାତରୁ ଯିବି ବୋଲିଣ ବୋଇଲା
ଅଯୋଧ୍ୟା ଦେଶକୁ ଯେ ସମ୍ଭାଳିଥାଅ ତୁମ୍ଭେ
ଜନନୀମାନଙ୍କୁ କିଛି ନ ବୋଲିବୁ ଆଉ ।

ଶୋକ ନ କରିବୁ ଦେବ ଆଳରେ ପୂଜା କରି
ଶ୍ରୀରାମ ନାମ ଧରି ତୁହି ଜପାମାଳି ଧରି ।
ଶିବ ଆଳରେ ଚମ୍ପା ତୁଳସୀ ବଢ଼ାଇବୁ
ଦୁଃଖୀ ଦରିଦ୍ରଙ୍କୁ ତୁ ଅନ୍ନଦାନ ଦେବୁ ।
ନାରାୟଣ ଦେବତାରେ ବିଶ୍ୱାସ କରିଥିବୁ
ଦେବୀଙ୍କ ମାଜଣା କରି ଗୁଗୁଲ ତୁ ଦେବୁ
ପରଜାମାନଙ୍କର ଗୁହାରି ନିତି ତୁ ବୁଝିବୁ
ପରଥାଟ ରାଜ୍ୟରେ ତୁ ପୁରାଇ ନ ଦେବୁ
ଶୁଣିକରି କଉଶଲ୍ୟା ବୋଲନ୍ତି ଉତ୍ତର
ଲୀଳାବତୀ ଜନମିଲ କହରେ କୁମର ।
ଏ କଥାମାନଙ୍କୁ ମୁଁ ନ ପାରଇ ବାବୁ
ରାଜ୍ୟର ଭଲମନ୍ଦ ସେ ବୁଝିପାରେ ସବୁ ।
ରାମ ନାମ ସୁମରଣା ମୋର ହାତେ ପୁଣ
ଆଉ କଥାମାନଙ୍କରେ ନୁହେ ମୋ କାରଣ
ପିତା ମଲା ରାମ ଗଲା ଚଉଦ ବରଷ
ଲୀଳାବତୀ ନଥିଲେ ତୁମ୍ଭେ ନଥାନ୍ତ ଏ ଦେଶ
ପିତା ଦଶରଥ ମଲେ ଲୀଳାବତୀ ପୁଣ
ଚଉଦ ବରଷ ପ୍ରଜା ପାଳିଲା ଏଥି ଜାଣ ।
ଦରିଦ୍ର ଦୁଃଖୀମାନଙ୍କୁ ସୁଖୀ କରାଇଲା
ପରଜାମାନଙ୍କୁ ସେ ସୁଖରେ ପାଳିଲା ।
ହସ୍ତୀ ଘୋଡ଼ା ପଦାତି ସାରେଣୀ ଓଟ ଜାଣ
ଏତେ ସମ୍ଭାଳିଲା ତୋ ସାନ ଜନନୀ ପୁଣ ।
ମୋଠାରେ ସେତିକି ଗତ ନ ହୁଅ ପୁତ୍ରମଣି
ଆଜ ମାସେ ସମ୍ଭାଳୁରେ ଲୀଳାବତୀ ପୁଣି ।
ଶ୍ରୀରାମ ଅଇଲେ ସବେ ହୋଇବେ ନିଶ୍ଚିନ୍ତ
ଶୁଣିକରି ସନ୍ତୋଷ ହୋଇଲେକ ଭରତ ।
ଲୀଳାବତୀ ବୋଇଲେ ଚଳରେ କୁମର
ଶତ୍ରୁଘନ ପୁତ୍ର ଆଉ ମୋହର ପାଶର ।
ହସ୍ତୀ ରଥୀ ପଦାତି ସମସ୍ତେ ଏଥି ଥାନ୍ତୁ
ବଶିଷ୍ଠ ସୁମନ୍ତ ତୋର ସଙ୍ଗରେ ଯାଆନ୍ତୁ ।
ଆଉ ପଞ୍ଚମନ୍ତ୍ରୀମାନେ ରହନ୍ତୁ ମୋର ସଙ୍ଗେ
ଶୁଣ ପୁତ୍ର ଏହିପରି ଯାଅରେ ସରବେ ।
ସୁରଭି ଘେନ ବଶିଷ୍ଠ ତୋ ସଙ୍ଗରେ ଥିଲେ
ଯେତେବେଳେ ଯାହା ଲୋଡ଼ିଲେ ସେତେବେ
ଶୁଣିଣ ଭରତ ସବ ଜନନୀ ଚରଣେ
ଓଳଗି ମେଲାଣି ବାହାର ତତକ୍ଷଣେ ।

ଜନମାମାନେ ସନ୍ତୋଷେ ହୁଳହୁଳି ଦେଲେ
ସୁକଲ୍ୟାଣ କରିଣ ପାଅରେ ବୋଇଲେ ।
ଶ୍ରୀରାମ ଲକ୍ଷ୍ମଣ ଯେ ଜାନକୀ ଘେନିଣ
ସର୍ବଶୁଭେ ଅଯୋଧ୍ୟାକୁ ଆସ ହେ ତକ୍ଷଣ ।
କୈକେୟୀଙ୍କୁ ଭରତ କଲେ ନମସ୍କାର
ମନ୍ଥରୀ ବୋଲି ନକରିବୁ ମାତ ମୋର ।
ମନ୍ଥରୀର ଯୋଗୁ ଏମା ଏତେ ଦୁର ହେଲା
ତିନି ପୁରେ ଅପକୀର୍ତ୍ତି ତୋ ନାମେ ଶୁଭିଲା ।
ଏତେ କହି ଭରତ ବଶିଷ୍ଠଙ୍କୁ ଘେନି
ବାହାର ଅବକାଶରେ ବଢେ କଲେ ପୁଣି ।
ମନ୍ତ୍ରୀକି ବୋଇଲେ କୁବେଗେ ସୈନ୍ୟଙ୍କୁ ଗୁଳ
ଶଗଡ଼ ବଳଦ ଆ କୋଦାଳ ଛେଦକାର ।
ମୁହିଁ ଯାଉଅଛି ଗୁହ ଶବରର ପାଶ
ଏମନ୍ତ ସମୟରେ ରଜନୀ ହେଲା ଶେଷ ।
ଦେବ ଆଳେ ଶଙ୍ଖଧ୍ୱନି ଶବଦ ଶୁଭିଲା
ବଶିଷ୍ଠଙ୍କୁ ଭରତ ବୀର ଓଳଗି ହୋଇଲା ।
ହେ ମୁନି ସ୍ନାନ ତର୍ପଣ ଆସ ବେଗେ ସାରି
ଫଳ ମୂଳ ଭୁଞ୍ଜିଣ ତୋଷ ଜଟାଧାରୀ ।
ସୁରଭିକି କହିଲେ ସକଳ ପୂଜା କରି
ଶ୍ରୀରାମ ରାବଣ ଯୁଦ୍ଧ ଦେଖିବା ଲଙ୍କାପୁରୀ ।
ରାମାୟଣ ଯୁଦ୍ଧ ଦେଖିଲେ ଧର୍ମ ହେବ
ବାସୁଦେବଙ୍କର ସେବା କରିବା ଆମ୍ଭେ ସବ ।
ଶୁଣି କରି ସୁରଭୀ ସନ୍ତୋଷ ହୋଇଲା
କାଲି ସୂର୍ଯ୍ୟ ଉଦୟରୁ ଅନୁକୂଳ ହେଲା ।
ଚମ୍ପକ ତ୍ରୟୋଦଶୀ କାଲି ଯେ ହୋଇବ
ଦକ୍ଷିଣକୁ ଶୁଭଯୋଗ ତୁମ୍ଭଙ୍କୁ ହୋଇବ ।
ମୁହିଁ କାମ୍ୟା ସିଦ୍ଧ ହେ ତୁମ୍ଭର ସଙ୍ଗରେ
ମୋତେ ସୁମରଣା ହେ କରିବ ମୁନିବରେ ।
ଯାହା ବସ୍ତୁ କର ତାହା ମିଳିବ ଭରତ
ସକଳ ସାମଗ୍ରୀ ତୁମ୍ଭଙ୍କୁ ଦେବ ମୋର ମାତ ।
ଏ କଥା ତାରଠାରୁ ସଙ୍କେତ ମୁନି ନେଲେ
ସେଠାରୁ ଯାଇ ବୃକ୍ଷଙ୍କରେ ବସିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ବର୍ଯ୍ୟରସ
ଭରତ ଯାଇ ଶବର ପାଶରେ ପରବେଶ ।
ଦେଖିକରି ଶବର ଓଳଗ ମେଲିଲା
ସୈନ୍ୟ ବଳ ଘେନିଣ ବେଗେ ଚଳିଗଲା ।

ଅଯୋଧ୍ୟା ଠାରୁ ଲଉଠା କାଟିଲେ ପାଞ୍ଚଯୁଣ
ଦଶଯୁଣ କାଟିଗଲେ ଶବର ଜନ ପୁଣ ।
ଆପଣାର ରାଜ୍ୟ ଯାଏ ଓଳାଇଲା ବ୍ୟଗ୍ର
ଆରଣ୍ୟକ ମେଳ ହେଲା କୋଡ଼ିଏ ଯୁଣ ଶୀଘ୍ର
ସକାଳ ବେଳା ସ୍ନାନ ବଧି ସେ ସାରିଲା
ଉପର ବେଳା ଭଣ୍ଡା ବଧିରେ ଲାଗିଲା ।
ପ୍ରଥମ ଦିନ ତିରିଶ ଯୁଣ ଓଳାଇଲେ
ଏଥୁ ଅନନ୍ତରେ ତୁ ଗୋ ଶୁଣ ଦେଖା ଭଲେ
ଗୁହ ନାମେ ଶବର ଯିବାରୁ ଯେ ପୁଣ
ଭରତ ପେଷିଲା ଯେ କୋଦାଳିଆ ପୁଣ ।
କୋଡ଼ିଏ ସହସ୍ର କୋଦାଳିଆ ଭଲ ଗଲେ
କଣ୍ଟା ମୂଳ ଡାଙ୍କୁଣ ବାଟ ନିର୍ମଳ କଲେ ।
ସେଥିର ପଛରୁ ଗଲେ ଛେଦକାର ଦଳ
କୂପ ବାପ୍ପୀ ସଜାଡ଼ି କଲେ ଯେ ନିର୍ମଳ ।
ତାଙ୍କ ପଛେ ପେଷିଲେ କଣ୍ଟାଶି ବଜାରୀ
ଦଶ ଯୁଣେ ଦଶ ସହସ୍ର ଦୋକାନ ଘର କରି
ତିରିଶ ସହସ୍ର ଦୋକାନୀ ତିନି ଠାବ କଲେ
ଦଶ ଯୁଣେ ଦୋକାନ ବସାଇଣ ଦେଲେ ।
ସୁମନ୍ତ ମନ୍ତ୍ରୀ ଗଲେ ଦେଖୁ ବନ ଗଲା
ତିରିଶ ଯୁଣ ଗମି ସକଳ ଦେଖିଲା ।
ଶହେ ଲେଖାଏଁ ଯେ ରଜକାସି ପୁଣ
ଦଶ ଯୁଣେ ରଖିଲେ କରିଣ ଭିଆଣ ।
ତିରିଶ ଯୁଣକୁ ତିନି ମୁକାମ କଲା
ତିନିଶ ରଜକାସି ତିନି ମୁକାମେ ରଖିଲା ।
ଦଶ ସହସ୍ର ଲେଖାଏଁ ବଳଦ ଶଗଡ଼ି ତ
ତିନି ମୁକାମକୁ ଯେ ଗଲେ ବୀର ଭରତ ।
ସୁମନ୍ତ ଶହୁ ଘନ ଦେଖିଣ ଅଇଲେ
ରଜନୀ ଦୁଇ ଘଡ଼ିଲା ପ୍ରବେଶ ହୋଇଲେ ।
ସକଳ ବୃତ୍ତାନ୍ତ ଯେ କହିଲେ ଭରତଠାରେ
ବଶିଷ୍ଠ ମନ୍ତ୍ରୀ ସହିତେ ବସିଲେ ଏକ ମେଳେ
କାଲିର ପ୍ରଭାତରେ କରିବା ଅନୁକୂଳ
ଜନ୍ମ କହିବାର ହେଲା ତିନି ଯେ ଦିନର ।
ପକ୍ଷକରେ ଆମ୍ଭେ ଯାଇ ହେବା ପରବେଶ
ବଶିଷ୍ଠଙ୍କୁ ବୋଇଲେ ସକାଳୁ ବେଗେ ଆସ ।
ବୃଦ୍ଧମୁନି ଚଳିଲେ ଆପଣା ନିଜସ୍ଥାନ
ଏଥୁ ଅନନ୍ତରେ କଥା ଶୁଣ ଦେଖା ପୁଣ ।

ସୁମନ୍ତ୍ରଙ୍କୁ ଘେନ ଭରତ ଶତ୍ରୁଘ୍ନ ଗଲେ
ରାଜାଙ୍କ ଉଆସରେ ପ୍ରବେଶ ହୋଇଲେ ।
ରାଜାମାନଙ୍କୁ ବୋଇଲେ ଶୁଣିବା ଦେବ ପୁଣ
ରାମ ପୁଣ ଯୁଦ୍ଧ କଲେ ରାବଣ ସଙ୍ଗତେଣ ।
ରାମ ରାବଣ ଲଙ୍କାଗଡ଼ରେ ଯୁଦ୍ଧ କଲେ
ରାବଣର ସୈନ୍ୟପାଳ ସବାଶି ପକାଇଲେ ।
ମହାଘୋର ଯୁଦ୍ଧ ଲଙ୍କାରେ ହେଲ ଟାଣ
କପିମାନେ ରାମଙ୍କ ମାୟା ତୁମ୍ଭେ ଜାଣ ।
ବାଳିକି ମାରି ରାମ ସୁଗ୍ରୀବ ରଜା କଲେ
ଋକ୍ଷ ମର୍କଟ ଘେନିଣ ଲଙ୍କାକୁ ଚଳିଲେ ।
ଲକ୍ଷେ ପୁଣ ଲଙ୍କା ଯେ ସମୁଦ୍ର ଭିତରେ
ପର୍ବତେ ସେତୁବନ୍ଧ ବାନ୍ଧିଣ ରାମ ଗଲେ ।
ଚାଲ ଚାଲ ଲଙ୍କାଗଡ଼ ଯାଏ ଆମ୍ଭେ ଯିବା
ରାମାୟଣ ଯୁଦ୍ଧ ଯେ ସେଠାରେ ଦେଖିବା ।
ମୁକତ ହୋଇବା ରାମ ପୁଣ ଯୁଦ୍ଧ ଦେଖି
ଅସୁର ମାରିବାକୁ ରାମ ଲକ୍ଷ୍ମଣ ନିକି ।
ରାମଙ୍କୁ ଦେଖି ନେତ୍ର ପବିତ୍ର କରିବା
ସ୍ୱୟଂ ନାରାୟଣ ଦେଖିଲେ ନିସ୍ତରିବା ।
ଶୁଣି କରି ରାଜାମାନେ ମନରେ ସନ୍ତୋଷ
ବୋଇଲେ ପ୍ରଭାତରୁ ଚଳିବା ଲଙ୍କାଦେଶ ।
ସୈନ୍ୟବଳ ସଜକରି ରାଜାମାନେ ପୁଣ
ପାତ୍ରମନ୍ତ୍ରୀମାନଙ୍କୁ ଆଜ୍ଞା ଦେଲେ ତତକ୍ଷଣ ।
ହୋଇଲେ ଉଚ୍ଛୁକ ଯେ ଯିବାକୁ ଉଦବେଗ
ରଥମାନଙ୍କୁ ସଜ କଲେ ସେତୁ ବେଗ ।
ସେହୁବଚନ ଗ୍ରହରେ ଯେ ପଡ଼ିଲା ତହିଁ
ସୈନ୍ୟବଳ ସଜକଲେ ଲକ୍ଷେ ରାଜାଙ୍କର ।
ଆନନ୍ଦ ଗୋଳରେ ନିଶି ବେଗେ ଗଲା ପାହି
ପୂର୍ବ ଦିଗରେ ଉଦୟ ହେଲେ ସୂର୍ଯ୍ୟ ସାଇଁ ।
ସ୍ନାନ ତର୍ପଣ ସାରିଣ ବଶିଷ୍ଠ ଆସିଲେ
ଭରତ ନିତ୍ୟକର୍ମ ବେଗେଣ ସାରିଲେ ।
ଶ୍ୱେତହସ୍ତୀ ଉପରେ ଅମାରି ଟଣାହେଲା
ଦିବ୍ୟରଥ ସାରିଣ ସୁମନ୍ତ୍ର ଆଣିଲା ।
ଅନୁକୂଳ କରିଣ ମୁନି ହସ୍ତୀପରେ ବସି
ଶୁଭ ଅନୁକୂଳରେ ଭରତ ବଳେ ଆସି ।
ରାଜହଂସ ପାରୁଆ ଉଦଳିଆ ପକ୍ଷୀ
ଦଧିମାଛ ପୂର୍ଣ୍ଣକୁମ୍ଭ ନଟକାସ ଦେଖି ।

ରାମ ନାମ ସୁମରିଣ ଭରତ ରଥେ ବସି
ପାତ୍ରମନ୍ତ୍ରୀ ମଙ୍ଗଳ ଆଳତି ଦେଲେ ଆସି ।
ହୁଳହୁଳି ରାମତାଳି ଶବଦ ପଡ଼ିଲା
ସୁମନ୍ତ୍ର ସାରଥି ହୋଇ ରଥରେ ବସିଲା ।
ବାର ଯୋଡ଼ା ଅଶ୍ୱ ଯେ ରଥରେ ଯୋଚିଅଛି
ବର୍ଣ୍ଣିଲେ ଦଶ ପୁଣ ବହିମିତେ ଯେଣି ।
ତେଜବନ୍ତ ଅଶ୍ୱ ମନ୍ତ୍ରୀ ବାଛିଣ ଯୋଚିଲା
ପିତାଙ୍କ ରଥେ ଭରତ ନିଷ୍ଟେ ବସିଲା ।
କଣିଅର ଧ୍ୱଜ ଯାନ ସେ ରଥର ନାମ
କନକ ସୁବର୍ଣ୍ଣ ପ୍ରାୟ ହୋଇଅଛି କାମ ।
ସେ ରଥର ଗାରିମା ଗୋ ଦେବୀ ଉମା ଶୁଣ
ତହିଁ ବସି ଯୁଦ୍ଧ କଲେ ଦେବତା ହାରି ପୁଣ
ସେହି ରଥେ ବସିକରି ଦଶରଥ ବୀର
ଶମ୍ବରଙ୍କୁ ଜିଣିଲେ ସେ ଯୁଦ୍ଧରେ ଅନ୍ତର୍ଗଲ ।
ସେହି ରଥେ ବସି ଭରତ ଅନୁକୂଳ କଲା
ଧନୁଶର ଧରି ବକ୍ର ବାଟକୁ ଧରିଲା ।
ରାଜବେଶ ଛାଡ଼ିକରି ସିଂହାସନେ ବସି
ଯତି ବେଶ ପିନ୍ଧି ବୀର ହୋଇଛି ସନ୍ନ୍ୟାସୀ ।
ଶ୍ୱେତ ହସ୍ତୀ ଉପରେ ବଶିଷ୍ଠ ବସିଥିଲେ
ଅନୁକୂଳ ବେଳ ଜାଣି ହସ୍ତୀ ଚାଳିଦେଲେ ।
ତାଙ୍କର ପଛେ ରଥ ସୁମନ୍ତ୍ର ଚାଳିଦେଲା
ରାମତାଳି ହୁଳହୁଳି ଶବଦ ପଡ଼ିଲା ।
ନଗ୍ରରୁ ବାହାର ହୋଇ ପଡ଼ାରେ ଯାଇଁ ମିଳି
ଲକ୍ଷେ ରଜା ରଥେ ସଜ କରିଣ ବାହାରି ।
ଲଟା କଟା ବାଟେ ଯେ ହୋଇଲେ ପରବେଶ
ଆଗରେ ବଶିଷ୍ଠ ପଛେ ଦଶରଥ ଶିଷ୍ୟ ।
ତାଙ୍କ ପଛେ ରାଜାମାନେ ରଥରେ ବସି ପୁଣ
ତହିଁପଛେ ହସ୍ତୀ ଘୋଡ଼ା ଗଲେକ ଚଳିଣ ।
ତହିଁ ପଛେ ପଦାତି ବଳ ଅପ୍ରମିତ
ତହିଁ ପଛେ ସରଦାର ସେନାପତି ଯୁଥ ।
ରାଜାମାନଙ୍କ ଆଗରେ ବାଜେ ବୀର ବାଜା
ଟମକ କାହାଳୀରେ ନେଇଲା ଦୁନ୍ଦୁଭା ।
ରଥଙ୍କର ଘୋଷ ରବ ବାଜାଣ ଶବଦ
ପ୍ରଳୟ କାଳରେ କି ମାଡ଼ିଲା ସମୁଦ୍ର ।
ପୃଥ୍ୱୀ ଦୁଲୁ ଦୁଲୁ ଦେଖି ବାସୁକୀ ଭୟକଲା
ଗୁଡ଼ିବ ମୁଁ ମସ୍ତ ବୋଲି ମନେ ବିଚାରିଲା ।

ସ୍ୱର୍ଗର ଦେବତାମାନେ ଦେଖିଲେ ସ୍ୱର୍ଗେଯାଇ
ତିରିଶ ଯୂଣଯା ଏ ରଥ ଉଚାକାରେ ଥୁଇ ।
ଯାଅ ଯାଅ ଆସ ଆସ ଉଚ୍ଚେ ଡାକ ପୁଣି
ଗହଳରେ ଯନ୍ତାଯନ୍ତ ହୋଇଲେ ସଇନ ।
ଉଜମା ଦେବାରୁ ଲଗିଲା ବହୁତ ହୁଳା
କେହୁ ବନେ ଛାଡ କେହୁ ଶୋଇଛନ୍ତି ମେଳ
ଶ୍ୱେତହସ୍ତୀ ଉପରୁ ବଶିଷ୍ଠ ଓହ୍ଲାଇଲେ
କାମଧେନୁ ଗୋଟିକୁ ସେ ସୁମରଣା କଲେ ।
ନାନାଦ୍ରବ୍ୟ ମିଳଇ ତିନ ମୁକାମରେ
ବାଣ୍ଡି ତଣ୍ଡୁଳ ଡାଲି କାଠ ଯେ ତତ୍‌କ୍ଷଣରେ
ସମସ୍ତେ କଲେ ରନ୍ଧା ଯେ ଯାହାର ଇଚ୍ଛା
ସନ୍ଧ୍ୟାବେଳ ସରିକ ଅଯୋଧ୍ୟା ହେଲା ତୁଚ୍ଛା ।
ତିରିଶ ଯୂଣରେ ରହିଲେ ରାଜାଗଣ
ଉଜମା ଶେଷରେ ମିଳଲେ ସର୍ବେ ପୁଣ ।
ସର୍ବଜନେ ଭୋଜନରେ ସନ୍ତୋଷ ହୋଇଲେ
ରାଜାମାନଙ୍କ ଯୋଗାଣ ଯେପରି ସର୍ବକାଳେ ।
ରାତ୍ରା ଘରମାନ କରି ରାଜା ଯେ ରହିଲେ
ଭୋଜନ ମଣୋହି ସାରି ନିଶ୍ଚେ ନିଦ୍ରାଗଲେ
ଶର୍ବରୀ ଶେଷେ ରାଜାଏ ନିତ୍ୟକର୍ମ ସାରି
ପଥ ବାହିଗଲେ ସେ ରଥରେ ଚଢିକରି ।
ବଂଶାଣି ବଜାଇ ତିନଠାରୁ ଉଠିଗଲେ
ଦ୍ୱିତୀୟ ଦିନ ତିନ ମୁକାମ ସେହି କଲେ ।
କାମଧେନୁ ସୁମରଣା ବଶିଷ୍ଠେ କରନ୍ତି
ଗାଈରେ ଅନେକ ପଦାର୍ଥ ମିଳେ ସମସ୍ତେ
ଯେ ଶାନ୍ତି ।
ଏହି ପ୍ରାୟେ ଦଶଦିନ ଦଶରାତ୍ର ଗଲେ
ଋଷ୍ୟମୁକ ପର୍ବତରେ ପ୍ରବେଶ ହୋଇଲେ ।
ଗିରିର ଚତୁପାର୍ଶ୍ୱ ଘେରିଣ ରହିଲେ
ଲକ୍ଷେ କପଡ଼ା ଟାଣିଲେ ଗିରିର ଉପରେ ।
ଶବଦରେ ମେରୁଗିରି ଚମକ ପଡ଼ିଲା
କିଷ୍କିନ୍ଧ୍ୟା କଟକରେ ତରାସ ଲଗିଲା ।
କେ ବୋଲଇ ରାଜ୍ୟ ଯେ ହୋଇଅଛି ମେଳ
ଶତ୍ରୁ ଜବା ଉପଗତ ଆସି ଏଥି ହେଲା ।
କେ ବୋଲଇ ରାବଣ ବାହିଲା ଏହି ଥାଟ
କେ ବୋଲଇ ଶ୍ରୀରାମକୁ ମାଇଲା
ଦୈତ୍ୟଆଣ୍ଡ ।

ସମସ୍ତଙ୍କ ମାରି ଅବା କିଷ୍କିନ୍ଧ୍ୟା ଅଇଲା
ଏ ନଗ୍ରକୁ ନଷ୍ଟପ୍ରାୟ ଉପାଡ଼ିବ ଭଲ ।
କେ ବୋଲଇ କେଉଁରାଜା ବାହିଲା ଏଥି ବଳ
ଅମ୍ଭମାନଙ୍କର ଯେ ପୂରିଲା ଏଥି କାଳ ।
ଏତେ ବୋଲିଣ ଲୋକେ ଧୁଅନ୍ତି କାତର
ବାଦ୍ୟର ନିଶାଣରେ କମ୍ପେ ତିନିପୁର ।
ବହୁତ ଚନ୍ଦ୍ର ପାପରେ ଆଲୋକମୟ ଦିଶି
ଚର ଜଣାଇଲା ତାରା ରାଣୀର ପାଶେ ଆସି ।
ବୋଇଲା ଯେ କିଷ୍କିନ୍ଧ୍ୟା ଠାକୁରାଣୀ ଶୁଣ
ପରଥାଟ ରାଜ୍ୟରେ ପ୍ରବେଶ ହେଲା ଜାଣ ।
ଦୁଇଗୋଟି ଯତି ଯେ ଅଛନ୍ତି ସରଦାର
ତାଙ୍କ ତାବେ ଲକ୍ଷେ ରାଜା ଅଛନ୍ତି ଆଗୁଆର
ରଥୀ ଘୋଡ଼ା ସୈନ୍ୟ ଯେ କଳନା ନ ଯାଇ
ବାରଯୂଣ ପରିଯନ୍ତେ ହୋଇଛନ୍ତି ଥୁଇ ।
ପଦାରେ ଷଡ଼ଯୂଣ ଜଙ୍ଗଲେ ଷଡ଼ଯୂଣ
ଋଷ୍ୟମୁକ ଘେରିଣ ରହିଲେ ସୈନ୍ୟ ପୁଣ ।
ହଟାଗ୍ରି ବଜାଗ୍ରି ଯେ ଦୋକାମା ବହୁତ
ହାଟ କରିଣ ଭକ୍ଷ କରନ୍ତି ସର୍ବଲୋକ ।
ଆଉ କଥା ତାଙ୍କର କିଛି ନ ଶୁଣିଲି
ଯତିଙ୍କର ମୁଖରୁ ଯେ ଏକଥା ଶୁଣିଲି ।
ସାନ ଯତି ବୋଇଲା ସୈନ୍ୟଙ୍କୁ ରହି ପୁଣ
ନଗ୍ରରେ ନ ପଶ ଯେ ଆମ୍ଭର ଏ କଥା ଜାଣ
ବାହାରେ ବାହାରେ ଆମ୍ଭେ ରହିଣ ଚଳିଯିବା
ନଗ୍ରର ସୀମାନ୍ତକୁ ବାହାର ନ ଯିବା ।
ଏହା ଶୁଣିଣ ମୁଁ ସେଠାରୁ ଅଇଲି
ତୁମ୍ଭଠାରେ ଆସି ମୁହିଁ ବାରତା କହିଲି ।
ତାରା ମହାଦେଈ ଯେ ଶୁଣିଣ ବୋଇଲା
କେଉଁ ଦେଶୁ ଅଇଲେ କେଣିକି ଯିବେ ପର
ପାଞ୍ଚ ଜଣ ତୁମ୍ଭେ ଯେ ସଙ୍ଗ ହୋଇ ଯିବ
କେଉଁଠାରୁ ଅଇଲେ କେଣେ ଯିବେ ପଚାରିବ
ଶୁଣିକରି ପାଞ୍ଚଜଣ ବେଗହୋଇ ଗଲେ
ସାନ ଯତିଙ୍କ ପାଶରେ ପ୍ରବେଶ ହୋଇଲେ ।
ପଚାରିଲେ କେଉଁଦେଶୁ ଆସିଅଛ ପୁଣ
କେଉଁଠାକୁ ଯିବାକୁ ହେ କରୁଛ ଗମନ ।
ଭରତ ବୀର ବୋଲେ ତୁମ୍ଭେ ଶୁଣ ଅନୁଚର
ଅଯୋଧ୍ୟା ଦେଶରେ ଯେ ଅଟେ ମୋର ଘର

ଦଶରଥ ନ ମରେ ସେ ରାଜ୍ୟର ନୃପତି
ସାତଶ ପଚ୍ଚଶ ରାଣୀ ତାଙ୍କ ପାଦେ ଖଟିଥାନ୍ତି
ତିନ ରାଣୀ ତାଙ୍କର ଅଟନ୍ତି ଜ୍ୟେଷ୍ଠ ପୁଣ
ତିନରାଣୀଠାରୁ ଜାତ ଚାରି ଯେ ନନ୍ଦନ ।
ଜ୍ୟେଷ୍ଠ ଅଟେ ଶ୍ରୀରାମ କନିଷ୍ଠ ଶତ୍ରୁଘ୍ନ
ଭରତ ଲକ୍ଷ୍ମଣ ଦୁହେଁ ଯେ ଅଟନ୍ତି ମଧ୍ୟମାନ ।
ବଡ ପାଟରାଣୀ ଯେ କୌଶଲ୍ୟା ତାଙ୍କର
କଉଶଲ୍ୟାଠାରୁ ଜାତ ଶ୍ରୀରାମ ଠାକୁର ।
କୈକେୟୀଠାରୁଭରତସୁମିତ୍ରାଠାରୁଲକ୍ଷ୍ମଣଶତ୍ରୁଘ୍ନ
ଚାରିଭାଇ ଏରୂପେ ତିନ ମାତାଠାରୁ ଜନ୍ମ ।
ଭରତର ଜନନୀ ଯେ କୈକେୟୀ ନାମେ ରାଣୀ
ସତ୍ୟ କରାଇଲା ପୂର୍ବ ମୋତେ ନୃପମଣି ।
ଶ୍ରୀରାମ ଲକ୍ଷ୍ମଣ ସୀତା ବନବାସେ ଯିବେ
ଚଉଦ ବରଷ ଗଲେ ରାଜ୍ୟକୁ ଆସିବେ ।
ଏକଥା ଶୁଣି ଶ୍ରୀରାମ କ୍ରୋଧଭର ହେଲେ
ତିନଜଣ ମେଳ ହୋଇ ବନବାସ ଗଲେ ।
ଶ୍ରୀରାମ ଆସିବାରେ ବାଉଳନେ ପିତା ମଲେ
ଭରତବୀର ଯାଇଣ ଅଜାଘରେ ଥିଲେ ।
ବାରତା ପାଇବାରୁ ସେ ଶ୍ରୀରାମ ପାଶେଗଲେ
ପିତା ସତ୍ୟପାଳି ଦେଶକୁ ସେ ନ ଫେରିଲେ
ଭରତ ରାଜା ନୋହିଲେ ଅଯୋଧ୍ୟା ନଗରେ
ଚଉଦ ବରଷ ଗଲା ଯେ ଏଥିର ଭିତରେ ।
ଶ୍ରୀରାମ ଅଭିଷେକ ବୋଲି ଭରତ ମନ କଲା
ଲକ୍ଷେକ ରାଜାଙ୍କୁ ବରଣ କରଣ ଆଣିଲା ।
ଚଉଦ ବରଷ ପୂରି ହେଲା ଷଣ୍ଢ ମାସ ତ
ଲକ୍ଷେରଜା ଆଦୋଳସହିଲ ମୋରନାମଭରତ
ଆଜକୁ ଚଉଦ ଦିବସ ପୂର୍ଣ୍ଣ ହେଲା
ପବନସୁତ ଗନ୍ଧମାର୍ଦ୍ଦନ ଯାଇଥିଲା ।
ଅଯୋଧ୍ୟା ବାଟରେ ସେ ଯେ ଅଇଲାକପିବର
ଅନ୍ଧାର ଭଜେ ମୁଁ ଯେ କରିଥିଲି ବାହାର ।
ତାର ବଚନକୁ ବାରି ବଚନ ମୁଁ ଦେଲି
ବାସୁଦେବ ରାଣ ଯେ ଉଚ୍ଚରେ ବୋଇଲି ।
ମୁଁ ରାଣ ଦେବାରୁ ହନୁ ତଳକୁ ଅଇଲା
ରାମ ସଙ୍ଗେ ରାବଣର ଯୁଦ୍ଧ ବଡ଼ ହେଲା ।
ରାମ ରାବଣର ଲାଗିଛି ବଡ଼ କଳି
ଲକ୍ଷ୍ମଣେ ଶକ୍ତି ମାଇଲା ରାବଣେଶ୍ୱର ବଳୀ ।

ସେ ଶରରେ ପ୍ରାଣ ହରାଇଲା ସଞ୍ଜିବିନୀ
ମୌଷଧି ନେବାପାଇଁ ଆସିଥିଲା ଏଥି ।
ଏତେ କହି ଧୀରେ ହନୁ ବନ୍ଦିଣ ଗଲା
ଲକ୍ଷେ ରାଜାଙ୍କୁ ଯାଇ କହିଲି ମୁଁ ପରା ।
ରାମାୟଣ ଯୁଦ୍ଧଦେଖିବାକୁ ସମସ୍ତେମନକଲେ
ଜଙ୍ଗଲ କଟାଇଣ ସମସ୍ତେ ଅଇଲେ ।
ମୂର୍ଚ୍ଛି ଅଇଲ ଯେ ଅଇଲେ ଗୁରୁ ମୋର
ମୋ ନାମ ଭରତ ଶୁଣ ହେ ହନୁଚର ।
ଶ୍ରୀରାମଚନ୍ଦ୍ରଙ୍କର ଚଳଣାଇ ମୂର୍ଚ୍ଛି
ମୋ ମାତା ସକାଶୁ ରାମ ବନକୁ ଆସିଇ ।
ସେ ଦୋଷ ମୋର କ୍ଷମା ହେବା ସକାଶରେ
ଲକ୍ଷେ ରାଜା ଘେନି ମୁଁ ଯାଉଛି ମଙ୍ଗତରେ ।
କନିଷ୍ଠ ଭ୍ରାତା ଶତ୍ରୁଘ୍ନ ରାଜ୍ୟରେ ରହିଲ
କେତେଦୂର ପଥ ଲଙ୍କା ଆହୁରି ଅଛଇ ।
ଦେଖ ଖୋଷ କାହାରି ପାଶକୁ ନ ଯିବ
ରାମଙ୍କୁ ଦେଖିଲେ ମୋ ର ଚିନ୍ତା ଛୁଟାଇବ ।
ଶୁଣିକରି ବୀର ଯେ କହିଲେ କରଯୋଡ଼ି
କିଷ୍କିନ୍ଧ୍ୟା କଟକ ଏହି ଯେ ନାମ ପୁରୀ ।
ବାଳିବୀର ଏଥିରେ ନୃପତି ହୋଇଥିଲା
ସାନଭାଇ ସୁଗ୍ରୀବକୁ ସେ ଘଉଡ଼ିଦେଲା ।
ସହସ୍ରେ ବରଷ ସେ ରହିଲା ଦୁଃଖ ସହି
ଶ୍ରୀରାମ ସଙ୍ଗତେ ମିତ୍ର ସୁଗ୍ରୀବର ହୋଇ ।
ମଇତ୍ର ଛଳେ ରାମ ବାଳିକ ମାଇଲେ
କିଷ୍କିନ୍ଧ୍ୟା କଟକରେ ସୁଗ୍ରୀବ ରାଜା କଲେ ।
ବାଳିର ଭାରିଯା ଯେ ତାରାନାମେ ସତୀ
ସୁଗ୍ରୀବର ତଳରେ ରଖିଲେ ରଘୁପତି ।
ସାଧବୀ ବୋଲି ତାକୁ ପଞ୍ଚକନ୍ୟାରେଲେଖିଲେ
ଅହଲ୍ୟା ସତୀ ସଙ୍ଗରେ ତାହାକୁ ଗଣିଲେ ।
ଅଙ୍ଗଦ ପୁତ୍ରକୁ ତାର ଯୁବରାଜ କଲେ
ସୈନ୍ୟବଳ ଘେନିଣଲଙ୍କାଗଡ଼କୁ ବିଜେକଲେ
ରାବଣ ସଙ୍ଗରେ ଯୁଦ୍ଧ କରନ୍ତି ସେ ପୁଣ
ଯେଉଁ ହନୁକୁ ଦେଖିଲେ ସୁଗ୍ରୀବ ଭଣଜା ସେ
ଜାଣ ।
ସୁଗ୍ରୀବ ପାଟରାଣୀ ଆମ୍ଭଙ୍କୁ ଭେଟ ଦେଲେ
କେଉଁଠାରୁ ଅଇଲେ ସେ ବାରତା
ବୁଝା ଭଲେ ।

ଏତେକ କହି ଦୂତେ ବାହୁଡ଼ି ଗଲେ ପଣ
ତାର ମହାଦେଈ ଆଗରେ କହେ ସବୁ ପୁଣ
ଶୁଣିକରି ମହାଦେଈ ଦୂତଙ୍କୁ କହିଲେ
ଦୁଇ ଯତିଙ୍କି ଡାକିଆଣ ବୋଲିଣ ବୋଇଲେ
ଶୁଣିକରି ଦୂତମାନେ ବେଗ ହୋଇଗଲେ
ଭରତର ଚରଣ ତଳେ ବଡ଼ଧାଳି ଶୋଇଲେ
ବୋଇଲେ ମହାଦେଈ ଭେଦିଲେ ଆମ୍ଭଙ୍କୁ
ଦୁଇ ଯତି ଗଲେ ସେ ଭେଟିବେ ତୁମ୍ଭଙ୍କୁ ।
ଭରତ ବୋଇଲେ ତୁମ୍ଭେ ଯାଅ ବେଗ ହୋଇ
ପ୍ରଜାଙ୍କ ଜଞ୍ଜାଳ ସରିଲେ ଯିବୁଁ ପଛ ହୋଇ
ପାଟମହାଦେଈଙ୍କି କହିରେ ତୁମ୍ଭେ ଯାଇ
ବୋଲିବ ଜଞ୍ଜାଳ ସାରି ଆସିବେଟି ସେହି ।
ଶୁଣିକରି ଦୂତମାନେ ବେଗ ହୋଇଗଲେ
ଅନ୍ତଃପୁର ମଧ୍ୟେ ସେହି ପ୍ରବେଶ ହୋଇଲେ
କରଯୋଡ଼ି ଜଣାଇଲେ ଶୁଣ କଷ୍ଟିନ୍ଧ୍ୟା
ପାଟରାଣୀ
ଶୁଣିବା ହେଉ ଆହେ ଏ ପୁର ଠାକୁରାଣୀ ।
ଶ୍ରୀରାମର ଭାଇ ଯେ ଅଟଇ ସାନୁଜ
ଆସିବାକୁ କହିବାରୁ ସେ କହେ ନାନା ଛନ୍ଦ
ବୋଇଲେ କେମନ୍ତେ ମୁଁ ତାଙ୍କ ପୁରକୁ ଯିବି
ରାଜାର ନବରେ ମୁଁ ଯେ କେମନ୍ତେ ପଶିବି ।
ଲୋକେ ଶୁଣିଲେ ମୋତେ କରିବେ ବହୁ ନିନ୍ଦ
ଲଜ୍ଜା ସ୍ଥାନକୁ ମୁଁ ନ ଯିବି ତୁ ଯାଇ କହସି
ଆମ୍ଭେ ବୋଇଲୁ ପାଟରାଣୀ ଦେଖିବେ ତୁମ୍ଭଙ୍କୁ
ରାଜନ ସେ ହେବ ଯିନା ଯିବ ହେ ସେଠାକୁ
ସେ ବୋଇଲେ ତୁମ୍ଭେ ଯେବେ ବଳାଇଲ
ମୋତେ
ଯିବଇଁ କହଇଁ କହ ଯାଇ ତାଙ୍କର ଅଗ୍ରତେ
ଲକ୍ଷେ ରାଜା ଘେନି ମୁଁ ଯେ ଯାଏ
ଲଙ୍କାଗଡ଼
ଏମାନଙ୍କ ଜଞ୍ଜାଳ ଅଟଇ ମୋତେ ଗାଢ଼ ।
ରାଜାଙ୍କ ଜଞ୍ଜାଳ ସାରି ମୁଁ ଯିବି ନର୍ଜନରେ
ସମସ୍ତେ ଶୟନ କଲେ ସେହି ଭୁବନରେ ।
ମୋର ପାଇଁ ଯେବେ ସହିବେ ଦୁଃଖ ପୁଣ
ଅନିଦ୍ରା ହୋଇ ଯେବେ ଚେତାରେ ଥିବେ
ଜାଣ ।

କାହାର ଆଗରେ କଥା ପ୍ରକଟ ନୋହିବ
ରାମ ସୁଗ୍ରୀବ ଜାଣିଲେ ମରଣ ଚନ୍ତାହେବ ।
ନିଶ୍ଚୟ ଆସିବେ ସେ କହିଦେଲେ ମୋତେ
ନର୍ଜନରେ ଭଜୟ କରିବେ ରାମ ଭ୍ରାତେ ।
ଶୁଣିକରି ତାରବନ୍ଧି ସନ୍ତୋଷ ହୋଇଲା
ଗୃହ ଦୁଆରରେ ଲୋକ ସେ ଜଗାଇଲା ।
ବୋଇଲେ ରାମ ଭାଇ ଭରତକୁ ଦେବ ଛାଡ଼ି
ଗୃହ ଦ୍ୱାରେ ଜାଳିଲା ଦୀପ ଯେ ବହୁତ ।
ଦାସୀଙ୍କି ଡ଼ାକିଣ ସୁବେଶ ଆପେ ହେଲା
ସୁବାସ ଲଗାଇଣ ଜୁଡ଼ା ଯେ ବାନ୍ଧିଲା ।
ଜୁଡ଼ା ଗୃହ ପାଖରେ ଚୌଦ୍ରଶ ମୁଣ୍ଡି ଝରା
ଜୁଡ଼ା ଗୃହପ ଖେ ସେବନ୍ତି ମଲ୍ଲୀ ଜାଇବେଡ଼ା
ମସ୍ତକର ଉପରେ ସେ ଅଳକା ବାନ୍ଧିଲା
ମଥାମଣି ଝରା ତନ୍ତିର ତଳେ ଦେଲା ।
କର୍ଣ୍ଣରେ ମଲ୍ଲୀକଢ଼ ବାପ ଯେ ଫିରିଫିରା
ଚକ୍ର ଫାସିଆ ଲଗାନ୍ତେ କର୍ଣ୍ଣପାଏ ତୋଷା ।
ନାକରେ ନାକଚଣା ଯେ ଫୁଲଗୁଣା ନୋଥ
ଚନ୍ଦ୍ରମା ପ୍ରାୟେକ ଯେ ଝଟକେ ସଖି ମୁଖ ।
ହୀରା ମାଣିକ୍ୟ ଚୂଡ଼ି ହସ୍ତରେ ଶୋଭାବନ
ଆଗଝଡ଼ୁ କଙ୍କଣ ଝଟଇ ମନୋରମ ।
ତାଡ଼ ବନ୍ଦ ବାହୁଟି ଦୁଇବାହେ ଶୋହେ
ଗୁନ୍ଥିଲେ ମୁନିମାନେ ପଡ଼ିବେ ଯେ ମୋହେ ।
ଅଣ୍ଟାରେ ସୁନା ସୁତା କାଞ୍ଚଣି ଶୋଭାପାଏ
ଝୁଣ୍ଟିଆ ପାହୁଡ଼ ନୂପୁର ଦେନି ପାୟେ ।
ଅମଳାଣ ଶାଢ଼ୀ ପିନ୍ଧି ସେ ସୁକେଶୀ
ଖଞ୍ଜିଆ ଷୀରୋଦ୍ର ଉପରେ ନେଇ ରଖି ।
ମସ୍ତକରେ ସିନ୍ଦୁର ନୟନେ କଜ୍ଜ୍ୱଳ
ଚରଣେ ଅଳତା ଯେସନେ ବିମ୍ବଫଳ ।
ସୁବର୍ଣ୍ଣ ପଲଙ୍କ ଉପରେ ବଜେ କଲା
ଖଟଯ ମାଣ୍ଡି ପକାଇ ଆଉଜି ବସିଲା ।
କର୍ପୂର ବଡ଼ିଆ ଯେ ତାମ୍ବୁଲଭୁଞ୍ଜେ ନାରୀ
ଦନ୍ତ ପନ୍ତି ଯେସନେ ଡାଳିମ୍ବ ମଞ୍ଜି ସରି ।
ଦାସୀକି ବୋଇଲା ଲୋ ବେଗେ ହୋଇ ଯାଅ
ସଞ୍ଚଣୀ ରାମାକୁ ବେଶ ଯେ କରାଅ ।
ମୋହର ସାଦୃଶରେ ବେଶ କରାଇବ
ବେଶ କରି ବେଗେ ମୋ ପାଶକୁ ଆଣିବ ।

ଶୁଣିଣ ଦାସୀଗଣ ବେଗେ ଚଳିଗଲେ
ସୁଗ୍ରୀବ ନାରୀଙ୍କ ବେଶ କରିଣ ଆଣିଲେ ।
ରତ୍ନ ପଲଙ୍କ ଉପରେ ବସାଇଲେ ନେଇ
ଇନ୍ଦ୍ରଙ୍କର ନାରୀ ପ୍ରାୟ ସେବିତ ଦିଶଇ ।
ସେଠାରୁ ତାର ସୁନ୍ଦରୀ ଦାସୀଙ୍କି ଆଜ୍ଞା ଦେଲା
ମାୟା ସୀତା ବେଶ କରି ଆଣିଲେ ବୋଇଲା
ଶତେକ ଦାସୀ ଯେ ବେଗ ହୋଇଗଲେ
ମାୟା ସୀତାକୁ ବେଶ ମାର୍ଜଣା କରାଇଲେ ।
କମଳାଙ୍କ ସଦୃଶ ଦିଶେ ମାୟା ନାରୀ
କରୁଣ ପୁ ରୁ ଅଇଲା ଦିଶେ ଯେ ସୁନ୍ଦରୀ ।
ବଶ କରି ନେଇ ତାର ସଖୀ ପାଶେ ଦେଲା
ତାରବର୍ଣ୍ଣ ସୁନ୍ଦରୀ ଦେଖି ତୋଷ ହେଲା ।
ରତ୍ନ ପଲଙ୍କ ପରେ ବସାଇଲେ ପୁଣ
କର୍ପୂର ତାମ୍ବୂଳ ବଡ଼ଆ ଭୁଞ୍ଜେ ସଖୀ ଜାଣ ।
ଉପରେ ଚନ୍ଦ୍ରାତପ ଟଣାଇ ବଚିତ୍ର
ତଳେ ପାହାଡ଼ା କଲା ସ୍ଫଟିକ ନାମେ କାନ୍ତ ।
ସ୍ୱରିକଣ୍ଠରେ ଚନ୍ଦ୍ରାତପ ଟଣାଇଲା
ସୁବାସିତ ଫୁଲମାନ ତଳରେ ସିଞ୍ଚିଲା ।
ଚୂଆଚନ୍ଦନ ଯେ ଅତର ନାନା ବାସ
ଈଶ୍ୱର ପାର୍ବତୀଙ୍କର ଯେସନେ କୈଳାସ ।
ଏମନ୍ତେ ପୁର ରଚଣ ଦାସୀଙ୍କ ଆଜ୍ଞା ଦେଲା
ତିନି ଶତ ଦାସୀ ବେଶ ହୁଅନ୍ତେ ବୋଇଲା ।
ରାଣୀର ବଚନରେ ସମସ୍ତେ ବେଶ ହେଲେ
ସୁଭବଶ ହୋଇ ରାଣୀ ସମ୍ମୁଖରେ ମିଳିଲେ ।
ପ.ଖର ମଣ୍ଡପ ଜଗତରେ ଯାଇ
ତିନି ଶତ ଦାସୀ ବସେ ସୁବେଶିତ ହୋଇ ।
ମେଲା ମଣ୍ଡପ ପରେ ଶତେକ ନର ନାରୀ
ବେଶ ହୋଇ ସୁନ୍ଦରୀ ବସେ ତହିଁରେ ଘେରି
ନୃତ୍ୟ ଗୀତ ଆଳାପ ଯେ କଲେକ ସେଠାରେ
ବୀଣା ବଂଶୀ ମର୍ଦ୍ଦଳ ନାନା ରଙ୍ଗେ ସ୍ୱର ।
ଦାସୀଗଣ ଜଗତ ମଣ୍ଡପ ପରେ ବସି
ଚଉପାଶେ ଦୀପାବଳି ଜଳେ ଉଜ୍ଜ୍ୱଳଟି ।
ଗାନ୍ଧାର ରାଗରେ ଯେ କରେ ନୃତ୍ୟଗୀତ
ଶୋଭା ପାଉଅଛି ଅପସରାଙ୍କ ସଞ୍ଜାତ ।
ଅନ୍ତଃପୁରେ ତାର ରତ୍ନ ପଲଙ୍କେ ଅଛି ବସି
ରତ୍ନ ଖଟ ଉପରେ ବସିଛି ଶୁଭ୍ରକେଶୀ ।

ମାୟା ସୀତା ଯେ ରତ୍ନ ଖଟପରେ ବସି
ଗେ-ାବଳୀ ରତ୍ନ ପଲଙ୍କରେ ବସି ।
ଧୂପଦୀପ ଆଳତି ବନ୍ଦାପନା ବିଧି
ସୁବର୍ଣ୍ଣ ଥାଳୀରେ ଅକ୍ଷତ କରି ସିଦ୍ଧି ।
ଥୋଇଣ ନୃତ୍ୟଗୀତ ଆରମ୍ଭ ସେ କରି
ଅପସରାମ ନେ ନାଚୁଛନ୍ତି ଭଲ ଭଳି ।
ବୀଣା ଝୀଞ୍ଜାର ଯେ ମର୍ଦ୍ଦଳ ଗିନି ତାଳ
ବଜାନ୍ତି ନାରୀମାନେ କରନ୍ତି ନୃତ୍ୟ ଗୋଳ ।
ଇନ୍ଦ୍ରଙ୍କର ପୁରେ ଯେସନେ ଉତ୍ସବ ହେଉଥାଇ
ସେହିରୂପେ ତାର ପୁରେ ନୃତ୍ୟଗୀତ ହୋଇ
ତିନି ଦ୍ୱାରେ ନାରୀମାନେ ଜଗିଛନ୍ତି ବସି
ବେନ ଯନ୍ତ ଆସିଲେ ନେବେ ତାର କଣ୍ଠ ।
ସିଂହଦ୍ୱାରେ ଦ୍ୱାରପାଳ ରହିଛନ୍ତି ପୁଣ
ପାଟ ମହାଦେଈ ଆଜ୍ଞା ଦେଇଛନ୍ତି ଜାଣ ।
ବେନ ଯନ୍ତ ଆସିଲେ ଦ୍ୱାର ଛାଡ଼ି ଦେବେ
କେହି କେବେ ତାହାଙ୍କ ବିରୋଧ ନ କରିବେ
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ତାର ନାମେ କନ୍ୟା ମନ୍ତ୍ରୀଙ୍କୁ ଆଣି ବରି ।
ବୋଇଲେ ତୁମ୍ଭେ ବେଗେ ପ୍ରଜାବଳ ଘେନ
ପ୍ରଜାଙ୍କୁ ଜଗିରହ ବୋଇଲେକ ପୁଣି ।
ଶୁଣିଣ ମନ୍ତ୍ରୀବର ବେଗ ହୋଇଗଲେ
ସୈନ୍ୟବଳ ସାଜିଣ ରାଜ୍ୟରେ ପାଇଲେ ।
ଦିହୁଡ଼ି ଚନ୍ଦ୍ରାଦୀପ ହୁଳା ଲଗାଇଣ
ଗଡ଼ ଗଡ଼ ଶବଦ ତହିଁରେ ଶୁଭି ଟାଣ ।
ନଗ୍ରର ବାହାରପାଶେ ବେଢ଼ି ସୈନ୍ୟ ରହି
ହାଲୁ ମର୍କଟରେ ଯେ ହୋଇଛନ୍ତି ଛାଇ ।
ଏଥୁ ଅନନ୍ତରେ ଭ୍ରତ ନାମେ ବୀର
ଲକ୍ଷେ ରାଜା ଆନ୍ଦୋଳ ସାରେ ତତପର ।
ସୈନ୍ୟବଳ ହସ୍ତୀ ଅଶ୍ୱ ସର୍ବେ ଭୁଞ୍ଜିବାର
ସମସ୍ତ ଜଞ୍ଜାଳ ଯେ ସାରେ ଭ୍ରତ ବୀର ।
ଚହଳଆ ପହର ଧେଣ୍ଡୁର ଫେରାଇଲା
ଦିହୁଡ଼ି ଚନ୍ଦ୍ରଦୀପ ଜଳେ ବଡ଼ ତୋରା ।
ବୀରବାଦ୍ୟ ନିଶାଣ ବାଜେ ଘୋର ଟାଣେ
ସମସ୍ତେ ଶମ୍ଭୂକରେ ନିଶବଦ ଜନେ ।
କଣିଷ୍ଠଙ୍କୁ ଭ୍ରତ ବୋଲେ ଯିବା ସୁଗ୍ରୀପୁର
ଆମ୍ଭର ଉପକାରୀ ଅଟଇ ସୋଦର ।

ସୁମନ୍ତ୍ରଙ୍କୁ ବୋଇଲେ ରଥ ବେଗେ ଆଣ
ତାରସଖା ପୁର ଯାଏ ଯିବା ଆମ୍ଭେ ପୁଣ ।
ଶୁଣି ମନ୍ତ୍ରୀବର ରଥ ସଜକରି ଆଣି
ବଶିଷ୍ଠ ଭରତ ବୀର ବସିଲେ ତହିଁ ପୁଣି ।
ଷଡ୍ଡୁଢ଼ ଚନ୍ଦ୍ର ଧାପ ରଥ ପରେ ଜାଳ
ବତଶ 'ଅଶ୍ୱ ରଥରେ ଯୋଚିଲା ବେଗ କରି
ବାଗ ଦଉଡ଼ି ଘେନିଣ ରଥ ଚାଳଦେଲା
ଗମନ ମାର୍ଗେ ରଥ ବହିମିଣ ଚଳ ।
କଣ୍ଟିଛିୟା ସିଂହଦ୍ୱାରେ ହେଲା ପରବେଶ
ସେ ଦ୍ୱାରେ ଦ୍ୱାରପାଳ ଅଛନ୍ତି ହୋଇବେଶ
ଭରତ ବଶିଷ୍ଠ ବେନି ରଥରୁ ଓହ୍ଲାଇ
ସିଂହ ଦ୍ୱାରେ ପ୍ରବେଶ ଧୀର ଧୀର ହୋଇ ।
ଖୁଣ୍ଟିଆ ପହଣ୍ଡ ମଣାଇ ଘେନି ଗଲେ
ମେଲା ମଣ୍ଡପରେ ନେଇ ଗୁଡ଼ିଣ ଅଇଲେ ।
ସେଠାରୁ ନଟକାରି ପହଣ୍ଡ ମଣାଇ
ଜଗତି ମଣ୍ଡପ ତଳେ ଗୁଡ଼ିଲେ ତାଙ୍କୁ ନେଇ
ଦାସୀଏ ହେଜି ପହଣ୍ଡ ମଣାଇ ଘେନିଗଲେ
ତାର ମହାଦେଈ ଠାରେ ପ୍ରବେଶ ହୋଇଲେ
କନକ ମଣ୍ଡପରେ ସିଂହାସନ ପରେ
ବଜେକଲେ ବଶିଷ୍ଠ ବ୍ରହ୍ମାଙ୍କ କୁମରେ ।
ରତ୍ନ ପଲଙ୍କ ଉପରେ ବଜେ ଭରତ ବୀର
ଅର୍ଘ୍ୟସ୍ଥାଳୀ ଘେନି ଉଭା ତାର ଭରତରୁ ଗୁମୁର
ଭରତ ବୋଇଲେ ତୁମ୍ଭେ ଜ୍ୟେଷ୍ଠ ରାଣୀ ଶୁଣ
ଗୁରୁ ସିଂହାସନେ ବଜେ କଲେ ଯାଇ ପୁଣ ।
ତାଙ୍କୁ ବନ୍ଦାପନା କରୁ ଅଙ୍ଗଦର ମାତ
ମୁହିଁ ତ ଅଟଇ ସାନ ବୟସରେ ବିହିତ ।
ଶୁଣିଣ ପାଟରାଣୀ ଆନନ୍ଦ ହୋଇଲେ
ବନ୍ଦାପନା ବିଧି ଯାଇଁ ବଶିଷ୍ଠଙ୍କୁ କଲେ ।
ଗୁରୁଙ୍କୁ ଅର୍ଘ୍ୟ ଦେଇ ଧୂପ ଧାପ ଦେଲେ
ଚରଣ ତଳେ ଲୋଟଗାଳି ସେ ଶୋଇଲେ ।
ବଶିଷ୍ଠ ବୋଇଲେ ଗୋ ସାଧବୀ ସତୀ ଶୁଣ
ଶ୍ରୀରାମଚନ୍ଦ୍ର ତୋତେ ଗୋ ଦୟା କଲେ ପୁଣ
ପଞ୍ଚ କନ୍ୟାରେ ସଙ୍ଗେ ଗଣିତା ତୋତେ କଲେ
ଯୁଗେ ଯୁଗେ ତୋରନାମଂଲଖାରେଲେଖିଲେ
ପୁଣି ବର ଦେଲେ ବଇକୁଣ୍ଠ ପୁର ଯିବୁ
ଏଗାର ସହସ୍ର ବର୍ଷ ମଧ୍ୟପୁରେ ଥିବୁ ।

ଶ୍ରୀରାମ ଗଲାବେଳେ ଯିବୁ ସଙ୍ଗତରେ
ବିଶିଷ୍ଟ ଗିରସ୍ତ ପୁଷ ଯିବେ ସଙ୍ଗତରେ ।
ରଘୁନାଥଙ୍କୁ ଦେଖିଲେ ହେବୁ ତୁ ମୁକତ
ସ୍ୱୟଂ ନାରାୟଣ ସେ ଅଟନ୍ତି ରଘୁପତି ।
ଉଠ ଉଠ ଆଗୋ ତୋର ସୁକଲ୍ୟାଣ ହେଉ
ଆମ୍ଭର ପ୍ରସନ୍ନରେ ଦୁଃଖ ନ ରହେ ଆଉ ।
ଉଠିଣ ତାରାବତୀ ମସ୍ତକେ ଦେଲାକର
ଅର୍ଘ୍ୟସ୍ଥାଳୀ ତୋଳିଣ ଧରେ ତାର କର ।
ଭରତଶିରେ ନେଇ ସେ ଦେଲା ଦୁର୍ବାକ୍ଷତ
ଅର୍ଘ୍ୟ ବନ୍ଦାପନାକରେ ଅଙ୍ଗଦର ମାତ ।
ଧୂପ ଧାପ ଦେଇଣ ଆଳତି ପୁଣ କଲା
ନଇଗୁଳ କରି କରଯୋଡ଼ି ଉଭା ହେଲା ।
ଏହି ସମୟରେ ସେ ଆସେ ରେମାନାରୀ
ଅର୍ଘ୍ୟ ବନ୍ଦାପନ ସେ ଯେ ବଶିଷ୍ଠଙ୍କୁ କରି ।
ଧୂପ ଧାପ ଦେଇଣ ଚରଣେ ଓଳଗିଲା
ଦେଖିଣ ବଶିଷ୍ଠ ଋଷି ସୁକଲ୍ୟାଣ କଲା ।
ବୋଇଲେ ସ୍ୱାମୀ ସଙ୍ଗେ ଯିବା ସ୍ୱର୍ଗପୁର
ଶ୍ରୀରାମଙ୍କର ଦାସ ଅଟନ୍ତି ତୋର ବର ।
ସେଠାରେ ସେ ରେମାନାରୀ ଚଳିଣ ଆଇଲା
ଭରତର ଶିରେ ନେଇ ସେ ବନ୍ଦାପନା କଲା ।
ଧୂପ ଧାପ ଦେଇଣ ସେ ମଙ୍ଗଳ ଆଳତି
ବନ୍ଦାପନା କରି ସତୀ ଶିରେ କରଦ୍ୟନ୍ତି ।
ଏହି ସମୟରେ ସେ ଆଇଲେ ମାୟା ସୀତା
ଅର୍ଘ୍ୟସ୍ଥାଳୀ ଘେନି ଉଭା ରାକ୍ଷସ ଦୁହିତା ।
ବଶିଷ୍ଠ ଶିରରେ ସେ ଅର୍ଘ୍ୟ ନେଇ ଦେଲା
ବନ୍ଦାପନା ସାରି ଭରତ ଆଗରେ ମିଳିଲା ।
ଭରତକୁ ବନ୍ଦାପନା କରେ ମାୟାସୀତା
ଧୂପ ଧାପ ମଙ୍ଗଳ ଆଳତି ଯେତେ କଥା ।
ସାରିଣ ମାୟାନାରୀ ଆଗରେ ଉଭା ହେଲେ
ଦେଖିଣ ବଶିଷ୍ଠ ଋଷି ତାରାଙ୍କୁ ପଚାରିଲେ ।
କି ଗୋ ତାରାବତୀ ଏ କି ଅଟେ ଅସମ୍ଭବ
ଏ ଦୁଇ ନାରୀ କିଏ କହ ଗୋ ତୁହି ବେଗ ।
ତାରାବତୀ ବୋଲେ ଶୁଣିବା ହେଉ ଦେବ
ରୋମାନାମେ ବାଳୀ ଏହା ପତି ସେ ସୁଗ୍ରୀବ
ଏହି ନାରୀଗୋଟି ପୁଣ ବଡ଼ ରାଜ୍ୟ କଲା
ରାମଚନ୍ଦ୍ର ଏହାକୁ ନେଇ ସୁଗ୍ରୀବ କୋଳେ ଦେଲା

ଏହୁ ନାସାଗୋଟି ଅଟେ ଶ୍ରୀରାମଙ୍କ ଦାସୀ
ଏହା ସକାଶରେ ରାମ ଲଙ୍କାଗଡ଼ ଧ୍ୱଂସି ।
ବଶିଷ୍ଠ ବୋଇଲେ ଆମ୍ଭ ସୀତାଟିକି ଏହୁ
ଦଶରଥ ରାଜାଙ୍କର ଅଟେ ବଡ଼ ନେହୁ ।
ଏହୁଠାରେ ଆମ୍ଭ ସୀତା ଆସିଣ ରହିଲ
ଯାହାପାଇଁ ଶ୍ରୀରାମ ଲଙ୍କାରେ ଯୁଦ୍ଧ କଲ ।
ଜାନକୀକି ଆଣିଣ ଥୋଇଲେ ତୋର ପୁର
ଶତ୍ରୁ ମାରିବାକୁ ଜବା ହୋଧ ରଘୁବୀର ।
ତାରାବତୀ ବୋଲେ ଦେବଶୁଣ ମୋର ବାଣୀ
ଲଙ୍କା ଗଡ଼ରେ ବିଜୟ କଲେ ରଘୁମଣି ।
ରାବଣର ସଙ୍ଗତେ ଅନେକ ଯୁଦ୍ଧ କଲେ
ଅନେକ ଦଇତ ବଳ ତହିଁ ସଂହାରିଲେ ।
ରାବଣର ଜ୍ୟେଷ୍ଠ ପୁତ୍ର ଅଟେ ଇନ୍ଦ୍ରଜିତ
ବହୁତ କୂଟକପଟ ଜାଣେ ସେ ବୀର ତ ।
ନୋତନ ରାକ୍ଷସର ସିଂହିକା ନାମେ ସୁତ
ତାହାର ଭଉଣୀ ଥିଲା ନିପୁର ମୋହିତ ।
ତାହାକୁ ଡକାଇଲା ରାବଣର ବଳା
ଭାଇ ଭଗ୍ନୀ ଦୁହିଁଙ୍କି ଭେଦିଲା ଅନର୍ଗଳା ।
ପ୍ରୟାଗ ତୀର୍ଥ କୂଳେ ପ୍ରବେଶ ହୋଇଲେ
ବାଞ୍ଛାବଟ ତଳରେ ବାଞ୍ଛା ସେହ୍ନୁ କଲେ ।
ସୀତା ପ୍ରାପ୍ତ ମୁହିଁ ହେବ ମନେ ମନାସିଲା
ରଘୁନାଥ ଚରଣେ ଖଟିବ ମନ କଲା ।
ଅକ୍ଷୟ ହୋଇବ କ୍ଷୟ ନୋହିବ ମୁଁ ପୁଣ
ମାରିଲେ ହାଣିଲେ ମୁଁ ଜୀଇବ ତତକ୍ଷଣ ।
ଏତେ କହିଣ ବାଳୀ ଗଙ୍ଗାରେ ଝାସ ଦେଲା
ତାହାକୁ ସୁଦୟା ଗଙ୍ଗା ତକ୍ଷଣେ ହୋଇଲା ।
ରଥ ଚଢ଼ି ସେଠାରୁ ଅଇଲା ମାୟା ସୀତା
ଲଙ୍କାରେ ପ୍ରବେଶ ନୋତନ ରାକ୍ଷସ ଦୁହିତା
ଦେଖିକରି ଇନ୍ଦ୍ରଜିତ ରଥେ ବସାଇଲା
ବେଶ କରି ତାହାକୁ ରଣଭୂମିକି ନେଲା ।
ରଘୁନାଥଙ୍କ ସମ୍ମୁଖରେ ପକାଇଲା ହାଣି
ପଳାଇଲା ଇନ୍ଦ୍ରଜିତ ଲଙ୍କାଗଡ଼କୁ ପୁଣି ।
ଦେଖି ରଘୁନାଥ ବହୁ କାରୁଣ୍ୟ କରିଲେ
ହନୁମାନକୁ ଶ୍ରୀରାମ ଲଙ୍କାକୁ ଭେଦିଲେ ।
ଅଶୋକ ବନେ ସୀତାଙ୍କୁ ଦେଖି ସେ ଅଇଲା
ରଘୁନାଥଙ୍କ ମନରୁ ଚିନ୍ତା ଛାଡ଼ି ଗଲା ।
ମାୟାସୀତା ଛାଡ଼ିକରି ସୁରଳୟା ଗଲେ
ଦେବତାଏ ଯାଇଣ ବ୍ରହ୍ମାଙ୍କୁ କହିଲେ ।
ଗଙ୍ଗା ଦେଲା ବର ତ ହେଉଛି ନଷ୍ଟକେ
ଶୁଣିକରି ବେଦବର ରଣ ଭୂମି ଚଳେ ।
ଚଣ୍ଡି ମୁଣ୍ଡ ଯୋଡ଼ିଣ ମାୟା ସୀତା ଜୀଆଇଲେ ।
ହନୁମନ୍ତ ହସ୍ତେ ଦେଇକରି ଭେଦିଦେଲେ ।
ହନୁମନ୍ତ ଆଣିଣ ମୋରଠାରେ ଦେଲା
ଯତନରେ ରଖିଥାଅ ଏହାକୁ ବୋଇଲା ।
ରାମଚନ୍ଦ୍ର ଅଯୋଧ୍ୟାକୁ ଗଲା ବେଳେ ପୁଣ
ଏ ସୀତାଙ୍କୁ ସମର୍ପିବୁ ତାଙ୍କ ସମ୍ମୁଖେଣ ।
ସେହିଦିନୁ ମୋର ପୁରେ ଅଛି ଏହି ସୀତା
ଯତନ କରି ତାକୁ ମୁଁ ରଖିଛି ଯେ ପିତା ।
ଶୁଣିକରି ବଶିଷ୍ଠ ପରମ ତୋଷ ହେଲେ
ତାରାବୋଲେ ତୋ ଭଜନେ ନଅ ଭ୍ରତାରେ
ଶୁଣିକରି ଭରତ ହସିଣ କହିଲା
ଗୋଟିଏ ଭଜନ ଥିଲା ସୁରଗୋଟି ହେଲା ।
ଶୁଣିକରି ତାରାବତୀ ମନ୍ଦ ହାସ କଲେ
ସୁବେଟି ଭଜନ କାହୁଁ ପାଇଲ ବୋଇଲେ ।
ଭରତ ବୋଇଲେ ମୋର କର୍ଷିନ୍ଧ୍ୟାରେ ଭଜନ
ଲଙ୍କା ଗଡ଼ରେ ଗୋଟିଏ ଶୁଣରେ କାମିନୀ ।
ଶୁଣିଣ ତାରାବତୀ ବେଗେ ଚଳିଗଲା
ନିଜପୁରେ ଯାଇଣ ପ୍ରବେଶ ହୋଇଲା ।
ଅମୃତ ଯୋଗାଡ଼ ଘେନିଣ ବେଗେ ଆସି
ଗଙ୍ଗଜଳ ଝାରିରେ ଧରି ଶୁଭ୍ର କେଶୀ ।
ରତ୍ନ ପିଢ଼ା ରଖିଣ ଠାବ ତହିଁ କଲା
ବଶିଷ୍ଠଙ୍କ ଚରଣ ଧରିଣ ଧୋଇଲା ।
ବୋଇଲା ପିତା ମଣୋହି କର ହେ ଏଥିଆସି
ଶୁଣିଣ ବଶିଷ୍ଠ ଋଷି ଉଠିଲେ ଝଟତି ।
ଭୋଜନ ସାରିଣ ସେ ଆଚମନ କଲେ
କଷାଫଳ ଭୁଞ୍ଜି ସିଂହାସନରେ ବସିଲେ ।
ତାରା ମହାଦେଈ ଯେ ସେଠାବରୁ ଗଲା
ଭରତ ହସ୍ତ ଧରିଣ ଭିତର ପୁରେ ନେଲା ।
ଠାଆ ପିଢ଼ା କରି ବସାଇଲା ନେଇ
ନାନାବିଧ ପକ୍ୱ ପଦାର୍ଥ ତାରା ପରଷଇ
ଭୋଜନ ସାରି ଭରତ ଆଚମନ କଲେ
କର୍ପୂର ହଡ଼ଆ ପାନ ତାରା ଆଣିଦେଲେ ।

ଭୁଞ୍ଜି କରି ଭୃତ ସାର ଚଳିଲେ ବହନ
ବଶିଷ୍ଠ ଋଷିଙ୍କ ପାଶେ ମିଳିଲେ ଯାଇଣ ।
ଛନ ନାଗଙ୍କି ଭୃତ ସାର କରେ ନମସ୍କାର
ବଶିଷ୍ଠ ଚରଣେ ରାଣୀ ଓଳଗେ ଛତପର ।
ଭରତ ବୋଇଲେ ଆମ୍ଭେ ଯାଉଛୁ ତୁମ୍ଭେ ଥାଅ
ସ୍ୱାମୀଙ୍କି ଦର୍ଶନ କରି ଆମ୍ଭଙ୍କୁ ତୋଷ ହୁଅ ।
ବଶିଷ୍ଠ ବୋଇଲେ ତୁମ୍ଭେ ଥାଅ ନିଶ୍ଚିନ୍ତରେ
ଲଙ୍କାଗଡ଼କୁ ଆମ୍ଭେ ଯାଉଛୁ ବ୍ୟଗ୍ରରେ ।
ଏତେ ବୋଲି ଦୁଇଜଣ ଉଠି ଚଳିଗଲେ
ଦାସୀମାନେ ପହଣ୍ଡ ମଣାଇ ହୁଡ଼ ଦେଲେ ।
ସିଂହଦ୍ୱାରେ ଯାଇଣ ହେଲେ ପରବେଶ
ରଥ ପରେ ବିଜୟ କଲେ ଗୁରୁ ଶିଷ୍ୟ ।
ଋଷ୍ୟମୂକ ପର୍ବତରେ ପ୍ରବେଶ ହୋଇଲେ
ରଥରୁ ଓହ୍ଲାଇ ଦୁଇ ଯତି ନଦ୍ମାଗଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହୋ ଈଶାନ
ମହୀରାବଣ ଗଲା ବିଲଙ୍କାକୁ ପୁଣ ।
ପିତାର ରଥ ଚଢ଼ି ଗମନ କରି ଗଲା
ସହସ୍ର ମୁଖ ରାବଣକୁ କସ ସେ କହିଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଏକ ମୁଖା ରାବଣ ଯେ ଚଳିଲା ତଡ଼ିତ ।
ଶତେ ଯୁଣ ଲଙ୍କାକୁ ଯେ ଅଟଇ ବିଲଂକା
ପ୍ରହରକେ ଗମିଲା ଯେ ଇନ୍ଦ୍ରଜିତ ପୁତା ।
ବିଲଂକା ଗଡ଼ରେ ଯାଇଁ ହେଲା ପରବେଶ
ସିଂହଦ୍ୱାରେ ରଥ ରୁହାଏ ଇନ୍ଦ୍ରଜିତ ଶିଷ୍ୟ ।
ପାଞ୍ଚଘଡ଼ି ବେଳ ପରେ ଲଂକାଗଡକୁ ଗଲା
ଦଶ ଘଡିରେ ବିଲଂକା ପ୍ରବେଶ ହୋଇଲା ।
ରଥରୁ ଓହ୍ଲାଇଣ ସିଂହଦ୍ୱାରେ ଜଗି
ଦାସିକ ବୋଲେ କରୁଅଛନ୍ତି ତୁମ୍ଭ ରଜା ।
ଦ୍ୱାରପାଳବୋଲେପହୁଡ଼ହୋଇଛୁଠାକୁରଙ୍କର
ନିଦ୍ରାରୁ ଉଠିବେ ତୁମ୍ଭେ ଦଣ୍ଡେ ଯେ ସମ୍ଭାଳ
ସିଂହଦ୍ୱାର ଉପରେ ବସ ଯାଇଁ ବୀର
ନିଦ୍ରା ଭାଙ୍ଗିଲା ବିଲଂକା ଗଡ ଈଶ୍ୱରଂକର ।
ବାହାର ଅବକାଶ ହେଲେ ରାୟୁ ଯାଇଁ
କରଯୋଡ଼ି ବୀର ଯେ ସମ୍ମୁରେ ଜଣାଇ ।
ଶୁଣିବା ହେ ଦେବ ବିଲଂକାଶ୍ୱର ରାୟେ
ଏକ ମୁଖା ରାବଣ ସିଂହଦ୍ୱାରେ ରହେ ।

ଦର୍ଶନ କରିବା ପାଇଁ ଆମ୍ଭଙ୍କୁ କହିଲା
ଠାକୁରଂକ ପହୁଡ଼ ଶୁଣିସିଂହଦ୍ୱାରେହକେକଲା
ଆସିବ ବୋଲି ଜଞ୍ଜାଳ କରୁଛି ସେ ପୁଣ
ହୁଡ଼ ଦେବୁ ବାଟ କ ନରୋଧିବୁ ପୁଣ ।
ଶୁଣିଣ ସହସ୍ର ମୁଖା ବୀରକୁ କହିଲା
ବେଗେ ଘେନ ଆସ ବୋଲିଣ ଆଜ୍ଞା ଦେଲା ।
ବୀର ଆସି ମହୀରାବଣକୁ ସଙ୍ଗେ ନେଲା
ବିଲଂକେଶ୍ୱର ପାଶରେ ନେଇ ପୁଣ ହେଲା ।
ସହସ୍ର ମୁଖା ରାବଣକୁ ଦେଖି ଏକ ମୁଖା
ପା ପଡ଼ ଶୋଇଣ ବୋଲେ କର ରକ୍ଷ ।
ଉଠିଣ ବେକ କର ଶିର ପରେ ଦେଲା
ନମସ୍କାର କରି ଯାଇ ପାଶରେ ବସିଲା ।
ବୋଇଲା ହେ ଦେବ ହେ ଶୁଣ ମୋର ବାଣୀ
ଅଜା ମୋତେ ପେଷିଲେ ତୁମ୍ଭର ପାଶେ ପୁଣି
ବୋଇଲେ ମିତ୍ରକୁ ମୋର କହ ତୁ ବାରତା
ଅସମ୍ଭାଳ ହେଲି ମୁଁ ଯେ ସମ୍ଭାଳୁ ଜଗଜ୍ଜିତା
ଜମ୍ବୁଦ୍ୱୀପ ମଣ୍ଡଳରେ ଭରତ ଖଣ୍ଡରେ
ଅଯୋଧ୍ୟା ନାମେ ଦେଶ ଅଟଇ ସେଥିରେ ।
ଦଶରଥ ନାମରେ ସେ ରାଜ୍ୟର ନୃପତି
ବୀର ଗୋଟି କୁମର ଅଟେ ତାର ସନ୍ତତି ।
ଜ୍ୟେଷ୍ଠ ପୁତ୍ର ରାମ କନିଷ୍ଠ ଶତ୍ରୁଘନ
ଭରତ ଲକ୍ଷ୍ମଣ ଯେ ଅଟନ୍ତି ମଧ୍ୟମାନ ।
ପିତା ଦଶରଥ ଭରତକୁ ରାଜା କଲା
ଜ୍ୟେଷ୍ଠ ପୁତ୍ର ରାମ ଲକ୍ଷ୍ମଣ ବନକୁ ପେଷିଲା ।
ପିତା ବାହ୍ୟାର କରିବାକୁ ବେନି ପୁତ୍ର
ଅରଣ୍ୟକୁ ଅଇଲେ ହୋଇ କୋପଚଣ୍ଡ ।
ଶ୍ରୀରାମର ଭାର୍ଯ୍ୟା ଯେ ସୀତା ନାମେ ନାରୀ
ତାହାକୁ ଘେନିଣ ରାମ ବନରେ ବିହରି ।
ଏ ରୂପେ ତେର ବରଷ ଦୁଇମାସ ଗଲା
ଗୋଦାବରୀ କୂଳେ ରାମ ମଢ଼ିଆ କରିଥିଲା ।
ବହୁତ ଦୈତ୍ୟବଳ ମାଇଲା ଯେ ପୁଣ
ତାହାଶୁଣି ଅଜା ମୋର କଲେ କୋପମନ ।
ଜମ୍ବୁଦ୍ୱୀପକୁ ସେ ଯେ ରଥରେ ଚଢିଗଲା
ଶ୍ରୀରାମ ଭାରିଯାକୁ ହରାଇ ଆଣିଲା ।
ନ ପାଇ ଶ୍ରୀରାମ ଯେ ଖୋଜିଲେ ବହୁତ
ଗଛୁଡର ପୁଅ କହେ ନେଲା ଲଂକଦୈତ୍ୟ ।

ଲଙ୍କାର ରାବଣ ଯେ ବଇଶ୍ରବାର ସୁତ
ଜନକ ନନ୍ଦନୀଙ୍କ ସେ ନେଲାକ ଭରତ ।
ତାର ଠାରୁ ଶୁଣି ରାମ କିଷ୍କିନ୍ଧ୍ୟାକୁ ଗଲେ
ସୁଗ୍ରୀବର ସଙ୍ଗତରେ ମଇତ୍ର ହୋଇଲେ ।
ମଇତ୍ର ହେଲେ ରାମ ବାଳିଙ୍କ ବଧ କରି
କିଷ୍କିନ୍ଧ୍ୟା କଟକରେ ସୁଗ୍ରୀବେ ଦେଲେ ଶାଢ଼ୀ
ଋକ୍ଷ କପି ସେନଣ ଅଇଲେ ସୁଗ୍ରୀବର
ପର୍ବତ ବନ୍ଧି ବନ୍ଧ ବାନ୍ଧିଲେ ସାଗର ।
ମେ ଅଜା ସଙ୍ଗରେ ବହୁତ ଯୁଦ୍ଧ କଲେ
ଭାଇ କୁମ୍ଭକର୍ଣ୍ଣଙ୍କୁ ପାଞ୍ଚଦିନରେ ମାରିଲେ ।
ମୋର ପିତା ନାଶଗଲେ ଦଶ ଦିବସରେ
କାଷଠି ସୁତା ମଲେ ପନ୍ଦର ଦିନରେ ।
ଏଗାରଶତ ନାତି ଏଥିରେ କ୍ଷୟ ଗଲେ
ଦଶ ସହସ୍ରଦୁଇଶତ ନାତି ବାଙ୍କଯେ ରହିଲେ
ଛତିଶ କୋଟି ମଲେ ମୁକୁଟ ବନ୍ଧା ଯୋଦ୍ଧା
ଚଉଦ କୋଟି ବାକି ରହିଲେ ମୁକୁଟ ବନ୍ଧା
ପଦାତି କେତେ ମଲେ କଳଣା ନ ଯାଇ
ହସ୍ତୀ ଘୋଡ଼ା ଅନେକ ମଲେ ହେ ଗୋସାଇଁ
ରାମ ଲକ୍ଷ୍ମଣ ଦୁହେଁ ଅଟନ୍ତି ବଡ଼ ଯୋଦ୍ଧା
ଲଙ୍କାଗଡ଼କୁ ସେହୁ କଲେ ହତାଯୁଧା ।
ନିଭରସା ହେବାରୁ ମୋତେ ଭେଦ ଦେଲେ
ମୋହର ମିତକୁ ଡାକ ଆଣରେ ବୋଇଲେ
ଶୁଣିଣ ସହସ୍ର ମୁଖା ରାବଣ କହେ ବାଣୀ
ରାଜା ହୋଇ ଅଧର୍ମ ସେ କଲା କର୍ମ ପୁଣି ।
ସୁନ୍ଦର ଦେଖି ସିନା ଲୋଭ ସେହୁ କଲା
ଯୁଦ୍ଧରେ ନ ମାରି କର୍ମା ସ୍ତ୍ରୀରାଜ ଆଣିଲା ।
କେଉଁଠାରେ ଶୁଣା ନାହିଁ କ୍ଷତ୍ରୀଙ୍କର ସ୍ତ୍ରୀର
ଯୁଦ୍ଧରେ ମାରଲେ ସିନା ହୋଇନ୍ତା ମହାବଳୀ
ଅଜା ତୋର ଅଧର୍ମ ଆଗ ଯେଣୁ କଲା
ସେ ଦୋଷରୁ ବିଧାତା ତାହାକୁ ବାମ ହେଲା
ସାଇଁଶିଳ କାଣ୍ଡ କ ଯୁଦ୍ଧର ବେଳେ ପାଇ
ମଲାର ମନୁଷ୍ୟରେ ଜାଇବୁ କ କେହି ।
ଯେତେରଜା ହୋଇଲେରେ ଯୁଦ୍ଧେ ନେବ ପ୍ରାଣ
ଈଶ୍ବର ଯୋଗ ସାଧନ୍ତି ପାର୍ବତୀ ସେନ ପୁଣ ।
ସଙ୍ଗରେ ପାଶୁପତ ଅସ୍ତ୍ର ହୋଇ ଥାଇ
ତା ସଙ୍ଗରେ ଶତ୍ରୁ ହେଲେ ତାକୁ ସେମାରଇ

ଅଧର୍ମୀକୁ କେବେହେଁ ନ ଯାଏ ପଶୁପତ
ତାଙ୍କୁ ଭକତ ହେଲେ ଅଭୟ ବର ଦିଅନ୍ତି ।
ବିଧାତା ବଡ଼ ଜାଣି କରଇ ନବ ସୃଷ୍ଟି
ମସ୍ତକ ଠାରେ ତାର ଏକମନ୍ତ ଦୃଷ୍ଟି ।
ବିଷ୍ଣୁ ବଡ଼ ଦେବତାରେ ତ୍ରୈଲୋକ୍ୟଠାକୁର
ଅଧର୍ମୀକୁ ନଯାଏ କ୍ଷୀର ସାଗରେ ତାର ଘର
ଅଭିଳ ଦେଖିଲେ ସେ ଦୁଷ୍ଟଙ୍କୁ ମାରଇ
ଶାନ୍ତ ଶୀଳ ଲୋକକୁ ସେ ସ୍ବର୍ଗରେ ରଖଇ ।
ଅଧର୍ମୀଙ୍କ ବାବୁରେ ନ ଯାଉଁଛି ଆମ୍ଭେ
ପର ପାଇଁ କର୍ମାରେ ମରିବୁ ଯାଇଁ ଯୁଦ୍ଧେ ।
ସେ ଯେବେ ମୋର ସଙ୍ଗେ ଆସିବରେ ଲାଗି
ଯୁଦ୍ଧରେ ତାକୁ ମାରିଲେ ମୋହର ସୁବୁଦ୍ଧି ।
ଶ୍ରୀମୁଖ କାଟିବ ଯେବେ ମୋ ପାଶକୁ ପୁଣ
ତେବେ ମୁଁ ତାର ବଂଶ କରିବ କ୍ଷୟ ଜାଣ ।
ରଜା ଦୋଷରେ ବାବୁରେ ତରଣ ନହେଲେ
ପର ପାଇଁକ କେହୁ ଆପଣା ବଂଶ ମାରେ ।
ଯାଅ ଯା ତୁମର ଭଲ ଯା ଅଜାକୁ ତୋହର
ବୋଲିବୁ ଅଦୋଷେ ନ ଆସେ ବଳିଙ୍କେଶ୍ବର
ଶୁଣିଣ ମହୀରାବଣ ବେଗେ ଚଳିଗଲା
ଦେବ ଦଳନ ରଥରେ ଯାଇଣ ବିଜେ କଲା
ଆପଣା ନିଜ ରାଜ୍ୟ ଅଟେ ଯେସୁଲଙ୍କା
ଶତେ ଯୁଗ ପଥ ନିମିଷକେ ଗଲା ଏକା ।
ଦୁଇ ଘଡ଼ି ବେଳ ଥିଲା ସେଠାରୁ ଚଳିଗଲା
ପାଞ୍ଚ ଦଣ୍ଡରେ ନିଜ ରାଜ୍ୟରେ ମିଳିଲା ।
ରଥ ପରୁ ଓହ୍ଲାଇ ଭିତର ପୁରେ ଗଲା
ବାହାର ଜଗତିରେ ଯାଇଣ ବିଜେ କଲା ।
ପାତ୍ର ମନ୍ତ୍ରୀ ସମସ୍ତେ ଆସି ଦର୍ଶନ କଲେ
ନିଯୋଗ ଖଟଣୀ ମାନେ ସେବାରେ ରହିଲେ
ମହୀରାବଣ ବୋଇଲେ ତୁମ୍ଭେ ସର୍ବେ ଶୁଣ
ମୋର ପିତାକୁ ମାରିଲା ଲକ୍ଷ୍ମଣ ଯତ ପୁଣ ।
ପିତା ଶତ୍ରୁକୁ ଯେବେ ପାରିବ କରି ହତ
ତେବେ ସିନା ପ୍ରଶଂସା କରିବେ ଦୈତ୍ୟଗୋଷ୍ଠ
ଯୋଡ଼ିଅ ବୋଦା ଛେଳି ବେଗକରି ଆଣ
ସୁଦେବୀଙ୍କ ମେଳିଆ ଦେବା ଏହିକ୍ଷଣ ।
ଏତେ ବୋଲି ମନ୍ତ୍ରୀଙ୍କି ସ୍ବହିଁଣ ଆଜ୍ଞା ଦେଲା
ସୁଗୁଣ ମନ୍ତ୍ରୀ ବେଗେ ଚଳିଣ ତହୁଁ ଗଲା ।

ବୋଦା ପୋଡ଼ୁଅ ହେଲ ଲକ୍ଷେ ଆଣି ପୁଣ
ସୁଦେବୀ ଠାରେ ମାଗଣା କଲା ତତକ୍ଷଣ ।
ମନୁଷ୍ୟ ମେରିଆ ଦେଇ ସନ୍ତୋଷେ ପୁଣ ଦେଲା
ମୋତେ ଦେବୀ ପ୍ରସନ୍ନ ହୁଅସି ବୋଇଲା ।
ଦେବୀଙ୍କି ସନ୍ତୋଷ କରି ମହୀରାବଣ ଗଲା
ଅନ୍ତଃପୁର ଜଗତି ଉପରେ ବସିଲା ।
ପାଟ ମନ୍ତ୍ରୀ ଡ଼କାଇ କହିଲା ସେ ପୁଣ
ସୈନ୍ୟବଳ ମୋହର ସଜକରି ଆଣ ।
ସଜ ହୋଇ ପଦାତିମାନେ ସର୍ବେ ଥିବେ
ହାତିଘୋଡ଼ା ରଥୀ ମୋର ସଜ ଯେ ହୋଇବେ
ପାଞ୍ଚକୋଟି ହସ୍ତୀ ଯେ ନବ କୋଟି ଅଶ୍ୱ
ବତିଶ କୋଟି ସେନାପତି ମୋ ବିଶେଷ ।
ରଥୀ ମୋର ସାତ କୋଟି ପଦାତି ଅକଳନ
ପୁତ୍ର ମୋର ବାଉନ ନାତି ଯେ ଛଅ ଶତ ।
ସମସ୍ତେ ସଜ ହୋଇଣ ଥିବେ ମୋର ପୁର
ଲଙ୍କାର ଗଡ଼କୁ ମୁଁ ଯିବରେ ତତପର ।
ପଦ୍ମବ୍ୟୂହ କରିଣ ଆଣିବ ତାକୁ ହରି
ତିନି ଜଣ ଆଣିବ ମାରିବ ବେଢ଼ି କରି ।
ଆଜ୍ଞାଦେଇ ଭିତର ପୁରକୁ ବେଗେ ଗଲେ
ପାଟ ମନ୍ତ୍ରୀ ଯାଆନ୍ତେ ଅବକାଶ ହେଲେ ।
ଦାସୀଗଣ ଆସିଣ ପାଶରେ ଉଭା ହେଲେ
ପଲଙ୍କ ମଣାଇଣ ଯେ ଭିତରକୁ ନେଲେ ।
ଅନ୍ତଃପୁର ମଧ୍ୟରେ ହେଲେ ପରବେଶ
ଦର୍ଶନ କଲେ ଆସି ଲକ୍ଷେକ ରାଣୀହଂସ ।
ମହୀରାବଣ ବୋଲେ ସର୍ବେ ତୁମ୍ଭେ ବଶ
ପିତାକୁ ମୋର ମାଇଲା ଦଶରଥ ଶିଷ୍ୟ ।
ପାଟରାଣୀ ତାର ସୁରଖି ନାମେ ବାଳୀ
ସୁସିଂହ ଅସୁରର ଅଟେ ସେ ଦୁଲାଳୀ ।
ତାର ତଳରାଣୀ ଯେ ରତ୍ନାନାଭ ବୋଲି
ବଳୀରାଜା ଦୁହିତା ଅଟେ ସେହୁ ବାଳୀ ।
ତାର ତଳ ରାଣୀ ଯେ ଅନ୍ତରୀକ୍ଷ ନାମ
ଅରୁଣ ଦେବତା ଘରୁ ଆଣିଲା ତାକୁ ହରି ।
ଏହୁ ତିନି ରାଣୀର ତଳରେ ଯେ ଲକ୍ଷେ ପୁଣ
ଏତେ ରାଣୀଙ୍କ ଠାରୁ ବାଆନେ ପୁତ୍ର ଜାଣ ।
ବାଆନେ ପୁତ୍ରଙ୍କର ଛଅଶ ଅଟେ ସୁତ
ବାଉନ ପୁତ୍ରଙ୍କର ନାତି ବାଉନ କୋଟିସମୁତ

ଏ ତିନିଗୋଟା କଟକେ ଶତେଲେଖାଏଁ ଯେକନ୍ୟା
ସମସ୍ତଙ୍କର ନବର ଭିନ୍ନେ ଭିନ୍ନେ ସିନା ।
ସୁଲଙ୍କା ଗଡ଼ ଗୋଟି ଯେ ନୈଋତ ଲଙ୍କାପୁର
ଚନ୍ଦ୍ରମା ପ୍ରାୟ ଉଜ୍ଜ୍ୱଳ ଦିଶେ ସବୁଠାର ।
ଧବଳ ପୁରି ଗୋଟି ଦିବ୍ୟ ଶୋଭାପାଏ
ପୁରି ପାଶେ ପର୍ବତ ଘେରିଣ ତାକୁ ରହେ ।
ପର୍ବତ ପାଖ ଲାଗି ନଦୀ ଯାଉଅଛି ବହି
ସେ ନଦୀର ନାମ ଯେ ସଞ୍ଜରଣୀ ବୋଲାଇ ।
ସୁସ୍ୱାଦ ଶୀତଳ ଯେ ସେ ନଦୀର ଜଳ
ଗଡ଼ର ପୁରି ପାଖେ ବୁଲିଅଛି ବେଢ଼ ।
ସେହି ଗଡ଼ ଗୋଟି ଅଟେ ଶତେ ଯୁଣ ଜାଣ
ବାଉନ ଲକ୍ଷ ଘର ସେ ପୁରେ ଛନ୍ତି ପୁଣ ।
ସମସ୍ତେ ଅଚିନ୍ତା ଚିନ୍ତା କାହାର ଯେ ନାହିଁ
ପାତାଳ ଚନ୍ଦ ନାଭି ସେ ପୁର ବୋଲାଇ ।
ସେହି ବମ୍ୱର ବାଟ ଯେ ସୁଲଙ୍କା ଗଡ଼କୁ
ସେହିପୁର ରାବଣ ଜିଣି ଦେଲା ତାକୁ ।
ବହୁ ତପ କରିଣ ସେ ଗଣେଶୁ ହୋଇଲା
ବିଧାତା ବର ଦେବାରୁ ବଳବନ୍ତ ହେଲା ।
ସୁଲଙ୍କା ଗଡ଼େ ବସ୍ତାଳଣ ଦାଣ୍ଡି ଜାଣ
ବାରକୋଟି ଘର ସେଥି ଅଟଇ ପ୍ରମାଣ ।
କନ୍ଦ ବକନ୍ଦ ଗଳ ସେଥିରେ ବହୁତ
ପୂର୍ବ ପାଖେ ରାଜା ନବର କରିଅଛି ତ ।
ପଶ୍ଚିମ ପାରୁଶରେ ସହଜେ ପଦାତି
ଉତ୍ତର ପାର୍ଶ୍ୱେ ସେନାପତିଏ ଅଛନ୍ତି ।
ଦକ୍ଷିଣ ପାଖରେ ଗୋରୁ ଯେ ମଇଁଷି
ଛେଳି ଘୁଗଲ ନାନା ବର୍ଣ୍ଣରେ ଜନ୍ତୁଛନ୍ତି ।
ଏ ରୂପେ ସେ ପୁର ଗୋଟି ଦଇବ ନିର୍ମିଳା
ସେ ଗଡ଼ଗୋଟା ନାମ ବିଲଙ୍କା ନାମହେଲା ।
ସବୁଦିନେ ଅସୁରଙ୍କର ସେଥିରେ ଯେ ଘର
ଅଜାଣ୍ଟିର ଗଡ଼ ସେ ଦେବଙ୍କୁ ଅଗୋଚର ।
ଆଗେ ଦୁଇ ପୁରରେ ଶଙ୍ଖାସୁର ପୁଣ ଥିଲା
ହରି ମାରିବାରୁ ଶଙ୍ଖାସୁର ପୁଣ ମଲା ।
ତାହାର କୁମର ତାରକାସୁର ରାଜ୍ୟେ
ରାବଣର ସଙ୍ଗରେ ବିବାଦ ସେହୁ ହୁଏ ।
ରଣ କରି ରାବଣ ତାକୁ ନାଶ କଲା
ମହୀରାବଣକୁ ସେଥିରେ ରାଜା କରାଇଲା ।

ସେହିନ୍ତୁ ଏକମୁଖା ରାବଣ ସେଥିରେ ନୃପତି
ଶୁଣିଲଟି କି ଗଜସ୍ତ ମନକର ସ୍ଥିତି ।
ଗଜସ୍ତ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ସେଠାରୁ ମହୀରାବଣ କି କଲା କହ ପୁଣ ।
ଈଶ୍ୱର ବୋଇଲେ ସେ ଲକ୍ଷେ ରାଣୀ ଘେନି
ବିହ୍ୱର କରନ୍ତି ବହୁତ ହୋଇଲା ରଜନୀ ।
ମାଜଣା ସାରି ମଣୋହି ବେଗ ଭୋଜ୍ଜ କଲା
ଦୁଇରାଣୀ ଘେନିଣ ପଲଙ୍କରେ ଶୋଇଲା ।
ନାନା ବନ୍ଧେ ସୁରତି କଲାକ ଅସୁର
ସ୍ୱଚ୍ଛ ଘଡ଼ିଏ ଥାଉଁ ସୁରତି ଛାଡ଼େ ସେ ଅସୁର
ତାହାର ଅବକାଶରେ ମାଜଣା ଯାଇଁ ହେଲା
ସ୍ନାନ କରି ଦେବାର୍ଚ୍ଚନ ବେଗେ ସେ ସାରିଲା
ସୁଦେବୀ ପୁରରେ ହୋଇଲା ପରବେଶ
ଯାଏ ପଡ଼ି ଶୋଇଲା ଯେ କହିଲା ସନ୍ଦେଶ ।
ବୋଇଲା ଲକ୍ଷ୍ମଣ ହନୁମନ୍ତ ଯେ ସୁଷେଣ
ଏହାଙ୍କୁ ହରି ଆଣିଲେ ମୋ ଜୀବନ ଧନ୍ୟ ।
ଲକ୍ଷେ ଛାଗଳ ଯୋଡ଼ୁଅ ମେଣ୍ଢା ଆଣିଦେବି
ଜାଇଥିବା ଯାକ ମେଢ଼ା ମୁଁ ନ ଛାଡ଼ିବି ।
ଏତେ କହି ପ୍ରସାଦ ସୁଦେବୀ ଠାରୁ ନେଲା
ମନ ହରଷରେ ନିଜ ନବରେ ମିଳିଲା ।
ଅନ୍ତଃପୁର ମଧ୍ୟରେ ହେଲା ପରବେଶ
ସନ୍ତୋଷେ ମଣୋହି କରେ ଇନ୍ଦ୍ରଜିତ ଶିଷ୍ୟ ।
କର୍ପୂର ବଡ଼ଆ ତାମ୍ବୁଳ ଭୁଞ୍ଜିଲା
ରାଜବେଶ ହୋଇଣ ବାହାରେ ବିଜେକଲା ।
ସିଂହଦ୍ୱାରେ ଯେ ହେଲା ପରବେଶ
ବେକହଳନ ରଥେ ବସେ ଇନ୍ଦ୍ରଜିତ ସୁତ ।
ସୁବୁଦ୍ଧି ମନ୍ତ୍ରୀ ରଥ ବାହିଣ ଘେନିଗଲା
ଲଙ୍କାରେ ପ୍ରବେଶ ପାଞ୍ଚ ଘଡ଼ିରେ ହୋଇଲା ।
ସିଂହଦ୍ୱାରେ ରଥରୁ ଓହ୍ଲାଇ ବହନ
ପ୍ରବେଶ ହେଲା ଯାଇ ରାବଣ ସନ୍ନିଧାନ ।
ଦେଖିଣ ରାବଣ ଯେ କୋଳକରି ନେଲା
ତାହାର ନିକଟରେ ନେଇଣ ବସାଇଲା ।
ବୋଇଲା କୁମରରେ କସ କୁ କଲୁ ପୁଣ
କି ବୋଇଲା ତୋତେ ସହସ୍ର ମୁଖା ଯେ ରାବଣ
କୁମର ବୋଇଲା ସେହୁ ତୋତେ ନ ମାନିଲା
ଅଧର୍ମ କଲ ବୋଲି ସେ ତୁମ୍ଭଙ୍କୁ ବୋଇଲା

ହୋଇଲା ରଜା ଦୋଷରେ ଯୁଦ୍ଧ ମୁଁ ନକରିବ
ମୋର ସଙ୍ଗେ ଯେ ଲାଗିବ ମୁଁ ତାହାକୁ
ମାରିବ ।
ସେ ନାସ୍ତି କରିବାରୁ ମୁଁ ସେଠାରୁ ଗଲି
ନିଜ ରାଜ୍ୟରେ ଯାଇ ପ୍ରବେଶ ହୋଇଲି ।
ମୋହର ସୈନବଳ ମୂର୍ଚ୍ଛି ସଜ କଲି
ଲକ୍ଷ୍ମଣ ହନୁମାରକୁ ମାରିବାରେ ସଜ ହେଲି
କିଛି ଚିନ୍ତା ନ କର ପ୍ରତାପୀ ଲଙ୍କେଶ୍ୱର
ଲକ୍ଷ୍ମଣ ହନୁ ସୁଷେଣଙ୍କୁ ହରିନେବି ମୋର
ପୁର ।
ଦେବୀଙ୍କର ପୁରେ ନେଇ ମେଣ୍ଢା ତାଙ୍କୁ ଦେବି
ଦେବୀ ନ ଖାଇଲେ ସୈନ୍ୟ ବେଳଣ ମାରିବି
ଶ୍ରୀରାମର ସେନାପତି ଯୂଥପତି ପୁଣ
ଏମାନଙ୍କୁ ତୁମ୍ଭେ ମାରି ହେ ବହନ ।
ଭରତ ଶତ୍ରୁଘ୍ନ ଯେ ଅଯୋଧ୍ୟାରେ ଛନ୍ତି
ସେଠାକୁ ଶତମୁଖା ରାବଣ ଯାଇଛି ।
ସେ ତାଙ୍କୁ ମାରିବା ପାଇଁ କରିଛି କୋପମନ
ରାମ ଲକ୍ଷ୍ମଣ ମରିଲେ ଶତ୍ରୁ ମୋ ସରେ ପୁଣ
ପଛେ ସହସ୍ରମୁଖା ସଙ୍ଗେ ଯୁଦ୍ଧ କରି
କରୁଚେ ଆମ୍ଭ ଆଜ୍ଞା ନ ମାନେ ଗର୍ବ କରି ।
ମୂର୍ଚ୍ଛି ରାମ ସଙ୍ଗରେ ଯିବ ଯୁଦ୍ଧକରି
ହରି ନେବ ତିନଜଣ ମୋହର ଯେ ପୁରୀ ।
ଲେଉଟି ଆସିବାକୁ ସମସ୍ତ ମୋତେ ନାହିଁ
ସୈନ୍ୟବଳ ବେଗେ ସାଜ ମୁଁ ଯିବି ରଣଭୂଇଁ
ଶୁଣିକରି ରାବଣ ମନ୍ତ୍ରୀକି ଆଜ୍ଞା ଦେଲା
ମୋର ଥାଟ ସାଜ ଯୁଦ୍ଧକୁ ଯିବ ଇନ୍ଦ୍ରଜିତ
ବଳା ।
ଶୁଣି ଶୁକ ସାରଣ ଥାଟ ସଜ କଲେ
ସାରବେଶ ହୋଇ ସିଂହଦ୍ୱାରରେ ମିଳିଲେ ।
ବାରଲକ୍ଷ ହସ୍ତୀ ତିନଲକ୍ଷ ପଦାତି ଜାଣ
ପନ୍ଦର କୋଟି ସେନାପତି ବାହାରି ହେଲେ
ପୁଣ ।
ଦୁଇକୋଟି ରଥୀ ଯେ ପଦାତି ଅକଳନ
ରଜା ଆଜ୍ଞା ଦେଲେ ତୁମ୍ଭେ ଯାଅରେ ତୁରିତ
ଶତ୍ରୁ ମାରିଣ ଜୟ କରରେ ଆଜଦିନ
ରଜାର ଆଜ୍ଞାରେ ଥାଟ ଚଳିଲେ ବହନ ।

ପଶ୍ଚିମ ଦ୍ୱାର ବାଟରେ ହେଲେ ସେ
ବାହାର
ବାଦ୍ୟର ଶବଦରେ କରେ ଛନ୍ନପୂର ।
ଶ୍ୱେତ ଚାମର ଯେ ଛତ୍ରେ ଫରହର
ରଥଗଜ ଅଶ୍ୱ ବାହାର ହେଲେ ଗଡ଼ଦ୍ୱାର
ସେହିନ ଦଶ ପୂର୍ବରୁ ଗୋଟିଏ ନ ଗଲେ
ଶତେ ନାତିସଙ୍ଗେ ରଥ ଚଢ଼ି କରି ଗଲେ ।
ପଛରେ ମହୀରାବଣ ହୋଇଲା ବାହାର
ଦେଖି କରି ଦେବେ ହେଲେ ଥରହର ।
ସତ୍ୟ ଯୁଗରେ ଯେସନ୍ତେ ହିରଣ୍ୟ କଶ୍ୟପ
ସେ ଯେସନ୍ତେ ଧାଇଁ ଦେଲା ସ୍ୱର୍ଗରେ ଦେବ
ଲୋକ ।
ସେହି ରୂପେ ମହୀରାବଣ ବାହାରିଲା
ରଣ ଭୂମିରେ ଯାଇ ପ୍ରବେଶ ହୋଇଲା ।
ଶ୍ରୀରାମ ଯେ ସୁବଳଯ୍ୟା ଗିରି ପରେ ଥିଲେ
ନିତ୍ୟକର୍ମ ସାରିଣ ଭୋଜନକୁ ଗଲେ ।
ଏହି ସମୟରେ ଜଣାଏଁ ଯାଇ ନଳ
ଯୁଦ୍ଧକୁ ଆଇଲେ ଦେବ ଲଙ୍କାଗଡ଼ର ବଳ ।
ରାମଚନ୍ଦ୍ର ବୋଇଲେ ଶୁଣ ପଚାଶ ଯୂଥପତି
ମଲ୍ଲ ମହାମଲ୍ଲ ଏବେ ଚଳ ହେ ତ୍ୱରିତ ।
ଆଗରେ ଓଗାଳ ତୁମ୍ଭେ କରୁଥାଅ ରଣ
ତୁମ୍ଭର ପଛରେ ଆମ୍ଭେ କରିବୁ ଗମନ ।
ଶୁଣିଣ ଯୂଥପତି ମଲ୍ଲ ମହାମଲ୍ଲ
ସୈନ୍ୟବଳ ଘେନିଣ ଧାଇଲେ ଆଗୁଁସାର ।
ଆଗୁଆଣି ବଣ୍ଡରେ ହେଲା ରଣ ଗୋଳ
ଅନେକ ଅସୁରକୁ ମାରିଲେ କପିବଳ ।
ଦୁଇଦଣ୍ଡ ପରିଯନ୍ତେ ରଣ ଗୋଳ ହେଲା
ଅସୁରେ ପଡ଼ିବାରେ ରକ୍ତନଦୀ ଯେ ବହିଲା ।
କୋଟି କୋଟି କବନ୍ଧ ନାଚିଲେ ନଦୀରେ
ଦେଖିଣ ଅସୁର ବଳ ପଳାଇଲେ ଡରେ ।
ଭାଜିଲେ ଅସୁର ବଳ ମାରିଲେ କପିବଳ
ଶରଣ ପଶିଲେ ଯାଇ ମହୀରାବଣ ପାଶର ।
ଦେଖି ମହୀରାବଣ କ୍ରୋଧଭର ହେଲା
ଅସୁରାଣର ଚାପ ବେଗେ କପିଙ୍କି ବିନ୍ଧିଲା ।
ଅନେକ କପିବଳଙ୍କୁ ମାରେ ସେହି ଶର
ଭାଜିଲେ କପିବଳ ନ ରହି ଆଗର ।

ଏକାଥରେ ଲକ୍ଷେଶର ହାନେ ଟାଣିକରି
ପ୍ରାଣହାରି କପିମାନେ ପଡ଼ିଲେ ମୁଖମାଡ଼ି ।
ଯୂଥପତିମାନେ ଯେ ଅନେକ ଯୁଦ୍ଧ କଲେ
କାହାକୁ କମାନେ ହେ ଇନ୍ଦ୍ରଜିତ ବାଳେ ।
ବାହୁଇ ଧନଧନ ଦେବଦଳନ ରଥ
ସୁବଳଯ୍ୟାରେ ଥାଇଣ ଦେଖିଲେ ରଘୁନାଥ ।
ଧନୁରେ ଗୁଣ ଦେଇଣ ବେଗେ ସଜ ହେଲେ
ପର୍ବତ ଓହ୍ଲାଇ ଜଣେ ଭୂମିକୁ ଧାଇଁଲେ ।
ଅଷ୍ଟସେନାପତି ଶ୍ରୀରାମର ସଙ୍ଗେ ଯାଇ
ବିଭୀଷଣ ଲକ୍ଷ୍ମଣ ସୁଗ୍ରୀବର ଧାଇଁ ।
ରଘୁବର ବୋଲିଣ ଓଗାଳିଲେ ତାଙ୍କୁ ଆଗେ
ଇନ୍ଦ୍ରଜିତ କୁମର ଚଳେ ଅତି ବେଗେ ।
ଶ୍ରୀରାମ ସମ୍ମୁଖେ ଯେ ହେଲା ପରବେଶ
ଶତେ ନାରାଚ ହାନେ ଇନ୍ଦ୍ରଜିତ ଶିଷ୍ୟ ।
କାଞ୍ଚନ ଶରେ ତାହା ଶ୍ରୀରାମ ନିବାରି
କୁହୁକ ଶର ପୁଣ ଇନ୍ଦ୍ରଜିତ କୁମର କରି ।
ସୂର୍ଯ୍ୟ ଶରେ ତାହା ଶ୍ରୀରାମ ନିବାରିଲେ
ପର୍ବତା ଶରକୁ ମାରେ ଦୈତ୍ୟ ବଳେ ।
ବଜ୍ରଶରେ ତାହା ଶ୍ରୀରାମ ନିବାରି
ଅଗ୍ନି ଶର ମହୀରାବଣ କରେ ଧରି ।
ସେଥିଲାଗି ରଘୁନାଥ ଜଳଶର କଲେ
ଅଗ୍ନି ଶର ତାହାର ଜ୍ୱାଳ ପଳାଇଲେ ।
ରାଗରେ ଏକମୁଖା ରାବଣ ପୁଣ ଜାଣ
ନାଗପାଶ ଶର ହାନିଲା କରି ଟାଣ ।
ଗରୁଡ଼ାଶରେ ତାହାକୁ ଶ୍ରୀରାମ ନିବାରି
ଦେଖି ମହୀରାବଣ ପବନାଶର କରି ।
ବାଦଲ ଶରେ ଶ୍ରୀରାମ ନିବାରି ପକାଇଲେ
ମୋହନାଶର ଦୈତ୍ୟ ମେଲିଲକ ବଳେ ।
ଜୀବନ୍ୟାସ ଶରରେ ଶ୍ରୀରାମ ନାଶକଲେ
ଦେଖି ମହୀରାବଣ ମନରେ ବିଚାରିଲେ ।
ପୁଣି ରୁଦ୍ରଶକ୍ତି ପେଷିଦେଲା ରାକ୍ଷସ
ମାଳ ମର୍କଟରେ ତାକୁ ଶ୍ରୀରାମ କଲେ ନାଶ ।
ଶ୍ରୀରାମ ପେଷିଲେ ଯେ ଖାଣ୍ଡମୁନା ଶର
ଲଲାଟରେ ନାରାଜ କାଣ୍ଡିଲା ଅସୁରର ।
ମୋହରେ ପଡ଼ିଲା ଇନ୍ଦ୍ରଜିତର କୁମର
ଦେଖିଣ ସାରଥି ମନେ କରଇ ବିଚାର ।

ସଙ୍କଟରେ ଚେତନା ପାଇଣ ଉଠନ୍ତି
କରେ ଧନୁ ଧରି ଗୁଣ ଟଙ୍କାରି ନାଦ କଲା ।
ଶତେକ ବ୍ରହ୍ମଶର ପେଷିଲା ବହନ
ନାରାୟଣ ଶରରେ ଛେଦିଲେ ରାମାୟଣ ।
ମହାକାଳ ଶର ପେଶିଲା ମହୀରାବଣ
ମାଳବାଣେ ତାହାକୁ ନିବାରିଲେ ଶ୍ରୀରାମ ।
ଏକମୁଖା ରାବଣ ତୀକ୍ଷ୍ଣ ଶର ପେଷି
ନାରାଚକେ ଶ୍ରୀରାମ ପକାଇଲେ ଛେଦି ।
ପଚିଶ ଯୂଥପତି ମଲ୍ଲ ମହାମଲ୍ଲ
ହସ୍ତୀ ଘୋଡ଼ା ପଦାତି ମାରିଲେ ଗୋଳମାଳ
ଅନେକ ଦୈତ୍ୟବଳ ପକାଇଲେ ହଣି
ଏହାଙ୍କର ଉପରେ ମଣ୍ଡା ଗଲେ ପଡ଼ି ।
ଅଷ୍ଟ ସେନାପତିଏ ହସ୍ତୀ ରଥୀ ମାରି
ପଦାତି ଦଳ ପୁଣି ପକାଇଲେ ହଣି ।
ଲକ୍ଷ୍ମଣ ଯେ କୋଦଣ୍ଡ କରେ ଧରି ପୁଣି
ସେନାପତିମାନଙ୍କୁ ଛେଦିଲେ ତତକ୍ଷଣି ।
ଦୁଇଲକ୍ଷ ସେନାପତି ତଳେ ପକାଇଲେ
ଦୁଇଲକ୍ଷ ହସ୍ତୀ ଯେ ମାରୁତି ସଂହାରିଲେ ।
ନଳ ନୀଳ ସୁଷେଣ ଅଙ୍ଗଦ ଶ୍ବେତଜଣ
ବାର ଲକ୍ଷ ଅଶ୍ବ ମାଇଲେ ଏହୁ ପୁଣ
ଜାମ୍ବବ ସୁଗ୍ରୀବର ଆବର ବିଭୀଷଣ
ଏ ତିନିଜଣ ମାଇଲେ ଶତେକ ନାତି ପୁଣ ।
ମଲ୍ଲ ମହାମଲ୍ଲ ଯେ ଯୂଥପତିମାନେ
ତିନିକୋଟି ସେନାପତି ମାଇଲେ ଯେ ତେଣେ
ଏମନ୍ତ ସମୟରେ ଅସ୍ତ ହେଲା ବେଳ
ମହୀରାବଣକୁ ଗୁଡ଼ି ଭଜିଲେ ସୈନ୍ୟବଳ ।
ଅଷ୍ଟ ସେନାପତି ଆବର ପଚିଶ ଯୂଥପତି
ମଲ୍ଲ ମହାମଲ୍ଲ ସମସ୍ତେ ବେଗେ ଆସି ।
ମହୀରାବଣକୁ ଯାଇ ପକାଇଲେ ଘେରି
କୁହାଇ ବହଇ ଇନ୍ଦ୍ରଜିତର କୁମର ।
ଶ୍ରୀରାମ ଛେଦନ୍ତି ତାହା ପ୍ରତିଶର କରି
ଏମନ୍ତ ସମୟେ ନିଶି ହେଲା ଯେ ବେନି ଘଡ଼ି
ସୁଷେଣ ହନୁମନ୍ତ ଲକ୍ଷ୍ମଣ ସଙ୍ଗେ ରହି
ଦେଖି ମହୀରାବଣ ମନେ ବିସ୍ମରଇ ।
ଏତିକ ବେଳରେ ମୁଁ କରିବି ପଦ୍ମବ୍ୟୂହ
ଗୋଟିଗୋଟିହେଲେମୋତେ ସଜକେବେନୁହଁ
ପିତା ଶମ୍ଭୁକୁ ମୁଁ ସେବେ ଜରପାତରେ ଓଡ଼ି
ତେବେ ମୋର ମହିମା ଯେ ଜଗତେ ବିଖ୍ୟାତ
ଏତେ ମନେ ଭାଳି ଶୀଘ୍ର ବ୍ରହ୍ମାଙ୍କୁ ସୁମରି
ପଦ୍ମବ୍ୟୂହ ଶର ଦେଇଥିଲେ କୁଶଧାରୀ ।
ସେ ଶର ଉପଗତ ହୋଇଲା ତାର କରେ
ଦେଖିଣ ମହୀରାବଣ ଆନନ୍ଦ ମନରେ ।
ବୋଇଲା ଶ୍ରୀରାମ ହେ ସମ୍ଭାଳ ମୋର ଶର
ଆଜ ମୁଁ ସମସ୍ତଙ୍କୁ ପେଷିବି ଯମପୁର ।
ଏତେ କହି ଗୁଣରେ ବସାଏ ଶର ନେଇ
ମନ୍ତ୍ର ପଢ଼ି ଛାଡ଼ିଲା ଶୂନ୍ୟକୁ ଅନାଇ ।
ଦେଖିଣ ଶ୍ରୀରାମ ଅନୁଜ ଶର କଲେ
କେବେହେଁ ଶରକୁ ସେ ନିବାରି ନ ପାରିଲେ
ଫୋଟିଲା ଶର ଯାଇ ରଣଭୂମି ଯାକ
ସମସ୍ତେ ମୋହିତହେଲେ ଶ୍ରୀରାମ ସୈନ୍ୟଚକ
ପଦ୍ମଫୁଲ ଯେସନେ ଭ୍ରମର ମୁହଇ
ତେସନ ପ୍ରାପ୍ତ ପଦ୍ମଶର ସେ କରଇ ।
ପିଚଶ ଯୂଥପତି ମହାମଲ୍ଲ ଯେତେ
ଅଷ୍ଟସେନା ମହିତେ ବୃଷକପି ଯେତେ ।
ସୁଗ୍ରୀବ ବିଭୀଷଣ ଶ୍ରୀରାମ ସହିତେ
ସମସ୍ତେ ମୋହିଗଲେ ଏକାଶର ଘାତେ ।
ଗୋଟିଏ ପାଖୁଡ଼ା ଗୋଟିଏ ମୁହ ଜାଣ
କେଶର ଭିତରେ ପଡ଼ିଲେ ସର୍ବେ ପୁଣ ।
ବଜ୍ରପଦ୍ମ ତିନିଗୋଟି ଫୁଟିଛି ମଧ୍ୟରେ
ହସ୍ତ ଗଜ ଶିବ ସେ ନାଡ଼ର ଭିତରେ ।
ନିଶବଦ ହେଲା ଯେ ରଣଭୂମି ଗୋଟା
ଦେଖି ମହୀରାବଣ ମନରେ କଲା ଶଙ୍କା ।
ବିସ୍ମିତ ଚନ୍ଦ୍ର ତ ଉଦୟ ହୋଇଛନ୍ତି
ଶିଶିର ପଡ଼ିଲେ ତ ପଦ୍ମ ଯିବ ଛପି ।
ଚନ୍ଦ୍ରଙ୍କର ପଦ୍ମଙ୍କର କେବେହେଁ ନୁହେଁ ପ୍ରୀତି
ହିଂସା କରି ଚନ୍ଦ୍ର ତ ସୁଧା ବରଷନ୍ତି ।
ଏହି ସମୟରେ ମୂର୍ଚ୍ଛି ଯେ ଯିବ ଚଳି
ପ୍ରବେଶ ହୋଇବି ମୁଁ ନିଜ ସ୍ଥାନେ ମିଳି
ଏ ଭଜମାନେ ତାଙ୍କ କରିବ ମୂର୍ଚ୍ଛି ନାଶ
ଏତେ ବିସ୍ମରି ଚଳିଲା ଇନ୍ଦ୍ରଜିତ ଶିଷ୍ୟ ।
ଲଙ୍କାଗଡ଼ରୁ ଯେତେ ସୈନ୍ୟ ଆସିଥିଲେ
ବାକି ଥିବାଲୋକ ସେ ଗଡ଼କୁ ପଳାଇଲେ ।

ସ୍ୱର ଦ୍ୱାରେ କବାଟ ପଡ଼ିଲା ନବନେ
ଏଥୁ ଅନନ୍ତରେ ଯେ ଶୁଣ କଥା ଛନ୍ଦେ ।
ରଥ ଘେନ ଦୈତ୍ୟ ଗମନ ବେଗେ କଲା
ସୁଲଙ୍କାରେ ଯାଇଣ ପ୍ରବେଶ ହୋଇଲା ।
ନିଜ ନଗରେ ଯେ ହେଲ ପରବେଶ
ରଥ ପରୁ ଓହ୍ଲାଇଲା ଇନ୍ଦ୍ରଜିତ ଶିଷ୍ୟ ।
ବାହାର ଜଗତିରେ ବିଜେ କଲା ଯାଇଁ
ପାତ୍ର ମନ୍ତ୍ରୀ ସମସ୍ତେ ଦର୍ଶନ କଲେ ତହିଁ ।
ହସ୍ତୀ ଘୋଡ଼ା ପଦାତି ସଜ ହୋଇଥିଲେ
ରାଜା ବିଜେ ଦେଖିଣ ଦର୍ଶନ ଆସି କଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତି
ରଣ ଭୂମିରେ ପଦ୍ମବ୍ୟୂହ କରେରାବଣରନାତି
ପଦ୍ମବ୍ୟୂହ କରିଣ ସେ ନିଜ ପୁର ଗଲା
ପଦ୍ମ ନାଡ଼ରେ ହନୁମନ୍ତ ଚଳିଗଲା ।
ତାର ପଛେ ସୁଷେଣ ଚଳିଗଲା ପୁଣ
ତହିଁର ପଛେ ଲକ୍ଷ୍ମଣ ଚଳିଲେକ ଜାଣ ।
ସୁଲଙ୍କା ନଗ୍ରୀ କୂଳରେ ପ୍ରବେଶ ହୋଇଲେ
ଚନ୍ଦ୍ର ଉଦୟ ଦେଖି ଆନନ୍ଦ ମନ ହେଲେ ।
ବାହାର ହୋଇବାରୁ ସ୍ୱର ଦେଖିଗଲେ
ମହୀରାବଣ ଆଗେ ଯାଇ ଜଣାଇଲେ ।
ତିନି ଜଣ ଦେବ ନଗ୍ରୀ କୂଳରେ ଛନ୍ତି ବସି
କେଉଁଠାରୁ ଅଇଲେ ନ ପାରୁ ତାଙ୍କୁ ପୁଚ୍ଛି ।
ମହୀରାବଣ ବୋଇଲା ତାଙ୍କୁ ଯେ ପଚାରିବ
କେଉଁଠାରୁ ଅଇଲେ ସେ ସଙ୍କେତ ମିଳିବ ।
ମଧୁର ବଚନ କହି ତାଙ୍କୁ ଘେନ ଯିବ
ସୁଦେବୀର ମନ୍ଦିରରେ ନେଇଣ ରଖାଇବ ।
ସ୍ୱପ୍ନ ପାହିଲେ ଆମ୍ଭେ ଚାହିଁବୁ ଯାଇଁ ପୁଣ
ପଚାରି ବୁଝିଲେ ତାଙ୍କୁ ଯାହା ହେବ ଜାଣ ।
ନୋହିଲେ ରାତ୍ରରେ ତାଙ୍କୁଦେବୀ କରନ୍ତୁଗ୍ରାସ
ଦେବୀ ସନ୍ତୋଷରେ ଆମ୍ଭର ପରିତୁଷ ।
ଶୁଣିକରି ଦୂତ ଯେ ସାତ ପାଞ୍ଚ ଗଲେ
ନଗ୍ରୀକୂଳେ ଯାଇଣ ପ୍ରବେଶ ବେଗେ ହେଲେ
ହନୁମନ୍ତ ସୁଷେଣ ଲକ୍ଷ୍ମଣ ତିନି ଜଣ
ବିଚାର କରନ୍ତି ତହିଁରେ ବସି ପୁଣ ।
କେଉଁଠାରେ ଥିଲଇଁ କେଉଁ ଠାବ ଏହି
ଲଙ୍କାଗଡ଼ ପରାୟ ଏହୁ ତ ଦିଶୁନାହିଁ ।

ହନୁମନ୍ତ ବୋଇଲା ହୋ ଲଙ୍କାଗଡ଼ରେ ଥିଲୁ
ମହୀରାବଣ ସଙ୍ଗରେ ବହୁତ ଯୁଦ୍ଧକଲୁଁ ।
ପଦ୍ମବ୍ୟୂହ ଶର ବନ୍ଧେ ରାବଣର ନାତି
ସେ ବ୍ୟୂହର ଦାଣ୍ଡରେକେ କେଣେଗଲେଜପି
ଆମ୍ଭେ ତିନିଜଣଯାକ ଏଠାରେ ପ୍ରବେଶ
ରଜନୀ କାଳରେ ନ ଦିଶେ ଦଶ ଦିଶ ।
ସ୍ୱର ବୋଲେ ନଗ୍ରକୁ ଏବେ ଯିବାଭଲ
ଏଠାରେ ବସିବାର ନୁହଇ ହାଦେ ଭଲ ।
ଉତ୍ତମ ସ୍ଥାନରେ ରହିବ ଆଜ ରାତି
କାଲି ପ୍ରଭାତରୁ ଚାହିଁବ କେଉଁ ପୃଥ୍ୱୀ ।
ରଜନୀ ସରିଲେ ଦିଶିବ ବେଳ ହେବ
ଯେଉଁ ସ୍ଥାନୁ ଆସିଛ ସେହି ସ୍ଥାନକୁ ଯିବ ।
ରଜନୀରେ ଚଳିବାର ନୁହେ ପୁଣ କଛି
ଏତେ କହି ଚରଗଣେ ବିଚାର କରନ୍ତି ।
ପ୍ରବୋଧ ବାକ୍ୟ ଶୁଣିଣ ତିନିଜଣ ଗଲେ
ନଗ୍ରର ଭିତରେ ସେ ପ୍ରବେଶ ହୋଇଲେ ।
ସୁଦେବୀର ମନ୍ଦିର ଅଟଇଁ ନିର୍ମଳ
ସେଥିରେ ନେଇ ରଖିଲେ ଅସୁର ନିଶାଚର
ବୋଇଲେ ରଜନୀ ଏଥିରେ ଶେଷ କର
ଉଦୟ ହେଲେ ଯିବ ଯେଣେ ମନ ତୁମ୍ଭର ।
ଏତେ କହି କବାଟ ଆଉଜାଇ ଦେଲେ
ବାହାର ଶିକୁଳିକ ତତକ୍ଷଣେ ଲଗାଇଲେ ।
ରାଜାର ପାଶରେ ପ୍ରବେଶ ହେଲେ ଯାଇଁ
ଦୂରରୁ ଦେଖିଣ ସ୍ୱର ପାଏ ପଡ଼ ଶୋଇ ।
ବୋଇଲେ ଶୁଣ ଦେବ ହେ ଶ୍ରୀରାମଚନ୍ଦ୍ର ଭାଇ
ଲଙ୍କାରେ ଯେଉଁ ଶ୍ରୀରାମ ସମର କରଇ ।
ଆଉଜଣେ ବୋଇଲା ମୋ ନାମ ହନୁମନ୍ତ
ଶ୍ରୀରାମଙ୍କର ଅଟଇ ମୁଁ ଦୂତ ।
ଆଉ ଜଣେ ବୋଇଲା ମୁଁ ଶ୍ରୀରାମର ବୈଦ୍ୟ
ମୋର ନାମ ସୁଷେଣ ଶୁଣ ସମ୍ବାଦ ।
ଲଂକା ଗଡ଼ରେ ଆମ୍ଭେ ଶ୍ରୀରାମ ସଙ୍ଗେ ଥିଲୁ
ରାବଣ ନାତି ମହୀରାବଣ ସଙ୍ଗେ ଯୁଦ୍ଧ କଲୁଁ ।
ଅନେକ ସଂଗ୍ରାମ ହେଲା ତହିଁ ଯେ ପୁଣ
ପଦ୍ମବ୍ୟୂହ କଲା ମହୀରାବଣ ତହିଁ ଜାଣ ।
ବ୍ୟୂହରେ ଆମ୍ଭେ ସର୍ବେ ମୋହିତ ପୁଣହେଲୁ
କଏ କେଣେ ଗଲେ ଯେ ବାରତା ନପାଇଲୁ

ଆମ୍ଭେ ତିନିଜଣ ଯେ ଅଇଲୁ ଏବେ ଏଣେ
ରଜନୀ ନଷ୍ଟ କାରଣ ନୃହତ ଜାଣେ ।
ମଧୁର ଭାଷା କହିଣ ତାହାଙ୍କୁ ଆଣିଲୁଁ
ସୁବେଶା ମଣ୍ଡପରେ ଯେ ନେଇଣ ରଖିଲୁଁ ।
ବାହାର କଳଶୀ ଦେଇ କୋଳଥ ଯୋଡ଼ା
ଦେଲୁ ।
ତୁମ୍ଭର ଆଗରେ ଦେବ ସେ କଥା
ଜଣାଇଲୁଁ ।
ଶୁଣି ମହୀରାବଣ ଯେ ସନ୍ତୋଷ ହୋଇଲା
ମୋହ ପିତା ଶତ୍ରୁ ବୋଲି ସେହିତ କହିଲା ।
ପଦ୍ମବ୍ୟୂହ କଟଣ ମୁଁ ଆଣିଥିଲି ହରି
ଉପକାର କଲ ହେ ମୋହର ପୁଅ ପରି ।
ଦେଖାର ମଣ୍ଡପରେ ଯେବେରଖିଲ ତାକୁନେଇ
ସନ୍ତୋଷ ହେବ ଦେବୀ ତିନି ଜଣ ଖାଇ ।
ଏତେ ବୋଲିଣ ରଜା ବଧାଇ ଅଣାଇଲା
ଧନ ରତ୍ନ ବହୁତ ଦୂତଙ୍କୁ ସେ ଦେଲା ।
ଧନରତ୍ନ ପାଇଣ ଦୂତମାନେ ଗଲେ
ଯେ ଯାହାର ମନ୍ଦିରେ ପ୍ରବେଶ ଯାଇ ହେଲେ
ପାତ୍ରମନ୍ତ୍ରୀ ମେଲାଣି ହେଲେ ନିଜପୁର
ମହୀରାବଣ ବିଜୟ କଲା ଅନ୍ତଃପୁର ।
ବାହାର ଅବକାଶରେ ମାଜଣା ବଧି ହେଲା
ମଶୋହି କରିବାକୁ ଭିତରକୁ ଗଲା ।
ପହଣ୍ଡ ମଣାଇ ଧାଈମାନେ ନେଲେ
ରାଣୀହଂସ ପୁରେ ସେ ଯାଇଣ ମିଳିଲେ ।
ବତିଶ ଭୋଜନ କଲା ସେ ସନ୍ତୋଷ
କର୍ପୂର ବଡ଼ିଆ ସେ ଭୁଞ୍ଜି ହେଲା ତୋଷ ।
ରତ୍ନ ପଲଙ୍କରେ ପଟ୍ଟତଳେ ଶଯ୍ୟା ଯାଇ
ବେନି ରାଣୀ ସେନିକ ଶୟନ କଲା ତହିଁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଲକ୍ଷ୍ମଣ ହନୁମନ୍ତ ସୁଷେଣ ବନ୍ଦୀ କରି ।
ସୁବେଶା ମଣ୍ଡପରେ ପୂରାଇ ମୁଦିଲା
ମନର ହରଷରେ ସୁଖେ ନିଦ୍ରା ଗଲା ।
ଶ୍ରୀରାମ ବଳ ଯେ ଲଙ୍କାରେ ଛନ୍ତି ଶୋଇ
ଚନ୍ଦ୍ରଙ୍କର କିରଣରେ ପଦ୍ମ ମଉଳଇ ।
ଏହି ସମୟରେ ଯେ ତ୍ରୈଲୋକ୍ୟ ଦେବଗଣ
ଶଙ୍କର ବସିଣ ବିଚାର କଲେ ପୁଣ ।

ସେ ତଦନ୍ତ ରଜନୀ ହେଲା ତତକାଳେ
ରାମାୟଣ ପୃଷ୍ଠ ଯେ ଷୋଳ ଖଣ୍ଡ ପୁରେ ।
ଦେବତାଏ ବୋଇଲେ ହେଲା କଥା ଘାଟ
ପଦ୍ମ ବ୍ୟୂହ କଲା ଯେ ଇନ୍ଦ୍ରଜିତ ଦୁଷ୍ଟ ।
ସମସ୍ତେ ମୋହରେ ପଡ଼ିଛନ୍ତି ପୁଣ
ଆମ୍ଭ ପାଇଁ କେତେ କଷ୍ଟ ପାଇଲେ
ନାରାୟଣ ।
ଏବେ ଜଣେ ଯାଇ ଇନ୍ଦ୍ରକୁ ବେଗେ କହୁଁ
ଶିଶିର ବରଷିଲେ ପଦ୍ମବ୍ୟୂହ ଯାଉ ।
ସମସ୍ତେ ମୋହ ତେଜଣ ଯାଆନ୍ତୁ ସ୍ୱବଳସ୍ଥା
ନାଶି ରାବଣ କରିବ ଅଗୋଚର ମାୟା
ସତର ଖଣ୍ଡ ପୃଷ୍ଠ କାଳି ଅନୁକୂଳ ହେବ
ଆଠ ଦିନରେ ରାବଣ ନିଷ୍ଟେ ନାଶ ଯିବ ।
ଏତେ ବୋଲି ଦେବତାଏ କରନ୍ତି ବିଚାର
ସୁର ରଜା ବୋଇଲେ କେ ଯିବ ଚନ୍ଦ୍ରଠାର
ନାରଦଙ୍କୁ ଶୁଣିଣ ଇନ୍ଦ୍ର ଆଜ୍ଞା ଦେଲେ
ଇନ୍ଦ୍ରଦେବଙ୍କ ଯାଏ ତୁମ୍ଭେ ଚଳ ହେ
ବୋଇଲେ ।
କହିବ ଶଶଧରଙ୍କୁ ତୁମ୍ଭେ ବେଗେ ଯାଇ
ତୋଳିବ ତ୍ରୈଲୋକ୍ୟ ଠାକୁର ଦୁଃଖ ପାଇ ।
ସୁଧା ରସ ବରଷି ପଦ୍ମବ୍ୟୂହ ନାଶ
ଶୁଣିକରି ନାରଦ ହେଲେ ହସ ହସ ।
ମନ ପବନ ଚଢ଼ିଣ ବେଗେ ଚଳିଗଲେ
ଚନ୍ଦ୍ରଙ୍କର ରଥରେ ପ୍ରବେଶ ଯାଇଁ ହେଲେ ।
ଦେଖି ଚନ୍ଦ୍ର ଦେବତା ଯେ ନମସ୍କାର କଲେ
କେଉଁ କାର୍ଯ୍ୟେ ଆଇଲ ସେହୁ ପଚାରିଲେ ।
ନାରଦ ବୋଇଲେ ଶୁଣ ଶୀତଳ ଦେବତା
ତୁମ୍ଭ ବିନା ନାରାୟଣ କେତେ ଯେ ଅବସ୍ଥା
ଇନ୍ଦ୍ରଜିତ ଦୁର୍ମର ଯେ ପଦ୍ମ ବ୍ୟୂହ କଲା
ଶ୍ରୀରାମ ଲକ୍ଷ୍ମଣ ସହିତେ ସବୁଙ୍କୁ ମୋହ କଲା
ଦେଖ ଯା ରଣଭୂମିରେ ଶୋଇଛନ୍ତି ପୁଣ
ଶିଶିର ବରଷିଲେ ପଦ୍ମ ନାଶ ହେବ ଜାଣ
ଶୁଣିଣ ଚନ୍ଦ୍ରଦେବ ଶିଶିର ବରଷିଲେ
ଶିଶିର ଦେଖି ପଦ୍ମ ଗୁଡ଼ ପଳାଇଲେ ।
ସମସ୍ତେ ଚେତାପାଇ ଉଠିଣ ବସିଲେ
ଶ୍ରୀରାମଙ୍କୁ ଘେନି ସୁବଳସ୍ଥା ଗଲେ ।

ସୁଗ୍ରୀବ ବଣ୍ଟଗଣ ଜମ୍ବେବ ତାରକ
ଚନ୍ଦନ ବସନ୍ତ ଯେ ଶରଭ ଗବାକ୍ଷ ।
ଜାଳମ୍ବ ସଙ୍କସ ଯେ ଶତବାଳ ପୁଣ
କେଶରୀ ନଳନୀଳ ରୋମା ପିତା ଜାଣ ।
ଗନ୍ଧମାର୍ଦ୍ଦନ ଯେ ସ୍ୱସୋଦନ ପିତା
କୁନ୍ଦ ବାମୋଦ ୯୪ ସଜରଭ ସେନାସୁତା ।
ପଚିଶ ଯୂଥପତି ଯେ ଗଡ଼ ସେନାପତି
ଅଙ୍ଗଦକୁ ଘେନ ମଲ୍ଲ ମହାମଲ୍ଲ ଯାନ୍ତି ।
ସୁବେଳସ୍ଥା ଗିରିରେ ଶ୍ରୀରାମ ବିଜେ କଲେ
ବିଭୀଷଣ ସୁଗ୍ରୀବ ଦର୍ଶନ ଯାଇଁ କଲେ ।
ପଚିଶ ଯୂଥପତି ଯେ ମଲ୍ଲ ମହାମଲ୍ଲ
ଷଡ଼ ସେନାପତି ଯେ ଓଗାଳେ ଆଗର ।
ଜଳଜଳା ରବ ଯେ ରାମଚାଳ ପୁଣ
ସୁବେଳ ଗିରିକ ଯେ ଆସୁଛନ୍ତି ସୈନ୍ୟ ।
ପ୍ରହର ପର୍ଯ୍ୟନ୍ତେ ସୈନ୍ୟ ଧାର ଯେ ଲାଗିଲ
ସୁବେଳଦ୍ୱା ଗିରିରେ ଯେ ଚମକ ପଡ଼ିଲ ।
ଯାଅ ଯାଅ ଆସ ଆସ ଶୁଭଇ ଶବଦ
ଶୁଣିଣ ଲଙ୍କା ଲୋକେ ହୋଇଲେ ଚବଦ ।
ଶ୍ରୀରାମ ବୋଇଲେ ସୁଗ୍ରୀବରକୁ ଚାହିଁଣ
ଅଲୌକିକ ସୈନ୍ୟବଳ ଶଙ୍ଖୋଳ ତୁମ୍ଭେ ପୁଣ
ଶୁଣିଣ ସୁଗ୍ରୀବର କରଯୋଡ଼ି କହି
ରଣଭୂମିରେ ଗୋଟିଏ ଦେବ କେହି ନାହିଁ ।
ସାତକୋଟି ଋକ୍ଷ କପି ଆନଗଲେ ନାଶ
ପ୍ରଥମ ଯୁଦ୍ଧେ ମାଇଲା ଇନ୍ଦ୍ରଜିତ ଶିଷ୍ୟ ।
ଜମ୍ବେବ ବୋଇଲେ ଦେବ ଶୁଣିବା ହେଉପୁଣି
ଲକ୍ଷ୍ମଣ ହନୁମନ୍ତ ସୁଷେଣ ନାହାନ୍ତି ତିନି ।
ଶୁଣିଣ ଶ୍ରୀରାମଙ୍କର ଉଡ଼ିଲା ସାହସ
ହରିଲେ ଭାଇମୋର ଗଲେ ପ୍ରାଣେ ନାଶ ।
ରଣ ଭୂମି ପର୍ବତ ଖୋଜ ଯାଇ ପୁଣ
କେଣେ ଗଲେ ତିନିଜଣ ମୋର ପଞ୍ଚପ୍ରାଣ ।
ଶୁଣିକରି ଯୂଥପତି ରଣଭୂମିକି ଗଲେ
ରଣଭୂମି ଖୋଜି ଯେ ପର୍ବତ ଖୋଜିଲେ ।
କେଉଁଠାରେ ନ ଦେଖିଲେ ସେହି ତିନିଜଣ
ଶ୍ରୀରାମ ସ୍ଥାନରେ ପ୍ରବେଶ ହେଲେ ପୁଣ ।
କରଯୋଡ଼ି ବୋଇଲେ ଶୁଣ ରଘୁଧାରୀ
କେଉଁଠାରେ ନ ଦେଖିଲୁ ଭାଇଙ୍କି କୁହର ।

ହନୁମନ୍ତ ସୁଷେଣଙ୍କୁ ଆମ୍ଭେ ନ ଦେଖିଲୁ
ରଣଭୂମି ଖୋଜି ଆମ୍ଭେ ପର୍ବତ ଖୋଜିଲୁଁ ।
ଶୁଣିକରି ଶ୍ରୀରାମ ବ୍ୟାକୁଳ ମନ ହେଲେ
ଭଲ ତିନିଜଣଙ୍କୁ କେହି ବାଛି ନେଲେ ।
ଲକ୍ଷ୍ମଣ ସହୋଦର ଅଟେ ମୋର ପ୍ରାଣ
ଉପକାରୀ ବୈଦ୍ୟ ଯେ ଅଟଇ ସୁଷେଣ ।
ହନୁମନ୍ତ ସକାଶେ ଯେ ଯୁଦ୍ଧ ମୋର ଟାଣ
ଯେଉଁଠାକୁ ପଠାଏ ସେଠାକୁ ଯାଏ ପୁଣ ।
ନାଗଫାଶ ବନ୍ଧନରେ ଗରୁଡ଼ ଆଣିଦେଲା
ସମୁଦ୍ର ଡେଇଁଣ ସେ ସୀତାଙ୍କୁ ଠାବକଲା ।
ବ୍ରହ୍ମଶର ବଳରେ ଆଣିଲା ଔଷଧ
ଅମୃତ ଆଣିଲା ସ୍ୱର୍ଗରେ କରି ସିଦ୍ଧି ।
ବ୍ରହ୍ମଶକ୍ତି ବେଳେ ଗନ୍ଧମାର୍ଦ୍ଦନକୁ ଗଲା
ପର୍ବତ ମୁଣ୍ଡି ଆଣି ଲଙ୍କା ଗଡ଼ରେ ଥୋଇଲା
ସୁଷେଣ ଭଲକଲା ଯେ ଭାଇଙ୍କ ମୋହର ।
ସେମାନେ କେଣେଗଲେ କରିବି କି ବିଚାର
ଚଉଦ ବରଷହେଲା ମୋର ସଙ୍ଗେ ଭାଇଥିଲା
ଏବେ ଛାଡ଼ିକରି ଭାଇ କେଉଁ ଦେଶ ଗଲା ।
ହନୁମନ୍ତ ଯିବାରୁ ନ ଦିଶେ ମୋତେ ବୁଦ୍ଧି
ସୁଷେଣ ସଙ୍ଗେ ମୋର ଗଲା ବଳ ବୁଦ୍ଧି ।
ରାବଣକୁ କେମନ୍ତେ ମାରିବି ମୁଁ ଆଜ
ବୁଦ୍ଧିବଳ ମୋହର ହରଣ ନେଲେ ସେହୁ ।
ଏମନ୍ତ ବୋଲି ଶ୍ରୀରାମ କରନ୍ତି ରୋଦନ
ଅନାଥ ହେଲା ବିଭୀଷଣ ଏବେ ପୁଣ ।
ବୀରବାହୁ କୁମର ଅନାଥ ପୁଣ ହେଲା
ସୀତାଙ୍କୁ ମୋହର ଅସୁର ଭୋଗ କଲା ।
ଏତେ ବୋଲି ଶ୍ରୀରାମ କରନ୍ତି କାରୁଣ୍ୟ
କେଣେ ଗଲୁ ଭାଇରେ ମୋର ସାରଲକ୍ଷଣ
ଶ୍ରୀରାମ ରୋଦନ୍ତେ ରୋଦନ୍ତି ଯୂଥପତି
ସେନାପତିମାନେ କାନ୍ଦିଲେ ମଥା ପୋତି ।
ଅଙ୍ଗଦ ସୁଗ୍ରୀବର ବିଭୀଷଣ ସୁବାହୁ
ଏ ରଘୁବୀର ଜଣଙ୍କ ରୋଦନ ହାଉ ହାଉ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଭଗବତୀ
ବ୍ରହ୍ମାଙ୍କର କୁମର ନାରଦ ନାମେ ଯତି ।
ଦେବେ କହିବାରୁ ଚନ୍ଦ୍ରଙ୍କଠାକୁ ଗଲେ
ଶୀତଳ ଦେବୀଙ୍କ ପାଶରେ ଯାଇଣ ମିଳିଲେ

ସୁର ରଜା କହନ୍ତେ ଚନ୍ଦ୍ରଙ୍କର ନତ
ଶିଶିର ବରଷନ୍ତେ ପଦ୍ମଶର ଗନ୍ଧକ ନେଉଛି
ପଦ୍ମବୃନ୍ଦ ଭାଙ୍ଗନ୍ତେ ସଚେତ ରାମ ହେଲେ
ସୈନ୍ୟବଳ ଘେନଣ ସୁବଳସ୍ଥା ଗିରି ଗଲେ
ଭାଇକ ନ ଦେଖି ସେ କରନ୍ତି ରୋଦନ
ସୈନ୍ୟ ପ୍ରଥପତିମାନେ ରୋଦନ କରନ୍ତି ପୁଣ
ଦେଖିଣ ଚନ୍ଦ୍ରଦେବ ବ୍ୟାକୁଳ ହୋଇଲେ
ନାରଦଙ୍କୁ ଗୁହିଁ ପୁଣି ବଚନ କହିଲେ ।
ସୁବଳସ୍ଥା ଗିରି ଯାଏ ଯାଅ ହେ ମୁନିବର
ଶ୍ରୀରାମଙ୍କୁ ଶୋକ ସାଗରରୁ ପାରିକର ।
ବୁଝାଇ କହ ଯାଇ ବ୍ରହ୍ମାଣ୍ଡ କରତାଙ୍କୁ
ବୋଲିବ ଭାଇ ଯେ ଯାଇଛି ସୁଳଙ୍କାକୁ ।
ରାବଣର ନାତି ମହୀରାବଣ ଯେ ଜାଣ
ହଲଙ୍କାରେ ରଜାହୋଇ ଅଛନ୍ତି ପୁଣ ।
ବାଛି ତନୟନେ ଚୋରଭାଇ ଲଙ୍କାକୁ ଆସିବ
ସେ ମହୀରାବଣ ତନୟନରେ ନାଶ ଯିବ ।
ଆମ୍ଭେମାନେ କଷ୍ଟରୁ ଦେବୁ ପୁଣି ପାର
ଯାଅ ଯାଅ ବ୍ରହ୍ମମୁନି ଉପକାର କର ।
ପରମବ୍ରହ୍ମ ମୁରତି ଦେଖଯାଇ ବେଗେ
ଏତେ ବୋଲି ଚନ୍ଦ୍ର ସେ କହିଲେ ସରାଗେ ।
ଶୁଣି ନାରଦ ଋଷି ବାହାରି ବେଗେ ହେଲେ
ମନ ପବନ ଚଢ଼ିଣ ସୁବଳ ଗିରି ଗଲେ ।
ଶ୍ରୀରାମଙ୍କର ପାଶରେ ହେଲେ ପରବେଶ
ମୁନିଙ୍କ ଦେଖି ରାମ ମନରେ ହେଲେ ତୋଷ
ଉଠି ନମସ୍କାର କଲେ କୋଦଣ୍ଡ ରୂପଧାରୀ
ବସିବାକୁ ମୃଗଚ୍ଛାଲ ଦେଲେ ନେଇକରି ।
ମୃଗ ଚ୍ଛାଲ ଉପରେ ନାରଦ ବିଜେ କଲେ
ରାମଙ୍କୁ ଦେଖି ବହୁତ ପ୍ରଶଂସା ଯେ କଲେ ।
ବୋଇଲେ ଦେବତା କୁଳ ଉଦ୍ଧରି ଧରିଲୁ
ଅଜସ୍ର ରାବଣର ନାଶ କରୁଥିଲୁ ।
ଆଠଦିନେ ରାବଣ ଯେ ମରିବ ନିଶ୍ଚୟେ
ସ୍ୱର୍ଗପୁରର ଦେବତା ଏ ନିଶ୍ଚିନ୍ତ ହୋଇ ରହେ
ସତର ଖଣ୍ଡ ଯୁଦ୍ଧ ସେଠାରୁ ଶେଷ ହେବ
ଏକୋଇଶ ଥର ଯୁଦ୍ଧରେ କଳଙ୍କୁ ଜିଣିବ ।
ନାରଦଙ୍କ ବଚନ ଯେ ଶୁଣିଣ ରାଘବ
ବୋଇଲେ ଆଜଠାରୁ ସରିଲା ଯୁଦ୍ଧଭାବ ।
ଭାଇ ଲକ୍ଷ୍ମଣ ମୋର କେଉଁଣେ ଗଲା ଏବେ
ବୁଦ୍ଧିବଳ ସରିଲା ମୁଁ କ କରିବି ହାଦେ ।
ପବନ ସୁତ ହନୁମନ୍ତ ନାମେ ଯାର ଥିଲା
ରାମ:ସ୍ମରଣ ଯୁଦ୍ଧକୁ କବାଟ ସେହୁ ଭଲା ।
ସେହି ପୁଣି ଗଲା ଯେ ଏତେବେଳେ ଗୁଡ଼ି
ଅସମୟ ଦେଖି ଧାତା ନେଲା ଯେ ଭାଙ୍ଗିଡ଼ି ।
ସୁଷେଣ ବୋଲି ବୈଦ୍ୟ ମୋର ସଙ୍ଗେ ଥିଲା
ଅସମୟ ଦେଖିକରି ସେହି କେଉଁଣେ ଗଲା ।
କ ବୁଦ୍ଧି କରିବି ମୁଁ ଯେ ନ ଦିଶଇ ବାଟ
ଦେବଙ୍କର କାର୍ଯ୍ୟ ଯେ ହେଲା ଏବେ ମଠ ।
ନାରଦ ବୋଇଲେ ତୁମ୍ଭେ ରାମଚନ୍ଦ୍ର ଶୁଣ
ରାବଣର ନାତି ଅଟେ ମହୀ ଯେ ରାବଣ ।
ଅଠର ବରଷଯାଏ ଘୋର ତପ କଲା
ଏକାଗୋଡ଼େ ଛିଡ଼ା ହୋଇ ଶୂନ୍ୟକୁ ଗୁହିଁଲା
ଦେଖିକରି ବିଧାତା ତାକୁ ଦୟା କଲା
ଅଭୟ ବର ପୁଣ ଯାଚ ତାକୁ ଦେଲା ।
ବୋଇଲା କୁମର ରେ ହୁଅ ତୁ ଅମର
ଜଳସ୍ଥଳ ଅନଳକୁ ଭୟ ନୋହୁ ତୋର ।
ଅଇଶ୍ୱର୍ଯ୍ୟ ପୁରେ ତୁହିରେ ରଜାହୋଇ ରହ
ଦେବ ଦାନବରେ ମୃତ୍ୟୁ ତୁ ନ ପାଅ ।
ଜନ୍ମ ହେଲେ କଳାରେ ଅବଶ୍ୟ ପୁଣ ମରି
ହେତୁକରି ଥିବୁରେ କହୁଛି ତଥ୍ୟକରି ।
ଯେ ତୋତେ ମାରିବରେ କହୁଛି କୁମର
ବାସୁଦେବ ସଙ୍ଗେ ସେ ହୋଇଥିବ ଅବତାର
ଅନନ୍ତ ମୂରତି ଯେ ଅନ୍ତ ତାର ନାହିଁ
ଯେ ତୋତେ ମାରିବ ରେ ଶୁଣିଥାଅ ତୁହି ।
ମାନବ ରୂପ ଧରି ଯେ ଜନମ ହୋଇବ
ବାରୁ ହୋଇ ଦୁଇ ବରଷ ବନାସ କରିବ ।
ବାସୁଦେବ ବନସ୍ତେ ହେବେ ବ୍ରହ୍ମଚାରୀ
ତାଙ୍କ ସଙ୍ଗେ ସେହି ହେବେ ଜଟାଧାରୀ ।
ତାଙ୍କ ନାରୀ ଅପୁଷ୍ଟକ ସେହି ନପୁଂସକ
ଚଉଦ ବରଷ ଯାଏ ପାଳିବେ ଏହୁ ବ୍ରତ ।
ସେ ପୁରୁଷ ହସ୍ତରେ ମରିବୁରେ ବଳା
ତୋତେ ମାରିବ ଜାଣରେ ଇନ୍ଦ୍ରଜିତ ବଳା ।
ଏତେ ବୋଲି ବିଧାତା କହି କରି ଗଲେ
ସେ କଥାକୁ ଅସୁର ମନ୍ତ୍ର ପାସୋରିଲେ ।

ପିତା ମଲ ବୋଲି ହୋଇଅଛୁ ରାଗ
ରାବଣକୁ ଦେଖାଇ ବୁଦ୍ଧି ସେ କହେ ବେଗ
ବୋଇଲା କହୁ ତୁ ଯେ ନ ବଳୁର ମନେ
ଉପାୟ ଅଛୁ ମୋର ମାରିବା ଯେସନେ ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ଥିବେ ଠାଣ
ମଲ ଲୋକଙ୍କୁ ସେ ଜୀଆଉଛନ୍ତି ପୁଣ ।
ବୈଦ୍ୟପଣ କରଇ ସୁଷେଣ କହଇ
ଔଷଧ ହନୁମନ୍ତ ଖୋଜିଣ ଆଣଇ ।
ଲକ୍ଷ୍ମଣ ସୈନ୍ୟବଳ କରଇ ତୋର ନାଶ
ଏ ତିନିଜଣଙ୍କୁ ହରି ନେବଇଁ ଅବଶ୍ୟ ।
ରାମ ଏକୁଟିଆ ହେଲେ ହେବ ପୁଣ ଅନ୍ଧ
ଏହନ ସମୟରେ ଛେଦ ତାର କନ୍ଧ ।
ଏମନ୍ତ ବୁଦ୍ଧି ଗୋଟା ରାବଣକୁ ସେ ଦେଲା
ଶୁଣିକରି ରାବଣ ସନ୍ତୋଷ ହୋଇଲା ।
ଏତେ ବୋଲିଣ ଶୀଘ୍ରପଣେ ଆସି ଭଣେ
ପିତା ଶତ୍ରୁ ମାରିବ ବଳୁର ତାର ମନେ ।
ପଦ୍ମ ବ୍ୟୂହରୁ ତିନିଜଣଙ୍କୁ ହରିନେଲା
ସୁଲଙ୍କା ଗଡ଼େ ନେଇ ତିନଙ୍କୁ ବନ୍ଦୀକଲା ।
ସୁଲଙ୍କା ଗଡରେ ଗ୍ରାମ ଦେବତା ଛନ୍ତି ପୁଣ
ପ୍ରତିଦିନ ମେରଆ ଖାଏ ଦେବୀ ଜାଣ ।
ମେଷ ଛାଗଳ ବୋଦା ପୋଡ଼ୁଅ ତାକୁ ଦିଏ
ମେରଆ ଦେଇଣ ତାକୁ ଯୁଦ୍ଧକୁ ସେ ଯାଏ ।
ଜୟ କରଇ ସେ ଅଜୟ ତାର ନାହିଁ
ଏମନ୍ତ ପ୍ରକାରେ ବର ପାଇ ଅଛି ସେହି ।
ସେ ଦେବୀର ନାମ ଶୁଣ ହେ ରଘୁରାଣ
ବିଧାତା କଲା ନିର୍ମାଣ ତାକୁ ସେଥିରେ ପୁତ
ଦେବୀର ନାମ ଗୋଟି ସୁଦେବୀ ବୋଲିଦେଲା
ରାଜା ମଲାବେଳେ ସ୍ୱାମୀ ଦେଖିବୁ ବୋଇଲା
ସ୍ୱାମୀଙ୍କର କାର୍ଯ୍ୟ ତୁ ଗୋ କରିବୁଟି ମାଏ
ବିଶ୍ୱନାଥ ପୁରକୁ ଯିବୁ ସ୍ୱାମୀ ଯାଏ ।
ଅଳକାପୁରରେ ତାଳଧ୍ୱଜ ରଥ ଥିବ
ତୋତେ ଦେଖି ସଦାଶିବ ସେ ରଥ ଆଣିଦେବ
ପାଶୁପତ ବାଣ ଦେବ ତ୍ରିପୁରାରି ଆଣି
ପାବକ ଦେବେ ପୁତ ଅକ୍ଷୟ ତୋଣ ବେନ
ସେ ରଥ ଆଣିଣ ସ୍ୱାମୀଙ୍କୁ ତୁ ଦେବୁ
ବିଜୟ ହୋଇଣ ତାର ଚରଣେ ଖଟିବୁ ।
ତେବେ ପ୍ରସନ୍ନ ତୋତେ ହୋଇବେ ଦେବସ୍ୱାମି
ସେ ଦିନୁ ପତନ ତୋ ହୋଇବୁ ତୁ ପୁଣି ।
ସେ ରଥେ ବସି ଲକ୍ଷ୍ମଣମହାବଳ ନାଶିବେ
ହନୁମନ୍ତଙ୍କୁ ଘେନିଣ ସୈନ୍ୟ ବିଧ୍ୱଂସିବେ ।
ସେ ରଥରେ ସାରଥି ହୋଇବ ସୁଷେଣ
ତେବେ ସେ ମରିବ ଏକମୁଖା ଯେ ରାବଣ ।
ସେଠାରେ ସଂଗ୍ରାମ କରିବ ସାତ ଘଡ଼ି
ସେ ରଣ ଭୂମିରେ ଲକ୍ଷ୍ମଣ ତାକୁ ମାରି ।
ଏତେ କହି ବିଧାତା ଦେବୀଙ୍କୁ ପୁତ ଗଲା
ସେଥିରେ ନବଲକ୍ଷ ଅଠରଯୁଗ ରାଜାହେଲା ।
ତାହାକୁ ମାରିଲା ରାବଣ କୁପାଞ୍ଚରେ
ନାସିକ ରାଜା କଲା ସେହୁ ଯେ ଗଡ଼ରେ ।
ଏକମୁଖା ସହର ଯୁଗଭୋଗ କଲା
ଏତେଦିନେ କାଳ ତାର ପ୍ରବେଶ ହୋଇଲା
ଲକ୍ଷ୍ମଣ ବ୍ୟତିରେକେ ଆନରେ ମରଇ
ବିଧାତା ପୁରୁଷ ଯାହା ଅଛନ୍ତି ଭିଆଇ ।
ଶ୍ରୀରାମ ବୋଇଲେ ହେ ମୁନି ତୁମ୍ଭେ ଶୁଣ
କେଉଁଠାରେ ରଖିଛି ଭାଇଙ୍କ ମୋର ପୁଣ ।
ନାରଦ ବୋଇଲେ ସେହୁ ରଣ କରି ନେଲା
ସୁଦେବୀର ମନ୍ଦିରେ ନେଇ ବନ୍ଦୀ କଲା ।
ସେ ମନ୍ଦିର ଗୋଟି କରିଛନ୍ତି କୂଟ ଜାଣ
ନବଗୋଟି ମଣ୍ଡପ ଘେରି ପାଖରେ ପୁଣ ।
ମଧ୍ୟ ମଣ୍ଡପରେ ଦେବୀ ଛନ୍ତି ବସି
ଚାରିପାଖେ ମଣ୍ଡପ ନବରତ୍ନେ ରଞ୍ଜି ।
ଗୋଟିଏ ମଣ୍ଡପରେ ମେରଆ ନେଇ ଦିଏ
ଗୋଟାକରେ ଛାଗଳ ଶୁଣହେ ରାମ ରାୟେ ।
ଗୋଟିକରେ ଛାଗୀ ଯେ ଗୋଟିକେ ପୋଡ଼ୁଅ
ଗୋଟିକେ ମେଷବୋଦା ଗୋଟିକେ ମୃଗପ୍ରିୟ ।
ଗୋଟିଏ ମେଲା ଥାଏ ହୁଏ ତହିଁ ଭୋଗ
ଗୋଟିକରେ ନୃପତି ଦର୍ଶନ କରେ ଆଗ ।
ଦୁଃଖ ଜଣାଇତ ଜପଇ ତହିଁ ମାଳ
ପ୍ରସାଦ ଘେନି ସେଠାରୁ ଚଳେ ମହୀପାଳ ।
ଯେଉଁ ମଣ୍ଡପରେ ମେରଆ ନିତି ଦିଏ
ସେହି ମଣ୍ଡପରେ ତୋର ଭାଇଙ୍କ ରଖାଏ ।

ହନୁମନ୍ତ ସୁଷେଣ ସଙ୍ଗରେ ଛନ୍ତି ପୁଣ
ଓନସନେ ଦୈତ୍ୟମାରି ଭେଟିବ ଲକ୍ଷ୍ମଣ ।
କହୁ ଚିନ୍ତା ନ କର କୋଦଣ୍ଡ ରଘୁଧାରୀ
ଅକ୍ଷୟ ରାବଣକୁ ମାରି ଧରି କରି ।
ଦେବତାଏ ନିଶ୍ଚିନ୍ତ ହେବେ ଏ ଯେ ମଲେ
ଦେବତାଙ୍କ କଥା କବା ନାହିଁ ତୋ ମନରେ
ଯୁଗେ ପରିଯନ୍ତେ ତୋତେ ଥିଲେ ଅନୁସରି
ଯୁଗକ ଅନ୍ତେ ଆଜ୍ଞା ଦେଲ ତାଙ୍କୁ ହରି ।
ମାରିବ ବୋଲି ଦୈତ୍ୟ ଶ୍ରୀମୁଖେ ଆଜ୍ଞାଦେଲ
ମନୁଷ୍ୟ ଦେହ ବହି କ ସେକଥା ପାସୋରିଲ
ତୁମ୍ଭେ ନ ମାରିଲେ ଯେ ମାରିବ କେହୁ ପୁଣ
କାହାରି ହସ୍ତେ ଯେ ନ ମରନ୍ତି ଦୈତ୍ୟଗଣ
ଦେବତାଙ୍କୁ ପାଦତଳରେ ଖଟାଇଲ
ରାଜାମାନଙ୍କୁ କଷ୍ଟିତ ସମରେ ଜିଣିଲ ।
ଏବେ ତୋତେ ଛନ୍ଦ ସେ କରିଅଛି ପୁଣ
ବରୁଣ ଦୁହିତା ସୀତା ବନ୍ଦୀ କଲା ଜାଣ ।
ଛଳ ଲକ୍ଷ୍ମଣଙ୍କୁ ସେ କୁପାଞ୍ଚ କରି ନେଲା
ଏକାକେ ତୋତେ ରଣେ ମାରିବ ବଶ୍ୱରିଲ
ହୋମ କରିବାକୁ ସେ ହୋଇଛି ସଜ ଜାଣ
ଯାଗ କୁଣ୍ଡରୁ ଉଠି ଯେ କାଟିବ ରାବଣ ।
କାଲି ଆସି ତୋର ସଙ୍ଗେ ରଣ ସେ କରିବ
କେତେ ଛନ୍ଦ କଥା ଜାଣେ ଦୈତ୍ୟଦଶଗ୍ରୀବ
ଶୁଣି କରି ରାମଚନ୍ଦ୍ର ନଶେ ହସ୍ତ ଦେଲେ
ଭଲରେ ରାବଣ ତୁ ବୋଲିଲୁ ଲଙ୍କାରେ ।
ନାରଦ ବୋଇଲେ ହେ ରଘୁନାଥ ଶୁଣ
ଲକ୍ଷେ ରାଜା ଭରତ ବରି ଆଣିଛି ପୁଣ ।
ଚଉଦ ବରଷ କଷ୍ଟ ପୂରିଲା ତୋର ଯେଣୁ
ତୁମ୍ଭ ଅଭିଷେକକୁ ବରିଲ ସେ ଯେ ତେଣୁ ।
ତୁମ୍ଭେ ନ ଯିବାରୁ ଯେ ଚିନ୍ତାକଲ ବଡ଼
ଗନ୍ଧମାର୍ଦ୍ଦନକୁ ଯାଇ ଥିଲା ଯେ ହନୁବୀର ।
ଦୈତ୍ୟକୁ ଭସ୍ମକରିଣ ଅଯୋଧ୍ୟା ବାଟେ ଆସି
ଭରତ ତୋହର ଯେ ଶୂନ୍ୟରେ ତାକୁ ଦେଖି
ବାଣ ଦେଇ ତୋର ଯେ ପାଶକୁ ଅଣାଇଲ
ତୁମ୍ଭ କଥା ହନୁମନ୍ତ ତାହାକୁ କହିଲ ।
ଶୁଣିକରି ଭରତ ବୀର ଅନେକ ଶୋକ କଲା
ଜନନୀକ ଗାଳିଦେଇ ମନ୍ତ୍ରୀକ ଡକାଇଲା ।

ବଶିଷ୍ଠଙ୍କୁ ଆଣିଣ ଯେ କହିଲା ସବୁ କଥା
ଶୁଣିଣ ବଶିଷ୍ଠ ମୁନି କଲେ ଯେ ସତେତା ।
ବୋଇଲେ ଭରତ ଯେ ହେଲା ବଡ଼ କାର୍ଯ୍ୟ
ଲଙ୍କାରେ ହେଉଛି ଯେ ରାମାୟଣ ଯୁଦ୍ଧ ।
ରାମ ରାବଣ ଯୁଦ୍ଧ ଦେଖିବା ଚାଲ ଏବେ
ରାଜାମାନଙ୍କୁ ଡକାଇ କହିଲେ ସଦଗବେ ।
ଶୁଣିଣ ରାଜାମାନେ ପୁଲକିତ ହେଲେ
ରାମାୟଣ ଯୁଦ୍ଧ ଚାଲ ଦେଖିବା ବୋଇଲେ ।
ବଶିଷ୍ଠଙ୍କୁ ପଚାରିଲେ ସେ କେତେଦୂର ହେବ
ବଶିଷ୍ଠ ବୋଇଲେ ଏଠାକୁ ଧୁରଣ ପୂର୍ଣ୍ଣଲବ
ପଲକରେ ଆମ୍ଭେ ଯେ ଦେବା ତାରି ଦେଖ
ଶୁଣିକରି ଲକ୍ଷେ ରାଜା ହେଲେ ମନତୋଷ ।
ଶତ୍ରୁଘ୍ନ ଯାଇ ଗୁହ ଶବର ଆଣିଲ
ଦୁଇଲକ୍ଷ କନ୍ଧ ଘେନି ଶବର ଅଇଲା ।
ଆଗେ ଲଟା କାଟିଲେ କନ୍ଧ ଯେ ଶବର
ପଛରେ ପ୍ରଜାମାନେ ଅଇଲେ ତାଙ୍କର ।
ହସ୍ତୀ ଘୋଡ଼ା ପଦାତି ସେନାପତି ବଳ
ବାରକୋଶ ମାଡ଼ିଣ ଚଳିଲେ ସୈନ୍ୟବଳ ।
ସୁମନ୍ତ ମନ୍ତ୍ରୀ ଯେ ବଶିଷ୍ଠ ଭରତ ବୀର
ଲକ୍ଷେ ରାଜା ଘେନି ସେ ଚଳେ ଧଙ୍ଗତର ।
କିଷ୍କିନ୍ଧ୍ୟା ନିକଟରେ ହେଲେଣି ଯେ ଆସି
ଦଶାନନ ହେଲ ସେ ଗୁଡ଼ିଲେ ଅଯୋଧ୍ୟାଟି ।
ଶୁଣିଣ ରାମଚନ୍ଦ୍ର ସ୍ତମ୍ଭୀଭୂତ ହେଲେ
ରାଜ୍ୟରେ କିଏ ରହିଲା ବୋଲି ପଚାରିଲେ
ବଶିଷ୍ଠ ଅଇଲେତ ହୋ ହୋଇଲା ପୁରକୁଚ୍ଛା
ଜନନୀମାନେ ମୋହର କି କରୁଥିବେ ଏକା
ଏଠାର କଥାକୁ ତ ସେଠାର କଥା ଗରୁ
ରାଜ୍ୟ ଛାଡ଼ି କପାଇଁ ଅଇଲା ହନୁକାରୁ ।
ସେରାଜ୍ୟରେ ଥିଲେ ଯେ ମୁଁ ନିଶ୍ଚିନ୍ତହୋଇଥିଲି
ଏବେ ଅଯୋଧ୍ୟାକୁ ଯେ ମୁହିଁ ତେଜ୍ୟାକଲି ।
ଦୁଇନାବେ ଦୁଇ ଗୋଡ଼ ରହିଲା ମୋହର
ଏଥିକୁ ଉପାୟ ମୋତେ କହ ମୁନିବର ।
କହୁତ ମାୟା ଯେ ଜାଣେ ନିଶାଚର
ନ ପୁଣ ଅଯୋଧ୍ୟା ମାଡ଼ି ବସନ୍ତି ମୋହର ।
ନାରଦ ବୋଇଲେ ତୁମ୍ଭେ ନୁହ ହେ ବିକଳ
ଅଯୋଧ୍ୟାରେ ରହିଲେ ଯେ ଶତ୍ରୁଘ୍ନ ବୀର

ସୈନ୍ୟପାଳ ସଙ୍ଗେ ଯେ ଅଛନ୍ତି ତୋହର
ମିଥିଳାବତୀ ଜନନୀ ତୋ ସମ୍ଭାଳେ ରାଜ୍ୟଭାର
କେଉଁ ସୁଯୋଗରେ ଜନ୍ମ ତାହାର ଯେ ପୁଣ
ଦଶରଥ ସମାନେ ଯେ ଅଟେ ଏକ ଜଣ ।
ରାଜ୍ୟ ବୁଝିଲ ନଗ୍ରେ କରେ ଆତଯାତ
ସମସ୍ତେ ତାଠାରେ ହୋଇଛନ୍ତି ତୋଷଚିତ୍ତ ।
ବଶିଷ୍ଠ ସୁମନ୍ତ ଭୃତ ଜାବାଳି କଶ୍ୟପ
ଏତିକ ତୁମ୍ଭ ରାଜ୍ୟଅଇଲେ ଶୁଣହେ ରାମନୃପ
ଲକ୍ଷେ ହଣ୍ଟାର ବଜାର ଅଇଲେ ତାଙ୍କ ସଙ୍ଗେ
ଦୁଇଲକ୍ଷ ଶଗଡ଼ ଜଳଷ ବହି ବେଗେ ।
ଗୁରୁଲକ୍ଷ ବଳଦ ଦୁଇ ସହସ୍ର ବହାଣୀ
ତିନିଲକ୍ଷ କମାର ସଙ୍ଗରେ ଆସେ ପୁଣି ।
ପଞ୍ଚଶ ସହସ୍ର ଛେଦକାର ସ୍ୟଅର ହଣାଜାଣ
କୂଅ ପୋଖରୀ ବାମ୍ଫୀ ଯେ କରନ୍ତି ଆଗେଣ ।
ଏତିକ ଲୋକ ଶ୍ରୀରାମ ତୁମ୍ଭ ରାଜ୍ୟରୁ ଆସେ
ଆଉ ସର୍ବେ ରହିଲେ ଶତ୍ରୁଘ୍ନ ପାଶେ ।
ଶତ୍ରୁଘ୍ନ ବୀର ଯେ ତୋତେ ବଳଆର
ତିନିଦିନେ ତିନିପୁର ଜିଣିବ ମନେକଲେତାର
ଲକ୍ଷେ ରାଜା ଆନ୍ଦୋଳି ସହିବା ନିମନ୍ତେ
ବଶିଷ୍ଠ ଅଇଲେ ସଙ୍ଗେ ଶୁଣ ତୁ ଏକଚିତ୍ତେ ।
ସୂରଖିକ ମନାଇଣ ଆସିଛନ୍ତି ପୁଣ
ଖାଇବା ପଦାର୍ଥ ସବୁ ଅସରନ୍ତି ଜାଣ ।
ଯେଉଁଠାରେ ଯାହା ଯାହା ସେ ଲୋଡନ୍ତି
ଲକ୍ଷେ ରାଜାଙ୍କ ଆନ୍ଦୋଳି ବଶିଷ୍ଠେ ଭୁଳାନ୍ତି ।
ଶୁଣିକରି ରାମ ମନରେ ତୋଷ ହେଲେ
ଶତ୍ରୁଘ୍ନ ରାଜ୍ୟ ସମ୍ଭାଳିବଟିକ ଭଲେ ।
ଏକାରେ କିସ ଯେ କରିବ ମୋର ଭାଇ
ଶତ୍ରୁ ସଙ୍ଗେ ଯୁଦ୍ଧ କରିବ କେହ୍ନେ ରହି ।
ନାରଦ ବୋଇଲେ ରାମ ହେଲକ ତୁମ୍ଭେବାଇ
ଏକାକୀରେ କେମନ୍ତେ ଧରିଲ ସେ ମହୀ ।
ସପ୍ତସାଗର ନବ ଖଣ୍ଡ ଏ ମେଦିନୀ
ଧନୁହଲେ କେମନ୍ତେ ଧରିଲେ ଶାରମଣି ।
ଶ୍ରୀରାମ ବୋଇଲେ ମୋର କାର୍ଯ୍ୟ ହେଲା ସିଦ୍ଧ
ରାମାୟଣଯୁଦ୍ଧଦେଖିଲକ୍ଷେ ରାଜାହେବେବୋଧ
ନଷ୍ଟେ ରାବଣ ଯେ ଏଥର ନାଶ ଯିବ
ରାବଣକୁ ନ ମାରିଲେମୋକୁଳକୁ ଲଜ୍ୟାହେବ

ଏତେ କହି ଶ୍ରୀରାମ ଆନନ୍ଦ ହୋଇଲେ
ନାରଦ ମହାଋଷି ସେଠାରୁ ଚଳିଗଲେ ।
ଅଶୋକ ବନେ ଋଷି ହେଲେ ପରବେଶ
ଦେଖିଣ ଜାନକୀ ମନରେ ହେଲେ ତୋଷ ।
ମୁନିଙ୍କର ଚରଣେ ଓଳଗି ସେହି ହେଲେ
କିମ୍ପାଇଁ ଅଇଲ ପିତା ବୋଲିଣ ପଚ୍ଛରିଲେ ।
ନାରଦ ବୋଇଲେ ମାଏ ଶୁଣ ମୋର ବାଣୀ
ପଦ୍ମବ୍ୟୂହ କଲା ଯେ ରାବଣ ଜାତି ପୁଣି ।
ଲକ୍ଷ୍ମଣ ହନୁମନ୍ତ ସୁଷେଣକୁ ହରି ନେଲା
ସୁଲଙ୍କାଗଡ଼େ ନେଇ ତାଙ୍କୁ ବନ୍ଦୀ କଲା ।
ରାମ ଏକା ହେବାରୁ କଲେକ ବଡ଼ ଚିନ୍ତା
ଶ୍ରୀରାମଙ୍କୁ ବୋଧିବାକୁ ଆସିଥିଲି ଲଙ୍କା ।
ତାଙ୍କୁ ବୋଧକରି ତୋତେ ଦେଖି ମୁଁ ଅଇଲି
ମନରେ ଚିନ୍ତା ନ କର ଜନକ ଦୁଲଲୀ ।
ଷୋଳଖଣ୍ଡ ଯୁଦ୍ଧ ଏବେ ସମାପତ ହେଲା
ସତର ଖଣ୍ଡ ଯୁଦ୍ଧକୁ ଆରମ୍ଭ ହୋଇଲା ।
ଏହି ଯୁଦ୍ଧରେ ମରିବ ବଶ୍ରବାର ସୁତ
କାଲିଠାରୁ ଦିନ ତୁ ଗୋ ଗଣୁଥିବୁ ମାତ ।
ଆଠଦିନେ ରାବଣକୁ ମାରିବେ ରାମରାଣ
ଏହି ଯୁଦ୍ଧ ସାତଦିନ ଦୁଇପ୍ରହର ଜାଣ ।
ତୁମ୍ଭର ପତି ତିନିଦିଅର ହେବେ ମେଳ
ଲକ୍ଷେ ରାଜା ଯେତେଣେ ଆସିବ ଭ୍ରତ ବୀର ।
ଏତେ କହି ନାରଦ ସ୍ୱର୍ଗପୁର ଗଲେ
ଶୁଣିକରି ସୀତା ମନେ ଆନନ୍ଦ ହୋଇଲେ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ମନରେ ତୋଷ ହୋଇଲେ କୋଦଣ୍ଡ
ରୂପଧାରୀ ।
ଦେବ ନଦୀ କୂଳରେ ହେଲେ ପରବେଶ
ସକଳ ସୈନ୍ୟମାନେ ମନରେ ହରଷ ।
ସ୍ନାହାନ ତର୍ପଣ ଦେବ ନଦୀରେ ବେଗେ
କଲେ
ଯୂଥପତିମାନେ ନିତ୍ୟକର୍ମ ଯେ ସାରିଲେ ।
ସୁଗ୍ରୀବ ବିଭୀଷଣ ଅଙ୍ଗଦ ସୁବାହୁ
ଦେବ ନଦୀ କୂଳରେ ସ୍ନାନ କଲେ ସେହୁ ।
ମଲ୍ଲ ମହାମଲ୍ଲ ଆଦି ଋଷ କପିବଳ
ସ୍ନାନ କର୍ମ କଲେ ସର୍ବେ ଦେବନଦୀ କୂଳ ।

ଛୁଧର ଛଡ଼ାଇଣ ଗିରିକ ଗଲେ ପଛୁଁ
ଶ୍ରୀରାମ ବିଜେକଲେ ଆଶ୍ରମକୁ ତହୁଁ ।
ମୃଗସ୍ଥଳ ଉପରେ ବିଜେ ଯାଇଁ କଲେ
ସୈନ୍ୟବଳ ଯୂଥପତି ସମସ୍ତେ ଆଇଲେ ।
ଅଙ୍ଗଦ ନେଇକରି ଫଳମୂଳ ଦେଲେ ।
ଶ୍ରୀରାମ ମଣୋହି ସାରି ଆଞ୍ଚୋବନ କଲେ ।
ସୈନ୍ୟବଳ ଯୂଥପତି କଲେକ ଭୋଜନ
ଅଷ୍ଟସେନା ସୁଗ୍ରୀବ ସୁବାହୁ ବିଭୀଷଣ ।
ସମସ୍ତେ ଭୋଜନ କଲେକ ଫଳମୂଳ
ଆଞ୍ଚୋବନ ସାରି ରାମ ଭୁଞ୍ଜି କଷାଫଳ ।
ମୃଗ ସ୍ଥଳ ଉପରେ ବିଜୟ ରଘୁସାଇଁ
ସେନା ଯୂଥପତି ବସିଛନ୍ତି ମେଳହୋଇ ।
ପାର୍ବତୀଙ୍କୁ ଏହା ଯେ କହନ୍ତି ଶଙ୍କର
ଲକ୍ଷ୍ମଣର କଥା ସର୍ବେ କରନ୍ତି ବିସ୍ତର ।
ବଳରାମ ଦାସ ସେବେ ଶ୍ରୀରାମ ଚରଣ
ଲଙ୍କାକାଣ୍ଡ ଦ୍ୱିତୀୟ ଖଣ୍ଡ କଲି ମୁଁ ସମ୍ପୂର୍ଣ୍ଣ ।

"ଲଙ୍କାକାଣ୍ଡ ଦ୍ୱିତୀୟଖଣ୍ଡ ସଦାଜପ୍ୟେ ସମ୍ପୂର୍ଣ୍ଣ"
ଭୀମସ୍ୟାପି ରଣେଭଙ୍ଗୋ ମୁନେରପିମତିଭ୍ରମଃ
ଯଦ୍ଧ ଶୁଦ୍ଧ ମଶୁଦ୍ଧଂ ବା ମମଦୋଷେ ନ ବିଦ୍ୟତେ

ପୁସ୍ତକ ହରତେ ଯସ୍ତୁ କାଣେ ଦୁଃଖୀ ଭବେତ୍ ନରଃ ।
ସହସ୍ର ଜନ୍ମାନ୍ତରେ ରୋଗୀ ଦୁଃଖ ଭାଗି ସଦା କୁଷ୍ଠିଃ ॥

—*—

## ତୃତୀୟ ଖଣ୍ଡ

ଜୟ ଜୟ ଜଗନ୍ନାଥ ନୀଳଗିରି ସାଇଁ
ରତ୍ନ ସିଂହାସନେ ବିଜେ ଚତୁର୍ଦ୍ଧାରୂପ ହୋଇ
ପାଚେରି ମେଘନାଦ ବ୍ରହ୍ମପାଶରେ ଘେରି
ବଡ଼ ଦେଉଳରେ ନାଥ ବିଜୟ ଅଛ କରି ।
ସେଥି ଉତ୍ତରୁ କୁସୁମ ବେଢ଼ା ପୁଣ ଜାଣ
ପାଟରାଣୀ ମହାଲକ୍ଷ୍ମୀ ବିମଳା ସଙ୍ଗେ ପୁଣ ।
ସରସ୍ୱତୀ କାଳିକାକୁ ସଙ୍ଗେ ଘେନ ପୁଣ
କଳପ ବଟ ରୋହିଣୀକୁଣ୍ଡ ଅଛୁ ଜାଣ ।
ଦକ୍ଷିଣରେ ମହୋଦଧି ମାରଇ ଲହରି
ବାମ ପାଶେ ମାର୍କଣ୍ଡ ଋଷିଙ୍କ ସ୍ଥାନ ଘେରି
ପଛରେ ଲୋକନାଥ ଆଗରେ ବେଲେଶ୍ୱର
ସ୍ୱର୍ଗଦ୍ୱାର ସ୍ୱରଦଗେ ବିରାଜେ ସେହିପୁର ।
ସିଂହଦ୍ୱାରେ ଦେବତାଏ ପଶନ୍ତି ଦରଶନେ
ପଶ୍ଚିମ ଦ୍ୱାରବାଟେ ଯାଆନ୍ତି ସ୍ୱର୍ଗସ୍ଥାନେ ।
ପତିତପାବନ ମୂର୍ତ୍ତି ସିଂହଦ୍ୱାରେ ଉଭା
ଛପନ କୋଟି ଜୀବ ଦର୍ଶନେ ପାଏ ଶୋଭା ।
ପଙ୍କଜଦଳ ଲୋଚନ ଭିତରେ ବସିଛନ୍ତି
ଦର୍ଶନେ ପ୍ରସନ୍ନ ହୋଇ ବର ସେ ଯାଚଦ୍ୟନ୍ତି
ବଳରାମ ଦାସ ଯେ ଦାଣ୍ଡର ସିଂହଦ୍ୱାରେ
ଛତା ଗୋଟି ପୋତି ସେ ବସନ୍ତି ସବୁକାଳେ
ପ୍ରଭୁଙ୍କୁ ଦର୍ଶନ କରଇ ଦେବ ହରି
ରାମାୟଣ ସମ୍ପୂର୍ଣ୍ଣକୁ କରଇ ଗୁହାରି ।
ପାଞ୍ଚକାଣ୍ଡ ସମାପତ ଛଅକାଣ୍ଡ ଅଧା
ସାରିବାକୁ ମନରେ ମୁଁ କରିଛୁ ଶରଧା ।
କର୍ଣ୍ଣେ ବସି ଜଗନ୍ନାଥ କହିଲେ ତାକୁ ବାଣୀ
ବୋଇଲେ ସମ୍ପୂର୍ଣ୍ଣ କର ରାମାୟଣକୁ ପୁଣି ।
ଶ୍ରୀ ଜଗନ୍ନାଥ ମୋତେ ଆଜ୍ଞାଦେଲେ ଯେଣୁ
ତାହାଙ୍କ ଆଜ୍ଞାରେ ପଦ ରଚଇ ମୁଁ ତେଣୁ ।
ଈଶ୍ୱର ଆଗେ ଏହା ପୁଚ୍ଛନ୍ତି ପାର୍ବତୀ
ବୋଇଲେ କି କଲେ ତହୁଁ ସେଠାରୁ ରଘୁପତି
ଏହା ମୋତେ ଯଞ୍ଚପି କହ ଦେବ ହର
ଶୁଣିକରି ସନ୍ତୋଷେ କହନ୍ତି ଈଶ୍ୱର ।
ମୃଗସ୍ଥଳ ପରେ ଶ୍ରୀରାମ ବିଜେ କରିଛନ୍ତି
ସେନା ଯୂଥପତି ଆଦି ସମସ୍ତେ ଅଛନ୍ତି ।
ଏଥୁଅନନ୍ତରେ ଭୃଗୋ ଶୁଣ ତାକମ୍ବାସୀ
ବାରକୋଟି ବାନର ମିଳିଲେ ଆସିକରି ।

ଜମ୍ବେବ ଜଣାଇଲେ ଶୁଣ ରଘୁନାଥ
ପଶ୍ଚିମ ଦିଗରୁ ସେନ ଅଇଲେ କପିଥାଟ ।
ଶ୍ରୀରାମ ବୋଇଲେ ଯୂଥପତି ଆଣ ଯାଇ
ଆଜ୍ଞାପାଇ ଜମ୍ବେବ ହକାର ଅଣାଇ ।
ଛତିଗୋଟି ସେନାପତି ଆଗରେ ଉଭାହେଲେ
ଟଭା ଲେମ୍ବୁ କମଳା ରୁମ୍ପରେ ଆଣି ଦେଲେ
ଶ୍ରୀରାମ ବୋଇଲେ ତୁମ୍ଭେ ଅଇଲ କେଉଁଠାରୁ
ଯୂଥପତି ବୋଇଲେ ଅଇଲୁ ଅସ୍ତ ଗିରିଠାରୁ
ରାମଚନ୍ଦ୍ର ବୋଇଲେ ସେ କେତେ ଦୂରହେବ
ଏଠାକୁ ଲକ୍ଷେ ଯୋଜନ ହେବ ହେ ରାଘବ ।
ଅନେକ ଦିନରୁ ସେନ ଅଇଲୁ ପୁଣ
ଆଦ୍ୟ ମାର୍ଗଶିରରେ ଅନୁକୂଳ ଜାଣ ।
ଶ୍ରୀରାମ ବୋଇଲେ ଅଇଲ କେଉଁ ବାଟେ
ସେନାପତି ବୋଇଲେ ସେନ ଚିତ୍ରକୂଟକୁଠେ
ଚିତ୍ରକୂଟରେ ଆମ୍ଭେ ପ୍ରବେଶ ଯେଉଁ ଦିନ
ଦୋଳପୂର୍ଣ୍ଣିମା ଯାତ୍ରା ହୋଇଲା ସେଦିନ ।
ଏକାମ୍ରର ବନ ମାଳଗିରି ବାଟେ
ମାଲ୍ୟବନ୍ତ ହୋଇ ସେନ ଅଇଲୁ ଏଥେ ।
ଶ୍ରୀରାମ ବୋଇଲେ ଆଗୁଆଣିର ଥାଟେ ରହ
ନୀଳ ସେନାପତିର ସଙ୍ଗତରେ ଯାଅ ।
ଶୁଣିକରି ନୀଳ ଯେ ତାଙ୍କୁ ସଙ୍ଗେ ନେଲା
ଆଗୁଆଣି ଥାଟରେ ଯାଇଣ ଠଣା କଲା ।
ଏଥୁଅନନ୍ତରେ ଶୁଣ ଭଗବନ୍ତ
ଗର୍ଜନ ହେଲେ ସର୍ବେ ନବଖଣ୍ଡ ଗାତ ।
ସୁବଳସ୍ତ୍ରୀ ପର୍ବତରୁ ବାସେନ ଅଇଲା
ଚଉଷଠି ଯୋଗ୍ନୀ ସେନ ବେଗେ ଚଳିଗଲା ।
ରଣ ଭୂମିରେ ସେ ବେଗେ ହେଲେ ପରବେଶ
ଘୋଡ଼ା ହସ୍ତୀ ଦୈତ୍ୟବଳ ହର୍ଷେ କଲେ ଗ୍ରାସ
ରୁଧିର ପାନ କରିଣ ହରଷ ହୋଇଲେ
ଋକ୍ଷକପି ବଳଙ୍କ ଗଣ୍ଡି ମୁଣ୍ଡ ଯୋଡ଼ ଦେଲେ
ବଳହେବା କପିଙ୍କି କଲେ ସେ ସକଳ
ଫେରି ସୁବଳସ୍ତ୍ରୀରେ ହେଲେ ପରବେଶ ।
ସ୍ୱର୍ଗରୁ ଶୁକ୍ରଦେବ ପରବେଶ ହେଲେ
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରେ ଜଳ ମନ୍ତ୍ରିଲେ ।
ରଣଭୂମି ମଧ୍ୟରେ ସିଞ୍ଚିଲେ ନେଇ ପାଣି
ଜୀବ ପାଇ ସମସ୍ତେ ଉଠିଲେ ତତକ୍ଷଣି ।

ଅମୃତ ବୃଷ୍ଟି କଲେ ଶୁକ୍ରଦେବ ପୁଣ
ବଳବନ୍ତ ହୋଇ କପି କଲେ ଗରଜନ ।
ଶୋଇଲା ପର୍ବତ୍ତେ ଯେ ମରିଲେ ଋକ୍ଷକପି
ସୁବଳସ୍ତ୍ରୀ ଗିରିକି ଶୀଘ୍ର କଲେ ଗତି ।
କପିସୈନ୍ୟ ମେଳରେ ହେଲେ ପରବେଶ
ଫଳମୂଳ ଖାଇଣ ମନେ ହୋଇଲେ ସନ୍ତୋଷ
ନିଦ୍ରା ଆସକ୍ତରେ ଶୟନ ପୁଣ କଲେ
ଆସିବା ସେନାପତି ନୀଳକୁ ପଚାରିଲେ ।
ଏତେବେଳେ ଋକ୍ଷକପି ଆସୁଛନ୍ତି କେଣେ
ନୀଳ ସେନାପତି ବୋଲେ ମରିଥିଲେ ରଣେ
ଦେବଗଣ ଉପରେ ଅମୃତ ବରଷିଲେ
ଜୀବ ପାଇ ଋକ୍ଷକପି ସୁବଳସ୍ତ୍ରୀ ଗଲେ ।
ସେନାପତି ବୋଲନ୍ତି ଏକଥା ଆଚମ୍ବିତ
ମନ୍ଦଲୋକ କେଉଁଠାରେ ଜୀଅନ୍ତି କଥା ମିଛ
ନୀଳ ବୋଲେ ଏହି ରାମ ଅଟନ୍ତି ନାରାୟଣ
ଦେବତାଙ୍କ ପାଇଁକି ଏ କରୁଛନ୍ତି ରଣ ।
ତେଣୁକରି ଦେବତାଏ ସୈନ୍ୟ ଜୀଆବନ୍ତି
ଶ୍ରୀରାମଙ୍କର ସୈନ୍ୟ କ୍ଷୟ ନୁହନ୍ତି ।
ପ୍ରାନ୍ତ ସେନାପତି ବୋଲେ ବଡ଼ ଭାଗ୍ୟମୋର
ଏହି ରାମଚନ୍ଦ୍ରଙ୍କୁ ମୁଁ ଦେଖିଲି ନୟନର ।
ଏତେ କହି ଶତେବାର ନମସ୍କାର କଲା
ମୋର ଦୋଷ କ୍ଷମାକର ବୋଲି ଭୂମିରେ
ପଡ଼ିଲା ।
ଏଥୁଅନନ୍ତରେ ଗୋ ଶୁଣ ଭଗବନ୍ତ
ମହୀରାବଣ ଯିବାର ଦୈତ୍ୟେ ଲେଉଟନ୍ତି ।
ଲଙ୍କାଗଡ଼ ଭିତରେ ପଶିଲେ ଯାଇଁ ବଳ
ଦ୍ୱାରପାଳମାନେ ଦ୍ୱାର କଲେ ନିଶ୍ଚଳ ।
ରାବଣ ଆଗେ ଚର ଜଣାଏ ପୁଣ ଯାଇ
ମହୀରାବଣ ଯୁଦ୍ଧକୁ ଗଲା ଯେ ଗୋସାଇଁ ।
ଅନେକ ସୈନ୍ୟ ସମର ମାଇଲା ଚପିକରି
ରାମ ଲକ୍ଷ୍ମଣ ମାଇଲେ ଦୈତ୍ୟକୁ
ତୋହରି ।
ଦୁଇକୋଟି ସେନାପତି ପଡ଼ିଲେ ଆଜ ରଣେ
ବସନାପତି ନାଶଗଲେ ଲକ୍ଷ୍ମଣର ବାଣେ ।
ହସ୍ତୀ ଘୋଡ଼ା ପଦାନ୍ତି ଅନେକ ନାଶଗଲେ
ଅଶ୍ୱ ନାଶଯିବାରୁ ନାତି ଉପାୟ କରିଲେ ।

ପଦ୍ମବ୍ୟୂହ କଲା ତୋର ଇନ୍ଦ୍ରଜିତ ବଳା
ସମସ୍ତଙ୍କ ଦେହରେ ସେ ପଦ୍ମ ଫୁଟାଇଲା ।
ଲକ୍ଷ୍ମଣ ହନୁ ସୁଷେଣ ତିନଙ୍କି ହରିନେଲା
ରଥେ ବସାଇ ସୁଲଙ୍କାକୁ ବେନେ ଚଳିଗଲା
ଆର ପଛେ ଆର ଦୈତ୍ୟ କହିଲକ ପୁଣ
ଦୁଇଘଡ଼ି ରାତିରେ ପଦ୍ମବ୍ୟୂହ ହେଲା ଜାଣ ।
ଚନ୍ଦ୍ର ଉଦେ ହେବାରୁ ଶିଶିର ବରଷିଲା
ପଦ୍ମବ୍ୟୂହ ଗୋଟା ଯେ ଉଡ଼ି ପଳାଇଲା ।
ସୈନ୍ୟଙ୍କୁ ଘେନ ଶ୍ରୀରାମ ସୁବଳସ୍ଥା ଗଲେ
ରଣଭୂମି ମଧ୍ୟରେ ଗୋଟିଏ ନ ରହିଲେ ।
ଏହିକ୍ଷଣି ଅଇଲି ମୁଁ କହିବାର ପାଇଁ
ଆରେକ ଦୂତ ଆଗରେ କରଯୋଡ଼ି କହି ।
ରାମ ଯିବାରୁ ସେ ସୁବଳ ଗିରି ପୁଣ
ତାଙ୍କ ସଙ୍ଗରେ ଗଲି ବାନର ରୂପେଣ ।
ସୁବଳ ଗିରିରେ ମୁଁ ହେଲି ପରବେଶ
ଲକ୍ଷ୍ମଣ ହନୁ ସୁଷେଣ ନ ଦେଖି ରଘୁଶିଷ୍ୟ ।
ଅନେକ ଶୋକ ଯେ ତହିଁରେ ବସି କଲେ
ବ୍ରହ୍ମା ପୁତ୍ର ନାରଦ ଆସିଣ କହିଗଲେ ।
ତୁମ୍ଭର ତିନିଜ ମହୀରାବଣ ହରିଲା
ସୁଲଙ୍କାରେ ନେଇ ବନ୍ଦୀ କରିଣ ଥୋଇଲା ।
ହନୁମନ୍ତ ସୁଷେଣ ଅଛନ୍ତି ତାର ସଙ୍ଗେ
ମାରି ନ ପାରିବ ସେ ଆସିବେ କେଉଁ ରଙ୍ଗେ
ରାବଣର ସଙ୍ଗରେ ତୁମ୍ଭେ ଯୁଦ୍ଧକର
କୌଣସି କଥାକୁ ଆଉ ବିସ୍ମର ନକର ।
ଏତେ କହି ନାରଦ ଗଲେ ସ୍ୱର୍ଗପୁର
ଦେଖିଆସି କହିଲି ମୁଁ ତୁମ୍ଭର ପୁମୁର ।
ଶୁଣିକରି ଲଙ୍କପତି ହରଷ ବିସ୍ମୟେ
ବିସ୍ମରଇ ନାତି ଭଲ କଲା ତ ଉପାୟେ ।
ଲଙ୍କାର ନରନାଶୀ କରନ୍ତି ବିସ୍ମର
ବଡ ପାରିବାର ଇନ୍ଦ୍ରଜିତର କୁମର ।
ସହୋଦର ତିନ୍ହିଙ୍କି ମାୟାରେ ହରିନେଲା
ସୁଲଙ୍କାରେ ନେଇଣ ସେ ବନ୍ଦୀ ପକାଇଲା ।
ଏବେ ରାମ ଏକା ଅଛି ମାରିବ ରାବଣ
ଏତେ କହି କୁହାକୁହି ହେଲେ ସର୍ବଜନ ।
ଏଥୁଅନନ୍ତରେ ଟଗୋ ଶାକମ୍ଭରୀ ଶୁଣ
ରାବଣର ଶତେକ ନାତି ମଲେ ପୁଣ ।

ନାତି ଗୋଟିକରେ ଯେ ଶତେ ଶତେ ନାରୀ
ପତିମାନେ ମରିବାରୁ ଶୁଣି ତଥ୍ୟକରି ।
ବେଶ ବସନ ହୋଇ ସେ ବେଗେ ଚଳିଗଲେ
ସମୁଦ୍ରରେ ଯାଇଣ ସମସ୍ତେ ଝାସ ଦେଲେ ।
ସ୍ୱାମୀମାନଙ୍କ ପାଶରେ ଯାଇଣ ମିଳିଲେ
ଅଚଳା ବୈକୁଣ୍ଠରେ ନିଶ୍ଚିନ୍ତେ ରହିଲେ ।
ଏଥୁଅନନ୍ତରେ ଯେ ଶୁଣ ହବ୍ୟରସ
ଯେବଣ କଥା କଲା ବଶ୍ରବାର ଶିଷ୍ୟ ।
ମନ୍ଦୋଦରୀକି କହିବାକୁ ଭିତରକୁ ଗଲା
ବାହାର ଜଗତରେ ଅବକାଶ ହେଲା ।
କ୍ଷଣରେ ହାତଦେଇ ବୋଲେ ଦଶଗ୍ରୀବ ;
କାଲି ଜାଣିବା ଯତ୍ନରେ ତୋର ବଳଗର୍ବ ।
ଏ ସମୟେ ପାତ୍ରମନ୍ତ୍ରୀ ମିଳି ତାର ପାଶ
ଦେଖି ଦଶଗ୍ରୀବ ଯେ କରଇ ବିଶ୍ୱାସ ।
ବୋଇଲା ଏ ମୋହର ଆଜ୍ଞା ପରମାଣ
ଯାଗର ସମ୍ଭାରମାନ ବେଗକରି ଆଣ ।
ଆଜ୍ଞା ପ୍ରମାଣରେ ମନ୍ତ୍ରୀ ଆଣେ ସର୍ବ ବୋହି
ଦଶଗ୍ରୀବ ମିଳିଲା ସେ ଶୁଚିବନ୍ତ ହୋଇ ।
ରଥୀ ମହାରଥୀଙ୍କି ସ୍ତୁହିଁ ଆଜ୍ଞାଦେଲା
ଯଜ୍ଞ ଯାଗ ଭୂମି ଆରମ୍ଭ କରରେ ବୋଇଲା
ବ୍ରହ୍ମାଙ୍କର ଆଜ୍ଞା ଘେନ ବସିଲେ ଲଙ୍କପାଳ
ଆଗରେ ଜଳୁଅଛି ପ୍ରଚଣ୍ଡ ଅନଳ ।
କଳା ଛେଳି ରୁଧିରେ ରକ୍ତ ପଦ୍ମମାନ
ହୋମ କରନ୍ତେ ତାର ଯେ ଦଶଇ ବଦନ ।
ଏକମନ ହୋଇଣ ସେ ମନ୍ତ୍ର ଜପକରି
ଧାତାର ବଚନ ସେ ମନରେ ଅଛି ଧରି ।
ଏଥୁ ଅନନ୍ତରେ ଯେ ରଜନୀ ହୁଏ ଶେଷ
ଦେବତାଙ୍କ ଆଳରେ ଶୁଭେ ଶଙ୍ଖଘୋଷ ।
ଶଯ୍ୟା ତ୍ୟାଗ କରିଣ ଉଠିଲେ ରଘୁବୀର
ପୂର୍ବଦିଗେ ଉଦୟ ହୋଇଲେ ଦିନକର ।
କାକ କପୋତ ରଡ଼ି କରନ୍ତି ଘନଘନ
ନିତ୍ୟକର୍ମ ବିଧାନ ସାରିଲେ ରଘୁନାଥ
ପିତୃଲୋକମାନଙ୍କୁ ଜଳଦାନ ଦେଲେ
ଶୁଚିବନ୍ତ ହୋଇକରି ଆସନେ ବସିଲେ ।
ଦର୍ଶନ କଲେ ଆସି ବୀର ମହାବୀର
ଅଙ୍ଗଦ କେଶରୀ ଯେ ତାରର ପିଅର ।

ନଳ ନୀଳ ଗନ୍ଧମାର୍ଦ୍ଦନ ସୁଷେଣ
ସୁଗ୍ରୀବର ଜାମ୍ବବ ପବନ ରମଣ ।
କାଳମୁଖ ବଳମୁଖ ସଉଖ ସେନାପତି
ଦଧିମୁଖ ବସନ୍ତ ଗବାକ୍ଷ ସମ୍ପାତି ।
ବଣକାଳ ବୃଦ୍ଧ ହନୁମନ୍ତର ପିଅର
ଶାଳମ୍ବ କୁମୁଦ ଯେ ଦୃବନ୍ଦ ମହାବୀର ।
ଋଷରାଜ ଆବର ସୁଗ୍ରୀବ ଶ୍ୱଶୁର
ସମସ୍ତେ ମିଳିଲେ ଶ୍ରୀରାମଙ୍କ ସିଂହଦ୍ୱାର
ଅଷ୍ଟସେହ୍ଲା ଆବର ପଚଶ ଯୁଥପତି
ଏମାନେ ଆସିଣ ଯେ ଦର୍ଶନ କରନ୍ତି ।
ମଲ୍ଲ ମହାମଲ୍ଲ ଯେ ଜଗଜେଠିମାନେ
ସଞ୍ଚପି କହିବା କେତେ ଶ୍ରୀରାମର ସୈନ୍ୟେ ।
ଦେଖିଣ ରଘୁନାଥ ହୋଇଲେ ଆନନ୍ଦ
ମୁଖ ପ୍ରକାଶଇ ଯେହ୍ନେ ପୂର୍ଣ୍ଣିମୀର ଚନ୍ଦ ।
ସମସ୍ତଙ୍କୁ ଚାହିଁଣ ବୋଲେ ରଘୁରାଣ
ତୁମ୍ଭ ସକାଶେ ଆମ୍ଭେ ବଞ୍ଚିଲୁ ହାଦେ ଜାଣ ।
ତିନି ଭୁବନରେ ଏ ଅଜୟେ ମହୀପାଳ
ବ୍ରହ୍ମାଣ୍ଡ ଭିତରେ ଏ ବୋଲାଏ ମହାବଳ ।
ବୀରବାହୁ ନାମରେ ଯେ ରାବଣ ନନ୍ଦନ
ପାଞ୍ଚଦିନ ପର୍ଯ୍ୟନ୍ତ କରିଲା ମହାରଣ ।
ତୁମ୍ଭମାନଙ୍କ ଧର୍ମରୁ ସେ ଲଭିଲା ମରଣ
ବ୍ରହ୍ମଶରେ ତାହାକୁ ମୁଁ କଲି ଯେ ଦହନ ।
ମାୟାବୀ ଶିରୋମଣି ଯେ ଅଟେ ଲଙ୍କନାଥ
ପାଦତଳେ ଖଟନ୍ତି ତାହାର ତିଦଶ ।
ତାହାକୁ କେସନେ ମୁଁ ଜିଣିବି ସମରରେ
ଏଥକୁ ସଂଶୟ ମୋର ହେଉଛି ମନରେ ।
ରଘୁନାଥ ମୁଖରୁ ଏସନ ବାଣୀ ଶୁଣି
କର ଦୁଇ ଯୋଡ଼ିକରି ସୁଗ୍ରୀବର ଭଣି ।
ପୂର୍ବରୁ ପ୍ରତିଜ୍ଞା ଦେବ କରିଅଛ ଯାହା
ହେ ପ୍ରଭୁ ସୁଫଳ ଯେ କରିବା ହେଉ ତାହା
ତ୍ରୈଲୋକ୍ୟ ପ୍ରଭୁ ତୁମ୍ଭେ ଅଟ ରଘୁନାଥ
କହିବାର ବଚନ କେ କରିବ ଦୃଅର୍ଥ ।
ନ କର ଶୋଚନା ତୁମ୍ଭେ ରଘୁକୁଳ ବୀର
ଋଷିଙ୍କର ଏହୁକଥା ଅଟେ ଅବୋଧର ।
ଯେମନ୍ତେ ରାବଣକୁ କରିବ ବିନାଶ
ଏଥିର ବିଧାନ ଦେବ କରିବା ଅବଶ୍ୟ ।
ଏଥିର ଯେବେ ଶତ୍ରୁ ତୁମ୍ଭ ଆଗେ ପଡ଼ିବ
ଜୀବନ ଘେନି ଆଉକି ଘରକୁ ସେ ଯିବ ।
ସିଂହଶାର୍ଦ୍ଦୂଳ ଯେହ୍ନେ ପଥରେ ଭେଟହୋନ୍ତି
ମତ୍ତଗଜ ଦେଖିଲେ ତା ଜୀବନ ନଅନ୍ତି ।
ଏବେ ତାହାର ଆମ୍ଭେ ଦେଖିବୁ ନଷ୍ଟେ ହତ
ତେବେ ଆମ୍ଭମାନଙ୍କର ଯିବ ଦେହୁ ତ୍ରାସ ।
ଯେସନ ରବିକି ଦେଖି ତିମିର ମଳିନ
ତୁମ୍ଭ ନାରଚେ ତେମନ୍ତ ହେବ ଦଶାନନ ।
ରଣରଙ୍ଗେ ତାହାର ଛେଦିବ ଦଶଶିର
ଦେଖିବାକୁ ଶରଧା ହୋଇଛି ରଘୁବୀର ।
ଏମନ୍ତେ ସୁଗ୍ରୀବ ବାଣୀ ଶୁଣି ରଘୁମଣି
ବୋଇଲେ ଭାଇକି ମୋର ନ ଦେଖିଲି ପୁଣି
ଆବର ହନୁ ସୁଷେଣ ଗଲେ ଭାଇ ସଙ୍ଗ
ତେତେବେଳୁ ମନ ମୋର ହୋଇଲା ଉଭଙ୍ଗ
ସୁଗ୍ରୀବର କହଇ ଯୋଡ଼ିଣ ବେନିକର
ନାରଦ କହିଗଲେ ତୁମ୍ଭର ଆଗର ।
ତିନିଦିନ ଯୁଦ୍ଧରେ ପ୍ରବେଶ ସାନୁଜ
ସଙ୍ଗରେ ଥିବ ସୁଷେଣ ପବନ ଆତ୍ମଜ ।
ଠଦବକୂଟ ହୋଇଅଛି ଆମ୍ଭର ବାଣୀ ଶୁଣ
ମାୟାବୀ ଅସୁର ଯେ ପାଞ୍ଚିଛି ମାୟା ପୁଣ ।
ଲକ୍ଷ୍ମଣକୁ ହରିନେଲା ତୁମ୍ଭଙ୍କୁ ମାଣ୍ଡିବ ।
ଏମନ୍ତ ବିଚାର ସିନା କରିଛି ଦଶଗ୍ରୀବ ।
ଦେବତାଏ ତୁମ୍ଭଙ୍କୁ ସପକ୍ଷ ଅଛନ୍ତି
ମଲବେଳକୁ ତୁମ୍ଭର ରାବରେ ଜୀଆନ୍ତି ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ହନୁମନ୍ତ ଅଛି ଭାଇ ସଙ୍ଗେ ବିଚାରିଲେ ।
କି କରିପାରିବ ଦୈତ୍ୟ ଘୁର ଯେ ଆମ୍ଭଙ୍କୁ
ତିନିପୁର ଖୋଜି ଯେ ମାରିବି ତାହାକୁ ।
ସଧୀରେ ରଘୁନାଥ ଧଇଲେ ଶରାସନ
ଯୁଦ୍ଧକୁ ଉଦବେଗ କଲେ ତାଙ୍କ ମନ ।
କରଯୋଡ଼ି ବିଭୀଷଣ କହଇ ପ୍ରଭୁର
ମନରେ ସନ୍ତୋଷ ହେବ ହୁଅ ଧନୁର୍ଦ୍ଧର ।
ସୁଗ୍ରୀବର କହିଲେ ଯେ ସିଦ୍ଧାନ୍ତ ବଚନ
ମହର୍ଷିଲୋକ ବାଣୀ କେବେହେଁ ନୁହେଁ ଆନ
ପ୍ରତିଜ୍ଞା କରିଅଛି ରାବଣ ମାରିବାରେ
ସତ୍ୟ ଧର୍ମ ଅଛି ବୋଲି ବୋଲନ୍ତି ତିନିପୁରେ

ଲକ୍ଷ୍ମଣ ଶରେ ତାହାଙ୍କୁ କର ହେ ବେନଖଣ୍ଡ
ମାର ଅସୁର ପ୍ରତିଜ୍ଞା କରିଛ ପ୍ରଚଣ୍ଡ ।
ବଚନ ସୁଫଳ ଯେ ହେଉ ରାମରାଜ
ସମର ଗାଢ଼କରି ଅସୁର ସଙ୍ଗେ ଯୁଝ ।
ଏ ବଚନ ଶୁଣିଣ କୋଦଣ୍ଡ କାଣ୍ଡପାଣି
ବୋଲନ୍ତି ବଚନ ଶୁଣ ବିଭୀଷଣ ପୁଣି
ଶୁଣ ତୁମ୍ଭେ ଲଙ୍କପତି ମୋହର ବଚନ
କେଉଁଠାରେ ରହିଅଛି ରାବଣ ନନ୍ଦନ ।
ରଣଭୂମିକି ନ ଆସି ଯାଇଅଛି କେଣେ
ଏବେ କେଉଁଠାରେ ଅଛି ବୁଝ ତତକ୍ଷଣେ ।
ଅତି ଦୁରାଚାର ଯେ ମାୟାବୀ ଦନୁଜ
ମୋହର ପ୍ରତିଜ୍ଞା ତୁମ୍ଭେ ବୁଝ ଲଙ୍କରାଜ ।
ଶୁଣି ବିଭୀଷଣ ରଘୁନାଥଙ୍କ ଚରିତ
ଏହି ସମୟେ ଲଙ୍କାରୁ ପ୍ରବେଶ ଆସି ଦୂତ ।
ବିଭୀଷଣ ଆଗରେ ଚାର କହିଲା ଆସି ପୁଣି
ନିକୁମ୍ଭିଳା ମୂଳେ ହୋମ କରୁଛି ଲଙ୍କପାଣି ।
ରାବଣର ଚରିତ ସମସ୍ତ ଠାବ କଲା
ଶୁଣିଣ ରଘୁନାଥ ସ୍ୱମୁଖେ ମିଳିଲା ।
କରଯୋଡ଼ି କହଇ ଯେ ଶୁଣ ବିଭୀଷଣ
ଶୁଣ ଦେବ ରଘୁନାଥ ଅଯୋଧ୍ୟା ରାଜନ ।
ଲକ୍ଷ୍ମଣଙ୍କୁ ଯେଉଁଦିନ ଶକତି ମାଇଲା
ଲଙ୍କାଗଡରେ ଯାଇଣ ପ୍ରବେଶ ହୋଇଲା ।
କୃପାଅରେ ହେଦେବ ବୀରବାହୁ ବୀର
ତାହାଙ୍କୁ ସଂଗ୍ରାମେ ନାଶ କଲେ ରଘୁବୀର ।
ତେଣୁ ସେ ଚନ୍ତାଭର ପାଇଲା ରାଜନ
ମନ୍ତ୍ରୀରାବଣକୁ ଯେ ପେଷିଲା ଡକାଇଣ ।
ପଦ୍ମବ୍ୟୂହ କଲା ସେ ଇନ୍ଦ୍ରଜିତ ସୁତ
ଲକ୍ଷ୍ମଣ ସୁଷେଣ ହନୁକୁ ହାରିନେଲା ସେ ତ
ବର ଦେଇଥିଲେ ତାକୁ ଅଷ୍ଟଆଖି ପୁଣ
ବ୍ରହ୍ମାଙ୍କର ବଚନକୁ କଲେ ସୁମରଣ ।
ପୂର୍ବେ ପିତାମହ ହେ ପ୍ରସନ୍ନେ ଦେଲେ ଯାହା
ଶୁଣ ପ୍ରଭୁ ରଘୁନାଥ ଶୁଣ ହୋ ଏବେ ତାହା
ଏହି ସ୍ୱର୍ଗପୁରେଣ ଅଛଇ ଦିବ୍ୟ ରଥ
ସନ୍ତୋଷ ଚିତ୍ତେ ତାକୁ ଦେଇଛି କୁଶହସ୍ତ ।
ସର୍ବ ବିମାନରେ ସେ ଯେ ଅଟଇ ସମ୍ପୂର୍ଣ୍ଣ
କାମରୂପୀ ଅଶ୍ୱ ତହିଁ ଯୋଡେ ବିଚପନ ।
ଅଭେଦ କବଚ ସେ ଦିବ୍ୟ ଅସ୍ତ୍ରମାନ
ଧନୁର୍ଜୟ ପତାକା ଅଟେ ବିଚପନ ।
ତ୍ରିଚାଶନ ମଧ୍ୟରୁ ବାହାର ସେ ରଥ
ତୁମ୍ଭ ମାରିବାରେ ଇଚ୍ଛାକରେ ଦଶମାଥ ।
ସେ ରଥରେ ବସିଲେ ସେ ଜିଣିବ ତ୍ରିଲୋକ
ତହିଁରେ ବସିଥିଲେ ନ ଲାଗେ ଦୁଃଖ ଶୋକ
କ୍ଷୁଧା ତୃଷା ପୁଣ ଯେ ନ ଲାଗେ ଆଉ ତହିଁ
ଏସନଙ୍କ ନିର୍ମାଣ କରିଅଛି ବିହି ।
ବ୍ରହ୍ମାଙ୍କର ବଚନ ତା କେବେହେଁ ନ ହେଉ ଆନ
ଅଗ୍ନିରୁ ବାହାର ସେ କରିବ ଦିବ୍ୟ ଯାନ ।
ସେ ହୋମ କରୁଅଛି ପ୍ରତାପେ ଲଙ୍କେଶ୍ୱର
ଦେବତାଙ୍କୁ ବନ୍ଧକରି ରଖିଛି ନିଶାଚର ।
ନିଷ୍ଠାଳମନ ହୋଇଣ ଯଜ୍ଞ ଆରମ୍ଭ କରେ
ମନ ଚଇତନକୁ ଦୃଢ଼ କରି ଧରେ ।
ସଂଯୁକ୍ତ କରିଣ ସେ କରେ ଦେବ ହୋମ
ଏଥକୁ ବିଘ୍ନ କସ କରିବ ଶ୍ରୀରାମ ।
ଯେମନ୍ତେ ଯାଗ ତାର ନୋହେ ସମାପତ
ଏ କଥାକୁ ବିଚାର କରନ୍ତେ ତୁରିତ ।
ସେ କର୍ମ ସମାପତ ହେବ ଯେବେ ତାରେ
ଅଜୟ ହୋଇବ ସେ ତିନ ଭୁବନରେ ।
ହରି ହର ବ୍ରହ୍ମା ତାକୁ ନ ପାରିବେ ଜିଣି
ଏମନ୍ତ ବର ତାକୁ ଦେଇଛି କୁଶପାଣି ।
ସୁବାହୁକୁ ପେଷି ମୁଁ ଜାଣିଲି ରଘୁବୀର
ଏଥିର ତରିତ ଦେବେ ବେଗେ ତୁମ୍ଭେ କର
ଶୁଣିଲେ ବିଭୀଷଣର ସୁସାର ବଚନ
ସେନାପତିମାନଙ୍କୁ ରାଇଲେ ରଘୁନାନ ।
ମନେ ମନେ ବିଚାରିଲେ ସୀତସ୍ୱାର କାନ୍ତ
ଅଷ୍ଟ ସେନାପତି ଯେ ବଳରେ ବଳବନ୍ତ ।
ମାଲ୍ୟବନ୍ତ ଗବୟ ଗବାକ୍ଷ ବସନ୍ତ
ଶରଭ ଗନ୍ଧମାଦ୍ଦନ ଏମନ୍ତେ ଯେ ଅଷ୍ଟ ।
ମହା ପ୍ରଳୟ ପ୍ରତାପୀ ଲଙ୍କାର ଅଧିପତି
ତାହାର ଯଜ୍ଞଭଗ୍ନ କର ହେ ତରିତ ।
ରଘୁନାଥଙ୍କ ଆଜ୍ଞା ସେନାପତିଏ ଘେନ
ଯୂଥପତିମାନେ ଯେ କରିଲେ ଘୋରଧ୍ୱନ ।
ପ୍ରଳୟକାଳେ ଯେସନ୍ତେ ଗର୍ଜନ ଜଳଦ
ଶୁଣିକରି ସର୍ବଜନେ ହୋଇଲେ ଭବଦ ।

ଯେ ଯାହା ସୈନ୍ୟସେନ ଗଗନମାର୍ଗେ ପୂରି
ଶାଳ ଶୀଳ ଅଙ୍ଗ ଭରେ ଛନ୍ତି ଧରି ।
ପକ୍ଷଥିଲା ପ୍ରାୟେକ ପର୍ବତ ଶୋଭା ଦିଶି
ଦେଖିଣ ଶ୍ରୀରାମ ଯେ ହେଲେ ମନେ ତୋଷି
ତତ୍‌କ୍ଷଣେ ଘୁଞ୍ଚିଲେ ସେ ଯେ ସଂଗ୍ରାମ ମଣ୍ଡଳ
ଲଙ୍କାଗଡ଼ରେ ମିଳିଲେ ଯାଇଁ କପିଦଳ ।
ତେଣିଁ ସୁବର୍ଣ୍ଣ ପାଚେରି ଉପରେ ଉଠି
ରାବଣ ନବରକୁ ରୁହାନ୍ତି କୋପଦୃଷ୍ଟି ।
ଦେଖିଲେ କପିବୃନ୍ଦ ଦେବତା ମନ୍ଦର
ମଧ୍ୟରେ ବସିଅଛି ଦଶକନ୍ଧ ବୀର ।
ସ୍ଥିରପାଣେ ସୈନ୍ୟବଳ କଳନା ନ ଯାଇ
ବେଢ଼ି କରି ଦୈତ୍ୟ ଅଛନ୍ତି ପୁଣ ରହି ।
ରଥୀ ପଦାନ୍ତି ସେନା ଚଉଁରେ ସେନାବଳ
ଯେସନେକ ଶୋଭିତ ପ୍ରଳୟ ସାଗର ।
ପ୍ରଳୟ ଅଗ୍ନି ଜାଣି ଦିଶନ୍ତି ସୈନ୍ୟଗଣ
ନାନା ଅସ୍ତ୍ରଶସ୍ତ୍ରେ ଯେ ପୂରିତ ଗଗନ ।
ହସ୍ତୀଙ୍କର ଧ୍ୱଜ ଯେ ଘୋଡ଼ାଙ୍କ ଟାପୁଘାତ
ରଥ ଗଜ ଅଶ୍ୱରେ ପୂରିଛି ଜଗତ ।
ଅନେକ ବଳ ଚହିଁରେ ନ ଯାଇ କଳଣା
ଯାହାମୁଖରେ ପଡ଼ିଲେ ଦେବତା ହୋନ୍ତି ଚଣା
ରଥୀଙ୍କର ମଧ୍ୟରେ ଶୋଭିତ ଲଙ୍କପାଳ
ଆଗେ ତାର ଜଳୁଅଛି ପ୍ରଚଣ୍ଡ ଅନଳ ।
ଦଶଦିଶିରେ ରଙ୍ଗଯାଗ ତାର ଶୋଭା ଦିଶି
ପ୍ରଳୟ ଅଗ୍ନି ଜାଣି ତେଜ ପରକାଶି ।
ରକ୍ତ ବସ୍ତ୍ର ହରଣ ଉତ୍ତରି ଅଙ୍ଗ ବାସ
ପୂର୍ବମୁଖ ହୋଇଣ ବସିଛି ଦଶାଈଶ ।
ଚପଳ ବିଜୁଳି କି ଶୋଭିତ ମଧ୍ୟଘନେ
ତେସନକ ଦିଶଇ ଯେ ବସ୍ତ୍ରବା ନନ୍ଦନେ ।
ପର୍ବତ ପରାୟେ ଯେ ଦିଶେ ଦିବ୍ୟଶୋଭା
ହସ୍ତରେ ସ୍ୱାହା ପ୍ରୋକ୍ଷଣୀ ଦିଶେ ମହାପ୍ରଭା ।
ହସ୍ତର ପାଦପରେ ଦିଶେ ଭୟଙ୍କର
ନର୍ତ୍ତିର ଝର ପ୍ରାୟେ ଦିଶେ ମୋତି ହାର ।
ମହାକାଳର ପ୍ରାୟେ ଯେ ଦିଶଇ କନ୍ଧ ଭାର
ଦେଖିଲେ ଭୟେ ଗାନ କରିବେ ସୁରେଶ୍ୱର
ବସ୍ତ୍ର ପରିହରଣ ଦିଶଇ ତତମନ
ମନ୍ତ୍ର ପଢ଼ି ବିଧାତାକୁ କରେ ସ୍ତୁତିମାନ ।

ପ୍ରତ୍ୟକ୍ଷେ ରୁଦ୍ରମୂର୍ତ୍ତି ଦିଶେ ଦଶାନନ
ଏସନେକ ରାବଣର ଦେଖି ହୋମ କର୍ମ ।
ଅଷ୍ଟ ସେନାପତିଏ ହୋଇଲେ ତୋଷମନ ।
ତହୁଁ ସେମାନେ ଚଳିଲେ ହୋଇଣ ବହଳ
ଅଙ୍ଗଦ ସୈନ୍ୟ ସେନ ପଶିଲ ଭିତରେ
ଗଛ ଶିଳାମାନ ଯେ ଧରିଛନ୍ତି କରେ ।
ବାନରବଳମାନଙ୍କୁ ଦେଖି ଦୈତ୍ୟଗଣ
ରଥ ଗଜ ପଦାନ୍ତି ଅଶ୍ୱ ଅପ୍ରମାଣ ।
ଉଚ୍ଛନ୍ନେ ଚହାକୋନ୍ତି ସେ ମାରନ୍ତି ମୁଦ୍‌ଗର
କ୍ରୋଧରେ ସଂଗ୍ରାମକୁ ବାହାରେ ଦୈତ୍ୟବୀର
ଦୁଇ ସୈନ୍ୟଯାକ ଯେ ହେଲେ ମିଶାମିଶି
ପ୍ରଳୟକାଳେ ଯେସନ୍ତେ ଦୁଇ ସୈନ୍ୟ ମିଶି ।
ବାନର ରାକ୍ଷସ କେହୁ ନୋହିଲ ବାରଣ
ଶିଳା ବୃକ୍ଷ ଧରିଣ କଲେ ମହାରଣ ।
ଅସୁରେ ଶାର୍ଙ୍ଗ ଶାବଳ ଯେ କଣ୍ଟ କରବାଳ
ହେଲ ଚକ୍ର ମୁଦ୍‌ଗର ଅର୍ଦ୍ଧୀପକ୍ଷ ଶୂଳ ।
ଦୈତ୍ୟେ କପିମାନଙ୍କର ଉପରେ ପ୍ରହରିଲେ
ବୃକ୍ଷଧରି କପିଏରେ ଦୈତ୍ୟଙ୍କୁ ମାଇଲେ ।
ମହାଘୋର ସଂଗ୍ରାମ ହେଲ ଦୁଇଦଳ
ଆକାଶରେ ଥାଇ ତାହା ଦେଖନ୍ତି ଦିଗପାଳ
ଶୁଣିଲ ମାଡ଼କରେ ଭଲୁସଇ ବ୍ୟୋମ
ବୃକ୍ଷ ଶିଳା ପଡ଼ନ୍ତେ ଆଚ୍ଛାଦେ କରେ ତମ
ବାନର ଗଛ ଶିଳା ଘେନଣ ଯୁଦ୍ଧକଲେ
ଲକ୍ଷଦନ୍ତ ଘେନଣ ଶିରରେ ବଢ଼ାଇଲେ ।
କେହି କାହାକୁ ଫୋପଡ଼ାଇ ମାରିଣକଲ ଗୁଣ୍ଡା
କେହୁ କାହାର ଉପରେ ପ୍ରହାର କଲ ଖଣ୍ଡା
କେହୁ ତୀକ୍ଷ୍ଣ ଭଲେ ଘେନଣ ଲହାଇଲେ
କେହୁ ତୀକ୍ଷ୍ଣ ଶରରେ ବାନର ନାଶିଲେ ।
ତୀକ୍ଷ୍ଣ ଶର ଘେନି ପେଶନ୍ତି ଘନ ଘନ
ଅଶ୍ୱତ୍ଥାମେ କାଟିଲେ ଶ୍ରୀରାମର ସୈନ୍ୟ ।
କେହୁ ଅଗ୍ନିଶର ଘେନଣ ଦହିଲେ
କେହୁ ଭୁଷଣ୍ଡୀ ପରଘ ଘେନଣ ମାଇଲେ ।
କ୍ଷଣକରେ ଅଦୃଶ୍ୟ ହୋଇଲ ଗଗନ
ପ୍ରାଣ ଗୁଡ଼ ଭୂମିରେ ପଡ଼ିଲେ କପିସୈନ୍ୟ ।
ଦେଖିଣ ଅଷ୍ଟ ସେନାପତି କ୍ରୋଧ ହେଲେ
ଶିଳା ବୃକ୍ଷ ଘେନିଣ ଗଉଡ଼େ ବରଷିଲେ ।

ରାକ୍ଷସ ସୈନ୍ୟ ଭିତରେ ପଶିଲେ ଝସାଇ
କଳକଳା ରବ ଯେ ସିଂହରାବ ଦେଇ ।
ଶିଳା ପର୍ବତ ଯେ ଘେନିଣ ଯୁଦ୍ଧକାଳେ
ଘଡ଼ିକ ଭିତରେ ଅସୁର ସଂହାରିଲେ ।
କର୍ଦ୍ଦମ ମାରୁଣି ଯେ ହୁଙ୍କାଇ ତାହା କରି
ଦୁଇକୋଟି କବନ୍ଧ ନାଚିଲେ ରଣଭୂଇଁ ।
ରକ୍ତ ମାଂସରେ କର୍ଦ୍ଦମ ହୁଏ ମହୀ
ଗୃଧ୍ରପକ୍ଷୀ ଶୃଗାଳ ସୁଖେଣ ଭୁଞ୍ଜେ ତହିଁ ।
ଦେଖିଣ ପଳାଇଲେ ଯେ ଅସୁର ସଇନ
ଋକ୍ଷକପି ମାଇଲେ ଶିଳା ବୃକ୍ଷ ଘେନି ।
ଏସନେକ ଯୁଦ୍ଧ ଦେଖିଣ ଦେବଗଣ ।
ସୁରଗଣମାନଙ୍କର ହରଷ ଯେ ପୁଣ ।
ଇକ୍ଷ୍ୱାକୁମାନଙ୍କର ଅଟେ ଏତ୍ତୁ ମନ
ସୁରନାରୀମାନଙ୍କର ଯେ ବଢ଼ାଇ ଆନନ୍ଦ ।
ରାକ୍ଷସ ବାନରଙ୍କର ବିଷମ ମହାରଣ
ରକ୍ତନଦୀ ଗୋଟିଏ ବହିଲା ତକ୍ଷଣ ।
ରଥର ପତାକାମାନ ଦିଶେ ମାଳ ମାଳ
ବିକଶିତ ଶଶୀମାନେ ଦିଶନ୍ତି ଚଞ୍ଚଳ ।
ଯୋଦ୍ଧାଙ୍କର ହାସ୍ୟେ ବଦନ କୋମଳ ଶୋଭା
ହସ୍ତୀଙ୍କର ବଦନ ଝରର ପ୍ରାନ୍ତେ ଶୋଭା ।
ବସ୍ତ୍ରମାନ ତହିଁରେ ଛୁଟର ଲହରୀ
ସୁରଗଣ ମାନଙ୍କର ହରଷ ମନ ଘେରି ।
ଇକ୍ଷ୍ୱାକୁମାନେ ତହିଁ ଇସ୍ନ ଜାତ କଲେ
ଗୃଧ୍ରପକ୍ଷୀ ଶୃଗାଳ ଆନନ୍ଦ ବିସ୍ତାରିଲେ ।
ସତ୍ୟହୀନ ଲୋକଙ୍କର ଦୁର୍ଗମ ଅଟଇ
ରକ୍ତନଦୀ ଗୋଟିଏ ବହୁଅଛି ତହିଁ ।
ସେ ନଦୀ ତରିଣ ସେ ଗଲେକ ତଡ଼ିତ
ଦେବତାଙ୍କ ମନ୍ଦିରେ ମିଳିଲେ ଶୀଘ୍ରଗତି ।
ଯେସନେକ ନଦୀ ବୈତରଣୀ ତଟି
ତରିଣ ସୁର ନରେ ବସନ୍ତି ସ୍ୱର୍ଗପୁରୀ ।
ତେସନକ ପ୍ରାୟେ ଯେ ବାନର ମହାବୀର
ସମସ୍ତେ ମିଳିଲେ ଯାଇ ରାବଣ ସନ୍ନିଧିର ।
ରାକ୍ଷସବଳମାନେ କରି ମହାରଣ
ଋକ୍ଷକପି ଅସୁରଙ୍କୁ କଲେ ରଣଭଣ ।
ପ୍ରଳୟ ମେଘ ଜାଣି କରନ୍ତି ସେ ଧ୍ୱନି
ତଦେଖିଣ ତ୍ରାସିଲେ ଅସୁର ସଇନ ।
ସଂଗ୍ରାମ ଭୂମିକୁ ସେ ଗୁଡ଼ିଣ ପଳାଇଲେ
ଥୋକାଏ ସମୁଦ୍ର କୂଳରେ ଲୁଚିଲେ ।
ଥୋକେ ଅସୁରବଳ କନ୍ଦରେ ହେଲେ ଲୀନ
ଥୋକେ ଅସୁର ପଶିଲେ ଅରଣ୍ୟରେ ପୁଣ ।
ଥୋକେ ବୋଇତରେ ଲୁଚିଲେ ପୁଣ ଯାଇ
ଭୟରେ କମ୍ପୁଛନ୍ତି ଦେହରେ ଜ୍ଞାନ ନାହିଁ ।
ଏମନ୍ତେ ବଣଢ଼ଗେ ଲୁଚିଲେ ଅସୁର ସେନା
ରଥ ଗଜ ଅଶ୍ୱ ଯେ ନ ଯାଇ କଳଣା ।
ଏମନ୍ତେ ନିଜବଳ ଭଗ୍ନ ପ୍ରାୟେ ଦେଖି
କେବେହେଁ କୋପମନ ନକର ବଂଶଆଖି ।
ଇନ୍ଦ୍ର ନଗ୍ରହଣ ସେ ଯେ ଅଗ୍ନିରେ ହୋମକରେ
କୁଶଧ୍ୱଜ ବୀର ଯେ ମନରେ ବିଚାରେ ।
ଅଙ୍ଗଦ ବସନ୍ତ ଯେ ଜାମ୍ବବ ନଳ ନୀଳ
ଖଞ୍ଜରୀ ସେନାପତି ପବନ ଶତବଳ ।
ଦଇତଗଣ ରଣରେ ଭାଜିବାର ଦେଖି
ଆନନ୍ଦରେ ସମସ୍ତେ ମନରେ ହେଲେ ସୁଖୀ
ରଘୁନାଥଙ୍କର କାର୍ଯ୍ୟ ହୋଇବ ସଫଳ
ଏମନ୍ତ ଭାଳି ଅଙ୍ଗଦ ଜାମ୍ବବ ନଳ ନୀଳ ।
ରାବଣ ଆଗରେ ସେ ହେଲେ ପରବେଶ
ଏଥୁଅନନ୍ତରେ ଯେ ବାଳି ରାଜା ଶିଷ୍ୟ ।
ବାହାସ୍ଫୋଟ ମାରିଣ ସେ ବୋଲଇ ବଚନ
ଶୁଣ ତୁହେ ଲଙ୍କାର ନୃପତି ଦଶାନନ ।
ଭସ୍ମଗୁଡ଼ ନିର୍ଭୟ ଲୋକର ପ୍ରାୟେ ହୋଇ
କମ୍ପାଇ ବସିଲୁ ତୁହେ ମନ୍ଦୋଦରୀ ପାଇଁ ।
ମୋର ସଙ୍ଗେ ଯେବେ ତୁ କରିବୁ ସଂଗ୍ରାମ
ଆଜ ତୋର ଜୀବନ ହରିନେବ ଯମ ।
ଏତେ କହି ପ୍ରଳୟ ମେଘପ୍ରାୟେ ହୋଇ
ଗର୍ଜନ କରଇ ଯେ ରାବଣ ମୁଖ ଚାହିଁ ।
କାଳର ମେଘପ୍ରାୟେ ଯେ ରାବଣ ତେଜକାନ୍ତି
ବଦନ ଦିଶୁଅଛି ଅନ୍ଧାର ଘୋର ଜ୍ୟୋତି ।
ଜାମ୍ବବ ନାମରେ ସେ ଋକ୍ଷ କପିବଳ
ଆସିଣ ରାବଣକୁ ବୋଲନ୍ତି କୋପଭର ।
ଶୁଣ ତୁରେ ରାବଣ ବିଶ୍ରବା ନନ୍ଦନ
କେଉଁ ଧର୍ମ ତୋହର କେବଣ ତୋର ପୁଣ୍ୟ
ଅଧାର୍ମିକ ଲୋକ ତୁହିରେ ମୁହିଁ ଜାଣିବାରେ
ଦୁଷ୍ଟ ଲୋକଙ୍କର ଜପତପ ଅବେଲରେ ।

ପ୍ରକୃତି ଅନ୍ତର ତୁରେ ହେଲୁ ଲଙ୍କେଶ୍ୱର
ନିଶ୍ଚୟ ଆମ୍ଭର ହସ୍ତେ ମରଣ ତୋହର ।
ଏମନ୍ତ ଋକ୍ଷ କପିଙ୍କ ବଚନ ଶୁଣିଣ
କେବେହେଁ କ୍ରୋଧମନ ନ କଲା ରାବଣ ।
ଏଥୁ ଅନନ୍ତରେ ବାଳି କୁମର ଯେ ପୁଣ
ଅଙ୍ଗଦ ନାମେ ବୀର ଅଟଇ ସେ ଜାଣ ।
ମେରୁ ପର୍ବତ ପ୍ରାୟେ ସାମାନ୍ୟ ରୂପ ଧରି
ରାବଣକୁ ବହୁତ ସେ କହିଲା ଧିକ୍କାରି ।
ମୁହିଁ ସେ ବାଳି ତନୟ ମୋ ନାମ ଅଙ୍ଗଦ
ମୋତେ ଭଲକରି ହୋ ଚିହ୍ନ ଦଶକନ୍ଧ ।
ଯୋଦ୍ଧା ଅର୍ଥେ ମୁହିଁ ଯେ ବୋଲୁଅଛୁ ତୋତେ
ଯୁଦ୍ଧକରି ତୁ ବିପୁତି କରି ମୋତେ ।
ଏତେ କହିଣ ବୀର କରଇ ଗର୍ଜନ
କେବେହେଁ କୋପ ନ କଲା ଦଶାନନ ।
ଏଥୁଅନନ୍ତରେ ଯେ ନୀଳ ସେନାପତି
ପ୍ରତ୍ୟକ୍ଷେ ଅଗ୍ନି ସେ ଯେ ହୋଇଛି ଉତପତ୍ତି
ତେସନ ପ୍ରାୟେ ଯେ ଅଗ୍ନିର ନନ୍ଦନ
ଗର୍ଜନ କରିଣ ସେ ଧାଇଁଲା ବହନ ।
ରାବଣର ଆଗରେ ମିଳିଲା ବୀର ଯାଇଁ
ତପକଲେ ତୋତେ ରଖିବା କେହି ନାହିଁ ।
ନୀଳର ବଚନକୁ ରାବଣ ନ ଶୁଣଇ
କେବେହେଁ କ୍ରୋଧ ନ କରେ ଲଙ୍କସାଇଁ ।
ରାବଣର ଏସନକ ଦେଖିଣ ଧଇର୍ଯ୍ୟ
ଆଗରେ ମିଳିଲା ତାର ଜାମ୍ବବ ନାମେ ବଢ
ଉଠ ତୁ ରାବଣ ବେଗେ କରି ତୁ ସମର
କ୍ଷତ୍ରୀଙ୍କର ଉପରେ ବୋଲଇ ବୀରବର ।
ମୋହର ସଙ୍ଗେ ଯୁଦ୍ଧକର ବେଗେ ଆଜ
ନିଶ୍ଚୟେ ତୁହି ପ୍ରାଣ ଘୁଞ୍ଚିବୁ ଲଙ୍କରାଜ ।
ଏହିକ୍ଷଣି ମୁହିଁ ତୋତେ କରିବି ନିଧନ
ନିଶସ୍ତ୍ର ହୋଇଣ କମ୍ପା ତୁ ବସିଛୁ ଦଶାନନ ।
ଉଠ ତୁ ଶସ୍ତ୍ରଧରି କରି ତୁ ଏବେ ରଣ
ନତୁବା ସୀତା ଦେଇ ରାମେ ପଶ ଯା ଶରଣ
ଏମନ୍ତ କଟୁ ବଚନ ବୋଲେ ଜାମ୍ବବନ୍ତ
ତେବେ କୋପ ନ କରଇ ବିଶ୍ରବାର ସୁତ ।
ବ୍ରହ୍ମାଙ୍କର ବଚନ ଅଗ୍ନିରେ କରେ ହୋମ
ଋଷିର ତପଟେଳ ଯେ କରିଅଛି ମନ ।

ଦେଖିଣ ବିସ୍ମୟେ ହେଲା ଜାମ୍ବବ ମନ୍ତ୍ରୀ ପୁଣ
ନିଶ୍ଚଳ ହୋଇଣ ଯେ ବସିଛି ଦଶାନନ ।
ରାବଣକୁ ସୁପାରୁଷ ବୋଲଇ ବଚନ
ଶୁଣ ତୁହେ ରାବଣ ବିଶ୍ରବା ନନ୍ଦନ ।
ଏତେ କଥାରେ ତୋର ମନେ କ୍ରୋଧ ନାହିଁ
ତୋ ଦେହେ କ୍ରୋଧ ହେବାକୁ କଥାଏ ଅଛଇ
ଯେଉଁ ପ୍ରାଏ କ୍ରୋଧ ଅବା ହେବ ହୋତୋର
ପାପଫଳ ଭୋଗ ତୁ କରି ଏବେ ଦୁରାଚାର ।
ତୋହର ଭାରିଯା ଯେ ମନ୍ଦୋଦରୀ ରାଣୀ
ତାକୁ ବଳଧରି ମୁଁ ଆଣିବି ଏହିକ୍ଷଣି ।
ତେବେ ସେ ତୋହର ରେ ତପଭଗ୍ନ ହୋଇ
ଆନ ଉପାୟରେ କ୍ରୋଧ ନୋହିବୁରେ ଭାଇ
ଏସନ ଶୁଣି ବୋଲେ ବାଳିର ନନ୍ଦନ
ଜାମ୍ବବକୁ ଚାହିଁ ସେ କହଇ ବଚନ ।
ସକଳ ନୀତ୍ୟକର୍ମ ଜାଣ ବାବୁ ତୁମ୍ଭେ
ଶୁଣ ତୁମ୍ଭେ ବଚନ କହୁଅଛୁ ଆମ୍ଭେ ।
ସେ ଦୈତ୍ୟ ନନ୍ଦନୀ ତେଜ ଅଟେ ରାଜଜେମା
ପତିଭକ୍ତାପଣେ ସେ ଅଟେ ଅନୁପମା ।
ଏମାନେ କେମନ୍ତେ ନ ଛୁଅଁନ୍ତି ପରନାରୀ
ବିଶେଷ ଅଟଇ ସେ ନୃପତି ମନୋହାରୀ ।
ନ କର ଏକଥା ବାବୁ ବାଳିର ନନ୍ଦନ
ଆମ୍ଭର ନୁହଁଇ ବାବୁ ଏସନ ବିଧାନ ।
ହନୁମନ୍ତ ଥିଲେ ସକଳ କଥା ହୋଏ
କେଣେ ଗଲା ବୀର ଯେ ରହିଲା କେଉଁଠାଏ ।
ଅଙ୍ଗଦ ବୋଇଲା ତୁମେ ଶୁଣ ଆହେ ଅଜା
ଏହି ହରି ଆଣିଲାଟି ଜନକ ତନୁଜା ।
ତ୍ରୈଲୋକ୍ୟ ଠାକୁରାଣୀ ଶ୍ରୀରାମ ମନୋହାରୀ
ନିମଗ୍ନ ସ୍ଥାନରୁ ସେ ଆଣିଲା ସ୍ୱେଚ୍ଛକରି ।
ଏଥିରେ ଅଧର୍ମପଣ ନ କରି ଦଶଗ୍ରୀବ
ଦୈତ୍ୟ ହରି ଆଣିଲା ଯେ ବିଷ୍ଣୁର ପ୍ରିୟଭାବ
ଏହାର ଭାରିଯାକୁ ଆଣିଲେ ନାହିଁ ପାପ
ପାପୀଠାରେ ପାପୀ ଯେ ଆତ୍ମାର ସ୍ୱରୂପ ।
ପୂର୍ବକାଳରେ ମୁଁ ଯେ ବ୍ରହ୍ମା ଆଜ୍ଞା ପାଇ
ସୂର୍ଯ୍ୟଙ୍କଠାରେ ପଢ଼ିଲି ଧର୍ମଶାସ୍ତ୍ର ଯାଇ ।
ଲକ୍ଷେ ଗ୍ରନ୍ଥ ପାଠ ଏହୁ ସମ୍ପାଦିଅଛି ପୁଣ
ଏକମନ ହୋଇଣ ଅଜା ହେ ତୁମ୍ଭେ ଶୁଣ ।

ଯେହ୍ନ ପରନାରୀକୁ ବଳେ ହରିଥାଇ
ତାରସ୍ତିରୀ ହରିଲେ ପାପ ନ ଲାଗଇ ।
ସ୍ୱୟଂ କମଳମା ତ ଜନକ ନନ୍ଦମା
ତାକୁ ହରି ଆଣିଲା ପାପିଷ୍ଠ ଲଙ୍କମଣି ।
ଏଥିକୁ ଶୋଚନା ତୁମ୍ଭେ ନ କର କପିବୀର
ବେଗେ ସ୍ୱାର ଭାରଯାକୁ ଆଣିବା ସତ୍ୱର ।
ଏମନ୍ତ ସୁପାରଣ ବଚନ ଶୁଣିଣ
ହସିଣ ବୋଇଲା ଯେ ବାଳିର ନନ୍ଦନ ।
ରାମ ନଥିବାରୁ ହରି ଆଣିଲା ସୀତା
ଏହା ନାରୀ ଆଣିବା ଅଟଇ ବହୁତା ।
ସମସ୍ତ ବୀରମାନେ ଥାଅ ଏହିଠାରେ
ମୁହିଁ ଆଣିବି ମନ୍ଦୋଦରୀକି ବଳାତ୍କାରେ ।
ସମସ୍ତେ ଦେଖିବ ସ୍ୱାର ପ୍ରିୟବନ୍ଧୁ ନାରୀ
ଶୁଣିଣ ସମସ୍ତେ ସର୍ବକଲେ ଜାଣ ।
ଏଥୁ ଅନନ୍ତରେ ଚଳେ ବାଳିର କୁମର
ରାବଣ ମନ୍ଦିରେ ପ୍ରବେଶ ମହାବୀର ।
ସିଂହ ଯେସନେ ଗିରି ବନରେ ପଶଇ
ତେସନକ ପ୍ରାୟେ ଅଙ୍ଗଦ ଶୋଭାପାଇ ।
ଦେଖିଲା ରାବଣ ସେ ପୁରେ ହାଟପନ
ଗଜଦନ୍ତ ବାଡ଼ରେ ଦିଶେ ଶେ ଭବନ ।
ବଜ୍ରରୁ ଆଣ୍ଡପଣ ଦେବର ନବର
ମାଣିକ୍ୟର ସ୍ତମ୍ଭ ଯେ ଦିଶଇ ସୁନ୍ଦର ।
ସେ ଘର ପାବଚ୍ଛ ମାଣିକ୍ୟ ଶୋଭାପାଇ
ସେ ଘରେ ଶୟନ ଯେ କରେ ଲଙ୍କସାଇଁ ।
ସେଠାରୁ ମହାବୀର ହରମିଣ ଯାଇ
ଅନ୍ତପୁର ମଧ୍ୟରେ ପ୍ରବେଶ ହେଲା ଯାଇ ।
ମଣି ମାଣିକ୍ୟ ଯୌବରଜେ ଦିଶେ ହାଟପନ
ଅନେକ ଯତନେ ଗଢ଼େ ବିଶ୍ୱକର୍ମା ପୁଣ ।
ଚନ୍ଦ୍ରକାନ୍ତ ମଣି ଯେ ଗୃହମଧ୍ୟକୁ ଶୋଭା
ଧରିଅଛି ପୁରମାନଙ୍କୁ ଶରମାନ ଶୋଭା ।
ମାଣିକ୍ୟର ଶୋଭା ଯେ ହଟାହ ଶୋଭାବନ
ମତ୍ତଗଜ ହଂସରେ ସେ ହୋଇଛି ରଞ୍ଜନ ।
ନୀଳ ମଣିଗଣ ଉପୃକ୍ତ ମଣ୍ଡିତ
କଳ କଣ୍ଠ ଧ୍ୱନିରେ ସେ ହୋଇଛି ବର୍ଣ୍ଣିତ ।
ମତ୍ତ ମଧୁକରେ ଧ୍ୱନିରେ ଯେ ମନ୍ମଥମନମୋହେ
ସର୍ବଦା ଜଡ଼ ହେଲୁ ଯେବଣ ଯୁବବହେ ।

ଗଜଦନ୍ତ ପଲଙ୍କରେ ଶୋଭିତ ନୀଳମଣି
ଠାବେ ଠାବେ ସୁବର୍ଣ୍ଣର ପିଜୁଳା ଝଞ୍ଜଣି ।
ନାନା ମଣିଗଣ ଯେ ଶୋଭିତ ଚନ୍ଦ୍ରାତପ
ଠାବେ ଠାବେ ଅଛି ଗଜମୋତିର କଳସ ।
ଶ୍ୱେତ ଚାମର ତହିଁରେ ଖଞ୍ଜିଛି ହାଟପନ
ପବନକୁ ଗଣ୍ଡିମାନ ବାନ୍ଧି କରନ୍ତି ସ୍ୱନ ।
ତହିଁମଧ୍ୟରେ ଯେ ଶୋଭିତ ଖଟଦୋଳି
ହେମଗିରି ଖୋପରେ ଖଞ୍ଜିଛି ଝିଲୁଳ ।
ନୀଳମଣି ପଖୁଡ଼ା ତା ଗଡ଼ କୁନ୍ଦୁବନ
ପଦ୍ମରାଗ ମାଣିକ୍ୟ ଗଣ୍ଡିକେ ନାଗବନ୍ଧ ।
ଗଜମୋତି ଝରରେ ମର୍କତ ଚନ୍ଦ୍ର ଶୋଭେ
ଦେଖିବା ମାତ୍ରକେ ତ୍ରୈଲୋକ୍ୟ ଜନମୋହେ
ହଂସତୁଳୀ ତୂଳରେ ଶେଯାଇ ଅଛି ଶେଯ
ଯେବଣ ପାଖୁଡ଼ାରେ କର୍ପୂରର ରଜ ।
ସୁଗନ୍ଧୀନ ବାସନାର ଉପରେ ଉଡ଼ାଇ
କପୂର କସ୍ତୁରୀରେ କୁସୁମ ସିଞ୍ଚ ତହିଁ ।
ପାଶରେ ଖଟିଛନ୍ତି ସହସ୍ରେ ବନିତା
ତହିଁରେ ବସିଅଛି ମୟଦୈତ୍ୟର ସୁତା ।
ଗନ୍ଧ ଚାମର ପତାକା ଉଡ଼ଇ ନିରନ୍ତର
ଉଡ଼ୁଅଛି ଛତ୍ର ଶତେ ତା ଆଗର ।
କେ ତହିଁରେ ଗାବନ୍ତି ପଞ୍ଚମସ୍ୱରେ ରାଗ
ନୃତ୍ୟ ଗୀତ ତହିଁରେ ବହୁତ ଉପାଙ୍ଗ ।
ଦକ୍ଷ ବିଦ୍ୟାଧରୀ ଯେ କନ୍ନର ଅପସରୀ
ମାନବ ନାରୀ ତହିଁରେ ଅନେକ ଅସୁରୀ ।
ଏମନ୍ତ କନ୍ୟାଗଣ ନାଚୁଛନ୍ତି ଜାଣି
ସେହି ମଧ୍ୟରେ ଶୋଭା ଯେ ମନ୍ଦୋଦରୀ ରାଣୀ
ଯେସନେ ତାରାଗଣ ମଧ୍ୟରେ ଶଶୀ ଶୋଭା
ନାରୀଗଣ ମଧ୍ୟରେ ତେସନ ମନେ ଆଭା ।
ସେହିଠାରେ ମିଳିଲା ଯେ ବାଳିର ନନ୍ଦନ
ଦେଖିଣ ନାରୀଗଣ ମଣିଲେ ମନ ଛନ୍ନ ।
ତେଖିଲେ ଅପୂର୍ବ ହେ ବାନର ସେନାପତି
ନ ସ୍ଥିର ଭଇ ବଚନ ଲଭିଲେ ମନେଭ୍ରାନ୍ତି ।
ସ୍ତମ୍ଭୀଭୂତ ହୋଇଣ ରହିଲେ ସର୍ବେ ତହିଁ
ଯେହ୍ନେକ ଚିତ୍ର ଯେ ପ୍ରତିମା ଶୋଭାପାଇ ।
ନାରୀଗଣଙ୍କର ମଧ୍ୟେ ବୀର ହେଲା ପରବେଶ
ମନ୍ଦୋଦରୀକି ବୋଲେ ବଚନ ହୋଇ ଆସ

ମନ୍ଦୋଦରୀ ବୋଇଲା ଶୁଣ ହେ ବାନର
କେଉଁଠାକୁ ଯିବାକୁ ହେ କରୁଛ ବିସ୍ତର ।
ଅନ୍ତଃପୁର ମଧ୍ୟରେ କିସ କାର୍ଯ୍ୟ ତୋର
ନବୁର୍ଦ୍ଧିଲା ବଇଠଲେ ଶଙ୍କ ଯେ ତୋହର ।
ଭଲକଥା ନୁହେଁ ବାନର ଶିରୋମଣି
ପୁରୁଷକୁ ପୁରୁଷ ଯେ ଶଙ୍କ କରେ ମଣି ।
ସ୍ତ୍ରିଙ୍କି କଟାଳ କଲେ ପୁରୁଷଙ୍କ ଅଧର୍ମ
ଏ କଥାକୁ ବିସ୍ତର କର ତୋର ମନ ।
ଅଙ୍ଗଦ ବୋଇଲା ଆଗେ ତୁମେ ଅଧର୍ମ କଲ
ବାସୁଦେବ ଘରଣୀକୁ ହରାଇ ଆଣିଲ ।
ପାଦରେ ପଡ଼ି ରାମ କରନ୍ତ ରଣରଙ୍ଗ
ଘରେଥାଇ ସ୍ୱାମୀ ତୋର ଲୁଚଣ ବିଭଙ୍ଗ ।
ହୋମ କରୁଅଛୁ ଆମ୍ଭେ ସେଠାରେ ପ୍ରବେଶ
ସୈନ୍ୟବଳ ସଙ୍ଗେ ଯୁଦ୍ଧ କଲୁ ଯେ ବିଶେଷ
ଅନେକ ଅତ୍ୟାଚାର ଆମ୍ଭେ ସେଠାରେ କଲୁ
ମଳମୂତ୍ର କରିଣ ଅନେକ ଗାଳଦେଲୁ ।
ତେବେହେଁ ସମସ୍ୟା ଯେ ନଦେଲ ଆମ୍ଭଙ୍କୁ
ସେଥିର ସକାଶେ ଅଇଲୁ ଘରଠାକୁ ।
ପରମ ବ୍ରହ୍ମ ମୂର୍ତ୍ତି ଆଜ୍ଞା ନୁହେଁ ଆନ
ତୋରବାଳ ଧରିନେବ ତାହାର ଆଗେଣ ।
ରାବଣ ଜୀଇବା କଥା ମୃଛଥାଇ ଏବେ
ବିଭୀଷଣର ରାଣୀ ହେବୁ ସଦଶ୍ଚବେ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାକ ସଞ୍ଚରେ ଗଣିତ
ଦୁଷ୍ଟନାଶକର ସନ୍ତୁ ରଖେ କଉଶଲ୍ୟା ସୁତ ।
ବଳରେ ଆକର୍ଷି ପୁଷ୍ପି ଆଣେ କନ୍ଧମଣି
ବିକଳରେ ଡାକେ ମୟଦୈତ୍ୟର ଦୁଲଣୀ ।
ଯେସନେ ମୃଗପଲୁ ସିଂହ ନଏ ମୃଗ
ଧରିକରି ଅଙ୍ଗଦ କଲାକ ବିଭଙ୍ଗ ।
ଭୂଷଣ ବସନ ମୁକୁତା ମାଳମାନ
ପଡ଼ିଣ ଅବନୀରେ ବିଶେ ଶୋଭାବନ ।
ବାଳଧରି ରାବଣ ଆଗକୁ ଘେନଆସି
ହସିଣ ରାବଣକୁ ବଚନ ପ୍ରକାଶି ।
ଦେଖ ହେ ଦଶାନନ ଏ ମୟଦୈତ୍ୟର ସୁତା
ମନ୍ଦୋଦରୀ ନାମ ଯାର ଇନ୍ଦ୍ରଜିତର ମାତା ।
ଏହି ତୋର ପ୍ରିୟବକ୍ଷୀ ଅଟଇ ଯେ ନାରୀ
ଏହାକୁ ବଳେ ମୁଁ ଯେ ନେଇଛି ଧରିକରି ।
ରାମ ନଥିଲେ ସୀତା ଆଣିଲୁ ହରିକରି
ଦେଖ ମୁହିଁ ନେଉଅଛୁ ମନ୍ଦୋଦରୀ ନାରୀ ।
ଯେବେ ତୋର ସତ୍ତ୍ୱ ଅଛି ଶୁଣ ତୁ ରାବଣ
ପାରିଲେ ମୋର ସଙ୍ଗେ ଉଠି ତୁ କର ରଣ
ନୋହିଲେ ତୋର ଶିରେ ପାରେ ପାଦଦେଇ
ଦେଖ ତୋର ଘରଣୀକି ନେଉଅଛୁ ମୁହିଁ ।
ଏମନ୍ତ ଅଙ୍ଗଦର ବଚନ ଶୁଣିଣ
କ୍ରୋଧରେ ଚକ୍ଷୁଫେଡ଼ି ଘୂରିଲା ରାବଣ ।
ଦେଖିଲା ଧରିଅଛି ମନ୍ଦୋଦରୀ ବାଳ
କୋପେ ଗର୍ଜି ଉଠିଲା ଅନର୍ଗଳ ।
ଉଠିକରି କ୍ରୋଧଭରେ ବଜ୍ରସମ ମୁଠେ
ଅଙ୍ଗଦର ହୃଦରେ ମାଇଲା ଲଙ୍କାନାଥେ ।
ସେହିକ୍ଷଣେ ବାଳିନନ୍ଦନ ମୋହଗଲା
ଅଜ୍ଞାନ ହୋଇଣ ଯେ ଭୂମିରେ ପଡ଼ିଲା ।
ମହାବୀର ସୁପାରୁସ ଏମନ୍ତ ଦେଖିଲା
ବାଳିର ତନୟକୁ କାନ୍ଧରେ ପକାଇଲା ।
ଝପଡ଼େ ରାବଣକୁ କଲାକ ପ୍ରହାର
ଆକାଶରେ ବହମି ଗଲା ସେ ମହାବୀର ।
ଏଥୁଅନନ୍ତରେ ଯୂଥପତିମାନେ
ଦେଖିଣ ମହାକ୍ରୋଧ ହେଲେ ଦଶାନନେ ।
ହୋମର ସାମଗ୍ରୀ ସମସ୍ତ ନାଶକଲେ
ବଳମାନ ଫୋପାଡ଼ିଣ ଗଗନେ ବିହମିଲେ ।
ଶ୍ରୀରାମ ସନ୍ନିଧିରେ ପ୍ରବେଶ ହୋଇଲେ
ପାଦେପଡ଼ି ଶୋଇଣ ମଥାରେ ହସ୍ତଦେଲେ ।
ଶୁଣଦେବ ଅଯୋଧ୍ୟା ଠାକୁର ରଘୁପତି
ତୁମ୍ଭର ଆଜ୍ଞାରେ ଦେବ ଗଲୁ ଯେ ତଡ଼ିତି ।
ଅସୁରଙ୍କ ସଙ୍ଗେ ଦେବହେ କଲୁ ରଣ
କେବେହେଁ କ୍ରୋଧମନ ନକଲା ରାବଣ ।
ତାର ପ୍ରିୟବକ୍ଷୀ ଯେ ମନ୍ଦୋଦରୀ ରାଣୀ
କେଶଧରି ଆଣିଲା ଅଙ୍ଗଦ ବୀରମଣି ।
ତେବେ ସେ ରାବଣ ମନେ ମହାକ୍ରୋଧ ହେଲା
ଆମ୍ଭର ସଙ୍ଗତରେ ସେ ଯୁଦ୍ଧ ଆରମ୍ଭିଲା ।
ତାର ଯାଗ ଭଙ୍ଗିଣ ଅଇଲୁ ତତ୍ତି
ସାବଧାନ ହୋଇଣ ଶୁଣ ହେ ରଘୁପତି ।
ଶୁଣିକରି ଦାଶରଥି ଆନନ୍ଦ ପୂର୍ଣ ହେଲେ
ବିଭୀଷଣ ମୁଖଚାହିଁ ବଚନ ବୋଇଲେ ।

ଏତେକ ଆମ୍ଭର କାର୍ଯ୍ୟ ହୋଇବ ସୁଫଳ
ତୁମ୍ଭେ ଯା କହିଥିଲ ବିଶ୍ରବାର ବାଳ ।
ଏଥୁ ଅନନ୍ତେ ଶୁଣ ତୁ ମନ୍ଦୋଦରୀ ସାଇଁ
ମୟଦୈତ୍ୟସୁତାକୁ କୋଳେ ବସାଇ ନେଇ
ସ୍ନେହଭରେ ରାଣୀମୁଖ ଉଚ୍ଚରେ ରଖିଦେଇ
ରୋଦନ କରି ରାମ ରାବଣ ଆଗେ କହି ।
ତୁମ୍ଭେ ଜୀଇଥାଇ ମୁହିଁ ପୁଣ ହୋଇବି ଅନାଥ
ତ୍ରୈଲୋକ୍ୟର ଅଜୟ ତୁ ଅଟୁ ଦଶମାଥ ।
ଏଣିକ ତେଣିକ ଯେ ହେଉଥିଲ ମୁହିଁ ।
ରକ୍ଷା କରିବାକୁ ନ ଥିଲେ ଜଣେ କେହି ।
ଜୀବନ ନିରାଶ ମୁଁ ଯେ ହୋଇଲି ଜାତର
ପ୍ରଳୟ କାଳେ ଯେସନ୍ତେ ଲଙ୍କାର ଆକାର ।
ବନ୍ଧୁ ବାନ୍ଧବ ଯେ ସହୋଦର ଜନ ମାନ
ପୁତ୍ର ନାତି ମୋର ହୋଇଲେ ନିଧନ ।
ଏକା ତୁମ୍ଭ ଯୋଗ ଯେ ଘେନ ଦଶାନନ
ତୁମ୍ଭେ ଜୀଇଁଥାଇ ଯେ ହୋଇଲି ଏସନ
ଧିକ ତୁମ୍ଭେ ଦଶାନନ ବକବୁଦ୍ଧି ଏବେ
ହରାଇ ବସିଲ ପୁତ୍ର ନାତି ସର୍ବେ ।
ଧିକ ଧିକ ହେଉ ତୋର ଲକ୍ଷ୍ମୀ ବଳ ପଣ
କେଣେ ଗଲେ ଏବେ ରାକ୍ଷସ ବାହମାନ ।
କିମ୍ପାଇ ଜୀବନ ତୁରେ ବହୁ ଲଙ୍କପାଳ
ତୁମ୍ଭେ ଥାଉ ବାନରେ ଧଇଲେ ମୋର ବାଳ ।
ଶୁଣିଛୁଟି ତୁ ପଣ୍ଡିତ ମୁଖୁ ଯାହା
କହୁଛି ସେକଥା ଶୁଣିବା ହେଉ ତାହା ।
ବୁଦ୍ଧିବଳ ପ୍ରାକ୍ରମ ଯାକ ହେ ତୋହର
ଏସନ ଲୋକର ଯେ ନୁହେ ଏ ବେଭାର ।
ଜନେ ଇଚ୍ଛା କରନ୍ତିରେ ପୁତ୍ରଦାର ସୁଖ
ସହୋଦର ବନ୍ଧୁଜନ କମ୍ପାଇଁ ବିମୁଖ ।
ଅନମିତ ଦ୍ୱନ୍ଦ୍ୱ ସିନା କଲେ ଦଶମାଥ
ବିଅର୍ଥେ ଅର୍ଜିଲ ଯେ ଏତେକ ଅନର୍ଥ ।
ପୁତ୍ରବନ୍ଧୁ ମରାଇ ପାଇଲ କେଉଁ ସୁଖ
ବେଳକୁ ବେଳ ଏବେ ହେଲା ବଡ ଦୁଃଖ ।
ବିଶେଷ ଅଧର୍ମଶୀଳ ଅଟେ ବିଭୀଷଣ
ତାର ବୋଲେ ତୁମ୍ଭେ ପାଇଲ ଅବଗୁଣ ।
ବିଅର୍ଥେ ତାହାର ତୁମ୍ଭେ ଛେଦୁଥିଲ ଶିର
ରଘୁନାଥ ଚରଣେ ପାତିଲା ନେଇ ଶିର ।

ତୁମ୍ଭର ହୋଇଲା ଏବେ କେଉଁ ପରତଷ
ମୋହର କହନ୍ତେ ସେ ମନରେ କଳୁଷ ।
ସେଦିନୁ ଜାଣିଛୁ ମୁହିଁ ନାଶଯିବ ଶିଷ୍ଟ
ମାଲ୍ୟବନ୍ତ କଥା ଅଛୁଟି ହେଳୁକରି ।
ଇଷ୍ଟବନ୍ଧୁମାନଙ୍କର ବଚନ ନ ଶୁଣିଲୁ
ଦୁଷ୍ଟଜନମାନଙ୍କର ବୁଦ୍ଧିରେ ପଡିଲୁ ।
ହେ ଦଶମାଥ ତୁମ୍ଭେ ବିଶ୍ରବାର ଶିଷ୍ୟ
ସବୁ ବିଦ୍ୟାରେ ତୁମ୍ଭେତ ହୋଇଛ ବିଶେଷ
ଆପଣାଏ ବୁଦ୍ଧିନାଶ କଲତ କିସ ପାଇଁ
ମୁଁ କିସ କହିବି କ ନଜାଣ ଲଙ୍କସାଇଁ ।
ଲୋକ ଅପବାଦକୁ ଭୟ ନୋହିଲ
ଲଜ୍ୟା ତୁମ୍ଭର ନାଥହେ କେଉଁ କତ ଗଲା ।
ଜନରେ ଅପବାଦ ଭୟରେ ସୁଜ୍ଞାନ
ତେଜ୍ୟା ସର୍ବେ କରୁଛନ୍ତି ଶୁଣିବା ଦଶାନନ
ଧର୍ମ ଯାଉ ଥାଉ ଶତଗୁଣ ତାର ଥାଉ
ଧର୍ମରେ ସୁଖହିଁ କହୁଅଛୁ ବିଭୁ ।
ଧର୍ମବନ୍ତ ଲୋକର ନାହିଁ ଦୁଃଖ ଲେସ
ପୂର୍ବରେ ମୋତେ କହୁଅଛନ୍ତି ବହୁଶିଷ୍ୟ ।
ଇହଲୋକରେ ପୁଣି ଯାର ନାହିଁ କୀର୍ତ୍ତି
ପରଲୋକରେ ତାକୁ ନ ମିଳେ ଷତ ।
ଏବେ ଉଠ ତୁମ୍ଭେ ଯୁଦ୍ଧ କର ଲଙ୍କେଶ୍ୱର
ନାନା ଶସ୍ତ୍ର ଧରି ତୁମ୍ଭେ ଶ୍ରୀରାମଙ୍କୁ ମାର ।
ପଣ୍ଡିତ ଜନ ଯେବେ ଅପବାଦ ପାଇ
ଜୀଇବାରୁ ମରିବାର ତାର ଭଲପାଇ ।
ଯେବେ ରକ୍ଷ କପିକୁ ନ ମାରିବ ଆଜ
ଅବଶ୍ୟ ମୁଁ ଅନଳେ ପଶିବି ଲଙ୍କରାଜ ।
ମୟଦୈତ୍ୟର ଝିଅ ମୁଁ ତୁମ୍ଭର ଜ୍ୟେଷ୍ଠରାଣୀ
ପତିଭକ୍ତାମାନଙ୍କର ମୁହିଁ ଯେ ଅଗ୍ରଣୀ ।
ମୋହର ତନୟ ଯେ ବନ୍ଦିଲା ଶଚୀନାଥ
ଏବେ ସବୁ କଥା ମୋର ହୋଇଲା ବିଅର୍ଥ ।
ଏତେ ବୋଲି ମନ୍ଦୋଦରୀ ଅବନୀରେ ଗଡି
ରୋଦନ କରଇ ରାଣୀ ଶିରେ କର ତାଡି ।
ଦେଖିଣ ନିଶ୍ୱାସ କ୍ରୋଧେ ଦଶାନନ ଛାଡି
ପ୍ରଳୟ କାଳରେ ଯେସନ୍ତେ ମେଘ ଘଡଘଡି ।
ପ୍ରଳୟ ମେଘପ୍ରାୟ ଗର୍ଜିଉଠି
ଆଶ୍ୱାସନା କରି ବୋଲେ ଶୁଣଗୋ ବିମ୍ବୋଷ୍ଠୀ

ମୁହିଁ ଜିଇଥିଲେ ତୋର ଜୀବ ଯେ ବୈଦନ
ତୋ ପ୍ରିୟ ମୋହର ଯେ ଗୁଢ଼ ଅଭିମାନ ।
ଅବଶ୍ୟ ମାରିବ ମୁଁ ଯେ ଋଷ କପିବଳ
ରାମ ବିଭୀଷଣ ଯେ ଦଶରଥ ବାଳ ।
ନାରାଚ ଅନଳେ ମୁଁ ଜାଳିବି ଭସ୍ମମାନ
ନୋହିଲେ ସଂଗ୍ରାମେ ଆଜ ଦେବି ଜୀବନ ।
ମୋହର ଆଗରେ ସେ ପଡ଼ିବ ଯେବେ ରଣେ
ଖଣ୍ଡ ଖଣ୍ଡ କରି ମୁଁ କାଟିବି ତୀକ୍ଷ୍ଣ ବାଣେ ।
ତୋହର ଅଭିମାନ ଗୁଡ଼ରେ ପ୍ରାଣସଖି
ଶ୍ରୀରାମକୁ କାଲି ଯେ ମାରିବି ସଖି ମୁହିଁ ।
ତୋହର ଆଗରେ ଶିର ତାର ଆଣିଦେବି
ତେବେରେ ପ୍ରିୟାତୋର ଲୋତକ ପୋଛିବି ।
ଏତେ ବୋଲି ସନ୍ତୋଷ କରାଇ ମନ୍ଦୋଦରୀ
ଯେସନେ ବିଜୟ ଅନ୍ତପୁରେ ଦଶଶିରୀ ।
ଏଥି ଅନନ୍ତରେ ପୁଣି ରବି ଅସ୍ତଂଗଲା
ନିତ୍ୟ କର୍ମ ମାଣୋହି ମାର୍ଜଣା ସାରିଲା ।
ଏକାନ୍ତରେ ବସିଲା ଯେ ମହାଦେଈ ଧେନ ।
ବିଚାର କରଇ ଦଶ ମୁର୍ଦ୍ଧାମା ।
କାଲି ମୁଁ ଠକୁରଙ୍କ ବଳ ଧେଣ୍ଡପିବି
ଶ୍ରୀରାମର ଋଷ କପିଙ୍କି ସଂହାରିବି ।
ସରେ ଖଣ୍ଡ ଯୁଦ୍ଧ କାଲି ପୁଣ
କେ କାହାକୁ ଜିଣିବ ଶୁଣିବ ଥାଇଣ ।
ମାରି ନପାରିଲେ ମୁ ଝାସିବି ମହାରଣେ
ହତ ହେଲେ ମୁଁ ପଳାଇବି କେଣେ ।
ପୂର୍ବନାତି ଭାଇବନ୍ଧୁ ସର୍ବେ ମୋର ମଲେ
ଦେବତାମାନେ ପିନା ଏହା ଭ୍ୟାଇଲେ ।
ଯେବେ ରାମ ବିଭୀଷଣ ପାଇବ କାଲି ମାରି
ତେବେ ମୁଁ ଭୋଗ କରିବି ରତ୍ନମୟ ପୁରୀ ।
ନୋହିଲେ ନଷ୍ଟୟୁ ମୁଁ ଅକ୍ଷୟ ସ୍ୱର୍ଗପିବ
ବୈକୁଣ୍ଠ ଦ୍ୱାରପାଳ ଯାଇଣ ହୋଇବି ।
ପୂର୍ବେ ନାରାୟଣ ଅଛନ୍ତି ଯାହା କହି
ସେକଥା ମୋର ମନେ ପ୍ରବେଶ ହେଲାସହି ।
ଯେବଣ କାଳେ ମୁଁ ଯେ ପାତାଳପୁରେଗଲି
ବ୍ରହ୍ମନାଡୀ ବିବରେ ମୁଁ ପୁରେକ ହରିଲି ।
ମାୟା ପୁର ତହିଁରେ ଜନ ଜନ୍ତୁ ନାହିଁ
ମଧ୍ୟରେ ମଣ୍ଡପ ପୁଣ ଦେଖିଲି ଯେ ମୁହିଁ ।
ଯୋଗବଳେ ସେକଥା ହୋଇଲା ମୋତେ ଦୃଶ୍ୟ
ରଥୁ ଓହ୍ଲାଇ ସେ ପୁରେ ହେଲି ଉପଗତ ।
ଦେଖିଲି ବନଜନ୍ତୁ ନାହାନ୍ତି ନୋହିତ
ଶୁଣି ସଖି ଶୁରେ ପୂର୍ବର ଭବିଷ୍ୟ ।
କେହି ଜନ ବେଢ଼ିବେ କେହି ନାହାନ୍ତି ପୁଣ
ସୁର ନର ପକ୍ଷୀ ତହିଁ ନାହାନ୍ତି ଗର୍ଜନ ।
ପଶା ଖେଳୁଥିଲେ ସେ ଦିବ୍ୟ ବେଶ ହୋଇ ।
ତାହାଙ୍କ ସମୀପେ ମୁଁ ପ୍ରବେଶ ହେଲିଯାଇଁ
ପଚାରିଲି ଜୟ ଯେ ଅଟେ ତୁମ ନାମ
ତୁମ୍ଭଙ୍କୁ ସମାନ ଯେ ନୁହଇ ରତିକାମ ।
ସେ ବୋଇଲେ ଆମ୍ଭେ ଯେ ଅଟୁ ଦେବାଦେବୀ
ଚଉଦ ଭୁବନ ଲୋକ ଆମ୍ଭ ପାଦେ ସେବି ।
ପୂର୍ବରେ ସ୍ଥାନଜନ୍ତୁ ହୋଇ ଜନମିଲୁ
ନାରାୟଣ ଦୟା କଲେ ପାତକ ଖଣ୍ଡିଲୁ ।
ବିଷ୍ଣୁ ଯେତେବେଳେ ଉଗ୍ରମୂର୍ତ୍ତି ଧରିଥିଲେ
ଅସୁର ବଳ ଯହୁଁ ପ୍ରବଳ ହୋଇଲେ ।
ଯେ ଦାନବ ବୋଲିଣ ବେନିଭାଇ
ରମଣ ରସ କଲେ ସୁନ୍ଦରୀ ନାରୀ ପାଇ ।
ତହିଁ ବାସୁଦେବ ଶାରଙ୍ଗ ଧନୁ ଧରି
ବନ୍ଧୁ ଦାନବଙ୍କୁ ସେ ପକାଇଲେ ମାରି ।
ପ୍ରଥମ ଅସ୍ତ୍ର ସେ ବିନ୍ଧିବାର କାଳେ
ଭୂମିକୁ ନାରାଚ ବିନ୍ଧିଲେ ଅବହେଳେ ।
ପୂର୍ବେ ଆମ୍ଭେ ମହୀରେ ଲତା ହୋଇଥିଲୁ
ଶର ବାଜନ୍ତେ ବେନିଖଣ୍ଡ ଯେ ହୋଇଲୁ ।
ଲତାଥିଲୁ ଭୂମିରୁ ଛାଡ଼ିଲୁ ତତକ୍ଷଣ
ସ୍ତ୍ରୀ ପୁରୁଷ ଆମ୍ଭେ ହେଲୁ ଯେ ବେନିଜନ ।
ଜ୍ୟେଷ୍ଠ ଖଣ୍ଡି ସ୍ତ୍ରୀ ଯେ କନିଷ୍ଠ ପୁରୁଷ
ଜଆ ନାଉ ଗୋଟିଏ ଏସନ ସ୍ୱରୂପ ।
ଶ୍ରୀହରିଙ୍କ ନାରାଚରେ ହେଲୁ ଆମ୍ଭେ ହତ ।
ଦେବାଦେବୀ ବୋଲିଣଯେ ପୂଜନ୍ତି ଜଗତ
ଏସନକ କଥା ଯେ କହିଲେ ମୋତେ ଯହୁଁ
ଆନନ୍ଦ ହୋଇ ଷଣେ ବସିଲି ମୁଁ ତହୁଁ ।
ପଶା ଖେଳନ୍ତେ ପଶା କାଠି ଗଡ଼ିଗଲା
ସେ ରତ୍ନ ମଣ୍ଡଳ ତଳେ ଯାଇଣ ପଡ଼ିଲା ।
ମୋତେ ସେ ବୋଇଲେ ଯାଇଆଣ ପଶାକାଠି
ତାଙ୍କର ବୋଲରେ ମୁଁ ତଳକୁ ଗଲି ଉଠି ।

ହସ୍ତ ବଢ଼ାଇଣ ମୁଁ ଆଣିତ ମନକଲି
କୋଢ଼ଏଭୁଜରେତାକୁମୁଁ ତୋଳି ନ ପାରିଲି
ଲଜ୍ୟା ପାଇଣ ମୁଁ ବାହୁଡ଼ି ଆସି
ଦେଖି ପୁରୁଷ ସ୍ତ୍ରୀ କରତାଳି ମାରି ହସି ।
ପୁଣି ସେହି ମଣ୍ଡପରେ ମୁହିଁ ବସିଥିଲି
ପଶାକାଠି କିଏ ଦେବ ମନରେ ବିଚାରିଲି ।
ଗର୍ଭ ସ୍ତ୍ରୀ ଜଣେ ପାଣିକି ଯାଉଥିଲା
କାଖେ ନାରୀ ଘଟ ମୁଣ୍ଡେ ବାହୁଡ଼ିଲା ।
ମଣ୍ଡପ ବାଟକୁ ଲାଗି ଆସଇ ସୁନ୍ଦରୀ
ଧୀରେ ଧୀରେ ଚାଲେ ସେ ଗର୍ଭବତୀ ନାରୀ ।
ତାକୁ ବୋଇଲି ସେ ଦିଅ ପଶାକାଠି
ଶୁଣିକରି ସ୍ତମ୍ଭୀଭୂତ ହେଲା ସେ ବାମୋଷ୍ଠୀ ।
ନଇଁ ନପାରଇ ତାର କାଖେ ମୁଣ୍ଡ ଘଟ
ଆଠମାସ ଗର୍ଭ ତାର ଏଡେବଡ଼ ପେଟ ।
ବୋଲନଶୁଣିଣ ସେଯେ ତୁନହିଁ ହୋଇଲେ
ପାଦ ଅଙ୍ଗୁଳିରେ ପଶାକାଠିକି ଧଇଲେ
ବୃଦ୍ଧଅଙ୍ଗୁଷ୍ଠିଅଗ୍ରରେସେ ନିବେଶ କରିଧରି
ଯେହ୍ନିକାଠିଖଣ୍ଡିକଯେପିଙ୍ଗିଣଦେଲାନାରୀ ।
ମଣ୍ଡପେ ପଡ଼ିଲା ଯାଇ ତାହାଙ୍କର ପାଶେ
ସ୍ତ୍ରୀ ପୁରୁଷ ପଶା ଯେ ଖେଳନ୍ତି ହରଷେ ।
ମୁହିଁ ବୋଇଲି ମୁଁ ଯେ ଯାଉଅଛି ଦେଖୁ
ଇନ୍ଦ୍ରମାନ ତୁମ୍ଭର ପଡ଼ିଅଛି ରଖ ।
ଶୁଣିକରି ପୁରୁଷ ବୋଇଲେ ମୋତେ ହସିଁ
ବଶିଷ୍ଠ ଋଷିନନ୍ଦନ ଅଟୁ ଲଙ୍କସାଇଁ ।
ମୁଁ ତାଙ୍କୁ ବୋଇଲି ତୁମେ ଜାଣିଲ କେମନ୍ତେ
ସେବୋଇଲେଆମ୍ଭେ ପ୍ରତେଜାଣିଲୁହେତତେ
ବିଷ୍ଣୁ ଭକ୍ତ ନୋହିଲେ ତାକୁ ନ ଦିଶଇ
ବ୍ରହ୍ମା ବଣା ହୋଇଣ ପରେ ଯୁଝଇ ।
ତୁ ଯହୁଁ ନିଶ୍ଚିନ୍ତ ହୋଇ ବସିଲୁ ଏଥି
ଜାଣିଲେ ତୋତେ ଦୟା ଅଛି ବିଷ୍ଣୁନାଥ ।
ପୂର୍ବରୁ ଅଟୁ ତୁ ରେ ଶ୍ରୀହରିର ଦାସ
କଞ୍ଚିତ ପାପରେ ହୋଇଲୁ ରାକ୍ଷସ ।
ପୁଣି ବୈକୁଣ୍ଠକୁ ଯିବୁ ହେ ନିଶ୍ଚୟ
ଏ ପୁରର ଧାମ ଅଟେ ଜ୍ୟୋତିର୍ମୟ ।
ବ୍ରହ୍ମ ପ୍ରଳୟ କାଳରେ ନୁହେଁ ଏହା ନାଶ
ଏଥିରେ ଥାଇ ପୁଣ ଯେ ପାଳନ୍ତି ପୀତବାସ
ପୃଥ୍ୱୀ ସର୍ଜନା କାଳେ ଏଥିରୁ ବତ ନେଇ
ଯେବେ ଭଜନର ଲୋକ ଏଥିରୁ ପାଇ ।
ବ୍ରହ୍ମାଣ୍ଡରେ ଶ୍ରେଷ୍ଠ ଯେ ଅଟେ ଏହି ପୁର
ଏଥିରେ ଥିଲା ଲୋକ କେହି ନୁହେଁ ହାର ।
ମହାଲକ୍ଷ୍ମୀ ଚରଚଇ ଘରେଘରେ ପଶି
ନାରାୟଣ ଥାନ୍ତି ଯେ ସବୁରିଅଙ୍ଗେ ପଶି ।
ଆମକୁ ପ୍ରକାଶ ଯେ ନୁହଇ ଏହି ସ୍ଥାନ
ତୁ ହୋ ରାବଣ ସେବଥାଏ ଜନାର୍ଦ୍ଦନ ।
ବିଷ୍ଣୁରେ ଭକ୍ତି ହୋଇଲେ ଧଇଲ ପାପଯାଇ
ତାହାରହସ୍ତରେ ମଲେ ବୈକୁଣ୍ଠେ ବସଇ ।
ଏସନକ ବଚନ କହେ ମହାତମା
ତାହା ଜାଣିଣ ହରି ଆଣିଛୁ ରାମବାମା ।
ସଗୋଷସହିତେ ମୋର ମାଡ଼ିବେ ରଘୁସାଇଁ
ବୈକୁଣ୍ଠେ ବସି ବିଷ୍ଣୁ ସକଳ ପାପ ବହି ।
ବିଷ୍ଣୁ ମାୟକ ନ ମରଇ ଆନ ହସ୍ତେ ।
ଏହିକଥା ମୋତେଯେକହିଲେ ଚଉମାଥେ ।
ସବୁ ଦେବତାଙ୍କ ସଙ୍ଗେ ଯୁଦ୍ଧ ମୁହିଁ କଲି
କାହାରି ହସ୍ତେ ଆମତେ ନ ମରିଲି ।
ଶ୍ରୀରାମଚନ୍ଦ୍ର ଯେ ସ୍ୱୟଂ ନାରାୟଣ
ସେହିଯେନାରଚେ ମୋର ଘେନବେ ପରାଣ
ବିଷ୍ଣୁ ହୋଇଥିବେ ଯେ ଦଶରଥ ସୁତ
ମୋହର ହସ୍ତରେ ତାର ମରଣ ନଯୁକ୍ତ ।
ଶ୍ରୀରାମ ସଙ୍ଗରେ ମିଶ ସୁଗ୍ରୀବର
ଏଥୁ ଅନନ୍ତରେ କଥା ଶୁଣନ୍ତୁ ମୋହର ।
ଏକମୁଖା ରାବଣ ଯେ ଅଟେ ମୋହ ନାତ
କୁପାଞ୍ଚକ କର କ ଉପାୟ କେବା ସଞ୍ଚ ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ସହିତେ ନେଲା
ସୁଲଙ୍କା ଗଡ଼େ ନେଇ ବନ୍ଧନ ତାଙ୍କୁ କଲା ।
ଶତମୁଖା ରାବଣକୁ ମୋର ଆଜ୍ଞା ହେଲା
ଅଯୋଧ୍ୟାରେଯୁଦ୍ଧକରି ଦେଖିଣ ବୋଇଲା ।
ଅଲଙ୍କା ଗଡ଼ରାଜା ଜିଣି ଜାର କରି
ଭରତ ଶତ୍ରୁଘ୍ନଙ୍କୁ ପକାଇବ ମାରି ।
ଅଲଙ୍କ ନୃପତି ଯେ ଶହସ୍ରାମୁଖା ଜାଣ ।
ମୋହର ପଛରେ ଯେ କରିବେ ଘୋରରଣ
ଶ୍ରୀରାମ ମୋର ହାତରେ ପଡ଼ିଛି ସୁନ୍ଦରୀ
ରାମର ସଙ୍ଗେ ମୋର ଯୁଦ୍ଧହେବ କାଲି ।

ଖର ରାବଣ ଆମ୍ଭେ ଯେ ଖରଭାଇ ହେଲୁ
ଖରଭାଗରେ ବାନ୍ଧିଣ ଆମ୍ଭେ ଯୁଦ୍ଧ କଲୁ ।
ଦଶରଥ ସୁତ ରାମ ମୋତେ ମ ରିବେ ଯେବେ
ଖରରାବଣ ମୋହର ସଙ୍ଗେ ନାଶ ଯିବେ ।
ନିଶ୍ଚୟ ତୁମ୍ଭ ସଙ୍ଗରେ ଜାଣିଥାଅ ଏହା
ତୁମ୍ଭଙ୍କୁ ମୋହଉ ହାଇ ହାଗ୍ରହ ସାହା ।
ଏତେ କହି ଆସ୍ଥାନୁ ଉଠିଲେ ଲଙ୍କେଶ୍ୱର
ସକଳ ରାଣୀହଂସ ଗ୍ରାମୁରେ ବଜେ ତାର ।
ମନ୍ଦୋଦରୀ ଆଗରେ କହିଲା ଏହୁ କଥା
ଶୋକେ ରାଣୀ ତଳକୁ ନୂଆଇଲା ମଥା ।
ରାବଣ ବୋଲେ ରାଣୀ କମ୍ପା ଚନ୍ତାକର
ବୁଦ୍ଧିବନ୍ତ ହୋଇଣ କମ୍ପା କଥା ନ ବସ୍ତୁର
ଏବେଳେ ଭାଳଲେ ଯେ ବୋଲବେ ମାତମନ୍ଦ
ଶତ୍ରୁକୁ ଯେ ଭୟ କଲା ଦଶକନ୍ଧ ।
ଏ ବଚନ ଶୁଣିଲେ ହେବ ମୋତେ ଲାଜ
ଏତେ କହି ଧଇଲା ରାଣୀର ବେନଭୁଜ ।
ନୃପତିର ବଚନକୁ ଶୁଣି ମନ୍ଦୋଦରୀ
କରପଦ୍ମ ଯୋଡ଼ିଣ କହେ ଧୀରକରି ।
ହେଦେବ ଦଶଗ୍ରୀବ ଅସୁରକୁଳ ରାଏ
ପୂର୍ବରେ ମୁହିଁ ପୁଣ ଶୁଣିଛି କଥାଏ ।
ନାରଦ ମହାଋଷି ଯେ କହିଛନ୍ତି ମୋତେ
ଏତେବେଳରେ ପ୍ରକାଶ କରୁଅଛି ଯେତେ ।
ଯେଉଁଦିନ ତୁମେ ଦିଗ ବିଜେ କରଗଲ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିପୁର ଜିଣିଲ ।
ଦେବାଙ୍ଗ ଦେଶରେ ଯେ ମିଳିଲେ ମହିପତି
ବେଦମତି ନାମେ କୁଶ ଧ୍ୱଜର ଦୁହିତା ।
ସେହି କନ୍ୟା ସ୍ୱୟଂ ଅବତାର କମଳାମ୍ମା
ଶ୍ୟାମ ଦେହରୁ ସମ୍ଭୁତ ବ୍ରହ୍ମାର ଦୁଲଣୀ ।
ଶ୍ରୀହରିକ ବରିବ ବୋଲିଣ କମଳାକ୍ଷୀ
ମହୀ ମଣ୍ଡଳେ ଅନେକ ତପୁଅଛି ।
ପୃଥ୍ୱୀ ବୁଲନ୍ତେ ତୁମ୍ଭେ ଭେଟିଲ ସେହିନାରୀ
ରୂପବନ୍ତ ଦେଖିଣ ନେଇଲେ ବଳେ ଧରି ।
ସେ ମହାସତୀ କେବେହେଁ ନହେଲା ସମତ
ତାହାର ବାଳଯାଇ ଧଇଲେ ଦଶମାଥ ।
ଅପମାନ ପାଇଲା ଯେ ବିଷ୍ଣୁର ଘରଣୀ
ଛାଡ଼ ଛାଡ ବାଳ ମୋର ବୋଇଲା ତରୁଣୀ
ତପବଳ ଯୋଗରୁ କୋପ କଲା ମୋତେ
ବୋଇଲାକ ରାକ୍ଷସରେ ଦ୍ରୋହକଲୁ ମୋତେ
ଏ ଦେହ ନ ରଖିବି ଅଗ୍ନିରେ ଝାସଦେବି
ତୁମ୍ଭ ଯେଣୁ ନାଶଯିବୁ ତେମନ୍ତ କରିବି ।
ଶୁଣିକରି ଉଦ୍ୟେତ ଛାଡ଼ିଲୁ ତାର ବାଳ
ସେ କନ୍ୟା କୋପରୁ ଜାତ ହୋଇଲା ଅନଳ
ପଞ୍ଚ ଅଙ୍ଗଗୋଟି ଦହିଲା ସୁନ୍ଦରୀ
କାଳେ ତ ଜନକ ଘରେ ସେହି ଅବତରି ।
ଏକଥା ଜାଣିଛି ମୋତେ ନାରଦ କହିଗଲେ
ତୋର ସ୍ୱାମୀ ଦାନ କରିଲା ବୋଇଲେ ।
ସେ କଥାକୁ ହେତୁ ଅଛି ମନେ ଧରି
ପୁଣି ନାରଦ ମୋତେ କହିଲେ ଗୁପ୍ତକରି ।
ବୋଇଲେକ ନାରାୟଣ ଆସି ହେଲେ ଜାତ
ଅଯୋଧ୍ୟାର ରାଜାଙ୍କର ଦଶରଥ ସୁତ ।
କୌଶଲ୍ୟା କୈକେୟୀ ସୁମିତ୍ରା ଯେ ତିନରାଣୀ
ତାହାଙ୍କର କୋଳେଜାତ ହେଲେ ଚକ୍ରପାଣି
ଶ୍ରୀରାମ ଭରତ ଯେ ଲକ୍ଷ୍ମଣ ଶତ୍ରୁଘନ
ଦେବତାଙ୍କ ଛଳେ ଅବତାର ଭଗବାନ ।
ଉପଦ୍ରବ ତୋର ସ୍ୱାମୀ ବହୁତ ଯହୁଁ କଲା
ପାପକୁ ଆଶ୍ରା କରି ଧର୍ମକୁ ଚିଙ୍ଗାସିଲା ।
ତେଣୁ ସେହି ବିଷ୍ଣୁ ନାଥ ଏବେ ହେଲେଜାତ
ତାହାଙ୍କର ହସ୍ତରେ ରାବଣ ହେବ ହତ ।
ଏତେ ବାଗେ ନାରଦ ବଚନ ପୁଣି କହି
ଆହୁରି କଥାଏ ଶୁଣ ପାଟ ମହାଦେଇ ।
ତୋହର ନଣନ୍ଦ ସେ ସୂର୍ପଣଖା ନାରୀ
ତୋର ବଂଶ ମରାଇବ ଶଙ୍କୁଣୀ ରୂପ ଧରି ।
ଦଶରଥ ଘରେ ଯେ ମନ୍ଥରା ଜାତହେବ
କେକେଇକୁ ଶିଖାଇ ନୃପତିକୁ ଶିଖାଇବ ।
ପିତା ସତ୍ୟପାଳି ରାମବନକୁ ଆସିବେ
ତୋ ସ୍ୱାମୀକୁ ମିଶାଇ ଖରଜଣ ମାରିବେ ।
କାହାରି ବଂଶ ଯେ ଆଉ ନରଖିବେ ପୁଣ
ଏ ଗଡମାନଙ୍କରେ ରାଜା ହେବେ ଅନ୍ୟଜାଣ
ଏତେ କହିଣ ନାରଦ ଅନ୍ତର୍ଦ୍ଧାନେ ହେଲେ
ଏକଥା ଶୁଣି ମୋ ଦେହ ସେଦନୁ ଚମକିଲେ
ସୂର୍ପଣଖା ଯେତେବେଳେ କହିଲା ତୁମ୍ଭଙ୍କୁ
ଅଯୋଧ୍ୟାର ରାଜପୁତ୍ର ଆସିଛି ବନକୁ ।

ଦଣ୍ଡକା ଅରଣ୍ୟରେ ଅଛୁ ଯଣ୍ଠ ବେଶେ
ବାସ କରିଛନ୍ତି ସେହୁ ଗୋଦାବରୀ ପାଶେ ।
ସୀତା ନାମେ ନାରୀ ତା'ର ଅଟେ ଯେସୁନ୍ଦରୀ
ମହା ସୁଲକ୍ଷଣୀ ସେ ଯେ ଶ୍ରୀରାମର ନାରୀ ।
ସେକଥା ଶୁଣି ମୁଁ ଯେ ବିସ୍ମୟ କରି ମନେ
ଅଯୋଧ୍ୟା ଛାଡ଼ି ରାମ ଅଇଲେ କେସନେ ।
ପୁଣି ଭାବିଲି ହୃଦପଦ୍ମରେ ଯେ ମୁହିଁ
ଯାହା ଯେ ଭିଆଣ କରିଛୁ ସିନା ବହି ।
ଯେବଣ ପଦାର୍ଥମାନ ଯାକୁ ପରାପତ
ହାତରେ ଥିଲେ ପଦାର୍ଥ ମିଳେହିଁ ତାକୁତ ।
ଶ୍ରୀରାମର ହସ୍ତରେ ଯେବେମରିବେମୋରସ୍ୱାମୀ
ତେଣୁ ରାଜ୍ୟ ରାମ ତେଜିଲେ ବନଗାମୀ ।
ସୂର୍ପଣଖା କେମନ୍ତେ ତାହା ତେ ଠାବ କଲା
କାଲି ଯାଇ ଖରଙ୍କ ବାରତା ଆଣିଦେଲା ।
ଏତେକ ଗୁପ୍ତ ମୁହିଁ ଜଣାଇଲି ତୁମ୍ଭେ
ପରନାରୀ ହରଣ ନକର ଅଜମିତେ ।
ସ୍ୱଭାବେ ପରନାରୀ ଦେଖାନ୍ତରୀ ବାମା
କେଶ ବାସ ମଳନ ଯେ ନୁହଇଁ ଉପମା ।
ମନଭ୍ରମାଇ ଯେ ଅନେକ କହିଲେ
ତୁମ୍ଭର ଚିତ୍ତକୁ ପ୍ରବୋଧି ନପାରିଲେ ।
ଅସୁର କୁଳେ ଜନ୍ମ ତୁମ୍ଭେ ବଳେ ବଳବନ୍ତ
ତୁମ୍ଭେ ନ ବୁଝିଲେ କେ ତୁମକୁ ବୁଝାନ୍ତ ।
ମୋର ବୋଲ ନକଲ ଯେ ଧାଡକାରେ ଗଲ
ଶ୍ରୀରାମ ଘରଣୀକ ହରାଇ ଆଣିଲ ।
ଶମ୍ଭୁକୁ ନମାର ତୁମ୍ଭେ ଆଣିଲ ମାୟାରୂପେ
ଜାଣିଲ ନାରାୟଣ ମାନବ ସ୍ୱରୂପେ ।
ତୁମ୍ଭେକ ତାହାଙ୍କୁ ସଂଗ୍ରାମରେ ମାରି
ମହାବାଉ ହେବୁ ଯେ ପାଇଲ ଦଶଶିରୀ ।
ପୂର୍ବେ ମୋତେ କହିଥିଲେ ନାରଦ ମହାଋଷି
ତାରି ତୁମ୍ଭ ଆଗେ ନକହେ ପ୍ରକାଶି ।
ସମୁଦ୍ର ଡେଇଁ ହନୁ ପ୍ରବେଶ ଏଥ
ଅକ୍ଷୟକୁ ମାରିଣ ଯେ କଲକ ଅନର୍ଥ ।
ମଧୁବନ ଭାଙ୍ଗି ସେ ଲଙ୍କା ପୋଡ଼ି ଦେଲା
ମୁହିଁ ବିଚାରିଲି ଯେ ବିପରୀତ ହେଲା ।
ନାରଦଙ୍କ ବଚନ ତ ସତ ହେଉଅଛି
ବାଳକ ରାମ ମାଇଲେ କହିଲ ମାନୁଛି ।

ସେକଥା ଜାଣିଣ ମୁଁ ପୁତ୍ରକୁ ମୁଁ ଛୁଟିଲି
ଜାଣିଲି ରଘୁନାଥଯେ ଜଗତ ତ୍ୟାଗ ବୋଲି
ସେତୁବନ୍ଧ ବାନ୍ଧିବା ହନୁ ମୁରୁଛିଲାଣିତୋତେ
ବିଭୀଷଣକୁ ତୁମ୍ଭେ ଖୋପିଲ ଅଜମିତେ ।
ସୋଦର ଭାଇ ତୁମ୍ଭର ସେ ତ ଛାଡ଼ିଗଲା
ଭଲଲର କଥା ଆସି ନିକଟ ହୋଇଲା ।
ଗଡ଼ ବେଢ଼ିଣ ଯହୁଁ ଛେଦିଲେ ଛତ୍ରମାନ
ଲଜ୍ୟା ପାଇଣ ତୁମେ ଅଇଲ ଦଶାନନ ।
ବିସ୍ମରିଲି ଦଇବତ କଲକ ଏହେନ
ଫେଡ଼ି ମୁଁ ନକହଇ ଭଲଇ ମନେ ମନ ।
ରକ୍ଷ କପି ଡେଇଁଲେ ଯେ ସୁବର୍ଣ୍ଣ ପାଚେରି
ଶତେଯୁଣ ଲଙ୍କାକୁ ସେ କଲେ ହରିଜୁର ।
କୁମ୍ଭକର୍ଣ୍ଣ ପଡ଼ିଗଲେ ହେଲା ମୁହିଁ କ୍ଷୀଣ
ବୋଇଲି ସତ ଯାହା କହିଲେ ମହାମୁନ ।
ଇନ୍ଦ୍ରଜିତ ପଡ଼ିଲା ଯେବଣହିଁ ଦିନ
ଦେହରୁ ମୋହର ଛାଡ଼ି ଗଲାକ ଜୀବନ ।
ନାଗଫାଶେ ବାନ୍ଧି ଯେ ମାଇଲେ ବ୍ରହ୍ମଶର
ଶକ୍ତି ଧରି ମାରିଲେ ଲକ୍ଷ୍ମଣ ହୃଦର ।
ଏକଥା ଶୁଣି ମୁଁ ହସିଲି ମନେ ମନ
ଦୃଢ଼ କରିଅଛି ମୁଁ ନାରଦଙ୍କ ବଚନ ।
ତୁମ୍ଭଙ୍କୁ ନକହଇ କୋପ ମୋତେ କର
ସରଳ କଥାରେ ମୋତେ କମାଇ ଯତ୍ୱର ।
ଏକ ପ୍ରତିକାର ଅଛଇ ଯେ ପୁଣ
ସୀତାଙ୍କୁ ସମର୍ପିଲେ ନୁହେଁ ଯେ ମରଣ ।
ନୋହିଲେ ଜୀବନ ହରାଇବ ଦଶଈଶ
ଏତେବଡ଼ ସମ୍ପଦକୁ କେବେ ନାହିଁ [illegible] ।
କହିଲି କଥା ଦେବ ହେ ପୂର୍ବର [illegible] ରକ୍ଷ୍ୟ
ମୋର ତହୁଁ ତୋର ଯେ ନାହିଁଟି [illegible]ଶ୍ୱାସ ।
ଯଦ୍ୟପି ପୁତ୍ର ମୋର ପଡ଼ିଲେ ରାମ ବାଣେ
ନକରଇ ଶୋକ ମୁଁ ଯେ ତାହାର କାରଣେ
ତୁ ଯେବେ କୁଶଳରେ ଥିବୁ ଲଙ୍କାପୁରେ
ପୁଣ ତୋର ସମସ୍ତେ ହେବ ପୁତ୍ର ନାତି ।
ତୁମ୍ଭେ କ୍ଷେମେ ଥିଲେହେଁ ମୁହିଁ ନାମେ [illegible]
ସ୍ୱାମୀର ବଚନେ ଯେ ଆନ ନ ଯୋଗାଇ ।
ଗୀରବାହୁ ତୁମର ଯେ ଭଜ କରୁଥିଲି
ତୁମ୍ଭର ଦୋଷ ଲାଗି ଦୂତ ନୋହେ ପଣ୍ଡ ।

ତପ ତାର ଭଗ୍ନ କରି ତୁମ୍ଭେ ମରାଇଲ
ନବସୂତ ତାର ସଙ୍ଗତରେ ନାଶ କଲ ।
ତାହାର ସାନ ପୁତ୍ର ସୁବାହୁ ନାମେ ବୀର
ଶ୍ରୀରାମ ଶରଣ ଗଲା ବିଚାରି ମନର ।

ବୋଇଲା ମୋର ବ୍ୟଥାତ ତପ କରୁଥିଲା
କୂପାଣରେ ଦଶଗ୍ରୀବ ତାକୁ ମରାଇଲା ।
କୁମ୍ଭକର୍ଣ୍ଣ ବଂଶତ ମରାଇ ରାଜନ
ଶତେକ ପୁତ୍ରରୁ ସୁବାହୁ ତାର ସାନ ।



ସେହି ରାମ ଚରଣରେ ଶରଣ ପଶଇ
ବୋଇଲା ଅଧର୍ମୀ କଲା ବିଶ୍ରବା ତନୟୀ ।

ଶୋଇବାରୁ ନେଲେକ ସେ ଉଠାଇ ମରାଇଲା
ଲାଇଜ ଖାଇ ପୁଣି ଅଧର୍ମ ବିଚାରିଲା ।
ସବୁଙ୍କର ସ୍ନେହ ଯେ ଗୁଡ଼ିଲା ତୁମ୍ଭଠାରୁ
ଏବେ କ୍ଷମା ମନରେ ବିଚାର ନକରୁ ।

ମୟୁଦୈତ୍ୟର ମୁଁ ଯେ ଅଟଇ ଦୁହିତା
ଅନେକ ଯତନରେ ପାଳିଲେ ମୋର ପିତା ।

ଅଗ୍ନିର ଭିତରୁ ମୁଁ ଯେ ହେଲି ଉତପତ୍ତି
ମନ୍ଦୋଦରୀ ନାମ ମୋର ଦେଲେ ସବୁଯନ୍ତି
ମୋର ସାଦୃଶରେ ବର ନପାଇଲେ ତାତ
ମୋତେ ଘେନିଣ ପିତା ବୁଲିଲେ ଜଗତ ।
ବାଳ ରାଜାଠାରେ ଯାଇ ପ୍ରବେଶ ହୋଇଲା
ବାନର ବୋଲି ତାକୁ ପ୍ରଦାନ ନକଲା ।
ଯୋଗରେ ଭେଟ ଆସି ଯେ ପାଇଲେ ତୋତେ
କନ୍ୟା ଦାନ କରି ଯେ ସମର୍ପିଲେ ମୋତେ ।
ତୁମ୍ଭ କୋଳରେ ଅନେକ ଯୁଗ ଭୋଗକଲି
ପାଞ୍ଚ ପୁତ୍ର ଦୁହିତା ମୁଁ ଯୋଗରେ ପାଇଲି ।
ଇନ୍ଦ୍ରଜିତ ଦେବାନ୍ତକ ନରାନ୍ତକ ତିନ
ଦେବଦତ୍ତ ଅକ୍ଷୟ କୁମର ପାଞ୍ଚଗୁଣି ।
ଦୁହିତା ଗୋଟି ମୋର ପରେ ପରଦାନ ;
ନବକନ୍ୟ ପୋତରେ ସେ ଅଟଇ ନନ୍ଦନ ।
ବକ୍ର କୋପାତ ନାମେ ଯେ ମୋର ଜୁଆଇଁ
ତାହାଙ୍କର ତହିଁ ପୁତ୍ର ଜନ୍ମଇ ।
ଶ୍ରୀମ ଉସ୍ନଙ୍କର ବୋଲି ନାମରେ ତନୟ
ତାହାକୁ ଦେଖିଲେ ଇନ୍ଦ୍ର ସୁର କରେ ଭୟ ।
ଇନ୍ଦ୍ରଜିତ କୁମର ମଧ୍ୟ ଯେ ରାବଣ
ହରି ଯୁଗରେ ସେ ଅଟଇ ଯଶୀ ପୁଣ ।
ଅଗ୍ନିକେତୁ ରଶ୍ମିକେତୁ ଦେବଦାନବଙ୍କନାଥ
ନରେନ୍ଦ୍ରକ ରୂପ ଘୋର ଚନ୍ଦ୍ରକାନ୍ତି ।
ଦେବାନ୍ତକ ପୁତ୍ର ଘନ ନନ୍ଦନ ଅଟଇ
ତନୟା ନାମେ ପିଙ୍ଗଳା କେଶାହୋଇ ସେହି
ଦୁହିତା ପିଙ୍ଗଳା ଷଷ୍ଠ ଆଉର ଗଉରୀ
ଦେବଦତ୍ତର ଯେ ତନୟ ଅବନ୍ତୀ ।
ଅଶ୍ୱକର୍ଣ୍ଣ ସାଦୃଶ ମହାକର୍ଣ୍ଣ ନାମ
ଦୁହିତା ସୁରଙ୍ଗିତା ସହିତେ ଅନୁପମ ।
ଅକ୍ଷୟ କୁମରର ଏକଇ କୁମର ରାଏ
ଷ୍ଟୁରନର ନାନା ଯେ ତାକୁ ଶୋଭାପାଏ ।
ପାଞ୍ଚପୁତ୍ର ଠାରୁ ହେଲେ ଶତେ ପୁତ୍ରଜାତ ,
ତିନ ନାତୁଣୀ ଯେ ରୂପେ ରୂପବନ୍ତ ।
ଆଉର ରାଣୀ ତୁମ୍ଭର ଅଛନ୍ତି ଅପାର
ତେରଶତ ନାତି ବାସ୍ତବିଗଣ୍ଡା କୁମର ।
ତୁମ୍ଭର ସମାନେ ସେ ଅଟନ୍ତି ରଣ ବୀରି
ସେହି ନାରତରେ ହେଲେ ସେ ସଂହାରି ।

ଆଜ ଯେ ଅଛନ୍ତି ହେ ଏହାର ରକ୍ଷାକର
ଆପଣ ହେ ଭୋଗ ବିଳସ ଲଙ୍କପୁର ।
ଦଶଗୋଟି କୁମର ଅଛନ୍ତି ଆଜ ବଞ୍ଚି
ଶତେ ଅଠସ୍ତ୍ରକଶ ନାତି ଯେ ଅଛନ୍ତି ।
ସୀତାଙ୍କ ସୁନ୍ଦର ଯେ ଅଟନ୍ତି ତୁମ୍ଭ ନାରୀ
ରୂପଗୁଣେ ପାଟ୍ଟଣୀ ନୋହିବେ ତାଙ୍କୁ ସରି ।
ରକ୍ତ ମୁଖ ଦୁହିତା ଯେ ଇନ୍ଦ୍ର ମୁଖୀ ସଖୀ
ବ୍ରହ୍ମା ପ୍ରଶଂସଇ ଯେ ବଦନ ତାର ଦେଖି ।
ଲବଣ ନାମରେ ଯେ ମଧୁବନ ରାଜା
ସେ କୁମ୍ଭର ଅଟନ୍ତି ଯେ ସୋଦର ଭଣଜା ।
ତାହାଙ୍କ ଦୋହିତା ଯେ ମଧୁବନ୍ତୀ ନାରୀ
ନାଗୁଣୀଙ୍କ ତୁମେ ବନ୍ଦୀ ହେଲେ ଭଣ୍ଡିରି ।
ତାହାର ରୂପକୁ କି ବିଦ୍ୟାଧରୀ ସମ
ଜଗତ ମୋହିନୀ ଯେ ସୁନ୍ଦର ଅନୁପମ ।
ଖଙ୍ଗାସୁର ନନ୍ଦନୀ ଯେ ସଜ୍ଜଭଜ୍ୟ କେଶୀ
ତାର ରୂପ ଦେଖିଲେ ମୋହିତ ବହୁଋଷି ।
ଦୁନ୍ଦୁଭିର ଦୋହିତା ସେ ଅଟେ ଅଂଶସେନା
ତାହାକୁ କେବଣ ନାରୀ ସମକକ୍ଷ କନା ।
ବାଣାସୁର ଦୁହିତା ଅଜଗା ନାମେ ବାଳ
ଯେଉଁଠାରେ ଥାଏ ଶୋଭାପାଏ ମହିଆଳ ।
ନାରକା ସୁରର ଦୁହିତା ଯେ ପଦ୍ମାବତୀ
ନାହିଁ ତାକୁ ସମାନ ଯେ ଅପୂର୍ବ ଯୁବତୀ ।
ପ୍ରହ୍ଲାଦ ଝିଅ ପାଟଟାଳ ନାମେ ବାମା
ସୁନ୍ଦର ପଣେ ତାକୁ ଆଗେ ଗଢ଼ଣେ ବ୍ରହ୍ମା ।
ତାଡ଼କାସୁରର ଯେ ନନ୍ଦନୀ ଚନ୍ଦ୍ରକାନ୍ତି
ଗୟାସୁର ନନ୍ଦନୀ ଯେ ଅଟେ ଗନ୍ଧମତୀ ।
ଦେଖିଲେ ତପିମାନେ ତପ କରନ୍ତି ଭ୍ରାନ୍ତି
ସେ କନ୍ୟା ରୂପବନ୍ତେ ସୁନ୍ଦର ସପଣେ ସତୀ ।
ସିନ୍ଧୁ ଦୈତ୍ୟର କୁମାରୀ ସାରଦା ବୋଲି ଜାଣ
ତ୍ରୈଲୋକ୍ୟକୁ ମୋହି ସେ ପାରଇ ଯେ ପୁଣ
ସିନ୍ଧୁସୁର ଦୁହିତା ଯେ ଅଶ୍ରୁଗତି ବନିତା
ରୂପ ଯୌବନତାର ସମ୍ପୂର୍ଣ୍ଣ ବ୍ରହ୍ମ ନେହା ।
ଗୋମନ୍ତର ନନ୍ଦନୀ ଅଟେ ଗନ୍ଧସ୍ୱନ୍ତୀ
ତାହାକୁ ସମାନ ବା କେବଣ ଯୁବତୀ ।
ରାହୁର ଦୋହିତା ଯେ ରାଧିକା ନାମେ କନ୍ୟା
ବ୍ରହ୍ମାଣ୍ଡ ଭିତରେ ତାକୁ ସର ନାହିଁ କନା ।

ସ୍ୱୟମ୍ଭର ଦୁହିତା ଯେ ଅଟେ ସରସ୍ୱତୀ
ସଂସାରକୁ ସେ ମୋହି ପାରଇ ଯୁବତୀ ।
କ୍ଷୀର ସମୁଦ୍ରରୁ ତ ଆଣିଲ ଶାନ୍ତକୋନ୍ତ
ଦେଖିଲେ ଯେ ତ୍ରିଶ ପୁରୁଷ ମୋହଯାନ୍ତି ।
ବ୍ରହ୍ମାପର ଦେଲେ ତୁମ୍ଭକୁ ସହସ୍ରେ କୁମାରୀଆଣି
କେଉଁ କେଉଁ ନାରୀ ସର ହେବେ ତାଙ୍କୁ ପୁଣି
ସ୍ୱର୍ଗର ଅପସରୀ ତୋର ଅଛନ୍ତି ଘରେ
ବିଦ୍ୟାଧରୀ କନ୍ନରୀ ଗହଳ ଅନ୍ତଃପୁରେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେକ ରୂପବନ୍ତୀ
ଏହି ଲଙ୍କାପୁରର ତୋର ସମସ୍ତେ ଅଛନ୍ତି ।
ଦିବ୍ୟଗନ୍ଧ ପୁରେ ଯେ ଚନ୍ଦନ ପୁର ବାସ
ଉତ୍ତମ ଭୋଗ ବିଳାସ କର ହେ ଦଶାନନ ।
ଏକା ସେ ଯୁବତୀ ସିନା ଶ୍ରୀରାମ ଘରଣୀ
ତାହାକୁ ଇଚ୍ଛା ତୁମେ ନ କର ବଂଶପାଣି ।
ସୀତାଙ୍କୁ ଦେବା ଉଠ ଯାଉ ସେ ରାମ ପତ
ନୋହୁ ଏଥିରେ ହନ୍ତ ହେ ନ ଶୁଭ୍ର ଅପକୀର୍ତ୍ତି
ନ ମରନ୍ତୁ ସୈନ୍ୟ ଆମ୍ଭେ ନିରେଖ ହୋଇବା
ନଥାଉ ସୀତା ଏଥି ତାକୁ ବାହୁଡ଼ାଇ ଦେବା
ଏତେକହି ମନ୍ଦୋଦରୀ ଦଶେ କରଣ ଧର
ରାବଣର ପାଦତଳେ ପଡ଼ିଲା ସୁନ୍ଦରୀ ।
ଉଠ ଉଠ ବୋଲିଣ ଯେ ବୋଲେ ଦଶଶିର
ହସ୍ତଧର ଉଠାଇ ଦେଲକ ବଂଶକର ।
ମହାଦେବୀଙ୍କ ଆଣିଣ କଣ୍ଠରେ ବସାଇଲା
ଶୁଣସି ଗୋ ସଖି ତୁହି ବୋଲିଣ ବୋଇଲା ।
ଯାହା ତୁ ବୋଇଲୁ ଗୋ ସେସବୁ ଅଟେ ସତ
ସୀତାଙ୍କୁ ଛାଡ଼ିଲେ ରାମ ଛାଡ଼ିବେ କୋପଚିତ୍ତ
ଶତ୍ରୁଙ୍କର ସମ୍ମୁଖେ ମୁଁ ପାଇବ ଉପହାସ୍ୟ
ଏ ଦେହ ମୋର ସଖି ରେ ଛାଡ଼ିବ ଅବଶ୍ୟ
ସର୍ବଦାକାଳେ ମୁଁ ବଳ ଆସ୍ଫେ କରଇ
ଅନ୍ୟାୟ କଥାମାନ ମୁଁ ସଫଳ ମଣଇ ।
ଅସତ ମାର୍ଗେ ଗମି ମୁଁ ଅର୍ଜିଲ ଏତେ ଶିରୀ
ସୁର ଦେବତାମାନେ ମୋତେ ସର୍ବେପୂଜାକରି
ଚଉଦ ଖଣ୍ଡାରେ ଯେତେ ଅର୍ଜିଅଛି ପାପ
କେବଣ ପ୍ରକାରେ ତାହା ହୋଇବ ସନ୍ତାପ ।
ଏହି ପିଣ୍ଡରୁ ଅବଶ୍ୟ ପ୍ରାଣ ଛାଡ଼ିଯିବ
ଅନ୍ତକାଳେ ଯମନେଇ ନରକ ଗତ ଦେବ ।

ଶ୍ରୀରାମ ନାରାୟଣ ତ ଅଟନ୍ତି ଚକ୍ରଧାରୀ
ପରମ ଲକ୍ଷ୍ମୀ ଅଟନ୍ତି ଜନକ କୁମାରୀ ।
ମୁହିଁ ଜାଣିଲି ଶ୍ରୀରାମ ମାରିବେ ମୋତେ ନିଶ୍ଚେ
ତେଣୁ ମୁଁ ସୀତା ଯେ ନଦେବ କଦାଚିତେ ।
ବିଷ୍ଣୁର ହସ୍ତରେ ମୁଁ ଯେ ନ ମରିବ ଯବ
କେମନ୍ତ ପାପଭର ହେ ହେବ ମୋର ଛେଦ
ନିଜ ରୂପ ଧରି ମୁଁ ଯେ ବୈକୁଣ୍ଠକୁ ଯିବ
ବାରସ୍ୱର୍ଗ ପୁରେ ଦ୍ୱାରପାଳ ମୁହିଁ ହେବ ।
କୁମ୍ଭକର୍ଣ୍ଣ ଭାଇ ମୋର ଆଗ ହୋଇ ଗଲା
ଶ୍ରୀରାମ ନାରାଚରେ ପାପ ମୋଚନ କଲା ।
ପୁତ୍ର ନାତି ଯେତେ ରଣ ଭୂମିରେ ମଲେ
ସମସ୍ତେ ଶ୍ରୀହରି ପାଟଣାରେ ଯେ ରହିଲେ ।
ବଧୂ ସାନବଧୂ ଯେତେକ ହେଲେକ ଖାସ
ଯେଝା ସ୍ୱାମୀ ସଙ୍ଗରେ ହେଲେ ପରବେଶ ।
ଅକ୍ଷୟେ ବୈକୁଣ୍ଠେ ସେ ନିଶ୍ଚିନ୍ତେ ରହିଲେ
ଯୁଗଳ ବନେ ପରସ୍ପେ ସେଠାରେ ମିଶିଲେ
କୁମ୍ଭକର୍ଣ୍ଣ ପୁତ୍ର ନାତି ଭାରିଯା ସହିତେ
ସ୍ୱାମୀ ସଙ୍ଗେ ଅକ୍ଷୟେ ବୈକୁଣ୍ଠେ ରହିଲେ ନିଶ୍ଚିନ୍ତେ
ଯେତେକ ସୈନ୍ୟ ବଳ ମଲେ ମୋର ପୁଣ
ସମସ୍ତେ ସ୍ୱର୍ଗବାସୀ ହେଲେ ତୁମ୍ଭେ ଜାଣ ।
ରାମଚନ୍ଦ୍ର ଦୃଷ୍ଟିରେ ସମସ୍ତେ ସ୍ୱର୍ଗ ଗଲେ
ଅକ୍ଷୟେ ବୈକୁଣ୍ଠରେ ନିଶ୍ଚିନ୍ତ ରହିଲେ ।
ସାତକୋଟି ପଚାଶ ସହସ୍ର ମୋର ନାରୀ
ସାତକୋଟି ଯିବେ ଯେ ସଙ୍ଗରେ ମୋହର ।
ପଚାଶ ସହସ୍ର ଯେ ଅଟନ୍ତି ବଡ଼ପାଟ
ସେ ତୁମ୍ଭ ସଙ୍ଗେ ରହିବେ ଜନ୍ମଅଛି ଜ୍ୟେଷ୍ଠ ।
ବଡ଼ ସୁନ୍ଦର ତୋତେ ପ୍ରାପତ ହୋଇବ
ଚନ୍ଦ୍ର ସୂର୍ଯ୍ୟଥିବା ଯାକ ଶରୀର ତୋର ଥିବ ।
ପାଞ୍ଚକନ୍ୟା ସଙ୍ଗରେ ତୁ ହୋଇବୁ ଗଣିତା
ସ୍ୱୟଂ ଗଣିତା କରିବେ କଉଶଲ୍ୟା ସୁତା ।
ମୋର ଭାଇ ବିଭୀଷଣର ହେବୁ ତୁ ପାଟରାଣୀ
ଯୁଗେ ଯୁଗେ ସୁମରଣା କରିବେ ସର୍ବେ ପୁଣି
ପରମବ୍ରହ୍ମ ନାରାୟଣ ଅଟନ୍ତି ରାମ ପୁଣ
ତାଙ୍କଠାରେ ସନମାନ ହେବୁ ତୁହି ଜାଣ ।

ଉତ୍ତମ ଦେବ ଅଟନ୍ତି ଦଶରଥ ସୁତ
ତାଙ୍କଠାରେ ବିଶ୍ୱାସ ଗୋ କର ତୋର ଚିତ୍ତ
ମୋତେ ମାରିବାକୁ ସେ କରି ଅଛନ୍ତି ନିୟମ
ନିଶ୍ଚୟ ମାରିବେ ମୋତେ ନ ରଖିବେ ବ୍ରହ୍ମା
ତାଙ୍କ ହସ୍ତେ ମଲେ ମୁଁ ଯେ ମୁକତ ପାଇବ
ତୋତେ ମୁହିଁ କାରଣ କରି ଏଥୁଁ ଯିବ ।
କିଛି ବିଚାର ନ କର ହୋଇବ ତୋତେ ଯଶ
ନିଶ୍ଚିନ୍ତେ ଭୋଗ କରିବୁ ତୁହି ଲଙ୍କା ଦେଶ ।
ମହୀରାବଣକୁ ନିଶ୍ଚୟେ ମାରିବେ ଲକ୍ଷ୍ମଣ
ତାଙ୍କ ହସ୍ତେ ମଲେ ସେହୁ ପାଇବ କାରଣ ।
ସାରବାହୁ ସୁତ ସୁବାହୁ ତହିଁ ହେବ ରାଜା
ତୋର ଥିବା ଯାଏ ଭୋଗ କରିବ ତନୁଜା ।
ମୁହିଁ ଯିବ ବେଗେ ପୁଣ ନ ପାରଇ ରହି
ଯେମନ୍ତେ ଜନ୍ମ ମୋର ଶୁଣ ରେ ପ୍ରାଣସହି ।
ବିଷ୍ଣୁର ଯେ ଦ୍ୱାରପାଳ ପଶ୍ଚିମ ଦ୍ୱାର ରଖୁ
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସେଥିରେ କାହାକୁ ନ ଲେଖୁ ।
ଅନେକ ମହାଲକ୍ଷ୍ମୀ ଦିବ୍ୟ ବେଶ ହୋଇ
ନାରାୟଣ ସମୀପକୁ ଗମିଲେ ବନ୍ଦମୁହିଁ ।
ଆଗେ ଉଗାଳଣ ତାଙ୍କୁ ବୋଇଲି ମୁଁ ରାଗେ
ସୁର ମୁନିମାନେ ଛନ୍ତି ଶ୍ରୀ ହରିଙ୍କ ସଙ୍ଗେ ।
ଏମନ୍ତ ସମସ୍ତେ ଯିବାର ନୁହଇ ଉଚିତ
କୁଳବଧୂ ସିନ୍ଧୁ ରାଜାର ଦୁହିତ ।
ଏକାନ୍ତ ସମୟରେ ତୁ ସ୍ୱାମୀର ସଙ୍ଗେ ଥିବୁ
ଉଦ୍ୟାନ ସ୍ଥାନକୁ ତୁ କମାଇ ଏବେ ଯିବୁ ।
ଚଞ୍ଚଳା ବୋଇଲେ ଯେ ସୁର ମୁନିମାନ
ସମସ୍ତେ ମୋହର ପୁଣି ଅଟନ୍ତି ନନ୍ଦନ ।
ତହିଁକି ବିକାର କରେ ଉପୁଜଇ ମୋତେ
ବାଟ ଛାଡ଼ ଦିଅରେ ଦୋଷ ନାହିଁ ତୋତେ
ଆଜ ଗୁରୁବାର ମୋର ସମୁଦ୍ରେ ସ୍ନାନ କଲି
ଦର୍ଶନ କରିବ ବୋଲି ବେଗେ ମୁଁ ଅଇଲି ।
ଆଜଦିନ ସୁଫଳ ସ୍ୱାମୀଙ୍କ ମୁଖ ଚାହିଁ
ନମସ୍କାର କରି ମୁଁ ଆସିବି ବେଗ ହୋଇ ।
ଆହେ ଚଣ୍ଡସାର ମୋତେ କଠାଳ ନକର
ଦିଅ ଛାଡ଼ ଦ୍ୱାର ମୋତେ ଦେଖିବ ସ୍ୱାମୀ ମୋର ।

ଦେବୀଙ୍କର ବଚନେ ମୁଁ କ୍ରୋଧ ମନକଲି
ଚକ୍ଷୁ ବୁଲାଇଣ ମୁଁ ଯେ କଟାକ୍ଷ ନ କଲି ।
ସେ ଭୟରେ ବାହୁଡ଼ିଲେ ବିଷ୍ଣୁ ପାଟରାଣୀ
ଶାପ୍ୟ ମୋତେ ଦେଲେ ଯେ ଯାତ କମଳିନୀ
ରାକ୍ଷସ ପ୍ରକୃତି ତୁ ରେ ଧରି ଉପୁଜିଲୁ
ମୋର ସ୍ୱାମୀ ସେବାରେ ବିଅର୍ଥ କରାଇଲୁ ।
ଆଜଠାରୁ ଅସୁର ବଦନ ତୋର ହେଉ
ମୋହର ବଚନ ତୋତେ ଯୁଗେ ଯୁଗେ ଥାଉ
ଏସନକ ବୋଲିଣ ବାହୁଡ଼ି ଯେ ଗଲି
ତତକ୍ଷଣେ ରୂପ ମୋର ବିକଟ ରୂପ ହେଲି ।
ବିଷ୍ଣୁଙ୍କର ଛାମୁରେ ଜଣାଇଲି ଯାଇ
ଗଦା ପକାଇଣ ମୁଁ ଯେ ଉଠିଲି ବୋବାଇ ।
ସ୍ୱାମୀ ବୋଇଲେ ତୁରେ ଉଠ ବେଗ ଚଣ୍ଡ
ଦେବୀର କୋପେ ବିକଟ ହେଲା ତୋର ମୁଣ୍ଡ
ପ୍ରତିକାର କରିଣ ଦୟା ମୋତେ କଲେ
ଜଗତଜନ ବୋଲିଣ ଅକ୍ଷୟେ ବର ଦେଲେ
କମଳାଙ୍କ ବଚନ ନୁହେଁ ତ କେବେ ଆନ
ପୂର୍ବ ଶାପେ ହେଲୁ ତୁରେ ଅସୁର ବଦନ ।
ତୁ ମୋର ବିଶ୍ୱାସରେ ଅଟୁରେ ପରମ ହିତ
ତୋତେ ସମର୍ପିଲି ମୋହର ଅର୍ଥ ବିତ୍ତ ।
ନ ବଲ୍ଲିର ସ୍ତ୍ରୀୟେ ତୋତେ ସେ କୋପ କଲା
ବେଳାରେ ନ ବୁଝିଣ ତୋତେ ସେ ଶାପ୍ୟ
ଦେଲା ।
ଏଥିକୁ ପ୍ରକାର ପାଇବ କମଳାକ୍ଷୀ
ଭୃତ୍ୟକୁ ତାଙ୍କର ଯେବେ ଏଡ଼େ କୋପ ଅଛି
ତୋତେ ଯେବେ ଶାପ୍ୟ ଦେଲା ସିନ୍ଧୁର
ତନୟୀ
ମର୍ତ୍ତ୍ୟ ଲୋକେ ଜନ୍ମିବ ମାନବ ତନୁ ବହି
ବିଶ୍ରବା ଋଷିର ତୁ ଯେ ହୋଇଥିବୁ ପୁତ୍ର
ମାତା ଗୁଣ ବେନି ତୁରେ ହୋଇବୁ ବିଦିତ
ଆମ୍ଭେ ଯାଇ ଦଶରଥ ଘରେ ଜାତ ହୋଇ
କମଳା ଜାତ ହେବେ ଜନକ ଘରେ ଯାଇଁ ।
ତୁମ୍ଭେ ଦୁଇଜଣ ଦୁଇ ଭାଇ ହେବ
ରାବଣ କୁମ୍ଭକର୍ଣ୍ଣ ନାମ ବୋଲାଇବ ।
ଯାଗକରି ବ୍ରହ୍ମାଙ୍କୁ ଯେ ମନାସିବ ବର
ବିଧାତାର ବଳେ ତୁମ୍ଭେ ହୋଇବ ବଳିଆର
ତିନିପୁର ଜିଣିଣ ଦେବତା ହରିନେବ
ସୁରଲୋକ ନେଇ ପାଦତଳେ ଖଟାଇବ ।
ତେବେ ଆମ୍ଭେ ତୁମ୍ଭଙ୍କୁ କରିବୁ ପ୍ରାଣେ ନାଶ
ଦଶରଥଙ୍କର ସତ୍ୟେ ଯିବୁ ବନବାସ ।
ଗୋଦାବରୀ ନଦୀ କୂଳେ ଥିବୁ ଆମ୍ଭେ ରହି
ଜନକ କୁମାରୀ ଯେ ସଙ୍ଗତେ ଥିବେ ଯାଇଁ ।
ସେଠାରୁ ବନରୁ ତୁ ଯେ ହରିନେବୁ ସୀତା
ଲଙ୍କାଗଡ଼େ ନେଇଣ ରଖିବୁ ଜଗତମାତା ।
ଯତନ ପ୍ରକାରେ ତୁ ଲୁଚାଇ ଥୋଇଥିବୁ
ତାହାଙ୍କୁ ଯାଇ ତୁ ଭର୍ତ୍ସନା ବୋଲିବୁ ।
ଏଣୁ ଲକ୍ଷ୍ମୀ ତୋତେ ଯେ ବୋଇଲେ ମନ୍ଦବାଣୀ
ତୁହି ମନ୍ଦ ବୋଲିବୁ ଆଜର କଥା ଶୁଣି ।
ସେ ତମୋହର କି ଜାଣିପା ତୁ ମୋର ସେବକ
ମୋଠାରୁ ବଡ଼ ଅଟନ୍ତି ମୋର ଭୃତ୍ୟଲୋକ
ଏସନକ ବୋଲିଣ ତୋଷିଲେ ମୋର ମନ
ଲକ୍ଷ୍ମୀସ୍ୱାମୀ ନାଥ ଯେ ଅଟନ୍ତି ଭଗବାନ ।
ସେବକଙ୍କ ନିମନ୍ତେ ଘରଣୀକି କୋପ କଲେ
ଏଥୁଅନନ୍ତରେ ଯେ ଅନେକ ଯୁଗ ଗଲେ ।
ଲକ୍ଷ୍ମୀନାରାୟଣ ଯେ ଏକାନ୍ତ ସମୟରେ
ଦୁର୍ବାସା ମହାଋଷି ପ୍ରବେଶ ସେ ଠାବରେ ।
ପଶ୍ଚିମ ଦ୍ୱାର ବାଟରେ ପ୍ରବେଶ ମହାମୁନି
ଦେଖି ଆମ୍ଭେ ଓଗାଳିଲୁ ଜୟେ ବିଜୟେ ବେନି
ନୁହଇ ଉଚିତ ଯେ ଏ ମାର୍ଗେ ନ ଯାଅ
କେସନେ ତୁମ୍ଭେ ବ୍ରହ୍ମଜ୍ଞାନୀ ଯେ ବୋଲାଅ ।
କମଳାଙ୍କୁ ଘେନି ଶ୍ରୀହରି ପରକାଶ
ପ୍ରବଳ କାଳ ଜାଣିଣ ଭିତରେ ନ ପଶ ।
ପଶ୍ଚିମ ଦ୍ୱାର କି ଅଟେ ତୁମ୍ଭର ବାଟ
ଠାକୁରେ ଜାଣିଲେ ହେବ ବଡ଼ ଘାଟ ।
ଏ ସନକ ବୋଲନ୍ତେ ଯେ ନ ରହେ ପୁଣ
ଋଷି
ତପବଳ ଦେଖାଇ ଭିତରେ ସେ ପଶି ।
ଜୟେ ସହିତେ ଆମ୍ଭେ କୋପ କଲୁ ବେନି
ବୋଇଲୁ ଏ କଥା ଭଲ ନୁହେଁ ମୁନି ।
ତ୍ରୈଲୋକ୍ୟ ଈଶ୍ୱର ସେ ଅଟେ ଯେବଣ
ନାହା
ବଞ୍ଚିତ କରି ତାକୁ ମଣ ଋଷି ନାହା ।

ଅଜ୍ଞାନରେ ଯାଅ ତୁମ୍ଭେ ବିଷ୍ଣୁ ଆଜ୍ଞା ମେଣ୍ଟି
ଏତେ କହି ଆମ୍ଭେ ଚପିଲୁ ତାଭ ତଣ୍ଟି ।
କୋପରେ ଗଳଥାରେ ପେଲି ପକାଇଲୁ
ବ୍ରାହ୍ମଣ ବୋଲିଣ ଭୟେ ଯେ ନ କଲୁ ।
କ୍ଷଣେକେ ସେ ବିଷ୍ଣୁ ଭକ୍ତ ସେ ମୋହର ଆତ୍ମା
ଏଥକୁ ଗଉରବ ନ କଲୁ ଦୁରାତ୍ମା ।
ତୁମ୍ଭେ ବାସୁଦେବର ଅଙ୍ଗସଙ୍ଗ ଅଛ
ତୁମ୍ଭେ ବାସୁଦେବର ପଦ୍ମପାଦ ଖଛ ।
ଆମ୍ଭେ ତ ଦୋରହା ହେଲୁ ତୁମ୍ଭ ବୋଲେ
ଗଳଥା ମାଇଲେ ରେ ନବରେ ପଶିଲେ ।
ଯେବେ ମୁଁ ବ୍ରାହ୍ମଣ ବାସୁଦେବର ସେବକ
ତୁମ୍ଭେ ଦୋରହା ବେଣ କଲରେ ପାତକ ।
ଏ ଦୋଷେ ରାକ୍ଷସରେ ହେବ ଶତେକର
ଶ୍ରୀହରି ଦୋରେହା ହୋଇ ବୋଲିବେ
ସଂସାର ।
ଯେତେକ ବିଶ୍ୱାସୀ ତୁମ୍ଭେ ତେତେ ଶତ୍ରୁ ହୁଅ
ନାରାୟଣ ଦୋରେହା ବୋଲି ଜଗତେ
ବୋଲାଅ ।
ଏତେବୋଲି ମୁନି ଯେ ଅନ୍ତର୍ଦ୍ଧାନ ହେଲେ
ଜାଣିଣ ବିଷ୍ଣୁନାଥ ଆମ୍ଭଙ୍କୁ ପୁଚ୍ଛିଲେ ।
ବୋଇଲେ ଦୁର୍ବାସା ଋଷିର ଶାପରୁ ଯେଉଁ
ଗତି
ଶୁଣିକରି ପ୍ରସନ୍ନ ହୋଇଲେ ଜଗଜ୍ଜ୍ୟୋତି ।
ବୋଇଲେ ବ୍ରହ୍ମମୁନିର ବଚନ ନୋହେ ଆନ
ପୂର୍ବରେ ଅଛି ତୁମ୍ଭଙ୍କୁ କମଳା ଶାପ ପୁଣ ।
ଶତ ଜନ୍ମ ବୋଲି ଯାହା ବୋଇଲେ ଦୁର୍ବାସା
ଦ୍ୱାରପାଳ ନ ଥିଲେ ତୁଚ୍ଛାହେବ ମୋ
ମନସା ।
ତିନିବେଳ ଜାତ ହେବ ତୁମ୍ଭେ ମର୍ତ୍ତ୍ୟପୁରେ
ଜନ୍ମିବ ଦିତି କଶ୍ୟପ ଋଷିଙ୍କର ଘରେ ।
ମାତର ଗୁଣ ଯେଣ ହୋଇବ ତୁମ୍ଭେ ଦୈତ୍ୟ
କଶ୍ୟପ କୋଳେ ହିରଣ୍ୟ ହିରଣାକ୍ଷ ଜାତ ।
ବରାହରୂପେ ହିରଣାକ୍ଷ୍ୟ ମୁଁ ମାରିବି
ନରସିଂହରୂପେ କଶିପୁକୁ ବିଦାରିବି ।
ଦ୍ୱିତୀୟ ବାରେ ବିଶ୍ରବାଋଷି ଘରେ ଜାତ
ରାବଣ କୁମ୍ଭକର୍ଣ୍ଣ ନାମରେ ବେନି ଭ୍ରାତ ।

ଏବେ ଲକ୍ଷ୍ମୀ ହାତେ ତୁମ୍ଭଙ୍କୁ କୋପ କଲା
ବୈଷ୍ଣବର କଥାକୁ ଉଦ୍ବେଗ ସେ ପାଇଲା ।
ସେ ଦୋଷରୁ ମନୁଷ୍ୟରୂପରେ ଜାତ ହେବ
ଆଗକରି ତୋତେ ମୁଁ କହୁଛି ତତ୍ତ୍ୱ ଦେବ ।
ସେହି ଦୋଷେ ତୁମ୍ଭଙ୍କୁ ମୁଁ କରିବି ଖେଦ
ନାରାଚରେ ମାଇଲେ ପାଇବ ନିଜ ପଦ ।
ତୃତୀୟ ଅବତାରେ ମାନବ ଘରେ ଜାତ
ଦମଘୋଷ ରଜାର ହେବ ବେନି ପୁତ୍ର ।
ଶାଲ୍ୱ ଶିଶୁପାଳ ବୋଲିଣ ଯେ ଅବତାର
ତହିଁ ବଧ ହେଲେ ତୁମ୍ଭେ ଦୋଷୁ ହେବ
ପାର ।
ଶାପରୁ ମୁକ୍ତ ହୋଇ ତିନି ଜନ୍ମରେ ଆସିବ
ଛଅଶୋଇ ଗଣ୍ଡାଏ ଯୁଗ ଏଥିରେ ବହିଯିବ ।
ଭକତ ହୋଇଲେ ତୁମ୍ଭେ ଶତଜନ୍ମ ଥିବ
ଦୁଷ୍ଟ ବୁଦ୍ଧି କଲେ ତିନି ଜନ୍ମରେ ନିସ୍ତରିବ ।
ଏହାଶୁଣି ମୂର୍ଚ୍ଛି ଯେ ବୋଲଇ ବଚନ
ଯେମନ୍ତେ ବେଗେ ଆସି ମୁଁ କରିବି ଦର୍ଶନ ।
ଏତିନି ଜନ୍ମ ହୋଇ ଆସ ବୋଲି ଆଜ୍ଞା
ଦେଲେ
ଶତେଜନ୍ମର ପାପ ଖଣ୍ଡ ଯେ ବୋଇଲେ ।
ଏହି ଆଜ୍ଞା ମୋତେ ଦେଇ ଅଛନ୍ତି ନାରାୟଣ
କେ ଆନ କରିବ ସର୍ବ ବିଷ୍ଣୁର ବଚନ ।
ସେ କଥାକୁ ଜାଣି ମୁଁ ଯେ ଆଣିଲି ସୀତା
ହରି
ଅଶୋକ ବନରେ ମୁଁ ଯେ ରଖିଛି ଯତ୍ନକରି
ରଜାର ଯୁବତୀ ଯେ ଅଟେ ବୁଦ୍ଧିମନ୍ତ
ଏ କଥା ଜାଣିଲି ପୁଣ ସକଳ ବୃତ୍ତାନ୍ତ ।
ଏତେବୋଲି ରାବଣ କହେ ବଚନ ଧୀରେ
ଗୁପ୍ତ କଥା କହିଲି ମୁଁ ତୁମ୍ଭର ଆଗରେ ।
ଆହୁରି ଦିନେ ମୁଁ ଯେ ଦଣ୍ଡକା ଅରଣ୍ୟ
ମୃଗୟା ବିନୋଦେ ଯାଇଥିଲେ ରଘୁନାନ ।
ଯେତେକ ଜୀବକୁ ସେ କରନ୍ତି ପ୍ରାଣେ ନାଶ
ପାର୍ଥିବ ଦେହ ଛାଡ଼ି ଧରେ ଦିବ୍ୟ ବେଶ ।
ସୁବର୍ଣ୍ଣର ବିମାନେ ସେ ଦେବତା ରୂପ ହୋଇ
ସୁର ପୁରେ ବସାଇ ଦେବତା ଦେହ କହି ।

ସେ ହନୁ ଜାଣିଲ ଏ ନିଶ୍ଚୟ ନାରାୟଣ
କୈବଲ୍ୟ ମୁକ୍ତି ଅଟଇ ତାହାଙ୍କଠାରୁ ଜାଣ ।
ସେହିହନୁ ତାର ହସ୍ତେ ଲୋଡ଼ଇ ମୁଁ ମରଣ
ତେଣୁକରି ଜାନକୀ ମୁଁ ଆଣିଲି ହରଣ ।
ମୋର ମନବାଞ୍ଛା ହୋଇବ ପୂରଣ ଯେବେ
ଶ୍ରୀରାମ ହାତରେ ଜୀବନାଶ ହେବ ତେବେ ।
ଯେବେ ରଘୁନାଥ ମୋତେ ନ ପାରିବ ମାରି
କେତେକାଳ ଥିବ ମୁଁ ଅସୁର ତନୁ ଧରି ।
ବଇକୁଣ୍ଠ ପୁରରେ ତ ଅଟେ ମୋର ଘର
କେବେ ଯିବାକୁ ମନ ଚଞ୍ଚଳ ହେଉଛି
ମୋର ।
ଅନେକ କାଳ ହଚ୍ଛେଦ କଲେ ତ ବିଧାତା
ଶ୍ରୀରାମ ଘରଣୀ ଯେ ଅଟେ ଦେବୀ ସୀତା ।
ତାଙ୍କୁ ଦ୍ରୋହ କଲି ମୁଁ ଯେ ମରିବାର ପାଇଁ
ମର୍ତ୍ତ୍ୟପୁରେ ରହିବାରେ ମୋର କାର୍ଯ୍ୟ ନାହିଁ ।
ଅଭୟ ଅଚ୍ୟୁତ ନାରାୟଣ ପାଶେ ଥିବ
ଅକାରଣେ କିମ୍ପା ମୁଁ ଦୁଃଖେ ଦିନ ନେବ ।
ଶାପ ପାର କରିଯିବ ମୁଁ ଯେ ସ୍ୱର୍ଗ ଆଳ
ଶ୍ରୀରାମ ହାତରେ ପୂରିବ ମୋର କାଳ ।
ଜେ ସଖି ମନ୍ଦୋଦରୀ ଗୋ ଗୁପ୍ତ ଏହି ବାଣୀ
ତେଣୁକରି ହରି ଆଣିଲି ମୁଁ ଶ୍ରୀରାମ ଘରଣୀ ।
ଶ୍ରୀରାମଚନ୍ଦ୍ରଙ୍କର ତ ଅନ୍ତର ନାହିଁ ମୋତେ
ବସିବ ବଇକୁଣ୍ଠେ ମଲେ ରାମ ହସ୍ତେ ।
ମୋହର ଗୋଚରେ ସଖି ସେ କମଳମୀ
ବିଶ୍ୱାସ କରି ବଚନ କହିଲା ଏବେ ପୁଣି
ମନେ ବୁଝିଲି ମୁଁ ଶ୍ରୀରାମଙ୍କ ଦୟା ମୋତେ
ଅଛି ।
ବିଶ୍ୱନାଥ ଠାକୁର ସେ ଅଧିକ ତାଙ୍କୁ ଲେଖି
ଏହିଥର ମୁହିଁ ପୁଣ ନ ଆସେ ଫେରିଟି
ଶୁଣ ରାଣୀ ସମସ୍ତ ତୋତେ କହିଲିଟି ।
ଏହିକଥା ପ୍ରମାଣ ଗୋ ଜାଣିଥାଅ ରାଣୀ
ଯେତେବେଳେ ରାମ ମୋତେ ପକାଇବେ
ହାଣି ।
ଆଦର କଲେ ପୁଣ ଯେ ନ ନେବେ ସେହି
ସୀତା
ବୋଲିବୁ ଯାହା ମୋତେ କହୁଥିଲେ ଭ୍ରାତା ।
ପରୀକ୍ଷା ହେଲେ ସୀତାଙ୍କୁ ଶ୍ରୀରାମହିଁ ନେବେ
ଦିଗପାଳଙ୍କର ସତ୍ୟ ତହୁଁ ଥିବେ ।
ଏବେ ରଘୁନାଥ ଦେଖ ମାଗନ୍ତିକ ସୀତା
ଧୋଇନ୍ତୁ ବାହୁଡ଼ି ଯିବ ପାଇଣ ବନିତା ।
ଏହୁ ଯେ ନରନାରୀ ଇଷ୍ଟବନ୍ଧୁ ଲୋକ
ବୁଝି ଗୋ ତଆର ମୋତେ କହିଲୁ ଅନେକ
ସେହି ନାରାୟଣ ପିନା ସବୁରି ଦେହେ ଅଛି
ତଥାପି ସତ୍ୟକୁ ମୁଁ ନ ପାରଇ ମୁଞ୍ଚି ।
ଶୁଣିଣ ମନ୍ଦୋଦରୀ ଯୋଡ଼ି ବେନି କର
ଶୁଣ ଦେବ ପ୍ରତାପୀ ତୁମ୍ଭେ ଲଙ୍କେଶ୍ୱର ।
ଏତେ କଥା ଜାଣୁ ତୁ ପୂର୍ବ କଥା ମନେ
ସୀତାଙ୍କୁ ବିଡ଼ମ୍ବନ କରୁ ତୁ କେସନେ ।
ଯେତେବେଳେ ଦଣ୍ଡକା ଅରଣ୍ୟକୁ ଗଲୁ
ଏକାଦେଖି ତାର ସଙ୍ଗେ ଯୁଦ୍ଧ ତୁ ନକଲୁ ।
ସେ କାଳେ ମରିଥିଲେ ତୁ ବୈକୁଣ୍ଠପୁର ଯାନ୍ତୁ
ଏତେ ସୈନ୍ୟ ମରାଇ ପାଇଲୁ କେଉଁ ହେତୁ
ପୁତ୍ର ନାତି ବନ୍ଧୁ ତୋର ଭାଇ ମରାଇଲୁ
ଅପଯଶ ଘେନିଣ କିମ୍ପା ଆପେ ମରିବା
ଇଚ୍ଛାକଲୁ ।
ଦଶଗ୍ରୀବ ବୋଲେ ମୁଁ ଯେ ପ୍ରତେ ନ କରଇ
ନୋହେ ମହାଲକ୍ଷ୍ମୀ ବୋଲି ମନେ ନ
କରଇ ।
ଆନ ନାରୀ ହୋଇଲେ ବଳନ୍ତା ମୋର ମତି
ହୋଇବ କି ନୋହିବ ସେ ସିନ୍ଧୁର ଦୋହିତ୍ରୀ
ଏସନ ବିଚାରି ମୁହିଁ କୁମାର୍ଗ କହିଲି
ନୁହଇ ମହାଲକ୍ଷ୍ମୀ ବୋଲିଣ ବିଚାରିଲି ।
ମହାଲକ୍ଷ୍ମୀ ହୋଇଲେ ଜଅଗ୍ନିରେ ସ୍ନାନକରେ
ସେହିହିନୁ ବିଚାରିଲି କମଳା ଅଟେ ଭଲେ ।
ଯେଦିନ ଦିନ ରାମ ସୀତାଙ୍କୁ ବିଭା ହୁଏ
ଅନ୍ତରୀକ୍ଷେ ଥାଇଣ ଦେଖନ୍ତି ଦେବତାଏ ।
ଈଶ୍ୱରଙ୍କର ଧନୁ ସେ ତୋଳିଲେ ବାମକରେ
ଗୁଣଦେଇ ଆମନ୍ତ୍ରିଲେ ଜନକ ସଭାରେ ।
ସେହିଦିନୁ ଦେଖି ମୁହିଁ ହୋଇଲି ଚକିତ
ବାରବରଷରେ ରାମ କଲେ ଏତେ କୃତ୍ୟ ।
ଇନ୍ଦ୍ର ହୋଇ ସେ ଧନୁକୁ ନପାରିଲେ ତୋଳି
ହେଲେ ରାମଚନ୍ଦ୍ର ତାକୁ ବାମକରେ ଧରି ।

ଗୁଣ ଦେଇ ଧନୁକୁ ଯେ ଦୁଇଖଣ୍ଡ କଲେ
ଯୋଗବଳେ ଜାଣିଲି ଶ୍ରୀରାମ ଜନ୍ମହେଲେ ।
ଆନନ୍ଦ ହୋଇଣ ତହୁଁ ବାହୁଡ଼ି ଅଇଲି
ପଶୁ ରାମଙ୍କୁ ଜଣିବାର ବାରତା ପାଇଲି ।
ବନବାସ ଆସିବାରୁ ମୁହିଁ ଗଲି ଦେଖି
ସଙ୍ଗରେ ଅଛନ୍ତି ଜାନକୀ ପଦ୍ମମୁଖୀ ।
ବନଫଳ ଖାଇ ତହୁଁ ଚଳେ ତାଙ୍କ ବାସ
ପଞ୍ଚବଟ ଆସ୍ଥାରେ ପାଇଲି ମ ହିଁ ହାସ ।
ଈଶ୍ୱର ସ୍ୱୟଂ ବିଷ୍ଣୁ ମୋହର ନିମନ୍ତେ
ଏତେ ଦୁଃଖ ସହିଣ ଅଛନ୍ତି ଏହି ମର୍ତ୍ତ୍ୟେ ।
ବେଶକରି ସୀତାଙ୍କୁ ମୁଁ ନେବି ଏଥି ହରି
ଦେବଙ୍କର କଷ୍ଟ ହାଦେ ଯିବ ସବୁ ସରି ।
ମୋହର ଅସୁର ତନୁ ଗୁଡ଼ ହେବ ତେବେ
ଦେବତାଙ୍କ ସଙ୍ଗେ ମୁଁ ବସିବି ସ୍ୱର୍ଗଭବେ ।
କମଳା ସହିତରେ ଶ୍ରୀହରି ସ୍ୱର୍ଗବାସ
ବୈକୁଣ୍ଠେ ସେବା କରିବି ସ୍ୱାମୀଙ୍କର ପାଶ ।
ଏକଥା ଈଶ୍ୱର ମୁଁ ଯେ ଆଣିଲି ବଇଦେହୀ
ଭୁ ମୋତେ ଅଜ୍ଞାନ ପ୍ରାୟେ ମଣିଲୁ କି ସହି
ବାଲ୍ୟତ କାଳରେ ମୁଁ ଅନେକ ତପ କଲି
କେବେହେଁ ବ୍ରହ୍ମାଙ୍କୁ ମୁଁ ମଣାଇ ନ ପାରିଲି
ଚନ୍ଦନ କାଷ୍ଠରେ ମୁଁ ଯେ କଲି ହୁତାଶନ
ବୋଇଲି ଏଥିରେ କରିବି ହବନ ।
ଏତେ ବୋଲି ମୁଣ୍ଡ ମୋଡ଼ିଲି ଆପଣାର
ଅଗ୍ନିରେ ପକାଇଲି ମୁଣ୍ଡକୁ ମୋହର ।
ପ୍ରଜ୍ୱଳତ ଅଗ୍ନିରେ ଚମଡ଼ା ଜଳିଗଲା
ଲଲାଟ ଲିଖନ ମୋତେ ତ ଦିଶିଲା ।
ପଢ଼ିଲି ଜାନକୀ ହରଣେ ମୋତେ ଅଛି ମୃତ୍ୟୁ
ଶ୍ରୀରାମଙ୍କ ହାତରେ ହେବ ମୋର ମୃତ୍ୟୁ ।
ସୀତା ନ ହରିଲେ ହୋଇବି ଅମର
ସୁଖେଣ ଭୋଗ ମୁଁ ଯେ କରିବି ତିନିପୁର ।
ଏସନ ପଢ଼ି ଆଶ୍ଚର୍ଯ୍ୟ ମୁଁ ହେଲି
ପୁଣି ଆରେକ ମୁଣ୍ଡ ମୋଡ଼ି ପକାଇଲି ।
ସେ ମୁଣ୍ଡ ପଡ଼ନ୍ତେ ମୋତେ ଦିଶନ୍ତିଅକ୍ଷରପନ୍ତି
ଦଶରଥ ବଧୂ ଯେ ସୁନ୍ଦର ରୂପବନ୍ତୀ ।
ତାହାଙ୍କୁ ହରାଇଲେ ମରିବ ଦଶଶିରା
ନୋହିଲେ ଜିଣାଶିବ କନକମସ୍ତେ ପୁରା ।

ପଢ଼ିଣ ଈଶ୍ୱରଙ୍କ ତଥ୍ୟ ଏହୁ କଥା
ପୁଣି ଅଗ୍ନିରେ ପୋଡ଼ିଲି ଆରେକ ମୋରମଥା
ତହିଁରେ ଲେଖା ହୋଇଛି ପଢ଼ିଲି ମୁଁ ପୁଣ
ଶ୍ରୀରାମ ନାରୀ ହରିଲେ ମରିବ ରାବଣ ।
ଏହି କଥା ନ କଲେ ଯେ ମୃତ୍ୟୁ ତାର ନାହିଁ
ଚଉଦ ବ୍ରହ୍ମାଣ୍ଡରେ ହୋଇବ ଏକ ସାଇଁ ।
ପୁଣି ଈଶ୍ୱରଙ୍କ ମୁଁ ପାଇଲି ମୃତ୍ୟୁଭେଦ
ଆଉ ମୁଣ୍ଡ ମୋଡ଼ି ପକାଇଲି ଅଗ୍ନି ମଧ୍ୟ ।
ତହିଁରେ ପଢ଼ିଲି ବିହି ଲେଖିଅଛି ଯାହା
ସୀତାଙ୍କୁ ହରିଲେ ଯେ ମରିବ ବଂଶବାହା
ମରିଲେ ସେ ବୈକୁଣ୍ଠ ପୁର ଚଳିଯିବ
ମନ୍ଦୋଦରୀ ରାଣୀକି ବିଭୀଷଣ ନେବ ।
ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ସେ ହେବ ଅମର
ମନ୍ଦୋଦରୀ ପାଟରାଣୀ ହେବ ଲଙ୍କାପୁର ।
ଶ୍ରୀରାମ ପ୍ରସନ୍ନରେ ହେବ ସେହୁ ସତ୍ତା
ପାଞ୍ଚ କନ୍ୟା ସଙ୍ଗରେ ତାକୁ ଗଣିବେ ରଘୁପତି
ସୀତାଙ୍କୁ ନ ହରିଲେ ନୋହେ ପୁଣ ନାଶ
ଏସନକ ପୂର୍ବରୁ ଅଛଇ ଭବିଷ୍ୟ ।
ପୁଣି ମୁଁ ଆରେକ ଶିର ପକାଇଲି ମୋଡ଼ି
ଚର୍ମ ପୋଡ଼ି ଯିବାରୁ ମୁଁ ଅକ୍ଷର ପନ୍ତି ପଢ଼ି
ଜନକ ଝିଅ ଦଶରଥଙ୍କ କୁଳବଧୂ
ତାଙ୍କଠାରେ ଦ୍ରୋହୀହେଲେଲକ୍ଷ୍ମୀଗୁଡ଼େକହ୍ନୁ
ଅନ୍ୟ ପ୍ରକାରେ ନୋହିବ ପୁଣ ନାଶ
ସେକଥା ଜାଣି ମୁଁ ଯେ ମନରେ ହେଲିତୋଷ
ଏମନ୍ତ ନବ ମୁଣ୍ଡ ପକାଇ ଅନଳେ
ଆଉ ମୁଣ୍ଡ ମୋଡ଼ନ୍ତେ ଅନ୍ଧାରଦିଶେ ମୋରେ
କୌଶଲ୍ୟା ନନ୍ଦନ ଯୁବତୀ ଯେବେ ହରି
ବଂଶ ତାର ଆଦ୍ୟକରି ରାବଣେଶ୍ୱର ମରି ।
ଭାଇ ବନ୍ଧୁ କୁଟୁମ୍ବ ସେନାପତି ପୁଣ
ମରିବ ମରାଇ ଆପେ ହେବ ଅକାରଣ ।
ଅକ୍ଷୟ ବୈକୁଣ୍ଠରେ ଯାଇଣ ବସିବ
ତେବେ ସେ ତିନିପୁର ନିଶ୍ଚିନ୍ତ ହୋଇବ ।
ସତର ଯୁଗ ଗଲେ ହେବ ପୁଣ ଜନ୍ମ
ଶାଲ୍ୱ ଶିଶୁପାଳକୁ ଚକ୍ରଧରେ ଛେଦି ପୁଣ ।
ସେଠାରୁ ବୈକୁଣ୍ଠରେ ଦ୍ୱାରପାଳ ହେବ
ଲକ୍ଷ୍ମୀର ଦୋଷହେବା ପାପ ସେଠାରୁ ଖଣ୍ଡିବ

ମନରେ ମୁଁ ବସ୍ତରଲି ଜାଣିଲି ମୃତ୍ୟୁକଥା
କମ୍ପାଇଁ ପ୍ରସନ୍ନ ମୋତେ ନୋହିଲେ ଚଉମଥା
ଏ ସମୟେ ଅଗ୍ନିରୁ କାଢ଼ିଲି ଏକମୁଣ୍ଡ
ବାମକରେ ଧରଣ ଆଣିଲି ମୁଁ ମୁଣ୍ଡ ।
ଅଙ୍ଗୁଳରେ ଧରଣ ମସ୍ତକରେ ଲଗାଇଲି ।
ଦକ୍ଷିଣ ଭୁଜରେ ଆରେକ ଶିରକୁ ଧଇଲି ।
ତର୍ଜନ ଅଙ୍ଗୁଷ୍ଠିରେ ମୃଧୁନ ଏ କପାଳ
କରେ ଆରେକ ଘଷିଲେ ପବନ ନସ୍ୱେଧକରି
ଏକ ପାଦରେ ଛିଡ଼ା ହୋଇ ମୁଁ ଜଣାଇଲି
ଗାନ୍ଧାର ସ୍ୱରରେ ସାମ ବେଦ ଯେ ପଢ଼ିଲି ।
ବ୍ରହ୍ମାଙ୍କୁ ବନ୍ଦଣ ଗାଇଲି ତାର ନାମ
ପ୍ରତ୍ୟକ୍ଷରେ ମିଳିଲେ ଯେ ଚତୁର ବଦନ ।
ସେ ବୋଇଲେ ଆରେ ପୁତ୍ରକମ୍ପାଇଁଦୁଃଖପଉ
ଅକାରଣେ କମ୍ପାଇଁରେ ନିଜ ମୁଣ୍ଡ ମୋଉ
ମରଣକୁ ଭୟ କରେ ନାହିଁକି ତୋହର
ଦେଖିକରି ବିକଳ ଆତ୍ମା ହୋଇଲା ମୋହର
କମ୍ପାଇଁ ଦଶମୁଣ୍ଡ ପୋଡୁ ତୁ ଅନଳେ
ଏ ବଚନ ଶୁଣିଣ ମୁଁ ପଡ଼ିଲି ପାଦତଳେ ।
ପ୍ରସନ୍ନ ହୋଇଣ ମୋତେ ଆପେସେ ତାଳିଲା
କସ ବରଦେବ ତୋତେ କହରେ ବୋଇଲା
ବସ୍ତ୍ର ମସ୍ତକ ମୋର ଧଇଲା ଆପଣ
କର୍ଣ୍ଣମାନଙ୍କରେ ସେ କହେ ବ୍ରହ୍ମଜ୍ଞାନ ।
ମୋହର ହସ୍ତରେ ଯେ ବାଜୁଥିଲା ବୀଣା
ତାହା ସବୁତରେ ନ ପାରିଲେ ଜଗତଜଣା ।
ନିଜ ରୂପ ହେଲା ଯେ ମୋହର ଦଶଶିର
ବିଧାତା ବୋଇଲେ ତୁ ଶୁଣସିରେ ବୀର ।
ଶିର ତୁ ଛେଦିଣ ଯେ ସେବାକଲୁ ମୋତେ
ମୁହିଁ ଏବେ ପ୍ରସନ୍ନରେ ହେଇଲି ତୋତେ ।
ଛପନ ଗଣ୍ଡା ଯୁଗକୁ ଭୋଗ ତୁ ପାଇବୁ
ଦେବ ଦାନବଙ୍କୁ ତୁ କାହାକୁ ନ ଡ଼ରିବୁ ।
ଚଉଦ ଭୁବନରେ ଚଳିବ ତୋର ରଥ
ଘଡ଼କ ଭିତରେ ବୁଲି ପାରିବ ଜଗତ ।
ଏସନକ ବର ମୋତେ ଦେଲେ ପିତାମହ
ଶୁଣିଣ ପରମ ତୋଷ ହେଲା ମୋର ଦେହ
କରଯୋଡ଼ି ବୋଇଲି ମୁଁ ଶୁଣ ବେଦପତି
କେଉଁ ପ୍ରକାରେ ମୋହର ହେବ କ୍ଷୟ ଗତି ।

ଅବଶ୍ୟ ଜନ୍ମହେଲେ ମୃତ୍ୟୁ ପୁଣ ପାଇ
ଦେହ ଲଭିଲେ ତ ଅବଶ୍ୟ ମରଇ ।
ବ୍ରହ୍ମା ବୋଇଲେ ତୁ ଶୁଣରେ ତନୟ
ମୋହର ପ୍ରସାଦେ ତୋତେ ନାହିଁ ମୃତ୍ୟୁଭୟ
ଏକ କଥାରେ ତୁରେ ପ୍ରତିପାଳଣ ଥିବୁ
ନାରାୟଣ ସଙ୍ଗରେ ତୁ ଅପ୍ରୀତ ନୋହିବୁ ।
ଯଦ୍ୟପି ଅପ୍ରୀତ ହେବୁ ନ ହରିବୁ ତାର ନାରୀ
ଯେବେ ତୁହି ହରିବୁରେ ଜନକ କୁମାରୀ ।
ଜାନକୀ ହରିଲେ ରେ ମୃତ୍ୟୁ ଅଛି ତୋତେ
ଏତେ କହି ବିଧାତା କୋଳ କଲେ ମୋତେ
ଚିତ୍ରପଟ୍ଟ ଲେଖନ ଦେଖାଇଲେ ନେଇ
ଶ୍ରୀରାମ ସୀତା ଯେ ଦେଖ ଛନ୍ତି ତହିଁ ।
ବୋଇଲେ ଏହି ରୂପେ କରିବେ ତୋତେନାଶ
ଏସନକ ରୂପକୁ ତୁ ହେବୁରେ ବିଶ୍ୱାସ ।
ଆନ ରୂପରେ ତୋତେ ନ ପାରେ ବିଷ୍ଣୁ ଜିଣି
ତୁ ଯେବେ ନ ହରିବୁ ରେ ତାହାର ଘରଣୀ
ବନକୁ ଆସିବେ ପାଇବେ ଅନେକ ଦୁଃଖ
ତେବେ ତୋତେ ନ ମାରିବେ ପଦ୍ମମୁଖ ।
ତେଣୁକରି ତୋତେ ମୃତ୍ୟୁ ଅଛିଟିରେ ବଳା
ସୀତାସ୍ୱେର ନ କରିବୁରେ ସେ ବୋଇଲା ।
ତୁ ସୀତା ସ୍ୱେର କଲେ ମରିବୁ ଅବଶ୍ୟ ତ
ଶ୍ରୀରାମ ହସ୍ତରେ ପୁଣ ମରିବୁରେ ସୁତ ।
ମୋହର ଶରରେ ତୁ ପାଇବୁରେ ମୃତ୍ୟୁ
ଏ କଥାକୁ ପୂର୍ବରେ ତୁ କରିଥିବୁ ହେତୁ ।
ବ୍ରହ୍ମ ଅସ୍ତ୍ରରେ ମୁଣ୍ଡ କାଟିଲେ ନ ମରିବୁ
ବୁକୁ ଫୋଡ଼ିଲେ ତୋର ନଷ୍ଟେ ପ୍ରାଣ ନେବୁ
ନୋହିଲେ ତୋତେ ଜିଣନ୍ତା ନାହିଁ ଆନ
ଦେବରୂପ ଧରି ତୋତେ ନ ମାରେ ଭଗବାନ
ଏହି ରୂପେ ଶ୍ରୀରାମ ଏହିରୂପେ ସୀତା
ଅଙ୍ଗୁଷ୍ଠି ଦେଖାଇ ମୋତେ ଟହ୍ଲାଏ ବିଧାତା
ନାରାୟଣକୁ ପଛେ ତୁ ହେବୁରେ ବଇରି
ଶିତୁର ଦୁଲ୍ଲଣୀକୁ ନ ଆଣିବୁ ସ୍ୱେରକରି ।
ସମର ବିବାଦ ତୁ ନହେବୁ କଦାଚତେ
ନ ଆଣିବୁ ସୀତା ତାର ଜନକ ଦୁହିତେ ।
ଏତେକ ନ କଲେ ମରଣ ତୋତେ ନାହିଁ
ଏତେ ବୋଲି ଶକ୍ତିଦେଲେ ଜଗତର ସାଇଁ ।

ବୋଇଲେ ଏ ଶସ୍ତ୍ରକୁ ତୁ କରରେ ଧରିଥିବୁ
ହୀନ ଜନ୍ତୁମାନଙ୍କୁ କେବେହେଁ ତୁ ନ
ମାରିବୁ ।
ଦେବ ଦାନବେ ଯେ ମହନ୍ତ ଏହି ଶରେ
ଦଶ ଦିଗପାଳେ ପଳାନ୍ତି ଦେଖି ଡରେ ।
ଏକ କଥାଏ ଯେ ଅଛଇଁ ଈଶ୍ୱର
ଏକ ଜଣକୁ ଭୂତେ କରିବୁ ପ୍ରହାର ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ନ ବଞ୍ଚିବେ ଏକାକ୍ଷଣେ
ଅସମର୍ଥ ସମୟେ ତୁ ମାରିବୁ ପୁଣ ରଣେ ।
ଯେବେ ତୋର ପ୍ରାଣକୁ ରେ ହୁଅବ ସଙ୍କଟ
ତେବେ ତୁ ମାରିବୁ ତୋତେ କହିଲ ମୁଁ ନିଟ
ଏ ଶର ବାଳକେ କଣ୍ଟକ ହେତୁ ପୁଣ
ତାଙ୍କର ହସ୍ତେ ମରିବୁ ନିଶ୍ଚେ ଜାଣ ।
ଏତେବୋଲି କହି ମୋତେ ଦେଲେତ
ପଠିଆଇ
ସୀତା ନ ହରିବୁ ବୋଲି ସେ ନିୟମ କରାଇ
ସେ କଥାକୁ ଜାଣି ମୁଁ ଯେ ଅଛି ହେଳକରି
ମରିବାକୁ ଭୟ ନ କଲଇ ନାସ୍ତି ।
ସକଳ ଦେବତାଙ୍କ ସଙ୍ଗେ ଯୁଦ୍ଧ କଲି
କାହାର ହସ୍ତରେ ମୁଁ ଅପମାନ ନ ପାଇଲି ।
ସଦାଶିବଙ୍କର ଶୂଳ ବାସୁଦେବଙ୍କର ଚକ୍ର
ମୋର ଅଙ୍ଗେ ବାଜି ସବୁ ହୋଇଯାନ୍ତି ବକ୍ର
ଇନ୍ଦ୍ରଙ୍କର ବଜ୍ରଧୂତୀ ଅଗ୍ନିଙ୍କ ମୁଦ୍ଗର
ଆଉ ସକଳ ଦେବତାମାନଙ୍କର ପ୍ରହରଣର ।
ଦେଖ ମୋର ଅଙ୍ଗରେ ଫଳଅଛି ଘାଏ
ସେ ଶସ୍ତ୍ରକୁ ମଣଇ ଭୂଜା କୁଢ଼ ଘାଏ ।
ଲଲାଟ ଲିଖନକୁ ମୁହିଁ ନ ଡରିଲି
ତେଣୁକରି ସ୍ୱର୍ଗକୁ ଯିବାକୁ ଆଶା କଲି ।
ବ୍ରହ୍ମାଙ୍କର ବରେ ମୁଁ ଯେ ଜଗତ ଜୟକଲି
ଲଲାଟ ଲିଖନକୁ ଭୟ ମୁଁ ନ କଲି ।
ବିଶ୍ୱରୁଛି ଶ୍ରୀରାମ ଯେ ମୋତେ ନ ପାରିବେ
ମାରି
ସୀତା ନ ହରିଥିଲେ ମୁହିଁ ନ ଥାନ୍ତି ଡରି
ଶିରେ କରଯୋଡ଼ିଣ ଚଢୋଇବା ପାଇଁ
ଅବକାଶେ ନଅବକାଶେ ଲେଖନ
ଯାଚି ଯାଚି ।

ଦର୍ଷମାନଙ୍କରେ ଲେଖନ ଏହି କଥା
କାଳରେ ଆସି ସମସ୍ତେ ହୋଇଲେ ଅନ୍ୟଥା
ଶ୍ରୀରାମର ବଇରୀ ମୁଁ ହୋଇ ସେ ଯୋଗେ
ସୀତାଙ୍କୁ ହରିଲି ମୁଁ ଯେ କର୍ମର ଅଭାବେ ।
ଶକତି ମାଇଲି ଯେ ନ ମଲା ଲକ୍ଷ୍ମଣ
ମୁହିଁ ଜାଣିଲି ନିଶ୍ଚୟେ ସରିଲା ବଡ଼ ପଣ ।
ଭାଇ ବନ୍ଧୁ କୁଟୁମ୍ବ ମୋର ସମସ୍ତେ କ୍ଷୟେ
ଗଲେ
ସୁବର୍ଣ୍ଣମୟ ଲଙ୍କାକୁ ଶତ୍ରେ ବିଧ୍ୱଂସିଲେ ।
ମର୍କଟ ଭାଲୁ ଦେଖି ଲାଜିଲେ ସଇନ
ଜୀବନ ହେଲେ ଭାଇ ଲକ୍ଷ୍ମଣ ଦୁଇ ପୁଣି ।
ମାନବେ ନାଗପାଶକୁ ଲଗିଲା ମୋତେ ଭୟେ
ସମୁଦ୍ର ବାନ୍ଧି ଏଥକୁ ଆଇଲେ ରାମରାୟେ ।
ସାମାନ୍ୟ ଭରସା କ ବୋଲିବା ତାଙ୍କର
ତ୍ରୈଲୋକ୍ୟ ଭିତରେ ମୋତେ କେ ଅଛି
ଧନୁର୍ଦ୍ଧର ।
କାଳଯାଇ ମୁହିଁ ଯେ କରିବ ସଂହାରଣ
ସଂହାରିବ ରାମ ଲକ୍ଷ୍ମଣ ବିଭୀଷଣ ।
ଅକ୍ଷୌହିଣୀ ଆବର ପଚିଶ ଯୂଥପତି
ଅଙ୍ଗଦ ହନୁମାନ ସୁଗ୍ରୀବ ପ୍ରଭୃତି ।
ବୀର ମହାବୀର ଯେ ଋକ୍ଷ କପିବଳ
ଘଡ଼ିକରେ କାଲି ମୁଁ ପେଶି ଯମଆଳ ।
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣହେ ପ୍ରାଣନାଥ
ଜଣା ଗଲଣି ମୁଁ ଯେ ହୋଇବି ଅନାଥ ।
ସୁଷେଣ ହନୁମନ୍ତ ଲକ୍ଷ୍ମଣ ତିନିଜଣ
ଏହାଙ୍କୁ ହରିନେଲା ମହୀରାବଣ ।
ସୁଲଙ୍କା ଗଡ଼କୁ ସେ ଘେନିଗଲା
ତାଙ୍କୁ ମାରିବୁ କେମନ୍ତେ ପ୍ରତିଜ୍ଞା ତୋର ହେଲା
ରାବଣ ବୋଇଲା ମୁଁ ଶ୍ରୀରାମଙ୍କୁ ନାଶକଲେ
ସୁଲଙ୍କାକୁ ଯାଇ ନାଶ କରିବ ତାଙ୍କୁ ଭଲେ
ନୋହିଲେ ଶ୍ରୀରାମ ହସ୍ତେ ମରିବ ଯେ ପୁଣ
ନିଶ୍ଚେ ମହୀରାବଣକୁ ମାରିବେ ଲକ୍ଷ୍ମଣ ।
ମନ୍ଦୋଦରୀ ବୋଲେ ଯେବେ ଆଗତ କଥା
ଜାଣ ।
ବିଭୀଷଣ ମୋତେ ଯେବେ ପାଳିବ ନିଶ୍ଚେ
ଜାଣ ।

ତାର ପୁତ୍ର ନାତି ବନ୍ଧ କରନ୍ତୁ କି କାରଣ
ଭାଇବନ୍ଧୁ ବଧୁ ବନ୍ଧରୁ କର ତୁ ଫେଡ଼ଣ ।
ଜଣାଗଲା କଥାରେ କୋପ ନ କରଅ ମୋତେ
ବିଭୀଷଣକୁ ବାହାର କରିଦେବା ଏଥେ ।
ତୁମ୍ଭଙ୍କୁ ଯେବେ ନଷ୍ଟେ ଶ୍ରୀରାମ ମାରିବ
ତାହାଠାରେ ମୋହର ଉବୁଷି ହେବେ ଥିବ
ଯେବେ ସୁଦୟା ମୋତେ କଲ ହେ ଲଙ୍କପତି
ଯୁଦ୍ଧରୁ ଫେଡ଼ିବା ଯାଏ ବନ୍ଧ ଫେଡ଼ ଝଟତି ।
ଆଶା ରଖି ମୋହର ସୁଙ୍କୁ ତୁମ୍ଭେ ଯାଅ
ମର୍କଟ ଭାଲୁଙ୍କୁ ଏବେ ମୋତେ ତୁ ନ ଦିଅ
ତୁମ୍ଭର ଆଜ୍ଞାରେ ମୁଁ ଯେ ରହିବି ଚାଳତଳେ
ସୁମରଣା କରିବି ଶାରଙ୍ଗ ଯେତେ କାଳେ ।
ଶୁଣିକରି ରାବଣ ପ୍ରସନ୍ନ ମୁଖେ କହି
ଯୁଦ୍ଧରୁ ଫେରିବା ଯାଏ ବନ୍ଧ ନ ଫେଡ଼ିବଇଁ ।
ତୋହର ପାଖରେ ଯେ ତାହାଙ୍କୁ ରଖିଥିବୁ
ଫେରିଲେ ମୋହର ସମ୍ମୁଖେ ଆଣି ମୋତେ
ଦେବୁ ।
ବୋଇଲେ ଉଅରରେ ନୋଇବୁ ଉଚ୍ଚସି
ତୋର ବୋଲ ଥରେ କରିଥିବାରେ
ଶୁଭକେଶୀ ।
ଏତେକହି ରାବଣ ଦାସୀକି ଭେଡ଼ିଦେଲା
ବିଭୀଷଣ କୁଟୁମ୍ବ ବନ୍ଦୀରୁ ଆଣସି ବୋଇଲା ।
ପୁତ୍ର ନାତି ସହିତେ ବେଗେ ଯାଇ ଆଣ
ଶୁଣିକରି ଦାସୀଗଣ ଚଳିଲେ ବହନ ।
ଗୋମସ୍ତ ନାସ ପାଶେ ପ୍ରବେଶ ଯାଇହେଲେ
ଚଉକି ଲୋକଙ୍କୁ କହି ବନ୍ଧନ ଫେଡ଼ିଦେଲେ
ପୁତ୍ର ନାତି ଭାରିଯା ବନ୍ଧୁମାନେ ଘେନି
ମନ୍ଦୋଦରୀ ସମ୍ମୁଖେ ମିଳିଲେ ଦାସୀ ପୁଣି ।
ମନ୍ଦୋଦରୀ ଚରଣେ ଲୋଟେ ବିଭୀଷଣ ନାରୀ
ପୁତ୍ରମାନେ ରାବଣ ଚରଣେ ଯାଇ ପଡ଼ି ।
ରାବଣ ବୋଇଲା ତୁମ୍ଭେ ଦଶପୁତ୍ର ଶୁଣ
ତରଣୀ ନାତି ତୁମ୍ଭେରେ ବିଭୀଷଣର ପୁଣ ।
ପିତା ତୁମ୍ଭର ମୋ ସଙ୍ଗେ ବଇରି ହୋଇଲା
ଶ୍ରୀରାମଙ୍କୁ କହିଣ ମୋର ବଂଶ ମରାଇଲା ।
ସେ ଗୁଣରୁ ତୁମ୍ଭଙ୍କୁ ରେ ବନ୍ଧ କରିଥିଲି
ମନ୍ଦୋଦରୀ କହିବାରୁ ବନ୍ଧରୁ ଫେଡ଼ିଦେଲି ।
କାଲି ସଜହୋଇଣ ଯୁଦ୍ଧକୁ ମୁଁ ଯିବି
ତୁମ୍ଭ ପିତା, ଶ୍ରୀରାମ ମାରି ନିଶ୍ଚିନ୍ତ ହୋଇବି
କର୍ମର ଅବଲେ ଯେବେ ହୋଇବି ମୁଁ ନାଶ
ତେବେ ଭୋଗ କରିବରେ ଏହି ଲଙ୍କାଦେଶ ।
ମନ୍ଦୋଦରୀ ମାତାପାଶେ ସର୍ବେ ରହିଥିବ
ତାର ପ୍ରସାଦରେ ତୁମ୍ଭେ ସୁଖ ଯେ ପାଇବ ।
ଏତେକହି ଲଙ୍କାପତି ମନ୍ଦୋଦରୀକି ଡାକି
କହିଲା ତୋର କଥା କଲି ଆରେ ସଖି ।
ଖଣ୍ଡର ଦୋଷ ସବୁ ଗଲା ମୋର ପୁଣ
ବିଭୀଷଣର କୁଟୁମ୍ବ, ସମ୍ଭାଳିବୁ ଜାଣ ।
ଏମନ୍ତ ବୋଲିଣ ସେ ପ୍ରତିଜ୍ଞା କରଇ
ଘୋର ଗର୍ଜ୍ଜନକେଶି ମନ୍ଦୋଦରୀ ଯେ ଡ଼ରଇ
ଭସୁପାଇ ସନ୍ଧି ଧନୁ ଘଟକୁ ଝଞ୍ଜିଗଲା
ରାବଣ ମନରେ ବହୁତ ପ୍ରତିଜ୍ଞା କଲା ।
ମଙ୍ଗଳ ହୋଇଣ ଯେ ରହେ ମନ୍ଦୋଦରୀ
ଅନ୍ତପୁରୁ ବାହାର ହୋଇଲା ଦଶଶିର ।
ମୁଦୁସୁଲିମାନେ ପଛରେ ଗୋଡ଼ାଇଲେ
ଅବକାଶ ଦୁଆରେ ବାହୁଡ଼ି ସେଠୁ ଗଲେ ।
ରାବଣ ମହାଦେବଙ୍କ ରତ୍ନ ଭିତରେ ଯାଇ
କବାଟ ଆଡ଼ିଆଇ ଅଛନ୍ତି ଦ୍ୱାରେ ରହି ।
ସର୍ବେ ଯେ ଲଙ୍କପତି ହେଲା ସେ ଅବକାଶ
ନିଯୋଗର ଲୋକ ଯେ ମିଳିଲେ ଆସି ପାଶ
ମନ୍ତ୍ରୀ ଅମାତ୍ୟ ଯେ ଦର୍ଶନ କରେ ଆସି
ଶୁକ ଶାରଣକୁ ଚାହିଁ ରାବଣ ବୋଲେ ହସି ।
ଆସ ପାତ୍ର ମନ୍ତ୍ରୀ ହେ ମୋହର ବୋଲ ଶୁଣ
ମୁହିଁଥିବା ତୁମ୍ଭଙ୍କୁ ନ କରିଥିଲି କେତେ ଗୁଣ
ଶତ୍ରୁକୁ ଦେଖି ମୋତେ ଛାଡ଼ି ଲେଉଟୁଅଛ
ଏ କଥା କାଳକାଳକୁ ଯେ ହେବ ସବୁ ମିଛ
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ପଡ଼ିଲେ ଏ ବେଳ
ନଗର ବୁଦ୍ଧି ବଳ ଗଲେ ସେଠୁ ଘେନି ।
କମାଇ ସଂଗ୍ରାମକୁ ରେ ହେଉଛ ନିସତ
ନ ଜାଣ କି ମୁହିଁତେ ରାବଣ ଦଶମାଥ ।
ବ୍ରହ୍ମାଦି ଦେବତାଙ୍କୁ ଖଟାଇଲି ପାଦତଳେ
କୈଳାସ ପର୍ବତ ମୁଁ ଉପାଡ଼ିଲି ହେଲେ ।
ଧ୍ରୁବମଣ୍ଡଳ ଉପରେ ପଶିସଦ୍ୟେ ଗଲି
ପାତାଳେ ପଶି ନାରାୟଣଙ୍କୁ ଦେଖିଲି ।

ବଳର ଦ୍ୱାରେ ଯେ ଦ୍ୱାରପାଳ ହୋଇ
ଇନ୍ଦ୍ର କରିବେ ବୋଲି ସେ ଅଛନ୍ତି ଲୁଚିଇ ।
ତାହା ଦର୍ଶନ କରିଣ ମୁଁ ଯେ ଆଇଲି
ପାଞ୍ଚଶ କୋଟି ବସୁନ୍ଧରା ବୁଲି ସାଧି କଲି ।
ବ୍ରହ୍ମାଣ୍ଡ ଭିତରେ ଯେତେ ସାର ଦ୍ରବ୍ୟ ଥିଲା
ସେସବୁ ଦେବ ଭଣ୍ଡାର ମୋ ଥାଟ ଜୁଇ କଲି
ଇନ୍ଦ୍ରଦେବତାଙ୍କୁ ଯାଇ ଧରିଲା ମେଘନାଦ
ତାର ବୋଲାଇଲା ସେ ଇନ୍ଦ୍ରଜିତ ପଦ ।
ଚଉଦ ଭୁବନ ସବୁରେ ଯୁଦ୍ଧ କରି
କାହାର ହସ୍ତରେ ଅପଜୟେ ମୁଁ ପାଇଲି ।
ଋକ୍ଷ କପି ଛାର ମାନବ ଜଟାଧାରୀ
ସେ ମୋର କୁଳ ଗୋତ୍ର ସବୁରେ ସଂହାରି ।
ବିଭୀଷଣ ଶରଣ ପଶିଲା ଶତ୍ରୁ ଠିଁ
ତାହାର କୁଳରେ ତୁମ୍ଭେ ନ ଯୁଝ ପରଘାଇ
ଦୋଚଡ଼ ହୋଇଣ ରେ ତୁମ୍ଭେ ନାଶ ଗଲ
ଉପ୍ରୋଧ ନ ଛାଡ଼ିଣ ଆପଣ ଏବେ ମଲ ।
ମୁଁହି ସିନା ତୁମ୍ଭର ରେ ମୋର ବୋଲେ ଥିବ
ମୋହର ନାଶ ହୋଇଲେ ତୁମ୍ଭେ ସୁସ୍ଥ ହେବ
ସ୍ୱର୍ଗପୁରେ ପଶିଣ ଜୁର କରିବ ପୁଣ
ଆଜହୁଁ ଛାଡ଼ ପିବରେ ପୂର୍ବ କଥାମାନ ।
ଏମନ୍ତ ବଚନ ଯହୁଁ କହେ ଦଶାନନ
ଶୁଣି ଶୁକ ସାରଣ ଯେ କହନ୍ତି ବଚନ ।
କ୍ଷମା ରାଜା ଆମ୍ଭଙ୍କୁ ଟିଙ୍ଗାସି କଥା କହୁ
ତୁମ୍ଭର ଆଗରେ ଆମ୍ଭେ ଫେଡ଼ିଣ ନ କହୁଁ ।
ଆମ୍ଭମାନଙ୍କର କଥା କି ଜାଣ ଆପଣେ
କାହା ଛାରକୁ ଆମ୍ଭେ ଯେ ହାରିଅଛୁଁ ରଣେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନପୁର ଯୁଝି
ଘଡ଼ିକରେ ଜଗତ ତରିଣ ପ୍ରାୟେ ବୁଝି ।
ଶ୍ରୀରାମଚନ୍ଦ୍ର, ଯେ ଅଟନ୍ତି ନାରାୟଣ
ଷୋଳଖଣ୍ଡ ଯୁଦ୍ଧରେ ଜିଣିଲେ ଯେ ପୁଣ ।
କାହାର ଭିତରେ ଯେ ପଶିଣ ଯୁଦ୍ଧ କଲେ
ଭସ୍ମ କରି ଋକ୍ଷ କପି କାହାକୁ ନ ଡରିଲେ ।
ଯେତେ ମାୟା କଲୁ ତୁ ନୋହିଲା କିଛି ତାର
ବେଳକୁ ବେଳ ଯୁଦ୍ଧ କରନ୍ତି ଅସମ୍ଭାଳ ।
ବୈଶାଖ ତୃତୀୟା ଯେ ଶୁକ୍ଳପକ୍ଷ ଶୁଣି
ସେ ଦିନରୁ ଯୁଦ୍ଧ ତୁ କଲୁ ଲଙ୍କମଣି ।

ଆଷାଢ଼ ସପ୍ତମୀ ଆଜର ଦିନ ପୁଣ
ତିନି ପକ୍ଷ ଉପରେ ହେଲା ଚାରି ଦିନ ।
ରାତ୍ର ପାହିଲେ ମାସେ କୋଡ଼ିଏ ଦିନ ହେବ
ସଦାରେ ରହି ରାମ କଲେ ସର୍ବ ଶୁଭ ।
ଅନେକ ପଦାତି ରଥୀ ପୁତ୍ର ନ'ନ୍ତି ମଲେ
ବେଳକୁ ବେଳ ତାର କିଛି ନ ତୁଟିଲେ ।
ଆମ୍ଭେ କିସ କରିବୁ ତୁ କହୁଛୁ ଆମ୍ଭଙ୍କୁ
ହେଳନ ଭୟ ସଙ୍ଗେ ସେ ହୋଇଲା ମନକୁ
ଆପଣେ ନ ମାରି ଯେ ପରକୁ ଦୋଷ ଦେଉ
ଆମ୍ଭଙ୍କୁ ନ୍ୟୂନ କରି କମାଇ ହେ କହୁ ।
ରାବଣ ବୋଇଲାରେ ମୁଁ ନ ଜାଣଇ ତୁମ୍ଭମନ
ଏବେ ଏବେ ଜାଣିପାରି ବଶଦ୍ଧଗମାନ ।
ମୋର କର୍ମ ଦୋଷରେ ହେଲା ହୀନ ବୀର୍ଯ୍ୟ
ତପୁସି ଦୁଇଗୋଟା କରାଇଲେ ମୋତେ ଲଜ
ପରମାର୍ଥ ଶାର କହେ ଆଗସର ପୁଣି
ତପନ ସିଂହନାଦ ବଜ୍ରଘୋଷ ଜାଣି ।
ଅଶ୍ୱିନୀ ପ୍ରଭଦ ହସିଲା ଗରଜେ ଥରହର
ଅଗ୍ନିକେତୁ ଧୃତ ଅଟନ୍ତି ବେନି ଶାର ।
ଯଜ୍ଞକେତୁ କ୍ରୋଧ ନ ପ୍ରଭଦ ବାହୁଟି
କାଳଘଣ୍ଟ ଯମଘଣ୍ଟ ଅଇଲେ ଭାଇ ଧାତ ।
ବାଳକେତୁ ଦୁହିତା ଅଟେ ସୁଲୋଚନା
ରାବଣ ତାର ଶ୍ୱଶୁର । ସେହୁ ତାର କନ୍ୟା
ତାହାର ତନୟ ଯେ ବଜ୍ର ଦୃଷ୍ଟିଶର
ସେସବୁ ଆସି ପ୍ରତିଜ୍ଞା କଲେ ଯେ ଅପାର ।
ଚଉଦଶ କୋଟି ରଥୀ ମୁକୁଟବନ୍ଧା ଛନ୍ତି
ଦଶ ଗୋଟି କୁମର ଶତେ ଶତଲକ୍ଷଣ ଦାନ୍ତ
ଦେଖିଣ ପରମ ତୋଷ ମନୋଦରୀ ସାଇଁ
କରନ୍ତି ପ୍ରତିଜ୍ଞା ସେ ରାଜାର ମୁଖ ଚାହିଁ ।
ଶୁକ ଶାରଣକୁ ଚାହିଁ ବୋଲଇ ନୃପବର
କାଢ଼ିଆଣ ଏବେ ମୋର ଅମୂଲ୍ୟ ଭଣ୍ଡାର
ସେନାପତିମାନଙ୍କୁ ଦେବା ଧନରତ୍ନ ମଧ୍ୟେ
ମୋହର ପାଇଁକ ଦେବେ ନିଜ କାର୍ଯ୍ୟେ ।
ଆଜ୍ଞା ପାଇଣ ସେ ଗଲେ ପାଦ ବେନି
ଦ୍ରବ୍ୟମାନ ବହିଣ ଆଣିଲେ ସୈନ୍ୟ ଘେନ ।
ଲଙ୍କପତି ଆଗରେ ଢାଳିଲେ ଧନମାନ
ଦେଖିଣ ସମସ୍ତଙ୍କୁ ବୋଇଲା ଦଶାନନ ।

ମୋହର ଅର୍ଜିଲ୍ଲ ପିତା ଏତୁ ଅଟେ ବଡ଼
ଚଉଦ ଭୁବନରୁ ବାଛୁ ଅଣିଛୁ ସମସ୍ତ ।
ଏ ଭଣ୍ଡାରକୁ ଦେବଭଣ୍ଡାର ନୋହେ ସର
ସମସ୍ତ ନଧି ପୂରାଇ ମୁଁ ଥୋଇଲ ଯତ୍ନ କରି ।
ଏ ଦ୍ରବ୍ୟ ବଧ୍ୱଂସିବ ହେ ଶ୍ରୀରାମ ନମନ୍ତେ
ବେବ ଥିଲେ କାଲ ମୁଁ ଅର୍ଜିବ କଷ୍ଟତେ ।
ଏତେ ବୋଲି ରାବେ ଶୁକ ଶାରଣକୁ ଚାହିଁ
ଆଜ୍ଞା ଦେଲକ ଯେ ମନ୍ଦୋଦରୀ ପାଇଁ ।
ଯେ ଯାହା ଅନୁରୂପ ଦଏ ଧନମାନ
ସମସ୍ତଙ୍କୁ ଦଅ ଯେ ବୋଲେ ଦଶାନନ ।
ଯେତେକ ଲୋକ ଯିବେ ମୋର ସଙ୍ଗେ
ଅଳଙ୍କାରରେ ମଣ୍ଡିତ ହେବ ନାନାରଙ୍ଗେ ।
ଦେଖିଲେ ଶତ୍ରୁ ପୁଣ ହେବ ମୋହମାନ
ବୋଲବେଟି କ ଏତୁ ଅର୍ଜିଛୁ ଏତେ ଧନ ।
ଦଅ ମୋର ଭଣ୍ଡାର ମଣି ସେ ପୁଣ ଦ୍ୟନ୍ତୁ
ଋକ୍ଷ କପିମାନଙ୍କୁ ସଂଗ୍ରାମେ ମାରନ୍ତୁ ।
ଶୁଣି ଶୁକ ଶାରଣ ଆୟୁମାନ ଦେଲେ
ସେଥିରେ ସନ୍ତୁଷ୍ଟ ଶତ୍ରୁ ଯେ ନ ହେଲେ ।
ମୁକୁଟ କୁଣ୍ଡଳ ଯେ ବାହୁଟି ଜଗଦଳା
ଗୋଡ଼ରେ ନୂପୁର ଯେ ମୁକୁତା ରତ୍ନମାଳା
ବବଧ ମଣି କଙ୍କଣ ବକ୍ଷରେ ପଇତା ।
ତାଡ଼ ପୁଷ୍ପସରଳ ମୁକୁତା ଚଉସର
କେଉଁ ଅଳଙ୍କାର ଦଶେ ବ୍ରହ୍ମକାଣ୍ଡ ପର ।
କାହିଁରେ ମର୍କତ କାଞ୍ଚନ ରେଖ ରେଖ
କାହିଁରେ ପ୍ରବାଳ କେଉଁଠାରେ ମାଣିକ୍ୟ ।
କାହିଁ ମାଳା ମାଣିକ୍ୟ କାହିଁ ପୁଷ୍ପରାଗ
କାହିଁ ଦ୍ରୁବନ୍ଦ କାହିଁ ଖଣ୍ଡିଲ ମାରଗ ।
ଅନେକ ପ୍ରକାରେ ଯେ ଖଞ୍ଜେ ଆୟୁମାନ
ନେତ ପାଟ ପଡନ ସିନ୍ଦୁର ବସନ ।
ରତ୍ନରେ ଜଡ଼ଣ ଅଛୁ ବସ୍ତ୍ର ଜଣି
ଅଞ୍ଚଳ ଖଞ୍ଜିଲ ଅଛୁ ନାନା ବର୍ଣ୍ଣେ ମଣି ।
ସୁବର୍ଣ୍ଣରେ ଲେଖନ ପିତୁଳ ପ୍ରକାର
ସୈନ୍ୟମାନଙ୍କୁ କଛୁ ଅଛଇ ଅପାର ।
ପାଟ ଯୋଡ଼ମାନଙ୍କରେ ଜରି ପୁଣି ଗୁଞ୍ଜି
ଉତ୍ତମ ଲୋକମାନଙ୍କୁ ଦଏ ମୁଦ୍ଧ ଖଞ୍ଜି ।
ତାହାକୁ ନେଇ କନକ ସ୍ନାହାନ କରାବନ୍ତି
କାହାର ମୁଣ୍ଡେ ମାଣିକ୍ୟ ମୁକୁତା ନଉଛନ୍ତି ।
କାହା ଅଙ୍ଗେ କର୍ପୂର ଚନ୍ଦନ ବୋଳ ଦଅନ୍ତି
କାହାର ଅଙ୍ଗରେ ଚୂଆ ଚନ୍ଦନ ଘଷନ୍ତି ।
ଚତୁଃସମ ଘଷନ୍ତି କାହା କଳେବର
କେତୁ ଗନ୍ଧ ଚନ୍ଦନ ଚୂଆରେ ଜର୍ଜର ।
ଆଯୁ ଅଳଙ୍କାରମାନ ଶରୀରେ ଭୂଷଣ
ହାତୀ ଘୋଡା ରଥତ ମାନୁନ୍ତ ଅପ୍ରମାଣ ।
ରାଏ ଆଜ୍ଞାଦେଲେ ଶୁକଶାରଣକୁ ଚାହିଁ
ଶସ୍ତ୍ରମାନ ବେଗରେ ଘେନ ଆସ ଯାଇ ।
ଉତ୍ତମ ଶସ୍ତ୍ର ଘେନ ଯୁଝନ୍ତୁ ମୋର ବଳ
ନୋହିଲେ ନ ମରନ୍ତି ଦଶରଥଙ୍କ ବଳ ।
ଯୁମନ୍ତ୍ରୀମାନେ ଶସ୍ତ୍ର ଘରକୁ ଯେ ଗଲେ
ସାଜଲର ଆୟୁଧ ଆଣି ପୁଣ ଦେଲେ ।
ବହୁତ ଲୋକମାନେ ଆଣନ୍ତି ତାହା ବହି
ଦେଖିକରି ଲଙ୍କପତ ହରଷରେ ହସ୍ତ ଦେଇ ।
ପ୍ରାକମ ହୋଇ ପୁଣ ବସେ ଯେ ମୁର୍ଚ୍ଛିବନ୍ତେ
ହସ୍ତରେ ଘେନଣ ତାର ନବନତ କୁନ୍ତେ ।
ଦ୍ୱଇବେଳ ଝମକାଇ ମନ୍ତ୍ରୀକି ଆଜ୍ଞାଦେଲେ
ଏ ଶସ୍ତ୍ରମାନ କାଟି ଦଅରେ ବୋଇଲେ ।
ଶୁଣି ଶୁକସାରଣ ଦେଲେ ଆୟୁଧମାନ
କାଣ୍ଡ ଖଣ୍ଡା ସାଲେନ ଯେ ବବଧ ବଧାନ ।
ନାନା ପରବନ୍ଧରେ ଦେଲେ ଶସ୍ତ୍ରମାନ
ଆପଣେ ଅବଧାନେ କରଛୁ ଦଶାନନ ।
ଶୂଳ ପରଘ କାତ ଭୂଷଣ୍ଡି ଚନ୍ଦ୍ରହାଲ
ଗଦା ମୁଦ୍ଗର ତୀକ୍ଷ୍ଣ ନର୍କିଆ ଢେଲ ।
ଫଳ ଫଳା କାଣ୍ଡ ଧ୍ୱଂସ ଆଡ଼ଣ କବାଡ଼
ଅବଧାନ କର ସେ ବଳସେ ଲଙ୍କାଗଡ଼ ।
ସବୁ ଶସ୍ତ୍ରଙ୍କର ତେଜ ପ୍ରଳୟ ଅଗ୍ନି ଜାଣି
ସୁବର୍ଣ୍ଣରେ ନର୍ମାଣ କେବଣ ଶସ୍ତ୍ର ଜାଣି ।
ପାଟ ଡୋର କସୁରୀ ପାବଚ୍ଛ ରେଖ ରେଖ
ଯାରନେତ ଚାମର ଯେ ଅଛଇ ଅନେକ ।
ପଇତା ଓଅ ଧଣ୍ଡା ଶୀକୁଳ କୁସ୍ତୀର
ରଙ୍ଗ ପାଟ ଗଣ୍ଡି ଯେ ମୁକୁତା ହୀର ମାଳା ।
ଚତୁରଙ୍ଗ ବଳ ସେ ଯେ ପାଇଲେ ଶସ୍ତ୍ରମାନ
ଆୟୁଧ ଶସ୍ତ୍ର ପାଇ ଝଲକେ ଘନ ଘନ ।

ରାବଣ ବୋଇଲା ପ୍ରଭୁ ତୋ ଆଜ୍ଞା ହାଣ୍ଡି ଅସ୍ତୁ
ଯାହାକୁ ଯୋଗାଇବ ତାଙ୍କ ପୁରସ୍କ ବସ୍ତୁ ।
ବାହାନ ନ ଥିଲେ ଯୁଦ୍ଧିବ କପର
ଯାନ ନ ଥିଲେ କା ସମରେ ରହି ପାର ।
ଶୁଣିକରି ମନ୍ତ୍ରୀମାନେ ଆଣିଲେ ଘୋଡ଼ାହାତୀ
ନାମ ଧରି ବଳକୁ କହିଲେ ଲଙ୍କାପତି ।
ଯେ ଯେତେ ସମର୍ଥ ତାଙ୍କୁ ଦେଲେକେ ବାହନ
ରଥ ଗଜ ଅଶ୍ୱମାନ ଦେଲେ ଦଶାନନ ।
ଚାମର ଆଲମ୍ବ ଧ୍ୱଜ ପାଟଛତ୍ର
ସହସ୍ର ବସ୍ତ୍ର ଅଳଙ୍କାର ଯେତେ ବହୁତ ।
ଦେଇକରି ଲଙ୍କାପତି ଆସନରୁ ଉଠି
ସୈନ୍ୟଙ୍କୁ ଚାହିଁଣ ପାତ୍ର ବଚନ ପ୍ରକଟି ।
ରଣ ରାଜପୁତ୍ରେ ଯେ ମଲ୍ଲ ମହାମଲ୍ଲ
ଛତିଶ କୁଳରୁ ତୁମ୍ଭେ ଅଛ ଅସୁଆର ।
ମୁହିଁ ଯେ ଲଙ୍କାପତି ବୋଲାଉଛି ସର୍ବେ ଶୁଣ
ଶ୍ରୀରାମ ସଙ୍ଗେ କରିବି କାଲି ରଣ ।
ଯେଉଁମାନେ ଯୁଦ୍ଧିବେ ରାମର ସଙ୍ଗ ହୁଅ
ଜସତ ହେଲା ଲୋକ ସଙ୍କଟରେ ବସିଅଛ ।
କ୍ଷତ୍ରିଙ୍କର ଧର୍ମ ଏହା ଅଟଇ ଜାଣ
ଏ ଦେହ ଅବଶ୍ୟ ହେ ମହୀରେ ହେବ ଲୀନ
ମୁହିଁ ତ ମହାରାଜ କେତେକ ମୂଢ଼ଇ ଜସତ
ଦେବରେ ଦୁର୍ଲ୍ଲଭରେ ମୁଁ କରିବଇଁ କୃତ୍ୟ
ସ୍ୱର୍ଗକୁ ନେଇ ନଷ୍ଟକୁ ପାତାଳେ ଲୁଚାଇବ
ମୃତ୍ୟୁପୁରକୁ ନେଇ ବ୍ରହ୍ମପୁରରେ ରଖିବ ।
ସେ ରାମ ସଙ୍ଗତେ ଯେତେ ଋକ୍ଷ କପିବଳ
ନାରାଜ ଅନଳେ ତାଙ୍କୁ ଦହିବ ସକଳ ।
ଦେଖ ପ୍ରତିଜ୍ଞା କଲି ମୁଁ ରଣର ଭିତରେ
ଯାବତ ଜୀବନ ଅଛି ମୋହର ହସ୍ତରେ ।
ବ୍ରହ୍ମାକରିଣ ମୁଁ ଯେତେ ରଖିଛି ଜଗସୃଷ୍ଟି
ଦିଗପାଳମାନେ ଡରନ୍ତି ମୋତେ ଦେଖି ।
ଇନ୍ଦ୍ରଦେବେ ଆସନରୁ ଉଠନ୍ତି ଉପେକ୍ଷି
ମୋହର କୋପକୁ କା ଭାଜନ ସଙ୍କେଷ୍ଟି ।
ତୁମ୍ଭେ କସ ନ ଜାଣଇ ମୁଁ କରିବଇଁ ଜସ
ଏବେ ତୁମ୍ଭେମାନେ କାଲି ସଜହୋଇ ଆସ
ଏତେ ଆଜ୍ଞା ଦେଇ ରାଜା ଭିତରପୁରେ ଗଲା
ମନ୍ଦୋଦରୀ ରାଣୀ ଆସି ଦର୍ଶନ ଯେ କଲା ।
ମୂ ଦୁସ୍ତୁଳ ପହଣ୍ଡି ମଣାଇ ନେଲେ ଆସି
ନୃପଙ୍କ ଆଜ୍ଞାଦେଲ ଅଳଗ ହୋଇ ବସି ।
ଶୁଣ ତୁ ଶଶୀମୁଖିରେ ଆଜର ପ୍ରସ୍ତାବ
ସାରହାତ୍ତକୁ ସନ୍ତୁଁଳେ ମାଇଲେ ରାମ ନୃପ ।
ସେନାପତିମାନେ ବହୁତ ପ୍ରତିଜ୍ଞା କଲେ
କାଲି ଶ୍ରୀରାମଙ୍କୁ ରଣେ ମାରିବୁ ବୋଇଲେ
ରଣ ସାଜା କଲେ ଯେ ଶସ୍ତ୍ରମାନ ଛୁଇଁ
ମୁହିଁ ପ୍ରବୋଧିଲି ତାଙ୍କୁ ଧନବସ୍ତ୍ର ଦେଇ ।
କାଲି ରାମଙ୍କୁ ଜାଣିବା ସବୁର କଥାମାନ
ଜାଣିବା କେ ସମର୍ଥ ଜାଣିବା ବଳ ସାନ ।
ହେଉ ଦେବ ବୋଲି ଯେ ବୋଲେ ମନ୍ଦୋଦରୀ
ଯେ ତୁମ୍ଭର ଆଜ୍ଞା ହେ ଅଟଇ ଦଣ୍ଡଗିରି ।
ଏଥୁଅନ୍ତରେ ଶୋ ଶୁଣ ହେମା ଉମା
ଅମାତ୍ୟ ଦେଖିଲେ ଭିତରପୁର ସିବା ।
ଜଳ ନନ୍ଦନକୁ ଯେ ବାହାର ହେବେ ସୈନ୍ୟ
ରଥ ଗଜ ଅଶ୍ୱ ଯେ ପଦାତି ବାହନ ।
ଢୋଲ ଦମା ଟମକ ବାଜେ ନିରନ୍ତର
ଜମିଲ ପାଟଛତ୍ର ଧ୍ୱଜର ଅପାର ।
ସଜବାଜ ହୋଇ ଲୋକେ ପ୍ରତିଜ୍ଞା କରନ୍ତି
ଯେ ଯାହାର ଶସ୍ତ୍ର ଘେନି ଘରକୁ ଚଳନ୍ତି ।
ରାବଣେଶ୍ୱର ପୁରରେ ଜଅବକାଶ ହୋଇ
ଦର୍ଶନ କଲେ ଆସିଣ ସକଳ ମହାଦେଈ ।
ମୂ ଦୁସ୍ତୁଳମାନେ ପଟୋ ଆଣିଛନ୍ତି
ଧୀରେ ଧୀରେ ଗମନ କରେ ଲଙ୍କପତି ।
ନବରତ୍ନେ ଘଟଣ କଲେ ଏକ ପୁର
ଯୋଜନ ପାର୍ଶ୍ୱ ଢଙ୍ଗେ କୋଣେକ ପ୍ରକାର ।
ମଧ୍ୟରେ ମାଣିକ୍ୟ ଯେ ଅଛଇ ଇନ୍ଦ୍ରାତପ
ଉପରେ ଟାଣିଅଛି ଇନ୍ଦ୍ର ଚନ୍ଦ୍ରାତପ ।
ତଳିଁରେ ଶେଯାଇ ଅଛି ଭୂମି ଶେଯ
ସେଥିରେ ବଜେକଲ ଲଙ୍କାର ଦେବରାଜ ।
ସହସ୍ରେ ଯୁବତୀ ସୁଗନ୍ଧ ତଳଇ ଘେନି
ବିବିଧ ବର୍ଣ୍ଣେ ମର୍ଦ୍ଦନ କରନ୍ତି କାମିନୀ ।
କେ ଶ୍ୱେତ ଚାମର ଢାଳନ୍ତି ପାଶେ ଥାଇ
କରଡ଼ ବଞ୍ଚଣାରେ ବଞ୍ଚନ୍ତି ପଦଗାଇ ।
କେହୁ ଆଳଟ କେହୁ ଧରନ୍ତି ଦର୍ପଣ
କେହୁ ଧରିଛନ୍ତି ଯେ ରତ୍ନ ଆଭରଣ ।

କେହୁ ଧରିଛନ୍ତି ଯେ ବିବିଧ ଝୀନବାସ
ଉତ୍ତରି ପଟୁଆରି ଅଛନ୍ତି ପରିହାସ ।
ତିନକୋଟି ପଞ୍ଚାଶ ସହସ୍ର ମହାବେଷ୍ଟ
ଝିଣ୍ଟା ମୃଦୁସ୍ୱଲ ଘରବାର ଆଢ ହୋଇ ।
ଯେ ଯାହାର ସେବାରେ ଅଛନ୍ତି ପରିଜନ
ଏସନକ ଭୋଗ ଯେ କରେ ଦଶାନନ ।
ମର୍ଦ୍ଦନ ମାଜଣା ଯେ ସା ଣ ବିଜେକଲା
ସୁବର୍ଣ୍ଣ ଜଡ଼ିତ ପିଢ଼ାରେ ବସିଲା ।
ମନ୍ଦୋଦରୀ ସହିତେ ସକଳ ରାଣୀହଂସ
ସେବା କରିଛନ୍ତି ସେ ରାଜାଙ୍କର ପାଶ ।
ତେଲ ଅଁଳା ଯେ ଚତୁଃସମ ଯେନ
ମହା ସୁଗନ୍ଧମାନେ ଯେ ଯେନନ୍ତି କାମିନୀ ।
ସୁବର୍ଣ୍ଣ ଗରିଆରେ ଯେ ବାସି ପାଣିମାନ
ଯେଣଣ ଯେ ରାଣୀମାନେ କରନ୍ତି ସ୍ନାହାନ ।
ସବୁ ଅଙ୍ଗ ପୋଛନ୍ତି ଯେ ସବୁ ଝୀନ ବାସେ
ବିବିଧ କୁସୁମ ଯେ କେଶରେ ସୁବେଶେ ।
ଦିବ୍ୟ ବସନ ପିନ୍ଧି ଯେ ଥାଏ ଆଭରଣ
ରତ୍ନ ଆସ୍ତେ ପୁରାଇ ଗଳକ ରାବଣ ।
ରତ୍ନ ପାଦୁକା ଚଢ଼ିଣ ପାରି ଭଲ
ଯେବଣ ପୁରରେ ଯାଇ ରାବଣ ବିଜେକଲା ।
ଟେରା ପାଣରଣ ଗଲେ ମହାଦେଈମାନେ
ସମ୍ମୁଖେ ରହିଲେ ଯେ ବଶ୍ୱସ୍ତ ସ୍ତ୍ରୀମାନେ
ସୁବର୍ଣ୍ଣ ପଲଙ୍କରେ ମନ୍ଦୋଦରୀ ରାଣୀ
ଶାଳିଅନ୍ନ ବେଗେ ଆଣି ପରଷଇ ପୁଣି ।
କାଳକେତୁଙ୍କ ଯେ ଦୁହିତା ସୁଲକ୍ଷଣା
ସେହୁ ଗନ୍ଧଅଛି ଯେ ଅପୂର୍ବ ରାନ୍ଧଣା ।
ନାରସୁଣ ବୈଦ୍ୟର ଝିଅ ପଦ୍ମାବତୀ
ଆବଟ ଇକ୍ଷୁମାର୍ଯ୍ୟ ଅମୃତ ଦୁହିତ ।
ସେ ଆଣି ଦିବ୍ୟ ଅନ୍ନ ଆଣି ଦିଏକ ବହନ
ମଣୋହି ସମ୍ପୂର୍ଣ୍ଣ ଯେ କଲା ଦଶାନନ ।
ଆସ୍ଥାନରୁ ଉଠ ସେ ଯେ ବଢେ କଲା
ରତ୍ନପିଢ଼ା ପରେ ବସି ଆଚମନ କଲା ।
କର୍ପୂର ଚନ୍ଦନ ବାସ ତିଳସମ ଯେନ
ଶ୍ରୀମୁଖ ପୋଛଇ ଯେ ବଇର ମୂର୍ଦ୍ଧନ ।
ଉଠି ବେଦାଙ୍ଗ ବସନ ପରିହରଣ କରି
ମୁଖବାସ ତାମ୍ବୁଳ ଭୁଞ୍ଜେ ଦଶ ଶିରୀ ।

ପ୍ରହଲାଦ ଦୁହିତା ଉପରେ ଦେଇ ହାତ
ରତ୍ନ ପାଦୁକା ପରେ ସ୍ୱଲଇ ଦଶମାଥ ।
ଗଜଦନ୍ତ ପଲଙ୍କରେ ସୁବର୍ଣ୍ଣ ଥୋଗ ଗୁର
ବ୍ରହ୍ମକାନ୍ତ ହୀରା ଯେ ପିନ୍ଧି କାମ କରି ।
ପଦ୍ମରାଗ ମାଣିକ୍ୟ ପଡ଼ାଗ ପୁଞ୍ଜା ପୁଞ୍ଜା
ମାଳା ମାଣିକ୍ୟରେ ଯେ କାଗଜ ମୋତି ଖଞ୍ଜା
ମଧୁପ ବେଲରି ଉପରେ ପାଟ ଶଯ୍ୟା
ଉପରେ ପାଖୁଡ଼ିମାନ ପୁଷ୍ପକରେ ଖଞ୍ଜା ।
ଶ୍ରୀକର୍ପୂର ଗୁଣ୍ଡି ଯେ ସିଞ୍ଚିଲା ଅଛି ତହିଁ
ମର୍କତ ବେନ ସ୍ତମ୍ଭରେ ଅଛି ଦୋଳ ହୋଇ
ପ୍ରବାଳ ରତ୍ନ କାଠ ଉପରେ ଅଛି ଖଞ୍ଜା
ମାଣିକ୍ୟ ରତ୍ନେ ସେ ବଣୁଅଛି ମଞ୍ଚା ।
ଉପରେ ଚନ୍ଦ୍ରାତପ ସୁବର୍ଣ୍ଣ ପୋତ ଯୋଡି
ଜାଣିଣ ଘଣ୍ଟାନ୍ତରେ ଯେ ସୂର୍ଯ୍ୟକର ଜ୍ୟୋତି ।
ମଧ୍ୟରେ ମାଣିକ୍ୟ ଭଦ୍ରରାଜ ଯେ କାଠଖୋସା
ଚନ୍ଦ୍ରମାର ସବଙ୍କ କ ଜଭାସ୍ୱ ଲକ୍ଷେ ତାରା ।
ନେତ ଚୁମରି ମଣ୍ଡି କି ବଳପାଶ
କର୍ପୂର କସ୍ତୁରୀ ଉପରେ ଗନ୍ଧବାସ ।
ରୂପାର ଘର ଗୋଟିଏ ନବରତ୍ନ ମଏ
ମାର୍ଗ ପ୍ରତି ଓପାଳ କୋଣେ କୋଣେ ଦ୍ୱୀଏ ।
କୃଷ୍ଣ ଅଗ୍ରୁ ଶ୍ରେଣୀ ଯେ ଗଣ୍ଠି ଅନାବଟା
ଲଇକରି ବାନ୍ଧି ଯେ ଅଛି ପାଟ ସୂତା ।
ତେଜପତ୍ର ତ୍ରୁଏଣି ଉପରେ କଳସ
ଉପରେ ଫରଫର ଉଡ଼େ ମାଳବାସ ।
ସେ ଘରେ ମଣ୍ଡଣି ହୋଇଛି ଗଟଦୋଳ
ବିଜେକଲେ ତହିଁରେ ରାବଣ ମହାବଳୀ ।
କଟାକ୍ଷ ଉପରେ ସେ ଯେ ବସିଲା ଯାଇ
ରାଣୀମାନେ ରହିଲେ ପଟୁଆରି ଦେଇ ।
କେହୁ ଶ୍ୱେତ ଚାମର ଢାଳନ୍ତି ଅବିରତ
ରତ୍ନ ବାଉଁଶି କେ ବଜାନ୍ତି ଘନ ଘନ ।
କେହୁ ଧୂପକାଠି ଯେ ଦର୍ପଣ ଦେଖାନ୍ତି
କେହୁ କାଖେ ହସ୍ତେ ଦେଇ ଉଭା ସେ ହୁଅନ୍ତି
କେହୁ ଯୁବତୀମାନେ ତ୍ରୁଷ ଖଣ୍ଡା ଧରି
ତୀର କମାଣ ଉଭା କେବଣ ନାରୀ ।
କେହୁ ପାନ ନେଇଣ ଭୁଞ୍ଜ ନ୍ତ ଅଧରେ
କେହୁ ପାନଦଣ୍ଟା ଧରି ରାବଣ ସମ୍ମୁଖେ ।

ଆଜ୍ଞା ଶୁଣିବାକୁ କେତେ ଅଛନ୍ତି ଆଗୁସାର
ପିକବାନ୍ଧ ଯେନ ଉଭା ହୁଏ କେ ଛାମୁର ।
ଦିବ୍ୟ ସିଂହାସନରେ ବିଜୟେ ଥାଇ ବସି
ଆଗେ ମଂସାସୁର ନନ୍ଦନୀ ଶୁଭ୍ରକେଶୀ ।
ସେହୁ ଆଗ ହୋଇଣ ଯୋଡ଼େ ବେନି କର
ଭୟରେ ସେହୁ ଯେ ନ କହେ ଉତ୍ତର ।
ଶୁଣ ଦେବ ଲଙ୍କାପତି ଆମ୍ଭର ପ୍ରାଣପତି
ତିନିକୋଟି ପାଞ୍ଚଶ ସହସ୍ର ଅଛନ୍ତି ଯୁବତୀ ।
ଏକୁ ଏକ ଗଟାନ୍ତର ଅଛନ୍ତି ସୁନ୍ଦରୀ
ଜଗତ ମୋହିବାରେ ତୋ ମନ୍ଦୋଦରୀ ନାରୀ
ତିନି ଭୁବନରେ ଯେତେକ ଦ୍ରବ୍ୟମାନ
ଅଧିକାରୀ ହୋଇଣ ବିଳସ ଦଶାନନ ।
ଲଙ୍କା କଟକ ତୋର ସକଳ ଗୁଣେ ଶ୍ରୀଯ
ଆମ୍ଭର ବାରସ୍ତ୍ରୀ ଯକ୍ଷିଣୀ ନୋହେ ସରି ।
ଅଠର ଗଣ୍ଡା କୁମରରୁ ଉଚ୍ଛିଲେ ପୁଣ ଦଶ
ତେରଶତ ନାତିରୁ ଶତଯେ ଲକ୍ଷଣ ।
ପାତ୍ର ଅମାତ୍ୟ ଯେ ଆବର ବନ୍ଧୁଜନ
ପାଞ୍ଚକୋଟି ମୁକୁଟ ବନ୍ଧା ସେନାପତି ଜାଣ
ରଥୀ ମହାରଥୀ ଯୋଦ୍ଧା କଳନା ନ କରି
ଲକ୍ଷଣ କୋଶ ଉଚ୍ଚ ସୁବର୍ଣ୍ଣ ପାଚେରି ।
ଅଠର କୋଟି ଅଶ୍ୱରୁ ଅଛନ୍ତି ଆଠକୋଟି
ବାରକୋଟି ହସ୍ତୀରୁ ଅଛନ୍ତି ପାଞ୍ଚକୋଟି ।
ନଅକୋଟି ପଦାତିରୁ ଅଛନ୍ତି ବତିଶ କୋଟି
ଏତେ ସୈନ୍ୟଯାକ ଷୋଳଖଣ୍ଡ ଯୁଦ୍ଧେ ମଲେଟି
ପୁଷ୍ପକ ଯାନ ତୋର ତିନି ଭୁବନେ ଗମଇ
ବୈଦ୍ୟଗଣେ ଯମ ତୁମ ପାଶେ ଖଟିଥାଇ ।
ଚନ୍ଦ୍ର ଦେବତା ତୁମରି ରାନ୍ଧଣା ସଞ୍ଜା ସଞ୍ଜି
ପ୍ରସନ୍ନ ହୋଇଣ ତୋତେ ଦେଉଛି ବରଞ୍ଜି ।
ପବନ ଘରର ଝାଡେ ଅଗ୍ନି ଧୂଏ ଲୁଗା
ରମ୍ଭା ଗୀତ ଗାଇଣ ତମ୍ବୁର କରେ ଫୁଙ୍କା ।
ମେନକା ନାଚନ୍ତି ପୁଣ ନାନା ଯନ୍ତ୍ର ବାଇ
ନୂତନ ପାଞ୍ଜି ଧରି ବୃହସ୍ପତି କହି ।
ଇନ୍ଦ୍ରକୁ ଧରି ଜିଣିଲେ ତୁମ୍ଭର ହେ ପୁତ୍ର
ଇନ୍ଦ୍ରଜିତ ପଦ ତାର ଜଗତେ ବିଦିତ ।
ଜ୍ୟେଷ୍ଠ ଭାଇ କୁବେରଙ୍କ ସଙ୍ଗେ ଗଣି
ମହିଆଁ ଜାଳ ଋଷିଙ୍କ ଶିରୋମଣି ।

ଜନସ୍ତୁ ବିଭୀଷଣ ଛତ୍ରମାନ ପାଇ
ବ୍ରହ୍ମାଣ୍ଡେ ଋଷିଗଣେ ବ୍ରହ୍ମ ସେ ଗଣାଇ ।
ସଂସାର ଭିତରେ ତୁ ଯେ ଅଜୟେଗଡ଼ କଲୁ
ଛପନ ଗଣ୍ଡା ଯୁଗକୁ ଆୟୁଷ ପାଇଲୁ ।
ଏବେ ମନ୍ଦ କୃତ୍ୟ ତୁମ୍ଭେ ନ କର ଗୋସାଇଁ
ଆମ୍ଭମାନଙ୍କୁ ନଯାଅ ବାଟରେ ବସାଇ ।
ତୁମ୍ଭ ବିହୁନେ ଆମ୍ଭେ କେ ହେବୁ ବଡ଼ ଦୁଃଖି
ସମ୍ପଦ ଦେଖିଲୁ ବିପଦ ଦେଖିବ ଏ ଆଖି ।
ବୋଲନ୍ତେ ରାବଣ ଆଣିଲ ପରନାରୀ
ଆପଣେ ଭୋଗ ତାକୁ ନ ପାରିଲ କରି ।
ଆପଣ ହତହେଲେ ରାଣୀ ହେବେ ଦୁଃଖୀ
ସମ୍ପଦ ବିପଦ ସିନା ଦେଖିବ ଏ ଆଖି ।
ଏମନ୍ତ ବୋଲିଣ ସେ ବୋଲନ୍ତେ ସର୍ବଜନ
ତୁମ୍ଭ ବିହୁନେ ଆମ୍ଭର ନ ସରିବ ଦିନ ।
ଲୋକକରେ ଅନ୍ଧକାର ହେବ ଏତୁ ଆଖି
ସ୍ତ୍ରୀଲୋକମାନେ କଥା ନ କହିବେ ଦେଖିଣ
ଏମନ୍ତ ବୋଲିଣ ବୋଲନ୍ତେ ସେ ସଂସାରେଣ
କେମନ୍ତେ ବଞ୍ଚିବୁ ଆମ୍ଭେ ନ ସରିବ ଦିନ ।
କୁଙ୍କୁମ ତୈଳ ବିହୁନେ ନ ଶୋଭିବ କେଶ
ପରିହରିଣ ନ କରିବୁ ଆମ୍ଭେ ଦିବ୍ୟବାସ ।
ଚୂଡ଼ି ନ ପିନ୍ଧିବୁ ନ ଘେନିବୁ ଯେ ଗନ୍ଧ
ଆଖି ଥାଉଁ ଥାଉଁ ଆମ୍ଭେ ପୁଣି ହୋଇବୁ ଅନ୍ଧ
ଚନ୍ଦନ କସ୍ତୁରୀ କର୍ପୂର ନ ମିଳିବ
ତୁମ୍ଭେ ନଥିଲେ ଆମ୍ଭଙ୍କୁ କିଏ ସୁଖ ଦେବ ।
ଦିବ୍ୟ ବସନ ଦିବ୍ୟ ଅଳଙ୍କାର ଲେଛୁ
ସୁଖଭୋଗ ଛାଡ଼ିଲେ ସେ ଦୁଃଖଭୋଗ ଅଛି ।
ବସି କାନ୍ଦିଥିବୁ ଆମ୍ଭେ ତୁମ୍ଭର ବିହୁନେ
ଏ କଥା ଯେସନେ ନ ହୁଅଇ ଦଶାନନେ ।
ସେ କଥା କର ତୁମ୍ଭେ ଅସୁର କୁଳସାଇଁ
ଶ୍ରୀରାମର ସଙ୍ଗେ ଯୁଝିବାର କାର୍ଯ୍ୟ ନାହିଁ ।
ଏତେବୋଲି ଶୁଭ୍ରକେଶୀ ପାଏପଡ଼ି ଶୋଇ
ଗଡ଼ଘାଲି ଶୁଣିଲେ ସକଳ ମହାଦେଈ ।
ମନ୍ଦୋଦରୀ ସହିତେ ଝିଡ଼ା ମୁଦୁସୁଲ
ଦେଖିକରି ନୃପବର ଉଠ ଉଠ ବୋଲି ।
ରାଣୀମାନେ ଜାଣନ୍ତି ଗଡ଼ଘାଲି ଶୋଇ
ସୀତାକୁ ଲେଉଟାଇ ଦେବ ହେ ଗୋସାଇଁ ।

ସାଧବୀ ହୋଇଣ ଆମ୍ଭେ ନିଶ୍ଚିନ୍ତ ହୋଇଥାଉ
ତୁମ୍ଭ ହସ୍ତ ଧରି ଆମ୍ଭେ ଅନାସ୍ତ ଯେ ନୋହୁ ।
ଯେତେ ପୁତ୍ର ନାତି ମଲେ ଆମ୍ଭେ ମୁରୁଛିଲୁ
ସବୁରାଣୀମାନେ ତୁମ୍ଭଙ୍କୁ ଏତକ ମାଗିଲୁ ।
ଶୁଣିକରି ଲଙ୍କମଣି ହସେ ଠହ ଠହ
ଯାହା ମାଗିଲ ସଖୀ ଏ କଥା ମୋର ନୁହଁ ।
ଉଠ ଉଠ ସୁନ୍ଦରୀ ମୋର ବୋଲ କର
ସ୍ୱଭାବେ ଅବଳା ତୁମ୍ଭେ ଅଟ ନାରୀବର ।
ମୋହର ମହିମା ତୁମ୍ଭେ ଜାଣୁ ଜାଣୁ ହୁଣ୍ଡ
ତୁମ୍ଭ ପରି ଲୋକମାନେ ହେଉଛନ୍ତି ମୂଢ଼ ।
ଉଠ ଉଠ ବୋଲିଣ ପଲଙ୍କୁ ଓହ୍ଲାଇଲା
ଆପଣେ ଶ୍ରୀହସ୍ତେ ମନ୍ଦୋଦରୀଙ୍କ ଟେକିଲା ।
ସୁକାନ୍ତ ଲକ୍ଷଣା ପୁଣି ଇନ୍ଦୁମୁଖୀ ଉଠି
ସବୁ ମହାଦେଈଯାକ ହେଲେ ଏକଗୋଷ୍ଠି ।
ମଂସାସୁର ଦୁହିତା ବଚନ ପ୍ରକାଶଇ
ପ୍ରହଲାଦ ଦୋହିତାକୁ ସାକ୍ଷୀ ସେ କରଇ ।
ପ୍ରତି ଉତ୍ତର କହେ ରାଜାଙ୍କୁ ମନ୍ଦୋଦରୀ
ତୁମ୍ଭେ ପ୍ରାଣନାଥ ବୋଲ ନ କର କାହାରି
ଶୁଣିକରି ଲଙ୍କମଣି କହେ ପ୍ରତିବାଣୀ
ଶୁଣ ଏକ କଥାଏ ଗୋ କହଇ ତରୁଣୀ ।
ଦୁନ୍ଦୁଭିର ଦୁହିତା ଅଶ୍ୱମାନ ପୁଣି
ହୋଇ ହୋଇ କରେ ଆଜ୍ଞାପ୍ରମାଣେ ତରୁଣୀ
ଶୁଣ ମହାଦେଈ ବୋଲେ ଦୈତ୍ୟରାୟେ
ତୁମ୍ଭେ ଯାହା ବୋଲ ଶୁଣ ମୋଠାରୁ କଥାଏ
ସୀତାଙ୍କୁ ଆଣିଲ ଯେ ମୋହର ମନ୍ଦପଣ
ନ ଦେବି ବୋଲିଣ ମୁଁ କରିଅଛୁ ରଣ ।
ଭଲ ଭଲ ଲୋକେ ଯେ ଗଢ଼ିଲେ ମୋରପାଇଁ
ଆଜି କସ କରିବି ଜୀବନ ରଖି ମୁହିଁ ।
ଭାଇ କୁମ୍ଭକର୍ଣ୍ଣ ଅଟେ ଇନ୍ଦ୍ରଜିତ ସୁତ
ରଥ ଗଜ ଅଶ୍ୱ ମୋର ପଦାତି ବହୁତ ।
ସମ୍ପଦ ସରିଲା ଗୋ ସରିଲା ଲଙ୍କପୁରୀ
ଋକ୍ଷ କପିମାନେ ଯେ କଲେ ହୁରିହୁରି ।
ଏମାନ ସହିବି ମୁହିଁ ସହି ଗୁଣ ବହି
ନିର୍ଲଜ ଦେହ ମୋର ରଖିବି କିମ୍ପାଇଁ ।
ଆଜି କସ କରିବି ଜୀବନ ରଖିବ ମୁହିଁ
ସୀତା ଜାଣି ଶୁଣି ମୁଁ ଆଣିଛୁ ବେଗଇ ।

ସୀତା ହରି ଆଣିଛୁ ମୁଁ ନ ଦେବି କଦାଚିତେ
ପ୍ରାଣ ତେଜ୍ୟା କରିବି ମୁଁ ଜାନକୀ ନିମନ୍ତେ ।
କାଲି ମୁଁ ରଣଗୋଳ କରିବି ଅପାର
ଶ୍ରୀରାମ ସଙ୍ଗେ ଆଦରି ଅଙ୍ଗଦ କୁମର ।
ନୀଳ ନଳ ଆଦରି ମାରିବ ସୁଗ୍ରୀବର
କାଲି ମୁଁ ଏମାନଙ୍କୁ ପେଷିବି ଯମପୁର ।
ବିଭୀଷଣ ବାପୁଡ଼ା କି ଦେଖିଲେ ପ୍ରାଣପାଇଁ
ମୋହର ବଚନ ଶୁଣ ସାବଧାନ ହୋଇ ।
କାଲି ଶତ୍ରୁ ନ ମାଇଲେ ନ ଆସଇ ଘର
କାଲି ସେହି ପ୍ରତିଜ୍ଞା ଦେଖିବ ମୋର ।
ଏ ତ୍ରିଭୁବନେ କି ଆନଲୋକ ମୋତେ ସରି
କାହାରି କେଶ ମୁଁ ଗୋ ହାତରେ ନାହିଁ ଧରି
ନାରାୟଣ ଦେବତା ସଂଗ୍ରାମେ ହାରିଗଲା
ପୁତ୍ର ମୋ ମେଘନାଦ ଇନ୍ଦ୍ରକୁ ଜିଣିଥିଲା ।
ପୁଷ୍ପକ ବିମାନ ମୋର ଚଳେ ଶୂନ୍ୟପୁର
କେ ମୋତେ ସମାନ ଅଛି ବ୍ରହ୍ମାଣ୍ଡ ଭିତର ।
ତୁମ୍ଭେ ମହାଦେଈ ହୋଇ ନ ଜାଣି କହୁ
ସଂଗ୍ରାମକୁ ଗଲେ ମୋତେ ଅଜୟେ ଗୋ ଅଛୁ
ଏତେ ବୋଲିଣ ଦାଢ଼ି ଧରଇ ବାମ କରେ
ମୁଦୁସୁଲ ହସ୍ତରୁ ଧଇଲା ଅଗ୍ନିରେ ।
ବର୍ଷିଣ କରେ ଧରି ଝମକାଏ ଘନ ଘନ
ଭୟପାଇ ଘୁଞ୍ଚିଲେ ମହାଦେଈମାନେ ।
ଅସିବର ଦେଖିଣ ପଲଙ୍କେ ନିଦ୍ରାଗଲା
ଇନ୍ଦ୍ରାବତୀ ମାଳାବତୀ ଘେନ ସେ ଶୁଣିଲା ।
ସକଳ ମହାଦେଈ ଯେ ଯାହା ପୁରେ ଗଲେ
ଯେ ଯାହା ମନ୍ଦିରେ ନିଶ୍ଚିନ୍ତେ ଶୋଇଲେ ।
ଏଥୁଅନ୍ତରେ ଯେ ରଜନୀ ଦଣ୍ଡଘଡ଼ି
ସୁବଳ ଗିରି ଉପରୁ ବାସେନ ବଜେ କରି
ଚଉଷଠି ଯୋଗିନୀ ସେ ସଙ୍ଗରେ ଘେନି ପୁଣ
ଲଙ୍କାଗଡ଼ ଭିତରେ ପଶେ ଦେବୀ ଜାଣ ।
ଅସୁରୁ ସଇନ ଯେତେକ ମାରିଥିଲେ
ସକଳ ଯୋଗିନୀ ଯାଇ ସମସ୍ତ ଭକ୍ଷିଲେ ।
ଅସୁରବଳ ବାଛି ଭକ୍ଷିଲେ ଦେବୀ ପୁଣ
କପିବଳ ସଳଖ କଲେ ତତକ୍ଷଣ ।
କବନ୍ଧମୁଣ୍ଡ ଯୋଡିଲେ କପିଙ୍କର ବେଗେ
କାଳଦେବୀ କପିଙ୍କ ସଳଖ କଲେ ବେଗେ ।

ରୁଧିର ପାନ କରିଣ ସୁବଳସ୍ଥାକୁ ଗଲେ
ସ୍ୱର୍ଗରୁ ଶୁକ୍ର ମନ୍ତ୍ରୀ ଆସିଣ ମିଳିଲେ ।
ସଞ୍ଜିବନୀ ମନ୍ତ୍ର ପଢ଼ି ପାଣି ସିଞ୍ଚିଦେଲେ
ଜୀବ ପାଇ କପିକୁଳ ଉଠିଣ ବସିଲେ ।
ଅମୃତ ବୃଷ୍ଟି କଲେ ଶୁକ୍ରଦେବ ପୁଣ
ବଳପାଇ କପିଗଣ ଗମିଲେ ଗଗନ ।
ସୁବଳ ଗିରିରେ ସେ ହେଲେ ପରବେଶ
ଶୁକ୍ରଦେବ ଚଳିଲେ ସ୍ୱର୍ଗକୁ ତୁରିତ ।
ସ୍ୱର୍ଗପୁରେ ଶୁକ୍ରମନ୍ତ୍ରୀ ପ୍ରବେଶ ହୋଇଲେ
ଏଥୁ ଅନନ୍ତରେ ଦେଖ ଶୁଣ ଗୋ ଭଲେ ।
ଅସୁରମାନେ ଥିଲେ ଯେ ରାବଣର କୂଳେ
ରାବଣ ଶୋଇବାରୁ ଚଳିଲେ ସତ୍ୱରେ ।
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ
ତ୍ରିଜଟା ସୀତା ବସିଅଛନ୍ତି ମଣ୍ଡପରେ ।
ସେହି ମଣ୍ଡପରେ ବସି କଥା ସେ କହିଲେ
ଲଙ୍କାପତି ପୁରକୁ ଯେ ଯାଇଥିଲୁ ଭଲେ ।
କାଲି ଯୁଦ୍ଧ କରିବାକୁ ସେହୁ ସଜ୍ଜ ହେଲା
ସୈନ୍ୟବଳ ଆଠ ସବୁ ସକଳ ସାଜିଲା ।
ରହି ପାରିଲେ କାଲି କରିବ ରଣ
ନସ୍ତମ କହୁଛି ମୁଁ ନଗରେ ଆସିବ ପୁଣ ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ତିନ ଜଣ
ଏ ତିନଙ୍କି ହରିନେଲା ମନ୍ତ୍ରୀ ଯେ ରାବଣ ।
ଶୁଣିକରି ସୀତାମ୍ଭା ମନରେ ଝୁରିଲେ
ଏଇଥର ରାବଣ ମରିବ ବୁଝିଗଲେ ।
ଏତେବୋଲି ସୀତାଯେମନରେ ହେଲେ ତୋଷ
ବୋଇଲେ ଜାଣିବାରେ ବଶବାର ଶିଷ୍ୟ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣିବା ଈଶ୍ୱର
କଥାଏ ଉହ୍ନିଲା ହେବ କହ ମୋ ଆଗର ।
ମନ୍ଦୋଦରୀ ରାଣୀଯେ ଅନ୍ତଃପୁରେ ଥିଲେ
ଅଙ୍ଗଦ କୁମର ତାକୁ ବାନ୍ଧିଧରି ନେଲେ ।
କେଉଁ ଦୋଷ କରିଥିଲା ପୂର୍ବରେ ସେ ନାରୀ
ବାଳିର କୁମର ତାର ବନ୍ଧନ ସତ ।
ଏହାମୋତେ ବୁଝାଇ କହ ଭବବାସ
ତେବେ ମୋର ମନଯେ ହୋଇବ ସନ୍ତୋଷ
ଈଶ୍ୱର ବୋଲନ୍ତି ତୁମ୍ଭେ ଶୁଣ ଗୋ ଗଉରୀ
ମୟଦୈତ୍ୟର ଝିଅ ଅଟେ ମନ୍ଦୋଦରୀ ।

ଅଗ୍ନିରୁ ଜାତ ହୋଇ ସେ ଯୁବା ହୋଇଲା
ପ୍ରଦାନ କରିବି ବୋଲି ପିତା ତା ସଙ୍ଗେ ନେଲା
ବଳୀର ଭୁବନରେ ହୋଇଲା ପ୍ରବେଶ
ଖଣ୍ଡଗ ନୃପତିକି ସେ କହେ ଦଇତ ।
ମୋହର ନନ୍ଦନୀକୁ ମୁଁ ତୁମ୍ଭ ପୁତ୍ରକୁ ଦେବ
ତୁମ୍ଭ ଜ୍ୟେଷ୍ଠ କୁମରକୁ ବିଭା କରାଇବ ।
ଶୁଣିକରି ସନ୍ତୋଷ ବାନରେଶ୍ୱର ହେଲା
ବାହାର ମଣ୍ଡପରେ ତାକୁ ରଖାଇଲା ।
ରାତ୍ରରେ ନାରଦ ମିଳିଲେ ତା ପାଶ
ବୋଇଲେ ଦୈତ୍ୟ କୁଳରେ ଶୁଣ ମୋ ଭବିଷ୍ୟ
ଲଙ୍କାଗଡ଼ରେ ଯେ ରାବଣ ରାଜା ପୁଣି
ତାହାକୁ ବିଭାକର ତୋ ଦୁହିତା ନେଇଣ
ବିଶ୍ରବା ଋଷି କୁଳରେ ଜନମ ତାହାର
ଜିତି ସ୍ୱର କୁବେର ଦେବତା ଦିଗପାଳ ।
କନିଷ୍ଠ କୁମ୍ଭକର୍ଣ୍ଣ ତିନପୁରେ ସାର
ବିଭୀଷଣ ଭାଇତାର ଯୁଦ୍ଧରେ ଅମର ।
ଲଙ୍କା ଗଡ଼କୁ ତୁ ଝିଅ ଘେନି ଚଳ
ରାବଣକୁ ବିଭା ତୁରେ କରିବୁ ସତ୍ୱର ।
ନାରଦ ବଚନକୁ ମୟ ଦୈତ୍ୟ ଶୁଣି
ସେହି ରଜନୀରେ ସେ ଗମନ କଲା ପୁଣି ।
ଲଙ୍କାଗଡ଼ରେ ଯାଇ ପ୍ରବେଶ ବେଗେ ହେଲା
ପ୍ରହସ୍ତ ମଉଳାକୁ ସେ ଡାକି ପଚାରିଲେ ।
ରାବଣ ଆଗେ ବୋଇଲା ସୁମାଳିର ସୁତ
କନ୍ୟାକୁ ଦେଖିବାକୁ ଉଦବେଗ ଚିତ ।
ତତକ୍ଷଣେ ରାବଣ ଦେଖିଲାକ ଯାଇ
ସୁନ୍ଦରୀ ଦେଖି ରାବଣ ସମ୍ମତ କରାଇ ।
ତିନଦିନେ ବିଭାଘର କଲେ ସେହୁ ପୁଣ
ନାରଦ ଥାଇ ବିଭାଘର ହେଲା ଜାଣ ।
ସେଠାରୁ ନାରଦ ଯେ ସ୍ୱର୍ଗପୁର ଗଲେ
ମୟ ଦୈତ୍ୟ ବରଦାନ ରହି ଚଳିଗଲେ ।
ପଞ୍ଚଦିନେ ଖଣ୍ଡଗ ନୃପତି ଜାଣିଲେ
ମୟଦୈତ୍ୟ ଝିଅକୁ ରାବଣ ବିଭାହେଲେ ।
ବିଚାରିଲେ ମୋତେଯାଚି ରାବଣେ ଝିଅ ଦେଲା
ଏକଥା ମୋତେ ବଡ଼ ମନ୍ଦ ସେ ହୋଇଲା ।
ବାହାର ଆଗେ ପୁଣି ନ କହିଲା ପୁଣ
ବୋଇଲା ବିଧାତା ମୋର ଦୋଷ ନାହିଁ ଜାଣ

ଏତେ କହି ନୃପତି ଶାପ ତାକୁ ଦେଲା
ମୋ ପୁତ୍ର ହସ୍ତେ ତା ରାଣୀ ପ୍ରାଭବ ପାଇଲା ।
ଏଥୁ ଅନନ୍ତରେ ଯେ ପକ୍ଷକ ଗଲା ବୋଲି
ତାର ନାମେ କନ୍ୟା ମୟ ଦାନବ ଘରେଥାଇ
ସେ କନ୍ୟାଗୋଟି ଅଗ୍ନିରୁ ଜାତ ପୁଣ
ଜାତ ହୋଇ ଯୁବା ସେ ହେଲା ତତକ୍ଷଣ ।
ସୁନ୍ଦର ପଣେ ସେ ତ୍ରୈଲୋକ୍ୟ ପାରେ ମୋହି
ମୟ ଦାନବ ସେ କନ୍ୟାକୁ ସଙ୍ଗରେ ନେଇ ।
କିଷ୍କିନ୍ଧ୍ୟା ନଗରେ ଯାଇ ହେଲା ପରବେଶ
ଖଡ୍ଗ ପୁତ୍ରକୁ ଦେବ ମୋ ଦୁହିତା ତାରାକୁତ
ଗୌତମ ଋଷିଙ୍କୁ ଡକାଇ ଅଣାଇଲା
ତାର ସହିତ ବାଳି ରାଜାକୁ ବିଭା କରାଇଲା ।
ଏମନ୍ତେ ମାସ ତିନି ସେଥିରେ ଗଲା ବହି
ତାରାବତୀ ସୁନ୍ଦରୀ ଗର୍ଭବତୀ ହୋଇ ।
ରାବଣ ଯେ ମନ୍ଦୋଦରୀ କନ୍ୟାକୁ ବିଭାହେଲା
ତିନିମାସ ଭିତରେ ଗର୍ଭବାସ ହେଲା ।
ମନ୍ଦୋଦରୀ ଗର୍ଭରେ ଯେ ପୁତ୍ର ହେଲା ସ୍ଥିତ
ତାରାବତୀ ଗର୍ଭରେ ଦୁହିତା ପ୍ରକଟିତ ।
ଏମନ୍ତ ଅଷ୍ଟମାସ ସେଥିରେ ବହିଗଲା
ବାଳିରାଜା ଆଗରେ ଯେ ନାରଦ ମିଳିଲା ।
ନାରଦ ବୋଇଲେ ଶୁଣ ଖଡ୍ଗର ସୁତ
ମୟ ଦୈତ୍ୟ ଦୁହିତା ମନ୍ଦୋଦରୀ ସେତ ।
ତୋତେ ବିଭା କରିବାକୁ ଦୁହିତା ଆଣିଥିଲା
ରାବଣେଶ୍ୱରକୁ ନେଇ ସେ କନ୍ୟାକୁ ଦେଲା ।
ତୋର ବଳଥିଲେ ଯେବେ ଆସ ତାର ପୁରୁ
ଏତେକହି ନାରଦ ଗଲେ ଯେ ସେଠାରୁ ।
ତାହାଶୁଣି ବାଳିରାଜ ଲଙ୍କାଗଡ଼େ ଗଲା
ରାବଣ ସଙ୍ଗେ ଯାଇ ବହୁତ ଯୁଦ୍ଧ କଲା ।
ରାବଣ ହାରିବାରୁ ବାଳି ରାଜା ପୁଣ
ଅନ୍ତଃପୁରେ ପଶିଣ ମନ୍ଦୋଦରୀକୁ ଧରିଣ ।
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା
ଏଣୁ ସମସ୍ତରେ ଯେ ରାବଣ ଚେତାହେଲା ।
ଦାସୀ ପରିବାରୀ କହିଲେ ଯାଇ ପୁଣ
ତୋ ଅନ୍ତଃପୁରେ ପଶିଲା ବାଳିସେ ରାଜନ ।
ପାଟ ମହାଦେଈ ମନ୍ଦୋଦରୀକି ଘେନିଗଲା
କୁଳନାରୀ ତୋହର ସବୁ ସେ ସରିଲା ।

ଶୁଣିଣ ରାବଣ ବିଧାତାର ଆଗେ କହି
ମୋହର ବଇରୀ ବାଳି ନୃପତି ଏବେ ହୋଇ
ମୋହର ପାଟରାଣୀ ମନ୍ଦୋଦରୀ ପୁଣ
ବଳେ ଧରିନେଲା ସେ ଯେ ବାଳି ଯେ ରାଜନ
କି ବୁଦ୍ଧି କରିବି ମୁଁ କହରେ ଦେବବର
ମୋତେ ବଳତ୍କାର ହେଲା ସେ ବାନରେଶ୍ୱର
ଶୁଣି ବିଧାତା ବୋଇଲେ ହୁଅ ତୁହି ସ୍ଥିର
ସମସ୍ତେ ଚାଲ ଯିବା କିଷ୍କିନ୍ଧ୍ୟା ନଗର ।
ଏତେବୋଲି ବିଧାତା ସୁରଗଣ ଘେନି
ରାବଣ କୁମ୍ଭକର୍ଣ୍ଣ ବିଭୀଷଣ ତିନି ।
କିଷ୍କିନ୍ଧ୍ୟା ନଗରେ ହେଲା ପରବେଶ
ଦେଖିକରି ବାଳିରାଜା ହେଲେ ହସ ହସ ।
ବିଧାତାଙ୍କ ଚରଣରେ ନମସ୍କାର କଲା
ଦେବତାମାନଙ୍କର ଚରଣେ ଲୋଟିଲା ।
ଦଇବେ ବୋଇଲେ ଶୁଣ ବାଳିବୀର
ରାବଣେଶ୍ୱର ଭାରିଯାକୁ ଆଣିଲେ କମ୍ପା ବଳେ
ବାଳିବୀର ବୋଲେ ଶୁଣ ଜଗତ କରତା
ଆଗେ ସେ କନ୍ୟା ଦେଖୁଣି କଲେ ତାରପିତା
ମୋତେ ନ ଦେଇ କନ୍ୟା ଏଠାରୁ ଘେନିଗଲା
ରାବଣେଶ୍ୱରକୁ ସେ କନ୍ୟା ବିଭା କରାଇଲା ।
ସେ କଥାକୁ ରୁଷି କରି ଆଣିଲି ମୁଁ ଧରି
କେଉଁ ଦୋଷ ମୋହର ହେ ପରମ କୁଶଧାରୀ
ଦେବତାଏ ବୋଇଲେ ସେ ତୋତେନାହିଁ ରାଜ
ବଳବନ୍ତ ଗୁଣ କଲେ ନ ପାରୁଁ ଆମ୍ଭେ ବୁଝି
ବାଳି ବୋଇଲା ଯେବେ ରାବଣ ମୋତେ କଲା
କେମନ୍ତେ ସେ କନ୍ୟା ଲଙ୍କପତି ସମର୍ପିଲା ।
ସେ କନ୍ୟରେ ଭାଗ ଅଟେଟିକ ମୋର
ତୁମ୍ଭେ ଦେବତା ଏବେ ବିଚାର ଏହାକର ।
ଦୁଇଫାଳ କରିଣ ଯେ ତାରିଦେବା ପୁଣ
ଫାଳେକ ସେହୁ ନେଇ ଫାଳେକ ମୋରଜାଣ
ଦେବତାଏ ବୋଇଲେ ଏକଥା ନୁହେଁ କାହିଁ
ସ୍ତ୍ରୀ ହତ୍ୟା ଦୋଷ କେ କରିବ ଶୁଣ ତୁହି ।
ବିଧାତା ବୋଇଲେ ତୁମ୍ଭେ ଦୁହେଁ ମିତ୍ର ହୁଅ
ଏକ ଆତ୍ମା ହୋଇଲେ ହୋଇବ ବଡ଼ ସ୍ନେହ
ଦୁଇଜଣଙ୍କୁ ସେଠାରେ ମଇତ୍ର କରାଇଲେ
ମନ୍ଦୋଦରୀ ଗର୍ଭରୁ ହରଣ ତହିଁ କଲେ ।

ତାରବତୀ ଗର୍ଭରେ ରଖିଲେ ନେଇ ବାଳି
ମନ୍ଦୋଦରୀ ଜାଣିଲେ ମୋ ଗର୍ଭ ହେଲା ଦୂର
ତାରା ଗର୍ଭ ହରିନେଲେ ମନ୍ଦୋଦରୀ
ଗର୍ଭେ ହେଲେ
ତାରା ମନ୍ଦୋଦରୀ ଦୁହେଁ ସେ କଥା ଜାଣିଲେ
ମନ୍ଦୋଦରୀକି ରାବଣ ଘେନି ଚଳିଗଲା
ଲଙ୍କା ଯାଇଣ ପ୍ରବେଶ ବେଗେ ହେଲା ।
ମନ୍ଦୋଦରୀ କୋଳେ ପାଞ୍ଚ ପୁତ୍ର ଦୁହିତା ସମ୍ଭୂତ
ଦୁହିତା ଗୋଟିଏ ବଡ ଅଟେ ତାର ଶ୍ରେଷ୍ଠ ।
ସେହି ଦୁହିତାକୁ ପୁଣି ପ୍ରଦାନ ସେ କଲେ
ଅଲଙ୍କା ନାମେ ପୁର ସମୁଦ୍ର ଭିତରେ ।
ସହସ୍ର ମୁଖା ରାବଣ ସେ ଗଡ଼ର ରାଜା
ଗୁମାନେଶ୍ୱର ନାମରେ ଜ୍ୟେଷ୍ଠ ଯେ ତନୁଜା ।
ତାହାକୁ ବିଭାକଲା ରାବଣ ଦୁର୍ଜନ
ଦୁଇଜଣ ମଇତ୍ର ଯେ ହନୁ ମନ ମିଳ ।
ବାଳି ରାଜାର ଦୁଇଗୋଟି ପୁତ୍ର ଜାଣ
ଗୋଟିଏ ଦୁହିତା ଯେ ଅଟେ ତାର ସାନ ।
ବସନ୍ତ କୁମାରକୁ ସେ କନ୍ୟା ବିଭା କଲା
ନନ୍ଦନ ନନ୍ଦମାକୁ ଅଙ୍ଗଦ ବିଭା ହେଲା ।
ଅଙ୍ଗଦର ସାନଭାଇ ଅଟେ ସୁରଜିତ
ସେହି ବିଭା ହେଲା ଗନ୍ଧ ରାଜାର ଦୁହିତ ।
ପାର୍ବତୀ ବୋଇଲେ କପି କେତେ ରାଜା ପୁଣ
ଈଶ୍ୱର ବୋଇଲେ ଲକ୍ଷେ ଅଟନ୍ତି ଋଷଗଣ ।
ପାର୍ବତୀ ବୋଇଲେ କାଲୁ କେତେ ରଜାଛନ୍ତି
ଈଶ୍ୱର ବୋଇଲେ ସେହୁ ଲକ୍ଷେକ ନୃପତି ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ମନ୍ଦୋଦରୀ ରାଣୀ ଯେ ଅଙ୍ଗଦ ନନ୍ଦନ ।
ମାତାଙ୍କୁ କମ୍ପା ଓପ୍ରଧ ନ କଲା ପୁଣ
ଏଥିର ସନ୍ଦେଶ ମୋତେ କହ ବିସ୍ତରିଣ ।
ଈଶ୍ୱର ବୋଇଲେ ପୁତ୍ର ନଜାଣେ ମାତାବୋଲି
ମନ୍ଦୋଦରୀ ଜାଣିକ୍ଷୁ କୋପ ନୋହିଲା ତାହାରି
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ମନ ଦେଇ
ଆଉରି କଥାଏ ମୋ ମନରେ ଅଛି ରହି ।
ବେଦମତୀ ବୋଲିଣ ଯେବଣ ନାରୀ
କାହିଁ ଜନମିଲା ସେ କାହାର କୁମାରୀ ।

ଈଶ୍ୱର ବୋଇଲେ ବିଷ୍ଣୁର ପାଟରାଣୀ
ନାରାୟଣ ଛାମୁକୁ ନ ଗଲା ବନେ ପୁଣି ।
କ୍ରୋଧଭରେ ବାସୁଦେବ ତାକୁ ଆଜ୍ଞାଦେଲେ
ସହସ୍ର ବର୍ଷ ଯୋଗ ସାଧୁ ଯେ ବୋଇଲେ
ଜମ୍ବୁଦ୍ୱୀପେ ଭରତ ଖଣ୍ଡେ ହୁଅ ତୁ ଜନମ
ତୁମ୍ଭର ହେତୁ ନଷ୍ଟେ ମରୁ ହେ ରାବଣ ।
ଦେବତାଙ୍କ ଦୁଃଖ ବୁଝି ସେ ନବାରିବୁ
ଏହି କଥା ସୁହୃଦୟରେ ମନରେ ରଖିଥିବୁ ।
ରାବଣ ଦେଖି ତୋତେ ବଢ଼ାଇବ ଆଶ
ତେତେବେଳେ ତୁହି ଦେବୁଲେ ପୁଣି ଶାପ ।
ମେରୁ ରାଜାଙ୍କର ତୁହି ଦୁହିତା ହୋଇବୁ
ଅରଣ୍ୟ ଭିତରେ ଯାଇଁ ତପ କରୁଥିବୁ ।
ଅଗଡଙ୍କେ କରୁଥିବ ବିଶ୍ରବା ନନ୍ଦନ
ବଳତ୍କାରେ କଲାବେଳେ ଶାପ ଦେବୁ ନାଶ
ଅଗ୍ନିରେ ଝାସିଣ ତୁ ଯେ ସେଠାରୁ ଚଳିଯିବୁ
ଜନକ ଋଷି ଘରେ ଜନମ ହୋଇବୁ ।
ଆମ୍ଭେ ଜାତ ହୋଇବୁ ଚତୁର୍ଦ୍ଧା ରୂପ ହୋଇ
ଧନୁଭଙ୍ଗି ବିଭା ତୋତେ ହେବୁଁ ବଇଦେହୀ
ପିତା ସତ୍ୟ ପାଳି ଆମ୍ଭେ ବନକୁ ସଙ୍ଗେନେବୁ
ତେବେ ସେ ରାବଣ ବଂଶ ନିପାତ କରିବୁ ।
ଏହା ଶୁଣି କମଳା ବେଗେ ଚଳିଗଲେ
ମେରୁ ପାଟରାଣୀ ଗର୍ଭେ ଜନମ ହୋଇଲେ ।
ସହସ୍ର ବରଷ ଯେ କଲା ତପ ପୁଣ
ରାବଣ ବଳାତ୍କାରେ ସେ ଦେହଛାଡ଼ି ଜାଣ
ଜନକ ଋଷି ଘରେ ଜନମ ଯେ ହେଲେ
ରାବଣ ମାରିବାକୁ ଲଙ୍କାକୁ ଅଇଲେ ।
ତାର ହେତୁରୁ ନାଶ ଯିବେ ବୀର ରାବଣ
ମେରୁ ରାଜାର ଦୁହିତା ସାବଧାନେ ଶୁଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପ୍ରାଣନାଥ
ଲଙ୍କାଗଡ଼କୁ ଗଲା ଇନ୍ଦ୍ରଜିତ ସୁତ ।
ଶତମୁଖା ରାବଣକୁ କହିଣ ଅଇଲା
ସେଠାରୁ ଶତମୁଖା ହୋମ କରିଣ ଥିଲା ।
ଉଦ୍ଧାରଥେ ହୋମକଲା ସେ ଷଡାନନ
ଜଗନ୍ନଧ୍ୱଜ ରଥ ସେ ହୋମରୁ କାଢ଼େ ପୁଣ ।
ସେ ରଥ ଘେନି ରାଜ୍ୟରେ ହେଲେ ପରବେଶ
ସେଠାରୁ କସ କଲା ଜଇନ୍ତା ମୁନି ଶିଷ୍ୟ ।

ଈଶ୍ୱର ବୋଇଲେ ଯେ ନିଜ ରାଜ୍ୟେ ପୁଣ
ପ୍ରବେଶ ହେଲା ଶତମୁଖା ଯେ ରାବଣ ।
ସୈନ୍ୟବଳ ତାର ସାଜେ ନିଜ ରାଜ୍ୟ ପାଇଁ
ବତିଶକୋଟି ତାର ବାଦ୍ୟକାର ହୋଇ ।
ବୟାଳିଶ କୋଟି ରଥୀ ସେନାପତି ସାଇ
ବାଷଠି କୋଟି ପଦାତି ବଳ ତାର ।
ଲକ୍ଷେକ କୁମର ତାର ନବଲକ୍ଷ ନାତି
ବାଷଠି ପଦ୍ମବଳ ପଦାତି ଯେ ଖଟି ।
ଘୋଡ଼ା ହାତୀ ତାର ଯେ ନ ଯାଇ କଳନା
ସମସ୍ତେ ବଳବନ୍ତ ତାର ମହର ପୁଷ୍ଟ କଣ୍ଡା ।
ରଙ୍ଗବସ୍ତ୍ର ପରିହରଣ ସର୍ବକାୟେ ଜାଣ
ମହାମହା ହୋଇ ଯେମନ୍ତେ ଫୁଟେ ରଙ୍ଗକାଣ
ସଜ ହୋଇଣ ସେ ସମସ୍ତ ବାହାରିଲେ
ଗଗନେ ବହମିଣ ତରୁକୁଳେ ମିଳେ ।
ରାଜା ଆଜ୍ଞାଦେଲେ ବିଲଙ୍କା ପୁର ମୋର
ସମସ୍ତେ ଠୁଳ ହେବ ଯାଇଣ ସେଠାର ।
ରାଜାର ଆଜ୍ଞାରେ ସମସ୍ତେ ଚଳିଗଲେ
ଜମ୍ବୁଦ୍ୱୀପ ମଣ୍ଡଳେ ସମସ୍ତେ ମିଳିଲେ ।
ଅଲଙ୍କା ନାମେ ପଲ୍ଲୀ ନଗର ଦକ୍ଷିଣ
ସେଠାରେ ପ୍ରବେଶ ଯେ ହେଲେ ସର୍ବେ ପୁଣ
ବାରଯୂଣ ପାର୍ଶ୍ୱପ୍ରାନ୍ତ ଓସାରେ ସ୍ଥିରହେଲେ
ଗଡ଼ର ଭିତରେ ବାକ ଏତେକ ରହିଲେ ।
ବାରକୋଟି ରହିଲେ ରଥୀ ସେନାପତି
ସ୍ତରିକୋଟି କୁମର ବାରକୋଟି ନାତି ।
ପଦାନ୍ତ ରହିଲେ ଅଠର ପଦ୍ମ ପୁଣ
ଘୋଡ଼ା ହସ୍ତୀ ସମସ୍ତେ ନ ରହିଲେ ଜାଣ ।
ବାର ଯୂଣ ପର୍ଯ୍ୟନ୍ତେ ଉଙ୍ଗବର୍ତ୍ତି ଦିଶି
ଟଳଟଳ ପୃଥ୍ୱୀ ବତଳକୁ ଲସି ।
ବାଜଣାର ଶବ୍ଦରେ ମେରୁଗିରି ଟମକ
ଘୂର୍ଣ୍ଣିର ହୋଇଲା ଯେ ନାହଁସି ନ ଉଠି ।
ବନରୁ ଜୀବମାନେ ପଳାଇଗଲେ ଛାଡ଼ି
ଯେସନେକ ପ୍ରଳୟ ପୂର୍ବକାଳେ ବଢ଼ି ।
ପାର୍ବତୀ ବୋଇଲେ ସେ କାହିଁରେ ପାରିହେଲେ
ଈଶ୍ୱର ବୋଇଲେ ଶୁଣ କହିବା ଭଲେ ।
ବାହାର ବୋଇତ ଯେ ଦୁଇପଦ୍ମ ଜାଣ
ଏଥିରେ ପାରି ହେଲେ ବାଦ୍ୟକାର ସୈନ୍ୟ
କୂଳରୁ ଗଡ଼ଯାଏ ଲଗା ଯେ ବନ୍ଧ କଲ
ସୈନ୍ୟବଳ ସେଥିରେ ପାରି କରିଣ ଆସିଲା
ରଥୀ ସେନାପତିମାନେ ନାତି ଅଣନାତି
ଏମାନେ ଅଇଲେ ଯେ ରଥଚଢ଼ି ଧାତି ।
ଅଲଙ୍କା ପଲ୍ଲୀରେ ସମସ୍ତେ ଠୁଳ ହେଲେ
ପଛରେ ଶତମୁଖା ରାବଣ ଅଇଲେ ।
ସେଦିନ ଅଟଇ ଯେ ମଙ୍ଗଳବାର ପୁଣ
ଉତ୍ତର ଦିଗେ ଅନୁକୂଳ କଲା ସେ ରାଜାଜାଣ
କୃଷ୍ଣପକ୍ଷ ତୃତୀୟା ସେଦିନ ଅଟଇ
ଉତ୍ତର ଦିଗକୁ ଦିଗଶୂଳ ହେବ କହି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେଦିନ ଇଚ୍ଛାକଲେ
ହୀନ ଲୋକ ହସ୍ତରେ ନାଶଯାନ୍ତି ଭଲେ ।
ସେ ରାଜାର ମୃତ୍ୟୁ ହୋଇଲା ଆସ ପୁଣ
ଦିଗଶୂଳ ଯେଉଁଦିନ ଅନୁକୂଳା ଜାଣ ।
ଅଇଲା ବେଳେ ଶୂନ୍ୟରେ ନିର୍ଘାତ ଶବଦ
ସର୍ପମାନଙ୍କୁ ଆଗରେ ଦେଖିଲା ଲଙ୍କରାଜ ।
ଉପରେ ଗ୍ରୀଧପକ୍ଷୀ କରନ୍ତି ଗର୍ଜନ
ମନ୍ଦ ମନ୍ଦ ହୋଇଣ ଯେ ଚଳଇ ବିମାନ ।
ସାରଙ୍ଗ କୁରଙ୍ଗୀ ବୋଲି ଅଟନ୍ତି ବେନମନ୍ତ୍ରୀ
ବୋଇଲେ ରାଜନ ହେ ଶତ ନ ଦେଖି ।
ନିଶ୍ଚେ ଅପଯଶ ଏଥିରେ ତୋତେ ହେବ
ଦଶରଥ କୁମର ଅଟନ୍ତି ବାସୁଦେବ ।
ଚତୁର୍ଦ୍ଧା ମୂରତି ହୋଇ ଜାତ ସେହୁ ପୁଣ
ଅସୁରବଳ ସବୁ କରିବେ ନିଧନ ।
ବଳେ ତାର ସଙ୍ଗରେ ଲାଗିବାକୁ ଗଲୁ
ଯଶ ନ ପାଇଣ ଯେ ଖେଟଡ଼େ ମଲୁ ।
ବାଇଲଗିଲୁକ ରାଜନ ତୋତେ ପୁଣ
ଫେରିଯିବା ଆସ ହେ ନକର ବାରଣ ।
ରାବଣ ବୋଇଲା ଯେ ମୁଁ ନାଶଗଲେ ଯିବ
ତାହାର ସଙ୍ଗରେ ମୁଁ ଯେ ରଣହିଁ କରିବ ।
ଏ ଜୀବନ ମୋହର ଯେ କେତେକାଳ ଥିବ
ସମସ୍ତେଙ୍କ ରହିଣ ତ ପୁଣ ନାଶଯିବ ।
ମର୍ତ୍ତ୍ୟପୁରେ କେତେବେଳେ ନୁଅଇ ଅମର
ବିଷ୍ଣୁ ହସ୍ତେ ମଲେ ଭବଜନ୍ମ ହେବ ପାର ।
ଯେଉଁ ଅଣାକାର ସଚରାଚର କଲା
ମଚ୍ଛିକାର ବାଠ ସେହି ଯେ ଉଆଇଲା ।

ଖାଇବାର ଶୋଇବାର ସୁଖ ସେହି କଲା
ନାନା ଅଳଙ୍କାରରେ ଭୂଷଣ ଭିଆଇଲା ।
ଲୋଭ ମୋହ ହିଂସା ପୁଣ ଶରୀରେ ରଖିଲା
ସମସ୍ତଙ୍କ ମଧ୍ୟରେ ଯେ ରଣ ସାର କଲା ।
ବ୍ରାହ୍ମଣଙ୍କ ବେଦସାର ମୁନିଙ୍କି ଦେଲା ତପ
ରାକ୍ଷସଙ୍କୁ ବୋଲେ ତୁରେ ମଦ ମାଂସ ଭକ୍ଷ ।
ରଣ କରିବାକୁ ସେ ଦେଲେ ନାନା ବର
ଯୁଦ୍ଧକରି ମଲେ ତୁମ୍ଭେ ହୋଇବରେ ପାର ।
ଅନ୍ୟରେ ଖଣ୍ଡ ନାହିଁ ବୋଲି କହିଗଲେ
ଯୁଦ୍ଧକରି ମଲେ ସ୍ୱର୍ଗେ ବସିବ ବୋଇଲେ ।
ତପିଙ୍କି ବୋଇଲେ ତୁମ୍ଭେ ତପ କଲ ଭଲ
ତପକରି ମଲେ ତୁମ୍ଭେ ମିଳିବ ମୋର ପୁର ।
ବ୍ରାହ୍ମଣଙ୍କୁ ବୋଇଲା ହୋ ବେଦ ବିଦ୍ୟାପତି
ଏ ସଂସାର ଜୀବକୁ ହେ ପ୍ରତିକାର କର ।
ରାଜାଙ୍କୁ ବୋଇଲେ ତୁମ୍ଭେ କରିବଟି କାରଣ
କ୍ଷତ୍ରିୟ ଧର୍ମର ଗୁଣ ଅଟଇ ଏ ପୁଣ ।
ରଣ କରି ମଲେରେ ବୈକୁଣ୍ଠ ପୁରେ ଯିବ
ନୋହିଲେ ଚୌରାଶି ନର୍କରେ ପଡ଼ିବ ।
ପାତ୍ରମନ୍ତ୍ରୀ ଲୋକଙ୍କୁ ଦେବ ହରି
ଧର୍ମରେଟି ନ୍ୟାୟମାନ କରିବ ବିଚାରି ।
ଅନ୍ୟାୟେ ଯୁଝିଲେ ତୁମ୍ଭେ ଯିବ ଯମଆଳ
ଅଳ୍ପ ଦିନକରେ ନଷ୍ଟେ ପୁରିବଟି କାଳ ।
ରଥୀଙ୍କ ବୋଇଲେ ତୁମ୍ଭେ ନ ଘୁଞ୍ଚିବ ପଛ
ପଛଦେଲେ ନର୍କପୁରେ ପାଇବ ନିବାସ ।
ଅଶ୍ୱଙ୍କୁ ବୋଇଲେ ସେ ସିପାହୀ ଯେତେବୋଲି
ତେତେଣେ ଚଳିବ ତୁମ୍ଭେ ନୋହି ଖଞ୍ଜିଆଳୀ ।
ହସ୍ତୀଙ୍କ ବୋଇଲେ ତୁମ୍ଭେ ନ୍ୟାୟବୋଲେଥିବ
ଯାହାର ଖାଇବ ତାହାର ବୋଲ ଯେ କରିବ
ହଟାଣି ବଜାରିକ ଯେ ଆଜ୍ଞାଦେଲେ ସେହି
ବାଣିଜ୍ୟ ବେପାର କରି ରଖିବ ତୁମ୍ଭ ଦେହି ।
ବୈଶ୍ୟଙ୍କୁ ବୋଇଲେ ତୁରେ ବାଣିଜ୍ୟରେଥିବୁ
ଅସମୟ କାଳରେ ଔଷଧ ପୁଣ ଦେବୁ ।
ଶୂଦ୍ରଙ୍କୁ ବୋଇଲେ ତୁମେ ଗୃହ ବିଦ୍ୟା କର
ଅନେକ ଲୋକଙ୍କୁ ତୁମ୍ଭେ ଉଦ୍ଧାରଣ ଧର ।
ଉଦ୍ଭିଜ୍ଜା ଜୀବଙ୍କୁ ବୋଲେ ନ୍ୟାୟ ଧର୍ମେ ଥିବ
ଉଦର ପୋଷଣ ନ୍ୟାୟ ଧର୍ମରେ ରହିବ ।
ବୁଡ଼ଜ୍ଜା ଜୀବଙ୍କୁ ବୋଲେ ଦେବ ହରି
ଜଳର ଭିତରେ ତୁମ୍ଭେ ଗର୍ଭ ଶାନ୍ତ କର ।
ଚଳନ୍ତି ଜୀବଙ୍କୁ ଆଜ୍ଞା ଦେଲେ ସେହୁ ପୁଣ
ନ୍ୟାୟ ଧର୍ମବଳେ ତୁମ୍ଭେ କରିବ ଭୋଜନ ।
ତୁମ୍ଭର ଆହାର ଯାହା ତାହା ସେ ରଖିବ
ଜୀବକୁ ଜୀବ ଭକ୍ଷିଲେ ଦୋଷ ନ ଲାଗିବ ।
ଚଳନ୍ତି ଜୀବକୁ କହିଲେ ନାରାୟଣ
ପବନ ସମୀର ପାଣି ତୁମ୍ଭ ଦେହ ଜାଣ ।
ଧରଣୀକି ବୋଇଲେ ତୁ ଅର୍ଦ୍ଧେ ଜଳ ସହିବୁ
ବାସୁକିକୁ ବୋଇଲେ ତୁ ଧରଣୀ ଧରିଥିବୁ
ନାଗବଳଙ୍କୁ ଡାକି କହିଲେକ ପୁଣ
ସର୍ପପୁରେ ତୁମ୍ଭେମାନେ କରିବ ବିଶ୍ରାମ ।
ଅନ୍ୟାୟ ଦେଖିଲେ ଜୀବମାନଙ୍କୁ ଦଣ୍ଡିବ
ନ୍ୟାୟବନ୍ତ ଲୋକଙ୍କର ପାଶକୁ ନ ଯିବ ।
ଦେବଲୋକଙ୍କୁ ଦେଖି କହେ ଦେବରାଜ
ଅସୁରମାନଙ୍କ ସଙ୍ଗେ କର ରଣ ସାଜ ।
ଭାଇ ହୋଇ ଭଗାରି ଯେ ଅଟେ ପୁଣ ସେହି
ଅନୁକ୍ଷଣେ ଅହଲ୍ୟା ଯେ ଭାଇପରେ ବହି ।
ତୁମ୍ଭ ସଙ୍ଗେ ଖଣ୍ଡିଆଳ ହେବ ଯେତେବେଳେ
ରଣରେ ମାରିବ ନ ବିଚାରିବ ମନରେ ।
ଏତେବୋଲି ବାସୁଦେବ ମନରେ ବିଚାରିଲେ
ସ୍ୱର୍ଗପୁର ଗୋଟା ପୁଣି ଦେବତାଙ୍କୁ ଦେଲେ
ମର୍ତ୍ତ୍ୟପୁର ଦେଲେ ପୁଣି ରାକ୍ଷସ ମାନବ
ନାନା ଛନ୍ଦ କପଟ ନାନା କୃତ୍ରିମ ଭାବ ।
ତଳପୁରେ ରହିଲେ ବାସୁକି ନାମେ ଅହି
ନାଗବଳମାନେ ପୂରିଲେକ ମହୀ ।
ଅଧେକ ପୁରି ପୁଣ ନାଗବଳ ଦେଲେ
ଆଉ ଅଧେ ନାରାୟଣ ଗୁପ୍ତରେ ରଖିଲେ ।
ନାନାପୁର ରଚନା ସେଥିରେ ସେ କଲେ
ଅମର ଲୋକଙ୍କୁ ନେଇ ସେଥିରେ ରଖିଲେ ।
ନାନା ଆୟୁମାନ ତାଙ୍କଙ୍କ ପୁରେ ଠୁଳ
ପ୍ରଳୟ ପର୍ଯ୍ୟନ୍ତେ ହୁଅନ୍ତି ଅମର ।
ଏକସ୍ତ୍ରୀ ମନୁ ହେଲେ ସେମାନେ ମରନ୍ତି
ତେତେ ଦିନ ଯାଏ ଅମର ହୋଇଥାନ୍ତି ।
ଶୁଣିଲଟି ତୁମ୍ଭେ ହେ ମନ୍ତ୍ରୀ କେଣଜଣ
ଯେଉଁ ନାରାୟଣ କଲେ ଏତେକ ଭିଆଣ ।

ସେ କମ୍ପାଇଁ ନରଦେହ ଜନମ ହୁଅନ୍ତି
ଆପଣା ଭିଆଇଲା ଦେବ କମ୍ପାଇଁ ନାଶନ୍ତି ।
ଶୁଣିକରି ମନ୍ତ୍ରୀବେନି କହନ୍ତି ଉତ୍ତର
ହିରଣ୍ୟ କଶିପୁ ଦୁହେଁ ଆଦ୍ୟରେ ଅସୁର ।
ପ୍ରହେତି ଯେ ମାତାଠାରୁ ହୋଇଲେ ଜନମ
ଈଶ୍ୱରଙ୍କୁ ମନାଇ ହେଲେ ବଳବାନ ।
ତିନିପୁର ସାତଦ୍ୱୀପ ଚଉଦ ଭୁବନ
ସମସ୍ତଙ୍କୁ ଜିଣିଣ ସେ ଏକ ରାଜା ପୁଣ ।
ନଜଯୁଗ ପରିଯନ୍ତେ ସେ ଭୋଗକରି ଗଲେ
ଦେବତାଙ୍କୁ ନେଇଣ ପାଦତଳେ ଖଟାଇଲେ
ଅସୁରଙ୍କୁ ସେବକାରୁ ଦେବତା ହେଲେ ମେଳ
ବାସୁଦେବ ଆଗେ ଯାଇ କହିଲେ ସକଳ ।
ଶୁଣି ନାରାୟଣ ଦେବ ଯେ ଜନମ ହୋଇଲେ
ବରାହ ରୂପ ଧରି କଶ୍ୟପୁ ନାଶିଲେ ।
ନୃସିଂହ ରୂପରେ ସେ ହିରଣ୍ୟ ବିଦାରି
ପୁତ୍ର ପ୍ରହ୍ଲାଦ ସ୍ୱର୍ଗରେ ଇନ୍ଦ୍ର କରି ।
ପ୍ରହଲାଦଠାରୁ ଜାତ ହେଇ ସେ ଲୋଚନ
ଦୁଷ୍ଟପଣ ଦେଖି ତାଙ୍କୁ ମାଇଲେ ନାରାୟଣ ।
ତାର ପୁତ୍ର ବେନି ଯେ ରାଜନ ଧର୍ମ କଲା
ଜଳପୁରେ ନାରାୟଣ ତାଙ୍କୁ ଠାବ ଦେଲା ।
ଧ୍ରୁବ ଚନ୍ଦ୍ରବାରୁ ଯାଇ ରହିଲା ଉପରେ
ଗଜ କୁମ୍ଭୀର ଯୁଦ୍ଧ ଦକ୍ଷିଣ ଦିଗରେ ।
ସପ୍ତବନ ମଧ୍ୟରେ ଅନେକ ଯୁଦ୍ଧ କଲା
ସହସ୍ର ବର୍ଷ ସେଠାବରେ ବହିଗଲା ।
ଗଜ ସୁମରିଲା ନାରାୟଣଙ୍କୁ ମନରେ
ଗ୍ରାହକୁ ଛେଦିଲେ ଦେବ ଚକ୍ର ଧରି କରେ ।
ଭକତ ବତ୍ସଳ ଯେ ଅଟନ୍ତି ଭଗବାନ
ଭକ୍ତଙ୍କ ନିମନ୍ତେ ସେ ଅବତାର ପୁଣ ।
ତୁମ୍ଭେ ସ୍ୱାମୀ ରାବଣ ଯେ ଜନମ ହୋଇଲ
ଜଗତକୁ କଷଣ ଦେଇ ଜଗତ ଦହିଲ ।
ସେଥି ସକାଶୁ ପୁଣ ଦଶରଥ ଘରେ
ଜନମ ହୋଇଲେ ସେ ଚତୁର୍ଦ୍ଧା ରୂପରେ ।
ସେହି ସ୍ୱାମୀ ରାବଣକୁ କରିବେ ବିନାଶ
ଆମ୍ଭ ବୋଲକୁ ନ ମାନ କଲନ୍ତା ମୁକ୍ତ ଶିଷ୍ୟ
ଶୁଣିକରି ଶତମୁଖା ମନ୍ତ୍ରୀଙ୍କର ବାଣୀ
ହିଂସ୍ର ବଚନ କହି ବୋଧ ହେଲା ପୁଣି ।

ବୋଇଲାରେ ମନ୍ତ୍ରୀ ମୂର୍ଖ କରୁଛୁ ନିୟମ
ନ ମାରି ପାରିଲେ ମୋତେ ମାରିବ ଶତ୍ରୁଘନ
ଏତେବୋଲି ରାବଣ କ୍ରୋଧମୁଖ ଦେଖି
କଥା ନ କହିଲେ ଶୁଣ ଜାଣ ମନ୍ତ୍ରୀ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ଶତମୁଖା ରାବଣର ସ୍ୱର ଥିଲା ଫେରି ।
ରାବଣ ଆଗରେ ଯାଇ ପ୍ରବେଶ ହୋଇଲା
ଚରଣେ ଲୋଟିଣ ସେ ଶିରେ କର ଦେଲା ।
ବୋଇଲା ଶୁଣିବା ଦେବ ମୋହର ବଚନ
ହୋମ କଲବନୁ ମୁଁ ଯେ ଅଇଲଣି ପୁଣ ।
ଜମ୍ବୁଦ୍ୱୀପ ବୁଲି ମୁଁ ଅଯୋଧ୍ୟା ପୁର ଗଲି
ଭରତ ଶତ୍ରୁଘନଙ୍କୁ ମୁଁ ସେଠାରେ ଦେଖିଲି ।
ଲକ୍ଷେ ରାଜା ଜମନ୍ତି ସେଥିରେ କରି ଠୁଳ
ରାଜ ଅଭିଷେକ ତାର ମନରେ ବିସ୍ମର ।
ଚାରିମାସେ ରାଜାମାନେ ହେବ ମେଳ
ଦୁଇମାସ ଅଯୋଧ୍ୟାରେ ରହିଲେ ଦିଗପାଳ ।
ଏହି ସମୟରେ ଶୁଣ ହେ ରାଜନ
ଲକ୍ଷ୍ମଣଙ୍କୁ ଶକ୍ତି ମାଇଲା ଦଶାନନ ।
ପବନର ନନ୍ଦନ ଅଟେ ସେ ମାରୁତି
ଶ୍ରୀରାମଙ୍କ ବୋଲରେ ସେ ଗଲାକ ଝଟତି ।
ଗନ୍ଧମାଦନ ପର୍ବତେଯାଇ ସେ ପ୍ରବେଶ ହେଲା
ଅମର ମୌଷଧି ଘେନି ଚଳି ସେ ଅଇଲା ।
ଅଯୋଧ୍ୟାର ବାଟେ କପି କରଇ ଗମନ
ଅନ୍ଧାର ବେଳେବେଳେ ଦେଖେ ଭରତ ପୁଣ ।
ଆକାଶକୁ ଚାହିଁ ଶର ବାଟୁଳି ମାରିଲା
ପର୍ବତ ମୁଣ୍ଡରେ ଅଛି ତଳରେ ପଡ଼ିଲା ।
ଭରତ ପାଶରେ ଯାଇ ହେଲା ପରବେଶ
ଭରତ ବୋଲେ ବାନରରେ ତୋର ନାମ କିସ
ମାରୁତି ବୋଇଲା ମୁଁ ରାମଚନ୍ଦ୍ର ଦାସ
ମୋର ନାମ ହନୁମନ୍ତ ଶୁଣ ହେ ବିଶେଷ ।
ଶ୍ରୀରାମଙ୍କର ଭାଇ ହେ ଲକ୍ଷ୍ମଣ ନାମେ ବୀର
ଶକ୍ତି ମାଇଲା ରାବଣ ନାମେ ନିଶାଚର ।
ଶ୍ରୀରାମ କାନ୍ଦିବାରୁ ସୁଷେଣ କହିଲେ
ଜିଆଇ ଦେବ ତୋ ଭାଇକି କହିଲେ ।
ଅମର ମୌଷଧି ପାଇଁ ପେଷିଲେ ମୋତେ ରାମ
ଗନ୍ଧମାଦନକୁ ମୁଁ ଗଲି ହେ ଶୀଘ୍ର ଜାଣ ।

ଔଷଧ ନ ଚିହ୍ନି ମୁଁ ପର୍ବତ ଆଣିଲି
ପଥବଣା ହୋଇଣ ମୁଁ ଏବାଟେ ସଳଖିଲି ।
ରାତ ପାହିଲେ ଯେ ଲକ୍ଷ୍ମଣ ନ ଜୀଇବ
ରାମାୟଣ ଯୁଦ୍ଧ ଯେ ନିଷ୍ଫଳ ହୋଇବ ।
ଭରତ ବୋଇଲେ ସେ ଯେ କାହାର କୁମର
ମାରୁତି ବୋଇଲେ ଅଯୋଧ୍ୟା ଦଶରଥ ବାଳ
ଶୁଣିଣ ଭରତଙ୍କର ଅତି ଶୋକ କଲା
ଧନୁଶର ପକାଇଣ ଭୂମିରେ ପଡ଼ିଲା ।
ମାରୁତି ବୋଇଲା ତୁରେ କଥାକୁ ନ ବୁଝୁରୁ
କେବଣ କଥା ମୋତେ କହରେ ହନ୍ତକାରୁ ।
ଭରତ ବୋଇଲେ ଶ୍ରୀରାମ ଲକ୍ଷ୍ମଣ ମୋର ଭାଇ
ପିତାଙ୍କ ସତ୍ୟପାଳି ବନଗଲେ ଯାଇ ।
କାହାଁଇଁ ସେ ଯୁଦ୍ଧକଲେ କେହୁ ହେଲା ସାହା
ଏଥିର ତଦନ୍ତ କହ ବାନର କୁଳନାହା ।
ହନୁମନ୍ତ ବୋଇଲେ ହେ ଭରତ ଦଶଶିର
ଶ୍ରୀରାମ ଭାରଯାକୁ ସେ ନେଲା ହରିକରି ।
ବାନର ଯେ ଭାଲୁବଳ ତାଙ୍କୁ ହେଲେ ସାହା
ରାବଣ ସଙ୍ଗରେ ଯୁଦ୍ଧ ଜାନକୀର ନାହା ।
ଏତେକହି ମାରୁତି ବେଗେ ଚଳିଗଲେ
ଲକ୍ଷେ ରାଜା ପାଶରେ ଭରତ କହିଲେ ।
ରାମାୟଣ ଯୁଦ୍ଧ ଶୁଣି ସମସ୍ତେ ସଜହେଲେ
ଲଟାକାଟି ଆରୋହଣ ଗମନ ସେ କଲେ ।
କାଲି ରାତ ପ୍ରବେଶ ହେଲେ ଯାଇ କିଷ୍କିନ୍ଧ୍ୟା
ଶୁଣ ଦେବ ଲଙ୍କେଶ୍ୱର ରାଜ୍ୟ ଛାଇଯୋଧା
ଶତେମୁଖା ବୋଲେ ଆରେ ଶୁଣ ମୋ ଉତ୍ତର
ଅଯୋଧ୍ୟା ଦେଶରେ କେହି ରହିଲା ତାହାର
ଚର ଜଣାଇଲା ତାର ସାନଭାଇ ଅଛି
ତାର ନାମ ଶତ୍ରୁଘ୍ନ ଶୁଣ ହେ ନୃପତି ।
ରାବଣ ବୋଇଲା କଥା ହୋଇଲା ବିଷମ
ଗୋଟି ଗୋଟି ହେଲେ ପୁଣ ରାମଭାଇ ଜାଣ
କେଉଁଠାକୁ ଯାଇ ଆମ୍ଭେ କରିବା ସମର
କିଷ୍କିନ୍ଧ୍ୟାକୁ ଆଗ ଯିବା ଶୁଣରେ ସକଳ ।
ଲକ୍ଷେରାଜା ଆଗୋଳ କରିବା ଆଗେ ରଣ
ପଛେ ଅଯୋଧ୍ୟାକୁ କଟକାଇ ଜାଣ ।
ସୁଜାଣ ମନ୍ତ୍ରୀ ବୋଲେ କର ଯୋଡ଼ି ତହିଁ
ଆଗ ଅଯୋଧ୍ୟାକୁ ଯିବା ଶୁଣ ନୃପସାଇଁ ।

ଶତ୍ରୁଘ୍ନ ସଙ୍ଗେ ଚାଲ କରିବା ସମର
ଅଯୋଧ୍ୟା ଜିଣି ପଛେ ଯିବା ଲଙ୍କାପୁର ।
ଲଙ୍କାଗଡ଼େ ସେମାନେ ତ ହୋଇଥିବେ ଠୁଳ
ଆଗେ ଅଯୋଧ୍ୟାରେ କରିବା ଗୋଳ ।
ଛୁଞ୍ଚାହୋଇ ଅଯୋଧ୍ୟା ଯେ ଅଛି ଏତେକାଳେ
ସେ ପୁରକୁ ଚାଲିଯିବା ଅନୁକୂଳ ଏକାଳେ ।
ଶୁଣିକରି ଶତମୁଖା ସନ୍ତୋଷ ହୋଇଲା
କଟୁରିଆମାନଙ୍କୁ ଡାକିଣ ଆଜ୍ଞାଦେଲା ।
ଯାଅରେ ଜଙ୍ଗଲ ଲଟା କଟା ବେଗ କରି
ଶତେଯୁଣ ବନକେ ତୁମ୍ଭେ ଯିବ ମେଳି ।
ପାଞ୍ଚଦିନେ ଲଟାକଟା ସରିକ ଯେ ପୁଣ
ଛଅଦିନେ ଆମ୍ଭେମାନେ କରିବା ଗମନ ।
ସାତଦିନେ ଆମ୍ଭ ଯୁଦ୍ଧ ଅଯୋଧ୍ୟାରେ ମୂଳ
ଏତେବୋଲି ଲଟାକାଟେ ନୃପତି ମହାବୀର ।
ତାଙ୍କ ପଛେ କୋଦାଳିଆ ଆସିଲେକ ପୁଣ
ସିଅ ମୁକ୍ତ ଖୋଳି ସେତୁ କଲେକ ଯତନ ।
ତାଙ୍କ ପଛେ ଛେଦକାରମାନେ ଚଳିଗଲେ
କୂପ ବାମ୍ପୀ ଉଦ୍ୟାନ ସମସ୍ତେ ସଜକଲେ ।
ତାଙ୍କ ପଛେ ହଟାରି ବଜାରି ଗଲେ ଚଳି
ଦୁଇପାଶେ ବଜାର ଦେଲେ ସେ ଆବୋରି
ତହିଁ ପଛେ ବାଦ୍ୟକାରମାନେ ଚଳିଗଲେ
ନିଶବଦ ହୋଇଗଲେ ଶବଦ ନ କଲେ ।
ରାବଣ ବୋଇଲା ସୈନ୍ୟ ଦଶଭାଗ କରି
ଦୁଇଭାଗ ସୈନ୍ୟ ଯେ ଅଯୋଧ୍ୟାକୁ ଚାଲି ।
ଶୁଣିଣ ହେ ମନ୍ତ୍ରୀବର ଦଶଭାଗ କଲା
ଦୁଇଭାଗ ସୈନ୍ୟ ସେ ସେଥିରୁ ଚାଳିଦେଲା ।
ପାଞ୍ଚଦିନେ ଲଟାକଟା ସରିଲାକ ପୁଣ
ଉଦ୍ୟାନ ଯେ କୂପ ବାମ୍ପୀ କଲେ ତିଆରଣ ।
ଦୁଇପାଖେ ବଜାର ମଧ୍ୟେ ହେଲା ବାଟ
ଅକଳନ ବଳ ଯେ ଅସୁରର ଥାଟ ।
ଆଠଗୋଟି ବାଦ୍ୟକାର ପ୍ରଥମରେ ଗଲେ
କୋଡ଼ିଏ ସହସ୍ରେ ଯେ କୁମର ପଛେ ଚଳେ
ଦୁଇଲକ୍ଷ ନାଣ୍ଡ ପୁଣି ରଥମାନ ଚଢ଼ି
ଦଶକୋଟି ସେନାପତି ସଙ୍ଗରେ ଯେ ଚଳି ।
ପଦାତି ବଳ ପୁଣ ଅକଳଣ ଗଲେ
ପାଞ୍ଚଦିନେ ଗଙ୍ଗାକୂଳେ ଯାଇଣ ମିଳିଲେ ।

ଏଥୁ ଅନନ୍ତରେ ଶୋ ଶୁଣ ଭଗବତୀ
ସ୍ୱର୍ଗର ଦେବତାମାନଙ୍କ ତଳକୁ ଦେଲେ ଦୃଷ୍ଟି
ନାରଦ କହିଲେ ଯାଇ ବ୍ରହ୍ମାଙ୍କ ପାଖେଣ
ଶତମୁଖା ରାବଣର ଅଲଙ୍କା ଗଡ଼ ଜାଣ ।
ପବନ ଦେବତାଠାରୁ ଅଟେ ସେ ବଳସ୍ୱାର
ପ୍ରଥମ ସମସ୍ତେ ସେ ସାଧିଲା ତିନପୁର ।
ସୁରଗଣ ରାଜାଗଣ ଧରି ଘେନିଗଲା
ପଦର ଯୁଗ ପରିଯନ୍ତେ ନେଇ ବନ୍ଦକଲା ।
ଶତେମୁଖା ରାବଣକୁ ଯାଇଁଣ କହିଲେ
ସୁରଗଣଙ୍କୁ ଛାଡ଼ି ବୋଲିଣ ବୋଇଲେ ।
ନୋହିଲେ ତୁ ଅଳ୍ପଦିନେ ହୋଇବୁରେ ନାଶ
ତୋତେ ମାରିବାକୁ ଜାତ ହେଲେ ପୀତବାସ
ବୈକୁଣ୍ଠ ନ ଜାଣ ତୁ ଅସୁରକୁଳ ମଣି
ତୋହର ପ୍ରାୟେ କେତେ ରାଜା ଗଲେ ପୁଣି
ବାସୁଦେବ ଦେବତା ଯେ ତାଙ୍କର ପୁଣ ଶାପୁ
ସେ ଜାଣିବେ ତୋହର ଜୀବନ ନୁହେ ଥପୁ
ଶୁଣିଣ ଶତେମୁଖା ରାବଣ କହିଲା
ତୁମ୍ଭ ବୋଲେ ଛାଡ଼ିଦେବ ବୋଲିଣ ବୋଇଲା
ଦେବତାଙ୍କୁ ଡ଼କାଇଣ ବୋଲେ ଲଙ୍କସାଇଁ
ସକଳ ଦେବତା ତୁମ୍ଭେ ଯାଅ ସ୍ୱର୍ଗ ଭୁଇଁ ।
ଯେତେବେଳେ ତୁମ୍ଭଙ୍କୁ ମୁଁ ଲୋଡ଼ିବଟି ପୁଣ
ତେତେବେଳେ ମୋର ପୁରେ ଆସିବ ବହନ
ମନାଇଣ ଦେବତାଙ୍କୁ ବେଗେ ଛାଡ଼ିଦେଲା
ସ୍ୱର୍ଗପୁର ଗୋଷ୍ଠା ସେ ମନରୁ ଇଚ୍ଛା କଲା ।
ତାରି ବୋଲେ ଦେବତାଏ ସ୍ୱର୍ଗପୁରେ ଗଲେ
ଅଛନ୍ତା ପୁରରେ ଯାଇ ପ୍ରବେଶ ହୋଇଲେ
କିଛିଦିନ ଅନ୍ତରରେ ଯେ ଦଶମୁଖା ପୁଣ
ଶତେମୁଖା ସଙ୍ଗରେ ଯୁଦ୍ଧକଲା ପୁଣ ।
ଯୁଗେ ପର୍ଯ୍ୟନ୍ତେ ତାରି ସଙ୍ଗେ ଯୁଦ୍ଧ କଲା
ହାଳପାରି ଆସି ସେ କଥା ବୁଝାଇଲା ।
ଦୁହିଁଙ୍କୁ ମଇତ୍ର କଲେ ଖଣ୍ଡଦର ସୁତ
ତେବେ ସନମାନ ଦେଲେ ସେ ଦଇତ ।
ସେଠାରୁ ଯେ ଦଶଗ୍ରୀବ ନିଜ ରାଜ୍ୟ ଗଲା
କିଛିଦିନ ଉତ୍ତାରେ ସେ ମନେ ବିଚାରିଲା ।
ଦେବତାଙ୍କ ସଙ୍ଗରେ କଲା ଯାଇ କଳି
ପାଦତଳେ ଖଟାଇଲା ଦେବଙ୍କୁ ନେଇକରି ।

ତୁମ୍ଭେ କହିବାରୁ ପୁଣି ଛାଡ଼ି ଯେତ୍ତୁ ଦେଲା
ସାତଖଣ୍ଡ ଯୁଗ ଯେ ଏଥିରେ ବହିଗଲା ।
ଦେବତାଏ ତୁମ୍ଭଙ୍କୁ କହିଲେ ଯାଉ ପୁଣ
ବାସୁଦେବ ଜାତ ତୁମ୍ଭେ କଲ ବରୁଣ ।
ଚତୁର୍ଦ୍ଧା ମୂରତି ରୂପେ ଜାତ ଦେବହରି
ଦଶଗ୍ରୀବ ସଙ୍ଗରେ ସେହ୍ନୁ ଯୁଦ୍ଧ କରି ।
ଦୁଇଭାଇ ଯୁଦ୍ଧରେ ଯେ କଲେ ତାକୁ କ୍ଷୀଣ
ନାଶି ତାର ଏକମୁଖା ମାୟା କଲା ପୁଣ ।
ଲକ୍ଷ୍ମଣ ସୁଷେଣ ହନୁମନ୍ତ ହରି ନେଲା
ସୁଡଙ୍ଗ ମଧରେ ନେଇ ବନ୍ଦ ତାଙ୍କୁ କଲା ।
ଶ୍ରୀରାମ ରହିଲେ ଏକା ଚିନ୍ତା ହେଲା ମନେ
ହନୁଠାରୁ ଭ୍ରତବାର ଶୁଣିଲକ କର୍ଣ୍ଣେ ।
ଲକ୍ଷେ ରାଜା ଘେନିଣ ସେ ଅଇଲା ବହନ
କିଷ୍କିନ୍ଧ୍ୟାରେ ପ୍ରବେଶ ହେଲେ ଦଶବନ ।
ସେଠାରୁ ମହୀରାବଣ ପୁଣ ଚଳଗଲା
ଦଶଗ୍ରୀବ ସଙ୍ଗରେ ଯାଇଣ ବସିଲା ।
ରାବଣର ଆଜ୍ଞାନେଇ ଅଲଙ୍କାକୁ ଗଲା
ଶତମୁଖା ରାବଣକୁ ସକଳ କହିଲା ।
ସେଠାରୁ ସେ ଏକମୁଖା ଫେରିକରି ଗଲା
ତାହାର ନିଜ ରାଜ୍ୟରେ ପ୍ରବେଶ ହୋଇଲା ।
ଦଶମୁଖା ଆଗେ କହି ନିଜ ରାଜ୍ୟେ ଯାଇ
ଶତମୁଖା ଅଯୋଧ୍ୟାକୁ କଲା କଟକାଇ ।
ଏକାଅଛି ଶତ୍ରୁଘନ କେହିନାହିଁ ସେଥି
ପାତ୍ରମନ୍ତ୍ରୀ ବଶିଷ୍ଠ ସଙ୍ଗରେ ଯାଇଛନ୍ତି ।
ଦେବତାଙ୍କ ପାଇଁ ସେ ଜନମ ହୋଇଲେ
ଅସୁରଙ୍କୁ ମାରିବାକୁ ପ୍ରତିଜ୍ଞା ସେ କଲେ ।
ଗୋଟିଗୋଟି ହେଲେ ଯେ ବୀର ଠାବରେ ପୁଣ
ମାୟା ଛନ୍ଦ ଦୈତ୍ୟମାନେ କରିଛନ୍ତି ଜାଣ ।
ଦେବବର ବୋଇଲେ ହେ କଥା ତହିଁ ଅଛି
ବୀର ରାବଣକୁ ଆମ୍ଭେ ମରାଇବା ବାଛି ।
ପଞ୍ଚକ ଭିତରେ ବୀର ରାବଣ ମରିବେ
ଅସୁର ବଳଙ୍କୁ ବାଛିକରି ନଶୋଧିବେ ।
ଆମ୍ଭେ ଯାଉଅଛୁଁ ସ୍ୱର୍ଗ ଶୁଣ ମୁନିବର
ତୁମ୍ଭେ ବେଗହୋଇ ଚଳ କପିଳାସ ପୁର ।
ଈଶ୍ୱରଙ୍କୁ ବୋଲିବ ହେ ଆମ୍ଭ କହିବାର
ବୋଲିବ ହେ ଦେବ ତୁମ୍ଭେ ଆସ ଧାଡବାର

ସକଳ ଦେବତାଙ୍କୁ ଘେନି ଦେବବର
ଅଯୋଧ୍ୟା ନଗ୍ରରେ ସଭା କରନ୍ତୁ ସକଳ ।
ତୁମ୍ଭେ ଗଲେ ବସୁର ସେ କରିବଟି ପୁଣ
ଦେବତାଙ୍କ ପାଇଁ ବାସୁଦେବ ହେଲେ ଜନ୍ମ
ପାଶୁପତ ତ୍ରିଶୂଳ ସଙ୍ଗତରେ ନେବ
ଅକ୍ଷୟ ତୋଣକୁ ପୁଣି ସଙ୍ଗତେ ଆଣିବ ।
ବଜ୍ର ଯେ ବଭୂତି ଦେବ ନେବ ସଙ୍ଗରେ
ଶତମୁଖା ରାବଣ ବଳୟୁ ଅଯୋଧ୍ୟାରେ ।
ବାସୁଦେବ ଶଙ୍ଖ ଜନ୍ମ ଶତ୍ରୁଘନ ରୂପେ
ଏତେକହି ସ୍ୱବଶୀବ ଘେନି ଆସ ବେଗେ ।
ଶୁଣିଣ ନାରଦ ମୁନି ବେଗେ ଚଳିଗଲେ
କପିଳାସ କନ୍ଦରେ ପ୍ରବେଶ ଯାଇ ହେଲେ ।
ଏଥୁ ଅନନ୍ତରେ କଥା ଶୁଣ ଶାକମ୍ବରୀ
ହଂସ ଯେ ବାହନକୁ ଚଢ଼ି କୁଶଧାରୀ ।
ଯଶୋବନ୍ତୀ ପୁରୁଷ ବଇଜୟେ କରିଗଲେ
ଦେବଙ୍କ ପୁରେ ଯାଇ ପ୍ରବେଶ ହୋଇଲେ ।
ଭଇରବୀ ଦେବୀ ଆସି ଦରଶନ କଲେ
କରଯୋଡ଼ି ପାଦ୍ୟେ ପଡ଼ି ଚରଣେ ଶୋଇଲେ ।
ଦେବବର ବୋଲେ ମାଏ ଆମ୍ଭଠାରୁ ଶୁଣ
ଅସୁର ମାରିବା ପାଇଁ ବାସୁଦେବ ଜନ୍ମ ।
ଆମ୍ଭର ସକାଶେ ପୁଣ ଦେବ ନାରାୟଣ
ମାନବ ରୂପରେ ଦେବ ହୋଇଲେ ଜନମ ।
ବସ୍ୟାହ୍ମ ପୁରୁଷ ସେ ଅଟନ୍ତି ଦେବହରି
ମରିବା ଲୋକକୁ ଜିଆଇ ଦଇତାରି ।
ବାଆନେ କୋଟି ପିଶାଚୁଣି ସଙ୍ଗେ ଘେନି ପୁଣ
ଅଯୋଧ୍ୟା ପୁରକୁ ତୁମ୍ଭେ ଚଳ ବେଗେ ପୁଣ
ଦକ୍ଷିଣ ପାଶେ ଅଛି ପର୍ବତ ସୁନାଗିରି ।
ସେଥିର ଉପରେ ତୁମ୍ଭେ ବିଶ୍ରାମ ଯାଇ କର
ଶତମୁଖା ରାବଣ ଯେ କରିବ ସମର
ଅକଳନ୍ତ ଯୁଦ୍ଧ ହେବ ଅଯୋଧ୍ୟା ନଗର ।
ଅସୁର ଭକ୍ଷିବ ତୁମ୍ଭେ ରଣରେ ଯାଇଣ
ମାନବ ସୈନ୍ୟଙ୍କୁ ତୁମ୍ଭେ ନ ଭକ୍ଷିବ ଜାଣ ।
ଛିଡ଼ିଥିବା ଗଣ୍ଡି ମୁଣ୍ଡ ଯୋଡ଼ି ତୁମ୍ଭେ ଦେବ
ଢଳିଥିବା ମନୁଷ୍ୟଙ୍କୁ ସଳଖି ଉଠିବ ।
ଅସୁରଙ୍କୁ ନିଶୋଧନ କରିଣ ଖାଇବ
ବ୍ୟୋମମାର୍ଗେ ରହିଣ ଯୁଦ୍ଧ ଦେଖୁଥିବ ।

ସେଠାରୁ ସେ ପର୍ବତରେ ଯାଇଣ ରହିବ
ରଙ୍କିଣୀ ହୋଇଲେ ରଣ ଭୂଇଁକି ଆସିବ ।
ପାଞ୍ଚଦିନ ଅଯୋଧ୍ୟାରେ ଯୁଝିବ ଅସୁର
ଛଅଦିନେ ପଳାଇବ ନିଜ ରାଜ୍ୟ ତାର ।
ତହିଁ ପଛେ ରଥ ଚଢ଼ି ଶତ୍ରୁଘନ ଯିବ
ବତିଶ ଯଉଣୀ ବଳ ରଥରେ ବସାଇବ ।
ଅଲଙ୍କା ଗଡ଼ରେ ଯୁଦ୍ଧ ହେବ ତିନିଦିନ
ତେବେ ଯୁଦ୍ଧ ନାଶ ତାର ହେବ ନିଶୋଧନ ।
ଅଯୋଧ୍ୟାରୁ ସଙ୍ଗେ ତାର ଅଲଙ୍କାପୁର ଯିବ
ଅସୁରଙ୍କୁ ଭକ୍ଷି ମାନବଙ୍କୁ ସଳଖିବ ।
ଆଠଦିନ ପୂରିଲେ ଯେ ଶତମୁଖା ପୁଣ
ସେଠାରୁ ସେ ପଳାଇବ ଲଙ୍କାଗଡ଼େ ଜାଣ ।
ଅଲଙ୍କାଗଡ଼ରୁ ତୁମ୍ଭେ ଲଙ୍କା ଯାଏ ଯିବ
ରାମ ରାବଣ ଯୁଦ୍ଧ ସେଠାରେ ଦେଖିବ ।
ରାମାୟଣ ଯୁଦ୍ଧ ଦେଖି ଖଣ୍ଡିବ ପାତକ
ବାସେଳି ସଙ୍ଗରେ ହୋଇବ ସେ ଭେଟ ।
ଚଉଷଠି ଯୋଗିନୀ ଘେନି ଅଛି ସେ ସେଠାରେ
ଅସୁରଙ୍କୁ ଭକ୍ଷି ସଳଖ କପିଙ୍କୁ କରେ ।
ସେଠାରେ କପିଙ୍କୁ ଜୀବନ ଦିଏ ଶୁକମନ୍ତ୍ରୀ
ମାନବଙ୍କୁ ଜୀବନେ ବଞ୍ଚାଅ ବୃହସ୍ପତି ।
ଏହା ଶୁଣି ଭଇରବୀ ବେଗେ ଚଳିଗଲେ
କନକ ପର୍ବତେ ଯାଇ ପ୍ରବେଶ ହୋଇଲେ
ବାଉନ କୋଟି ପିଶାଚୁଣୀ ସଙ୍ଗତରେ ଘେନି
କନକ ଗିରିରେ ଦେଖି ରହେ ଯାଇ ପୁଣି ।
ସେଠାରୁ କୁଶଧର ବେଗେ ଚଳିଗଲେ
ସୁଧର୍ମା ସଭାରେ ଯାଇ ପ୍ରବେଶ ହୋଇଲେ ।
ତେତିଶ କୋଟି ଦେବତା ହୋଇଛନ୍ତି ଛୁଣ୍ଡ
ଦେବବର ବୋଇଲେ ବସ୍ତୁର ବେଗେଖଣ୍ଡ ।
ଶତମୁଖା ରାବଣ ଅଯୋଧ୍ୟାପୁର ଗଲା
ରାମ ଭାଇ ଶତ୍ରୁଘନ ଏକା ଅଛି ପରା ।
ଆମ୍ଭେ ଚଳ ଅଯୋଧ୍ୟାକୁ ସର୍ବେ ଯିବା ପୁଣ
ବୁଝାଇ କହିବା ଆମ୍ଭେ ରାମ ଭାଇକି ଜାଣ ।
ଏତେବୋଲି ଖରଧାରେ ମନ୍ତ୍ରୀଙ୍କୁ ଡାକିଲେ
ସୁଧର୍ମା ସଭାକୁ ମୁଣ୍ଡେ ବହିରେ ବୋଇଲେ ।
ତତକ୍ଷଣ ମନ୍ତ୍ରୀଙ୍କ ରାଜା ମଥାରେ ବହିଲେ
ଅଯୋଧ୍ୟା ନଗରେ ଯାଇ ପ୍ରବେଶ ହୋଇଲେ

ରଜନୀ ଯେ ହୋଇଅଛି ବେନି ଘଡ଼ି ପୁଣ
ଚନ୍ଦ୍ର ସୂର୍ଯ୍ୟ ଅଛନ୍ତି ଯେ ସଙ୍ଗତରେ ପୁଣ ।
ସ୍ୱପନରେ ଉଇଁଲା ଖରା ରବଙ୍କର ହାସ
ଅଯୋଧ୍ୟା ନଗ୍ରଲୋକ ପାଇଲେ ମନେ ତ୍ରାସ ।
ଶତ୍ରୁଘନ ଆଗେ ରଘୁର ବାରତା କହିଲ
ରଜନୀରେ ତୁମ୍ଭ ନଗ୍ରେ ଖରା ଉଦେ ପରା ।
ଶତ୍ରୁଘନ ବିଚାରିଲେ ଦେବତା ବିଜେକଲେ
କଶ୍ୟପ ନନ୍ଦନ ମୋ ପୁରକୁ ଅଇଲେ ।
ମନ୍ତ୍ରୀର ପୁଅକୁ ସେ ଡ଼ାକେ ବେଗ କରି
ଅର୍ଘ୍ୟସ୍ଥାଳ ଅଣାଅ ଯେ ଦେବ ବିଜେକରି ।
ଏମନ୍ତ ସମୟେ ରଘୁ ପୁଣ ଜଣାଇଲା
ସୁରଗଣ ଘେନି ବ୍ରହ୍ମା ତୁମପୁରେ ବିଜେକଲା
ଶୁଣିଣ ଶତ୍ରୁଘନ ବେଗେ ଗଲା ଚଳି
ମନ୍ଦନାମ ଗିରିପରେ ଦେବଛନ୍ତି ମିଳି ।
ଦେବତାଙ୍କୁ ଦେଖି ରାମଭାଇ ଓଳଗିଲେ
କରଯୋଡ଼ି ଦେବଙ୍କର ଆଗେ ଉଭାହେଲେ ।
ବିଧାତା ବୋଇଲେ ଦେବ ଶତ୍ରୁଘନ ପୁଣ
ଶତମୁଖା ରାବଣ ଯେ ତୋର ପୁରେ ପୁଣ
ଥାଟ ସାଜ ଆସୁଅଛି ସେ କରିବ ରଣ
ତୁମ୍ଭ ଭାଇ ସଙ୍ଗେ ଯୁଦ୍ଧେ ଲଙ୍କାର ରାବଣ ।
ଆର ଭାଇ ତୋର କନିଷ୍ଠ ଭ୍ୟା ପାଇଲା
ଲକ୍ଷ୍ମଣକୁ ଏକମୁଖା ରାବଣ ହରିନେଲା ।
ସୁଲଙ୍କା ଗଡ଼ରେ ବନ୍ଦ କରିଅଛି ପୁଣ
ତୋତେ ମାରିବାକୁ ଶତମୁଖା ଆଗମନ ।
ଆଜ ନିଶିରେ ସେ ଗଙ୍ଗାକୂଳରେ ରହିଲାପୁଣି
ନବଲକ୍ଷ ନାତି ତାର ଶୁଣ ହେ ସାରମଣି ।
ଲକ୍ଷେ କୁମର ତାର ଶୁଣ ହେ ସୈନ୍ୟବଳ
ବତିଶ କୋଟି ଅଛନ୍ତି ବାଦ୍ୟକାର ତାର ।
ବାଅଷଠି କୋଟି ତାର ପଦାତି ଯେ ବଳ
ବୟାଳିଶ କୋଟି ତାର ସେନାପତି ଠୂଳ ।
ଏତେସୈନ୍ୟ ଅଙ୍ଗବଳ ଘେନିଣ ଅଇଲା
ଏହି ରଜନୀ ତୋ ପୁର ଘୋଟିବ ବୋଇଲା ।
ଏହାଦେଖି ମୋର ପୁରେ ନାରଦ ଯେ ଗଲେ
ସକଳ ବାରତା ଯାଇ ମୋଠାରେ କହିଲେ
ଶୁଣିକରି ଦେବଗଣ ଘେନିଣ ଅଇଲି
ତୋତେ ଚେତାକରିବାକୁ ମନରେ ବିଚାରିଲେ

ତୁମ୍ଭେ ବୃକ୍ଷଭର ଅଟ ଦେବଙ୍କ ଉପକାରୀ
ଶ୍ରୀରାମଚନ୍ଦ୍ର ଅଟନ୍ତି ନଷ୍ଟେ ଚକ୍ରଧାରୀ ।
ଅସୁର ମାରିବା ପାଇଁ ହୋଇଛନ୍ତି ଜାତ
ଦେବତାମାନଙ୍କର ଅଟନ୍ତି ସେହୁ ନାଥ ।
ତୋ ହସ୍ତେ ଶତମୁଖା ହୋଇବ ଶରଣ
ଅସୁର ମଲେ ଦେବଙ୍କୁ ବହୁତ କାରଣ ।
ଏତେ କହି ବେଦବର ଶତ୍ରୁଘନ ଧରି
ଶିର ଆଉଁଷିଣ ଯେ ଅଭୟ କରି ।
ବୋଇଲେ କେଉଁ କଥାକୁ ଚିନ୍ତା ନ କରିବୁ
ନିର୍ଭୟ ହୋଇ ତୁ ଯୁଦ୍ଧ ଆରମ୍ଭିବୁ ।
ଏତେବୋଲି ବ୍ରହ୍ମଶର ସମର୍ପିଲେ ନେଇ
ବ୍ରହ୍ମଶକ୍ତି ବ୍ରହ୍ମଚର୍ଯ୍ୟ ସମର୍ପିଣ ଦେଇ ।
ଶସ୍ତ୍ରମାନଙ୍କର ମନ୍ତ୍ର ତାଙ୍କୁ ଶିଖାଇଲେ
କୋଟିଏ ସିଂହର ବଳ ତାଙ୍କୁ ନେଇ ଦେଲେ
ସରସ୍ୱତୀ ସୁମରଣା କଲେ ବେଦବର
ତତକ୍ଷଣେ ବୁଦ୍ଧିମାତା ମିଳିଲେ ସୁମୁଖ ।
ବିଧାତା ବୋଇଲେ ତୁମ୍ଭେ ମୋର କଥା ଶୁଣ
ଶତ୍ରୁଘନ ହୃଦୟରେ ବିଜେକରି ପୁଣ ।
ଯୁଦ୍ଧସାରି ଅଯୋଧ୍ୟାକୁ ଆସିବା ପର୍ଯ୍ୟନ୍ତେ
ଏହା ଶରୀରରେ ଥିବୁ କହୁଅଛି ତୋତେ ।
ଶୁଣିକରି ସରସ୍ୱତୀ ବେଗେ ଚଳିଗଲେ
ଶତ୍ରୁଘନ ହୃଦୟରେ ଯାଇ ବିଜେ କଲେ ।
ବୁଦ୍ଧି ବଳ ପରାକ୍ରମ ଦେଲେ ସେ ବହୁତ
ଶତ୍ରୁଘନ ବଢୁରଇ ଜ କରେ ଦଇତ ।
ଗୋଟିଏ ଲେଖାଏଁ କଳା ଦେବତାଏ ଦେଲେ
ଶତ୍ରୁଘନ ଦେହରେ ନେଇଣ ଠୁଳକଲେ ।
ତେତିଶ କୋଟି ସିଂହ ପ୍ରାକର୍ମ ବହିଲା
ଜମ୍ବୁଦ୍ୱୀପ ଉପାଡ଼ି ନେବାକୁ ବଲ୍ଗିଲା ।
ସବୁ ଦେବତାଏ ପୁଣ ଦେଲେ ଯେ ସହସ୍ର
ମନଭେଦ ଶର ଦେଲେ ଅଗ୍ନିଦେବ ଜାତ ।
ମୋହଶର ଗୋଟି ଦେଲେ ବରୁଣ ଦେବତା
କାଳ ଯେ ଜଳୁଷୀ ଦେଲେ ଯମଦେବତା ।
ମହାକାଳ ଶର ଦେଲେ କେତୁ ଦିଗପାଳ
ବାବଲ ଶରକୁ ଦେଲେ ମଙ୍ଗଳ ସେଠାରେ ।
କୁବେର ଶରକୁ କୁବେର ବେଗେ ଦେଲେ
ନଳ ଆଣି ବହୁମୁଖି ଶର ସମର୍ପିଲେ ।

ସାରସ୍ୱତ ମନ୍ତ୍ର ଯେ ଜପିଲେ ଦେବଗୁରୁ
ଶତ୍ରୁଘନ ହୃଦେ ସେ ଦେଲେ ମହାମେରୁ ।
ସକଳ ଦେବତା ଶସ୍ତ୍ର ଯେ ଯାହାର ଦେଲେ
ଶତ୍ରୁଘନ ବୀରକୁ ଯେ ବୁଝାଇ କହିଲେ ।
ଇନ୍ଦ୍ର ଆଣିଦେଲେ ରଥ ଆସୁର ଦଳନ
ଯେଉଁ ରଥେ ବସିଥିଲେ କ୍ଷୁଧା ନାହିଁ ପୁଣ ।
ଯେଉଁ ରଥେ ବସିଥିଲେ କ୍ଷୁଧା ତୃଷା ନାହିଁ ।
ଯେଉଁ ରଥେ ବସିଥିଲେ ଶୋକ ଯାତନା ନାହିଁ
ଯେଉଁ ରଥେ ବସିଥିଲେ ଚିନ୍ତା ନୁହେଁ ପୁଣ
ଯେଉଁ ରଥେ ବସିଥିଲେ ଚଳେ ଘନ ଘନ ।
ଯେଉଁ ରଥେ ବସିଥିଲେ ପୁର ଜିଣିପାରେ
ଯେଉଁ ରଥେ ବସିଥିଲେ ରଣେ ସର୍ବେ ହାରେ
ମନେ ବିଚାରିଲେ ରଥ କରଇ ଗମନ
ଅସୁରଙ୍କୁ ଦଳଇ ଦଳଇ ଦେବ ପୁଣ ।
ଅକାଶ ହଟଇ ଯେ ବହୁତ ପ୍ରକାଶ
ତିନପୁରଯାକ ରଥେ ହୋଇଲେ ପ୍ରବେଶ ।
ଚଉଦ ଭୁବନ ଯେ ସପତ ଦ୍ୱୀପ ଯେତେ
ସେ ରଥେ ବସିଲେ ଯେ ଲୁଚିବେ ସମସ୍ତେ ।
ପ୍ରଳୟ କାଳରେ ସେ ରଥେ ବିଧାତା
ତିନପୁର ଘେନ ରଥ ପାତାଳ ଗମନ୍ତା ।
ଜ୍ୟୋତି ପୁରେ ଯାଇ ହୁଏ ପରବେଶ
ଅଠର ମନୁ ପରିଯନ୍ତେ ସେଠାରେ କରେବାସ
ଅଠର ମନୁ ଅନ୍ତେ ପ୍ରଳୟ ପୁଣ ଯାଇ
ଯେ ଯାହାର ସ୍ଥାନରେ ରଖେ ପୁଣ ନେଇ ।
ସେହିଠାରୁ ସଂସାର ହୁଅଇ ପୁଣ ଜାତ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନପୁରେ ସାରସ୍ୱତ ।
ଚଉଦ ଭୁବନ କରି ବାଣ୍ଟଇ ପୃଥ୍ୱୀ ବନ୍ଧି
ନବଖଣ୍ଡ ମେଦିନୀ ଯେ ସେଠାରୁ ହୋଇ ।
ମେରୁଗିରି ପର୍ବତେ ରହନ୍ତି ଯେଖାସ୍ଥାନେ
ସପ୍ତସାଗର ବନ୍ଧି କରଇ ଯତନେ ।
ସପ୍ତସାଗରେ ପୁଣ ସପ୍ତଦ୍ୱୀପ କରି
ଏମନ୍ତ ପ୍ରକାରେ କଥା ଶୁଣ ଗୋ ଗନ୍ଧରୀ ।
ପାର୍ବତୀ ବୋଇଲେ ହେ କି କଲ ଦେବପୁଣ
ଈଶ୍ୱର ବୋଇଲେ ମେଳ ହୋଇଲେଦେବଗଣ
ଦେବକୂଟ କଟଣ ଶତ୍ରୁଘନଙ୍କୁ ଶସ୍ତ୍ରଦେଲେ
ତେତିଶକୋଟିସିଂହାସନତାଦେହରେଥୋଇଲେ

ଅସୁର ଦଳନ ରଥ ଦେଲେ ନେଇ କରି
ସେ ରଥରେ ସର୍ବ ଶୁଭ ଶୁଣ ଗୋ ଗଉରୀ ।
ବିଧାତା ବୋଇଲେ ତୁମ୍ଭେ ଶତ୍ରୁଘନ ଶୁଣ
ଏ ରଥେ ସାରଥି ତୋର ମାତା ହେବ ଜାଣ
କାଶୀରାଜା ଦୋହିତା ଅଟେ ମାଳାବତୀ
ସେହି ତୋର ସାଙ୍ଗରେ ହୋଇବ ସାରଥି ।
ଯେତେବେଳେ ଶତମୁଖା ଜନମ ହୋଇଲା
ବିଷ୍ଣୁ ଶଙ୍ଖ ହସ୍ତେ ମୃତ୍ୟୁ କପାଳେ ଲେଖାହେଲା
ଚତୁର୍ଦ୍ଧା ରୂପରେ ବାସୁଦେବ ଜାତ
ଶ୍ରୀରାମ ଅଟେ ନାରାୟଣ ଶୁଣ ଭୂ କଥିତ ।
ଭାଇ ଲକ୍ଷ୍ମଣ ତୁମ୍ଭର ଅନନ୍ତ ମୂରତି
ସୁଦର୍ଶନ ଚକ୍ର ଅଟେ ଭରତ ଜନ୍ମ ଗୋଟି ।
ଡାହାଣ ବଳୟକ ଶଙ୍ଖ ଜନ୍ମ ତୋର ପୁଣ
ଏଥି ସକାଶେ ଆମ୍ଭେ ଆୟୁଧ ଦେଲୁ ଜାଣ ।
ତୋହର ହସ୍ତେ ମରିବ ଅଳଙ୍କଗଡ଼ ରଜା
ପବନ ଦେବତାଙ୍କୁ ଆଦ୍ୟେକଲା ପୂଜା ।
ତପେ ମନାଇବାରୁ ବର ତାଙ୍କୁ ଦେଲା
ତିନପୁର ଜିଣିବୁ ବୋଲିଣ ବୋଇଲା ।
ଅକ୍ଷୟ ବର ଦେଲେ ପବନ ଦେବତା
କାହାରି ହସ୍ତରେ ନ ମରିବୁ ତୁରେ ପୁତା ।
ଏକ କଥାଏ ତୁରେ ଜାଣିଥିବୁ ପୁଣ
ବିଷ୍ଣୁର ଆୟୁଧ ତୋତେ ମାରିବ ନିଶ୍ଚେ ଜାଣ
ଡାହାଣା ବଳୟକ ଶଙ୍ଖ ମାନବ ଜନ୍ମ ହେବ
ବାସୁଦେବ ଜାତ ସେ ମର୍ତ୍ତ୍ୟରେ ହୋଇବ ।
ଅନନ୍ତଙ୍କୁ ସଙ୍ଗେ ଧରି ହୋଇବେ ଜନମ
ଶଙ୍ଖ ଚକ୍ର ଗୁଡ଼ିବେ ଯେତେବେଳେ ନାରାୟଣ
ତାଙ୍କସଙ୍ଗେ ଜାତ ହେବ ଆୟୁଧ ଦୁଇଗୋଟି
ଚତୁର୍ଦ୍ଧା ମୂର୍ତ୍ତି ହେବେ ଆଜ ପ୍ରଭୁ ସେଠି ।
ଅସୁର ମାରିବାରୁ ହେବ ଉତପନ୍ନ
ଅସୁର ମାରି ଦେବ ଯିବେ ନିଜସ୍ଥାନ ।
ଯେତେବେଳେ ତୋତେ ହୋଇବ ମରଣ
ଏତେ କହି ପବନ ଯାନ ଦେଲେ ପୁଣ ।
ଅଦ୍ଭୁତ ବିମାନ ଅଟେ ତାଙ୍କର ଯେ ଜାଣ
ସେ ରଥରେ ବସିଥିଲେ ନଭୁଟେ କିଛି ପୁଣ
ଜଳ ପବନ ଅଗ୍ନି ଯେ ଅଟେ ପୃଥ୍ୱୀ
ସେ ରଥେ ବସିଲେ ନ ଲାଗେ ଗାରମଣି ।

ଏତେ କହି ପବନ ଦେବ ଯେ ବୋଇଲେ
ଅଗ୍ନିରୁ କାଢ଼ିବୁ ରଥ ଯୁଦ୍ଧକୁ ମନ କଲେ ।
ଜମ୍ବୁଦ୍ୱୀପ ମଣ୍ଡଳେ ଭରତ ଖଣ୍ଡରେ
ଉତ୍କଳ ଦେଶରେ ଐଶାନ୍ୟ ଭାଗରେ ।
ସୂର୍ଯ୍ୟନାମେ ତୀର୍ଥ ଯେ ଅର୍କ ବଟ ତହିଁ
ସେହି ସ୍ଥାନେ ହୋମ କରିବୁରେ ଯାଇଁ ।
ସାରସ୍ୱତ ମନ୍ତ୍ର ଯେ ତାକୁ ଶିଖାଇଲେ
ସାମବେଦ ଗୋଟି ତୁ ସାଧରେ ବୋଇଲେ ।
ସାମବେଦ ପଢ଼ିଲେ ବାହାର ହେବ ଯାନ
ତକ୍ଷଣେ ଅଗ୍ନିରୁ ହେବ ଉତପନ୍ନ ।
ଏତେ ବାତେ ପବନ ଦେବତା କହି
ଯାହାକୁ ମାରିବୁ ତୋର ନାମେ ଉପୁଯାସ୍ତୀ ।
ତାହାକୁ ଜିଣିଲେ ରଥ ହଜିବ ଯେ ପୁଣ
ଆରବେଳେ ଏହିରୂପେ କରିବୁ ନର୍ଗୁଣ ।
ଏତେକହି ପବନ ଯେ ନିଜ ସ୍ଥାନେ ଗଲେ
ଦେବପତି ରଥ ସେ ହୋମରୁ ଜାତ କଲେ ।
ଦେବତାଗଣମାନଙ୍କୁ ଜିଣିଲ ସେ ବଳେ
ପାବତଳେ ଖଟାଇଲା ନେଇ ସୁରବଳେ ।
ପନ୍ଦର ଯୁଗ ଅନ୍ତେ ପବନ କହିଲା
ପବନ ବୋଲରେ ସେ ଦେବଙ୍କୁ ଛାଡ଼ିଦେଲା
ଆରବେଳେ ହୋମ କରି କାଢ଼ିଲା ସେ ଯାନ
ମଣିପୁର ରାଜାଙ୍କୁ ଜିଣେ ସର୍ବେ ପୁଣ ।
ରାଜାମାନଙ୍କର ଦୁହିତା ସେ ଆଣିଲା
ସାତ ଲକ୍ଷ ଦୁହିତା ନିଜ ରାଜ୍ୟ ନେଲା ।
ସେ କନ୍ୟାମାନଙ୍କୁ ପୁଣ ଦେଲା ସେହୁ ବର
ଅସୁରମାନଙ୍କ ଦୁହିତାଙ୍କୁ ଦେଖି ଶୋଭା ।
ସାତଲକ୍ଷ କନ୍ୟା ସେଥିରୁ ବଶ ହେଲା
ଚଉଦ ଲକ୍ଷ ଭାରିଯା ସେହୁ ପୁଣ କଲା ।
ବାରଗୋଟି ସେଥିରୁ ଅଟନ୍ତି ଜ୍ୟେଷ୍ଠ ରାଣୀ
ସେ ରାଣି ମାନଙ୍କ ନାମ ଶୁଣ କର୍ଣ୍ଣ ଘେନ ।
ପ୍ରଥମରେ ଶରଚନ୍ଦ୍ରବୁଦ୍ଧି ଦ୍ୱିତୀୟରେ କୋନ୍ତମେନା।
ତୃତୀୟେ ଯେ ଏକା ଗୋ ଚତୁର୍ଥେ ଅବଳା ।
ପଞ୍ଚମରେ ମାଳଶ୍ରୀ ଷଷ୍ଠରେ ହିରାବଳୀ
ସପ୍ତମରେ ଗଗରକା ନାମରେ ଅଟେ ବାଳୀ
ଏ ସପ୍ତ କନ୍ୟା ଅଟେ ଅସୁର ଦୁଲଣ
ଏହାଙ୍କ ତଳେ ସାତଲକ୍ଷ ଅସୁରୁଣୀ ଦାସୀ ।

ମାଳାବତୀ କଳାବତୀ ପଦ୍ମାବତୀ ଜାଣ
ଚନ୍ଦ୍ରାବତୀ ତରୁବତୀ ଦେବବତୀ ଯେ ତରଣ ।
ଗଙ୍ଗାବତୀ ସଙ୍ଗରେ ଅଟେ ସାରସ୍ୱତୀ
ଯାଙ୍କ ତଳେ ସାତଲକ୍ଷ ଅଟନ୍ତି ଯୁବତୀ ।
ଏମାନେ ଅଟନ୍ତି ସର୍ବେ ରାଜାଙ୍କ ଦୁହିତା
ଏ ରୂପେ ପ୍ରତାପି ଅଟେ ଜଇନ୍ଦ୍ରାର ସୁତା ।
ଏମାନଙ୍କ ଠାରୁ ଜାତ ଲକ୍ଷେ ଯେ କୁମର
ଲକ୍ଷେ କୁମରରୁ ଜାତ ନବ ଲକ୍ଷ ବୀର ।
ସହସ୍ରେ ବଣତା ଅଟେ ଗୋଟାକ ସୁତରେ
ନାତି ଗୋଟିକରେ ଶତକନ୍ୟା ବଶକରେ ।
ଏହିରୂପେ ଅଠାଇଶ ଗଣ୍ଡା ଯୁଗ ଗଲା
ଦଶର୍ବା ନନ୍ଦନ ତାର ସଙ୍ଗେ ଯୁଦ୍ଧ କଲା ।
ଯୁଗେ ପରିଯନ୍ତେ ସେ କଲାକ ସମର
ଜିଣି ନ ପାରିଲା ତାକୁ ଦଶର୍ବାର ବାଳା
ହାରିକରି ତାର ସଙ୍ଗେ ମଇତ୍ର ହୋଇଲା
ସେଠାବରରୁ ଫେରି ସେ ନିଜ ରାଜ୍ୟ ଗଲା
ଏବେ କୁମ୍ଭ ଭାଉଜକୁ ହ୍ରେରିକରି ନେଲା
ସକଳ ସମ୍ପଦ ତାର ରାମ ନାଶ କଲା ।
ନ ପାରିଣ ବକଳ ହୋଇଲା ଦଶଗ୍ରୀବ
ଏକମୁଖା ମିଳଣ ଯେ କଲା ସଦଭାବ ।
ବୃତ୍ରଠାବ କରି ସେ ଯେ ମାରିବ ବୋଇଲା
ଅଜାକୁ କହି ମହୀରାବଣ ଚଳିଗଲା ।
ଶତମୁଖା ରାବଣକୁ କହିଲା ସକଳ
ଅଯୋଧ୍ୟକୁ ଯାଇ ନାଶକର ଶ୍ରୀରାମର ବଳ ।
ଭରତ ଶତ୍ରୁଘନ ଯେ ଅଛନ୍ତି ସେଠାରେ
ଦୁଇ ଭାଇଙ୍କୁ ତୁ ମାର ମଇଦ ଛଳରେ ।
ତାହା ଶୁଣି ଶତମୁଖା ସନମତ କଲା
ଅର୍କତୀର୍ଥେ ଯାଇ ହୋମ କରିଣ ବସିଲା ।
ଅକ୍ଷୟ ଅତୁଟ ଯାନ କାଢ଼ିଲା ଅଗ୍ନିରୁ
ସୈନ୍ୟଘେନ ବାହାର ସେ ନିଜ ରାଜ୍ୟରୁ ।
ସିନ୍ଧୁର ଉତ୍ତରକୂଳେ ଅଲଙ୍କାନାମେ ପୁରୀ
ସେଠାରେ ସର୍ବ ସୈନ୍ୟକଲା ଯେଯେ ମେଳ
ସେହିଠାରେ କଟାକାଟି ତୋର ପରେ ହୋଧ
ଦଶଭାଗ କରିଣ ସେ ସଇନ କଲା ବୋଧ ।
ଦୁଇଭାଗ ସଇନ ଗଙ୍ଗାକୂଳେ ଛନ୍ତି
ପୁତ୍ରନାତି ତାଙ୍କର ସଙ୍ଗରେ ଅଛନ୍ତି ।

ଏହାଶୁଣି ଶତ୍ରୁଘନ ବୋଇଲେକ ପୁଣି
ମୋତେ ଯେବେ ସୁଦୃଷ୍ଟି କଲ କୃପାପାଣି ।
କୋଟିଏଲେଖାଏଁ ଦଳ ସୈନ୍ୟକୁ ମୋରଦିଅ
ତେତିଶ କୋଟି ଦେବଙ୍କୁ ଏଣିକ ମୋର ପ୍ରିୟ
ଶୁଣିଣ ଦେବତାଏ ସମ୍ମତ କଲେ
ପଦାତି ଗୋଟିକେ କୋଟି ସିଂହ ବଳ ଦେଲେ
ସେନାପତି ଗୋଟିକେ ଦଶକୋଟି ସିଂହରବଳ
ସନ୍ତୋଷେ ଦେବତାଏ ଦେଲେ ସେ ସକଳ
ଶତ୍ରୁଘନ ବୋଇଲେ ମୋ ଜନମାକୁ କହ
ମୁହିଁ କହିବାର ତ ନୁହେଁ ହାଦେ ପ୍ରିୟ ।
ଶୁଣିଣ ଦଇବ ଯେ ବୋଲେ ବେଗେ ଆଣ
ତାହାଶୁଣି ଶତ୍ରୁଘନ ଗଲେକ ବହନ ।
ମାତାଗଣଙ୍କର ପାଶେ ପ୍ରବେଶ ସେ ହେଲେ
ଦେବତା ଦଇବ ବଚନ ବୋଲଣ ବୋଇଲେ
ଶୁଣିକରି ମାତାଗଣ ବେଗେ ସେ ଅଇଲେ
ବିଧାତାର ଚରଣେ ଓଳଗି ବେଗେ ହେଲେ
ବିଧାତା ବୋଇଲେ ଶୁଣରେ ରାମ ଆଈ
ଶ୍ରୀରାମର ଜାନକୀକୁ ରାବଣ ନେଲାଇ ।
ତାର ସଙ୍ଗେ ଯୁଦ୍ଧ କରନ୍ତି ତୋର ବଳା
ଅସୁର ବଡ ପ୍ରତାପୀ ଅଟେ ଅନର୍ଗଳା ।
ତାହାର ମଇଁ ଶତମୁଖା ଯେ ରାବଣ
ଶତମୁଖାକୁ କହିଲା ଝଣ୍ଟବା ନନ୍ଦନ ।
ଅଯୋଧ୍ୟାରେ ଭରତ ଶତ୍ରୁଘନ ଯେ ଅଛନ୍ତି
ତାହାଙ୍କର ସଙ୍ଗେ ରଣ କରିବେ ଯାଇ ଧାତି
ଶୁଣିଣ ଶତମୁଖା ସୈନ୍ୟବଳ ଘେନି
ଭୁମ୍ବର ପୁରକୁ ସେ ଅଇଲା ବେଗେ ପୁଣି ।
ଗଙ୍ଗାର କୂଳରେ ସେ ଆସିଣ ଅଛନ୍ତି
ଏ ବାରତା କହିବାକୁ ଅଇଲୁ ଆମ୍ଭେ ଏଥି
ଆଜ ରଜନୀରେ ଭୁମ୍ବ ପୁର ସେ ଘେରିବ
ଏହା ଦେଖିଣ ଆମ୍ଭେ ଅଇଲୁ ଯେ ବେଗ ।
ସକଳ ଦେବତାଙ୍କୁ ସଙ୍ଗରେ ଧରି ପୁଣ
ତୋର ପୁଅକୁ ଆୟୁଧ ଦେଲୁ ଗୋ ବେଗପୁଣ
ପାତ୍ର ମନ୍ତ୍ରୀ ସହିତେ ସମସ୍ତେ ଗଲେ ପୁଣ
ଏକା ହୋଇ ନନ୍ଦନ ଅଛି ତୋର ଜାଣ ।
କିଛି ଚିନ୍ତା ନ କରି ହୃଷ୍ଟିତରେ ଥିବ
ଆସୁର କହିବାର ବୋଲକୁ ମାନିଥିବ ।

ଶତ୍ରୁଘନ ସଙ୍ଗରେ ଏ ରଥରେ ପୁଣ
ସାରଥି ହୋଇବୁ ଲୀଳାବତୀ ରାଣୀ ଜାଣ ।
ତେବେ ଶତ୍ରୁଘନ ମାରିବେ ତାହାକୁ
ଶୁଣିକରି ଲୀଳାବତୀ ଆନନ୍ଦ ମନକୁ ।
ଏଣିକି ସମୟରେ ଶୁଣ ଗୋ ଗଉରୀ
ସକଳ ସୈନ୍ୟ ଆସି ଭେଟିଲେ କୁଶଧାରୀ ।
ପାଏ ପଡି ଶୋଇଣ ଶିରେ କର ଦେଲେ
ଶ୍ରୀରାମ ଥିବାଯାକ ତୁମ୍ଭେ ଥାଅରେ ବୋଇଲେ
ମାତାମାନେ ଗଲେ ଯେ ଯାହାର ପୁର
ଲୀଳାବତୀ ରହିଲେ ପୁତ୍ରର ସଙ୍ଗର ।
ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ କହି
କପିଳାସ ପର୍ବତକୁ ନାରଦ ବେଗେ ଯାଇ ।
ସେ କଥା ଦେବ ମୋର ଆଗରେ ହେ କହି
ଆମ୍ଭପୁରେ ଆସିଥିଲେ ବ୍ରହ୍ମାଙ୍କର ପୁଅ ।
ଈଶ୍ୱର ବୋଇଲେ ମୁନି ଅଇଲେ ଧାଡିକାର
ଆମ୍ଭର ସମ୍ମୁଖେ ସେ କରିଲେ ନମସ୍କାର ।
ବୋଇଲେ ଦେବ ବ୍ରହ୍ମା ଭେଦଦେଲେ ମୋତେ
ଅଯୋଧ୍ୟା ପୁରଯାଏ ଯିବକି କଷ୍ଟିନ୍ତେ ।
ସକଳ ଦେବଗଣ ସେଠାରେ ଅଛନ୍ତି
ତୁମ୍ଭେ ଗଲେ ବିଧାତା ହୋଇବେ ସ୍ଥିରମତି
ଶ୍ରୀରାମଙ୍କ ସଙ୍ଗରେ ରାବଣ ଯୁଦ୍ଧ କଲା
ତାହାଶୁଣି ଭରତ ସୈନ୍ୟ ଘେନଗଲା ।
ଏକା ଶତ୍ରୁଘନ ଅଯୋଧ୍ୟା ପୁରେ ଅଛି
ଶତମୁଖା ରାବଣ ତା ଉପରେ ଦେଲା ଦୃଷ୍ଟି
ଭରତଗଲା ଏକା ଅଛଇଁ ସେହି ପୁରେ
ଏତେବେଳେ ଧରି ମାରିବ ତାକୁ ବଳେ ।
ଏତେବୋଲି ନିଜ ଥାଟ ବେଗେ ସଜକଲା
ଗଙ୍ଗାର କୂଳରେ ଆସି ଆଜ ରହିଲା ।
କାଲି ପ୍ରଭାତରୁ କରିବ ସେ ରଣ
ବିଧାତା ଅଇଲେ ଏହା ଦେଖି ଏବେ ଜାଣ
ବିଧାତା ଆସିବାରୁ ସକଳ ଦେବେ ଆସି
ସୁଧର୍ମା ସଭାରେ ସମସ୍ତେ ଛନ୍ତି ବସି ।
ତୁମ୍ଭେ ଗଲେ ବିଗ୍ରହ କରିବେ ସେ ପୁଣ
ତାହା ଶୁଣିଣ ସଜହେଲୁ ଆମ୍ଭେ ଜାଣ ।
ନାରଦ କହିଲେ ସେ କହିଛନ୍ତି ପୁଣ ।
ପିନାକ ପାଶୁପତ ସଙ୍ଗେ ଦେବ ଜାଣ ।

ଅକ୍ଷୟ ତୋଣ ବଜ୍ର ବଭୂତ ତୁମ୍ଭର
ସଙ୍ଗତରେ ନେବ କହୁଛନ୍ତି ବେଦବର ।
ତାହାଶୁଣି ଆମ୍ଭେ ତୋର ପୁରକୁ ଅଇଲୁ
ସକଳ କଥା କହି ଅକ୍ଷୟ ତୋଣ ନେଲୁଁ ।
ବିଜେ କଲୁ ପୁଣ ବୃଷଭ ଉପରେ
ନନ୍ଦି ଭୃକୁଟି ଯେ ଗଲେକ ସଙ୍ଗରେ ।
ଅଯୋଧ୍ୟା ନଗରେ ହେଲେ ପରବେଶ
ଶୀତଳ ଗିରିପରେ ତେବଙ୍କର ବିଳାସ ।
ସୁଧର୍ମା ସଭାରେ ସକଳ ଦେବ ଛନ୍ତି
ଦେଖିଣ ଆମ୍ଭେ ତାଙ୍କୁ ହେଲୁରେ ଉପସ୍ଥିତ ।
ଦେଖିଣ ବେଦବର ଆସ୍ଥାନୁ ଉଠିଲେ
ନମସ୍କାର କରିଣ ପାଶରେ ବସାଇଲେ ।
ଦେବତା ସକଳେ କଲେ ମାନ୍ୟ ଧର୍ମ
ସଭାରେ ବସିବାରୁ କହିଲେ ଦେବବ୍ରହ୍ମ ।
ବୋଇଲେ ଅସୁରଙ୍କୁ ମାରିବେ ଶ୍ରୀହରି
ତେବେ ସେ ଧରଣୀ ରହିବ ସ୍ଥିର ହୋଇ ।
ଆମ୍ଭର ନିମନ୍ତେ ହେ ସ୍ୱୟଂ ନାରାୟଣ
ମାନବ ଦେହ ବହି ଜନମ ହେଲେ ପୁଣ ।
ଏକରୁ ଚତୁର୍ଦ୍ଧା ମୂରତି ହେଲେ ପୁଣ
ରାବଣ ସଙ୍ଗେ ଯୁଦ୍ଧ କଲେ ରାମ ଲକ୍ଷ୍ମଣ ।
ଲଙ୍କେ ରାଜା ଘେନିଣ ଭ୍ରାତ ଏବେ ଗଲେ
ଶତ୍ରୁଘ୍ନ ଏକା ଯେ ସେ ପୁରେ ରହିଲେ ।
ଶତମୁଖା ରାବଣ ଆସିଅଛି ପୁଣ
ଶତ୍ରୁଘ୍ନ ସଙ୍ଗରେ କରିବ ସେହୁ ରଣ ।
ଆମ୍ଭେ ସମସ୍ତେ ଯେ ଆୟୁଧମାନ ଦେଲୁଁ
ତୁମ୍ଭଙ୍କୁ ଭରସା କରିଣ ଅଣାଇଲୁଁ ।
ପିନାକ ପାଶୁପତ ତ୍ରିଶୂଳ ଆଣି ଦେବ
ଅକ୍ଷୟ ତୋଣ ବଜ୍ର ବଭୂତ ସମର୍ପିବ ।
ତୁମ୍ଭର ପାଶୁପତ ଅସ୍ତ୍ରେ ଯିବେ ନାଶ
ରାମ ଭାଇ ହସ୍ତରେ ମରିବେ ତାର ବଂଶ ।
ଶୁଣିଣ ଆମ୍ଭେ ମନେ ସନ୍ତୋଷ ହୋଇଲୁ
ବଜ୍ର ବଭୂତ ଅକ୍ଷୟ ତୋଣ ସମର୍ପିଲୁ ।
ପିନାକ ପାଶୁପତ ଦେଲୁ ତାର କରେ
ବଜ୍ର ବଭୂତ ସର୍ବାଙ୍ଗେ ବୋଳିଲୁ ଧାଡିକାରେ
ଜନନୀ ମାଳାବତୀ ଅଙ୍ଗରେ ବୋଳି ଦେଲୁ
ସକଳ ସୈନ୍ୟଙ୍କୁ ଯେ ବଭୂତ ଖୁଆଇଲୁ ।

ବଜ୍ର କରି ଆମ୍ଭେ ଯେ ଅଇଲୁ କପିଳାସ
ବିଧାତା ବିଜେ କଲେ ସ୍ୱାବହୀର ପାଶ ।
ଦେବତାମାନେ ସୁଧର୍ମା ସଭା ଘେନି ଚଳେ
ସ୍ୱର୍ଗପୁରେ ସୁରଦେବେ ମିଳିଲେ ସକଳେ ।
ଏହି ସମୟରେ ରାଜ ସାତପଡ଼ ହେଲା
ସୈନ୍ୟବଳ ଭୁଞ୍ଜିଣ ସଜହେଲେ ତୋରା ।
ଶତ୍ରୁଘ୍ନ ନବରରେ ହେଲା ପରବେଶ
ରାଜଣା ମାଣୋହି କଲେ ମାଳାବତୀ ଶିଷ୍ୟ ।
ଶ୍ରୀରାମ ସୁମନ୍ତ ବେଶ ଶତ୍ରୁଘ୍ନ ଭରତ
ଯନ୍ତ୍ର ବେଶ ଧରିଲେ ଯେ ଦଶରଥ ସୁତ ।
ମାତା ମାଳାବତୀ କାଛେଣି ବେଶ ହେଲେ
ଦୈତ୍ୟ ଦଳନ ରଥରେ କୁମର ବିଜେକଲେ
ମାଳାବତୀ ସାରଥି ତୁଷରେ ବିଜେକରି
ଦେବଙ୍କ ଶସ୍ତ୍ରମାନ ଥୁଏ ବାନ୍ଧି କରି ।
ପିନାକ ଧନୁ ହସ୍ତରେ ଧଇଲେ ଗାରମଣି
ସୈନ୍ୟବଳ ସଜହୋଇ ଅଇଲେ ତତକ୍ଷଣି ।
ଆଠକୋଟି ବାଦ୍ୟକାର ଆସି ଜୁଣ୍ଟ ହେଲେ
ଶତ୍ରୁଘ୍ନ ଗାର ଚତ୍ରୁଁ ତାଙ୍କୁ ଆଜ୍ଞା ଦେଲେ ।
ସାତପୁର ହୋଇଣ ସେ ଘେରିଲେ ନବର
ବାଦ୍ୟର ଶବଦରେ କମ୍ପିଲା ତିନିପୁର ।
ସେନାପତି ତାଙ୍କର ନବକୋଟି ପୁଣ
ପଞ୍ଚାଶକୋଟି ପଦାତି ଅଟନ୍ତି ଆଗୁଆଣ ।
ନବକୋଟି ରଥୀ ଯେ ହସ୍ତୀମାନ ଚଢ଼ି
ବାରକୋଟି ସେନାପତି ରଥୀରେ ବିଜେକରି
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଅସୁର ସଇନ ପୁଣି ଗଙ୍ଗାକୂଳେ ଛନ୍ତି ।
ଜନନୀ ପ୍ରଭାତରେ ଅଛି ଉଠିଲେ ସେ ପୁଣ
ନଗରକୁ ଗମନ କଲେ ସେ ରାବଣ ।
ଅଯୋଧ୍ୟା ନଗରେ ଯାଇ ହେଲେ ପରବେଶ
ବାଦ୍ୟମାନ ଶବଦ କଲେ ଯେ ବିଶେଷ ।
ଦୁଇକୂଳ ବାଦ୍ୟରେ ମେରୁ ଟମକିଲା
ଶତମୁଖା ରାବଣ ପୁଣ ଆଗରେ ପାଇଲା ।
କୋଡ଼ିଏ ସହସ୍ର ପୁଅ ଆଗରେ ଯାଇଥିଲେ
ଶତରଭ ଜନଭଭ ଅନୁପ୍ରେକ୍ଷ ତୁଳେ ।
ଗାରସେନ କୁଳସେନ ଅମାଳ ମାଳ ଫୁଲଙ୍ଗ
ଗୌରବର୍ଣ୍ଣ ଯୁଗଳ ମୂର୍ତ୍ତି ଦଶେ ଶୋଭା ।

ଗେଲନ ଗୁମାଲଟ ଠଳ ନାଟଗାର
ଢନ ମୁଖା କାଠମୁଖାର ଢଣେ ତେଜଗାର ।
ଭଦ୍ରକଳା ରୂପକଳା ମେଘ କଳା ଜାଣ
ଏହି ପ୍ରକାରେ ନାମ ତାଙ୍କର ଅଟେ ପୁଣ ।
ଖିଷ୍ଟଣ ନାରାଚକୋଟି ସେ ମାଇଲେ ଧରିକରି
ତନ କୋଟି ତେଲ୍ଲି ଯେ ମାଇଲେ ଧରିକରି ।
ଲଗିଲା ରଣଘୋଳ ଯେ ଲଟିଲା ଧନୋଳ
ଅନେକ ନାରାଚ ମାଇଲେ ଅସୁର ବଳ ।
ଶତ୍ରୁଘନ ସୈନ୍ୟ ମାରନ୍ତି ଖିଷ୍ଟଣ ଶର
ଲୋଟନ୍ତି ରାକ୍ଷସେ ଛିଣ୍ଡିଣ କନ୍ଧମୂଳ ।
ଅସୁରେ ମା ବାର ଶତ୍ରୁଘନ ସୈନ୍ୟ
ଅଭୁଟ ହୋଇ ଯେ କଲେ ଘୋର ରଣ ।
କେହି କାହାକୁ ଯେ ଘାଏ ନ ଘୂଆନ୍ତି
ମରମରି ହଣାହଣି ଯନ୍ତ୍ରାଯନ୍ତ୍ର ହୁଂନ୍ତି ।
ଅନେକ ସୈନ୍ୟ ଅସୁରଙ୍କର ଯେ ପଡ଼ନ୍ତି
ଅସୁର ବଳରୁ ସେ ଅନେକ ମାରନ୍ତି ।
ରାବଣର ପୁତ୍ରମାନେ ଅଟନ୍ତି ବଡ଼ ଯୋଦ୍ଧା
ଅନେକ ନାରାଚ ସେ ମାରନ୍ତି କରି ସୋଧା ।
ଦୁଇକୁଳରୁ ଅନେକ ଲୋକ ନଷ୍ଟ ଗଲେ
ନବଘଡ଼ି ବେଳ ଯେ ହୋଇଛି ତେତେବେଳେ
ଅସୁରେ ଶସ୍ତ୍ରରେ କଲେ ଅନ୍ଧକାର
ଦେଖିଣ ଶତ୍ରୁଘନ ଟେକିଲେ ରଘୁବର ।
ଦେଖିଣ ରାବଣ ତନୟେ ମେଳ ହେଲେ
ଅନେକ ନାରାଚ ଯେ କ୍ରୋଧରେ ବରଷିଲେ
ଭୂମି ଗଗନ ଯେ କଲେକ ନରୋଧନ
ପବନ ପଶିବାକୁ ବାଟ ନାହିଁ ପୁଣ ।
ଦେଖିଣ ଶତ୍ରୁଘନ ମନରେ ବିଚାରିଲେ
ପିନାକ ଧନୁରେ ବଜ୍ର ପୁରାଇ ବିନ୍ଧିଲେ ।
ଦୁଇକୋଟି ବଜସୂଚୀ ବିନ୍ଧେ ଏକାବେଳେ
ପୁତ୍ରନାତି ସହିତେ ସମସ୍ତେ ନାଶଗଲେ ।
ବାଉକୋଟି ବଜ୍ରଶର ପୁଣ ଦେଲେ ଛାଡ଼ି
ବାଉକୋଟି ସେନାପତି ବନ୍ଧ ଗଲେ ଛାଡ଼ି ।
ବାବଲ ଶର ପୁଣି ଅକ୍ଷୟ କ୍ରୋଣ ପେଷି
ପଦାନ୍ତି ଦଳ ପୁଣି ପକାଇଲେ ନାଶି ।
ଖିଷ୍ଟଣ ନାରାଚ ଯେ ପେଷିଲେକ ବଳେ
ଆଠକୋଟି ବାଦ୍ୟକାର ଛେଦିଲେ ଘଡ଼କରେ

ଏମନ୍ତ ସମୟେ ରଜନୀ ପରବେଶ
ଯେତେକ ଅସୁର ଥିଲେ ବାକି ସେଥି ଶେଷ
ପଳାଇଲେ ରଣ ଛାଡ଼ି ନ ରହିଲେ କେହି
ସହସ୍ରେକ ଅସୁର ଯେ ବର୍ତ୍ତିଲେକ ତହିଁ ।
ରଥ ଚଢ଼ି ମନୁ ବେଗେ ସେହୁ ଟଳିଗଲେ
ଅଲଙ୍କା ପୁରରେ ଯାଇ ପ୍ରବେଶ ହୋଇଲେ
ଦେଖିଲେ ଶତମୁଖ ବସିଛି ସିଂହାସନ
ରଥରୁ ଓହ୍ଲାଇଯାଇ ମିଳିଲେ ବନ୍ଦନ ।
ଶୁଣ ଦେବ ରାବଣ ହେ ଅଲଙ୍କା ନୃପତି
ଯେତେ ସୈନ୍ୟଗଲେତୋରସଙ୍ଗରେପୁତ୍ରନାତି
ଅନେକ ସେ ଯୁଦ୍ଧ କଲେ ମାନବ କୁଳରେ
ବହୁତ ସୈନ୍ୟ ମାଇଲେ ଅଯୋଧ୍ୟା ନଗରେ
ଦେଖିକରି ରାମଙ୍କର ରଥ ଧୂଆଁଇଲା
ରଣଭୂମି ଘୋଟାକୁ ଶରେ ଲୁଚାଇଲା ।
ଦେଖିଣ ତୋ ପୁତ୍ରନାତି ସେନାପତିମାନେ
ମାଇଲେ ଅନେକ ଶର ବରଷା ଯେସନେ ।
ତାହାଦେଖି ଶତ୍ରୁଘନ ବଜ୍ରଶର ମାରି
ପୁତ୍ରନାତିଙ୍କ ତୋହର ଦେହଖଣ୍ଡ କରି ।
ଆରବେଳ ତଡ଼ିକ ବଜ୍ରସୂଚୀ ମାଇଲା
ଜଳଧାର ପ୍ରମାଣେ ବାଣ ବୃଷ୍ଟି କଲା ।
ତେରକୋଟି ସେନାପତି ତୋର ନାଶଗଲେ
ପୁତ୍ର ନାତି ସେନାପତି ଗୋଟିଏ ନ ରହିଲେ
ଆଜଥରେ ବାବଲ ଶର ଯେ ବୃଷ୍ଟି କଲା
ପନ୍ଦର ପଦ୍ମ ତୋର ପାଦାନ୍ତି ନାଶକଲା ।
ଆଉବେଳେ ଖିଷ୍ଟଣ ଶର କଲା ବରଷଣ
ବାରକୋଟି ବାଦ୍ୟକାର ପଡ଼ିଲେ ରଣେପୁଣ
ସମସ୍ତଙ୍କ କନ୍ଧ ଯେ ଛିଣ୍ଡାଇଲା ବୀର
ଆମ୍ଭେ ବାକି ବଞ୍ଚିଲୁ ସହସ୍ରେ ଯୁଦ୍ଧର ।
ଶୁଣିଣ ଶତମୁଖା ରାବଣ କୋପ କଲା
କେଣେଗଲେ ପୁତ୍ରନାତି ସେ କାନ୍ଦିଲା ।
ଧରଣୀରେ ପଡ଼ିଣ ଯେ ରୋଦଇ ରାବଣ
ଅକାରଣେ ମରାଇଲ ଏତେକ ଯେ ସୈନ୍ୟ
ପୁତ୍ର ସୁମରିଣ କାନ୍ଦେ ଲଙ୍କାପତି
ଭୂମିରେ ପଡ଼ିଣ ସେ ହୁଏ ମୂର୍ଚ୍ଛାଗତି ।
ଶତେମୁଖା ରାବଣର ଦେଖି ଅସମ୍ଭାଳ
ସୁଜାଣ କୁଜାଣ ମନ୍ତ୍ରୀ ଉଠିଲେ ସତ୍ୱର ।

ବୋଇଲେ ରାବଣ ତୁମ୍ଭେ କ୍ଷମା କର ରୋଷ
ମାନବ ହୋଇଣ ସେ ମାଇଲା ମୋର ଲୋକ
କାଲର ଯୁଦ୍ଧରେ ଆମ୍ଭେ ଦେବା ତାଙ୍କୁ ମୃତ୍ୟୁ
ଦୁଇଭାଗ ସୈନ୍ୟ ପୁଣି ଏହିକ୍ଷଣି ଯାନ୍ତୁ ।
ତାଙ୍କଠାରୁ ଶୁଣି ପୁଣି ସଚେତ ହୋଇଲା
କ୍ରୋଧଭର ହୋଇଣ କଣରେ ହସ୍ତଦେଲା ।
ଦୁଇଭାଗ ସୈନ୍ୟ ଡ଼କାଇ ଆଣିଲା
ଅନେକ ଅଳଙ୍କାର ତାହାକୁ ପୁଣ ଦେଲା ।
ପିନ୍ଧିବାକୁ ଲୁହା ସଞ୍ଜୁମାନ ଆଣିଦେଲା
ଖଡ଼୍ଗ ନୋଳା କଣ୍ଟିମାନ ହୃଦେ ଲମ୍ବାଇଲା ।
କଣ୍ଠି କୁଣ୍ଡଳ ଯେ ବାହାରେ ବାହୁଟି
ତାଡ଼ ଭଡ଼ ଆଭରଣ ସବୁର ଦେହେ ଯୋଟି
ଭଲୁକ ହେ ମନ୍ତ୍ରମାନ ଚେତା କରାଇଲା
ରଥ ଉପରେ ନେଇଣ ପତାକା ଉଡ଼ାଇଲା ।
ସଜକଲା ଆଣି ବାରକୋଟି ରଥ
ସମସ୍ତେ ରଙ୍ଗବର୍ଣ୍ଣ ଦିଶନ୍ତ ପ୍ରତ୍ୟକ୍ଷ ।
ରଙ୍ଗ ବର୍ଣ୍ଣ ଆକୃତ ତାଙ୍କର ତେଜ ଦିଶି
ଯେସନକ ସ୍ୱର୍ଗରୁ ପାରିଜାତ ଖସି ।
ଆୟୁଧ ଅଳଙ୍କାରରେ ଦିଶନ୍ତ ତେଜବନ୍ତ
ସ୍ୱରଗର ଦେବଲୋକ ଦେଖିଣ ଚକିତ ।
ମଂସାସୁର ସାଦୃଶରେ ଦିଶେ ତାର ବଳ
କ୍ରୋଧରେ ଶତମୁଖା ଯେସନ ଅନଳ ।
ଜଳ ଭୂଅ ସ୍ଥଳ ଭୂଅ କୂଅ ଭୂଅ ପୁଣି
ଶୂନ୍ୟ ଗଣ୍ଡ ସ୍ଥିତ ଗଣ୍ଡ ରିପୁଗଣ୍ଡ ଜାଣି ।
ଅଦ୍ରିବଳ ସାନ୍ଦ୍ରବଳ ମତ୍ତବଳ ତୋରା
ଇନ୍ଦ୍ରବଳ ସୁରବଳ ଦିଗବଳ ପରା ।
କର ଖୁଣ୍ଟ ମତ୍ତଖୁଣ୍ଟ ସତ୍ତଖୁଣ୍ଟ ତାର
ଏମନ୍ତ ଯେ ନାମ ଅଟେ କୁମାରମାନଙ୍କର ।
ଈଶ୍ୱର ବୋଇଲେ ଶୁଣ ଉମା ସ୍ଥିରେ
ନାତିଙ୍କର ନାମ ଲେଖି ନୋହିଲା ଅକ୍ଷରେ ।
ଏହିମତେ ପୁତ୍ରନାତି ସଜ ହୋଇ ପରା
ରଥର ଉପରେ ସେ ବସନ୍ତ ହୋଇ ତୋରା ।
ସିଂହରଡ଼ ଦେଇ ଗାରେ ହୋଇଲେ ବାହାର
ସେତେବେଳକୁ ରଜନୀ ଦଣ୍ଡଘଡ଼ି ଦୂର ।
ଏକାଦଶ ଘଡ଼ିରେ ସେ କଲେ ଅନୁକୂଳ
ବାରକୋଟି ସେନାପତି ହୋଇଲେ ବାହାର
ସାତକୋଟି ପଦାନ୍ତ ଯେ ସଙ୍ଗରେ ସେ ଗଲେ
ଛଅକୋଟି ବାଦ୍ୟକାର ଆଗରେ ଚଳିଲେ ।
ଦୁଇଲକ୍ଷ ନାତି ପୁଣ ଅଇଲେ ସହସ୍ର
କୁମରଙ୍କି ଗଲେ ସଙ୍ଗେ ସତର ସହସ୍ର ।
ପାଞ୍ଚଘଡ଼ି ସମସ୍ତେ ଗଙ୍ଗା କୂଳରେ ହେଲେ
ସେ ଠାବରେ ଚଉରଙ୍ଗ ବଳ ଠୁଳ ହେଲେ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଶତମୁଖା ରାବଣ ଯେ ଭେଦିଲାକ ସୈନ୍ୟ ।
ଗଙ୍ଗାକୂଳେ ସୈନ୍ୟବଳ ହେଲେ ପରବେଶ
ସେଠାରୁ ଯେ ଶତ୍ରୁଘନ କଲେ ପୁଣ କସ ।
ସେହି କଥାଗୋଟି ଦେବ ମୋତେ କହି ପୁଣି
ମନ ମୋର ଛନ୍ଦ ଛନ୍ଦ ସେ କଥା ନ ପୁଣି ।
ଈଶ୍ୱର ବୋଇଲେ ତୁମ୍ଭେ ଭଗବତୀ ଶୁଣ
ଶତ୍ରୁଘନର ବାଣରେ ଅସୁର ମଲେ ପୁଣ ।
ଶେଷେଥିବା ରାକ୍ଷସେ ପଳାଇଣ ଗଲେ
ରାବଣ ଆଗରେ ଯାଇ ବାରତା କହିଲେ ।
ଶୁଣି ରାବଣେଶ୍ୱର ପୁଣି ସୈନ୍ୟ ପେଶି
ଗଙ୍ଗାକୂଳେ ସୈନ୍ୟ ରହିଛନ୍ତି ଆସି ।
ଅସୁର ପଳାଇ ଯିବାରୁ ରାମ ଭାଇ ପୁଣ
ଜୟ ଶଙ୍ଖ ବଜାଇ ଲେଉଟିଲେ ପୁଣ ।
ନିଜ ନବରେ ଯାଇଣ ହେଲେ ପରବେଶ
ରଥରୁ ଓହ୍ଲାଇଣ ଦଶରଥ ଶିଷ୍ୟ ।
ମାଳାବତୀ ଜନନୀ ସେ ରଥରୁ ଓହ୍ଲାଇଲା
ଶତ୍ରୁଘନ ମାତାର ଚରଣେ ଓଳଗିଲା ।
ଅନ୍ତଃପୁର ମଧ୍ୟରୁ ମାଳାବତୀ ଚଳ
ଧାଇଁ ମୁଦ୍‌ସୁଲି ଆସି ନେଲେ ହସ୍ତ ଧରି ।
କନକ ମଣ୍ଡପେ ନେଇ ବସାଇଲେ ରାଣୀ
ତିଳକ ଦେଇଣ ତାଙ୍କୁ ମାର୍ଜନା କଲେ ପୁଣି
ମାର୍ଜନା କରାଇ ମନୋହି ଠାବେ ନେଲେ
ଛଅରସ ବ୍ୟଞ୍ଜନରେ ଶାଳି ଅନ୍ନ ଦେଲେ ।
ମନ ସନ୍ତୋଷରେ ରାଣୀ କଲେକ ଭୋଜନ
ଶେଷେ ରାଣୀ ଯାଇ କଲେକ ଶୟନ ।
ଏଥୁ ଅନନ୍ତରେ ଶତ୍ରୁଘନ ଚଳିଗଲେ
ବାହାର କନକ ମଣ୍ଡପରେ ବିଜେକଲେ ।
ମର୍ଦ୍ଦନ ମାର୍ଜନା ଯେ ଦେଲ ରାମ ଭାଇ
ସୁବାସିତ ଜଳେ ସ୍ନାନ କଲେକ ସେ ଯାଇଁ ।

ପିତୃଙ୍କୁ ତର୍ପଣ କରି ସନ୍ଧ୍ୟା ସୁମରିଲେ
ଦେବଆଳେ ଦର୍ଶନ ଯେ କରିବାକୁ ଗଲେ ।
ବିରଞ୍ଚି ନାରାୟଣ ଆଗରେ ମିଳିଲେ
କରଯୋଡ଼ି ଚରଣ ତଳରେ ଓଳଗିଲେ ।
ପ୍ରସାଦ ସାରିଣ ସେ ଲେଉଟିଣ ପୁଣ
ନିଜ ନଗରକୁ ସେ ଚଳିଲେ ତତକ୍ଷଣ ।
ଅନ୍ତଃପୁର ମଧ୍ୟରେ ଯାଇ ହେଲେ ପରବେଶ
ଧାଇଁ ପରିବାରୀ ଯେ ପହଣ୍ଡ ମଣାଇ ନେଲେ ।
ମହାଦେଈ ପୁରେ ଯାଇ ହେଲେ ପରବେଶ
ଦର୍ଶନ କଲେ ଆସି ପାଶରେ ରାଣୀହଂସ ।
ମଣୋହିରେ ବିଜୟେ କଲେ ଶତ୍ରୁଘନ
ଛଡ଼ରସେ ଭୋଜନ କଲେ ତତକ୍ଷଣ ।
ଭୋଜନ ସାରିଣ ସେ ଆଚମନ କଲେ
କର୍ପୂର ବଡ଼ିଆ ପାନ ଦାସୀ ଆଣି ଦେଲେ
ଖଟଦୋଳି ପଲଙ୍କରେ ନିଦ୍ରାଗଲେ ପୁଣ
ପାଦ ମଞ୍ଚାଳିଲେ ପୁଣି ଅନେକ ନାରୀଗଣ ।
ନ ଅବକାଶ ଯେ ହେଲେ ଯେତେବେଳେ
ମହାଦେଈ ବିଜେକଲେ ତାଙ୍କର ସମୁରେ ।
ନାନା ସୁବାରେ ସେ ଯେ ହୋଇଛନ୍ତି ବେଶ
ଅନ୍ଧାର ରଜନୀରେ କି ଚନ୍ଦ୍ରମା ପ୍ରକାଶ ।
ଝଟକ ବିଜୁଳି ପ୍ରାୟେ ଶରୀର ବିରାଜ
ଚନ୍ଦ୍ରର ଘରଣୀ ସେ କି ରୂପରେ ଅଛି ଖଞ୍ଜି
ଦେଖିଣ ଶତ୍ରୁଘନ ତାଙ୍କୁ କୋଳରେ ବସାଇଲେ
ଧାଇଁ ପରିବାରୀମାନେ ଦୂର ହୋଇଗଲେ ।
ଏକାନ୍ତ ହୋଇଣ ପୁଣ ନାନା ବନ୍ଧେ ରତି
ପଲଙ୍କେ ଘେନ ଶୋଇଲେ ଅଜରଜା ନାତି
ଏଥୁଅନନ୍ତରେ ଭୁମ୍ଭେ ଶୁଣ ଶାକମ୍ଭରୀ
କନକଗିରିରେ ଦେବୀ ଥିଲେ ବସାକରି ।
ନିର୍ଜନ ହେବାରୁ ପୁଣି ଭଇରବୀ ବେଗେ
ବାଉନକୋଟି ପିଶାଚୁଣୀ ଘେନ ସଙ୍ଗେ ।
ରଣଭୂମି ମଧ୍ୟରେ ସେ ହେଲେ ପରବେଶ
ଦେଖିଲେ ସେ ରଣଭୂମି ବିଚିତ୍ର ସେ ରସ ।
ଯୁଣେକ ଓସାର ରକତନଦୀ ବହେ
ସପ୍ତତାଳ ଗଭୀର ଯେ ଅଳକୂଳ ନୁହେଁ ।
ଦୁଇକୂଳେ କବନ୍ଧ ନାଚନ୍ତି କୋଟି କୋଟି
ଶୃଗାଳ ଶାର୍ଦ୍ଦୂଳ ଆସି ରକତ ଭକ୍ଷନ୍ତି ।

ଗୃଧପକ୍ଷୀ ଶ୍ୱାନ କାକ କରନ୍ତି ଆହାର
ଶୋଣିତରେ ମଡ଼ାମାନେ ଭାସନ୍ତି ଅପାର ।
ପିଶାଚୁଣୀ ବଳ ତହିଁ ଭିତରେ ପଶିଲେ
ଅସୁରଙ୍କୁ ଭକ୍ଷିଣ ମାନବ ଛାଡ଼ିଗଲେ ।
ଦୁଇଘଡ଼ି ଭିତରେ ଭକ୍ଷିଲେ ଦୈତ୍ୟବଳ
ରୁଧିର ପାନ କରନ୍ତେ ଶୁଖିଲା ନଦୀ ଧାର ।
ସନ୍ତୋଷ ହୋଇଣ ଦେବୀ ମାନବଙ୍କୁ ଧରି
ଗଣ୍ଡି ମୁଣ୍ଡ ଯୋଡ଼ିଣ ଯେ ରଖିଲେ ସଳଖି ।
ବଳିଦେବା ଲୋକଙ୍କୁ ସଳଖ କରିଦେଲେ
କନକ ଗିରିରେ ଯାଇ ପ୍ରବେଶ ହୋଇଲେ ।
ତାହାଦେଖି ବୃହସ୍ପତି ସ୍ୱର୍ଗରୁ ଆସେ ପୁଣ
ଇନ୍ଦ୍ରଙ୍କ ଭୁବନୁ ଆଣି ଅମୃତ ସଙ୍ଗେଣ ।
ଉପରେ ଥାଇଣ ମୃତ୍ୟୁ ସଞ୍ଜୀବନୀ ପଢ଼ି
ସଞ୍ଜୀବନୀ ପାଣି ଧରି ରଣରେ ସିଞ୍ଚିବଟି ।
ଉପରେ ପଡ଼ନ୍ତେ ଯେ ମାନବେ ଜୀବପାଇ
ଗଣ୍ଡି ମୁଣ୍ଡ ଲାଗିଣ ଯେ ସଚେତ ସେ ହୋଇ
ଅମୃତ ଯେ ତାଙ୍କ ଉପରେ ସିଞ୍ଚେ ଦେବଗୁରୁ
ବଳପାଇ ମାନବେ ହେଲେ ମହାମେରୁ ।
ନଦୀରେ ପଶିଣ ସେ ଯେ ସ୍ନାନ କଲେ
ସୂର୍ଯ୍ୟ ଦେବତାଙ୍କୁ ଜଳ ଦାନରେ ତୋଷିଲେ
ଯେଝା ଘରମାନଙ୍କରେ ହେଲେ ପରବେଶ
ଛଡ଼ରସ ବ୍ୟଞ୍ଜନରେ ସର୍ବେ ମଲେ ଗ୍ରାସ ।
ନିଶ୍ଚିନ୍ତ ହୋଇଣ ସେ ଘରଣୀ କୋଳେ ଘେନ
ନିଦ୍ରାରେ ଅସକତ ହେଲେ ସର୍ବେ ପୁଣି ।
ଏଥୁଅନନ୍ତରେ ଶୁଣ ଗୋ ସଙ୍କାରୁଣୀ
ବୃହସ୍ପତି ଗୁରୁ ଯେ ଉପରେ ଥିଲେ ପୁଣି ।
ସକଳେ ଉଠି ଯିବାରୁ ସେଠୁ ଯେ ଦେଖିଲେ
ଅସୁର ବଳଙ୍କୁ ପିଶାଚୁଣୀ ଯେ ଭକ୍ଷିଲେ ।
ରୁଧିର ପାନ କରନ୍ତେ ଶୁଖିଲା ରକତନଦୀ
କେହି ନ ରହିବାରୁ ନିଷ୍ଟକ ରଣ ଭେଦି ।
ନିର୍ମଳ ଦେଖିବାରୁ ବୃହସ୍ପତି ଗଲେ
ସ୍ୱର୍ଗପୁରେ ଯାଇ ପ୍ରବେଶ ହୋଇଲେ ।
ତେତେବେଳେ ବେଳ ଏଗାର ଘଡ଼ି ପୁଣ
ସମସ୍ତେ ନିଶବଦ ଅଯୋଧ୍ୟା ଦେଶ ଜାଣ ।
ଦୁଇଘଡ଼ି ରଜନୀ ଯେ ପାହିବାକୁ ଅଛି
ମାଳାବତୀ ରାଣୀ ଯେ ଶଯ୍ୟାନରୁ ଉଠି ।

ଶତ୍ରୁଘନ ପୁରରେ ହେଲେ ପରବେଶ
ବୋଇଲେ ପୁତ୍ରରେ ନିଦ୍ରା ତୁ ତେଜ ଆସ ।
ବୋଲୁ ଚେତା ପାଇ ପୁଣ ସ୍ୱାମୀକୁ ଚେତାକଲା
କବାଟ ଫିଟାଇଣ ସେ ବାହାର ହୋଇଗଲା
ମାଳାବନ୍ଧି ବଜେଇଲେ ପୁଷ୍ପ ଉଆସରେ
ଦେଖିକରି ଶତ୍ରୁଘନ ଉଠିଲେ ସତ୍ୱରେ ।
ଜନନୀ ଚରଣରେ ନମସ୍କାର କଲେ
ସୁକଲ୍ୟାଣ ବୋଲିଣ ଯେ ଜନନୀ ବୋଇଲେ
କେତେ ନିଦ୍ରା ଯାଅରେ କୁମର ଚୂଡ଼ାମଣି
ଅସୁର ବଳ ଆସିଲେ ଘୋଟିବେ ଏହ୍ନିକ୍ଷଣି ।
ଥାଟ ସଜକର ବେଗେ ନିତ୍ୟକର୍ମ ସାର
ରଣ କରିବାକୁ ସଜ ହୁଅରେ କୁମର ।
କାଲି ମରିଛନ୍ତି ଦୈତ୍ୟବଳ ପୁଣ
ଆଜ ସେ କେଡ଼େ ରଣ କରିବେରେ ଜାଣ ।
ଶୁଣିଣ କୁମର ଯେ ବାହାରେ ଅବକାଶ
ସାମନ୍ତ ପାତ୍ର ମିଳିଲେ ଆସି ତାର ପାଶ ।
ଶତ୍ରୁଘନ ବୋଇଲେ ଥାଟ ମୋ ସଜକର
ଆଜ ରଣ ହେବ ଯେ ଅସୁର ସଙ୍ଗର ।
ଏହି ସମୟରେ ଯେ ଚର ଆସି କହି
ଗଙ୍ଗାକୂଳରେ ଦୈତ୍ୟଙ୍କୁ ଦେଖି ଅଇଲି ମୁହିଁ
ଏହି ରଜନୀରେ ପ୍ରବେଶ ସେହୁ ହେଲେ
ଏପାର ଘଡ଼ରେ ଗଙ୍ଗାକୂଳରେ ମିଳିଲେ ।
ଗର୍ଜନ ତର୍ଜନ ଯେ କରନ୍ତି ଦୈତ୍ୟବଳ
ମେରୁଗିରି ଟମକେ ଯେ ଲଙ୍କା ହୁଏ ଚୂର ।
କେବୋଲେ ମାରିବା କେବୋଲେ ଖାଇବା ପାଇଁ
କେ ବୋଲେ ଅଯୋଧ୍ୟାକୁ ଉପାଡ଼ିବା ଯାଇଁ ।
କେ ବୋଲେ ଗୃହ ଏ ନଗର ଯୋଡ଼ିଦେବା
କେବୋଲେ ସାଗରେନେଇ ଗୃହ ପକାଇବା
ଏମନ୍ତ ବୋଲି ସର୍ବେ ହୁଅନ୍ତି ଅଗ୍ରଜ
ତୁମ୍ଭେ କମା ନିଶ୍ଚିନ୍ତ ହେଲେ ଦେବରାଜ ।
ତାହାଶୁଣି ଶତ୍ରୁଘନ ଉଦ୍‌ବେଗ ମନେ
ଡକାଇଲେ ଝଣ୍ଟୀମାନଙ୍କୁ ତତକ୍ଷଣେ ।
ଶୁଣିଣ ଖଣ୍ଡିଆମାନେ ଡଆରିଲେ
ବାଦ୍ୟକାରିମାନଙ୍କୁ ଡାକି ସେହୁ ଭଲେ ।
ପଦାନ୍ତ ବଳଙ୍କୁ ସେ କହିଲେ ବହନ
ସେନାପତିମାନଙ୍କୁ ଉଠାଇବେ ପୁଣ ।

ସଜହୋଇ ପଦାନ୍ତ ଅଇଲେ ପୁଣ ଫେରି ।
ସେନାପତିମାନେ ରଥରେ ବଜେକରି
ରାଜାର ସିଂହଦ୍ୱାରେ ହେଲେ ପରବେଶ
ଦେଖିକରି ଶତ୍ରୁଘନ ମନେହେଲେ ତୋଷ
ଏହି ସମୟରେ ଚର ଜଣାଇଲା
କାଲିର ଯୁଦ୍ଧ ହେବ ଅଗୋଚର କେଲା ।
ଯେତେକ ସଇନ ବାବୁ ଭୂମ୍ଭର ଯାଇଥିଲେ
ଆଜନ୍ମି ସେମାନେ ଦେବ ଯୁଦ୍ଧକୁ ବାହାରିଲେ
ଶତ୍ରୁଘନ ବୋଇଲେ ଏକଥା ସବୁ ମିଛତ
ମଲ୍ଲଲୋକମାନେ ପୁଣ ଜଇଲେ କେମନ୍ତ ।
ଶୁଣିଲିର ଶ୍ରବଣେ ନାହିଁ ଯେଉଁ କଥା
ମଞ୍ଚପୁରେ ଜଇବାକୁ କଏ ସାମରଥା ।
ଉପର ବୋଇଲା ମୁଁ ଯେ ରଣଭୂଇଁକି ଗଲି
ମୃତ୍ୟୁ ଶବ ସେଠାରେ ଗୋଟିଏ ନ ଦେଖିଲି
ରୁଧିର ନଦୀ ସଞ୍ଚାର ନ ଦେଖିଲି ମୁହିଁ
ନିର୍ମଳ ହୋଇଛି ଯେ ରଣ ଯୁଦ୍ଧ ଭୂଇଁ ।
ତେଣୁ ମୁଁ ବିସ୍ମରୁଛି ହେ ଜୀଇଲେ ସକଳ
ଏ କଥାକୁ ଶ୍ରୀଦେବ ହେ ମନରେ ବିଚାର ।
ତାହାଶୁଣି ଶତ୍ରୁଘନ ପାବାନ୍ତ ପଚ୍ଚାରି
ମଲ୍ଲ ଜୀଇବାର କି ଜାଣ ହେତୁ କରି ।
ସେ ବୋଇଲେ ନିଶି ବାରଘଡ଼ି ଠାରେ ମଲୁ
ରଜନୀ ଶେଷପରେ ଘରକୁ ଅଇଲୁ ।
କେ ଆସି ଉଠାଇଲା ଆମ୍ଭେ ନ ଜାଣୁ ତାକୁ
ତେଣୁ ଶତ୍ରୁଘନ ବିଷାଦ ମନକୁ ।
ବୋଇଲା ଜଣାଯିବ ଆଜ ଯୁଦ୍ଧରେ ପୁଣ
ମରିବା ଜୀଇବାର ବୁଝିବା ରହଣ ।
ଏତେବୋଲି ସେନାପତିମାନଙ୍କୁ ଆଜ୍ଞାଦେଲା
ଦୈତ୍ୟର ବଳ ନିରୋଧ ଯାଇଣ ବୋଇଲା ।
ମୁହିଁ ଯାଉଅଛି ଯେ ପଛରେ ତୁମ୍ଭର
କେଉଁ କଥାକୁ ତୁମ୍ଭେ ବିସ୍ମର ନ କର ।
ଶୁଣିଣ ସେନାପତିମାନେ ଚଳିଗଲେ
ଥାଟଯାକ ମାରବାଜା ଆଗରେ ବଜାଇଲେ ।
ପଦାତି ବଳମାନେ ହେଲା ସଜ ପୁଣ
ଖଣ୍ଡା ଶାବେଳ ଭଲ ଲର୍କି ଥିଆ କୋଦ୍ର ଜାଣ
ଧନୁର୍ଧର ହସ୍ତରେ ବଡ଼ା ବଡ଼ା କାଣ୍ଡ
ଯେସନେକ ବିଶନ୍ତି ଯେ ଗୋରୁପଲେ ଷଣ୍ଢ ।

ଅଯୋଧ୍ୟାର ଦକ୍ଷିଣ ପାଶରେ ହେଲେ ଠୁଳ
ମାର ମାର ଧର ଧର ଶୁଣ୍ଡରେ ଚହଳ ।
ବେନଘଡ଼ି ବେଳ ଯେ ହୋଇଲାଣି ଆସି
ଦୈତ୍ୟବଳ ବେଗ ଯେ ମିଳିଲେ ସେଥି ଆସି
ଦୁଇବଳ ସେଠାରେ ହେଲେ ପିଟାପିଟି
ପେଲାପେଲି ହୋଇ ସେ ହେଲେ ଯେ ମୁରାଟି
ଦୂର ଜଣାଇଲା ଶତ୍ରୁଘନର ଆଗେ
ଅସୁରେ ଯୁଦ୍ଧକଲେ ତୁମ୍ଭର ସୈନ୍ୟ ସଙ୍ଗେ ।
ଶୁଣିକରି ରାମଭାଇ ଧନୁଧରି କରେ
ପ୍ରବେଶ ହେଲା ଯାଇ ଜନନୀରଠାରେ ।
ଚରଣେ ଲୋଟିଗଲା ଯେ ଶୋଇଲା କୁମର
ବୋଇଲେ ଦୈତ୍ୟବଳ ଅଇଲେ ଅପାର ।
ଆମ୍ଭର ସୈନ୍ୟସଙ୍ଗେ କଲେ ରଣ ରଙ୍ଗ
ସଜହୋଇ ଭଲରେ ଆଜ୍ଞାକର ବେଗ ।
ଶୁଣିଣ ମାଳାବତୀ କାଛେଣ ବେଶ ହେଲେ
ପାଞ୍ଚଘଡ଼ି ବେଳରେ ରଥରେ ବସିଲେ ।
ବତିଶି ଅଶ୍ୱ ଯେ ଯୋଚିଲେ ରଥରେ
ବିଜେକଲେ ଶତ୍ରୁଘନ ରଥର ଉପରେ ।
ବାଗ ବଜଡ଼ି ଧରି ରଥକୁ ଚଳ ଧିରେ
ମାଳାବତୀ ଜନନୀ ରଥ ବାହିଲା ସତ୍ୱରେ ।
ରଣଭୂମି ମଧ୍ୟରେ ରଥ ହେଲା ଯାଇ
ଅସୁରେ ଭଲା କୋପ୍ର ମାରନ୍ତି ଲୁହାଇ ।
ଲର୍କିଆ ଶକଣ୍ଡ ଶୂଳ ପ୍ରହାରନ୍ତି
ଖଣ୍ଡାଧରି ଝମକାଇ ଯାଉଣ ହାଣନ୍ତି ।
ଧନୁଶର ଧରିଣ ବିନ୍ଧନ୍ତି ନାରାଜ
ଯୁଦ୍ଧରେ ଦୈତ୍ୟବଳ ଦିଶନ୍ତି ବଡ଼ ତେଜ ।
ନାନାଶସ୍ତ୍ର ଧରି କରନ୍ତି ସୈନ୍ୟ ନାଶ
ଶରର ଆଚ୍ଛାଦେ ନ ଦିଶେ ପୁଣି ପଥ ।
ବାଦଲ ବଜ୍ରଶର ତୀକ୍ଷ୍ଣ ନାରାଜ ମାରେ
ଅବଶ୍ରାମ ବଳ ଅସୁରେ ଯୁଦ୍ଧ କଲେ ।
ଅନେକ ସୈନ୍ୟ ଅସୁର ବିନାଶି ପକାଇଲେ
ତିନଭାଗ ସୈନ୍ୟ ଶତ୍ରୁଘନର ଯେ ମଲେ ।
ବ୍ରହ୍ମଶର ଅସୁରା ଶର ସେ ଯେ କଲେ
ସ୍ୱର୍ଗ ମର୍ତ୍ତ୍ୟ ଦୁଇପୁର ଶରରେ ଲୁଚାଇଲେ ।
ଭଞ୍ଜଣ ପଳାଇଲେ ଅଯୋଧ୍ୟାର ସୈନ୍ୟ
ଶତ୍ରୁଘନ ପଛରେ ସେ ପଶିଲେ ଶରଣ ।

ଦେଖି ଶତ୍ରୁଘନ ପାଇ ଅକ୍ଷୟ ତୋଣ ଧରି
ବାରକୋଟି ବ୍ରହ୍ମଶର ମନରେ ସୁମରି ।
ମନ୍ତ୍ର ପଢ଼ି ଶର ବିନ୍ଧିଲେ ଲୁହାଇ
ବାରକୋଟି ସେନାପତି କନ୍ଧ ଛିଣ୍ଡି ଯାଇ ।
ପୁଣିହିଁ ଅଗ୍ନି ଶର ବିନ୍ଧିଲେକ ଜାଣ
ବାରକୋଟି ରଥ ଭସ୍ମ ହେଲେ ତତକ୍ଷଣ
ବାଦଲ ଶରକେ ସାତପଦ୍ମ ଶର ମାରି
ପତାକ ଦଳ ତାର ବେନଖଣ୍ଡ କରି ।
ଆଉଥରେ ବଜ୍ରଶର ବସାଇ ଗୁଣର
ବିନ୍ଧିବାରୁ ଶବଦ କରେ ମହାଘୋର ।
ବିଜୁଳି ପ୍ରାୟେ ଶର ମନୁ ବେଗେ ଗଲା
ଦୁଇ ଲକ୍ଷ ଦାନ୍ତି ବେକ କାଟି ପକାଇଲା ।
ପୁଣି ସେ ଅକ୍ଷୟ ତୋଣ ଧରିଣ ଶତ୍ରୁଘନ
ବଜ୍ରସୂଚି କୋଡ଼ିଏ ସହସ୍ରେ ମାରେ ପୁଣ ।
କୋଡ଼ିଏ ସହସ୍ର ଯେ ଦାନ୍ତି ବାକି ଥିଲେ
ବଜ୍ରସୂଚୀ ବାଜିବାରୁ ବେନିଖଣ୍ଡ ହେଲେ ।
ତୀକ୍ଷ୍ଣ ମୁନା ଆଠକୋଟି ତୋଣରେ ପୂରାଇ
ଟଙ୍କାର ବିନ୍ଧିଲେ ପୁଣି ଶ୍ରୀରାମଙ୍କ ଭାଇ ।
ମନ୍ତ୍ରପଢ଼ି ବୋଇଲେରେ ବେଗକରି ଯାଅ
ବାଦ୍ୟକାର ମାନଙ୍କର କନ୍ଧ ଯେ ଛିଣ୍ଡାଅ ।
ଏତେବୋଲି ନାରାଜ ପେଷିଦେଲେ ପାର
ଗର୍ଜନ କରି ଶର ହେଲେ ଯେ ବାହାର ।
ଆଠକୋଟି ନାରାଜକୁ ଆଠକୋଟି ବାଦ୍ୟକାର
ତତକ୍ଷଣେ ଛିଡ଼ିଲା ସେ ଯେ ସବୁଙ୍କର ଶିର ।
ଦୁଇଖଣ୍ଡି ହୋଇ ସେ ଭୂମିରେ ପଡ଼ିଲେ
କୋଡ଼ିଏ ସହସ୍ର ରାବଣର ପୁଅଛନ୍ତି ଭଲେ ।
ଦୈତ୍ୟଙ୍କର ମରିବାର ଦେଖି ପୁତ୍ରମାନ
ଅସୁରା ଶରକୁ ସେ କଲେ ବରଷଣ ।
ଛଅକୋଟି ଶତ୍ରୁଘନର ସୈନ୍ୟ ନାଶକଲେ
ଆଗେ ଛବିଶକୋଟି ନାଶ କରିଥିଲେ ।
ବତିଶ କୋଟି ଦୈତ୍ୟ ଯେ ମାଇଲେ ସେଦିନ
ତିନକୋଟି ରହିଲେ ଶତ୍ରୁଘନର ସୈନ୍ୟ ।
ପଞ୍ଚତିରିଶ କୋଟିରୁ ବତିଶକୋଟି ଗଲେ
ଦେଖିଣ ଶତ୍ରୁଘନ ମନରେ କ୍ରୋଧହେଲେ ।
ଅକ୍ଷୟେ ତୋଣ ଭିତରୁ ବ୍ରହ୍ମଶର ବସାଇଲେ
ମନ୍ତ୍ର ବଳ ସୁମରିଣ ବେଗେ ଛାଡ଼ିଦେଲେ ।

ଗର୍ଜନ କରିଣ ଶର ହେଳା ଯେ ବାହାର
ହାଣି ପକାଇଲା ବେଗେ ରାବଣକୁମର । .
ସେତେବେଳକୁ ବେଳବୁଡ଼ ପାଞ୍ଚଘଡ଼ି
ରାବଣଙ୍କର ନାତି ସମସ୍ତେ ଯେ ମରି ।
ହାନ ପାଞ୍ଚଜଣ ସେଥିରୁ ଉବୁରିଲେ
ପାଞ୍ଚରଥେ ଚଢ଼ି କରି ବେଗେ ଚଳିଗଲେ ।
ଶତ୍ରୁଘ୍ନ ଦେଖିଲେ ଯେ ରଣଭୂମି ପୁଣ
ଦୈତ୍ୟବଳମାନେ ଯେ ହେଲେ ନଷ୍ଟୋଧନ ।
ଆପଣାର ସୈନ୍ୟ ପୁଣି ବହୁତ ମରିଲେ
ଅଳପ ତ ସୈନ୍ୟ ଆସି ସଙ୍ଗରେ ମିଶିଲେ ।
ଶତ୍ରୁଘ୍ନ ବୋଇଲେ ମୋର ବୋଲ ଶୁଣ
କେତେ ମଲେ କେତେ ସୈନ୍ୟ ରହିଲେ ପୁଣ
ସୁମନ୍ତ୍ର ମନ୍ତ୍ରୀର ପୁଅ କହେ କରଯୋଡ଼ି
ବତିଶକୋଟି ସୈନ୍ୟ ତୋର ଆଜ ଯୁଦ୍ଧେ ମରି
ତିନିକୋଟି ସୈନ୍ୟ ତୋର ରହିଲେ ବରତ
ଶୁଣିଣ ଶତ୍ରୁଘ୍ନ ଅସ୍ଥିର ଯେ ମତ ।
ଆଖି ଥନ ଥନ କରି ମନ୍ତ୍ରୀକି ବୋଇଲା
ଆଜରେ ଯୁଦ୍ଧରେ ଦୈତ୍ୟ ମୋତେ ଜିଣିଗଲା
ମନ୍ତ୍ରୀର ସୁତ ବୋଲେ ତୁମ୍ଭେ କିଛି ନ ବରିଷ
ଦେବେ ସାହାବଳ ଯେ ଅଟନ୍ତି ତୁମ୍ଭର ।
ଯେତେବଳ ତୋହର ଯେ ମରିଛନ୍ତି ଦେବ
ରଣରେ ଦେବତାମାନେ ଜିଆଇଲେ ସର୍ବ ।
ଶତ୍ରୁଘ୍ନ ବୋଇଲେ ହୋ କେମନ୍ତ ଜାଣିଲୁ
ମରିବା ଜୀଇବା କଥା ମୋ ଆଗେ ବଖାଣିଲୁ
ସୁମନ୍ତ୍ର ମନ୍ତ୍ରୀର ପୁଅ କହେ କରଯୋଡ଼ି
ଦେବକୂଟ ହୋଇଅଛି ଶୁଣ ହେ ଦଣ୍ଡଧାରୀ ।
ସମୁଦ୍ର ଭିତରେ ଗଡ଼ ବୁଝି ରାବଣର
ଦେବତାଙ୍କୁ କଷ୍ଟ ସେ ଦେଲାକ ଅପାର ।
ତାଙ୍କୁ ମାରିବା ପାଇଁ ନାରାୟଣ ଜନ୍ମ
ଶ୍ରୀରାମ ତୁମ୍ଭେ ସେହୁ ଜାତ ହେଲେ ପୁଣ ।
ଅନନ୍ତ ମୂରତି ଅଟେ ତୋ ଭାଇ ଲକ୍ଷ୍ମଣ
ସୁଦର୍ଶନ ଚକ୍ର ଅଟେ ଭରତ ଯେ ପୁଣ ।
ଓହାଣ ବୁଡେକ ଶଙ୍ଖ ତୁମ୍ଭେ ହେଲୁ ଜାତ
ଦେବେ ପରା କହିଗଲେ ତୁମ୍ଭର ଆଗେତ ।
ସେ କଥାକୁ ପାଶୋରିଲ ତୁମ୍ଭେ ଏବେ ପୁଣ
ତୁମ୍ଭ ହସ୍ତେ ମରିବ ଶତମୁଖା ଯେ ରାବଣ ।
ଲକ୍ଷ୍ମଣର ହସ୍ତେ ମୃତ୍ୟୁ ଏକମୁଖା ହେବ
ଦଶମୁଖା ରାବଣକୁ ଶ୍ରୀରାମ ମାରିବ ।
ସହସ୍ର ମୁଖା ରାବଣ ଜାନକୀ ହସ୍ତେ ମରି
ତେବେ ସେ ଦେବତାଏ ରହିବେ ସ୍ୱର୍ଗପୁରୀ ।
ଦେବତାଏ ବସ୍ତିର କୂଟ କରିଛନ୍ତି
ରାମଙ୍କର ସୈନ୍ୟଙ୍କୁ ରାତିରେ ଜିଆନ୍ତି ।
ତୁମ୍ଭ ସୈନ୍ୟ କାଲି ଆସି ରଜନୀରେ ପୁଣ
ଦେବେ ଜିଆଇଣ ଗଲେ ସ୍ୱର୍ଗସ୍ଥାନ ।
ମୀନାବତୀ ସୂତଗୋଟି ମୁହିଁ ପୁଣ ଜାଣି
ମୋତେ କହିଗଲେ ଦେବ ଭୃଗୁମୁନି ପୁଣି ।
ଶତ୍ରୁଘ୍ନ ବୋଲେ ତୁରେ ଆମ୍ଭଙ୍କୁ ନ କହୁ
ପ୍ରକାଶ ନ କରି କଥା ଗୁପତରେ କହୁ ।
ମନ୍ତ୍ରୀପୁତ୍ର ବୋଲଇ ଯେ ସେ ନୁହେ ପ୍ରକାଶ
ଯେତେବେଳେ ମୁନି ମୋତେ କହିଲେ ସନ୍ଦେଶ
ବୋଇଲେ ଏ କଥାକୁ ତୁ ପ୍ରକାଶ ନ କରୁ
ପଲ୍ଲଟିଲାବେଳେ ତୁ ରାଜାଙ୍କୁ କହିବୁ ।
ମନକୁ କହିଲେରେ ହେବୁ ପ୍ରାଣେ ନାଶ
ଏତେବୋଲି କହିଗଲେ କଶ୍ୟପଙ୍କ ଶିଷ୍ୟ ।
ତାହା ଶୁଣି ଶତ୍ରୁଘ୍ନ ସନ୍ତୋଷ ହୋଇଲେ
ଜୟେ ଶଙ୍ଖ ବଜାଇଣ ନିଜ ରାଜ୍ୟ ଗଲେ ।
ସିଂହଦ୍ୱାରେ ରଥ ଯାଇ ହୋଇଲା ପ୍ରବେଶ
ରଥରୁ ଓହ୍ଲାଇଲେ ଦଶରଥ ଶିଷ୍ୟ ।
ଜନନୀ ମାନବତୀ ରଥରୁ ଓହ୍ଲାଇଲା
ଭିତର ନବରେ ଯାଇ ପ୍ରବେଶ ହୋଇଲା ।
ଦାସୀମାନଗଣ ଯେ ଆସିଲେ ବେଗ ପୁଣ
ପଦହସ୍ତ ମଣାଇ ନେଲେ ଭିତରକୁ ଜାଣ ।
ମର୍ଦ୍ଦନ ମାଜଣା ଯେ ଭିତରେ ଯାଇ ହେଲେ
ସୁବର୍ଣ୍ଣ ଭରିଆରେ ସୁବାସ ଜଳ ଦେଲେ ।
ସ୍ନାହାନ ସାରି ବେଗ ହୋଇଲେ ନିର୍ମଳ
ଛତିଶ ରସେ ଭୋଜନ କରନ୍ତି ହୋଇ ସ୍ଥିର ।
ଆଚମନ ସାରି ବେଗ ତାମ୍ବୁଳ ଭୁଞ୍ଜିଲେ
ସବୁ ସପତଣୀମାନେ ଆସିଣ ମିଳିଲେ ।
କଥା ହୋଇଲେ ସେଥିରେ ଯେ ଗଲା ବେନଘଡ଼ି
ସମସ୍ତେ ମେଲାଣି ହୋଇ ଗଲେକ ବାହୁଡ଼ି ।
ସୁପାଡ଼ି ଶେଯେ ମାନବତୀ ବିଜେ କଲେ
ନିଶ୍ଚିନ୍ତ ହୋଇଣ ସେ ପଲଙ୍କେ ଶୋଇଲେ ।

ଦାସୀ ପରିଚାରୀ ଆସି ପାଦ ମଞ୍ଜାଳଲେ
ଏଥୁଅନନ୍ତରେ କଥା ଶୁଣ ଭଲେ ।
ଶତ୍ରୁଘନ ସିଂହଦ୍ୱାରେ ବିଜେ କରିଥିଲେ
ବେହେରା ଖୁଣ୍ଟିଆ ପହଣ୍ଡ ମଣାଇଲେ ।
ତାହାର ମଣ୍ଡପ ଜଗଣ୍ଡରେ ବିଜେକଲେ
ମର୍ଦ୍ଦନ ମାଜଣା ସେ ସେଠାବରେ ହେଲେ ।
ସୁବାସ ପାଣିରେ ପୁଣ କଲେକ ସ୍ନାହାନ
ଶ୍ରୀଅଙ୍ଗ ପୋଛୁ ସେ ଛଡାଇଲି ଜାଣ ।
ଅମଳାଙ୍ଗ ବସ୍ତ୍ର ପିନ୍ଧି ଦୋସଡ଼ା ଅଙ୍ଗେ ଦେଲେ
ବଣଦଗପାଳଙ୍କୁ ବର୍ଣ୍ଣନ ବେଦେ କଲେ ।
କମଳ ପିଢ଼ାରେ ବସିଲେ ଯାଇ ପୁଣ
ମହାଦେଈ ଅନ୍ନ ପରଷିଲେ ଜାଣ ।
ଛଡ଼ରସେ ଭୋଜନ କଲେ ସେ ସମସ୍ତଇ
ଆଚୋବନ ସାରିଣ ପ୍ରବେଶ ହେଲେ ଯାଇ ।
କର୍ପୂର ତାମ୍ବୁଳ ବଡ଼ଙ୍ଗ ଭୁଞ୍ଜିଲେ
ପଲଙ୍କ ଉପରେ ଯାଇ ସୁଖେ ନିଦ୍ରାଗଲେ ।
ଦାସୀମାନେ ଆସି କର ଚରଣ ମଞ୍ଜାଳଲେ
ମହାଦେଈ ପୁଣି ଭେଶେ ସୁବେଶ ହେଲେ ।
ଅମଳାନ ଶାଢ଼ୀ ପିନ୍ଧି ଜନକ ଦୁହିତା
ସ୍ୱାମୀ ପାଶେ ଆସି ମିଳେ ସେ ବନିତା ।
ଦାସୀମାନେ ସର୍ବେ ଅନ୍ତର ହୋଇଗଲେ
ସ୍ୱାମୀ ଜେମା ଯେ ନିଦ୍ରା ଶୋଇଲେ ।
ନାନାରସେ ଲୀଳାକଲେ ଦେନଜନ
ନିଦ୍ରାରେ ଅଚେତନ ହେଲେ ଦେନଜନ ।
ଏଥୁଅନନ୍ତରେ ଶୁଣ ଶାକମ୍ବରୀ
ଭଇରବୀ ଦେବୀ ଥିଲେ କନକ ଯେ ଗିରି ।
ବାଆନ କୋଟି ପିଶାଚୁଣି ସଙ୍ଗତରେ ଘେନି
ରଣଭୂମିରେ ପ୍ରବେଶ ହେଲେ ଯାଇ ପୁଣି ।
ଦେଖିଲେ ଅନେକ ଅସୁର ମରିଛନ୍ତି
ସନ୍ତୋଷେ ପିଶାଚୁଣି ତାହାକୁ ଭକ୍ଷନ୍ତି
ବାଞ୍ଛକରି ଦୈତ୍ୟବଳ କଲେ ସେ ଆହାର
ଦୁଇଘଡ଼ିରେ ରଣଭୂମିରେ ମରିଲେଦୈତ୍ୟବଳ
ଦେଖିଲେ ଆଗରେ ଶୋଣିତ ନଦୀ ବହେ
ରୁଧିର ପାନ କରି ସନ୍ତୋଷ ମନରେ ହୁଏ ।
ରଣଭୂଇଁରେ ମାନବଙ୍କୁ ଧଇଲେକ ଯାଇ
ଗଣ୍ଡିମୁଣ୍ଡ ଯୋଡ଼ିଣ ଲକ୍ଷ କଲେ ତହିଁ ।

ତିରିଶକୋଟି ମାନବ ବଳ ଯେ ଥିଲେ
ଗଣ୍ଡି ମୁଣ୍ଡ ଯୋଡ଼ି ଦେବ ପଙ୍କତେ ଚଳଗଲେ
ଆନନ୍ଦ ହୋଇଣ ସୁବର୍ଣ୍ଣ ଗିରିପୁର
ନିଶ୍ଚିନ୍ତରେ ତହିଁରେ ରହିଲେ ଦେବୀ ଭଲେ
ଏଥୁଅନନ୍ତରେ ବୃହସ୍ପତି ଜାଣ
ସ୍ୱର୍ଗପୁରରୁ ବିଜୟ କଲେ ତତକ୍ଷଣ ।
ଅଯୋଧ୍ୟା ନଗରେ ଯାଇ ହେଲେ ପରବେଶ
ରଣଭୂମି ଦେଖି ମନରେ ହୋଇଲେ ବିରସ
ସଞ୍ଜିବନୀ ମନ୍ତ୍ରରେ ପାଣି ସେ ମନ୍ତ୍ରିଲେ
ରଣଭୂମି ଗୋଠାଯାକ ନେଇଣ ସିଞ୍ଚିଲେ ।
ଗଣ୍ଡିମୁଣ୍ଡ ଲାଗି ପୁଣ ପାଇଲେ ଜୀବନ
ଅମୃତ ବୃଷ୍ଟି କଲେ ଗୁରୁଦେବ ଜାଣ ।
ଜୀବପାଇ ସମସ୍ତେ ଉଠିଲେ ଏକାବେଳେ
ମାର ମାର ଧର ଧର ଡାକନ୍ତି ଉଚ୍ଚରେ ।
ନିଦ୍ରାଗଲା ପ୍ରାୟେ ଯେ ସମସ୍ତେ ମଣିଛନ୍ତି
ଜୀବ ପାଇ ଉଠିବାରୁ ଆଚମ୍ବିତ ହୁଅନ୍ତି ।
ଧନୁଶରମାନ ସେ ଯେ ଗୋଟାଇ ଧଇଲେ
ଶାବେଳ ଯେ କୋନ୍ତ ଖଲ ତଳରୁ ଆଣିଲେ
ତୀକ୍ଷ୍ଣ ମୁନାମାନ କରେ ଧରି
ଶତ୍ରୁ ଶତେଗୁଣେ ସେ କଲେ ହାଲହୋଳ ।
ଶବଦରେ ମେରୁଗିରି ମାନ ଟମକିଲା
ଅଯୋଧ୍ୟା ନଗରଯାକ ଚେତା ଯେ ହୋଇଲା
ଶତ୍ରୁଘନ ଉଠିଲେ ଉଠିଲେ ରାଣୀହଂସ
ଜନମାମାନେ ନିଦ୍ରା ଛାଡ଼ିଣ ଅବକାଶ ।
ଶୁଣି ଶତ୍ରୁଘନ ବିଚାରକଲେକ ତହିଁ ପୁଣ
ମାତାମାନେ ଡାକଇଲେ ବାବୁରେ ଶୁଣ ମୋ ବଚନ
ରଣ ଭୂମିଗୋଠା ବଡ଼ ଚହଲ ହୋଇଲା
ଅସୁର ବଳ କି ଏଥି ପ୍ରବେଶ ହୋଇଲା ।
ଶୁଣିକରି ଶତ୍ରୁଘନ ସିଂହଦ୍ୱାରକୁ ଗଲେ
ଦୂତ ଡକାଇଣ ରଣ ଭୂମିକି ଛାଡ଼ିଲେ ।
ଯୁଦ୍ଧଭୂମି ଦୂତମାନେ ଦେଖିଲେ ପୁଣ ଯାଇ
ଆପଣା ସୈନ୍ୟମାନେ କରନ୍ତି ରବ ତହିଁ ।
ଦୂତମାନେ ବୋଇଲେ କରଯୋଡ଼ି
ପଦାନ୍ତ ଦଳ ବୋଲନ୍ତି ଅସୁର ଆସ୍ତେ ଲେଢ଼ି
ଦୂତମାନେ ବୋଇଲେ ଗଲେଣି ସର୍ବେ ମରି
ଶତ୍ରୁଘନ ସାରି ତାଙ୍କୁ ଛେଦିଲେ ଚକ୍ରଧରି ।

ପାଞ୍ଚସାତ ଜନ୍ମବାରୁ ପଳାଇ ପୁଣ ଗଲେ
ପାଞ୍ଚଘଡ଼ି ଠାରେ ରଣ ସରିଲା ସେତେବେଳେ ।
ଦଶଘଡ଼ି ରାତ୍ର ହେଲାଣି ଏବେ ଆସି
ଏତେବେଳେଯାଏ ତୁମ୍ଭେ କେଉଁଠାରେ ଲୁଚି
ସେନାପତିସ୍ତୁ ବୋଲନ୍ତିଆମ୍ଭେମୋହଯାଇଥିଲୁ
ମୋହଚେତ ଏତେବେଳେ ମୋହରୁ ଉଠିଲୁ
ଶୁଣିଣ ପଦାନ୍ତିବଳ ଯେ ଯାହା ପୁର ଗଲେ
ଦୂତମାନେ ଲେଉଟିଣ ଶତ୍ରୁଘନଙ୍କୁ ଭଣିଲେ
ଶୁଣିକରି ଶତ୍ରୁଘନ ଆନନ୍ଦ ମନ ହେଲା
ଦେବତାମାନଙ୍କୁ ସେ ନମସ୍କାର କଲା ।
ସାମନ୍ତ ପାଟ ଯେ ସେଠାରେ ଥିବେ ରହି
ତାଙ୍କୁ ଆଜ୍ଞାଦେଲେ ସୈନ୍ୟ ଆଣ ଯା କଟାଇ
ଶୁଣି ପାଟ ସାମନ୍ତ ବରଗିଲେ ଦୂତ
ଧେଣ୍ଡୁରା ଫେରାଇଲେ ନଗର ସମସ୍ତ ।
ଯେଉଁ ଲୋକମାନେ ରଣରୁ ଆସିଥିଲେ
ଶବଦ ଶୁଣିକରି ସେହୁ ସଜ ହେଲେ ।
ଯେଉଁ ଲୋକମାନେ ମରିଥିଲେ ପୁଣ
ମଲାଠାରୁ ଜୀଇଣ ଆସିଲେ ସେମାନେ ।
ଅଇଲ ବେଳକୁ ନିଜ ଘରେ ଯେ ତାଙ୍କର
ସ୍ତ୍ରୀଯା ପୁତ୍ର ଝିଇ କାନ୍ଦନ୍ତି ଅପାର ।
କେ ବୋଲେ କେଣେ ଗଲେ ଈଶ୍ୱର ମୋହର
କେ ବୋଲେ ରଣେମୋର ପଡ଼ିଲେ ବଡ଼ଶୁର
କେ ବୋଲଇ ପ୍ରଭୁବର ଯୁଦ୍ଧରେ ମୋର ମଲା
ପୁରୁଷ ବୋଲୁ ମୋର ବିଧବା ହୋଇଲା ।
କେ ବୋଲେ ସୁରନ୍ତ ପଡ଼ିଲେ ମୋର ରଣେ
ବଡପ୍ରାଣୀ ଯେଣ ମୁଁ ବଞ୍ଚିବି କେସନେ ।
ଏତେବୋଲି ସମସ୍ତେ ଯେ କରନ୍ତି ରୋଦନ
ଏହି ସମୟେ ମିଳିଲେ ସକଳେ ଯାଇ ପୁଣ ।
ଦେଖିଣ ଆନନ୍ଦ ହୋଇଲେ ସକଳ ପୁଣ
ଏତେ ଉତ୍ସବ କମ୍ପାଇ କଲେ ଆଜ ଦିନ ।
ସେ ବୋଇଲେ ଯୁଦ୍ଧ ଭୂଇଁରେ ମୋହଗଲୁ
ରଜନୀର କାଳରେ ଚେତା ଯେ ପାଇଲୁ ।
ଚେତା ପାଇବାରୁ ଦେଖିଲୁ ଆମ୍ଭେ ପୁଣି
ରଣଖୋଳ ଉପେକ୍ଷି ଗଲେଣି ସର୍ବପ୍ରାଣୀ ।
ସେଠାରୁ ଆମ୍ଭେମାନେ ନିଜ ଘରକୁ ଆସୁ
ତୁମ୍ଭମାନଙ୍କର ଯେ ଶୋକମାନ ଦେଖୁଁ ।

ସେମାନେ ବୋଇଲେ ହେ ଶବଦ ହେଲା ପୁଣ
ଆଜ ଯୁଦ୍ଧରେ ଯେ ପଡ଼ିଲେ ସର୍ବପୁଣ ।
ସେଥିର ସକାସେ ରୋଦନ ଆମ୍ଭେ କଲୁ
ଏବେ ଯେ ନୟନରେ ତୁମ୍ଭଙ୍କୁ ଦେଖିଲୁ ।
ଏହାଶୁଣି ସେମାନେ ସ୍ନାହାନ ବେଗେକଲେ
ଭୋଜନ ସାରିଣ ବେଶ ପୁଣ ହେଲେ ।
ଶତ୍ରୁଘନ ଆଜ୍ଞାରେ ଗଲେକ ବହନ
ସିଂହଦ୍ୱାରେ ଯାଇଣ ପ୍ରବେଶ ହେଲେ ପୁଣ ।
ଆଠକୋଟି ବାଦ୍ୟକାର ପ୍ରବେଶ ପୁଣିହେଲେ
ତାହାଙ୍କୁ ସ୍ତୁହିଁଣ ରାମ ଭାଇ ଆଜ୍ଞାଦେଲେ ।
ରଣଭୂମି ପଦାରେ ସମସ୍ତେ ହୁଅ ଠୁଳ
ଅସୁର ଆସିଲେ ତାଙ୍କ ସଙ୍ଗରେ କରଗୋଳ
ଶୁଣିକରି ପଦାନ୍ତିବଳ ସେନାପତିମାନେ
ଯୁଦ୍ଧ ପଦାରେ ପ୍ରବେଶ ଯାଇ ତତକ୍ଷଣେ ।
ବୀରବାଦ୍ୟ ବଜାଇଣ ଶବଦ ଯାଇଁ କଲେ
ଧର ଧର ମାର ମାର ବୋଲନ୍ତି ତୁଣ୍ଡରେ ।
ଏହି ସମୟେ ଦଶରଥଙ୍କର ବାଳ
ପ୍ରବେଶ ହୋଇଣ ରଥରେ ବସିଲେ ତତକ୍ଷଣ
ଜନନୀ ମାଳାବନ୍ତି ଆସିଣ ବସିଲେ
ଅଶ୍ୱ ଆଠଯୋଡ଼ା ନେଇଣ ରଥରେଯୋଚଲେ
ବାଗ ଦଉଡ଼ି ଧରିଣ ରଥ ଦେଲେ ସ୍ଥଳ
ଶବଦ କରିଣ ରଥ ବେଗେ ଗଲା ଚଳ ।
ରଣ ପାଦରେ ଯାଇଁ ହେଲେ ପରବେଶ
ତ୍ରିଣଧନୁ ଯେଣ ଶତ୍ରୁଘନ ପରବେଶ ।
ବୃହସ୍ପତି ଦେବଗୁରୁ ରଣଭୂମିରେ ଥିଲେ
ଗହଳ ଦେଖିଣ ସେ ସ୍ୱର୍ଗପୁରେ ଗଲେ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଗଜସ୍ତ
ଅଲଙ୍କା ପୁରରେ ଶତମୁଖା ବଜେକରି ।
ରଜନୀ ସପ୍ତଘଡ଼ି ସମୟରେ ପୁଣ
ଯୁଦ୍ଧରୁ ମିଳିଲେ ଯାଇ ରଥି ପାଞ୍ଚଜଣ ।
ବଡ଼ଯୋଡ଼ ରାବଣ ଆଗରେ ଛିଡ଼ାହେଲେ
ଆଜ୍ଞା ଯୁଦ୍ଧକଥା ଦେବ ଶୁଣ ହେ ବୋଇଲେ ।
ତୁମ୍ଭ ପୁତ୍ରନାତି ସୈନ୍ୟ ଯୁଦ୍ଧକଲେ ପୁଣ
ଶତ୍ରୁଘନ ସୈନ୍ୟଙ୍କୁ ମାରେ ବିକୋପିଣ ।
ସକଳ ସୈନ୍ୟ ତାର ବକୋଷ୍ଟି ମାଇଲେ
ଅଳପ ସୈନ୍ୟ ତାର ସୁଡ଼ି ପଳାଇଲେ ।

ଦେଖିଣ ଶତ୍ରୁଘନ ପାଞ୍ଚଶର ମାରି
ପୂର୍ବନାଭ ସୈନ୍ୟ ରଥୀ ମଲେ ଯେ ଭୂମ୍ଭର ।
ପାଞ୍ଚଜଣ ବର୍ତ୍ତି ଅଇଲୁ ଦେବ ପୁଣ
ଶୁଣିକରି ଶତମୁଖା କଲା ଯେ ଦାରୁଣ୍ୟ ।
ପାଞ୍ଚସାତ ରହିବାରୁ ପଳାଇ ପୁଣ ଗଲେ
ପାଞ୍ଚଘଡ଼ି ଠାବରେ ରଣ ସନ୍ଧିଲା ସେତେବେଳେ ।
ଦଶଘଡ଼ି ସମ୍ବତ ହେଲାଣି ଏବେ ଆସି
ଏତେବେଳଯାଏ ଭୂମ୍ଭେ ଯେଉଁଠାରେ ଲୁଚି
ସେନାପତିଏ ବୋଲନ୍ତି ଆମ୍ଭେ ମୋହଯାଇଥିଲୁ
ମୋହଚେତ ଏତେବେଳେ ମୋହରୁ ଉଠିଲୁ
ଶୁଣିଣ ପଦାନ୍ତବଳ ଯେ ସାହା ପୂର ଗଲେ
ଦୂତମାନେ ଲେଉଟିଣ ଶତ୍ରୁଘନଙ୍କୁ କହିଲେ
ଶୁଣିକରି ଶତ୍ରୁଘନ ଆନନ୍ଦ ମନେ ହେଲା
ଦେବତାମାନଙ୍କୁ ସେ ନମସ୍କାର କଲା ।
ସାମନ୍ତ ପାଣ ଯେ ସେଠାରେ ଥିଲେ ରହି
ତାଙ୍କୁ ଆଜ୍ଞାଦେଲେ ସୈନ୍ୟ ଆଣ ଯା କଢ଼ାଇ
ଶୁଣି ପାଣ ସାମନ୍ତ ବଉଗିଲେ ଦୂତ
ଧେଣ୍ଡୁରା ଫେରାଇଲେ ନଗର ସମସ୍ତ ।
ଯେଉଁ ଲୋକମାନେ ରଣରୁ ଆସିଥିଲେ
ଶବଦ ଶୁଣିକରି ସେହୁ ସଜ ହେଲେ ।
ଯେଉଁ ଲୋକମାନେ ମରିଥିଲେ ପୁଣ
ମଲାଠାରୁ ଜୀଇଣ ଆସିଲେ ସେମାନ ।
ଅଇଲା ବେଳକୁ ନିଜ ଘରେ ଯେ ତାଙ୍କର
ଭାରଯା ପୁତ୍ର ଝିଅ କାନ୍ଦନ୍ତି ଅପାର ।
କେ ବୋଲେ କେଉଣେ ଗଲେ ଝିଅର ମୋହର
କେ ବୋଲେ ରଣେ ମୋର ପଡ଼ିଲେ ଦେଢ଼ଶୁର
କେ ବୋଲେ ପୁରୁଷ ଯୁଦ୍ଧରେ ମୋର ମଲା
ଘୁଞ୍ଚିଲା ବୋହୁ ମୋର ବିଧବା ହୋଇଲା ।
କେ ବୋଲେ ଗୃହସ୍ତ ପଡ଼ିଲେ ମୋର ରଣେ
ଦଗ୍ଧପ୍ରାଣୀ ଯେଣୁ ମୁଁ ବଞ୍ଚିବି କେମନେ ।
ଏତେବୋଲି ସମସ୍ତେ କରନ୍ତି ରୋଦନ
ଏ ସମସ୍ତେ ମିଳିଲେ ସକଳେ ଧାଇ ପୁଣ ।
ଦେଖିଣ ଆନନ୍ଦ ହୋଇଲେ ସକଳ ପୁଣ
ଏତେ ଉତ୍ସବ କର୍ମାଇଁ କଲେ ଆନନ୍ଦନ ।
ବେନଖଣ୍ଡ ହୋଇଣ ପଡ଼ିଲେ ଦୈତ୍ୟବଳ
ସମସ୍ତେ ମଲେ ସେଥିରୁ ଉଭୁରେ ଦଶବୀର
ଦଶରଥ ଚଢ଼ିଣ ସେ ପଳାଇଣ ଗଲେ
ଏଗାର ଘଡ଼ିରେ ଅଲଙ୍କା ପଲରେ ପାଇଲେ
ଶତମୁଖା ଆଗରେ କହିଲେ କର ଯୋଡ଼ି
ଦୁଇଦଣ୍ଡରେ ଶତ୍ରୁଘନ ତାର ସୈନ୍ୟ ମାରି ।
ଶୁଣି ସୁବର୍ଣ୍ଣେଶ୍ୱର ଚମତ୍କାର ହେଲା
ଅନେକ ଶୋକ କରିଣ ମନରେ ବିସ୍ମରିଲା ।
ସେ ବୋଇଲେ ଯୁଦ୍ଧ ଭୂଇଁରେ ମୋହଗଲୁ
ରଜନୀର କାଳରେ ଚେତା ଯେ ପାଇଲୁ ।
ଚେତା ପାଇବାରୁ ଦେଖିଲୁ ଆମ୍ଭେ ପୁଣି
ରଣଭୋଳ ଉପେକ୍ଷି ଗଲେଣି ସର୍ବପ୍ରାଣୀ ।
ସେଠାରୁ ଆମ୍ଭମାନେ ନିଜ ଘରକୁ ଆସୁ
କୁମ୍ଭମାନଙ୍କର ଯେ ଶୋକମାନ ଦେଖୁଁ ।
ସେମାନେ ବୋଇଲେ ହେ ଶବଦ ହେଲାପୁଣ
ଆଜ ଯୁଦ୍ଧରେ ଯେ ପଡ଼ିଲେ ସର୍ବେପୁଣ ।
ସେଥିର ଶକାଶେ ରୋଦନ ଆମ୍ଭେ କଲୁ
ଏବେ ଯେ ନୟନରେ ତୁମ୍ଭଙ୍କୁ ଦେଖିଲୁ ।
ଏହା ଶୁଣି ସେମାନେ ସ୍ନାହାନ ବେଗେ କଲେ
ଭୋଜନ ସାରିଣ ବେଶ ପୁଣ ହେଲେ ।
ଶତ୍ରୁଘନ ଆଜ୍ଞାରେ ଗଲେକ ବହନ
ସିଂହଦ୍ୱାରେ ଯାଇଣ ପ୍ରବେଶ ପୁଣି ହେଲେ ।
ଆଠକୋଟି ବାଦ୍ୟକାର ପ୍ରବେଶ ପୁଣି ହେଲେ
ତାହାଙ୍କୁ ସୁବର୍ଣ୍ଣ ରାମ ଭାଇ ଆଜ୍ଞାଦେଲେ ।
ରଣଭୂମି ପଦାରେ ସମସ୍ତେ ହୁଅ ଠୁଳ
ଅସୁର ଆସିଲେ ତାଙ୍କ ସଙ୍ଗରେ କରିଗୋଳ
ଶୁଣିକରି ପଦାନ୍ତବଳ ସେନାପତିମାନେ
ଯୁଦ୍ଧ ପଦାରେ ପ୍ରବେଶ ଯାଇ ତତକ୍ଷଣେ ।
ସାରବାଦ୍ୟ ବଜାଇଣ ଶବଦ ଯାଇଁ କଲେ
ଧର ଧର ମାର ମାର ବୋଲନ୍ତି ତୁଣ୍ଡରେ ।
ଏଣୁ ସମସ୍ତେ ଦଶରଥଙ୍କର ବାଳ
ପ୍ରବେଶ ହୋଇଣ ରଥରେ ବସିଲେ ତତକ୍ଷଣ
କନମା ମାଳାବନ୍ତି ଆସିଣ ବସିଲେ
ଅଶ୍ୱ ଆଠଯୋଡ଼ାନେଇ ରଥରେ ଯୋଚିଲେ
ବାଗ ବଜଡ଼ି ଧରିଣ ରଥ ଦେଲେ ଚଳ
ଶବଦ କରିଣ ରଥ ବେଗେ ଗଲା ଚଳ ।
ପିନାକୀ ଯେ ଧନୁଧରେ ଈଶ୍ୱର ପୁଣ
ତାକୁସରି କେହୁହେବ ଶତମୁଖା ଯେ ସ୍ୱବଶ

ମନ୍ଦ ଲୋକଙ୍କୁ ଯାଉ ଦେବେ ଶାଆନ୍ତ ଆସି
ବୈକୁଣ୍ଠ କରଣ ଅସୁର ବଳ ଧ୍ୱଂସି ।
ଶାଙ୍ଖ ବୋଇଲେ ଶର ରଣ ପଦାରେ ଥିଲା
ରଣଗୋଳ କରିବାକୁ ନ ବହୁର କଲା
ଈଶ୍ୱର ବୋଇଲେ ସର୍ବେ ମାର ରାମଚାନ୍ଦ
ଖଣ୍ଡା ଝମକାଇ ପୁଣ ବାହୁମାନ ତୋଳ ।
ବୋଇଲେ ଉଜ୍ଜଳ ଲକ୍ଷ୍ମୀ ଅଟେ ଶତ୍ରୁଘନ
ଦୁଇଣରେ ନାଶକଲ ଦୈତ୍ୟବଳ ପୁଣ ।
ଦେବତାଏ ଉପରେ ରହି ଦେଖୁଥିଲେ
ଭଲ ବୁଦ୍ଧି ରାମ ଶ୍ରୀଇ କଲ ସେ ବୋଇଲେ
ଏବେ ଦୈତ୍ୟବଳକୁ ମାରିବେ ଶତ୍ରୁଘନ
ଦେବତାଙ୍କର କଷ୍ଟ ଯେ ସରିବ ପୁଣ ।
ଏତେକେ ଦେବତାଏ ହରଷ ସର୍ବେ ହେଲେ
ଶତ୍ରୁଘନର ଶିରେ କୁସୁମ ବରଷିଲେ ।
ଦେଖିକରି ଶତ୍ରୁଘନ ମନେ ଚକ୍ଷଶଲେ
ଦେବତାଏ ପୁଷ୍ପବୃଷ୍ଟି ମୋହଣରେ କଲେ ।
କରଯୋଡ଼ି ନମସ୍କାରି ଶତ୍ରୁଘନ କଲା
ମୋହଠାରେ ଦୟାକର ବୋଲିଣ ବୋଇଲା
ସୈନ୍ୟଙ୍କୁ ବୋଇଲେ ଯେଝାଘରେ ଚଳ
ସ୍ନାହାନ ଭୋଜନ ସାରି ଆସି ତତକାଳ ।
ଅସୁରେ ଯେ କାମରୂପି ଅଟନ୍ତି ମାୟାବୀ
ତାହାଙ୍କୁ ନବେଧିଲେ ଆମ୍ଭର ହେବ ସିଦ୍ଧି ।
ଆନନ୍ଦି ସକଳ ସୈନ୍ୟ ମଲେଟି ତାଙ୍କର
କ୍ରୋଧରେ ଶତମୁଖା ଆସିବ ଏଥର ।
ଶୁଣିକ ସର୍ବ ସୈନ୍ୟ ବେଗ ଚଳଗଲେ
ନିଜ ଘର ମାନଙ୍କରେ ପ୍ରବେଶ ହୋଇଲେ ।
ସ୍ନାନ ମାର୍ଜନା ହୋଇ ଭୋଜନ କଲେ ପୁଣ
ଧନୁଶରମାନ ସବୁ କଲେ ସମ୍ଭାଳଣ ।
ଯାହାର ଯେଉଁ ଆୟୁଧମାନ ସଜକଲେ
କାଇମାଟି ଲୁହାସାଞ୍ଜୁ ପିନ୍ଧିଣ ସଜହେଲେ
କେତୁ ରକ୍ତବର୍ଣ୍ଣ ସେ ଦିଶନ୍ତି ବଡ଼ ଘୋର
କେତୁ କଳାବର୍ଣ୍ଣ ଯେ ମେଘଖଣ୍ଡ ପରି ।
କେତୁ ନୀଳବର୍ଣ୍ଣରେ ଦିଶେ ଗଙ୍ଗାଜଳ
କେତୁ ବସନ୍ତରେ ଦିଶେ ହଳଦୀ ଗରଗର ।
କେତୁ ଦିଶନ୍ତି ଧବଳ ଯେସନ ଚନ୍ଦ୍ରମା
ଏମନ୍ତେ ପଞ୍ଚବର୍ଣ୍ଣ ହୋଇଣ ଉପମା

ଏଥୁ ଅନନ୍ତରେ ଶୁଣ ଶତ୍ରୁଘନ ବୀର
ଧୀରେ ଧୀରେ ବିଜେକରି ଗଲେକ ନଗର ।
ସିଂହଦ୍ୱାରେ ରଥ ଯାଇ ହେଲା ପରବେଶ
ରଥରୁ ଓହ୍ଲାଏ ବେଗେ ଦଶରଥ ଶିଷ୍ୟ ।
ଧୀରଧୀର ହୋଇ ମାଳାବଣ୍ଠ ଚଳଗଲା
ବାହାର ଜଗନ୍ତ ଦ୍ୱାରେ ପ୍ରବେଶ ହେଲା ।
ଦାସୀ ପରିବାରି ଆସି ମଣାଇ ଘେନଗଲେ
ଭିତର ଜଗତି ପରେ ନେଇ ବସାଇଲେ ।
ମର୍ଦ୍ଦନ ମାର୍ଜଣା ଯେ କଲେ ସର୍ବେ ମିଳି
ସୁବାସ ପାଣିରେ ଯେ ସ୍ନାନ ତାହାଙ୍କୁ କରି ।
ଅମଳାନ ପାଟୀ ଯେ ପିନ୍ଧେ ରାମମାତା
ଛଡ଼ରସେ ଭୋଜନ କରେ କାଶୀରାଜା ସୁତା
କର୍ପୂର ବିଡ଼ିଆ ନେଇଣ ଦାସୀଗଣେ ଦେଲେ
ତାମ୍ବୁଳ ଭୁଞ୍ଜିଣ ମାତା ପଲଙ୍କେ ଶୋଇଲେ
ଏଥୁ ଅନନ୍ତରେ ଶତ୍ରୁଘନ ବୀର
ବିଜୟେ ହେଲେ ଯାଇଁ ବାହାର ଜଗତର ।
ମର୍ଦ୍ଦନ ମାର୍ଜଣାସାରି ସ୍ନାହାନ ବେଗେକଲେ
ଅମଳାନ ବସ୍ତ୍ର ପିନ୍ଧି ଦେବଆଳେ ବିଜେକଲେ
ଇଷ୍ଟଦେବତାଙ୍କୁ କଲେ ଦରଶନ
ଶ୍ରୀଅଙ୍ଗରୁ ପ୍ରସାଦ ଆଣେ ବିପ୍ରଗଣ ।
ପ୍ରସାଦ ସାରିଣ ଯେ ଓଳଟି ମେଲ୍ଲଇଲେ
କରଯୋଡ଼ି ଆଗରେ ଉଭା ସେ ହୋଇଲେ ।
ବୋଇଲେ ମୋ ଭାଇଙ୍କର ଗଲେ ଲଙ୍କାଗଡ଼
ମୂର୍ଚ୍ଛି ଜଗିଥିଲି ଯେ ଅଯୋଧ୍ୟା ପୁର ।
ମୋତେ ଆସି ଅସୁରେ ଘୋଟିଲେ ତୁମ୍ଭେ ଜାଣ
ସ୍ୱର୍ଗରେ ଦେବତାଏ ସାହାହେଲେ ପୁଣ ।
ସେମାନେ ଯାହା ହେବାରୁ ଅସୁର ଦଳଇ
ଏବେ ତୁମ୍ଭ ଆଗରେ ଗୁହାରି କରଇ ।
ମୋତେ ପ୍ରସନ୍ନ ହୋଇଣ କହିବେବ ଯାହା
ସେହିକଥା ଇଷ୍ଟଦେବ କହିବ ତଡ଼ବାହା ।
ଶୁଣିଣ ବରଞ୍ଚ ନାରାୟଣ କହି ପୁଣ
ଇଷ୍ଟୁର ସଖା ବୋଲିଣ ଦେବତା ସାହାଜାଣ
ଶତମୁଖା ରାବଣ ତୋ ହସ୍ତରେ ମରିବ
ଜନ୍ମ ହେଲାବେଳେ ଲେଖିଅଛି ହେ ଦଇବ ।
କେଉଁ କଥାରେ ତୁମ୍ଭେ ବହୁର ନକର
ଆଜ ଦୁଇଦିନ ଯେ ଯୁଝିବ ଏଥର ।

ସେଠାରୁ ଶତେମୁଖା ପଳାଇବ ପୁଣି
ନିଜ ରାଜ୍ୟକୁ ତାର ଗମିବ ସାରମଣି ।
ତାହା ପଛରେ ତୁମ୍ଭେ କରିବୁ ଗମନ
ଜନନୀ ସାରଥି ତୋ ସଙ୍ଗେ ଥିବ ପୁଣ ।
ଅଠର କୋଟି ଯବାନ୍ତୁ ତୋର ସଙ୍ଗେ ଯିବେ
ରଥର ଉପରେ ବସି ଗମନ କରିବେ ।
ନିଜ ରାଜ୍ୟେ ଗମନ କର ରଘୁ ନନ୍ଦନ
ସେଠାରୁ ପଳାଇବ ଶତେମୁଖା ପୁଣ ।
ଲଙ୍କାଗଡ ଦଶମୁଖା ରାବଣ ସଙ୍ଗେ ଭେଟ
ରାମ ରାବଣ ଯୁଦ୍ଧ ଦେଖିବୁ ପ୍ରତ୍ୟକ୍ଷ ।
ସେଠାରେ ଶତମୁଖା ପାଇବ ମରଣ
ତୋର ରାଜ୍ୟ ଆମ୍ଭଙ୍କୁ ଲଭା ହେଲା ପୁଣ ।
ପରରାଷ୍ଟ୍ର ନୋହିବେ ତୋର ରାଜ୍ୟେ ଉପଗତ
ଆମ୍ଭର ସପକ୍ଷ ଯେତେ ମାରିଲ ଦଇତ ।
ଆଜ ସନ୍ଧ୍ୟାବେଳେ ଆସି ଅସୁର ମିଳିବ
ସତର୍କ ଥାଅ ବତ୍ସ କହୁଛୁ ସଦାଶିବ ।
ରଥ ଚଢ଼ି ରଣକୁ ଯିବୁ ତୁମ୍ଭେ ଭଲେ
ଏଥିକୁ ଡର କିଛି ନ କର ମନରେ ।
ସୈନ୍ୟଦଳ ଗୋଟିଏ ତୁମେ ସଙ୍ଗେନନେବୁ
ଅକ୍ଷୟ ତୋଣ ଧରି ତାହାକୁ ନିବାରିବୁ ।
ନାଗପାଶ ବନ୍ଧନରେ ବାନ୍ଧିବୁ ଦୈତ୍ୟଙ୍କୁ
ନାଗମଣି କଳୁଷରେ ପେଷିବୁ ତାହାଙ୍କୁ ।
କଳୁଷ ଶରେ ଖଣ୍ଡ ଖଣ୍ଡ ହେବ ସର୍ବ
ତୋର ଯଶ ଜଗତରେ ବିଖ୍ୟାତ ହୋଇବ ।
ଶୁଣିଥିବୁ ତ ନାରାୟଣ ଏକା ଅଟେ ପୁଣ
ତେଣୁକରି ଦୈତ୍ୟଙ୍କୁ ସେ ମାରିବେ ଆପଣ ।
ପର୍ଶୁରାମ ଏକା ଲକ୍ଷେ ନୃପତି ଜିଣିଲ
ବଳିରାଜ୍ୟ ଦେଇ ସର୍ବ ସ୍ୱର୍ଗେ ରାଜାହେଲା ।
ବାସୁକି ଏକା ଧରେ ମେଦିନୀ ସକଳ
ଚନ୍ଦ୍ର ଏକା ଅଟେ ଉଦେ ଦେଖେ ନିଶିର ।
ସୂର୍ଯ୍ୟ ଏକା ଉଦେ ହୋଇ ଦିବସ କରନ୍ତି
ଏକା ପବନ ଦେବତା ସର୍ବଦେହେ ବ୍ୟାପି ।
ଯମ ଏକା ହୋଇଣ ସେ ଶମନପୁର ବୁଝେ
ଧର୍ମତ ଏକା ହୋଇଣ ସର୍ବଠାରେ ବିଜେ ।
ପାପ ତ ଗୋଟିଏ ଅଟେ ସର୍ବ ଦେହେ ବ୍ୟାପି
ରବି ତ ଗୋଟିଏ ଅଟେ ସବୁପୁରେ ଯୋଚି ।

ଦିବସ ଗୋଟିଏ ଅଟେ କରଇ ଆଲୋକ
ଗୋଟିଏ ଫଳ ପୃଥିବୀରେ ଫଳେ ଫଳ ।
ଗୋଟିଏ ଗାଜରୁ ଯିନା ସଙ୍ଗେ ହୋନ୍ତି ଜାତ
ଅଂଶରୁ ଅନେକ ଜାତ ହୁଅନ୍ତି ସମ୍ଭୂତ ।
ଦୁହିତାଙ୍କୁ ସୁଝିବାକୁ କମ୍ପା କରୁ ଡର
ନାରାୟଣ ଅଯୁଧ ତୁମରେ ଦେବେ ଦେଲେ ବଳ
ଅଦ୍ଭୁତ ଅପୂର୍ବ ତୋ ଶରୀର ଅଟଇ
ଦୈତ୍ୟଦଳ ମାରିବେ କିଛିହିଁ ଭୟ ନାହିଁ ।
ଏତେକହି ଈଶ୍ୱର ଯେ ଅନ୍ତର୍ଦ୍ଧାନ ହେଲେ
ଶତ୍ରୁଘନ ସେଠାରୁ ଯେ ନିଜପୁର ଗଲେ ।
ଅନ୍ତଃପୁରେ ବେଗେ ହେଲେ ପରବେଶ
ପିତୃଙ୍କୁ ତର୍ପଣ ଦିଏ ଦଶରଥ ଶିଷ୍ୟ ।
ସନ୍ଧ୍ୟା ସୁମରଣ ସେ ପୂଜା ବେଗେ କଲେ
ଷଡରସ ଭୋଜନ ମନତୋଷ କଲେ ।
କର୍ପୂର ଖଣ୍ଡିଆ ଭୁଞ୍ଜି ପଲଙ୍କେ ବସିଲେ
ସୁପାଣ ଶେଯରେ ପୁଣି ସୁଖେ ନିଦ୍ରାଗଲେ ।
ଅଥ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ବେଳ ଦୁଇଘଡ଼ି ଅଛି ଉଠଲେ ମାତା ତାର
ଶତ୍ରୁଘନ ପାଶେ ଯାଇ ହେଲେ ପରବେଶ
ପୁତ୍ରକୁ ବୋଇଲେ ତୁମ୍ଭେ କେତେ ପାଞ୍ଚ ପାସ
ଶୁଣିଣ ପୁତ୍ରମଣି ବେଗେତ ଉଠିଲା
ମାଆ ଚରଣେ ପଡ଼ି ଉଠି ଉଭା ହେଲା ।
ମାତାବତ୍ସ ବୋଇଲରେ ଶୁଣ ତୁ କୁମର
କ୍ଷତ୍ରୀ ହୋଇ ଚିନ୍ତା କମ୍ପା ମନରେ ମୋହର
ମଣ୍ଡି ମାରିବାର ପାଇଁ ଜାତ ପୁଣ ହେଲ
ଦୈତ୍ୟଙ୍କୁ ମାରିଲେ ଦେବ ହୋଇବେ କୁଶଳ
ଶତ୍ରୁଘନ ବୋଲେ ମାତା ମୋର ବାଣୀ ଶୁଣ
ଗୁପତ କଥାଏ ତୋତେ କହୁଛୁ ମୁହିଁ ପୁଣ ।
ଦେବେ ମୋତେ ସାହାହୋଇ ଦେଲେ ଶସ୍ତ୍ର
ଇଷ୍ଟ ଦେବତାଏ ଯେ ମୋତେ କହିଲେ ସତ୍ୟ
ବୋଇଲେ ଲଙ୍କାକୁ ଯିବାକୁତ ହେବ
ଶ୍ରୀରାମଙ୍କୁ ଦେଖି ଶତମୁଖା ମାରିବ ।
ପଳାଇଲେ ଗୋଡ଼ାଇ ତୁ ଯିବୁଟି କୁମର
ଆଜୁ ପାଞ୍ଚଦିନେ ମରିବ ଶତମୁଖା ବୀର ।
ଶୁଣିକରି ଜନନୀ ଯେ ଆନନ୍ଦ ହୋଇଲା
ଲଙ୍କାକୁ ଗଲେ ରାବଣ ଦେଖିବା ବୋଇଲା ।

ସମାପ୍ତଣ ଯୁଦ୍ଧ ଆମ୍ଭେ ଦେଖିବାରେ ପୁତ୍ର
ମୁକ୍ତ ଲଭିବା ଆମ୍ଭେ ଯିବା ସ୍ୱର୍ଗ ପଥ
ଏବେ ଦେବତାଏ ଶୁଣି ହୋଇବେ କୁଶଳ
ଦେବକାର୍ଯ୍ୟ କରିବାରେ ଅଟଇ ଆତୁର ।
ଶତ୍ରୁଘନ ବୋଲେ ଅନ୍ତଃପୁରେ ନ କହିବୁ
ଶୁଣିଲେ ଯେ ମନ୍ଦ ବୁଦ୍ଧି କରା କହିବୁ ।
ଜନନୀ ବୋଇଲ ବେଗେ ରଥ ସଜକର
ରଜନୀରେ ଜଗିବା ଆମ୍ଭେ ନିଜପୁର ।
ଅସୁରେ ମାୟାବୀ ବଡ଼ କୁପାଞ୍ଚ ଜାଣନ୍ତି
ରଜନୀ ନ ପୁଣ ସେ ଅର୍ଥ କରନ୍ତି ।
ଏହା ଶୁଣି ଶତ୍ରୁଘନ ବେଗେ ଚଳିଗଲେ
ମନ୍ତ୍ରୀର ପୁଅକୁ ସେ ବେଗେଣ କହିଲେ ।
ରଥ ଗୋଟି ମୋହର ବେଗେ ସଜକର
ଅଛାର ବଜପେ ଆଜ କରିବ ଗସ୍ତ ।
ଧେଣ୍ଡୁରା ଫେରାଇବ ରାଜ୍ୟରେ ମୋହର
ରଜନୀ ସମସ୍ତେ କେହି ନୋହିବେ ବାହାର ।
ଶୁଣିଣ ମନ୍ତ୍ରୀର ପୁଅ ବେଗେ ଚଳିଗଲା
ଅଯୋଧ୍ୟା ନଗରେ ଧେଣ୍ଡୁରା ଫେରାଇଲା ।
ରଜନୀରେ କେହି ତୁମ୍ଭେ ନୋହିବ ବାହାର
ଶତ୍ରୁଘନ ମନାଇଲେ କହିବ ସକଳ ।
ଫେରିଆସି ମନ୍ତ୍ରୀ ପୁତ୍ର ରଥ ସଜକଲା
ଏମନ୍ତ ସମୟେ ଆସି ରଜନୀ ହୋଇଲା ।
ସନ୍ଧ୍ୟା ତର୍ପଣ ସାରିଣ ଶତ୍ରୁଘନ ପୁଣ
ବେଗହୋଇ ବାହାର ହେଲା ତତକ୍ଷଣ ।
ଅକ୍ଷୟ ତୋଣକୁ ଧରି ପିନାକା ଧଇଲା
ସକଳ ଦେବଙ୍କ ଶସ୍ତ୍ର ଥୋଇଲା ।
ମାଳାବନ୍ତି ଜନନୀ ଆସି ମିଳିଲେ ପୁଣ
ସାରଥି ବେଶ ହୋଇ ବସିଲା ତତକ୍ଷଣ ।
ଷୋଳ ଯୋଡ଼ା ଅଶ୍ୱନେଇ ରଥରେ ଯୋଚିଲା
କୋରଡ଼ା ଉଞ୍ଚାଇଣ ରଥ ଚଳିଗଲା ।
ରଣଭୂମି ଦ୍ୱାରାରେ ହେଲେ ପରବେଶ
ରଜନୀ ଯେ ଦେହନଡ଼ ହୋଇଲା ବିଶେଷ ।
ଏଥି ଅନନ୍ତରେ କଥା ଶୁଣ ଗୋ ଗଉରୀ
କନକ ଗିରିପରେ ଥିଲେ ଶାକମ୍ଭରୀ ।
ରଜନୀ ହେବାରୁ ଭୈରବୀ ବାହାରିଲେ
ଯୁଦ୍ଧ ପଡ଼ା ମଧ୍ୟରେ ଯାଇ ବଜେ କଲେ ।
ପିଙ୍ଗୁଳି ମେଳ ହୋଇ ଭକ୍ଷିବାକୁ ଗଲେ
ଅସୁରମାନଙ୍କୁ ଭକ୍ଷି କଶୋଧନ କଲେ ।
ରକ୍ତନଦୀ ପୁଣ ବହୁଅଛି ଜାଣ
ପକ୍ଷୀଙ୍କୁ ଖାଇଦେଇ ଚଳିଲେ ବହନ ।
କବନ୍ଧ ଯେ ନାଚନ୍ତି କୋଟି କୋଟି ହୋଇ
ଦେଖିଣ ସେ ଭଇରବୀ ମନେ ହରଷଇ
ରୁଧିର ନଦୀ ଗୋଟା ବେଗେ ଗଲ ସରି
ରୁଧିର ନଦୀ ଗୋଟା ବେଗେ ଗଲ ସରି ।
ସେଠାବରୁ ଭଇରବୀ ଲେଉଟି ଅଇଲେ
ଶତ୍ରୁଘନଙ୍କର ସୈନ୍ୟ ସଙ୍ଗ ସେ କଲେ ।
ଗଣ୍ଡି ମୁଣ୍ଡ ଯୋଡ଼ିକରି କଲେ ଏକଠାବ
ପିଶାଚୁଣୀ ସେଣକରି ଚଳିଗଲେ ବେଗ ।
ମୂକଣ୍ଠ ଗିରିରେ ଯାଇ ପ୍ରବେଶ ହୋଇଲେ
ଏଥିଅନନ୍ତରେ କଥା ଶୁଣ ଗୌରୀ ଭଲେ ।
ସ୍ୱର୍ଗପୁରୁ ବୃହସ୍ପତି ଚଳିଣ ଅଇଲେ
ସଞ୍ଜୀବନୀ ମନ୍ତ୍ରପଢ଼ି ପାଣି ସିଞ୍ଚିଦେଲେ ।
ଜୀବ ପାଇ ମାନବେ ହେଲେ ପୁଣି ଚେତା
ଅମୃତ ସିଞ୍ଚିଲେ ଉପର ଦେବତା ।
କୋଟିଏ ସୈନ୍ୟ ତାର ମରିଥିଲେ ପୁଣ
ଜୀଇକରି ଉଠିଲେ ଜୀବ ସେ ପାଇଣ ।
ଉଠିଣ ଦେଖିଲେ ସେ କେହି ନାହିଁ ପୁଣ
ରଥ ଗୋଟି ଦିଶୁଅଛି ଦ୍ୱାରରେ ସେ ଜାଣ ।
ରଥ ପାଶେ ସୈନ୍ୟ ଯାଇ ହେଲେ ପରବେଶ
ଦେଖିଲେ ଶତ୍ରୁଘନ ଦଶରଥ ଶିଶ୍ୟ ।
ଶତ୍ରୁଘନ ବୋଇଲେରେ ବେଗ ଯାଅ ଚଳି
ଯେ ଯାହା ମନ୍ଦିରେ ତୁମ୍ଭେ ଶୟନ ଥାଅକରି
ଡକାଇଲା ବେଳେ ତୁମ୍ଭେ ଆସିବ ବହନ
ଶୁଣିକରି ସୈନ୍ୟବଳ ଚଳିଗଲେ ପୁଣ ।
ବୃହସ୍ପତି ଚଳିଗଲେ ସ୍ୱର୍ଗପୁରେ ବେଗେ
ମାଳାବତୀ ବୋଲେ ପୁତ୍ର କଥା ଛାଡ଼ ଏବେ ।
ମଲ୍ଲଲୋକ ଜୀଇଲେ ଏବେ ଦେଖିଲଇଁ
ଦେବୀଗଣ ଆସିଣ ଅସୁର ଗଲେ ଖାଇ ।
ଏଥିଅନନ୍ତରେ କଥାଶୁଣ ଶାକମ୍ଭରୀ
ଲବଣେଶ୍ୱରର ସୈନ୍ୟ ଆସେ ଯୁଦ୍ଧକରି ।
କନଗିରି ଲଙ୍କାତଳେ ବସି ରହିଥିଲେ
ପାଣ୍ଡୁଘଡ଼ ରଜନୀରେ ବାହାର ହୋଇଲେ ।

ମାର ମାର ଧର ଧର କରନ୍ତି ଶବଦ
ଶତ୍ରୁଘନ ବର୍ଷିଲେ ଅସ୍ତ୍ର ଗଞ୍ଜଣ ।
ଅକ୍ଷୟ ତୋଣୁ କାଢ଼ିବାର ସେ ଧଇଲା
ନାଗଫାଶ ସମ୍ମୋହନ ଗୁଣରେ ବସାଇଲା ।
ଯେତେ ସୈନ୍ୟ ତେତେ ଫାଶ ତହୁଁ ଅଛେ ବୋଇଲା
ସମ୍ମୋହନା ଅସ୍ତ୍ର ଶର ବେଗେ ଛାଡ଼ିଦେଲା ।
ନାଗଫାଶ ଶର ଯାଇ ସବୁଙ୍କୁ ବାନ୍ଧିଲା
ଘୋଡ଼ଠାରୁ ବୃକ୍ଷ ପଦଯନ୍ତେ ଛନ୍ଦିଦେଲା ।
ତହିଁପରେ ଶତ୍ରୁଘନ ଶର ଯେ କଳୁଷ
ଗୁଣରେ ବସାଇ ମାରି ଛନ୍ଦେ ବେଗକରି ।
କଳୁଷ ନାଗଙ୍କ ଯାଇଁ ରଣଭୂମି ପଡ଼
ସବୁଙ୍କର ଦେହ ତମ୍ଭ କରୁଛେ ବେଗକରି ।
ସମସ୍ତଙ୍କ ଦେହକୁଡ଼ ଖଣ୍ଡଖଣ୍ଡ କଲେ
କଳୁଷ ନାଗଫାଶ ଗଙ୍ଗାରେ ସ୍ନାନ କଲେ ।
ଶତ୍ରୁଘନ ତୋଣରେ ଯେ ଯାଇ ସମ୍ଭାଇଲେ
ଏଥି ଅନନ୍ତରେ ଦେଖ ହେ ଶୁଣ ଭଲେ ।
ତାହାଙ୍କୁ ମାରଣ ବାର ଲେଉଟିଲା ପୁଣ
ସିଂହଦ୍ୱାରେ ପ୍ରବେଶ ହେଲେ ତତକ୍ଷଣ ।
ଖୁଣ୍ଟିଆ ଯେ ପଡ଼ିହାରୀ ଦ୍ୱାର ଜଗିଥିଲେ
ମାତା ପୁତ୍ର ଦୁଇଜଣ ମନ୍ଦିରକୁ ଗଲେ ।
ମର୍ଦ୍ଦନ ମାର୍ଜନା ହୋଇ ସ୍ନାନ ବେଗ ହେଲେ
ଶ୍ରୀନିବାସ ପିନ୍ଧି ମନୋହରେ ବଦେଇଲେ ।
ଛତିଶ ସେ ଭୋଜନ ଯେ କଲେ ବେନିଜଣ
ତାମ୍ବୁଳ ଭୁଞ୍ଜିଣ ବେଗେ କଲେକ ଶୟନ ।
ଏଥୁ ଅନନ୍ତରେ ସେହି ରାତ୍ରେ ପୁଣ
ଜନକ ଗିରିପରେ ଭଇରବୀ ଯେ ଜାଣ ।
ଅର୍ଜ୍ଜନ ଦେଖିଣ ଭଇରବୀ ସେଠାରୁ ଅଇଲେ
ରଣରେ ପିଶାଚୁଣୀଙ୍କୁ ସଙ୍ଗରେ ଘେନ ପଶିଲେ
ଦୈତ୍ୟବଳ ସେ ଯେ କଲେକ ଆହାର
ରକ୍ତନଦୀ ଶୋଷିଣ ଗଲେ ଗିରିପରେ ରହି ।
ଆନନ୍ଦ ହୋଇଣ ସେ ଗିରିପରେ ରହି
ଏଥୁ ଅନନ୍ତରେ ଗୋ ଶୁଣ ଚନ୍ଦ୍ରମୁଖି ।
ସେଥିରୁ ଅନ୍ତର ହୋଇ ଦୈତ୍ୟ ଦଶଜଣ
ଲତାର ଜହାଡ଼ରେ ଦେଖୁଥିଲେ ପୁଣ ।
ସମସ୍ତେ ମରିବାରୁ ଦେଖି ଚଳିଗଲେ
ଲଙ୍କା ସନ୍ଧିରେ ଯାଇ ପ୍ରବେଶ ହୋଇଲେ ।

ରଜନୀ ତିନ ଯେ ପ୍ରହର ହେତେବେଳେ
ଶତମୁଖା ରାବଣ ଶୋଇଛି ନିଶ୍ଚିନ୍ତରେ ।
ଘଡ଼ିଏ ରଜନୀ ଅଛି ଉଠିଲା ରାବଣ
ମୁଖ ପଖାଳିଣ ବସିଲା ସେହୁ ପୁଣ ।
ଏହି ସମୟରେ ଦୂତମାନେ ଯାଇ
କରଯୋଡ଼ି ଆଗରେ ଉଭାହେଲେ ସେହି ।
ବୋଇଲେ ହେ ଦେବ ଶୁଣହେ ମୋରବାଣୀ
ଯେତେକେ ସୈନ୍ୟ କାଲି ଗଲେ ପୁଣି ।
ରଜନୀ ଦୁଇଘଡ଼ିରେ ପ୍ରବେଶ ଯାଇଁ ହେଲେ
ସମସ୍ତେ ଅର୍ଜ୍ଜନ ହେବାରୁ ତହିଁରେ ମିଳିଲେ
ସେତେବେଳେ ଶତ୍ରୁଘନ ଅଭ୍ୟାସ ବଳେ ପୁଣ
ଦେଖିଲେ ତୁମ୍ଭର ସୈନ୍ୟ ଗହଳ ଯେ ପୁଣ
ରହରେ ନିଶାଚର କେଣିକି ଯାଅ ଯାଅ
ମୋହର ସମ୍ମୁଖେ ଆଜ କେଉଁ ତୁମ୍ଭେ ଯାଅ ।
ଶୁଣିଣ ସୈନ୍ୟବଳ ଲେଉଟିଲେ ରହି
ଅନେକ ଶର ପୁଣି ବନ୍ଧିଲେ ଭୁହାଇ ।
ଏକାକୀ ଶତ୍ରୁଘନ ଛେଦେ ବାରମ୍ବାର ।
ନାଗଫାଶ ଶର ତହିଁ ବେଗେ ଛନ୍ଦେ ମାରି ।
ଅଳ୍ପଶରେ ତୋର ସୈନ୍ୟଙ୍କୁ ବନ୍ଧିଲା
କଳୁଷଶର ତାର ପଛରେ ଛନ୍ଦିଲା ।
ଦେହ ଖଣ୍ଡ ଲେଖାଏଁ କଲା ଗଣ୍ଡି ମୁଣ୍ଡ
ରକତ ନଦୀ ସୋତା ଯେ ବହେ ପରଚଣ୍ଡ ।
କବନ୍ଧ ନାଚିଲେ ହେ କୋଟି କୋଟି ପୁଣ
ବହିଲା ରକ୍ତ ଯେଣେକ ଓସାରେଣ ।
ବୃକ୍ଷର ଉପରେ ଚଢ଼ି ଆମ୍ଭେ ଦେଖୁଥିଲୁ
ଶତ୍ରୁଘନ ଗଲେ ତେଣେ ଆମ୍ଭେ ଯେ ଅଇଲୁ
ତୁମ୍ଭର ସମ୍ମୁଖରେ କହିଲୁ ରାଏ ଆସି
ଆଗକୁ ତାହାର ଦେହ ନ ପାରନ୍ତି ଭରସି ।
ସାକ୍ଷାତ ଯମ ଦେବତା ଶ୍ରୀରାମର ଭାଇ
ତାର ଆଗେ ଯେ ପଡ଼ିବ ସେ ବର୍ତ୍ତିବ ନାହିଁ ।
ଏକା ବାଣକରେ ତୋର ଏତେ ସୈନ୍ୟ ମଲେ
କାଳ ଦେବତା ଆସି କି ଜନ୍ମ ମର୍ତ୍ତ୍ୟପୁରେ ।
ତାର ମୁଖକୁ ଚାହିଁଣ ଦୈତ୍ୟ ହେଲେ ଦଣା
ସିଂହ ଚାହିଁଲେ ଯେସନେ ଶୃଗାଳ ହୁଏ ଦଣା ।
ସର୍ପକୁ ଚାହିଁଲେ ଯେସନେ ମଣ୍ଡୁକୀ ମରଇ
କାକକୁ ଚାହିଁଲେ ଯେସନେ ପେଚା ନ ରହଇ

ମଞ୍ଜାର ଦେଖିଲେ ଯେସନ୍ତେ ମୂଷା ପଳାଇଗଲେ
ସେହିରୂପେ ଦୈତ୍ୟବଳ ମାଇଲା ଯୁଦ୍ଧପଥେ ।
ତୋର ଯଶ ଦେବଲୋକ ଦଶୁନାହିଁ ଜାଣ
ଯାହା ତୋ ମନକୁ ପାଏ କରୁଅଛ ଲଙ୍କଗଣ
ସୁରଭନ ଯୁଦ୍ଧ ତୋର ଏଥିରେ ଦେଖାଇଲା
ଆଠଦନ ସୈନ୍ୟ ରାମ ଦିନରେ ନାଶଗଲା ।
ଶେଷେ ତୋର ଦୁଇଭାଗ ଅଛନ୍ତି ନୃପତି
ତାଙ୍କୁ ଯେବେ ଯୁଦ୍ଧକର ଅଯୋଧ୍ୟାରେ ଧାଇ
ତୋର ସଙ୍ଗେ ଯୁଝିଲେ ଜାଣିବ ତାର ବଳ
ତାହା ଶୁଣି କମ୍ପିଲା ଶତମୁଖା ଗାତ୍ର ।
ବୋଇଲାରେ ହସଅଛୁ କେ ମୋତେ ପୃଥ୍ୱୀରେ
ଦେବାସୁର ନର ପୂର୍ଣ୍ଣ ତ୍ରୈଲୋକ୍ୟ ଭିତରେ
ଶତେବାର ପର୍ଯ୍ୟନ୍ତେ ସ୍ୱର୍ଗକୁ ଜିଣିଥିଲି
ପାଦତଳେ ଦେବତାଙ୍କୁ ଆଣି ଖଟାଇଲି ।
ପନ୍ଦର ଯୁଗ ପର୍ଯ୍ୟନ୍ତେ ରହିଲ ମୋର ପୁରେ
ପବନ ଦେବତା ଆସି କହିଲେ ମୋଠାରେ
ଦେବତାଙ୍କୁ ମୁଁ ଦେଲି ସ୍ୱର୍ଗ ନାମେ ପୁର
ମଣିପୁର ରାଜାଙ୍କୁ ଜିଣିଲି ଶତବାର ।
ଲକ୍ଷେ ରାଜାଙ୍କ ମନ୍ଦିରୁ ସାତଲକ୍ଷ କନ୍ୟା ଆଣି
ବନ୍ଦୀହୋଇ ରହିଅଛି ନଗ୍ରରେ ମୁଁ ପୁଣି ।
ଲକ୍ଷେ ଅସୁରଙ୍କୁ ମୁଁ ଯେ ସାତବାର ଜିଣି
ସାତଲକ୍ଷ ଦୋହିତା ମୁଁ ଆଣିଲଇଁ ପୁଣି ।
ସେହି କନ୍ୟାମାନଙ୍କୁ ମୁଁ ବଶ ପୁଣି ହେଲି
ଅଧଲକ୍ଷ କୁମର ମୁଁ ତାଙ୍କଠାରୁ ଜାତ କଲି ।
ପାତାଳ ପୁରେ ମୁଁ ଯେ ହେଲି ପରବେଶ
ସମସ୍ତଙ୍କୁ ଜିଣି ମୁଁ ଯେ ଆଇଲି ନିଜବାସ ।
ସଜକର ଆଜ ମୋର ପିଢ ମୁଁ ଅଯୋଧ୍ୟାକୁ
ସତ୍ୱରେ ସମର ମୁଁ ଦେବି ହେ ତାହାକୁ ।
ଶୁଣିଲେ ପାତ୍ରମନ୍ତ୍ରୀ ସାମନ୍ତ ସେବାକାରୀ
ସଜହୋଇ ବାହାରିଲେ ସଙ୍ଗରେ ତାହାର ।
ଦଶ ଦହନ ରଥରେ ରାବଣ ବିଜେକଲା
ଦୁଇଲକ୍ଷ ନାତି ତାର ଦିଶନ୍ତି ବଡ ଘୋର ।
କୋଡ଼ିଏ ସହସ୍ର ଯେ ଅଟନ୍ତି କୁମର
ଷୋଳପଦ୍ମ ପଦାନ୍ତି ବାଜ ଛନ୍ତି ତାର ।
ପନ୍ଦର କୋଟି ବାଜ ସେନାପତି ଯେବେ
ଆଠକୋଟି ବାଦ୍ୟକାର କରୁଛନ୍ତି ଧ୍ୱନ ।
ଗହ ଗହ ଶବ୍ଦ ଶୁଭେ ନିରନ୍ତର
ସିଂହଦ୍ୱାରେ ଅସୁର ବଳ ହେଲେ ବାହାର
ଚତୁରଙ୍ଗ ବଳ ସେ ଯେ ସାଜିଲା ରାବଣ
ପନ୍ଦର କୋଟି ରଥ ଦିଶେ ରଙ୍ଗବର୍ଣ୍ଣ ।
ଚିତ୍ରାଙ୍କ ପତାକା ଯେ ଅଶ୍ୱମାନ ଯୋଚି
ଯେସନେକ ବୃତ୍ତସୁର ଗଗନରେ ବ୍ୟାପି ।
ପ୍ରଳୟ କାଳରେ ଯେସନ୍ତେ ଘୋଟେ ଜଳପୁଣ
ସେହି ପ୍ରକାରେ ବାହାରେ ଅଲଙ୍କା ରାଜନ ।
ବାଦ୍ୟକାରମାନେ ଯେ ଆଗେ ଚଳିଗଲେ
ତହିଁ ପଛରେ ପଦାନ୍ତି ବଳ ପୁଣ ଚଳେ ।
ତହିଁ ପଛରେ ନାତି ଦୁଇଲକ୍ଷ ପୁଣ
ତାଙ୍କ ପଛରେ ପୁତ୍ରେ ଦିଶନ୍ତି ଶୋଭନ ।
ତାଙ୍କପଛେ ଶତେମୁଖା ରାବଣ ଚଳିଗଲା
ଅଲଙ୍କା ନାମେ ପଲ୍ଲୀ ଶୂନ୍ୟ ପୁଣ ହେଲା ।
ଦେବତାଏ ସ୍ୱର୍ଗରେ ଦେଖନ୍ତି ରହି ପୁଣ
ଏଥୁ ଅନନ୍ତରେ ଗୋ ଗଜପା ଏବେ ଶୁଣ ।
ଅଯୋଧ୍ୟା ନଗରେ ଶତ୍ରୁଘନ ବୀର
ଶୟନରୁ ଉଠି ବିଜୟେ କଲେ ପୁର ।
ଶ୍ରୀମୁଖ ଧୋଇ ପାଦ ପଖାଳିଲେ ସେହୁ
ପଲଙ୍କ ଛେଜଣ ଛଡ଼େଇଲେ ଯହୁଁ ।
ଜନନୀ ପାଶରେ ପ୍ରବେଶ ହେଲେ ପୁଣ
ଜନନୀଙ୍କ ବନ୍ଦିଣ କଲେ ମାନ୍ୟଧର୍ମ ।
ବୋଇଲେ ଜନନୀ ଗୋ ବେଗେ ଦୃଷ୍ଟ ସଜ
ରାମାୟଣ ଯୁଦ୍ଧ ହୋ ଦେଖିବା ମହାରାଜ ।
ଆଜଠାରୁ ମାସକରେ ଆସିବା ନିଜ ଘର
ଶ୍ରୀରାମ ସଙ୍ଗେ ଆମ୍ଭେ ନେଉଟିବା ପୁର ।
କହିଣ ଜନନୀଙ୍କ ବେଗେ ଚଳିଗଲେ
ବାହାର ଜଗତିରେ ଅବକାଶ ହେଲେ ।
ପାତ୍ରମନ୍ତ୍ରୀ ସାମନ୍ତ ଡକାଇ ଅଣାଇଲେ
ସୈନ୍ୟ ସଜକର ବୋଲି ତାଙ୍କୁ ଆଜ୍ଞାଦେଲେ ।
ଶୁଣିକରି ମନ୍ତ୍ରୀ ପୁତ୍ର ବେଗେ ଚଳିଗଲା
ଧେଣ୍ଡୁରା ଫେରାଇଣ ସୈନ୍ୟ ସଜକଲା ।
ବହୁବେଶ ଧରିଣ ଆଇଲେ ସର୍ବ ସୈନ୍ୟ
ବାଦ୍ୟକାରମାନେ ଦିଶନ୍ତି ଶୋଭନ ।
ନବକୋଟି ରଥ ସାଜେଣୀ ହୋଇଅଛି
ନବକୋଟି ସେନାପତି ସେଥିରେ ବସିଛନ୍ତି ।

ବାରକୋଟି ହସ୍ତୀ ଉପରେ ମାହୁନ୍ତ
ହସ୍ତୀମାନେ ସଜ ଯେସନେ ଐରାବତ ।
ସାତକୋଟି ଅଶ୍ୱ ଆସି ବେଗହୋଇ ପୁଣ
ଚହ୍ନିପାରେ ସିଂହଦ୍ୱାରେ କପି ଉଚ୍ଚୈଶ୍ରବନ ।
ପଦାନ୍ତ ଦଳ ଆସି ହୋଇଣ ଅବ୍ୟବେଶ
ସିଂହଦ୍ୱାରେ ସମସ୍ତେ ହୋଇଲେ ପ୍ରବେଶ ।
ସମସ୍ତଙ୍କୁ ବୃନ୍ଦି ଆଜ୍ଞାଦେଲେ ରାମଚନ୍ଦ୍ର
ଆଜତ ରାବଣ ଭଜେ କରିବ ରଣଭୂଇଁ ।
ଅନେକ ଯୁଦ୍ଧ ଆଜ କରିବ ଶତେମୁଖା
ପବନ ଦେବତା ଯେ ଅଟେ ତାର ସଖା ।
ରହି ଯୁଦ୍ଧ କରବ ନ ପାରୁଛ ପୁଣ
ତାର ମୋର ଲେଉଟ ଯାଏ ସମ୍ଭାଳ କର ରଣ
ଏତେବୋଲି ଆଜ୍ଞାଦେଲେ ଯାଅ ବେଗହୋଇ
ଶୁଣିକର ସନ୍ୟଦଳ ଚଳି ରଣଭୂଇଁ ।
ସେଠାବରୁ ଶତ୍ରୁଘନ ବେଗେ ବାହେଡିଲେ
ଦେବଙ୍କର ଶସ୍ତ୍ର ନେଇ ରଥରେ ଥୋଇଲେ
ଅଗସ୍ତ୍ୟେ ଦୋଣ ପିନାକ ଅଜଗବ ଧନୁ
ରଥରେ ଥୋଇଲ ନେଇ ଦଶରଥ ସୁନୁ ।
ଅଜଗବ ଧନୁକୁ ଧଇଲ ବାମ କରେ
ଗୁଣ ଚଡାଇ ଟଙ୍କାର କଲେ ବାହୁବଳେ ।
ବ୍ରହ୍ମଶର ନେଇଣ ସେଥିରେ ବସାଇଲେ
ଯନ୍ତ୍ର ବେଶ ଧରି ମନ୍ତ୍ର ପ୍ରାସ୍ତୁକ ବସିଲେ ।
ଏହି ସମୟରେ ଜନମ ମାଳାବନ୍ତ
କାଚେଣୀ ବେଶଧରି ବାହାର ହେଲ ସନ୍ତ ।
ରଥର ଉପରେ ଯାଇ ବେଗେ ବାହେଡିଲ
ବାଛୁଣ ଅଶ୍ୱଶାଳୁ ଅଶ୍ୱ ଅଣାଇଲ ।
ଷୋଳ ଯୋଡା ଅଶ୍ୱ ଯୋଚିଲ ବଳବନ୍ତ
ଯେଉଁ ଅଶ୍ୱମାନେ ଲଙ୍ଘି ପାରନ୍ତି ଜଗତ ।
ସାକେଣି କରି ଅଶ୍ୱମାନଙ୍କୁ ଯୋଚି ବେଗେ
ବାଗ ଦଉଡ଼ିମାନ ଧଇଲେ ସେ ଆଗେ ।
କୋରଡା ଧରିଣ ରଥ ଅଶ୍ୱଚାଳ ହେଲେ
ରଣଭୂମିରେ ଯାଇଁ ପ୍ରବେଶ ବେଗେ ହେଲେ
ଶବଦରେ କମ୍ପଇ ସ୍ୱର୍ଗ ମର୍ତ୍ତ୍ୟପୁର
ପାରବାଦ୍ୟ ଶବଦ ଅନ୍ତରୀକ୍ଷ ଚହଳ ।
ଶତ୍ରୁଘନ ସନ୍ୟ ସଙ୍ଗେ ବସି କଳାବନ୍ତ
କଳା ସାକେଣି ବେଶ ହୋଇ ଅଛନ୍ତି ପୁଣ ।

କଳାବର୍ତ୍ତ୍ତି ପ୍ରାୟେ ଯେ ଦିଶଇ ରଣଭୂଇଁ
ଯେସନେକ କଳା ସାଗର ଦିଶଇ ।
ଏଥିଅନନ୍ତରେ ଗୋ ଶୁଣ ଶାକମ୍ବରୀ
ଶତମୁଖା ରାବଣ ଅଇଲା ବଳ ଧରି ।
ସୈନ୍ୟଦଳ ଧରି ଆସି ପ୍ରବେଶ ହୋଇଲ
ରଜମାର ଶେଷରେ ଅଯୋଧ୍ୟା ମିଳିଲ ।
ଦଶିଲ ସନ୍ୟଦଳ ରଣଭୂମିରେ ମେଳ
କରେ ଧରିଣ ଶସ୍ତ୍ର ହେଲୁ ଆଗୁସାର ।
ଦେଖିକରି ଶତ୍ରୁଘନ ଆଗେ ରଥ କଲ
ବଜ୍ରଶର ନେଇଣ ପୁଣ ଗୁଣରେ ବସାଇଲ ।
ଯେତେକ ଶର ଧରିଣ ଅସୁରେ ମାରନ୍ତି
ସବୁଶର ଚ୍ଛେଦନ କରଇ ଅଜ ନାତି ।
ଅସୁର ଶହସ୍ର ଯେ କଲେକ ଅସୁର
ବ୍ରହ୍ମଶରେ ନିବାରିଲେ ଦଶରଥ ବାଳ ।
ପୁଣିହିଁ ପାଷାଣଶର ଅସୁରେ ମାରିଲେ
ବାଦଲ ଶରେ ଚ୍ଛେଦିଲେ ଶତ୍ରୁଘନ ପାରେ ।
ଶକ୍ତିରୁ ତହୁଁ ଭେଦିଲେ ପୁଣ ରାଗେ
ଦେଖିକରି ଶତ୍ରୁଘନ ଚ୍ଛେଦିଲେ ତା ବେଗେ ।
କୁହୁକ ଶର ଅସୁରେ ପୁଣିହିଁ ଯେ କଲେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ କୁହୁକ ମୟେ କଲେ ।
ସୂର୍ଯ୍ୟଶର ତହିଁକି ପେଷିଲେ ଶତ୍ରୁଘନ
କୁହୁକ ପଳାଇଲେ ନ ରହିଲେ ପୁଣ ।
ଯାମିନୀ ଶର ପୁଣି ଯେ ଅସୁରେ କଲେ
ସ୍ୱର୍ଗମର୍ତ୍ତ୍ୟ ପାତାଳ ରଜନୀ ଘୋଟାଇଲେ ।
ଅଗ୍ନିଶର ଶତ୍ରୁଘନ ମାରିଲ ବହନ
ଯାମିନୀ ନ ରହିଲେ ପଳାଇଲେ ପୁଣ ।
ଦେଖିଣ ଶତମୁଖା କ୍ରୋଧେ ଜର ଜର
ଉଲ୍କାବର କଲ ନେଇ ଶତ୍ରୁଘନର ଆଗର ।
ପନ୍ଦର କୋଟି ଶର ସେ ଗୁଣରେ ବସାଇଲ
ମନ୍ତ୍ରପଢ଼ି ରାବଣ ଶରକୁ ପେଷିଦେଲ ।
ଗର୍ଜନ କରିଣ ଶର ହେଲ ଯେ ବାହାର
ପନ୍ଦର କୋଟି ପଦାନ୍ତ ମାରିଲ ଅସୁର ।
ଦେଖିକରି ଶତ୍ରୁଘନ ମନେ କ୍ରୋଧ ହେଲ
ତ୍ରିଶୂଳ ଗୋଟିଏ ଏବେ ସେ ବାନ୍ଧିଲ ।
ଘୋର ନାଦ କରିଣ ଚଳିଲ ଶୀଘ୍ରକର
ଶତେମୁଖା ରାବଣର ପଡ଼ିଲ ହୃଦସ୍ଥଳ ।

ଶର ବୁକୁରେ ବାଜନ୍ତେ ଅସୁର ମୋହଗଲା
ଜାଣିଣ ମନ୍ତ୍ରୀ ପୁଣ ରଥ କାଢ଼ିନେଲା ।
ଦେଖିକରି ଶତ୍ରୁଘ୍ନ ବଜ୍ରସୂଚୀ ଧରେ
କୋଡ଼ିଏ ସହସ୍ର ଯେ ସୁମରଣା କରେ ।
ଏକାବେଳେ ବଜ୍ର ମାରେ ରାମଭାଇ
ଚଳିଲେ ଶରମାନେ ଗର୍ଜନ ନାଦ ଦେଇ
କୋଡ଼ିଏ ସହସ୍ର ଯେ କୁମର ନିବାରିଲେ
ଫେରିଣ ବଜ୍ରତୁଣ୍ଡ ତୋଣରେ ସମ୍ଭାଇଲେ ।
ପୁଣି ଆରବେଳେ ତଡ଼କ ମାଇଲେ
ଦୁଇଲକ୍ଷ ନାଶ ତାର ଗୁଣରେ ପଡ଼ିଲେ ।
ପୁଣି ଆରବେଳେ ବ୍ରହ୍ମଶର ବୃଷ୍ଟି କଲା
ପନ୍ଦର କୋଟି ସେନାପତିଙ୍କ କାଟିଲା ।
ସେତେବେଳେ ଚେତା ପାଇଲେ ରାବଣ
ଶତ୍ରୁଘ୍ନ ଆଗରେ ରଥ କଲା ପୁଣ ।
ମନ୍ତ୍ରୀକି କହଇ ଏ ଅଟେ ବଡ଼ ଯୋଦ୍ଧା
ମୋତେ ମୋହ କଲା ଏ ସୁର ମାନବା ।
ପୁତ୍ରଯାକ ମୋର ପାଞ୍ଚ ଦିନରେ ମାଇଲା
ଲକ୍ଷେକ କୁମରକୁ ମୋର ମାଇଲା ।
ନବ ଲକ୍ଷ ନାଶ ଯେ ଅତ୍ୟନ୍ତ ମୋହର
ତାହାଙ୍କୁ ମାଇଲା ଏ ମାନବା ସୁର ।
ବୟାଳିଶି କୋଟି ସେନାପତି ଆଣିଥିଲା
ଅଯୋଧ୍ୟା ନଗ୍ରରେ ତାହାଙ୍କ ହରାଇଲି ।
ଏତେକହି କ୍ରୋଧ ଯେ ହୋଇଲା ରାବଣ
ଦୁଇଶତ ନୟନ ବୁଲାଏ ଘନ ଘନ ।
ଦୁଇଶତ ବାହୁରେ ଶତେକ ଧନୁ ଧରି
ସେ ସନ୍ଧେ ନାରାଚ ବରଷା ଯେସନ୍ତେ କରି ।
ହସ୍ତରୁ ନ ଫିଟେ ତାହାଙ୍କେବେ ଦଶରଥ ବାଳ
ଦେବଙ୍କୁ ଦେଖ ସମର ହେଲା ଅଗୋଚର ।
ପଦାନ୍ତି ବଳମାନେ କରନ୍ତି ସମର
କୋନ୍ତ ଖଣ୍ଡା ଲଙ୍ଗିଆ ମାରନ୍ତି ଅପାର ।
ଅଯୋଧ୍ୟାର ସୈନ୍ୟ ମାଇଲେ ଧନୁ ଧରି
ଅସୁର ସୈନ୍ୟ ଯେ ମାରନ୍ତି ରୋଷକରି ।
ଦେଖିକରି ରାବଣ ଯେ ଅନେକ ଶର ମାରେ
ଭୂତଶରେ ନିବାରଣ ଶତ୍ରୁଘ୍ନ କରେ ।
ପିନାକ ବଜ୍ରଶର ମାରଇ ରାବଣ
ଅଗ୍ନିଶରେ ନିବାରି ରଖାଏ ଶତ୍ରୁଘ୍ନ ।

ଦେଖିକ ରାବଣ ଯେ ବ୍ରହ୍ମଶର କଲା
ନାରାୟଣ ଶରେ ଶତ୍ରୁଘ୍ନ ନିବାରିଲା ।
ଦେଖିକରି ଅସୁର ଅସୁରା ଶରକରେ
ଈଶ୍ୱର ଶରେ ଶତ୍ରୁଘ୍ନ ତା ନିବାରେ ।
ଜଳଧାରା ଶର ଯେ ରାବଣ ମାରେ ଟାଣି
ଅଗ୍ନିଶରେ ନିବାରିଲେ ଶ୍ରୀରାମ ଭାଇ ପୁଣି ।
ମାୟାଶର ଗୋଟିଏ ଯେ ରାବଣ ମାଇଲା
ସଚରାଚର ଯାକ ପର୍ବତମୟେ ହେଲା ।
ବଜ୍ରଶରେ ତାହା ନିବାରେ ଶ୍ରୀରାମ ଭାଇ
ଦେଖିକରି ଶତମୁଖା ମନେ ବିସ୍ମରଇ ।
ଭଲ ଯୋଦ୍ଧା ଅଟନ୍ତି ଦଶରଥ ପୋଏ
ମୋହିଲେ ଦଶଗ୍ରୀବ ସଙ୍ଗେ ଯୁଝିଯାଏ ।
ଏତେକହି ଶାରଙ୍ଗର ଧୂଳି ଘେନ
ଶରକୁ ମନ୍ତ୍ରିଣ ଛାଡ଼ିଦେଲା ପୁଣି ।
ଗର୍ଜନ ନାଦ କରି ଶର ବାହାରିଲା
ସ୍ୱର୍ଗ ମର୍ତ୍ତ୍ୟ ଦୁଇ ପୁର ଆକାଶେ ପୂରିଲା ।
ଦେଖିକରି ଶତ୍ରୁଘ୍ନ ଗରୁଡ଼ ଶର ପେଷି
ସର୍ପମାନେ ସର୍ବେ ପଳାଇଲେ ଖସି ।
ଦେଖି ରାବଣେଶ୍ୱର ଅଗ୍ନିଶର କଲା
ସ୍ୱର୍ଗ ମର୍ତ୍ତ୍ୟ ଦୁଇପୁର ଅନଳ ଘୋଟାଇଲା ।
ଶତ୍ରୁଘ୍ନ ଚିହ୍ନିକ କଲା ଜଳବୃଷ୍ଟି
ଅଗ୍ନି ସର ଗୋଟିକର ତେଜ ଗଲା ଲୁଚି ।
ଦେଖିଣ ଶତ୍ରୁଘ୍ନ ବାବଲ ସର ମାରି
ପଦାନ୍ତି ବଳ ସବୁ ପକାଏ ନିବାରି ।
ପୁଣି ଷାଷ୍ଠ ନାରଜ ଗୁଣେ ବସାଇଲା
ମନ୍ତ୍ରକୁ ସୁମରି ବୀର ବେଗେ ଛାଡ଼ିଦେଲା ।
ଆଠ କୋଟି ବାଦ୍ୟକାର କନ୍ଧ ଛିଡ଼େ ପୁଣ
ଗୋଟିଏ ନାହାନ୍ତି ଆଜ ରାବଣର ସୈନ୍ୟ ।
ଦେଖିଣ ସହସ୍ର ମୁଖା ସିଂହ ରଡ଼ି ଦେଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସବଦେ କମ୍ପିଲା ।
ଦେବତାଏ ଶୂନ୍ୟରେ ଦେଖଥିଲେ ପୁଣ
ଶତ୍ରୁଘନ ପରେ କୁସୁମ ବରଷିଲେ ପୁଣ ।
ବର୍ତ୍ତିଲେ ଶତ୍ରୁଘନ ମାରିବ ସତମୁଖା ରାବଣ
ଅପସରା ନୃତ୍ୟ କଲେ ବଜାଇ ବାଦ୍ୟମାନ
ଦେଖିଣ ରାବଣେଶ୍ୱର ମନେ ମନେ ଭାଳି
ନିର୍ଘାତ ସବଦ କରିଣ ବାଣ ମାରି ।

ଉଚ୍ଚରନ୍ତି ଏହାକୁ ଏଠାରୁ ଘେନିଯିବ
ଆପଣାର ରାଜ୍ୟରେ ଏହାକୁ ମାରିବ ।
ଏମନ୍ତ ଶାର କହିଲାକ ପୁଣି
ଶୁଣ ତୁରେ ଦଶରଥ ସୁତ ରାମମଣି ।
ସିନ୍ଧୁ ତେଜି ତୋହର ରାଜ୍ୟରେ ଯୁଦ୍ଧ କଲି
ସୈନ୍ୟବଳ ସୁବନାଶ ମରାଇଲି ।
ମୋହର ସଙ୍ଗରେ ସୈନ୍ୟ କୋଟିଏ ନାହାନ୍ତି
ମୋ ସଙ୍ଗେ ମୋରାଜ୍ୟେ ଯିବୁ ଦଶରଥ ବସ୍ତି
ତୋର ମୋର ସେଠାରେ କରିବା ରଣଭୋଳ
ନିଜରାଜ୍ୟେ ଜିଣିଲେ କ ହୋଇବ ଘାରବାର ।
ପରରାଜ୍ୟେ ଯୁଦ୍ଧକରି ଜିଣିଲେ ଯଶ ପାଇ
ଆମେମାନେ ପର ରାଷ୍ଟ୍ର ଜିଣିଲୁ ଯୁଦ୍ଧେରହି ।
ମରିବା ଜଇବା ପିନା କ୍ଷତ୍ରିଙ୍କ ବେଭାର
ରଣରେ ମଲେ କ୍ଷତ୍ରୀ ଯାଆନ୍ତି ସ୍ୱର୍ଗପୁର ।
ତୁ ମୋତେ ମାରିବୁ ମୁଁ ତୋତେ ମାରି
ଦୁଇ ଜଣରୁ ଜଣେ ଯିବ ସ୍ୱର୍ଗପୁରୀ ।
ଏତେବୋଲି ରାବଣ ମନ୍ତ୍ରୀଙ୍କି ଆଜ୍ଞାଦେଲା
ଅଭୁତ ବିମାନ ମୋର ବାହାରେ ହୋଇଲା ।
ନିଜ ରାଜ୍ୟରେ ତୁ କର ପରବେଶ
ଏତେବୋଲି ଆଜ୍ଞାଦେଲା ଜଇନ୍ତା ମୁନିଶିଷ୍ୟ
ରାବଣର ଆଜ୍ଞାରେ ସାରଥି ବାହେ ଯାନ
ଆପଣା ରାଜ୍ୟକୁ ସେ କଲେକ ଗମନ ।
ଦେଖିଣ ଶତ୍ରୁଘନ ଜନନୀକ ପୁଚ୍ଛି
ଆମ୍ଭେ ଯିବା ଚିନ୍ତା ମାତା ରାବଣ ଗଲା ଡାକ
ଜନନୀ ବୋଇଲେ ତୁରେ ଅଜସ୍ର ଜମ୍ଭା କରୁ
ଭଗାର ଡାକିଲା ବେଳେ ଗୋଡ଼ାଇ ନ ମାରୁ
ସେ ଆମ୍ଭର ଭଗାରରେ ଦେବତାଙ୍କର ସଲ
ଦେବତାଙ୍କ ସଂହାରେ ମାରିଲୁ ଦୈତ୍ୟବଳ
ଦେବେ ପରା ଆୟୁଧମାନ ତୋତେ ଦେଲେ
ରଣରେ ଆସି ତୋର ସୈନ୍ୟଙ୍କୁ ଖାଆଇଲେ
ଏତେ ଉପକାର କଲେନ୍ତେ କେତ୍ତୁ ପୁଣ
ଏକା ବିନକରେ ଅସୁର ନେଇଆନ୍ତା ପ୍ରାଣ ।
ଏବେ ଗଲ ଆମ୍ଭେ ତା ସଙ୍ଗରେ ଗଲପିବା
ତାକୁମାରି ଦେବତାଙ୍କୁ କୁଶଳ କରିବା ।
ଶୁଣିକରି ଶତ୍ରୁଘନ ରଥୀଙ୍କୁ ଆଜ୍ଞାଦେଲା
ଅସୁର ସଙ୍ଗେ ଯିବାପାଇଁ ସେ କହିଲା ।

ମନ୍ତ୍ରୀର ପୁଅକୁ ଡାକ କହିଲେ ଯେ ପୁଣ
ରାଜ୍ୟ ମୋର ସମ୍ଭାଳ ଥିବୁ ତୁ ଜାଣ ।
ମୁଁ ଯାଇ ଅସୁରଙ୍କୁ ମାରେ ଯୁଦ୍ଧ କରି
ନବକୋଟି ସେନାପତି ନେଲ ସଙ୍ଗକରି ।
ନେଜନକୋଟି ସେନାପତିରହିଲେ ତୋରମୁଳେ
ହସ୍ତୀ ଘୋଡ଼ା ସମସ୍ତଙ୍କୁ ତଇତବୁ ସାଟେରେ
ମାତାଗଣମାନଙ୍କୁ କହିବୁ ପୁଣ ଯାଇ
ଶୋକ ନ କରିବେ ଚିନ୍ତା ନ କରିବେ କେହି
ଏତେବୋଲି ରାମମଣି ରଥରେ ବସେ ଧୀର
ମୀନାବର୍ଣ୍ଣ ବାଗ ଧନୁ ଜୋରଡ଼ା ଜଲ ତୋରା
ଅସୁର ଭଳକ ରଥ ବେଗେ ଚାଳଦେଲା
ଗଗନ ମାର୍ଗରେ ରଥେ ବେଗେ ଚଳିଗଲା ।
ଶତମୁଖା ରାବଣର ରଥ ଚଳେ ବେଗେ
ସିନ୍ଧୁକୁଳେ ପ୍ରବେଶ ହେଲା ଦୈତ୍ୟ ରାଗେ
ତାହାର ପଛେ ପଛେ ଶତ୍ରୁଘନ କରଇ ଗମନ
ତାର ପଛେ ନବକୋଟି ରଥୀ ଚଳେ ପୁଣ ।
ସିନ୍ଧୁକୁଳେ ଶତ୍ରୁଘନ ହେଲା ପରବେଶ
ନବକୋଟି ରଥୀ ତାର ସଙ୍ଗରେ ବିଶେଷ ।
ସେଠାରୁ ଯେ ଶତମୁଖା କରଇ ଗମନ
ତାର ପଛେ ଶତ୍ରୁଘନ ଚଳଇ ବହନ ।
ଉପରର ଶୂନ୍ୟ ଜାଣ ଚଳରେ ଯେ ପାଣି
ବେଗ ବେଗ ହୋଇ ରଥ ଚଳଇ ସେ ପୁଣି ।
ଲବଣ ସମୁଦ୍ର କ୍ଷଣେ ଯୁଣ ପାରି ହେଲେ
ସନ୍ଧ୍ୟାବେଳେ ଅଲଙ୍କା ଗଡ଼ରେ ପଶିଲେ ।
ଶତମୁଖା ରାବଣ ନବରେ ମିଳିଲା
ଉତ୍ତର ଦ୍ୱାରକ ରୁନ୍ଧି ବେଗେ ଆଜ୍ଞାଦେଲା ।
କହିଲା କବାଟ ଭୁରେ ପାଡ଼ ଯତ୍ନକରି
ଯୁଞ୍ଜା କାଠ ଦେଇଣ ଅର୍ଗଳ ଦେବ ପାଡ଼ି ।
ପୁତ୍ର ନାଶ ସେନାପତି ସୈନ୍ୟବଳ ମଲେ
ଏକାକୀ ଅଇଲ ଯେ ମୋହର ଭାଗ୍ୟବଳେ ।
ଏବେ ଦେଖ ଶତ୍ରୁ ମୋର ସଙ୍ଗରେ ଗୋଡ଼ାଇ
ବେଗେ ପାଡ଼ କବାଟରେ ନ ପଶିବେ କେହି
ସେତେବେଳେ ରଜନୀ ହୋଇଅଛି ସାତପଡ଼
ନିଜ ନବରେ ଶତମୁଖା ଯାଇଁ ମିଳ ।
ଏଥୁ ଅନନ୍ତରେ ଶାଇ ଶତ୍ରୁଘନ ଗଲେ
ନବକୋଟି ରଥୀ ତାଙ୍କ ସଙ୍ଗରେ ଥିଲେ ।

ସମୁଦ୍ର ପାରହୋଇ ଲଙ୍କାରେ ପ୍ରବେଶ
ଦେଖିଲେ ସେ ସିନ୍ଧୁ ବେଢ଼ିଅଛି ଚଉପାଶ ।
ତାହାର ଉପରେ ପର୍ବତମାଳା ପୁଣି
ସେହିଠାରୁ ନଦୀମାନେ ବହୁଯାଏ ପୁଣି ।
ପର୍ବତ ଉପରେ ନଦୀକୂଳେ ହେଲେ ଠୁଳ
ନଗର ଉପରେ ଦେଖ ଅଗ୍ନି କୁଣ୍ଡ କୁଣ୍ଡ ।
ସୁବେଳସ୍ଥା ବୋଲିକରି ଗୋଟିଏ ପର୍ବତ
ସେ ପର୍ବତ ଉପରେ ଫଳ ଅଛି ବହୁତ ।
ସେହି ପର୍ବତେ ଶତ୍ରୁଘନ କଲେ ଠଣା
ନବକୋଟି ରଥ ଧରି ରହିଲେ ଜଗତ ଜଣା
ରଥୁଁ ଓହ୍ଲାଇ ସଙ୍ଗେ ନଦୀ କୂଳକୁ ଗଲେ
ସ୍ନାନ ତର୍ପଣ ସେ ଯେ ନଦୀରେ ସାରିଲେ ।
ଫଳମୂଳ ପାଚିଲା କଦଳୀ ପଣସ
ଆମ୍ବ କନ୍ଦମୂଳ ତୋଳି ଆଣିଲେ ବିଶେଷ ।
ମନଇଚ୍ଛା ଭୋଜନ ରଥିମାନେ କଲେ
ମାଳାବନ୍ତୀ ଜନନୀ ସ୍ନାନ ପୂଜା କଲେ ।
ଅମଳାନ ବସ୍ତ୍ର ପିନ୍ଧିଲେ ଦେବୀ ଆସି
ସୁଗନ୍ଧ ପଦାର୍ଥ ସଙ୍ଗରେ ଥିଲେ ସଖୀ ।
ନବାତ ଜଳ ପାଣି ଦେଲ ନେଇ
ସନ୍ତୋଷରେ କୁମର ଭୋଜନ କରଇ ।
ଭୋଜନ ସାରିଣ ଯେ କୁମର ଉଠିଲା
ଆଚମନ ସାରିଣ ଆସନେ ବିଜେକଲା ।
ଜନନୀ ଭୋଜନ କଲେ ତହିଁ ବସି
ଭୋଜନ ସାରିଣ ମନ କଲେ ତୋଷି ।
ଶତେକ ରଥି ଯେ ଜଗିଣ ରହିଲେ
ରଥର ଉପରେ ଯେ ସମସ୍ତେ ଶୋଇଲେ ।
ଏଥୁ ଅନନ୍ତରେ ଶୁଣ ଭଗବନ୍ତ
ଶତମୁଖା ନିଜ ନିବରେ ଯାଇ ପଶି ।
ବାହାର ଜଗତୀରେ ବିଜେକଲ ଯାଇ
ପାତ୍ର ସାମନ୍ତ ଯେ ଅଇଲେ ଦେଖା ହୋଇ ।
ବାନ୍ଧକରି ରାବଣ ତାଙ୍କ ଆଗେ କହେ
ସକଳ ସମ୍ପତ୍ତି ମୁଁ ହରାଇଲି ସ୍ନେହେ ।
ଲକ୍ଷେକ କୁମର ମୋର ନବଲକ୍ଷ ନାତି
ସେନାପତି ମୋର ବସ୍ତୁଲକ୍ଷ କୋଟି ।
ବାଷଠି କୋଟି ମୁଁ ପଦାତି ବଳ ନେଲି ।
ବାଇଶିକୋଟି ବାଦ୍ୟକାର ନେଇଥିଲି ।
ଜମ୍ବୁଦ୍ୱୀପ ଅଯୋଧ୍ୟାରେ ପ୍ରବେଶ ହେଲି ଯାଇ
ଦଶରଥ ସାନ ପୁତ୍ର ଯୁଦ୍ଧ କଲା ରହି ।
ଦୁଇଭାଇ ଲଙ୍କାରେ ଯୁଦ୍ଧ କରୁଛନ୍ତି
ଲକ୍ଷେ ନୃପତି ଯୋଜନ ତା ଭାଇ ଯାଇଛି ।
ସାନଭାଇ କେବଳ ରାଜ୍ୟରେ ଥିଲା ତାର
ତାହାର ସଙ୍ଗରେ ଯୁଦ୍ଧ କଲିଟି ଅପାର ।
ଷଠିଶକୋଟି ତାର ସୈନ୍ୟ ବନାଶିଲି
ଅନେକ ପ୍ରକାର ତାର ସଙ୍ଗେ ଯୁଦ୍ଧ କଲି ।
କେତେବେଳେ ତାହାକୁ ମୁଁ ଜିଣି ନ ପାରିଲି
କି ବୁଦ୍ଧି କରିବି ବୋଲି ମନେ ବିଚାରିଲି ।
ସକଳ ସୈନ୍ୟ ମୋର ହେଲେ ବିନାଶନ
ପୁତ୍ର ନାତି ସବୁତରେ ମଲେ ମୋର ପୁଣ ।
ତାହା ଦେଖିଣ ମୁଁ ଅଇଲି ପଳାଇ
ମୋତେ ମାରିବାକୁ ଯେ ଗୋଡ଼ାଇ ଅଛି ସେହି
ରାଜାଠାରୁ ଏହି ବଚନ ଶୁଣିଣ
ସମସ୍ତେ ଭାଟକା ହେଲେ ସେହୁ ପୁଣ ।
ସେ ବୋଲଇ ଘର ପାଇଁ ବଂଶ ମରାଇଲି
ପର ଉପକାର ହେଲା କି ଏତେଦୂର ।
ଦାସୀମାନେ ଆପଣେ ଶୁଣୁଥିଲେ ସୁଖେ
ସମସ୍ତେ ରହିଥିଲେ କଳା କବାଟି ପାଖେ ।
ସେ କଥା ଦାସୀ ଶୁଣିଣ ରାଣୀକି କହିଲେ
ରାଣୀମାନେ ଶୁଣିଣ ଅନେକ ଶୋକ କଲେ
ବଧୂମାନେ ଶୁଣିଣ ଶାଶୁଙ୍କୁ ତଥାରି
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ ।
ନାତୁଣୀ ବଧୂମାନେ ଶୁଣିଣ ଶୋକ କଲେ
ଶାଶୁମାନଙ୍କୁ ସମସ୍ତେ ମଣାଇ କହିଲେ ।
କୋଇଲେ ଖଣ୍ଡ ପୁଅ ସେ ରଣରେ ମଲେ ପୁଣ
କେଉଁଠାନ ହେଲେ ହୁଅନ୍ତା ମରଣ ।
ଏତେବୋଲି ବଧୂମାନେ ସୁବେଶ ଯେ ହେଲେ
ନାତୁଣୀ ବଧୂମାନେ ବେଶ ପୁଣି ହେଲେ ।
ଅମଳାନ ଶାଢ଼ୀ ପିନ୍ଧିଲେ ସର୍ବଜନ
ବହୁତ ଚନ୍ଦ୍ରଦୀପ ଜଳଇ ଘନ ଘନ ।
ବଧୂ ନାତୁଣୀବଧୂ ହୋଇଲେ ବାହାର
ଶାଶୁଙ୍କୁ କହିଲେ ଚଳୁ ସ୍ୱାମୀଙ୍କ ସଙ୍ଗର ।
ଏତେକହି ବାହାରେ ହେଲେ ସେ ବାହାର
ଅଗ୍ନିକୁଣ୍ଡ ପାଶରେ ପ୍ରବେଶ ସଭିଏ ।

ଅଗ୍ନିକୁଣ୍ଡ ଭିତରେ ସର୍ବେ ସେ ବସିଲେ
ପାର୍ଥିବ ଦେହ ଛାଡ଼ିଣ ସ୍ୱର୍ଗପୁର ଗଲେ ।
ସେନାପତିମାନଙ୍କର ନାରୀମାନେ ପୁଣ
ଭୃଥ ସାଙ୍ଗରେ ସତୀ ସବଗଲେ ପୁଣ ।
ଭଣ୍ଡାରୁ ଧନ ଆଣିଲେ ରକଣେଶ୍ବର ପୁଣି
ଦୁଃଖି ଦରିଦ୍ରମାନଙ୍କୁ ଧନଦେଲା ଆଣି ।
ସେତେକ ନାରୀଗଣ ଅଗ୍ନିରେ ଝାସଦେଲେ
ଯେଝା ସ୍ୱାମୀଙ୍କ ସଙ୍ଗରେ ଯାଇଣ ମିଳିଲେ ।
ଏଥୁଅନନ୍ତରେ ଭଗବତୀ ଶୁଣ
ମର୍ଦ୍ଦନ ମାଜଣା ଯେ ରବଣେଶ୍ବର ପୁଣ ।
ସ୍ନାହାନ କରିଣ ପିନ୍ଧେ ଝୀନ ବାସ
ମାଣୋହିରେ ବଜେଜଲେ ଜଇନ୍ତା ମୁଙ୍ଗଶିଙ୍ଘ୍ୟ
ଭୋଜନ ସାରିଣ ଆଚମନ କଲେ ଯାଇ
ମନଦୁଃଖେ ପଲଙ୍କରେ ଶୁଏ ଲଙ୍କସାଇଁ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଅଯୋଧ୍ୟା କଟକରୁ ଶତ୍ରୁଘନ ଆସି ।
ସୁବଳ ଗିରିରେ ରହେ ପାଇମଣି
ଅଯୋଧ୍ୟା ପୁର କଥା କହଗୋ କାହାଣୀ ।
ଏଗାର ଘଡ଼ିଠାରେ ରଣ ଯେ ସରିଲା
ମନ୍ତ୍ରୀର କୁମର ସମସ୍ତ ଯୋଝିଗଲା ।
ଯେଝା ଘରେ ସର୍ବେ ହେଲେ ପରବେଶ
ଏଥୁଅନନ୍ତରେ ଶୁଣ ବିଜ୍ୟରସ ।
ଏହି ସମୟରେ ଭଜାମା ହୋଇଲା
କନକ ଗିରିରୁ ଦେଖ ଭଇରବ ଗଲା ।
ବାଆନେ କୋଟି ପିଶାଚୁଣୀ ସଙ୍ଗରେ ଘେନିଣ
ରଣ ସ୍ଥାନରେ ସର୍ବେ ଯାଇ ହେଲେ ପୁଣ ।
ରାକ୍ଷସଙ୍କୁ ଭକ୍ଷଣ ମାନବେ ଛାଡ଼ିଗଲେ
ରକ୍ତ ନଦୀରୁ ରୁଧିର ପାନ କଲେ ।
ମାନବଙ୍କୁ ସଲଖ କରିଦେଲେ ପୁଣ
ଗର୍ଣ୍ଡି ମୁଣ୍ଡ ଯୋଡ଼ିଣ ଗଲେ ଦେଖ ପୁଣ ।
ସ୍ୱର୍ଗରୁ ବୃହସ୍ପତି ବେଗେଣ ଅଇଲେ
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରକୁ ସ୍ମରିଲେ ।
ରଣଭୂମି ଗୋଟାକରେ ସିଞ୍ଚିଲେକ ନେଇ
ଜୀବପାଇ ଚେତା ଯେ ସମସ୍ତେ ହେଲେ ତହିଁ
ଅମୃତ ବରଷିବାରୁ ବଳ ସେ ପାଇଲେ
ଉଠିଣ ସୈନ୍ୟବଳ ଯେଝା ଘର ଗଲେ ।

ଦେଖି ବୃହସ୍ପତି ସ୍ୱର୍ଗପୁର ଗଲେ
ଭଇରବୀ ଥିଲା ଯେ କନକ ଗିରି ପରେ ।
ବାଆନକୋଟି ପିଶାଚୁଣି ସଙ୍ଗରେ ସେ ନେଲା
ଅଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇଲା ।
କୁବଳୟାଗିରି ପଶ୍ଚିମ ଭାଗରେ ଯାଇ
ରହିଲା ଭଇରବୀ ଅଲଙ୍କାକୁ ରହିଁ ।
ଏଥୁଅନନ୍ତରେ ସେ ମନ୍ତ୍ରୀପୁଅ ଜାଣ
ଟମକ ଘୋଷଣା ଦେଲେକ ତତକ୍ଷଣ ।
ଅଯୋଧ୍ୟା ନଗ୍ରେ ଯେ ପତାକା ଉଞ୍ଚାଇଲା
ହସ୍ତୀ ଘୋଡ଼ାକୁ ବାନା ସେ ଖଞ୍ଜିଲା ।
ରାଜାର ନବରେ ପ୍ରବେଶ ହେଲେ ଯାଇଁ
ଦାସୀଗଣମାନଙ୍କୁ ଡ଼ାକାଇଲା ତହିଁ ।
ବୋଇଲା ଠାକୁର ଗଲେ ଶତମୁଖା ସଙ୍ଗେ
ଚିନ୍ତା ନ କରିବ ତୁମ୍ଭେ ରହିବ ସବଭାବେ ।
ଯେଉଁକଥା ଲୋଡ଼ିବ ଦେବୀ ସର୍ବ ପୁଣ
କେଉଁ କଥାରୁ ଭିନ୍ନର ନ କରିବ ଜାଣ ।
ଏତେକହି ମନ୍ତ୍ରୀପୁତ୍ର ନିଜ ଘରେ ଗଲା
ଏଥୁଅନନ୍ତରେ କଥା ପୁଣି ଯାହା ହେଲା ।
ରାଣୀ ହଂସପୁରେ ଯାଇ କହିଲେ ଦାସୀଗଣ
ଶତମୁଖା ମାରିବାକୁ ଗଲେ ପୁତ୍ର ପୁଣ ।
ଶୁଣିକରି କୌଶଲ୍ୟା କୈକେଇ ସୁମିତ୍ରା
ସକଳ ରାଣୀ ବସି ସର୍ବେ କଲେକ ଚିନ୍ତା ।
ବୋଇଲେ ସେ ପୁତ୍ର ସଙ୍ଗେ କେହୁ ଗଲେ ପୁଣ
ଦାସୀ ବୋଲେ ନବକୋଟି ସେନାପତି ଜାଣ
କୁମର ସଙ୍ଗେ ଗଲେ ମାଳାବତୀ ପୁଣ
କଉଶଲ୍ୟା ବୋଇଲେ କଥା ହେଲା ବଡ଼ମ୍ବନ
ସ୍ବରପୁତ୍ର ମୋର ଗଲେ ଯୁଦ୍ଧ କରିବାକୁ
ଆମ୍ଭେମାନେ ପାପୀ ଗୋ ନ ଦେଖି କାହାକୁ
କୈକେୟୀ ବୋଇଲେ ଗୋ ଦାସୀମାନେ ଯାଅ
ଉର୍ମିଳା ମହାଦେଇ ଡାକିଣ ଆଣାଅ ।
ଶୁଣି ଦାସୀମାନେ ବେଗ ହୋଇ ଗଲେ
ଉର୍ମିଳା ପୁରରେ ଯାଇ ପ୍ରବେଶ ହୋଇଲେ ।
ବୋଇଲେ ଶାଶୁମାନେ ଡାକୁଛନ୍ତି ପୁଣ
ଏକଠାବେ ରୁଣ୍ଡହୋଇ ଅଛନ୍ତି ସର୍ବେଜାଣ ।
ଶୁଣିକରି ଜନକ ଦୁହିତା ବାହାରିଲେ
ଶାଶୁମାନଙ୍କ ଛାମୁରେ ଯାଇ ଓଳଗିଲେ ।

ଏଥୁ ଅନନ୍ତରେ ଯେ ଦାସୀମାନେ ଗଲେ
ଭରଥ ମହାଦେଈଙ୍କି ଡାକଣ ଆଣିଲେ ।
କୁଶଧ୍ୱଜ ଦୁହିତା ମାଳମା ନାମେ କନ୍ୟା
ଶାଶୁଙ୍କ ଚରଣେ ଓଳଗ କରେ ରମା ।
ଶତ୍ରୁଘନ ମହାଦେଈଙ୍କ ଦାସୀ ଘେନ ଆସି
ଶାଶୁଙ୍କ ଚରଣେ ଓଳଗେ ଶୁଭ୍ରକେଶୀ ।
କୌଶଲ୍ୟା ବୋଇଲେ ମୋ ମହିଆଣୀ ଶୁଣ
ସ୍ୱରପୁଅ ବଡ଼ବୋହୁ ଛାଡ଼ିଗଲେ ପୁଣ ।
ଆମ୍ଭେମାନେ କା କରିବୁ ନ ଦିଶଇ ବୁଦ୍ଧି
ଶୋକଜଳେ ବୁଡ଼ି ଇଣ ଗଲେ ଗୁଣନିଧି ।
ଊର୍ମିଳା ବୋଇଲେ ମାତ କଥା ଶୁଣ ମୋର
ହେଲଣି ଶୁଭକର୍ମ ଆସିବେ ଏଥର ।
ଏକୋଇଶ ଦିନେ ଆସି ପରବେଶ ହେବେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସର୍ବ ଲୋକ ଥିବେ ।
ଅନେକ ସମ୍ଭ୍ରମରେ ଆସିବେ ଠାକୁରେ
ସ୍ୱରଭାଇ ସଙ୍ଗେ ଘେନ ଆସିବେ ହରଷରେ ।
ଏକମାତ୍ର ଶାଶୁ ମୋର ନ ଆସିବେ ଫେରି
ଆଜ ସମସ୍ତେ ଆସିବେ ଅଯୋଧ୍ୟା ନାମେ ପୁରୀ
ଅନେକ ଉତ୍ସବ ହେବ ଏହୁ ନଗରରେ
ବସୁଦେବ ନ ରାଯ୍ୟୁଣ ବଡ଼ ଯେ ଠାକୁରେ ।
ଜ୍ୟେଷ୍ଠ ଯେ ଭଉଣୀ ମୋର ପରଲକ୍ଷ୍ମୀ ଜାଣ
ତ୍ରୈଲୋକ୍ୟ ଠାକୁରାଣୀ ଅଟନ୍ତି ଯେ ପୁଣ ।
ତିନିପୁର ସପ୍ତଦ୍ୱୀପ ଚଉଦ ଭୁବନରେ
ଏକା ଯେ କର୍ତ୍ତା ଅଟେ ବଡ଼ ଯେ ଠାକୁରେ
ଦେବ ଯେ ମାନବ କପି ତପି ନାଗବଳ
ସମସ୍ତେ ସଙ୍ଗେ ଥିବେ ଜ୍ୟେଷ୍ଠଙ୍କ ସଙ୍ଗର ।
ନପୁଂସକ ଲକ୍ଷଣ ଯେ ମୋର ଗଲ ପୁଣି
ତେଜବନ୍ତୀ ବୋଲା ମୁଁ ଯେ ଦିନାସ୍ୱରି ପୁଣି ।
ଅନୁଥାନ କଥା ଯେ ଦିଶିଲା ଆସି ମୋର
ଦିନା ସ୍ୱର ପାଞ୍ଚ କଲେ ରତ୍ନ ସାର ।
ଶତେମୁଖା ରାବଣ ଯେ ସାନୁଜ ହସ୍ତେ ମାର
ପାଞ୍ଚଦିନ ରହିଲା ଯେ ମରିବା ତାହାର ।
ମୋର ସ୍ୱାମୀ ହସ୍ତେ ଏକମୁଖା ଯିବ ନାଶ
ଦଶମୁଖା ରାବଣକୁ ମାରିବେ ମୋର ଜ୍ୟେଷ୍ଠ
ସହସ୍ରେ, ମୁଖାକୁ ମୋର ନାମି ଯେ ମାରିବେ
ସ୍ୱର ରାବଣ ମାରଣ ଅଯୋଧ୍ୟା ଆସିବେ ।

ଠାକୁରାଣୀଙ୍କର ତିନି ଭାଇଠାରେ ସୁଖ
ଏକୋଇଶ ଦିନେ ପ୍ରବେଶ ହେବେ ପଦ୍ମମୁଖ
କୌଶଲ୍ୟା ବୋଇଲେଗୋ କହିଲ କଥାମାନ
ମାଳାବନ୍ତି ନ ଆସିବାରୁ ଲାଗୁଛି ମୋତେ ଛନ୍ନ
ଚଉଦ ବରଷ ଯେ ପ୍ରଜାଙ୍କୁ ପାଳିଲା
ଏବେ ସାରଥି ହୋଇ ଅସୁର ମାଇଲା ।
ସ୍ୱାମୀରୁ ଅଧିକ ମୋର ସପତ୍ନୀ ପୁଣ
ପୁତ୍ରମୋର ଗଲଦିନୁ ନ ଜାଣେ କିଛି ଜାଣ ।
ଭରଥ ଶତ୍ରୁଘନ ହେଲେ ତୀର୍ଥାର୍ଥୀ
ପିତା ନାଶ ଗଲେ ଭାଇ ଛାଡ଼ିଲେ ପୃଥ୍ୱୀ ।
ଏବେ ସେ ସ୍ୱରଭାଇ ଲଙ୍କାରେ ହେବେଦେଖ
ସମସ୍ତେ ଆସିବେ ମାଳାବନ୍ତି ନଆସିବେ ଏକା
ଊର୍ମିଳା ବୋଇଲା ତୁମ୍ଭେ ଶୁଣମୋର ବାଣୀ
ଶ୍ୱଶୁରଙ୍କୁ ଦେବଲୋକେ ସଙ୍ଗରେ ଘେନ ।
ଦଶଗ୍ରୀବ ମରିବାରୁ ପରବେଶ ହେବେ
ଅଗ୍ନିରେ ପରୀକ୍ଷା ଜ୍ୟେଷ୍ଠ ନାମାଙ୍କୁ କରିବେ ।
ତେତେବେଳେ ସ୍ୱରପୁତ୍ରେ କହିବେ ଜନନୀ
ସ୍ୱାମୀ ସଙ୍ଗେ ଯିବେ ପୁଣି ସ୍ୱଦେହରେ ପୁଣି ।
ଏଥିର ପ୍ରକାଶେ ଲେଉଟିବେ ନାହିଁ
ଅଖିଳ ବୈକୁଣ୍ଠେ ବସିବେ ସେ ଯାଇ ।
କୌଶଲ୍ୟା ବୋଇଲେ ତୁ ଗୁପତ କଥା ରଖ
ଆମ୍ଭ ଆଗେ ନ କହିଲୁ କଥା ଦେଖୁ ଦେଖୁ
ଊର୍ମିଳା ବୋଇଲେ ତୁମ୍ଭେ ଶୁଣ ଗୋ ଜନନୀ
ମାଳାବନ୍ତି ଜନମାର ଗୁଣ ଅଛି ପୁଣି ।
ଯେତେବେଳେ ଏହାମୋତେ ଭୃଗୁମୁନି କହି
ଏକଥା ଗୋଟିକ ତୋର ମନକୁ ନ କହି ।
ପଚାରିଲେ କହିବୁ ଗୋ ଜନକର ସୁତା
ମନକୁ କହିଲେ ପ୍ରାଣ ନ ରହିବ ପୁତା ।
ନିୟମ କରାଇ ମୋତେ କହିକରି ଗଲେ
ସେହିଦିନୁ ମନକୁ ମୋ ନ କହଇ ଭଲେ ।
ଶୁଣିକରି କଉଶଲ୍ୟା କହନ୍ତି ବଚନ
ଏକୋଇଶ ଦିନେଶ୍ରୀରାମ ଆସିବେନିଶ୍ଚେଜାଣ
ଏତେ ଦିନଯାଏ କେହୁ ଆମ୍ଭଙ୍କୁ ପାଳିବ
ଏଥିର ସନ୍ଦେହ ମୋତେ ବୁଝାଇ କହିବ ।
ଊର୍ମିଳାବୋଇଲେ କଳାବନ୍ତି ମାତା ପୁଣ
ଯୁବରାଜ ହେବେ ସେହୁ ଏକୋଇଶ ଦିନ ।

ହସ୍ତୀ ଘୋଡ଼ା ପଦାନ୍ତ ଯେ ପ୍ରଜାୟେ ସକଳ
ସମସ୍ତଙ୍କୁ ପାଳିବେ ସେ ମନ୍ତ୍ରୀର ଦୁଲାଳ ।
ଶୁଣିଣ ସେ କଉଶଲ୍ୟା ବେଗେ ଉଠି ଜାଣ
କଳାବତୀ ଶିରେ ପାଟ ବାନ୍ଧିଲେ ପୁଣ ।
ବୋଇଲେ ଗୋ ପୁତ୍ରମାନେ ଆସିବାଯାଏ ତୁମ୍ଭି
ରାଜ୍ୟଘୋଷ ସୈନ୍ୟବଳ ପାଳ ଏବେ ରହି
ହସ୍ତୀ ଘୋଡ଼ା ପ୍ରଜା ଯେ ଆମ୍ଭଙ୍କୁ ପାଳିବୁ ।
ରାମପୁତ୍ର ଅଇଲେ ତୁ ନିଶ୍ଚିନ୍ତେ ରହିବୁ ।
ଶୁଣିକରି କଳାବତୀ ରାଜବେଶ ଧରି
ମନ୍ତ୍ରୀର ପୁଅକୁ ସେ ଡକାଏ ବେଗକରି ।
ବେଗେ ଆସି ମନ୍ତ୍ରୀର ଦୁଲାଳ ମିଳିଲା
କଳାବତୀ ଦେଖି ପୁଣି ଆଜ୍ଞା ତାକୁ ଦେଲା ।
ପଦାନ୍ତ ଯେ ହସ୍ତୀ ଘୋଡ଼ା ପରଜା ସକଳ
କଶ୍ୟପଙ୍କୁ ସଙ୍ଗେ ଘେନି ଋଷିର ସକଳ ।
ରାଜ୍ୟ ଜଗି ରହିବେ ରାତ୍ର ଦିବସରେ
ପରରାଷ୍ଟ୍ର ନ ପଶିବେ ରାଜ୍ୟର ଭିତରେ ।
ପ୍ରଜାଙ୍କୁ କଷ୍ଟ ତୁମ୍ଭେରେ ନ ବୋଲିବ ପୁଣ
କଳି ଦ୍ୱନ୍ଦ୍ୱକଲେ ଆସି କହିବ ଯେ ପୁଣ ।
ଦୁଃଖୀ ଦରିଦ୍ରଙ୍କୁ ଅନ୍ନ ବସ୍ତ୍ର ଦିଅ ନେଇ
ବ୍ରାହ୍ମଣଙ୍କୁ ଭୂରି ଭୋଜନମାନ ଦେଇ ।
ଦେବତାଙ୍କୁ ମିଷ୍ଟାନ୍ନ ପାଣି ପଣା ଦେବ
ଦେବୀମାନଙ୍କୁ ମନ୍ଦରେ ମାର୍ଜଣା କରାଇବ ।
ଛାଗଳ ମଇଁଷି ବୋଦା ମେଣ୍ଢା ଦେଇ
ଗ୍ରାମର ଦେବତାଙ୍କି ସନ୍ତୋଷ କରାଇ ।
ଦୁବ ବେଲପତ୍ର ଉଆ ଚାଉଳ ଦେବ
ଚମ୍ପା ଗନ୍ଧୂଶ ଦେଇଣ ଶିବଙ୍କୁ ତୋଷିବ ।
ଶୁଣିକରି ମନ୍ତ୍ରୀପୁଅ ବଚନ କହଇ
ଏହିକ୍ଷଣି ସର୍ବକଥା କରିବି ହାଦେ ମୁହିଁ ।
ଏତେକହି ସେଠାରୁ ଅଇଲା ମନ୍ତ୍ରୀ ସୁତ
ଦେବଦେବୀଙ୍କୁ ପୂଜାକରେ ବ୍ରାହ୍ମଣ ଆଣିତ ।
ରାଣୀହଂସମାନେ ଯେଝା ନଅରକୁ ଗଲେ
କଳାବତୀ ନିତ୍ୟକର୍ମ ଯେ ସାରିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ନିଜ ନଅରେ ଶୋଇଛି ଋଷଙ୍କାର ବସି ।
ରାମ ଯେ ସୁବଳୟୁଷ୍ଟା ଗିରିପରେ ଥିଲେ
ଅଙ୍ଗଦ ନଳ ନୀଳ ଯାଇ ଆଗେ ହେଲେ ।
ହୋମ ଭଙ୍ଗିଲୁ ବୋଲି କହିଲୁ ଆଗର
ଶୁଣିକରି ରାମ ଯେ ସନ୍ତୋଷ ମନର ।
ଏଥୁ ଅନନ୍ତରେ ଦେବତାଏ ପୁଣ
ସୁଧର୍ମା ସଭାରେ ବସିଲେ ସର୍ବେ ଜାଣ ।
ବିଚାରିଲେ ତ୍ରୈଲୋକ୍ୟ ଠାକୁର ଶ୍ରୀରାମ
ପାଦଗଣ୍ଡରେ ଯୁଦ୍ଧ କରନ୍ତି ଯେହୁ ପୁଣ ।
ସାନ ଦୁଇଭାଇ ଯେ ଯାନ ଚଢ଼ିଗଲେ
ତାଙ୍କ ପାଖକୁ ଯାଇ ପଠାଅ ବୋଇଲେ ।
ଶୁଣି ଦେବ ଇନ୍ଦ୍ର ମାତଳିକି ଆଜ୍ଞାଦେଲା
ନନ୍ଦିଘୋଷ ରଥ ସଜ କରସି ବୋଇଲା ।
ଶୁଣି ମାତଳି ଘେନି ଆସେ ରଥ
ବସନ୍ତ ବର୍ଣ୍ଣ କରିଣ ସାଜିଲା ତୁରିତ ।
ଦେବେ ଅସୁର ମାନବେଦେଖିଲେମୋହସିବେ
ଶସ୍ତ୍ରୁରଆୟୁଧ ସବୁହନରେ ଖଟେ ଯେବେ ।
ଷୋଳଗୋଟା ଅଶ୍ୱଯେ ଯୋଚିଲା ତହିଁ ନେଇ
ବାହାର କରି ରଥ ମେଲାକୁ ଆଣଇ ।
ଦେବତାଙ୍କ ସମ୍ମୁଖରେ ନେଇଣ ରଥ କଲା
ଦେଖିଣ ଦେବରାଜା ସନ୍ତୋଷ ମନ ହେଲା ।
ବୋଇଲା ମାତଳି ହୋ ଘେନ ବେଗେଚଳ
ଶ୍ରୀରାମ ସମ୍ମୁଖରେ ନେଇ ଦେବୁ ଯାନ ତାର ।
ବୋଲିବୁ ଏଥିରେ ବସି ବେଗେ ଯୁଦ୍ଧ କର
ତେବେ ନାଶ ଯିବ ସିନା ରାବଣ କୁମର ।
ଶୁଣି ମାତଳି ରଥ ଘେନିଗଲା ବେଗେ
ରଥ ନେଇ ମିଳିଲା ଶ୍ରୀରାମଙ୍କ ଆଗେ ।
ତେତେବେଳେ ରଜନୀ ହେଲା ବେନିଘଡ଼ି
ଶରମାନ ବାଛି ରାମ ଅଲଗା କରି କାଢ଼ି ।
ରଥ ଦେଖି ସର୍ବେ ହେଲେ ଆଚମ୍ବିତ
ବୋଇଲେ ରାବଣ ପୁଣି ଅଇଲା ଗୁପତ ।
ଶ୍ରୀରାମଚନ୍ଦ୍ର ଦେଖି ଶାରଙ୍ଗ ଧନୁଧରି
ବ୍ରହ୍ମଶର ଗୋଟିଏ ବାଛିଲେ ରୁପଧାରୀ ।
ରଥକୁ ଚାହିଁଲେ ଯେ ରଥୀ ସେଥିରେ ନାହିଁ
ଧନୁଶର ଧରି ଶ୍ରୀରାମ ପଚାରନ୍ତି ତହିଁ ।
କେଉଁଠାରୁ ରଥ ଘେନି ସାରଥି ଅଇଲୁ
ନର୍ଜନ ରଣରେ ଏଥେ ପ୍ରବେଶ ହୋଇଲୁ ।
ସାରଥି ବୋଇଲା ମୁଁ ଅଇଲି ସ୍ୱର୍ଗରୁ
ସକଳଦେବତାମୋତେ ପଠାଇଲେ ସେଠାରୁ

ବୋଇଲେ ରାମଚନ୍ଦ୍ରଙ୍କ ସ୍ମୃମୁକୁ ରଥ ନଅ
ଶ୍ରୀପାଦପଦ୍ମ ତଳେ ଯୁଦ୍ଧ କରେ ରାମରାୟ ।
ଏ ରଥରେ ବସିଣ ଯୁଦ୍ଧ କରିବେ ପୁଣ
ତେବେ ସେ ନାଶ ଯିବ ରାବଣ ନନ୍ଦନ ।
ଶ୍ରୀରାମ ବୋଲନ୍ତି ଏବେ ଦେବତାଙ୍କର ଯାନ
କେମନ୍ତେ ଆମ୍ଭେ ତାହା କରିବା ଆଘ୍ରାଣ ।
ମାତଳି ବୋଇଲା ଦେବ ତୁମ୍ଭର ଯାନ ଏହି
ମାନବ ଜନ୍ମ ହେବାରୁ ନ ଚିହ୍ନୁଛ ତୁହି ।
ସବୁକାଳେ ଏ ଯାନ ଅଟଇ ତୁମ୍ଭର
ନନ୍ଦିଘୋଷ ନାମ ଅଟେ ଏ ରଥର ।
ତୁମ୍ଭେ ତ୍ରୈଲୋକ୍ୟ କରତା ବସୁଦେବ
ମାନବ ଅବତାରେ କି ପାଶୋର ଗଲ ସର୍ବ
ଏ ରଥରେ ନ ବସିଲେ ନ ମରେ ରାବଣ
ଏଥେ ବିଜେକଲେ ହାରିବେ ସର୍ବଜନ ।
ଅନେକ ଯୁଦ୍ଧ ସେ କରିବ ଦଶଗ୍ରୀବ
ସାତଦିନ ଦ୍ୱିପ୍ରହରେ ହେବ ପ୍ରାଣେ ବଧ ।
ଶୁଣିଣ ରାମଚନ୍ଦ୍ର ଜାମ୍ବୁଜକୁ ଚାହିଁ
ରାବଣ ରଥ କି ମାୟାରେ ଅଛି ଦେଇ ।
ଜାମ୍ବୁଜ ବୋଇଲେ ଦେବ ମୋରଠାରୁ ଶୁଣ
ଦେବଦୂତ ମାତଳି ଏଥିରେ ଅଛି ପୁଣ ।
ବିଷ୍ଣୁର ବାହନ ଏସବୁ ବିନରେ ପୁଣି
ଅସୁରକୁ ଏ ବାହନ କାହୁଁ ମିଳିବ ନୃପମଣି
ଦେବେ ଏ ଯାନକୁ ଦେବାର ଅଟେ ସତ
ରାବଣ ମଲେ ତାଙ୍କର ଯିବ ପୁଣି କଷ୍ଟ ।
ଏକଥା ଶୁଣି ରାମ ମନ ସନ୍ତୋଷ କଲେ
ରାଜ ପାହିଲେ ଏରଥେ ବସିବା ବୋଇଲେ ।
ମାତଳିକି ବୋଇଲେ ରହ ତୁ ନିଶ୍ଚିନ୍ତରେ
ରାବଣ ଆଇଲେ ବିଜେ କରିବା ଏ ରଥରେ
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ
ପଲଙ୍କରେ ଶୟନ ଯେ କରିଛି ରାବଣ ।
ମନ୍ଦୋଦରୀର ବୋଲ ଯେ ନ କଲା ଦଶଗ୍ରୀବ
ତେଣୁକରି ମନ୍ଦୋଦରୀ ପାଇଲା ଅଭାବ ।
ଦାସୀକି ପଠାଇଲା କୁମ୍ଭକର୍ଣ୍ଣ ପୁର
ସୁତୁରକୁ ଡକାଇ ଆଣ ମୋ ଆଗର ।
ଶୁଣିକରି ଦାସୀମାନେ ବେଗ ହୋଇଗଲେ
କୁମ୍ଭକର୍ଣ୍ଣ କୁମରକୁ ଘେନିଣ ଆଇଲେ ।

ମନ୍ଦୋଦରୀ ଆଗରେ ନେଇ କଲେକ ଉଭା
ଚରଣ ତଳେ କୁମର ଲୋଟନ୍ତି ପାଏ ଶୋଭା
ଉଠିଣ କରଯୋଡ଼ି ଆଗରେ ଉଭା ହେଲା
ମୋତେ ଜନନୀ କମ୍ପା ଡାକିଲ ବୋଇଲା ।
ମନ୍ଦୋଦରୀ ବୋଇଲା ଶୁଣରେ କୁମର,
ରାବଣ ଅନ୍ୟାୟ କଲାକ ତିନିପୁର ।
ଦେବଙ୍କୁ ଦୁଃଖ ସେ ଦେଲାକ ବହୁତ
ଦେବେ କୁଟ କରିଣ ରାମଙ୍କୁ କଲେ ଜାତ ।
ରାବଣ ମରିବାକୁ ବାଞ୍ଛିର ସେ କଲେ
କାହାରି ବୋଲ ରାବଣ ନ ମାନିଲା ଭଲେ ।
ମୁଁ ଯେତେ ବାଗରେ ବୁଝାଇ କହିଲି
ତେବେ ତାର କ୍ରୋଧ ମୁଁ ସମ୍ଭାଳି ନ ପାରିଲି
ଶ୍ରୀରାମ ତିନିଥର ମାଗିଲେ ଧରଣୀ
ତେବେସେ ନ ମର୍ଣ୍ଣିଲେ ଲଙ୍କାରେ ନୃପମଣି—
ପିତା ତୁମ୍ଭର ଶୟନ କରିଥିଲେ ପୁଣ
ତାହାଙ୍କୁ ଉଠାଇଣ ମରାଏ ରାବଣ ।
ବୀରବାହୁ ତପ ଯେ କରୁଥିଲା ଯାଇ
ତା ତପକୁ ଭଙ୍ଗାଇ ମରାଏ ଲଙ୍କସାଇଁ ।
ଅନେକ ଅନ୍ୟାୟ ଏ ପୁରେ ସେହୁ କଲା
ଏବେ ଆସି ମରଣକୁ ଶ୍ରୀରାମ ହସ୍ତେ ଦେଲା ।
ବୀରବାହୁ କୁମର ପଶିଲା ଶରଣ
ଆପଦ ଖଣ୍ଡିଲାରେ ଅକାଳ ମରଣ ।
ତୁହି ଯାଇ ଶରଣରେ ପଶ ରାମପାଦେ
ନୋହିଲେ ପୁଣ ତୁରେ ମରିବୁ ନଷ୍ଟେ ହାଦେ
ଶ୍ରୀରାମ ଚରଣେ ଯେବେ ଶରଣ ପଶିବୁ
ଯୁଗେ ଯୁଗେ ବଳା ତୁରେ ଅମର ହୋଇବୁ
ଶୁଣିଣ ସୁକର୍ଣ୍ଣ ଯେ ରଥରେ ବିଜେକଲା
ନମସ୍କାର କରିଣ ବେଗେ ସେ ଚଳିଗଲା
ସୁବଳ ଗିରିରେ ଯାଇ ହେଲେ ପରବେଶ
ରଥରୁ ଓହ୍ଲାଇ ଗଲା ଶ୍ରୀରାମଙ୍କ ପାଶ ।
ଦନ୍ତରେ ତୃଣ ଧରି ସୁକର୍ଣ୍ଣ ବୀରମଣି
ଶ୍ରୀରାମଙ୍କ ଚରଣେ ଲୋଟଗଲା ପୁଣି ।
ଦେଖିକରି ରାମଚନ୍ଦ୍ର ବୋଲନ୍ତି ଉଠ ବୀର
କେଉଁଠାରୁ ଆଇଲୁ କହ ତୁ ଉତ୍ତର ।
କୁମର ବୋଇଲା ମୁଁ ଯେ କୁମ୍ଭକର୍ଣ୍ଣ ସୁତ
ଶ୍ରୀରାମଙ୍କ ଚରଣେ ମୁଁ ଶରଣ ନପ୍ତୃତ ।

ମୋହର ପିଅର ସେ ଶୟନ କରିଥିଲା
ରାବଣ ତାହାକୁ ଯେ ଉଠାଇଣ ମରାଇଲା ।
ପିତାଶତ୍ରୁ ବଇରୀ ହେଲା ସେ ମୋହର
ଶରଣ ପଶିଲି ମୁଁ ତୁମ୍ଭର ପାଦତଳ ।
ରାବଣକୁ ମାରିଣ ଆମ୍ଭଙ୍କୁ କର ରକ୍ଷା
ତ୍ରିଭୁବନରେ ଦେବ ରହିବ ତୁମ୍ଭ କଥା ।
ଶୁଣିଣ ଶ୍ରୀରାମ ବିଭୀଷଣକୁ ଡାକିଲେ
କୁମ୍ଭକର୍ଣ୍ଣ ମୃତକଥା କେମନ୍ତ ପରୁଛିଲେ ।
ବିଭୀଷଣ ବୋଲେ ତୁମ୍ଭେ ମହିମା ସାଗର
ଶରଣାଗତ ଲୋକଙ୍କୁ ବାରେ ଦୟା କର ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ତୁମ୍ଭ ପାଶେ ଥାଉ ସେ ବୋଲିଣ ବୋଇଲେ
ବିଭୀଷଣ ପୁତ୍ରଙ୍କୁ ଡାକକରି ନେଲା
ବୋଇଲା ଅକାଳରେ ଖଣ୍ଡିଲୁ ବାବା ପରା ।
ପାର୍ବତୀ ବୋଇଲେ ଦେବ ଶୁଣ ମହେଶ୍ୱର
ରାବଣ ଶୋଇଥିଲା ଯେ ତାହାର ମନ୍ଦିର ।
ରଜନୀ ଶେଷରେ ସେ ଉଠିଣ କିସ କଲା
ସେ କଥାକୁ ଶୁଣିବାକୁ ମୋ ଶରଧା ବଳିଲା ।
ଈଶ୍ୱର ବୋଇଲେ ଯେ ଦୁଇଦଣ୍ଡ ପୁଣ
ନିଦ୍ରାରେ ଅଚେତନ ହୁଏ ଯେ ରାବଣ ।
ହସ୍ତୀ ରଥୀ ପଦାତି ଯେ ଅଶ୍ୱବଳ ପୁଣ
ଗର୍ଜନର ଘାଏ ଚେତା ହେଲା ସେ ରାବଣ ।
ଉଠିକରି ବାହାରେ ଅବକାଶ ହେଲା
ହସ୍ତୀ ଘୋଡ଼ା ଦେଖିମନେ ସନ୍ତୋଷହୋଇଲା
ମନରେବିଚାରେ ମୋହର ଏତେକ ବଳଅଛି
କିମ୍ପା ମୁଁ ସଂଗ୍ରାମରେ ହେଉଅଛି ଦୁଃଖୀ ।
ଅକଣ୍ଟକ ରାଜ୍ୟ ମୋର ରାମ ନାଶକଲା
ଅଜୟ ଗଡ଼ ଲଙ୍କାକୁ ଶ୍ରୀରାମ ଧ୍ୱଂସିଲା ।
କୁମ୍ଭକର୍ଣ୍ଣ ପଡ଼ିଲା ବୀରଙ୍କ ଶିରୋମଣି
ଆବରି ଯେତେକ ସୈନ୍ୟ କେ ପାରିବ ଗଣି
ତେରଶତ ନାତିରୁ ଏଗାର ଶତ ନାଶ
ପୁତ୍ରମୋରମାନଙ୍କେ ଏକଷଠି ଯେ ବିଶେଷ ।
ଭାଇବନ୍ଧୁ ପୁତ୍ରସର୍ବ ଅନେକ ନାଶଗଲେ
ପଦାତି ବଳରୁ ମୋର ଦଶବର୍ଗ ମଲେ ।
ପଠାଇଣ କୋଟି ମୋର ମନ୍ତ୍ରୀକ ସେନାପତି
ବନ୍ଧୁ ନାତୁଣୀ ବଧୂ ଗଲେ ମୋର ସତୀ ।

ଦୁହିତା ଅନେକ ଯେ ବିଧବା ହୋଇଲେ
ଶ୍ରୀରାମ ଲକ୍ଷ୍ମଣ ମୋର ବଂଶ ନଶୋଧିଲେ ।
ମୁହିଁ ଶସ୍ତ୍ର କଲେ ନ ମରେ ପୁଣ କେହି
ବଜ୍ରହୁଁ କଠିଣ ଯେ ଅଟେ ତାର ଦେହୀ ।
କାଲି ସେ ଜାଣିବା ତାଙ୍କର ଅପରଏ
ହସ୍ତୀ ନଅ ମୋର ବୋଲେ ଲଙ୍କାରାଏ ।
ଆପଣେ ଅବକାଶେ ପଶେ ଲଙ୍କପତି
ପାତ୍ରମନ୍ତ୍ରୀମାନେ ଯେ ଯାହାରେ ଯାଆନ୍ତି ।
ରାବଣ ବିଚାରଇ ଯେ ସଗୋତ୍ର ମୋର ମଲା
ସୀତାର ସକାଶେମୋହର ସମ୍ପଦ ନାଶଗଲା
ଯଦ୍ୟପି ସରିଲାଣି ମୋର ଏତେ ଶିଘ୍ର
ଜାନକୀଙ୍କି ଭୋଗ ମୁଁ ନ ପାରିଲି କରି ।
କେମନ୍ତ ପ୍ରକାରେ ମୁଁ ରଚିବି ବୈଦେହୀ
ତାହା ବ୍ୟତିତେ ମୋତେ ଆନ ନ ରୁଚଇ ।
ତାହାକୁ ଦେଖିବି ମୁହିଁ ତା ସଙ୍ଗରେ ଥିବି
ସେହି ଯେଣେ ଯିବ ମୁହିଁ ତେଣେ ଯିବି ।
ଏସନକ ମନ ମୋର ହେଉଛି ଅବିରତ
ସୀତା ଅଟଇ ମୋର ପ୍ରାଣର ଈଶ୍ୱରତ ।
ଏମନ୍ତ କଉଣ ବିଧାତା ସୃଷ୍ଟି କଲା
ଅଯୋଧ୍ୟାକୁ ରାମ ଯେବେ ଲଙ୍କାକୁ ଅଇଲା ।
କି ବୁଦ୍ଧି କରିବି ମୁହିଁ ନ ସ୍ଫୁରଇ କିଛି
କେମନ୍ତେ ଭୋଗ ମୋତେ ହୋଇବ ମୃଗାକ୍ଷୀ
ଯିବି ମୁଁ ସୀତା ପାଶ କହିବି ବୁଝାଇ
ତାହାର ବିନା ମୋତେ ଆନ ଗତି କାହିଁ ।
ଯଦ୍ୟପି ମୁଁ ରଣ କରିବି ରାମ ତୁଲେ
ଜୀବନ ହାରିବି ମୁଁ ତାହାର ଶରରେ ।
ଇହକୁଳେ ପରକୁଳେ ହୋଇଲି ଉପୃତି
କେଉଁଣ ପ୍ରକାରେ ରହିବି ଯେ ବର୍ତ୍ତି ।
ମାୟା କରି କହିଲେ ମୁଁ ସମ୍ପ୍ରତେ ନ କରିଣ
ଉପାୟ ବଳେ କହିଲେ ଆଗତ କାରଣ ।
ଯିବି ମୁଁ ସୀତା ପାଶ କହିବି ପ୍ରୀତିରେତ
ଦୟା କରିବ ମୋତେ ଜନକ ଦୁହିତ ।
ବିବିଧ ବିନୋଦ ଯେ କରିବି ରାମତୁଲେଁ
ଅକାରଣ ହେବ ସବୁ ସମରେ ପଡ଼ିଲେ ।
ଅଶୋକ ବିପିନକୁ ଚଳେ ଲଙ୍କସାଇଁ
ଏତେ ବିଚାରି ଚଳଇ ବିମାନ ଆରୋହି ।

ତନ ପ୍ରହର ରାତ୍ର ଯେ ନବଖଣ୍ଡ ଅନ୍ଧାର
ସୀତାର ସନ୍ନିଧିକୁ ଚଳେ ଲଙ୍କେଶ୍ୱର ।
ଶୟ୍ୟାନରୁ ଓହ୍ଲାଇଣ ଜଗତୀ ପରେ ଉଠି
ସହସ୍ରେ ଅସୁରୀ ମଧ୍ୟେ ଶଳପ୍ୟେ ଶତମ୍ବ୍ୟାଷ୍ଟି ।
ଘୃତ ଭରନ୍ତରେ ଜଳେ ରତ୍ନଦୀପ
ରାବଣ ଶଳେ କରନ୍ତେ ପ୍ରକଟ କରେ ବାସ ।
ଜାଣିକଣ ଉଠିଲେ ସକଳ ରାକ୍ଷାସୁଣୀ
ଦେଖିଣ ମଥା ପୋତିଲେ ଜନକ ନନ୍ଦନୀ ।
ଚିନ୍ତା ସନ୍ତତରେ ଦର୍ଶନ ଆସି କଲେ
ଆବର ଅସୁରୀମାନେ ଚରଣେ ଶୁତିଲେ ।
ଉଠି ଉଭା ହୋଇ କର ସେ ଯୋଡ଼ିଲେ
ଜାନକୀର ମୁଖଗୃହିଁ ରାବଣେଶ୍ୱର ବୋଲେ
ଶୁଣ ତୁ ସୁନ୍ଦରୀ ଗୋ ପାଷାଣ ତୋର ହିଆ
ଯୁବତୀଏ ପୁରୁଷଙ୍କୁ ନ କରନ୍ତି ଏହା ।
ମୁହିଁ ପରା ସଖୀ ଗୋ ଆଣିଅଛୁ ତୋତେ
ସେକଥା ନ ବର୍ତ୍ତୁର ଉପେକ୍ଷା କରୁ ମୋତେ ।
କେବଣ ଗୁଣରେ ତୋତେ ନୋହିଲି ଗୋସାଇଁ
କିମ୍ପାଇ ମୁ ରୁଷ୍ଟୁ ମୋତେ ଜନକ କୁମାରୀ ।
ମୁହିଁ ଲଙ୍କପତି ଗୋ ଅସୁର ଈଶ୍ୱର
ଅନେକ ସୁନ୍ଦରୀ ଗୋ ଅଛନ୍ତି ମୋହର ।
କେବଣ ମନରେ ମୋର ବଳିଲା ତୋର ମତି
ତୁ କିମ୍ପା ଅନୁଗ୍ରହ ଗୋ ନ କରୁ ମୋତେ ସତୀ
ତୋହର ନିମନ୍ତେ ମୋର ମଲେ ପୁତ୍ର ଭାଇ
ରଥ ଗଜ ଅଶ୍ୱ ମୋ ପଦାତି ହତ ଯାଇ ।
ସୁବର୍ଣ୍ଣମୟ ପୁର ଅଗ୍ନିରେ ଭସ୍ମ ହେଲା
ମୋହର ବଡ଼ପଣ ସଖୀ ତୋ ଯୋଗୁଁ ସରିଲା
ତୋର ସ୍ୱାମୀ ନଦାରୁଣ କପଟ ଅର୍ଜ୍ଜୁ ସହ୍ୱ
ଏହି ଯେ ଦେଖିଣ ମୋର ତୋତେ ଦୟା ନାହିଁ
ଆସ ଆସ ସୁନ୍ଦରୀରେ ଧରୁଛୁ ତୋର ହସ୍ତ
ମୁହିଁ ତୋର ଆଙ୍କରେ ହୋଇଲି ସଙ୍ଗାତ ।
ତୋହର ରୂପକୁ ମୁହିଁ ନ ପାରିଲି ମୁର୍ଚ୍ଛି
ତୋ ଯଉବନ ଭିତରେ ଅମୃତ ପୂରିଅଛି ।
ସେ ପଦାର୍ଥ ନ ଖାଇଲେ ମରିବ ସଖି ମୁହିଁ
ମୂକତ ଲଭିବ ସୁଖେ ତୋହର ଦେହକୁ ଛୁଇଁ ।
ତୋର ମୁଖ ସୁନ୍ଦର ଫୁଟିଛି ପଦ୍ମଫୁଲ
ତିନ ଭୁବନକୁ ଯେଣୁ ତୁ ଅମୂଲ୍ୟ ।
ସେଥିରୁ ମଧୁ ପାନ କରିବ ମୁହିଁ
ମୋର ମାନ ରଖ ତୁ ସୁରତି ଦାନଦେଇ ।
ଚକୋର ନୟନେ ମୋତେ ଚାହିଁ କନାବାରେ
କାମଦେବ ବାଣ ପୀଡ଼ୁଅଛି ଗାତ୍ରେ ।
ନାସିକା ଫୁଲାଇ ମୋତେ ଅଳପ କର କନ୍ଧ
ଅଧରେ ଚୁମ୍ବନ ଦେଇ ରଖ ମୋର ଦେହ ।
ହିଆରେ ହିଆ ଦେଇଣ କୋଳକର ସଖି
ଏତେ ପ୍ରକାରେ ମୋଠାରେ ଦୟା ଆସୁନାହିଁ
କେବଣ ଦେବତା ଗୋ ଗଢ଼ିଲା ତୋରଦେହି
କି ଅବା ରତ୍ତି ତେଜ ତୋରଠାରେ ନାହିଁ ।
କିମ୍ପା ସରୋବରରେ ଫୁଲ ତୋ ହୃଦେନ ଫୁଟିଲା
କି ଅବା କାମଦେବ ଅପସରି ଗଲା ।
ଯାନୁ ଯଉବନ ତ ଅମୃତ ପ୍ରାପ୍ୟେ ବାହୁ
ଯୁବା ସ୍ତ୍ରୀ ହୋଇଣ ଏହା ତୁ କେମନ୍ତେ ସହୁ
ରୂପ ଯୌବନ ସୁନ୍ଦର ନୂତନ ବୟସ
ଉଛରେ ଶ୍ରଦ୍ଧା ନାହିଁ ତୋ ଜନ୍ମ ଅଟେ କସ
କିମ୍ପାଇ ଗୋ କାମ ବାଧା ନ ବାଧଇ ତୋତେ
ମୋତେ ବଳ ପାରିବୁକ ଆଜ ରାତେ ।
ମୁହିଁ ତ ଲଙ୍କପତି ଗୋ ଦିଗପାଳ ସମ
ମୋର ମୁଖ ଦେଖିଲେ ଭୟଙ୍କରେ ଯମ ।
କେବଣ ଦେବତାର ମୁଁ ଦୁହିତା ଆଣିନାହିଁ
ଅପ୍ସରୀ କନ୍ୟା ମୋର ଅଛନ୍ତି ତହିଁ ।
ଭୁବି ସମସର ଅଟୁ ରାଜାର ଦୁହିତା
ତୋର ବଚ୍ଚରକୁ କିଗୋ ନ ଯୋଗାଏ ଏକଥା
ଇତର ଲୋକ ପ୍ରାୟ ଭଙ୍ଗୁ ମୋର ବୋଲ
ସ୍ରୋତ ପାଣିରେ ଯେମନ୍ତେ ଭାସିଯାଏ ସୋଲ ।
ମୁହିଁ ସିନା ତୋର ଗୋ ରଖିଅଛୁ ବଡ଼ପଣ
ତୋହର ବଚ୍ଚରେ ଭୁକ ହେଉଅଛୁ ଟାଣ ।
ସତେ ମୁହିଁ ତୋତେ କି ନ ପାରଇ ମାର
ମାର ପକାଇଲେ କି ରଖିି ଜଟାଧାରୀ ।
ବାଇ କି ବାତୁଳ ଭୁବି ଅଟୁ ରାଜଜେମା
ତିନପୁରେ ବିଦିତ ଯେ ମୋହର ଗାରିମା ।
ତେତିଶକୋଟି ଦେବତା ମୋହର ବଶ୍ୟବୃତ୍ତ
ମୁହିଁ ଯେ ବ୍ରହ୍ମାଣ୍ଡରେ ରାବଣ ମହାକ୍ଷତ୍ରି ।
ମୋତେ କେଉଁ ଗୁଣରେ ଗୋସଇଁ ତୋର ରାମ
ଏହାର ଉପର କଣେ ଅରଣ୍ୟ ରାଜନ ।

ଅଠଗୁଣଣୀ ପୁ ରୁକ୍ଷେ ହୋଇଥିଲେ ରାଜା
ରାଜାମାନଙ୍କୁ ମାରଣ ବଜାଏ ଖରବାଜା ।
ଦେବେ ପ୍ରଶଂସା କରନ୍ତି ଯୁଦ୍ଧ ଦେଖି ତାର
ଜମ୍ବୁଦ୍ୱୀପରେ ସେ ରାଜା ଅଟେ ବଳୟୁଆର ।
ସେ ମୋର ମୁଖରେ ପଡ଼ିଲା ଯେଉଁକାଳେ
ଗୃଗୋଡ଼େ ମାରି ମୁଣ୍ଡ ପକାଇଲି ତଳେ ।
ଏ ରାମ କି ବଳୟୁଆର ଅଳପ ବୟସ
କାଲି ମୁଁ ଦୁଇଭାଇଙ୍କୁ ପେଶିବି ଯମ ପାଶ ।
ଏତେ କହି ରାବଣ ଗର୍ଜଇ ଘନ ଘନ
ଜାନକୀ ବୋଇଲେ ତୁରେ ଶୁଣ ଦଶାନନ ।
ଏ ନବସୃଷ୍ଟିରେ ଯେତେକ ଲୋକଛନ୍ତି
ତୋତେ ସମାନ ନୁହନ୍ତି ଶଶବାର ବର୍ଷି ।
ବାଳି ରାଜା ସଙ୍ଗରେ ଅନେକ ଯୁଦ୍ଧ କଲୁ
ଛଅମାସ ଯାଏ ତୁ ବନ୍ଧନରେ ଥିଲୁ ।
ତାହାର ଉଚ୍ଛିଷ୍ଟ ଭୁଞ୍ଜି କରୁ ସେ ଆହାର
ଗୌଲସ୍ତି ଯାଇ ଉଦ୍ଧାର ଆଣିଲେ ଏକବାର
ଆଉଥରେ ତୋରରେ ଭାର୍ଯ୍ୟା ଘେନଗଲା
ଛମାସ ପର୍ଯ୍ୟନ୍ତେ ବନ୍ଧରେ ରଖିଥିଲା ।
ବେଦବର କହିବାରୁ ଦେଲା ତୋ ଘରଣୀ
ଆଉଥରେ ତୋତେ କାଖେ ଯାକନେଲା ପୁଣି
ଦେବେ ଆସି କହିବାରୁ ତୋତେ ଛାଡ଼ଦେଲା
ସହସ୍ରମୁଖା ରାବଣ ତୋତେ ଧରିନେଲା ।
ଦୂତିତା ଦେଇଣରେ ପଶିଲୁ ଶରଣ
ତେବେ ତୋତେ ଛାଡ଼ଦେଲା ସହସ୍ର ମୁଖାପୁଣ
କପିଳାସ ଉପାଡ଼ିଲୁ ଯାଇ ତୁ ଯେତେବେଳେ
ସଦାଶିବ ବୁଢ଼ା ଆଙ୍ଗୁଳି ମାଡ଼ଦେଲ ହେଲେ
ତେତେବେଳେ ଶଶବାଂଶି ପୁଣି ଗଲେ
ଈଶ୍ୱରଙ୍କୁ କହି ତୋତେ ମୁକୁଳାଇ ଦେଲେ
ତେତେବେଳେ ଶାପ ଡାକୁଦେଲେ ତ୍ରିଲୋଚନ
ମୋହର ବନ୍ଧନରେ ମରିବୁ ଦଶାନନ ।
ତୋହର ଧନ ଆସିରେ ହୋଇଲାକ ଶେଷ
ଅଳପ ଦିନ ଅଛୁରେ ମରିବୁ ରାକ୍ଷସ ।
ଶତମୁଖା ସଙ୍ଗେ ତୁ ଅନେକ ଯୁଦ୍ଧକଲୁ
ନ ପାରି ତାର ପୁରେ କନ୍ଦରେ ରହିଲୁ ।
ବାଳୀଖାର ଆସି ତୋତେ ଖଲସ କରିଦେଲା
ସେ କଥାମାନ ମନରୁ ପାଶୋରି କି ଗଲା ।

ଯେତେବେଳେ ବଳପୁରେ ହେଲୁ ପରବେଶ
ପଶାକାଠି ଟେକ ନ ପାରିଲୁରେ ରାକ୍ଷସ ।
ପଶାକାଠିକି ଆଣିଲେ ଗର୍ଭ ହିଁଶ୍ରୀ ଦେଲା
ଦେଖି ଲଜ୍ଜା ପାଇ ତୁରେ ଶଶବାର ବଳା ।
ଦଣ୍ଡେ ନ ରହି ତୁରେ ଅଇଲୁ ପଳାଇ
କେତେ ବଡ଼ି କହୁରେ ପଣ୍ଡମୁଖା ହୋଇ ।
ବୟସରେ ସାନରେ ଅଟନ୍ତି ଶ୍ରୀରାମ
ଭାଇ ତୋ ବଳଷ୍ଟରେ ଅଟେ କୁମ୍ଭକର୍ଣ୍ଣ ।
ପୁଅ ତୋର ବଳବନ୍ତ ଅଟଇ ଇନ୍ଦ୍ରଜିତ
ସେମାନେ ଅଛନ୍ତି ସଞ୍ଜିବନୀ ଦୁଆରେତ ।
ଅଳପ ଦିନରେ ତୁ ଦେଖିବୁ ରାବଣ
କୁଭାଷା କହିବାରୁ ନ ଯିବୁ ସ୍ୱର୍ଗପୁର ।
ଆଦ୍ୟର ଅଠର ଯୁଗ ଦୁଃଖ ତୁ ପାଇବୁ
ଚକ୍ରେ ଛେଦନ ହେଲେ ବିଷ୍ଣୁ ଦ୍ୱାରପାଳହେବୁ
ଜାଣୁ ଜାଣୁ ବଂଶ ମରାଇଲୁ ଲଙ୍କମଣି
ଏସନେକ ବଧାତାରେ ଅଛଇ ନିର୍ମାଣି ।
ଶ୍ରୀରାମଙ୍କର ପ୍ରତିଜ୍ଞା ଦେଖିଲି ତୋର ନାହିଁ
ବଳରେ ଗରିଷ୍ଠ ଅଟନ୍ତି ବେନଭାଇ ।
ସୁଗ୍ରୀବ ହନୁମାନ କେତେ କେତେ ଯୋଦ୍ଧି
ଅଙ୍ଗଦ ବାପୁଡ଼ା ତୁରେ ନ ପାରୁ ବୁଝି ।
ଭୁଞ୍ଜି ଏତେ ଭରସାରେ କହୁ ଦଶଶିର
ତୋର ବଳେ କରେ ଶ୍ରୀରାମଙ୍କୁ ହୁଏ ମାରି ।
ଶକତ ମାଇଲୁରେ ଲକ୍ଷ୍ମଣ ହୃଦୟରେ
ସୁରଗଣେ ହାସ୍ୟ କଲେ ଦେଖି ସ୍ୱର୍ଗପୁରେ ।
ଶ୍ରୀରାମ ଜାଣନ୍ତି ଯେ ଏମନ୍ତ ଇଲାଜ
ସେ ଘାଆରୁ ଉବୁରିଲେ ସୁମିତ୍ରା ତନୁଜ ।
ଭୁଞ୍ଜି ସିନା ଜାଣୁରେ ତୋର ଯେତେ ସୈନ୍ୟ
ଏବେ ପୁତ୍ରନାତି ମଲେ ହେଲୁ ଏକା ପୁଣ ।
ଶ୍ରୀରାମଙ୍କୁ ଜିଣିବାକୁ ଏବେ ତୋ ବାଗ୍ଗର
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଶ୍ରୀରାମ ହନ୍ତକାର ।
ନଗୁଡ଼ କୁବୁଦ୍ଧି ତୁ ଖାର ଶୂର ପଣେ
ପୁତ୍ର ତୋର ମାଇଲାରେ ନାଗଫାଶ ବାଣେ ।
ବ୍ରହ୍ମଶର କରିବାରେ ନୋହିଲାରେ କଣ୍ଟ
ତିନପୁରେ ଅଜପୁରେ ଦଶରଥ ବଂଶ ।
ଗୃର ରାବଣଙ୍କୁ ଘେନ ତୁ କରିଅଛୁ ମେଳ
ତାଡ଼କଗକୁ ତୁମ୍ଭେରେ ହେବ ଶଶାବଳ ।

ମନ୍ଦୋଦରୀଙ୍କରେ ବିଭୀଷଣ ନେବ
କାଳ କାଳକୁ କଥା ପୁରାଣେ ରହିଥିବ ।
ଦୁଇ ରାବଣ ମରିବେ ତୋହର ଯୁଦ୍ଧରେ
ତୁହି ନାଶଯିବୁ ପୁଣି ତାଙ୍କ ସଙ୍ଗତରେ ।
ପଛରେ ସହସ୍ରମୁଖା ହୋଇବ ବିନାଶ
ତେବେ ରାମାୟଣ ଯୁଦ୍ଧ ହେବ ପୁଣି ଶେଷ ।
ଯେତେ ସୈନ୍ୟମଲେ ତୋର ଗଲେସ୍ୱର୍ଗପୁର
ଶ୍ରୀରାମ ସୈନ୍ୟ ଗୋଟିଏ ନୁହନ୍ତି ଅନ୍ତର ।
ତାଙ୍କର ଉପର ବଂଶ ମାଇଲୁ ଯେଉଁରାଜା
ଏବେ ଶ୍ରୀରାମ ଫେଡ଼ିବେ ତାହାଙ୍କର ଲଜ୍ଜା ।
ତୋତେ ମାରିବେ ଏଥର ଯୁଦ୍ଧକୁ ତୁ ଗଲେ
ପ୍ରାଣ ପାଇବୁ ମୋତେ ତୁ ସମର୍ପିଲେ ।
ହସେ ଲଙ୍କେଶ୍ୱର ସୀତା ବାଣୀ ଶୁଣି
ହଇହଇ ସେ କଥା ଅଟେ ଗୋ ତରୁଣୀ ।
ସମର୍ପିଣ କି ମାରିବ ଏ ଦୁଇକଥା ସତ
ଏତେ କହି କ୍ରୋଧହେଲା ଲଙ୍କାଗଡ଼ନାଥ ।
ଖଣ୍ଡା ଝଲମକାଇ ସେ ହଲାଏ ଦଶମୁଣ୍ଡ
କ୍ରୋଧରେ ଲଙ୍କପତି ହୋଇଲା ପ୍ରଚଣ୍ଡ ।
ଦେଖିଣ ଜାନକୀ ଯେ ହେଲେ ତେଜମୂର୍ତ୍ତି
ବୋଇଲେ ରାକ୍ଷସ ମୁଁ ତୋତେ ଭସ୍ମ କରନ୍ତି
ଶ୍ରୀରାମଚନ୍ଦ୍ର ପ୍ରତିଜ୍ଞା କରୁଛନ୍ତି ପୁଣ
ରାବଣର ଦଶଶିର ମୁଁ କାଟିବି ଜାଣ ।
ମୋ ସ୍ୱାମୀ ପ୍ରତିଜ୍ଞା ମୁଁ ନ କରିବି ଆନ
ଏତେ ବୋଇଲେ ଜନକ ଝିଅ ଜାଣ ।
ଜଳଗଲା ଦେହ ଯେ ଅଗ୍ନି ତେଜ ବଡ଼
ଦେଖିଲା ରାବଣ ଯେ ଦେବୀଙ୍କର ଗାଢ଼ ।
ମନରେ ବିଚାରିଲା ହେବ ନିଷ୍ଟେ ମନ୍ଦ
ଏତେବୋଲି ଚାଲିଗଲା ରାବଣ ଦଶକନ୍ଧ ।
ତ୍ରିଜଟା ଗୋଡ଼ାଇ ଯେ ଗଲା ଖଣ୍ଡେ ଦୂର
ବାହୁଡ଼ି ଯାଅ ବୋଇଲେ ଲଙ୍କାର ମହୀପାଳ
ଦୃଢ଼କର ଗୋ ତୁମ୍ଭେ ଜଗିବସ
କଥାରେ ଉପ୍ରଧ ତୁମ୍ଭେ ନକର ବିଶେଷ ।
ହେଉ ଦେବ ବୋଲିଣ ଯେ ବୋଇଲା ତ୍ରିଜଟା
ବିମାନରେ ବିଜେକଲେ ବିଶ୍ରବାର ବେଟା ।
ନିଜ ନଗରରେ ଯାଇ ହେଲେ ପରବେଶ
ଶ୍ରୀରାମ ପାଦେ ଶରଣ ବଳରାମ ଦାସ ।

ବନ୍ଦଇ ଜଗନ୍ନାଥ ହେ ନୀଳଗିରିବାସୀ
ସଂସାର ଉଦ୍ଧାରଣ ବିଜୟେ ହେବ ଆସି ।
ଲକ୍ଷ୍ମୀଙ୍କ ବଲ୍ଲଭ ସୁରଗଣ ନାଥ
ଶୁଦ୍ଧ ସୁବର୍ଣ୍ଣ ଭୂଷଣ ପ୍ରଭୁ ଶଙ୍ଖଚକ୍ର ହସ୍ତ ।
କଣ୍ଠରେ ନବରତ୍ନ ଶିରେ ମୁକୁଟ ଶୋଭା
ସର୍ବାଙ୍ଗେ ଚନ୍ଦନ କଉସ୍ତୁଭ ଦିଶେ ଶୋଭା ।
ବିପୁଳ ଭୋଗ ବୈକୁଣ୍ଠ ପୁର ଉଇତାର
ରତ୍ନ ସିଂହାସନରେ ବିଜେ ହଳଧାରୀ ।
ସୁଭଦ୍ରା ସିନ୍ଧୁ ଦୋହିତା ସଙ୍ଗେ ନୀଳା ବିଜେ
ଇହଲୋକ ପରଲୋକ ଜଗଜନ ସାଜେ ।
ଦାସ ବତ୍ସଳ ହେ କରୁଣାମୟ ତନୁ
ଆରତ ଭଞ୍ଜନ ପ୍ରଭୁ ଆରତ ଅନୁଆନୁ ।
ପରମ ଈଶ୍ୱର ପରମ ଅଟନ୍ତି ଭବଗ୍ରାହୀ
ନମୋନମଃ ନାରାୟଣ ମହାଜନ ସାଇଁ ।
ହୃଦରୁ ଲକ୍ଷ୍ମୀ ଜାତ ନାଭିରୁ ବିଧାତା
ମଣ୍ଡଳରୁ ଜାତ ଯେ ହେଲେ ବୁଧମାତା ।
ଏଣୁକରି ନବସୃଷ୍ଟି ସୃଜିଲୁ ଗୋସାଇଁ
ଦେବଙ୍କର ଦେବ ତୁମ୍ଭେ କମଳା ଦେବୀସାଇଁ
ନୀଳ ସୁନ୍ଦର ଗୋଟି ପବନ ଚକ୍ର ଶୋଭା
ପ୍ରସନ୍ନ ହୋଇଣ ମୋତେ ଅଭୟ ବରଦେବା
ଶରଣ ସମ୍ଭାଳ ପ୍ରଭୁ ଦୁଃଖିଜନ ସଖା
ଜୟ ଜୟ ଜଗନ୍ନାଥ ତ୍ରୈଲୋକ୍ୟ ସ୍ୱାମୀ ଏକା
ଭୟ ଆକର୍ଷଣ କରଉ ଅଛୁ ମୋତେ
ତେଣୁକରି ପ୍ରାର୍ଥନା ମୁଁ କରୁଅଛୁ ତୋତେ ।
କ୍ଳେଶ ନିବାରଣ କର ହେ ମୋତେ ଦୟା
ଅଇଲା ଅଇଲା ବୋଲି ଉରାଉଛି ମାୟା ।
ଆକନ୍ଦୁଁ ଗାର ଦେବ ପୁରାଣେ ରହିଲା
ପ୍ରହ୍ଲାଦ କୁମର ତୁମ୍ଭଠାରେ ଶରଣ ପଶିଲା
ବିଭୀଷଣ ଅମର ତୁମ୍ଭପାଦ ସେବି
ସୁଖେ ଭୋଗ କଲା ସେ କନକମୟ ଭୂମି ।
ଅପାର ମହିମା ଦେବ କେ ପାରଇ କହି
ଆରତ ଭଞ୍ଜନ ପ୍ରଭୁ ଅଟ ଭବଗ୍ରାହୀ ।
ରଖ ରଖ ଜଗନ୍ନାଥ ଅଟେ ମୁଁ ତୋରଦାସ
ବଳରାମ ଦାସର ପୁରାଅ ମନ ଆଶ ।
ଏଥୁ ଅନନ୍ତରେ ଯେ ପାର୍ବତୀ କହି ପୁଣ
ଜାନକୀର ଛାମୁରୁ ଗଲାକ ରାବଣ ।

ପୁଣିହିଁ ଶପଥ କଲେ କହ ଦେବ ମୋତେ
ସେ କଥାରେ ଶରଧା ବଳଇ ମୋର ଚିତ୍ତେ
ଈଶ୍ୱର ବୋଇଲେ ଶୁଣ ଦକ୍ଷର ଦୁହିତା
ଜାନକୀ ସ୍ଥାନୁରୁ ଗଲା ଇନ୍ଦ୍ରଜିତ ପିତା ।
ବେଗେ ବେଗେ ଚଳିଯାଏ ଲଙ୍କାଗଡ଼ରାଏ
ରାତ୍ର ତିନିପ୍ରହରରେ ନିଜ ନବରେ ହୁଏ ।
ବିମାନୁ ଓହ୍ଲାଇଣ ହେଲା ପରବେଶ
ଦର୍ଶନ କଲେ ଆସି ସକଳ ରାଣୀହଂସ ।
ବୋଇଲା ମୁଁ ଜାନକୀ ପାଖକୁ ଯାଇଥିଲି
ଅନେକ ପ୍ରକାରେ ମୁଁ ବିନୋଇ କହିଲି ।
କେବେହେଁ ମୋର ବୋଲ ନ କଲା ବଇଦେହୀ
ଶୁଣି କରଯୋଡ଼ି ଯେ ମନ୍ଦୋଦରୀ କହି ।
ଶ୍ୱେଦେବ ଯାହା ପୁଣ କରୁଅଛ ଆଜ୍ଞା
ତିନିପୁରେ ଲାଗଇ ଯେ ତୋହର ପ୍ରତିଜ୍ଞା ।
ମାଇ ଗାଇ ଲୋକ ସେ ନ ଜାଣଇ କିଛି
ସ୍ୱର୍ଗ ବିଦ୍ୟାଧର ତୋତେ ପଣ୍ଡପଣେ ଲେଖି ।
ଏଥିପାଇଁ ମଣାଇ କହିଲି ଦେବ ତୋତେ
ନ ରହୁ ସୀତା ପୁଣ ନ ରହୁ ଦେବ ଏଥେ ।
ଅକାରଣ କଥାରେ ପ୍ରୟୋଜନ ନାହିଁ
ଶ୍ୱେଦେବ ଜାନକୀ ଦେବା ବାହୁଡ଼ାଇ ।
ଶୁଣିକରି ଅଳପ ହସିଲା ଲଙ୍କପତି
ଏ କଥା ମୋର ଆଗରେ ନ କହରେ ସତୀ ।
ଦେହରେ ପ୍ରାଣଥିଲେ ମୁଁ ନ ଦିଅଇ ସୀତା
ଏ ମୋହର ସମର ବିରଥ ଜଗଜିତା ।
କାଲି ମୁଁ ରଘୁନାଥଙ୍କୁ ସଂହାରିବି ରଣେ
ଭାଇପୁତ୍ର ମୋର ଯେ ପାଶୋର ହେବ ତେଣେ
ଜାନକୀର ମାଂସ ମୁଁ ସେ ଖାଇପାରେ ସତୀ
ତେବେ ମୁଁ ପ୍ରତାପୀ ଲଙ୍କେଶ୍ୱର ଯେବୋଲାଇ
ଏତେକହି ରାଜା ପଦ୍ମାବକ୍ଷୀ କର ଧରି
ଶୟନ ମନ୍ଦିରେ ଯାଇ ପ୍ରବେଶ ଦଶଶୀର ।
ନବରତ୍ନ ପଲଙ୍କରେ ସରୁଝୀନ ବାସ
ଶେଯରେ ସଜାଇଛନ୍ତି ନାନା ବର୍ଣ୍ଣ ପୁଷ୍ପ ।
ବିଚିତ୍ର ଗୃହର ଯେ ନେଇ ସମହେର
ମୁକୁତା ଝରା ଯେ ଲମ୍ବେ କେରି କେରି ।
ଚନ୍ଦନ କର୍ପୂରଗନ୍ଧ କରେ ଚଉପାଶ
ଏଣୁ ତ ହୋଇଅଛି ବିଶେଷ ଚନ୍ଦ୍ରପକ୍ଷ ।

ଶେଯରେ ବିଜେକଲା ଲଙ୍କାର ଅଧିପତି
ପାଶରେ ଖଟିଛନ୍ତି ଅନେକ ଯୁବତୀ ।
ନିଦ୍ରାରେ ଅସକତ ଅସୁରକୁଳ ସାଇଁ
ପଲଙ୍କରେ ଶୁଏ ରାଜା ଉପର ମୁଖହୋଇ ।
ରାଣୀ ମହାଦେଈଙ୍କ ଦେଖିଣ ବିଚାର
ମୋର ମୂର୍ଖ ପଣୁ ଯାଉଛି ଏଡ଼େ ଶିରୀ ।
ବିଚିତ୍ର ପୁରମାନ ବିଳସି ନ ପାରିଲି
ଅକାରଣେ ଏଡ଼େ ମୁଁ ସମ୍ପଦ ହାରିଲି ।
ଏହିକ୍ଷଣି ମୁହିଁ ଯେବେ ସୀତାଙ୍କୁ ଦେବି
ଏ ଲଙ୍କାପୁରେ ମୁଁ ନିଶ୍ଚିନ୍ତେ ରହିଥିବି ।
ମଲା ଲୋକମାନଙ୍କୁ ଆଉ ପାଇବି କାହିଁ
ଯେତେକ ମଲେ ସୈନ୍ୟ ପୁତ୍ରନାତି ଭାଇ ।
କମ୍ପାଇଁ ସମର୍ପିବି କରିବି କାଲି ରଣ
ମାରିବି ମୁଁ ଶ୍ରୀରାମ ଲକ୍ଷ୍ମଣ ବିଭୀଷଣ ।
ଏମନ୍ତ ଭାବୁ ଭାବୁ ଘୂର୍ମିତ ନୟନ
ନିଶ୍ଚେଷ୍ଟ ହୋଇଣ ଯେ ଶୋଇଲା ଦଶାନନ ।
ମାଣିକ୍ୟ ଦୀପାବଳୀ ଜଳଇ ଚଉକତି
ବେଢ଼ିକରି ଶୋଇଲେ ସକଳ ଯୁବତୀ ।
ନିଦ୍ରାରେ ଅସକତ ଅସୁର କୁଳ ସାଇଁ
ମହାଦେଈମାନେ ଯେ ଖଟିଛନ୍ତି ତହିଁ ।
ମନ୍ଦୋଦରୀ ରାଣୀ ଯେ ଚାପଇ ପୟର
ଆଲଟ ଗୃହର ସେ ବିଅନ୍ତି ଅପାର ।
ଏଥୁ ଅନନ୍ତରେ ଯେ ନିଶୀ ହୁଏ ଶେଷ
ସପନ ଦେଖିଲା ଯେ ବିଶବାର ଶୀର୍ଷ ।
ଚେତି ଉଠି ବସିଣ ବିଚାର କରେ ମନେ
ଶ୍ରୀରାମର ଭୁଜେ ମୁଁ ଯେ ଯୁଝିଲି ସ୍ୱପନେ ।
ମନ୍ଦୋଦରୀଙ୍କ ଚାହିଁଣ କହେ ଦଶଶୀର
ସପନରେ ମୁଁ ଯେ ରାମ ସଙ୍ଗେ ଯୁଦ୍ଧକରି ।
ରଘୁନାଥଙ୍କ ଭୁଜେ ବାଜେ ରଣ ଗୋଳ
ବ୍ରହ୍ମଶରରେ ମୋର ଫୋଡ଼ିଲେ ବକ୍ଷସ୍ଥଳ ।
ପ୍ରାଣହାରି ମୁଁ ଯେ ପଡ଼ିଲି ରଥତଳେ
ତୁମ୍ଭେ ବେଢ଼ି ରୋଦନ କରୁଛ ସକଳେ ।
ବିଭୀଷଣ ରାଜା ହେଲା ଲଙ୍କଦେଶେ
ବୈକୁଣ୍ଠକୁ ଗଲି ମୁଁ ବିଷ୍ଣୁଙ୍କର ପାଶେ ।
ସେ ରାମ ସେଥିରେ ଅଟନ୍ତି ନାରାୟଣ
ସୀତାଙ୍କୁ କୋଳେ ଧରିଅଛନ୍ତି ସେ ପୁଣ ।

ମୋତେ ଦେଖିଣ ଦୟାକଲେ ଦେବରାଜ
ଶଙ୍ଖ ଚକ୍ର ଗଦା ଯେ ଶାରଙ୍ଗ ଚତୁର୍ଭୁଜ ।
ବୋଇଲେକ ଦୁଃଖରେ ପାଇଲୁ ମର୍ତ୍ତ୍ୟପୁରେ
ପୁଣି ସେ ସ୍ୱର୍ଗ ପ୍ରାପତ ହେବେ ମୋ ଶରରେ
ଯାଅ ଯାଅ ତୋର ପଶ୍ଚିମ ଦ୍ୱାର ରଖ
କୁମ୍ଭକର୍ଣ୍ଣ ଅଛୁରେ ତାହାକୁ ତୁ ଦେଖ ।
ଏ ବଚନ ଶୁଣି ମୁଁ ଶୀଘ୍ର ଚଳିଗଲି
ନାରାୟଣ ପଶ୍ଚିମ ଦ୍ୱାରରେ ମିଳିଲି ।
ଦେଖିଲି କୁମ୍ଭକର୍ଣ୍ଣ ତହିଁରେ ଅଛୁ ବସି
ସେହୁ ମୋତେ ସନ୍ନିଧିକୁ ହକାରିଲେ ହସି ।
ପଚାରିଲେ ଶ୍ରୀରାମ କେଉଁଠି କ ନେଲେ ସୀତା
ଏହିକ୍ଷଣି ଏଠାରେ ପଡ଼ିଥିଲୁ ସେ କଥା ।
ମୁଁ ବୋଇଲି ସୀତା ଅଶୋକ ବନେ ଅଛି
କମାଇଁ ମୁଁ ରହନ୍ତ ଗୃରୁ ଚନ୍ଦ୍ରମୁଖୀ ।
ଏହି ସମୟରେ ଭାଙ୍ଗିଲା ମୋର ନିଦ
ସଂଗ୍ରାମ ଉପରେ ସଖୀ ଏ କ ମୋର ଖେଦ ।
ମନ୍ଦୋଦରୀ କହେ ଦେବ କହିଲି ହାଦେଯାହା
ମୁହିଁତ ସ୍ୱପନରେ ଦେଖିଲି ତାହା ।
ପୁଷ୍ପକ ବିମାନରେ ବସିକରି ଗଲ
ସପ୍ତରାତ୍ର ସପ୍ତଦିନ ଯୁଦ୍ଧ ତୁମ୍ଭେ କଲ ।
ନନ୍ଦିଘୋଷ ରଥରେ ଶ୍ରୀରାମ ଛନ୍ତି ବସି
ମାତଳି ରଥ ଆଣିଣ ଆଗରେ କଲାଟି ।
ସେ ରଥରେ ବସିଣ ଶ୍ରୀରାମ ଯୁଦ୍ଧକଲେ
ସାତଦିନ ଦିପ୍ରହରେ ତୁମ୍ଭଙ୍କୁ ମାରିଗଲେ ।
ଦଶଶିର ତୋହର ପକାଇଲେ କାଟି
ତୁମ୍ଭର ଅବସ୍ଥା ଦେଖି କାନ୍ଦିଲି ମହୀଲୋଟି ।
ଏସନକ ସମୟରେ ଚେତିଲି ନିଦ୍ରା ଛାଡ଼ି
ବିଷାଦ ହୋଇଲା ଦେବ ମନରେ ବିଚାରି ।
ତୁମ୍ଭେତ କହିଲ ଦେବ ଭାଳିବାର ବେଳେ
ହେନାଥ ବିପତ୍ତି ହେ ପଡ଼ିଲା ଏତେକାଳେ ।
ଯେବଣ ବିଧାତା ଏହି ଯୋଗ କଲା
ସୁବର୍ଣ୍ଣମୟୀ ଲଙ୍କା ଏତେକେ ନାଶଗଲା ।
କାହୁଁ କାଳ ହେଲା ଆମ୍ଭଙ୍କୁ ଏ ସୂର୍ପଣେଖା
ସକଳ ସମ୍ପଦ ଆମ୍ଭର ହରିଲା ସେହୁ ଏକା ।
କମା ଆମ୍ଭର ଶିରୀ ସେ ଦେଖି ନ ପାରିଲା
କେଉଁ କଥାରେ ଏତେକଥା ଭିଆଇଲା ।

ଏତେ କହି ରାଣୀ ଛାଡ଼ିଲା ନିଃଶ୍ୱାସ
ଉତ୍ତରେ ନ ବୋଇଲା ମନରେ ମହାତ୍ରାସ ।
ଏହି ସମୟରେ ରଜନୀ ଶେଷ ହୁଏ
ଦେବତାଙ୍କ ଅଳରେ ଶୁଭେ ଶଙ୍ଖମଏ ।
ଶେଯ ଛାଡ଼ି ପଲଙ୍କୁ ଉଠେ ଲଙ୍କପତି
ଯେ ବିଧି ନିତ୍ୟକର୍ମ ସାରିଲା ତଡ଼ତି ।
ମୃଦୁସୁଲକ ରାବଣ ବୋଲେ ନୃପବର
ଦ୍ୱାରରେ କେହୁ ଅଛୁ ଯାଇଣ ପଚାର ।
ଡାଆନ୍ତୁ ଟମକ ଯେ ଆସନ୍ତୁ ମନ୍ତ୍ରୀମାନେ
ବେଗେ ସଜ ହୁଅନ୍ତୁ ଚତୁରଙ୍ଗ ସୈନ୍ୟେ ।
ଶୁଣିଣ ମୃଦୁସୁଲ ଚଳିଗଲା ଖରେ
ଯାଇଁଣ ପ୍ରବେଶ ହେଲା ସେହୁ ସିଂହଦ୍ୱାରେ
କବାଟ ଫେଡ଼ିଣ ସେ ଖୁଣ୍ଟିଆକୁ ଡାକିଲା
ଟମକ ଦେବାକୁ ନୃପତିଙ୍କ ଆଜ୍ଞାହେଲା ।
ଶୁଣି ଦ୍ୱାରପାଳ ଟମକଆକୁ ଡାକ କରି
ବୋଇଲା ଟମକ ଦିଅରେ ବେଗକରି ।
ଶୁଣିଣ ଟମକଆ ବଜାଏ ବେଗେ ତୁରୀ
ବାଜନ୍ତେ ଟମକ ଯେ ଶୁଭେ ତିନପୁରୀ ।
ଶୂର ବୀର ଚମକ ଯେ ଅଟେ ତାର ନାମ
ବାଦ୍ୟ ଶୁଣି ଉଚାଟ ହେଲେ ଲଙ୍କା ଗ୍ରାମ ।
ଗୁନ ଅମାନାତ୍ୟ ଯେ ଚତୁରଙ୍ଗ ବଳ
ଯେ ଯାହାର ସୈନ୍ୟ ଆଣନ୍ତି ସକଳ ।
ଏଥୁ ଅନନ୍ତରେ ଯେ ରାଏ ଦଶାନନ
ଯେ ବିଧି ବିଧାନରେ କରେ ନିତ୍ୟକର୍ମ ।
ସୁବର୍ଣ୍ଣ କଠାଉ ଉପରେ ବିଜେ କଲା
ମାଣିକ୍ୟର ଜଗତିରେ ଅବକାଶ କଲା ।
ରତ୍ନପଲଙ୍କରେ ବସିଣ ନୃପବର
ମହାଦେଣ୍ଡମାନେ ଯେ ଥିଲେ ଯୋଦ୍ଧାପୁର ।
ରାଜା ଅବକାଶରେ ଦର୍ଶନ ଆସି କଲେ
ବେଳକୁ ବେଳ ସୈନ୍ୟ ଗହଳ ପୁଣି ହେଲେ
ଶୁକ ସାରଣ ଦେନି ଦର୍ଶନ କଲେ ଯାଇ
ତାହାଙ୍କୁ ଚାହିଁଣ ବୋଲେ ଲଙ୍କସାଇଁ ।
କହେ ସଂଗ୍ରାମକୁ ହେବଟିକି ସଜ
ଶ୍ରୀରାମ ସଙ୍ଗରେ ଯୁଦ୍ଧ କରିବାଟି ଆଜ ।
ଜାଣିବା ରଘୁନାଥ କେତେ ବଳ ସେ ବହଇ
କେଉଁବାଣେ ଅସୁର କୁଳକୁ ଦହଇ ।

କୁମ୍ଭକର୍ଣ୍ଣ ବୀରକୁ ମାଇଲା ଜଟାଧାରୀ
ମନେ ମନେ ତାହାର ସେ ବୋଲ ଏବେ ଇତାରି
ଆଜ ମୁଁ ଅସୁରଙ୍କର ଫେଡ଼ିବି ଅଭିମାନ
ଜାଣିଲି ମୁଁ ଦେବତାଙ୍କର ଅଟେ ଏ ବିଧାନ
ବାସୁଦେବଙ୍କୁ ଜନ୍ମ କରାଇଲେ ମର୍ତ୍ତ୍ୟପୁରେ
ଏଡ଼େ ସମ୍ପଦ ସରିଲା କପଟରେ ।
ବ୍ୟାଧି ବୋଇଲି ଏମାନଙ୍କୁ ମାଇଲେ ସଲ ଯାଇ
ଏତେ କହି ଆସନରୁ ଉଠେ ଲଙ୍କସାଇଁ ।
ନୀଳ ରତ୍ନ ପିଢ଼ାରେ ସନ୍ଧ୍ୟା ସୁମରିଲା
କାଳକେତୁ ବୀର ଯେ ଦର୍ଶନ ଆସିକଲା ।
ଅଗ୍ନିକେତୁ ରଶ୍ମିକେତୁ ମହାଶନ ଆଏ
ଏକଶିରା ପଞ୍ଚଶିରା ଦର୍ଶନ ଆସିକରେ ।
ଯମଦାଢ଼ ତୀକ୍ଷ୍ଣ ଦାଢ଼ ବରୁପାକ୍ଷ ବୀର
ଅଣରସମଏ ସେ ଯେ ଜ୍ୟୋତିଷ ସାଗର ।
ମନ୍ଦ ରାକ୍ଷସର ସେ ଭାଇଟି ଶୂଳଧର
ତାହାର ନାମ ଅଟେ ହାଦେ ହଲ୍ଲକାର ।
ତାଙ୍କୁ ଦେଖିଣ ଯେ ପସ୍ତରେ ପୁଣ ରାମ୍ଭେ
ତୋହର ନାମଗୋଟି ହଲ୍ଲକାରୁ ହୋଯ୍ୟେ ।
ଖରର ତନୁଜ ତୁ ଯେ ପୁତୁରା ମୋହର
ଏ ଘାନ୍ତ ପ୍ରତିଜ୍ଞାରେ ବୁଝିବା ତୋହର ।
ମୋହର ସାହା ଯେବେ ରାମଲକ୍ଷ୍ମଣବେଗେମାର
ସକଳ ବିଦ୍ୟାରେ ପରିପୂର୍ଣ୍ଣ ଅଟେ ତୋର ।
ଈଶ୍ୱର ତୋତେ ସଂଗ୍ରାମେ ନୁହନ୍ତି ଯେ ସରି
ସମସ୍ତ ବିଦ୍ୟାକୁ ତୁ ଅଛୁ ହେତୁ କରି ।
ତୁଅ ଆଗୁଆଣି କାଳକେତୁଙ୍କୁ ଘେନ
ଅମର ସମଏ ଯେ ଯାଆନ୍ତୁ ଭାଇ ବେନ ।
ଯମଦାଢ଼ ରଶ୍ମିକେତୁ ତୀକ୍ଷ୍ଣଦାଢ଼ ଯାନ୍ତୁ
ପାଞ୍ଚ ଲକ୍ଷ ନାଗ ବଳ ତୁମ୍ଭ ସାଙ୍ଗେ ଥାନ୍ତୁ ।
କୋଟିଏ ରଥୀ ସଙ୍ଗରେ ଥିବ ଘେନ
ଅହଲ୍ଲତେ ଯାନ ଯେ ବାହନ ଥିବ ପୁଣି ।
ପଦାନ୍ତ ସଇନ ଯେ ଯାଆନ୍ତୁ କୋଟି ସ୍ୱର
ଆଜ ଆଣି ଦାଣ୍ଡରେ ତୁଅ ମହାସମରେ ।
ବଜ୍ର କପଟ ଦୃଢ଼ କପଟ ଅଜଏ
ଅଶୋକ ବଶୋକ ରସକେତୁ ଅସମଏ ।
ଈନ୍ଦ୍ରଜିତ ବଜ୍ରାଜିତ ଅଇରି ମହାବୀର
ଦକ୍ଷିଣ ଦ୍ୱାରବାଟେ ହୋଇବେ ବାହାର ।
ପୂର୍ବ ଦ୍ୱାର ବଳଯାକ ସୁବଳଯ୍ୟା ଯିବେ
ପର୍ବତରୁ ଓହ୍ଲାଇଲେ ଗୋଡ଼ାଇ ମାରିବେ ।
ଦଶସହସ୍ର ରଥୀ ପଦାତି ବଳ ପୁଣ
ବାଦ୍ୟ ନ ଶୁଭିବ ନ ଦିଶିବ ବର୍ଣ୍ଣ ଶଙ୍ଖ ।
ସିନ୍ଧୁକୂଳ କାନ୍ଥେ କାନ୍ଥେ ଯାଇଥିବ ମାଡ଼ି
ବନସ୍ତର ସୀମା ତୁମ୍ଭେ ଦଶଯୂଣ ଗୁଡ଼ ।
ପର୍ବତର ଉଠାଣିରେ ଥିବ ତୁମ୍ଭେ ରହି
ରାମର ସୈନ୍ୟ ଆସିଲେ ମାରିବ ପଠିଆଇ ।
ବେଗେ ଯାଅ ତୁମ୍ଭେ ଯିବଟି ସାମ୍ଭେଇ ।
ସମର ଗୋଳକୁ ତର୍କିଥିବ ଆଗହୋଇ ।
ଥୋକାଏ ବଳ ଯେ କଢ଼ାଇ ଘେନିଯିବେ
ସୁବଳ ଗିରି ପର୍ବତ ତଳରେ ସେ ଥିବେ ।
କଉରବ ସୁବଶୁର ମହାଶୁରା ତିନ
ମହାପାରୁଶ ବିକଟ ପ୍ରଚଣ୍ଡ ଭାଇ ବେନ ।
ପାଞ୍ଚକୋଟି ବଳ ଅପ୍ରମୟ୍ୟ ଅଛି
ତେଜବଳ ଚଣ୍ଡାଳ ସେ ବଳ ଶକତି ।
ଗୁରଣ ବଗୁରଣ ପରମାର୍ଥବରୁପାକ୍ଷଲୋହିତାକ୍ଷ
ଅଜୟ୍ୟ ଅମୟ୍ୟ ଯେ କାଳାକ୍ଷ ଜମ୍ବୁପାକ୍ଷ ।
ପଶ୍ଚିମଦ୍ୱାର ବାଟରେ ହୋଇଲେ ବାହାର
ଦଶକୋଟି ଅଶ୍ୱ ସେ ସାଙ୍ଗରେ ତାଙ୍କର ।
ନିଶାଣ ନ ବାଜଇ ତୁମ୍ଭେ ସଳଖରେ ଯିବ
ଭେଟ ପଡ଼ିଲେ ରଣରେ ରହିଣ ଯୁଝିବ ।
ତୁମ୍ଭର ପଛରେ ମୁହିଁ ଥିବଇଁ ହେ ପୁଣି
ମୋ ସଙ୍ଗରେ ବଳ ଥିବେ ଅଠର କ୍ଷଉଣୀ ।
ଲକ୍ଷେ ପାଟଛତ୍ର ଯେ ଲକ୍ଷେକ ଚାମର
ଲକ୍ଷ ଲକ୍ଷ ବୀର ଘଣ୍ଟି ଲକ୍ଷେକ ମର୍ଦ୍ଦଳ ।
ଲକ୍ଷେକ ଗୁମର ହେ ଲକ୍ଷେକ ଝମକ
ବାଇଶି କୋଟି ଯୋଦ୍ଧା ସେଥି ଯେ ବାହୁକ ।
ଲକ୍ଷେକ ଆଲମ୍ବ ଲକ୍ଷେକ ଯେ ବୀର ନେତ
ଲକ୍ଷ ଲକ୍ଷ ଉଖାରି ଥିବେ ସେ ବହୁତ ।
ଲକ୍ଷେକ ଶଙ୍ଖ ଯେ ରତ୍ନ ଭୂଷଣ ନାରୀ
ମଙ୍ଗଳ ଗୁଜୁରୀ ରାଗେ ବାଇବେ ମହୁରୀ ।
ଶତେକ ହାତି ଯେ ପନ୍ଦର କୁମର
ଆବର ସୈନ୍ୟବଳ ଅଛନ୍ତି ଅପାର ।
ବାରକୋଟି ସେନାପତି ଅଛନ୍ତି ମୋର ରଣେ
କେଉଁ କେଉଁ ଯୋଦ୍ଧା ନାହାନ୍ତି ମୋ ଗହଣେ

ରଥୀ ମହାରଥୀ ଯେ ରାଜତ ମାହନ୍ତ
ଚତୁରଙ୍ଗ ବଳ କେହୁ ପାରିବ ଗଣିତ ।
ଯାଅ ଯାଅ ବୋଲି ଆଜ୍ଞା ଦେଲେକ ଆପଣ
ପୁଷ୍ପକ ଯାନକୁ ସେ କଲା ସୁମରଣ ।
ତକ୍ଷଣେ ଦଶରଥ ମିଳିଲେକ କତ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିକ ହୋଇଲେ ଉତପତ୍ତି ।
ଆଲୁଅପଯ୍ୟ ଦଶେ ଜଗତ ଲଙ୍କାପୁରୀ
ପାରିଜାତକ ପୁଷ୍ପକୁ ଦଶେ ବଳିଆରି ।
ଦେବାଙ୍ଗ ବସ୍ତ୍ର ମଣ୍ଡିଣି ଦର୍ପଣ ଚାମର
ଘଣ୍ଟି ଘାଗୁଡ଼ି ଯେ ଶବଦ ଗୁରୁତର ।
ଚଉଦ ବ୍ରହ୍ମାଣ୍ଡରେ ରାଜା ରାବଣେଶ୍ୱର
ସେ ରଥରେ ବସି ସାଧି କଲା ଯେ ସଂସାର ।
ଶହ୍ମ ଚରାଳ ଯେ ଉଡ଼େ ପନ୍ତ ପନ୍ତ
ଠାବେ ଠାବେ ଅଷ୍ଟରତ୍ନ ମଣ୍ଡିଣି ହୋଇଛନ୍ତି ।
ତେଣୁ ପାରିଜାତକ ପୁଷ୍ପ ମଣ୍ଡିଣି ରତ୍ନବର
ତେଣୁ ପୁଷ୍ପକ ବିମାନ ଗମନ ଅଟେ ତାର ।
ଚଉଦ ଭୁବନରେ ଚଳେ ମାୟା ରଥ
ତେଣୁ ସିନା ଜିଣିଲା ସକଳ ଦଶମାଥ ।
ପାତାଳ ବଇକୁଣ୍ଠରୁ ବ୍ରହ୍ମଲୋକ ଯାଏ
ବୁଲିଣ ଆୟତ୍ତ କଲା ଦଶାନନ ରାୟେ ।
ସେ ରଥରେ ବସିଥିଲେ ନୁହେଁ ମନ ଭଙ୍ଗ
ଦେବାସୁର ନରରେ କରେ ରଣ ରଙ୍ଗ ।
ଅଷ୍ଟାଙ୍ଗ ଯୁଦ୍ଧ ସମୟେ ରଥରେ ବସିବ
ନିର୍ଭୟ ହୋଇଣ ସମର ମଧ୍ୟରେ ପଶିବ ।
ବ୍ରହ୍ମରୁଦ୍ର ରୁଦ୍ରରେ ନୁହଇ ମନେ ଭୟେ
ତିନିପୁର ଇଙ୍ଗିତରେ କରିପାରେ ଜୟେ ।
ଯହୁଁ ସେ ରାମଚନ୍ଦ୍ର ରହିଲେ ଗଡ଼ ବେଢ଼ି
ହେଲା ଯୁଦ୍ଧ କରିଣ ଅସୁର ବଳ ମାଡ଼ି ।
ମହାମହା ବୀରମାନେ ଯୁଦ୍ଧ ଯହୁଁ କଲେ
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ତହୁଁ କ୍ଷୟ ଗଲେ ।
ତେଣୁ ସିନା ରାବଣ ଯେ ରଣ ଆଶା କଲା
ପୁଷ୍ପକ ଯାନେ ବସି ଯୁଦ୍ଧକୁ ବାହାରିଲା ।
ସୁମରନ୍ତେ ପୁଷ୍ପକ ମିଳିଲା ତାର ପାଶ
ନୀଳଗିରି ଜଗନ୍ନାଥ ଚରଣେ ମୁଁ ଦାସ ।
ଶ୍ରୀପୁରୁଷୋତ୍ତମଙ୍କୁ ଭାବଣ ବନ୍ଦଇ
ରାମାୟଣ ଗୀତ ମୁଁ ଯେ ପଦରେ ଛନ୍ଦଇ ।

ଯହୁଁ ମୋତେ ପ୍ରସନ୍ନ କମଳା ଦେବୀ ପତି
ତେଣୁ ମୋତେ ଦୟା କଲେ ଦେବୀ ସରସ୍ୱତୀ
ପରଂବ୍ରହ୍ମ ବାଲ୍ମୀକ ଋଷି ଯାହା କହି
ପୂର୍ବେ ନାରଦ ମୁନି ସଞ୍ଜ ଅଛୁ ଯହିଁ ।
କରଞ୍ଜ ଚଢ଼ାଇ ଗୋଟିକ ସରିଲା ସେ ବ୍ୟାଧ
ବାଲମିକ ମୁନି ଯାହା କଲେ ଗୀତ ଛନ୍ଦ ।
ସେ କଥା ପଚ୍ଚରନ୍ତି ଦକ୍ଷଙ୍କ ଜେମା ଶୋଭି
ଭୋଳେଦେବ ହେ ସଦାଶିବ ସୁଦୟା କରିବା ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ରାମ ରାହୁ
ଲୀଳା ଯୁଦ୍ଧ କଲେ ଯେ ରାବଣ ସଙ୍ଗେ ପ୍ରଭୁ ।
ରାବଣକୁ ମାରିଣ ସୀତା କେଉଁ ରୂପେ ନେଲେ
ଲଙ୍କାଗଡ଼ରେ ରାଜା ବିଭୀଷଣକୁ କଲେ ।
ସେକଥା ଶୁଣିବାକୁ ବହୁତ ମୋର ମନ
ଗିରିଜାଙ୍କୁ ଶୁଣିଣ କହନ୍ତି ତ୍ରିଲୋଚନ ।
ଶୁଣ ଶାକମ୍ଭରି ରାମଚନ୍ଦ୍ର ଯୁଦ୍ଧ
ଯେବଣ ପ୍ରକାରେ ରାମ ରାବଣ କଲେ ବଧ ।
ରାମାୟଣ ଯୁଦ୍ଧ ଏଯେ ଲଙ୍କାନାମେ କାଣ୍ଡ
ରଣରୋଳ ଆଚ୍ଛନ୍ନପର ଅମୃତମୟ ଖଣ୍ଡ ।
ଏଥିରୁ ପଦେ ପଦେ ଯେଉଁ ପ୍ରାଣୀ ଶୁଣି
ଶତ୍ରୁ ହୁତ କରି ଶୁଣିଲେ ନର୍କପଥ ଜିଣି ।
ବିଷ୍ଣୁଙ୍କ ଅଂଶରେ ଯେ ଯେଉଁ ପ୍ରାଣୀ ଜାତ
ଏ ଗ୍ରନ୍ଥ ଶୁଣିବାକୁ ସେ ବହୁତ ଉଛତ ।
ଯେଉଁ ପୁଣ୍ୟ ସ୍ତ୍ରୀ ରାମାନେ ଅଟନ୍ତି ବଇଷ୍ଣବୀ
ଗୃହ ରାବଣ ମାରିବାର ତା ଆଗେ କହିବି ।
ମୁହିଁ ନିସ୍ତରିବି ଗୋ ତୁମ୍ଭେ ମୋକ୍ଷ ହୁଅ
ଏଥୁ ଅନନ୍ତରେ ଯେ ଶଣ୍ଡବୀର ପୁଅ ।
ଶକତର ଘାଏ ଯହୁଁ ଲକ୍ଷ୍ମଣ ନ ମଲା
ସ୍ଥୂଳଜଙ୍ଘ କୁମର ତାର ରଣରେ ପଡ଼ିଲା ।
ବାରତା ପାଇଲା ଯେ ଦଶାନନ ରାୟେ
ମନ୍ତ୍ରୀ ଅମାନାତ୍ୟ ଯେ ସବୁଙ୍କୁ ହକରାଏ ।
ଗୃହ ଭାଗ କରିଣ ସେ ବାଣ୍ଟି ଦେଲେ ଦଣ୍ଡ
ସୈନ୍ୟବାହାରିବାରେ ଯେପୂରିଲା ଲଙ୍କାକାଣ୍ଡ
ଗୃହଦ୍ୱାରେ ବାହାର ଯେ ହେଲେ ପୁଣ ଥାଟ
ରଥ ଗଜ ଅଶ୍ୱ ଯେ ପଦାତି ମୂରାଟ ।
ରଥ ଗଜ ଅଶ୍ୱ ଯେ ମହା ଯୋଦ୍ଧାମାନ
କେହୁ ରଥେ କେଅଶ୍ୱେ ଯେ କରନ୍ତି ଗମନ ।

ସିବାର ତଉବନ୍ଧ ଯେ ଡାକବାର ଡାକ
ଢୋଲ ଦମା ବାଦ୍ୟ ଯେ ନିଶାଣ ଝମକ ।
ଶଙ୍ଖ କମ ଭେରୀ ଯେ ହସ୍ତୀଙ୍କ ଗର୍ଜନ
ହାବେଳ ବଜ୍ରବାଣ ମାରନ୍ତି ଘନ ଘନ ।
ଛେଲ ଚନ୍ଦ ମର୍ଦ୍ଦଳ ଘାଗୁଡ଼ି କଣ୍ଡୁଘଣ୍ଟି
ରଣ ଦେଖି ଧାମନ୍ତି କେହୁ ଦେଇ ପିଠି ।
ଫଳ ଫଳା ସେ ଯେ ଘୋଡ଼ାଝାପୁ ଜାତ
ସଂଗ୍ରାମକୁ ଅଶ୍ୱ ସେହୁ ମେଲିଲେ ବହୁତ ।
କଂସାର ବୋଶାଳ କାହାଳୀ ସଜକର
ଶଙ୍ଖଘୋଷ ବାଉଣ୍ଡି ବୋଫଟା ମହୁରୀ ।
ଶଙ୍ଖ ମହୁରୀ ବଜାଇ ବଂଶୀ ସିଂହା ଧ୍ୱନି
ବାଜଣାର ଘାତରେ ଯେ ଫୁଟିଲା ମେଦିନୀ ।
ଆବରହିଁ ଅଛନ୍ତି ଅନେକ ବାଦ୍ୟମାନ
ଆଳମ୍ବ ପାଟଛନ୍ଦ ଦମକର ଶବ୍ଦ ।
ରଥଙ୍କର ଚକାର ସହସ୍ର ଝୁଲକବା
ଚେଜମଣ୍ଡ ସଇନ ବାହାର ହୋଇଯିବା ।
ଦୁଲୁ ଦୁଲୁ ପୃଥିବୀ କମ୍ପଇ ବ୍ରହ୍ମାଣ୍ଡ
ଟଳଟଳି ଲଙ୍କାଗଡ଼ ସିଂହଦ୍ୱାର ଖଣ୍ଡ ।
ପାଦ ଘାତରେ ଧୂଳି ଉଡ଼ିଲା ଗଗନ
ଛନ୍ନ ଛନ୍ନ ମନ ହୁଏ ବାହାର ସମ୍ଭାଳଣ ।
ଏକର କହନ୍ତେ ଯେ ଆରେକ ନ ଶୁଣି
ହୋଇ ହୋଇ ବୋଲନ୍ତି ଲଙ୍କାର ରାକ୍ଷସୁଣୀ
ଏକକୁ ଆରେକ ଯେ ଭାଳନ୍ତି ସୈନ୍ୟ ଗୁହିଁ
ଏଡ଼େ ବଡ଼ ଥାଟ ଯେ ରହିଥିଲେ କାହିଁ ।
ବାବୁ ଦଶଗ୍ରୀବରେ ଧନ୍ୟ ତୋର ପୁଣ୍ୟ
ଭଲ ସମ୍ଭାଳି ଅଛୁରେ ଚତୁରଙ୍ଗ ସୈନ୍ୟ ।
କେତେ କେତେ ପଦାତି ଯାଆନ୍ତି ନ ଜାଣି
ଭଲ ସେ ରଘୁନାଥ ପକାବନ୍ତି ହାଣି ।
ଆଜ ସେ ଜାଣିବ ତୋର ଯୁଦ୍ଧର ବଧାନ
ଆପଣେ ସଂଗ୍ରାମତ କରିବ ଦଶାନନ ।
ରାମ ରାବଣର ଯେ ହେବ ଆଜ ଯୁଦ୍ଧ
ଏହି କଥା ମନେ ଭାଳି ଲଙ୍କା ଲୋକେ ସଧ ।
ତୁହେଁ ଯେ ମହାକ୍ଷସୀ କେହି ନୁହେଁ ଊଛ
ଏକକୁ ଆରେକ ଯେ ଅଟନ୍ତି ସମକଛ ।
କେ ବୋଲେ ରାମକୁ ନ ପାରିବ ଗୋ ରାବଣ
ବଜ୍ରଘାତ ପ୍ରାୟେ ତ ପଡ଼େ ତାର ବାଣ ।
ଦେଖିଲଟିକ କୁମ୍ଭକର୍ଣ୍ଣ ପଡ଼େ ଯାର ଶରେ
କୁମ୍ଭକର୍ଣ୍ଣ ସମାନରେ କେ ଅଛୁ ସଂସାରେ ।
ଇନ୍ଦ୍ରଜିତର ମହିମା କହିଲେ ନ ସରି
କଟକରେ ପଶି ତାହାକୁ ଲକ୍ଷ୍ମଣ ଗଲା ମାରି
ଆବର ଅନେକ ପୁଣ ମଲେ ଯେ ଅସୁର
ରାବଣ ହାରଣ ଆସିଛୁ ଦୁଇବେଳ ।
ହନୁମନ୍ତ ସୁଗ୍ରୀବର ପଶନ୍ତି ଯେବେ ରଣେ
ତାଙ୍କୁ ଦେଖିଲେ ଅସୁରେ ପଳାନ୍ତି ଏଣେ ତେଣେ
ଆଜର ଯୁଦ୍ଧ ତୁମ୍ଭେ ପଛକେ ଶୁଣ କନା
ଉଠିଲାର ଗଛର ପତରୁ ଜାଣି ସିନା ।
ଯଦ୍ୟପି ଲଙ୍କପତି ସାଧିଲା ଜଗତ
ଶ୍ରୀରାମଙ୍କୁ ହାରିବାର ଅଟେ ଯେ ନିଶ୍ଚିତ ।
କେ ବୋଲଇ ରାବଣ ନୁହଇଟି ସାନ
ସୁରଗଣଙ୍କୁ ବଶ କଲାଟି ଦଶାନନ ।
ସଦାଶିବ ଦେବ ପିତାମହ ବ୍ରହ୍ମା
ଦଶଗ୍ରୀବ ଠାରେ କେ ନ କରେ ଗାରିମା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଜିଣିଲା ତିନିପୁର
ଏଡ଼େ ସମ୍ପଦ ଅଛୁ ଗୋ କେବଣ ଅସୁର ।
ମର୍ତ୍ତ୍ୟରେ ଜନମିଲେ ମରଣ ନିଅତ
ଆନର ବଳେ କେହିଗୋ ନକରିପାରେହତ
ନାରାୟଣ ପୁରୁଷ ଅଟନ୍ତି ସବୁଙ୍କର
ତାହାଙ୍କର ସମା ନୁହେଁ ଆନ କର ।
ବ୍ରହ୍ମ ରାକ୍ଷସ ଅଟେ ଯେ ରାବଣ ପ୍ରକୃତି
ସଂଗ୍ରାମେ ଗାରିମା ଅଟେ ତାହାର ବିଭୂତି ।
ପିତାର ଗୁଣ ଘେନ ଯେ ସମସ୍ତେ ଭୋଗକଲା
ମାତା ଗୁଣ ଘେନ ଯେ ଜଗତ ଜିଣିଲା ।
ଯେଉଁ ପ୍ରାଣୀମାନଙ୍କୁ ଡରନ୍ତି ଜଗତ
ସେ ପ୍ରାଣୀ ରହିଲେ ସଂସାର ହୁଏ ହତ ।
କର୍ମାଙ୍କ ବଧାତା ସହିବ ତାଙ୍କୁ ହେଳ
ସୀତା ଆଣିବା ଦିନରୁ ପୁରିଲା ତାର କାଳ ।
ଆରେକ ଅସୁରୁଣୀ ବୋଲେ ତୁମ୍ଭେ ଶୁଣ
ନାତି ତା ମହୀରାବଣ ଅଛଇଟି ପୁଣ ।
ରାମ ଭାଇ ହନୁମନ୍ତ ସୁଷେଣ ହରିନେଲା
ସୁଲଙ୍କାରେ ନେଇ ସେ ବନ୍ଦୀରେ ଥୋଇଲା
ଶତେମୁଖା ରାବଣ ଅଲଙ୍କାଗଡ଼େ ରାଜା
ତା ସଙ୍ଗେ ଯୁଦ୍ଧରେ ହରେ ବଶିବା ଦନୁଜା ।

ସମରରେ ତାକୁ ନପାରି ତାସଙ୍ଗେ ମିତ୍ର ହେଲା
ଏକମୁଖା ରାବଣକୁ ତ ଠାକୁ ଭେଦିଲା ।
ଦୁଃଖ ସୁଖ ବନ୍ଧନ ବୋଧିଲା ତାର ମନ
ରାମ ନିଜ ରାଜ୍ୟକୁ ଯୁଝି ସେ ଗଲା ପୁଣ ।
ସାନୁଜ ଦୁଇଭାଇ ରାମର ରାଜ୍ୟରେ
ତାହାକୁ ମାରିବାକୁ କୁପାଞ୍ଚ ଏତୁକରେ ।
ଶତେମୁଖା ସେଠାରେ କରୁଅଛୁ ଯୁଦ୍ଧ
ବହୁତ କୁପାଞ୍ଚ ଏ ଜାଣଇ ଦଶକନ୍ଧ ।
ସହସ୍ର ମୁଖା ରାବଣର ଏ ଅଟେ ସମ୍ବନ୍ଧୀ
ତାହାର ପାଶକୁ ମହୀରାବଣକୁ ଦେଲା ଭେଦ
ତାକୁ କହି ଆସିଛୁ ଆସିବ ସେ ଯେ ପୁଣ
ଏକା ରାମ ଯୁଝିବେ ରାବଣ ସଙ୍ଗେଣ ।
ଏତେ ମାୟା କରଅଛୁ ଦଶଗ୍ରୀବ ଶୁଣି
ରାମ ପଳାଇଲେ ତାର ହରିବ ଘରଣୀ ।
କକ୍ଷା କର ରାମ ଯେ କରିଛୁ ସୁବଳସ୍ଥା
ରାବଣକୁ ମାରିଲେ ହେବ ବୋଧ ତାଙ୍କ ହିଆ
ଗୋଦାବରୀ କୂଳରେ ଯେବେ ପଡ଼ିଥାନ୍ତା ଭେଟ
ତେବେ କି ଛାଡ଼ିଥାନ୍ତେ ଦଶରଥ ସୁତ ।
ସମୁଦ୍ରରେ ବନ୍ଧବାନ୍ଧି ଲଙ୍କାରେ ଯୁଦ୍ଧ ତାର
ରାବଣ ପୁତ୍ର ନାତିକି ମାରେ ରଘୁବୀର ।
ଏହିଥର ରାବଣ ବର୍ତ୍ତି ଯେବେ ଆସି
ତେବେସିନା ଶ୍ରୀରାମ ହାରିଲା ପ୍ରାୟେ ଦିଶି ।
ଘର ଦ୍ୱାର ନାହିଁ ତାର କରେ ଯୁଦ୍ଧ ଠାଣ
ଯୁଦ୍ଧକଲେ ରାବଣ ପଳାଇ ଆସେ ପୁଣ ।
ଏଡ଼େବଡ କଥା ଗୋ ଦେଖିଅଛ କାହିଁ
ଅଯୋଧ୍ୟା ଗ୍ରାମରୁ ଆସି ଲଙ୍କାରେ ମାରଇ ।
ଦଇବର ଭିଆଣ ଏ ଶ୍ରୀରାମ ହସ୍ତେ ପୁଣ
ନିଶ୍ଚୟ ରାବଣକୁ ଗୋ ମାରିବେ ରାମବାଣ ।
ଭାଇ ଶରଣ ପଶିଲା ନ ତ ଗଲା ଛାଡ଼ି
ପୁତ୍ର ବୋଲେ ଶରଣ ମାଗିଲା ଯାଇକରି ।
ତେବେ ଦେଖ ଗାରିମା କରେ ଦଶଶିର
ବହୁତ ନାତୁଣୀ ଗୋ ଜଳେ ବୁଡ଼ିମଲେ ତାର
ଶୁଣିକରି ଆଉ ଜଣେ କହୁଛି ଉତ୍ତର
ଲଙ୍କକୁ ମରଣ ଗୋ ଲୋଡ଼େ ଦଶଶିର ।
କୌଣସି ଆଡ଼ରେ ନୋହିଲା ଏବେ ପୁଣି
ମଲେ ଲଙ୍କା ସମୁଦ୍ରରୁ ପାରିବେକ ଜାଣି ।

ମୋହର କଥାକୁ ସବେ ହେଉ କରିଥିବ
ନିଶ୍ଚୟ ରାବଣକୁ ମାରିବେ ରାଘବ ।
ଦେଖ ଏବେ ଭୁମ୍ଭେମାନେ ଚଳିଯାନ୍ତି ସୈନ୍ୟ
ରଥ ଗଜ ଅଶ୍ୱ ଯେ ପଦାତି ଯେତେ ପୁଣ ।
ଚିହ୍ନ ଚିରାଳ ଦେଖ ଉଡ଼ନ୍ତି ପନ୍ତି ପନ୍ତି
ବୀର ତୂର ଧାଏ ଯେ କୁରୁମ ଉଛୁଳନ୍ତି ।
ହାତେରେଣ ପୂର୍ଣ୍ଣ କୁମ୍ଭ ଆବର କଦଳୀ
ନଟୀକାଳ ରାଜହଂସ ପାରୁଆ ଆଦିକରି ।
ଯୁଦ୍ଧକୁ ଯିବା ଲୋକଙ୍କୁ ଶିଖାଇ ଦ୍ୟନ୍ତି ବୁଦ୍ଧି
ଯେମନ୍ତ ପାର ବାବୁରେ ରିପୁବଳ ସାଧି ।
ଅସୁର ବଳ ବହୁତ ହୋଇଲେ ଝିଙ୍ଗାସି
ବେଳୁବେଳ ବାନରେ ମାରନ୍ତି ଆକର୍ଷି ।
ଅଭିମାନ ସମୁଦ୍ରରେ ବୁଡ଼େ ଦଶଶିର
ମନଦେଇ ଯୁଝିଲେଅବା ପାରିବେ ଯଶକର
ଯିବାର ଲୋକେ ବୋଲନ୍ତି ତୁମ୍ଭର ପ୍ରସାଦେ
ଏହିକ୍ଷଣି ଶତ୍ରୁକୁ ମାରିବୁଁ ଅପ୍ରମାଦେ ।
ଏତେ କହି ଶସ୍ତ୍ରକୁ ଯେ ଝମକାନ୍ତି ପୁଣି
ହୋଇ ହୋଇ ବୋଲିଣ ବୋଲନ୍ତି ତରୁଣୀ ।
ଫଳାଫଳା ଛୁଟେଣ ଗୁଣେ ଗମ ଗମ
ଘଣ୍ଟି କୋଳାହଳ ଢାଗୁଡ଼ି ଝମ ଝମ ।
ଘୋଡ଼ାଙ୍କର ହ୍ରେସାରବ ହସ୍ତୀଙ୍କ ତଡ଼ବଡ଼
ରଥ ଘୋଷ ଶବଦ ଯେ ଆକାଶ ଘଡ଼ଘଡ଼ ।
ଅନୁକ୍ଷଣେ ନିଶାଣ ବାଜେ ଅନୁକ୍ଷଣ
ହେଲ ଘେନୁଅଛି ସ୍ୱର୍ଗ ମଞ୍ଚ ପାତାଳଯେ ପୁଣ
ଗୃହ ଦ୍ୱାରବାଟେ ଯେ ବାହାର ହେଲେ
ରାଜ ପ୍ରହରେ ଥାଉଁ ଯେ ଫିଟିଲା କବାଟ
ଯୁଦ୍ଧକୁ ଯିବାର ଲୋକେ ନିଦ୍ରାହିଁ ନ ଗଲେ
ଯେ ଯାହାର ଶସ୍ତ୍ରମାନଙ୍କୁ ନିର୍ଭାକଲେ ।
ରାତ୍ରରୁ ଆଜ୍ଞା ଦେଇଥିଲେ ଯେ ଲଙ୍କରାୟେ
ରାତ୍ରରୁ ସମସ୍ତ ସୈନ୍ୟ ସଜ ହୋଇଥାଏ ।
ପଦାତି ପ୍ରହରୀ ଯେ ଯାହାରେ ବଣ୍ଟାବଣ୍ଟି
ସେନାପତିମାନେ ଯେ ହେଲେ ଏକ ଗୋଷ୍ଠି
କାଳକେତୁ ରଶ୍ମିକେତୁ ମହାକେତୁ ତିନି
ଏକଶିର ପଞ୍ଚଶିର ଯମବାଡ଼ି ଘେନି
ଜୁଲୁପାକ୍ଷ କେଶାନ୍ତି ସାଗର ଅମଏ ସମଏ
ଉତ୍ତର ଢଡ଼ାରେ ବାହାର ହୋଇଯାଏ ।

ତାଙ୍କ ପଛରେ ନାନ୍ତି ପଞ୍ଚ ଯେ ଜଣ
ସେନାପତି ପାଞ୍ଚଗୋଟି ଯେ ବିଶେଷ ।
ଦୁଇପଦ୍ମ ପଦାତି ତାଙ୍କ ସଙ୍ଗେ ଗଲେ
ଉତ୍ତରଦ୍ୱାର ବାଟରେ ବାହାର ସର୍ବେହେଲେ
ଉତ୍ତମ ରଥୀରୁ ସହସ୍ରେ ପୁଣ ଗଲେ
ଉତ୍ତର ଦ୍ୱାରେ ବଳ ବାହାର ହୋଇଲେ ।
ଦକ୍ଷିଣ ଦ୍ୱାରେ ଯେ ଅଶୋକ ବିଶୋକ
ବଜ୍ରକପଟ ଦୃଢ଼କପଟ ଅମର ଅନ୍ତକ ।
ଶତ୍ରୁଜିତ ସମ ସର୍ବ ଶୋଣିତାକ୍ଷ ବୀର
ଅଇର ଜମ୍ବୁ ସମୟ ହୋଇଲେ ବାହାର ।
ପୂର୍ବଦ୍ୱାରେ ବାହାର ଦଶସହସ୍ର ରଥୀ
ଲୁଣ୍ଠ ଯେ ନ ଶୁଣାନ୍ତି ବାଦ୍ୟ ନ ବଜାନ୍ତି ।
କଳଣା ନ ଯାଇ ହସ୍ତୀ ସୈନ୍ୟ ଯେ ପଦାତି
ଦଶଗୋଟି କୁମରଯେ ସଙ୍ଗରେ ଗଲେ ନାତି
ସୁବଳସ୍ଥା ଗିରିକ ଯେ ସୈନ୍ୟ ଥାଇଁ ଗଲେ
ଝାଡ଼ ଜଙ୍ଗଲେ ଯାଇଣ ଲୁଚିଣ ରହିଲେ ।
ଲୁଣ୍ଠ ଯେ ନ ଶୁଣାନ୍ତି ବାଦ୍ୟ ନ ବଜାନ୍ତି
ପୂର୍ବ ଦ୍ୱାରେ ସର୍ବେ ନିଶବଦରେ ଯାଆନ୍ତି ।
କର୍ଣ୍ଣସୁର ମହାସୁର ଜମ୍ବୁସୁର ତିନି
ମହାସୁର ବିକଟ ପରମାର୍ଥ ଯେ ଭାଇବେନି ।
ପାଞ୍ଚଲକ୍ଷ ଗଜ ଖାଲି ତାଙ୍କ ସଙ୍ଗେ ଯାଇ
ନାନା ଅଳଙ୍କାରେ ଭୂଷଣ ସେଯେ ହୋଇ ।
ସିଂହଦ୍ୱାର ଘୁଡ଼କର ପାଞ୍ଚପୂଣ ଗଲେ
ପଞ୍ଝାପଞ୍ଝା ହୋଇଣ ସେଠାରୁ ବାହା ହେଲେ
ପ୍ରଥମ ଦ୍ୱାରେ ଯେ ପରମାର୍ଥ ଲୋହିତାକ୍ଷ
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳ ବିରୂପାକ୍ଷ ।
ଘୋର ବିଘୋରଣ ବକାସୁର ଅମଙ୍ଗ
ଅନୁକୂଳ ଯେତେଣ ବାହାର ହୋଇଯାଏ ।
ଏ ଆଠ ସେନାପତି ପଶ୍ଚିମ ଦ୍ୱାରେ ଗଲେ
ରଥ ଗଜ ଅଶ୍ୱ ଅନେକ ସଙ୍ଗେ ନେଲେ ।
ଉଚରି ଜଣାଏ ଶୁଣ ହେ ଦଶଶିର
ଚାରି ଦ୍ୱାରେ ସୈନ୍ୟ ଦେବହୋଇଲେବାହାର
ଯେ ଯେଉଁଠାରେ ଥିବାକୁ ଆଜ୍ଞା ଅଛ ଦେଇ
ସେଠାରେ ଥାଟ ରହନ୍ତି ସୁମାରି ହୋଇ ।
ଶୁଣିକରି ଲଙ୍କପତି ପରମ ତୋଷ ମନ
ଆପଣେ ସଜ ଯେ ହୋଇଲା ଦଶାନନ ।
ନୀଳରତ୍ନ ପିଢ଼ାରେ ବିଜେ କରିଥିଲା
ସୁବର୍ଣ୍ଣ ପାଦୁକା ଚଢ଼ି ତହୁଁ ଚଳିଗଲା ।
ରତ୍ନ ପଲଙ୍କରେ ସଜାଇ ଅଛି ଭୂଜ
ସେଥିରେ ବିଜେ କଲା ଦଶଇ ମଣ୍ଡଳ ।
ଦେବାଙ୍ଗ ପାଟ ଯେ ପିନ୍ଧିଲା ତହିଁ କମ
ସୁବର୍ଣ୍ଣର ଲେଖନ ବିଚିତ୍ର ଅନୁପମ ।
ଦଶମୁଣ୍ଡେ ଦଶ ପାଗ ଭିନ୍ନ ଭିନ୍ନ କରି
ପଦ୍ମରାଗ ମାଣିକ୍ୟ ଟୋପରି ଶିରେ ଭରି ।
ନବରତ୍ନରେ ଜଡ଼ିତ ଦଶେ ସେ ମୁକୁଟ
କସ୍ତୁରୀ ତିଳକ ଶୋଭା ଦିଶୁଛି ଲଲାଟ ।
ବାହେ ବୀର ନେତ ଉଡ଼େ ଫର ହର
ଅନର୍ଗଳ ତୋଡ଼ର ଅଛି ତା ପୟର ।
କଣ୍ଠେ କଣ୍ଠିମାଳ ତାର ଶତେ ସର ମୋତି
କର୍ଣ୍ଣରେ କୁଣ୍ଡଳ ଶୋଭେଦିନକର ଜ୍ୟୋତି ।
ବିଦ ମୁଦି ବାହୁଟି ଶିକୁଳୀ କଙ୍କଣ
ବିବିଧ ପଦକ ତାର ହୃଦରେ ଭୂଷଣ ।
କଟିରେ କଟି ମେଖଳା ବାମେ ଖଣ୍ଡାଡ଼ି
ପୟରେ ନୂପୁରଶୋଭେ ଅଳତା ଅଗ୍ନିବେଢ଼ି
ରାଜା ସଜ ହୁଅନ୍ତେ ଶୁଭେ ଶଙ୍ଖ ଧ୍ୱନି
ହୁଳହୁଳି ଦିଅନ୍ତି ସକଳ କାମିନୀ ।
ଦ୍ୱାରେ ପୂର୍ଣ୍ଣକୁମ୍ଭ ଚୂତ ପତ୍ର ନଡ଼ିଆକାଳ
କଦଳୀ ଗଛ ଶ୍ୱେତ ପାରୁଆ ମାଳ ମାଳ ।
ଶ୍ୱେତ ଚାମର ଯେ ଉଡ଼େ ଚଉପାଶ
ଗୋରଚନା ଛତା ଯେତେଣ ଦଶଇଶ ।
ପୁରୋହିତ କରେ ଆସି ମଙ୍ଗଳ ଆଳତି
ବସିକରି ଅର୍ଘ୍ୟ ଯେ ଦେନେ ଲଙ୍କପତି ।
ବିଦ୍ୟୁଜନମାନେ ଯେ ପଢ଼ନ୍ତି ଚାରିବେଦ
ଜ୍ୟୋତିଷେ ପଢ଼ନ୍ତି ମଙ୍ଗଳ ପାଠପଦ ।
ପୁଷ୍ପକ ବିମାନରେ ବିଜେ କଲା ଯାଇ
ସୁରଗଣେ ବିଚାରନ୍ତି ସ୍ୱର୍ଗପୁରେ ଥାଇ ।
ନପୁଣ ଶ୍ରୀରାମ ନ ପାରନ୍ତି ଏହାକୁ ଜିଣି
ରାବଣ ଯେ ଦିଗ ବିଜେ କରୁଅଛି ପୁଣି ।
ଛପନ ଗଣ୍ଡା ଯୁଗକୁ ପାଇଛି ଆୟୁଷ
ଶ୍ରୀରାମଙ୍କୁ ହୋଇଛି ବୟସ ସତାଇଶ ।
ସଂଗ୍ରାମରେ ଜଡ଼ା ଯେ ଅଟେ ମହୀପାଳ
ଅସୁରେ ବିଷମ ଯେ ଜାଣନ୍ତି ରଣଗୋଳ ।

ପୁଣି ବିଚାରନ୍ତି ସେ ଶ୍ରୀରାମ ବିଷ୍ଣୁନାଥ
ଦଶଗ୍ରୀବର ମୃତ୍ୟୁ ସେ ଅଛି ରାମ ହସ୍ତ ।
ଏହିକ୍ଷଣି ଭେଟି ମୁଁ ପଡ଼ିଲେ ନାଶ ଯିବ
ରାମାୟଣ ଯୁଦ୍ଧ ଆଜୁଁ ଶେଷ ମୁଁ କରିବ ।
ଯେତେ ଦୋଷ ପାତକ ଥିଲା ଆମ୍ଭ ଅଙ୍ଗେ
ସବୁ କ୍ଷୟ ଯିବ ସେ ଶ୍ରୀରାମ ଦର୍ଶନ ସଙ୍ଗେ ।
ସାତଦ୍ୱନେ ସୁଷ୍ଟ ସେ ବଢିବ ସ୍ୱର୍ଗପୁର
ଶ୍ରୀରାମର ନାରାଚରେ ପଡ଼ିବେ ଅସୁର ।
ଏକମୁଖା ରାବଣକୁ ମାରିବେ ଅନନ୍ତ
ସାକ୍ଷାତେ ଈଶ୍ୱର ସେ ସୁମିତ୍ରାଙ୍କ ଶିଷ୍ୟ ।
ଶତେମୁଖାକୁ ଶତ୍ରୁଘ୍ନ ସେ ମାରିବେ
ଖାହାଣ ବ୍ରତେକ ଶଙ୍ଖ ବାସୁଦେବରଶୁଭେ ।
ଜାନକୀ ହସ୍ତେ ମରିବ ତେବେ ସହସ୍ର ମୁଖା
ସୃରରାବଣ ମାରିଲେ ଯିବ ଦେବତାଙ୍କ କଷା
ଏମନ୍ତ ବିଚାର କରନ୍ତି ଦେବଗଣ
ଏଥୁ ଅନନ୍ତରେ ସେ ସମର ରସ ଶୁଣ ।
ପୁଷ୍ପକ ଯାନ ପରେ ରାବଣ ବିଜେ କଲା
ଶତ ଅଶ୍ୱ ତହିଁରେ ନେଇଣ ଯୋଚିଲା ।
ଚିହ୍ନା ଚିରାଳ ସେଥିରେ ଉଡ଼େ ଗାର ନେତ
ଢୋଲ ଦମା ଟମକ ବଜାଇ ବହୁତ ।
ଆଷାଢ଼ ଶୁକ୍ଳପକ୍ଷ ଦଶମୀ ଗୁରୁବାର
ସେଦିନ ରାବଣକୁ ଅଟେ ସମ୍ପଦ ସେ ତାର ।
ଧୃତି ନାମେ ଯୋଗ ସେ କରଣ ତୈତୁଲ୍ଲ
ଏହି ସମୟେ ବିଜୟ କଲେ ଲଙ୍କପାଳ ।
ଦୁଇଘଡ଼ି ଉତ୍ତାରୁ ସେ ରାବଣେଶ୍ୱର ଚଳା
ପାଦ ଭରେ ଦଳ ଦଳ କମ୍ପେ ମହୀଆଳା ।
ଶତେକ ଶଙ୍ଖ ମହୁରୀ ବାଜେ ଘନ ଘନ
ଧୀରେ ଧୀରେ ଚଳଇ ସେ ପୁଷ୍ପକ ବିମାନ ।
ପ୍ରଥମରୁ ଦେଖିଲା ସେ ବିଧବା ସ୍ତ୍ରୀଏ ପୁଣି
ଜଳ ଘେନି ତରୁଣୀ କୁମ୍ଭରେ ଆସେ ପୁଣି ।
ରାବଣ ଆଗରେ କାଖରୁ ଖସି ଭାଙ୍ଗି
ଆଗରେ ସର୍ପ ଗୋଟାଏ ହୋଇଅଛି ରାଗି ।
ଫଣାଟେକ ଲାଞ୍ଜରେ ହୋଇଲାକ ଛିଡ଼ା
ପଛରେ ଶୃଗାଳ ଯେରଉନ୍ତି ଯୋଡ଼ାଯୋଡ଼ା
ଦୁଇପାଶେ ଗୃଧ୍ରପକ୍ଷୀ ଗୃଜନ୍ତି ମାଳ ମାଳ
ରାବଣେଶ୍ୱରର ଯହୁଁ ପୁରିଲା ଆସି କାଳ ।

ଆଗରେ ନୃତ୍ୟ ଯେ ସେ କରନ୍ତି ବିଳାସୁଣୀ
ପଞ୍ଚମ ସ୍ୱରରେ ଗୀତ ଗାବନ୍ତି ତରୁଣୀ
ମର୍ଦ୍ଦଳ କଂସାଳ ତାଳ ସେ ବାଜଣା
ଭେରୀ ମହୁରୀ ସେ ଏକ ଏକ ଜଣା ।
ବିପିଅଳା ବେଣୀ ସେ ଘାଗୁଡ଼ି ଟାଣେ ବାଜେ
ଚତୁରାଙ୍ଗବଳ ସେ ସମରେ ଘୋର ସାଜେ ।
କୁସୁମ ବିଞ୍ଚନ୍ତି ସେ ଚନ୍ଦନ ଛେରା ଦେଇ
ଶତ୍ରୁମାରି ଉଭା ତୁମ୍ଭେ ହୁଅ ହେ ଗୋସାଇଁ ।
ଅସୁର କୁଳର ତୁମ୍ଭେ ଫେଡ଼ି ଅଭିମାନ
ରୁକ୍ଷ ମର୍କଟ ମାରି ଆସ ତୁ ବହନ ।
ଏସନ ବୋଲଣ ସେ ବୋଲନ୍ତି ଲୋକମାନେ
ଶୁଣି ଖଣ୍ଡାଧର ଚମକାଏ ଦଶାନନେ ।
ବନରୁ ବାହାର ସେ ହେଲା ଦେବରଥ
ଦିଗପାଳ ସମାନରେ ଦିଶେ ଦଶମାଥ ।
ବାମ କରେ ଧରିଛି ସେ ନବନଶୀ କୋନ୍ତ
ସଙ୍ଗେ ତିନ କୋଟି ତାର ଅଛନ୍ତି ମାହୁନ୍ତ ।
ଦଶଗୋଟି କୁମର ମୋ ସତଗୃଳଶ ନାତି
ଅଠର ଲକ୍ଷ ସେ ପଦାତି ସଙ୍ଗେ ଯାନ୍ତି ।
ଷୋଳ ଗୋଟି ରଥୀ ସେ ରାବଣ ସମାନ
ଗୃହ ସହସ୍ର ଅଟନ୍ତି ସେ ମୟୂ ମତ୍ତଯାନ ।
ଥାଟ ଚଳିବାରେ ସେ ମେଦିନୀ ଟଳ ମଳ
ତାଳ କଂସାଳ ସେ ବାଜଇ ମର୍ଦ୍ଦଳ ।
ଘୁମୁରା ଘୁମୁ ସେ ଘିଡ଼ି ଘିଡ଼ି ଦମା
ରାଜା ବିଜେ ଦେଖିଣ ଧାମନ୍ତି ସର୍ବବାମା ।
ବାଜଇ ଚଉପାଶରେ ମହାସଞ୍ଚ ହୋଇ
ଦ୍ରିମି ଦ୍ରିମି ଗିମି ଗିମି ଶୁଭଇ ସେ ତହିଁ ।
ଧୂପୁ ଧୂପୁ ଜମା ସେ ମର୍ଦ୍ଦଳ ସୁସ୍ୱର
ଝମ ଝମ ତାଳ ସେ ବାଜଇ କରି ସ୍ୱର ।
ନାଗରା ଶୃଙ୍ଗ ବାଜା ଶୁଭଇ ବଡ଼ ରଡ଼ ।
ଗିମି ଗିମି ଗିନି ସେ ଶୁଭଇ ମେଘରଡ଼ ।
ବଜ୍ରଘୋଷ ଡାଉଣ୍ଡୀ ଘର୍ଘରି ବାଦ୍ୟ ଘୋର
ବାଦ୍ୟଘାତେ ପୃଥିବୀ ସେ ହେଲା ଟଳମଳ ।
ଆଲଟ ପାଟଛନ୍ଦ ବିମଳ ଉଡ଼ନ୍ତି
ରଥର ଘୋଷ ଘାଏ ବ୍ରହ୍ମାଣ୍ଡ କମ୍ପାନ୍ତି ।
ହୋଇଲା ହୋଇଲା ବୋଲି ଶୁଭେଲଙ୍କରାଷ୍ଟ୍ର
ଚଉପିଠି ଦାଣ୍ଡପୁର ଯାଉଛନ୍ତି ଥାଟ ।

ନଟ ଭାଟ କଏବାର କରନ୍ତି ଘନ ଘନ
ଉତ୍ତରଦ୍ୱାରେ ବାହାର ହେଲେ ଦଶାନନ ।
ଏଥୁ ଅନନ୍ତରେ ଗୋ ଶୁଣ ହେମବନ୍ତୀ
ସୁବଳୟା ଗିରପରେ ଅଛନ୍ତି ଦାଶରଥି ।
ଅରୁଣ ପ୍ରକାଶ ଯେ କୁମୁଦ ବଦାତ
ନିଦ୍ରା ତେଜିଣ ସେ ଉଠିଲେ ରଘୁନାଥ ।
ସେନାପତିମାନେ ଯେ ଦର୍ଶନ ଆସି କଲେ
ନିତ୍ୟକର୍ମ ସାରିବାକୁ ଶ୍ରୀରାମ ଯେ ଗଲେ ।
ଯେ ବିଧିବିଧାନ ସାରିଲେ ଝଟତି
ବାହୁଡ଼ିଣ ନବରକୁ ଅଇଲେ ରଘୂପତି ।
କୃଷ୍ଣାଜିନ ସ୍ଥଳରେ ବସିଲେ ରଘୂସାଇଁ
କାଣ୍ଡ ସଜକଲେ ରାମ ତୂଣୀ ଆଗେ ଥୋଇ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ଏମାନଙ୍କୁ ବୋଇଲେ ଯେ ନିତ୍ୟକର୍ମ ସାର
ଆଜର ଯୁଦ୍ଧରେ ନିଶ୍ଚେ ଆସିବ ରାବଣ
ଅନେକ ମାୟା ଛଳେ କରିବ ରଣ ପୁଣ ।
ସକଳ ମୁଖରେ ପାଇଲିଣି ସେହୁ ନିନ୍ଦା
ବଡ଼ ଯୁଦ୍ଧ କରିବ ସେ ହୋଇଛି ତାକୁ ବାଧା
ସୈନ୍ୟମାନେ ସମସ୍ତେ ଯେ କରନ୍ତୁ ଆହାର
ତୁମ୍ଭେମାନେ ଭୋଜନ ଫଳ ମୂଳ କର ।
ଶୁଣିକରି ସମସ୍ତେ ନଦୀକି ପୁଣ ଗଲେ
ନିତ୍ୟକର୍ମ ସାରିଣ ଭୋଜନ ବେଗେ କଲେ ।
ଯେ ଯାହାର ଇଚ୍ଛାରେ ହେଲେ ବେଶମାନ
ତରୁଶୀଳ ପଥର କରରେ ଘେନିଣ ।
ଯୂଥପତିମାନେ ଯେ ଭୁଞ୍ଜିଲେ କନ୍ଦମୂଳ
ସେନାପତିମାନେ ଯେ କଲେକ ଆହାର ।
ମଲ୍ଲ ମହାମଲ୍ଲ ସମସ୍ତେ ଖୁସି ହେଲେ
ଯେ ଯାହାର ମନସୁଖେ ଭୋଜନ ଯେ କଲେ
ଏଥୁ ଅନନ୍ତରେ ଯେ ରାମଚନ୍ଦ୍ର ରାୟେ
ଭିନ୍ନ ଭିନ୍ନ କରିଣ ଶରକୁ ବାଛୁ ଥୁଏ ।
ଅଗସ୍ତି ଦେଲା ଧନୁ ଧରିଣ ଦେଲେ ଗୁଣ
ବସିଣ ଗୁଣ ଟଙ୍କାର କଲେ ରାମରାଣ ।
ସୁଗ୍ରୀବର ମୁଖ ଚୁହିଁ ରାମ ବୋଲନ୍ତି ମିତ
ମାରିପାରିବାଟିକ ଆମ୍ଭେ ଇନ୍ଦ୍ରଜିତର ତାତ ।
ଏ ଘାନ୍ତ ଆସିଲେ ଯେ ବୁଝିବା ତାର କଥା
ଭେଟ ପଡ଼ିଲେ ନିକି ବର୍ତ୍ତିବ ଦଶମଥା ।

ଜଗତଯାକ ମନ୍ଦିବା ପ୍ରାୟ ସେ ମଣଇ
ମୁଁ କେଉଁ ରାମ ବୋଲି ତାହା ସେ ନଜାଣଇ
ଲକ୍ଷ୍ମଣ ଶକ୍ତିଭେଦ ମୁଁ ନିଶ୍ଚୟ ସୁଝାଇବି
ଭେଟ ପଡ଼ିଲେ କି ମୁଁ ମନ୍ଦରକୁ ଛାଡ଼ିଦେବି ।
ବାଦ ବିବାଦମାନ ବଡ଼ାଇଲେ ସେ ବଡ଼ଇ
ରାଜମାନ୍ତି କଥାଶାନ୍ତ ହେଲେ ସେ ଛାଡ଼ଇ ।
ରାବଣ ଅଇଲେ ଯୁଝିବି ଆଜ ମୁହିଁ
ମୋହର ବଳ ଦେଖି ଦେବେ ଦୃଷ୍ଟି ଦେଇ ।
ଆଠଦିନ ପର୍ଯ୍ୟନ୍ତେ ମୁଁ କରିବଇଁ ରଣ
ସଙ୍ଗତେ ନାହିଁ ମୋର ଭାଇ ଯେ ଲକ୍ଷ୍ମଣ ।
ହନୁମନ୍ତ ମୋ ଯେଉଁ କର୍ମକୁ ଗଲା ପୁଣି
ବୈଦ୍ୟ ସୁଷେଣକୁ ସଙ୍ଗରେ ନେଲେ ଜାଣି
ବୀରବାହୁ କୁମର କୁମ୍ଭକର୍ଣ୍ଣର ପୁତ୍ର
ଏମାନେ ମୋର ଆଗେ ଆସନ୍ତୁ ତୁରିତ ।
ଶୁଣିକରି ସୁବାହୁ ସୁକର୍ଣ୍ଣ ଅଇଲେ
ଚରଣ ତଳରେ ଓଳଗି ହୋଇଲେ ।
ଉଠ ଉଠ ବୋଲିଣ ରାମଚନ୍ଦ୍ର କହି
ଉଠିଣ ଦୁଇଜଣ ଆଗରେ ଉଭା ହୋଇ ।
ଶ୍ରୀରାମ କହିଲେ ଆଜ ଆସିବ ରାବଣ
ଆଠଦିନ ଯାଏ ସେ କରିବ ବଡ଼ ରଣ ।
ତାହାର ସଙ୍ଗରେ ଯୁଝିବଟିକି ତୁମ୍ଭେ
ଶୁଣିକରି ବିଭୀଷଣ କହିଲ ସେ ରାଗେ ।
ପିତା ଶତ୍ରୁ ଅଟଇ ଯେ ରାବଣ ଆମ୍ଭର
ଆପେ ଦୋଷ କରିଣ ପରକୁ ନାଶେ ଘୋର
ଶୋଇବା ଲୋକକୁ ତପକଲା ଲୋକକୁ ପୁଣ
କହିବାର ଲୋକକୁ ଯେ ମରାଏ ରାବଣ ।
ଆଜ୍ଞାହେଲେ ତାର ସଙ୍ଗେ କରିବୁ ଆମ୍ଭେ ରଣ
ରାମଚନ୍ଦ୍ର ବୋଇଲେ ତୁମ୍ଭେ ଧରଧନୁ ତୂଣ ।
ବିଭୀଷଣର କୁଳରେ ତୁମ୍ଭେ ପୁଣ ଥିବ
ଲୁହାର ଧନୁରେ ଅସୁରଙ୍କୁ ନିବାରିବ ।
ଶୁଣିକରି ତିନିଜଣ ଧନୁରେ ଦେଲେ ଗୁଣ
ଲୁହା ଧନୁ ଟଙ୍କାର କଲେ ସେ ପୁଣ ପୁଣ
ଏଥୁ ଅନନ୍ତରେ ଗୋ ଭଗବତି ଶୁଣ
ବିଭୀଷଣ ସଙ୍ଗେ ପୁତ୍ର ନାତି ଦୁଇଜଣ ।
ରାମଙ୍କର ବଚନରେ ଧନୁ ସେ ଧରିଲେ
ଅସୁର ମାରିବୁଁ ବୋଲି ଠାଣି ସେହୁ କଲେ ।

ଶ୍ରୀରାମ ବୋଇଲେ ହେ ପକ୍ଷୀ ଅଗ୍ରଗଣ୍ୟ
ଏହି ଶସ୍ତ୍ରେ ତାର ମୁଁ ଫୋଡ଼ିବି ବକ୍ଷସ୍ଥଳ ।
ଏତେ କହି ଅଗସ୍ତି ଦେଲା ବ୍ରହ୍ମଶର
ଶରକୁ ଦେଖାନ୍ତି ଯୂଥ ପତିଙ୍କୁ ରଘୁବୀର ।
ଦେଖିଥାଅ ଏହିକାଣ୍ଡେ ମରିବ ଲଙ୍କପତି
ଦେଲାବେଳେ ମୋତେ କହି ଅଛନ୍ତି ଅଗସ୍ତି
ବୋଇଲେ ଏ ଶରେ ବଧ ହେବ ଦଶମାଥ
ସମର ଜୀବନ ଏ ଶର ହରିବ ନିଅତ ।
ଏ ଶରର ଘାଏ ନବର୍ତ୍ତିବ ଦଶମାଥ
ଏ ଶର କାହାକୁ ନ ମାରିବୁ ରଘୁନାଥ ।
ବ୍ରହ୍ମାଙ୍କର ପ୍ରାଣକୁ ଏ ଶରେ ନାଶ କରି
ତୁ ଯାହାକୁ ମାରିବୁ ମନ୍ତ୍ରିଣ ଗୃପଧାରୀ ।
ଆନର ହସ୍ତେ ଏ ଶସ୍ତ୍ର ଯେ ନଚଳଇ ପାଦେ
ଶଙ୍କର ବେଳେ ପଶିଲେ ତ୍ରିପୁରାରି ଯୁଦ୍ଧେ ।
ଗୁଣରେ ବସନ୍ତେ ଧନୁ ବେଗେ ଚଳିଗଲା
ବାହୁଡ଼ାଇ ବିଧାତା ଯେ ଇନ୍ଦ୍ର ହସ୍ତେ ଦେଲା
ପୁଣି ଇନ୍ଦ୍ର ଶର ସମ୍ଭାଳି ନ ପାରିଲା
ବିଧାତାର ହସ୍ତରେ ନେଇଣ ପୁଣ ଦେଲା ।
ନେଇଣ ପିତାମହ ସମର୍ପିଲେ ମୋତେ
ମୁହିଁ ଏବେ ଶ୍ରୀରାମ ହେ ଦେଉଅଛୁ ତୋତେ
ଏସନେକ ବୋଲିଣ ବୋଲନ୍ତେ ବ୍ରହ୍ମମୁନି
ସେହିଦିନୁ ଏ ଶସ୍ତ୍ରକୁ ସମ୍ଭାଳିଛୁ ପୁଣି ।
ମୁଁ ଏବେ ବିଚାରୁଛୁ ହେଲା କାର୍ଯ୍ୟ ସିଦ୍ଧ
ପୂର୍ବରୁ ସେ ଜାଣଇ ଅପୂର୍ବ ମାୟା ଯୁଦ୍ଧ ।
ଏହି ନାରାଚ ପେଶି ମୁଁ କରିବି ତାକୁ ନାଶ
ଏହି ସମୟେ ଅଙ୍ଗଦ ମିଳେ ତାଙ୍କ ପାଶ ।
ପାଏ ପଡ଼ି ଶୋଇଣ ମଥାରେ ହସ୍ତ ଦେଇ
ଦୂର ହୋଇ କରି ସେ ଅପସର ହୋଇ ।
ଏସନ ସମୟରେ ନୀଳ ସେନାପତି
ଶ୍ରୀରାମ ପାଦେ ଦର୍ଶନ କଲେକ ତଡ଼ିତି ।
ଅଙ୍ଗଦ କହଇ ଯୋଡ଼ିଣ ବେନିକର
ନୀଳ ଦର୍ଶନ କରଇ ଭୁମ୍ଭର ପୟର ।
ନୀଳକୁ ଗୃହିଁଣ ପଗୃରନ୍ତି ରାମ ହସି
କି କି ବାରତା ତୁହୋ ଘେନ ଅଛୁ ଆସି ।
ରବରେ ଗୋଳଟିକ ଶୁଭେ ଲଙ୍କପୁରୀ
ଅସୁରକୁଳ ରାୟ ସାଜିଲା କରେ ଆଟି ।

ଲକ୍ଷ୍ମଣ ହନୁ ସୁଷେଣ ଯିବାରୁ ମନେ ସୁଖ
କି କରିବ ମୋତେ ଏକାକୀ ରଘୁନାଥ ।
ତେଣିକି ଯିବ ମୋର ଘରଣୀ ତାର ଘରେ
ତାହାକୁ ମାରିଲେ ଶତ୍ରୁକ୍ଷୟ ଯିବ ମୋରେ ।
ଝମକ ନିଶାଣ କରେ ବାଜେ ଘନ ଘନ
ଆପଣେ ଯୁଦ୍ଧକୁରେ ଅଇଲା ଦଶାନନ ।
ନୀଳ ସେନାପତି ଯେ ଯୋଡ଼େ ବେନି କର
ହୋଇ ଦେବ ଆଟି ସାଜି ଅଇଲା ଅସୁର ।
ଆଜକୁ ରଜନୀରେ ଉଚାଟ ଲଙ୍କାପୁର
କୋଳାହଳ ନିଶାଣ ଯେ ବାଜେ ନିରନ୍ତର ।
ଆସ ଆସ ଧାଅଁ ଧାଅଁ ଗୃଲ ଗୃଲ ଶବ୍ଦ
ହାଲ ହୋଳି ଶୁଭେ ଯେ ଲଙ୍କାଗଡ଼ ମଧ୍ୟ ।
ନିଦ୍ରା ଯାଇ ନାହାନ୍ତି ଲଙ୍କାର ଯେତେ ଲୋକ
ତୁଣ୍ଡର ଗହଳ ଯେ ଶୁଭଇ ଅନେକ ।
ସେ କଥା ଶୁଣି ମୁଁ ଦେବ ଅଇଲି କହିବାକୁ
ଆପଣେ ଲଙ୍କପତି ବାହାରେ ସଂଗ୍ରାମକୁ ।
ଏତେବେଳଯାଏ ନିହାଇ ଛଣେ ଥାଟ
ମୁଖରବ ଶବଦେ ଉଛୁଳେ ଲଙ୍କପୁରୀ ।
ଅନ୍ୟଗୃରେ ବାରତା ପାଇଲି ଗୋସାଇଁ
ଆଜ ଥାଟେ ସେନାପତି ହେଲା ଲଙ୍କସାଇଁ ।
ଶୁଣିଣ ଶ୍ରୀରାମ ଯେ ସୁଗ୍ରୀବ ମୁଖ ଗୃହିଁ
ଶୁଣିଲଟିକି ମିତ ହେ ନୀଳ ଯାହା କହି ।
କପିରାଜ ବୋଇଲେ ଶୁଣିବା ରଘୁନାଥ
କୁମ୍ଭକର୍ଣ୍ଣ ପ୍ରାୟେ ମୁଁ କରିବି ଏଥର ତ ।
ଶୁଣିଣ ଶ୍ରୀରାମ ଯେ ବୋଇଲେ ସଜହୁଅ
ଲଙ୍କପତି ଯେମନ୍ତେ ଗ୍ରୁଡ଼ିବ ନିଜ ଦେହ ।
ଏହା କହୁଣ ଯେ ଉଠିଲେ ରାମ ରାୟେ
ତୁରିଦ ସେନାପତି ଘୁମୁରେ ଜଣାଏ ।
ଦେଖ ଦେବ ଲଙ୍କପତି ବାହାର କଲା ସୈନ୍ୟ
ଦିଶୁଛି ଶବଳ ଦେବ ଧ୍ୱଜ ପତାକାମାନ ।
ଶୁଣିଣ ରଘୁନାଥ ଗୃହିଁଲେ ନିରେଖି
ଚତୁରଙ୍ଗ ବଳ ଯେ ଆସନ୍ତି ମହାବ୍ୟାପୀ ।
ରଥ ଛଣେ ପନ୍ତି ପନ୍ତି କୁଦା କୁଦା ହସ୍ତୀ
ଝାଙ୍କ ଝାଙ୍କ ହୋଇଣ ରାଉତେ ଝଲକନ୍ତି ।
ପଦାତି ପଲ ପଲ ଟଳ ଟଳ ମହୀ
ଏକ ମୁଖରେ ପଦାତି ବାହାରଯେ ହୋଇ ।

ପଏକାର ସୈନ୍ୟ ଅଛନ୍ତି ଅଲେଖା
ଆଲମ୍ବ ବିଲମ୍ବ କେ କରିପାରେ ସଂଖ୍ୟା ।
ବାଇଶି କୋଟି ଯେ ମୁକୁଟ ଯୋଦ୍ଧାମାନ
ଏକ ଏକ ବୀର ଯେ ସଂଗ୍ରାମକୁ କ୍ଷମ ।
ପୃଥ୍ୱୀ ନାହିଁ ସହିତେ ଯେତେ ବନ୍ଧୁ ଜନ
ସଞ୍ଚପି କହିବ କେତେ ରାବଣର ସୈନ୍ୟ ।
ଦେଖିଣ ଶ୍ରୀରାମ ଯେ ଆତୁର ମନ ହୋଇ
କେମନ୍ତ କଷ୍ଟ ବାଟରେ ଗଲି ଝାଳ ବହି ।
ମନେ ବିଚାରିଲେ ଯେ ଏ ଯାତ୍ରା ବଡ଼ ଗାଢ଼
ନପୁଣ ମାୟାରେ ମୋତେ ଜଣେ ଦୈତ୍ୟରାଢ଼
ଏମନ୍ତ ବିଚାରି ଦେବ ଅଙ୍ଗଦକୁ ବୋଲି
ଠଣା ଭାଙ୍ଗିଣ ଦୈତ୍ୟ ନ ପୁଣ ଆସେ ପେଲି
ନୀଳ ସହିତରେ ସବୁ ସେନାପତିମାନେ
କେହି ନ ରହନ୍ତୁ ଯେ ମୋହର ସନ୍ନିଧାନେ
ସୁଗ୍ରୀବର ବିଭୀଷଣ ଜମ୍ବେବ ଯାଆନ୍ତୁ
ଋକ୍ଷ କପିବଳ ଏଥି ଗୋଟିଏ ନ ରହନ୍ତୁ ।
ସୁବାହୁ ସୁକର୍ଣ୍ଣ ଯାନ୍ତୁ ବିଭୀଷଣ ସଙ୍ଗେ
ଆମ୍ଭେ ବିଜେ କରିବୁ ନନ୍ଦିଘୋଷେ ରଙ୍ଗେ ।
ଗନ୍ଧମାଦନ ସମ୍ପାତି ନଳ ନୀଳ
ଏମାନଙ୍କ ସଙ୍ଗରେ ଯାଉ ପନଶିଳ ।
ଦିଶୁଅଛି କେବ ଧ୍ୱଜ ପତାକ ଯେ ପୁଣ
ଅନେକ ସମ୍ଭବରେ ଆସଇ ରାବଣ ।
ଦଶ କାଳ ବୃଦ୍ଧ ସେ ସଉର ସେନାପତି
ଏହିମାନେ ରହିଥାନ୍ତି ମୋହର ଯେ କତି ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ବରୀ
ବିଭୀଷଣ ଜଣାଇଲା ଆଗେ କର ଯୋଡ଼ି ।
ହେ ଦେବ ନନ୍ଦିଘୋଷ ରଥରେ ବିଜେକର
ଦେଖନ୍ତୁ ଦୈତ୍ୟବଳ ଯାନ ଯେ ଭୂମରେ ।
ରାମତାଳି ହୁଳହୁଳି ଦେବ ରାମତାଳି
ବାଜବ ବାଦ୍ୟମାନ କର୍ମି ବ ମହୀ ଆଳି ।
ଦେଖିଲେ ଦୈତ୍ୟଙ୍କର ଶଙ୍କିଯିବ ବପୁ
କମ୍ପାଇ ପଡ଼ିବ ତୁମ୍ଭେ ଚଢ଼ିବ ଯାନ ରିପୁ ।
ଶୁଣିକରି ଶ୍ରୀରାମ ଯେ ସନମତ କଲେ
ଯାନ ପରେ ବସିବାକୁ ମନେ ବିଚାରିଲେ ।
ଦେବତାଏ ଉପରେ ସେ ଦେଖୁଥିଲେ ପୁଣ
ନାରଦଙ୍କୁ ବୋଇଲେ ଚଳନ୍ତୁ ତତକ୍ଷଣ ।

କପିଳାସ କନ୍ଦରେ ସଦାଶିବଙ୍କ ସ୍ଥାନ
ସେ ଠାବକୁ ତୁମ୍ଭେ ଏବେ ଚଳନ୍ତୁ ବହନ ।
ଶିବଙ୍କୁ କହିଣ ନନ୍ଦୀକେଶରୀ ଆଣିବ
ନନ୍ଦିଘୋଷ ରଥ ମଧ୍ୟେ ନେଇ ରଖାଇବ ।
ବୋଲିଣ ସିଂହ ରଡ଼ି କରିବ ତୁମ୍ଭେ ପୁଣ
ଏତେ ବୋଲି କହିଲେ ସକଳ ଦେବଗଣ ।
ମନ ପବନ ଦଣ୍ଡେ ନାରଦ ଚଳିଗଲେ
କପିଳାସ କନ୍ଦରେ ପ୍ରବେଶ ହୋଇଲେ ।
ସଦାଶିବ ଦେବତାଙ୍କୁ କଲେ ଦରଶନ
ବୋଇଲେ ନନ୍ଦୀକେଶରୀ ଦେବ ହେ ବହନ
ରାମ ରାବଣର ଯୁଦ୍ଧ ହେବ ଆଜ ଠାଣ
ନନ୍ଦିଘୋଷ ରଥ ଦେଇଛନ୍ତି ଦେବଗଣ ।
ସଦାଶିବ ବୋଇଲେ ବେଗେ ସେହି ଯାନ୍ତୁ
ଦଶାନନର ପ୍ରତାପ ଆଜ ସେ ଦହନ୍ତୁ ।
ଶୁଣି ନନ୍ଦିକେଶରୀ ବେଗେ ଚଳିଗଲେ
ସୁବଳଯ୍ୟା ଗିରିରେ ପ୍ରବେଶ ହୋଇଲେ ।
ଶ୍ରୀରାମଙ୍କୁ ଦେଖିଣ ସେ କଲେ ନମସ୍କାର
ଶ୍ରୀରାମ ବୋଇଲେ ତୁମ୍ଭର କେବଣ ବେଶେଘର
ନନ୍ଦୀକେଶ୍ୱର ବୋଇଲେ ମୁଁ ସଦାଶିବ ଦ୍ୱାରୀ
ତୁମ୍ଭ ପାଶକୁ ମୋତେ ପେଷିଲେ ତ୍ରିପୁରାରି ।
ସେ ବୋଇଲେ ଶ୍ରୀରାମ ପାଶରେ ତୁମ୍ଭେ ଥିବ
ନନ୍ଦିଘୋଷ ରଥ ଉପରେ ବସିବ ।
ରଣ ଭୂମିକି ଗଲେ କରିବ ସିଂହରଡ଼ି
ତେବେ ସେ ରାବଣକୁ ମାରିବେ ରୂପଧାରୀ ।
ଶୁଣି କରି ଶ୍ରୀରାମ ଯେ ସନ୍ତୋଷମନ ହେଲେ
ନନ୍ଦୀକେଶରୀକୁ ନେଇ ରଥରେ ବସାଇଲେ ।
ମାତଳିକି ଡାକିଣ ଯେ ବୋଇଲେ ଶ୍ରୀରାମ
ଯାନ ସଜ କର ବେଗେ ତୁହି ଏବେ ପୁଣ ।
ଶୁଣି କରି ମାତଳି ରଥ ସଜ କଲା
ତିନିପୁରକୁ ସେ ରଥ ସୁନ୍ଦର ଦିଶିଲା ।
ସେ ରଥରେ ବିଜୟ କଲେ ରଘୁନାଥ
କାଣ୍ଡ କୋଦଣ୍ଡ ଯେ ଥୋଇଲେ ନେଇ ତ
ହରିବୋଲ ହୁଳହୁଳି ରାମତାଳି ପଡ଼େ
ଖେମଟା ରଙ୍ଗରେ ନାଚନ୍ତି କପି ପଲେ ।
ବୀର ବାଦ୍ୟ ବାଜା ଯେ ବାଜେ ଆଗେ ପୁଣ
ନନ୍ଦୀକେଶରୀ ଦୁହେଁ କଲେ ଗରଜନ ।

ତିନି ପୁର କମ୍ପିଲା ଶୁଭିଲା ଘୋର ରଡ଼ି
ଶ୍ରୀରାମ ବରୁଷିଲେ ରାବଣ ନଷ୍ଟେ ମରି ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ଭଲ୍ଲୁକ ମର୍କଟ ଯେ ହେଲେ ପନ୍ତି ପନ୍ତି ।
ସମସ୍ତଙ୍କ ହରଷ ଶ୍ରୀରାମ ରଥେ ବିଜେ
ସେନାପତି ଯୂଥପତି ମାନ ହେଲେ ତେଜେ
ଆଗୁଆଣି ଥାଟରେ ଯୁଦ୍ଧରେ ତୁମ୍ଭେ ରହି
ତୁମ୍ଭର ପଛରେ ମୁହିଁ ଯାଉଛି ଚଳାଇ ।
ଚାରିଭାଗ ହୋଇ ସୈନ୍ୟ ବଣ୍ଟା ହୋଇଯାଅ
ଚାରି ଦ୍ୱାରେ ଥାଟ ରଖିଛି ବିଶ୍ରବାର ପୁଅ ।
ଶୁଣି କରି ରିକ୍ଷ କପି ଚାରି ଭାଗ ହେଲେ
ମଲ୍ଲ ମହାମଲ୍ଲ ତାଙ୍କ ସଙ୍ଗତରେ ଗଲେ ।
ଯୂଥପତିମାନେ ଯେ ବଣ୍ଟାରେ ଗଲେ ପୁଣ
ସେନାପତିମାନେ ଯେ ଗଲେ ଦି ଦି ଜଣ ।
ଉତ୍ତର ଦ୍ୱାରକୁ ଗଲେ ଅଙ୍ଗଦ ନଳ ନୀଳ
ପୂର୍ବଦ୍ୱାରେ ସୁଗ୍ରୀବର ସ୍ୱକର୍ଣ୍ଣ ପନଶୀଳ ।
ଦକ୍ଷିଣ ଦ୍ୱାରରେ ଜମ୍ବୁବ ବିଭୀଷଣ
ପଶ୍ଚିମ ଦ୍ୱାରେ ସୁବାହୁ ଗବୟେ ଗବାୟୂଣ ।
ଏମନ୍ତେ ଚାରି ଦ୍ୱାରକୁ ସୈନ୍ୟ ଚଳିଗଲେ
ସେନାପତିଙ୍କି ଶ୍ରୀରାମ ଚାହିଁଣ କହିଲେ ।
ଅନେକ କୁମାର୍ଗ ଜାଣଇ ଲଙ୍କାପତି
ପରିହାଇ ସମର କରିବ ଏ ଘାନ୍ତି ।
ରାବଣକୁ ମୋ ଆଗକୁ ଆଣିବ କଡ଼ାଇ
ଇନ୍ଦ୍ର ଦେଖିଲେ ଯାହାକୁ ଭୟ ଯେ କରଇ ।
ଯାହାର ନାମ ଶୁଣିଲେ ବିଧାତା ଡରଇ
ବିଚାର ମାରେଣି ଯେ ମାରିବ ଲଙ୍କାସାଇଁ ।
ତୁମ୍ଭେ କି ଆମ୍ଭ ଆଗେ ସମର ଭାଜନ
ମୁହିଁ ଯେ ଆଜ ଯୁଦ୍ଧେ ହାରିବ ତାର ପ୍ରାଣ ।
କଥା ହୁଅନ୍ତେ ତେବେଣେ ପଡ଼ିଲେ ଥାଟ ମାଡ଼ି
ଆଗୁଆଣି ଥାଟମାନେ ପଳାଇଲେ ଛାଡ଼ି ।
ଶ୍ରୀରାମ ବୋଇଲେ ଯେ ଅଇଲା ଲଙ୍କାପତି
ନୋହିଲେ ସୈନ୍ୟ ମୋର କାହିଁକି ପଳାନ୍ତି
ଆମ୍ଭେ ଯିବା ଏଥର ନଥିବ ଆଉ ଏଥି
ଆପେ ସମରକୁ ଆସେ ପୌଲସ୍ତିର ନାତି ।
ଅଙ୍ଗଦକୁ ବୋଇଲେ ତୁମ୍ଭେ ଯେ ବେଗେ ଚଳ
ଚାରି ଦ୍ୱାରେ ଚାରିଭାଗ ଓଗାଳି ଯାଇଁ ବଳ ।

ଶୁଣିକରି ଚାରିଭାଗ ହୋଇ ସୈନ୍ୟ ଗଲେ
ଚାରି ଦ୍ୱାର ଥାଟକୁ ଯାଇ ଓଗାଳିଲେ ।
ଏଥୁ ଅନନ୍ତରେ ଯାଇ ଭଗବତୀ ଶୁଣ
ଶ୍ରୀରାମ ମନରେ ସୁମରଣା କଲେ ପୁଣ ।
ଆପଣାର ନାମ ଧରି ମନ୍ତ୍ରିଲେ ଶ୍ରୀଅଙ୍ଗ
ଯେମନ୍ତ ସଂଗ୍ରାମେ ନୋହିବ ରଣ ଭଙ୍ଗ ।
ଶଉଚବନ୍ତ ହୋଇଣ ଶିରେ ଦେଲେ କର
ବଜ୍ର ଅଙ୍ଗ ହେଉ ବୋଲି ବୋଲନ୍ତି ରଘୁବୀର
ରାଘବ ରକ୍ଷା ମୋର କରନ୍ତୁ ମୂର୍ଦ୍ଧନ
ଯେଉଁ ଦେବକୁ ଚିନ୍ତା କରନ୍ତି ସୁରମୁନ ।
ଦଶରଥ ନନ୍ଦନ ରାମ କପାଳ କରୁ ରକ୍ଷା
ଲଲାଟ ଛୁଇଁଣ ବୋଲେ କୌଶଲ୍ୟାର ବତ୍ସା
ଦଶରଥ ତନୟ ବୋଲି ନୟନେ ହସ୍ତଦ୍ୟନ୍ତି
ବିଶ୍ୱାମିତ୍ର ପ୍ରିୟ ମୋର ଶ୍ରବଣ ରଖନ୍ତି ।
ସୌମିତ୍ରୀ ବତ୍ସଳ ମୋର ଶ୍ରୀମୁଖ ଉଦ୍ଧରୁ
ଜିହ୍ୱା ରକ୍ଷା କରନ୍ତୁ ମୋହର ବିଦ୍ୟାଗୁରୁ ।
ତାଡ଼କା କର୍ଣ୍ଣ ରଖନ୍ତୁ ହୋଇଣଟି ଶୋଭା
ଶତ୍ରୁଘ୍ନ ଭାଇ ରଖୁ ଡାହାଣ ପାଖ ଅବା ।
ଭରତ ବଲ୍ଲଭ ମୋର କଣ୍ଠ ରକ୍ଷାକରୁ
କୈକେୟୀ ଜନନୀ ଯେ ଚରଣ ରକ୍ଷାକରୁ ।
ସଦାଶିବ ଧନୁ ଭାଙ୍ଗେ ଯେବଣଟି ଦେବ
ସେହି ଆଜ ମୋର ଭୁଜ ଯୁଗଳ ରଖିବ ।
ସୀତା ପ୍ରିୟବନ୍ତ କରନ୍ତୁ ମୋତେ ରକ୍ଷା
ସଂସାରେ ମୁଁ ଘେନୁଅଛି ରାମ କପଟ ଦୀକ୍ଷା ।
ହୃଦ ରଖୁ ଯମଦଗ୍ନି ସୁତ ଦର୍ପହର
ଧର୍ମ ଆଶ୍ରେ ଦଶରଥ ଚାରି ଯେ କୁମର ।
ନନ୍ଦୀକେଶରୀ ଯେଉଁ ଦେବ ଦେଲେ ମୋତେ
ସେ ଦେବ ବଜ୍ର କରୁ ମୋହର ଦେହଯାକେ
ନନ୍ଦଘୋଷ ରଥ ଯେଉଁ ଦେବତାଙ୍କ ପୁଣ
ସେ ମୋତେ ରକ୍ଷାକରୁ କରିଣ ନିର୍ବାଣ ।
ଖର ଦୂଷଣ ନିବାରଣ ରଖନ୍ତୁ ମଧ୍ୟସ୍ଥାନ
ନାଭି ରଖନ୍ତୁ ଜମ୍ବୁବ ଆଶ୍ରିତ ଯେଉଁ ରାମ ।
ସୁଗ୍ରୀବର ସଖା ମୋର କଟି ରକ୍ଷାକରୁ
ହନୁମନ୍ତ ଭକ୍ତ ମୋର ବିଭୂତି ଉଦ୍ଧାରୁ ।
ଏତେକହି ଶ୍ରୀରାମ ଛୁଇଁଲେ ଥାନମାନ
ଅତି ଆନନ୍ଦରେ ହାକିଲେ ମନେ ମନ ।

ମୁଣ୍ଡି ଯେ ମୋତେ ତ ରଖିତ ସାମରଥ
ମୋଠାରୁ ଆନ କେହ୍ନ ନାହିଁ ତ ବଳବନ୍ତ ।
ଏହା ମୁଁ ପଢ଼ି ଣ ଦେହ କପଟ କଲ
ସଂଗ୍ରାମରେ ଜୟ ମୁଁ ଯେ କରିବ ବୋଇଲ ।
ଆଜଠାରୁ ଏମନ୍ତ ଯେ ହେବ ସାରସ୍ୱତ
ଯେ ଏହା ଶୁଣିବ ସେ ତରିବ ନିଅତ ।
ବିଶ୍ୱାମିତ୍ର ମୁନି ଯେ ଅଟନ୍ତି ମୋର ଗୁରୁ
ତାଙ୍କର ପ୍ରସାଦେ ବାଞ୍ଛା ମୋର ପୂରୁ ।
ମୋର ନାମ ଜପି ଯେ ସ୍ଥାନମାନ ଛୁଏଁ
ବିଶ୍ୱାମିତ୍ର ମୁନିଙ୍କ ଅନୁଷ୍ଟୁପ ଛନ୍ଦ ଏ ।
ବଜ୍ରରୁ ଆଣ୍ଟେ ଯେ ହେବ ତାର କାୟେ
ଗ୍ରହ ଦୋଷ କଟିବ ବାଞ୍ଛିତ ଫଳ ଦିଏ ।
ଜଳରେ ନ ବୁଡ଼ିବ ଅଗ୍ନିରେ ନ ଛୁଡ଼ିବ
ପବନେ ନ ଉଡ଼ିଲେ ଖଡ଼ଗେ ନ ପୋଡ଼ିବ ।
ଜୟ ଶ୍ରୀ ଆୟୁଷ ଯେ ବର୍ଦ୍ଧିତ ତାହାର
ଯୋଗ ବଳେ ପ୍ରାପତ ଯେ ଅମୃତ ଆହାର
ସର୍ବସଙ୍ଗଳ ଯେ ସକଳ କାର୍ଯ୍ୟ ସିଦ୍ଧି
ଶ୍ରୀରାମର ବଚନ ଯେ ଏସନେକ ବିଧି ।
ଏତେ କହି ଶ୍ରୀରାମ ଯେ କର୍ପୂରର ଗୁଣ୍ଡି
ଅଷ୍ଟାଙ୍ଗ ଶରୀରେ ଶ୍ରୀରାମ ହେଲେ ମଣ୍ଡି ।
ଶ୍ରୀରାମର କବଚ ଏ ବୀର ସୁର କନା
ବାମରେ କ୍ଷୁରି ନେତ ଯେ ବୀରବର ବାନା
ସୀତାର ମଣି ଗୋଟି କଣ୍ଠରେ ଦେବ ଲାଗି
ତୁଳସୀ ମାଳକୁ ଲାଇଲେ ରଘୁସାଇଁ ।
ସୀତାରଅମଳାଣଶାଢ଼ୀ ଅଙ୍ଗରେବେଢ଼ାଇଲେ
ଶ୍ରୀକର୍ପୂର ମିଶାଇ ଲବଙ୍ଗ ଖୁଆଇଲେ ।
ରୁଦ୍ରାକ୍ଷର ମାଳ ଯେ ଶୋଭେ ଗଣ୍ଡସ୍ଥଳେ
ପୁଣି ରୁଦ୍ରଅା ମାଳ ଲାଇଲେ ବାହୁମୂଳେ ।
ସର୍ବାଙ୍ଗରେ ଶୋଭେ ସନ୍ନ୍ୟାସ ଅଲଙ୍କାର
ଜାଇ ପୁଷ୍ପରେ ଗନ୍ଧ ମଣ୍ଡିଲେ ଜଟାଭାର
ଗଳାରେ ଶ୍ୱେତପଦ୍ମ ମାଳ ଆଭରଣ
ଦୁଇମାଳ ଦସ୍ତୁଣା ଲାଇଲେ ରାମ ରାଣ ।
ତିନି ସରି ତୁଳସୀ ମାଳ ସେ ଲାଅାନ୍ତି
ଅଙ୍ଗୁଷ୍ଠି ମଲ୍ଲିକା ମାନ ହୃଦରେ ରୂପକାନ୍ତି ।
ଚଉସରି ବଉଳ ମାଳେକ ଲମ୍ବାଇ
ପଞ୍ଚବର୍ଣ୍ଣ କୁସୁମ ମାଳା ଲାଇଲେ ରଘୁସାଇଁ ।

ଶ୍ୱେତ ମନ୍ଦାର ମାଳ ଗଳାରେ ଲମ୍ବାଇଲେ
ଦେଖିଲେ ଶତ୍ରୁ ଦର୍ପ ହରିବ ପୁଣି ଭଲେ ।
କପୋଳରେ କସ୍ତୁରୀ ଘେନିଲେ ଆଡ଼କୋର
କସ୍ତୁରୀ ରେଖ ନିଶ ଯେ ଉଡ଼େ ଫରହର ।
ମଧୁର ମୁରତି ଯେ କୋଟିଏ ତାମ ତେଜ
କନ୍ଧରେ ଅକ୍ଷୟ ତୂଣ ଭିଡ଼ିଲେ ରାମ ରାଜ ।
ପର୍ଶୁରାମ ଦେବା ଧନୁରେ ଗୁଣଦ୍ୟନ୍ତି
ପଇତା ଛଳରେ ତାହା ଅଙ୍ଗରେ ଦିଅନ୍ତି ।
ଅଗସ୍ତି ଦେଲ୍ଲ କୋଦଣ୍ଡ ଶ୍ରୀରାମ କରେ ଧରି
ଉଜ୍ଜ୍ୱଳ କୋଦଣ୍ଡ ଆମଞ୍ଚିଲେ ବେଳଗୁରି ।
ଅକଳନ୍ତ ବଳ ଧନୁରେ ଗୁଣ ଦେଲେ
ଜ୍ୟେଷ୍ଠ ଅଙ୍ଗୁଳରେ କଷଣୀ ଲଗାଇଲେ ।
ଶର ଫଳା ଛୁଟିକଣି ବାନ୍ଧିଲେ କରି ସଜ
ଅଙ୍ଗ ତାବ ଖଣ୍ଡା ଯେ ଥୋଇଲେ ରାମରାଜ ।
ବୀରବର ବାନା ଯେ ଅସରଳ ସୂତା
କନ୍ଧରେ ଶୋଭାପାଏ ସେହୁ ଯେ ପଇତା ।
ଦାଢ଼ିରେ କସ୍ତୁରୀଦେଇଣ ବୋଲଇଆଇଆଇ
କେଣିକ ଯିବୁ ଆଜରେ କୁମ୍ଭକର୍ଣ୍ଣ ଭାଇ ।
ଏସନକ ସମୟେ ଶୁଟଭ ଶଙ୍ଖଧ୍ୱନି
ସ୍ୱର୍ଗରେ ଥାଇଣ ଦେଖନ୍ତି ସୁର ମୁନି ।
ସଜ ହୋଇ ଶ୍ରୀରାମ ବସିଲେ ରଥରେ
ଗୋରଚନା ଚିତାଯେ ଘେନିଲେ କପାଳରେ
କ୍ଷତ୍ରୀ ବୀରବର ବୋଲିସେ ସିନ୍ଦୂର ଘେନନ୍ତି
ଶ୍ରୀରାମଙ୍କ କପଟ ତୁଣ୍ଡରେ ଉଚ୍ଚାରନ୍ତି ।
ଏମନ୍ତେ ବେଳ ଯେ ହେଲ୍ଲ ତିନିଘଡ଼ି
ମଙ୍ଗଳ ଅଷ୍ଟକ ଯେ ମାତେଲି ତୁଣ୍ଡେ ପଢ଼ି ।
ଏକ କପି ଗୋଟାଏ ଜଣାଏ ପୁଣ ଯାଇ
ଖେଦେବ ସଂଗ୍ରାମରେ ପଶିଲ ଲଙ୍କାସାଇଁ ।
ଆଗୁଆଣି ଦଣ୍ଡରେ ଅଛନ୍ତି ପାଞ୍ଚ ସେନା
ଚତୁରଙ୍ଗ ବଳ ଯେ ନ ଯାଇ କଳଣା ।
ଦେଖିଣ ଶ୍ରୀରାମ ଯେ ମନରେ ବିଚାରନ୍ତି
ଦକ୍ଷିଣକରେ ତୀକ୍ଷ୍ଣ ନାରାଚ ଧରିଛନ୍ତି ।
ବାମକରେ କୋଦଣ୍ଡ ଯେ ବାଳ ଅର୍କଜଣି
ବିଷ୍ଣୁଙ୍କୁ ସୁମରଣା କଲେ ରଘୁମଣି ।
ପବନ ବେଳ ଖୋଜ ସୀତା ରୂପ ଚିନ୍ତି
ଯୁଦ୍ଧକୁ ଯିବାକୁ ରାମ ରୋମ ଟାଙ୍କୁରନ୍ତି ।

ମାତେଳକ ବୋଇଲେ ଶ୍ରୀରାମଚନ୍ଦ୍ର ଗୁହ୍ନାଁ
ବାହା ତୁ ନନ୍ଦିଘୋଷ ଉଗ୍ରମୂର୍ତ୍ତି ହୋଇ ।
ଆଗରେ ବୀରବାଦ୍ୟ ବାଜେ ଗରୁଟାଣ
ସୁର ଗିରି ଚମକଇ ଚମକେ ଲଙ୍କା ପୁଣ ।
ସୁଗ୍ରୀବର ସଜ ଯେ ହୋଇଲେ କାଛେଣୀ
ସର୍ବାଙ୍ଗରେ ମଣ୍ଡିଣି ଯେ ହୋଇଛନ୍ତି ନାନାବେଣୀ
ବିଭୀଷଣ ସଜ ଯେ ଦେବଙ୍କୁ ଦୁର୍ଲ୍ଲଭ
ସ୍ୱର୍ଗରେ ପ୍ରଶଂସା ଯେ କରନ୍ତି ସୁର ଦେବ ।
ଅଙ୍ଗଦ କୁମର ଯେ ସଉଦ୍ଧ ସେନାପତି
ବୀରଙ୍କୁର ବଳାଇ ଆଗ ହୋଇଯାନ୍ତି ।
ରଣ ଦେଖିଣ ବୀରେ ହିଅନ୍ତି ହୁଳହୁଳି
ଆଡ଼ମ୍ବରେ ମାରନ୍ତି ବଜାନ୍ତି ରାମତାଳି ।
ପବନ ବିବଧ ଯେ ସମ୍ପାତି ତାରକ
ପଡ଼ ଉଠି ଧାମନ୍ତି ଧରିଣ ଶିଳାବୃକ୍ଷ ।
କୁନ୍ଦ କଞ୍ଚଣ କାଳାଞ୍ଜନ ପବନ ପନଶିଳ
ଏମାନେ ଧାମନ୍ତେ ମଚ୍ଚି ଟଳ ମଳ ।
ଦଧିମୁଖ ବସନ୍ତ ସାରସ ଶତବଳ
ବୀର ମହାବୀର ଯେ ମଲ୍ଲ ମହାମଲ୍ଲ ।
ଧାମନ୍ତେଣ ପୃଥ୍ୱୀ ଯେ କମ୍ପେ ଚଳଚଳ
ଧାଇଁଣ ଗର୍ଜନ କରନ୍ତି କପିଦଳ ।
ମହାଘୋର ଯୁଦ୍ଧ କି ହୋଇଲା ପୁଣି ଆସି
ପାଦ ରେଣୁରେ ଯେ ଗଗନ ନ ଦିଶି ।
ନିଶାଣ ଡଡ଼ବଡ଼ ଯେ ବାଜେ ବିକଟାଳ
ଉଦଣ୍ଡ ଆଲମ୍ବ ଯେ ବିମଳ ଚାମର ।
ନାନା ବାଦ୍ୟମାନ ଯେ ଘାଗୁଡ଼ି ଘଣ୍ଟି ଧ୍ୱନି
ମୁଖରବ ଶବଦରେ କମ୍ପଇ ମେଦିନୀ ।
ପର୍ବତରୁ ଓହ୍ଲାଇଲେ ଋକ୍ଷ କପିବଳ
ସପତ ସିନ୍ଧୁ କି ଘୋଟିଲା ମହାଜଳ ।
ଦଶଲକ୍ଷ ରଥୀ ଯେ ରାବଣ ପେଶିଥିଲା
ସମର ଶେଷରେ ତାହାଙ୍କୁ ଭେଦ ଦେଲା ।
ଦକ୍ଷିଣ ଦ୍ୱାର ବାଟେ ପୂର୍ବ କଟକ ଗଲେ
କେହି ନ ଦେଖିଲେ ଉଣ୍ଡି ଲୁଚି ଦେଲେ ।
ତୁଣ୍ଡ ନ ଶୁଭଇ ଯେ ବାଦ୍ୟ ନ ବାଜଇ
ପୂର୍ବ ସମୁଦ୍ରର ପନ୍ତାରେ ଲୁଚି ଦେଇ ।
ସୁବଳ ଗିରି ନିକଟେ ବୁଡ଼ାମାରି ରହି
ପଞ୍ଚ ପାହାଡ଼ ପାଷାଣ ଓହାଡ଼େ ଲୁଚି ଦେଇ

ପଞ୍ଚ ସମୁଦ୍ରର ପନ୍ତାରେ ରହିଥିଲେ
ପିଆଶାଳ ବନ ଭିତରେ ବୁଡ଼ା ଦେଲେ ।
ଆଗୁଆଣୀ ହଣ୍ଡେ ସୈନ୍ୟ ପଡ଼ିଲେ ଯେ ମାଡ଼ି
ରଣ ଭୂମି ସୀମା ଯେ ଦୁଇ ଯୁଣ ଗୁଡ଼ ।
ଗୁପତରେ ଅଛନ୍ତି ତା ଶ୍ରୀରାମ ନ ଜାଣନ୍ତି
ରାବଣ ଅଇଲା ବୋଲି ଆଗକୁ ଧାମନ୍ତି ।
ଯାଆନ୍ତେ ପୂର୍ବକୁ ଯେ ରହେଁ ବିଭୀଷଣ
ମତ୍ତ ଗଜ କୁଦା କୁଦା ଦେଖିଲା ଅପ୍ରମାଣ ।
ପ୍ରଥମରେ ପର୍ବତ ପ୍ରାୟେକ ମଣିଥିଲା
ପୁଣିହିଁ ନିରେଖିଲା ଗୁହ୍ନିଁଣ ଜାଣିଲା ।
ବୋଇଲା ଲଙ୍କେଶ୍ୱର କଲାକ କପଟ
ଆଡ଼ ଉହାଡ଼ରେ ଯେ ଜଗାଇ ଅଛି ଥାଟ ।
ଶ୍ରୀରାମ ଛାମୁରେ ଜଣାଏ ପୁଣ ଯାଇ
ଶୁଣେଦେବ କପଟ ଯେ କଲା ଲଙ୍କାସାଇଁ ।
ଦେଖ ବାମ ପାଶରେ ଦଶେ ହାତୀ ଦଣ୍ଡ
କିଅବା ଦିଶୁଅଛି ପର୍ବତ ଶୃଙ୍ଗଖଣ୍ଡ ।
ଆପଣେ ଲଙ୍କାପତି ସେଥିରେ ଥିବା ଅବା
ଥାଟ ବରଗିବା କି ଆପଣେ ଆମ୍ଭେ ଯିବା ।
ଏମନ୍ତ ବିଗ୍ରହନ୍ତେ ଦଶେ ଲଙ୍କାରାୟେ
ପୁଷ୍ପକ ଯାନରେ ସେ ବିଜେ କରିଥାଏ ।
ଅଠର ଷଉଣୀ ଯେ ଅଛନ୍ତି ପଏକାର
ରାଉତେ ଝଲକନ୍ତି ଚଢ଼ିଣ ହସ୍ତିବର ।
ରଣ ବାଦ୍ୟ ବାଜା ଯେ ଫର ହର ଉଡ଼େ
ଦୁଇ ପାଖରେ ଚାମର ଲକ୍ଷେ ଲକ୍ଷେ ପଡ଼େ ।
ଲକ୍ଷେକ ଶ୍ୱେତଛତ୍ର ଲକ୍ଷେକ ଦର୍ପଣ
ପୁଷ୍ପକ ବିମାନ ଯେ ଚଳେ ଘନ ଘନ ।
ପ୍ରଳୟ କାଳରେ ଯେହ୍ନେ ନ ଥାନ୍ତି ସୂର୍ଯ୍ୟଚନ୍ଦ୍ର
ତେସନକ ଦିଶୁଅଛି ଅସୁର କୁଳ ଇନ୍ଦ୍ର ।
ସୁଗ୍ରୀବ ବୋଇଲା ଏଯେ ଅଟେ ଦଶଶିର
ମଧ୍ୟ ଦଣ୍ଡରେ ଅଛି ସୈନ୍ୟକୁ ଆବୋରି ।
କମ୍ପାଇଁ ସେ ଆଡ଼ ଉହାଡ଼େ ରହିଥିବ
ବଇରି ବିରଧୁ ଯେ ବୋଲାଏ ଦଶଗ୍ରୀବ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ବିଭୀଷଣ
ଥାଟ ଅପ୍ରମିତ ଯେ ଦଶେ ଯନ୍ତୁଁ ପୁଣ୍ୟ
ସେ ହାତୀ ଦଣ୍ଡରେ ଯେ ଜୁଟେ ସେନାପତି
ତାହାକୁ ପେଶିବେ ବୋଲି ଗୁହ୍ନିଁଲେ ରଘୁପତି

ଦେଖିକରି ଜମ୍ବୁବ ମଥାରେ ହସ୍ତ ଦେଲେ
ଆଜ୍ଞା ଦେଲେ ଭେଦିବ ସିଦ୍ଧ ମୁଁ ବୋଇଲେ
ଏହ୍ନକ୍ଷଣି ମାର ଯେ ଆସିବ ହସ୍ତୀ ଦଣ୍ଡ
ରଥ ଗଜ ମଣ୍ଡଳ କରିବ ଖଣ୍ଡ ଖଣ୍ଡ ।
ଶ୍ରୀରାମ ବୋଇଲେ ତୁମ୍ଭେ ସାତଜଣ ଯାସି
ଶତବାଳ ତୁମ୍ଭ ସଙ୍ଗେ ଯାଉ ଯେ ଶୀଘ୍ରଟି ।
ଗବୟ ଗବାକ୍ଷ ମହେନ୍ଦ୍ର ଦେବ ଯାସି
ଲକ୍ଷେକ ଋକ୍ଷ କପି ସଙ୍ଗରେ ନିଅ ବାଛି ।
ଏତେକ ଋକ୍ଷ କପି ଯାଆନ୍ତୁ ସାହା ହୋଇ
ଗାଢ଼ ଯୁଦ୍ଧ ହେଲେ ତୁମ୍ଭେ ଆସିଣ କହାଇ ।
ଆନ ଦିନର ପ୍ରାୟ ନୁହେଁ ଆଜ ଯୁଦ୍ଧ
ଅସୁରଙ୍କର ମାୟାଟି ଦେବଙ୍କୁ ଆଶ୍ଚର୍ଯ୍ୟ ।
ଅକ୍ଷମାନ ସାରିବ ସେ ବୋଲିଣ ଆସିଅଛନ୍ତି
ଭାଇ ହନୁମନ୍ତ ସୁଷେଣଙ୍କୁ ହରି ସେ ନେଇଛନ୍ତି
ଏକାଅଛି ମୁଁ ମୋ ସଙ୍ଗେ କରିବେ ଘୋରରଣ
ପାଞ୍ଚଦିନ ହେଲା ମୋର ଭାଇ ଗଲା ପୁଣ ।
ମାରୁତି ଥିଲେ ତାଙ୍କୁ ମାରନ୍ତା ନଶୋଧିଣ
ଗାଢ଼ ଯୁଦ୍ଧ ଦେଖିଲେ ତୁମ୍ଭେ ଆସିବ କହାଇଣ
ନୋହିଲେ କି ଚାରିଭାଗ କରିଣ ବାଣ୍ଟେ ବାଳ
ଆଜର ଯୁଦ୍ଧ ଗୋଟା ହୋଇବ ବଡ଼ ଗୋଳ
ଯାଆ ମନ୍ତ୍ରୀବର ବିଚାରି କାର୍ଯ୍ୟ କରି
ଅସମ୍ଭାଳ ହୋଇଲେ ଜାଣି ଅପସରି ।
ଶୁଣିଣ ଜମ୍ବୁବ ଶତବାଳି ଚଳିଯାନ୍ତି
ମହେନ୍ଦ୍ର ଗବୟ ଗବାକ୍ଷ ପୁଣି ଧାମନ୍ତି ।
ସୈନ୍ୟଙ୍କୁ ବୋଇଲେ ହୋ ଥୋକାଏ ଏଣେ ଆସ
ହସ୍ତୀ ବଣ୍ଡଙ୍କୁ ମାଡିଣ କରିବା ଆମ୍ଭେ ନାଶ ।
ଶୁଣିଣ ଭାଲୁ ମର୍କଟ ରଡ଼ି ଏକ ଦେଲେ
ଥାଟ ଭିତରୁ ଯେ ବାହାର ହୋଇଲେ ।
ଚାଳିଶ ସହସ୍ର କୁମ୍ଭକା ଷାଠିଏ ସହସ୍ର ହରି
ସଂଗ୍ରାମକୁ ବାହାରିଲେ ବୃକ୍ଷ ପାଷାଣ ଧରି ।
ଆଗୁଆଣି ବଳ ମାରିବେ ବୋଲି ଆଗୁଁ ସାର
ପାଦଭରେ ଦଳା ଦଳି କଟମ୍ପେ ମହୀଭର ।
ଜମ୍ବୁବ ଆଗୁଆଣି ବୀର ବେଶ ହୋଇ
ମାଳଶ୍ରୀ ସ୍ୱରରେ ସେ ଯେ ବାଜଣା ବଜାଇ
ଶଙ୍ଖବର୍ଣ୍ଣ ଆଳମ୍ବ ଫର ହର ଉଡ଼େ
ଯାହାଙ୍କୁ ଦେଖିଲେ ଲଙ୍କାଗଡ଼େ ଚମକ ପଡ଼େ

ବନ୍ଧ ଭାଜିଲେ ଯେସନ୍ତେ ପାଣି ବହିଯାଇ
ଏକ ଥାଟ ହୋଇଣ ଗର୍ଜ୍ଜନ ନାଦ ଦେଇ ।
ସେମାନଙ୍କୁ ପଠିଆଏ ରାମଚନ୍ଦ୍ର ରାୟେ
ଆଗୁଆଣି ଦଣ୍ଡକୁ ମାର ଯା ବୋଲି କହେ ।
ବିଭୀଷଣଙ୍କୁ ବୋଇଲେ ଡାହାଣ ପାଶେ ଥିବୁ
ତୋତେ ଦେଖି କ୍ରୋଧ ହୁଏ ଦଶମାଥ ବାବୁ ।
ସୁଗ୍ରୀବର ରାଜ ଆଜ ହୁଅନ୍ତୁ ଆଗୁଆଣି
ଅଙ୍ଗଦ ସଙ୍ଗରେ ଥିବ କପିକୁଳ ମଣି ।
ଦ୍ୱିବିଦକେଶରୀ ସମ୍ପାତି ଶତବଳି
କୁମୁଦ କାମୋଦ ଯେ ବସନ୍ତ ପନଶିଲ ।
ଏହି ଆଠଜଣରେ ଯେ ରାଜାର ସଙ୍ଗେ ଥିବେ
ଋକ୍ଷ କପିବଳ ଯେ ଆଗସରି ଯିବେ ।
ବଳମୁଖ କାଳୀମୁଖ ଗନ୍ଧମାରଦନ
କଞ୍ଚଣ ସାରସ ପାରସ ସୁଶୋଦନ ।
ଏ ସପ୍ତ ସେନାପତି ରହନ୍ତୁ ବାମ ପାଶ
ଡାହାଣ ପାଖରେ ଦଧିମୁଖ ଯେ ସାରସ ।
ଦଶକାଳ ବୃଦ୍ଧ ଶଉରୀ ରମଣ
ପଛୁଆଣି ଦଣ୍ଡରେ ରହନ୍ତୁ ଏହୁ ପୁଣ ।
ସରସେତୁ ଗବଏ ଡ଼ାଳମ୍ବ ବସନ୍ତ
ସମ୍ଭାଳ ଆଣନ୍ତୁ ଋକ୍ଷ କପି ଯେ ସମସ୍ତ ।
ଏତେ କହି ଶ୍ରୀରାମ ଯେ ଆମଞ୍ଚିଲେ ଧନୁ
ଆଗୁଆଣି ଦଣ୍ଡ ଯେ ପଳାଉଛନ୍ତି ତେଣୁ ।
ରହ ରହ ବୋଇଲେ ନ ରହନ୍ତି କେହି
ଶଙ୍ଖଶ୍ରୀ ସେନାପତି କୋପରେ ଆଗ ହୋଇ ।
ସୈନ୍ୟଙ୍କୁ ବୋଇଲେ ହୋ ଯୁଦ୍ଧ ନବାଇବୁ
ଅକାରଣେ କମ୍ପାଇରେ ପକାଇ ଅଛ ବାବୁ
ଭାଜି ପଳାଇଲେ ତୁମ୍ଭେ ଯିବ କେଉଁଯାଏ
ଗୋଡ଼ାଇ ମାରିବ ସିନା ଦଶାନନ ରାୟେ ।
ରହି ଯୁଦ୍ଧ କଲେରେ ଶତ୍ରୁକୁ ପାରେ ଜିଣି
ପଛରେ ଆସିବେ ଆମ୍ଭର ଧନୁକ ଚୂଡ଼ାମଣି ।
କପି ବୋଇଲେ ଆଜ ହୋଇବ ମହାରଣ
ଅସୁରେ କରିଛନ୍ତି ଅପୂର୍ବ ଭିଆଣ ।
ଦେଖ ଛୁଟିକଣୀ ସେ ପଡ଼ୁଅଛି ଥାଟେ
ପଥର ଧରି ଫିଙ୍ଗି ଦିଅନ୍ତି ମହାଆଟେ ।
ପବନୁ ବେଗରେ ଗର୍ଜଣ ଆସି ପଡ଼ି
ଯନ୍ତ୍ର କାଣ୍ଡମାନେ ସର୍ବେ ପକ୍ଷୀଲାଗି ଉଡ଼ି ।

ବଡ଼ ବଡ଼ ହାବେଳୀ ପଡ଼ନ୍ତି ବଜ୍ରବାଣ
ବିକଟାଳ ହୋଇଣ ବାଜୁଛି ନିଶାଣ ।
ସେହି ପ୍ରହରୁ ଅସୁରେ ହୋଇଛନ୍ତି ସଜ
ଘର ଥାଇଁ ସଇନ ବାହାର ହେଲେ ଆଜ ।
ଜୁଜୁଜୁଲା ପୋକ ପ୍ରାୟେ ପଡ଼ୁଛନ୍ତି କାଂଡ
ଦେହଯାକ ସବୁରି ହୋଇଗଲା ଖଂଡ ଖଂଡ ।
କେମନ୍ତେ ଯୁଝିବୁ ସେନାପତି କେହି ନାହିଁ
ଏମନ୍ତେ ଘଡ଼ିଏ ଯେ ରହିଲା ଯୁଦ୍ଧ ସହି ।
ଶ୍ରାବଣ ବରଷା ଜାଣି ଶର ବରଷନ୍ତି
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଶରେ ନିରୋଧନ୍ତି ।
ଶତ୍ରୁଘ୍ନ ବୋଇଲେ ଶୁଣ ମୋର କଥା
କେବଣଠାରେ ଅଛି ଦେଖାଅ ଦଶମଥା ।
ରଥର ସହିତରେ ମୁଁ ପକାଇ ଦେବି ସିନ୍ଧୁ
କଥା ରହୁ ମୋର ମହୀମଂଡଳେ ଇନ୍ଦୁ ।
ଶୁଣିଣ ରିକ୍ଷ କପି ଯେ ପାଇଲେ ଭରସା
ମେଘ ଗର୍ଜନରେ ଯେସନ୍ତେ ଚାତକର ଆଶା ।
ବୃକ୍ଷ ଡାଳ ଧରିଣ ବାଜଣା ବଜାଇ
ଅସୁର ବଳଙ୍କୁ ଭେଟ ପାଇଲେ ପୁଣ ଯାଇ ।
ସମୁଦ୍ରେ ସମୁଦ୍ର କି ହେଲେ ଭେଟାଭେଟି
ସ୍ୱର୍ଗରେ ଥାଇଣ ତାହା ଦେଖନ୍ତି ସୁରଗୋଷ୍ଠୀ
ଦୁଇ ଖଂଡରେ ଯେ ସେ ଆଗୁଆଣି ବଳ
ମାର ମାର ବୋଲନ୍ତି ଯେ ଶୁଭଇ ଚହଳ ।
ହୋଇଣ ମିଶାମିଶି ଧାଇଁଣ ପିଟାପିଟି
କେହି କାହାକୁ ପାଇ ଯେ ପଡ଼ିଲେ ମହୀଲୋଟି
କେ ବୃକ୍ଷ ପଥରେ ପଥୁଡ଼ନ୍ତି କେହୁ ଶୀଳ
କେ ନେଇ ଚାଳିଣ ଯେ ମାରନ୍ତି କରବାଳ
କେହୁ ଗଦା ଚକ୍ର ମାରେ କେହୁ ମାରେ ଶକ୍ତି
କେହୁ ଋକ୍ଷବାଣ ଘେନି ମାରନ୍ତି କରି ଗତି ।
ମୁଣ୍ଡକୁ ମୁଣ୍ଡ କେହୁ ହାଆକୁ ହାଆ ଠେଲି
କେହି କାହାକୁ ଯେ ହେଲେ ପେଲାପେଲି ।
କେହୁ କାହା ବୁକୁରେ ମାରନ୍ତି ପଦାଘାତ
କେହୁ ଅଙ୍ଗ ଡାଳିଣ ଫେରଇ ଯାଇ ନାତ ।
କେହୁ ରାଗେ ମାରନ୍ତି ସହସ୍ରେ ଯେ ବାଧା
କେହୁ ନାହିଁ ନାହିଁ ବୋଲି ମାରିଦ୍ୟନ୍ତି ଖୁନ୍ଦା
ଗୃପୋଡ଼େ ମାରଣ କେହୁ ପୁଣ ସେ ଉଞ୍ଚାଇ
ମାରି ଲୋଡ଼ିଲେ ପୁଣ କେହୁ ପଳାଇ ଯାଇ ।
କେହୁ ଆଣ୍ଡ ଆଣ୍ଡ ବୋଲି କାମୁଡ଼ଇ ଓଷ୍ଠ
କେହୁ ଆଗ ସରିଯାଇ କାମୁଡ଼େ ବାହାଆଣ୍ଟ
କେ ଧରି କଚାଡ଼େ କୋପେ କେପକାଏଡଲେ
କେହୁ ଧର୍ମଯୁଦ୍ଧ କରେ ମୁଖେ ମୁଖ ମିଳେ ।
କେ ବୋଲନ୍ତି ପଥର କେ ବଜ୍ରବାଣ ମାର
କେହୁ ଗାଡ଼ ପାଇଲେ ଦୂରରୁ ଅପସର ।
କେହୁ ବଜ୍ରକାଣ୍ଡ ଯେ ହାବେଳ ବାଣ ମାରି
ଛାଟିକଣୀ ପଥର କେ ଉଡ଼ାନ୍ତି ହସ୍ତେ ଧରି ।
ମୁଖରବ ଶବଦ ଆୟୁଧଙ୍କର ଘାତ
ତୀରତୂର ବାଦ୍ୟ ଯେ ବଜାଇ ବହୁତ ।
କ୍ଷୀର ସମୁଦ୍ର ଯେସନ୍ତେ ମନ୍ଥିବାର ବେଳେ
କୋଳାହଳ ଶବଦ ଶୁଭେ ମୁଖ ଗୋଳେ ।
ତେସନେକ ରାମାୟଣ ଯୁଦ୍ଧରେ ଗୋଳବାଜେ
ରିକ୍ଷ କପି ରାକ୍ଷସ ମରନ୍ତି ଦେବକାର୍ଯ୍ୟେ ।
ଯେବଣ ଥାଟରେ ଶ୍ରୀରାମ ସେନାପତି
ଭାଲୁ ମର୍କଟଙ୍କର କାହାକୁ ନାହିଁ ଖ୍ୟାତି ।
ସୁରଗଣେ ନ ପାରିଲେ ଯେବଣ ବଳ ମାରି
ରିକ୍ଷ କପି ଘେନିଣ ଶ୍ରୀରାମ ନିବାରି ।
ସମୁଦ୍ର ଭିତରେ ହୁଅନ୍ତି ସଂଘର୍ଷଣ
ଆନ କେହି ନାହିଁ ଦେଖନ୍ତି ଯେ ଦେବଗଣ
ଅପସରୀ କିନ୍ନରୀ ବିଦ୍ୟାଧରୀ ଛନ୍ତି
ସାଧୁ ରଘୁନାଥ ବୋଲି ହୁଳହୁଳି ଦ୍ୟନ୍ତି ।
ଗନ୍ଧର୍ବ କିନ୍ନର ଯକ୍ଷ ଯେ ବିଦ୍ୟାଧର
ସନକାଦି ସକଳେ ସହିତ ମୁନିବର ।
ସଂଗ୍ରାମ ଧନ୍ଦୋଳ ଦେଖିଣ ବିଚାରନ୍ତି
ନ ପୁଣ ନିଶାଚରେ କପିଙ୍କି ମାରନ୍ତି ।
ଆବର ଯୁଦ୍ଧ ଦେଖିଣ ଭୟ ଲାଗେ ମନ
ତ୍ରୈଲୋକ୍ୟ ବନ୍ଦ କଲା ଏକାକୀ ଦଶାନନ ।
ସଂସାର ଖୋଜିଛି ଯେ ପାଇଲା ଏହାରେ
ଜଗତ ଲୋକଙ୍କ ଦୁଃଖ କହିବା କାହାରେ ।
ନାରୀଗଣ ପୁରୁଷ ନ ପାରେ ପୁଣ ସହି
ଏତେ ଦୁଃଖରେ ଜାତ ହେଲେ ପୁଣ ମହୀ ।
ନୋହିଲେ କି ମରନ୍ତା ଏତେକ ଅସୁର
ରାମ ରାବଣର ଯେ ହୋଇଲା ସମର ।
ଶୁଣିବାର ନଥିଲା ଯେ ଦେଖା ନଥିଲା ଆଖି
ଅପୂର୍ବ ସମରକୁ ଯେ ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ।

ଦେଖ ଆଗୁଆଣି ଦଣ୍ଡରେ ରଣ ଗୋଳ
ସ୍ୱର୍ଗ ମଞ୍ଚ ପୂରଛି ଯେ ରଣର ହାଲ୍ଲୋହଳ ।
ନାନା ପ୍ରକାରର ଯେ ଆୟୁଧ ବୃକ୍ଷ ଶିଳା
ଧନ୍ୟ ଧନୁର୍ଦ୍ଧର ଅଟେ ଦଶରଥ ବଳା ।
ବିଭୀଷଣଙ୍କୁ ଘେନ ଯେ ଅଟନ୍ତି ତିନ ଯୋଦ୍ଧା
ଦଣ୍ଡେ ମନ କଲେ ସେ କରିବେ ପୃଥ୍ୱୀଶୋଧା
ସୁଗ୍ରୀବର ବୀର ଯେ ବାଳିର କୁମର
ସଉଷି ସେନାପତି ଆବର ନଳ ନୀଳ ।
ଚନ୍ଦନ ତାରାଷ ଆବର କପି ବଳ
ଋକ୍ଷ କପି ଜମ୍ବେବ ଦୁହେଁ ବଳିଆର ।
ଗନ୍ଧ ମାଦନ ଯେ ଅଟଇ ମହାବୀର
ସେ ସଞ୍ଚି କହିବ ଯେ ଶ୍ରୀରାମର ବଳ ।
ରାବଣର ନଳ ଯେ ଭଲେ ଅଛୁଁ ଜାଣି
ଏତେ ବୋଲି ଦେବତାଏ କରନ୍ତି ଭାଲେଣି ।
ଏଥୁ ଅନନ୍ତରେ ଯେ ଋଷ କପିବଳ
ସଢ଼ିଏ ପରିଯନ୍ତେ ବାଜେ ରଣ ଗୋଳ ।
ନିରନ୍ତରେ ମଡ଼ା ଯେ ରୁଧିର ଚଉକତି
ଯୋଦ୍ଧାଏ ନ ରହନ୍ତି ପ୍ରଚଣ୍ଡ ଉଗ୍ର ମୂର୍ତ୍ତି ।
ରାବଣ ଚାରିଭାଗେ ଯେ ବାଣ୍ଟି ଅଛି ବଳ
ହାତୀ ରଥୀ ରହିଲେ ଯେ ସମୁଦ୍ରର କୂଳ ।
ଆଗରେ ଆଗୁଆଣି ପଛରେ ଲଙ୍କପତି
ଯେବଣ ସୈନ୍ୟ ଅଇଲେ ପଶ୍ଚିମ ଦ୍ୱାରକତି
ସେଥିରେ ସେନାପତି ପରମାର୍ଥ ଲୋହିତାକ୍ଷ
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳ ବିରୂପାକ୍ଷ ।
ଖରଣ ଦୂଷଣ ସମଏ ବକାସୁର
ଚତୁରଙ୍ଗ ବଳ ଘେନ ହୋଇଲେ ବାହାର ।
ପଶ୍ଚିମ ଦ୍ୱାର ପାଟେଶ୍ୱ ତଳେ ତଳେ ଗଲେ
ଅଗ୍ନି କୋଣେ ସଳଖେ ଧାଇଁଣ ପଡ଼ିଲେ ।
ଦଣ୍ଡ ମଧ୍ୟରେ ଆସିଣ ପଶିଲେ ଧସାଇ
କାହାଳୀ ରଡ଼ରେ ସେ ବାଜଣା ବାଜଇ ।
ରଥ ଗଜ ଅଶ୍ୱ ଯେ ପଦାତି ଗହଳ
ପାଦ ଭରେ ମେଦିନୀ କମ୍ପେ ଥରହର ।
ମାର ମାର ବୋଲିଣ ଡାକେ ସେନାପତି
ପର୍ବତେ ଥାଇଣ ତାହା ଦେଖିଲେ ସୀତାପତି
ବିଭୀଷଣଙ୍କୁ ଏ କଥ ବୋଲିଣ ପୁଛନ୍ତି
ରଥ ଗଜ ଅଶ୍ୱମାନ କେତେ ପନ୍ତି ପନ୍ତି ।

ଗଗନ ମାର୍ଗରେ ଯେ ଉଡ଼ୁ ଅଛି ଧୂଳି
ଚତୁରଙ୍ଗ ବଳ ଯେ ଆସୁଛନ୍ତି ଚଳି ।
ଆଗରେ ଆଗୁଆଣି ପଛରେ ଲଙ୍କପତି
ହସ୍ତୀ ଦଣ୍ଡ ଦେଖା ଦେଲେ ପଶ୍ଚିମଦ୍ୱାର କତି
କଉଣସି ଦିନ ତ ନ ଆସେ ଏତେ ବାଗେ
ଚଉଭାଗ କରି ସୈନ୍ୟ ବାଣ୍ଟି ଅଛି ରାଗେ ।
ସେ ଦଣ୍ଡେ ଯେପରି ନ ପଶନ୍ତି ଆମ୍ଭ ଯୂଥ
ସମସ୍ତେ ଏକ ହେଲେ ଯେ କରିବେ ଅନର୍ଥ ।
ଏତେ ବୋଲିଣ ରାମ ଅଙ୍ଗଦକୁ ଚାହିଁ
ଜାଣିଣ ବାଳିସୁତ ମସ୍ତକେ ହସ୍ତ ଦେଇ ।
ଶ୍ରୀରାମଚନ୍ଦ୍ର ବୋଇଲେ ଶୁଣରେ କୁମର
ଆଡ଼ ଉହାଡ଼ରେ ଯାଇ ସୈନ୍ୟଙ୍କୁ ସମ୍ଭାଳ
କଞ୍ଚଣ କାଣିମୁଖ କାଳଞ୍ଜନକୁ ଦିଅସି
ଯେମନ୍ତେ ସେ ବେଳ ଆସି ଏ ବଳେ ନମିଣି
ଏସନକ ବୋଲିଣ ଶ୍ରୀରାମ ଆଜ୍ଞା ଦେଲେ
ଶୁଣିଣ ଋଷ କପି ବାଟ ଭାଙ୍ଗି ଗଲେ ।
ଦଶ କୋଟି ବାନର ଚାଳିଶ କୋଟି ଋଷ
ସବୁଙ୍କର ହସ୍ତରେ ଅଛି ଶିଳା ବୃକ୍ଷ ।
ସେ ଥାଟେ ସେନାପତି ବାଳିର କୁମର
କଞ୍ଚଣ କାଳ ମୁଖ ଅନେକ ବାନର ।
କନଡ଼ା ରାଗରେ ବଜାଇ ବୀରତୂର
ରୋଷଭରେ ଧାମନ୍ତି ଅପାରୁଁ ଅପାର ।
ଗରୁଡ଼ ଧ୍ୱଜ ଶଙ୍ଖ ଦେଖିଣ ଧାମନ୍ତି
ଏକକୁ ଆରେକ ଯେ ଆଗ ସରି ଯାନ୍ତି ।
ଅଙ୍ଗଦ କଞ୍ଚଣ ଦଧି ମୁଖ କାଳଞ୍ଜନ
ଆଗରେ ଯୁଝିଲେ ସେ ପଛରେ ଯେ ସୈନ୍ୟ
ପାଷାଣ ତରୁ କେ ଧରି ମାରେ ରୋଷଭରି
ଦଇତେ ଛେଦିଲେ ତାହା ପ୍ରତି ଅସ୍ତ୍ର କରି ।
ବେଳକୁ ବେଳ ସମର ହେଲା ମହାରଣ
ଅସୁର ମାରୁଣି ଦେଖି ରଗିଲେ କପିସୈନ୍ୟ ।
ଭାଜିଲା ରଣ ଗୋଳ ଯେ ହେଲେ ମିଶାମିଶି
ଦଶ ସେନାପତି ପୁଣ ଯୁଦ୍ଧ କଲେ ଆସି ।
ଅଙ୍ଗଦ ସହିତରେ ପଛଦୁଆଁ ଦେଲେ
ପ୍ରଶସ୍ତ ନାରଚକୁ ବହୁତ ଭସ୍ମ କଲେ ।
ଦଧିମୁଖ କାଳଞ୍ଜନ କଞ୍ଚନ ସହିତେ
ଭାଙ୍ଗିଣ ପଳାଇଲେ ପବନର ଘାତେ ।

ଅଶ୍ୱ କର୍ଣ୍ଣ ଏକ ପାଦ ପାଟୋଳ ବରୁପାକ୍ଷ
ଗୃରଣ ବଗୃରଣ ଅମଏ ଲୋହିତାକ୍ଷ ।
ବକାସୁର ସହିତେ ପରମାର୍ଥ ମହାବୀର
ପିଠି ପାଇଣ ଯେ ବନ୍ଧୁ ଛନ୍ତି ଶର ।
ଋକ୍ଷ କପିବଳ ଯେ ପାଇଲେ ଭଙ୍ଗୁଣୀ
ମୁହଁ ଦେଇ ନ ପାରିଲେ ଏ କପି ସଇନ ।
କୋଟେ ପରସନ୍ତେ ସେ ଗଲେ ପିଠିଦେଇ
ବାଳିର ତନୟ ଯେ ରହିଲ ପରିଷ୍ୱାଇ ।
ସଇନ ସହିତେ ଯେ ଗଲେ ଆଡ଼ ହୋଇ
ନ ଘଞ୍ଚିଲେ ସୈନ୍ୟ ଯେ ରହିଲେ ଥାକଦେଇ
ବାମ ପାରୁଶରେ କଞ୍ଚଣ କାଳଞ୍ଜନ
ପଛରେ ଦଧିମୁଖ ସଇନ ସହିତେଣ ।
ରହ ରହ ବୋଲନ୍ତେ ରହିଲେ ଶସ୍ତ୍ର ଧରି
ପୁଣ ଦୁଇ ଦଳ ଯେ ହେଲେ ମଗ୍ରାମରି ।
ମାର ମାର ବୋଲିଣ ଉଠିଲେ କପିବଳ
ଅସୁରଙ୍କ ଉପରେ ପିଟିଲେ ତରୁଶୀଳ ।
ଘାଆ ପାଇ ଭାଙ୍ଗିଲେ ରାବଣ ସଇନ
ଧାଇଁ ଆଗ ହେଲେ ଯେ ସେନାପତି ପୁଣି ।
ପରମାର୍ଥ ବୋଲିଣ ଯେ ରାବଣ ତନୟେ
ଥାଟଭଜବାର ଦେଖି ଅସୁର ବେଗେ ଧାଏଁ
ଏକଇ ବାଣରେ ଯେ ମାରେ ଋକ୍ଷ କପି
ପୁଣି ହିଁ ସେହି ଶସ୍ତ୍ର ଯେ ପେଷିଲାକ କୋପି ।
ଶତେଶତେ ସହସ୍ରେଯେ ଭଲ୍ଲୁକ କେତେମଲେ
ଦେଖିଣ ଅଙ୍ଗଦ ଯେ ଗରୁଡ଼ ଚିନ୍ତାକଲେ ।
ମନରେ ବଚୁରେ ମୋର ସବବ ବଡ଼ପଣ
କବୋଲ ବୋଲବେମୋତେ ସ୍ୱାମୀ ରଘୁରାଣ
ହନୁମନ୍ତ ଏକାକେ ଯେ ଲଙ୍କାକୁ ଅଇଲା
ଅସୁର ବଳ ମାରିଣ ଲଙ୍କା ପୋଡ଼ିଦେଲା ।
ଏକାହୋଇ ଅଇଲା ସଙ୍ଗରେ କେହି ନାହିଁ
ମୋରସଙ୍ଗେ ସାତଜଣ ଅଛନ୍ତି ସେନାହୋଇ
ଏସନକ ଭାଳିଣ ଶୀଳା ବୃକ୍ଷ ଧରି
ଗଗନେ ବଜମିଲା ବଚନ ଗତି କରି ।
ପରମାର୍ଥ ଉପରେ ନେଇ ପିଟଇ ଯେ ଶୀଳ
ଦେଖିଣ ଛେଦଇ ତାହା ରାବଣ ଦୁଲାଳ ।
ଲଜ୍ଜା ପାଇଲା ସେ ଯେ କପିକୁଳ ପତି
ଅତବଡ଼ ଶୀଳାମାନେ କରିଣ ସେ ଗତି ।

ପରମାର୍ଥ ଛେଦିଲା ତା ବଜ୍ରବାଣ ଘେନ
ଧାଇଁକରି ଅଙ୍ଗଦ ଧରିଲା ଗୋଡ଼ ବେନ ।
ପରମାର୍ଥ ସାରଥି ତାହା ଦେଖିଲା ଯେତେବେଳେ
ଆପଣେ ଅଙ୍ଗଦକୁ ମାରିଲା ତୀକ୍ଷ୍ଣ ଶୂଳେ ।
ଘାଏ ଘୁମାଇଲା ଯେ କପିକୁଳ ଷଣ୍ଢ
ଚେତା ପାଇ ବେଗେ ଧଇଲା ରଥଦଣ୍ଡ ।
ଗୃରଣ ବଗୃରଣ ବେଢ଼ିଲେ ଆସି ବେନ
ସମର ଗୋଳ ଦେଖିଣ ଭାଜିଲେ ସଇନ ।
ଦଧିମୁଖ କାଳମୁଖ କଞ୍ଚଣ ତିନ ବୀର
ବିଚ୍ଛନ୍ଦରେ ଯୁଦ୍ଧ ଦେଖି ହେଲେ ସେ କାତର
ମୁଖ ଚୁହାଁ ଚୁହିଁ ଯେ ହେଲେ ଆଗୁଁ ସାରି,
ବୃକ୍ଷଶୀଳା ଧରିଣ ଅନେକ ଦୈତ୍ୟ ମାରି ।
ଭୂମି ଭେଦ ଯାଇଣ ଭିତରେ ପଶିଲେ
ବେଢ଼ରେ ପଡ଼ିଛି ଅଙ୍ଗଦକୁ ସେ ଦେଖିଲେ ।
ଗୃରିଜଣ ରୁଣ୍ଡ ହୋଇ କରନ୍ତି ସମର,
ଅସୁରଙ୍କର ଅସ୍ତ୍ର ଘେନଲେ କପିବୀର ।
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳ ବରୁପାକ୍ଷ
ସମଏ ବକାସୁର ଆବର ଲୋହିତାକ୍ଷ ।
ଗୃରିକପି ବୀରଙ୍କୁ ବେଢ଼ିଲେ ସାତ ସେନା
ରଥ ଗଜ ଅଶ୍ୱ ସୈନ୍ୟ ନ ଯାଏ କଳଣା ।
ପଦାତି ନଘଞ୍ଚନ ଦୈତ୍ୟ ଯେ ଦର୍ପିଷ୍ଠ
ରଣଭଗ୍ନ ହୋଇଲେ ଯେ ଶ୍ରୀରାମର ଥାଟ ।
ଯୂଥପତିମାନଙ୍କୁ ପକାଇଲେ ବେଢ଼େ
ଋକ୍ଷକପିଙ୍କି ଗୋଡ଼ାଇ ଦୈତ୍ୟମାରନ୍ତିଗାଢ଼େ
ଏମନ୍ତ ସମୟରେ ଦେଖିଲା ରାବଣ
ସଂଗ୍ରାମକୁ ଆଗଭର ହେଲା ସେ ଆପଣ ।
ସୁରଗିରି ଚମକ ଟମକ ବଜାଇଲା
ବେଢ଼ ପଡ଼ିବା ଠାବକୁ ରଥ ଧୂଆଁଇଲା ।
ଜମ୍ବେବ ଯେ ପଶ୍ଚିମ ଦ୍ୱାରକୁ ଯାଇଥିଲା
ସଂଗ୍ରାମ ଗୃର୍ବିଣ ଅପସରି ସେ ଅଇଲା ।
ପାଞ୍ଚଗୋଟି ନବଲକ୍ଷ ହସ୍ତୀ ହତ କଲା
ମହାପାରୁଶକୁ ଦେଖି ରାବଣ ଅଇଲା ।
କୁମ୍ଭେକ ମହୀଶୂର ସୁରାସୁର ତିନ
ବିକଟ ପ୍ରଶସ୍ତ ଯେ ଅଟନ୍ତି ଭାଇ ବେନ ।
ଏ ଷଡ଼ ରଥୀଏ ମିଳିଣ ଯୁଦ୍ଧ କଲେ
ମକର କୁହୁଡ଼ି ଜାଣି ଶର ବରଷିଲେ ।

ପୃଥିବୀ ଟଳମଳ ଯେ କମ୍ପେ ବାଣ ପଡ଼ି
କେ ଧନୁ ଆମଞ୍ଚନ୍ତେ ଶବଦ ଘଡ଼ଘଡ଼ି ।
ପ୍ରଶସ୍ତ ମହାପାରୁଶ ଏ ବେନି ବଳବନ୍ତା
ତ୍ରିଭୁବନେ ଏହାଙ୍କୁ କେ ନାହିଁ ଜିଣନ୍ତା ।
ଏମାନ ଅସୁର ଶର କରନ୍ତି ଆଗଭର
ହସ୍ତୀ ଦଣ୍ଡ ଘେନିଣ ବେଢ଼ିଲେ ଯତ୍ନକରି ।
ଆଦ୍ୟାବଳୀ ଉଇଁଲା ପ୍ରାୟକ ଧନୁ ଜ୍ୟୋତି
ଆଷାଢ଼ ମେଘ ଗର୍ଜନ କରଇ ହେଉ ମତ୍ତି ।
ତେସନେକ ଶବଦ ଶୁଭେ ଗୁଣ ନାଦ
ବିଶେଷ ଅସୁରେ ଯେ ଜାଣନ୍ତି ଧନୁର୍ବେଦ ।
ଶ୍ରାବଣ ବରଷା ଜାଣି ବନ୍ଧୁ ଛନ୍ତି ଶର
ଘାଆ ପାଇ ପଳାଇଲେ ଋକ୍ଷ କପିବଳ ।
ମହେନ୍ଦ୍ର ସମର ଯେ କଲକ ଅନେକ
ତାହା ଦେଖିଣ ଶକ୍ତି ଯେ ମାରିଲ କୁମ୍ଭେକ ।
ଜଙ୍ଘରେ ବାଜିଣ ଯେ ଶକତି ନ ଭେଦିଲା
ସେ ଶକ୍ତି ମହେନ୍ଦ୍ର କୁମ୍ଭେକକୁ ମାରିଲା ।
ଯେବଣ ଗଜ ପିଠିରେ ବସିଥିଲା ବୀର
ତାହାର କୁମ୍ଭ ମୂଳରେ ପଡ଼ିଲା ଯାଇଁ ଶର ।
ବୁଡ଼ିକରି ବସିଲା ନ ଗଲା ବାହାରକୁ
ଗଲଗାଜି ହସ୍ତୀ ଗୋଟା ପଡ଼ିଲା ଆଗକୁ ।
ଜାଣିକରି କୁମ୍ଭେକ ଛାଡ଼ିଲା ତାର ପିଠି
ମହାପାରୁଶ ଗଜ ଉପରେ ଯାଇଁ ଉଠି ।
ସମ୍ଭାଳ ହୋଇଣ ବୀର ବସେ ପୁଣ ଯାଇଁ
ଦୁଇଭାଇ ମହେନ୍ଦ୍ରକୁ ନାରାଚ କଲେ ତହିଁ ।
ଦେଖିଣ ଜମ୍ବେବ କୁମ୍ଭେକକୁ ଯେ ଆବୋରି
ଶିଳା ବୃକ୍ଷଧରି ଯେ ମାରେ କୋପକରି ।
କୁମ୍ଭେକ ପେଶିଲା ଯେ ବାବଲ ନାମେ ଶର
କାଟି ପକାଇଲା ଯେତେକ ତରୁବର ।
ଛାଡ଼ିଲା ତରୁ ଶିଳା ପଡ଼େ ଆସି ତଳେ
ଖଣ୍ଡାକୁ ଧରିବାକୁ ପଡ଼ିଲା ଭୂମିରେ ।
ଧରିଲା ଖଣ୍ଡା ମହେନ୍ଦ୍ର ମାରିଲା ଭୁଜବଳେ
ମହାପାରୁଶ କୁମ୍ଭେକ ଯେବଣ ଗଜେଥିଲେ ।
ମହେନ୍ଦ୍ର ପ୍ରହାରନ୍ତେ ଯାଇଣ ବାଜିଲା
ଘାଆ ପାଇ ଗର୍ଜନ ନାଦ କଲା ।
ଚତୁଖଣ୍ଡ ବାଛି ହସ୍ତୀ ମୁଣ୍ଡ ଛେଦ ହେଲା
କୁମ୍ଭେକ ମହାପୁରୁଷ ପଳାଇ ଲୁଚିଲା ।

ପୁଣି ଆନ ହସ୍ତୀ ଯେ ଚଢ଼ିଲେ ଭାଇ ବେନି
ସଂଗ୍ରାମ କଲେ ଆସି ଅସୁରାଶର ଘେନି ।
ମଧ୍ୟାହ୍ନ ଆଦିତ୍ୟ ଜାଣି ଦିଶୁଅଛି ଶର
ଶୂରକୋଟି ଭାଲୁ ମର୍କଟ ବାନର ।
ଦେବବାଣ ପେଶି ସେମାନେ ଏତେସୈନ୍ୟ
ଦେଖିଣ ଭାଜିଲେ ଯେ ଶ୍ରୀରାମର ସୈନ୍ୟ ।
ଅଙ୍ଗଦ ବୋଇଲା ସ୍ୱାମୀ ମୋତେ ବରଗିଲେ
ଶ୍ରୀରାମଙ୍କର ଥାନ୍ତେ ମୁହିଁ ଆଉ ମଲେ ।
ପଚାରିଲେ କ ବୋଲିବି ମୁଖ ରହିଁ
ମୋହର ଥାଉଁ ଥାଉଁ ଲେଉଟିଲେ କପି ମଣ୍ଡି ।
ଏତେ ବୋଲି ସଙ୍ଗରେ ସେନା ଗଲେ ତିନି
ପବନ ଗବାକ୍ଷ ଯେ ଶତବାଳି ତିନି ।
କୁମୁଦ ଦୁମୁଦ ଯେ ଦୁଇପାଶେ ଛନ୍ତି
ଋକ୍ଷ କପିବଳଙ୍କୁ ଗୁହାଁଣ ବୋଲନ୍ତି ।
ପଡ଼ି ଉଠି କରି ବାବୁରେ ଶ୍ରୀରାମ କାର୍ଯ୍ୟକର
ଯେମନ୍ତ ପାର ବାବୁରେ ହସ୍ତୀ ଦଣ୍ଡମାର ।
ଶୁଣି ଋକ୍ଷ କପି କଳକଳା ନାଦ ଦେଲେ
ସେନାପତିଙ୍କର ବୋଲେସଂଗ୍ରାମେ ପଶିଲେ ।
ଯେ ଯାହାର ମୂଳରେ ପଶିଲେ ଗଜଯୂଥ
ଢୋଲ ଦମା ଝମକ ନିଶାଣ ସହିତ ।
ଗବୟେ ଗବାକ୍ଷ ଯେ ମହେନ୍ଦ୍ର ସୁରବନ୍ତ
ବିଧା ମାରିଣ ହସ୍ତୀ ମାରିଲେ ଅନେକ ।
କାହାକୁ ଧରିଣ ଯେ କରୁଡ଼େ ପୁଣ କୋପେ
କାହାକୁ ଫୁଟାଇ ଯେ ମାରନ୍ତି ଆଗପଛେ ।
କେବଣ ମତ୍ତ ଗଜକୁ ବେଢ଼ନ୍ତି ଦଶବଂଶ
ଲଞ୍ଜା କାମୁଡ଼ି କେହି ଯେ ଆଣନ୍ତି ଆଙ୍କୁଶ ।
କାନକୁ କେହି ଟାଣନ୍ତି ଧରି ଥୋଇ ହସ୍ତ
କନ୍ଦର ବାଳ ଧରି କେ ମାରନ୍ତି ମାହୁନ୍ତ ।
ଉପରକୁ ଉଠିଣ ପାଦେ ଦିଅନ୍ତି ପେଲି
କାହା ଗୋଡ଼ ଧରନ୍ତେ କେ ନପାରଇ ଗଲି
କାହାକୁ ବାହାଦଣ୍ଡେ ପେଲି ଯେ ପକାନ୍ତି
କେବଣ ଗଜକୁ ହାବୋଡ଼ କରି ଯାନ୍ତି ।
କେବଣ ଗଜ ମାରି କପୋଳେ ଦିଏ ଚଟା
କେ ହସ୍ତୀ ମାରିଣ ଦୁଅନ୍ତି ମସ୍ତମଣ୍ଡି ।
କେଉଁ ଗଜ କପୋଳେ ଆପଣା ମୁଣ୍ଡଦିଧି ।
ଲାଗିଲା କ ବୋଲିଣ ପଚାରନ୍ତି ହସି ।

ହସ୍ତୀକି ମାରନ୍ତେ ହସ୍ତୀ କରନ୍ତି ଗର୍ଜ୍ଜନ
ଦେଖି କୋପ କରଇ ରାବଣ ନନ୍ଦନ ।
କୁମ୍ଭେକ ମହୀଶ୍ୱର ଯୁଗସୁର ଧାମନ୍ତ
ପର୍ବତମାନଙ୍କ ପ୍ରାୟେ ଦିଶୁଛନ୍ତି ହସ୍ତୀ ।
କରେ କାଣ୍ଡ କୋଦଣ୍ଡ ଗଦା ଚନ୍ଦ ଘେନି
ଅଙ୍ଗଛଳେ ଯୁଝିଣ ମାରିଲେ ସଇନ ।
ବିକଟ ପ୍ରଶସ୍ତ ବେନି ଚଢ଼ି ମତ୍ତଗଜ
ଋଷ ମର୍କଟଙ୍କୁ ଯେ ବାନ୍ଧିଲେ ନାରାଜ ।
ମହାପାରୁଶବୀର ଉତ୍ତମ ଗଜ ଚଢ଼ି
ପଚିଶ କୋଟି ଭଲ୍ଲୁକ ମାରିଲେ ଏକଘଡ଼ି ।
ଅସୁର ଶସ୍ତ୍ର କରେଣ ନିବାରେ ସେତୁ ବଳ
ଦେଖିଣ ଧାଇଁଲା ଯେ ବାଳିର କୁମର ।
ଗବୟ ଗବାକ୍ଷ ଶତବାଳିର ସଙ୍ଗତେ
ତରୁଶିଳ ବୃଷ୍ଟି ସେ କଲେ କୋପଚିତ୍ତେ ।
ଦେଖିଣ ଷଡ଼ରଥୀ ବାନ୍ଧିଲେ ତୀକ୍ଷଣ ଶର
ଶ୍ରାବଣ ମାସରେ ଯେସନ୍ତେ ବରଷା କରେ ନୀର
କପି ପାଞ୍ଚ ବୀର ଯେ ଏକ ମୋଟ ହୋଇ
ବିଷମ ସମର ଗୋଳ କଲେ ତାହା ସଙ୍ଗ ।
ଲକ୍ଷେକ ମତ୍ତଗଜ ମାରିଲେ ନିଃଶ୍ୱାସକେ
ଆକାଶରେ ଥାଇଣ ଦେଖନ୍ତି ଦେବଲୋକେ ।
ରାବଣର ତନୟ ମହାପାରୁଣ ନାମ
ଦେବଙ୍କୁ ଦୁର୍ଲ୍ଲଭ ସେ କରଇ ସଂଗ୍ରାମ ।
ସ୍ୱର୍ଗ ମଞ୍ଚ ପାତାଳ ପୂରିଲା ତାର ବାଣେ
ଋଷ କପିବଳ ଯେ ପଳାଏ ଏଣେତେଣେ ।
ଅନେକ ସୂର୍ଯ୍ୟ କି ଉଇଁଲେ ରଣଭୂମି
ଶସ୍ତ୍ରଙ୍କର ତେଜ ଅଗ୍ନି କି ପାରେ ଜିଣି ।
ଶତବାଳି ମହେନ୍ଦ୍ର ଗବୟ ଗବାକ୍ଷ
ଏମାନେ ପଛଘୁଞ୍ଚା ଦେଲେ ସେ ବିବଶ ।
ପଳାଇଲେ ଆଉ ଯେ ନ ରହେ ପୁଣ କେହି
ପାଞ୍ଚ ସେନାପତି ଯେ ଆଜ ଯୁଦ୍ଧ ସହି ।
ରହ ରହ ବୋଇଲେ ନରହେ ପୁଣ ବଳ
ଗୋଡ଼ାଇ ମାରନ୍ତି ଅସୁର ଅନର୍ଗଳ ।
ଏକମୁଖା ହୋଇଣ ଉଠିଲେ ହସ୍ତୀଦଂଡ଼ି
ନିଶାଣର ଘାଏ ଯେ କମ୍ପଇ ବ୍ରହ୍ମାଣ୍ଡ ।
ଦୂରେ ଥାଇ ତାହା ଯେ ଦେଖିଲା ଲଙ୍କାପତି
ଶୁକ ସାରଣଙ୍କୁ ହକାରେ ବେଗେ କତି ।

ବୋଇଲ ଶ୍ରୀରାମର ଦେହ ଭଙ୍ଗି ଲକ୍ଷି ଥାଟ
ଦେଖ ପଳାଉଅଛନ୍ତି ନ ପାଇଣ ବାଟ ।
ଭଲରେ ପୁତ୍ର ମୋର କଲା ଭଲ କାର୍ଯ୍ୟ
ଅଭିମାନ ସମୁଦ୍ରୁ ମୋତେ ଉଦ୍ଧରିଲା ଆଜ ।
ଏସନେକ ବୋଲିଣ ସେ ସାରଥିଙ୍କି ପୃଚ୍ଛି
ବୋଇଲା ରଥମୋର ନିଅ ବାହୁଡ଼ାଇ ।
ଶ୍ରୀରାମଙ୍କୁ ଲୋଡ଼ରେ ନ ଲୋଡ଼ ପୁଣ୍ୟ ଆନ
ଆହା ଭାଇ ମୋରରେ ପଡ଼ିଲୁ କୁମ୍ଭକର୍ଣ୍ଣ ।
ସେ କଷ୍ଟ ପାଶୋରିବ ରେ ଶ୍ରୀରାମଙ୍କୁ ମାରି
ଇନ୍ଦ୍ରଜିତ ପାଶୋର ହେବ ଲକ୍ଷ୍ମଣେ ସଂହାରି
ମହୀରାବଣ ମୋର ମାରିବ ହନୁମନ୍ତ
ଅଙ୍ଗଦକୁ ମାରିଲେ ଆତ୍ମା ମୋର ସ୍ଥିତ ।
ସୁଗ୍ରୀବର କୁମ୍ଭକର୍ଣ୍ଣର ଛେଦିଲା ନାକ କାନ
ରତ୍ନ ମୁକୁଟ ଘେନି ମୋର ଉଡ଼ିଲା ଗଗନ ।
ନଳ ବନ୍ଧବାନ୍ଧି ଯେ ପାରିକଲା ସୈନ୍ୟ
ଅଚଳ ପର୍ବତ ବହି ଆଣିଲେ କପି ସୈନ୍ୟ ।
ବିଭୀଷଣ ମୋର ଯେ ସହୋଦ ମରାଇଲା
ନୀଳ ଆଗୁଆଣି ହୋଇଣ କଢ଼ାଇଲା ।
ସୁଷେଣ ଔଷଧ ଚିହ୍ନିଣ ଭଲ କରି
ଏକମୁଖା ରାବଣ ଯେ ନେଇଛି ତାକୁ ଧରି ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ତିନିଜଣ
ଇନ୍ଦ୍ରଜିତ ପୁତ୍ର ତାଙ୍କୁ କରିବ ନିବାରଣ ।
ଜମ୍ବବର ବୁଦ୍ଧିରେ ଯେ ସୈନ୍ୟସାକ ମରି
ଗନ୍ଧମାଦନ ମୋର ପୁତ୍ରର ନାଶ କରି ।
ହନୁମନ୍ତ ଅକ୍ଷୟ କୁମାରକୁ ମାଇଲା
ଲଙ୍କାପୋଡ଼ି ଦେଇ ଯାଇ ବାରତା କହିଲା ।
ମହେନ୍ଦ୍ର ଦ୍ୱିବିଦ ବେନି ଭଣଜା ମୋର ଘେନି
ଦଳ ପକାଇଲା ମୋର ତେତେକ ସଇନ ।
ବଳମୁଖ ମୋତେ ଦେଖିଲେ ବୋଷ ଦେଇ
ରମଣ ପ୍ରସାଦେ ରାମର ତାହାକୁ ଭୟ ନାହିଁ
ଭାଲୁବଳ ଘେନଣ ଡାଳମ୍ବ ଆଗୁଁ ସାର
କାଳମୁଖ ଅବକ୍ଷନ୍ନ ଡାକେ ମାର ମାର ।
ଦଶକାଳ ବୃଦ୍ଧ ଯେ ବିବଧ ସମ୍ପାତ
ବିଭୀଷଣର ବଳ ଏ ଗୃର ଅଟନ୍ତି ।
ଲଙ୍କାଗଡ଼ର ଭେଦ ଏ ଜାଣନ୍ତି ନିର୍ଭରେ
ରଘୁନାଥ ଭଜନ୍ତି ଏ ଗୃରିଙ୍କର ଭୁଲେ ।

ଏହାଙ୍କୁ ନ ମାରିଲେ ଜୟ ମୋତେ ନାହିଁ
ବିଭୀଷଣକୁ ମାରି ସେ ନେଉଛି ଲଙ୍କାସାଇଁ ।
ଋଷ କପିବଳ ମାରିଲେ ମୋର ସୈନ୍ୟ
ଆଜ ମୁଁ ସାରିବ ତହିଁର ଅଭିମାନ ।
ଶତ୍ରୁ ନ ମାରିଲେ ନ ଛୁଟଇ ମୁହିଁ ରଣ
ମନେ ମନ ବିଚାର ଯେ କରଇ ରାବଣ ।
ଦଶସହସ୍ର ରଥୀ ଯେ ବୁଡ଼ା ମାରିଥିଲେ
ସୁବଳ ଗିରି ଉପରୁ ଧାଇଁଣ ଆଇଲେ ।
କୋଳାହଳ ବାଦ୍ୟ ସେ ବାଜଇ ବହୁତ
ବିଭୀଷଣଙ୍କୁ ଚାହିଁଣ ପଚାରନ୍ତି ରଘୁନାଥ ।
ଅଙ୍ଗଦ ଜମ୍ବୁବ ଆସୁଛନ୍ତି ଭଜ
ଆଗୁଆଣି ଋଷ କପି ଫୁଟିଲେଣି ଯୁଝି ।
ପଛରେ ଡମ୍ବରୁ ଯେ ବାଜଇ ଘନ ଘନ
ଆଲମ୍ବ ଧ୍ୱଜା ପତାକା ଅସୁରଙ୍କ ଚିହ୍ନ ।
ହସ୍ତୀ ଘୋଡ଼ା ଅଳପ ବହୁତ ପଦାତି
ଅନେକ ରତ୍ନବର ଯେ ଦିଶେ ପନ୍ତି ପନ୍ତି
କୌଣସି ଦିନ ତ ନ ଥିଲା ଏତେ ଛନ୍ଦ
କୁମନ୍ତ୍ରଣା ଆଜ ଭିଆଇଛି ଦଶକନ୍ଧ ।
ଉବୁରି ଥାଟ ଦେଖି କଡ଼ାଇ ସେ ଦେଲେ
ଧାଇଁ ପିଠି ଉପରେ ମାଡ଼ି ଯେ ବସିଲେ ।
ଦେଖିକରି ବିଭୀଷଣ କହେ କରଯୋଡ଼ି
ଦୁର୍ଗାଙ୍କୁ ସୁମରଣା କର ହେ ବେଗ କରି ।
ନନ୍ଦିଘୋଷ ରଥକୁ ଗ୍ରହିଲ ରଣ ଭୂଇଁ
ରାବଣ ଆସିଲାଣି ସୈନ୍ୟ ସେ କଢ଼ାଇ ।
ଶୁଣିଣ ଶ୍ରୀରାମ ଯେ ଦୁର୍ଗାଙ୍କୁ ସୁମରିଲେ
ଜୟ ତୁ ଜଗତ ଜନନୀ ଗୋ ବୋଇଲେ
ଲଙ୍କାଗଡ଼ରେ ମୁଁ ଯେ ହେଲି ପରବେଶ
ବୈରହୋଇ ସେରନ୍ତାକୁ ମାରଇ ବିଶେଷ ।
ସେରନ୍ତାକୁ ବୈର ବେଗେ କରିବ ବିନାଶ
ଅଧର୍ମ ହେଲେ ତ ସଂସାର ଯିବ ନାଶ
ଏହି ସକାଶୁଁ ତୋତେ କଲି ସୁମରଣା
ସାହାହୁଅ ମୋତେ ହେମବନ୍ତର ଦୁଲଣୀ ।
ଜାଣିକରି ଜୟଦୁର୍ଗା ବିଜୟ ଆସି କଲେ
ରାବଣକୁ ମାର ବୋଲି ଶ୍ରୀରାମେ କହିଲେ ।
ଦେବତାଙ୍କର କଷ୍ଟ ସାର ହେ ବହନ
କାଲି ଆସି ଭେଟିବ ଭାଇ ଯେ ଲକ୍ଷ୍ମଣ ।
ଏତେବୋଲି ଦେବୀ ଜୟ ଶଙ୍ଖ ଦେଲି
ଜୟ ଶଂଖ ଶବ୍ଦେ ଅସୁର ନିର୍ବଳ ହେବ ପର
ଋକ୍ଷ କପି ବଳ ଯେ ହେବେ ତେଜବନ୍ତ
ତାହା ଶୁଣି ଶ୍ରୀରାମ ବଢ଼ାଇଦେଲେ ହସ୍ତ ।
ଶଂଖ ଦେଇ ଜୟ ଦୁର୍ଗା ନିଜପୁରେ ଗଲେ
ରଥପରେ ବସି ରାମ ଶଂଖ ସ୍ୱର କଲେ ।
ଦୈତ୍ୟର ଯେତେକବଳ ହୋଇଲେ ନିସ୍ତେଜ
ପ୍ରଶସ୍ତକୁ କ୍ଷୀଣ କଲା ଶଂଖର ଶବଦ ।
ନୃସିଂହ ମୂର୍ତ୍ତିକ ଯେ ସୁମରଣା କଲେ
ରଥର ଉପରେ ଆସି ନୃସିଂହ ବିଜେ କଲେ
ଆପଣା ନାମ ସୁମରି ମାତଳିକ କହି
ନନ୍ଦିଘୋଷ ରଥକୁ ବେଗେ ଗ୍ରହିଲ ଭୁଞ୍ଜି ।
ଶୁଣିଣ ମାତଳି ବାଗ ଦଉଡ଼ି ଧରିଲା
ସୁବଳ ଗିରିପରୁ ରଥକୁ ବାହିନେଲା ।
ଚଳନ୍ତେ ଦେବରଥ ଗର୍ଜନ କଲା ଘୋର
ତିନପୁର କମ୍ପିଲା ପର୍ବତ ହେଲା ସ୍ଥିର ।
ରଥ ଯାଇଣ ରଣ ଭୂମିରେ ପ୍ରବେଶ
ଗର୍ଜନର ଘାଏ ଦୈତ୍ୟ ହେଲେ ସର୍ବବଶ ।
ନନ୍ଦିଘୋଷ ରଥ ଦେଖି ରାବଣ ପଚାରି
ସୁବଳ ଗିରିରୁ ତ ରଥେକ ବାହାରି ।
ଶୁକ ସାରଣ ବୋଲନ୍ତି ଏ ଅଟେ ଦେବଯାନ
ନାରାୟଣ ଦେବ ଏଥେ କରନ୍ତି ବିଶ୍ରାମ ।
ଆନ ବସିଲେ ଏ ରଥେ ମୁର୍ଦ୍ଧା ଫାଟିଯାଇ
ଇନ୍ଦ୍ରଦେବତା ଏ ରଥ ସମ୍ଭାଳି ରଖିଥାଇ ।
ଶ୍ରୀରାମ ନିଶ୍ଚୟ ଯେ ଅଟନ୍ତି ବାସୁଦେବ
ନୋହିଲେ କି ଆନ ଛାର ଏରଥେ ବସିବ ।
ତୋହର କର୍ମ ବାମ ହେଲା ଲଙ୍କରାୟେ
ଜାଣିକରି ଦେବତାଏ ରଥ ତାଙ୍କୁ ଦିଏ ।
ପରଂବ୍ରହ୍ମ ନାରାୟଣ ଅଟନ୍ତି ଶ୍ରୀରାମ
ତୋତେମାରିବେ ବୋଲି ହୋଇଲେସେଜନ୍ମ
ଶୁଣିକରି ରାବଣ ଉପରକୁ ଚାହିଁ
ବୋଲେ ଦେବତା ସକଳ ଏକଥା ଭିଆଇ ।
ଏଥୁଅନନ୍ତରେ ଶୁଣ ଗୋ ଗିରିଜା
ଶଂଖର ଶବଦେ ଦୈତ୍ୟ ହୋଇଲେତାବଦା
ରଣ ଭୂମିରେ ରଥ ହେଲା ପରବେଶ ।
ବଳରାମ ଦାସ ଶରଣ ଶ୍ରୀରାମର ପାଶ ।

ଆଗରେ ଦଶଗ୍ରୀବ ପଛରେ ପଛୁଆଣୀ
ତାହାର ସୈନ୍ୟବଳ କେ ପାରିବ ଗଣି ।
ପଛ ରଥୀମାନେ ମାଡ଼ିଣ ପଡ଼ିଲେ
ରଥରେ ଥାଇ ଶ୍ରୀରାମ ଧନୁକୁ ଧରିଲେ ।
ତୀକ୍ଷ୍ଣମୁନା ନାରାଚ ପାଞ୍ଚ ଗୋଟି ବାନ୍ଧ
ପାଞ୍ଚକୋଟି ଦୈତ୍ୟବଳ ପକାଇଲେ ଛେଦ ।
ରଥ ଗଜ ଅଶ୍ୱ ଯେ ଦୈତ୍ୟେ ଧୁଆଁଇଲେ
ବ୍ରହ୍ମା କମ୍ପନ୍ତ ଯାର କଟକାଇ କଟିଲ ।
ଶ୍ରୀରାମ ରଥେ ଥାଇ ମନେ ବିଚାରିଲେ
ଋକ୍ଷ କପିବଳ ମୋର ଅକାରଣେ ମଲେ ।
ଏ ଯେଉଁ ରାବଣ ସମ୍ପଦେ ବଡ଼ ଜଣ
ବେନି ଚକ୍ଷୁ ଯେନ ଆଜ ଦେଖିଲି ମୁଁ ପୁଣ ।
ରଣ ରତ୍ନ ବାନା ଉଡ଼ାଇଛି କେତେ ଉଚେ
ସରହର କି ସୁନ୍ଦର ଉଡ଼ଇ ସୁଯଞ୍ଚେ ।
ଏହି ପୁଷ୍ପକ ବିମାନ ଅଟେ ଦେବଯାନ
ଏଥିରେ ଯେ ବସି ସୃଷ୍ଟି ସାଧେ ଦଶାନନ ।
ଲକ୍ଷେ ଶ୍ୱେତ ଛତ୍ର ଯେ ଉଡ଼ୁଅଛି ଗୃହଁ ।
ଧନ୍ୟ ଧନ୍ୟ ଜୀବନ ତୋ ଅଟେ ବଂଶବାହା ।
ଏତେ ସମ୍ପଦ ତୋତେରେ ହେଲା ବଡ଼ତରୁ
ମହାରାଜା ହୋଇ କମ୍ପା ପର ସ୍ତ୍ରୀ ତୁ ହରୁ ।
ଆଜ ସେ ଜାଣିବା ସଂଗ୍ରାମ ତୋହର
ଏତେକହି ତୂଣୀରୁ କାଢ଼ିଲେ ତୀକ୍ଷ୍ଣଶର ।
ପଛୁଆଣୀ ଦଣ୍ଡକୁ ଯେ ପେଶିଲେ ରାବଣର
ଛେଦ ପକାଇଲେ ତିନକୋଟି ଯେ ଅସୁର ।
ନଳ ନୀଳ କୁମୁଦ ଜମ୍ବେବ ଯେ ପୁଣ
ବୋଇଲେ ତୁମ୍ଭେମାନେ ମୋର କଥା ଶୁଣ ।
ଯେମନ୍ତେ ଦୈତ୍ୟମାନେ ନ ପଡ଼ନ୍ତି ମାଡ଼ି
ମାର ଅସୁରଙ୍କୁ ତୁମ୍ଭେ ଓପ୍ରୋଧ ନ କରି ।
ଶୁଣିକରି ଧାଇଁଲେ ଜମ୍ବେବ ନଳ ନୀଳ
କୁମୁଦ ସୁଶୋଭନ ଯେ ତାରକ୍ଷ ଶତବଳ ।
ଥାଟ ଅପ୍ରମିତ ଯେ ଋଷି କପି ସୈନ୍ୟ
ମାର ମାର ଡାକ ଯେ କରନ୍ତି ଅବିଚ୍ଛିନ୍ନ ।
ଏମନ୍ତ ସମୟରେ ଶଙ୍ଖର ଶବଦ
କମ୍ପିଲା ତିନିପୁର ଦୈତ୍ୟ ଯେ ତବଦ ।
ନନ୍ଦୀ କେଶରୀ ଯେ ଶଙ୍ଖ ମଧ୍ୟେ ଥିଲେ
ଶଂଖ ଶବଦ ଶୁଣି ଗର୍ଜନ ନାଦ କଲେ ।

ବିଭୀଷଣ ବୋଇଲେ ଶ୍ରୀରାମଙ୍କୁ ଚାହିଁ
ଆପଣେ ସଂଗ୍ରାମରେ ପଶିଛି ଲଙ୍କାସାଇଁ ।
ସର୍ବଦା ଲଙ୍କାପତିର ମୋରଠାରେ ରାଗ
ଆମ୍ଭେମାନେ ଆଗେ ତାର ନ କରିବୁଁ ବାଦ
ତୁମ୍ଭେ ହେବ ବିଚାରିଣ ସମର ଏବେ କର
ଆନନ୍ଦନ ପ୍ରାପ୍ତ ଆଜ ନୁହେଁ ସେ ସମର ।
ମାରିବ ମରିବ ବୋଲି ଆସିଅଛି ପୁଣି
ରାଜ୍ୟରେ ନିନ୍ଦା ତାକୁ କଲେ ସର୍ବେ ଜାଣି ।
ଅସୁରେ ନିଶାଚରେ ଯୁଝନ୍ତି ପଜରାଇ
ଆଗୁଆଣି ଥାଟ ତୋର ଅଇଲେ ପଳାଇ ।
ଅଙ୍ଗଦ ଭାଜିଲାଣି ଥାଟର ସେନାପତି
ବିଷମ ସମର ଆଜ ହେବ ସୀତାପତି ।
ପଛରେ ରଥୀମାନେ ପଡ଼ୁଛନ୍ତି ମାଡ଼ି
ଦେଖି ଋକ୍ଷ କପିଏ ପଳାନ୍ତି ଯେ ଛାଡ଼ି ।
କଥା ହୁଅନ୍ତେଣ ଅଙ୍ଗଦ ଆସି ହୁଏ
ପଛରେ ଗୋଡ଼ାଇଛନ୍ତି ଅସୁରର ପୁଏ ।
ଦେଖିଣ ରଘୁନାଥଙ୍କୁ ନ ସ୍ଫୁରଇ କିଛି
ପଛକୁ ଚାହିଁଲେ ସେନାପତି ଭାଜିଅଛି ।
ଶତବାଳି ଗବୟ ଯେ ମାହେନ୍ଦ୍ର ଗବାକ୍ଷ
ପିଠିବିରି ଆସୁଛନ୍ତି ଦେଖିଲେ ରଘୁନାଥ ।
ପଛେ ଗୋଡ଼ାଇ ମାରନ୍ତି କୁଶ ସହସ୍ର ରଥୀ
ତେତେ ସୈନ୍ୟଗୋଟା ପକାଉଛନ୍ତି ମର୍ଦ୍ଦି ।
ନଳ ନୀଳ ଜମ୍ବେବ ଭାଜିଲେ କୁମୁଦ
ସମଦଣ୍ଡ ମିଳଣ କଲେଗୋଳ ଯୁଦ୍ଧ ।
ଏସନକ ସମୟେ ମିଳି ଲଙ୍କପତି
ପଛରେ ତାର ଛନ୍ତି ସପ୍ତକୁଳଶ ନାତି ।
ବାଇଶୀ କୋଟି ମୁକୁଟ ବନ୍ଧା ଯୋଦ୍ଧା ଘେନ
ଅଠର ପଦ୍ମ ପଦାତି ତାହାର ସଇନ ।
ଷଡ଼ଲକ୍ଷ ରଥୀ ଯେ ଆପଣ ସମାନ
ତାହାଙ୍କୁ ଘେନ ରଣରେ ପଶେ ଦଶାନନ ।
ମହାପାରୁଶ କୁମ୍ଭେକ ଆବର ସୁରସୁର
ମହୀଶ୍ୱର ବିକଟ ପ୍ରଶସ୍ତ ବେନି ବୀର ।
ଷଡ଼ରଥୀ ଯୁଦ୍ଧରେ ଗଜ ଦଂଡ ଘେନ
ଦଳି ପକାଉ ଅଛନ୍ତି ଶ୍ରୀରାମ ସଇନ ।
ଯମଦାଢ଼ ଅଶ୍ୱକର୍ଣ୍ଣ ପାଟୋଳ ବିରୂପାକ୍ଷ
ଚୂରଣ ବିସ୍ତରଣ ସମଏ ଲୋହିତାକ୍ଷ ।

ଏହାଙ୍କୁ ନ ମାରିଲେ ଜୟ ମୋତେ ନାହିଁ
ବିଭୀଷଣଙ୍କୁ ମାରି ସେ ନେଉଛି ଲଙ୍କାସାଇଁ ।
ଋଷ କପିବଳ ମାରିଲେ ମୋର ସୈନ୍ୟ
ଆଜ ମୁଁ ସାରିବ ତହିଁର ଅଭିମାନ ।
ଶତ୍ରୁ ନ ମାରିଲେ ନ ଛାଡ଼େ ମୁହିଁ ରଣ
ମନେ ମନେ ବିଚାରି ସେ କରଇ ରାବଣ ।
ଦଶସହସ୍ର ରଥୀ ଯେ ବୁଢ଼ା ମାରିଥିଲେ
ସୁବଳ ଗିରି ଉପରୁ ଧାଇଁଣ ଆଇଲେ ।
କୋଳାହଳ ବାଦ୍ୟ ସେ ବାଜଇ ବହୁତ
ବିଭୀଷଣଙ୍କୁ ଚାହିଁଣ ପଚାରନ୍ତି ରଘୁନାଥ ।
ଅଙ୍ଗଦ ଜାମ୍ବେବ ଆସୁଛନ୍ତି ରାଜ
ଆଗୁଆଣି ଋଷ କପି ଫୁଟିଲେଣି ଯୁଝି ।
ପଛରେ ଝମକ ଯେ ବାଜଇ ଘନ ଘନ
ଆଲମ୍ବ ଧ୍ୱଜା ପତାକା ଅସୁରଙ୍କ ଚିହ୍ନ ।
ହସ୍ତୀ ଘୋଡ଼ା ଅଳପ ବହୁତ ପଦାତି
ଅନେକ ରଥବର ଯେ ଦିଶେ ପନ୍ତି ପନ୍ତି
କୌଣସି ଦିନ ତ ନ ଥିଲା ଏଡ଼େ ଛନ୍ଦ
କୁମନ୍ତ୍ରଣା ଆଜ ଭିଆଇଛି ଦଶକନ୍ଧ ।
ଉତ୍ତର ଥାଟ ଦେଖି କଡ଼ାଇ ସେ ଦେଲେ
ଧାଇଁ ଗିରି ଉପରେ ମାଡ଼ି ଯେ ବସିଲେ ।
ଦେଖିକରି ବିଭୀଷଣ କହେ କରଯୋଡ଼ି
ଦୁର୍ଗାଙ୍କୁ ସୁମରଣା କର ହେ ବେଗ କରି ।
ନନ୍ଦଘୋଷ ରଥକୁ ଘେନି ରଣ ଭୁଇଁ
ରାବଣ ଆସିଲାଣି ସୈନ୍ୟ ସେ କଢ଼ାଇ ।
ଶୁଣିଣ ଶ୍ରୀରାମ ଯେ ଦୁର୍ଗାଙ୍କୁ ସୁମରିଲେ
ଜୟ ତୁ ଜଗତ ଜନନୀ ଗୋ ବୋଇଲେ
ଲଙ୍କାଗଡ଼ରେ ମୁଁ ଯେ ହେଲି ପରବେଶ
ସ୍ଥିରହୋଇ ସେରନ୍ଧ୍ରାକୁ ମାରଇ ବିଶେଷ ।
ସେରନ୍ଧ୍ରାକୁ ସ୍ଥିର ବେଗେ କରିବ ବିନାଶ
ଅଧର୍ମ ହେଲେ ତ ସଂସାର ଯିବ ନାଶ
ଏଣୁ ସକାଶୁଁ ତୋତେ କଲି ସୁମରଣା
ସାହାହୁଅ ମୋତେ ହେମବନ୍ତର ଦୁଲଣୀ ।
ଜାଣିକରି ଜୟଦୁର୍ଗା ବିଜୟେ ଆସି କଲେ
ରାବଣକୁ ମାର ବୋଲି ଶ୍ରୀରାମେ କହିଲେ ।
ଦେବତାଙ୍କର କଷ୍ଟ ସାର ହେ ବହନ
କାଲି ଆସି ଭେଟିବ ଭାଇ ଯେ ଲକ୍ଷ୍ମଣ ।

ଏତେକବୋଲି ଦେବୀ ଜୟ ଶଙ୍ଖ ଦେଲା
ଜୟ ଶଂଖ ଶବ୍ଦେ ଅସୁର ବିକଳ ହେବେ ସବୁ
ଋଷ କପି ବଳ ଯେ ହେବେ ତେଜବନ୍ତ
ତାହା ଶୁଣି ଶ୍ରୀରାମ ବଢ଼ାଇଦେଲେ ହସ୍ତ ।
ଶଂଖ ଦେଇ ଜୟ ଦୁର୍ଗା ନିଜପୁରେ ଗଲେ
ରଥପରେ ବସି ରାମ ଶଂଖ ସ୍ୱର କଲେ ।
ଦୈତ୍ୟର ଯେତେକବଳ ହୋଇଲେ ନିସ୍ତେଜ
ପ୍ରଶସ୍ତକୁ କ୍ଷୀଣ କଲା ଶଂଖର ଶବଦ ।
ନୃସିଂହ ମୂର୍ତ୍ତିଙ୍କ ଯେ ସୁମରଣା କଲେ
ରଥର ଉପରେ ଆସି ନୃସିଂହ ବିଜେ କଲେ
ଆପଣା ନାମ ସୁମରି ମାତଳିକି କହି
ନନ୍ଦଘୋଷ ରଥକୁ ବେଗେ ଚଳା ଭୁଇଁ ।
ଶୁଣିଣ ମାତଳି ବାଗ ଦଉଡ଼ି ଧରିଲା
ସୁବଳ ଗିରିପରୁ ରଥକୁ ବାହିନେଲା ।
ଚଳନ୍ତେ ଦେବରଥ ଗର୍ଜନ କଲା ଘୋର
ଛନପୁର କମ୍ପିଲା ପର୍ବତ ହେଲା ସ୍ଥିର ।
ରଥ ଯାଇଣ ରଣ ଭୂମିରେ ପ୍ରବେଶ
ଗର୍ଜନର ଘାଏ ଦୈତ୍ୟ ହେଲେ ସର୍ବବଶ ।
ନନ୍ଦଘୋଷ ରଥ ଦେଖି ରାବଣ ପଚାରି
ସୁବଳ ଗିରିରୁ ତ ରଥେକ ବାହାରି ।
ଶୁକ ସାରଣ ବୋଲନ୍ତି ଏ ଅଟେ ଦେବଯାନ
ନାରାୟଣ ଦେବ ଏଥେ କରନ୍ତି ବିଶ୍ରାମ ।
ଆନ ବସିଲେ ଏ ରଥେ ମୁଣ୍ଡ ଫାଟିଯାଇ
ଇନ୍ଦ୍ରଦେବତା ଏ ରଥ ସମ୍ଭାଳି ରଖିଥାଇ ।
ଶ୍ରୀରାମ ନିଶ୍ଚୟ ଯେ ଅଟନ୍ତି ବାସୁଦେବ
ନୋହିଲେ କି ଆନ ଛାର ଏ ରଥେ ବସିବ ।
ତୋହର କର୍ମ ବାମ ହେଲା ଲଙ୍କସ୍ୱେ
ଜାଣିକରି ଦେବତାଏ ରଥ ତାଙ୍କୁ ଦିଏ ।
ପରଂବ୍ରହ୍ମ ନାରାୟଣ ଅଟନ୍ତି ଶ୍ରୀରାମ
ତୋତେମାରିବେ ବୋଲି ହୋଇଲେସେଜନ୍ମ
ଶୁଣିକରି ରାବଣ ଉପରକୁ ଚାହିଁ
ବୋଲେ ଦେବତା ସକଳ ଏକଥା ଭିଆଇ ।
ଏଥୁଅନନ୍ତରେ ଶୁଣ ଗୋ ଗିରିଜା
ଶଂଖର ଶବଦେ ଦୈତ୍ୟ ହୋଇଲେତାବଦା
ରଣ ଭୂମିରେ ରଥ ହେଲା ପରବେଶ ।
ବଳରାମ ଦାସ ଶରଣ ଶ୍ରୀରାମଙ୍କ ପାଶ ।

ଆଗରେ ଦଶଗ୍ରୀବ ପଛରେ ପଛୁଆଣି
ତାହାର ସୈନ୍ୟବଳ କେ ପାରିବ ଗଣି ।
ପଛ ରଥୀମାନେ ମାଡ଼ଣ ପଡ଼ିଲେ
ରଥରେ ଥାଇ ଶ୍ରୀରାମ ଧନୁକୁ ଧରିଲେ ।
ତୀକ୍ଷ୍ଣମୁନା ନାରାଚ ପାଞ୍ଚ ଗୋଟି ବାଣ
ପାଞ୍ଚକୋଟି ଦୈତ୍ୟବଳ ପକାଇଲେ ଛେଦି ।
ରଥ ଗଜ ଅଶ୍ୱ ଯେ ଦୈତ୍ୟେ ଧୁଆଁଇଲେ
ବ୍ରହ୍ମା କମଣ୍ଡ ଯାର କଟକାଇ କଲେ ।
ଶ୍ରୀରାମ ରଥେ ଥାଇ ମନେ ବିଚାରିଲେ
ଋକ୍ଷ କପିବଳ ମୋର ଅକାରଣେ ମଲେ ।
ଏ ଯେଉଁ ରାବଣ ସମ୍ପଦେ ବଡ଼ ଜଣ
କେବେ ଚକ୍ଷୁ ଦେଖି ଆଜ ଦେଖିଲି ମୁଁ ପୁଣ ।
ରଣ ରାହୁ ବାନା ଉଡ଼ାଇଛି କେତେ ଉଚେ
ସଂସାରର କି ସୁନ୍ଦର ଉଡ଼ଇ ସୁଯଞ୍ଚେ ।
ଏହି ପୁଷ୍ପକ ବିମାନ ଅଟେ ଦେବଯାନ
ଏଥିରେ ଯେ ବସି ସୃଷ୍ଟି ସାଧେ ଦଶାନନ ।
ଲକ୍ଷେ ଶ୍ୱେତ ଛତ୍ର ଯେ ଉଡ଼ୁଅଛି ଗୃହେଁ ।
ଧନ୍ୟ ଧନ୍ୟ ଜୀବନ ତୋ ଅଟେ ବଂଶବାହା ।
ଏତେ ସମ୍ପଦ ତୋତେରେ ହେଲି ବଡ଼ରୁ
ମହାରାଜା ହୋଇ କମ୍ପା ପର ସ୍ତ୍ରୀ ତୁ ହରୁ ।
ଆଜ ସେ ଜାଣିବାନା ସଂଗ୍ରାମ ତୋହର
ଏତେକହି ତୂଣୀରୁ କାଢ଼ିଲେ ତୀକ୍ଷ୍ଣଶର ।
ପଚ୍ଛୁଆଣି ଦଣ୍ଡକୁ ଯେ ପେଶିଲେ ରାବଣର
ଛେଦି ପକାଇଲେ ତିନକୋଟି ଯେ ଅସୁର ।
ନଳ ନୀଳ କୁମୁଦ ଜମ୍ବେବ ଯେ ପୁଣ
ବୋଇଲେ ତୁମ୍ଭେମାନେ ମୋର କଥା ଶୁଣ ।
ଯେମନ୍ତେ ଦୈତ୍ୟମାନେ ନ ପଡ଼ନ୍ତ ମାଡ଼ି
ମାର ଅସୁରଙ୍କୁ ତୁମ୍ଭେ ଓପ୍ରୋଧ ନ କରି ।
ଶୁଣିକରି ଧାଇଁଲେ ଜମ୍ବେବ ନଳ ନୀଳ
କୁମୁଦ ସୁଶୋଦନ ଯେ ତାରାକ୍ଷ ଶତବଳ ।
ଥାଟ ଅପ୍ରମିତ ଯେ ଋଷି କପି ସୈନ୍ୟ
ମାର ମାର ଡାକ ଯେ କରନ୍ତି ଅବଚ୍ଛିନ୍ନ ।
ଏମନ୍ତ ସମୟରେ ଶଙ୍ଖର ଶବଦ
କମ୍ପିଲା ତିନପୁର ଦୈତ୍ୟ ଯେ ତବଦ ।
ନନ୍ଦୀ କେଶରୀ ଯେ ଶଙ୍ଖ ମଧ୍ୟେ ଥିଲେ
ଶଂଖ ଶବଦ ଶୁଣି ଗର୍ଜନ ନାଦ କଲେ ।

ବିଭୀଷଣ ବୋଇଲେ ଶ୍ରୀରାମଙ୍କୁ ଚାହିଁ
ଆପଣେ ସଂଗ୍ରାମରେ ପଶିଛି ଲଙ୍କସାଇଁ ।
ସର୍ବଦା ଲଙ୍କପତିର ମୋରଠାରେ ରାଗ
ଆମ୍ଭେମାନେ ଆଗେ ତାର ନ କରିବୁଁ ବାଦ
ତୁମ୍ଭେ ଦେବ ବିଚାରିଣ ସମର ଏବେ କର
ଆନନ୍ଦନ ପ୍ରାୟୁ ଆଜ ନୁହେଁ ସେ ସମର ।
ମାରିବ ମରିବ ବୋଲି ଆସିଅଛି ପୁଣି
ରାଜ୍ୟରେ ନନ୍ଦା ତାକୁ କଲେ ସର୍ବେ ଜାଣି ।
ଅସୁରେ ନଗରରେ ଯୁଝନ୍ତି ପଚାରାଇ
ଆଗୁଆଣି ଥାଟ ତୋର ଅଇଲେ ପଳାଇ ।
ଅଙ୍ଗଦ ଭାଜିଲାଣି ଥାଟର ସେନାପତି
ବିଷମ ସମର ଆଜ ହେବ ସୀତାପତି ।
ପଛରେ ରଥୀମାନେ ପଡ଼ୁଛନ୍ତି ମାଡ଼ି
ଦେଖି ଋକ୍ଷ କପିଏ ପଳାନ୍ତି ଯେ ଛାଡ଼ି ।
କଥା ହୁଅନ୍ତେଣ ଅଙ୍ଗଦ ଆସି ହୁଏ
ପଛରେ ଗୋଡ଼ାଇଛନ୍ତି ଅସୁରର ପୁଏ ।
ଦେଖିଣ ରଘୁନାଥଙ୍କୁ ନ ସ୍ଫୁରଇ କିଛି
ପଛକୁ ଚାହିଁଲେ ସେନାପତି ଭାଜିଅଛି ।
ଶତବାଳି ଗବୟ ଯେ ମାହେନ୍ଦ୍ର ଗବାକ୍ଷ
ପିଠିବରି ଆସୁଛନ୍ତି ଦେଖିଲେ ରଘୁନାଥ ।
ପଛେ ଗୋଡ଼ାଇ ମାରନ୍ତି କୁଶ ସହସ୍ର ରଥୀ
ତେତେ ସୈନ୍ୟଗୋଟା ପକାଉଛନ୍ତି ମର୍ଦ୍ଦି ।
ନଳ ନୀଳ ଜମ୍ବେବ ଭାଜିଲେ କୁମୁଦ
ସମଦଣ୍ଡ ମିଳଣ କଲେ ଗୋଳ ଯୁଦ୍ଧ ।
ଏସନକ ସମୟେ ମିଳି ଲଙ୍କପତି
ପଛରେ ତାର ଛନ୍ତି ସପ୍ତ ଭୂଲଣ ନାତି ।
ବାଇଶି କୋଟି ମୁକୁଟ ବନ୍ଧା ଯୋଦ୍ଧା ଘେନି
ଅଠର ପଦ୍ମ ପଦାତି ତାହାର ସଇନ ।
ଷଡ଼ଲକ୍ଷ ରଥୀ ଯେ ଆପଣ ସମାନ
ତାହାଙ୍କୁ ଘେନି ରଣରେ ପଶେ ଦଶାନନ ।
ମହାପାରୁଶ କୁମ୍ଭେକ ଆବର ସୁରାସୁର
ମହୀଶ୍ୱର ବିକଟ ପ୍ରଶାସ୍ତ୍ର ବେନି ବୀର ।
ଷଡ଼ରଥୀ ଯୁଦ୍ଧରେ ଚାଳ ଦଂଡ ଘେନି
ଦଳି ପକାଉ ଅଛନ୍ତି ଶ୍ରୀରାମ ସଇନ ।
ସମବାଢ଼ ଅଶ୍ୱକର୍ଣ୍ଣ ପାଟୋଳି ବିରୂପାକ୍ଷ
ଘୂରଣ ବିଘୂରଣ ସମଏ ଲୋହିତାକ୍ଷ ।

ଏକ ପାଦକୁ ଯେମନ ଏ ଅଟନ୍ତି ଦଶ ଶାରି
ଏମାନେ ଅଟନ୍ତି ଯେ ରାବଣ କୁମର ।
ରୁକ୍ଷ କପିବଳ ଯେ ମାରନ୍ତି ଘଣ୍ଟାଇ
ଯେଉଁ ପଡ଼ଇ ଆଗରେ ଜୀବନ ନରହଇ ।
ଦଶ ସହସ୍ର ରଥୀ ଯେମନ ଆସଇ ବିଶୋକ
ବଜ୍ରକବଚ ଦୃଢ଼କପଟ ଅମର ଅନ୍ତକ ।
ସୁରଜିତ ସମରଜିତ ଶୋଣିତାକ୍ଷ ଅମରେନ୍ଦ୍ର
ତାଙ୍କ ସଙ୍ଗେ ଅଛନ୍ତି ଅଇର ରିପୁଜୟେନ୍ଦ୍ର ।
ପଠିଆଇ ଦଇତେ ମାଇଲେ କପିବଳ
ତରଣେ ମର୍କଟେ ଧରି ନ ପାରନ୍ତି ଶୀଳ ।
ଜମ୍ବୁବ ନଳ ନୀଳ ତାର୍କ୍ଷ୍ୟ ସୁଶୋଭନ
ଏମାନେ ଲେଉଟନ୍ତେ ବାଜେ ଘୋର ରଣ ।
ପଳାଇ କପିସୈନ୍ୟ ଶ୍ରୀରାମଙ୍କୁ ଆଶ୍ରେକଲେ
ଆଗୁଆଣି ବଳ ଯେ ସହିତେ ଭଜଲେ ।
କାଳକେତୁ ଅଗ୍ନିକେତୁ ସମଏ ଅମଏ
ସମଦାଢ଼କୁ ଯେମନଏ ପାଞ୍ଚଶର ହୁଏ ।
ଜ୍ୟୋତି ସାଗର ପଞ୍ଚ ସାଗର ଏକଇ ସାଗର
ମହାଶନ ନାମେ ଯେ ଏକଇ କୁମର ।
ଚଉରଙ୍ଗ ବଳ ଯେମନ ପଡ଼ିଲେ ଯେବେ ଧ୍ୱାସି
ରୁକ୍ଷ ବାନରଙ୍କୁ ପକାଉଛନ୍ତି ନାଶି ।
ଆପଣେ ଦଶଗ୍ରୀବ ପଶିଛି ଆସି ରଣେ
ଶୂଳଶ ଲକ୍ଷ ଦୈତ୍ୟ ଗୁରୁପାଶରେ ତେଣେ
ଦଶପୁଚ୍ଛ ଯେମନ ସେ ମନ୍ତ୍ରେ କଳବଳ
ବ୍ରହ୍ମାଣ୍ଡ ପୁରୁଅଛି ଯେ ମୁଖର ଚହଳ ।
ପାଦଘାତେ ଦଳି ଦଳି କମ୍ପଇ ମେଦିନୀ
ସ୍ୱର୍ଗପୁରେ ଥାଇଣ ତା ଦେଖି ସୁରମୁନି ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶ୍ୱର
ସୁରଗଣମାନଙ୍କର ଉପରେ ଅଟେ ଘର ।
ସେମାନେ ଦେଖୁଛନ୍ତି ଉପରେ ପୁଣ ଥାଇ
ଋଷିମାନେକେଉଁରୂପେ ଶୂନ୍ୟରେଦେଖ ରହି
ଏହିକଥା ଗୋଟି ମୋତେ ଲାଗିଲା ସନ୍ଦେହତ
ଫେଡ଼ିକରି କହମୋତେ କାର୍ତ୍ତିକେଶ୍ୱର ତାତ
ଈଶ୍ୱର ବୋଇଲେ ଗୋ ଶୁଣ ମନଦେଇ
ପାଞ୍ଚଗୋଟି ବ୍ରହ୍ମମୁନି ସ୍ୱର୍ଗରେ ଛନ୍ତି ରହି ।
ଦେବମୁନି ଅଟନ୍ତି ସାତକୋଟି ପୁଣ
ଅଚନ୍ତା ବଇକୁଣ୍ଠେ ଅଟେ ତାଙ୍କ ସ୍ଥାନ ।
ଦେବତାଙ୍କ ସଙ୍ଗରେ ସେ ସଭାରେ ବସନ୍ତି
ଦେବତାଏ ଯେଣେଯାନ୍ତି ସେହି ତେଣେଯାନ୍ତି
ସମସ୍ତ ସଭାଙ୍କୁ ଋଷି ଦେବଙ୍କର ମେଳେ
ବିଷ୍ଣୁ ନାମ ଜପନ୍ତି ଧରି ମାଳ କରେ ।
ପାର୍ବତୀ ବୋଇଲେ ସେ ଋଷିମାନେ ପୁଣ
ସ୍ୱର୍ଗରେ ଦେବତାଙ୍କ ସଙ୍ଗରେ ସମାନ ।
ମର୍ତ୍ତ୍ୟ ପାତାଳରେ କେତେ ମୁନିଛନ୍ତି ପୁଣି
ଈଶ୍ୱର ବୋଇଲେ ତୁମେ ଶୁଣଗୋସ୍ୱାମିଣୀ ।
ପାତାଳରେ ନବକୋଟି ସିଦ୍ଧ ମୁନି ପୁଣ
ଈଶ୍ୱର ପ୍ରଳୟ ଯାଏ ସେହି ଥାନ୍ତି ଜାଣ ।
ଏକ ଈଶ୍ୱର କ୍ଷୟ ହେଲେ ତାଙ୍କୁ ହୁଏ ମୃତ୍ୟୁ
ମର୍ତ୍ତ୍ୟପୁର କଥାଗୋଟା ଶୁଣଆରେ ତତ୍ତ୍ୱ ।
ରାଜଋଷି ଶୂଦ୍ରଋଷି ଛୟାଣୋଇ ଗୋଟି
ସପତ କୁଳଯାକ ଏହାଙ୍କର ସୃଷ୍ଟି ।
କୃଷ୍ଣନାମ ବ୍ୟତିରେକେ ଆନ ନ ଭଜନ୍ତି
ଅଠାଇଶ କୋଟିମାନଙ୍କର ଗୁରୁ ସେ ଅଟନ୍ତି
ପାର୍ବତୀ ବୋଲେ ତୁମ୍ଭେ ଶୁଣ ହେ ଦିଗବାସ
ରାମ ରାବଣର ଯୁଦ୍ଧ କହହେ ବିଶେଷ ।
ଈଶ୍ୱର ବୋଇଲେ ତୁମ୍ଭେ ମନ ଦେଇ ଶୁଣ
ରାବଣର ସଙ୍ଗତରେ ଯେମନ ସର୍ବସୈନ୍ୟ ।
ରୁକ୍ଷ କପି ରାକ୍ଷସେ ହେଲେ ମିଶାମିଶି
ଦିବସରେ ଅନ୍ଧାରତ ଦିବସ ନ ଦିଶି ।
ରୁକ୍ଷ କପି ଦୈତ୍ୟବଳ ବାରିତ ନ ପାରି
ନ ଚିହ୍ନି ଏକ ଆରକେ ହୁଅନ୍ତି ମରାମରି ।
ବୃକ୍ଷ ଶୀଳ ଆତ ଯାତ ଶସ୍ତ୍ର ଯେ ପିଟାପିଟି
ଗାଢ଼ ଯୁଦ୍ଧ ହେବାରୁ ଅଗ୍ନି ଜଳଉଠି ।
ଅସ୍ତ୍ରରେ ଯେ ଛୁଟିକଣ ମୋର ଘନଘନ
ପାଷାଣରୁ କାଣ୍ତିମାନ ପଡ଼ଇ ଯେସନ ।
ଶତେ ଯୋଜନ ଦୀର୍ଘ ଶତେ ଯୋଜନ ପ୍ରସ୍ଥ
ସୈନ୍ୟ ପୂରିବାରେ ଯେ ନ ଦିଶେ ବସୁମତୀ
ଦେହେ ଦେହ ଲାଗି ଲାଗି କରନ୍ତି ସମର
ଦେଖିଣ ବହୁତ ଚିନ୍ତା ହେଲା ଶ୍ରୀରାମର ।
ସୁଗ୍ରୀବରଙ୍କୁ ରାମେ ବୋଲନ୍ତି ଶୁଣ ମିତ
ଆଜ ଯୁଦ୍ଧ ମୋତେ ଲାଗିଲା ବିପରୀତ ।
କହେ ବିଭୀଷଣ ଏ କେମନ୍ତ ଅଟେ କଥା
ଇନ୍ଦ୍ରଜିତ ଠାରୁ ଏତ ଅଟେ ସାମରଥା ।

ସୈନ୍ୟବଳ ଭଙ୍ଗ ଯେ ଆସୁଛନ୍ତି କେଣେ
ବିଭୀଷଣ ବୋଲେ ଦେବଯାନ୍ତୁ ସୁଗ୍ରୀବର ଆଗେ
ସୈନ୍ୟବଳଙ୍କୁ ପିଠି ହୋଇ ଅଙ୍ଗଦର
ତୁମ୍ଭେ ଦେବ ଦଶାନନକୁ ଆଗ କରି ମାର ।
ପଚ୍ଛୁଆଣି କଥା ଦେବ ଲାଗିଲା ଯେ ମୋତେ
ନଳ ନୀଳ ଥାନ୍ତୁ ପିଠି କଟକ ତୋ ସଙ୍ଗତେ
ଏ ଯେ ମନ୍ତ୍ରୀବର ଜାମ୍ବୁବ ସୁଶୋଭନ
ଏମାନଙ୍କୁ ସଙ୍ଗତରେ ରଖିଥିବ ପୁଣ ।
ପଚଶ ଯୂଥପତି ଶୂର ବଗରେ ଯାନ୍ତୁ
ଏକାବେଳେ ଯାଇଣ ସମସ୍ତେ ଯୁଝନ୍ତୁ ।
ଏତେ ବୋଲି ବିଭୀଷଣ ଚମକ ଦିଆଇଲା
ସେହି କଥା ଶ୍ରୀରାମର ମନକୁ ଯୋଗାଇଲା ।
ଋକ୍ଷ କପି ବଳଙ୍କୁ ବୋଇଲେ ଶବଦାଇ
ମଲ ମହାମଲଙ୍କୁ କହିଲେ ଶୁଣାଇ ।
ଜଗଜେଠି ମାନେ ତୁମ୍ଭେ ଅଟ ବଳଆର
ମଲମାନେ ରାକ୍ଷକୁରେ ଯିବଇ ସକଳ ।
ବେଗେ ଉଠରେ ବାବୁ ଅସୁର ବଳ ମାର
ଲଙ୍କପତି ଆଜରେ ଯିବ ଯମଆଳ ।
ଦେଖିଲଟିକି ବେଢ଼ିରେ ପଡ଼ିଥାଇ ଆଜ
ରାକ୍ଷସ ବଳ ଆମ୍ଭଙ୍କୁ ନରେଖିଲ ସବ ।
ପଳାଇ ଯିବାକୁ ଯେ ଏଥିରେ ନାହିଁ ବାଟ
ଯେ ଯାହାର ମନେ ବାବୁ ଚଳ ଯେବେ ଉଠ
ଏତେ ବୋଲି ରଘୁନାଥ କଲେ ଶଙ୍ଖଧ୍ୱନି
ସମସ୍ତଙ୍କ ଦେହ ତେଜ ବିକାଶଇ ପୁଣି ।
ଗମ ଗମ ରାଗରେ ସଭିଏଁ ଉଠିଗଲେ
କୋଟିକୋଟିସୈନ୍ୟ ଯେପରିଲେଦୈତ୍ୟପଲେ
ମାର ମାର ହାଣ ହାଣ ଶୁଭିଲା ଶବଦ
ଦୁଇ ଥାଟରେ ଶୁଭଇ ବୀର ଶୂର ବାଦ୍ୟ ।
ଗଲା ଗଲା ନାହିଁ ନାହିଁ ହୋଇହୋଇ ଶୁଭେ
ବ୍ରହ୍ମା ଇନ୍ଦ୍ରର ମୂର୍ଚ୍ଛେ ଦେଖନ୍ତି ସର୍ବ ଦେବେ
ବୋଲନ୍ତି ଶ୍ରୀରାମ ଆଜ ରାବଣ ମାରିବେ
ଅସଂକ୍ଷପ ସମର ଯେ ଶ୍ରୀରାମ କରିବେ ।
ନାହିଁ ନାହିଁ ଅବିଶ୍ରାମ ବେଢ଼ି କରି ମାର
ଧାଇଁ ହେଉଁ ମିଶିଣ ସମସ୍ତେ କାର୍ଯ୍ୟକର ।
ଭେଟିଣ ଗଡ଼ାଗଡ଼ି ରହନ୍ତି ଅପସର
ଅସଂଖ୍ୟକ ସମରତ କହିତ ନ ପାରି ।

ଓଷ୍ଠ କାମୁଡ଼ନ୍ତି ଯେ ତରାଟନ୍ତି ଆକ୍ଷି
ଆଗଭରେ ସଂଗ୍ରାମ କରନ୍ତି ଦେଖାଦେଖି ।
ଧରି ମାରି ଫିଙ୍ଗି ଯେ ପକାନ୍ତି ଏଣେତେଣେ
ଦୁଇକୁଳ ବଳ ଉବୁରି ଉବୁରି ରଣେ ।
ରଡ଼ି ଘନ ଘନ ଯେ ଖରି ନିଶୁଆସ
ବିଷମଘାତ ପାଇଲେ ମଣନ୍ତି ଦେହେ ତ୍ରାସ ।
ପରିଘାଇ ଯୁଝନ୍ତି ଯେ ଅଙ୍ଗ ଛଳ କରି
କେହୁ ତାହାକୁ ମାରନ୍ତି ଉବୁରି ଉବୁରି ।
ଦେଖିଣ ରଘୁନାଥ ମାତଳୀଙ୍କ କହି
ଅଳପ କରି ରଥ ଦେବୁ ତୁଟି ବାହି ।
ଶୁଣିଣ ମାତଳୀ ଯେ ରଥ ବାହି ଦେଲା
ଗର୍ଜ୍ଜନ କରିଣ ଯାନ ସେଠାରୁ ଉଠିଲା ।
ନନ୍ଦୀ କେଶରୀ ଗର୍ଜ୍ଜନ କଲେ ସିଂହରଡ଼ି
ଯେସନେକ ଶୂନ୍ୟରେ ଶୁଭେ ଘଡ଼ଘଡ଼ି ।
ଏସନେକ ସମୟରେ ଶ୍ରୀରାମଚନ୍ଦ୍ର ରାୟେ
ଜୟ ଶଙ୍ଖ ଧରିଣକଲେ ସ୍ୱର ତାଏ ।
ତେଜମୟ କପିଏ ହୋଇଲେ ତତକ୍ଷଣ
ସୁବାହୁ ସମରେ ଉଦବେଗ ହେଲେ ପୁଣ ।
ଏଥୁ ଅନନ୍ତରେ ଗୋ ଶୁଣ ଗାନ୍ଧାରୀ
ବିଭୀଷଣ ଡାକିଲା ସୁବାହୁ ନାମ ଧରି ।
ବୋଇଲାରେ କୁମର ମୋର ବୋଲ କର
ଲୌହ ଧନୁଧରି କର ଅସୁର ନିବାର ।
ଦେଖରେ ପରମ ବ୍ରହ୍ମ ନିନ୍ଦଯୋଗେ ବିଜେ
ଅମର ହୋଇବୁ ତୁରେ କର ତାହା ବେଗେ
ଏତେବେଳେ ଯେବେତୁଛେଦିବୁ ଦୈତ୍ୟବଳ
ତୋରଠାରେ ପ୍ରସନ୍ନହୋଇବେ ରଘୁବୀର ।
ସୁକର୍ଣ୍ଣଙ୍କୁ ବୋଇଲା ବିଭୀଷଣ ଗୁହାଁ
ମାରି ରାବଣ ସୈନ୍ୟକୁ କିଛି ଦୋଷ ନାହିଁ ।
ଅକାରଣେ ପିତାକୁ ନାଶକଲା ତୋର
ତାହାକୁ ମାରିଲେ ଯେ ଆମ୍ଭର ସୁଖ ଘୋର
ଶୁଣିଣ ସୁବାହୁ ସୁକର୍ଣ୍ଣ ବେନି ବୀର
ଗୁଣ ଚଢ଼ାଇଲେ ଯେ ଲୌହ ଧନୁପର ।
ଅସୁରଗଣର ଆବର ଲୌହ ଧନୁ ଧରି
ପଶିଲେ ରଣ ମଧ୍ୟେ କଥା ସେ ବିସ୍ତରି ।
ମାରନ୍ତି ବ୍ରହ୍ମଶର ଛେଦନ୍ତି ଦୈତ୍ୟବଳ
ଘଡ଼ିକରେ ନାଶ କଲେ ଦୁଇ ପଦ୍ମ ବଳ ।

ଦେଖିଣ ଶ୍ରୀରାମ ଯେ ମନରେ ପ୍ରୀତେ ଗଲେ
ରାବଣର ଓପ୍ରୋଧ ସେ ଶୁଣିଲେ ଜାଣିଲେ ।
ରାବଣ ଆଗରେ କହିଲେ ବେନି ମନ୍ତ୍ରୀ
ଦେଖ ଦେବ ବୀରବାହୁ କୁମରର ଗତି ।
ତୋ ଠାରୁ ଯାଇ ରାମରେ ପଶିଲା ଶରଣ
ତୋ ସୈନ୍ୟକୁ ନାଶକଲେ ସୁବାହୁ ଯେ ପୁଣ
ରାବଣ ବୋଇଲା ଏ କାଳକୁ ମେଣ୍ଟିଲ
ପିଣ୍ଡ ପାଣି ଦେବାକୁ ଏହି ଯେ ରହିଲା ।
ଶୁକ ସାରଣ ବୋଇଲେ ସୁବର୍ଣ୍ଣ ମହାବୀର
ରାମ ପାଶେ ଶରଣ ଯେ ପୁତ୍ରୁ ତୋହର ।
ଦଶାନନ ବୋଇଲା ଏହି ଭଲ କଲା
କୁମ୍ଭକର୍ଣ୍ଣ ବଂଶରୁ ଏତେକ ରହିଲା ।
ଇନ୍ଦ୍ରଜିତ ବଂଶରେ ରହେ ଏକମୁଖା
ମରିବକ ଖାଇବ ତାହାକୁ ନାହିଁ ଦେଖା ।
ବିଭୀଷଣ ଅଟଇ ମୋହର ବଇରି
ତାହାକୁ ମାରିଲେ ମୋର ମନୋରଥ ପୂରି ।
ମୁହିଁ ମଲେ ମନ୍ଦୋଦରୀ ତା ତଳେ ରହିବ
ଏମନ୍ତ ପ୍ରକାରେ ମୋତେ ଖାଅଇ ଦଇବ ।
ଶ୍ରୀରାମଙ୍କୁ ମୁହିଁ ଆଜ ମାରିବଟି ଭଲେ
ବିଭୀଷଣ ଭାର୍ଯ୍ୟାକୁ ରଖିବ ମୋର ତଳେ ।
ଏତେ ବୋଲିଣ ବୀର ହସ ଉରେ ହାତେ
ଆଜର ଯୁଦ୍ଧେ ଯୁଝିବା ଦଶରଥ ସୁତେ ।
ଏଥ ଅନନ୍ତରେ ଶୁଣ ଗୋ ଭଗବତୀ
ଶ୍ରୀରାମ ଠାକୁର ନନ୍ଦଘୋଷରେ ଅଛନ୍ତି ।
ଯୂଥପତି ସେନାପତି କରନ୍ତି ସମର
ଓପ୍ରୋଧ ନ ରଖିଣ ମାରନ୍ତି ଦୈତ୍ୟବଳ ।
ପଛକୁ ନ ଗୃହାନ୍ତି ବଇରି ଆଗ ମିଳ
ବଳ ଅଚଳ କ ବାରି ତ ନ ପାରି ।
ଯାହା ମୁଖେ ପଡ଼େ ଯେ ତାହାକୁ ସଂହାରି
ଅଣଗୁଣ ପବନ ପ୍ରଳୟ ବହେ ବାରି ।
ମୁଖ ଗୋଳ ଶବଦରେ ହେଲ ଘେନୁଛି ମହୀ
ଚଉଦ ଭୁବନ ଲୋକେ ନିଶବଦେ ରହି ।
ଏକ ଦୃଷ୍ଟି କରିଣ ଗୃହେଁ ରଣ ଭୂଇଁ
ଅନର୍ଯ୍ୟାମୀ ସୈନ୍ୟ ଅନୁକ୍ଷଣରେ ମରଇ ।
ଦେବରେ ଦୁର୍ଲ୍ଲଭ ସେ କହିତ ନ ପାରି
ସ୍ୱୟଂ ନାରାୟଣ ଯହିଁରେ ବିଜେ କରି ।

ରିକ୍ଷ କପି ଘେନିଣ ଅସୁର ବଳ ମାରି
ଓଲଟି ଉଠିଣ ସେ ରହିଣ ମରାମରି ।
ରିକ୍ଷ କପି ସମରେ ଅଭିମାନ ଧରି
ଅନେକ ଦୈତ୍ୟବଳ ପକାଇଲେ ମାରି ।
ଯହୁଁ ସେ ଅନ୍ୟୋଅନ୍ୟେ ହେଲା ରଣଗୋଳ
ଲଙ୍କାଗଡ଼ରେ ଦେଖ ଶୁଭୁଛି ଚହଳ ।
ରାବଣ ସଙ୍ଗେ ରାମ କରେ ଯେ ବିବାଦ
ଆଜ ଗୋଳରେ ଜିଣିଲା ଜାଣ ଦଶଗ୍ରୀବ ।
ସୁବଳସ୍ଥା ଗିରିର ଉପରେ ରାମ ଥିଲେ
ସୈନ୍ୟ ମରିବାର ଦେଖି ତଳକୁ ଆଇଲେ ।
ଅପୂର୍ବ ବିମାନରେ ବସିଣ ଶ୍ରୀରାମ
ଶଂଖ ଶବଦରେ ଯେ ଦଇତେ ହେଲେ କ୍ଷୀଣ
ତାହା ଶୁଣି ଲଙ୍କା ଲୋକେ ହୋଇଲେ ବିକଳ
ଅସୁର ସୁବର୍ଣ୍ଣମାନେ ଧାଇଁଲେ ସକଳ ।
ମେଘନାଦ ପାଚେରି ଉପରେ ଯାଇଁ ଉଠି
ଅପୂର୍ବ ସଂଗ୍ରାମକୁ ନେତ୍ରରେ ଦେଲେ ଦୃଷ୍ଟି
ଗୃହିଁଲେ ସମର ବାଜଇ କୋଳାହଳ
ଲଙ୍କା ଗଡ଼ ଯାକରେ ଶୁଭଇ ଚହଳ ।
ଧାଅଁ ଧାଅଁ ଆସ ଆସ ଦେଖ ଦେଖ ଆହେ
ଅପୂର୍ବ ସଂଗ୍ରାମ ହେ ଆଜକୁ ଦିନ ତୁଏ ।
ଆମ୍ଭ ସୈନ୍ୟ ଘେନ ଆଜ ଜିଣିଲା ଲଙ୍କାରାଜ
ରିକ୍ଷ କପି ଘେନ ବଳ ପଡ଼ିଲେ ରାମରାଜ ।
କେ ବୋଲେ ତଥ୍ୟ ବାରତା ଜାଣିଛୁକି ତୁହି
କେ ବୋଲଇ ଦୈତ୍ୟ ବଳମାରିଲେଗୋଡ଼ାଇ
ରାବଣର ବୁଦ୍ଧି କି ଗୋ ଆନ ଲୋକ ସରି
ଆଠକୁ ବାଣ୍ଟିଣ ଦେଲା ଯେ ଗୃହ ଭାଗ କରି
ଆପଣେ ଆଗୁଆଣି ସମଦ୍ରଂଷ୍ଟ ଘେନି
ଏଥର ଉବୁରିବେ କି ରିକ୍ଷ କପି ସଇନି ।
ସୀତାକୁ ବାରତା ଯେ କହିଲା ତ୍ରିଜଟା
ଅପୂର୍ବ ହୋଇଲା ଯେ ଆଜର ଯୁଦ୍ଧ ଗୋଟା ।
ରିକ୍ଷ କପି ରାକ୍ଷସେ ହୋଇଛନ୍ତି ମିଶା
କେହି କାହାକୁ ନ ଦିଅନ୍ତି ପଛଘୁଞ୍ଚା ।
ଆଜ ଲେଉଟିବ ଗୋ ନିଶ୍ଚୟ ତୁମ୍ଭ ଦଶା
କଥାଏ କହିବ ମୋତେ ନ କରିବ ହିଂସା ।
ସୁବଳସ୍ଥା ଗିରିରେ ଗୋ ସ୍ୱାମୀ ତୁମ୍ଭର ଥିଲେ
ସକଳ ସୈନ୍ୟଙ୍କୁ ଗୋ ସେଠାରୁପେଶିଦେଲେ

ଦୈତ୍ୟଗଣ ସୈନ୍ୟଙ୍କୁ ମାରିବାର ଦେଖି
ନନ୍ଦିଘୋଷ ରଥଚଢ଼ି ପଛରେ ସ୍ୱାମୀ ଆସି ।
ଜୟ ଶଙ୍ଖ ବଜାନ୍ତେ ଦୈତ୍ୟ କ୍ଷୀଣ ହେଲେ
ଋକ୍ଷ କପିବାନରେ ଯେ ତେଜ ମୂର୍ତ୍ତି ଧରେ ।
ଦୈତ୍ୟବଳ ସଙ୍ଗରେ କରନ୍ତି ରାଗେ ଯୁଦ୍ଧ
ବାସୁଦେବଙ୍କର ଯାନ ଅଟେ ସେ ଆୟୁଧ ।
ହୋଇ ହୋଇ ବୋଲନ୍ତି କେ ସଖି କମଳମା
ତୁମ୍ଭର ପ୍ରସାଦେ ଗୋ ଆଉନ୍ତି ରଘୁମଣି ।
ନିଶାଖା ଲୋକମାନଙ୍କୁ ଗୋ ଧର୍ମ ଅଟେସାହା
ନିରେଖ ନିର୍ମଳ ଯେ ଅଟନ୍ତି ମୋର ନାହା ।
ବିକଳରେ ବାନର ଭାଲୁଙ୍କୁ କରି ଆଶ
ଦାଇବକୁ କବୋଲିବି ସବୁ ମୋ କର୍ମଦୋଷ
ଏହି ବଚନ ଯେ କହିଲେ ବଇଦେହୀ
ପାର୍ବତୀଙ୍କ ଆଗରେ ଗୋ ସଦା ଶିବ କହି ।
ଶୁଣ ତୁ ଗିରିଜା ଗୋ ଶ୍ରୀରାମ ଚରିତ
ଯେବଣ ରଣଭାବରେ ମୋରେଦୈତ୍ୟଗୋହ
ବ୍ରହ୍ମାଣ୍ଡର ଶତ୍ରୁ ଯେ ଦଶାନନ ବୀର
ଦଶଭୁଜେ ଧନୁ ଯେ ଦଶ ଭୁଜରେ ଶର ।
ଅଙ୍ଗଦ ଜାମ୍ବୁବ ଯେ ଭାଜିଲେ ସତ୍ତୁଁ ରଣେ
ଦଶ ସହସ୍ର ରଥୀଯେ ପଡ଼ିଲେ ପୁଣି ତେତଣେ
ଆଗୁଆଣି ଦଣ୍ଡରେ ସତ୍ତୁଁ ସେ ଜୟକଲା
ଦେଖିଣ ଦଶଗ୍ରୀବ ହରଷ ହୋଇଲା ।
ବିଚାରିଲା ଏବେ କେ ମାରିବ ମୋର ଶତ୍ରୁ
ଯଦ୍ୟପି ଜୀଣିବ ସେ କଥାଏ ଥିବ ହେତୁ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ଦୁଇବୀର ଥିଲେ
ଆବର ତାଙ୍କ ସଙ୍ଗରେ ଅନେକ କ୍ଷତି ମଲେ
ସେନାପତି ମଲେଯେ ମୋହର ଦେଖୁଁ ଦେଖୁଁ
ମହା ମହାବୀର ଯେ ପଡ଼ିଲେ ଏକୁ ଏକୁ ।
କେବଣପ୍ରକାରେ ଆଜ ଭାଜିଲେ ରାମ ସୈନ୍ୟ
ବାବୁରେ ଦଶପୁତ୍ରେ ତୁମ୍ଭ ମହିମା ଧନ୍ୟ ।
ରଘୁନାଥ ପ୍ରାୟେକରେ ମିଳିଛି ବଇରି
ତୁମ୍ଭମାନଙ୍କରେ ହେଲା ଏଡ଼େ ବଡ଼ କର୍ମ କରି
ଯେବଣ ଋକ୍ଷ ବାନରେ ମୋତେ ନ ଡରନ୍ତି
ତୁମ୍ଭର ମୁଖ ଦେଖିଲେ ପଳାଇ ଯାଉଛନ୍ତି ।
ରଶ୍ମିକେତୁ ଅଗ୍ନିକେତୁ ପାଟେଳ ବିରୂପାକ୍ଷ
କୁମ୍ଭେକ ମହୀଶ୍ୱର ବୀରଘଣ୍ଟ ଲୋହିତାକ୍ଷ ।
ମହା ପ୍ରଶସ୍ତ ବୀର ପାରୁଶ ବଳଆର
ଗ୍ରହଣ ବିଗ୍ରହଣ ଜ୍ୟୋତି ଯେ ସାଗର ।
ଶତ୍ରୁଘ୍ନ ଜିତ ସମର ଜିତ ମିତ୍ରଘ୍ନ ସନଏ
ଅଛନ୍ତି ଦଶପୁତ୍ର ମୋହର ପରାୟେ ।
ସଙ୍କଟ ବକାସୁର ଅଶୋକ ବିଶୋକ
ବଜ୍ର କପଟ ଦୃଢ଼ କପଟ ଅମର ଅନେକ ।
ଶୋଣିତାକ୍ଷ ଲୋହିତାକ୍ଷ ଭଲ ଭଲ ଯୋଦ୍ଧା
ନୋହିଲେରୁକ୍ଷକପି ମାଇଲେକେହ୍ନେ ଯୋଧା
ହନୁମନ୍ତ ଲକ୍ଷ୍ମଣ ଯେ ନାହାନ୍ତି ମୋର କର୍ମେ
ଆବର ଥିଲା ବାଳର କୁମର ସୁଧର୍ମେ ।
ଆଗୁଆଣି ଦଣ୍ଡ ସହିତରେ ଗଲେ ହାତ
ଦଶ ସହସ୍ର ରଥୀ ତେଣୁ ଆସୁଛନ୍ତି ମାତ୍ର ।
ଇଷ୍ଟ ଦେବତା ମୋତେ କଲେ ଅବା ଦୟା
କେତେ ଅଭିମାନ ଯେ ସହିବ ମୋର କାୟା
ଆଜ ଯେବେ ରାମଙ୍କୁ ମୁଁ ପାରଇ ସଂହରି
ତେବେ ଭୋଗ ମୁଁ ଯେ କରିବି ତ୍ରିଭୁବନପୁରୀ ।
ଏମନ୍ତ ସମୟରେ ଶ୍ରୀରାମଙ୍କର ସୈନ୍ୟ
ରାକ୍ଷସଙ୍କ ସଙ୍ଗରେ ହେଲେ ଅନ୍ୟୋଅନ୍ୟ ।
ଅଭିମାନ ହେବଣ ଉଠିଣ ଯୁଦ୍ଧ କଲେ
ତରୁଶୀଳ ଧରିଣ ଅସୁର ମାରିଲେ ।
କଳକଳା ଶବଦ କଲେ ରୋଷଭରେ
କେହି ନସତ ଆଉ ଯେ ନୁହନ୍ତି ଯୁଦ୍ଧରେ ।
ଗନ୍ଧମାଦନକୁ ପିଠ ହେଲାଁସୁଗ୍ରୀବର
ଚନ୍ଦନ ଦୁର୍ବନ୍ଦ ଯେ କେଶରୀ ପନଶୀଳ ।
ପଛୁଆଣି ହସ୍ତକୁ ଯେ ବିଭୀଷଣ ଗଲା
ଶ୍ରୀରାମ ଧନୁଧରିଣ ରଥ ଧୂଆଁଇଲା ।
ଜୟ ଶଙ୍ଖ ବଜାଇ କୋଦଣ୍ଡ ଗୃପଧାରୀ
ନନ୍ଦିଘୋଷ ରଥ ଯେ ଗର୍ଜନ ଘୋର କରି ।
ପଚରି ଯୂଥପତି ଯେ ଗୋଳ ଯୁଦ୍ଧ କଲେ
ଅଷ୍ଟସେନାପତିଏ ସମସ୍ତେ ଧାଇଁଲେ ।
ସୁବାହୁ ସୁବର୍ଣ୍ଣ ହେଣ ଶ୍ରୀରାମଚନ୍ଦ୍ର ରାୟେ
ଦେବଙ୍କୁ ଦୁର୍ଲ୍ଲଭ ଯେବଣ ସମର କଏ ।
ଏକ ନାରାଚକରେ ମରନ୍ତି ଲକ୍ଷ ଲକ୍ଷ
ବଧିରେ ଯୁଝେ ବୀର କୁମ୍ଭକର୍ଣ୍ଣ ବକ୍ଷ ।
ଅପୂର୍ବ ସମର କରେ ତହିଁ ବିଭୀଷଣ
ଜାମ୍ବୁବ ନଳ ନୀଳ ସଙ୍ଗରେ ସୁଷେଣ ।

ଶତବାଳ ଚନ୍ଦନ ମହେନ୍ଦ୍ର ଦଧିମୁଖ
ଗବଏ ଗବାକ୍ଷ ଯେ ତାଳମ୍ବ ଧୂମ୍ରାକ୍ଷ ।
କୁନ୍ଦ କାମୋଦ ଯେ କାଳଞ୍ଜନ ଶତବଳ
ସମ୍ପାତି ମରୁଚ ଯେ ବସନ୍ତ ପନଶୀଳ ।
ସଭଗ୍ର ସେନାପତି ଦଶକୋଳ ବୃଦ୍ଧ
ତାଙ୍କର ପିଅର ଯେ ଆବର ବିବୁଧ ।
କାଳୀମୁଖ ବୀର ସୁନାସ ସୁଶୋଭନ
ସାରସ ସାରସ ଯେ ଗନ୍ଧ ମାଦନ ।
ଲକ୍ଷେ ମହାବୀର ଯେ କୋଟି ମହାମଲ
ବୀର ମହାବୀର ଯେ ଅଟନ୍ତି ସାଗର ।
ଋକ୍ଷ କପି ବଳ ଯେ କଳିତ ନ ପାରି
ରାକ୍ଷସଙ୍କ ସଙ୍ଗରେ ହେଲେ ମରାମରି ।
ଯେଉଣେ ଉଠାଉଠି ହାକିଁ ଯୁଝାଯୁଝି
ଏକ ଆରକରେ ଧାଇଁ ମନ ହେଜ ।
ଲାଗିଲା ରଣଗୋଳ ଦୁଇବଳ ଥାଟ
ମୁଖରାବ ତୋଳେ ପୂରିଲା ଅନ୍ତରୀକ୍ଷ ବାଟ ।
ଟମକ ନିଶାଣ ଯେ ବାଜେ ତଡ଼ବଡ଼
ଆଲମ୍ବ ପାଟଛତ୍ର ଚଉଳ ମାନ ଉଡ଼େ ।
ହସ୍ତୀ ଘୋଡ଼ା ରଥୀ ଯେ ଅନେକ ପଦାତି
ଋକ୍ଷ କପି ରାକ୍ଷସେ ହେଲେ ମିଶାମିଶି ।
ଉତ୍ତର ଦ୍ୱାରର ବଳ ପଶ୍ଚିମକୁ ଗଲେ
ପୂର୍ବର ବଳ ଯାଇ ପଶ୍ଚିମେ ଠୁଳ ହେଲେ ।
ଦକ୍ଷିଣ ଦ୍ୱାର ଥାଟ ବୃତରେ ଯାଇ ପଶି
ପୂର୍ବର ସୈନ୍ୟ ଯେ ପଶ୍ଚିମେ ଯାଇ ମିଶି ।
ଚାରିଦ୍ୱାର ସୈନ୍ୟ ଯେ ହେଲେ ମିଶାମିଶି
ତରୁଶିଳ ବୃକ୍ଷ ଯେ ଆୟୁଧ ପେଟାପେଟି ।
ସେନାପତିମାନେ ଯେ ହେଲେ ଛଡ଼ାଛଡ଼ି
ବହୁତ ସୈନ୍ୟ ତହିଁରେହେଲେ ମଡ଼ାମଡ଼ି ।
ରଥଙ୍କର ଉପରେ ମର୍କଟ ପଲପଲ
ମଣ୍ତି ଲୁଗାମାନ ଚିରନ୍ତି ଭଲ ଭଲ ।
କେଉଁ ଭାଲୁ ବଳରେ ଯୋଦ୍ଧା ମର୍ଦ୍ଦିଇ ପାଦ୍ୟେ
କେବଣଗୋ ଲାଙ୍ଗୁଡ଼ା ମଲେବାଳଅର୍କ ପ୍ରାୟେ ।
କେବଣ ହସ୍ତୀ ମାରନ୍ତି ଋକ୍ଷ କପି ବେଢ଼ି
କେବଣ ଗଜ ଉପରେ ବୃକ୍ଷ ଯେ ପଡ଼ୁଛି ।
କେବଣ ବାନରଙ୍କୁ ଅସୁରେ କଚୁଡ଼ନ୍ତି
କେବଣ ଭାଲୁକୁ ଯେ ଚରଣେ ମର୍ଦ୍ଦନ୍ତି ।
କେହୁ ଯେ ସିଂହରଡ଼ି ଛାଡ଼ନ୍ତି ଘନ ଘନ
ଅନର୍ଥୀପଡ ରଣ ଯେ ବାଜେ ଦୁଇ ସୈନ୍ୟ ।
କେହୁ ବୃକ୍ଷ ପିଟନ୍ତି କେ ପାଷାଣ ଧରି ମାରି
କେହୁକାଣ୍ଡ ଘାଆରେ ଅଚେତନରେ ପଡ଼ି ।
କେହୁ ବଜ୍ର ବାଣକୁ ଡରଣ ପଳାଇଲେ
କେହୁ ଯୁଦ୍ଧ କରଣ ମୁଷ୍ଟି ଯେ ମାଇଲେ ।
କାହାକୁ ରଥବର ତଳରେ ଗଲାମାଡ଼ି
କାହାକୁ ମତ୍ତଗଜ ପକାଏ କଚୁଡ଼ି ।
ଘୋଡ଼ା କାମୁଡ଼ିଲା ଯେ କେବଣ ବାପୁଡ଼ାକୁ
ହସ୍ତୀ ମାଡ଼ିଗଲା କେବଣ ରାକ୍ଷସକୁ ।
କେହୁ ନେଡ଼ା ଘାଆରେ ନ ପାରି ପୁଣ ଉଠି
ଗୋଇଠା ଘାଆରେ କାହାର ଭାଜିଗଲା ପିଠି
କାହାକୁ ଅଖଡ଼ରେ ରଥ ମାଡ଼ିଗଲା
ଘୋଡ଼ା ନାଚ ବାଜି କାହାର ଅଙ୍ଗ ବଥାଇଲା
ଗହଳରେ କେକାହାର ତୋଳିଦେଲେ କାଟି
ଝିମିଟକେ ବଢିଗଲା ରକ୍ତ ନଦୀ ଗୋଟି ।
କେହୁ ଅଣକତରେ ଧରାଧରି ହୋନ୍ତି
କେହୁ କାହା ଉପରେ ମାଡ଼ିଣ ପଡ଼ନ୍ତି ।
କେହୁ ବୋଲନ୍ତି ହେ ଯାଅ ଉଠିକରି
କେହୁ ଚିରା ମାରିଣ ଝମକାନ୍ତି ଫେରି ।
କେହୁ ଶୂନ୍ୟେ ଚଉମାରି କରି ଉଡ଼ଯାନ୍ତି
ବାଜିଲା ବାଜିଲାବୋଲି କେନାରିଚ ଛାଡ଼ଦ୍ୟନ୍ତି
କେ ଧରି କରି ଯେ ମୋଡ଼ନ୍ତି ବକ୍ଷସ୍ଥଳ
ଉପରେ ଥିଲା ଲୋକର କେ ଝିଙ୍କନ୍ତି ବାଳ ।
କେହୁ କାହାକୁ ଆଣୁଆରେ ପେଲ ଦ୍ୟନ୍ତି
କେହୁ ଆଣୁଆମାର ସମ୍ଭାଳ ବୋଲନ୍ତି ।
ବାନରେ ଧରେ ଶିଳ ଅସୁର ଶସ୍ତ୍ର ଧରେ
ଯେଯାହାକୁ ଦେଖନ୍ତି ତାହାକୁ ସେହୁ ମାରେ
ଅକଳିତ ସମର ଯେ ଦେବଙ୍କୁ ଅଗୋଚର
ରକତ ନଦୀ ବହେ ରଣର ଭିତର ।
ରଥୀମାନେ ଉବୁଡ଼ନ୍ତି ରକତର ଘାତେ
ହାଣ୍ଡିମାନେ ଉବୁଡ଼ନ୍ତି ପଦାତି ସହିତେ ।
ରଥରେ ପକାନ୍ତି ଯେ ବିବିଧ ତରୁମାନ
ଲହରୀ ପଟାନ୍ତର ଆଲମ୍ବ ଧ୍ୱଜ ଚିହ୍ନ ।
ଋକ୍ଷ କପିଙ୍କ ମଡ଼ା କ୍ଷୁଦ୍ର ଯୂଥ ଯୂଥ
ଅନ୍ତଃ ପିତ୍ତ ଫାଟି ଯେ ପଡ଼ିଲେ ବହୁତ ।

ଶ୍ୱେତ ପଙ୍କ ପ୍ରାପ୍ତେ ଯେ ଲେଟନ୍ତି ମାଏଁସ
ବସ୍ତୁ ଉପୁଜନ୍ତେ ଦିଶେ ଯେସନ୍ତେ ପୁଷ୍ପ ।
ଦେବେ ଯେସନେକ ମନ୍ଥନ୍ତି କ୍ଷୀରାର୍ଣ୍ଣବ
ଋକ୍ଷ ରାକ୍ଷସ କପି ତେସନ ସ୍ୱଭାବ ।
ବିଭୀଷଣ ସେଠାରେ ଅଟେ ଯେ ମନ୍ଦର
ତାହାର ଦନ୍ତ ଧନୁ ଅଟେ ଅମ୍ବର ।
ସେଥିରୁ ଉଠିଲେ ନାମ କମଳା
ବିଜୟରେ ପାଇବେ ତାଙ୍କୁ ରାମଚନ୍ଦ୍ର ପୁଣି ।
ଆନରେ କେସନ୍ତେ ହୋଇବ ଏସନକ କଥା
ଅସଂଖ୍ୟ ସମର ଯେ ଦେଖେ ଦଶମଥା ।
ବିଚାରିଲା ପ୍ରଳୟ ହେବ ଆଜ ପୁଣି
ସୃଷ୍ଟି ସଂହାରଣ କରିବେ କୁଶ ପାଣି ।
ଏ ଯୁଦ୍ଧରେ ଜିଣିଲେ ବୋଲାଇବ ଋଷୀବର
ଏତେ ବୋଲି ଦଶ ଧନୁରେ ଦଶକର ।
ଏଥୁ ଅନନ୍ତରେ ଯେ ଦଶଗ୍ରୀବ ରାୟେ
ଚତୁରଙ୍ଗ ବଳଧରି ସମର କରିଯାଏ ।
ସାବଧାନ ହୋଇଣ ମାରେ ଋକ୍ଷ ହରି
ବସନ୍ତ ମାସରେ ଯେସନ୍ତେ ଧୂଳି ବୃଷ୍ଟି କରି ।
ତେସନ ପ୍ରକାରେ ଯେ ପେଶୁଅଛି ଶର
ଦେଖିଣ ଓଗାଳିଲେ ହନୁର ପଥର ।
ଦୁଇ ହସ୍ତରେ ଦୁଇ ଗଛ ଅଛି ଧରି
ଦୂରରୁ ରାବଣ ଯେ ପକାଏ ଛେଦ କରି ।
କେଶରୀ କପିର ଯେ ଶୂନ୍ୟ ଦୁଇ ହସ୍ତ
ଦେଖିଲା ଆଗରେ ଯେ ଅଛଇଁ ପରବତ ।
ତୋଳି ପକାଇଲେ ପୁଷ୍ପକ ବିମାନ
ବଜ୍ରଶର ପେଷିଣ ଛେଦେ ଦଶାନନ ।
ମହେନ୍ଦ୍ର ଦୁର୍ବନ୍ଦ ଯେ ଧାଇଁଲେ ତାହା ଦେଖି
କଞ୍ଚଣ ଅଇଲେ ଯେ ସମର ଉପେକ୍ଷି ।
ଗୃହ ସେନା ଓଗାଳିଲେ ଦଶଗ୍ରୀବର ଆଗେ
ଦେଖିକରି ବିଚାରିଲା ଅତିଘୋର ରାଗେ ।
ବାଣ ଆସନ୍ତେଣ ଦେଖିଲେ ଗୃହ ବୀର
ଶୂନ୍ୟରେ କ୍ଷେପିଣ ଗଲେ ସେ ସତ୍ୱର ।
ଭୂମି ବନ୍ଧା ହୋଇଲା ହେ ଦଶଗ୍ରୀବ ଶର
ଲଙ୍କା ପାଇଲା ପୁଣି ଲଙ୍କାର ଈଶ୍ୱର ।
କୋପରେ ଦଶାନନ ଦିବ୍ୟ ଅସ୍ତ୍ର କଲା
ଦଶ ସହସ୍ର ଭଲ୍ଲୁ ସେ ନାଶି ପକାଇଲା ।

ଦଶ ସହସ୍ର ମର୍କଟ ପଡ଼ିଲେ ତାର ସଙ୍ଗେ
ଦେଖିକରି ମହେନ୍ଦ୍ର ଧାଏଁ ଅତି ବେଗେ ।
ଦୁର୍ବନ୍ଦ ସହିତରେ କଞ୍ଚଣ କେଶରୀ
ଗୃହେ ଓଗାଳିଲେ ଗିରିବୃକ୍ଷ ଧରି ।
ଶେଷରେ ରାବଣ ଯେ ମାରେ ପରିଘଳ
ମୋହରେ ପଡ଼ିଲେ ଯେ କପିକୁଳ ମଲ୍ଲ ।
ସେଠାରୁ ରଘୁବର ଚଳେ ଶୀଘ୍ର ଗତି
ଯହୁଁ ସେ ଅଙ୍ଗଦର ଦେଖିଲେ ବିଶ୍ୱମୂର୍ତ୍ତି ।
ବାଇଶ କୋଟି ଯେ ମୁକୁଟ ଯୋଦ୍ଧା ଘେନ
ବିକୋତି ଯେ କାଟୁଛନ୍ତି ଶ୍ରୀରାମ ସଇନ ।
ସାତ କୋଟି ରଥୀ ଯେ ରାବଣ ସମାନ
ସଙ୍ଗରେ ଅଛନ୍ତି ତାହାର ସେହୁ ପୁଣ ।
ଋକ୍ଷ କପିବଳ ନ ଯୁଝନ୍ତି ଯେ ପାଏ
ଏହି ସମୟରେ ଯେ ଏଗାର ଘଡ଼ି ହୁଏ ।
ବ୍ୟାକୁଳ କରି ରାବଣର ମାରେ କପି ବଳ
ଦେଖିଣ ଧାଇଁଲେ ଅଙ୍ଗଦ ନଳ ନୀଳ ।
ରାବଣକୁ ଓଗାଳିଲେ ଶିଳା ବୃକ୍ଷ ଧରି
ଦଶଗ୍ରୀବ ଛେଦେ ତା କଞ୍ଚିତ ଶରକରି ।
କୋପରେ ତିନ ବୀରେ ଉଠିଲେ ରଥେ ଯାଇ
ବାହୁଡ଼ି ପଳାଇବେ ଅଭରସା ପାଇ ।
ବାଳୀର ତନୟ ଯେ ଧରେ ରଘୁବର
ବୋଇଲା ପକାଇବି ମୁଁ ସାହେର ମଧ୍ୟର ।
ଟେକ ନ ପାରିଣ ମୁଣ୍ଡରେ ପେଲି ଦେଲା
ଘୁମୁଘୁମୁ ଶବଦରେ ବିମାନ ବାହୁଡ଼ିଲା ।
ଉତ୍ତର ଦ୍ୱାରକୁ ବୋଲି ନେଲା ବାଳି ସୁତ
ତିନ ପୁଣ ପରିଯନ୍ତେ ପେଲେ ତାର ସୁତ ।
ରଣ ଭୂମିରୁ ସେ ଅଲଗା କରି ଦେଲା
ଲଙ୍କାର ଉତ୍ତର ଦ୍ୱାରେ ନେଇ ବେଗେ କଲା
ଲଙ୍କାର ପାଚେରୀପରେ ଯେତେ ସ୍ତ୍ରୀ ଥିଲେ
ଦେଖିଣ ତାଟକା ଯେ ସମସ୍ତେ ପୁଣ ହେଲେ
ବୋଇଲେ ବାଳି ସୁତ ଅଟେ ବଳଆର
ପେଲିଣ ଆଣିଲା ଏ ପୁଷ୍ପକ ରଘୁବର ।
ଲଙ୍କା ପାଇଲା ଯେ ଅସୁର କୁଳପତି
ଯହୁଁ ସେ ଅଙ୍ଗଦର ଦେଖେ ବିଶ୍ୱମୂର୍ତ୍ତି ।
ଶୁକ ସାରଣ ଯେ ରଥ ପରେ ଥିଲେ
ଗୁଟ ଭଣ୍ଡାନ୍ତେ ଯେ ଅଶ୍ୱ ପଳାଇଲେ ।

ଯାଅ ଯାଅ ବୋଲିଣ ଅଶ୍ୱେ ଦେଲେ ଚାଳ
ଦେଖିଣ ଓଗାଳିରେ ବାଟରେ ତିନି ବଳି ।
ପୁଣି ଆଉ ଥରେ ଅଙ୍ଗଦ ପେଲି ଦେଇ
ପଶ୍ଚିମ ଦ୍ୱାରେ ନେଇ ରଥକୁ ଛାଡ଼ଇ ।
ଚାରି ଘୂର୍ଣ୍ଣ ପରିଯନ୍ତେ ପେଲି କରି ନେଲା
ସାରଥି ରଥ ବାହାନ୍ତେ ରଣରେ ପୁଣ ଗଲା
ଦେଖିଣ ଲଙ୍କରାୟେ ମାଇଲା ଚକ୍ର ଚାରି
ଅଙ୍ଗଦ ପେଲିଲା ବିଚିତ୍ର ଗତିକରି ।
ଶୁକ ଶାରଣ ବାହାନ୍ତେ ଅପସରେ ଯାନ
ପୁଣି ରଥେ ପେଲି ଦେଲା ବାଳିର ନନ୍ଦନ ।
ଦକ୍ଷିଣ ଦ୍ୱାରେ ରଥ ପରବେଶ କଲା
ଲଙ୍କାର ନରନାରୀ ଦେଖନ୍ତେ ହାସ୍ୟକଲା ।
ପୁଣି ସାରଥି ଯେ ବାହିଲା ପୁଷ୍ପଯାନ
ରଣଭୂମିରେ ନେଇ କଲା ତତକ୍ଷଣ ।
ପାଞ୍ଚ ଘୂର୍ଣ୍ଣ ବାଟ ସେ ନିମିଷକେ ଯାଏ
ସୈନ୍ୟବଳ ଦେଖିଣ ଚାଟକା ଚାଇ ହୁଏ ।
ଦେଖିଣ ବଳହୀନ ଯାଏ ଦଶାନନ
ବଜ୍ର ଶୂଳ ନେଇଣ ଯେ ମାରେ ନିଠାଇଣ ।
ଅଙ୍ଗଦ ପଳାଇଲା ଯେ ପଛଧୁଆଁ ଦେଇ
ଭୂମିରେ ପଡ଼ିଲା ସେ ରାବଣ ଅସ୍ତ୍ର ଯାଇ ।
ବାହୁଡ଼ି ଆସିଣ ସେ ଧରେ ତରୁ ଶିଳ
ନେଇଣ ପହୁଡ଼ିଲା ଯେ ରାବଣ ଉପର ।
ତରୁଶିଳ ବାଜନ୍ତେ ରାବଣ ମୋହଗଲା
ତତକ୍ଷଣେ ଦଶଗ୍ରୀବ ଚେତନା ପାଇଲା ।
ଯାନକୁ ଯାଇଣ ଧରେ ତାର ଶୀର୍ଷ୍ୟ
ଓଟାରି ଘେନିଗଲା ପୂର୍ବ ଦ୍ୱାର ପାଶ ।
ସିଂହଦ୍ୱାରେ ନେଇଣ ଛାଡ଼ିଲା ବିମାନ
ଦେଖିଣ ଲଙ୍କାର ଲୋକେ ହାସ୍ୟ କଲେ ପୁଣ
ବୋଇଲେ ରାବଣ ଯେ ନିର୍ବଳ ଏବେ ହେଲା
ଜାଆଇଁ ପୁତ୍ର ନାତି ଭାଇ ମରିବାରୁ ଚିନ୍ତାକଲା
ପୁଣି ଶୁକ ସାରଣ ବାହିନେଲେ ରଥ
ରଣ ଭୂମିରେ ଯାଇ ସେ କଲା ଉପଗତ ।
ଦେଖିଣ ବିସ୍ମୟ ଯେ ହେଲା ଲଙ୍କପତି
କୋପଭରେ ପୁଣ ସେ ମାଇଲା ଶକତି ।
ସେହି ଅସ୍ତ୍ର ଅଙ୍ଗଦ ଯେ ଧରେ ପୁଣ ଡେଇଁ ।
ରାବଣେଶ୍ୱରକୁ ଯେ ମାରେ ଲେଉଟାଇ ।

ଧାଇଁଣ ବାଳି ସୁତ ରଥରେ ଚଢ଼ିଗଲା
ଭରସି ନ ପାରିଣ ତଳକୁ ଖସିଲା ।
ପୁଣି ହିଁ ଓଟାରି ସେ ନେଲା ରଘୁବର
ନେଇ କରି ଛାଡ଼ି ଦେଲା ସମୁଦ୍ର କୂଳର ।
ସେଠାରୁ ଯାନ ଯେ ଆଇଲା ବେଗ କରି
ରଣ ଭୂମିରେ ଆସି ମିଳେ ଯାନ ଚାରି ।
ଦେଖିଣ ଦଶକନ୍ଧ ଧରେ ବ୍ରହ୍ମଶର
ଅଙ୍ଗଦ ପଳାଇଲେ ପଛକୁ ତାହାର ।
ଭଲ ତରକିଲୁ ପୁଅରେ ବୋଲେ ଲଙ୍କସାଇଁ
ନଳ ନୀଳ ସହିତେ ଗଲେ ଆଡ଼ ହୋଇ ।
ଆଗରେ ଋକ୍ଷ କପି ଯେ ଦୂରରୁ ପଳାଇଲେ
ଦେଖିକରି ଲଙ୍କପତି ମନେ ବିଚାରିଲେ ।
ସେ ଅସ୍ତ୍ର ସଂହାରିଲା ଲଙ୍କାର ନାୟକ
ସମସ୍ତଙ୍କ ଉପରେ ନେଇ ବୁଲାଏ ଶାୟକ ।
ରଥ ବାହା ବୋଲିଣ ମନ୍ତ୍ରୀଙ୍କି ଆଜ୍ଞା ଦେଲା
ଋକ୍ଷ କପିଙ୍କ ପରେ ନାରାଚ ବରଷିଲା ।
ଦୂରରୁ ଦେଖିଲା ତା ସଉରି ସେନାପତି
ଧାଇଁ ଓଳଗିଲା ତାଙ୍କୁ ପବନୁ ଦ୍ରୁତଗତି ।
ଦୁଇ କରରେ ଧରି ଅଛଇ ଦୁଇ ଶିଳ
ରୋଷଭରେ ଡାକିଲୁ ରହରେ ଲଙ୍କପାଳ ।
ଆଜ ତୋର ପ୍ରାଣରେ ଘେନିବ ନିଶ୍ଚେ ମୁହିଁ
ଦଶମୁଣ୍ଡ ଆଜ ତୋର ଲୋଟିବ ରଣଭୂଇଁ ।
ଏତେ ବୋଲି ପର୍ବତ ପକାଇଲା ତୋଳି
ନାରାଚରେ ଛେଦିଲା ସେ ଦଶାର ମଉଳି ।
ମୁଦ୍ଗର ଧରିଣ ସେ ପିଟିଲାକ ପୁଣି
ସେ ଅସ୍ତ୍ରକୁ ଶଉରି ଯେ ବଞ୍ଚାଇଲା ପୁଣି ।
ଭୂମି ବନ୍ଧା ହୋଇଲା ଯେ ତେତେଡ଼େ ମହାଶର
ଧାଇଁଣ ଶଉରି ଯେ ଧଇଲା ରଘୁବର ।
ଲେଉଟାଇ ଦେବବୋଲି ସେହି ସେତୋଳିଲା
ଦେବଙ୍କର ଯାନ ସେ ତୋଳିଣ ନ ପାରିଲା ।
ଦୁଇବେଳ ପରିଯନ୍ତେ ହାର୍କି ସେ ଧଇଲା ।
କୌଣସି ମତେ ସେହୁ ତୋଳି ନ ପାରିଲା ।
ଅଙ୍ଗଦ ବୀର ଆଡ଼ ହୋଇଣ ତେଣେ ଥିଲା
ନଳ ସହିତରେ ସେ ପାଳଟି ଧାଇଁଲା ।
ମହେନ୍ଦ୍ର ଦ୍ୱିବିଦ ଯେ କଞ୍ଚନ କେଶରୀ
ଗବାଏ ଗବାକ୍ଷ ଯେ କୁମୁଦ ଆଦି କରି ।

ବଳ ମୁଖ ଦଧି ମୁଖ ଯେ ଗନ୍ଧ ମାଦନ
ବସନ୍ତ ଚନ୍ଦନ ଯେ ବାଳି ମୁଖ ସୁଶୋଭନ ।
ସାରସ ପାରସ ଯେ ଆବର ପନଶିଳ
ସରସେଣୁ ସମ୍ପାତି ଯେ ସ୍ୱବଧ ନଳ ନୀଳ ।
ତାରାକ୍ଷ ରମଣ ଯେ ଦଶକାଳ ବୃଦ୍ଧ
ଧାମନ୍ତ ବୃକ୍ଷ କପି ଘେନିଣ ଆୟୁଧ ।
ପୁଷ୍ପକ ବିମାନରେ ଚଢ଼ିଲେ ସେନାମାନେ
ବୃକ୍ଷ ପାଷାଣ ଯେ ମାରନ୍ତି ଅବଚ୍ଛନେ ।
ଅଦୃଶ୍ୟ ହୋଇଲା ଯେତେକ ରଘୁବର
ମାରନ୍ତି ବୃକ୍ଷ କପି ଯେ ଶାଳଶିଳ ପଥର ।
ସଉରି ଅଙ୍ଗଦ ଯେ ଉଠେ ରଥେଯାଇଁ
ଯେବଣ ଧନୁ ସେ ରଥରେ ଥିଲା ଥୋଇ ।
ନୋଇଣ ଉଚ୍ଛୁଡ଼ି ତା ପକାଇଲେ ଭଲେ
ବିଭୀଷଣ ଧାଇଁଲା ହେ ଏସନକ ବେଳେ ।
ବୃକ୍ଷ କପି ବଳ ଘେନି ପଡ଼ିଲେ ସେ ମାଡ଼ି
ଦେଖିଣ ରାବଣର ଦର୍ପ ଗଲା ଛାଡ଼ି ।
ଏହି ସମୟରେ ବୀରବାହୁ କୁମର
କୁମ୍ଭକର୍ଣ୍ଣ ପୁତ୍ର ଯେ ଅଟେ ମହାବୀର ।
ଶ୍ରୀରାମଙ୍କୁ କହିଣ ଯେ ଅଇଲେ ବେନି ଜଣ
ପ୍ରବେଶ ହୋଇଲେ ରାବଣ ସମ୍ମୁଖେଣ ।
ଲୌହ ଧନୁ ଧରିଣ ବସାଏ ବ୍ରହ୍ମଶର
ରାବଣର ଦୁଇ ପାଖେ ରହିଲେ ରଘୁବୀର ।
ଦୁଇପଦ୍ମ ଦୁହେଁ ଯେ ବାନ୍ଧଲେ ବ୍ରହ୍ମଶର
ଦୁଇ ପଦ୍ମ ପଦାନ୍ତି ଶିର ଛାଡ଼ି ପଡ଼ିଲାକ ତଳ
ଦେଖିଣ ରାବଣ ଯେ ପଚାରେ ତାହାଙ୍କୁ
ତୁମ୍ଭେ କମ୍ପା ଶରଣରେ ଗଲ ଶ୍ରୀରାମଙ୍କୁ ।
ଆପଣାର ସୈନ୍ୟକୁରେ ଧନୁ ଧରି ମ ର
ଶରଣ ପଶିଲେ କରେ ରକ୍ଷିବ ତୁମ୍ଭ ଶିର ।
ବିଭୀଷଣ ସଙ୍ଗରେ ଆଜରେ ଗଲେ ନାଶ
ଯମପୁରେ ଭେଟିବ ପିତାଙ୍କୁ ଅବଶ୍ୟ ।
ସୁବାହୁ ସୁକର୍ଣ୍ଣ ଯେ ଶୁଣିଣ ବୋଇଲେ
ଯେଉଁଆଡ଼େ ଥିଲେ ତ ମାରନ୍ତୁ ଆମ୍ଭେ ଭଲେ
ନଜେ ତୁ ଅଧର୍ମ ଯେ ତାତ ପୁଣ କଲୁ
ପୁତ୍ର ନାତି ଜ୍ଞାତିଙ୍କି ତୁ ଅନେକ ମରାଇଲୁ ।
ଶୋଇଲାର ଲୋକକୁରେ ମରାଉ ତୁ କମ୍ପା
ଉଲୁଥାରେ ପାଶକରେ ସହେ ଲୋକ ଏକା ।

ଭାଇ କୁମ୍ଭକର୍ଣ୍ଣରେ ନଦ୍ରା ଯାଇଥିଲା
ନଦ୍ରା ଭାଙ୍ଗି ତାହାଙ୍କୁରେ ମରାଇଲୁ ପରା ।
ତୋତେ କହି ନଥିଲା କରି ରେ ଅଧର୍ମ
ସମସ୍ତଙ୍କଠାରେ ଦୋଷୀ ହେଲୁ ଦଶାନନ ।
ବୀରବାହୁ କୁମର ତ ତପକରୁଥିଲା
ତପ ଭାଙ୍ଗି ତାହାକୁରେ ମରାଇଲୁ ପରା ।
ପିତା ଶବ୍ଦ ଆମ୍ଭରରେ ଭୁଲିଟି ହୋଇଲୁ
ସଗୋଷ୍ଠ ମରାଇ ଏକା ଖାଇବୁ ମନେ କଲୁ ।
ଯେବେ ଶ୍ରୀରାମ ତୋର ଘେନିବେ ପରାଣ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ରହିବୁଁ ଆମ୍ଭେ ପୁଣ
ନୋହିଲେ ସମୁଦ୍ରରେ ଯାଇଣ ଝାସ ଦେବୁ
ତୁହି ଜଇଲେ ଆମ୍ଭେରେ ପାଶକୁ ନ ଯିବୁଁ ।
ଆମ୍ଭର ପାରିବାରେ କରିବା ରାମ କାର୍ଯ୍ୟ
ତୋର ସଙ୍ଗେ ଥିଲେତ ମରନ୍ତୁ ଯୁଦ୍ଧି ଆଜ ।
ଏତେ ବୋଲି ଦୁଇଜଣ ବଜ୍ର ଶର ଘେନ
ରୁଦ୍ରଲକ୍ଷ ଅଶ୍ୱ ଯେ କାଟିଲେ ବେଗେ ପୁଣି ।
ଏଥୁ ଅନନ୍ତରେ ତୁ ଗୋ ଶୁଣ ଭଗବତି
ମଲ ମହାମଲ ପଚଶ ଯୂଥପତି ।
ଅଷ୍ଟ ସେନାପତି ଯେ ବିଭୀଷଣ ପୁଣ
ସମସ୍ତେ ବେଢ଼ିଲେ ଦଶମୁଖାକୁ ଯାଇଣ ।
ରାବଣର ସୈନ୍ୟ ଯେ ପଳାଏ ନ କରି ଦ୍ୱନ୍ଦ୍ୱ
ରହ ରହ ବୋଲିଣ ଡାକେ ଦଶକନ୍ଧ ।
ଅଙ୍ଗଦ ସଉରି ରଥପରେ ଉଠିଥିଲେ
ବିଭୀଷଣକୁ ଦେଖିଣ ତଳକୁ ଅଇଲେ ।
ସମସ୍ତେ ମେଳ ହୋଇଣ କରନ୍ତି ସମର
ଆନ ଧନୁ ଧରିଲା ଯେ ଦଶାନନ ବୀର ।
ବିଭୀଷଣକୁ ସହସ୍ରେ ବାଣ ବିନ୍ଧିଲା
ସଉରୀ ଅଙ୍ଗଦକୁ ଯେ ଶକତି ମାଇଲା ।
ଗନ୍ଧମାଦନ ନଳ ନୀଳ କାଳାଞ୍ଜନ
ପରିଧାଇ ଶର ଯେ ଧରେ ଦଶାନନ ।
ଗବଏ ଗବାକ୍ଷକୁ ବଜ୍ର ଶର ବରଷି
ଦଶମୁଖ ବଳ ମୁଖକୁ ମୁଦ୍‌ଗର ପେଷି ।
ବଜ୍ର ପିଟିଲା ନେଇ ତାରାକ୍ଷ ଶତବାଳକୁ
କଞ୍ଚିତ ନାରାଚ ପେଶିଲା ଗବାକ୍ଷକୁ ।
ଜମ୍ବେବ ମନ୍ତ୍ରୀକ ତୀକ୍ଷ୍ଣ ନାରାଚ ପୁଣି ମାରି
ସଉରୀକ ତହୁଁ ଅସିବର ଯେ ପ୍ରହାରି ।

ଗବାବର ସେକ୍ଷଣ ରମଣକୁ ମାରିଲା
ଚକ୍ଷରେ ଶତବଳ ସୁନାସକୁ ସେ ମାରିଲା ।
ଡାଳମ୍ବ ଚନ୍ଦନକୁ ଫୋପାଡ଼ିଲା ଶୂଳେ
ଶରଭେଭୂକୁ ମାରନ୍ତେକ ବାଜେବକ୍ଷସ୍ଥଳେ ।
ଅଷ୍ଟସେନା ଆବର ପଚଶ ଯୂଥପତି
ଭିନ୍ନ ଭିନ୍ନ କରିଣ ସେ କାଟିଲା ବକେତି ।
ଦେଖିଲା ବିଭୀଷଣ ବନ୍ଧେ ଶତଶର
ପଡ଼ିଲା ରାବଣ ହୃଦୟରେ ଯାଇଁ ଶର ।
ଘାଆ ପାଇ ବୋଇଲା ଅସୁର କୁଳମଣି
ଆଜ ତୋର ଶିରରେ ପକାଇବି ହାଣି ।
ଦଶାନନ ଯେତେ ଶର ପେଶିଥିଲା ପୁଣ
ନାରାୟଣ ଶରେ ତା କାଟିଲା ସୁକଣ୍ଠ ।
ଦେଖିଣ ରାବଣ ଯେ ଧରେ ତୀକ୍ଷଣ ବାଣ
ବାଣ ଦେଖି ପଳାଇଲା ବୀର ବିଭୀଷଣ ।
ଶୁକ ସାରଣକୁ ଚାହିଁ ବୋଲେ ଦଶକନ୍ଧ
ବେଗକରି ମୋତେତେରେ ଭେଟାଅ ରାମଚନ୍ଦ୍ର
ରଘୁନାଥକୁ ମାରିଲେ ରହୁ ମୋର କଥା
ଆଜ ଦେଖନ୍ତୁ ମୁଁ ରେ ରଣ କପଟ ଶିକ୍ଷା ।
କଥା କହୁଁ କହୁଁ ସେ ଯେ ବନ୍ଧଇ ନାରାଚ
ତା ନାରାଚ ଛେଦିଲା କୁମ୍ଭକର୍ଣ୍ଣର ତନୁଜ ।
ଋକ୍ଷ କପିବଳ ସଂହାରିଲା ଲଙ୍କରାଜ
ବଜ୍ରରଣ ସୁବାହୁ ଧରିଲା ଲୋହ ଦଣ୍ଡ ।
ପୁଷ୍ପକ ବିମାନ ଯେ ଚଳେ ଘନ ଘନ
ଦୁଇପାଶରେ ଅଛନ୍ତି ସୁବାହୁ ସୁକଣ୍ଠ ।
ଧାଇଁଣ ଅଙ୍ଗଦ ଯେ ଆଗେ ମିଳେ ଆସି
ବୋଇଲା କାହିଁ ଯିବୁରେ ବିଶ୍ରବାରଶିର୍ଷି ।
ଦୂରରୁ ଡାକିଲେ ରେ ରାବଣ ଆଜ ମଲୁ
ଚତୁରଙ୍ଗ ବଳ ସହିତେ ନାଶଗଲୁ ।
ଗତକଥା ମାନ ତୁ ଛାଡ଼ ପୁଣ ଏବେ
ଆମ୍ଭର ଆଗରେ ପଡ଼ିଛୁ ଯେବେ ।
ଏହି ସମୟରେ ପଚଶ ଯୂଥପତି
ଅଷ୍ଟସେନା ସହିତେ ବିଭୀଷଣ ପ୍ରଭୃତି ।
ଦଶଗ୍ରୀବ ନାରାଚେ ପଛକୁ ଘୁଞ୍ଚିଗଲେ
ସୁକଣ୍ଠ ଶର ଛେଦନ୍ତେ ଆସିଣ ମିଳିଲେ ।
ସମସ୍ତେ ମେଳ ହୋଇଣ ବିମାନ ଧରନ୍ତି
ପଛକୁ ଓଟାରିଣ ଉଚ୍ଛୁଡ଼ି ଦେଖସାନ୍ତି ।

ଦେଖିଣ ଧାଇଁଲେ ତାର ଛନ ସେନାପତି
ମହାଘୋର ସମର କଲେ ସେ ଅପ୍ରମିତ ।
ଜମ୍ବୁବକୁ ଚାହିଁଣ ବୋଲନ୍ତି ସୀତାକାନ୍ତ
ଆଜର ଚରିତ ଦେଖିଲୁ ଆଚମ୍ବିତ ।
ପୁଷ୍ପକ ବିମାନ ତ ପଛକୁ ଲେଉଟିଲା
ରଣଭୂମି ଛାଡ଼ିକରି ଉପରେ ଉଠିଲା ।
ଏକ କପିଏ ଯେ ଜଣାଏ ପୁଣ ଯାଇ
ସେନାପତିଙ୍କ ସଙ୍ଗେ ଯୁଝୁଛି ଲଙ୍କସାଇଁ ।
ସେନାପତି ଯୂଥପତି ରଥ ଧରୁଛନ୍ତି
ବିଭୀଷଣ ନାରାଚ ଭରସି ବିନ୍ଧନ୍ତି ।
ରାବଣର ପୁଅ ନାତି କରନ୍ତି ସମର
ଶୁଣି ଉଦବେଗ ମନ ଶ୍ରୀରାମଚନ୍ଦ୍ରଙ୍କର ।
ସୁଗ୍ରୀବ ଜମ୍ବୁବକୁ ଯେ ସଙ୍ଗତରେ ଘେନ
ନନ୍ଦଘୋଷ ରଥ ହେ ଚଳିଲେ ରାମ ପୁଣି ।
ଜୟ ଶଙ୍ଖ ଶବଦ କଲେ ରାମ ପୁଣ
ନନ୍ଦିକେଶର ଗର୍ଜନ କଲେ ଘୋର ଜାଣ ।
ଧୀରେ ଧୀରେ ମାତଳି ବାହଇ ରଥପୁଣ
ଗର୍ଜନ ଜୟ ଶଙ୍ଖରେ ଦୈତ୍ୟହେଲେ କ୍ଷୀଣ
ଲଙ୍କପତି ସଙ୍ଗରେ ପଡ଼ିଲେ ସେ ଭେଟ
ରାମତାଳି ହୁଳହୁଳି ଶବଦ ଗରୁ ଡାକ ।
ଶ୍ରୀରାମ ବୋଇଲେ କାହିଁ ଯିବୁରେ ପାପିଷ୍ଠ
ତୋ ପୁଷ୍ପକ ବିମାନକୁ ମୋ ନନ୍ଦଘୋଷ ରଥ
ଆଜ ଜୀବନ ଆଶା ଛାଡ଼ ଲଙ୍କପତି
ବିଭୀଷଣ ପଛକରି ଆପଣେ ଆଗହୁଅନ୍ତି ।
ଶ୍ରୀରାମଙ୍କୁ ଦେଖିଣ ଯେ ବିଶ୍ରବାର ସୁତ
ତୀକ୍ଷଣ ମୁନା ନାରାଚସେ ବିନ୍ଧିଲା ଦୁଇଶତ ।
ଆସନ୍ତେ ବାଣଯେ କରେ ଘୋର ରାବ
ବାବଲ ବାଣରେ ତା ଛେଦିଲେ ରାଘବ ।
ମହାପାରୁଶ ବୋଲି ନାମ ତା ତନୟେ
ବିଭୀଷଣ ସଙ୍ଗରେ ସମର ଘୋରକଏ ।
ପରମାର୍ଥ ଶଉଘର ହେଲା ଘୋର ରଣ
ମହାଶୂର ସଙ୍ଗତେ ଯୁଝେ ସୁଶୋଦନ ।
ଲୋହିତାକ୍ଷ ନଳ ଯେ ହେଲେ ଭେଟାଭେଟି
ସୁଗ୍ରୀବ ବଜ୍ର କପଟ ଗଦା ପିଟାପିଟି ।
ବିଟଙ୍କ ଗଛ କରିଣ ଫେଡ଼ା କପିନାହା
ମାଲ୍ୟଯୁଦ୍ଧ କଲେ ଧରାଧରି ବେଢ଼ା ବାହା ।

କୁମ୍ଭକ ସଙ୍ଗରେ ଯୁଦ୍ଧ ଗନ୍ଧମାଦନ
ତାଳମ୍ବକୁ ଓଗାଳିଲା ସଉରି ଯେ ପୁଣ ।
ବୃଦ୍ଧ କପଟ ନନ୍ଦନ ଦୁହେଁ ଚଳିଗଲେ
କେଶରୀ ମହାଶନ ଏକମେଳ ହେଲେ ।
ପ୍ରଶସ୍ତ ଅଙ୍ଗଦ ଯେ ହେଲେ ମରାମରି
ରଶ୍ମିକେତୁ ସଙ୍ଗରେ ଜମ୍ବେବ ଯୁଦ୍ଧ କରି ।
ଜ୍ୟୋତି ସାଗରସଙ୍ଗରେ ଜମ୍ବେବ କଲାରଣ
ଗବାକ୍ଷର ସଙ୍ଗତେ ଯୁଝଇ ବଜ୍ରରଣ ।
ମିହଘନ ଗବଏ ସମର ମହାଘୋର
ଅଶ୍ୱକର୍ଣ୍ଣ ସଙ୍ଗରେ ହନୁର ପିଅର ।
ଶୂର ବଜ୍ରରଣ ଯେ ହେଲେ ପିଟାପିଟି
ଦଶକାଳବୃଦ୍ଧ ଯେ ଖଦଧ ପିଟାପିଟି ।
ବକାସୁର ବସନ୍ତ ଯେ ସମର କଲେ ବେନ
ଏକପାଦ ସୁଶୋଭନ ହେଲେ ଅନ୍ୟାଅନ ।
ଅମର ଅନ୍ତକ ଦଧିମୁଖ ସଙ୍ଗେ ଦ୍ୱନ୍ଦ୍ୱ
ଧୂମ୍ରାକ୍ଷର ସଙ୍ଗରେ ଯେ ଝଗଇ ମହେନ୍ଦ୍ର ।
ଅଶୋକ କଞ୍ଚଣର ସମର ବଣ୍ଟାବଣ୍ଟି
ପାଟୋଳ ଶତବାଳ ସମର କଣ୍ଠାକଣ୍ଠି ।
ଶୂର ବଳମୁଖ ସଙ୍ଗରେ ଯୁଦ୍ଧ କଲା
କୁନ୍ଦ ପଞ୍ଚଶିରା ଯୁଦ୍ଧ କରନ୍ତି ସେ ଭଲା ।
କାଳମୁଖ ଅଗ୍ନିକେତୁ କରନ୍ତି ସମର
ଦଧିମୁଖ ଓଗାଳିଲା ଅଇରି ଜମ୍ବୁ ବୀର ।
ସୁରସୁର ସର୍ବେ ପନାଶିଲ ଯୁଦ୍ଧ କଲା
ଅଜୟ ସୁଶୋଦନର ସମର ବାଜିଲା ।
ବିରୁପାକ୍ଷ ସମ୍ପାତି ସମର ଘୋର ବାଜେ
ଶ୍ରୋଣିତାକ୍ଷ ସାଗର ଯୁଦ୍ଧକୁ ଭଲ ସାଜେ ।
ପାରୁଶର ସଙ୍ଗରେ ଅମଏ ଯୁଦ୍ଧ କଲା
ଦଶଗ୍ରୀବ ସଙ୍ଗରେ ଯେ ଶ୍ରୀରାମ ରହିଲା ।
ଋକ୍ଷ କପି ସୈନ୍ୟ ଯେ ବୀରହିଁ ମହାବୀର
ଜଣେ ଜଣେ ହୋଇଣ ସେ କରନ୍ତି ସମର ।
ଦୁଇବଳ ଥାଟରେ ବାଜେ ବୀର ତୁର
ଆୟୁଧ ପିଟାପିଟି ହୁଅନ୍ତି ଆଗର ।
ପାଦଭରେ ଟଳମଳ ମେଦିନୀ କମ୍ପେ ଭଲେ
ନାହିଁ ଯେ ପଟାନ୍ତର ଯୁଦ୍ଧକୁ ଗୁହିଁଲେ ।
କେ କହିପାରିବ ହେଲା ଖଚ୍ଛନ୍ଦ ମାରୁଣି
ଉପରେ ଦେବଗଣ ଦେଖନ୍ତି ତାହା ପୁଣି ।

ଦକ୍ଷିଣେ ରାକ୍ଷସ ଯେ ଉତ୍ତରେ କପିବଳ
ରଥ ଗଜ ଅଶ୍ୱ ଯେ ଅନେକ ଚହଳ ।
ଭୁହାଇ ସମର ଯେ ଅଙ୍ଗ ଛନ୍ଦ ବାଦ
ନାହିଁ ନାହିଁ ଭୁଲଇ ତିନି ପୁର ମଧ୍ୟ ।
ଆଗଭରେ ଯୁଝନ୍ତି ନ ଘୁଞ୍ଚନ୍ତି ପାଏ
ବେଳକୁ ବେଳ ସମର ଅଗୋଚର ହୁଏ ।
କନ୍ଧରେ ଫରି ଗଦା ଯେ ଚକ୍ରଧରି
ବାନରେ ଚରୁଣିକ ଘେନି ଯୁଦ୍ଧ କରି ।
ଯେ ଯେଉଁ ଆୟୁଧଯେ ଲୋଡ଼ିଲା ବେଳେପାନ୍ତି
ଯେ ଯାହାର ଆୟୁଧ ଯେ ଘେନିଣ ମାରନ୍ତି ।
କେ କାହାର ଆୟୁଧ ବାରି ତ ନୁହଇ
ପଡ଼ିଲର ଶସ୍ତ୍ର କେ ଧରିଣ ମାରଇ ।
ତ୍ରୈଲୋକ୍ୟରେ ଗହଳ ଯେ ହାଲହୋଳ ବାଜେ
ପୃଥିବୀ ଘୋଟଇ ଯେହ୍ନେ ପ୍ରଳୟ ମେଘ ଗର୍ଜେ ।
ପାଷାଣ ତରୁବର ଯେ ନାନା ପ୍ରହରଣ
ଆତଯାତ ହୋନ୍ତି ଯେ ପକ୍ଷୀଙ୍କ ଆକାର ।
କେତେ ଋକ୍ଷ କପି ସେ ପଡ଼ିଲେ ନ ଜାଣି
ଦୈତ୍ୟଙ୍କର ମଡ଼ା ସେ କେ ପାରିବ ଗଣି ।
ରକତର ନଦୀ ବହିଲା ମେଦିନୀଯାକ
ସିନ୍ଦୂର ଗୁଣ୍ଡି ଦେଇ ପୃଥ୍ୱୀ କଲେ ଲେଖ ।
ତେସନେକ ସଞ୍ଜାତ ଯେ ଦିଶେ ବସୁନ୍ଧରା
ରକତ ମାଏଁ ସରେ ହେଲା ମହାଆଳ ।
କ୍ଷଣକେ ଧୂଳିଉଠେ କ୍ଷଣକେ ନଦୀ ବହେ
ଅଳ୍ପକ୍ଷଣେ ସଂଗ୍ରାମ ଯେ କ୍ଷଣକେ ନ ରହେ ।
ଝାଳ ରକତରେ ଯେ ଓଦା ସର୍ବ ଲୋକେ
କେ ସହି ଅସମ୍ଭାଳ ହୋଇଣ ଯୁଝେ ଥୋକେ
ମାଙ୍କଡ଼ଙ୍କର ଉପରେ ଉଡ଼ନ୍ତି ଅନୁକ୍ଷଣେ
ତେତେ ସୈନ୍ୟ ଗୋଟାସମସ୍ତେ ରଙ୍ଗବର୍ଣ୍ଣେ
ଏକକୁ ଆରେକ ବୋଲନ୍ତି ପିଠି ରକ୍ଷା
କରନ୍ତି ସଂଗ୍ରାମ ଯେ କରିଣ ସେ କକ୍ଷା ।
ଏମନ୍ତେ ରାବଣର ସମର ମହାଘୋର
ଲେଖା ନାହିଁ ତହିଁରେ କେତେ ମରିବାର ।
ତିନି କୋଶ ଓସାରରେ ରକତ ନଦୀବହି
ପଞ୍ଜା ପଞ୍ଜା ହୋଇ କବନ୍ଧ ନାଚି ଯେ କରଇ
ସାତତାଳ ଗଭୀର ବହେ ରକତ ନଦୀ
ମଡ଼ାମାନେ ଶ୍ରୋଣିତରେ ଭାସିଯାନ୍ତି ବେଗି । ୬୯

ଶ୍ୱାନ ଶୃଗାଳ ଗୃଧ୍ରପକ୍ଷୀ କରନ୍ତି ଆହାର
ଶୋଣିତ ମିଶଇ ଯାଇ ସମୁଦ୍ର ଭିତର ।
ମହାପାରୁଶ ସଙ୍ଗେ ଋଷଭ ଯୁଦ୍ଧ କଲା
ନାହିଁ ନାହିଁ ତ୍ରିପୁରେ ପଟାନ୍ତର ଭଲା ।
ଅନେକ ସଂଗ୍ରାମ ଯେ କଲେ ତ୍ରିଭୁବନରେ
ଦେବଙ୍କୁ ଦୁର୍ଲ୍ଲଭ ଯେ ମାନବେ ଅଗୋଚରେ
କୋପରେ ରାବଣ ତନୟ ଆଗସର
ଶରୀର ଯୁଲକାଇ ଅସୁରାଶର କରି ।
ପ୍ରକ୍ଷେପର କଲ ତାହା ଛେଦଇ ଶଉରୀ
ନୁହନ୍ତି କେହି ଊଣ ସମସ୍ତେ ସମସରି ।
ବେନ୍ତୁଁ ବେଳ ସମର ହେଲା ଅଗୋଚର
ଦୁହିଁଙ୍କର ଶରୀର ରକତେ ଜର ଜର ।
ବାଣର ଆଘାତରେ କମ୍ପେ ଯେ ମେଦିନୀ
କୋପଭରେ ଶଉରୀ ଯେ ତରୁଶିଳା ଘେନି ।
ନେଇ ପହଞ୍ଚିଲା ଆଗକୁ ଆଗ ସରି
ଚଳଗଲା ତରୁଶିଳ ଘୋରନାଦ କରି ।
ତରୁଶିଳ ଆସନ୍ତେ ରାବଣର ତନୟେ
ସହସ୍ରେ ନାରାଚ ଯେ ପ୍ରକ୍ତିତୁଲ୍ୟ କଏ ।
କେବେହେଁ ନିବାରି ନ ପାରିଲା ମହାତରୁ
ଅଇଲା ଶାଳ ଶିଳ ଗର୍ଜନ ନାଦ ଗରୁ ।
ଆସିଣ ପଡ଼ିଲା ଯେ ଦୈତ୍ୟର ହୃଦରେ
ଛେଚ ହୋଇଯାନ୍ତେ ସେ ପଡ଼େ ମହୀତଳେ ।
ମୁକୁଟ କୁଣ୍ଡଳ ଯେ ସହିତେ ମୁଣ୍ଡ ଛିଡ଼ି
ଥର ଥର ହୋଇଣ ରଥରୁ ତଳେ ପଡ଼ି ।
ଦେଖିଲା ଲଙ୍କପତି ପୁତ୍ରର ବିନାଶ
ବଜ୍ରକପଟ ସହିତେ ଦୁହେଁ ଗଲେ ନାଶ ।
ମାଲ ଯୁଦ୍ଧ ବନ୍ଧେ ସୁଗ୍ରୀ ମୋଡ଼େ ତାର ମୁଣ୍ଡ
ଉଠିଣ ନାତେ ପୁଣି ମାରେ କପି ଷଣ୍ଡ ।
ଦେଖିଣ ଦଶଗ୍ରୀବ ଯେ ଭୟ ମନେ କଲା
ସୁଶୋଦନ ହାତରେ ଯେ ମହାଶନ ମଲା ।
ସୁବର୍ଣ୍ଣ ରଥରେ ଯେ ଥିଲା ମହାନାଦ
ସଉରୀକ ଦେଖିଣ ସେ ଅନେକ କଲାଭେଦ ।
ସହିଣ ସଉରୀ ଯେ ହେଠମାଥ ହୋଇ
ଅନେକ ନାରାଚ ଯେ ଶରୀରେ ବଜାଇ ।
ରୁଧିର ଖଳ ଖଳ କପାଳରୁ ଯୋଗ
ଓଷ୍ଠ କାମୋଡ଼ ଧାଏଁ ସଉରଭ ବର୍ଷି ।

ରଥ ଲେଉଟାଇ ଯେ ପକାଏ ସେହୁ ତୋଳି
ଗୋଇଠାଏ ମାରିଣ ଯେ ମୁଣ୍ଡ କଲା ଧୂଳି ।
ପଳାଇ ମହାଶନ ଧଇଲା ପୁଣି ଗଦା
ସଉରୀ ବକ୍ଷରେ ମୋର ଦୁଇହାତ ଶୋଧା
ଏତେ ବୋଲିଣ ବୀର ଗୃଲେ ଏଣେତେଣେ
ଅନେକ ଶସ୍ତ୍ର ଯେ ପଡ଼ିଅଛି ରଣେ ।
ଗୋଟାଇ ଗଦାଏ ପୁଣ ଧଇଲା ସଉରୀ
ମହାଶନ ସଙ୍ଗରେ ସମର ବେଗ କରି ।
ହୁନ୍ତକାରୁ ମଲ୍ଲେ ଯେ ଉପ୍ରୋଧ ତହିଁ ନାହିଁ
ଏକକୁ ଆରେକ ଯେ ଠକାଠକ ହୋଇ ।
ଉଶ୍ୱାସି ଘାତ ଦିଅନ୍ତି ପଡ଼ିଲେ ସମରେ
ହେଠ ଉଠାଇଣ ଧଡ଼ସି କେହୁ ମାରେ ।
କେ ମାରେ ବୋଲିଣ ଦେଖାନ୍ତି ଯେ କାୟେ
ପଶିଣ ଲେଉଟନ୍ତି କେ ପଛସରି ଯାଏ ।
ଗଦାମୁନକୁ ଲୟ କରିଛନ୍ତି ଏକ
ପୁଣି ମହାଶନ ଯେ ହାଲିଇଲା ବେକ ।
ଘାଆ ପାଇଲା ପ୍ରାୟେ ସଉରୀ ବୀର ଭଳି
ଏହି ସମୟେ ଅସୁର ପିଠେ ଗଦାତୋଳି ।
ଶୂଳ ମାରନ୍ତେ ପୁଣି ଭୂମି ଶୋଧା ହେଲା
ଭଲା ସେ ସଉରୀ ଆଡ଼ରେ ବଞ୍ଚାଇଲା ।
ଡେଇଁଣ ଦୈତ୍ୟ ପୁଣି ମାଇଲା ମୁଣ୍ଡକୁ
ଲଇଁଣ ମହାଶନ ଖଣ୍ଡିଣ ପେଟକୁ ।
ଦୁହିଁଙ୍କର ଦେହେ ଯେ ନ ବାଜେ ପୁଣି ଅସ୍ତ୍ର
ଧାଇଁଣ ରଣେ ପଶିଲା ପୌଲସ୍ତିର ଶିଷ୍ୟ ।
ପ୍ରାଣର ବିକଳେ ଦୁହେଁ ଗଦା ନ ଛାଡ଼ନ୍ତି
ଦୁହେଁ ଜଡ଼ ବନ୍ଧରେ ଗଡ଼ାଗଡ଼ି ହୁଅନ୍ତି ।
ତଳେ ଦୈତ୍ୟକୁ ମାଡ଼ି ବସିଲା ସଉରୀ
ମୁଣ୍ଡେମୁଣ୍ଡ ମାରିଣ ଯେ ତୋଟି ତା ବିଦାରି
ପଡ଼ିଲା ରାବଣ ତନୟ ସେ ମହାଶନ
ଦେଖିଣ ହୃଦ ଭାଜିଲା ତାହାର ମୁର୍ଦ୍ଧନ ।
ଇନ୍ଦ୍ରଜିତ ସମାନେ ଅଟେ ସେହୁ ପୁଣ
ତାହାକୁ ଯୁଦ୍ଧେ ମାରିଲା ସଉରୀ ବୀର ଜାଣ
ଆବର ଦେଖିଲା ସେ ପରମାର୍ଥ ମଲା
ବିଶ୍ୱାକ୍ଷଣର ଶରକୁ ବଞ୍ଚାଇ ନ ପାରିଲା ।
ଖଣ୍ଡୁତା ପୃଷ୍ଠୁରଙ୍କର ହେଲା ମହାରଣ
ଦୁହେଁ କ୍ଷୀବର ଅଟେ ସଂଗ୍ରାମେଣ ।

ଅସୁର ଅସ୍ତ୍ର ଯେନ ସଂଗ୍ରାମ ଦୁହେଁ କଲେ
ଶ୍ରାବଣ ବରଷା ପ୍ରାୟେ ନାରାଚ ବର୍ଷିଲେ ।
ରଣ ଗୋଳ କାଳେ ଯେ ରାବଣର ଭାଇ
ପରମାର୍ଥକୁ ଶକତି ଯେ ମାଇଲା ଭୁହାଇ ।
ନିବାରି ନ ପାରିଲେ ଯେ ରାବଣର ସୁତ
ପ୍ରହସ୍ତର ସେ ଯେ କଲକ ବହୁତ ।
ତତକ୍ଷଣେ ଶକତି ପଡ଼େ ବକ୍ଷସ୍ଥଳେ
ପିଠି କଣ୍ଟକ ବାହାର ହେଲା ଏକାବେଳେ ।
ରକତ ଉଦ୍‌ଗାରି ପଡ଼େ ରାବଣର ବାଳ
ଦେଖିଣ ସେମହାଶାନ୍ତା କରେ ସେ ଲଙ୍କପାଳ
ଅଙ୍ଗଦ ହସ୍ତରେ ପୁଣ ପ୍ରଶସ୍ତ ବୀର ମଲା
ଦୁହିଁଙ୍କର ସମର ଯେ ଅନେକ ହୋଇଲା ।
ନାନା ପ୍ରହସ୍ତର ଯେ ବର୍ଷିଲା ପ୍ରଶସ୍ତ
ବିଚିତ୍ର ଗତି କରି ବଞ୍ଚାଏ ବାଳି ସୁତ ।
କେବଣ କାଣ୍ଡ ଆସିଣ ବାଜେ ପୁଣ ଅଙ୍ଗେ
ବେନି ବୀରେ କୁଶଳ ଅଟନ୍ତି ରଣରଙ୍ଗେ ।
ପ୍ରଶସ୍ତ ବାଣରେ ବିମୁଖ ତାରା ସୁତ
କୋପଭରେ ଧଇଲା ସେ ଏକ ପରବତ ।
ଅଖାଳ ପିଟିଲା ନେଇ ପ୍ରଶସ୍ତ ଉପରେ
ପ୍ରାଣ ଛାଡ଼ି ପଡ଼ିଲେ ଘୋଡ଼ାଏ ଭୂମିରେ ।
ସାରଥି ବାଳ ଧରି ତଳେ କଚାଡ଼ିଲା
ଆପଣେ ଧାଇଁଯାଇ ରଥରେ ଉଠିଲା ।
ଦେଖିଣ ପ୍ରଶସ୍ତ ଯେ ମାଇଲା ଶକତି
ଅଙ୍ଗଦ ଫେରାଇଲା କଟିଣ ଶତ ଗତି ।
ଅସ୍ତ୍ର ବଞ୍ଚାଇଣ ପଶିଲା ଯୁଦ୍ଧେ ପୁଣି
ଜଡ଼ ବନ୍ଧରେ ମାଲ ବିନ୍ଧାଣ କଲେ ଜାଣି ।
ପ୍ରଶସ୍ତ ବସିଲା ଯାଇ ଅଙ୍ଗଦ ବକ୍ଷସ୍ଥଳେ
ଗଡ଼ାଗଡ଼ି ହୋଇଦୁହେଁ ପଡ଼ିଲେ ରଥତଳେ ।
ସମ୍ଭାଳି ହୋଇ ପ୍ରଶସ୍ତ ବସି ନ ପାରିଲା
ବାଳିର ତନୟ ତାତଣ୍ଟିରେ ହାତ ଦେଲା ।
ଡାହାଣ ହାତ ଧରି ଖୁନ୍ଦିଲା ତା ପେଟକୁ
ବାମ ଆଣ୍ଠୁ ନେଇଣ ମାରିଲା ବୁକୁକୁ ।
ଉଠିକରି ଗୋଇଠାଏ ମାରେ ମୁଣ୍ଡେ ନେଇ
ଭାଜିଲା ମୂର୍ଦ୍ଧ୍ୱନା ଯେ ଚୂରିଖଣ୍ଡ ହୋଇ ।
ଗଳକାଳ ହୋଇ ଦୈତ୍ୟ ଛାଡ଼େ ପୁଣ ପ୍ରାଣ
ମଉଳା ହତ ରାବଣ ଦେଖେ ତତକ୍ଷଣ ।

ରଶ୍ମିକେତୁ ଜମ୍ବେବ ସମର ମହାଘୋର
କୁମ୍ଭକ ସଙ୍ଗେ ଯୁଝେ ଗନ୍ଧମାଦ୍ଦନ ବୀର ।
ଦୃଢ଼କପଟ ଯେ ଶ୍ରୀରାମ ହସ୍ତେ ମଲା
ଡାଳମ୍ବ ହସ୍ତରେ ଶତ୍ରୁଜିତ ପ୍ରାଣ ଦେଲା ।
ଲୋହିତାକ୍ଷ ନଳ ଯେ ସମର ଗରୁତର
ସୁଷେଣ ହସ୍ତରେ ଯେ ମରେ ମହେଶ୍ୱର ।
ଚନ୍ଦନ ହସ୍ତରେ ଜ୍ୟୋତି ସାଗର ପୁଣ ମଲା
ଗବାକ୍ଷର ହସ୍ତେ ବିଚୂରକ ପ୍ରାଣ ଦେଲା ।
ଗବାକ୍ଷ ମିହଘନ ବିଚୂରି ଯୁଝିଲେ
ଦେଖିକରି ଅଙ୍ଗଦ ଧାଇଁଣ ପଡ଼ିଲେ ।
ମିହଘନ ବୀର ଯେ ବଳେ ବଳବନ୍ତା
ତିନି ଭୁବନେ ତାକୁ ନାହିଁ କେ ଜିଣନ୍ତା ।
ଶର ବୃଷ୍ଟି କଲା ଯେ ବରଷା ସମାନ
ସାଧୁ ସାଧୁ କ୍ଷନ୍ଦୀଯେ ବୋଲନ୍ତି ଦୁଇସୈନ୍ୟ
ଅଙ୍ଗଦ ସୁଷେଣ ପବନ ତନୟେଣ
ଯାଇଁଣ ଉଠିଲେ ରଥ ଉପରେଣ ପୁଣ ।
ଅସ୍ତ୍ରଧାନ ଫିଙ୍ଗି ଯେ ପକାଇଲେ ତଳେ
ବିଭୀଷଣ ଧାଇଁଲେ ଏସନକ ବେଳେ ।
ରହ୍ନବରେ ଉଠି ଯେ ମାଇଲା ମୁଦ୍‌ଗର
ଅଙ୍ଗଡାଳ ଆଡ଼ ଦେଲ ମିହଘନ ବୀର ।
ରଥ ଫୁଟି ଅସ୍ତ୍ର ଯେ ବାହାର ହୋଇଲା
ଚେତେତବେଳେ ସାଧୁ ସାଧୁ ଶବଦ ଶୁଭିଲା ।
ଫିଙ୍ଗିଣ ପକାଇଲା ଶଙ୍ଖ ବୀର ରାସ୍ତେ
ଧାଇଁଣ ଧଡ଼ପଡ଼େ ହାଣିଲା ଗଦାଏ ।
କରବାଳ ଧରିଣ ମାରେ ବିଭୀଷଣ
ଛିଡ଼ିଣ ପଡ଼ିଲା ମୁଣ୍ଡ ନବକ ସଲଖେଣ ।
ଖଲ ଖଲ ହୋଇଣ ପଡ଼େ ଅନ୍ତ ଲୋଟି
ଗୃଗଙ୍କର ଦେହ ଯେ ରକତେ ହେଲ ସୋଟି
ମୁଣ୍ଡ ଖଣ୍ଡ ଘେନିଣ ଅଙ୍ଗଦ ବେଗେ ଗଲା
ରାବଣର ଆଗରେ ନେଇଣ ପକାଇଲା ।
ବୋଲେ ଦେଖ ଏବେରେ ଦଶଇ ବଦନ
ଏହି ମିହଘନରେ ତୋହର ନନ୍ଦନ ।
ଲଙ୍କପତି ଜ୍ଞାନ ନଯ ହାରିଲା ତାହା ଶୁହିଁ
ଆଗକୁ ଉଗାଳିଲା ପାଟୋଳି ଆସେ ଧାଇଁ ।
ଶତବାଳ ଗୋଡ଼ାଇ ଅଛି ତାର ପଛେ
କରେ ଧରି ଅଛି ସେ ଶାଳନାମେ ଛେଛେ ।

ସେ ଆସି ପିଟନ୍ତେ ପଡ଼େ ଦୈତ୍ୟବୀର
ଧାଇଁକରି ଶତବାଳ ବସେ ତା ବୁକୁର ।
ମୁଣ୍ଡକୁ ମୁଣ୍ଡ ମାରି ଘେନଲେ ତାର ପ୍ରାଣ
ପ୍ରତ୍ୟକ୍ଷେ ଦେଖିଲା ତ ଦଶଇ ବଦନ ।
ଦଶମୁଖ ପଡ଼ିବାର ଦେଖି ମୋହ ଗଲା
ଦଧିମୁଖ ହସ୍ତେ ଅଇର ଅନେକ ମଲା ।
ଦଶକାଳ ବୃଦ୍ଧ ବିକଟ ପ୍ରାଣ ମାରି
ଏକ ପାଦକୁ ନାଶ କରେ ସେ ସତ୍ୱରି ।
ମହେନ୍ଦ୍ର ବୃଧାରେ ବିଶ୍ୱକର୍ମା ପ୍ରାଣ ଦେଲା
କେଶରୀ ହସ୍ତେ ଅଶ୍ୱକର୍ଣ୍ଣ ପୁଣି ମଲା ।
ବକାସୁର ମଲା ବିଭୀଷଣ ହାତ ବାଜି
ଅଶୋକ ମଲା ବିବିଧ ମୁଥ ମାଡ଼ ବାଜି ।
ସୁରଣ ବୀର ମଲା ଦୁର୍ବନ୍ଦ ହସ୍ତର
ଏକଶୀରକୁ ନାଶିଲା ବଳନାମେ ବୀର ।
ମହେନ୍ଦ୍ର ବିଧାରେ ଅଇର କ୍ଷୟଗଲା
କାଳମୁଖ ହସ୍ତରେ ଅଗ୍ନିକେତୁ ପ୍ରାଣ ଦେଲା
କୁନ୍ଦ ପୁଣି ମୋଡ଼ିଲା ପଞ୍ଚଶୀର ମୁଣ୍ଡ
ସମରେ ଅମରକୁ କଲା ଖଣ୍ଡ ଖଣ୍ଡ ।
କଞ୍ଚଣ କରିଡ଼ିଲା ବିରୂପାକ୍ଷକୁ ଧରି
ସାଗର ହସ୍ତେ ଶୋଣିତାକ୍ଷ ସେ ଗଲା ମରି ।
ପନଶୀଳ ମାରନ୍ତେ ଯୂପାସୁର ମଲା
ଦେଖିଣ ଦଶଗ୍ରୀବ ମନେ ବିଚାରିଲା ।
ନିଶ୍ଚୟ ଶ୍ରୀରାମ ମୋତେ ଆଜ କରିବେ ନାଶ
ରଣରେ ପଡ଼ିଲେ ମୁଁ ଯିବି ସ୍ୱର୍ଗବାସ ।
ଆଜ କି ସଂଗ୍ରାମ ଛାଡ଼ିଲେ ସୁଖ ଅଛୁ
ଶଶତ ହେଲେ ଦେହ ନ ଯୋଗାଏ କଛୁ ।
ଅସଂଖ୍ୟ ସମର ମୁଁ କରିବି ଶତ୍ରୁ ଭୁଲେ
ବଇକୁଣ୍ଠ ପାଇବି ମୁଁ ଶ୍ରୀରାମ ହସ୍ତେ ମଲେ ।
ମୁହିଁ ବିନା ଆଗକରି ହରିଲ ତାର ନାରୀ
ନ ଦେବି ବୋଲିଣ ମୁଁ ଅଛୁ ଦୃଢ଼ କରି ।
ଯଦ୍ୟପି ଜାନକୀ ମୁଁ ଦେବି ଏହିକ୍ଷଣି
ଅନୁଗ୍ରହ କରିବେ ମୋତେ ରଘୁକୁଳମଣି ।
ପୁଣି ବର୍ତ୍ତିବେ କି ମୋର ବନ୍ଧୁ ପୁତ୍ର ଭାଇ
ଜନ୍ମମୃତ୍ୟୁ ସଂସାରରେକେବେହେଁ ଶରନୋହି
ମୁହିଁ ଯେତେ କ୍ଷତ୍ରୀ ମୁହିଁ ତାହାତ ଜାଣଇ ।
ବ୍ରହ୍ମାଣ୍ଡରେ ଯେତେ କ୍ଷତ୍ରୀ କାହାକୁ ନ ଗଣଇ

ଶ୍ରୀରାମ ଯେବେ ମୋତେ ପାରିବେରେ ମାରି
ଚଉଦ ଭୁବନେ ମୋତେ କେହି ନାହିଁ ସରି ।
ଏହାଙ୍କ ସମାନ ମୋତେ ଦଶରଥ ସୁତେ
ଦେବତା ଭୃତ୍ୟପଣେ ଖଟିଥାନ୍ତି ମୋତେ ।
ଏହିକ୍ଷଣି ନାରାଚେ ମୁଁ ଘେନିବି ପରାଣ
ଏତେ କହି ଲଙ୍କାରାୟେ ଧରେ ଦଶବାଣ ।
ଶୁକ ସାରଣ ବେନି ମନ୍ତ୍ରୀ ବାହୁଛନ୍ତି ରଥ
ତାହାଙ୍କୁ ଗୃହ୍ଣିଣ ସେ ବୋଲେ ଦଶମାଥ ।
ଲକ୍ଷେକ ଅଶ୍ୱ ଯେ ଯୋଚିଛି ସବୁ ସମ
ତୁମ୍ଭେ ତ ସାରଥି ପଣକୁ ଅଟ ଅନୁପମ ।
ପୁଷ୍ପକ ବିମାନ ଚଳେ ଦିବ୍ୟ ଜ୍ୟୋତି ଗତି
ଏଥି ବସି ଯୁଝିଲେ ଜିଣିପାରେ ପୃଥ୍ୱୀ ।
ମୁହିଁ ପୁଣି କ୍ଷତ୍ରିୟ ପଣରେ ବଳବନ୍ତା
ତିନିପୁର ମଧ୍ୟରେ କେ ମୋତେ ଜିଣନ୍ତା ।
ସାବଧାନ ହୋଇ ତୁମ୍ଭେ ବାହା ରଥବର
ମୁହିଁ ଆଜ କରିବି ଅସଂଖ୍ୟ ସମର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ହଲାଇବି କୋପେ
ଲକ୍ଷେକୋଟି ନାରାଚ ମୁଁ ପୁରାଇବି ଚାପେ ।
ଦେଖି ମୋର ମହିମା କ୍ଷତ୍ରିଙ୍କ ଭୁଜବଳ
ଶ୍ରୀରାମର ସହିତରେ ଋକ୍ଷ କପିବଳ ।
ନାରାଚର ଅନଳେ ମୁଁ କରିବି ଭସ୍ମ ରାଶି
ଦେଖିଥାନ୍ତୁ ଶୂନ୍ୟରେ ସ୍ୱର୍ଗପୁରବାସୀ ।
ବୋଇଲା ବାସ୍ତରୀ କୁମର ମୋର ଥିଲେ
ଏକସ୍ତରୀ କୁମର ଶ୍ରୀରାମ ମାଇଲେ ।
ତେରଶତ ନାତିରୁ ଅଛନ୍ତି ଦୁଇ ପୁଣ
ଆଜ ସମସ୍ତେ ନାଶ ହେଲେ ଏବେ ଜାଣ ।
ଏତେବୋଲି ଅସୁର ଛାଡ଼େ ସିଂହରଡ଼ି
ବସୁନ୍ଧରା ଥର ଥର ହୋଇଣ କମ୍ପେ ପଡ଼ି ।
ଋକ୍ଷ କପି ରାକ୍ଷସ ଡରିଲେ ତାହା ଶୁଣି
ଦେବତାଏ ଭୟ କଲେ ସ୍ୱର୍ଗପୁରେ ପୁଣି ।
ଜଗତ ସଂସାର ଯେ ହେଲା ଟଳମଳ
ଆପଣେ କାୟା ବଢ଼ାଏ ବଣବୀର ବାଳ ।
ତିନିଲକ୍ଷ ଯୁଣ ସେ ହେଲା କାୟା ଉଚ
କାଳ ଦେବତା କି ଉପୁଜେ ପୁଣ ମଞ୍ଚ ।
ପ୍ରଚଣ୍ଡ ମୂରତି ସେହୁ ଦିଶେ ଉଗ୍ର ତେଜ
ଦଶ ଭୁଜରେ ଧନୁ ନାରାଚ ଧରି ଭଜ ।

କାମରୁପୀ ବିମାନ ତକ୍ଷଣେ ବଢ଼ି ଗଲା
ଚନ୍ଦ୍ର ସୂର୍ଯ୍ୟ ସବୁଙ୍କୁ ସେ ବହନ ଜିଣିଲା ।
ମାୟାର ଯୁଦ୍ଧକୁ ସେ ଅଟଇ ଭାଜନ
ଯେବଣ ରଥରେ ଯୋଚା ଅଛୁ ଲକ୍ଷେ ଯାନ ।
ସାରଥି ବାହୁଲେ ରଥ ଲୀଳା ଗତିରେ ଚଳଇ
ଯନ୍ତ୍ରୀଙ୍କ ମନକରେ ତହିଁକ ଚଳଇ ।
ରାବଣର ତେଜ ମୂର୍ତ୍ତି ଦେଖନ୍ତି ରଘୁନାଥ
ମନରେ ବିଚାରନ୍ତି କୋଦଣ୍ଡ କାଣ୍ଡ ହସ୍ତ ।
ଏ କିସ ଭୟଙ୍କର ଦିଶେ ମେଘମାଳ
ଆନ ଆନ ମୂର୍ତ୍ତି ଯେ ଦିଶେ ମୁଣ୍ଡମାଳ ।
ମାତଳି ବୋଲେ ବ୍ରହ୍ମରାକ୍ଷସ ଦଶଶିର
ଏବେ ସେ ମାୟାରୂପ ଦେଖାଏ ଭୟଙ୍କର ।
ଏମନ୍ତ ରୂପକୁ କାହିଁ ବଶ ତୋର ସୀତା
ଏହିଟି ଲଙ୍କପତି ଇନ୍ଦ୍ରଜିତର ପିତା ।
ଏହାର ପରି ପୁରୁଷ ପୃଥ୍ୱୀରେ ଯେବେ ଥାଇ
ତେବେ ସେ ପୃଥ୍ୱୀଦେବୀ ଅନେକ ଦୁଃଖପାଇ
ବିପରୀତ ରୂପ ସେ ଧରେ କ୍ଷଣେ କ୍ଷଣ
ଅତି ଭୟଙ୍କର ଯେ ଦିଶଇ ରାବଣ ।
ମାତଳି ବୋଇଲା ତୁମ୍ଭେ ଶୁଣ ହେ ଶ୍ରୀରାମ
ତିନ ଲକ୍ଷ ବଳ ନାଶିବାକୁ ଏକାକୀ ସେ କ୍ଷମ
ତାରା ମଣ୍ଡଳେ ବିମାନ ଶିଖା ଲାଗେ ଯାଇ
ଭଇରବ ରୂପ ଦେଖାଏ ଲଙ୍କାସାଇଁ ।
ତୁମ୍ଭର ନିଜରୂପ ପ୍ରକାଶ କର ଏବେ
ଦେଖିଣ ରାକ୍ଷସ ଯେ ପାଆନ୍ତୁ ପରାଭବେ ।
ମାତଳିର ବୋଲେ ଶ୍ରୀରାମ ବୋଲେ ପୁଣ
ଏବେ ଚଳାଅ ମୋର ନନ୍ଦିଘୋଷ ଯାନ ।
ଆଜ୍ଞାରେ ନନ୍ଦିଘୋଷ ଯାନ ଚଢ଼ିଗଲା
ଧ୍ରୁବ ମଂଡଳରେ ଯାଇ ଶିଖା ତା ଲାଗିଲା ।
ବିଂଶ ନୟନରେ ଚାହିଁଲା ରାବଣ
ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁ ଯେ ଅଟେ ଯାର ପୁଣ ।
ଶରୀର ଅଟଇ ଯେ ଧରଣୀ ତିନିପୁର
ଦେଖିଣ ଭୟ କଲା ବିଶ୍ରବା କୁମର ।
ଶାନ୍ତ ମୂର୍ତ୍ତି ହୋଇଣ ରହିଲା ରଣ ଭୂଇଁ
ସାମାନ୍ୟ ରୂପ ହେଲେ ରଘୁନାଥ ସାଇଁ ।
ଲକ୍ଷ ବାନର ଯେ ଦୈତ୍ୟବଳ ଦେଖି ପୁଣ
ଦୁଇଜଣ ଅଟନ୍ତି ମାୟାରେ ବିଚକ୍ଷଣ ।

ଦେଖିକର ଆଗରେ ହୋଇଲା ଅଙ୍ଗଦ
ରାବଣ ଦଶ କାଣ୍ଡ ବିନ୍ଧିଲାକ ବେଗ ।
ଏକା କାଣ୍ଡକରେ ଛେଦିଲା ସୁବାହୁ
ଦେଖିଣ ଆଗଭର ହେଲେ ରାମ ରାହୁ ।
ରହ ରହ ବୋଲିଣ ସୁବାହୁ ଡାକଦ୍ୟନ୍ତ
ରାବଣ ସଙ୍ଗରେ ମୁଁ ଯୁଝିବି ଏ ଘାନ୍ତ ।
ଏସନେକ ବିଚାରନ୍ତେ ରଘୁକୁଳପତି
କରରେ ଧରିଛନ୍ତି କୋଦଣ୍ଡ ଭାରତି ।
ଏସନକ ସମୟରେ ମିଳେ ବିଭୀଷଣ
କରରେ ଧରିଛି ସେ ଯେ କୋଦଣ୍ଡକାଣ୍ଡବାଣ
ଶ୍ରୀରାମର ଡାହାଣ ପଖା ଆବୋରିଲା
ସୁବାହୁ ସୁକଣ୍ଠିକୁ ସେହୁ ଯେ ବୋଇଲା ।
ରଘୁନାଥ ବାମକରେ ରହରେ ଦୁଇଜଣ
ପ୍ରତିଅସ୍ତ୍ର କରିଣ ଛେଦିବ ଶରମାନ ।
ସୁଗ୍ରୀବର ମୋହର ପାଖରେ ଏବେ ଥାନ୍ତୁ
ଅଙ୍ଗଦ କୁମର ତୁମ୍ଭ ପାଖରେ ରହନ୍ତୁ ।
ଦେଖିଣ ଦଶଗ୍ରୀବ ଅଳପ ହସିଲେ
ଜାଣିବା ତୋହର ବଳ କେତେକ ବୋଇଲେ
ରଘୁନାଥ ବାମପାଖେ ସୁବାହୁ ସୁକଣ୍ଠି
ବାଳିର କୁମର ଯିବ ସଙ୍ଗତରେ ପୁଣ ।
ଏକମୁଖ ହୋଇଣ ରହିଲେ ତିନ କ୍ଷଣୀ
ଅଷ୍ଟସେନା ଆବର ପଚାଶ ଯୂଥପତି ।
ମଲ୍ଲ ମହାମଲ୍ଲ ଯେ ଅନେକ ଅଛନ୍ତି
ସମସ୍ତେ ମେଳ ଯେ ସେଠାରେ ହୋଇଛନ୍ତି ।
ବୀର ମହାବୀର ଯେ ଜଗଜେଠିମାନ
ଲକ୍ଷ କପିବଳ ଯେ ଅଗୋଚର ସୈନ୍ୟ ।
ଛାଡ଼ିଲେ ଆରେଣୀ ଯେ ପ୍ରଚଣ୍ଡ ଗୋଳଯୁଦ୍ଧ
ଯେ ଯାହାର ଠାବରେ ଘେନିଣ ଆୟୁଧ ।
ଅସୁର ବଳ ଘେନିଣ ଦଶାନନ ରାୟେ
ରଥ ଗଜ ପଦାତି ଯେ କଳଣା ନ ଯାଏ ।
ସମ୍ମୁଖ ହୋଇଣ ରହିଲେ ବେନି ଦଂଡ
ଆହୋବଳରେ ଯେ ଲାଗିଲା ଯୁଦ୍ଧ ଖଂଡ ।
ମୁକୁଟବନ୍ଧା ଯୋଦ୍ଧାଙ୍କର ଲଗାଲଗି ପିଠି
ପ୍ରତାପି ଲଙ୍କେଶ୍ୱର ସଂଗ୍ରାମକୁ ଉଠି ।
ପୁନ ନାତି ଗୋଟିଏ ନାହାନ୍ତି ଆଉ ଶାଖା
ଇନ୍ଦ୍ର ସଙ୍ଗେ ଯୁଝି ପାରେ ଲଙ୍କପତି ଏକା ।

କେହୁ ହାତୀ ନେଇଣ ଠେକନ୍ତି ରଣ ମୁଖେ
ଘୋଡ଼ାକୁ ଧୂଆଁଇ କେହୁ ପେଶେ ଏକଲକ୍ଷେ
କେହୁ ରଥ ଘୋଡ଼ା ଘେନଣ ଉଠନ୍ତି
କେଉଁଠାରେ ହଣାହଣି ଲାଗନ୍ତି ପଦାତି ।
ଶ୍ରୀରାମଙ୍କର ସୈନ୍ୟ ପଶିଯାଇ ଯୁଝି
ଏକ ମଲେ ଆରେକ ଯେ ପଳାଇଯାଏ ଭାଜି
ଅଙ୍ଗଦ ସୁଗ୍ରୀବର ସୁଶୋଦନ ପୁଣ
ନଳ ନୀଳ ଗନ୍ଧମାର୍ଦ୍ଦନ ବିଭୀଷଣ ।
ଜାମ୍ବବ ଯେ ପନଶୀଳ ସତ୍ତରି ସେନାପତି
ଦଧିମୁଖ କାଳମୁଖ ଅଟନ୍ତି ପ୍ରଭୃତି ।
ବସନ ପବନ ଯେ ଡାଳମ୍ବ ସୁଶୋଦନ
ଗବଏ ଗବାକ୍ଷ ଯେ ସାରସ କାଳଞ୍ଜନ ।
ସରସେତୁ କୁନ୍ଦ କାମୋଦ ପନଶୀଳ
ଆବର ଯେ ଅନେକ ଅଛନ୍ତି ସୈନ୍ୟବଳ
ରଣଗୋଳ ଧନ୍ଦୋଳ ଯେ ଲାଗିଲା ଅପାର
ମାର ମାର ଡାକ ଯେ ଶୁଭେ ନିରନ୍ତର ।
ଦୁଇ କତି ନିଶାଣ ଝମକ ଘୋର ବାଜେ
ଋକ୍ଷ-କପି ରାକ୍ଷସ ସମର ଘୋର କାର୍ଯ୍ୟ ।
ଉଲ୍ଲଟ ଉଦଣ୍ଡ ଚାମର ଚୀର ନେତ
ଝଲମଲ ଦର୍ପଣ ଦିଶେ ବିଲମ୍ବିତ ।
ବିବିଧ ବର୍ଣ୍ଣରେ ଦିଶେ ଶୋଭାବନ
ବିଚିତ୍ର ଗତି ଯୁଦ୍ଧ କରନ୍ତି ଦୁଇ ସୈନ୍ୟ ।
ଧରାଧରି ମରାମରି ଶସ୍ତ୍ରରେ ପିଟାପିଟି
ମାଲ ବିନ୍ଧାଣ କଟଣ ପ୍ରହାର କରେ ମୁଷ୍ଟି ।
ନଖ ଦନ୍ତ ଘାତରେ ଯେ ବାହାର ରକତ
ସଂଗ୍ରାମରେ ଦୁଇବଳ ହୋଇଛନ୍ତି ମତ ।
ରାବଣର ସେନାପତି ଅଶ୍ବକର୍ଣ୍ଣ ବୀର
ସଙ୍ଗରେ ସାହା ତାର ଚଉଦ ସହସ୍ର ବଳ ।
ବାସ୍କରି ସେନାପତି ସଙ୍ଗରେ ଖଣ୍ଡା ଧରି
ଦଶକୋଟି ମାହୁନ୍ତ ଅଛନ୍ତି କୁନ୍ତ ଧରି ।
ମୁକୁଟ ଯୋଦ୍ଧାମାନେ ଅଛନ୍ତି ପାଞ୍ଚକୋଟି
ସହସ୍ରେ ଅସୁର ସୈନ୍ୟଧାଇଁ ବଜ୍ର ଘୋଟି
ରଥଲକ୍ଷ ତାର ଅଛନ୍ତି ଅଙ୍ଗବଳ
ସଂଗ୍ରାମରେ ଶରଧା ଏ ସମସ୍ତ କୁଶଳ ।
ଜପାସୁର ନାମରେ ଏକଇ ବୀରବର
ଲକ୍ଷେ ବୀର ଛନ୍ଦ ଯେ ଉଡ଼େ ଫରହର ।
ଆଗରେ ବାଜୁଅଛି ରଣ ଜୟ ତୂରୀ
ଝଙ୍କର ଶବଦରେ କମ୍ପଇ ବସୁନ୍ଧରୀ ।
ଶ୍ରୀରାମଙ୍କୁ ଗୁହାଁଣ ବଚରେ ଦଶାନନ
ଧନ୍ୟ ଧନ୍ୟ ଦଶରଥ ତୋହର ବଡ଼ପଣ ।
ଧନ୍ୟ ଯେ ସୂର୍ଯ୍ୟବଂଶ ଧନ୍ୟ ଅଯୋଧ୍ୟାପୁରୀ
ଧନ୍ୟ ଋକ୍ଷ କପି ଧନ୍ୟ କୋଦଣ୍ଡ ଚାପଧାରୀ ।
ରଣରେ ରମଣୀ ଏ ବଳେ ନେବ ଯୁଝି
ମନ ସତ ଦିଅଁକୁ ଆସି ଅଛୁ ପୂଜି ।
ଅସରଳା ସୁତା ଯେ ଚଳାରେ ଧଣ୍ଡାମାଳ
ସିନ୍ଦୂର ଟିକା ଭଲ ଶୋଭେ ତା କପାଳ ।
ମୁଖରେ ଗଜୁରି ଆସୁଛି ନିଶଦାଢ଼ି
କସ୍ତୁରୀ ରେଖା ପରାୟେ ଦିଶୁଅଛି ବଢ଼ି ।
ଅଳପ ବୟସ ଏହାର ଯୁଦ୍ଧକାଳ ନୋହି
ବୀରବର ବନା ଯେ ଏହାକୁ ଶୋଭାପାଇ ।
ମାନବ ହୋଇଣ ଏ ପାଏ ବ୍ରହ୍ମ ଅସ୍ତ୍ର
କେବଣ ଦେବତାଏ ଦଶରଥ ସୁତ ।
ଆଜ ମୁଁ ପରୀକ୍ଷା କରିବି ଏହାର ବଳ
ମୋହର ନାଗଚକୁନ ସହେ ଦିଗପାଳ ।
ଏସନକ କହିଣ ବିନ୍ଧେ ଶରମାନ
ଅନ୍ତରୀକ୍ଷେ ଉଠୁଅଛି ପୁଷ୍ପକ ବିମାନ ।
ରାମ ରାବଣର ସମର ମହାଘୋର
ଅନେକ ସୈନ୍ୟ ଏଥିର ସମରକଲେ ଘୋର
ବହୁତ ଶକ୍ତି ଯେବେ ପେଶେ କୋପଭରେ
ଶ୍ରୀରାମ ଦେଖି ତାହା ବାରନ୍ତି ଦୂରେ ।
ସୈନ୍ୟମାନେ ସମସ୍ତେ ପେଶନ୍ତି ତୀକ୍ଷ୍ଣ ମୁନା
କାହାର କାଣ୍ଡ ଆସେ ରବର ଜ୍ୟୋଛନା ।
କେହୁ ବୁଲଆ ଯେ ନଳାକ୍ଷ ପଞ୍ଚମାରି
ବରଡ଼ାର କାଣ୍ଡେ କେ ପେଶେ ମନସରି ।
କେହୁ ରତ୍ନ ଜଡ଼ିତର ଦେଖାଏ କାଣ୍ଡଗୋଟା
କାହାର ଫାଳ ଓସାର କା ମୁଗୁର ମୋଟା ।
କାହାର ତିନ ମୁନା କେ ପାଞ୍ଚ ମୁନା ଶର
କାହାର ଆଙ୍କେରା ଯେ ଅଟଇ ଚଆର ।
କାହାରି ଚମ୍ପାକଢ଼ି ପ୍ରାୟକ ଶର ଦିଶି
କେବଣ ଅର୍ଦ୍ଧଫଳା ଶଶୀ ପ୍ରାୟ ଦିଶି ।
କେଅନ୍ଧାରେ ଉଜ୍ଜ୍ୱଳ କେ ସାହାଣତେଷ୍ଣ
କଜ୍ଜ ବେଲଙ୍ଗ ଫଳ କେବଣ ବିଶିଖ ।

କେବଣ କାଣ୍ଡ ଦେଖି ରାବଣ ଚମତ୍କାର
କେବଣ କାଣ୍ଡରୁ ହୁଗୁଳେ ପୁଣି ଫାଳ ।
କେବଣ କାଣ୍ଡ ଚଳେ ପାଣି ଥୋପା ପ୍ରାୟେ
କେବଣ ଅସ୍ତ୍ରକୁ ପ୍ରତିଶର କଲେ ବଳଥାଏ ।
କେ ମନୁ ଛୁଟନ୍ତେ ବେଗେ ପବନହୁଁ ଖର
ଧନୁଗୁଣ୍ଡ ଦେଇ କେତେ ଯାଆନ୍ତି ବହୁଦୂର ।
କେତେ ନଚଳଇ କେ ଯିବାର ନଜାଣି
କେତେ ତରକରେ ପକାଉଛନ୍ତି ହାଣି ।
କେ ବାଜ ଉପରୁ ଉଲୁଟି ପଡ଼େ ମଣ୍ଡି
କାହାର ସେହ୍ଲା ଫୁଟି ଯେ ଶରୀରେ ପଶଇ
ଦୁହିଁଙ୍କର କାଣ୍ଡରେ ହେଉଛୁ ଘାଉରଆ
ରକ୍ତରେ ଦେହ ଯାକ ହଣୁଛୁ ତାଉଆ ।
ରାବଣର ଦଶ ଧନୁ ଶ୍ରୀରାମର ଏକ
ସମ୍ମୁଖେ ମାରି ନ ପାରନ୍ତି ଏକୁ ଏକ ।
ସୁକର୍ଣ୍ଣ ବିଭୀଷଣ ଯୁଦ୍ଧେ ମରଘାଇ
ତିନଙ୍କୁ ଏକା ଶର ଯେ କରେ ଲଙ୍କସାଇଁ ।
ମର୍ମ ସ୍ଥାନ ଦେଖିଣ ବିନ୍ଧେ ବିଭୀଷଣ ବୀର
ରାଗରେ ଶରୀର ତାର କମ୍ପେ ଥରହର ।
ସୁକର୍ଣ୍ଣକୁ ଚଉଦରେ ଉରେ ଲଙ୍କସାଇଁ
ଯୁଝନ୍ତି ଅଷ୍ଟ ସେନା ଯଥପତି ରହି ।
ବୃକ୍ଷଶିଳା ଶସ୍ତ୍ର ଯେ ଆଉ ଯାଉ ଶର
ହିବସରେ ଅନ୍ଧାର ହିଶେ ମହାଘୋର ।
କୋଠାରେ ଲଙ୍କପତି ଲକ୍ଷେ କାଣ୍ଡ ଯୋଚ
ଶ୍ରୀରାମର ସୈନ୍ୟକୁ ଯେ ବିନ୍ଧିଲା ସଞ୍ଚି ।
ସୁକର୍ଣ୍ଣକୁ ସହସ୍ରେ ବିଭୀଷଣକୁ ଶତେ
ସୁଗ୍ରୀବକୁ ପଚଶ ଯେ ବିନ୍ଧେ ଲଙ୍କନାଥେ ।
ଅଙ୍ଗଦକୁ କୋଟିଏହିଁ ଶତବାଳକୁ ଦଶ
ଗନ୍ଧ ମାଦ୍ଦନକୁ ବିନ୍ଧେ ଅଠାଇଶ ।
ନୀଳକୁ ସାତ ଯେ ନଳକୁହିଁ ତେର
ରମଣକୁ କୋଡ଼ିଏ ବିନ୍ଧେ ଦଶଶୀର ।
ଦଧିମୁଖକୁ ଅଠର ବଳ ମୁଖକୁ ଚାରି
ଜମ୍ବେବ ମନ୍ତ୍ରୀକ ଷାଠିଏ ବାଣ ମାରି ।
ଚନ୍ଦନକୁ ତିରିଶ ତାରାକ୍ଷକୁ କୋଡ଼ିଏ
କୋପରେ ବିନ୍ଧଇ ଯେ ଦଶାନନ ରାୟେ ।
ସୁଜାଣକୁ ଷାଠିଏ ସାରାସକୁ ସତୁରି
ନଉବାଣ ପୁଣ ଯେ ତାରାକ୍ଷକୁ ମାରି ।

କୁମୁଦକୁ ଚଉଦ ବାଣ କୁନ୍ଦକୁ ଯେ ଷୋଳ
ହାର୍କିଣ ନାରାଚ ଯେ ବିନ୍ଧେ ଦଶଶୀର ।
ଦଧିମୁଖକୁ ଅଠର ବଳ ମୁଖକୁ ଚାରି
ଜମ୍ବେବ ମନ୍ତ୍ରୀକ ଷାଠିଏ ବାଣ ମାରି ।
ଚନ୍ଦନକୁ ତିରିଶ ତାରାକ୍ଷକୁ କୋଡ଼ିଏ
କୋପରେ ବିନ୍ଧଇ ଯେ ଦଶାନନ ରାୟେ ।
ସୁନାସକୁ ଷାଠିଏ ସାରାସକୁ ସତୁରି
ନଉବାଣ ପୁଣ ଯେ ତାରାକ୍ଷକୁ ମାରି ।
କୁମୁଦକୁ ଚଉଦ ବାଣ କୁନ୍ଦକୁ ହେ ଷୋଳ
ହାର୍କିଣ ନାରାଚ ହେ ବିନ୍ଧିଲେ ଲଙ୍କପାଳ ।
ସଉଖିକ ଶନ୍ଧ ଶତ ବାଳକ ତିରିଶ
ଦଶକାଳ ବୃଦ୍ଧକୁ ବିନ୍ଧେ ଯେ ପଚଶ ।
ଶରକେତୁକୁ ଅଠର ପବନକୁ ଯେ ଚାରି
ସବୁ ଋକ୍ଷ କପିଙ୍କି ଯେ କାଂଡେ କାଂଡେମାରି
ଅସଂଖ୍ୟ ସମର କଲାକ କାମ ରୁଚୀ
ଧନୁରୁ ଫିଟି ବାଣ ମିଳେ ଅସଂଖ୍ୟପି ।
ଦେଖିଣ ସୁବାହୁ ଯେ ମନରେ କ୍ରୋଧହେଲା
ବାବଲ ଶରରେ ଯେ କାଟି ପକାଇଲା ।
କାହାର ଅଙ୍ଗେ ଯାଇ ନ ବାଜେ ପୁଣ କାଂଡ
ରାଗରେ ରାବଣ ଯେ ହାଲ୍‌ଏ ଦଶମୁଂଡ ।
ଶ୍ରୀରାମ ବୋଇଲେରେ ପନ୍ତି ମୁଣ୍ଡା ଆଜ
ଯେତେବାଣ ମାଇଲେ ପାଇବୁ କରେ କାର୍ଯ୍ୟ
ଏତେ କହି ଶ୍ରୀରାମ ବାବଲ ଶର ପେଶି
ଦଶ ମୁଣ୍ଡ ତାର ପକାଇଲେ ନାଶି ।
ମୁଣ୍ଡା ବୃକ୍ଷ ପ୍ରାୟେ ଯେ ହଣଇ ରାବଣ
ତଳେ ନ ପଡ଼ି ମୁଣ୍ଡ ଯେ ଲାଗେ ତତକ୍ଷଣ ।
ଦେଖିଣ ଶ୍ରୀରାମଚନ୍ଦ୍ର ବିସ୍ମୟ ମନ ହେଲେ
କାମ୍ଭୁତ ଚରିତ ବୋଲି ମନେ ବିଚାରିଲେ ।
ଧନୁର୍ବେଦ ପଡିଣ ବିନ୍ଧେ ଦଶଶୀର
ଅନ୍ତ ଅସ୍ତ୍ର କଲ ତାହା ଛେଦିଲେ ରଘୁବୀର ।
ଏସନକ ବେଳ ଯେ ବାରିଘଡ଼ି ହୁଏ
ନଠାଇ ସତର ଯେ କଲା ଲଙ୍କରାୟେ ।
ଋକ୍ଷ କପିବଳଙ୍କୁ ଯେ ଆଣ୍ଠେରେ ଯୁଝନ୍ତି
ଖରବାହୁ କୁମର ତା ଦୂରରୁ ଛେଦନ୍ତି ।
ଏଥୁ ଅନନ୍ତରେ ଯେ ଶ୍ରୀରାମ ରାବଣ
ପ୍ରଳୟର ମେଘ ଜାଣି ବାଣ ବରଷଣ ।

ତେସନେକ ପଟାନ୍ତର ଶବ୍ଦୁଛନ୍ତି ଶର
ଅଧାନ ସନ୍ଧାନ ଯେ ଦୁଇ ପ୍ରକାର ।
ଗୁଣ ନାଦ ଶବଦକୁ ନିର୍ଘାତ ପ୍ରାୟ ମଣି
ଅଶ୍ୱଙ୍କ ଆଉ ଯାତରେ କମ୍ପଇ ମେଦିନୀ ।
ଆୟୁଧଙ୍କର ତେଜ ଯେ ବିଜୁଳି ପ୍ରାୟ ଦିଶେ
ଲକ୍ଷେ ଲକ୍ଷେ ନାରାଚ ବିନ୍ଧନ୍ତି ନିମିଷେ ।
ହୋଇଲା ମହାଗୋଳ ଦୁଇଦଳ ଥାଟ
ମିଶାମିଶି ଯୁଦ୍ଧ କଲେ ବାନରେ ଦର୍ପିଷ୍ଟ ।
ଯୁଦ୍ଧ ଦେଖି ଶ୍ରୀରାମ ହେଲେ କୋପଭର
ବାବନ ଶର ପେଶି କାଟିଲେ ତା ଶିର ।
ତଳରେ ନ ପଡ଼ୁ ଶିର କନ୍ଧରେ ଲାଗିଲା
ଦେଖିଣ ଶ୍ରୀରାମ ଯେ ଆଚମ୍ବିତ ହେଲା ।
ପୁଣି ବାବନ ଶରରେ ଛେଦିଲେ ତାର ଶିର
ବେକ ଛାଡ଼ିଣ ଯେ ନ ପଡ଼ିଲା ତଳ ।
ରକ୍ଷ କପିବଳ ଦେଖି ହସିଲେ ସମରେ
ତରୁଶିଳ ମାରିଲେ ପୁଷ୍ପକ ରଥବରେ ।
ରାକ୍ଷସ ବେଢ଼ିଣ ଯେ ବିନ୍ଧନ୍ତି ଶ୍ରୀରାମଙ୍କୁ
ସୁରଗଣ ସ୍ୱର୍ଗରେ ଚାହାନ୍ତି ସମରକୁ ।
ଦିବସ ଯାଇ ଯାମିନୀ ଅନ୍ଧାର ରଣ ଭୂଇଁ
ଶସ୍ତ୍ରଙ୍କ ତେଜରେ କି ଚନ୍ଦ୍ରମା ଅଛି ଉଇଁ ।
ଦେଖିଣ କ୍ରୋଧ ଯେ ରାମଚନ୍ଦ୍ର ହେଲେ
ବାବନ ଶରେ ଦଶ ମଣ୍ଡଳ କାଟିଲେ ।
ତଳରେ ନ ପଡ଼ୁ ଶିର ଲାଗିଲା ବେକରେ
ଦେଖି କରି ଶ୍ରୀରାମ ଯେ ଅତି କ୍ରୋଧ ଭରେ ।
ପୁଣ ଆଉଥରେ ବାବନ ଶର ବିନ୍ଧି
କାଟିଲେ ବେଗ କରି ଦଶ ଶିର ରୁନ୍ଧି ।
ତଳରେ ନ ପଡ଼ି ଶିର ଯାଇ ପୁଣ
ଦେଖିଣ ରଘୁନାଥ ବିଚାର କଲେ ମନ ।
ବେକ ଛେଦିଲେ ତ ନ ମରେ ରାବଣ
ପାଞ୍ଚ ଥର ପର୍ଯ୍ୟନ୍ତ କାଟିଲେ ଶିର ପୁଣ ।
କେତେ ଦିନ ପର୍ଯ୍ୟନ୍ତେ କରିବ ଏହୁ ରଣ
ନିବେଗ କରି ଆକୁ ଗର୍ଜିଲା ଧାତା ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ମେଘନାଦ ପାଟେଶ୍ୱରୀ ଅସୁର ଥିଲେଘେରି ।
ରଜନୀ ହେବାରୁ ସର୍ବେ ଯେ ଯାହା ଘରକଲେ
ମନ୍ଦୋଦରୀ ଆଗରେ ଦାସୀଏ ଜଣାଇଲେ ।

କୁମ୍ଭର ପୁତ୍ର ନାତି ମରିଲେ ରଣେ ପୁଣ
ଶ୍ରୀରାମ ସଙ୍ଗରେ ଏକା ଯୁଝନ୍ତି ରାବଣ ।
ଶ୍ରୀରାମ ଚଢ଼ିଛନ୍ତି ନନ୍ଦୀଘୋଷ ରଥ
ତୋ ସ୍ୱାମୀ ପୁଷ୍ପକ ବିମାନେ ସାମରଥ ।
ତୋହର ସ୍ୱାମୀ ମୁଣ୍ଡ ପାଞ୍ଚ ରଥ ପୁଣ
କାଟି ପକାଇଲେ ଯେ ରାମଚନ୍ଦ୍ର ଜାଣ ।
ପାଲଟି ଶର ଯାଇ ବେକରେ ଲାଗେ ଗୁଣି
ଦେଖିଣ ଶ୍ରୀରାମ ଯେ ହୃଦପଦ୍ମେ ପୁଣି ।
ଯେତେ ଶର ସ୍ୱାମୀ ତୋର ବାନ୍ଧେ ଅବିଚ୍ଛିନ୍ନ
ବୀରବାହୁ ନନ୍ଦନ ଛେଦଇ ତାହା ପୁଣ ।
କୁମ୍ଭକର୍ଣ୍ଣ ନନ୍ଦନ ସୈନ୍ୟଙ୍କ ଶିର ଛେଦି
ଦିଆର ବିଭୀଷଣ ବାନ୍ଧେ ଶର ସନ୍ଧି ।
ଶୁଣିକରି ମନ୍ଦୋଦରୀ ବିସ୍ମୟ ମନ ହେଲା
ସୂର୍ପଣଖା ରାଣ୍ଡ ମୋର ବଂଶ କରାଇଲା ।
ଯେବେ ଶ୍ରୀରାମ ମୋର ମାରିବେ ପତିଙ୍କି
ସୂର୍ପଣଖାକୁ ନିଶ୍ଚେ ମାରିବି ମୁହିଁ ନିକି ।
ଏତେ ବୋଲି ସତୀ ଯେ ଦୃଢ଼ ବ୍ରତ କଲା
ନାରଦ ମୁନିଙ୍କି ପୁଣ ମନେ ସୁମରିଲା ।
ତକ୍ଷଣରେ ନାରଦ ମିଳିଲେ ଆସି ପୁଣ
ମନ୍ଦୋଦରୀ ଆଗରେ ପ୍ରବେଶ ହେଲେ ଜାଣ
ଦେଖିଣ ମନ୍ଦୋଦରୀ ଉଲଗି ମେଲାଇଲା
ସୁବାସିତ ଜଳରେ ଚରଣ ଧୋଇଲା ।
ବସିବାକୁ ମାଣିକର ପିଢ଼ା ଦେଲା ପୁଣ
ବୋଇଲା ବ୍ରହ୍ମ ମୁନି ଶୁଣ ମୋ ବଚନ ।
ଯାହା କହିଥିଲ ସେ କଥା ଏବେ ହେଲା
ଅଠର ସହସ୍ର କୁମରଙ୍କୁ ଗୋଟିଏ ରହିଲା ।
ଦିଆର କୁମ୍ଭକର୍ଣ୍ଣ ଅଟନ୍ତି ମୋର ତଳ
ସହସ୍ରେ କୁମରରେ ଲକ୍ଷେ ନାତି ତାର ।
ତାହାର ଗୋଟିଏ କୁମର ରହିଲା
ମୋ ତେର ଶତ ନାତିରୁ ବୀରବାହୁ କୁଳଭଳ
ତାହାର କୁମର ରଖିଲେ ରୂପଧାରୀ
ବାପ ଥାଉଁ ଶରଣ ପଶିଲା ଯାଇଁକରି ।
ରାବଣ ଯୁଦ୍ଧକୁ ଯେ ଗଲା ଆଜ ପୁଣ
ଜିଣିବା ଠିକ ସତ୍ୟ ତୁମ୍ଭେ ମୁନି ଜାଣ ।
ନାରଦ ବୋଇଲେ ତୋତେ କହୁଛୁଁ ପୂର୍ବରେ
ରାବଣକୁ ଶ୍ରୀରାମ ମାରିବେ ବ୍ରହ୍ମଶରେ ।

ବିଭୀଷଣ ତୋହର ହେବ ପ୍ରାଣନାଥ
ଶ୍ରୀରାମ ତୋତେ ସତ୍ୟ କରିବେ ନଅତ ।
ସୂର୍ଯ୍ୟ ଚନ୍ଦ୍ର ଥିବାଯାଏ ଥିବୁ ଗୋ ସତ୍ୟ ପୁଣ
ପଞ୍ଚ କନ୍ୟାରେ ତୁ ଗୋ ଗଣିତା ପ୍ରମାଣ ।
ଦିନ ଗଣୁଥିବୁ ତୁ ଆଜଠୁଁ ସାତଦିନ
ଇନ୍ଦ୍ରଜିତ ପିତା ଗୋ ପାଇବ ମରଣ ।
ଏତେ କହି ନାରଦ ସେଠାରୁ ବେଗେ ଗଲେ
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ
ଦେଖିକରି ଜାନକୀ ଉଠିଲେ ବହନ
ମୁନଙ୍କର ଚରଣେ ଓଳଗିଲେ ପୁଣ ।
ଶୋକଭର ହୋଇଣ କହିଲେ ରାମନାରୀ
ଭଲା ମୋତେ ଜନ୍ମ କଲେ ଜନକର ନାରୀ
ଶ୍ରୀରାମଚନ୍ଦ୍ରଙ୍କୁ ମୋତେ କନ୍ୟା ବିଭାକଲେ
ପର ବ୍ରହ୍ମ ନାରାୟଣଙ୍କୁ ଏ କଷ୍ଟ ଭୁଆଇଲେ ।
ମୋର ସକାଶରୁ ସ୍ୱାମୀ ପାଇଲେକେତେଦୁଃଖ
ବଡ଼ ଜଞ୍ଜାଳ ତାଙ୍କୁ ଦେଲା ଦଶମାଥ ।
ନାରଦ ବୋଇଲେ ଦୁଲାଳୀ ନୁହତୁ ବିକଳ
ଆଉ ଷଡ଼ ଦିନରେ ମରିବ ଲଙ୍କପାଳ ।
ସତର ଦିନେ ଲଙ୍କାରୁ ଯିବୁ ଗୋ ବଇଦେହୀ
ଏତେ ବୋଲି ନାରଦ ପ୍ରମାଣ କରି କହି ।
ଜାନକୀ ବୋଲନ୍ତି ପିତା ଲକ୍ଷ୍ମଣ କେଣେଗଲା
ରାଇକ ନଦେଖି ରାମ ବହୁତ ଚିନ୍ତା କଲା ।
ନାରଦ ବୋଇଲେ ଆଜ ପାତାଳଗଡ଼ ଠାରେ
ଲକ୍ଷ୍ମଣ ସୁଷେଣ ଯେ ହନୁମନ୍ତ ସାରେ ।
ପ୍ରବେଶ ହେବେ ଗୋ ନକର ଚିନ୍ତା ତୁହି
ପାଞ୍ଚଦିନେ ଶତ୍ରୁଘନ ପ୍ରବେଶ ଏଥି ହୋଇ ।
ଷଡ଼ ଦିନେ ଭରତ ହେବେ ଏଥି ଜାଣ
ଲକ୍ଷେ ରାଜା ଘେନିଣ ଯେ ଆସୁଛି ଆପଣ ।
ସାତଦିନେ ରାବଣ ହେବେ ପ୍ରାଣେ ନାଶ
ଅନ ଦିଅର ସ୍ୱାମୀଙ୍କି ଦେଖିଣ ମନ ତୋଷ ।
ଏତେ କହି ନାରଦ ସ୍ୱର୍ଗପୁରେ ଗଲେ
ପାଞ୍ଚଗୋଟି ଅସୁରୁଣୀ ରାବଣପୁରେ ଥିଲେ ।
ଦାସୀଙ୍କଠାରୁ ଶୁଣି ବେଗେ ଚାଲିଗଲେ
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ
ତ୍ରିଜଟା ଆଗେ ଉଭାହୋଇ କହିଲେକ ପୁଣ
ରାମ ରାବଣ ଆଜ ଅନେକ ଯୁଦ୍ଧ ଜାଣ ।

ପ୍ରଥମେ ଯୁଦ୍ଧରେ ରାବଣ ଜିଣିଥିଲା
ପୁନନାନ୍ତ ଶ୍ରୀରାମ ଦିଷ୍ଟୟେ ମାରିଲା ।
ପୁଷ୍ପକ ବିମାନରେ ବିଜେ ଦଶଶିର
ନନ୍ଦୀଘୋଷ ରଥରେ ଚଢ଼ିଛି ରଘୁବୀର ।
ପାଞ୍ଚଥର ରାବଣର କାଟିଲେଣି ଶିର
ତଳେ ନ ପଡ଼ି ଶିର ଯେ ଲାଗୁଛି କନ୍ଧର ।
ଶୁଣିକରି ତ୍ରିଜଟା ମନରେ ତୋଷ ହେଲା
ଫେଡ଼ି ନ କହିଣ ସେ ମଉନେ ରହିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ରାବଣର ସଙ୍ଗରେ ଶ୍ରୀରାମ ଯୁଦ୍ଧକରି ।
ପୁଷ୍ପକର ଯାନ ଯେ ଦିଶେ ମହାଶୋଭା
କି ଜାଣି ପଟାନ୍ତର ସୁଧର୍ମାର ସଭା ।
ଲକ୍ଷେକ ଶ୍ୱେତ ଛତ୍ର ଚାମର ଉଡ଼ନ୍ତି
ଲକ୍ଷେକ ଉତ୍ତମ ହୟ ରଥରେ ଯୋଚିଅଛି ।
ବିଚିତ୍ର ଗତିରେ ଯେ ଚଳଇ ବିମାନ
ଯେଉଁଠାକୁ ମନ କରେ ଚଳଇ ସେ ଯାନ ।
ରଣ ବାଦ୍ୟ ବାଜା ଯେ ଉଡ଼େ ଫରହର
ସେ ରଥରେ ଥାଇଣ ଯୁଝଇ ଦଶଶିର ।
ଶ୍ରୀରାମଚନ୍ଦ୍ର ଯେ ନନ୍ଦୀଘୋଷ ରଥେ
ସିଂହାସନ ଉପରେ କି ବିଜେ ଜଗନ୍ନାଥେ ।
ନାରାଚ ବିନ୍ଧନ୍ତି ସେ ପବନୁଁ ବେଗେ କରି
ଚମକେ ରଣ ଭୂମି କରେ ଘୋର ରଡ଼ି ।
ଜୟ ଶଙ୍ଖ ବଜାନ୍ତେ ଅସୁର ବପୁ କ୍ଷୀଣ
ଆଗଭର ହୋଇ ଯେ ରହନ୍ତି ରଘୁନାନ ।
ମହା ଶୋଭା ଦିଶଇ ଯେ ନନ୍ଦିଘୋଷ ରଥ
ଉଦୟାଗରେ ଉଦୟ କି କଶ୍ୟପର ସୁତ ।
ବସନ୍ତ ବର୍ଣ୍ଣ ରଥ ଦିଶେ ବିତପନ
ଚଉଦ ଭୁବନ ଯାକ ଘୋଟିଅଛି ଯାନ ।
ଦେଖିଣ ରାବଣ ଯେ ବିରସ ମନରେ
ଖରତର ନିଶ୍ୱାସ ଛାଡ଼ିଲା ନିର୍ଭରେ ।
ନିଶ୍ଚୟ କରି ଜାଣିଲା ଅଟେ ନାରାୟଣ
ହେଲା ଯୁଦ୍ଧ ନ କରି କରିଲା ଯୁଦ୍ଧ ଠାଣ ।
ଏକ କାଣ୍ଡ ନ ବିନ୍ଧୁ ଯେ ଆରକ ସନ୍ଧଇ
ଧାଇଁଲା ସେ ଶର ଆଗରେ ବିନ୍ଧଇ ।
ମନ ବେଗେ ନାରାଚ ଦେଉଛନ୍ତି ଗୁଡ଼
ଦୁହିଁଙ୍କର ନାରାଚ ଛେଦନ୍ତି ଶସ୍ତ୍ର ଧରି ।

ଦେଖିଣ ଦେବତାଏ ସନ୍ତୋଷ ମନ ହେଲେ
ସ୍ୱର୍ଗର ଅପସରା ହୁଳହୁଳି ଦେଲେ ।
ଶ୍ୱେତ ପୁଷ୍ପ ବୃଷ୍ଟି କରନ୍ତି ଦେବଗଣ
ଦେଖିଣ ମନରେ ଭୟ କଲାକ ରାବଣ ।
ହୃଦରେ ବିଚାରିଲା ହେଲା ବିପରୀତ
ମନୁଷ୍ୟ ନୁହନ୍ତି ଏହି ଦଶରଥ ସୁତ ।
ଆକାଶେ ଶିର ଏହାର ଲଗୁଅଛି ଯାଇଁ
ଚନ୍ଦ୍ର ସୂର୍ଯ୍ୟ ପରାୟେ ନୟନ ଯେ ଦୁଇ ।
ଦଶ ଦିଗରେ ଏହାର ପୂରିଲା ଯେ ତେଜ
ପାତାଳ ପୁରରେ ଏହାର ଲାଗେ ଦୁଇ ପାଦ ।
ନିଶ୍ଚୟ ପରମେଶ୍ୱର ଦଶରଥ ସୁତ
ନୋହିଲେ କେମନ୍ତେ ରଥ ଆଣିଲା ଦେବଦୂତ
ଏମନ୍ତ ବିଚାରନ୍ତେ ଜାଣିଲା ମାତଳି
ମନରେ ବିଚାରଇ ରାବଣେଶ୍ୱର ଭଳି ।
ଏମନ୍ତ ଜାଣିଲା ସେ ନନ୍ଦିଘୋଷରେ ଥାଇ
ବାଗ ଦଉଡ଼ି ଧରି ଘୋଡ଼ାଙ୍କୁ ବଳାଇ ।
ଯେ ଅପା ବୋଲିଣ ଜୟ ବିଜୟ ସୁମରିଲା
ନନ୍ଦୀଘୋଷ ରଥକୁ ବେଗେ ଚଳାଇ ଦେଲା ।
ଯହିଁକି ଶ୍ରୀରାମ ମନ ତହିଁକି ଗମନ
ରାବଣ ଚଢ଼ିଛି ଯେ ପୁଷ୍ପକ ବିମାନ ।
ଶୁକ ସାରଣ ବାହାନ୍ତେ ବେଗେ ଚଳେ ରଥ
ଦିଗପାଳ ସମାନରେ ରଥୀ ଦଶମାଥ ।
କରରେ ଧନୁଶର ବିକଟାଳ ମୂର୍ତ୍ତି
କେବଣ କରେ ଧନୁ ଅଛି ଚଣ୍ଡକାଣ୍ଡ ।
କେବଣ କରେ ଗଦା କେବଣ କରେ ଶୂଳ
କେଉଁ କରେ ମୁଦ୍‌ଗର କେବଣ କରେ ଶୂଳ
କେଉଁ କରେ ମୁଦ୍‌ଗର କେଉଁକରେକରବାଳ
କେଉଁକରେ ଧରେଶୂଳକେଉଁକରେତୀକ୍ଷଣଭାଲ
କେଉଁକରେ ଅସ୍ତ୍ର ଯେ ଗିରିବର ତୁଲ୍ୟ
କେବଣ କରେ ଭାଲ ବରଛି ଅଛି ତାର ।
କେଉଁକରେ ଶୂଳ କେଉଁକରେ ତୀକ୍ଷ୍ଣ ଭାଲ
କେଉଁକରେ ଅସ୍ତ୍ର ଯେ ଗିରିବର ତୁଲ୍ୟ ।
କେବଣ କରେ ଭାଲ ବରଛି ଅଛି କାହିଁ
କେଉଁ ହସ୍ତେ ବାଟଳୀ ମାରେ ମନ ଦେଇ ।
କେବଣ ହସ୍ତେ ଯଷ୍ଟି ଭୂପାଳ କରେ ଧରି
କେବଣ କରରେ ଅଙ୍କୁଶ ମାରେ ଧରି ।

ଦୈତ୍ୟ ଯେ ବଳବନ୍ତ ବିଷ୍ଣୁର ଦ୍ୱାରପାଳ
କାଳକୁ ଜିଣିକରି ବୋଲାଏ ମହାକାଳ ।
ଦଶହାତ ତାର ଯେ ଦଶମୁଣ୍ଡ ଗୋଟି
ଦେଖି ଦେବଗଣେ ଯାହାକୁ କରି ସ୍ତୁତି ।
ପୁଷ୍ପକ ଯାନେ ବସି ଷଣ୍ଢୀପଣ କରଇ
ନାରାୟଣ ସାମ୍ନରେ ଧନୁ ଧରି ଉଭା ହୋଇ ।
ଦେବେ ବୋଲନ୍ତି ରାବଣ କେବଣ ପୁଣ୍ୟକଲା
ତେତିଶ କୋଟି ଦେବଙ୍କୁ ସମରେ ଜିଣିଲା ।
ଏବେ ଜଗନ୍ନାଥଙ୍କ ତୁଲେ ଯୁଦ୍ଧ ରଚି
ବିଷ୍ଣୁଙ୍କୁ ଜିଣିବ ବୋଲି ମନେ ପାଞ୍ଚୁଅଛି ।
ଏସନକ ବୋଲିଣ ବୋଲନ୍ତି ସୁରଶ୍ୱରେ
ଭେଟ ପଡ଼ିଅଛି ଆଜ ଦୁଇ ରଥବରେ ।
ରକ୍ଷ କପି ରାକ୍ଷସେ ହେଉଛନ୍ତି ଧନ୍ଦା
ଶ୍ରୀରାମଙ୍କୁ ରାବଣ ନୁହେଁ ବଡ଼ ଯୋଦ୍ଧା ।
ବିଶେଷରେ ଦୈତ୍ୟ ଭରସି ପାରେ ମାରି
ରାମ ଅବତାର ବୋଲି ମନେ ନାହିଁ ତାହାରି
ସମସ୍ତେ ମରିବାରୁ ଯେ ରାଗରେ ଯୁଝଇ
କାଣ୍ଡ ଦେହେ ପଡ଼ିଲେ ତୁଳାପ୍ରାୟ ମଣଇ ।
ନାନା ପ୍ରକାରେ ନାରାଚ ବିନ୍ଧଇ ଶ୍ରୀରାମଙ୍କୁ
ନନ୍ଦୀଘୋଷ ଗଲାବେଳୁ ଭଙ୍ଗିଲା ତାର ବପୁ
ରାଗର ସଂଗ୍ରାମରେ ଶସ୍ତ୍ରବାର ବର୍ଷି
ନନ୍ଦୀଘୋଷ ରଥ ପୁଣ ଗମଇ ତହିଁକି ।
ଶ୍ରୀରାମ ନାରାଚ ବିନ୍ଧୁଛନ୍ତି ଅନୁକ୍ଷଣେ
ପ୍ରଚଣ୍ଡ ଅସ୍ତ୍ର କରି ତାହା ଛେଦଇ ରାବଣେ ।
ଶିରଚ୍ଛେଦ ଶ୍ରୀରାମଙ୍କୁ ବାଣ ଯେ ପେଶଇ
ମାତଳିକ ନାରାଚ ପେଶିଲେ ନ ଦିଶଇ ।
ତାହା ଦେଖି ଶ୍ରୀରାମ ନାରାଚ କରେ ଧରି
ହାତରୁ ନ ଫିଟୁ ରାବଣ ଶରକୁ ନିବାରି ।
ଗରୁଡ଼ ମୁଖ ଶର ଯେ ପେଶିଲେ ଦାଶରଥି
ଦେଖି ବୁଜେ ନୟନ ପୌଲସ୍ତିର ନାତି ।
କାଖ ସଳଖେ ବାଣ ପୁଣ ଚଳିଗଲା
ରଘୁନାଥଙ୍କ ତୂଣୀରେ ଯାଇ ସମ୍ଭାଇଲା ।
ଘାଆ ପାଇଣ ରାବଣ ପେଶେ ମୋହପାଶ
ବାବଲ ବାଣେ ତାହା ଶ୍ରୀରାମ କଲେ ନାଶ ।
ହସିଣ ବୋଲନ୍ତି ତୁଦେଲ ଲଙ୍କପତି ବାଇ
ଏ ଶସ୍ତ୍ର କାଟିଲ କରେ ଆମ୍ଭଙ୍କୁ ଜିଣିହୋଇ ।

ଏହି ନାରାଚରେ କରେ ମୋତେ ଧ୍ରୁବ ମାର
ଅପୂର୍ବ ବିଦ୍ୟା ଥିଲେ ପରଖ ବେଗ କର ।
ଗୁରୁ ତୋର ବ୍ରହ୍ମ ଅସ୍ତ୍ର ଯେତେ ଅଛି ଦେଇ
ତୁ ତାହାକୁ ସନ୍ଧରେ ସାବଧାନ ହୋଇ ।
ଶୁଣିଣ ରାବଣେଶ୍ୱର ସନ୍ଧେ ତୀକ୍ଷ୍ଣ ଶର
ଯାଇଣ ପଡ଼ିଲା ଶର ଜାନୁର ଉପର ।
ଗଳିଗଲା ଶର ଯେ ଛିନ୍ନଛନ୍ନ ହୋଇ
ଦେବେ ବ୍ୟଥା ପାଇଲେ ସ୍ୱର୍ଗପୁରେ ଥାଇଁ ।
ଘାଆ ପାଇ ରାମ କୃତାନ୍ତ ରୂପ ଧରି
ଶରୀର କମ୍ପାଇଲେ ମହା କୋପ କରି ।
ଦେଖି ଦୈତ୍ୟବଳ ସପୁ ହୋଇଲେ କାତର
ସ୍ୱୟଂ ବିଷ୍ଣୁ ଏହୁ ରାବଣ କେତେକ ମାତର ।
ସୁବଳୟା ପର୍ବତ କମ୍ପିଲା କୋପ ଚାହିଁ
ସିନ୍ଧୁ ସ୍ତକତ ହେଲା ମହାଭୟପାଇ ।
ପୃଥ୍ୱୀ ବିଚାରିଲେ ଜଗତ ନାଶଯିବ
ଶ୍ରୀରାମର କୋପକୁ କେ ଭଜନ ହୋଇବ ।
ଦେଖିଣ ଦଶ କନ୍ଧ ଭାବିଲା ତାର ମନେ
ମାନବ ବୋଲି ଏହାକୁ ବୋଲିବା କେମନେ
ମହାଘୋର ସଂଗ୍ରାମ ମୁଁ ପାଇଲି ଏତେକାଳେ
ଯେବେ ରଘୁନାଥ ମୋତେ ମାରିବେ ଆଜ ବଳେ
ତେବେ ମୁଁ ବଇକୁଣ୍ଠ ପୁରକୁ ଯିବଇଁ
ରାମ ନାରାୟଣ ନୋହିଲେ ନିଶ୍ଚୟ ମାରିବ ମୁହିଁ
ଏତେବୋଲି ପେଶିଲା ସହସ୍ରେକ ଶର
ଲକ୍ଷ ଲକ୍ଷ କୋଟି କୋଟି ତହିଁର ଉପର ।
ଶୂଳ ଶକତି କାଣ୍ଡ ଆବର ବଜ୍ର ବାଣ
ଗଦା ମୁଦ୍‌ଗର ଯେ ପରିଘ ଘୋର ଟାଣ ।
କକଡ଼ା ମାସରେ ଯେହ୍ନେ ବରଷଇ ପାଣି
ସନ୍ଧଇ ଦଶାନନ ତେସନେକ ପୁଣି ।
ଶ୍ରୀରାମଙ୍କୁ ଘନ ଘନ ଛେଦନ୍ତି ତାହା ବେଗି
ଥୋକାଏକ ନାରାଚ ଶିରରେ ଅଛି ଭେଦି ।
କୋପରେ ଲଙ୍କପତି ସନ୍ଧେ ତୀକ୍ଷ୍ଣ ଶର
ବକାଣି ହଣିଲା ଯେ ମହତ ଗିରିବର ।
ଶ୍ରୀରାମ ଚାହିଁଣ ବୋଲଇ ରାବଣ
ତୁମ୍ଭେ ଦୁଇଭାଇ ମଲ ଆମ୍ଭର ହସ୍ତେଣ ।
ନଜାଣ କରେ ଦେବଙ୍କୁ ଦୁର୍ଲ୍ଲଭ ମୋରରଣ
ଏତେବୋଲି ମାରିଲା ପର୍ବତା ଶର ପୁଣ ।

ପୃଥିବୀ କମ୍ପିଲା ଯେ ସୁବଳୟା କମ୍ପି
ସବୁ ସୈନ୍ୟମାନେ ଯେ ଭୟ ପାଇଲେ ଦେଖି
ମାତଳିକ ଶକ୍ତ ଯେ ମାରିଲା ଭୁହାଇ
ଦେଖି ଦୂରରୁ ଶର ଛେଦିଲେ ରଘୁସାଇଁ ।
ବୃଷ୍ଟକ ବିମାନ ତାର ଲକ୍ଷେ ଅଶ୍ୱ ଥିଲେ
ଏକା ବାଣକେ ଶ୍ରୀରାମ ସବୁଙ୍କୁ ଛେଦିଲେ ।
ଦେଖିଣ ରାବଣ ବାରୁଣୀ ଶର ମାରି
ଚଳିଲକ ନାରାଚ ପୁଣି ଘୋରନାଦ କରି ।
ଶ୍ରୀରାମ ଶରୀରେ ଶର ନ ପାରିଲା ଭେଦି
ବିବିଧ ପ୍ରକାରେ ଶ୍ରୀରାମ ଦୁଇହସ୍ତ ଛେଦି ।
ବଡ଼ିବା ବହ୍ନିଲେ ଯେହ୍ନେ ମେରୁ ଗିରି ଟଳ
ତେସନେକ ପଟାନ୍ତର ରାବଣ ମହାବଳ ।
ଖୁର୍ପ ନାରାଚ ଶ୍ରୀରାମ ଗୁଣରେ ବସାଇ
ରାବଣକୁ ଚାହିଁଣ ବୋଲନ୍ତି ରଘୁସାଇଁ ।
କେବଣ କାରଣେ ତୁରେ ମୋର ନାରୀ ହରି
ବିଶ୍ରବା ଋଷିଙ୍କର ପୁତ୍ର ତୁ ଦଶଶିରି ।
କାଳ ସର୍ପକୁ କମ୍ପା ତୁ ଋଜା ଦେଲୁ ଗୋଡ଼େ
ବିଷ ଖାଇ ତରିବୁ ଭରସା ତୋର ଏଡ଼େ ।
ବଳବନ୍ତ ପଣେ ଯେବେ ଅଛୁ ତୁରେ ଗାଢ଼
ଚୋରିକରି କମ୍ପା ତୁରେ ଆଣିଲୁ ମୂର୍ଖ ମୂଢ଼
ନିଜ ଶଉର୍ଯ୍ୟେ ତୁରେ ଆପଣେ ଯେବେ ଜାଣୁ
ଯୁଦ୍ଧ ନ କରି କମ୍ପା ଚୋରାଇଣ ଆଣୁ ।
ଆଜହୁଁ ଜୀବନ ଆଶା ଛାଡ଼ ଦଶଶିଶ
ମୋହର ବାଣରେ ତୁ ନିଶ୍ଚେ ଯିବୁ ନାଶ ।
ଏ ବଚନ କହି ଶ୍ରୀରାମ ଯୁଦ୍ଧ କାଳେ
ରଜନୀ ପାଅସଡ଼ ହେଲାଣି ତେତେବେଳେ ।
କ୍ଷଣେହେଁ ବିଶ୍ରାମ ନାହିଁ ଅବିଶ୍ରାମ ସମର
ପୁଣି ଘୋର ଯୁଦ୍ଧ ହେଲା ଦୁଇ ସୈନ୍ୟଙ୍କର
ଅନ୍ଧାର ବେଳରେ ଯେ ହେଲେ ପିଟାପିଟି
ପଶି ମରାମରି ପୁଣି ଘେନ ଯେ ଉଠାଉଠି ।
ରାବଣ ସୈନ୍ୟବଳ ଶ୍ରୀରାମଙ୍କୁ ବେଢ଼ିଲେ
ଅଙ୍ଗଦ ବିଭୀଷଣ ଯେ ଦଶଶିର ତୁଲେ ।
ଘୋର ଯୁଦ୍ଧରେ ରାବଣ ବିରଥ ହୋଇଥିଲା
ଶ୍ରୀରାମଙ୍କ ନାରାଚରେ ଅଶ୍ୱଙ୍କ ପ୍ରାଣ ଗଲା ।
ବିଭୀଷଣର ବାଣରେ ମୋହି ଦଶଶିର
ଅନ୍ଧାରେ ରାଘବ ମାରନ୍ତି ଦୈତ୍ୟବଳ ।

ବିଭୀଷଣ ନାରାଚ ବନ୍ଧେ ବେଳ ଜାଣି
ଆଷାଢ଼ ମାସରେ ଯେସନ୍ତେ ବରଷଇ ପାଣି ।
ବୁକୁ ଦକ ଦକ ଯେ କାଖ ଖୋଳା ସନ୍ଧି
ନାସାର ବିମ୍ବରକୁ ବିଭୀଷଣ କାଣ୍ଡ ବନ୍ଧି ।
କଣ୍ଠ କପୋଳ ଆଣ୍ଠୁ ଯେ ଆଉ ନାଭି
ଅଙ୍ଗରେ ତରକଣ ହୋଇଲ ସେ ବାଦି ।
ବିନ୍ଧିଲ କାଣ୍ଡମାନ ତ୍ରିଗୁଳ ରହେ ଫାଳ
ଫାଳଙ୍କର ଅଧାଚନ୍ଦ୍ର ଭିନଜଣ ଯେ ଭିଆର ।
ଗ୍ରୀଷ୍ମଣ ନାରାଚମାନ ଅସୁରି ଶରମାନ
ଦିବ୍ୟଅସ୍ତ୍ର ଗନ୍ଧର୍ବ ଅସ୍ତ୍ର ଅନେକ ବିଧାନ ।
ମର୍ଦ୍ଦିଣ ବିନ୍ଧଇ ସେ ଯେ ମର୍ମସ୍ଥାନ ଖୋଜି
ବାଣମାନ ଯାଇଣ ରାବଣ ଦେହେ ବାଜି ।
ବାଣ ବାଜନ୍ତେ ରଥରେ ଢଳେ ଦଶଶୀର୍ଷ
ବାଛିଣ ଭିନକାଣ୍ଡ ଯେ ବିଭୀଷଣ ମାରି ।
ଶରକୁ ବୋଇଲ ଶିର ଛେଦି ପକା ଭୁଇଁ
ରାବଣର କପୋଳେ ପଡ଼ିଲ ବେଗଯାଇ ।
ଦଶ ଲଲାଟରେ ଯାଇ ପଡ଼େ ଦଶ ବାଣ
ରକ୍ତ ବହୁଅଛି ଯେ ନ ଜାଣେ ରାବଣ ।
ଜୀବନ ହାରି ପୁଣ ରଥରେ ଅଛି ପଡ଼ି
ମରିଛି ବୋଲି କେହୁ ନ ପାରିଲେ ବାରି ।
ଅନ୍ଧାର ରଜନୀରେ ଦିହୁଡ଼ି ହୁଲା ନାହିଁ
ଶ୍ରୀରାମ ନ ଜାଣନ୍ତି ଡ଼ିକଲ ଲଙ୍କସାଇଁ ।
ଶୁକ ସାରଣ ମନ୍ତ୍ରୀ ଅଟଇ ବୁଦ୍ଧିମନ୍ତ
ବିଚାରିଲ ଡ଼ିକଲଣି ମନ୍ଦୋଦରୀ କାନ୍ତ ।
ଅନ୍ଧାର ବେଳରେ ରଥ ବାହିଲ ବାହୁଡ଼ାଇ
ନବଡ଼ ରଜନୀରେ କାହିଁକି ଦିଶୁ ନାହିଁ ।
ଚେତଉଠି ଦଶାନନ ବୋଲେ କୋପ କରି
ଜ୍ଞାନ ହରାଇଲୁ ମନ୍ତ୍ରୀ ହେଲୁରେ ବଇରି ।
ମୋହର ବଳ ବୀର୍ଯ୍ୟ ନଜାଣ କରେ ଅବା
ବାହୁଡ଼ାଇ ରଥ ପୁଣ କେମନ୍ତେ ବାହିବା ।
ଏସନକ ବିଚାର ନ କଲ ବେନି ଜନ
ବାହୁଡ଼ାଇ କମ୍ପାଇଁ ଆଣିଲ ମୋର ଯାନ ।
ବଜସ୍ତା ରଥ ମୋର ହାରି କେବେ ନାହିଁ
କ୍ଷତ୍ରୀ କୁଳରେ ଲାଜ ହରାଇଲ କସ ପାଇଁ ।
ଶୁଣିଲେ ରାଜାମାନେ ରେକବୋଲବେମୋତେ
ଏବେଳକ ଦୋଷ କ୍ଷମା କଲରେ ଭୁରନ୍ତେ ।
ବେଗେ ରାମ ଡ଼ିମୁଖକୁ ରଥ ମୋରବାହ
ସଂଗ୍ରାମ ସତ୍ୟ ଗୋଟି ବେଗେ ମୋ ରଖାଅ
ଏତେବୋଲି ଲଙ୍କରାୟେ ଉଠେ ଶସ୍ତ୍ରା ହୋଇ
ଦେଖିଲ ଦେହରେ କାଣ୍ଡ ହୋଇଅଛି ଗ୍ରୁଇ ।
କାଣ୍ଡଲଗି ଦେହଯାକ ହେଉଅଛି ବ୍ୟଥା
ବିଭୀଷଣ କାଣ୍ଡ ବୋଲି ଚିହ୍ନେ ଦଶମଥା ।
ରାମରୁ ଅଧିକ ମୋତେ ମୋ ଭାଇ ବଇରୀ
କୌଣସି ପ୍ରକାରେ ତାକୁ ନ ପାରିଲି ମାରି ।
ଏତେ କହି ରାବଣ ଯେ ଧନୁ ଶସ୍ତ୍ର ଧରି
ଯୁଦ୍ଧକୁ ଯେ ଉଦଯୋଗ କଲ ଦଶଗିରି ।
ଶୁକ ସାରଣ ମନ୍ତ୍ରୀ ଯେ ଯୋଡ଼େ ବେନିକର
ବିଭୀଷଣରେ ଅଚେତା ହେଲ ଦଶଶିର ।
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର
ରଥରୁ ଘୋଡ଼ାମାନ ଛେଦିଲେ ରଘୁବୀର ।
ବିଚାରିଲି ଆନ ଅଶ୍ୱ ଯୋଚଣ ଆଣିବା
ରାଜା ଆଜ୍ଞା ନ ପାଇଲେ ସମରେ ନ ପଶିବା
ଏବେ ଏଣ୍ଟିକ୍ଷଣ ଆଜ୍ଞା ଦିଅନ୍ତୁ ବାହିବୁଁ ରଥବର
କର ଯେ ସଂଗ୍ରାମ ତୁ ହୋ ଯେତେପାରମାର
ଏତେ କହି ରଥରେ ଅଶ୍ୱମାନ ଯୋଚି
ବାଗ ଦଉଡ଼ିକ ଦୁହେଁ ଧରିଲେ କରେ କଷି
ଯାଅ ଯା ବୋଲି ଉତ୍ତର ମୁରଛି ରଥ କରେ
ଦେଖିଣ ରଘୁନାଥ ମାତଳିକି ବୋଲେ ।
ମୋହର ରଥ ନେଇ ରାବଣ ଆଗେ କର
ଶୁଣିକରି ସାରଥି ନେଲ ଯେ ରଥବର ।
ଶ୍ୱେତ ଅଶ୍ୱ ବଜ୍ରଣ ହାର୍ଦ୍ଦିଣ ଗ୍ରୁଡ଼ିଦେଲେ
ପୁଷ୍ପକ ରଥ ଆଗରେ ନାଦଘୋଷ କଲେ ।
ଦେଖିଣ ତାହା ରାବଣ ଦୂରୁ ଶସ୍ତ୍ର ମାରି
ସଂଗ୍ରାମ ଭୂମି ଗୋଟାକୁ ଅନ୍ଧକାର କରି ।
ଗୁରୁତର ସଂଗ୍ରାମ କରନ୍ତି ବେନି ଜନ
ଚାହିଁବାକୁ ଭରନ୍ତି ନୋହିଲେ ଆନ ଜନ ।
ଦିବ୍ୟ ଅସ୍ତ୍ର ଘେନିଣ ସଂଗ୍ରାମ କରେ ବେନି
ଡାକ ହାକ ବିନ୍ଧିବାରେ ନାଦଶେ ମେଦିନୀ ।
ଦୁହିଁଙ୍କର ଶରୀରୁ ବହେ ଶ୍ରମ ଝାଳ
ବାଣ ପଶି ରକତ ବହେ ଖଳ ଖଳ ।
ଖଣେ ବିଶ୍ରାମ ନାହିଁ ସମର ମହାରଣ
ରାମ ପାହି ତ୍ରିଦଶ ଗ୍ଲାସ୍ୟାର ରମଣ ।

ପଣଦ୍ୱାଇ ଯୁଝନ୍ତି ବେଳକୁ ବେଳ ବେଗେ
ଛଡ଼ାଛଡ଼ି ନୁହନ୍ତି ଯୁଝନ୍ତି ଏକ ଲଗେ ।
ଲକ୍ଷେ ଲକ୍ଷେ ନାରାଚ ବନ୍ଧାଇ ଲଙ୍କପତି
ଶ୍ରାବଣ ମାସ ବରଷା ଯେସନେକ ସ୍ୱାତି ।
ଘନ ଘନ ତାହା ଯେ ଛେଦନ୍ତି ରଘୁପତି
ଅସଂଖ୍ୟ ସମର କରେ ପୌଲସ୍ତିର ନାତି ।
ରାବଣ କୋପ ଦେଖି ରଘୁକୁଳ ସାଇଁ
ଇନ୍ଦ୍ରର ଦେଲା ଧନୁ ଯେ ଧରିଲେ ସଜହୋଇ
ଅକ୍ଷୟ ତୂଣୀ ଭିଡ଼ିଣ ଦିବ୍ୟ ଅସ୍ତ୍ର କଲେ
ରାବଣେଶ୍ୱର ରଥରେ ଶର ବରଷିଲେ ।
ଉଲ୍କାପାତ ହୋଇଲା ସୈନ୍ୟଙ୍କର ମଧ୍ୟେ
ସ୍ୱର୍ଗପୁରେ ଥାଇଣ ଦେଖନ୍ତି ବିବୁଧେ ।
ଆଶ୍ଚର୍ଯ୍ୟ ଅସ୍ତ୍ର ପୁଣ ପେଷିଲେ ରାମଚନ୍ଦ୍ର
ଜଗତ ଛନ୍ନ ଛନ୍ନ ଯେ ଗର୍ଜଇ ହାଉହାଉ ।
ରଙ୍ଗବର୍ଣ୍ଣ ଦିଶିଲା ଯେ ସଭିଙ୍କର କାୟେ
ଦୁଇବଳ ସୈନ୍ୟ ଯେ ବହୁତ କ୍ଷୋଭ ପାଏ ।
ରାବଣର ସହିତ ସେନାପତି ପୁଣି
ଯୋଦ୍ଧା ରଥୀ ରାଉତେ ଥିଲେ ଶସ୍ତ୍ର ଘେନି
ଅପୂର୍ବ ସମର ଦେଖି ଶସ୍ତ୍ର ଯେ ପକାଇଲେ
ମଧ୍ୟସ୍ଥ ପ୍ରାୟେ ହୋଇଣ ଚାହିଁଣ ରହିଲେ ।
ଶ୍ରୀରାମଙ୍କର ସୈନ୍ୟ ସହିତେ ଶସ୍ତ୍ର ଛାଡ଼ି
କେହିଆଉ ସଂଗ୍ରାମରେ ନୋହିଲେ ତେଡ଼ିଭଳି
ଅଙ୍ଗଦ ସୁଗ୍ରୀବର ଯେ ବିଭୀଷଣ ରାୟେ
ଯୁଦ୍ଧ ନ କରିଣ ସର୍ବେ ଉଭା ହୋଇ ରହେ ।
ଅଷ୍ଟସେନା ଆବର ପଚଶ ଯୂଥପତି
ବୀର ମହାବୀରମାନେ ସେତେକ ଅଛନ୍ତି ।
ତରୁଶିଳ ପକାଇ ମଧ୍ୟସ୍ଥ ହୋଇ ଚାହିଁ
ଦୁଇକୁଳ ସୈନ୍ୟଙ୍କର ଯୁଦ୍ଧ ରହେ ତହିଁ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ରାମ ରାବଣର ଦୁଇଦିନ ଯୁଦ୍ଧ ପୁଣ ।
ପ୍ରଥମ ଦିନ ରାତ୍ର ଗୋଳ ଯୁଦ୍ଧ ହେଲା
ଅନେକ ସୈନ୍ୟ ଦୁଇ ବଳରୁ ନାଶଗଲା ।
ଆରଦିନ ବେଳ ଯେ ହୋଇଲା ପାଞ୍ଚଘଡ଼ି
ସେଦିନ ରାତ୍ରରେଟିକି ରଣ ଦେଖା ମେଳ ।
ଈଶ୍ୱର ବୋଇଲେ ହେଲା ନିବଡ଼ ଅନ୍ଧକାର
ରାତ୍ର ଅର୍ଦ୍ଧଠାରେ ଦେଖା ହୋଇଲେ ବାହାର

ମଲା ଦୈତ୍ୟମାନଙ୍କୁ ଯେ ବାଛିଣ ଭକ୍ଷିଲେ
ରକ୍ତ ନଦୀରୁ ଯାଇ ରୁଧିର ପାନ କଲେ ।
ଶୁଖିଲା ରକ୍ତ ନଦୀ ନ ରହିଲା ଚିହ୍ନ
ରୁଧିର ପାନରେ ଦେବୀ ସନ୍ତୋଷ କଲେ ମନ
ଲେଉଟି ଦେବୀଗଣ ରଣରେ ପଶିଲେ
ଋକ୍ଷ କପିଙ୍କର ମୁଣ୍ଡ ଗଣ୍ଡିକ ଯୋଡ଼ିଲେ ।
ଦଳ ହେବା ଲୋକଙ୍କୁ ସଲଖି ପୁଣ
ରଜନୀ ପ୍ରହରେ ଥାଉଁ ଚଳିଲେ ଦେବୀଗଣ ।
ସୁବଳୟା ଦକ୍ଷିଣ ପାଶରେ ଯାଇଁ ହେଲେ
ନିଜ ସ୍ଥାନ ଦେଖିଣ ବିଶ୍ରାମ ତହିଁ କଲେ ।
ଏଥୁ ଅନନ୍ତରେ ଭୁ ଗୋ ଶୁଣ ଶାକମ୍ବରୀ
ସ୍ୱର୍ଗରୁ ଯେ ଶୁକ୍ରମନ୍ତ୍ରୀ ଆସେ ବେଗକରି ।
ରଣରେ ପଶିଣ ମୃତ୍ୟୁସଞ୍ଜିବନୀ ପଢ଼ି
ଋକ୍ଷ କପିଙ୍କ ଉପରେ ସିଞ୍ଚିଲେ ଜଳ ଧରି ।
ତାର ପରେ ଅମୃତ ସିଞ୍ଚିଲେ ବେଦବର
ଜୀବ ପାଇ ସମସ୍ତେ ହେଲେ ବଳଆର ।
ଶୋଇବା ଠାବରୁ ସର୍ବେ ଉଠିକରି ଗଲେ
ଆପଣାର ସୈନ୍ୟ ମେଳେ ଯାଇଣ ରହିଲେ
ରଜନୀ ପାହିଲା ଯେ ଦେଖିଲେ ସର୍ବ ବଳ
ଦଇତ ବିଚାରିଲେ ମନରେ ତାଙ୍କର ।
କାଲି ରଣରେ ଯେତେ ସୈନ୍ୟ ମରିଥିଲେ
ରକ୍ତ ନଦୀରେ ପୁଣ ସର୍ବେ ଭାସି ଗଲେ ।
ତେଣୁକରି ନିର୍ମଳ ହେଲା ରଣ ଭୂଇଁ
ଏମନ୍ତ ମନେ ବିଚାରି ରାବଣ ସଇନ ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିଲୋଚନ
ପଦ୍ମବ୍ୟୂହ କରିଥିଲେ ମନ୍ତ୍ରୀ ଯେ ରାବଣ ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ହରି ନେଲା
ସୁଲଙ୍କା ନଦୀ କୂଳେ ବାହାର ତାଙ୍କୁ କଲା ।
ନଦୀ କୂଳେ ତିନିଜଣ ହୋଇଲେ ପ୍ରବେଶ
ନିଜ ପୁରେ ଏକମୁଖ ହେଲା ପରବେଶ ।
ବେନି ମନ୍ତ୍ରୀଙ୍କି ସେହୁ କହେ ବିଶ୍ୱାସରେ
ପିତା ଶତ୍ରୁ ମୋର ଅଛି କୁମ୍ଭନଦୀ ତୀରେ ।
ଛନ୍ଦ କଥା ଦେବୀ ମନ୍ଦିରେ ନେଇଁ ରଖ
ଦେବୀଙ୍କି ଯେ ବଶାବଳ ହୋଇବେ ପ୍ରତ୍ୟକ୍ଷ
ବାହାର କୋଳପ ଦେଇ ଆସିଲଟି ପୁଣ
ଏତେ ବୋଲି ଆଜ୍ଞା ଦେଲା ମନ୍ତ୍ରୀ ଯେ ରାବଣ

ତାହାଶୁଣି ମନ୍ତ୍ରୀ ବେନ ତତକ୍ଷଣେ ଚଳିଗଲେ
କୃଷ୍ଣା ନଦୀ କୂଳେ ଯାଇ ପ୍ରବେଶ ହୋଇଲେ
ଦେଖିଲେ ତିନିଜଣ ବସିଛନ୍ତି ସେଥି
ତାଙ୍କ ପାଶେ ପ୍ରବେଶ ଯେ ହେଲେ ତିନିମନ୍ତ୍ରି
ତାହାଙ୍କୁ ବୋଇଲେ ତୁମ୍ଭେ ଏଥେ କିମ୍ପା ବସ
ନଦୀକୂଳେ ବସିଲେ କି ଦିଶିବ ତୁମ୍ଭ ବେଶ ।
ସହର ଭିତରକୁ ଯିବା ଆସ ପୁଣ
ଭୋଜନ କରିଣ ସୁସ୍ଥ ହେବା ତିନିଜଣ ।
ରଜନୀ ଶେଷେ ପୁଣି କରିବ ଗମନ
ଏତେବେଳେ ରଜନୀ ତ ହେବ ନିଶା ଜାଣ
ପର ରାଜ୍ୟ ନଦୀକୂଳ ବନସ୍ତରେ ଅବା
ଏମାନଙ୍କ ମଧ୍ୟରେ ନ ରହେ ଭୂରିସବା ।
ଏତେବୋଲି ତାହାଙ୍କୁ ଯେ ସଙ୍ଗରେ ଆଣିଲେ
ସୁବେଗ ମନ୍ଦିରେ ତାହାଙ୍କୁ ଠାବ ଦେଲେ ।
ବୋଇଲେ ଏହିଠାରେ ରହ ତିନିଜଣ
ତୁମ୍ଭପାଇଁ ସଞ୍ଜା ଆମ୍ଭେ ଅଣାଇ ଦେ ପୁଣ ।
ଏତେ ବୋଲି ଦୁଇଜଣ ସେଠାରୁ ଚଳିଗଲେ
କବାଟକୁ ଆଉଯାଇ କୋଳପ ସେ ଦେଲେ ।
ବାହାର କୋଳପ ଦେଇ ଅଇଲେ ବେନିମନ୍ତ୍ରୀ
ଏକମୁଖା ରାବଣରେ କହିଲେ ସବୁଟି
ଶୁଣି ମହୀରାବଣ ସନ୍ତୋଷ ପୁଣ ହେଲା
ଭିତରେ ଅଭିଷେକ ହୋଇଣ ରହିଲା ।
ବନ୍ଦାପନା କଲେ ଯେ ସକଳ ରାଣୀହଂସ
ଅର୍ଘ୍ୟ ବନ୍ଦାପନା କରି ହୋଇଲେ ହରଷ ।
ଧାତ୍ରିମାନେ ପହଣ୍ଡ ମଣାଇ ଘେନି ଗଲେ
ରାଜାଙ୍କୁ ନେଇ ଭିତରେ ପରବେଶ କଲେ ।
ମର୍ଦ୍ଦନ ମାଜଣା ଯେ ହୋଇଲା ଶରୀର
ସୁବାସ ଜଳେ ସ୍ନାନ କଲା ଧାଡିକାର ।
ସନ୍ଧ୍ୟା ତର୍ପଣ ବିଧି ସାରିଣ ବହନ
ସାମବେଦ ଉଚ୍ଚାରଣ କଲାକ ଗାୟନ ।
ଇଷ୍ଟ ଦେବତାଙ୍କୁ ଯେ ସୁମରଣା କଲା
ପୂଜାସାରି ଭୋଜନରେ ଯାଇଣ ବସିଲା ।
ଷଡ଼ରସେ ଭୋଜନ କଲାକ ରାବଣ
କର୍ପୂର ଖଡ଼ିଆ ପାନ କଲାକ ଭୋଜନ ।
ଯାନ୍ତିଫୁଲ ପଲଙ୍କରେ ଶୟନ ଯାଇ କଲା
ଦାସୀଗଣ ଘେନି ପାଟ ମହାଦେଈ ଗଲା ।

ସ୍ୱାମୀର ଚରଣ ଯାଇ କରିଲେ ମଞ୍ଜାଳ
ତିନି ଘଡ଼ି ଶୟନ କଲେକ ମହୀପାଳ ।
ତିନି ଘଡ଼ି ଉତ୍ତାରୁ ତା ନିଦ ଭାଙ୍ଗିଗଲା
ଉଠି କରିଣ ପଲଙ୍କ ଉପରେ ବସିଲା ।
ବଡ଼ ପାଟମହାଦେଈ ସୁକେଶୀ ଯେ ଜାଣ
କରଯୋଡ଼ି କହଇ ନୃପତି ଆଗେଣ ।
ବୋଇଲା ଲଙ୍କାପୁର ପିତାଙ୍କ ପାଶେ ଗଲ
ସବୁ କଥା ଭଲଟିକି ଅଜା ଶ୍ୱଶୁରଙ୍କର ।
ଶାଶୁ ଶ୍ୱଶୁରଙ୍କ କଥା ଅଟେ କି କୁଶଳ
ଖୁଡ଼ୁତାମାନଙ୍କ କଥା ସବୁଟିକି ଭଲ ।
ଖୁଡ଼ିଶାଶୁମାନେ ସର୍ବେ ଅଛନ୍ତିଟିକି ଭଲେ
କପରି ସୁସ୍ଥେ ଅଛନ୍ତି ମୋତେ ନ କହିଲେ ।
ଭାଇମାନେ ସମସ୍ତେ ଅଛନ୍ତି ସୁଖେ ପୁଣ
ଲଙ୍କା ଗଡ଼ଯାକ ପରଜା ସୁସ୍ଥ ଜାଣ ।
ଶୁଣିଣ ମହୀରାବଣ ବଚନ କହଇ
ଲଙ୍କାଗଡ଼େ ବଡ଼ ଦୁଃଖ ଶୁଣରେ ପ୍ରାଣସହୀ ।
ଜମ୍ବୁଦ୍ୱୀପ ମଣ୍ଡଳରେ ଭରତ ଖଣ୍ଡରେ
ଅଯୋଧ୍ୟା ନାମେ ପୁର ଅଛି ସେ ରାଜ୍ୟରେ ।
ସେହି ରାଜ୍ୟକୁ ମୁଁ ଯେ ବୁଲି ଯାଇଥିଲି
ଦଶରଥ ରାଜା ଗୃହ ପୁତ୍ରଙ୍କୁ ଦେଖିଲି ।
ପିତା ସତ୍ୟ ପାଳି ବଡ଼ ପୁତ୍ର ବନ ଗଲା
ଭାଇ ଭାରିଯା ତାର ସଙ୍ଗରେ ଗୋଡ଼ାଇଲା ।
ତିନିଜଣ ବନସ୍ତରେ ନେଉଥିଲେ ଦିନ
ରାବଣ ଯେ ବନସ୍ତରେ ଦେଖିଲା ଏକଦିନ ।
ସୁନ୍ଦରୀ ଦେଖି ତାର ଭାରିଯାକୁ ଆଣିଲା
ଲଙ୍କାଗଡ଼ ଅଶୋକ ବନରେ ରଖିଲା ।
ତାହା ଜାଣି ଶ୍ରୀରାମ ଯେ ଋକ୍ଷ କପି ଘେନି
ସମୁଦ୍ରରେ ସେତୁବନ୍ଧ କଲେକ ସେ ପୁଣି ।
ସୁବଳସ୍ଥ ଗିରିରେ ଆସିଣ ଠଣା କଲା
ସାତଦିନେ କୁମ୍ଭକର୍ଣ୍ଣ ଅଜାକୁ ମାରିଲା ।
ଏଗାର ଦିନରେ ମୋର ପିତା ଗଲା ନାଶ
ବାରଦିନେ ମୋ ଖୁଡ଼ୁତା ହେଲା ପ୍ରାଣେଧ୍ୱଂସ
ତେରଦିନେ ଭାଇମାନେ ଯମପୁର ଗଲେ
ଚଉଦ ଦିନରେ ମୁଁ ପ୍ରବେଶ ହେଲି ଭଲେ ।
ଭାଇ ବୋହୂ ଖୁଡ଼ି ମାତା ଆଈମାନେ ପୁଣ
ସମସ୍ତେ ଯେ ଯାହା ସୁଖେ ଥାସିଲେ ସମ୍ଭୋଗେଣ

ଶୋକ କର ଅଜା ମୋତେ ବହୁତ କହିଲ
ମୋର ଯୋଗୁଁ ମୋର ବଂଶ ଏବେକ୍ଷୟ ଗଲ
ଦମ୍ଭ ଦେଇ ତାକୁ ମୁଁ ଯେ ରଣ ଭୂମି ଗଲି
ପଦ୍ମବ୍ୟୂହ କରିଣ ପିତା ଶତ୍ରୁକୁ ଆଣିଲି ।
ସୁଦେବୀ ମନ୍ଦିରେ ତାକୁ ରଖିଲି ଯତନେ
ଦେବୀ ସନ୍ତୋଷ ହେବ ମରିବ ଶତ୍ରୁ ତେଣେ ।
ଶୁଣିକରି ରାଣୀହଂସ ସମସ୍ତେ ଶୋକ କଲେ
ନ ମରି ଲଙ୍କରାଯ୍ୟେ ବଂଶକୁ ମରାଇଲେ ।
କେଉଁ ସ୍ତ୍ରୀ ନାହାନ୍ତି ଯେ ତାହାର ମନ୍ଦିର
ସ୍ତ୍ରୀ ହରଣେ ବଂଶ ମଲେ ଯେ ଅପାର ।
ଏତେ ବୋଲି ଶୋକଯେଅନେକବେଳକଲେ
ସମ୍ଭାଳ ହୋଇଣ ଦୁଃଖ ମନରେ ନିଦ୍ରାଗଲେ
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ସୁଦେବୀର ମନ୍ଦିରେ ଲକ୍ଷ୍ମଣ ରହିଅଛନ୍ତି ।
ହନୁମନ୍ତ ସୁଷେଣ ଅଛନ୍ତି ସଙ୍ଗତରେ
ଶ୍ରୀରାମ କଥା ଯେ ବିଚାରନ୍ତି ମନରେ ।
ବୋଇଲେ ଶ୍ରୀରାମଚନ୍ଦ୍ର ଏକା ହୋଇ ପୁଣ
ବଡ଼ ଚିନ୍ତା କରୁଥିବେ ଜାନକୀ ରମଣ ।
କେତେବେଳେ ପଦ୍ମବ୍ୟୂହ ହୋଇଥିବ ନାଶ
ଏତେ ବିଚାରି ମନରେ ଲକ୍ଷ୍ମଣ ବିରସ ।
ହନୁମନ୍ତ ବୋଇଲା ସେ ଅଟନ୍ତି ନାରାୟଣ
କି କରି ପାରନ୍ତି ତାଙ୍କୁ ଦଇତେ ଯେ ପୁଣ ।
ସୁଷେଣ ବୋଇଲା ଯେ ସେ କଥାଏବେ ଛାଡ଼
ରାତ୍ର ପାହିଲେ ଆମ୍ଭେ କରିବା ବିଚାର ।
ରଜନୀ ଶେଷ ଯାଏ ଏ ମନ୍ଦିରେ ଥିବା
ଶର୍ବରୀ ଶେଷଅନ୍ତେ ଲଙ୍କାକୁ ଆମ୍ଭେ ଯିବା ।
କାଲି ଶ୍ରୀରାମ ଛାମୁରେ କରିବା ଦରଶନ
ଏତେ ବୋଲି ପ୍ରବୋଧଯେ କରଇ ସୁଷେଣ
ଏମନ୍ତ ବିଚାର ଯେ ଶ୍ରୀରାମ ଶୁଣିଲା
ଅନ୍ତର୍ଗତେ ତାହାର ଭାଳେଣି ପୁଣ ହେଲା ।
କମଳାର ବଲ୍ଲଭ ଯେ ଅଟନ୍ତି ଶ୍ରୀରାମ
ଅସୁର ମାରିବାକୁ ହୋଇଛନ୍ତି ଜନ୍ମ ।
ରାବଣ ସଙ୍ଗରେ ସେ ଯେ କରନ୍ତି ସମର
ଅସୁର ହରି ଆଣିଛି ଜାନକୀ ତାଙ୍କର ।
ହନାକେତେ ତଳରେ ମୁଁ ଲଙ୍କାଗଡ଼ ଗଲି
ସପତଣୀ ଦେବୀ ସଙ୍ଗେଯାଇ ମେଳ ହେଲି ।

ସେବୋଇଲା ଅଳ୍ପଦିନେ ଦେଖିବାଆମ୍ଭେମେଳ
ଚଉଷଠି ଯୋଗ୍ନୀ ଘେନି ବାଶେଳ ହେବଠୁଳ
ପରଂବ୍ରହ୍ମ ମୂରତି ଯେ ଶ୍ରୀରାମ ଆସିବେ
ଅନନ୍ତ ମୂରତି ପୁଣି ଲକ୍ଷ୍ମଣ ସଙ୍ଗେ ଥିବେ ।
ଆମ୍ଭର କରତା ଅଟେ ସୁମିତ୍ରାଙ୍କ ସୁତ
ଅଳପଦିନରେ ତାହାଙ୍କୁ ଦେଖିବା ନେତ୍ରପଥ
ସେହିଦିନରୁ ମୋର ହୃଦରେ ସୁମରଣ
ଏବେ ଆସି ମୋରପୁରେ କଲେକବିଜେପୁଣ
ଏତେ ବୋଲି ସୁଦେବୀ ଯେ ଉକ୍ସୁଲଗାଇଲା
ମଣ୍ଡପରେ ମହଣ ପୀଢ ବସାଇଲା ।
ଅଷ୍ଟରତ୍ନ ପଲଙ୍କ ସେ ନେଇଣ ଥୋଇଲା
ବାସପାଣି ସୁବର୍ଣ୍ଣ ଝରିରେ ପୁଣ ନେଲା ।
ସୁବର୍ଣ୍ଣ ଥାଳୀ ନେଇଣ ରଖିଲା ସେଠାରେ
ମାଳା ପିଢ଼ା ଗୋଟି ନେଇ ଦେଲା ଲକ୍ଷ୍ମଣରେ
ସୁଦେବ ବୋଇଲେ ଦେବ ଆସନରେ ବସ
ଚରଣପଖାଳ ଦେବୀ ମନରେ ହେଲେ ତୋଷ
ଛାମୁର ବାସନ୍ଦ ମୋର ଆଜ ଯେ ଫିଟିଲା
ମୋଠାରୁ ଅହନ୍ତା ଛାଡ଼ ଦଶରଥ ବଳା ।
ମନରେ ବିଚାର କରେ ସୁମିତ୍ରାର ବାଳ
ମୋତେ ଦେଖି ଏ ସ୍ତ୍ରୀରୁ ଯେଅଛୁ ମେଳ
ସନମାନ ରଖି ଏହାରେ ଶୀତଳ ହୋଇବା
ବିଶ୍ୱାସ କରିଣ ଏହାକୁ କଥା ପଚାରିବା ।
ଏ ଦେବୀ ଅଟଇ ଯେ ପୁର ନାୟିକାଣୀ
ରାଜା ପରଜା ସେବନ୍ତି ଏହାକୁ ହେ ପୁଣି ।
ଏତେ ବିଚାରି ଲକ୍ଷ୍ମଣ ମାଳ ପିଢ଼ାରେ ବସି
ଦେଖିଣ ସୁଦେବୀ ଯେ ଝରି ଘେନି ଆସି ।
ସୁବର୍ଣ୍ଣ ଥାଳିଆଟିରେ ନେଇଣ ଥୋଇଲା
ଲକ୍ଷ୍ମଣଙ୍କ ଚରଣକୁ ସେଥିରେ ଧୋଇଲା ।
ଆପଣାର ଅଞ୍ଚଳରେ ପୋଛେ ଯେ ଚରଣ
ଚରଣ ଉଦକ ଯେ ରଖେ ଦେବୀ ପୁଣ ।
ସେଠାରୁ ଦେବୀ ଉଠି ଗମ୍ଭୀରକୁ ଗଲା
ଦୁଇ ଝରି ପାଣିଆଣି ବେଗେ ଥୋଇଦେଲା ।
ହନୁମନ୍ତ ସୁଷେଣକୁ ବୋଇଲେ ଦେବୀ ପୁଣ
ଦୁଇଜଣ ଯାକ ମୁଖ ପଖାଳ ବହନ ।
ଶୁଣିକରି ହନୁମନ୍ତ ସୁଷେଣ ଯେ ଗଲେ
ଦୁଆର ଫେଡ଼ି ବାହାରେ ମୁଖ ପଖାଳଲେ ।

ଚରଣ ଧୋଇଣ ବେଗେ ହେଲେ ପରବେଶ
ରାମୁରେ ସୁଦେଷ୍ଣା କର ଯୋଡ଼ିଣ ହରଷ ।
ଲକ୍ଷ୍ମଣ ବୋଇଲେ ଏବେ ଶୁଣରେ ସୁନ୍ଦରୀ
ଏ ସ୍ଥାନରେ ଏବେ କମ୍ପା ରହିଛ ଘର କରି
ସୁଦେଷ୍ଣା ବୋଲେ ଆଜକୁ ଅଠର ମନୁ ହେଲା
ବ୍ରହ୍ମା ମୋତେ ଏଥିରେ ଯେ ରଖିକରି ଗଲା ।
ଏ ଗଡ଼ର ନାମ ହାଟଦେ ଅଟେ ଯେ ସୁଲଙ୍କା
ପ୍ରଥମରେ ଋଷିମାନେ କଲେ ଯେ ତପସ୍ୟା ।
ଦ୍ୱିତୀୟରେ ରାଜା ଏଥି ଚନ୍ଦ୍ରବେ ହୋଇଲେ
ନାନାଦ ସୌରଭ ଏଥିରେ ଜାତକଲେ ।
ଜଳନ୍ଧର ନାମେ ଦୈତ୍ୟ ଜଳରୁ ଜାତହେଲା
ରୋଦନ କରନ୍ତେ ତାକୁ ବରୁଣ ସମ୍ଭାଳିଲା ।
ଢାଳନ୍ତରେ ପ୍ରବେଶ ଯେ ହୋଇଲେ ଅସୁର
ଛନପୁର ଯାକ ହେଲେ ପରଜା ତାହାର ।
ବୃନ୍ଦାବତୀ ନାମରେ ସେ ସତୀ ବନ୍ଧୁ ହେଲା
ବାଷଠି ବର୍ଷ ପର୍ଯ୍ୟନ୍ତେ ଅସୁର ଭୋଗ କଲା ।
ସେତେବେଳେ ଚନ୍ଦ୍ରବେ ଛାଡ଼ିଲେ ଏହିପୁର
ବରୁଣ ଦେବତା ଜାଣି ହେଲା ଏହି ପୁର ।
ତାହାକୁ ଯେ ତ୍ରିଲୋଚନ ମାରିଲେ ଯୁଦ୍ଧରେ
ତାପୁତ୍ର ରାଜା ହେଲେ ଅଠର ଦିନପର୍ଯ୍ୟନ୍ତରେ
ପୁଣି ତାକୁ ତ୍ରିଲୋଚନ ଆପେ ନାଶ କଲେ ।
ସେ ଅସୁର ନାମ ଅଟେ ତ୍ରିପୁରା ଯେ ଭଲେ
ପୁଣି ଅସୁର ରାଜ ନାମ ନୂତନକେଶୀ ବୀର
ତାକୁ ନାଶ କଲା ଲଙ୍କା ରାବଣ ଦଶଶିର ।
ନାତି ତାର ଏକମୁଖା ରାବଣ ଅଟଇ
ସତାଇଶ ଯୁଗ ହେଲା ଏଥିରେ ରାଜା ହୋଇ
ବଡ଼ କୁପାଙ୍ଗ ମାୟା ଅଟେ ଯେ ତାହାର
ପିତାକୁ ଦେଖିବା ପାଇଁ ଗଲା ଲଙ୍କାପୁର ।
ତାର ପିତା ଇନ୍ଦ୍ରଜିତ ଭୁମ୍ବ ହସ୍ତେ ମଲା
ପିତା ମରିବାରୁ ମାତା ଜଳରେ ଝାସଦେଲା ।
ତାହା ଦେଖି କ୍ରୋଧ ହେଲା ମନ୍ତ୍ରୀ ଯେ ରାବଣ
ଭୁମ୍ବ ସଙ୍ଗେ ସୈନ୍ୟ ଘେନ କଲାକ ମହାରଣ
ନ ପାରିଣ ପଦ୍ମବ୍ୟୂହ ଗୋଟିଏ ସେ କଲା
ଭୁମ୍ବଙ୍କୁ ସେ ପଦ୍ମନାଡ଼ େହରିଣ ଆଣିଲା ।
ମୋର ପୁରେ ରଖିଣ ସେ କବାଟ ଗଲାଦେଇ
ବୋଇଲା ଏହାକୁ ଭୁମ୍ବେ ଖାଅ ମହାମାୟୀ ।

ଏତେ କହି ନିଜ ନବରେ ଚଳିଗଲା
ଶ୍ରୀରାମ ସଙ୍ଗତେ ସୈନ୍ୟ ଉଠି ଚେତା ହେଲା
ସୁବଳସ୍ୟା ଗିରିରେ ସମସ୍ତେ ହେଲେ ରୁଣ୍ଡ
ଭୁମ୍ବ ତିନ ଜଣଙ୍କୁ ଖୋଜିଲେ ରାମଚନ୍ଦ୍ର ।
ନ ପାଇବାରୁ ଅନେକ ଶୋକ ପୁଣ କଲେ
ନାରଦ ଆସିଣ ପୁଣ ତାକୁ କହିଗଲେ ।
ଏହିକ୍ଷଣି ସ୍ନାନ ଭୋଜନ କଲେ ଭୁମ୍ବ ଭାଇ
ଷଡ଼ଦିନେ ଭାଇକ ଦେଖିବ ନାରଦ ଗଲେକହି
ଏକମୁଖା ରାବଣକୁ ନାଶହେ କର ସ୍ୱାମୀ
ଆପେତ ପ୍ରତିଜ୍ଞା କରି ଅଛ ହେ ବୀରମଣି ।
ବୀରବାହୁ କୁମର ଶିରେ ପାଟ ହେଲା
ଭାଇକ ନ ଦେଖି ଏବେ ବ୍ୟସ୍ତ ହୋଇଲା ।
ଆଜୁ ପାଞ୍ଚ ଦିନେ ଭାଇକ ଦେଖିବ କୁମର
ଶ୍ରୀରାମ ଅଟନ୍ତି ନଷ୍ଟେ ଶଙ୍ଖଚକ୍ରଧର ।
ଏ ଘୋର ଅସୁରମାନେ ତାଙ୍କୁ କି କରିବେ
ହରୁଣଲେ ଛନପୁର ନମିଷେ ମାରିବେ ।
ଭୁମ୍ବେ ମହୀରାବଣକୁ କରି ଦେବ ନାଶ
ସୁବାହୁ ରାଜା କରି ନଅ ପୁଣ ଯଶ ।
ଶୁଣିଣ ଲକ୍ଷ୍ମଣ ବୋଲେ କେମନ୍ତେ ମାରିବା
ଅନ୍ତର୍ଦ୍ଧାନ ହୋଇଲେ ସେ କି ବୁଦ୍ଧି କରିବ
ଅସୁର ଯେ କାମରୂପି ଶୂନ୍ୟରେ ଗମନ୍ତି
ମାୟାକରି ଦଣ୍ଡକରେ ବ୍ରହ୍ମାଣ୍ଡ ବୁଲନ୍ତି ।
ସୁଦେଷ୍ଣା ବୋଇଲେ ଦେବ ଭୋଜନ ଯେ କର
ପଲଙ୍କରେ ନିଦ୍ରା ଯାଅ କହୁଛି ନ ବହୁର ।
ନିଜ ଯାନ ଆଣି ମୁଁ ଯେ ଦେବି ଭୁମ୍ବ ପାଶ
ସେ ଯାନରେ ବସି ଦେବ ଅସୁରଙ୍କୁ ନାଶ ।
ଶୁଣିକରି ସଉମିତ୍ରୀ ମନ ତୋଷ କଲେ
ଆଣ ଗୋ ସୁନ୍ଦରୀ କସ ଭୁଞ୍ଜିବା ବୋଇଲେ
ସୁବର୍ଣ୍ଣ ଥାଳୀରେ ଦେଖି ସଜାଡ଼ି ବହନ
ପାଚିଲା କଦଳୀ ଆମ୍ବ ତାଳସଜ ପୁଣ ।
ଲେମ୍ବୁ ଯେ କମଳା ଟଭ ପଣସ ନାରଙ୍ଗ
ଶାଡ ଯେ ନବାତ ପୁଣି ଆଣି ଦେଲା କନ୍ଦ ।
ତାହା ଦେଖି ସଉମିତ୍ରୀ ଭୋଜନ ଯେ କଲେ
ବାସୀପାଣି ଘେନିଣ ଯେ ମୁଖ ପଖାଳିଲେ ।
ଦୁଇ ଠାବ କରିଣ ସକଳ ଦ୍ରବ୍ୟ ପୁଣି
ହନୁମନ୍ତ ସୁଷେଣକୁ ଦେଲେ ଦେଖା ଆଣି ।

ଦୁଇଜଣ ଭୋଜନରେ ସନ୍ତୋଷ ହୋଇଲେ
ଆଚ୍ଛେବନ ସାରଣ ସେ ତାମ୍ବୁଳ ଭୁଞ୍ଜିଲେ ।
ସୁପାନ୍ତ ଶେଯରେ ଯାଇ ଲକ୍ଷ୍ମଣ ବସିଲେ
ରାମର ଆଲଟ ହନୁ ସୁଷେଣ ବଞ୍ଚିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ସୁଦେବୀ କାଢ଼ିଲେ ମାୟା ବିମାନ ଯେ ଗୋଟି
ବୋଇଲେ ହେ ପ୍ରାଣନାଥ ଏଥିଠାରେ ଥିବ
ଯିବା ଆସିବାକୁ ମୋତେ ପ୍ରହରେ ଲାଗିବ ।
ଏତେ କହି ବିମାନରେ ବସିବେ ବହନ
ପ୍ରବେଶ ହୋଇଲେ ଯାଇ ଇନ୍ଦ୍ରର ଭୁବନ ।
ଦେଖିଲେ ଦେବରାଜା କନକ ମଣ୍ଡପେ
ଶଚୀର ସଙ୍ଗତେ ଦେବ ବିଜୟେ ଏକାନ୍ତେ ।
ବିମାନୁ ଓହ୍ଲାଇ ଦେବୀ ଭିତରକୁ ଗଲା
ଦେବରାଜା ଚରଣରେ ଯାଇଣ ଓଳଗିଲା ।
ଶଚୀନାଥ ବୋଇଲା ଗୋ କିମ୍ପାଇଁ ଅଇଲ
ଶ୍ରୀରାମ ଭାଇ ଲକ୍ଷ୍ମଣଙ୍କୁ କି ଭେଟିଲ ।
ତୋତେ ସ୍ୱର୍ଗପୁର ପୁଣି ହୋଇଥିଲା ମନା ।
ଲକ୍ଷ୍ମଣଙ୍କୁ ସେବାକଲେ ଯିବ ତୋ ଦୋଷଣା ।
ସୁଦେବୀ ବୋଇଲା ଦେବ ମୋଠାରୁ ଶୁଣ
ଶ୍ରୀରାମ ଭାଇକି ହରି ନେଲା ଯେ ମହୀରାବଣ ।
ମୋହର ମନ୍ଦିରେ ନେଇ କଲା ପରବେଶ
ଦେଖିଣ ମୋର ମନ ହୋଇଲା ହରଷ ।
ମୁହିଁ ଜାଣିକରି ତାଙ୍କ ଚରଣ ସେବା କଲି
ଭୋଜନ କରିବାକୁ ସୁପକ୍ୱ ଦ୍ରବ୍ୟ ଦେଲି ।
ତେବେ ମୋର ପ୍ରାଣନାଥ ହୋଇଲେ ବିଶ୍ୱାସ
ମହୀରାବଣର କଥା କହିଲି ବିଶେଷ ।
ଶୁଣିଣ ବୋଇଲେ ଆମ୍ଭେ କେମନ୍ତେ ମାରିବୁ
ଅସୁର ତ କାମରୂପି ଗଲେ ନ ପାଇବୁଁ ।
ଯାନରେ ଚଢ଼ିଲେ ଯିବା ମାରିବା ଗୋଡ଼ାଇ
ପାଦଗଣ୍ଡ ହେଲେ ଯେ ଅସୁର ଲୁଚଇ ।
ଶୁଣିଣ ମୁଁ ବୋଇଲି ଯେ ସ୍ୱର୍ଗପୁର ଯିବି
ଦେବରାଜଙ୍କୁ କହି ମୁଁ ବିମାନ ଅଣାଇବି ।
ଏହା ଶୁଣି ବୋଇଲେ ଯେ ବେଗହୋଇଯାଅ
ତାଙ୍କ ବୋଲେ ଖଣ୍ଡିଲି ମୁଁ ଦୁଃସହପାପଦେହ
ତୁମ୍ଭଙ୍କୁ ଆସିଣ ମୁଁ କଲି ଦରଶନ
ଦିଅ ଯାନ ଗୋଟି ମୁଁ ଯେ ଯିବଇଁ ବହନ ।
ଶୁଣିଣ ଦେବରାଜା ଯେ ସନ୍ତୋଷ ହୋଇଲେ
ଦାସୀଜଣେ ପଠିଆଇ ଦାରୁକ ଡାକିଲେ ।
ତତକ୍ଷଣେ ଦାରୁ ଆସି ମିଳିଲା ଗୃହରେ
ଦେବରାଜା ବୋଇଲେ ତୁ ଯାଅ ଧାଣ୍ଡକାରେ
ତାଳଧ୍ୱଜ ରଥ ଘେନି ବହନ ତୁ ଯିବୁ
ଲକ୍ଷ୍ମଣଙ୍କ ଗୋଚରେ ନେଇ ସମର୍ପିବୁ ।
ତାଳଧ୍ୱଜ ରଥେ ଶ୍ରୀରାମ ଭାଇ ବିଜେ କରି
ତେବେ ସେ ଏକମୁଖା ରାବଣ ଯେ ମରି ।
ତାହା ଶୁଣି ଦାରୁ ଯେ ବେଗେ ଚାଲିଗଲା
ତାଳଧ୍ୱଜ ରଥ ଆଣି ମଣ୍ଡିଣି ଯେ କଲା ।
ସାଜେଣି କରି ରଥ ଆଣିଲା ବହନ
ଦେବରାଜା ଆଗରେ ଉଭା ସେ କଲା ପୁଣ ।
ବଜ୍ରଶର ବାବଲା ଯେ ଦୁଇ ଶର ଆଣି
ଦାରୁର ହସ୍ତରେ ଯେ ଦେଲେ ଦେବ ପୁଣି ।
ବୋଇଲେ ହେ ଦାରୁ ତୁ ଦୁଇଶର ନେବୁ
ଲକ୍ଷ୍ମଣଙ୍କ ହସ୍ତରେ ନେଇ ସମର୍ପିବୁ ।
ବୋଲିବୁ ଏ ଶରେ ପୁଣ ମରିବ ଏକମୁଖା
ହସ୍ତ ମୁଣ୍ଡ କାଟିଲେ ସେ ହୋଇବ ନିଶଙ୍କା ।
ଚରଣ କାଟିଲେ କେଭେ ନ ମରିବ ପୁଣ
ନାଭି ମଣ୍ଡଳେ ଯେବେହେ ପଶିବ ବ୍ରହ୍ମବାଣ ।
ତେବେ ତାର ମୃତ୍ୟୁ ହେବ କହିବୁଟି ତୁହି
ପାଶୋରିଲେ ଷଡ଼ଦନ ଏଥିରେ ଯିବ ବହି ।
ଆହୁରି କଥାଏ ତାର ଅଛି ମୃତ୍ୟୁଭେଦ
ଯେତେବେଳେ ବ୍ରହ୍ମା ତାକୁ ଦେଇଗଲେ ପଦ
ବୋଇଲେ ତୁ ଦେବତାଙ୍କ ହସ୍ତରେ ନମରିବୁ
ଅନନ୍ତ ମାନବ ହେଲେ ନିଶ୍ଚେ ତୁ ପ୍ରାଣଦେବୁ
ଦେବ ଯାନ ତାଳଧ୍ୱଜ ଚଢ଼ିବେ ଲକ୍ଷ୍ମଣ
ଚଉଦ ବରଷ ଯାଏ ନପୁଂସକ ପୁଣ ।
ଜନକର ଦୁହିତା ଯେ ତାଙ୍କର ଘରଣୀ
ଚଉଦ ବରଷ ଯେବେ ନପୁଂସକ ପୁଣି ।
କାକଚରିତ ପାଠ ଦେଇଣ ଥିଲେ ଭୃଗୁ
ଲୀଳାବତୀ ସୂତ୍ର ତାଙ୍କୁ ପଢ଼ାଇଥିଲେ ଆଗୁ ।
ଦୁଇଜଣ ଉନ୍ନିଦ୍ରରେ କେତେଦିନ ଥିବେ
ପୁରୁଷ ସ୍ତ୍ରୀ ଶୁଣ ଦୁହେଁ ସେ ନୋହିବେ ।
ବାଳକଙ୍କ ଗଣ୍ଡ ବୋଲି ତାହାଙ୍କୁ ଯେ ଗଣି
ମହୀରାବଣ ତୁ ମରିବୁ ତାଙ୍କ ହସ୍ତେ ପୁଣି ।

ତେବେ ତାର ନପୁଂସକ ଲକ୍ଷଣ ଯେ ଯିବ
ଆରନ୍ଧନ ତାର ନାଶ୍ରୀ ପୁଷ୍ପବନ୍ତୀ ହେବ ।
ତେବେ ସେ ଜାଣିବଟି ନାଶ୍ରୀ ରମଣ ରସ
ପକ୍ଷକରେ ତାର ସ୍ୱାମୀ ହେବ ପରବେଶ ।
ଇଥ ଦେବଯାନ ହେବ ରଥୀ ଯେ ମାନବ
ସେରଥରେ ସାରଥି ଯେ ମର୍କଟ ହୋଇବ ।
ତେବେ ତୋତେ ମରଣ ହେବ ଏକମୁଖା
ସେହି ମାରଥିବେ ତୋର ପିତାକୁ ଯେ ଏକା
ଏତେ କହି ବେଦପତି ବର ଦେଇଗଲେ
ସେକଥାକୁ ଏବେ ମହୀରାବଣ ପାଶୋରିଲେ ।
ରଥ ଦେଇ ବାହୁଡ଼ି ତୁ ଆସିବୁ ସ୍ୱର୍ଗପୁର
ସୁଷେଣ ସାରଥି ହେବ ସେ ରଥ ଉପର ।
ତୋହଠାରୁ ବାରକଳା ସୁଷେଣ ଯେ ନେବ
ପୂର୍ବରୁ ସେ ତୋ ଦେହୁଁ ଜାତ ହେଲା ଭାବ
ଏତେବୋଲି ମାତଳିକି ସେବୁଝାଇ କହିଲେ
ଦୁଇଗୋଟି ଶରନେଇ ତାରହସ୍ତେ ଦେଲେ
ମାତଳିକି ବୋଇଲେ ତୁ ଚଳଚନ୍ଦ୍ରପୁର
ଚନ୍ଦ୍ର ଦେବତାଙ୍କଠାରୁ ନେବ ଏକଶର ।
ପଦ୍ମଶର ତାହାର ଯେ ଅଟଇ ପ୍ରବଳ
ଆର୍ଦ୍ରାବଳୀ ଚନ୍ଦ୍ରଠାରୁ ନେବୁ ତୁ ସତ୍ୱର ।
ଶୁଣିକରି ମାତଳି ଯେ ଓଳଗ ମେଲ୍ଲାଇ
ଚଢ଼ିଲ ଯେ ଶ୍ୱେତଅଶ୍ୱ ଯୋଚାଇଲକ ନେଇ ।
ବାଗଦେଉଡ଼ି ଧରି ବେଗେ ଚଳ ଦେଲା
ଚନ୍ଦ୍ରମଣ୍ଡଳରେ ଯାଇ ପ୍ରବେଶ ହୋଇଲା ।
ଦେଖିକରି ଶଶଧର ସନ୍ତୋଷ ହୋଇଲେ
କେଣେ ଯାଉଛ ବୋଲି ତାଙ୍କୁ ପଚାରିଲେ ।
ମାତଳି ବୋଇଲା ମୁଁ ଯାଉଛି ମଞ୍ଚପୁରେ
ମହୀରାବଣ ହତ ହେବ ଲକ୍ଷ୍ମଣ ହସ୍ତରେ ।
ବାବଲ ଶର ବଜ୍ରଶର ଦେବରାଜା ଦେଲେ
ଆଦ୍ରାବଳୀ ଶରପାଇଁ ତୁମ୍ଭପାଶକୁ ଭେଜିଲେ
ଶୁଣିକରି ଶଶଧର ବେଗେ ଆଣି ଦେଲେ
ଆଦ୍ରାବଳୀ ହେମାବଳୀ ଦୁହିଁଙ୍କି ସମର୍ପିଲେ ।
ସେବୋଇଲେ ତୁହିନେଇ ଲକ୍ଷ୍ମଣହସ୍ତେଦେବୁ
ପଦ୍ମବ୍ୟୂହ କଲେ ହେମାବଳୀକି ବନ୍ଧିବୁ ।
ରଜନୀରେ ତୋର ପାଶେ ଆଦ୍ରାବଳୀ ଥିବ
ଅନ୍ଧଡ଼ ଅନ୍ଧକାରଯାକ ଆଲୁଅ କରିବ ।

ଚନ୍ଦ୍ରଠାରୁ ଶରନେଇ ମାତଳି ଚଳିଗଲା
କପିଳାସ କନ୍ଦରରେ ପ୍ରବେଶ ହୋଇଲା ।
ତେତେବେଳେ ଆମ୍ଭେ ତୁମ୍ଭଙ୍କୁଧରି କୋଳେ
ଜାଈଫୁଲ ଧଣ୍ଡାରେଯେ ଜୁଡ଼ା ତୋମୁଣ୍ଡରେ
ତେତେବେଳେ ରଜନୀଯେ ହୋଇଛି ସାତଘଡ଼ି
ଦେବଦୂତ ମାତଳି ଯେ ଆମ୍ଭପୁରେ ମିଳି ।
ଦୁଇଜଣଙ୍କର ପାଦେ ପଡ଼ିଲା ସେ ଯାଇ
ତୁମ୍ଭେ ପଚାରିଲ କମ୍ପୁତ କଥା ଏହି ।
ମାତଳି ବୋଇଲା ଦେବ ଅସୁର ବଡ଼ ଟାଣ
ତାଙ୍କର ଭୟେ ସ୍ୱର୍ଗରେ ନରହେ ଦେବଗଣ
ବାସୁଦେବ ଅନନ୍ତ ମାନବ ଦେହ ବହି
ଅସୁର ମାରିବାକୁ ଜନମ ହେଲେ ସେହି ।
ଶ୍ରୀରାମ ଲକ୍ଷ୍ମଣ ନାମେ ଅଟନ୍ତି ଦୁଇଭାଇ
ଦଶମୁଖା ରାବଣ ସଙ୍ଗରେ ଯୁଦ୍ଧ ହୋଇ ।
ନାତି ତାର ମହୀରାବଣ ଅଟଇ ଏକମୁଖା
ଲକ୍ଷ୍ମଣ ସହିତରେ ଯୁଝିଇ କରି କକ୍ଷା ।
ଦେବଯାନ ସବୁଦିନେ ଅଟଳ ତାଙ୍କର
ତାଳଧ୍ୱଜ ରଥେ ବଜେ କରନ୍ତି ସଦାକାଳ ।
ତେଣୁ ମୁଁ ଜାତ ନେଇଛି ତାଙ୍କ ପାଇଁ
ଏଥି ବସି ଯୁଝିଲେ ମରିବଟି ସେହି ।
ଇନ୍ଦ୍ର ଦେବା ଶସ୍ତ୍ର ଯେ ଚନ୍ଦ୍ର ଦେବା ଶର
ଏ ଶର ନେଉଅଛି ଦେବ ମୁଁ ତାଙ୍କଠାରୁ ।
ମୁହିଁ ସେ ରଥରେ ପୁଣି ନୋହିବ ସାରଥି
ସୁଷେଣ ନାମେ କପି ସେ ରଥ ବାହିବଟି ।
ତାଙ୍କ ପାଇଁ ତୁମ୍ଭଠାରୁ ବଜ୍ର ବଭୂତ ନେବ
ତାଅଙ୍ଗେ ବୋଳିଣ ତାକୁ ବଶ୍ୟ କରାଇବ ।
ତେବେ ସେ ମରିବ ଏକମୁଖା ଯେ ରାବଣ
ଆମ୍ଭଠାରୁ ବଜ୍ର ବଭୂତ ଦେଲୁ ପୁଣ ।
ଆମ୍ଭର ବଭୂତ ନେଇ ବେଗେ ଚଳିଗଲା
ସୁଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇଲା ।
ସୁଦେବୀ ମନ୍ଦରେ ରଥ କଳାକ ନେଇଣ
ଭିତରେ ଶୟନ କରିଥିଲେ ରାମ ରାଣ ।
ମାତଳି ବୋଇଲା ଉଠ ମାରୁତିରେ ପୁଣ
ଅଚେତା ହୋଇଣ କମା ଅଛ ଯେସେଶୋଇଣ ।
ତାଳରେ ପୁରଇ ମୂଷା ରଖିଅଛି ପୁଣି
ତହିଁକି ଚମର ଗାତ ଦେବତାଏ ପୁଣି ।

ଶୁଣିଣ ପବନ ସୁତ ବଚ୍ଚ ଫେଡ଼ ଦେଲା
ବାହାରକୁ ଆସି ରଥ ସାଜେଣି ଦେଖିଲା ।
ମାରୁତ ବୋଇଲା ତୁମ୍ଭେ କେଉଁଠାରେ ଆଏ
କସ ନାମ ତୁମ୍ଭର ଅଟେ କହତ ମୋତେହେ
ମାତଳ ବୋଇଲା ତୁ ହନୁମନ୍ତ ଶୁଣ
କେଉଁଠାରୁ ଆସିଅଛୁ କହିବ ମୁଁ ପୁଣ ।
ତୁମ୍ଭେ ଯାଇ ଲକ୍ଷ୍ମଣଙ୍କୁ ଉଠାଇ ଘେନଆସ
ଆସିଅଛୁ ଯହିଁପାଇଁ କହିବ ତାଙ୍କ ପାଶ ।
ଶୁଣି କର ମାରୁତ ଲକ୍ଷ୍ମଣ ପାଶେ ହୋଇ
ଲକ୍ଷ୍ମଣଙ୍କୁ ବୋଇଲେ ବେଗେ ଆସ ଧାଇଁ ।
ଶୁଣିକର ସଉମିତ୍ରି ଶେଯ୍ୟାରୁ ଉଠିଲେ
ସୁବାସଜଳ ନେଇ ମୁଖ ପଖାଳିଲେ ।
ଧନୁଶର ଧରଣ ବାହାରେ ହେଲେ ଉଭା
ଦେଖିଲେ ସେ ଯାନଗୋଟି ପାଉଅଛୁ ଶୋଭା
ଦେଖିଣ ମାତଳ ବେଗେ ରଥରୁ ଓହ୍ଲାଇଲା
ଲକ୍ଷ୍ମଣର ଚରଣରେ ଯାଇଣ ପଡ଼ିଲା ।
ସଉମିତ୍ରୀ ବୋଇଲେ ସେ କେଉଁଠାରୁ ଆସି
ମାତଳ ବୋଇଲା ଦେବ ସ୍ୱର୍ଗରୁ ମୁଁ ଆସି ।
ଲକ୍ଷ୍ମଣ ବୋଇଲେ କମ୍ପା ଅଇଲ ସ୍ୱର୍ଗରୁ
ମାତଳ ବୋଇଲା କଥା ଶୁଣ ହେ ମୋଠାରୁ ।
ସୁବେଗି ଯାଇଣ ଦେବରାଜଙ୍କୁ କହିଲା
ମହୀରାବଣ ମାରିବାକୁ ଲକ୍ଷ୍ମଣ ବିଜେକଲା ।
ଶୁଣିବାରୁ ଦେବରାଜ ଯାନ ଦେଲେ ଗୁଳ
ଏ ରଥରେ ବସି ତୁମ୍ଭେ ଯୁଦ୍ଧ କରିବ ବୋଲ
ଇନ୍ଦ୍ର ଦେଇଛନ୍ତି ଯେ ବାବଲ ବଜ୍ରଶର
କହିଛନ୍ତି ଦେବରାଜା ଶୁଣ ହେ ମୋଠାର ।
ବଜ୍ରଶର ମାରିଲେ ଯେ ଦୈତ୍ୟହେବେ ନାଶ
ବାବଲ ଶରେ ତାର ଛେଦିବ ଶରଯାକ ।
ବଡ଼ ଯୁଦ୍ଧ କରିବ ପ୍ରତାପୀ ଏକମୁଖା
ପାଞ୍ଚଦିନେ ମରିବ ହେ ଶୁଣ ରାମ ସଖା ।
ପ୍ରଥମ ଯୁଦ୍ଧେ ଯାଇ ତୁମ୍ଭ ସଙ୍ଗେ କଲା
ମାୟା ଯୁଦ୍ଧ କରି ତୁମ୍ଭକୁ ହରିଣ ଆଣିଲା ।
ଏବେ କେତେ ମାୟା ଯୁଦ୍ଧ କରିବ ସେ ପୁଣ
ଏ ଯାନେ ବସିଲେ ଜିଣିନପାରେତୋତେଜାଣ
ସେହି ଯେଣେ ଯିବ ତୁମ୍ଭେ ଯିବ ତାର ପଛେ
ଏହି ଯାନ ଗୋଡ଼ାଇବ ତାହାର ସଙ୍ଗତେ ।

ଏତେକହି ମାତଳ ଯେ ଚନ୍ଦ୍ର ଦେଲା ଶର
ଲକ୍ଷ୍ମଣର ହସ୍ତେ ନେଇ ଦେଲା ଧାତକାର ।
ବୋଇଲା ଏ ଶର ଶଶୀଧର ଦେଇଛନ୍ତି
ଆଦ୍ରାବଳ ହେମାଶର ଏହାଙ୍କ ନାମ ଗୋଟି
ଆଦ୍ରାବଳ ଥିଲେ ନଶୀ ଆଲୋକ ହଶିବ
ହେମଶର ବାନ୍ଧିଲେ ତାର ମାୟାଟି ତୁଟିବ ।
ତେବେ ମରିବ ପୁଣି ବରିବାର ନାନ୍ତ
ଏତେ ବୋଲି ଦେବଦୂତ ବୁଝାଇ କହନ୍ତି ।
ପୁଣିହିଁ ବୋଇଲେ ତୁମ୍ଭେ ମୋର ବୋଲ ଶୁଣ
ନାରାୟଣଙ୍କ ପଥ ଅଟେ ନନ୍ଦୀଘୋଷ ଜାଣ ।
ସେ ରଥରେ ବିଜେକଲେ ଦଶରଥ ବଳା
ସ୍ୱର୍ଗରୁ ଦେବତାଏ ତାଙ୍କୁ ଦେଲେ ପରା ।
ମାତଳ ଘେନିଣ ରଥ ଶୂନ୍ୟରୁ ଆସିଲେ
ସେ ରଥେ ବସିଣ ରାମ ସନ୍ତୋଷ ହୋଇଲେ
ତହିଁ ବସି ରାମଚନ୍ଦ୍ର ରାବଣ ସଙ୍ଗେ ଯୁଝି
ଏକଥା ଗୋଟିକୁ ତୁମ୍ଭେ ଥାଅ ଏବେ ବୁଝି ।
ଶୁଣିଣ ସଉମିତ୍ରୀ ସନ୍ତୋଷ ହୋଇଲେ
ତାଳଧ୍ୱଜ ରଥପରେ ଯାଇଣ ବିଜେକଲେ ।
ରତ୍ନ ସିଂହାସନରେ ବୀରବେଶେ ଯାଇପୁଣ
ଦୈତ୍ୟ ନାଶ ଅର୍ଥେ ଲୁଚ କଲେ ଦେବଗଣ
ସୁଷେଣ ବୈଦ୍ୟକୁ ଯେ ଡାକିଲେ ଦାରୁକ
ବୋଇଲେ ବେଗ ହୋଇ ମୋର ପାଶେ ଆସ
ଶୁଣିଣ ସୁଷେଣ ବୈଦ୍ୟ ବେଗେ ଆସେ ପୁଣି
ମାତଳ ଆଗରେ ଉଭା ହେଲେ ତତକ୍ଷଣି ।
ମାତଳଙ୍କ ନମସ୍କାର କଲେ ସେ ସୁଷେଣ
ସବୁଦିନେ ମାତଳ ଯେ ବିଷ୍ଣୁର ବାହନ ।
ମାତଳ ବୋଇଲେ ତୁମ୍ଭେ ଶୁଣ ବୈଦ୍ୟରାଜ
ତାଳଧ୍ୱଜ ରଥରେ ସାରଥି ହେବୁ ଆଜ ।
ଶତେ ଜନ୍ମ ପାପ ତୋର ଏହିଠାରୁ ଗଲା
ଅଳ୍ପଦିନେ ବଇକୁଣ୍ଠ ପ୍ରାପତ ହୋଇଲା ।
ଶ୍ରୀରାମ ଫେରିଲା ବେଳେ ଅଯୋଧ୍ୟାର ପୁର
ବାଟରେ ଏରୂପ ତୋର ତେଜ୍ୟା ହେବଶର
ନିରଞ୍ଜନ ରୂପ ତୋତେ ଦେବେ ରାମରାୟେ
ଅକ୍ଷୟ ବୈକୁଣ୍ଠ ପୁରେ କରିବୁ ବିଜୟେ ।
ଏଗାର ସହସ୍ର ବର୍ଷ ପାଷାଣ ରୂପ ହେବୁ
ରାମନାମ କଲାବେଳେ ତୁ ସଙ୍ଗତରେ ଯିବୁ ।

ବଇକୁଣ୍ଠକୁ ଯିବାପାଏ ଜପିବୁ ରାମ ନାମ
ଏତେବୋଲି ଦେବଦୂତ କହିଲେ ମରମ ।
ଈଶ୍ୱର ଦେଲାବଭୂତିଅଙ୍ଗରେ ତାର ବୋଲି
ବାର କଳା ଆପଣ ଅଙ୍ଗରୁ ତେଜ କାଢ଼ି ।
ସୁଷେଣ ଦେହେ ଯାଇ ହୋଇଲାକ ପୂର୍ଣ୍ଣ
ବୋଇଲା ହୋ ବେଗେ ଯାଇ ରଥ ବାହାପୁଣ
ଈଶ୍ୱରଙ୍କ ଆଜ୍ଞାରେ ଶରୀର ତାର ବଜ୍ର
ମୋରଠାରୁ ବାରକଳା ତୋତେ ଦେଲିଆଜ
ଯେଣିକ ଲକ୍ଷ୍ମଣ ବୀର ତୋତେ ଆଜ୍ଞାଦେବେ
ତେଣିକ ବାହିବୁ ରଥ କରି ସଦଭାବେ ।
ତାହା ଶୁଣି ସୁଷେଣ ଯେ ରଥରେ ବସିଲା
ମାତଳ ଯାଇଣ ଚୂର ଅଶ୍ୱଙ୍କୁ କହିଲା ।
ବୋଇଲା ଏଥି ସାରଥି ହେଲା କପିବୀର
ଏହାର କହିବା ବୋଲି କରିବ ନକର ।
ଏତେବାଗେ ମାତଳ ଯେ ମାରୁତିକ କହି
ସାବଧାନେ ଯୁଦ୍ଧ କର ପବନ ତନୟି ।
ଦୈତ୍ୟବଳ ହସ୍ତୀ ଘୋଡ଼ା ମାରିବ ସକଳ
ଉପ୍ରୋଧ ନ କର ବାବୁ ଦେବଙ୍କ କୁଶଳ ।
ଏତେ କହି ମାତଳି ଯେ ଲକ୍ଷ୍ମଣ ଚରଣେ
ଓଳଗି ହୋଇଣ ଯେ ଗଲା ନିଜସ୍ଥାନେ ।
ଇନ୍ଦ୍ରଙ୍କର ଆଗେ ଯାଇ ପ୍ରବେଶ ହୋଇଲା
ଲକ୍ଷ୍ମଣଙ୍କ ରଥ ଦେଲି ବୋଲିଣ ବୋଇଲା ।
ସକଳ ମଣାଇଣ ଯେ କହିଲା ତାହାଙ୍କୁ
ରଥରେ ସାରଥି କଲି ସୁଷେଣ ବୈଦ୍ୟକୁ ।
ତୁମ୍ଭଶର ଚନ୍ଦ୍ରଶର ଦେଲି ଯେ ଲକ୍ଷ୍ମଣ
ଏହା ଶୁଣି ଦେବରାଜ ସନ୍ତୋଷ ମନେଣ ।
ଏଥୁଁ ଅନନ୍ତରେ ତୁ ଗୋ ଶୁଣ ଶାକମ୍ଭରୀ
ସ୍ୱଲଙ୍କାରେ ଦେଖା ଯେ ରହିଛୁ ଇନ୍ଦ୍ରପୁରୀ ।
ଦେବରାଜା ତାହାଙ୍କୁ ଯେ ଆଜ୍ଞା ଦେଲେ ପୁଣ
ଚର୍ଚ୍ଚିକାପୁରୀ ଦେବୀଙ୍କ ଗୋ ମୋରପାଶେଆଣ
ତାଙ୍କ ଆଜ୍ଞା ପାଇଣ ସୁଦେବୀ ବେଗେଗଲା
କାଳିକାଙ୍କପୁରେ ଯାଇ ପ୍ରବେଶ ହୋଇଲା ।
ଚରଣେ ଓଳଗେ ଯାଇ କାଳିକାର ପୁଣ
ଦେବରାଜ ଆଜ୍ଞା ତୁମ୍ଭେ ଯିବ ଗୋ ବହନ ।
ଶୁଣିକରି ହେଙ୍ଗୁଳାଇ ବାହାର ହୋଇଲେ
ଇନ୍ଦ୍ର ଭୁବନେ ଯାଇ ତୁରିତେ ମିଳିଲେ ।

ଦେଖିଣ ଦେବରାଜା ଚରଣେ ଓଳଗେ
ଦେବରାଜାବୋଲେତୁମ୍ଭେମଅଙ୍କୁ ଯାଅବେଗେ
ଏକମୁଖା ସଙ୍ଗେ ଯୁଦ୍ଧେ ଶ୍ରୀରାମର ଭାଇ
କଙ୍କାଳୀ ଯେ ନବକୋଟି ସଙ୍ଗରେ ନେଅ ତୁହି
ଯେତେକ ଅସୁର ସେଥି ମାରିବ ଲକ୍ଷ୍ମଣ
ସେମାନଙ୍କୁ ଭକ୍ଷି ଭସ୍ମ କର ତୁ ବଦନ ।
ବାସେଲୀ ଯେ ଭଇରବୀ ଯାଇଛନ୍ତି ପୁଣି
ଆସିଲା ବେଳେ ତାଙ୍କୁ ସଙ୍ଗତେ ଆସିବେନି ।
ଶୁଣିକରି ହେଙ୍ଗୁଳା ଯେ ବେଗେ ଚଳିଗଲା
ନବକୋଟି କଙ୍କାଳଙ୍କ ସଙ୍ଗତରେ ନେଲା ।
ଦେଖିଲା ଯେ ସଉମିତ୍ରୀ ରଥପରେ ବସି
ସୁଷେଣ ନାମରେକପି ସାରଥି ହୋଇଅଛି ।
ହନୁମନ୍ତ ଅଛି ସଙ୍ଗେ ପବନର ପୁଅ
ଲକ୍ଷ୍ମଣ ଚରଣେ ଦେବୀ କଲେ ଅତି ପ୍ରିୟ ।
ଓଳଗ ମେଲାଇ ଦେବୀ କରଯୋଡ଼ି ଆଗେ
ଦେଖିଣ ସଉମିତ୍ରୀ ସନ୍ତୋଷ ସଉଭାଗ୍ୟେ ।
ବୋଇଲେଗୋ ତୋହ ପ୍ରସନ୍ନରେଏତେକଥା
ଅସୁରଙ୍କ ହେତୁ ଦେବେ ପାଉଛନ୍ତି ବ୍ୟଥା ।
ଦେବତାଙ୍କଉପକାର କଲଗୋଏବେତୁମ୍ଭେ
ଆମ୍ଭେ ସୁଖୀ ହୋଇଲୁ ତୁମ୍ଭର ଯେ ଭାବେ ।
ନିର୍ଶ୍ଚିନ୍ତ ହୋଇଣ ତୁମ୍ଭେ ଯୁଗେ ଯୁଗେ ଥାଅ
ନବକୋଟି ଦେବୀଙ୍କର ସଙ୍ଗେ ପୂଜା ପାଅ ।
ପ୍ରାଣନାଥଙ୍କଠାରେ ହୁଅ ଗୋ ଭରସି
ଏତେ କହି ବର ଦେଲେ ଦଶରଥ ବଂଶୀ ।
ତାହାଶୁଣି ଈଶ୍ୱରଙ୍କୁ ପାର୍ବତୀ କହିଲେ
କେଉଁଦୋଷେ ସ୍ୱର୍ଗମନା ଦେବୀଙ୍କି ଯେକଲେ
ସେ ରଥଗୋଟାଦେବହେ ମୋତେତଦେବକହି
ତେବେମୋର ମନରେସନ୍ତୋଷ ପୁଣ ହୋଇ
ସେ ବଚନ ଶୁଣିଣ ବୋଲନ୍ତି ତ୍ରିଲୋଚନ
ସେକଥା ଗୋଟାକ ତୋତେ କହିଦେବାପୁଣ
ତ୍ରେତୟୁଗ ମଧ୍ୟରେ ଯେ କଳିର ଯୁଗରେ
ବଇଧୃତି ନାମରେ ଯେ ଏକ ନୃପବରେ ।
କୁଶଳ ଦ୍ୱୀପରେ ଯେ ଅଟେ ତାର ଘର
ସେ ରାଜା ବିଷ୍ଣୁ ଭକତରେ ଅଟେ ସାର ।
ପୁହଗୋଟି ନାମ ତାର କରଭ ଚକ୍ରବର୍ତ୍ତୀ
ତାହାଙ୍କୁ ସେ ରାଜ୍ୟରେ କରାଏ ନୃପତି ।

ଯୋଗ ସାଧିବାକୁ ସେ ଉଦେଗିର ଗଲା
ଛନଯୁଗ ପରଯନ୍ତେ ବସିଣ ତପ କଲା ।
ସେସ୍ଥଠାରେ ନାରାୟଣ ପ୍ରବେଶହେଲେ ଯାଇ
ବରଦେଲେ ତାହାକୁ ବଇକୁଣ୍ଠରେ ରହି ।
ବରପାଇ ନୃପତ୍ତ ବେଗେଣ ଉଠିଗଲା
ଗୃରିଦ୍ଦଗକୁ ସେ ନୃପତ୍ତ ଅନାଇଲା ।
ପର୍ଣ୍ଣିମ ଦ୍ୱାରରୁ ସେ ଆସଇ ବିମାନ
ଭଇରବ ମୂର୍ତ୍ତି ତହିଁ ବସିଅଛି ପୁଣ ।
ଦ୍ୱାର ଭ୍ରମଣକୁ ସେଦ୍ଦନ ଦେଖା ଯାଇଥିଲା
ନୃପତ୍ତର ଆଗେ ଆସି ପ୍ରବେଶ ହୋଇଲା ।
ନୃପତ୍ତକ ବୋଲେ ତୁମ୍ଭେ କର ରତ୍ତି ରଙ୍ଗ
ନୃପତ୍ତ ବୋଇଲେ ଆମ୍ଭେନୋହୁଁ ତୁମ୍ଭ ସଙ୍ଗ
ତାହାଶୁଣି ଦେଖାଯେ କାମରେ ଭୋଳହୋଇ
ଭଷ୍ଟ ଭକତକୁ ସେ ଯେ କୋଳ କଲା ଯାଇ
ଦେଖିକରି ନୃପତ୍ତର ଅତି କ୍ରୋଧ ହେଲା
ଅସୁର ପୁରରେ ଯାଇ ରହ ସେ ବୋଇଲା ।
ମନୁଏ ପରଯନ୍ତେ ସେ ପୁରେ ତୁ ଥିବୁ
ରକତ ମାଂସ ଖାଇଣ ଉଦର ପୋଷିବୁ ।
ସ୍ୱର୍ଗପୁର ଅଇଲେ ତୁ ହେବୁ ଭସ୍ମ ପୁଣ
ସେଅସୁର ତୋତେ ପୂଜା କରୁଥିବ ଜାଣ ।
ସେଅସୁର ଲକ୍ଷ୍ମଣରେ ବଦାଦ୍ଧ ହୋଇବ
ଅସୁରକୁ ମାରିବାରୁ ଲକ୍ଷ୍ମଣ ଆସିବ ।
ତୋହର ପୁରେ ସେ ରହିବେ ରଜନୀରେ
ତେବେ ତୁ ଶାପରୁ ଯେମୁକ୍ତ ହେବୁ ଭଲେ ।
ଏତେ କହି ରାଜନ ସେ ସ୍ୱର୍ଗପୁର ଗଲା
ସେ କଥା କାଳେ ଆସି ପ୍ରବେଶ ହୋଇଲା ।
ସେ ଦ୍ଦନରୁ ଦେଖାଙ୍କ ସ୍ୱର୍ଗ ମନା ଥିଲା
ସୁମିତ୍ରାର ପୁତ୍ର ଯହୁଁ ସେ ପୁରକୁ ଗଲା ।
ଏମନ୍ତ ପ୍ରକାରେ ଗୋ ଦେଖାର ଶାପ ପୁଣ
ଯାହା ପଚ୍ଚରିଲୁ ତୁ କର୍ଣ୍ଣ ଦେଇ ଶୁଣ ।
ସଂବଶ୍ରବୋଇଲେ ଦେବ ଲକ୍ଷ୍ମଣଙ୍କସ କଲେ
ସେକଥା ବୁଝାଇମୋତେ କହିବାକ ଭଲେ ।
ଈଶ୍ୱର ବୋଇଲେ ତୁ ଗୋ ଶୁଣ ମନଦେଇ
ତାଳଧ୍ୱଜ ରଥରେ ଯେ ବଜେ ରାମ ଭାଇ ।
ସୁଦେଷାଙ୍କ ବୋଇଲେ ଆଗରେ ବେଗେଚ୍ଚଲ
ଏକମୁଖା ରାବଣ ପୁର ଦେଖାଅ କେତେଦୂର

ଶୁଣିଣ ସୁଦେଷା ଯେ ଆଗରେ ବଜେ କଲା
ସୁଲଙ୍କା ଗଡ଼ ସିଂହଦ୍ୱାରରେ ଯାଇଣ ମିଳିଲା ।
ବୋଇଲା ପ୍ରାଣନାଥ ଏହି ସେ ରାଜା ପୁର
ମାର ଅସୁରକୁ ହେ ଦେବ କାର୍ଯ୍ୟ କର ।
ଏମନ୍ତ ସମୟରେ ରଜନୀ ଦଶ ଘଡ଼ି
ସେ ପୁରରେ ବେଦନଯେ କରନ୍ତି ଦଶନାସା
ଆହା ପୁତ୍ର କେଣେ ଯେ ଗଲୁରେ ଆମ୍ଭର
ଅକାରଣେ ମୃତ୍ୟୁରେ ପାଇଲ କୁମର ।
ରାବଣର ନାତ୍ତରେ ଅନ୍ୟାୟ ବଡ଼ କଲା
ଯୁବା ପୁତ୍ରମାନଙ୍କୁ ଆମ୍ଭର ବଳି ଦେଲା ।
ଅକାଳରେ ମୃତ୍ୟୁ ହେଉ ସେ ତାହାକୁ
ଏତେ ବୋଲି ଶାପ ଦ୍ଦଅନ୍ତି ରାଜାକୁ ।
ଲକ୍ଷ୍ମଣର କର୍ଣ୍ଣରେ ତାହା ସମ୍ଭାଇଲା
ସୁମିତ୍ରାର ସୁତ ଦେଖାଙ୍କି ଅନାଇଲା ।
ବୋଇଲେ ଗୋ ସୁଦେଷା ଏ କସ ଗୋ ପୁଣି
ସୁଦେବୀ ବୋଇଲେ ଦେବ ସେଥିରକଥାଶୁଣି
ତୁମ୍ଭଙ୍କୁ ଆଣିଣ ରାଜା ମୋର ପରେ ରଖି
ନଅଗୋଟି ମଣ୍ଡପ ଯେ ଏଠାରେ କରିଛି ।
ଚଢ଼ଳ ମେଣ୍ଢା ମଣ୍ଡପ ଗୋଟିକରେ ରଖେ
ପୋଡ଼ୁଅ ଅଜାକ ଏକ ମଣ୍ଡପରେ ରଖେ ।
ଏକ ମଣ୍ଡପରେ ନେଇ ରଖେ ସବୁ ଭୋଗ
ଅର ମଣ୍ଡପରେ ରଖେ ମେଈଆ ସଯୋଗ ।
ମାସକରେ ଥରେ ମୋତେ ଦ୍ଦଅଇ ନୃପତ୍ତ
ତେବେ ତାର କାମନା ମୁଁ କରଇ ପୂରତି ।
ତୁମ୍ଭଙ୍କୁ ମାରିବା ପାଇଁ ମୋ ପୁରେ ରଖିଲା
ଅନେକ ସମ୍ଭବେ ନେଇ ମୋତେ ସମର୍ପିଲା ।
ଦଶଗୋଟି ରାକ୍ଷସ ଯେ ଯୁବାଇ କୁମର
ମୋର ଘରେ ଦେଇଅଛି ଖାଇବାକୁ ମୋର
ଲକ୍ଷ୍ମଣ ବୋଇଲେ ତୁମ୍ଭେ ମୋରବୋଲକର
ସେମାନଙ୍କୁ ଛାଡ଼ିଦଅ ଯାଇଣ ସତ୍ୱର ।
ଆମ୍ଭର ଉଚ୍ଛିଷ୍ଟ ଯେବେ ଆଜ ପାନ କଲୁ
ପାପଭାରୁ ଛେଦଣ ତ ସ୍ୱର୍ଗପୁର ଗଲୁ ।
ଏବେ ଆମ୍ଭ ପାପ କର୍ମୀ ମନରେ ବିଚ୍ଚରିଲୁ ।
ସେମାନଙ୍କୁ ରଖି ତୁହି ଆମ୍ଭଙ୍କୁ ନ କହିଲୁ ।
ସୁଦେବୀ ବୋଇଲା ମୁଁ ଯେ ସ୍ୱର୍ଗପୁର ଗଲି
ସେଠାରୁ ଆସି ତୁମ୍ଭ ଛାମୁରେ ମିଳିଲି ।

ମୋର ମନେ ନାହିଁ ଦେବ ସେ କଥା ହେପୁଣ
ଗଲେ ଛାଡ଼ି ଦେବି ମୁଁ ସମସ୍ତଙ୍କୁ ପୁଣ ।
ସଞ୍ଜିମିନୀ ବୋଲେ ତୁମ୍ଭେ ବେଗହୋଇ ଯାଅ
ତାଙ୍କୁ ଛାଡ଼ି ଦେଇ ନିଜ ଆଶ୍ରମରେ ରହ ।
ମଉନ ହୋଇଣ ତୁମ୍ଭେ ନିଜ ପୁରେ ଥିବ
ରଜନୀ ହୋଇଲେ ପୁଣ ଆସିଣ ଦେଖିବ ।
ଶୁଣିଣ ସୁଦେବୀ ପୁଣ ବେଗେ ଚଳିଗଲା
ତାର ସଙ୍ଗେ ମାରୁତି ଯେ ଗମନ ପୁଣ କଲା ।
ସକଳ ମେଢ଼ିଆଙ୍କୁ ଦେଲା ସେ ଫେଡ଼ିଣ
ହରଷ ହୋଇଣ ସେ ଚଳିଗଲେ ପୁଣ ।
ଦେଖିଣ ମାରୁତି ବେଗେ ଫେରିଣ ଅଇଲା
ଲକ୍ଷ୍ମଣ ପାଶେ ଆସି ପ୍ରବେଶ ହୋଇଲା ।
ତାର ପଛେ ଦଶ ଯେ କୁମର ଗଲେ ପୁଣ
ପ୍ରବେଶ ହୋଇଲେ ଆସି ଲକ୍ଷ୍ମଣ ଆଗେଣ ।
ଚରଣରେ ପଡ଼ି କର ଯୋଡ଼ି ଉଭା ହେଲେ
ତୁମ୍ଭର ପ୍ରକାଶେ ଜୀବ ପାଇଲୁଁ ବୋଇଲେ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଆମ୍ଭ ପାଶରୁ ଯାଅ
ଅଲଗା ହୋଇଣ ତୁମ୍ଭେ ଗୋପପୁରେ ଥାଅ ।
ରଜନୀ ପାହିଲେ ତୁମ୍ଭେ ଯେ ଯାହା ଘରଯିବ
ଯୁଦ୍ଧକୁ ଅଇଲେ ତୁମ୍ଭେ ନିଶ୍ଚୟ ମରିବ ।
ତାହା ଶୁଣି ଅସୁରେ ଯେ ଅଲଗା ରହିଲେ
ଏଥୁ ଅନନ୍ତରେ ଯେ ରଜନୀ ଶେଷ ହେଲେ ।
ଦେବ ଆଳରେ ଶର ଶବଦ ଶୁଭିଲା
ହାଟ ବାଟ ଦାଣ୍ଡ ଗହଳ ପୁଣ ହେଲା ।
ପୁରି ଦ୍ୱାର କବାଟ ଫିଟିଲା ତତକ୍ଷଣ
ସିଂହଦ୍ୱାର ବାଟରେ ପଶିଲେ ଲକ୍ଷ୍ମଣ ।
ରାଜାର ନବର ସିଂହଦ୍ୱାରେ ହେଲେ ଯାଇଁ
ବୋଇଲେ କର୍ମାଇଁରେ ଲୁଚିଲୁ ଲଙ୍କସାଇଁ ।
ତୋଲର ଭିତରେ ତୁ ପୂରାଇ ଅଛୁ ମୁଷା
ଆଗକରି ଆମ୍ଭ ସଙ୍ଗେ ଜୁଝି କଲୁ ହିଂସା ।
ଏବେ ଆମ୍ଭ ସଙ୍ଗରେ ତୁ କରରେ ସମର
ଏତେ କହି ଧନୁ ଯେ ଧଇଲେ ବାମକର ।
ତୀକ୍ଷ୍ଣ ନାରାଚ ନେଇ ଗୁଣରେ ବସାଇଲେ
ବନ୍ଧିଲେ ନାରାଚ ଯେ ଗର୍ଜନ ନାଦ କଲେ ।
ଏହି ସମୟରେ ହନୁ ଦିଏ ସିଂହରଡ଼ି
ସୁଲଙ୍କାଗଡ଼ କମ୍ପିଲା ଯେସନେ ଘଡ଼ଘଡ଼ି ।

ମନ୍ତ୍ରୀ ଯାଇ ଜଣାଇଲେ ମହୀ ରାବଣକୁ
ଲକ୍ଷ୍ମଣ ଡକେଇକଲେ ତୋ ସଙ୍ଗେ ଯୁଝିବାକୁ ।
କାଲି ଯୁଦ୍ଧରେ ତୁହି ପଦ୍ମବ୍ୟୂହ କଲୁ
ଶ୍ରୀରାମ ଲକ୍ଷ୍ମଣ ଭାଇଙ୍କୁ ହରଣ ଆଣିଲୁ ।
ସୁଦେବୀର ମନ୍ଦିରେ ରଖିଲୁ ନେଇକରି
ହନୁମନ୍ତ ଥିଲା ଯେ ସଙ୍ଗରେ ତାହାରି ।
ବାହା ଲେଉଡ଼ା ମାରନ୍ତେ ଯେ ଫିଟିଲା କବାଟ
ସ୍ୱର୍ଗରୁ ଆଣିଲା ଯାନ ପବନର ସୁତ ।
ଗୃହପୋଡ଼େ ମାରି ସେ ଦେବୀଙ୍କ ସାଧି କଲା
ଏବେ ଆସି ତୋତେ ସେ ଯୁଦ୍ଧକୁ ଡାକଦେଲା
ଶୁଣିଣ ମହୀରାବଣ ବୋଲେ ଯିବ କାହିଁ
ତିନ ଜଣଙ୍କୁ ବେଢ଼ି ଯେ ମାରିବା ସାଙ୍ଗହୋଇ
ମନ୍ତ୍ରୀକି ବୋଇଲା ମୋର ସୈନ୍ୟ ସଜକର
ବେଢ଼ରେ ମାର ଯାଇ ଉପ୍ରୋଧ ନ କର ।
ରାଜାର ଆଜ୍ଞାରେ ଯେ ମନ୍ତ୍ରୀ ବେନି ଜନ
ଟମକ ନିଶାଣ ଯେ ଦେଲେ ରାଜ୍ୟରେଣ ।
ଶତ୍ରୁ ଉପଗତ ହେଲା ବେଗେ ହୁଅ ସଜ
ଏତେ ବୋଲି ଘୋଷଣା ଦେଲା ଲଙ୍କରାଜ ।
ତାହାଶୁଣି ସେନାପତି ପଦାତି ସଜ ହେଲେ
ଦଶ କୋଟିର ସେନାପତି ଅଟନ୍ତି ତାରଭଲେ
ରଥୀ ବାରକୋଟି ଯେ ପଦାତି ନବ ପଦ
ବାଦ୍ୟକର ଅଟେ ତାର ଚଉଦ କୋଟି ଦନ୍ତ
ମତ୍ତହସ୍ତୀ ପୋତିଅଛୁ ଷୋଳ ଲକ୍ଷ ପୁଣ
ଏମନ୍ତ ସମୟେ ଏକ ମୁଖା ଯେ ରାବଣ ।
ଘନ ଘନ ତୀକ୍ଷ୍ଣ ଶର ବନ୍ଧେ ଆମଞ୍ଚଣ
ସଜ ହୋଇ ଚଢ଼ିଲା ସେ ଦେବଦଳନ ।
କୁବୁଦ୍ଧି ସୁବୁଦ୍ଧି ଦୁହେଁ ରଥରେ ସାରଥି
ସିଂହଦ୍ୱାରେ ରଥ ନେଇ କଲେକ ଝଟତି ।
କୋଦଣ୍ଡ ଧରିଣ ହସ୍ତେ ମହୀ ଯେ ରାବଣ
ଘନ ଘନ ତୀକ୍ଷ୍ଣ ଶର ବନ୍ଧେ ଆମଞ୍ଚଣ ।
ଲକ୍ଷ୍ମଣ ଛେଦନ୍ତି ତା ପ୍ରତି ଅସ୍ତ୍ର କରି
ଶୂଳ ଭଲ୍ଲ କୋନ୍ତ ଯେ ପ୍ରହାରେ ବେଗକରି ।
ଧନୁଶର କରେ ଧରି ସଞ୍ଜମିନୀ ଛେଦେ
ନିମିଷକେ ଲକ୍ଷ ଶର ବନ୍ଧଇ ଦୈତ୍ୟ ବାଦେ
ଛୟାଳିଶ ବଡ଼ ଦାଣ୍ଡ ଅଟେ ଯେ ତାହାର
ଗଳି କନ୍ଦ ଅଟଇ ଯେ ଲକ୍ଷେକ ସମ୍ଭାର ।

ସେଥିରେ ଯନ୍ତ୍ରା ଯନ୍ତ୍ର ସୈନ୍ୟ ହେଲେ
ଗହଳରେ ସବୁଦଣ୍ଡେ ସୈନ୍ୟଛନ୍ତି ଯୁଣିତହିଁ
ସୁବୁଦ୍ଧି କୁବୁଦ୍ଧି ମନ୍ତ୍ରୀ ଦୁଇଜଣ ପୁଣ
ବୋଇଲେ ରାଜନ ଏବେ ଶୁଣହେ ବଚନ
ଏଥିରୁ ବାହାର କରି ରଥ କାଢ଼ି ନେବା
ଗଡ଼ର ବାହାରେ ଯାଇ ସମର କରିବା ।
ଏବେ ଦୈତ୍ୟଗଡ଼ ଭିତରେ ସୈନ୍ୟଯନ୍ତ୍ରାଯନ୍ତ୍ର
ହାଟ ବାଟ ଦାଣ୍ଡରେ ନ ମିଳନ୍ତି ।
ମହୀରାବଣ ବୋଇଲା ଯଦାକୁ ରଥ କାଢ଼
ଦେଖିବା ଯାନ ଯନ୍ତ୍ରର ଅଛେ କେତେ ଗାଢ଼
ପିତାକୁ ମାରିଛି ଏ ଯେ ପିତା ଶତ୍ରୁ ମୋର
ଆଜଯେବେ ତାହାକୁ ମୁଁ ପେଶିବ ଯମପୁର ।
ତେବେମୋର ମନଯେ ସନ୍ତୋଷ ହେବ ଜଣ
ମାନବ ହୋଇଣ ନେଲା ମୋ ପିତା ଜୀବନ ।
ଋକ୍ଷ କପି ସଙ୍ଗରେ ନାହାନ୍ତି କେହି ସଖା
ବେଢ଼ିକରି ମାରିବାରେ ତା ଭାଇ କରୁ ରକ୍ଷା
ସିଂହର ଆଗରେ ଆସି ପଡ଼ୁଛି ଶୃଗାଳ
ବଣ ବୁଦା ନ ଥିଲେ ମରଇ ସେବେଳ ।
ବ୍ୟାଘ୍ରରହାତବୋଢ଼ୁନେଯେହ୍ନେ ମିଳଯାନ୍ତି ଛେଳି
ନଖ ଦେଇ ଶାର୍ଦ୍ଦୁଳ ତାହାକୁ ବିଦାରି ।
ମାରିଣ ତାହାର ମାଂସ କରଇ ଆହାର
ତେବେ ମନସ୍ଥିରହୁଏ ଶାର୍ଦ୍ଦୁଳବାପୁଡ଼ାର
ମଞ୍ଜାରି ଯେସନେ ପୁଣ ମୂଷାକୁ ମାରଇ
ମାଡ଼ି କରି ତାର ମାଂସ ଆହାର କରଇ ।
ଶ୍ୟାମଳ ଯେସନେ ବକପରେ ଦିଏ ଦୃଷ୍ଟି
ଜଗିକରି ମାରଇ ଯେ କରି ଏକ ମୁଷ୍ଟି ।
ଟେକନେଇ ଅନ୍ୟସ୍ଥାନେ କରଇ ଆହାର
ତେବେ ରିପୁ ତାହାର ଯେ ହୁଅଇ ସଂହାର
ସେହି ରୂପେ ମୋହର ଯେ ବଇରି ଲକ୍ଷ୍ମଣ
ଏହାକୁ ମାରିଲେ ମୋର ଶତ୍ରୁ ଯାଏ ପୁଣ ।
ତେଣୁକରି ବର୍ବର ମୁଁ ଆଣିଅଛି ହରି
ତୁମ୍ଭର ଆଗରେ ମୁଁ କହୁଛି ନିୟମ କରି ।
ଯେତେବେଳେ ଏ ମରିବ ମୁଁ ନଯିବ ନବର
ଏହାକୁ ମାରିଲେ ମୁଁ ଯିବ ନିଜପୁର ।
ଏତେକହି ଏକମୁଖା ନଅତ ଯେ କଲା
ମନ୍ତ୍ରୀକି ବୋଇଲା ଦେଖି ରଥ କାଢ଼ି ମେଲା ।

ନବରୁ ସାଗର ଆଠ ବାହାରକୁ ଯାନ୍ତୁ
ନଗ୍ରରେ ରହିବା ଲୋକେ କଦର୍ଯ୍ୟ ମୁହନ୍ତୁ ।
ଏତେବାରେ ରାବଣ ଯେ ମନ୍ତ୍ରୀକି କହିଲା
ତାହାଶୁଣି ବେଗେ ମନ୍ତ୍ରୀ ରଥ ବାହାରିନେଲା ।
ଦକ୍ଷିଣ ପାଶରେ ନେଇ ସମୁଦ୍ର କୂଳରେ
ଦେବଦଳନ ରଥ ଦେଇ ଉଭାରିଲା ବେଳେ
ଦେଖିଣ ଯେ ସଉମିତ୍ରୀ ତାର ସଙ୍ଗ ଗଲେ
ତାଳଧ୍ୱଜ ରଥରୁ ସୁଷେଣ ବାହାରିନେଲେ ।
ସ୍ୱାନନ୍ଦେ ରାବଣ ପାଖେ କଲା ନେଇ ରଥ
ଧନୁଶର ଧରି ଦୁହେଁ କଲେ ଯେ ଅନର୍ଥ ।
ମନୁବେଗେ ଶରବର୍ଷେ ଏକମୁଖା ପୁଣ
କୋଟି କୋଟି ଓକ୍ଷଣଶର ବନ୍ଧଅଛି ଜାଣ ।
ଦୁଇକୋଟି ନାଗପାଶ ପୁରାଇ ତୁଣରେ
ବାନ୍ଧିଲା ଯେ ଇନ୍ଦ୍ରଜିତ କୁମର ଯେ ଭଲେ ।
ଫୁତ୍କାର ଶବଦରେ ମେଦିନୀ ପୂରିଲା
ଆକାଶ ମଣ୍ଡଳେ ନାଗ ଶିର ଲଗାଇଲା ।
ଦେଖିକରି ଦେବତାଏ ହୋଇଲେ ବିକଳ
ବିଷମ ଜ୍ୱାଳା ତହିଁ କଲେ ନାଗବଳ ।
ନାଗବଳମାନେ ତିନି ପୁରକୁ ଗିଳିବେ
ତେସନ ପ୍ରାୟେ ଯେ ଦିଶନ୍ତି ସର୍ପ ସବେ ।
ଅନ୍ଧାର ପ୍ରାୟେ ପୃଥ୍ୱୀ ଦିଶିଲାକ ପୁଣ
ହସ୍ତରୁ ଶର ଯାନ୍ତେ ଘୋଟିଲା ଗଗନ ।
ଗରୁଡ଼ା ଶରକୁ ଦେଖି ନାଗ ପଳାଇଲେ
ସମୁଦ୍ରେ ପଶି ସବେ ପାତାଳକୁ ଗଲେ ।
ଦେଖିଣ ଗରୁଡ଼ାଶର ଫେରିଣ ଆଇଲା
ଲକ୍ଷ୍ମଣ ତୂଣୀରେ ସେ ବେଗେ ସମାଇଲା ।
ତାହା ଦେଖିଣ ମହୀରାବଣ ବିଚାରଇ
ଜଟାଧାରୀ ବିଷମ ତ ସମର ଜାଣଇ ।
ଏତେ କହି ଏକମୁଖା ଧନୁରେ ଦେଲା ଗୁଣ
ଅଗ୍ନି ଶର ଦୁଇ କୋଟି ବିନ୍ଧେ ତତକ୍ଷଣ ।
ସ୍ୱର୍ଗଠାରୁ ମର୍ତ୍ତ୍ୟ ଦେଇ ପଥ ନିରୋଧିଲା
ସକଳ ଜୀବଙ୍କୁ ସେ ଯେ ତ୍ରାସ କରାଇଲା ।
ଦେଖିକରି ସଉମିତ୍ରୀ ଶୀତଳ ଶର ପେଶି
ବରଷିଲା ଜଳ ଯେ ହିମାଳୟ ମିଶି ।
ଶୀତଳ ହୋଇଲା ଅଗ୍ନି କେଉଁଣେ ଗଲା ଚଳି
ତାହା ଦେଖି ବିଚାରିଲା ମହୀ ଯେ ରାବଣ ।

ଅସୁରିଶରକୁ ସେ ବିନ୍ଧେ ଘନ ଘନ
ବାବଲ ଶରେ ତାହା ନିବାରେ ଲକ୍ଷ୍ମଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ସେନାପତି ବଳ ଆସି ମିଳିଲେ ତାହାର ।
ଶୂର ପାତେଶ ଘୋରଯୁଦ୍ଧ କଲେ ସେ ଯତନେ
ମେରୁ ଉହାଡକୁ ଗଲେ କଶ୍ୟପର ନାତେ ।
ଯାମିନୀ ହୋଇଲା ଆସି ପୁଣ ତିନ ଘଡ଼ି
ହନୁମନ୍ତଙ୍କୁ ଗୃହିଁଣ ଲକ୍ଷ୍ମଣ ପଚାର ।
କହେ ପବନ ସୁତ କି ବିଚାର ମନ
ବେଳକୁ ବେଳ ଆସି ଯୁଦ୍ଧ ହେଲା ଠାଣ ।
ଏକ ମୁଖାକୁ ମାରିଲେ ଯିବା ରାମ ପାଶ
ଆମ୍ଭକୁ ନ ଦେଖି ରାମ ମନରେ ବିରସ ।
ଦୁଇଦିନ ଆସି ତ କାଳ ବହିଗଲା
ବହୁତ ଛଳ ଜାଣଇ ବିଶ୍ରବାର ବଳା ।
ମାର ହେ ଦୈତ୍ୟକୁ ଯିବା ଏହିଠାରୁ ବେଗ
ହନୁମନ୍ତ ବୋଲଇ ସମ୍ଭାଳ ତୁମ୍ଭେ ଦେବ ।
ସୈନ୍ୟବଳ ତାହାର ଏକ ମୁଖ ହୁଅନ୍ତ
କେତେ ବଳ ସମ୍ଭାଳନ୍ତି ଦେଖିବା ଆଜଠି ।
ଏହି ସମୟରେ ତାର ବାର ଗୋଟି ରଥୀ
ପାଞ୍ଚପଦ୍ମ ପଦାତି ମିଳିଲେ ଆସି ତଥି ।
ବାରଲକ୍ଷ ହସ୍ତୀ ଯେ ଷୋଳ ଲକ୍ଷ ଅଶ୍ୱ
ସହସ୍ର ନାତି ତାହାର କୁମର ବିଶେଷ ।
ସମସ୍ତେ ଆସି ସମୁଦ୍ର ପନ୍ତାରେ ଠୁଳ ହେଲେ
ମାର ମାର ଧର ଧର ଡାକ ଦିଅନ୍ତି ଭଲେ ।
ଏମନ୍ତ ସମୟରେ ରଜନୀ ହେଲା ଶେଷ
ପୂର୍ବଦିଗେ ଦିନକର ହେଲେ ପରକାଶ ।
ମହୀରାବଣ ବିନ୍ଧେ ଛେଳ ଚନ୍ଦ ବାଣ
କୋନ୍ତ ଶାବେଳ ଲଙ୍କିଆ ବରଛାଭାଲା ଠାଣ
ଶତେକ ବଜ୍ରଶର ମନ୍ତୁ ବେଗ ଗଲା
ମହୀରାବଣ ତାହା ଛେଦି ପକାଇଲା ।
ଶତେ କୁମରଙ୍କ ମୁଣ୍ଡ କାଟିଲା ବେଗେ ବାଣ
ଶତେ ଠାବ ହୋଇଣ ପଡ଼ିଲା ତତକ୍ଷଣ ।
ଦେଖିକରି ଏକମୁଖା ବଡ଼ କ୍ରୋଧ ହେଲା
କୋଟି କୋଟି କରଣ ନାରାଚ ବରଷିଲା ।
ବାବଲ ଶରରେ ତାହା ଲକ୍ଷ୍ମଣ ନିବାରି
ନମିଷକେ କୋଟିକୋଟି ବିନ୍ଧେ କ୍ରୋଧକରି ।

ହନୁମନ୍ତ ତାଳଧ୍ୱଜ ରଥ ପରେ ଥିଲା
ହୁଙ୍କାର ଶବଦ ଦେଇ ରଥରୁ ଓହ୍ଲାଇଲା ।
ରହ ରହ ବୋଲି ସେ କରଇ ଗରଜନ
ସହସ୍ରେ ନାତିଆସି ବେଢ଼ିଲେ ତାକୁ ପୁଣ ।
ମଧ୍ୟରେ ମାରୁତି ଚଉପାଶେ ହସ୍ତୀ ବଣ
ଦେଖିଣ ହନୁମନ୍ତ ବିଚାର କରେ ମନ ।
ସହସ୍ରେ ହସ୍ତୀ ଉପରେ ସହସ୍ରେ ନାତିଛନ୍ତି
ଦେଖିଣ ହନୁମନ୍ତ ନିଜ ରୂପ ପ୍ରକାଶି ।
ହସ୍ତୀର ଉପରେ ନେଇ କଚୁଡ଼େ ପୁଣ ହସ୍ତୀ
କ୍ଷୁଲ ଯେହ୍ନେ ମାହୁନ୍ତଙ୍କୁ ମାରେ ପରକଟି ।
ଓପ୍ରୋଧ ଗୁଡ଼ିଣ ସେହୁ ପବନ ଦୁଲାଳ
ମାରଇ ମାରୁତି ସେ କରେ ରଣ ଗୋଳ ।
ସେନାପତିମାନେ ଯେ ଗୁରୁଜ ଘେନପିଟି
କୋନ୍ତ ଭାଲା ଶର ଛେଳ ଚନ୍ଦ ବରଷନ୍ତି ।
ଶସ୍ତ୍ରମାନ କଟାଇ ମାରୁତି ଶରୀର
ମାରଇ ମରୁତି ଯେ ପୂରଇ ତାଙ୍କ କାଳ ।
ହୁଁକାର ଶବଦ କରି ମାରଇ ଅତି ବେଗେ
ଶୂନ୍ୟରେ ଦେବତାମାନେ ଦେଖନ୍ତି ସରାଗେ ।
ଦିଗପାଳ ସମାନେ ହେଲା ହନୁମନ୍ତ
ଏକର ଉପରେ ଯେ ଆରେକ କରେ ହତ ।
ଷୋଳଲକ୍ଷ ନାଗବଳ ଆସିଣ ଥିଲେ ପୁଣ
ଆଠଲକ୍ଷ ନାଗବଳ ମାରିଲେ ହନୁମାନ ।
ସହସ୍ର ନାତି ଯେ ହସ୍ତୀ ପରେ ଥିଲେ
ଗଦା ଚନ୍ଦ ଛେଳ ଘେନ ହନୁକୁ ମାରିଲେ ।
ଦେଖିଣ ମାରୁତି ଯେ ଗଦାଏ ଧରିଲା
ଗଦାଧରି ଦୁଇହସ୍ତେ ପ୍ରହାର ତାଙ୍କୁ କଲା ।
ଚଉଦ ଘଡ଼ି ସମୟେ ମଲେ ସହସ୍ର ନାତି
ପଳାଇଲେ ଗଜ ଯୁଥେ ଏଣେ ତେଣେ ପଶି
ପ୍ରଥମ ଭାଗରେ ବଡ଼ ବନସ୍ତ ଯେ ଥିଲା
ତହିଁ ଯାଇ ଗଜ ଯୁଥ ହୋଇଲେ ସମ୍ଭଳା ।
ମେଳା ହୋଇ ବୁଲିଣ ଯେ ବନସ୍ତ ଭିତର
ସିଂହ ପ୍ରାୟ ମଣିଲେ ସେ ପବନ କୁମର ।
ଆଠ ଲକ୍ଷ ମାହୁନ୍ତ ଯେ ସହସ୍ରେକ ନାତି
ଏହାଙ୍କୁ ମାରିଲେ ଏକା ପବନ ସନ୍ତତି ।
ରକତ ନଦୀ ଗୋଟା ବହିଲା ତହିଁରେ
ହାତଢାଲ ତଣ୍ଡିର ଯେ ଯୁଟଣେକ ଓପାରେ ।

ଛିନ୍ନଧାଡ଼ି କବନ୍ଧ ଯେ ହରଷେ ନାଚନ୍ତି
ମନ୍ଦାର ପୁଷ୍ପ ପ୍ରାୟେ ମୁଖ ବିକାଶନ୍ତି ।
ରୁଧିର ସହିତେ ହସ୍ତୀ ମାହୁନ୍ତ ଗଲେ ଭାସି
ସମୁଦ୍ର କୂଳେ ଯାଇ ଲଗିଲେ ବିଶେଷି ।
ତାହା ଦେଖି ରାବଣଯେ ମନରେ ଚିନ୍ତା କଲା
ପୁଣ୍ଡ ନାଶ ହସ୍ତୀ ମଲେ ନୟନେ ଦେଖିଲା ।
ମନ୍ତ୍ରୀକି ବୋଇଲା ରଥ ସିଂହଦ୍ୱାରେ ଘେନ
ଏହା ଦେଖି ବିରସ ହେଉଛି ମୋର ମନ ।
ଆପଣେ ଅର୍ଜିଲା କର୍ମ ପରରେ ନ କହି
କୁଳ ମୂଳ ସହିତରେ ବଇର ମୋ ନାହିଁ ।
ଦଇବ ବିପାକ ବେଳେ ନଷ୍ଟ ହୁଏ ବୁଦ୍ଧି
ତୋଳର ଭିତରେ ଯେହ୍ନେ ମୂଷାକୁ ନରୋଧି
ମୂଳରୁ ପାତକ ପୁଣି ଦଶଗ୍ରୀବ କଲା
ଶ୍ରୀରାମେ ପ୍ରୀତି ନ କରି ବଂଶ ତା ମରାଇଲା ।
ଛତ୍ରୀର ପୁଅ ଆମ୍ଭେ ଯୁଦ୍ଧରେ ମରିବୁ
ମଲାର ବେଳରେ ଆମ୍ଭେ ନସଡକୁ ଯିବୁଁ ।
ବେଗେ ରଥ ବାହାରେ ସିଂହଦ୍ୱାର କତି
ଶୁଣି ବେନ ମନ୍ତ୍ରୀ ରଥ ବାହୁଣ ନଅନ୍ତି ।
ଦେଖିଣ ସୁଷେଣ ରଥ ତାଙ୍କସଙ୍ଗରେ ନେଲା
ମହୀରାବଣ ଆଗରେ ନେଇଣ ରଥ କଲା ।
ଦେଖିଣ ମହୀରାବଣ କଲା ଶର ବୃଷ୍ଟି
ଲକ୍ଷ୍ମଣ ନିବାରଇ ତାହାକରିଣ ଏକ ଦୃଷ୍ଟି ।
ହନୁମନ୍ତ ଯେ ରଣ ଭୂମିରେ ପୁଣ ଥିଲା
ରଣ ଛାଡ଼ି ସେଠାରୁ ବେଗରେ ଆସିଲା ।
ସିଂହ ଦ୍ୱାରରେ ଆସି ହେଲା ପରବେଶ
ରଥର ତଳରେ ଆସି ହୋଇଲା ଗୁପତ ।
ସୈନ୍ୟବଳ ସେଠାରୁ ଏକ ମୁଖାର ପୁଣ
ବାହାର ହୋଇ ଆସିବେ ସିଂହ ଦୁଆରେଣ
ତେତେବେଳେ ରଜନୀ ହୋଇଛି ନବଘଡ଼ି
ଛନ୍ଦବନ ଏଥିରେ ଗଲା ପୁଣି ଗଡ଼ି ।
ସକଳ ସୈନ୍ୟ ଯହୁଁ ସେଠାରୁ ଅଇଲେ
ସବଳ ଗିରି ପରୁ ଦେଖା ଯେ ଓହ୍ଲାଇଲେ ।
ରଣ ଭୂମି ମଧ୍ୟରେ ପ୍ରବେଶ ହେଲେ ଯାଇଁ
ପ୍ରଥମରେ ରୁଧିର ଯେ ପାନ କଲେ ସେହି ।
ଦ୍ୱିତୀୟେ ଦୈତ୍ୟବଳ କଲେକ ଭୋଜନ
ତୃତୀୟେ ହସ୍ତୀମାଂସ ଭକ୍ଷିଲେ ଦେବୀ ପୁଣ ।
ପୁଣି ଆଦ୍ରାବଳ ଶର ପେଷିଲେ ଲକ୍ଷ୍ମଣ
ଯାଇଣ ଛେଦିଲା ବାଣ ହସ୍ତ ଦୁଇ ପୁଣ ।
ତଳରେ ନ ପଡ଼ୁଁ ଲାଗିଲାକ ହସ୍ତ ମୁଣ୍ଡ
ମୁଣ୍ଡ ହସ୍ତ ଦୁଇ ଲାଗି ହୋଇଲା ପ୍ରଚଣ୍ଡ ।
ତାହା ଦେଖି ଲକ୍ଷ୍ମଣ ଯେ କ୍ରୋଧରେ ଜର୍ଜର
ପେଷିଲା ଦାବଳ ଶର କାଟିଲେ ଶୀର ତାର
ଚରଣ ତାହାର ତହିଁ ସଙ୍ଗରେ କଟିଲା
ବେକରୁ ନ ପଡ଼ୁ ଶୀର ତକ୍ଷଣେ ଲାଗିଲା ।
ଚରଣ ସହିତେ ଶୀର ଲାଗିଲା ପୁଣ ଯାଇ
ଦେଖି ଆଚମ୍ବିତ ହେଲେ ସୁମିତ୍ରା ତନୟି ।
କ୍ରୋଧଭରେ ଏକୋଇଶ ବାରସେ କାଟିଲେ
ତଳେ ନପଡ଼ୁ ଶୀର ବାହୁଡ଼ି ଲାଗିଲେ ।
ପୁଣି ସେ କ୍ରୋଧଭରେ ବିନ୍ଧିଲେ ଦଶଶର
ଦଶ ସ୍ଥାନେ ଶର ଯାଇ ରହିଲା ତାହାର ।
ମୋହରେ ପଡ଼ିଲା ଯେ ମହୀରାବଣ ବୀର
ରଥକୁ ବୁଲାଇ ଦେଲା ମନ୍ତ୍ରୀ ଯେ ତାହାର ।
ରଥ ବୁଲିବାର ଦେଖି ଦଶରଥ ବଳା
ଷଡ଼ ଗୋଟି ଅଗ୍ନି ଶର ଧରିଣ ମାଇଲା ।
ବାରଗୋଟି ରଥରୁ ଯେ ଷଡ଼କୋଟି ମଲେ
ରଥର ସହିତେ ପୁଣି ଜଳି ସର୍ବେ ମଲେ ।
ତେତେବେଳେ ତେତାପାଏ ମହୀଯେ ରାବଣ
ଧନୁଶର ଧରି ସେ ବିନ୍ଧିଲାକ ବାଣ ।
ପ୍ରତି ଅସ୍ତ୍ର କରି ତାହା ଲକ୍ଷ୍ମଣ ନିବାରି
ଏଥି ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ ।
ହନୁମନ୍ତ ରଥତଳେ ବସିଣ ଯେ ଥିଲା
ବିକ୍ରମ ରୂପ ଧରିଣ ରଣରେ ପଶିଲା ।
ଦୁଇ ହସ୍ତେ ଗଦା ଧରି ପିଟଇ ମାରୁତି
ଛିନ୍ନ ପଦ ପଦାତି ମଲେ ମହାଲୋଟି ।
ରକତ ନଦୀ ଯେ ଗୋଟାଏ ବହିଗଲା
ବରଷା କାଳର ନଦୀ ପ୍ରାୟେ ଯେ ବଢ଼ିଲା ।
ମଧ୍ୟା ମନ୍ଦା କବନ୍ଧ ଯେ ନାଚନ୍ତି ନଦୀର
ପୂର୍ବ ଦିଗେ ମୁଖ କରି ବହେ ସେ ରୁଧିର ।
ଏମନ୍ତ ସମୟରେ ରଜନୀ ଆସି ହେଲା
ସୁଲଙ୍କା ଗଡ଼ରେ ଯେ ବୋବାଳି ପଡ଼ିଲା ।
ମହୀରାବଣ ଲକ୍ଷ୍ମଣ ସମର କରନ୍ତି
ରଜନୀ ପାହିଣ ଯେ ହୋଇଲାକ ପାହାନ୍ତି ।

ତ୍ରିନନ୍ଦନ ସମର କରନ୍ତି ଏକା ରାମେ
କାହାର ଯୁଦ୍ଧରେ ଯେ ଅଳସ ନ ରହେ ।
ଗୃହନନ୍ଦନ ଯୁଦ୍ଧ ଯେ ହେଲା ପରବେଶ
ଗଲାର ରଜନୀ କଥା ଶୁଣ ହବ୍ୟରସ ।
ରଜନୀରେ ଚର୍ଚ୍ଚିକାଇ ସଙ୍ଗରେ ଘେନି ଦେବ
ରଣ ଭୂମିରେ ବିଜୟ କଲାଯାଇ ବେଗି ।
ଦୈତ୍ୟବଳ ଭକ୍ଷିଣ ରୁଧିର ପାନ କରେ
ରଜନୀ ଶେଷରେଉତ୍ତ୍ଵଳ ଗିରିକ ସେଗଲେ ।
ବେଳ ଦୁଇଘଡ଼ିରେ ଯେ ସେ ମହୀରାବଣ
ମନ୍ତ୍ରୀକି ଚାହିଁଣ ସେ ବୋଲଇ ବଚନ ।
ଏ ଦ୍ୱାରରୁ ରଥମୋର ଉତ୍ତର ଦ୍ୱାରକୁ ନିଅ
ଆଜରସମର ମୋତେ ଯେ ଦୁଆରେ ଦିଅ ।
କୁବୁଦ୍ଧି ସୁବୁଦ୍ଧି ମନ୍ତ୍ରୀ ରାଜାର ବାଣୀ ଶୁଣି
ସିଂହଦ୍ୱାରରୁ ରଥ ବାହାର କଲେ ପୁଣି ।
ଉତ୍ତର ଦୁଆରେ ନେଇ କଲେ ପରବେଶ
ତାର ପଛେ ସୁଷେଣ ଯେବାହିନେଲା ରଥ ।
ଏକ ମୁଖା ରାବଣ ଆଗେ କଲା ନେଇ ଯାନ
ଦୁଇଜଣ ସମ୍ମୁଖରେ ବାଜିଲା ପୁଣି ରଣ ।
ଅନେକ ଶର ବିନ୍ଧିଲା ଦଶଗ୍ରୀବ ନାତି
ଅନୁଜ ଶରେ ତାହା ଲକ୍ଷ୍ମଣ ନିବାରନ୍ତି ।
ବିଚାରିଲା ଦୈତ୍ୟ ଏ ଯେ ନୁହଇ ନିବଳ
ମାୟା ଯୁଦ୍ଧ ଏହାର ସଙ୍ଗେ କରିବା ଏଥର ।
ଏତେ ବିଚାରି ଦୈତ୍ୟ ଯେ କୁହୁକମୟ କଲା
ଦିବସକୁ ଭିଆଣ ରଜନୀ ପୁଣ କଲା ।
ସୂର୍ଯ୍ୟକାନ୍ତ ଶର ଯେ ବିନ୍ଧିଲେ ଲକ୍ଷ୍ମଣ
ଯେଉଁ ଶର ଦେଇଥିଲେ କରୁଣା ଋଷି ପୁଣ
ସେ ଶର ବିନ୍ଧନ୍ତେଯେ ତିମିର କେଣେ ଗଲା
ବେଳ ପାଞ୍ଚଘଡ଼ି ଯେ ଆସିଣ ହୋଇଲା ।
ସ୍ୱର୍ଗ ମଞ୍ଚ ଦୁଇ ପୁର ଲଗାଇ ଏକ କଲା
ବାବଲ ଶରେ ତାହା ଲକ୍ଷ୍ମଣ ନିବାରିଲା ।
ପଦ୍ମବ୍ୟୂହ ଗୋଟିଏ ଯେ ବେଗେ ଆରମ୍ଭିଲା
ହେମ ଶରରେ ଲକ୍ଷ୍ମଣ ସେ ଶର ନାଶଗଲା
ଜଳବ୍ୟୂହ ଗୋଟିଏ ଯେ ଏକମୁଖା କଲା
ଅଗ୍ନିଶରେ ତାହା ଯେ ଲକ୍ଷ୍ମଣ ନିବାରିଲା ।
ଗିରିବ୍ୟୂହ କଲା ପୁଣି ରାବଣର ନାତି
ବଜ୍ରଶରେ ତାହା ଯେ ଲକ୍ଷ୍ମଣ ନିବାରନ୍ତି ।

ଦେଖିଣ ମହୀରାବଣ ଆଚମ୍ଭିତ ହେଲା
ଶତେକ ବ୍ରହ୍ମଶର ତୂଣୀରୁ କାଢ଼ିଲା ।
ଗୁଣରେ ବସାଇ ବିନ୍ଧିଲା ବେଗ କରି
ଆସନ୍ତେ ବ୍ରହ୍ମଶର ଲକ୍ଷ୍ମଣ ଦୂରରୁ ନିବାରି ।
ନାରାୟଣ ଶର ଯେ ଅଗସ୍ତି ଦେଇଥିଲେ
ସେ ଶର ମାରନ୍ତେ ବ୍ରହ୍ମଶର ନାଶଗଲେ ।
ତୀକ୍ଷ୍ଣ ରୁଦ୍ରାଶର ଲକ୍ଷ୍ମଣ ବିନ୍ଧେ ଟାଣି
ଦୁଇ ଜାନୁ ରାବଣର ପକାଇଲେ ହାଣି ।
ଅଚେତ ହୋଇଣ ଯେ ପଡ଼ିଲା ମହୀର
ରଥ ବୁଲାଇ ଦେଲେ ଦୁଇ ମନ୍ତ୍ରୀବର ।
ଏହି ସମୟରେ ଯେ ଲକ୍ଷ୍ମଣ ଧନୁର୍ଦ୍ଧର
କୋଡ଼ିଏକୋଟି ବଜ୍ରବାଣ ବସାଏ ଧନୁର ।
ଏକାବେଳେକେ ସେ ସୁମରି ବିନ୍ଧିଲେ
କୋଟିକୋଟି ସେନାପତି ବେନିଖଣ୍ଡ କଲେ ।
ଦେଖିଣ ମାରୁତି ଯେ ନୃସିଂହ ରୂପ ଧରି
ଅଶ୍ୱପଲରେ ଯାଇବେଗେ ସେବିଜେ କରି ।
ଘନଦାର ବିଦାରିଲା ଆଠଗୋଟି ଅଶ୍ୱ
ରକ୍ତନଦୀ ଗୋଟିଏ ବହିଲା ତୁରିତ ।
ଦୁଇ ଯୁଣ ଓସାରରେ ରକ୍ତ ନଦୀ ବହି
ମଗର କୁମ୍ଭୀର ମତ୍ସ୍ୟ ସମୁଦ୍ରୁ ଉଠିଲାଇଁ ।
ଧାଡ଼ି ଧାଡ଼ି ହୋଇଣ ଯେ ନାଚନ୍ତି କବନ୍ଧ
ସମୁଦ୍ରରେ ରକ୍ତନଦୀ ହେଲା ଯାଇ ଭେଦ ।
ବାକି ଯେତେ ଅଶ୍ୱ ଥିଲେ ପଳାଇଣ ଗଲେ
ନଗ୍ରରେ ପଶିଣ ମେଲା ହୋଇଣ ବୁଲିଲେ ।
ପଦାତି ଯେ ଷଡ଼ପଦ୍ମ ଯୁଦ୍ଧକୁ ଆସିଥିଲେ
ତିନପଦ୍ମ ମରିବାରୁ ସେହୁ ପଳାଇଲେ ।
ରଥୀ ଆସିଥିଲେ ଯେ ବାରକୋଟି ପୁଣ
ଷଡ଼କୋଟି ମରିବାରୁ ପଳାଇଗଲେ ଜାଣ ।
ସେନାପତି ଆସିଥିଲେ ବତିଶ ଯେ କୋଟି
କୋଡ଼ିଏକୋଟି ସେଥିରୁ ମାରିଲେ ସଉମିତ୍ରି
ବାରକୋଟି ସେଥିରୁ ଉବୁରି ପଳାଇଲେ
ନୃସିଂହ ମୁରତି ହନୁମନ୍ତର ଦେଖିଲେ ।
ରଥରେ ଏକା ଅଛି ଦଶଗ୍ରୀବର ନାତି
ଅନର୍ଯ୍ୟାପ୍ତ ଶର ଯେ ବିନ୍ଧଇ ବିକୋତି ।
ଏସନକ ସମୟରେ ହୋଇଲା ରଜନୀ
ସୈନ୍ୟ ପଳାଇବାରୁ ହନୁମନ୍ତ ଆସେ ଶୁଣି ।

ଦେଖିକରି ଲକ୍ଷ୍ମଣ ଯେ ସୁଷେଣଙ୍କୁ କହି
ଆଜ ଦେଖ ହନୁମନ୍ତ ନୃସିଂହ ମୂର୍ତ୍ତି ହୋଇ
ଏମନ୍ତ ରୂପ ତାର ଦେଖା ଯେ ନ ଥିଲା
ନୋହିଲେ କି ଶ୍ରୀରାମ ତାହାଙ୍କୁ ବଡ଼ କଲା ।
ରାମାୟଣ ଯୁଦ୍ଧରେ କବାଟ ଏହୁ ପରି
ସୁଷେଣ ବୋଇଲେ ହନୁ ସେହିରୂପେ ତୋରି
ତେତିଶ କୋଟି ଦେବ ତାହାଙ୍କୁ ବରଦେଲେ
ତେତିଶ କୋଟି ସିଂହର ବଳ ତା ହୃଦରେ ।
ତେଣୁକରି ଅଭୁଟ ଅଜାମର ହନୁହୋଇ
ବଜ୍ରଅଙ୍ଗ ଗୋଟା ସେ ଯେ ହନୁର ଅଟଇ ।
ଏକା ହୋଇ ଲଙ୍କାକୁ ଯେ ସେହି ତ ଅଇଲା
ଅସୁର ବଳମାରି ସେ ଲଙ୍କା ପୋଡ଼ି ଦେଲା ।
ସୀତାର ବାରତା ନେଇ ଯେକହିଲା ତୁମ୍ଭକୁ
ତେବେ ଦୁଇ ଭାଇ ତୁମ୍ଭେ ଅଇଲ ଲଙ୍କାକୁ ।
ଆନ୍ୟରୁ ଜାଣନ୍ତ କେତେ କାର୍ଯ୍ୟକରେ ସେହି
ବ୍ରହ୍ମନ୍ଦର ନ କାଟଇ ଯାର ଦେଖ ଦେହି ।
ଦୂରକୁ ଗଲେ ସେ ଯେ ଭଇରବ ମୂର୍ତ୍ତିଧରେ
ସଙ୍ଗରେ ଥିଲେ ଅସୁର ବିକୋଶ ସେହୁମାରେ
ବେଳ ଦେଖି ଧରଇ ଆନରୂପ ମାରୁତି
ଏବେତ ଦେଖିଲ ତାର ନୃସିଂହ କୋପମୂର୍ତ୍ତି
ଏମନ୍ତ ବିଚାରନ୍ତେ ପବନ କୁମର
ସାମାନ୍ୟ ରୂପଗୋଟି ହୋଇଲା ତାହାର ।
ତାଳଧ୍ୱଜ ରଥର ତଳରେ ମିଳିଲା
ରଥତଳେ ଥାଇ ହନୁ ସିଂହରଡ଼ି ଦେଲା ।
ଶୁଣିଣ ସ୍ୱାନ ରାବଣ ହୋଇଲା ସ୍ତମ୍ଭିତ
ଏଥୁ ଅନନ୍ତରେ ଗୋ ଶୁଣ ଋଷିରାଜ ମାତ ।
ଦୁଇଘଡ଼ି ବେଳ ଥିଲା ସୈନ୍ୟ ପଳାଇଲେ
ନଗରକୁ ନ ଯାଇଣ ବନସ୍ତେ ପଶିଲେ ।
ରକ୍ତ ନଦୀ ଗୋଟା ଉଛୁଳେ ତୁମ୍ଭେ ଜାଣ
ବସ୍ତ୍ରାଳଶ ଦାଣ୍ଡବାଟ ବହିଲେକ ପୁଣ ।
ସେହି ଗଡ଼ର ପୁରୁଷ ସ୍ତ୍ରୀ ଯେ ଦେଖିଲେ
ବିକଳ ମନ ହୋଇ ରାଜାଙ୍କୁ ଗାଳି ଦେଲେ ।
ଅନୀତିରେ ଶତ୍ରୁ ଆଣି ରାଜ୍ୟରେ ପଶିଲା
ପୁତ୍ର ନାତି ମରାଇଣ କୁଳକ୍ଷୟ କଲା ।
ସେ ଗଡ଼ରେ ବୋବାଳି ଯେ ପଡ଼ିଲାକ ପୁଣ
କେ ବୋଲେ ପୁତ୍ରଭାଇ ମୋର ମଲେ ରଣ ।
କେ ବୋଲେ ଖୁଡ଼ୁତା ଦଅର ମୋରମଲେ
କେ ବୋଲଇ ଗୁରସ୍ତ ଶ୍ୱଶୁର ମୋର ଗଲେ
ଏତେ ବୋଲି ବିକଳରେ କରନ୍ତି ରୋଦନ
ଯାହା ହେଲେ ଯେସନେ ଗହଳ ହୁଏ ପୁଣ ।
ଏଥ ଅନନ୍ତରେ ରଜନୀ ସାତଘଡ଼ି
ଉବଳ ଗିରିରୁ ଦେବୀ ଅଇଲେ ବିଜେକରି ।
ରଣଭୂମି ଗୋଟାରେ ଯାଇଣ ପଶିଲେ
ଅସୁରମାନଙ୍କୁ ଭକ୍ଷି ଉଦର ପୋଷିଲେ ।
ହସ୍ତୀ ଘୋଡ଼ା ମାଂସ ପୁଣି କଲେକ ଆହାର
ରୁଧିର ପାନ କରି ଯେ କଲେ ମନସ୍ଥିର ।
ଦଶଘଡ଼ି ନିଶିଠାରେ ଲଙ୍କାଗଡ଼ ଗଲେ
ବାସେଳି ସଙ୍ଗରେ ମେଳ ସେ ହୋଇଲେ ।
ସକଳ ଚରିତ ଯେ କହିଲେ ଚର୍ଚ୍ଚିକାଣ୍ଡ
ତାହା ଶୁଣି ସନ୍ତୋଷ ହୋଇଲେ ଦେବୀ ତହିଁ
ବାସେଳିବୋଇଲେ ତୁମ୍ଭେଶୁଣ ମୋରବୋଲି
ଲକ୍ଷ୍ମଣ ନ ଆସୁ ତୁମ୍ଭେ ଆଗରେ ଆସିଲ ।
ଚର୍ଚ୍ଚିକାଣ୍ଡ ବୋଇଲେ ଯେ ମୋର କଥାବୁଝ
ବୃତ୍ରବଦନ ପରିଯନ୍ତେ ଲକ୍ଷ୍ମଣ କଲେ ଯୁଦ୍ଧ ।
ଅନେକ ସଇନ ତହିଁ ନାଶ କଲେ ପୁଣ
ରୁଧିର ମାଂଏସ ଖାଇ ତୋଷିଲ ଆମ୍ଭମନ
ବାକି ସୈନ୍ୟ ତାହାରଯେ ଘୋଡ଼ାହାତୀପୁଣ
ପଳାଇ ଲୁଚିଲେ ବନସ୍ତରେ ସେ ଯାଇଣ ।
ସେଠାବରୁ ଆମ୍ଭେମାନେ ଅଇଲୁ ଯେ ପୁଣ
ଭକ୍ଷିବାକୁ ଆମ୍ଭଙ୍କୁ ଆହାର ନାହିଁ ଜାଣ ।
କାଲିବେଳ ପାଞ୍ଚଘଡ଼ିରେ ଏଠାରେ ମିଳିବେ
ତାହା ଜାଣିଆମ୍ଭେମାନେ ଅଇଲୁ ଗୋବେଗେ
ତାଙ୍କଠାରୁ ଶୁଣି ଦେବୀ ସନ୍ତୋଷ ହୋଇଲେ
ନିଜସ୍ଥାନେ ଯିବାକୁ ପାଶେକ ରହିଲେ ।
ଏଥୁ ଅନନ୍ତରେ ତୁ ଗୋ ଶୁଣ ଭଗବତୀ
ମହୀରାବଣ ପୁରେ ଯେ ଗୃର ଯେ ଜଣାନ୍ତି ।
ଶୁଣ ପାଟ ମହାଦେଈ ସୁଧାରି ଯେ ଧୀର
ପୁତ୍ର ନାତି ସହିତରେ ସକଳେ ମଲେ ପରା ।
କୁଳ ଉଦ୍ଧାରିବାକୁ ଆଉ ଗୋଟିଏ ନାହାନ୍ତି
ରଥୀ ହସ୍ତୀ ଦୁଇଭାଗ ମଲେ ଶୁଣ ସତ୍ୟ ।
ଭାଗେକ ବରିଷ୍ଠ ଯାଇ ଅରଣ୍ୟେ ପଶିଲେ
ଶ୍ରାବନ ବିକଳେ ସେ ଜଙ୍ଗଲରେ ଲୁଚିଲେ ।

ସେନାପତି ପ୍ରଚଣ୍ଡ ଯେ ମଲେ ଦୁଇଭାଗ
ସ୍ୱରେକ ବରତି ଯେ ରହିଲା ନବଭାଗ ।
ଅଶ୍ୱ ଦଶବକ୍ଷୌ ମଲେ ଛବକ୍ଷୌ ହେଲେ ମଲ
ପୁଅ ନାତି ଭୃତ୍ୟରସେ ଗୋଟିଏ ନ ରହିଲ ।
ଶୁଣିକରି ରାଣୀହଂସ କଲେକ ରୋଦନ
ଅକାରଣେ ମଲେମୋର ଏତେକଯେ ସୈନ୍ୟ
ପୁଅ ନାତି ମଲେ ଭାଇବନ୍ଧୁ ଗଲେ ନାଶ
ଡାକ କରି ରାଜନ ସେ ମରାଇଲେ ବଂଶ ।
ଏବେ ଆମେ ନାଶ ଯିବେ ନ ରହିବେ କୁଳ
ଏତେବୋଲି ରାଣୀ ଶୋକକରେ ମହାଘୋର
ବଧୂମାନେ ଶୁଣିଲେ ସ୍ୱାମୀଙ୍କ ମରଣ
ନାତୁଣୀ ବୋହୂମାନେ ଯେ ଶୁଣିଲେ ତାପୁଣ
କାରୁଣ୍ୟ ନକରି ସେସେ ସୁବେଶ ପୂର୍ଣିହେଲେ
ଅମଳାଣ ଶାଢ଼ୀ ପିନ୍ଧି ଖଣ୍ଡୁଆ ପନ୍ଧରିଲେ ।
ଶାଶୁମାନେ ଯେ ବେଶ ହେଲେ ପୁଣ ଜାଣ
କର୍ପୂର ଚୂଆ ଚନ୍ଦନ ଲଗାଇ ଅଙ୍ଗେଣ ।
ହଳଦୀ ଅଁଳାମାନ ଶରୀରେ ଲେପିଲେ
ପାଟ ପଚଣୀ ପିନ୍ଧିଣ ବେଗେ ବାହାରିଲେ ।
ଚନ୍ଦ୍ରଗୋପ ଦଉଡ଼ି ଯେ ଲଗାଇ ଆଗରେ
ଶାଶୁମାନଙ୍କୁ ଓଳଗି ଚଳଲେ ବଧୂରେ ।
ସମୁଦ୍ର କୂଳରେ ଯାଇ ହେଲେ ପରବେଶ
ସିଂହଦ୍ୱାର ବାଟରେ ଚଳିଲେ ରାଣୀହଂସ ।
ଦ୍ୱିଗୁଣ ଲହରୀ ଯେ ମାରଇ ବାରିନିଧି
ସମୁଦ୍ରେ ପଶିଲେ ସେ ମନେକରି ସିଦ୍ଧି ।
ଶୂନ୍ୟରୁ ବିମାନ ଆସି ମିଳଲା ସେଠାରେ
ସମୁଦ୍ରେ ପଶିଣ ଯେ ହୋଇଲେ ଅନ୍ତର ।
ଯେଯାହା ସ୍ୱାମୀସଙ୍ଗେ ରଥେ ଯାଇଁଣମିଳଲେ
ମଞ୍ଚପୁର ଛାଡ଼ିଣ ଯେ ସ୍ୱର୍ଗକୁ ଗମିଲେ ।
ଦକ୍ଷଙ୍କର ପୁରେ ଯାଇ ହେଲେ ପରବେଶ
ଜନପୁରରେ ରହିଣ ସେ କଲେ ମନତୋଷ ।
ଅସୁର ଜନ୍ମରୁ ଯେ ପାର ହୋଇଗଲେ
ଅମର ଭୁବନେ ଯାଇ ନିଶ୍ଚିନ୍ତେ ରହିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ପାଟ ମହାଦେଈ ଚର ଭେଟିଲା ବହୁରି ।
ବୋଇଲେ ରାଜାଙ୍କୁ ଯାଇ ବେଗକରି କହ
ସମର ଛାଡ଼ିଣ ଏବେ ସମ୍ଭାଳ ନିଜ ଦେହ ।
ନିଜ ନଗରକୁ ବେଗେ ଆସନ୍ତୁ ଝଟକରି
ଜଣାଗଲା ଯାରିବାର ପଣ ସେ ତାଙ୍କରି ।
ତାହାଶୁଣି ଉଠିଲା ଯେ ବେଗ ହୋଇଗଲା
ସୁଲଙ୍କା ନୃପତି ଆଗେ ଯାଇଣ କହିଲା ।
ବୋଇଲା ହେ ରାଜନ ଶୁଣ ମୋର ବାଣୀ
ଆଜ ଯୁଦ୍ଧ ନକର ତୁ ଫେରିଆସ ପୁଣି ।
ପୁଅ ନାତି ମଲେ ତୋର ମଲେ ସୈନ୍ୟବଳ
ଯଶ ତୋତେ ଏବେ ନାହିଁ ଫେର ମହୀପାଳ
ପାଟ ମହାଦେଈ ତାଙ୍କୁ କରିବେ ସନମାନ
ରଣ ଛାଡ଼ିକରି ଆସ ସୁଲଙ୍କା ରାଜନ ।
ତାହା ଶୁଣି ଏକମୁଖା କହିଲା ସେ ବାଣୀ
କ୍ଷତ୍ରୀର ପୁଅ ମୁହିଁ ଯେ ନଉନ ତୁହେଁ ପୁଣି
ରଣରେ ମରିବ ପଛେ ନ ଯିବ ମୁଁ ଘର
ତୁମ୍ଭେ ଯାଇ କହିବ ସେ ରାଣୀ ହଂସପୁର ।
ବୋଲିବ ଯେ ଖରବାହୁ କୁମର ସୁବାହୁ
ମୁହିଁମଲେ ଏ ରାଜ୍ୟରେ ହେବ ସେହି ପ୍ରଭୁ ।
ତାହାକୁ ମୋ ପାଟରାଣୀ ଅଭିଷେକ ହେବ
ଚନ୍ଦ୍ର ସୂର୍ଯ୍ୟ ଥିବାଯାକେ ନିଶ୍ଚିନ୍ତେ ରହିବ ।
ନୋହିଲେମୁହିଁ ତାହାକୁପାରିବ ଯେବେମାରି
ଚିରଯୁଗେ ଅମର ମୁଁ ହେବ ଯେ ବହରି ।
ଯାଅ ତୁ କହିବୁ ମୋର ପାଟରାଣୀକି ପୁଣ
ଶୁଣିକରି ଉଠିଗ ଯେ ଫେରିଲା ତତକ୍ଷଣ ।
ଏହି ସମୟରେ ଯେ ରଜନୀ ଶେଷ ହେଲା
ଦିନକର ନାଥ ଯେ ପୂର୍ବରୁ ଉଇଁଲା ।
ମହୀରାବଣ ବୋଲେ ଶୁଣରେ ମନ୍ତ୍ରୀ ବେନି
ମୋର ଯାନ ଲଙ୍କାକୁ ବାହିବ ବେଗ ପୁଣି ।
ସେଠାରେ ମଜେ ମୋତେ ବହୁତ ଯଶହେବ
ଗୋସାଇଁ ବାପ ମୋର ମରଣ ଦେଖିବ ।
ପାବକ୍ଷୀ ବୋଇଲେ ଦେବ ଶୁଣ ମୋରବାଣୀ
ଚର ଯାଇ କସ କହିଲକ ପାଟରାଣୀ ।
ଈଶ୍ୱର ବୋଇଲେ ଚର ବେଗ ହୋଇଗଲେ
ପାଟ ମହାଦେଈ ପୁରେ ଯାଇଁଣ ମିଳିଲେ ।
ବୋଇଲା ଶୁଣ ହେ ରାଣୀ ମୁଁ ଫେରିଣ ଅଇଲି
ରାଜାଙ୍କର ଆଗରେ ମୁଁ ଯାଇଣ କହିଲି ।
ସେ ବୋଇଲେ ମୁହିଁ ଆଜ ନ ଫେରଇ ପୁଣ
ସୁବାହୁତ ରଜା ହେବ ଏ ରାଜ୍ୟରେ ଜାଣ ।

ମୋର ପାଟ ମହାଦେଈ ହେବ ସେ ହିଅର
ତାର ସଙ୍ଗେ ଅଭିଷେକ ପ୍ରିୟବନ୍ତି ମୋର ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଥିବ ଏବେ ଜାଣ
ଦଶଗ୍ରୀବ ଭାଇଯାକୁ ରଖିବ ବିଭୀଷଣ ।
ବେଳହୁଁ ବଧି ଏହା ଅଛଇ ଲିଖାଇ
ଏତେକହି ସ୍ୱାମୀ ତୋର ଗଲେ ପିଠିଆଇ ।
ଜଳନ୍ଧର ଦୁହିତା ଶୁଣି ମନ କଲା ସ୍ଥିର
ଲହୁଣ୍ଡର ଦୁହିତାକୁ ଅଣାଏ ଗମ୍ଭୀର ।
ବୋଇଲା ଟିଗୋ କଥାଏବେ ବିଚାର ଛନ୍ଦହେଲା
ଶତ୍ରୁକୁ ଏବେ ଆମ୍ଭର ଭାକଣ ଆଣିଲା ।
ବଂଶ ମରାଇ ଏବେ ଗଲା ଲଙ୍କାଭୂଇଁ
ମୋର ବୋଲ ଆଉଯେ ନକଲା ଲଙ୍କସାଇଁ ।
ବୋଇଲା ଏଥକୁ ତୁମ୍ଭେ ସୁବାହୁକୁ ଭଜ
ଖଣ୍ଡୂଚାଣୁରଙ୍କର ପୁଅ ଅଟନ୍ତି ଦୁର୍ଲ୍ଲଭ ।
ଦଶଗ୍ରୀବ ଭାଇଯାକୁ ହିଅର ବିଭୀଷଣ
ମୋ ପ୍ରିୟବନ୍ତୀଙ୍କ ରଖିବ ବୀରବାହୁର ନନ୍ଦନ
ଦଶଗ୍ରୀବ ସଙ୍ଗେ ମୁଁ ଯେ ଯିବ ଯମପୁର
ଏ କଥାମାନଙ୍କୁ କଇ ବିଚାର ତୋହର ।
ଲହୁଣ୍ଡ ଦୁହିତା ବୋଲେ ଏ କଥାତ ସତ
ବୀରବାହୁ କୁମର ଶ୍ରୀରାମରେ ଶରଣାଗତ ।
ଏହି ଲକ୍ଷ୍ମଣ ତାଙ୍କ ଶିରରେ ପାଟବାନ୍ଧି
ମହୀରାବଣକୁ ମାରି ନୃପତି ପଣ ଦେବ ।
ଆଜ ଏଗାର ଘଡ଼ିରେ ସ୍ୱାମୀ ଯିବେ ନାଶ
ଆମ୍ଭର ପ୍ରଭୁ ଅଟନ୍ତି ବୀରବାହୁଙ୍କ ଶିଷ୍ୟ ।
ତାହାଙ୍କ ସଙ୍ଗରେ ଆମ୍ଭେ କେତେଦିନ ଥିବା
ଚନ୍ଦ୍ରସୂର୍ଯ୍ୟ ଗଲେ ସିନା ଆମ୍ଭେ ଲୀନ ହେବା ।
ଅନେକ ସୁଖ ସେହୁ ଦେବେ ଯେ ଆମ୍ଭରେ
ଏହି ବର ଦେଇଛନ୍ତି ତାଙ୍କୁ ଜାନକୀବରେ ।
ଏହାଶୁଣି ରାଣୀମାନେ ହରଷ ମନ ଭଲ
ବିଚାରିଲେ ଏକଥା ହେବ କି ଏବେ ମୂଳ ।
ଏଥୁ ଅନନ୍ତରେ ଶୁଣ ଗଉରି ଆଉ କଥା
ମହୀରାବଣ ଠାରୁ ଶୁଣି ମନ୍ତ୍ରୀର ମନ ବ୍ୟଥା ।
ରାଜାର ବୋଲନ୍ତେ ଯେ ବାହିଲେ ରଥବର
ଉପରେ ମହାଶୂନ୍ୟ ତଳରେ ମହାଜଳ ।
ମଧ୍ୟରେ ଦୁଇମନ୍ତ୍ରୀ ନାହିନ୍ତି ଯାନ ତାର
ପଛେ ରଥବର ଗୁଡିଲ ସୁଷେଣ ଯେ ବୀର ।

ତାଳଧ୍ୱଜ ରଥରେ ଯେ ବିଜୟେ ଲକ୍ଷ୍ମଣ
ହନୁମନ୍ତ ବସିଅଛି ରଥ ଉପରେଣ ।
ଯେଉଁଠାରେ ଦଶଶିର କରୁଛି ସମର
ସେଠାରେ ପ୍ରବେଶ ହେଲେ ମହୀରାବଣ ବୀର
ଖଣ୍ଡେଦୂର ଗୁଡ଼ଣ ସେ ରଥ ରୁହାଇଲା
ଶ୍ରୀରାମ ସଙ୍ଗେ ରାବଣ ଯୁଦ୍ଧ ଯେ ଦେଖିଲା ।
ନନ୍ଦଘୋଷ ରଥରେ ଯେ ବିଜେ ରଘୁନାଥ
ପୁଷ୍ପକଯାନେ ଅଛି ରାବଣ ନାମେ ଦୈତ୍ୟ ।
ଅକଳିତ ଯୁଦ୍ଧ ଯେ କରନ୍ତି ବେନଜନ
ଦୁଇଆଡ଼ ମଲେ ଯୁଦ୍ଧରେ ବହୁତଯେ ସୈନ୍ୟ
ତାହା ଦେଖି ମହୀରାବଣ ରୁହାଇଲା ରଥ
ତାରପଛେ ଲକ୍ଷ୍ମଣ ଯେ ହେଲେ ଉପଗତ ।
ତାଳଧ୍ୱଜ ରଥ ଯେ ସୁଷେଣ ଆଣି କଲେ
ମହୀରାବଣର ଆଗେ ଲକ୍ଷ୍ମଣ ମିଳିଲେ ।
ନନ୍ଦଘୋଷ ରଥରେ ଯେ ଶ୍ରୀରାମ ଯୁଝୁଥିଲେ
ତାଳଧ୍ୱଜ ରଥକୁ ବହୁରେ ଗୁହାଁ ଦେଲେ ।
ଦେଖିଲେ ହନୁମନ୍ତ ଯେ ରଥପରେ ବସି
ସୁଷେଣନାମରେ ଦୈତ୍ୟ ସାରଥି ହୋଇଅଛି
ମହାର ପୁଷ୍ପପ୍ରାୟ ଲକ୍ଷ୍ମଣ ବର୍ଣ୍ଣ ଶୁଦ୍ଧ
ଷୋଡ଼ଶ ମୂରତି ତାର ଦଶେ ଆନୁ ଆନ ।
ବୋଇଲେମୋରପୋଦରେ ଅଇଲେଷଣ୍ଡଦନେ
କେତେ ଦୁଃଖ ପାଇଲୁରେ ମୋହର ବହୁନେ
ଏତେ କହି ରାମ ଛେଦିଲେ ରାବଣର ଶର
ମହୀରାବଣକୁ ଦେଖି ଲଙ୍କପତି କରଇ ବିଚାର
ମୋର ସକାଶେ ନାତି ଅନେକ ଯୁଦ୍ଧ କଲା
ଷଣ୍ଢୀକୁଳେ ଜନ୍ମିବାରୁ ଯୁଦ୍ଧକୁ ନ ଡରିଲା ।
ମରିବାର ଆଗପଛ ଅଟେ ପୁଣ ସତ
ଯେଉଁକାଳେ ମୃତ୍ୟୁ ତ ହୋଇବ ନିଶ୍ଚିତ ।
ମରିଲେ ତ ସ୍ୱର୍ଗ ଯିବ ଜୀଇଲେ ଭୋଗମସ୍ତ
ଏଥକୁ ବିଚାର ନ କର ଦୈତ୍ୟସାଇଁ ।
ଭଲ ମୋର କୁଳରେ ଜନମ ମୋର ପୁଣ
ମରିବାକୁ ନ ଡରି କରନ୍ତି ମହାରଣ ।
ଏତେ ମନେ ବିଚାରି ରାବଣ ଦମ୍ଭ ହେଲା
କ୍ରୁଦ୍ଧ ପରାୟେ ଏକ ନାରାଚ ବରଷିଲା ।
ଘନ ଘନ ସେ ଶର ଛେଦନ୍ତି ରଘୁନାଥ
କାହାରି ଉପରେ ନାରାଚ ନ କରଇ ଘାତ ।

ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ମହୀରାବଣ ଆଗରେ ଲକ୍ଷ୍ମଣ ଯାଇ ମିଳି ।
ଦେଖିକରି ଏକମୁଖା ଧନୁଶର ଧରି
କୋଟି କୋଟି ଶରକୁ ସେ ସୁମରଣା କରି ।
ଛାଡନ୍ତେ ନାରାଚଯେ ଗର୍ଜନ ନାଦ ଘୋର
ମନୁବେଗେ ଛେଦନ୍ତି ସେ ସୁମିତ୍ରାର ବାଳ ।
ମନରେ ବିଚାରନ୍ତି ସଉମିତ୍ରୀ ବୀର
ଷଡ୍ବାନ ହେଲା ତ ମଲା ଦୈତ୍ୟ ସ୍ଥିର ।
ଏତେ ବିଚାରି ଲକ୍ଷ୍ମଣ ବ୍ରହ୍ମଶର ଧରି
ମନ୍ତ୍ରପଢ଼ି ନାରାଚ ଛାଡନ୍ତେ କୋପ କରି ।
ଚଳନ୍ତେ ଏକମୁଖା ଶୀର ଯାଇ କାଟି
ତଳେ ନ ପଡୁ ଶୀର ଲାଗିଲା ବେକରେଟି ।
ପୁଣି ହିଁ ବ୍ରହ୍ମଶର ସଉମିତ୍ରୀ ପେଶି
ଶୀର ଛୁଡ଼ି ତଳରେ ନ ପଡ଼ିଲା ସେହିଟି ।
ଲାଗିଲାକ ଶିର ଯେ ଦେଖନ୍ତି ଲକ୍ଷ୍ମଣ
ବ୍ୟଗ୍ରରେ କନ୍ଧମାନ ଲାଗୁଅଛି ପୁଣ ।
ଦେଖିଣ ଲକ୍ଷ୍ମଣ ଯେ ବେଗେ ପେଶେଶର
ପେଶନ୍ତେ ଶିର ତାର ଛୁଟେ ବାରମ୍ବାର ।
ବାସ୍ତରି ବାର ଯେ ଶୀର ତାର କାଟି
କନ୍ଧରେ ଲାଗଇ ଶୀର ବ୍ୟଗ୍ରରେ ଯୋଡ଼ିଟି ।
ଦୁଇ ହସ୍ତ ତାର ଛେଦିଲେ ବାରମ୍ବାର
ତଳରେ ପଡ଼ି ବାହୁ କଅଁଳେ ବ୍ୟଗ୍ରର ।
ବାଷଠି ଥର ଯେ ଦୁଇବାହୁ କାଟି
ଥରକୁ ଥର କଅଁଳେ ବେନି ଭୁଜ ଗୋଟି ।
ଦେଖିକରି ସଉମିତ୍ରୀ ଚରଣ ବେଗେ ଛେଦ
ଛେଦନ୍ତେ ଚରଣଯେ କଅଁଳେ ବେଗି ବେଗି
ନଅଥର ତାର ଯେ ଚରଣ ଛେଦିଲେ
କଅଁଳନ୍ତେ ଚରଣ ମନରେ ଭୟ କଲେ ।
ବୋଇଲେ ଗରସ୍ତୁ ଯେ ଅଟେ ଏ ଅସୁର
କେମନ୍ତ ପ୍ରକାରେ ଏହାକୁ ମୁଁ କରିବି ସଂହାର
ମହୀରାବଣ ବୋଲେ ଶୁଣହେ ସଉମିତ୍ରୀ
ମୁଣ୍ଡଚରଣବାହୁ ଛେଦିଲେ ନୁହଇମୋରକଛି
ଏଥିରେ ମୃତ୍ୟୁଯେବେରେ ଆଥାନ୍ତା ମୋହର
ଦେବତାଏଧରିମୋତେ ମାରନ୍ତେହୋଇମେଳ
ପିତାକୁ ମାରିଲୁ ମୋର ଅଟୁ ପିତା ଶତ୍ରୁ
ତୋତେ ଯମ ଦେବତାରେ ଦେବଆଜ ମୃତ୍ୟୁ
ଏତେ କହି ଏକମୁଖା ଛାଡେ ପୁଣ ଶର
ରଣ ଭୂମି ଗୋଟା କଲା ପର୍ବତ ସେ ମାଳ ।
ବଜ୍ରଶର ଯୋଗ ତାହା ଲକ୍ଷ୍ମଣ ନିବାରି
ପୁଣି ହିଁ ଏକମୁଖା କ୍ରୋଧରେ ଶର ମାରି ।
ଶର ମୁନେ ରଣ ଭୂମି ହେଲା ପୁଣ ସ୍ଥିର
ପବନାଶରେ ଲକ୍ଷ୍ମଣ ଦେଲେକ ଉଡ଼ାଇ ।
ଦେଖିଣ ସାନ ରାଇଣ ମାୟା ଯେ ଶର କଲା
ମାୟାରେ ତରୁଶିଳ ଉପରେ ବରଷିଲା ।
ବାବଲ ଶରେ ତାହା ଲକ୍ଷ୍ମଣ ନିବାରି
ଦେଖିଣ ଦୈତ୍ୟରାଜ ଅସୁରଶର କରି ।
ନାରାୟଣ ଶରେ ତାହା ଲକ୍ଷ୍ମଣ ଛେଦିଲେ
କଣ୍ଠ କପାଳ ଶର ଯେ ଅସୁର ଛାଡିଲେ ।
ଲକ୍ଷ୍ମଣଙ୍କ ଅଙ୍ଗରେ କର୍ଣ୍ଣିଲା ଯାଇ ଶର
ଦଶଧାର ହୋଇଣ ଯେ ବହିଲା ରୁଧିର ।
ସେ ଶରରେ ମୋହ ଯେ ହେଲେ ସଉମିତ୍ରୀ
ରଥ ବୁଲାଇ ଦେଲା ସୁଷେଣ ଯେ ମନ୍ତ୍ରୀ ।
ମୋହ ଯାନ୍ତେ ପବନ ଯେ କହିଲେ କର୍ଣ୍ଣର
ବଜ୍ରଶର ମାର ହେ ନାଶିକ ତାହାର ।
ତେବେ ସେ ମରିବ ଅଷୟ ଦନୁଜ
ଏତେ କହି ପବନ ଗଲେ ଉର୍ଦ୍ଧ୍ୱେ ବେଗ ।
ଚେତା ପାଇ ସଉମିତ୍ରୀ ବେଗରେ ଉଠିଲେ
ଇନ୍ଦ୍ର ଦେଲା ଧନୁକୁ ସେ କରରେ ଧରିଲେ ।
ମହାକାଳ ଶରକୁ ସେ ବସାଇ ଗୁଣରେ
ଦେଖିଣ ଦୈତ୍ୟ ତାକୁ ଛେଦଇ ମାଳ ଶରେ
ଦେଖିଣ ଲକ୍ଷ୍ମଣ ବେଗେ ବାବଲ ଶର କରେ
ଭୁଜବାଣ ମାରି ତାହା ଦୈତ୍ୟ ନିବାରିଲେ ।
ଦେଖିଣ ସଉମିତ୍ରୀ ବଜ୍ରଶର ଧରି
ଗୁଣରେ ବସାଇଲେ ଇନ୍ଦ୍ରକୁ ସୁମରି ।
ବୋଇଲେ ଦୈତ୍ୟରେ ପୁରିଲା ତୋରକାଳ
ପିତାର ସଙ୍ଗରେ ଭେଟ ହେବୁରେ ଏବେଳ
ଆଜ ତୋର ନାମଯମ ପାଞ୍ଜିରୁ ପୋଛିହେବ
ଦୁଇ ଖଣ୍ଡ ହୋଇଣ ପିଣ୍ଡ ତୋ ପଡ଼ିବ ।
ଦଶଗ୍ରୀବ ଦେଖିବ ଯେ ତୋହର ମୃତ୍ୟୁ
ଇଷ୍ଟ ଦେବତା ସୁମରଣା କରରେ ଆଜକୁ ।
ଏତେ କହି ଲକ୍ଷ୍ମଣ ଛାଡ଼ିଦେଲା ଶର
ମେଘ ଘଡ଼ଘଡ଼ି ଜାଣି ଶବଦ କଲା ଘୋର ।

ଦୁଇ ବଳ ସୈନ୍ୟଦେଖି ଆଚମ୍ଭିତ ହେଲେ
ଲଙ୍କାରେ ନରନାରୀ ପାଚେରୀ ପରଥିଲେ ।
ସମସ୍ତଙ୍କୁ ଦଶିଲା ଦାବାନଳ ପ୍ରାୟେ
ଶୂନ୍ୟରେ ଦେବତାଏ ଆନନ୍ଦ ମନ ହୁଏ ।
ମହୀରାବଣ ଭାବଇ ଏ ଶରେ ମୋର ମୃତ୍ୟୁ
ଅନେକ ଅନୁଜ ଶର କଲା ଇନ୍ଦ୍ରଜିତ ତହୁଁ ।
କେବେହେଁ ଶରକୁ ନିବାରି ନ ପାରିଲା
ବଜ୍ରଶର ଯାଇଁ ତାର ନାଭିରେ ପଶିଲା ।
ବାହାର ହୋଇଲା ଶର ପିଠି କଣ୍ଟକ ଯାଇ
ପେଟରୁ ଅନ୍ତନାଡ଼ି ବାହାର ବେଗ ହୋଇ
ଚକ୍ରବାଟରେ ତାର ପ୍ରାଣ ଛାଡ଼ିଗଲା
ଅସୁର ରୂପକୁ ଛାଡ଼ି ଦିବ୍ୟ ରୂପ ହେଲା ।
ମାଣିକ୍ୟ ରଥରେ ବସିଲା ବେଗେ ଯାଇ
ଲକ୍ଷ୍ମଣଙ୍କୁ ଓଳଗ ହେଲା ସେ ରଥେ ଯାଇ ।
ସରଗ ପୁରକୁ ବୀର ବେଗେ ଚଳିଗଲା
କେତୁ ଗ୍ରହ ପାଶେ ଯାଇ ପ୍ରବେଶ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗଉରୀ ଗୋ ଏବେ
ଏକମୁଖା ରାବଣ ମଲା ଲକ୍ଷ୍ମଣର ସରସନ୍ଧେ ।
ଦେବଦଳନ ରଥରୁ ଖସିଣ ପଡ଼ିଲା
ଧରଣୀରେ ପଡ଼ି ପିଣ୍ଡ ଛଟପଟ ହେଲା ।
ଉସର୍ଗ ବାରଯୁଣ ଓସାର ଛନଯୁଣ
ଏତେ ମାଡ଼ି ବସିଲା ରାବଣ ନାଭି ପୁଣ ।
ଦେବେ ଦେଖି ଶୂନ୍ୟରେ ପୁଷ୍ପବୃଷ୍ଟି କଲେ
କନ୍ଦଳୀ ଅପସରୀ ହୁଳହୁଳି ଦେଲେ ।
ଘୃଷ୍ଟକ ସମାନେ ଥାଇ ଦେଖଇ ଦଶାନନ
ମହୀରାବଣ ମରିବାରୁ ବିସ୍ମିର କରେ ମନ ।
ଇନ୍ଦ୍ରଜିତର ବଂଶ ଲକ୍ଷ୍ମଣ ନାଶ କଲା
ମହୀରାବଣ ପରି ନାତି ରଣରେ ପଡ଼ିଲା ।
ମୁହିଁ ଆଜ କସ ଯେ, କରିବି ଆଉ କଣ
ଏମନ୍ତ ବିସ୍ମିରଣ ମନରେ ଦଶଶୀର୍ଷ ।
ଅନେକ ଶର ଶ୍ରୀରାମ ପରେ ବୃଷ୍ଟି କଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଦଣ୍ଡକେ ଲୁଚିଇଲା ।
ଶ୍ରୀରାମ ଛେଦିଲେ ତା ପ୍ରଚଣ୍ଡ ଅସ୍ତ୍ର କରି
ମନରେ ବିସ୍ମରନ୍ତି କୋଦଣ୍ଡ ଚାପଧାରୀ ।
ଭାଇ ମୋର ଲକ୍ଷ୍ମଣ ଖଣ୍ଡ ବନ ଗଲା
ଏବେ ମୋ ଆଗରେ ଏକମୁଖାକୁ ମାରିଲା ।

ଭଲ ଯୋଗେ ଭ୍ରାତଭାବରେ ହୋଇଥିଲୁ ଜାତ
ତୁ ନଥିଲେ କେମନ୍ତେ ମୁଁ ମାରନ୍ତି ଦଇତ ।
ଏମନ୍ତ ବିସ୍ମିର ସେ କରନ୍ତି ଚାପଧାରୀ
ରାବଣ ସଙ୍ଗରେ ଯେ ଘୋର ଯୁଦ୍ଧ କରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଲକ୍ଷ୍ମଣ ନୟନକୁ ନ ଦିଶିଲା କିଛି ।
ସାତ ଖଣ୍ଡ ବନଠାରେ ଅନ୍ଧାର ସେ ହେଲା
ବ୍ରହ୍ମହତ୍ୟାଦୋଷ ଲକ୍ଷ୍ମଣ ଅଙ୍ଗରେ ଘୋଟିଲା
ଲକ୍ଷ୍ମଣ ବୋଲନ୍ତେ ହନୁମନ୍ତ ଏବେ ଶୁଣ
କିଛି ନଦିଶିଲା ମୋତେ ଅନ୍ଧାର ସବୁ ପୁଣ ।
ସୁଷେଣ ବୋଇଲେ ଦେବ ବ୍ରହ୍ମ ରାକ୍ଷସ ଏହି
ଘୃତ ବେଦ ପଢ଼ନ୍ତ ଯେ ବ୍ରହ୍ମଶିକ୍ଷା ବହି ।
ବାଳକାଳୁଁ ବେଦପଢ଼ି ସେ ହୋଇଲା ପଣ୍ଡିତ
ବ୍ରହ୍ମାଙ୍କ ଶାପରୁ ହେଲା ଏ ବ୍ରହ୍ମରାକ୍ଷସ ।
ଲକ୍ଷ୍ମଣ ବୋଲେ ତାର ପିତାକୁ ନାଶ କଲି
ତେତେବେଳେ ଏହାମୁହିଁ ଦେଖିତ ନଥିଲି ।
ସୁଷେଣ ବୋଇଲେ ସେ ନୁହଁଇ ରାଜା ପୁଣ
ତାହାକୁ ମାରିଲେ ଦୋଷନାହିଁ ତୁମ୍ଭେ ଜାଣ
ରାଜା ହେବାରୁ ସେ ହୋଇଲା ପଣ୍ଡିତ
ତେଣୁ ବ୍ରହ୍ମହତ୍ୟା ଲାଗିଲାହେ ସୁମିତ୍ରା ସୁତ ।
ଲକ୍ଷ୍ମଣ ବୋଇଲେତୁମ୍ଭେଶୁଣହେ ବୈଦ୍ୟରାଜ
ରାଜାପଣେ କୁମ୍ଭକର୍ଣ୍ଣ ନୁହଁ ତ ସଂଯୋଗ ।
ଯେତେବେଳେ ସ୍ୱାମୀଦ୍ରୋହ ତାକୁନାଶକଲେ
ବ୍ରହ୍ମହତ୍ୟା ଦୋଷଯେ ଆକର୍ଷ କଲ ଭଲେ ।
ସୁଷେଣ ବୋଇଲେ ଶୁଣ ହେ ସଉମିତ୍ରୀ
ଛଣ୍ଡିବା ଋଷିର ସେ ଅଟଇ ସନ୍ତତି ।
ମାତାର ଗୁଣଧରି ରାକ୍ଷସ ହୋଇଲା
ଋଷିର ବୀର୍ଯ୍ୟରୁ ଯହୁଁ ଜନମ ସେ ହେଲା ।
ତେଣୁ ବ୍ରହ୍ମ ରାକ୍ଷସ ଯେ ସେହିଟି ହୋଇଲା
ସେ ଦୋଷରୁ ତୁମ୍ଭଙ୍କୁ ପ୍ରକାଶ ଯେ ହେଲା ।
ଲକ୍ଷ୍ମଣ ବୋଇଲେ ମୁଁ କରିବି କସ ପୁଣ
ସୁଷେଣ ବୋଲେ ରାମନାମ କର ହେ କାର୍ତ୍ତିକ
ତେବେ ବ୍ରହ୍ମହତ୍ୟା ଯେ ଛାଡ଼ିବ ତୁମ୍ଭେ ଜାଣ
ଶ୍ରୀରାମ ଯେ ବସୁଦେବ ଅଟନ୍ତି ନାରାୟଣ ।
ସୁଷେଣଠାରୁ ଶୁଣି ସୁମିତ୍ରା ନନ୍ଦନ
ରାମନାମ ଗୋଟି କଲେକ ସୁମରଣ ।

ବୋଇଲେ ଯେଉଁ ରାମ କୌଶଲ୍ୟା ଗର୍ଭୁ ଜାତ
ସେ ରାମ ମୋର ହୃଦୁ ପାତକ କରନ୍ତୁ ହତ
ଯେଉଁ ରାମ ବିଶ୍ୱାମିତ୍ର ଯାଗ ସମ୍ଭାଳିଲେ
ସେହି ରାମ ମୋର ପାତକ ହରିବେ ଯେଉଭଲେ
ଯେଉଁ ରାମ ଶିବ ଧନୁ ଭଙ୍ଗିଲେ ଜନକର
ସେହି ରାମ ରକ୍ଷା ହେ କରିବେ ହୃଦମୋର ।
ଯେଉଁ ରାମ ପର୍ଶୁରାମଙ୍କୁ ବାଟରେ ଜିଣିଲେ
ଏ ଦୋଷ ମୋ ଅଙ୍ଗରୁ ହରିନେବ ଭଲେ ।
ଯେଉଁ ରାମ ପିତା ସତ୍ୟ ପାଳି ବନ ଗଲେ
ଯେଉଁ ରାମ ବନସ୍ତେ ଜାନକୀ ହରାଇଲେ ।
ଯେଉଁ ରାମ ମାରିଲେ ବାଳି ନୃପବର
ଯେଉଁ ରାମ ସଙ୍ଗେ ଋକ୍ଷକପି ହେଲେ ଠୁଳ ।
ଯେଉଁ ରାମ ସମୁଦ୍ରରେ ସେତୁ ବନ୍ଧ ବାନ୍ଧି
ଯେଉଁ ରାମ କୁମ୍ଭକର୍ଣ୍ଣକୁ ପକାଇଲା ଛେଦି ।
ଯେଉଁ ରାମ ପାଦ ଲାଗି ଅହଲ୍ୟା ତନୁଧରି
ସେହି ରାମ ମୋ ହୃଦରୁ ପାତକ ନେବେ ହରି
ଯେଉଁ ରାମ ଦଶଗ୍ରୀବ ବଂଶ ନାଶ କଲେ
ଯେଉଁ ରାମେ ବିଭୀଷଣ ଶରଣ ପଶିଲେ ।
ଯେଉଁ ରାମ ଲାଗି ଋଷ୍ୟଶୃଙ୍ଗ ହେଉଇ ଜାତ
ସେହି ରାମ ମୋ ଅଙ୍ଗୁ ପାତକ ହରିବେତ ।
ସେ ରାମ ସୁଗ୍ରୀବରଙ୍କୁ କଲେ ରାଜା ପୁଣ
ଯେଉଁ ରାମ ବୋଲେ ହନୁ ସ୍ୱର୍ଗକୁ ଯାଏ ପୁଣ
ସେ ରାମ ଚରଣେ ମୁଁ କରୁଛି ବିନତି
ଏ ଦୋଷକ୍ଷମା ମୋର କରିବେ ଦାଶରଥି ।
ଶ୍ରୀରାମ ନାମ ଗୋଟି ଲକ୍ଷ୍ମଣ ସୁମରିଲେ
ତତକ୍ଷଣ ବ୍ରହ୍ମହତ୍ୟା ଅଙ୍ଗରୁ ଛୁଟି ଗଲେ ।
ନେତ୍ରକୁ ଦିଶିଲା ତାଙ୍କର ଆଲୋକ ସକଳ
ଶଲ୍ୟା ଛାଡ଼ି ଲକ୍ଷ୍ମଣ ହେଲେ ଯେ କୁଶଳ ।
ସୁଷେଣଙ୍କୁ ବୋଇଲେ ସେ ରଘୁବର ଯେଣ
ଶ୍ରୀରାମଙ୍କୁ ଦର୍ଶନ କରିବି ମୁହିଁ ପୁଣ ।
ପୂର୍ବରେ ପାତକ ମୁଁ କେତେ କରିଥିଲି
ଛଡ଼ଦନ ହେଲା ମୁଁ ସ୍ୱାମୀଙ୍କି ଛାଡ଼ିଗଲି ।
ଭରତର ମାତା କୈକେୟୀ ଏହା ଅରଜିଲା
ଆମ୍ଭ ଦୁଇ ଭାଇଙ୍କି ତ ଭିନ୍ନ ଭିନ୍ନ କଲା ।
ସେଠାରେଯେବେ ଶ୍ରୀରାମମୋତେ କହୁଥାନ୍ତେ
ମାରିଥାନ୍ତି କୈକେୟୀଙ୍କ କେହି ନ ରଖନ୍ତେ ।

ଆଜ ବଡ଼ ସୁଫଳରେ ରାତ୍ର ପାହିଥିଲି
ଶ୍ରୀରାମଙ୍କୁ ଦର୍ଶନ କଲି ମୁହିଁ ଭଲି ।
ରାମ ରାବଣର ତ ଯୁଦ୍ଧ ମହାଘୋର
ତାଙ୍କ ପାଶକୁ ମୋର ବାହା ରଘୁବର ।
ଶୁଣିକରି ସୁଷେଣ ଉଠି ବେଗେ ଗଲା
ନନ୍ଦଘୋଷ ରଥର ପାଶେ ଯାଇ ମିଳି ।
କରଯୋଡ଼ି ମନେ ମନେ କରେ ନମସ୍କାର
ସୁଷେଣ ମନରେ ଭାବନା କଲା ଯେ ଅପାର
ହନୁମନ୍ତ ରଥ ଉପରକୁ ଓହ୍ଲାଇଲା
ଶ୍ରୀରାମଙ୍କ ଚରଣେ ଗଡ଼ିଯାଇ ଶୋଇଲା ।
ଅଙ୍ଗଦର ପାଶରେ ହେଲା ଯାଇଁ ମେଳ
ଅଙ୍ଗଦବୋଲେଷଡ଼ଦାନଦେଲା ଥିଲକେଉଁଠାର
ହନୁମନ୍ତ ବୋଲେ ଭାଇ କହିବା କଥା ନୁହେଁ
ବଡ଼ ସଂଗ୍ରାମ କଲା ଇନ୍ଦ୍ରଜିତ ତନୟେ ।
ପାଞ୍ଚଦିନ ଭିତରେ କଲୁଁ ଆମ୍ଭେ କଷ୍ଟ
ରାତ୍ର ଦିବସରେ ଯୁଦ୍ଧ କଲା ଏକମୁଖା ।
ଲକ୍ଷ୍ମଣ ଯେ ତାଳଧ୍ୱଜ ରଥ ଚଢ଼ି ପୁଣ
ଶ୍ରୀରାମ ଦକ୍ଷିଣ ପାଶେ ବିଜେ କଲେ ଜାଣ ।
ଲକ୍ଷ୍ମଣଙ୍କୁ ଦେଖି ରାମ ମନରେ ହରଷ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟରସ ।
ପାର୍ବତୀ ବୋଇଲେ ଦେବ ରହିଲା କଥାପୁଣ
ଜାନକୀ ଶୁଣିଲେଟିକ ମହୀରାବଣ ମରଣ ।
ମନ୍ଦୋଦରୀ ସେହୁ ଅଟଇ ନାତି ପୁଣ
ଏକମୁଖା ମରିବାର ଜାଣିଲେ ଟିକ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ସେକଥାଯେ ଶୁଣ
ଚର ଜଣାଇଲା ମନ୍ଦୋଦରୀର ଆଗେଣ ।
ବୋଇଲେ ଗୋ ମହାଦେଈ କହୁଅଛି ଶୁଣ
କାଲି ଯୁଦ୍ଧକୁ ତୋ ସ୍ୱାମୀ କଲେକ ଗମନ ।
ଅନେକ ପ୍ରକାରେ ଯୁଦ୍ଧ ନାନାରଙ୍ଗେ କଲେ
ଆଦ୍ୟରୁ ଜାଣିଣ ଦଶପୁତ୍ର ମରାଇଲେ ।
ତେରଶତ ନାତିରୁ ଯେ ସତଗୁଳଶ ଜାଣ
ସେହି ମଲେ ଗୋଟିଏ ନ ବର୍ତ୍ତିଲେ ଜାଣ ।
ପୁଷ୍ପକ ବିମାନ ତୋର ସ୍ୱାମୀଙ୍କର ଯୁଦ୍ଧ
ନନ୍ଦଘୋଷ ରଥରେ ଚଢିଛି ଯନ୍ତ ସିଦ୍ଧ ।
ନାତି ତୋର ପଦ୍ମବ୍ୟୂହରେ ଲକ୍ଷ୍ମଣ ହରିନେଲା
ଲଙ୍କା ଗଡ଼ରେ ନେଇ ବହୁତ ଯୁଦ୍ଧ କଲା ।

ତାଳଧ୍ୱଜ ରଥରେ ସେ ଚଢ଼ିଣ ରାମଭାଇ
ଏକମୁଖା ରାବଣ ସଙ୍ଗେ ଯୁଦ୍ଧ ସେ କରଇ ।
ପୁତ୍ର ନାତି ମାର ତାର ସୈନ୍ୟ ସଂହାରିଲା
ତୋର ନାତିପଳାନ୍ତେ ସେ ତାକୁ ଗୋଡ଼ାଇଲା
ଝଡ଼କେ କେଳବାପ ପାଖେ ହେଲା ପରବେଶ
ଲକ୍ଷ୍ମଣର ବାଣେ ତୋର ନାତି ଗଲା ନାଶ ।
ଦୁଇ ରଥରେ ଚଢ଼ି ଦୁଇଭାଇ ଯୁଝନ୍ତିସେ ପୁଣ
ଏକାଳେ ଯୁଝୁଛୁ ତୋସ୍ୱାମୀ ଶ୍ରୀରାମ ସଙ୍ଗେଣ
ଦୁଇ କୁଳ ସୈନ୍ୟ ମଧ୍ୟସ୍ଥ ପ୍ରାୟ ଦେଖେ
ଏହା ପୁଣି ମନ୍ଦୋଦରୀ ବରସ ସେ ମୁଖେ ।
ବୋଇଲା ସେ ଯେଉଁ ଦୋଷ ଯେହୁ କରିଥାଇ
ଦଇବ ପୁରୁଷ ତାକୁ ବେଳରେ ଦଣ୍ଡଇ ।
ଶ୍ରୀରାମର ଦୋଷ ନାହିଁ ଆଣିଲେ ଜାନକୀ
ନଦେଇ ରାବଣ ପୁଣ ଗାରିମା କରିଅଛି ।
ଧର୍ମରେ ହାନି ଅଟେ ଦଶ ସେ ଗ୍ରୀବର
ଶ୍ରୀରାମର ଜୟ ହେବ ଶୁଣ ତୁ ନକର ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଦଶଗୋଟି ଅସୁରୁଣୀ ଆସିଥିଲେ ଫେରି ।
ଭାଳେଣି ଦେଖିଣ ସେସେ ବେଗେ ଚଳିଗଲେ
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ
ଦେଖିଲେ ଜାନକୀ ବସିଅଛନ୍ତି ମଣ୍ଡପରେ
ତ୍ରିଜଟା ବଣାଖା ଅଛନ୍ତି ତାଙ୍କର ସଙ୍ଗରେ ।
ଅସୁରୁଣୀମାନେ ବୋଲନ୍ତି ଶୁଣ ଗୋ ତ୍ରିଜଟା
ରାଜାଙ୍କ ପୁରକୁ ଆମ୍ଭେ ଯାଇଥିଲୁ ଏକା ।
ରାବଣ ସେ ପୁଷ୍ପକ ବିମାନେ ପୁଣ ଗଲା
ଶ୍ରୀରାମ ସଙ୍ଗରେ ବହୁତ ଯୁଦ୍ଧ କଲା ।
ପୁତ୍ର ନାତି ଯେତେକ ସମସ୍ତେ ତାର ମଲେ
ନନ୍ଦଘୋଷ ରଥ ଚଢ଼ି ଶ୍ରୀରାମ ଯୁଦ୍ଧ କଲେ ।
ତାର ନାତି ମହୀ ସେ ରାବଣ ନାମେ ବୀର
ସୁଲଙ୍କାରେ ରାଜା କରିଥିଲା ଦଶଶିର ।
ଆଜକୁ ଷଡ଼ାନନ ହୋଇଲା ଗୋ ପୁଣ
ପଦ୍ମବ୍ୟୂହ ଯୁଦ୍ଧକଲା ସେ ମହୀରାବଣ ।
ଲକ୍ଷ୍ମଣ ହନୁମନ୍ତ ସୁଷେଣ ହରିନେଲା
ଆପଣା ରାଜ୍ୟରେ ତାଙ୍କ ସଙ୍ଗେ ଯୁଦ୍ଧକଲା ।
ଦେବ ଦଳନ ରଥରେ ବିଜୟେ ଏକମୁଖା
ସାରଥି ଦୁଇ ମନ୍ତ୍ରୀ ହୋଇଣ ତାଇ ସଖା ।
କୁବୁଦ୍ଧି ସୁବୁଦ୍ଧି ସେ ନାମରେ ଦୁଇଜଣ
ମହୀରାବଣ ରଥକୁ ବାହାନ୍ତି ଘନ ଘନ ।
ଲକ୍ଷ୍ମଣ ନାମରେ ସେ ସାନ ପତ୍ର ପୁଣ
ସେହି ଚଢ଼ିଥିଲା ତାଳଧ୍ୱଜ ରଥ ଜାଣ ।
ଦୁହିଁଙ୍କର ସମର ହୋଇଲା ବଡ଼ ଟାଣ
ମହୀରାବଣ ପୁତ୍ର ନାତି ମଲେ ତହିଁ ପୁଣ ।
ପାଞ୍ଚାନନ ପରିଯନ୍ତେ ରାଜ୍ୟେ ଯୁଦ୍ଧ କଲେ
ଷଡ଼ାନନେ ଅଜାପାଶେ ପଳାଇ ଅଇଲେ ।
ଲକ୍ଷ୍ମଣ ହସ୍ତରେ ପୁଣି ମଲା ଏକଗ୍ରୀବ
ଇନ୍ଦ୍ରଜିତର ବଂଶ ସରିଲେ ସଦଭାବ ।
ଶ୍ରୀରାମତ ରାବଣ ସଙ୍ଗରେ କରେ ରଣ
ଦୁଇବଳ ସୈନ୍ୟ ମଧ୍ୟସ୍ଥ ରୂପେ ପୁଣ ।
ଦେଖନ୍ତି ରହିଣ ସବେ ଦୁଇଜଣଙ୍କ ସମର
ଦୁଇଦିନ ହେଲା ରଣ ସେ ମହାଘୋର ।
ରଣ ଜୟ ଅଛି ଗୋ ଯନ୍ତର ଏଥିରେ
ରାବଣ ମରିବ ଯନ୍ଦା ଜଣିବ ଏଠାରେ ।
ପାଦରେ ଯୁଝୁଥିଲା ବସିଲା ରଥର
ଦୁଇଭାଇ ରଥରେ ସେ ହେଲେ ଆଗୁସାର
ଏହା ଶୁଣି ଜାନକୀ ସେ ଆନନ୍ଦ ହୋଇଲେ
ତ୍ରିଜଟାକୁ ରୁହିଁଣ ସେ ବଚନ ବୋଇଲେ ।
ତୁମ୍ଭେ ଦେଖି ଆସ ଗୋ ଯାଇଣସେ ବେଗେ
ଏକଥା ଏବେତ ମୋତେ ପରିହାସ ଲାଗେ
ଶୁଣିକରି ତ୍ରିଜଟା ସେ ବେଗେ ଚଳିଗଲା
ପୁରୁଷ ବେଶରେ ଆସି ଅସୁର ହୋଇଲା ।
ରଣ ଭୂମିରେ ଯାଇଣ ହେଲା ପରବେଶ
ଦେଖିଲା ଶ୍ରୀରାମଙ୍କୁ ସେ ରଥ ନନ୍ଦଘୋଷ ।
ଲକ୍ଷ୍ମଣର ରଥ ସେ କଳାମେଘ ଜାଣି
ପୁଷ୍ପକ ରଥଦିଶେ ନୀଳବର୍ଣ୍ଣ ପୁଣି ।
ଦେବଦଳନ ରଥ ଦିଶେ ରଙ୍ଗ ବର୍ଣ୍ଣ
ଖାଲି ଆସୁଅଛି ମହୀରାବଣର ଯାନ ।
ଶ୍ରୀରାମ ରାବଣର ହେଉଛି ମହାଯୁଦ୍ଧ
ଦେଖିକରି ତ୍ରିଜଟା ସେ ବାହୁଡ଼ିଲା ବେଗ ।
ଅଶୋକ ବନରେ ପ୍ରବେଶ ଯାଇ ହେଲା
ସତ ବୋଲି ଜାନକୀର ଆଗରେ କହିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାମ ରାବଣ ଯୁଦ୍ଧ ଶୁଣନ୍ତୁ ଦିବ୍ୟ ଗୀତି ।

ଅଶ୍ୱତ୍ଥାମ ସମର ଯେ କରନ୍ତି ଦୁଇକ୍ଷୀ
ନାରାଚର ଘାଏ ଯେ କମ୍ପେ ବସୁମତୀ ।
ଏକୁ ଏକ ଶର ଯେ ମେଲନ୍ତି ବେଳୁଁ ବେଳ
ଦୁହେଁ ନିବାରନ୍ତି ଯେ ହୋଇଣ ଆଗୁ ସାର ।
ଯହିଁକି ମନ କରନ୍ତି ତହିଁକି ଯାଏ ଯାନ
ସ୍ୱର୍ଗକୁ ବାହି ନେଲା ପୁଷ୍ପକ ବିମାନ ।
ତହିଁରେ ଅଶ୍ୱତ୍ଥାମ ହୋଇଲା ସମର
ତାହା ଦେଖି ଶ୍ରୀରାମ ଯେ କୋପେ ଗୁରୁତର
ପାଞ୍ଚଣ ବାଣ ପୁଣି ବିନ୍ଧିଲେ ରାମ ରାଣ
ନାରାଚେ ଲଙ୍କପତି ହେଲେ ନିବାରଣ ।
କୋପରେ ଦଶାନନ ମାରିଲା ପୁଣି ଶର
ଦୂରରୁ ନିବାରେ ତାହା ରଘୁକୁଳ ବୀର ।
ଗଦା ପରଶୁ ଭୁଷଣ୍ଡି ଛେଲ ଚକ୍ର କୁନ୍ତ
ଅନେକେ ପେଷଇ ମନ୍ଦୋଦରୀ କାନ୍ତ ।
ଶ୍ରୀରାମ ନାରାଚ ଯେ କାଟନ୍ତି ଅସଂଖ୍ୟାତ
ଦୁହିଁଙ୍କର ସମର ହୋଇଲା ଅନର୍ଥାପ ।
ଶରଙ୍କର ତେଜ ପ୍ରଳୟ ଅଗ୍ନି ଜାଣି
ସୁରଦାନବ କେହୁ ନୁହେ ପରମାଣି ।
ଭଇରୋବ ଶର ପେଶେ ଯହୁଁ ରାମ ରାହୁ
ଜଗତ ଛନ୍ନ ଛନ୍ନ ହେଲା ରହୁଁ ରହୁଁ ।
ବିକଟ ମୂର୍ତ୍ତି ତାର ଲହ ଲହ ଜିଭ
ମହାଘୋର ଗର୍ଜନ କରଇ ଦଶଗ୍ରୀବ ।
ସ୍ୱର୍ଗ ଭୁବନ କମ୍ପିଲା ଅସୁରଙ୍କ ତେଜେ
ନିଶ୍ଚୟ ପୃଥ୍ୱୀଙ୍କ କମ୍ପାଇ ଦବ୍ବ ଯେ ।
ଅନର୍ଥାପ ଶଙ୍କିତ ପେଶେ ଦଶାନନ
ତୂଣୀରୁ ଆସନ୍ତେ ଶର କଲାକ ପ୍ରୟାଣ ।
ଯହିଁ ଲଗିଲା ବିବାଦ ଦୁଇ ଅସ୍ତ୍ରଙ୍କର
ଊର୍ଦ୍ଧ୍ୱରେ ଥାଇ ବିବୁଧେ ହୋଇଲେ କାତର
ଶସ୍ତ୍ରଙ୍କର ତେଜରେ ଗିରି କନ୍ଦର ହଲିଲା
ପୃଥ୍ୱୀ ଦଲ ଦଲ ହୋଇଣ ବସିଲା ।
ପ୍ରଳୟ ଅଗ୍ନି ଜଳ ଉଠିଲେ ବେନି ଅସ୍ତ୍ର
ଜଳଧର ଶର ଯେ ପେଷିଲେ ରଘୁଗୋତ୍ର ।
ଅଗ୍ନିଙ୍କର ଉପରେକ ବରଷେ ଆସି ପାଣି
ଶସ୍ତ୍ରଙ୍କର ତେଜ ଯେ ନିର୍ଜନ ହେଲା ଜାଣି ।
ବେନି ଶସ୍ତ୍ର ଯହୁଁ ଗମିଲେ ପାତାଳେ
ଭିଡ଼ିଲେ ଯାଇ ଅନନ୍ତ ପାଦ ଶଯ୍ୟା ତଳେ ।

ପୁଣି ପର୍ବତ ଶର ପେଷିଲେ ରାବଣର
ବଜ୍ରଶରରେ ତାହା ଦଇତ ନିବାର ।
ବେଳୁ ବେଳ ସମର ହୋଇଲା ମହାଘୋର
ପୁଣି ରଣ ଭୂମିରେ କଲେକ ସମର ।
ଦୁହେଁ ସମକ୍ଷୀ ଯେ କେହି ନୁହେଁ ଊଣ
ପୁଣ ପୁଣ ମାୟା ଯୁଦ୍ଧ କଲାକ ରାକ୍ଷସ ।
ଶରେ ଶରେ ଅନ୍ଧକାର କଲା ରଣ ଭୂଇଁ
ରାକ୍ଷ ଦାନବ ସେଥିରେ ଯୁଦ୍ଧ କଲେ ରହି ।
ସେଠାରୁ ବିମାନ ଯେ ତଳକୁ ଖସାଇଲା
ପାତାଳ ପୁରେ ଯାଇ ପ୍ରବେଶ ହୋଇଲା ।
ଜାଣିକରି ମାତଳ ରାମଚନ୍ଦ୍ରରେ ପୃଚ୍ଛି
ମାୟାକଲା ତୁମ୍ଭଙ୍କୁ ଏ ଦଶଗ୍ରୀବ ବଳି ।
ଏବେ ପାତାଳକୁ ନେଇ ଗଲା ପୁଣ ଯାନ
କୋପଭରେ ଶ୍ରୀରାମ ଯେ ବୋଲନ୍ତି ବଚନ ।
ମୋର ରଥବର ତୁମ୍ଭ ବେଗ କରି ବାହା
କାହିଁଅଛି ରାବଣ ଦେଖାଅ ମୋତେ ତାହା ।
ବଡ଼ ମାୟା ଜାଣଇ ଦଶଗ୍ରୀବ ନାତ
ଚକ୍ରବ୍ୟୂହ ଭିତରେ ଯେ ରହେ ସଉମିତ୍ରୀ
ସୈନ୍ୟବଳ ପୁତ୍ର ନାତି ମାରିଲା ଲକ୍ଷ୍ମଣ
ଷଡ଼ଙ୍ଗନରେ ମୋର ଭାଇ ମାରେ ତାକୁ ପୁଣ
ମୋହର ଯୁଦ୍ଧକୁ ସେ କରଅଛି ଦୃଷ୍ଟି
ବାହୁଡ଼ୁଥିବ ମନେ ଶ୍ରୀରାମଚନ୍ଦ୍ର ପୁଟି ।
ତିନଦିନ ଆସିଣ ସମ୍ପୂର୍ଣ୍ଣ ହେଲା ଯୁଦ୍ଧ
ତିନରାତ ଏଥିରେ ହେଲା ଗୋଳ ଭେଦ ।
ଶୁଣି ଦେବଦୂତ ମନୁ ବେଗେ ବାହେ ରଥ
ପାତାଳ ପୁରେ ଭେଟିଲା ଯାଇ ଦଶମାଥ ।
ଦେଖିକରି ଶ୍ରୀରାମ ବୋଲନ୍ତି ଆରେ ମୂଢ଼
ଜାଣିବାନା ତୋହର କେଉଁଠେ ଅଟେ ଗାଡ଼ ।
ରଣ ଭୂମି ଛାଡ଼ି ଏଣେତେଣେ କମ୍ପା ଲୁଚୁ
ନଶତ ହେଲେ କରେ ଜୀବନ ରୋକବଞ୍ଚୁ ।
ଶୁଣିଣ ରାବଣେଶ୍ୱର କୋପେ ଥରହର
ଶ୍ରୀରାମଙ୍କୁ ଚାହିଁ ପୁଣ ବୋଲଇ ଉତ୍ତର ।
ନ ଜାଣୁ କି ମାୟା ସାଗର ମୋର ବାନା
ତିନପୁରେ ମୁଁ ଯେ ଅଟଇ ବଜ୍ରସେନା ।
ଏତେ କହି ରାବଣ ଯେ ପର୍ବତ ଶର ମାରି
କୋପରେ ବୀର ବିନ୍ଧଇ ଧନୁର୍ବେଦ ପଢି ।

ଦେଖିଣ ରଘୁନାଥ ଛେଦିଲେ ତାହା ଦୂରୁ
ତୀକ୍ଷ୍ଣମୁନା ଶର ପୁଣି କାଢ଼ିଲେ ତୂଣୀରୁ ।
ଗୁଣରେ ବସାଇ ଯେ ନାରାଚ ଛାଡ଼ିଦେଲେ
ଦଶଗ୍ରୀବ ତାହା ଯେ ଦୂରରୁ ନିବାରିଲେ ।
ଏମନ୍ତେ ଅବଶ୍ରାମ ହୋଇଲା ସମର
ଦୁହିଁଙ୍କର ଶରୀର ରକ୍ତରେ ଜରଜର ।
ଦେଖିଣ ଶ୍ରୀରାମଚନ୍ଦ୍ର କୋପରେ ପ୍ରଚଣ୍ଡ
ବୋଇଲେ ରାବଣରେ ଛେଦିବି ତୋର ମୁଣ୍ଡ
ଏତେ କହି ତୂଣୀରୁ କାଢ଼ିଲେ ବଜ୍ରଶର
ଗୁଣରେ ବସାଇଲେ ରଘୁକୁଳ ବୀର ।
ମନ୍ତ୍ରକୁ ସ୍ମରନ୍ତେ ଶସ୍ତ୍ର ଯେ ବିକରାଳ
ଯେସନେକ ପ୍ରଜ୍ୱଳିତ ବଡ଼ବା ଅନଳ ।
ବ୍ରହ୍ମାଣ୍ଡ ଖଣ୍ଡ କି ପଡ଼ିବ ରସାତଳେ
ସୃଷ୍ଟି କି ପ୍ରଳୟ ପୁଣ ହେବ ଏକାବେଳେ ।
ସପତ ସାଗର କି ରହିବ ଶରଘାତେ
କି ଅବା ଉତ୍ପାତ ଯେ ହେବ ଏ ଜଗତେ ।
ପାତାଳ ପୁର ଦିଶେ ଖୋଜକ ପ୍ରାୟ ହୋଇ
ନାରାଚରେ ମୁନେ କି ରହିବ ଲୁଚି ସେହି
ଦେଖି କରି ନାଗ ଲୋକ ବହୁତ ଭୟକଲେ
ଶ୍ରୀରାମଙ୍କୁ ବହୁତ ବିନୟେ ସ୍ତୁତି ହେଲେ ।
ଜୟ ଜୟ ବାସୁଦେବ ଅନନ୍ତ ମୁରତି
ତୋହର କଳ୍ପିକ ସିନା ଅଟେ ଏହୁ ପୃଥ୍ୱୀ ।
ଆଗେ ତୁ ସ୍ୱର୍ଗ କଲୁ ମଧ୍ୟରେ କଲୁ ମଞ୍ଚ
ପ୍ରାନ୍ତରେ ରଚିଲୁ ତୁ ଯେ ପାତାଳପୁର ନାଥ
ନାଗ ଲୋକ ସିଦ୍ଧ ଲୋକ ଏ ପୁରରେ ପୁଣ
ସ୍ଥାନେ ସ୍ଥାନେ କରି ତୁ ରଖିଲୁ ନାରାୟଣ ।
ମଞ୍ଚକୁ ଧରିବା ପାଇଁ ବାସୁକୀ ଅର୍ପି କଲୁ
ସ୍ୱର୍ଗରେ ତେତିଶ କୋଟି ଦେବ ଠୁଳକଲୁ ।
ଛପନ କୋଟି ଜୀବ ଅସୁର ଦେବଗଣ
ସାତ ଗୋଟି ଦ୍ୱୀପକଲୁ ମଞ୍ଚରେ ଭିଆଣ ।
ସପ୍ତସାଗର ସେଥିର ମଧ୍ୟରେ ଥୋଇଲୁ
ସେ ସବୁ ଆଣିଣ ଅର୍ପି ବାସୁକି ଶିରେଦେଲୁ
ସ୍ୱର୍ଗପୁରର ତେତିଶକୋଟି ଦେବତା ଠୁଳକଲୁ
ସପ୍ତସାଗର ସାତ ଦ୍ୱୀପରେ ରଞ୍ଜିଲୁ ।
ସେ ପୁର ଧରିଲା ସୁଦର୍ଶନ ଯେ ମଣ୍ଡୁକୀ
ତାହାକୁ ସୁଦୟା ତୁମ୍ଭେ କଲହେ ଦାଶରଥି ।

ସେ ପୁରେ ସାତଗୋଟି ବଇକୁଣ୍ଠ କଲ
ନିଶ୍ଚୟ କରିଣ ପୁଣ ସେ ପୁର ରଖିଲ ।
ମଞ୍ଚପୁରେ ସାତଗୋଟି ବୈକୁଣ୍ଠ ତୋହର
ଯୁଗକୁ ଯୁଗ ଲୀଳା କଲ ହେ ବିହାର ।
ପାତାଳରେ ତିନି ଗୋଟି ବଇକୁଣ୍ଠ ପୁର
ଏଣ୍ଡୁଅ ମଣ୍ଡୁକୀ ପରେ ରଖିଲୁ ତୁ ଧର ।
ତୋର ଠାରୁ ଜାତ ସିନା ସକଳ ହୋଇଲେ
ନ ଚିହ୍ନି ଯେଦୈତ୍ୟବଳତୋସଙ୍ଗେକଳିକଲେ
ଆପଣା କଥାକୁ ଆପେ ଚିହ୍ନ ହେ ଦାଶରଥି
ଓପ୍ରୋଧ ଛାଡ଼ିଣ ଦୈତ୍ୟକୁ ମାର ହେ ଝଟତି
ଏ ଶରକୁ ସମ୍ଭାଳ କର ହେ ଦାଶରଥି
ଏମନ୍ତ ବୋଲି ନାଗେ କଲେ ବହୁସ୍ତୁତି ।
ଶୁଣିଣ ଶ୍ରୀରାମ ଯେ ମନରେ ହେଲେ ତୋଷ
ନାରାଚକୁ ସଂହାରଣ କଲେ ରଘୁଶିଷ୍ୟ ।
ଦେଖିଣ ରାବଣେଶ୍ୱର ବହୁ ସ୍ତୁତି କଲା
ଏହି ସେ ନାରାୟଣ ବୋଲିଣ ବିଚାରିଲା ।
ମାୟାକୁ ମାୟା ଏ ତ ଜାଣନ୍ତି ବହୁତ
ନିଶ୍ଚୟ ହରିବ ଏ ମୋହର ଜୀବତ ।
ପୁଣି ରଘୁବର ଯେ ପାତାଳୁ ଆଣିଲା
ଲଙ୍କାର ରଣ ଭୂମିରେ ଆଣି ଉଭା କଲା ।
ତାର ପଛେ ମାତଳୀ ଯେ ବାହେ ନନ୍ଦିଘୋଷ
ରାବଣର ଆଗରେ ହେଲେ ତ ପ୍ରବେଶ ।
ନାଗଲୋକ ଦେଖିଣ ବହୁତ ତୋଷହେଲେ
ପାତାଳ ସମ୍ଭାଳ ହେଲା ବୋଲି ବିଚାରିଲେ ।
ସ୍ୱର୍ଗର ଦେବତାଏ ଯେ ବିଚାର କଲେ ମନ
ଏଥର ଦଶଗ୍ରୀବର ତୁଟିବ ଯେ ପ୍ରାଣ ।
ସ୍ୱର୍ଗପୁର ପାତାଳ ସେ ଦୁହେଁ ରକ୍ଷାକଲେ
ପରମେଶ୍ୱର ରଖିଲା ପ୍ରାୟକ ଜାଣିଲେ ।
ପକ୍ଷକରେ ମଞ୍ଚପୁର ଅଦ୍ଧୋଳ ସରିବ
ସହସ୍ର ମୁଖା ମଲେ ଦେବଙ୍କର ଶଲ ଯିବ ।
ସମର ଭୂମିରେ ଯୁଦ୍ଧ କରନ୍ତି ବେନି ବୀର
ରଣ ଝଣ କରିଣ ବିନ୍ଧୁଛନ୍ତି ଶର ।
ଆକାଶରେ ତେଜ ହୀନ ହେଲେ ଦିନକର
ଶର ଆତଯାତ ହୁଏ ଦିବସ ଅନ୍ଧାର ।
ସ୍ୱର୍ଗରେ ପାତାଳେ ଦୁଇଦିନ ଦୁଇ ବର୍ଷ
ସମର ବହୁତ ତହିଁ କଲେ ଆଶ୍ଚର୍ମିତ ।

ବୃତ୍ର ଧନ ବୃତ୍ର ସବ ଏଥିରେ ବହିଗଲା
ମହାଘୋର ଯୁଦ୍ଧ ଯେ ଅନ୍ଧାରମୟ ହେଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
କଥାଏ ରହିଲା ମୋତେ କହ ଏବେ ପୁଣ ।
ଶତ୍ରୁଘନ ବୀର ଦୈତ୍ୟବଳ ରଥ ଚଢ଼ି
ଶତମୁଖା ସଙ୍ଗେ ପାଞ୍ଚଦିନ ଯୁଦ୍ଧ କରି ।
ପୁତ୍ର ନାତି ସୈନ୍ୟ ବଳ ମାରିଲେ ତାହାର
ପଳାଇଲେ ଶତେଗ୍ରୀବ ନ ରହି ଆଗର ।
ନିଜରାଜ୍ୟେ ଆସି ପ୍ରବେଶ ତାହାର ହେଲା
ଶତ୍ରୁଘନ ତାହାର ପଛରେ ଗୋଡ଼ାଇଲା ।
ସୁବଳୟା ଗିରିରେ ରହିଲେ ରାମ ଭାଇ
ଅସୁରଦଳନ ରଥ ସଙ୍ଗରେ ଅଛଇଁ ।
ନବକୋଟି ରଥୀ ତାଙ୍କ ସଙ୍ଗତରେ ଗଲେ
ସେହି ଯାଇ କୁବଳୟା ଗିରିରେ ରହିଲେ ।
ନିଜ ନଗରେ ମିଳିଲା ଶତମୁଖା ଯାଇ
ବୃତ୍ର ରାଣୀଙ୍କ ଆଗରେ ଏକଥା କହଇ ।
ବୋଇଲା ପୁତ୍ରନାତି ତୁମ୍ଭର ନାଶଗଲେ
ରଥୀ ସେନାପତି ପଦାତି ସର୍ବେ ମଲେ ।
ବାର ରଥ ଘେନି ମୁଁ ଯେ ଅଇଲି ପଳାଇ
ଆମ୍ଭର ପଛେ ଶତ୍ରୁଘନ ଆସିଛି ଗୋଡ଼ାଇ ।
ଶୁଣି ରାଣୀହଂସ ତାର ଶୋକ ପୁଣ କଲେ
ବଧୂ ନାତୁଣୀ ବଧୂମାନେ ସଜ ହେଲେ ।
ସତୀ ଯିବା ନିମନ୍ତେ ହୋଇଲେ ବେଶ ପୁଣ
ନାନା ଅଳଙ୍କାରମାନ ହୋଇଲେ ଭୂଷଣ ।
ମେଳ ହୋଇ ବାହାର ହେଲେ ସର୍ବନାରୀ
ଅଗ୍ନିନଙ୍କ ପାଶରେ ସମସ୍ତେ ଯାଇ ମିଳି ।
ସ୍ୱାମୀମାନଙ୍କୁ ସୁମରି ଅଗ୍ନିରେ ଦେଲେ ଝାସ
ତତକ୍ଷଣେ ସେମାନେ ହୋଇଲେକ ଭସ୍ମ ।
ଯେ ଯାହାର ସ୍ୱାମୀ ସଙ୍ଗେ ସ୍ୱର୍ଗପୁର ଗଲେ
ଅଚଳା ବୈକୁଣ୍ଠପୁରେ ଯାଇଣ ରହିଲେ ।
ଶତମୁଖା ରାବଣର ବୃତ୍ର ଯେ କୁମର
ଲକ୍ଷେ କୁମରରୁ ବାକି ଅଛନ୍ତି ବଳତାର ।
ନବଲକ୍ଷ ନାତିରୁ ରହିବେ ପୁଣି ବାର
ବୟାଳିଶ କୋଟି ସେନାପତି ଯେ ତାହାର ।
ପଚିଶ କୋଟି ପାଞ୍ଚଦିନରେ ନାଶ ଗଲେ
ସେନାପତି ସତର କୋଟି ବାକି ଥିଲେ ।
ରଥ ତାର ଅଟନ୍ତି ଷୋଳଗୋଟି ପୁଣ
ପାଞ୍ଚଦିନେ ଦଶକୋଟି ମାରିଗଲେ ଜାଣ ।
ସେଥିରୁ ଷଡ଼କୋଟି ଶେଷକୁ ରହିଲେ
ଏମାନେ ସମରକୁ ଆସିଣ ନ ଥିଲେ ।
ବାଆଷଠୀ ପଦ୍ମ ତାର ଅଟନ୍ତି ପଦାତି
ସେଥିରୁ ଯାଇଥିଲେ ବତିଶ ଯେ କୋଟି ।
ସମସ୍ତେ ନାଶ ଗଲେ ନ ଆସିଲେ କେହି
ପାଞ୍ଚଦିନେ ଏତେ ଲୋକ ମଲେ ତାର ଯାଇ ।
ଚଉଦ ଲକ୍ଷ ରାଣୀ ଅଟନ୍ତି ତାର ପୁଣ
ସମସ୍ତଙ୍କ ମନରେ ବିରସ ବଡ଼ ଜାଣ ।
ରାଜା ବାହାର ଅବକାଶ ପରେ ଥିଲା
ସେଠାରୁ ଦଶଗ୍ରୀବ ବିଚାର କସ କଲା ।
ଏହା ମୋତେ ବୁଝାଇ କହ ତ୍ରିଲୋଚନ
ଯେ କଥାକୁ ଶୁଣିଲେ ସନ୍ତୋଷ ମୋର ମନ ।
ତ୍ରିଲୋଚନ ବୋଇଲେ ଶୁଣରେ ଭଗବତୀ
ବାହାର ଅବକାଶରେ ବିଜୟ ନୃପତି ।
ବିଚାରଇ ମନରେ ମୁଁ ଅନ୍ୟାୟ ବହୁ କଲି
ପରଲୋକଙ୍କର ବୋଲେ ବଂଶ ମରାଇଲି ।
ଅକାଳ ମୃତ୍ୟୁ ମୋତେ କରିବ ନିଶ୍ଚେ ନାଶ
ଏବେ କାଳ ମୋତେ ଯେ ହେଲା ପରବେଶ
ଡାକ ଆଣିଲି ଶତ୍ରୁକୁ ମୁଁ ଯୁଦ୍ଧ କରିବି ବୋଲି
ପଛ ଘୁଞ୍ଚିଲେ ଧର୍ମରେ ହାନି ହେବ ଭଳି ।
କ୍ଷତ୍ରି ପୁଅ ହୋଇ ମୁଁ ଯୁଦ୍ଧ ଯେବେ ନ କରିବି
ଦେବ ଦୈତ୍ୟବଳେ ମୁଁ ଅକୀର୍ତ୍ତି ପାଇବି ।
ପଳାଇଯିବାକୁ ତ ବାଟ ନାହିଁ ମୋର
ଯେଉଁ ଆଡ଼େ ଯିବି ମୁଁ ଗୋଡ଼ାଏ ପଛର ।
ରାଜାଙ୍କର ମୁଖରେ ନିନ୍ଦା ମୁଁ ପାଇବି
ପଛନ୍ତେ ମଲେ ମୁଁ ନର୍କକୁ ପୁଣ ଯିବି ।
ଯୁଦ୍ଧ କରି ମଲେ ମୁଁ ହେବି ସ୍ୱର୍ଗବାସୀ
ଯେତେବେଳେ ହେଲେତ ମୃତ୍ୟୁ ମୋତେ ଅଛି
ନିନ୍ଦା କଥା ଶୁଣିଲେ ମରଣୁ ଅଟେ ବଡ଼
ଜୀବନ ରଖିବାର ନୁହେଁ ଯେ ବେଭାର ।
ଜୀଇ କରି କେହିତ ରହିବ ତଳେ ନାହିଁ
ଆଗପଛେ ସମସ୍ତଙ୍କୁ ମରଣ ଯେ ହୋଇ ।
କେଡ଼େ କେଡ଼େ ବଡ଼ ଅସୁର ନଥିଲେ
ପୁଣି କାଳେ ସେହିମାନେ ମୃତ୍ୟୁକୁ ଲଭିଲେ ।

ଯଶହିଁ ରହିଲା ଆଉ ନ ରହିଲା କିଛି
ଏତେ ବୋଲି ଶତଗ୍ରୀବ ମନରେ ଭାବୁଛି ।
ଏମନ୍ତ ସମୟରେ ଚାରି ଯେ କୁମର
ବୀର ନାତି ଆସିକରି ମିଳିଲେ ପାଶର ।
ବୋଇଲେ ନୃପତି କମ୍ପା ବାହାରେ ଅବକାଶ
ମନ ତ ବରସ ଢଣେ ସରସ ନାହିଁ ଚିନ୍ତା ।
ଜନମ ହୋଇ ଥାଇଁ ଯେ ଅବଶ୍ୟ ମରିବା
କ୍ଷତ୍ରୀୟ ପୁଅ ହୋଇ କି ଯୁଦ୍ଧକୁ ଡରିବା ।
ମାଜଣା ମଣୋହି ଯେ କର ଦେବ ଯାଇଁ
ରାଜ୍ୟ ପାଇଲେ ଯୁଦ୍ଧ କରିବା ସର୍ବେ ଥାଇ ।
ମଲେ ତ ସ୍ୱର୍ଗ ଯିବା ମାଇଲେ ହେବ ଯଶ
ଏ କଥାକୁ ଚିନ୍ତା କମ୍ପା କର ନରଈଶ ।
କ୍ଷତ୍ରୀ ହୋଇ ଯେତେ ଯୁଦ୍ଧକୁ କର ଭୟ
ତପୀ ହୋଇ ଯେବେ ତପରେ ନାହିଁ ଲୟ ।
ବିପ୍ର ହୋଇ ଯେବେ ନ ପଢ଼ନ୍ତି ବେଦ
ଅଶ୍ୱ ହୋଇ ଯେବେ ନଥାଇ ତାର ବାଗ ।
ଭାରିଯା ହୋଇ ଯେବେ ନ କରଇ ବୋଲ
ପୁତ୍ର ହୋଇ ଯେବେ ନ ବୁଝେ ଶସ୍ତ୍ରଶାଳ ।
ପଦାତି ବଳ ଯେବେ ନ କରନ୍ତି ବୋଲ
ମନ୍ତ୍ରୀ ହୋଇ ଯେବେ ନ କରନ୍ତି ଭଲ ।
ଶତ୍ରୁ ହୋଇ ଯେବେ ପଶଇ ଶରଣ
ଜ୍ୟେଷ୍ଠ ପୁତ୍ର ହୋଇ ଯେବେ ନୁହଇ କାରଣ
ଭାଇକି ଭାଇ ଯେବେ ନୁହନ୍ତି ଉପକାରୀ
ସାଧବ ହୋଇ ଯେବେ ସବୁ ଦିନେ ସରି ।
ଜଳ ହୋଇ ଯେବେ ନୁହନ୍ତି ଗଙ୍ଗାଜଳ
ବୃକ୍ଷ ହୋଇକରି ଯେବେ ନ ଫଳଇ ଫଳ ।
ରାଜା ହୋଇକରି ଯେବେ ନ ପାଳଇ ପ୍ରଜା
ଏତେ ଲୋକ ନର୍କ ଭୋଗ କରନ୍ତି ମହାରାଜା ।
କମ୍ପାଇ ଚିନ୍ତା ମନେ କର ହେ ନୃପବର
କାଲି ପ୍ରଭାତରୁ ଯାଇ ସମର ବେଗ କର ।
ସୈନ୍ୟବଳ ଆସନ୍ତୁ ଘୋଷଣା ଦିଅ ପୁଣ
ଶୁଣିକରି ସନ୍ତୋଷ ହୋଇଲା ରାବଣ ।
ଏବେବୋଲି ଶତମୁଖା କରଇ ବିଚାର
ମାରିକରି ମରିବାର ଅଟେ ବଡ଼ ସାର ।
ବୋଇଲା ପର ପାଇଁ ଯାଇ ନାଶିଲି ସକଳ
ଜମ୍ବୁଦ୍ୱୀପ ରାଜା କେହି ଶତ୍ରୁ ନାହିଁ ମୋର ।

ଦଶଗ୍ରୀବ ବୋଲେ ମୁଁ ଅକାରଣେ ଗଲି
ପୁତ୍ର ନାତି ହରାଇ ମୁଁ ସମ୍ପତ୍ତି ହରାଇଲି ।
ଆପଣାର ଶତ୍ରୁ ନୁହେଁ ପରର ଉଗାରି
ତେଣୁକରି ମୋହର ମନରେ ବଡ଼ ଭାଳ ।
ନାତିମାନେ ବୋଲେ ତୁମ୍ଭେ ଶୁଣ ହେ ଠାକୁର
ଯୁଦ୍ଧକରି ମଲେ କ୍ଷତ୍ରୀ ଅଟେ ବଡ଼ ସାର ।
କ୍ଷତ୍ରୀ ପୁଅ ହୋଇ ଯେବେ ଅନ୍ୟେ ନାଶଯାଇ
ତାର ଜନ୍ମ ଶୋଚା ଜାଣ ନିଷ୍ଫଳ ଅଟଇ ।
ଜନ୍ମ ହେଲେ ମୃତ୍ୟୁ ହୁଏ ଏ ମର୍ତ୍ତ୍ୟ ମଣ୍ଡଳେ
ରଣକୁ ଭୟକଲେ କେ ରଖିବ ଭଲେ ।
ସବୁଚିନ୍ତା ଛାଡ଼ିଣ ମାଜଣା ଏବେ ହୁଅ
କେତେ କ୍ଷତ୍ରୀ ଅଟଇ ଯେ ଦଶରଥ ପୁଅ ।
ବୁଝିବା ପ୍ରଭାତୁ ତାର କେତେ ବଳ ପୁଣ
ଅଭୁଟ ବର ତୁମ୍ଭଙ୍କୁ ଦେଇଛି ପବନ ।
ତୁମ୍ଭେ ଥିଲେ କାଲି ପୁତ୍ରନାତି ଯେ ହୋଇବେ
ଏ କଥାକୁ ଚିନ୍ତା ହେ ନ କର ପ୍ରଭୁ ଏବେ ।
ଶୁଣିକରି ଶତମୁଖା ହରଷ ପୁଣ ହେଲା
ଦୁଇମନ୍ତ୍ରୀଙ୍କି ଯେ ଡକାଇ ଅଣାଇଲା ।
କୁଜାଣ ସୁଜାଣ ମନ୍ତ୍ରୀ ବେନି ଜଣ ଆଏ
ନୃପତି ଆଗରେ କର ଯୋଡ଼ିଣ ଜଣାଏ ।
ନୃପତି ବୋଇଲେ ତୁମ୍ଭେ ସୈନ୍ୟବଳ ସାଜ
କାଲି ପ୍ରଭାତରୁ ହୋ କରିବା ଆମ୍ଭେ ଯୁଦ୍ଧ ।
ସୈନ୍ୟବଳ ଘେନି ଆମ୍ଭେ ଗଡ଼ରେ ରହିଥିବ
ଅଗ୍ନି ନଦୀ ଡେଇଁଲେ ତା ସଙ୍ଗରେ ଯୁଝିବା ।
ରାଜା ଆଜ୍ଞା ପାଇ ମନ୍ତ୍ରୀ ବେଗେ ଚଳିଗଲେ
ଟମକଆ ଡକାଇ ଘୋଷଣା ପୁଣି ଦେଲେ ।
ହସ୍ତୀ ରଥୀ ଅଶ୍ୱ ଯେ ପଦାତି ବଳ ପୁଣ
ସାଜେଣି ଓଟମାନଙ୍କରେ ଉଜ ପୁଣ ।
ହସ୍ତୀ ଘୋଡ଼ା ସଜ କଲେ ଦୁଇ ମନ୍ତ୍ରୀ ମିଳି
ଭୁଣ୍ଡିର ଗହଳରେ ଯେ ହୋଇଲା ଚହଳି ।
ସମୁଦ୍ର ଗର୍ଜନ ପ୍ରାୟେ ଶୁଭୁଅଛି ଗୋଳ
ଯନ୍ତ୍ରାଯନ୍ତ୍ର ହୋଇ ସୈନ୍ୟ ଚାଲନ୍ତି ସକଳ ।
ତେତେବେଳେ ରଜନୀ ହୋଇଛି ବେନିଘଡ଼ି ।
ଶୀରବାଦ୍ୟ ଶବଦ ଯେସନେ ଘଡ଼ଘଡ଼ି ।
ହେନାପତିମାନେ ଯାଇ ଦର୍ଶନ ବେଗେ କଲେ
ରାଜା ଆଜ୍ଞାଦେଲେ ଚାରି ରହ ହେ ଦୁଆରେ

ଶୁଣି କରି ସେନାପତି ଚାରିଭାଗ ହେଲେ
ଚାରି ଦ୍ୱାରେ ଯାଇଁ କରି ବାଣ୍ଟିଣ ରହିଲେ ।
ଚାରିଭାଗ ହୋଇ ରଥୀ ରହିଲେ ଚାରିଦ୍ୱାରେ
ପଦାତି ବଳ ବାଣ୍ଟା ଚାରିଭାଗ ହେଲେ ।
ହାତୀ ଘୋଡ଼ା ସେନାପତି ହେଲେ ଚାରିଭାଗ
ଚାରି ଦ୍ୱାରେ ଜଗିଣ ରହିଲେ ଯାଇଁ ସର୍ବ ।
ସେଠାରୁ ରାଜନ ସେ ଉଠିକରି ଗଲା
ସିଂହଦ୍ୱାରେ ଯାଇଣ ପ୍ରବେଶ ବେଗେ ହେଲା ।
ଦେଖିଲେ ସୈନ୍ୟବଳ ସେଠାରେହେଲେଠୁଳ
ଦକ୍ଷିଣ ଦ୍ୱାରେ ଯାଇ ମିଳେ ମନ୍ତ୍ରୀପାଳ ।
ତହିଁରେ ସୈନ୍ୟ ଦେଖି ପଶ୍ଚିମ ଦ୍ୱାରେ ଗଲା
ଶଉଚରେ ଅମଳାଣ ବସନ ପିନ୍ଧିଲା ।
ଅଗ୍ନି ନଦୀ ପାଶରେ ବସିଲା ଶତେ ଶିର
ମଧ୍ୟମ ଅଙ୍ଗୁଷ୍ଠିରେ କୁଶବଟୁ ଭରି ।
ମାଣିକ୍ୟର ପିଢ଼ା ପରେ ଯାଇଣ ବସିଲା
ଆସନ ଶୁଦ୍ଧି କରି ଶରୀର ଶୁଦ୍ଧି କଲା ।
ନୈବେଦ୍ୟ ପଦାର୍ଥ ନେଇଣ କଲାକ ପୂଜା
ଅର୍ଘ୍ୟ ଦେଇ ଅଗ୍ନିଙ୍କ କହିଲେକ ରାଜା ।
ବୋଇଲା ଅଗ୍ନି ଦେବତା ଶୁଣନ୍ତ ମୋର ବଚନ
ଦଶ ପୁଣ ଉତ୍ସର୍ଗ ହେବ ତୁମ୍ଭେ ଜାଣ ।
ଏତେ କହିଣ ଘୃତ ଢାଳେ ନେଇ କରି
କୋଟିଏ କୁମ୍ଭ ଘୃତ ସନ୍ତୋଷେ ଦେଲେ ଭରି
ସର କୋଟିଏ କୁମ୍ଭୀକ୍ଷୀର ଯେ କୋଟିଏ
ଅରୁଆ ଚାଉଳ ଦେଲା ପଉଟି ଷାଠିଏ ।
ବସନ ଦେଲା ନେଇ କୋଟିଏକ ପୁଣ
ସତେ କି ହୁତାଶନ ଦହିବ ପୃଥ୍ୱୀ ଜାଣ ।
ପାଏ ପଡ଼ି ଶୋଇଲା ଯେ ଶତେଗ୍ରୀବ ପୁଣି
ଶତେବାର ଓଲଗି କହିଲାକ ଟାଣି ।
ଶତ୍ରୁମାରି ମୁହିଁ ଜୟ କରିବି ଯେ ପୁଣ
ଅନେକ ପ୍ରକାରେ ପୂଜା ମୁହିଁ ଦେବି ଜାଣ ।
ଅଗୁରୁ ଚନ୍ଦନ କାଠ ବହୁତ ଦେଲେ ନେଇ
ସନ୍ତୋଷେ ଅଗ୍ନି ପୁଣ ଜଳି ଯେ ଉଠଇ ।
ଦେଖିଣ ସନ୍ତୋଷ ପୁଣ ଦଶମୁଖା ହେଲା
ଚାରିପାଖେ ଅଗ୍ନିର ଶିଖା ଯେ ଉଠିଲା ।
ଲକ୍ଷ କୋଶ ଉଚ୍ଚେ ଅଗ୍ନି ହେଲା ପ୍ରବଳ
ଲାଗିଲା ହାବଳ ବାଣ କରେ ଯେହ୍ନେ ଗୋଳ
ଦାଉ ଦାଉ ଜଳ ଜଳ ରକ୍ତବର୍ଣ୍ଣ ଦିଶେ
ଜୀବଜନ୍ତୁ ପିବାକୁ ଯେ ଭସ୍ମ କଲା ଶେଷେ ।
ଉଡ଼ନ୍ତା ଜୀବମାନେ ଦୂର ହେଲେ ପୁଣ
ସତେ କି ହୁତାଶନ ଦହିବ ପୃଥ୍ୱୀ ଜାଣ ।
ଏତେ ବୋଲି ମେଲାଣି ମାଗେ ଶତଶିର
ସେଠାରୁ ବେଗେ ପୁଣି ଚଳିଲା ନିଜପୁର ।
ଆପଣାର ନବରେ ହେଲା ପରବେଶ
ମନ୍ତ୍ରୀଙ୍କ ଡାକିଣ ସେ କହିଲା ବିଶେଷ ।
ଚାରି କୋଟି ବାଦ୍ୟକର ଚାରି ଦ୍ୱାରେ ନିଅ
ଘୋର ଶବଦ ତୁମ୍ଭେ ବେଗ କରି ଭିଆଅ ।
ଶତ୍ରୁ ଶୁଣି ଚାଟକା ଯେ ହେଉ ତାର ମନ
ବିଚାରିବ ବହୁତ ଅଛନ୍ତି ଏବେ ସୈନ୍ୟ ।
ତାହା ଶୁଣି ମନ୍ତ୍ରୀ ବେନି ବେଗେ ଚଳିଗଲେ
ଚାରି ଦ୍ୱାରେ ଚାରି କୋଟି ବାଦ୍ୟ ରଖାଇଲେ
ବୋଇଲେ ଶବଦ ତୁମ୍ଭେ କର ଗୁରୁତର
ସୁରଗିରି ଚମକୁ ଚମକୁ ଶତ୍ରୁଘନ ଘର ।
ମନ୍ତ୍ରୀ ଦୁହେଁ କହିବାରୁ ବାଜିଲା ବାଜଣା
ସୁରଗିରି ଚମକିଣ ନବରେ ହେଲେ ବଣା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଭରତ ବିଜୟ କଲେକ ଶତଶିରି ।
ଦାସୀମାନେ ପହଣ୍ଡ ମଣାଇ ଘେନିଗଲେ
ଭିତର ପୁରେ ରାଜା ପ୍ରବେଶ ଯାଇଁ ହେଲେ ।
ରାଣୀହଂସମାନେ ଯେ ଦର୍ଶନ ବେଗେ କଲେ
କରଯୋଡ଼ି ଆଗରେ ଉଭାରି ରହିଲେ ।
କେହୁ ଧୂପକାଠି ଯେ ଧରିଣ ଆଳଟ
ପଙ୍ଖା ବିଞ୍ଚଣୀ କେହୁ ଧରିଣ ମୁରଚ୍ଛ ।
ଶ୍ୱେତ ଚାମର କେହୁ ଢାଳନ୍ତି ନିରନ୍ତରେ
ବୀଣା ତୁମ୍ବୁରୁ କେ ବଜାନ୍ତି ଉଚ୍ଚ ସ୍ୱରେ ।
ସୀତାର ନାଗେଶ୍ୱର ବଇଁଶୀ ମର୍ଦ୍ଦଳ
ଗାନ୍ଧାର ରାଗରେ ଗାୟନ କରେ ସ୍ୱର ।
ଅପସରୀଏ ନାଚନ୍ତି ତଳ ତଳ ପୁଣ
ଦୁଇ ପାଟରାଣୀ କୋଳେ ବସାଇ ରାଜନ ।
ଦୁଇଘଡ଼ି ପର୍ଯ୍ୟନ୍ତେ ନୃତ୍ୟରଙ୍ଗ କଲେ
ନୃତ୍ୟ ବନ୍ଦ କରି ରାଜା ମର୍ଦ୍ଦନ ହୋଇଲେ ।
ସୁବାସ ପାଣିରେ ରାଜା କଲେକ ଯେ ସ୍ନାନ
ଶରୀର ପୋଛି ପିନ୍ଧିଲେ ବସ୍ତ୍ର ଅମଳାନ ।

ତର୍ପଣ ସନ୍ଧ୍ୟା ସାରିଣ ପିତୃଙ୍କୁ ଦେଲେ ଜଳ
ଷଡ଼ରସେ ପୂଜାକଲେ ଦେବତା ସକଳ ।
ଷଡରସେ ଭୋଜନ ରାଜନ ପୁଣି କଲା
ଅଞ୍ଚୋବନ ସାରିଣ ପଲଙ୍କେ ବସିଲା ।
ମହାଦେଈମାନେ ବାଡ଼ୁଆ ନେଇ ଦେଲେ
କର୍ପୂର ଅଳାଇଚ ତା ସଙ୍ଗେ ଭୁଞ୍ଜିଲେ ।
ଆଲଟ ପଙ୍ଖା ଧରିଣ ବାଅନ୍ତି କାମିନୀ
ଚନ୍ଦନ କର୍ପୂର ଅଙ୍ଗରେଲଗାଇ ଦ୍ୟନ୍ତି ପୁଣି
ଗଙ୍ଗବାଣ ପଇଡ଼ି ନେଇଣ ଯୋଗାଇଲେ
ସ୍ୱାମୀଙ୍କର ମନକୁ ସନ୍ତୋଷ କରାଇଲେ ।
ବଡ଼ପାଟ ମହାଦେଈ ତା ନାମ କୋଶଳା
ଅଭୟ ଦେଶ ରାଜାର ଅଟେ ଦୁଲାଳ ପରା ।
କରଯୋଡ଼ି ଆଗରେ ସେହି ଯେ ଉଭା ହେଲା
କଶ୍ୟପ ଦୁହିତା ଅଟେ ପଦ୍ମାବତୀ ପରା ।
ସେହି ପାଟରାଣୀ ଯେ ଆସି ହେଲା ଛିଡ଼ା
ଦୁଇ ପାଟରାଣୀ ଯେ ଆଗରେ ହୋଇଲେ ଠିଆ
ବୋଇଲେ ରାଜନ ହେ ଅନ୍ୟାୟ ତୁମ୍ଭେ କଲ
ପର ବୋଲରେ ପଡ଼ି ବଂଶ ମରାଇଲ ।
ଏବେ ହେ ସନମାନ କରିବୁ ଆମ୍ଭେ ଯାଇ
ଶ୍ରୀରାମର ଭାଇକ କହିଦେବୁ ଲେଉଟାଇ ।
ଆଉ ଯୁଦ୍ଧ ତୁମ୍ଭେ ହେ ନ କର ନୃପତି
ଆମ୍ଭମାନଙ୍କୁ ଅନାଥ ନକର ଲଙ୍କପତି ।
ସମସ୍ତେ ମରିଲେ ଆଉ ଅଛନ୍ତି ବାକି ଶେଷ
ଆମ୍ଭେମାନେ କହୁଅଛୁଁ କ୍ଷମାକର ଦୋଷ ।
ଦନ୍ତରେ ତୃଣ ଧରି ଚରଣ ତଳେ ପଡ଼ି
ଉଠ ଉଠ ବୋଲଇ ଯେ ଶତମୁଖା ତୋଳି
ସ୍ୱାମୀପାଶେ ମହାଦେଈ ଆସି ହେଲେ ମେଳ
ଏକତ୍ର ହୋଇଣ ସଙ୍ଗେ ଗଲେ ସେ ସକଳ
ଅନେକ ପ୍ରକାରେ ତାଙ୍କୁ ବୁଝାଇ କହିଲେ
ପୁତ୍ର ନାତିମାନଙ୍କୁହେ ପାଶୋରିଲୁ ବୋଇଲେ
ତୁମ୍ଭେ ଥିବେ ସକଳ ଆମ୍ଭର ହେବ ଭଲ
ପାଟ ମହାଦେଈ ଏମନ୍ତ କହିଲେ ସ୍ୱାମୀର ।
ମହାଦେଈ ବଚନେ କହେ ଲଙ୍କପତି
ସୈନ୍ୟବଳ ସହିତେ ମୋ ମଲେ ପୁତ୍ରନାତି
ନ ମାରିଣ ଶତ୍ରୁକୁ ଯେବେ ନିଭନ ହୋଇବା
ରାଜାମାନଙ୍କର ମୁଖେ ନିନ୍ଦା ଯେ ପାଇବା ।
ଦୈତ୍ୟଙ୍କର କୁଳେ ମୁଁ ଯେ ହୋଇବି ନିଭନ
ଶତ୍ରୁଘ୍ନକୁ ଜିଣି ନପାରେ ଶତମୁଖା ପୁଣ ।
ଦେବତାଏ ମୋତେ ଯେ ନ ଡରିବେ ଆଉ
ଶତ୍ରୁକୁ ମାରିଲେ ଭଲ ବୋଲିବେଟି ସେହୁ ।
ଅଛୁଟ ଶରୀର ମୋର ପବନ ବଳେ ପରା
କେମନ୍ତେମାରିବ ମୋତେ ଦେଖିବାତାକୁଭଲା
ମୁଣ୍ଡ ତ କାଟିଲେ ମୋର ନୁହଇ ମରଣ
ଅଗ୍ନିରେ ପଶିଲେମୋତେ ନଦହେ ହୁତାସନ
ପାଣିରେ ବୁଡ଼ିଲେ ମୋର ନ ଭେଦଇ ଜଳ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନତୁଟେ ମୋର ବଳ
ପବନ ଦେବତା ମୋତେ ଉଡ଼ାଇ ନପାରଇ
ହୋମରେ ପଶିଲେ ମୋର ଶରୀର ଫୁଲଇ ।
ଦେବତାଏ ଶତ୍ରୁ ମୋର ନୁହନ୍ତି ଯେ ପୁଣ
ରାଜା ହୋଇ ସମ ମୋତେ କରିବେକ ରଣ
ପୁତ୍ରନାତି ସୈନ୍ୟବଳ ଏହାଙ୍କୁ ମାରିଛି
ଏକଥାକୁ ଚିନ୍ତା ତୁମ୍ଭେ ନକରରେ କିଛି ।
ଫଳଗଲା ବୋଲି ଚିନ୍ତା ନକର ଗୋ ତୁମ୍ଭେ
ମୂଳ ଥିଲେ କେତେ ଫଳ ଫଳିବଟି ଏବେ ।
କ୍ଷତ୍ରୀପୁତ୍ର ହୋଇ ଯେବେ ଯୁଦ୍ଧକୁ ନ ଡରଇ
ଅମର ସ୍ୱର୍ଗପୁରେ ଯାଇଣ ବସଇ ।
ଦେବତାଙ୍କୁ ସାଧୁ ବୋଲି ବୋଲନ୍ତିଦେବତା
ଜନ୍ମ ହେଲେ ମରଣ ତ ଅବଶ୍ୟ ହୁଅନ୍ତା ।
ଦେଖିବା ତାହାର ବଳ କେଉଁ ଧନୁର୍ଦ୍ଧର
କେତେ ଯୁଗ ମୋର ସଙ୍ଗେ କରିବ ସମର ।
ସ୍ଥଳରେ ଯୁଝିବା ପୁଣି ଯୁଝିବା ଜଳରେ
ଅଗ୍ନିରେ ଯୁଝିବା ପୁଣି ଯୁଝିବା ଶୂନ୍ୟରେ ।
ହୋମରେ ଯୁଝିବା ପୁଣି ଯୁଝିବା ପବନେ
ବ୍ରହ୍ମପୁରେ ଯୁଝିବା ବୁଲିବା ମନେ ମନେ ।
ତେବେ ମନମୋର ଯାଇ ସନ୍ତୋଷ ହୋଇବ
ଦଶରଥ ରାଜାପୁତ୍ର ମୋତେ କି ଜିଣିବ ।
ପୁରୁଷ ହୋଇଣ ମୁଁ ହୋଇଛି ଜନମ
ମାତା ମୋର ଦୈତ୍ୟ ଅଟେ ମୁଁ ଦୈତ୍ୟପୁଣ
ପିତା ମୋର ଋଷି ଅଟେ ମାତା ଅସୁରୁଣୀ
ତେଣୁ ଜନ୍ମିଲି ବ୍ରହ୍ମ ରାକ୍ଷସ ବଳେ ପୁଣି
ବସ୍ତୁ ଲକ୍ଷ ଗଣ୍ଡାଯୁଗ ମୁହିଁ ଭୋଗ କଲି
ସପ୍ତଗଣ୍ଡା ଯୁଗଯାଏ ଦେବତା ରୁନ୍ଧିଲି ।

ତିନ ଯୁଗ ପର୍ଯ୍ୟନ୍ତ ଜମ୍ବୁଦ୍ୱୀପ ମୁଁ ବୁଲିଲି
ସାତଲକ୍ଷ କନ୍ୟା ମୁଁ ଯେ ଜିଣି କରି ଆଣିଲି ।
ସପତ ଦ୍ୱୀପରେ ମୁଁ ରାଜାଙ୍କୁ ଜିଣିଲି
ଦୈତ୍ୟବଳ ଜିଣିଲି ମୁଁ ସାତଲକ୍ଷ ବୋଲି ।
ଦୈତ୍ୟଙ୍କର ସାତଲକ୍ଷ ଦୁହିତା ଆଣିଲି
ଆପଣାର ନଗ୍ରେ ମୁଁ ତାହାଙ୍କୁ ବନ୍ଦୀ କଲି ।
ସମସ୍ତେ ଡରନ୍ତି ଯେ ମୋ ସଙ୍ଗେ ସମର
ମୁହିଁ ଜିଣିଲି ବୋଲି କାହାକୁ ନାହିଁ ଡର ।
ଏ ଶୁର ବାଳକ ତ କେତେକ ବୟସ
ମୋର ସଙ୍ଗେ ଯୁଝିବାକୁ କରୁଛି ସାହସ ।
ରହ ପାହିଲେ ତାର ଦେଖିବି ମୁଁ ରଣ
କ୍ଷତ୍ରୀ ହୋଇ ଯେବେ ମୁଁ ନ କାଟିବି ପ୍ରାଣ ।
ନନ୍ଦନ ହେଲେ ମୋର ସବୁ ବଳବୁଦ୍ଧି
ନିରୋଧ ନ କର ସକଳ ନାରୀ ଗୁଣନିଧି ।
ଏତେ କହି ରାଜନ ଶୟନ ବେଗେ କଲା
ଏଥୁ ଅନନ୍ତରେ କଥା ଶୁଣ ଗୋ ଗଉରୀ ।
ଶତ୍ରୁଘ୍ନ ବୀର ଯେ ଅଯୋଧ୍ୟାରୁ ଗଲା
ଅଲଙ୍କା ଗଡରେ ଯାଇ ପ୍ରବେଶ ହୋଇଲା ।
ସଙ୍ଗରେ ନବକୋଟି ରଥୀ ତାର ଛନ୍ତି
କୁବଳୟା ଗିରିରେ ପ୍ରବେଶ ହେଲା ଯାନ୍ତି ।
ସେ ପର୍ବତ ଉପରେ ସମସ୍ତେ କଲେ ଠଣା
ରହି ସାତ ଘଡ଼ିରେ ଭୋଜନ କଲେ କନା ।
ଶତେକ ଠଣା ଜଗି ରହିଲେ ଅନିଦ୍ରା
ଆଉ ସମସ୍ତେ ତହିଁରେ ଗଲେକ ମହାନିଦ୍ରା ।
ବାଦ୍ୟ ଗୋଳ ଶୁଭିବାରୁ ଭାଙ୍ଗିଲା ନିଦ୍ରା ପୁଣ
ବଜାରେ ସଜ ଯେ ହେଲାଣି ରାବଣ ।
ରଥମାନଙ୍କ ଉପରେ ରଥୀ ଯେ ବସିଲେ
ଯେ ଯାହା ଆୟୁଧମାନ ବାଛୁଣ ଥୋଇଲେ ।
ଧନୁମାନ ଧରିଣ ନାରାଚ କଲେ ସଜ
ଯେ ଯାହା ସଜରେ ସଜ କଲେ ଯେ ଆୟୁଧ
ଶତ୍ରୁଘ୍ନ ବୀର ଯେ ମୁଖ ପଖାଳିଲେ
ଷୋଳଗୋଟା ଅଶ୍ୱ ନେଇ ରଥରେ ଯୋଚିଲେ
ଜନନୀର ଚରଣେ ଓଳଗି ପୁଣ ଯାଇ
ବୋଇଲେ ମାତା ଗୋ ସୁଦୟା କର ତୁହି ।
ଅଯୋଧ୍ୟା ପୁରକୁ ଯେ ଅଇଲିଁ ଛାଡ଼ି
ଲେଙ୍କନିନ୍ଦା ନୋହିବା ମାୟା ସଂସାରେ ପଡ଼ି

ଶ୍ରୀରାମ ଲକ୍ଷ୍ମଣ ଯେ ଲଙ୍କାରେ ଯୁଦ୍ଧ କଲେ
ଦଶଗ୍ରୀବ ସମରେ ଯୁଝନ୍ତି ସେହୁ ଭଲେ ।
ମୋତେ ନିନ୍ଦା ନ କରିବେ ଶ୍ରୀରାମ ଠାକୁର
ଏମନ୍ତରେ ବର ମୋତେ ଦିଅ ଧିକ୍କାର ।
ଶୁଣିଣ ମାତା ତାର ସନ୍ତୋଷ ହୋଇଲା
ଶତ୍ରୁକୁ ମାରି ଉଭା ହୁଅନ୍ତେ ବୋଇଲା ।
ତିନ ପୁରରେ ଯଶ ମିଳୁ ତୋତେ ପୁଣ
ଶ୍ରୀରାମ ଲକ୍ଷ୍ମଣରେ କରନ୍ତୁ ସନମାନ ।
ପଞ୍ଚଦିନେ ଶତମୁଖା ହାତରେ ମରଣ
ଏତେବୋଲି ଲୀଳାବତୀ ବୋଇଲେ ବଚନ ।
ନିତ୍ୟ କର୍ମ ସାରିଣ ରଥରେ ବିଜେ କଲେ
ପୁରୁଷ ବେଶ ଗୋଟି ତତକ୍ଷଣେ ହୋଇଲେ ।
ତୋରା ହୋଇଣ ବେଶ ଧଇଲେ ଧନୁ ହୋଣ
ରଥର ଉପରେ ଯାଇ ବସିଲେ ଶତ୍ରୁଘ୍ନ ।
ଏଥୁ ଅନନ୍ତରେ ଯେ ଶର୍ବରୀ ଶେଷ ପୁଣ
ଶୁଣ ଗୋ ପାର୍ବତୀ ଯେ କହନ୍ତି ତ୍ରିଲୋଚନ
ନବକୋଟି ଶଙ୍ଖ ବାଜେ ନବକୋଟି ରଥୀ
ତିନପୁରେ ଶବଦ ଶୁଭିଲା ପୁଣ ଘୋଟି ।
ଆଲୋକ ଦିଶିବାରୁ ଗୁହେଁ ଶତ୍ରୁଘ୍ନ
ଦେଖିଲା ଗୃହ ପାଶରେ ଘୋଟିଛି ହୁତାଶନ ।
ବିଚାରିଲା କମ୍ପିତ ମାୟା ଅଛି କରି
ଅଗ୍ନିଙ୍କର ଶିଖାତ ପ୍ରଳୟ ପ୍ରାୟ ହେରି ।
ଉପରକୁ ଦଶ ଯୁଣ ତଳକୁ ଯୋଡ଼ା କେତେ
ଭଲ ଗଡ଼ କରିଅଛି ଶତମୁଖା ଏଥେ ।
ନୋହିଲେ କି ଅସୁର ହୁଅଇ ବଳବନ୍ତ
ଏତେ କହି ବୀର ନିଶରେ ଦେଲେ ହସ୍ତ ।
ବୋଇଲେ ଶତମୁଖା କେତେ ଅଛି ଠାଣ
ରଣ କଲେ ଜାଣିବା ତା ପାରିବାର ପଣ ।
ଏତେ କହି ଅଗ୍ନିକି ସ୍ତୁତି କରେ କନା
ଜୟ ଜୟ ଅନଳ ଦେବତା ତୋର ବାନା ।
ଦାବାନଳ ବୋଲି ବିଧାତା ସୃଜିଲା
ତେଣୁକରି ହୁତାଶନ ତୋରନାମ ହେଲା ।
ତୁହି ଜନ୍ମ ହେଲା ବୋଲି ଦେବ ମନୁଷ୍ୟଜାତ ,
ତୋରମୁଖେ ହବି ଦେଲେ ଦେବଙ୍କୁ ପ୍ରାପତ
ତେତିଶ କୋଟି ଦେବଙ୍କର ଅଟୁ ତୁ ଯେପ୍ରାଣ
ତେଣୁକରି ତୋତେ ଯେ ବୋଲନ୍ତି ବଡ଼ଜଣ ।

କାଷ୍ଠ ଦ୍ରବ୍ୟ ତୁମ୍ଭ ଯେ ପାକ କରୁ ଯେଣୁ
ପାବକେଶ୍ୱର ଦେବତା ବୋଲାଉ ତୁମ୍ଭେ ତେଣୁ ।
ତୋହର ସକାଶେ ନର ରାକ୍ଷସ ଅଟେ ବଡ଼
ଆହାର ବିନା ଶରୀରକୁ କରୁଅଛୁ ଗାଢ଼ ।
ସମସ୍ତଙ୍କ ଗର୍ଭରେ ତୁମ୍ଭ କରିଣ ବିଶ୍ରାମ
ଆହାରକୁ ଭସ୍ମ କରୁ ଜୀବଙ୍କର ପୁଣ ।
ତେଣୁକରି ଜୀଉଙ୍କର ଅଟୁ ତୁ କରତା
ତୋତେ ସେବାକରି ନର ଅସୁର ଦେବତା ।
ଜଳର ଶୋଷକ ନାମ ତୋହର ଅଟଇ
ତେଣୁକରି ତୋତେ ମୁହିଁ ମନରେ ଭାବଇ ।
ସକଳ ଦେବତା ଆସି ମୋତେ ବରଦେଲେ
ଶତେମୁଖା ରାବଣକୁ ମାରରେ ବୋଇଲେ
କେମନ୍ତେ ମାରିବି ମୁହିଁ ଏଡ଼େ ଦୈତ୍ୟବୀର
ତୋହର ତେଜତ ଯାଇ ଲାଗେ ଆକାଶର ।
ତୁ ଯେବେ ଅନମିତେ ହେବୁ ତେଜ ମୂର୍ତ୍ତି
ତେବେ ମୁଁ ଅସୁରକୁ ମାରିବି ନିଶ୍ଚିନ୍ତି ।
କରୁଛୁ ବିନତି ତୋତେ ତୁଅ ଦେବ ସାହା
ଏତେ ବୋଲି ସ୍ତୁତି କଲେ ସୁମିତ୍ରାର ନାହା
ଶତ୍ରୁଘନ ସ୍ତୁତି ଶୁଣି ଅଗ୍ନି ହେଲେ ତୋଷ
ଦିବ୍ୟ ରୂପ ଧରି ସେ ହୋଇଲେ ପ୍ରବେଶ ।
ଅଗ୍ନି ଦେବତାଙ୍କୁ ଦେଖି ଶ୍ରୀରାମର ଭାଇ
ନମସ୍କାର କଲେ ଯେ ତାହାଙ୍କୁ ପୁଣ ଚାହିଁ ।
ବୋଇଲେ ମୁଁ କେମନ୍ତେ ମାରିବି ଅସୁର
ବୈଶ୍ୱାନର ବୋଲେ ଶୁଣ ଶତ୍ରୁଘନ ବୀର ।
ତୋହର ସ୍ତୁତିରେ ମୁଁ ଯେ ହେଇଲିଁ ବଶ
ଆକାଶରେ ଲାଗୁଥିବ ମୋହର ଯେ ତାପ ।
ତୋତେ ମୁଁ ଶୀତଳ ଯେ ହୋଇବି ବୀରବର
ନବକୋଟି ରଥୀ ଘେନ ତୁମ୍ଭ ବେଗେଚଳ ।
ଏତେ କହିଣ ଅଗ୍ନି ସେଠାରୁ ଚଳିଗଲେ
ଶୁଣିଣ ଶତ୍ରୁଘନ ଯେ ସନ୍ତୋଷ ହୋଇଲେ ।
ମାତାଳିକୁବୋଇଲେ ରଥ ଦେବୁଟିବେଗେବାହି
ରଥିଙ୍କିବୋଇଲେତୁମ୍ଭେ ଚଳରେବେଗହୋଇ
ଅଗ୍ନିକି ଭୟ ତୁମ୍ଭେ ନ କର କେହୁ ପୁଣ
ଏତେ ବୋଲି ଧନୁଶର ଧରିଲେ କରେଣ ।
ଦେଶର ଗୋଟି ବାହୁ ବାନ୍ଧିଲେ ବେଗେ ପୁଣ
ଅଗ୍ନିଙ୍କର ଶିଖା ଯେ ଶୀତଳ ହୋଇଣ ।
ଜନନୀ ବାଗ ଧରି ଚଳାଲେ ବେଗେ ରଥ
ତାର ପଛେ ନବକୋଟି ଚଳନ୍ତି ତୁରିତ ।
ଅଗ୍ନି ନଦୀ ଡେଇଁଣ ସକଳ ରଥୀ ପୁଣ
ପ୍ରବେଶ ହୋଇଲେ ଯାଇଁ ସିଂହ ଦୁଆରେଣ ।
ଦେଖିଲେ ସୈନ୍ୟବଳ ଅଛନ୍ତି ବହୁତାୟ
ବେଢିଣ ରଥୀମାନେ ଧନୁ ଯେ ଧରିହସ୍ତ ।
ନବକୋଟି ଶଙ୍ଖ ଯେ ଶବଦ ପୁଣ ତାଡ଼ି
ମେରୁଗିରି ଚମକେ ଚମକେ ତାର ଗଡ଼ ।
ଶୁଣି କରି ରାବଣ ଯେ ହେଲା ଚମତ୍କାର
ବୋଲେ ଅଗ୍ନି ନଦୀ ଡେଇଁଲା ଶତ୍ରୁଘନ ବୀର
ଅଗ୍ନି ନଦୀ ଡେଇଁଣ ଆସିଲା ଶତ୍ରୁ ଯେବେ
ଯୁଦ୍ଧ କରିବତ ନିଶ୍ଚୟ ସଦଭାବେ ।
ଏହାରୁ ଉଠି ରାଜା ମୁଖ ପ୍ରକ୍ଷାଳିଲା
ବେନି ମନ୍ତ୍ରୀଙ୍କି ସେ ଡକାଇ ଅଣାଇଲା ।
ସୁଜାଣ କୁଜାଣ ମନ୍ତ୍ରୀ ବେଗେ ଯେ ଅଇଲେ
ରାଜାଙ୍କୁ ଯାଇଣ ସେ ଦରଶନ କଲେ ।
ରାଜନ ବୋଇଲେ ମନ୍ତ୍ରୀଯାଅ ତୁମ୍ଭେ ବେଗେ
ବିମାନ ସଜକରି ଆଣ ମୋର ଆଗେ ।
ଅଭୁଟ ବିମାନ ମୋର ସଜ କରି ଆଣ
ଶତ୍ରୁର ଆଗକୁ ମୁଁ ଯିବି ଏହିକ୍ଷଣ ।
ରାଜାଠାରୁ ଶୁଣି ମନ୍ତ୍ରୀ ବେଗେ ଚଳିଗଲେ
ଅଭୁଟ ବିମାନ ବେଗେ ସାଜିଣ ଆଣିଲେ ।
ନୃପତି ଗୁମୁରେ ନେଇ ରଥ ବେଗେ କଲେ
ରଥ ଦେଖି ଶତେମୁଖା ହରଷ ହୋଇଲେ ।
ଶତେକ ଧନୁ ନେଇ ଧରେ ରାଜା କର
ନାରାଚ ମାନ ତୂଣରେ ରଖେ ନୃପବର ।
ବୀରବେଶ ଗୋଟିଏ ହେଲା ସେହି ଜାଣ
ଶତେକ ମୁଣ୍ଡରେ ଯେ ମୁକୁଟ ବାନ୍ଧେ ପୁଣ
ସୁନାଖଡ଼ୁ ବୀରବଳି ବାହୁଟି ହସ୍ତେ କଣ୍ଠି
ଚନ୍ଦ୍ରର ଫାଶିଆ ମାନ କର୍ଣ୍ଣରେ ଶୋଭିବନ ।
ଝଲ ଝଲ ଝଲକା ମାଣିକ୍ୟ ହୀରାମଣି
ଦୁଇଶତ କର୍ଣ୍ଣରେ ଯେ ହୋଇଛି ମଣ୍ଡଣି ।
ଗଳାରେ ଗୁପସରି ପଦକ ବ୍ୟାଘ୍ର ନଖ ।
ଅଣ୍ଟାରେ ସୁବର୍ଣ୍ଣ ସୁତା ଦିଶଇ ଅଳଗା ତ ।
ଦୁଇ ଚରଣରେ ତ ପାହୁଡ଼ ନୂପୁର
ସୁନା ସାଞ୍ଜି ଗୋଟିଏ ତ ଶରୀରେ ତାହାର ।

ଅମଳାଣ ବସ୍ତ୍ର ପିନ୍ଧି ଦଶଇ ସେ ଶୋଭା
ପଚମ ଛନ୍ଦରେ ସେ ଦଶଇ ମହାଶୋଭା ।
ନବଗୁଣ ପଇତା ତା ହୃଦରେ ପୁଣ ଲୁଳେ
ସୁବର୍ଣ୍ଣ ପର୍ବତ ପ୍ରାୟ ଦଶେ ବୈଡୂର୍ଯ୍ୟରେ ।
ରଥର ଉପରେ ବୀର ଯାଇଣ ବସିଲା
ଲକ୍ଷେକ ଅଶ୍ୱ ନେଇଣ ରଥରେ ଯୋଚିଲା ।
ସୁଜାଣ କୁଜାଣ ମନ୍ତ୍ରୀ ବସିଲେ ଯାଇଁ ରଥେ
ବାଗ ଦଉଡ଼ି ସେ ଯେ ଧଇଲେ ବେନିହସ୍ତେ
କୋରଡ଼ା ଉଞ୍ଚାଇଣ ଅଶ୍ୱକୁ ଗୃଳଦେଲେ
ନଗ୍ରରୁ ରଥ ନେଇ ବାହାରେ ଛଡ଼ାଇଲେ ।
ଉତ୍ତରଗଡ଼ ଦ୍ୱାରେ ରଥ କଲେ ପରବେଶ
ଦେଖିଲା ଶତ୍ରୁଘନ ବୀର ବସିଅଛି ରଥ ।
ଦେଖିଣ ଶତେମୁଖା ମନରେ ହରଷ
ଶରେ ଧନୁରେ ନାରାଚ ପୂରାଏ ବଶେଷ ।
ଲକ୍ଷେକ ନାରାଚ ଆଣି ଗୁଣରେ ବସାଇଲା
ଛାଡ଼ନ୍ତେ ମେଦନୀ ସେ ଅନ୍ଧକାର ହେଲା ।
କଶ୍ୟପର ନନ୍ଦନ ଲୁଚିଲେ ତାର ତେଜେ
ଯେସନେକ ଯାମିନୀ ଘୋଟଇ ଗୃହବରେ ।
ତାହାଦେଖି ଶତ୍ରୁଘନ ମନେ ବଚାରିଲେ
ଅନେକ ଶର ରାବଣ ଆଧ୍ୱାନ ଯେ କରେ ।
ବାବଲ ବଜ୍ରଶର ପରାଏ ଏବେ ସୃଷ୍ଟି
ଏହା ଦେଖି ଶତ୍ରୁଘନ ଏକଶର ଯୋଚି ।
ଗୁଣରେ ବସାଇ ଶର ବେଗେ ଛାଡ଼ି ଦେଲେ
ଏକାଶରେ ଲକ୍ଷେଶର କାଟି ପକାଇଲେ ।
ପୁଣିହିଁ ସତେଗ୍ରୀବ କୋଟିଏ ଶରମାର
ବଜ୍ରଶରେ ଶତ୍ରୁଘନ ସେ ଶର ନିବାର ।
ଘଡ଼ଘଡ଼ ଚଡ଼ଚଡ଼ ଶରମାରେ ଶତ୍ରୁଘନ
ଶବଦ ଶୁଭନ୍ତେ ସର୍ବେହେଲେ ମହାମାନ ।
ସମସ୍ତଙ୍କ ହସ୍ତରୁ ଖସିଲା ଧନୁ ତୂଣ
ଉପରକୁ ନ ଚାହିଁଣ ତଳକୁ ବଦନ ।
ଶତେଗ୍ରୀବ ତହିଁକି ବ୍ରହ୍ମଶର କଲା
ଘଡ଼ଘଡ଼ ବଜ୍ରସୁଚି ଚଡ଼କ ନିବାରିଲା ।
ତାହା ଦେଖି ବାବଲ ଶର କଲା ବୀରମଣି
ଅସୁରଶରେ ତାହା ଦଶଗ୍ରୀବ ହାଣି ।
ତକ୍ଷଣ ନାରାଚେକ ପେଶିଲେ ରାମ ଭାଇ
ଦୁଇଶତ ହସ୍ତ ତାର ଛେଦଣ ପକାଇ ।
ସେ ହସ୍ତ ଯାକ ତାର ତଳରେ ପଡ଼ିଲା
ନୂତନ ହସ୍ତ ତାର ବେଗେ କଅଁଳିଲା ।
ଦେଖିଣ ବଜ୍ରଶର ଶତ୍ରୁଘନ ପେଷି
ପୁଣି ବେନି ଶତ କର ପକାଇଲେ ନାଶି ।
ପୁଣି ସେ କରମାନ କଅଁଳେ ବେଗ ହୋଇ
ଧନୁଶର ଶତେଗ୍ରୀବ କରରେ ଧରଇ ।
ପୁଣି ଅଗ୍ନି ଶରରେ ପୋଡ଼ିଲେ ବେଗେ ବୀର
ତଳେ ପଡ଼ନ୍ତେ କର କଅଁଳେ ତାହାର ।
ପୁଣି ମନଭେଦ ଶର ମାରନ୍ତେକ ଟାଣି
କ୍ଷଣମାତ୍ରେ ପୁଣି କଅଁଳେ ହସ୍ତ ପାଣି ।
ଏହି ପ୍ରକାରେ ଛେଦେ ଏକୋଇଶ ଥର
ତଳେ ପଡ଼ନ୍ତେ ହସ୍ତ କଅଁଳେ ତାହାର ।
ଦେଖିଣ ବୀରମଣି ତୀକ୍ଷ୍ଣଶର ମାର
ଦୁଇ ଚରଣ ତାର କାଟେ ବେଗ କରି ।
ଚରଣ କାଟିଲେ ତାର ଲାଗଇ ତୁରିତ
ବତିଶ ଥର କାଟିଲେ ଦଶରଥ ସୁତ ।
ଚରଣ କାଟନ୍ତେ ସନ୍ଧି ଲାଗିଲା ତାହାର
ଭୁଜବାଣ ପେଷିଲେକ ସୁମିତ୍ରା କୁମର ।
ଶତେବାଣ ଦେଖିଣ ମାଳ ବାଣ ପେଶି
ଦୁଇବାଣ ଯାଇଣ ହେଲେ ଭେଟାଭେଟି ।
ପ୍ରହରେ ପରଯନ୍ତେ ସଂଗ୍ରାମ ସେହୁ କଲେ
ଧନମାନ ହୋଇ ଯେଯାହା ତୂଣୀକୁ ଗଲେ ।
ପୁଣିହିଁ ମହାକାଳ ପେଶେ ଶତ୍ରୁଘନ
ଶତେଗ୍ରୀବ ପେଶିଲା କାଳଶର ପୁଣ ।
ଦୁଇଶର ଯାଇଣ ହେଲେ ଭେଟାଭେଟି
ଅନ୍ଧାରମୟ ଦିଶିଲା ପୁଣ ନବ ସୃଷ୍ଟି ।
ଦେଖିଣ ଦେବତାଏ ଶରକୁ ସ୍ତୁତି କଲେ
ଜୟ ଜୟ ମହାକାଳ ସୃଷ୍ଟି ରଖ ଭଲେ ।
କାଳ ମହାକାଳ ଯେ ଅଟ ଦୁଇଜଣ
ସ୍ୱର୍ଗମର୍ତ୍ତ୍ୟ ପାତାଳେ ତୁମ୍ଭଙ୍କୁ ନାହିଁ ଆନ ।
ତୁମ୍ଭର ରାଗକୁ ନ ସହେ ମେଦନୀ
ଅକାରଣେ ସୃଷ୍ଟି ନାଶ ହୋଇଲାକ ପୁଣି ।
ଏତେ କହି ଦେବେ ଯେ ସ୍ତୁତି ପୁଣ କଲେ
କାଳ ମହାକାଳ ନିବର୍ତ୍ତି ପୁଣ ହେଲେ ।
ଫେରିଣ ଯେଯାହା ତୂଣୀରେ ରହିଲେକ ପୁଣ
ଶତେ ମୁଖା ରାବଣ ଛାଡ଼ନ୍ତେ ଶରମାନ ।

କୋଟି କୋଟି ତୀକ୍ଷ୍ଣଶର ବିନ୍ଧନ୍ତି ଲକ୍ଷ ଲକ୍ଷ
ନେତ୍ର ପିଚ୍ଛୁଡ଼ିବାକୁ ନୋହିଲ ପୁଣି ସଖ୍ୟ ।
ଦିନ ଦିନ କରିଣ ଛେଦେ ରାମ ଭାଇ
ଶୂନ୍ୟରେ ଗୁପ୍ତାପତି ଅଦୃଶ୍ୟ ପୁଣ ହୋଇ ।
ଏମନ୍ତେ ରଜନୀ ଯେ ହେଲ ଆସି ପୁଣ
ମହାଘୋର ଯୁଦ୍ଧ ଯେ କଲେକ ଝଣଝଣ ।
ନାଗଜଙ୍କର ତେଜ ଯେ ଦିଶଇ ଆଲୋଳ
ଶରେଶର ଆତଯାତ ହୁଅନ୍ତି ଦୁଇକୂଳ ।
ବିଜୁଳିର ପ୍ରାୟ ଯେ ଦିଶେ ଝଟଝଟ
ଦୁଇଜଣ ଯୁଦ୍ଧ କଲେ ବଡ଼ ସେ ମୁରାଠ ।
ଶତ୍ରୁଘନ ଶର ଯେ ରାବଣ ଛେଦଇ
ଶତେମୁଖା ଶରକୁ ରାମ ଭାଇ ନିବାରଇ ।
ରଜନୀ ଶେଷରେ ପୁଣି ଦିବସ ହୋଇଲା
ଅନେକ ଶର ତହିଁ ରାବଣ ବିନ୍ଧିଲା ।
ଦିନ ଦିନ କରିଣ ଛେଦେ ଶତ୍ରୁଘନ
ଶତ୍ରୁଘ୍ନର ଶରଛେଦେ ଶତେମୁଖ ପୁଣ ।
ପୁଣ ସେ ରଜନୀର କରନ୍ତି ସମର
କ୍ଷଣେହେ ବିଶ୍ରାମ ନାହିଁ ଦୁଇ ଜଣଙ୍କର ।
ରଜନୀ ପାହିଣ ଯେ ହୋଇଲା ଦିବସ
ଦୁଇରାତ୍ର ଦୁଇ ଯେ ଦିବସ ହେଲା ଶେଷ ।
ପୁତ୍ର ନାତି ତାର ଯେ ଦେଖନ୍ତି ସମର
ସେନାପତି ରଥୀ ଯେ ରହିଥିଲେ ତାର ।
ପଦାତି ବଳ ପୁଣି ଚାରି ଦ୍ୱାରେ ଥାଇ
ବିହରନ୍ତି ବଡ଼ ଯୋଦ୍ଧା ଏହି ରାମ ଭାଇ ।
ଏଥୁଅନନ୍ତରେ ଶୁଣ ଗଉରୀ ଗୋ ପୁଣ
ରାବଣ ଚାରି ପୁତ୍ର ଅଛନ୍ତି ଯେ ଜାଣ ।
ରଣଜିତ କଳାଙ୍ଗଜିତ ଶତ୍ରୁଜିତ ପୁଣ
ନାଗଜିତକୁ ମିଶି ଅଟନ୍ତି ଚାରିଜଣ ।
କାହାର ଏକ ମୁଖ କାହାର ଅଟେ ଚାରି
ନବ ମୁଖ ଜ୍ୟେଷ୍ଠ ପୁତ୍ର ଅଟଇ ତାହାର ।
ଇନ୍ଦ୍ରକୁ ଜିଣିଣ ସେହୁ ହେମରଥ ନେଲା
ଶୀତଳ ରଥରେ ସବୁଦିନ ବିଜେ କଲା ।
ସେ ରଥରେ ଚଢ଼ି କରି ଆସିଛି ରଣକୁ
ନବ ହସ୍ତେ ଧନୁ ଯେ ଧରିଛି ମାରିବାକୁ ।
ଆଉ ନବ ହସ୍ତରେ ଗୁଣ ଟଙ୍କାର କରେ
ଲକ୍ଷେ ଶର ସୁମରି ବିନ୍ଧେ ପ୍ରଥମରେ ।

ଲକ୍ଷେ ରଥୀ ଟଳି ଯେ ପଡ଼ିଲେ ଶତ୍ରୁଘନର
ଶତ୍ରୁଘନ ଦେଖି ଯେ ବିଚାରେ ମନର ।
ବିଷମ ସମର ଏବେ କରିବ ଶତେମୁଖା
ସାତଗୋଟି ସେନାପତି ଏହାର ସଙ୍ଗେ ସଖା
ଏତେ ବିଚାରିଣ ଲାଗିଲେ ସେନା ଯୂଥ
ରଥୀଙ୍କ ସଙ୍ଗରେ ଯୁଦ୍ଧକଲେ ସେ ଅନେକ ।
ଦୁଇବଳ ସମର ହେଲା ବଡ଼ ଟାଣ
ଶତ୍ରୁଘ୍ନ ଦେଖେ କୋଟିଏ ରଥୀ ମଲେ ପୁଣ ।
ଦେଖନ୍ତି ରଥୀମାନେ ଶର ବିନ୍ଧେ ଟାଣି
ରାବଣର ଷଡ଼ କୋଟି ସେନା ମଲେ ପୁଣି ।
ପଦ୍ମେ ପଦାତି ମଲେ ରଥୀଙ୍କ ଯୁଦ୍ଧରେ
ରକ୍ତନଦୀ ଗୋଟିଏ ବହିଲା ରଣ ମଧ୍ୟରେ ।
ମାଳ ମାଳ କବନ୍ଧ ଯେ ନାଚଲେ ତହିଁରେ
ଦୁଇଗୁଣ ଓସାରରେ ରକ୍ତ ନଦୀ ପୂରେ ।
ବସ୍ତ୍ରାଳଗ ଦାଣ୍ଡ ଯେ ଗଡ଼ ଅଟେ ତାର
ଦାଣ୍ଡମାନଙ୍କରେ ରକ୍ତ ହୋଇଲା ବାହାର ।
ପଳାଇଲେ ପଦାତି ଯେ ନ ରହିଲେ କେହି
ଚାରି ପୁତ୍ର ତାର ଯେ ଯୁଝିଲେ ନଠାଇ ।
ଦେଖିଣ ଶତ୍ରୁଘନ ବିନ୍ଧେ ବଜ୍ରଶର
ଚାରିମୁଣ୍ଡା ଖାର ଯେ ପଡ଼ିଲା ଧରଣୀର ।
ଦେଖିଣ ସେ ତିନି ଭାଇ ବାର ନାତି ପୁଣ
ଶତ୍ରୁଘନ ସଙ୍ଗରେ ସେ ଆସି କଲେ ରଣ ।
ସାତ ଗୋଟି ସେନାପତି ଯେଶତ୍ରୁଘନରଥିଲେ
ଶତେଗ୍ରୀବ ସଙ୍ଗରେ ସେ ଯାଇଣ ଲାଗିଲେ ।
ସାତଗୋଟି ରଥୀ ଯେ ମାରନ୍ତି ଶରପୁଣ
ଏକାକେ ଛେଦେ ଶତେମୁଖା ଯେ ରାବଣ ।
ଦିନ ଯାଇ ଯାମିନୀ ହୋଇଲା ଦୁଇଘଡ଼ି
ଶତ୍ରୁଘନ ସଙ୍ଗରେ ପୁତ୍ର ନାତି ବେଢ଼ି ।
ଦେଖିଣ ଶତ୍ରୁଘନ ମନରେ କ୍ରୋଧହେଲା
ବାରଗୋଟି ବଜ୍ରଶର ଧନୁରେ ଯୋଗିଲା ।
ମନ୍ତ୍ରପଢ଼ି ଶରକୁ ଛାଡ଼ିଲା ବେଗେ ଗୁଡ଼ି
ଉଡ଼ି ଦେଇ ଶର ଯେ ଅଇଲେ ବେଗ କରି ।
ବାର ନାତିଙ୍କର ଶିର ପକାଏ ବେଗେଛେଦି
ଖଣ୍ଡ ଖଣ୍ଡ ହୋଇଣ ଧରଣୀରେ ଭେଦି ।
ଶର ଲେଉଟିଣ ସମୁଦ୍ର ଗଲେ ପୁଣ
ସ୍ନାନକରି ତୂଣୀରେ ସମାଇଲେ ଜାଣ ।

ସେତେବେଳେ ରଜନୀ ହେଲା ସାତଘଡ଼ି
ଶରଙ୍କର ଆଘାତ ଶୁଭେ ଘଡ଼ି ଘଡ଼ି ।
ପୁଣ ସେ ବାଚିଲ ଶର ଶତ୍ରୁଘ୍ନ ମାରି
ତିନମୁଖା ପୁତ୍ରକୁ ତାର ପକାଏ ସଂହାରି ।
ଆଉଥରେ ପାଶୁପତ କାଢ଼ିଣ ଯୋଡିଲେ
ବଙ୍ଗବୋଲି ଯେଉଁ ପୁତ୍ର ତାକୁ ନାଶକଲେ ।
ପାଞ୍ଚଗୋଟି ମୁଣ୍ଡ ଯେ ଅଟଇ ତାହାର
ଛିଡ଼ି କରି ଗଣ୍ଡି ମୁଣ୍ଡ ପଡ଼ିଲା ମହୀର ।
ପୁଣିହିଁ ବ୍ରହ୍ମଶର କାଢ଼ିଲେ ତୂଣୀରୁ ବାଛି
ଧନୁରେ ବସାଇ ପୁଣ ମନ୍ତ୍ରକୁ ଅଭ୍ୟାସି ।
ସେଷନ୍ତେ ସପ୍ତଶୀର୍ଷ କୁମର ନାଶଗଲା
ନାଗଜିତ କୁମର ଦେଖିଣ କୋପକଲା ।
ଅସୁରଶର ଯେ କଲାକ ନବମୁଖା
ଯୋଡ଼ିଲା ଶର ଯେ ମନ୍ତ୍ରକୁ କରି ଶିଖା ।
ତାହା ଦେଖି ଶତ୍ରୁଘ୍ନ ବଜ୍ରଶର ମାରି
ଅସୁରଶରକୁ ସେ ନିବାରଣ କରି ।
ରଜନୀ ଶେଷ ହେଲା ହୋଇଲା ଆଲୋକ
ଶତମୁଖା ଯୁଦ୍ଧେ ସେନାପତିଙ୍କ ସଙ୍ଗର ।
ଦେଖିଣ କୁମର ତାର ମାୟାଶର କଲା
ପର୍ବତ ମାଳ ରଣ ଭୂମିରେ ବରଷିଲା ।
ବଜ୍ରଶରେ ଶତ୍ରୁଘ୍ନ ନିବାରି କଲେ ପୁଣ ।
ଜଳଧାର ଶର ଯେ ପେଷେ ଦୈତ୍ୟଗଣ ।
ବରଷିଲା ପାଣି ଯେ ରଣ ଭୂମିର ମଧ୍ୟେ
ଅଗ୍ନିଶରେ ଶତ୍ରୁଘ୍ନ ନିବାରି କଲେ ବେଗେ
ବଜ୍ରଶର ଯେବେଣ ମାରିଲେ ରାମଭାଇ
ନବ ମୁଣ୍ଡ ତାହାର କାଟିଲେ ବେଗେଯାଇଁ ।
ନାଗଜିତ କୁମର ଯେ ପଡ଼ିଲା ଭୂମିର
ହାହାକାର କଲେ ଯେ ସୈନ୍ୟବଳ ତାର ।
ସେନାପତି ରଥୀ ଯେତେକ ରଣେ ଥିଲେ
ଶସ୍ତ୍ର ଛାଡ଼ିଣ ଯେ ଅଲଗା ପୁଣ ହେଲେ ।
ଶତମୁଖା ରାବଣ ଯୁଦ୍ଧ କରୁଥିଲା
ପୁତ୍ର ନାତି ମରିବାର ନୟନେ ଦେଖିଲା ।
କ୍ରୋଧରେ ଗରୁଡ଼ର ହେଲା ତା ଶରୀର
ତିନକୋଟି ବ୍ରହ୍ମଶର ଧରେ ଅସୁର ।
ଏକାବେଳକେ ମାରିଲା ଧନୁରେ ବସାଇ
ତିନକୋଟି ସେନାପତି ପଡ଼ିଲେ ମହୀଯାଇ ।

ଦେଖିଣ ଶତ୍ରୁଘ୍ନ ଜନନୀକୁ କହିଲା
ପାଞ୍ଚକୋଟି ରଥୀମୋର ରାବଣ ନାଶକଲା ।
ତାହାର ଆଗକୁ ରଥ ବାହା ଗୋ ଜନନୀ
ଶୁଣିଣ ଲୀଳାବତୀ ରଥ ବାହେ ପୁଣି ।
ଶତମୁଖା ଆଗେ ରଥ ନେଇ କଲେ
ଦେଖିକରି ଶତମୁଖା ଶର ଯେ ବର୍ଷିଲେ ।
ସେ ଶର ରାମଭାଇ ବଜ୍ରଶରେ ନିବାରିଲେ
ଦେଖିକରି ଶତମୁଖା ତୀକ୍ଷ୍ଣ ଶରକଲେ ।
ଗନ୍ଧର୍ବାଶର ଶତ୍ରୁଘ୍ନ ମାରେ ରାଗେ
ତୀକ୍ଷ୍ଣ ଶରମାନଙ୍କୁ ଛେଦିଲେ ସେ ବେଗେ
ଘନଭେଦ ଶର ଯେ ଶତ୍ରୁଘ୍ନ ମାରେ
ଶତମୁଖା ରାବଣ ମୋହରେ ଢଳି ପଡ଼େ ।
ଦେଖିଣ ତା ମନ୍ତ୍ରୀ ବେନି ରଥ ବୁଲାଇଲେ
ଘଡ଼ିକେ ଚେତା ପାଇ ଶତଗ୍ରୀବ ଭଲେ ।
ମନ୍ତ୍ରୀକି ବୋଇଲେ ରଥ ବେଗକରି ବାହି
ଅଗ୍ନି ନଦୀ ଭିତରେ ରଥ ମୋ ପୂରାଅ ।
ଶୁଣିଣ ମନ୍ତ୍ରୀ ବେନି ରାଜାର ବୋଲକଲେ
ଅଗ୍ନି ନଦୀ ଭିତରେ ରଥ ପୂରାଇଲେ ।
ଦେଖିଣ ଚାଟକା ଯେ ହେଲେ ଶତ୍ରୁଘ୍ନ
ଏମନ୍ତ ଦୈତ୍ୟକୁ ମୁଁ କେମନ୍ତେ ମାରିବିପୁଣ ।
ଅଗ୍ନିର ଭିତରେ ତ ପଶିଲା ଦୈତ୍ୟଯାଇ
ଅଗ୍ନିଭିତରକୁ ଗଲେ ଜଳିବ ମୋର ଦେହି ।
ଅନେକ ବଚନ ତ ଏଥିରେ ବହିଯିବ
ଶ୍ରୀରାମଭ୍ରାତ ଶୁଣିଲେ ଲଜ୍ଜା ମୋତେ ହେବ ।
ବୋଲିବେ ଦୈତ୍ୟସ୍ତରକୁ ନ ପାରିଲା ମାରି
ରାଜପୁତ୍ର ହୋଇତ ନୁହେଁ କାର୍ଯ୍ୟକାରୀ ।
ଏତେ ବୋଲିଣ ମୋତେ ସେ ନିନ୍ଦନ କରିବେ
ଷଣ୍ଢ ପୁତ୍ରଙ୍କ ସଙ୍ଗେ ମୋତେ ନ ଗଣିବେ ।
ଦେବକାର୍ଯ୍ୟ ନୋହିଲେତ କହିବ କିସ ପୁଣ
ଏତେ ବୋଲିଣ ଭାଳନ୍ତି ଦଶରଥ ନନ୍ଦନ ।
ନବଦିନ ହେଲା ଏହା ସଙ୍ଗେ ମୁଁ ଯୁଦ୍ଧ କଲି
ଅନେକ ସୈନ୍ୟବଳ ମୁଁ ଏହାର ମାରିଲି ।
ତେବେ ଏହାକୁ ମୁଁ ଯେ ନ ପାରିଲି ଜିଣି
ଅଗ୍ନିର ଭିତରେ ଯାଇ ପଶେ ଦୈତ୍ୟମଣି ।
ଭଲ ବର ଦେଇଥିଲା ପବନ ଯାକୁ ପୁଣ
ନୋହିଲେ କେମନ୍ତେ ଜଣେ ତିନପୁର ଜାଣ ।

ଦେବତାଏ ଡରନ୍ତି ଡରନ୍ତି ରାଜାମ ନେ
ଏଡ଼େ ଦୈତ୍ୟକୁ ମୁଁ ଯେ ମାରିବି କେସନେ ।
ବାସୁକିର ପୁରରେ ମୁଁ ପୃଥିବୀ ଧରିଲି
ଲକ୍ଷେ ରାଜା ସାଧି କରି ମୁଁ ପୃଥିକି ଆଣିଲି ।
ଏଡ଼େ ପାରିବାର କରି ନ ଦେଖେ କାହାକୁ
ଘୁଞ୍ଚକରି ଯିବି ମୁହିଁ ନପାରି ଏହାକୁ ।
ଏତେ ବୋଲି ବିଚାରନ୍ତେ ମନରେ ତାହାର
ସ୍ୱର୍ଗରେ ଦେବତା ଥାଇ କରନ୍ତି ବିଚାର ।
ଇନ୍ଦ୍ର ବୋଲେ ଶତ୍ରୁଘ୍ନ ଭଲେ ଦେଖିକରି
ଅଭୁତ ବିମାନ ଯେ ଗଢ଼ିଛୁ ଶତେଗିରି ।
ଯେଉଁ ବିମାନକୁ ଅଗ୍ନି ଜ୍ୱାଳା ଯେ ନକାଟେ
ପବନ ବହିଲେ ଫୁଲହୁଏ ମେରୁ ମୋଟେ ।
ଦଣ୍ଡକରେ ତିନପୁର କରଇ ଭ୍ରମଣ
ପବନରୁ ବେଗେ ସେ କରଇ ଗମନ ।
କାହାର ହସ୍ତରେ ତାକୁ ମରଣ ନ ଲେଖିଲି
ଶତ୍ରୁଘ୍ନ ହସ୍ତରେ ତା ମରଣ ରଖିଲି ।
ଏତେ କହି ଦେବତାଏ କରନ୍ତି ଭାଳେଣି
ବୃହସ୍ପତି ବୋଲେ ଶୁଣ ଦେବରାଜା ପୁଣି ।
ନାରଦ ତାଙ୍କୁ ଯାଇ କହି ଦିଅନ୍ତୁ ଥରେ
ମନ ଭେଦ ଶରରେ ପର୍ବତ ଶତ୍ରୁ ଭଲେ ।
ନଦୀର ଜଳକୁ ଆଣି ସେଥିରେ ପୂରାଉ
ତେବେ ସେ ଅଳପେ ଦେବ ଭାଜିବ ପରଦାଉ
ତାହା ଶୁଣି ଦେବରାଜା ନାରଦେ କହିଲେ
ଶୁଣି ବ୍ରହ୍ମାଙ୍କ ନନ୍ଦନ ବେଗେ ଚଳିଗଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଶତେ ମୁଖା ରାଣୀହଂସ ନଗ୍ରେ ଛନ୍ତି ପୁଣ ।
ବାର ନାତି ରାଜପୁତ୍ର ରଣରେ ତାର ମଲେ
ସେନାପତି ରଥୀ ଯେ ପଦାତି ବଳ ଭୁଲେ ।
ତିନି ରାତି ଚାରି ଦିବସ ଯେ ବହିଗଲା
ମରିବାର କଥା ପରା ତାଙ୍କୁ ଜଣାଗଲା ।
କେମନ୍ତେ ଜାଣିଲେ ସେହୁ କେ କହେବାରତା
ନାତି ପୁତ୍ର ମରିବାରୁ ମନରେ କରେ ଚିନ୍ତା
ସ୍ୱାମୀ ନାଶଗଲେ ତ ସରିବ ତାହା କୁଳ
ଦଇବ ଯାହାକୁ ପୁଣ ହେବ ପ୍ରତିକୂଳ ।
ଦେବତାଏ ପାଞ୍ଚପୂର୍ଣ କଲେକ ଉଆଣ
ବାସୁଦେବ ଜାତହେବେ ମଞ୍ଚରେ ଯେ ପୂର୍ଣ ।

ଯାହାର କର୍ମରେ ଯାହା ଲେଖିଥାନ୍ତି ଆଗେ
ସେ କଥାମାନ ହେ ସବୁ ଭେଟାଇଲେ ଏବେ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଲକ୍ଷେକ କୁମର ତାର ନବଲକ୍ଷ ନାତି ।
ନବଦିନେ ନାତି ପୁତ୍ର ସମସ୍ତେ ତାର ମଲେ
ସେନାପତି କୋଡ଼ିଏ ଚଉଦ କୋଟି ମଲେ ।
ପଦାତି ତାହାର ନାଶ ବୟାଳିଶ ପଦ୍ମ
ରଥୀ ମହାରଥୀ ମଲେ ଆଠକୋଟି ଭେଦ ।
ଆଠକୋଟି ରଥୀ ଯେ ବରତିଲେ ଜାଣ
ସେନାପତି ଆଠକୋଟି ବର୍ତ୍ତିଲେକ ପୂର୍ଣ ।
କୋଡ଼ିଏ ପଦ୍ମ ପଦାତି ବରତିଲେ ତାର
ଆଉମାନେ ସର୍ବେ ଗଲେ ସ୍ୱର୍ଗନାମେ ପୁର ।
ପୁତ୍ର ନାତି ମରିବାରୁ ବଧୂମାନେ ଗଲେ
ଅନଳେ ପଶିଣ ସ୍ୱାମୀ ସଙ୍ଗରେ ଚଳିଲେ ।
ରାଜ ଶତ ଭାରିଯା ଯେ ରାଜ ଭାଇଙ୍କର
ବାରଶତ ଭାରିଯାରେ ବାର ନାତିଙ୍କର ।
ଏହି ବାକି ଅଛନ୍ତି ଯେ ନ ପାଇ ବାରତା
ଯେଝା ପୁରେ ବସିଣ ଯେ କରୁଛନ୍ତି ଚିନ୍ତା ।
ଚଉଦ ଲକ୍ଷ ଅଟନ୍ତି ଯେ ରାଣୀ ହଂସ
ସମସ୍ତେ ମେଳ ହୋଇଣ ଡାଳନ୍ତି ମାନସ ।
କେ ବୋଲଇ କେଉଁ ବୁଦ୍ଧି କରିବା ଏଥର
କେ ବୋଲେ ଅକାଳ କାଣ୍ଡ ପଡ଼ିଲା ମାଥର ।
କେ ବୋଲେ ଜାଣୁ ଜାଣୁ କାଳ ସର୍ପ ମୁଖେ
ଆମ୍ଭର ରାଜା ଆଙ୍ଗୁଳି ମେଲିଇଲେ ସୁଖେ ।
କେ ବୋଲଇ ବସ ଗୋ ହୋଇଲା ଅନ୍ଧାର
କେ ବୋଲେ ପରରବୋଲେମଲେସର୍ବେମୋର
କେ ବୋଲେ ଶତ୍ରୁଘ୍ନ ବୀରର ଦୋଷ ନାହିଁ
ବଳେ ଆମ୍ଭ ରାଜା ଯେ ଉଦାସୀ ହେଲା ଯାଇଁ
କେ ବୋଲଇ କାଳ ଯେ ରାଜାଙ୍କୁ ନେଲାକାଢ଼ି
କେବୋଲେ କହିଲା ବୋଲ ନକଲେ ଯେବଡ଼ି
କେବୋଲେ ରାଜା ଆମ୍ଭର ବଂଶ ମରାଇଲା
କେବୋଲେ ତାହାଙ୍କୁ ପୁଣ ଜଞ୍ଜାଳ ଯେହେଲା
ଏତେ ବୋଲି ବିଚାର କରନ୍ତି ରାଣୀ ହଂସ
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ସନ୍ଦେଶ ।
ରାଜ ଜଣାଇଲା ଯାଇଁ ରାଣୀହଂସପୁର
ଶୁଣ ଗୋ ଠାକୁରାଣୀ ଯୁଦ୍ଧର ସମାଚାର ।

ପୁତ୍ରନାତି ସୈନ୍ୟବଳ ସମରକୁ ଗଲେ
ପାଞ୍ଚକୋଟି ଯାଇ ଯେ ସମରରେ ମଲେ ।
କର୍ମବାମ ବେଳେ ସେ ଯେ ପଡ଼ିଲେ ରଣରେ
ଗୋଟିଏ ନ ଫେରିଲେ ମଲେ ଏକା ବେଳେ ।
ରାଜା ନ ଜାଣଇ ଅଗ୍ନି ନଗ୍ରରେ ଅଛି ପଶି
ରଥୀ ପଦାତି ସେନାପତି ମାନେ ସର୍ବେ ମିଶି
ଅନେକ ସୈନ୍ୟବଳ ମଲେକ ରଣରେ
ରକତ ନଦୀ ଯେ ବହୁଛି ଏତେବେଳେ ।
ନଗ୍ରଯାକ ସବୁ ଯେ ପଡ଼ୁଛି ହାଲହୋଳ
ପ୍ରତିଘରେ ନର ନାରୀ ଶୋକ କଲେ ଭୋଳ ।
କେ ବୋଲଇ ମୋହର ପୁତ୍ର ତ ମଲା
କେ ବୋଲଇ ଭାଇମୋର ରଣରୁ ନ ଆସିଲା
କେ ବୋଲଇ ଗୁରସ୍ତ ଶଶୁର ମୋହର ମଲେ
ଦଶ ପ୍ରାଣୀଙ୍କି ଉଛନ୍ନ କରିଣ ଛାଡ଼ିଗଲେ ।
କେ ବୋଲେ ଦେଢ଼ଶୁର ମୋରଯୁଦ୍ଧେ ମଲେ
ଜ୍ୱାଇଁ ମଲାର ଝିଅ ବିଧବା ହୋଇଲେ ।
କେବୋଲେ ଜ୍ୱାଇଁ ମୋର ରଣରୁନଆସିଲା
କେ ବୋଲଇ ଶୋକ ଜଳେ ବୁଡ଼ାଇ ମାରିଲା
ଏମନ୍ତେ ରୋଦନ କଲେ ନଗ୍ରର ନରନାରୀ
ସବୁଦାଣ୍ଡେ ରକ୍ତନଦୀ ବହେ ବାରି ବାରି ।
ଶୁଣିଣ ରାଣୀହଂସ କରନ୍ତି ରୋଦନ
ସମୁଦ୍ର ଗର୍ଜନ ପ୍ରାୟେ ଶୁଭେ ଗୋଳ ପୁଣ ।
ଶାଶୁମାନଙ୍କ ରୋଦନ ଶୁଣିଣ ବଧୂମାନେ
ବେଶ ଭୂଷଣ ହୋଇ ବାହାର ତତ୍‌କ୍ଷଣେ ।
ନାକୁଣୀ ବଧୂମାନେ ବଗ୍ଭର କଲେ ପୁଣ
ସେମାନେ ବେଶ ହେଲେ ଭୂଷଣ ଯେମନ୍ତ ।
ଅଳଙ୍କାର ଯେମନ୍ତ ପତଳ ଶାଢ଼ୀ ପିନ୍ଧି
ହୀରା ମାଳାମୋତି ମାଣିକ୍ୟ ଦେହେ ଖଞ୍ଜି ।
ମାଣିକ୍ୟର ଚୂଡ଼ିମାନ ଲଗାଇ ହସ୍ତରେ
ଅଳଙ୍କାର ପାହୁଡ଼ ନୂପୁର ଚରଣରେ ।
ନେତ୍ରେ ଅଞ୍ଜନ ସିନ୍ଦୂର ମସ୍ତକରେ ଶୋଭା
ଦେଖିଲେ ତାହାଙ୍କୁ ମୁନିମାନେ ହୋନ୍ତିଲୋଭା
ସଜହୋଇ ସର୍ବନାରୀ ହୋଇଲେ ବାହାର
ଲେଖାରେ ଅଟନ୍ତି ସେ ଚଉଦ ହଜାର ।
ପୁତ୍ରମାନଙ୍କର ନାରୀ ସହସ୍ର ଲେଖାଏଁ
ନାତିମାନଙ୍କର ଶତେ ଲେଖା ପୂର୍ଣ୍ଣ ହୁଏ ।

ସମସ୍ତେ ବାହାର ହୋଇ ଶାଶୁଙ୍କପୁରେଗଲେ
ଚରଣେ ଓଳଗି ହୋଇ ବଚନ କହିଲେ ।
ବୋଇଲେ ସକଳ ଶୁଣ ତୁମ୍ଭେ ମାଏ ପୁଣ
କର୍ମରେ ଯାହା ବିଧି କରିଛି ଘଟଣ ।
ଅନେକ ସୁଖ ଦେଇ ଯତନେ ରଖିଥିଲେ
ପାପ ଦେଖିବାରୁ ଏବେ ସଭିଙ୍କି ନାଶକଲେ
ଧର୍ମରେ ଚନ୍ଦ୍ର ସୂର୍ଯ୍ୟ ହୁଅନ୍ତି ଆତ ଯାତ
ସତ୍ୟଥିବା ଯାକେ ଯେ ସମସ୍ତେ ଭଲତ ।
ସତ୍ୟକୁ ଲଙ୍ଘିଲେ ମୃତ୍ୟୁ ହୁଅଇ ନିଶ୍ଚିତ
ଏକଥାକୁ ବିଗ୍ଭର ନକଲ ରାଜନ ତ ।
ସତ୍ୟ ଲଙ୍ଘିବାରୁ ଦେଖ ବାଣାସୁର ମଲା
ସତ୍ୟଥିଲାକୁ ପ୍ରହ୍ଲାଦ ସ୍ୱର୍ଗେ ଇନ୍ଦ୍ରହେଲା ।
ବେଦ ଚୋରି କରିବାରୁ ମଲା ଶଙ୍ଖାସୁର
ବାସୁଦେବ ତାହାଙ୍କୁ ନାଶ କଲେ ସତ୍ୱର ।
ହିରଣ୍ୟ କଶିପୁ ଯେ ଆପଣା ଦୋଷେ ମଲା
ବଳି ଧର୍ମ କରିବାରୁ ଅମର ହୋଇଲା ।
ବଳାତ୍କାରେ ବାଳୀ ଭାଇବୋହୂକୁ ହରିଲା ।
ଦଶରଥ ପୁଅ ହସ୍ତେ ତାର ପ୍ରାଣ ଗଲା ।
ସୀତାଙ୍କୁ ଚୋରାଇ ବନୁ ଆଣିଛି ରାବଣ
ଭାରିଯା ଯେଣୁ ରାମ ବନରେ ବୁଲେପୁଣ ।
ଜାନକୀ ନାମରେ ଯେ ଅଟଇ ତା ସଖି
ତାକୁନେଇ ରାବଣ ଅଶୋକ ବନେ ରଖି ।
ଅନେକ ପାତକ ଯେ ଦଶଗ୍ରୀବ କଲା
ସ୍ୱର୍ଗର ଦେବତାଙ୍କୁ ପାଦରେ ଖଟାଇଲା ।
ସେଥିର ସକାଳେ ଦେବତାଏ ହେଲେ ମେଳ
ବାସୁଦେବଙ୍କର ଆଗେ କଲେକ ଗୁହାରି ।
ଦେବଙ୍କର ଛଳରେ ଚତୁର୍ଦ୍ଧା ରୂପଧରି
ଅସୁର ମାରିବାକୁ ଜନମ ହେଲେ ହରି ।
ରାବଣର ବଂଶ ସେ ଯେ ମାରିଲେ ଆପଣ
ଏକା ଅଛି ରାବଣ ସମସ୍ତେ ମଲେ ଜାଣ ।
ଆଜହୁଁ ଗୃହ ବନରେ ସେହି ନାଶ ଯିବ
ଲାଗିଛି ଘୋର ଯୁଦ୍ଧ କହିଲେ ନ ସରିବ ।
ଉଗାରି ନୁହେଁ ଆମ୍ଭ ସଙ୍ଗରେ ରଘୁରାମ
ସାନଭାଇ ଶତ୍ରୁଘ୍ନ ଅଟେ ତାର ନାମ ।
ତାଙ୍କ ସଙ୍ଗେ ଦଶଗ୍ରୀବ ଉଗାରି ହୋଇଲେ
ଏକା ତଦଖି ଶତ୍ରୁଘ୍ନ ମାରିବେ ବିଗ୍ଭରିଲେ ।

ପରକୁ ମାରିବେ ବୋଲି ଅଧର୍ମକୁ ଗଲେ
ଆପଣାର ସୈନ୍ୟ ବଳ ଧ୍ୱଂସ କରାଇଲେ ।
ରଜନୀ ସାରିଲେ ବେଳ ହେବହାଦେ ପୁଣି
କାଲି ସନ୍ଧ୍ୟା ବେଳକୁ ମରିଥିବେ ନୃପମଣି ।
ଅଚିନ୍ତା ସ୍ୱର୍ଗପୁରରେ ଯାଇଣ ବସିବେ
ଶ୍ରୀରାମଙ୍କୁ ଦେଖିବାରୁ ଗତି ସେ ପାଇବେ ।
ତୁମ୍ଭର ଆମ୍ଭର ସେ ଦିନ ପରା ଦେଖା
ସତ୍ୟବନ୍ତ ପୁରେ ତୁମ୍ଭେ ମିଳିବ ଯେମନ୍ତ ସଖା
ସ୍ୱାମୀର ସଙ୍ଗରେ ଗଲେ ପାଇବ ସୁସ୍ଥ ସ୍ଥାନ
ଏଥିରେ ରହିଲେ ତୁମ୍ଭେ କଷ୍ଟପି ହେବପୁଣ ।
ଆମ୍ଭେତ ଯାଉଛୁ ହେ ସ୍ୱାମୀଙ୍କ ସଙ୍ଗରେ
ବିକଳ ନୁହ ତୁମ୍ଭେ କାହାରି ମନରେ ।
ରାମ ନାମ ସୁମରଣା ହୃଦରେ ତୁମ୍ଭେ କର
ଅସୁର ଜନ୍ମରୁ ପାରି କରିବେ ରଘୁବୀର ।
ଏତେ କହି ବଧୂମାନେ ବାହାର ହୋଇଲେ
ଚନ୍ଦ୍ର ଦୀପ ଜଗତ୍ମଳା ଆଗରେ ଲଗାଇଲେ ।
ରାମ ନାମ ସୁମରଣ ସେ ହୋଇଲେ ବାହାର
ଦାସୀ ପରିବାରମାନେ ଅଛନ୍ତି ସଙ୍ଗତର ।
ଅଗ୍ନିନଦୀ ପାଶରେ ହୋଇଲେ ପ୍ରବେଶ
ନମସ୍କାର କରିଣ ସେ ପଶିଲେ ବାଳିଶ ।
ନଦୀର ଭିତରେ ପଶିଲେ ସର୍ବେ ଯାଇ
ତତକ୍ଷଣେ ଭସ୍ମ ସେ ହେଲେ ପୁଣ ସେହି ।
ସ୍ୱର୍ଗରୁ ବିମାନ ସେ ଆଇଲା ତତକ୍ଷଣେ
ବିମାନେ ବସି ସମସ୍ତେ ଗଲେ ସେ ବହନେ ।
ସ୍ୱର୍ଗ ଭୁବନରେ ସେ ହେଲେ ପରବେଶ
ଦାସୀମାନଙ୍କୁ ଦେଖି ସେ ହୋଇଲେ ହରଷ
ସେ ଯାହା ସ୍ୱାମୀ ପାଶରେ ଯାଇଣ ଖଟିଲେ
ଶତେମୁଖା ରାବଣ ପୁତ୍ର ବଧୂମାନେ ଗଲେ
ବଧୂମାନେ ଯିବାରୁ ଶାଶୁମାନେ ଦେଖି
ଚିନ୍ତା ଛାଡ଼ି ମନରେ ହେଲେ ମହା ସୁଖୀ ।
ରାମ ନାମ ସୁମରଣା ଜପାମାଳି ଧରି
ବଧୂମାନେ କହିବାରୁ ଗୁରୁ ତୁଲ୍ୟ କରି ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭେଶ୍ୱ
ଶତେଗ୍ରୀବ ସଙ୍ଗରେ ଶତ୍ରୁଘ୍ନ ଯୁଦ୍ଧ କରି ।
ନବକୋଟି ଯୋଦ୍ଧାଯେନ ଅଯୋଧ୍ୟାରୁ ଗଲେ
ଅଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲେ ।

କୁବଳୟା ଗିରିରେ କଲେ ଠଣା ପୁଣ
ଶତେ ମୁଖା ସଙ୍ଗେ ଦୁଇ ଦିନ କଲେ ରଣ ।
ଶତ୍ରୁନନ୍ଦନେ ପୁତ୍ରନାନ୍ତ ସୈନ୍ୟବଳ ମାରି
ରାବଣ ସଙ୍ଗରେ ଯୁଦ୍ଧ କଲେ ମହାବଳୀ ।
ଯୁଦ୍ଧଛାଡ଼ି ରାବଣ ସେ ଅଗ୍ନିରେ ପଶିଲା
ଶତ୍ରୁଘନ ଅଗ୍ନି ନଦୀ କୂଳରେ ରହିଲା ।
ରଜନୀ ହୋଇଲା ଆସି ଦଶ ଘଡ଼ି ପୁଣ
ପାଞ୍ଚକୋଟି ରଥୀମାନେ ଶତ୍ରୁଘନର ଜାଣ ।
ବାଉନ କୋଟି ପିଶାଚ ଯେମନ୍ତ ଭଇରୋବୀ
କୁବଳୟା ଦକ୍ଷିଣ ପାଶରେ ସେ ଭେଦ୍ଧ ।
ଶତ୍ରୁନନ୍ଦନ ହେଲା ଆହାର ନାହିଁ ଯେ ତାଙ୍କର
ଦୈତ୍ୟବଳ ଅନେକ ମଲେ ସେ ଦିନର ।
ନର୍ଜନ ରାତିରେ ଭଇରୋବ ଗରଜିଲା
ବାଆନକୋଟି ପିଶାଚୁଣୀ ସଙ୍ଗତରେ ନେଲା
ରଣ ଭୂମିରେ ଯାଇଣ ହେଲା ପରବେଶ
ଦୈତ୍ୟବଳ ଖାଇଣ ମନ କଲେ ତୋଷ ।
କେହୁ ଶୁରି ଭକ୍ଷଇ କେ ଭକ୍ଷଇ ପାଞ୍ଚସାତ
ଦୁଇତିନ ଭକ୍ଷିକା ମନରେ ଉଷତ ।
ରକ୍ତନଦୀମାନେ ଯେ ଶୋଷିଲେ ସନ୍ତୋଷରେ
ଚିହ୍ନ ନ ରହିଲା ସେ ରଣର ଭୂମିରେ ।
ଏମନ୍ତ ସମୟେ ମିଳିଲେ ବୃହସ୍ପତି
ସଞ୍ଜିବନୀ ମନ୍ତ୍ରପଡି ପାଣି ସେ ସିଞ୍ଚନ୍ତି ।
ପାଞ୍ଚକୋଟି ରଥୀ ସେ ମୋହ ଯାଇଥିଲେ
ମନ୍ତ୍ର ପାଣି ସିଞ୍ଚିବାରୁ ଜଇଣ ଉଠିଲେ ।
ଅମୃତ ବୃଷ୍ଟି ସେ କଲେ ଦେବଗୁରୁ
ଜୀବପାଇ ରଥୀମାନେ ହେଲେ ମହାମେରୁ ।
ଦେବଗୁରୁ ବୋଇଲେରେ ତୁମ୍ଭେ ଏବେଶୁଣ
କାଲି ରାମ ଲକ୍ଷଣ ଦେଖିବ ଯାଇଣ ।
ରଜନୀ ପାଇଲେ ଶତମୁଖା ପଳାଇବ
ଲଙ୍କାଗଡରେ ଯାଇଣ ସେ ଯୁଦ୍ଧ କରିବ ।
ତାହାର ପଛରେ ତୁମ୍ଭେ ଯିବରେ ସମସ୍ତେ
ଲଙ୍କାରେ ପ୍ରବେଶତୁମ୍ଭେ ହେବରେ ତୁରିତେ
ବେଳ ଚଉଦ ଘଡ଼ିରେ ମରିବ ଦଶଗ୍ରୀବ
ତାହାଶୁଣି ରଥୀମାନେ ମନରେ ଉଲ୍ଲସିବ ।
ଦେବଗୁରୁ ପାଦେ ସର୍ବେ ନମସ୍କାର କଲେ
ରଥର ଉପରେ ଯାଇ ବସିଲେକ ଭଲେ ।

ସେଠାରୁ ବୃହସ୍ପତି ଡାକଲେ ଭଇରବ
କାଞ୍ଚନକୋଟିପିଶାଚୁଣୀ ସଙ୍ଗରେଘେନଦେବୀ
ଦେବଗୁରୁ ପାଦରେ କଲେ ନମସ୍କାର
କରଯୋଡ଼ିଆଗେ ଉଭା ହେଲେ ଧାଡକାର ।
ବୃହସ୍ପତି ବୋଇଲେ ଶୁଣ ଗୋ ଜୟଦୁର୍ଗା
ଅଯୋଧ୍ୟାରେପାଞ୍ଚଦନ ଯୁଦ୍ଧକଲା ଦୈତ୍ୟରାଜା
ଚାର ଲକ୍ଷ ଗଡ଼ ଦେଶ ଅଲଙ୍କା ଯେ ପୁଣ
ଏଥିରେ ଶତ୍ରୁଘନ ସଙ୍ଗରେ ଯୁଝେ ଜାଣ ।
ଛଅ ଦନ ରାତ୍ର ଦବସ ଯୁଦ୍ଧ କଲା
କେବେହେଁ ଶତ୍ରୁଘନକୁ ଜିଣି ନ ପାରିଲା ।
ତାର ପୁତ୍ର ନାତି ଶତ୍ରୁଘନ ହସ୍ତେ ମଲେ
ପାଣି ଦେବାକୁ କୁଳରେଗୋଟିଏ ନରହିଲେ
ରଥୀ ହାତୀ ପଦାତି ମଲେ ସୈନ୍ୟବଳ
ଝିଅ ଜୋଆଇଁ ଆଦି ଗଲେ ଯମସ୍ଥାଳ ।
ଭାଇ ବନ୍ଧୁ ସମସ୍ତେ ଯୁଦ୍ଧରେ ପଡ଼ିଲେ
ଏକାକେ ଶତେମୁଖା ଉବୁରି ଅଛି ଭଲେ ।
ଦୁଇ ଯୁଗ ପର୍ଯ୍ୟନ୍ତେ ତପ ସେ ଯେ କଲା
ଅର୍କ ତୀର୍ଥରେ ଯାଇଣ ପ୍ରବେଶ ହୋଇଲା ।
ସେଠାରେ ତପ ସେହୁ କଲା ଯୁଗେ ଯାଏ
ଚକା ଆସନ କରି ପବନେ କଲା ଲୟେ ।
ତଳକୁ ମୁଖ ଗୋଡ଼ ମଣ୍ଡଳେ ତପ କଲା
ଯୁଗକ ଅନ୍ତରେ ପୁଣ ପବନ ଅଇଲା ।
ବର ତାକୁ ଯାଚ ଦେଲେ ମରୁତ ଯେ ରାଜା
ଉଠିଣ ଶତେ ଗ୍ରୀବ ପାଦରେ କଲା ପୂଜା ।
ପବନ ବୋଇଲେ ତୁରେ ଘେନ ଇଚ୍ଛାବର
ଶତଗ୍ରୀବବୋଲେ ଦେବସୁଦୟାମୋତେକର
ଜଳ ପବନ ଯେ ଅଗ୍ନି ହୋମ ଜାଣ
ଏଥିରେ ପଶିଲେ ମୋତେ ନୋହିବ ମରଣ
ଦେବତା ଅସୁରହସ୍ତେ ନୋହିବ ମୋରମୃତ୍ୟୁ
ସ୍ତ୍ରୀପୁରୁଷ ହସ୍ତେ ନମରିବ କହିଲି ମୁଁ ତତ୍ତ୍ୱ ।
ଜୀବଙ୍କ ମଧ୍ୟରେ ଯେ ଛପନ କୋଟି ଜାଣ
ତାଙ୍କହସ୍ତେ ମୃତ୍ୟୁ ମୋର ନୋହିବଟି ପୁଣ ।
ଅଠର କୋଟି ଯେ ଅଛନ୍ତି ନାଗବଳ
ଚଉର୍ଦ୍ଦଶ କୋଟି ଯେ ରୁଦ୍ରବଳ ଠୁଳ ।

ଏମାନଙ୍କ ହସ୍ତରେ ନୋହିବ ମୁଁ ନାଶ
ଏପନ୍ତ ବର ମୋତେ ଦିଅ ହେ ମରୁତ ।
ପବନବୋଇଲେଜନ୍ମିଲେଦେବତାହେଲେମରି
ଅମର ହୋଇଣ କେହି ନାହିଁ ଦେହ ଧରି
ମର୍ତ୍ତ୍ୟ ମଣ୍ଡଳରେ ନୀଳ ଯେ କନ୍ଦରେ
ଦାରୁ ବ୍ରହ୍ମ ଅଛନ୍ତି ବଉଦ୍ଧ ରୂପରେ ।
ବାର ବରଷରେ ସେହି ପ୍ରଭୁ ଥରେ
ନବ କଳେବର ଯେ ହୁଅନ୍ତି ସେଠାରେ ।
ପବନର ବଚନେ ଦଶଗ୍ରୀବ କହି
ବାସୁଦେବ ଦେବଙ୍କର ଚତୁର୍ଦ୍ଧାରୁପ ହୋଇ
ଚାର ଗୋଟି ଆୟୁଧ ଚାର ଭୁଜ ପୁଣ
ଶଙ୍ଖ ଚକ୍ର ଗଦା ପଦ୍ମ ଭୁଜରେ ଭୂଷଣ ।
ସେ ଆୟୁଧ ଶଙ୍ଖ ଯେ ଜନମ ହୋଇବେ
କ୍ଷତ୍ରି ଅଂଶେ ରାଜାକୁଳେ ଜନମ ଲଭିଥିବେ ।
ତେତିଶକୋଟିଦେବଙ୍କର ତାଠାରେଥିବକଳା
ମାତା ତାର ହୋଇଥିବ ରାଜାର ଦୁଲଳା ।
ମାତାଙ୍କ ସାରଥି ହେବ ପୁତ୍ର ହେବ ରଥୀ
ତେବେ ସେମୋତେ ଦେବ ମାରିବସେହୁମୂର୍ତ୍ତି
ଦଶଦିନ ପର୍ଯ୍ୟନ୍ତେ ମୋ ସଙ୍ଗେ ଯୁଝିବ
ଛଅଠାରେ ଯୁଦ୍ଧକଲେ ମୋତେ ସେ ମାରିବ
ବାସୁଦେବ ସଦାଶିବ ଥିବେ ଯେଉଁ ସ୍ଥାନେ
ସେଦେଖିବେ ମୃତ୍ୟୁମୋର ତାହାର ନୟନେ
ତେବେଦୈତ୍ୟଦେହମୋରପାଶେ ରହୋଇବ
ଏମନ୍ତ ମରଣ ମୋତେ ଆଜ୍ଞା ତୁମ୍ଭେ ଦେବ ।
ଅସ୍ତୁ ହେଉ ବୋଲି ଯେ ବୋଇଲେ ପବନ
ଶତେମୁଖା ବୋଲେ ଦେବ ମୋହଠାରୁଶୁଣ
ପୁତ୍ର ନାତି ବନ୍ଧୁ ମୋର ଗୋଟିଏ ନଥିବେ
ମୁଁହିଁ ମଲେ ମୋର କୁଳ ନିର୍ମୂଳ ହୋଇବେ
ଅସ୍ତୁହେଉ ବୋଲିଣ ଯେ ବୋଇଲେ ପବନ
ସେ କଥାମାନ ଦେଖ ହୋଇଲା ଆସି ପୁଣ ।
ମଲାର ବେଳକୁ ଯେ ଗୋଟିଏ କେହି ନାହିଁ
କାଲିର ଦବସରେ ମରିବ ଲଙ୍କସାଇଁ ।
କାଲିକ ଦଶଦିନ ହୋଇବ ତାହାର
ଦଣ୍ଡେକ ସମୟରେ ମରିବ ନୃପବର ।

ଭଇରେଖା ବୋଲେ ଦେବ ମୋହଠାରୁ ଶୁଣ
ଶତଗ୍ରୀବ ଅଗ୍ନିରେ ପଶିଲା କମ୍ପା ପୁଣ ।
ବହ୍ନି କମ୍ପାଇ ତାକୁ ନକଲା ସେ ଭସ୍ମ ସାତ
ବୃହସ୍ପତିବୋଇଲେ ଭୁମ୍ଭେଶୁଣଗୋଦେଶୀମାତ
ଯେତେବେଳେ ପବନଦେବତା ବରଦେଲେ
ସେତେବେଳେ ଶତଗ୍ରୀବ ବସ୍ତୁର ମାଗିଲେ ।
ବୋଇଲାଦେବତାମୋତେବିମାନଗୋଟିଦେବ
ଯେଉଁଠାକୁ ମନହେବ ସେଠାକୁ ଗମିବ ।
ଅକୁଣ୍ଠ ବିମାନ ମୋତେ ଦେବ ହେ ମରୁତ
ସେ ବିମାନେ ବସିଲେ ହେବ ମୁଁ ଅକୁଣ୍ଠ ।
କୌଣସି ଶର ମୋର ଦେହରେ ନ କାଟିବ
ତେବେ ମୋ ରଥ ଚଉଦ ଭୁବନ ବୁଲିବ ।
ତାହାଶୁଣି ପବନଦେବତା ତୋଷ ହେଲେ
ଅକୁଣ୍ଠ ବିମାନ ଆଣି ତାହାକୁ ସେ ଦେଲେ ।
ବୋଇଲେ ତେତିଶକୋଟି ଦେବ ନାରାୟଣ
ଦୈତ୍ୟ କ୍ଷତ୍ରୀ ଅଟନ୍ତି ସେ ରାଜାଗଣ ପୁଣ ।
ଏମାନଙ୍କ ଶରେ ତୁ ଯେ ନୋହିବୁ ନିଧନ
ମନେ ରଖିଥିବୁ ତୁ ଯେ କହୁଅଛି ଶୁଣ ।
ସଦାଶିବ ଶରେ ତୋର ନେବଟି ପରାଣ
କଟୀଠାରୁ ଦୁଇଭାଗ କରିବ ସେ ପୁଣ ।
ନାରାୟଣଙ୍କ ଆୟୁଧ ସଦାଶିବଙ୍କର ଶର
ବ୍ରହ୍ମାଙ୍କର ମନ୍ତ୍ର ସେ ଯେ ଇନ୍ଦ୍ରଙ୍କ ଧନୁବଳ ।
ଗ୍ରହ ଦେବ ଆୟୁଧ ଯେ ଏକଠାବ ହେବ
ପଶୁପତ ମାରିଲେ ମରିବୁ ଦଶଗ୍ରୀବ ।
ତାହାଦେଖି ଦୈତ୍ୟ ବଡ଼ ସନ୍ତୋଷ ହୋଇଲା
ମେଲାଣି ମାଗିଣ ସେ ପୁରକୁ ଯେ ଗଲା ।
ବର ଦେଇଣ ପବନ ସେଠାରୁ ଚଳିଗଲେ
ସ୍ୱର୍ଗପୁରେ ଯାଇନିଜ ଆଶ୍ରମେ ମିଳିଲେ ।
କିଛିଦିନ ଅନ୍ତରେ ରାବଣ ବିଚାରିଲା
ଅକୁଣ୍ଠ ବିମାନ ଚଢ଼ି ମଞ୍ଜପୁର ଗଲା ।
ମଞ୍ଜପୁରେ ସପ୍ତଦ୍ୱୀପ ଅଟଇ ଯେ ସାର
ଚଉଦ ଲକ୍ଷ ରାଜାଜିଣିଲା ଦୈତ୍ୟବୀର ।
ଚଉଦ ଲକ୍ଷ ଦୁହିତା ରାଜାଙ୍କଠାରୁ ଆଣି ।
ନିଜପୁରେ ସେମାନଙ୍କୁ ବିଭା ହେଲା ପୁଣି ।
ନବଦ୍ୱୀପ ଦୈତ୍ୟଙ୍କୁ ସେ ଜିଣିଲାକ ଧରି
ଦୈତ୍ୟଙ୍କର ପୁତ୍ର କନ୍ୟା ଆଣିଲା ବାଛିକରି

ଚଉଦ ଲକ୍ଷ କନ୍ୟା ଆଣିଣ ବିଭା ହେଲା
ପନ୍ଦର ଦିନ ରାଜକନ୍ୟା ସାତଲକ୍ଷ କଲା ।
ମାସକେ ସାତଲକ୍ଷ ମଲେ ଅସୁରଙ୍କ ଜେମା
ଦୁଇକୁଳୁ ଚଉଦଲକ୍ଷ ରହିଲେ ବାକିସିନା ।
ସ୍ୱର୍ଗପୁରେ ପଶି ଦେବ ଲୋକଙ୍କୁ ଜିଣିଲା
ତିନଗୋଟି କନ୍ୟାକୁ ଯେ ସଙ୍ଗରେ ଆଣିଲା ।
ପାତାଳେ ପଶିଣ ଯେ ଜିଣିଲା ନାଗବଳ
ବାସୁକୀକ ବୋଇଲା ତୁ ଯୁଦ୍ଧ ବେଗକର ।
ନାଗମଣି ବୋଲେ ତୁରେ ଶୁଣ ଦୈତ୍ୟରାଜ
ମେଦିନୀ ଧରିଛି ମୁହିଁ କେ ଧରିବ ଆଜ ।
ମୁହିଁ ଗୁଡ଼ ଦେଲେ ଯେ ପଡ଼ିବ ରସାତଳେ
ସମସ୍ତେ ନାଶ ଯିବେ ଘଡ଼ିକ ଭିତରେ ।
ନ କରିବି ଯୁଦ୍ଧରେ ନ ମାରିବି ତୋତେ
ମୁଁ ହାରିଲି ତୋତେରେ ଯାଅଦୈତ୍ୟନାଥେ
ଶତେଗ୍ରୀବ ବୋଇଲା ମୋତେନାଗରୁ ହାରିଲୁ
ପାତାଳ ପୁର ଧନ ଭଣ୍ଡାର ରଖିଲୁ ।
ମାସକରେ କୋଡ଼ିଏ ଗାରିଆ ଦେବୁ ସୁନା
ତେବେତୋତେ ସନମାନ କରିବି ମୁହିଁ ସିନା
ନାଗରଜାବୋଲେ ବାରମାସେ ବାରକୋଟି
ତୋହର ଭଣ୍ଡାରେ ଆଣି ଦେବଇଁ ମୁହିଁଟି
ଶୁଣିଣ ଲଙ୍କପତି ଫେରିଣ ଅଇଲା
ଅଲଙ୍କା ଗଡ଼ରେ ଆସି ପ୍ରବେଶ ହୋଇଲା ।
ଏହି ରୂପେ ଜିଣିଲା ସେ ଚଉଦ ଭୁବନ
ସାତପୁର ନବଖଣ୍ଡ ମେଦିନୀ ଯେ ପୁଣ ।
ଏବେ ତାର କାଳ ଯେ ପ୍ରବେଶ ହୋଇଲା
ଶମ୍ଭୁଘନ ତାକୁ ଯମ ଦେବତା ହୋଇଲା ।
ତୁମ୍ଭେ ଚଳ ଯା ଅଲଙ୍କା ଭୁବନକୁ ବେଗେ
ବାସେଳ ଅଛି ସୁବଳୟା ପରବତ ଲଗେ ।
ଚଉଷଠି ଯୋଗିନୀ ଯେ ତାର ସଙ୍ଗତରେଛନ୍ତି
ସତର ଦିନ ଯୁଦ୍ଧରେ ରକ୍ତ ମାଂସ ଖାନ୍ତି ।
ସେହି ପର୍ବତରେ ସେ ଯେ ରହିଛନ୍ତି ଭଲେ
ପିଶାଚୁଣୀ ଯେ ଜଣ ଚଳଇ ସେଠାରେ ।
କାଳିକା ଯେ ନବକୋଟି ଭବାନୀ ଯେଣଚଳ
ସୁଲଙ୍କା ଗଡ଼ରେ ସେହି ତୁରିତରେ ମିଳ ।
ଦେବକାର୍ଯ୍ୟ ନିମନ୍ତେ ଚଳିଲେ ଜୟଦୁର୍ଗା
ସୁବଳୟା ଗିରିରେ ସେ ରହିଲା ଅଲଗା ।

ଏକମୁଖା ରାବଣ ସଙ୍ଗେ ଲକ୍ଷ୍ମଣର ଯୁଦ୍ଧ
ପାଞ୍ଚଦିନେ ମଲା ସେ ମାୟାବୀ ଦନୁଜ ।
ସେଠାରୁ ସେ ଜମ୍ବୁଦୁର୍ଗା ବେଗେଣ ଆସିଲା
ସୁବଳୟା ଗିରିରେ ପ୍ରବେଶ ହୋଇଲା ।
ରାବଣର ଯୁଦ୍ଧ ସେ ଦେଖେ ତହିଁ ରହି
ନାରାୟଣ ଦରଶନ ନିତି ସେହୁ ପାଇ ।
ଶ୍ରୀରାମ ଅଟନ୍ତି ଯେ ସ୍ୱୟଂ ବାସୁଦେବ
ତାର ଦରଶନେ ପୂର୍ବେ ମୁକତ ଦେବରାଜ ।
ତାହାର ଭାଇ ଅଟେ ଲକ୍ଷ୍ମଣ ନାମେ ବୀର
ସେହି ସଦାଶିବଟି ସାକ୍ଷାତେ ଈଶ୍ୱର ।
ସହସ୍ର ମୁଖା ରାବଣ ମରିବ ଦରଶନେ
ରକ୍ତ ମାଂସ ଖାଇବେ ବୋଧ ତୋର ମନେ
ଶୁଣିଣ ଭଇରବୀ ନମସ୍କାର କଲା
ଲଙ୍କା ଆସି କରି ଏକ ଠେଲରେ ରହିଲା ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଶତେମୁଖା ରାବଣ ଯୁଝୁଥିଲା ପୁଣ ।
ପୁତ୍ର ନାତି ସୈନ୍ୟବଳ ମରିବାରୁ ତାର
ଅଗ୍ନିର ଭିତରେ ଯାଇ ପଶେ ନିଶାଚର ।
ପବନ ଦେବତା ତାଙ୍କୁ ବର ଦେଇଗଲା
ଅଲୁଟ ବିମାନ ନେଇ ତାକୁ ପୁଣ ଦେଲା ।
ସେ ବିମାନ ଚଢ଼ିଣ ସେ ଜଣେ ତିନିପୁର
ଏବେ କାଳ ହୋଇଲା ତାକୁ ଶତ୍ରୁଘନ ବୀର
ଡରିକରି ଶତେମୁଖା ଅଗ୍ନିରେ ପଶିଲା
ଧନୁଧରି ଶତ୍ରୁଘନ କୂଳରେ ରହିଲା ।
ଦେବତାଏ ବିଚାରନ୍ତି କଲେକ ସ୍ୱର୍ଗର
ନାରଦଙ୍କୁ ପଠାଇଲେ ଶତ୍ରୁଘନ ପାଶର ।
ମୁନିବର ଆସି କିସ କହିଲେ ତାହାଙ୍କୁ
ସେ କଥା ଗୋଟି ଦେବ କହିବ ଆମ୍ଭଙ୍କୁ ।
ଈଶ୍ୱର ବୋଇଲେ ଦେବୀ ଶୁଣ ମନଦେଇ
ଯେଉଁ କଥା ଶୁଣିଲେ ପାତକ ନ ରହଇ ।
ଯେଉଁ ରାମ ନାମ ଗୋଟି ଅଟଇ ଯେ ସାର
ଯେଉଁ ରାମ ନାମ ଗୋଟି ଜପେ ବେଦବର ।
ଯେଉଁ ନାମ ଗୋଟି ଜପି ହେଲ ମୁହିଁ ସୁଖୀ
ଯେଉଁ ନାମ ଜପି ମୁନି ଅମର ହୁଅନ୍ତି ।
ଯାହାର ନାମ ଶୁଣି ବିଭୀଷଣ ଶରଣ
ଯୁଗେ ଯୁଗେ ଅମର ସେ ହୋଇଲାକ ପୁଣ ।

ହନୁମନ୍ତର ଅଜର ଅମର ଦେବେ ହେଲେ ସୁଖୀ
ତିନିପୁରେ ବିଖ୍ୟାତ ହୋଇଲା ନାମ ଗୋଟି
ଯାର ଆଜ୍ଞାରେ ପଥର ଭାସଇ ପାଣିରେ
ଋଷ କପି ବଳବନ୍ତ ଯାହାର ଆଜ୍ଞାରେ ।
ଯାହାର ଆୟୁଧ ଅଟେ ଭ୍ରାତ ଶତ୍ରୁଘନ
ଯାହାକୁ ଦେଖିଣ ମଲେ ଯାଏ ସ୍ୱର୍ଗ ସ୍ଥାନ ।
ନିଶାରେ ଶତମୁଖା ରାବଣେଶ୍ୱର ପୁଣି
ଶତ୍ରୁଘନ ସଙ୍ଗେ ଯୁଦ୍ଧ କଲା ସେ ନ ଜାଣି ।
ପୁତ୍ରନାତି ସୈନ୍ୟବଳ ଅଖଣ୍ଡେ ମରାଇଲା
ରାଜ୍ୟ ନିନ୍ଦା ଶୁଣି କରି ଅଗ୍ନିରେ ପଶିଲା ।
ନବ ଦିନ ଯୁଦ୍ଧ ସେହୁ କଲକ ପୃଥ୍ୱୀର
ବିଚାରିଲା ଯୁଦ୍ଧଦିନେ କରିବ ଅଗ୍ନିର ।
ଅଗ୍ନିରେ ଜିଣିବେ ଜଳ ଭିତରେ ପଶିବି
ଜଳରେ ଜିଣିଲେ ମୁଁ ପାତାଳ ପୁରେ ଯିବି ।
ଏମନ୍ତ ବିଚାରି ଦୈତ୍ୟ ଅଗ୍ନିରେ ପଶିଲା
ଅନଳ ଭିତରେ ଥାଇ ଶର ବୃଷ୍ଟି କଲା ।
ଧନୁଧରି ଶତ୍ରୁଘନ ଛେଦଇ ତା ଭଲେ
ଦଶଦଣ୍ଡ ରାତ୍ର ଅନ୍ଧାର ସେତେବେଳେ ।
ଦଶଦଣ୍ଡ ଠାରୁ ଯେ ଚଉଦ ଦଣ୍ଡଯାଏ
ଅଗ୍ନିର ଭିତରେ ଯୁଦ୍ଧ କରେ ଲଙ୍କରାୟ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ସ୍ୱର୍ଗରୁ ନାରଦ ମିଳଲେ ଯାଇ କରି ।
ଶତ୍ରୁଘନ ପାଶରେ ପ୍ରବେଶ ବେଗ ହୋଇ
ଦେଖିଣ ଶ୍ରୀରାମ ଭାଇ ବିନତ ହୁଅଇ ।
ସୁକଲ୍ୟାଣ କଲେ ଯେ ବ୍ରହ୍ମାଙ୍କ କୁମର
ଶତ୍ରୁମାରି ଯଶରଖ ପୃଥ୍ୱୀରେ କୁମର ।
ଶତ୍ରୁଘନ ବୋଇଲେ କହିଲ ତୁମ୍ଭେ ଯାହା
ଶତେଗ୍ରୀବ ଦନୁଜର ଅଟେ ବଡ଼ ମାୟା ।
ନବଦିନ ମୋହର ସଙ୍ଗରେ ଯୁଦ୍ଧ କଲା
ପରିହାଇ ସମରରେ ନିଘଞ୍ଚ ଯୁଝିଲା ।
ପୁତ୍ରନାତି ସୈନ୍ୟବଳ ମଲେ ଯହୁଁ ତାର
ଏବେ ଅଗ୍ନିନଦୀରେ ଲୁଚିଲା ଦୈତ୍ୟବୀର ।
ଅଗ୍ନିର ଭିତରେ ଥାଇ ଶର ବୃଷ୍ଟି କଲା
ଶରେ ମୁଁ ଛେଦୁଅଛୁ ପ୍ରହରେ ଏବେ ହେଲା
କେମନ୍ତେ ମରିବ ସେ ଅଜୟ ଅସୁର
ଅଗ୍ନିର ଭିତରେ ଦୈତ୍ୟ କରିଅଛୁ ଘର ।

ବୁଦ୍ଧି ନ ବଳଇ ମୋତେ କରିବ କସ ପୁଣି
ମୋହର ଚିତ୍ତରେ ଚିନ୍ତା ହେଲା ବଡ଼ ଜାଣି ।
ଶୁଣିଣ ନାରଦ ଯେ ବୋଲନ୍ତି ବଚନ
ସୁଯୋଗ ତୋତେ ଆସି ହୋଇଲାରେ ପୁଣ ।
କାଲି ଦୁଇ ଘଡ଼ିରେ ଦେଖିବୁ ତୁହି ଯାଇ
ଶ୍ରୀରାମ ଲକ୍ଷ୍ମଣ ଯେ ଅଛନ୍ତି ତୋର ଭାଇ ।
ଦଶଗ୍ରୀବ ସଙ୍ଗରେ କରନ୍ତି ଯୁଦ୍ଧ ପୁଣ
ରାମାୟଣ ଯୁଦ୍ଧ ଯେ ସେହିଟି ଅଟେ ଜାଣ ।
ଲାଗିଛି ରଣ କ୍ଷଣେ ଯୁଦ୍ଧଟି ବଡ଼ ଟାଣ
ସୃଷ୍ଟି ସଅ ସୃଷ୍ଟି ଯେ ଦିବସ ହେଲା ପୁଣ ।
ଆହୁରି ତିନ ଦିନେ ମରିବ ଦଶଗ୍ରୀବ
ତାହାରି ଛଳରେ ଯିନା ଯୁଝେ ଶତଗ୍ରୀବ ।
କାଲି ଚଉଦ ଘଡ଼ିରେ ମରିବ ଶତମୁଖା
ରଜନୀ ପ ହିଲେ ସେ ଏଠାରୁ ଯିବ ଏକା ।
ଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇବ
ମିତ୍ରଙ୍କୁ ଦେଖା ହୋଇ ତୋ ସଙ୍ଗେ ଯୁଝିବ ।
ସମୁଦ୍ର ଭିତରେ ସେତୁ ପଶିବ ଯାଇ ପୁଣ
ଭରକେ ଯୁଦ୍ଧ ତୁ ରେ କରିବୁ ରକ୍ଷଣ ।
ଶ୍ରୀରାମର ଯୁଦ୍ଧକୁରେ ଲଘୁ ନ କରିବୁ
ଛେଦ ଭେଦ ଯୁଦ୍ଧ ତୁ ସେଠାରେ କରିବୁ ।
ଜଳେ ଯୁଦ୍ଧ କଲେ ତୁ କରିବୁ ପ୍ରୟୋଗ
ଅଗ୍ନି ଦେଇ ଶର ତୁ ବିନ୍ଧିବୁରେ ବେଗ ।
ଯେତେ ଆୟୁତନରେ ଶତମୁଖା ଥିବ
ତେତେ ଆୟୁତନରେ ସମୁଦ୍ର ଶୁଖି ଯିବ ।
ତେବେ ସେଠାରୁ ବାହାରହୋଇ ବେଗେପୁଣ
ରଣ ଭୂମିରେ ରଣ କରିବ ରଣ କ୍ଷଣ ।
ପ୍ରହରେ ଯୁଦ୍ଧ କରି ଜଳରେ ପଶିବ
ଦୁଇଥରେ ଦୁଇ ପ୍ରହର ବହି ଯିବ ।
ସେହି ଅଗ୍ନିଶର ଯେ ଶୋଷକ ତାର ନାମ
ମନରେ ରଖି ଥିବୁରେ ଶତ୍ରୁଘନ ପୁଣ ।
ନବକୋଟି ରଥୀ ଯେ ଅଛନ୍ତି ତୋହର
ଏହିକ୍ଷଣି ଯିବେ ସେ ସୁବର୍ଣ୍ଣ ଲଙ୍କାପୁର ।
ଆଗହୋଇ ଯିବେ ସେ ନ ରହିବେ ଏଥ
ଲଙ୍କାକୁ କଡ଼ାଇ ଆମ୍ଭେ ସେତୁରେ ରାମଭ୍ରାତ
ରଜନୀ ଦୁଇଘଡ଼ି ଯେ ଘଡ଼ିଏ ବେଳ ଜାଣ
ପ୍ରବେଶ ହୋଇଲେ ନବକୋଟି ରଥୀ ପୁଣ ।

ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବ ହର
ନାରଦ ଯେ ଯକେ କରେ ଅଲଙ୍କା ଗଡ଼ର ।
ନବଗ୍ରହ ଅନ୍ଧାର ବେଳେ ସ୍ୱର୍ଗରୁ ଅଇଲେ
ଶତ୍ରୁଘନ ପାଶରେ ପ୍ରବେଶ ଯେ ହେଲେ ।
କେମନ୍ତେ ଚିହ୍ନିଲେ ସେ ଯେ ଶତ୍ରୁଘନ ବୀର
ଏ କଥା ଗୋଟି ଦେବ କହ ମୋ ଆଗର ।
ସଦାଶିବ ବୋଇଲେ ତୁମ୍ଭେ ଶୁଣ ଭଗବତୀ
ବ୍ରହ୍ମାଙ୍କର ସୁତ ସେ ନାରଦ ଅଟନ୍ତି ।
ବ୍ରହ୍ମ ତେଜରେ ଜଗତ ଆଲୋକ ତାଙ୍କର
ଦେଖିଣ ଶତ୍ରୁଘନ ନମିଲା ପୟର ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଶତଗ୍ରୀବଜଳରେବୁଡ଼ିବାରକହିଲମତେପୁଣ
ଦୁଇଥରରେ ଦୁଇ ପ୍ରହର ବହିଗଲା
ଗଲାବେଳକୁତାହାରଦୁଇଘଡ଼ିଯେବେଳହେଲା
ଆଉ ପ୍ରହରକେ ଯେ ମରିବ ଶତମୁଖା
ସେଥିର କଥା ମୋତେ କହ ପଞ୍ଚମଥା ।
ଈଶ୍ୱର ବୋଇଲେ ଦଶଘଡ଼ି ଗଲା ପୁଣି
ଆଉଥରେ ଶତମୁଖା ସମୁଦ୍ରେ ସ୍ନାନ ଜାଣି
ଯେତେବେଳେ ଶତମୁଖା ରଥକୁବାହୁଦେବ
ତେତେବେଳେ ହନୁମନ୍ତ ରଥ ଉପରେବସିବ
ଜଳରେ ବୁଡ଼ନ୍ତେ ରଥ ହନୁ ବାହୁଡ଼ିବ
କୌଣସି ରୂପେ ସେ ରଥ ନରୋଧି ନ ପାରିବ
ପାର୍ବତୀ ବୋଇଲେ ଦେବ ଆବର କଥା ଶୁଣ
ଶୋଷେକର ଶସ୍ତ୍ରରେ ଶୁଖେ ଜଳ ପୁଣ ।
ଶୁଖିଲା ରହଇ କି ସେ ସ୍ଥାନ ନିଷ୍ଟଳେ
ଏହା ମୋତେ ସଞ୍ଜପି କହିବା ଦିଗମ୍ବରେ ।
ସଦାଶିବ ବୋଇଲେ ସେ କଥା ଦେବୀ କହି
ଶତମୁଖା ଗଲେ ସମୁଦ୍ରେ ମିଶେ ତୁଲହୋଇ
ଜଳରେ ପଶିଲେ ତାକୁ ଶୁଖିଲା ପ୍ରାୟ ମଣି
ପବନ ଦେବତା ତାକୁ ବର ଦେଇଅଛି ପୁଣି
ଅଦ୍ଭୁତ ବିମାନ ଯେ ଅଟେ ସାର ଧାର
ଭୁଟିବାକୁ ନାହିଁ ଯେ ଜଗତ ସଂସାର ।
ସମସ୍ତ ଶସ୍ତ୍ରରେ ଯେଉଁ ପବନ ରହିଲା
ରଥ ନ ଥିଲେ କେମନ୍ତେ ନିଷ୍ଫଳ ହେବ ପରା
ଶସ୍ତ୍ରର ଗୋଟିକ ଯିନା ନିଷ୍ଫଳ ବୋଲି କହି
ଶାଖାମାନଙ୍କୁ ରଥ ବୋଲିଣ ସେ ଥୋଇ ।

ପବନ ଦେବତା ଯେହୁ ଅଟେ ବୁଦ୍ଧି ଜାଣ
ବେଦରୁ ମନ୍ତ୍ର ଗୋଟିଏ ଦେଲ୍ ପରମାଣ ।
ମନ୍ତ୍ରରୁ ନାନା କଥାମାନ ଯେ ଉପୁଜଇ
ଅଗ୍ନି ରଥରେ ଥିବାରୁ ତାହା ଶାନ୍ତି ହୋଇ ।
ପାର୍ବତୀ ବୋଇଲେ ମୁଁ ଯେ ଜାଣିଲି ଏଥର
ରଥ ମୂଳବୀଜ ଯେ ପବନ ଆହାର ।
ଅଗ୍ନି ଭସ୍ମ କେତୁ ତାହାଙ୍କ ଅଟେ ଜାଣ
ବେଦ ମନ୍ତ୍ରରୁ ଔଷଧଟି ହେଲ୍ ପୁଣ ।
ତେବେ ସେ ରୋଗମାନ ହୁଅନ୍ତ ଆପୂର୍ତ୍ତ
ରୋଗମାନେ ଯିନା ଯେ ଅଟଇ ପଞ୍ଚଭୂତ ।
ପଚଶ ପ୍ରକୃତି ଯେ ଜାତ ଭିନ୍ନ କରେ
ହିଂସା ରାଗ ତମ ଯେ ସକଳ ଆବୋରେ ।
କାଳ ଯେତେବେଳେ ଘୋଟେ ଆସି ଜାଣ
କେ ରଖି ପାରବ ସେ ତେତେବେଳେ ପୁଣ ।
ନାରଦ ଆସିଣ ଶତ୍ରୁଘନକୁ ବୁଝାଇଲେ
ସକଳ ବୃତ୍ତାନ୍ତ ଯେ ତାହାକୁ କହିଲେ ।
ବୋଇଲ ମନଭେଦ ଭେଦ ଶତ୍ରୁଘନ
ଜଳନଦୀ ଅଛି ଯେ ଆର ପାଖରେ ପୁଣ ।
ପଥର ଚରଣ ତୁ ଆଣ ଜଳ ଧାର
ତେବେ ସେ ଅନଳ ଯେ ଲଭିବ ସତ୍ୱର ।
ନାରଦ କହିବାରୁ କି କଲେ ଶତ୍ରୁଘନ
ଏହା ମୋତେ ସଞ୍ଚି କହ ହେ ପଞ୍ଚାନନ ।
ଈଶ୍ୱର ବୋଇଲେ ଯେ ନାରଦ ବହିଲେ
ଶତ୍ରୁଘନ ଶୁଣିଣ ମନରେ ତୋଷ ହେଲେ ।
ମନଭେଦ ଶର ଧରିଲେ ବୀର ପୁଣି
ଶରକୁ ଡାଆରିଣ କହିଲେ ସେ ବାଣୀ ।
ବୋଇଲେ ମନଭେଦରେ ବେଗେ ତୁ ଚାଲିଯିବୁ
ପାହାଡ଼ ଦୁଇଫାଳ କରିଣ ଶରବୁ ।
ନଦୀରୁ ଜଳ ଆଣି ନଦୀରେ ମିଶାଅ
ଅଗ୍ନି ନଦୀରେ ମିଶାଇ ଶୀତଳ କରାଅ ।
ଯେବେ ମୁଁ ଶତମୁଖାକୁ ଦେଖିବ ନୟନ
ତେବେ ଶତଗ୍ରୀବର ମୁଁ ହରିବ ଜୀବନ ।
ଏତେ କହି ଶର ଯେ ଛାଡ଼େ ବେଗ କରି
ଚଞ୍ଚଳକ ଶର ଯେ ଘୋରନାଦ କରି ।
ପାହାଡ଼ ଚିରି ଜଳନଦୀରେ ପରବେଶ
ବାଟ ପାଇ ନଦୀ ଯେ ବହିଲ୍ ବିଶେଷ ।

ଅଗ୍ନି ନଦୀରେ ଜଳ ପ୍ରବେଶ ହୋଇଲ୍
ଲେଉଟି ମନଭେଦ ତୂଣୀରେ ସମ୍ଭାଇଲ୍ ।
ଜଳ ପଶିବାରୁ ହେ ଅଗ୍ନି ଗଲେ ନାଶ
ଘଡ଼ିକରେ ଅଗ୍ନି ଜଳକୁ କଲା ଗ୍ରାସ ।
ଲିଭିଲ୍ ହୁତାଶନ ତେଜ ଗଲ୍ ତାର
ଶତମୁଖା ଦେଖିଣ ହେଲ୍ ଚମତ୍କାର ।
ବରିଲ୍ ନିଶ୍ଚୟ ହୋଇଲ୍ ମରଣ
ଏହାର ହସ୍ତରେ ମୃତ୍ୟୁ ହେବ ମୋର ପୁଣ ।
ଲଙ୍କାଗଡ଼କୁ ମୁଁ ଯେ ବହନ ହୋଇଯିବ
ସୁବର୍ଣ୍ଣ ଲଙ୍କାରେ ମୁଁ ଯେ ରାମଙ୍କୁ ଦେଖିବ ।
ନାରାୟଣ ଦରଶନେ ହେବ ମୁଁ ମୁକତ
ଅସୁର ଜନ୍ମରୁ ପାର ହେବ ମୁଁ ନିଶ୍ଚିତ ।
ମିତ୍ରଙ୍କ ଆଗରେ ମୁଁ ଯେ କହିବ ସକଳ
ତୁମ୍ଭ ବୋଲେ ନାଶ ହେଲ ଦେଖ ମିତ୍ରକୁଳ
ମାୟାକର ସମୁଦ୍ରର ଭିତରେ ପଶିବ
ସମସ୍ତେ ଦେଖିଲେ ମୁହିଁ ପ୍ରଶଂସା ପାଇବ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ବରୀ
ଏମନ୍ତ ବିଚାର ଯେ ଶତମୁଖା କରି ।
ନାରଦ ମୁନି ଶତ୍ରୁଘନକୁ କହିଥିଲେ
ନବକୋଟି ରଥ ମୋର ସଙ୍ଗେ ଯିବ ଭଲେ ।
ରଥୀମାନଙ୍କୁ ଯାଇ କହିଲେ ମୁନିବର
ମୋର ସଙ୍ଗେ ଆସରେ ସୁବର୍ଣ୍ଣ ଲଙ୍କାପୁର ।
ରାମାୟଣ ଯୁଦ୍ଧ ତୁମ୍ଭେ ଦେଖିବ ସେଠାରେ
ଶ୍ରୀରାମ ଲକ୍ଷ୍ମଣ ଯୁଦ୍ଧ ରାବଣ ସଙ୍ଗରେ ।
ଏ ଗଡ଼ର ଯୁଦ୍ଧ ଯେ ସରିଲ୍ ଏବେ ପୁଣ
ଶତ୍ରୁଘନ ତୁମ୍ଭର ଯିବରେ ଏହିକ୍ଷଣ ।
ଶତଗ୍ରୀବ ସେ ସ୍ଥାନକୁ ପଳାଇବ ଦେଖ
ସେ ରଣ ଭୂମିରେ ଯୁଦ୍ଧ କରରେ ପ୍ରତ୍ୟକ୍ଷ ।
ଏଠାରେ ଦେଖିଲରେ ସେଠାରେ ଦେଖିବ ।
ଶ୍ରୀରାମଙ୍କ ଦରଶନେ ମୁକତି ଲଭିବ ।
ଶୁଣି ସରଦାର ଶତ୍ରୁଘନ ଠାକୁ ଗଲ
ମୁନି କହିବାର କଥା ଯାଇଣ ଜଣାଇଲ ।
ରାଜମିତ୍ରୀ ବୋଲେ ତୁମ୍ଭେ ଯାଅ ବେଗହୋଇ
ଶ୍ରୀରାମ ଛାମୁକୁରେ ନ ଯିବ ତୁମ୍ଭେ କେହି ।
ଅଲଗା ହୋଇଥିବ ନ ଜାଣିବେ ରାମ
ଶ୍ରୀରାମ ଜାଣିଲେ ଆମ୍ଭେ ହୋଇବା ଅଧମ ।

ବୋଲଟେ ଅସୁରକୁ ନ ପାରିଲେ ମାରି
କେମନ୍ତେ ରାଜ୍ୟ ଏ ଯେ ପାଳନ୍ତି ମୋହରି ।
ଲେଖାରେ ନ ରଖିବେ ହେବ ତୁଚ୍ଛ ବୁଦ୍ଧି
ଶତେମୁଖାକୁ ମାରିଲେ ଆମ୍ଭର ସବୁ ସିଦ୍ଧି ।
ଏହାଶୁଣି ସରଦାର ବେଗ ହୋଇଗଲେ
ସମସ୍ତ ରଥୀଙ୍କି ଯାଇ ସକଳ କହିଲେ ।
ସରଦାର ରଥରେ ବସିଲେ ମୁନିବର
ଚଳିଲେକ ରଘୁବର ପବନରୁଁ ଖର ।
ନବ କୋଟି ରଥ ଯେ ତାହାଁର ପଛେ ଗଲେ
ଦୁଇଘଡ଼ି ମଧ୍ୟେ ଶତେ ଯୁଣ୍ଡ ପାରିହେଲେ ।
ସୁବର୍ଣ୍ଣ ଲଙ୍କା ଗଡ଼ରେ ହେଲେ ପରବେଶ
ଏଥୁ ଅନନ୍ତରେ ଯେ ଶୁଣ କଥାରସ ।
ଅଗ୍ନି ନଦୀ ଯହୁଁ ସେ ଲଂଘିଗଲେ ପୁଣି
ଅଦ୍ଭୁତ ବିମାନରେ ବସିଛି ରାବଣ ।
ଜ୍ୟୋତିର୍ମୟ ଦଶଇ ରଥର ଆୟତନ
ଦେଖିଣ ଶତ୍ରୁଘନ ବିନ୍ଧଇ ଶର ଯୁଣ ।
ଛକ୍ଷଣ ନାରାଚ ଗୋଟି ଯେ ବେଗେ ଚଳିଗଲା
ଶତେଗ୍ରୀବ ହୃଦୟରେ ଯାଇଣ କଣ୍ଟିଲା ।
ଦଶ ଧାରା ହୋଇଣ ବହିଲା ରକତ
ସିଂହରଡ଼ି ଦେଇଣ ଗର୍ଜଇ ଦଇତ ।
କୋଟିଏ ନାରାଜ ହେ ଧନୁରେ ପୂରାଇ
ଶତ୍ରୁଘନ ବିନ୍ଧିଲେ ଦୂରରୁ ଛେଦଇ ।
ଲୁହୁଡ଼ି ପ୍ରାୟ ବରଷେ ନାରାଜ ଯେ ପୁଣ
ବାରେ ବାରେ ଛେଦଇ ଶତ୍ରୁଘନ ପୁଣ ।
ଶତେମୁଖା ରାବଣ ଯେ ଶରବୃଷ୍ଟି କଲା
ଜନପୁର ଯାକରେ ନାରାଜ ଘୋଟାଇଲା ।
ପ୍ରତିଶର ବାବଲି ଛେଦେ ଶତ୍ରୁଘନ
ଛେଦି ପକାଇଲା ସେ ସକଳ ଶର ପୁଣ ।
ସୁମିତ୍ରା ନନ୍ଦନ ସେ ପାଞ୍ଚଶର ମାରି
ଶତେଗ୍ରୀବ ଉପରେ ପଡ଼ିଲା ଯାଇଁ କରି ।
ପାଞ୍ଚଶର ବାଜନ୍ତେ ରାବଣ ମୋହ ଗଲା
ଦେଖିଣ ଶତ୍ରୁଘନ ରଥ ଧୁଆଁଇଲା ।
ବାମ କରରେ ଯାଇଁ ଧରିଲା ତାର ବାଳ
ରଥରୁ ଘୋଷାଡ଼ି ଆଣେ ସୁମିତ୍ରା କୁମର ।
ଭୂଇଁକୁ ଫୋପାଡ଼ି ଦେଲା ତାକୁ ପୁଣ ନେଇ
ତଳେ ପଡ଼ି ଶତଗ୍ରୀବ ଉଠିଲା ଚିଆଇଁ ।
ନିଜ ରଥରେ ଯାଇଁ ଚଢ଼ିଲାକ ବେଗ
ଧନୁଧରି ଶତେ ଶୀର ଦେଖାଏ ବୈରାଗ୍ୟଭାବ
ବଜ୍ର କଟାରି ଯେ ଶତ୍ରୁଘନ କାଢ଼ି
ମାରନ୍ତେ ଶତେ ମୁଣ୍ଡ ବେଗେ ଗଲା ଛିଡ଼ି ।
ତଳରୁ ନ ପଡ଼ୁ ମୁଣ୍ଡ ବେକରେ ଲାଗିଲା
ହସିଣ ଶତେମୁଖା ବଚନ କହିଲା ।
ମୁଣ୍ଡ କାଟନ୍ତେ ଆମ୍ଭେ ନ ମରୁ ରଜାବଳା
ଅଗ୍ନିରେ ପୋଡ଼ିଲେତ ଦେହ ନୁହେଁ କଳା ।
ଜଳରେ ବୁଡ଼ିଲେ ତ ନୁହଇ ମରଣ
ମୋହର ହାତେ ନିଶ୍ଚିତ ଅଟେ ତୋରପ୍ରାଣ ।
ତୋର ଭାଇ ଦୁହେଁରେ ଅଛନ୍ତି ଯେଉଁଠାରେ
ସେହିଠାରେ ତୋତେରେ ମାରିବି ମୁହିଁବଳେ
ଦୁଇ ଭାଇ ରୋଦନ କରିବେ ତାହା ଜାଣି
ତେବେ ସିନା ବୀର ପଣ ହଶିବ ମୋର ପୁଣି
ଆସ ଯିବା ସୁବର୍ଣ୍ଣର ଲଙ୍କାଗଡ଼ ଯାଏ
ଏମନ୍ତ ସମୟରେ ରଜନୀ ଶେଷ ହୁଏ ।
ପୂର୍ବ ଦିଗରେ ଭାନୁ ହେଲେ ପରକାଶ
ନଦୀରୁ କାଢ଼େ ବିମାନ ଜଇନ୍ତା ମୁନି ଶିଷ୍ୟ ।
ମନ୍ତ୍ରୀକି ବୋଇଲାରେ ରଥ ମୋର ବାହ
ସୁବର୍ଣ୍ଣ ଲଙ୍କାଗଡ଼ରେ ଘଡ଼ିକରେ ଥୁଅ ।
ଶତେମୁଖା କହିବାରୁ ରଥ ସେ ବାହିଲେ
ଦୁଇଘଡ଼ି ସମୟରେ ଲଙ୍କାରେ ହୋଇଲେ ।
ନଗ୍ର ନରନାରୀମାନେ ଦେଖନ୍ତି ଯିବାର
ରାଣୀହଂସମାନେ ଯେ ରହିଁଲେ ଉପରର ।
ଶତେଗ୍ରୀବ ପଛରେ ଯେ ଶତ୍ରୁଘନ ଗଲା
ସୁବର୍ଣ୍ଣ ଲଙ୍କା ଗଡ଼ରେ ପ୍ରବେଶ ହୋଇଲା ।
ନବକୋଟି ରଥ ଯେ ସିଂହଦ୍ୱାରେ ଥିଲେ
ତାଙ୍କ ସଙ୍ଗେ ମିଳିଲେ ସୁମିତ୍ରାର ବାଳେ ।
ରଥି ନବକୋଟି ଯେନ ସେଥିରେ ପ୍ରବେଶ
ପାଏକ ପଥ ଛାଡ଼ି ରହିଲେ ସମସ୍ତ ।
ଲଙ୍କାର ଦଇତ ଦେଖି ଆଚମ୍ଭିତ ହେଲେ
ନବକୋଟି ରଥ ଯେ ସାଲେଣି ଲେଖିଲେ ।
କେ ବୋଲନ୍ତି କେଉଁଠାରୁ ଅଇଲାକ ଏହୁ
କେ ବୋଲଇ ଅକଳିତ ବଳ ଅଟେ ଯହୁଁ ।
କେ ବୋଲଇ ଶୂନ୍ୟରେ ଅଇଲେ ସିନ୍ଧୁଡେଇଁ
କେ ବୋଲଇ ଶତେମୁଖାକୁ ଅଛନ୍ତିଗୋଡ଼ାଇ

କେ ବୋଲେ ଶତେଗ୍ରୀବ କା ସଙ୍ଗେ ଯୁଦ୍ଧ କଲା
କେ ବୋଲେ ନ ପାରିବାରୁ ପଳାଇ ଅଇଲା ।
କେ ବୋଲେ ମିତକୁ ହେ ଦେଖିବବୋଲିଆସି
କେ ବୋଲେ କିସ ବାରତା ଶୁଣିମା ବିଶେଷି
ଏମନ୍ତ ବିସ୍ମର ଯେ କରନ୍ତି ସର୍ବଜନ
ଶ୍ରୀରାମ ରାବଣ ଯୁଦ୍ଧ ହେଉଅଛି ଟାଣ ।
ରାବଣ ବିନ୍ଧଲେ ଶ୍ରୀରାମ ତା ଛେଦନ୍ତି
ଶ୍ରୀରାମ ବିନ୍ଧଲେ ରାବଣ ତା ନିବାରନ୍ତି ।
ଏମନ୍ତେ ରଣ ଝଣ ହେଉଛି ସମର
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖି ଶତେମୁଖା ବୀର ।
ରଥରେ ଥାଇଣ ଯେ ଓହ୍ଲିଲା କରକୁ
ଋକ୍ଷ କପିବଳ ଯେ ବହନ ଦିଶେ ତାକୁ ।
ସେନାପତିମାନେ ଯେ ଦିଶନ୍ତି ଗିରିବର
ଯୂଥପତିମାନେ ଯେ ଦିଶନ୍ତି ବଳଆର ।
ମଲ୍ଲ ମହାମଲ୍ଲ ଯେ ଦିଶନ୍ତି ସିଂହ ପ୍ରାୟେ
କପିମାନେ ଦିଶନ୍ତି ଯେ ହସ୍ତୀଙ୍କ ପରିଏ ।
ଯେଣେ ସୁଗ୍ରୀବ ତେଣେ ଋକ୍ଷକପି ସୃଷ୍ଟି
ଲଙ୍କାଗଡ଼ ଘେରି ପାଖେ ଅଛନ୍ତି ସର୍ବଘୋଟି ।
ଶ୍ରୀରାମ ଲକ୍ଷ୍ମଣଙ୍କର ତେଜ ବଳାସ୍ମାର
ଧ୍ରୁବ ମଣ୍ଡଳରେ ଲଗିଣ ଅଛି ଶିର ।
ନୟନ ଯାହାର ଚନ୍ଦ୍ର ସୂର୍ଯ୍ୟ ପୁଣ
ତେଜ ବିକାଶୁ ଅଛି ଅରୁଣ ଉଦେ ଜାଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଶ୍ରୀରାମକୁ ଦେଖି ଶତେଗ୍ରୀବ ଭୟଙ୍କରି ।
ବିସ୍ମରିଲା ମନେ ଏହୁ ବ୍ରହ୍ମାଣ୍ଡ କରତା
ଦୈତ୍ୟ ନିବାରିବାକୁ ଏ ହୋଇଛି ଶକତା ।
ଦୈତ୍ୟ କୁଳକୁ ସେ ଗୃହେଁ ବାମକରେ
ଧନୁଧରି ଉଭା ହୋଇଛନ୍ତି ଦୈତ୍ୟବଳେ ।
ମଧ୍ୟସ୍ଥ ପଣେ ଦୁଇ ବଳ ଯେ ଦେଖନ୍ତି
ସାକ୍ଷୀହେଲା ପ୍ରାୟେତ ଉଭା ହୋଇଛନ୍ତି ।
ଦେଖିଣ ଶତେମୁଖା ବିସ୍ମର କରେ ମନ
ଦଶ ଗ୍ରୀବକୁ ମାରିବ ନିଶ୍ଚୟ ଏହାଙ୍କ ବାଣ
ବାସୁଦେବ ମୁରତି ଅଟେ ନାରାୟଣ ।
ସଚରାଚର ମେଦିନୀ ଅଟେ ଯାର ପୁଣ
ଏତେ ବିସ୍ମରି ଶତେଗ୍ରୀବ ମନ୍ତ୍ରୀକି ବୋଇଲା
ଦଶଗ୍ରୀବ ସମ୍ମୁଖକୁ ରଥ ମୋ ବାହଚୋରି ।

ଶ୍ରୀରାମ ଆଡ଼କୁ ରଥ ପଛ ଭାଗ କରି
ଦଶଗ୍ରୀବ ସଙ୍ଗରେ କଥା ଯେ ଅଛିମୋର ।
ରାଜାଠାରୁ ବଚନ ଶୁଣିଣ ବେନମନ୍ତ୍ରୀ
ଅଶ୍ୱୁଟ ବିମାନକୁ ବାହିଲେ ତଡ଼ତି ।
ଦଶଗ୍ରୀବ ଆଗରେ ରଥ ନେଇ କଲେ
ଶ୍ରୀରାମ ଆଡ଼କୁ ରଥ ପଛ ଭାଗ କଲେ ।
ଦଶଗ୍ରୀବ ମାନ୍ୟ ଯେ କଲେ ତାକୁ ପୁଣ
ଶତଗ୍ରୀବ ବୋଲେ ମିତ ମୋରଠାରୁ ଶୁଣ ।
ତୁମର ବୋଲେ ମୁଁ ଯେ ଅଯୋଧ୍ୟାକୁ ଗଲି
ଶ୍ରୀରାମ ସାନଭାଇ ସଙ୍ଗରେ ଯୁଦ୍ଧ କଲି ।
ସୈନ୍ୟବଳ ପୁଣ ନାତି ମାଇଲା ମୋହର
ସେଠାରୁ ପଳାଇ ଯେ ଆସିଲି ମୁହିଁ ଖର ।
ନିଜଗଡ଼ ଅଲଙ୍କାରେ ପ୍ରବେଶ ହୋଇଲି
ମୋର ସଙ୍ଗେ ଗୋଡ଼ାଇଣ ଆସିଲା ସେ ପେଲି
ନବ କୋଟି ରଥ ଘେନ କୁବଳୟାରେରହିଲା
ରଜନୀ ପ୍ରଭାତେ ମୋର ସଙ୍ଗତେ ଯୁଦ୍ଧକଲା ।
ତିନିଦିନେ ମୋହର ଯେ ତିନିକୋଟି ରଥ
ବାରକୋଟି ସେନାପତି ମାଇଲା ଶିକୋତି ।
ରକ୍ତ ନଦୀ ଯେ କ୍ଷଣକେ ବୁହାଇଲା
ତାହା ଦେଖି ସୈନ୍ୟବଳ ଛାଡ଼ି ମୋତେ ଗଲା
ଗୋଟିଏ ନ ରହିଲେ ପଳାଇଲେ ଛାଡ଼ି
ତା ସଙ୍ଗେ ଯୁଦ୍ଧ ମୁଁ ଏକା ରହିକଲି କଳି ।
ସେଠାରୁ ଅଗ୍ନି ନଦୀ ଭିତରେ ପଶିଲି
ଅନେକ ଶରବୃଷ୍ଟି ରହି ତହିଁ କଲି ।
ଅନେକ ସମର ସେ କୂଳରେ ଥାଇକଲା
ପାହାଡ଼ଚରି ନଦୀ ଜଳ ଅଗ୍ନିରେ ଭରିଲା ।
ଜଳ ପଶନ୍ତେ ଯେ ଅନଳ ଲିଭିଗଲା
ଅନଳ ଲିଭନ୍ତେ ରଥ ବାହାର ମୋର ହେଲା
ରଥକୁ ବାହାର କରି ଅନେକ ଯୁଦ୍ଧକଲି
କୌଣସି ପ୍ରକାରେ ତାକୁ ଜିଣି ନ ପାରିଲି ।
ବିସ୍ମରିଲି ମନରେ ମୁଁ ଯିବି ମିତ ପାଶ
ଯୁଦ୍ଧନକରିବୋଲିମିତମତେକରିବେଅବିଶ୍ୱାସ
ତୁମ୍ଭର ସକାଶେ ଏବେ ବଂଶ ମୋର ମଲେ
ଏଠାରୁ ମୋର କୁଳ କ୍ଷୟ ଯେ ହୋଇଲେ ।
ଯେତେକ ସୈନ୍ୟତାର ମାରଇ ମୁହିଁ ପୁଣ
ରାଜ ପାଖିଲା ବେଳକୁ ଜୀଇଥାନ୍ତି ଜାଣ ।

ଯେତେକ ସୈନ୍ୟ ସେ ମାରଇ ମୋହର
ପାର୍ଥିବ ଦେହ ଛାଡ଼ି ଯାଆନ୍ତି ଯମପୁର ।
ଦଶଗ୍ରୀବ ବୋଇଲା ଶୁଣ ହେ ମଇହ
ଆଜକୁ ମାସେ ଛବଦିନ ଯୁଦ୍ଧ କଲି ମୁଁ ତ ।
ଅନେକ ସୈନ୍ୟବଳ ମୋର କ୍ଷୟ ଗଲେ
ହସ୍ତୀ ଅଶ୍ୱ ସାରେଣୀ ପାଦାନ୍ତି ମାନେ ମଲେ
ରଥୀ ସେନାପତି ଯେ ଭାଇବନ୍ଧୁ ମୋର
ପୁତ୍ର ନାତି କୁଆଇଁ ମଲେକ ସକଳ ।
ଏକା ମୁହିଁ ରାବଣ ଯେ କରୁଅଛି ରଣ
ଏ ରାମ ଅଟନ୍ତି ଯେ ସ୍ୱୟଂ ନାରାୟଣ ।
ଏହାର ହସ୍ତେ ମଲେ ହୋଇବା କାରଣ
ଯେତେବେଳେ ଅବଶ୍ୟ ହୁଅନ୍ତା ମରଣ ।
କ୍ଷତ୍ରୀ ହୋଇକରି ଯେବେ ଯୁଦ୍ଧ ନ କରିବା
ପଛକୁ ଘୁଞ୍ଚିଲେ ତ ନର୍କରେ ପଡ଼ିବା ।
ମଲେ ତ ସ୍ୱର୍ଗବାସ ଆମ୍ଭଙ୍କୁ ହୋଇବ
କାଳେକାଳେ ଆମ୍ଭକଥା ଲେଖାରେ ରହିବ ।
ନାରାୟଣ ନୋହିଲେ କେ ଜଅନ୍ତା ଆସି
ବାନର ଭାଲୁଙ୍କ ବଳ ବଂଶ ମୋ ବିନାଶି ।
ଅନ୍ୟଲୋକ ଘରକ ମୋ ସଙ୍ଗେ କରେ କଳି
ମନ୍ଦର ବିନା କି ସମୁଦ୍ର ହୋଏ ଦଳି ।
ଗଙ୍ଗା ନ ବର୍ଷିଲେକି ସପ୍ତସିନ୍ଧୁ ପୁର
ଧରଣୀ ନ ଥିଲେ କି ରହନ୍ତା ମେରୁଗିରି ।
ନାରାୟଣ ନଥିଲେ କି ଦୈତ୍ୟଯନ୍ତେ ନାଶ
ଦେବଙ୍କର ସବୁବେଳେ ଦୈତ୍ୟଙ୍କଠାରେ ପ୍ରାସ
ତୁମ୍ଭେ ମୋର ପୁତ୍ରହେ ଭଲ ଯୋଗରେ ହେଲ
ଅସମୟ ବେଳେ ମୋତେ ଉପକାର କଲ ।
ତୁମ୍ଭ ବଂଶ ନାଶ ଗଲେ ମୋର ବଂଶ ମଲେ
ଦୁହିଁକ ଏକାଦଶା ହୋଇଛି ଯେ ଭଲେ ।
ନାତି ମୋର ମହୀରାବଣ ପୁଣ ଥିଲା
ସେହୁ ବହୁତ ଯୁଦ୍ଧ ଲକ୍ଷ୍ମଣ ସଙ୍ଗେ କଲା ।
କାଳର ବଳେ ଯାକୁ ମାଇଲେ ରାମଭାଇ
ତାଳଧ୍ୱଜ ରଥ ଯେ ଦେବତା ଦେଲେ ନେଇ
ସେ ରଥେ ବସି ମୋ ନାତିକି ମାରଇ
ତାକୁ ଦେଖିଲେ ମୋର ହାଡ଼ ଯେ ଜଳଇ ।
ଏବେ ଦେଖ ରଥ ପରେ ବସିଛି ଭଗାରି
ତାକୁ ଦେଖି ଆତ୍ମା ମୋର ହେଉଅଛି ଘାର

ଇନ୍ଦ୍ରଜିତ କୁମରକୁ ସେହି ନାଶ କଲା ।
ସେହିଦିନୁ ମୁହିଁ ଯେ ଡରଇ ତାକୁ ଭଲା ।
ନନ୍ଦିଘୋଷ ରଥେ ଦେଖ ବସିଛି ଶ୍ରୀରାମ
ବାସୁଦେବ ଦେବତାର ଅଟେ ଏହୁ ଯାନ ।
ଗ୍ରହଦିନ ଗ୍ରହରାତ୍ର ମୋ ସଙ୍ଗେ ଯୁଦ୍ଧତାର
ଆଜକୁ ପାଞ୍ଚଦିନ ହେଲା ଯେ ସମର ।
କ୍ଷଣେ ବିଶ୍ରାମ ହେ ନାହିଁ ମିତ ପୁଣି
ବେଳକୁ ବେଳ ତେଜ ବଢାଏ ରଘୁମଣି ।
ମୁହିଁ ତାର ସଙ୍ଗେ କରୁଛି ସମର
କେତେଦିନ ଯୁଝିବ ଜଣିଆ ନୃବର ।
ତୁମ୍ଭେ ଯାଇ ବେଳେ ଶତ୍ରୁଘନକୁ ମାର
ସେହି ସିନା ଭଗାରି ଅଟଇ ତୁମ୍ଭର ।
ବଇରି ଅଟଇ ଯେ ଶ୍ରୀରାମର ଭାଇ
ତାହାକୁ ମାଇଲେ ତୋତେ ବହୁତ ଯଶ ହୋଇ
ଯାଅ ବେଗେ ମିତ ହେବା ଳମ୍ବ ନକର ତୁମ୍ଭେ
ଯେତେ ଦିନେ ମାରିବ ମାରତାକୁ ବେଗେ ।
ଶୁଣିଣ ଶତଗ୍ରୀବ ସନ୍ତୋଷ ହୋଇଲା
ଶତେ ଧନୁ ଧରିଣ ବେଗେ ବାହୁଡ଼ିଲା ।
ଶତ୍ରୁଘନ ପାଶରେ ହେଲା ପରବେଶ
ବୋଇଲା ଶତ୍ରୁଘନ ଶୁଣ ମୋ ସନ୍ଦେଶ ।
ସୈନ୍ୟବଳ ମୋହର ନାହାନ୍ତି କେହୁ ପୁଣ
ଏକା ଯୁଦ୍ଧକୁ ମୁଁ ଯେ ଆସିଛି ଏବେ ଜାଣ ।
ତୋ'ର ମୋର ସମର କରିବା ଦିନାକେତେ
ତୋର ଭାଇ ମୋର ମତ ଦେଖନ୍ତୁ ଆନମତେ
ତୁ ମୋତେ ମାରିବୁ ଅବା ମୁଁ ମାରିବି ତୋତେ
ଯେହୁ ହେଲେ ଜଣେ ତ ମରିବ ନିଶ୍ଚେ ।
ସୈନ୍ୟବଳକୁ ତୋର କହରେ ଯାଇ ପୁଣ
କେହି ଯୁଦ୍ଧ ନ କରନ୍ତୁ ଦେଖନ୍ତୁ ରହିପୁଣ ।
ଭାଇ ତୋର ଶ୍ରୀରାମ ଦଶଗ୍ରୀବ ସଙ୍ଗେ ଯୁଦ୍ଧ
ଋକ୍ଷ କପି ଦୈତ୍ୟବଳ ନ ଯୁଝନ୍ତୁ ମଧ୍ୟ ।
ଦୁଇ ପକ୍ଷେ ରହିଣ ଦେଖନ୍ତୁ ସୈନ୍ୟଦଳ
ସେହିରୂପେ ତୋର ରଥୀ ଦେଖନ୍ତୁ ସମର ।
ଶତ୍ରୁଘନ ଡକାଇଲା ସର୍ଦ୍ଦାର ରଥୀ
ବୋଇଲା ତୁମ୍ଭେମାନେ ହୋଇଥାଅ ସାକ୍ଷୀ ।
ଧନୁଶର ଧରିଣ ସେ ରଥରେ ବସିବ
ଶତଗ୍ରୀବ ମାଇଲେ ତୁମ୍ଭେ ସେ ମାରିବ ।

ଶୁଣି ସର୍ଦ୍ଦାର ସବୁ ରଥୀଙ୍କି କହିଲା
ଏଥୁ ଅନନ୍ତରେ କଥା ଏମନ୍ତ ହୋଇଲା ।
ଶତେମୁଖା ଯିବାରୁ ଦଶମୁଖାର ପାଶ
ଦୈତ୍ୟବଳ ଦେଖିଣହୋଇଲେ ସନ୍ତୋଷ ।
ବୋଇଲେ ଦଶଗ୍ରୀବର ମିତ ଏ ଅଟଇ
ମହୀରାବଣକୁ ପଠାଇ ଥିଲା ଯାର ତହିଁ ।
ଶ୍ରୀରାମ ନଜ ରାଜ୍ୟକୁ ଏହୁ ଯାଇଥିଲା
ଯୁଦ୍ଧ କରି ରାମ ଭାଇଙ୍କ କଢ଼ାଇ ଆଣିଲା ।
ବଡ଼ ମାୟା ଛନ୍ଦ ଯେ ଜାଣଇ ଶତେଗ୍ରୀବ
ସୈନ୍ୟବଳ ମରାଇ ଏକାକେ କଲା ଯୁଦ୍ଧ ।
ରାମ ଭାଇ ସଙ୍ଗେ ଦେଖ ଅନେକ ରଥିଛନ୍ତି
ଏହା ସଙ୍ଗରେ ଗୋଟିଏ ପାଦାନ୍ତି ନାହାନ୍ତି ।
ଏହି ଶତେମୁଖା ରାବଣ ସଙ୍ଗେ ପୁଣି
ରାବଣ ଯୁଦ୍ଧକଲା ଯୁଗେକ ପ୍ରମାଣ ।
ହାରିଣ ଦଶଗ୍ରୀବ ତାଟକା ହୋଇଲା
ବାଳି ନୃପବର ଯାଇ କଳିକ ଭାଙ୍ଗିଲା ।
ଯେବେ ରାମ ଭାଇ ସଙ୍ଗେ କରିବ ସମର
ଦେଖିବା ଆମ୍ଭେମାନେ କାହାର ଯୁଦ୍ଧସାର ।
କେକାହାକୁ ଜିଣିବ ଏଠାରେ ଜଣାଯିବ
ଶ୍ରୀରାମର ତିନଭାଇଏଠାରେ ହେଲେ ଠାବ ।
ଏମନ୍ତ ବିଚାର ଯେ କରନ୍ତି ଦୈତ୍ୟବଳ
ଶ୍ରୀରାମ ହାରିଲେ ତ ମରିବେ ସକଳ ।
ପାର୍ବତୀ ବୋଇଲେ ଦେବ ମୋରଠାରୁ ଶୁଣ
ଶତେମୁଖା ଦଶମୁଖ ଦୁହିଁଙ୍କ କଥାପୁଣ ।
ଦୁଃଖ ସୁଖ କୁହାକୁହି ଅଲଗା ହୋଇଲେ
ଯେ ଯାହାର ସ୍ଥାନରେ ଯାଇଣ ରହିଲେ ।
ଶ୍ରୀରାମ ଶତ୍ରୁଘ୍ନ ହୋଇଲେଟିକ ଭେଟ
ଏ କଥା ଗୋଟି ମୋତେ କହିବ ବିଶ୍ୱନାଥ ।
ପାର୍ବତୀଙ୍କ ବଚନେ ଯେ ସଦାଶିବ କହି
ଶତ୍ରୁଘ୍ନ ଶ୍ରୀରାମଙ୍କୁ ନ ଗଲା ଭେଟଦେଇ ।
ବିଚାରିଲା ମନରେ ଦଶରଥ ସୁତ
ଶତେ ମୁଖାକୁ ମାରି ଶ୍ରୀରାମେ ଭେଟିବତ ।
ନମାରିଲେ ଶ୍ରୀରାମ କରିବେ ମୋତେ ନିନ୍ଦା
ଏତେକହି ଅଲଗା ରହିଲା ବୀର ଯୋଦ୍ଧା ।
କରଯୋଡ଼ି ଶ୍ରୀରାମଙ୍କୁ ନମସ୍କାର କଲା
ହୃଦପଦ୍ମେ ରାମନାମ ପଦ ସୁମରିଲା ।

ଶତେକ ଓଳଗି ଯେ ହୋଇଲେ କନିଷ୍ଟ
ବୋଇଲେ ରଘୁନାଥ ପାଇଲେ କେତେକଷ୍ଟ
ଏତେ ଶୁଣି ବୀରବର ଲକ୍ଷ୍ମଣ ଓଳଗିଲା
ନମସ୍କାର କରି ହସ୍ତେ ଧନୁ ଶର ଧଇଲା ।
ଏଥୁ ଅନନ୍ତରେ ଭୁତମ୍ଭ ଶୁଣ ଶାକମ୍ଭରୀ
ଶତେମୁଖା ରାବଣ ଯେ ଗଲା ବେଗ କରି ।
ଦଶମୁଖା ରାବଣର ସଙ୍ଗେ କଥା ହେଲା
ଶ୍ରୀରାମ ଆଗକୁ ରଥ ପଛ ଭାଗ କଲା ।
ଏହାଦେଖି ଶ୍ରୀରାମ କୋଦଣ୍ଡ ରୂପଧାରୀ
ବିଭୀଷଣଙ୍କୁ ବୋଇଲେ ଶୁଣ ହେ ଦଣ୍ଡଧାରୀ ।
ଏଜଣକ କିଏ ଯେ ଅଇଲା ରଥଚଢ଼ି
ବିଭୀଷଣ ବୋଲେ ଶୁଣ କୋଦଣ୍ଡ ରୂପଧାରୀ
ଶତେମୁଖା ରାବଣ ଯେହୁ ଯାର ନାମଗୋଟି
ଦଶମୁଖା ରାବଣର ଅଟଇ ମିତଟି ।
ଅଲଙ୍କା ଗଡ଼ରେ ଅଟଇ ଯାର ଘର
ଛୟାନବେ ଗଣ୍ଡାକୁ ଏ ହୋଇଛି ଅମର ।
ଦେବ ଦାନବରେ ନାହିଁ ଯେ ଯାର ମୃତ୍ୟୁ
ନରଦେହି ରାଜନ ତାକୁ କରିବ ହେତୁ ।
ଜଳରେ ବୁଡ଼ିଲେ ସେ ରହିବ ଯୁଗେ ଯୁଗେ
ଅଗ୍ନିରେ ପଶିଲେ ଦୈତ୍ୟ ନୋହିବ ଭସ୍ମରାଗେ
ପବନ ନ ଜାଟଇ ତାହାର ଶରୀରେ
ଯେତେ ରଣକଲେ କ୍ଷୁଧା ନାହିଁଯେ ତାହାରେ
ଅଷ୍ଟ ବିମାନରେ ଚଢ଼ଇ ଭୟ ନାହିଁ
ତିନପୁର ଚଉଦ ଭୁବନ ଜିଣିଲାଇଁ ।
ନବଖଣ୍ଡ ମେଦିନୀ ଯେ ସପତ ସାଗର
ସାତଦ୍ୱୀପ ଜିଣିଣ ଅଛେ ଏହୁ ସାର ।
ଦେବତାଙ୍କୁ ଜିଣି ଏ ପାଦରେ ଖଟାଇଲା
ସାତଗଣ୍ଡା ଯୁଗଯାଏ ବନ୍ଧ କରିଥିଲା ।
ପବନଦେବତା ବୋଲରେ ତାଙ୍କୁଦେଲାଗୁଡ଼ି
ଦେବେ ସଦାଶିବରେ କଲେକ ଗୁହାରି ।
ସଦାଶିବ ବୋଇଲେ ଆମ୍ଭରେ ନୁହେ ମାରି
ଫେରିଣ ଦେବତାଏ ବ୍ରହ୍ମାଙ୍କୁ ସୁମରି ।
ବ୍ରହ୍ମାବୋଇଲେ ସେ ନୋହିବ ମୋର ବଧ
ବାସୁଦେବଙ୍କୁ ଯାଇ କହିଲେ ସୁରସିଦ୍ଧ ।
ବାସୁଦେବ ବୋଇଲେ ନୋହେବଧ ମୋରେ
ପବନ ଦେବତାକୁ ଅଭୟ ବର ଦେଲେ ।

ଅଦ୍ଭୁତ ବିମାନ ଯେ ଦେଲେକ ମରୁତ
ତାଙ୍କୁ ମାରିବାକୁ ଆମ୍ଭେ ନୋହୁ ଯେ ସାମର୍ଥ
ଦେବତାଏ ବୋଇଲେ ଏ କେମନ୍ତେ ମରିବ
ବାସୁଦେବ ବୋଇଲେ ବର୍ଷ୍ଯାଳଗି ଯୁଗଯିବ
ମଞ୍ଜପୁରେ ଜମ୍ବୁଦ୍ୱୀପେ ଆମ୍ଭେ ହେବୁଜାତ
ଚତୁର୍ଦ୍ଧା ମୂରତି ଆମ୍ଭର ହୋଇବ ସମ୍ଭୂତ ।
ଆୟୁଧ ଆମ୍ଭର ଡାହାଣ ବ୍ରତ ଶଙ୍ଖ
ସେହି ହୋଇଥିବ ମୋର କନେଷ୍ଟଭ୍ରାତ ।
ତାହାର ହସ୍ତରେ ମୃତ୍ୟୁ ପାଇବ ଦନୁଜ
ତେତିଶକୋଟିଦେବଙ୍କରଧେନବ ସେହୁତେଜ
ସବୁ ଦେବତାଙ୍କର ସହସ୍ର ଧରିବ
ଅସୁରଦଳଣ ରଥ ସେହୁ ଯେ ଚଢ଼ିବ ।
ଜନମା ସାରଥି ହେବ ପୁଷ ହେବ ରଥୀ
ଦଣ୍ଡଦିନ ମଧ୍ୟରେ ମରିବ ମହାକ୍ଷେତ୍ରୀ ।
ଏତେକହି ବାସୁଦେବ ଶୟନ ପୁଣି କଲେ
ଲେଉଟି ଦେବତାମ୍ଭେ ସ୍ୱର୍ଗପୁରେ ଗଲେ ।
କେତେ ଯୁଗ ଅନ୍ତରେ ଦଶଗ୍ରୀବ ପୁଣ
ତାର ସଙ୍ଗରେ ସମର କଲେକ ନ ଜାଣିଣ ।
ଯୁଗେ ପରିଯନ୍ତେ ତା ସଙ୍ଗେ ରଣକଲା
ଜିଣି ନ ପାରିଣ ହାରିଲା ବିଶ୍ରବାର ବଳା ।
ବନ୍ଧ କରି ରଖିଲା ଯେ ଯଇନ୍ତା ମୁନିଶିଷ୍ୟ
ବାଳଶାର ବିଜେ କଲା ଲଙ୍କାନାମେ ଦେଶ ।
ରାବଣକୁ ନ ଦେଖି ପଚ୍ଛରେ ସେହି ପୁଣ
ମନ୍ଦୋଦରୀ ରାଣୀ ଯେ କହେ ତା ଆଗେରଣ ।
ବୋଇଲା ମିତ ଭୁମ୍ଭର ଅଲଙ୍କା ଗଡ଼ଗଲା
ଶତମୁଖା ରାବଣର ସଙ୍ଗେ ଯୁଦ୍ଧକଲା ।
ହାରିବାରୁ ଶତେଗ୍ରୀବ ରଖି ଅଛୁ ଧରି
ମିତଙ୍କୁ ଭୁମ୍ଭର ଯାଇ ଆଣ ହେ ଉଦ୍ଧାରି ।
ତାହାଶୁଣି ବାଳିରାଜା ସେ ପୁରକୁ ଗଲା
ଶତମୁଖା ରାବଣକୁ ବୁଝାଇ କହିଲା ।
ଦଶଗ୍ରୀବକୁ ମୁକୁଳାଇ ଆଣିଲା ସେଠାରୁ
କିଷ୍କିନ୍ଧ୍ୟାକୁ ଗଲାଯେ ଲଙ୍କାରେ ଛାଡ଼ିବାରୁ ।
ଏବେ ତାହାସଙ୍ଗେ କେହୁ ହୋଇବ ଉଗାରି
କଢ଼ାଇ ଆଣିଛୁ ତାର ସଙ୍ଗେ ଯୁଦ୍ଧକରି ।
ମିତ ସଙ୍ଗେ କସ କଥା ହୋଇଣ ଫେରିଲା
ଶତ୍ରୁର ଆଗରେ ଯାଇ ରଥ ଉଭାକଲା ।

ଶ୍ରୀରାମ ଶୁଣିଣ ବୋଇଲେ କଥା ହେଲା ଧାଟ
ଆଜର ଦିବସ ମୋତେ ହୋଇବ ଉଚ୍ଚାଟ ।
ମାରୁତିକ ବୋଇଲେ ତୁ ବେଗହୋଇ ଯିବୁ
ଶତେଗ୍ରୀବସଙ୍ଗେଯୁଦ୍ଧକେକରେଦେଖିଣଆସିବୁ ।
ଶୁଣିଣ ପବନ ସୁତ ବେଗେ ଚଳିଗଲା
ଶତ୍ରୁଘନ ରଥପରେ ଯାଇଣ ବସିଲା ।
ଶତ୍ରୁଘନ ପଚ୍ଚରିଲେ ଶୁଣରେ ବାନର
କେବଣ ଦେଶରେଯେ ଅଟେ ତୋର ଘର ।
କେବଣ କାର୍ଯ୍ୟେ ତୁରେ ଏଠାକୁ ଅଇଲୁ
ମୋର ରଥ ପରେ ତୁରେ ନିର୍ଭୟେ ବସିଲୁ
ମାରୁତିବୋଇଲା ମୋର ଘର କିଷ୍କିନ୍ଧ୍ୟାରେ
ବାଳି ରାଜା ଭଣଜା ମୁଁ ଅଟଇ ଯୁକତରେ ।
ଦଶରଥ ଜ୍ୟେଷ୍ଠପୁତ୍ର ଅଟନ୍ତି ଶ୍ରୀରାମ
ପିତା ସତ୍ୟ ରଖିଣ ସେ ବନକୁ ଆସେ ପୁଣ
ଦଶଗ୍ରୀବ ନାମରେ ସେ ଅଟଇ ରାବଣ
ଶ୍ରୀରାମର ଭାରିଯାକୁ ନେଲା ଚୋରିଇଣ ।
ଜାନକୀ ନ ପାଇ ଶ୍ରୀରାମ କିଷ୍କିନ୍ଧ୍ୟା ପ୍ରବେଶ
ସୁଗ୍ରୀବର ସଙ୍ଗେ ରାମ ହୋଇଲେ ମଇତ୍ର ।
ମଇତ୍ରଛଳେ ରାମ ବାଳିକି ନାଶ କଲେ
ରିକ୍ଷକପି ଘେନି ଶ୍ରୀରାମ ଲଙ୍କାକୁ ଅଇଲେ ।
ସମୁଦ୍ରରେ ସେତୁ ବନ୍ଧ ବାନ୍ଧିଲେ ଆପଣ
ରାବଣ ସଗୋତ୍ର ନାଶ କଲେ ପୁଣ ।
ଏବେ ଏକା ରାବଣ ସଙ୍ଗରେ ଯୁଦ୍ଧ କରି
ରାବଣକୁ ମାରି ଶ୍ରୀରାମ ଯିବେ ନିଜ ପୁରୀ ।
ସାନୁଜ ଭାଇ ସଙ୍ଗରେ ଅଛନ୍ତି ଲକ୍ଷ୍ମଣ
ରାବଣ ସୁତ ଇନ୍ଦ୍ରଜିତ କୁମାର ପୁଣ ।
ଇନ୍ଦ୍ରଜିତସୁତ ମହୀରାବଣ ପୁଣ ଥିଲା
ପଞ୍ଚ ଭୁଅ କରିଣ ଲକ୍ଷ୍ମଣଙ୍କୁ ହରିନେଲା ।
ତାଳଧ୍ୱଜ ରଥରେ ଚଢ଼ିଣ ସଉମିତ୍ରୀ
ପ୍ରାଣ୍ଡବନେ ତାହାଙ୍କୁ ମାରିଲେ ନିପାତି ।
ସେଠାରୁ ରାବଣ ସଙ୍ଗେ ଶ୍ରୀରାମ କରି ଯୁଦ୍ଧ
ପ୍ରାଣ୍ଡବନ ହେଲା ଷଣେ ନାହିଁ ଯେ ବିରୋଧ ।
ଶତମୁଖା ରାବଣ ଯେ ଅଇଲା ବହନ
ଦଶମୁଖା ସଙ୍ଗେ କଥା ହୋଇଲା ସେ ପୁଣ ।
ବେଗେ ଫେରି ଆସି ତୁମ୍ଭ ଆଗରେ ମିଳିଲେ
ତାଙ୍କୁ ଦେଖି ଶ୍ରୀରାମ ବିଭୀଷଣଙ୍କୁ ପଚାରିଲେ ।

ବିଭୀଷଣଙ୍କୁ କହିଲେ ସେ ଶତଗ୍ରୀବ ବାଣୀ
ତାହାଶୁଣି ମୋତେଯେ ପେଷିଲେ ରଘୁମଣି ।
ମୁହିଁ ଦାସ ଯେଣୁ ହେ ଅଟଇ ତାଙ୍କର
ତେଣୁମୋତେ ଭେଦଦେଲେ ତୋହରସ୍ଥମୁର
ଶତ୍ରୁଘନ ବୋଇଲେ ତୁ ଶ୍ରୀରାମର ଦାସ
ନୋହିଲେ ତୋତେ ମୁଁରେ କରନ୍ତିଆଜନାଶ
ଶ୍ରୀରାମ ଠାକୁର ତ ସବୁର ଅଟେ ସ୍ୱାମୀ
ଯାହାର ନାମ ଜପିଲେ ମୁକ୍ତ ହୋନ୍ତି ମୁନି ।
ଲକ୍ଷ୍ମଣ ଠାକୁର ମୋର ଶକ୍ତିଭେଦ ବେଳେ
ଏକ କପି ଯାଇଣ ଗନ୍ଧମାର୍ଦ୍ଦନ ହେଲେ ।
ଶ୍ରୀରାମ ହୁକୁମରେ ଆଣିଲା ଔଷଧି
ଅଯୋଧ୍ୟା ବାଟରେସେ ଶୂନ୍ୟରେଆସିଭେଦି
ଭରଥ ନାମେ ବୀର ଯେ ତାହାକୁ ଦେଖିଲେ
ବଜ୍ରବାଟୁଳି ମାରିଣ ତାହାକୁ ମୋହ କଲେ ।
ତାହାଠାରୁ ଶୁଣିଲେ ଶ୍ରୀରାମ ରାବଣ ଯୁଦ୍ଧ
ଲକ୍ଷେଶ୍ୱରୀ ଯେଜନ ଆସେ କୈକେୟୀ ତନୁଜ
ଚଉଦନ୍ଦନ ଯେ ହୋଇଲା ଆଜକୁ
ସୈନ୍ୟବଳ ଘେନିଣ ଅଇଲେ ରାମ ଠାକୁ ।
ତହିଁର ପ୍ରହର ଦିନ ଗଲାର ଉତ୍ତାରୁ
ଶତମୁଖା ରାବଣ ଯେ ଗଲା ଅଲଙ୍କାରୁ ।
ରାଜ୍ୟକୁ ଜଗିଥାବୋଲି ମୋତେସେ ରଖିଲେ
ସୈନ୍ୟବଳ ଅଯୋଧ୍ୟାରୁ ଗୋଟିଏ ନ ଆଣିଲେ
ସେଆସିବାରୁ ଶତଗ୍ରୀବ ସେଠାରେପ୍ରବେଶ
ଅନେକ ଯୁଦ୍ଧ ମୋସଙ୍ଗେ ଯଇଲା ମୁନିଶିଷ୍ୟ ।
ପାଞ୍ଚଦିନଯାଏ ଅଯୋଧ୍ୟାରେ ଯୁଦ୍ଧ କଲା
ସୈନ୍ୟବଳ ପୁତ୍ରନାତି ସମସ୍ତ ମାଇଲା ।
ସେଠାରୁ ପଳାଇଲା ନିଜ ରାଜ୍ୟକୁ ତାର
ଗୋଡ଼ାଇ ଅଇଲି ମୁଁ ତାହାର ସଙ୍ଗତର ।
ଛଦିନ ତାର ରାଜ୍ୟେ ଯୁଦ୍ଧ ମୁହିଁ କଲି
ସକଳ ସୈନ୍ୟ ମୁଁ ତାର ମାରି ପକାଇଲି ।
ଯେତେ ସୈନ୍ୟଥିଲେ ସର୍ବେ ଗଲେକପଳାଇ
ଗୋଟିଏ ସଙ୍ଗତରେ ନ ରହିଲେ କେହି ।
ଅଗ୍ନି ନଦୀ ଗୋଟିଏ ଗଡ଼କୁ ଅଛି ବେଢ଼ି
ସେଥିରେ ଶତମୁଖା ରହିଲା ଯାଇ କରି ।
ପାହାଡ଼ ଚିରି ମୁଁ ଗୁପ୍ତ ଗଙ୍ଗାକୁ ଆଣିଲି
ଅଗ୍ନି ନଦୀ ଗୋଟିକ ଶୀତଳ ପୁଣି କଲି ।

ସେଠାରୁ ପଳାଇ ଅଇଲା ଶତମୁଖା ରାବଣ
ଏଠାରେ ପ୍ରବେଶ ଯେ ହୋଇଲା ତୁମ୍ଭେଜାଣ
ଦଶଗ୍ରୀବ ସଙ୍ଗରେ ଆସି ହେଲା ଭେଟ
କ କ ଶିଖାଇଲା ତାକୁ ମନ୍ଦୋଦରୀ କାନ୍ତ ।
ତାର ପଛେ ମୁଁ ଅଇଲି ସବୁର ଯେ ହୋଇ
ନବକୋଟି ରଥି ମୋର ସଙ୍ଗରେ ଅଛଇ ।
ଦଶଗ୍ରୀବ ଠାବରୁ ଫେରେ ଶତଗ୍ରୀବ
ମୋତେ ବୋଇଲେ ଶୁଣହେ ସୁମିତ୍ରା ତନୁଜ
ତୋର ମୋର ଯୁଦ୍ଧ ଯେ କରିବାକ ପୁଣ
ଜଣ ଜଣକୁ ଯୁଦ୍ଧ ଯେ ଅଟଇ କାରଣ ।
ମୁହିଁ ସ୍ୱୀକାର ଯେ ସେ କଥାକୁ କଲି
ନବକୋଟି ରଥିଙ୍କୁ ସାଥିରେ ରଖିଲି ।
ହନୁମନ୍ତ ବୋଇଲା ଶ୍ରୀରାମର ଜୟ ତୁହି
ଏହି ରଥଗୋଟିକ କେଦେଲା ତୋତେନେଇ
ଏ ସ୍ତ୍ରୀ ସାରଥି ଗୋ ଅଟନ୍ତି ତୋର ଜୟ
ଏହା ମୋତେ କହିଲେ ମୁଁ ଯିବ ରାମପାଶ ।
ଶତ୍ରୁଘନ ବୋଇଲେ ମୁଁ ଶ୍ରୀରାମଙ୍କ କନିଷ୍ଠ
ଅସୁର ଦଳର ରଥ ଦେଲେ ଶଚୀକାନ୍ତ ।
ସକଳ ଦେବତାମୋତେ ଆୟୁଧମାନଦେଲେ
ସୁରଗଣେ ମୋଠାରେ ସୁଦୟା ଭାବକଲେ ।
ସାରଥି ମୋହର ମାତା ଅଟନ୍ତି ନୀଳାବନ୍ତି
ଦେବେ କହିବାରୁ ସେ ହୋଇଲେ ସାରଥି ।
ଯାଅ ଶ୍ରୀରାମକୁ ତୁହି କହିବୁ ବାରତା
ହନୁମନ୍ତ ବୋଇଲା ଶୁଣ ହେ ମୋର କଥା ।
ଶ୍ରୀରାମ ଚରଣେ କମ୍ପା ଦର୍ଶନ ନକଲୁ
ତହିଁଦେଇଣ କମ୍ପା ଯୁଦ୍ଧକୁ ନ ଆସିଲୁ
ଶତ୍ରୁଘନବୋଇଲେମୋର ଶତ୍ରୁକୁନାଶକଲେ
ତେବେ ଦର୍ଶନ କରିବି ମୁଁ ଶ୍ରୀରାମ ପଦ୍ମରେ ।
ଶୁଣିକରି ହନୁମନ୍ତ ବେଗେ ଚଳିଗଲେ
ନନ୍ଦିଘୋଷ ରଥରେ ଯାଇଣ ଉଠିଲେ ।
ଶ୍ରୀରାମଙ୍କୁ ବୋଇଲେ ଯେ ପବନର ସୁତ
ସେ ରଥି ଅଟନ୍ତି ଦେବ ତୁମ୍ଭର କନିଷ୍ଠ
ସାରଥି ନୀଳାବନ୍ତି ମାତା ଅଟନ୍ତି ତୁମ୍ଭର
ଦଶଦିନ ଯୁଦ୍ଧ କଲେ ଦଶମୁଖା ସଙ୍ଗତର ।
ଦେବଙ୍କର କୁଟକଥା ମୁଁ ତାହାଠାରୁ ଶୁଣିଲି
ଦେବେ ସହା ହେବାରୁ ଯୁଦ୍ଧକରେ ଫେରି ।

ଶତେମୁଖାକୁ ଦଶମୁଖା ଅଯୋଧ୍ୟା ଭେଟିଲା
ମୋର ଶତ୍ରୁ ରାମ ଭାଇଙ୍କ ମାରଯା ବୋଇଲା
ସେ ଠାବକୁ ଶତେମୁଖା ବଳ ଘେନଗଲା
ସ୍ୱର୍ଗରେ ଇନ୍ଦ୍ର ଦେବତା ତାହାବଳୁ ହରିଲା ।
ବ୍ରହ୍ମାଶିବ ଦେବତା ଯେ ହେଲେ ଏକ ମେଳ
ଅସୁର ଦଳନ ରଥ କଲେକ ବାହାର ।
ଶତ୍ରୁଘନକୁ ନେଇଣ ସେ ରଥ ଦେବେଗେଦେଲେ
ସମସ୍ତ ଆୟୁଧ ତୋର ଭାଇତ ସମର୍ପିଲେ ।
ଶତେମୁଖାକୁ ଦେଖି ତୁମ୍ଭ ଭାଇ ଭ୍ରଟନ୍ତ ଯୁଦ୍ଧ
ପୂର୍ଣନାଶ ସୈନ୍ୟବଳ ହୋଇଲେ ତାର ବଧ
ସେଠାରୁ ଶତେଗ୍ରୀବ ପଳାଇ ଅଇଲା
ନିଜରାଜ୍ୟ ଅଲଙ୍କାରେ ପ୍ରବେଶ ହୋଇଲା ।
ନବକୋଟି ରଥ୍‌ଘେନ ତୋ ଭାଇ ସଙ୍ଗରେ
ଗୋଡ଼ାଇ ଅଇଲା ତାର ପଛରେ ସତ୍ୱରେ ।
ଅଲଙ୍କା ଗଡ଼େ ବୁଳି ବନ ଯୁଦ୍ଧ କଲେ
ଖଣ୍ଡନେ ସୈନ୍ୟ ବଳ ସମସ୍ତ ନାଶିଲେ ।
କେତେ ମଲେ କେତେ ପଳାଇ ଗଲେ ପୁଣ
ଅଗ୍ନି ମୁଖରେ ଶତମୁଖା ପଶିଲା ଯାଇଣ ।
ଗୁପ୍ତଗଙ୍ଗାଙ୍କୁ ଆଣିଲେ ତୁମ୍ଭଭାଇ ଶର ବନ୍ଧ
ଅଗ୍ନିକ ଶୀତଳ କରି ଶତେମୁଖାକୁ ଗଞ୍ଜି ।
ସେଠାରୁ ଶତେମୁଖା ପଳାଇ ଅଇଲା
ନବକୋଟି ରଥ ଘେନ ଭାଇ ଗୋଡ଼ାଇଲା ।
ଦଶଗ୍ରୀବ ସଙ୍ଗରେ ଶତେଗ୍ରୀବର କଥା
ଫେଣିକରି ଶତ୍ରୁଘନ ସଙ୍ଗରେ କରେ କଥା ।
ଶ୍ରୀରାମ ବୋଇଲେ ଦୈତ୍ୟ ଅଟନ୍ତ ମାୟାବୀ
ମିତକୁ ପଠାଇ ମୋ ରାଜ୍ୟରେ ଯାଇ ଯୁଝି ।
ଯେତେ ମାୟା କଲେ କରେ ଜୀଇବୁ ଚନ୍ଦ୍ରମୁଖା
ସଖା ସହୋଦର ତୋରରେ ନରଖିବ ପଖା ।
ହନୁମନ୍ତ ବୋଇଲା ଦେବ ଆହୁରି କଥା ଶୁଣ
ଲକ୍ଷେରାଜା ଭରଥ ଯେ ବରଣ କଲେ ପୁଣ ।
ତୁମ୍ଭ ଅଭିଷେକକୁ ଅଇଲେ ସର୍ବ ରାୟ
ଅଯୋଧ୍ୟାରେ ଛୁଣ୍ଡିଆଣି କଲେ ଭୂଅ ରାୟ ।
ଯେତେବେଳେ ଲକ୍ଷ୍ମଣଙ୍କୁ ଶକ୍ତିଭେଦ ହେଲା
ମୋର ଠାରୁ ଖବର ହେ ଭରତ ପାଇଲା ।
ଶକ୍ତିଭେଦ ବାର୍ତ୍ତିକନ ଲକ୍ଷେରାଜା ଘେନ
ଜଙ୍ଗଲ କଟାଇ ଭ୍ରତ ଅଇଲେକ ପୁଣି ।

ଚଉଦ ବରଷ ହେଲା ଆସିଲେଣି ପୁଣ
ରାମାୟଣ ଯୁଦ୍ଧ ଦେଖି ରାଜାଙ୍କର ମନ ।
କାଲି ଆଜ ଭିତରେ ହେବା ପରବେଶ
ରାଜ୍ୟରେ ଦେବତାମାନେ ତୁମ୍ଭର କଲେ ବାସ
ଭରଥ ଆସିବାରେ ଯେ ବୃତ୍ତାନ୍ତ ଗଲା
ଶତେମୁଖା ତୁମ୍ଭ ରାଜ୍ୟେ ଯାଇ କଳକଲା ।
ଶ୍ରୀରାମ ବୋଇଲେ ହନୁ ଶୁଣ ମୋ ବଚନ
ଓଁଶତ୍ରୁଘନ ଦେଖା କମ୍ପା ନୋହିଲାରେ ପୁଣ ।
ହନୁମନ୍ତ ବୋଲେ ଦେବହେ ଶତ୍ରୁ ନମାଇଲେ
ତୁମ୍ଭର ଗ୍ରାମକୁ ସେ ଯେ ନ ଆସିଲ ଭଲେ ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ମନ ହେଲେ
ଦଶଗ୍ରୀବଙ୍କୁ ଅନାଇ ବଚନ କହିଲେ ।
କରେ ଚନ୍ଦ୍ରମୁଖା ମାୟା ତୋର ବଡ଼
ନାଟକ ଶିଖାଇଲୁରେ ଲକ୍ଷ୍ମଣ ସଙ୍ଗେ ଗାଢ଼ ।
ଏବେତୋର ନାଟରେ କେଉଁଠାରେ ଅଛୁ
ଇନ୍ଦ୍ରଜିତ ସଙ୍ଗକୁ ଗଲାଣି ସେହିଟି ।
ମିତକୁ ଶିଖାଇବାରୁ ମୋ ରାଜ୍ୟକୁ ପୁଣଗଲା
ମୋର ସାନଭାଇ ସଙ୍ଗେ ସମର ଯେ କଲା ।
ତୋହର ସକାଶୁ ତୋ ପୁତ୍ର ନାଶ ମଲେ
ଏବେ ନକଟେ ତୁ ଯିବୁ ଯମ ଆଳେ ।
ଆଉ କଏ ଅଛୁରେ ତୋର ଶାଖା ଶୁଣ
ତାହାକୁ ଘେନ ଆସରେ ତୋ ସଙ୍ଗକୁ ପୁଣ ।
ମୋହର ଶାଖ ଦେଖରେ ମୋ ସଙ୍ଗେ ଲକ୍ଷ୍ମଣ
ଆବର ଶାଖା ଦେ ଆସିଛୁ ଶତ୍ରୁଘନ ।
ଆହୁରି ଶାଖା ଟାଲରେ ଆସିଣ ମିଳବ
ତୋର ଶାଖା କଏ ଅଛୁ ଆଣରେ ଦଶଗ୍ରୀବ
ସ୍ଥିର ହୋଇ ଲୁହରେ ସେଉନ୍ତା ଗୁଣବନ୍ତ
ଆପଣେ ମରି ତୁ ପରକୁ ଦୁଃଖ ଦେଉ ।
ରାବଣ ବୋଇଲା ମୁଁ ଏକାରେ ସାମରଥ
କେମନ୍ତେ ମାରିବୁ ତୁରେ ଦଶରଥ ସୁତ ।
ଏମନ୍ତ କଥା ଦୁଇଜଣ ହେଲେ ପୁଣ
ଧନୁକୁ କରେ ଧରିଣ ଚଢ଼ାଇଲେ ଗୁଣ ।
ପାଞ୍ଚଶ ବିନ୍ଧାଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ରାଣୀ ମନ୍ଦୋଦରୀ ଜାଣିଲାଟିକ ପୁଣ ।
ଶ୍ରୀରାମ ରାଣୀ ଯେ ଅଟନ୍ତି ଜାନକୀ
ଶାଶୁ ଶ୍ୱଶୁର ଆସିବାର ସେହିଟିକ ।

ସଦଶିବ ବୋଇଲେ ଶୁଣ ହେ ଗଉରୀ
ଖବର ଜଣାଇଲା ଯାଇଣ ମନ୍ଦୋଦରୀ ।
ଆଜର କଥା ଶୁଣ ମୋରଠାରୁ ଏବେ
ଶତେମୁଖା ରାବଣ ଯେ ମିତ ତୁମ୍ଭର ହେବେ
ତୁମ୍ଭର ସ୍ୱାମୀ ବୋଲରେ ଅଯୋଧ୍ୟାପୁର ଗଲା
ରାମଭାଇ ସଙ୍ଗରେ ଯୁଦ୍ଧ ପାଇଁ କଲା ।
ପୁତ୍ରନାଶ ସୈନ୍ୟବଳ ମାଇଲେ ରାମଭାଇ
ସେଠାରୁ ଗତେମୁଖା ଯେ ଅଇଲା ପଳାଇ ।
ତାର ପଛେ ଶ୍ରୀରାମର ଭାଇ ଗୋଡ଼ାଇଲେ
ତୋର ସ୍ୱାମୀ ସଙ୍ଗତରେ କଥା ସେହୁ ହେଲେ
ପୁଣି ଯୁଦ୍ଧ କରିବାକୁ ହୋଇଲେଣି ସଜ
ମନ୍ଦୋଦରୀ ବୋଇଲା ଉସତ ନ ପାଇବ କାର୍ଯ୍ୟ
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଅସୁରୁଣୀମାନେ ଯେ ଯାଇଥିଲେ ଫେରି ।
ମନ୍ଦୋଦରୀ ପାଶରେ ଯେ ଥିଲେ ସାତଜଣ
ଖବରକୁ ଶୁଣି ଲେଉଟିଲେ ପୁଣ ।
ଅଶୋକ ବନରେ ସେ ଯେ ହେଲେ ପରବେଶ
ତ୍ରିଜଟାକୁ ଦେଖିଣ ସେ ହେଲେ ହସ ହସ ।
ତ୍ରିଜଟା ବୋଇଲେ ଯେ ହରଷ ତୁମ୍ଭ ମନ
କସ କଥା ଶୁଣିଲ ଗୋ କହିବ ବଦନ ।
ଅସୁରୁଣୀ ବୋଇଲେ ବିଚିତ୍ର କଥା ଆଜ
ଦଶମୁଖର ମିତ ଯେ ଶତେମୁଖା ବୁଝ ।
ଦଶଗ୍ରୀବ ବାକ୍ୟରେ ଅଯୋଧ୍ୟା ପୁର ଗଲା
ରାମଭାଇ ସଙ୍ଗରେ ସେ ଅନେକ ଯୁଦ୍ଧ କଲା ।
ଶ୍ରୀରାମର ଭାଇ ତାର ମାଇଲେ ପୁତ୍ର ନାତି
ସୈନ୍ୟବଳ ସହିତରେ ମାଇଲା ବକୋଟି ।
ସମସ୍ତଙ୍କୁ ମାରାଇ ସେଠାରୁ ପଳାଇଲା
ଶ୍ରୀରାମର ଭାଇ ତାର ପଛେ ଗୋଡ଼ାଇଲା ।
ଅଲଙ୍କା ଗଡ଼ରେ ସେ ହେଲା ପରବେଶ
ରାମଭାଇ ତାର ସଙ୍ଗେ କଲେ ଯୁଦ୍ଧରସ ।
ସେଠାରେ ଅନେକ ମାଡ଼ ମାଇଲା ଶତ୍ରୁଘନ
ପଳାଇଲେ ସୈନବଳ ବାଟ ନ ପାଇଣ ।
ସେଠାରୁ ଦଶଗ୍ରୀବ ପଳାଇ ଆସିଲା
ଲଙ୍କାଗଡ଼ରେ ଆସି ପ୍ରବେଶ ସେ ହେଲା ।
ଦଶଗ୍ରୀବର ସଙ୍ଗରେ ହେଲା ପୁଣି କଥା
ଏବେ ଯୁଦ୍ଧକୁ ସେ ଯେ ହେଲେ ସାମରଥା ।

ଶ୍ରୀରାମର ଭାଇନାମ ଅଟେ ଶତ୍ରୁଘନ
ଅସୁର ଦଳଣ ରଥେ ଚଢ଼ିଅଛୁ ପୁଣ ।
ଜନମ୍ମା ମାଳାବନ୍ତି ସାରଥି ଅଟେ ତାର
ସେ ରଥରେ ଧନୁ ଧରି ବସିଛୁ ମହାବୀର ।
ଶ୍ରୀରାମ ଯେ ତାହାକୁ ଦେଖିବାର ପାଇଁ
ହନୁମନ୍ତ ଶେଷିଣ ଡ଼କାଇଲେ ସେହି ।
ଶତ୍ରୁଘନ ବୋଇଲେ ମୁଁ ଘୁଞ୍ଚି ନ ଯାଇପାରେ
ଶତ୍ରୁକୁ ମାଇଲେ ମୁଁ ଯେ ଯିବି ତାଙ୍କ ଠାରେ
ଏତେକହି ଶର ଯେ ଧନୁରେ ଦେଲା
ତାହା ଶୁଣି ତ୍ରିଜଟ ହସିଣ କହିଲା ।
ବୋଇଲେ ଭଲ କଥା ଶୁଣିଲନା ଏବେ
ଜାନକୀର ଶାଶୁ ବୁଢ଼ୀ ଆସିଅଛୁ ଯେବେ ।
ଦେଖିବା ଆମ୍ଭେ ତାକୁ କେମନ୍ତେ ଅଟେଟଶୀଘ୍ର
ଦେଖିଲେ ଅସୁରେ ତାକୁ କରିବେ ଅବାଲେଖ
ଜାନକୀ ବୋଇଲେ କେତେ କରୁଗୋ ଇଙ୍ଗିତ
ସେ କମ୍ପାଇ ଆସିବେ ଲଙ୍କାଗଡ଼ ପୃଥି ।
ନରେଖ ମୂର୍ତ୍ତି ସିନା ମୋ କାନ୍ତ ଅଟେ ଦୁଃଖୀ
ମୋ ଶ୍ୱଅର ମାନେ କମ୍ପା ଆସିବେ ଏଥିକି ।
କେଉଁଯୋଗେ ଶ୍ୱଅର ଗୋଟିଏ ସଙ୍ଗେ ଥିଲା
ସେହି ପୁଣି ବହୁତ ଦୁଃଖ ଯେ ପାଇଲା ।
ଚଉଦବର୍ଷ ଛମାସ ଆହାର ତାର ନାହିଁ
ଆମ୍ଭ ଦୁଇ ଜଣଙ୍କର ବୋଲରେ ଯେ ଥାଇ ।
ମୋହର ସକାଶେ କେତେ ପାଇଲା ସେ ଦୁଃଖ
ମୋ ସ୍ୱାମୀ ସଙ୍ଗେ ଶାଖା ହୋଇଛୁ ସେ ମାତ୍ର ।
ତୁମ୍ଭ ବେଳ ପଡ଼ିଛୁ ପରିହାସ କରିବାକୁ
ବିଧାତା ଲେଖିଛୁ ମୋ କର୍ମେ ଏହା ସହିବାକୁ
ଏତେ କହି ଜାନକୀ ନୟନୁ ନୀର ବହି
ବଇଦ ଏମନ୍ତରେ କପାଳେ ଥିଲୁ ଲହି ।
ଏତେ କହି ରୋଦନ ଯେ କରେ ରାମନାରୀ
ତ୍ରିଜଟା ବୋଇଲେ ଶାଶୁ ମଲେ କି ତୁମ୍ଭରି
ଭଲକଥା ମାନ ତ ପ୍ରବେଶ ଆସି ହୁଏ
ଏଥିକି ବିରୋଧ ମନ କର କମ୍ପା ମାଏ ।
ଭଲ ଖାଲେ ଶୋକ ଯେ ନ କର ସ୍ୱଦମୂର୍ତ୍ତି
ଆଜନ୍ମ କଥାମାନ ଜାଣିବୁ ଯେ ବୁଝି ।
ଶୁଣିକରି ଜାନକୀ ଯେ ଶୋକ ସମ୍ଭାଳିଲେ
ଅଗ୍ନି ଦେବତାକୁ ମନେ ସୁମରଣ କଲେ ।

ତତ୍‌କ୍ଷଣେ ବୈଶ୍ୱାନର ପ୍ରବେଶ ହେଲେ ଆସି
ଦେଖିକରି ଜାନକୀ ତାହାଙ୍କୁ କହେ ହସି ।
ତୁମ୍ଭେ ଏହିକ୍ଷଣି ହେ ରଣଭୂମି ଯିବ
ଦେଖିଣ ମୋ ଆଗରେ ବାରତା କହିବ ।
ରାମ ରାବଣର ଯୁଦ୍ଧ ଅଟେ କେଉଁ ଠାଣ
ପାଞ୍ଚଦିନ ହେଲାଣି କରନ୍ତି ରଣ ପୁଣ ।
ରାତ୍ର ଦିବସରେ ବିଶ୍ରାମ ଦଣ୍ଡେ ନାହିଁ
ଏକଥା ଦେଖି ତୁମ୍ଭେ ଆସିବ ବେଗେ ଯାଇ
ଶୁଣିକରି ବୈଶ୍ୱାନର ଆନନ୍ଦ ହୋଇଲେ
ଅସୁର ରୂପ ଧରିଣ ବେଗେ ଚଳିଗଲେ ।
ରଣ ଭୂମିରେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ବୀର ରାବଣ ଯୁଦ୍ଧ ଅପ୍ରମିତ ।
ସେଠାବରୁ ଫେରିଣ ଖଣ୍ଡେ ଦୂର ଗଲେ
ଶତେମୁଖା ରାବଣକୁ ଯାଇଣ ଦେଖିଲେ ।
ଶତ୍ରୁଘନ ସଙ୍ଗରେ ଯୁଦ୍ଧ ବଡ଼ ଠାଣ
ଶତ୍ରୁଘନ ଧନୁ ଧରି କରେ ଆଗମନ ।
ଶତ୍ରୁଘନ ରଥେ ସାରଥି ଜନନୀ ଯେ ପୁଣ
ତାହାଦେଖି ବୈଶ୍ୱାନର ଲେଉଟିଲେ ଜାଣ ।
ଜାନକୀର ସମ୍ମୁଖରେ ହେଲେକ ପ୍ରବେଶ
ବୋଇଲେ ଶୁଣ ରାଜରାଣୀ ଯେ ବିଶେଷ ।
ଶ୍ରୀରାମ ରାବଣର ହେଉଛି ଯୁଦ୍ଧ ଠାଣ
ବିଶ୍ରାମ ନାହିଁ ଦଣ୍ଡେ କରନ୍ତି ମହା ରଣ ।
ଆଉରି ରାବଣ ଯେ ଆସିଛି ଶତେମୁଖା
ପର୍ବତ ସମାନ ତାର ଶରୀର ଅଟେ ଶିଖା ।
ମେରୁର ସମାନ ସେ ଚଢ଼ିଛି ବିମାନ
ଶତେ ଧନୁ ଧରି ହସ୍ତରେ ସେହୁ ପୁଣ ।
ତାର ସଙ୍ଗେ ତୁମ୍ଭ ସାନ ଦିଅର ଯୁଦ୍ଧ ଠାଣ
ଧନୁଏ ଧରି ଅଛି ତ୍ରୈଲୋକ୍ୟମୟ ପୁଣ ।
ଚଢିଅଛି ଯାନ ଯେ ବିରଜେ ରଣଙ୍ଗଣ
ନେତ୍ର ବୁଜି ଦୁଏ ଶର ବିନ୍ଧଇ ଗରୁ ଠାଣ ।
କ୍ରୋଧରେ ସେ ଜର୍ଜର ରକ୍ତବର୍ଣ୍ଣ ନେତ୍ର
ସର୍ବାଙ୍ଗ ଶରୀର ରଙ୍ଗ ବର୍ଣ୍ଣ ଦିଶଇତ ।
ସେ ଜାନରେ ଷୋଳ ଅଶ୍ୱ ତେଜବର୍ଣ୍ଣ ପୁଣ
ଯୁଡ଼ିଦେଲେ ଭଣ୍ଡପୁର ଲଙ୍ଘିଯିବେ ଜାଣ ।
ସାରଥି ହୋଇଣ ପୁଣ ବସିଛି ଜନନୀ
ଘଡ଼ିକେ ବୁଲାଇ ଆଣି ପାରିବ ମେଦିନୀ ।

ତାହାଶୁଣି ବୈଦେହୀ ଆନନ୍ଦ ହୋଇଲେ
ମୋ ବଡ଼େ ଦିଅର ରାଜ୍ୟ ରହିଲେ ବିସ୍ମରିଲେ
ନିକଟା ବୋଇଲା ପର ଆମ୍ଭ କଥା ମିଛ
ଏବେ ତ ଜନନୀ ଗୋ ଶୁଣିଲ ପ୍ରତ୍ୟକ୍ଷ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଗୋ ଈଶାନ
ଏଥୁଅନନ୍ତରେ କଥା ହେଲା କିସ ପୁଣ
ଈଶ୍ୱର ବୋଇଲେ ରାମ ଧଇଲେ ଧନୁଶର
ରାବଣ ଯେ ଧନୁଶର ଧରଇ ତାଙ୍କର ।
ଧନୁରେ ଗୁଣ ଦେଇ ନାରାଚ ବରଷିଲେ
ଦଶକୋଟି ନାରାଚ ଯେ ଶ୍ରୀରାମ ବିନ୍ଧିଲେ ।
ଅନୁଜ ନାରାଚରେ ରାବଣ ତାହା ଛେଦି
ଲକ୍ଷେ ନାରାଚ ଯେ ଶ୍ରୀରାମଚନ୍ଦ୍ର ବିନ୍ଧି ।
ତାକ୍ଷଣ ନାରାଚ ଯେ ଦଶଗ୍ରୀବ ଛେଦି ଦେଲା
ତାହା ପଛେ ରାବଣ ନାରାଚ ବରଷିଲା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ନାରାଚେ କଲା ପୂଇ
ଦିବସ ଅନ୍ଧାର ଯେ ହୋଇାଇଲାକ ତହିଁ ।
ଶବଦ ଘୋର ନାଦ ତର୍ଜନ ଗର୍ଜନ
କରିଣ ଶରମାନେ ଧାମନ୍ତି ଘନ ଘନ ।
ତାହାଦେଖି ଶ୍ରୀରାମ ଯେ ବିନ୍ଧିଲେ ବାଣଲେ
ସବୁ ଶର ତାର ଯେ କାଟି ପକାଇଲେ ।
ଶତେଗ୍ରୀବ ଶତ୍ରୁଘନ ଯୁଦ୍ଧ ମହାଘୋର
ଦେଖିଣ ଦୈତ୍ୟ ଯେ କମ୍ପଇ ଥରହର ।
ଶତେ ଧନୁ ଧରିଣ କଲାକ ଗର୍ଜନ
ଶତେ ସିଂହର ରଡ଼ି ଦେଲାକ ଦୈତ୍ୟ ପୁଣ
ସୁରଗିରି ଚମକିଲା ଚମକେ ଗଡ଼ଲଙ୍କା
ଋକ୍ଷକପି ବାନର କଲେ ବହୁତ ଶଙ୍କା ।
ସମସ୍ତଙ୍କ ହସ୍ତରୁ ଧନୁ ପଡ଼େ ଖସି
ଆଉଥରେ ଶତଗ୍ରୀବ ଦେଲା ସିଂହରଡ଼ି ।
ରାବଣ ଶ୍ରୀରାମର ଧନୁ ଯେ ହସ୍ତୁ ପଡ଼ି
ସମସ୍ତେ ଶୁଣି ତାଟକା ଶତଗ୍ରୀବ ରଡ଼ି ।
ଆଉଥରେ ସିଂହରଡ଼ି ଦେଲେକ ଶତେମୁଖା
ଧରଣୀ କମ୍ପିଲା ବାସୁକ ତାଟକା ।
ତାହାଶୁଣି ଶତ୍ରୁଘନ ମନେ ବିସ୍ମରିଲା
ମିତର ରଡ଼ି ପାଇ ସିଂହରଡ଼ି ଦେଲା ।
ଏତେ ବିସ୍ମରି ଘାର ଗୁଣ ଟଙ୍କାର କରି
ବଜ୍ର ଶୁଚ ଘଡ଼ଘଡ଼ି ତଡ଼କ ଶର ଧରି ।

ଗୁଣରେ ବସାଇ ମନ୍ତ୍ରପଢ଼ି ଛାଡ଼ିଦେଲା
ତିନିପୁର ଚଉଦ ଭୁବନ କମ୍ପିଲା ।
ନବଖଣ୍ଡ ମେଦିନୀ ଯେ ସପତ ସାଗର
ସପ୍ତଦ୍ୱୀପ ପୃଥ୍ୱୀ ହେଲା ଟଳମଳ ।
ଗର୍ଜନ ନାଦରେ ସିନ୍ଧୁ ଉଛୁଳିଲା
ଶ୍ରୀରାମ ହସ୍ତରୁ ଧନୁ ଝଡ଼ିଣ ପଡ଼ିଲା ।
ଋକ୍ଷକପି ଭଲ୍ଲୁ ଯେ ଶୋଇଲେ ମହୀରେ
ଦୈତ୍ୟବଳ ସମସ୍ତେ ଶୋଇଲେ ଧରଣୀରେ
ହସ୍ତୀଘୋଡ଼ା ସବୁତେ ଧରଣୀରେ ପଡ଼ି
ଦଶଗ୍ରୀବ ଶତେଗ୍ରୀବ ରଥପରୁ ଢଳି ।
ରଥୀମାନେ ସମସ୍ତେ ଯେ ରଥରେ ଶୋଇଲେ
ଲଙ୍କାଗଡ଼ର ଲୋକେ ଯେ ଅଚେତାହୋଇଲେ
ଦେବତାଏ ସ୍ୱର୍ଗରୁ ପଳାଇ ଗଲେ ପୁଣ
ଦଶ ଦିଗପାଳେ ଦେଖି ହେଲେ ଛନଛନ
ପ୍ରଳୟ ହେଲା ପ୍ରାୟେ ଲାଗିଲା ସମସ୍ତଙ୍କୁ
ବାସୁକି ସୁମରିଲା ବାସୁ ଯେ ଦେବଙ୍କୁ ।
ଅନନ୍ତ ନାଗ ଯେ ସହସ୍ର ଫଣାରେ
ମେଦିନୀ ଧରିଲେ ଯେ ନାରାୟଣର ବଳେ ।
ସମୁଦ୍ର ଥରହରେ ଘୁଞ୍ଚିଲାକ ପୁଣ
ସଚରାଚର ମେଦିନୀ ସୁମରେ ନାରାୟଣ ।
ଶ୍ରୀରାମ ବିଚାରିଲେ ଏ ବିପରୀତ ହେଲା
ରାମାୟଣ ଯୁଦ୍ଧର ସମ୍ପୂର୍ଣ୍ଣ ନୋହିଲା ।
ଆଜ ଏ ଶତେମୁଖା ହୋଇବ ସଂହାର
ଗର୍ଜନ ନାଦେ ସମସ୍ତେ ହେଲେ ଅସମ୍ଭାଳ ।
ବେଳୁବେଳ ଗର୍ଜନ କରେ ଦେବଶର
ଆକାଶରେ ଦିନମଣି ହୋଇଲେ ଅସ୍ଥିର ।
ରାମ ବୋଇଲେ ଲକ୍ଷ୍ମଣ ହେଲା ସୃଷ୍ଟି ନାଶ
ଶତ୍ରୁଘନ ଦାଉତ ହୋଇଲା ବିଶେଷ ।
ଜାନକୀ ବସିଥିଲେ ମଣ୍ଡପ ଉପରେ
ଚମକି ପଡ଼ିଣ ସେ ଢଳିଲେ ସେହିଠାରେ ।
ଅସୁରୁଣୀ ଯେତେକ ତାଙ୍କ ସଙ୍ଗେ ଥିଲେ
ମଲା ପ୍ରାୟେ ହୋଇଣ ଭୂମିରେ ପଡ଼ିଲେ ।
ରାବଣର ଯେତେକ ପାଟରାଣୀ ଥିଲେ
ଧରଣୀରେ ପଡ଼ି ଅଚେତା ହୋଇଲେ ।
ଦେଖିକରି ଶ୍ରୀରାମ ମାତଳିକି କହି
କେମନ୍ତେ ସମ୍ଭାଳରେ ହେବ ଏହୁ ମହୀ ।

ଗର୍ଜନ ନାଦ ତ ଶୁଭେ ଘୋର ପୁଣି
ବେଳୁବେଳ ଅସମ୍ଭାଳ ହେଲାରେ ଧରଣୀ ।
ମାତଳି ବୋଲେ ଦେବ କରତା ତୁମ୍ଭେ ଅଟ
ତୁମ୍ଭେତ ରକ୍ଷିପାର ସପତ ପାପ ଯାକ
ଶ୍ରୀରାମ ବୋଇଲେ ମୋତେ ନସ୍ଫୁରଇ ବୁଦ୍ଧି
ଦେବଶର ଗୋଟି ଯେ ଶତ୍ରୁଘନ ସାଧି ।
ସେଇ ମୋର ଅଟଇରେ ଶତ୍ରୁଘନ ଶର
ତାର ଶର ଛେଦିଲେ ଦୁଃଖକରିବ ସେଇମୋର
ବୋଲିବ ରାବଣକୁ ମାରି ନ ପାରିଲେ
ମୋର ଶରକୁ ପୁଣି ଛେଦି ପକାଇଲେ ।
ଆହୁରି କଥାଏ ଶୁଣ ମାତେଳି ଏବେ
ଧନୁଶର ଝଡ଼ିଣ ପଡ଼ିଲା ମୋର ବେଗେ ।
ଧନୁଶର ଧରିବାକୁ ସକ୍ଷ ମୋର ନାହିଁ
କେମନ୍ତ ସମ୍ଭାଳରେ ହେବ ଏହି ମହୀ ।
ମାତଳି ବୋଇଲା ତୁମ୍ଭେ ଦେବ ଶରକୁ ମାର
ଶ୍ରୀରାମ ବୋଇଲେ ସେ ନୁହଇ ବେଭାର ।
କନେଷ୍ଠର ଶର ସେହୁ ଜ୍ୟେଷ୍ଠ ଅଟେ ମୁହିଁ
କନିଷ୍ଠ ଶରକୁ ସୁମରିବି କିସପାଇଁ ।
ଦେବତାଏ ନିନ୍ଦା ମୋତେ କରିବେ ପଶ୍ଚାତେ
ଜ୍ୟେଷ୍ଠ ହୋଇ କନିଷ୍ଠକୁ ନିଉନ କେମନ୍ତେ ।
ମୁହିଁ ଯେବେ ଶରକୁ ସ୍ତୁତି ଯେ କରିବି
ଶତ୍ରୁଘନର ସିନା ହାନି ଯେ କରିବି ।
ମାତଳି ବୋଇଲା ଦେବ ମେଠାବକୁ ଯିବାରୁଲ
ଶତ୍ରୁଘନକୁ କହିଲେ ସମ୍ଭାଳୁ ତା ଶର ।
ଶୁଣିକରି ଶ୍ରୀରାମ ସନ୍ତୋଷ ମନ ହେଲେ
ନନ୍ଦିଘୋଷ ରଥ କୁ ବାହାରେ ବୋଇଲେ ।
ମାତଳି ବାହେ ରଥ ଚଳେ ଧୀର ଧୀର
ଦେଖିଣ ଶତ୍ରୁଘନ ବିସ୍ମୟରେ ମନର ।
ନନ୍ଦିଘୋଷ ରଥତ ମୋର ପାଶେ ଆସେ
ବଜ୍ରଶର ଶବଦରେ ଶ୍ରୀରାମ ମନ ହାସେ ।
ମେଦିନୀ ନାଶ ଯିବ ମନରେ ବିଚାରି
ମୋରଠାକୁ ବିଜୟ କଲେ ରୂପଧାରୀ ।
ମନରେ ସାର ଶରକୁ ସୁମରିଲା
ଉଚ୍ଚାରି ମନ୍ତ୍ର କରିଣ ଶରକୁ କହିଲା ।
ଶାନ୍ତ ହେଲା ଶର ଯେ ନକଲା ଗର୍ଜନ
ତୂଣରୁ ଛାଡ଼ିଲେ ଶର ଶତ୍ରୁଘନ ପୁଣ ।

ଧନୁଥୋଇ କରଯୋଡ଼ି ରଥପରେ ଛିଡ଼ା
ଜନନୀଙ୍କ ବୋଲେ ଦେଖ ନନ୍ଦଘୋଷ ଚଡ଼ା ।
ଜନନୀ ବୋଲେ ମୋର ଅଟେ ଗୁଣମଣି
ମାଳମୁଖ ଗୋଟିକ ମୁଁ ଦେଖିବ କେବେ ପୁଣି
ଏତେବୋଲି କଥା ଯେ ହୁଅନ୍ତି ମାଏ ପୋଏ
ନନ୍ଦଘୋଷ ରଥ ପାଖରେ ଯାଇହୋଏ
ଦେଖିଣ ରଘୁନାଥ ନମସ୍କାର କଲେ
ଜନନୀଙ୍କ ଚରଣେ ଓଳଗି ହୋଇଲେ ।
ଜନନୀ ବୋଇଲେ ଶୁଣରେ ମାଳମଣି
କେତେକାଳ ପରଯନ୍ତେ ରହିଲେ ବନେ ପୁଣି
ଶୋକ ଜଳରେ ଆମ୍ଭଙ୍କୁ ଦେଲରେ ଭସାଇ
ତୋର ମୁଖ ନଦେଖି ଝୁରୁଛନ୍ତି ଆଈ ।
ସପତଣୀ କୌଶଲ୍ୟାର ଶରୀରେ ନାହିଁ ପ୍ରାଣ
ଭରତର ଜନନୀ ଶରୀର ହେଲା କ୍ଷୀଣ ।
ଲକ୍ଷ୍ମଣର ଜନନୀ କେବଳ ଅଛି ଦସ୍ଥ
ଆଉ ସବୁ ମାତାମାନେ ନଦେଖି ଅବସ୍ଥ ।
ଭରତ ବାଳୁକ ଯେ ହେଲ ତୋର ଲାଗି
ମୂଳକ ନ ବୁଝିଲା ମୌନେ ଯୋଗସାଧି ।
ସାନଭାଇ ତୋହର ଅଟେ ଶତ୍ରୁଘନ
ପାତାଳରେ ଧରଣୀ ଧରିଲା ତିନଦିନ ।
ଏବେ ଶତମୁଖା ଯେ ତୋର ଶତ୍ରୁହେଲା
ଅଯୋଧ୍ୟା ନଗ୍ରକୁ ଯାଇ ଯୁଦ୍ଧ ସେହୁ କଲା ।
ଦେବଙ୍କୁ ସାହା କରି ସେ ପାଇଅଛି ବର
ପଳାଇଲା ଶତମୁଖା ଜବରେ ବଳ ତାର ।
ଏବେ ଲଙ୍କା ଗଡ଼ରେ ହେଲା ପରବେଶ
ଶତ୍ରୁଘନ ଘୋଡାଇ ଅଇଲା ତାର ପଛ ।
ଏଠାରେ ଆସିକରେ ସିଂହରଡ଼ି ପୁଣ
ଶତମୁଖା ମଲେରେ ବଂଶହେବ ଲୀନ ।
ଲକ୍ଷ୍ମଣ ଶକ୍ତିଭେଦ ହନୁ କହିଲା ବାରତା
ଲକ୍ଷେ ରାଜା ଘେନ ଆସେ କୈକେୟୀ ସୁତା
ତଉବ ଦିନ ଆସି ଆଜକୁ ହୋଇଲା
କେଉଁଠାରେ କଳାମୋର ଅକଟେ ରହିଲା ।
ତାହାର ଚିନ୍ତାରେ ଆମ୍ଭର ନ ସରେ ପୁଣିଦିନ
ଭାଇବୋହୂମାନେ ତୋର କରନ୍ତି ରୋଦନ
ବଧାତାକୁ ସୁମରୁଛି ମରିବ କେଉଁ ଦିନ
ଶ୍ରୀରାମଙ୍କ ଦର୍ଶନ ନୋହିଲା ମୋତେ ପୁଣ ।

କାହାର ସୁଖନାହିଁ ସମସ୍ତେ ବଡ଼ ଦୁଃଖି
ଜନକର ଝିଅ ଯେ ଉର୍ମିଳା ନାମେ ଅଛି ।
ସେ କେବଳ ସମସ୍ତଙ୍କୁ କରଇ ଧଇର୍ଯ୍ୟ
ସେବୋଲେଠାକୁରଠାକୁ ଗଣିକରବେବଡ଼କାର୍ଯ୍ୟ
ତିନପୁର ଯଶ ଘେନିଣ ଆସିବେ
ଅସୁର ଦେବତା ରକ୍ଷ ରାଜା ଏ ସଙ୍ଗେ ଥିବେ
ଶ୍ରୀରାମ ବୋଇଲେ ମାତ ସାରଥି କମା ରଥେ
ଏତେ ଦୁଃଖ କମା ସହିଲ ଯୁବତେ ।
ସାରଥି ହେବାକୁ କ ନଥିଲେ ମନ୍ତ୍ରୀ ମୋର ।
ତୁମ୍ଭେ କମା ଦୁଃଖଭାର ସହିଲ ମୋହର ।
ଜନନୀ ବୋଇଲେ ପୁତ୍ର ମୋହଠାରୁ ଶୁଣ
ମନ୍ତ୍ରୀ ତୋର ଅଇଲେ ଭରତ ସଙ୍ଗେଣ ।
ଦେବତାଏ ମୋତେ କହିଲେ ଆସି ପୁଣ
ଶତ୍ରୁଘନର ସାରଥି ହେବ ଗୋ ତୁମ୍ଭେ ଜାଣ
ତେବେ ଯେ ଶତମୁଖା ରାବଣ କରବ
ଦେବତାମାନଙ୍କର ବହୁତ କାର୍ଯ୍ୟ ହେବ ।
ଦେବଙ୍କର ବୋଲେ ମୁଁ ଯେ ହୋଇଲି ସାରଥି
ଭରସା ଅଟନ୍ତି ଆମ୍ଭର ଦେବତା ଗଣେଟି ।
ଶୁଣିକରି ଶ୍ରୀରାମ ସନ୍ତୋଷ କଲେ ମନେ
ବୋଇଲେ ରାଜ୍ୟମୋର ରଖିଲେ କେ ତେଣେ
ମାଳାବତୀ ବୋଇଲେ ତୋ ଜନନୀ କଳାବତୀ
ରାଜ୍ୟ ଭଲମନ୍ଦ ବୁଝି ପରଜା ପାଳନ୍ତି ।
ମନ୍ତ୍ରୀର ପୁତ୍ର ସମ୍ୟବଳ ସଙ୍ଗେ ରହି
ଦେବତାଏ ରଖିଣ ଅଛନ୍ତି ତୋର ମହୀ ।
ପଶୁରାମ ଆସିଣ ଧନୁଶର ଧରି
ଶୀତଳ ଗିରିପରେ ଅଛନ୍ତି ବଳେକରି ।
ରାବଣକୁ ମାରିବାକୁ ନଯିବା ନିଜ ପୁର
ଆଜ ଶତମୁଖାକୁ ଆମ୍ଭେ କରିବୁ ସଂହାର
ତୋତେଦେଖିଲିବଳାରେ ସୁଫଳ ହେଲା ଆଖି
ଲକ୍ଷ୍ମଣକୁମରକୁ ଦେଖାଅ ମୋର ନିକ ।
ଏହି ସମୟରେ ଲକ୍ଷ୍ମଣ ମିଳେ ଯାଇ
ରଥପରୁ ଓହ୍ଲାଇ ଧଇର୍ଯ୍ୟ ମତ ହୋଇ ।
ଜନନୀର ଚରଣେ ଶୋଇଲା ଗଡ଼ିଘାଲି
ଉଠବାକୁ ଲକ୍ଷ୍ମଣ ମାଳାବତୀ ବୋଲକରି ।
ଉଠିଣ ସୌମିତ୍ରୀ ଓଳଗ ମେଲାଇଲା
ଲକ୍ଷ୍ମଣ ଚରଣେ ଶତ୍ରୁଘନ ଓଳଗିଲା ।

ଉଠିଲେ କରଯୋଡ଼ି ଉଭାହେଲେ ସୌମିତ୍ରୀ
ଶ୍ରୀରାମ ବୋଇଲେ ଯାଇ କର ଶର ବୃଷ୍ଟି ।
ବର୍ଷିଲେ ସ୍ୱାମୀ କୋପେ ଦୃଷ୍ଟି ନାଶ ଯିବ
ଦୃଷ୍ଟି ଭଲେ ଥିଲେରେ ଯଶ ଉପୁଜିବ ।
ଶତ୍ରୁଘନ ବୋଇଲେ ଅସୁର ଦୈତ୍ୟଗୁରୁ
ଦେଖ ସିଂହରଡ଼ି ଆରେ କମ୍ପେ ତିନପୁର ।
ତାହାଶୁଣି ଶ୍ରୀରାମ ଲକ୍ଷ୍ମଣ ବେଗେ ଗଲେ
ଦଶଗ୍ରୀବ ଆଗରେ ଯାଇଣ ମିଳିଲେ ।
ଶତ୍ରୁକୁ ଲେଉଟାଇ ରଖେ ଶତ୍ରୁଘନ
ଗର୍ଜନ ଶୁଣିବାରୁ ଚେତା ହେଲେ ସର୍ବସୈନ୍ୟ
ଗାଈ ମଇଁଷି ହସ୍ତୀ ଘୋଡ଼ା ପଏକାର
ଏମାନେ ଚେତା ପାଇ ଉଠିଲେ ସତ୍ୱର ।
ରାଣୀ ମହାଦେଈ ଯେ ଲଙ୍କାର ନରନାରୀ
ନିଦ୍ରାରୁ ଉଠିଲା ପ୍ରାଏ ସମସ୍ତେ ବର୍ଷିବ ।
ଜନେକର ବୋଲିବିତା ଜାନକୀ ଚେତା ହେଲା
ଅସୁରୁଣି ମାନେ ଉଠିଲେ ହୋଇ ତୋଷ
ରଥିମାନେ ଚେତାପାଇ ରଥରେ ବସିଲେ
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁ ଭୂଲେ ।
ସୁଗ୍ରୀବର ବୋଲେ ଦେବ ଆଚମ୍ବିତ ହେଲା
ଗର୍ଜନ ନାଦରେ ଶର ସବୁଙ୍କୁ ମୋହକଲା ।
ଶ୍ରୀରାମ ବୋଲେ ଶର ଭେଦନାହିଁ ଶତ୍ରୁଘନ
ଶରକ ଗର୍ଜନେ ସର୍ବେ ହେଲେ ମୋହମାନ
କ୍ରୋଧରେ ଶତ୍ରୁଘନ ଗର୍ଜନ ଶର କଲା
ଗର୍ଜନରେ ସମସ୍ତଙ୍କୁ ମୋହ କରାଇଲା ।
ମାରିଥିଲେ ଶର ସର୍ବେ ହୁଅନ୍ତା ପ୍ରାଣେ ନାଶ
ସୁଗ୍ରୀବର ବୋଲେ ଦେବକାହାର ଶିକ୍ଷାସେତ
ଶ୍ରୀରାମ ବୋଇଲେ ମୋର ଭ୍ରାତ ଶତ୍ରୁଘନ
ଏ ଦୁହିଁଙ୍କ ଶିକ୍ଷାଗୁରୁ ଅଗସ୍ତି ଋଷି ପୁଣ ।
ଏ ଦୁହେଁ ନଉକ୍ରୋଧ ଯୁଦ୍ଧ ସେ କରନ୍ତୁ
ଏଠାରେ ନଥିଲେ ମୁଁ ମାରନ୍ତା ସବୁନ୍ତକ ।
ସୁଗ୍ରୀବ ବୋଇଲେଦେବ ସେଯେବେ ମାରନ୍ତେ
ଆପଣାର ସୈନ୍ୟବଳ କେମନ୍ତେ ଜୀଆନ୍ତେ ।
ଶ୍ରୀରାମ ବୋଇଲେ ତୋଠାରେ ଜୀବନ୍ୟାସଅଛି
ସେ ଶର ପେଷିଲେ ସର୍ବେ ଉଠନ୍ତେ ଚେତ ।
ସୁଗ୍ରୀବ ବୋଇଲେ ଦେବ ଭଲ ଯୋଧ ସେହି
ମାରିକରି ଜୀଆଇଲେ ତାଠାରୁ ବଡ଼ନାହିଁ ।

ଏମନ୍ତ କଥା ଯେ ହୁଅନ୍ତେ ବେଳ ଜନ
ଚେତା ପାଇ ଉଠିଲା ଦଶଗ୍ରୀବ ପୁଣ ।
ମନ୍ତ୍ରୀକି ବୋଇଲା ଏ କମ୍ଭୁତ କଥା ହେଲା
ନାରାଜ ନ ବାଜୁ ମୋର ଶରୀର ତଳିଲା ।
ବେଳ ମନ୍ତ୍ରୀ ବୋଲେ ରାମ ଭାଇ ଶତ୍ରୁଘନ
ଶର ମୁନରେ ବସାନ୍ତେ କଲା ଗରଜନ ।
ସମସ୍ତେ ମୋହଗଲେ ଚେତା ନାହିଁ କେହି
ତିନଭାଇ ଚେତା ଯେ ରହିଲେ ରଣ ଭୂଇଁ ।
ସାରଥି ତିନଜଣ ରହିଲେ ଚେତା ପୁଣ
ଶ୍ରୀରାମଙ୍କୁ ଅଧିକ ଏଟଇ ଶତ୍ରୁଘନ ।
ରାବଣ ବୋଇଲା ହେ ରଘୁନାଥ ଶୁଣ
ଶତ୍ରୁଘନ ଶତଗ୍ରୀବ ଦୁହିଁଙ୍କର ରଣ ।
ତାହାଙ୍କର ଯୁଦ୍ଧ ଆମ୍ଭେ ଦେଖିବା ରହିକରି
ଦୁହେଁ ତ ମହାଯୋଦ୍ଧା ଅଟନ୍ତି ସମସରି ।
କେ ଜିଣିବ କାହାକୁ ଦେଖିବା ଏହିଠାରେ
ତାଙ୍କ ଯୁଦ୍ଧ ସରିଲେ ଆମ୍ଭଙ୍କୁ ହେବ ଭଲେ ।
ଏହି ସମସ୍ତେ ଶତେମୁଖା ଚେତା ପାଇ
ଶତେ ଧନୁ ଧରିଣ ନାରାଜ ବରଷଇ ।
ଶତ୍ରୁଘନ ଖେଦଇ ଧରିଣ ତୀକ୍ଷ୍ଣ ଶର
ଏମନ୍ତ ମହାଘୋର ହୋଇଲା ସମର ।
ବେଳକୁ ବେଳ ରଣ ଲାଗିଲା ଦୁହିଁଙ୍କର
ଦେଖିଣ ଶତ୍ରୁଘନ ଯେ ପାଞ୍ଚଶର ମାର ।
ହୁଦେ ବାଜନ୍ତେ ଶତେଗ୍ରୀବ ହୋଇଲା ବିକଳ
ସାରଥି କି ବୋଇଲା ରଥ ମୋ ବେଗ ଚଳ
ସମୁଦ୍ର ଭିତରେ ଆମ୍ଭେ ରହିବା ଯାଇକରି
ମାୟା ଯୁଦ୍ଧ କଲେରେ ଏହାକୁ ଜିଣିପାରି ।
ଶୁଣିଣ ମନ୍ତ୍ରୀ ଦୁହେଁ ରଥ ବାହି ନେଲେ
ଉଟ୍ଟ ବମାନକୁ ଜଳରେ ବୁଡ଼ାଇଲେ ।
ଦେଖିଣ ଶତ୍ରୁଘନ ପଛରେ ରଥ ବାହି
ସମୁଦ୍ର ଭିତରେ ରଥ ଶୂନ୍ୟରେ ରଖଇ ।
ଜଳେ ଥାଇ ଶତେଗ୍ରୀବ କରେ ଶର ବୃଷ୍ଟି
ଦେଖିଣ ଶତ୍ରୁଘନ ଛେଦଇ ବେଗେନକ ।
ଜନମ ନଳାବନ୍ତ ବୋଇଲେରେ ଶୁଣ
ନାରଦ କହିଗଲେ ଯେବଣ ବଚନ ।
ଶୁଣେକ ଅଗ୍ନିଶର ପେଶରେ ଭୂଷିବଳା
ଜଳ ଶୁଖିଲେ ବାହାର ହେବ ସେହିପରି ।

ଜନମାର ବଚନେ ଶତ୍ରୁଘନ ପୁଣ
ଶ୍ଳେକ ଶର ବସାଇ ଛନ୍ଦେ ତତ୍‌କ୍ଷଣ ।
ଯୁଣେକ ପର୍ଯ୍ୟନ୍ତେ ସେହୁ ଶୁଖିଲା ସମୁଦ୍ର
କେହି ନ ଜାଣନ୍ତି ତର୍ଣ୍ଣିର ଛେଦ ଭେଦ ।
ଶୁଖିବାରୁ ସମୁଦ୍ର ଯେ ଶତ୍ରୁଘନ ପଶି
ନାରାଜ ବରଷିଲା ସୁମିତ୍ରାର ବଂଶି ।
ଝଡ଼ଝଡ଼ ଚଡ଼ଚଡ଼ ଶବଦ ଶବଦ ଗରୁଟାଣ
ରାବଣ ଦେଖିଣ ଯେ ବ୍ୟଗ୍ର କଲେ ମନ ।
ପାଣିର ଭିତରେ ଦୋହେଁ କରନ୍ତି ସମର
ମେରୁଗିରି ଚମକଇ ଚମକେ ଲଙ୍କାପୁର ।
ବାସୁଦେବ ନୋହିଲେକ ଏମନ୍ତ ଯୁଦ୍ଧକରି
ମୋତେ ମାରିବା ପାଇଁ ଜନ୍ମ ହେଲେ ହରି ।
ଏମନ୍ତ ସମୟେ ଯେ ଶୁଭେ ସିଂହରଡ଼ି
ଗଛରୁ ପତ୍ର କା ପଡ଼ିଲା ତଳେ ଝଡ଼ି ।
ଏମନ୍ତ ସମୟେ ଦୁଇଜଣ ପୁଣ
ସାହେର ଭିତରେ ସେ ବାହାର ହେଲେ ଜାଣ
ରଣଭୂମିରେ ଆସିଣ ସେ ପ୍ରବେଶ ହେଲେ
ଦୁଇଜଣ ସମର କରନ୍ତି ସେହୁ ଭଲେ ।
ତେତେବେଳକୁ ଯେ ଦୁଇ ପ୍ରହର ହେଲା
ରଣଝଣ ଯୁଦ୍ଧ ଯେ ଦୁହିଁଙ୍କର ହେଲା ।
ଶତ୍ରୁଘନ ବନ୍ଧିଲେ ଶତେମୁଖା ଛେଦଇ
ଶତେମୁଖ ବନ୍ଧିଲେ ଶତ୍ରୁଘନ ନିବାରଇ ।
ଦଶବାଣ ସନ୍ଧିଣ ଛନ୍ଦେ ରାମ ଭାଇ
ବକ୍ଷଲଲାଟରେ ବସିଲା ତାର ଯାଇ ।
ଝଳକେ ବୋଇଲା ଯେ ଶତେଗ୍ରୀବ ଶୁଣ
ମନ୍ତ୍ରୀଙ୍କୁ ବୋଇଲାରେ ରଥ ବେଗେ ଘେନ ।
ସମୁଦ୍ର ଜଳେ ରଥ ରଖ ତୁ ବେଗେ ନେଇ
ଶୁଣି ମନ୍ତ୍ରୀ ଅଭୁଟ ବିମାନ ନେଲେ ବାହି ।
ସାହେର ଭିତରେ ନେଇ ରଥ ବୁଡ଼ାଇଲା
ଶତ୍ରୁଘନ ଆର ତାର ପଛରେ ଗୋଡ଼ାଇଲା ।
ଶତ୍ରୁଘନକୁ ଦେଖିଣ ଶତେମୁଖା ପୁଣ
ଅନେକ ଶର ସେ ଛନ୍ଦେ କରଟାଣ ।
ଛେଦଇ ଶତ୍ରୁଘନ ବାବଲ ଶର ଘେନ
ଶ୍ଳେକ ଅଗ୍ନିଶର ପେଷେ ବେଗେ ପୁଣି ।
ଯୁଣେକ ପର୍ଯ୍ୟନ୍ତେ ସାହେର ଶୁଖିଗଲା
ଦେଖିଣ ଶତେମୁଖା ଅନେକ ଶର କଲା ।

ଶତ୍ରୁଘନ ତାହା ନିବାର କରେ ହେଳେ
ଦୁହେଁ ପଶିଛନ୍ତି ସାହେର ଭିତରେ ।
ସେଠାରୁ ଦୁଇଜଣ ହୋଇଲେ ବାହାର
ରଣ ଭୂମିରେ ଆସିଣ କରନ୍ତି ସମର ।
ଘୁମୁଘୁମୁ ଗର୍ଜନ ନାରାଜ କରେ ଘୋର
ମାର ମାର ଡାକହାକ ଶବ୍ଦ ନିରନ୍ତର ।
ଧର ଧର ବୋଲିଣ ଡାକନ୍ତି ଦୁଇଜଣ
ଗୁଣ ଟଙ୍କାର ନାଦେ କମ୍ପନ୍ତି ସର୍ବେ ପୁଣ ।
କୋଟି କୋଟି ଶର ଯେ କରୁଛନ୍ତି ବୃଷ୍ଟି
କେହୁ ଛେଦେ କେହୁ ଯେ ମାରେ ଦୃଢ଼ ମୁଷ୍ଟି
ଏହି ସମୟେ ଶତେମୁଖା ଯେ ରାବଣ
ଅକାଳ କାଣ୍ଡ ସେ ଲକ୍ଷ ଯୋଟା ପୁଣ ।
ପବନ ଦେବତା ଯେ ତାହାକୁ ଦେଇଥିଲା
ସେ କାଣ୍ଡ ଶତେଗ୍ରୀବ ଗୁଣରେ ବସାଇଲା ।
ମନ୍ତ୍ର ପଢ଼ି ନାରାଜକୁ ପେଷିଲା ବହନ
ପବନ ବେଗେ ନାରାଜ ଗଲା ତତ୍‌କ୍ଷଣ ।
ଶତ୍ରୁଘନ ଦେହରେ ଯାଇଣ କଣ୍ଟିଲା
ନାରାଜର ଘାଏ ସୌମିତ୍ରୀ ମୋହଗଲା ।
ଦେଖିକରି ଜନମା ତାର ରଥକୁ ବୁଲାଇଲା
ପଞ୍ଚ ହାତ ଶତେଗ୍ରୀବ ଆଡ଼କୁ ରଖିଲା ।
ଦଣ୍ଡକ ଭିତରେ ଚେତାପାଏ ରାମଭାଇ
ଧୂମ୍ରମା ନାରାଜ ସତେ ଗୁଣରେ ବସାଇ ।
ରଥକୁ ବୁଲାଇଣ ସେ ଆଗ ଉଭା କଲା
ଅଶ୍ୱିନୀ କୁମାର ଯେଉଁ ସାରଜ ଦେଇଥିଲା ।
ସେ ନାରାଜ ପେଷିଲେ ଦଶରଥ ବାଳ
ଧୂମ୍ରମସ୍ତ ବଟିଲା ମଞ୍ଚ ଯେ ମଣ୍ଡଳ ।
ଗର୍ଜନ କରି ନାରାଜ ହୋଇଲା ବାହାର
ଶତେଗ୍ରୀବ ଛେଦନ୍ତେ ସେ ନୋହିଲା ନିବାର
ଶତେ ଲଲାଟରେ ଯାଇ ଶତ ଖର ପଶି
ଖଳ ଖଳ ରକତ ଭିତରୁ ବହି ଆସି ।
ଅଚେତା ହୋଇଣ ପଡ଼େ ଦଶଗ୍ରୀବ
ସୁଜାଣ କୁଜାଣ ମନ୍ତ୍ରୀ ରଥକୁ ବୁଲାଏ ବେଗ
ରଥର ପଞ୍ଚ ହାତ ଶତ୍ରୁଘନର ଆଗେ
ତତ୍କ୍ଷେ ଅଚେତା ଯେ ହୋଇଲା ଦୈତ୍ୟରାଜେ
ଉଠିକରି ଶତେଧନୁ ହସ୍ତରେ ଧଇଲା
ରଥର ଆଗ ହାତ ସନ୍ଧଖେ ବୁଲାଇଲା ।

ମନ୍ତ୍ରୀଙ୍କ ବୋଇଲାରେ ରଥକୁ ବାହ ବେଗ
ସାଗରରେ ବୁଡ଼ିଲେ ଶୀତଳ ମୋର ଅଙ୍ଗ
ଶୁଣିଣ ମନ୍ତ୍ରୀ ବେଗେ ରଥ ବାହିନେଲେ
ଏମନ୍ତ ସମୟରେ ଶ୍ରୀରାମ ଅନାଇଲେ ।
ମାରୁତି ବୋଇଲେ ତୁ ଯାଅରେ ବହନ
ଜଳକୁ ଛାଡ଼ ନ ଦେଇ କୁଳେ ରଖ ପୁଣ ।
ତାହାଶୁଣି ହନୁମନ୍ତ ବେଗେ ଚଳିଗଲା
ଅଭୁଟ ବିମାନ ସ୍ଥରେ ଯାଇଣ ବସିଲା ।
ବିମାନକୁ ସ୍ବପନ୍ତେ ନୋହିଲା ସ୍ଥିର ପୁଣ
ସାଗର ଭିତରେ ଯାଇ ପ୍ରବେଶ ବିମାନ ।
ରଥଧ୍ୱଜ ପତାକା ସାଗରେ ବୁଡ଼ିଗଲା
ଜଳରେ ବୁଡ଼ନ୍ତେ ରଥ ହନୁ ହାବୁଡ଼ିଲେ ।
ସେନାପତିଙ୍କ ମୁଖେ ବଡ଼ଲାଜ ପାଇ
ଶ୍ରୀରାମଙ୍କ ପାଖରେ ପ୍ରବେଶ ହେଲା ଯାଇ ।
ଦେଖିକରି ରଘୁନାଥ ଅଳପ ହସିଲେ
ହନୁମନ୍ତକୁ ସ୍ନେହିଣ ବଚନ ଭାଷିଲେ ।
ବୋଇଲେ ଏ ମାରୁତି ପାଇଲ ବଡ଼ ଲାଜ
ସେ ରଥ ରଖିବାକୁ ନୁହେ ତୋର ଧୈର୍ଯ୍ୟ
ତୋହର ପିତାର ଅଟଇ ସେହୁ ଯାନ
ଅଭୁଟ ବିମାନ ତାକୁ ଦେଇଛ ପବନ ।
ପିତାର ବିମାନ ତୋର ନିରୋଧ ନୋହିଲା
ଏଥିକି ଦୁଃଖ ନ କର ପବନର ବଳା ।
ଶୁଣିକରି ହନୁମନ୍ତ ସନ୍ତୋଷ ହୋଇଲା
ଏଥୁ ଅନ୍ତରେ ଶୁଣ ଗୋ ପାର୍ବତୀ ।
ହନୁମନ୍ତ ଫେରିବାରୁ ଶତ୍ରୁଘନ ପୁଣ
ଅସୁର ବଳନ ରଥ ବାହିଲା ଘନ ଘନ ।
ଯେଉଁଠାରେ ଶତେମୁଖା ରଥ ବୁଡ଼ାଇଲା
ଶତ୍ରୁଘନ ସେଠାରେ ପ୍ରବେଶ ହୋଇଲା ।
ଶୁଖେକ ଅଗ୍ନିଶର ବିନ୍ଧିଲା ରାମଭାଇ
ଯୁଣେ ଦେଖିଲେ ପରିଯନ୍ତେ ସାଗରଶୁଖିଯାଇ
ଦେଖିଣ ଶତେଗ୍ରୀବ ମନରେ କ୍ରୋଧ ହେଲା
ଯଇନ୍ତା ଦେଲା ଶର କୋଟିଏ ବିନ୍ଧିଲା ।
ଦେଖିଣ ଶତ୍ରୁଘନ କାର୍ମୁକ ଶର ଧରି
ରମ୍ଭା ବୃକ୍ଷ ପ୍ରାୟେ ଛେଦିଲା ବେଗକରି ।
ଦେଖିକରି ଶତେ ମୁଖା ବିକାଳ ଶରଜାଲ
ରିକୋଟି ନାରାଚ ସେ ଧନୁରେ ପୂରାଇଲା

ବିନ୍ଧନ୍ତେ ବିକାଳ ଯେ ହେଲା ପରବେଶ
ଶତେମୁଖା ନାରାଚ ଯେ ବରଷେ ବିଶେଷ ।
ଦେଖିଣ ଶତ୍ରୁଘନ ଛେଦେ ବାରମ୍ବାର
ଏକୋଟି ଶର ବିନ୍ଧେ ଯାଇନ୍ତା କୁମର ।
ତୀକ୍ଷ୍ଣ ନାରାଚରେ କାଳିକ ଅସୁର
ଘନ ୨ କରି ବିନ୍ଧେ ଦଶରଥ ବାଳ ।
ତାହା ଦେଖିଣ ଶତ୍ରୁଘନ ମନରେ ବିଚାରିଲା
ମନଭେଦ ଶରକୁ ଗୁଣରେ ବସାଇଲା ।
ଅଗ୍ନିକ ସୁମରି ସେ ମନ୍ତ୍ରକୁ ସୁମରିଲା
ଗୁଣରେ ବସାଇ ଶର ବେଗେ ଛାଡ଼ିଦେଲା
ଶ୍ରୀର ବାଡ଼କର ବୋଲି ଶରକୁ କହିଲା
ପବନଠୁଁ ବେଗ୍ରରେ ସେ ଶର ଚଳିଗଲା ।
ସ୍ବରିପାଖ ନିରୋଧିଣ ଉପରେ ନିରୋଧିଲା
ନିବାଞ୍ଚ ହୋଇ ଶର ବଜ୍ର ଯେ ହୋଇଲା ।
ସମୁଦ୍ର କୂଳଧରି ଲଙ୍କାର ସ୍ବରିପାଖ
ଉପରେ ପିଢ଼କରି ବାନ୍ଧିଲା ଶର ସେ ତ ।
ଦେଖିଣ ତାଟକା ଯେ ହୋଇଲା ଲଙ୍କାସ୍ତମ୍ଭ
ବିସ୍ମରିଲା ଦେବ ଏ ମୋତେ ବଡ଼ କଷ୍ଟ ।
ଦେଖିଣ ଶତେଗ୍ରୀବ ମନରେ ବିଚାରିଲା
ନିଶ୍ଚୟ ମରଣ ମୋତେ ଆସିଣ ହୋଇଲା ।
ସୀତାର ରୂପକୁ ମୁଁ ନେତ୍ରରେ ନ ଦେଖିଲି
ସେହି ସୀତା ଲାଗି ମୋର ବଂଶ ନାଶ କଲି
ଏତେକ ବିଚାରି ଯେ ମନ୍ତ୍ରୀଙ୍କି କହିଲା
ଉସକ ବନକୁ ରଥ ବାହା ତୋ ବୋଇଲା ।
ଦେଖିବା ଜାନକୀ ରୂପ କେଡ଼େ ସୁନ୍ଦର
ତା ସକାଶେ ଦଶଗ୍ରୀବ କରଇ ସମର ।
ସ୍ବରିପାଶେ ଶର ବାଡ଼ ରାମଭାଇ କଲା ।
ଲଙ୍କାଗଡ଼ ସ୍ବରିପାଶ ଶରରେ ଘୋଡ଼ାଇଲା
ଏବେଯାଇ ରଥରେ ଦେଖିବା ଜାନକୀ
ଏହିଠାରେ ମରିବାର କପାଳେ ଲେଖାଅଛି ।
ତାହାଶୁଣି ବେଗେ ମନ୍ତ୍ରୀ ରଥ ବାହିନେଲେ
ଉସକ ବନେ ନେଇଣ ରଥ ଉଭାକଲେ ।
ଦେଖିଲେ ସୁନ୍ଦରୀ ବସିଛି ରାମ ନାରୀ
ଦେଖିଣ ଶତମୁଖା ମନେ ବେଳାଭାରି ।
ବୋଇଲା ଦଶଶିରରେ ତୋ ମରିଛା ଧନ୍ୟ
ଏ କମଳା ଅଟନ୍ତି ନାରାୟଣଙ୍କର ପୁଣ ।

ଏହାକୁ ଚୂରିଣ ମିତ୍ର ମର୍କଟ ତୁ ହେଲୁ
ଅନନ୍ତା ବୈକୁଣ୍ଠ ସ୍ଥାନ ତୁ ପାଇଲୁ ।
ଏତେକଶୁଣି ଶତଗ୍ରୀବ ଭାଳଇ ମନରେ
ଶତ୍ରୁଘନ ଥିଲେ ଯେ ରଣର ଭୂମିରେ ।
ଜାନକୀ ବୋଇଲେ ଗୋ ତ୍ରିଜଟା ଏବେ ଶୁଣ
ଏ କଏ ଅଇଲା ଗୋ କହ ମୋତେ ପୁଣ
ତ୍ରିଜଟା ବୋଇଲା ଏ ଅଟେ ଶତମୁଖା
ଦଶମୁଖା ରାବଣର ଅଟେ ମିତ୍ର ସଖା ।
ରାବଣର ବୋଲରେ ଏ ଅଯୋଧ୍ୟାକୁ ଗଲା
ତୁମ୍ଭର ଦିଅର ସଙ୍ଗେ ଯାଇ ଯୁଦ୍ଧ କଲା ।
ଏବେ ତୁମ୍ଭର ଦେଖି ଆସିଛି ଗୋ ମାତ
କେମନ୍ତେ, ଜନକୀର ଅଟଇ ସ୍ୱରୂପ ।
ଜାନକୀ ବୋଇଲେ ଦେଖ ମୋ ରୂପଗୁଣ
ଏତେକଶୁଣି ରାମନାରୀ ହେଲା ହୁତାଶନ ।
ଜଳନ୍ତା ଅଗ୍ନି ପ୍ରାୟେ ତେଜ ତାଙ୍କର ଦେଖଣ
ଦେଖିଣ ଶତଗ୍ରୀବ ମନେକରେ ତ୍ରାସେ ।
ଏଥୁଁ ଅନନ୍ତରେ ଶୁଣ ଗୋ ଶାକମ୍ବରି
ଶତ୍ରୁଘନ ବେଗେ ରଣ ଭୂମିକୁ ବାହାରି ।
ଶତମୁଖା ପଛରେ କଲେକ ଗମନ
ଅଶୋକ ବନରେ ଯାଇ ଲୁଚାଇଲା ଯାନ ।
ଶତ୍ରୁଘନକୁ ଦେଖିଣ ରାବଣ ପଳାଇଲା
ଦଶଗ୍ରୀବ ପାଶରେ ଯାଇ ପ୍ରବେଶ ହେଲା ।
ଜାନକୀ ଯେ ତନୁକୁ କଲେ ଶାନ୍ତ ପୁଣ
ଶତ୍ରୁଘନକୁ ଦେଖି ରୋଦନ କଲେ ଜାଣ ।
ମାଳାବତୀ ଶାଶୁ ଯେ ରଥରୁ ଓହ୍ଲାଇଲେ
କିମ୍ପାଇ ରୋଦନ ମାଏ କରୁଛ ବୋଇଲେ ।
କହିବାର ବୋଲ ଗୋ ନକଲ ବୈଦେହୀ
ଗୋଡ଼ାଇ ଅଇଲ ତ କନ୍ଦମୂଳ ଖାଇ
ବନରେ କେ କେ ପ୍ରମାଦ ଅଛିତ ନ ଜାଣ
ଏତେ ଏତେ କଷ୍ଟ ପାଇଲେ ବନେ ପୁଣ ।
ଅଳପ ଦିନରେ ତୋର କଷ୍ଟ ଯିବ ଜାଣ
ଅଯୋଧ୍ୟାର ପାଟରାଣୀ ହେବ ଗୋ ମାଏ ପୁଣ
ଏତେକଶୁଣି ବଧୂକୁ ଯେ କୋଳରେ ଧଇଲେ
ଅଞ୍ଚଳରେ ନୟନରୁ ଲୋତକ ପୋଛିଲେ
ବୋଇଲେ ଅଳପଦିନ ରହ ଗୋ ଜନନୀ
ଶୋକ ସମ୍ଭାଳ ତୁମ୍ଭେ ହୁଅ ଶ୍ୟାମମୂର୍ତ୍ତି ।

ଏତେକଶୁଣି ବାହାର ହେଲେ ଶାଶୁପୁଣ
ଜାନକୀ ଉଠିଣ ଯେ ଶୁଣ୍ଡିଲେ ଚରଣ ।
ରଥପରେ ମାଳାବତୀ ଯାଇଣ ବସିଲେ
ଶତ୍ରୁଘନ ରଥରୁ ବେଗେ ଓହ୍ଲାଇଲେ ।
ଜାନକୀ ଚରଣେ ଲୁଣ୍ଠିଲେ ଯାଇ କରି
ଜାନକୀ ବୋଇଲେ ବାବୁ ଉଠ ମୋ ସଙ୍ଗାତ
କେତେ ଦୁଃଖ ପାଇଲଟି ଅସୁର ସଙ୍ଗେ ପୁଣ
ଶତ୍ରୁ ମାରି ଜୟେ କରହେ ଆଜ ଦିନ ।
ଶୁଣିକରି ଶତ୍ରୁଘନ ଉଠିଲେ ତଡ଼ଡ଼
ବୋଇଲେ ଗୋ ଠାକୁରାଣୀ ଚନ୍ଦ୍ରାନନର କଞ୍ଜ
ତ୍ରୈଲୋକ୍ୟ ଠାକୁରାଣୀ ହେବ ଅଯୋଧ୍ୟାରେ
ତିନିପୁରର ପୂଜା ପାଇବ ସେଠାରେ ।
ଏତେକଶୁଣି ଶତ୍ରୁଘନ ରଥରେ ଯାଇ ବସି
ଜନନୀକି ବୋଇଲେ ରଥ ମୋ ବାହା ନକ
ଅସୁର ବଳନ ରଥ ବେଗେ ଚଳ ଦେଲେ
ରାବଣର ସିଂହଦ୍ୱାରେ ପ୍ରବେଶ ଯାଇ ହେଲେ
ଲଙ୍କାଗଡ଼ ନରନାରୀ ଦେଖନ୍ତି ଦାଣ୍ଡରେ
ଶ୍ରୀରାମଭାଇ ଏବେ ବୋଲନ୍ତି କୁଣ୍ଡରେ ।
ଏଥୁଁ ଅନନ୍ତରେ ଯେ ଶତମୁଖା ବୀର
ମନ୍ଦୋଦରୀ ସାଙ୍ଗରେ ଭେଟ ଯେ ତାଙ୍କର ।
ବୋଇଲା ଅନ୍ୟାୟେ ଗୋ ସ୍ୱାମୀ ତୋର କଲା
ପରନାରୀ ହରାଇଣ ବଂଶ ମରାଇଲା ।
ମିତ୍ରଙ୍କର ବୋଲରେ ମୁଁ ସମର କରି ଗଲ
ପୁତ୍ର ନାତି ସୈନ୍ୟବଳ ମୋର ମରାଇଲ ।
ତୁମ୍ଭେ ସିନା ରାମନାରୀ ଆଣିଲ ହରାଇ
କେଉଁ ଅପକୀର୍ତ୍ତିରେ ଦୋଷି ହେଲମୁହିଁ
ଯାହା କଲ ଅପକୀର୍ତ୍ତି ହେଉ ମୋତେ ପଛେ
ରାମବାଣେ ମଲେ ମୁଁ ଯାନ୍ତି ସ୍ୱର୍ଗ ପଥେ ।
ଏଇ ସମୟରେ ମିଳିଲେ ରାମ ଭାଇ
ଶତମୁଖା ରାବଣ ସେଠାରୁ ପଳାଇ ।
ଦଶମୁଖା ପାଶରେ ହେଲା ପରବେଶ
ଶତ୍ରୁଘନ ତାର ପଛେ ଗୋଡ଼ାଏ ବିଶେଷ ।
ସେହିଠାରେ ଶତମୁଖା ନାରଚ ବନ୍ଧେ ପୁଣ
ଏହି ସମୟରେ ଦିନ ଚୌଦ ଘଡ଼ି ଜାଣ ।
କୋଟିଏ ନାରଚ ଯେ ଶତଶିର ମାରି
ଲକ୍ଷେ ନାରଚ ପେଶିଦେଲା ସିଂହ ରଡ଼ି ।

ତାହାର ମାୟାତ ମାନ ଶତ୍ରୁଘନ ଛେଦ
ପିନାକ ଧନୁ ବେଗେ ଧରେ ଗଜଗାଜ ।
ପାଶୁପତ ଶରକୁ ଗୁଣରେ ବସାଇଲେ
ରାମନାମ ସୁମରି ଶଙ୍କରଙ୍କୁ ଗୁହାରିଲେ ।
ଶତମୁଖା ଅନେକ ଯେ ପ୍ରତିଶର କଲା
ସଦାଶିବ ଶରକୁ ସେ ନିବାରି ନ ପାରିଲା
ପାଶୁପତ ଶରଙ୍କେ ଚଳାଇଲେ ବହନ
ଶତମୁଖା ସ୍କନ୍ଧରେ କାଟିଲେ କଟି ପୁଣ ।
ଦୁଇଖଣ୍ଡ କରି ଶର ବାହୁଡ଼ି ଆଇଲା
ଶତ୍ରୁଘନ ତୂଣରେ ପଶିଣ ସମ୍ଭାଇଲା ।
ବେନିଖଣ୍ଡ ହୋଇଣ ପଡ଼ିଲା ଶତମୁଖା
ପ୍ରାଣଗଲା ବେଳେ ତାର ରାମ ନାମ ଶାଖା
ଦୁଇଗୋଟା ପର୍ବତ ଯେ ଦୁଇପାଖେ ପଡ଼ି
ସୁବଳ ଗିରିକ ଅଣେ ତା ଶରୀର ବଢ଼ି ।
ଦେଖିଣ ଋକ୍ଷ କପି ରାମ ତାଳ ମାରି
ହୁଳହୁଳି ଗାଇ ଭୁଷ୍ଟି ବଜାନ୍ତି ମହୁରି ।
ଖେମଟା ସ୍ୱରରେ ସେ କରନ୍ତି ଗାୟନ
ତଳ ତଳ ନାଚନ୍ତି ବାନର ଭଲୁ ପୁଣ ।
ସାରବାଜା ବଜାଇ ସେ ହୁଅନ୍ତି ମଜୁଆଳ
ବନ୍ଧୁଜମାନେ ସଙ୍ଗେ ହୋଇଲେ ସକଳ ।
ଶତ୍ରୁଘନଙ୍କୁ ବୃଷ୍ଟି ଦେବତାଗଣ ପୁଣ
ପାରିଜାତକ ପୁଷ୍ପ ବରଷିଲେ ତାଣ ।
ବିଦ୍ୟାଧର କିନ୍ନରି ଯେ ନୃତ୍ୟାରମ୍ଭ କଲେ
ସାଧୁ ସାଧୁ ଶତ୍ରୁଘନ ଦେବତା ବୋଇଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ବ୍ରହ୍ମରାକ୍ଷସ ଅଟଇ ଗଗନ ଋଷି ଯତି ।
ମାତା ତାର ଅସୁରୀ ପିତା ତାର ଋଷି
ବ୍ରହ୍ମବୀର୍ଯ୍ୟେ ଶତଗ୍ରୀବ ଯାତ ହୋଇଅଛି ।
ତେଣୁକରି ଯଜ୍ଞ ଯେ ପବିତ୍ର ତାର କଣ୍ଠେ
ଶତ୍ରୁଘନ ବଧ ଯେ କଲେ ତାକୁ ଏବେ ।
ବ୍ରହ୍ମହତ୍ୟା ଦୋଷ ଲାଗେ ସୁମିତ୍ରା କୁମର
ନୟନ ଦୃଷ୍ଟିକି କିଛି ନ ଦିଶିଲା ତାର ।
ତାଟକା ହୋଇଣ ରଥରେ ପଡ଼ି ବସି
ଯେସନେ କ ଅନ୍ଧଙ୍କର ଦୁଇଆଖି ଫୁଟି
ନବଡ଼ ଅନ୍ଧାର ଦିଶୁ ଅଛଇ ତାହାକୁ
ଶତ୍ରୁଘନ ମନରେ ଯେ ବିସ୍ମରେ କଥାକୁ ।

ବୋଇଲା ଉପଶାନ୍ତ କଥା ଏବେ ହେଲା
ଦୁଇଚକ୍ଷୁକୁ ମୋର କମ୍ପାଇ ନ ଦିଶିଲା ।
ଏତେବୋଲି ପାରି ଯେ ପଚ୍ଛରେ ମାତାକୁ
ଶୁଣଗୋ ଜନନୀ ବୁଝେ ମୋହର କଥାକୁ ।
କଣ୍ଠଗ୍ରୀବ ପଡ଼ିଲା ଦେଖୁ ନ ଦିଶଇ ମୋତେ
ଏକଥା ଜନନୀ ଗୋ ଜଣାଅଛି କ ତୋତେ ।
କଳାବତୀ ବୋଇଲେ କୁମରମଣି ଶୁଣ
ବ୍ରହ୍ମରାକ୍ଷସ ଅଟଇ ଶତମୁଖା ପୁଣ ।
ମାତାତାର ଅସୁରୁଣୀ ପିତା ତାର ମୁନି
ଜଇନ୍ତ ଋଷିଙ୍କ ବୀର୍ଯ୍ୟେ ରାକ୍ଷସ ଜନମି ।
ଶତ୍ରୁଘନ ବୋଇଲେ ସେ କଥାମୋତେ ବୁଝା
କଳାବତୀ ବାଣିବୋଲେ ଶୁଣରେ ତନୁଜା
ମଜରଭ୍ୟ ମୁନିଅଟେ ବ୍ରହ୍ମାଙ୍କ ନନ୍ଦନ
ତାହାଙ୍କର କୁମର ସନନ୍ଦ ସନାତନ ।
ସନାନ୍ତ କୁମର ଯେ କଉମଦା ଋଷି
କୌମୁଦ ନନ୍ଦନ ଗଗନା ମହାଋଷି ।
ଗଗନା ଋଷିର ପୁତ୍ର ଅଟଇ ଜୟନ୍ତ
ସେ ଋଷି ଉଦୟ ଗିରି ପରେ ତପୋବନ୍ତ ।
ନବଯୁଗ ପରିଯନ୍ତେ ତପ ସେହୁ କଲା
ବ୍ରହ୍ମ ମୁନିହୋଇ ସେ ବ୍ରହ୍ମଲୋକେ ଗଲା ।
ବ୍ରହ୍ମାକୁ ଦର୍ଶନ ସେହୁ କରିବା ନିମନ୍ତେ
ଯଶୋବନ୍ତ ସିଂହଦ୍ୱାରେ ମିଳିଲା ତୁରିତେ ।
ନାରଦ ବୋଇଲେ ମୁନି ଆଜ୍ଞା ନାହିଁ ତୋତେ
ଆଣ୍ଠୁ କୁଣ୍ଡା ଦୋଷଅଛି ତୋହର ଅଙ୍ଗରେ ।
ଫେରିକରି ମର୍ତ୍ତ୍ୟପୁରକୁ ଯାଅ ତୁ ବହନ
ପୁତ୍ରଜାତ କରି ଆସ ଏଥି ଯେ ଭୁବନ ।
ତାହାଶୁଣି ଯଇନ୍ତ ଯେ ଫେରିଣ ଆଇଲେ
ଅଳଙ୍କାଗଡ଼ ପଦାରେ ତପ ଆସି କଲେ ।
ସେ ଗଡ଼ରେ ରାଜା ସେ ଦାନରେ କଳନ୍ଧର
ତାକୁ ମାଇଲେ ଈଶ୍ୱର କରିଣ ସମର ।
ତାର ଭାରିଯା ଅଟଇ ବୃନ୍ଦାବତୀ ନାରୀ
ତାହାକୁ ମାୟାରେ ବାସୁଦେବ ଯାଇଁ ହରି ।
ତୋହର ଏକ ଦୁହିତା ହୋଇଲାକ ପୁଣ
ଷୋଡ଼ଶ ବୟସ ଅଟେ ନବ ଯଉବନ ।
ସେ କନ୍ୟା ଯେ ଅବିବାହ୍ନ ହୋଇ ରହିଥିଲା
ପିତା ମରିବାରୁ ସେହୁ ବଣ ଯେ ନୋହିଲା ।

ମାତାକୁ ତାହାର ବାସୁଦେବ ଯେ ହରିଲେ
ସତୀପଣ ଘୋଟାଚାର ଧର୍ମ କରାଇଲେ ।
ଜାଣିଣ ବୃନ୍ଦାବତୀ ବିଷ୍ଣୁଙ୍କୁ ଶାପ ଦେଲା
ପାଷାଣ ରୂପହୁଅ ତାହାଙ୍କୁ ବୋଇଲା ।
ତକ୍ଷଣେ ପାଷାଣ ଯେ ହୋଇଲେ ବାସୁଦେବ
ବୃନ୍ଦାବତୀ କୋଳେ ତୁମ୍ଭେ ଆଗେକଲ ଛଳ
ମୋତେ କହିଥିଲ ତୋତେ ଜଣାଇ ମୁଁ କଡ଼
ସେକଥାପାସୋରି ମୋତେ ଆଲିଙ୍ଗନ ଗାଢ଼
ବାସୁଦେବ ବୋଇଲେ ମୁଁ କହୁଅଛୁ ଯାହା
ସେକଥା ଅବଶ୍ୟ ଧାରା ପୁରାଇବ ତାହା ।
ତୁଳସୀ କରିଡ ତୋତେ ମସ୍ତକେ ବହିବ
ବୃନ୍ଦାବତୀ ବୋଇଲେ ହେ କର ମୋତେବେଗି
ତାହାଶୁଣି ଶ୍ରୀହରି ତୁଳସୀ ବୃକ୍ଷ କଲେ
ବୃନ୍ଦାବତୀ ବୃକ୍ଷହୋଇ ଝଳେ ସର୍ବ ପରେ ।
ବାସୁଦେବ ବିଷ୍ଣୁ ଯେ ପାଷାଣ ଅଙ୍ଗତ
ଗଣ୍ଡକୀ ନଦୀ କୂଳରେ ରହିଲେ କରି ସତ୍ୟ
ସେ ପଙ୍କୁ ଶାଳଗ୍ରାମ ଶିଳା ଭପୂଜଲେ
ଜଳନ୍ଧର ଜୀବ ଲୁଟେ ସେ ଶିର କାଟିଲେ ।
ମାତା ପିତା ମରିବାରୁ ଦେଖିଣ ନନ୍ଦନୀ
ଜୟନ୍ତ ଋଷିଙ୍କ ସେ ବରିଲା ଯାଇଁ ପୁଣି ।
ଋଷିଙ୍କ ବଶ ହୋଇଣସେପୁରେ ରାଜାହେଲା
ସୁଖ ପାଇଁ ଋଷି ଷାଠିଏ ଯୁଗ ରାଜାହେଲେ
ସେ କନ୍ୟାର ଠାମଗୋଟି ଅଟଇ ଅଙ୍କୁରେଖା
ତାର ଗର୍ଭେ ଜାତ ଯେ ହେଲା ଶତେମୁଖା
ଜନ୍ମହୋଇ ତତ୍ୟ ଯେ ତପସ୍ୟା କରିଗଲା
ଯୁଗକୁ ପର୍ଯ୍ୟନ୍ତେ ତପ ସେ ସାଧିଲା ।
ଅର୍କତୀର୍ଥରେ ଯାଇଁ କଲକ ତପସିଦ୍ଧ
ପବନ ଦେବତା ତାଙ୍କୁ ବରଦେଲେ ବେଗ ।
ଅଭୁଟ ବିମାନ ତାକୁ ଆଣିଣ ପଣ ଦେଲେ
ଅମର ହୋଇବୁ ବୋଲି ଅସ୍ତୁ ବାକ୍ୟବୋଲେ
ଶତେମୁଖା ସେଠାରୁ ନିଜ ରାଜ୍ୟେ ପ୍ରବେଶ
ଯଇନ୍ତା ମୁନି ଦେଖିଣ ହୋଇଲେ ହରଷ ।
ପୁତ୍ରକୁ ସେ ଗଡ଼ରେ ରାଜା କରାଇଲେ
ସାମବେଦରେ ତାକୁ ପଢ଼ନ୍ତ କରାଇଲେ ।
ସେ ଶରୀର ତେଜ୍ୟା ଯେ କଲେ ମୁନିବର
ମୁନିପିବାରୁ ଅଙ୍କୁରେଖ ଝାସିଲେ ଅଗ୍ନିର ।

ସ୍ୱାମୀର ସହିତେ ସେହୁ ବ୍ରହ୍ମଲୋକେ ଗଲା
ଯଶୋବନ୍ତ ପୁରରେ ନିଷ୍ଠିନ୍ତେ ରହିଲା ।
ସେକଥା ମୋର ଆଗେ କହିଲେ ନାରଦ
ପିତାଦ୍ୱାରେ ଯୁବାରେ ସଂଯୋଗ ।
ବୋଇଲେ ବାସୁଦେବ ପୁତ୍ର ତୁମ୍ଭର ହେବେ
ଅସୁର ମାରିବାକୁ ଜାତ ହୋଇବେ ।
ଦଶରଥଙ୍କ ଘରେ କୌଶଲ୍ୟାଙ୍କ ଗର୍ଭେ
ନବଶତ ବରଷ ସେ ଜାତ ହୋଇବେ ।
ତୋହର ପିତା ଯେ କରିବେ ସ୍ୱୟମ୍ବର
ଦଶରଥଙ୍କ ବଶବୁ କହିଲ ନିକ... ।
ଚତୁର୍ଥ ରାଣୀ ତାଙ୍କର ତୁହି ସେ ହୋଇବୁ
ନାନା ସୁଖ ସେଥିରେ ତୁହି ଭଳସିବୁ ।
ଶ୍ରୀରାମକୁ ଜନ୍ମ ତୁ ଦିବୁ ସ୍ୱାମୀ ସଙ୍ଗ
ସ୍ୱଦେବ ଘେନି ତୁ ଯିବୁ ଶୂନ୍ୟ ମାର୍ଗେ ।
ଏତେ କହି ନାରଦ ସ୍ୱର୍ଗପୁର ଗଲେ
ସେହି କଥା ମନେ ମୋର ଅଛୁରେ ତୁମରେ
ଏହିପରି ଶତେମୁଖା ବ୍ରହ୍ମ ଯେ ରାକ୍ଷସ
ମହର୍ଷିଙ୍କ ବଚନ ପାଶୋରିଲୁ ତୁତ ।
ମାଳାବତୀ ବୋଇଲେରେ କଥାଏ ପୁତ୍ରକର
ଶ୍ରୀରାମର ନାମକୁ ତୁ ଭଜରେ ଶତେବାର
ତେବେ ବ୍ରହ୍ମହତ୍ୟା ଦୋଷ କଟିବ ତୋହର
ଜନନୀ ଠାରୁ ଶୁଣି ଶତ୍ରୁଘ୍ନ ସାର ।
ରାମ ନାମ ଗୋଟି ଯେ କଲେ ସୁମରଣ
ଜୟ ଜୟ ଶ୍ରୀରାମ ଜାନକୀ ପ୍ରାଣଧନ ।।
ଜୟ ଜୟ ଶ୍ରୀରାମ ହେ କୌଶଲ୍ୟା ସୁତ
ଜୟ ଜୟ ଶ୍ରୀରାମ ହେ ମୁନିଙ୍କ ପଞ୍ଚଭୂତ ।
ଜୟ ଜୟ ଶ୍ରୀରାମ ହେ ଅଯୋଧ୍ୟା ରାଜନ
ଜୟ ଜୟ ଶ୍ରୀରାମ ହେ ତ୍ରୈଲୋକ୍ୟ ମଣ୍ଡନ
ଜୟ ଜୟ ଶ୍ରୀରାମ ହେ ଅସୁର ଦଳନ ନାଥ
ଜୟ ଜୟ ଶ୍ରୀରାମ ହେ ଧନୁ ଶରାସନ ହସ୍ତ ।
ଜୟ ଜୟ ଶ୍ରୀରାମ ହେ ଶ୍ୟାମଳ ମୂରତି
ଜୟ ଜୟ ଶ୍ରୀରାମ ହେ ଦୁଃଖି ଜନର ଗତି ।
ଜୟ ଜୟ ଶ୍ରୀରାମ ହେ ପାତକ ଧ୍ୱଂସନ
ଜୟ ଜୟ ଶ୍ରୀରାମ ହେ ଦେବତାଙ୍କ ଜୀବନ ।
ଶ୍ରୀରାମ ନାମ ଗୋଟି ଅଟେ ସାର
ଶ୍ରୀରାମ ନାମ ଗୋଟି ତାରକ ମନ୍ତ୍ର ।

ଶ୍ରୀରାମ ନାମ ରୂପି ଅମରପଦ ଲଭି
ଶ୍ରୀରାମ ନାମ ଗୋଟିକ ସଂସାରସାର ବୁଦ୍ଧି ।
ଏତେବୋଲି ସୁମରଣା କରେ ଶତ୍ରୁଘନ
ହୁଡ଼ିଗଲା ପାତକ ଯେ ବ୍ରହ୍ମହତ୍ୟା ପୁଣ ।
ବ୍ରହ୍ମହତ୍ୟା ଦୋଷ ତା ଦେହରୁ ପଳାଇଲେ
ଚୌଦିଗ ନିର୍ମଳ ହୋଇ ଆଲୋକ ଦିଶିଲେ
ରଥର ଉପରୁ ବୀର ଭୂଇଁକେ ଓହ୍ଲାଇଲେ
ଜନନୀ ଚରଣେ ବୀର ନମସ୍କାର କଲା ।
ପୁଣି ରଥର ଉପରେ ବସେ ବୀର ଯାଇ
ଜନନୀକି ବୋଲେ ରଥ ବେଗେ ନେଅ ବାହି
ଶ୍ରୀରାମ ଠାକୁରଙ୍କର ଡାହାଣ ପାଖରେ
ରଥକୁ ରଖିବ ମୋର ସେଇଣ ସତ୍ୱରେ ।
ଶୁଣିଣ ନୀଳକଣ୍ଠୀ ବାଗ ଡଉଡ଼ି ଧରି
ରଥକୁ ଚଳାଇଲେ ଚଞ୍ଚଳ ବେଗକରି ।
ଶ୍ରୀରାମର ଡାହାଣ ପାଶରେ ଯାନ ଗଲା
ବାମରେ ଲକ୍ଷ୍ମଣ ଡାହାଣେ ଶତ୍ରୁଘନ ପରି ।
ମଧ୍ୟରେ ବିଜୟେ କୌଶଲ୍ୟାଙ୍କ ନନ୍ଦନ
ଯେମନ୍ତେ ଜଗନ୍ନାଥ ପୁଣ୍ଡି ବୃପାତ ପୁଣ ।
ତେମନ୍ତ ଦିଶୁ ଯେ ଦିଶନ୍ତି ଶୋଭାବନ
ଶ୍ରୀରାମ ବୋଇଲେ ତୁ ଶୁଣରେ ଶତ୍ରୁଘନ ।
ଶତ୍ରୁକୁ ନାଶ କଲୁ ଆଉ କର୍ମା ବୋଧ
ଦଶମୁଖା ମାଣ୍ଡବ ମୁଁ କରି ରଣ ଯୁଦ୍ଧ ।
ମୋହର ବଇରିରେ ଅଟେ ଲଙ୍କସାଇଁ
ଜଣକୁ ଜଣେ ଯୁଦ୍ଧରେ ଜିଣିବ ଅଟଇ ।
ଏବେ ତୁ ଶର ବାଣରେ ସମ୍ଭାଳ ତୋହର
ତୋ ଶର ବାଣ ଥିଲେ ଯୁଦ୍ଧ ନୁହେଁ ମୋର
ଶୁଣି ଶତ୍ରୁଘନ ମନେ ହେ ସୁମରିଲେ
ତତକ୍ଷଣେ ଶର ବାଣ ଅନ୍ତର ହୋଇଲେ ।
ମନଭେଦ ଶର ଯେ ଲେଉଟି ଗଲେ ପୁଣ
ଶତ୍ରୁଘନର ନିହାଣରେ ରହିଲା ଯାଇଣ ।
ଦିଶିଲା ଆଲୋକ ଯେ ଜଗତ ହେଲା ମଳା
ଆଉ ପଡ଼ିଏ ଦେଖ ଅଛି ଶୁଣଗୋ ଗଉରୀ ।
ଗଉରୀ ବୋଇଲେ ଦେବ କଥାଏ ଅଛି ମୋର
ଜାନକୀ ଜାଣିଲେ ଦଶମୁଖା ମରିବାର ।
ଈଶ୍ୱର ବୋଇଲେ ବୀର ରଣ ଭୂମିରୁ ଗଲା
ମନ୍ଦୋଦରୀ ଆଗରେ ସେ ଯାଇଣ କହିଲା ।

ବୋଇଲେ ଶତମୁଖା ଅଟେ ତୋର ମିତ
ରାମ ଭାଇ ତାହାକୁ ଯେ ମାଇଲେ ତୁରିତ ।
ଶୁଣିଣ ମନ୍ଦୋଦରୀ ବିସ୍ମୟ ମନ କଲା
କିସ୍ମୟ ମୋର ସ୍ୱାମୀ ମରିବେ ବିଚାରିଲା ।
ଅଧର୍ମ କଲେ ଯେ ନରହେ ପୁଣି ବଂଶ
ଧର୍ମରେ ଥିଲେ ସବୁଠାରେ ହୋଏ ଯଶ ।
ଶ୍ରୀରାମ ଯେ ଧର୍ମରେ ଅଛନ୍ତି ବିଶ୍ୱାସ
ତେଣୁ ଦୈତ୍ୟ କୁଳ ଯେ ହେଉଛନ୍ତି ନାଶ ।
ନାରଦ କହିବାରତ ହେଲା ତନଦନ
ତନ ଦିନେ ସ୍ୱାମୀ ମୋର ହୋଇବ ନିଧନ ।
ଏହାଶୁଣି ମନ୍ଦୋଦରୀ ମନରେ କରେ ଦୁଃଖ
ଏଥି ଅନନ୍ତରେ ଶୁଣ ଗୋ କଥା ରସ ।
ମନ୍ଦୋଦରୀ ପୁରକୁ ଯେ ଅସୁରୀ ଯାଇଥିଲେ
ଶତଗ୍ରୀବ ପାଇବାର ବାରତା ପାଇଲେ ।
ସେଠାରୁ ଦଶ ଜଣ ଅସୁରୀ ଫେରି ଆସି
ଅଶୋକ ବନରେ ପ୍ରବେଶ ଶୀଘ୍ରେ ଆସି ।
ଜାନକୀ ତ୍ରିଜଟା ଯେ ବସିଛନ୍ତି ପୁଣ
ଅସୁରୀମାନେ ଯାଇଣ ମିଳିଲେ ତକ୍ଷଣ ।
ବୋଇଲେ ତ୍ରିଜଟାଗୋ ଆମ୍ଭର କଥାଶୁଣ
ମନ୍ଦୋଦରୀ ପୁରକୁ ଆମ୍ଭେ ଯାଇଥିଲୁ ପୁଣ
ବୀର ଜଣାଇଲା ଶତମୁଖା ଗଲା
ଶ୍ରୀରାମ ଭାଇ ତାକୁ ବେନି ଖଣ୍ଡ କଲା ।
ଶୁଣିଣ ତ୍ରିଜଟା ଯେ ମନରେ ହରଷ
ସୀତାର ମୁଖ ଚନ୍ଦ୍ରମା ପରାଏ ପ୍ରକାଶ ।
ଜାନକୀ ବିଚାରିଲେ ଦିଅର ମୋର ବଡ଼
ଘୋଡାଇ ଏ ଦୈତ୍ୟଙ୍କୁ ମାରେ ବୀରବର ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ସେ କଥା ମୋର ଆଗେ କହ ଦେବ ଭଲା ।
ଈଶ୍ୱର ବୋଇଲେ ସ୍ୱଦଣେଶ୍ୱର ପୁଣ
ଶତମୁଖ ମରିବାର ଦେଖିଲା ନୟନ ।
ମନରେ ବିଚାରିଲା ମାରିବେ ମୋତେ ରାମ
ମୋରଯୋଗୁ ନାଶହେଲା ମୋର ବଂଶ ପୁଣ
ଏମନ୍ତ ବିଚାରି ମନେ ଧନୁ ଟେସ ଧଇଲା
ଗୁଣର ଟଙ୍କାର କରି ନାରାଚ ଯୋଚିଲା ।
ଦେଖିଣ ଶ୍ରୀରାମ ଯେ ଧନୁକୁ ବେଗେଧରି
ଗୁଣ ଦେଇ ଟଙ୍କାର କଲେ ରୂପଧାରୀ ।

ବାଦଲ ଶରକୁ ଯେ ଯୋଚିଲେ ରାମ ରାଏ
ବୋଇଲେ ପନ୍ତ ମୁଖରେସନ୍ଧାନଚୋରକାପ୍ୟେ
ଦେଖିଣ ଦଶଗ୍ରୀବ ଲକ୍ଷେଶର ବନ୍ଧ
ବାଦଲ ଶରେ ରାମ ଛେଦିଲେ ତାହା ବେଗି
କୋଟିଏ ଶର ରାବଣ ବନ୍ଧିଲାକ ରାଗେ
ବାଣ ନଆସୁ ଶ୍ରୀରାମ ଛେଦିଲେ ସରାଗେ ।
ମର୍ତ୍ତ୍ତେଜ ଶର ଯେ ବନ୍ଧେ ଦଶଶିର
ଭୂରିତେ ଛେଦିଲେ ତାହା ଦଶରଥ ବାଳା ।
ବଜ୍ରାଶର ଦଶକୋଟି ଶ୍ରୀରାମ ବନ୍ଧିଲେ
ଦଶ ଲଲାଟରେ ବସିଲା ତାର ଭଲେ ।
ଖଳ ଖଳ ହୋଇଣ ବହଇ ରକତ
ବିକଳ ହୋଇଲା ବଡ଼ ବିଶ୍ରବାର ସୁତ ।
ଗୁଣରେ ନାରାଚ ଅନେକ ବସାଇଲା
ସବୁ ସୈନ୍ୟ ମାରିବ ବୋଲି ବିଚାରିଲା ।
ଏତେବୋଲି ଶର ବନ୍ଧିଲା କରି ଟାଣ
ଶ୍ରୀରାମ ଛେଦିଲା ତାହା ବାଦଲ ପେଷିଣ ।
ଉଣ୍ଡଖଣ ସମର କରେ ଦଶଗ୍ରୀବ
ବଜୂଳ ତେଜ ଜାଣି ଶରଙ୍କ ପ୍ରଭାବ ।
ରାବଣର ଶରକୁ ଶ୍ରୀରାମ ଛେଦେ ପୁଣ
ଶ୍ରୀରାମ ଯାହା ବନ୍ଧନ୍ତି ରାବଣ ଛେଦେ ଜାଣ
ଏମନ୍ତେ ରଜନୀ ଆସି ତିନ ଯେ ପ୍ରହର
କୁହୁଡ଼ି ପରାଏ ଶର ବରଷେ ଦଶଶିର ।
ଶର ଆତଯାତରେ ରଜନୀ ଆଲୋକ
ବାଦଲ ଶର ଧରି ଛେଦିଲେ ରଘୁବାଳ ।
ପୁଣି ଶତେ ଶର ଯେ ଶ୍ରୀରାମ ବନ୍ଧିଲେ
ରାବଣର ଶସାର ଶରରେ ଗ୍ଲାଇ ଦେଲେ ।
ଦେଖିଣ ରାବଣ ଯେ ବିଶ୍ୱମୂର୍ତ୍ତି ହେଲା
ଦଶ ଯୋଜନ ମୋଟରେ କାୟା ବିସ୍ତାରିଲା
ଦଶଭୁଜରେ ଧନୁ ଧରି ବନ୍ଧିଲା ନାରାଚ
ରଜନୀ ଶେଷ ହୁଅନ୍ତେ ବିକାଶେ ରଣତେଜ
ଗଗନେ ଉଦୟ ଯେ ହେଲେ ଅଂଶୁମାଳି
ବେଳ ଯେ ଦୁଇଘଡ଼ି ହେଲା ଆସିକରି ।
ପାଷଣ୍ଡି ବୋଇଲେ ତୁମ୍ଭେ ଦଶରୁଦ୍ର ଶୁଣ
ଭରତ ଯେ ଅଯୋଧ୍ୟାରୁ ଅଇଲାକ ପୁଣ ।
ଲକ୍ଷେ ରାଜା ଘେନିଣ ଯେ ଶ୍ରୀରାମର ଭାଇ
ବଶିଷ୍ଠ ମୁନିଙ୍କି ସେ ସଙ୍ଗରେ ଆଣିଲଇଁ ।

ସେଦିନ ସେ କିଷ୍କିନ୍ଧ୍ୟାରେ ହେଲେ ପରବେଶ
ରସରେ ଆସି ରହିଲେ ପର୍ବତ ରୁଷି ମୂଳ ।
ତାର ମହାଦେଈ ସଙ୍ଗରେ ଭେଟହେଲେ
ଆଦରନ ପୁଣି କ ବଚର ସେହୁ କଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗିରିଜା
ଦଣ୍ଡଘଡ଼ି ରାଜଠାରେ ଭରତ କଲେ ଶଯ୍ୟା ।
ଯେନାମଣି ପାଟଣାରେ ଅସୁରଙ୍କ ସ୍ଥାନ
ହିରଣ୍ୟ ଗର୍ଭ ସେଠାରେ ଅଛିଗୋ ତୁମ୍ଭେଜାଣ
ସେଠାରେ ବାଇତା ଯେ ଦେଲା ସୁଗ୍ରୀବର
ସେ ରାଜ୍ୟ ରକ୍ଷ କପି ଅଛନ୍ତି କୋଟିବାର
ଶଙ୍ଖ ମୁଖା ଭାଲୁ ଯେ ଦଶ କୋଟି ଜାଣ
ସେନାପତିଙ୍କର ନାମ ମୋରଠାରୁ ଶୁଣ
କୁମ୍ଭେକ ଅକୁମ୍ଭେକ ଅରୁଣ ନାମ ତିନ
ବାରତା ମିଳିଲା ତାଙ୍କୁ ବୀରମାନେ ପୁଣି ।
ସନ୍ୟବଳ ସାଜିଣ ମାସକେ ବାହାରିଲେ
ସେହି ରାଜ ଶେଷେ ଆଣି ରକ୍ଷ ଭାଲୁ ମିଳେ
ସେନାପତି ତିନ ଜଣ ମିଳିଲେ ଆସିକରି
ସେ ନବରେ ପଚାରିଲେ କାହାନ୍ତି ଦଣ୍ଡଧାରୀ
ସେ ବୋଇଲେ ଲଙ୍କାଗଡ଼େ ହେଉଛି ସମର
ବିଶ୍ରବା ସୁତ ରାବଣ ସଙ୍ଗରେ ତାଙ୍କର ।
ଏହି ସମସ୍ତରେ କିଷ୍କିନ୍ଧ୍ୟା ନଗ୍ର ବୀର
ଯାଇଁ ଜଣାଇଲା ସେ ଯେ ଭରତ ଆଗର ।
ଯେନାମଣି ପାଟଣାରୁ ଅଇଲେ ରକ୍ଷ କପି
ଲଙ୍କାଗଡ଼କୁ ସେହୁ ଯାଉଛନ୍ତି ଖେପି ।
ତାଙ୍କର ସଙ୍ଗରେ ତୁମ୍ଭେ କର ହେ ଗମନ
ଏଠାରୁ ଦୁଇଶତ ଯୁଣ ଲଙ୍କା ଅଟେ ଜାଣ ।
ବୀର ମୁଖୁ ପୁଣି ଭରତ ଉଠିଲା ଯେ ବେଗେ
ଟମକ ବଜାଇଲେ ସୈନ୍ୟଙ୍କର ଲଗେ ।
ନିଶାଣ ବାଜଣାରୁ ସମସ୍ତେ ଚେତା ହେଲେ
ରାଜାମାନେ ଉଠିଣ ସମସ୍ତେ ବସିଲେ ।
ରାଜାମାନେ ନିତ୍ୟକର୍ମ ସାରିଲେ ବେଗଯାଇ
ଯେ ଯାହାର ବାହାନ ପରେ ବସିଲେକ ଯାଇ
ଭରତ ସେଠାରୁ ଉଠିଣ ବେଗେ ଗଲେ
ବଶିଷ୍ଠଙ୍କ ଆଗରେ ପ୍ରବେଶ ହୋଇଲେ ।
ବୋଇଲେ କଥାଏ ଯେ ଶୁଣ ମୋହଠାରୁ
କିଷ୍କିନ୍ଧାର ବୀର ହେ ଆସେ ହନ୍ତାକାରୁ ।

ମୋତେ ଆସି ଖବର ଯେ କହିକରି ଗଲେ
କେନାମଣି ପାଟଣାରୁ ସୈନ୍ୟ ଯେ ଅଇଲେ
ଶ୍ରୀରାମ ରାବଣ ଯୁଦ୍ଧକୁ ଯାଇଛନ୍ତି ସେସ୍ଥ
ତାଙ୍କ ସଙ୍ଗେ ଯାଅ ବୋଲି କହିଲା ଦୂତ ସ୍ଥ
ଋକ୍ଷ ମର୍କଟ ଯେ ଆସିଲେ ବାଉକୋଟି ।
ଗଙ୍ଗ ମୁଖା ଭାଲୁ ଅଛନ୍ତି ବାରକୋଟି ।
ବହୁତ ଦୂରରୁ ସେ ଆସିଛନ୍ତି ପୁଣ
ତିନି ସେନାପତି ସଙ୍ଗରେ ଛନ୍ତି ଜାଣ ।
ଏତେ କହି ଦୂତ ଯେ ବେଗେ ଫେରିଗଲେ
ବଶିଷ୍ଠ ଶୁଣିଣ ଯେ ସନ୍ତୋଷ ହୋଇଲେ ।
ସେଠାରୁ ବଶିଷ୍ଠ ନିତ୍ୟ କର୍ମକୁ ଗଲେ
ନଦୀରେ ସ୍ନାନ କରି ତର୍ପଣ ସନ୍ଧ୍ୟାକଲେ ।
ନିତ୍ୟ କର୍ମ ସାରିଣ ଅଇଲେ ଋଷି ପୁଣ
ହସ୍ତୀର ଉପରେ ଯାଇ ବସିଲେ ତକ୍ଷଣ ।
ସେଠାରୁ ଭରତ ଯେ ବେଗେ ଚଳିଗଲେ
ଗୁହନାମେ ଶବର ପୁରରେ ମିଳିଲେ ।
ବୋଇଲେ ଆଗେ ତୁମ୍ଭେ ଚଳ ହେ ରାଜନ
ଋକ୍ଷ କପି ଯିବାରୁ ଛାଡ଼ିଛୁ ବାଟ ପୁଣ ।
ତାହାଶୁଣି ଶବର ଆଗରେ ଚଳିଗଲା
ଟମକ ଭୁସୁଣ୍ଡି ଶାର ବାଦ୍ୟ ଯେ ବଜାଇଲା
ରଜାମାନେ ତାର ପଛେ କଲେକ ଗମନ
ହସ୍ତୀ ଘୋଡ଼ା ସୈନ୍ୟବଳ ସଙ୍ଗରେ ଘେନିଣ
ହଟାଗ୍ର ବଜାର ଯେ ସେଠ ଲମ୍ବହତା
ଛେନ୍ଦକାର ଗଥୁରିଆ କୋଦାଳିଆ ବଳବନ୍ତ
ଶଗଡ଼ି ବଳଦ ଯେ ଚଳିଲେ ତାଙ୍କପଛେ
ବାଦ୍ୟର ନିଶାଣ ଯେ ବାଜଇ ଭୂରିତେ
ବାହାଳୀ ଗାରଭୁଗା ଯେ ଟମକ ନାଗରା
ଶାରବାଦ୍ୟ ତେଲିଙ୍ଗି ବାଜେ ହୋଇ ଭରା
ମେରୁଗିରି ଚମକେ ଚମକେ ମେଦିନୀ
ଗହଳରେ ସୈନ୍ୟମାନେ ଜନ୍ତା ଜନ୍ତି ପୁଣି
ସମସ୍ତଙ୍କୁ ରଖିଁଲା କୈକେୟୀଙ୍କ ବଳା
ନିତ୍ୟକର୍ମ ସାରିଣ ରଥରେ ଧଜେ କଲା ।
ଏଥୁ ଅନନ୍ତରେ ଯେ ତିନି ସେନାପତି
ଶାର ବାଦ୍ୟ ଶୁଣିଣ ସେ ରାଜ୍ୟରେ ପଶୁଛନ୍ତି
ଏତେ ସମ୍ଭବରେ ତ କେବଣ ଲୋକଯାଏ
କିଷ୍କିନ୍ଧ୍ୟା ନରଜନ ତାହୁ ଆଗ କହେ ।

ଯିବାଁର ସକାଶେ ତୁମ୍ଭେ ଯାଉଛ ଏବେ ପୁଣ
ଶ୍ରୀରାମ ରାବଣ ଲଙ୍କାରେ କରୁଛନ୍ତି ରଣ ।
ଅନେକ ଋକ୍ଷ କପି ଯେ ତାଙ୍କ ସଙ୍ଗେ ଅଛି
ଦୁଇମାସ ହେଲା ଯୁଦ୍ଧ ତହିଁରେ ଲାଗିଛି ।
ସେଠାକୁ ଯାଉଅଛୁ ଶ୍ରୀରାମ ଭାଇ ପୁଣ
ବାରତା ପାଇଲା ସେ ଅଯୋଧ୍ୟାରେ ଜାଣ ।
ଲକ୍ଷେ ରଜା ଘେନି ସେ ଅଇଲେ ଚଳାଇ
ରଜାମାନଙ୍କର ବାଦ୍ୟେ ମେଦିନୀ କମ୍ପଇ ।
କାଲି ସନ୍ଧ୍ୟାବେଳକୁ ସେ ଏହିଠାରେ ଥିଲେ
ରଜନୀ ପାହିବାରୁ ତକ୍ଷଣ ସର୍ବେ ଗଲେ ।
ତାହାଶୁଣି ସେନାପତି ଗ୍ରାଇ ଋକ୍ଷ କପି
ବୋଇଲାକ ଆଗରେ ଯାଉଛୁ ଭ୍ରତ ଯତି ।
ଶ୍ରୀରାମର ଭାଇ ସେଯେ ଅଟନ୍ତି ଯୁବତେ
ତାଙ୍କପଛେ ଚାଲ ତୁମ୍ଭେ କରିଣ ମୁରାଟେ ।
ଏତେବୋଲି ଆଗରେ ଯେ ଦୁଇ ସେନାପତି
ମଧ୍ୟରେ ଚାଲିଲେ ଭାଲୁ ମର୍କଟ ବାନରଟି ।
ତାଙ୍କ ସଙ୍ଗେ କୁମ୍ଭ ସେନାପତି ଗଲା ପୁଣ
ଶବଦରେ ମେରୁଗିରି ଖବଦ ଯେ ଜାଣ ।
ରାମଭାଇ ଭ୍ରଥ ଯେ ପଛରେ ଯାଉଥିଲା
ତାଙ୍କ ପଛେ ସେନାପତି ଯାଇଣ ମିଶିଲା ।
ଋକ୍ଷ କପି ଫଉଜ ଯେ ତାଙ୍କ ପଛେ
ହୁଳହୁଳି ଗାନ ଭୁଗା ବଜାଉଛନ୍ତି ପଥେ ।
କେ ବୋଲେ କେତେଦିନ ହେବା ପରବେଶ
କେ ବୋଲଇ ସବୁଲଣି ଅଳପ ଅଛି ଶେଷ
କେ ବୋଲଇ ଖରି ପାଞ୍ଚ ଦିନରେ ମିଳିବା
କେ ବୋଲଇ ଶ୍ରୀରାମକୁ ସେଠାରେ ଭେଟିବା
କେ ବୋଲେ ରାମ ରାବଣ ହେଉଛି ସମର
କେ ବୋଲେ ସେଠାରେ ଯାଇଛନ୍ତି ସୁଗ୍ରୀବର
କେ ବୋଲେ ଅଙ୍ଗଦ ହନୁ ଯମ୍ବେବ ଅଛନ୍ତି
କେ ବୋଲେ ରାବଣ ସଙ୍ଗେ ଯୁଦ୍ଧ କରୁଛନ୍ତି
କେ ବୋଲେରାମାସ୍ତ୍ରଥ ଯୁଦ୍ଧଥିବକ ଯିବା ଯାଏ
କେ ବୋଲେ ଚାଲଗଲା ନିଶତ ମୋରଦେହେ
କେ ବୋଲେ ଦୁଇମାସ ପାଞ୍ଚଦିନ ହେଲା
କେ ବୋଲନ୍ତି ଭଲେହେ ଯୁଦ୍ଧେ ଦେଖିବାପରା
ଚାଲ ଚାଲ ଆସ ଆସ ବୋଲେ କପିପଲ
ଭରତ ଆଗରେ ଯାଇ ଉଠିଲେ କପିପଲ ।

ଋକ୍ଷ କପିଙ୍କି ଦେଖି ଭରତ ପଚ୍ଛିଲେ
କେଣିକ ଯାଉଛ ବୋଲି ବାରତା ପଚ୍ଛରିଲେ
ସେନାପତି ବୋଇଲେ ଯାଉଛୁ ଲଙ୍କାଗଡ଼
ରାମ ରାବଣର ସମର ଅଟେ ମହାଘୋର ।
ଶ୍ରୀରାମଙ୍କ ଭାରିଯା ଜାନକୀ ନାମେ ନାରୀ
ଜନକ ନାରୀଙ୍କର ସେ ଅଟନ୍ତି ଦୁଲାଳୀ ।
ସ୍ୱୟଂ ନାରାୟଣ ଯେ ଅଟନ୍ତି ରାମ ପୁଣ
ଜାନକୀ ଅଟନ୍ତି ଯେ କମଳା ଦେବୀ ଜାଣ ।
ଶିବଧନୁ ଭାଙ୍ଗି ରାମ ତାଙ୍କୁ ହେଲେ ବର
ଅସୁରଙ୍କୁ ମାରିବାକୁ ବୈକୁଣ୍ଠ ହେଲା ।
ପିତା ସତ୍ୟ ପାଳିରାମ ବନକୁ ଅଇଲେ
ରାବଣ ଜାନକୀଙ୍କି ହରିଣ ଆଣିଲେ ।
ସେଠାରେ ରାମ ଲକ୍ଷ୍ମଣ କିଷ୍କିନ୍ଧ୍ୟାରେ ମିଳି
ଏକକାଣ୍ଡରେ ଯେ ବାଳିତ ବଧ କରି ।
ବାଳିର କୁମର ଯେ ଅଙ୍ଗଦ ନାମେ ବୀର
ସୁଗ୍ରୀବର ଭେଟିବାକୁ ଆଣିଲ ଋଷବଳ ।
ଆମ୍ଭମାନଙ୍କ ବସା ଅଟେ ବହୁଦୂରେ
ଖବର ପାଇଲୁ ଆମ୍ଭେ ବହୁତ ଝନରେ ।
ସୈନ୍ୟବଳ ସାଜ ଆମ୍ଭେ ଆସିଅଛୁ ପୁଣ
ଉତ୍ତର ହେଲାବୋଲି ବୋଲିବ ବାଳିନନ୍ଦନ
ସେଠାକୁ ତ ବାରରେ ଯାଉଅଛୁ ପୁଣି
ଯୁଦ୍ଧ ଥିହେ ଦୟା ଆମ୍ଭଙ୍କୁ କରିବେ ରଘୁମଣି
ରାମାୟଣ ଯୁଦ୍ଧରେ ଆମେ ହେବୁ ମାମରଥ
ଆମ୍ଭଙ୍କୁ ଆଜ୍ଞା ଦେଇଛନ୍ତି ତ୍ରୈଲୋକ୍ୟର ନାଥ
ଆମ୍ଭର ନୃପତି ଯେ ଅଟେ ସୁଗ୍ରୀବର
ତାହାଙ୍କ ଆଜ୍ଞାରେ ଆମ୍ଭ ଯାଉଛୁ ଲଙ୍କାପୁର
ତୁମ୍ଭେ କେବଣ ଦେଶର ଅଟ ହେ ରାଜନ
କେଉଁଠାକୁ ଯାଉଅଛୁ ସୈନ୍ୟବଳ ସାଜଣ ।
ଭରଥ ବୋଇଲେ ଶ୍ରୀରାମଙ୍କର ମୁଁ ସୋଦର
ଭରତ ନାମ ମୋଟି ଅଟେ ଯେ ମୋହର ।
ମୋର ଜନମ ସକାଶେ ଶ୍ରୀରାମ ଆସି ବନ
ଚୌଦ ବରଷକୁ ଶ୍ରୀରାମ କରିଛନ୍ତି ପ୍ରମାଣ ।
ନୟମ ପରି ଯାଇ ହେଲାଣି ଛଡ଼ମାସ
ଲକ୍ଷେ ରାଜା ବରଣ କରି ଆଣିଛୁ ନାନାଦେଶ
ଅଭିଷେକ ହୋଇ ମୁଁ ସକଳ ଉଆଇଲି
ରାମ ରାବଣର ଯୁଦ୍ଧ ବାରତା ପାଇଲି ।

ଲକ୍ଷେ ରାଜା ଘେନଣ ମୁଁ ଆସିଅଛି ପୁଣ
ବଶିଷ୍ଠ ସୁମନ୍ତ୍ର ଅଛନ୍ତି ସଙ୍ଗତେଣ ।
କେତେଦୂରପଥ ଆଉ ଅଛିହେ ତୋତେଜଣା
ସେନାପତି ବୋଇଲେ ଦୁଇଶ ଯୁଣ ସିନା ।
ଏଥି ଅନନ୍ତରେ ଗଲେ ସେହୁ ଚଳି
ସନ୍ଧ୍ୟାବେଳ ସରିକ ମାଲ୍ୟାବନ୍ତରେ ମିଳି ।
ରାଜାମାନେ ସେଠାରେ ରହିଛନ୍ତି ପୁଣ
ନିତ୍ୟକର୍ମ ସାରିବାକୁ ଚଳିଲେ ରାଜାଗଣ ।
ସ୍ନାନ ତର୍ପଣ ଯେ ନଦୀରେ ଯାଇ କଲେ
ନିତ୍ୟକର୍ମ ସାରିଣ ସେଠାରୁ ଅଇଲେ ।
ଖାଣ୍ଡ଼ୀଘରମାନ ସେ ଟାଣିଲେ ହେଉକରି
ବହୁତ୍ଡ଼ ମସାଲ ଯେ ଜଗ ଜ୍ୱଳା ଜାଳି ।
ହଜାର କଯାରି ଯେ ଦୋକାନ ମେଲିଦେଲେ
ସକଳ ଜନଙ୍କୁ ସେ ରାନ୍ଧଣା ସଞ୍ଚଦେଲେ ।
ବଶିଷ୍ଠ ନିତ୍ୟକର୍ମ ସାରିଲେ ଯାଇ ପୁଣ
ସନ୍ଧ୍ୟାସୁମରି ସେ ତର୍ପଣ କଲେ ଜାଣ ।
ଖାଣ୍ଡ଼ୀଘରେ ଆସିଣ ହେଲେ ପରିବେଶ
ସୁରଭିକ ସୁମରଣା କଲେ ବ୍ରହ୍ମସୁତ ।
ଯେ ଯାହା ବାଞ୍ଛଇ ତାହାକୁ ତାହା ମିଳି
ଅନେକ ପଦାର୍ଥ ସୁରଭି ଦେଲେ ଆଣି କରି
ଘିଅ ଗୁଡ଼ ଛେନା ଦଧି ଯେ ଶାକରି
ଦୁଧ ମାଛ ମାଂସ ଯେ ପଞ୍ଚବା ଅଚାର ।
କାଠ ନିଆଁ ଲୁଣ ହାଣ୍ଡି ଚକଣ ଆଣି
ସମସ୍ତ ପରଶଇ ସୁରଭି ଧେନୁ ଜାଣି ।
ସିଂଖା ପଇ ରାଚାମାନେ ରାନ୍ଧଣାବଧି କଲେ
ଭୋଜନ ସାରିଣ ସର୍ବେ ସୁଖରେ ଶୋଇଲେ
ସେଠାରୁ ସୈନ୍ୟ ବଳ ରାନ୍ଧଣା କଲେ ପୁଣ
ମନ ସନ୍ତୋଷରେ ସର୍ବେ କରନ୍ତି ଭୋଜନ ।
ସୈନ୍ୟବଳ ଭୁଞ୍ଜିଣ ଯେ ନିଦ୍ରାଗଲେ ତହିଁ
ବାଯନ୍ତ୍ରୀମାନେ ଭୁଞ୍ଜିଣ ସୁସ୍ଥ ହୋଇ ଶୋଇ
ସିଠ ଲମ୍ବ ହାତୀ ଛେଦକାରି ଧେ ଖାଇଲେ
ଯେ ଯାହା ସୁଖରେ ସମସ୍ତେ ନିଦ୍ରାଗଲେ ।
ହସ୍ତୀମାନଙ୍କର ଯେ ମାହୁନ୍ତ ଜାନେ ତାଣ
ଘୋଳଥ ଭରି ମସୁର ନେଲେ ସେ ଆସିଣ
ନାଗବଳଙ୍କୁ ସେ ଖାଇବାକୁ ଦେଲେ
ଆପେଭୁଞ୍ଜି ନିଦ୍ରାରେ ଅଚେତ ହୋଇଲେ

ଚେରଦାରମାନେଯେ ଘୋଡ଼ାଙ୍କୁ ଦେଲେଦାନ
ନଜରେ ଭୋଜନ କରି ଶପୁନ କଲେ ସିନା ।
ଫଳମୂଳ ଆଣିଣ ଭରତେ ପୁଣି ଦେଲେ
ବଶିଷ୍ଠ ଭୁଞ୍ଜି ଣ ଯେ ଆଚ୍ଛମନ କଲେ ।
କଷା ମୂଳ ଖାଇଣ ପଲଙ୍କେ ନିଦ୍ରାଗଲେ
କପିସେନାପତିଙ୍କୁ ଭରତ ବୋଇଲେ ।
ବୋଇଲେ ସୈନ୍ୟବଳଙ୍କୁ କହ ହେ ସୁନ୍ଦର
ଫଳମୂଳ ନେଇଣ କରନ୍ତୁ ଆହାର ।
ଯାହା ମନକୁ ଯାହା ରୁଚଇ ନେଇ ପୁଣ
ଧନର ସନ୍ତୋଷେ ସେହୁ କରନ୍ତୁ ଭୋଜନ ।
ଭୃଥ ଯତି ଠାରୁ ଶୁଣି ସେନାପତି ଗଲେ
ରିଛ ମର୍କଟକୁ ଡାକିଣ କହିଲେ ।
ବୋଇଲେ ତୁମ୍ଭେ ଯାଅ ଭୃଥ ଯତି ପାଶ
ସେ ଯାହା ଦେବେ ତାହା ଆଣିକରି ଗ୍ରାସ ।
ତାହାଶୁଣି ସୈନ୍ୟବଳ ତୁରିତ ହୋଇଗଲେ
ଭୃଥ ଯତି ପାଶେଯାଇ ପ୍ରବେଶ ହୋଇଲେ
କନ୍ଦମୂଳ ଆମ୍ବ ଯେ ପଣସ ନଠୀକାଳ
କାଳୁଡ଼ି କଷାରୁ ଯେ କନ୍ଦି ଶିମ୍ବ ଫଳ ।
ଯାହାର ମନକୁ ଯାହା ଯୋଗାଇଲା ପୁଣ
ଭୋଜନ କଲେ ଯହିଁ ରିଛ କପି ଗଣ ।
ଭୋଜନ ସାରିଣ ନିଦ୍ରା ତହିଁ ଗଲେ
ସେନାପତି ଭୋଜନ ତାଙ୍କ ପଛେ କଲେ ।
ସନ୍ତୋଷେ ବୋଇଲେ ଧନ୍ୟ ଶ୍ରୀରାମହେ ଜାଣ
ତୁମ୍ଭର ନାମ ଧରିଲେ ଖଣ୍ଡଇ ପାପ ପୁଣ୍ୟ ।
ଯାଇ ଭରତ ତୋର ଅନେକ ସୁଖ ହେଲା
ଏତେବେଳକୁ ସେ ଭୋଜନ କରେ ପର ।
ଏତେକହି ସେନାପତି ଶୋଇଲେ ସେଠାରେ
ଭରତ ସେବନ କରେ ସମସ୍ତଙ୍କ ପଛରେ ।
ସୁମନ୍ତ ମନ୍ତ୍ରୀ ଯେ ଭୋଜନ ପୁଣ କଲେ
ଭ୍ରତଙ୍କ ପାଶରେ ଯାଇ ସେ ନିଦ୍ରା ଗଲେ ।
କେତେବେଳେ ରାତ୍ର ଯେ ଏଗାର ଘଡ଼ି ଜାଣ
ବଜ୍ର ବାଟୁଳି ଧରି ଭରତ ବୁଲେ ପୁଣ
ରଜନୀ ଶେଷରେ ଯେ ବାଜିଲାକ ତୁଷ
ଉଠିଣ ବସିଲେ ସକଳ ସୈନ୍ୟ ଘେରି ।
ରାଜାମାନେ ନିତ୍ୟକର୍ମ ସାରିଲେ ପୁଣ ବେଗେ
ରଥର ଉପରେ ବସି ବାହାରି ହେଲେ ସଙ୍ଗେ

ବାଜା ବଜାଇଣ ଆଗରେ ଚଳିଗଲେ
ସେମାନଙ୍କ ଆଗରେ ରିଛ କପି ଗଲେ ।
ତାହାଙ୍କର ପଛରେ ଗଲେ ସୈନ୍ୟବଳ
ଛେଦକାରି କୋଦଳିଆ ଅଛନ୍ତି ସଙ୍ଗରି ।
ଗୁହମାନେ ଶବର ଆଗରେ ଥଗୁଆଣି
ତହିଁ ପଛେ ସମସ୍ତେ ଚାଲନ୍ତି ଧୀରେ ପୁଣି ।
ହୁଳହୁଳି ରାମତାଳି ବାଜଣା ବାଜଇ
ନୃତ୍ୟରଙ୍ଗ କରିଣ ଗାଉଣା ମାନ ଗାଇ ।
ବଶିଷ୍ଠ ମହାମୁନି ଯେ ନିତ୍ୟକର୍ମ ସାରି
ଅମରି ହସ୍ତୀ ପରେ ଯାଇଣ ବିଜେ କରି ।
ସନ୍ୟଙ୍କର ପଛରେ ସେ କଲେକ ଗମନ
ସେଠାରୁ ଭରତ ସାରି କଲେକ ସ୍ନାହାନ ।
ନିତ୍ୟକର୍ମ କରିଣ ତର୍ପଣ ବେଗେ କଲେ
ରଥର ଉପରେ ସେ ଯାଇଣ ବସିଲେ ।
ସମସ୍ତଙ୍କ ପଛରେ ସେ କଲେ ଗମନ
କାର୍ତ୍ତିକ ପଦାରେ ଯାଇ ହେଲେ ସର୍ବ ସନ୍ୟ
ଦିବସ ଶେଷ ହେଲା ଯେ ହେଲା ସନ୍ଧ୍ୟାବେଳ
ଘାହୁଳ ଜଗହୁଳା ଲାଗେ ସମସ୍ତଙ୍କର ।
ବାଜଣାର ହାଉ ଯେ ତୁଣ୍ଡେ ଶବ୍ଦ ଶୁଣ
ସଦାଶିବ ନନ୍ଦନ ଯେ କାର୍ତ୍ତିକେଶ୍ୱର ପୁର ।
ମୟୂର ବାହାନ ଚଢ଼ି ବାହାର ତକ୍ଷଣ
ବୋଇଲ ତୁମ୍ଭେ ଯାଉଛ କେଣେ ପୁଣ ।
ପିନାକ ଶର ଧରି ଆଗରେ ଉଭା ହେଲେ
ରହ ରହ ଭାଇ ବୋଲି ଡାକ ସେହୁ ଦେଲେ
ସ୍ୱର ଜଣାଇଲା ଯାଇ ଭରତ ସ୍ମୁରେ
ଉଶ୍ୱର ନନ୍ଦନ କଳି କରୁଛି ଆଗରେ ।
ଶୁଣିଣ ଭରତ ସାର ବେଗେ ଚମ୍ପଗଲା
କାର୍ତ୍ତିକେଶ୍ୱର ଆଗରେ ନେଇଣ ରଥ କଲା
ବୋଇଲେ ନନ୍ଦନରେ କମ୍ପାକରି କଳି
ଆପଣା ଆପଣାରେ କି ହେବା ସଂଗ୍ରାମରି ।
ଅସୁରଙ୍କୁ ମାଇଲେ ଦେବକାର୍ଯ୍ୟ ହେବ
ଦେବତାଙ୍କୁ ମାଇଲେରେ କାହିଁରେ ରହିବ ।
ବାସୁଦେବ ମୂର୍ତ୍ତି ହେ ଅଟନ୍ତି ଶ୍ରୀରାମ
ଅସୁର ମାରିବା ପାଇଁ ହୋଇଛନ୍ତି ଜନ୍ମ ।
ରାବଣର ସଙ୍ଗରେ କରୁଛନ୍ତି ଯୁଦ୍ଧ
ତାଙ୍କର ସୈନ୍ୟଙ୍କୁ ଘାଇ ଓଳଗୁନ୍ତୁ ଆଗ ।

କୁମ୍ଭେ ବର ଦେଇଣ ଅସୁରଙ୍କୁ ବଢାଇଲ
ବର ଦେଇ ଅସୁରଙ୍କୁ ପ୍ରବଳ କରାଇଲ ।
ବାପ ତୋର ନିକଟାରେ ଅସୁରବୋଲେଥାଇ
ତାଣ୍ଡବ ନୃତ୍ୟକାଳେ ରାବଣ ଆଗେ ନାଚଇ
ମନ ନାହିଁ କୁମ୍ଭଙ୍କୁରେ କରୁଛ ଏବେ କଳ
ଅସୁରଙ୍କ ସଙ୍ଗେ ତୋତେ ଦେବ ରଣାକଳ ।
କାର୍ତ୍ତିକେଶ୍ୱର ବୋଲେ ଶୁଣ ମୋର ବାଣୀ
ରାଜାର କୁମର କୁମ୍ଭେ ରଘୁବର ପୁଣି ।
ଧନ ନ ସରିବାରୁରେ ମୁଣ୍ଡରେ ଜଟା ବାନ୍ଧ
ପୁତ୍ର ମୁଖ ନ ଦେଖି ବାପ ତୋ ମଲା କାନ୍ଦ ।
ରାଇ ତୋର ଅଯୋଗ୍ୟରେ ବନସ୍ତକୁ ଗଲା
ଭାଜକୁ କୁମ୍ଭରରେ ଅସୁର ହରିନେଲା ।
ଋକ୍ଷକପି ସେନାଣରେ କରୁଛ ସମର
ମାଙ୍କଡ଼ ଗୁଡ଼ାଏରେ ରଖିଛ ସଙ୍ଗତର ।
ମନେ ମନେ ବଡ଼ରେ ହେଉଛ କୁମ୍ଭେ ପୁଣି
ମୋହର ହାବୋଉ କରେ ଆଜ ଯିବ ଜାଣି
ତୋତେ ମୁଁ ମାଇଲେ ମୋରହେବ ବଡ଼କାର୍ଯ୍ୟ
ଲକ୍ଷେ ରାଜା ମୁଣ୍ଡରେ ପଡ଼ିବ ତଳେ ଆଜ
ତାହାଶୁଣି ଭରତ ଯେ କ୍ରୋଧରେ ଜର୍ଜର
ରଥରୁ ଓହ୍ଲାଇଲା ତତ୍କ୍ଷଣେ ମହାବୀର ।
କୁମର ବାଳ ଯାଇ କରରେ ଧଇଲା
ଆର କରେ ମୟୁରକୁ ଧରିଣ ଆଣିଲା ।
ରଥର ଉପରେ ବସିଲା ଯାଇ ବେଗ
ରଥର ନାୟକାର ପାଟଡ଼ୋର ସଜ ।
ବାର ଭୁଜ ତାହାର ନଗୁଡ଼େ ବାନ୍ଧିଲା
ମୟୁର ବାନ୍ଧିକରି ସଙ୍ଗରେ ରଖିଲା ।
ଏଥୁ ଅନନ୍ତରେ ଯୋ ଶୁଣ ଶାକମ୍ଭରୀ
ରଥରୁ ଓହ୍ଲାଇ ରାଜା ନିତ୍ୟକର୍ମ ସାରି ।
ଶାଢ଼ୀ ଘରମାନ ସେଠାରୁ ଉଠାଇଲେ
ଯେ ଯାହା ଶାଢ଼ୀଘରରେ ରାଜାଏ ମିଳଲେ
ହଟାରି ବଜାର ଦୋକାନ ଦେଲେ ମେଲି
ସୈନ୍ୟବଳ ସମସ୍ତେ ରନ୍ଧଣା ବଧି କରି ।
ବଶିଷ୍ଠ ସୁମରିଲେ ସୁରଭିଙ୍କ ପୁଣ
ତତ୍କ୍ଷଣେ କାମଧେନୁ ସଙ୍ଗ ଦେଲା ଜାଣ ।
ରାଜମାନଙ୍କର ଅମୃତ ଯୋଗାଡ଼ ହୋଇ
ପାତ୍ର ମନ୍ତ୍ରୀ ସାମନ୍ତ ସେହିରୂପେ ପାଇ ।

ନାଗବଳଙ୍କୁ ଦାନା ଘୋଡ଼ା ଓଟଙ୍କୁ ବର
ରଥିମାନଙ୍କ ଅଶ୍ୱଙ୍କୁ ମସୁର ଦେଲେ ମେଲ ।
ମାହୁନ୍ତ ଚେରବାରମାନଙ୍କୁ ଖୁଆଇ
ଝଶାଘଡ଼ ରାହଠାରେ ଜଞ୍ଜାଳ ସରଇ ।
ଭୁଞ୍ଜିଣ ସମସ୍ତେ ଖୁଆଇଲେ ଗୁଆ ପାନ
ବଶିଷ୍ଠ ସେହିଠାରୁ କଲେ ନିତ୍ୟକର୍ମ ।
ତର୍ପଣ ସନ୍ଧ୍ୟା ସାରି ନିର୍ମଳ ସ୍ଥାନେ ବସି
ଅବାତ କନ୍ଦ ଛେନା ଆହାର କଲେ ଋଷି ।
ସେନାପତିଙ୍କ ଡାକି ଭରତ କହିଲେ
ଫଳ ମୂଳ ସୈନ୍ୟଙ୍କୁରେ ଢଅଯେ ବୋଇଲେ
ଭରତ ଆଜ୍ଞାରେ ସକଳ ଋକ୍ଷ କପି
ଫଳ ମୂଳ ନେଇ ସର୍ବେ ବାଣ୍ଟିଣ ଖାଆନ୍ତି ।
ଖାଇକରି ଋକ୍ଷ କପି ସମସ୍ତେ ନିଦ୍ରା ଗଲେ
ଏଥୁ ଅନନ୍ତରେ ଯେ ଶୁଣ କୁମ୍ଭେ ଭଲେ ।
ଉଶାନନ ନନ୍ଦନ କହନ୍ତେ ଅଛି ପୁଣ
ଭରତ ଧରି ନେଇ ରଖିଛି ବନ୍ଧରେଣ ।
ସେ କୁମର ମୋତେ ଯେ ସୁମରଣା କଲା
ସେହିକଥା ମୋତେ ପ୍ରସନ୍ନେ ଜଣାଗଲା ।
ଚଉଦ କୋଟି ଶିବଗଣ ସୁମରିଲି ମୁହିଁ
ବୃଷଭ ଚଢ଼ିଣ ଅଇଲେ ସର୍ବେ ସେହି ।
ମୋର ପୁରେ ଆସିଣ ହେଲେ ପରବେଶ
ନବଲକ୍ଷ ଡମ୍ବରୁ ଧରି ଅଇଲେ ଦୁର୍ଗାଅଂଶ
ମୂଷିକ ବାହନ ଚଢ଼ି ଗଣପତି ଆସେ
ମହାବୃଷଭ ଚଢ଼ି ଆମ୍ଭେ ଗଲୁ ତାଙ୍କ ପାଶେ
ପୁତ୍ର ମୋର ଷଡ଼ାନନ କୁମାର ପଦାଥିଲା
ଋକ୍ଷକପି ସେନ ରାମ ସେ ବାଟରେ ଗଲା ।
ସେତେବେଳେ ବରୋଧ କଲା ଶ୍ରୀରାମଙ୍କୁ
ସଜମାନ କଲୁ ଆମ୍ଭେ ଯାଇଣ ତାହାକୁ ।
ରାବଣର ସଙ୍ଗରେ ଯାଇ ଯୁଦ୍ଧ କଲେ
ଦେବତାଙ୍କ କାର୍ଯ୍ୟ ବୋଲି ଅସୁର ଦଳିଲେ
ଦଶଗ୍ରୀବର ବଂଶ ଯେ ଶତଗ୍ରୀବର ବଂଶ
ଏକମୁଖା ଅସୁର ବଂଶ କଲେ ସେ ବିନାଶ ।
ଏକମୁଖା ଅସୁରଙ୍କୁ ଲକ୍ଷ୍ମଣ ମାଇଲେ
ଶତମୁଖାକୁ ଶତ୍ରୁଘନ ସଂହାରିଲେ ।
ଦଶମୁଖା ସଙ୍ଗରେ ଲଗିଛି ରଘୁନାଥ
ତାଙ୍କୁ ମାଇଲେ ଯେ ଦେବେ ହେବେ ସୁସ୍ଥ ।

ତାହାଙ୍କର ଖବର ଭରତ ଶୁଣିପାରି
ଲକ୍ଷ୍ୟେ ରାଜା ସେନାଣ ଆସିଛି ସଜେକରି ।
କୁମାର ପଦାରେ ସେ ବାରଦନେ ପୁଣ
ପ୍ରବେଶ ହୋଇଲେ ସେ ରଜନୀ ସମଏଣ ।
ସେଠାରେ ସୈନ୍ୟବଳ ତାହାର ରହିଲେ
ଷଡ଼ାନନ ତାହାଙ୍କ ସଙ୍ଗେ କଳି କଲେ ।
ସେହିଠାରୁ ରାମ ଭାଇ ବୁଝାଇ କହିଲେ
ଷଡ଼ାନନ ତାହାଙ୍କ ସଙ୍ଗେ କହିଲେ ।
ସେହିଠାରୁ ରାମଭାଇ ବୁଝାଇ କହିଲେ
ଦେବତାଙ୍କର କାର୍ଯ୍ୟହେବ ହେ ବୋଇଲେ ।
ଷଡ଼ାନନ ବୋଇଲେରେ ମୋ ସଙ୍ଗେ ଯୁଦ୍ଧକର
ପଛେ ଯାଇ ଅସୁରବଳକୁ ତୁମ୍ଭେ ମାର ।
ଆମ୍ଭର ଦୈତ୍ୟବଳ ଅଛନ୍ତି ଭଗତ
ତାଙ୍କ ସକାସେ ତୁମ୍ଭେ ଆମ୍ଭର ବଇରତ ।
ଶୁଣିଣ ଭରତ ବୀର କ୍ରୋଧରେ ଜର୍ଜର
ରଥରୁ ଓହ୍ଲାଇ ବେଗେ ଧଇଲା ସତ୍ୱର ।
କୁମାର କାଳ ଧରଣ ବେଗେ ସେ ଘେନିଗଲା
ରଥର ଖମ୍ବରେ ନେଇ ବାନ୍ଧିଲା ମୋ କଳା ।
ଜକଲେ ତୁମର ଯେ ମୋତେ ସୁମରଇ
ସେଥି ସକାଶେ ମୁହିଁ ତୁମ୍ଭଙ୍କୁ କହିଲଇଁ ।
ଏବେ ଚାଲ ସେଠାରେ କରିବା ରଣ ଘୋର
ରାମ ଭାଇ ଭରତର ପୁରଇବା କାଳ ।
ଏତେକହି ଆମ୍ଭେ ଯେ ସେଠାରୁ ଚାଲିଗଲୁ
କାର୍ତ୍ତିକେଶ୍ୱର ବନ୍ଧନ ଯାଇଣ ଦେଖିଲୁ ।
କ୍ରୋଧରେ ନବଲକ୍ଷ ଡମ୍ବରୁ ବଜାଇଲି
ଶବଦ କରି ମୁଁ ଯେ ଏହାକୁ ବୋଇଲି ।
ଆଜ ଜଟାଧାରୀ ତୋର ହୋଇବ ମରଣ
ତାହାଶୁଣି ଭରତ ଯେ କହିଲା ବଚନ ।
ବୋଇଲେହେ ତ୍ରିଲୋଚନତୋମୁଖେଲଜ୍ଜାନାହିଁ
ଦେବଙ୍କର ସଙ୍ଗରେ କି ବାଦ ଅଛି ତୁମ୍ଭ ।
ତୋହର ସକାଶେରେ ଅସୁରେ ପ୍ରବଳ
ତୋହଠାରୁ ବରରେ ପାଆନ୍ତି ନିଶାଚର ।
ଦେବଙ୍କୁ ରୁନ୍ଧ ନର ମାନଙ୍କେ ଭକ୍ଷନ୍ତି
ତୋତେନେଇ ନିଜପୁରେ ବନ୍ଦରେ ରଖନ୍ତି ।
ଅସୁରଙ୍କ ଆଗରେ ତୁ ନାଚୁ ତାଳି ତାଳି
ସେ କଥା ତୋତେ ସୁଝିଲାଗେହେ ତ୍ରିପୁରାରି

ବାଟରେ ଯିବା ଲୋକ ସଙ୍ଗରେ କଳିକର
ନ ଦେଇ ନ କରରେ ବଳକାରେ ମାର ।
ଏବେ ମୋ ସଙ୍ଗତର କର କଳି ପୁରାଣ ।
ତୁ ମଲେ ଦେବତାଙ୍କର ହୋଇବ କାରଣ ।
ରାବଣ ନ ମରି ତୁମ୍ଭ ମଲ ଆଜ ଆଗ
ପାର୍ବତୀ ଦେଖ ତୋତେ ଖୋଜିବେ ଯୋଗିଯାଗ
ଏତେକହି ବୀର ଧନୁ କରେ ଧରି
ଚଉଦ କୋଟି ବାଣ ମାଇଲେ ବେଗକରି ।
ଚଉଦ କୋଟି ବୃଷଭ ଲମ୍ଫେ ବାଜିଲା
ବାଜିବାରୁ ବୃଷଭ ଯେ ଢଳିଣ ପଡ଼ିଲା ।
ଚଉଦ କୋଟି ବୃଷଭ ଢଳିଣ ପଡ଼ିଲେ
ପାଦଗଣ୍ଡରେ ଜଙ୍ଘା ଆମ୍ଭେହେଲୁ ଯେ ସେଥିରେ
ଦେଖିଣ ଭରତବୀର ବଡ କ୍ରୋଧ ହେଲା
ସୁଦର୍ଶନ ଚକ୍ର ପ୍ରାୟେ ତା ଦେହ ଦିଶିଲା ।
ନବକୋଟି ବାଟୁଳି ପୁରାଇ ଦେଲା ଗୁଡ଼
ନବକୋଟି ଦେବା ଯେ ପଡ଼ିଲେ ମୁହଁ ମାଡ଼ି ।
କୋଟିଏ ଦାଢ଼ରେ ତାର ରୂପ ପ୍ରକାଶିଲା
ଚଉଦ କୋଟି ବାଟୁଳି ପୁଣିହିଁ ମାଇଲା ।
ଚଉଦ କୋଟି ଶିବ ସଙ୍ଗରେ ଘେନପୁଣ
ଧରଣିରେ ଚାଲିଲୁ ଆମ୍ଭେ ଶିବଗଣ ।
ଗଣେଷ ନନ୍ଦନ ତୋର ପଳାଇ ଅଇଲା
ତୋର ଆଗରେ ଆମ୍ଭ ଖବର କହିଲା ।
କପିଳାସ କନ୍ଦରୁ ଗଲା ସିଂହ ଚଢ଼ି
ପଦାରେ ଦେଖିଲା ସମସ୍ତେ ଛନ୍ତି ତଳି ।
ସେଠାରେ ଭ୍ରଥକୁ କହିଲା ଶିତଳବାଣି
ତୋ ବଚନ ଶୁଣିଣ ଶିତଳ ହରମଣି ।
କାର୍ତ୍ତିକେଶ୍ୱରର ବନ୍ଧନ ଫେଡ଼ି ଦେଲା
ରଥରୁ ଓହ୍ଲାଇ ବୀର ଚରଣେ ନମିଲା ।
ନନ୍ଦନ ବୋଲେ ଜନନୀ ଶୁଣ ମୋର ବାଣି
ରଘୁନାଥ ଅଇଲେ ଗୋ ଏହିବାଟେ ପୁଣି ।
ଜନଶ ହୋଇଣ ସେ ମୋତେ ମୁକ୍ତ କଲେ
ପିତାଙ୍କୁ ମୋର ଦେଖି ନମସ୍କାର କଲେ ।
ତାହାର ଭାଇ ଦେଖ ବନ୍ଧନ ମୋତେ କଲା
ପିତା ସଙ୍ଗେ ଚଉଦ କୋଟି ଶିବଙ୍କୁମୋହକଲା
ଚଉଦ କୋଟି ଯେ ବୃଷଭ ପଡ଼ିଲେ
ନବକୋଟି ଦେବୀ ଦେଖ ମୋହଗଲେ ।

ଏକଥା ବୁଝାଇ ମୋତେ କହ ଗୋ ଜନନୀ
ଶ୍ରୀରାମ ହୋଇ କିଏ ଅଛନ୍ତି କହ ପୁଣି ।
ତୁମ୍ଭେ ତାଙ୍କୁ ବୋଲ ସେ ଅଛନ୍ତି ଶତ୍ରୁଘ୍ନ
ବିଷ୍ଣୁଙ୍କର ଆୟୁଧ ଚକ୍ର ଗୋଟି ପୁଣ ।
ଆରେକ ଆୟୁଧ ଯେ ଅଟେ ଶଙ୍ଖ ପୁଣ
ଶଙ୍ଖ ଗୋଟି ଶତ୍ରୁଘ୍ନ ଶୁଣରେ ନନ୍ଦନ ।
ଆରେକ ଆୟୁଧ ଲକ୍ଷ୍ମଣ ଯାର ନାମ
ସେ ଅଟେ ତୋର ପିତା ଅଙ୍ଗରୁ ଜନମ ।
ଅନନ୍ତ ହୋଇଣ ସେ ବିଷ୍ଣୁଙ୍କ ପାଶେ ଥାଇ
ବାସୁଦେବ ଜନ୍ମିଲେ ସେହିତ ଜନ୍ମଇ ।
ଏମନ୍ତେ ଚାରିଭାଇ ହୋଇଛନ୍ତି ଜାତ
ଶ୍ରୀରାମ ଅଛନ୍ତି ତ ଜଗତର ନାଥ ।
ପରମ ବସ୍ତୁକୁ ଯେ ଅଛନ୍ତି ରୂପଧାରୀ
ତୋତେ ମାନ୍ୟକଲେ ସେ ନନ୍ଦନ ବୋଲକରି
ସେ କଥାରେ ଚେତା ତୁରେ ନୋହିଲୁ ନନ୍ଦନ
ଆୟୁଧର ହସ୍ତରେ ପାଇଲୁ ଶାସ୍ତି ପୁଣ ।
ସେ ବୋଇଲେ କୁଳର ଚନ୍ଦ୍ରମା ଅଟୁ ମୋର
ସବାଶିବ ଅଛନ୍ତି ମୋହର ସହୋଦର ।
ତାହାଶୁଣି ବାସୁଦେବ ତୋତେ ଦୟାକଲେ
କିଛି ସେ ନ କହିଣ ତୁନ ଯେ ହେଲେ ।
ଜନନୀଙ୍କର ବଚନେ ଶାନ୍ତ ସେ ନନ୍ଦନ
ଜନନୀ ବୋଇଲେ ତୁ ଭରତକୁ କହ ପୁଣ ।
ପିତା ମୋର ଉଠନ୍ତୁ ଯିବା ନିଜ ପୁର
ମୋ ସକାଶେ ପିତା କେତେ ଦୁଃଖ ପାଇଲ
ମୋର ପୁଚ୍ଛଠାରୁ ଶୁଣିଣ ପାଞ୍ଚଣ୍ଟି ଦେଖା କହି
ସୁନ୍ଦରମାନଙ୍କର ମୋହ ତେଜ ଭରଥ ତୁହି ।
ଶୁଣିଣ ଭରଥବୀର ରଥରୁ ଓହ୍ଲାଇଲା
ତୁମ୍ଭର ଚରଣେ ଆସି ନମସ୍କାର କଲା ।
ବଶିଷ୍ଠଙ୍କୁ ବୋଇଲ ଅମୃତ ବେଗେ ଆଣ
ସୁରଭୀକୁ ବଶିଷ୍ଠ ସୁମରିଲେ ପୁଣ ।
ତତ୍‌କ୍ଷଣେ ସୁରଭି ପ୍ରବେଶ ହୋଇଲା
କାମଧେନୁ ଅମୃତ ସେଠାରେ ବୃଷ୍ଟି କଲା ।
ସକଳ ଜୀବଗଣେ ବୃଷ୍ଟି ସହିତେ
ଚେତା ପାଇ ସମସ୍ତେ ଉଠିଲେ ତୁରିତେ ।
ନବକୋଟି ସେନା ଯେ ଚେତା ପାଇ ପୁଣ
ଚେତା ପାଇ ସର୍ବେ ଉଠିଲେ ଦେବଗଣ ।

ସେଠାରୁ କାମଧେନୁ ସ୍ୱର୍ଗପୁର ଗଲା
ଆମ୍ଭେ ଦେଖି ତୃପତ ହେଲୁ ଶୁଣ ବାଳା ।
ଭରଥକୁ ତୁହି ପୁଣି ଯେ କହିଲୁ ବଚନ
ଅସୁର ମାରି ଜୟ କର ହେ ବାହନ ।
ଭରତ ବୋଇଲେ ସୁଦକ୍ଷା ମୋତେ କର
ଯେତେବେଳେ ଯାହାମୋର ହେବ ଦରକାର
ତେତେବେଳେ ତାହା ଦେବ ହେ ତୁମ୍ଭେ ପୁଣ
ସୁଦକ୍ଷା କରିଥିବ ମୋହଠାରେ ଜାଣ ।
ଅସୁର ମଲେ ଦେବଙ୍କର ଯାଏ ସଲ
ତେବେ ଯଦ ଭଲ ହୋନ୍ତି ସମସ୍ତଙ୍କର ଭଲ ।
ଶୁଣିଣ ସୁଦକ୍ଷା ଦିନା ତୁମ୍ଭେ ତାଙ୍କୁ ହେଲ
ସେ କଥାମାନ ତୁମ୍ଭେ କି ମନରୁ ପାସୋରିଲ
ଆମ୍ଭଙ୍କୁ ଘେନିଣ ତୁମ୍ଭେ ଅଇଲ ଯେ ପୁର
ସକଳ ଦେବ ଗଲେ ଯେ ଯାହା ମନ୍ଦିର ।
ଦେବୀମାନେ ଯେ ଯାହା ପୁରେ ପରବେଶ
ଏଥୁଅନନ୍ତରେ ତୁମ୍ଭେ ଶୁଣ ଦଶରଥ ।
ତମ୍ବୁରୁ ବାଜବାରୁ ରାଜାଗଣେ ଉଠି
ସୈନ୍ୟ ବଳ ଉଠିଲେ ଉଠିଲେ ଘୋଡ଼ା ହସ୍ତୀ
ଗୃହ ନାମେ ସବର କନ୍ଧ ଘେନ ଚେତା
ରାଜାମାନେ ଉଠିଲେ ହୋଇଣ ସଚେତା ।
ଦେଖିଣ ସମସ୍ତେ ସ୍ତମ୍ଭୀଭୂତ ହେଲେ
ଦେବତାଙ୍କୁ ମୋହ ଏହି କଲକ ଯେ ବଳେ
ନୋହିଲେ କି ପଶୁରାମ ଜଣିଣ ଅଇଲେ
ଦୈତ୍ୟମାନଙ୍କୁ ମାରିଣ ଅଜସ୍ର ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରଜନୀ ଶେଷ ହେବାକୁ ଅଛି ଦୁଇ ଘଡ଼ି ।
ଭରଥ ବୋଇଲେ ହେ ସକଳ ସୈନ୍ୟଚାଲ
ଶୁଣିଣ ସଜ ହେଲେ ସବାନ୍ତି ସୈନ୍ୟବଳ ।
ଆଗେ ଋଷକପି ଯେ ପଛେ କନ୍ଧବଳ
ତହିଁ ପଛେ ରାଜାମାନେ ଚଳିଲେ ସଧୀର ।
ତହିଁ ପଛେ ରଥି ସବାନ୍ତି ଚଳିଗଲେ
ଆଗରେ ପଥୁରିଆ ଛେଦକାର ଚଳେ ।
ହଟାରି ବଜାରି ଦୋକାନ ସଙ୍ଗେ ଗଲେ
ପଛରେ ବଶିଷ୍ଠ ଭରଥ ବିଜେକଲେ ।
ଦ୍ୱନମଣି ଅସ୍ତବେଳେ ମିଳ ସିନ୍ଧୁକୂଳେ
କୁଶଶଯ୍ୟା ଯେଉଁଠାରେ ଶ୍ରୀରାମ କରିଥିଲେ ।

ସେଠାରେ ସକଳ ସୈନ୍ୟହେଲେ ପରବେଶ
ଦ୍ୱୀପରୁ ନଦୀଟୋଟି ସାଗରେ ମିଳେତ ।
ସେଠାରୁ ସମସ୍ତେ ତ ସ୍ନାନ ସାରିକଲେ
ରାଜାମାନେ ନିତ୍ୟକର୍ମ ସେଠାରେ ସାରିଲେ
ବଶିଷ୍ଠ ସୁରଭିକି କଲେ ସୁମରଣ
ଅମୃତ ଯୋଗାଡ଼ ଦେଲେ କାମଧେନୁ ପୁଣ ।
ସମସ୍ତେ ଅମୃତ ଯୋଗାଡ଼ ପାନ କଲେ
ଭରତ ବଶିଷ୍ଠ ଯେ ପଛରେ ଭୁଞ୍ଜିଲେ ।
ସମସ୍ତଙ୍କର ମନ ଯେ ହୋଇଲା ହରଷ
ଅମୃତ ଭୋଜନରେ ଆତ୍ମା ଭଲେ ତୋଷ ।
ରାଜାମାନେ ବଡ଼ଆ ତାମ୍ବୁଳ ଲଗି ହେଲେ
ପାତ୍ରମାନେ ପାନଗୁଆ ସୁଖରେ ଭୁଞ୍ଜିଲେ ।
ଆଉ ସର୍ବ ସୈନ୍ୟ କଷା ଫଳ ଖାଇ
ଭରଥ ବଶିଷ୍ଠ କଷାଫଳ ଭୁଞ୍ଜିଲେକ ତହିଁ ।
ଏହି ସମୟରେ ଶୁଣ ଗୋ ଭଗବତୀ
ଶତେ ରାଜା ଯେଜଣ ଚମ୍ପାବତୀର ନୃପତି ।
ଲୋମପାଦ ରାଜା ଯେ ପ୍ରବେଶ ହେଲେ ଯାଇ
ନିଜ ପୁତ୍ର ସଙ୍ଗରେ ଅଛନ୍ତି ଗୋଡ଼ାଇ ।
କୈକେୟୀଙ୍କର ଭାଇ କୌଶଲ୍ୟାଙ୍କର ଭ୍ରାତ
ମାଳାବତୀର ଭ୍ରଥ ଯେ ସୁମିତ୍ରାର ତାତ ।
କଳାବତୀ ପଦ୍ମାବତୀ ଦୁହିଙ୍କର ଭାଇ
ଏମନ୍ତେ ଶତ ରାଜା ପ୍ରବେଶ ହେଲେ ଯାଇ ।
ତାଙ୍କୁ ଦେଖି ଭରଥ ଯେ ନମସ୍କାର ହେଲା
ମାନ୍ୟଧର୍ମ କରଣ ଯେ ତାହାଙ୍କୁ ବୋଇଲା ।
ନିତ୍ୟକର୍ମ ସାର ବେଗେ ଉଭୁର ଘଅରୁ
ତତ୍‌କ୍ଷଣେ ରାଜାମାନେ ଓହ୍ଲାଇ ସେଥିରୁ ।
ନଦୀରେ ପଶିଣ ସର୍ବେ ସ୍ନାନବିଧି କଲେ
ନିତ୍ୟକର୍ମ କରାଇ ଅମୃତ ପାନ କଲେ ।
ହସ୍ତୀ ଘୋଡ଼ା ପାଣିଖାଇ ଖାଇଲେ ଯେ ଦାନା
ରହିଲ ଦେଖିଣ ସିନ୍ଧୁ ଉଚ୍ଛୁଳେ ଦିଗୁଣା ।
ଏଥୁ ଅନନ୍ତରେ ଯେ ରାବଣ ସଙ୍ଗରେ
ଅବିଶ୍ରାମ ସମର କରନ୍ତି ରଘୁବୀରେ ।
ସୁଗ୍ରୀବର ରହିଲା ଗଉଳ ନାମେ କପି
ଭମିଲର ଅଟନ୍ତି ସେହୁ ଭ୍ରାତ ଗୋଟି ।
ତାହାକୁ ବୋଇଲରେ ତୁହି ବେଗେ ଯିବୁ
ନନ୍ଦିଗ୍ରାମ କଟକକୁ ଦେଖିଣ ଆସିବୁ ।

ନମ୍ଭୃଣ ଅମ୍ବରରେ କରନ୍ତି ଉଡ଼ାଉଡ଼
ମୋହକୁ ଗଳ୍ପରେ କେହୁ ନାହାନ୍ତି ବାଡ଼
ତାହାଶୁଣି କପିବାର ବେଗେ ଚଳିଗଲା
ଏକ ଦିନକରେ ସେକୁ ବନ୍ଧକୁ ଡେଇଁଲା ।
ସେ କୂଳରେ ଦେଖିଲା ସେ ସୈନ୍ୟବଳ ପୁଣ
ଋକ୍ଷକପି ରାଜାଗଣ ଅଛନ୍ତି ଜାଣ
ନିକୁମ୍ଭ ବାନର ଦଳ ସେନାପତି ଜାଣ
ତାର ନିକଟରେ ବେଗେ ପ୍ରବେଶ ଯାଇଣ ।
ବୋଇଲା ଏତେ ଦିନଯାଏ କିସ କରୁଥିଲ
ରାମାୟଣ ଯୁଦ୍ଧ ବୋଲି ଜାଣିକ ନ ଥିଲ ।
ସେ ବୋଇଲା ହେଉଛି ନା ଅନେକ ଦୂର ପଥ
ଶ୍ରୀରାମଙ୍କ ଭାଇ ମୋ ସଙ୍ଗେ ହେଲେ ଭେଟ ।
ଏତେକହି ବୀର ସେଠାରୁ ପସ୍ୱର
କେତେ ରାଜାଯେନ ଶ୍ରୀରାମ ଭାଇ ଭଜେକର
ସେନାପତି ବୋଇଲେ ହେ ଲକ୍ଷେ ରାଜାଯେନ
ସନ୍ୟବଳ ହାତୀ ଘୋଡ଼ା ସଙ୍ଗେ ଛନ୍ତି ପୁଣ ।
ତେରଦିନ ହେଲା ସେ ଅଯୋଧ୍ୟାରୁ ଅଇଲେ
ବାଟରେ ସଦାଶିବ ପ୍ରଭୁଙ୍କୁ ଜିଣିଲେ ।
କୁମାର ପବାରେ ରଣ କଲେ ତ୍ରିଲୋଚନ
ଶରବାଣେ ତାହାଙ୍କୁ ସେ ମୋହକଲେ ପୁଣ ।
ପାର୍ବତୀ ଆସିଣ ତାଙ୍କୁ ଜିଆଇଣ ଦେଲେ
ଶ୍ରୀରାମଙ୍କୁ ତାଙ୍କ ଭାଇ ଯୋଦ୍ଧାରେ ଚଳିଲେ ।
ବିରୂପାକ୍ଷ ବୋଇଲେରେ ମୋରସଙ୍ଗେ ଚାଲ
ଶ୍ରୀରାମ ଭାଇ ଭ୍ରଥକୁ ଦେଖିବା ସେହର ।
କହିକରି ସେନାପତି ସଙ୍ଗରେ ଯେନଗଲା
ଭ୍ରଥଙ୍କ ଆଗରେ ନେଇ ପ୍ରବେଶ କଲା ।
ବଶିଷ୍ଠଙ୍କ ସଙ୍ଗେ ଭ୍ରତ ହେଉଛନ୍ତି କଥା
ଏ ସମୟେ ସେନାପତି ଆଖିରେ ଦେଲଦେଖା
ଭରଥ ବୋଲେ କରେ ସେନାପତି ବୀର
ଋକ୍ଷ କପିବଳ କ ଭୁଞ୍ଜିଲେ ଫଳ ମୂଳ ।
ନିକୁମ୍ଭିଲ ବୀର କହେ ସର୍ବେ ହେଲେ ତୋଷ
ଲଙ୍କାର ଖବର ମୋତେ ମିଳୁଛି ସନ୍ଦେଶ ।
ସୁଗ୍ରୀବର ଶଳା ଅଟେ ବିରୂପାକ୍ଷ ବୀର
ବାନରା ମଣ୍ଡଳ ଯେ ଅଟେ ତାର ଘର ।
ବିଭୀଷଣର ସଂଗରେ ସେ ଲଙ୍କାଗଡ଼ ଗଲା
ଶ୍ରୀରାମ ରାବଣ ଯୁଦ୍ଧ ଲଙ୍କାରେ ଏହୁ ଥିଲା ।

ସୁଗ୍ରୀବର ପେଷିଲ ଯେ ନଳ ରାଜ୍ୟ ପୁଣ
କିଷ୍କିନ୍ଧ୍ୟା ଦେଖିବାକୁ ଆସିଛୁ ଏ ଜାଣ ।
ଏହାକୁ ଦେଖି ମୁଁ ଯେ ବାରତା ପଚାରିଲି
ଭିନ୍ନ ଭିନ୍ନ କାହାଣୀ ଏହାଠାରୁ ଶୁଣିଲି ।
ଶୁଣିଣ ଭରଥ ଖାନ୍ତି ବୋଇଲେ ତୁମ୍ଭେ ବସ
ଲଙ୍କାଗଡ଼ ଯୁଦ୍ଧକଥା କହ ହେ ବିଶେଷ ।
ବିରୂପାକ୍ଷ ବୋଲେ ତୁମ୍ଭେ ସାବଧାନେ ଶୁଣ
ରାବଣର ଭାଇ ଅଟେ କୁମ୍ଭକର୍ଣ୍ଣ ନାମ ।
ଅଠର ଖଣ୍ଡା ତାର ଅଛଇ ଯେ ପୁତ୍ର
ତେରଶତ ନାତି ତାର ଶ୍ରୀରାମ କଲେ ହତ ।
ବତିଶ କୁମର ତାର ଶ୍ରୀରାମ ମାଇଲେ
ଭାଇ କୁମ୍ଭକର୍ଣ୍ଣକୁ ନିଶୋଧନ କଲେ ।
ଶ୍ରୀରାମ ଭାଇ ଯେ ଲକ୍ଷ୍ମଣ ନାମେ ବୀର
ରାବଣର ପୁତ୍ର ଅଟେ ଇନ୍ଦ୍ରଜିତ ସାର ।
ତାହାକୁ ଯେ ରାମ ଭାଇ ପକାଇଲେ ହାଣି
ତାର ସଙ୍ଗେ ମଲେ ପୁତ୍ର ଛତିଶ ଯେ ପୁଣି ।
ନାତି ମଲେ ତିନିଶତ ମୋହଠାରୁ ଶୁଣ
ଭାଇ ତାର ବିଭୀଷଣ ପଶିଲା ଶରଣ ।
ରାବଣର ନାତି ଅଟେ ମନ୍ତ୍ରୀ ଯେ ରାବଣ
ମାୟା ଛନ୍ଦ କପଟ ସେ ଜାଣେ ବହୁତ ପୁରାଣ ।
ପଦ୍ମଭୂଅ କରି ଲକ୍ଷ୍ମଣକୁ ହରିନେଲା
ସୁଲଙ୍କାରେ ରାଜା ତାକୁ ରାବଣ କରିଥିଲା ।
ତାଙ୍କ ରାଜ୍ୟରେ ସୁବେଶୀ ଅଛନ୍ତି ଯେ ଗାଢ଼
ପ୍ରଭଞ୍ଜନ ମେଳିଆ ତାକୁ ବଏ ସେହି ଖାଡ଼ ।
ଲକ୍ଷ୍ମଣ ଯେ ହନୁମନ୍ତ ସୁଷେଣ ତିନିଜଣ
ସ୍ତ୍ରୀଙ୍କୁ ନେଇ ଦେବୀ ପୁରେ ରଖିଲେ ରାଜନ ।
ଲକ୍ଷ୍ମଣକୁ ଦେଖି ଦେବୀ ପାଦ ପୂଜା କଲେ
ସୁଷେଣ ବୈଦ୍ୟ ତାହାର ସାରଥି ହୋଇଲେ
ହନୁମନ୍ତକୁ ଯୋଜଣ ଯୁଝିଲେ ସେହୁ ପୁଣ
ପୁତ୍ର ନାତି ସୈନ୍ୟଙ୍କୁ ମାଇଲେ ତାର ଜାଣ ।
ସେଠାରୁ ଏକମୁଖା ରାବଣ ପଳାଇଲା
ଅଜାର ପାଶରେ ଆସି ସମର ସେହୁ କଲା ।
ତାହାକୁ ଲକ୍ଷ୍ମଣ ବୀର ମାଇଲେ ଯେ ପୁଣ
ତାହା ଦେଖି ମାୟା ଭିଆଇଲା ଯେ ରାବଣ ।
ମିତ ତାର ଶତମୁଖା ରାବଣ ଅଛଇ
ତାହଠାକୁ ବାରତା ଯେ ଦଶମୁଖା ଦେଇ ।

ବୋଇଲା ଅଯୋଧ୍ୟା ନଗ୍ରକୁ ବେଗେ ଯିବୁ
ରାମ ଭାଇ ଭରତ ଶତ୍ରୁଘନକୁ ମାରିବୁ ।
ଅଲଙ୍କା ରାବଣ ଶତେମୁଖା ଅଟେ ଜାଣ
ଦଶଗ୍ରୀବ ବଚନରେ ଗଲାକ ବହନ ।
ଅଯୋଧ୍ୟା ଦେଶରେ ଯାଇ ହେଲେ ପ୍ରବେଶ
ନବଲକ୍ଷ ନାତି ତାର ଅଛଇ ବିଶେଷ ।
ଲକ୍ଷେ କୁମର ତାର ବତିଶକୋଟି ରଥ
ବାଶଠି ପଦ୍ମ ତାର ଅଛନ୍ତି ପଦାନ୍ତ ।
ବୟାଳିଶ କୋଟି ତାର ସେନାପତି ଜାଣ
ଏତେବଳ ଘେନିକରି ଗଲା ସେ ରାବଣ ।
ଦେଖି ଦେବଗଣେ ବସି କଲେକ ବିଚାର
ସ୍ୱର୍ଗରୁ ଓହ୍ଲାଇଲେ ଅଯୋଧ୍ୟା ନାମେ ପୁର ।
ଶତ୍ରୁଘନକୁ ଡାକିଣ ସମସ୍ତ ବର ଦେଲେ
ତେତିଶ କୋଟି କଳା ଅଙ୍ଗରେ ପୂରେଇଲେ
ତେତିଶ କୋଟି ଅସ୍ତ୍ର ଦେଲେ ସେ ଯାଚିକରି
ଈଶ୍ୱର ବଜ୍ର ବିଭୂତି ଅଙ୍ଗରେ ଡାରିବୋଳି ।
ଅସୁର ଦଳନ ରଥ ଇନ୍ଦ୍ର ଆଣି ଦେଲା
ଅକ୍ଷୟ ତୋଣ ଧନୁ ଦୁର୍ଗା ସମର୍ପିଲା ।
ଜନମ ଯେ ନୀଳକଣ୍ଠ ସେ ରଥେ ସାରଥି
ଶତ୍ରୁଘନ ସେ ରଥରେ ହୋଇଲେକ ରଥୀ
ଭାଇ ତାଙ୍କର ଭରଥ ଲକ୍ଷେ ରାଜା ଘେନି
ଲଙ୍କାଗଡ଼କୁ ଗମନ କଲ ହେ ତୁମ୍ଭେ ପୁଣି ।
ତୋର ଆସିବାର ତିନିଦିନ ବହିଗଲା
ଶତ୍ରୁଘନ ଶତେମୁଖା ସମର ହୋଇଲା ।
ପାଞ୍ଚଦିନ ଅଯୋଧ୍ୟାରେ ହୋଇଲା ସମର
ରକତ ନଦୀ ବହିଲା ଯୁଝେକ ଓସାର ।
ସୈନ୍ୟବଳ ପୁତ୍ର ନାତି ମାରେ ରାମ ଭାଇ
ଶତେମୁଖା ପଳାଇଲା ତାକୁ ପିଠିଦେଇ ।
ନବକୋଟି ରଥୀ ଘେନି ଶତ୍ରୁଘନ ଗଲା
ପାଞ୍ଚଘଡ଼ି ବେଳଠାରେ ସିନ୍ଧୁ ପାରି ହେଲା ।
ଅଲଙ୍କାଗଡରେ ଯାଇ କଲେ ଯୁଦ୍ଧ ପୁଣ
ତିନିଦିନ ସେହିଠାରେ ହୋଇଲା ସଂଗ୍ରାମ ।
ସେହିଠାରେ ରକତ ନଦୀଏ ବହିଗଲା
ସୈନ୍ୟ ଗୁଡ଼ିକରି ତାକୁ ପଳାଇଲା ସବ ।
ଏକାହୋଇ ଶତେଗ୍ରୀବ ଅଗ୍ନିରେ ପଶିଲା
ଶତ୍ରୁଘନ ପଶିଣ ତା ସଙ୍ଗେ ଯୁଦ୍ଧ କଲା ।

ତାହାଦେଖି ଶତେମୁଖା ପଳାଇଲା ପୁଣ
ଖରଦ୍ୱନ ସେଠାରେ ଯେ କଲେ ରଣ ଜାଣ
ସେଠାରୁ ସୁବର୍ଣ୍ଣ ଲଙ୍କାଗଡ଼କୁ ଅଇଲା
ମିତ ସଙ୍ଗେ ଭେଟ ହୋଇ ରଣ ଯା କଲା ।
ସମୁଦ୍ର ଭିତରେ ଯାଇ ବୁଡ଼ାଇଲା ରଥ
ଶତ୍ରୁଘନ ତାର ତୁଲେ ବୁଡ଼ିଲା ବୁହିତ ।
ସାତଘଡ଼ି ପରିଯନ୍ତେ ଜଳରେ ରଣ କଲେ
ଦୁଇଦଳ ଲୋକ ତାଙ୍କୁ ଚାହିଁଣ ରହିଲେ ।
ରାମ ଲକ୍ଷ୍ମଣ ରାବଣ ରଖିଲେ ପୁଣ ରଣ
ତାହାଙ୍କୁ ସମସ୍ତେ ଚାହିଁଲେ ତୁମ୍ଭେ ଜାଣ ।
ତିନପ୍ରହର ଦିନ ଏଥିରେ ବହିଗଲା
ସାହେର ଭିତରେଦୋହେଁବାହାରୁହେଲେଭଲା
ରଣ ଭୂମିରେ ଆସିଣ ହେଲେ ପରବେଶ
ଶର ବାଡ଼ି ତାକୁ କଲେ ସୁମିତ୍ରାର ସୁତ ।
ତଳ ଉପର ଚାରିପାଖ ଶରରେ ନବାଡ଼ି
ପଳାଇ ଯିବାକୁ ବାଟ ନାହିଁ ଆଜ ତାର ।
ଅନେକ ସମର ସେଠୁ ଦୁଇଘଡ଼ି କଲେ
ଚୌଦ ଘଡ଼ିରେ ଶତ୍ରୁଘନ ତାହାକୁ ମାଇଲେ
ଦୁଇଖଣ୍ଡ କରି ତାକୁ ପକାଇଲେ କାଟି
ଶ୍ରୀରାମ ବୋଇଲେ ମୋର ଭାଇ ବଡ଼ ନକ ।
ଦେବତାଏ ନନ୍ଦଘୋଷ ରଥ ଆଣି ଦେଲେ
ସେ ରଥେ ବସି ଶ୍ରୀରାମ ସମର କଲେ ଭଲେ
ଦୁଇପାଶେ ଦୁଇଭାଇ ମଧ୍ୟରେ ଶ୍ରୀରାମ
ଜଣକୁ ଜଣ ସମର ହୋଇଲା ପ୍ରମାଣ ।
ଦୁଇଦଳ ସୈନ୍ୟ ଚହିଁ ଦେଖୁଚନ୍ତି ରହି
ସୁଗ୍ରୀବରବୋଇଲେ ତୁ ଯାଅରେ ବେଗହୋଇ
କିଷ୍କିନ୍ଧ୍ୟା କଟକ ତୁ ଦେଖିଣ ଆସିବୁ
କାଲି ଦିନ ଦୁଇଘଡ଼ିଠାରେ ଖବର ଆଣିଦେବୁ
ଘଡ଼ିଏ ବେଳ ଥିଲା ମୁଁ ଅଇଲି ସେଠାରୁ
ଦଶଘଡ଼ି ହୋଇଲାଣି ବେଳ ଏହିଠାରୁ ।
ଭରଥ ବୋଲେ ଆମ୍ଭ ରାଜ୍ୟ କେ ରଖିଲା
ଶତ୍ରୁଘନ ଅଇଲେତ ଜନନୀ ଅଇଲା ।
ବିରୁପାକ୍ଷ ବୋଇଲେ ସେ କଥା ଅଛୁ ଜଣା
ଶତ୍ରୁଘନକୁ ପଚାରିଲେ ଲକ୍ଷ୍ମଣ ବୀର ସିନା ।
ଜନନୀ ଘଣ କୁମର କହିଲେ ତାହାଙ୍କୁ
ଯମଦଗ୍ନି ସୁତ ହେ ଜଗିଲେ ଅଯୋଧ୍ୟାକୁ ।

କଳାବତ୍ତି ଜନନୀ ପରଜା ଯାକେ ପୁଣ
ସୁମନ୍ତ କୁମର ଯେ ଭଣ୍ଡାର ରଖେ ଜାଣ ।
ସୈନ୍ୟଦଳ ଚାରିପାଖେ ଜଗିଣ ଅଛନ୍ତି
ତୁମ୍ଭ ସୈନ୍ୟରୁ ଗୋଟିଏ ମରି ଯେ ନାହାନ୍ତି ।
ଏତେକହି ବିରୁପାକ୍ଷ ଉଡ଼ିଗ ମେଲାଇଲା
କିଷ୍କିନ୍ଧ୍ୟା ନଗ୍ରକୁ ସେ ବେଗେ ଚଳିଗଲା ।
ପାଂବଷ୍ଟ ବୋଇଲେ ତୁମ୍ଭେ ଶୁଣ ପଞ୍ଚାନନ
ଭରତ ସେଠାରୁ କିସ କଲେ ପୁଣ ।
ଶିବ ବୋଇଲେ ଦେବୀ ମୋହଠାରୁ ଶୁଣ
ନକୁନ୍ଦି ଲ ସେନାପତିଙ୍କ ଭ୍ରଥ କଲେ ପୁଣ ।
ବୋଇଲେ ସେନାପତିରେ ବେଗ ତୁହିଚଳ
ରିକ୍ଷକପି ସୈନ୍ୟସେନ ସେତୁବନ୍ଧରେ ଚଢ଼ ।
ରଜନୀରେ ଆଜ ଆମ୍ଭେ କରିବା ଗମନ
ବଡ଼ବଡ଼ ଚନ୍ଦ୍ରଧାପ ଆଲୋକ କରେ ପୁଣ ।
ଶୁଣି ରିକ୍ଷ କପି ଆଗରେ ଚମ୍ପିଗଲେ
ଗୁହନାମେ ଶବର ତା ପଛରେ ଚଳିଲେ ।
ରଥିମାନେ ଚହିଁପଛେ ଗମନ କରେ ପୁଣ
ରାଜା ପଦାନ୍ତିମାନେ କଲେକ ଗମନ ।
ଭରଥ ବଶିଷ୍ଠ ସଙ୍ଗେ ଚଳିଗଲେ
କୋଡ଼ିଏ ଯୁଣ ପଥ ରଜନୀରେ ଗଲେ ।
ଦିନରେ ଚଳିଲେ ସେ ବାଳିଶି ଯୁଣ ପୁଣ
ସନ୍ଧ୍ୟାକୁ ସମସ୍ତେ ସାରିଲେ ସ୍ନାହାନ ।
ରାଜା ସାହମାନେ କଲେକ ଭୋଜନ
ପଦାନ୍ତି ରିକ୍ଷକପି ଅମୃତ କଲେ ପାନ ।
ହସ୍ତୀ ଘୋଡ଼ା ଅଶ୍ୱ ଦାନା ପାଣି କଲେ
ସବୁ ଆଣି ସୁରଭି ରଜନୀରେ ଦେଲେ ।
ଭରତ ବଶିଷ୍ଠ କଲେକ ଭୋଜନ
ପାଞ୍ଚ ଘଡ଼ି ରାତରେ ସରିଲା ନିତ୍ୟକର୍ମ ।
ବଡ଼ବଡ଼ ଦୁଳା ଲଗାଇ ବେଗେ ଚଳିଗଲେ
ପଞ୍ଚ ତିରିଶି ଯୁଣ ସେ ରାତରେ ପାରିହେଲେ
ଘଡ଼ିକରେ ସୁବଳଦ୍ୱାରେ ହୋଇଲେ ପ୍ରବେଶ
ନଗରେ ନିତ୍ୟକର୍ମ ସାରିଲେ ବିଶେଷ ।
ସଜମାନ ପୁରଇ ରାଜାଏ ବେଶ ହେଲେ
ଅମୃତ ଭୋଜନ ସାରିଲେକ ଭଲେ ।
ରଥମାନଙ୍କରେ ଚଢ଼ିଲେ ରାଜାଗଣ
ଧନୁଧ ଗୁଣ କେତୁ ଚଢ଼ାନ୍ତି ବହନ ।

ଗନ୍ଧମାଦନ ଶବର ଆଗେ ଚଳଗଲ
ତାର ପଛେ ଋକ୍ଷ ମର୍କଟେ ଗଲେ ତୋଷ ।
ଦେଖିକରି ଶ୍ରୀରାମ ମନରେ ବିଚାରି
ମିତ୍ର ମୋର ଅଇଲେ ମୁଁ ନୟନେ ଦେଖିଲି ।
ପଦାତି ଗଣମାନେ ଗଲେ ରଣ ଭୂମି
ଦେଖିଲେ ଶ୍ରୀରାମ ରାବଣ ସଙ୍ଗେ ପୁଣି ।
ରାମ ରାବଣ ସମର ହେଉଅଛି ଟାଣ
ଶରମାନ ବରଷନ୍ତି କୁହୁଡ଼ି ପ୍ରାଏଣ ।
ରଥ ହସ୍ତୀ ଘୋଡ଼ା ଆଦି ମାନେ ଗଲେ ଚଳି
ରଣ ଭୂମିରେ ଯାଇଁ ଭୂରିତେ ସେ ମିଳି ।
ରଣଭୂଇଁ ଗୋଟା ଯେ ହୋଇଲା ପୂର୍ଣ୍ଣ ସ୍ଥଳ
ଦେଖିକରି ରାବଣ ମନରେ ବିଚାରଇ ।
କେଉଁ ବେଳ ଶ୍ରୀରାମର ଅଇଲେ ସୈନ୍ୟବଳ
ନିଶ୍ଚୟ ମୋହର ଏତ ପୂରଇବେ କାଳ ।
ଏତେ ବିଚାରି ରାବଣ କରେ ଶର ବୃଷ୍ଟି
ଖିନ୍ନଶରେ ଶ୍ରୀରାମ ନିବାରେ ତାହା ବସି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାଜାମାନେ ସଜ କରି ବସିଛନ୍ତି ।
ସୁବଳ ଗିରିରୁ ରାଜାଏ ହୋଇଲେ ବାହାର
ରଣ ଭୂମିରେ ରାଜାଏ ପ୍ରବେଶ ସତ୍ୱର ।
ଲକ୍ଷେକ ରାଜା ରଣ ଭୂମିରେ ଯାଇଁ ମିଳି
ଦେଖିକରି ଶ୍ରୀରାମ ମନରେ ବିଚାରି ।
ବୋଇଲେ ଭରତରତ ଅଟେ ଏହୁ କୃତ୍ୟ
ଲକ୍ଷେ ରାଜା ଆଣି କାହୁଁ ମିଳାଇଲା ଏଥ ।
କେତେବେଳେ ଏହାଙ୍କୁ ବରଣ କରି ଆଣି
ମୋହଠାରେ ମାନ୍ୟ ଯେ କରାଇଛି ଭ୍ରାତ ପୁଣି ।
ଏତେକହି ଶ୍ରୀରାମ ବିନ୍ଧିଲେ ତୀକ୍ଷ୍ଣ ଶର
ଛିଣ୍ଡିଗଲ ଛତ୍ରଦଣ୍ଡ ଗଲାଣି ଏଥର ।
ସାତଦିନରୁ ବେଳ ଦୁଇଘଡ଼ି ପୁଣ
ଲକ୍ଷେରାଜା ରୁଣ୍ଡ ହେଲେ ରଣ ଭୂମିରେଣ ।
ଦେଖିଣ ରଘୁନାଥ ମାରୁତିଙ୍କୁ କହି
ଅଙ୍ଗଦକୁ ଘେନିଣ ଚଳଯା ବେଗେ କହି ।
ରାଜାମାନଙ୍କୁ ଯାଇଣ ବୁଝାଇ କହିବ
ଧନୁଶର ଧରିଣ ରଥରେ ବସିଥିବ ।
ଦେଖୁଥିବେ ରଣ ସେ ନ ମାରିବେ ଶର
ଜଣକୁ ଜଣ ଯୁଦ୍ଧରେ ଅଟଇ ବେଭାର ।

ଏହା ଜଣକୁ ଯେବେରେ ସମସ୍ତେ ମାରିବ
ଅଧର୍ମ ହେବ ପୁଣ ଧର୍ମ ଛାଡ଼ି ଯିବ ।
ତାହାଶୁଣି ମାରୁତି ଅଙ୍ଗଦ ବେଗେ ଗଲେ
ରାଜାମାନଙ୍କୁ ଯାଇଣ ବଚନ କହିଲେ ।
ବୋଇଲେ ହେ ରାଜାମାନେ ଶ୍ରୀରାମ ଆଜ୍ଞାଘେନ
ଧନୁଶର ଧରିଣ ରଥରେ ବସ ପୁଣ
ଶର ବେନ୍ଧି ନ ମାରିବ ରଣ ଦେଖ ପୁଣ
ଏକା ଜଣକୁ ସମସ୍ତେ ମାଇଲେ ହେ ଜାଣ ।
ତୁମ୍ଭେମାନେ ମାଇଲେ ଅଧର୍ମ ପୁଣ ହେବ
ଧର୍ମରେ ଥିଲେ ସିନା ଭଲ କରନ୍ତି ଦେବ ।
ତାହାଶୁଣି ରାଜାମାନେ ରଥରେ ବସିରହି
ପଦାତି ମାନେ ରଣ ଭୂମିକି ଅନାଇ ।
ଶତେ ଯୁଣ ଶରଯନ୍ତ୍ରେ ସୈନ୍ୟ ଯନ୍ତ୍ରାଯନ୍ତ୍ର
ଦେଖନ୍ତି ସମସ୍ତେ ଯେ ସମରକୁ ଶ୍ରୀହାନ୍ତି ।
ଏଥୁ ଅନନ୍ତରେ ଯେ ଭରତ ନାମେ ବୀର
ସମସ୍ତଙ୍କୁ ଡାକି ଦେଇ କଲେକ ବିଚାର ।
ନଗର କୂଳକୁ ସେ ବେଗେହୋଇ ଗଲା
ନିର୍ମଳ ସ୍ଥାନ ଦେଖି ସେ ପୁରେକ ରଚିଲା ।
ସ୍ଥିର ପାଖେ ଟେରା ବାଡ଼ କଲାକ ବହନ
ମଧ୍ୟରେ କନକ ମଣ୍ଡପ କଲା ପୁଣ ।
କନକ ମଣ୍ଡପ ମଧ୍ୟରେ ରତ୍ନ ସିଂହାସନ
ଖଟ ଦୋଳି ବାଙ୍କିଆ ରହିଲା ତହିଁ ପୁଣ ।
ରାଜାଙ୍କର ନିତ୍ୟକର୍ମ ତହିଁରେ ରଖିଲା
ନିଯୋଗିମାନଙ୍କୁ ତହିଁରେ ଜଗାଇଲା ।
ସ୍ଥିର ପାଶେ ଶାଢ଼ୀଘର ରଖିଲା ଯେ ପୁଣ
ଜନନୀର ପାଇଁକ ଶାଢ଼ୀଘର ଜାଣ ।
ଜାନକୀ ରହିବାକୁ ଘରେ ତିଆରିଲା
ସମ୍ପତ୍ତ ପୂର କରି ସେଠାରେ ରଖିଲା ।
ସବୁଘରେ ଖଟଦୋଳି ବାଙ୍କଆ ସେହୁ ରଖି
ବଶିଷ୍ଠ ରହିବା ପାଇଁ ଶାଢ଼ୀ ଘର ସେଠି ।
ପାତ୍ର ମନ୍ତ୍ରୀଙ୍କ ପାଇଁକ ଶାଢ଼ିଘର କଲେ
ସେଠାରୁ ଭରତ ବୀର ରଥରେ ଚଳିଲେ ।
ସୁମନ୍ତ୍ରକୁ ବୋଇଲେ ସେ ରଥ ବେଗେବାହା
ଶ୍ରୀରାମ ଆଗରେ ରଥ ବେଗକରି ରୁହା ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ରଥ ବାହି ନେଲା
ଶ୍ରୀରାମଙ୍କ ପାଶେ ନେଇ ରଥ ଦେଖା କଲା ।

ଶ୍ରୀରାମଙ୍କୁ ଦେଖି ଭରଥ କଲା ନମସ୍କାର
ଜନନୀଙ୍କ ଦେଖି ଉଲଟେ ଭ୍ରଥବୀର ।
ଲକ୍ଷ୍ମଣ ଶତ୍ରୁଘନ ଦୁଇଭାଇ ପୁଣ
ଭରଥଙ୍କୁ ଉଲଟ ସେ ହେଲେ ତତକ୍ଷଣ ।
ଶ୍ରୀରାମଙ୍କ ପ୍ରାୟେ ଦିଶେ ଭ୍ରଥ ନାମେ ବୀର
ଶ୍ୟାମଳ ମୂରତି ରୂପ ଅଟଇ ତାଙ୍କର ।
ଶତ୍ରୁଘନ ଲକ୍ଷ୍ମଣ ଅଟନ୍ତି ଗୋରା ଗୋରା
ଦେଖିଣ ଦଶଗ୍ରୀବ ବିସ୍ମୟରେ ମନେ ଘରା ।
ବିର ଭାଇ ଆସି ଏଥି ହୋଇଲେକ ଠୁଳ
ଚତୁର୍ଦ୍ଧା ମୂରତି ମୁଁ ଦେଖିଲି ଏତକାଳ ।
ଏତେ ବିଚାରି ରାବଣ କରେ ଶର ବୃଷ୍ଟି
ଶ୍ରୀରାମ ନିବାରନ୍ତି କରଣେ ଏକ ଦୃଷ୍ଟି ।
ଭରଥଙ୍କୁ ଠାରି ଯେ ବୋଲେ ରାବଣାରି
ରାବଣର କର ପଟେ ଉଢ଼ ବୋଲି କରି ।
ଦେଖିଣ ଭରଥ ବୀର ରଥ ଚଳଦେଲେ
ରାବଣର ଦକ୍ଷିଣ ପାଶରେ ଯାଇ ହେଲେ ।
ହସ୍ତରେ ଧନୁଧରି ତେଜ ଅନର୍ଗଳ
କୋଟିଏ ସୂର୍ଯ୍ୟର ତେଜ ପ୍ରକାଶେ ତାହାର
ରାବଣକୁ ବୋଇଲେ ନସତ କଥା ହେଉ
ମାରିବା ବେଳେ କଥାଇ ତେଜବନ୍ତ ନୋହୁ
ବ୍ୟାଘ୍ରର ହାବୋଡ଼ୁ କରେ ପଳାଇବ ଛେଳି
ଏମନ୍ତ ବିସ୍ମର କ କରନ୍ତୁ ଦୈତ୍ୟ ବଳୀ ।
ତୋର ପନ୍ତ ମୁଖ ମୂର୍ତ୍ତି ଦେଖିଣ ନ ଥିଲି
ଏତେ ନିଲକ୍ଷଣ ରୂପ ଅଟେରେ ତୋହର ।
ଏହାଶୁଣି ରାବଣ ଯେ ବଚନ କହିଲା
ସ୍ଵରଭାଇ ଠୁଳ ହେଲ ଭଲରେ ହୋଇଲା ।
ଏ ସ୍ଥାନ ବିର ଭାଇରେ ପାଇବ ମରଣ
ଲଙ୍କେ ରାଜା ମାରି ମୁଁ ଦିଶାବଳ ଦେବପୁଣ ।
ହସ୍ତୀ ରଥି ସନ୍ୟବଳ ସମସ୍ତେ ଯିବେ ନାଶ
ଆଜକ ଦେଖିବ ଯାଇ ତୁମ୍ଭର ନିଜ ଦେଶ ।
ଏତେ ବୋଲି ଦଶମୁଖା ସିଂହରଡ଼ ଦେଲା
ରଡ଼ ଶୁଣିବାରୁ ଭ୍ରଥ କ୍ରୋଧଭର ହେଲା ।
ବିଶ୍ୱମୂର୍ତ୍ତି ହୋଇ ଭ୍ରଥ ଉଠିଲେକ ପୁଣ
ଧନୁରେ ଦଶ ବାଟୁଳ ଯୋଚିଲା ନେଇଣ ।
ମନ୍ତ୍ର ପଢ଼ି ଭ୍ରଥ ଯେ ବାଟୁଳ ଛାଡ଼ିଦେଲା
ଦଶ ଲଲାଟରେ ବଜ୍ର ବାଟୁଳ ବସିଲା ।

ବୁଡ଼ିଗଲା ବାଟୁଳ ତା କପାଳରେ ପୁଣ
ମୋହ ଯାଇ ଦଶମୁଖା ପଡ଼ିଲା ରଥେଣ ।
ପୁଷ୍ପକ ବିମାନ ପଛେ ଭ୍ରଥ ଦେଲା ଗୋଡ଼
ଆଉ ଗୋଡ଼ ଅଛୁ ତାର ଆପଣା ରଥର ।
ବଟେଜ କଣ୍ଠ କଟାରିକୁ କାଢ଼ିଲେକ ବେଗେ
ଦଶଶିର କାଟିବାକୁ ଗଲେ ଉଦବେଗେ ।
ଶ୍ରୀରାମ ବୋଇଲେ ଭ୍ରଥ ନ କାଟ ତାର ଶିର
ମୋର ଶତ୍ରୁକୁ ମାରିବ ଦେଖ ତୁମ୍ଭେ ସ୍ଥିର ।
ଶ୍ରୀରାମଙ୍କ ବଚନ ଭରଥ ଶୁଣିଲେ
ଦଶଗ୍ରୀବ ଶିର ଛାଡ଼ି ରଥରେ ବସିଲେ ।
ଧନୁ ଧରି ବୀର ଯେ କ୍ରୋଧରେ ଜର ଜର
ଏ ସମୟେ ଚେତାପାଏ ଦଶଗ୍ରୀବ ବୀର ।
ଦଶଧାର ହୋଇଣ ଯେ ରକ୍ତ ବହିଆସେ
ଦଶଧନୁ ରାବଣ ସଚେତରେ ବସେ ।
କ୍ରୋଧରେ ଦଶଶିର ବଢ଼ାଇଲା କାୟେ
ଆକାଶରେ ତାର ଉଥିଳା ଯାଇ ହୋଏ ।
ଦେଖିଣ ଶ୍ରୀରାମ ପୁଣ ବିଶ୍ୱରୂପ ହେଲେ
ଆକାଶରେ ଶିର ଯେ ମୁକୁଟ ଲଗାଇଲେ ।
ଚନ୍ଦ୍ର ସୂର୍ଯ୍ୟ ନୟନ ଯେ ଶ୍ରୀରାମର ପୁଣ
ଚତୁର୍ଭୁଜ ପ୍ରକାଶ କଲେ ଦେବ ଜାଣ ।
ତାହାଦେଖି ରାବଣ ସାମାନ୍ୟ ରୂପ ହେଲା
ଶ୍ରୀରାମ ସାମାନ୍ୟ ରୂପ ନୟନେ ଦେଖିଲା ।
ଦଶଭୁଜେ ଦଶ ଧନୁ ଧରେ ଯେ ରାବଣ
କୋଟି କୋଟି ଶର ଯେ ବିନ୍ଧଇ ତତକ୍ଷଣ ।
ଶ୍ରୀରାମ ଛେଦନ୍ତି ତାହ ଅନୁଜ ଶରକର
ବେଳୁ ବେଳ ସମର କରେ ଦତ୍ୟବଳ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଲଙ୍କେ ରାଜା ଆଣି ଭ୍ରଥ ଆସିଲାକ ପୁଣ ।
ଲଙ୍କାଗଡ଼ ରଣରେ ପ୍ରବେଶ ଆସି ହେଲା
ଏକଥା ଜାନକୀଙ୍କି ବାରତା କିଏ ଦେଲା ।
ଈଶ୍ୱର ବୋଇଲେ ଯୁଦ୍ଧ ହେଉଛି ବଡ଼ ଟାଣ
ଶ୍ରୀରାମ ତିନଭାଇ ତିନପାଟଖ ପୁଣ ।
ରୁକ୍ଷକପି ଭାଲୁବଳ ଅଛନ୍ତି ଯେ ପୁରି
ନବକୋଟି ରଥି ଯେ ରଥରେ ବସିକରି ।
ଲଙ୍କେ ନୃପଙ୍କ ସଙ୍ଗେ ସନ୍ୟବଳ ପୁଣ
ହସ୍ତୀଘୋଡ଼ା ଗୁହ ନାମେ ଶବର ଜାଣ ।

ନେମପାଦ ରାଜାଙ୍କର ନଉଏ ନନ୍ଦନ
ମାମୁଁ ଅଜା ଶ୍ରୀରାମର ବନ୍ଧୁବର୍ଗ ଜାଣ ।
ସମସ୍ତେ ଅଛନ୍ତି ରଣ ଭୂମିର ପଦାରେ
ଶ୍ରୀରାମ ରାବଣ ଯୁଦ୍ଧ କରନ୍ତି ଏକାରେ ।
ଦେଖଣାହାରୀ ପ୍ରାଏ ଦେଖନ୍ତି ସର୍ବେ ଜାଣ
ଏହି ସମଏ ନଳ ଗଲା ଗୁପତେଣ ।
ଅଶୋକ ବନରେ ଯାଇଁ ପ୍ରବେଶ ହୋଇଲା
ଜନନୀଙ୍କ ଚରଣ ତଳରେ ଓଳଗିଲା ।
ଜାନକୀ ବୋଇଲେ ତୁରେ ସେନାପତି ଶୁଣ
କସ କୁହ ବାରତା ଆଣି ଅଛୁ ଜାଣ ।
ରାବଣକୁ ଶ୍ରୀରାମ କଲେ କି ବିନାଶ
ନୋହିଲେ ତାଙ୍କର ଯୁଦ୍ଧ ହେଲା କି ବିଶେଷ ।
ନଳବୋଲେ ମଥାଏ ଶୁଣ ତୁ ଠାକୁରାଣୀ
ବଡ଼ ବିଅର ଭରତ ଆସିଛନ୍ତି ପୁଣି ।
ଲକ୍ଷେ ନୃପତି ସଙ୍ଗରେ ଆସିଛନ୍ତି ଘେନି
ବଶିଷ୍ଠ ସୁମନ୍ତ ହସ୍ତୀ ସୈନ୍ୟବଳ ଶୁଣି ।
ଭରତ ଭାଇ ଏକଠାରେ ହୋଇଲେଣି ଠୁଳ
ଶତେ ଯୋଜନ ପର୍ଯ୍ୟନ୍ତ ରହିଛନ୍ତି ବଳ ।
ସପତ ଦିନ ବେଳେ ଦୁଇ ଯେ ପ୍ରହର
କାହାର ଆହାର ତ ନାହିଁ ଏତେ ବେଳ ।
ଏତେକହି ନଳ ଯେ ଓଳଗ ମେଲାଇଲା
ଜାନକୀଙ୍କି କହିକରି ସେଠାରୁ ଅଇଲା ।
ରଣ ଭୂମିରେ ଆସି ହେଲା ପରବେଶ
ଏଥୁ ଅନନ୍ତରେ ଦେବୀ ଶୁଣ କଥାରସ ।
ମନ୍ଦୋଦରୀର ପୁରକୁ ଚର ବେଗ କଲା
ରାବଣର ରାଣୀ ଆଗେ ଯାଇଣ କହିଲା ।
ବୋଇଲା ଗୋ ପାଟରାଣୀ ଶୁଣ ମୋ ବଚନ
ଶ୍ରୀରାମଙ୍କର ଭାଇ ଯେ ଶତ୍ରୁଘନ ପୁଣ ।
କାଲି ଶତେମୁଖାକୁ ମାଇଲେ ସେ ରଗେ
ଆଜ ଆରମ୍ଭଇ ତାର ଆସିଛି ସରାଗେ
ଲକ୍ଷେରାଜା ସଙ୍ଗେ ଘେନି ରଣେ ପରବେଶ
ହସ୍ତୀଘୋଡ଼ା ସୈନ୍ୟବଳ ଅଛନ୍ତି ବହୁତ ।
ଶତେଯୁଣ ପଞ୍ଚଯନ୍ତେ ହୋଇଛନ୍ତି ସ୍ଥିର
ଶ୍ରୀରାମ ସଙ୍ଗେ ତୋ ସ୍ୱାମୀ ସମର କରଇ ।
ଏତେକହି ଚାର ଯେ ବହନ ହୋଇଗଲା
ରଣଭୂମିରେ ଯାଇଁ ପ୍ରବେଶ ହୋଇଲା ।

ମନ୍ଦୋଦରୀ ବୋଲେ ମଲେ ମୋର ସ୍ୱାମୀ
ହସ୍ତର ଚୂଡ଼ି ମାନତ ମଳିନ ଦିଶେ ପୁଣି ।
ବିରୂପାକ୍ଷ କପି ଯେ କଷ୍କିନ୍ଧ୍ୟାକୁ ଗଲା
ତାରାଠାରେ ଭେଟ ହୋଇ ଲେଉଟି ଅଇଲା
ସୁଗ୍ରୀବ ଆଗରେ କହିଲା ବାରତା
ରାଜ୍ୟର ଜନପ୍ରଜା କାହାରି ନାହିଁ ଚିନ୍ତା ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଦିବସ ଶେଷରେ ରଜନୀ ଘଡ଼ି ଚାରି ।
ଦୁଇଜଣ ସେଥିରେ ଯେ କରନ୍ତି ସମର
ରଜନୀ ଶେଷ ହେଲା ଉଦଏ ଭାସ୍କର ।
ଏମନ୍ତ ସପ୍ତଦିନ ସପ୍ତରାତ୍ର ବହିଗଲା
ରାମ ରାବଣର ଗୋ ବହୁତ ଯୁଦ୍ଧ ହେଲା ।
ରାବଣକୁ ପ୍ରଶଂସା କରନ୍ତି ଦେବ ସୁର
ମହାଷର୍ଦ୍ଦି ଅଟ ତୁମ୍ଭେ ବାବୁରେ ଦୁଇବୀର ।
ପୁଣି ଯୁଦ୍ଧ କରନ୍ତି ଯେ ଅନେକ ପ୍ରକାରେ
ଶକ୍ତି ଚିରାଳ ନେତ ଉଡ଼ଇ ଫରହରେ ।
ରଥବର ଉଡ଼ାଇଲେ ପକ୍ଷିପ୍ରାଏ ଜାଣି
ସୂର୍ଯ୍ୟମଣ୍ଡଳୁ ହୋଇଣ ଖସିବେ ଧରଣୀ ।
ନାରଚ ବନ୍ଧବାରେ ଯେ ନ ଦିଶଇ ରଥ
ମେଘଙ୍କ ଉହାଡେ ଯେହ୍ନେ ଚନ୍ଦ୍ରମା ଆବଚ୍ୟ
ସ୍ତମ୍ଭୀଭୂତ ହୋଇ ଯେ ଦେଖନ୍ତି ସର୍ବଜନ
କୋପରେ ତିନବାଣ ମାରେ ଦଶାନନ ।
ଦେଖିକରି ଶ୍ରୀରାମ ମଧ୍ୟମା ଶର ପେଶି
ଦୁଇଶର କାଟି ତାଳ ତଳେ ପଡ଼େ ଆସି ।
ଦୁଇରଥୀ ଘୋଡ଼ାଙ୍କ ଉପରେ ବଶୋଇଲେ
ବାବୁସେହି ଘୋଡ଼ାଙ୍କର କିଛି ନ ହୋଇଲେ
ଦେଖି ଲଙ୍କପତି ଯେ ପେଶଇ ଅଗ୍ନିଶର
ସେ ଅଗ୍ନି ଦହିବକ ଜଗତ ସଂସାର ।
ନାରଜ ଆସନ୍ତେଣ ରାମଚନ୍ଦ୍ର ଜାଣି
ଜଳଧାର ଶର ଶ୍ରୀରାମ ବିନ୍ଧିଲେକ ଟାଣି ।
ଅଗ୍ନି ଲିଭିଗଲା ସେ ଜଳଧାର ପାଇ
ସହସ୍ରେ ଶର ପୁଣ ପେଶେ ଲଙ୍କସାଇଁ ।
ପ୍ରତିଅସ୍ତ୍ର କରି ଶ୍ରୀରାମ ଛେଦିଲେକ ତାହା
ଅପୂର୍ବ ସମର ଯେ କଲା ବଂଶବାହା ।
ଧନୁର୍ବେଦ ପଢ଼ି ଯହୁଁ ଠାଣି ମାଣିରହି
ମନ୍ତ୍ର ସୁମରିଣ ଶରକୁ ଯା ଯା ବୋଲି କହି ।

ରାଗରେ ଶରୀର ତାର କମ୍ପେ ଥରହର
ଶ୍ରୀରାମ ଦେଖିଣ ଯେ କ୍ରୋଧେ ଜରଜର ।
ଦୁଇଷଣ୍ଢିଙ୍କର ସମର ବର୍ଣ୍ଣାବର୍ଣ୍ଣି
ଏଡ଼େବଡ଼ ଘୋର ଯୁଦ୍ଧ ତାହାକୁ ନଅଣ୍ଟି ।
ଶର କଷଣି ଛୁଟନ୍ତେ ବହୁଛି ରୁଧିର
ଦୁହିଙ୍କର ଶରୀର ଉକଟେ ଜର ଜର ।
ଗଗନେ ଘୁରେ ଅସ୍ତ୍ରଙ୍କର ଆଘାତ
ଗଗନେ ପାଞ୍ଚ ଘଡ଼ି ଯେ ଝଳକର ନାଥ ।
ଦୁଇଦଳ ସୈନ୍ୟକୁ ଯେ ନ ଦିଶେ ପୁଣ କହୁ
ଅସ୍ତ୍ରଙ୍କର ତେଜ କି ଆଶ୍ଚର୍ଯ୍ୟ ଉଠି ଅଛୁ ।
ରାବଣ ବୋଲନ୍ତେ ମେଘଠାରେ ଜାଣିତ ନପାତ
ଯେତେବେଳେ ସୂର୍ଯ୍ୟ ମେରୁ ଉଦୟାନ୍ତକୁ ଯାନ
ସେତେବେଳେ ଅରୁଣ ପ୍ରକାଶକୁ ଦେନ
ଦିବସ ରାତ୍ରକେ ଦେବ ନୁହଇ ହାଟେଶନ୍ତି
ସହସ୍ରଙ୍କ ତେଜରେ ହୀନବୀର୍ଯ୍ୟ ରବି
ଗ୍ରହଙ୍କର ରାଜାଏ ଦେଖିଲେ ପର ଛବି ।
ରଜନୀରେ ପ୍ରକାଶ ହୋନ୍ତି ଚନ୍ଦ୍ର ତାରା
ଶହସ୍ରଙ୍କର ତେଜ ଦିଶେ ତେଜେ ତାରା ।
ନିଶିଦିବସ ଜେ ତେଣୁ କାରଣ ନପାର
ଅପୂର୍ବ ଯୁଦ୍ଧ ରାମ ରାବଣ ସଙ୍ଗେ କର ।
ଅଷ୍ଟ ସେନାପତି ଆଉ ପଚାଶ ଯୂଥପତି
ଲକ୍ଷ୍ମଣ ସୁଗ୍ରୀବ ବିଭୀଷଣ ଯେ ପ୍ରଭୃତି ।
ଶତ୍ରୁଘନର ରଥ ଯେ ନବକୋଟି ରଥି
ଲକ୍ଷେରାଜା ସୈନ୍ୟବଳ ସମସ୍ତେ ସେଥି ଛନ୍ତି ।
ଗୁହ ନାମେ ଶବର ଯେ ବଶିଷ୍ଠ ଋଷି ପୁଣ
ସେନାପତି ରଥି ଯେ ପଦାତି ବଳ ଜାଣ ।
ଋକ୍ଷକପି କଳୁ ଆଉ ହଟାରି ବଜାର
ଲଙ୍କାଗଡ଼େ ଯେତେକ ଦେଖନ୍ତି ନରନାରୀ ।
ଶ୍ରୀରାମଙ୍କୁ ପ୍ରଶଂସା ସେ କରନ୍ତି ସକଳ
ଯମ୍ବେବ ବୋଲନ୍ତି ସାଧୁ ଦଶରଥ ବାଳ ।
ଧନ୍ୟ ସେ କୌଶଲ୍ୟା ଧରିଲେ ତୋତେ କୋଳ
ନାରାୟଣ ଦର୍ଶନ ପାଇଲୁ ଏତେବେଳେ ।
ସୁଶିକ୍ଷଇ ଶାରବର ଅଟ ହେ ଶାରମଣି
ଜିନ ଭାଇ ଭରତ ଯେ ସଦାଶିବ ଜାଣି ।
ମଧ୍ୟମ ଭାଇ ଲକ୍ଷ୍ମଣ ବଳରେ ବଳୀଆର
ଇନ୍ଦ୍ରଜିତ ନାମେଣ ମାଇଲା ମହାବୀର ।

ଏକମୁଖା ରାବଣକୁ ହାଣି ପକାଇଲା
ଶତ୍ରୁଘନ ବୀର ତ ସବୁନ୍ତୁଁ ଅଟେ ଭୋରା ।
ଶତେମୁଖା ରାବଣକୁ ଦୁଇଖଣ୍ଡ କଲା
ଅଗ୍ନିରେ ପଶିଣ ସେ ଜନକରେ ଯୁଦ୍ଧକଲା ।
କୁମ୍ଭର ଆଜ୍ଞାରେ ତିନଭାଇ ହୋଇ ସ୍ଥିର
ଏକଆତ୍ମା ପ୍ରାୟେ ଜଣାଗଲା ତ କୁମ୍ଭର ।
ଏତେକ ବୋଲି ମନରେ ବିଚାର କରନ୍ତି
କାନର ଯୋଦ୍ଧା ଭଲା ମନରେ ଭାବନ୍ତି ।
କୁମ୍ଭର ପ୍ରାୟେ ଯେବେରେ ଷହୀ ସଙ୍ଗେ ଯୁଝି
ତେବେ ପିନା ସଂଗ୍ରାମ କଲା ପ୍ରାୟେ ବୁଝି ।
କପ୍ଳବ ସରିଗଲାଣି ଏବେ ହେବ ଜୟ
ମନ୍ଦୀବର ଭାଳଣି ଜାଣିଲେ ରଘୁଶୀର୍ଯ୍ୟ ।
ସର୍ବାଙ୍ଗ ପୁରୁଷ ଯେ ହସନ୍ତି ମନେ ମନେ
ଏହି ସମୟରେ ଯେ ରାସ୍ତେ କଣାନନେ ।
ଘୋଡ଼ଙ୍କର ଉପରକୁ ସନ୍ଧାନ କଲା ଶର
ଅଶ୍ୱସ୍ତ୍ର ନାମରେ ଶର ଛନ୍ଦେ ଦୈତ୍ୟବୀର ।
ଅନେକ ବାଣ ବୀର ଯେ ମାତଳିକ ମାରି
ଷୋଳ ଘୋଡ଼ାକୁ ତହୁଁ ମାଇଲା ରଥ ତୋଳି
ବାଣ ଆସିବାରୁ ସେ ଜଗତ କ୍ଷୋଭପାଏ
ସ୍ୱର୍ଗରେ ତରସ୍ତ ଯେ ହେଲେ ଦେବତାଏ ।
ଆକୁଳରେ ଶ୍ରୀରାମ ଉପରକୁ ଚାହିଁ
ଦାଶରଥିଙ୍କି ଚାହିଁଣ ସୁରଗଣେ କହି ।
ହେ ରାମ ତୁମ୍ଭ ନାରାଜେ ରାବଣେଶ୍ୱର ମନ୍ତୁ
ଚଉଦ ଭୁବନରୁ ଉତପାତ ସନ୍ତୁ ।
ଶୁଣିଲେ ରଘୁନାଥ ବିବୁଧଙ୍କର ବାଣୀ
ରାବଣର ଶସ୍ତ୍ରମାନ ପକାଇଲେ ହାଣି ।
ଦେଖିଣ ଦଶଶିର ଛନ୍ଦେ ଘୋଷଣଶର
ଶ୍ରୀରାମ ଛେଦିଲେ ତା କଞ୍ଚିତ ପ୍ରକାର ।
ବାବଲ ବାଣ ପୁଣି ଛନ୍ଦିଲେ ରଘୁନାଥ
ହେଲେଣ ନିବାରିଲା ମନ୍ଦୋଦରୀ କାନ୍ତ ।
ଦେଖିଣ ଶ୍ରୀରାମଚନ୍ଦ୍ର କୋପରେ ଗରୁତର
ରାବଣକୁ କୋଟିଏ ଶର କଲେକ ପ୍ରହାର ।
ପୁଣି ମନ୍ତ୍ରେକ ଶର ଛନ୍ଦିଲେ ରଘୁନାଥ
ହେଲେଣ ନିବାରିଲା ତା ମନ୍ଦୋଦରୀ କାନ୍ତ ।
ପୁଣି ମନ୍ତ୍ରେକ ଶର ଛନ୍ଦିଲେ ରଘୁପତି
ରାକ୍ଷସ ବଳ ତାର ପଡ଼ିଲେ ମହୀ ଲୋଟି ।

ପୁଣି ଲକ୍ଷେ ବାଣ ଯେ ବିନ୍ଧିଲେ ରାବଣାରି
ଛେଦିଲା ରାବଣ ତା କଞ୍ଚିତ ଶର କରି ।
ପୁଣିହିଁ ଅଯୁତେ ପେଶିଲେ କୋପଭରେ
ସେ ବାଣକୁ ଛେଦିଲା ଭୂରତେ ଦଶଶିରେ ।
ସହସ୍ରେକ ବାଣ ଯେ ପେଶିଲେ ଦାଶରଥି
ସେ ଶର ଛେଦିଲା ଯେ ଦଶଙ୍କା ସନ୍ତତି ।
ଏମନ୍ତ ମହାଘୋର ଅବିଶ୍ରାମ ଯୁଦ୍ଧ
ଲେଖାଲେଖି ନାହିଁ ଯୁଦ୍ଧର ପରିବନ୍ଧ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶ୍ବର
ପାଞ୍ଚଘଡ଼ି ଆସିତ ହୋଇଲାଣି ବେଳ ।
ଶ୍ରୀରାମ ଯେ ଯୁଦ୍ଧରେ ହୋଇଲେ କେତେଧନ
ମନେ ବିସ୍ମରନ୍ତି କେତେ ନାଚିଲେ କବନ୍ଧ ।
ଏହା ମୋତେ ସଞ୍ଚପି କହ ହେ ଦିଗବାସ
ତେବେ ମୋର ମନ ଯେ ହୋଇବ ସନ୍ତୋଷ
କେତେ ସନ୍ୟବଳ କେତେ ଘୋଡ଼ାହସ୍ତୀ
ଏହା ମୋତେ ସଞ୍ଚପି କହ ଦେବକାଶୀ ।
ଏତେକହି ପାର୍ବତୀ ପଡ଼ିଲେ ପାଦତଳେ
ଉଠାଇ ତ୍ରିଲୋଚନ ଧଇଲେ ତାଙ୍କୁ କୋଳେ
ହସିଣ ସ୍ନେହଭରେ ମୁଖେ ଚୁମ୍ବନ ଦେଲେ
ଯେଣେ ତୋର ବାଞ୍ଛା ଶୁଣ ହେ ବୋଇଲେ
ସାମବେଦ ବାଣୀ ଏ ବିଷ୍ଣୁ ପୁରାଣ
ସଂକ୍ଷେପ କରଣ କେହ୍ନୁ କହିତ ଭର୍ଜନ ।
ତୁମ୍ଭେ ଏବେ ଶୁଣିବାକୁ ମନକଲ ସ୍ପୃହା
ମୁହିଁ ତେଣୁ ତୋର ଆଗେ କହିବି ଗୋପ୍ରିୟା
ଶୁଣ ସଙ୍ଗାକୁଣୀ ଗୋ ରାମ ରାବଣ ଯୁଦ୍ଧ କଥା
ଶର ମାରିବା କୋବନ୍ଧ ନାଚିବା ବ୍ୟବସ୍ଥା ।
ଦଶ ଦଶ ହେଲେ ଯେ ଶତେକ ବୋଲିକହି
ଦଶ ଶତେ ହେଲେ ଯେ ସହସ୍ରେ ବୋଲାଇ
ସହସ୍ରେ ଦଶ ସହସ୍ରେ ଅଯୁତେ ଲେଖା
ଦଶ ଅଯୁତେ ଯେ ଲକ୍ଷେକ ହୋଏ ଯୋଖା
ଦଶ ଲକ୍ଷରେ ଗୋ ନେଥ ବୋଲି କହି
ଦଶ ନେଥ ହୋଇଲେ ଗୋ କୋଟିଏ ହୁଅଇ
ଏମନ୍ତେ ଦଶକୋଟି ପଡ଼ନ୍ତି ଯେବେ ରଣେ
କୋବନ୍ଧ ଗୋଟିଏକ ନାଚନ୍ତି ଯେ ରଣେ ।
ଦଶକୋଟି କବନ୍ଧ ଯେ ରଣ ମଧ୍ୟେ ହେଇଁ
ଖେଚରୀ କୋଟିଏ ତେବେ ନୃତ୍ୟ ଯେ କରଇ

ଏମନ୍ତେ ଖେଚରୀ ଯେ ଦଶ କୋଟିଏ ସ୍ଥାନେ
କୋଟିଏ ନାଚନ୍ତି ଦେବୀ ଶୁଣ ସାବଧାନେ ।
ଦଶକୋଟି ଦେବୀ ତହିଁ ନାଚନ୍ତି ଯେ ପୁଣ
କୋଟିଏ ମୁଣ୍ଡ ହସନ୍ତି ଶୁଣ ତୁ ପ୍ରମାଣ ।
ଦଶକୋଟି ମୁଣ୍ଡ ଯେବେ ହସନ୍ତି ରଣରେ
ଶ୍ରୀରାମ ଧନୁ ଘଣ୍ଟି ଗୋଟିଏ ସ୍ବରକରେ ।
ଏମନ୍ତେ ସାତ ଘଣ୍ଟି ଯୋ କୋଦଣ୍ଡରେ ଥିଲା
ସପତ ରାତ୍ର ସପତ ଦିବସ ରହିଲା ।
ଶୁଣ ଗୋ ପାର୍ବତୀ ତମ୍ଭେ ରାମାୟଣ ଯୁଦ୍ଧ
ଲୀଳା ଯୁଦ୍ଧେ ରାମ ରାବଣକୁ କଲେ ସାଧ ।
ସାତଦିନେ ତିନ ଘଣ୍ଟି ତୁଟିଲା ତାଙ୍କର
ଏମନ୍ତ ପ୍ରକାରେ ଯେ ପ୍ରମାଣ ଅଟେ ସାର ।
ଏଥୁ ଅନନ୍ତରେ ଗୋ ଶୁଣ କଶ ସାତ
ଶୁଣ ଏକ ମନେ ଗୋ ହେମବନ୍ତ ଦୁହିତା ।
ଏମନ୍ତେ ମହାଘୋର ଯେ ହୋଇଲା ସମର
ଲେଖାରେ ଯେ ସନ୍ୟ ତାର ପଡ଼ିଲେ ଅପାର
ପଞ୍ଚାଶ କୋଟି ଯେ ତାର ସେନାପତି ସାର
ବତିଶ କୋଟି ମଲେ ଯେ ସେଥିରୁ ତାହାର ।
ବାସ୍ତବ ପଦ୍ମ ଯେ ଅଷ୍ଟନ୍ତ ପଦାତି
ବୟାଳିଶ ପଦ୍ମ ମଲେ ପୁଣ ଗୋ ପାର୍ବତୀ ।
ବାଇକୋଟି ତାର ରଥ ଯେ ପ୍ରମାଣ
ସେଥିରୁ ଆଠ କୋଟି ହେଲେ କ୍ଷଏ ଜାଣ ।
ହସ୍ତୀ ତାର ଅଠର ଲକ୍ଷ୍ୟ ପୁଣ ଥିଲା
ତେର ଲକ୍ଷ୍ୟ ହସ୍ତୀ ତାର ପୁଣ କ୍ଷଏ ଗଲା ।
ତିନ କୋଟି ଅଶ୍ବ ଯେ ତିନ କୋଟି ଖର
ଦୁଇ ଦୁଇ କୋଟି ମଲେ ଶୁଣ ତୁ ନକର ।
ବୃଷ ଲକ୍ଷ୍ୟ ସାରେଣି ଯେ ଓଟ ଥିଲେ ପୁଣ
ତିନ ଲକ୍ଷ୍ୟ ସେଥିରୁ ମଲେ ତୁମ୍ଭେ ଶୁଣ ।
ତେର ଶତ ନାତିରୁ ଗୋଟିଏ ବଞ୍ଚିଲା
ବାସ୍ତବ ପୁତ୍ରରୁ ପ୍ରତ୍ୟେକ ରହିଲା ।
ଶହେ ପୁତ୍ରରୁ ଗୋଟିଏ ପୁଣ ରହେ
ଲକ୍ଷ୍ୟେ ପୁତ୍ରସ ବୋହୁରୁ ରହିଲେକ ଶହେ ।
ଶତେକ ବଧୂ ତାହା ରହିଲେ ପ୍ରମାଣ
ନାତୁଣୀ ବଧରୁ ଶତେ ରହିଲେକ ଜାଣ ।
ଆଜ ସର୍ବେ ଜଳରେ ଝାସ ଦେଇ ମଲେ
ନାଶ ହୁଅ ବୋଲି ରାବଣ କହିଲେ ।

ବାଦ୍ୟକାର ତାହାଙ୍କର ଯେ ଅଠର ଅକ୍ଷୌହିଣୀ
ଚଉଦ କୋଟି ମଲେ ଶୁଣ ତୁ ସୁରମଣି ।
ତେବେ ତିନି ଘଣ୍ଟା ଯେ ବାଜିଲା ଶ୍ରୀରାମର
ସ୍ୱର୍ଗର ଦେବତାଏ ହରଷ ମନର ।
ପାର୍ବତୀ ବୋଇଲେ ତାର ତନ ଯେ ଖଇ ଭୁଅ
ତାର କେତେ ଘଣ୍ଟି ବାଜିଲା କହ ସତ ।
ଈଶ୍ୱର ବୋଇଲେ ଯେ ଆମ୍ଭକୁ ଜିଣିଲା
ନବଘଣ୍ଟି ବଜାଇ ଭରତ ଚଳିଗଲା ।
ନବ କୋଟି ଡମ୍ବରୁ ବାଜେ ସେତୁ ହେଲେ
ଚଉଦ କୋଟି ଶିବ ଯେ ମୋହରେ ପଡ଼ିଲେ
ଚଉଦ କୋଟି ଯେ ବୃଷଭ ପଡ଼େ ତଳ
ତେବେ ସେ ନବ ଘଣ୍ଟୀ ବଜାଏ ସାର ବଳ ।
ପାର୍ବତୀ ବୋଇଲେ ତାର ତନଯେ ଲକ୍ଷ୍ମଣ
ଇନ୍ଦ୍ରଜିତ ମନ୍ତ୍ରୀ ରାବଣକୁ ମାରେ ପୁଣ ।
କେତେକ ସନ୍ୟହଳ ସେତୁ ନାଶ କଲା
କେତେ ଘଣ୍ଟୀ ରଣରେ ଶବଦ ତାର ହେଲା
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ନଅଶ କୁମାର ଇନ୍ଦ୍ରଜିତର ଯେ ପୁଣ ।
ସମସ୍ତଙ୍କୁ ମାଇଲେ ଲକ୍ଷ୍ମଣ ନାମେ ସାର
ତେଣୁ ସେ ସନ୍ଦେହ ଲାଗଇ ମୋହର ।
ନଉଏ ନାତି ତାର ବଜାଣିଲେ ପୁଣି
ଇନ୍ଦ୍ରଜିତକୁ ସେ ପକାଇଲେ ହାଣି ।
ତାହାର କୁମର ଏକ ମୁଖା ଯେ ରାବଣ
ସୁଲଙ୍କା ଗଡ଼ରେ ଅଟଇ ତାର ସ୍ଥାନ ।
ଶତେ କୁମର ତାର ଯେ ଅନେକ ନାତି
ସମସ୍ତଙ୍କୁ ସାର ଯେ ମାଇଲା ଅକୋତି ।
ବାଇଶି କୋଟି ଅଟନ୍ତି ସେନାପତି ତାର
ଷୋଳ କୋଟି ଗଜେ ତାର ଶୁଣ ତୁ ନଗର
ବୟାଳିଶି ବଳ ଯେ ପଦାନ୍ତ ବଳଥିଲେ
ଷଟଶ କୋଟି ଯୋଦ୍ଧାନ୍ତ ଲକ୍ଷ୍ମଣ ହସ୍ତେ ମଲେ
ରଥୀ ବାର କୋଟିରୁ ମଲେ ପାଞ୍ଚ କୋଟି
ବାଦ୍ୟକାର ତାହାର ମଲେ ପାଞ୍ଚ କୋଟି ।
ଷଇ ବୋଲୁ ମାତା ବଧୂଏ ଖ୍ୟାସ ହେଲେ
ଲକ୍ଷେ ଭାରିଯାରୁ ବାର ସହସ୍ର ରହିଲେ ।
ହସ୍ତୀ ରଥ ତାହାର ପାଞ୍ଚ ଲକ୍ଷେ ମଲେ ପୁଣ
ଲକ୍ଷେକ ସାତେଶି ମଲେ ଶୁଣ ତୁ କଣ୍ଠେଣ ।

ଅଶ୍ୱ ମଲେ ଷଢ଼ ଲକ୍ଷ ଶୁଣ ତୁ ପାର୍ବତୀ
ତିରିଶି କୋଟି କବନ୍ଧ ନାଚିଲେ ଉଣେଟି ।
ତା ଧନୁରୁ ଘଣ୍ଟୀ ପାଞ୍ଚ କଲାକ ଶବଦ
ଶ୍ରୀରାମକୁ ତା ସମର ହୋଇଲା ତବଦ ।
ପାର୍ବତୀ ବୋଇଲେ ତାର ତନ ଶତ୍ରୁଘନ
ଶତେମୁଖା ରାବଣ ସଙ୍ଗରେ ତାର ଜାଣ ।
ତାହା ମୋତେ ସମ୍ପି କହ ହେ ଦେବକାଣି
ଈଶ୍ୱର ବୋଇଲେ ତୁ ଶୁଣରେ ଶୁଭ୍ରକେଶୀ
ଶତେମୁଖା ରାବଣର ନବେ ଲକ୍ଷ ନାତି
ଲକ୍ଷେ କୁମର ତାର ଅଟନ୍ତି ବଡ଼ ଯଶୀ ।
ଚଉଦ ଲକ୍ଷ ତାର ଅଟନ୍ତି ପାଟରାଣୀ
ବଧୂ ନାତୁଣୀବଧୂ ଅଟନ୍ତି ତିନକୋଟି ପୁଣି
ଲକ୍ଷେକ କୁମର ଶତ୍ରୁଘନ ନାଶକଲେ
ନବ ଲକ୍ଷ ନାତି ଶ୍ରୀରାମ ଭାଇ ହସ୍ତେ ମଲେ ।
ବାଷଠି ପଦ୍ମ ପଦାତି ବଳ ତାହାଙ୍କର
ସତସ୍ତଳିଶି ପଦ୍ମ ମାରେ ଶତ୍ରୁଘନ ସାର ।
ବୟାଳିଶି କୋଟି ଯେ ସେନାପତି ଜାଣି
ବତିଶି କୋଟି ମଲେ ରହିଲେ ଦଶ ଗଣି ।
ଅଠର କୋଟି ରଥୀ ମଲେ ତା ନଗାଣ
ଅଶ୍ୱମଲେ ତାର ନବ ଲକ୍ଷ ଜାଣ ।
ଓଟ ମଲେ ଦୁଇ ଲକ୍ଷ ହସ୍ତୀ ନବ ଲକ୍ଷ
ଏମାନଙ୍କୁ ଶତ୍ରୁଘନ ସଂହାରେ ପ୍ରତ୍ୟେକ ।
ବଧୂ ନାତୁଣି ବଧୂ ସମସ୍ତେ ଗଲେ ଜଳି
ଅଗ୍ନି ନଘ ଭିତରେ ସମସ୍ତେ ପଶିକରି ।
ଜଳେ ଶତେମୁଖା ପ୍ରାଣ ତେଜ୍ୟା କଲା
ଦଶବଦନ ଶତ୍ରୁଘନ ସହାଙ୍କୁ ମାଇଲା ।
ତେବେ ସପ୍ତଘଣ୍ଟି ତାର ଧନୁରେ କରେ ସ୍ୱର
ପର୍ବତ ଶୁଣିକରି ହେଲେ ତୋଷଭର ।
ବୋଇଲେ ଏଥିଠାରୁ ଦେଖନ୍ତ ହେଲା ପୁଣ
ଏହା ମୋତେ ସମ୍ପି କହ ବିଲୋଚନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ହେ ଗଉରୀ
ମନରେ ବିସ୍ମୟ କଲେ କୌଶଲ୍ୟାର ବାଳା ।
ରାବଣକୁ ଦେଖି ରାମ ମନରେ ବିସ୍ମରି
ଗରିଷ୍ଠ ଦାନବ ଏତୁ ଅଟେ ବଳଗିର ।
ଏତେ ବୋଲିକରି ତୀକ୍ଷ୍ଣ ନାରାଚ ଧରି
ମନ୍ତ୍ରିଣ ରାମଚନ୍ଦ୍ର ଛାଡ଼ିଲେ କୋପ କରି ।

ଅସ୍ତ୍ର ଯାଇ ବେଗେ ଯେ କାଟେ ତାର ମୁଣ୍ଡ
ଗର୍ଜନେ କମ୍ପାଇ ଯେ ଅଶେଷ ବ୍ରହ୍ମାଣ୍ଡ ।
ପୁଣି ରାମଚନ୍ଦ୍ର କୁବେର ଶର ପେଷି
ବେକ ସଳଖେ ତାର ବାଣ ଗଲା ପଶି ।
ଦଶ ମଉଳ ତାର କାଟି ପକାଇଲା
ଛିଡ଼ିଣ ଦଶ ମୁଣ୍ଡ ତଳକେ ପଡ଼ିଲା ।
ପାଣିକି ପିଟିଲେ ଯେହ୍ନେ ନୁହେଁ ଦୁଇଭାଗ
ଦେଖିକରି ରଘୁନାଥ ମନରେ ହେଲେ ରାଗ
ସେହିପରି କାନ୍ଧ ତାର ଲାଗଇ ପାଲଟି
ଥରକୁ ଥର ଶ୍ରୀରାମ ପକାଉଛନ୍ତି କାଟି ।
ପୁଣି ଜଇନ୍ତା ନାମରେ ଶର ରାମ କଲେ
ବେକ ସଳଖେ ତାର ବାଣ ଗଳି ଗଲେ ।
ତଳରେ ପଡ଼ିଣ ମୁଣ୍ଡ ଲାଗିଲା ତକ୍ଷଣ
ଦେଖି ବିସ୍ମରିଲେ ଯେ ସୁଗ୍ରୀବ ହନୁମାନ ।
କୋପଭରେ ଯୁଦ୍ଧ କଲାକ ରାବଣ
ଶରରେ ଆକାଶ ପଥ କଲା ନିରୋଧନ ।
ଶ୍ରୀରାମ ପେଷିଲେ ଯେ ଅଧାଚନ୍ଦ୍ର ଶର
ପଡ଼ିଲା ଯାଇଣ ଶର ବେକ ସଳଖର ।
ଦଶମୁଣ୍ଡ ଛିଡ଼ି ତଳେ ପଡ଼େ ତାର ପୁଣି
ରାମ ରାବଣ ମାତଳୀ ବିଭୀଷଣ ଜାଣି ।
ତେବେ କପି ବିସ୍ମରିଲେ ରାବଣ ମହାବୀର
ନ ପୁଣ ଜିଣି ଯାଏ ଆଜର ସମର ।
ଏଥର ଜିଣିଲେ ଆମ୍ଭଙ୍କୁ ନ ଥୋଇବ କାହିଁ
ନିଶ୍ଚୟ ରସାତଳେ ପଡ଼ିବ ଏ ମହୀ ।
ଆଜର ସମଭତ ଆଶା ଅଛୁଁ କରି
ବେକ ଛିଡ଼ି ଲାଗିବାରୁ ମନରେ ଭ୍ରାନ୍ତି କରି ।
ନ ପୁଣ ଲଙ୍କାପତି ନୋହିଲେ ବିନାଶ
ନ ମଲେ ଦଶଗ୍ରୀବ ପାରିବ ସ୍ୱର୍ଗବାସ ।
ଏସନକ ଭୟର କହେ ସୁର ଗଣ
ରାମ ରାବଣର ଯେ ଅପ୍ରମିତ ରଣ ।
ଶ୍ରାବଣ ମାସରେ ଯେହ୍ନେ ବରଷା କରେପାଣି
ଗୁଣ ଟଙ୍କାର ପ୍ରଳୟ ଅଗ୍ନି ପ୍ରାୟ ଜାଣି ।
ତେସନେକ ଶର ବର୍ଷେ ଦେନି ବୀର
ଉଭୟେ ହେଉଛନ୍ତି ନାନା ପ୍ରତ ଶର ।
ବ୍ରହ୍ମ ଅସ୍ତ୍ର ପଶୁପତ ନାରାୟଣ ଅସ୍ତ୍ର
ପିନାକୀ ଅସ୍ତ୍ର ପବନ ଅସ୍ତ୍ର ଅଗସ୍ତ୍ୟ ଅସ୍ତ୍ର ।

ଯକ୍ଷ ଅସ୍ତ୍ର କାଳ ଅସ୍ତ୍ର ଉଡନ୍ତି ଜଗତେ
ବରୁଣା ଅସ୍ତ୍ର ଇନ୍ଦ୍ର ଅସ୍ତ୍ର ଦକ୍ଷ ଐରାବତେ ।
ତପିଲ ବିମୋଚନା ସହସ୍ରାୟେ ବାଛି
ଗର୍ଜନା ସର୍ଜନା ଯାଏ ସ୍ୱର୍ଗପୁର ଲୁଟି ।
ଗନ୍ଧର୍ବା ଅସ୍ତ୍ର ସୂର୍ଯ୍ୟ ଅସ୍ତ୍ର ମାର ଅବା
ପଙ୍କତା କାଳ ବାରୁଣୀ ଅଧାଚନ୍ଦ୍ର ଶୋଷ ।
ବଜ୍ରମୁନା ଅସ୍ତ୍ର ଜୟ ବିଜୟ ଶକତି
ଅମୋଘ ଶକ୍ତି ବଜ୍ରଶକ୍ତି ଅପାର ମାରନ୍ତି ।
ଇନ୍ଦ୍ରଶକ୍ତି କୁମାର ଶକ୍ତି ଧ ଣ ମାରନ୍ତି
ଲୁହାମୟ ଗଦା କାଳମୁଖ ପ୍ରହାରନ୍ତି ।
ବଜ୍ର ଯେ ମୁଦ୍ଗର ଫାସ ରୁଦ୍ର ଫାସ
ମହାମାୟା ଶସ୍ତ୍ର ବଜ୍ରମୁନା ପରୁହଂସ ।
ଶିବ ଶୂଳ ଚକ୍ର ଅପୂର୍ବ ଯେ ଶରମାନ
ଏକକୁ ଆରେକ ସେ ବିନ୍ଧନ୍ତି ଘନ ଘନ ।
ଏସନକ ସମୟେ ସମର ଅପାର
ବରୁଣୀ ଅସ୍ତ୍ର ଯୋଜଣ ଛେଦିଲେ ଦଶଶିର ।
ବେକ ସଳଖରୁ ଛିଡ଼ି ନପଡ଼େ ମୁଣ୍ଡ
ପୁଣ ବଧିଲେ ରାମ ତାଡ଼କା ବଧ କାଣ୍ଡ ।
ବେକ ଛିଡ଼ି ମୁଣ୍ଡ ତାର ପାଲଟି ଲାଗିଲା
ବେଳକୁ ବେଳ ସମର ଅଧିକ ହୋଇଲା ।
ରାବଣ ବୋଇଲା ଆରେ ଶୁଣ ରଘୁନାଥ
ଶରରେ ଛେଦନ ଯେ ନୁହେ ମୋର ଘାତ ।
ମୋର ଯେବେ ମୁଣ୍ଡରେ କାଟିଲେ ମୃତ୍ୟୁ ହୋନ୍ତା
ଏତେକାଳ ଯାଏ କଭେ ମୋର ଦେହ ଥାନ୍ତା
ଦେବତାଏ ବେଢ଼ି ମୋତେ ମାରନ୍ତି ପୁଣ
ଚଉଦ ଭୁବନକୁ ମୁଁ ସାଧି କଲି ଜାଣ ।
ଇନ୍ଦ୍ରଜିତ କୁମର ଭାଇ କୁମ୍ଭକର୍ଣ୍ଣ ବୁଝି
ଦେବତାଙ୍କ ଠାରୁ ଶୁଣି ଶୁଝିଲ ପ୍ରାୟେ ବୁଝି
ଆଜ ମୁଁ ନିଶ୍ଚୟରେ ଯେନିବି ତୋର ପ୍ରାଣ
ଏତେକହି ରାବଣ ଯେ ବର୍ଷେ ତୀକ୍ଷ୍ଣବାଣ ।
ସେ ବାଣ ନିବାରିଲ କୌଶଲ୍ୟା ସୁତ
ବୋଇଲେ ହେ ଲଙ୍କପତି ଶୁଣ ତୁ ନିଶ୍ଚିତ ।
ତୋହର ନାତି ମହୀରାବଣ ନାମେ ବୀର
ପାଞ୍ଚଦିନ ଯୁଦ୍ଧ କଲା ଲକ୍ଷ୍ମଣ ସଙ୍ଗର ।
ବାହୁସା ଶରରେ କାଟିଲ ସୌମିତ୍ରୀ
ନାଭିରେ ପଶିଲା ଶର ମଲା ତୋର ନାତି ।

ଶତେମୁଖା ରାବଣ ଅଟେ ତୋର ମିତ
ତୋର ବୋଲେ ଅଯୋଧ୍ୟାକୁ ଗଲେକ ଭୁରିତ
ମୋହ ସାନଭାଇ ସଙ୍ଗରେ ଯୁଦ୍ଧ କଲା
ସକଳ ସୈନ୍ୟ ମରାଇ ଅଗ୍ନିରେ ପଶିଲା ।
ଅଗ୍ନିରେ ପଶି ମୋ ଭାଇ କଲାକ ସମର
ସେଠାରୁ ପଳାଇ ଘରେ ଆସିଲା ତୋର ପୁର
ଜଳରେ ପଶିଲା ଯେ ପୁଣ ଯୁଦ୍ଧ କଲା
ସାହେର ଭିତରେ ପିଲାଭାଇ ମୋର ପଶିଲା ।
ପୁଣ ସମ୍ଭାଳି ନପାରି ଶତେମୁଖା ପୁଣ
ନଉଥର ପର୍ଯ୍ୟନ୍ତେ କାଟିଲି ମୁଣ୍ଡ ଜାଣ ।
ତେବେ ତାକୁ ମରଣ ନୋହିଲା ହାବେ ପୁଣ
ମର୍ମକୁ ଚିହ୍ନି ବିନ୍ଧିଲା ଭାଇ ମୋର ଜାଣ ।
କଟିଠାରୁ କାଟନ୍ତେ ସେ ପାଇଲା ମରଣ
ବେନିଖଣ୍ଡ ହୋଇ ସେ ପଡ଼ିଅଛି ପୁଣ ।
ଶକତି ମାଇଲାରେ ମୋ ଭାଇ ଲକ୍ଷ୍ମଣକୁ
ହନୁମନ୍ତ ଯାଇ ଗଲା ଔଷଧ ଆଣିବାକୁ ।
ଲେଉଟାଣି ବେଳେ ଭରତକୁ ବାରତା କହିଲା
ଲକ୍ଷେରଜା ଘେନ ଭାଇ ମୋଠାକୁ ଅଇଲା ।
କୁମାର ପଦାରେ ସଦାଶିବ କଲେ ରଣ
ଚଉଦ କୋଟି ଶିବ ସଙ୍ଗରେ ଛନ୍ତି ଜାଣ ।
ନବକୋଟି ଦେବାଙ୍କ ସଙ୍ଗରେ ଘେନିଥିଲା
ତିନି ବାଟୁଳରେ ସମସ୍ତଙ୍କୁ ମୋହକଲା ।
ପାବଣ୍ଡ ଆସିଣରେ କହିଲେ ଭରତକୁ
ତେବେ ସେ ଶିବଗଣେ ପାଇଲେ ପ୍ରାଣକୁ ।
ମୋତେ ନକହି ଭରତ ବାଟୁଳ ମାଇଲା
ଦଶ ବାଟୁଳ ମାରି ତୋରେ ଅଚେତ କରାଇଲା
ଭଜେ କର୍ଣ୍ଣ କଟାରିରେ ବିଖଣ୍ଡ କରନ୍ତା
ଦେବାସୁରେ ମୋତେରେ ନପାଏ ଦୁଅନ୍ତା ।
ସେଥି ସକାଶରେ ମୁଁ ମନା କଲି ତାକୁ
ସ୍ଥିରହୋଇ ରହିଲା ମୋର ବଚନକୁ ।
ଏକା ଅଙ୍ଗରେ ମୋର ଯେ ନ୍ୟନ୍ତ ପରାଣ
ମରିବାର ମର୍ମସ୍ଥାନ ଚିହ୍ନି ଅଛି ପୁଣ ।
ଧୀରେ ଧୀରେ ସମର ମୁଁ କରଇ ତୋରରଣେ
ଯୁଗେ ଯୁଗେ କଥା ମୋର ରହିବ ପୁରାଣେ
ଏତେବାଗେ ଶ୍ରୀରାମ ଯେ କହନ୍ତି ବଚନ
ଦେବଦେବତାର ପାଇଁ କଳକରନ୍ତି ମୋ ସଙ୍ଗେଣ

ଏତେବୋଲି ଶ୍ରୀରାମ ଭରତକୁ ଠାରି
ରାବଣକୁ ଦେଖାରେ ପ୍ରତାପ ତୋହରି ।
ଶୁଣିଣ ଭରତ ଯେ କ୍ରୋଧରେ ଜର୍ଜର
କୋଟିଏ ସୂର୍ଯ୍ୟ ଯେହ୍ନେ ଉଦୟେ ତେଜକର
ତିନିରଥେ ପାଦରଖି ତା ରଥେ ପାଦେଦେଲା
ସୁଦର୍ଶନ ଚକ୍ର ପ୍ରାୟେ ଶରୀର ଦିଶିଲା ।
ଦଶ ମୁକୁଟ ତାର ଆଣିଲା ଝିଙ୍କି କରି
ଶ୍ରୀରାମ କହିବାରୁ ଅଇଲା ଫେରିକରି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଶ୍ରୀରାମ ରାବଣ ଯେ ଅନେକ ଯୁଦ୍ଧକରି ।
ରାବଣ ବିଚାରଇ ମନରେ ତାହାର
ବିରିଭାଇ ଲକ୍ଷେରଜା ଅଛନ୍ତି ଏଥିର ।
ନଜୟ ହେଲେ ମୁଁ ତ ନୋହିବି କେଉଁଆଡ଼େ
ମଲା ଜୀବ ପ୍ରାୟେ ମୁଁ ରହିବି ଲଙ୍କାଗଡ଼େ ।
ଯୁଦ୍ଧକରି ମଲେ ମୋର କଥା ପୁଣ ଥିବ
ଏତେ କହି ଶର ଯେ ବିନ୍ଧେ ଦଶଗ୍ରୀବ ।
ତାର ଶର ନିବାରିଲା କୌଶଲ୍ୟା ସୁତ
ବାଳକ ମାଇଲେ ବାଣ ବିନ୍ଧିଲେ ରଘୁନାଥ
ଛିଡ଼ିଣ ଦଶଶିର ଲାଗିଲା ତାର ବେକେ
ସପ୍ତଶାଳା ବାଣ ବିନ୍ଧିଲେ ରାମ କୋପେ ।
ଦଶଶିର ଛିଡ଼ିଣ ଯେ ନ ପଡ଼ିଲା ତଳ
କୋପରେ ଗର୍ଜନ କରଇ ଯେ ଅସୁର ।
ଆକାଶକୁ ଚାହିଁଣ ଦେବତାଙ୍କୁ ସେ ବୋଲଇ
ଟଙ୍କାଶ ଦଶ ବେଳ ଧନୁଗୁଣ ମାଜଇ ।
ଧାଇଁଣ ଆଗସରି ବିନ୍ଧେ ଶରମାନ
ଶ୍ରୀରାମଙ୍କ ଦେହେ ଶର ପଡ଼ୁଛି ଅବଛନ୍ନ ।
ଖଳ ଖଳ ରୋଧିର ବାହାର ଚଉକତି ପୁଣ
କାଳମୁଖା ଶର ଶ୍ରୀରାମ କୋପେ ଯେ ପୁଣ ।
ଛିଡ଼ିଣ ଦଶମୁଣ୍ଡ ଲାଗିଲା ବେକେ ପୁଣି
ଶ୍ରୀରାମ ବୋଇଲେ ଏବେ ନ ପାରିଲି ଜିଣି ।
ଏତେବୋଲି ଶ୍ରୀରାମ ଯେ ଦଶବାଣ ମାରି
ଛିଡ଼ିଲାକ ଦଶକନ୍ଧ ତଳରେ ନ ପଡ଼ି ।
ଦେଖିଣ ଶ୍ରୀରାମ କୋପରେ ପରଚଣ୍ଡ
ଭିଡ଼ିଣ କରଣ ହାଣଏ କୋଦଣ୍ଡ ।
ଗୁଣ ମାଜ କାଳାନ୍ତକ ଶରବସାଇଲେ
ପୁଣ ଦଶ ମୁଣ୍ଡ କାଟରେ ଦୋଇଲେ ।

ପୁଣି ନାରାଚ ଯେ କୋଟିଏ ତେଜ ଧରି
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ନରୋଧ ତିନି ପୁରୀ ।
ଆକାଶ ପଥପାକ ନରୋଧ ସେହୁ କଲା
ଶସ୍ତ୍ର ଗରଜନେ ବାସୁକୀ ଆସନ କମ୍ପିଲା ।
ସପତ ସମୁଦ୍ର ଯେ ହୋଇଲା ସ୍ଥିର ମତ
ପବନ ନ ବହିଲା ସ୍ତମ୍ଭିତ ମରୁତ ।
ଋକ୍ଷ କପି ରାକ୍ଷସେ ବୁଜିଲେ ଯେ ଆଖି
ଗୋଟିଏ ସୂର୍ଯ୍ୟକିରଣ ପ୍ରାୟେକ ଅସ୍ତ୍ର କ୍ଷେପି
ରାବଣର ବେକରେ ଯେ ଶର ପଡ଼େ ଯାଇ
ଦଶମଉଳୀକି ତାର କାଟିଲେ ରଘୁସାଇଁ ।
ଏମନ୍ତେ ଶ୍ରୀରାମ ଶତେ ଉତ୍ତର ଏକବେଳେ
ରାବଣର ମୁଣ୍ଡ ଯେ କାଟିଲେ ରଘୁବାଳେ
ଆଶ୍ଚର୍ଯ୍ୟ ହେଲେ ଯେ ମାତଳୀକି ରଘୁବୀ
କେବଣ ଆକାର ଏହା ଜାଣୁ କହୋ ଭୁବି ।
ଭଲ ଏ ସ୍ତବି ଗୋଟା ଅଟେ ଲଙ୍କେଶ୍ୱର
ମୋହର ଶରରେ ଦେଖ ନ ଭେଦେ ଶରୀର
ମୁହିଁ ତାର ସଙ୍ଗେ ସାତଦିନ ଯୁଦ୍ଧ କଲି
ଏକାଦୈତ୍ୟ ଗୋଟାକୁ ମୁଁ ଜିଣି ନ ପାରିଲି ।
କି ବୁଦ୍ଧି କରିବି ଏବେ କେମନ୍ତ ନାଶ ଯିବ
ମୋହର ବୁଦ୍ଧି ଏବେ ନ ସ୍ଫୁରେ ସ୍ୱାର ଠାବ
ସହସ୍ର ପଡ଼ନ୍ତେ ତାର ଛୁଡ଼ିଯାଏ ବେକ
କେବେହେଁ ତଳେ ତାର ନ ପଡ଼େ ମସ୍ତକ ।
ବଜ୍ରରୁ ଆଣ୍ଟ ଶୁଣ ଅଟେ ସ୍ୱାର ଦେହି
ଏମନ୍ତ ଅସୁର ପୂର୍ବେ ନ ଥିଲେ ଯେ କେହି ।
ମଂସାସୁର ଦୈତ୍ୟ ଯେ ଅତି ବଳବାନ
ଏକା ଶରକରେ କାର ସରିଲା ଜୀବନ ।
ହିରଣ୍ୟ ହିରଣାକ୍ଷ ମଧୁ ଯେ କୈଟଭ
ଶଙ୍ଖାସୁର ନମୁଚି ତ୍ରୈଲୋଚନ ନୃପ ।
ଶମ୍ଭୁ ନିଶମ୍ଭୁ ଯେ ଦୈତ୍ୟଗଣ ପ୍ରଭୃତି
ବୃତ୍ର ଦୈତ୍ୟ ସନ୍ଧିତେ ଯେତେ ଥିଲେ ପୃଥି ।
କାହାର ଏତେ ଟାଣ ଶରୀର ନ ଥିଲା
ମାଇଲେ ମାରନ୍ତି ଯେ ଅଛଇଁ ଶୁଣିଲା ।
ରକତବୀର୍ଯ୍ୟ ରୋଧିରୁ ସନ୍ୟଜାତ ହୁଏ
ସହସ୍ର ମାରନ୍ତେ ପୁଣ ସେହୁ କ୍ଷୟ ଯାଏ ।
ଅତି ଅସ୍ତ୍ରାଙ୍ଗତ ବେଳେ ସେହୁ ସେ ବଞ୍ଚଇ
ଆରବେଳେ ମାରିଲେ ସେହୁ ସେ ମରଇ ।

ଏ ରାବଣ ଦାନବ କେବେହେଁ ନ ମରି
ଏହାକୁ ଦେବତାଏ ଡ଼ରିଣ ସେବାକରି ।
ଏ ଦଇତ ଥିଲେ ତ ପୃଥିବୀ ନୋହେ ସ୍ଥିର
ତିନିପୁର ମଥି ଏ କରିବ ନାରଖାର ।
ମାତଳି ତୁ ଜାଣୁ କି ଏଥିର ଉପାୟେ
କେବଣ ଶରେ ମାରିବ ଏ ଦୈତ୍ୟରାୟେ ।
ଅନେକ ଥର ବେକ କାଟିଲେ ନ ମଲା
ଚଣ୍ଡାଳ ଦୈତ୍ୟ ମୋତେ ଅନେକ କଷ୍ଟ ଦେଲା
ମାତଳି ପ୍ରସଙ୍ଗ କଥା ଶୁଣନ୍ତେ ରଘୁବୀର
ଚେତେଣ ଶର ବଞ୍ଚଇ ଯେ ବନ୍ଧୁବାର ବାଳ ।
ମାତଳି କୋଇଲେ ତୁମ୍ଭେ ଶୁଣହେ ରଘୁରାଜ
ବ୍ରହ୍ମାର ବରେ ସେଯେ ଅକ୍ଷୟେ ଦନୁଜ ।
ହେ ଶ୍ରୀରାମ ଏହାର ଯେ ମହିମା ନ ଜାଣ
ଆନ ଅସୁର ପ୍ରାଏ କି ରାବଣକୁ ମଣ ।
ସୃଷ୍ଟି କରତା ଧାତା ତାକୁ ବର ଦେଲେ
ସେହି ପୁଣି ଏହାକୁ ବ୍ରାହ୍ମଣ ସେବା କଲେ ।
ଇନ୍ଦ୍ର ଅଟନ୍ତି ହେ ହାଦେ ଦେବତାଙ୍କର ରାଏ
ସେହି ଦେଖ ତାହାର ଦ୍ୱାରପାଳ ହୋଏ ।
ଶିବ ନୃତ୍ୟ କରନ୍ତି ଅଗ୍ନି ଧୁଅନ୍ତି ଶାଢ଼ୀ
ଏହାର ମହିମା ଦେବ କେହୁ କହିପାରି ।
କେବଣ ଦିନ ଏହୁ ସ୍ୱର୍ଗକୁ ବିଜେ କଲା
ପ୍ରଳୟ ଅଗ୍ନି ଜାଣି ନାରାଚ ବରଷିଲା ।
ଦଶଦିଗପାଳଙ୍କୁ ଏ ଆଣିଲା ବନ୍ଦୀକରି
ପୁଷ୍ପକ ରଥ ଚଢ଼ିଣ ବୁଲିଲା ତିନିପୁରୀ ।
ଦୈତ୍ୟଙ୍କର ଇନ୍ଦ୍ର ଏହୁ ବଳରେ ବଳବନ୍ତା
ଦେବାସୁର ନରେ କେହୁ ନୋହିଲେ ଜଣନ୍ତା
ଅତି ଦୁଃଖରେ ଦେବେ ତୁମ୍ଭଙ୍କୁ ଆଶ୍ରେ କଲେ
ସୁରଗଣେ ବହୁତ ତୁମ୍ଭଙ୍କୁ ଜାତ କଲେ ।
ତୁମ୍ଭେ ସ୍ୱୟଂ ବାସୁଦେବ କ ପାର ଏକୁ ମାରି
ଆଜ ଜଣେ କଏ ଅଛି ପାରିବ ସଂହାରି ।
ତୁମ୍ଭଙ୍କୁ ଏହୁ ହାଦେ ଜିଣିବ ପୁଣ ରଣେ
ତେବେ ସେ ଦେବତାଙ୍କୁ ଖଟାଇବ ଚରଣେ
ସାମାନ୍ୟ ପ୍ରାୟେ ଏହାକୁ ନ ମଣ ରଘୁସାଇଁ
ଏହାର ମୁଣ୍ଡ କାଟନ୍ତେ କେବେହେଁ ମୃତ୍ୟୁ ନାହିଁ
ବ୍ରହ୍ମଶର ଏହାର ମର୍ମସ୍ଥାନକୁ ମାରି
ବୁକୁ ଫୁଟିଲେ ଏ ଦୈତ୍ୟ ମରିବ ନିକରି ।

ପୂର୍ବେ ଏ ଶିରକମଳ ଦେଇଣ ମନାଇଲା
ପ୍ରସନ୍ନ ହୋଇଣ ଧାତା ଏହାକୁ ବର ଦେଲା
ତେଣୁ ତାର ମୁଣ୍ଡ ଛିଡ଼ିଲେ ନ ମରଇ
ଛିଣ୍ଡିଗଲେ ମୁଣ୍ଡ ତା'ର ତଳରେ ନ ପଡ଼ଇ
ତାର ଶିର ଛେଦିବାରୁ ଗର୍ଜନ କେହି ନାହିଁ
କୃଷ୍ଣ ହସ୍ତେ ରଘୁନାଥ ଏ କର୍ମ ହୁଅଇ ।
ଏବେ ସେ ବ୍ରହ୍ମଶର ଯେମନ୍ତେ ବୁକୁ ଫୋଡ଼
ଏହାର ବକ୍ଷସ୍ଥଳ ବଜ୍ରହୁଁ ଅଟେ ଗାଢ଼ ।
ଏହାର ହୃଦପଦ୍ମରେ ପ୍ରାଣଲିଙ୍ଗ ଅଛି
ବ୍ରହ୍ମଶରେ ଫୋଡ଼ି ମରୁ କହିବାର କହି ।
ଅଗସ୍ତି ଦେଲା ଶର ଜ ତୁମ୍ଭର ମନେ ନାହିଁ
ଦେଲାବେଳରେ ଋଷି ଯାଇଛନ୍ତି କହି ।
ଶୁଣିଣ ଶ୍ରୀରାମ ମନେ ଆନନ୍ଦ ହୋଇଲେ
ନନ୍ଦିଘୋଷ ରଥେ ଥାଇ ବିକ୍ରମ ଘେନ କଲେ ।
ବୋଇଲେରେ ଚନ୍ଦ୍ରମୁଖୀ ଯିବୁ ଆଜ କାହିଁ
କୁମ୍ଭକର୍ଣ୍ଣକୁ ଦେଖିବୁ ତୁହି ଯାଇ
ମିତ୍ରନାଶ ପୁତ୍ର ତୋର ଅଛନ୍ତି ଯେଉଁଠାରେ
ସେ ସ୍ଥାନକୁ ତୁହି ଯାଅ ତେଜ ଏହି ପୁରେ ।
ଅଗସ୍ତି ଋଷି ଦେଇଥିଲେ ଯେଉଁ ବ୍ରହ୍ମଶର
ତତ୍‌କ୍ଷଣ ତୂଣରୁ କାଢ଼ିଲେ ରଘୁବୀର ।
ଧନୁର୍ବେଦ ପଢ଼ି ରାମ ବସାଇଲେ ଗୁଣେ
ଦେଖିବାରୁ ଦୈତ୍ୟବୀରେ ପଳାନ୍ତି ଏଣେତେଣେ
ମଧ୍ୟାହ୍ନ ଆଦିତ୍ୟ ଜାଣି ସହସ୍ର ତେଜ
ପ୍ରଳୟ ଅଗ୍ନିକି ଜଗତ ଜଳିବ ଦହିଯିବ ।
ମେରୁଗିରି ଜିଣିଣ ଦିଶିଲା ତାର ପ୍ରଭା
ବିଷ୍ଣୁ ହସ୍ତେ ସୁଦର୍ଶନ ଯେମନ୍ତେ ପାଏ ଶୋଭା
ବନଗିରି ପର୍ବତ କମ୍ପଇ ଦଶଦିଶ
ଜଗତ ସଂହାରି କି ହେବ ଏବେ ନାଶ ।
ଶ୍ରୀରାମର କୋପେ କି ଦହିବ ତିନିପୁର
ଖଳବଳ ହେଲେ ସତ୍ୟ ଆତଙ୍କ ମନର ।
ଶ୍ରୀରାମ ନାରାଚ ଧନୁରେ ପୂରାଇ ବିନ୍ଧନ୍ତି
ମନ ପବନ ପ୍ରାଣକୁ ଏକ ଯେ କରନ୍ତି ।
ମୁଖରୁ ବାଟରେ ଜଳ ପଡ଼ଇ ଉକତ
ଆଖି ଢୁଳୁକଲା ପ୍ରାଏ ଦିଶନ୍ତି ରଘୁନାଥ ।
ଧନକୁ ଟାଣିଲାବେଳେ ଧନୁ ଲେସ ହୋଇ
ଗୁଣ କି ବାଏଁ ଶ ବୋଲି ଜାଣି ନ ଯାଇ ।

ସୁଦର୍ଶନ ଚକ୍ରପ୍ରାଏ ଦିଶେ ଶରାସନ
ତେଜର ଦାଉରେ ଯେ ଲୁଚିଲା ଦିନମାନ ।
କଟକଟ କରିଣ ପୁଣ ଆଣିଲେ ରଘୁବୀର
ଦକ୍ଷିଣ କର୍ଣ୍ଣପାଏ ଉଠାଇଲେ ରହି ।
ଏହି ସମୟରେ ଯେ ଶ୍ରୀରାମ ବାମକର
ଦକ୍ଷିଣ ଭୁଜକୁ ସେ କହଇ ଉତ୍ତର ।
ସଂଗ୍ରାମ କାଳେ କମ୍ପାରେ ପଛକୁ ପକାଉ
ତୋହପ୍ରାଏ ଲୋକରେ ହାସ କମ୍ପା ପାଉ ।
ଦକ୍ଷିଣ କରସ୍ଥଳ ବୋଲଇ ତାହା ଶୁଣି
ତୁ ଯାହା ବୋଲୁଅଛୁ ଗୋ ନୁହଇ ଏହୁ ଜାଣି
ମୁହିଁ କମ୍ପା ସଂଗ୍ରାମରେ ହେବା ପଞ୍ଚଘୂଣା
କୌଣସି ଦିନରେ ଆମ୍ଭେ ନୁହଇଟି ଲେସ ।
ଶର ବିନ୍ଧିଲାବେଳେ ଆଗକୁ ତୋତେ କରି
କରବାଳ ଧରି ଥାଟକୁ ଆମ୍ଭେ ମାରି ।
ଯେବଣ କାରଣେ ମୁହିଁ ପଛକୁ ଅଇଲି
ଶ୍ରୀରାମଙ୍କ କର୍ଣ୍ଣରେ ମୁଁ ଯାଇଣ କହିଲି ।
କରୁଣା ସାଗର ଯେ ଅଟନ୍ତି ରଘୁନାଥ
ଛେଦିବେ କି ନ ଛେଦିବେ ରାବଣ ଦଶମାଥ ।
ସତକଥା ପଚାରିବାକୁ ମୁଁ ଅଇଲି ଧାଇଁ
ଆଜ୍ଞା ପାଇଲେ ଶତ୍ରୁକୁ ମାରିବି ବେଗ ଯାଇ
ବାମକର କହିଲା ସେ କସ ଆଜ୍ଞାଦେଲେ
ସେ କଥା ଗୋଟାକ ମୁଁ ଯେ ଶୁଣଇ କର୍ଣ୍ଣରେ
ଡାହାଣ କର କହଇ ଶୁଣହେ ମୋର ବାଣୀ
ଶ୍ରୀରାମ କର୍ଣ୍ଣରେ ମୁଁ ଶବଦ ଦେଲି ପୁଣି ।
ସେ ବୋଇଲେ ଲଙ୍କେ ରଜା ହୋଇଛନ୍ତି ରୁଣ୍ଡ
ଭିଷଣର ସଙ୍ଗରେ ମୋ ଅଛନ୍ତି ପ୍ରଚଣ୍ଡ ।
ଋକ୍ଷକପି ଭାଲୁ ଦଳ କେତେ କଷ୍ଟପାଇ
ଅଯୋଧ୍ୟାର ଲୋକମାନେ ନୟନେ ଦେଖ ରହି
ଦୈତ୍ୟ ନିଶାଚରେ ରହିଁଣ ଅଛନ୍ତି
କେ ହାରିବ କେ ଜିଣିବ ମନରେ ବିସ୍ମରନ୍ତି ।
ମୋହର ଭାରିଯା ପୁଣ ଅଟନ୍ତି ଜାନକୀ
ରାବଣ ମାରିବାକୁ ସେ ଆଶା କରିଛନ୍ତି ।
ଆକାଶେ ଦେବତାଏ ହୁଳହୁଳି କରନ୍ତି
ନିଶ୍ଚୟ ରାବଣକୁ ମାରିବେ ଏ ଭ୍ରାନ୍ତି ।
ରାବଣ ମଲେ ସୁଖ ପାଇବୁ ଆମ୍ଭେ ପୁଣି
କେତେ ଦୁଃଖ ଆମ୍ଭଙ୍କୁ ଦେଲା ଦୈତ୍ୟମଣି ।

ଦୈତ୍ୟବଳ ଚୂର୍ଣ୍ଣ କରେଣି ଛନ୍ତି ଦେଖ
ବିଚାରୁଛନ୍ତି ମନରେ ରାବଣ ମଲେ ସୁଖ ।
ଭାଇବନ୍ଧୁ ଆମ୍ଭର କୁଟୁମ୍ବ ମରାଇଲା
ନପାରି ସାହସ କରି ଆଗେ ନାଶଗଲା ।
ଲଙ୍କାର ନରନାସ୍ତ ବୋଲନ୍ତି ରାଜାମରୁ
ରାବଣଶ୍ବର ମଲେଟି ଅଧର୍ମ ପଥ ସରୁ ।
ରାଣୀମାନେ ବସି ବିଚାରନ୍ତି ମନେମନେ
ସ୍ବାମୀ ମଲେ ରହିବା ଆମ୍ଭେ ସୁଖେ ବିଭୀଷଣେ
ଶାନ୍ତଶୀଳ ଅଟନ୍ତି ଯେ ଦିଅର ଆମ୍ଭର
ସେ ରାଜାହେଲେ ଆମ୍ଭଙ୍କୁ ସୁଖଟି ଅପାର ।
ସମସ୍ତଙ୍କର ତାଠାରେ ଅଟଇ ଯେ କକ୍ଷା
ଶ୍ରୀରାମ ବୋଇଲେ ତାକୁ ନ କରିବା ରକ୍ଷା ।
ମାଇଶଙ୍କୁ ତୁ ମୋର ସମସ୍ତେ ହୋନ୍ତୁ ସୁସ୍ଥ
ରାବଣଠାରୁ ଉପ୍ରୋଧ ଛାଡ଼ିଲ ରଘୁନାଥ ।
ତାଙ୍କଠାରୁ ଶୁଣି ମୁଁ ସନ୍ତୋଷ ହୋଇଲି
ନିଶ୍ଚୟ ମାରିବ ବୋଲି ସତ୍ୟ ମୁଁ ପାଇଲି ।
ଶୁଣିଲଟିକ ହୋ ବାମା ମୋର କଥା ମାନ
ଏଥର ପାଇଁ ଓଁକାର ବଚନ କହ ପୁଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ଈଶାନ
ରାବଣ ଦେଖିବ କି ବିଚାରେ ମନ ।
ଈଶ୍ବର ବୋଇଲେ ସେ ଦେଖିଲା ମୃତ୍ୟୁ ଶର
ମନରେ ବିଚାର କରେ ପୁଣ ଦଶଶିର ।
ଏସନ ବିଚାରେ ସେ ବିଶ୍ରବା ତନୟେ
ବ୍ରହ୍ମ ଅସ୍ତ୍ର ଦେଖନ୍ତେ ସେ ମନରେ ଶଙ୍କାପାଏ
ଜାଣିଣ ଦଶଗ୍ରୀବ ଭାଳେ ମୃତ୍ୟୁଭେଦ
ଏହିକ୍ଷଣି ସରିବ ମୋର ଏତେକ ସମ୍ପଦ ।
ଏତେକହି ଦଶ ଭୁଜରେ ଧନୁଧରି
ଅପ୍ରମିତ ନାରାଚ ବିନ୍ଧଇ କୋପ କରି ।
ଲକ୍ଷେ କୋଟିଏ ଏକା ବେଳେକେ ପେଷଇ
ପ୍ରଳୟ କାଳରେ ଯେହ୍ନେ ମେଘ ବରଷଇ ।
ତାହାଦେଖି ଶତ୍ରୁଘନ ନିବାରେ ସେ ପୁଣ
ଆଉଥରେ ଶର ପୁଣି ପ୍ରହାରେ ରାବଣ ।
ନନ୍ଦଘୋଷ ରଥକୁ ଯେ କାଣ୍ଡରେ ଲୁଚାଇଲା
ମାତଳିକୁ ନାରାଚ ଯେ କୋଟିଏ ମାଇଲା ।
ଲକ୍ଷେକ ନାରାଚ ପୁଣି ଶ୍ରୀରାମକୁ ବିନ୍ଧ
ଧ୍ରୁବମଣ୍ଡଳ ପର୍ଯ୍ୟନ୍ତେ ଶର ସେତୁ ଛନ୍ଦ ।

ରଥଘୋଡ଼ାକୁ ପୁଣ ଶକତ ଚାରି ମାରି
ଲକ୍ଷ୍ମଣଙ୍କୁ ଲକ୍ଷେ ଯେ ନାରାଚ ପ୍ରହାରି ।
ଦେଖିଣ ଶତ୍ରୁଘନ ବାଦଲେ ନିବାରିଲେ
ଆଉଥରେ ଦଶଗ୍ରୀବ ଶରବୃଷ୍ଟି କଲେ ।
ନିଶ୍ଚୟ ମାରିବ ବୋଲି କୋପାନଳ ହେଲା
ଅନେକ ଶର ନେଇ ଧନୁରେ ଯୋଚିଲା ।
ବିଭୀଷଣକୁ ଲକ୍ଷେ ହନୁମନ୍ତକୁ ଶହେ
ଅଙ୍ଗଦକୁ ଷାଠିଏ ମାରଇ ଲଙ୍କରାଏ ।
ସୁଗ୍ରୀବକୁ ସହସ୍ରେ ଜମ୍ବେବକୁ ଅଶୀ
ନଳନୀଳ ଦୁହିଁଙ୍କ ଶତେ ଶର ପେଶି ।
ସୁଷେଣକୁ ପଞ୍ଚାଶ ଗନ୍ଧମାଦନକୁ ଷୋଳ
ହାକିଣ ନାରାଚ ରେ ବିନ୍ଧେ ଲଙ୍କପାଳ ।
ଶ୍ରୀରାମ ଚାଳିଶ ଯେ ପାରଶକୁ ବିଂଶ
ସଢ଼ସା ସେନାପତିଙ୍କ ବିନ୍ଧେ ଅଠାଇଶ ।
ଶତେଦ୍ୱାଳକ ଆଠ ଶତବଳକୁ ବାର
ମହେନ୍ଦ୍ରକୁ କୋଡ଼ିଏ ଦ୍ୱିବିଦକୁ ଏଗାର ।
କୁନ୍ଦକୁ ବାଇଶ ମାରେ କୁମୁଦକୁ ବାର
ନାରାଚ ବିନ୍ଧଇ ସେ ବିବିଧ ପ୍ରକାର ।
ତାରସକୁ ସାତ ଯେ ପାରସକୁ ଚାରି
ବଳମୁଖ କାଳିମୁଖକୁ ଚାରି ଚାରି ମାରି ।
ଦଧିମୁଖକୁ ଦଶ ଯେ କାଳ ମୁଖକୁ ଶଏ
ସାମନ୍ତଙ୍କ ସତରି ଯେ ବିନ୍ଧେ ଦୈତ୍ୟରାୟେ
ବିବଧକୁ ଚାଳିଶ କର୍ତ୍ତନକୁ ଅଠାଇଶ
ଋଷଭକୁ ବତିଶ କାଳ ବୃନ୍ଦକୁ ଦଶ ।
ବସନ୍ତକୁ ବଉଦ ଯେ ଡ଼ାଳମ୍ବକୁ ବାର
ଚନ୍ଦନ ପବନ ଏ ଦୁହିଁଙ୍କ ତେର ।
ଯେତେ ଋକ୍ଷ କପିଯାକ ରଣ ମଧ୍ୟରେ ଥିଲେ
ସଭଙ୍କି ବିନ୍ଧେ ନାରାଚ ପାଞ୍ଚ ପାଞ୍ଚ ଭଲେ ।
କାହାକୁ ବାଦଲ ଯେ କାହାକୁ ଦିବ୍ୟ ଅସ୍ତ୍ର
କାହାକୁ ଗରୁଡ଼ାଶର କାହାକୁ ଅଧାଚନ୍ଦ୍ର ତ
ମାନବା ଶର ପେଶନ୍ତି ପୁଣ ଯେ ଅଶେଷ
ପାଶୁପତ ବାଣକୁ ପେଶେ ସେ ଅଶେଷ ।
ବଜ୍ରବାଣ ଶୂଳ ଶକ୍ତି ଆଣେ ପ୍ରହାରକରେ
ଗଦା ଯେ ମୁଦ୍ଗର ପରିଘ ଘେନି ମାରେ ।
କାହାକୁ ମାରେ ଶକତ କାହାକୁ ଅସିବର
ମୂଷଳ ବାଣ କାହାକୁ ପେଶେ ଧାଡ଼କାର ।

ଏହି ରୂପେ ନାନାଶର ବର୍ଷେ ଲଙ୍କସାଇଁ
ଏକା ବାଣକଟରେ ତାହା ଲକ୍ଷ୍ମଣ ଛେଦଇ ।
ପୁଣ ଆଉ ବେଳକ ବର୍ଷିଲା ଲଙ୍କସାଇଁ
ହାକଣେ କାଟଇ ସେ ସାବଧାନ ହୋଇ ।
ବିଚାରିଲା ମୂର୍ଚ୍ଛିତ ପଡ଼ିବ ରାମବାଣେ
ମାରିବ ମରିବ ମୁଁ ଏଥିରୁ ଭଲ ଜାଣେ ।
ମାରିମଲା ବୋଲି ମୋତେ ସମସ୍ତେ ବୋଲିବେ
କ୍ଷତ୍ରିପଣ କଲା ବୋଲି ମୋତେ ସୁମରିବେ ।
ଶ୍ରୀରାମ ଏ ବେଳେତ ନ ପାରେ ଶର ଛେଦି
ଶିନହାଇ ଅଚ୍ଛନ୍ନତ ଛେଦିବେ ଗଳଗାଜ ।
ସୁଶିଶର କରିବାକୁ ରାମର ନାହିଁ ବୁଦ୍ଧି
ଭାଇଙ୍କର ବଳତାର କଳଥିବା ସିଦ୍ଧି ।
ଏହି ସମୟରେ ମାରି ପାରିଲେ ମାରିବ
ଅଷ୍ଟସେନାରୁ ମୁଁ ଯେବେ ଜଣେ ସଂହାରିବ ।
ଏତେକହି ଲଙ୍କରାୟେ ଶର ବୃଷ୍ଟି କଲା
ଶ୍ରୀରାମଙ୍କୁ ଲକ୍ଷେ ଯେ ନାରାଜ ବର୍ଷିଲା ।
କୋଦଣ୍ଡ କାଟିବାକୁ ପେଷିଲା ସସ୍ତ୍ର ଶହେ
ବ୍ରହ୍ମଶରକୁ ସ୍ତତଶର ବହୁତ ସେ କାଟେ ।
ଧନୁର୍ଗୁଣ କାଟିବାକୁ ପେଶେ ତୀକ୍ଷ୍ଣଶର
ବାଛୁ ବାଣ ପେଶେ ସେ ଛେଦିବ ରଘୁବର ।
ଉଡ଼ନାଦ ଦେଇଣ ଯନ୍ତ୍ରୁଁ ଗର୍ଜେ ବର୍ଷେଶର
ଧାଉଁଛନ୍ତି ଅସ୍ତ୍ରମାନେ ଶବଦ ଗୁରୁତର ।
ନାରାଜ ଆସିବାରୁ ଲକ୍ଷ୍ମଣ ଅନାଇଲେ
ବାବଲ ଶର ପେଷିଣ ଶର କାଟିଦେଲେ ।
ତାହାଦେଖି ଦେବତାଏ ସାଧୁ ସାଧୁ କଲେ
ଧନ୍ୟ ତୁମ୍ଭେ କ୍ଷତ୍ରି ବୋଲି ଲକ୍ଷ୍ମଣେ ବୋଇଲେ
ଏସନକ ସମୟରେ ବଜ୍ରବୀର ସୁତ
ବଣ ଧନୁ ନେଇ ପୁଣ ଧରେ ତାର ହସ୍ତ ।
ବଣ ହସ୍ତରେ ନାରାଜ କାଢେ ସେ ତୋଣରୁ
ଧନୁରେ ବସାନ୍ତେ ତାହା ଭ୍ରଥ ଦେଖେ ଦୂରୁ
ଧନୁରେ ବଣ ବଳ ବାଟୁଳ ଯୋଡଲା
ହୁଙ୍କାର ନାଦ ଦେଇଣ ତକ୍ଷଣେ ଛାଡ଼ିଦେଲା
ବଣଭୁଜ ବଣ ଧନୁ ପକାଇଲା ଝାଡ଼ି
ବଣଭୁଜ ତାର ଆଉ ନଟଳେ ବାହୁଡ଼ି ।
ରାବଣ ଦେଖି ମନରେ ବିଚାରଇ ପୁଣ
ଚତୁର୍ଦ୍ଧମୂର୍ତ୍ତି ଧରି ଆସିଛନ୍ତି ନାରାୟଣ ।

ପ୍ରାଣ ଗଲାବେଳେ ମୋର ବଂଶ ହାତ ଭାଙ୍ଗି
କେଉଁଠାରୁ ଅକାଳ କାଣ୍ଡଥିଲା ମୋତେ ଜଗି
ଏସନକ ସମୟରେ ରାମଚନ୍ଦ୍ର ରାୟେ
ଧନୁର୍ବେଦ ପଢ଼ିଣ ବ୍ରହ୍ମଶର ଛାଡ଼ି ଦିଏ ।
ନାରାଚକ ଛାଡ଼ିଦେଲେ ହୁଙ୍କାର ନାଦ କରି
ସହସ୍ର ଆସ୍ୱାରେ କମ୍ପେ ବସୁନ୍ଧରା ।
ଦଶଦିଗ ପାଳ ଦେଖି ବୁଝିଲେ ଅଭିମାନ
ଜଳଣ ଆସୁଅଛି ପ୍ରଚଣ୍ଡ ହୁତାଶନ ।
ତେତେବେଳେ ରାବଣର ପ୍ରତି ଅସ୍ତ୍ର ନାହିଁ
ଉରତର ବାଟୁଳରେ ବଂଶଭୁଜ ଭାଙ୍ଗି ଯାଇ ।
ଭାଗ୍ୟ ସରିଲା ପ୍ରାଣିକ ମଣ୍ଡୂକ ଜଗେ ବାଟତ
ଭାଗ୍ୟ ଭଲଥିଲେ ସିଂହ ବନସ୍ତ ପଳାଏତ ।
ଯେତେବେଳ ରାବଣର କନ୍ଧରେ ଲକ୍ଷ୍ମୀଥିଲେ
ବେଦବର ଆସିଣ ପ୍ରବୋଧ କରୁଥିଲେ ।
ଏବେ ଦେଖ ସରିଲା ସକଳ ବଡ଼ ପଣ
ଋଷ୍ଟ କପିଙ୍କର ହସ୍ତେ ମଲେ ବଂଶ ଜାଣ ।
ଧର୍ମବନ୍ତ ପ୍ରାଣୀ ଯେ ଅଟନ୍ତି ରଘୁନାଥ
ବ୍ରହ୍ମ ଅସ୍ତ୍ରେ ପେଷିଲେ ସେ ନୋହିଲେ ବ୍ୟର୍ଥ
ଜଗତର ନିମନ୍ତେ ଅସୁର ସଙ୍ଗେ ଯୁଝି
ଅଗସ୍ତି ଦେଲା ନାରାଜ ଯାଉଛି ମର୍ମ ଖୋଜି
ରାବଣର ହୃଦୟରେ ପଡ଼େ ଶର ଯାଇଁ
ପିଠିକି ଗଳିଲା ଅସ୍ତ୍ର ଛିନ୍ନଛନ୍ନ ହୋଇ ।
ଅସ୍ତ୍ର ବାହାର ହୁଅନ୍ତେ ପ୍ରାଣ ତେଣେ ଗଲା
ସମୁଦ୍ରେ ପଶିଣ ଶର ସ୍ନାହାନ ବେଗେ କଲା
ରକତ ଛଡ଼ାଇଣ ଶ୍ରୀରାମ ତୋଣେ ପଶି
ଶ୍ରୀରାମଙ୍କର ଚକ୍ଷୁକୁ କହୁ ଯେ ନ ଦିଶି ।
ଦଶଦିଗ ଅନ୍ଧାରମୟ ଭାଳନ୍ତି ରାମ ରାଏ
ଆତଙ୍କ ମନରେ ସେ ମାତଳିକି ପୁଚ୍ଛଏ ।
କହେ ଦେବଦୂତ ଏହୁ କେବଣ ପ୍ରକାର
କମ୍ପାଇ ଜଗତ ମୋତେ ଦିଶେ ଅନ୍ଧକାର ।
ମାତଳି ବୋଇଲା ଦେବ ମାଇଲ ବ୍ରହ୍ମବାଣ
ରାବଣେଶ୍ୱର ଅଟଇ ବ୍ରହ୍ମ ରାକ୍ଷସ ପୁଣ ।
ବିଶ୍ରବା ମହାଋଷିଙ୍କ ଭାର୍ଯ୍ୟେ ଜନମିଲା
ମାତାର ଦୋଷରୁ ସିନା ରାକ୍ଷସ ହୋଇଲା ।
ବ୍ରହ୍ମାଙ୍କର ନାତି ସେହୁ ବିଶ୍ରବା ଋଷିସୁତ
ତପସ୍ୟାର ବଳରେ ପଦବୀ ସେହିତ ।

ବ୍ରହ୍ମ କର୍ମ ଗୋଟି ଅଛୁ ରାବଣର ତହିଁ
ଦଶମୁଖେ ଚାରିବେଦ ନିତ୍ୟ ସେ ପଢ଼ଇ ।
ତେଣୁ ସେ ବ୍ରହ୍ମହତ୍ୟା ଲାଗିଅଛୁ ତୋତେ
ବ୍ରହ୍ମ ଅସ୍ତ୍ର ପେଷିକାକୁ ହାସ କରେ ତୋତେ
ଆନ ଲୋକ ହୋଇଥିଲେ ପ୍ରାଣ ଆଜ ଯାନ୍ତା
ରାବଣେଶ୍ବର ସଙ୍ଗରେ ସେହି ସେ ମାରନ୍ତା ।
ଶୁଣିକରି ଶ୍ରୀରାମ ଯେ ହୋଇଲେ ବିଷାଦ
ମାତଳିକି ଚାହିଁଣ ସେ ପୁଚ୍ଛନ୍ତି ସମ୍ବାଦ ।
କେଉଁ କର୍ମରେ ମୋତେ ଦୋଷ ହେବପାର
ଶୁଣିକରି ଦେବଦୂତ କହଇ ଉତ୍ତର ।
ହେ ରଘୁନାଥ ତୁମ୍ଭେ ନୁହ ଯେ ବିକଳ
ତୁମ୍ଭର ନାମକୁ ପ୍ରଭୁ ମନେ ମନେ ଝଳ ।
ତୁମ୍ଭଙ୍କୁ ପାପ କାହିଁ ହେ ଲାଗିବ ରଘୁପତି
ତୁମ୍ଭେ ସିନା କରୁଅଛ ଏସନକ ସାନ୍ତି ।
ଅନନ୍ତ କୋଟି ବ୍ରହ୍ମାଣ୍ଡର ତୁମ୍ଭେ ଶିରୋମଣି
ତୁମ୍ଭର ରଚନା ସିନା ଅଟେ ଚାରିଖାଣି ।
ଶୁଣିମା ରଘୁନାଥ ପରମ ତୋଷ ମନ
ହୃଦପଦ୍ମେ ବିଚାର କଲେ ଆପଣା ଜ୍ଞାନ ।
ଜୀବ ପରମକୁ ସେ ଏକ ମନ କଲେ
ପ୍ରକୃତିକ ଅନ୍ତରରେ କରଣ ବିଚାରିଲେ ।
ମୁହିଁତ ଶ୍ରୀହରି ଜଗତର ଅଧିପତି
ମୋହର ସୃଜନର ଅଟେ ଏତ୍ତ ପୃଥ୍ବୀ ।
ପାପ ପୁଣ୍ୟମାନ ସବୁ ମୁହିଁ ତିଆରିଲି
ଧର୍ମ ଅଧର୍ମକୁ ମୁହିଁ ଆଗ ପଛ କଲି ।
ବେଦ ବଇବକୁ ମୁହିଁ କଲି ଦୁଇମତ
ମୁହିଁସିନା ତିଆରିଲି ଦେବତା ଦଇତ ।
ସନ୍ଥକୁ ପ୍ରତିପାଳି ମୁଁ ଦୁଷ୍ଟକୁ ନାଶଇ
ରାକ୍ଷସ ସଂହାରି ଦେବତାଙ୍କୁ ମୁଁ ତୋଷଇ ।
ଯହୁଁ ଏ ଦଶାନନ ବହୁତ ପାପ କଲା
ମୋହର ଘରଣୀ ଚୋରାଇ ଆଣିଲା ।
ତେଣୁକରି ତାହାର ହରିଲି ମୁଁ ପ୍ରାଣ
ମୁହିଁତ ଅପାପୀ ପୁରୁଷ ନାରାୟଣ
ସର୍ବ ପାପ ହରନ୍ତ ମୋତେ ଆଶ୍ରେ କରି
ଦେବତାଙ୍କୁ ରକ୍ଷିଲି ମୁଁ ରାବଣକୁ ମାରି ।
ମାୟା ଘୋର ସଂସାର ମୁଁ କରିଛି ରଚନା
ନଜାଣି କଳୁଷ ତୁରେ ହେଉଅଛି ବଣା ।

କେବଣ ପ୍ରକାରେ ମୁହିଁ କେ କାହାକୁ ମାରି
କେତୁ ଏଥି ପାପକଲି କେତୁତ ଉଦ୍ଧାରି ।
ଯାଅକୁ କଳୁଷ ହେ ସୁଝିଲୁ ତୋର ସେବା
ନୋହିଲେ ଶାପ ତୁରେ ପାନ୍ତୁ ପାପ ଅବା ।
ପୂର୍ବରୁ ଯେ ମରୁତ ରାଜାର ଥିଲା ଦୋଷ
ତାହା ତୁହି ଏବେ ଭୋଗ କଲୁରେ କଳୁଷ ।
ନିଅମ ତୋର ଛାଡ଼ିଲି ଅଙ୍ଗରୁ ଯାଅ ଛାଡ଼ି
ଏତେକହି ଶ୍ରୀରାମ ଆପଣା ନାମ ପଢ଼ି ।
ତାରକ ମହାମନ୍ତ୍ର ଯେବଣ ନାମଗୋଟି
ସୁମରିବା ମାତ୍ରେ ବ୍ରହ୍ମହତ୍ୟା ଗଲା ତୁଟି ।
ଶ୍ରୀରାମର ଅଙ୍ଗରୁ ଛାଡ଼ିଲା ପାପ ଭାର
ପଦ୍ମଦଳ ଲୋଚନକୁ ଦିଶେ ବଡ଼ ଚୋର ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରି
ଅସୁର ମାରିବା ପାଇଁ ମନରେ ହେତୁକରି ।
ଦୈତ୍ୟଙ୍କର ରାଜା ଯେ ଅଟେ ଦଶଶିର
ବୁକୁଫୁଟି ବ୍ରହ୍ମଶର ହେଲା ଯେ ବାହାର ।
ଘୋରରାବ କରିଣ ପଡ଼ିଲା ଗଳଗାଜ
ବୃତ୍ରାସୁର ମଲା ଯେହ୍ନେ ଇନ୍ଦ୍ରଶର ବାଜ ।
ତିନିଶ ଷାଠିଏ ଲମ୍ବା ସେତୁ ହୋଇ
ଶହେଷାଠିଏ ହାତ ଓସାର ତାର ଅଟଇ ।
ଲକ୍ଷସହସ୍ର ଘୋଡ଼ା ଯେ ସହସ୍ରେ ପୁଣ ହାତୀ
ଏତେକ ମାଡ଼ି ପଡ଼ିଲା ପୌଲସ୍ତ୍ରୀର ନାତି ।
ଦେଖିକରି ଶ୍ରୀରାମ ଗୁଣ ଟଙ୍କାର କଲେ
ଦଶଗ୍ରୀବ ମାଇଲା ମନେ ଆନନ୍ଦ ହେଲେ ।
ଜୟ ଶଙ୍ଖ ବଜାଇଲେ କୋଦଣ୍ଡ ରୂପଧାରୀ
ତିନିପୁର ଚଉଦ ଭୁବନ ଯାକ ପୂରି ।
ଜୟ ଜୟ ଶବଦ ଯେ ଆକାଶରେ ପୂରି
ଦୁନ୍ଦୁଭି ବଜାଇଲେ ନାଚିଲେ ଅପସରି ।
ସୁଗନ୍ଧ ଶୀତଳ ଯେ ବହଇ ପବନ
ଗାନ୍ଧାର ରାଗେ ଗନ୍ଧର୍ବ ନୃତ୍ୟକଲେ ପୁଣ ।
ତିନିପୁର ଲୋକଙ୍କର ଅରିଷ୍ଟ ଦେଗେଗଲା
ପାପିଷ୍ଠ ରାବଣେଶ୍ବର ରାମବାଣେ ମଲା ।
ସମସ୍ତ ଦେବତାଙ୍କର ବିକାଶଇ ତେଜ
ଏବେ ବ୍ରହ୍ମାଣ୍ଡରେ ବିହରଇ ଦେବରାଜ ।
ଅଗ୍ନିର ମୁଖେ ହୋମ କରିବେ ମୁନିମାନେ
ଯୋଗୀମାନେ ସମସ୍ତେ ସାଧିବେ ବ୍ରହ୍ମଜ୍ଞାନେ

ପୃଥ୍ୱୀଦେବୀ ରସ ଦାୟକ ମନରେ ଚାର ଭାବ
ଯେଯାହା ବେଳେ ରଘୁ ଶ୍ଳୋକ ସେ କରିବ
ଚଉଦ ଭୁବନ ଲୋକେ କରିଥିଲେ ଶଙ୍କା
ଶ୍ରୀରାମ ବିଧ୍ୱଂସିଲେ ଅଜୟ ଗଡ଼ ଲଙ୍କା ।
ରାବଣ ଇନ୍ଦ୍ରଜିତ ଅଇରି ଗଣ ମଲେ
ଦେଖିକରି ଦେବତାଏ ସାଧୁ ସାଧୁ କଲେ ।
ସୁଗ୍ରୀବର ସୁନ୍ଦର ଅଟନ୍ତ ରଘୁନାଥ
ରଣଗୋଳ କରି ସେ ମାଇଲେ ଦଶମାଥ ।

ସ୍ୱେଚ୍ଛାଏ ନାରାୟଣ ମାନବ ଦେହଧରି
ତ୍ରୈଲୋକ୍ୟେ କ ଦେବତାଙ୍କୁ ବଳତ୍କାରେ ମାରି
କରୁଣା ସାଗର ପ୍ରଭୁ କମଳା ବିଳାସ
ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ତୃତୀୟ ଖଣ୍ଡ ଲଙ୍କା ହୋଇଲା ସମ୍ପୂର୍ଣ୍ଣ
ସାରଳାଦେବୀ ଯେଣୁ ହୋଇଲେ ପ୍ରସନ୍ନ ।
ସୁଜନ ଜନମାନେ ନ ଧରିବ ଦୋଷ
ଶ୍ରୀରାମ ଚରଣରେ ମୋହର ବିଶ୍ୱାସ ।

ଇତି ତୃତୀୟ ଲଙ୍କା ସଦାଜପ୍ୱେ ସମ୍ପୂର୍ଣ୍ଣ



# ଦକ୍ଷିଣୀ ରାମାୟଣ

ବା

## ଜଗମୋହନ ଦାଣ୍ଡି ରାମାୟଣ

## ଲଙ୍କାକାଣ୍ଡ ଚତୁର୍ଥ ଖଣ୍ଡ

ନମସ୍ତେ ହେ ଜଗନ୍ନାଥ ନୀଳଗିରି ବାସୀ
ସାହେର ଦୁଲଣୀ ଅଟେ ଯାହାର ପ୍ରିୟବଶି ।
ଶ୍ରୀରାମ ଅନନ୍ତ ମୂର୍ତ୍ତି ଯେ ବ୍ରହ୍ମାଣ୍ଡର ନାଥ
ଶରଣ ରକ୍ଷଣ ବାନା ଶଙ୍ଖଚକ୍ର ହସ୍ତ
ଗରୁଡ଼ ଗମନ ପିତାମ୍ବର ମଧୁହାରି
ଶ୍ରୀବତ୍ସ ଚିହ୍ନି ହୃଦରେ ଧାରୀ ବଇଜୟନ୍ତୀ ।
ଅପାର ମହିମା ଯାର ଶରଣ ଜନ ସାହା
ନାନା ଯୁଦ୍ଧରେ ଦେବ ମାଇଲ ବଂଶବାହା ।
ଦେବେଣ ଅଜଏ ପୁଣ ନନ୍ଦକେଶ ସୁତ
ମାନବ ରୂପରେ ଯେ ମାଇଲେ ଦଇତ ।
ବ୍ରହ୍ମ ଅସ୍ତ୍ର ଯୋଜଣ ଫୋଡ଼ିଲ ବକ୍ଷସ୍ଥଳ
ପ୍ରାଣ ଯାନ୍ତେ ଭୂମିରେ ପଡ଼ିଲ ଦୈତ୍ୟବର
ଦେଖିଣ ଦୈତ୍ୟଯାକ ପଳାନ୍ତି ରଣଗୁଡ଼
ଗୋଡ଼ାଇ ଋକ୍ଷକପି ମାଇଲେ ଦେଉଡ଼ ।
ଧନ୍ୟ ଧନ୍ୟ ଶ୍ରୀରାମ ହେ ଋଷୀଙ୍କ ଶିରୋମଣି
ଷନ ରାବଣ ମଲେ ଯେ ତୋ ସକାଶୁ ପୁଣି ।
ଚଉଦ ଭୁବନ ଶତ୍ରୁକୁ କଲୁ ନାଶ
ଏତେକହି ଦେବେଯେନାଚକଲେ ହୃଷ୍ଟପୁଷ୍ଟ
ସେହି ପୁଷ୍ପେ ଦେବେ ସଜ୍ଜେଗୋଟି ମଣ୍ଡାଇଲେ
ସେହି ପୁଷ୍ପ ଶ୍ରୀରାମ ଉପରେ ବୃଷ୍ଟି କଲେ ।
ଅନ୍ୟ ଜନଭାଇଙ୍କର ଶିରେ ପୁଷ୍ପ ବୃଷ୍ଟି
ଋକ୍ଷ କପି ସମସ୍ତଙ୍କର ଉପରେ ପଡ଼ିସିଞ୍ଚି ।
ଲକ୍ଷେ ରାଜାଙ୍କରେ ପୁଷ୍ପ ବୃଷ୍ଟି କଲେ ପୁଣ
କୁସୁମରେ ମାଳମାନ ଗୁନ୍ଥି ବାନ୍ଧିଣ ।
ବଶିଷ୍ଠଙ୍କ ଉପରେ ଭୂଷଣ ହେଲ କଲେ
ସମସ୍ତେ ପୁଷ୍ପରେ ଭୂଷଣ ହୋଇଲେ ।
ପୁଷ୍ପଗନ୍ଧ ସଭିଙ୍କର ଦେହରେ ଲାଗିଲେ
ଶ୍ରୀରାମ ଦେଖି ବଡ଼ ଆନନ୍ଦ ହୋଇଲେ ।

ଲକ୍ଷେ ରାଜା କରଯୋଡ଼ି କରନ୍ତି ପୁଣ ସ୍ତୁତି
ଜୟ ଜୟ ରଘୁନାଥ ମାନ ଉଦ୍ଧାର ମୂରତି ।
ଅସୁର ମାରଣ ଦେଇ ରାଜାଙ୍କୁ ଉଦ୍ଧରିଲୁ
ଲକ୍ଷେ ରାଜାଙ୍କ ମଧ୍ୟେ ଶିରୋମଣି ହେଲୁ ।
ତୁମ୍ଭର ହୃଦୟାରୁ ଆମ୍ଭେ ଦରଶନ କଲୁ
ରାମରାବଣ ଯୁଦ୍ଧ ଦେଖି ଆମ୍ଭେ ଯେ ନିସ୍ତରିଲୁଁ
ଆମ୍ଭଠାରେ ସୁଦୟା ହେ କର ରଘୁନାଥ
ତୁମ୍ଭର ଚାପ ବଦାର ଆମ୍ଭେ ହେ ସମସ୍ତ ।
ଏତେବୋଲି ରାଜାମାନେ ସମସ୍ତେ ସ୍ତୁତିକଲେ
ନିଶ୍ଚଳ ନୟନେ ରାମ ମୁଖକୁ ଚାହିଁଲେ ।
ନିଜରୂପ ଶ୍ରୀରାମର ଦର୍ଶିଲ ତାଙ୍କୁ
ଶଙ୍ଖଚକ୍ର ନିରାଜିତ ସେ ରାଜାମାନଙ୍କୁ ।
ଦେଖିଣ ସନ୍ତୋଷହେଲେ ଚିହ୍ନିଲେ ନାରାୟଣ
ରାଜାମାନେ ବୋଲିଲେ ପ୍ରଭୁ ନିସ୍ତରିଲୁ ପୁଣ
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଗୁହନାମେ ଶବର ଯେ ସେଠାରେ ସ୍ତୁତି କରି
ନିଜରୂପ ଶ୍ରୀରାମ ଯେ ଦେଖିଲାକ ପୁଣ
ସଙ୍ଗରେ ଥିଲେ ଯେତେକ ତାଙ୍କର ସଇନ ।
ସମସ୍ତଙ୍କୁ ଦୃଶ୍ୟହେଲା ନାରାୟଣ ରୂପ
ଋକ୍ଷକପି ସମସ୍ତେ ଦେଖିଲେ ପ୍ରତ୍ୟକ୍ଷ ।
ସୁଗ୍ରୀବ ବିଭୀଷଣ ଅଷ୍ଟ ସୈନ୍ୟ ଜାଣ
ନଳ ମହାନଳ ଯେ ଯୂଥପତି ଜାଣ ।
ସେମାନଙ୍କୁ ଶ୍ରୀରାମ ଯେ ଦୟା ପୁଣ କଲେ
ନିଜରୂପ ପ୍ରକାଶିଲେ ସେମାନେ ଦେଖିଲେ ।
ଜନଭାଇ ସ୍ତୁତି କରନ୍ତି କରଯୋଡ଼ି
ଆମ୍ଭଙ୍କୁ ସୁଦୟା କର କୋଧମନ ଛାଡ଼ି ।
ରଥପରେ ଉତ୍ସବ ଯେ କଲେ ଜନଭାଇ
ଦେଖି କରିଣ ଶ୍ରୀରାମ ମନେ ସନ୍ତୋଷ ହୋଇ

ହୁଳହୁଳି ରାମ ତାଳି ପଡ଼ନ୍ତି ଅନେକ
ଗୀତଗାଇ ନୃତ୍ୟକଲେ ଋକ୍ଷକପି ଯାକ ।
କଣ୍ଡଶ ଝଞ୍ଜଣୀ ସୈନ୍ୟ ବଜାଇଲେ ବାଦ୍ୟ
ଲକ୍ଷେକ କାହାଳୀ ବାଜେ ଲକ୍ଷେରାଜାବାଦ୍ୟ
ଲକ୍ଷେକ ଯେ ଶୁଭ ଶଙ୍ଖ ଲକ୍ଷେ ଜୟ ଶଙ୍ଖ
ମହୁରିର ସ୍ୱର ତହିଁ ହେଲା ଦୁଇଲକ୍ଷ ।
କାହାଳୀ ଲକ୍ଷେକ ତହିଁ ବାଜିଲା ପୁଣ
ଦୁଇଲକ୍ଷ ଛତ୍ର ଟେକିଣ ଟେକାଇଲେରାଜାଗଣ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନିପୁର କମ୍ପି
ରଣଭୂମି ଛତ୍ରର ଛାଇରେ ନ ଦିଶି ।
ତାହାଦେଖି ଭରତ ଯେ ରଥରୁ ଓହ୍ଲାଇଲା
ସୁବଳ ଗିରିରେ ଯାଇ ପ୍ରବେଶ ହୋଇଲା ।
ନଯୋଗଙ୍କ ହସ୍ତେ ଚାମର ଛତ୍ର ଧରାଇଣ
କାହାଳୀ ଯେ ଭୁରୀ ସାରବାଜା ସଙ୍ଗେ ପୁଣ ।
ଶ୍ରୀରାମ ଛାମୁରେ ଆସି ପ୍ରବେଶ ହୋଇଲେ
ଶ୍ୱେତ ଛତ୍ର ଟେକାଇଣ କାହାଳୀ ସ୍ୱରକଲେ ।
ବେଣୁ ବଇଁଶୀ ଭୁରୀ ମର୍ଦ୍ଦଣ ସାଣାତାଳ
ସାରବାଜା ତେଲଙ୍ଗୀ ଯେ ବାଜିଲା ଅପାର ।
ତାହାଦେଖି ଦେବତାଏ ସନ୍ତୋଷ ହୋଇଲେ
ପାରିଜାତ ପୁଷ୍ପ ଶିରରେ ବରଷିଲେ ।
ସୈନ୍ୟବଳ ସମସ୍ତେ ରାଜାଗଣ ପୁଣ
ଦେଖିଣ ସନ୍ତୋଷ ହେଲେ ଶ୍ରୀରାମଙ୍କୁ ଜାଣ ।
ଶ୍ରୀରାମ ଯେ ମନ ମଧ୍ୟେ ବିଚାର ତହିଁ କଲେ
ଦେବଲୋକନାଗଲୋକେଯେଉଶ୍ୱାସହୋଇଲେ
ସମସ୍ତଙ୍କ ମନରେ ଆନନ୍ଦ ହେଲେ ପୁଣ
ବ୍ରହ୍ମା ଇନ୍ଦ୍ର ଦୁଇଜଣ ହରଷ ହେଲେ ଜାଣ
ବଜ୍ରଧର ବୋଇଲେ ହେ ଶୁଣ ପିତାମହ
ଶେଷକୁ ସହସ୍ରମୁଖା ରହିଲା ଯେ କହ ।
ସନ୍ୟ ମଲେ ଆମ୍ଭରତ ସୁଖ ପୁଣ ନାହିଁ
ଦଶଗ୍ରୀବଠାରୁ ଶତଗୁଣେ ଯେ ବଳଇ ।
ଦଶମୁଖା ହରିବା ଯେ ଶୁଣିବ ଯେ ପୁଣ
ତିନିପୁର ଦହିବ ଯେ ଏକାଦିନକେ ଜାଣ ।
ବେଦବର ବୋଇଲେ ତୁ ଦେବରାଜ ଶୁଣ
କୁଟକରି ତାକୁ ଯେ ମରାଇବ ପୁଣ ।
ରାମ ବୀରଭାଇ ହସ୍ତେ ନ ମରଇ ସେହି
ଦେବଙ୍କ ହସ୍ତରେ ତାର ମୃତ୍ୟୁଭେଦ ନାହିଁ ।

ନାଗଲୋକେ ନରଲୋକେ ନ ପାରିବେ ମାରି
ଯମ ନେଇଅଛୁ ବର ଅସାଧ୍ୟ ଯେ କରି ।
ଅକ୍ଷଏ ହୋଇ ଅକ୍ଷଏ ରଥ ଜାଳ ଯେ କବୁସ
ବାସେକୀ ହେବ ସାରଥି ଦେବା ଯୁଦ୍ଧ କରି ।
ସେ ରଥରେ ଶ୍ରୀରାମ ଧରଣୀ ହେବେ ରଥୀ
ତେବେ ସେ ମରିବ ସହସ୍ରା ରାବଣଟି ।
ଏମନ୍ତ ବର ଦେଇଛନ୍ତି ଜଗନ୍ନାଥ
ତାର ମୃତ୍ୟୁ ରଖିଲା ଯେ ଜାନକୀର ହାତ ।
ପାଞ୍ଚକରି ମାରିବା ହୋ ନ ହୁଅ ବିକଳ
ପିତାମହଠାରୁ ଶୁଣି ସନ୍ତୋଷ ବଜ୍ରଧର ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଜାଣ
ରାବଣକୁ ମାରିଣ ପରମ ତୋଷ ମନ ।
ଧନୁଗୁଣ ଟଙ୍କାର କରନ୍ତି ରଘୁନାଥ
ଶୋଭା ପାଉଅଛୁ ସେ ଚଉଦ ଭୁବନ ।
ଜୟ ଜୟ ଶବଦ ଶୁଭେ ଚଉପାଶ
ଯାନରେ ସିଂହନାଦ କରନ୍ତି ହରଷ ।
ଯେତେବେଳେ ରାବଣର ପଡ଼ିବା ଦେଖିଲେ
ପଞ୍ଚାଶ ଯୂଥପତି ସଂଗ୍ରାମ ଉପେକ୍ଷିଲେ ।
ଅଷ୍ଟସେନା ସହିତେ ସୁଗ୍ରୀବ ବିଭୀଷଣ
ଯୁଦ୍ଧ ଛାଡ଼ି ବେଢ଼ି କରି ଦେଖିଣ ରାବଣ ।
ଶରରେ କରଯୋଡ଼ିଣ ବଖାଣନ୍ତି ସ୍ତୁତି
ଜୟ ଜୟ ରାମ ତୁମ୍ଭେ ଅନନ୍ତ ମୂରତି ।
ଯେବଣ ଯୁଦ୍ଧ ତୁମ୍ଭେ କଲେ ହେ ଗୋସାଇଁ
ଆଖି ଯେନ ଦେଖିଲୁ ଶୁଣିଲୁ କର୍ଣ୍ଣେ ନାହିଁ ।
ଏତେକହି ରାମଙ୍କୁ ଯେ ପ୍ରଶଂସା କରନ୍ତି
ବୋଲନ୍ତି ସଦାଶିବ ଶୁଣ ଗୋ ହୈମବନ୍ତି ।
ଋକ୍ଷ କପି ବଳ ଯେ ବିଚାର କଲେ ମନେ
ଯାହାକୁ ସାନ ବୋଲିବା ବୋଲିବା ବଚନେ
ଲକ୍ଷ୍ମଣ ମହୀରାବଣ ଇନ୍ଦ୍ରଜିତକୁ ମାରି
ତାହା ସକାଶେ ସୁର ଗୁଡ଼ ପକାଇଲେ ଭଙ୍ଗି
ସାନ ଶତ୍ରୁଘ୍ନ ତାର ରଣ ବଡ଼ କର
ସାହେର ଭିତରେ ପଶି କଲକ ସମର ।
ଏମନ୍ତେ କୁହାକୁହି ହୋନ୍ତି ଋକ୍ଷ କପି
ଶ୍ରୀରାମ ବୀରଭାଇଙ୍କୁ ପ୍ରଶଂସା କରନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ମହାରସ
ଶ୍ରୀରାମର ବାଣେ ଯହୁଁ ରାବଣ ଗଲା ନାଶ ।

ରାବଣକୁ ବିନାଶିଣ ରଘୁକୁଳ ସ୍ୱାମୀ
ମନେ ମନେ ବିଚାର କରନ୍ତି ଅନ୍ତର୍ଯ୍ୟାମୀ ।
ସଂଗ୍ରାମରେ ମଲେ ଯେ ରାବଣ ବଂଶ
ବିଭୀଷଣ ବୁଦ୍ଧିରେ ପାଇଲୁ ଏଡ଼େ ଯଶ ।
ଭାଇମଲା କ୍ରୋଧ ଯେ କରଇ ପୁଣ ଚିତ୍ତ
ମୁହିଁ ଏବେ ତାର ମନ ତୋଷିବି କେମନ୍ତେ
ଏତେବୋଲି ଶ୍ରୀରାମ ଲକ୍ଷ୍ମଣକୁ ରାଇ
ଯେମନ୍ତେ ବିଭୀଷଣ ହେ ଚିନ୍ତା ନ କରଇ ।
ତେମନ୍ତ କରଣ ତାକୁ ତୁଆରେ ତୁ ଆସ
ଶୁଣି ଲକ୍ଷ୍ମଣବୀର ଚଳେ ତାର ପାଶ ।
ତାରପାଶେ ମିଳଣ ଦେଖିଲେ ତାହାକୁ
ଭାଇପାଶେ ବିଭୀଷଣ ଶୋକ ଯେ ମନକୁ ।
ସେନାପତି ଯୂଥପତି ସଙ୍ଗରେ ନେଲେ ପୁଣି
ବିଭୀଷଣ ପ୍ରଶଂସି ଲକ୍ଷ୍ମଣ ଖାରମଣି ।
ଧନ୍ୟଧନ୍ୟ ଲଙ୍କପତି ଧନ୍ୟ ତୋର ହିଆ
ଆନର ଦେବେ ପୁଣିରେ କରିନୋହେ ଏହା
ଆଜ ଏ ଦନୁଜ ନାଶ ତୋହର ବୁଦ୍ଧିରେ
ତୋରଯୋଗୁ ରାମସିନା ଏଡ଼େ ଯଶ କଲେ ।
ବୁଦ୍ଧିପୁଣ୍ୟ ପୁରୁଷ ତୋ ବେହେ ପାପନାହିଁ
ଯେଉଁ କମଣ୍ଡମା ତୋତେ କହିବ ଧନ୍ୟସେହି
ଏହାଶୁଣି ବିଭୀଷଣ ବଚନ କହଇ
ସବୁ କଉପଣ ଅଭଜଲେ ରଘୁସାଇଁ ।
ତାହାଙ୍କର ନାଗଚରେ ମଣ ଦୈତ୍ୟଇନ୍ଦ୍ର
ଋଷିଙ୍କର ଉପରେ ସିଂହ ଅଟନ୍ତି ରାମଚନ୍ଦ୍ର ।
ଆନର ହସ୍ତରେ କି ରାବଣ ମରଇ
ଯାହାର ନାମ ଧରନ୍ତେ ବାସବ ଡରଇ ।
ଦିଗପାଳ ସମାନରେ ମଲା ମୋର ଭାଇ
ଏତେକହି ବିଭୀଷଣ ଉଠିଲେ ବୋଇଲେ ।
ପଞ୍ଚକୁଆ ଦେଇଣ ପୁଷ୍ପେକ ଛଳେକ ମିଳି
ଦେଖିଲା ତଳେ ପଡ଼ିଛି ଲଙ୍କପତି ତଳି ।
ଦଶଶିରର ଯେ ମୁକୁଟ ନାହିଁ ପୁଣି
ଆଗକର ଉତ୍ତପାର ମୁକୁଟ ନେଲେ ଜାଣ ।
ଦେଖିଲା ସେ ମୁକୁଟ ପାଶରେ ଅଛି ପଡ଼ି
ଦେଖିକରି ବିଭୀଷଣ ମୁଣ୍ଡେ ହସ୍ତ କୋଡ଼ି ।
ଆହା ମୋର ଭାଇବୋଲି କରଇ ରୋଦନ
କାହିଁ ଗୁଡ଼ଗଲୁ ମୋତେ ନ ନେଲୁ ସଙ୍ଗେଣ

ଦଶଭୁଜେ ଧନୁ ଯେ ଦଶଭୁଜେ ଶର
କରରୁ ପଳାଇଲୁ ପ୍ରତାପ ଲଙ୍କେଶ୍ୱର ।
ବ୍ରହ୍ମଜାତ ହାରରେ ରନ୍ଧ୍ରହାର ଲାଇ
ରଣଭୂମିରେ ପଡ଼ିଅଛୁ ମୂର୍ଚ୍ଛା ହୋଇ ।
ସରହର ନଖ ଦାନ୍ତି ଦିଶଇ ସୁନ୍ଦର
ଶୋଭା ଦିଶୁଅଛି ଦେହେ ପଡ଼ିଣ ରୁଧିର ।
ଆଖି ଜଳ ଜଳ ବୁହିଁଲା ପାଷେକ ଦିଶଇ
ଦେଖିକରି ବିଭୀଷଣ ଧନ୍ୟ ପ୍ରଶଂସଇ ।
ଚଣ୍ଡାଳ ଭାଇରେ ତୁ ନକଲୁ ମୋର ବୋଲ
ଅକାରଣେ ହାରିଲୁ ଜୀବନ ଲଙ୍କପାଳ ।
ଅନ୍ୟାୟ ଆସ୍ତେ କରିଣ ଝିଙ୍ଗାସିଲୁ ଧର୍ମ
ଅପଣେ ଯତନେ ତୁ ନେଉଁଲୁ ଏଡ଼େ କର୍ମ ।
ସୀତାଙ୍କୁ ଆଣି ନଥିଲେ ନୁହନ୍ତ ମୃତ୍ୟୁତୋତେ
ଅନେକ ଉଆରେ ବୁଝା କହିଥିଲେ ତୋତେ ।
ମନ୍ଦୋଦରୀକୁ ଏବେ କାହାକୁ ଗଲୁ ଦେଇ
ପର ପୁବଣ୍ଡ କର୍ମାରେ ଆଣିଲୁ ବେଗାଇ ।
ଏକଥା ପାଶୋରିଲୁରେ ମତ୍ତଗଙ୍ଗ ବଳେ
ମୋତେ ତେଜ୍ୟା କଲୁରେ ମରିବାରବେଳେ
ଏଡ଼େ ସମ୍ପଦ ହରାଇଲୁ କାହିଁପାଇଁ
ଦେବଦାନବେ ତୋତେ ଜଣନ୍ତି କେହିନାହିଁ
ତଉଦ ଭୁବନରେ ଟଣଇ ତୋର ରଥ
ଅବମାରେ ଫଡ଼ିଲୁ ଏବେ ଦଶମାଥ ।
ଯେଉଁଯେଉଁମାନେ ତୋତେ ମନ୍ଦବୁଦ୍ଧି ଦେଲେ
ସେମାନେ କର୍ମାଇଁ ତୋତେ ରଖି ନପାରିଲେ
ପରଲୋକ ବୋଇଲେ ପଡ଼ି ହରାଇଲୁ ଶିର
ଜଗତେ ଅପଖ୍ୟାତି ପାଇଲୁ ଦଶଗିରି ।
ଏମନ୍ତ ବାହୁନ ପୁଣି କରଇ ରୋଦନ
ସମାର୍ଜନା କରୁଛନ୍ତି ଯୂଥପତିମାନ ।
କାହାର ବୋଲରେ ଶୋକ ନୁହଇ ନିବାରି
ପୁଣପୁଣ କାନ୍ଦନ୍ତି ଭାଇକୁ କୋଳକରି ।
ଲକ୍ଷ୍ମଣ ତୁଆରିଲେ ସୁଗ୍ରୀବକୁ ଘେନ
ଆଦର ତୁଆଟନ୍ତି ଜାମ୍ବବ ମନ୍ତ୍ରୀ ପୁଣି ।
ଅଙ୍ଗଦ କୁମାର ତାକୁ ବୁଝାଏ ବହୁତ
ଋଷକପି ବଳହୋଇ ଦେଖନ୍ତି ସମସ୍ତ ।
କାହାର ବୋଇଲେ ସେତ ନୋହିଲାକ ଭୁନ
ଭାଇକୁ କୋଳକରି କାନ୍ଦଇ ପୁଣି ପୁଣି ।

ଯନ୍ତୁଁ ବିଭୀଷଣ ଶୋକ କରେ ଉଚ୍ଚସ୍ୱରେ
ଆପଣେ ରଘୁନାଥ ବୁଝାନ୍ତି ଉତ୍ତରରେ ।
ମାତଳିକୁ ଘେନି ବିଭୀଷଣ ପାଶେ ଗଲେ
ପୁରାତନ କଥାମାନ ଦେଖାଇ କହିଲେ ।
କହେ ବିଭୀଷଣ ତୁମ୍ଭେ ହୋଇଲକ ବାଇ
କେ କାହାର ସୋଦର କେ କାହାର ଭାଇ ।
ଜନ୍ମ ମରଣ ବେନି ସଂସାରେ ରଞ୍ଜନା
ମନରେ ଧର୍ମ ଶାସ୍ତ୍ର ବିଚାର କର ଜନା ।
ହିରଣ୍ୟ କଶିପୁକୁ ନୃସିଂହ ବିଦାରି
ଶ୍ରୀହରି ପର ପ୍ରହଲ୍ଲାଦକୁ ଇନ୍ଦ୍ର କରି ।
ବଇଲୋଚନ ମରିବାରୁ ବଳିରାଜା ହୋଇ
କାହାର ସଙ୍ଗତରେ ନ ଗଲେ ପୁଣକେହି ।
ମୁହିଁ ମଲେ ରାବଣର ନଷ୍ଟି ନେ ରହନ୍ତା
ରାବଣ ମଲେ ତାର ନନ୍ଦନ ରାଜା ହୋନ୍ତା ।
ତୁମ୍ଭର ସୁଖମାନ ନ ରହନ୍ତା ପୁଣ
ମୁହିଁ କଲେ ଝାସ ହେ ବିଅନ୍ତ ବିଭୀଷଣ ।
ଭାଇବୋଲି ଯେବେ ହୋ ରାବଣ ଘେନଥାନ୍ତା
ନାଶକ ସେ ରାଜପଣ କମ୍ପାଇଁ ବିଅନ୍ତା ।
ସେ କଥା ବୁଝ ମନରେ ନାହିଁ ବିଭୀଷଣ
ଯେତେକ ଶୋକ କରୁଛ ସବୁ ଅକାରଣ ।
ମୁହିଁ ଦେଖ ପିତା ବୋଲେ ବନବାସ କଲି
ପିଅର ମଲେ ମୁହିଁ ସଙ୍ଗରେ ନ ଗଲି ।
ମାଇଲି ଅଜା ତୋରରେ ସୁମାଳି ଦଇତ୍ୟ
ତାହାର ଭାଇ ଯେ ମାଳି ମାଲ୍ୟବନ୍ତ ।
ତାକୁ ପର ହରି ହୋ ତକ୍ଷରେ ନାଶକଲେ
ସୁମାଳି ପଳାଇ ଯାଇ ପାତାଳେ ପଶିଲେ
ଭାଇ ତାର ମରନ୍ତେରେ ସେ ନୋହିଲି ନାଶ
ତାର ଦୁହିତାରୁ ଉପୁଜିଲି ତୁମ୍ଭ ବଂଶ ।
ବେବେ ବାନରର ଦେଖ ଅଟନ୍ତି ଦୁଇଭାଇ
କାହାର ସଙ୍ଗରେ ହୋ ନ ଗଲେ ପୁଣକେହି
ଏ ମାୟା ସଂସାରକୁ ହୋ ଦଇବ ରଚିଲି
ଯେ ଯାହାର କର୍ମକୁ ହୋ ଘେନି ଉପୁଜିଲି ।
ମଲ୍ଲୋକ ମରଇ ହୋ ଜୀଇଲି ଲୋକ ଥାଇ
ବିଧାତା ନିର୍ମାଣ ହେ ଅର୍ଜିବା ଫଳ ପାଇ ।
ଉଠ ଉଠ ରାଜା ତୁହୋ ନବର ସନ୍ତାପ
ତାହାର ତୋହର ସିନା ଅଟେ ଏକ ବାପ ।

ଛପନ ଗଣ୍ଡା ଯୁଗକୁ ରେ ଆୟୁ ପାଇଥିଲା
ଏବେ ଦେଖ ହେ ସୀତାକୁ ହେରଇ ନାଶକଲା
ଜଗତେ ଅପଖ୍ୟାତି ପାଇଲା ତିନପୁରେ
ପାଦତଳେ ଖଟାଇଲା ଦେବାସୁର ନରେ ।
ତୁ ତାହାର ଭାଗ୍ୟରେ ନୋହୁନା ଉପକାରୀ
ଏବେ ତୋର କର୍ମରେ ଯେ ଅଛୁ ଏତେଶିରୀ ।
ମୋଠାରେ ଭେଟ ଯେବେ ନୋହିଥାନ୍ତ ବିଭୀଷଣ
ତୋଭାଇ ସଙ୍ଗରେ ଯାଆନ୍ତା ତୋର ପ୍ରାଣ
ଏକାହୋଇ ଭାଇକୁ କି ରଖନ୍ତୁରେ ତୁହି
ଶତମୁଖୀ ରାବଣ କଲା ତୋଭାଇର ବୋଲ ତହିଁ
ବଂଶ ମରାଇ ତାରରେ ଆପେ ନାଶଗଲା
ତୋର ଭାଇତ ତାହାକୁ ରକ୍ଷି ନ ପାରିଲା ।
ନାଶକୁ ଶିଖାଇ ସେ ଯେ ଲକ୍ଷ୍ମଣ ସଙ୍ଗେ ଘୋଳ
ଆଗକରି ତାହାକୁ ମରାଏ ଲଙ୍କା ମଲି ।
ମନ୍ଦୋଦରୀ ରାଣୀ ତାର ଅଟେ ପ୍ରିୟବନ୍ତି
ତାକୁ ସଙ୍ଗେ ନ ନେବ ଛାଡ଼ିଗଲା ଏଥି ।
ଚନ୍ଦ୍ରସୂର୍ଯ୍ୟ ଥିବାଯାଏ ରେ ଦେହ ଧରିଥିବୁ
ରାକ୍ଷସଇନ୍ଦ୍ର ପଣରେ ଲଙ୍କା କୁ ଭଳସିବୁ ।
ଦେବ ସଙ୍ଗରେ ନ ହୋଇବ ଖଣ୍ଡିଆଳ
ପ୍ରଜାଙ୍କୁ ପାଳିବୁ ତୁହୋ ପୁତ୍ର ସମକରି ।
ବିଷ୍ଣୁ ଠାରେ ଭକ୍ତିହେଲେ ସମସ୍ତେ ଭଲହୋଇ
ବିଷ୍ଣୁ ଭକ୍ତକୁ ଦେଖିଲେ ପାତକ ତରଇ ।
ତୁଯେ ପୁଣ୍ୟ ପୁରୁଷ ବିଷ୍ଣୁଙ୍କ ଉପକାରୀ
ଉପକାରୀ ଲୋକଙ୍କୁ ଯେ ବିଷ୍ଣୁ ଦୟାକରି ।
ଗୋଡ଼ି ମାଟି ସଂସାରେ ହୋ ଅଟଇ ଏହି ମସ୍ତି
ବୀରହୋଇ ଗୋଟିଏ ଏଥିରେ କେହି ନାହିଁ ।
ଏ ପୃଥ୍ୱୀ ମଧ୍ୟରେ ତ ସମସ୍ତେ ରହିଥାନ୍ତେ
ବାସୁକୀ କେମନ୍ତେ ହେ ଏ ପୃଥ୍ୱୀକି ଧରନ୍ତେ
ରାଜ୍ୟରେ ଯେବଣ ଜନ ପକ୍ଷାପକ୍ଷ କରି
ସେହି ପ୍ରାଣୀକୁ ଯମଦୂତ ନର୍କକୁ ନୟନ୍ତି ଧରି ।
ତାର ରକ୍ତଭୋଗ କାଳେ କେହି ନ କରନ୍ତି
ଅସମୟ କାଳେ ତାକୁ ସମସ୍ତେ ଝିଙ୍ଗାସନ୍ତି ।
ତୁହି କମ୍ପାଇ ଆରତ ହେଉଅଛୁ ରାଜା
ଲଙ୍କାଗଡ଼େ ନୃପତିକୁ ଏବେ ହୁଅସା ।
ଏହୁଯେ ମାତଳି ଦେଖ ଗନ୍ଧର୍ବ ସେନାପତି
ଏହୁ ପୁତ୍ରକୁ ମାଇଲା ପୌଲସ୍ତି ର ନାତି ।

ଏହୁ ପୁଣ ଦେହଧରି ଅଛୁ କଷ୍ଟ ସହି
ବିଧାତା କଲା କଥା ଅନ୍ୟଥା ନୁହଇ ।
ଆସ ହେ ବିଭୀଷଣ ମୋର ବୋଲ କର
ଆନନ୍ଦ କାଳେ ମୋତେ ହେ ବିକଳ ନ କର
ତୋହର ବିକଳ ମୂର୍ତ୍ତି ନ ପାରଇ ସହି
ଚିନ୍ତାଭରେ ବ୍ୟଥା ପାଉଅଛି ମୋର ଦେହି
ଏତେ ସ୍ନେହ ତୋହର ଭାଇରେ ଯେବେ ଥିଲା
ମୁଁ କମ୍ପାଇ ମାରନ୍ତି ହେ ଦଶଙ୍କାର ଭଲା ।
ସୀତାଙ୍କୁ ମୁ ଛୁଞ୍ଚ ମୁଁ ବାହୁଡ଼ି ଯାଇଥାନ୍ତି
ତୋ ସମ୍ମତ ନଥିଲେ ମୁଁ କମ୍ପା ଏଥିବଞ୍ଚେଥାନ୍ତି
ତୁମ୍ଭେ ପ୍ରିୟ ମୋହର ଅଟ ହେ ବିଭୀଷଣ
ତୋ ଠାରୁ ଅଧିକ ମୋର ନୁହଇ ଲକ୍ଷ୍ମଣ ।
ଏବେ ତୁ ବୋଇଲେ ଜଆଇ ଦେବତୋ ଭାଇ
ମୋହର ବୋଲ ହାଦେ ସମର୍ଥି କରଇ ।
ମୋହର ବୋଲ କରିବେ ଦେବତା ସକଳ
ତୋତେ ଯେ ଭଲହେବ ମୋତେ ସେହିକଥାଭଲ
ସୀତାକୁ ଘେନ ପଛେ ହୋ ସେହି କରୁ ଘର
ଉଠ ଉଠ ବିଭୀଷଣ ମୋର ବୋଲ କର ।
ଦଶ ପୁନ୍ଦ ଭାରିଯା ଶତଙ୍କ ଦେଖ ବନ୍ଦୀ
ଏହି ଭାଇ ରାବଣରେ କରିଅଛି ବନ୍ଦୀ ।
ତାହାଙ୍କୁ ଯାଇ ଏବେ ବନ୍ଦୀରୁ ମୁକୁଳାଅ
ଏମନ୍ତ ବଚନ କହେ ଦଶରଥ ପୁଅ ।
ଶୁଣି ବିଶ୍ରବା ସୁତ ଉଠିଲା ଜାଣ
ଶୋକ ସମ୍ଭାଳି ବେନକର ଯୋଡ଼ଇ ଶିରେଣ
ହଠି ଜଳ ହୋଇଣ ସେ କହଇ ସିଦ୍ଧାନ୍ତ
କମ୍ପା ଏତେ କଷ୍ଟ କଥା କହିଲେ ସୀତାକାନ୍ତ
ରାବଣ ମୋ ଜ୍ୟେଷ୍ଠଭାଇ ଦଗପାଳ ସମ
ତାହାର ପ୍ରାଣକୁ ଏବେ ହରିନେଲା ଯମ ।
ଯେବେ ଶୋକ ନ କରିବି ମୂର୍ତ୍ତି ଦେଖ ଦେଖ
ଲୋକଙ୍କୁ ଦୁଷ୍ଟାବ ମୋର ରହିବ କାଳକ ।
ତୁମ୍ଭେ ପରା ବୋଲନ୍ତି ବିଭୀଷଣ ତ ନର୍ସ୍ୟା
ଶୋକ ସନ୍ତାପ ଏହାର ନ ବସିଲା କାୟା ।
ସୋଦର ଭାଇକୁ ଏ କୁଟରେ ମରାଇଲା
ତେତେ ଶିରାଗୋଟା ପୁଣ ତାହାର ରହିଲା ।
ତୁମ୍ଭେ ତାର ଶତ୍ରୁ ହେଲୁ ତୁମ୍ଭର ବଇରି
ଭୁଖକରି ଆଣିଅଛି ଏ ତୁମ୍ଭର ନାରୀ ।

ତେଣୁ ତୁମ୍ଭେ ନାରନେ ଘେନିଲ ତାର ପ୍ରାଣ
ମୂର୍ତ୍ତି ଯହ ନ କାନ୍ଦିବି ସୋଦ୍ଧିମାର ପଣ ।
ଲୋକେ ବିସ୍ମରିବେ ତ ରାବଣେଶ୍ୱର ମଲା
ବିଭୀଷଣ ଯୋଗୁଁ ଏହାର ସମ୍ପଦ ନାଶଗଲା ।
ସୈନ୍ୟବଳ ବିସ୍ମରିତ କରିବେ ମନରେ
ଏହିକ୍ଷଣି ଶ୍ରୀରାମ ତ ମାରିବେ ଆମ୍ଭରେ ।
ଏତେ ବଜ୍ରର ଦୈତ୍ୟ ପାଇବେଟି ତ୍ରାସ
ଏହିକ୍ଷଣି ଲଙ୍କାଗଡ଼ ଛାଡ଼ିଣ ଯିବେ ସେ ତ ।
ଧନ ରତ୍ନ ଭଣ୍ଡାର ସେ ସବୁ ହେବ ଚୂର
ଅଗ୍ନିମୁଖେ ଦହି ପୁଣ ହେବ ତେତେ ପୁର ।
ଏବେ ସେମାନେ ପୁଣ ବୋଲିବେ ଆଉକଛି
ଅସୁର ବୋଲିବେ ଦୁଷ୍ଟ ବିଭୀଷଣ କାନ୍ଦୁଅଛି
ସେଇଯାଇ ଶତ୍ରୁଠାରେ ଶରଣ ପଶିଲା
ଆପଣେ ସେ ରାଜ୍ୟ ବନ୍ଧୁ ସଗୋତ୍ର ମରାଇଲା ।
ଭାଇ ତାର ମାରିବାରୁ ନ ପାରିଲା ମୂର୍ଚ୍ଛି
ସ୍ନେହଭାବ ଗୁଣଘେନ ରୋଦନ କରୁଅଛି
ଭାଇ ମରିବାରେ ଯେବେ କରଇ ରୋଦନ
ବିଭୀଷଣ ରାଜା ହେଲେ ସଭାଙ୍କୁ ଭଲ ଜାଣ ।
ବିଭୀଷଣ ବୋଲେ ତୁମ୍ଭେ ଶୁଣ ହେ ରଘୁନାଥ
ମୋହଠାରେ କମ୍ପାଇ ତୁମ୍ଭର କୋପ ଚିତ୍ତ
ତୁମ୍ଭର ଶତ୍ରୁ ପରା ହେ ମଲା ଦଶଶିର
ଅଦୋଷୀ ଲୋକଙ୍କୁ ଦେବ କୋପ ହେ ନକର
ଏସନେକ କଥାରେ ପ୍ରବୋଧ କଲେ ରାମ
ବିଭୀଷଣ ଠାରୁ ଶୁଣି ଛାଡ଼ିଲେ ରାମ ତମ ।
ଏସନକ ବୋଲିଣ ଯେ ଭାଳିବେ ଲଙ୍କାଲୋକ
ଯେ ଯାହା ଘରେ ସର୍ବେ ରହନ୍ତୁ ନିଃଶଙ୍କେ ।
ଏହି କଥାକୁ ବର୍ତ୍ତିର ରୋଦନ ଯେ କଲି
ତୁମ୍ଭ ଚରଣୀକ ଦେବ ଆଶିଷକ ହର ।
ମୋତେତେବ ପ୍ରାଣରେ ହେ ପକାଇଥିଲମାରି
ତୁମ୍ଭର ଶରଣୁ ମୁଁ ପଶିଲି ଶ୍ରୀହରି ।
ତୁମ୍ଭେ କମ୍ପା ବୋଲ ରାବଣକୁ ଜିଆଇ ଦେବ
ଜନକର ଜେମାକୁ ଜିଆଇ ଦେବ ।
ଏମନ୍ତେ ହସାରେ ମୋତେ ଶୁଣିବ ହେ ମନ୍ଦ
ତୁମ୍ଭ ତହୁଁ ଅଧିକ ମୋତେ ବଳ କ ଦଶକନ୍ଧ
ସ୍ନେହଗୁଣ ତାହାର ଛାଡ଼ିବ ମୁ କେମନ୍ତେ
ମିଛରେ ଶୋକ ମୋହର ପରଜାଙ୍କ ହିତେ ।

ତୁମ୍ଭେ ତାହା ନ ଜାଣକ କଉଶଲ୍ୟା ସୁତ
କେମନ୍ତ ବୋଲ ରାବଣ ଜିଆଇଁ ଦେବ ମୁଁ ତ
ତୁମ୍ଭ ପରି ସ୍ୱାମୀ ହେ ଏମନ୍ତ କଥା କହ
ମଲ ଲୋକଙ୍କୁ କେମନ୍ତେ ଜିଆଇ ଦେବ କହ
ତ୍ରେତାଯୁଗେ ମରିବାର ଅଟଇ ଯେ ସତ୍ୟ
ମଲେ ଜୀବନ୍ତନ୍ତି ଆଉ ନ ଥାନ୍ତି ଜୀବ ତ ।
ତୁମ୍ଭେ ଯେବେ ଜୀବଦାନ ଦେବ ଦାଶରଥି
କେତେ ସୈନ୍ୟ ଦେବ ହେ ମରି ନାହାନ୍ତି ଏଥି
ଏମାନଙ୍କୁ ଜିଆଇ ଦିଅ ହେ ରଘୁସାଇଁ
ଲଙ୍କାରେ ସୈନ୍ୟଦେବ ନାହାନ୍ତି ହେ କେହି
ମଲ ସୈନ୍ୟରୁ ଥୋକେ ଜିଆଇ ଦିଅ ବନା
ଅକ୍ଷୋହିଣୀ ଅପାର ଏଥିରେ ପଡ଼ିଛନ୍ତି ସିନା ।
ମୋତେ ଯେବେ ଲଙ୍କାଗଡ଼େ କଲ ନୃପବର
ସୈନ୍ୟବଳ ନ ଥିଲେ ରାଜା କି ହେବାର ।
ରାବଣ ଜିଇଲେ କି ମୁଁ ହେବି ମହୀପାଳ
ତୁମ୍ଭର ପିତା ଆଜ୍ଞା ହୋଇବ ନିଷ୍ଫଳ ।
ଦଶକନ୍ଧ ନ ଜିଉ ନ ଜିଉ କୁମ୍ଭକର୍ଣ୍ଣ
ନ ଜିଉ ଇନ୍ଦ୍ରଜିତ ଦୁଷ୍ଟ ପୁତ୍ର ସେ ପୁଣ ।
ପୁତ୍ର ନାତି ତାର ଦୁଷ୍ଟ କେହି ନ ଜିଅନ୍ତୁ ।
ଗଜ ଅଶ୍ୱ ରଥ ଏଥିରୁ ଥୋକାଏ ଜିଅନ୍ତୁ
ଜିଆଇ ପାରନ୍ତେ ସ୍ୱାମୀ କରିବ ତୁମ୍ଭେ ଏହା
ଏହା ଶୁଣି ଅଳପ ହସିଲେ ଚଉବାହା ।
ବୋଇଲେ ହେ ବିଭୀଷଣ ମୋହଠାରୁ ଶୁଣ
ବେଦନ ସକାରଣ ତୋତେ କହିଦେଲୁ ପୁଣ ।
ପିତା ମୋର ଦଶରଥ ଅବଧନରେ ମଲେ
ଜିଆଇଥାନ୍ତି ଯେବେ ସେ ନଥାନ୍ତେ କମ୍ପାଇଲେ
କରିବାର ଲୋକରେ ଜିଇବା କେହି ନାହିଁ
ସେ କଥାକୁ ବିଭୀଷଣ ପାଶୋରୁ କମ୍ପାଇ ।
ମୁହିଁ ଜିଇଅଛୁ ତୋତେ କରିବ ନୃପତି
ଦଶଗ୍ରୀବ ରାଜା ଯେବେ ନ ମରିଥାନ୍ତା ଏଥି
ସମୁଦ୍ରେ ପଶିଣ ତୁ ଯେ ମିଳିଲୁ ମୋର ସଙ୍ଗେ
ସେ କଥାକୁ ବିଚାର କରରେ ମନେ ଏବେ ।
ଶ୍ରୀରାମଠାରୁ ଶୁଣି ବିଭୀଷଣ ଯେ ସନ୍ତୋଷ
ଏଥି ଅନନ୍ତରେ ଗୋ ଶୁଣ ଦିବ୍ୟ ରସ ।
ଶ୍ରୀରାମ ବୋଇଲେ ତୁମ୍ଭେ ଚନ୍ଦ୍ରା ବେଗେ ଘୁଡ଼
ଦିଣ୍ଡି ସ ପେରଅ ନେଇଣ ଲଙ୍କାଗଡ଼ ।
ସମସ୍ତେ ଅଚିନ୍ତା ହୋଇ ଯେ ଯାହା ଘରେ ରହ
ଚିନ୍ତା ନ କର ବିଭୀଷଣର ଅଛି ସ୍ନେହ ।
ଶ୍ରୀରାମଙ୍କଠାରେ ସେ ହୋଇଛି ପୌରୁଷ
ଭୟ ଭ୍ରାନ୍ତି ତୁମ୍ଭେମାନେ ନ କରିବେ ତ୍ରାସ ।
ଏତେବେଳେ ଶ୍ରୀରାମଙ୍କର ବଚନକୁ ପାଇ
ଶତେ ନାଗର ଲଙ୍କା ଗଡ଼କୁ ପଠାଇ ।
ପଚାଶ ଯୂଥପତିଙ୍କି ଡାକିଣ ଶ୍ରୀରାମ
ବୋଇଲେ ଋକ୍ଷ କପିଙ୍କି କହ ଯାଇ ପୁଣ ।
ଲଙ୍କାଗଡ଼େ ଦୁର ଜୁର ନ କରିବେ କେହି
ଶ୍ରୀରାମଙ୍କ ଆଜ୍ଞା ବୋଲି କହ ତୁମ୍ଭେ ଯାଇ ।
ଶୁଣିକରି ସେନା ଯୂଥପତି ଚଳିଗଲେ
ଋକ୍ଷ କର୍କଟ ସଭିଙ୍କୁ ଜଣାଇ କହିଲେ ।
କେହି ଲଙ୍କାଗଡ଼ର ଯେ ସୀମାକୁ ନ ଯିବ
ଶ୍ରୀରାମଙ୍କ ଆଜ୍ଞା ଦେଲ ସୁବଳସ୍ଥା ଯିବ ।
ଏତେକହି ସେନାପତି ଲେଉଟି ଅଇଲେ
ଭରତ ଶତ୍ରୁଘନଙ୍କୁ ଡାକି ରାମ କଲେ ।
ଲକ୍ଷେ ରାଜା ସୈନ୍ୟବଳ ଅଛନ୍ତି ଯେତେକ
ସମସ୍ତେ ଘେନିଣ ତୁମ୍ଭେ ଚଳରେ ତୁରିତ ।
ରାଜାମାନଙ୍କର ମିତ ସଂଯୋଗ କରାଅ
ସ୍ନାନ ଶଉଚ ସାରିଣ ସଖା ତୁମ୍ଭେ ଦିଅ ।
ବିଭୀଷଣ ବୋଧକରି ଯାଉଅଛୁ ଆମ୍ଭେ
ସେ କଥାମାନଙ୍କୁ ଯାଇ ବେଗକରି ତୁମ୍ଭେ ।
ଆଜ୍ଞା ପାଇ ଭରତ ଶତ୍ରୁଘନ ଚଳିଗଲେ
ଯାଇଣ ରାଜାମାନଙ୍କୁ ବଚନ କହିଲେ ।
ସ୍ନାନ ଶଉଚ ବିଧି ସାରିବା ହେ ତୁଲ
ଦୁଇଦିନ ଏକରାତ୍ର ଆହାର ନାହିଁ ଭଲ ।
ରାଜାମାନେ ବୋଇଲେ ପିତା ହେ ତୁମ୍ଭେ ରହ
ରାବଣର ରାଣୀହଂସ ଦେଖିବାରେ ସ୍ନେହ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଲଙ୍କାଗଡ଼ ମଧ୍ୟକୁ ଗଲେ ବେଗେ ଚଳି ।
ଏହି ସମସ୍ତେ ଦେଖିଲେ ମନ୍ଦୋଦରୀ ରାଣୀ
ସଙ୍ଗରେ ତାର ଅଛନ୍ତି ଅନେକ ତରୁଣୀ ।
ସ୍ତୁତି ଜଣାଇଲ ତାଙ୍କର ଆଗେ ପୁଣ
ରାମ ବାଣେ ତୁମ୍ଭ ସ୍ୱାମୀ ପଡ଼ିଲେ ଗୋ ଜାଣ
ଶତେ ଏକବାର ସ୍ୱାମୀର କାଟିଲେ ସେ ମୁଣ୍ଡ
ଲଙ୍କାର ନୃପତି ତେବେ ନୋହିଲେ ବିଖଣ୍ଡ ।

ବ୍ରହ୍ମଶର ଯେଉଣ ଯୋଡ଼ିଲେ ଯହୁଁ ବୁକୁ
ଧନୁଶର ଛାଡ଼ି ସ୍ୱାମୀ ପଡ଼ିଲେ ତଳକୁ ।
ରଥରୁ ପଡ଼ିଲେ ଯହୁଁ ପ୍ରାଣ ଛାଡ଼ିଗଲା
କୋଳକରି ବିଭୀଷଣ ବହୁ ଶୋକ କଲା ।
ଚାରମୁଖୁଁ ଶୁଣିଲି ଯେ ସ୍ୱାମୀର ନିଧନ
ସୈନ୍ୟ କହିଲେ ମଲେ ଲଙ୍କାର ରାଜନ ।
ଶୁଣିଣ ଆଉତ ସର୍ବେ ଲଙ୍କାପୁର ଜନ
ବୋଇଲେ ଏବେ କିସ କରିବା ଆମ୍ଭେ ପୁଣ
ପଳାଇ ମନ କଲେ ଘରଦ୍ୱାର ଛାଡ଼ି
ବୋଇଲେ ଏକ୍ଷଣି ପଡ଼ିବେ କପି ମାଡ଼ି ।
ଶୁଣିକରି ବୃଦ୍ଧମାନେ କହିଲେ ପୁଣ ଯାଇ
ନ ପଳାଅ କେହି ତୁମ୍ଭେ କିଛି ଭୟ ନାହିଁ ।
ରାବଣ ପଡ଼ିବାରେ ବିଭୀଷଣ କାନ୍ଦଇ
ବସ୍ତ୍ର ନ ସମ୍ଭାଳଣ ସେ କେଶକୁ ନ ବାନ୍ଧଇ
ଗୁଣ ସୁମରି ପୁଣ ଚେତନ ନ କରଇ
ହାଇ ହାଇ ବୋଲି ସେ ଯେ ଭୂମିରେ ଲୋଟଇ
ରାମଚନ୍ଦ୍ର ଚାରିଭାଇ ସୁଗ୍ରୀବ ହନୁମନ୍ତ
ଅନେକ ଭିଆରି ଯେ କହୁଛନ୍ତି ଜାମ୍ବବନ୍ତ ।
ଅଙ୍ଗଦର ମୂଳେ ଯେ ସେନା ଯୂଥପତି
ଯୂଥପତି ବେଢ଼ିଣ ବିଭୀଷଣକୁ କହନ୍ତି ।
ଶୋକ ସମ୍ଭାଳ ପୁଣ ଦଶାନନ ଭାଇ
ଜଗତରେ ଜରଗର କାହାକୁ ନ କହି ।
ମୋହର ମନକୁ ଗୋ ଏସନ କଥା ଗଲା
ବିଭୀଷଣ ବଚନକୁ ରାବଣ ନ କଲା ।
ଏବେତ ତାର କ୍ରୋଧରୁ କହିଲେ ନ ସରି
ରାବଣରୁ ଅଧିକ ପାଳିବ ଲଙ୍କାପୁରୀ ।
ଶୁଣିକରି ନଗ୍ରଲୋକ ମନ ସ୍ଥିର କଲେ
ନୁହଇ କି ଏକଥା ବୋଲିଣ ବୋଇଲେ ।
ଶ୍ରୀରାମ ବିଭୀଷଣ ମୁଣ୍ଡେ ବାନ୍ଧିଅଛି ପାଟ
ରାବଣକୁ ମାରି ମୁଁ ଦେବି ଲଙ୍କା ରାଷ୍ଟ୍ର ।
ସେହି କଥା ଆନହେ ନୁହେ କବ ଚିତେ
ସତ୍ୟଶୀଳ ପୁରୁଷ ସେ ଦଶରଥ ସୁତେ ।
ତା ଘରଣୀ ଆଣିବାରୁ ସେହୁ ଏଡ଼ାକଲା
ଏଥିରେ କେତେବେଳେ ସେ ଆସିଣ ନ ମାଗିଲା
ଅଙ୍ଗଦ ହନୁମନ୍ତ ଅଇଲେ ଦୁଇଥର
ଏକାବେଳେ ଦୁଇଥର ମାଗିଛି ଉଦ୍ଧାର ।
ଏକାରଣେ ଦୋଷ କଲେ ପାପପୁଣ୍ୟ ପାଇ
ଶ୍ରୀରାମର ଏଥିରେ କିଛିହିଁ ଦୋଷ ନାହିଁ ।
ଏମନ୍ତକ ବୋଲି ବସୁରନ୍ତି ନଗ୍ରଲୋକେ
ଆଉ ବିପତ୍ତିରେ ଜାଣିବା ବୋଲୁଛନ୍ତି ଥୋକେ
ପୁତ୍ର ଦାର ଧନ ଯେ ଯାହା ଥାନେ ପୂର
ଟୋକାଟକରେ ଅଛନ୍ତି ଯେ ଯାହା ଥାନେ ପୂର
ବାରତା ଜାଣିବା ଯାଏ ସ୍ଥିର ହୁଏ ମନ
ସ୍ୱଳ ଆମ୍ଭେ ଜଙ୍ଗଲରେ ଲୁଚିବା ବୋଲନ୍ତି ।
କେ ବୋଲନ୍ତି ଶ୍ରୀରାମଙ୍କୁ ବଳସ୍ତ ନୁହେ ଗାଢ଼
ସମୁଦ୍ରରେ ବନ୍ଧ ବାନ୍ଧି ଧ୍ୱଂସିଲା ଏତେ ଗଡ଼
`କ ବୋଲନ୍ତି ଭାଇ ତାର ଅଟନ୍ତି ଲକ୍ଷ୍ମଣ
ସିନ୍ଧୁ ତେଢ଼ିଁ ମହୀରାବଣ ମାରିଲା ଯେ ପୁଣ ।
ଇନ୍ଦ୍ରଜିତକୁ ମାରି ସେ ଅନେକ ଯୁଦ୍ଧ କଲା
ଦୈତ୍ୟବଳ ତାର ଆଗେ କେହି ନ ରହିଲା
ସବା ସାନଭାଇ ଯେ ଅଟେ ଶତ୍ରୁଘନ
ଶତେମୁଖା ରାବଣକୁ ମାରିଲା ସେହୁ ପୁଣ ।
ଅଗ୍ନିନଗ୍ର ଭିତରେ ପଶିଣ ଯୁଦ୍ଧ କଲା
ସମୁଦ୍ର ଭିତରେ ବୁଡ଼ି ତା ସଙ୍ଗେ ଯୁଦ୍ଧ କଲା
ଗର୍ଜନ ନାଦରେ ଯେ ମେରୁଗିରି ଝଡ଼େ
ସ୍ୱର୍ଗକୁ ଛେଡ଼ି ଦେଲା ଶୂନ୍ୟ ଯେ ଶରରେ ।
ଶରର ବାଡ଼ ଭିତରେ ମାଇଲା ବକୋଣ୍ଡ
ଶତେମୁଖା ରାବଣର ପକାଏ ଅଣ୍ଟା କାଟି ।
ଆଉ ଭାଇ ଅଟଇ ଭରତ ନାମେ ଜାଣ
ଲକ୍ଷେ ରାଜାଙ୍କୁ ସାଧିଣ ଆସିଲା ଏଥେ ପୁଣ
ବାଟରେ ଶତାକ୍ଷୀବଳକୁ ଜିଣିଲା ସେହୁ ଭଲେ
କୋଡ଼ିଏ ଭୁଜ ରାବଣର ଭାଙ୍ଗିଲା ବାଟୂଳରେ
ଚାରିଭାଇଙ୍କ ଚାରିଭାଇ ଅଟନ୍ତି ଧନୁର୍ଦ୍ଧାରୀ
ଶ୍ରୀରାମର ବଚନକୁ ସମସ୍ତେ ଭୟ କରି ।
ପାତ୍ରବାହୁ କୁମରତ ଶରଣ ପଶିଲା
ସୁଲଙ୍କାର ଲକ୍ଷ୍ମଣ ତା ମୁଣ୍ଡେ ଶାଢ଼ୀ ଦେଲା ।
କୁମ୍ଭକର୍ଣ୍ଣ ପୁତ୍ର ଯେ ସୁକର୍ଣ୍ଣ ଗୋଟି ଥିଲା
ଶରଣ ପଶନ୍ତେ ଅଲଙ୍କାଗଡ଼ ଛଟି ଦେଲା ।
ବିଭୀଷଣ ଶରଣ ପଶି ନେଲା ଲଙ୍କାଗଡ଼
ଦଶଗ୍ରୀବ ମରିବାରୁ ଆମ୍ଭଙ୍କୁ ଝଗଡ଼ ।
ଏମନ୍ତ ବିଚାର ଯେ କରନ୍ତି ସମସ୍ତେ
ବିଭୀଷଣ ନ ଥିଲେ ତ ମରନ୍ତୁ ଆମ୍ଭେ ଏଥେ

ଏହି ସମୟରେ ଶୁଭେ ଶବଦେକ
ନାଗରା ବାଜୁଅଛି ଦାଣ୍ଡରେ ଦେଇ ଡାକ ।
ରଥିଏ ସୈନ୍ୟବଳ ପରଜା ସଙ୍ଗେ ଶୁଣ
ବିଭୀଷଣ ନୃପତି ଆଜ୍ଞାଦେଲେ ପୁଣ ।
ନିଷ୍ଟିତଂରେ ରହିବ ନ କରିବ ଯେ ଭୟେ
ଶ୍ରୀରାମ ଦସ୍ୟାଙ୍କୁ ଯେ ଦୋଷ କଲେ କ୍ଷୟେ ।
ଦୁର୍ଜନ କଥାମାନ ହେ ମନରେ ନ ଧରିବ
ଶାନ୍ତଶୀଳ ହୋଇଣ ଯେ ଯାହା ପୁରେଥିବ ।
ଏତେ ବୋଲି ଧେଣ୍ଡୁରା ଦିଆଏ ଦେଶାଉତ
ସମସ୍ତେ ତୋଷହେଲେ ଶୁଣି ତା ଉତ୍ତର ।
କେ ବୋଲେ ଆମ୍ଭେମାନେ କ ନକଲୁଁ ତାକୁ
ମାରିତ ପକାଇଲା ତା କୋପେ ଯାହାକୁ ।
ଆମ୍ଭେ ପଳାଇଲେ ସେ ଗୋଡ଼ାନ୍ତା କାହିଁପାଇଁ
ଆମ୍ଭେ ତୋହଠାରେ କେବେ ଦୋଷକଲୁନାହିଁ
ଆମ୍ଭର ରାଜା ରାବଣ ତାହାର ବୋଲେଥାଉ
ଯେ ଯହିଁକି ପେଷଇ ଆମ୍ଭେ ତହିଁକି ଯାଉ ।
ଆମ୍ଭର ଇଚ୍ଛାରେ କି ଆମ୍ଭେ ଯୁଦ୍ଧ କରୁକନା
ସେବାକାରୀ ଲୋକ ଆମ୍ଭେ ସଭିଙ୍କର ସିନା ।
ଏସନକ ବୋଲି ଲୋକେ କରନ୍ତି ବିଚାର
ମନ୍ଦୋଦରୀ ରାଣୀ ଯେ ପଶିଲା ପୁଣ ଘର ।
ଉକାହକା କରଇ ନଗ୍ରଜନେ ବୋଧ
ରାବଣେଶ୍ୱର ହୋଇଲା ଏବେ ପ୍ରାଣେ ବଧ
ତାର ଭାଇ ବିଭୀଷଣ ରାଜା ଯେ ହୋଇଅଛି
ବିମାସପଟେହେଲାଅଭିଷେକ କଲେଶିରଘୁବୀ
ଅବଶ୍ୟ ଏ ପୁରେ ସେ ହେବ ମହୀପାଳ
ସତ୍ୟକରି ଗାଡ଼ିବାନ୍ଧି ଅଛନ୍ତି ରଘୁବାଳ ।
ଏବେହେଁ ତୁମ୍ଭେ କେହି ନକର ଚିନ୍ତା ପୁଣ
ମୁହିଁ ବୋଧିବ ଯାଉ ଜାନକୀ ପତି ଜାଣ ।
ନେଇ ତା ଘରଣୀକି ନ କଙ୍କୁ ଆମ ଦେଶ
ନ ରହନ୍ତୁ କ୍ଷଣେ ଏଥିରେ ଆମ୍ଭର ଅଛି କସ
ଏସନକ କୋଳିଣ ଚୁଭ ପେଶେ ରାଣୀ
ଶୁଣିଣ ସନ୍ତୋଷ ହୋଇଲେ ଲଙ୍କାଜନ ପୁଣି
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହୋ ଈଶାନ
ରାମଚନ୍ଦ୍ର ବୋଲେ ବିଭୀଷଣ ପୁଣ ।
ଦେଶାଉର ଚଢ଼ିଆଇ ଘୋଷଣା ପୁଣ ଦେଲା
ଚଉଷଠି ଦାଣ୍ଡ କଢ଼ ବକଢ଼ କହିଲା ।

ତେବେ ତୋଷହେଲେ ଯେ ଲଙ୍କାର ନରନାରୀ
ମନ୍ଦୋଦରୀ ଘର କମ୍ପା ପେଶେ ସେତୁ ପୁରୀ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ମନ୍ଦୋଦରୀ ରାଣୀପୁଣ ଜାଣିଣ ସେ ଗତି ।
ଯେଉଁଦିନ ରାବଣ ସୀତାଙ୍କୁ ଆଣିଲା
ମନ୍ଦୋଦରୀ ମନା ଦଶଶିର ନ ମାନିଲା ।
ସେତେବେଳେ ମନ୍ଦୋଦରୀ ମନରେ ପାଞ୍ଚିଲା
ରାବଣକୁ କାଳ ଆସି ପ୍ରବେଶ ହୋଇଲା ।
ନାରଦଙ୍କୁ ସୁମରଣା କଲାକ ମନରେ
ପ୍ରବେଶ ହୋଇଲେ ଯାଇ ବ୍ରହ୍ମାଙ୍କ କୁମର
ଦଶଗ୍ରୀବ କରିବାର ନାରଦ କହିଲେ
ବିଭୀଷଣ ସଙ୍ଗେ ପ୍ରୀତି କରଗୋ ବୋଇଲେ ।
ସେ ତୁମ୍ଭର ପ୍ରାଣନାଥ ହୋଇବେ ସୁନ୍ଦରୀ
ସତ୍ତ୍ୱରେ ରଣିତା ତୋତେ କରିବେ ରୂପଧାରୀ
ନାରଦଙ୍କ ବଚନରେ ମନ୍ଦୋଦରୀ ପୁଣ
ଦିଅର ସାଙ୍ଗରେ ପ୍ରୀତି କଲାକ ତୁମ୍ଭେ ଜାଣ
ସେଥିର ସକାଶେ ମନ୍ଦୋଦରୀ ଘର ଭେଦ
ନଗ୍ର ନରନାରୀଙ୍କି ଯେ କହିଲା ପ୍ରବୋଧ ।
ଦୁଇକୁଳ କଥାରେ ଯେ ପ୍ରଜାମାନେ ପୁଣ
ଆନନ୍ଦହୋଇ ରହିଲେ ତେଜିଣ ଦୁଃଖମାନ
ପାର୍ବତୀ ବୋଇଲେ ଏଥି ଉତ୍ତରୁ ହେଲା କସ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ସେହିଦିସ
ବିଶ୍ବଶଲେ ମହାଦେଈ କହିଲେ ଯେ ପୁଣ
ବିଭୀଷଣ କହିବାର ହୋଇଲା ସମାନ ।
ତାଙ୍କବୋଲେ ଏପୁରୁ ନଯିବ ଆମ୍ଭେ କେହି
ଅତି ଅସମ୍ଭାଳ ହେଲା ସିନା ଯେ ପଳାଇ ।
ଲେଉଟି ବାରତା ଆମେ ପାଇବା ଯାଏ ଥିବା
ଏମନ୍ତ ବିଚାରିଲେ ଅସୁରଙ୍କର ବାମା ।
ଦାଣ୍ଡର ଭିତରୁ ଲୋକେ ବାହାର ହୋଇଲେ
ଯେ ଯାହା ମନ୍ଦିରେ ପ୍ରବେଶ ହୋଇଲେ
ରାବଣ ନଗରେ କୋଳାହଳ ଶବଦ ଶୁଣି
ସକଳ ରାଣୀହଂସ ରୋଦନ କରେ ଜାଣି
ମନ୍ଦୋଦରୀବୋଇଲେ ଗୋ ସମସ୍ତେ ଚଳିଯିବା
ସ୍ୱାମୀ ପଡ଼ିଛନ୍ତି ତାଙ୍କୁ ନୟନେ ଦେଖିବା ।
ମୋହର ବୋଲକୁ ସେ ନକଲେ କାଳେପୁଣ
ନୟନରେ ମୁଁ ଦେଖିବି ସ୍ୱାମୀଙ୍କ ବଦନ ।

ମନ୍ଦୋଦରୀ ବଚନେ କହନ୍ତି ଇନ୍ଦୁମୁଖୀ
ସ୍ୱାମୀଙ୍କ ଆମ୍ଭେ ପୁଣ ନ ପାଆଇବା ସେଥି ।
ଜୀଇବାରୁ ମରଣ ବଡ଼ ସୁଖ ପୁଣ
କି ରୂପେ ଆମ୍ଭେ ଯିବା କରଗୋ ବିଚରଣ
ଲକ୍ଷେ ରାଜା ସେଠାରେ ଅଛନ୍ତି ଅପାର
ସୈନ୍ୟବଳ ରିକ୍ଷ କପି ଅଛନ୍ତି ସେଠାର ।
ଶ୍ରୀରାମ ଯେ ଦୁଇଭାଇ ସୁଗ୍ରୀବ ବିଭୀଷଣ
ସେନାପତି ଯୂଥପତି ଅଛନ୍ତି ଯେ ପୁଣ ।
ଆମ୍ଭେ ଯେବେ ସେଠାକୁ ଯିବା ଗୋ ପଳାଇ
ନୃପତି ଏ ବିଚାରିବେ ଅସୁରୀ ସିନା ଏହି ।
ଏହାଙ୍କର ମହତ୍ତ୍ୱ ଆଦର କିଛି ନାହିଁ
ରଣ ଭୂମିରେ ରୋଦନ କରନ୍ତି ଆସି ରହି ।
ଏହା ଶୁଣି ଝିଅରଙ୍କ ମୁଖ ଜଳଯିବ
ଆମ୍ଭଠାରେ ଝିଅରର ସୁଖ ନ ରହିବ ।
ତାଙ୍କଠାରୁ ଶୁଣିଲେ ଯେ ଆମ୍ଭେ ଯିବା ଜାଣ
ଚର ଦ୍ୱାରା ତାଙ୍କୁ ବେଗେ ଡକାଇଣ ଆଣ ।
ଚରକୁ ବୋଇଲେ ଯାଅ ବିଭୀଷଣ ପାଶ
ତାହା ଶୁଣି ମନ୍ଦୋଦରୀ ମନ ତୋଷ ।
ବୋଲଇ ତୁମ୍ଭ ରାଜନ ତୁମ୍ଭଙ୍କୁ ଡାକୁଛନ୍ତି
ନଗଲେ ତାଙ୍କର ଜୀବନ ହାରିବେ ଏ ଭ୍ରାନ୍ତି
ମନ୍ଦୋଦରୀ ଠାରୁ ଶୁଣି ଚର ଚଳିଗଲା
ବିଭୀଷଣ ପାଖେ ଯାଇ ପ୍ରବେଶ ହୋଇଲା ।
କରଯୋଡ଼ି ଆଗେ ଉଭା ହେଲାକ ଯାଇ ପୁଣ
ବୋଇଲା ହେ ଲଙ୍କେଶ୍ୱର ଶୁଣ ମୋ ବଚନ
ମନ୍ଦୋଦରୀ ରାଣୀ ଯେ ଅଟନ୍ତି ପାଟେଶ୍ୱରୀ
ସେ ମୋତେ ପେଷିଛନ୍ତି ପାଶର ତୁମ୍ଭର
ସେ ବୋଇଲେ ନୃପତିକି ଘେନିଆସ ବେଗେ
ନୃପତି ନ ଆସିଲେ ପଶିବି ଜଳ ମଧ୍ୟେ ।
ତୁମ୍ଭଙ୍କୁ ଦେଖିଲେ ତାଙ୍କ ମନ ହେବ ସ୍ଥିର
ନଗରେ ମରିବେ ନଷ୍ଟେ ରାଣୀ ହଂସ ତୋର
ତାହା ଶୁଣି ବିଭୀଷଣ ଶ୍ରୀରାମଙ୍କୁ କହି
ରାଣୀ ହଂସମାନେ ମୋତେ ନେଉଛନ୍ତି ଗୋସାଇଁ
ଶ୍ରୀରାମ ବୋଇଲେ ତୁମ୍ଭେ ବେଗେ ଚଳିଯାଅ
ରାଣୀ ହଂସ ବୋଲିବେ ସୀତାକାର ଝିଅ ।
ବିଶ୍ୱାସ ପାଇଲେ ଯିବ ହୋ ତାଙ୍କ ପାଶକୁ
ଧନୁଶର ହାତେ ଧରି ଥିବଟି ଜାଗ୍ରତକୁ ।

ସୁକଣ୍ଠ ସୁବାହୁକୁ ସଙ୍ଗରେ ତୁମ୍ଭେ ନିଅ
ତୁମ୍ଭ ସଙ୍ଗେ ଧନୁ ଧରିଥିବେ ଦୁଇ ପୁଅ ।
ପୁଷ୍ପକ ଯାନରେ ତୁମ୍ଭେ ଚଢ଼ି କରି ଯିବ
ରାଣୀ ହଂସ ଆସିଲେ ତୁମ୍ଭେ ସେ ରଥରେ ଆଣିବ
ତାଙ୍କର ସ୍ୱାମୀଙ୍କ ସେ ଦେଖିବେ ଅବା ପୁଣ
ସ୍ୱାମୀର ମରଣ ଦେଖି ସ୍ୱତେ ଯିବେ ଜାଣ
ଏହା ଶୁଣି ବିଭୀଷଣ ବେଗେ ଚଳିଗଲେ
ସୁବାହୁ ସୁକଣ୍ଠ ସଙ୍ଗତରେ ନେଲେ ।
ପୁଷ୍ପକ ଯାନରେ ଚଢ଼ିଲେ ଯାଇ ପୁଣ
ଶୁକ ସାରଣ ବେନିମନ୍ତ୍ରୀ ବାହିଲେ ବେଗେ ଯାନ
ଉତ୍ତର ଦ୍ୱାର ବାଟେ କଲେକ ଗମନ
ଲଙ୍କାର ସିଂହଦ୍ୱାରରେ ମିଳିଲେ ଯାଇ ପୁଣ ।
ଲଙ୍କା ନାରୀ ଦେଖିଲେ ବିଭୀଷଣ ପୁଣି
ଦଶଗ୍ରୀବ ଅଇଲା ତାକୁ ପ୍ରାୟ ମଣି ।
ବିଚାରିଲେ ମନରେ ଅଇଲେ ଲଙ୍କମଲ
ସ୍ୱଜନ ମାନଙ୍କ ମନ କରିବେ ଶୀତଳ ।
ରାଣୀ ହଂସ ବୋଧିବାକୁ ମନରେ ହେଲା ଦୟା ।
ଲଙ୍କାଗଡ଼ଲୋକଙ୍କଠାରେ ନାହିଁ ଯେ ତାଙ୍କ ମାୟା ।
ଏମନ୍ତେ କୁହାକୁହି ହୁଅନ୍ତି ନରନାରୀ
ରଥରୁ ବିଭୀଷଣ ଉଆସକୁ ଚଳି ।
ଭିତରେ ରାଜା ଯାଇଣ ହେଲେ ପରବେଶ
ରାଣୀମାନେ ଦେଖିଲେ ଯେ ରୋଦନ କଲେ ଉଚ୍ଚ
ମନ୍ଦୋଦରୀ ଉଠିଣ ଯେ ଓଳଗେ ଚରଣେ
ଚେତନା ହରାଇ ପଡ଼ିଲା ତତକ୍ଷଣେ ।
ବିଭୀଷଣ ଦେଖି ତାଙ୍କୁ ତୋଳିଣ ଧଇଲେ
ସଚେତ ହୁଅ ଗୋ ସଖୀ ବୋଲିଣ ବୋଇଲେ
ଅଭ୍ୟାନ୍ତରେ ମନେ ନ ଧର ଆଗୋ ସତୀ
ବିକଳ ହେଲେକ ଆଉ ଜୀଇବେ ତୋର ପତି
ତୁମ୍ଭ ବୋଲ ନକଲା ଯେ ମୋ ବୋଲ ନକଲା
ବେଦ ବ୍ରହ୍ମା କହିବାରୁ କେବେହେଁ ନ ମାନିଲା
କର୍ମର ଲେଖନ ଯେ ବିଧାତା ଦେଲେ ଦେଖି
ଜାହାର ବୋଲେ ନମାନେ ପ୍ରତାପୀ ବଂଶଆଖି
ବୋଲ ମୋ ନ କରି ଏବେ ରଣ କରି ମଲା
ସମସ୍ତଙ୍କ ବସ୍ତା ଧର୍ମ ତା ଠାରୁ ଛାଡ଼ିଗଲା ।
ଯେତେବେଳେ ଯାହାକୁ ଦଇବ ବାମ ହୋଇ
ତାହାର ବୁଦ୍ଧି ଆଉ ଯେ କେବେ ନଷ୍ଟ ହୋଇ

ଦେଖ ମୁଁ ଶରଣ ପଶି ରହିଛୁ ଜୀବନ
ଲଙ୍କାଗଡ଼ରେ ଥିଲେ ମରିଥାନ୍ତେ ପୁଣ ।
ପରମବ୍ରହ୍ମ ମୂରତି ଅଟନ୍ତି ଶ୍ରୀରାମ
ଦର୍ଶନ କଲେ ପାପ କ୍ଷୟ ହୁଏ ଜାଣ ।
ତାହାଙ୍କ ଦର୍ଶନ କରି ନଯାଇ ମୁଁ କେଣେ
ତୁମ୍ଭେ ଡକାଇବାରୁ ଅଇଲି ମୁଁ ଏଣେ ।
କିସପାଇଁ ଡକାଇଲ କହ କନା ମୋତେ
ମନର ଉଦବେଗ ହେ ହେଉଣ ଅଛି ଚିତ୍ତ ।
ଏହାଶୁଣି ମନ୍ଦୋଦରୀ କହେ ଯେ ବଚନ
କଥାଏ ପଚାରିବି ମୁଁ କହ ବିବରଣ ।
ଶ୍ରୀରାମ ସଙ୍ଗରେ ମୋ ସ୍ୱାମୀ ଯୁଦ୍ଧକଲେ
ଆମ୍ଭମାନଙ୍କୁ ତୁମ୍ଭ ନେକରେ ବାନ୍ଧିଦେଲେ ।
ତୁମ୍ଭେ ଆମ୍ଭର ପ୍ରଭୁ ଆମ୍ଭେ ତୁମ୍ଭର ଦାସୀ
ସ୍ୱାମୀଙ୍କ ବଚନ ଆମ୍ଭେ ଆସିବୁଁ କ ଦେଖି ।
ତୁମ୍ଭ ତୁଣ୍ଡରୁ ଶୁଣିଲେ ଆମ୍ଭେ ଯିବୁଁ ରଣଭୂମି
ଲକ୍ଷେ ରଜା ଅଛନ୍ତି ଶ୍ରୀରାମ ସଙ୍ଗେ ପୁଣି ।
କେଉଁ ରୂପେ ଯିବୁଁ ଆମ୍ଭେ ଦେଖିବୁ ପାଇକର
ବିହିତ ପ୍ରକାରେ ଆମ୍ଭଙ୍କୁ ନଅ ବୋଧ କର ।
ଶୁଣିକରି ବିଭୀଷଣ ବୋଇଲେ ବଚନ
ପୁଷ୍ପକ ବିମାନରେ ସମସ୍ତେ ବସ ପୁଣ ।
ଟେରବାଡ଼ ଘୁରପାଖ କରିଣ ସ୍ୱାମୀ ଦେଖ
ସଙ୍କୋଚ ଭାବେ ରହିଲେ ପଛନ୍ତେ ବଡ଼ ସୁଖ
ନାରାୟଣ ମୂର୍ତ୍ତି ଯେ ଶ୍ରୀରାମ ଅଟେ ଜାଣ
ଦର୍ଶନ କରି ପାପ କର ହେ ଖଣ୍ଡନ ।
ସେ ଯାହା ଆଜ୍ଞା ଦେବେ ନିଶ୍ଚୟ ସେ କଥା
ଶୁଣିଣ ମନ୍ଦୋଦରୀ ମନରୁ ଗୁଚେ ଚିନ୍ତା ।
ସବୁ ସପତଣୀ ଘେନ ରଥରେ ବସିଲ
କର୍ଣ୍ଣାଟ ଗଡ଼କୁ ସେ ସଙ୍ଗତରେ ନେଲ ।
ଉତ୍ତର ଦ୍ୱାର କାଟରେ ହୋଇଲେ ବାହାର
ସୁଘାନ୍ତୁ ସୁକଣ୍ଠ ଯେ ବିଭୀଷଣ ସାର ।
ତିନଜଣ ସାଙ୍ଗ ହୋଇ ବନ୍ଦୀଘରକୁ ଗଲେ
ଶତେପୁତ୍ର ଶତେ ଭାରିଯା ବନ୍ଦୀରୁ ଫେଡ଼ିଲେ
ନିଜ ମନ୍ଦିରେ ନେଇଣ ରଖିଲେ ଯେ ତାଙ୍କୁ
ଶତେକ ଯୁବତୀ ଆସ ଓଳଗେ କାନ୍ତକୁ ।
ଦଶକୋଟି ପୁତ୍ର ପୁଣ ପଡ଼ିଲେ ଚରଣେ
ଦୁହିଁର ନାତି ଓଳଗିଲେ ଜନନୀ ଚରଣେ ।

ନିଶ୍ଚିନ୍ତ କରି ତାହାଙ୍କୁ ବିଭୀଷଣ ଗଲ
ନାତି ପୁତୁରକୁ ନେଇ ରଥରେ ବସିଲ ।
ଦେବଦଳନ ରଥ ଯେ ଚଳଇ ତୁରିତ
ଶ୍ରୀରାମ ପାଶେ ଯାଇ ପ୍ରବେଶ ହେଲେ ସତ ।
ଏଥୁ ଅନନ୍ତରେ ଶୁଣ ହୋ ଶାକମ୍ଭରୀ
ପୁଷ୍ପକ ଯାନରେ ଚଢ଼ି ରାବଣର ନାରୀ ।
ଧୀରେ ଧୀରେ ସେ ଗମନ କରେ ପୁଣ
ତିନକୋଟି ପଚିଶ ସହସ୍ର ରାଣୀଗଣ ।
ରଥପରେ ରୋଦନ କରିଣ ଚଳଯାନ୍ତି
ଲଙ୍କାର ନରନାରୀ ହାହାକାର କରନ୍ତି ।
ଋକ୍ଷ କପିଦଳ ଯେ ଲେଉଟି ଚାହିଁଲେ
ରଥପରେ କେଉଁମାନେ ଯାଆନ୍ତି ବୋଇଲେ
କେ ବୋଲଇ ରାବଣର ରାଣୀହଂସ ମାନ
ସ୍ୱାମୀ ମରିବାର ଶୁଣି କରନ୍ତି ରୋଦନ ।
ବିଭୀଷଣକୁ ଡକାଇ ନବରକୁ ନେଲେ
ବିଚାର କରିଣ ରଣ ଭୂମିକି ଆସିଲେ ।
ବିଭୀଷଣ ଯିବାରୁ ଅଇଲେ ସର୍ବନାଶ
ତେଣୁ ସେମାନେ ଏବେ ଆସନ୍ତି ଶୋକ କରି
ଏନନକ ବିଚାରୁ ଅଇଲେ ନାରୀଗଣ
ଦେଖିଲେ ତଳରେ ପଡ଼ିଅଛି ଯେ ରାବଣ ।
ଲୋକଙ୍କୁ ବୋଇଲେ ବେଗେ ଟେରବାଡ଼ କର
ଶୁଣିକରି ଭୃତମାନ ଗଲେ ଯେ ଯାହାର ।
ଟେରବାଡ଼ ସରିବାରୁ ସକଳ ରାଣୀହଂସ
ରଥର ଉପରୁ ସର୍ବେ ଓହ୍ଲାଇ ବିରସ ।
ଆହା ସ୍ୱାମୀ ବୋଲିଣ ଧାଇଁଣ କୋଳକଲେ
ଟେରବାଡ଼ ଆରପାଖେ ରଘୁନାଥ ଯେ ରହିଲେ
ବିଭୀଷଣ ସହିତରେ ସୁଗ୍ରୀବର ଘେନ
ଆଉର ଜାମ୍ବୁବ ଯେ ସେନାପତି ପୁଣି ।
ଅଙ୍ଗଦ ଯେ ହନୁମନ୍ତ ଗନ୍ଧ ମାଦନ
ଅଷ୍ଟସେନା ଯୂଥ ପତଙ୍ଗ ଯେ ପୁଣ ।
ମଲ୍ଲ ମହାମଲ୍ଲ ଯେ ଅଯୋଧ୍ୟା ସେନାପତି
ଲକ୍ଷେ ରାଜାଙ୍କର ଦଳ ସହସ୍ରେ ଅଛନ୍ତି ।
ଋକ୍ଷ କପି ଭଲ୍ଲୁକ ଯେ ଦୈତ୍ୟଦଳ ପୁଣ
ରଥପରେ ରାଜାମାନେ ବସିଛନ୍ତି ଜାଣ ।
ଲଙ୍କାର ଉତ୍ତର ଦାଣ୍ଡ ନଘଞ୍ଚନ ହୋଇ
ଶ୍ରୀରାମ ସଙ୍ଗେ ତିନଭାଇ ରହିଛନ୍ତି ରହି ।

ଏଥୁ ଅନନ୍ତରେ ଯେ ରାଣୀ ମହାଦେଈ
ଦଶମାଥର ମୁଣ୍ଡ ନେଇ ତଳରେ ପକାଇ ।
ସ୍ୱାମୀଙ୍କ ବାହୁନ ଯେ ଧୂଳି ସାଉଣ୍ଟନ୍ତି
ଦୁଇକର ଆଣି ସେ ବୁକୁରେ କୋଡ଼ହୋନ୍ତି
ମଣ୍ଡାକୁ ତୋଳିକର ବସାଇଲେ କୋଳେ
ସବୁ ରାଣୀମାନେ ପୁଣି ବେଢନ୍ତି ସକଳେ ।
କେହୁ ତାର କର ଧରି ବୁକୁରେ ଲଗାନ୍ତି
କେଉଁ ରାଣୀମାନେ ପୁଣ ଚରଣ ଧରନ୍ତି ।
ଦେହେଦେହେ ଲଗାଇ କେ ବାହେବାହାଛନ୍ଦ
ଦଶ ମୁଖ ଚୁମ୍ବିଣ କେ ବାଉଳଣ କାନ୍ଦ ।
ମୁକୁଟ କୁଣ୍ଡଳ ଦେଖି କେ ବାଉଳ କାନ୍ଦଇ
ମଲି ମଲି ବୋଲିଣ କେ ଭୂମିରେ ଗଡ଼ଇ ।
କେହୁ କାନ ଚପିଣ ଭୁଣ୍ଡରେ ଦ୍ୟନ୍ତି ହାତ
କହିବେ ବୋଲି ମନେ ବିଚାରି ସମସ୍ତ ।
କେହୁ ରାଣୀ ବୋଇଲେ ସ୍ୱାମୀ ଲୋକପାଳ ସମ
ତୁମ୍ଭର ପ୍ରାଣ କେମନ୍ତେ ହରିନେଲା ଯମ ।
କେ ବୋଲନ୍ତି ଦଶମାଥ ପ୍ରତାପୀ ଲଙ୍କେଶ୍ୱର
କେ ବୋଲନ୍ତି ପ୍ରାଣନାଥ ବଲ୍ଲଭ ଆମ୍ଭର ।
କାନ୍ଦନ୍ତି ସୁନ୍ଦରୀମାନେ ଅନେକ ଗୁଣ ଗୁଣି
ବହୁତ ଶୋକ କରଇ ମନ୍ଦୋଦରୀ ରାଣୀ ।
କୋଳରେ ଧରିଲା ସେ ଛେଡ଼େ ମଣ୍ଡା ଗୋଟା
କପୋଳରେ ଦେଖେ ରାଣୀ ଚନ୍ଦନ ଗନ୍ଧ ଟୋପା
ଆହା ପ୍ରାଣନାଥ ବୋଲି କରଇ ରୋଦନ
ତୁମ୍ଭଙ୍କୁ ପଟାନ୍ତର ହେ ନୁହନ୍ତି କେହି ପୁଣ ।
ପ୍ରାଣନାଥ ମୋର ହେ ଅଟ ଯେ ଲଙ୍କସାଇଁ
ତିନ ଭୁବନ ତୋତେ ଜିଣନ୍ତା କେହି ନାହିଁ
ସଂଗ୍ରାମେ ନର୍କସ୍ଥା ନାମ ତୁମ୍ଭର ଲଙ୍କନାଥ
ମୁଣ୍ଡରେ ଉପରେ ମୁଣ୍ଡ କହ ଦଶମାଥ ।
ଶ୍ରୀରାମ ମାନବ ରୂପ କେମନ୍ତେ ମାଇଲେ
ଏକଥା ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗେ ଇଲେ
ଇନ୍ଦ୍ର ଦେବତାରୁ ନାଥ ଅଟ ବଡ ସୁଖି
ଏବେକେଁ ପ୍ରାଣନାଥ ହେଲୁ ବଡ ଦୁଃଖୀ ।
ଅମର ବର ତୋତେ ଦେଲେ ପିତାମହ
ସେ କଥାକୁ ହରାଇଲ ବଜ୍ରଧାର ପୁଅ ।
ଇନ୍ଦ୍ରଜିତ କୁମର ବଳରେ ବଳବନ୍ତା
ଦେବତାଙ୍କୁ ବଡ ହେଲେ ଦଶରଥ ସୁତା ।
ମାୟାରେ ସେ ଧନୁଶର ଧରିଥାନ୍ତା ହାତ
କୋପରେ ଏବେ ସେ ମାଇଲେ ମୋରନାଥ
ମନୁଷ୍ୟ ରୂପ ମୂର୍ତ୍ତିତ ନଦେଖେ ତାଙ୍କର
କମ୍ପାଇଁ ସ୍ୱାମୀ ତାଙ୍କର ବୈଭ କଲ ନାଶ ।
ଅନେକ ପ୍ରକାରେ ନାଥ ତଥାରେ ତୁମ୍ଭଙ୍କୁ
ମୋର କଥା ନ ଆସିଲା ତୁମ୍ଭର ମନକୁ ।
ପାତ୍ରମନ୍ତ୍ରୀ ଅମାତ୍ୟ ପୀରତି ବନ୍ଧୁଜନ
ମୂର୍ଖପଣେ କାହାରି ହେ ନକଲ ବଚନ ।
ଅହଙ୍କାର କରିଣ ଆପଣେ ପ୍ରାଣ ଦେଲ
ଏତେକ ସମ୍ପଦ ନାଥ ହେଳେ ହରାଇଲ ।
ଅନାଥ କରିଣ ଛାଡ଼ିଗଲୁ ଯେ ଆମ୍ଭଙ୍କୁ
ଜଗତେ ବୋଲନ୍ତି ତୋତେ ମନ୍ଦୋଦରୀ କାନ୍ତ
ସେକଥା ବିଫଳ ଏବେ କଲ ମୋର ନାହା
ଧନ୍ୟ ଧନ୍ୟ ସ୍ୱାମୀହେ ଆଜାନୁ ବଂଶବାହା ।
ପଲଙ୍କ ସୁପାଣ୍ଡ ଛାଡ଼ି ଭୂମିରେ ପଡ଼ିଲ
ଅକାରଣ କଥାରେ ଅନମିତରେ ମଲ ।
ଚନ୍ଦନ ଚନ୍ଦ୍ରମା ଛାଡ଼ି ରକତେ ବିଲେପନ
ବିଭୂଷଣ ଅବସ୍ଥା ଏବେ ପାଇଲୁ ଦଶାନନ ।
ଦେବଙ୍କୁ ଖଟାଇଲୁ ସିଂହାସନ ତଳେ
ଏବେ ତ ପଡ଼ିଛ ନାଥ ଋକ୍ଷ କପି ମେଳେ ।
ପୂର୍ବନାଶ ଯେଣୁ ନାଥ ଯମପୁର ଗଲ
ବଧୂ ନାତୁଣୀ ବଧୂ ସଙ୍ଗତରେ ନେଲ ।
ମୁଣ୍ଡକୁ ନକାଟିଣ ସେମାଇଲେତୋତେକେମନ୍ତେ
ଏବେ ପ୍ରାଣ ହରାଇଲ କେବଣ ଯେ ବାଣେ ।
ଏତେ କହି ଚୁମ୍ବି ଦେଲା ଫୁଟି ଅଛି ବୁକୁ
ଦେଖିଣ ଭ୍ରାନ୍ତି ଆସିଲା ରାଣୀର ମନକୁ ।
ବିହ୍ୱଳ ସୂତ ମୁନେ ଟାଳିଲା ପଙ୍କତ
ଦ୍ରୁତପଦେ ବିହରିଲା ଧନ୍ୟରେ ରଘୁନାଥ ।
ଅନ୍ତ ପିଣ୍ଡ ବୁକୁ ତାର ବାହାରି ପ୍ରାଣେଙ୍ଗ
ଅଏଁଳା ପିଅଁଳା ପିଳୋହି ଏକ ସଙ୍ଗ ।
ବୁକୁଠାରୁ ପିଠିଯାଏ ଦିଶୁଅଛି କଳା
ଦେଖିଣ ବିକଳ ହେଲେ ସର୍ବ ଯେ ଅବଳା
ତିନକୋଟି ପଚାଶ ସହସ୍ର ମହାଦେଈ
ଦାସୀ ପରିବାରୀ ଯେଣ ବେଢ଼ନ୍ତ କଲେ ତହିଁ
ବିକଳରେ ରୋଦନ ଯେ କରନ୍ତି ତରୁଣୀ
ଆକାଶ ପୂରୁଅଛି ମୁଖରବ ବାଣୀ ।

ସମସ୍ତଙ୍କ ଆଖିରୁ ବହୁଅଛୁ ଜଳ
ଥୋକେ ନାରୀ ସ୍ତମ୍ଭୀଭୂତେ ହୋଇଲେ ସକଳ
ଚଞ୍ଚଳରେ ଆଖିମାନ ନ ଉଠାନ୍ତି ଆଉ
ଥୋକେ ନାରୀ କାନ୍ଦନ୍ତି ଅହା ଆମ୍ଭ ପ୍ରଭୁ ।
ଏମନ୍ତ ରୋଦନ ଯେ କରନ୍ତି ସର୍ବନାରୀ
ବିଭୀଷଣକୁ ଚାହିଁ ବୋଲନ୍ତି ରୂପଧାରୀ ।
ଆହେ ଲଙ୍କପତି ତୁମ୍ଭେ ଆମ୍ଭର ବୋଲ ଶୁଣ
ଯେସନେକ ଭାଇ ତୋର ଅଟଇ ରାବଣ ।
ଯେସନେକ ମୁହିଁ ତୋର ଅଟଇ ସୋଦର
ଏକଥାରୁ ବିଚାରି ତୁ ଥିବୁ ହୃଦପୁର ।
ରାବଣ ଭାଇକି ତୋର ଆମ୍ଭେ ନପାରୁଁ ଦେଇ
ମୋହର ବୋଲକର ଯାଆନ୍ତୁ ମହାଦେଈ ।
ସ୍ୱାମୀ ମରିବା ଦେଖୁ ସେ କରନ୍ତି ରୋଦନ
ମୋହର ନିୟମ ଯେ ଏବେ ଅଛୁ ଶୁଣ ।
ରାବଣକୁ ମାରିବାକୁ ମୋହର ମତ ତୋର
ତାହାରନାରୀ ପରକୁ ଦେଲେ ହେବ ଧୀର ।
ରାଣୀମାନଙ୍କୁ କହନ୍ତି ସେ ଯାଆନ୍ତୁ ନଗର
ଦହନ କରାଅ ନେଇ ଭାଇକ ତୋହର ।
ଶତେମୁଖା ରାବଣ ଯେ ପଡ଼ିଛି ରଣେ ପୁଣ
ଛନଦନ ହୋଇଲାଣି ସେ ନୋହିଛି ଦହନ ।
ସେହି ତାର ସୋଦର ଅଟଇ ଜାଣ ଭାଇ
ତାହାକୁ ଦହନ କରିବା ଉଚିତ ଅଟଇ ।
ମହୀରାବଣ ଯେ ଅଟେ ତୋର ନାତି
ତାହାକୁ ଦହନ କର ହେ ଲଙ୍କପତି ।
କୁମ୍ଭକର୍ଣ୍ଣ ଭାଇ ତୋର ଅଟେ ସେ ମଟିଆଁ
ତାହାକୁ ଦହନ କର ତୁ ଜାଳ ନିଆଁ ।
ଆଠଦିନ ହେଲା ସେ ଏକାକେ କରେ ରଣ
ଭନଜଇ ଦେଖ ମୋର ଆସିଛନ୍ତି ପୁଣ ।
ତାହାଙ୍କ ସଙ୍ଗେ ଲକ୍ଷେ ନୃପତି ଅଛନ୍ତି
ସନ୍ୟବଳ ସହିତରେ ଆହାର ନାହିଁ କଳୁ ।
ଋକ୍ଷକପି ସେନାପତି ଭଲ୍ଲୁକଙ୍କ ମେଳ
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ ।
ରଥୀ ହାତୀ ଅଶ୍ୱ ପୁଣ ବଳଦ ଶଗଡ଼
ହଟାଇବକାରୀ ସହିତେ ଆହାର ନାହିଁ ଗାଢ଼
ସମସ୍ତଙ୍କ ହୃଦୟ ଯେ କ୍ଷୁଧାରେ ଜଳଇ ।
ଛନ୍ନରହୋଇଲେ ଲଙ୍କାଗଡ଼ ଦେବେଦହି ।

ରକ୍ତମ ହୋଇଲେ ପୁଣ ପାଞ୍ଚ ଉଡ଼ି ଜାଣ
କେତେ ରୋଦନ କରନ୍ତି ରାବଣ ନାରୀ ପୁଣ
ରୋଦନ କଲେକ ଆଉ ପାଇବ ରାବଣକୁ
କାଲିଆଉ ସ୍ୱାମୀମାନ ଦେବା ଯେ ତାହାଙ୍କୁ ।
ତାହାଶୁଣି ବିଭୀଷଣ ମଥାରେ ହାତଦେଇ
ମନ୍ଦୋଦରୀ ନିକଟକୁ ଗଲେ ସେ ଖରହୋଇ ।
ଦ୍ୱିଗୁଣ ସେ ନାରୀମାନେ ରୋଦନ୍ତି ତାଙ୍କୁଦେଖି
ମନ୍ଦୋଦରୀ ବୋଲେ ଏବେ ନାଶିଲ ବଂଶଆଖି
ଦିଗପାଳ ପ୍ରାୟେ ଭାଇ ପଡ଼ିଛନ୍ତି ରଣେ
ଶ୍ରୀରାମଚନ୍ଦ୍ରଙ୍କ ବାଣେ ପଡ଼ିଛି ରାବଣେ ।
ଏହାଶୁଣି ରାବଣଯେ ବୋଇଲାକ ସତି
ତୁମ୍ଭେ କାନ୍ଦିଲେ କି ପ୍ରାଣ ପାଇବେ ତୁମ୍ଭ ପତି
ଶ୍ରୀରାମ ଯେ କୋପଭରେ ହେଉଛନ୍ତି ପୁଣ
ବୋଲନ୍ତି ରାଣୀକି ତୁମ୍ଭେ କହ ବୁଝାଇଣ ।
ସମସ୍ତ ରାଣୀଙ୍କି କାଲି ନୂଆପତି ଦେବା
ନିଜପତିଙ୍କି ତାଙ୍କର ଦହନ କରାଇବା ।
ମୋର ରାଣୀ ଯେତେବେଳେ ଆଣିଲା ଦଶଶିର
ନିୟମ କରିଛି ମୁଁ ଯେ ଧନୁଶର ଧରି ।
ମୋର ଶତ୍ରୁ ରାବଣକୁ ଯେବେ ମୁଁ ନିବାରିବ
ତାହାରଭାର୍ଯାକୁ ମୁଁ ଆନକୁ ପୁଣି ଦେବ ।
ତେବେ ମୋର ମନରଥ ହୋଇବ ଯେ ପୂର୍ଣ୍ଣ
ଏତେବୋଲି ଶ୍ରୀରାମ ଯେ କହିଲେ ବଚନ ।
ତୁମ୍ଭେମାନେ ଶାନ୍ତହୋଇ ନଗରକୁ ଯାଅ
ଭାଇର ମୃତ୍ୟୁପିଣ୍ଡ ଅଗ୍ନିରେ କରୁ ଦାହ ।
ଭାଇମୋର ଏହିଠାରେ କମ୍ପାହେ ପଡ଼ିଥିବ
ତୋରମୋର ଆନ୍ତେ କି ନରେଖ ହୋଇବ
ମନ୍ଦୋଦରୀ ବୋଲେ ତୁମ୍ଭେ ମୋହଠାରେ ଶୁଣ
ଆମ୍ଭମାନଙ୍କୁ ଯେବେ ପରକୁ ଦେବେ ରାମ ।
ସ୍ୱାମୀର ସଙ୍ଗତେ ଆମ୍ଭେ ଦେବୁ କନା ଝାସ
ଆମ୍ଭର ଜୀବନକୁ କମ୍ପାଇଁ ଥିବ ଆଶ ।
ବିଭୀଷଣ ବୋଇଲେ ଗୋ ମୋରଆନ୍ତେ ପୁଣ
ତୁମ୍ଭମାନଙ୍କୁ କେମନ୍ତେ ଆନକୁ ଦେବେ ରାମ ।
ତୁମ୍ଭେଗଲେ ମୁଁ କମ୍ପାଇ ରଖିବ ଜୀବନ
କାହାକୁ ଘେନିଣ ମୁଁ କରିବ ପ୍ରଭୁପଣ ।
ଶୁଣିକରି ମନ୍ଦୋଦରୀ ସନ୍ତୋଷ ହୋଇଲା
ଆମ୍ଭମାନଙ୍କ ଏଥର ସ୍ୱାମୀ ହେବେ ପରା ।

ଶୁଣି ମନ୍ଦୋଦରୀ ରାଣୀ ମନରେ ଝୁରୁଥିଲା
ଶୋକ ସମ୍ଭାଳ ବୋଲି ସମସ୍ତଙ୍କୁ ଆଜ୍ଞାଦେଲା
ଏବେ ବ୍ୟଥା ପାଇଲି ତ ସେ ଦେବର ଗୁଣେ
ଏତେ ଅନର୍ଥ ହେଲା କେବଣ କାରଣେ ।
ବିଭୀଷଣ ବୋଲେ ପାଶୋରିଲ କି ଗୋସାଣୀ
ଜାଣନ୍ତି କି ପୂର୍ବରୁ ଅଛଇ ଯେଉଁ ବାଣୀ ।
ବ୍ରହ୍ମା ପରା କହିଥିଲେ ନ ହରିବୁ ସୀତା
ପୁଣି ସତ୍ୟ କରାଇଲେ ଜଗତର ପିତା ।
ସେକଥାକୁ ପାଶୋରି ଜାନକୀ ହରାଇଲା
ଆଣିଲା ଲୋକଙ୍କୁ ବଇରସ ପାଇଲା ।
ମୋତେ ମାରୁଥିଲା ମୁଁ ଧର୍ମରେ ରଖାଇଲି
ତୋତେ କୋପ କଲା ବୋଲି ମୁହିଁ ଶୁଣିଥିଲି
ଅକୀର୍ତ୍ତି କଲାଲୋକ କେବେହେଁ ନ ଜୀଅଇ
ଅଧର୍ମ କଲାଲୋକଙ୍କୁ ଧର୍ମ ନ ସହଇ ।
ମେରୁ ଯେ ପର୍ବତକୁ ସେହି ଲଗେ ଘୁନ୍ତି
ବୁଦ୍ଧି ପୁଣ ସ୍ୱଜନ କଥାକୁ ନ ବୁଝନ୍ତି ।
ତାହା ଜାଣି ତୁମ୍ଭ ଯେ ନାରଦ ସୁମତିଙ୍କୁ
ମୁନିଙ୍କଠାରୁ ଶୁଣି ମନେ ସନ୍ଦେହ ନ କଲୁ ।
ମନ୍ଦୋଦରୀବୋଲେ ସେକଥା ନୋହିଲାକ ଆମ
ଜନକାଳେ ନ ଜାଣନ୍ତି ଦୁଷ୍ଟ ଲୋକମାନ ।
ମୋହର ସ୍ୱାମୀ ବୋଲଣ ମୁହିଁ ଶୋକ କଲି
ମୋ କର୍ମରେ ଲେଖାଥିଲା ଏହା ମୁଁ ଦେଖିଲି
ଯେ ଯାହାର କର୍ମ ଯେଣ ପଥ ସେ କହିଗଲା
ବିନ୍ଦୁ ତୁମ୍ଭ କର୍ମରେ ଏତେ ଯେ ଶିଖା ଦେଲା ।
ଅଭିହିଁ ଅନ୍ୟାୟ ଯତ୍ନ ଦଶଗିରି କଲା
କାଳେ ତାକୁ ଧର୍ମ ଯେ ସହି ନ ପାରିଲା ।
ସୁଖେ ଭୋଗକର ଏବେ ରତ୍ନମୟ ପୁର
ଶୁଣିଣ ବିଭୀଷଣ ଯେ କହଇ ଉତ୍ତର ।
ତୁମ୍ଭେ ମୋତେ ପ୍ରସନ୍ନ ହେଲେ ମହାଦେଇ
ତେବେ ମୋତେ ପ୍ରାପତ ହେବ ରତ୍ନମହୀ ।
ରାଣୀ ବୋଲେ ତୁମ୍ଭଙ୍କୁ ଦେଲେ ଶ୍ରୀରାମଚନ୍ଦ୍ର
ମୋହର ବୋଲରେ କି ତୁମ୍ଭଙ୍କୁ ହେବ ମନ୍ଦ
ବିଭୀଷଣ ବୋଇଲେ ଶ୍ରୀରାମ ମୋତେ ଦେଲେ
ତୁମ୍ଭ ସ୍ୱାମୀର ଅର୍ଜିଲା ଏ ପୁର ଅଟେ ଭଲେ
ତାହାର ଅନ୍ତରେ ତୁ ରାଜ୍ୟକୁ କାରଣୀ
ତୋତେ କି ବାହାର କରିବେ ରଘୁମଣି ।

ରାବଣର ପାଟବଂଶୀ ଗଡ଼େ ଅଧିକାରୀ
ତୋତେ ମୁଁ ସନ୍ତୋଷକଲେ ଭୁଞ୍ଜିବଟି ଶିରୀ
ଶୁଣିକରି ମନ୍ଦୋଦରୀ ମନରେ ହସିଲା
ଦିଅରର କଥା ଯେପରି ମନକୁ ଆଇଲା ।
ମନ୍ଦୋଦରୀ ବୋଇଲେ ହେ ମୋ ବଚନ ଶୁଣ
ରାମର ମୋହଠାରେ କ୍ରୋଧ ଅଛି ପୁଣ ।
ନିୟମ ସେ କରିଛନ୍ତି ମୋତେ ଦେବେ ପରେ
କେମନ୍ତେ ଠାକୁରାଣୀ ମୁଁ ହେବ ଏହି ପୁରେ
ବିଭୀଷଣ ବୋଲେ ତାଙ୍କ ନିୟମ ରହିବ
ପଛକୁ ଦେଲେ ତାଙ୍କର ମନ ସନ୍ତୋଷହେବ
ମୁହିଁବି ପରି ଅଟେ ଭଜନ ବିନା ତୁମ୍ଭେ
ବାଳି ଭାରିଯାକୁ ଯେସନ୍ତେ ସୁଗ୍ରୀବର ରମେ ।
ମୁହିଁ ଯଦି ଥିବି ଆନ କିଏ ତୋତେ ନେବ
ଶ୍ରୀରାମଙ୍କୁ ତୋଷ ମୁଁ ଯେ କରିବ ସବଳବ ।
ଶୁଣିକରି ମନ୍ଦୋଦରୀ ମନରେ ତୋଷହେଲା
କରଯୋଡ଼ି ଦିଅରକୁ ବଚନ କହିଲା ।
ବୋଇଲା ପ୍ରାଣନାଥ ହେ ମୋର ବୋଲକର
ଭାଇ ବିନା ଭଗାରି ଯେ ଅଟନ୍ତି ସଂସାର ।
ଦଶଗ୍ରୀବକୁ ଯେବେ ମୁଖାଗ୍ନି ନଦେବା
ପଶ୍ଚାତେ ବହୁତ ଆମ୍ଭେ ନିନ୍ଦା ଯେ ଶୁଣିବା
କୁମ୍ଭକର୍ଣ୍ଣଙ୍କୁ ମୁଖାଗ୍ନି ଦିଅନ୍ତୁ ତାଙ୍କ ସୁତ
ମନ୍ତ୍ରୀରାବଣଙ୍କୁ ମୁଖାଗ୍ନି ଦେବ ସୁବାହୁ ତ ।
ଶତେମୁଖା ରାବଣକୁ ତୁମ୍ଭେ ଦେବଅଗ୍ନି
ଆମ୍ଭ ବୋଲେ ବଂଶତୋର ନରହେକେହିପୁଣି
ଏତକ ମାଗୁଣି ମୋର ତୁମ୍ଭଙ୍କୁ ହୋଇଲା
ଉପକାରୀକ ମୁଖାଗ୍ନି ଦିଅ ଧର୍ମ ହେବ ପରା
ଏ ଭିକ୍ଷଜଣଙ୍କୁ ବେଗେ କରାଅ ଦହନ
ଲଙ୍କାର ରାବଣ ଆଜ୍ଞ ପଛକୁ ଯେ ପୁଣ ।
ନାଭ ନାମରେ ତାର ଗୋଟିଏ କୁମର
ତପ କୁମର ତପ କରେ ନର୍ମଦା କୂଳର ।
ତାହାକୁ ଡକାଇ ଆଣ ବେଗେଣ ନୃପତି
ସେ ଆସିଲେ ମୁଖାଗ୍ନି ଦେବ ଲଙ୍କପତି ।
ଏମନ୍ତ ବଚନ କହି ରାଣୀ ମନ ତୋଷ
ସଉତୁଣୀମାନଙ୍କୁ ବୋଧି କରାଏ ପୌରସ ।
ସର୍ବେତୋଷ ହୋଇଣ ବିଷାଦ ତେଜ୍ୟାକଲେ
ପୁଷ୍ପକ ବିମାନର ଯେ ଉପରେ ବସିଲେ ।

ଶୁକ ସାରଣ ମନ୍ତ୍ରୀ ଯେ ରଥ ନେଲେ ବାହି
ଉତ୍ତରଗଡ଼ ଦ୍ୱାର ବାଟରେ ଲଙ୍କା ଯାଇ ।
ନିଜ ନଗରେ ଯାଇଣ ହେଲେ ପରବେଶ
ଅନ୍ତଃପୁରେ ମିଳିଲେ ସକଳ ରାଣୀହଂସ ।
ମନରେ ବିଚାରିଲେ ଦଥର ତନେ ଉଣ୍ଟି
ଏତେ ବିଭବ କରନ୍ତି ରାଣୀହଂସ ହୋଇ ।
ମହାଦେଈମାନଙ୍କୁ ଗୁହାରିଣ ମନ୍ତ୍ରୀ ବେଗେ
ପୁଷ୍ପକ ବିମାନ ନେଲେ ବିଭୀଷଣ ନଗେ ।
ମନ୍ତ୍ରୀ ଦେଖି ବିଭୀଷଣ ବୋଇଲେକ ପୁଣ
ପୁଷ୍ପକ ଯାନ ଘେନିଣ ଚଳ ତୁ ବହନ ।
ନର୍ମଦା କୂଳରେ ନାଦ ନାମରେ କୁମର
ତପ କରୁଅଛି ସେହୁ ଜାଳଞ୍ଜ ବନର ।
ସେ ବନଗୋଟି ଅଟେ ସହସ୍ରାର୍ଜ୍ଜୁନାର
ଅର୍ଜ୍ଜୁନକୁ ମାଇଲେ ଯେ ପଶୁରାମ ବୀର ।
ସେ ସ୍ଥାନକୁ ତୁମ୍ଭେ ଏବେ ଯାଅ ହେ ବହନ
ପିତା ମଲା ଖବର କହିବ ଏବେ ପୁଣ ।
ଶୁଣିକରି ବେନି ମନ୍ତ୍ରୀ ବେଗେ ଚଳିଗଲେ
ନର୍ମଦା କୂଳରେ ଯାଇ ପ୍ରବେଶ ହୋଇଲେ ।
ନାଦ ନାମେ କୁମର କରୁଛି ତପ ପୁଣ
ମନର ମୂଳେ ଛନ୍ଦିଛି ଚିତ୍ତାକୁ ନେଇଣ ।
ଏକ ପାଦରେ ଛିଡ଼ା ଯେ ହୋଇଛି କୁମର
ଶୂନ୍ୟକୁ ଚାହିଁ ଧ୍ୟାନ କରେ ଦୈତ୍ୟବୀର ।
ଦେଖିକରି ଦୁଇ ମନ୍ତ୍ରୀ ରଥରୁ ଓହ୍ଲାଇଲେ
କୁମରର ପାଶେ ଯାଇ ପରବେଶ ହେଲେ ।
ଅନେକ ପ୍ରକାରେ କହିଲେ କଷ୍ଟବାଣୀ
ପିତା ତୋର ମଲେରେ ସକଳ ବଂଶଘେନି ।
ପାଣି ଦେବାକୁ କୁଳରେ କେହି ନାହିଁ ତୋର
ତୁ ଯାଇ ଲଙ୍କପତିଙ୍କ ଦହନ ବେଗେ କର ।
ମାତା ତୋର ରୋଦନ କରୁଛି ମନ୍ଦୋଦରୀ
ଶୀଘ୍ର ଦାନ ତାଙ୍କୁ ଦିଅରେ ଯାଇ ବେଗ କରି
କେବେହେଁ ନ ଶୁଣେ ସେ ଦଶଗ୍ରୀବର ବାଳା
ବେନି ନୟନରେ ଲୁହ ସେ ରୋଦନ କଲା
ଶୁକ ସାରଣ ବୋଇଲେ ଶୁଣରେ ନାଦ ବୁଝି
ତୋର ପିତାକୁ ମାଇଲେ ରଘୁନାଥ ସାଇଁ ।
ଶ୍ରୀରାମ ନାମ ଅଟେ ଦଶରଥର ବାଳା
ତାଙ୍କ ସଙ୍ଗେ ବିବାଦ ଲଙ୍କମଲ୍ଲ କଲା ।

ରାମ ନାମ ଯହୁଁ କର୍ଣ୍ଣରେ ଶୁଣିଲା କୁମର
ମନ ଚଇତନ ତାର ହୋଇଲାକ ସ୍ଥିର ।
ବୋଇଲା କିସ କଥା କହୁଅଛରେ ତୁମ୍ଭେ
ଶୁକ ସାରଣ ବୋଇଲେ ପିତା ମଲା ଏବେ ।
ନାଦ ବୋଲଇ କମ୍ପାଇଁ ମୋର ପିତା ମଲା
ଦୈତ୍ୟଙ୍କର ରାଜ୍ଜ ସେ ତାକୁ କେ ମାଇଲା ।
ବେନିମନ୍ତ୍ରୀ ବୋଲେ ଶ୍ରୀରାମସଙ୍ଗେ ବାଦହେଲା
କାହାର କଥା ତାର ମନକୁ ନ ଆସିଲା ।
ଶ୍ରୀରାମ ଘରଣୀକୁ ସେ ହରଇ ଆଣିଲା
ତୋ ମାତା ମନା କଲାକୁ ଘାଳ ତାକୁ ଦେଲା
ତୋ ଖୁଡ଼ୁତା ବିଭୀଷଣ କହିଲା ତାକୁ ପୁଣ
ତାକୁ ମାରି ତଡ଼ିଦେଲା ତୋ ବାପ ରାବଣ ।
ରାମ ସଙ୍ଗେ ଯୁଝିବାକୁ ପ୍ରତିଜ୍ଞା କରିଥିଲା
ଏବେ ଭୂମିରେ ଶୋଇଲା ବିଶ୍ରବାର ବଳା ।
ନାଦବୋଲେହନୁ ଗଲାବେଳେମୁଁଲଙ୍କାରେଥିଲି
ଏକା ମାରୁତିଙ୍କ ସମ ହୋଇଲେ ଲଙ୍କପୁରୀ ।
ଲଙ୍କା ପୋଡ଼ିଦେଇ ସେ ଅକ୍ଷୟ ନାଶ କଲା
ପାଞ୍ଚ ସେନାପତି ସଙ୍ଗେ ଜମ୍ବୁମାଳି ମଲା ।
ସୈନ୍ୟବଳ ନାଶକଲା ଅକଳିତ ପୁଣ
ମୋର ବାଳ ଧରିଣ ଶୂନ୍ୟରେ ନେଲା ଜାଣ
ମୋତେ ଫୋପାଡ଼ି ଦିଅନ୍ତେ ପଡ଼ିଲି ଏକୂଳେ
ସେଠାରୁ ଲଙ୍କାଗଡ଼କୁ ନ ଗଲି ମୁହିଁ ଛଳେ ।
ଏବେ ମୁଁ ତପ କଲି ତିନି ମାସେ ଯଥେ
ରାମ ନାମ ଶୁଣି ମୋର ଆନନ୍ଦ ଉପୁଜେ ।
ଦେଖିବି ମୁଁ ନାରାୟଣ ଯିବି ଲଙ୍କାଗଡ଼
ମୋ ପିତା ବିଭୀଷଣ ଅଛନ୍ତିକ ଗାଢ଼ ।
ମନ୍ତ୍ରୀ ବୋଲେ ଏତେବେଳେ ବିଭୀଷଣ ମୂଳ
ଆମ୍ଭଙ୍କୁ ବୋଇଲେ ସେ ପ୍ରଭୁଙ୍କ ପାଶେ ଚଳ
ସେ ଆସିଲେ ତା ଜନମ ହେବ ପୁଣ ତୋଷ
ପିତାକୁ ମୁଖାଗ୍ନି ସେ ଦେବ ସେ ବିଶେଷ ।
ତାଙ୍କଠାରୁ ଶୁଣି ପୁଣ ବହନ ଉଠିଲା
ରଥ ଉପରେ ଯାଇଣ ସେ ତ୍ୱରିତେ ବସିଲା ।
ପ୍ରବେଶ ହୋଇଲେ ଆସି ବେଗେ ଲଙ୍କାଗଡ଼
ରଥପରୁ ଓହ୍ଲାଇଣ ଗଲା ଅନ୍ତଃପୁର ।
ଜନନୀକୁ ଦେଖି ବେଗେ ଓଳଗି ହୋଇଲା
ଧନ୍ୟତୋର ଜନମ ଗୋ ବୋଲିଣବୋଇଲା

ସ୍ୱୟଂ ନାରାୟଣ ତୋତେ କହିବେ ଗୂଢ଼ବାଣୀ
ମୁକତ ହୋଇବୁ ମାତା ଶ୍ରୀରାମ ଦେଖି ପୁଣି ।
ମନ୍ଦୋଦରୀ ବୋଇଲାରେ ସଉଲାଣି ଦେଲ
ପିତାଙ୍କୁ ଯାଇଣ ତୁ ଦହନ କେବେ କଲୁ ।
ନାଦ ବୋଲେ ମୋର ପିତା ଅଟେ ବିଭୀଷଣ
ସେ ଯେବେ ଶ୍ରୀରାମଙ୍କୁ ତୋଷ କଲେ ଜାଣ ।
ଏତେ କହି ନାଦ ଭଣ ଭୂମିକି ଚଳିଲା
ବିଭୀଷଣଙ୍କୁ ଦେଖିଣ ଓଳଗ ମେଲାଇଲା ।
ଦେଖିକରି ବିଭୀଷଣ କୋଳ କଲା ଯାଇ
ମୁଖରେ ଚୁମ୍ବନ ଦେଇ ମଧୁର କହଇ ।
ବୋଇଲେ ପିତାଙ୍କୁ ତୋର କଲୁରେ ଦହନ
ଶୁଣିକରି ନାଦ କର ଯୋଡ଼ିଲା ବଚନ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ମନରେ ତୋଷ ହେଲେ ଲଙ୍କାର ନରନାରୀ
ମନ୍ଦୋଦରୀ ବାରତା ବିଭୀଷଣର ସନ୍ଦେଶ
ସମସ୍ତେ ଇପ୍ସୁ ଗୁଡ଼ିଣ ହୋଇଲେ ସନ୍ତୋଷ ।
ଏଥଅନନ୍ତରେ ପୁଣ ବିଭୀଷଣ ବୀର
ମନରେ ବିଚାର ସେ କରଇ ତାହାର ।
ଶ୍ରୀରାମଚନ୍ଦ୍ର ପ୍ରଭୁରେ ଜଣାଇଲା ଯାଇ
ରଣୀହଂସ ବାହୁଡ଼ିଣ ଗଲେ ରଘୁସାଇଁ ।
ନାଦ ନାମେ କୁମର ଯେ ରାବଣର ଥିଲା
ତାହାକୁ ଅଣାଇଲି ମୁଁ ତପ କରୁଥିଲା ।
ପିତାଙ୍କୁ ତାହାର ସେ ମୁଖାଅଗ୍ନି ଦେବ
ତେବେ ମନ୍ଦୋଦରୀ ମନ ସନ୍ତୋଷ ହୋଇବ
ଏସନକ ଶୁଣିଣ ଶ୍ରୀରାମଚନ୍ଦ୍ର ରାୟେ
ବିଭୀଷଣଙ୍କୁ ବୁଝିଣ ବେଗେ ଆଜ୍ଞା ଦିଏ ।
ଆହେ ଲଙ୍କପତି ଯେ କହଇ ତୁମ୍ଭେ ହେଳା
ମୋହର ମନ ଏବେ ଚଞ୍ଚଳ ହୋଇଲା ।
ଶିଘ୍ର ରାବଣଙ୍କୁ ବେଗେ କରାଅ ଦହନ
ମୋହର ପାଶରୁ ଏବେ ଚଳ ତୁ ବହନ
ସେନା ଯୂଥପତିମାନେ ତୋର ସଙ୍ଗେ ଆନ୍ତୁ
ଋକ୍ଷବଳ ଗୋଷ୍ଠି ମୋର କେହି ନ ରହନ୍ତୁ ।
ଅଗୁରୁ ଚନ୍ଦନ କାଠ ନେଇକରି ସଞ୍ଚ
ବଉଦ ଖନ୍ଦୁଆ ତାର ଉପରେ ନେଇ ରଚ
ଶ୍ରୀରାମଙ୍କ ଆଜ୍ଞାରେ ବାହୁଡ଼େ ବିଭୀଷଣ
ସେନାପତି ଯୂଥପତି ସୁଗ୍ରୀବର ପୁଣ ।

ବେଗେ ଚଳ ଦେଖିଲେ ଶୋଇଛି ଦଶଶିର
ଦେଖିଣ ପ୍ରଶଂସା ଯେ କରନ୍ତି ସର୍ବ ବୀର ।
ବିଭୀଷଣ ବୋଇଲା ଶୁକ ସାରଣ ଦେଖି
ଗନ୍ଧରବ କର ତାଙ୍କୁ ଗଡ଼କୁ ଦେଲା ପେଷି
ବେନି ମନ୍ତ୍ରୀ ଲଙ୍କାଗଡ଼େ ପ୍ରବେଶ ହୋଇଲେ
ଖଟଦୋଳି ବାଙ୍କିଆଙ୍କୁ ବେଗେ ଗୁଳ ଦେଲେ
ଭଣ୍ଡାରୁ ଯାଇ ପାଟ ପଟମ୍ବୀ ଅଣାଇଲେ
ଗୁଆଘୃତ ଚନ୍ଦନ ସେ କର୍ପୂରର ଭୁଲେ ।
ନିଯୋଗୀ ଲୋକଙ୍କୁ ସେ ଦେଲେ ପଠିଆଇ
ଶମଶାନ ଭୂମିରେ ଖନ୍ଦୁଆକୁ ଟଣାଇ ।
ବିଭୀଷଣ ବଚନେ କୁଳର ପୁରୋହିତ
ହୋମରା ଘରୁ ଅଗ୍ନି ସେ ଆଣିଲେ ତୁରିତ
ଅଗୁରୁ ଚନ୍ଦନ କାଠ ସଂଯୋଗ କଲେ ପୁଣ
ତହିଁପରେ ଶୁଆଇଲେ ଦଶଗ୍ରୀବ ଜାଣ ।
ପାଟ ପଟମ୍ବୀ ପିନ୍ଧିଣ ଦୋସଡ଼ା ଘୋଡ଼ାଇଲେ
ତହିଁପରେ ଗୁଆଘୃତ ନେଇଣ ଢାଳିଲେ ।
ନାଦ ପୁତ୍ର ହସ୍ତରେ କରାଇ ପଥ ଶ୍ରାଦ୍ଧ
ମୁଖାଅଗ୍ନି ଦେଲା ନେଇ ବେଗକରି ନାଦ ।
ଧକଧାକ ହୋଇ ଅଗ୍ନି ଉଠିଲା ଦହନ
ସେଠାରୁ ନାଦ କୁମର ଚଳିଲା ନିଜସ୍ଥାନ ।
ବାଜେ ବାଦ୍ୟ ଟମକ ନିଶାଣ ଖରତୁର
ତୃଷ୍ଣ କାହାଳୀ ମର୍ଦ୍ଦଳ ମହୁରୀ ସୀତାର ।
ବେଣୁ ବଇଁଶୀ ବୀଣା ବାଜଇ ଶଙ୍ଖ ଭେରୀ
ନୃତ୍ୟକାରୀମାନେ ଯେ ଆଗରେ ନୃତ୍ୟକର ।
ମହୁରୀ ଭୁଙ୍ଗୁଙ୍ଗ ଆଦର ଡମ୍ଫ ନାଗରା
ବାଦ୍ୟର ଶବଦରେ ସମସ୍ତେ ହେଲେ ଭୁରା
ନାନା ଅଳଙ୍କାର ସେ ଭୂଷଣ ହୋଇଥିଲେ
ଦେଖିଣ ଅଗ୍ନିଦେବତା ସନ୍ତୋଷ ହୋଇଲେ
ଲାଗିଲାକ ଅନଳ ପ୍ରଜ୍ୱଳିତ ହୋଇ
ଦୁଇଦଣ୍ଡରେ ଭସ୍ମ ହେଲା ଲଙ୍କସାଇଁ ।
ଶୀତଳ କରିଣ ଶବ ଘେନିଲେ ସର୍ବଜନ
ମନ୍ତ୍ରୀ ରାବଣ ପାଶକୁ ମାଲ ଗଲେ ପୁଣ ।
ପାଟ ପିନ୍ଧାଇଣ ପଟମ୍ବୀ ଘୋଡ଼ାଇଲେ
ସୁବାହୁ କୁମର ତାଙ୍କୁ ପଥଶ୍ରାଦ୍ଧ ଦେଲେ ।
ଅଗୁରୁ ଚନ୍ଦନ କାଠ ଲଦିଲେ ବହନ
ତହିଁରେ ଶୁଆଇଲେ ଏକମୁଖା ଯେ ରାକ୍ଷଣ ..

ମୁଖାଗ୍ନି ନେଇଣ ସୁବାହୁ କୁମର ଯେ ଦେଲା
ଅଗ୍ନି ଦେଇ କୁମାର ସେଠାରୁ ଘୁଞ୍ଚିଗଲା ।
ପ୍ରଜ୍ୱଳିତ ହୋଇଣ ଯେ ଜଳିଲା ଅନଳ
ଖଣ୍ଡି ପାଗୁଡ଼ି ଯେ ବଜାଏ ଦୈତ୍ୟଦଳ ।
ଗାନ୍ଧାର ରାଗରେ ନୃତ୍ୟ କରନ୍ତି ଅପ୍ସରା
ବେଣୁ ବୀଣା ବାଦ୍ୟ ଯେ ବଜାଇ ଘଣ୍ଟାଭେରୀ
ଢୁଙ୍କୁ ଡେମ୍ଫ ନାଗରା ଟମକ ଯେ ଭୁଡଙ୍ଗ
ବାଦ୍ୟ ବଡ଼କାଠ ତେଲଙ୍ଗୀ ସଙ୍ଗେ ସଙ୍ଗ ।
କାହାଳୀ ତୁରୀ ବଂଶୀ ସୀତାର ନାଗେଶ୍ୱର
କୋଳାହଳ ଶବଦ ଯେ ଶୁଭଇ ସେଥିର ।
ହୁହୁଁ ହୁହୁଁ ଅଗ୍ନି ତାକୁ ଭସ୍ମକରେ ପୁଣ
ରାଇ ଶୀତଳାଇ ଶିବ ନେଲେ ଦୈତ୍ୟଗଣ
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ
କୁମ୍ଭକର୍ଣ୍ଣ ପାଶରେ ପ୍ରବେଶ ହେଲେ ଜାଣ ।
ଅଗୁରୁ ଚନ୍ଦନ କାଠ ତଳରେ ଦେଲେ ପାରି
କୁମ୍ଭକର୍ଣ୍ଣଙ୍କୁ ସେଥିରେ ଶୁଆଇଲେ ଧରି ।
ପୁରୋହିତ ବ୍ରାହ୍ମଣ ଯେ ଧର୍ମ କର୍ମ କଲେ
ସୁକର୍ଣ୍ଣ ସେହିଠାରେ ପଥଶ୍ରାଦ୍ଧ ଦେଲେ ।
ବାଦ୍ୟନାଦ ଶବଦେ କୁସୁମ ଉଚ୍ଛୁଳିଲା
ଦମା ଭେରୀ ଦାଉଣ୍ଡି ଯେ ଘୁମୁରା ବାଜିଲା
ମୁଖାଗ୍ନି ଦେଲା ନେଇ ସୁକର୍ଣ୍ଣ ସେଠାରେ
ଘୃତ ଢାଳନ୍ତେ ଅନଳ ଜଳିଲା ପ୍ରଖରେ ।
ଘଡିକ ଭିତରେ ଭସ୍ମ କଲା ବୈଶ୍ୱାନର
ମାଲମାନେ ତାହା ଯେ ଦେଖିଲେ ସତ୍ୱର ।
ରାଇ ଶୀତଳାଇ ଅସ୍ଥି ଘେନି ଚଳିଗଲେ
ଲଙ୍କାରେ ପ୍ରବେଶ ସେ ଯାଇଣ ହୋଇଲେ ।
ସେଠାରୁ ଯେ ବିଭୀଷଣ ଦୈତ୍ୟଦଳ ଘେନି
ଢୋଲ ଦମ ଢୁଙ୍କୁ ନାଗରା ବାଜେ ପୁଣି ।
ଘୋରବାଦ୍ୟ ତୁରୀ ଯେ ବାଜେ ଶଙ୍ଖ ଭେରୀ
ନୃତ୍ୟକାରୀମାନେ ଯେ ଆଗରେ ନୃତ୍ୟକରି ।
ଶତଗ୍ରୀବ ପାଶରେ ହେଲେ ପରବେଶ
ଅଗୁରୁ ଚନ୍ଦନ କାଠ ଆଣିଲେ ବିଶେଷ ।
ତଳରେ ପାରି ଶତଗ୍ରୀବକୁ ଶୁଆଇଲେ
ଚନ୍ଦନ କାଠରେ ଜୁଇ ଉର୍ଦ୍ଧ୍ୱ ଲଗାଇଲେ ।
ଆର ଖଣ୍ଡ ଯୋଡିଣ ରଖିଲେ ନେଇ ପୁଣ
ପୁରୋହିତ ଡକାଇ କର୍ମ ସେ କଲେ ଜାଣ ।

ପଥଶ୍ରାଦ୍ଧ ସେଠାରେ ବିଭୀଷଣ ଦେଲେ
ପାଟେକ ପିନ୍ଧାଇ ପତାକା ଘୋଡ଼ାଇଲେ ।
ମୁଖାଅଗ୍ନି ଦେଲେ ନେଇ ବିଭୀଷଣ ପୁଣ
ଗୁଆଘୃତ ଢାଳିଲେ ତାର ଅଙ୍ଗେ ଜାଣ ।
ପ୍ରଜ୍ୱଳିତ ଅଗ୍ନି ଜଳିଲାକ ଟାଣେ
ଭସ୍ମକଲେ ବୈଶ୍ୱାନର ଘଡ଼ିକରେ ତେଣେ ।
ଶୀତଳ କରିଣ ଦୈତ୍ୟେ ଲଙ୍କାଗଡ଼ ଗଲେ
ସୁକର୍ଣ୍ଣ ସୁବାହୁ ଜାତ ନଗରେ ମିଳିଲେ ।
ଜନନୀମାନଙ୍କୁ ସେ କଲେ ନମସ୍କାର
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣରେ କୁମର
ବୀରଜଣଙ୍କୁ ଅଗ୍ନିରେ ଦାହ କଲଟିକି
ନାତ କହେ ବୀରଜଣଙ୍କୁ ଅଗ୍ନିରେ ଧ୍ୱଂସିଲୁଟି
ଅଗୁରୁ ଚନ୍ଦନ ଗୁଆଘୃତ ଢାଳି ପୋଡ଼ିଦେଲୁ
କାଉଙ୍କର ହସ୍ତରେ ଶବ ଅଣାଇଲୁ ।
ମନ୍ଦୋଦରୀ ବୋଲେରେ କୁମରମଣି ଶୁଣ
ବିଭୀଷଣଙ୍କୁ ସଙ୍ଗରେ କମ୍ପାଇଁ ନ ଆଣ ।
ପିତାର ବଦଳେ ସେ ଅଟେ ତୋର ପିତା
ଲଙ୍କାରେ ନୃପତି ତାକୁ କଲେ ଜଗନ୍ନିତା ।
ସୋଦରମା ପଣରେ ତୋତେ ସେ ରଖାକଲେ
ମୋତେ ଘର ନେଇଆନ୍ତା ସେହୁ ସେ ରଖିଲେ
ପ୍ରଭୁଙ୍କୁ ଘେନି ତୁମ୍ଭେ ଦୁଇଭାଇ ଯାଅ
ଶ୍ରୀରାମଙ୍କୁ କହି ତାଙ୍କୁ ସଙ୍ଗରେ ଅଣାଅ ।
ତାହା ଶୁଣି ବେନିଜଣ ବେଗେ ଚଳିଗଲେ
ବିଭୀଷଣ ପାଶେ ଯାଇ ପ୍ରବେଶ ହୋଇଲେ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ
ବୀରଙ୍କି ଭସ୍ମ କରିଣ ଚଳେ ଦଣ୍ଡଧାରୀ ।
ଶ୍ରୀରାମ ଛାମୁରେ ଯାଇ ପ୍ରବେଶ ହୋଇଲେ
ବୀରଙ୍କି ଦହନ କଲି ବୋଲିଣ ବୋଇଲେ ।
ଶୁଣିକରି ଶ୍ରୀରାମ ମନରେ ତୋଷ ହେଲେ
ଯୂଥପତି ସେନାପତି ସବୁଙ୍କି ଡକାଇଲେ ।
ହୋଇଲେ ନୃପତିଗଣ ସୈନ୍ୟଦଳ ଶୁଣ
ଦ୍ୱିଷ କପି ଭଲ୍ଲୁଙ୍କୁ କହେ ହେ ଯାଇଣ ।
ବୋଲନ୍ତି ସମସ୍ତେ ତୁମ୍ଭେ ସୁବଳୟାକୁ ଯାଅ
ନଦୀରେ ସ୍ନାନ କରିଣ ଜଳ ତିଳ ଦିଅ ।
ଜମ୍ବୁ କଲ ଭୂମିରେ ଯେ ନରହ ଦଣ୍ଡେ କେହି
ସମସ୍ତେ ରଣଭୂମିରୁ ବାହାର ହୋଇଯାଇ ।

ତାହା ଶୁଣି ଯୂଥପତି ସେନାପତିଏ ସକଳେ
ନୃପତିଗଣଙ୍କୁ ଘେନି ବେଗେ ଚଳିଗଲେ ।
ସୈନ୍ୟବଳ ଋକ୍ଷ କପି ସମସ୍ତେ ଯାଇ ଚଳି
ସୁବେଳସ୍ଥା ଗିରିରେ ସମସ୍ତେ ଯାଇ ମିଳି ।
ରଥରୁ ଓହ୍ଲାଇଣ ନୃପତିମାନେ ସକଳେ
ଦେବ ନଦୀରେ ପଶି ସ୍ନାନ ତର୍ପଣ କଲେ ।
ନିତ୍ୟକର୍ମ ସାରିଣ ସେ ଅଇଲେ ତୁରିତ
ଶାଢ଼ୀ ଘର ତିଆରିଣ ରହିଲେ ସମସ୍ତ ।
ବଶିଷ୍ଠ ସୁରଭିଙ୍କି ମନରେ ସୁମରିଲେ
ନାନା ବର୍ଣ୍ଣେ ଅମୃତ ଯୋଗାଡ଼ ଭିଆଇଲେ
ଶ୍ରୀରାମ ସଙ୍ଗତରେ ଅଛନ୍ତି ତିନି ଭାଇ
ସୁଗ୍ରୀବର ଅଙ୍ଗଦ ଅଛନ୍ତି ପୁଣ ରହି ।
ଅଷ୍ଟସେନା ସଙ୍ଗତରେ ମାରୁତି ଜାମ୍ବୁବ
ବିଭୀଷଣଙ୍କୁ ସ୍ତୁତିଣ ବୋଇଲେ ରାଘବ ।
ତୁମ୍ଭେ ନୃପତି ଏବେ ନିଜ ପୁର ଯାଅ
ରାଣୀହଂସ ପ୍ରଜାଲୋକ ଜ୍ଞାତିଙ୍କି ବୋଧିଦିଅ ।
କାଲି ଲଙ୍କାଗଡ଼ ରାଜା ହେବ ପୁଣ ତୁମ୍ଭେ
ଆଜ ସମସ୍ତ ଆମ୍ଭଙ୍କୁ ନାହିଁ ଜନା ଏବେ ।
ଆଠଦିନ ହୋଇଲା ରଣରେ ଆମ୍ଭେ ବଣା
ଋକ୍ଷ ପତି ସେନାପତି ଆମ୍ଭର ସଙ୍ଗେ ସିନା ।
ଆହାର ଶୟନ ପୁଣ ଜାହାର ଦେଖା ନାହିଁ
ସମସ୍ତେ ଉପବାସେ କ୍ଷୁଧାକୁ ଛନ୍ତି ସହି ।
ଲକ୍ଷେକ ନୃପତି ପୁଣ ଦୁଇଦିନ ହେଲା
ସେହି ଉପବାସରେ ଅଛନ୍ତି ଦେଖ ଭଲା ।
ଗୁରୁ ଯେ ବଶିଷ୍ଠ ମୁନି ଆସିଛନ୍ତି ପୁଣ
ଜନନୀ ଆସିଅଛି ଭାଇଙ୍କ ସଙ୍ଗେଣ ।
ଭାଇମାନେ ଅଛନ୍ତି ଯେ ସଙ୍ଗରେ ମୋହର
ଏହାଙ୍କ କୁଶଳମାନ କରିବା ବିଚାର ।
ତୁମ୍ଭଙ୍କୁ ମନ୍ଦୋଦରୀ ଡକାଉଛନ୍ତି ପୁଣ
ତୁମ୍ଭର ଗଲେ ସମସ୍ତେ ହୋଇବେ ସନମାନ
ଶୁଣିକରି ବିଭୀଷଣ ସନ୍ତୋଷ ହୋଇଲା
ପୁଷ୍ପକ ବିମାନରେ ଯାଇଣ ବସିଲା ।
ଏମନ୍ତ ସମୟରେ ଶୁଣ ଗୋ ଭଗବତୀ
ନୈଋତ ସେନାପତିଙ୍କ ଭେଟିଲେ ବଶିଷ୍ଠ ଯତି
ବୋଇଲେ ଶ୍ରୀରାମଙ୍କୁ କହିବ ଯାଇଁ କରି
ଜମ୍ବୁକଳ୍ପ ଭୂମିରେ କମ୍ପା ଅଛନ୍ତି ରୂପଧାରୀ

ସେ ଭୂମିରେ ରହିଲେ ଉତପାତ ଜାତହେବ
ଶ୍ରୀରାମଙ୍କୁ କହିଣ ଘେନି ଆସ ବେଗ ।
ନୈଋତ ସେନାପତି ବେଗେ ଚଳିଗଲା
ନନ୍ଦିଘୋଷ ରଥେ ଯାଇ ଶ୍ରୀରାମ ଭେଟିଲା ।
ବୋଇଲା ଗୁରୁ ବଶିଷ୍ଠ ଭେଟିଲେ ତୁମ୍ଭ ପାଶ
ଜମ୍ବୁ କଳ୍ପ ଭୂମିରେ କମ୍ପା କରୁଛି ଅଳସ ।
ଶୀଘ୍ର ଉପୁଜିବଟି ବେଗେ ତୁମ୍ଭେ ଆସ
ଗୁରୁ ମୋତେ ଭେଟିବାକୁ କହିଲ ସନ୍ଦେଶ ।
ଶୁଣିଣ ଶ୍ରୀରାମଚନ୍ଦ୍ର ତିନି ଭାଇ ଘେନି
ସେନା ଯୂଥପତିଙ୍କ ସଙ୍ଗତରେ ପୁଣି ।
ଋକ୍ଷ କପି ଭଲ୍ଲୁକ ଯେତେ ଥିଲେ ପୁଣ
ସମତାଳ ତୁଳତୁଳ କେତେକ ବହନ ।
ଶଙ୍ଖ ମହୁରୀ ବାଦ୍ୟ ଯେ ବାଜେ କାହାଳ
ଟମକ ନିଶାଣ ଯେ ତୂରୀ ବୀଣା ତାଳ ।
ଋକ୍ଷ କପିଗଣେ କରନ୍ତି ଆଗେ ନୃତ୍ୟ
ଖେମଟା ରାଗରେ ଯେ ନାଚନ୍ତି ହୋଇ ମତ୍ତ
କେତେ ଗାଲଫୁରିବାଏ କେତେ ମାଳଗୀତ ଗାଇ
କେତେ ଚସ ମାରିଣ ଆଗରେ ଛିଡ଼ା ହୋଇ ।
ଆଗରେ ରୁଚି ଛତା ଯେ ତରାସ ଆଲଟ
ଚଅଁର ମୟୂର ଝୁଲ ଧରନ୍ତି ନିଯୋଗେତ ।
ନନ୍ଦିଘୋଷ ରଥରେ ବିଜେ ରାମଚନ୍ଦ୍ର
ଦେବଗୋଷ୍ଠୀରେ ଯେସନେ ଶୋଭାପାଏ ଇନ୍ଦ୍ର
ନାଗଲୋକ ମଧ୍ୟରେ ବାସୁକି ଯେସନେ ରହି
ଶିବ ମଧ୍ୟରେ ଯେସନେ ସଦାଶିବ ଶୋଭାପାଇ
ମୁନିଙ୍କ ମଧ୍ୟରେ ଯେସନେ ପାଏ ବ୍ରହ୍ମା ଶୋଭା
ତାରାଙ୍କ ମଧ୍ୟରେ ଯେସନେ ଶଶୀପାଏ ଶୋଭା
ତେସନ ପ୍ରାୟେ ଶ୍ରୀରାମ ପାଉଛନ୍ତି ଶୋଭା
ସ୍ୱର୍ଗରେ ଦେବତାଏ ଦେଖିଣ ମନେ ଲୋଭା ।
ଶ୍ୱେତ କୁସୁମ ବୃଷ୍ଟି ଯେ କରନ୍ତି ଦେବଗଣ
ସ୍ୱର୍ଗେ ଅପ୍ସରୀ ଯେ ନୃତ୍ୟ କରନ୍ତି ପୁଣ ।
ବିଭୀଷଣଙ୍କୁ ମେଲାଣି ଦେଇ ରୂପଧାରୀ
ମାତଳିକି ବୋଇଲେ ରଥ ଦିଅ ଚଳି ।
ଶୁଣିଣ ମାତଳି ଯେ ରଥ ବାହିଦେଲା
ନନ୍ଦିଘୋଷ ସୁବେଳ ଗିରିରେ ପ୍ରବେଶିଲା ।
ଆଗରେ ସେନାପତି ଯୂଥପତି ପୁଣ
ମଲ୍ଲ ମହାମଲ୍ଲ ଯେ ସୁଗ୍ରୀବର ଜାଣ ।

ପଛରେ ଭରତ ଶତ୍ରୁଘ୍ନ ଯେ ଲକ୍ଷ୍ମଣ
ଦୁଇପାଖେ ଋଷକପି ଚଳନ୍ତି ଗହଳେଣି ।
ସ୍ୱବଳସ୍ଥା ଗିରିରେ ସେ ହେଲେ ପରବେଶ
ରାମଚାଳ ଶବଦରେ ଦୂରେ ଉଦବଶ ।
ନଗର କୂଳରେ ସବେ ମିଳିଲେ ତହଁର
ନନ୍ଦିଘୋଷ ରଥରୁ ଓହ୍ଲାଇ ରାମରାଜ ।
ବଶିଷ୍ଠଙ୍କ ପାଶେ ଯାଇ ପ୍ରବେଶ ହୋଇଲେ
ଓଳଗ ମେଲାଇ ରାମ ମାଢ୍ୟ ଧର୍ମ କଲେ ।
ବଶିଷ୍ଠ ବୋଇଲେ ପ୍ରଭୁ ସୁକଲ୍ୟାଣ ହୁଅ
ସପ୍ତଦ୍ୱୀପେ ତୋର ନାମ ଜୟନ୍ତୁ ମୁନିପ୍ରିୟ ।
ଜୟ ହେଲା ସ୍ଥାନେ ବାବୁ ନ ରହନ୍ତୁ କଟେ
ରହିଲେ ସେ ସ୍ଥାନରେ ଉପୁଜଇ ଦନ୍ଦ ।
ସତେ ରହିଲେ ଅନର୍ଥ ଉପୁଜେ ଅନେକ
ତୁମ୍ଭେ କେନ୍ଦ୍ରେ ରହିଲ ସେ ସ୍ଥାନେ ଦିନଯାକ
ପ୍ରମାଦ ଗୋଟିଏ ତୋତେ ଏଠାରେ ହୋଇବ
ଛଟେ ଗଲେ ଏଠୁ ଫିରୁ ହେ ରାଘବ ।
ଯାଅ ଯାଅ ନିତ୍ୟକର୍ମ ସାର ଯା ନଗରେ
ଆଜ ପାକ ଅନ୍ନ ଭୁଞ୍ଜି ଜନନୀ ହସ୍ତରେ ।
ଶୁଣି ଚହୁଁ ରାମଚନ୍ଦ୍ର ବେଗେ ଚଳିଗଲେ
ଜନନୀଙ୍କ ସମ୍ମୁଖେ ସେ ପ୍ରବେଶ ହୋଇଲେ ।
ଚରଣେ ଓଳଗି ରାମଚନ୍ଦ୍ର ହେଲେ ଉଭା
ଦେଖି ଲୀଳାବତୀ ରଥୁ ଓହ୍ଲାଇ ପାଏ ଶୋଭା
ଶ୍ରୀରାମଙ୍କୁ କୋଳକରି ମୁଖେ ଚୁମ୍ବ ଦେଲେ
ଚଉଦ ବରଷ ଛମାସେ ଦେଖିଲି ବୋଇଲେ
ଚିରଜୀବୀ ହୋଇ ସୁଖରେ ସୁଖ ରାଜ୍ୟ କର
ଜନପୁର ଲୋକେ ତୋର ଖଟନ୍ତୁ ପଦୁର ।
ଚାଲ ବାବୁ ବେଗେ ହେ ସ୍ନାନବିଧି କର
ମୁହିଁ ପାକ ରାନ୍ଧିବି ଭୋଜନ ବିଧି ସାର ।
ନିଦେଶକୁ ପୁରରେ ଯାଇ ଥିଲେ ପୁଣ
ଜନନୀକ ଦେଖିଲେ ତା ଦୋଷ ଯାଏ ପୁଣ ।
ଭରିଯାକୁ ଦେଖିଲେ ବିରହ ଦୋଷ ଯାଇ
ପିତାକୁ ଦେଖିଲେ ବହୁତ ଫଳ ପାଇ ।
ଭାଇଙ୍କ ଦେଖିଲେ ଦୁଃଖ ହୁଏ ଦୂର ଯାଇ
ପୁତ୍ର ଦୁହିତା ଦେଖିଲେ ମିଳେ ନିଧି ତାଇ ।
ବାନ୍ଧବ ଜ୍ଞାତି ଦେଖିଲେ ହରଷ ହୁଏ ମନ
ଗୁରୁ ଦର୍ଶନେ ହୃଦରୁ ଉଦୟ ହୁଏ ଜ୍ଞାନ ।

ତାହାଙ୍କି ଦେଖିଲେ ବାବୁ କୁଳ ତାର ଭଲ
ରାଜ୍ୟରେ ପ୍ରବେଶ ହେଲେ ଉଜ୍ଜ୍ୱଳ ଯେ କୁଳ
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ମନହେଲେ
ନିଯୋଗୀମାନେ କେତି ଫଳସା ମାଗଣାଇଲେ
ତିନି ଭାଇ ଫଳସା ହେଲେ ବେଗେ ଲାଗି
ଜନନୀଙ୍କ ଗୃହିଁ ଭାଇ ଉଜ୍ଜ୍ୱଳ ବିଧି ଲାଗି ।
ସମସ୍ତଙ୍କୁ ଘେନି ଶ୍ରୀରାମ ନଦୀରେ ସ୍ନାନକଲେ
ପିତୃ ତର୍ପଣ ସାରି ନିଜ ପୁରେ ଗଲେ ।
ଜନକ ମଣ୍ଡପରେ ହେଲେ ପରବେଶ
ଅମଳାଣ ବସ୍ତ୍ର ପିନ୍ଧି ସାରିଲେ ତିଳକ ।
ବାସୁକ ସିଂହାସନ ଉପରେ ବଜେ କଲେ
ବାଦ୍ୟ ତେଲଙ୍ଗି କାହାଳି ନିଶାଣ ବଜାଇଲେ
କନା ଧନା ଦେଇ ଛତ୍ର ହୋଇଲାକ ଠିଆ
ମଙ୍ଗଳ ଆଳତି ବଶିଷ୍ଠ କଲେକ ନୁଆ ।
ତିନି ଭାଇ ମଣ୍ଡ ଯେ ସାରିଲେ ସେଠାରେ
ଜନନୀ ନିତ୍ୟକର୍ମ ସାରିଲେ ସତ୍ୱରେ ।
ସେଠାରୁ ଜନନୀ ଯାଇ ରୋଷରେ ପ୍ରବେଶ
ପାକ ସମାପିଲେ ଦଶରଥଙ୍କ ରାଣୀହଂସ ।
ତିନିଭାଇ ସୁଗ୍ରୀ ଘେନି କଲେକ ଭୋଜନ
ଷଡ଼ରସେ ଭୋଜନ କଲେକ ଷଡ଼ଜଣ ।
ଆଚମନ ସାରଣ ବଡ଼ିଆ ଲାଗି ହେଲେ
ଭିନ୍ନ ପଲଙ୍କରେ ଯାଇଣ ପହୁଡ଼ିଲେ ।
ଋଷ କପି ଭଲୁ ଯେ ଅଷ୍ଟ ସେନାପତି
ହାତୀ ରଥୀ ଅଶ୍ୱ ଯେତେକ ପଦାତି ।
ବଶିଷ୍ଠଙ୍କ ଆଜ୍ଞାରେ ସମସ୍ତେ କଲେ ସ୍ନାନ
ଅମୃତ ଭୋଜନ ଯେ କଲେ ତତକ୍ଷଣ ।
ସନ୍ତୋଷ ହୋଇଣ ସମସ୍ତେ ନିଦ୍ରା ଗଲେ
ନ ପଣ୍ଡିତମାନେ ସେ ପଲଙ୍କରେ ଶୋଇଲେ ।
ଅଙ୍ଗଦ ଶତ୍ରୁଘ୍ନ ଗୁହ ନାମେ ଯେ ଶବର
ସମସ୍ତଙ୍କୁ ଜଗି ରହିଲେ ସେତୁ ଯେ ରାଘବ
ବଶିଷ୍ଠ ବାସୁଦେବଙ୍କୁ ଲୟ କଲେ ପୁଣ
ଲକ୍ଷେକ ମୃଗତ ପାତ୍ର ମନ୍ତ୍ରୀ ଯେ ହୋଇଣ ।
ଏଥି ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ହନୁମନ୍ତ ଚଳିଗଲା ଲଙ୍କା ନାମେ ପୁରୀ ।
ଜାନକୀ ପାଶରେ ଯାଇ ହେଲେ ପରବେଶ
ଦେଖିଣ ଜାନକୀ ଯେ ମନରେ ହରଷ ।

ଜାନକୀର ଚରଣରେ ମାରୁତି ଉଳଗିଲେ
ଜାନକୀ ଆଗରେ କରଯୋଡ଼ି ଛିଡ଼ା ହେଲେ
ହନୁ ବୋଲେ ଜାନକୀ ଗୋ ଦେବଙ୍କ କଷ୍ଟ ଗଲା
ଦଶମୁଖ ରାବଣକୁ ଯମ ସେ ଧରିନେଲା ।
ଶ୍ରୀରାମ ବାଣରେ ସେ ହୋଇଲା ନିଧନ
ତୁମ୍ଭର କ୍ରୋଧରେ ଏବେ ମଲାକ ରାବଣ ।
ସାତଦିନ ଦଶଦଣ୍ଡ ପର୍ଯ୍ୟନ୍ତେ ଯୁଦ୍ଧ କଲା
କର୍ମର ଅବଳେ ସେ ପ୍ରାଣ ହରାଇଲା ।
ଜାନକୀ ବୋଇଲେ ମୋର ଶାଶ୍ରୁ ଗଲେ କେଣେ
ଦିନଭାଇ ଅଛନ୍ତି ମୋ ସ୍ୱାମୀ ସଙ୍ଗେ ଯେଣେ
ମାରୁତି ବୋଇଲେ ଦିନଭାଇଙ୍କ ସଙ୍ଗତରେ
ଦେନଣ ନିଦ୍ରା ଗଲେ ପଲଙ୍କ ଉପରେ ।
ଜାନକୀ ବୋଇଲେ ତାଙ୍କୁ ପଲଙ୍କ କାହିଁ ମିଳ
ବନଗାବଙ୍କ ସଙ୍ଗତରେ ସେ କରୁଛନ୍ତି କେଳି
ଜନମାଙ୍କ ପାଖେ ଗୃହପୁଷ୍ପ ସୁଗ୍ରୀ ଭୁଞ୍ଜି
ଲକ୍ଷେ ରଜା ଭୋଜନ କଲେ ଗଳଗାଜ ।
ସୈନ୍ୟବଳ ହାତୀ ରଥୀ ଓଟ ଅଶ୍ୱ ଯେତେ
ଋକ୍ଷ କପି ବାନର ଭଲ୍ଲୁକ ଅଛନ୍ତେ ।
ସମସ୍ତେ ଅମୃତ ଭୋଜନ ତୃପ୍ତି କଲେ
ଅଚଳା ହୋଇ ଗିରି ଉପରେ ଶୋଇଲେ ।
ଜାନକୀ କହୁଥିଲେ ଭଲ ଏ ରାମଚନ୍ଦ୍ର
ଅକ୍ଷୟ ରାବଣକୁ ମାରିଲେ ରଜା ଇନ୍ଦ୍ର ।
ଜନପୁରକୁ ଅଭୟ ଆଜ ତୁମ୍ଭେ କଲ
ଦେବଲୋକଙ୍କୁ ତୁମ୍ଭେ ତ ସ୍ୱର୍ଗରେ ବସାଇଲ
ମୋର ଯେତେ ଦୁଃଖ ଥିଲା ସକଳ ପଳାଇ
ତୁମ୍ଭଙ୍କୁ ଦେଖଣ ମୁଁ ଯେ ଶକତି ମନ୍ତ୍ରୀ ।
ଏତେ ବଚନ ଦେବୀ ମନରେ ତୋଷହେଲେ
ପବନ ନନ୍ଦନକୁ ସ୍ନେହେଁଣ ବୋଇଲେ ।
ମାଗ ମାଗ ମାରୁତି ହୋ ଦେବି ମୁଁ ବଧାଇ
ଶୁଭ ବାରତା ତୁ ଆସି ମୋର ଆଗେ କହି
ମାରୁତି ବୋଇଲେ ଗୋ ଜନନୀ ଏବେ ଶୁଣ
ରାବଣର ବୋଲରେ ଗୋ ରାକ୍ଷସୀମାନେ ପୁଣ
ଦୁର୍ମୁଖ କଥା ତୋତେ କହନ୍ତି ପ୍ରତିଦିନ
ତୁମ୍ଭଙ୍କୁ ଡରାଉଥାନ୍ତି ସେ ଭୟ କରାଇଣ ।
ଏତେକ ମାଗୁଣି ମୋତେ ଦିଅ ଗୋ ଜନନୀ
ତାହାଙ୍କୁ ମାରଣ ସୁବଳପ୍ୱା ଦିବ ପୁଣି ।

ତେବେ ମୋର ମନୋରଥ ହୋଇବାକ ପୂର୍ଣ୍ଣ
ଜାନକୀ ବୋଇଲେ ବାବୁରେ ନୁହଇ ସେମାନ
ରଜାର ବେଳ ବିନା କରନ୍ତି ପ୍ରଜାଲୋକ
ଯାହା ସେ ଆଜ୍ଞା ଦିଅନ୍ତି କରନ୍ତି ତାର ଲୋକ
ରଜାର ଅନ୍ନ ଜଳ ଖାଆନ୍ତି ସେମାନେ
ଦୁଃଖୀଜନ ବିନା ବୋଲକାରୀ ଜନେ ।
ତାହାଙ୍କୁ ମାରିବାର ଅଟଇ ଅକାରଣ
ଆମ୍ଭର ଭଗାରି ମଲା ଲଙ୍କାର ରାବଣ ।
ଯାଅ ବାବୁ ଏମାନଙ୍କୁ ନକର କ୍ରୋଧ ମନ
ଅଯୋଧ୍ୟା ଗଲେ ତୋତେ କପାଳ ଦଣ୍ଡା ଦେବି ପୁଣ
ଯାଅ ବାବୁ ମାରୁତି ହୋ ଶ୍ରୀରାମ ସଙ୍ଗେ ରହ
ତୋହର ପ୍ରସାଦେ ମୋତେ ଦଶରଥ ପୁଅ ।
ଜାନକୀ ଚରଣେ ହନୁ ଉଳଗ ମେଲାଇଲା
ସୁବଳପ୍ୱା ଗିରିରେ ଯାଇଣ ମିଳିଲା ।
ପାର୍ବତୀ ଦେବୀ କହେ ବିଭୀଷଣ ଶୁଣ
ଶ୍ରୀରାମ କହିବାରୁ ସନ୍ତୋଷ ମନ ଜାଣ ।
ଲଙ୍କାଗଡ଼କୁ ଯାଇଣ କେବଣ କୃତ୍ୟ କଲା
ମନ୍ଦୋଦରୀ ସଙ୍ଗରେ କେମନ୍ତେ ମେଳହେଲା
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ଭରୀ
ନାଦ ନାମେ କୁମରକୁ ଭେଟିଲା ମନ୍ଦୋଦରୀ
ବିଭୀଷଣ ପାଶରେ ଯାଇ କୁମର ମିଳିଲା
ଶ୍ରୀରାମଙ୍କୁ ଉଳଗି ହୋଇ ସେ ଜଣାଇଲା ।
ସନ୍ତୋଷରେ ଶ୍ରୀରାମ ବିଭୀଷଣକୁ କହି
ଶ୍ରୀରାମ ବୋଲେ ବିଭୀଷଣ ଲଙ୍କାକୁ ଯାଇ ।
ଅନ୍ତଃପୁରେ ବିଭୀଷଣ ହେଲେକ ପ୍ରବେଶ
ଦେଖିବାରୁ ରାଣୀହଂସ ମନରେ ହରଷ ।
ଉଠିଣ ସମସ୍ତେ ଯେ ମାନ୍ୟ ଧର୍ମ କଲେ
ମନ୍ଦୋଦରୀ ରାଣୀ ବିଭୀଷଣକୁ କହିଲେ ।
ବୋଇଲେ କବୁଦ୍ଧି କହିବା ଲଙ୍କପତି
ସମସ୍ତେ ତ ମଲେ ତାଙ୍କୁ କେମନ୍ତେ ଦେବା ଗତି
ବିଭୀଷଣ ବୋଲେ ସମସ୍ତଙ୍କୁ ଏକାଦିନ
ଜାତିଙ୍କି ବସାଇ ଆମ୍ଭେ ଭୋଜଦେବା ପୁଣ
ସୁବର୍ଣ୍ଣ ତାହାର ଅଂଶ କରୁ ସେ ମୂକତ
ସୁବାହୁ ଖୁଡ଼ୁତା ପିତା ସଭଙ୍କି କରୁ ମୋକ୍ଷ
ନାଦ କୁମର ଥାଉ ପିତାର କାରଣେ
ଏତେ ବୋଲି ବିଭୀଷଣ କଲାକ ଭିଆଣେ ।

ସେହିଦିନ ଉପବାସରେ ସମସ୍ତେ ରହିଲେ
ସମୁଦ୍ରରେ ପଶିଣ ସ୍ନାନ ଯାଇ କଲେ ।
ରାଣୀହଂସ ସହିତେ ସ୍ନାନ କଲେ ଯାଇ
ଅସୁର ଘରର ବିଧି ଯେସନେକ ହୋଇ ।
ରଜନୀ ଶେଷ ହୁଅନ୍ତେ ହୋଇଲା ପୁଣ ଦିନ
ସୁକର୍ଣ୍ଣ ସୁବାହୁକୁ ଯେନ ପୁରୋହିତ ଗଣ ।
ଅସୁର ଘର ବିଧିରେ କଲେକ କରମ
ସମସ୍ତଙ୍କୁ ପିଣ୍ଡଦାନ ଦେଲେ ଦୁଇଜଣ ।
ଜାତି ବନ୍ଧୁ କୁଟୁମ୍ବଙ୍କୁ ନେଉଣ ଆଣିଲେ
ଲଙ୍କାଗଡ଼ ମଧ୍ୟରେ ଯେତେକ ଲୋକ ଥିଲେ
ସମସ୍ତଙ୍କୁ ଭୋଜନ ଦେଲେ ନାନା ପରକାରେ
ମଦ୍ୟ ମାଂସ ଯେତେ ସେବନ ପ୍ରକାରେ ।
ଦୈତ୍ୟମାନଙ୍କୁ ଭୋଜନ ପରିପୂର୍ଣ୍ଣେ ଦେଲେ
ଦୈତ୍ୟମାନଙ୍କର ମନ ସମସ୍ତ ମିଳାଇଲେ ।
ସେଦିନ ବିଧବା ଯେ ହେଲେ ସବୁରାଣୀ
ଅଳଙ୍କାର ଚୂଡ଼ି କାଢ଼ି ଥୋଇଲେ ସର୍ବେ ପୁଣି
ମଙ୍ଗଳର ସରଞ୍ଜାମ ହସ୍ତରେ ରଖିଲେ
ବିଭୀଷଣଙ୍କୁ ଯେଣୁ ସମସ୍ତେ ଆସ୍ତେ କଲେ ।
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣ ହେ ନୃପତି
ଦେଶକର ବନ୍ଧାଣୀ ଯେ ଡକାଅ ତଡ଼ନ୍ତେ ।
ଶୁଣିଣ ବିଭୀଷଣ ବନ୍ଧାଣୀ ଡକାଇଲେ
ରାଣୀଙ୍କର ଅଳଙ୍କାର ନୂଆକର ବୋଲେ ।
ତାହା ଶୁଣି ଲୋହିତ ବଳ ବେଗ ଆସି
ପୁରୁଣା ଅଳଙ୍କାର ନୂଆ କଲେ ବସି ।
ତାଡ଼ ବଳ ଚୂଡ଼ ଯେ ବାହୁଟି ବଙ୍କାମାଳ
ପାହୁଡ଼ ନୁପୁର ଝୁଣ୍ଟିଆ ସଜ କରି ।
ଅଣ୍ଟାସୂତା ପଦକ ଯେ ଚନ୍ଦ୍ର ହାରମାନ
ହୀରା ମାଣିକ୍ୟରେ ସର୍ବ କଲେକ ଯତନ ।
ଝଞ୍ଜିରୀ ଚଉରୀ ମୁଣ୍ଡିହିରା କାଠି ପୁଣ
କାପ ମଲ୍ଲକଡ଼ୀ ଫାସିଆ ଫିରିଫିରା ଜାଣ ।
ପ୍ରହରକ ଭିତରେ ସମସ୍ତ ନୂଆ କଲେ
ଅଷ୍ଟରତ୍ନ ବସାଇ ସଜାଡ଼ି କରି ଦେଲେ ।
ବନ୍ଧାଣୀ ଯିବାରୁ ଯେ ମନ୍ଦୋଦରୀ ପୁଣ
ବିଭୀଷଣଙ୍କୁ ଯେନ କରଇ ବିବରଣ ।
ବିଭୀଷଣ ବୋଲେ ସର୍ବେ ଅଳଙ୍କାର ନିଅ
ପାଟ ପଟମ ପିନ୍ଧିଣ ସମସ୍ତେ ସଜ ହୁଅ ।

ତତକ୍ଷଣେ ରାଣୀମାନେ ନୂତନ ସଜ ହେଲେ
ଭଣ୍ଡାରୁ ନୂତନ ଶାଢ଼ୀ କାଢ଼ି ଯେ ପିନ୍ଧିଲେ ।
ସବୁରାଣୀମାନ ହେଲେ ଅପ୍ସରୀ ବେଶ
ମାଳ ଗୁଡ଼ି ଝରାକାଠି ଲଗାଇ ସମସ୍ତ ।
ଖଟ ଦୋଳ ପଲଙ୍କର ଉପରେ ବସିଲେ
ନୂତନ ବେଶ ହେବାରୁ ସଂସାର ମୋହିଲେ ।
ଗଲୁ ଶତେ ଗୁଣରେ ହୋଇଲେ ସୁନ୍ଦର
ଦଣ୍ଡକେ ମୋହିପାରନ୍ତି ବ୍ରହ୍ମା ବିଷ୍ଣୁ ହର ।
ଦାସୀ ପରିଚାରୀ ଯେଯାହାରେ ସେବାକଲେ
ଧାଇଁ ମୃଦୁସୁଲ୍ଲ ଯେ ଖଟଣୀ ଖଟିଲେ ।
ବାସୀପାଣି ତାମ୍ବୁଲ ଭୁଞ୍ଜନ୍ତି ରାଣୀ ହଂସ
ସୁନ୍ଦର ଘଣେ ସମସ୍ତେ ଅତ୍ୟନ୍ତ ବିଶେଷ ।
ମନ୍ଦୋଦରୀଙ୍କି ଡକାଇ କହେ ବିଭୀଷଣ
ମୁଁ ଯାଉଛି ଶ୍ରୀରାମଚନ୍ଦ୍ରଙ୍କ ପାଶେ ପୁଣ ।
ପରମ ବ୍ରହ୍ମ ମୂରତି ଦେଖିଣେ ବଡ଼ ଲୋଭ
ବଇକୁଣ୍ଠ ନାଥ ସେହି ଅଟନ୍ତି ରାଘବ ।
ଜଗତ ଯାହାଙ୍କର ମନରୁ ଜାତ ହେଲା
ଛପନ କୋଟି ଜୀବଜନ୍ତୁ ସେ ଉପାଇଲା ।
ସାତଦ୍ୱୀପ ଶତପୁର ନବଖଣ୍ଡ ମହୀ
ଚଉଦ ଭୁବନ ଯେ ରଚିଲେକ ସେହି ।
ଗୁହାଳତା ଜଙ୍ଗଲ ପାହାଡ଼ ଗିରି କରି
ନାନା ଜୀବମାନଙ୍କୁ ରଖିଲେ ତହିଁ ଭରି ।
ଦେବତା ଅସୁର କରି ସେ ଦୁଇଜଣ କଲେ
ଦୁଷ୍ଟ ଦୈତ୍ୟଗଣ ଦେଖି ଦେବତା କହିଲେ ।
ତେଣୁକରି ଦେବତାଙ୍କର ଛଳେ ବାସୁଦେବ
ଜନ୍ମ ହୋଇଣ ଦୁଷ୍ଟ କରନ୍ତି ହସ୍ତେ ବଧ ।
ଶ୍ରୀରାମଙ୍କୁ ଦେଖିଲେ ଗତିମୁକ୍ତି ଅଛି ପୁଣ
ଦେଖିବୁ ଦେବତାଏ ପଶିବେ ଶରଣ ।
କେତେକ ବରଷରେ ଲଙ୍କେ ରାଜା ସାଧି
ପଶୁ'ରାମ ବାଳୀକ ଜଣିଲେ ଯୁଦ୍ଧେ ସାଧି ।
ଶଙ୍କରୀ ଶେଷ ହୋଇଣ ବଣଘଡ଼ ଦିନ
ନଗଲେ ଅବଗୁଣ ପାଇବେ ରାମ ବାଣ ।
ଯାଉଅଛି ମୁହିଁ ଯେ ନକର ଖେଦ କେହି
ଏତେତବୋଲି ବିଭୀଷଣ ବାହାର ହୋଇଯାଇ
ଏଥୁଅନନ୍ତରେ କଥା କହନ୍ତି ଭଗବତୀ
ଶ୍ରୀମଣସ୍ତୁଦନକଲେବିଭୀଷଣଗଲେମନ୍ଦୋଦରୀକତ

ନାଣ୍ଡ ପୁଷ୍ପବଙ୍କର ଶୁଦ୍ଧ ସେବନ କଲ
ଚଣ୍ଡୀର ସଙ୍ଗରେ ଘାଇ ଶୁଦ୍ଧ ଯେ ସକଳ ।
ଜାଣିକ ଡକାଇ ନସ ଭୂରି ଭୋଜନ ଦେଲେ
ଦେବତା ବ୍ରାହ୍ମଣଙ୍କୁ ତୋଷ କରାଇଲେ ।
ବଣଗଣ୍ଡ ସମସ୍ତରେ ସାରିଲେ ସକଳ
ସୁବାହୁ ସୁକର୍ଣ୍ଣଙ୍କୁ ରଖିଲେ ନବର ।
ନାଦ କୁମରଙ୍କୁ ଡକାଇ କହିଲେକ ସେହି
ଦୁଃଖୀ ଦରିଦ୍ରଙ୍କୁ ଅନ୍ନ ଦାନ ଦିଅ ତୁହି ।
ମନ୍ଦୋଦରୀଙ୍କ ବୋଇଲେ ଶୁଣ ଗୋ ସୁନ୍ଦରୀ
ଦୁଃଖୀଲୋକ ତୋଷ ଧନ ଦେଇ କରି ।
ଏତେ କହି ବିଭୀଷଣ ହୋଇଲା ବାହାର
ଏଥିଉତ୍ତାରୁ କପ ହେଲା ବିସମ୍ବର ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ
ଶ୍ରୀରାମ ରଘୁବୀର ଭୋଜନ ବେଗେ ସାରି ।
ଲକ୍ଷେ ରଜାଙ୍କର ସୈନ୍ୟ କଲେକ ଭୋଜନ
ଶଙ୍ଖ ମନ୍ଦୁରୀ ବାଜେ ଶଙ୍ଖରୀ ଶେଷ ପୁଣ ।
ନିଦ୍ରାରୁ ଉଠି ଶ୍ରୀରାମ ନଗ୍ର କୂଳ ଗଲେ
ନିତ୍ୟକର୍ମମାନ ସାରି ନଦରେ ମିଳିଲେ ।
ଜନନୀ ତିନିହିଁ କଲେକ ସ୍ନାହାନ
ଶ୍ରୀରାମଙ୍କ ପାଶରେ ପ୍ରବେଶ ବହନ ।
ଲକ୍ଷେ ରଜା ନିତ୍ୟକର୍ମ ନଗରେ ସାରିଲେ
ଯେ ଯାହାର ବସାଘରେ ପ୍ରବେଶ ହୋଇଲେ
ସୈନ୍ୟବଳ ସମସ୍ତେ କଲେକ ଯେ ସ୍ନାନ
ଯେ ଯାହାର ନିତ୍ୟକର୍ମ ସାରିଲେ ତକ୍ଷଣ ।
ସେନାପତି ଯୂଥପତି ରଥୀ ମହାରଥୀ
ଋକ୍ଷ କପି ଭଲ୍ଲୁ ଯେ ବଶିଷ୍ଠ ତପସ୍ୱୀ ।
ସମସ୍ତେ ସ୍ନାହାନ ସାରି ନିତ୍ୟକର୍ମ କଲେ
ଏଥୁଅନନ୍ତରେ ଶୁଣ ଶାକମ୍ଭରୀ ଭଲେ ।
କାହାଳୀ ତୁରୀ ବାଜା ବଜାଇ ରଜାଗଣ
କଳା ଧଳା ଛତ୍ର ଟେକାଇ ସମ୍ଭେଣ ।
ସୁଖାସନ ଚଢ଼ିଣ ଶ୍ରୀରାମ ପାଶେ ଗଲେ
ଶ୍ରୀରାମଙ୍କୁ ଦର୍ଶନ କରିବା ନିମନ୍ତରେ ।
ବଶିଷ୍ଠ ପ୍ରବେଶ ହେଲେ ଶ୍ରୀରାମର ପାଶ
ସୁମନ୍ତ ମନ୍ତ୍ରୀ ଯାଇଁ ହେଲେ ପରବେଶ ।
ବଶିଷ୍ଠ ବୋଇଲେ ତୁମ୍ଭେ ମନ୍ତ୍ରୀବର ଶୁଣ
ମଙ୍ଗଳ ଆଳତି ତୁମ୍ଭେ କର ହେ ବେଗଣ ।
ଲକ୍ଷ୍ମଣଙ୍କୁ ବୋଇଲେ ହନୁ ଅଙ୍ଗଦ ଘେନ
ପଶ୍ଚିମ ଦ୍ୱାରେ ତୁମ୍ଭେ ଜଗହେ ଯାଇ ପୁଣି ।
ପୂର୍ବଦ୍ୱାରେ ଯାଇଣ ରହନ୍ତୁ ଶତ୍ରୁଘ୍ନ
ନଳ ନୀଳ ଜାମ୍ବବ ସଙ୍ଗରେ ଯାନ୍ତୁ ପୁଣ ।
ରଜାମାନେ ଦର୍ଶନ କରିବେ ଆସିକରି
ପୂର୍ବଦ୍ୱାରେ ଆସିଣ ପଶ୍ଚିମେ ଯିବେ ଫେରି ।
ଶୁଣିକରି ଦ୍ୱାରୀମାନେ ନିରୋଧ ଯାଇକରି
ଚତୁର୍ ରଜାମାନେ ସଜ ହୋଇଣ ବାହାରି ।
ବେଶହୋଇ ରାମଚନ୍ଦ୍ର ବସିଲେ ସିଂହାସନେ
ଖୁଣ୍ଟିଆ ଡାକହେଲ ଶୁଣିବା ରଜାମାନେ ।
ପୂର୍ବନଗର ରାଜା ଆସ ହେ ବେଗହୋଇ
ଶ୍ରୀରାମଙ୍କୁ ଦର୍ଶନ କରହେ ବେଗ ଯାଇ ।
ଆଗରେ ସୁଗ୍ରୀବର ଭରତ ଘେନି ଜନ
ସୁନାବେତ ଧରି ଆଗେ ହଗ୍ରହେଲେ ପୁଣ ।
ପ୍ରତିହାରୀ ଡାକହେଲେ ମଣିମା ମଣିମା
ଖୁଣ୍ଟିଆ ଡାକ ଦେଲେ ଗୁହାରି ଶୁଣିବା ।
କାହାଳୀ ଶଙ୍ଖ ସ୍ୱର ତୁରୀ ଭେରୀ ସ୍ୱର
ଆଗରେ ଶ୍ୱେତ ପାଟୁଆ ମୟୂର ନାଚେଣ୍ଟିଲ
ପଖାଜ ଯେ ଆଲଟ ବଶୀଣୀ ଘେନି ବସ୍ତ୍ର
ଗୃହିଜାତି ମସ୍ତକ ଉପରେ ନେଇ ଟେକ ।
କଳା ଧଳା ଚଉରୀ ଆଡ଼େଣୀ ଶିର ପରେ
ପିକଦାନୀ ପାଣି ଝରି ବଡ଼ିଆ ଲଗି କଲେ ।
ମଙ୍ଗଳ ଆଳତି ଯେ ବଶିଷ୍ଠ ନେଇ ଦେଲେ
ବନ୍ଦାପନା ବିଧି ଯେ ସମ୍ଭବେ ସାରିଲେ ।
ଅଠର ସହସ୍ର ଯେ ପୂର୍ବଦିଗ ରାଜା
ସେମାନଙ୍କ ଆଗରେ ବାଜେ ଶର ବାଜା ।
ଉତ୍ତରାଷ୍ଟ୍ର ସାର ଯେ ଗିରିଜା ମଣ୍ଡଳ
ମଣ୍ଡଳମଣି ଅଟେ ପୂର୍ବ ଯେ ଦିଗର ।
ଆଗରେ ସେହି ରାଜା କଲେକ ବିଜୟେ
ମଣିମା ମଣିମା ଡାକ ଖୁଣ୍ଟିଆ ଡାକ ଦିଏ ।
ଶ୍ରୀରାମ ଛାମୁରେ ଆସି ହେଲେ ପରବେଶ
ଦେଖିଣ ଶ୍ରୀରାମଚନ୍ଦ୍ର ମନେ ହେଲେ ତୋଷ
ବଶିଷ୍ଠଙ୍କୁ ବୋଇଲେ ଶୁଣିବା ମୋର ବାଣୀ
ଏ ରାଜା ଅଟନ୍ତି ମୋର ଜନମ ଦାସ ପୁଣି ।
ଜାଣୁଛ ମାନ୍ୟ ମୋତେ କରିବେ ହୋଇବଡ଼
ବଶିଷ୍ଠଙ୍କୁ ମାନ୍ୟ ଧର୍ମ ତୁମ୍ଭେ ଯାଇ କର ।

ଶୁଣିକରି ରାଜାମାନେ ମାନ୍ୟ ପୁଣ କଲେ
ତୋଷ ହୋଇଣ ରାଜା ବଚନ କହିଲେ ।
କୁଳକୁ ଚନ୍ଦ୍ରମା ଯେ ହୋଇଲେ ଶ୍ରୀରାମ
ନେହରେ ଦେଖିଣ ମୁକ୍ତ ମୂର୍ତ୍ତି ହେଲୁ ପୁଣ ।
ଭେଟା ଦରଶନ ରାଜା ମାଣିକ୍ୟ ନେଇଦେଲେ
ଅଙ୍ଗଦେଶ ରାଜା ତହୁଁ ଆସିଣ ମିଳିଲେ ।
ସେହୁ ମାଣିକ୍ୟ ପୁଣ ଦେଲେ ଦରଶନ
ତାର ସଙ୍ଗେ ଶତେକ ରାଜା ଆସିଥିଲେ ପୁଣି ।
ଭେଟା ଦରଶନ ଦେଇ ତାର ସଙ୍ଗେ ଗଲେ
ବଙ୍ଗଦେଶ ରାଜା ଆସି ପ୍ରବେଶ ହୋଇଲେ ।
ତାର ସଙ୍ଗେ ଦୁଇଶତ ରାଜା ଆସି ମିଳି
ଭେଟା ଦରଶନ ଦେଇ ସେହୁ ଗଲେ ଚଳି ।
କଳିଙ୍ଗ ଦେଶର ରାଜା ପ୍ରବେଶ ହୋଇଲେ
ସହସ୍ରେ ରାଜାଙ୍କୁ ଘେନ ଦରଶନ କଲେ ।
ଦରଶନ ପାଣି ଦ୍ରବ୍ୟ ଦେଇଗଲେ ଫେରି
ଗୌଡ଼େଶ୍ୱର ରାଜା ପ୍ରବେଶ ଆସିକରି ।
ସହସ୍ରେକ ରାଜା ଘେନ କଲେକ ବର୍ଣ୍ଣନ
ମାଣିକ୍ୟ ପାଣି ଦ୍ରବ୍ୟ ଦେଇ ଫେରିଲେ ବହନ
ମତ୍ସ୍ୟଦେଶ ରାଜା ଆସି ହେଲେ ପରବେଶ
ଏକାମ୍ବର ବନରେ ଅଟଇ ତାର ବାସ ।
ସହସ୍ରେ ରାଜା ତାର ସଙ୍ଗରେ ଯାଇଥିଲେ
ଦେଖି ଦରଶନ ଦେଇ ପଶ୍ଚିମଦ୍ୱାରେ ଗଲେ
[illegible]ଧିପୁର ରାଜା ଯାଇ ହେଲେ ପରବେଶ
ଶତେ ରାଜା ଘେନ ସେହୁ ମିଳେ ରାମପାଶ ।
ସହସ୍ରେ ସୁବର୍ଣ୍ଣ ଦେଇ ଦରଶନ କଲେ
ଶ୍ରୀରାମ ଆଜ୍ଞାରୁ ପଶ୍ଚିମ ଦ୍ୱାରେ ଗଲେ ।
କାଉଁଶି ଦେଶର ରାଜା ହେଲେ ପରବେଶ
ସହସ୍ରେ ରାଜା ତାର ସଙ୍ଗରେ ଅବଶେଷ ।
ଭେଟା ଦରଶନ ଯେ ଦେଇଣ ଚଳିଗଲେ
କ୍ଷୀରଦେଇ ପୁରେ ରାଜା ପ୍ରବେଶ ହୋଇଲେ
ସହସ୍ରେକ ରାଜା ଘେନଣ ଶିରମଣି
ଭେଟାହୋଇ ଦରଶନ ଦେଲେ ବେଗେ ପୁଣି
ଗଙ୍ଗାର ସାଗର ରାଜା ପ୍ରବେଶ ହୋଇଲେ
ଦୁଇସହସ୍ର ରାଜାସଙ୍ଗରେ ତାଉ ନେଲେ ।
ଭେଟାହୋଇ ଭେଟିଦେଇ ବେଗେ ଚଳିଗଲେ
ଭୂଟ ଗିରିଦେଶ ରାଜା ପ୍ରବେଶ ହୋଇଲେ ।
ତିନିସହସ୍ର ରାଜା ସଙ୍ଗେ ନେଇଣ ତାହାର
ଦରଶନ ଥୋଇଣ ସେ କଲେ ନମସ୍କାର ।
ଶ୍ରୀରାମଙ୍କ ଆଜ୍ଞା ଘେନ ଫେରିକରି ଗଲେ
ଲକ୍ଷେ ମୋହର ଦେଇଣ ସେ ବେଗେ ବାହୁଡ଼ିଲେ
ଅଏଁଳା ପିଅଁଳା ରାଜା ହେଲେ ପରବେଶ
ଦୁଇସହସ୍ର ରାଜାଘେନ ମିଳେ ରାମ ପାଶ ।
ଦେଖିଣ ତୋଷ ହୋଇଣ ଫେରିକରି ଗଲେ
ଲକ୍ଷେ ମୋହର ଦେଇଣ ବେଗେ ସେ ବାହୁଡ଼ିଲେ
ସୁବର୍ଣ୍ଣରେଖାର ରାଜା ହେଲେ ପରବେଶ
ସଙ୍ଗରେ ସହସ୍ରେ ନୃପତି ତାହାର ବିଶେଷ ।
କାମଦ ଦେଶର ରାଜା ହେଲେ ପରବେଶ
ନବଶତ ରାଜା ଶ୍ରୀରାମ ପାଶେ ପରବେଶ ।
ଅଷ୍ଟରତ୍ନ ଦେଇ ଫେରି ସେ ବେଗେ ଗଲେ
ପଶ୍ଚିମ ଦ୍ୱାର ବାଟରେ ବାହାର ହୋଇଲେ ।
ଅର୍କ ଘର୍ଥ ରାଜା ତହିଁ ହେଲେକ ପ୍ରବେଶ
ବଇଡ଼ୂର୍ଯ୍ୟ ହୀରା ଦେଇ ରାମଙ୍କୁ କଲେତୋଷ
ଶ୍ରୀରାମ ଆଜ୍ଞା ପାଇଣ ପଶ୍ଚିମ ଦ୍ୱାରେ ଗଲେ
କାଞ୍ଚୀ ଦେଶରରାଜା ପ୍ରବେଶବେଗେହେଲେ
ସହସ୍ରେ ରାଜା ଘେନ କଲେକ ଦରଶନ
ସୁବର୍ଣ୍ଣ ଥରିରେ ରତ୍ନ ପୂରାଇ ଦେଲେ ପୁଣ ।
ପଶ୍ଚିମ ଦ୍ୱାର ବାଟରେ ବେଗେ ଚଳିଗଲେ
ତାହାର ଶାନ୍ତି ଘରେ ଯାଇଣ ମିଳିଲେ ।
ପୁଣ୍ଡ୍ରନଗର ରାଜା ଅଠର ମଣ୍ଡଳମଣି
ଅଠର ସହସ୍ର ରାଜା ବର୍ଣ୍ଣନ କଲେ ପୁଣି ।
ଶୁଣିଲୁଟିକ ଗୋ ହେମବନ୍ତର ଦୁହିତା
ଦକ୍ଷିଣଦେଶର ରାଜାଙ୍କ କହିବା ତୋତେକଥା
ତଉଡ଼ ସହସ୍ରଜନ୍ତ ଦକ୍ଷିଣ ଦେଶ ରାଜା
ସପ୍ତ ମଣ୍ଡଳମଣି କୁ ଶୁଣ ଗୋ ଗିରିଜା ।
ମାଳାଞ୍ଚଳର ରାଜା ଅଟଇ ପ୍ରତାପୀ
ଦୁଇ ସହସ୍ର ରାଜା ତା ଚରଣରେ ଖଟି ।
ଶ୍ରୀରାମଙ୍କୁ ଦରଶନ ସେ ରାଜା ଯାଇ କଲେ
ଲକ୍ଷେକ ମାଣିକ ଦେଇ ଫେରି ସେ ଆଇଲେ
ଶ୍ରୋଣିତ ନଗର ରାଜା କଲେ ଦରଶନ
ସଙ୍ଗରେ ପାଞ୍ଚଶତ ରାଜା ଛନ୍ତି ପୁଣ ।
ଶତେକ ରଥ ଦେଇ ଫେରି ସେହୁ ଗଲେ
ପଶ୍ଚିମ ଦ୍ୱାର ବାଟରେ ବାହାର ହୋଇଲେ

ଚଉଳ ନବଶତ ରାଜା ହେଲେ ପରବେଶ
ଦେଖା ଦରଶନ ଦେଇ ଫେରିଲେ ବିଶେଷ ।
ସଙ୍ଗରେ ସହସ୍ର ରାଜା ତାହାର ଯାଉଥିଲେ
ଲକ୍ଷେ ମୋହର ଦେଇଣ ଦରଶନ କଲେ ।
ପାହାଡ଼କୁଦା ରାଜା ହେଲେ ପରବେଶ
ଷଠିସହସ୍ର ରାଜା ତାର ସଙ୍ଗରେ ବିଶେଷ ।
ସ୍ୱରୂପଧାରିଙ୍କି ଦେଖି ଦେବତା ପ୍ରାୟ ମଣି
ଲକ୍ଷେକ କଉଡ଼ିଅର୍ଘ୍ୟ ଦେଲ୍ଲ ନେଇ ପୁଣି ।
ସମ୍ବଲପୁର ରାଜା ହେଲ ପରବେଶ
ସଙ୍ଗରେ ଦୁଇ ସହସ୍ର ରାଜା ଯେ ବିଶେଷ ।
ଶ୍ରୀରାମଙ୍କୁ ଦେଖିଣ ସେ ସନ୍ତୋଷ ମନକଲେ
ଅଠରଗୋଟି ଘୋଡାଦେଇ ବେଗେଚଳିଗଲେ
ରାମ ନାମ ସୁମରି ପଶ୍ଚିମ ଦ୍ୱାରେ ଗଲେ
ଶାନ୍ତୀ ଘରେ ଯାଇ ସେ ପ୍ରବେଶ ହୋଇଲେ
ପାଟଣା ରାଜା ଯାଇ ହେଲେ ପରବେଶ
ପାଞ୍ଚଶତ ରାଜା ତାର ସଙ୍ଗରେ ବିଶେଷ ।
ଶ୍ରୀରାମଙ୍କୁ ଯାଇଣ କଲେ ଦରଶନ
ଦଶ ସହସ୍ର ଅଶ୍ୱଲକ୍ଷେକ ସୁନାଅଁ ଦେଲେ ପୁଣ
ହସିଣ ଶ୍ରୀରାମ ଯେ ତାଙ୍କୁ ପୁଣ କହି
ଚିନ୍ତା ମନରୁ ଛାଡ଼ି ଘରକୁ ଅଛୁ ଭବି ।
ପାଟଣା ରାଜା କହେ ଅସୁର ଏବେ ମଲ
ତୁମ୍ଭର କୀର୍ତ୍ତି ଯୁଗ ଯୁଗାନ୍ତେ ରହିଲା ।
ଦୈତ୍ୟଙ୍କ ଧ୍ୱଂସରୁ ଆମ୍ଭେ ହୋଇଲୁ ନିଶ୍ଚିନ୍ତ
ଆମ୍ଭଠାରେ ଦୟାକରି ଥିବ ହେ ରଘୁନାଥ ।
ଶ୍ରୀରାମଙ୍କୁ କହିଣ ସେ ବେଗେ ଚଳିଗଲେ
ପଶ୍ଚିମଦ୍ୱାର ବାଟରେ ବାହାର ହୋଇଲେ ।
ହଳଦି ଦେଶର ରାଜା ହେଲେ ପରବେଶ
ଦୁଇଶତ ରାଜା ତାର ସଙ୍ଗରେ ବିଶେଷ ।
ଜାତିରେ ଯବନ ସେ ଅଟଇ ପରସ୍ତୁ
ମକ୍କା ସହର ପର୍ଯ୍ୟନ୍ତ ଲାଗିଛି ତାର ବାସ
ଘୋଡ଼ା ଲକ୍ଷ ଆଣି ସେ ଲକ୍ଷମାନ ଦେଲ
ନିସ୍ତରିଲ ବୋଲିଣ ଶ୍ରୀମୁଖରେ ଜଣାଇଲା ।
କହୁଥି ବେଦରେ ସେ କଲା ନମସ୍କାର
କଳିର ଧ୍ୱଂସନ ବାନା ଅଟେ ପ୍ରଭୁ ତୋର ।
ଚତୁର୍ଦ୍ଧା ମୂରତି ମୁଁ ଦେଖିଲି ନୟନରେ
ଏତେ କହି ଯବନ ଚରଣେ ଲୋଟି ପାଳେ ।

ଶ୍ରୀରାମ ଆଜ୍ଞା ଦେଲେ ଯାଅ ବାବୁ ସୁଖେ
ପଶ୍ଚିମ ଦ୍ୱାର ବାଟ ଗମନ କର ରଥେ ।
ଅଯୋଧ୍ୟାକୁ ଗଲାବେଳେ ହେବହେ ମେଳାଣି
ଏତେକହି ଆଜ୍ଞା ଯେ ଦେଲେ ରଘୁମଣି ।
ଯବନ ଚଳିଗଲା ପଶ୍ଚିମ ଦ୍ୱାର ବାଟେ
ଶାନ୍ତୀଘରେ ପ୍ରବେଶ ହେଲା ସେ କୁଶଳେ ।
ଏଥିଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦକ୍ଷିଣ ଦେଶ ରାଜା ସମସ୍ତେ ଦେଖାକରି ।
ପଶ୍ଚିମ ଦିଗରେ ଅଠାଶୀ ସହସ୍ର ରାଜା
ଦଶଗୋଟି ମଣ୍ଡଳେଶ୍ୱରୀ ଶୁଣ କୁ ଗିରିଜା ।
କର୍ଣ୍ଣଗିରି ରାଜା ଯେ ନଉଳ ନାମେ ପୁଣ
ଆଠ ସହସ୍ର ରାଜା ଅଟେ ତାହାରସଙ୍ଗେଣ
ଘେନିଣ ସକଳ ରାଜା ବେଗେ ଚଳିଗଲା
ଶ୍ରୀରାମଙ୍କ ପାଦେ ଯାଇ ମାନ୍ୟ ଧର୍ମ କଲା ।
ଆଠଲକ୍ଷ ସୁବର୍ଣ୍ଣ ଯେ ପାଣି ଦ୍ରବ୍ୟ ଦେଇ
ପଶ୍ଚିମ ଦ୍ୱାରବାଟେ ବାହାର ହୋଇଯାଇ ।
କର୍ଣ୍ଣାଟ ଦେଶର ରାଜା ଅଟଇ କେଶରୀ
ଦୁଇ ସହସ୍ର ରାଜାଙ୍କର ଅଧିକାରୀ ତାହାର ।
ସାଙ୍ଗରେ ନୃପତି ଘେନି ରାମ ପାଶେ ଗଲା
କୋଦଣ୍ଡ ଧରି ଚରଣେ ନମସ୍କାର କଲା ।
ଲକ୍ଷେକ ମାଣିକ୍ୟ ଦେଇ କଲା ଦରଶନ
ପଶ୍ଚିମ ଦ୍ୱାର ବାଟରେ ଗଲେ ତତକ୍ଷଣ ।
ପାଣ୍ଡ୍ରୋଇ ଦେଶର ରାଜା ବେଗେ ଚଳିଗଲା
ଦୁଇ ସହସ୍ର ରାଜା ଘେନି ପ୍ରବେଶହୋଇଲା
ଲକ୍ଷେକ ରୌପ୍ୟ ଧନ ଦେଇଣ ଦରଶନ
ପଶ୍ଚିମ ଦ୍ୱାର ବାଟରେ ଚଳିଲା ଗାରମଣି ।
ସାତମାଳ ରାଜା ବେଗେ ପ୍ରବେଶ ହୋଇଲା
ସହସ୍ରେକ ନୃପତି ତାହାର ସଙ୍ଗ ହୋଇ
ଶ୍ରୀରାମର ପାଦେ ଯାଇ କଲା ନମସ୍କାର
ପରଶୁ ପଥର ଦେଇ ଫେରିଲା ସତ୍ୱର ।
ସୋମନ୍ତି ଦେଶର ରାଜା ତାର ପଛେ ଗଲା
ଦୁଇ ସହସ୍ର ରାଜା ତାର ସଙ୍ଗତରେ ହୋଇ
ଶ୍ରୀରାମଙ୍କ ପାଦେ ଯାଇ ଉଳଗ ହୋଇଲା
ସମସ୍ତ ରାଜାଙ୍କୁ ଘେନି ମାନ୍ୟ ଧର୍ମ କଲା ।
ରତ୍ନେକ ପାଣି ଦ୍ରବ୍ୟ ଦେଲାକ ନେଇ ପୁଣ
ପଶ୍ଚିମ ଦ୍ୱାର ବାଟେ କଲେକ ଗମନ ।

ସିଂହଳଦେଶର ରାଜା ହେଲକ ପରବେଶ
ସଙ୍ଗରେ ଅଛନ୍ତି ତାର ରାଜା ପାଞ୍ଚସହସ୍ର ।
ହୀରାର ଖଟେକ ମାଳ ମୋତି ରୂପ ସର
ଶ୍ରୀରାମଙ୍କ ଚରଣେ ଥୋଇଲା ନେଇକରି ।
ନମସ୍କାର କରିଣ ପଶ୍ଚିମ ଦ୍ୱାରେ ଗଲା
ସମସ୍ତଙ୍କୁ ବିଷ୍ଣୁରୂପ ଦୃଶ୍ୟ ଯେ ହୋଇଲା ।
କରୁଣାସାଗର ରାଜା ଜଙ୍ଗଲ ତାର ମୂଳେ
ଦୁଇ ସହସ୍ର ନୃପତି ଖଟନ୍ତି ପାଦତଳେ ।
ଶ୍ରୀରାମଙ୍କ ସମ୍ମୁଖର ହେଲେ ପରବେଶ
ଦରଶନୀ କରି ଲକ୍ଷେ ସୁନାଆ ଦେଲେ ସେତ
ପଶ୍ଚିମ ଦ୍ୱାର ବାଟେ ବାହାର ହୋଇଗଲେ
ଆପଣାର ଶାଢ଼ୀ ଘରେ ପ୍ରବେଶ ହୋଇଲେ
ମଛ ନଧିଦେଶ ରାଜା ହେଲେ ପରବେଶ
ଗୃହସହସ୍ର ରାଜା ତାର ସଙ୍ଗରେ ବିଶେଷ ।
ଶ୍ରୀରାମଙ୍କ ଆଗେ ଯାଇ ରାଜା ହେଲେ ଉଭା
ଅଷ୍ଟରତ୍ନ ଭୂଷଣ ବସାଇ ଦିବ୍ୟ ଶୋଭା
ପୁଣି ଦ୍ରବ୍ୟ ନେଇଣ ଦେଲେକ ସହସ୍ରେ
ମାନ୍ୟ ଧର୍ମ କଲେ ରାଜା ଶ୍ରୀରାମଙ୍କ ପାଶେ
ନସ୍ତରିଲ ବୋଲିଣ କହି ଚଳିଗଲା
ପଶ୍ଚିମ ଦ୍ୱାର ବାଟରେ ଗମନ ସେହୁ କଲା
ଦ୍ୱାରିକା ଦେଶର ରାଜା ହେଲେ ପରବେଶ
ସଙ୍ଗରେ ତିନି ସହସ୍ର ରାଜା ତ ବିଶେଷ ।
ଶ୍ରୀରାମଙ୍କ ସମ୍ମୁଖେ ପ୍ରବେଶ ସେହୁ ହେଲା
ଓଳଗି ମେଲିଇଣ ଦରଶନ କଲା ।
ଲକ୍ଷେ ସ୍ୱର ଶଙ୍ଖ ସେ ଦେଇଣ ସମ୍ମୁଖରେ
ପଶ୍ଚିମ ଦ୍ୱାରବାଟେ ଗଲା ସେହୁ ଘରେ ।
ଶାଢ଼ୀ ଘରମାନଙ୍କରେ ହେଲେ ପରବେଶ
ପଶ୍ଚିମ ଦିଗ ରାଜା ହେଲେ ପୁଣ ଶେଷ ।
ଏଥିଅନନ୍ତରେ ଗୋ ଶୁଣ ଶାକମ୍ବରୀ
ଉତ୍ତର ଦିଗ ରାଜା ଶୁଣ ତୁ ମନେକରି ।
ଛତିଶ ସହସ୍ର ଯେ ଦିଗ ଦଣ୍ଡଧାରୀ
କାରଗୋଷ୍ଠ ମଣ୍ଡଳମଣି ସେ ଦିଗରେ ସରି ।
ହସ୍ତିନା ଦେଶର ସେ ନୃପତି ସାରବର
ପଚିଶ ସହସ୍ର ରାଜା ଯେ ଖଟନ୍ତି ପସୁର ।
ସକଳ ରାଜା ଘେନ ଦେବ ସେ ଅଇଲା
ରାମଙ୍କ ସମ୍ମୁଖେ ଆଜ ପ୍ରବେଶ ହୋଇଲା ।

ଲକ୍ଷେ ମାଣିକ୍ୟ ଦେଇ ପଶ୍ଚିମ ଦ୍ୱାରେ ଗଲେ
ଆପଣାର ଶାଢ଼ୀଘରେ ପ୍ରବେଶ ଯାଇହେଲେ
ଇରତପୁର ନୃପତି ହେଲା ପରବେଶ
ସହସ୍ରେକ ନୃପତି ଖଟନ୍ତି ତାର ପାଶ ।
ଶ୍ରୀରାମଙ୍କ ସମ୍ମୁଖରେ ହୋଇଲା ସେ ଦେଖା
ନମସ୍କାର କରିଣ ଧରିଲା ହସ୍ତେ ପଖା ।
ଲକ୍ଷେକ ପାଣି ଦ୍ରବ୍ୟ ନେଇ ସମର୍ପିଲା
ଅସୁର ଭୟ ମୋତେ ହୋଇଛି ବୋଇଲା ।
ମଧୁବନ ଲବଣ ଦୈତ୍ୟଶୂର ପୁଣ
ମୋର ରାଜ୍ୟ ଉଜାଡ଼କରେ ଅନୁକ୍ଷଣ ।
ରାମଚନ୍ଦ୍ର ବୋଇଲେ ମୁଁ ଅଯୋଧ୍ୟାକୁ ଗଲେ
ତାକୁମାରିତୋତେଭଲକରିବାତେତେବେଳେ
ଶୁଣିକରି ନୃପତି ପଶ୍ଚିମ ଦ୍ୱାରେ ଗଲା ।
ଐରାବତ ଦେଶ ରାଜା ପ୍ରବେଶ ହୋଇଲା
ସହସ୍ରେ ରାଜା ଘେନି କଲା ଦରଶନ
ସହସ୍ରେ ଅଭିଷେକ ସୁନାଆଁ ଦେଲା ଜାଣ ।
ଜମ୍ବୁନଗ ରାଜା ତହୁଁ ହେଲା ପରବେଶ
ତିନି ସହସ୍ର ରାଜା ତା ସଙ୍ଗରେ ବିଶେଷ ।
ଶ୍ରୀରାମ ସମ୍ମୁଖରେ ସେ କଲା ଦରଶନ
ସମସ୍ତେ ଚରଣାମ୍ବୁଜ ପାଇଲେକ ପୁଣ ।
କାଞ୍ଚନ ସୁନା ଲକ୍ଷେକ ଦେଲେ ଦରଶନୀ
ପଶ୍ଚିମ ଦ୍ୱାର ବାଟେ ଗଲେକ ତତକ୍ଷଣି ।
କାଶୀକ୍ଷେତ୍ର ରାଜା ଯେ ହେଲେ ପରବେଶ
ପଞ୍ଚରତ୍ନ ବନମାଳା ପୁରୋଇ ବିଶେଷ ।
ଶ୍ରୀରାମର ପାଶେ ଯାଇ ପ୍ରବେଶ ହୋଇଲା
ସହସ୍ରେ ସୁବର୍ଣ୍ଣ ଲିଙ୍ଗ ଥୋଇ ଉଭା ହେଲା ।
ସ୍ୱର ସହସ୍ର ରାଜା ତାର ଚରଣ ଖଟିଣ
ଶ୍ରୀରାମ ବୋଇଲେ ରାଜା ନକର ମାନ୍ୟପୁଣ
ଶ୍ରୀରାମ ଯେ ରାଜାଙ୍କୁ ମାନ୍ୟ ଧର୍ମ କଲେ
ପଶ୍ଚିମ ଦ୍ୱାରବାଟେ ମେଲାଣି ତାକୁ ଦେଲେ
ଭରତଙ୍କର ମାମୁଁ ଯେ କୈକେୟ ଦେଶରାଜା
ସହସ୍ରେ ରାଜାଉପରେସେରାଜାଅଟେତେଜା
ଶ୍ରୀରାମଚନ୍ଦ୍ର ତାଙ୍କୁ ମାନ୍ୟଧର୍ମ କଲେ
ମଉଳା ବୋଲି ତାଙ୍କୁ ପ୍ରସନ୍ନ ହୋଇଲେ ।
ସେରାଜା ବୋଇଲେ ତୁମ୍ଭେ ଶୁଣହେ ଶ୍ରୀରାମ
କଥାଏ ମାଗିବି ମୋତେ ଦେବହେ ତୁମ୍ଭେପୁଣ

ତୋହର ଜନନୀ ମୋର ପିଅର ଆମ୍ଭର
ଦୁଇଜଣଙ୍କୁ ଦରଶେ ହେ କୋଦଣ୍ଡଧର ।
ଭରତକୁ ହିଂସା ଯତ୍ନ ନ କରବ ମନେ
ଯଶ ରହିଥିବ ତୋର ରଘୁବଂଶ ଜେଣେ ।
ଶ୍ରୀରାମ ବୋଇଲେ ମୋର କୈକେୟୀ ଜନନୀ
ତାର ସକାଶେ ଯଶ ଅଟେ ମୋର ପୁଣି ।
ରାଜ୍ୟରେ ଥିଲେ ମୋତେ କେଉଁ ଯଶହୋନ୍ତା
ତାଠାରେ ସନ୍ତୋଷ ମୋର ନାହିଁ ଯେଅନ୍ତା ।
ତାହା ଶୁଣି ରାଜା ଅଶ୍ରୁରହୁ ମୁଖ ହେଲ
ମେଲାଣି ମାଗି ପଶ୍ଚିମ ଦ୍ୱାରେ ଚଳିଗଲ ।
ବନଭୋଜ ଦେଶ ରାଜା ହେଲେ ପରବେଶ
ଷଟସହସ୍ର ରାଜା ତା ସଙ୍ଗରେ ବଶେଷ ।
ଲକ୍ଷ୍ମଣଙ୍କର ମଉଳା ଅଟନ୍ତି ସେ ଭଲେ
ଶ୍ରୀରାମ ଦେଖିଣ ତାଙ୍କୁ ଓଳଗି ହୋଇଲେ ।
ସୁନା ଖଡ୍ଗ ପାରିବଲ୍ଲୀ ମୁକୁତା ସେତୁ ଦେଲ
ଧନ୍ୟହେ ରଘୁନାଥ ବୋଲିଣ ପ୍ରଶଂସିଲ ।
ରାଜାଙ୍କ କୁଳରେ ତୁମ୍ଭେ ହେଲ ଗଙ୍ଗାଜଳ
ଭଗୀରଥଙ୍କ ସମାନେ କୁଳ ଉଦ୍ଧରିଲ ।
ଏତେ କହି ପଶ୍ଚିମ ଦୁଆର ବାଟେ ଗଲେ
ଶାନ୍ତୀ ଘରେ ଯାଇଣ ପ୍ରବେଶ ହୋଇଲେ ।
ଉଡ଼ଙ୍କ ଦେଶର ରାଜା ହେଲେ ବରବେଶ
ଷଟ ସହସ୍ର ରାଜା ଖଟନ୍ତି ତାର ପାଶ ।
ଶ୍ରୀରାମଚନ୍ଦ୍ର ସମ୍ମୁଖରେ ଉଭା ହେଲା ଯାଇ
ରଥେକ ପାଣି ଦ୍ରବ୍ୟ ଦେଲକ ସେ ନେଇ ।
ପଶ୍ଚିମ ଦ୍ୱାର ବାଟେ ମେଲାଣି ହୋଇଗଲ
କନକ ଗିର ରାଜା ପ୍ରବେଶ ହୋଇଲ ।
ନଅଶହ ରାଜା ତାର ସଙ୍ଗରେ ଅଛନ୍ତି
ଇନ୍ଦ୍ର ଯୋଦ୍ଧ ଯୁଦ୍ଧଆ ଥୋଇଲ ନୃପତି ।
କାଞ୍ଚନ ସୁନାରେ ଭୂଷଣ ହୋଇ ସେ ହି
କର ଯୋଡ଼ି ଆଗରେ ବଜସ୍ତୁ କଲ ଚହ୍ନି ।
ଶ୍ରୀରାମ କହନ୍ତେ ପଶ୍ଚିମ ଦ୍ୱାରେ ଗଲ
ବସ୍ତୁର ରୂପକୁ ଦେଖି ସନ୍ତୋଷ ହୋଇଲ ।
ମାଳବ ଦେଶର ରାଜା ହେଲେ ପରବେଶ
କଉଶଲ୍ୟା ଜନନୀର ଅଟେ ନିଜ ଭ୍ରାତ ।
ପୂର୍ବଦ୍ୱାର ବାଟେ ସେ ଯେ କରିଲ ଗମନ
ନୃପନୁ ଲୋଚକ ଧାର ବହେ ଅନୁକ୍ଷଣ ।

ଶ୍ରୀରାମ ପାଶରେ ଯାଇ ହେଲେ ପରବେଶ
ଦେଖିକରି ରଘୁନାଥ ମନରେ ହରଷ ।
ମାମୁଁଙ୍କୁ ଦେଖିଣ ବେଗେ ଉଠିଲେ ଆସନୁ
ମାମୁଁ ଭଣଜା ରୋଦନ କଲେ ପୁଣ ତେଣୁ ।
ଶୋକ ସମ୍ଭାଳି ରାମ ବୋଇଲେ ମାମୁଁ ଶୁଣ
ଜନନୀର କଥା ମୋତେ କହ ତଥ୍ୟ ପୁଣ ।
ମଉଳା ବୋଇଲେ ରାମ ଜନନୀ ଚିନ୍ତାର୍ଥୀ
ଲକ୍ଷ୍ମଣଙ୍କ ଭରସା ପୁଣ ତାଙ୍କୁ ବଞ୍ଚାଇଛୁ ।
ମିଳାବତୀ ଜନନୀ ତୋର ଖରା ଭସ୍ମାସିଲ
ରାଜ୍ୟର ଭଲ ମନ୍ଦ ସେ ସକଳ ବୁଝିଲ ।
ଭରତର ଚିନ୍ତା ଯେ କହିଲେ ନ ସରି
ପାତକନରେ କୈକେୟୀ ଭୋଜନ ନ କରି ।
ଶୋକ ସମ୍ଭାଳି ରାଜନ ମଥାମଣି ଦେଲ
ପଶ୍ଚିମ ଦ୍ୱାର ବାଟରେ ବାହାର ହୋଇଲ ।
ଚମ୍ପାବତୀ ରାଜନ ଯେ ପ୍ରେମଗାଢ ପୁଣ
ପାଞ୍ଚ ସହସ୍ର ରାଜା ଘେନ କଲେକ ଗମନ ।
ନବେ ପୁତ୍ର ତାର ସଙ୍ଗତରେ ଅଛନ୍ତି
ରଘୁନାଥଙ୍କ ଆଗରେ ପ୍ରବେଶ ହେଲେଟି ।
ଦେଖିକରି ରଘୁନାଥ ନମସ୍କାର କଲେ
ପିତାମୋର ଆସିଅଛୁ ବୋଲିଣ ବୋଇଲେ
ଅଷ୍ଟାସୂତା ବାଜୁଟି ଯାଉଁଡ ପାରିବଲ୍ଲ
ଶ୍ରୀରାମ ପାଶରେ ଦେଲେକ ରାଜା ତୋଳି
ଦୁଃଖ ସୁଖ କହିଣ ପଶ୍ଚିମ ଦ୍ୱାରେ ଗଲ
ଗୁହକ ନାମେ ଶବର ପଛରେ ମିଳିଲ ।
ଶତେକ ରାଜା ତାର ଶବର ଭଣ୍ଡ ସଙ୍ଗେ
ପୂର୍ବଦ୍ୱାର ବାଟେ ଭଜେ ଉଠିଗଲ ବେଗେ ।
ବେଣୁ ବଇଁଶୀ ଶିଙ୍ଗା ଭୁଗ ସେ ବଜାଇଣ
ତାହାଲ ସ୍ୱର ଶଙ୍ଖ ମହୁରୀ ବାଜେ ଟାଣ ।
ଶ୍ରୀରାମ ଆଗରେ ଯାଇ ହେଲେ ପରବେଶ
ଯେତେ ଦୂରରୁ ଶ୍ରୀରାମଙ୍କୁ ଦର୍ଶିଲ ସନ୍ଦେଶ ।
ଗାଡ଼ାଡ ପାଡ଼ି କରି ପାଶକୁ ବେଗେ ଗଲ
କରଯୋଡ଼ି ରଘୁନାଥ ଆଗରେ ଉଭାହେଲ ।
ଶ୍ରୀରାମ ବୋଇଲେ ମିତ ଦେଖିଲ ଆଜ ତ
ବହୁତ ଉପକାର କରିଛ ତୁମ୍ଭେ ତ ।
ରାଜାଗଣ ମଧ୍ୟରେ ଥାଅ ନିଶ୍ଚିନ୍ତରେ
ସଙ୍ଗ ହୋଇଣ ଯିବାହେ ଅଯୋଧ୍ୟା ନଗରେ

ତାହା ଶୁଣି ଶବର ଅକାଟ ମାଳ ଦେଲା
ପଶ୍ଚିମ ଦ୍ୱାରବାଟେ ନିଜ ସ୍ଥାନକୁ ଗଲା ।
ଶୁଣିଲକ ହୋ ହେମବନ୍ତର ଦୁଲଣୀ
ଲକ୍ଷେରାଜା ଭେଟହେଲେ କୋଦଣ୍ଡ ଚାପପାଣି
ରଘୁବଂଶ ରାଜାଙ୍କର ଦର୍ଶନ ସରିଲା
ପାର୍ବତୀ ବୋଇଲେ କଥାଏ ଏଥିରେ ରହିଲା
ଲକ୍ଷେ ରାଜା ସୈନ୍ୟବଳ ଦେଖିଲେଟି ରାମ
ଈଶ୍ୱର ବୋଇଲେ ତାହା କହିବେବା ପୁଣ ।
ରାଜାମାନେ ଯିବାରୁ ଯେ ରଥୀମାନେ ଗଲେ
ଶ୍ରୀରାମ ଦର୍ଶନ କରି ଫେରଣ ଆସିଲେ ।
ପ୍ରଧାନ ବଳମାନେ କଲେ ଦରଶନ
ମାହୁନ୍ତଗଣ ଦେଖି ଫେରିଲେ ତତ୍‌କ୍ଷଣ ।
ହଟାରି ବଜାଣ୍ଡ ଦେଖି ରାମଙ୍କୁ ଅଇଲେ
ଦଣ୍ଡଧର ସମସ୍ତେ ସମସ୍ତେ ଭେଟା ହେଲେ ।
ପାର୍ବତୀ ବୋଇଲେ ସେ ଯେ ଦଶଗ୍ରୀବ ମଲା
ସୁବଳଯା ଗିରି ଯେ ଦେଖା ମେଳ ଥିଲା ।
ରାତିରେ ମଲା ଦୈତ୍ୟଙ୍କୁ ଭେଟିଲେଟିକ ପୁଣି
ଏହା ମୋତେ ସଂକ୍ଷେପି କହିବା ଶୂଳପାଣି ।
ଈଶ୍ୱର ବୋଇଲେ ରାଜ୍ୟରେ ଦେଖା ଗଲେ
ମଲା ଦୈତ୍ୟବଳଙ୍କୁ ଭୋଜନ ସେହୁ କଲେ ।
ପାର୍ବତୀ ବୋଇଲେ ମଲା କପି କିସ କଲେ
ଈଶ୍ୱର ବୋଇଲେ ଶୁକମନ୍ତ୍ରୀ ଖାଆଇଲେ ।
ପାର୍ବତୀ ବୋଇଲେ କପି ରାଜା କେତେ ପୁଣ
ଈଶ୍ୱର ବୋଇଲେ କପି ଲକ୍ଷେ ରାଜା ଜାଣ
ମଣ୍ଡଳମଣି ବାଳୀ ଯେ ଅଟଇ ତାଙ୍କର
ଏବେ ଯେ ସୁଗ୍ରୀବର ହେଲା ନୃପବର ।
ପାର୍ବତୀ ବୋଇଲେ ଶ୍ରୀରାମ ରଘୁରାଇ ପୁଣ
କି ବଚର କରନ୍ତି ସେ ଏକଠାରେ ଜାଣ ।
ଈଶ୍ୱରବୋଇଲେଶ୍ରୀରାମଙ୍କୁସମସ୍ତେଦେଖିଲେ
ତିନିଭାଇ ଯିବାରୁ ଶ୍ରୀରାମସଙ୍ଗେମେଳହେଲେ
ସିଂହାସନପରୁ ଉଠି ଆସିଲେ ଶ୍ରୀରାମ
ସୁଗ୍ରୀବର ଅସ୍ତ୍ରସେନା ଯେଣି ତାହିଁ ପୁଣ ।
ଭରତ ଲକ୍ଷ୍ମଣ ଯେ ଶତ୍ରୁଘ୍ନ ଆସି
ଶ୍ରୀରାମଙ୍କୁ ନମସ୍କାର କଲେକ ମନ ତୋଷି ।
ଏକ ଆସନେ ବସିଲେ ଯାଇ ରଘୁରାଇ
ଭରତଙ୍କୁ ପୁଚ୍ଛିଣ ଶ୍ରୀରାମଚନ୍ଦ୍ର କହି ।

କହୋ କୈକେୟୀଙ୍କୁ ମୋରାଜ୍ୟ କାହାକୁ ଦେଲ
ଲକ୍ଷେ ରାଜା ଯେଉଁଣ ତ ଏଥକୁ ଅଇଲ ।
ଭରତ ବୋଇଲେ ଦେବ ଅଇଲି ମୁଁ ଆଗ
ମାରୁତିର ମୁଖରୁ ମୁଁ ଶୁଣିଣ ସମ୍ବାଦ ।
ରାଜ୍ୟରେ ଶତ୍ରୁଘ୍ନଙ୍କୁ ସଙ୍ଗ ସମର୍ପିଲି
ଜନନୀ ଲୀଳାବତୀଙ୍କୁ ସଙ୍ଗ ସମର୍ପିଲି ।
ଶୁଣିକରି ଶ୍ରୀରାମ ଡାକଲେ ସୁମନ୍ତ୍ରକୁ
ବୋଇଲେ ମୋର ରାଜ୍ୟଦେଲେହେକାହାକୁ
ସୁମନ୍ତ୍ର ବୋଇଲେଦେବମୁଁଅଇଲିଭରତକୁଲେ
ଲକ୍ଷେରାଜାଙ୍କର ଅର୍ଦ୍ଧେକ ସମ୍ଭାଳବାକୁରଇଲ
ଶତ୍ରୁଘ୍ନ ଜନନୀ ରହିଲେ ତୁମ୍ଭର ପୁର
ସୈନ୍ୟବଳ ସବୁ ଯେ ରହିଲେ ତୁମ୍ଭର ।
ନିଯୋଗୀ ଲୋକ ଭଣ୍ଡାର ଯେଣ ମୁଁ ଅଇଲି
ପକ୍ଷକରେ ତୁମ୍ଭଙ୍କୁ ମୁଁ ଦରଶନ କଲି ।
ଶୁଣିକରି ଶ୍ରୀରାମ ଯେ ପଚ୍ଛରି ବଶିଷ୍ଠଙ୍କୁ
ତୁମ୍ଭେ କମ୍ପା ଗୁରୁ ହେ ଅଇଲ ଏଠାକୁ ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ହେ ଚାପଧାରି
ଲକ୍ଷେ ରାଜା ଅର୍ଦ୍ଧେକ ଭରତ ସଙ୍ଗପାର
ସୁରକ୍ଷି ଯେଉଁଣ ଆମ୍ଭେ ଥାଟରେ ଧାଇଁ ଗଲୁ
ମନଇଚ୍ଛାରେ ଭୋଜନ ରାଜାମାନଙ୍କୁ ଦେଲୁ
ଶୁଣିକରି ଶ୍ରୀରାମ ଯେ ଶତ୍ରୁଘ୍ନକୁ ପୁଛି
ରାଜ୍ୟକୁ ଛାଡ଼ି କମ୍ପା ତୁ ଅଇଲୁ ସଙ୍ଗିହୀ ।
ଶତ୍ରୁଘ୍ନ ବୋଇଲେ ଶୁଣିବା ଦେବ ଏବେ
ଲକ୍ଷେ ରାଜା ଯେଣ ଅଇଲେ ତୁମ୍ଭ କାର୍ଯ୍ୟେ
ଏଥିରେ ରଘୁବର କାଳ ବହିଗଲା
ଲଙ୍କା ରାବଣ ଏକମୁଖାକୁ ଭେଟଦେଲା ।
ଶତମୁଖା ରାବଣକୁ କହିଲା ଯାଇ ପୁଣ
ତୋର ମିତ ସଙ୍ଗେ ଯୁଦ୍ଧ ରାମ ଯେ ଲକ୍ଷ୍ମଣ
ଭରତ ଶତ୍ରୁଘ୍ନ ଅଯୋଧ୍ୟାରେ ପୁଣ
ଶ୍ରୀରାମ ଭାଇ ଅଟନ୍ତି ସେହୁ ଦୁଇଜଣ ।
ସେ ଦୁଇଜଣ ତୁମ୍ଭ ବେଗେ ଯାଇ ମାର
ମଇଷକୁ ଉପକାର ବାଟେରେକ ତୁ କର ।
ଏକମୁଖାର କଥା ଶତମୁଖା ଯେଣଗଲା
ଏକମୁଖା ଫେରି ଦଶଗ୍ରୀବରେ କହିଲା ।
ମିତ ତୋର ଗଲା ଯେ ଅଯୋଧ୍ୟା ପୁର
ମୁହିଁ ଏଣେ ନେଉଛି ଲକ୍ଷ୍ମଣ ହନୁମାର ।

ଏତେକକହି ଏକମୁଖା ପଦ୍ମବ୍ୟୂହ କଲା
ଲକ୍ଷ୍ମଣଙ୍କ ସଙ୍ଗତରେ ତିନିଙ୍କି ହରିନେଲା ।
ପାଞ୍ଚଦିନେ ମୃତ୍ୟୁ ତାର ହୋଇଲା ନିକର
ଏକଥା କହିଲେ ମୋତେ ନାରଦ ମୁନିବର
ଶତେମୁଖା ଯେତେବେଳେ ଅଯୋଧ୍ୟାକୁ ଗଲା
ଲକ୍ଷେକ କୁମର ନବଲକ୍ଷ ନାତି ନେଲା ।
ସ୍ୱର୍ଗର ଦେବତାଏ ଦେଖିଲେ ତାକୁ ପୁଣ
ଅଯୋଧ୍ୟାକୁ ଆଇଲେ ସକଳ ଦେବଗଣ ।
ନାରଦଙ୍କ ହସ୍ତରେ ଡକାଇ ମୋତେ ନେଲେ
ତୋରପୁରେ ଶତ୍ରୁ ଉଠ ବାହୁଲା ବୋଇଲେ
ଶ୍ରୀରାମ ଲକ୍ଷ୍ମଣ ଯେ ଅଛନ୍ତି ଭୁମ୍ଭ ଛାଇ
ଲଙ୍କାରେ ଦଶଗ୍ରୀବ ସଙ୍ଗରେ ଯୁଦ୍ଧ କରି ।
ଦଶମୁଖାର ଶତେମୁଖା ଅଟଇ ଯେ ମିତ
ମିତ୍ର ଛଳେ ତୋତେ ମାରି ଆସିଛୁ ଏଦୈତ୍ୟ
ତୋର ଜାଣିବାର ପାଇଁ ଆମ୍ଭେ ଯେ ଅଇଲୁ
ତୋର ହସ୍ତେ ଶତେମୁଖା ମରିବ ଜାଣିଲୁ ।
ଏତେକହି ସକଳ ଦେବତାଏ ବଳ ଦେଲେ
ଆୟୁଧମାନ ଦେଇଣ ବଚନ କହିଲେ ।
ମାତା ତୋର ଲୀଳାବତୀ ସାରଥି ଯେ ହେବ
ତେବେ ସେ ଉଶିଷ୍ଟ ବାନର କ୍ଷୟ ଯିବ ।
ଶର ମନ୍ତ୍ର ଦେଇ ମୋତେ କହିଲେକ ସାର
ଏତେକହି ଦେବତାଏ ଗଲେ ସ୍ୱର୍ଗପୁର ।
ଦେବଗଣ ଯିବାରୁ ଯେ ବ୍ରହ୍ମାରୁଦ୍ର ବେନି
ପ୍ରବେଶ ହୋଇଲେ ଆସି ମୋରପୁରେ ପୁଣି
କୁମନ୍ତ୍ର ଯନ୍ତ୍ର ବ୍ରହ୍ମଶର ମୋତେ ଦେଲେ
ଈଶ୍ୱରବଜ୍ର ବିଭୂତି ମୋ ଅଙ୍ଗେ ବୋଳିଲେ
ଜନନୀ ଅଙ୍ଗରେ ନେଇ ବୋଳିଲେ ହର ପୁଣ
ଅକାଟ ଶରୀରହେଉ ବୋଲିଲେ ବେନିଜନ
ବ୍ରହ୍ମା ରୁଦ୍ର ଗଲାବେଳେ ବଚନ ମୁଁ କହିଲି
ରାଜ୍ୟ କେତ୍ତେ ସମ୍ଭାଳିବ ବୋଲିଣ ବୋଇଲି
ଈଶ୍ୱର ବୋଇଲେ ତୋର ଜନନୀ ଲୀଳାବତୀ
ପରଜା ସେ ପାଳିବ ନ ରଖିବ ନବରତି ।
ମନ୍ତ୍ରୀର ପୁଅ ରାଜ କରିବ ପାଳନା
ପର୍ଶୁରାମଙ୍କୁ ଭେଦ ଦେଉଛୁ ଆମ୍ଭେ ସିନା ।
ଶୀତଳ ଗିରି ପରେ ସେତୁ ରହିଥିବ
ଶ୍ରୀରାମଚନ୍ଦ୍ର ଆସିଲେ ନିଜ ପୁର ଯିବ ।

ଏତେ ଭଣି ବେନିଜନେ ବେଗେ ଚଳିଗଲେ
ନାରଦଙ୍କୁ ଭେଦ ପର୍ଶୁରାମଙ୍କୁ ଶୁଣାଇଲେ ।
ବ୍ରହ୍ମା ଶିବଙ୍କ ବୋଲରେ ରହିଲେ ମୁନିବର
କୋଠାର ଧନୁକୁ ଧରି ଜଗିଲେ ନବର ।
ପିନାକୀ ଧନୁ ପଶୁପତି ଶିବ ଦେଲେ
ବଶଦିନେ ମାଉଡ଼ ଯେ ବୋଲିଣ କହିଲେ ।
ସେଠାରୁ ଶତେମୁଖା ଜମ୍ବୁଦ୍ୱୀପରେ ପୁଣ
ଜଙ୍ଗଲ କଟାଇ ଅଯୋଧ୍ୟାରେ ପ୍ରବେଶଯାଇଣ
ଲକ୍ଷେକ କୁମର ପ୍ରଥମରୁ ନାଶ ହେଲେ
ଦ୍ୱିତୀୟ ଦିନରେ ନବଲକ୍ଷ ନାତି ମଲେ ।
ଚତୁର୍ଥ ଦିନରେ ପଦାତି ସବୁ ଗଲେ ନାଶ
ପଞ୍ଚମ ଦିନରେ ଶତେମୁଖା ଯେ ପ୍ରବେଶ ।
ରଥି ସେନାପତି ସକଳେ ନାଶ ଗଲେ
ନଉରଥ ବେଢ଼ ବନ୍ଧୁଦଳ ମୂର୍ଚ୍ଛିଲେ ।
କେବେହେଁ ନ ମଲା ସେ ଦନୁଜ ରାବଣ
ଡାକଣ ପକାଇଲା ସେ ଅଲଙ୍କାଗଡ଼ ଜାଣ ।
ନବକୋଟି ରଥି ଘେନି ଅଲଙ୍କା ଗଡ଼ ଗଲା
ତିନିଦିନ ରାବଣ ସଙ୍ଗରେ ଯୁଦ୍ଧ ହେଲା ।
ଦୁଇଦିନ ଅଗ୍ନିରେ ସେ ପଶିଲା ରାବଣ
ଅନେକ ଯୁଦ୍ଧ କଲା ଅଗ୍ନିରେ ଥାଇଣ ।
ମନଭେଦ ମୁଁ ପେଷିଣ ଗୁପତ ଗଙ୍ଗା ଆଣି
ଅଗ୍ନିକି ଲିଭାଇଣ ଯୁଦ୍ଧ କଲି ପୁଣି ।
ମୋହର ଯୁଦ୍ଧ ଦେଖିଣ ପଳାଇ ଅଇଲା
ସୁବର୍ଣ୍ଣ ଲଙ୍କାଗଡ଼ରେ ପ୍ରବେଶ ହୋଇଲା ।
ସିନ୍ଧୁରେ ପଶି ଯୁଦ୍ଧ କଲକ ଦନୁଜ
ଶରବାଡ଼ କରିବାରୁ ମଲା ଯେ ଦୈତ୍ୟରାଜ
ଶତ୍ରୁଘନ କହିବାରୁ ଜନନୀକି ଡାକିଲେ ଶ୍ରୀରାମ
ବୋଇଲେ ତୁମ୍ଭେ କମା ଥିଲ ଏଥେପୁଣ ।
ଜନନୀ ବୋଇଲେ ଯେ ଦେବତାଙ୍କରବୋଲେ
ସାରଥି କଲେ ମୋତେ କୁମର ରଥରେ ।
ସମସ୍ତଙ୍କର ସମ୍ବାଦ ସାରିଲେ ଶ୍ରୀରାମ
ତିନିଭାଇ ସଙ୍ଗେ ଯେଣ କଲେକ ଭୋଜନ ।
ଅଷ୍ଟସେନା ସୁଗ୍ରୀବ ଅଙ୍ଗଦ ହନୁମନ୍ତ
ସମସ୍ତଙ୍କୁ ପରଷିଲେ କ୍ଷୀର ମଣ୍ଡ ଭାତ ।
ଭୋଜନ ସାରିଣ ସର୍ବେ ଆଚମନ କଲେ
ପଲଙ୍କେ ବସିଣ ବଡ଼ିଆ ଲଗି ହେଲେ ।

ଲକ୍ଷେ ରାଜା ଭୋଜନ କଲେ ଯେ ଯାହାର
ପକାଣ ରଥିବଳ ଭୁଞ୍ଜିଲେ ସଭିର ।
ସେନାପତି ରକ୍ଷପତି ସ୍ୱଳ୍ପ ଯେ ବାନର
ଫଳ ମୂଳ ଆହାର କଲେ ଯେ ସଭିର ।
ହଟାର ବଜାର ସମସ୍ତ ଲୋକ ପୁଣ
ଭୋଜନ କରି ନିଦ୍ରା କଲେକ ବହନ ।
ଯେତେବେଳେ ତିନି ପ୍ରହର ହେଲା ଦିନ
ଶ୍ରୀରାମ ବୋଇଲେ ତୁରେ ଶୁଣ ହନୁମାନ ।
ଅଯୋଧ୍ୟା ନଗରକୁ ତୁ ବେଗେ ଚଳିଯାଅ
ଜନନୀ ପରଜା ମୁନି ଖବର ମୋତେ ଦିଅ ।
ଶୁଣି କରି ମାରୁତି ଯେ ବେଗେ ସଜ ହେଲେ
କିଷ୍କିନ୍ଧ୍ୟା ନଗରେ ଯିବୁ ଶ୍ରୀରାମ କହିଲେ ।
ରାମ ନାମ ସୁମରି ମାରୁତି ବେଗେ ଚଳି
କିଷ୍କିନ୍ଧ୍ୟା ନଗରରେ ଶୀଘ୍ର ଯାଇଣ ମିଳି ।
ତାରାକୁ ନମସ୍କାର କଲେକ ବହନ
ସକଳ ବୃତ୍ତାନ୍ତ କହେ ପବନ ନନ୍ଦନ ।
ତିନି ଭାଇ ମାରିଲେ ତିନି ଯେ ରାବଣ
ଆଠଦିନେ ଆସିବେ ଏହିଠାକୁ ପୁଣ ।
ଲକ୍ଷେ ରାଜାଙ୍କୁ ଘେନ ଶ୍ରୀରାମ ଆସିବେ
ଆଗମୋତେଭେଟିବେଲେତେଣୁସେ ରାଘବେ
ଅଯୋଧ୍ୟାକୁ ମୁହିଁ ଗୋ ଯାଉଛି ଜନନୀ
ଲକ୍ଷେ ରାଜା ଯେମନ୍ତେ ଚର୍ଚ୍ଚା ହେବେ ପୁଣି
ଏତେ କହି ମାରୁତି ଉଲଗ ମେଲାଇଲା
ଆକାଶେ ବହନି ଗଲା ପବନରୁ ବଳି ।
ଦୁଇଘଡ଼ିରେ ଅଯୋଧ୍ୟା ହେଲା ପରବେଶ
ଶୂନ୍ୟରୁ ଓହ୍ଲାଇଣ ନଗରରେ ପ୍ରବେଶ ।
ବାନର ରୂପ ଛାଡ଼ି ମାନବ ରୂପ ହେଲା
କଢ ଓଳଡ ସମସ୍ତ ସ୍ଥାନରେ ବୁଲିଲା ।
ନର ନାରୀମାନେ ଚର୍ଚ୍ଚି କରନ୍ତି ବହୁର
ସ୍ତିରଲାଇ ଛାଡ଼ିକରି ଗଲେଟି ଏ ପୁର ।
ଦୈତ୍ୟଙ୍କର ସଙ୍ଗରେ ସେ ଗାଢ଼ ଯୁଦ୍ଧ କଲେ
କେତେଦିନେ ଆସିବେ ସେ ଜଣାଇ ନଗଲେ
ପିଣ୍ଡିକୁ କାରଣ ଅଟେ ରାଜା ନାମ ଗୋଟି
ରାମଙ୍କୁ ଦେଖିଲେ ଆମ୍ଭ ମନ ହେବ ଶାନ୍ତି ।
ରାମ ନାମ ଗୋଟିକ କରନ୍ତି ସୁମରଣା
ସ୍ୱଚକ ଯେସନରେ ବରଷା ଜଳେ ବଣା ।

ସାହି ଦାଣ୍ଡ ନଗର ଘରେ ସର୍ବେ ସ୍ଥାନ
ରାମ ନାମ ଗୋଟିକ କରନ୍ତି ସେ ସଙ୍ଗାନ
ଶୁଣିକରି ମାରୁତି ପରମ ତୋଷ ହେଲା
ଶୀତଳ ଗିରି ପରେ ଯାଇଣ ଉଠିଲା ।
ଦେଖିଲା ପର୍ଶୁରାମ ଅଛନ୍ତି ବଜେ କରି
ପଞ୍ଚଶର ସମାନେ କୋଦଣ୍ଡ ଆଗେ ପଡ଼ି ।
କୁଠାର ଗୋଟିଏ ପଡ଼ିଛି ତାହାଁର ପାଶ
ସୁଦର୍ଶନ ଚକ୍ର ପ୍ରାୟେ ତେଜ ତା ପ୍ରକାଶ ।
ରାମ ନାମ ଗୋଟି ଜପ କରୁଛନ୍ତି ପୁଣ
ଏକଥା ଦେଖି ମାରୁତି ଭଲେ ମାନ୍ୟ ଧର୍ମ ।
ପର୍ଶୁରାମ ବୋଇଲେରେ କାହାଁର ଅଟୁ କୁହି
କେଉଁ ପୁରୁ ଆସିଅଛୁ କହିବୁ ବୁଝାଇ ।
ପ୍ରାଣକୁ ଭରସା ଥିଲେ କହରେ ବଚନ
ନୋହିଲେ ତୋତେ ମୁଁ ଯେ ମାରିବି ଏହିକ୍ଷଣ
ପର୍ଶୁରାମଙ୍କ ବଚନେ ମାରୁତି କହେ ପୁଣି
ମୋହର ସ୍ୱାମୀ ଅଟନ୍ତି ରଘୁକୁଳ ମଣି ।
ତିନି ଭାଇ ସଙ୍ଗେ ଘେନି କରନ୍ତି ସମର
ଲଙ୍କାଗଡ଼ରେ ଅଛନ୍ତି ଶ୍ରୀରାମ ଠାକୁର ।
ତିନି ରାବଣକୁ ତିନି ଭାଇ ନାଶ କଲେ
ଲକ୍ଷେ ରାଜା ଘେନି ରାମ ବିହରନ୍ତି ଭଲେ
ମୋତେବୋଇଲେତୁରେ ଅଯୋଧ୍ୟାପୁର ଯିବୁ
ଶୀତଳ ଗିରିପରେ ପର୍ଶୁରାମଙ୍କୁ ଭେଟିବୁ ।
କହିବୁ ଶ୍ରୀରାମ ଆସିବାଯାଏ ରହିଥିବ
ଏତେକହି ତୁ ଲେଉଟି ଆସିବୁରେ ବେଗ ।
ପର୍ଶୁରାମ ବୋଇଲେ ଆହୁରି ପକ୍ଷେ ମଠ
ଆଜ ସାତଦିନେ ମରିବ ସହସ୍ରମୁଖା ଦୈତ୍ୟ
ତେବେ ଯାଇ ଶ୍ରୀରାମ ଅଯୋଧ୍ୟାକୁ ଆସି
ତୋହର ନିଜ ରୂପକୁ ପ୍ରକାଶ କରସି ।
ସେହିଠାରୁ ହନୁମନ୍ତ ନିଜ ରୂପ ହେଲା
ପର୍ବତ ସମାନେ ନିଜ ରୂପ ବିକାଶିଲା ।
ସାମାନ୍ୟ ରୂପ ହୋଇଣ ରହିଲା ମାରୁତି
ଏଥୁଅନନ୍ତରେ ତୁମ୍ଭେ ଶୁଣ ଭଗବତୀ ।
ପର୍ଶୁରାମ ବୋଇଲେ ତୁ ଭରତପୁରେ ଯାଅ
ସନ୍ତୋଷ କରି ତାଙ୍କ ଜନନୀଙ୍କୁ କହ ।
ନଗ୍ରଲୋକେ ଜାଣନ୍ତୁ ଆସିଅଛି ଦୂତ
ପବନସୁତ କଥା ତୁ ହେଉଛୁ ଗୁପତ ।

ପର୍ଶୁରାମ କୋଇଲରେ ମାରୁତି ବେଗେଗଲା
ସିଂହଦ୍ୱାରେ ଯାଇଣ ପ୍ରବେଶ ହୋଇଲା ।
ଦ୍ୱାରପାଳକୁ ବୋଇଲା ଶୁଣ କୁହରେ ବାଟ
ମୁହିଁ ଯିବ ଭିତରକୁ ନକର ଆଟକ ।
ଦ୍ୱାରପାଳ ବୋଇଲେ ତୁ କାହାଁର ଅଟୁ ପୁଣି
ମର୍କଟ ଶରୀର ଧରୁ ତୋତେ ମୁଁ ନ ଚିହ୍ନି ।
ମାରୁତି ବୋଇଲା ମୁଁ ଯେ ଶ୍ରୀରାମଙ୍କର ଦୂତ
କୋଦଣ୍ଡଧାରୀ ମାତାଙ୍କୁ ମୁଁ କହିବ ବାରତ ।
ଦ୍ୱାରପାଳ ବୋଲଇ ଦଣ୍ଡେ ରହ କ୍ଷଣେ
ଭିତରପୁରେ ଜଣାଇ ଆସୁଅଛୁ ଆମ୍ଭେ ।
ବ୍ୟଗ୍ରେ ଖଣ୍ଡିଆ ଯେ ପ୍ରତିହାରୀ ଗଲା
ଅନ୍ତଃପୁରେ ଯାଇଣ ପ୍ରବେଶ ବେଗେହେଲା ।
ବୋଇଲା ଜନନୀ ଗୋ ଶୁଣ ମୋର ବାଣୀ
ଶ୍ରୀରାମଙ୍କର ଦୂତ ଗୋଟିଏ ଆସିଅଛି ପୁଣି ।
ଶୁଣିକରି କଉଶଲ୍ୟା ଉଠିଲେ ବହନ
ବେଗକରି ଆଣରେ ଦୂତକୁ ଯାଇଣ ।
ଶୁଣିକରି ପ୍ରତିହାରୀ ବେଗେ ଚଳିଗଲା
ମାରୁତିକି ସିଂହଦ୍ୱାରୁ ଡାକିଣ ଆଣିଲା ।
ଅନ୍ତଃପୁରେ ହନୁଯାଇ ହେଲେ ପରବେଶ
ଶ୍ରୀରାମ ମାତାଙ୍କୁ ଦେଖି ମାରୁତି ହରଷ ।
ଓଳଗି ମେଲାଇଣ ପାଏ ପଡ଼ି ଶୋଇ
ଉଠିଣ ମାରୁତି ମସ୍ତକେ କର ଦେଇ ।
କୌଶଲ୍ୟା ବୋଇଲେ ବାବୁ କୁହକ ରାମଦୂତ
ତୋହର ପିତା ନାମ ଅଟଇ ଯେ କିସ ।
ମାରୁତି ବୋଇଲେ ମୁଁ ଯେ ପବନ ନନ୍ଦନ
ଯୁଦ୍ଧ ସରିବାରୁ ମୋତେ ପେଷିଲେ ଶ୍ରୀରାମ ।
ମୋ ଜନନୀମାନଙ୍କୁ ଦେଖି ଆସ ପୁଣି
ଅଯୋଧ୍ୟାର ହରଷ ମୋତେ କହିବୁ ତୁ ଆଣି
ତାହାଙ୍କର ବଚନେ ମୁଁ ଏଥକୁ ଅଇଲି
ପର୍ଶୁରାମଙ୍କୁ ଶୀତଳ ଗିରିରେ ଦେଖିଲି ।
ତୁମ୍ଭର ଦେଖା ହୋଇଲେ ଯିବ ବେଗେ ମୁହିଁ
ସ୍ୱରିକାଇ ଜନନୀ ସୁବଳ ଗିରି ରହି ।
ଯେତେକ ଜନନୀ ଅନ୍ତଃପୁରେ ଥିଲେ
ରାମଦୂତ ଆସିଛି ବୋଲି ସମସ୍ତେ ଦେଖିଲେ
ମାରୁତି ବୋଇଲେ ଶୁଣ ଠାକୁରଙ୍କ ମାତ
ତୁମ୍ଭ ତନପୁତ୍ର ଦଶବଦନ କଲେ ହତ ।

ଆଜ ଅଳ୍ପଦିନରେ ଆସିବେ ରଘୁସାଇଁ
ତାଙ୍କସଙ୍ଗେ ଲକ୍ଷେ ରଜା ଆସିବେ ଗୋଡ଼ାଇ
କଉଶଲ୍ୟା ବୋଇଲେ ମଲେଟି ଦୈତ୍ୟବଳ
ସ୍ୱରିପୁତ୍ର କୁଶଳରେ ଅଛନ୍ତିଟି ମୋର ।
ସପତ୍ନୀ ଲୀଳାବତୀ ଅଛନ୍ତିଟିକି ଭଲେ
ଚଉଦ ବରଷ ହେବାରେ ବୋଧକଲୁ ମୋରେ
ରାଜ୍ୟ ଭଲ ଅଟେ ମୋତେ ସେ କୁଶଳ
ପୁତ୍ରବଧୂ ପାସୋର ଯେ ମୋସଙ୍ଗେ ଥିବାର
ସବୁକଥା ଭଲ ବୋଲି ହନୁ ଯେ କହିଲା
ଓଳଗି ମେଲାଇଣ ବାହାର ହୋଇଲା ।
ନିଜରୂପ ଧରି ଆକାଶରେ ସେ ଗମନ
ଯେସନେ ମେଘ ଭାଙ୍ଗି ପଡ଼େ ଭୂମିରେଣ ।
ଅଯୋଧ୍ୟାର ଲୋକ ଶୁଣି ଚମତ୍କାର ହେଲେ
ରାମଦୂତ ଆସିଥିଲା ବୋଲିଣ ଜାଣିଲେ ।
ଲଙ୍କାଗଡ଼ରେ ହନୁ ହେଲେ ପରବେଶ
ପ୍ରହରେ ରଜନୀ ରହିଅଛି ଅବଶେଷ ।
ସନ୍ଧ୍ୟାସାରିଣ ଶ୍ରୀରାମ ସିଂହାସନରେ ବିଜେ
ସ୍ୱରିପାଖେ ସେନାପତି ଶଳଭାଇ ଜଗେ ।
ଓଳଗ ମେଲାଇ ହନୁ ଆଗରେ ହେଲା ଉଭା
ଶ୍ରୀରାମ ବୋଇଲେ ତୁହି ଆସିଲୁ କରେ ବାବା
କିଷ୍କିନ୍ଧ୍ୟାରେ ସରସ ଅଯୋଧ୍ୟା କୁଶଳ
ସବୁଭଲ ବୋଲି କହେ ପବନ କୁମର ।
ପର୍ଶୁରାମ ଅଛନ୍ତି ମାତାମାନେ ସୁଖୀ
ଲୀଳାବତୀ ଜନନୀ ତୋର ରାଜ୍ୟ ପାଳୁଛନ୍ତି ।
ମନ୍ତ୍ରୀର ପୁଅ ରାଜ୍ୟର ଭଲମନ୍ଦ ବୁଝଇ
ଜନ ପ୍ରଜା କୁଶଳ ଦେଖିଲି ମୁହିଁ ଯାଇ ।
ସମସ୍ତେ ଚାହୁଁଛନ୍ତି ରାମଙ୍କୁ ଦେଖିବା
ଏମନ୍ତ ବଚନ ଯେ ଶୁଣିଲି ମୁହିଁ ଦେବା ।
ଏତେବୋଲି ହନୁ ଯେ କହିଲା ସନ୍ଦେଶ
ଶୁଣିକରି ରାମଚନ୍ଦ୍ର ମନରେ ହେଲେ ତୋଷ
ପାର୍ବତୀ ବୋଇଲେ ଦେବ କଥାଏ ପଚାରି
ବିଭୀଷଣ ଗଲା ଯେ ମନ୍ଦୋଦରୀ ପୁରୀ ।
ପୁତୁରା ନାତି ଭାଇ ଯେତେକ ମରିଥିଲେ
ରାବଣ ମଲ୍ଲବାସୀ କେମନ୍ତେ ହେଲେ ।
ନାତିକୁମର ରାବଣକୁ କେତେଦିନେହେଲା ଶୁଦ୍ଧି
ଅସୁରଙ୍କର ଘରବାଧି କହିବ ଦେବରାଜ ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ଜୀବଜନ୍ତୁ ମଲ୍ଲବନ ଯେବନ ଶୁଦ୍ଧି ହୋଇ ।
ଦେବତାଏ ତୁଷ୍ଟଗଲେ ତିନଦିନ ଜାଣ
ନରଲୋକେ ଏଗାର ଦିନରେ ଶୁଦ୍ଧ ଜାଣ ।
ବମନେ ଏକୋଇଶି ଦୈତ୍ୟେ ଯେ ପନ୍ଦର
ପ୍ରଥମ ଦିନ ଉପବାସ ରହନ୍ତି ସକଳ ।
ଜୀବଜନ୍ତୁଙ୍କର ଉପବାସ ତ ନାହିଁ
ଦ୍ୱିତୀୟ ଦିନ ବମନେ ଆମିଷ ଭକ୍ଷେ ତହିଁ ।
ମଦ ଯେ ଆମିଷ ଦୈତ୍ୟେ କରନ୍ତି ଆହାର
ନରଲୋକେ ଏଗାର ଦିନ ଆମିଷ ବାର ।
ପାର୍ବତୀ ବୋଇଲେ ହେ ବିଭୀଷଣ ପତ୍ନୀ
ମନ୍ଦୋଦରୀକ ବୋଧିଣ ବାହାରହେଲ ତୋଷ
ଶ୍ରୀରାମଙ୍କ ପାଶରେ ସେ ହେଲେ ପରବେଶ
ଈଶ୍ୱର ବୋଇଲେ ଶୁଣ ଗିରିଜା ବିଳାସ ।
ପାଞ୍ଚଘଡ଼ି ବସଠାରେ ବିଭୀଷଣ ଗଲ
ଶ୍ରୀରାମଙ୍କ ଚରଣରେ ଦରଶନ କଲ ।
ଶ୍ରୀରାମ ବୋଲନ୍ତି ନୃପତି ବିଳମ୍ବ କାହିଁକି
ବିଭୀଷଣ ବୋଲେ ସମସ୍ତଙ୍କୁ ବୋଧିନକି ।
ଶ୍ରୀରାମ ବୋଇଲେ କାଲି ପ୍ରଭାତୁ ଅଭିଷେକ
ଭୋଜନ ସାରି ଶ୍ରୀରାମ ପହୁଡ଼ିଲେ ବେଗ ।
ରଜନୀ ଶେଷରେ ନିତ୍ୟକର୍ମ ସାରି
ପିତୃଙ୍କୁ ତର୍ପଣ ଯେ କଲେ ରୂପଧାରୀ ।
ତିନଭାଇ ନିତ୍ୟକର୍ମ ସାରିଲେ ବହନ
ଯୂଥପତି ସେନାପତି ସୁଗ୍ରୀ ବିଭୀଷଣ ।
ଲଙ୍କେ ରାଜା ନିତ୍ୟକର୍ମ ସାରିଣ ଅଇଲେ
ଯେଯାହା ଅନୁରୂପରେ ବେଶମାନ ହେଲେ ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଇଲେ ରାମରାଜ
ବିଭୀଷଣଙ୍କୁ ଅଭିଷେକ କରାଅ ତୁମ୍ଭେ ବେଗ
ଏହି ସମୟରେ ଯେ ମନ୍ତ୍ରୀ ବେନି ଜଣ
ପ୍ରବେଶ ହୋଇଲେ ଯାଇ ଶ୍ରୀରାମ ଆସେଣ ।
ଶୁକ ସାରଣ ବେନି ଦର୍ଶନ ଆସି କଲେ
ତାଙ୍କୁ ଚାହିଁ ରାମ ଶାନ୍ତ କଥା ଯେ କହିଲେ ।
ଆମ୍ଭେ ମନ୍ତ୍ରୀମାନେ ହେ ଆମ୍ଭର ଓଳାଲ ଶୁଣ
ଲଙ୍କା ନୃପତି ଆମ୍ଭେ କରିବୁ ବିଭୀଷଣ ।
ମନ୍ଦୋଦରୀ ରାଣୀ ପୁଣି ହୋଇବେ ଯେ ପାଟ
ତେବେ ସେ ସୁଖ ହାବେ ପାଇବେ ଲଙ୍କପୁର

ସୁଗ୍ରୀବ ଅଙ୍ଗଦ ହନୁ ଲକ୍ଷ୍ମଣ ସଙ୍ଗେ ନଅ
ଆସ୍ଥଏ ଆଜ୍ଞା ବୋଲି ମନ୍ଦୋଦରୀଙ୍କ କହ ।
ମୁହିଁ ତ ପ୍ରତିଜ୍ଞା ଯେ କରିଛି ସିନ୍ଧୁକୂଳେ
ମୋ ଭକ୍ତଯା ଦେଖାଇ ଆସିଛି ଲଙ୍କପାଳେ ।
ତାହାର ଘରଣୀକୁ ଆନକୁ ଯେବେ ଦେଇ
ତେବେ ସେ କ୍ଷତ୍ରୀସ୍ୱର ବରଧୂ ବୋଲଇ ।
ଏସନେକ ସତ୍ୟ ମୁଁ ଯେ କରିଅଛି ପୂର୍ବେ
ମୋହର ଧର୍ମବଳେ ମାରିଲି ଦଶଗ୍ରୀବେ ।
ତାର ଘରଣୀକ ମୁଁ ବିଭୀଷଣକୁ ଦେବି
ମୂର୍ଖିକ ଅଜ୍ଞାନ ସେ ଆନକୁ ସମର୍ପିବ ।
ସ୍ୱଭାବେ ରାବଣ ତ ଅଟେ ଜ୍ୟେଷ୍ଠ ଭାଇ
ଭଜନ ଲେଖାରେ ବିଭୀଷଣକୁ ଯୋଗାଇ ।
ଯାଅ ବେଗେ ମନ୍ତ୍ରୀବର ରାବଣ ନଗର
ଲଙ୍କେ ରାଜା ଭୁଣ୍ଡହୋଇ ଅଛନ୍ତି ସେଠାର
ଏଠାକୁ ଆସିବାର କହୁତ ତାର ନାହିଁ
ଆଗତୁଁ ବିଭୀଷଣ ମୋତେ ଅଛି ଧାପି ।
ତାହାର ନଗରେ ତାକୁ କରାଅ ଅଭିଷେକ
ଏଠାକୁ ଅଇଲେ ସେକଥା ମୋତେ ଦୁଃଖ ।
ଶୁଣି ଶୁକ ସାରଣ ହୋଇଲେ ହରଷ
ବୋଇଲେ ତ୍ରୈଲୋକ୍ୟଠାକୁର ତୁମ୍ଭେ ଅଟ
କ୍ଷତ୍ରୀପଣେ ସମାନ ବୁଦ୍ଧିରେ ବିବେକ
କେଉଁ ଗୁଣ ତୁମ୍ଭର ନାହିଁ ହେ ରଘୁନାଥ ।
ଲକ୍ଷ୍ମଣରୁ ଅଧିକ ଯେ ହେଲ ବିଭୀଷଣ
ଜନ୍ମେବ ସୁଗ୍ରୀବର ଅଙ୍ଗଦ ସୁଷେଣ ।
ଶୁକ ସାରଣ ଦୁଇ ଯେ ପାତ୍ରମନ୍ତ୍ରୀ ବେନି
ଯାଆନ୍ତୁ ସେନାପତି ଯୂଥପତି ପୁଣି ।
ଲଙ୍କାଗଡ଼େ ଯେତେକ ଅଛନ୍ତି ନର ନାରୀ
ବୋଲିବେ ବିଭୀଷଣଙ୍କୁ ଆସିଲ ରାଜା କରି ।
ମନ୍ଦୋଦରୀ ହୋଇବ ପାଟ ମହାଦେଈ
ଏବେ ସୁଖେ ରହିବା ନିଶ୍ଚିନ୍ତ ଆମ୍ଭେ ହୋଇ ।
ଏତେ କହି ଶ୍ରୀରାମ ମେଲାଣି ତାଙ୍କୁ ଦେଲେ
ସେନାପତି ଯୂଥପତି ସୁଗ୍ରୀବର ଗଲେ ।
ଶୁକ ସାରଣ ବିଭୀଷଣ ଲକ୍ଷଣ ସଙ୍ଗରେ
ପ୍ରବେଶ ହୋଇଲେ ରାବଣର ସିଂହଦ୍ୱାରେ ।
ଏଥୁଅନନ୍ତରେ ଯେ ସୁମିତ୍ରା ତନୟେ
ନୃପତିର ଭିତରେ କନ୍ଦରେ ଯାଇ ହୁଏ ।

ବିଭୀଷଣ ପାତ୍ରମନ୍ତ୍ରୀ ସୁଗ୍ରୀବର ସେନ
ଲଙ୍କା ନଗରେ ପଶିଲେ ବେଗେ ପୁଣି ।
ଦେଖି ପ୍ରଶଂସା କରନ୍ତି ଧନ୍ୟରେ ରାବଣ
ଯେମ୍ମାଇଁ ଚଣ୍ଡାଳରେ ଗୁଡ଼ିଲୁ ବଡ଼ପଣ ।
ସ୍ୱର୍ଗପୁର ସମାନରେ ଅଟେ ତୋର ପୁର
ସୁଖ ଭୋଗ କରି ନ ପାରିଲୁ ଦଶଶିର ।
ଏତେବୋଲି ପ୍ରବେଶ ଆସ୍ଥାନ ନଗର
ଅଭିଷେକ ଯୋଗାଡ଼ ଅଣାଇ ସତ୍ୱର ।
ନଗ୍ରକୁ ମଣ୍ଡାଇଣ ଉତ୍ସବ କରାଇଲେ
ମନ୍ଦୋଦରୀ ରାଣୀକୁ ଖଟରେ ଥୁଆଇଲେ ।
ବାଡ଼ର ଉହାଡ଼ରେ ରହିଲା ସୁନ୍ଦରୀ
ଶୁକ ସାରଣ ମନ୍ତ୍ରୀ ଯେ ଅନେକ ଛଆର ।
ଶୁଣ ଗୋ ଠାକୁରାଣୀ ଶ୍ରୀରାମ ଦେଲେଆଜ୍ଞା
ସୀତା ହରିଲା ବୋଲି କରିଥିଲେ ପ୍ରତିଜ୍ଞା ।
ଜାନକୀ ନେଉଥିଲା ନେଲା ଦଶ ଶିର
ମୁଣ୍ଡି ଯେବେ ଦଶକନ୍ଧ ପାରିବ ନ ଗଲେ ମାରି
ତେବେ ତାର ଘରଣୀକି ମୁଣ୍ଡି ଆଣେ ଦେବ
ନୋହିଲେ ରଣଭୂମିରେ ଜୀବନ ହରାଇବ ।
ଏମନ୍ତ ବଚନ ଯେ ଅଛନ୍ତି ଦୃଢ଼ କରି
ଏବେ ତ ରାବଣକୁ ମାରିଲେ ରଘୁଧାରୀ ।
ବିଭୀଷଣ ଥିବାରୁ ତୁମ୍ଭଙ୍କୁ ଦୟା କଲେ
ଯେମ୍ମାଇଁ ଆନକୁଆମ୍ଭେ ଦେବାସେ ବୋଇଲେ
ମନରେ ବିଚାରିଲେ ବିଭୀଷଣକୁ ଦେବା
ସେ ମହାତ୍ମା ଆମ୍ଭଙ୍କୁ କଲାକ ବହୁ ସେବା ।
ବିଭୀଷଣର ରାବଣ ଅଟେ ଜ୍ୟେଷ୍ଠ ଭାଇ
ବିହିକ ଲେଖାରେ ଏ ତ ଏହାକୁ ଯୋଗାଇ
ଲଙ୍କାଗଡ଼ ରାଣୀରୁ ତାକୁ ନ କଲୁ ବାହାର
ଆମ୍ଭ ବୋଲି ନଭାଙ୍ଗ ଯେ ଉଚିତ ତାହାର
ବାଳୀର ଭାରିଯାକୁ ସୁଗ୍ରୀବରକୁ ଦେଲୁ
ଆମ୍ଭ ଆଜ୍ଞା ଯେଉଁବାରେ ଅନୁଗ୍ରହ କଲୁ ।
ଅହଲ୍ୟା ଯେ ବୋଲୁଥିଲି ହୋଇ ରହିଥିଲା
ମୋହର ପାଦ ଲାଗନ୍ତେ ମୁକତ ହୋଇଲା ।
ଯେବେ ମନ୍ଦୋଦରୀ ଯେ କରୁ ଆମ୍ଭ ବୋଲ
ତେବେ ଦୁଇକୁଳକୁ କଥା ହେବ ଭଲ ।
ଏସନେକ ଆଜ୍ଞାଦେଲେ ରାମଚନ୍ଦ୍ର ରାୟେ
ଆଜ ଅଭିଷେକ ହୁଅ ନ ଭାଳ ଗୋ ମାଏ ।
ଶୁଣିକରି ମନ୍ଦୋଦରୀ ହୃଦରେ ସନ୍ତୋଷ
ବିଚାରିଲେ ନାରଦ କରିଛନ୍ତି ସତ୍ୟ ।
ତାର ହୃଦପଦ୍ମ ମଧ୍ୟେ କଥାକୁ ବାଣ୍ଟିଲା
ବ୍ରହ୍ମ ମୁନିଙ୍କର କଥା ସତ୍ୟହିଁ ଭେଟିଲା ।
ନାରଦଙ୍କ କଥା ମୁଁ କହିଲି ବିଭୀଷଣେ
ତେଣୁ ମୋତେ ବିଶ୍ୱାସ ତଣ୍ଡିବା ନନ୍ଦନେ ।
ମୋହର ବୋଲି କରଣ ଲଙ୍କାଗଡ଼ୁ ଗଲେ
ଶ୍ରୀରାମ ଚରଣେ ଯାଇ ଶରଣ ପଶିଲେ ।
ଶ୍ରୀରାମ ପାଦେ ଥିବାରୁ ସେତୁ ଦୟା କଲେ
ମାୟା କରନ୍ତେ ରାମ ବିଭୀଷଣ ନ ଥିଲେ ।
ଦଶଗ୍ରୀବ ଗୁମ୍ଫରେ ମୁଁ ଏକାବେଳେ ପୁଣ
ଜାଣିକରି କହିବାରୁ ମୋତେ ଦେଲେ ରାଣ
ବିଭୀଷଣର ବୁଦ୍ଧି ଯେ ହୋଇବୁ କଳ୍ପନା
ସଙ୍ଗରେ ଗଣିତା ତୋତେ କରିବେ ଦୟାନିଧି
ଏମନ୍ତେ ପୂର୍ବକଥା ବିଚାରିଲା ରାଣୀ
ଯଦ୍ୟପି କଥା ମୁଁ ଯେ କହିବି ରୋଷ ପୁଣି ।
ଧୂମିକା ସୁତକୁ ଯେ ବୋଲନ୍ତି ବଡ଼ ଦୁଷ୍ଟ
ଓପ୍ରୋଧ ନ କରଇ ଶ୍ରୀରାମ କନିଷ୍ଠ ।
ସୂର୍ପଣଖାର ସେହୁ କାଟିଲେ ନାକ କାନ
ମୋ ପୁତ୍ର ଇନ୍ଦ୍ରଜିତକୁ ମାଇଲେ ଲକ୍ଷ୍ମଣ ।
ମହୀରାବଣ ନାମରେ ଅଟଇ ମୋ ନାତି
ସ୍ନେହରେ ରାଜା କଲି ସୁଲଙ୍କା ନାମେ ପୃଥ୍ୱୀ
ତାହାକୁ ମାଇଲେ ରାମଭାଇ ଯେ ଲକ୍ଷ୍ମଣ
ଲକ୍ଷେ ଯୁବତୀ ତାର ବିଧବା ହେଲେ ପୁଣ ।
ଶ୍ରୀରାମରୁ ଅବୁଝା ଅଟନ୍ତି ସଉମିତ୍ରୀ
ବିଶେଷ ଆଜ୍ଞାଭ୍ରଷ୍ଟ ନୁହନ୍ତି ରାମ ଯତି ।
କାହିଁଯେବେମୁଁକରିବିମୋତେ ହେବେ କ୍ରୋଧ
ନାରଦ କହିବା କଥା ପ୍ରତ୍ୟକ୍ଷେ ସବୁ ସାଧ
ଏହାଙ୍କ ଘରଣୀକି ମୋ ସ୍ୱାମୀ କଲେ ବୈର
ରାମ ମାରି ସୀତା ବୈରି କରନ୍ତେ ଦଶଗିରି
ରାବଣକୁ ମାରି ମୋତେ ଆନକୁ ନ ଦେଇ
ବିଅଭି ତଳେ ରଖିଲେ ମୋତେ ଦୟାବନ୍ତ ।
ବାଳୀର ଘରଣୀକି ସୁଗ୍ରୀବକୁ ଦେଲେ
ଅହଲ୍ୟା ସୁନ୍ଦରୀକୁ ଶାପୁ ମୁକ୍ତ କଲେ ।
ସୁଗ୍ରୀବର ଭାରିଯା ରୋମା ନାମେ ନାରୀ
ଭାଇବୋହୂକୁ ବାଳୀ ବଳେ ରମଣ କରି ।

ଶ୍ରୀରାମ ସେକଥାକୁ ଜାଣତା ପାଇଥିଲେ
ଆପଣେ ହସ୍ତଧରି ସୁଗ୍ରୀବ ସମର୍ପିଲେ ।
ଏବେ ସେ ସଙ୍ଗତି ସ୍ୱାମୀରେ ପ୍ରିୟବନ୍ତ
ସ୍ୱପସ୍ତ କଥାମାନ କରନ୍ତି ଦାଶରଥି ।
ମୋହର କର୍ମରେ ଅଛି ଏସନେକ ଯୋଗ
ରାବଣ ଅନ୍ତେ ହେବ ବିଭୀଷଣକୁ ଭୋଗ ।
ମୁହିଁ ଯେବେ ଝାସ ଦେବି ସଙ୍ଗ ସପତଣୀ
ମୋର ସଙ୍ଗେ ମରିବେ ନ ରହିବେ ପୁଣି ।
ବିଭୀଷଣ କାଲି ଆସି ପ୍ରବୋଧ ମୋତେକଲେ
ସପତଣୀମାନଙ୍କୁ ମୋ ସଙ୍ଗତେ ବସାଇଲେ ।
ସ୍ପଷ୍ଟ ବଚନ କହି ରହିଲେ ମୋର ଶୋକ
ବୋଇଲେ ସୁନ୍ଦରୀରେ ନୁହ ତୁ ବିମୁଖ ।
ଦୁଷ୍ଟ ଲୋକମାନେ ସର୍ବେ ଜାଣିଥିବେ କେହି
ଦୁଷ୍ଟ ଅସୁରଙ୍କୁ ଯେ ମାରିଲେ ଧନୁଗ୍ରାହୀ ।
ଏତେ କହି ଲୁଛା ମୋର ଦେଖିଲେ ବେନହସ୍ତ
ସ୍ୱାମୀ ମାଣିକର ଚୂଡ଼ ପିନ୍ଧାଏ ଆପସେତ ।
ସନମାନ କରଣ ମୋ ମୁଖେ ଚୁମ୍ବ ଦେଲା
ମୋତେ କହି ଶ୍ରୀରାମ ପାଶକୁ ଚଳିଗଲା ।
ଆଜ ଯେବେ ସେ କଥାକୁ ମୁଁ କରିବ ଆନ
ପୁତ୍ର ନାତି ପୁଚୁରାରେ ନୋହିବ ସନମାନ ।
କହିବାର କଥାକୁ ମୋର ସ୍ୱାମୀ ନ କଲେ
ଦୁଷ୍ଟ ବୁଦ୍ଧି କରଣ ଆପଣେ ନାଶ ଗଲେ ।
ମୁଁ ଯେବେ ହୋଇବ ଦୁଷ୍ଟ ତାହାର ପରାୟେ
ବିଅରେ ନଦେଇ ଆନେଦେବେ ରାମରାୟେ
ନାହିଁ ବୋଲି ବୋଇଲେ ମୁଁ ହେବ ଆଉ କସ
ମୁହିଁ ଥିଲେ ରକ୍ଷା ମୋର ହୋଇବ ସେ ବଂଶ
ରାଜ୍ୟ ଲୋକେ ମୋଠାରେ ହୁଅନ୍ତି ସନମାନ
ଯାହା ସେ କପାଳେ ମୋର ଲେଖାଅଛି ପୁଣ
ଏସନେକ ମନରେ ସେ ଭାବଇ ସୁନ୍ଦରୀ
ସଭକୁଣୀମାନେ ବୋଧ କରନ୍ତି ତାଙ୍କୁ ଘେରି
ନକର ନାହିଁ ତୁମ୍ଭେ ନୁହଟି ବିମୁଖ
ଅମ୍ଭ ରାଜ୍ୟେ ଆମ୍ଭେ ସିନା ପାଇବାଗୋ ସୁଖ
ରାବଣକୁ ମାରିଲେ ଗୋ ଯେଉଁ ରାମ ପୁଣ
ଅମ୍ଭଙ୍କୁ ଅପରାଧ ସେ କରିଲେ କି କାରଣ ।
ଭଲହିଁ ହୋଇଲା ଗୋ ବିଭୀଷଣକୁ ଦେଲେ
ଋକ୍ଷ ମର୍କଟଙ୍କୁ ବିଅ ଯାହା ନ ବୋଇଲେ ।

ତାହା ଶ୍ରୀରାମ ବୋଇଲେ ଜଳେ ଝାସଦ୍ୟନ୍ତୁ
ଯାହା ସେ ପୂର୍ବେ ଆମ୍ଭେ କର୍ମରେ ଅର୍ଜିଅଛୁ
ଅମ୍ଭ ରାଜ୍ୟ ଆମ୍ଭେଗୋ ହୋଇବାକାରେଣି
ବିଅର ହେବେ ଗୁରୁସ୍ତ ଆମ୍ଭର ସିନା ପୁଣି ।
ସକମତ ତୁମ୍ଭେ ଗୋ କର ମନ୍ଦାଦେହ
କ୍ଷଣେ ଭୂଷହୋଇ ଯେ ମନ୍ଦୋଦରୀ କହି ।
ଯେବେ ତୁମ୍ଭ ସଭୁରି ମନକୁ ଯୋଗାଇଲା
ଏକା ମୁଁ ନାହିଁକଲେ କସ ଗୋ ହେବ ଭଲ
ବୋଲିବେ ଲୋକଲୁଣୀ ମୁହିଁ ହେବ ପାଠ
ଏଣେ ଯେ ସୃଷ୍ଟି ଗୋ ହେବେ ଲଙ୍କରାଷ୍ଟ୍ର ।
ମନ୍ଦୋଦରୀ ବଚନକୁ ସପତଣୀ ଶୁଣି
ମନରେ ହର୍ଷ ଯେ ରାଣୀହଂସ ପୁଣି ।
ମନ୍ଦୋଦରୀ ବୋଇଲେ ଗୋ ବନ୍ଦେ ତୁମ୍ଭେ ରହ
ସଲପତେ କହିବେ ଜାଣିବା ତାଙ୍କ ସ୍ନେହ ।
କାଲି ବିଅର ଆମ୍ଭଙ୍କୁ କରିଛନ୍ତି ବୋଧ ପୁଣ
ଅଷ୍ଟ ଅଳଙ୍କାର ଲଦିଛନ୍ତି ଦୁବେ ଜାଣ ।
ତାଙ୍କର ବ୍ୟତିରେକେ ଆମ୍ଭଙ୍କୁ ହେବ ଯୋଗ
ଆମ୍ଭେ ଛନ୍ଦ କହି ଜଣାଇବା ରାମଚନ୍ଦ୍ର ।
ମନ୍ଦୋଦରୀ କହେ ତୁମ୍ଭେ ଶୁଣହେ ବେନମନ୍ତ୍ରୀ
ସଉମିତ୍ରୀଙ୍କ ଡକାଅ କହିବୁ କଥାନକ ।
ବିବେକପଣ ଯେବେ କରିବେ ସେ ପୁଣ
ଧର୍ମ ଅଧର୍ମକୁ ଯେବେ କରିବେ ବିସ୍ତରଣ ।
ତେବେ ସିନା ଯେଉଁକଥା ଯେମନ୍ତ ହୋଇବ
ନୋହିଲେ ରାବଣ ସଙ୍ଗେ ଆମ୍ଭର ପ୍ରାଣଯିବ
ରାଣୀଠାରୁ ଶୁଣି ମନ୍ତ୍ରୀ ବେଗେ ଚଳିଗଲେ
ଲକ୍ଷ୍ମଣ ଆଗରେ ଯାଇ ପ୍ରବେଶ ହୋଇଲେ ।
ବୋଇଲେ ଦେବଦେବ ତୁମ୍ଭେ ବେଗହୋଇ ଆସ
ମନ୍ଦୋଦରୀ ରାଣୀ ତୁମ୍ଭଙ୍କୁ ଲୋଡ଼ୁଛନ୍ତି ପାଶ
ଶୁଣିଣ ଶ୍ରୀରାମ ଭାଇ ବେଗେଣ ଅଇଲେହିଁ
ମନ୍ଦୋଦରୀ ନିକଟକୁ ବେଗେ ଚଳିଗଲେ ।
ବୋଇଲେ ଗୋ ପାଟରାଣୀ କମା ଲୋଡ଼ିଲ
ବିଅରକୁ ଯେଣ ଅଭିଷେକ ଗୋ ନୋହିଲ ।
ଅଭେଦ ନମ୍ରମ କରିଛନ୍ତି ନୃପଧାରୀ
ଦଶଗ୍ରୀବ ଘରଣୀଙ୍କ ଆଗକୁ ଦେବଂବୋଲ ।
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣଗୋ ସାନୁଜ
ଆମ୍ଭେମାନେ ତୁମ୍ଭ ସଙ୍ଗେ କରିବାହୁଁ ଯୁଦ୍ଧ ।

ଜନମା କ ଆଣିନାହିଁ କୁମ୍ଭର ସେ ଆସେ
ସ୍ୱଳ୍ପହୋଇ ଆମ୍ଭଠାରେ କ୍ରୋଧ କ୍ଷମା ଏବେ
ଯେବେ ସେ କଷ୍ଟ କରିଛନ୍ତି ଆମ୍ଭପାଇଁ
ଆମ୍ଭେ ନପୂମ କହୁଛୁ ହେ ଜବଗସ୍ୱାମୀ ।
ବିଅରଙ୍କ ତଳେ ରଖିବାକୁ ଯେବେ ମନ
ବିଭୀଷଣଠାରେ ଯେବେ ହୋଇଛ ପ୍ରସନ୍ନ ।
ତେବେ ଏଥକୁ ଆସି କରନ୍ତୁ ଅଭିଷେକ
ନ ଆସିଲେ ଝାସଦେବୁ ଆମ୍ଭେକି ସମସ୍ତ ।
ଧର୍ମରେ ତୁମ୍ଭେ ଆମ୍ଭର ଅଟ ଯେ ସାନୁଜ
କେମନ୍ତେ ଅଭିଷେକ କରିବ ମନେ ବୁଝ ।
କେଉଁଠାରେ ସାନ ବଡ଼କୁ ବିଅନ୍ତି ଯୋଗାଡ଼ି
ଏହୁକଥା ବିଚାର କରି ଦେଖୁ କର ।
ଲକ୍ଷ୍ମଣ ବୋଇଲେ ତୁ ତ ଅଟୁ ବଡ଼ ବେତା
ଜାଣିଲି ବୁଦ୍ଧି ତୋର ଅଟେ ଜଗନ୍ନିତା ।
ଶ୍ରୀରାମଚନ୍ଦ୍ର ଆସିଲେ ତୁ ମୁକତ୍ତ ଲଭିବୁ
ବୋଲୁଛୁଣୀ ଘଣ ଗୁଡ଼ ସଙ୍କଟରେ ଦେଖାଦେବୁ
ଯାଉଛୁ ଶ୍ରୀରାମଙ୍କୁ ଆଣିବ ତୁମ୍ଭ ବୋଲେ
ଧର୍ମ ଦେଖାଇଲୁ ମଧୁ ବଚନ ଦୁଲକେ ।
ମନ୍ଦୋଦରୀ ବୋଲେ ତୁମ୍ଭେ ଶ୍ରୀରାମଙ୍କୁ ଆଣ
ରାମ ସଙ୍ଗେ ଭିନଗ୍ରହ ଆସିବ ଯେ ପୁଣ ।
ରଘୁବରଙ୍କୁ ଦେଖିଲେ ମୁଁ ହେବ ଅଭିଷେକ
ନୋହିଲେ ସିନ୍ଧୁରେ ଝାସ ଦେବାର ଯେସନ
ଶୁଣିକରି ଲକ୍ଷ୍ମଣ ଯେ ବେଗେ ଚଳିଗଲେ
ତାଳଧ୍ୱଜ ରଥରେ ବସେ ଯାଇ ଭଲେ ।
ସୁଷେଣକୁ ବୋଇଲେ ତୁ ବାହି ବେଗେ ରଥ
ଶ୍ରୀରାମ ଆଗରେ ମୋତେ କରି ଉପଗତ ।
ଶୁଣିଣ ସୁଷେଣ ବେଗେ ରଥ ବାହି ନେଲା
ସୁବଳଯା ଗିରିରେ ରଥ ନେଇ କଲା ।
ଶ୍ରୀରାମ ଛାମୁରେ ଲକ୍ଷ୍ମଣ ହେଲେ ଉପଗତ
କରଯୋଡ଼ି ଜଣାଇଲେ ଉର୍ମିଳାର କାନ୍ତ ।
ଶ୍ରୀରାମ ବୋଇଲେ ବେଗେ ଅଇଲ ଲକ୍ଷ୍ମଣ
ଅଭିଷେକ ହୋଇଲା କି ମନ୍ଦୋଦରୀ ପୁଣ ।
ଲକ୍ଷ୍ମଣ ବୋଇଲେ ଦେବ ଶୁଣ ଅଟେନାଥ
ବୋଇଲା ଶ୍ରୀରାମ ଯେବେ ଏଠାକୁ ତତେକରି
ଭିନଗ୍ରହ ଘେନି ଯେବେ ନ ଆସିବେ ପୁଣ
ଯଦଗଣୀ ଘେନି ଝାସ ଦେବ ମୁହିଁ ଜାଣ ।

ମୁଁ ବୋଇଲି ସେଠାବକୁ ଚଳ ଏବେ ଯିବା
ଶ୍ରୀରାମ ଛାମୁରେ ଅଭିଷେକ କରାଇବା ।
ସେ ବୋଇଲେ ଲଙ୍କେ ରାଜା ଅଛନ୍ତି ସେଠାରେ
ରାଜାର ପାଟରାଣୀ ମୁଁ ଯିବ କି ପ୍ରକାରେ ।
ତୁମ୍ଭଙ୍କୁ ଲଜ୍ଜା ହେବ ମୋତେ ହେବ ମାନ୍ୟ
ବୋଲିବେ ରଘୁନାଥ ଅଧର୍ମ କଲେ ପୁଣ ।
ସ୍ୱାମୀକି ମାରିଣ ତା ଘରଣୀ ଅଣାଇଲେ
ଥାଟ ବଳ ଭିତରେ ଆଣି ଛିଡ଼ା କଲେ ।
ବିଭୀଷଣକୁ ଔଷଧ ନ କଲେ ରାମ ରାଣ
ତା ରାଣୀକୁ ସଙ୍ଗ ମଧ୍ୟକୁ ଅଣାଇଲେ ପୁଣ ।
ରାଣୀମାନେ କହିଲେ କି ଜାନକୀ ସ୍ନେହକର
ରାବଣ ସିନା ଅଟଇ ତାଙ୍କର ଭଗାରି ।
ବିଭୀଷଣଠାରେ ଦୟା ଆମ୍ଭଠାରେ ବୁଦ୍ଧି
ତେବେ ଏଠାକୁ ବିଜେ କରିବେ ଦୟାନିଧି ।
ରଘୁବର ଯେବେ କରିବେ ମୋତେ ପାଟ
ତେବେ ବିଭୀଷଣର ହେବ ଭରସା ତ ।
ବଡ଼କୁ ତୁ ଶାଢ଼ୀ ଦେବାକୁ ଆସିଛୁ ସାନୁଜ
ଅଧର୍ମ ହୋଇବଟି ପ୍ରଭୁଙ୍କୁ କହ ଆଜ ।
ଏତେକ ଯେ ମନ୍ଦୋଦରୀ ମୋ ଆଗେ କହିଲା
ଶୁଣି ତାରକଥା ଯେ ମୋ ମନକୁ ଅଇଲା ।
ଶ୍ରୀରାମ ବୋଇଲେ ସେ ଯେ ଅଟେ ବଡଗରୁ
ନୋହିଲେ କି ଧର୍ମକଥା ବାହାରେ ତାହୁଦରୁ
ତାହାର ମନକୁ ଜାଣେ ନ କଲା ରାବଣ
ବଡ଼ପଣ କରିବାରୁ ହରାଇଲା ପ୍ରାଣ ।
ଅହଲ୍ୟାକୁ ଯେସନେ ହରିଲା ଇନ୍ଦ୍ର ଆସି
ଋଷିଶାପେ ତାଙ୍କ ଦେହ ଯୋନିମୟ ଦିଶି ।
ଖଇବୋହୁକୁ ବାଳ ହରଣ ପ୍ରାଣ ଦେଲା
ପରଭ ବୋଲେ ଯେମନ୍ତେ ଶତମୁଖା ମଲା ।
ଏ ପାଞ୍ଚ ଜଣେ ଏକମୁଖା ମହାରାବଣ
ତୋର ହସ୍ତେ ମଲେ ପାଞ୍ଚଜନେ ପୁଣ ।
କାର୍ତ୍ତିକେଶ୍ୱର ଗମନ କହିଲେ ନ ସରଇ
ତପ୍ୟାକରି ତାକୁ ଗୁଡ଼ ଅଇଲା ସେ ମୁହିଁ ।
ଭରତର ସଙ୍ଗରେ ସେହୁ ନେଇ ଜନ କଳା
ତଞ୍ଚଦେହାନ୍ତ ଶିଙ୍କର ବାପକୁ ଅଣାଦବ ।
ଭରତ ବାହୁନରେ ସମସ୍ତେ ସ୍ମରିଲେ ମୋହ
ପାଶଟ ଅସିଣ ଦେଖିଲେ ତାଙ୍କ ମୋହ ।

ନାରୀମାନେ ଧର୍ମରେ ସବୁଦିନେ ତେଜା
ଜାନକୀ ରାବଣକୁ ଅଗ୍ନି ଯେ ଦେବତା ।
ଜାନକୀ ସୁନ୍ଦରୀ ବୋଲି ମନ୍ଦୋଦରୀ ମନାକଲା
ରାବଣ ସ୍ନେହ ଗୁଡ଼ ଜେବେହେଁ ନ ରହିଲା ।
ଯେତେ ପ୍ରକାର ସେହୁ କହିଲା ବୁଝାଇ
ଛାର ବୋଲ ନ କଲା ବିଶ୍ରବା ତନସ୍ବୀ ।
ସେ କଥାମାନ ବିଭୀଷଣ ଯେ କହିଲା
ବିଶ୍ୱାସରେ ବିଭୀଷଣ ଶୁଣିକ ମରିଗଲା ।
ତାହାକୁ ନିଶ୍ଚୟ ଲଙ୍କାଗଡ଼େ ରାଜା କରି
ଯୁଗେ ଯୁଗେ ନାମ ମୋ ରହିବ ଜନପୁରୀ ।
ମନ୍ଦୋଦରୀ ଏବେ ଯେ ଧର୍ମକୁ ଆସ୍ଥା କଲା
ତୋତେ ଦେଖିବାରୁ ଯେବେ ସାନୁଜବୋଇଲା
ମୂର୍ତ୍ତି ଗଲେ ଯେବେ ସେ ହେବ ଅଭିଷେକ
ସୁରଭାଇଙ୍କି ଦେଖିଲେ ପାଇବ ଯେବେ ସୁଖ
ମୋଠାରେ ବଡ଼ ବିଶ୍ୱାସ ତାହାର ଜଣାଗଲେ
ଏତେବୋଲି ଶ୍ରୀରାମ ଭ୍ରାତକୁ ଡାକିଲେ ।
ଲକ୍ଷ୍ମଣଙ୍କୁ ବୋଇଲେ ଡାକ ହେ ଶତ୍ରୁଘନ
ତକ୍ଷଣେ ଦୁଇଭାଇ ମିଳିଲେ ଗ୍ରାମୁରେଣ ।
ଚାରିଭାଇଯାକ ଏକଠାରେ ମେଳ ହେଲେ
କୋଦଣ୍ଡ ରୂପଧାରୀ ତାଙ୍କୁ ରୂର୍ତ୍ତିଣ ବୋଇଲେ
ହୁଅ ତୁମ୍ଭେ ରାଜବେଶ ଦେହ ଦିଶୁ ତୋର
ମନ୍ଦୋଦରୀ ସୁରିଜଣେ କରିଅଛୁ ଲୋଡ଼ା ।
ଲଙ୍କାର ନରନାରୀ ସୁରିଙ୍କି ଦେଖିବେ
ଯୂଥପତି ସେନାପତି ସଙ୍ଗରେ ମୋର ଥିବେ
ଋକ୍ଷକପି ସୈନ୍ୟ ଯେ ରାଜାଗଣେ ପୁଣ
ଲଙ୍କାଗଡ଼କୁ ଆଜ ନ ଯିବେ କେହି ଜାଣ ।
ରଥ ସଜକର ହୋ ଯିବା ବେଗହୋଇ
ଏତେକହି ଶ୍ରୀରାମ ଯେ ବେଶମାନ ହୋଇ ।
ସୁନାଖଡ଼ୁ ବଉଦଳୀ ମୁକ୍ତା ଜାଲମାନ
ଜରି ପାଗ ମୁକୁଟ ଶିରରେ ବାନ୍ଧି ପୁଣ ।
ବାହୁଟି କଙ୍କଣ ଯେ କର୍ଣ୍ଣରେ ଫିରଫିରା
ଘାଗୁଡ଼ି ନୂପୁର ଯେ ଅଙ୍ଗୁଷ୍ଠ ମୁଦି ଯୋଡ଼ା ।
ବଜ୍ର ମୁଦି ହୀରା ମୁଦି ମାଣିକ୍ୟ ମୁଦିମାନ
ଅଷ୍ଟରତ୍ନ ମୁଦି ଅଙ୍ଗୁଷ୍ଠିକୁ ଶୋଭିବନ ।
କର୍ଣ୍ଣରେ ଚନ୍ଦ୍ରଫାସିଆ ମସ୍ତକେ ନୀଳମଣି
ଚନ୍ଦ୍ରହାର ବନମାଳ ବକ୍ଷସ୍ଥଳେ ପୁଣି ।

ଦେବାଙ୍ଗ ପଟମା ଶାଢ଼ୀ ପିନ୍ଧି ରାମ ପୁଣ
ପଞ୍ଚସର ସୁନା ସୂତା ଅଣ୍ଟାରେ ବାନ୍ଧଣ ।
ହୀରା ନୀଳା ମୋତି ଯେ ମାଣିକ୍ୟ ରୂପସର
କଣ୍ଠକୁ ଶୋଭା ସେହୁ ଯେ ଦିଶଇ ଆବୋର
ଜାମାଜର ପାଗ ବାନ୍ଧି ଶ୍ରୀରାମ ଭଲ ହେଲେ
ବଶିଷ୍ଠ ଗୁରୁଙ୍କୁ ଯାଇ ନମସ୍କାର କଲେ ।
ଲଙ୍କାଗଡ଼କୁ ମୂର୍ତ୍ତି ଯେ ଯାଉଛୁ ବୋଇଲେ
ଶୁଣିକରି ବଶିଷ୍ଠ ପରମ ତୋଷ ହେଲେ ।
ରଥେ ବସି କୁମ୍ଭ ସଙ୍ଗେ ମୂର୍ତ୍ତି ପିଷ ତର୍ତ୍ତି
ମଙ୍ଗଳ ଆଳତି ତୋତେ କରିବ ବସଠାଇ ।
ଶୁଣି ରାମଚନ୍ଦ୍ର ମାହୁନ୍ତ ଡକାଇଲେ
ଶ୍ୱେତହସ୍ତୀ ଉପରେ ଅମରା ବେଠାଇଲେ ।
ମଙ୍ଗଳ ଆଳତି ସଜ ଚନ୍ଦନ କର୍ପୂର
ସବୁ ସଜ କରିଣ ଯେ ଥୋଇଲେ ସେଥିର ।
ବଶିଷ୍ଠଙ୍କୁ ନେଇଣ ସେଥିରେ ବସାଇଲେ
ମାତଳୀକୁ କହିଣ ରଥକୁ ସଜ କଲେ ।
ରଥକୁ ସଜାଡ଼ି କରି ମାତଳୀ ଆଣିଲା
କନକ ମଣ୍ଡପ ଯେ ଦିଶିଲା ବଡ଼ ଶୋଭା ।
ନନ୍ଦିଘୋଷ ରଥ ପରେ ବିଜେ ରଘୁନାଥ
ତିନପୁରକୁ ସୁନ୍ଦର ଦିଶେ ସେହୁ ରଥ ।
କନକର ସିଂହାସନ ଉପରେ ବସିଲେ
କୋଦଣ୍ଡଶୋଟି ତାଙ୍କର ଆଗରେ ଥୋଇଲେ
ଶୁଭ୍ର ଛତ୍ର ଟେକାଇ ଆଗରେ ବାଡ଼ି କରି
ଶ୍ୱେତଚାମରମୟୂରଘଣ୍ଟାଲନପୋଖୀଆଗେଡ଼ାଳ
ରାମଚନ୍ଦ୍ର ପ୍ରାପ୍ତ ବେଶ ଭରତ ଅଙ୍ଗେହେଲେ
ଜଣେଅର ଧ୍ବଜର ଉପରେ ବସିଲେ ।
ଲକ୍ଷ୍ମଣ ତ ରାଜବେଶ ହେଲେ ବଡ଼ ଶୋଭା
ତାଳଧ୍ୱଜ ରଥରେ ବିଜୟ କଲେ ପରା ।
ଶତ୍ରୁଘନର ବେଶ ଅଧିକ ଦିଶେ ଶୋଭା
ଦିଶଇ ଦେବରାଜ ଦେବଙ୍କ ମଧ୍ୟେ ପରା ।
ଚାରିଭାଇଯାକ ରଥରେ ବିଜେକଲେ
ଅସୁରଦଳନ ରଥେ ଶତ୍ରୁଘନ ବିଜେକଲେ ।
ଜନନୀକ ସୁରିଭାଇ କଲେ ନମସ୍କାର
ଯେସନେ ବ୍ରହ୍ମା ବିଷ୍ଣୁ ଦିଶେ ମହେଶ୍ବର ।
ଆଗରେ ବଶିଷ୍ଠ ଯେ ପଛରେ ଶ୍ରୀରାମ
ଭରତ ଲକ୍ଷ୍ମଣ ଯେ ମଧ୍ୟରେ ଗଲେ ପୁଣ ।

ତାଙ୍କ ପଛେ ଶତ୍ରୁଘ୍ନ କରନ୍ତି ଗମନ
ଯେସନେ ଗୁଣ୍ଡିଚ୍ଛ ଯାତ୍ରା ଶ୍ରୀପୁରୁଷୋତ୍ତମ ।
ତେସନେକ ପ୍ରାୟେ ଯେ ଦିଶନ୍ତି ଶ୍ରୀରାମ
ଆଗେ ଯୂଥପତି ପଛେ ସେନାପତିଗଣ ।
କନ୍ଦର୍ପ ପରାୟେ ଶୋଭା ଦିଶେ ଆନୁଆନ
ତ୍ରିଭୁବନେ ପଟାନ୍ତର ନ ଘଟିବ ପୁଣ ।
ଆଗରେ ନୃତ୍ୟକାରୀ ନୃତ୍ୟ ଗୀତ କରେ
ପଛରେ ରାମତାଳ ହୁଳହୁଳି ପଡ଼େ ।
ତେଲଙ୍ଗୀ ବୀର ବାଜା ଧ୍ୱଂସନ ସ୍ୱର ଶଙ୍ଖ
କାହାଳୀ ତୂରୀ ବୀଣା ବଇଁଶୀ ଘଣ୍ଟିମୁଖ ।
ଦୁଇପାଖେ ଆଲଟ ପଡ଼େ ମୟୂରର ଝାଲ
ଘଷା ପକାବନ୍ତି ଯେ ନିଯୋଗୀ ସକଳ ।
ମର୍ଦ୍ଦଳ ଘଣ୍ଟି ଯେ ବାଜଇ ଆଗେ ଗୁଣି
ପଶ୍ଚିମ ଦ୍ୱାରବାଟେ ବିଜୟ ରଘୁମଣି ।
ଲଙ୍କାର ବଡ଼ଦାଣ୍ଡ ଅଟେ ଯେତୁ ପୁଣ
ସେ ଦାଣ୍ଡରେ ବିଜୟ କଲେ ରଘୁରାଣ ।
ରାଜାର ସିଂହଦ୍ୱାରେ ପ୍ରବେଶ ହେଲେ ଯାଇଁ
ଖୁଣ୍ଟିଆ ପ୍ରତିହାରୀ ଆଗରେ ଡାକଦେଇ ।
ମଣିମା ମଣିମା ଡାକ ପଡ଼େ ନିରନ୍ତର
ବିଜୟ କଲେ ଯାଇ ବ୍ରହ୍ମାଣ୍ଡ ଠାକୁର ।
ବାଜଣାର ଶବଦେ ଚମକେ ଲଙ୍କାପୁର
ଲଙ୍କାର ନର ନାରୀ ଦେଖନ୍ତି ମଣ୍ଡପର ।
ବୋଲନ୍ତି ରାମଚନ୍ଦ୍ର ବେଗେଣ ବୃହସ୍ପଇ
ବିଭୀଷଣଙ୍କୁ ରାଜା କରିବେ ଏବେ ଏହି ।
କେବୋଲନ୍ତି ମନ୍ଦୋଦରୀ ବସିବେ ଆଜପାଟ
କେବୋଇଲେ ସମ୍ଭାଳ ଆଜ ହେବ ଲଙ୍କରାଷ୍ଟ୍ର
କେ ବୋଲନ୍ତି ବିଭୀଷଣ ଭଲ ପଣ କଲେ
ଆଗକରି ଯାଇଣ ଶ୍ରୀରାମଙ୍କୁ ଭେଟିଥିଲେ ।
କେ ବୋଲଇ ମନ୍ଦୋଦରୀ ବିଗ୍ଭରଟି ଏହି
ବିଅରଙ୍କ ସଙ୍ଗରେ ବିଗ୍ଭର ଅଛି ହୋଇ ।
କେବୋଲନ୍ତି ଶ୍ରୀରାମ ଯେ ଏକଥାକଲେଭଲ
ରାବଣର ନାରୀକଗୋ ନୋହିଲେଟି ସଳ ।
କୁଳଧର୍ମ ରକ୍ଷିଣ ବିଭୀଷଣଙ୍କୁ ଦେଲେ
ଅନ୍ୟ ଲୋକଙ୍କୁ ଦେଲେଅଧର୍ମ ହୋନ୍ତେଭଲେ
ଏମନ୍ତ ବିଗ୍ଭର ଯେ କରନ୍ତି ନର ନାରୀ
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ ।

ରାମ ବିଜେ କରିବାର ବଜାରେ ଶବଦ
ହୁଳହୁଳି ସମତାଳରେ ହୋଇଣ ନିର୍ଘୋଷ ।
ରଥର ଚଳବାର ଶୋଭାମାନ ଦେଖି
ଅଶୋକବନେ ତ୍ରିଜଟାଙ୍କୁ ପଗ୍ଭରେ ଜାନକୀ ।
ଶୁଣ ଗୋ ତ୍ରିଜଟା ଆଜ ଉତ୍ସବ ଲଙ୍କାପୁର
ବାଦ୍ୟ ରାମତାଳ ଯେ ପଡ଼ୁଛି ନିରନ୍ତର ।
ବୃଦ୍ଧରଥ ସାଜେଣି ଯେ ଦିଶୁଛି ମୋତେଧ୍ୱଜା
କେବଣ କଥା ଏ ଜଣା ନଗଲା ବୁଝ ଯାଯା ।
କୋଦଣ୍ଡ ଚାପଧାରୀ ତ ଲଙ୍କାରେବିଜେକଲେ
ଅସୁରକୁଳ ଘାତକ ଖଣ୍ଡନ ହେବ ଭଲେ ।
ତ୍ରିଜଟା ବୋଇଲା ମାତା ଶୁଣ ମୋ ବଚନ
ମୋର ପିତା ଲଙ୍କାରେ ନୃପତି ହେବେ ପୁଣ
ସେଥିସକାଶେ ପ୍ରଭୁ ଆସିଥିବେ ଏବା
ପିତା ମୋର ତାଙ୍କ ପାଶେ କରିଛନ୍ତି ସେବା
ଅସୁରୁଣୀ ପାଞ୍ଚଗୋଟି ଅସୁରପୁରେ ଥିଲେ
ଧାଇଁଯାଇ ଜାନକୀର ଆଗରେ କହିଲେ ।
କୁମ୍ଭର ପ୍ରାଣନାଥ ଲଙ୍କାକୁ ବିଜେ କଲେ
ଭିନଭାଇ ତାଙ୍କ ସଙ୍ଗେ ଅଛନ୍ତି ଯେ ଭଲେ ।
ଗୁରୁ ଯେ ବଶିଷ୍ଠ ବ୍ରହ୍ମାଙ୍କ କୁମର
ସେହି ବିଜେ କରିଛନ୍ତି ରାମ ସଙ୍ଗତର ।
ତାହା ଶୁଣି ଜାନକୀ କହିଲେ ତ୍ରିଜଟାଙ୍କୁ
ପିତା ତୋର ରାଜାହେବେ ଯାଅବୁଝେଠାକୁ
ତୋ ପିତା ସୂଲଭ ଯାଇ ଦେଖ ଲୋ ଦୁହିତା
ଶ୍ରୀରାମ ଗଲେ ସେଥିରୁ ଆସିବୁ ଗୋ ମାତା
ଜାନକୀ ଚରଣେ ଉଲଗେ ତ୍ରିଜଟା
ଆଜ୍ଞାମାଗି ବାହାର ହୋଇଲା କରି ତ୍ୱରା
ସୁଖାସନେ ଯାଇଣ ବସିଲା ସୁନ୍ଦରୀ
ହରଷରେ ଗମନ ଯେ କରେ ସେହୁ ନାରୀ
ରାବଣର ସିଂହଦ୍ୱାରେ ହେଲା ପରବେଶ
ଦେଖିଲା ସୁଖ ଉଥେ ବିଜେ ରଘୁ ଭ୍ରାତ ।
ଅଛି ସେ ଶୋଭା ଯେସନେ ସ୍ୱର୍ଗରେ ଦେବକଣି
ଯାନରୁ ଓହ୍ଲାଇ ବେଗେ ଭୂମିରେ ଜଭାପୁଣି
ଶ୍ରୀରାମଙ୍କ ଚରଣରେ ଲୋଟେ ସୁକୁମାରୀ
ଶତେବାର ପରିଯନ୍ତେ ପ୍ରଣାମ ସେ କରି ।
ଦେଖିଣ ଶ୍ରୀରାମ ମନେ ବିଗ୍ଭରନ୍ତି ପୁଣ
ଏହି ନାରୀଗୋଟି କିଏ ଜାଣିବା କେମନ୍ତେଣ

ହନୁମନ୍ତଙ୍କୁ ଉଚ୍ଚାଇଣ ପଚ୍ଚରନ୍ତି ରଘୁନାଥ
ଏହି ନାରୀ କାହାର ଜାଣୁ କି ଦେଖୁଅଛ ।
ମାରୁତି ବୋଇଲା ଦେବ ମୋହଠାରୁ ଶୁଣ
ଏ ଲଙ୍କାଖଣ୍ଡରେ ଏତେକ ଅଛି ପୁଣ ।
ଏହାର ସକାଶେ ତୋର ଜାନକୀ ପ୍ରାଣପାଇ
କେଉଁକାଳେ ଦୁହିତା ଜାନକୀର ଅଟେ ଏହି
ଶୀତଳ ବଚନ କହି ସେବାକରି ଥାଇ
ଜାନକୀ ପାଶରୁ ଦେବ ଦଣ୍ଡେ ନ ଛାଡ଼ଇ ।
ରାବଣ କଠୋର କଲେ କହେ ଏ ବୁଝାଇ
ବଇଦେହୀ ଶୋକ କଲେ ଚରଣ ଧରଇ ।
ଅସୁରୁଣୀମାନେ ଯେବେ କହନ୍ତି ଟାଣକରି
ତାହାକୁ କବଚ କରେ ଭୟଦେଇ ଏ ନାରୀ
ତୁମ୍ଭେ ଆସିବାରୁ ଆଜ ଆସିଛି ଏଠାକୁ
ଚଉଦ ମାସ ହେଲା ସେ ନଦେଖେ ମାତାକୁ
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଜାନକୀ ସେବାରୁ ଫଳ ପାଇବ ବୋଇଲେ ।
ଯେଉଁବର ତୋତେ ଦେଇଅଛି ମୋରସୀତା
ସେ ବର ତୋତେ ପ୍ରାପତ ହେଉ ଗୋ ବନିତା ।
ହନୁମନ୍ତ ବୋଲେ ଏ ମାଧବୀ ନୋହେ ହରି
ଶ୍ରୀରାମଚନ୍ଦ୍ର ବୋଇଲେ ସେକଥା କହିବା ।
ଉତ୍ତମ କୁଳରୁ ଆଣି କର ଏହାକୁ ଦେବା
ଅସୁରକୁଳ ଦେବକୁଳ ଭେଟ କରାଇବା ।
ଶ୍ରୀରାମ ବୋଇଲେ ଏହାକୁ କେତେହେବ ବୟସ
ହନୁମନ୍ତ ବୋଲେ ଦେବ କୋଡ଼ିଏ ବାଇଶ
ଶ୍ରୀରାମ ବୋଇଲେ ଯେ ଅଳପ ବୟସରେ
ବୁଦ୍ଧି ସୁଜ୍ଞାନ ପ୍ରବେଶ ହେଲା ଏହାଠାରେ ।
ମୋସୀତା ନଦେଖ ଯେ ତାହାକୁ ସଖୀହେଲା
ବସ୍ତ୍ରା ଧର୍ମ ଏହାର ଯେ ବୁଝେ ପର ହେଲା ।
ଯାଅ ଯା ସୁନ୍ଦରୀ ତୁ ଜନନୀର ପୁର
ପିତାର ଶୁଭ ଆଜ ଦେଖ ଗୋ ଦୂରଳ ।
ସେଠାରୁ ତ୍ରିଜଟା ଯେ ଭରତ ପାଶେ ଗଲା
ପାଏ ପଡ଼ ଶୋଇଣ ଉଠିଣ ମେଲିଇଲା ।
ଭରତ ବୋଇଲେ ଏ ଯେ କାହାର ଦୁହିତା
ଅଙ୍ଗଦ ବୋଇଲେ ଏ ବିଭୀଷଣର ସୁତା ।
ଏହାର ନାମ ତ୍ରିଜଟା ରଖିଛି ଜାନକୀ
ଏହାଠାରେ ସୁଖ କରେ ଜନକ ଦୁହିତା ।

ଭରତ ବୋଇଲେ ଏ ପୂର୍ବରେ ଭାଗ୍ୟକଲା
ତ୍ରୈଲୋକ୍ୟ ଠାକୁରାଣୀର ସେବାରେ ରହିଲା
ସେଠାରୁ ତ୍ରିଜଟା ଯେ ଲକ୍ଷ୍ମଣ ପାଶେ ମିଳ
ଉଲଗ ହୋଇଣ ସେ ଶୋଇଲା କେତେକାଳ
ସଉମିତ୍ରି ବୋଇଲେ ଏ କାହାର ବୋଲେ ନାଥ
ତ୍ରିଜଟା କହିଲେ ଜାନକୀ ମୋର ମାତ ।
ଅଳପ ବୟସ ଅଟେ ବୁଦ୍ଧି ବଳବନ୍ତା
ତୁମ୍ଭମାନଙ୍କର ମୂର୍ତ୍ତି ଅଟଇ ଯେ ମାତା ।
ଦଶରଥ ରାଜା ମୋତେ ଆଗେ ରଖିଥିଲେ
ପଛେ ଆଉ ରାଣୀ ସେ ଅନେକ ପୁଣ କଲେ
ଗୁରୁଗୋଷ୍ଠି ପୁନ ମୋର ମୂର୍ତ୍ତି ବାଣ୍ଟିଲଇଁ
ଜ୍ୟେଷ୍ଠକୁ ନେଲେ କୌଶଲ୍ୟା କେକେୟୀ ଭରତକଇଁ
ଲକ୍ଷ୍ମଣେ ସୁମିତ୍ରା ଲଙ୍କାବଇଁଳ ଶତ୍ରୁଘନ
ଜନ୍ମ ହେବାରୁ ସେହି ବାଣ୍ଟିନେଲେ ପୁଣ ।
ଲକ୍ଷ୍ମଣ ବୋଇଲେ ଆମ୍ଭ ପିତା ଭଲଥିଲେ
ଅସୁରୁଣୀ ବଣ୍ଡହୋଇ ଆମ୍ଭଙ୍କୁ ଜାତକଲେ ।
ସୁଷେଣି ବୋଇଲେ ଏ ବିଭୀଷଣର ଦୁହିତା
ଜାନକୀର ଦାସୀପଣେ ଅଟେ ଏ ବନିତା ।
ଲକ୍ଷ୍ମଣ ବୋଇଲେ ଆଜ ପାଇଲୁ ନୂଆମାତା
ମନକୁ ସରସ ତେଣୁ କରୁଛୁ ଦୁହିତା ।
ଜନନୀକ ଦେଖିବୁ ଆମ୍ଭେ ଜାନକୀଙ୍କ ତୁଲେ ହେଲେ
ମୋରମାତା ହେବେ ବୋଲି ଏଠାକୁ ଆଇଲେ
ତ୍ରିଜଟା ବୋଇଲେ ମୋର ଭଉଣୀ ଏକସ୍ତ୍ରୀ
ଲକ୍ଷ୍ମଣ ହେବକେବେ ଷୀର ସେ ହେଲେ ପୁଣି
ତେଣୁକରି ପୁତ୍ରଲେଖା ତୁମ୍ଭଙ୍କୁ ମୁଁ କଲି
ଏତେକହି ତ୍ରିଜଟା ସେଠାରୁ ଗଲା ଚଳି ।
ଶତ୍ରୁଘନକୁ ଦେଖି ପଡ଼ିଲା ପାଦତଳେ
ଉଠି ଛିଡ଼ା ହୋଇ କର ଯୋଡ଼ିଲା କପୋଳେ
ବୋଇଲା ଜନନୀକରେ ତୋରକେତୁନେଲ ପୁଣ
ଆଜ ତ ଆସିନାହିଁ ତୁମ୍ଭର ସଙ୍ଗେ ଜାଣ ।
ଶତ୍ରୁଘନ ବୋଇଲେ ଗୋ ଦେଖ ଏବେଯାଇ
ବାପ ସୁନ୍ଦରୀ ମା କରିବ ଆଜ ରହି ।
ସେ ମାଆଠାରୁ ଦୁଧ ଖାଇବୁ ଆଜ ପୁଣି
ଜାଲକ ପାଶୋରିବୁ ଜାନକୀ ଠାକୁରାଣୀ ।
ଶୁଣିକରି ଲଜ୍ଜାପାଇ ତ୍ରିଜଟା ବେଗେ ଗଲା
ମନ୍ଦୋଦରୀର ପାଶେ ପ୍ରବେଶ ହୋଇଲା ।

ଶ୍ରୀରାମ ଆସିବାର ଶୁଣିଣ ମନ୍ଦୋଦରୀ
ଅସ୍ତରନ୍ତେ ଭୂଷଣ ବେଶ ବେଗେ ଧାରି ।
ସପତ୍ନୀମାନଙ୍କୁ ବୋଇଲେ ତୁମ୍ଭ ସଜ
ଶ୍ରୀରାମଙ୍କୁ ଦର୍ଶନ କରିବା ଆସ ଆଜ ।
ତତକ୍ଷଣି ସପତ୍ନୀମାନେ ସଜ ହେଲେ
ଅମଳାନ ଛତମା ଶାଢ଼ୀକି ପିନ୍ଧିଲେ ।
ସର୍ବନାରୀମାନେ ଫୁଲ ଚନ୍ଦନ ଲେପନ
କର୍ପୂର ବଞ୍ଜଆଗାଜ କରନ୍ତି ସୈନ୍ୟଜନ ।
ତ୍ରିଜଟାକୁ ବୋଇଲେ ତୋ ପିତାକୁ ଡାକି ଆଣ
ଶୁଣିକରି ତ୍ରିଜଟା ସେ ଗଲାକ ବହନ ।
ପିତାକୁ ବୋଇଲେ ତୁମ୍ଭେ ଆସ ଅନ୍ତଃପୁର
ତୁମ୍ଭଙ୍କୁ ଜନନୀମାନେ ଡାକନ୍ତି ସତ୍ୱର ।
ତାହା ଶୁଣି ବିଭୀଷଣ ବେଗେ ଚଳିଗଲେ
ମନ୍ଦୋଦରୀ ପାଶେ ଯାଇ ପ୍ରବେଶ ହୋଇଲେ ।
ଦେଖି ମନ୍ଦୋଦରୀ ବୋଲେ ଶୁଣ ପ୍ରାଣନାଥ
ଶ୍ରୀରାମ ବିଜେ କଲେ ଆମ୍ଭର ପୁରକୁ ତ ।
ରଘୁବୀରଙ୍କି ତୁମ୍ଭେ ଭିତରକୁ ଆଣ
ନମସ୍କାର କରିଣ କହିବା ଦୁଃଖ ପୁଣ ।
ରଘୁବୀରଙ୍କି ଓଳଗ ହୋଇବି ସେ ମୁହିଁ
ଶୁଣିକରି ବିଭୀଷଣ ବଚନ କହଇ ।
ବାସୁଦେବ ଜନମ ଗୋ ଚତୁର୍ଦ୍ଧା ମୂରତି
ଶ୍ରୀରାମ ନାରାୟଣ ଲକ୍ଷ୍ମଣ ଅନନ୍ତ ଟି ।
ସୁଦର୍ଶନ ଚକ୍ର ସେ ଅଟନ୍ତି ଭରତ
ଶତ୍ରୁଘନ ଅଟନ୍ତି ଡାହାଣ ହାତ ଶଙ୍ଖ ।
ସେ ଯାହା ବୋଲିବେ ତୁ କରିବୁ ତାହା ପୁଣ
ଏତେ କହି ବିଭୀଷଣ ଗଲାକ ବହନ ।
ଶ୍ରୀରାମ ପାଖରେ ଯାଇଁ ହେଲା ପରବେଶ
ଦେଖିକରି ରଘୁନାଥ ହୋଇଲେ ହରଷ ।
ଶ୍ୱେତ ହସ୍ତୀ ଉପରୁ ସେ ଓହ୍ଲାଇ ବଶିଷ୍ଠ
ମଙ୍ଗଳ ଆଳତି ଜାଠି ଧରିଛନ୍ତି ହସ୍ତ ।
ନନ୍ଦିଘୋଷ ରଥରୁ ଶ୍ରୀରାମ ଓହ୍ଲାଇଲେ
କପିଅରି ଧ୍ୱଜ ଉପରୁ ଭରତ ଖସିଲେ ।
ତାଳଧ୍ୱଜ ରଥୁଁ ଆସି ଲକ୍ଷ୍ମଣ ବହନ
ଅସୁର ଦଳନ ରଥୁ ଓହ୍ଲାଇ ଶତ୍ରୁଘନ ।
ଚାରିଭାଇ ଏକଠାରେ ହେଲେ ଯାଇ ଉଭା
ଲଙ୍କାଗଡ଼ ମଧ୍ୟରେ ପଶିଲେ ମହା ଶୋଭା ।

ମଙ୍ଗଳ ଆଳତି ସେ ବଶିଷ୍ଠ ଯାଇ କଲେ
ବନ୍ଦାପନା କରି ଧୂପ ଦୀପ ଦେଲେ ।
କାହାଳୀ ଶଙ୍ଖ ସ୍ୱର ବାଦନ୍ତ ବେଣୁ ଶବଦ
ପୁଷ୍ପ ବୃଷ୍ଟି ହେଲା ସେ ମସ୍ତକ ଉପରେ ।
ବାଦ୍ୟ ନୃତ୍ୟ କରିଣ କରନ୍ତି କୋଳାହଳ
ପୁରରେ ବିଜେ କଲେ ଶ୍ରୀରାମ ଠାକୁର ।
ଅନ୍ତଃପୁର ଦୁଆରେ ପ୍ରବେଶ ଯାଇ ହେଲେ
ରାଣୀହଂସ ସେଠାରେ ହୁଳହୁଳି ଦେଲେ ।
ବିଭୀଷଣ ବୋଲେ ଅନ୍ତଃପୁରେ ବେଗେ ଚଳ
ରଘୁବୀର ପ୍ରବେଶ ହେଲେ ଅନ୍ତଃପୁର ।
ବଶିଷ୍ଠ ଋଷି ଆଗହୋଇ ପୁଣ ଗଲେ
ନାରଦ ଋଷି ଆସି ପ୍ରବେଶ ହୋଇଲେ ।
ଅର୍ଘ୍ୟଥାଳୀ ଘେନିଣ ସକଳ ରାଣୀ ହଂସ
ଆଗରେ ମନ୍ଦୋଦରୀ ପଛରେ ସମସ୍ତ ।
ଶ୍ରୀରାମ ଶିରେ ଅର୍ଘ୍ୟ ବନ୍ଦାଏ ମନ୍ଦୋଦରୀ
ସକଳ ରାଣୀହଂସ ବନ୍ଦାପନା କରି ।
ଦୁର୍ବାକ୍ଷତ ଦେଇଣ ଦେଲେ ସେ ହୁଳହୁଳି
ରଘୁବରଙ୍କୁ ବୋଲିଣ ସମସ୍ତେ କରଯୋଡ଼ି ।
ମନ୍ଦୋଦରୀ ବୋଲେ ପ୍ରଭୁ ଅଧିକ କଷ୍ଟ କଲ
ସୀତାକ ହୋଇଛୁଣୀ କରିଣ ରଖିଲ ।
କୁଅଳ ତଳେ ରଖିଲ ହେଲ ହୋଇଛୁଣୀ
ତ୍ରୈଲୋକ୍ୟରନାଥ ହୋଇ ଅଯୋଧ୍ୟାପୁରର ପୃଥି
ଶ୍ରୀରାମ ବୋଇଲେ ତୁମ୍ଭେ ସଂସାରେ ଲେଖା ହେବ
ପଞ୍ଚକନ୍ୟାଙ୍କ ସଙ୍ଗରେ ଗଣିତା ହୋଇବ ।
ପ୍ରାତରୁ ପଞ୍ଚକନ୍ୟା ସୁମରିବେ ଯେହୁ
ପଞ୍ଚ ମହାପାତକ ଖଣ୍ଡନ ହେବ ତହୁଁ ।
ଦ୍ରୌପଦୀ ଅହଲ୍ୟା ତାରା ଶଚୀ ମନ୍ଦୋଦରୀ
ପଞ୍ଚକନ୍ୟାରେ ଗଣିତା ଏହୁ ପାଞ୍ଚ ନାରୀ ।
ଏହାଙ୍କ ନାମ ଧରି ଯେ ପୁରୁଷ ସ୍ତିରୀ ଏକ
ବେଦମନ୍ତ କୁଶଗ୍ରନ୍ଥି ଦେଲେ ଯେବେଶ୍ୱରେକ
ସପ୍ତ ପଣରେ ତୁମ୍ଭେ ହୋଇଲ ଯେ ବଡ଼
ପଞ୍ଚକନ୍ୟାରେ ତୁମ୍ଭେ ହେଲ ଯେ ସମତୁଲ ।
ମନ୍ଦୋଦରୀ ବୋଲେ ଏ ପଞ୍ଚକନ୍ୟା କିସ କଲେ
ଶ୍ରୀରାମ ବୋଇଲେ ତାହା କହିବା ଶୁଣ ଭଲେ
ସ୍ୱର୍ଗରେ ଇନ୍ଦ୍ର ଯେ ଅଟନ୍ତି ଦେବରାଜା
ତାହାର ଭାରିଯା ଶଚୀ ଗୋ ଅଟେ ସୁଲମଜା

ଦୋହିଏ ଇନ୍ଦ୍ର ନାକୁ ଗୋ ହୁଅନ୍ତି ଅଭିଷେକ
ତେଣୁ ସେ ସତୀ ଗଣରୁ ନୁହନ୍ତି ବାହାର ।
ଜମ୍ବାଣୋଇ ବୋଲି ଯେ ମୁନିଙ୍କ ଘରଣୀ
କେତେକେତେକେ ବାହାପି ନୁହନ୍ତି ମୁନିଆଣୀ ।
ଗଉତମ ଋଷିଙ୍କର ଘରଣୀ ଅହଲ୍ୟା
ଇନ୍ଦ୍ର ଆସି ତାହାଙ୍କୁ ଯେ ମାୟାରେ ହରିଲା
ସେହିଦେଲୁ ଦେବରାଜ ସହସ୍ର ଯୋନି ହେଲା
ଗଉତମ ଜାଣିଣ ଶାପ ତାଙ୍କୁ ଦେଲା ।
ଅହଲ୍ୟା ପାଷାଣ ହୋଇଣ ପଡ଼ିଥିଲା
ଆମ୍ଭ ପାଦ ଲାଗିବାରୁ ମୁକ୍ତ ସତୀ ହେଲା ।
ବାଳି କପି ହରିଥିଲା ଭାଇବୋହୂ ପୁଣି
ସେ ଦୋଷରୁ ଆମ୍ଭେ ତାକୁ ମାରିଲୁଗୋ ପୁଣି
ତାର ଭାରିଯାକୁ ସତୀରେ ଗଣିଲୁ
ଝିଅର ତଳେ ତାକୁ ନେଇଣ ରଖାଇଲୁ ।
ଦ୍ରୁପଦ ରାଜ ଦୁହିତା ଯେ ଦ୍ରୌପଦୀ
ପଞ୍ଚପାଣ୍ଡବ ତାହାର ହୋଇଲେକ ପତି ।
ଏକା ସ୍ୱବଶୀକ ପାଞ୍ଚଗୋଟି ବର ପୁଣ
ସେ ପୁଣି ପଞ୍ଚକନ୍ୟାରେ ଗଣିତା ହେଲା ଜାଣ
ରାବଣର ଭାରିଯା ତୁ ଅଟୁ ମନ୍ଦୋଦରୀ
ନିୟମ ମୁଁ କରିଥିଲି ଅନ୍ୟକୁ ଦେବି ବୋଲି ।
ବିଭୀଷଣ ଥିବାରୁ ନୋହିଲା ମନ ତେଣେ
ରାଜ୍ୟଲୋଭ ବୋଲାବେରାମଅଧର୍ମକଲେଏଣେ
ଗୁରୁହନ୍ତକୁ ମାରି ତାର ଭାରିଯାକୁ ଆଣେନେଲା
ତାହାର ଭାଇ ଥିଲା ତାକୁ ସେ ନ ଦେଲା ।
ଭଲକ ବେଲେ ଆନକ ନୁହଇ ସେକଥା
ଏମନ୍ତ ନିନ୍ଦା କଥାକୁ ମୋ ମନରେ ଚିନ୍ତା ।
ବରଞ୍ଚିଲି ଝିଅର ତଳେ ରଖାଇବି
ସତୀରେ ଗଣିତା କରି ପଞ୍ଚକନ୍ୟାରେ ଲେଖିବି
ତେବେ ମୁଁ ତିନିପୁରେ ପାଇବି ପ୍ରଶଂସା
ଏକଥାକୁ ଯେବେ ତୁ ମନରେ କରୁ ହିଂସା ।
ଏ ନଗ୍ରରୁ ଯାଇ ତୁହି ଅନ୍ୟ ଘରେ ରହ
ଝିଅରଠାରେ ଯେବେ ନାହିଁ ତୋର ସ୍ନେହ ।
ତୋର ସ୍ୱାମୀ ଥିଲେ କି ବିଭୀଷଣ ରହନ୍ତା
ବିଭୀଷଣ କମା ଗୋ ଲଙ୍କାକୁ ଆସିଥାନ୍ତା ।
ମୋତେଜାଣିଲେହରନ୍ତାବିଭୀଷଣରଣେତେନାଶ
ବନ୍ଦୀଶାଳ ଘରେ ରଖିଥିଲା ବନ୍ଦୀ କରି ।

ବଳଗୋଟି କୁମର ଯେ ଅଟଇ ତାହାର
ଚରଣେ ଲୌହ ଶାଙ୍କୁଳୀ ପିନ୍ଧାଏ ତୋରବର
ମୋତେ ସେଜାଣିଲେ ତାଙ୍କୁ କରନ୍ତା ଦୋଇଖଣ୍ଡ
ତୋର ସଙ୍ଗରେ ଭାଇବୋହୂ କରନ୍ତା ଅଣିରୁଣ୍ଡ
ନାକୁଣୀ ଝିଆଣି ଯେତକ ସେ ଭଗ୍ନ ହେଲା
ଆପଣେ ଦୋଷକରି ସେ ବଂଶ ମରାଇଲା ।
ତୋତେ ଭଲ କରିବାକୁ ଆମ୍ଭର ମନ ଅଛି
ଯେବୋଲିବ ତୋ ଶୁଣି ନର୍କରେ ହେବଧ୍ୱସି
ପଞ୍ଚକନ୍ୟା ସଙ୍ଗେ ତୋତେ ସୁମରଣା କଲେ
ସ୍ୱର୍ଗେ ବସିବ ପ୍ରାପ୍ତ ହେବ ତାଙ୍କୁ ଭଲେ ।
ଶୁଣିକରି ମନ୍ଦୋଦରୀ ସନ୍ତୋଷ ମନ ଭଲା
ସବୁ ସପତଣୀ ବେଢ଼ି ଚରଣେ ଲୋଟିଲା ।
ସ୍ୱର୍ଣ୍ଣ ଥାଳୀରେ ଅର୍ଘ୍ୟ ପୂରାଇ ବହନ
ଦୁଇମୁନି ଶିରେ ଅର୍ଘ୍ୟ ଦେଲା ତତକ୍ଷଣ ।
ସେଠାରୁ ଚଳିଯାଇ ଭରତକୁ ବନ୍ଦାଇଲା
ଦୁର୍ବାଅକ୍ଷତ ଘେନିଣ ଲକ୍ଷ୍ମଣ ପାଶେ ଗଲା ।
ବନ୍ଦାପନା କରିଣ ସେ ଅର୍ଘ୍ୟ ଦେଲା ଶିରେ
ବୋଇଲା ମୋହଠାରେ ସପକ୍ଷ ହୁଅ ସାରେ
ସେଠାରୁ ଶତ୍ରୁଘନ ପାଶେ ପ୍ରବେଶ
ଅର୍ଘ୍ୟ ବନ୍ଦାଇଣ ମନ୍ଦୋଦରୀ ଯେ ହରଷ ।
ବୋଇଲା ସାନୁଜ ହୋ ମୁଁ ଅଟେ ତୁମ୍ଭର
ତୁମ୍ଭ ସଙ୍ଗେ ମୋତେ ନିଅ ଅଯୋଧ୍ୟା ନଗର
ଶତ୍ରୁଘନ ବୋଲେ ମୋର ବିଭୀଷଣ ଭାଇ
ତାରସଙ୍ଗେତୁମ୍ଭେଥିଲେଆମ୍ଭରଯେଉଲାଭହୋଇ
ଏତେକହି ମନ୍ଦୋଦରୀ ବେଗେ ଲେଉଟିଲା
ସୁବର୍ଣ୍ଣ ସିଂହାସନ ସେ ଶ୍ରୀରାମଙ୍କୁ ଦେଲା ।
ତିନି ଭାଇଙ୍କି ଆସନ ଦେଲା ସେ ବହନ
କନକ ପିଢ଼ା ଆଣି ମୁନିଙ୍କି ଦେଲା ପୁଣ ।
ପ୍ରବେଶିତଙ୍କୁ ଡାକାଇ ଅଣାଏ ବହନ
ମନ୍ତ୍ରୀଙ୍କି ବୋଇଲା ତୁ ଅଣାଅ ସିଂହାସନ ।
କନକ ସିଂହାସନ ମନ୍ତ୍ରୀ ଯେ ଅଣାଇଲେ
ଅଭିଷେକ ମଣ୍ଡପରେ ନେଇ ରଖାଇଲେ ।
ଦେଖିଣ ରଘୁନାଥ ସନ୍ତୋଷ ହୋଇଲେ
ମନ୍ତ୍ରୀକି କହି ପଟମା ଶାଢ଼ୀ ଅଣାଇଲେ ।
ବିଭୀଷଣକୁ କହିଲେ ବସ ସିଂହାସନ
କାହାକୀ ଆଣ ମନ୍ତ୍ରୀକି ବୋଇଲେ ରଘୁନାଥ

ବାଜଣା ବଜାଇ କୁଟମ୍ବ କରି ନୃତ୍ୟ ଗୀତ
ଶୁଣିକରି ମନ୍ତ୍ରୀମାନେ କଲେ ଯେ ସଂଯୁକ୍ତ ।
ମାଜଣା ଚନ୍ଦନ ଲଗି ବିଭୀଷଣ ହେଲା
ଅମଳାନ ବସ୍ତ୍ର ପିନ୍ଧି ରାଜବେଶ ଭଲା ।
ସୁନାଖଣ୍ଡୁ ପାଲୁବଲ୍ଲୀ ଝାଲର ଝଲକା
ଜରି ପାଗ ମୁକୁଟ ଶିରରେ ହେଲା ଶିଖା ।
ଜରି ଜାମା ରତ୍ନ ଆଦି ନାନାବର୍ଣ୍ଣେ ବେଶ
ବେଶହୋଇ ସିଂହାସନେ ହେଲେ ସେ ପ୍ରବେଶ
ମନ୍ଦୋଦରୀ ବେଶହୋଇ କୋଳରେ ବସିଲେ
ତୀର୍ଥଜଳ ନେଇ ଶ୍ରୀରାମ ଶିରରେ ଲଗାଡ଼ିଲେ
ବିଭୀଷଣ ମଥାରେ ପାଟେକ ନେଇ ବାନ୍ଧି
ଶ୍ରୀରାମ ବୋଲେ ଲଙ୍କାରେ ନୃପତି ହେଲୁ ଆଜ
ରତ୍ନପୁରଗୋଟି କୁ ଭଳସି କରି ଯୋଗ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ତୋତେ ହେଲା ଯୋଗ
ପାଟରାଣୀ ମନ୍ଦୋଦରୀ ହୋଇଲା ତୋହର
ଏତେକହି ଛତ୍ର ନେଇ ଟେକାଇଲେ ଶିର ।
କାହାଳଆ ଢାଢ଼ାଳୀ ଯେ ଆଗରେ ବଜାଏ
ବୀଣା ତୂରୀ ବଇଁଶୀ ସିଂହାର ସ୍ୱର ହୁଏ ।
ମଙ୍ଗଳ ଆରତି ନେଇ ପୁରୋହିତ କଲେ
ବନ୍ଦାପନା ସାରି ଛତ୍ରେ ଆଡ଼ ହୋଇଗଲେ ।
ଦୁର୍ବାଅକ୍ଷତ ଆଣି ନାରଦ ଯେ ଦେଲେ
ବିଭୀଷଣ କୋଳୁ ମନ୍ଦୋଦରୀ ଉଠିଗଲେ ।
ଛପନକୋଟି ପଞ୍ଚଶ ଲକ୍ଷ ମହାଦେଈ
ଯେ ହି ଗୋଷ୍ଠି ହୋଇଣ ସମସ୍ତେ ବସିଯାଇ
ବିଭୀଷଣ କୋଳେ ସର୍ବେ ବନ୍ଦାପନା ହେଲେ
ସେଠାରୁ ରାମଚନ୍ଦ୍ର ତ୍ରିଜଟା ଡକାଇଲେ ।
ବିଭୀଷଣ ପାଶେ ନିଜ ମାତା ଆଣ ବେଗେ
ଶୁଣିଣ ତ୍ରିଜଟା ଗଲେ ଦାସୀଙ୍କର ଆଗେ ।
ଦାସୀଗଣ ବୋଇଲେ ଯୋବେଶହୋଇ ଆସ
ତୁମ୍ଭଙ୍କୁ ଡକାଇଛନ୍ତି ରଘୁକୁଳ ବଂଶ ।
ଶୁଣିକରି ଶତେ ନାରୀ ବେଗେ ସେ ଆଇଲେ
ଶ୍ରୀରାମଚନ୍ଦ୍ର ଚରଣେ ନମସ୍କାର କଲେ ।
ଶ୍ରୀରାମ ବୋଇଲେ ମନ୍ତ୍ରୀ ଶୁଣ ଆମ୍ଭ ବାଣୀ
ଭଣ୍ଡାରୁ ଚୂଡ଼ି ଶାଢ଼ୀ ଅଣାଅ ବେଗେ ପୁଣି ।
ଶ୍ରୀରାମ ଆଜ୍ଞାରେ ଯେ ମନ୍ତ୍ରୀ ଆଣିଦେଲେ
ଦେଖିଣ ଶ୍ରୀରାମଚନ୍ଦ୍ର ହରଷ ହୋଇଲେ ।

ତ୍ରିଜଟାକୁ ବୋଇଲେ ଯେ ଜାନକୀର କାନ୍ତ
ମାଜଣା ବେଶ କରି ଆଣ ଯା ତୋର ମାତ
ଦାସୀଜନେ ମିଳଣ ବେଶ କଲେ ପୁଣ
ଅଷ୍ଟରତ୍ନେ ଅଳଙ୍କାର ଭୂଷଣ କଲେ ଜାଣ ।
ଚନ୍ଦନ କର୍ପୂର ଘଷିଣ ଶାଢ଼ୀ ପିନ୍ଧାଇଲେ
ସମସ୍ତଙ୍କୁ ବେଶକରି ଶ୍ରୀରାମଙ୍କୁ କହିଲେ ।
ଶ୍ରୀରାମ ବୋଇଲେ ସବୁଙ୍କି ଆଣ ବେଶକରି
ଜ୍ୟେଷ୍ଠରାଣୀ ବିଭୀଷଣର କୋଳେବସୁ ଘେର
ରଏଣୀ ଦଏଣୀ ବେନ ନାରୀ ବେଗେ ଗଲେ
ବିଭୀଷଣ କୋଳରେ ଯାଇଣ ବସିଲେ ।
ଅଷ୍ଟ ସଙ୍ଗ ନାରୀମାନେ ଚହକତ ହେଲେ
ଅର୍ଘ୍ୟ ବନ୍ଦାପନା ଯାଇ ଦାସୀଗଣ କଲେ ।
ବିଭୀଷଣ ଶତେନାରୀ ଉଠିଲେ ବହନ
ଶ୍ରୀରାମ ପାଦେ ଯାଇ ଓଳଗ ହେଲେ ପୁଣ ।
ମନ୍ଦୋଦରୀ ନାରୀ ପୁଣି ସମସ୍ତଙ୍କୁ ଘେନ
ଶ୍ରୀରାମ ଚରଣେ ସେ ଦଣ୍ଡୁପ୍ରଣାମିଲା ।
ଦେଖିକରି ରାମ ସିଂହାସନରୁ ଉଠିଲେ
ମନ୍ଦୋଦରୀ ହସ୍ତ ଧରି ସଭଙ୍କି ସମର୍ପିଲେ ।
ବୋଇଲେ ସମସ୍ତଙ୍କୁ ଗୋ ପାଳିବ ଏକାପରି
କଳହ ନ କରିବୁ ସମସ୍ତେ ତୋହର ।
ରାଜ୍ୟର ଭଲ ମନ୍ଦ ପରଜା ଗୁହାର
ଦୁଃଖୀଙ୍କି ଅନ୍ନ ବସ୍ତ୍ର ଦେବୁଟି ବିଚାର ।
ବିଭୀଷଣକୁ ମନ୍ଦୋଦରୀକି ସମର୍ପିଣ ଦେଇ
ବୋଇଲେ ଆଜଠାରୁ ତୁମ୍ଭର ଅଟେ ଏହି ।
ଶୁଣିକରି ବିଭୀଷଣ ବ୍ୟଗ୍ରରେ ଉଠିଲେ
ଶ୍ରୀରାମଙ୍କ ଚରଣେ ଓଳଗ ମେଲାଇଲେ ।
ଶ୍ରୀରାମବୋଇଲେବାବୁରେକେତେଦୁଃଖଘୋର
କେତେ କଷ୍ଟ ସହିଛୁ ତୁ ମୋର ସଙ୍ଗର ।
ଏତେ କହି ଧରି ବିଭୀଷଣକୁ ତୋଳିଲେ
ଉଠି କରଯୋଡ଼ି ବିଭୀଷଣ ଉଭା ହେଲେ ।
ମନ୍ଦୋଦରୀ ଶୋଇଲା ଚରଣେ ଲୋଟଗାଳ
ଉଠ ତୁମ୍ଭେ ପାଟରାଣୀ ରାମଚନ୍ଦ୍ର ବୋଲି ।
ବିଭୀଷଣକୁ ବୋଇଲେ ଉଠାଅ ମହାଦେଈ
ରାଣୀ ପାଖେ ବିଭୀଷଣ ମିଳନ୍ତି ଯାଇ ।
ତତକ୍ଷଣେ କର ଧରି ରାଣୀକି ତୋଳିଲା
କରଯୋଡ଼ି ମନ୍ଦୋଦରୀ ଆଗରେ ଉଭାହେଲା

ମନ୍ଦୋଦରୀ ବୋଲେ ସବୁହେଲ ଭଲ ହେବ
ମୁଁ କଥାଏ ଜଣାଇଛି ସେକଥା ଜାଣିହ ।
ସାନବାହୁର କୁମର ସୁବାହୁ ଅଟେ ଜାଣ
ଶତେକ ଯୁବତୀ ସେ ସୁବାହୁର ପୁଣ ।
ଲକ୍ଷେ ଘରଣୀ ଅଟେ ମହୀରାବଣର
ସମସ୍ତେ ରହିବେ ସେ ସୁବାହୁ ରାଜ୍ୟର ।
ନୋହିଲେ ଯାସବେ ହବାପରେ ଯାଇ ବେଗେ
ଶରଣ ପଶିଛୁ ତୁମ୍ଭ ଚରଣରେ ଆସେ ।
ଶରଣ ପଶିବାରୁ ତାକୁ ତ ଦୟା କଲେ
ସୁଲଙ୍କାରେ ରାଜାକଲ ବୋଲିଣ ବୋଇଲେ
ସାନୁଜ ଲକ୍ଷ୍ମଣ ଶାଢୀ ଦେଲେ ତାର ଶିରେ
ସେକଥାକୁ ଯାଶୋର କହ କ ରଘୁଶରେ ।
ଶତେକ ଯୁବତୀ ସେ ସୁବାହୁର ପୁଣ
ଲକ୍ଷେ ଯୁବତୀ ମହୀରାବଣର ଜାଣ ।
ଶୁଣିକରି ଶ୍ରୀରାମ ସେ କହନ୍ତି ଉତ୍ତର
ତାକୁ ରାଜା କରିବ ଲକ୍ଷ୍ମଣ ବୀର ମୋର ।
ଯାଅରେ ସୁବାହୁ ତୋର ରଥ ସଜ କର
ସୁଲଙ୍କାରେ ରାଜା ଆଜ ହେବୁରେ କୁମର
ମହୀରାବଣରୁ ପାଟ ଅଟଇ ସଭରଣୀ
ତାକୁ ଯେଣ ଅଭିଷେକ ହୁଅ ତୁରେ ବେଗି
ବିଭୀଷଣର ଦୁଇ କୁମର ସଙ୍ଗେ ନଅ
ଥାଟ ରାଜା ଯୁବରାଜା କରି ସେଥି ଥୁଅ ।
ଶୁଣିକରି ସାନବାହୁ କୁମର ଚଳିଗଲା
ଆପଣାର ନଗରେ ସେ ପ୍ରବେଶ ହୋଇଲା ।
ଧନରତ୍ନ ନେଇଣ ରଥରେ କଲା ପୂର
ଶତେକନ୍ୟାକୁ ଘେନିଆସେ ସଙ୍ଗତର ।
ଶ୍ରୀରାମ ଚରଣେ ଯାଇ ନମସ୍କାର କଲା
ପାଏ ପଡ଼ି ଶୋଇଣ ଆଗରେ ଉଭା ହେଲା ।
ଶତେ ନାରୀ ରାମଚନ୍ଦ୍ର ଚରଣେ ଓଳଗି
ଦେଖିଣ ରଘୁନାଥ ହୋଇଲେ ସତଲାଗି ।
ତହୁଁ ସୁବାହୁ ମନ୍ଦୋଦରୀକି ଓଳଗିଲା
ନମସ୍କାର କରିଣ ଆଗରେ ଉଭାହେଲା ।
ବୋଇଲା ଜନନୀ ଗୋ ତୋର ସୁପକ୍ଷରେ
ଯାଉଅଛୁ ସ୍ୱବସ୍ଥା କର ଗୋ ମୋହରେ ।
ତୁମ୍ଭ ବିନା ଜନନୀ ମୋହର ଅଛି ପୁଣ
ଛୋଟରୁ ସକାଶେ ମୋର ଏଡ଼େ ବଡ଼ ପୁଣ

ମନ୍ଦୋଦରୀ ବୋଇଲେ ବାବୁ ଦୁଷ୍ଟପଣ ଛାଡ
ସନ୍ତୋଷଣ କଲେ ହେବେ ପୋଷ୍ଟେ ବଇବ ।
ସବୁ ଘରଣୀଙ୍କ ଏକା ପ୍ରାୟ ମଣିଥିବୁ
ଏକାପରି ଅଳଙ୍କାର ସବୁଙ୍କୁ ପିନ୍ଧାଇବୁ ।
କେଉଁରା ବେଉରା ଘର ଭରିଥିବୁ ତାଙ୍କୁ
କଳି ନ କରିବେ ସଉକୁଣିଏ ବାଦକୁ ।
ମାସକେ ଥରେ ଯମାରେ ବେଶିପିବୁ ହେବଳା
ଦୁଃଖୀ ଝିଅତାଙ୍କୁ ତୋର ନ କରିବୁ ହେଳା
ଯାଅରେ କୁମର ତୁମ୍ଭ ସୁକଲ୍ୟାଣ ପାଅ
ପିତାଙ୍କର ଚରଣେ ଓଳଗି ଯାଇଁ ହୁଅ ।
ଶୁଣିଣ ସୁବାହୁ ବୀର ଚଳିଗଲା ଖରେ
ବିଭୀଷଣ ଆଗେ ଯାଇଁ ମିଳିଲା ସତ୍ୱରେ ।
ଓଳଗି ହୋଇଣ ପାଦେ ପାଏ ପଡ଼ି ଶୋଇ
ଯାଉଅଛୁ ପିତା ମୁଁ ସୁବସ୍ଥା କର ତୁହି ।
ବିଭୀଷଣ ବୋଇଲା ଯେ ରାମ ନାମ ସାର
ରାମନାମ ଭଜିଲେରେ ହୋଇବୁ ଅମର ।
ପାତ୍ରମନ୍ତ୍ରୀମାନଙ୍କୁ ତୁ ଉତ୍ତମେ ପାଳିବୁ
ହସ୍ତୀ ଘୋଡ଼ା ପଦାତି ଆଦର କରିଥିବୁ ।
ରଥ ସେନାପତି ଯେ ସଉଦାର ବୁଲେ
ଦେବାଦେବୀ ପୂଜା କରିବୁ ବେଳକାଳେ ।
ତାହାଙ୍କ ସଙ୍ଗରେ ବାଦ ନୋହିବୁ ଦମନ
ଖଣ୍ଡ ତାଙ୍କ ବୋଲରେ ତୁ ଥିବୁ ସନ୍ତପନ ।
ଏତେବୋଲି ରାଜା ମେଲାଣି ତାକୁ ଦେଲେ
ଦୁଇ ପୁଅଙ୍କୁ ଡାକାଇ ସକଳ କହିଲେ ।
ଶୁଣିକରି ଦୁଇପୁଅ ଚରଣ ତଳେ ପଡ଼ି
ଉଠିକରି ଦୁଇପୁଅ ନଗରେ ଯାଇ ମିଳି ।
ମନ୍ଦୋଦରୀ ଚରଣରେ କଲେକ ନମସ୍କାର
ବୋଇଲେ ଗୋ ଜନନୀ ସୁବସ୍ଥା ଏବେ କର
ମନ୍ଦୋଦରୀ ପାଶରୁ ସେ ବେଗେ ଚଳିଗଲେ
ଶ୍ରୀରାମ ଚରଣରେ ଓଳଗି ଯାଇ ହେଲେ ।
ଲକ୍ଷ୍ମଣର ଚରଣରେ କଲେ ନମସ୍କାର
ଭରତ ଚରଣରେ ଓଳଗେ ଯାଇ ବୀର ।
ଶତ୍ରୁଘ୍ନ ଚରଣରେ ପାଏ ପଡ଼ି ଶୋଇ
ଦୁଇଜଣ ଦୁଇରଥେ ବସିଲେ ପୁଣ ଯାଇ ।
ଶତ ଶତ ଘରଣୀ ସଙ୍ଗତରେ ଘେନି
ସିଂହଦ୍ୱାରେ ବିଜୟ କଲେ ସେ ବେଗେ ପୁଣି

ସୁବାହୁ କୁମର ଯେ ବେଗେ ଚଳିଗଲା
ଲକ୍ଷ୍ମଣର ଚରଣରେ ଓଳଗି ହୋଇଲା ।
ଭରତ ଶତ୍ରୁଘନଙ୍କୁ ଯେ କଲେ ନମସ୍କାର
ବେଦବଳନ ରଥରେ ବସିଲା ଯାଇ ବୀର ।
ରାମ ବୋଇଲେ ତୁମ୍ଭେରେ ସଉମିତ୍ରି ଯାଅ
ସୁଲଙ୍କାରେ ସୁବାହୁକୁ ନୃପତି କରାଅ ।
ସଉମିତ୍ରି ନାରଦ ସଙ୍ଗରେ କରିବ ଅଭିଷେକ
ଯେସନେ ସେ ରାଜ୍ୟଲୋକ ହେବେରେ ସନ୍ତୋଷ
ବିଭୀଷଣ ପୁଅକୁରେ ଥାଟ ସୁବନ୍ଧକା
ସମସ୍ତଙ୍କୁ ସନମାନ କରି ବେଗେ ଆ ଯା ।
ନଳ ନୀଳ ସଉଷ୍ଣ କୁମୁଦ ଚନ୍ଦନ
ଏମାନଙ୍କୁ ସଙ୍ଗେ ଘେନ ତୁ ଚଳ ଯା ବହନ ।
ସୁବାହୁକୁ ରାଜା କରି ବେଗ ହୋଇ ଆସ
ଏତେ ବୋଲି ଆଜ୍ଞା ଦେଲେ ଜାନକୀ ବିଳାସ
ଶୁଣି କରି ଲକ୍ଷ୍ମଣ ସୁଷେଣକୁ ଘେନି
ସାଜ ମୋର ରଥ ସୁଲଙ୍କାକୁ ଯାଇ ପୁଣି ।
ରଥପରେ ଲକ୍ଷ୍ମଣ ଯାଇତ ବସିଲେ
ସମସ୍ତଙ୍କୁ ନେଇଣ ରଥରେ ବସାଇଲେ ।
ଶ୍ରୀରାମ ବୋଇଲେ ନାରଦ ବେଗହୋଇଯାଅ
ସୁବାହୁକୁ ରାଜପଦ ସେହିଠାରେ ଦିଅ ।
ଲକ୍ଷ୍ମଣର ସଙ୍ଗେ ମୁନି ତୁମ୍ଭେ ଥିବ ପୁଣ
ଲକ୍ଷ୍ମଣ ରଘୁବନ୍ତ ନ ଜାଣେ କିଛି ଜାଣ ।
ଶୁଣି କରିଣ ନାରଦ ରଥପରେ ବସି
ଲକ୍ଷ୍ମଣ ରଥୀ ହେଲେ ସୁଷେଣ ସାରଥି ।
ସୁବାହୁ କୁମର ଯେ ରଥରେ ବସିଲା
ଖୁଡ଼ି ତାଙ୍କୁ ନମସ୍କାର କରିଣ କହିଲା ।
ସୁବୁଦ୍ଧି କୁବୁଦ୍ଧି ଯେ ଦୁଇ ମନ୍ତ୍ରୀ ଥିଲେ
ସାରଥି ହୋଇ ରଥ ବେଗେ ସେ ବାହିଲେ
ଆଗରେ ଲକ୍ଷ୍ମଣ ଯେ ପଛରେ ସୁବାହୁ
ବିଭୀଷଣ ଦୁଇ ପୁତ୍ର କୁମର ପଛେ ଯାଉ ।
ସୁଲଙ୍କାରେ ଯାଇଣ ହେଲେ ପରବେଶ
ସିଂହଦ୍ୱାରେ ରଥକୁ ଯେ ରଖିଲେ ବିଶେଷ ।
କରଯୋଡ଼ି ମନ୍ଦୋଦରୀ ଶ୍ରୀରାମ ଆଗେ ଉଭା
ଶୁଣ ତୁମ୍ଭେ କୃପାଧାମ ଶ୍ରୀରାମଚନ୍ଦ୍ର ପ୍ରଭା ।
ସିଂହାସନ ଉପରେ ବିଜୟ କୃପାଧାମ
ବିଭୀଷଣ କରଯୋଡ଼ି ଆଗରେ ଉଭାରି ।

ବଶିଷ୍ଠ ବସିଛନ୍ତି ସୁଖାସନ ପରେ
ଦୁଇ ଭାଇ ବସିଛନ୍ତି ଆସନ ଉପରେ ।
ଏମନ୍ତ ସମୟରେ ମନ୍ଦୋଦରୀ ରାଣୀ
ଶ୍ରୀରାମର ଆଗରୁ ଗଲା ଚନ୍ଦ୍ରଷଣୀ ।
ବଡ଼ ଦୁଃଖର ପୁଅ ଅଟଇ ସୁକର୍ଣ୍ଣ
ଶ୍ରୀରାମଚନ୍ଦ୍ର ଚଲଣେ ଶୁଆଏ ନେଇ ପୁଣ ।
ସୁକର୍ଣ୍ଣକୁ ରାମଚନ୍ଦ୍ର ଉଠରେ ବୋଇଲେ
ରାବଣର ଭସ୍ମତେ ତୁ ଶରଣ ଗଲୁ ମୋରେ
ଏବେ ତୁମ୍ଭ ରାଜା ଯେ ଅଲଙ୍କାରେ ହୁଅ
ଯୁଗ ଯୁଗାନ୍ତରେ ତୁ ଅମର ହୋଇଥାଅ ।
ସୁଜାଣ କୁଜାଣ ଯେ ଦୁଇମନ୍ତ୍ରୀ ଥିଲେ
ଶ୍ରୀରାମ ତାହାଙ୍କୁ ଯେ ପାଖକୁ ଡାକିଲେ ।
ଦୁଇମନ୍ତ୍ରୀ ଯାଇଣ କରଯୋଡ଼ି ଉଭା
ଶ୍ରୀରାମ ବୋଇଲେ ଶୁଣ ଅଲଙ୍କାଗଡ଼ ଶୋଭା
ଦୁଇ ପାଦ ଅଟ ତୁମ୍ଭେ ଅଲଙ୍କା ଗଡ଼େ ପୁଣ
ଶତମୁଖା ରାବଣ ହୋଇଲା କ୍ଷୟ ଜାଣ ।
କୁମ୍ଭକର୍ଣ୍ଣ ସୁତ ରାଜା ହେବ ସେ ରାଜ୍ୟରେ
ତୁମ୍ଭେ ମନ୍ତ୍ରୀ ସୁଖ କରିବ ଏଠାରେ ।
ଶୁଣି ଦୁଇମନ୍ତ୍ରୀ ଶିରରେ କର ଦେଲେ
ଯାଅ ବୋଲି ଶ୍ରୀରାମ ସେତାହାଙ୍କୁ ବୋଇଲେ
ଶୁଣିକରି ବେନି ମନ୍ତ୍ରୀ ଓଳଗି ମେଲାଇଲେ
ଅଳ୍ପ ବିମାନରେ ଯାଇଣ ବସିଲେ ।
ରଥକୁ ଚଳାଇ ମିଳିଲେ ଅଲଙ୍କାଗଡ଼
ରାଜାର ସିଂହଦ୍ୱାରରେ ଓହ୍ଲାଇ ସତ୍ୱର ।
ଗଙ୍ଗା ଯମୁନା ଦୁଇ ରାଣୀଙ୍କ ଡକାଇଲେ
କୁମ୍ଭର ସ୍ୱାମୀ ରଣରେ ପଡ଼ିଲା ବୋଇଲେ ।
ଶୁଣିକରି ଶୋକ ଯେ କଲେ ରାଣୀମାନେ
ଆମ୍ଭର ସ୍ୱାମୀ ମଲେ ପର ବୋଲେ ତେଣେ
ମନ୍ତ୍ରୀଙ୍କ ବୋଇଲେ ଦଶମୁଖା ନାଶ କଲା
ଏକମୁଖା ରାବଣ ଏଠାକୁ ଆସିଥିଲା ।
ମନ୍ତ୍ରୀ ବୋଲେ ଏକମୁଖାକୁ ମାରିଲେ ରାମଭଲ
ଶ୍ରୀରାମଚନ୍ଦ୍ର ଦଶମୁଖାକୁ ସଂହାରିଲେ ।
ବିଭୀଷଣ ସେ ଲଙ୍କାରେ ହୋଇଲେ ରାଜନ
ତାର ତଳେ ରହିଲେ ରାବଣ ନାରୀ ପୁଣ ।
ଆଜହୁଁ ବିଭୀଷଣ ଶ୍ରୀରାମେ ଶରଣ
ସେଥିର ସକାଶୁ ତାକୁ ଦୟା କଲେ ରାମ ।

ଏକମୁଖା ଅଟଇ ରାବଣ ନାଶ ଜାଣ
ସେ ମଲାବାରୁ ସେପୁର ହୋଇଲାକ ଶୂନ୍ୟ ।
ଶରବାହୁ କୁମର ସୁବାହୁ ନାମେ ପୁଣ
ଶରଣ ପଶିଲା ଯାଇ ଶ୍ରୀରାମ ଚରଣ ।
ଶରଣ ରକ୍ଷିଣ ରାମ ତାଙ୍କୁ ଦୟା କଲେ
ଏକମୁଖା ରାବଣ ରାଜ୍ୟରେ ରାଜା ହେଲେ ।
କୁମ୍ଭକର୍ଣ୍ଣଙ୍କ ପୁତ୍ର ଯେ କୋଟିଏକ ଥିଲେ
ଏ ରାଜ୍ୟରେ ରାଜାହେବ ଶ୍ରୀରାମ ଆଜ୍ଞାଦେଲେ
ଶୁଣିକରି ରାଣୀହଂସ ମନରେ ବିଚାରିଲେ
ଆମ୍ଭର କେହି ଆଶ୍ରା ନାହିଁ ଯେ ବୋଇଲେ ।
ପରପୁଅ ସଙ୍ଗରେ କ କରିବା ଯେ ଘର
ଖାସହେଲେ ସ୍ୱାମୀ କାର୍ଯ୍ୟ ହେବସେ ଅପାର
ଏତେଚିନ୍ତି ସକଳ ଯେ ରାଣୀହଂସ ପୁଣି
ବେଶହୋଇ ବାହାରି ସମସ୍ତେ ତତକ୍ଷଣି ।
ଦାସୀ ପରିବାର ଯେଣ ସଙ୍ଗରେ ଚଳିଲେ
ସାହେର କୂଳରେ ଯାଇ ପ୍ରବେଶ ହୋଇଲେ
ସିନ୍ଧୁଜଳେ ପଶିଣ ସମସ୍ତେ ଖାସହେଲେ
ସ୍ୱର୍ଗପୁରେ ଯାଇଣ ସ୍ୱାମୀଙ୍କି ଭେଟିଲେ ।
ଏଥୁଅନନ୍ତରେ ଶୋ ଶୁଣ ଶାକମ୍ବରୀ
ସୁକର୍ଣ୍ଣର ଶ୍ରୀରାମ ବେଦେଶ ହେଲେ ପୂଜା ।
ଲକ୍ଷେକ ଘରଣୀ ଯେ ଅଟଇ ତାହାର
ଲକ୍ଷେକ କାମିନୀ ଯେଣ ଅଇଲେ ସଭାର ।
ମନ୍ଦୋଦରୀ ଚରଣେ ଓଳଗି ହୋଇଲା
ଯାଉଛୁ ଜନନୀ ବୋଲି ରାଣୀକ କହିଲା ।
ମନ୍ଦୋଦରୀ ବୋଇଲେ ବେଗେ ଯାଅ ଚଳି
ସବୁ ଘରଣୀମାନଙ୍କୁ ଏକା ପ୍ରାୟ ପାଳି ।
ଜନ ପ୍ରଜା ପଦାତି ଯେ ରଥି ହାତୀ ଭୁଲେ
ସେନାପତି ପାତ୍ରମନ୍ତ୍ରୀ ତୋହର ଯେ ପୁରେ ।
ସମସ୍ତଙ୍କର କଥା ତ କର ବିବେଚନା
ତନା ବୋଷେ କାହାକୁ ନ ଦଣ୍ଡ କଲ ମନା
ରାମ ନାମଚୋଟି ଅନୁକ୍ଷଣରେ ଜପିବୁ
ମାସକେ ଥରେ ମୋତେ ସଂଖୋଳ କୁ ଯିବୁ
ଏହା ଶୁଣି ସୁକର୍ଣ୍ଣ ସେଠାରୁ ଚଳିଗଲେ
ବିଭୀଷଣ ଚରଣରେ ଓଳଗି ହୋଇଲେ ।
ଯାଉଛୁ ବୋଲିଣ ତାଙ୍କୁ କହେ କରଯୋଡ଼ି
ବିଭୀଷଣ ବୋଇଲେ ଯାଅ ବେଗକରି ।

ଲକ୍ଷେ ସୁନ୍ଦରୀ ଯେଣ ରାମ ଚରଣେ ବନ୍ଦୋଇ
ଶ୍ରୀରାମ ବୋଇଲେ ଚଳ ବେଗହୋଇ ବୁଦ୍ଧ
ବିଭୀଷଣ ନଥିଲେ ଭୁମ୍ଭେ ମରନ୍ତ ସମସ୍ତ
ମନ୍ଦୋଦରୀ କୁମରଙ୍କୁ ରଖିଲା କରି ଯତ୍ନ ।
ଯାଆରେ ଅଲଙ୍କା ଖଣ୍ଡ ବିବେଶ ରାଜା ହୁଅ
ବାପର ଭଣ୍ଡାର ଘେନି ବେଘେନଣ ଚଳିଯାଅ ।
ମନ୍ଦୋଦରୀ ରାଣୀଙ୍କ ଯେ ଶ୍ରୀରାମ ଅଣାଇଲେ
କୁମ୍ଭକର୍ଣ୍ଣର ଭଣ୍ଡାର ଦଅ ଗୋ ବୋଇଲେ ।
ସକଳ ଗୁଣେ ସୁଲକ୍ଷଣୀ ଅଟୁଇ ସୁନ୍ଦରୀ
ମୋ ଜାନକୀ ସତୁଣ୍ୟରେ ତୋହରରୂପହେବ
ମନ୍ଦୋଦରୀ ବୋଲେ ଦେବ କହୁଅଛ ମିଛ
ହାଡ଼ମାଳ ମାଣିକ୍ୟ କି ହେବ ଏକ ଲକ୍ଷ୍ୟ ।
ହୀରା ସଙ୍ଗେ ମେଘମାଳ ହୋଇବ କି ମୂଲ
ଏମନ୍ତ ବଚନ କମ୍ପା ବୋଇଲ ଅତମୂଳ ।
ଗଣ୍ଡା ସଙ୍ଗେ ଘୁଷୁରିକି ଆଣି ସଙ୍ଗ କଲ
କୁକ୍କୁର ସଙ୍ଗରେ ନେଇ ମୃଗକୁ ରଖିଲ ।
କର୍ପୂର ସଙ୍ଗରେ ଯୋଗ କସ୍ତୁରୀହେଲେଶୋଭା
ଆକାଶରେ ତାରାଗଣ ଅନନ୍ତ ଅଲଗା ।
ସେହିରୂପେ ଜାନକୀ ଯେ ତ୍ରୈଲୋକ୍ୟଠାକୁରାଣୀ
ଛୁଇଁଲରୁ ରାବଣ ଯେ ଭସ୍ମ ହେଲ ପୁଣି ।
ତେତିଶକୋଟି ଦେବେ ଯା ଚରଣେ ଲୋଟନ୍ତି
ବିଷ୍ଣୁଙ୍କର ପାଟରାଣୀ ଯେ କରୁଣ ବୋଲନ୍ତି
ଶ୍ରୀରାମ ବୋଇଲେ ସତ କହିଲୁରେ ସଖି
ଜୀବ ମଧ୍ୟେ ଗଜଦନ୍ତ ଲୋଡ଼ା ସେ ସୁପାତି ।
ମୃଗନାଭି କସ୍ତୁରୀକି ଦେବତା ହୋନ୍ତିବୋଲି
ମନ୍ଦିରା ପାନରେ ଖେଳ ଅଭୁକ୍ତେ ଲୋଟଗାଳି
ଯେଉଁ ସ୍ଥାନେ ଯେଉଁ ଦ୍ରବ୍ୟ ହୁଏ ଜଳାକଣୀ
ଚଣ୍ଡାଳ ସାହିରେ କି ମାଣିକ୍ୟ ମୂଲ ଘେନା
ସରସ ମିରସ ହେଲେ ରାଜାମାନେ ବଢ଼ି
ପରଜା ପାଳ ଶୀତଳ ହେଲେ ହୋନ୍ତି ଗାଢ଼
ଖାଇଲେକ ମୁଖରେ ପ୍ରଶଂସା ସେହୁ ପାଇ
ପାଉଁଶ ଭିତରେ ଯେସନେ ନିଆଁ ଲୋଟି ଥାଇ
ତୁଳସୀ ବଣରେ ଯେସନେ ବାଘ ଛପିଥାଇ
ଏକମୁଖ ସର୍ପ ଯେସନେ ଧ୍ୱଂସିଲେ ମରଇ ।
ସୁକ୍ଷବ ଏହାର ସିନା ଏହି ପରକାର
ଚଣ୍ଡାଳ ଯୋଗ୍ୟହେଲେ କି ହେବ ବିପ୍ରବର ।

ସେ ଯାହାର ପଟ୍ଟାଶେଷ ହୋଇବ ସେବଶ୍ରେଷ୍ଠ
ଅପସରାମାନଙ୍କୁ ସେ ନୃତ୍ୟ କୁହେ କଷ୍ଟ ।
ଏମନ୍ତ ବଚନ ଯହୁଁ ଶ୍ରୀରାମ କହିଲେ
ଶୁଣି ମନ୍ଦୋଦରୀ ରାଣୀ ଚରଣେ ନମିଲେ ।
କରି କୁମ୍ଭ ରଥରେ ସେ ସୁକଣ୍ଠ ବସିଲା
ଲକ୍ଷେ ଯୁବତୀଙ୍କି ନେଇ ରଥରେ ଆସିଲା ।
ପିତାର ଧନ ଭଣ୍ଡାର ରଖିଲାକ ନେଇ
ରଥରେ ଅଶ୍ୱ ଯୋଚଲା ବଡ଼େଜା ଚନଇ ।
ଶ୍ରୀରାମଚନ୍ଦ୍ର ଶତ୍ରୁଘନଙ୍କୁ ଚାହିଁ ପୁଣ
ବୋଇଲେ ଅଲଙ୍କାଗଡ଼ ଯାଅରେ ବହନ ।
ସୁକଣ୍ଠକୁ ସେ ରାଜ୍ୟରେ ରାଜା ତୁ କରିବୁ
ପାତ୍ରମନ୍ତ୍ରୀ ସାମନ୍ତଙ୍କୁ ସେବାରେ ରଖିବୁ ।
ଧନ ଭଣ୍ଡାର ମଣାଇ ଦେବୁ ତୁ ବହନ
ବୋଲବୁ ଦୁଷ୍ଟ ପଣରେ ନ କରବ ପୁଣ ।
ଅଭିଷେକ କରାଇ ବହନ ହୋଇ ଆସ
ଏତେକହି ଶ୍ରୀରାମ ସେ ଦେଲେକ ସନ୍ଦେଶ ।
ଜନ୍ମେକ ହନୁମନ୍ତ ଗବଏ ଗବାକ୍ଷ
କୁମୁଦ ସୁଶୋଭନ ସଉରୀ ପାରାଶ ।
ଏମାନଙ୍କୁ ଘେନକରି ଚଳରେ ସାନୁଜ
ନୃପତି କରି ତାକୁ ଏଥକୁ ବେଗେ ଆସ ।
ଶୁଣିଣ ଶତ୍ରୁଘନ ଓଳଗ ମେଲାଇଲା
ଅସୁର ଦଳନ ରଥ ଉପରେ ବସିଲା ।
ଅଷ୍ଟସେନାପତି ବସିଲେ ରଥ ପରେ
ହନୁମନ୍ତ ସାରଥି ହୋଇଲା ସେ ରଥରେ ।
ବାଗ ବଉଡ଼ି ଧରି ରଥକୁ ଚାଳି ଦେଲା
ଗଗନ ମାର୍ଗରେ ରଥ ବେଗେ ଉଡ଼ିଗଲା ।
ତାର ପଛେ ସୁକଣ୍ଠ ଚାଳିଲା ପୁଣ ରଥ
ଆଗପଛ ହୋଇଣ ଚଳିଲେ ପୁଣ ଯୂଥ ।
ଅଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲେ
ରାଜାର ସିଂହଦ୍ୱାରେ ରଥ ନେଇ ଗଲେ ।
ଏଥୁଅନନ୍ତରେ ଶୁଣ ଗଉରୀ କଥା ଭସ
ଶୁଣି ରାମ ମନେ ମନେ କଲେ ସେ ସନ୍ଦେଶ
ବୋଇଲେ ଶତ୍ରୁଘନ ତ ଅଲଙ୍କାଗଡ଼ ଗଲେ
ଋଷିପୁତ୍ର ଯୋଡ଼ିଏ ତ ସଙ୍ଗରେ ନ ନେଲେ ।
ଏତେ ଭାଳି ରାମ ଦୁର୍ଗାଙ୍କୁ ସୁମରିଲେ
ଯୋଗେ ବସିଥିଲେ ମୁନି ସେକଥା ଜାଣିଲେ

ମନପବନ ଦଣ୍ଡ ଉପରେ ଚଢ଼ି ପୁଣ
ଜଙ୍ଘକାମନ୍ତ୍ର ସୁମରଣା କଲେକ ମନେଣ ।
ଲଙ୍କାଗଡ଼ ମଧ୍ୟେ ଆସି ପ୍ରବେଶ ହୋଇଲେ
ଶ୍ରୀରାମଙ୍କୁ ଦେଖି ମୁନି ସନ୍ତୋଷ ହୋଇଲେ
ନମସ୍କାର କଲେ ଦଶରଥଙ୍କ କୁମର
ମୁନି ବୋଇଥିଲ କିଅର୍ଥେ ସ୍ମରିଲେଣି କୁମର
କୋଦଣ୍ଡ ଚାପଧାରୀ ବୋଲନ୍ତି ମଞ୍ଜୁବାଣୀ
ଶତ୍ରୁଘନ ସାନୁଜ ଅଟଇ ମୋର ପୁଣି ।
ଅଲଙ୍କାଗଡ଼କୁ ସେ ଗଲା ଏବେ ପୁଣ
ତାର ସଙ୍ଗେ ଋଷି କେହି ନଥିଲେଟି ଜାଣ ।
ତୁମ୍ଭେ ସେହି ଠାବକୁ ଚଳହେ ବେଗେ ମୁନି
ମଙ୍ଗଳ ଆଳତି କରିବ ତୁମ୍ଭେ ତାଙ୍କୁ ଯୁଣି ।
ଦୁଇଛତ୍ର ଟେକାଇବ ଶତ୍ରୁଘନ ଶିରେ
କାହାଳୀ ବଜାଇବ ଶତ୍ରୁଘନର ଆଗରେ ।
ତେବେ ସିନା ଅସୁରେ ସେ ମାନବେ ତାହାକୁ
ସେହି ରାଜା କରିବେ ସେ ସୁକଣ୍ଠ ଷାରକୁ ।
ଶୁଣିକରି ଦୁର୍ବାସା ସେ ବେଗେ ଚଳିଗଲେ
ଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲେ ।
ଦେଖିକରି ଶତ୍ରୁଘନ ନମସ୍କାର କଲେ
ତୃକଲ୍ୟାଣ କରି ମୁନି ପରମ ତୋଷ ହେଲେ
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ରାବଣ ନଗରରେ ବଜେ ଚାପଧାରୀ ।
ବିଭୀଷଣ ମନ୍ଦୋଦରୀ ଆଗରେ ଉଭାହୋଇ
ସବୁ ରାଣୀମାନେ ସଙ୍ଗରେ ଛନ୍ତି ଉଭି ।
ନୀଳାଚଳରେ ବିଜୟେ ଯେସନେ ଜଗନ୍ନାଥ
ତେସନ ପ୍ରାୟେ ବଶନ୍ତି ତାକୁ ସୀତାକାନ୍ତ ।
ମନ୍ଦୋଦରୀ ଶ୍ରୀରାମ ଚରଣେ ଲୋଟିଗଲା
ଉଠ ଉଠ ବୋଲିଣ ଶ୍ରୀରାମଚନ୍ଦ୍ର ବୋଲ ।
ଉଠିଣ କରଯୋଡ଼ିଣ ଆଗେ ଉଭା ହେଲା
ମୋତେ କର୍ଣ୍ଣିକା କଲ ବୋଲିଣ ବୋଇଲା ।
ସ୍ୱର୍ଗରେ ଗଣିତା କରି ରଖିଅଛ ମୋତେ
ଲଗାରର ଘରଣୀକ ବସ୍ତାକଲ ତତେ ।
ଆହୁରି କଥାଏ ମୁଁ ସେ ମାଗୁଛି ତୁମ୍ଭଙ୍କୁ
ସେହି ବର ପାଇଲେ ସେ ତୃପତ ମନକୁ ।
କାଳ ଯୁଗକୁ କଥା ତୁମ୍ଭର ରହିଥିବ
ତିନପୁରେ ତୁମ୍ଭକଥା ବିଖ୍ୟାତ ହୋଇବ ।

ଶତ୍ରୁ ମାଇଲେ ତାର ପୁତ୍ରକୁ ରାଜା କରି
ଚାରିଯୁଗେ ଏହିକଥା ଅଛନ୍ତି ସବୁଙ୍କରି ।
ଯେତେବେଳେ ନୃସିଂହ ହିରଣ୍ୟକୁ ବିଦାରିଲେ
ତାର ପ୍ରହ୍ଲାଦ କୁମରକୁ ରାଜା କଲେ ।
ବଳିମେଚନକୁ ମାରିଣ ବଳୀକି କଲେ ରାଜା
ଶଙ୍ଖାସୁରକୁ ମାରି ତା ପୁତ୍ର କଲେ ତେଜ୍ୟା
ଏ ଧର୍ମ ସେକାଳେ କରିଥିଲେ ଭଗବାନ
ଏକାଳେ କମ୍ପା ତେଜ୍ୟା କଲ ତାହା ପୁଣ ।
ଶ୍ରୀରାମ ବୋଇଲେ ସେ ଯୁଗର କଥା ସିନା
ହୃତର ହେଲେ ସରପୁଅ ଖାଏ ଘୃତ ଛେନା
ଆପଣାର ପୁଅ ଯେବେ ଅଣହିତେ ଥାଇ
ଅଣଆଦର ତାହାକୁ ଭୋଜନ ନ ମିଳଇ ।
ବଳଦ ହାଣ୍ଡିରେ ଯେଉଁ ପେଜ ଉଡ଼ଦେଇ
ଅବୋଲକରା ପୁତ୍ରକୁ ସେ ପେଜ ନ ଝଅଇ
ଆପଣା ଘରଣୀ ଯେବେ ଗୃହସ୍ଥେ ଭରୁସି
ରାତ୍ର ଦିବସରେ ସେବା କରନ୍ତି ପତିଙ୍କି ।
ତେବେ ସେ ପୁରୁଷ ଅନ୍ୟସ୍ତ୍ରୀ ସଙ୍ଗ ନକରହେଁ
ସେ ସ୍ତିରୀକି ଯେବେ ଗୁପ୍ତ ଅନ୍ୟସ୍ତିରୀ ଯାଏ
ଯେଉଁ ପ୍ରାଣୀମାନେ ପରହିଂସା କରେ ଥାନ୍ତି
ମୃତ୍ୟୁକାଳେ ସେହିମାନେ ନରକେ ପଡ଼ନ୍ତି ।
ଆୟୁବଳ ଥାଉଁ ନଷ୍ଟେ ମରେ ସେ ପୁରୁଷ
ରାଜ୍ୟରେ ଅସନ୍ତୋଷ ଦେବଙ୍କ ଦଣ୍ଡକ ।
ଧର୍ମକଥା ମାନ ସଙ୍ଗ ସଂସାରରେ ସାର
ଅଧର୍ମ ଲୋକେ ପାଆନ୍ତି ନର୍କ ଘୋର ।
ଯେଉଁମାନେ ନିଜ ମୁଖେ ସତ୍ୟ ଯେ ଭାଷନ୍ତି
ପଦ୍ମପଦେ ଜଳଛନ୍ଦ ପ୍ରାପ୍ତ ହୁଅନ୍ତି ।
ସେତେବେଳେ ସେ ପ୍ରାଣୀକି କିଙ୍କିଣୀଜାଳକ ଏ
ବିଷ୍ଣୁଦୂତ ଆସିକରି ରଥରେ ନେଇଯାଏ ।
ଯେଉଁ ପ୍ରାଣୀମାନେ ପର ହିଂସକରେ ଥାନ୍ତି
ସେ ପ୍ରାଣୀମାନଙ୍କୁ ଯମଦୂତେ ଦଣ୍ଡନ୍ତି ।
ଯମରାଜା ବସିଣ ଯେ ନ୍ୟାୟ ଧର୍ମ କରି
ସେହି ପ୍ରାଣୀମାନଙ୍କୁ ନର୍କକୁଣ୍ଡେ ଭରି ।
ପ୍ରହ୍ଲାଦ କୁମର ଯେ ହରିଙ୍କି ଆଶ୍ରେ କଲେ
ତେଣୁ ନାରାୟଣ ତାର ସପକ୍ଷ ହୋଇଲେ ।
ପିତାକୁ ମାରି ତାର ଦେଲେ ରାଜପଣ
ସ୍ୱର୍ଗରେ ବସାଇ ତାକୁ କଲେ ଯେ କାରଣ ।

ବଳିମେଚନ ସୁତ ଯେ ଅଟଇ ପାରିବଳ
ଦାନକରି ପ୍ରଭୁଙ୍କୁ ସେ ଦେଲା ତିନିପୁରୀ ।
ବାସୁଦେବ ସନ୍ତୋଷ ଯେ ହେଲେ ତାରଠାରେ
ପାତାଳେ ରଖିଣ ଦ୍ୱାରୀ ହେଲେ ତାର ଦ୍ୱାରେ
ଶଙ୍ଖାସୁର ପୁତ୍ର ଅଟେ ସୁରସେନ ସାର ।
ଚାରିବେଦ ଚୋରି କଲା ବାପ ଯେ ତାହାର
ମୀନ ରୂପେ ନାରାୟଣ ତାକୁ ନାଶ କଲେ
ଶଙ୍ଖାସୁର ମରିବାରୁ ପୁତ୍ର ଆସି ମିଳେ ।
ଚାରିବେଦ ଥୋଇଦେଇ ପଶିଲ ଶରଣ
ଭକତି ଦେଖିଣ କୃପା କଲେ ନାରାୟଣ ।
ସେ ରାଜ୍ୟରେ ରାଜା କରି ରଖିଲେ ତାହାକୁ
ସେକଥାମାନ ତୁମ୍ଭେ ଛାଡ଼ିତ ମନକୁ ।
ଆମ୍ଭ ବୋଲ ତୁମ୍ଭେ ଯେବେ ନ କରନ୍ତ ଆଜ
ବିଭୀଷଣର ଭକତି ନୁହନ୍ତା ଲଙ୍କ ରାଜ ।
ତୁମ୍ଭଙ୍କୁ ନଷ୍ଟପ୍ରାୟ ଆସନ୍ତେ ଚଣ୍ଡାଳେ ବସନ୍ତୁ
ଅଯୋଧ୍ୟାରେ ବାଡ଼ ଚାଟି ନେଇଣ ଖଟାନ୍ତୁ
ଆମ୍ଭ ବୋଲ କଲର ଯେ ସପ୍ତରେ ଗଣିତା
ମୋର ସୀତା ସତୀ ମଧ୍ୟେ ହୋଇଣ ସରିତା
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଏ ନଷ୍ଟକେ ରଖିଲ
ପରମ ବସ୍ତୁକୁ ପଡ଼ ସଂସାରେ ଲଭିଲ ।
ପୁଞ୍ଜୁରା ମାତଙ୍କ ରାଜା କରାଇଲ ପୁଣ
ବିଭୀଷଣ ଅଟଇ କୁମ୍ଭର ଭଇର ଜାଣ ।
ସେହୁ ରାଜା ହେବାକୁ ନ ସହେ ତୁମ୍ଭ ଦେହ
ବିଭୀଷଣ ଏଥୁ ଗଲେ ତୋହର ହୋନ୍ତା ସ୍ନେହ
ଏ ବଚନ ଶୁଣି ମନ୍ଦୋଦରୀ ପଛଘୁଞ୍ଚା
ଲୋଟଗଲ ଥୁଏ ମସ୍ତ କରିଚ ଦୂଢିତା ।
ଶୋକଭର ହୋଇଣ ସେ ମନ୍ଦୋଦରୀରାଣୀ
କରଯୋଡ଼ି ଆଗେ ଭଗ୍ନ ହେଲେକ ତରୁଣୀ
ବେନ ନେତ୍ର ମାରୁ ତାର ଯାଉଅଛି ବହି
ବଚନେ କରୁଣୀ ଭାଷା କହ ହେ ରଘୁସାଇଁ
ଶ୍ରୀରାମ ବୋଲନ୍ତି କମ୍ପା କରୁଅଛଗୋ ଶୋକ
ବିଭୀଷଣଙ୍କୁ ନେଇକୁ ଆମ୍ଭର ବେଶକୁତ ।
ଜମ୍ବୁଦ୍ୱୀପ ମଣ୍ଡଳରେ ରାଜା କରାଇବୁ
ଏ ଲଙ୍କାଗଡ଼ରୁ ବିଭୀଷଣକୁ ନେଇ ଯିବୁ ।
ଶୁଣିଣ ମନ୍ଦୋଦରୀ କହଇ ବଚନ
ବିଭୀଷଣ ଯିବେ କମ୍ପା ତୁମ୍ଭ ସଙ୍ଗେ ପୁଣ ।

ଆମ୍ଭେ ତ ଭଗାଗ୍ୟ ଅଟୁ ସ୍ୱାମୀର ଦୋଷଗୁଣେ
ଏକଥାକୁ ଅର୍ଜିଲ ଯେ ଚଣ୍ଡୀ ନ ବଣେ ।
ଆଗେ ମରିବ ସମସ୍ତଙ୍କୁ ସେହୁ ଘେନଗଲା
ମୋତେ ସଙ୍ଗେ ନ ନେଇ କମ୍ପାଇଁ ଛାଡ଼ିଗଲା
ବାସୁଦେବ ଅବତାର କୃଷ୍ଣେ ଅଟ ପୁଣ
ଶରଣ ପଶିଲି ମୁଁ କରୁଛ ମୋତେ ତ୍ରାଣ ।
ମୋହର ମନରେ ଆଉ ଅବଶ୍ୱାସ ନାହିଁ
କୁଳଧର୍ମ ରଖିବାକୁ ମୋର ମନ ହୋଇ ।
ଶ୍ରୀରାମ ବୋଇଲେ କସ ରଖିବୁ ତୁ କୁଳ
ବିଭୀଷଣ ଅଛେ ସିନା ଜାଣରେ ଅକୁଳ ।
ଜୀବନ୍ତେ ଗୁରସ୍ତକୁ ନ କଲୁ ବୋଧ ପୁଣି
ଆମ୍ଭେ ମଲେ ତୋର ସୁଖ ହୁଅନ୍ତା ଘୋଷଣୀ
ଜାନକୀ ମୋହରଯେବେ ତୋତେ ଖଟିଥାନ୍ତା
ତେବେ ତୋର ମନୋରଥ ପୂର୍ଣ୍ଣହୋଇଥାନ୍ତା
ଶତେମୁଖା ରାବଣକୁ ଗୁରସ୍ତ ଶିଖାଇଲା
ମୂଳ ଡାଳ ତାହାର ଯେ କିଛି ନ ଥିଲା ।
ମହୀରାବଣ ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ପୁଣ
ଏମାନେ ଯୋଡ଼ାଇଣଗଲେ ତା ସଙ୍ଗେଣ ।
ବାପା ତୋର ଲଗିଥିଲା ଦେବତାଙ୍କ ସଙ୍ଗେ
ମଲାବେଳେ ଶରଣ ପଶିଲା ଯାଇ ବେଗେ ।
ସଦାଶିବ ଦେବତା ଯେ ତାଙ୍କୁ ରକ୍ଷାକଲେ
ନୋହିଲେ ସେ ଯମପୁର ଦେଖିଥାନ୍ତା ଭଲେ
ଏତେକହି ଶ୍ରୀରାମ ଯେ ବିଭୀଷଣେ ଡାକ
କରଯୋଡ଼ି ବିଭୀଷଣ ଆଗରେ ଉଭାଜନ ।
ଶ୍ରୀରାମ ବୋଇଲେ ଯେ ବିଭୀଷଣ ଶୁଣ
ଜ୍ୟେଷ୍ଠ ଜନସ୍ତୁ ଛାଡ଼ିଣ ଦୁଇପୁତ୍ର ଆଣ ।
ଖୁମାଖୁମି ଦୁଇପୁତ୍ର ଆଣିଣ ଠିଆକଲା
ଦେଖିଣ ଶ୍ରୀରାମ ମନ ସନ୍ତୋଷ ହୋଇଲା ।
ବୋଇଲେ ଦୁଇକାଳ ବେଗେ ହୋଇଯାଅ
ଯୁବରାଜ ପାଟ ରାଜା ଅଳଙ୍କାରେ ହୁଅ ।
ମୋର ଆଜ୍ଞାହେଲା ବୋଲି କହିବମୋ ଭାଇକ
ଶୁଣିକରି ଓଳଗି ହୋଇଲେ ବେଗେନକ ।
ପବନନ୍ଦନ ରଥ ଚଢ଼ିଣ ବେଗେ ଗଲେ
ଅଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲେ ।
ଶତ୍ରୁଘନ ପାଖରେ ଓଳଗ ବେଗେ ପୁଣ
ସୁବର୍ଣ୍ଣକୁ ନମସ୍କାର କଲେକ ବହନ ।

ସୁବର୍ଣ୍ଣ ବୋଇଲେ ମୋର ଭାଗ୍ୟ ଯେ ବଳିଲା
ସୋଦର ମୋ ସଙ୍ଗେ ଆସି ଅନୁଗତ ହେଲା
ସୁଜାଣ କୁଜାଣ ମନ୍ତ୍ରୀ ଅଇଲେ ବହନ
ରାବଣ ନବରେ ଯାଇ ପ୍ରବେଶ ଶତ୍ରୁଘନ ।
ସୁବର୍ଣ୍ଣ ପ୍ରବେଶ ହେଲେ ନବର ଭିତରେ
ଶୁଣ ଆହେ ସୁଜ୍ଞଜନେ ଏଥି ଅନନ୍ତରେ ।
ସାମନ୍ତ ପାତର ସରଦାର ରଥି ପୁଣ
ସେନାପତି ପଦାତି ଯେ ହସ୍ତୀ ଘୋଡ଼ା ଜାଣ
ଅଲଙ୍କାଗଡ଼ରେ ପୁଣି ପଡ଼ିଲା ଚହଳ
ନୂଆ ରାଜା ହେଉଛନ୍ତି ଦେଖିପିବା ଭଲ ।
ଦେଶଙ୍କ ମଧରୁ ଛତ୍ର କାହାଳୀ ଆଣିଲେ
ଶଙ୍ଖ ଘନ ଶିଳରେ ନେଇଣ ଟେକାଇଲେ ।
ମଙ୍ଗଳ ଆଳତି କଲେ ଦୁର୍ବାସା ମୁନିବର
ଧୂପ ଦୀପ ଦେଇ ପୂଜା କଲେକ ବଧିର ।
ମନ୍ତ୍ରୀକ ଡାକ ତାର ଭଣ୍ଡାର ଫେଡ଼ିଦେଲେ
ରାଜବେଶ ଗୋଟି ଆଣି ସୁବର୍ଣ୍ଣକୁ ଦେଲେ ।
ସୁନାଖଣ୍ଡ ହାରବଳି ମୁକୁତା ଝାଲେସି
ଜରି ବେଶ କରାଇଣ ପାଗବାନ୍ଧେ ଘେର ।
ସୁବର୍ଣ୍ଣ ସିଂହାସନରେ ନେଇଣ ବସାଇଲେ
ବଡ଼ୋଜାଭନ୍ୟାକୁନେଇତାରବୋଳେଦେଲେ
କଟେକ୍ଷ ସୁବର୍ଣ୍ଣ ବେଢ଼ିଣ ବସିଲେ ପାଶରେ
ସବୁ ସ୍ତ୍ରୀ ଶ୍ୱବେଶ ହୋଇଛନ୍ତି ସୁବର୍ଣ୍ଣରେ ।
ସ୍ୱର୍ଣ୍ଣ ମାଳା ମୁକୁତା ଯେ ଅଷ୍ଟରତ୍ନେ ପୁଣି
ଦେବଦୃଷ୍ଟି ସ୍ନ ପ୍ରାୟୁ ତେଜ ଝଟକେ ତାର ପୁଣି
ସ୍ମୃର୍ତ୍ତି ଜଳ ଘେନି ଶତ୍ରୁଘନ ହଜେ କଲେ
ସୁବର୍ଣ୍ଣ ଶିରେ ମସ୍ତକରେ ଯେ ଢାଳିଲେ ।
ଅଭିଷେକ କରାଇଲେ ଶ୍ରୀରାମଚନ୍ଦ୍ର ଭାଇ
ସାମନ୍ତ ପାତ୍ର ମନ୍ତ୍ରୀଙ୍କି ଉଭାକଲେ ନେଇ ।
ଦୁଇଛତ୍ର ତାର ପଚେ ଟେକାଇଲେ ନେଇ
ମଙ୍ଗଳ ଆଳତି କଲେ ପୁରୋହିତ ଠାଇଁ ।
କାହାଳୀ ବାଜିଲା ବାଜା ବାଜିଲା ତେଲଙ୍ଗି
ନୃତ୍ୟକାରୀମାନେ ନୃତ୍ୟ କଲେ ଆସି ବେଗି
ଶ୍ୱେତ ହସ୍ତୀ ଉପରେ ଯେ ଅମର ହୋଇଲେ
ହୁଳହୁଳି ରାମତାଳି ଶବଦ ଘୋର କଲେ ।
ନଯୋଗୀ ଲୋକମାନେ ପ୍ରବେଶ ହେଲେ ପୁଣ
ସିଂହାସନୁ ଉଠିଲେ ଯେ ସୁବର୍ଣ୍ଣ ରାଜନ ।

ଶତ୍ରୁଘନ ଚରଣରେ ଲୋଟଗଲେ ଶୋଇ
ଉଠିକରି କରଯୋଡ଼ି ଆଗରେ ଉଭାହୋଇ ।
ଶତ୍ରୁଘନ ବୋଇଲେରେ ପାଟକୁ ଘେନ ଚଳ
ରାଜଦାଣ୍ଡେ ଫେରିଲେ ଲୋକେ ନୁହନ୍ତୁ ଗହଳ
ଯୁବରାଜ ପାଟରାଜ ଶାଢ଼ୀ ପୁଣ ଦେଲେ
ହସ୍ତୀ ଚଢ଼ି ଦୁଇଭାଇ ସଙ୍ଗରେ ଚଳିଲେ ।
ସିଂହଦ୍ୱାରେ ସୁକଣ୍ଠ ଯେ ଉଭା ଯାଇ ହେଲା
ଅମରି ଉପରେ ଯାଇ ବେଗେ ବିଜେକଲା ।
ଦୁଇଭାଇ ଦୁଇ ଯେ ହସ୍ତୀ ପରେ ବସି
ଆଗରେ ସୁମିତ୍ରା ସୁତ ରଥପରେ ଆସି ।
ଚଉଷଠି ବାଣ୍ଡ କନ୍ଧ ବଜନ୍ଧ ବୁଲିଲେ
ସିଂହଦ୍ୱାରେ ଆସିଣ ବେଗେ ପ୍ରବେଶ ହେଲେ
ଶ୍ୱେତ ହସ୍ତୀ ଉପରୁ ଓହ୍ଲାଏ ବେଗେ ପୁଣ
ନବରଭିତରେ ଯାଇପ୍ରବେଶ ହେଲେ ଜାଣ ।
ଖୁଣ୍ଟିଆ ପ୍ରତିହାରୀ ମଣିମା ଡାକ ଦେଲେ
ରତ୍ନସିଂହାସନ ପରେ ରାଜନ ବିଜେକଲେ ।
ପାଟ ମହାଦେଈ ଏ ଯେ ଭିତରିପୁରେଗଲେ
ଖଟଦୋଳି ବାଙ୍କିଆରେ ଯାଇଣ ବସିଲେ ।
ଶତ୍ରୁଘନ ବିଜୟ ଯେ କଲେକ ନବରେ
ସୁକଣ୍ଠ ଉଠିଆସି ଓଳଗେ ପଦ୍ମରେ ।
ପାଟରାଣୀମାନେ ଆସି ଚରଣ ଧରିଲେ
ଆମ୍ଭଠାରେ ଦୟାକରିଥିବ ଯେ ବୋଇଲେ ।
ବିଭୀଷଣ ଦୁଇ ପୁଅକୁ ଅଲଗା ରଖିଲେ
ଦୁଇଭାଇ ଦୁଇ ମନ୍ଦିରରେ ଯେ ରହିଲେ ।
ବଶ ବଶ ଦାସୀ ଯେ ଅଟନ୍ତି ତାହାଙ୍କର
ଆପଣା ଖୁସିରେ ରହିଲେ ଦୁଇଭାଇ ବୀର ।
ଶତ୍ରୁଘନ ବୋଇଲେରେ କୁମର ଚୂଡ଼ାମଣି
ଆମ୍ଭେ ଯାଉଅଛୁ ନିଶ୍ଚିନ୍ତରେ ଥାଅ ପୁଣି ।
ସୁକଣ୍ଠ ବୋଇଲେ ଦେବମଣୋହିଦେବଯୋଜର
ଶତ୍ରୁଘନ ବୋଇଲେ ଠାକୁରେ ଲଙ୍କାପୁର ।
ସମସ୍ତଙ୍କୁ ବସାଇଣ ରଥରେ ବସିଲେ
ଗଗନ ମାର୍ଗରେ ରଥ ବେଗେ ବାହିନେଲେ
ଲଙ୍କାଗଡ଼େ ଯାଇକରି ପ୍ରବେଶ ହୋଇଲେ
ଶତ୍ରୁଘନ ସିଂହଦ୍ୱାରେ ରଥ ରଖାଇଲେ ।
ପାଦପତ୍ତ ହୋଇଯାଇ ନବରେ ମିଳିଲେ
ରାମଙ୍କ ଚରଣ ତଳେ ଓଳଗି ହୋଇଲେ ।

ବୋଇଲେ ସୁକଣ୍ଠଙ୍କୁ ତହିଁ ରାଜା କରିଲି
ପାତ୍ରମନ୍ତ୍ରୀ ସମସ୍ତଙ୍କୁ ସେଥିରେ ରଖାଇଲି ।
ଯୁବରାଜ ପାଟରାଜା କଲି ତହିଁରେ ପୁଣ
ବିଭୀଷଣ ଦୁଇପୁଅ ହେଲେ ମୂଳ ଜାଣ ।
ଶୁଣିକରି ରାମଚନ୍ଦ୍ର ମନରେ ତୋଷ ହେଲେ
ରାବଣର ପୁଅ ଆସି ଚରଣେ ପଡ଼ିଲେ ।
ଶ୍ରୀରାମ ବୋଇଲେ କହୋ ବିଭୀଷଣ ଶୁଣ
ଏହୁ କୁମରଗୋଟି ଯେ ଅଟଇ କାଏ ପୁଣ ।
ବିଭୀଷଣ ବୋଇଲେ ଦେବ ଶୁଣମୋରବାଣୀ
ରାବଣର ଅଠରଗଣ୍ଡା ଯେ ପୁଅ ପୁଣି ।
ମନ୍ଦୋଦରୀ ଗର୍ଭରୁ ଯେ ଦୁଇ ପୁଅ ଜାତ
ପାଟମହାନନ୍ଦ ଅଟଇ ଯେ ଇନ୍ଦ୍ରଜିତ ସୁତ ।
ଅକ୍ଷୟକୁ ମିଶାଇଣ ଦୁଇ କୁମର ତାର
ପ୍ରଥମେ ଅକ୍ଷୟକୁ ମାରିଲେ ହନୁ ବୀର ।
ଦ୍ୱିତୀୟେ ଇନ୍ଦ୍ରଜିତ ମେଘନାଦ ମଲେ
ଆଉ ସକଳେ କୁମର ରଣରେ କ୍ଷୟଗଲେ
ନାଦନାମେ କୁମର ଯେ ତପ କରୁଥିଲା
ରଣରେ ନ ପଶିଣ ସେହୁ ତ ବଞ୍ଚିଲା ।
ଦଶଶିର ମରିବାରୁ ମାତା ତାର ପୁଣ
ନର୍ମଦା କୂଳକୁ ଦୂର ଭେଦଦେଲେ ଜାଣ ।
ତେବେହେଁ ସେ କୁମର ନ ଆସିଲେ ପୁଣ
ତାହାର ନାମ ଦୂର କହିଲା ତାକୁ ଜାଣ ।
ତେବେ ସେ ଅଇଲା ନାଦ ନାମରେ କୁମର
ତୋତେ ଦର୍ଶନ କରି କପାଳେ ଦିଏ କର ।
କୁମ୍ଭଠାରୁ ଶୁଣିକରି ପିତାଙ୍କୁ ଅଗ୍ନି ଦେଲା
ଏତିକ ରାବଣର ସଙ୍ଗା ନ ରହିଲା ।
ଏ ପୁଅ ସକାଶେ ଜନମ ଭକ୍ତେ ତୋତେବଳି
ଏହାକୁ ଦୟା ତୁମ୍ଭେ କର ହେ କୃପାଧାରୀ ।
ଶ୍ରୀରାମ ବୋଇଲେମୋତେ ଦେଖନ୍ତୁ ନକହିଲୁ
ସଉଲ୍ଲ ଦେଳକୁ ମଥା ଆଣିଣ ଦେଖାଇଲୁ ।
ବିଭୀଷଣ ବୋଇଲେ ନ ଜାଣ ଦେବ ପୁଣ
ବରିଲେ ସ୍ଥାନ ତାକୁ ଦିଅନ୍ତୁ ହେ ରାମଗଣ ।
ଶ୍ରୀରାମ ବୋଲନ୍ତି ସ୍ଥାନ କେଉଁଠାରେ ଅଛି
ବିଭୀଷଣ ବୋଇଲେ ଶୁଣ ହେ ରଘୁବଂଶି ।
ସୁଲଙ୍କା ଜ୍ୟୋତିଲଙ୍କା ବୋଲି ଦୁଇ ଥାନ
ଶତେ ଯୋଜନ ଲେଖାଏଁ ଅଟେ ସେହି ପୁଣ

ଯେ ଦୁଇଗଡ଼େ ମହାରାବଣ ରାଜା ଥିଲା
ଏବେ ସୁଲଙ୍କାକୁ ସୁବାହୁକୁ ଆଜ୍ଞା ହେଲା ।
ଜ୍ୟୋତିଲଙ୍କା ଅଛଇ ଯେ ଅଲଗାହୋଇପୁଣ
ସେଥିରେ ନାଦକୁ ରାଜା କର ହେ ଆପଣ ।
ଶୁଣିକରି କପିଧାଶ ସନ୍ତୋଷ ହୋଇଲେ
ନାଦ ନାମେ କୁମରକୁ ଗୃହିଣ ବୋଇଲେ ।
ଯାଅରେ କୁମର କୁହ କୁଟୁମ୍ବ ବେଗେ ଆଣ
ରଥକୁ ସଜକରି ଯାଅ ଯା ବହନ ।
ଶୁଣିଣ ନାଦ କୁମର ବେଗେ ଚଳିଗଲା
ଆପଣା ନବରେ ଯାଇ ପ୍ରବେଶ ହୋଇଲା ।
କରୁଣାବତୀଙ୍କ ପୁରେ ହେଲେ ପରବେଶ
ଶତେ ସପତ୍ନୀଙ୍କି ଘେନିଣ ବେଗେ ଆସ ।
ଜନମ ଖଣ୍ଡ ତା ମୋର କହିବାରୁ ପୁଣ
ଶ୍ରୀରାମ ଠାକୁର ମୋତେ ଦୟା କଲେ ଜାଣ
ବୋଇଲେ ଜ୍ୟୋତିଲଙ୍କାରେ ହୁଅ କୁହରାଜା
ବେଗହୋଇ ଆସ ବୋଲି ଦେଲେକ ମୂଲଜା
ତତକ୍ଷଣେ ରାଜବେଶ ହେଲେ ନାଦ ପୁଣ
କରୁଣାବତୀ କନ୍ୟା ହୋଇଲା ବେଶ ଜାଣ ।
ଖଟେକ ଯୁବତୀ ବେଗେ ବେଶ ପୁଣି ହେଲେ
ପଟମ ଶାଢ଼ୀପିନ୍ଧି ବାହାର ହୋଇଲେ ।
ଶ୍ରୀରାମ ଚରଣେ ଓଳଗେ ବେଗେ ଯାଇଁ
ଦେଖି ଶ୍ରୀରାମ ତାକୁ ପରମ ତୋଷ ହୋଇ ।
ଭରତଙ୍କ ଚରଣରେ ଶୋଇଲେ ପାଏ ପଡ଼ି
ବଧୂଙ୍କୁ କୋଳେ ନେଇ ବସାଏ ମନ୍ଦୋଦରୀ ।
ମୁଖରେ ଚୁମ୍ବ ଦେଇଣ ବୋଇଲା ଏବେ ଶୁଣ
କଳହଦ୍ୱନ୍ଦ୍ୱ କାହୁଁ ଯୋ ନ କରିବ ପୁଣ ।
ସପତ୍ନୀମାନଙ୍କୁ ପାଳିବ ଏକ ପ୍ରାୟ
ଶ୍ରୀରାମର ନାମଗୋଟି ଜପିବ ହୃଦୟ ।
ସେ ପୁର ନରନାରୀଙ୍କ ସବୁଠାରେ ରଖିବ
ଅନ୍ନବସ୍ତ୍ର ଦୁଃଖୀ ଦରିଦ୍ରେ ଦେବୁ ସର୍ବ ।
ଏତେକହି ମନ୍ଦୋଦରୀ ତାଙ୍କର ସଙ୍ଗେ ଗଲା
କହିମୋଷ ରଥପରେ ନେଇଣ ବସାଇଲା ।
ନାଦ କୁମର ଯାଇଣ ବସେ ରଥ ପରେ
ଦେଖିକରି ରାମଚନ୍ଦ୍ର ଭରତକୁ ବୋଲେ ।
ଯାଅରେ ସାନୁଜ ବେଗେ ନାଦକୁ ରାଜାକର
ସେନାପତି ଯୂଥପତି ଯାଆନ୍ତୁ ସଙ୍ଗର ।

ଶୁଣିଣ ଭରତ ବୀର ନମସ୍କାର କଲା
କଣ୍ଠିଅର ରଥପରେ ଯାଇଣ ବସିଲା ।
କଳାନ୍ଥତି ଧଳାଛତି ଟେକାଇଲେ ଶିରେ
ଘୋଡ଼ା ବାହାଳ ବାଜିଲା ତାହାଙ୍କ ଆଗରେ
ସୁମନ୍ତ୍ର ମନ୍ତ୍ରୀ ଆସି ସାରଥି ହୋଇ ବସି
ପନ୍ଦର ଯୂଥପତି ବସିଲେ ରଥେ ଆସି ।
ଶୁଣ ତୁ ଗଜପତି ତୋ କହୁ ତୋ ଆଗରେ
ଏଥୁଅନନ୍ତରେ ଜୟ ହୋଇଲା ସେଠାରେ ।
ଏମନ୍ତ ସମୟରେ ଯମଦଗ୍ନି ସୁତ
ରଘୁବରଙ୍କ ପାଖେ ଯାଇ ହେଲେ ଉପଗତ ।
ଶ୍ରୀରାମ ସେ ଋଷିଙ୍କି ଯେ ନମସ୍କାର କଲେ
ଭଲଯୋଗରେ ଅଇଲ ବୋଲିଣ ବୋଇଲେ
ଭରତ ସଙ୍ଗରେ ବିଜେ କର ହେ ଋଷିରାଣ
ଜ୍ୟୋତି ଲଙ୍କାରେ ନାଦକୁ କରାଅ ରାଜନ
ଯାଅ ବେଗ ରଥେ ବସ ବିଳମ୍ବ ନକର
ଶୁଣିକରି ମୁନିବର ଗଲେକ ସତ୍ୱର ।
ଭରତ ରଥପରେ ଯାଇଁ ବିଜେ କଲେ
ଗଗନ ମାର୍ଗରେ ରଥ ସୁମନ୍ତ୍ର ବାହିଲେ ।
ନାଦ କୁମର ତାର ପରେ ରଥ ବହିଳ
ଘଡ଼ିକ ସମୟରେ ଜ୍ୟୋତି ଲଙ୍କା ମିଳ ।
ଦେଖିକରି ନରନାରୀ ଆନନ୍ଦ ହୋଇଲେ
ମହାରାବଣ ମରିବାର କର୍ଣ୍ଣରେ ଶୁଣିଲେ ।
ସିଂହଦ୍ୱାରେ ରଥନେଇ ଭରତ ବୀର ଗଲେ
ରଥପରୁ ଓହ୍ଲାଇଣ ନବରକୁ ଗଲେ ।
ଦେଖିଲେ ଅତି ଶୋଭା ନବର ଯୋଟିକ
ଜବେ ହେମପ୍ରାୟ ଦିଶଇ ଝଟକ ।
ସେନାପତି ଯୂଥପତି ନବରରେ ପଶି
ନାଦ ସଙ୍ଗନାରୀ ଘେନି ପ୍ରବେଶ ତହିଁ ଆସି ।
ଏ ସମୟେ ଶରଣ ଅଶରଣ ଦୁଇ ମନ୍ତ୍ରୀ
ଭରତର ପାଖରେ ପ୍ରବେଶ ଯାଇଁ ଧାଇଁ ।
ଭରତ ବୋଇଲେ ହୋ ଭଣ୍ଡାର ମେଲକର
ଅସ୍ତ୍ରରତ୍ନ ଅଳଙ୍କାର ଭଣ୍ଡାରରୁ କାଢ଼ ।
ଶୁଣିକରି ଦେବମନ୍ତ୍ରୀ ଭଣ୍ଡାର ଖୋଲିଲେ
ଅସ୍ତ୍ରରତ୍ନେ ଶତନାରୀ ସଜ କରାଇଲେ ।
ରତ୍ନ ସିଂହାସନ ଯେ ଆଣିଲେ ତହୁଁ କାଢ଼ି
ଭରତ ସମ୍ମୁଖରେ ମନ୍ତ୍ରୀ ଦେଲେ ନେଇକରି ।

ସାରବେଶ ଭରତ ନାଦଙ୍କୁ କରାଇଲେ
ଶତେକ ରାଣୀଙ୍କି ବେଶ କରାଅ ବୋଇଲେ
ଏଥିଉତ୍ତାରୁ କରୁଣାବନ୍ତି ରାଣୀ ଯାଇ
ସପତ୍ନୀମାନ ଯେନ ମାଜଣା ଯେ ହୋଇ ।
ଦାସୀପରିବାରମାନେ ମାଜଣା ସେ ହୋଇଲେ
ବେଶ ହୋଇ ଚନ୍ଦନ ଅଗୁରୁ ବୋଳିହେଲେ
ବେଶକାରୀ ଲୋକମାନେ ପ୍ରବେଶ ହେଲେ ଆସି
ନାଦଙ୍କୁ ରାଜବେଶ କରାଇଲେ ବସି ।
ରାଜବେଶ କରି ସିଂହାସନେ ବସାଇଲେ
ଧଳା ଧଳା ଛତ୍ରକ ଉପରେ ଟେକାଇଲେ ।
ଭରତଙ୍କୁ ନେଇକରି ସିଂହାସନ ଦେଲେ
ସିଂହାସନ ପରେ ରାମପାଦ ବିଜେକଲେ ।
ଆରେକ ସିଂହାସନ ଦେଲେକ ଆରୋପି
ସିଂହାସନ ମାଡ଼ିଣ ବସିଲେ ନୂଆ ପତି ।
ଏମନ୍ତ ସମୟରେ ସାମନ୍ତ ପାତ୍ର ମିଳି
ଦାସୀଗଣ ଦେଲେ ରାମତାଳି ହୁଳହୁଳି ।
ଏ ସମୟେ ବିଭୀଷଣ ନେବନ୍ତ ଯେ କୁମର
ପ୍ରବେଶ ହୋଇଲେ ଯାଇ ଭରତ ଛାମୁର ।
ଭରତ ବୋଇଲେ ତୁମ୍ଭେ ଅଇଲ କମ୍ପାଇଁ
କଣ କହିଅଛ ବୋଇଲେ ତାଙ୍କୁ ଯାଇ ।
ରାମ ପେଷିଛନ୍ତି ଯୁବରାଜ ଥାଟ ରାଜା
ହୋଇ ଆମ୍ଭେ ଭାଇପାଶେ ରହିବୁ କଲେ ସଞ୍ଜା ।
ଶୁଣିଣ ନାଦ କୁମର ହରଷ ହୋଇଲା
କରୁଣାବନ୍ତି ଶୁଣିଣ ସନ୍ତୋଷ ଲଭିଲା ।
ଏଥୁଅନନ୍ତରେ ଭୃତ୍ୟ ଅଣାଇଲେ ତୀର୍ଥଜଳ
ରଥୀ ପଦାତିମାନେ ଯେ ମିଳିଲେ ସକଳ ।
ହସ୍ତୀ ଘଣ୍ଟା ଅଶ୍ୱ ଓଟ ସାରେଣୀ ମଯୂଳ
ବାଦ୍ୟକର ନୃତ୍ୟକର ବେଣୁ ବୀଣା ତାଳ ।
ଗହଳ ଶବଦରେ ହୁଅନ୍ତି ସନ୍ତାପନ୍ତ
ହରିବୋଲ ରାମତାଳି ହୁଳହୁଳି ଦିଅନ୍ତି ।
ତୀର୍ଥଜଳ ନେଇଣ ଯେ ମନ୍ତ୍ରୀ ବେଗେ ଦେଲେ
ଭରତ ଉଠି ନାରଦ ଶିରରେ ଢାଳିଲେ ।
ଶତେକ ଯୁବତୀ ଚାରିପାଶେ ବେଢ଼ି ବସି
କରୁଣାବନ୍ତି ଯେତେଣ ଅଭିଷେକ ନୃପତି ।
ଅଭିଷେକ ସରିବାରୁ ପୁରୋହିତ ପୁଣ
ମଙ୍ଗଳ ଆଳତି ଧୂପ ଦୀପ ଦେଲେ ଜାଣ ।

ସେଠାରୁ ବେଳକେ ଉଠିକରି ଗଲ
ସକଳ ନାରୀଗଣ ଅନ୍ତନ୍ତ ଭାର ବୁଲେ ।
ଭରତ ଚରଣରେ ଶୋଇଲେ ଲୋଟଗାଳି
ବୋଇଲେ ଆମ୍ଭଙ୍କୁ ଦୟା କଲେ ବୃଷଧାରୀ
ଭରତ ବୋଇଲେ ମନ୍ତ୍ରୀ ବେଗହୋଇ ଯାଅ
ଶ୍ୱେତହସ୍ତୀ ଅମରି କରିଣ ଅଣାଅ ।
ଶୁଣିକରି ବେନି ମନ୍ତ୍ରୀ ବେଗେ ଚଳିଗଲେ
ଶ୍ୱେତହସ୍ତୀ ଅମରି କରିଣ ଅଣାଇଲେ ।
ସିଂହଦ୍ୱାରେ ପାଟହସ୍ତୀ ଆସି ହେଲେ ଉଭା
ଲବରାମ ଭରତଙ୍କୁ କଲେ ମଙ୍ଗଳ ପୂଜା ।
ମଙ୍ଗଳ ଆଳତି କରି ଧୂପ ଦୀପ ଦେଲେ
ମହିମା ଡାକ ପଡ଼ନ୍ତେ ଭରତ ଉଠିଲେ ।
କହିଅଛ ଧ୍ୱଜରଥେ ବିଜେକଲେ ଯାଇ
ସେନାପତି ଯୂଥପତି ଆଗେ ଉଭାହୋଇ ।
ହନୁମନ୍ତ ଅଙ୍ଗଦ ଜାମ୍ବବ ବିଭୀଷଣ
ଚଅଁର ମୟୂରଚ୍ଛନ୍ଦ ଛତ୍ର ଟେକେ ପୁଣି ।
ପଥା ବିଞ୍ଚଣା ଆଲଟ ଧରନ୍ତି ଯୂଥପତି
ମହିମା ମହିମା ଉଚେ ଡାକନ୍ତି ସେନାପତି ।
ନାରଦକୁମର କରୁଣା କନ୍ୟାଙ୍କୁ ସଙ୍ଗେଘେନି
ଅମରି ଉପରେ ବିଜେକଲେ ନୃପମଣି ।
ହରିବୋଲ ରାମତାଳି ହୁଳହୁଳି ପଡ଼େ
ନୃତ୍ୟକାରୀମାନେ ସବେ ଆଗରେ ନୃତ୍ୟକଲେ
ନଉଛଠି ବାଣ୍ଡ ଢମଢମ ବୁଲିଲେ ।
ନରନାରୀମାନେ ବସି ବିଚାର ତର୍କ କଲେ
କେ ବୋଲେ ରାବଣର କୁମର ଅଟେ ଏହୁ
ଆମ୍ଭମାନଙ୍କର ଏବେ ହୋଇଲା ଯେ ପ୍ରଭୁ ।
କେ ବୋଲନ୍ତି ନୂଆରାଜା ପାଳିବ ଆମ୍ଭଙ୍କୁ
ନାଦଙ୍କୁ ଶ୍ରୀରାମ ମାଇଲେ ଖବୁସିନେହଲକୁ
ଶ୍ରୀରାମଙ୍କର ଭାଇ ଅଟନ୍ତି ଭରତ ପୁଣ
ଏହାଙ୍କୁ ରାଜା କରିବାରୁ ଏଥକୁ ଆସେ ପୁଣ
ଏମନ୍ତ ବିଚାର ତର୍କ ନରନାରୀ କଲେ
ସିଂହଦ୍ୱାରେ ଫେରିକରି ଭରତ ମିଳିଲେ ।
ନାଦ ନାମେ ନୃପତି ମିଳିଲେ ଯାଇ ପୁଣ
ରଥପରୁ ଓହ୍ଲାଇ ଅଇଲେ ତତକ୍ଷଣ ।
କରୁଣା ପାଟରାଣୀ ଭିତରପୁରେ ଗଲା
ଭରତ ରଥୁ ଓହ୍ଲାଇ ନଗରେ ମିଳିଲା ।

ବୋଇଲେ ନୃପତି ହେ ଯାଉଛୁ ଆଜନ୍ମ ପୁଣ
ରାଜ୍ୟ ବୁଝାମଣା କରି ପରଜା ପାଳ ପୁଣ ।
ଜନମାକ ତୋହର ଅଯଶ ନ କରିବୁ
ଏ ଦୁଇଭାଇଙ୍କଠାରେ ଶରଧା କରିଥିବୁ ।
ଶୁଣିଣ ନୃପତି ଶତେ ସୁବର୍ଣ୍ଣ ସଙ୍ଗେ ଘେନ
ଚରଣ ଧରି ଓଳଗି ହେଲେ ଆସି ପୁଣି ।
ବୋଇଲେ ଆଜ୍ଞାକ ଯେ ଭୃତ୍ୟ ମୋରପୁର
ଭରତ ବୋଲେ ଆଜ୍ଞାକାରୀ ରଘୁବୀରଙ୍କର ।
ବିଭୀଷଣର ଦୁଇ ପୁତ୍ରଙ୍କୁ ଡକାଇଲେ
ସୁବରଜା ଶାଢ଼ୀ ସେ ତାଙ୍କୁ ପୁଣ ଦେଲେ ।
ଆଉ ଲାଇକ ଆଠ ରଜା ଶାଢ଼ୀ ଦେଲେ
ଭିନ୍ନ ଭିନ୍ନ ନଗରେ ତାଙ୍କୁ ରଖାଇଲେ ।
ଦଶ ଦଶ କାମିନୀ ଯେ ଅଟନ୍ତି ତାଙ୍କର
ସେମାନଙ୍କୁ ବୁଝାଇ କହିଲେ ଭଲ ସାର ।
ସମସ୍ତ ପାତ୍ରଙ୍କୁ ଡକାଇଣ ସମର୍ପିଲେ
ରଥର ଉପରେ ଯାଇଣ ବିଜେ କଲେ ।
ସେନାପତି ଯୂଥପତି ବସାଇ ରଥରେ
ସମକଗି ସ୍ଥିତ ବସିଲେ ରଥପରେ ।
ସୁମନ୍ତ ମନ୍ତ୍ରୀ ସେଠାରୁ ରଥ ଚଳାଇଲା
ଗଗନ ମାର୍ଗରେ ରଥ ଉଡ଼ିକରି ଗଲା ।
ଲଙ୍କାଗଡ଼ରେ ଯାଇଁ ହେଲା ପରବେଶ
ରଥରୁ ଓହ୍ଲାଇ ଗଲେ ଶ୍ରୀରାମର ପାଶ ।
ରଘୁନାଥ ଚରଣେ ନମସ୍କାର କଲେ ଯାଇ
ଦେଖିକରି ତୋଷ ହେଲେ ରଘୁକୁଳ ସାଇଁ ।
ନୃପତି କରିଣ ରାଜ୍ୟ ସମର୍ପିଲ ଟିକ
ସାମନ୍ତ ପାତ୍ର ସେବକ ଖଟିଲେ ତାଙ୍କୁ ଟିକ ।
ଭରତ ବୋଇଲେ ମୁଁ ସକଳ ଶୁଭ କଲି
ନୃପତି କରିଣ ରାଜ୍ୟ ତାଙ୍କୁ ସମର୍ପିଲି ।
ରାଘବ ବୋଇଲେ ତୁମ୍ଭେ ଶୁଣ ହେ ଲୋଚନ
ଲକ୍ଷ୍ମଣ ପର ସୁବାହୁ ଘେନଗଲେ ପୁଣ ।
କେଉଁ ପ୍ରାୟେ ରଜା ତାକୁ କଲେ ସୁଲଙ୍କାରେ
ଏକଥାକୁ ମୋର ଆଗେ କହ ତୁମ୍ଭେ ଭଲେ
ଈଶ୍ୱର ବୋଇଲେ ଲକ୍ଷ୍ମଣ ସୁଲଙ୍କାଗଡ଼ ଗଲେ
ରଜାର ସିଂହଦ୍ୱାରେ ପ୍ରବେଶ ହୋଇଲେ ।
ମଙ୍ଗଳ ଆଳତି ଯେ ନାରୀ ତହିଁ କଲେ
ରଥରୁ ଓହ୍ଲାଇ ଲକ୍ଷ୍ମଣ ନଗରେ ମିଳିଲେ ।

ସୁବୁଦ୍ଧି କୁବୁଦ୍ଧି ବୋଲି ଅଟଇ ଦୁଇମନ୍ତ୍ରୀ
ତାହାକୁ ବର୍ତ୍ତଣ ଯେ କହେ ସତ୍ରମିତ୍ରୀ ।
ସାମନ୍ତ ପାତ୍ର ପଦାତି ସେନା ଯୂଥପତି
ରଥୀ ମହାରଥୀ ଯେ ସରଦାର ସେଥି ।
ସେମାନଙ୍କୁ ଡକାଇ ଯେ ଆଣିଲେ ଲକ୍ଷ୍ମଣ
ସୁବାହୁକୁ ବୋଇଲେ ତୁ ନଗରେ ଯାଅ ପୁଣ
ଶତେକନ୍ୟା ଘେନିଣ ତୁ ନଗରରେ ପଶ
ସ୍ୱଜନକୁ ତୋର ଡାକିଆଣ ମୋର ପାଶ ।
ଶୁଣିକରି ସୁବାହୁ ନଗରେ ଚଳିଗଲା
ଲକ୍ଷେ ସ୍ୱଜନଙ୍କୁ ସେ ଯାଇଣ ଦେଖିଲା ।
ସତ୍ରରେଖ ପାଟରାଣୀ ଉଠିଲେ ବହନ
କୁଛା ଘର ଦେଖିବାକୁ ଅଇଲ କ ପୁଣ ।
ସୁବାହୁ ବୋଇଲେ ତୁ ଯୋମୋରଠାରୁ ଶୁଣ
ପରମ ବ୍ରହ୍ମ ମୂରତି ନଗରେ ବିଜେ ପୁଣ ।
ଦର୍ଶନ କରି ଯାଇ ଗୋ ତାଙ୍କର ଚରଣେ
ଯେବେ ତୁମ୍ଭେ ଠାକୁରାଣୀ ହେବ ଏ ଭୁବନେ
ସତ୍ରରେଖ କହିଲେ ତୁମ୍ଭେ କେମନ୍ତେ କହବାଣୀ
ସ୍ୱାମୀ ମଲେ ବିଧବା ତ ହୋଇଲି ମୁଁ ପୁଣି ।
କେମନ୍ତେ ଠାକୁରାଣୀ ହେବ ଯେ ମୁହିଁ ପୁଣି
ଏଥିର ସନ୍ଦେଶ ମୋତେ କହ ହେ ସାରମଣି
ସୁବାହୁ ବୋଇଲେ ତୁ ମୋର କଥା ଶୁଣ
ପରମ ଦୟାଳୁ ଅଟନ୍ତି ରାମଚନ୍ଦ୍ର ପୁଣ ।
ରାବଣକୁ ମାରି ବିଭୀଷଣକୁ ରଜା କଲେ
ମନ୍ଦୋଦରୀ ରାଣୀକି ସେ ପାଟରେ ବସାଇଲେ
କୁମ୍ଭକର୍ଣ୍ଣ ପୁଅକୁ ସେ ରଜାକଲେ ପୁଣ
ଶତେମୁଖାକୁ ମାରିଲେ ତାଙ୍କର ଭାଇ ଜାଣ
ତାହାର କେହି ନଥିବାରୁ ବଂଶରେ ଯେପୁଣ
ସୁକର୍ଣ୍ଣ ହେଲା ରଜା ସେ ରାଜ୍ୟରେ ଜାଣ ।
ଯେ ଯାହାକୁ ମାରିଲା ସେ ରାଜ୍ୟେ ରଜାକଲେ
ତୋର ଗୁରସ୍ତଙ୍କୁ ପରା ଲକ୍ଷ୍ମଣ ମାରିଲେ ।
ମୋତେ ରଜା କରିବାକୁ ସେହି ଆସିଛନ୍ତି
ଶ୍ରୀରାମଚନ୍ଦ୍ରଙ୍କର ଭାଇ ସେ ଅଟନ୍ତି ।
ଆସିଲାବେଳେ ଭାଇଙ୍କ କହିଛନ୍ତି ସେହି
ସତ୍ରରେଖ କନ୍ୟାକୁ କରିବୁ ପାଟଦେଈ ।
ବଡ଼ ବଡ଼ ଆଉ କଥା ହୋଇଲାଣି ପୁଣ
ତୁମ୍ଭେ ମନରେ ଆଉ ନ ଧର ଅବଗୁଣ ।

ଶୁଣିଣ ସଉରଭି ଆନନ୍ଦ ହୋଇଲା
ଝିଅରକୁ ଚୁମ୍ବିଣ ବଚନ ବୋଇଲା ।
ତୁମ୍ଭେ ଯେବେ ସ୍ୱାମୀ ମୋର ହେବ ଆଜଠାରୁ
ବିଧବା ଅବସ୍ଥାରେ ମୁଁ କେମନ୍ତେ ଯିବ ଘରୁ
ନାରାୟଣଙ୍କୁ କେମନ୍ତେ ମୁଁ କରିବ ମାନ୍ୟଧର୍ମ
ଏଥିର କଥା ମୋତେ ବୁଝାଇ କହିବ
ସୁବାହୁ ବୋଇଲେ ତୁମ୍ଭେ ମାଜଣା ବେଶ ହୁଅ
ଶ୍ରୀରାମ ଭାଇ ଚରଣେ ଓଳଗିଣ ହୁଅ ।
ସଉରଭି ବୋଇଲା ତୁମ୍ଭର ନଜ ନାଶ
ଘେନଆସ ଆମ୍ଭ ସଙ୍ଗେ ହୁଅନ୍ତୁ ବେଶଦାସ
ଶୁଣି ସୁବାହୁ ଶତେକ କନ୍ୟାଙ୍କୁ ଅଣାଇଲା
ଲକ୍ଷେ ଶତେ କନ୍ୟାଙ୍କୁ ସେ ବେଶ କରାଇଲା
ଅର୍ଘ୍ୟଥାଳୀ ଘେନିଣ ଅଇଲେ ସର୍ବନାରୀ
ଲକ୍ଷ୍ମଣଙ୍କୁ ବନ୍ଦାପନା କରନ୍ତି ସର୍ବେ ଘେରି ।
ଦୂବ ବରକୋଳିପତ୍ର ଚଣ୍ଡୁଳ ଶିରେ ଦେଲେ
ଚରଣ ଧରିଣ ସର୍ବେ ଓଳଗି ଶୋଇଲେ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ହୁଅ ସଉଭାଗୀ
ବସ ଗୋ ସୁନ୍ଦରୀ ଝିଅର କୋଳେ ବେଗି ।
ମନ୍ତ୍ରୀଙ୍କି ବୋଇଲେ ତୁମ୍ଭେ ଅଣାଅ ସିଂହାସନ
ଶୁଣିକରି ମନ୍ତ୍ରୀ ବେଗେ ଗଲେକ ବହନ ।
ସୁବର୍ଣ୍ଣର ସିଂହାସନ ଆଣି ଉଶ୍ୱଳଲେ
ସେଥିର ଉପରେ ସୁବାହୁଙ୍କୁ ବସାଇଲେ ।
ସଉରଭି କନ୍ୟା ଯାଇ ବସିଲେକ କୋଳେ
ସବୁ କନ୍ୟା ବସିଲେ ଘେରିଣ ସଙ୍ଗରେ ।
ତୀର୍ଥଜଳ ଆଣିଣ ମନ୍ତ୍ରୀ ବେଗେ ଦେଲେ
ଲକ୍ଷ୍ମଣ ଉଠିଣ ଢାଳିଲେ ତାଙ୍କ ଶିରେ ।
ଦାସୀମାନେ ବନ୍ଦାପନା କଲେକ ଯାଇଣ
ମଙ୍ଗଳ ଆଳତି କଲେ ପୃଷ୍ଠେବ୍ରତଗଣ ।
ମଣିମା ମଣିମା ଡାକ ପଡ଼ିଲା ସେଠାରେ
ମନ୍ତ୍ରୀଙ୍କ ଚୁମ୍ବିଣ ଲକ୍ଷ୍ମଣ ଆଜ୍ଞା ଦେଲେ ।
ବୋଇଲେ ପାଟହସ୍ତୀ ଅମର ବେଗେ କର
ନୂଆ ରଜା ଫେରିବେ ରାଜ୍ୟେ ଯେ ତୁମ୍ଭର
ଶୁଣିକରି ପାତ୍ରମନ୍ତ୍ରୀ ଅମର ସଜକଲେ
ଲକ୍ଷ୍ମଣ ଆଗରେ ଯାଇଣ ଜଣାଇଲେ ।
ବିଭୀଷଣ ଦୁଇ ପୁତ୍ରଙ୍କୁ ଅଣାଇ ବହନ
ଯୁବରାଜା ପାଟରାଜା କରାଇ ଲକ୍ଷ୍ମଣ ।
ଦୁଇ ହସ୍ତୀଙ୍କ ଉପରେ ଦୁହିଁଙ୍କି ବସାଇଲେ
ଅମରରେ ରାଜା ବିଜେକଲେ ଯାଇଥିଲେ ।
ସଉରଭି କନ୍ୟାକୁ ବସାଇଲେ କୋଳେ
ବେଷ୍ଟିଣ ସଉମିତ୍ରୀ ବିଜେ କରି ଗଲେ ।
ତାଳଧ୍ୱଜ ରଥରେ ଲକ୍ଷ୍ମଣ ବିଜେ କଲେ
ଶ୍ୱେତହସ୍ତୀ ଉପରେ ନାରଦଙ୍କୁ ବସାଇଲେ
ଚଉଷଠି ବାଦ୍ୟ ଯେ କଢ ବଜଢ ତା'ଣ
ଦେଖିକରି ନଗ୍ରଲୋକେ ସନ୍ତୋଷ ହେଲେ ପୁଣ
ସେ ନଗ୍ର ନରନାରୀ ବିଚାରିଲେ ମନ
ପୁରୁଣା ଠାକୁରାଣୀଙ୍କୁ ନଅ ହେ ରାଜା ଏଣେ
ଆମ୍ଭମାନଙ୍କୁ ଏ ଯେ ସୁଖରେ ପାଳିବେ
ନାରାୟଣ ଦେବତାରେ ଭକତ ଏହୁ ହେବେ
ନ ମନ୍ଦ ପାପିଷ୍ଠ ଏକମୁଖା ଯେ ରାବଣ
କେତେ ଲୋକଙ୍କୁ ବିଧବା କଲା ଏହୁ ପୁଣ ।
ଏତେବୋଲି ନରନାରୀ ହୁଅନ୍ତି କୁହାକୁହି
ତାହାର ସକାଶେ ଭଲ ନ ଭୁଞ୍ଜିଲୁ କେହି ।
ସୁବାହୁଙ୍କୁ ଘେନିଣ ଯେ ସଉମିତ୍ରୀ ପୁଣ
ସିଂହଦ୍ୱାରେ ପ୍ରବେଶ ହେଲେ ତତକ୍ଷଣ ।
ରଥରୁ ଓହ୍ଲାଇ ନବରେ ପରବେଶ
ରାଜା ରାଣୀ ଓହ୍ଲାଇଲେ ନବରେ ବିଶେଷ
ଲକ୍ଷ୍ମଣ ବୋଇଲେ ନିଶ୍ଚିନ୍ତରେ ଥାଅ ପୁଣ
ଆମ୍ଭେ ଯାଉଅଛୁ ଗୋ ଲଙ୍କାଗଡ଼ ଜାଣ ।
ପାତ୍ରମନ୍ତ୍ରୀଙ୍କ ବୋଲରେ ଥିବୁଟି ରାଜନ
ପରଜା ପାଳିଣ ରାଜ୍ୟ ବୁଝିବୁ ଭଲେ ପୁଣ
ଦୁଷ୍ଟଗଣ କଲେ ପିଡା ପ୍ରାପ୍ତ ନାଶିବୁ
ଦେବତା ବ୍ରାହ୍ମଣରେ ଭକତ ଭାବ ହେବୁ ।
ପାତ୍ର ମନ୍ତ୍ରୀମାନଙ୍କୁ ସମର୍ପି ଦେଲେ ପୁଣ
ସେ ଠାବରୁ ଲକ୍ଷ୍ମଣ ଚଳିଲେ ବହନ ।
ସୁବେଳାର ମଣ୍ଡରେ ହେଲେ ପରବେଶ
ଦେଖା ଉଠେ ଆସିଣ ଆଗରେ ପ୍ରବେଶ ।
କରଯୋଡ଼ି ଓଳଗି ଆଗରେ ଉଭା ହେଲା
ମୋରଠାରେ ଦୟା କରିଥିବ ହେ ବୋଇଲା
ଲକ୍ଷ୍ମଣ ବୋଇଲେ ମୋର ତୁହି ହିତକାରୀ
ଆଜଠାରୁ ସର୍ବଦେଖା ସଙ୍ଗରେ ହୁଅ ମେଳ ।
ସେଠାରୁ ଆସି ତାଳଧ୍ୱଜ ରଥରେ ବସିଲେ
ନାରଦଋଷିଙ୍କି ନେଇଣ ରଥରେ ବସାଇଲେ

ସେନାପତି ଯୂଥପତି ବସିଲେ ରଥର
ଗୁର ଜଣାଇଲା ଯାଇ ଆଗରେ ତାଙ୍କର ।
ରାବଣର ପୁତ୍ରକୁ ଚଉତ ରାଜା କଲେ
ଜ୍ୟୋତି ଲଙ୍କାରେ ରାଜାକର ଶ୍ରୀରାମ ଗଲେ
ଶୁଣିକରି ସମସ୍ତେ ହୋଇଲେ ହରଷ
ସୁବାହୁ ବିଭୂଷିଲା ଖୁଡ଼ୁତା ରାଜା ତ ।
ମନ୍ଦୋଦରୀ ବିଭୂଷଣ କୂଳକୁ ରଖିଲା
ଶ୍ରୀରାମଠାରେ ସେହି ପ୍ରୀତି ଭାବ କଲା ।
ଲକ୍ଷ୍ମଣ ସୁଷେଣଙ୍କୁ ବୋଇଲେ ରଥ ଗୁଳ
ଗଗନ ମାର୍ଗରେ ରଥ ଚଳାଇଲ ଖର ।
ଲଙ୍କାଗଡ଼ରେ ସେ ହୋଇଲେ ପରବେଶ
ରଥରୁ ଓହ୍ଲାଇଣ ଗଲେ ଶ୍ରୀରାମ ପାଶ ।
ଶ୍ରୀରାମ ଚରଣେ ନମସ୍କାର କଲେ ଯାଇ
ଭରତ ଚରଣେ ଓଳଗି ବେଗ ହୋଇ ।
ଶ୍ରୀରାମ ବୋଇଲେ ରାଜା କଲଟିକ ପୁଣ
ଲକ୍ଷ୍ମଣ ବୋଇଲେ ଭାଉଜ ପାଟ ହେଲେ ଜାଣ
ବିଭୀଷଣ ଦୁଇ ପୁତ୍ର ହେଲେ ଯୁବରାଜା
ପାତ୍ର ମନ୍ତ୍ରୀ ଯାଇଣ କଲେକ ପାଦପୂଜା ।
ଶୁଣିକରି ଶ୍ରୀରାମ ମନରେ ତୋଷ ହେଲେ
ବିଭୀଷଣକୁ ଅଣାଅ ବୋଲିଣ ଆଜ୍ଞା ଦେଲେ
ବିଭୀଷଣ ଆଗରେ ହେଲେ ପରବେଶ
ଶ୍ରୀରାମବୋଇଲେ ତୁ ବେଗପୁତ୍ରଆଣରେ ବିଶେଷ
ଜ୍ୟେଷ୍ଠ କନିଷ୍ଠକୁ ବେଗକରି ଯାଇ ଆଣ
ଶୁଣିକରି ମନ୍ତ୍ରୀବର ବେଗେ ଗଲେ ପୁଣ ।
ହସ୍ତୀମାନ ଅମରି କରିଣ ଅଣାଇଲା
ଶ୍ରୀରାମ ଗୁମ୍ଫରେ ଜଣାଣ ଆସି ବେଗେ କଲା
ଦେଖିକରି ଶ୍ରୀରାମ ଯେ ଉଠିଲେ ବହନ
ବିଭୀଷଣକୁ ବୋଇଲେ ମନ୍ଦୋଦରୀକ ନେଇ
ଅମରି ଉପରେ ଯାଇଁ ଦୁଇଜଣ ବିଜେ
ଦୁଇ ପୁତ୍ର ଦୁଇ ହସ୍ତୀ ଚଢ଼ନ୍ତୁ ଯାଇ ବେଗେ
ନଗର ବୁଲିଲେ ନଗ୍ରଲୋକ ସେ ଜାଣିବେ
ନୂଆରାଜା ହେଲେ ବୋଲି ମନରେ ଖୁସି ହେବେ
ବିଭୀଷଣ ବୋଇଲେ ଦେବ ତୁମ୍ଭେ ବିଜେକର
ସୁରଭାଇ ବିଜେକର ରଥର ଉପର ।
ତେବେ ସିନା ଲଙ୍କାଗଡ଼ ସୁନ୍ଦର ଦିଶିବ
ଶୁଣିକରି ଶ୍ରୀରାମ ହେଲେ ସନ୍ତୋଷ ।

ନନ୍ଦିଘୋଷ ରଥରେ ଯାଇଣ ବିଜେ କଲେ
ତିନିଭାଇ ତିନିରଥ ଉପରେ ବସିଲେ ।
ମାତଳି ହନୁମନ୍ତ ସୁମନ୍ତ ସୁଷେଣ
ଗୁରିରଥରେ ସାରଥି ହେଲେ ସେହୁ ପୁଣ ।
ଗୁରି ହସ୍ତୀ ଉପରେ ଗୁରି ମୂଳ ବିଜେ କଲେ
ବିଭୀଷଣ କୁମର ଦୁଇ ହସ୍ତୀରେ ବସିଲେ ।
ହସ୍ତୀର ଉପରେ ପୁଣି ସୁଗ୍ରୀବର ବସି
ବାଳି ସୁତ ଅଙ୍ଗଦ ଯେ ହସ୍ତୀପରେ ବସି ।
ମନ୍ଦୋଦରୀକ ଘେନିଣ ବିଭୀଷଣ ଗଲା
ହସ୍ତୀର ଉପରେ ଯାଇ ବେଗେଣ ବସିଲା ।
ମନ୍ଦୋଦରୀକ ଘେନିଣ ବଣ୍ଡାବାର ବଳା
ମନରେ ହରଷ ହୋଇ ବିଜେ କରେ ପରା
ଶୁଣିଲଟିକ ତୁମ୍ଭେ ଗୋ ଶ୍ରୀରାମର ବାଣୀ
ଏମନ୍ତ ପ୍ରକାରେ ରାମ ମହିମା ଅଟେପୁଣି ।
ଅସୁର ଦଳଣ ଅଟେ ବାସୁଦେବ ଜାଣ
ଦେବାଙ୍କର ଭକତରେ ମାଇଲେ ରାବଣ ।
ଶରଣ ପଞ୍ଜର ବାନା ଅଟଇ ସେ ଜାଣ
ବିଭୀଷଣ ଶରଣ ପଶିଲେ ତେଣୁ ପୁଣ ।
ଏବେ ବିଭୀଷଣର ଯେ ଦେଖ ହେ ସମ୍ପଦ
ତିନି ଲୋକ୍ୟଠାକୁର ଯାହାକୁ ହୋଇଛନ୍ତି ଭାବ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଆହୁରି କଥା ଏ ଏବେ ରହିଲା ଯେ ପୁଣ ।
ନିଜଠା ବିଭୀଷଣର ଅଟଇ ଦୁହିତା
ଜାନକୀ ପାଶରେ ଥାଇ ମନରେ କଷ୍ଟ ଚିନ୍ତା
ସୀତା ଅଭିଷେକ ଶୁଣି ଯାନକୀଙ୍କ କହି
ମନ୍ଦୋଦରୀ ପୁରରେ ପ୍ରବେଶ ହେଲା ଯାଇ
ଅଇଲାଟିକ ପୁଣ ଅଶୋକବନେ ସେହୁ
ଏକଥା ଗୋଟି ପ୍ରଭୁ କହିବସ ତହୁଁ ।
ଈଶ୍ୱର ବୋଇଲେ ସେ ପିତାର ପାଶେ ଗଲା
ମନ୍ଦୋଦରୀ ରାଣୀକି ଓଳଗ ସେହୁ ହେଲା ।
ପିତାର ଅଭିଷେକ ଦେଖିଲା ତହିଁ ରହି
ଜନମାମାନେ ତାହାର ଅଇଲେକ ତହିଁ ।
ଆଠଭାଇ ପୁବରାଜ ଥାଟରାଜ ହେଲେ
ଗୁରିରାଜା ହେବାର ଦେଖିଲା ସେହୁ ଭଲେ
ଦେଖି ପ୍ରହରକରେ ଅଇଲା ସେ ବାଳୀ
ଅଶୋକବନରେ ଯାଇ ଭୂଇଁରେ ମିଳି ।

ଜାନକୀ ପାଦତଳେ ଯାଇ ଉଳଗି ହୋଇଲ
ଚରଣ ଧରି ନେତ୍ରଜଳ ଶୋଇଲ ସେହୁରଇ
କରଯୋଡ଼ି ଆଗରେ ଉଭା ହେଲ ପୁଣ
ଜାନକୀ ବୋଇଲେ କିସ ଦେଖିଲୁ ଧାଇଣ ।
ତ୍ରିଜଟା ବୋଇଲେ ମୁଁ ଯେ କୁମ୍ଭପାଶୁ ଗଲି
ପିତାଙ୍କ ଅଭିଷେକ ଯାଇଣ ଦେଖିଲି ।
ମନ୍ଦୋଦରୀ ପିତା ତଳେ ଅଭିଷେକ ହେଲା
ଦୁଇଭାଇ ଯୁବରାଜ ହେଲେ ମୋର ପରା ।
କୁମ୍ଭକର୍ଣ୍ଣ ନନ୍ଦନ ସୁକର୍ଣ୍ଣ ଆଉ ଥିଲା
ଶତେମୁଖା ଭାଗ୍ୟେ ଶତ୍ରୁଘନ ରାଜ ହେଲା ।
ତାର ସଙ୍ଗେ ଦୁଇଭାଇ ହେଲେ ଯୁବରାଜା
ସେ ଗଡ଼ରୁ ବେଗେ ଆସି ସୁମିତ୍ରା ତନୁଜା ।
ଲକ୍ଷ୍ମଣ ମହୀରାବଣ ନାଶ କଲେ ପୁଣ
ଆଉ ବାନ୍ଧୁ କୁମର ଯେ ପଶିଲା ଶରଣ ।
ସୁଲଙ୍କାଗଡ଼େ ଲକ୍ଷ୍ମଣ ତାକୁ ରାଜା କଲେ
ମହୀରାବଣ ପାଟକୁ ତାର କୋଳେ ଦେଲେ
ଅଭିଷେକ କରି ଦୁଇ ଭାଇଙ୍କି ରଖିଲେ
ଥାଟ ରଜା ଯୁବରାଜା କରିଣ ଆସିଲେ ।
ରାବଣର ଗୋଟିଏ କୁମର ଥିଲା ପୁଣ
ଦାଶରଥି ଚରଣରେ ମନ୍ଦୋଦରୀ ଯେ ଶରଣ
ତ୍ରୈଲୋକ୍ୟ ଠାକୁର ତାକୁ ସୁବସ୍ଥା ଯେ କଲେ
ଜ୍ୟୋତି ଲଙ୍କାରେ ରାଜା ହୁଅ ତୁ ବୋଇଲେ
ଭରତକୁ ବୋଇଲେ ତୁ ଏହାକୁ କର ରାଜା
ତେଣୁକରି କୈକେୟୀ ଯେ ପୁତ୍ରକଲେ ରାଜା
ମୋର ଦୁଇଭାଇଙ୍କି ଯେ ଯୁବରାଜ କରି
ସେ ଗଡ଼ରୁ ଫେରି ବେଗେ ଭରତ ଦଣ୍ଡଧାରୀ ।
ଶ୍ରୀରାମଙ୍କ ପାଶେ ଆସି ପ୍ରବେଶ ହୋଇଲେ
ସେଠାରୁ କୁମ୍ଭଭସ୍ୱାମୀ ମୋପିତାକୁ ଆଜ୍ଞା ଦେଲେ
ନଗରକୁ ବୁଲି ବୋଳଣ ଘୋଷଣ ବୋଇଲେ
ଗୁରୁ ରଥେ ଗୁରୁ ଛାଇ ଯାଇଣ ବସିଲେ ।
ପାଟହସ୍ତୀ ଉପରେ ମୋପିତାକୁ ବସାଇଲେ
ଗୁରୁ ମୁନି ଗୁରୁ ହସ୍ତୀ ଉପରେ ବସିଲେ ।
ଦୁଇଭାଇ ଦୁଇ ହସ୍ତୀ ଉପରେ ବସେ ଯାଇ
ପାତ୍ରମନ୍ତ୍ରୀ ସାମନ୍ତ ଯେ ସଙ୍ଗରେ ଘୋଡ଼ାଇ ।
ଏହିକ୍ଷଣି ଏଣ୍ଡୁ ବାଟେ ଆସିବେ ତୋର ସ୍ୱାମୀ
ଏତେବୋଲି ତ୍ରିଜଟା ଯେ କହିଲେକ ପୁଣି ।

ଶୁଣିକରି ଜାନକୀ ବହୁତ ତୋଷ ହେଲେ
ତେତେକେ ରୂପକୁ ଛପାଇ ନୂତନ ରୂପ ଧରେ ।
ଏଥି ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ବିଭୀଷଣ ଆଗରେ ଯେ ଗଲେ ମୁନି ଗୁରୁ ।
ତହିଁପରେ ଦୁଇପୁତ୍ର ପାତ୍ରମନ୍ତ୍ରୀ ଗଲେ
ତହିଁପଛେ ବିଭୀଷଣ ମନ୍ଦୋଦରୀ ଚଳେ ।
ତହିଁପଛେ ବୃଦ୍ଧଭାଇ କରନ୍ତି ଗମନ
ଆଗେ ଶ୍ରୀରାମ ଚଳେ ପଛେରେ ଶତ୍ରୁଘନ ।
ମଧ୍ୟେ ଭରତ ଲକ୍ଷ୍ମଣ ଚଳିଗଲେ ଧୀର
ତହିଁ ପଛେ ଯୂଥପତି ସେନାପତି ବଳ ।
ବିଭୀଷଣ ହଙ୍ଗତରେ ସୁଗ୍ରୀବର ଦଳ
ସମସ୍ତଙ୍କ ପଛରେ ଅଙ୍ଗଦ ବଜେ କଳ ।
ରାମତାଳ ତୁଳତୁଳ ପଡ଼େ ନିରନ୍ତର
ଦୁଇଛତ୍ର ଟେକାଇଲେ ସମସ୍ତଙ୍କ ଶିର ।
ନୃତ୍ୟକାରୀମାନେ ଆଗେ କରନ୍ତି ଗାୟଣୀ
ସ୍ୱର ଟଙ୍କ ଭାହାଳୀ ଯେ ତେଲେଙ୍ଗି ବାଜାପୁଣି
ଚଉଷଠି ବାଦ୍ୟ ଜଡ଼ ବଜନ୍ତ ବୁଲିଲେ
ତମ୍ପାବନ ମଧୁବନ ଭିତରେ ପଶିଲେ ।
ବଉଳ ବନେ ଫୁଲ ଦେଖିଲେ ପୁଣ ଯାଇ
ଅଶୋକ ବନ ଭିତରେ ଆସନ୍ତି ଚଳାଇ ।
ନନ୍ଦଘୋଷେ ଥାଇ ରାସମଣ୍ଡପକୁ ଚାହିଁ
ନିଳେଖ ପ୍ରାଣୀ ପ୍ରାୟୁ ଜାନକୀ ବସିଥାଇ ।
ମନରେ ବିଚାରିଲେ ଏ କେଉଁ ଦୋଷ କଲେ
କଇବ ପୁରୁଷ ଆଣି ଏତେ ଦୁଃଖ ଦେଲେ ।
ଶୋକଭରି ହୋଇ ରାମ ସେଠାରୁ ଚଳିଗଲେ
ରାଜାର ସିଂହଦ୍ୱାରେ ପ୍ରବେଶ ହୋଇଲେ ।
ବିଭୀଷଣ ମନ୍ଦୋଦରୀ ଭିତର ପୁର ଗଲେ
ଦୁଇପୁତ୍ର ତାହାଙ୍କର ସଙ୍ଗରେ ଚଳିଲେ ।
ପାପମନ୍ତ୍ରୀ ସେହିଠାରେ ରହିଲେ ତାଙ୍କର
ସୁବଳସ୍ଥା ବଜେ କଲେ ଶ୍ରୀରାମ ଠାକୁର ।
ଗୁରୁ ମୁନି ଯୂଥପତି ସେନାପତି ସେନ
ସଙ୍ଗରେ ସୁଗ୍ରୀବରଙ୍କୁ ଘେନି ଚଳେ ପୁଣି ।
ତେତେବେଳେ ହୋଇଥିଲା ବେଳ ପାଞ୍ଚଘଡ଼ି
ସୁବଳସ୍ଥାରେ ବିଜେ କୋଦଣ୍ଡ ଚାପଧାରୀ ।
ରଥରୁ ଓହ୍ଲାଇ ନଦୀ କୂଳରେ ପ୍ରବେଶ
ସ୍ନାନସାରି ନିତ୍ୟକର୍ମ ସାରିଲେ ରଘୁବଂଶ ।

ସମସ୍ତେ ନଦୀ କୂଳରେ ନିତ୍ୟକର୍ମ ସାରି
ନଦରେ ପ୍ରବେଶ ଯାଇଁ ହେଲେ ଋପଧାରୀ ।
ଷଡ଼ରସେ ବ୍ୟଞ୍ଜନ ଉତ୍ତମ ତିଳ ଅନ୍ନ
ଜନନୀ ପରୁଷିଲେ ସେ ସମସ୍ତଙ୍କୁ ପୁଣ ।
ଭୋଜନ ସାରି ସଙ୍ଗେ ଆଚମନ କଲେ
ପଲଙ୍କ ପରେ ସୁଗ୍ରୀବଙ୍କୁ ଶୋଇଲେ
ବଡ଼ଆ କର୍ପୂରମାନ ଭକ୍ଷିଲେ ଭୋଜନ
ପଲଙ୍କରେ ନିଦ୍ରା ଗଲେ ଯେତେ ମାତ୍ରଜନ ।
ଯୂଥପତି ସେନାପତି ସମସ୍ତେ ନିଦ୍ରାଗଲେ
ହନୁମନ୍ତ ଅଙ୍ଗଦ ଯେ ପାହାଣ୍ଡ ଜଗେ ଭଲେ
ଫଳମୂଳ ଖାଇ ମୁକ୍ତ ହୋଇଲେ ସନ୍ତୋଷ
ଲକ୍ଷେ ରଜା ଭୋଜନ କରିଣ ଯେ ନିଦ୍ରାଗତ
ନିଶବଦ ହୋଇଲା ସେ ସୁବେଳଗିରି
ବଳରାମ ଦାସ କହେ ଶ୍ରୀରାମ ଋପଧାରୀ ।
ଏହି ଯେତେ ପଦ ପୁଣ କଲେକ ରଚନା
କଣ୍ଠରେ ବସି ଯାହା କହିଲେ ନିରଞ୍ଜନା ।

ଶୁଣିଲଟି କ ଶାକମ୍ଭରୀ ଶ୍ରୀରାମର ବାଣୀ
ଏମନ୍ତେ ରାବଣକୁ ମାରିଲେ ରଘୁମଣି ।
ବିଭୀଷଣ ଅଭିଷେକ ସରିବାରୁ ପୁଣ
ଉନ୍ମତ୍ତ ମାରିଲେ ଯେ ଶତକୋଟି ରାବଣ ।
ଲକ୍ଷେ ରଜା ଘେନି ଶ୍ରୀରାମ ଲଙ୍କାରେପ୍ରବେଶ
ଗୃହିଭାଇ ମିଳି ଋଷି ରଜା କହେ ସେତ ।
ଲଙ୍କାର ମଧ୍ୟଖଣ୍ଡ ହୋଇଲାକ ଶେଷ
ଶ୍ରୀରାମ ଚରଣେ ଶରଣ ମୁଁ ବଳରାମ ଦାସ ।
ଏପାର ସମୁଦ୍ର ପୁଣ ଦକ୍ଷିଣ ପଦରେ
ମଧ୍ୟ ଲଙ୍କା ଖଣ୍ଡି ଯେ ସରିଲା ଭବରେ ।
ପ୍ରାନ୍ତ ଖଣ୍ଡରେ ଶ୍ରୀରାମ ଜାନକୀଙ୍କୁ ଧରି
ଅଭିଷେକ ହେବେ ଅଯୋଧ୍ୟାରେ ରାବଣାରି ।
ମୁଁ ଅଧମ ବଳରାମ ଦାସ କରଇ ଲେଖନ
ଉଦ୍ଧାର କରିବେ ମୋତେ ଶ୍ରୀରାମଚନ୍ଦ୍ର ପୁଣ ।

ଦକ୍ଷିଣୀ ରାମାୟଣ ମଧ୍ୟଲଙ୍କା ସକାଳଟେ ସଂପୂର୍ଣ୍ଣ ।

●




ପ୍ରକାଶକ ଓ ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ-୨
ଫୋନ୍ ନଂ ୬୦୮୨୯୭/୬୦୭୯୨୨

# ଦକ୍ଷିଣୀ ବା ଜଗମୋହନ ରାମାୟଣ

## ଚତୁର୍ଥ ଖଣ୍ଡର ପ୍ରାନ୍ତଖଣ୍ଡ ଆରମ୍ଭ



ବନ୍ଦଇ ଜଗନ୍ନାଥ ହେ ସଂସାର କରତା
ଯାର ନାମ ଧଇଲେ ନ ଲଗେ ଯମ ଚିନ୍ତା ।
ତିନପୁର ଚଉଦ ଭୁବନ ମଧ୍ୟେ ସାର
ନବଖଣ୍ଡ ମେଦିନୀ ଯେ ସପତ ସାଗର ।
ଯେହୁଁ ବେଦ ମନରୁ ଯେ ହେଲେ ଜଳ ଜାତ
ସମସ୍ତଙ୍କୁ ଜାତ କଲେ ଯା ନାମ ଜଗନ୍ନାଥ ।
ଜଗତର ପିତାମାତା ଅଟନ୍ତି ସେ ଭଲେ
ସମୁଦ୍ର ମଧ୍ୟରେ ଯେ ରମ୍ୟକ ଦ୍ୱୀପେ ।
ସୁବାସ ନାମେ ମନ୍ଦର ଜ୍ୟୋତି ନାମେ ପୁର
ତହିଁରେ ଶୟନ କଲେ ଅନନ୍ତ ଉପର ।
ଭ୍ରମରେ ଯୋଗମାୟା ସଙ୍ଗରେ କଲେ ଲୀଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେଥିରୁ ଜାତ ପରା
ତିନପୁରେ ତିନଜଣ ହୋଇଲେ କରତା
ଛପନ କୋଟି ଜୀବଙ୍କୁ ସେ ବିଷ୍ଣୁ ପାଳନ୍ତା ।
ତେତିଶକୋଟି ଦେବଙ୍କୁ ପାଳଲେ ବେଦବର
ଦେବରାଜା କରିଲେ ଯେ ଇନ୍ଦ୍ର ନାମେ ଯାର
ପାତାଳରେ ସଦାଶିବ ହେଲେ ଯେ କରତ
ଅଠରକୋଟି ନାଗବଳ ପାଳଲେ ଜଗଜ୍ଜିତା
କ୍ଷୀରସାଗର ଭିତରେ ରହିଲେ ଅଣାକାର
ବଳରାମ ବାସ ଘଟେ ତାଙ୍କ ଚରଣର ।
ଦେବତାଙ୍କର କନଷ୍ଠ ଭାଇ ଯେ ଅସୁର
ଭୂମାରି ହିଂସାରେ ଲାଗେ ଦେବଙ୍କ ସଙ୍ଗର ।

ସଦାଶିବ ଦେବବର ତାଙ୍କୁ ହୋନ୍ତି ସାହା
ତପ କଲେ ବର ତାଙ୍କୁ ଦଅନ୍ତି ଅଷ୍ଟବାହା ।
ଯେତେବେଳେ ବଳବାନ ହୁଅନ୍ତି ଅସୁର
ଯୁଦ୍ଧରେ ଦେବତାଙ୍କୁ ଜିଣନ୍ତି ଦୈତ୍ୟବଳ ।
ତିନପୁର ଜିଣି ଦେବଙ୍କୁ ଦିଅନ୍ତି କଷ୍ଟ
ତେବେ ସେ ଦେବତା ଏ ଜଣାନ୍ତି ଜଗନ୍ନାଥ
ନିଦ୍ରା ତେଜ୍ୟାକରି ଦେବ ଅନନ୍ତ ସଙ୍ଗେ ଘେନ
ସାରଙ୍ଗ ଧନୁ ଧରି ଅସୁର ମାରି ପୁଣି ।
ଭାର ନିବାରି ଶୟନ ଯାଇଣ କରନ୍ତି
ହୃଦୟରେ ଦେବତାଙ୍କୁ ଦୟା କରିଥାନ୍ତି ।
ସତ୍ୟ ଯୁଗରେ ଦେବ ପଞ୍ଚମ ଅବତାର
ଅସୁର ବଳ ମାରିଲେ ଦେବ ଚକ୍ରଧର ।
ସତ୍ୟଯୁଗ ଅନ୍ତରେ ତ୍ରେତୟା ଯୁଗ ହେଲ
ଦୁଷ୍ଟ କେତେ ବଇତ ଯେ କଳନା ନ ଗଲ ।
ଋଷିକୁଳେ ଜାତ ଯେ ହୋଇଲେ ଦେବହରି
ପରଶୁରାମ ନାମ ଯେ ବହିଲେ ତେଣୁକରି ।
ସେହି ଅବତାରେ ପ୍ରଭୁ ଦୁଷ୍ଟଙ୍କୁ ମାଇଲେ
ତିନପୁର ଦୁଷ୍ଟଲୋକ ଖୋଜି ନାଶ କଲେ ।
ସେ ଅବତାରେ ଅସୁର ନୋହିଲେ ବହ୍ୟ
ତେବେ କହିବାରୁ ନିଦ୍ରା ତେଜ ଦେବରାଜ ।
ଅନନ୍ତଙ୍କୁ ସଙ୍ଗେ ଘେନ ଚଳଗଲେ ହରି
ଶଙ୍ଖ ଚକ୍ର ହଳ ଯେ ଆୟୁଧ କରେ ଧରି ।

ଜମ୍ବୁଦ୍ୱୀପ ମଣ୍ଡଳରେ ଭରତ ଖଣ୍ଡରେ
ଅଯୋଧ୍ୟା ନାମେ ପୁରୀ ଯେ ଦଶରଥ ଘରେ
ଚତୁର୍ଦ୍ଧା ମୂରତି ଧରି ଦେବ ହେଲେ ଜାତ
ଖର ରାବଣ ମାରଣ ଲଖିବେ ଜଗତ ।
ସମୁଦ୍ର ଭିତରେ ଯାଇ ଲଙ୍କା ନାମେ ଗଡ଼
ଦଶଗ୍ରୀବ ଅସୁର ଅଟଇ ତହିଁ ଗାଡ଼ ।
ଦେବଙ୍କ ଛଳରେ ବାସୁଦେବ ହେଲେ ଜାତ
ତାହାକୁ ମାରିବା ପାଇଁ ଗଲେ ରଘୁନାଥ ।
ଅଞ୍ଜନା ନନ୍ଦନକୁ ଯେ କଲେ ତହିଁ ଦୂତ
ଭାଇ ତାର ବିଭୀଷଣ ସେ ଗଡ଼େ ବାନ୍ଧ ପାଟ
ନାଶ କଲେ ଅନନ୍ତ ଏକମୁଖା ରାବଣ
ସୁଲଙ୍କା ଗଡ଼ରେ କଲେ ସୁବାହୁ ରାଜନ ।
ଶତେମୁଖା ମଲା ଶତ୍ରୁଘନ ହସ୍ତରେ
କୁମ୍ଭକର୍ଣ୍ଣ ସୁତ ରାଜା ହେଲା ଯେ ତହିଁରେ ।
ଚନ୍ଦ ଆୟୁଧ ଭରତ ରୂପରେ ଜାତ ହେଲେ
ନାଦକୁମରକୁ ଜ୍ୟେଷ୍ଠ ଲଙ୍କାରେ ରାଜା କଲେ
ଚାରିଭାଇଙ୍କି ଚାରି ଲଙ୍କାରେ ରାଜା କରି
ଚାରିଭାଇ ବସୁରନ୍ତ ରାଜ୍ୟକୁ ସିବା ଫେରି ।
କେଉଁ ପ୍ରାୟେ ଫେରିଣ ଆସିବେ ରଘୁନାଥ
ସେକଥାକୁ ମୋର ମନ ଇଚ୍ଛେ ଅଦ୍ଭୁତ ।
ବାଲମୀକ ମୁନି ଆଗେ ପୁରାଣ କଲେ ଯାହା
ସେକଥା ମୋତେ ଦୃଶ୍ୟ କରନ୍ତୁ ଦେଉବାହା
କଣ୍ଠରେ ସରସ୍ୱତୀ ହୃଦରେ ନାରାୟଣ
ଲଭିଲେ ଭଗବତୀ ମସ୍ତକେ ଶିବ ଜାଣ ।
ତେଣୁକରି ରାମାୟଣ ଗ୍ରନ୍ଥ ମୁଁ କରଇ
ବଳରାମ ଦାସ କଣ୍ଠେ ବାକ୍ୟ ଦେବୀ କହି ।
ପାର୍ବତୀ ଆଗରେ ଯାହା ଈଶ୍ୱର ବଖାଣିଲେ
ସେକଥାକୁ ମୋରମନେ ପ୍ରକାଶ ଦେବକଲେ
ଏଥୁ ଅନନ୍ତରେ ଶୁଣ ହେ ସୁଜ୍ଞଜନ
ଈଶ୍ୱରଙ୍କୁ ପୁଚ୍ଛି ପାର୍ବତୀ କହେ ପୁଣ ।
ଉମା କହେ ମୋର ବାଣୀ ଶୁଣ ତ୍ରିଲୋଚନ
ଚାରିଆଡ଼େ ଚାରିରାଜା କଲେ ରାମ ପୁଣ ।
ପାଞ୍ଚଘଡ଼ି ବେଳରେ ସୁବଳପୁରେ ପ୍ରବେଶ
ସ୍ନାନ ଭୋଜନ ସାରି ନିଦ୍ରା ରଘୁବଂଶ ।
ସେଠାରୁ କିସ କଲେ କହ ଶୂଳଧାରୀ
ରାମାୟଣ ଶୁଣିବାକୁ ମୁଁ ମନରେ ଇଚ୍ଛାକରି ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ରାତ୍ର ହେବାରୁ ଶ୍ରୀରାମ ସନ୍ଧ୍ୟା ସୁମରନ୍ତି ।
ଫଳମୂଳ ଭୋଜନ ଯେ ତହିଁରେ ସାରିଲେ
ପଲଙ୍କ ଉପରେ ଯାଇ ସୁଖେ ନିଦ୍ରା ଗଲେ ।
ଏମନ୍ତେ ରଜନୀ ଯେ ଶେଷ ହେଲା ପୁଣ
ନିଦ୍ରା ତେଜି ରଜନୀ ଉଠିଲେ ବେଗେ ପୁଣ ।
ରାମଙ୍କ ପାଶରେ ଯାଇ ହେଲେ ପରବେଶ
ଉଠ ହେ ରଘୁନାଥ ଶର୍ବରୀ ହେଲା ଶେଷ ।
ଉଠ ବାବୁ ଅଳସ ଯେ ନକର ତୁମ୍ଭେ ପୁଣ
ସୈନ୍ୟବଳ ନିଦ୍ରା ତେଜି ଉଠିଲେ ବହନ ।
ଦେବଆଳେ ଶଙ୍ଖ ଶବଦ ହୁଳହୁଳି ଦେଲେ
ପୂର୍ବ ଦିଗରେ ଭାନୁ ଯେ ଉଦୟ ହୋଇଲେ
ଶୁଣିକରି ରଘୁନାଥ ଶଯ୍ୟାରୁ ଉଠିଲେ
ସୁବାସ ଜଳରେ ସେ ମୁଖ ପଖାଳିଲେ ।
ତିନିଭାଇଯାକ ଯେ ଉଠିଲେ ବହନ
ଶ୍ରୀରାମଙ୍କୁ ଦେଖିଣ ସନ୍ତୋଷ କଲେ ମନ ।
ଜନନୀ ଚରଣରେ ଉଳଗ ପୁଣ ହେଲେ
ଶ୍ରୀରାମ ଚରଣରେ ନମସ୍କାର କଲେ ।
ଏହି ସମୟରେ ଯେ ସୁଗ୍ରୀବର ମିଳ
ପ୍ରେମଘାତ ରାଜା ପ୍ରବେଶ ଯାଇକରି ।
ସୁଷେଣା ଆଦରି ପଚାଶ ଯୂଥପତି
ଅଙ୍ଗଦ ହନୁମନ୍ତ ଜାମ୍ବୁବ ମିଳନ୍ତି ।
ହନୁମନ୍ତକୁ ପୁଚ୍ଛି ବୋଲନ୍ତି ଚାପଧାରୀ
ଅଶୋକବନକୁ ତୁ ଚଳ ଶୀଘ୍ର କରି ।
ଜନକର ଦୁହିତାକୁ କହିବୁ ତୁ ପୁଣ
କାଲିତ ରଘୁନାଥ ନେବେ ତୋତେ ପୁଣ ।
ଶୁଣିକରି ହନୁମନ୍ତ ବେଗେ ଚଳିଗଲା
ଅଶୋକ ବନରେ ଯାଇ ପ୍ରବେଶ ହୋଇଲା ।
ସେଠାରୁ ରଘୁନାଥ ଲକ୍ଷ୍ମଣଙ୍କୁ ପୁଣ
ରାଜାଙ୍କୁ ତରସ୍ତ ତୁମ୍ଭେ କହିବ ଆଜ ଜାଣ
ସେନାପତି ଯୂଥପତି ଋକ୍ଷ କପିବଳ
ଏମାନେ ଆହାର କରନ୍ତୁ ଫଳ ମୂଳ ।
ରଥ ମହାରଥ ପଦାତି ବଳ ପୁଣି
ଶତ୍ରୁଘନକୁ ବୋଇଲେ ସାଥ ଛତ୍ରପତି ।
ଏମାନଙ୍କୁ ତରସ୍ତ କର ହେ ବହନ
ହଟାରି ବଜାରି ବଜାର ବସାଅ ତକ୍ଷଣ ।

ଶୁଣିଣ ଶତ୍ରୁଘନ ବଚନ ହୋଇଗଲେ
ହାଟର ବଜାର ତାଙ୍କ ହାଟ ବସାଇଲେ ।
ନଗରେ ସ୍ନାହାନ ଯେ କଲେ ସଙ୍ଗେ ଯାଇ
ନିତ୍ୟକର୍ମ ସାରଣ ସନ୍ଧ୍ୟା କଲେ ବସି ।
ସେନାପତି ସରଦାର ସମସ୍ତେ କଲେ ସନ୍ଧ୍ୟା
ହାଟ ବାଟ କରିଣ ସମସ୍ତେ ହେଲେ ଅଣ୍ଡା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ସେହି ଲଙ୍କାରେ ବିଭୀଷଣ ଦଣ୍ଡଧାରୀ ।
ମନ୍ଦୋଦରୀ ଘେନିଣ ନାନା ରସରେ ଲୀଳା
ଶ୍ରୀଅଙ୍ଗରେ ବେନି ଜନ ହୋଇଲେ ସେ ଭୋଳା ।
ରଜନୀ ଶେଷେ ପଲଙ୍କରୁ ସେ ଉଠିଲେ
ସୁବାସ ଜଳରେ ସେ ମୁଖ ପଖାଳିଲେ ।
ମନ୍ଦୋଦରୀ ବୋଲେ ଶୁଣ ହେ ପ୍ରାଣନାଥ
ସୁବଳ ଗିରିରେ ଯାଇ ରହିଲେ ରଘୁନାଥ ।
ଲକ୍ଷେ ରଜା ଅଛନ୍ତି ସେ ସେ ଗିରିରେ ପୁଣ
ଅନେକ ସଇନ୍ୟ ଯେ ହାତୀ ଘୋଡ଼ା ଜାଣ ।
ଋକ୍ଷ ବାନର ଯେ ଭଲ୍ଲୁକ ବଳ କେତେ
କଳଣା ନ ଯାଇ ସେ ଆସିଛନ୍ତି ଯେତେ ।
ଏମାନଙ୍କ ଆବୋଳି ଯେ ରହିଲେ ରଘୁନାଥ
ମନରେ ବିଚାରିଲେ ନିଶ୍ଚିନ୍ତ ହେଲେ ଲଙ୍କାନାଥ
ତାଙ୍କା ଦେଖିବାକୁ ସେ ମୋତେ ପାସୋରିଲେ
ଲଙ୍କାରେ ଯାଇଣ ସେ ନିଶ୍ଚିନ୍ତ ରହିଲେ ।
ଏବେ ତାହାର ଜଗତରେ ଯାଇ ବିଜେ କର
ମନ୍ତ୍ରୀକି ଡକାଇଣ ଆଣାଅ ସତ୍ୱର ।
ହାଟର ବଜାର ସୁଳଭଅ କାଉଳକ୍ଷ
ତରସ୍ତ କରନ୍ତୁ ଯାଇ ସଖାମାନ ମେଳ ।
ପଠାଅ ରଥୀରାଜା ସେନାପତି ପୁଣ
ମନ ଇଚ୍ଛାରେ ଭୋଜନ ଦିଅନ୍ତୁ ତାଙ୍କୁ ଜାଣ
ଫଳ ମୂଳ ବଜାର ଦିଅନ୍ତୁ ନେଇ କରି
ଋକ୍ଷ କପି ଖାନ୍ତୁ ଯେ ଭୁଞ୍ଜନ୍ତୁ ମନଭରି ।
ଘୋଡ଼ା ହାତୀ ସାରେଣି ଏହାଙ୍କ ପାଇଁ ଦାନା
ଏମାନଙ୍କୁ ଦେଇଣ ଦିଅ ଯେ ଫୁଲଣା ।
ତୁମ୍ଭେ ନିତ୍ୟକର୍ମ ସାରିଣ ବେଗେ ଯାଅ
ରଘୁନାଥ ସମ୍ମୁଖରେ ତୁମ୍ଭେ ଭେଟ ଦିଅ ।
ଏତେ କହି ମନ୍ଦୋଦରୀ ଅନ୍ତରପୁରେ ଗଲା
ତାହାର ଜଗତରେ ବିଭୀଷଣ ବିଜେ କଲା ।
ମନ୍ତ୍ରୀକି ଡକାଇଣ ଆଣାଏ ବଚନ
ବୋଇଲେ ତୁମ୍ଭେ ଦୁହେଁ କରହେ ଗମନ ।
କାଉଳକ୍ଷ ହାଟର ବଜାର ଘେନିଯାଅ
ଲକ୍ଷେ ତାଙ୍କାଙ୍କୁ ତୁମ୍ଭେ ତରସ୍ତ କରାଅ ।
କହି ମହାରଥି ସରଦାର ସେନାପତି
କହ ଶବର ସେ ନାନା ବର୍ଣ୍ଣ ଜାତି ।
ଏହା ଶୁଣି ବେନି ମନ୍ତ୍ରୀ ବେଗେ ଚଳିଗଲେ
କାଉଳକ୍ଷ ହାଟ ବଜାର ସୁଳଭେଲେ ।
ସୁବଳ ଗିରିରେ ଯାଇ ହେଲେ ପରବେଶ
ଦୁଇମନ୍ତ୍ରୀ ଥାଇଣ ତରତେ ବିଶେଷ ।
ବିଭୀଷଣ ଗୃହ ସୁଦ୍ଧଙ୍କୁ ଡକାଇଲ
ମଧୁକର ପାଅରେ ବୋଲିଣ ବୋଇଲ ।
ଦୁଇକୋଟି ଟୋଟାଳଆ ସହସେ ଯେ ପୁଣ
ଫଳମୂଳ ବାନରେ କରିବେ ଭୋଜନ ।
ବ୍ୟଗ୍ରରେ ସୁରସୁର ତକ୍ଷଣେ ଚଳିଗଲେ
ଦୁଇକୋଟି ଟୋଟାଳଆ ଭରଷେ ପଳଭେଲେ
ସୁବଳ ଗିରିରେ ନେଇ ପହଞ୍ଚାଇଲେ ପୁଣ
ଋକ୍ଷ ବଳକୁ ବୋଇଲେ କରିହେ ଭୋଜନ ।
ଶୁଣିଣ ବାନର ବଳ ଫଳମୂଳ ନେଲେ
ମନଇଚ୍ଛା ଭୋଜନରେ ସନ୍ତୋଷ ହୋଇଲେ ।
ନିଗିଲ ତଳିରେ ପହଳ ସେ ଦଉ
ବିଶେଷ ସଖାମାନ ମନ୍ତ୍ରୀ ଭେଳେ ଗାଡ଼ ।
ଏଥୁ ଅନନ୍ତରେ ବିଭୀଷଣ ରାୟ ପୁଣ
ମାଜଣା ହୋଇଲେ ସେ ତତକ୍ଷଣ ଜାଣ ।
ସ୍ନାହାନ ସାରିଣ ସେ ନିତ୍ୟକର୍ମ ସାରି
ଦେବଆଳେ ଦର୍ଶନ କଲା ଯାଇ କରି ।
ଅନ୍ତଃପୁର ମଧ୍ୟରେ ହେଲେ ପରବେଶ
ଦାସୀ ପରିଚାରୀ ଯେ ମିଳିଲେ ତାଙ୍କ ପାଶ
ପଦଣ୍ଡ ମଣାଇଣ ଉତରକୁ ନେଲେ
ରାଣୀହଂସମାନେ ଦର୍ଶନ ଆସି କଲେ ।
ଅମଳାଣ ବସ୍ତ୍ର ଯେ ପିନ୍ଧିଣ ବିଭୀଷଣ
ଷଡ଼ରସରେ ଭୋଜନ କଲେକ ଆପଣ ।
ଆଚୋବନ ସାରିଣ ବସିବାର ସୁତ
ରାଜବେଶମାନ ସେ ହୋଇଲେ ଭୂଷିତ ।
ସୁନାଖଡ଼ୁ ପାରଦଳୀ ମୁକୁତା ଲଗାଇଲା
କର ପାଗରେ ହୀରା ଝଳକା ଝଞ୍ଜିଲା ।

ଚନ୍ଦ୍ରହାର ପଦକ ଯେ ସୁପସର ମାଳ
ଅଙ୍ଗୁଷ୍ଠିରେ ହୀର ମୁଦ ଯେ ପ୍ରବଳ ।
ଚାଦୁଟି ପାଟ୍ଟଡ଼ ଯେ ନାନାବର୍ଣ୍ଣେ ବେଶ
ତାମ୍ବୁଳ ଭୁଞ୍ଜିଣ ସେ ମନରେ ହରଷ ।
ମନ୍ଦୋଦରୀ ରାଣୀକୁ ପାଶକୁ ଡାକିଲ
ଜୟ ଭେଟିବା ବୋଲି ସେ ରାଣୀକି ପଚାରିଲ
ମନ୍ଦୋଦରୀ ବୋଇଲେ ଶୁଣ ମୋ ବଚନ
ପ୍ରଥମେ ଆଜ ଭେଟ ହେବା ଯେ ରାମରାଣ ।
ଲକ୍ଷେକ ହୀର ଦୁଇଲକ୍ଷ ଯେ ମାଣିକ୍ୟ
ତିନିଲକ୍ଷ ବୈଡ଼ୂର୍ଯ୍ୟ ଚାରିଲକ୍ଷ ମୋତିରେଖ ।
ନୀଳ କାଞ୍ଚନ ଯେ ଚାରି ଲକ୍ଷ ପୁଣ
ହୀର ମାଳା ମାଣିକ୍ୟ ରଜା ସଜ ଜାଣ ।
କୋଟିଏକ ରଥ କୋଟିଏକ ହସ୍ତୀ
ଦୁଇକୋଟି ଅଶ୍ୱ ଯେ ସାରେଣୀ କରିଅଛି ।
ଲକ୍ଷେ ସାରେଣୀକି ସଜ କରି ପୁଣ
କନକ ଦଣ୍ଡଛତ୍ର ଯୋଗାଇ ସଙ୍ଗେଣ ।
ରାଣୀକ କଥା ରଜା ହୋଇଲେ ବାହାର
ସିଂହଦ୍ୱାରେ ଯାଇଣ ବଜାଯ ସତ୍ୱର ।
ଛତ୍ର ଟେକାଇ ସେ ରଥରେ ବସେ କଲ
କାହାଳୀ ତୁରୀ ତାର ଆଗରେ ବାଜିଲ ।
ସିଂହାସନ ଉପରେ ବସିଲ ଯାଇକରି
ସକଳ ଯୋଧ ଚଳିଲ ଲଙ୍କ ଦଣ୍ଡଧାରୀ ।
ବହୁରଙ୍ଗେ ବାଜଣା ବାଜଇ ଆଗର
ଦେଖିଣ ହୁଳହୁଳି ଦେଲେ ନାରୀବର ।
ବିଭୀଷଣ ଉତ୍ତର ଦୁଆରେ ବାହାର
ଶବଦରେ ମେରୁଗିରି ଚମକେ ମହାଘୋର ।
ଉତ୍ସବ ଆନନ୍ଦେ କରେ ସେ ଗମନ
ଏଥି ଅନନ୍ତରେ କଥା ଶୁଣ ଗୋ ତୁମ୍ଭେ ପୁଣ
ସୁବଳ ଗିରିରେ ଶୁଭେ ଯନ୍ତ୍ର ଘୋଳ
ଲକ୍ଷ୍ମଣ ଶବ୍ଦ ଘନ ଯେ ମିଳିଲେ ସୁମ୍ଭର ।
ଶ୍ରୀରାମ ପଚାରିଲେ କିସ ଏ ଘୋଳ ଠାଣ
ଲକ୍ଷ୍ମଣ ବୋଇଲେ ଦେବ ଶୁଣିବା ସାବଧାନ
ବିଭୀଷଣ ନୃପତି ଯେ ହାଟ ବସାଇଲ
ସୈନ୍ୟବନ୍ତଙ୍କୁ ଆଣି ଯୋଗାଡ଼ ସେ ଦେଲ ।
ଋକ୍ଷ କପିଙ୍କି ସେ ଦେଲ ଫଳମୂଳ
ଆଣି ଖାଇବାକୁ ସେ ଲଗିଛି ଚହଳ ।
ଶବଦ ଗଲୁ ଠାଣ ଅସଂଖ୍ୟ ସୈନ୍ୟଙ୍କର
ଅପୂର୍ବ ପଦାର୍ଥ ସେ କରନ୍ତି ଆହାର ।
ସୁପକ୍ୱ ପଦାର୍ଥ ଅନେକ ଦେଲ ରାସ୍ୱେ
ଭୁଞ୍ଜିଣ ସନ୍ତୋଷ ସର୍ବ ସୈନ୍ୟ ହୁଏ ।
ଶୁଣିକରି ରଘୁନାଥ ସନ୍ତୋଷ ମନ ହେଲେ
ଜନକଜଙ୍କି ଶୁଣିଣ ବଚନ ବୋଇଲେ ।
ବୋଇଲେ ତୁମ୍ଭେ ବେଗେ କରଯେ ସ୍ନାହାନ
ନିତ୍ୟକର୍ମ ସାରି ଉତ୍ତର ହେଲ ଭଜ ।
ଗୁରୁ ଋଷି ପାଶକୁ ଯାଅରେ ବହନ
ଋଷିଏ ନିତ୍ୟକର୍ମ ସାରନ୍ତୁ ତତକ୍ଷଣ ।
ତରସ୍ତ କରିଣ ତୁମ୍ଭେ ଆସିବ ଏତକ୍ଷଣି
ଏତେବୋଲି ଆଜ୍ଞାଦେଲେ ରଘୁକୁଳମଣି ।
ଶୁଣିକରି ଜନକୀର ବେଗେ ଚଳିଗଲେ
ଋଷିମୁନିଙ୍କ ପାଖେ ଯାଇ ପ୍ରବେଶ ହୋଇଲେ
ସୁପକ୍ୱ ଫଳ ମୂଳ ନେଇଥିଲେ ସଙ୍ଗେ
ମୁନିଙ୍କର ଆଗରେ ଦେଲେ ନେଇ ବେଗେ ।
ବୋଇଲେ ନିତ୍ୟକର୍ମ ସାରି ବେଗେ ପୁଣ
ଭୋଜନ କରି ଶ୍ରୀରାମ କରିବେ ଦର୍ଶନ ।
ଏତେକହି ଜନକୀର ନଦୀକୂଳକୁ ଗଲେ
ତର୍ପଣ ସାରିଣ ବେଗେଣ ଆଇଲେ ।
ନିଜ ଭବରେ ଆସି ହେଲେ ପରବେଶ
ନିତ୍ୟକର୍ମ ସାରିଣ ସେ ମନରେ ହରଷ ।
ଏଣୁ ସମୟରେ ଗୁହ ନାମରେ ଶବର
ପ୍ରବେଶ ହେଲ ଯାଇ ଶ୍ରୀରାମ ସମ୍ମୁଖ ।
ଦେଖିଣ ଶ୍ରୀରାମ ହରଷ ମନ ପୁଣ
ବୋଇଲେ ହେ ମଇତ୍ର କର ଯା ସ୍ନାହାନ ।
ଶବର ବୋଇଲେ ଦେବ ହେ ଆଜକଥାଶୁଣ
ଲଙ୍କାଗଡ଼ ରାଜା ଆଗ କଲେକ ଉଆଣ ।
ଅନେକ ସମ୍ଭାର ଦେଇ ସଭିଙ୍କି ବୋଧକଲ
ସୁପକ୍ୱ ପଦାର୍ଥରେ ତୋଷ କରାଇଲ ।
ଏଣୁ ସମୟରେ ଯେ ମିଳେ ବିଭୀଷଣ
ଛତ୍ର ଟେକାଇ ବାଜା ବଜାଏ କରି ଠାଣ ।
ମଣିମା ମଣିମା ଡାକ ପଡ଼ିଲ ଆଗେ ତାର
ନିଯୋଗୀ ଲୋକମାନେ ଅଛନ୍ତି ସଙ୍ଗତର ।
ଶ୍ରୀରାମ ଚରଣରେ କରେ ଦରଶନ
ପାଏ ପଡ଼ି ଶୋଇଲ ତରଣେ ବିଭୀଷଣ ।

ଶ୍ରୀରାମ ବୋଇଲେ ଉଠ ଉଠ ହେ ନୃପତି
ମୋର ସଖା ହୋଇ କେତେ କରୁଛ ବିନତି
କରଯୋଡ଼ି ବିଭୀଷଣ ଆଗରେ ଉଭାହେଲା
ଦେଖା ଦରଶନୀ ଆଗରେ ନେଇ ଦେଲା ।
କୋଟିଏକ ରଥ ଯେ କୋଟିଏ ମତ୍ତହସ୍ତୀ
କୋଟିଏ ସାରେଣୀ ପୁଣ ନିକୋଟି ଅଶ୍ୱଛନ୍ତି
ହୀରା ନୀଳା ମୋତି ମାଣିକ୍ୟ ବଇଡ଼ୁର୍ଯ୍ୟ
କୋଟିଏକ ଛତ୍ର ନେଇ ଦେଲା ଲଙ୍କାରାଜ ।
ରାଜବେଶ ଛତ୍ର ସଜ ଶ୍ରୀରାମଙ୍କି ଦେଲା
ବଜ୍ରଖଣ୍ଡ ପରଶୁ ପଥର ସମର୍ପିଲା ।
କନକ ଦଣ୍ଡ ନେଇ ଆଗରେ କଲା ଠିଆ
ବ୍ରହ୍ମଜାତ ଲକ୍ଷେହୀରା ଝଡ଼ିଲା ହୋଇ ନୂଆ ।
ଅଷ୍ଟରତ୍ନ ଝଡ଼ଣା ସୁବର୍ଣ୍ଣ ବୃଷ୍ଟି ହେଲା
ଦେଖିଣ ରଘୁଧାମୀ ମନରେ ହରଷିଲା ।
ବୋଇଲେ ହେ ବିଭୀଷଣ ଅଟେ ଏ କିସ ପୁଣ
କରଯୋଡ଼ି ଜଣାଇଲା ନିକଷା ନନ୍ଦନ ।
ବରୁଣ ଜିଣି ରାବଣ କନକ ଦଣ୍ଡ ଆଣି
ବୃହସ୍ପତିଙ୍କି ଜିଣି ପରଶୁ ଆଣେ ପୁଣି ।
ଧନପତି କୁବେରଙ୍କୁ ରଣରେ ଜିଣିଲା
ପୁଷ୍ପକ ବିମାନ ତାର ବଳରେ ଆଣିଲା ।
ପୁଣି ଅମ୍ବୁନିଧି ଅଷ୍ଟରତ୍ନ ଅଣାଇଲା
ଲଙ୍କାଗଡ଼ରେ-ଆଣି ତାହାକୁ ଠୁଳ କଲା ।
ଦେବରାଜଙ୍କୁ ଜିଣି ଖାଣ୍ଡବ ବନ ବୃକ୍ଷ
ମଧୁବନେ ଠୁଳନେଇ କଲାକ ପ୍ରତ୍ୟକ୍ଷ ।
ଅପସରାଗଣେ ତାଣ୍ଡବ ନୃତ୍ୟ ପୁଣ
ଜୟ ଜୟ ସିଦ୍ଧି ନରସ୍ପି ନବାଉଣ ।
ଉପର ପ୍ରଭୁ ଦେବ ଯେତେକ ଅଣାଇଲା
ଭଣ୍ଡାର ଭିତରେ ଦେବ ନେଇଣ ଥୋଇଲା
ଦେବଙ୍କର ପଦାର୍ଥ ଅଟେ ସେହୁ ପୁଣ
ତୁମ୍ଭେ ଦେବ ସମ୍ଭାଳ ଏହାକୁ ନେଇଣ ।
ଏ କନକ ଦଣ୍ଡ ଧରିଲେ ଯାହା ଇଚ୍ଛା କରି
ସେହୁମାନେ ମିଳନ୍ତି ଶୁଣ ହେ ରଘୁଧାମୀ ।
ଶୁଣିକରି ଶ୍ରୀରାମ ସନ୍ତୋଷ ମନ ହେଲେ
ସୁମନ୍ତ ମନ୍ତ୍ରୀଙ୍କୁ ଯେ ଡକାଇ ଆଣିଲେ ।
ବୋଇଲେ ଏ ପଦାର୍ଥକୁ ଭଣ୍ଡାରେ ନେଇଥୁଅ
ଶୁଣିକରି ସୁମନ୍ତ ହେଲା ତୋଷ ପ୍ରିୟ ।

ସକଳ ପଦାର୍ଥ ଭଣ୍ଡାରରେ ନେଇ ରଖି
ବିଭୀଷଣଙ୍କୁ ଚାହିଁ ବୋଲନ୍ତି ରଘୁବୀର ।
ତୁମ୍ଭର ନିଜ ବସାରେ ରହ ତୁମ୍ଭେ ଯାଇ
ମିଳି ଯାଇ ବିଭୀଷଣ ବେଗେ ଚଳିଯାଇ ।
ନିଜ ବସା ଯାଇଣ ହୋଇଲେ ପରବେଶ
ପାତ୍ରମନ୍ତ୍ରୀଙ୍କି ବୋଇଲେ ଶୁଣ ମୋ ସନ୍ଦେଶ
ବେଗେ ଶାଢ଼ୀଘର ଅଣାଅ ଯାଇ ପୁଣ
ଏଠାରେ ଶାଢ଼ୀଘର କରିବା ଭିଆଣ ।
ଶୁଣିଣ ମନ୍ତ୍ରୀବେଗେ ଯେ ଲୋକ ପେଶିଦେଲା
ସାତକୋଟି ଶାଢ଼ୀଘର ଅଣାଇ ଟଣାଇଲା ।
ସେଥିରେ ବିଭୀଷଣ କଲେକ ଆଶ୍ରମ
ଖଟ ତୋଳି ପଲଙ୍କ ରଖିଲା ନେଇ ପୁଣ ।
ଏଥି ଅନନ୍ତରେ ଗୋ ଶୁଣ ଶାକମ୍ବରୀ
ଗୁହକାମେ ଶବରଙ୍କୁ ଡକାଇଲେ ରଘୁଧାମୀ ।
ତୁମ୍ଭେ ଯାଇ ନିଜ ଆଶ୍ରମରେ ରହିଥାଅ
ମନରେ ହରଷ ତୁମ୍ଭେ ଆଜିକଠୁ ନୁହଁ ।
ଶୁଣିଣ ଗୁହ ଶବର ବେଗେ ଚଳିଗଲା
କହି ଶବର ଯେନ ଶାଢ଼ୀ ଘରେ ରହିଲା ।
ସେଠାରୁ ଶ୍ରୀରାମ ମାଜଣା ବେଗେ ହେଲେ
ଦେବ ନଦୀ ଭିତରେ ସ୍ନାନ ଯାଇ କଲେ ।
ତର୍ପଣ ସନ୍ଧ୍ୟାସାରି ପିତୃଙ୍କୁ ଦେଲେ ଜଳ
ବସାଘରେ ମିଳିଲେ କୋଦଣ୍ଡ କାଣ୍ଡଧର ।
ନିତ୍ୟକର୍ମ ସାରିଣ ଭୋଜନ ବେଗେ କଲେ
ବଡ଼ଆ ଲାଗି ହୋଇଣ ପଲଙ୍କେ ପହୁଡ଼ିଲେ ।
ତିନିଭାଇ ଭୋଜନ କଲେ ଷଡ଼ ରସ
ବଡ଼ଆ ଭୁଞ୍ଜିଣ ପଲଙ୍କେ ନିଦ୍ରାଗତ ।
ଯାଜ୍ଞ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ହନୁମନ୍ତ ଗଲା ଯହିଁ ଜାନକୀ ପାଶ ପୁଣ ।
କିସ କହିଲା ତାଙ୍କୁ ଯେ ପବନ ନନ୍ଦନ
ତାହା ମୋତେ ସମ୍ପ୍ରତି କହ ହେ ଦିଗମ୍ବର ।
ଈଶ୍ୱର ବୋଲନ୍ତି ହନୁ ଶ୍ରୀରାମଠାରୁ ଗଲା
ଅଶୋକ ବନରେ ଯାଇ ପ୍ରବେଶ ହୋଇଲା ।
ଜାନକୀର ଚରଣରେ କଲାକ ନମସ୍କାର
ଦେଖିଣ ଜନକ ସୁତା ଆନନ୍ଦ ମନର ।
ଯେତେବେଳେ ମାରୁତି ଶ୍ରୀରାମ ପାଶୁ ଗଲା
ଉତ୍ତର ଦୁଆରେ ଗମନ ସେହୁ କଲା ।

ଦେଖିଣ ଅସୁରୀମାନେ କଲେକ ମନତୋଷ
କେ ବୋଲଇ ଯାଉଛି ଏ ଜାନକୀଙ୍କ ପାଶ ।
କେ ବୋଲଇ ସୀତାଙ୍କ ଠାବକୁ ଏହି ଯାଏ
ଏ ହନୁକୁ ଦେଖିଲେ ମୋ ମନେ ଭୟହୋଏ
କେ ବୋଲଇ ହନୁମନ୍ତ ବଡ଼ ପୁଣ୍ୟବନ୍ତ
ଯାଇଣ ଦର୍ଶନ କରିବ ଏ ଜଗତ ମାତ ।
ଧନ୍ୟ ହୋ ହନୁମନ୍ତ ତୁ କେତେ ପୁଣ୍ୟ କଲୁ
ଜନକ ଦୁହିତାଙ୍କୁ ନେତ୍ରରେ ଦେଖିଲୁ ।
ଅସୁର ଜାତି ଅଟଇ ବିଶ୍ରବା ନନ୍ଦନ
ଶ୍ରୀରାମ ବାମା ଆଣି ମରିଏ ବଂଶ ପୁଣ ।
ଦଶଗ୍ରୀବ ମରିବାରୁ ବିଭୀଷଣ ରଜା
ମନ୍ଦୋଦରୀ ରାଣୀ ହେବେ ରକ୍ଷିବ ପରଜା ।
କେ ବୋଲଇ ଏମାନଙ୍କ ନଜାଣେ ବଇଦେହୀ
ଉଦବେଗ ହୋଇଣ ସେ ଯାଉଅଛି କହି ।
ଏସନେକ ବୋଲି ଲୋକେ କରନ୍ତି ବିଚାର
ସେହି ବନେ ବୁଲିଯାଏ ପବନ କୁମର ।
ମଧୁବନ ଭିତରେ ଯେ ଅଶୋକ ବଗିଚ
ମିଳିଲା ଯାଇ ସେଥିରେ ବୀର ହନୁମାନ ।
ଦୂରରୁ ଦେଖିଲା ସୀତା ଜଗତ ପରେ ବସି
ବେଢ଼ି ତାଙ୍କୁ ବସିଛନ୍ତି ସହସ୍ରେ ରାକ୍ଷସୀ ।
ଖଣ୍ଡେଦୂରୁ ଅନାଇଲେ ଶରଦ ଚନ୍ଦ୍ରମୁଖୀ
ଦେଖିଣ ହନୁମନ୍ତ ମନରେ ବଡ଼ ସୁଖୀ ।
ଜାନକୀ ବିଚାରନ୍ତି ଏ ଆସୁଛି ହନୁମନ୍ତ
କେବଣ କୃତ୍ୟ ଆଜ କଲେ ମୋର କାନ୍ତ ।
ତ୍ରିଜଟା ବୋଇଲା କାଲି କହିଲି ଯାହା ମୁହିଁ
ଦଶଗ୍ରୀବ ମଲାରୁ ମୋ ପିତା ରାଜାହୋଇ ।
ହନୁମନ୍ତ ଆସିଛି କହିବ ସେ ବାରତା
ଶୁଣିକରି ସନ୍ତୋଷ ହେଲେ ଦେବୀ ସୀତା ।
ଏହି ସମୟରେ ପବନ ତନୟେ
ଜାନକୀଙ୍କି ଦେଖି ଦୂରୁ ପାଏ ପଡ଼ି ଶୁଏ ।
ଉଠିକରି ଉଚ୍ଚେଁ ସେ ଉଡ଼ା ବୃକ୍ଷ ଗଲା
ନିକଟକୁ ଯାଇ ପଡ଼ିଗଲା ସେ ଶୋଇଲା ।
ପୃଥ୍ବୀଁ ଉଠିଯାଇ ଶିରେ କରଯୋଡ଼
ବୁଲଇ ଧୀରେ ଧୀରେ ଚରଣ ଦୁଇ କାଢ଼ି ।
ନିର୍ଭୟ ହୋଇଣ ହନୁ ଜଣାଏ ଯାଇ ପୁଣି
ଆଜକୁ ତିନଦିନ ହେଲା ମଲା ଲଙ୍କମଣି ।

ରାବଣମରିବାରୁ ବିଭୀଷଣ କୁମ୍ଭବୋଧକରାଇଲେ
ତିନ ରାବଣ କୁମ୍ଭକର୍ଣ୍ଣ ଏହାଙ୍କୁ ଭସ୍ମ କଲେ ।
ବୁଦ୍ଧର ଛଳରେ ଶ୍ରୀରାମ ଏତେ କର୍ମକଲେ
ଅକ୍ଷୟ ରାବଣକୁ ସେ ମାରି ପକାଇଲେ ।
ସେଠାରୁ ଲକ୍ଷେ ରାଜା ବୀର ଭାଇ ଘେନି
ବିଭୀଷଣ ସୁଗ୍ରୀବ ଅଙ୍ଗଦ ଘେନି ପୁଣି ।
ସୁବଳ ଗିରିପରେ ରାତ୍ରରେ ବସିଲେ
ଜନମ ପାକ କଲେ ଶ୍ରୀରାମ ଭୁଞ୍ଜିଲେ ।
ଆଉଦିନ ସକାଳୁ ନିତ୍ୟକର୍ମ ସାରି
ଲଙ୍କାକୁ ବିଜେକଲେ କୋଦଣ୍ଡ ରୂପଧାରୀ ।
ସ୍ତ୍ରୀଭାଇ ସଙ୍ଗରେ ସୁଗ୍ରୀବ ବିଭୀଷଣ
ସେନାପତି ଯୂଥପତି ଯାଇଥିଲେ ପୁଣ ।
ଶୁଣିକରି ଜାନକୀ ବୋଇଲେ ଭଲ ହେଲା
ବିଭୀଷଣ ବାପୁଡ଼ା କେତେ କଷ୍ଟ ପାଉଥିଲା ।
ଆଉରି କଥାଏ ତୁ ଶୁଣ ଆବେଗ ମାତ
ମୋତେ ପେଷିଛନ୍ତି ସେ କୌଶଲ୍ୟା ସୁତ ।
ମୋତେ ସେ ବୋଇଲେ ଯାଅ ବେଗକରି
ଜନକ ଦୁହିତାକୁ କହିବୁ ସ୍ନେହ କରି ।
ବୋଲିବୁ ଚିନ୍ତା ତୁମ୍ଭେ ନ କର ମନରେ
କାଲି ଶ୍ରୀରାମ ତୁମ୍ଭଙ୍କୁ ଭେଟିବେ ଗୋ ସତ୍ତରେ
ବୋଧକରି କହି ତୁ ଆସିବୁ ବହନ
ଏତେକହି ଭେଟିଲେ ମୋତେ ରାମରାଣ ।
ଜାନକୀ ବୋଇଲେ ମୋତେ କହ ସତ୍ୟବାଣୀ
ମୋର ଶାଶୁ କସ କରୁଅଛନ୍ତି ସେ ପୁଣି ।
ମୋହରି ସ୍ବାମୀ ଯେତେ କଷ୍ଟ ସେ ସହିଲେ
ଚଉଦ ବରଷ ଜଞ୍ଜାଳ ନପ୍ରାପ୍ତେ ତାଙ୍କୁ ଭଲେ
ତ୍ରିଜଟା ବୋଇଲେ ଏବେ ହେବ ସୁଖୀ
ବୃଦ୍ଧସ୍ତ୍ରୀର ଚଳେ ରଖିବା ତାଙ୍କୁ ପୋଷି ।
ହନୁମନ୍ତ ବୋଇଲେ ଜନନୀ ଏବେ ଶୁଣ
ସ୍ବଦ୍ୱେଷ୍ଟିକ ଅସୁଖ ଲାଗିଛନ୍ତି ପୁଣ ।
ପ୍ରଥମେ ଆସିଲାବେଳେ କହିଥିଲା ମାତ
ସେକଥା ମନରୁ ପାଶୋରିଲୁ ତୁ ତ ।
ଶୁଣିକରି ଜାନକୀ ହରଷ ହୋଇଲେ
ତ୍ରିଜଟାକୁ ବୃତ୍ତିଁଣ ବଚନ ବୋଇଲେ ।
ମୋର ଶାଶୁଙ୍କର ତ ବୟସ ସରିଲାଣି
ସ୍ବର୍ଗକୁ ଯିବାକୁ ତ ମନରେ ଭଲେଣି ।

ତୁମ୍ଭର ଅନେକ ବେଶ ହେଲେ ନୂଆ ମାଆ
ନୂଆମାଆ ଦେଖିକଣ ଆନନ୍ଦ ହେବ ଝିଆ ।
ଅକ୍ଷୟ ରାବଣକୁ ଶ୍ରୀରାମ ନାଶ କଲେ
ତେବ ଦାନବରେ କ୍ଷୟ ନୁହେଁ ଭଲେ ।
ହନୁମନ୍ତ ବୋଲେ ଗୋ ଏକଥା ଅଟେ ସତ
ବ୍ରହ୍ମଶସ୍ତ୍ରେ ପଡ଼ିଲା ସେ ଦଶବାର ସୁତ ।
ଜାନକୀ ବୋଇଲେ ରାବଣ ଏବେ ମଲା
ମୋହର କଷ୍ଟଯାକ ଆଜହୁଁ କ୍ଷୟ ଗଲା ।
ହନୁମନ୍ତ ବୋଲେ ମାତ ଶୁଣିବା କଥାଏ
ମୁଁ ଯାହା ମାଗିବି ତୁ ଦେବୁ କି ଗୋ ମାଏ ।
ତୁହି ତ ମାଗୁ ମୁଁ ବତାଇ ଦେବି କିସ
ଏକଥା ଶୁଣି ଉଷତ ପ୍ରଭଞ୍ଜନ ସୁତ ।
ତୁ ଯେବେ ପ୍ରସନ୍ନ ମୋତେ ହୋଇଲୁ ଗୋ ମାଏ
ବତାଇ ଦେଲେ ମୋର ଦୁଃଖ ଯାନ୍ତା କ୍ଷୟେ ।
ଯେତେକ ଅସୁରୁଣୀ ତୋତେ ବେଢ଼ିଛନ୍ତି
ତୋହର ଆଜ୍ଞା ହେଲେ ମୁଁ ମାରିବ ସବୁନ୍ତି ।
ଜାଣିନାହୁଁ କି ମାତ ମୁଁ ଆସିବା ଦିନ ରାତି
ଯେବଣ ବଚନମାନ ମୋତେ କହୁଛନ୍ତି ।
ସେକଥା ଶୁଣି ମୁଁ ମାରନ୍ତି ମନକଲି
ସେ ଦିନ ପ୍ରାଣ ନଅନ୍ତି ବୋଲି ମୁଁ ସହିଲି ।
ସବୁ କଥାମାନ ତ ଅକଳ ହୋଇଥିବ
ତେଣୁ ସେ ରାକ୍ଷସୀଙ୍କ ଜୀବନ ରହିଲା ।
ଯେବେ ରାମରାଣୀ ଗୋ ଘେନିଲ ମୋର ସେବା
ଏହାଙ୍କ ପ୍ରାଣ ମୁଁ ଘେନନ୍ତି ଆଜ୍ଞା ଦେବା ।
ଶୁଣିକରି ବଇଦେହୀ ବୋଲେ ବାବୁ ଶୁଣ
ବୋଲକରାଙ୍କର ଦୋଷ କି ଥାଇ ପୁଣ ।
ରାବଣର ସେବାକାରୀଏ ତାର ବୋଲେ ଥାନ୍ତି
ଏହାଙ୍କର ବଳେ ମୋତେ କି କରିପାରନ୍ତି ।
ପୂର୍ବେ ମୋହ କର୍ମରେ ମୁଁ ଅର୍ଜିଥିଲି ଦୋଷ
ଦେଲକାଳ ଜାଣି ମୋତେ ଫଳିଲା ଅବଶ୍ୟ ।
ଶୁଣିକରି ହନୁମନ୍ତ ସୀତାଙ୍କୁ ପ୍ରଶଂସି
ଧନ୍ୟ ଧନ୍ୟ ଜାନକୀ ତୁ ପରମ ତପସ୍ୱୀ ।
ତୋତେ ଯେତେ ମନ୍ଦ ଗୋ ଚେଟୀଏ ଦେଖୁ ଦେଖୁ
ତାହାଙ୍କର ଦୋଷ ତୁ ମନରୁ ଉପେକ୍ଷୁ ।
ଭଲ ମହିମା ତୁମ୍ଭର ଜନକକୁମାରୀ
ବ୍ରହ୍ମାଣ୍ଡର ଭିତରେ ତୋତେ କେ ଅଛୁ ସରି ।
ଅଭାଗୀ ଆମ୍ଭ ତୁମ୍ଭର ସଙ୍ଗ ବା ଅଟେ ତପ
ତୋତେ ମୁଁ ଦେଖିଲି ଧନ୍ୟ ମୋ ଜୀବନ ତ
ଏତେକହି ହନୁ ପୁଣ କଲେ ନମସ୍କାର
ସୀତା ବୋଲେ ଶୁଣ ପବନ କୁମର ।
ପରବନ ଆସି ତୁ କହିଲୁ ଯେତେବେଳେ
ଦଶଗ୍ରୀବ ମଲେ ପରା ଶ୍ରୀରାମ ବାଣରେ ।
ସେତେବେଳେ ମନ ମୋର ହୋଇଲା ହରଷ
କେତେ କଥା କହୁଥିଲ ଦଶବାର ଶିଷ୍ୟ ।
ଅଗ୍ରେ ଆସି ମୋତେ ତୁ କହିକରି ଗଲୁ
ଏବେ ଏଥର କାହା ବୋଲରେ ଅଇଲୁ ।
ହନୁମନ୍ତ ବୋଲେ ତୁମ୍ଭେ ଶୁଣ ରାମରାଣୀ
ଯେତେବେଳେ ଦଶଗ୍ରୀବ ପଡ଼ିଲା ପୃଥି ।
କେହି କହି ନଥିଲେ ମୁଁ ଅଇଲି ଗୁପତେ
ତୁମ୍ଭ ଆଗେ କହିଣ ମୁଁ ଗଲି ଯେ ତୁରିତେ ।
ଏଥର ରାମଚନ୍ଦ୍ର ପେଷିଛନ୍ତି ମୋତେ
ତାହାଙ୍କ ଆଜ୍ଞାରେ ମୁଁ ଆସିଛି ତୁରିତେ ।
ଶୁଣିକରି ଜାନକୀ କହନ୍ତି ବଚନ
ବିଭୀଷଣ ସଙ୍ଗେ ମୁହିଁ ଦେଖିଥିଲି ପୁଣ ।
ମିତ୍ରଭାବ ମେଳହୋଇ ଏହ୍ବାଟେ ଗଲେ
ମୁହିଁ ତାଙ୍କୁ ଦେଖିଅଛି ସେ ମୋତେ ନ ଦେଖିଲେ
ରାମଙ୍କୁ ଦେଖିବାକୁ ମୋ ଚିତ୍ତ ବଳଇ
ତାହାଙ୍କୁ ଦେଖିଲେ ମୋର ମନ ସ୍ଥିର ହୋଇ
ମୋର ମନବାଞ୍ଛା ତୁ ପୁରାଅ ପାବନି
ମୋ ସ୍ୱାମୀଙ୍କ କହିବୁ ତୁ ମୁଁ କରୁଛି ବିନତି ।
ବେଗେ ବେଗେ କରି ନଅନ୍ତୁ ମୁଁ ଦେଖଇ ପଦ୍ମମୁଖ
ବହୁତ କାଳର ମୋର ପଳାଇଯାଉ ଦୁଃଖ ।
ଏହି କଥା ଶୁଣି ହନୁ ବଚନ ପୁଣ କହି
ସୁଗ୍ରୀବାଦି ବନ୍ଧୁଜଣ କେତେ ଉପସାଇଁ ।
ଲକ୍ଷେ ରାଜା ରହିଛନ୍ତି ସୁବେଳସ୍ଥ ଗିରି
ତାହାଙ୍କୁ ପରିବେଢ଼େ ନେବେ ରୂପଧାରୀ ।
ଏତେକହି ହନୁମନ୍ତ ଉଲଗ ମେଲଇଲା
ଗଗନ ମାର୍ଗରେ ସାଇ ଭ୍ରମିଣ ଗଲା ।
ସୁବେଳ ଗିରିରେ ଯାଇଁ ହେଲା ପରବେଶ
ଦେଖିଲା ଶ୍ରୀରାମଚନ୍ଦ୍ର ବାହାରେ ଅବକାଶ ।
ଗୁମ୍ଫରେ ବିଭୀଷଣ ସୁଗ୍ରୀବର ଜାଣ
ତିନି ଭାଇ ସେନାପତି ଅଛନ୍ତି ପୁଣ ।

ମଲ୍ଲ ମହାମଲ୍ଲ ଯୂଥପତିମାନେ
ଲକ୍ଷେ ରାଜାଙ୍କର ପହଲ ଲଗିଅଛୁ ତେଣେ
ଏହି ସମୟରେ ମାରୁତି ଜଣାଏ
ମୂର୍ଛି ଯାଇଥିଲ ଦେବ ଜାନକୀଙ୍କ ଯାଏ ।
ଶୁଣିବା ରଘୁନାଥ ହେ ଅଯୋଧ୍ୟାର ସାଇଁ
ଜନକ ସୁତାର ପାଖେ ପ୍ରବେଶ ହେଲି ଯାଇ
ତୁମ୍ଭଙ୍କୁ ଦେଖିବାରେ ଉତ୍ସୁକ ତାଙ୍କ ମନ
ଶୋକଭରେ ମୋତେ କହିଲେ ସତୀ ପୁଣ ।
ବୋଇଲେ ମୁଁ ଶାର୍ଙ୍ଗଧାରୀଙ୍କି କରିବ ଦର୍ଶନ
ତେବେ ମୋର ମନୋରଥ ହୋଇବ ସଂପୂର୍ଣ୍ଣ
ଶୁଣି ରଘୁନାଥ ଥନ ଥନ କଲେ ଆଖି
ବିଭୀଷଣଙ୍କୁ ବୋଇଲେ ଆଣିବାଟିକ ସଖୀ ।
ବିଭୀଷଣ ବୋଲେ ଦେବ ମୋତେ ପୁଚ୍ଛ କିସ
ତୁମ୍ଭେ ତ୍ରୈଲୋକ୍ୟର ଠାକୁର ବିଶେଷ ।
ଠାକୁରାଣୀ ଆଣିବାକୁ ତୁମ୍ଭେ ସେ କରତା
ମୋତେ ଦେବ କମ୍ପାଇଁ ହେ କହୁଛ ଏତେକଥା
ଶୁଣି ରଘୁନାଥ ତିନି ଭାଇଙ୍କି ଡାକି କହି
ବଇଦେହୀଙ୍କ ତୁମ୍ଭେ ଘେନିଆସ ଯାଇ ।
କର ଯୋଡ଼ିଣ ଶତ୍ରୁଘନ କହନ୍ତି ବଚନ
ଉଚିତ ଧର୍ମ ତୁମ୍ଭେ ପାଳ ହେ ରଘୁନାଥ ।
ଲକ୍ଷେ ରାଜା ଅଛନ୍ତି ହେ ମଞ୍ଚ ମଣ୍ଡଳରୁ
ଏ କଥାକୁ ବିଚାର ତୁମ୍ଭେ କରହେ ଦେବଗୁରୁ
ଶୁଣିକରି ରଘୁନାଥ ସନ୍ତୋଷ ମନ ହେଲେ
ଧନ୍ୟ ତୁ ଶତ୍ରୁଘନ ବୋଲିଣ ବୋଇଲେ ।
ଭଗିରଥୀ କୁଳକୁ ତୁ ହୋଇଲୁ କାରଣ
ତୋହର କୁଳ ଉଜ୍ଜ୍ୱଳ ହୋଇବ ମୋରପୁଣ
ଏତେକହି ଶ୍ରୀରାମ ମନରେ ବିଚାରିଲେ
ଜମ୍ବୁବକୁ ଅଣାଅ ବୋଲିଣ ବୋଇଲେ ।
ଶୁଣିକରି ସୁଷେଣ ବେଗେ ଚଳିଗଲା
ଜମ୍ବୁବ ମନ୍ତ୍ରୀଙ୍କୁ ବେଗେ ସେ ଅଣାଇଲା ।
ଜାମ୍ବୁବକୁ ଦେଖିଣ ଶ୍ରୀରାମ ମନେ ତୋଷ
ଭରତକୁ ଚାହିଁଣ ସେ କହିଲେ ସନ୍ଦେଶ ।
ସୁମନ୍ତ ମନ୍ତ୍ରୀଙ୍କୁ ଡକାଇ ଆଣ ବେଗେ
ଶୁଣିଣ ଭରତଯାଇ ଅଣାଏ ସତ୍ୱରେ ।
ବ୍ୟଗ୍ରରେ ସୁମନ୍ତ ଆସିଣ ମିଳିଲା
ରଘୁନାଥଙ୍କ ସମ୍ମୁଖରେ ଓଳଗ ସେ ହେଲା ।

ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମନ୍ତ୍ରୀବର
ସୀତାଙ୍କୁ ରାବଣ ତ ନେଇଛି ସ୍ୱେସଇ ।
ଅଶୋକ ବନରେ ରଖିଲା ମୋର ସୀତା
ଜାନକୀ ଛଳେ ମାରିଲି ମୁଁ ଇନ୍ଦ୍ରଜିତ ପିତା ।
ରାବଣ ମଲା ତ ଏବେ ଆଣିବାଟିକ ସତୀ
ତୁମ୍ଭ ଦୁଇ ମନ୍ତ୍ରୀଙ୍କ ମୋର ବିଚାରିବା ଅଛି ।
ଶୁଣିକରି ଜମ୍ବୁବ କହନ୍ତି କରଯୋଡ଼ି
ଲକ୍ଷେ ରାଜା ଏଥିରେ ଅଛନ୍ତି ଦେବ ପୁରି ।
ଯେଉଁରୂପେ ଶୋଭା ବଢ଼ିବ ତିନି ପୁର
ଆଗପଛକୁ ଦେବ କର ହେ ବିଚାର ।
ଶୁଣିଣ ରଘୁନାଥ ସୁମନ୍ତଙ୍କୁ କହି
ତୁମ୍ଭର ମନକୁ ମନ୍ତ୍ରୀ କେମନ୍ତ ଯୋଗାଇ ।
ସୁମନ୍ତ ବୋଇଲେ ଦେବ ରାଜକୁଳରେ ଜାତ
ସତପଣି ପୁରୁଷରେ ନ ଲାଗେ କଳଙ୍କ ।
ସେ କଥାକୁ ବିଚାର କର ହେ ରଘୁନାଥ
ଯେମନ୍ତେ ତିନିପୁରେ ହୋଇବ ସାମର୍ଥ ।
ସତପଣି ପୁରୁଷର ଗୁରୁ ତ ବଶିଷ୍ଠ
ତାଙ୍କୁ ଡକାଇବେବ ବିଚାର କର ଶ୍ରେଷ୍ଠ ।
ରାଜାଏ ତୋଷହେବେ ଦେବତାହେବେ ବଶ୍ୟ
ତିନିପୁର ନାଗଲୋକେ ହୋଇବେ ସନ୍ତୋଷ
ପର ଘରବୁଡ଼ା ଏଥିରେ ଯେ ଅଛନ୍ତି
ଯେଉଁ କଥା ରାଜ୍ୟ ନଥିବ ସେକଥା କହନ୍ତି
ପୁରକୁ ଦୋଷ ଦେଇଣ ଆପଣେ ଚହ୍ଲାଦ୍ୟନ୍ତି
ସେମାନଙ୍କର ବଂଶ ଯେ ମୂଳରୁ ଖସୁ ଯାନ୍ତି ।
ତୁମ୍ଭର ଉପରେ ବଂଶ ଭଗୀରଥ ଥିଲେ
ଆପଣା ବଂଶ ଉଦ୍ଧାରି ପରକୁ ଉଦ୍ଧାରିଲେ ।
ଗଙ୍ଗାକୁ ଆଣିବାରୁ ମୁକ୍ତ ସର୍ବଜନ
ଏବେ ରାମ ନାମ ତୋହର ରହିବ ପୁରାଣ
ମୁକ୍ତ ଜୀବନରେ ଦୁହେଁ ଲେଖାହେବ
ତିନିପୁର ଅପବାଦ ତୋଠାରେ ନ ରହିବ ।
ଶୁଣିକରି ରାମଚନ୍ଦ୍ର ବହନ ଉଠିଲେ
ବଶିଷ୍ଠ ମୁନିଙ୍କ ପାଖେ ପ୍ରବେଶ ଯାଇଁ ହେଲେ
ଦେଖିଲେ ଯେ ବ୍ରହ୍ମମୁନି ବସିଛନ୍ତି ପୁଣ
ନମସ୍କାର କଲେ ଦେବ ତାଙ୍କର ଚରଣ ।
ଉଠିଣ ବ୍ରହ୍ମମୁନି ଆଶିଷ ତାଙ୍କୁ ଦେଲେ
ସୁମନ୍ତ ମନ୍ତ୍ରୀ ନେଇଣ ଆସନ ସମର୍ପିଲେ ।

ସୁଖାସନ ଉପରେ ବସିଲେ ଈଶ୍ୱର ମୁନି
ସିଂହାସନ ଉପରେ ବିଜେ ରାମ ପୁଣି ।
ତିନି ଭାଇ ସୁଗ୍ରୀବର ବିଭୀଷଣ ପୁଣ
ସେନାପତି ଲୋମପାଦ ରାଜା ସଙ୍ଗେ ପୁଣ ।
ଗହଳେ ଯନ୍ତ୍ରାଯନ୍ତ୍ର ଲାଗିଛନ୍ତି ବଳ
ରାମତାଳ ହୁଳହୁଳି ଶୁଭଇ ତହଳ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମୁନିପୁଣି
ପିତାଙ୍କ ସତ୍ୟପାଳି ବନକୁ ଅଇଲି ମୁଁ ଜାଣି
ବନରେ ରହି ମୁଁ ଯେ ମାରିଲି ରାବଣ
ମୋହର ଘରଣୀ ଅଟେ ବଇଦେହୀ ପୁଣ ।
ମୃଗ ମାରି ଯିବାରୁ ରାବଣ ଚୋରି କଲା
ଜନକର ଦୁହିତାକୁ ଘେନିଣ ଅଇଲା ।
ଜାନକୀର ଛଳେ ମୁଁ ଯେ ମାରିଲି ଦଶଶିରା
ଅନେକ କୁଟ କଲା ସେ ଲଙ୍କାର ଦଣ୍ଡଧାରା ।
ଶତେମୁଖା ରାବଣକୁ ଅଯୋଧ୍ୟା ପେଷିଲା
ଏକମୁଖା ରାବଣକୁ ଶିଖାଇ ପୁଣ ଦେଲା ।
ମୋର ଭାଇ ଲକ୍ଷ୍ମଣକୁ ହରି କରି ନେଲା
ଷଡ଼୍‌ବ୍ୟୂହ ଗୋଟାଏ ଯେ ଏଥିରେ ପୁଣ କଲା
ଏକା ଦେଖି ମୋର ସଙ୍ଗେ କଲା ବହୁରଣ
ଶତେମୁଖାକୁ ମାଇଲା ମୋ ଭାଇ ଶତ୍ରୁଘନ ।
ଏକମୁଖା ନାଶ ଗଲା ଲକ୍ଷ୍ମଣର ହସ୍ତେ
ଦଶମୁଖା ପଡ଼ିଲା ଯେ ମୋହର ବାଣଘାତେ
ଭରତ ଶୁଣିଣ ଯେ ଲକ୍ଷେ ରାଜା ଘେନି
ଅଯୋଧ୍ୟାକୁ ଗୁଡ଼ିଣ ଅଇଲା ସେ ପୁଣି ।
ଆଣିବାକୁ ନ ଆଣିବା ଜନକ ଦୁହିତା
କେଉଁ ରୂପେ ଆସିବ କହ ହେ ମୁନିଶ୍ରେଷ୍ଠା
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣହେ ରଘୁନାଥ
ରାଜାଙ୍କୁ ପରୀକ୍ଷାକାର ଅଟେ ଏ ଯୁକତ ।
ନପରୁର ଆଣିଲେ ସେ ଧରିବେ ହିଂସାପୁଣ
ବୋଲିବେ ଆମ୍ଭେମାନେ ନୋହିଲୁ କହିଜାଣ
ଶ୍ରୀରାମ ବୋଇଲେ ତାଙ୍କୁ କେମନ୍ତେ ପରୀକ୍ଷିବା
ବଶିଷ୍ଠ ବୋଇଲେ ସଭା କରିଣ ବସାଇବା ।
ଶ୍ରୀରାମ ବୋଇଲେ ଏତେଆସନ କାହିଁ ଦେବ
କେଉଁଠାରେ ଆମ୍ଭେ ପୁଣ ସଭା ଯେ କରିବା
ବଶିଷ୍ଠ ବୋଇଲେ ସଭା ଅଛି ଯେ ଏଠାରେ
ଚନ୍ଦ୍ରସଭା ଦେବ ଶୁଣ ଏହୁ ଯେ ସ୍ଥାନରେ ।

ଦେବତା ଏ ସ୍ୱର୍ଗପୁରୁ ଆସିବେ ଯେ ପୁଣ
ସୁଧର୍ମା ସଭା ଆସିବ ଏ ସ୍ଥାନକୁ ଜାଣ ।
ସକଳ ଦେବଗଣ ସେଥିରେ ବସିଥିବେ
ଦେବବର ସଦାଶିବ ଇନ୍ଦ୍ର ଆଦି ଥିବେ ।
ରାଜା ସଭା ହୋଇବ ଏଥିରେ ପ୍ରକଟ
ପାତ୍ରମନ୍ତ୍ରୀ ଘେନି ରାଜା ବସିବେ ଲକ୍ଷେକ ।
ତିନିପୁର ଚଉଦ ଭୁବନେ ଯେତେ ମୁନି
ଛୟାଣୋଇ କୋଟି ଯେ ଅଟନ୍ତି ହେ ଜ୍ଞାନୀ ।
ଏହିମାନେ ସେଠାରେ ହେବେ ପରବେଶ
ସେହି ସଭାରେ ସର୍ବେ ଥିବେ ହେ ସମସ୍ତ ।
ତେବେ ତୁମ୍ଭ ଜାନକୀ ଲଙ୍କାରୁ ଆସିବ
ତିନି ସଭା ମଧ୍ୟରେ ଅଗ୍ନି ପରୀକ୍ଷା ହେବ ।
ତେବେ ତୁମ୍ଭଠାରୁ ଦେବ କଳଙ୍କ ନାଶନ
ଭଗିରଥିକ ବଡ଼ ହେ ତୁମ୍ଭେ ହେବ ଜାଣ ।
ରାମ ନାମ ସାର ତୋର ସଂସାରେ ହୋଇବ
କାଳ ଯୁଗକୁ କଥା ପୁରାଣେ ରହିଥିବ ।
ଲକ୍ଷେ ପଦ ରାମାୟଣ ହେବ ଗ୍ରନ୍ଥସାର
ମୁନିମାନେ ତୁମ୍ଭ ନାମ ଜପିବେ ନିରନ୍ତର ।
ବୈକୁଣ୍ଠ ଶୂନ୍ୟକରି ମର୍ତ୍ତ୍ୟେ ଜନ୍ମ ହେଲ
ଦେବଙ୍କ ଛଳେ ଦୁଷ୍ଟ ଅସୁର ନାଶ କଲ ।
ଦେବେ ପୂଜା କରିବେ ମୁନି କରିବେ ଧ୍ୟାନ
ରାଜାମାନେ ତୋହର କିଙ୍କର ହେବେ ଜାଣ
କେତେ ଦୁଷ୍ଟଙ୍କୁ ନାଶ କରିବ ହେ ରଘୁନାଥ
ଧରଣୀ ଧ୍ୟାନ କରେ ତୋହର ଚରଣେ ତ
ତିନିପୁରର ତୁହି ଯେ ଅଟୁ ହେ ଜଗତା
ତୋ ବଂଶ କଳଙ୍କ ଏବେ ଛଡ଼ାଅ ଜଗଜ୍ଜିତ
ଆପଣାର ବଡ଼ ପଣ ରଖିଲେ ସିନା ଭଲ
ପଛକେ କେହି ତୁମ୍ଭଙ୍କୁ ନୋହିବଟି ସଲ ।
ଶୁଣିକରି ରଘୁନାଥ ସନ୍ତୋଷ ମନ ହେଲେ
କେଉଁରୂପେସଭାହେବକହକହହେବୋଇଲେ
ବଶିଷ୍ଠ ବୋଇଲେ ତୁମ୍ଭେ ବିଭୀଷଣକୁ ପେଶ
ମନ୍ଦୋଦରୀ କହି ଆଣନ୍ତୁ ମୟଦୈତ୍ୟ ।
ମନ୍ଦୋଦରୀର ପିତା ଅଟନ୍ତି ସେ ପୁଣ
ସେ ଆଇଲେ ସବୁକଥା ହେବ ଯେ ଭିଆଣ ।
ଶୁଣିଣ ଭୂପଧାରୀ ସନ୍ତୋଷ ମନ ହେଲେ
ସୁଜାଣ ଶତ୍ରୁଘନ ବୋଲିଣ ବୋଇଲେ ।

ବିଭୀଷଣଙ୍କୁ ଶୁଣି ଯେ ବୋଲନ୍ତି ରାବଣାସୁ
ମନ୍ଦୋଦରୀ ପାଶକୁ ଚଳ ଯା ଶୀଘ୍ରକରି ।
ମୟ ଦୈତ୍ୟକୁ ବେଗେ ଆଣ ଯା ତୁହି
ତେବେ ତୋରଲାଗି ମୁଁ ଜନକ ଜେମା ପାଇ
ଶୁଣିକରି କରଯୋଡ଼ି ବିଭୀଷଣ ପୁଣ
ଆଜର ମଧ୍ୟରେ ମୁଁ ଆଣିଦେବି ଜାଣ ।
ନମସ୍କାର କରିଣ ଲଙ୍କାର ଦଣ୍ଡଧାରୀ
ଦୁଇମନ୍ତ୍ରୀଙ୍କି ଘେନିଣ ଚଳେ ବେଗକରି ।
ସୁଖାସନ ଉପରେ ଯେ ବିଜେ କରଗଲା
ଉତ୍ତର ଦ୍ୱାର ବାଟରେ ଲଙ୍କାରେ ପଶିଲା ।
ସିଂହଦ୍ୱାରେ ଯାଇଣ ହେଲେ ପରବେଶ
ଭିତରେ ଗମନ କରେ ବିଶ୍ରବାର ଶିଷ୍ୟ ।
ଖୁଣ୍ଟିଆ ପ୍ରତିହାରୀ ଆଗରେ ଡାକଦେଲେ
ମଣିମା ମଣିମା ବୋଲି ଖବର ସେହୁ କଲେ
ଶୁଣିକରି ଦାସୀମାନେ ଅଇଲେ ବହନ
ବାହାରେ ରହିଲେ ବାହାର ଲୋକମାନ ।
ଷଡ଼ଣ୍ଡି ମଣାଇ ଦାସୀମାନେ ଘେନିଗଲେ
ଅନ୍ତଃପୁର ଭିତରେ ନେଇଣ ଦେଖା କଲେ ।
ମନ୍ଦୋଦରୀ ସଙ୍ଗରେ ସକଳ ମହାଦେଈ
ଦର୍ଶନ କଲେ ଆସି ଓଳଗ ମେଲାଇ ।
ବିଭୀଷଣ ବୋଇଲେ ଶୁଣ ପାଟରାଣୀ
ଶ୍ରୀରାମ ଗ୍ରାମରେ ମୁଁ ଯେ ଭେଟ ହେଲି ପୁଣି
ଦେଖିଣ ତ୍ରୈଲୋକ୍ୟନାଥ ମୋତେ ଆଜ୍ଞା ଦେଲେ
ମୟ ଦୈତ୍ୟକୁ ଆଣାଇଦେବଟି ବୋଇଲେ
ମନ୍ଦୋଦରୀର ପିତା ଅଟେ ଦୈତ୍ୟସାର
ମନ୍ଦୋଦରୀକୁ କହିଣ ଆଣ ସତ୍ୱର ।
ଆଜର ଭିତରେ ତୁମ୍ଭେ ଆଣିଦେବ ତାକୁ
ତେବେ ତାର ଉପକାର ହୋଇବ ଆମ୍ଭଙ୍କୁ ।
ତାହାଙ୍କଠାରୁ ଶୁଣି ମୁଁ ଶୀଘ୍ରେ ଆସି
ତୁମ୍ଭ ପିତାକୁ ଆଣ ତୋତେ କହିଲି ଆସି
ଶୁଣିଣ ମନ୍ଦୋଦରୀ ହରଷ ମନ ହେଲା
ଶ୍ରୀରାମଯୋଗୁ ମୋ ପିତା ବଞ୍ଚିବ ବୋଇଲା
ଚରଣେ ଓଳଗି କହେ ମନ୍ଦୋଦରୀ
ତୁମ୍ଭର ପ୍ରସାଦେ ମୋତେ ଅନେକ ସୁଖ ମିଳି
ବୋଇଲେ ଦୁଇମନ୍ତ୍ରୀଙ୍କି ଶୁଳଦଅ ବେଗ
ଜନଲକ୍ଷ ପୁଣ ଅଟେ ପିତାଙ୍କର ଠାବ ।

ଚନ୍ଦ୍ରଜ୍ୟୋତିପୁର ଯେ ଗୁପତେ ସେହୁ ଥାଏ
ଦେବଙ୍କ ଆଜ୍ଞାରେ ସେ ଦେବପୁର ଯାଏ ।
ବାଣାସୁର ମୋର ପିତା ଦୁହେଁ ଯେ ଅମର
ଶୋଣିତ ନଗର ଅଟେ ବାଣାସୁର ଘର ।
ଦୁଇଜଣ ବସି ପୁଣ ତପ ଆରମ୍ଭିଲେ
ତିନଯୁଗେ ତପ ସେହି ନିର୍ବାଣ ଯେ କଲେ ।
ସଦାଶିବ ବରେ ସେହୁ ହୋଇଲେ ଅମର
ଦୁଷ୍ଟପଣ ନ କରନ୍ତି ଶାନ୍ତ ହୋଇ ସ୍ଥିର ।
ଶ୍ରୀରାମର କାର୍ଯ୍ୟ ହେବ ଆମ୍ଭର ହେବ ଦେଖା
ଶୁଭ ଦେଲେ ଆମ୍ଭଙ୍କୁ ଯେ ସେହି ହେବେ ଶାଖା
ଭଲକଥା ଆମ୍ଭର ଶୁଭ ହେବ ଏଣେ
ବାସୁଦେବ ସପକ୍ଷରେ କାର୍ଯ୍ୟ ହେବ ତେଣେ ।
ଶୁଣିକରି ବିଭୀଷଣ ବାହାରେ ବିଜେ କଲା
ଶୁକ ସାରଣ ଦୁଇମନ୍ତ୍ରୀଙ୍କି ଡକାଇଲା ।
ବୋଇଲେ ମନ୍ତ୍ରୀବର ଯାଅ ଏହିକ୍ଷଣି
ମୟଦୈତ୍ୟ ଆଗରେ କହିବ ତୁମ୍ଭେ ବାଣୀ ।
ବୋଲିବ ଶ୍ରୀରାମଚନ୍ଦ୍ର ରାବଣ ନାଶ କଲେ
ଲଙ୍କାରେ ବିଭୀଷଣଙ୍କୁ ରାଜପଣ ଦେଲେ ।
ଦୁହିତା ତୁମ୍ଭର ଯେ ହେଲେ ପାଟରାଣୀ
ଆମ୍ଭକୁ ପେଷିଛନ୍ତି ପିତାକୁ ତୁମ୍ଭେ ପୁଣି ।
ଏତେ କହିଣ ତାଙ୍କୁ ଘେନିଆସ ବେଗେ
ତୁମ୍ଭଙ୍କୁ ଦେଖିଲେ ମୁଁ ଯିବି ଶ୍ରୀରାମ ଆଗେ ।
ଶୁଣିକରି ଦୋନମନ୍ତ୍ରୀ ବେଗେ ଚଳିଗଲେ
ବେଗ ଗମନ ରଥରେ ଯାଇଣ ବସିଲେ ।
ଅଶ୍ୱମାନ ସୁମରଣା କଲେକ ମନର
ଗଗନେ ଉଡ଼ିଲା ରଥ ପବନରୁ ଖର ।
ଚନ୍ଦ୍ରଜ୍ୟୋତି ପୁରରେ ହେଲା ପରବେଶ
ସିଂହଦ୍ୱାରେ ରଥ ନେଇ କଲେ ଉପଗତ ।
ପ୍ରତିହାରୀ ବସିଥିଲେ ସେ ଦ୍ୱାରରେ ପୁଣ
ରାବଣ ଦୂତ ବୋଲି ଜାଣିଲେ ତକ୍ଷଣ ।
ମୟଦୈତ୍ୟ ଆଗରେ ଯାଇଣ କହିଲେ ବାରତା
ସିଂହଦ୍ୱାରେ ରାବଣର ଦୂତ ଉପଗତା ।
ମୟଦୈତ୍ୟ ବୋଲେ ତାଙ୍କୁ ବେଗେ ଘେନିଆସ
ବହୁତ କାଳରୁ ତାଙ୍କର ନ ପାଇ ସନ୍ଦେଶ ।
ଶୁଣିକରି ପ୍ରତିହାରୀ ବେଗେ ଚଳିଗଲା
ଶୁକ ସାରଣକୁ ଘେନି ପ୍ରବେଶ ହୋଇଲା ।

ମସ୍ତ ଦୈତ୍ୟଙ୍କୁ ଦେଖିଣ ମନ୍ତ୍ରୀ ବେନି ଜନ
ଉଲଗ ହୋଇଣ ଭଗ୍ନ ହୋଇଲେ ଆଗେଣ ।
ମସ୍ତଦୈତ୍ୟ ପଚ୍ଛରେ ଥିଲ କସ ପାଇଁ
ଝିଅ ଜୁଆଇଁ ମୋର ଅଛନ୍ତିକି ସୁଖେ ରହି
ଲଙ୍କାର କୁଶଳ କଥା କହ ମୋର ଆଗ
ସୁବର୍ଣ୍ଣ ଗଡ଼ରେ ଅଛନ୍ତିକି ସଙ୍ଗ ।
ଦୁଇମନ୍ତ୍ରୀ ବୋଇଲେ ଯେ ଶୁଣ ରାୟେ ପୁଣ
ଦଶଗ୍ରୀବ ନାଶଗଲେ ଶ୍ରୀରାମ ବାଣେ ଜାଣ ।
ତାର ଭାଇ ବିଭୀଷଣ ରାଜ୍ୟେ ରାଜା ହେଲ
କୁମ୍ଭର ଦୁହିତା ତୋହ୍ନି ପାଟରେ ବସିଲ ।
ଶୁଣିକରି ମସ୍ତଦୈତ୍ୟ ହେଲ ଯେ ଚକିତ
ବୋଇଲ ଏକଥା ମୋତେ କହ ଆଦ୍ୟରୁତ ।
କମ୍ପାଇଁ ରାମ ସଙ୍ଗେ ବିବାଦ ଏ ହେଲ
ବିଶ୍ରବା ନନ୍ଦନକୁ କିମ୍ପାଇଁ ସେ ନାଶ କଲ ।
ସେହି ତ ଅଟନ୍ତି ପରଂବ୍ରହ୍ମ ମୂର୍ତ୍ତି
ଅକାରଣେ ମାରିଲେ ସେ ଲଙ୍କାର ନୃପତି ।
ଶୁକ ସାରଣ ବୋଇଲେ ଶୁଣ ହେ ଦୈତ୍ୟସାର
ଦଶରଥ ନାମରେ ଅଯୋଧ୍ୟା ନୃପବର ।
ତିନ ରାଣୀଙ୍କର ଚାରିପୁତ୍ର ଜାତ ହେଲେ
ବାଳକାଳେ ବିଶ୍ୱାମିତ୍ର ଯାଗ ରକ୍ଷା କଲେ ।
ଅହଲ୍ୟାକୁ ତାରିଣ ମିଥିଳା ଗଲେ ପୁଣ
ଶିବଧନୁ ଭାଙ୍ଗି ଜାନକୀ ବିଭା ଜାଣ ।
ମିଥିଳା ଦେଶର ଜନକ ନୃପତି
ଧନୁ ସ୍ୱୟମ୍ବର କରିଥିଲେ ସେହିଟି ।
ଦଶରଥ ଧନୁ ସ୍ୱୟମ୍ବର ସେହୁ କଲେ
ସେ ଧନୁକୁ କେହି ଯେ ଟେକି ନପାରିଲେ ।
ବିଶ୍ୱାମିତ୍ର ମୁନଙ୍କ ସଙ୍ଗରେ ଆସିଣ
ସେ ଧନୁକୁ ଭାଙ୍ଗିଲେ ଏହି ରାମ ଜାଣ ।
ଯେତେବେଳେ ଧନୁ ଶ୍ରୀରାମ ଭାଙ୍ଗିଲେ
ଲଙ୍କାର ରାବଣ ତ ନେତ୍ରରେ ଦେଖିଲେ ।
ଲକ୍ଷେ ରାଜା ମୁଖେ ରାମ ଲଗାଇଲେ କାଳି
ପର୍ଶୁରାମ ଦର୍ପ ବାଟରେ ଦେଲେ ଦଳି ।
ଶ୍ରୀରାମ ଯାଇଣ ଅଯୋଧ୍ୟା ପରବେଶ
କଳ୍ପବନ ତଳିରେ ରହିଲେ ରଘୁଶିଷ୍ୟ ।
ଦଶରଥ ରାଜା ଯେ ଏକଦିନେ ପୁଣି
ବଶିଷ୍ଠଙ୍କୁ ଡକାଇ ବୋଲନ୍ତି ଶୁଣ ମୁନି ।

ଶ୍ରୀରାମଙ୍କୁ ଅଯୋଧ୍ୟାରେ ନୃପତି କରାଇବା
ଆମ୍ଭର ଦେଖନ୍ତେ ଛତ୍ର ଟେକାଇବା ।
ଦଶରଥ ରାଜାଙ୍କର ରାଜା କରିବାକୁ ମନ
କୈକେୟୀ ରାଣୀ ତ କଲ ଭିନ୍ନ ଭିନ୍ନ ।
ଚଉଦ ବରଷ ଶ୍ରୀରାମ ବନକୁ ସେ ଗଲେ
ନ ଦେଖି ଦଶରଥ ଜୀବନ ହରାଇଲେ ।
ଭାଇ ଭାରଯାଙ୍କୁ ଶ୍ରୀରାମ ସଙ୍ଗରେ ଘେନିଣ
ତେର ବର୍ଷ ଦୁଇମାସ ବନରେ ଗଲ ଦିନ ।
ଗୋଦାବରୀ କୂଳରେ ଶ୍ରୀରାମ ହୋଇ ପରବେଶ
ବିଶ୍ରବା କୁମାରୀ ସୂର୍ପଣଖା ଯେ ନାମ ତ ।
ସୁରତ କରିବ ବୋଲି ତାଙ୍କ ପାଶେ ଗଲ
ନାସ୍ତି କରିବାରୁ ଖର ଦୂଷଣେ କହିଲ ।
ଚଉଦ ସହସ୍ର ବଳ ଘେନିଣ ଖର ଚଳିଗଲ
ଶ୍ରୀରାମ ସଙ୍ଗେ ଯୁଦ୍ଧକରି ମଲେ ସଙ୍ଗେ ସଭା
ସେଠାରୁ ସୂର୍ପଣଖା ରାବଣ ଆଗେ କହି
ଶୁଣିକରି ଦଶଗ୍ରୀବ ଗଲ ବେଗ ହୋଇ ।
ରାମର ଘରଣୀ ସେ ଚୋରାଇ ଆଣିଲ
ଅଶୋକବନରେ ନେଇ ଗୁପତେ ଥୋଇଲ ।
ବନରେ ଖୋଜି ନ ପାଇଲେ ରାମ ନାରୀ
କିଷ୍କିନ୍ଧ୍ୟା କଟକେ ପ୍ରବେଶ ଯାଇକରି ।
ବାଳିର ଭାଇ ସୁଗ୍ରୀ ସଙ୍ଗେ ମିତ ହେଲେ
ବାଳୀକି ମାରି ରାଜ୍ୟ ସୁଗ୍ରୀକ ପୁଣି ଦେଲେ
ରୁଷିବଗକୁ ଦୂତ କରିଗଲେ ରାମ
ଲଙ୍କାରେ ହନୁମନ୍ତ ମିଳିଲ ଯାଇଣ ।
ସୀତାଙ୍କୁ ଠାବ କରିଣ ଅନେକ ଲୋକମାରି
ଲଙ୍କା ପୋଡ଼ିଦେଇ ଆସିଲ ବେଗ କରି ।
ହନୁଠାରୁ ଶୁଣି ରାମ କପିବଳ ଘେନି
ସମୁଦ୍ରେ ସେତୁବନ୍ଧ ବାନ୍ଧିଲେ ଯାଇ ପୁଣି ।
ସୁବେଳ ଗିରିରେ ଠଣା ସେ ଯେ କଲେ
ଦୂତ ପଠାଇ ଘରଣୀ ମଗାଇଲେ ।
କେବେହେଁ ରାବଣ ନ ଦେଲ ଘରଣୀ
ବୋଇଲ ତୋର ସଙ୍ଗରେ ଯୁଦ୍ଧ ମୋର ପୁଣି
କୁମ୍ଭର ଦୁହିତା ଯେ ବହୁତ କହିଲେ
ବାଳପ୍ରାସ୍ତ ନାଶିବୁ ବୋଲିଣ ବୋଇଲେ ।
କେବେହେଁ ତା କଥା ନମାନେ ଦଶଶିର
କୁମ୍ଭ ଦୁହିତା ଉକାଏ ବିଭୀଷଣ ସାର ।

ବିଅର ଭଞ୍ଜନ ଦୁର୍ଦ୍ଦାନ୍ତ ଦଳେକ ବର୍ବର
ବୋଇଲେ ବଞ୍ଚିଣିବୁ ମରିବ ଏଥର ।
ମନ୍ଦୋଦରୀ ବୋଇଲେ ତୁମ୍ଭେ ଯାଇ କହ
ନ ମାନିଲେ ତୁମ୍ଭ କଥା ରାମେ ଶରଣ ହୁଅ ।
ରାବଣଠାରୁ ଶୁଣି ବିଭୀଷଣ ଗଲା
ଲଙ୍କପତି ଆଗରେ ଯାଇଣ କହିଲା ।
କ୍ରୋଧରେ ଦଶଶିର ନଗ୍ରରୁ କାଢ଼ିଦେଲା
ଶ୍ରୀରାମରେ ବିଭୀଷଣ ଶରଣ ପଶିଲା ।
ପାଞ୍ଚଦିନେ କୁମ୍ଭକର୍ଣ୍ଣଙ୍କୁ ମାରେ ରଘୁନାଥ
ସେହିଦିନ କୁମ୍ଭକର୍ଣ୍ଣର ମଲେ ଯେ ସମସ୍ତ ।
ଦଶଦିନରେ ଇନ୍ଦ୍ରଜିତକୁ ମାରେ ରାମ ଭାଇ ।
ଚଉଦ ଦିନେ ନାତି ପୁତ୍ର କ୍ଷୟ ଯାଇ ।
ଇନ୍ଦ୍ରଜିତ ମଲାରୁ ମହୀରାବଣ ଆସି ପୁଣ
କୂଟଯୁଦ୍ଧ କଲା ରାମ ସଙ୍ଗତରେ ପୁଣ ।
ଅଲଙ୍କାରେ ଯାଇଣ ଶତେମୁଖାକୁ କହିଲା
ଅଯୋଧ୍ୟାରେ ଶତେମୁଖା ଅନେକ ଯୁଦ୍ଧ କଲା
ନ ପାରି ପଳାଇଲା ସୁବର୍ଣ୍ଣ ଲଙ୍କାଗଡ
ରାମ ଭାଇ ଗୋଡାଇ ମାରିଲେ ସେଠାବର ।
ମହୀରାବଣ ପୁଣ ଯେ ପଦ୍ମବ୍ୟୂହ କଲା.
ରାମଭାଇ ଲକ୍ଷ୍ମଣଙ୍କୁ ହରି ନେଇଗଲା ।
ନପାରି ପଳାଇଲା ଅଜାର ପାଶେ ପୁଣ
ସେହିଠାରେ ଲକ୍ଷ୍ମଣ ମାରିଲେ ତାଙ୍କୁ ଜାଣ
ସେହିଠାରୁ ବୀରବାହୁ ଯୁଦ୍ଧକୁ ଗଲେ
ସତର ଦିନ ଯୁଦ୍ଧରେ ରାବଣ ପଡ଼ିଲେ ।
ବୀରବାହୁ କୁମର ଯେ ସୁବାହୁ ପୁଣ ଥିଲେ
ମନ୍ଦୋଦରୀ କହିବାରୁ ରାବଣ ରାଜାକଲେ ।
ସୁଲଙ୍କା ଗଡରେ ସେ ଯେ ହେଲେ ରାଜନ
କୁମ୍ଭକର୍ଣ୍ଣର ଜେଠିଏ ଥିଲେକ ନନ୍ଦନ ।
କୁମ୍ଭ ଦୁହିତା ରାମଙ୍କୁ କହିଲେ ଯେ ପୁଣ
ଅଲଙ୍କାରେ ଏହାକୁ କର ହେ ରାଜନ ।
ମନ୍ଦୋଦରୀ ବଚନ ଶୁଣି ରଘୁଧାରୀ
ଶତ୍ରୁଘନଙ୍କୁ ବୋଇଲେ ଯାଅ ବେଗକରି ।
ସୁକର୍ଣ୍ଣଙ୍କୁ ନେଇଣ ଯେ ଶତ୍ରୁଘନ ଗଲେ
ଲଙ୍କାରେ ସୁକର୍ଣ୍ଣଙ୍କୁ ରାଜା ସେହୁ କଲେ ।
ଏଥୁ ଅନନ୍ତରେ ଶୁଣ ଦୈତ୍ୟବୀର
ଭରତ ନାମରେ ଭାଇ ରାମଚନ୍ଦ୍ରଙ୍କର ।

ଲକ୍ଷେ ରାଜା ନେଇଯାଇ ପ୍ରବେଶ ହୋଇଲେ
ଜ୍ୟେଷ୍ଠଭାଇ ଶ୍ରୀରାମଙ୍କୁ ଦରଶନ କଲେ ।
ରାବଣ କୁମ୍ଭକର୍ଣ୍ଣର ବଂଶ ଗଲେ ନାଶ
ଦୁଇଭାଇଙ୍କର ଦୁଇପୁତ୍ର ରହିଲେ ଶେଷ ।
ନାଦ ନାମେ କୁମର ଯେ ଦଶଗ୍ରୀବର ଥିଲା
କୁମ୍ଭ ଦୁହିତା ରାମ ଚରଣେ ମିଳାଇଲା ।
ଦେଖିଣ ସୁଦୟା ତାଙ୍କୁ କଲେ ରଘୁବୀର
ଭରତଙ୍କୁ ବୋଇଲେ ତୁ ଯାଅରେ ବେଗର
ଜ୍ୟୋତି ନାମେ ଲଙ୍କାରେ ଏହାକୁ ରାଜାକର
ଶୁଣିଣ ଭରତବୀର ଗଲେ ଯେ ସତ୍ୱର ।
ଜ୍ୟୋତି ଲଙ୍କାରେ ନେଇ ତାକୁ ରାଜାକଲେ
ଫେରିଣ ଶ୍ରୀରାମ ପାଶେ ଆସିଣ ମିଳଲେ ।
ଏଥୁଅନନ୍ତରେ ଯେ ରାମଚନ୍ଦ୍ର ପୁଣ
ମନ୍ଦୋଦରୀଙ୍କ ବୋଇଲେ ଶୁଣ ତୁ ବଦନ ।
ବିଭୀଷଣ କୋଳରେ ତୁ ବସି ହୁଅ ପାଟ
ସ୍ୱର୍ଗରେ ଆଜଠାରୁ ତୁ ହେବୁ ପ୍ରକଟ ।
ପଞ୍ଚକନ୍ୟାରେ ତୋତେ ଗଣିତା ଆମ୍ଭେ କଲୁ
ସୀତାଙ୍କର ସଙ୍ଗରେ ତୋତେ ଯେ ଦେଖିଲୁ ।
ଶୁଣିକରି ସନ୍ତୋଷ ତୋର ପୃଥ୍ୱୀ ହେଲା
ଲଙ୍କାରେ ସେ ପାଟରାଣୀ ହୋଇଣ ରହିଲା
ଆମ୍ଭଙ୍କୁ ଡକାଇ ଯେ କହିଲେ କୁମ୍ଭ ପାଶ
ବୋଇଲେ ମୋର ପିତାକୁ ଯାଇଣ ନେଇ ଆସ
ଆଜର ମଧ୍ୟରେ ଯେ ଆଣିବ ଯାଇକରି
ଶୁଣିକରି ଆମ୍ଭେ ଯେ ଅଇଲୁ ଶୀଘ୍ରକରି ।
ମହୀଦୈତ୍ୟ ବୋଇଲେ ଦେବଙ୍କ କାର୍ଯ୍ୟହେଲା
ଦୁଷ୍ଟ ଦୁରାତ୍ମର ରାବଣେଶ୍ୱର ମଲା ।
ମୋର ଭାଗ୍ୟ ଆସି ଯେ ହେଲା ଏତେକାଳେ
ବାସୁଦେବଙ୍କୁ ମୁଁ ଯେ ଦେଖିବି ନେନତୋଳେ
ଏତେ କହି ମହୀଦୈତ୍ୟ ପାଦାଡ଼ା ପକାଇଲା
ଶତେବାର ପର୍ଯ୍ୟନ୍ତେ ଓଳଗି ହୋଇଲା ।
ଝଟକ ବଜ୍ରକୀଳ ରଥ ଅଣାଏ ବହନ
ସାରଥିକ ବୋଇଲେ ସାଜେଣି କର ପୁଣ ।
ଅନ୍ତଃପୁରେ ଯାଇଣ ହେଲେ ପରବେଶ
ମନ୍ଦୋଦରୀ ମାତାକୁ କହିଲା ବିଶେଷ ।
ବୋଇଲେ ଲଙ୍କାଗଡ଼କୁ ଯାଉଅଛି ମୁହିଁ
ତୋ ଦୁହିତା ମନ୍ଦୋଦରୀ ଦୂତ ପଠାଇ ।

ତାକୁ ମୁଁ ଦେଖାଦେଇ ଆସିବି ଯେ ପୁଣ
ଏତେବୋଲି କହିକରି ଅଇଲା ତତକ୍ଷଣ ।
ଝଟକ ବଇକୂଳ ରଥେ ଯାଇଣ ବସିଲା
ଶୁକ ସାରଣଙ୍କୁ ଘେନି ଗମନ କରିଗଲା ।
ପ୍ରହରକେ ଲଙ୍କାଗଡ଼େ ହେଲେ ପରବେଶ
ସିଂହଦ୍ୱାର ବାଟେ ରଜା ଗଲେକ ଅଶେଷ ।
ନବର ସିଂହଦ୍ୱାରେ ହେଲେ ଯାଇକରି
ରଥରୁ ଓହ୍ଲାଇ ଝଟତେ ପଶିଲା ବେଗକରି
ଅନ୍ତଃପୁରେ ଯାଇଣ ହେଲେ ପ୍ରବେଶ
ଦାସୀଗଣମାନେ ଦେଖି କହିଲେ ସନ୍ଦେଶ ।
ମନ୍ଦୋଦରୀ ଆଗେ ଯାଇ ଜଣାଇଲେ ପୁଣ
କୁମ୍ଭର ପିତା ଆସି ଅକେଇଲେ ଜାଣ ।
ଶୁଣିକରି ମନ୍ଦୋଦରୀ ବ୍ୟଗ୍ରରେ ଚଳିଗଲା
ପିତାର ଚରଣେ ଯାଇଁ ନମସ୍କାର କଲା ।
ପାଏ ପଡ଼ି ଶୋଇ ସେ ଉଠେ କରଯୋଡ଼ି
ଦେଖିକରି ମୟ ଦୈତ୍ୟ ତାହାକୁ ପଚାରି ।
କେଉଁଠାରେ ବିଭୀଷଣ ଅଛନ୍ତି ମୋତେ ଦେଖା
କୁଳଧର୍ମ ଉଦ୍ଧରିଲେ ଶ୍ୱଶ୍ରବାର ସୁତା ।
ମନ୍ଦୋଦରୀ ବୋଲେ ମଲେ କୁଆଁ କୁମ୍ଭର
କହିବାର ବୋଲି ସେ ନ କଲେ ମୋହର ।
ଶ୍ରୀରାମଙ୍କ ବାଣରେ ପ୍ରାଣ ଗୁଡ଼ିଗଲା
ଲଙ୍କାଗଡ଼ ଗୋଷ୍ଠି ଯେ ଅନାଥ ଏବେ ହେଲା
ମୟଦୈତ୍ୟବୋଇଲେଶୋନକହ ମୋରଆଗ
ଦୁଷ୍ଟଜନ ମରିବାର ଅଟଇ ବଡ଼ଭାଗ୍ୟ ।
ଅମର ଲୋକଙ୍କୁ ସେ ବହୁତ କଷ୍ଟ ଦେଲା
ନାରାୟଣ ଘରଣୀଙ୍କି ହରାଇ ଆଣିଲା ।
ନାରାୟଣ ହସ୍ତେ ମାରି ପକାଇଲା କାରଣ
ଉଜ୍ଜ୍ୱଳ ହେଲା ଦେହ ଦେଖିଲୁ ନାରାୟଣ ।
ସମସ୍ତଙ୍କର ମୁଖରେ ତୋ ନାମ ରହିଲା
ଭଲଯୋଗେ ଜାତ ତୁମ୍ଭେ ହୋଇଲୁ ଅବଳ
ସଙ୍ଗରେ ଗଣିକା ତୋତେ କଲେ ପରଂବ୍ରହ୍ମ
ମୋର କୋଳେଜାତହୋଇପାଇଲୁଏଡ଼େକର୍ମ
ଶୁଣିକରି ମନ୍ଦୋଦରୀ ସନ୍ତୋଷ ହୋଇଲେ
ପୁଣ ପିତାର ଚରଣେ ଓଳଗ ସେହୁ କଲେ ।
ଚରଣ ଧୋଇକରି ଆସନ ନେଇ ଦେଲା
ବ୍ରହ୍ମଜାତ ଖଟର ପୁରେ ଟେକିଣ ବସାଇଲା ।

ମୟ ଦୈତ୍ୟବୋଇଲେ ଶୁଣଲୋ ମନ୍ଦୋଦରୀ
କେଉଁଠାରେ ବିଭୀଷଣ ଅଛି ଲୋ କୁମାରୀ ।
ତାହାକୁ ଦେଖିଲେ ମୋର ସୁଫଳହେବଆଖି
ବେଗକରି ଏଠାକୁ ଅଣାଅ ତୁ ଡକ ।
ତାହା ଶୁଣି ମନ୍ଦୋଦରୀ ବେଗେ ଚଳିଗଲା
ବିଭୀଷଣ ପାଖେ ଯାଇଁ ପ୍ରବେଶ ହୋଇଲା ।
ଦେଖି ଭଣ୍ଡାର ଧନ ସାଇତେ ବିଭୀଷଣ
ସୁନା ରୁପା ମାଳା ମୋତି ମାଣିକ୍ୟ ମାନ ।
ବଇଡ଼ୁର୍ଯ୍ୟ ପୋଏଳା ଯେ ଅଳଙ୍କାର ଘର
କୁମ୍ଭ ଖଞ୍ଜା ସାବେଳୀ ଯେ ନାନାଆଭୂଷଣ ଗର
ଦେଖି ଚିହ୍ନ ମୁଦ ଦେଇ ଆସଇ ନୃପତି
ଏହି ସମୟରେ ଯେ ମିଳିଲେ ସତୀ ।
ଶିରରେ କର ଦେଇଣ ପାଏ ପଡ଼ି ଶୋଇ
ବୋଇଲା ମୋର ପିତା ଲୋଡ଼ୁଛନ୍ତି ତୁମ୍ଭକୁହିଁ
ଶୁଣି ବିଭୀଷଣ ମନ ଉଦ୍‌ବେଗ କଲା
ମୟଦୈତ୍ୟ ଆଗରେ ଯାଇଣ ମିଳିଲା ।
କର ପ୍ରସାରିଣ ସେ ଶୋଇଲା ଲମ୍ବ ହୋଇ
ଦେଖିଣ ମୟଦୈତ୍ୟ ଆସନୁ ଉଠିଯାଇ
କୋଳକରି ବିଭୀଷଣକୁ ଘେନିଣ ଆଣିଲା
ମାଳ ପିଢ଼ା ଉପରେ ଯାଇଣ ବସିଲା ।
ବିଭୀଷଣକୁ କୋଳରେ ବସାଇଲେ ନେଇ
ଶିର ଆଉଁସିଣ ସେ ମୁଖେ ଚୁମ୍ବ ଦେଇ ।
ବୋଇଲେ ପରଂବ୍ରହ୍ମ ମୁରତି ଆଶ୍ରେ କଲ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଅମର ପୁଣ ହେଲ ।
କୁମ୍ଭ କୁଳ ମୋର କୁଳ କଲ ହେ ଉଦ୍ଧାରଣ
ମୋହର ଦୁହିତା ନରକରେ ଦୋଷୀ ପୁଣ ।
ମୋର ଦୁହିତା ଦୋଷ ନ ଧରିବ ଆଉ
ଯୁଗେ ଯୁଗେ କୁମ୍ଭ କଥା ପୁରାଣେ ରହିଥାଉ
ଏତେକହି ମନ୍ଦୋଦରୀକି ଅଣାଇଲେ ପାଖ
ଦୁହିଙ୍କି କୋଳରେ ଧରି ହୋଇଲେ ହରଷ
ମନ୍ଦୋଦରୀ କର ବିଭୀଷଣ ହସ୍ତେ ଦେଲେ
ଏହା ଦୋଷ ନଘେନିବ ବୋଲିଣ ବୋଇଲେ
ବିଭୀଷଣ ବୋଇଲେ ଶୁଣ ହେ ଦେବ ପୁଣ
ଲଙ୍କାର ଠାକୁରାଣୀ ଅଟନ୍ତି ଏ ଜାଣ ।
ଯେଉଁ ରୂପେ ତାଙ୍କ ମନ ଯୋଗାଇବ ପୁଣ
ସେହି ରୂପେ ଅନ୍ତଃପୁର ପାଳନ କରି ଜାଣ

ମୋହର ଅଭ୍ୟାନ୍ତର ତାଠାରେ କହୁ ନାହିଁ
ଶ୍ରୀରାମ ଠାକୁର ତାଙ୍କୁ ବୋଧ ଦେଲେ ରହି
ଶୁଣିଣ ମନ୍ତ୍ରଦୈତ୍ୟ ମନରେ ତୋଷ ହେଲେ
ଜମାଇଁ ଡକାଇଲ ବୋଲିଣ ବୋଇଲେ ।
ବିଭୀଷଣ ବୋଇଲେ ଶୁଣ ମୋ ବଚନ
ରାମଚନ୍ଦ୍ର ଲୋଡ଼ନ୍ତି ତୁମ୍ଭଙ୍କୁ ତ ପୁଣ ।
ଚାଲ ଯିବା ଶ୍ରୀରାମଙ୍କୁ କରିବା ଦର୍ଶନ
ଜୟ କହିବେ ତୁମ୍ଭଙ୍କୁ ଦଶରଥ ନାନ ।
ଏତେକହି ବିଭୀଷଣ କୋଳରୁ ଉଠିଗଲା
ମନ୍ଦୋଦରୀକି ଶୁଣିଣ ବଚନ ବୋଇଲା ।
ପିତାଙ୍କୁ ତରତ କରି କରାଅ ଭୋଜନ
ଶ୍ରୀରାମ ପାଶକୁ ଆମ୍ଭେ ଯିବୁ ଗୋ ବହନ ।
ଶୁଣିଣ ମନ୍ଦୋଦରୀ ବେଗେ ଚଳିଗଲେ
ଷଡ଼ରସେ ଭୋଜନ ପିତାଙ୍କୁ କରାଇଲେ ।
ବିଭୀଷଣ ଷଡ଼ରସେ କଲେକ ଭୋଜନ
ଆଚୋବନ ସାରିଣ ଭୁଞ୍ଜିଲେ ଗୁଆ ପାନ ।
ବିଭୀଷଣ ବୋଇଲେ ଶୁଣ ଗୋ ପାଟରାଣୀ
ଶ୍ରୀରାମର ରାଣୀ ଯେ ଜାନକୀ ଠାକୁରାଣୀ ।
ଆଜ ରଜନୀରେ ତୁମ୍ଭେ ସମସ୍ତେ ହୋଇଁ ଯିବ
ତ୍ରୈଲୋକ୍ୟ ଠାକୁରାଣୀଙ୍କି ଦର୍ଶନ କରିବ ।
ବରଣମା ଅଳଙ୍କାର ଆଗରେ ନେଇ ଥୋଇ
ରାମର ନାରୀ ତୋଷ ଯେଉଁରୂପେ ହୋଇ ।
କେଉଁ କଥା କହିବି ମୁଁ ନ ଜାଣ ତୁମ୍ଭେ ଜସ
ଯେମନ୍ତେ ଠାକୁରାଣୀ ତୁମ୍ଭଙ୍କୁ ଦେବେ ତୋଷ
ଜଣକେ ଅଳଙ୍କାର ସମ୍ଭାର ଘେନିଯିବ
ଦର୍ଶନ କରିଣ ହୀରା ମାଣିକ୍ୟ ସମର୍ପିବ ।
ଜାଲି ସୁବଳସ୍ତ୍ରାକୁ ଯିବେ ରାମରାଣୀ
ଗଲେ ଦର୍ଶନ ତୁମ୍ଭେ କରି ନ ପାରି ପୁଣି ।
ନବର ଭିତରେ ତୁମ୍ଭେ ଧେଣ୍ଡୁରା ଫେରାଇବ
ସକଳ ନାରୀମାନଙ୍କୁ ଦର୍ଶନ କରାଇବ ।
ବୋଲିବ ଶ୍ରୀରାମ ନାରୀ ଯାଉଛନ୍ତି ତାର ପୁର
ଦେଖିବ ସର୍ବେ ତୁମ୍ଭେ ମନ ହରଷର ।
ଶୁଣିକରି ମନ୍ଦୋଦରୀ ମନେ ହରଷ ହେଲା
ମନ୍ତ୍ରୀକି ଡକାଇଣ ପୁଣ ଆଜ୍ଞା ଦେଲା ।
ଟମକ ଦିଆଅ ରାଜ୍ୟରେ ମୋହର
ସକଳ ନାରୀ ଯିବେ ଅଶୋକ ବନରୁ ।

ଶ୍ରୀରାମର ଘରଣୀକି କରିବେ ଦରଶନ
ଏତେବୋଲିରାଜ୍ୟରୁଘୋଷଣାଫେରାଅବହନ
ଶୁଣିଣ ବେନି ମନ୍ତ୍ରୀ ଉଗରା ପେଶିଦେଲେ
ଟମକଆ ଟମକ ବାଣ୍ଡିରେ ବଜାଇଲେ ।
ହାକେଉଁକର ଯେ ହୋଇଛି ଆଜ୍ଞା ପୁଣ
ସମସ୍ତେ ଶ୍ରୀରାମ ନାରୀଙ୍କି କରିବ ଦର୍ଶନ ।
ଏତେକହି ନିଶାଣ ବାଣ୍ଡିରେ ଫେରାଇଲା
ସେଠାରୁ ଲଙ୍କାଗଡ଼ରେ ଚହଳ ପଡ଼ିଲା ।
ହାଟବାଟ ବାଣ୍ଡିରେ ବଜାର ଦୋକାନ
ଅଦ୍ଭୁତ ଦୁଲାରେ ଆଲୋକ ଦିଶେ ପୁଣ ।
ଲଙ୍କାଗଡ଼ରେ ଯେତେ ସ୍ତିରୀ ଜନ ପୁଣ
ଯେ ଯାହା ଅନୁରୂପରେ ବେଶ ହେଲେଜାଣ
ତେ ବୋଲେ ରାମନାରୀ ଭାଳିଯିବେ ପୁଣ
ନେଇ ସୁଫଳ କରିବା ଦେଖି ତାଙ୍କୁ ଜାଣ ।
ଦାସୀଙ୍କି ଶୁଣିଣ ଯେ ବୋଲେ ବିଭୀଷଣ
ତୁମ୍ଭେ ଏହିକ୍ଷଣି ବେଗେ ଚଳ ପୁଣ ।
ଅଶୋକବନକୁ ତୁମ୍ଭେ ବହନ ହୋଇ ଚଳ
ତ୍ରିଜଟାକୁ ଘେନିଆସ ମୋହର ଗୁମର ।
ଶୁଣିକରି ଦାସୀଗଣ ବେଗେ ଚଳିଗଲେ
ଅଶୋକବନରେ ଯାଇ ପ୍ରବେଶ ହୋଇଲେ
ତ୍ରିଜଟା ନିକଟରେ ହେଲେ ଦାସୀଗଣ
ବୋଇଲେ ପିତା ତୁମ୍ଭଙ୍କୁ ଲୋଡ଼ା କଲେପୁଣ
ତୁମ୍ଭେ ଗଲେ ଜସ ଯେ କହିବେ ତୁମ୍ଭଙ୍କୁ
ଶୁଣିକରି ତ୍ରିଜଟା ହରଷ ମନକୁ ।
ଜାନକୀ ଚରଣେ ଯାଇ ଓଳଗି ଶୋଇଲା
କରଯୋଡ଼ି ଭକ୍ତ ହୋଇ ଆଗରେ କହିଲା ।
ଶୁଣ ତୁମ୍ଭେ ଜାନକୀ ଗୋ ମୋହର ବଚନ
ପିତା ଜମା ଲୋଡ଼ା ମୋତେ କରିଛନ୍ତି ପୁଣ
ଆଜ୍ଞା ହେଲେ ଯାଇକରି ଆସିବି ବହନ
ଏତେକହି ଚରଣେ ନମେ ପୁଣ ପୁଣ ।
ଜାନକୀ ବୋଇଲେ ତୁମ୍ଭେ ଯାଅ ବେଗକରି
ପିତାଙ୍କୁ ଦର୍ଶନ ଯାଇ କର ଗୋ ସୁନ୍ଦରୀ ।
ଜାନକୀଙ୍କି କହିଣ ତ୍ରିଜଟା ଚଳିଗଲା
ପିତାର ଆଗେ ଯାଇ ପ୍ରବେଶ ବେଗେହେଲା
ପିତାକୁ ଦେଖିଣ ଯେ ଦୁହିତା ନମେ ପୁଣ
କରଯୋଡ଼ି ଆଗେ ହୃଷ୍ଟ ହେଲେ ତତକ୍ଷଣ ।

ବିଭୀଷଣ ଦେଖିକରି ଆନନ୍ଦ ଯେ ହେଲା
ହନୁତାକୁ ଚାହିଁଣ ବଚନ କହିଲା ।
କୁଳ ଉଦ୍ଧାରଣ ତୁ ଗୋ ଅଟୁ ମୋର ଜେମା
ଜାନକୀ ପ୍ରକାଶେ ତୁ ପାଇବୁ ସୁଖ ସୀମା ।
ଏବେ ତୁ ମୋର ବୋଲକରି ବେଗେ ପୁଣ
ମାତାମାନଙ୍କୁ ଦର୍ଶନ କରାଇବୁ ପୁଣ ।
କଦାପି ନ ପଡ଼ନ୍ତେ ତୁ ଯାବନ୍ତ କରିବୁ
ଯେଉଁରୂପେ ଶ୍ରୀରାମ ତୁଣ୍ଡେ ପ୍ରଶଂସା ପାଇବୁ
ମାତାମାନେ ଦେଖିଣ ଯେ ହେବେ ତୋଷମନ
ରାଜ୍ୟଲୋକ ଦେଖିଣ ହରଷ ସର୍ବଜନ ।
ବେଖା ବରଷମା ପୁଣ ଦେଲେ ମାତାମାନେ
ସେ ପଦାର୍ଥମାନ ତୁହି ଥୋଇବୁ ଯତନେ ।
ଯେଉଁରୂପେକ୍ରୋଧଗୋ ନୋହିବେରାମରାଣୀ
ମନରେ ସନ୍ତୋଷ ଯେଉଁ ରୂପେ ଠାକୁରାଣୀ
ଯାଅ ମାତ ବେଗ ଗୋ ସେବା ତୁ କରିଥାଅ
ଏତେବୋଲି ଆଜ୍ଞାଦେଲେ ବିଶ୍ରବାର ପୁଅ ।
ପିତା ଆଜ୍ଞା ମାଗିକରି ତ୍ରିଜଟା ବେଗେ ଗଲା
ଜନନୀମାନଙ୍କୁ ଅନ୍ତଃପୁରରେ ଦେଖିଲା ।
ଜନନୀଙ୍କ ଚରଣରେ କଲା ନମସ୍କାର
ମନ୍ଦୋଦରୀ ଚରଣରେ ଶୋଇଲା ଧାଡ଼କାର
କର ଧରି ମନ୍ଦୋଦରୀ ଉଠାଏ ତାକୁ ପୁଣ
ରାମଚନ୍ଦ୍ର ରାଣୀ ପାଶେ ଚଳ ଗୋ ବହନ ।
ଅଳ୍ପଦିନରେ ତୋର କଷ୍ଟ ଯିବ ପୁଣ
ପିତାଙ୍କୁ କହିଣ ବିଭା କରିବା ଗୋ ଜାଣ ।
ଉତ୍ତମ ସ୍ଥାନରେ ତୋତେ ଦେବାଗୋ ବହନତା
କୁଳ ଧର୍ମ ରଖିଲୁ ତୁ ବହୁତ କରି ତା ।
ଯାଅ ବେଗେ ମାତା ଗୋ ଅଶୋକ ବନକୁ
ଯେଉଁରୂପେ ରାମରାଣୀ ତୋଷ ଯେ ଆମ୍ଭଙ୍କୁ
ଶୁଣିକରି ତ୍ରିଜଟା ବେଗେ ଚଳଗଲା
ଅଶୋକବନରେ ଯାଇ ପ୍ରବେଶ ହୋଇଲା ।
ଜାନକୀଙ୍କ ଚରଣେ କରେ ନମସ୍କାର
ଦେଖିଣ ସେ ରାମରାଣୀ ହେଲେ ତୋଷଭର
ସୀତା ବୋଲେ ଆଜ ନୂଆ ମାଆଙ୍କୁ ଦେଖିଲ
କସ ବଚନ ବୋଇଲେ ଆମ୍ଭଙ୍କୁ ନ କହିଲ ।
ତ୍ରିଜଟାବୋଇଲେତୁମ୍ଭେତ୍ରୈଲୋକ୍ୟଠାକୁରାଣୀ
କେଉଁ କଥା ନ ଜାଣ ହେ କ କହିବ ପୁଣି ।

ପିତା ମୋର ଡକାଇଣ ଏ ଠାବରୁ ନେଲେ
ଜାଣି ଠାକୁରାଣୀ ପିବେବୋଲିଣବୋଇଲେ
ଜନନୀମାନଙ୍କୁ ତୁ ନେଇ କରାଅ ଦର୍ଶନ
ରାଜ୍ୟର ନରନାରୀ ଦେଖିବେ ଯାଇ ପୁଣ ।
ଏତେକହିପିତା ମୋତେ ବେଗେଚଳିବେଲେ
ଶୁଣିଣ ଜାନକୀ ମନେ ସନ୍ତୋଷ ହୋଇଲେ
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ମନ୍ତ୍ରୀ ଦୈତ୍ୟ ସଙ୍ଗରେ ଗୋ ବିଭୀଷଣ ଯାନ୍ତି ।
ଝିଣ୍ଟିକ ବଜ୍ରକ ରଥେ ଚଳେ ମନ୍ତ୍ରୀଦୈତ୍ୟ
ବିଭୀଷଣ ଯାଏ ଯେ କନକ ମନ୍ତ୍ରୀ ରଥ ।
ସୁବଳଗିରିରେ ଯାଇ ହେଲେ ପରବେଶ
ଝିଣ୍ଟିକ ବଜ୍ରକ ତେଜ ଯେସନ ପ୍ରକାଶ ।
ଦେଖିଣ ଲକ୍ଷେ ନୃପତି ଆଶ୍ଚର୍ଯ୍ୟ ହୋଇଲେ
ପଦାତି ରଥବଳ ସେନାପତି ତୁଲେ ।
ରୁକ୍ଷକପି ହଟାରି ବଜାର ନାନା ଜାତି
ମନ୍ତ୍ରୀ ଦୈତ୍ୟ ତେଜ ଦେଖି ସମସ୍ତେ ଡରନ୍ତି
ବୋଲନ୍ତି କମୁଁ ଏକଥା ଜଣାନାହିଁ
ତେଜବନ୍ତ ସମସ୍ତଙ୍କୁ ମୋହୁଅଛି ଏହି ।
ଏ ତେଜବନ୍ତ ଅସୁର ଏଥିକି ଅଇଲା
ସମସ୍ତେ ଡରନ୍ତି ପୁଣ ତ ଯୁଦ୍ଧ ହେଲା ।
ସୁଗ୍ରୀବ ଏକଠାବେ ବସିଥିଲେ ପୁଣି
ତେଜ ଦେଖି ବଲୁରିଲେ ଦୁଷ୍ଟ ଏ ଦୈତ୍ୟଜାଣି
ସେନାପତିମାନେ ଯେ ଅଳପେ ରହିଥିଲେ
ଯୂଥପତିଙ୍କି ବେଢଣ ବେଗେ ସେ ଅଇଲେ ।
ଶ୍ରୀରାମଙ୍କ ସୁରଭାଇ ହେଲେ ଆଗୁଆଣି
ଦେଖିଣ ତନଭାଇ ଧନୁ ଧଇଲେ ଟାଣି ।
ହନୁମନ୍ତ ଯାଇଣ ଶ୍ରୀରାମ ଆଗେ ଛିଡ଼ା
ବୋଇଲା ପ୍ରମାଦ ଆସି ଘୋଟିଲା ଅମଡ଼ା ।
ଶ୍ରୀରାମବୋଇଲେବାବୁ ମାରୁତି ବେଗେଯାଅ
ସେନା ଯୂଥପତି ସଙ୍ଗରେ ସବୁ ନିଅ ।
ବିଭୀଷଣ ଆସୁଅଛି ମନ୍ତ୍ରୀ ଦୈତ୍ୟଙ୍କୁ ନେଇ
ପାଟେଶ୍ବରୀ ବେଢଆଅ ତୁମ୍ଭେ ଯାଇ ପୁଣି ।
ଆମ୍ଭଙ୍କୁ ଦେଖିବାକୁ ଆସୁଅଛି ଦୈତ୍ୟସାର
ଜନ୍ମହେଲା କାହୁଁ ସେ ଭରୁସି ଅଟେ ମୋର
ଶୁଣିଣ ଶ୍ରୀରାମଠାରୁ ଯୂଥପତିମାନେ
ମନ୍ତ୍ରୀ ଦୈତ୍ୟ ଆଗରେ ପ୍ରବେଶ ତତକ୍ଷଣେ ।

ବିଭୀଷଣ ବୋଇଲେ ଏ ଶ୍ରୀରାମର ଆଟ
ତୁମ୍ଭଙ୍କୁ ଦେବାକୁ ପେଶିଛନ୍ତି ରଘୁନାଥ ।
ଅନ୍ତର୍ଯ୍ୟାମୀ ନାଥ ଯେ ସକଳ କଥା ଜାଣି
ପଞ୍ଚରତ୍ନ ସକାଶେ ପେଶିଛନ୍ତି ରଘୁମଣି ।
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ପୁଣ
ତିନି ଭାଇଙ୍କି ଚାହିଁଣ ବୋଇଲେ ତାକୁ ଶୁଣ
ବୋଇଲେ ରାଜବେଶ ହୁଅରେ ବେଗଯାଇ
ଆପେ ବେଶ ହୋଇଲେ ରଘୁକୁଳ ସାଇଁ ।
ଅଙ୍ଗଦକୁ ଚାହିଁଣ ବୋଇଲେ ରଘୁନାଥ
ଗୁରୁ ମୁନିଙ୍କି ତୁମ୍ଭେ ବେଗେ ଘେନିଆସ ।
ଶୁଣିକରି ଅଙ୍ଗଦ ବେଗେ ଚଳିଗଲା
ଗୁରୁମୁନିଙ୍କ ଗୃହରେ ଯାଇଣ ଜଣାଇଲା ।
ଶ୍ରୀରାମ ଠାକୁର ଆଜ୍ଞା ଦେଇଛନ୍ତି ମୋରେ
ତୁମ୍ଭେ ବେଗେ କରିବ ତାଙ୍କର ପାଶରେ ।
ଶୁଣିକରି ଗୁରୁମୁନି ବେଗେ ଚଳିଗଲେ
ରଘୁନାଥଙ୍କ ପାଶେ ପ୍ରବେଶ ହୋଇଲେ ।
ବେଶ ହୋଇ ଶ୍ରୀରାମ ଅଇଲେ ତତକ୍ଷଣ
ନମସ୍କାର କଲେ ଆସି ମୁନିଙ୍କ ଚରଣ ।
କନକରେ ଆସନ ଗୁରୁ ମୁନିଙ୍କି ଦେଲେ
ଆସନ ଉପରେ ମୁନି ନିଶ୍ଚିନ୍ତେ ବସିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ମୟୂ ଦୈତ୍ୟ ସଙ୍ଗରେ ଯେ ବିଭୀଷଣ ସରି ।
ଦୁଇଜଣ ଆସି ରାମ ଆଗେ ଉପଗତ
ଖଣ୍ଡେ ଦୂରେ ରହିଣ ଦେଖିଲେ ରାମରୂପ ।
ନଗରେ ମୟୂଦୈତ୍ୟ ଯେ ଚାହିଁଲା ନୟନେ
ଦେଖିଲା ନାରାୟଣ ବସେ ସିଂହାସନେ ।
ଗୁରୁ ଋଷି ବସିଅଛନ୍ତି ପାଶେ ପୁଣ
ତିନି ଭାଇ ଅଛନ୍ତି ବାମ ପାର୍ଶ୍ୱେଣ ।
ଆଗରେ ସୁଗ୍ରୀବର ଲୋମପାଦ ରହେ
ଗୁହ ନାମେ ଶବର ତହିଁର ପାଶେ ଯାଏ ।
ଦେଖିଣ ମୟୂ ଦୈତ୍ୟ ସନ୍ତୋଷ ମନ ହେଲା
ଝଟକ ବିଜୁଳି ରଥ ଉପରୁ ଓହ୍ଲାଇଲା ।
ସୁବର୍ଣ୍ଣ ରଥରୁ ଓହ୍ଲାଇ ବିଭୀଷଣ
ପାଏଡ଼ା ପକାଇ ଯେ କଲାକ ପ୍ରଣାମ ।
କରଯୋଡ଼ି ଆଗରେ ଯାଇଣ ଉଭାହେଲା
ଏଥ ଅନନ୍ତରେ ଶୁଣ ହେମବନ୍ତର ଦୁଲାଳ

ଯେତେ ଦୁଷ୍ଟ ଶ୍ରୀରାମଙ୍କର ବଚନ ତାକୁ ମୁଖ
କେତେଦୂରୁ ପାଏ ପଡ଼ି ଗୋଇଲାକ ଦୈତ୍ୟ
ଦଣ୍ଡ ପ୍ରଣାମ କରିଣ ଆନନ୍ଦ ସେହୁ ପୁଣ
ଶତେବେଳ ପର୍ଯ୍ୟନ୍ତ ପାଏଡ଼ା ପାରେ ଜାଣ
ଦେଖିକରି ରଘୁନାଥ ହରଷ ମନ ହେଲେ
ଉଠ ଉଠ ବୋଲିଣ ଦୈତ୍ୟକୁ ଆଜ୍ଞା ଦେଲେ
କରଯୋଡ଼ି ଆଗରେ ମୟୂ ଦୈତ୍ୟ ଉଭା
ଶ୍ରୀରାମ ପ୍ରଭୁଙ୍କୁ ସେ ପାଉଅଛି ଶୋଭା ।
ଶ୍ରୀରାମ ବୋଲନ୍ତି ତୁମ୍ଭେ ଦୈତ୍ୟରାଜ ଶୁଣ
ସବୁ କୁଶଳଟିକ କହ ମୋ ଆଗେଣ ।
ମୟୂ ଦୈତ୍ୟ ବୋଇଲା ମୁଁ କହିବି ଆଉ କିସ
ଅନ୍ତର୍ଯ୍ୟାମୀ ନାଥ ତୁମ୍ଭେ ଜାଣ ତ ବିଶେଷ
ଚଳି ହେଲା ଜନ୍ମ ଆଜ ପରସନ୍ନେ ଭଲ
ଏବେ ଶୁଣିଲି ମର୍ତ୍ତ୍ୟରୁ ମଲେ ତିନି ମଲ୍ଲ ।
ଅନେକ ଦୁଷ୍ଟ ଛନ୍ତି ସପତ ଦ୍ୱୀପରେ
ଏବେ ସେ ନାଶ ଯିବେ ତୁମର ହସ୍ତରେ ।
ଏହୁ ସିନ୍ଧୁ ଭିତରେ ଅଛି ଏକ ଦୁଷ୍ଟ
ବାଳକ ଷଣ୍ଡା ଯୁଦ୍ଧ ଖେଳ କଲା ସେ ପାପିଷ୍ଠ
ସେ ଯେବେ ନାଶ ଯିବ ପୃଥ୍ୱୀ ହେବ ସ୍ଥିର
ବିଭୀଷଣ ନୃପତିର ମନରୁ ଯାନ୍ତା ଦୂର ।
ନଳପଞ୍ଚକ ବଳ ତ ଅଟେ ବଳସ୍ୱାର
ଦେବତାଙ୍କୁ ନ ମାନେ ସେ ଦଶଦିଗପାଳ ।
ଧରଣୀ କରଯୋଡ଼ି ଡାକୁଛନ୍ତି ଉଚ୍ଚ
କସୁଙ୍କା ଶତେ ଘର ସୁବର୍ଣ୍ଣ ନିତ ଦେଇ ।
ଅମଲାଣ ଶାଢ଼ୀ ଇନ୍ଦ୍ର ବିଅନ୍ତି ଲକ୍ଷେ ପୁର୍ଣ
ତା ପୁରେ ମେଘମାନେ ବରଷେ ଘୃତବନ ।
ଶସ୍ୟରେ ହାନ ନାହିଁ ଆୟୁରେ ଅଟେ ବଡ଼
ପରିବାର ପଣରେ ସୁଧରେ ଅଟେ ପାଡ଼ ।
ପଦ୍ମବନ ପ୍ରାୟୁ ସନ୍ତାନ ବଢ଼େ ତାର
ସମସ୍ତେ ଧବଳବର୍ଣ୍ଣ ଶୁଣ ହେ ରଘୁବୀର ।
କେଉଁ ପୁଣ୍ୟ କରିବାରୁ ଦେବ୍ୟା ମୋତେ ହେଲା
ନରେନ୍ଦ୍ରୀ ଦେଖିବାକୁ ମୋର ଭାଗ୍ୟଥିଲା ।
ଶ୍ରୀରାମବୋଇଲେ ଦେଖ ନେସରେଦୈତ୍ୟସାର
ଲକ୍ଷେ ରଜା ଭୁଣ୍ଡ ଯେ ସୁଫଳ ଗିରିର ।
ପାଶମନ୍ତ୍ରୀ ଭୃଙ୍ଗଲକ୍ଷ ଷୋଳଲକ୍ଷ ଯେ ପଦାତ
ଏତେ ଆସନ ବାହୁଁ ଦେବ ମୁଁ ଝଟତ ।

ଘର ଦ୍ୱାର ମୋର ନାହିଁ ଏଥିରେ ତ ପୁଣ
ହୁକୁମ କାଟିବାକୁ ମୋ ରାଜ୍ୟ ନୁହେଁ ଜାଣ ।
ଖାଇବାର ସଞ୍ଚା ମୁଁ ଯେ ଦେବାରୁ ନୁହେସକ୍ଷ
ମୋର ଦୁଃଖେ ଦୁଃଖୀ ଆସି ରାଜାଏ ସମସ୍ତ
ଅକଳନ ସୈନ୍ୟ ଦେଖ ଘୋଡା ହାତୀ ପୁଣ
ଅଚ୍ଛାରେ ଏଥିରେ ଦୁଃଖ ପାଉ ଜାଣ ।
ଋଷଭଦ୍ର ଭଲ୍ଲ ଯେ ମୋର ଅଟେ ସାଥି
ରାଜ୍ୟ ଛାଡ଼ି ଜନଗଇ ଅଇଲେ ଏଥିକି ।
ଅକାରଣେ ମୋର ସଙ୍ଗେ ଲାଗିଲା ଦଶଶିର
କିଛୁ ଦୋଷ କରିନାହିଁ ମୁହିଁ ଯେ ତାହାର ।
ପୁତ୍ର ନାତି ଘଟିଆଇ କୂଟ ମୋତେ କଲା
ଆପଣା ଦୋଷରୁ ଯେ ଯମପୁର ଗଲା ।
ଗଲାବେଳେ ତାକୁ ନେଲା ପୁତ୍ର ନାତି ପୁଣ
ବନ୍ଧୁ ଭାଇ କୁଟୁମ୍ବ ଝିଅଙ୍କ ବର ପୁଣ ।
ସେଠୁ ଯିବାରୁ ତାର ଘରଣୀ ମନ୍ଦୋଦରୀ
ମୋର ସଙ୍ଗେ କଳହ ଯେ କଲେକ ବହୁତ ।
ବୋଇଲା ମୋରରାଜ୍ୟରେମୋସୁତହେବରାଜ
ବିଭୀଷଣ ରାଜା ହେଲେ ନ ରହେ ପରଜା ।
ତାର କଥା ଶୁଣି ମୁଁ କିଛି ନ କହିଲି
ପୁତ୍ରକୁ ତାହାର ଡାକିଣ ବସାଇଲି ।
ଜ୍ୟେଷ୍ଠ ଲଙ୍କାରେ ମୁଁ ନାତକୁ ରାଜା କଲି
ସନ୍ତୋଷ ନୋହିଲା ମନ କହିଲା ଫେର କରି
ବୋଇଲା ମୋର ବଡ଼ ବଅରଙ୍କ ପୁଅ
ତାଙ୍କୁ ରାଜାକର ତୁମ୍ଭେ ଦଶରଥ ସ୍ନେହ ।
ତାର ମନ ବୁଝିବାକୁ ବହୁତ ମୁଁ ଯେ କଲି
ସୁଲଙ୍କା ଗଡ଼ରେ ତାକୁ ରାଜପଣ ଦେଲି ।
ତେବେ ତାର ମନବୋଧ ନୁହେଁ କେବେପୁଣ
ବିଭୀଷଣ ମୋ ସଙ୍ଗରେ ଶତ୍ରୁ ହେଲା ଜାଣ ।
ବୋଇଲା ମୁଁ ରାଜ୍ୟରେଯେବେହେବପାଟରାଣୀ
ସଖୀରେ ଗଣିବା ମୋତେ କର ହେ ରଘୁମଣି
ବିଭୀଷଣ ଉପ୍ରୋଧରେ ସମ୍ପ୍ରତି ତାକୁ କଲି
ଯେବେ ମନବୋଧତାରକେବେହେଁ ନଜାଣିଲି
ବୋଇଲା ସେ ଗନ୍ଧକନ୍ୟା ସଙ୍ଗରେ କର ସମ
ସେକଥାକୁ ବହୁରଣ କଲି ମୁହିଁ ପୁଣ ।
ତେବେ ବିଭୀଷଣକୁ ସେଠୁ ରାଜ ଦେଲା
ବିଭୀଷଣ ନଜାଣେ ବସି ପାଟ ବୋଲାଇଲା ।

ତେବେ ସେ ମୋର ଘରେ କରେ ତଳସଳ
ବୋଇଲା ତୋ ଘରଣୀକି ଘେନ ଦେଖେତଳ
ଶୁଣିକରି ମୋର ମନ ହେଲା ଉଦବେଗ
ଉଚ୍ଚରିଲ ମଦ୍ୟଦୈତ୍ୟ କରବେ ମୋର କାର୍ଯ୍ୟ
ବିଭୀଷଣକୁ କହିଣ ତୁମ୍ଭଙ୍କୁ ଅଣାଇଲି
ଏ ଲଙ୍କାଗଡ଼ରୁ ମୁହିଁ ଦେଶେ ଯିବ ବୋଲି
ମଦ୍ୟଦୈତ୍ୟ ବୋଲେ ଶୁଣ ହେ ରୂପଧାରୀ
ମୋହର ହସ୍ତରେ କେଉଁ କଥା ହେବ କରି !
ଦୃଷ୍ଟ ଅଣ୍ଡ ଦେଖେ ଯେ କରିବ ତତକ୍ଷଣ
ଏତେକହି କରଯୋଡ଼ି କହେ ବନୋଇଣ ।
ଶ୍ରୀରାମ ବୋଇଲେ ଶୁଣ ସଭା ନିର୍ମାକର
ଲକ୍ଷେ ରାଜା ବସିବାକୁ ହୋଇବ ସମ୍ଭାର ।
ଲକ୍ଷେ ସ୍ତମ୍ଭ ଅଯୁତ ଯେ ଲକ୍ଷେ ସିଂହାସନ
ଖମ୍ବଗୋଟି ହୋଇଥିବ ସ୍ୱରଅଂଶା ପୁଣ ।
ପାତ୍ର ମନ୍ତ୍ରୀ ସାମନ୍ତ ଯେ ଜନ ପାଖରେଥିବେ
ମଧ୍ୟ ସିଂହାସନକୁ ରାଜାମାନେ ଯିବେ ।
ଆଉଜଲେ ଶୀତଳ ଯେ ଲାଗିବ ଦେହକୁ
ସୁବର୍ଣ୍ଣରେ ନିର୍ମାଣ ହେବ ବସିବାକୁ ।
ଦୂରରୁ ଦିଶିଲେ ଶୋଭା ଝଟକ ବିଜୁଳି
ବସିଲେ ସୁଖ ଚିତ୍ତରେ ପାଇବେ ଦଣ୍ଡଧାରୀ ।
ଉଠିବାକୁ ବଳଣ ପାବଚ୍ଛ ଥିବ କରି
ଇନ୍ଦ୍ର ଗୋବନ୍ଦ ବୃନ୍ଦଆ ଉପରେ ଥିବ ଘେରି
ଯେଉଁ ରାଜା ସେ ସଭାରେ ନାରଦ କରିବ
ବୁଦ୍ଧି ତାକୁ ନ ସ୍ଫୁରିବ କାବାଡ଼ ହୋଇଥିବ
ଏମନ୍ତ ପ୍ରକାରେ ସଭା କର ହେ ଭଆଣ
ସଭାରେ ଲକ୍ଷେ ରାଜା ବସନ୍ତୁ ଏକମନ ।
ଆହୁରି ସଭା ଗୋଟିଏ ତିଆରି କର ପୁଣ
ଧବଳ ବର୍ଣ୍ଣ ସଭା ହୋଇବ ଭଆଣ ।
ସେ ସଭାରେ ବସିବେ ଯେ ଲକ୍ଷେ କପି ଭଲ୍ଲୁ
ବାନର କୁଳ ରାଜା ଅଟନ୍ତି ସେସବୁ ।
ଲକ୍ଷେ ଖମ୍ବ ସେଥିରେ ଯେ କରିବ ଭଆଣ
ବସିବାକୁ ପିଢ଼ା ଥିବ ସେଥିରେ ଯେ ପୁଣ ।
ମଧ୍ୟରେ ସିଂହାସନ ଦୁଇଗୋଟି ଥିବ
ଅଙ୍ଗଦକୁ ଘେନ ସୁଗ୍ରୀବର ଯେ ବସିବ ।
ସେନାପତି ଯୂଥମାନେ ବସିବେ ସେଥିରେ
ସୈନ୍ୟମାନେ ରହିବେ ଯେ ସଭାର ତଳରେ

ଆତ୍ମର ସଭା ଗୋଟିଏ କରିବ ଭିଆଣ
ହୀରା ମାଳା ପ୍ରବାଳରେ ହୋଇବ ନିର୍ମାଣ ।
ଚଉଷଠି ଗୋଟି ସ୍ତମ୍ଭ ହୋଇବ ସେଥିରେସାର
ବାରଣ ନୋହିବ ରାତ୍ର ଦିବସ ସେଥିର ।
ଖମ୍ବ ଗୋଟିକରେ ଯେ ଦୁଇ ଦୁଇ ଆସନ
ଦୁଇଗୋଟି ବସିବେ ସେଥିରେ ଋଷି ପୁଣ ।
ଛୟାଣୋଇ କୋଟି ଋଷି ବସିବେ ପ୍ରମାଣ
ଉପରେ ଚନ୍ଦୁଆ ଟଣା ତଳରେ ଚିକ୍କଣ ।
ଏ ତିନ ସଭାକୁ ଆଜ ଆସି ନିର୍ମ୍ମା କର
କାଲି ପ୍ରଭାତରୁ ସଭା କରିବା ବିଚାର ।
ତାହା ଶୁଣି ମୟଦୈତ୍ୟ ବଚନ କହିଲେ
ରାତ୍ରକ ଭିତରେ ନିର୍ମ୍ମା କରିବ ବୋଇଲେ ।
ଅଣାଅ ହେ ଋଷିଗଣ ଏଠାକୁ ବହନ
ବସ୍ଥାନଣ ଥାଉଛି ଯେ ଏ ସଭାରେ ପୁଣ ।
ଷୋଳଗୋଟି ଥାଉଛି ଧବଳ ଶୋଭା ହେବ
ମେଲାରେ ହୋଇବ ସଭା ଜଙ୍ଗଲ ନ ଥିବ ।
ଶୁଣିକରି ରଘୁନାଥ ବଶିଷ୍ଠଙ୍କୁ କହି
ତୁମ୍ଭଙ୍କୁ ବନନ୍ତି ଯେ କରୁଅଛି ମୁହିଁ ।
ତୁମ୍ଭେ ସଭାରେ ତରସ୍ତ ସକଳ କରିବ
ସୁରଭୀଙ୍କୁ ଅଣାଇଣ ସଙ୍ଗରେ ରଖିବ ।
ନାରଦଙ୍କୁ ବୋଇଲେ ଯାଅ ସ୍ୱର୍ଗପୁର
ସକଳ ମୁନିମାନଙ୍କୁ ଆମନ୍ତ୍ରଣ କର ।
ଶୁଣିଣ ନାରଦ ମୁନି ସ୍ୱର୍ଗକୁ ଚଳିଗଲେ
ଯଶୋବନ୍ତୀ ପୁରେ ଯାଇ ପ୍ରବେଶ ହୋଇଲେ
ରଘୁରାମ ଋଷିଙ୍କି ବୋଲେ ବେଗେ ଯାଇ
ମଣିପୁର ଋଷିଙ୍କି ଆଣିବ ବରଗାଇ ।
ଶୁଣିକରି ରଘୁରାମ ବେଗେ ଚଳିଗଲେ
ଅଗସ୍ତି ଋଷିଙ୍କ ପାଶେ ପ୍ରବେଶ ହୋଇଲେ ।
ଦୁର୍ବ୍ବାସାଙ୍କୁ ବୋଇଲେ ତୁମ୍ଭେ ଯାଅ ତଳପୁର
ପାତାଳପୁର ଋଷିଙ୍କି ବରଣ ଯାଇ କର ।
ବେଗେ ଘେନ ଏଠାକୁ ଆସିବ ବହନ
ଶୁଣିଣ ଦୁର୍ବ୍ବାସା ଋଷି ଉଠି ବେଗ ପୁଣ ।
ପାତାଳପୁରେ ପ୍ରବେଶ ହୋଇଲେ ତତକ୍ଷଣ
ବାସୁକି ରାଜା ପାଶରେ ମିଳିଲେ ଯାଇଣ ।
ବାସୁକୀ ପଚାରିଲେ ଶୁଣ ଆହେ ମୁନି
କେଉଁକାର୍ଯ୍ୟେ ଆସିଅଛ ଏଠାବକୁ ପୁଣି ।

ଦୁର୍ବ୍ବାସା ବୋଇଲେ ରାଜା ଶୁଣ ମୋ ବଚନ
ଲଙ୍କାରେ ରାମ ରାବଣ ସମର ହେଲା ପୁଣ
ଲକ୍ଷେ ରାଜା ସେଠାରେ ରୁଣ୍ଡ ହୋଇଛନ୍ତି
ତୁମ୍ଭଙ୍କୁ ବରଣ କରିଛନ୍ତି ରଘୁପତି ।
ମନପବନ ଦଣ୍ଡରେ ଋଷି ଗଲେ ପୁଣି
ଓଲ୍ଲି କମନ୍ତେ ଭ୍ରମଣ କରନ୍ତି ତତକ୍ଷଣି ।
ତାହାଙ୍କୁ ଦେଖି ବଶିଷ୍ଠ ମନରେ ବିଚାରିଲେ
ଗୋମାତାର ନାମ ଧରି ସୁମରଣା କଲେ ।
ତତକ୍ଷଣେ କାମଧେନୁ ହେଲେ ପରବେଶ
କାମଧେନୁକୁ ଦେଖି ମୁନି ହେ ହରଷ ।
ବଶିଷ୍ଠ ବୋଇଲେ ମାତ ଶୁଣ ମୋ ବଚନ
ଦେଖ ଏ ଶ୍ରୀରାମ ତ ସାକ୍ଷାତେ ନାରାୟଣ
ଅସୁରକୁ ମାରିବାକୁ ହେଲେ ଅବତାର
ଦେଖ ଏ ଲଙ୍କାଗଡ଼ ରାଜା ରାବଣନିଶାଚର
ଏହାକୁ ମାରି ରାମ ମାରିଲେ ଶତେମୁଖା
ଏକମୁଖା ମରିବାରୁ ଦେବତା ନିଶଙ୍କା ।
ଏହି ରାମ ଘରଣୀ ଯେ ଅଟନ୍ତି ଜାନକୀ
ଜାନକୀ କୋପ ମନେ ମରିଛି ଲଙ୍କପତି ।
ଅସଂଖ୍ୟ ସୈନ୍ୟ ଦେଖ ରାମର ଅଟେ ପୁଣ
ଲକ୍ଷେ ରାଜା ଅଛନ୍ତି ତାଙ୍କର ସଙ୍ଗେଣ ।
ସମୁଦ୍ର ମଧ୍ୟରେ ଦେଖ ଅଟେ ଏହାର ଘର
ଜାନକୀ ବନ୍ଦୀରେ ଅଛି ଅଶୋକ ବନର ।
ବନରୁ ରାବଣ ଯାଇ ଧରିଣ ଆଣିଲା
ଲକ୍ଷେ ରାଜା ଆସିବାକୁ ଡିଗର ଏଥିହେଲା
ସଭାକରିପଚାରିବେସେନେବେକିନାହିଁଜାନକୀ
ଏତେକହି ସେଠାରୁ ଯେ ଗଲେ ବ୍ରହ୍ମସୁତ ।
ନିଜ ଆଶ୍ରମରେ ଯାଇ ପ୍ରବେଶ ହୋଇଲେ
ସୁରଭୀଙ୍କୁ ସଙ୍ଗେ ଘେନି ମୁନି ସେଠାରୁ ଗଲେ
ଶୁଣିଣ ସୁରଭୀ ମାୟା କପଟ ପୁଣ କଲା
ଯେ ଯାହା ଲୋଡ଼ଇ ତାକୁ ସେରୂପେ ମିଳିଲା
ବିଶ୍ରାମଣ ନିଜର ଆଶ୍ରମେ ମିଳଇ
ମୟଦୈତ୍ୟକୁ ସଙ୍ଗେ ଯେ ନେଲେ ନୃପସାଇଁ
ସୁଗ୍ରୀବର ଲୋମପାଦ ଗୁହନାମେ ଯେ ଶବର
ଯେ ଯାହା ଆଶ୍ରମରେ ମିଳିଲେ ସତ୍ୱର ।
ସେଠାରୁ ବୁଡ଼ିଭାଇ ସନ୍ଧ୍ୟା ତର୍ପଣ କଲେ
ସେନାପତି ଯୂଥପତିମାନଙ୍କୁ ପୂଜିଁ ଆଜ୍ଞାଦେଲେ

ବୋଇଲେ ଅକଳନ୍ତ ଅଟ୍ଟ ଦଳ ଦେଖ
ଦ୍ୱାରପାଶେ ଜଗ ତୁମ୍ଭେ କର ଯେ ଆକଟ ।
ଯାଆନ୍ତା ଯାଉଥିବେ ଆସନ୍ତା ଆସିବେ
ଦୁଷ୍ଟଜନ ଦେଖିଲେ ବନ୍ଦୀ ଯେ କରିବେ ।
ଶୁଣିକରି ସେନାପତି ଯୂଥପତି ଗଲେ
ସେତୁବନ୍ଧ ଉତ୍ତର ଦୁଆର ନିରୋଧିଲେ ।
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଷଡ଼ରସେ ଭୋଜନ ରଘୁବୀର କରି ।
ସୁପନ୍ତି ପଲଙ୍କରେ ଶଯ୍ୟା ଯାଇ କଲେ
ସୈନ୍ୟବଳ ଭୁଞ୍ଜିଣ ନିଦ୍ରା ଯେ ପୁଣ ଗଲେ ।
ରାଜାଗଣେ ଭୋଜନ କରିଣ ଅଚେତ ।
ହସ୍ତୀଘୋଡ଼ା ସାରେଣୀ ଦାନାରେ ମସ୍ତମତ ।
ନିର୍ଜନ ଦେଖିଣ ମୟଦୈତ୍ୟ ଆର ପୁଣ
ବିଭୀଷଣକୁ ଭେଟିଣ ଗଲେ ତତକ୍ଷଣ ।
ତେତେବେଳେ ରଜନୀ ହୋଇଛି ସାତଘଡ଼ି
ମୟଦୈତ୍ୟ ମନଭେଦେ ବିଶ୍ୱର କରେ ବେଢ଼
କୋଶେକ ଓସାର ପୁଣ କୋଶେକ ଅଟେ ଲମ୍ବ
ଷଡ଼ରସ ପ୍ରକାରେ ଯେ ପ୍ରସ୍ତ କଲ ଦମ୍ଭ ।
ହୀରାନୀଳା ବଇଦୂର୍ଯ୍ୟ ମାଣିକ୍ୟ ଜ୍ୟୋତିଜାଣ
ମାୟାରେ ସେ ସ୍ଥଳୀଗୋଟା କଲେ ଯେ ନିର୍ମାଣ
ଛବିଶ ଗୋଲ ଖମ୍ବ ଯେ ଚହ୍ନିରେ ବସାଇଲ
ହୀରା ନୀଳା ମୋତି ଛନ୍ଦେ ଛନ୍ଦେ ଖମ୍ବ କଲ
ଖମ୍ବ ଗୋଟିଙ୍କ ଯେ ସ୍ବରଅଂଶା କରି
ତଳରେ ଯେ ସ୍ବର ପିଢ଼ ବସାଏ ବିସ୍ତର ।
ଉପରେ ମୁକ୍ତ କରିଣ ମଣ୍ଡପ ରଚିଲ
ହରି ଗୋବିନ୍ଦ ନାମାବଳୀ ଚାନ୍ଦୁଆ ଟଣାଇଲ
ବସ୍ତ୍ରାଳଙ୍କ ପାଲଙ୍କ ଯେ ପୂର୍ବଦ୍ୱାରେ କଲେ
ପଶ୍ଚିମ ଦ୍ୱାରକୁ ସେହି ପ୍ରାୟ ଯେ ଘଟିଲେ
ହୀରା ନୀଳା ସଙ୍ଗ ନିର୍ଭା କଲେ ସେ ସତ୍ୱର
ଦଶଗୋଟି ବସ୍ତ୍ରାଳି ପାଏକ ଓସାର ।
ଆରପାଖେ ସୁବର୍ଣ୍ଣ ଯେ ସଙ୍ଗ ନିର୍ଭା କଲ
କୋଶେକ ଓସାର ଯେ ପୁଣ ଲମ୍ବା କଲ ।
ସୁବର୍ଣ୍ଣରେ ନିର୍ଭା କଲ ପିଢ଼ଗୋଟି ଜାଣ
ଯେଥିପରେ ଲକ୍ଷେ ଖମ୍ବ ବସାଇଲେ ପୁଣ ।
ଖମ୍ବ ଗୋଟିଙ୍କରେ ସ୍ବରଅଂଶା ଯେ କରାଇ
ନାନାରତ୍ନ ଅଳଙ୍କାର ଚହ୍ନିରେ ଲମ୍ବାଇ ।

ଗୋଟିଏ ଯେ ସିଂହାସନ ରତ୍ନଗୋଟି ପିଢ଼
ସୁବର୍ଣ୍ଣ ଖମ୍ବ ନିର୍ମାଣ ଚକ୍‌କଣ ଯେ ଗାଢ଼ ।
ଉପର ପିଢ଼କୁ ନିର୍ଭାଇଲେ ସେ ସୁବର୍ଣ୍ଣ
ଛତରେ ରଥ ଆକୃତି କଲ ଛନ୍ଦେ ଛନ୍ଦେ
ଇନ୍ଦ୍ରଗୋବିନ୍ଦ ଚାନ୍ଦୁଆ ସେଥି ଟଣାଇଲେ
ପୂର୍ବକୁ ଦ୍ୱାର କଲେ ବଶଶ ଓାବଛରେ ।
ପଶ୍ଚିମ ଦ୍ୱାରକୁ ପୁଣ କଲ ସେହିମତ
ତେଜରେ ପ୍ରକାଶ ହୋଇ ଲୁଚଇ ଜଗତ ।
ଚାରି ପାଶେ ଧବଳ ଯେ ସଭା ନିର୍ଭା କଲ
ତଳ ପିଢ଼ଗୋଟି ଯେ ଧବଳ କରାଇଲା ।
ଲକ୍ଷେ ଖମ୍ବ ଧବଳ ଯେ କରିଣ ବସାଏ
ଖମ୍ବ ଗୋଟିକରେ ସ୍ବରଅଂଶା ନିର୍ଭା ହୁଏ ।
ସ୍ବରଅଂଶା ସ୍ବର ପିଢ଼ କଲେକ ଯତନ
ଉପର ନିର୍ଭା କଲ ଧବଳ ଯେ ବର୍ଣ୍ଣ ।
କୋଶେକ ପ୍ରସ୍ତ ଚାହାର କୋଶେକ ଯେ ଦୀର୍ଘ
ଧବଳ ଚାନ୍ଦୁଆ ସେଥି ଟଣାଇଲା ବେଗ ।
ଷୋଳଗୋଟି ପାଲଙ୍କ ଯେ ପୂର୍ବଦ୍ୱାରେ କଲ
ପଶ୍ଚିମଦ୍ୱାରେ ଷୋଳ ପାଲଙ୍କ ବସାଇଲା
ଏହିରୂପେ ତିନି ସଭା କଲାକ ନିର୍ଭା ପୁଣ
ମାୟାରେ ପାଚେଶ୍ରଗୋଟି ଷୋଳକୋଶ ଜାଣ
ନିର୍ଭାକରି ମୟଦୈତ୍ୟ ସେଠାରୁ ଚଳିଗଲା
ଅଙ୍ଗଦ ହନୁମନ୍ତ ଚନ୍ଦନ ସୁଷେଣକୁ ଡକାଇଲା
ବୋଇଲା ହୋ ବୀରଜଣ ପୂର୍ବଦ୍ୱାର ଜଗ
କାହାକୁହିଁ ଛାଡ଼ ଏଥି ନ ଦେବ ସରାଗ ।
ପୂର୍ବର ପାଚେଶ୍ର ଦ୍ୱାର ନିରୋଧିଣ ଥିବ
ଶ୍ରୀରାମଙ୍କ ଆଜ୍ଞା ଦେଲେ ଏଥକୁ ଛାଡ଼ିଦେବ ।
ଶୁଣିକରି ବୀରଜଣ ପୂର୍ବରେ ରହିଲେ
ଏଥୁଅନନ୍ତରେ କଥା ଶୁଣ ତୁମ୍ଭେ ଭଲେ ।
ପଶ୍ଚିମଦ୍ୱାରେ ଦୈତ୍ୟ ହେଲା ପରବେଶ
ଜାମ୍ବବ କେଶରୀ ଗନ୍ଧ ଗବାକ୍ଷ ଡାକ ସେତ
ବୋଇଲା ହୋ ଏ ଦୁଆରେ ଜଗି ରହିଥିବ
ଇତରକୁ କାହାକୁ ହୋ ଛାଡ଼ିଣ ନ ଦେବ ।
ଯେତେବେଳେ ରଘୁନାଥ କେବେ ପରମାଣ
ତେତେବେଳେ ଛାଡ଼ିଦେବ ଶୁଣ ତୁମ୍ଭେ ପୁଣ ।
ସାତଘଡ଼ି ରାତିଠାରେ ପ୍ରବେଶ ସେ ହେଲା
ନବଘଡ଼ି ରାତିଠାରେ ତିନି ସଭା ନିର୍ଭାକଲା

ଜଗାଇଣ ମଯୂରଦୈତ୍ୟ ଚଳିଲା ବହନ
ଘଡ଼ିଏ ରଜନୀ ଅଛି ଅରୁଣ ଉଦୟ ଜାଣ ।
ଶ୍ରୀରାମ ଗୁମ୍ଫରେ ଯାଇ ହେଲା ପରବେଶ
ଦେଖିଲା ମୁଖ ପଖାଳେ ଦଶରଥ ଶିଷ୍ୟ ।
କରଯୋଡ଼ି ମଯୂରଦୈତ୍ୟ କହିଲା ବଚନ
ନର୍ଭା ହେଲା ସଭା ବୋଲି ଜଣାଇଲା ପୁଣ ।
ଛନ ସଭା ନର୍ଭା କରି ଯାଚେଷ୍ଟ ନର୍ଭାକଲି
ପୂର୍ବ ପଶ୍ଚିମ ଦ୍ୱାରେ ସେନାପତି ଜଗାଇଲି ।
ନିତ୍ୟକର୍ମ ସାରିଣ ଯାଇଣ ଦେଖ ଏବେ
ଲଙ୍କେଶ ରାଜାଙ୍କୁ ନିମନ୍ତ୍ରି କରିଣ ନଅ ଦେବେ
ସୁବର୍ଣ୍ଣରେ ନର୍ଭାକଲି ରାଜାଙ୍କର ପାଇଁ
ଧବଳ ସଭାଗୋଟି ଯେ ବାନରଙ୍କ ପାଇଁ ।
ସ୍ୱୀର ମାଳା ସଙ୍ଗପରେ ଋଷିଙ୍କର ମେଳା
ଏତେବୋଲି କହିଲା ଯେ କୁମୁଦ ଦୈତ୍ୟବଳ
ତାହାକୁ ବୁଦ୍ଧିଣ ଯେ ବୋଇଲେ ରାମରାୟେ
ନିତ୍ୟକର୍ମ ସାରି ସଙ୍ଗରେ କର ହେ ଭଜୟେ
ଏମନ୍ତ ସମୟେ ପୁଣ ବଶିଷ୍ଠ ଋଷି ଜାଣ
ବିଜେକଲେ ଶ୍ରୀରାମ ମୁନିଙ୍କ ଆଗେଣ ।
ନମସ୍କାର କରି ମୁନିଙ୍କ କହନ୍ତି ବଚନ
ବେଗେ ବିଜେ କରିବା ହେଉ ସଭାକୁ ବହନ
ଋଷିମାନେ ଆସିବେ କରିବ ତରସ୍ତ
ନିତ୍ୟକର୍ମ ସାରି ବେଗେ ଯାଅ ବ୍ରହ୍ମବେତ୍ତା ।
ଶୁଣିଣ ବଶିଷ୍ଠମୁନି ବେଗେ ଚଳିଗଲେ
ନଦୀରେ ସ୍ନାହାନ କରି ନିତ୍ୟକର୍ମ କଲେ ।
ଶୀଘ୍ର ଆଶ୍ରମରେ ଯାଇ ହେଲେ ପରବେଶ
ମାଜଣୀ ହୋଇ ରାମ ନଗରେ ପ୍ରବେଶ ।
ସ୍ନାହାନ ସାରିଣ ସନ୍ଧ୍ୟା ତର୍ପଣ ଯେ କଲେ
ଜଳ ତିଳ ଦେଇ ନିଜ ଆଶ୍ରମେ ମିଳିଲେ ।
ଏହା ଶୁଣି ପାର୍ବତୀ କହିଲେ ତ୍ରିଲୋଚନ
ମଯୂରଦୈତ୍ୟ କଥା ମୁଁ ଯେ ନ ଶୁଣିଲି କର୍ଣ୍ଣେ ।
କାହାଠାରୁ ମଯୂରଦୈତ୍ୟ ବର ଯେ ପାଇଲା
କେଉଣ ଦେବତା ତାକୁ ମାୟାସଭା ଦେଲା ।
ଈଶ୍ୱର ବୋଇଲେ ସେ ଯେ ତପ କଲାବେଳେ
ସୁଗେ ପଞ୍ଚଯଜ୍ଞେ ସେ ରହିଲା ଯଜ୍ଞସ୍ଥାନେ ।
ତେତେକାଳେ ସୁବସ୍ଥା ଯେ ହୋଇଲା ଆମ୍ଭର
ଯାଚକରି ବର ଆମ୍ଭେ ଦେଲୁ ନିଶାଚର ।

ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଅମର ଏବେ ହୁଅ
ଦେବତାଙ୍କଠାରେ ତୋ ରହୁ ଏବେ ସ୍ନେହ
ହିଂସା ଭାବ ନୁହ ତୁ ଦେବତାରେ ଭକୁସି
ମନେ ବିଚାରିଲେ ମାୟା ସଭାଏ ବିଶେଷି ।
ସଭାଗୋଟି ରଚିଲେ ଦେବେ ବଶ୍ୟ ଜାଣ
ବିଶ୍ୱକର୍ମା ସହସ୍ର ନ ଲଗିବ ପୁଣ ।
ବ୍ରହ୍ମାବିଷ୍ଣୁ ମହେଶ୍ୱର ତିନିଙ୍କର ତନ୍ତ୍ର
ଅନ୍ୟ ଦେବଆଜ୍ଞାରେ ନୋହିବ ଆଜ୍ଞାହତୁ ।
ବରପାଇ ମଯୂରଦୈତ୍ୟ ଯାନ ଯେ ମାଗିଲା
ଶୂନ୍ୟରେ ଗମନ ମୋର କରିବ ବୋଇଲା ।
ଶୁଣିଣ ତାହାକୁ ଆମ୍ଭେ ଯେ ଆଜ୍ଞାଦେଲୁ
ପୁଟକ ବିକୁଳି ରଥ ଦେଇ ସମର୍ପିଲୁ ।
ବୋଇଲେ ହୋ ଏହୁ ରଥ ଅଟଇ ଯେ ପୁଣ
ଲଙ୍କେ ଯୁଣ ବିହରିବ ଶୁଣ ମୋ ବଚନ ।
ରଥ ପାଇ ଦୈତ୍ୟପାର ନିଜପୁର ଗଲା
ଚନ୍ଦ୍ରଜ୍ୟୋତିପୁରେ ଯାଇ ପ୍ରବେଶ ହୋଇଲା ।
ଶତଗୋଟି ଦୁହିତା ଯେ ପାଞ୍ଚଗୋଟି ପୁତ୍ର
ଦୈତ୍ୟବଳ ଯେଉଁଣ ସେ ରାଜ୍ୟ ରଜାତ ।
ବଡ଼ ଦୁହିତା ଗୋଟି ବଳକ ବିଭା ହେଲା
ମାଳାବତୀ ବୋଲି ତାର ନାମଗୋଟି ହେଲା
ମଝିଆ ଝିଅକୁ ତାର ବିଭା କଉରବ
ସେ ଝିଅର ନାମଗୋଟି ଅଟଇ ସୁଲଭ ।
ସାନ ଝିଅ ନାମ ଯେ ମନ୍ଦୋଦରୀ ଜାଣ
ଦଶଗ୍ରୀବ ବିଭା ହେଲା ତାହାକୁ ଯେ ପୁଣ ।
କଉ ଦୈତ୍ୟ କମାଦୈତ୍ୟ ସଜଦୈତ୍ୟଆର
ଅଣଦୈତ୍ୟ ସୁରଦୈତ୍ୟ ପାଞ୍ଚପୁତ୍ର ତାର ।
ପାର୍ବତୀ ବୋଇଲେ ତାର କଥା ମୁଁ ଶୁଣିଲି
କଥାଏ ରହିଲା ମୋତେ କହିବ ବିଚାରି ।
ମନ୍ଦୋଦରୀକି କହିଣ ବିଭୀଷଣ ଆସି
ଦର୍ଶନ କରି ଯାଇ ରାମର ପାଟବଂଶୀ ।
ବିବୁଧେ ଦର୍ଶନ ଯାଇ କଲେ ମନ୍ଦୋଦରୀ
କଥମନେ ବିଚାରିଲେ ଜନକ କୁମାରୀ ।
ସେକଥା ମୋର ଆଗେ କହ ତ୍ରିଲୋଚନ
ତେବେ ମୋର ମନ ହେବ ସନ୍ତୋଷ ହେବ ପୁଣ
ଈଶ୍ୱର ବୋଇଲେ ସେକଥା ଦେବୀ କହି
ବିଭୀଷଣ ମଯୂରଦୈତ୍ୟ ରାମ ପାଶେ ଯାଇ ।

ସାତଲକ୍ଷ ପଞ୍ଚଶ ସହସ୍ର ଶ୍ରେଷ୍ଠ ନାସ
ସାତକୋଟି ପଞ୍ଚଶ ନାସ ତହିଁରେ ପୂର ।
ସମସ୍ତେ ମାଜଣା ହୋଇ ସୁବେଶ ହୋଇଲେ
ଅମଲାନ ଶାଢ଼ୀ ପିନ୍ଧି ଅଳଙ୍କାର ଲଗିଦେଲେ
ସୁବାସ କୁସୁମ ଫୁଲ ଲଗାଇ ସେହୁ ପୁଣ
ଚନ୍ଦନ ଚୁଆ ଅଙ୍ଗରେ ଲେପିଲେ ବହନ ।
ମସ୍ତକରେ ଅଳକା ସେ ଶିରପରେ ମଥାମଣି
ଝୁରକାଠି ଝୁମ୍ପା ଯେ ତଉସ ଭଣ୍ଡି ଜାଣି ।
ମଲକଡ଼ି ଝଲକା ଯେ କର୍ଣ୍ଣରେ କାପ ଶୋହେ
ବକ୍ଷସ୍ଥଳେ ସୁପସର ପଦକମାନ ରହେ ।
ଚନ୍ଦ୍ରହାର ମୋତିମାଳ ଲୁବେ ଗଣ୍ଡସ୍ଥଳେ
ହୀରା ମାଣିକ୍ୟର ଚୁଡ଼ି ବେନ ଯେ ହସ୍ତରେ ।
ତାଡ଼ ତୋଡର ବାହୁଟି ବଳ ଶୋଭେ ପୁଣି
ପାହୁଡ଼ ଝୁଣ୍ଟିଆ ବଳା ନୂପୁର ବାଜେଣି ।
ବେଶମାନ ଅଟେ ତୋର ମୋହର ଜଗତ
ଦେଇଣ ଯେ ମୁନିମାନେ ହୋଇବେ ମୋହିତ
ରଜନୀ ଆସିଣ ଯହୁଁ ହେଲା ଦୁଇଦଣ୍ଡ
ମନ୍ଦୋଦରୀ ରାଣୀ ଯେ ହାନ୍ଦୋଳା ସଜକର ।
ସପତଣୀ ସଙ୍ଗେ ଘେନଗଲା ତଳ ପୁଣ
ଗହଳରେ ବାଣ୍ଡ ଯେ ହୋଇଲା ଘଞ୍ଚ ଜାଣ
ମଧୁବନ ଲଙ୍ଘିଣ ଅଶୋକବନେ ହେଲେ
ଜାନକୀର ନିକଟରେ ଯାଇଣ ମିଳିଲେ ।
ହାନ୍ଦୋଳାରୁ ଓହ୍ଲାଇଣ ମନ୍ଦୋଦରୀ ରାଣୀ
ଧୀର ଧୀର ହୋଇ ସେ ସ୍ଥଳପ ଏ ଭୂଣି ।
ନିକଟକୁ ଯାଇଣ ସେ ଲଜ୍ଜି ହୋଇଲା
କରଯୋଡ଼ ଆଗରେ ଛିଡ଼ା ପୁଣି ହେଲା ।
ସପତଣୀମାନେ ଶୋଇଲେ ପାଏ ମଣ୍ଡ
ସମସ୍ତ ରାଣୀ ଆସି ଓଳଗି ତଳେ ପଡ଼ ।
ମନ୍ଦୋଦରୀ ରାଣୀ ପୁଣି ଅଳଙ୍କାର ନେଇ
ସୁବର୍ଣ୍ଣର ଭୃଙ୍ଗାରେ ଯତନେ ପୂରାଇ ।
ହୀରା ମାଣିକ୍ୟ ଚୁଡ଼ି ତଡ଼ ତୋଡର ବଳ
ଚନ୍ଦ୍ରହାର ପଦକ ସୁପସର ସଜ ।
ମଥାମଣି ଅଳଙ୍କାର ତଉଁସ ଭଣ୍ଡି ଝୁମ୍ପି
ପାହୁଡ଼ ନୂପୁର ନାନା ବର୍ଣ୍ଣରେ ଯେ ରଞ୍ଜି ।
ଚନ୍ଦନ ଚୁଆ ସଙ୍ଗରେ ଅମଲାନ ଶାଢ଼ୀ
ସୁବାସ ଫୁଲ ସଙ୍ଗରେ ଧଣ୍ଡାମାନ ଗଢ଼ି ।

ଲକ୍ଷେକ ସୁବର୍ଣ୍ଣ ଭୃଙ୍ଗା ଗୋଟି ଜାଣ
ଦରଶନ କରିଦେଲା ମନ୍ଦୋଦରୀ ପୁଣ ।
ଏହୁରୂପେ ସର୍ବନାରୀ ଦେଲେ ନେଇ ଜାଣ
ଦେଖା ଦରଶନ ଦେଲେକ ସର୍ବେ ପୁଣ ।
ଜାନକୀର ତେଜ ଦେଖି ସକଳ ନୋହୁଛେ
ଆଡ଼ ହୋଇ ହୋଇ ରହି ବସୁର ସବହେଁ ।
ଏଡ଼େ ସୁନ୍ଦର ପଣ ନ ଦେଖୁ ଆମ୍ଭେ କାହିଁ
ଅଗ୍ନି ପ୍ରାପ୍ତ କନ୍ୟାଅଛି ଏ ସଂସାର ଦେହି ।
ନୋହିଲେ କମ୍ପାଇଁ ଦଶଗ୍ରୀବ ମୂର୍ଚ୍ଛିଲ
ନ ଦେଇଣ ନିଜ ପ୍ରାଣ ଗ୍ରୁଏଁ ହରାଇଲ ।
କେ ବୋଲଇ ଲଙ୍କାକୁ ତ ଅଟେ ଏହୁ ଅଗ୍ନି
କେ ବୋଲନ୍ତି ଲଙ୍କା ଲୋକେ ଭୃଣ ସ୍ୱାକୁପୁଣି
କେ ବୋଲନ୍ତି କମଳା ଏ ବିଷ୍ଣୁର ପାଟରାଣୀ
କେ ବୋଲଇ ବରୁଣର ଦୁହିତା ଏହୁ ପୁଣି ।
କେ ବୋଲଇ ବିଭୀଷଣ ବଡ଼ ଗୋ ଭାଗ୍ୟବନ୍ତ
ତାଙ୍କର ସଜାଶେ ଆମ୍ଭେ ଦେଖିଲୁ ସ୍ୱାକୁତ ।
କେ ବୋଲେ ଆଜନ୍ଦକ ସୁଫଳ ମୋହର
କେ ବୋଲେ ଦେଖିଲୁ ଆମ୍ଭେ ଭାଗ୍ୟେ ଯେ ପୁର୍ବର
କେ ବୋଲଇ ରାବଣକୁ ନକର ଗୋ ଊଣା
ଅଗ୍ନିକି ଆଣିଲବେଳେ ନୋହିଲ ପଥବଣା ।
କେ ବୋଲଇ ନୋହିଲ କମ୍ପା ଗୁଡ଼ଲଦଇବ
କେ ବୋଲେ ମତଣି ତ ଲୁହୋଇଲ ସବଷିବ
କେ ବୋଲଇ ଆମ୍ଭ ଅଅର୍ବ ବହୁତ ସୁଖଦେବ
ଭଲ ଯୋଗେ ଭେଟିଲେ ଏ ଯାଇ ରାଘବ ।
କେ ବୋଲଇ ତାଙ୍କ ତେଜେନପାରୁ ଆମ୍ଭେ ରହି
କେ ବୋଲଇ ଏହାପୁଣ କେମନ୍ତେ ଗଢ଼େ ବହି
କେ ବୋଲଇ ଧନ୍ୟ ଯେ ଅଟେ ଲଙ୍କାପୁର
ଏହିସ୍ଥାନେ ବଟେଳଟେଲ ବ୍ରହ୍ମାଣ୍ଡ ଠାକୁର ।
ଏମନ୍ତ ବସୁର ପୁଣି କରନ୍ତି ସର୍ବନାରୀ
ହୁଳହୁଳି ଦେଇଣ ସେ ବନ୍ଦାପନା କରି ।
ଅର୍ଘ୍ୟଥାଳୀରେ ଆଳତି ପୁଣ କଲେ
ବନ୍ଦାପନା କରି ସର୍ବେ ଓଳଗି ମେଲାଇଲେ ।
ଜାନକୀ ବୋଇଲେ ତୁମ୍ଭେ ଶୁଣଗୋ ରାଣୀହଂସ
ଏତେ ନାରୀ ଥାଉ ଥାଉ ରାବଣ ଗଲା ନାଶ
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣଗୋ ଠାକୁରାଣୀ
ମଲବେଳେ ବୋଲ କେହି ନ କରନ୍ତି ପୁଣି ।

ଦଶଗ୍ରୀବର ନଅର ଏଠାରେ ପୁଣ ଥିଲ
ଜନକ'ର ବୋଲ ସେ ଜାହାର ନ ମାନଲ ।
ତେଣୁ ଦଇବ ତାକୁ ହେଲ ପ୍ରତିକୂଳ
ଜଗତ ଦେଖବାରୁ ସେ ମଲ ଶ୍ରୀରାମ ବାଣର ।
ଦୁଷ୍ଟଗଣ ଜନେ ହେତୁ ନ ବର୍ତ୍ତନ୍ତି ଜାଣ
ନିର୍ଦ୍ଦ ପଣରେ ଯେ ସେ କରୁଥାନ୍ତି ଠାଣ ।
ଯେତେବେଳେ ଠାଣକୁ ଠାଣ୍ଡୁଏ ପଇଦେଶ
ବଳବୁଦ୍ଧି ସେତେବେଳେ ହବୁ ଯାଏ ନାଶ ।
ଚଉଦ ଗଣ୍ଡା ଯୁଗକୁ ବର ପାଇଥିଲ
ଚଉଦ ଗଣ୍ଡା ଯୁଗରେ ଲଙ୍କେଶ୍ୱର ମଲ ।
ଯେ ତୋପକୁ ଶାନ୍ତ ଏବେ କର ରାଣୀ
ଆମ୍ଭେ ତୋର ଦାସୀ ଅଟୁ ରକ୍ଷାକର ପୁଣି ।
ବୋଷଜଳ ଦେବ ହେଉଁଥାନ୍ତେ ଗଲ
ଦୁର୍ଜନ ପଣ ତାର କାଳକୁ ଉହ୍ଲ ।
ବଇଦେହୀ ବୋଇଲେ ଗୋ ହେଲ ଏତେକଷ୍ଟ
ଚଉଦ ମାସ ମୋତେ ଗୋ ସେ କଲନରେଖ
ଏତେକହି ଜାନକୀ ହେଲେ ଶୋକଭର
ଆହା ହୋ ବିଧାତା ମୋତେ କଲ ଏତେଦୂର
ଜାନକୀର ଶୋକ ଦେଖିବୋଲେ ସେହିକଟ
ସୁଫଳ ଜାଲେ ହେଣ ନକର କିଛି ଚିନ୍ତା ।
କାଲି ସ୍ୱାମୀ ସଙ୍ଗେ ତୁମ୍ଭେ ସତ୍ୟହେବ ଭେଟ
ଜନକର ପାଇଁ କମା ହେଉଛ ଉଚାଟ ।
ଜାନକୀ ଚରଣ ଧରି ମନ୍ଦୋଦରୀ ବୋଧେ
ବୋଧିଲରେ ଜାନକୀ ହେଲେ ଗଦଗଦେ ।
କେତେବେଳ ଉତ୍ତାରୁ ଜାନକୀ ଶାନ୍ତ ହେଲେ
ଦଇବକୁ ସୁମରି ବଚନ ବୋଇଲେ ।
ଶୁଣ ଶୁଣ ମନ୍ଦୋଦରୀ ମୋହର ଚରଣେ
ତୋତେ ଶ୍ରୀରାମ ଦେଲେଣି ତ ବଡ଼ପଣ ।
ମୋହର ଜ ଚଣ୍ଡାହଠାରେ ଅଛୁ ଆଉ ରାଖ
ସ୍ୱାମୀ ମୋର ସନ୍ତୋଷରେ କରିଣା ଗଲେ ଯାଗ
ମୋର ସ୍ୱାମୀ ବଚନ ତ ନୁହେ ଆନ କରି
ଏତେବୋଲି ଜାନକୀ ଯେ ଶାନ୍ତ ରୂପ ଧରି ।
ଏହି ସମୟରେ ଯେ ବିଭୀଷଣ ଶତେ ନାରୀ
ଦାସୀ ପରିବାର ଘେନ ଦର୍ଶନ ଆସିକରି ।
ବେଶ ଭରଣମ ଯେ ଆଗରେ ନେଇ ଦେଲେ
ବ୍ରହ୍ମଜାତ ହୀରା ଲକ୍ଷେକ ଆଣିଥିଲେ ।

ଓଳଗ ମେଲାଇ ଅର୍ଘ୍ୟ ବନ୍ଦାଇଲେଶତେନାରୀ
ହୁଳହୁଳି ଶବଦେ ଅଶୋକ ବନପୂରି ।
ତ୍ରିଜଟା ବୋଇଲେ ମୋର ଜନମଅଟେଏହି
ଦାସର ଭାରିଯା ଅଟେ ଦାସୀ ତୋର ଏହି ।
ଜାନକୀ ବୋଇଲେ ତୁମ୍ଭେ ସମସ୍ତେ ଶୋଣ
ମନ୍ଦୋଦରୀ ତୁମ୍ଭ ପରେ ଅଟେ ବଡ଼ ଜାଣ ।
ଅଷ୍ଟସୁଲକ୍ଷଣୀ ହୋଇ ସମସ୍ତେ ତୁମ୍ଭେ ଶୁଣ
ଶ୍ରୀରାମଙ୍କ ପ୍ରସାଦେ ଅମର ହୋଇ ରହ ପୁଣ
ଶୁଣିଣ ସନ୍ତୋଷ ସର୍ବ ନାରୀ ପୁଣ
ମନ୍ଦୋଦରୀ ଅଛି ଧରି ଜାନକୀ ଚରଣ ।
ଜାନକୀବୋଇଲେମୋତେତ୍ରିଜଟାସାହାହେଲା
ଚଉଦମାସେବନ୍ଦୀଘରେସେମୋତେ ବୋଧିଲା
ପୂର୍ବରେ ମୋର ଜନମା ଅଟଇ ତ୍ରିଜଟା
ଯେବେ ତାର ମନବୋଧ ହୋଇବସେସ୍ପୃହା
ମନ୍ଦୋଦରୀକି ଶୁଣିଣ ବଚନ ପୁଣ କହି
ସବୁରାଣୀ ଯାଅ ନିଜ ପୁରକୁ ବେଗହୋଇ ।
ଶୁଣିଣ ରାଣୀମାନେ ଓଳଗ ମେଲାଇଲେ
ଯାନମାନ ଚଢ଼ି ନିଜ ପୁରେ ଗଲେ ।
ମନ୍ଦୋଦରୀ ରହିଲ ଜାନକୀ ଦେଖି ପାଶ
ନିଜ ପୁରେ ରାଣୀମାନେ ହୋଇଲେ ପ୍ରବେଶ
ରାଣୀମାନେ ଗିବାରୁ ଯେ ଦାସୀମାନେ ଆସି
ଅଶୋକବନରେ ଯାଇ ସୀତାଙ୍କୁ ଦେଖି ।
ଓଳଗ ମେଲାଇଣ ଅର୍ଘ୍ୟ ବନ୍ଦାପନା କଲେ
ମନ୍ଦୋଦରୀ କହିବାରୁ ନିଜ ଘରେ ଗଲେ ।
ଅପ୍ସରୁଣୀମାନେ ବେଶ ହୋଇ ତତକ୍ଷଣ
ଥଞ୍ଚା ଥଞ୍ଚା ହୋଇ ଆସି କରନ୍ତି ଦର୍ଶନ ।
ଲଙ୍କାନଗ୍ର ନାରୀ ନର ସମସ୍ତ ଦେଖିଲେ
ରୂପଦେଖି ସମସ୍ତେ ମୋହମାନ ହେଲେ ।
ଯେସନ ପୁରୁଷୋତ୍ତମେ ଗୁଣ୍ଡିଚାଯାତ ହୋଇ
ରଥରେ ଜଗନ୍ନାଥ ଯେମନ୍ତେ ଚଳଯାଇ ।
କେଲାଛଟାଣି ବେଳେ ଯେସନେ ବଡ଼ ଦାଣ୍ଡରେ
ଲକ୍ଷ୍ମୀ ନାରାୟଣ ଭେଟ ଯେବଣ ପ୍ରକାରେ ।
ଭେଟବେଳେ ଯେଉଁରୂପେ କରନ୍ତି ଦରଶନ
ସେ ରୂପେ ଜାନକୀ ପାଶେ ଅସୁରୀ ଚଳେ ପୁଣ
ରଜନୀ ଶେଷରେ ବେଳ ଦୁଇଘଡ଼ି ଯାଏ
ଲଙ୍କାର ନରନାରୀ ଦର୍ଶନ କରି ଥାଏ ।

ମନ୍ଦୋଦରୀ ଉଚ୍ଚତ ଯେ ହୋଇଣ କହିଲା
ଯାଉଛି ମୁଁ ନିଜ ପୁର ବୋଲିଣ ବୋଇଲା ।
ଲଙ୍କାର ନରନାରୀ କଲେକ ଦର୍ଶନ
ରାଣୀହଂସ ସଙ୍ଗେ ଦେଖି ହେଲେ ତୋଷମନ
ସୁବର୍ଣ୍ଣ କର ମୋତେ ବାରେ ଗୋଠାକୁରାଣୀ
ଯେମନ୍ତେ ତୋର ପାଦେ ମୋର ମନ ପୁଣି ।
ଏତେକହି ହାନ୍ଦୋଳାରେ ବସି ଚଳିଗଲା
ଅନ୍ତଃପୁରେ ଯାଇଣ ପ୍ରବେଶ ବେଗେ ହେଲା
ଲଙ୍କାର ନାରୀଗଣ ଦେଖିଣ କହୁଛନ୍ତି
ଶ୍ରୀରାମର ଭାରିଯା ଗୋ କେଡେ ରୂପବନ୍ତୀ ।
ତ୍ରୈଲୋକ୍ୟରେ ତାର ନୋହିବେ କେହୁ ସରି
ଭୂଷଣ ନ ଥିବାରୁ ତ ଏଡ଼େକ ସୁନ୍ଦରୀ ।
ଭୂଷଣ ଥିଲେକ ଆଉ ଧରଣୀ ସମ୍ଭାଳନ୍ତା
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ମୁନିଙ୍କି ବଦନ୍ତା ।
ଏମନ୍ତ ବଖାଣ ଯେ କଲେ ନାରୀଗଣ
ରାଣୀହଂସମାନେ ହେ ବଖାଣ କଲେ ପୁଣ ।
ଜାନକୀ ଯେବେ ନିଶ୍ଚୟ ରାବଣେ ରାଜହୋନ୍ତା
ସମସ୍ତଙ୍କୁ ରାବଣ ତେଜ୍ୟା କରିଥାନ୍ତା ।
ଏମନ୍ତ ବଖାଣ ଯେ କରନ୍ତି ରାଣୀଗଣ
ଅନୁରୂପେ ବର ତାକୁ ଶ୍ରୀରାମ ଅଟେ ପୁଣ ।
ଏମନ୍ତ ବଖାଣ ମନେ ମାନିଣ ବିଧିହେଲେ
ସ୍ନାନ ସାରିଣ ନିତ୍ୟକର୍ମ ଯେ ସାରିଲେ ।
ଷଡ଼ରସେ ଭୋଜନ ଯେ କଲେ ରାଣୀଗଣ
ଅନଦ୍ରା ହେବାରୁ ଶୁଏ ପଲଙ୍କ ଉପରେ ପୁଣ ।
ପାର୍ବତୀ ବୋଇଲେ ଦେବ ଶୁଣହେ ମୋର ବାଣୀ
ରାଜାଗଣମାନଙ୍କୁ ଯେ ଶ୍ରୀରାମ ବରିଣି ।
କେବଣ କୃତ୍ୟ ହେଲା କହ ମୋତେ ପୁଣ
ଶ୍ରୀରାମ କଥା ଶୁଣିବାକୁ ବଳୁଛି ମୋର ମନ
ପଞ୍ଚାନନ ବୋଇଲେ ସେକଥା ଦେବୀ କହି
ଷଡ଼ରସେ ଭୋଜନ ଯେ କଲେ ରଘୁଭାଇ ।
ରାଜବେଶ ହୋଇବାହାରବେଗେହେଲେସେ
ଏହି ସମୟେ ମିଳିଲେ ସୁଗ୍ରୀବ ଆଉ ଯେ
ବିଭୀଷଣ ମୟୂ ଦୈତ୍ୟ ଆସିଣ ମିଳିଲେ
ଦେଖିକରି ରଘୁନାଥ ବାହାର ହୋଇଲେ ।
ତିନିଭାଇ ସଙ୍ଗେ ଘେନିଗଲେ ବେଗ ଚଳି
ପୂର୍ବଦ୍ୱାର ବାଟେ ଶ୍ରୀରାମ ଯାଇକରି ମିଳି ।

ହନୁ ଅଙ୍ଗଦ ଯେ ସେ ଦୁଆରେ ଥିଲେ
ଶ୍ରୀରାମ ଦେଖିଣ ତାଙ୍କୁ ବଚନ କହିଲେ ।
ବୋଇଲେ ହେ ବୀରଜଣ ଏହି ଦ୍ୱାରେ ଥିବ
କପି ରାଜା ନରରାଜା ଭିତରେ ପ୍ରୁଡ଼ବେବ
ଋଷିଗଣ ଆଇଲେ ନିରୋଧ ନ କରିବ ।
ଏମାନେ ଗଲାରୁ କେଷଣାହାସ ପ୍ରୁଡ଼ବେବ
ଏତେକହି ଭିତରେ ଗଲେ ରୂପଧାରୀ
ଦେଖିଲେ ଧବଳସଭା ଶୋଭା ବିଶେଷେ ପରି ।
ଦେଖିଣ ଶ୍ରୀରାମ ମନେ ସନ୍ତୋଷ ହୋଇଲେ
ମୟୂ ଦୈତ୍ୟ ମୁଖ ଚାହିଁ ବଚନ କହିଲେ ।
ଏ ସଭା କାହାର ପାଇଁ କରିଛ ଭିଆଣ
ମୟୂଦୈତ୍ୟ ବୋଇଲେ ଏ କପିଙ୍କର ପୁଣ ।
ତାହାଶୁଣି ସେଠାରୁ ସେ ବେଗେ ଚଳିଗଲେ
ଘ୍ରାହିମାଳା ସଭା ପାଖେ ପ୍ରବେଶ ହୋଇଲେ
ବୋଇଲେ ଏ ସଭାଗୋଟି ବିପରୀତ ପୁଣ
କେବଣ ଜନ ଏଥିରେ କରିବେ ବିଶ୍ରାମ ।
ମୟୂ ଦୈତ୍ୟ ବୋଇଲେ ଏ ମୁନିଙ୍କର
ଏଥିରେ ବସିଲେ ତୋଷ ହେବେ ମୁନିବର
ଏମନ୍ତ ସମୟେ ମୁନି ବଶିଷ୍ଠ ପ୍ରବେଶ
ଶ୍ରୀରାମ ଦେଖିଣ ତାଙ୍କୁ ଉଚ୍ଚଗେ ବିଶେଷ ।
ବୋଇଲେ ଏ ସଭାପରେ ବସ ଯାଇ ତୁମ୍ଭେ
ମୁନିମାନେ ଆଇଲେ ଯେ କରିବ ସମ୍ମାନେ ।
ଭରତକୁ ବୋଇଲେ ତୁମ୍ଭେ ଏ ଦୁଆରେ ଥାଅ
ମୁନିମାନେ ଆଇଲେ ଯେ ଏଥିରେ ବସାଅ ।
ଅନ୍ୟଲୋକ ଏ ସଭାକୁ ନ ଯିବେଟି ପୁଣ
ଗଲେ ନାଶ ହୋଇବେଟି କହିଗଲୁ ଜାଣ ।
ଏତେକହି ସେଠାରୁ ଯେ ବେଗେ ଚଳିଗଲେ
ସୁଗ୍ରୀବଙ୍କୁ ଚାହିଁଣ ଆଜ୍ଞା ପୁଣ ଦେଲେ ।
ତୁମ୍ଭର ସଭାରେ ତୁମ୍ଭେ ବସ ଯାଇ ପୁଣ
ଶତ୍ରୁଘନ ଭାଇ ମୋର ଥିବ ଏ ଦୁଆରେଣ ।
ଯେତେକ ଋକ୍ଷ କପି ରାଜା ଅଣାଇ ସତ୍ୱର
ସମସ୍ତଙ୍କୁ ବସାଇବ ନେଇଣ ସଭାର ।
ତାହା ଶୁଣି ସୁଗ୍ରୀବଇ ବେଗେ ଚଳିଗଲେ
ପୂର୍ବ ଦ୍ୱାର ବାଟେ ଯାଇ ସଭାରେ ବସିଲେ
ଶତ୍ରୁଘନକୁ ଚାହିଁଣ ବୋଲନ୍ତି ରୂପଧାରୀ
ତୁମ୍ଭେ ଏ ସଭାକୁ ବାବୁ ବସି ରହ ଘେରି ।

ସୁନ୍ଦ ନାମେ ଶବରକୁ ଏ ସଭାରେ ବସାଇବୁ
ଭୃଷକପି ବାନରଙ୍କୁ ଅଜଟ ନ କରିବୁ ।
ସୁନାବେତ ଧରି ତୁ ହେବୁ ପ୍ରତିହାରୀ
ଏ ଋଷ ବାନରେଟି ଅଟନ୍ତି ଆସ୍ଥିର ।
ଏତେକହି ସେଠାରୁ ଚଳିଣ ବେଗେ ଗଲେ
ସୁବର୍ଣ୍ଣର ସଭାଠାରେ ପ୍ରବେଶ ଯାଇ ହେଲେ
ଦେଖିଣ ସେ ସଭାକୁ କୋଦଣ୍ଡ ରୂପଧାରୀ
ବୋଇଲେ ଏ ସଭାଗୋଟି ରାଜାଙ୍କପାଇଁ କରି
ଭଲରେ ମୟ ଦୈତ୍ୟ ପାଇଥିଲୁ ବର
ଭଲ ତୋର ପୁରୁଷାର୍ଥ ଅଟଇ ଦୈତ୍ୟବୀର
ଏତେବୋଲି ସଉମିତ୍ରୀ ମୁଖକୁ ଚାହିଁଲେ
ଏ ଦୁଆରେ ତୁମ୍ଭେ ରହ ବୋଲିଣବୋଇଲେ
ସୁନାବେଣ ଧରି ତୁମ୍ଭେ ହୁଅ ପ୍ରତିହାରୀ
ରାଜାମନ୍ତ୍ରୀ ପାତ୍ରଙ୍କୁ ଯେ ଦେଉଥିବ ଖାଡ଼ି ।
ଋଷ କପି ବାନର ଏ ସଭାକୁ ଆସିବେ
ଯେ ଯାହାର ସଭାରେ ପ୍ରବେଶ ହୋଇବେ ।
ଅଯୋଧ୍ୟା ରଥୀମାନଙ୍କୁ ଡକାଇ ଆଜ୍ଞାଦିଅ
ରାଜାଗଣମାନଙ୍କୁ ଯେ ଡକାଇ ଅଣାଅ ।
ଆଜ୍ଞାପାଇ ଲକ୍ଷ୍ମଣ ବୀରଙ୍କୁ ଭେଟଦେଲେ
ଅଯୋଧ୍ୟା ରଥୀଙ୍କୁ ସେ ଡକାଇ ଆଣିଲେ ।
ବୋଲେ ସର୍ବ ନୃପତି ଡାକଅାଣ ବେଗେ
ସଭାରେ ଆସିଣ ବସନ୍ତୁ ଯେ ଯାହାର ଠାବେ
ଶୁଣି ରଥୀମାନେ ଯେ ବେଗ ହୋଇ ଗଲେ
ରାଜାଗଣମାନଙ୍କୁ ଯାଇଣ ଜଣାଇଲେ ।
ଶ୍ରୀରାମ ଆଜ୍ଞାଦେଲେ ଯେ ବେଗେ ଆସ ପୁଣ
ସଭାରେ ବସ ଯାଇ ମନ ହରଷେଣ ।
ଏତେକହି ରଥୀ ଯେ ଅଇଲେ ବେଗ ହୋଇ
ଲକ୍ଷ୍ମଣର ଆଗରେ ପ୍ରବେଶ ହେଲେ ଯାଇ ।
ବୋଇଲେ ସମସ୍ତ ରାଜାଙ୍କୁ ଯାଇଣ କହିଲୁ
କହିଣ ଫେରିକରି ଆମ୍ଭେ ଯେ ଅଇଲୁ ।
ଶୁଣିକରି ଶ୍ରୀରାମ ବିଭୀଷଣଙ୍କୁ ଘେନି
ତାହାଙ୍କର ସଙ୍ଗତରେ ମୟଦୈତ୍ୟ ପୁଣି ।
ଶ୍ରୀରାମ ରାମନାମ ସୁମରଣା କଲେ
ପାଦୁକା ଉପରେ ଶ୍ରୀରାମ ଯାଇଣ ପାଦଦେଲେ
ବଇଶ ପାଦୁକା ଶ୍ରୀରାମ ଉଠିଗଲେ ପୁଣ
ରତ୍ନ ସିଂହାସନରେ ବସିଲେ ଅର୍ପଣ ।

ଆରଖମ୍ଭେ ବିଭୀଷଣ ବସେ ପୁଣ ଯାଇ
ଆରଖମ୍ଭେ ମୟଦୈତ୍ୟ ବସେ ହୃଷ୍ଟ ହୋଇ ।
ଶୁକ ସାରଣ ବେନିମନ୍ତ୍ରୀ ଅଇଲେବେଗେପୁଣ
ବିଭୀଷଣ ପାଶରେ ବସିଲେ ଯାଇ ପୁଣ ।
ମୟଦୈତ୍ୟ ସଙ୍ଗରେ ଯେ ଦୁଇମନ୍ତ୍ରୀ ଥିଲେ
ସେହି ଦୁଇ ମୟଦୈତ୍ୟ ପାଶରେ ବସିଲେ ।
ଏଥିଅନନ୍ତରେ ଶୋ ଶୁଣ ଶାକମ୍ଭରୀ
ସୁମନ୍ତ ମନ୍ତ୍ରୀ ଆସି ମିଳିଲା ବେଗ କରି ।
କୌଶିକ ତାଙ୍କ ସଙ୍ଗରେ ଆସିଲେକ ପୁଣ
ବେନି ଜନ ବସିଲେ ଶ୍ରୀରାମ ପାଶେଣ ।
ଏମନ୍ତ ସମୟରେ ଅଇଲେ ରାଜାଗଣ
ରାଜାବେଶ ଧାରଣ ସଙ୍ଗରେ ସନାତନ ।
ପୂର୍ବଦ୍ୱାରେ ଯାଇଣ ସେ ହେଲେ ପରବେଶ
ଅଙ୍ଗଦ ହନୁମନ୍ତ ବୋଇଲେ ବିଶେଷ ।
ସନାତନ ରଖି ତୁମ୍ଭେ ଚଳ ହେ ବହନ
ପାତ୍ରମନ୍ତ୍ରୀ ସଞ୍ଚରେ ନଅ ହେ ରାଜନ ।
ଶୁଣିଣ ରାଜାମାନେ ଯେ ସନ୍ତୋଷହୋଇଲେ
ସନାତ୍ନକୁ ରଖାଇ ଚଳିଣ ସେ ଗଲେ ।
ଆରପାଖରେ ରଥୀ ଯେ ଥିଲେ ଶ୍ରୀରାମଙ୍କର
କଢ଼ାଇ ନେଲେ ରାଜାଙ୍କୁ ବାଣ୍ଡିର ଭିତର ।
ସୁବର୍ଣ୍ଣ ସଭା ତଳରେ ହେଲେ ପରବେଶ
ଦେଖିଲେ ସଭାଗୋଟି ଯେ ଶୋଭଇ ବିଶେଷ ।
ପୂର୍ବଦ୍ୱାରେ ବେତ ଧରି ଅଛନ୍ତି ଲକ୍ଷ୍ମଣ
ବୋଇଲେ ହେ ରାଜାମାନେ ହେଜୁ ଶୁଣ ।
ଗୋଟିକ ଖମ୍ବ ପାଖରେ ବସି ଏକ ରାଜା
ପାତ୍ରମନ୍ତ୍ରୀ ସଙ୍ଗେ ନୋହିବା ଯେ ଦୁଜା ।
ଖମ୍ବଗୋଟି ରବିଅଂଶା ଅଟେ ତୁମ୍ଭେ ଜାଣ
ସିଂହାସନେ ତୁମ୍ଭେମାନେ ବସିବ ଯାଇଣ ।
ପିଢାମାନଙ୍କରେ ପାତ୍ରମନ୍ତ୍ରୀ ଯେ ବସିବେ
ଖଟଣୀ ସାମନ୍ତ ତାଙ୍କ ପାଶରେ ରହିଥିବେ
ଯେ ଯାହାର ଅଧିକାର ସଙ୍ଗରେ ଥିବେଘେନ
ପହଲ ନ କରିବ କହିଲ ମୁହିଁ ପୁଣି ।
ଅନ୍ୟ ଖମ୍ବକୁ ଗଲେ ନଷ୍ଟେ ହୋଇବ କଳି
କଳି କଲେ ତୁମ୍ଭେମାନେ ନ ଜିବଟି ବଳି ।
ଏତେକହି ରାଜାଗଣ ଗୁଡ଼ ପୁଷ ଦେଲେ
ଗୋଟିଏ ଗୋଟିଏ ଖମ୍ବ ରାଜାଏ ଆବରିଲେ

ସିଂହାସନ ଉପରେ ବସିଲେ ଲଙ୍କେ ରାଜା
ସ୍ୱର୍ଗର ସୁଧର୍ମା ସଭା ପରାୟେ ପାଏ ଶୋଭା ।
ପିଢ଼ମାନଙ୍କରେ ପାତ୍ର ମନ୍ତ୍ରୀ ଯେ ବସିଲେ
ଖଟଣୀ ସାମନ୍ତମାନେ ଅଂଶାଳେ ରହିଲେ ।
ଏଥିଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ପୂର୍ବଦ୍ୱାରେ ଲକ୍ଷ୍ମଣ ଯେ ଜଗି ରହିଛନ୍ତି ।
ପଶ୍ଚିମ ଦ୍ୱାରେ ଜଗିଲେ ଅସୁର ବୀର ଜଣ
ରାଜସଭା ପରିପୂର୍ଣ୍ଣ ହେଲା ତୁମ୍ଭେ ଜାଣ ।
ସଭାର ମଧ୍ୟରେ ବିଜେକଲେ ରଘୁନାଥ
ବିଭୀଷଣ ମୟୁ ଦୈତ୍ୟ ଅଛନ୍ତି ଆଗରେ ତ ।
ସେଥିଉତ୍ତାରୁ କଥା ଶୁଣ ମନକରି
ଧବଳ ସଭାର ମଧ୍ୟେ ସୁଗ୍ରୀବର ଯାଇ ।
ସିଂହାସନ ଉପରେ କନକ ଆସନ
ସୁଷେଣ ଜାମ୍ବୁବ ମନ୍ତ୍ରୀ ମିଳିଲେ ପାଶେଣ ।
ରାଜାପାଶେ ପିଢ଼ରେ ଯେ ବସିଲେ ସେହୁଯାଇ
ଖଟଣୀ ସାମନ୍ତ ଯାଙ୍କ ପାଶରେ ଛନ୍ତି ରହି ।
ଏହି ସମୟରେ ଗୂଢ଼ ନାମରେ ଶବର
ପ୍ରବେଶ ହୋଇଲା ଯାଇ ପୂର୍ବର ଦୁଆର ।
ଅଙ୍ଗଦ ବୋଇଲେ ତୁମ୍ଭେ ବେଗ ହୋଇଯାଅ
ସୁଗ୍ରୀବର ସଙ୍ଗରେ ଯାଇଣ ତୁମ୍ଭେ ରହ ।
ଶୁଣିକରି ଶବର ଯେ ବେଗେ ଚଳିଗଲା
ଧବଳ ସଭାରେ ଯାଇ ପ୍ରବେଶ ହୋଇଲା ।
ଶତ୍ରୁଘନ ବୋଇଲେ ହେ ଯାଅ ସଭାପର
ପାତ୍ର ମନ୍ତ୍ରୀ ଘେନ ସିଂହାସନେ ବିଜେ କର ।
ଶୁଣିଣ ଶବର ବେଗେ ପାବନ୍ତି ଉଠିଲେ
ସୁଗ୍ରୀବର ପାଶରେ ଯାଇଣ ମିଳିଲେ ।
ଗୋଟିଏ ଖମ୍ବରେ ଯାଇ ସିଂହାସନ ପରେ
ପାତ୍ରମନ୍ତ୍ରୀ ଘେନକରି ମିଳିଲେ ସେଠାରେ ।
ଏଥିଅନନ୍ତରେ ଯେ କପିରାଜା ଶୁଣ
ଧବଳ ସଭାରେ ଯାଇ ପ୍ରବେଶ ହେଲେଜାଣ ।
ବାନର ଭାଲୁ ଲଙ୍କେ ରାଜା ପୁଣ ଗଲେ
ଲଙ୍କେ ଖମ୍ବ ଆବୋରି ଯେ ଯାଇଣ ବସିଲେ ।
ମଲ୍ଲ ମହାମଲ୍ଲ ଯେ ସରଭାର ପୁଣ
ସେମାନଙ୍କ ସଙ୍ଗରେ ବସିଲେ ସେ ଜାଣ ।
ବିହରନ୍ତି ଆମ୍ଭଠାରୁ ପାପ ପାରଗଲା
କୋଦଣ୍ଡଧାରୀ ଆମ୍ଭଙ୍କୁ ସୁଦୟା ଏବେ କଲା ।

ସୁଗ୍ରୀବର ସକାଶରୁ ସଭା ହେଲା ଯୋଗ
ଖଣ୍ଡବ ନନ୍ଦନ ବାନ ନ ହେଲେ ଏହୁ ଭୋଗ
ଏମନ୍ତ ବଚନର ଚର୍ଚ୍ଚିରେ କପିରାଜ ଭଲେ
ଧନ୍ୟ ଧନ୍ୟ ସୁଗ୍ରୀବର ବୋଲିଣ ବୋଇଲେ
ଯୁଦ୍ଧର ତ୍ରାସ ହେ ଆଜ ଗଲା ଆମ୍ଭଠାରୁ
ବଳବାନ ହେଲୁ ଆମ୍ଭେ ଯେସନେ ମହାମେରୁ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ବନଜନ୍ତୁ ହୋଇ କମ୍ପା ସଭାରେ ବସେ ପୁଣ
ଏଥିର ସନ୍ଦେଶ ମୋତେ କହ ବିଲୋଚନ
ଶୁଣିଲେ ମୋହର ମନ ହୋଇବ ପ୍ରସନ୍ନ ।
ଈଶ୍ୱରବୋଇଲେ ତୋତେ ସେକଥା କହିବା
ମନଦେଇ ଶୁଣ ଏବେ ଦୈତ୍ୟଙ୍କର ଜେମା ।
କପି ରୂପ ଧରି ଯେ ଦେବତା ହେଲେ ଜାତ
ତେତିଶକୋଟି ଦେବତା କପିରୂପେ ସେତ ।
ଶ୍ରୀରାମ ଅଟନ୍ତି ଯେ ସ୍ୱୟଂ ନାରାୟଣ
ସେକଥା ଗୋଚର ତାଙ୍କୁ ହୋଇଅଛି ପୁଣ ।
ସେଥିସକାଶେ ମନେ ବିଚାର ରୂପଧାରୀ
ଧବଳ ସଭା ଗୋଟିଏ ତାଙ୍କପାଇଁ କରି ।
ସେ ସଭାରେ ଲଙ୍କେ କପି ବସି ହେଲେ ଠୁଳ
ଏ କଥାମାନଙ୍କୁ କେହି ନ ଜାଣେ ଆଦିମୂଳ
ସେ ସକାଶେ ଆଦିମୂଳ ତାଙ୍କଠାରେ ସ୍ନେହ
ଶୁଣିକରି ଗଉରୀ ଯେ ମନରେ ବୋଧ ପ୍ରିୟ ।
ଭଗବତୀ ବୋଲେ ତୁମ୍ଭେ କଥାଏ ପୁଚ୍ଛିଲି
ରାଜାଙ୍କୁ ସ୍ନେହ କମ୍ପା ରଖିଲେ ରାଘବ ।
ଈଶ୍ୱର ବୋଇଲେ ସେ ବିଷ୍ଣୁ ଅଂଶରେ ଜାତ
ସେଥି ସକାଶେ ସ୍ନେହ କରନ୍ତି ରଘୁନାଥ ।
ସେ କୁଳରେ ଭେକ ଜାତ ହେଲେ ରୂପଧାରୀ
ସେହି ତ ସୂର୍ଯ୍ୟବଂଶେ ଅଛନ୍ତି ଦଣ୍ଡଧାରୀ ।
ତାଙ୍କୁ ପୂର୍ବି ଶ୍ରୀରାମ ଯେ ଭଜିଲେ ସନମାନ
ସେଥିପୂର୍ବେ ନନ୍ଦା ନବେଷ୍ଟ ପାଇବେ ଆପଣ ।
ସେଥିର ସକାଶେ ତାଙ୍କୁ କରନ୍ତି ଆଦର
ସକଳଙ୍କୁ ସାର ଅଟନ୍ତି ଯେ ରଘୁବୀର ।
ଶୁଣିଣ ପାର୍ବତୀଦେବୀ ମନରେ ତୋଷହେଲେ
ହସ ହସ ହୋଇଣ ଯେ ଶିବଙ୍କୁ ପଚାରିଲେ ।
ବୋଇଲେ ଦେବ ମୋତେ କହିବକଥା ଏପୁଣ
ଲୋମପାଦ ରାଜା ଦଶରଥର ମିତ୍ର ଜାଣ ।

ଶ୍ରୀରାମଙ୍କ ମଣ୍ଡପ ସେ ଅତ୍ୟନ୍ତ ଗୀରଣ୍ଡ
କୁସ୍ତାଣୋଇ ପୁତ୍ର ସେନ ଅଇଲେ ନୃପଣ୍ଡ ।
ସେ ରାଜାର ପୁତ୍ରମାନେ ଶ୍ରୀରାମଙ୍କ ଅନ୍ତଃସ୍ଥାଇ
ତାଙ୍କଠାରେ ସ୍ନେହ କମା ନ କଲେରଘୁସାଇଁ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଜମ୍ବୁଦୁର୍ଗା
ଶ୍ରୀରାମ ଲୋମପାଦ ରାଜାଙ୍କୁ କଲେ ପୂଜା ।
ସେ ରାଜାର ପୁତ୍ରକୁ ସେ ନଜଲେ ଆଦର
ସୁମନ୍ତ୍ର ଯାଇ କର ଆଣେ ତା କୁମର ।
ସୁମନ୍ତ୍ର ଯାଇ ସଭାରେ ବସି ଶ୍ରୀରାମ ପାଶ
ଶ୍ରୀରାମ ବୋଇଲେ ମନ୍ତ୍ରୀ ଶୁଣ ମୋ ଆଦେଶ
ଲୋମପାଦ ରାଜାଙ୍କର ଯେତେକ କୁମର
ଏମାନଙ୍କୁ ସେନାଆସ ଯାଇଣ ବ୍ୟଗ୍ରର ।
ପୂର୍ବର ପାଚେରୀ ଦ୍ୱାରେ ରଖିବ ଦଶଜଣ
ଦଶଜଣ ପଶ୍ଚିମ ଦ୍ୱାରରେ ନପୁଣ ।
ଉତ୍ତରସଙ୍କ ଦ୍ୱାରେ ତୁମ୍ଭେ ରଖିବ ଷାଠିଏ
ଏ ସମସ୍ତେ ଲୋମପାଦ ନନ୍ଦନ ଆସି ହୁଏ ।
ମୋହର ଜନନୀ ପାଶେ ଦଶଜଣ ଥିବେ
ତାର ନିଜ ଆଶ୍ରମେ ଷଣ୍ଡଜଣ ରହିବେ ।
ହନୁମନ୍ତ ଅଙ୍ଗଦ ଯେ ସେନାପତିଗଣ
ସମସ୍ତଙ୍କୁ କହିବଅ ସଭାକୁ ଯେ ପୁଣ ।
ମୋର ତିନ ଭାଇଙ୍କି ଯେ ସଙ୍ଗତରେ ଘେନ
ମୋହର ପାଖକୁ ଆସ ଯାଇଣ ତତକ୍ଷଣି ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ବେଗ ହୋଇ ଗଲ
ଲୋମପାଦ ରାଜାପୁତ୍ରଙ୍କୁ ଯାଇଣ ଡକାଇଲ ।
ଶ୍ରୀରାମ ସମ୍ମୁଖରେ ଯାଇ ହେଲେ ପରବେଶ
ଦେଖିଣ ରାମଚନ୍ଦ୍ର ମନରେ ହେଲେ ତୋଷ ।
ଆପଣାର ପାଶରେ ନେଇ ତାଙ୍କୁ ବସାଇଲେ
ଶୁଣିକରି ରାଜଗ ଯେ ବଚନ କହିଲେ ।
ବୋଇଲେ ଏ ରାଜସଭା ହୋଇଲାକ ଭୂଲ
କପିବଳ ଦୂଳହେଲେ ଶୁଣିଲେ ଯେ ଭଲ ।
ଋଷି ସଭା ମେଳ କଥା ମୋର ଆଗେ କହ
କୁସ୍ତାଣୋଇ ମୁନଯଣ୍ଡ କେମନ୍ତ ହେଲେ ସ୍ନେହ
ଈଶ୍ୱର ବୋଇଲେ ନାରଦ ସ୍ୱର୍ଗପୁର ଗଲେ
ଇନ୍ଦ୍ରଙ୍କ ସଭାରେ ଯାଇ ପ୍ରବେଶ ହୋଇଲେ
ସନକ ଯେ ସନାତନ ଅଙ୍ଗିରା ଭୃଗୁ ବଶିଷ୍ଠବା
ଅଷ୍ଟାବକ୍ର କପିଳ ଯେ କଉଣ୍ଡିନ୍ୟ ଖଣ୍ଡା ।

ଏମନ୍ତେ ସପ୍ତଋଷି ବସିଛନ୍ତି ତହିଁ
ସେହିଠାରେ ନାରଦ ପ୍ରବେଶ ହେଲେ ଯାଇ
ନାରଦଙ୍କୁ ଦେଖି ସର୍ବେ ନମସ୍କାର କଲେ
କେଉଁଠାରୁ ଅଇଲ ତୁମ୍ଭେ ବୋଲିଣ ପଚାରିଲେ
ନାରଦ ବୋଇଲେ ଆମ୍ଭେ ଅଇଲୁ ମର୍ତ୍ତ୍ୟପୁରୁ
ଲଙ୍କାଗଡ଼ ମଧ୍ୟରୁ ହେ ଶ୍ରୀରାମ ଆଜ୍ଞାରୁ ।
ସକଳ ଋଷିଙ୍କ ରାମ ବରଣ ପୁଣ କଲେ
ସ୍ୱର୍ଗପୁର ବରକାକୁ ମୋତେ ସେ ପେଷିଲେ ।
ଲଙ୍କାରେ ରାମଚନ୍ଦ୍ର ପୁଣି ଛନ୍ତି ରହି
ଲକ୍ଷେ ରାଜା ସେଠାରେ ଅଛନ୍ତି ଜୁଣ୍ଡ ହୋଇ
ମସ୍ତ ଦୈତ୍ୟକୁ ଅଣାଇ ଶ୍ରୀରାମଚନ୍ଦ୍ର ରାସ୍ତ
ତିନ ସଭା ନର୍ଭା ଯେ କରନ୍ତି ଦୈତ୍ୟରାସ୍ତ ।
ଶୁଣିଣ ସପ୍ତଋଷି ସୁମରଣା କଲେ
ବତିଶକୋଟି ବ୍ରହ୍ମ ଆସନ କମ୍ପାଇଲେ ।
ଜାଣିକରି ଋଷିମାନେ ଅଇଲେ ତତକ୍ଷଣ
ସପ୍ତଋଷି ଲଙ୍କାଗଡ଼କୁ ଚାଲିଗଲେ ପୁଣ ।
ବଶିଷ୍ଠ ଅଛନ୍ତି ଯେ ସଭାରେ ଏକା ହୋଇ
ସେ ସଭାରେ ପ୍ରବେଶ ହୁଅ ତୁମ୍ଭେ ଯାଇ ।
ଏତେବୋଲି ଦେବଋଷି ନାରଦ ସଙ୍ଗେଘେନ
ଲଙ୍କାର ସୀମାରେ ପ୍ରବେଶ ଯାଇ ପୁଣି ।
ପାଚେରୀ ପୂର୍ବ ଦ୍ୱାରେ ହେଲେ ପରବେଶ
ଦେଖିକରି ଦ୍ୱାରୀ ବାଟ ଛାଡ଼ିଲେ ବିଶେଷ ।
ହୀରା ମାଳା ସଭାରେ ଲାଇଣ ବଜେ କଲେ
ଖମ୍ବ ଗୋଟିକେ ବ୍ରହ୍ମ ଋଷି ଆସନ ବସିଲେ
ବତିଶ କୋଟି ଋଷିଙ୍କି ବ୍ରହ୍ମଗୋଟି ଖମ୍ବ
ଖମ୍ବ ଗୋଟି ବ୍ରହ୍ମ ସିଂହାସନ ଦମ୍ଭ ।
ବ୍ରହ୍ମଋଷି ଦେବଋଷି ସ୍ୱର୍ଗ ବତିଶ କୋଟି
ସପ୍ତଋଷି ସଙ୍ଗରେ ଅଇଲେ ସେହିଠି ।
ନାରଦଙ୍କ ସଙ୍ଗରେ ସଭାରେ ବସିଲେ
ବ୍ରହ୍ମାଙ୍କ ନନ୍ଦନ ତହିଁରେ ବାଣୀ ସ୍ତୁତି କଲେ ।
ଶ୍ରୀରାମ ଜାଣିଲେ ସ୍ୱର୍ଗରୁ ଅଇଲେ ମୁନିଗଣ
ଏ ଖବର ଅଟଇ ଯେ ନାରଦଙ୍କର ପୁଣ ।
ଭରତକୁ ଚାହିଁଣ ଯେ ବୋଲନ୍ତି ରଘୁଧାରୀ
ତିନିଭାଇ ଏବେ ତୁମ୍ଭେ ଯାଅ ବେଗକରି ।
ଦେବଋଷିମାନଙ୍କୁ ଫୁଲ ଚନ୍ଦନ ଦିଅ
ଅର୍ଘ୍ୟ ଦେଲେ ସନ୍ତୋଷ ହେବେ ଋଷି ପ୍ରିୟ ।

ରାମଙ୍କ ଆଜ୍ଞାରେ ଭିକାରି ଚଳିଗଲେ
ଚନ୍ଦନ ଫୂଲ ଘେନି ଅର୍ଘ୍ୟ ଋଷିଙ୍କି ଦେଲେ
ମାନ୍ୟ ଧର୍ମ କରି ଋଷିଙ୍କ ଚରଣେ ନମିଲେ
ଏଥିଅନନ୍ତରେ କଥା ଶୁଣ ତୁମ୍ଭେ ଭଲେ ।
ଦୁର୍ବାସା ଋଷି ଚଳି ପୁରକୁ ଚଳିଲେ
ନାଗରଷି ସିଦ୍ଧ ଋଷି ବରଣ ଆଣିଲେ ।
ଲଙ୍କାଗଡ଼େ ପ୍ରବେଶ ହେଲେ ମୁନିବର
ତବଣକୋଟି ମୁନି ଅଛନ୍ତି ସଙ୍ଗର ।
ପୂର୍ବ ଦ୍ୱାର ବାଟରେ ଗମନ କରି ଗଲେ
ହୀରା ନୀଳା ସଜ୍ଜରେ ଯାଇଣ ମିଳିଲେ ।
ଦେଖିଲେ ରାଜଋଷି ଦେବଋଷିମାନ
ବଶିଷ୍ଠ ନାରଦ ଯେ ବସିଛନ୍ତି ପୁଣ ।
ସପ୍ତଋଷି ବସିଛନ୍ତି ସଭାର ମଧ୍ୟରେ
ନମସ୍କାର କରି ତାଙ୍କୁ ବସିଲେ ସଜ୍ଜରେ ।
ଭିକାରି ଚନ୍ଦନ ଯେ ଫୂଲ ଘେନି ପୁଣ
ଋଷିମାନଙ୍କୁ ଅର୍ଘ୍ୟନେଇ ଦେଲେ ତତକ୍ଷଣ ।
ତବଣକୋଟି ଋଷି ଯେ ପାତାଳୁ ଅଇଲେ
ଷଡ଼ଗୋଟି ଖମ୍ବ ସିଂହାସନରେ ବସିଲେ ।
ଦୁର୍ବାସା ଋଷି ତାଙ୍କ ସଙ୍ଗରେ ଅଇଲେ
ଦୁଇ ପୁର ଋଷି ସମସ୍ତେ ଠୁଳ ହେଲେ ।
ଏଥିଅନନ୍ତରେ ଶୋ ଶୁଣ ଶାକମ୍ଭରୀ
ଭୃଗୁରାଜ ଋଷି ଯେ ଗଲେ ମଣିପୁରୀ ।
ପୌଲସ୍ତି ଅଗସ୍ତି ଠାରେ ହେଲେ ପରବେଶ
ଶୁଣିକରି ବ୍ରହ୍ମମୁନି ମନରେ ହରଷ ।
ଯୋଗ ଲମ୍ବ କରନ୍ତେ ଅଇଲେ ବାରକୋଟି
ସମସ୍ତ ଋଷିଙ୍କି ଘେନି ଅଇଲେ ପୌଲସ୍ତି
ଲଙ୍କାଗଡ଼ ମଧ୍ୟରେ ହେଲେ ପରବେଶ
ପୂର୍ବଦ୍ୱାର ବାଟରେ ଗଲେ କୁମ୍ଭ ସୁତ ।
ହୀରା ନୀଳା ସଜ୍ଜରେ ଯାଇ ବିଜେକରି
ତିନିଗୋଟି ଖମ୍ବ ସେ ବସିଲେ ଆଦରି ।
ସେ ସ୍ଥାନୁ ରଘୁରାମ ଗଲେ ବେଗେ ଚଳି
ଗଉତମ ଋଷିଙ୍କର ଆଶ୍ରମରେ ମିଳି ।
ବୋଇଲେ ରାମଚନ୍ଦ୍ର ବଚନେ ତୁମ୍ଭରେ
ଲଙ୍କାଗଡ଼କୁ ତୁମ୍ଭେ ଯିବ ହେ ସତ୍ୱରେ ।
ଶୁଣିକରି ଗଉତମ ହରଷ ହୋଇଲେ
ଯୋଗରେ ବସିଣ ମୁନି ସୁମରଣା କଲେ ।

ବୃନ୍ଦକୋଟି ଋଷି ଆସି ମିଳିଲେ ତାଙ୍କ ପାଶ
ଦେଖିକରି ଗଉତମ ମନରେ ହରଷ ।
ଲଙ୍କାଗଡ଼ରେ ଯାଇ ହେଲେ ପରବେଶ
ପୂର୍ବଦ୍ୱାର ବାଟରେ ସଜ୍ଜରେ ନିଃଶେଷ ।
କୋଟିଏ ଖମ୍ବକୁ ଯାଇ ଆବୋରିଲେ ପୁଣ
ନୀଳକଣ୍ଠ ସଜ୍ଜରେ ବସିଲେ ତତକ୍ଷଣ ।
ସେଠାବରୁ ରଘୁରାମ ଋଷି ଚଳିଗଲେ
ବିଶ୍ରବା ଋଷି ପାଶେ ପ୍ରବେଶ ହୋଇଲେ ।
ଲଙ୍କାଗଡ଼କୁ ବେଗେ ଯାଅ ହେ ମୁନିବର
ତିନିପୁରରୁ ଋଷି ସେଠାରେ ହେବେ ଠୁଳ ।
ପୁଣ ତୋର ରାବଣେଶ୍ୱର ନାଶ ଗଲା
ବାସୁଦେବ ସଙ୍ଗରେ ଅପ୍ରୀତି ଯହୁଁ ହେଲା ।
ଶୁଣିଣ ବିଶ୍ରବା ଋଷି ହେଲେ ତୋଷମନ
କୋଟିଏ ଋଷି ଘେନି କଲେକ ଗମନ ।
ଲଙ୍କାଗଡ଼େ ଯାଇଣ ହେଲେ ପରବେଶ
ପୂର୍ବ ଦ୍ୱାର ବାଟରେ ଗଲେକ ବିଶେଷ ।
ସଜ୍ଜର ଉପରେ ଯାଇକରି ବିଜେ କଲେ
ପଚାଶ ଲକ୍ଷ ଖମ୍ବ ଆବୋରି ରହିଲେ ।
ସେଠାରୁ ରଘୁରାମ କଲେକ ଗମନ
ମିଥିଳାର ନଗରେ ହୋଇଲେ ଯାଇଣ ।
ଜନକ ଋଷିଙ୍କୁ ଯେ କହିଲେ ମୁନିବର
ଲଙ୍କାଗଡ଼କୁ ତୁମ୍ଭେ ତ ବହନରେ ଚଳ ।
ସେଠାରେ ତିନିପୁର ଋଷି ଠୁଳ ହେଲେ
ତୁମ୍ଭ ଜାଇଁ ଶ୍ରୀରାମହସ୍ତେ ରାବଣେଶ୍ୱରମଲେ
ଶୁଣିକରି ମୁନିବର ହେଲେ ଯେ ଆନନ୍ଦ
ମୁଖ ଶକାଶଇ କି ପୂର୍ଣ୍ଣମୀର ଚନ୍ଦ୍ର ।
ତିନିକୋଟି ଋଷି ଯେତେକ ପାଖରେ ଥିଲେ
ସେ ମୁନିମାନଙ୍କୁ ଘେନି ଜନକ ଚଳିଗଲେ ।
ଲଙ୍କାଗଡ଼େ ପ୍ରବେଶ ହୋଇଲେକ ପୁଣ
ଦେଖିଲେ ଋଷି ସମ୍ଭୂବନ ଜାଣ ।
ହସ୍ତୀ ଘୋଡ଼ା ରଥ ଦେଖିଲେ ସେ ପୁଣ
ଯନ୍ତ୍ରାଯନ୍ତ୍ର ରାଜ୍ୟ କୋଟିଏ ସୁଣ ଜାଣ ।
ଦେଖିକରି ଜନକ ସ୍ତମ୍ଭୀଭୂତ ହେଲେ
ଧନ୍ୟ ଧନ୍ୟ ଶ୍ରୀରାମଚନ୍ଦ୍ର ବୋଲିଣବୋଇଲେ
ପଶ୍ଚିମ ଦ୍ୱାର ବାଟେ କଲେକ ଗମନ
ସୁବର୍ଣ୍ଣ ସଜ୍ଜରେ ଲକ୍ଷେ ରାଜାଛନ୍ତି ପୁଣ ।

ସଭାରେ ଥାଇଣ ଶ୍ରୀରାମ ତାହାଙ୍କୁ ଦେଖିଲେ
ମନରେ ସ୍ମରିଣ ନମସ୍କାର କଲେ ।
ବୋଇଲେ ଜାନକୀ ପିତା ଅଇଲେକ ପୁଣ
ସଭାରୁ ଉଠବାରୁ ନୁହେ ମୋହର ଜାଣ ।
ସେଠାରୁ ଜନକ ଋଷି ପୁଣି ଚଳିଗଲେ
ଧବଳ ସଭାର ସେ ଆଗରେ ବସିଲେ ।
ସେଥିରେ କପିରାଜା ବସିଛନ୍ତି ଜାଣ
ଶିରପରେ ମୁକୁଟ କର୍ଣ୍ଣେ କୁଣ୍ଡଳ ପୁଣ ।
ଦେଖିଣ ସେଠାରୁ ଯେ ଜନକ ଚଳିଗଲେ
ପ୍ରଭୁ ମେଳା ସଭାରେ ଯେ ପ୍ରବେଶ ହୋଇଲେ
ଶନକୋଟି ଋଷି ଯେଣେ ଉଠିଲେ ଯାବନ୍ତ
ଶହସ୍ରସ ଲକ୍ଷ ଖର୍ବ ଆଦର ଅଶେଷ ।
ବସିଲେ ସେ ସିଂହାସନ ପରେ ଯାଇକରି
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଭୃଗୁରାମ ଋଷି ଯେ ସେଠାରୁ ଚଳିଗଲେ
ବଶିଷ୍ଠଙ୍କ ଆଶ୍ରମରେ ପ୍ରବେଶ ହୋଇଲେ ।
ଦେଖିଲେ ଆଶ୍ରମଗୋଟି ହୋଇଛି ଗହଳ
ସପ୍ତକୋଟି ଋଷି ହୋଇଛନ୍ତି ଯେ ଠୁଳ ।
ସପ୍ତଋଷି ସିଂହ ନାମ ଯେ ବିଖ୍ୟାତ
ବଶିଷ୍ଠ ବରଷେ ତାର ହେଲା ଏକ ସୁତ ।
ଦଶରଥ ନନ୍ଦନ ଶାଆନ୍ତା ନାମ ଜାଣ
ତାର କୋଳେ ପୁତ୍ର ହୋଇଛନ୍ତି ପୁଣ ।
ସେ ପୁତ୍ରର ଏକୋଶା ସେବନ ଅଟଇ
ସପ୍ତକୋଟି ଋଷି ବଶ ଉପ୍ରବ କସାଇ ।
ଏହି ସମୟରେ ମିଳିଲେ ରଘୁରାମ
ଦେଖିକରି ବଶିଷ୍ଠେକ ଆନନ୍ଦ ଯେ ମନ ।
ପାଦପୂଜା କରି ତାଙ୍କୁ ଆସନେ ବସାଇଲେ
ମୋର ଭାଗ୍ୟ ଧନ୍ୟ ଆଜ ବୋଲିଣ ବୋଇଲେ
ଯମଦଗ୍ନିଙ୍କ ସୁତ ଭଜିଲେକ ପୁଣ
ଋଷିଗଣ ଯେଣେ ତୁମ୍ଭେ ଚଳ ତତକ୍ଷଣି ।
ଲଙ୍କାଗଡ଼େ ଭଜନପୁର ମେଳ ହେଲେ ଠୁଳ
ଅକ୍ଷୟ ରାବଣକୁ ମାରିଲେ ରଘୁବୀର ।
ସ୍ମରିଗଲ ଲକ୍ଷେ ରାଜା ସେଠାରେ ଅଛନ୍ତି
ଦୁଇଲକ୍ଷ କୋଟି କପି ସଙ୍ଗରେ ଅଶେଷି ।
ଗହଳ ଯେ ଲଙ୍କାଗଡ଼ ଶତେମୁଣ ପୁଣ
ଦଶରଥ ବୋହ କୁ ରେଖିଥିଲା ରାବଣ ।

ନାରାୟଣ ବୋହ ବୋଲି ଅଳକା ରଖିଲା
ଜାନକୀ ଛଳେ ରାମ ରାବଣ ନାଶ କଲା ।
ଶତ୍ରୁଘ୍ନ ଶତେମୁଖା ରାବଣ ମାରିଲା
ଲକ୍ଷ୍ମଣ ଏକମୁଖା ରାବଣ ବଧ କଲା ।
ଭରତ ଯେ ଲକ୍ଷେ ରାଜା ଯେଣଣ ମିଳିଲା
ଜାନକୀଙ୍କ ଆଣିବାକୁ ଋଷିଙ୍କି ଲୋଡ଼ାହେଲା
ଅଗ୍ନି ପରୀକ୍ଷା ସେଠାରେ କରିବେ ବଇଦେହୀ
ସ୍ୱର୍ଗର ଦେବତାମାନେ ସେଠାକୁ ଯାଇ
ଶୁଣିକରି ବଶିଷ୍ଠଙ୍କ ପରମ ତୋଷ ହେଲେ
ସପ୍ତକୋଟି ଋଷିଙ୍କି ଯେ ନମସ୍କାର କଲେ ।
ଋଷ୍ୟଶୃଙ୍ଗଙ୍କୁ ବୋଇଲେ ଚଳ ତୁ ବହନ
ସପ୍ତକୋଟି ଋଷିଙ୍କି ସଙ୍ଗତରେ ଘେନିଣ ।
ବ୍ରହ୍ମାଣ୍ଡଇକୋଟିଋଷି ସେଠାରେ ହେବେ ମେଳ
ତେଜିଲେ ଅନେକ ଧର୍ମ ହେବରେ କୁମର
ଭଜନପୁର ନବଖଣ୍ଡ ଚଉଦ ଭୁବନ
ବ୍ରହ୍ମଋଷି ଦେବଋଷି ସିଦ୍ଧଋଷି ଜାଣ ।
ରୁଦ୍ରଋଷି ବସ୍ତୁଋଷି ରାଜଋଷି ପୁଣ
ସିଦ୍ଧ ନାଗ ମନୁ ଅସୁର ସୁର ମୁନ ଜାଣ ।
ଏ ରୁପେ ଅନେକ ମୁନି ଠୁଳ ହେଲେ ପୁଣି
ସେଠାକୁ ତୁମ୍ଭେ ଏବେ ଯାଅ ତତକ୍ଷଣି ।
ସିଠାରୁ ଋଷ୍ୟଶୃଙ୍ଗ ଶୁଣି ବେଗେ ଗଲେ
ଭରତର ପୁରେ ଯାଇ ପ୍ରବେଶ ହୋଇଲେ ।
ତାପସୀଗଣ ଆସିଣ କଲେ ନମସ୍କାର
ଦଶରଥ ନନ୍ଦନ ଯେ ଅଇଲେ ସତ୍ୱର ।
ମାନ୍ଧାତା ପାଡ଼ଣ ସେ ଯେ ନମିଲେ ଚରଣ
ଉଠି କରଯୋଡ଼ିଣ ଆଗେ ଉଭା ହେଲେ ପୁଣ
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ମୋର ବାଣୀ
ଲଙ୍କାଗଡ଼କୁ ଆମ୍ଭେ ଯାଉଅଛୁ ପୁଣି ।
କଡ଼ଭାଇ ତୁମ୍ଭର ଯେ ଅଟନ୍ତି ରାମଚନ୍ଦ୍ର
ପିତା ସତ୍ୟ ପାଳି ବନକୁ ଗଲେ ସାନ୍ଦ୍ର ।
ଜାଣିଯା ଭାଇକ ତାଙ୍କ ସଙ୍ଗତରେ ନେଲେ
ଚଉଦ ବରଷ ସେ ଅରଣ୍ୟ ବୁଲିଲେ ।
ଆସିଲେ ଦେଳକୁ ତାଙ୍କୁ ଦେବତା କଲେ କୁଟି
ଏହି ରାବଣେଶ୍ୱର ଦେବଙ୍କୁ ବେଳ କଷ୍ଟ ।
ସରସ୍ୱତୀ ଦେବୀଙ୍କି ଡକାଇ ତତକ୍ଷଣ
ରାବଣର ଶରୀରରେ ବସାଇ ବହନ ।

ଶ୍ରୀରାମ ଘରଣୀଙ୍କି ଯେମନ୍ତ ସେ ନେଇ
ଅଶୋକବନରେ ତାଙ୍କୁ ଯତନେ ରଖାଇ ।
ତେବେ ରଘୁନାଥ ତାଙ୍କୁ କରିବେ ବିନାଶ
ଧରଣୀ ଭେଟିଲେ ସେ ହୋଇବ ଉଲ୍ଲାସ ।
ଶୁଣିଣ ସରସ୍ୱତୀ ବେଗେ ଚଳିଗଲେ
ଦଶଗ୍ରୀବ ଦେହରେ ଯାଇଣ ବିଜେ କଲେ ।
ସରସ୍ୱତୀ ଯିବାରୁ ଯେ ବେଦଗଣେ ପୁଣ
ଖଳ ପୁରୁଷଙ୍କୁ ସେ ଭେଟିଲେ ତତକ୍ଷଣ ।
ରାବଣ ଦେହେ ଖଳପୁରୁଷ ବିଜେ କଲେ
ଦଶଶିରଙ୍କୁ ସେଠାରୁ ବଳରେ ଧାରିଲେ ।
ସୂର୍ପଣଖା ଜନ୍ମିବାରୁ ଅରଣ୍ୟ ସେ ଖରେ
ଶ୍ରୀରାମ ନ ଥିଲେ ସେ ଘରଣୀ ନେଲା ବଳେ
ଜନକାଙ୍କୁ ଚଣ୍ଡି ଜଣ ରଖିଲା ଅଲଗାରେ
ଶ୍ରୀରାମ ମୃଗ ମାରି ଆସିଣ ଦେଖିଲେ ।
ଜାନକୀ ନ ଥାଇଣ ମନେ ବିଳାପ ପୁଣ
କିଷ୍କିନ୍ଧ୍ୟାରେ ଯାଇଣ ପ୍ରବେଶ ହେଲେ ଜାଣ
ବାଳିକି ମାରି ସୁଗ୍ରୀ ସେଥିରେ ରଜା କଲେ
ବାନର ବଳ ଘେନି ଶ୍ରୀରାମ ଲଙ୍କାକୁ ଗଲେ
ସମୁଦ୍ରେ ସେତୁବନ୍ଧ ବାନ୍ଧିଲେ ପର୍ବତରେ
ରାବଣ ବଂଶ ନାଶିଲେ ବହୁତ ଯତନରେ ।
ଇନ୍ଦ୍ରଜିତ ଷାଠିଏ କୁମରଙ୍କୁ ଲକ୍ଷ୍ମଣ ଛେଦିଲେ
ତାର ସହସ୍ରେ ନାତିକି ଛେଦିଲେ ସମରେ ।
ଏକମୁଖା ରାବଣଙ୍କୁ ସୁଲଙ୍କା ଗଡେ ମାରି
ସରବାହୁ କୁମରଙ୍କୁ ସେଥିରେ ରଜା କରି ।
ରାମ ରାବଣଙ୍କୁ ମାରି ବିଭୀଷଣଙ୍କୁ ରଜା କଲେ
ଶତମୁଖା ଅଯୋଧ୍ୟାକୁ ଯୁଦ୍ଧ କରି ଗଲେ ।
ସେହି ନାଶ ଗଲା ଯେ ଶତ୍ରୁଘନର ହସ୍ତେ
ଭୂତ ଲକ୍ଷେ ରଜା ଘେନି ଚଳିଲେ ତୁରିତେ
ଲକ୍ଷେ ରଜା ଥିବାରୁ ରାମ ବିଚାରିଲେ ମନ
ପଚାରିଲେ ଘରଣୀକି ମୁଁ କେଉଁ ନିଜ ସ୍ଥାନ ।
ନାରଦ ରଘୁରାମ ବଶିଷ୍ଠ ଦୁର୍ବାସା
ନାରାୟଣ ଆଗରେ ପ୍ରବେଶ ବ୍ରହ୍ମଦେବ ।
ପ୍ରବେଶ ହେଲେ ବାସୁଦେବଙ୍କ ଆଗେଯାଇ
ମସ୍ୟ ଦୈତ୍ୟଙ୍କୁ ଅଣାଅ ବୋଲିଣ ସେ କହି ।
ସେଠାରେ ମସ୍ୟ ଦୈତ୍ୟ ହେଲେ ପରବେଶ
ମାସ୍ୟ ଦେହେ ଶନ ସଜ୍ଜ ରଚିଲା ଦଇତ ।

ଲକ୍ଷେ ରାଜା ଯାକ ଯେ ସଭାରେ ବିଜେ କଲେ
ପାତ୍ର ମନ୍ତ୍ରୀ ସାମନ୍ତ ଘେନିଣ ସଙ୍ଗରେ ।
ଏକସଭାରେ ଋଷ କପି ବାନର ବଳ ରହି
ଆର ସଭାରେ ଋଷି ବସିଲେ ପୁଣ ଯାଇ ।
ଚଉରାଶି କୋଟି ଋଷି ହୋଇଲେକି ଠୁଳ
ବାରକୋଟି ଋଷିଗଣେ ଛନ୍ଦି ହେବ ମେଳ ।
ସମସ୍ତଙ୍କୁ ପଚାରିଲେ ଜାନକୀ ଅଣାଇବେ
ବଇଦେହୀ ଆସିଣ ଅଗ୍ନି ପରୀକ୍ଷା ଦେବେ ।
ସ୍ୱର୍ଗରୁ ଦେବେ ଯେ ହେଲେ ପରବେଶ
ସୁଧର୍ମା ସଭାକୁ ଆଣିବେ ଅବଶ୍ୟ ।
ମସ୍ତକରେ ଆମ୍ଭେ ଯେ ଆସିବୁ ଯାଇ ପୁଣ
ଚିନ୍ତା ନ କରିବ ହରଷେ ତୁମ୍ଭେ ଥିବ ଜାଣ ।
ପିତାଙ୍କର ଚରିତ୍ର ନିତ କହୁଥିବ
ଏତେକହି ଋଷ୍ୟଶୃଙ୍ଗ ଆସିଲେକ ବେଗ ।
ବଶିଷ୍ଠେକ ଚରଣରେ ନମସ୍କାର କଲେ
ବାରକୋଟି ଋଷିଘେନି ବେଗେ ଚଳିଗଲେ ।
ଲଙ୍କାର ଭୁବନରେ ଯେତେ ପରବେଶ
ପଶ୍ଚିମ ଦ୍ୱାରରେ ଗଲେ ଯେ ସମସ୍ତ ।
ଦେଖିଲେ ସୁବର୍ଣ୍ଣ ସଭା ଉପରେ ନୃପତି
ଲକ୍ଷେକ ସିଂହାସନ ପରେ ବସିଛନ୍ତି ।
ରାଜାମାନେ ଦେଖିଲେ ଋଷ୍ୟଶୃଙ୍ଗଙ୍କୁ ପୁଣ
ଶ୍ରୀରାମ ଦେଖିଣ ଯେ ହେଲେ ମାନ୍ୟଧର୍ମ ।
ସେଠାରୁ ଧବଳ ସଭା ଯାଇଣ ଦେଖିଲେ
ଲକ୍ଷ ପଦ୍ମ ଋଷି କପି ଦେଖିଣ ଚଳିଲେ ।
ହୀରା ମାଳା ସଭାରେ ହେଲେ ପରବେଶ
କୋଟିଏ ଖମ୍ବରେ ଯେ ବସିଲେ ବିଶେଷ ।
ସେଠାରୁ ରଘୁରାମ ଋଷି ଚଳିଗଲେ
ଶୀତଳ ଗିରି ଉପରେ ଯାଇଣ ପଶିଲେ ।
ଆଠକୋଟି ଋଷି ଘେନି ପରଶୁରାମ ପୁଣ
ଶୀତଳ ଗିରି ଉପରେ କଲେ ସେ ଗମନ ।
ରଘୁରାମ ଯାଇଣ ନମସ୍କାର କଲେ
ଦେଖିଣ ପରଶୁରାମ ହରଷ ହୋଇଲେ ।
ରଘୁରାମ ବୋଇଲେ ଶୁଣ ହେ ଋଷିଗଣ
ଅଷ୍ଟମ ରାବଣଙ୍କୁ ମାରିଲେ ଶ୍ରୀରାମ ଜାଣ ।
ଲକ୍ଷେ ରାଜା ଯାଇଣ ହେଲେ ପରବେଶ
ରହି ଯାଇ ସେଠାରେ ଅଛନ୍ତି ବିଶେଷ ।

ଛପ୍ପନଇକୋଟି ଋଷିସେଠାରେହେଲେମେଳ
ସୈନ୍ୟବଳ ସେଠାରେ ଅଛନ୍ତି ତହଳ ।
ଋକ୍ଷ ବାନର ଯେଣେ ସେ ଅସୁର ବଧ୍ୟଂସିଲେ
ସେଠାରୁ ସ୍ୱରସଜ୍ଜ ଆରମ୍ଭ ଯେ କଲେ ।
ତୁମ୍ଭେ ବେଗେ ଚଳ ନ କର ହେଳା ପୁଣ
ନାରାୟଣ ଅବତାର ଦେଖ ହେ ନୟନ ।
ଶୁଣିଣ ପଶୁରାମ ବଚନ ଚଳିଗଲେ
ଆଠକୋଟି ଋଷି ଘେନ ଲଙ୍କାରେ ମିଳିଲେ
ପଶ୍ଚିମ ଦ୍ୱାର ବାଟରେ କଲେକ ଗମନ
ରାଜାଗଣମାନେ ଦେଖିଲେ ପଶୁରାମ ।
କୋଠାର ଧନୁ ଧରିଣ ଚଳନ୍ତି ଧୀର ଧୀର
କୁରାଳ ତକ୍ଷ ପ୍ରାୟେ ଦିଶଇ ନୟନ ତାଙ୍କର
ରାଜାମାନେ ଦେଖିଣ ଭୟରେ ମୁଖ ପୋତ
ବୋଇଲେ ଶ୍ରୀରାମ ହେ ଆମ୍ଭଙ୍କୁ ରଖନ୍ତି ।
ରଘୁନାଥ ବୋଇଲେ କହୁଛି ନ ଡରର
ପଶୁରାମ ମୁନଙ୍କି ଚିନ୍ତା ଯେ ନ କର ।
ସେଠାରୁ ପଶୁରାମ ବେଗେ ଚଳିଗଲେ
ସୀତା ମାଳା ସଙ୍ଗରେ ମିଳିଲେ ସତ୍ୱରେ ।
ଦୁଇକୋଟି ଋଷି ଯେ ଆବରି ପୁଣ ରହି
ସଙ୍ଗ ଦେଖି ପଶୁରାମ ଶୀତଳ ଭାବ ବହି ।
ସେହିଠାରୁ ରଘୁରାଣ ବେଗେ ଚଳିଗଲେ
ଅଯୋଧ୍ୟା ନଗ୍ରରେ ଯାଇ ପ୍ରବେଶ ହେଲେ
ଅନ୍ତଃପୁରେ ଯାଇଣ ହେଲେ ପରବେଶ
ଦେଖିକରି ରାମ ମାତା ଉଠିଲେ ତୁରିତ ।
ଚରଣ ଧୋଇଣ ଭକତ ସେବା କଲେ
ଆସନ ଦେଇଣ ମୁନଙ୍କି ବସାଇଲେ ।
ସକଳ ମାତା ଆସି କଲେ ଦରଶନ
ରଘୁରାମ ବୋଇଲେ ଶୁଣ ମୋ ବଚନ ।
ତନ ରାବଣକୁ ଯେ ମାରିଲେ ତନ୍ଦ ପୁତ୍ର
ଲକ୍ଷେ ରାଜା ଘେନିଣ ଭରତ ଉପଗତ ।
ଅସଂଖ୍ୟ ସୈନ୍ୟ ସେଠାରେ ହୋଇଛନ୍ତି ଠୁଳ
ଜାନକୀ ଆଣିବେ ଶ୍ରୀରାମ ହେଉଛି ଡରର ।
ରାଜାମାନେ ବୋଇଲେ ମୁନଙ୍କି ଅଣାଅ
ତାଙ୍କୁ ପଚାରିବା ଭଲମନ୍ଦ କଥା ସ୍ନେହ ।
ରାବଣ ଧରିଣ ନେଇଛି ତାଙ୍କ ନାରୀ
ବସ୍ତୁରକୁ ଆସିଲେ ଆଣିବେ ରଘୁନାଥ ।

ସର୍ବଜ୍ଞ ପୁରୁଷ ଯେ ଅଟନ୍ତି ଋଷିଗଣ
ତାହାଙ୍କୁ ପଚାରିବେ ଭଲ ମନ୍ଦ ପୁଣ ।
ଋଷିଙ୍କି ଅଣାଇ ସଙ୍ଗ କର ଏବେ
ଏତେବୋଲି ରାଜାଗଣ କହିଲେ ସଦ୍‌ଭାବେ
ରାଜାଙ୍କରଠାରୁ ଶୁଣି ରାମଚନ୍ଦ୍ର ପୁଣ
ସ୍ୱରସଭା ସେଥିରେ ସେ କଲେକ ରଚଣ ।
ଦେବସଭା ଋଷି ସଭା ରାଜସଭା ପୁଣ
ଋକ୍ଷ କପିଗଣଙ୍କର ଏକଇ ସଭା ଜାଣ ।
ନର ବାନର ଦେବତା ଅସୁର ସହିତେ
ହାତୀ ଘୋଡ଼ା ଓଟ ଗଜ ମଇଁଷି କେତେ ।
ଏତେବଳ ଯେ ମେଳ ହେଲେ ଲଙ୍କାଗଡ଼
ମୁନଙ୍କି ମିଶାଇଣ ବଣ ବର୍ଣ୍ଣରେ ଗାଢ଼ ।
ଏ ବଣ ଜାଣିଲେ ତୁମ୍ଭ ପୁତ୍ର ବଳସ୍ୱାର
ଋଷିଙ୍କି କରିବାକୁ ମୁଁ ଆସିଛି ମଣ୍ଡପର ।
ନାରଦ ଯେ ସ୍ୱର୍ଗପୁର କଲେକ ଗମନ
ଦୁର୍ବାସା ଋଷି ଗଲେ ପାତାଳ ଭୁବନ ।
ବଶିଷ୍ଠ ଅଛନ୍ତି ରାମ ପାଶରେଟି ଜାଣ
ସକଳ ଋଷି ଯାଇ ମିଳିଲେ ଲଙ୍କାସ୍ଥାନ ।
ସମସ୍ତଙ୍କୁ ସ୍ୱଳ ଦେଇ ମୁଁ ରହିଲି ଏକା
ପକ୍ଷକରେ ସ୍ୱରପୁତ୍ର ଆସିବେ ଗୋ ମାତା ।
ଏତେ କହି ସେଠାରୁ ଯେ ଋଷି ଚଳିଗଲେ
ବାମଦେବ ଋଷି ଠାରେ ଯାଇଣ ମିଳିଲେ ।
ସକଳ ବୃତ୍ତାନ୍ତ ତାଙ୍କୁ କହିଲେ ବଚନ
ସଙ୍ଗେ ଘେନ ତାହାଙ୍କୁ ଚଳିଲେ ରଘୁରାମ ।
ଲଙ୍କାଗଡ଼େ ପ୍ରବେଶ ଯେ ତତକ୍ଷଣେ ହେଲେ
ସଭାର ବାଣ୍ଡରେ ଯାଇ ସତ୍ୱରେ ମିଳିଲେ ।
ରଘୁରାମଙ୍କୁ ଦେଖିଣ ଭରତ ବେଗେ ଆସି
ରଘୁରାମ ବୋଇଲେ ଅଇଲେ ସର୍ବଋଷି
ସୀତା ମାଳା ସଭାରେ ଯାଇଣ ବନ୍ଦେକଲେ
ସକଳ ଯେ ଋଷିଗଣ ବେଦ ଆରମ୍ଭିଲେ ।
ଏଥିଅନନ୍ତରେ ଗୋ ଶୁଣ ଭଗବତୀ
ଭକ୍ତ ଯାଇ ଶ୍ରୀରାମ ଆଗରେ କହନ୍ତି ।
ଛପ୍ପନଇ କୋଟି ଋଷି ଅଇଲେ ଦେବପୁଣ
ତିନ ସଭା ସମ୍ପୂର୍ଣ୍ଣ ଯେ ହେଲା ଏବେ ଜାଣ
ଏହା ଶୁଣି ଶ୍ରୀରାମ ଯେ ଭରତଙ୍କୁ କହି
ଋଷିଙ୍କ ସଭାକୁ ତୁମ୍ଭେ ଯାଅ ବେଗହୋଇ

ସକଳ ଋଷିମାନଙ୍କୁ ଅଣାଅ ଏବେ ପୁଣ
ରାବଣ ଶ୍ରୀରାମ ଘରଣୀଙ୍କ ବନ୍ଦୀକରିଛି ଜାଣ
ଶ୍ରୀରାମ ପଚାରନ୍ତି ଆଣିବାଟିକ ପୁଣି
ସକଳ ମୁନି ତୁମ୍ଭେ ସର୍ବଜ୍ଞ ଅଟ ଜାଣି ।
କହୋଇବେ ତାଙ୍କଠାରୁ ଶୁଣି ବେଗେ ଆସି
ମୋହର ଆଗରେ ସର୍ବ ବୃତ୍ତାନ୍ତ କହସି ।
ଶୁଣିଣ ଭରତ ଯେ ଚଳଣ ବେଗେ ଗଲେ
ସୀରା ମଳା ସଭାପରେ ପ୍ରବେଶ ହୋଇଲେ
କରଯୋଡ଼ି ଭରତ ମୁନିଙ୍କି ଜଣାଇଲେ
ଶ୍ରୀରାମଙ୍କର ବାରତା ଶୁଣ ତୁମ୍ଭେ ଭଲେ ।
ବୋଇଲେ ସକଳ ମୁନି ହେ ହୋଇଅଛମେନ
କଥାଏ ପଚାରୁଛି କହିବ ମୋତେ ଠିକ ।
ପିତା ସତ୍ୟ ପାଳଣ ଶ୍ରୀରାମ ବନ ଗଲେ
ଚଉଦ ବରଷ ବନରେ ଝନ ନେଲେ ।
ରାଜ୍ୟକୁ ପିବାକୁ ଥିଲା କିଛୁ ଦନ
ଶ୍ରୀରାମ ଘରଣୀଙ୍କ ଚୋରାଇ ଅଣିଛି ରାବଣ
ଜାନକୀଙ୍କୁ ନେଇଣ ଅଶୋକବନେ ରଖି
ଶ୍ରୀରାମ ଆସିଣ ରାବଣ ମାରିଲେଟି ।
ତୁମ୍ଭଙ୍କୁ ବରଣ କରି ଆଣିଛନ୍ତି ପୁଣ
ପଚାରୁଛି ଜାନକୀଙ୍କି ନେବେଟିକ ପୁଣ ।
ପାପ ପୁଣ୍ୟ ସତୀଙ୍କର କହିବ ବିଚାରି
ନର୍ମଳରେ ଥିଲେ ତାଙ୍କୁ ଆଣିବେ ବୃପଧାରୀ
ଶୁଣିଣ ଯେ ମୁନିମାନେ କହନ୍ତି ବଚନ
ଜାନକୀର କିଛି ଦୋଷ ନାହିଁ ଏବେ ପୁଣ ।
ବାସୁଦେବଙ୍କ ବନିତା ଅଟନ୍ତି କମଳା
ରାବଣକୁ ମାରିବାକୁ ଲଙ୍କାକୁ ଅଇଲା ।
ବନୁଜଙ୍କରେ ପ୍ରବଳ ହୋଇଲା ସେତୁ ବଡ଼
ଦେବତାଙ୍କ ସକାଶରୁ ଯମଦେବ ବଡ଼ ।
ଏବେ ଦେଖ ଅଯସୁ ରାବଣ ଯସୁ ଗଲା
ତିନଯୁଗକୁ ଶ୍ରୀରାମ କଥାଟି ରହିଲା ।
ସ୍ୱୟଂ କମଳା ଅଟେ ଜାନକୀ ତାର ପୁଣ
ଅକଳଙ୍କ ସତୀ ଅଟେ କଳଙ୍କ ନାହିଁ ଜାଣ ।
ରାବଣ କର୍ତ୍ତବ୍ୟରେ କ ଦୁଅଇ ତାକୁ ଆଣି
ତାଙ୍କର ମନଇଚ୍ଛାରେ ଅଇଲେ ସତୀ ପୁଣି ।
ଦେବଙ୍କର କାର୍ଯ୍ୟରେ ଅଇଲେ ସତୀ ପୁଣ
ରାବଣ ବଂଶରେ ଅଇଲେ ଶୀଘ୍ର ଜାଣ ।
ଅଗ୍ନି ଯାହାକୁ ଜଗିଲେ ରହିଛି ପାଶରେ
ପବନ ଜଗିବସିଛି ଯାହାର ସ୍ତମ୍ଭରେ ।
ଲଙ୍କାଗଡ଼କୁ ଅଗ୍ନି ଜନକ ନନ୍ଦନ
ବନୁଜଙ୍କ ଶୁଷ୍କକାଠ ହୋଇଲେ ତାକୁ ପୁଣି ।
କୋପାନଳରେ ଅସୁରଙ୍କୁ କହ୍ୟ ସେତୁକଲେ
ଏବେ ସ୍ୱାମୀଙ୍କର ସଙ୍ଗ ପୁଣି ସେ ଲୋଡ଼ିଲେ
ଯାଅରେ କୈକେୟୀ କୁଳହଯା ଶ୍ରୀରାମର ପାଶ
ବୋଲିବୁ ସୀତାଙ୍କର କିଛି ନାହିଁ ଦୋଷ ।
ଶୁଣିକରି ଭରତ ବେଗେ ଚଳିଗଲେ
ଶ୍ରୀରାମଚନ୍ଦ୍ର ଆଗରେ ଯାଇଣ ଜଣାଇଲେ ।
ଋଷିଗଣଙ୍କୁ ମୁହିଁ ପଚାରିଲି ପୁଣ
ମନରେ ବିଚାରି ମୁନି କହିଲେ ବୁଝାଇଣ ।
ବୋଇଲେ ହେ ଜାନକୀଙ୍କି ଏଥୁ ନେଇ ଚଳ
ଅଯୋଧ୍ୟାରେ ରାଜାହୋଇ ଦଶରଥ ବାଳ ।
ତ'ହାଙ୍କଠାରୁ ଶୁଣି ମୁଁ ଅଇଲି ବହନ
ତୁମ୍ଭର ମନକୁ ଯାହା ଯୋଗାଏ ପ୍ରଭୁ ପୁଣ ।
ଶୁଣିକରି ସନ୍ତୋଷ ହେଲେ ଦାଶରଥି
ଶତ୍ରୁଘନକୁ ଶୁଣିଣ ବଚନ କହନ୍ତି ।
ବେଗେ ଚଳ ବାକୁରେ ବାନର ଭାଲୁ ସଭା
ପଚାରିଆସ ତାଙ୍କୁ କ ବୋଲୁଛେ ଅବା ।
ଶୁଣିକରି ଶତ୍ରୁଘନ ବେଗେ ଚଳିଗଲେ
ସୁଗ୍ରୀବର ସଭାରେ ପ୍ରବେଶ ହୋଇଲେ ।
କରଯୋଡ଼ି ବୋଲନ୍ତି ଯେ ରାମଭାଇ ପୁଣ
ଶୁଣ ହେ ସକଳ କପି ମୋହର ବଚନ ।
ଶ୍ରୀରାମ ଅଟନ୍ତି ଯେ ଦଶରଥ ନାନ
ବୋଇଲେ କପିରାଜାଙ୍କୁ ପଚାର ଯାଇ ପୁଣ
ଜାନକୀଙ୍କି ନେବେଟିକ ଦଶରଥ ପୁଅ
ଅଭ୍ୟାନ୍ତର କଥା କିଛି ଦେଖିଥିଲେ କହ ।
ଋକ୍ଷକପି ବୋଇଲେ ଶୁଣ ହେ ଶତ୍ରୁଘନ
ପବନ ଅଗ୍ନି ଯାହାର ଦୂତ ଅଟନ୍ତି ପୁଣ ।
ବିଷ୍ଣୁଙ୍କର ରାଣୀ ଯେ ଶ୍ରୀରାମ ଘରଣୀ
କ୍ରୋଧ ଛଳାରେ ରାବଣ ମଲା ଏବେ ପୁଣି ।
ଦୈତ୍ୟବଳ ଅନେକ ସଙ୍ଗରେ ଘେନିଗଲା
ଦୁଷ୍କୃପଣ କରିବାରୁ ବଂଶ ମରାଇଲା ।
କିଛି ଦୋଷ ନାହିଁ ତାର ଆମ୍ଭେ ଅଛୁ ଜାଣି
ବିରୋଧ ନକରି ଶ୍ରୀରାମ ଆଣନ୍ତୁ ଠାକୁରାଣୀ

ଶୁଣିକରି ଶତ୍ରୁଘନ ବେଗେ ଚଳିଗଲେ
ଶ୍ରୀରାମଙ୍କର ଆଗରେ ବନ୍ଦନ ମିଳିଲେ ।
ବୋଇଲେ ବାନର ଗଣଙ୍କୁ ମୋତେ ଦେଲ
ତାହାଙ୍କୁ ପଚାରିଲେ ସ୍ୱଳ୍ପ ସେ ସିଦ୍ଧି ।
ସେ ବୋଇଲେ ପ୍ରଜନ ଅଗ୍ନି ପାହାର ଦୁଚ ଅଟେ
ସେହୁଠାରେ କଳଙ୍କ କ ଲାଗିବ ପ୍ରକଟେ ।
ସାକ୍ଷାତେ ଦେଖନ୍ତୁ ଆମ୍ଭେ କହୁନ୍ତି ଦୋଷନାହିଁ
ଆମ୍ଭେମାନେ ତା ଚରଣେ ଦାସପଣେ ରହି
ତାହା ଶୁଣି ଶ୍ରୀରାମ ହେଲେ ତୋଷ ମନ
ଲକ୍ଷ୍ମଣଙ୍କୁ ବୋଇଲେ ତୁ ଉଠ ହୋ ବହନ
ରାଜାମାନଙ୍କୁ ବେଗେ ପଚାର ଆସ ବୁଝି
ଶ୍ରୀରାମ ରାବଣକୁ ମାରିଲେ ଯହିଁପାଇଁ ।
ଘରଣୀକ ତାଙ୍କର ଆଣିବେଟିକ ପୁଣ
ତୁମ୍ଭମାନଙ୍କୁ ଶ୍ରୀରାମ ଯେ ପଚାରୁଛନ୍ତି ଜାଣ ।
ଶୁଣିଣ ସଉମିତ୍ରୀ ଗଲେକ ବହନ
ରାଜାଙ୍କର ଆଗରେ ହୋଇଲେ ଛିଡ଼ା ପୁଣ ।
ବୋଇଲେ ରାଜାମାନେ ଶୁଣହେ ମୋରବାଣୀ
ଶ୍ରୀରାମ ଘରଣୀକ ରାବଣ ନେଲା ପୁଣି ।
ଘରଣୀ ଛଳେ ଶ୍ରୀରାମ ରାବଣକୁ ମାରି
ଜାନକୀ ଆଣିଲେ ଶ୍ରୀରାମ ଯିବେ ନିଜପୁରୀ ।
ତୁମ୍ଭଙ୍କୁ ପଚାରୁଛି ଆଣିବେଟିକ ବାମା
ଏ ବଚନ ଶୁଣିଣ କହିଲେ ରାଜ ସୀମା ।
ବୋଇଲେ ଶ୍ରୀରାମ ଯେ ରାବଣ ନାଶ କଲ
ନିଜ ପୁର ନେଲକ ଅଲଗା ରଖିଲ ।
ସେକଥାରେ ଆମ୍ଭ ମନ ହେଉଛି ଦୁର୍ବୋଧା
ଦେଖିଲେ ଜଣାଯିବ ରହିଲେ ଅଲଗା ।
ଶୁଣିଲୁ କର୍ଣ୍ଣରେ ସୀତା ଅଛି ସେହି ଭଳେ
ଚକ୍ଷୁରେ ଦେଖିଲେ ସୀତା ନିଷ୍କଳଙ୍କ ହେବ ତାରେ
ଆମ୍ଭେମାନେ ଦେଖିବୁ ସେ କେମନ୍ତରେ ଅଛି
ତେବେ ସେ ଘରଣୀକ ଆଣିବେ ରଘୁବଂଶୀ ।
ଶୁଣିକରି ଲକ୍ଷ୍ମଣ ବେଗେ ଚଳିଗଲେ
ଶ୍ରୀରାମ ଆଗରେ ପ୍ରବେଶ ହୋଇଲେ ।
କରଯୋଡ଼ି ଶ୍ରୀରାମ ଆଗେ କହନ୍ତି ସଉମିତ୍ରୀ
ରାଜାମାନେ କହିଲେ ଯେ ଭିନ୍ନ ଭିନ୍ନ ଗତି
ବୋଇଲେ ଯେ ଶ୍ରୀରାମଙ୍କ ଘରଣୀକ ପୁଣ
ଦଶଗ୍ରୀବ ନେଇରଖି ନେଲକ ଯେବେ ଜାଣ ।

ରାଜାମାନଙ୍କ କୁଳକୁ କଳଙ୍କ କରାଇଲା
କେଉଁଠାରେ ଅଛି ସେ ତ ଜଣା ଯେ ନଗଲା
ଏଥିର ସଜାଣେ ଆମ୍ଭେ ଦେଖିବୁ ଯାଇଥରେ
ପରୀକ୍ଷା କରାଇବୁ ଆଣିଣ ଏଠାରେ ।
ସଙ୍କେତ ପାଇଲେ ତା ହସ୍ତେ କରିବୁ ଭୋଜନ
ତେବେ କଳଙ୍କ ଛାଡ଼ିବେ ଶ୍ରୀରାମ ବେହୁ ଜାଣ
ଶୁଣିକରି ରାମଚନ୍ଦ୍ର ହରଷ ମନ ହେଲେ
ଏକଥା ମୋର ମନକୁ ଆଇଲା ବୋଇଲେ ।
ଦେଖନ୍ତୁ ରାଜାଗଣେ କରନ୍ତୁ ପରୀକ୍ଷା
ଜାନକୀ ହାତରେ ଅନ୍ନ ଭୁଞ୍ଜନ୍ତୁ ରାଜାଯାକ ।
ଏକଥାକୁ ମନମତ ଅଟଇ ଆମ୍ଭର
ସମସ୍ତଙ୍କୁ ଅସମସ୍ତ ଅଛି ବସ୍ତୁର ମନର ।
ଛଳପୁରରେ ଆମ୍ଭେ ହେବା ନିଶଙ୍କିତା
ଦେଖନ୍ତୁ ଜାନକୀର ଅଗ୍ନିରେ ସ୍ନାନ କଥା ।
ଅନ୍ୟ ରାଜାର୍'ନାସ୍ତିକ ଅଗ୍ନିରେ ଦେବଶ୍ୱାସ
ତାଙ୍କରଆଜ୍ଞ ଲକ୍ଷ୍ମଣ ହୋଇଲେ ମୋରବଂଶ
ଦଶକୋଟି ପୁଣ ଲୋମପାବକ ହାରେ ଥାନ୍ତୁ
ଆଜ ଭରଣ କୁମର ଅଣାଅ ବେଗେ ତୁ ।
ଶୁଣିଣ ସଉମିତ୍ରୀ ବେଗେ ଚଳିଗଲେ
ଗଡ଼ଦ୍ୱାରେ ଷାଠିଏ କୁମର ଜଗାଇ ରଖିଲେ
ଭରଣ କୁମର ଯେ ଆଣିଲା ବେଗେ ପୁଣ
ଶ୍ରୀରାମ ସମ୍ମୁଖରେ ପ୍ରବେଶ ହେଲା ଜାଣ ।
ଶ୍ରୀରାମ ଦେଖିଣ ଯେ ବୋଇଲେ ତୁମ୍ଭେ ଯାଅ
ଲଙ୍କାଗଡ଼ ଉତ୍ତର ଦୁଆର ଜଗିଥାଅ ।
ଶତେ ଶତେ ରାଜାଙ୍କୁ ଛାଡ଼ିବେକ ପୁଣ
ତିନି ଠାବରେ ତୁମ୍ଭେ ଜଗରେ ଯାଇଣ ।
ଦ୍ୱାରର ଆର ପାଖରେ ରହିବ ଦଶଜଣ
ଏ ପାଖରେ ଦଶଜଣ ଜଗିଥିବ ଜାଣ ।
ତାଙ୍କର ବାହାରେ ଦଶ ଦଶ ଯେ ଜଗିଥିବ
ତିନି ଦ୍ୱାର ବରଣ ସେଥିରେ ବାଡ଼ ଦେବ ।
ଧାଡ଼ି ପ୍ରମାଣେ ଯେ ଲାଗିଣ ଥିବେ ପୁଣ
ଆକଟ ନ କରିବ ଯିବେ ସେ ପ୍ରଜାଗଣ ।
ଶୁଣିଣ ଭରଣ ଭାଇ ବେଗେ ଚଳିଗଲେ
ତିନି ବାଡ଼ ହୋଇଣ ଦ୍ୱାରକୁ ନିରୋଧିଲେ ।
ସେ ଯିବାରୁ ଶ୍ରୀରାମ ଡାକିଲେ ହନୁଭାଇ
ବୋଇଲେ ହନୁ ଅଙ୍ଗଦ ଆଣ ବେଗେ ଯାଇ

ଶୁଣିଣ ଶତ୍ରୁଘନ ବେଗେ ଚଳିଗଲେ
ଜନ୍ମେକ ହନୁମନ୍ତ ବେଗେ ଅଣାଇଲେ ।
ରାମର ଆଗରେ ଆସି ହେଲେ କରଣତ
ଦେଖିଣ ଦାଶରଥି କହିଲେ ତାଙ୍କୁ ପୁଣ ।
ବୋଇଲେ ତୁମ୍ଭେ ଶୁଣହେଁ ମୋର ଘର ଶିଷ୍ଟ
ଷଡ଼ଜଣ ତୁମ୍ଭେ ହୋଇ ଚଳ ଏକ୍ଷଣି ।
ଜାନକୀ ଆଗରେ ତୁମ୍ଭେ ଦୁଆର ଦେବ ଜାଣ
ଲକ୍ଷେ ରାଜା ଜାନକୀଙ୍କୁ ଦେଖିବେ ନେତ୍ରେଣ
ଧାଡ଼ି ପ୍ରମାଣରେ ତାଙ୍କୁ ଗୁଡ଼ବ ଆଗକୁ
ଦର୍ଶନ କଲେ ଚଳନ୍ତି ନ ଦେବ ଏ ଆଡ଼କୁ
ଲଙ୍କାରକାଣ୍ଡରେ ତାଙ୍କୁ ସକଳେ ଦାଣ୍ଡେଭେ
ପଶ୍ଚିମ ଦୁଆର ବାଟେ ଯାଅ ଯା ବୋଲକ
ଗଲେ ବେଳେ ସମସ୍ତେ ଉତ୍ତର ଦ୍ୱାରେ ଯିବେ
ଆସିଲ ବେଳେ ପୂର୍ବ ପଶ୍ଚିମେ ଆସିବେ ।
ଶତ୍ରୁଘନଙ୍କୁ ବୋଇଲେ ଯାଅ ଜାନକୀଙ୍କି
ଲକ୍ଷେ ନକ୍ଷତ୍ର ତୁମ୍ଭଙ୍କୁ ଦେଖିବେ ଆସୁଛନ୍ତି ।
ନିଜ ରୂପ ତୁମ୍ଭର ଯେ କରିବ ପ୍ରକାଶ
ଯେମନ୍ତେ ରାଜାମାନଙ୍କ ଭାଳାନଳ ଦୃଶ୍ୟ ।
ଶୁଣିକରି ଷଡ଼ଜଣ ବେଗେ ଚଳିଗଲେ
ଅଶୋକବନରେ ପ୍ରବେଶ ବେଗେ ହେଲେ ।
ଜାନକୀର ଆଗରେ ହେଲେ ମନ୍ତ୍ରବେଶ
ଶ୍ରୀରାମ ଜାୟାଙ୍କ ନମସ୍କାର କଲେ ଯେ ସମସ୍ତ
ପ୍ରଥମ ଦ୍ୱାରେ ଭରତ ହନୁଅଛନ୍ତି ରହି
ଦ୍ୱିତୀୟରେ ଜନ୍ମେତ ଲକ୍ଷ୍ମଣ ଯେ ରହି ।
ଜାନକୀର ପାଶରେ ରହିଲେ ଶତ୍ରୁଘନ
ଅଙ୍ଗଦକୁ ଯୋଜଣ କରିଲେ ଦ୍ୱାର ପୁଣ ।
ଜାନକୀ ବୋଇଲେ ଯେ ତ୍ରିଜଟା ଏବେ ଶୁଣ
ଅନ୍ତର ମଧ୍ୟରେ କ କଥାଏ ହେଲା ଜାଣ ।
ଛିନ ଝିଅର ମୋର ଯେ ଜଗନ୍ତୁ ଦୁଆର
ଛିନ କପିଙ୍କି ସଙ୍ଗେ ଯୋଜଣ ତାଙ୍କର ।
କମ୍ଭୁକ କଥାଏ ମୋ ନ ପାରେ ମୁଁ ଜାଣି
ତ୍ରିଜଟା ବୋଇଲେ ଯେ ଜାଣିବା ଏକ୍ଷଣି ।
ଏଣୁ ସମୟରେ ଯେ ଶତ୍ରୁଘନ ବୀର
ଜାନକୀଙ୍କ ଚରଣରେ କଲେ ନମସ୍କାର ।
ଜାନକୀ ବୋଇଲେ ହାନୁମ ଆସ ଏକେସମ୍ପତ
ଶତ୍ରୁଘନ ବୋଇଲେ ଶୁଣ ମୋ ଦେବୀ ସତ୍ୟ ।

ତୁମ୍ଭଙ୍କୁ ନେବାକୁ ତ ଶ୍ରୀରାମ ବସ୍ତରଲେ
ରାଜାମାନଙ୍କୁ ପଗ୍ଭର ଆଣିବା ବୋଇଲେ ।
ବଶିଷ୍ଠ ବୋଇଲେ ସଭା କର ହେ ଭିଆଣ
ସଙ୍ଗରେ ରାଜାମାନଙ୍କୁ ପଗ୍ଭରିବା ପୁଣ ।
ଶୁଣିକରି ଶ୍ରୀରାମ ମୟଦୈତ୍ୟଙ୍କୁ ଅଣାଇଲେ
ତିନକୋଟି ସଭା ଭିଆଣ ସେଥି କଲେ ।
ସୁବର୍ଣ୍ଣର ସଭାରେ ରହିଲେ ରାଜାଗଣ
ଧବଳ ସଭାରେ ଯେ କପି ରାଜା ପୁଣ ।
ହୀରା ମାଣା ସଭାରେ ବସିଲେ ସର୍ବ ମୁନି
ଜାନକୀ ଆସିବାଟିକ ଶ୍ରୀରାମ ପଗ୍ଭରିଲେ ପୁଣି
ମୁନିମାନେ ବୋଇଲେ ଜାଣିଲେ ତୁମ୍ଭେ ଆଣ
ତାଙ୍କଠାରେ କିଛୁ ଦୋଷ ନାହିଁ ଶ୍ରୀରାମ ପୁଣ
କପି ରାଜାମାନଙ୍କୁ ପଗ୍ଭରିଲୁ ଯାଇ
ସେ ବୋଇଲେ ସୁଖଆମ୍ଭେ ଦେଖିବୁ ତାଙ୍କପାଇଁ
ଅଗ୍ନି ପବନ ଦେବତା ଆର ଅଷ୍ଟମ ଦୂତ
ପରଠାରେ ଦୋଷ କେତ୍ତ କରିବ ସମ୍ଭୂତ ।
ଆଣ ବେଗେ ଠାକୁରାଣୀ ସିବା ହେ ଏଠାକୁ
ଶୁଣିଣ ଶ୍ରୀରାମ ତୋଷ କପି ଯେ ସଭାକୁ ।
ନାଗସଭା ମଧ୍ୟେ ଶ୍ରୀରାମ ପ୍ରଶ୍ନଲେ ଯାଇ
ରାଜାମାନେ ବୋଇଲେ ଶୁଣ ହେ ରଘୁସାଇଁ
ରାବଣ ଯେ ତୁମ୍ଭ ଘରଣୀଙ୍କ ନେଇଥିଲା
ଦୂର୍ବାଦ ତାଠାରେ ଲୋକମୁଖରେ ଜଣାଗଲା ।
ସେଥିକି ବିଚାର ଯେ କରୁଅଛୁ ଆମ୍ଭେ
ଦେଉଁସ୍ଥାନେ ରଖିଅଛ ଦେଖିବୁ ଯାଇଣି ସେ
ତେବେ ତୁମ୍ଭେ ଆଣିବ ଯେ ପରୀକ୍ଷା ଏଥି ହେବ
ତୁମ୍ଭର କୁଳକୁ ଆଉ କଳଙ୍କ ନ ରହିବ ।
ଶୁଣିକରି ଶ୍ରୀରାମ ଯେ ସ୍ୱୀକାର କଲେ
ଉତ୍ତର ଗଡ଼ଦ୍ୱାରେ ପାହାରା ଜଗାଇଲେ ।
ଆସ୍ତଙ୍କୁ ବୋଇଲେ ତୁମ୍ଭେ ଯାଅ ଷଡ଼ଜଣ
ସୀତାର ପାଶରେ ଦ୍ୱାର ଜଗ ହେ ତୁମ୍ଭେପୁଣ
ରାଜାଙ୍କୁ ଦର୍ଶନ ତୁମ୍ଭେ କରାଅ ଜାନକୀ
ଏତେକହି ଆଜ୍ଞାଦେଲେ ଆସ୍ତଙ୍କୁ ଦାଶରଥି ।
ମୋତେ ଡକାଇଣ ପୁଣ କହିଲେ ଏକ ବାଣୀ
ଜାନକୀଙ୍କି କହିବ ତୁମ୍ଭେ ଏକାନ୍ତରେ ପୁଣି ।
ବୋଲିବ ରାଜାଗଣେ ଆସିବେ ତୋତେ ଦେଖି
ନିଜ ରୂପ ପ୍ରକାଶ ତୁ କରିବୁ ଚନ୍ଦ୍ରମୁଖୀ ।

ଯେଉଁ ରୂପେ ରାଜାମାନେ ହୋଇବେ ପ୍ରସନ୍ନ
ସେହିରୂପେ ତେଜ ତାଙ୍କୁ ଦେଖାଇବ ପୁଣ ।
ଶୁଣିଣ ଜାନକୀ ଦେବୀ ମନେ ସନ୍ତୋଷ ହେଲେ
ନିକଟେ ଲକ୍ଷ୍ମଣ ଜାଣି ବୋଲିଣ ଉତ୍ତରିଲେ
ଏତେକହି ଶତ୍ରୁଘ୍ନ ଅଇଲେ ବେଗେ ପୁଣ
ଅଙ୍ଗଦଙ୍କୁ ସେନା ଦ୍ୱାରେ ଜଗିଲେ ସେ ପୁଣ ।
ଏଥୁଅନନ୍ତରେ ଶମ୍ଭୁ ଶୁଣ ଗୋ ଭଗବତୀ
ଦ୍ୱାର ଜଗାଇଣ ଶ୍ରୀରାମ ମନରେ ଚିନ୍ତୁଛନ୍ତି ।
ବିଭୀଷଣ ମନ୍ତ୍ରବୈଦ୍ୟ ଦୁହିଁଙ୍କି ଅଣାଇଲେ
ଧୀରେ ଧୀରେ ତହିଁ ଶ୍ରୀରାମ ବଚନ କହିଲେ
ବୋଇଲେ ହେ ନୃପତି ବେଗେ ତୁମ୍ଭେ ଯାଅ
ଲଙ୍କାଗଡ଼ ସୁନା ଦ୍ୱାର ଯାଇଣ ଜଗାଅ ।
ସୁନାଦ୍ୱାରେ ଦୂତଗଣ ରହିବ ଜଗୁଆଳ
ମୋହିଲେ ରାଜାମାନେ ଜାଣିବେ ମୋର ବଳ
ଚଉଦ ସହସ୍ର ରଥ ତୁମ୍ଭ ସିଂହଦ୍ୱାରେ ତୁମ୍ଭେ
ଜଗନ୍ତି ସିଂହାସନ ଉପରେ ବସ ବେଗେ ।
ରାଜାଗଣେ ଦେଖିବେ ତୁ ନୋହିବୁ ଅପସନ୍ନ
ବେଗେ ତହିଁ ଦୁଇଜଣ ସୁନାଦ୍ୱାର ରୁନ୍ଧ ।
ଶୁଣିକରି ବିଭୀଷଣ ନମସ୍କାରି ଚଳି
ମନ୍ତ୍ରବୈଦ୍ୟ ସେନାକରି ରଥରେ ବସିଲ ।
ଲଙ୍କାରେ ପ୍ରବେଶ ଯାଇ ହୋଇଲେ ଦୁଇଜଣ
ଅଶୋକବନରେ ଯାଇ ମିଳିଲେ ତକ୍ଷଣ ।
ମଧୁବନ ଅଶୋକବନ ମଧ୍ୟେ ବସାଇଲେ ହାଟ
ନାନା ଜାତି ଫଳମୂଳ ଆମ୍ବ ଯେ ପଣସ ।
ଠଙ୍କ ଲେମ୍ବୁ କମଳା ଯେ ଡାଳିମ୍ବ ପକ୍ୱଫଳ
ନବାତ ମଲ୍ଲଡ଼ କଦଳୀ ନାନା ଜାତିରେ ମେଳ
ହଟାରି ବଜାରି ଯେ ଦୋକାନୀ ନାନା ଜାତି
ସଦାବ୍ରତ ସେଥିରେ ସମସ୍ତେ ବିଅନ୍ତି ।
ମଧୁବନରୁ ଯାଇଣ ନଗରେ ପ୍ରବେଶ
ହାଟ ବାଟ ସବୁ ଯେ ଗହଳ ଅଶେଷ ।
ନିଜ ନଗରେ ଯାଇଣ ପ୍ରବେଶ ହୋଇଲେ
ମନ୍ତ୍ରୀକି କହିଣ ସେ ରଥଙ୍କି ଅଣାଇଲେ ।
ସୁରଶତ ରଥ ଯେ ଚଳିଲେ ସୁନା ଦ୍ୱାରେ
ବୋଇଲେ ନିଷେଧ ନକରିବେଯେତାଙ୍କୁବନେ
ରାଜାମାନେ ଦେଖିବେ ଫେରିଣ ମୋର ପୁର
ରାଜାଏ ଗଲେ ଆସିବେ ଋଷ ଯେ ବାନର ।
ଋଷ ବାନର ଗଲେ ଆସିବେ ରୁଷଗଣ
ଏତେବୋଲି ଶ୍ରୀରାମଙ୍କ ଆଜ୍ଞା ପରମାଣ ।
କଥାନ୍ତି ନ କହିବ ତୁମ୍ଭେ ଦ୍ୱାର ଜଗିଥିବ
ଯେ ଯାହା ପାଇବ ତାହା ନିଷେଧ ନ କରିବ
ଶୁଣିକରି ରଥମାନେ ବେଗେ ଚଳିଗଲେ
ସୁନାଦ୍ୱାର ମେଲିକରି ଜଗିଣ ରହିଲେ ।
ଚଉଦ ସହସ୍ର ରଥ ଯେ ଅଣାଇ ବିଭୀଷଣ
ନ୍ୟାୟ ଅନ୍ୟାୟ ବୁଝିଣ ଦଣ୍ଡିଲ ପ୍ରଜା ପୁଣ ।
ଦୁଃଖୀଜନମାନଙ୍କୁ ଅନ୍ନ ବସ୍ତ୍ର ଦଏ ପୁଣି
ମାଗନ୍ତା ଲୋକ ମନ ତୋଷ କରେ ଜାଣି ।
ମନ୍ତ୍ରବୈଦ୍ୟ ମିଳିଲେ ଯେ ନଗର ଭିତରେ
ମନ୍ଦୋଦରୀ ପାଶେ ଯାଇ ମିଳିଲେ ସତ୍ୱରେ ।
ମନ୍ଦୋଦରୀ ତାଙ୍କୁ ସର୍ବକଥା ବୁଝାଇ କହିଲା
ଭୋଜନ ସାରି ପଲଙ୍କ ଉପରେ ଶୋଇଲା ।
ଏଥୁଅନନ୍ତରେ ଶୁଣ ଗୋ ଗଉରୀ
ଶ୍ରୀରାମ ଯେ ସଭାରେ ଅଛନ୍ତି ବିଜେକରି ।
ସୁମନ୍ତଙ୍କୁ ବୋଇଲେ ଶୁଣ ମନ୍ତ୍ରୀବର
ରାଜାମାନଙ୍କୁ ଯାଇଣ କହ ହେ ବ୍ୟଗ୍ର ।
ବୋଲିବ ତୁମ୍ଭେମାନେ ଲଙ୍କାଗଡ଼କୁ ଯାଅ
ଅଶୋକବନେ ଶ୍ରୀରାମ ନାରୀଙ୍କି ଭେଟ ପାଅ
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗ ହୋଇ ଗଲା
ରାଜାମାନଙ୍କୁ ଯାଇଣ ବଚନ କହିଲା ।
ଶୁଣ ହେ ରାଜାମାନେ ମନ କରି ସ୍ଥିର
ଜନକ ଦୁହିତାଙ୍କୁ ଦେଖିବା ପାଇଁ ଚଳ ।
ଆପଣଙ୍କ ଧାରାଟେ ଯିବେ ସେ ସଭାରୁ
ଦୁଷ୍ଟପଣ ନ କରିବ ସ୍ଥିରରେ ହେବ ଗରୁ ।
ଉତ୍ତର ଦ୍ୱାର ବାଟରେ ଗମନ କରି ଯିବ
ଘୋଡ଼ାକର ପଛରେ ଘୋଡ଼ାଏ ଚଳିଯିବ ।
ଜାନକୀଙ୍କି ଦେଖିକରି ମଧୁବନେ ପଶ
ମନଇଚ୍ଛା ଫଳମୂଳ କର ତର୍ପି ଗ୍ରାସ ।
ଲଙ୍କାଗଡ଼ଦେଖିଣଯେପୂର୍ବଦ୍ୱାରେବାହାରିଗମନ
ସେ ଦୁଆରେ ଫେରିଣ ଆସ ହେ ବହନ ।
ଯେଯାହାର ଘରେ ଯାଇଣ ହେବ ପରବେଶ
ରଜନୀ ପୁହାଇଣ ସଭାକୁ ପୁଣ ଆସ ।
ଦୁଷ୍ଟପଣ କଲେ ନାଶ ଯିବନ୍ତି ସେଠାରେ
ପଶୁ ରାମ ଆସିଛନ୍ତି ତୁମ୍ଭର ସକାଶରେ ।

ଏତେ କହନ୍ତେ ମନ୍ତ୍ରୀ ଶ୍ରୀରାମ ପାଶେ ଗଲେ
ଏଥୁଅନନ୍ତରେ କଥା ଶୁଣ ଶିଷ୍ଟ ହେଲେ
ପୂର୍ବଦିଗ ରାଜା ଯେ ଉଠିଲେ ବହନ
ଘୋଟକ ପନ୍ଥରେ ଘୋଟଏ କରନ୍ତ ଗମନ ।
ଉତ୍ତର ଦ୍ୱାରେ ଯାଇଣ ହେଲେ ପରବେଶ
ଦାସକ କହନ୍ତେ ଭିତରେ ଗଲେ ସେତ ।
ଅଶୋକବନକୁ ସେହୁ ଗମନ କରିଗଲେ
ଭରତ ଲକ୍ଷ୍ମଣ ଶତ୍ରୁଘନଙ୍କୁ ଦେଖିଲେ ।
ହନୁମନ୍ତ ପାଶରେ ହେଲେ ପରବେଶ
ଶତ୍ରୁଘନ ଚାହାଁଇଲେ ଜନକ ଦୁହିତ ।
ରାବଣ ଏହାଙ୍କୁ ଯେ ଆଣିଛି ହେରାଇ
ଏହିସ୍ଥାନେ ରଖିଛି ଦେଖ ହେ ତୁମ୍ଭେ ରହି ।
ଶୁଣିକରି ରାଜାମାନେ କରେଣି ସ୍ତୁତିଲେ
ଅଗ୍ନିର ତେଜ ବର୍ଣ୍ଣ ତା ରୂପ ଦେଖିଲେ ।
ଦେଖିବାରୁ ହନୁମନ୍ତ କହାଲେ ତୁମ୍ଭେ ଯାଅ
ମଧୁବନେ ପଶିଣ ଫଳମୂଳ ଖାଅ ।
ଦେଖିକରି ରାଜାମାନେ ସେଠାରୁ ଚଳିଗଲେ
ମଧୁବନରେ ଯାଇଣ ପ୍ରବେଶ ହୋଇଲେ ।
ଦେଖିଣ ପ୍ରଶଂସା କରନ୍ତି ରାଜାଗଣ
ଧନ୍ୟରେ ରାବଣ କୃତି ଯେ ଅଟେ ପୁଣ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ଦ୍ରବ୍ୟ ପୁଣ
ସକଳ ଆଣିଣ କରିଛି ଠୁଳ ଜାଣ ।
ମଧୁବନେ ଦେଖିଲେ ହଟାଣ ବଜାର
ନାନା ବର୍ଣ୍ଣରେ ପସରାମାନ ସେହୁ ଭରି ।
ବୋଲନ୍ତି ଯେ ଯାହାର ଇଚ୍ଛାରେ କର ଗ୍ରାସ
ବିଭୀଷଣ ରାଜା ଯେ ହୋଇଛି ସବାରୁ ତ ।
ଶୁଣିଣ ରାଜାମାନେ ହରଷ ମନ ହେଲେ
ଯେ ଯାହାର ଇଚ୍ଛାରେ ଆଣିଣ ଭୁଞ୍ଜିଲେ ।
ପାଚିଲା କଦଳୀ କେତେ ନଡ଼ିଆ ନେହାଖଜା
ଆମ୍ବ ପଣସ କେତେ ଭୁଞ୍ଜିଲେ ପୁଣ ରଜା ।
ଭୋଜନ ସାରିଣ ଯେ ସେଠାରୁ ଚଳିଗଲେ
ଫୁଲବନ ଭିତରେ ପବେଶ ହେଲେ ।
ଦେଖିଣ ଫୁଲବନ ଚଳିଲେ ବହନ
ଖାଣ୍ଡବ ବନ ଦେଖିଣ ନଆଳ ବନ ପୁଣ ।
ଶାଳ ବନ ଶିଶୁବନ ଚନ୍ଦନ ମଳୟ ବନ
ଏମାନ ଦେଖି ରାଜାଏ ଚଳିଲେ ବହନ ।

ନଗ୍ର ଭିତରେ ଯାଇଣ ହେଲେ ପରବେଶ
ଚଉଷଠି ବର୍ତ୍ତରେ ଚଳନ୍ତି ରାଜହଂସ ।
ହୀରା ମାଣିକ ପୁର ଯେ ସୁବର୍ଣ୍ଣେ ନିର୍ମାଣ
ଦେଖିକରି ରାଜାଗଣେ ହୋଇଲେ କାତର
ଚାନ୍ଦ୍ରଗୋଟି ଜଳେ ଶତ ଶତ କନ୍ଧ
କନ୍ଧକେ ଅଛି ଚହିଁରେ ଶବଦ ଯେ ଝଙ୍କାର ।
ନବରତନ ପୁର ଯେ ସୁବର୍ଣ୍ଣେ ନିର୍ମାଣ
ଉପରେ ଧବଳ ମୁକୁତା ଜାଲି ଜାଣ ।
ଏତେବେଳେ ଲଙ୍କା ବୁଲି ଦେଖନ୍ତି ରାଜାମାନେ
ରାଜାର ସିଂହଦ୍ୱାରେ ପ୍ରବେଶ ବହନେ ।
ନଗର ଦେଖି ରାଜାମାନେ ବହୁତ ପ୍ରଶଂସିଲେ
ପୂର୍ବଦ୍ୱାର ବାଟରେ ବାହାର ହୋଇଗଲେ ।
ଦକ୍ଷିଣ ପଶ୍ଚିମ ଦ୍ୱାର ଲଙ୍କାର ଚଉପାଶ
ଝାଡ଼ ଜଙ୍ଗଲ ପଥର ପାହାଡ଼ ପର୍ବତ ।
ଦେଖିକରି ରାଜାମାନେ ସନ୍ତୋଷମନହେଲେ
ଯେ ଯାହାର ଛାଉଣୀ ଘରେ ପ୍ରବେଶହୋଇଲେ
ଏଥୁଅନନ୍ତରେ ଗୋ ଶୁଣ ଦେବୀ ଉମା
ପୂର୍ବଦିଗରେ ରାଜା ଅଠର ସସ୍ତ୍ର ସୀମା ।
ଅଠର ମଣ୍ଡଳମଣି ଅଟନ୍ତି ସେ ଦିଗରେ
ସେଦିଗ ରାଜାମାନେ ଦେଖିଣ ପୁଣି ଗଲେ ।
ସେଠାରୁ ଉତ୍ତର ଦିଗ ରାଜା ଯେ ଉଠିଲେ
ଘୋଟକର ପନ୍ଥରେ ଘୋଟଏ ଚଳିଗଲେ ।
ଉତ୍ତର ଦ୍ୱାର ବାଟରେ କଲେକ ଗମନ
ଲକ୍ଷେ ସହସ୍ର ରାଜା ଭେଜେ କଲେ ପୁଣ ।
ଉତ୍ତରଦ୍ୱାର ଦେଇଁଣ ଭିତରେ ପୁଣି ଗଲେ
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ
ଜାନକୀ ଉପରେ ଦେଖିଲେ ଶ୍ରୀରାମର ଦାସ
ପ୍ରକାଶ ଅଗ୍ନି ପ୍ରାୟ ଯେ ଦିଶନ୍ତି ସୁନ୍ଦର ।
ଦେଖିଣ ରାଜାମାନେ ଯେ ବିସ୍ମୟ କଲେ ମନ
ତ୍ରୈଲୋକ୍ୟ ଠାକୁରାଣୀ ମାୟାରେ ଜନ୍ମପୁଣ
ଶ୍ରୀରାମ ଅଟନ୍ତି ଯେ ସ୍ୱୟଂ ନାରାୟଣ
ଜାନକୀ ଅଟନ୍ତି ଯେ କମଳା ଦେବୀ ପୁଣ ।
ଏତେ ବିଚାରି ରାଜାଏ ମଧୁବନକୁ ଗଲେ
ଦଶ ମଣ୍ଡଳମଣି ତାଙ୍କ ସଙ୍ଗରେ ଚଳନ୍ତି ଭଲେ
ମଧୁବନରେ ଯାଇଣ ହେଲେ ପରବେଶ
ଦେଖିଲେ ଅତି ଶୋଭା ଦିଶଇ ବିଶେଷ ।

ଫଳ ବନ ଦେଖିଣ ଫୁଲ ବନ ଗଲେ
ମଉଷଧି ବନକୁ ଯାଇଣ ଦେଖିଲେ ।
ହଟାସ୍ତ ବଜାସ୍ତ ଦେଖିଲେ ଅଛନ୍ତି ବସି
ଅପୂର୍ବ ପଦାର୍ଥମାନ ଶୋଭନ୍ତି ସେହୁ ଯ ଠ ।
ଯେ ଯାହାର ମନଇଛା ହୋଇଲାକ ଜାଣ
ଅଣାଇଣ ରାଜାଗଣେ କଲେକ ଭୋଜନ ।
ଭୋଜନ ସାରିଣ ରାଜାଏ ଆଶ୍ଚୋବନ କଲେ
ଲଙ୍କା ନଗର ଭିତରେ ଯାଇଣ ପଶିଲେ ।
ଚଉଷଠି ବାଣ୍ଡରେ କରନ୍ତି ଗମନ
ଜଗ ବଜାର ଦେଖିଣ ଫେରିଗଲେ ପୁଣ ।
ଦଶଗ୍ରୀବ ସିଂହଦ୍ୱାରେ ହେଲେ ପରବେଶ
ଦେଖିଲେ ହୀରା ନୀଳା ମାଣିକ୍ୟ ବିଶେଷ ।
ଅଷ୍ଟରତ୍ନେ ଘର ଯେ କରିଛି ଦଶଶିର
ଅନ୍ତଃପୁର ମଧ୍ୟରେ ଅଟେ ସାର ଘର ।
ସପତ ଶାଳ ଘର କରିଛି ବିସ୍ତର
ନବଗୁଞ୍ଜର ଘର ଏକ ରଚିଛି ସୁନ୍ଦର ।
ତାହାଇକୁ ସୁନ୍ଦର ଭିତରେ ନାହିଁ ଭେଦ
ଦେଖିକରି ରାଜାଗଣେ ହୋଇଲେ ଆନନ୍ଦ ।
ଦକ୍ଷିଣ ଦ୍ୱାର ବାଟରେ ହୋଇଲେ ବାହାର
ଗଡ଼ର ଗୁରିପାଖେ ଦେଖନ୍ତି ସନ୍ତୋଷର ।
ଦେଖିକରି ଚଳିଲେ ଯେ ରାଜାଗଣେ ପୁଣ
ଯେ ଯାହାର ଶାଡ଼ୀଘରେ ପ୍ରବେଶ ଯାଇଣ ।
ଏଥିଅନନ୍ତରେ ଶୋ ପାର୍ବତୀଦେବୀ ଶୁଣ
ପଶ୍ଚିମଦିଗ ରାଜାଏ ଉଠିଲେ ତତକ୍ଷଣ ।
ଚଉଦ ମଉଡ଼ମଣି ସେଥିରେ ସରଦାର
ଗୋଟିକ ପଛେ ଗୋଟିଏ କଲେକ ସଉର ।
ଉତ୍ତର ଦ୍ୱାରେ ଯାଇଣ ହେଲେ ପରବେଶ
ଦେଖିଲେ ମେଘନାଦ ପାଟେଶ୍ୱ ବିଶେଷ ।
ସୁବର୍ଣ୍ଣର ବର୍ଣ୍ଣରେ ବିଶଇ ପାଟେଶ୍ୱ
ଦେଖିଣ ରାଜାମାନେ ମନରେ ବିସ୍ମର ।
ଭଲରେ ଅସୁର ଯୋଗେଣ ଜନ୍ମ ହେଲୁ
ସୁବର୍ଣ୍ଣମୟ ଲଙ୍କା ପୁଣ ଯେ ଭୋଗ କଲୁ ।
ଅଜସ୍ର ଗଡ଼ କରିଣ ଈଶ୍ୱରିନ୍ତେ ଭୁ ଯେ ଥିଲୁ
ଅନ୍ୟାୟ ସ୍ଥାନମାନଙ୍କୁ କମାଇଁ ପୁଣ ଗଲୁ ।
ଏତେ ବିସ୍ମରିଣ ଯେ ତହୁଁ ଚଳିଗଲେ
ଅଶୋକ ବନରେ ଯାଇ ପ୍ରବେଶ ହୋଇଲେ

ଦେଖିଲେ ଜାନକୀ ଯେ ସୁବର୍ଣ୍ଣ ମଣ୍ଡପରେ
ଭଜସ୍ତୁ କରିଛନ୍ତି ଯେ ଜାନକୀ ସେଥିରେ ।
ତାଙ୍କର ତେଜ ଦେଖିଣ ନୟନ ବୁଜିଲେ
ସ୍ୱୟଂ କମଳା ଏହୁ ମନରେ ବିସ୍ମରିଲେ ।
ଏହାକୁ ଛୁଇଁବାକୁ କାହିଁ ରାବଣ ଦୁର୍ଜନ
ହୋଇ ଚିନ୍ତିବାରୁ ବଂଶ ମରାଇଲା ପୁଣ ।
ଏତେ ବିସ୍ମରି ରାଜା ସେଠାରୁ ଚଳିଗଲେ
ମଧୁବନରେ ଯାଇଣ ପ୍ରବେଶ ସେହୁ ହେଲେ
ଫୁଲବନ ବାଟରେ ସେହୁ ଚଳିଗଲେ
ଚନ୍ଦନ ବନ ଯାଇଣ ସେହୁ ଯେ ଦେଖିଲେ ।
ହଟାସ୍ତ ବଜାସ୍ତ ବସିଅଛନ୍ତି ତହିଁରେ
ନାନାବିଧ ପଦାର୍ଥମାନ ଦେଖିଲେ ସେଠାରେ
ଯେ ଯାହାର ମନ ଇଚ୍ଛାରେ କଲେକ ଭୋଜନ
ସେଠାରୁ ଚଳିଗଲେକ ସେହୁ ପୁଣ ।
ଔଷଧ ବନ ଦେଖିଣ ଶାଳବନ ଗଲେ
ବଡ଼ ବାଣ୍ଡ ଭିତରେ ଯାଇଣ ପଶିଲେ ।
ଚଉଷଠି ବାଣ୍ଡ ବୁଲି ଜଗ ବଜାର ଦେଖିଲେ
ରାଜାର ସିଂହଦ୍ୱାରେ ଯାଇ ପ୍ରବେଶ ହୋଇଲେ
ଦେଖିଲେ ଜଗତି ପରେ ବସିଛି ବିଭୀଷଣ
ଦେଖି ରାଜାମାନେ ହର୍ଷୀଭୂତ ହେଲେ ପୁଣ
ସେଠାରୁ ପୂର୍ବଦ୍ୱାର ବାଟରେ ଚଳିଗଲେ
ନଗର ଗୁରିପାଖ ବୁଲିଣ ଦେଖିଲେ ।
ଦେଖିକରି ଚଳିଗଲେ ରାଜାଗଣ ପୁଣ
ଯେ ଯାହାର ଶାଡ଼ୀ ଘରେ ପ୍ରବେଶ ଯାଇଣ
ଏଥିଅନନ୍ତରେ ଶୋ ପାର୍ବତୀ ଦେବୀ ଶୁଣ
ଦକ୍ଷିଣ ଦିଗ ରାଜା ଉଠିଲେ ବହନ ।
ବାର ମଉଡ଼ମଣି ଯେ ସେଥିରେ ସରଦାର
ଗୋଟିକ ପଛରେ ଗୋଟିଏ ଗଲେ ସେସଉର
ଉତ୍ତର ଦ୍ୱାର ବାଟରେ ଗଲେକ ସେହୁ ପୁଣ
ମେଘନାଦ ପାଟେଶ୍ୱ ଦେଖି ପ୍ରଶଂସା କଲେ ପୁଣ
ଲଙ୍କାର ବଡ଼ ବାଣ୍ଡରେ କରନ୍ତି ଗମନ
ଅଶୋକବନେ ଯାଇଣ ପ୍ରବେଶ ରାଜାଗଣ ।
ଦେଖିଲେ ଜାନକୀ ଯେ ସୁବର୍ଣ୍ଣ ମଣ୍ଡପରେ
ତପେ କରିଛନ୍ତି ଯେ ଜାନକୀ ସେଥିରେ ।
ପ୍ରଳୟ ଅଗ୍ନି ପ୍ରାୟ ଶରୀର ତାଙ୍କ ଦିଶି
ଦେଖିବାକୁ ରାଜାମାନେ ମନରେ ପୁଣ ହାସି

ମନରେ ଭାବୁଥିଲେ ଏ ଅଟନ୍ତି ଠାକୁରାଣୀ
ନୋହିଲେ ଏତେତେଜ କାହାର ହୋନ୍ତା ପୁଣି
ଅମ୍ଭର ବଡ ଭାଗ୍ୟ ଦେଖିଲୁଁ ଆସି
ଅମ୍ଭର କୁଳରେ ଶ୍ରୀରାମ ଅଟନ୍ତି ବ୍ରହ୍ମଋଷି ।
ଏଠାରେ ଜାନକୀଶ୍ରୀହସ୍ତେ ଖାଇବାଯୋଗେ ଅନ୍ନ
ମୁକତ ହେବ ପିଣ୍ଡ ସ୍ୱର୍ଗକୁ ଯିବା ପୁଣ ।
ଏତେ ଭାବିଣ ରାଜାଏ ସେଠାରୁ ଚଳିଗଲେ
ମଧୁବନରେ ଯାଇଣ ପ୍ରବେଶ ହୋଇଲେ ।
ହଟାସ୍ତ ବଜାସ୍ତ କପିଅଛନ୍ତି ତହିଁରେ
ନାନାଦ ପଦାର୍ଥମାନ ଦେଖିଲେ ନେତ୍ରରେ ।
ପକ୍ୱ ପଦାର୍ଥ ଆଣି କଲେକ ଭୋଜନ
ସେଠାରୁ ଫୁଲବନ ଦେଖିଲେ ଯାଇ ପୁଣ ।
ଔଷଧ ବନ ଦେଖିଣ ଶାଳବନ ଗଲେ
ସେ ବନରେ ହାଟ ବସିଅଛୁ ଯେ ଦେଖିଲେ
ଉତ୍ତମ ପଦାର୍ଥ ଦେଖି ଅଣାଏ ରାଜନ
ଦୁଧ ଦହି ଛେନା ଗଜା ଖାକର ଯେ ପୁଣ ।
ନଡ଼ିଆ ପଇଡ ସର ପଣା ଘୃତ ମିଶା
ନବାତ କଦଳୀ ଆମ୍ବ ପଣସ ଚକ୍ରାଘଷା ।
ସାକ୍ଷରନ ସେଣ୍ଡା ଯେ ନାନା ବର୍ଣ୍ଣର ଫଳ
ଭୁଞ୍ଜିଣ ରାଜାମାନେ ହେଲେ ଯେ ଶୀତଳ
ପଞ୍ଚବର୍ଣ୍ଣ ଫୁଲମାଳ ଗଭା ମୁଣ୍ଡରେ ଘାଇ
ଆନନ୍ଦ ହୋଇଲେ ମନେ ସଙ୍ଗ ନୃତ୍ୟ ତହିଁ ।
ଫୁଲ ବନ ଶିଶୁ ବନ ମଳୟ ଚନ୍ଦନ
ମଳୟ ପବନ ଦେଖିଣ ନଗ୍ରକୁ ଗଲେ ପୁଣ
ଶତେ ପୁଣ ଲଙ୍କାକୁ ଭ୍ରମଣ ଯେ କଲେ
ହାଟ ବାଣ୍ଡ ବଜ ଯେ ବଜନ ଦେଖିଲେ ।
ରାଜାର ସିଂହଦ୍ୱାର ନବରକୁ ଦେଖିଲେ
ପ୍ରଶଂସା କରିଣ ତହୁଁ ଯେ ବେଗେଣ ଫେରିଲେ
ପଶ୍ଚିମ ଦ୍ୱାର ବାଟରେ ହୋଇଲେ ବାହାର
ଗଡ଼ ଘୂରିପାଖ ବୁଲିଲେ ସେ ସର୍ବ ।
ଜନ ଶାଢ଼ୀଘରେ ଯାଇ ହେଲେ ପରବେଶ
ପୁଣି କୁମ୍ଭେ ରାକ୍ଷସୀ ଗୋ ଏଥୁଅନ୍ତେ ଭର୍ସ ।
ରାଜସଭା ଶେଷ ଯେ ହୋଇଲା ପୁଣି
ସେ ସଭାରୁ ଉଠିଲେ ଯେ ଶ୍ରୀରାମ ରାଜନ
ହୀର ମାଳା ସଭାରେ ଯେ ହେଲେ ପରବେଶ
ମୁନିମାନଙ୍କୁ ଦେଖିଣ ମନରେ ହରଷ ।

ଶ୍ରୀରାମ ମାନ୍ୟ କଲେ ଯେ ମୁନିଙ୍କ ଚରଣ
ଆନନ୍ଦରେ ମୁନିମାନେ କଲେକ କଲ୍ୟାଣ ।
କରଯୋଡ଼ି ଶ୍ରୀରାମ ଯେ ମୁନିଙ୍କି ପୁଣ କହି
ତୁମ୍ଭର ଦୁହିତାକୁ ରାବଣ ଅଛି ନେଇ ।
ଲଙ୍କାଗଡ଼ ଭିତରେ ଯେ ଅଶୋକ ବନରେ
ବନ୍ଦୀକରି ରଖିଲା ଯେ ରାବଣ ଦଶଶିରେ ।
ବଡଇ ଦୁର୍ଜନ ସେ ଯେ ଗଲା ଏବେ ନାଶ
ତୁମ୍ଭେମାନେ ଯାଇ ତୁମ୍ଭ ଦୁହିତାକୁ ଦେଖ ।
ହାନି ଲାଭ କଥାକୁ ତୁମ୍ଭେ ମୋର ସାକ୍ଷ୍ୟ
ତୁମ୍ଭବ୍ୟଞ୍ଜରେକେ କେନ୍ତି କାହ୍ନେନ୍ତି ମୋରପକ୍ଷ
ତୁମ୍ଭେମାନେ ଦେଖିଲେ ମୁଁ ହୋଇବି ନିର୍ମଳ
ଏତେ କହି ନମିଲେ ଦଶରଥ ବାଳ ।
ଶୁଣିକରି ମୁନିମାନେ ସନ୍ତୋଷ ହୋଇଲେ
ଦେବଋଷି ସକଳେ ଉଠକରି ଗଲେ ।
ଉତ୍ତର ଦ୍ୱାର ବାଟରେ କଲେକ ଗମନ
ଅଶୋକବନେ ଯାଇ ହୋଇଲେ ବେଗେଣ ।
ଦେଖିକରି ଜାନକୀ ନିଜ ରୂପ ପ୍ରକାଶିଲେ
ମହାଦେବର ଘରଣୀ ପ୍ରାୟେ ତାହାଙ୍କୁ ଦିଶିଲେ ।
ଋଷିଙ୍କି ଦେଖି ଜାନକୀ ନମସ୍କାର କଲେ
ସୁକଲ୍ୟାଣ କଲେ ସେ ଋଷିମାନେ ଭଲେ ।
ମଧୁବନେ ମିଳଣ ଫୁଲବନେ ଗଲେ
ଔଷଧ ବନ ଦେଖି ତୁଳସୀ ଦେଖିଲେ ।
ଚନ୍ଦନ ବନରେ ପ୍ରବେଶ ହେଲେ ଯାଇ
ବିଶ୍ରବା ଋଷି ସେଠାରେ ମୁନିଙ୍କି ରଖାଇ ।
ଫଳଫୁଲ ଭୁଞ୍ଜିବାକୁ ତାଙ୍କୁ ପୁଣ ଦେଲେ
ଶତେ ପୁଣ ଲଙ୍କା ଯେ ନଗ୍ର ବୁଲାଇଲେ ।
ରାଜାର ସିଂହଦ୍ୱାରେ ହେଲେ ପରବେଶ
ଭିତରକୁ ନେଲେ ତାଙ୍କୁ ବିଶ୍ରବାର ଶିଷ୍ୟ ।
ଜଗଣ୍ଣଙ୍କୁ ବିଭୀଷଣ ଦେଖିଣ ଉହ୍ଲାଇ
ପିତା ଚରଣେ ଭକତ ହେଲେ ବେଗେ ଯାଇ
ବିଶ୍ରବା ଋଷି ବୋଇଲେ ବଡ଼ିଆ କାର୍ଯ୍ୟକଲୁ
ନ ରାଖୁଣଠାରେ ତୁ ଯେ ବିଶ୍ୱାସ ହୋଇଲୁ
ଏତେ କହି ଅନ୍ତଃପୁରରେ ପଶିଲେ ଋଷିଗଣ
ବିଭୀଷଣଙ୍କୁ କହିଲେ ମନେ ବସା ପୁଣ ।
ବିଜୟ କଲେ ପିତା ଋଷିଙ୍କ ସଙ୍ଗତରେ
ସକଳ ରାଣୀହଂସ ଚଳ ଗୋ ସତ୍ୱରେ ।

ଭକତ ଦୁଅ ଯାଇ ପିତାଙ୍କ ଚରଣ
ଶୁଣିକରି ମନ୍ଦୋଦରୀ ଉଠିଲ ବଦନ ।
ସପତ୍ନୀମାନଙ୍କୁ ଘେନିଣ ଚଳିଗଲ
ଶ୍ୱଶୁର ବିଶ୍ରବା ଚରଣେ ଓଳଗିଲ ।
ବିଶ୍ରବା ଋଷି କହିଲେ ହେଉ କାର୍ଯ୍ୟସିଦ୍ଧ
ସଙ୍ଗରେ ଜାଣିବା ତୋତେ ଭଲେ ଯେ ସମ୍ବାଦ
ମୃତକ ହୋଇଲୁ ତୁ ପାଇଲୁ ବଡ଼ ଦଣ
ଏତେକବୋଲି ବଧୂବୋଧେ ବିଶ୍ରବାଋଷି ପୁଣି
ଶୁଣିକରି ମନ୍ଦୋଦରୀ ହରଷ ମନ ହେଲା
ସପତ୍ନୀ ଘେନିଣ ଅନ୍ତଃପୁରକୁ ଗଲା ।
ସକଳ ଋଷିଙ୍କି ଘେନି ବିଶ୍ରବା ଫେରିଲେ
ପୂର୍ବ ଦ୍ୱାର ବାଟରେ ବାହାର ହୋଇଗଲେ
ଶ୍ରୀରାମଙ୍କ ସଭାରେ ହେଲେ ପରବେଶ
ଯେ ଯାହାର ଆଶ୍ରମରେ ବସିଲେ ତାପସ ।
ପାତାଳପୁର ମୁନିଏ ସଭାରୁ ଉଠିଲେ
ଉତ୍ତର ଦ୍ୱାର ବାଟରେ ଲଙ୍କାଗଡ଼ ଗଲେ ।
ଜାନକୀ ପାଶରେ ଯାଇ ହେଲେ ପରବେଶ
ଦେଖିଣ ମୁନିମାନେ ମନରେ ହରଷ ।
ବର୍ଣ୍ଣିଲେ ନାରାୟଣଙ୍କର ଏ ବାରତା
ଏହାର ସ୍ୱାମୀକୁ ଆମ୍ଭେ ମନେ କରୁ ଚିନ୍ତା ।
ଏତେକହି ମୁନିମାନେ ମନେ ଚିନ୍ତାକଲେ
ଜାନକୀ ସମସ୍ତଙ୍କୁ ଓଳଗି ମେଲାଇଲେ ।
ସୁବର୍ଣ୍ଣ କରି ମୁନି ବେଗେ ଚଳିଗଲେ
ମଧୁବନ ଫଳବନ ଯାଇଣ ଦେଖିଲେ ।
ଶିଶୁବନ ଫଳବନ ବିବିଧ ବନ ଜାତ
ଚନ୍ଦନ ବନରେ ଯାଇ ପ୍ରବେଶ ହୁଅନ୍ତି ।
ସେ ବନରେ ଫଳମୂଳ କଲେକ ଭୋଜନ
ଶତେଯୋଜନ ନଗ୍ରକୁ ଦେଖିଲେ ଯାଇଣ ।
ହାଟ ବାଟ ଗଡ଼ ବଗଡ଼ ବାଣ୍ଡି ଯେ ବୁଲିଲେ
ରାଜା ସିଂହଦ୍ୱାରେ ଯାଇଣ ସମସ୍ତେ ମିଳିଲେ
ଦଶଗ୍ରୀବ ନଗର ଦେଖିଣ ଗଲେ ଚଳି
ପୂର୍ବ ଦ୍ୱାର ବାଟରେ ବାହାର ହୋଇ ମିଳି ।
ଗଡ଼ର ଚଉପାଖ ବୁଲିଣ ବେଗେ ଗଲେ
ଶ୍ରୀରାମ ସଭାରେ ଯାଇଣ ବିଜେ କଲେ
ଯେ ଯାହାର ଆଶ୍ରମରେ ବସିଲେ ଯାଇ ପୁଣ
ଏଥୁ ଅନନ୍ତରେ ଗୋ ଗଙ୍ଗେ ଦେବୀ ଶୁଣ ।

ମଣ୍ଡପୂର ଋଷିମାନେ ସଭାରୁ ଉଠିଲେ
ଉତ୍ତରଗଡ଼ ଦ୍ୱାରେ ପ୍ରବେଶ ଯାଇ ହେଲେ ।
ଲଙ୍କାଗଡ଼ ଭିତରେ ପଶିଲେ ବହନ
ବାଣ୍ଡିର ମଧ୍ୟରେ ଋଷି କରନ୍ତି ଗମନ ।
ଅଶୋକ ବନରେ ଯାଇ ହେଲେ ପରବେଶ
ଜନକାଇ ଋଷିଙ୍କି ଓଳଗି ବିଶେଷ ।
ଶତ୍ରୁଘନ ବୋଇଲେ ଗୋ ଠାକୁରାଣୀ ଶୁଣ
ପିତାମାତା ବିଜେକଲେ ଓଳଗି ହୁଅ ପୁଣ ।
ଶୁଣିକରି ଜାନକୀ ମନରେ ହେଲେ ତୋଷ
ମୁନିମାନଙ୍କୁ ଓଳଗି ହୁଅନ୍ତି ବିଶେଷ ।
ଦେଖିଣ ମୁନିମାନେ ସନ୍ତୋଷ ପୁଣ ହେଲେ
ଜନକ ବାଲ୍ମୀକ ଆଗରେ ମିଳିଲେ ।
ଦେଖିଣ ଜାନକୀ ଯେ ଶୋଇଲେ ପାଏ ପଡ଼ି
ଉଠିଣ କରଯୋଡ଼ି ଜାନକୀ ହେଲ ସୁଦଶା ।
ଜନକ ବୋଇଲେ ଗୋ ଅଦ୍ୟାପୁ ବୁଝିବଲ
ଶାଶୁଙ୍କ ସ୍ୱଭ କର୍ମା ବନକୁ ଆଇଲ ।
ଗୁରୁଜନଙ୍କ ବୋଲ ନ ମାନିବାରୁ ପୁଣ
ବିଧାତା ଦେଲେ ଦକ୍ଷଣ ଭୁଞ୍ଜୁ ଏବେ ଜାଣ
ଏବେ ତୋର ଦୋଷ ଯେ ହେଲା ଆସି ପାର
ତୋହଠାରେ ବସୁ ଅଛି ଶ୍ରୀରାମଚନ୍ଦ୍ରଙ୍କର
କାଲିପରିଭିତରେ ଗୋ ଶ୍ରୀରାମେ ନେବେ ତୋତେ
ଚିନ୍ତା ନ କର ସତ୍ୟ ଗୋ ରହ ସ୍ଥିର ଚିତ୍ତେ
ଏତେବୋଲି ଜନକ ସେଠାରୁ ଚଳିଗଲେ
ମଧୁବନରେ ଯାଇଣ ଋଷିଙ୍କି ଭେଟିଲେ ।
ଫଳ ବନ ଦେଖିଣ ତୁଳସୀ ବନ ଗଲେ
ଖାଣ୍ଡବ ବନ ଯାଇଣ ଔଷଧ ଦେଖିଲେ ।
ମଳୟ ଚନ୍ଦନ ବନ ଦେଖିଲେକ ପୁଣ
ସେହିଠାରେ ଫଳମୂଳ କଲେକ ଭୋଜନ ।
ଚଉଷଠି ବଣ୍ଡେ ଗଡ଼ ବଗଡ଼ ଲଙ୍କାନଗ୍ର
ସମସ୍ତ ସୁବର୍ଣ୍ଣମୟ ଦେଖିଲେ ଋଷି ବୃନ୍ଦ ।
ରାଜାର ସିଂହଦ୍ୱାରେ ପ୍ରବେଶ ହେଲେ ଯାଇ
ଅଷ୍ଟରତ୍ନ ପୁର ଦେଖି ପ୍ରଶଂସେ ମୁନି ଭଣ୍ଡି ।
ଦେଖିକରି ମୁନିମାନେ ସେଠାରୁ ଚଳିଗଲେ
ପଶ୍ଚିମ ଦୁଆର ବାଟେ ବାହାର ହୋଇଲେ
ମେଘନାଦ ପାଟେଶ୍ୱରୀ ଚଉପାଖ ବୁଲି
ଝାଡ଼ ଜଙ୍ଗଲ ପର୍ବତ ଦେଖିଣ ସେ ଫେରି ।

ସ୍ତ୍ରୀରା ମଜା ସଙ୍ଗରେ ହେଲେ ପରବେଶ
ଯେ ଯାହାର ଆଶ୍ରମରେ ରହିଲେ ବିଶେଷ ।
ନମସ୍କାର କଲେ ତାଙ୍କୁ ଦଶରଥ ଶିଷ୍ୟ
ସମସ୍ତ ମୁନି ସନ୍ତେଁ ହେଲେ ପରବେଶ ।
ସେ ସବାରୁ ଶ୍ରୀରାମ ଯେ ବେଗେ ଚଳିଗଲେ
ଧବଳ ସଭାରେ ଯାଇଁ ପ୍ରବେଶ ହୋଇଲେ
ସୁଗ୍ରୀବରଙ୍କୁ ବୋଇଲେ ଶୁଣ ହେ ମଇତ
ଜାନକୀଙ୍କି ଦେଖିବାକୁ ଯାଅ ହେ ସମସ୍ତ ।
ଯେତେ କପି ରାଜା ଯେ ଅଛନ୍ତି ସଭାରେ
ଯାହାରପକାଶେକୁମ୍ଭେସଂଗ୍ରାମେପାଇଲୁଦୁଃଖ
ତୁର ଯୁଦ୍ଧ ନ କରିବ ଲଙ୍କାର ନବର
ଜାଣିଛତ ବିଭୀଷଣ ଅଟନ୍ତି ଅସୁର ।
ଶୁଣିକରି ସୁଗ୍ରୀବର ହୋଇଲେ ବାହାର
ବାନର ରାଜା ଗଲେ ପଛରେ ସଭର ।
ଗଡର ଉତ୍ତର ଦ୍ୱାରେ ହୋଇଲେ ପରବେଶ
ଲଙ୍କାର ଦାଣ୍ଡରେ ଯେ ବୁଲନ୍ତି ହରଷ ।
ମଧୁବନରୁ ଯାଇଣ ଅଶୋକ ବନେ ଗଲେ
ଜଗତୀ ଉପରେ ଯାଇ ସୀତାଙ୍କୁ ଦେଖିଲେ
ଶବ୍ଦ ଘନ ବୋଲେ ତୁମ୍ଭେ ଶୁଣ ଠାକୁରାଣୀ
ଶ୍ରୀରାମ ମଇତ ଏ ସୁଗ୍ରୀବର ପୁଣି ।
ଏହାଙ୍କ ବଳରେ ଗୋ ରାବଣ ହେଲା ହତ
ଏହାଙ୍କର ଭଣଜା ଅଟନ୍ତି ହନୁମନ୍ତ ।
ଏ ରାଜାର ଭାଇ ଯେ ଅଟଇ ବାଳି ପୁଣ
ଅଙ୍ଗଦ କୁମର ଅଟଇ ତାର ପୁତ୍ର ଜାଣ ।
ସେ ବାଳିକି ଶ୍ରୀରାମ ମାରାତେ କଲେ ହତ
ଏଣୁ ସୁଗ୍ରୀବର ବଳ ଅଟନ୍ତି କପି ସେ ତ ।
ଶୁଣିକରି ଠାକୁରାଣୀ ପ୍ରସନ୍ନ ମୁଖ ହେଲେ
ସୁଗ୍ରୀବରଙ୍କୁ ଦୃଷ୍ଟିଁ ଲଜ୍ଜା କରିଣ ରହିଲେ ।
ଦର୍ଶନ କରିଣ ରାଜା ଗଳାକ ଖର ହୋଇ
ଲକ୍ଷେକ କପି ଦର୍ଶନ କଲେ ଯାଇଁ ।
ଦର୍ଶନ କରିଣ ସର୍ବେ ଖାଣ୍ଡବ ବନ ଗଲେ
ବନକୁ ଦେଖିଣ ସେ ସନ୍ତୋଷ ମନ ହେଲେ
ଚନ୍ଦନ ବନରେ ଯାଇଁ ହେଲେ ପରବେଶ
ମଳୟ ବନ ଦେଖିଣ ହୋଇଲେ ହରଷ ।
ଫଳମୂଳ ଖାଇଲେ ତୁଷ କପିକୁଳ
ସନ୍ତୋଷରେ ସର୍ବେ ହେଲେ ବନରୁ ବାହାର

ଲଙ୍କାର ନଗ୍ରରେ ହେଲେ ପରବେଶ
ଚଉଷଠି ଦାଣ୍ଡରେ ଭ୍ରମଣ କଲ ସେ ତ ।
ଗଢ ବଗଢ ଦାଣ୍ଡ ହଟାସ୍ତ ବଜାସ୍ତ
ସମସ୍ତଙ୍କର ଘର ଯେ ସୁବର୍ଣ୍ଣମୟ ପୁସ୍ତ ।
ଦେଖିଣ କପିରାଜା ସମସ୍ତେ ତୋଷ ହେଲେ
ତାଙ୍କୁ ଦେଖି ନଗ୍ରବାସୀ ମନରେ ଡରିଲେ
ଏହୁ କପିମାନେ ଗୋ ଶ୍ରୀରାମ ସଙ୍ଗେ ଆସି
ଏ ଲଙ୍କାଗଡ଼କୁ ଏ ପକାଇଲେ ଧ୍ୱଂସି ।
କେ ବୋଲନ୍ତି ମୋର ଗୋ ମାଇଲେ ଶ୍ୱଶୁର
ପୁତୁରା ରଅର ବେଢ଼ଣ୍ଡୁର ଯେ ମୋହର
କେ ବୋଲଇ ପୁଅ ଭାଇବନ୍ଧୁ ଗଲେମୋରେ
ଚଉଷଠିରଣ କୋଟି ସେନାପତି ମାରେ ।
କୁମ୍ଭକର୍ଣ୍ଣ ରାବଣର ବଂଶ ନିପାତନ
ଅନେକ ଖଦାଣ୍ଡି ବଳ ମାରିଲେ ଏ ପୁଣ ।
ଦେଖୁଛୁ କପିସୈନ୍ୟ ଧାଡ଼ ଧାଡ଼ ହୋଇ
ଦାଣ୍ଡ ଗଢ ବଗଢ ପୂରିଣ ଛନ୍ତି ରହି ।
ଶତେକ ଯୋଜନ ଲଙ୍କା ଚଉପିନ ପଦା ଦାଣ୍ଡ
ଭାଲୁ ମର୍କଟ ସବୁ ହୋଇଛନ୍ତି ଗୁଣ୍ଡ ।
ଲକ୍ଷେ କପି ରାଜାଙ୍କର ବଳ ଅକଳନ
ଲଙ୍କାଗଡ଼ ପୁର ଯେ ଦେଖନ୍ତି ସମସ୍ତ ।
ଅବର ଦେଖଣା ରାଜା ଏ ସିଂହଦ୍ୱାରେ ମିଳ
ଅସୁରଙ୍କର ସଙ୍ଗରେ ପ୍ରୀତି ସେହୁ କରି
କେଉଁ କପି ଅସୁର ଘରେ ଯାଇ ବସି
କେଉଁ ଅସୁରୁଣୀ କପିକି ଦେଳ ହସି ।
କେଉଁ ଅସୁରୁଣୀ କରେ ପ୍ରୀତିଭାବ
ବାନର ଅସୁର ହେଲେ ଏକ ସଙ୍ଗ ।
ଲଙ୍କାର ବଚନ କେହି କାହାକୁ ନ କହନ୍ତି
ସ୍ତ୍ରୀ ପୁରୁଷ ବାନର ସଙ୍ଗ ମେଳ ହୋନ୍ତି ।
ଏଥଅନ୍ତରେ ଗୋ ଶୁଣ ଶାକମ୍ବସ
ସୁଗ୍ରୀବର ଯାଇଣ ସିଂହଦ୍ୱାରେ ମିଳ ।
ଦେଖିଣ ବିଭୀଷଣ ଜଗତ୍ତକୁ ଉଠାଇଲ
ସୁଗ୍ରୀବର ଆଗରେ ପ୍ରବେଶ ଯାଇ ହେଲ ।
ମାନ୍ୟ ଧନ୍ୟ କରିଣ ଆଣେ କପିରାଜ
ଅନ୍ତଃପୁରକୁ ତାଙ୍କୁ ନେଲ ସେହୁ ବେଗ ।
ଭଣ୍ଡାର ଘର ଦେଖାଇ ଭିତର ପୁର ନେଲ
ରାଣୀହଂସ ପୁରରେ ପ୍ରବେଶ ଯାଇ ହେଲ ।

ମନ୍ଦୋଦରୀ ରାଣୀକ ଡକାଏ ବହନ
ସୁଗ୍ରୀବର ରାଜନ ଅଟନ୍ତି ବନ୍ଧୁ ପୁଣ ।
ଆଗେ କୁମ୍ଭର ମଇତ୍ର ବାଳି ହୋଇଥିଲା
ସେହୁ ମଲ୍ଲଯୁଦ୍ଧ ତା ସଙ୍ଗେ ନାଶ ଗଲା ।
ତାଙ୍କର ଭାରଯାକୁ ରଖିଲେ ସୁଗ୍ରୀବର
କୁମ୍ଭେ ବ ପାଟରାଣୀ ହୋଇଲ ଏ ପୁର ।
ଦୁଇଜଣଙ୍କର କଥା ହୋଇଲା ଏବେ ସର
ଆମ୍ଭ ଦୁହିଁଙ୍କ ସତ ସେହୁକଥା ପର ।
ମନ୍ଦୋଦରୀ ବୋଇଲା ସେକଥା ହେଲା ସତ
ଦୁଇ ରାଜା କୁମ୍ଭେ ହୁଅ ଯା ମଇତ୍ର ।
ମୋହର ଏ ମଇତ୍ର ପୂର୍ବରୁ ଅବଶ୍ୟ
ଶୁଣିଣ ସୁଗ୍ରୀବର ବଶ୍ୱିଷଣ ତୋଷ ।
ସିଂହାସନ ଉପରେ ଯେ ବସିଲେ ଦୁଇଜଣ
ବନ୍ଦାପନା କଲେ ତାଙ୍କୁ ରାଣୀହଂସ ପୁଣ ।
ମଙ୍ଗଳ ଆଳତି ଯେ ମନ୍ଦୋଦରୀ କଲେ
ଦୁଇଜଣ ମଇତ୍ର ଯେ ସେଠାରେ ହୋଇଲେ
ହସ୍ତ ଧରାଧରି ହୋଇ ସେଠାରୁ ଉଠଗଲେ
ସିଂହଦ୍ୱାରେ ସୁଗ୍ରୀବର ପ୍ରବେଶ ହୋଇଲେ ।
ଋଷ କପିଙ୍କି ଆଜ୍ଞାଦେଲେକ ତନଯାଇ
ଆସ ଯିବା ବେଗେ ହୋ ଶ୍ରୀରାମଚନ୍ଦ୍ର ଯହିଁ
ଋଷ କପିମାନେ ଯେ ନବରଙ୍ଗେ ଥିଲେ
ଅସୁରଙ୍କ ସଙ୍ଗେ ମଇତ୍ର ହେଲେ ଭଲେ ।
ସୁଗ୍ରୀବର ଆଜ୍ଞା ଯେ ପାଇଲେ ବାରତା
ସ୍ୱଭଦ୍ୱାରେ ବାହାର ବାନର ଜଗଜ୍ଜିତା ।
ସୁଗ୍ରୀବର ଦେଖିଣ ହୋଇଲେ ବାହାର
ସୁବଳସ୍ଥାରେ ବଳେ ଭଲେ ନୃପବର ।
ଏଥୁଅନନ୍ତରେ ଶୁଣ ଶାକମ୍ଭରୀ କୁମ୍ଭେ
ସେନାପତି ଋଷିଙ୍କି ଡକାଇ ଶ୍ରୀରାମ ବେଗେ
ବୋଇଲେ କୁମ୍ଭେମାନେ ଜାନକୀ ଦେଖିଯାଅ
ଯାହାର ସହାଶରେ ଏତେ କଷ୍ଟ ପାଅ ।
ଶୁଣିଣ ସେନାପତି ଋଷିମାନେ ଗଲେ
ଲକ୍ଷେ ଭାଜା ସୈନ୍ୟସାଙ୍ଗ ଲଙ୍କାରେପଶିଲେ
ଜାନକୀ ଦର୍ଶନ କରି ମଧୁବନ ଗଲେ
ଯେ ଯାହାର ଇଚ୍ଛାରେ ଭୋଜନ ସେହୁକଲେ
ଫୁଲ ଚନ୍ଦନ ବନ ଦେଖିଣ ସେ ପୁଣ
ଲଙ୍କାର ନଗର ବୁଲି ଦେଖିଲେ ସଙ୍ଗେ ଜାଣ

ରାଜାର ନଗର ସିଂହଦ୍ୱାର ଯେ ଦେଖିଲେ
ସ୍ୱରଦ୍ୱାରେ ସୈନ୍ୟବଳ ବାହାରଣ ଗଲେ ।
ଯେ ଯାହାର ସ୍ଥାନରେ ହେଲେ ପରବେଶ
ଦେଖିକରି ଶ୍ରୀରାମ ମନରେ ହରଷ ।
ସେନା ଯୂଥପତି ଯେ ଶ୍ରୀରାମ ପାଶେ ମିଳ
ହନୁ ଅଙ୍ଗଦ ବୋଇଲେ ରଘୁପଧାରୀ ।
ସଭର ଦ୍ୱାରକୁ କୁମ୍ଭେ କର ହେ ନିରୋଧ
ଶୁଣିଣ ସେନାପତି ଯୂଥପତି ବୋଧ ।
ସ୍ୱରଜଣ ଲେଖାଏଁ ଦ୍ୱାରରେ ରହିଲେ
ଗୁହ ନାମେ ଶବରକୁ ଶ୍ରୀରାମ ଆଜ୍ଞାଦେଲେ
କୁମ୍ଭେ ବଳ ଘେନ ମିତ ଯାଅ ହେ ବହନ
ଜନକର ଦୁହିତାକୁ କର ହେ ଦର୍ଶନ ।
ଶୁଣିକରି ଶବର ବେଗେ ଚଳଗଲା
ଅଶୋକବନରେ ଯାଇ ଜାନକୀ ଦେଖିଲା ।
ଶତ୍ରୁଘନ ବୋଇଲେ ଶୁଣ ଠାକୁରାଣୀ
ଗୁହ ନାମେ ଶବର ଅଟଇ ଏହୁ ପୁଣି ।
କୁମ୍ଭ ସ୍ୱାମୀଙ୍କର ଅଟଇ ଏ ମିତ୍ର
ବାରବର୍ଷ କାଳେ ରାମ ଏହାକୁପାଇଲେଭେଟ
ଶୁଣିକରି ଜାନକୀ ମନରେ ତୋଷ ହେଲେ
ଦର୍ଶନ କରି ଫେରିଲା ଶବର ବେଗରେ ।
ମଧୁବନ ଦେଖିଣ ଚନ୍ଦନ ବନ ଗଲା
ମଳୟ ବନ ଦେଖିଣ ଫୁଲବନେ ହେଲା ।
ଶାଳବନ ଶିଶୁବନ ତୁଳସୀବନ ଦେଖି
ସେଠାରେ ଭୋଜନକଲେ ଭଲ ଦ୍ରବ୍ୟଦେଖି
ସୁବର୍ଣ୍ଣମୟ ଲଙ୍କା ଦେଖି ତୋଷ ହେଲେ
ଜଗତି ଅଟ୍ଟାଳ ନଗ୍ର ସେ ବୁଲିଲେ ।
ରାବଣ ସିଂହଦ୍ୱାରେ ନବର ଦେଖି ପୁଣ
ଦକ୍ଷିଣ ଦ୍ୱାର ବାଟରେ କଲେକ ଗମନ ।
ଗଡ଼ର ସ୍ୱରମାଖ ବୁଲିଣ ଦେଖିଲେ
ରାମଚାଳ ଦେଇ ନିଜ ଆଶ୍ରମକୁ ଗଲେ ।
ସେ ସଭାରୁ ଶ୍ରୀରାମ ଯେ ଉଠିଲେ ବହନ
ପୂର୍ବଦ୍ୱାରେ ବଜେକଲେ ଦଶରଥଙ୍କ ନନ୍ଦନ
ଅଙ୍ଗଦକୁ ବୋଲେ ପୁହରେ ଚଳରେ ବହନ
ବିଭୀଷଣକୁ ବେଗେ ଘେନଆସ ପୁଣ ।
ଶୁଣିକରି ଅଙ୍ଗଦ ବେଗେ ଚଳିଗଲା
ରାଜାର ସିଂହଦ୍ୱାରେ ଯାଇ ପ୍ରବେଶ ହେଲା ।

ଅନ୍ତଃପୁର ଭିତରକୁ କଲାକ ଗମନ
ମନ୍ଦୋଦରୀ ପାଶରେ ମିଳିଲା ଯାଇ ପୁଣ ।
ରାଣୀମାନଙ୍କୁ ଦେଖିଣ ନମସ୍କାର କଲା
ମନ୍ଦୋଦରୀ ଚରଣରେ ଜୁହାର ହୋଇଲା ।
ମନ୍ଦୋଦରୀ ବୋଇଲେ ତୁ ଅଇଲୁ କିସପାଇଁ
ଅଙ୍ଗଦ ବୋଇଲେ ନେଉଁନ୍ତ ରାଜାଙ୍କୁ ରଘୁସାଇଁ
ଏହି ସମୟେ ଯେ ବିଭୀଷଣ ଆସି ମିଳି
ଅଙ୍ଗଦଠାରୁ ପୁଣ ବହନ ହୋଇ ଚଳି ।
ଶ୍ରୀରାମ ସମ୍ମୁଖରେ ମିଳିଲେ ଦୁଇଜଣ
ବିଭୀଷଣଙ୍କୁ ଦେଖିଣ ଶ୍ରୀରାମ ଭଣେ ପୁଣ ।
ରାଜାଗଣ ଋଷିଗଣ ବାନର ସୈନ୍ୟଦଳ
ସମସ୍ତେ କୁମ୍ଭ ସୈନ୍ୟଙ୍କୁ ଦେଖିଲେ ବ୍ୟଗ୍ରେ
କାଲି ଲଙ୍କାରୁ ଜାନକୀ ଆସିବେ ମୋହର
ଯାଅ ତୁ ବିଭୀଷଣ ତୋହର ନଗର ।
ଶୁଣିକରି ବିଭୀଷଣ ବେଗେ ଚଳିଗଲା
ନିଜ ନଗରେ ଯାଇଣ ପ୍ରବେଶ ହୋଇଲା ।
ଅଙ୍ଗଦକୁ ବୁଝିଣ ବୋଲନ୍ତି ରଘୁନାଥ
ପ୍ରେମସାଦ ପୁଅକୁ ଦେଖାଅ ନେଇ କରି ।
କୁମ୍ଭ ଦ୍ୱାରେ ଯେତେକ ଅଛ ହେ ଯୂଥି ରକ୍ଷି
ସମସ୍ତେ ଦେଖିପାରିଲେ ଆସିବେବେଗହୋଇ
ଶୁଣିକରି ଅଙ୍ଗଦ ବେଗେ ଚଳିଗଲା
ପ୍ରେମସାଦ ପୁଅଙ୍କୁ ସଙ୍ଗତରେ ନେଲା ।
ବୋଇଲା ଜନନୀଙ୍କି କର ଦରଶନ
ଶୁଣିଣ ସଙ୍ଗ ଛାଡ଼ି ଚଳିଲେ ବହନ ।
ଅଶୋକବନରେ ଯାଇ ପ୍ରବେଶ ହୋଇଲେ
ଶତ୍ରୁଘନ ଦେଖିଣ ମନେ ବିସ୍ମିଲେ ।
ବୋଇଲେ ଠାକୁରାଣୀଗୋଅଇଲେଦେଢ଼ଶ୍ଚର
ପ୍ରେମସାଦ ରାଜାଙ୍କର ଅଟନ୍ତି କୁମର ।
ଶୁଣିକରି ଠାକୁରାଣୀ ଲଜ୍ଜାଭର ହେଲେ
ଦେଖିଣ ରାଜପୁତ୍ର ମଧୁବନ ଗଲେ ।
ବନଯାକ ଦେଖିଣ ବୁଲିଲେ ଲଙ୍କାନଗ୍ର
ସିଂହଦ୍ୱାରେ ଦେଖିଣ ବାହୁଡ଼ିଗଲେ ବ୍ୟଗ୍ର ।
ପିତାର ପାଶରେ ଯାଇ ହେଲେ ପରବେଶ
ଏଥିଅନନ୍ତରେ ଶୁଣ ଯୋ ଭବ୍ୟରସ ।
ଶ୍ରୀରାମ ସଙ୍ଗର ଯେ ପୁଷ୍ପ ଦ୍ୱାରେ ଥିଲେ
ସୁବଳ ଗିରିକି ଯେ ବହନ ଚଳିଗଲେ ।

ସୁବଳ ଗିରିରେ ଯେ ନିଜର ନଗର
ପ୍ରବେଶ ହେଲେ ଶ୍ରୀରାମ ଯାଇଣ ଧାଇଁକାର ।
ବେଶଚଳଗି ହୋଇଣ ମାଜଣାବେଗେ ହେଲେ
ସ୍ନାନ ସାରିଣ ଅମଳାଣ ସେ ପିନ୍ଧିଲେ ।
ଜନନୀଙ୍କି ନମସ୍କାର କଲେ ଯାଇ ପୁଣ
ଷଡ଼ ରସେ ଭୋଜନ କଲେ ରାମ ରାଣ ।
ଏଥି ଅନନ୍ତରେ ଯେ ବିଭୀଷଣ ରାଜା
ମନ୍ତ୍ରୀକି ଡକାଇଣ କହେ ସେ ଅଲଗା ।
ବୋଇଲେ ଲଙ୍କାଗଡ଼ରେ ଯେତେକ ଅସୁର
ଶ୍ରୀରାମଙ୍କ ରାଣୀଙ୍କି ଦର୍ଶନ ଯାଇ କର ।
ଶୁଣିଣ ବେନି ମନ୍ତ୍ରୀ ଢେଣ୍ଡୁରା ଫେରାଇଲେ
ଶୁଣିଣ ଅସୁର ଦଳ ଆନନ୍ଦ ହୋଇଲେ ।
ବେଶହୋଇ ଅସୁର ଦର୍ଶନ କରି ଗଲେ
ଜାନକୀଙ୍କି ଦେଖିଣ ହରଷ ମନ ହେଲେ ।
ଲଙ୍କାର ନଗ୍ରରେ ଯେତେକ ଅସୁର
ସମସ୍ତେ ଦର୍ଶନ କଲେ ଆସିଣ ସତ୍ୱର ।
ସମସ୍ତେ ଯିବାରୁ ସେନାପତି ତିନିଭାଇ
ଜାନକୀଙ୍କ ଚରଣରେ ଜୁହାର ପୁଣ ହୋଇ ।
ମେଲାଣି ମାଗିଣ ସେଠାରୁ ଚଳିଗଲେ
ଫୁଲବନ ଫଳବନ ଯାଇଣ ଦେଖିଲେ ।
ଚନ୍ଦନ ବନ ଦେଖିଣ ନଗ୍ରକୁ ଫେରି ବୁଝି
ବିଭୀଷଣ ନଗରେ ପଶି ବେଗେ ଯାଇ ।
ନଗର ଦେଖିଣ ସେ କରନ୍ତି ପ୍ରଶଂସା
ଧନ୍ୟ ହୋ ବିଭୀଷଣ ଧନ୍ୟ ତୋ ପିତାମାତା
ତିନିଭାଇଙ୍କ ଚରଣେ କଲେ ନମସ୍କାର
ମନ୍ଦୋଦରୀ ରାଣୀ ଯାଇ ନମିଲେ ପଯୂର ।
ସେଠାରୁ ତିନିଭାଇ ଫେରିଲେ ବହନ
ସିଂହଦ୍ୱାର ବାଟରେ କଲେକ ଗମନ ।
ଘଣ୍ଟର ସ୍ୱରପାଖରେ ବୁଲିଣ ଦେଖନ୍ତି
ଦଶଗ୍ରୀବଙ୍କୁ ପ୍ରଶଂସା ସମସ୍ତେ କରନ୍ତି ।
ସୁବଳ ଗିରିରେ ଯାଇ ହେଲେ ପରବେଶ
ଶ୍ରୀରାମଙ୍କୁ ଯାଇଣ ଦେଖିଲେ ସମସ୍ତ ।
ନମସ୍କାର କରିଣ ବେଗେ ଚଳିଗଲେ
ଦେବ ନଦୀରେ ପଶିଣ ସ୍ନାନ ସେହୁ କଲେ ।
ଅମଳାନ ଶାଢ଼ୀ ପିନ୍ଧିଲେ ଯାଇ ପୁଣ
ମାତାଙ୍କୁ ଜୁହାର ହୋଇଲେ ଯାଇଣ ।

ଷଡ଼ରସରେ ଭୋଜନ କଲେକ ଯାଇ ପୁଣ
ତାମ୍ବୁଳ ଭୁଞ୍ଜିଣ ବସିଲେ ଯେ ଯାହାର ସ୍ଥାନ
ଏମନ୍ତ ସମୟରେ ରଜନୀ ହେଲା ଶେଷ
ନିଦ୍ରାରୁ ଉଠିଲେ ଯେ ଜାନକୀ ବିଳାସ ।
ଲକ୍ଷ୍ମଣଙ୍କୁ ବୋଇଲେ ଚଳ ତୁ ବହନ
ବଶିଷ୍ଠ ଅଗସ୍ତିଙ୍କି ବେଗେ ଡାକ ଆଣ ।
ଶୁଣିକରି ସଉମିତ୍ରୀ ବେଗେ ଚଳିଗଲେ
ବଶିଷ୍ଠ ଅଗସ୍ତିଙ୍କି ଯାଇଣ ଜଣାଇଲେ ।
ଶ୍ରୀରାମଚନ୍ଦ୍ର ତୁମ୍ଭଙ୍କୁ ଲୋଡ଼ୁଛନ୍ତି ପୁଣି
ଶୁଣିଣ ଦୁଇ ମୁନି ଆଇଲେ ତତକ୍ଷଣି ।
ମୁନିଙ୍କି ଦେଖିଣ ଯେ ନମସ୍କାର କଲେ
ବସିବାକୁ ଦିବ୍ୟ ଆସନ ଆଣି ଦେଲେ ।
ବୋଇଲେ ଦେବତାଏ କଲେ ନାନା କଷ୍ଟ
ରାବଣ ମରିବାରୁ ଗୋଟିଏ ନୋହିଲେ ଯେ ଭେଟ
ଅସୁରଙ୍କୁ ଖଟିଲେ ଯେ ବାରଗଣ୍ଡା ଯୁଗ
ଏବେ ସେମାନେ ଯେ ପାଇଲେ ଦିବ୍ୟ ଭୋଗ
ଦେବ ଆସିଲେ ଆସିବେ ମୋହର ଘରଣୀ
ପଛନ୍ତେ ଦେବତା କ୍ଷମା କରୁଥିବେ ପୁଣି
ଶୁଣିକରି ଅଗସ୍ତି ବଚନ କହିଲେ
ଦେବତାଙ୍କୁ ଉଡାଅ ବୋଲିଣ ବୋଇଲେ ।
ଶ୍ରୀରାମ ବୋଇଲେ ସ୍ୱର୍ଗକୁ କିଏ ଯିବ
ଅଗସ୍ତି ବୋଇଲେ ଆମ୍ଭେ ଯାଉଛୁ ରାଘବ ।
ଏତେକହି ଅଗସ୍ତି ଦଣ୍ଡକମଣ୍ଡଳୁ ଧରି
ହଲୁକା ମନ୍ତ୍ର ସୁମରଣା କଲେ ବେଗେ କରି
ଚଳିଲେକ ଭୁରିତେ କୁମ୍ଭ ଋଷି ସୁତ
ସ୍ୱର୍ଗପୁରେ ଯାଇଣ ହେଲେ ଉପଗତ ।
ସୁଧର୍ମା ସଭାରେ ଯାଇଣ ବିଜେ କଲେ
ତେତିଶକୋଟି ଦେବତା ଅଛନ୍ତି ତହିଁରେ ।
ଦେବରାଜା ଦେଖିଣ ଋଷିଙ୍କି ପଚାରି
କି କାର୍ଯ୍ୟେ ଆଗମନ ଏ ସ୍ଥାନକୁ କରି ।
ଅଗସ୍ତି ବୋଇଲେ ତୁମ୍ଭେ ହୋଇଲ ଏବେ ସୁଖୀ
ତ୍ରୈଲୋକ୍ୟ ଠାକୁର ଶ୍ରୀରାମ ଦୁଃଖ ପାଉଛନ୍ତି
ଛନ ରାବଣକୁ ଏବେ ମାଇଲେ ରଘୁପଧାଶ
ତେଣୁ ଅସୁରଙ୍କୁ ଭୟ ନାହିଁ ଯେ କାହାରି ।
ଲଙ୍କାରେ ଛୟାଣୋଇ କୋଟି ଋଷି ଠୂଳ
କରି ବାନର ଦୁଇଲକ୍ଷ ରଜା ହେଲେମେଳ ।
ଅସଂଖ୍ୟ ସୈନ୍ୟ ତାଙ୍କର କଳଣା ନ ଯାଇ
ଅଯୋଧ୍ୟାକୁ ଯିବାକୁ ଶ୍ରୀରାମ ମନ ହୋଇ ।
ଜନକର ଦୁହିତା ଯେ ଘରଣୀ ଅଟେ ତାର
ଅସୁର ଧରିଣ ନେବାରୁ ପଡ଼ିଲୁ ବିସ୍ତର ।
ଆମ୍ଭଙ୍କୁ ଡାକିଣ କହିଲେ ଶ୍ରୀରାମ
ଦେବତାଏ ନଇଲେ ଏ ଲଙ୍କା ଭୁବନ ।
ଅସୁର ଥିଲାରୁ ପୁଣ ଆସୁଥିଲେ ଜାଣ
ଏବେ ତ ନିଶ୍ଚିନ୍ତ ହେଲେ ଦେବଗଣ ।
ତୁମ୍ଭେମାନେ ଯାଇଣ କହ ତାଙ୍କୁ ପୁଣ
ସୁଧର୍ମା ସଭା ଘେନିଣ ଆସନ୍ତୁ ବହନ ।
ସକଳ ଦେବତାଏ ମେଳ ହୋଇ ପୁଣ
ଲଙ୍କାଗଡ଼କୁ ତୁମ୍ଭେ ଚଳ ତତକ୍ଷଣ ।
ଶୁଣିଣ ଦେବ ରାଜା ସନ୍ତୋଷ ହୋଇଲେ
ନଇନଧି ମଣ୍ଡୁକଙ୍କୁ ବୁଝିଣ ବୋଇଲେ ।
ସୁଧର୍ମା ସଭା ଘେନ ଚଳ ହେ ଲଙ୍କାଗଡ଼
ଯେଉଁଠାରେ ମୁନିଙ୍କ ସଙ୍ଗ ନିରନ୍ତର ।
ଶୁଣିକରି ମଣ୍ଡୁକ ସଭାକୁ ଘେନ ଚଳି
ଲଙ୍କାର ଭୁବନରେ ଯାଇଣ ବେଗେ ମିଳି ।
ମୁନିଙ୍କର ସଭା ପାଖେ ଦେବସଭା ରଖି
ବାର ଆଦିତ୍ୟ ଷୋଳ ଚନ୍ଦ୍ରମା ବିଜେ ଆସି
ଏଗାର କୋଟି ଗନ୍ଧର୍ବ ଘେନ ଦେବରାଜା
ସୁଧର୍ମା ସଭାରେ ବିଜେ କଲେକ ମଘବା ।
ଚଉଷଠି ମେଘ ଅଣଚାଶ ଯେ ପବନ
ସଭାରେ ବିଜେକଲେ ସମସ୍ତେ ଯାଇଣ ।
ଅପସରୀ କିନ୍ନରୀ ଯକ୍ଷ ବିଦ୍ୟାଧରୀ
ଦଶ ଦିଗପାଳ ସଙ୍ଗରେ ସେହୁ ଚଳି ।
ଏଗାରକୋଟି ଦେବଙ୍କ ସଙ୍ଗରେ ନବଗ୍ରହ
ଦେବସଭ[illegible] ପ୍ରବେଶ ହେଲେ କରି ସ୍ନେହ
ସେଠାରୁ ଅଗସ୍ତି ବେଗେ ଚଳିଗଲେ
ସଂଯୋବନ୍ତୀପୁରେ ଯାଇ ପ୍ରବେଶ ହୋଇଲେ
ପିତାମହଙ୍କୁ ଦେଖିଣ ନମସ୍କାର କଲେ
ଲଙ୍କାଗଡ଼କୁ ଚଳ ବୋଲିଣ ଜଣାଇଲେ ।
ଦେବତାଏ ସଭା ଘେନିଣ ଗଲେଣି ଲଙ୍କାଗଡ଼
ହେ ପିତାମହ ତୁମ୍ଭେ ବିଜୟ ବେଗେ କର
ଶୁଣିକରି ଦେବବର ଉଠିଲେ ବହନ
ପରମ ହଂସ ବାହନ ଚଢ଼ିଲେ ତତକ୍ଷଣ ।

ଏଗାରକୋଟି ଦେବତା ସଙ୍ଗରେଘେନଗଲେ
ଲଙ୍କାଗଡ଼ ନଦରେ ଯାଇଣ ମିଳିଲେ ।
ସୁଧର୍ମ୍ମ ସଭାରେ ଜୟଜୟ କଲେ ଦେବ
ଦେଖିଣ ଦେବତାଏ ହେଲେ ସଉଭାଗ୍ୟ ।
ତେତିଶକୋଟି ଦେବତା ସଭାରେହେଲେଠୁଳ
ସ୍ୱର୍ଗରୁ ଅଗସ୍ତି ଯେ ହୋଇଲେ ବାହାର ।
ଅଳକାପୁରେ ଯାଇଣ ହେଲେ କୁମ୍ଭଶିଷ୍ୟ
ସଦାଶିବଙ୍କୁ ଦେଖି ନମିଲେ କୁମ୍ଭଶିଷ୍ୟ ।
ସେ ବୋଇଲେ ମୁନି ହେ କି କାର୍ଯ୍ୟେ ଅଇଲ
ସେହୁ କଥା ଆମ୍ଭକୁ କହ ତୁମ୍ଭେ ଭଲ ।
ଆମ୍ଭର ଆଗରେ ସେ କହିଲେ ମୁନିବର
ଲଙ୍କାଗଡ଼କୁ ଦେବ ଚଳହେ ସତ୍ୱର ।
ନର ବାନର ଦୁଇ ଲକ୍ଷ ରାଜାତହିଁରେମେଳ
ଛପ୍ପନଇ କୋଟି ଋଷି ହୋଇଲେ ତହିଁଠୁଳ
ତେତିଶ କୋଟି ଦେବତା ସୁଧର୍ମ୍ମ ସଭା ଘେନି
ଜୟଜୟ କଲେ ପୁଣି ଲଙ୍କାରେ ସର୍ବେ ଜାଣି ।
ହଂସ ବାହନ ଚଢ଼ି ବ୍ରହ୍ମା ଜୟଜୟ କଲେ
ବ୍ରହ୍ମଠାକୁ ଦେବବର ମୋତେ ଭେଦଦେଲେ
ଶୁଣିଣ ସଦାଶିବ ବେଗେ ହେଲେ ସଜ
ତେଇଶକୋଟି ଶିବ ସଙ୍ଗରେ ଘେନି ଦେବ ।
ବୃଷଭ ଉପରେ ଚଢ଼ିଲେ ଦେବ ବେଗେ
ନବକୋଟି ଡମ୍ବରୁ ବାଜା ବାଜେ ଶୁଭେ ।
ନନ୍ଦୀ ଭୃଙ୍ଗୀ କାଳ ବିକାଳ କେଶରୀ
ଗଣେଶ କାର୍ତ୍ତିକେଶ୍ୱର ସଙ୍ଗରେ ବିଜେକରି ।
ଡାକ ଡମ୍ବରୁ ବଜାଇ ହୋଇଲେ ବାହାର
ଶବଦରେ ତିନିପୁର ହୋଇଲା ଚହଳ ।
ଲଙ୍କାଗଡ଼ରେ ଯାଇଣ ହେଲେ ପରବେଶ
ସୁଧର୍ମ୍ମ ସଭାରେ ଯେ ଦେବତା ସମସ୍ତ ।
ବୃଷଭ ଉପରୁ ଓହ୍ଲାଇ ଦେବ କାଶୀ
ସକଳ ଶିବ ଘେନିଣ ସଭା ପରେ ବସି ।
ଡାକ ଡମ୍ବରୁ ଶବଦେ ଲଙ୍କା ଚମକିଲା
ଅଳକାପୁରରୁ ମୁନି ପିତୃ ସ୍ୱର୍ଗ ଗଲା ।
ଦଶରଥ ହରି ଚନ୍ଦନ ଯେ ମାନଧାତା
ଭଗିରଥ ସଗର ରାଜା ସକଳ ମେଳସ୍ରୋତା
ସତଷଠି ପୁରୁଷର ପିତୃ ଯେ ଅଛନ୍ତି
ସେଠାରେ ପ୍ରବେଶ ବେଗେହେଲେ ଯାଇଯ ତି
ଉଠିଣ ସମସ୍ତେ ଯେ ନମସ୍କାର କଲେ
ଅଗସ୍ତି ବୋଇଲେ ତୁମ୍ଭେ ଚଳବେଗେଭଲେ
ଭୁମ୍ଭର କୁଳରେ ଯେ ବାସୁଦେବ ଜାତ
ଅସୁର ବଳ ସେ ଯେ କଲେକ ନିପାତ ।
ତୁମ୍ଭର କୁଳବଧୂ ଯେ ସାତ୍ୱର ଦୁଲଣୀ
ରାବଣେଶ୍ୱର ତାକୁ ଯେ ଘେନଗଲା ପୁଣି ।
ଅଶୋକବନରେ ନେଇ ତାହାଙ୍କୁ ବନ୍ଦୀ କଲା
ଜାରକାର ଛଳେ ଶ୍ରୀରାମ ଅସୁର ସଂହାରିଲା ।
ଦେବତା ଋଷି ରାଜା ହେଲେ ତହିଁରେଠୁଳ
ଅଗ୍ନିରେ ପରୀକ୍ଷା ହେବେ କୁଳବଧୂ ତୋର
ଯାଅ ବେଗହୋଇ ନ ରହ ଦଣ୍ଡେ ତୁମ୍ଭେ
ଶୁଣିଣ ପିତୃଲୋକ ଚଳିଗଲେ ବେଗେ ।
ଲଙ୍କାଗଡ଼ରେ ଯାଇଣ ପ୍ରବେଶ ହୋଇଲେ
ଦେବତାଙ୍କ ପାଶରେ ଯାଇଣ ବସିଲେ ।
ସେଠାରୁ ଅଗସ୍ତି ଋଷି ବେଗେ ଚଳିଯାଇ
ଶ୍ରୀରାମ ଆଗରେ ମିଳିଲେକ ତହିଁ ।
ଦେଖିଣ ଶ୍ରୀରାମ ଉଠିଣ ମେଲାଇଲେ
ବସିବାକୁ ଆସନ ନେଇଣ ବେଗେ ଦେଲେ
ଅଗସ୍ତି ବୋଇଲେ ଆସିଲେ ଦେବଗଣ
ସୁଧର୍ମ୍ମ ସଭାରେ ଆସି ବିଜେ କଲେ ପୁଣ ।
ପିତୃଲୋକ ଅଇଲେ ଅଇଲେ ଦେବଗଣ
ଦେବବର ଅଇଲେ ଚଢ଼ିଣ ହଂସ ପୁଣ ।
ଶୁଣିକରି ଶ୍ରୀରାମ ପରମ ତୋଷ ହେଲେ
ଆଜ କେତ୍ହୁ ଆସିବେ ବୋଲିଣ ବୋଇଲେ ।
ଏମନ୍ତ ସମୟରେ ଅଙ୍ଗଦ ହନୁମନ୍ତ
ପ୍ରବେଶ ହେଲେଯାଇ ଶ୍ରୀରାମ ଆଗରେ ତ ।
ଶ୍ରୀରାମଚନ୍ଦ୍ର ବୋଇଲେ ତୁରିତରେ ଚଳ
ରାଜାମାନଙ୍କୁ ନେଇଣ ସଭାରେ କର ମେଳ
ଶୁଣିକରି ଅଙ୍ଗଦ ହନୁମନ୍ତ ଗଲେ
ରାଜାଙ୍କୁ ଡକାଇନେଇ ସଭାରେ ବସାଇଲେ
ସୁଗ୍ରୀବକୁ କହିଲେ ଯେତେକ ବାନର ନୃପତି
ଧବଳ ସଭାରେ ଏହାଙ୍କୁ ବସାଅ ଝଟତି ।
ଗୁହ ନାମେ ଶବର ମସୁ ଦୈତ୍ୟ ଆର
ବିଭୀଷଣଙ୍କୁ ଘେନି ଚଳିଲେ ସତ୍ୱର ।
ଯେତେକ ସୈନ୍ୟବଳ ଯେ ରକ୍ଷ କପି ଥିଲେ
ଅଶୋକବନୁ ସଭା ପର୍ଯ୍ୟନ୍ତ ଲାଗିଲେ ।

ଦୁଇ ପାଖେ ଦୁଇ କାଣ୍ଡ ହୋଇଲେ ସେ ପୁଣ
ମଧ୍ୟଯାକ ବଡ଼ ଦାଣ୍ଡ ଯେସନେ ଝଟଣ ଜାଣ
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଗସ୍ତେ
କରଯୋଡ଼ିଣ ଦୁଇ ମୁନିଙ୍କି ପୁଣ କହେ ।
ସମସ୍ତେ ଅଇଲେ ତ ବିଜେ କର ତୁମ୍ଭେ
ଦେବତା ଋଷି ସମ୍ଭାଳ ଯାଇ ତୁମ୍ଭେ ବେଗେ
ଅଗସ୍ତି ବୋଇଲେ ସକଳ କଥା ହେଲା
ଚୌଦର ସଙ୍ଗକୁ ଯେ ବାସୁକି ନଇଲା ।
ଶ୍ରୀରାମ ବୋଇଲେ ପାତାଳକୁ ପିବାକୁ କେ ଅଛି
ସହଜେ ଧରଣୀ ତ ଅନନ୍ତ ଧରିଅଛି ।
ଅଗସ୍ତି ବୋଇଲେ ଯାଉ ଯେ ସେ ଲକ୍ଷ୍ମଣ
ଅଠରକୋଟି ନାଗବଳ ଘେନ ଆସୁ ପୁଣ ।
ଶୁଣିକରି ଶ୍ରୀରାମ ଲକ୍ଷ୍ମଣ ମୁଖ ଚାହିଁ
କରଯୋଡ଼ ଆଗେ ଉଭା ସୁମିତ୍ରା ତନୟୀ ।
ଶ୍ରୀରାମ ବୋଇଲେ ଭାଇ ତଳପୁର ଯାସି
ନାଗବଳ ଘେନି ବ୍ୟଗ୍ରରେ ଆସସି ।
ଶୁଣିକରି ଲକ୍ଷ୍ମଣ ବେଗେ ଚଳିଗଲେ
ଅଗସ୍ତି ଋଷିଙ୍କଠାରୁ ମନ୍ତ୍ର ଧୂଳି ନେଲେ ।
ଉଲ୍ଲୂକ ମନ୍ତ୍ରକୁ ବଶିଷ୍ଠ ଦେଲେ କହି
ସେ ମନ୍ତ୍ରକୁ ସୁମରି ଲକ୍ଷ୍ମଣ ବେଗେ ଚଳିଯାଇ
ବଇଁରିଗିରେ ଯାଇ ହେଲେ ପ୍ରବେଶ
କ୍ଷଣରେ ପଶିଲେ ଯାଇ ଦଶରଥ ଶିଷ୍ୟ ।
ନାଗରାଜା ପାଶେ ହେଲେ ପରବେଶ
ଅନନ୍ତଙ୍କୁ ଦେଖିଣ ଲକ୍ଷ୍ମଣ ହେଲେ ତୋଷ ।
ନମସ୍କାର କଲେ ସେତ୍ତ ନାଗରାଜାଙ୍କୁ ପୁଣ
ବାସୁକୀ ପଚାରିଲେ ଶୁଣ ହେ ଲକ୍ଷ୍ମଣ ।
ମାଇଲଟିକ ତୁମ୍ଭେ ଅକ୍ଷୟ ରାବଣ
ଦେବତାଙ୍କର କଷ୍ଟ ଗଲଟିକ ପୁଣ ।
ଲକ୍ଷ୍ମଣ ବୋଇଲେ ଶୁଣ ରାବଣ ନାଶଗଲେ
ଲକ୍ଷେରାଜା ଆସିଣ ଲଙ୍କାରେ ଠୁଳହେଲେ
ଛପ୍ପାଣୋଇକୋଟି ଅଇଲେ ଶନପ୍ରସ୍ତ ଋଷି
ତେତିଶକୋଟି ଦେବତା ଠୁଳ ହେଲେ ଆସି
ତୁମ୍ଭେ ଗଲେ ଜାନକୀ ଲଙ୍କାରୁ ଆସିବେ
ଅଗ୍ନିରେ ପରୀକ୍ଷା ସଭାଠାରେ ଦେବେ ।
ତେବେ ନର ବାନରଦେବଋଷିହେବେତୋଷ
ଏମନ୍ତ ବଚନ କହି ଦଶରଥ ଶିଷ୍ୟ ।

ବାସୁକୀ ବୋଇଲେ ମୁଁ ଯିବଇଁ କେମନ୍ତେ
ଧରଣୀକି ଏଠାରେ ବହିବ କେତ୍ତ ମାଥେ ।
ଲକ୍ଷ୍ମଣ ବୋଇଲେ ମୁଁ ଯେ ଧରିବି ଧରଣୀ
ତୁମ୍ଭେ ବିଜେକଲେ ଏବେ ନ ରହ କ୍ଷଣେପୁଣି
ଶୁଣିକରି ବାସୁକୀ ମନେ ତୋଷ ହେଲା
ଧରି ଆସି ବୋଲିଣ ବଚନ କହିଲା ।
ଧନୁଦ୍ରକେ ଲକ୍ଷ୍ମଣ ଯେ ଧଇଲେ ଧରଣୀ
ଅଠରକୋଟି ନାଗଘେନି ଚଳେବାସୁକୀ ପୁଣି
ଲଙ୍କାଗଡ଼ରେ ଯାଇଣ ହେଲେ ପରବେଶ
ସୁଧର୍ମା ସଭାରେ ବସେ ହୋଇଣ ହରଷ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ
ହନୁମନ୍ତ ଜଣାଇଲେ ଅଇଲେ ବାସୁକୀ ।
ଶ୍ରୀରାମ ବୋଇଲେ ଲକ୍ଷ୍ମଣ କାହିଁ ମୋର
ହନୁମନ୍ତ ବୋଲେ ଧରିଲେ ଧରଣୀର ଭାର ।
ଶୁଣିକରି ଶ୍ରୀରାମ ଯେ କାର୍ଯ୍ୟକର୍ମ ସାର
ବଶିଷ୍ଠ ଅଗସ୍ତି ଯେ ସଭାରେ ବିଜେ କରି ।
ରାଜବେଶ ହେଲେ ଯେ ଶ୍ରୀରାମଚନ୍ଦ୍ର ରାସ୍ତେ
ଭରତ ଶତ୍ରୁଘନ ଯେ ରାଜବେଶ ହୁଏ ।
ହନୁମନ୍ତ ସୁଷେଣ ଜାମ୍ବବ ଶନଜଣ
ଧବଳ ଛତ୍ର ଶନଗୋଟି ଟେକିଲେ ସେ ପୁଣ
ପ୍ରହସ୍ତ ଆଗରେ ମଣିମା ଡାକବେଲେ
ସଭାର ପୂର୍ବଦ୍ୱାରେ ଶ୍ରୀରାମ ବିଜେ କଲେ ।
ହୀରା ମାଳା ସଭାପରେ ହେଲେ ପରବେଶ
ସକଳ ଋଷିଙ୍କି ଯେ ଓଳଗି ବିଶେଷ ।
ମୁନିମାନେ ବୋଇଲେ ଶ୍ରୀରାମଚନ୍ଦ୍ର ଶୁଣ
ତୁମ୍ଭର ଘରଣୀକି ଆଣ ବେଗେ ପୁଣ ।
ସେଠାରୁ ଶ୍ରୀରାମ ବହନ ଚଳିଗଲେ
ଦେବସଭା ତଳରେ ପ୍ରବେଶ ଯାଇ ହେଲେ
ଦେବତାଙ୍କୁ ଓଳଗି ହେଲେ ରୂପଧାରୀ
ଦେବତାଏ ବୋଇଲେ ଆଣ ଜନକ କୁମାରୀ
ଦେବଦରଙ୍କୁ ନମସ୍କାର ଶ୍ରୀରାମ ପୁଣ ହେଲେ
ଦେଖିଣ ବ୍ରହ୍ମା ତାହାଙ୍କୁ ବଚନ କହିଲେ ।
ତୁମ୍ଭର ଘରଣୀ ଯେ ଅଟନ୍ତି କମଳା
ଜମା ତାଙ୍କୁ ନଆଣି ବରୁଛ ତୁମ୍ଭେ ହେଲା ।
ଶୁଣିଣ ଶ୍ରୀରାମ ଯେ ଆସ୍ତଙ୍କୁ ଓଳଗିଲେ
ଆମ୍ଭେ ତାଙ୍କୁ ବୋଲିଲୁ ଶୁଣ ତୁମ୍ଭେ ଭଲେ ।

ଜନକର କୁମାରୀ ଅଟଇ ନିଷ୍କଳଙ୍କୀ
କିଛି ନ କରିବ ରାମ ଆଣ ହେ ଝଟତି ।
ଆମ୍ଭଠାରୁ ଶୁଣି ଶ୍ରୀରାମ ବସୁକନ୍ୟା ମାନ୍ୟ
ନାଗରାଜା ବୋଇଲେ ତୁମ୍ଭେ ଶୁଣହେ ରାମଘଣ
ଧରଣୀ କରତା ମୁଁ ଅଟଇ ଧର୍ମ ମନ୍ତ୍ରୀ
ସୀତାର ଦେହର ତ କଳଙ୍କ କିଛି ନାହିଁ ।
ଆଣ ବେଗେ ହେଳା ତେ ନ କରେ ରାମଘଣ
ତ୍ରୈଲୋକ୍ୟ ଠାକୁରାଣୀ ଅଟନ୍ତି ସେହୁ ପୁଣ ।
ଶୁଣିଣ ପରମ ତୋଷ ହେଲେ ଦାଶରଥି
ପିତାଙ୍କୁ ନମସ୍କାର କଲେ ସେହି ଦେଖି ।
ଦଶରଥ ବୋଇଲେ ଶୁଣ ରଘୁଧୀର
କୁଳବଧୂର ଦୋଷ ନାହିଁ ଯେ ମୋହର ।
ଦେବଙ୍କର କଷ୍ଟ ଦେଖି ଅସୁରପୁରେ ଆସି
ଅକ୍ଷୟ ଅସୁରକୁ ମରାଇଲେ ଧ୍ୱଂସି ।
କୁଳବଧୂକୁ ମୋର ହେ ବେଗକରି ଆଣ
ତା ମୁଖ ଦେଖି ମୁକ୍ତି ଲଭିବୁ ଆମ୍ଭେ ପୁଣ ।
ଶୁଣିକରି ଶ୍ରୀରାମ ସେଠାରୁ ଚଳିଗଲେ
ରାଜସଭା ଭିତରେ ପ୍ରବେଶ ଯାଇ ହେଲେ ।
ରାଜାମାନେ ବୋଇଲେ ଶୁଣ ହେ ରାମ ଦେବ
ଜନକ ଦୁହିତାକୁ ଆଣ ଯାଇ ବେଗ ।
ଯିବା ଏଥିରୁ କିଛି ବିଳମ୍ବ ନ କର
ଜମ୍ବୁକଳ ଭୂମିରେ କମ୍ପା ରହିବା ରଘୁବୀର ।
ଶୁଣିଣ ସେଠାରୁ ଯେ ଶ୍ରୀରାମ ଚଳିଗଲେ
କପି ରାଜ୍ୟସଭାରେ ଯାଇଣ ମିଳିଲେ ।
ଦେଖିଣ କପିରାଜା ସମସ୍ତ କଟକ ପୁଣ
ନମସ୍କାର କଲେ ଯେ ଶ୍ରୀରାମ ପାଦେଣ ।
ବୋଇଲେ ଯୁଦ୍ଧ ତ ନାହିଁ ବିଳମ୍ବ କିସପାଇଁ
ଅଯୋଧ୍ୟାକୁ ଯିବା ଏଥିରେ କାର୍ଯ୍ୟ ନାହିଁ ।
ଆଣ ବେଗେ ଠାକୁରାଣୀ ଯିବା ହେ ବହନ
ଲଙ୍କାର ତ ସକଳ କାର୍ଯ୍ୟ ଏବେ ଜାଣ ।
ଯାହାର ସକାଶେ ଏତେ ଦୁଃଖ ଯେ ଆମ୍ଭର
ସେ କମାଇଁ ରହିଛନ୍ତି ଅଶୋକ ବନର ।
ତୁମ୍ଭେ ଯେବେ ଲଙ୍କାରେ ରହିବ ହେ ପୁଣ
ଆମ୍ଭକୁ ମେଲାଣି ଦେଲେ ଯିବ ହେ ବହନ ।
ଶୁଣିକରି ଶ୍ରୀରାମ ଯେ ସେଠାରୁ ଚଳିଗଲେ
ସକଳ ପଶ୍ଚିମ ଦ୍ୱାରେ ଯାଇଣ ମିଳିଲେ ।

ଅଙ୍ଗଦକୁ ଚାହିଁଣ ବୋଇଲେ ରାମଘଣ
ସୁଗ୍ରୀବ ଯୂଥପତିଙ୍କି ବେଗେ ମୋଠାକୁ ଆଣ
ହନୁମନ୍ତକୁ ବୋଇଲେ ତୁ ଚଳ ରାଜସଭ
ବିଭୀଷଣକୁ ବେଗେ ଘେନିଆସ ଯାଅ ଯା ।
ଶୁଣିକରି ଅଙ୍ଗଦ ଯେ ବେଗେ ଚଳିଗଲା
ସୁଗ୍ରୀବର ସେନାପତି ଘେନିଣ ଆସିଲା ।
ହନୁମନ୍ତ ଯାଇଣ ଆଣିଲା ବିଭୀଷଣ
ପଶ୍ଚିମ ଦ୍ୱାରେ ସମସ୍ତେ ହେଲେ ମେଳପୁଣ ।
ଶ୍ରୀରାମ ବୋଇଲେ ଭରତ ଶତ୍ରୁଘନକୁ ଚାହିଁ
ଜନକର ଦୁହିତାକୁ ଘେନ ଆସ ଯାଇ
ଦେବତା ଅସୁର ଯେ ନ ରହି ବାନର
ଦଶବର୍ଣ୍ଣ ଋଷି କହେ ମୋ ଆଗର ।
ଅଷ୍ଟ ସେନାପତି ଯେ ସଙ୍ଗରେ ଯାନ୍ତୁ ପୁଣ
ରତ୍ନ ଦାଣ୍ଡୋଳାରେ ସୀତାଙ୍କୁ ବେଗେ ଆଣ
ଶୁଣିକରି ଶତ୍ରୁଘନ ଯୋଡ଼ି ବେନି କର
ଜନପୁରର ସାତ ଯେ ସଜ୍ଜ ପର ।
କେମନ୍ତେ ଅନୁକ୍ଷଣେ ଆଣିବା ଠାକୁରାଣୀ
ଯେଉଁ ରୂପେ ରଜମାଣ୍ଡ ପୂର୍ବରୁ ଅଛି ପୁଣି ।
ଶ୍ରୀରାମ ବୋଇଲେ କେଉଁ ରୂପରେ ବଧୂ କର
ସେହି ରୂପେ ଅଣାଇବ ଜନକର ଝିଅ ।
ଶତ୍ରୁଘନ ବୋଲେ ଦେବ ଶୁଣ ମୋ ବଚନ
ଦେବତାଙ୍କର ବଧୂ ଶୁଣ ହେ ରାଜନ ।
ଯେ ଯାହା ବାହନରେ ବସନ୍ତି ଦୁଇଜଣ
ଯେ ଯାହା ଘରଣୀ ଘେନି କରନ୍ତି ଗମନ ।
ଅସୁର ଏକା ଆସନେ ମେଳରେ ଯେ ଯାନ୍ତି
ବାରଣ ନ ଥାଇ ଯେ ଦୁଇଜଣ ସେଥି ।
ଏକ ଆସନରେ ଯେ ବସନ୍ତି ଦୁଇଜଣ
ବାରଣ ନାହିଁ ତାଙ୍କର ସାବଧାନେ ଶୁଣ ।
ବାନରମାନଙ୍କର ସେହି ପ୍ରକାରେ
ସଙ୍ଗ ହୋଇ ବସନ୍ତି ଯେ ସକଳ ଠାବରେ ।
ଋଷିମାନଙ୍କର ଭିନ୍ନ ରୂପେଣ ଭିଆଣ
ତପସ୍ୟାକୁ ଗଲେ ଘରଣୀ ଘରେ ଥାନ୍ତି ପୁଣ
ଦାସୀମାନଙ୍କୁ ଜଣାଇ ଯାଆନ୍ତି ଯୋଗସାଧି
ତପୀ ଲୋକମାନଙ୍କର ଏ ପ୍ରକାର ବିଧି ।
ପିତୃ ଲୋକମାନଙ୍କର ଶୁଣ ରଘୁରାଣ
ଏତେକ ନରଲୋକ ଯେ ଅଟନ୍ତି ତୁମ୍ଭେ ଜାଣ ।

ଗୃହସ୍ଥ ଆଗେ ଯାଏ ଭାରଯା ରହେ ପୃଷ୍ଠି
ଭାରଯା ଆଗେ ଗଲେ ଗୃହସ୍ଥ ହେ ଜାଣି ।
ଆଗ ପଛ ହୋଇ ସେ ଯେ କରନ୍ତି ଗମନ
କେ ସ୍ୱର୍ଗେ ରହେ କେ ନର୍କକୁ ଯାଏ ପୁଣ ।
ଭାରଯା ଯେବେ ତାର ଧର୍ମବନ୍ତରେ ଥାଇ
ସେ ଧର୍ମରୁ ସୃଷ୍ଟି କାହୁଁ ଗୃହସ୍ଥେ ନ ନେଇ ।
ଏମନ୍ତ ପ୍ରକାରେ ଗ୍ରନ୍ଥ ଅଟେ ପିତୃ ଜାଣ
ତନ୍ତ୍ରିକ ଜନ୍ମପତ୍ର ଋଦ୍ଧସ୍ୱା ଅଟେ ପୁଣ ।
ଦେବଦତ୍ତ ବ୍ରାହ୍ମଣର ଘରଣୀ ଯେହ୍ନ ପୁଣ
ବ୍ରାହ୍ମଣ ସଙ୍ଗରେ ସଙ୍ଗ ହୋଇଲେ ଏହୁ ଜାଣ
ବାହ୍ମକାଳେ ଏକା ସୁଖାସନରେ ସେ ଯାନ୍ତି
ଆଉବେଳେ ସ୍ୱାମୀଙ୍କର ସଙ୍ଗରେ ନ ଯାନ୍ତି ।
ବେଶ୍ୟାଜାତି ସେହ୍ନ ରୂପେ କରନ୍ତି ଯେ ଜାଣ
ଶୂଦ୍ର ଜାତି ସାତ ଯେ ତମ ଅଟେ ପୁଣ ।
ବାଳ କାଳରେ ଶୂଦ୍ର ଯୁବା କାଳରେ ଷଣ୍ଢୀ
ସଣ୍ଢଲବେଳକୁ ତାର ନ ରହେ କୁଳ ଜାତି ।
ଛତିଶ ପାଟକ ଜାତି ଏକାପର ଜାଣ
ଗୃହସ୍ଥ ସଙ୍ଗରେ ସଙ୍ଗ ତାଙ୍କର ଅନୁକ୍ଷଣ ।
ପାତରେ ଷଣ୍ଢ ଜାତି ଅଛନ୍ତି ଅଛବ
ତାଙ୍କର ମହତ୍ତ୍ୱ ଯେ ନାହିଁ ସବଲବ ।
ଋଷିଙ୍କର ମହତ୍ତ୍ୱ ଶୁଣ ଦେବ ତୁମ୍ଭେ
ବସ୍ତ୍ର ନଗର ବୋଲି ଅଛିବ ଯେ ଆମ୍ଭେ ।
ବର୍ଦ୍ଧମାନ ପ୍ରକାର ଆଣିବାର ବନ୍ଧନ
ଲକ୍ଷେ ନୃପତିର ତୁମ୍ଭ ନ ସାଇ ମହତ୍ତ୍ୱ ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ମନ ହେଲେ
ବୁଦ୍ଧିରେ ମୋରଠାରୁ ବଳଲୁ ବୋଇଲେ ।
ବଶିଷ୍ଠଙ୍କୁ ବୋଇଲେ ଅଣାଅ ସନାତନ
ବାଦ୍ୟକାର ସାର ବାଜା ଅଣାଅ ତତକ୍ଷଣ ।
ସୁମନ୍ତ୍ରକୁ ବୋଇଲେ ସଜାଡ଼ ବେଗ
ଦୁଇଗୋଟି ରତ୍ନଦାନ୍ଦୋଳା ଅଣାଅ ମୋର ଆଗ
ସାତଗୋଟି ସୁଖାସନ ମକରମୁହାଁ ଶୁଣି
ଗୋଟିଏ ସୁଖାସନ ରତ୍ନ କୁମ୍ଭ ଜାଣି ।
ଦୁଇଭାଇଙ୍କ ପାଇଁ ମୋର ସ୍ୱର ଛତ୍ର ଜାଣ
ଆଡ଼େଣୀ ଚଅଁର ମୟୂର ଝୁଲ ଜାଣ ।
ମୋର ସ୍ୱର୍ଣ୍ଣ ଛତ୍ର ଯେ ଚଅଁର ଆଡ଼େଣୀ
ସ୍ୱର୍ଣ୍ଣବର୍ଣ୍ଣ ଫୁଲମାନ ଅଣାଅ ଗୁନ୍ଥି ପୁଣି ।
ଅମଳାନ ଶାଢ଼ୀ ରତ୍ନ ଭୂଷଣ ଅଣାଅ ।
ଅନ୍ତଃପୁରକୁ ଶୋଭା ଯେସନ୍ତେ ଜନକର ଝିଅ ।
ଶୁଣିକରି ସୁମନ୍ତ୍ର ବେଗେ ଚଳଗଲା
ସାତ ସୁଖାସନ ଦୁଇ ଦାନ୍ଦୋଳା ଅଣାଇଲା
ହୀର ମାଣିକ୍ୟ ଚୂଡ଼ୀ ନାନା ରତ୍ନରେ ଭୂଷଣ
ସନାତନ ଘେନି ମନ୍ତ୍ରୀ ପ୍ରବେଶ ତତକ୍ଷଣ ।
ବଶିଷ୍ଠ ଘେନିଣ ଯେ ପ୍ରବେଶ ତତକ୍ଷଣ
ବଜନ୍ତ୍ର ଷଜ୍ଜଣୀ ଯେ ବାଦ୍ୟକାର ଜାଣ ।
ସୁଗ୍ରୀବ ଅଣାଇଲେ ନାନା ଜାତିର ବାଜା
ଦେଖିକରି ସନ୍ତୋଷ ହେଲେ ରାମରାଜା ।
ସଭାଠାରୁ ଅଶୋକବନ ପରଯନ୍ତେ
ଦୁଇଧାଡ଼ି ବାଦ୍ୟକାର ବଜାନ୍ତି କୁରତେ ।
ଶଙ୍ଖ ମହୁରୀ ଯେ କାହାଳୀ ତେଲ୍ଲ ତୁରୀ
ନୃତ୍ୟକାରୀମାନେ ଯେ ବାଟରେ ନୃତ୍ୟକରି ।
ଋକ୍ଷ କପି ଯେ ପତାକା ରଥୀ ଦଳ
ସଭାଠାରୁ ପୂରିଛନ୍ତି ଅଶୋକ ବନର ।
ଆଷାଢ଼ ଦ୍ୱିତୀୟା ଦିନ ଯେସନ୍ତେ ରଘୁନାଥ
ନନ୍ଦିଘୋଷେ ବିଜେକଲେ ଲକ୍ଷ୍ମୀଙ୍କର କାନ୍ତ ।
ସେକାଳେ ଯେସନ୍ତ ଶୋଭାପାଏ ଦେବ ହରି
ସେହ୍ନ ରୂପେ ଯାତ୍ରାକଲେ ଲଙ୍କାରେସ୍ୱପଧାସ
ଶତ୍ରୁଘ୍ନ ବୋଇଲେ ଦାନ୍ଦୋଳା ଦେଗେନଅ
ଜନକ ନନ୍ଦିନୀଙ୍କି ଶୀଘ୍ର ଯାନରେ ବସାଅ ।
ଶୁଣିଣ ଶତ୍ରୁଘ୍ନ ବେଗେ ଚଳିଗଲେ
ଜନନୀକ ଦାନ୍ଦୋଳାରେ ବସାଇ ଅଣାଇଲେ
ଶ୍ରୀରାମ ପାଶରେ ହେଲେ ପରବେଶ
ଜନନୀ ଆଗରେ ଚଳେ କୁଳବଧୂ ହଂସ ।
ତହିଁ ପାଛେ ଶତ୍ରୁଘ୍ନ ବିଜେ ସୁଖାସନେ
ଭରତ ପଛରେ ଚଳଇ ତତକ୍ଷଣେ ।
ଜାନକୀର ଦାନ୍ଦୋଳା ଘେନାଇ ରାମରାଣ
ସ୍ୱର୍ଣ୍ଣ କୁମ୍ଭ ସୁଖାସନେ ବିଜୟ ତତକ୍ଷଣ ।
ରାମଚାଳ ଦ୍ରୁକଦ୍ରୁକ ଶବଦ ଗଛୁଟାଣ
ସ୍ୱର୍ଣ୍ଣ ଛତ୍ର ଟେକାଇ ବାହାର ରାମରାଣ ।
ଅଶୋକବନରେ ଯାଇ ହେଲେ ପରବେଶ
ଲଙ୍କାର ନରନାରୀ ଦେଖନ୍ତି ସମସ୍ତ ।
ଜନନୀ ତଳେ ଯାଇ ଜନନୀ ପରବେଶ
ଦାନ୍ଦୋଳାରୁ ଓହ୍ଲାଇ ଚଳନ୍ତି ସୀତାପାଶ ।

ଦେଖିଣ ଜାନକୀ ଯେ ବହନ ଉଠିଲେ
ଶାଶୁଙ୍କ ଚରଣରେ ଓଳଗି ଶୁଣ୍ଡିଲେ ।
ସୁବର୍ଣ୍ଣ ଝଷରେ ମାଇ ଅଣାଏ ବହନ
ଚରଣ ଧୋଇଦେଲେ ରାମଜାୟା ପୁଣ ।
ଦେଖିଣ ଲଜ୍ଜାବତୀ ପରମ ତୋଷ ହେଲେ
ଜଗଖଟର ଉପରେ ଯାଇଣ ବସିଲେ ।
ସୁଖାସନରୁ ଓହ୍ଲାଇ ଶତ୍ରୁଘନ ପୁଣ
ଜାନକୀଙ୍କ ଚରଣେ କରନ୍ତି ମାନ୍ୟ ଧର୍ମ ।
ସୁଖାସନ ଉପରୁ ଭରତ ଓହ୍ଲାଇଲେ
ସୀତସ୍ୱାର ଚରଣରେ ନମସ୍କାର କଲେ ।
କନକ ସିଂହାସନ ଉପରୁ ଶ୍ରୀରାମ
ଓହ୍ଲାଇ ବଜେଇଲେ ଭୂମିରେ ଯାଇ ପୁଣ ।
ଦେଖିଣ ଜାନକୀ ଯେ ଚରଣ ତଳେ ପଡ଼ି
ଗୃହଚକ୍ଷୁ ଏକାନ୍ତ ହେଲା ତାହାଙ୍କର ।
ଦୁଇ ନେତ୍ରୁ ଜାନକୀର ବହେ ଅଶ୍ରୁଜଳ
ଦେଖିକରି ରାମଚନ୍ଦ୍ର ହୋଇଲେ ବିକଳ ।
ଏହି ସମୟରେ ତ୍ରିଜଟା ବେଗେ ଗଲା
ଜାନକୀ ଚରଣ ଧରି ବୋଧ କରାଇଲା ।
ବୋଇଲା ସୁଲଭବେଳେ କମ୍ପାଇଁ କରଶୋକ
ସ୍ୱାମୀ ବଳେ କରିଛନ୍ତି ଗଲାଣି ସବୁ ଦୁଃଖ ।
ନକର ଶୋକ ତୁମ୍ଭେ ତ୍ରୈଲୋକ୍ୟଠାକୁରାଣୀ
ଆଜର ଦିନ ସଫଳ ହୋଇଲାକ ପୁଣି ।
ବୋଧକରି ତ୍ରିଜଟା ବେଗେ ଚଳିଗଲା
ସହସ୍ରେ ଅସୁରୁଣୀଙ୍କି ସଙ୍ଗରେ ଆଣିଲା ।
ଶ୍ରୀରାମ ଚରଣରେ ଯାଇଣ ଓଳଗିଲେ
କରଯୋଡ଼ି ଆଗରେ ଉଭା ସେ ହୋଇଲେ ।
ଶ୍ରୀରାମ ବୋଇଲେ ତୁମ୍ଭ ନାମ ଅଟେ କିସ
ତୁମ୍ଭଙ୍କୁ ଜଣାଇଥିଲା ପରା ବଣ୍ଣବାର ଶିଷ୍ୟ ।
ଅନେକ ବୋଧ କରାଅ ଜନକ କୁମାରୀଙ୍କି
ସହସ୍ରେ ଅସୁରୀ ଅଛ ସହିଛନ୍ତି ଟିକ ।
ରାବଣ ଦଶଶିରର ସହିଲେ ଭର୍ତ୍ସନା
ଚଉଦ ମାସରେ ଦେହ କଲେଣି ସେ ଚୂନା
ଶାଶୁକଥା ନମାନ ମୋ ସଙ୍ଗରେ ଯେ ଆସି
ବନ୍ଦେ ନଦେଖିଲେ ସେ ହୁଅଇ ବଡ଼ ଦୁଃଖୀ
ମୋର ଭାଇ ସଉମିତ୍ରୀ ସେବା କରିଥାଇ
ରଜନୀରେ ଅନିଦ୍ରା ହୋଇଣ ଜଗିରହି ।

ମୃଗ ମାରି ମାଂସ ଯେ କେଞ୍ଚାଇ ଦଏ ପୁଣ
ଖଲ୍ଲିବଳା ସଜାଡ଼ି ପାଶରେ ଥାଇ ଜାଣ ।
ସେ ଭାଇକି ମୋର କଟୁ ବଚନ କହି
କୁବଚନ କହିବାରୁ ଏତେ ଦୁଃଖ ପାଇ ।
ନୋହିଲେ କି ଅସୁର ଆଣନ୍ତ ସୁଙ୍କୁ ପୁଣ
ସେହିଠାରେ ଲକ୍ଷ୍ମଣ ମାରିଥାନ୍ତ ଜାଣ ।
ଏ କଟୁ ବଚନ ସୀତାଙ୍କୁ ଶ୍ରୀରାମ କହିଣ
ମନବୋଧ ହେଲା ଅଯୋଧ୍ୟାକୁ ପୁଣ ।
ଶ୍ରୀରାମ ବୋଇଲେ ତୋର ନାମ ଅଟେ କିସ
କାହାର ଦୁହିତା ତୁ କହ ଦେଖା ବିଶେଷ ।
ଷୋଳବର୍ଷୀ ବୟସୀ ତୁ ଅଟୁରେ ସୁନ୍ଦରୀ
ମନ୍ଦୋଦରୀ ସମାନେ ସୁନ୍ଦରୀ ତୁହି ନାରୀ ।
ବିଭୀଷଣ ଦୁହିତା ଯେ କହଇ ଉତ୍ତର
ମୋର ନାମ ତ୍ରିଜଟା ଶୁଣ ହେ ରଘୁବର ।
ବିଭୀଷଣଠାରୁ ଆମ୍ଭେ ତିନିଜଣ ଜାତ
ବଡ଼ ଭଉଣୀକି ବିଭା ନନ୍ଦାସୁର ଦୈତ୍ୟ ।
ମଝିଆଣୀ ଏକତ୍ରମା ହୋଇଣ ଜାତ ହେଲା
ତୁମ୍ଭ ଭାଇ ଘାଆକୁ ସେ ଔଷଧ ବାଟିଦେଲା
ତୁମ୍ଭଙ୍କୁ ଦେଖି ସ୍ୱର୍ଗକୁ ଗଲା ଚଳି
ମୁହିଁ ଅଟେ ସାନ ଶୁଣ କୋଦଣ୍ଡ ରୂପଧାରୀ ।
ଯେଉଁଦିନୁ ତୋର ନାରୀ ଦଶଗ୍ରୀବ ଆଣି
ଜାନକୀଙ୍କି ଜଣାଇଲା ମୋତେ ସେହୁ ପୁଣି ।
ସହସ୍ରେ ଅସୁରୀ ମୁଁ ଘେନିଣ ଜଗିଥାଇ
ସେହିଦିନୁ ମାତା ମୋର ଜାନକୀ ଅଟଇ ।
ଶୁଣିଣ ରାମ ଯେ ତୋଷ ହୋଇଲେକ ପୁଣ
ମାରୁତିକି ପଚାରିଲେ ତ୍ରିଜଟାର ଗୁଣ ।
ହନୁମନ୍ତ ବୋଇଲେ ଶୁଣିବା ଗୋସାଇଁ
ତ୍ରିଜଟା ନଥିଲେ କି ଜାନକୀ ଥାନ୍ତ ପାଇ ।
ନିଶ୍ଚୟ ସୀତା ତୋର ଜୀବନ ହାରିଥାନ୍ତା
ଅସୁରଙ୍କ ହାତରେ କି ଶରୀର ବହନ୍ତା ।
ତ୍ରିଜଟା ରଖିଛି ପ୍ରାଣ ଜାନକୀର ତୋର
ବିଭୀଷଣର ଦୁହିତା ନୁହଇ ଅସୁର ।
ଶ୍ରୀରାମ ବୋଇଲେ ତାକୁ କିସ ଦେବା ପୁଣି
ଉପକାର କରିଛି ବିଭୀଷଣର ଦୁଲଣୀ ।
ତ୍ରିଜଟା ବୋଇଲେ ଦେବ କହୁଅଛି ମୁହିଁ
କଥାଏ ମାଗିବି ଦେବ ନ କରିବା ନାହିଁ ।

କୁସୁମର ଯେ ଲୀଳାବତୀ ଅଟନ୍ତି ଜନନୀ
ବସୁଭ ମାତାଗଣ ଅଛନ୍ତି ତୋର ପୁଣି ।
ଏହି ମାତାଙ୍କୁ ଯେବେ ଦେଇପାରୁ ମୋତେ
ତେବେ ଥୋର ସନ୍ତୋଷ ହୋଇବାକ ଚିତ୍ତେ
ଶ୍ରୀରାମ ବୋଇଲେ ମାତା ଦେଲେଣିଯେବେଷ
ନୂଆମାତା ଦେଲ ସାତଶସହସ୍ର ଯେ ଲକ୍ଷ ।
ଏବେ ଜନନୀଙ୍କ ବେଗେ ମାର୍ଜଣା କରାଅ
ଭୂଷଣ ବସନ ଦେଇ ସୁବେଶ କରାଅ ।
ଶୁଣିଣ ତ୍ରିଜଟା ଯେ ବେଗେ ଚଳିଗଲା
ସ୍ନାନ କରାଇଣ ବେଗେ ମାର୍ଜଣା କରାଇଲା
ଯୋଡ଼ା ବାନ୍ଧ ଫୁଲ ଝଞ୍ଜେ ଝୁମ୍ପା ଝରାକାଠି
ଅଳକା ଯେ ମଥାମଣି ମଥା ପରେ ରଖି ।
ନାଗ ମଲ୍ଲଲତି ଚନ୍ଦ୍ର ଫାଶିଆ ଖଞ୍ଜିଲା
ଝଲକା ଫିରିଫିରା ମଣି କର୍ଣ୍ଣରେ ଦେଲା ।
ତାଡ଼ ବଦ ବାହୁଟି ଯେ ଖଞ୍ଜିଲା ହସ୍ତରେ
ହୀରା ମାଣିକ୍ୟ ଚୂଡ଼ି ଦେଲା ବେନ କରେ ।
କଣ୍ଠରେ ଯେ ଗୁପସରି ରସୁଣିଆ କଣ୍ଠି
ଚନ୍ଦ୍ର ହାର ପଦକ ଯେ ବକ୍ଷସ୍ଥଳେ ଲୋଟି ।
କଟୀରେ ଯେ ସପ୍ତ ସର ସୁନାସୂତା ଦେଲା
ଚରଣେ ନୂପୁର ବଳା ନେଇଣ ଖଞ୍ଜିଲା ।
ଝୁଣ୍ଟିଆ ପାହୁଡ଼ ନେଇ ଦେଲାକ ଯତନେ
ଅମଳାନ କାଞ୍ଚଲା କଲା ସୁଯତନେ ।
ଅମଳାନ ଶାଢ଼ୀ ନେଇ କାଛୁ ପିନ୍ଧାଇଲା
ଉପରେ ଅମଳାନ ଖଣ୍ଡୁଆ ପହୁରିଲା ।
ମସ୍ତକରେ ସିନ୍ଦୂର ଯେ ନୟନେ ଅଞ୍ଜନ
ପାଦରେ ଅଳତା ଦେଲାକ ନେଇ ପୁଣ ।
ବେଶକରି ତ୍ରିଜଟା ଯେ ଚରଣେ ଓଳଗିଲେ
ଜାନକୀ ଆସିଣ ଯେ ଶାଶୁଙ୍କୁ ମାନ୍ୟକଲେ ।
ଅର୍ଘ୍ୟଥାଳୀ ଆଣିଣ ଦେଲେକ ତ୍ରିଜଟା
ଶ୍ରୀରାମ ସମ୍ମୁଖରେ ଜାନକୀ ମନେ ସେତା ।
ମଙ୍ଗଳ ଆଳତି କଲେ ଶ୍ରୀରାମଙ୍କୁ ପୁଣି
ଅର୍ଘ୍ୟ ବନ୍ଦାପନା କଲେ ଜନକ ଦୁଲଣୀ ।
ହସ୍ତ ଧରି ତ୍ରିଜଟା ସେଠାରୁ ଘେନଗଲା
ରତ୍ନ ଦାନ୍ଦୋଳାରେ ନେଇଣ ବସାଇଲା ।
ବଶିଷ୍ଠ ବାମଦେବ କଶ୍ୟପ ସୁମନ୍ତ
ସୁଖଯାନ ପରେ ବସି ଆଗରେ ଚଳେ ସେତ
ତନ୍ତ୍ରିଙ୍କ ପଛରେ ଜାନକୀ ଚଳେ ପୁଣ
ସ୍ୱର ଛତ୍ର ଆଡ଼େଣୀ ମୟୂର ଝୁଲ ଜାଣ ।
ଚଅଁର ପଙ୍ଖା ଢାଳଣୀ ଆଗେ ପଡ଼
ରାମଚାଳ ହୁଳହୁଳି ଶବଦେ ଶଙ୍ଖ ପୂର ।
ନାନା ବର୍ଣ୍ଣରେ ବାଜା ବାଜେ ତତକ୍ଷଣ
କାହାଳୀ ଭେରୀ ତୂରୀ ଶବଦ ଘନ୍ତ ଠାଣ ।
କଯସନେକ ସାଗର ଦୁଲଣୀ ଅଙ୍ଗେ ଶୋଭା
କ୍ଷୀର ସାଗର ଭିତରେ ଯେସନେ ବସ୍ତୁ ପ୍ରଭା
ଆଗରେ ଜାନକୀ ଯେ ପଛରେ ଶ୍ରୀରାମ
ତନ୍ତ୍ରିଭ ପଛେ ଭରତ ଶତ୍ରୁଘନ ଜାଣ ।
ତାଙ୍କ ପଛରେ ଯାନରେ ଚଳଲେ ଲୀଳାବତୀ
ଦକ୍ଷକୋଳ ରାମଚାନ୍ଦ ସେଠାରେ ପଡ଼ୁଅଛି
ତାଙ୍କ ପଛେ ସେନାପତି ଯୂଥପତି ଗଲେ
ଲଙ୍କାଗଡ଼ରୁ ବେଗୀ ଯେ ବାହାର ହୋଇଲେ
ଲଙ୍କାର ନରନାରୀ ଦେଖନ୍ତି ରହିଣ
ଉପରେ ଦେବନାରୀ ବୃହୁଁଛନ୍ତି ଜାଣ ।
ଧୀରେ ଧୀରେ ଗମନ ଯେ କରନ୍ତି ସକଳ
ଦୁଇପାଖେ ଦେଖନ୍ତି ରହି ସୈନ୍ୟଦଳ ।
ନଗର ପୂର୍ବଦ୍ୱାରେ ହେଲେ ପରବେଶ
ଭିତରେ ପଶିଲେ ଯେ ହୋଇଣ ହରଷ ।
ଦେବସଭା ତଳେ ଯାଇ ପ୍ରବେଶ ହୋଇଲେ
ବାମଦେବ ବଶିଷ୍ଠ ଯାନରୁ ଓହ୍ଲାଇଲେ ।
କଶ୍ୟପ ସୁମନ୍ତ ଯେ ଓହ୍ଲାଇ ବହନ
ଜନକଙ୍କ ଯାନରୁ ଉଚ୍ଛୁରେ ତତକ୍ଷଣ ।
ଜନନୀ ଯାନରୁ ଉତ୍ତୁରି ତତକ୍ଷଣ
ଦାନ୍ଦୋଳାରୁ ଓହ୍ଲାଇଲେ ଜନକ ସୁତା ଜାଣ
ଶାଶୁ ବୋହୂ ଏକମେଳ ହୋଇଲେକ ପୁଣ ।
ଦେବଙ୍କ ସଭା ତଳରେ ଓଳଗେ ଯାଇଣ ।
ଦେବଙ୍କୁ ଓଳଗିଣ ନାଗରାଜାଙ୍କୁ ମାନ୍ୟ
ପିତୃଙ୍କୁ ଓଳଗ ସେ ହେଲେ ବେଶ ନନ ।
ଲୀଳାବତୀ ଜନନୀ ଦେଖିଲେ ଦଶରଥ
ପିତୃଙ୍କର ସଙ୍ଗରେ ବସିଅଛନ୍ତି ସେତ ।
ଲୀଳାବତୀ ବସୁରେ ସ୍ୱାମୀଙ୍କ ସଙ୍ଗେ ସିଦ
ସ୍ୱର୍ଗପୁରେ ଯାଇଣ ନିଶ୍ଚିନ୍ତେ ବସିବ ।
କୁଳ ଉଦ୍ଧାରିଣ ମୋର ଅଟନ୍ତି ଶ୍ରୀରାମ
କହିଲେ ନିଶ୍ଚିନ୍ତ ଯେ ହୋଇବ ଏଥୁ ଜାଣ ।

ଏମନ୍ତ ବଚନର ଯେ ଜନମ ମନର
ସେକଥା ଜାଣିଲେ ଯେ କୋଦଣ୍ଡ ଧନୁଧର ।
ଦେବତାଏ ବୋଇଲେ ଶୁଣ ହେ ରଘୁସାଇଁ
ତୋହର ଘରଣୀଠାରେ କହୁଛ ଦୋଷନାହିଁ
ନାସ ଦେବତାଏ ବୋଇଲେ ଶୁଣ ହେ ଶ୍ରୀରାମ
ତୋହର ଘରଣୀ ଯେ କମଳା ଅଟେ ପୁଣ
ଏହାକୁ ଘେନିଣ ଯେ ଅଯୋଧ୍ୟାପୁର ଚଳ
ସନ୍ଥଙ୍କୁ ପାଳିଣ ଯେ ଦୁଷ୍ଟଜନ ମାର ।
ପିତୃଲୋକ ବୋଇଲେ ଶୁଣ ହେ ରୂପଧାସ
କୁଳବଧୂ ଆମ୍ଭର ଜହନ୍ତି ଦୋଷନାଶ ।
ଦେବବର ବୋଇଲେ ଶୁଣ ହେ ଦାଶରଥି
ପୂର୍ବ କଥାମାନ ଜ ପାଶୋରିଲ ଏଥି ।
ସହସ୍ରେ ବରଷଯାଏ ତୋତେ ସେବାକଲୁ
ତେବେ ସେ ଦୈତ୍ୟବଳ ଆସିଣ ମାରିଲୁ ।
ଜାନକୀ ନ ଆସିଲେ ନ ମରନ୍ତା ଏ ଅସୁର
କେବେ ବଣ୍ୟ ହୋଇଣ ରହିଥାନ୍ତେ ତାର ।
ଦେବକାହିଁ ବଳ ଏବେ ଅଯୋଧ୍ୟାପୁର ଚଳ
ଦେବତାଙ୍କର ତୁମ୍ଭେ ଅଟ ଆଦମୂଳ ।
ଶୁଣିକରି ଜାନକୀ ସେଠାରୁ ଚଳିଯାଇ
ଦେବତାଙ୍କ ଚରଣରେ ଓଳଗିଲେ ତହିଁ ।
ଆମ୍ଭେ ବୋଲୁଛୁ କେବେହେଁ ନ ବଚର ମନ
ଘରଣୀକି ଘେନିଣ ଚଳ ତୁ ବହନ ।
ଶୁଣିକରି ସନ୍ଥ ଯେ ସେଠାରୁ ଚଳିଗଲେ
ଋଷିଙ୍କର ସନ୍ଧରେ ପ୍ରବେଶ ହୋଇଲେ ।
ସୀତା ଋଷିଙ୍କି ଯେ କହିଲେ ମାନ୍ୟଧର୍ମ
ଅକଳଙ୍କ ଚନ୍ଦ୍ରମା ଯେ ଅଟଇ ପୁଣ ଶ୍ରୀରାମ ।
ଅକଳଙ୍କ ବୋଲିଣ ଯେ ଋଷିଏ ସର୍ବେ କହି
ସେଠାରୁ ଶ୍ରୀରାମ ଯେ ଜାନକୀ ଚଳିଯାଇ ।
ଋକ୍ଷ ବାନର ସଙ୍ଗତେ ହେଲେ ପରବେଶ
ସକଳ ବାନରମାନେ ଓଳଗେ ଅଶେଷ ।
ବୋଇଲେ ଶ୍ରୀରାମହେ ଅଯୋଧ୍ୟା ବେଗେଚଳ
ଦେଶ ଲୋକ ଗୁଡ଼ିଲୁ ଘର ଯେ ସଂସାର ।
ସହିଲ କଷ୍ଟ ଆମ୍ଭର ଦୁଃଖ ତୁମ୍ଭେ ଜାଣ
ମଲେ ତ ସ୍ୱର୍ଗପିବୁ ଯାଇଁଲେ କାରଣ ।
ଅଯୋଧ୍ୟାପୁରକୁ ଆମ୍ଭେ ଦେଖିବୁ ଥରେଯାଇ
ତେବେ ମନ ସନ୍ତୋଷ ଆମ୍ଭର ହୁଅଇ ।

ଶୁଣିକରି ଶ୍ରୀରାମ ଜାନକୀ ଚଳିଗଲେ
ରାଜ ସଭାତଳରେ ପ୍ରବେଶ ଯାଇ ହେଲେ ।
ରାଜାଗଣ ଦେଖିଣ ହେଲେ ତୋଷମନ
ବୋଇଲେ ଶ୍ରୀରାମଚନ୍ଦ୍ର ଆମ୍ଭଠାରୁ ଶୁଣ ।
ତୁମ୍ଭର ଘରଣୀ ରାବଣ ଆଣିଥିଲା
ଚଉଦମାସ କାଳ ଯେ ବନ୍ଧରେ ରଖିଲା ।
ଅଷସ୍ତ ରାବଣକୁ କଲ ତୁମ୍ଭେ ନାଶ
ତୁମ୍ଭଠାରେ ତିନିପୁର ଦେବତା ସନ୍ତୋଷ ।
ତିନିପୁର ଋଷି ଯେ ଅନନ୍ତ ସର୍ବଜ୍ଞ
ସେମାନେବୋଲନ୍ତି ଶ୍ରୀରାମଅନନ୍ତଜଉଯୋଗ୍ୟ
ନାଗ ଦେବତା ଈଶ୍ୱର ଦେବରାଜା ଜାଣ
ପିତୃ ଦେବତା ତୁମ୍ଭର କୁଳ ଉଦ୍ଧାରଣ ।
କପି ରାଜାମାନେ ନର ଯେ ବାନର
ଏମାନେ ଜାଣନ୍ତି ତୁମ୍ଭେ ଅଟ ହେ ଚକ୍ରଧର
ନଲ୍ଲ ଯାଇଁବାର ସେ ପାଇଲେ ସଙ୍କେତ
ଚେଣୁକରି ସମସ୍ତେ ଜାଣନ୍ତି ଜଗନ୍ନାଥ ।
ତୁମ୍ଭେ ତ ବାସୁଦେବ ଆମ୍ଭର କୁଳେ ଜାତ
ତୁମ୍ଭର ଉପର ବଂଶେ ଭଗିରଥି ସେ ତ ।
ସପ୍ତସାଗର ଯେ ସଗର ନୃପଙ୍କ ବଳ
ଭଗିରଥି ଗଙ୍ଗା ଆଣି ସଗର ପୁତ୍ରଙ୍କୁ ଉଦ୍ଧରିଲା
ମାନ୍ଧାତା ପୁଣ ତ ସଂସାରେ ଅଟେ ସାର
ଶିବ ରାଜା ସ୍ୱର୍ଗ ମଣ୍ଡ ଜିଣିଲେ ଇନ୍ଦ୍ରପୁର ।
ହରିଚନ୍ଦନ ରାଜା କଥା କହିଲେ ନ ସରଇ
ଦଶରଥ ଯମକୁ ଜିଣିଲେ କେହବନ୍ତି ।
ତୁମ୍ଭେ ତ କୁଳଦୀପ ହେଲ ରାଜାକୁଳ
ଆମ୍ଭମାନଙ୍କର ଜୟ ତୁମ୍ଭ ସକାଶରେ
ନଷ୍ଟଙ୍କ ହୋଇଣ ଲଙ୍କାପଡରୁ ଯିବା
ସମସ୍ତେ ବୁଣ୍ଡିହୋଇ ଅଛନ୍ତି ଦେଖ ଅବା ।
ଏହାଙ୍କ ଆଗେ ଜାନକୀ ଦେବେ ଯେ ପରୀକ୍ଷା
ସମସ୍ତଙ୍କ ମନରୁ ସନ୍ଦେହ ହେବ ରକ୍ଷା ।
ଆମ୍ଭେମାନେ ଶୁଣିଅଛୁ ତୁମ୍ଭ ଜାନକୀ ଗୁଣ
ଅଗ୍ନିରେ ପଶିଣ ସେ କରନ୍ତି ସ୍ନାହାନ ।
ଏବେ ଅଗ୍ନିରେ ଥରେ ପଶନ୍ତୁ ତୁମ୍ଭ ନାରୀ
ଆମ୍ଭମାନଙ୍କ ମନରୁ ଯାଉ ଚିନ୍ତାସର ।
କୌଣସି କାଳେ ତୁମ୍ଭକୁଳେ ନଲାଗେ କଳଙ୍କ
ଏତେବୋଲି ବୋଇଲେ ରାଜାଏ ସମସ୍ତ ।

ଶୁଣିକରି ସନ୍ତୋଷ ମନ ଶ୍ରୀରାମ ହେଲେ
ମୁହିଁ ନାରାୟଣ ମନରେ ବିଚାରିଲେ ।
ଏକଥା ନକଲେ ତ ନୋହିବ କିଛି କାର୍ଯ୍ୟ
ତିନିପୁର ଜାଣିବେ ଜାନକୀ କମଳାକ୍ଷ ।
ଜାନକୀର ଦୋଷ ଗୁଣ ଏଠାରୁ ଯିବ ନାଶ
ତିନିପୁରରେ ସୀତା ପାଇବେ ବଡ଼ଯଶ ।
ଉରିବେ ଦେବଗଣ ନାଗବଳ ପୁଣି
ଅସୁର ନର ବାନରେ ହେଁ ଥିବେ ଜାଣି ।
ଋଷିଗଣମାନେ ତୋତେ କରିବେ ଭାବନା
ବିପ୍ରଗଣେ ସେବାକାଂକ୍ଷ ହୋଇବେ ଯେ ସିନା
ଏମନ୍ତ ବିଚାରି ରାଜା ଜାନକୀକି କହି
ତୁମ୍ଭେ ନିଷ୍କଳଙ୍କ ଯୋ ହୋଇବ ବଇଦେହୀ
ଜାନକୀ ବୋଇଲେ ଦେବ ମୋଠାରୁ ଶୁଣ
ନିଷ୍କଳଙ୍କ ଚନ୍ଦ୍ରମା ତ ମୁହିଁ ଅଟେ ପୁଣ ।
ଧର୍ମବନ୍ତ ସତ ଯେବେ ଶୁଣ ରଘୁରାଣ
ହେ ସ୍ୱାମୀ ଏବେ ତୁମ୍ଭେ ମୋର କଥା ଶୁଣ
ରାଜାଏ କହିବା କଥା ପରୀକ୍ଷା କରି ତୁହି
ଇହ ପର ଦୁଇକଥା ମନେ ତୁମ୍ଭେ ହେଜ ।
ତିନି ତ୍ରୈଲୋକ୍ୟକୁ ଯେ ଶୁଝୁଛ ଗୋସାଇଁ
ଜଳନ୍ତା ଅନଳେ ମୁଁ ହେ ପଶିବି ଧସାଇ ।
ହେ ସାନୁଜ ତୁମ୍ଭେ କେତେ ହୁତାଶନ ଜାତ
କମ୍ପା ତୁମ୍ଭେ ସମସ୍ତେ ଯେ ଅବଗୁଣ ଧର ।
ରାଜାଗଣ ନର ଯେ ବାନର ପ୍ରତେ ଯିବେ
ଦେବତା ଋଷିକୁଳ ପିତୃ ତୋଷ ହେବେ ।
ନାଗଦେବ ଶିବଦେବ ବ୍ରହ୍ମଦେବ ପୁଣ
ଦୈତ୍ୟଗଣ ଦେଖନ୍ତୁ ମୋ ପତିବ୍ରତା ପଣ ।
କମ୍ପାଇଁ ଅଳସ ତୁମ୍ଭେ କର ହେ ସାନୁଜ
ଅଗ୍ନିକି ଲଗାଅ ତୁମ୍ଭେ ପଶିବି ମୁଁ ବେଗ ।
ଏତେକହି ଶ୍ରୀରାମ ମୁଖକୁ ଚାହିଁ ପୁଣ
ସମସ୍ତେ ତ ଅଛ ଚାହିଁ ମୋ ସାନୁଜ ଲକ୍ଷ୍ମଣ
କେତେ ଦୁଃଖ ପାଇଲ ଆମ୍ଭର ପାଇଁ ସେହୁ
ଏବେ ତ ଦେଖୁନାହିଁ ଚାହିଁ ଗଲ ସେହୁ ।
ତାହା ଶୁଣି ଶ୍ରୀରାମ କହନ୍ତି ବଚନ
ପାତାଳପୁର ଯାଇଛି ସାନୁଜ ଲକ୍ଷ୍ମଣ ।
ବାସୁକୀରାଜା ଅଇଲେ ଏ ସଭା ମଧ୍ୟର
ସେହୁ ଧରିଅଛି ଗୋ ବସୁନ୍ଧରା ଭାର ।

ଏତେ କହି ଶ୍ରୀରାମ ଶତ୍ରୁଘନକୁ ଚାହିଁ
ଲଗାଅ ଅନଳବୋଲି ଶ୍ରୀରାମ ଆଜ୍ଞାଦେଇ ।
ରଘୁନାଥ କହିବାରୁ ଶତ୍ରୁଘନ ପୁଣ
କେଉଁଠାରେ ଅଗ୍ନି ମୁଁ ଜାଳିବି ପାଇଣ ।
ଶ୍ରୀରାମ ବୋଇଲେ ସୁରସଭାର ମଧ୍ୟରେ
ଅଗ୍ନି ଲଗାଇବ ଯେ ଦେଖିବେ ସର୍ବେ ଭଲେ
ଶୁଣିଣ ସେ ଶତ୍ରୁଘନ ଆଣି ତପସ୍ୱିଦେଲ
ଚନ୍ଦନ ଅଗରୁ କାଠ ବନରୁ ଆଣିଲ ।
ସୁରସଭା ମଧ୍ୟରେ ଅଗ୍ନି ସଂଯୋଗ କଲେନେଇ
ଏଥିଅନନ୍ତରେ ତୁମ୍ଭେ ଶୁଣ ଗୋ ବୁଦ୍ଧମୂର୍ତ୍ତି ।
ସୀତାଅଗ୍ନିରେପଶିବେବୋଲିଲଙ୍କାରେଚହଳ
ଲଙ୍କାର ନର ନାରୀ ଧାଇଁଲେ ସକଳ ।
ପୁଷ୍ପକ ବିମାନ ଯେ ଚଢ଼ିଣ ମନ୍ଦୋଦରୀ
ସକଳ ସପତ୍ନୀ ଭଳିରେ ବସିକରି ।
ବିଭୀଷଣ ଘୃତଭାଣ୍ଡ ଆଣାଇଲେ ତଥି
ଜଳନ୍ତା ହୁତାଶନରେ ନେଇଣ ଢାଳନ୍ତି ।
ହାହାକାର ହୋଇଣ କରଇ ବଦନ
ତପନ୍ତିର ପାଏ ପୀଡ଼ା ପାଇଲେ ସଜନ ।
ଦେଖିକରି ଜାନକୀ ପରମ ତୋଷ ତନୁ
ପୂର୍ବ ମୁଖ ହୋଇ ବୋଲେ ଜନକ ଦୁହିତ ।
ଶ୍ରୀରାମ ବିନୁ ଯେବେ ଆନେ ମୋ ମନ ଅଛି
ହେ ହୁତାଶନ ଦେବତାପବାଅମୋତେଧ୍ୱଂସି
ଏମନେକ ବଚନ ଯେ କହନ୍ତି ବଇଦେହୀ
ଦେବତାମାନେ ତୁମ୍ଭେ ସଭାରେ ଦେଖ ରହି
ନାଗଦେବ ସ୍ୱର୍ଗଦେବ ପିତୃଦେବ ପୁଣ
ଦଶ ଦିଗପାଳ ଯେ ବିଧାତା ଦେବ ଜାଣ ।
ଦେବଋଷି ବ୍ରହ୍ମଋଷି ଶିବଋଷି ଦେଖ
ନାଗଋଷି ଶୂଦ୍ରଋଷି ରାଜଋଷି ଅଛ ।
ବ୍ରହ୍ମଋଷି କଳ୍ପଋଷି ଅଛ ଆହେ ପୁଣ
ସଭାରେ ଲକ୍ଷେ ନୃପତି ବସିଅଛ ଜାଣ ।
ନର ବାନର ଋଷି ରାଜା ଯେ ସମସ୍ତେ
ମୋର ସତୀପଣ ତୁମ୍ଭେ ଦେଖିବ ନେହାତେ
ଦେବତାଙ୍କ ଦୁଃଖ ଦେଖି ମୁଁ ଲଙ୍କାକୁ ଅଇଲି
କୋପାନଳ ହୋଇ ଦୈତ୍ୟକୁଳ ବିନାଶିଲି ।
ଏବେ ମୋର ନିଜ ସ୍ୱାମୀ ସଙ୍ଗରେ ମିଳିଲି
ତୁମ୍ଭେମାନେ ପ୍ରତେପିବାକୁ ପରୀକ୍ଷା ମୁଁ ଦେଲି

ଆଜ ତେବେ କହୁଛନ୍ତି କରିବ ମୁଁ ଭସ୍ମ
ଏତେବୋଲି ସମସ୍ତଙ୍କୁ କହୁଛନ୍ତି ବିଶେଷ ।
ଏମନ୍ତ ବଚନ କହି ଅଗ୍ନିରେ ବେଗେ ପଶି
ଯେସନେ ସ୍ନାନ ବେଳରେ ଜଳରେ ଯାଇ ପଶି
ଦେଖିଣ ସକଳ ଲୋକେ ହାହାକାର କଲେ
ଦେବତା ଅମ୍ବରୁ ପୁଷ୍ପବୃଷ୍ଟି ଏ ବର୍ଷିଲେ ।
ନର ଯେ ବାନରେ ଦେଖି ଚାଟଙ୍କା ହୋଇଲେ
ହାହାକାର ଶବଦ ଯେ ସର୍ବେ ତହିଁ କଲେ ।
ଲଙ୍କାର ଯେ ନାରୀମାନେ ସେଠାରେ ବସନ୍ତି
କମ୍ପାଇ ଦେହକୁ ଏତେ ଧର୍ମ କରି ।
ସତ୍ୟବନ୍ତ ଲୋକଙ୍କୁ ଯେ ଜିଣାଇଲେ ଧର୍ମ
ମହାମଣ୍ଡଳ ଅଗ୍ନିରେ ପୂଜାଇଲେ ଶ୍ରୀରାମ ।
ସମସ୍ତ ଲୋକଙ୍କର ଭାଳେଣି ଅପାର
ଡାକନ୍ତି ଊର୍ଦ୍ଧ୍ୱେ ଅତ୍ୟନ୍ତ ଦୁଃଖର ।
ବିକଟା ବୋଇଲେ ଶୁଣେ ଅପ୍ସରୁଣୀ ଯେତେ
ଆତ୍ମପ୍ରାଣେ ମୂର୍ଚ୍ଛି ଜଗିଅଛଇଁ ପୁଣି ।
କମାଇଁ ପ୍ରାଣମୋତେ ନ ହେଲେ ରଘୁନାଥେ
କୁଷ୍ମାଣ୍ଡ ସର୍ପଜାତ ହୋଇଥାନ୍ତେ ମୋତେ
ଆମ୍ଭଙ୍କୁ ପ୍ରମାଣ କମା ନ କରନ୍ତେ ପୁଣ
ଜାନକୀଙ୍କ ଏତେ କଷ୍ଟ କମା ଦେଲେ ପୁଣ ।
ରାକ୍ଷସୁଣୀ ମନ୍ଦୋଦରୀ ରାଣୀଗଣମାନେ
ନୟନରେ ଦେଖିଣ ଡରନ୍ତି ମନେ ମନେ ।
ବସନ୍ତି ଶ୍ରୀରାମ କମା ନ କଲେ ଉପ୍ରୋଧ
ଏ କମା ଅସୁରବଳ ନ କରନ୍ତେ ବଧ ।
ଲଙ୍କାର ରାକ୍ଷସୁଣୀ ରୋଦନ ସେଠି କଲେ
ଶ୍ରୀରାମଙ୍କୁ ବଇରାଗ ମନରେ ଧଇଲେ ।
ଏତେ ନିର୍ଦ୍ଦୟାବନ୍ତ ହେ ଦଶରଥ ସୁତ
ଜାନକୀ ପରା ସତୀଙ୍କ କଲ ହେ ଏମନ୍ତ ।
ଋକ୍ଷ କପି ବାନର କାନ୍ଦନ୍ତି ତହିଁ ପୁଣ
ଏତୋରଣ କଲୁ ଆମ୍ଭେ ହେଲୁଁ ଅକାରଣ
କମାଇଁ ଦାଶରଥି କଲେ ଏ ପାପ ବୁଦ୍ଧି
ହୁତାଶନେ ପୁରାଇଲ ଯୁବତୀରତ୍ନ ବଧି ।
ଅଷ୍ଟସେନା ପ୍ରଚଣ୍ଡ ଯୂଥପତି ଆଦ
ବସନ କୁଁ ନ ପିନ୍ଧନ୍ତି କେଶକୁଁ ନ ବାନ୍ଧି ।
ସୁଗ୍ରୀବର ବିଭୀଷଣ ଅଙ୍ଗଦ ହନୁମନ୍ତ
ନଳ ନୀଳ ସୁଷେଣ ତାରାକ୍ଷ ଜାମ୍ବୋବନ୍ତ ।
ଉତ୍ତରେଣ ଶ୍ରୀରାମଙ୍କୁ ନ ବୋଲନ୍ତି କିଛୁ
ସମସ୍ତଙ୍କ ହୃଦୟ ବିକଳ ହୋଇଅଛୁ ।
ସମସ୍ତଙ୍କ ବିକଳ ଦେଖି ଶ୍ରୀରାମ ବସିଲେ
ଜାନକୀ ମୋହର ଅଗ୍ନିରେ ଲୁଚକଣି ଭଲେ
ଏତେ ଚିନ୍ତନ୍ତି ଶ୍ରୀରାମ ହୃଦରେ ବିକଳ
ବୋଲନ୍ତି ସତା ତୁମ୍ଭେ ନ କର ସୈନ୍ୟଦଳ
ମୋ କର୍ମେ ଥିଲେ ସତୀ ମୋତେ ଭେଟହେବ
ଉଛୁ ଯବ ଦୋଷଥିବ ଅଗ୍ନିରେ ନାଶିବ ।
ଏତେବୋଲି ଉଠିଲେ କୋଦଣ୍ଡ ଧନୁଧାରୀ
ଅଗ୍ନିର ଭିତରକୁ ଚାହିଁଲେ ରାବଣାରି ।
ଜଳନ୍ତର ପାଏ ନ ପାରନ୍ତି ଦୃଷ୍ଟି ଦେଇ
କ୍ରୂରପାଶ୍ୱ ଲକ୍ଷଣ ଯେ ଲୁହାନ୍ତି ଚହୁଁପାଇଁ ।
ଏସନେକ ସମସ୍ତେ ନଳନୀ ପୁର ମଧ୍ୟେ
ଫୁଲ୍ଲତେଜ ଦିଶିଲେ ଦେଖନ୍ତି ରାମଭାଜେ ।
ଅଗ୍ନିର ଭିତରୁ ସେ ହୋଇଲେ ବାହାର
ଅଗ୍ନିଦେବତା ପ୍ରାୟେ ଦିଶଇ ଦେହ ତାର ।
ସୀତାଙ୍କୁ ଘେନିଣ ଯେ କରଯୋଡ଼ି କହି
ଅଦ୍ୟାପି ନିଷ୍କଳଙ୍କ ଅଟନ୍ତି ବଇଦେହୀ ।
ଏମନ୍ତ ସମସ୍ତେ ଦେଖିଲେ ରାଜାଗଣମାନେ
ଋକ୍ଷକପି ବାନର ଦେଖନ୍ତି ସାବଧାନେ ।
ଦେବତା ଅମ୍ବରୁ ଯେ ନାରଦଙ୍କ ଜାଣ
ବ୍ରହ୍ମା ଶିବ ପିତୃଲୋକେ ଦେଖନ୍ତି ନିରୀକ୍ଷଣ ।
ହଟାର ବଜାର ଯେ ଦେଖଣାହାର ଲୋକ
ଲଙ୍କାର ନରନାରୀ ଦେଖନ୍ତି ପ୍ରତ୍ୟକ୍ଷ ।
ହୁତାଶନ ଭିତରୁ ବାହାର ହେଲା ପୁଣ
ସମସ୍ତେ ଦେଖନ୍ତି ନିଶ୍ଚଳ ହୋଇଣ ।
ଅଗ୍ନିଦେବତା ଅଗ୍ନି ମଧ୍ୟରେ ଥାଇ କହି
ହେ ଶ୍ରୀରାମ ଜାନକୀଙ୍କି ବେଗ ନିଅ ତୁହି ।
ମୁହିଁ ଅଗ୍ନିଦେବତା ସମର୍ପୁଅଛୁ ତୋତେ
ମାନବ ଜନ୍ମରେ ଦେବ ନ ଚହ୍ନୁ ତୁମୋତେ
ମୁଁ ତୋତେ ଜାଣଇ ତୁ ପରମ ପୁରୁଷ
ଅନନ୍ତ ମୂରତି ତୁମ୍ଭେ ଅଟ ହେ ଜଗନ୍ନିବାସ ।
ଏସୀତା ଅଟନ୍ତି ତୋର ସାକ୍ଷାତେ କମଳିଣୀ
ନିଷ୍କଳଙ୍କ ପ୍ରତିମା ଯେ ତୋହର ପାଟରାଣୀ
ଦେବ ସ୍ତ୍ରୀମାନେ ଏମାନେ ଅଟନ୍ତି ପରିବାରୀ
ପରମ ବୈଷ୍ଣବୀ ଅଟେ ଜନକ କୁମାରୀ ।

ଏହାଙ୍କୁ ସଂଶୟ ତୁମ୍ଭେ ନ କର ରାଘବ
ଅଗ୍ନି ଦେବତା ଏହାଙ୍କୁ କେମନ୍ତେ ଛୁଇଁବ ।
ସୀତାର ତେଜ ଦେଖ ଅଗ୍ନି ତେଜରୁ ବଳ
ମୋତେ ଜାତକଲେ ସିନା ତୋହର ଯେନାସ
ଏତୁ ସିଂହବାହିନୀ ଯେ କମଳ ଆସନ
ଛପନ କୋଟି ଜୀବଙ୍କ ପ୍ରତିପାଳୀ ପୁଣି ।
ମୁଁ ତୁମ୍ଭଙ୍କୁ କହିଲି ଏହାର ପାପ ନାହିଁ
ନିଅ ଜାନକୀ ତୋର ପରମ ତୋଷ ହୋଇ
ଶୁଣିଣ ରଘୁନାଥ ମନରେ ସନ୍ତୋଷ
ଦେବ ଅସୁର ନର ଋଷି ଦେଖିଣ ହରଷ ।
ସମସ୍ତଙ୍କ ହୃଦୟ ଯେ ହୋଇଛି ବିକଳ
ଅନ୍ତର୍ଯ୍ୟାମୀନାଥ ଯେ ଜାଣିଲେ ରଘୁବୀର ।
ସମସ୍ତଙ୍କ ବିକଳ ଦେଖି ଶ୍ରୀରାମ ଭର୍ତ୍ସିଲେ
ଆସନ୍ତୁ ବଇଦେହୀ ବୋଲି ଶ୍ରୀରାମ ବୋଇଲେ
ସୁମନଙ୍କ ମନରୁ ବିଷାଦ ଗଲା ଭଲେ
ଶୁଣିଣ ଅଗ୍ନି ଦେବତା ଉଲ୍ଲାସ ମେଲ୍ଲାଇଲେ ।
ସୀତାଙ୍କୁ ସମର୍ପିଣ ଅନ୍ତର୍ଦ୍ଧାନ ହେଲେ
ଶୂନ୍ୟମାର୍ଗେ ଯାଇଣ ସଭାରେ ବସିଲେ ।
ଦେବତାଙ୍କ ପାଶରେ ସେ ଅଗ୍ନି ବସେ ପୁଣ
ସାଧୁ ସାଧୁ ବୋଇଲେ ଦେଖଣାହାରି ଜନ ।
ଦେବସଭା ଋଷି ସଭା ରାଜସଭା ନର
ସ୍ତ୍ରୀସଭା ନରେ ଦେଖି ମନଭଲେ ସୁନ୍ଦର ।
ଅଗ୍ନିକୁଣ୍ଡରୁ ସୀତାସ୍ତ୍ରୀ ହୋଇଲେ ବାହାର
ଶୁଦ୍ଧ ଯେ ସୁବର୍ଣ୍ଣ ପ୍ରାୟ ଶରୀର ତାଙ୍କର ।
କୋଟିଏ ଚନ୍ଦ୍ରମା ପ୍ରାୟ ତେଜ ତାର ଦିଶି
ହସ୍ତ ଧରି ଶ୍ରୀରାମ ଯେ ଘେନିଗଲେ ଆସି ।
ବାମେ ଦେବ ରାମରେ ଯେସନେ ବଜେ କମଳିଣୀ
ଶ୍ରୀରାମଙ୍କୁ ଜାନକୀ ସେହିରୂପେ ପୁଣି ।
ଦେଖିଣ ଦେବଗଣ ପୁଷ୍ପ ବୃଷ୍ଟି କଲେ
ବ୍ରହ୍ମା ଶିବ ଦେବତା ଦେଖି ତୋଷ ହେଲେ
କିନ୍ନରୀ ବିଦ୍ୟାଧରୀ ଅପସରୀମାନେ
ସମସ୍ତେ ନୃତ୍ୟ ଆସି କଲେ ସନ୍ନିଧାନେ ।
ସୁଧର୍ମା ସଭାରେ ଯେ ଦେବଗଣ ଯେତେ
ତାଙ୍କର ନାମ ଏବେ ଶୁଣ ଗୋ ସୁକତେ ।
ଚନ୍ଦ୍ର ଇନ୍ଦ୍ର କୁବେର ବ୍ରହ୍ମା ନଇଋତ
ଅଗ୍ନି ପବନ ଦେବତା ଗନ୍ଧର୍ବ ବୈଶ୍ୟାନର ତ

ସୂର୍ଯ୍ୟ ଅଶ୍ୱିଦେବ ଗୁରୁ ବୃହସ୍ପତି
ଅଙ୍ଗିରା ସନାତନ ସନକାଦି ପୌଲସ୍ତି ।
କଶ୍ୟପ ମରୁତ ଯେ ନାରଦ ଯୋଗୀଶ୍ୱର
ଅପସରୀ ବିଦ୍ୟାଧରୀ ଗନ୍ଧର୍ବ କିନ୍ନର ।
ଚିତ୍ରରଥ ଗନ୍ଧର୍ବ ପନଗ ଜମ୍ବୁସେନ
ଏମାନେ ଅଛନ୍ତି ସର୍ବେ ସଭାପରେ ପୁଣ ।
ଅଶ୍ୱିନୀ କୁମାର ଯେ ବାରୁ ବିଶ୍ୱଦେବା
ଦଶଦିଗପାଳ ଯେ ସନ୍ନିତେ ମଘବା ।
ସପ୍ତ ପତିବ୍ରତା ସେହୁ ଦେଖିଲେ ସର୍ବେ ପୁଣ
ଐରାବତ ଗଜ ଯେ ଉଚ୍ଚୈଃଶ୍ରବା ଯାନ ।
ସକଳ ଯାନମାନ ସଭାର ଭଳେଣ
ଶୁଣ ଗୋ ଗଉରୀ ଏବେ ମନଦେଇ ପୁଣ ।
କଳ୍ପତରୁ ଅଇଲେ ଯେ ମୂର୍ତ୍ତିମନ୍ତ ହୋଇ
ଅରୁଣ ବରୁଣ ଯେ ଗଙ୍ଗାଦେବୀ ତ ବୋଲାଇ ।
ଦେବବର ସଭାରୁ ଯେ ଓହ୍ଲାଇ ବେଗେଗଲେ
ଶ୍ରୀରାମ ଆଗରେ ଯେ ଯାଇଣ ମିଳିଲେ ।
ଦେବବର ବୋଇଲେ ଶୁଣ ରାମ ଈଶ
ଏକଥାରେ ଅଭିମାନ ନ କର ରଘୁଶିଷ୍ୟ ।
ମୂର୍ତ୍ତି ତ ବ୍ରହ୍ମ ତୁମ୍ଭେ ପରଂବ୍ରହ୍ମ ମହାତ୍ମା
ଯାବତ ଜନ୍ତୁଙ୍କର ହୃଦରେ ଅନ୍ତର୍ଯ୍ୟାମୀ ।
ବଇକୁଣ୍ଠବାସୀ ତୁମ୍ଭେ ଅଟ ହେ ନାରାୟଣ
ତାସ ସହସ୍ର ନାଥ ହେ ବଇତାର ପୁଣ ।
ତାଙ୍କଠାରୁ ଶୁଣିଣ ବୋଲନ୍ତି ରାମଚନ୍ଦ୍ର
ମୋତେ କମା ଦେବବର ଭକ୍ତଅଛ ପାଦ ।
ଦଶରଥ ପୁଅ ମୁଁ ରଘୁବଂଶରେ ଜାତ
ମାନବ ଭଉତଲ୍ଲା ଅଟନ୍ତି ମୋର ମାତ ।
ଏହା ମୂର୍ତ୍ତି ଜାଣଇ ନ ଜାଣଇ ଆନ
କସ କସ କଥା ମୋତେ କହୁଛ ସୁରଗଣ ।
ମୋର ଜାତ ସ୍ୱରୂପ ଅଟଇ ହୋ କସ
କହ କହ ବ୍ରହ୍ମା ମୂର୍ତ୍ତି କେବଣ ପୁରୁଷ ।
କେବଣ ଦେବଙ୍କ ମୁଁ କସ ଯେ କହଇ
ତୁମ୍ଭେ ଜଗତ ପିତା ତୁମ୍ଭଙ୍କୁ ପଚ୍ଚାରଇ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଅଟ ନାରାୟଣ
ଶଙ୍ଖ ଚକ୍ରଧାରୀ ତୁମ୍ଭେ କମଳା ରମଣ ।
ନାରାୟଣ ପୁରୁଷ ତୁମ୍ଭେ ହେ ବିଶ୍ୱନାଥ
ତୁମ୍ଭେ ତ ମହାପ୍ରଭୁ ପରମ ପୁରୁଷ ।

ଜଳ ସ୍ଥଳ ଅନଳ ପବନ ତୁ ଯେ ମହୀ
ସକଳ ଭୂତ ଭବିଷ୍ୟ ଅଟ ତୁମ୍ଭେ ତହିଁ ।
ଅକ୍ଷୟ ଅପକ୍ଷ ତେଜଁ ତୋହଠାରୁ ଆନ
ଆନର ବଳେ ନାଶ ନ ଯାଏ ଦଶାନନ ।
ଦେବଙ୍କର ଛନ୍ଦରେ ମାନବ ରୂପ ଧରି
ତ୍ରୈଲୋକ୍ୟ କଣ୍ଟକୁ ତୁ ନାଶିଲେ ନାଶକରି
ତୁମ୍ଭେ ତ ବାସୁଦେବ ପରମ ପୁରୁଷ ଉତ୍ତମ
ଚଉଦ ଭୁବନ ପ୍ରାଣୀଙ୍କର ସଞ୍ଚମନ ।
ତୁମ୍ଭେ ଅଟ ଯୋଗ ଭୋଗ ତୁମ୍ଭେ ସକଳ ଲୋକ
ତୁମ୍ଭେ ତ ପରମ ବ୍ରହ୍ମ ମହତ୍ତ୍ୱ ବିବେକ ।
ତୁମ୍ଭେ ଶାନ୍ତମୂର୍ତ୍ତି କ୍ଷମା ଯେ ଅକ୍ଷମା
ଅକ୍ଷୟ ଅବ୍ୟୟ ନାଥ ତୁମ୍ଭେ ମାୟା ସୀମା ।
ତୁମ୍ଭେ ବାସୁଦେବ ମୂର୍ତ୍ତି ଶରଣ ରକ୍ଷଣ
ଶ୍ରୀମଧୁସୂଦନ ରକ୍ଷାକର ହେ ନାରାୟଣ ।
ଏତେ ବୋଲି ବ୍ରହ୍ମା ଯେ ଯୋଡ଼ିଲେ ବେନି କର
ରାମଙ୍କୁ ଅନେକ ସ୍ତୁତି କଲେ ଦେବବର ।
ଅକାର ଓଁକାର ତୁମ୍ଭେ ଜଗତ ପ୍ରଧାନ
ତୁମ୍ଭେ ଦଶଦଶ ରକ୍ଷାକର ଦେବ ପୂର୍ଣ୍ଣ ।
ଅଭାବ ପ୍ରଭାବ ତୁମ୍ଭେ ସକଳ ଶରୀର
ଭୟ ଅଭୟ ତୁମ୍ଭେ ଯେ ଅବ୍ୟୟ ଯୋଗେଶ୍ୱର
ପଦ୍ମପୁରୁଷ ଅଟ ତୁମ୍ଭେ ଜଗତ ଧାରଣ
ତୁମ୍ଭ ସେ ସକଳ ଜୀବ କରିଛ ଭିଆଣ ।
ତୋର ପାଦତଳରେ ଯେ ସରସ୍ୱତୀ ବସି
ବାସୁଦେବ ଦେବତା ତୋ ଲୋମରୁ ପ୍ରକାଶି
ଚନ୍ଦ୍ର ସୂର୍ଯ୍ୟ ବେନି ତୋର ଅଟନ୍ତି ନୟନ
ତୁମ୍ଭ ସଂସାର ଯେ ରଖୁ ଜଗତ ଜୀବନ ।
ତୁମ୍ଭେ ହେଉ ମତ ତୁମ୍ଭେ ସମସ୍ତ ସଂସାର
ଧଇର୍ଯ୍ୟରେ ପୃଥ୍ୱୀ ତୁମ୍ଭେ ଧଇଲ ଉଦ୍ଧାର ।
ତେଜରୁ ଅଗ୍ନିକ ପୁଣି ଜଳ ତୁମ୍ଭେ ଜାତ
କ୍ଷୀରସ୍ର ମନ୍ଥନ ଶିକ୍ଷ ଚନ୍ଦ୍ରମା ଉଦ୍ଭବ ।
ତ୍ରୈଲୋକ୍ୟଯାକ ତାର ଗର୍ଭରେ ଅଛୁ ପୂରି
ଦଇତ ନିସୂଦନ ତୁମ୍ଭେ ହେ ଚକ୍ରଧାରୀ ।
ଅସୁରଙ୍କୁ ମାରି ଦେବ ରାଜାଙ୍କୁ ସ୍ଥିର କଲୁ
ରାବଣ ନାଶିବାକୁ ମାନବେ ଜାତ ହେଲୁ ।
ଏ ସୀତା ଅଟନ୍ତି ସାକ୍ଷାତରେ କମଳା
ଏହାଙ୍କ ଅବଗୁଣ ନ ଧର ରଘୁମଣି ।

ଶୁଣିଣ ଶ୍ରୀରାମ ଯେ ବୋଲନ୍ତି ଯଦ୍ୟପତ
ଯାହା ତୁମ୍ଭେ କହିଲ ନରୁଚେ ମୋର ମତ ।
ତୁମ୍ଭେ ତ ଦେବତା ଏ ଆମେ ତ ମନୁଷ୍ୟ ପୁଣି
ଶାନ୍ତ ହୋଇବ କେହ୍ନେ ତୁମର କଥା ଶୁଣି ।
ଯେବେ ହେବ ମୂର୍ତ୍ତି ଭଜନଯାରୁ ପାର
ତଥାପି ନ ଛାଡ଼ିବ କୁଳର ଆଚାର ।
ତୁମେ ତ ଦେବତା ଏ ସ୍ୱର୍ଗପୁରେ ଥାଅ
ଅସୁରଙ୍କୁ ଡରିଲେ ତାଙ୍କୁ ଭୟ ପାଅ ।
ଦୈତ୍ୟମାନେ ତୁମଙ୍କୁ ଖଟାନ୍ତି ପାଦତଳେ
ତେବେ ତୁମେ ସୁମରଣା କରହେ ଚକ୍ରଧରେ
ଦୁଇମାସ ସାତଦିନ ଏଥିରେ ହେଲା ରଣ
ସ୍ୱପନରେ ନ ଦେଖିଲି ତୁମଙ୍କୁ ମୁଁ ପୁଣ ।
ସକଳ ରାଜା ପରଜା ଋଷି ଯେ ବାନର
ଋଷିଗଣ ନାଗବଳ ପିତୃ ଯେ ମୋହର ।
ସକଳ ଦେବତାଙ୍କୁ ଆଣିଲି ମୁଁ ଯେ ବରି
ସ୍ୱର୍ଗସଭା ଏଥିରେ ଭିଆଣ ମୁଁ କରି ।
ସମସ୍ତେ ବୋଇଲେ ସୀତା ଅଗ୍ନିପରୀକ୍ଷା କରୁ
ମନରୁ ଆମର ଯେ ଧୋକାମାନ ସରୁ ।
ତାର ପରୀକ୍ଷା ଦେଖି ମୋତେ କହୁଛ ବଡ଼
ସବୁଦିନେ ଦେବତା ଅସାଧ୍ୟ ପଣ ଗାଢ଼ ।
ଏମନ୍ତ ବଚନ ମହୁଁ କହିଲେ ଚକ୍ରପାଣି
ହୃଦବଧ ହେଲେ ସକଳ ସୁରଗଣେ ପୁଣି ।
ବଧ ତା ବୋଇଲେ ଶ୍ରୀରାମଙ୍କମାଇଁ ଏହାକହୁ
ତୁମେ ତ ଅନନ୍ତ କୋଟି ବ୍ରହ୍ମାଣ୍ଡେ ଅଟ ପ୍ରଭୁ
ତୋହର ସତଷଠି ପୁରୁଷ ପିତୃଗଣ
ବସିଛନ୍ତି ସମସ୍ତେ କର ହେ ଦରଶନ ।
ଶ୍ରୀରାମ ବୋଇଲେ ମୁଁ ଦର୍ଶନ ତାଙ୍କୁ କଲି
ସେ ମୋତେ କହିବାରୁ ଜାନକୀ ଅଣାଇଲି ।
ସଭାର ଉପରୁ ଯେ ଦଶରଥ ଆଣି
ଶ୍ରୀରାମଙ୍କ ସମ୍ମୁଖେ ସେ ଉଭାକଲେ ପୁଣି ।
ଆନନ୍ଦ ହେଲେ ଶ୍ରୀରାମ ପିତାଙ୍କ ମୁଖ ଚାହିଁ
ଛନଭିଲ ଚରଣେ ଗଡ଼ିଥାଲି ଶୋଇ ।
ଜାନକୀ କୁଳବଧୂ ଓଳଗେ ସେ ଯେ ପୁଣ
ଉଠ ଉଠ ବୋଲିଣ ସେ ବୋଲନ୍ତି ବଚନ ।
ହସ୍ତ ଧରି ଦଶରଥ ତୋଳିଲେ ସମସ୍ତ
ଆନନ୍ଦେ ଅଶ୍ରୁଜଳ ବହେ ବେନି ନେତ୍ର ।

ତିନ ପୁତ୍ରଙ୍କୁ କୋଳେଧରି ବୋଲେକ ତୁମ୍ଭନ
କୁଳବଧୂଙ୍କୁ ଶୁଶ୍ରୁଷା କରନ୍ତି ରାଜନ ।
ଲୀଳାବତୀ ରାଣୀକ ଯେ ହସ୍ତଧରି ପୁଣ
ଅନେକ ଶୁଶ୍ରୁଷା କହିଲେ ସଜନ ।
ମୋହର କୁଳଧର୍ମ ରଖିଲୁ ପ୍ରାଣସଖୀ
ଚଉଦ ବର୍ଷହେଲ ଅଯୋଧ୍ୟା ରଖି ତୁହି ।
ଏବେ ଦେବକାର୍ଯ୍ୟ ତୁହି ସେ ପୁଣ କଲୁ
ଶତ୍ରୁଘନଙ୍କୁ ଘେନଣ ଶତମୁଖାକୁ ମାରିଲୁ ।
ଶୁଣିଣ ଲୀଳାବତୀ ହରଷ ମନର
କରଯୋଡ଼ି କହୁଛନ୍ତି ସ୍ୱାମୀଙ୍କ ଆଗର ।
ମୋତେ ସଙ୍ଗରେ ନିଅ ମୁଁ କହୁଛି ବସ୍ତୁମି
ଦଶରଥ କହେ କହ ତୁ ଶ୍ରୀରାମଙ୍କୁ ପୁଣି ।
ଶ୍ରୀରାମ ଯେବେଦେବତାଙ୍କୁକହିବେନିଷ୍ଟେଜାଣ
ଆମର ସଙ୍ଗରେ ତୁମେ ଯିବ ଗୋ ସ୍ୱର୍ଗସ୍ଥାନ
ଶୁଣିକରି ଲୀଳାବତୀ ରାମଙ୍କ ମୁଖ ଚାହିଁ
ତିନ ପୁତ୍ରମାନଙ୍କୁ କହିଲେ ବୁଝାଇ ।
ବୋଇଲେ ସ୍ୱାମୀ ସଙ୍ଗରେ ଯିବି ମୁହିଁ ନିଷ୍ଟେ
ଏତେକ ସୁବସ୍ଥା ରାମ କରହେ ସୁଚେଷ୍ଟେ ।
ଶୁଣିକରି ଶ୍ରୀରାମ ଯେ ବଚନ ତାଙ୍କୁ କହି
ଚଉଦ ବରଷ ଅଯୋଧ୍ୟା ପାଳିଲୁ ପୁଣ ତୁହି
ପୁତ୍ରଙ୍କୁ ଘେନି ଅସୁର ବଧ କଲୁ ଏବେ
ତୋତେ ଦେଖି ଆନନ୍ଦ ସ୍ନେହ ମୋର ହବେ
କେମନ୍ତେ ମୋତେ ଛାଡ଼ିଯିବୁ ଗୋ ଜନନୀ
ଗଲେ ଯେବେ ସୁଖ ଗୋ ଲଭିବୁ ତୁହି ପୁଣି
ଦେବତାଙ୍କୁ କହିଲେ ପିତାଙ୍କସଙ୍ଗେଏହିଯିବେ
ଏତେବୋଲି ଶ୍ରୀରାମ ବୁଝାଇ ସବଙ୍କବେ ।
ବ୍ରହ୍ମାଙ୍କୁ ବୋଇଲେ ଶ୍ରୀରାମଚନ୍ଦ୍ର ଚାହିଁ
ପିତାଙ୍କର ସଙ୍ଗରେ ଯିବେ ମୋ ସାନ ଆଈ
ବୋଇଲେ ପିତାମହ ହେଉ ଯେ ସେକଥା
ପିତାଙ୍କ ସଙ୍ଗରେ ଏବେ ଯାଆନ୍ତୁ ତୁମ୍ଭ ମାତା
ଯେତେବେଳେ ଦଶରଥ ଯିବେ ସେ ସ୍ୱର୍ଗକୁ
ସଙ୍ଗତେ ଘେନିଯିବେ କହିଲ ତୁମ୍ଭଙ୍କୁ ।
ଏଥିଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ହରଷ ମନରେ ଦଶରଥ ନୃପଗଣ ।
ଶ୍ରୀରାମଚନ୍ଦ୍ରଙ୍କୁ ଚାହିଁ କହନ୍ତି ବଚନ
ମୋର କୁଳକୁ ଉଦ୍ଧରିଲୁ ତାବୁରେ ତୁହି ପୁଣ

ସ୍ୱର୍ଗପୁର ସମ୍ଭାବ ନ ରୁଚଇ ମୋର ମନେ
ନ ରୁଚଇ ମୋତେ କିଛି ତୋହର ବହୁନେ
ତୁମ୍ଭଙ୍କୁ ଜନ୍ମକରି ତୁମ୍ଭ ପୁଣ୍ୟରେ ତରିଲି
କୈକେୟୀ କୁମନ୍ତ୍ର ବୁଦ୍ଧିରେ ନ ଜାଣି ପଡ଼ିଲି
ସୁପୁତ୍ର ତୁମ୍ଭେ ହେବାରୁ କଲ ମୋତେ ପାର
ଧନ୍ୟ ଧନ୍ୟ ହେ ଶ୍ରୀରାମ ମହିମା ତୁମ୍ଭର ।
ରାବଣ ମାରିବାକୁ ମୋ କୁଳରେ ଜନ୍ମହେଲ
ମୋହର କାକୁସ୍ଥ ବଂଶ ଉଦ୍ଧରି ଧରିଲ ।
ତୋର ଗର୍ଭଧାରୀ ଯେ ଅଟଇ କଉଶଲ୍ୟା
ତାହାର ଜୀବନ ଏବେ ସୁଫଳ ହୋଇଲା ।
ଏବେ ତାକୁ ରଘୁନାଥ ଅଯୋଧ୍ୟାପୁର ଯା ଯା
ଫଳିଲୁ ସକଳ ଅଯୋଧ୍ୟାରେ ହୁଅ ରାଜା ।
ଦେଖ ତୁମ୍ଭ ଜନନୀଙ୍କ ଦେଖ ହେ ଦଣ୍ଡଜନ
ଏ ଲଙ୍କାଭୁବନୁ ତାକୁ ତଳ ହେ ବହନ ।
ଏଥୁ ଯାଇ ରାଜ୍ୟେ ତାକୁ କରିବଟି ଯାଗ
ଦେବଙ୍କୁ ସନ୍ତୋଷିବ ଦେଇଣ ହବିର୍ଭାଗ ।
ଜାନକୀଠାରେ କଳାଭି ନକର ରଘୁପତି
ମହାଲକ୍ଷ୍ମୀ ବୋଲି ତାଙ୍କୁ ଦେବତା ବୋଲନ୍ତି
ଏହା ଶ୍ରୀରାମ ପୁତ୍ର ତୁ ତାଇଲୁ ନିଷ୍ଟପ୍ର
ଶୁଣିଣ ଆନନ୍ଦ ହେଲେ ରାମଚନ୍ଦ୍ର ରାୟ ।
କରଯୋଡ଼ି ଶ୍ରୀରାମ ବୋଲନ୍ତି ଶୁଣ ପିତା
ଧନ୍ୟ ଅଟନ୍ତି ମୋର କଇକେୟୀ ମାତା ।
ଯେହୁ ଯେବେ ବନପେଶନ୍ତେମୋତେଘୋରବନ
ଏତେ ଋଷି ଦେବତା ମୁଁ ଦେଖନ୍ତି କେସନ ।
ତାହାଙ୍କର ପୁଣ୍ୟରୁ ମୁଁ ଦେଖିଲି ତୁମ୍ଭଙ୍କୁ
ସୁଫଳ ହୋଇଲା ସୂର୍ଯ୍ୟବଂଶ ଯେ କୁଳକୁ ।
ଶୁଣିଣ ଦଶରଥ ପୁତ୍ରଙ୍କୁ କଲେ କୋଳ
ତୁମ୍ଭେ ସ୍ୱୟଂ ସଇଁଭୃତ୍ତ ଠାକୁର ଅଟ ଭଲ
ତୁମ୍ଭେ ପ୍ରିୟ ଅପ୍ରିୟ ଅଟ ହେ ରାବଣାରି
ଶୁଣିଣ ସନ୍ତୋଷ ହେଲେ କୋଦଣ୍ଡ ଧନୁଧାରୀ
ତକ୍ଷଣ ପାଶେ ଅଛନ୍ତି ଜନକ ଦୁଲଣୀ
ଏସନକ ସମୟେ ବ୍ରହ୍ମାଦି ସୁର ମୁନ ।
ଶ୍ରୀରାମ ନାମ ଧରି ଉଚ୍ଚରେ କଲେ ବାଣୀ
ରକ୍ଷାକର ବୋଲିଣ ସମସ୍ତ ଦେବ ଭଣି ।
ପାଏ ପଡ଼ି ଶୋଇଣ ଅନେକ ସ୍ତୁତି କରି
ସନ୍ତପି ତୁମ୍ଭର ମହିମା କେହୁ କହିପାରି ।

ରାମନାମ ବେଦନ ଯେ ଅକ୍ଷର ବ୍ରହ୍ମଜ୍ଞାନ
ଯାହା ଚିନ୍ତ ବ୍ରହ୍ମମୁନ କରୁଛନ୍ତି ଧାନ ।
ସେ ରୂପ ବ୍ରହ୍ମ ଦେଖିଲୁ ଅନେକ ପୁଣ୍ୟବଳେ
ଦୋଷକୃତ ଆମ୍ଭର ଗଲା ଏତେକାଳେ ।
ଦେବତାଙ୍କ ପ୍ରଣସତ୍ୟ ଦେଖି ଦଶରଥ
ଶିରପରେ ଲଗାଇଣ ଯୋଡ଼େ ବେନି ହସ୍ତ ।
ସତଷଠି ପୁରୁଷ ସଙ୍ଗରେ ଥିଲେ ପୁଣି
ଶିରେ କରଦେଇ ସ୍ତୁତି କଲେକ ବହନ ।
ଧାଇଁଯାଇ ଶ୍ରୀରାମ ପିତୃଙ୍କୁ କୋଳକଲେ
ହେ ତାତ ଏହା କିମ୍ପା କରୁଛ ବୋଇଲେ ।
ଏହି ସମୟରେ ଉଠିଲେ ସୁରଗଣ
ଏଥୁଅନନ୍ତରେ ହେ ଅପୂର୍ବ କଥା ଶୁଣ ।
ଶ୍ରୀରାମଙ୍କୁ ସ୍ତୁତିଣ ବୋଲନ୍ତି ବଜ୍ରଧର
ହେ ରଘୁନାଥ ଏବେ ମୋତେ କୃପାକର ।
ଏଥି ଥିଲେ ତୁମ୍ଭଙ୍କୁ ପଡ଼ଇ ନଷ୍ଟେ ଧ୍ୱଂସ
ଜାନକୀ ଘେନି ଚଳ ଅଯୋଧ୍ୟା ଯେ ଦେଶ ।
ସାହେର ଭିତରେ ଯେ ଅଛନ୍ତି ଦନୁଜ
ଦଶଗ୍ରୀବ ସଙ୍ଗେ ମଲେ ତିନଗଣ୍ଡ ଦୈତ୍ୟରାଜ
ଅକ୍ଷୟ ଅସୁରମାନେ ଅଛନ୍ତି ଗଡ଼କରି
ଦଶଗ୍ରୀବ ମଲା ଶୁଣି ହେବେ ସେ ଖଣ୍ଡି ଆଳି
ବେଗେ ତୁମ୍ଭେ ଚଳଯାଅ ମୁଁ ସ୍ୱର୍ଗପୁର ଯାଇ
ତୁମ୍ଭେ ହେ ପରମ ବ୍ରହ୍ମ ଅଖିଳ ମଣ୍ଡି ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ସୁରଗଣେ
ତୁମ୍ଭ ପ୍ରସାଦେ ନାଶଗଲେ ତିନ ଯେ ରାବଣେ
ସୀତୟା ଯେ ବରଷେ ରାବଣ ଘରେ ଥିଲା
ଅପଖ୍ୟାତି ଏହାକୁ ଏହି ଜଗତେ ଉପୁଜିଲା ।
ତୁମ୍ଭେ ଜାଣିଅଛ ତାର କିଛି ନାହିଁ ଦୋଷ
ଲୋକ ନ ଜାଣନ୍ତି ଏଥିର ତଥ୍ୟ କିସ ।
ଦେବବର ବୋଇଲେ ତୁମ୍ଭର ଆଜ୍ଞା ଯାହା
ଆମ୍ଭେ ସୁରଗଣେ ହାତେ କରିବୁଟି ତାହା ।
ତୋହର ସଙ୍କଳର ଅଟୁ ଆମ୍ଭେ ଦେବବୃନ୍ଦ
ତୁମ୍ଭେ ଦେବ ମଧୁରିପୁ ମୁକୁନ୍ଦ ମାଧବ ।
କେମନ୍ତେ ସମ୍ଭବେ ଏବେ କରିବୁ ଦେବଜଙ୍ଗ
ଶୁଣିକରି ରଘୁନାଥ ହସିଲେ ଟହ ଟହ ।
ଶ୍ରୀରାମ ବୋଇଲେ ଇନ୍ଦ୍ରାଦି ଦେବେ ଶୁଣ
ଯେଉଁଦିନ ଅଯୋଧ୍ୟାରେ ବସିବି ପାଟେ ପୁଣ

ଅଯୋଧ୍ୟାରେ ରଜା ହୋନ୍ତି ସୀତାହୋନ୍ତି ରାଣୀ
ଦୋଷ କଲା ବୋଲି ମୁଁ ତଣ୍ଡିଲଇଁ ପୁଣି ।
ତହୁଁଧେ ମିଳଣ ବୋଇଲେ ଜନଙ୍କ ସେନାହିଁ
ସ୍ୱତେ କରାଇଲ ମୋର ପିଅର ମୁଖେ କହି
ମଲାଲୋକ ତୁମ୍ଭ ବୋଲେ ଯେବେ ହେଁ ଜଣଇ
ସବୁ କଥାମାନ ସିନା ବଧାତା ବୁଝଇ ।
ତହିଁକି ଦେବଗଣେ ସମସ୍ତେ ସତ୍ୟ କଲ
ମୁଁ କେମନ୍ତେ ଆନ ଯେ ଜଣିବି ତୁମ୍ଭ ବୋଲ
ଜମ୍ବୁଦ୍ୱୀପ ଲୋକେ ନ ଜାଣିବେ ଏହା କେହି
ଯେରୂପେ ପ୍ରତେକିବେ ମୋତେତାହାବଅକହି
ଯେତେକ ଋଷ ଲକ୍ଷୟ ଗଣ ମଲେ
ଜାନକୀର ଅମନ୍ତେ ଯେତେକ ପ୍ରାଣ ଦେଲେ
ସେ ଯେବେ ଗାଇଁ ଲଭି ଜନ୍ମିବେ ମୋର ଲାଗି
ତେବେ ମୋ କଥା ରହିବ ସପତ ଦ୍ୱୀପପୃଥ୍ୱୀ
ଅଭିଷେକକାଳେ ଆସି ବ୍ରହ୍ମର୍ଷିଦେବର୍ଷିମାନେ
ତୀର୍ଥଜଳ ମୋହରଶିରେ ଢାଳିବେ ଦ୍ୱିଜନେ
ସୀତାଙ୍କୁ କୋଳେ ଧରିଣ ହେବ ଅଭିଷେକ
ଦେଖୁଥିବେ ତିନପୁର ଚତୁର୍ଦ୍ଦଶ ଲୋକ ।
ଯେତେକଣ ବୋଲିବେ ଶ୍ରୀରାମ ରାବଣ ଯୁଦ୍ଧ
ପ୍ରତ୍ୟକ୍ଷେ ଆସି ପୁଣ ଜନ୍ମିଲେ ବିବୁଧ ।
ମୂର୍ଚ୍ଛିକ ଜିଆଁଇବ ରାକ୍ଷସ ଋଷ କପି
ଯଶ ରହିବ ମୋର ବ୍ରହ୍ମାଣ୍ଡ ଗୋଟା ବ୍ୟାପି
ଶ୍ରୀରାମର ମୁଖରୁ ଏସନ ବାଣୀ ଶୁଣି
କରପଦ୍ମ ଯୋଡ଼ିଣ ଇନ୍ଦ୍ର କୁଶପାଣି ।
ଯାହା ସୀତାପତି ଯେ ବୋଲନ୍ତି ବଚନ
ଗୋଟିଏ ନାହାନ୍ତି ମୃତ୍ୟୁ ଶବ ଏଥି ପୁଣ ।
ରଣଭୂମି ଯୋଠା ତୁମ୍ଭେ ଦେଖ କିବା ଯାଇ
ଶବ ଥିଲେ ଜୀବ ଆମ୍ଭେ ଦେବୁ ହେରଗୁସାଇଁ
ଶ୍ରୀରାମ ବୋଇଲେ ଶବ କେଉଁଆଡ଼େ ଗଲେ
କୁଶପାଣି ବୋଲେ କହୁଁ ହୋଇଲା ତହିଁରେ
ସୈନ୍ୟଦଳ ଉଜାଇଣ ପଶୁର ଏବେ ତୁମ୍ଭେ
କେତେ ସୈନ୍ୟ ତୁଟିଛନ୍ତି ବଳର ବୁହଁ ଏବେ
କେତେ ଋଷ କପି ତୁମ୍ଭର ଆସିଣ ଅଛନ୍ତି
ଗୋଟିଏ ମୃତ୍ୟୁ କେହି ପାଇଣ ନାହାନ୍ତି ।
ତିନ ଦୈତ୍ୟଙ୍କର ବଳ ମରିଛନ୍ତି ପୁଣି
ଦୁଷ୍ଟଦୈତ୍ୟ ବୋଲିଣ ଦୈତ୍ୟ ସେ ରଘୁମଣି

ଶ୍ରୀରାମ ବୋଇଲେ ତୁମ୍ଭେ ଏଥିର କଥା କହ
କେମନ୍ତ ଯେ ଋଷଭକପି ଖାଇଁଲେ ମୋର ପ୍ରିୟ
ବହୁକ କେମନ୍ତେ ଭସ୍ମ ହୋଇଗଲେ ପୁଣ
ଏକଥା ବୁଝାଇ ମୋତେ କହ ହେ ଦେବଗଣ
କୁଶପାଣି ବୋଇଲେ ତୁମ୍ଭେ ଶୁଣ ହେ ଶ୍ରୀରାମ
ବିଶ୍ରବା ଋଷିର ସୁତ ଦଶଗ୍ରୀବ ଜାଣ ।
ଦଶଗ୍ରୀବର ପୁତ୍ର ଅଟେ ଇନ୍ଦ୍ରଜିତ ବୀର
ବାହୁବଳେ ଦେବତାଙ୍କୁ ଜିଣିଲେ ସକଳ ।
ସକଳ ଦେବଙ୍କୁ ଆଣି ଲଙ୍କାରେ ଠୁଳ କଲା
ପିତା ସମ୍ମୁଖରେ ସେବାକାର୍ଯ୍ୟ କରଣ ରଖିଲା ।
ପ୍ରଥମ ତୁମର ଇନ୍ଦ୍ରଜିତର ଯେ ପୁଣ
ମନ୍ତ୍ରୀରାବଣ ବୋଲିଣ ନାମ ହେଲା ଜାଣ ।
ସୁଲଙ୍କା ବୋଲି ଗଡ଼ ସମୁଦ୍ର ଭିତରେ
ସେ ଗଡ଼କୁ ଜିଣି ରାଜା କଲା ସେଥିରେ ।
ଅଲଙ୍କା ବୋଲି ଗଡ଼ ଏହି ସମୁଦ୍ର ଭିତରେ
କଇନ୍ତା ମୁନିର ସୁତ ଦଶଗ୍ରୀବ ଭଲେ ।
ଅଲଙ୍କା ଗଡ଼ରେ ଯେ ସହସ୍ରମୁଖା ପୁଣ
ଏ ସବୁଙ୍କ ପ୍ରତାପରେ କମ୍ପେ ସ୍ୱର୍ଗ ଜାଣ ।
ସବୁ ଦୈତ୍ୟ ମାରିବାକୁ ଉପାୟ ଆମ୍ଭେ କଲୁ
ତୁମ୍ଭଙ୍କୁ ସହସ୍ର ବର୍ଷ ପର୍ଯ୍ୟନ୍ତେ ସୁମରିଲୁ ।
ତେବେ ବସ୍ତାବସିଲ ଯେ ତୁମ୍ଭର ଆସ୍ଥଠାରେ
ଜନମ ହୋଇଲ ଦେବ ଦଶରଥ ଘରେ ।
ଚତୁର୍ଦ୍ଧା ମୂରତି ହୋଇ ଲଭିଲ ଜନମ
ଏମନ୍ତେ ବାର ବରଷ ବହିଗଲା ପୁଣ ।
ଦଶରଥ ପିତା ତୁମର ମନରେ ବିଚାରି
ବଶିଷ୍ଠଙ୍କୁ ଡକାଇ ଦିନ ବୁଝିଲେ ଶୁଦ୍ଧକରି ।
ରାଜ ପାଟ୍ଟଲେ ତୁମେ ହୁଅନ୍ତ ରାଜା ପୁଣ
ଦେବତା ଏ ମୋତେ ସେନ କଲେ ବିସ୍ମରଣ
ବୋଇଲେ ଶ୍ରୀରାମସେ ହୋଇବେ ରାଜାଚର୍ତ୍ତି
ରାଜା ହେଲେ ଦୈତ୍ୟକୁଳ ନ ମରିବେ କେହି
କ ରୂପେ ବନକୁ ସେ କରିବେ ଗମନ
ତେବେ ଦଶାନନ ଦୈତ୍ୟ ମରିବଟି ପୁଣ ।
ତୁମେ ବନେ ଆସିବାକୁ ଆମେ ଉପାୟ କଲୁ
ଖଳ ଦୁର୍ବଳ ଦୁର୍ବୁଦ୍ଧିଙ୍କି ଦେଇ ସେ ବୁଲାଦେଲୁ
ପିତା ମାତା ଦୁର୍ବୁଦ୍ଧିଙ୍କର ବସିଲେ ହୃଦୟର
ତେଣୁକରି ତୁମେ ବନକୁ ଅଇଲ ସତ୍ୱର ।

ତେର ବରଷ ଦୁଇଦିନ ବନରେ ଗଲା ଦିନ
ନର୍ଦ୍ଧସ୍ୱା ପୁରୁଷକୁ ପେଷିଲୁ ଆମ୍ଭେ ପୁଣ ।
ରାବଣର ଶରୀରରେ ଯାଇଣ ବସିଲା
ମରିବାକୁ ନ ଡରୁରେ ବିଶ୍ରବା ଋଷି ବଳା ।
ତୁମର ଘରଣୀକି ଆଣିଲା ହେଳକରି
ଲଙ୍କା ଅଶୋକବନରେ ରଖିଲା ଯତ୍ନ କରି ।
ଘରଣୀ ନ ଦେଖି ତୁମ୍ଭ ହୃଦରେ ହେଲା ଛଳ
ସମୁଦ୍ରେ ବନ୍ଧ ବାନ୍ଧିଣ ମାରିଲ ଦୈତ୍ୟକୁଳ ।
ସୁବେଳ ପର୍ବତେ ତୁମ୍ଭେ ବଜେ ଯେଉଁଦିନ
ସ୍ୱର୍ଗରୁ ସୁରଗଣେ କଲେ ବିସ୍ମରଣ ।
ବୋଇଲେ ଶ୍ରୀରାମ ତ ଅଟନ୍ତି ବସ୍ତୁ'କୁ
ଶରଣ ପଶି ବିଭୀଷଣ ହେଲା ହନୁକାରୁ ।
ଦଶଗ୍ରୀବକୁ ମାଇଲେ ଦୁଷ୍ଟଦୈତ୍ୟହେବେହତ
ପୁଚ୍ଛ ସରନ୍ତେ ସୁଦସ୍ୟା କମଳାର କାନ୍ତ ।
ଆମ୍ଭ ବିରୁରେ ଦୁଷ୍ଟଦୈତ୍ୟଙ୍କୁ ଭସ୍ମକର
ସ୍ୱପନ ଦେଖିଲେ କେହୁ ଖାଆଁଇ ନ ପାରୁ ।
ଏତେ ବିଚାରି କୂଟରେ ପେଷିଲୁ ଯୋଗ୍ନୀକୁଳ
ଚଉଷଠି ଯୋଗ୍ନୀକୁଳ ସୁବେଳସ୍ୱାରେ ଠୁଳ ।
ଯୁଦ୍ଧ ସରିଲେ ନଣବଦ ଯେ ହୋଇଯାନ୍ତି
ମରିବା ଦୈତ୍ୟକୁଳଙ୍କୁ ଆହାର କରନ୍ତି ।
ତେଣେ ଭସ୍ମ ଯାନ୍ତି ପୁଣ ଦୁଷ୍ଟ ଦୈତ୍ୟକୁଳ
ତୁମ ଋଷଭକପି ଯେତେ ମରନ୍ତି ଯୁଦ୍ଧର ।
ସ୍ୱର୍ଗରୁ ଶୁଧ ଆଣିଣ ଜୀଆଁନ୍ତି ତାଙ୍କୁ ପୁଣ
ସାବଧାନ ହୋଇ ତୁମେ ଶ୍ରୀରାମଚନ୍ଦ୍ର ଶୁଣ ।
ଆଉ ଦିନ ଯୁଦ୍ଧ ଯେ କରନ୍ତି ତୁମ ସଙ୍ଗେ
ଏମନ୍ତ କୂଟ ଆରମ୍ଭ କରିଅଛୁ ରଙ୍ଗେ ।
ଦୈତ୍ୟକୁଳ ଖାଇଁବାକୁ ତାଙ୍କର ନାହିଁ ଶବ
ଏ କଥାକୁ ଗୁପତ କର ହେ ରାଘବ ।
ଶୁଣିକରି ଦାଶରଥି ସନ୍ତୋଷ ମନ ହେଲେ
ତୁମେ ତ ଜାଣିଲ ନର ଅସୁରେ ନ ଜାଣିଲେ
ବିଧାତା ବୋଇଲେ ତୁମେ ସାବଧାନ ଶୁଣ
ନର ଅସୁରେ ଯେବେ ଦେଖିବଟି ପୁଣ ।
ପାତାଳେ ସହସ୍ରମୁଖା ରାବଣ ନାଶଯିବ
ସେତେବେଳେ ସୁମରିଲେ ଆସିବୁ ରାଘବ ।
ନର ବାନର ଅସୁର ସଙ୍ଗେ ଥିବ ରଣ
ଜୀବନ ଦେଇ ତାଙ୍କୁ ସଚେତ କରିବଇଁ ।

ଏମନ୍ତ ବଚନ ତହିଁ କହିଲେ ଦଇବତ
ବ୍ରହ୍ମାଠାରୁ ଶୁଣିଣ କହନ୍ତି ରଘୁନାଥ ।
ମୁହିଁ ଯାଇ ଅଯୋଧ୍ୟାରେ ହେବି ଅଭିଷେକ
ସ୍ତୁତି କରିବେ ସେ ଯେ ଜମ୍ବୁଦ୍ୱୀପ ଲୋକ ।
ଏମନ୍ତ ବିସ୍ତର ତୁମ୍ଭେ କର ହେ କୃପାଧାରୀ
ଏ ବୋଇଲେ ହୀନପାପୀ ଜନକ କୁମାରୀ ।
ଏ କଥାରେ ସନ୍ତୁଟେ ଆସଇ ଯେଣେମୋତେ
ସୀତସ୍ତୁକୁ ସଖ୍ୟ ଯେ ବୋଲିବେ ଜଗତେ ।
ଦେବତା ଋଷି ମୋତେ ଅଭିଷେକ କରିବେ
ଅପସରା କନ୍ୟାସ ନୃତ୍ୟ କରୁଥିବେ ।
ତୁମ୍ଭେ ଧାତା ରୁଦ୍ର ଥିବ ତାଙ୍କ ସଙ୍ଗେ ପୁଣ
ସଙ୍ଗେ ମେଳ ହୋଇଥିବ ସୁରମୁନି ଜାଣ ।
ତେତିଶକୋଟି ତୁମ୍ଭର ଦେବଗଣ ବଳ
ଅଭିଷେକବେଳେ ମୋର ଥିବେ ଯେ ସକଳ
ଆଉର କଥା ଏ ତୁମ୍ଭେ ଶୁଣ ପଦ୍ମଯୋନି
ମୁହିଁ ବେଷ ଜନମିଲି ମନୁଷ୍ୟଦେହ ଘେନି ।
ଅଯୋଧ୍ୟାର ରାଜ୍ୟରେ ମୁଁ କରିବି ରାଜାପଣ
ସୁକୃତ ସେବକ ମୋର ହୋଇବେ ବ୍ରାହ୍ମଣ ।
ଶୂଦ୍ର ନଛୁଇଁବେମୋତେ ନଛୁଇଁବେ ଅନ୍ୟଜାତି
ତେବେ ସେ ଜାଣ ତୁମ୍ଭେ ରହିବ ଧରିତ୍ରୀ ।
ନିୟମ ଅନିୟମ ଏହୁ ଦୁଇକାଳ
ଏସନ ବିଧାନେ ମୋର ଥିବେ ବିପ୍ରବର ।
ଦେହର କାଳେ ମୋତେ ଛୁଇଁବେ ଷଡ଼ିବଂଶ
ଅନିମିତେ ମୋହର ନସିବେ କେହୁ ପାଶ ।
ବ୍ରାହ୍ମଣ କଲଗି କରିବେ ଆସ୍ଥାନ
ବ୍ରାହ୍ମଣ ଛୁଇଁବେ ମୋର ଉଚ୍ଛିଷ୍ଟ ଦ୍ରବ୍ୟମାନ
ବ୍ରାହ୍ମଣ ଛୁଇଁଣ ମୋତେ ସ୍ନାନ କରାଇବ
ବ୍ରାହ୍ମଣ ମୋତେ ବସନ ପିନ୍ଧାଇଣ ଦେବ ।
ପାଲଟା ମଡ଼ିଆଳ ମୋର ଛୁଇଁବେ ବ୍ରାହ୍ମଣ
ତେବେ ମୁଁ ରାଜପଣ କରିବି ଯେ ଜାଣ ।
ବଢ଼ିଆ ଲାଗି ମୋତେ କରିବେ ଦ୍ୱିଜବର
ବ୍ରାହ୍ମଣ ଅନୁବ୍ରତେ ଖଟିବେ ପରିସର ।
ବ୍ରାହ୍ମଣମାନେ କେଶ ସଞ୍ଜେ ଇବେ ମୋର
ଦ୍ୱିଜବର ମର୍ଦ୍ଦନ କରିବେ ମୋ ଶରୀର ।
ବ୍ରାହ୍ମଣ ପାଏ ପଡ଼ି ଶୋଇବେ ଯେ ମୋତେ
ତେଣୁ ସେ ଏକଥା ମୁଁ କହଇ ଯେ ତୋତେ
ମୁହିଁ ଯେବେ ନାରାୟଣ ଅଛି ଅବତରି
କମ୍ପାଇଁ ବ୍ରାହ୍ମଣେମୋତେନଥିବେସେବାକରି
ଶୁଣିଣ ପିତାମହ ଯୋଡ଼ହସ୍ତେ ବେନକରି
ଯେବଣ ଆଜ୍ଞା ମୋତେ ଦେଲ ଚକ୍ରଧରି ।
ତୁ ଯେଉଁ ଠାକୁର ହେ ନିସ୍ତାର ତୋର ବାନା
ତେଣୁକରି ଏକଥା କହିଲୁ ଏବେ ସିନା ।
ବୋଲୁଅଛ ବ୍ରାହ୍ମଣଯେ ଖଟିବେଅବା ମୋତେ
ଏ କଥାମାନ କହୁ ନୁହଇ ଯେ ତୋତେ ।
ତୋହର ପାଦପଦ୍ମ ପଖାଳି ମନକରି
ଚଉରାଶି କାଠି·ଗଙ୍ଗା ଗଗନର ନଦୀ ବୋଲି ।
ପଦ୍ମଶକୋଟି ଗଙ୍ଗା ଅଛି ଯେ ଆଚ୍ଛାଦ
ସବୁଠାରେ ଗଙ୍ଗାନଦୀ ଅଛଇ ଯେ ଭେଦ ।
ତ୍ରିଦଶ ଦେବତା ଏ ଯହିଁରେ ଭେଟ ହୋନ୍ତି
ସୁରସୁର ବୋଲି ସର୍ବେ ଯାହାକୁ ବୋଲନ୍ତି ।
ସେ ପବିତ୍ର ଜଳ ମୁଁ ଯେ ସିଞ୍ଚିଥିଲି ଆଣି
ତୁମ୍ଭର ପଦ୍ମପାଦେ ଢାଳିଲି ମୁଁ ପାଣି ।
ବିଶ୍ୱରୂପ ଦେଖିଣ ନଖର କୋଣେ ଲୁଚି
ଦେଖିକରି ଦେବତାଏ ପଳାଇଲେ ଘୁଞ୍ଚି ।
ଶଙ୍କର ତୋର ପାଦକୁ ଆଶ୍ରେ କରିଥିଲେ
ନ ପାଇଣ ଲଜ୍ଜାରେ ଯେ ସେହି ବାହୁଡ଼ିଲେ
ମୁହିଁ ମଉନେ ରହିଣ ନ କହିଲି କଥା
ଗଙ୍ଗାଦେବୀ ହୋଇଲେ ମୃତ୍ୟୁ ଯେ ଅବସ୍ଥା ।
ଯେବଣ ସ୍ୱାମୀଙ୍କର ଏସନକ ରୀତି
ସୁରମୁନିମାନେ ଯାହା ହୃଦରେ ଚିନ୍ତନ୍ତି ।
ସେ ଦେବଙ୍କୁ ଦର୍ଶନେ ପୁଣ ବର ଯାଚି
ଏ କଥାମାନ ଜାଣିଅଛଇ ମୁହିଁଟି ।
ବଶିଷ୍ଠ ଜାବାଳି ଯେ କଶ୍ୟପ ବାମଦେବ
ଏହାଙ୍କର ଶିଷ୍ୟ ତୋତେ ଖଟିବେ ସର୍ବ ।
ତୁ ତାହାଙ୍କୁ ଭାବରେ ଦେଇଅଛୁ ବର
କାଳେ କାଳେ ଭୃତ୍ୟ ସେହୁ ଅଟନ୍ତି ତୋହର
କମ୍ପାଇଁ ତୋର ଅଙ୍ଗ ଛୁଇଁବେ ଆନ ପୁଣ
ତୁମ୍ଭେ ତ ଭକତବତ୍ସଳ ଭଗବାନ ।
ଯାଅ ତୁମ୍ଭେ ଅଯୋଧ୍ୟା ନଗର ଏବେ ହେଳା
ଆମ୍ଭେ ଦେବଙ୍କୁ ଘେନିଯାଉଛୁ ସ୍ୱର୍ଗପୁର ।
ଶ୍ରୀରାମ ବୋଇଲେ ପିତୃ ଲୋକଙ୍କୁ ମୋରନାଥ
ସ୍ୱର୍ଗପୁରେ ନେଇଣ ଏହାଙ୍କୁ ରଖାଅ ।

ସାବଜ ଜନମ ମୋର ଅଟନ୍ତି ଲୀଳାବତୀ
ପିତା ସଙ୍ଗେ ଏହୁ ଦେହ ଯାଉ ପୁଣ ଧାତ୍ରି ।
ଶୁଣିଣ ଦେବବ୍ରହ୍ମ ପିତୃଙ୍କୁ ଡକାଇଲେ
ସକଳ ପିତୃଗଣ ସତ୍ୱରୁ ଅଇଲେ ।
ସତଷଠି ପିତୃ ଦେଖି ରାମ ଚରଣେ ପଡ଼ିଣ
ଭଗିରଥ ସାଗର ମାନଧାତା ହରିଚନ୍ଦନ ।
ଶିବରାଜା ଅନରଣ୍ୟ ଅଜ ନନ୍ଦନ ଦଶରଥ
ଏମାନଙ୍କ ଚରଣରେ ଶ୍ରୀରାମ ଲଗାଇଲେମାଥ
ସମସ୍ତେ ଯାଇ ରାମଙ୍କୁ ଉଠାଇ କୋଳ କଲେ
ତୋର ସକାଶୁ ଆମେ ତରିଲୁ ବୋଇଲେ ।
ତାହା ଦେଖି ଜନକ ଦୁହିତା ସୀତା ସତୀ
ତ୍ରୈଲୋକ୍ୟ ମାତା ପିତୃଙ୍କ ଚରଣେ ଓଳଗନ୍ତି
ଭ୍ରାତ ଶତ୍ରୁଘନ ଓଳଗେ ପୁଣ ଯାଇ
ସମସ୍ତଙ୍କୁ ସନ୍ମାନ ପିତଲୋକେ ଦଆଇ ।
କରଯୋଡ଼ିଣ ସମସ୍ତେ ହୋଇଲେ ପୁଣ ଉଭା
ଲୀଳାବତୀ ପିତୃଙ୍କ ଚରଣେ କଲେ ସେବା ।
ଓଳଗ ମେଲାଇଣ ପାଏ ପଡ଼ି ଶୋଇ
ଶିରରେ କର ଦେଇ ଆଗରେ ଉଭାହୋଇ ।
ଦେଖି ନୟନରୁ ମାରି ଝରେ ନିରନ୍ତର
ଦେଖି ସକଳ ପିତୃ ହରଷ ତାହାର ।
ଦଶରଥ ଯାଇଣ ତାହାଙ୍କୁ କୋଳ କଲେ
ବ୍ରହ୍ମା ଶଙ୍କରଙ୍କୁ କହି ରାମଙ୍କୁ କହିଲେ ।
ଯାଉଛୁ ସ୍ୱର୍ଗପୁର ଅଯୋଧ୍ୟା ତୁମ୍ଭେ ଯାଅ
କୁଳବଧୂଠାରେ ମୋର ଅବଗୁଣ ନୁହ ।
ସାହେର ଦୁଲଣୀ ଅଟେ ଜନକ ଦୁହିତା
ତିନିପୁର ଚଉଦ ଭୁବନର ମାତା ।
ଦେବବର ଶଙ୍କରଙ୍କୁ ପିତୃଲୋକେ ପୁଣ
ନମସ୍କାର ହୋଇ ସ୍ତୁତି କଲେକ ବହନ ।
ଦେବତାଙ୍କୁ କରଯୋଡ଼ି ଓଳଗ ହୋଇଲେ
ମେଲାଣି ମାଗି ସ୍ୱର୍ଗପୁରକୁ ଗମିଲେ ।
ସେ ଯାହାର ଯାନ ଆରୋହି ଚଳିଲେକ ପୁଣ
ଦଶରଥ ରାଜା କହିକରି ଗଲେ ପୁଣ ।
ଲୀଳାବତୀ ହସ୍ତ ଧରି ଯାନରେ ବସିଲେ
ପିତୃଙ୍କ ସଙ୍ଗରେ ପିତା ମାତା ଚଳିଗଲେ ।
ଦେଖିଣ ସେ ସଜ୍ଜନେ ରାମଚାନ୍ଦ ଦେଇ
ହୁଳହୁଳି ଶବଦରେ ମେଦିନୀ ପୂରଇ ।

ଚାହୁଁ ଚାହୁଁ ଅଦୃଶ୍ୟ ହେଲେ ପିତା ମାତା
ବିଷ୍ଣୁ ଦେବପୁରେ ଯାଇ ପ୍ରବେଶ ଜଗଜ୍ଜିତା
ଜନନୀ ପିତାରୁ ଶ୍ରୀରାମ କରନ୍ତି ବେଦନ
ଗୁଡ଼ଗଲ ମୋତେ ମାତା କରିଣ ଜନମ ।
ଭରତ ବୋଇଲେ ଭ୍ରାତ ଚିନ୍ତା କାହିଁପାଇଁ
ପିତା ସଙ୍ଗେ ଜନନୀ ନିଶ୍ଚିନ୍ତ ହେଲେ ଯାଇ
ବ୍ରହ୍ମା ରୁଦ୍ର ବୋଇଲେ ଭଲ ତୁମ୍ଭର ହୋଇଲା
ଦେବତାଏ ବୋଇଲେ ସ୍ୱଦେହ ଘେନଗଲା ।
ରାଜା ମନେ ବିଚାରିଲେ ମନରେ ତାଙ୍କର
ନିଶ୍ଚୟ ବାସୁଦେବ ଜନମ ମଣପୁର ।
ନୋହିଲେ କି ଦେବତାଏ ନମସ୍କାର କରି
ଦେବବର ଶଙ୍କର କି ଶ୍ରୀରାମ ଆଜ୍ଞାକାରୀ ।
ଆମ୍ଭେମାନେ ପୂର୍ବରେ ଭାଗ୍ୟ କରିଥିଲୁ
ଚର୍ମ ନୟନରେ ଯେ ଏମାନ ଦେଖିଲୁ ।
ଆମ୍ଭମାନଙ୍କର କୁଳ ହୋଇଲା ଉଦ୍ଧାର
ଏମନ୍ତ ମନେ ବିଚାର କଲେ ନୃପବର ।
ଋକ୍ଷକପି ବାନରେ ମନରେ ବିଚାରିଲେ
ସକଳ କାର୍ଯ୍ୟ ଆମର ସଫଳ ହେଲା ଭଲେ
ନାରାୟଣ ଦେବତାର ପାଦରେ ଅଛୁ ସେବା
ମଲେ ସ୍ୱର୍ଗପିବୁ ଜାଣିଲେ ଯଶ ଅବା ।
ଋଷିମାନେ ବିଚାରିଲେ ମନେ ମନେ ପୁଣ
ଯାହାଙ୍କୁ ଧ୍ୟାନକରି ତାଙ୍କୁ ଦେଖିଲୁ ନୟନ ।
ଦୈତ୍ୟବଳ ବିଚାରିଲେ ନିଶ୍ଚୟ ନାରାୟଣ
ନୋହିଲେ କି ପିତାସଙ୍ଗେ ମାତାଗଲେ ପୁଣ
ମଲେ ସିନା ଯାଆନ୍ତି ସଂସାର ଜନେ ପୁଣ
ଜୀବନ୍ତରେ ଗଲେ ଏବେ ଦେଖିଲୁ ନୟନ ।
ଏମନ୍ତ ବିଚାର ଯେ ସର୍ବେ ଚର୍ଚ୍ଚି କଲେ
ଶ୍ରୀରାମଙ୍କୁ ନାରାୟଣ ବୋଲିଣ ମାନିଲେ ।
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଶ୍ରୀରାମଙ୍କୁ କୁଶପାଣି କହିଣ ବୋଧକରି ।
ଦେବତାଙ୍କୁ ଘେନ ସେ କେହୋଇଲେବାହାର
ଶ୍ରୀରାମ ଜାନକୀ ଦୁହେଁ ହେଲେ ନମସ୍କାର ।
ସମସ୍ତେ ବିମାନ ଯେ ଆରୋହି ସୁରଗଣ
ଚଳିଲେ ଦେବତାଏ ଯେ ଯାହା ଆଶ୍ରମ ।
ତୋଷହୋଇ ଦେବତାଏ ଯେ ନିଜପୁରେରହି
ଶଙ୍କର କହିଣ ଯେ ବେଗେ ଚଳିଯାଇ ।

ଅଷ୍ଟବସୁ ନବଗ୍ରହ ଦଶଦିଗପାଳ
ଶ୍ରୀରାମଙ୍କୁ ବୋଧକରି ଗଲେ ନିଜପୁର ।
ଯେତେବେଳେ ସଦାଶିବ ବିଜେ କରିଗଲେ
ନବଲକ୍ଷ ଡମ୍ବରୁ ଆଗରେ ବାଜେ ଭଲେ ।
ହର ଅସୁର ବାନର ଦେଖିଣ ସର୍ବେ ତୋଷ
ଶବଦରେ ତିନିପୁର କମ୍ପିଲା ଆକାଶ ।
ଅଳକାପୁରରେ ଦେବ ହେଲେ ପରବେଶ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଆନରସ ।
ନାଗରାଜା ବାସୁକୀ ଯେ ସଭାପରେ ଥିଲେ
ଦେବତା ଯିବାରୁ ସେ ଯେ ସଭାରୁ ଉଠିଲେ
ଶ୍ରୀରାମ ଆଗରେ ଉଭା ତଳପୁରର ଦେବତା ।
ଆମ୍ଭେ ଯାଉଅଛୁ ଶୁଣ ଦଶରଥ ସୁତା ।
ଦୁଇଦିନ ହେଲା ଯେ ଲକ୍ଷ୍ମଣ ଧରେ ମନ୍ତ୍ରୀ
ଆମ୍ଭେ ଜାଣିବାରେ ସୀତାଠାରେ ଦୋଷନାହିଁ
ଶ୍ରୀରାମଙ୍କୁ ଓଳଗ ଯେ ଅନନ୍ତ ବାସୁକୀ
ନାଗଦଳ ଘେନିଣ ଚଳିଲା ବେଗରେଟି ।
ପାତାଳ ବଇକୁଣ୍ଠ ପୁରେ ପରବେଶ
ଲକ୍ଷ୍ମଣଙ୍କୁ ଦେଖି ମନେ ହୋଇଲେ ହରଷ ।
ନିତ୍ୟକର୍ମ ସାରିଣ ବେଗେ ଯାଇ ମିଳି
ଦେଖିଣ ଲକ୍ଷ୍ମଣ ବୀର ନମସ୍କାର କରି ।
ନାଗରାଜା ବୋଇଲେ ତୁମ୍ଭେ ଶୁଣ ମୋ ବଚନ
ବେଗେ ଚଳିଯାଅ ବାବୁ ପାଇଲ ସରାପୁଣ
ଲକ୍ଷ୍ମଣ ବୋଇଲେ ଦେବ ଆସିଲେଟି କି ସୀତା ।
ଶ୍ରୀରାମ ଆଣିଲେଟି କି ଜନକ ଦୁହିତା ।
ନାଗରାଜା ବୋଇଲେ ସୀତା ଆଣିଲେ ଦାଶରଥି
ସମସ୍ତେ ଯାଇ ଅଶୋକବନରେ ଦେଖେ ସତୀ
ବୃକ୍ଷସଭା ମଧ୍ୟରେ ଆଣି କଲେ ଛିଡ଼ା
ଜନକର ଦୁହିତା ଅଗ୍ନି ପରୀକ୍ଷା ହେଲା ।
ସତଷଠି ପୁରୁଷ ପିତୃ ଆସିଣ ଥିଲେ ସେଥି
ପିତା ଦଶରଥ ଶ୍ରୀରାମଙ୍କୁ ପ୍ରଶଂସନ୍ତି ।
ଜନମ ଲୀଳା ଦେଖି ପିତାଙ୍କ ସଙ୍ଗେ ଗଲେ
ଶୁଣିକରି ସଉମିତ୍ରୀ ପରମ ତୋଷ ହେଲେ ।
ସକଳ ଦେବତା ଏ ଗଲେ ସ୍ୱର୍ଗ ପୁଣ
ସୁଧର୍ମା ସଭା ଘେନିଣ ବିଜେ ଇନ୍ଦ୍ର ଜାଣ ।
ସ୍ୱର୍ଗପୁରେ ଇନ୍ଦ୍ରରାଜା ହେଲେ ପରବେଶ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ କଥାରସ ।

ଦେବରାଜା ଗଲେ ଯେ ଦେବସଭା ଘେନି
ଶ୍ରୀରାମ ସୀତା ଦୁହେଁ ଚଳିଗଲେ ପୁଣି ।
ଋଷିମାନଙ୍କ ଆଗରେ ହେଲେ ପରବେଶ
କରଯୋଡ଼ି ନମସ୍କାର କଲେକ ବିଶେଷ ।
ସୁକଲ୍ୟାଣ କରି ଋଷି ଉଠିଲେ ସଭାରୁ
ବୋଇଲେ ଶ୍ରୀରାମ ହେ ଯାଅ ତୁ ଏଠାରୁ ।
ଅଯୋଧ୍ୟାପୁରେ ଯାଇଣ ହୁଅ ରାଜା ବେଗେ
ଦୁଷ୍ଟମାରି ସନ୍ଥ ପାଳ ତୁମ୍ଭେ ମହୀଭୋଗେ ।
ଏଗାର ସହସ୍ର ବରଷ ନିଷ୍କଣ୍ଟେ ଭୋଗ କର
ସ୍ୱଦେହ ଘେନିକରି ତୁ ନିଜପୁରେ ଚଳ ।
ଭରତ ଡାକିଣ କହିଲେ ଶ୍ରୀରାମ
ଭଣ୍ଡାରୁ ଦ୍ରବ୍ୟ ଆଣି ଦିଅ ଋଷିଙ୍କି ପୁଣ ।
ସୁମନ୍ତ୍ରକୁ ଘେନିଣ ବେଗେ ଚଳିଗଲେ
ଗୋଟି ଏ ଲେଖାଏଁ ହୀରା ଋଷିଙ୍କି ଆଣିଦେଲେ
ମେଲାଣି ହୋଇଣ ଋଷି ଗଲେ ଚଳି
ଯେ ଯାହାର ଆଶ୍ରମରେ ଯାଇ କରି ମିଳି ।
ପାର୍ବତୀ ବୋଇଲେ ଲକ୍ଷ୍ମଣ ତଳପୁରେ ଥିଲା
ଶ୍ରୀରାମଙ୍କୁ ଦର୍ଶନ କେମନ୍ତେ ସେ କଲା ।
ଈଶ୍ୱର ବୋଇଲେ ସେ ଗୁଡ଼ିଲେ ଧରଣୀ
ନାଗରାଜା ପ୍ରଶଂସା କରନ୍ତି ଦେଖି ପୁଣି ।
ଲକ୍ଷ୍ମଣ ବୋଇଲେ ଆମ୍ଭେ ଯାଉଛୁ ଲଙ୍କାଗଡ଼
ଏତେ କହି ଅଇଲେ ଯେ ସୁମିତ୍ରା କୁମର ।
ଋଷ୍ୟମୂକ ପର୍ବତ ବମ୍ବର ଦ୍ୱାରେ ପୁଣ
ସେ ଦ୍ୱାରେ ବାହାର ଯେ ହୋଇଲେ ଲକ୍ଷ୍ମଣ
ପାଦୁକା ମନ୍ତ୍ର ସୁମରି ବେଗେ ଚଳିଗଲେ
ସୁବେଳ ଗିରିପରେ ପ୍ରବେଶ ଯାଇ ହେଲେ ।
ଦେଖିଲେ ସଭାଠାରେ ଅଛନ୍ତି ଦାଶରଥି
ବେଗେଣ ସଉମିତ୍ରୀ ଚଳିଗଲେ ସେଥି ।
ଜାନକୀ ଶ୍ରୀରାମଙ୍କୁ ଦେଖିଲେ ସଭାତଳେ
ଧରଣେ ଲୋଟିଗଲେ ସୁମିତ୍ରା କୁମରେ ।
ଦେଖିକରି ଶ୍ରୀରାମ ଯେ ପରମ ତୋଷ ହେଲେ
ଜାନକୀ ବୋଇଲେ ଏପରା ପୃଥ୍ୱୀ ଧରିଥିଲେ
ଶ୍ରୀରାମ ବୋଇଲେ ଏ ଥିଲେ ତଳପୁରେ
ଧରଣୀକି ଧରିବାରୁ ଅଇଲେ ନାଗବଳେ ।
ଏଠାରୁ ବାସୁକୀ ଯାଇ ଧରଣୀ ଧରେ ପୁଣ
ଅଇଲା ସଉମିତ୍ରୀ ଯେ ମୋର ଅର୍ଦ୍ଧ ପ୍ରାଣ ।

ଋଷିଗଣେ ଯିବାରୁ ଋକ୍ଷ ରାଜାଗଣ
ଶ୍ରୀରାମ ଚରଣେ ଆସି ଓଳଗ ହୁଏ ପୁଣ ।
ସୁଗ୍ରୀବ ଗୁହ ନାମେ ଶବର ଅଇଲେ
ଶ୍ରୀରାମ ଚରଣେ ଯେ ନମସ୍କାର ହେଲେ ।
ଏଥି ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରି
ଲକ୍ଷେ ରାଜା ସଭାରୁ ଉଠିଲେ ବେଗକରି ।
ଶ୍ରୀରାମ ଚରଣେ ଯାଇ ନମସ୍କାର କଲେ
ଉଭା ହୋଇ ରାଜାମାନେ ବଚନ କହିଲେ ।
ଶୁଣ ହେ ଶ୍ରୀରାମ ଦେବ ଆମ୍ଭର ବଚନ
ରାଜାକୁଳେ ଜନମ ହେଲେ ହେ ତୁମ୍ଭେ ପୁଣ
ନାଗଗଣ ଋଷିଗଣ ଦେବଗଣ ରହି
ବାସୁଦେବ ଅବତାର ବୋଲି ମାନ୍ୟ ହୋଇ
ଆମ୍ଭେ ଯେତେ ରାଜାଗଣ ଅଛୁ ତୁମ୍ଭ ଜାଣ
କୁଟୁମ୍ବ ଜ୍ଞାତି ତୁମ୍ଭର ଅଟୁ ହେ ଦାଶରଥି ।
ଆମମାନଙ୍କର କଥା କରିବ ଯେବେ ବଳେ
ଆମେମାନେ କୃତାର୍ଥ ହେବୁ ତୁମ୍ଭ ଫଳେ ।
ତୁମ୍ଭେ ହେବ ଜର୍ମିଳ ଆମେ ହେବୁ ସୁଖୀ
ତୁମ୍ଭର ଘରଣୀ ପାକ କରିବେ କମଳାକ୍ଷୀ ।
ତାଙ୍କର ପାକରେ ଆମେ କରିବୁ ଭୋଜନ
ନୈବେଦ୍ୟ ମାତା ଆମଙ୍କୁ ପରଶିବେ ଅନ୍ନ
ଏକଥା ଶୁଣି ଶ୍ରୀରାମ ସନ୍ତୋଷ ହୋଇଲେ
ରାଜାଗଣଙ୍କୁ ସୁର୍ଦ୍ଧିଣ ବଚନ କହିଲେ ।
ଦିନ ଆସି ଶେଷ ହେଲା ଚଳ ଶାଢ଼ୀଘର
ନିତ୍ୟକର୍ମ ସାରି ତୁମ୍ଭେ ରହ ନିଶ୍ଚିନ୍ତର ।
ଋକ୍ଷ କପିଙ୍କି ବୋଇଲେ ଚଳ ନିଜ ସ୍ଥାନ
ଫଳ ମୂଳ ଆହାର କର ହେ ଯାଇଣ ।
ବିଭୀଷଣଙ୍କୁ ଡାକିଣ କହନ୍ତି ରାମରାୟେ
ରାଣୀହଂସ ଘେନିଣ ଚଳ ତୁ ଗଡଯାଏ ।
ରାଜାମାନଙ୍କର ସଞ୍ଚାକର ହେ ଭିଆଣ
ପାକ କରିବେ ଆଜ ଜନକ ସୁତା ପୁଣ ।
ଶୁଣିକରି ବିଭୀଷଣ ମସୁଦୈତ୍ୟକୁ ଘେନି
ଶ୍ରୀରାମ ପାଦେ ଓଳଗେ ଅସୁର ରାଜା ପୁଣି
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମସୁଦୈତ୍ୟ
ଏ ଭଣ୍ଡସଭାକୁ ତୁମ୍ଭେ କର ହେ ତୃପତ ।
ଶୁଣିକରି ମସୁଦୈତ୍ୟ ବୋଲେ ତୁମ୍ଭ ଆଜ୍ଞା
ତୃପତ କରିବି ଦେବ ନ ରହିବ ସୀମା ।

ଏତେକହି ମସୁଦୈତ୍ୟ ସଭାକୁ କହେ ଯାଇ
ଯାଅ ଯାଅ ଭଣ୍ଡସଭା ଶୂନ୍ୟରେ ଥାଅ ରହି ।
ଶୁଣିକରି ଭଣ୍ଡସଭା ଉଠିଲେ ବହନ
ଶୂନ୍ୟରେ ଅଦୃଶ୍ୟ ହେଲେ ଦେଖୁ ଦେଖୁ ପୁଣ
ସମସ୍ତଙ୍କ ଆଗରେ ଯେ ମାୟାସଭା ଗଲା
ଅଦୃଶ୍ୟ ହୋଇଣ ଯାଇ ଶୂନ୍ୟରେ ରହିଲା ।
ମସୁଦୈତ୍ୟ ଯିବାରୁ ଦଶେ ପଦା ପୁଣ
ମସୁଦୈତ୍ୟକୁ ଘେନିଣ ଚଳେ ବିଭୀଷଣ ।
ମନ୍ଦୋଦରୀ ରାଣୀକି ବୋଲେ ଯାଅ ବେଗ
ଶୁଣିକରି ମନ୍ଦୋଦରୀ ମନରେ ଉଦବେଗ ।
ପୁଷ୍ପକ ବିମାନରୁ ସବୁ ରାଣୀହଂସ
ଓହ୍ଲାଇ ଜାନକୀ ପାଶେ ହେଲେ ପରବେଶ ।
ପାହାଡ଼ା ପକାଇଣ ଚରଣେ ଲୋଟିଗଲେ
ଉଠ ଉଠ ବୋଲିଣ ଶ୍ରୀରାମଚନ୍ଦ୍ର ବୋଲି ।
ଯାଅ ଗୋ ସାଧବୀ ତୁମ୍ଭେ ତୁମ୍ଭର ନିଜ ପୁର
ଶୁଣି ମନ୍ଦୋଦରୀ ଲେଉଟି ବ୍ୟଗ୍ର ।
ସପତଣୀ ଘେନି ରାଣୀ ମନ୍ଦିରେ ପ୍ରବେଶ
ବିଭୀଷଣ ମସୁଦୈତ୍ୟ ଘେନିଣ ହରଷ ।
ରାକ୍ଷସୁଣୀମାନେ ଯେ ଯାହା ଭୁବନକୁ ଗଲେ
ଦୈତ୍ୟମାନେ ସମସ୍ତେ ଗଡରେ ମିଳିଲେ ।
ନରନାରୀ ଲଙ୍କାଗଡେ କରନ୍ତି ବିଚାର
ଏହି ଶ୍ରୀରାମ ଅଟନ୍ତି ସାକ୍ଷାତେ ଚକ୍ରଧର ।
ବିଭୀଷଣ ଆମ୍ଭଙ୍କୁ ରକ୍ଷାକଲେ ପୁଣ
ରାବଣର ସକାଶେ ମରନ୍ତୁ ସର୍ବେ ଜାଣ ।
ଏମନ୍ତ ବିଚାର ଯେ କରନ୍ତି ଲଙ୍କା ଲୋକେ
ଏଥି ଅନ୍ତେ କଥା ତୁମ୍ଭେ ଶୁଣ ଗୋ କୁତୁକେ
ରାଜାମାନେ ସେଠାରୁ ଚଳିଗଲେ କୁତୁକେ
ଯେ ଯାହାର ଶାଢ଼ୀ ଘରେ ପ୍ରବେଶ ହୁଅନ୍ତି
ମାର୍ଜନା ମର୍ଦ୍ଦନ ଯେ ହେଲେ ରାଜଗଣ
ନଦୀରେ ପଶି ସର୍ବେ କଲେକ ସ୍ନାହାନ ।
ମିଠା ପଦାର୍ଥମାନ ଭୋଜନ ସେ କଲେ
ଏଥି ଅନନ୍ତରେ ଋକ୍ଷ କପି ଗଲେ ।
ସୁବେଳ ଗିରିରେ ଯାଇ ହେଲେ ପରବେଶ
ଫଳ ମୂଳ ଭୋଜନ କରନ୍ତି ଚତୁର୍ଦ୍ଦିଶ୍ୟ ।
ଏଥି ଅନନ୍ତରେ ଗୋ ଶୁଣ ଭଗବତୀ
ଶ୍ରୀରାମ ସଙ୍ଗରେ ଅନେକ ସୈନ୍ୟଛନ୍ତି ।

ଅଷ୍ଟସେନା ଆବର ପଚାଶ ଯୂଥପତି
ସୁଗ୍ରୀବର ନେମପାଦ ସଙ୍ଗରେ ଅଛନ୍ତି ।
ବଶିଷ୍ଠ ବୋଇଲେ ଶ୍ରୀରାମ ବିଜେକର ତୁମ୍ଭେ
ଯାମିନୀ ହୋଇଲା ଆସି କର୍ମ ଥିବା ଆମ୍ଭେ
ଶ୍ରୀରାମ ବୋଇଲେ ତୁମ୍ଭେ ଉଜ୍ଜ୍ୱଳ ଆଣି ଜାଳ
ଏତୁଡ଼ ଚନ୍ଦ୍ରଦୀପ ଲଗିଲା ସକଳ ।
ମଙ୍ଗଳ ଆଳତି ଆଣି ବଶିଷ୍ଠ ଯେ କଲେ
ରତ୍ନ ହାନ୍ଦୋଳାରେ ଜାନକୀ ବିଜେକଲେ ।
ରତ୍ନଛତ୍ର ଆଢ଼େଣୀ ଆଗରେ ଟେକାଇଲେ
ଚାମରୀ ଆଲଟ ପଙ୍ଖା ଆଗରେ ଢାଳିଲେ ।
ରାମତାଳ ତୁଳତୁଳ ଶବଦ ସକଳ
ସହସ୍ରେ ଅପ୍ସରୁଣୀ ତ୍ରିଜଟା ସଙ୍ଗର ।
ହାନ୍ଦୋଳାର ଚାରିପାଖେ ବେଢ଼ିକରି ରହି
ଆଗରେ ନୃତ୍ୟ ଗୀତ ଶଙ୍ଖ ଭେରୀ ଦେଇ ।
କାହାଳୀ ଘାର ତୂରୀ ସୀତାର ଯେ ବାଜ
ଆଗରେ ମଣିମା ଡାକ ପଡ଼େ ଗଳଗାଜ ।
ସୁଖାସନ ଉପରେ ଶ୍ରୀରାମ ବିଜେକଲେ
ମଙ୍ଗଳ ଆଳତି ଯେ ବଶିଷ୍ଠ ସାରିଲେ ।
ଧୀରେ ଧୀରେ ହାନ୍ଦୋଳାରେ ବିଜେକରିଯାନ୍ତି
ଆଗରେ ସୀତାସ୍ତ୍ରୀ ପଛରେ ଶ୍ରୀରାମନ୍ତି ।
ସ୍ୱର୍ଗ ମଣ୍ଡଳୁ ଶୋଭା ପାଉଛି ସକଳ
ଦେବନଦୀ କୂଳରେ ପ୍ରବେଶ ଆହୋବଳ ।
ଶ୍ରୀରାମ ସଙ୍ଗରେ ଭାଇ ସୁଗ୍ରୀବର
ଆନନ୍ଦରେ ମିଳିଲେ ନଦୀର କୂଳର ।
ହାନ୍ଦୋଳାରୁଉତୁରିଦେବୀନଦୀରେ ସ୍ନାନକଲେ
ଶ୍ରୀଅଙ୍ଗ ପୋଛି ଦେବାଙ୍ଗ ବସନ ପିନ୍ଧିଲେ ।
ନିତ୍ୟକର୍ମ ସାରି ପିତୃଙ୍କୁ ଜଳ ସମର୍ପିଲେ
ଚନ୍ଦନ ଲାଗିହୋଇ ସୁଖାସନେ ବିଜେକଲେ
ଆଗରେ ବଇଦେହୀ ପଛରେ ରଘୁଧାରୀ
କନକ ମଣ୍ଡପରେ ବିଜୟକଲେ ରାବଣାରି ।
ହାନ୍ଦୋଳାରୁ ଉତୁରିଗଲେ ଦେବୀ ସୀତା
କନକ ମଣ୍ଡପରେ ବିଜେ ଜନକ ଦୁହିତା ।
ସାଟକନ୍ଦ ଆଣିଣ ଶତ୍ରୁଘନ ଦେଲେ
ଶୀତଳ ମଣୋହି ଶ୍ରୀରାମ ତୃପ୍ତି କଲେ ।
ଆଚମନ ସାରିଣ ଭୁଞ୍ଜେ ବଇଦେହୀ
ଜନଙ୍କଇ ଭୁଞ୍ଜିଣ ସନ୍ତୋଷ ମନ ହୋଇ ।

ଅଷ୍ଟସେନା ପଚାଶ ଯୂଥପତି ପୁଣ
ସୁଗ୍ରୀବର ନେମପାଦ ଭୋଜନକଲେ ଜଣ ।
ଯେ ଯାହା ଠଣାରେ ଯାଇ ରହିଲେ ସକଳ
ପଚାଶ ସେନାପତି ଜଗିଲେ ରାଜର ।
ବଶିଷ୍ଠ ମହାଋଷି ନିତ୍ୟକର୍ମ ସାରି
ତାଙ୍କର ନିଜ ସ୍ଥାନେ ଗଲେ ତପସ୍ୱୀ ।
ଫଳମୂଳ ଭୋଜନ କଲେ ମୁନିବର
କାମଧେନୁ ସଙ୍ଗରେ ଅଛନ୍ତି ତାଙ୍କର ।
ଏଥୁଅନନ୍ତରେ ଯେ ରଜନୀ ପାଞ୍ଚଘଡ଼ି
ଜାନକୀଙ୍କି ବେଶକଲେ ବିଭୀଷଣର କୁମାରୀ
ଅଷ୍ଟରତ୍ନେ ଜଡ଼ିତ ଯେ ଜାନକୀ ଶରୀର
ଚନ୍ଦନ ଲଗି କଲେ ଯେ ସର୍ବାଙ୍ଗ ତାଙ୍କର ।
ଅଲେଖ ତିଳକ ବେଶ କଲେ ଯେ ତ୍ରିଜଟା
ପଞ୍ଚବର୍ଣ୍ଣେ ଫୁଲ ରଚିଲା ଗଣ୍ଠିଗୋଠା ।
ଯୂଡ଼ାବାନ୍ଧି ଫୁଲଗଭା ତର୍ଣ୍ଣିରେ ବେଢ଼ ବେଣୀ
ମସ୍ତକେ ସିନ୍ଦୂର ଦେଇ ଅଞ୍ଜନ ରଞ୍ଜିଲା ।
ଚରଣରେ ଅଳତା ଲେପିଲେ ନେଇ ପୁଣ
ଦେବାଙ୍ଗ କାଞ୍ଚୁଲା ପିନ୍ଧାଇ ଯତନ ।
ଅମଳାନ ଶାଢ଼ୀ ନେଇଣ କାଛି ପିନ୍ଧାଇଲା
ରତ୍ନଖଟ ଉପରେ ନେଇ ବସାଇଲା ।
ପଲଙ୍କ ସ୍ୱପାଟ ଗୋଟି ଶଯ୍ୟା କଲା ବେଶେ
ଚନ୍ଦ୍ରକାନ୍ତ ହୀର ଖଞ୍ଜିଲା ରତ୍ନବିଦ୍ଧେ ।
ସକଳସ ବଣ୍ଟରେ ଜାଳେ ଦୀପମାନ
ଜାନକୀର ଚରଣେ ଓଳଗି ହୁଏ ପୁଣ ।
ସେଠାରୁ ତ୍ରିଜଟା ଶ୍ରୀରାମ ପାଶେ ଗଲା
ଗଡ଼ାଗଲା ଚରଣେ ଯାଇଣ ଶୋଇଲା ।
କରଯୋଡ଼ି ଉଭାହୋଇ ବୋଲଇ ବଚନ
ନ ବୋଲିବ ମୋ ଜନନୀକି ରଘୁନାଥ ପୁଣ ।
ତ୍ରିଜଟାଠାରୁ ରାମ ଏସନ ବାଣୀ ଶୁଣି
ସହସ୍ରେ ଅସୂଷକ ଡକାଇଲେ ପୁଣି ।
ବୋଇଲେ ଯେଯାହା ଘର ଯାଅତୁମ୍ଭେଭଲେ
କାଲିବେଳେ ଭେଟ ହେବ ଆସି କୂଳେ ।
ଦଶଜଣ ତ୍ରିଜଟା ବିଶାଖା ସଙ୍ଗେ ଥାଅ
ଆଉ ସମସ୍ତେ ତୁମ୍ଭେ ଯେ ଯାହା ଘର ଯାଅ
ଏତେବୋଲି ଶତ୍ରୁଘନକୁ ଡାକିଲେ ରାବଣାରି
ଜଣକେ ଶତେ ସୁନାଆଁ ଦିଅ ହେ ବୋଧକରି

ଶୁଣିଣ ଶତ୍ରୁଘନ ଭଣ୍ଡାର ଫେଡିଲା
ଶତେ ଲେଖାଏଁ ସୁବର୍ଣ୍ଣ ଜଣଙ୍କେ ଆଣିଦେଲା
ଧନ ପାଇ ଅସୁରୁଣୀ ଯେ ଯାହା ଘର ଗଲେ
ବିଶାଖା ତ୍ରିଜଟା ସଙ୍ଗେ ଦଶଜଣ ରହିଲେ ।
ଶତ୍ରୁଘନ ଭରତ ଲକ୍ଷ୍ମଣ ତିନିଜଣ
ଖାଡ଼ୀଘରେ ରହିଲେ ଯାଇଣ ସେ ପୁଣ ।
ଦଶ ଅସୁରୀ ସଙ୍ଗରେ ଘେନିଣ ତ୍ରିଜଟା
ଖାଡ଼ୀଘରେ ଯାଇ ରହେ ବିଭୀଷଣ ସୁତା ।
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ପୁଣ
ପଲଙ୍କ ଉପରେ ବସିଲେ ଯାଇଣ ।
ସୀତାଙ୍କୁ କୋଳରେ ଆଣି ବସାଇଲେ
ମାଧୁର୍ଯ୍ୟ ବଚନ ସୀତା ଦେବୀଙ୍କି କହିଲେ ।
ମନକୋଧ ହେଲକ ଗୋ ଅସୁର ଘରେରହି
ଲକ୍ଷ୍ମଣଙ୍କୁ ଗାଳିଦେଇ ଅଇଲୁ ବନ୍ଦମୁହିଁ ।
ଭାଇ ମୋର ସେବାକରି ଥାଏ ତୋଚରଣେ
କୁବାର ଭାଷା ତାଙ୍କୁ କହୁ ଗୋ ଅନୁକ୍ଷଣେ ।
ତୋହର ପାଇଁ ପ୍ରାଣ ମୁରୁଛୁ ତୋହସଙ୍ଗେ
ଯେତେ ଦୁଃଖ ସହିଣ ବିମୁଖ ନୁହେ ଅଙ୍ଗେ ।
ଶୁଣିଣ ଜାନକୀ ଯେ କହନ୍ତି ମୃଦୁବାଣୀ
ସେଥିର ସକାଶେ ମୁଁ ପାଇଲି ଶାସ୍ତି ପୁଣି ।
ଏବେ ସେ ଦୋଷ ମୋର କ୍ଷମାକର ପୁଣି
ସେ ଦୋଷରୁ ଅନ୍ତର ବିଧାତା କଲା ଜାଣି ।
ଶୁଣିକରି ଶ୍ରୀରାମ ଯେ ପରମ ତୋଷ ହେଲେ
ବଇଦେହୀଙ୍କି ଘେନିଣ ପଲଙ୍କେ ନିଦ୍ରାଗଲେ
ନାନା ଲୀଳା ରସରେ ପୁହାଇଲେ ନିଶି
ମନରେ ସନ୍ତୋଷ ଯେ ହେଲେ ବ୍ରହ୍ମରାଶି ।
ଦେବଆଳେ ଶଙ୍ଖ ଶବଦ ଯହୁଁ ହେଲା
ନିଦ୍ରା ତେଜି ଉଠିଲେ ଦଶରଥ ବଳା ।
ଜାନକୀ ଉଠିଣ ତ୍ରିଜଟା ସଙ୍ଗେ ମେଳ
ନଦୀରେ ସ୍ନାନ କଲେ ଜନକ ଦୁଲାଳ ।
ନଦୀରେ ପଶିଣ ସ୍ନାନ ଶୁଚି ହୋଇଲେ
ନିଜ ଆଶ୍ରମରେ ଯାଇ ପ୍ରବେଶ ହୋଇଲେ ।
ସୁଗ୍ରୀବ ଗୁହ ନାମେ ଶବର ନେମପାଳ
ପ୍ରବେଶ ହେଲେ ଆସି ଶ୍ରୀରାମଚନ୍ଦ୍ର ଆଗ ।
ମାର୍ଜଣା ମର୍ଦ୍ଦନ ଯେ ହେଲେ ଦାଶରଥି
ଦେବ ନଦୀରେ ଯାଇଣ ସ୍ନାହାନ କରନ୍ତି ।
ନିତ୍ୟକର୍ମ ସାରଣ ପିତୃଙ୍କୁ ଜଳ ଦେଲେ
କନକ ମଣ୍ଡପରେ ଆସିଣ ମିଳିଲେ ।
ଦେବାଙ୍ଗ ପଟମା ଯେ ପିନ୍ଧିଲେ ଦେବ ପୁଣ
ଚନ୍ଦନ ଲଗି ହୋଇଲେ ଦଶରଥ ନନ୍ଦ ।
ନାନା କୁସୁମରେ ଶିରେ ଘଞ୍ଜ ବାନ୍ଧି
ରାଜବେଶ ହୁଅନ୍ତେ ସମସ୍ତ ଦେଖେ ସିଦ୍ଧି ।
ଅଙ୍ଗଦ ହନୁମନ୍ତ ଅଷ୍ଟ ସେନାପତି
ତାଙ୍କୁ ଚାହିଁ ଶ୍ରୀରାମଚନ୍ଦ୍ର ବଚନ କହନ୍ତି ।
ତୁମ୍ଭେମାନେ ଯାଇଣ ରାଜାମାନଙ୍କୁ କହ
ନିତ୍ୟକର୍ମମାନ ସାରନ୍ତୁ ନର ଦେହ ।
ଆମ୍ଭର ପାକରେ ଆଜ କରିବେ ଭୋଜନ
ଏତେବୋଲି ଆଜ୍ଞାଦେଲେ ଶ୍ରୀରାମ ରାଜନ ।
ଶୁଣିକରି ସେନାପତି ବେଗେ ଚଳିଗଲେ
ସକଳ ରାଜାଙ୍କୁ କହି ଫେରିଣ ଆସିଲେ ।
ଏ ସମୟେ ବିଭୀଷଣ ଆସି ଉଭା ହୋଇ
ଶ୍ରୀରାମଙ୍କ ଚରଣେ ପାଏ ପଡ଼ି ଶୋଇ ।
ରାଜାମାନଙ୍କର ପାଇଁ ସଖା ଆଣିଥିଲା
ଶ୍ରୀରାମଙ୍କ ଆଗରେ ନେଇଣ ତାହା ଦେଲା ।
ତ୍ରିଜଟାକୁ ଡାକାଇଣ ରାମଚନ୍ଦ୍ର କହି
ସୀତାଙ୍କୁ ବୋଲ ପାକ କରନ୍ତୁ ବେଗେ ଯାଇ
ଶୁଣିକରି ତ୍ରିଜଟା ସୀତାଙ୍କ ଆଗେ କହି
ଶୁଣି ପାକଶାଳେ ରନ୍ଧନ କଲେ ବଇଦେହୀ ।
ଗୁହନାମେ ଶବରକୁ କହିଲେ ରାମ ପୁଣ
ସ୍ନାନ ନିର୍ମଳ ତୁମ୍ଭେ କର ହେ ବହନ ।
ମନ୍ତ୍ରଦୈତ୍ୟକୁ ବୋଇଲେ ଶୁଣ ମୋ ବଚନ
ସ୍ୱର୍ଣ୍ଣ ପ୍ରସ୍ତ ତିନି ପୁଣ କର ଆବରଣ ।
ଶୁଣିଣ ମନ୍ତ୍ରଦୈତ୍ୟ ଉପାୟ ରଚିଲା
ବାରକୋଶ ପରିଯନ୍ତେ ନାଟ ବାଡ଼ ଦେଲା ।
ଉପରେ ଚାନ୍ଦୁଆ ଟାଣି ଗ୍ରୁମ୍ଭିଆ କରି
ତଳ ପିଣ୍ଡ ଉତ୍ତମ ନିର୍ମଳ ହେଲା ପରି ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଲକ୍ଷ୍ମଣଙ୍କୁ ଶ୍ରୀରାମ ଡାକିଣ ପଚାରି ।
କେମନ୍ତେ ରାଜାମାନେ କରିବେ ଭୋଜନ
ଏଥିର ବିଚାର ମୋତେ କହ ହେ ଲକ୍ଷ୍ମଣ ।
ସଉମିତ୍ରୀ ବୋଇଲେ ଦେବ ନକର ଶୋଚନା
କଥାଏ କହିବି ଦେବ କରିବ ଯେ ସେନା ।

ଦେବତାଏ ବସ୍ତ୍ର ଜରିଣ କୂଟ ବୁଦ୍ଧି
ବାଣେଳୀଙ୍କ ସଙ୍ଗରେଚଉଷଠି ଯୋଗି୍ନରେଦ
ସୁବଳସ୍ଥା ଗିରିର ଦକ୍ଷିଣେ ଅଛନ୍ତି
ଅସୁରଙ୍କୁ ଭକ୍ଷି କପିବଳ ସେ ଖାଆନ୍ତି ।
ତାଙ୍କ ସଙ୍ଗେ କାଳକା ଅଛନ୍ତି ପୁଣ ରକ୍ତ
ମସ୍ତିରାବଣ ଯୁଦ୍ଧକାଳେ ଦେବେଥିଲେଯଠିଆଇ
ଶତମୁଖା ମରିବାକୁ ଦେବେ କୂଟ କଲେ
ତେତିଶ କୋଟି ବଳ ଶତ୍ରୁଘନଙ୍କୁ ଦେଲେ ।
ଦେବଗଣ ସମସ୍ତେ ଦେଲେ ଶରମାନ
ଶତ୍ରୁଘନ ମାରିଲେ ଯେ ଦଶଗ୍ରୀବ ପୁଣ ।
ଅସୁରଗଣଙ୍କୁ ଲ୍ପନ କରିବାକୁ ପାଞ୍ଚ
ଚର୍ଚ୍ଚିକାଇ ସଙ୍ଗରେ ପିଶାଚୁଣୀଗଣ ସେଷ୍ଟି ।
ଯେବନ୍ତେ ଶତଗ୍ରୀବର ସୈନ୍ୟ ଭସ୍ମ କଲେ
ସେହି ବାଣେଳୀ ଆସିଣ ସଙ୍ଗେ ଠୁଳ ହେଲେ
ତାହାକୁ ସୁମରଣା କର ହେ ରାବଣାରି
ସମସ୍ତଙ୍କୁ ପରକ୍ଷିବେ ଜନକ କୁମାରି ।
ଶୁଣିକରି ଶ୍ରୀରାମ ଯେ ସନ୍ତୋଷମନ ହେଲେ
ସେହି ପୁଣ କେମନ୍ତେ ଜାଣିଣ ପଚ୍ଚରିଲେ ।
ଲକ୍ଷ୍ମଣ ବୋଇଲେ ଦେବ ଶୁଣ ଆଗରେ ପୁଣ
କୁଶପାଣି କହିଲେ ଯେ ଶୁଣର ଭଆଣ ।
ଯେତେବେଳେ ବୋଇଲେଅସୁରବଳ ଖାଆନ୍ତୁ
କୁଶପାଣି ବୋଇଲେ ଯେ ଭସ୍ମ ହେଲେ ତନ୍ତୁ
ରାମ ବୋଇଲେ ଯେ ଦେବତାଏ ସ୍ୱର୍ଗ ଗଲେ
ତନପୁର ଋଷି ପୁଣି ଆଶ୍ରମେ ଚଳିଲେ ।
ସିଦ୍ଧଗଣ ନାଗଗଣ ଗଲେ ଯେଝା ସ୍ଥାନ
ଦିଗପାଳ ନବଗ୍ରହ ଅଷ୍ଟବସୁ ପୁଣ ।
ଅପସରା ବିଦ୍ୟାଧରୀ କିନ୍ନରୀ ଯକ୍ଷ ନାରୀ
ପିତୃଲୋକ ଅମର ଯେ ଗଲେ ସ୍ୱର୍ଗପୁରୀ ।
ଦେବୀଗଣ ଯୋଗିନୀଗଣ ପିଶାଚୁଣୀଗଣ
ଏ କର୍ମା ସ୍ୱର୍ଗପୁରକୁ ନକଲେ ଗମନ ।
ଏଥିର ସନ୍ଦେଶ ମୋତେ କହ ସଉମିତ୍ରୀ
ଶୁଣିବାକୁ ମୋର ମନ ପ୍ରତେ ଯେ ହେଉଛି ।
ଲକ୍ଷ୍ମଣ ବୋଇଲେ ଦେବେ କହିଲେଦେବବର
ସେକଥା କ ଶୁଣ ମନ ହୋଇଲା ପାଶୋର
କୁମ୍ଭେ ଯେ ବୋଇଲ ଦେବବରଙ୍କୁ ବଚନ
ଖାଇଁବାର ମୂର୍ତ୍ତି ଆଉ ନଦେଖେ ନୟନ ।
ସେଥିର ସକାଶେ ତୋତେ କହିଲେଦେବତା
ସହସ୍ରମୁଖା ରାବଣ ଅଛେ ଜଗଜ୍ଜିତା ।
ତାର ସଙ୍ଗରେଣ ଯୁଦ୍ଧ ହୋଇବ କୁମ୍ଭର
ରୁକ୍ଷକପି ପଦାତି ଯେ ମରିବେ ସକଳ ।
ରଥ ହସ୍ତୀ ଅଶ୍ୱ ପଦାତିଙ୍କ ନାଶଯିବେ
ଯେତେବେଳେ ସୁମରଣା କରିବୁ ରାଘବେ ।
ସେତେବେଳେ ଆମେ ଖାଆଇବୁ ତୋରବଳ
ଦେବୀଗଣ ଭକ୍ଷିବେ ଯେ ମରିବେ ଦୈତ୍ୟବଳ
ଏତେବେଳେସ୍ପତେସିବୁବୋଲିଣ ବୋଇଲେ
କହିଣ ଯେ ଦେବବ୍ରହ୍ମା ନିଜପୁରେ ଗଲେ ।
ସେଥିର ସକାଶେ ଦେବୀ ଅଛନ୍ତି ଯେ ମସ୍ତି
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷ ମନ ହୋଇ ।
ବାଣେଳୀ କାଳକାଙ୍କୁ ସୁମରଣା କଲେ
ତେସ୍ତରିକୋଟି ଦେବୀ ପ୍ରବେଶ ହୋଇଲେ ।
ଶ୍ରୀରାମ ଚରଣରେ କରନ୍ତି ବସ୍ତିମା
କରଯୋଡ଼ି ଆଗେ ଉଭା ହେଲେ ଯେଉବାମା
ଶ୍ରୀରାମ ବୋଇଲେ ମୋତେ କୁମ୍ଭେ ହୃଅସାସ୍ତୁ
ସୈନ୍ୟବଳ ରାଜାବଳ ରୁକ୍ଷ କପିପ୍ରିସ୍ତୁ ।
ହସ୍ତୀଘୋଡ଼ା ସାରେଣୀଯେଦୈତ୍ୟବଳଯେତେ
ଏମାନଙ୍କୁ ଭୋଜନ ଦିଅ ଟଗା କୁରିତେ ।
ବଇଦେହୀ ରୂପମାନ ପ୍ରକାଶ କର ପୁଣ
ଶୁଣିଣ ସକଳଦେବୀ ହରଷ ହେଲେ ମନ ।
ଜାନକୀ ରୂପଗୋଟି ସମସ୍ତେ ଧରିଲେ
ସୀତାଙ୍କର ଚରଣରେ ଓଳଗି ହୋଇଲେ ।
ତାଙ୍କୁ ଦେଖି ଶ୍ରୀରାମ ଯେ ଭରତଙ୍କୁ ଚାହିଁ
ବଶିଷ୍ଠ ଋଷିଙ୍କି ବେଗେ କହ କୁମ୍ଭେ ଯାଇ
ବୋଲିବ ଏ ସମସ୍ତ ଯେ କରିବେ ଭୋଜନ
କାମଧେନୁ ଯେଉଁରୂପେ ହୁଅନ୍ତି ପ୍ରସନ୍ନ ।
ଶୁଣିକରି ଋଷି ଯାଇ ଗୋମାତାଙ୍କୁ କହି
ଶୁଣିଣ ସୁରଭି ପରମ ତୋଷମନେ ହୋଇ ।
ଜନକ ମଣ୍ଡପରେ ସକଳ ବୃଷ୍ଟି କଲେ
ଜନପୁର ଜନେ ବୁଝିଲେ ନ ସରିବ ଭଲେ
ଶତ୍ରୁଘନ ଲକ୍ଷ୍ମଣ ଯେ ସେନାପତି ଯୂଥପତି
ସମସ୍ତ ରାଜାଙ୍କୁ ଡାକ ଆଣିଲେ ତରତ ।
ପାତ୍ରମନ୍ତ୍ରୀ ପଏରାର ପଦାତି ରଥିବଳ
ହଟାରି ବଜାରି ଯେତେ ହୋଇଲେକ ମେଳ

ବିଭୀଷଣଙ୍କୁ କହି ରାକ୍ଷସ ବଳ ଆଣି
ସୁଗ୍ରୀବର ସଙ୍ଗରେ ଋକ୍ଷ କପି ପୁଣି ।
ଗୁହନାମେ ଶବର ସଙ୍ଗରେ ସୈନ୍ୟବଳ
ଯେ ଯାହାର କୂଳ ଶ୍ରେଣୀ ବସିଲେ ସକଳ ।
ରାଜାମନ୍ତ୍ରୀମାନଙ୍କୁ ଆସନ ସେଥି ଦେଲେ
ଯେ ଯାହାର ଅନୁକ୍ରମେ ସମସ୍ତେ ବସିଲେ ।
ରମ୍ଭାପତ୍ର ଦେଇ ଦେବୀ ଅନ୍ନ ପରଷନ୍ତି
ସକଳ ଦେବୀଗଣେ ସୀତା ରୂପ ହୋନ୍ତି ।
ରାଜା ପାତ୍ର ପରଜା ମନଇଚ୍ଛା ଭରି
ଅନ୍ନ ବ୍ୟଞ୍ଜନ ଷଠି ଭୋଜନମାନ କରି ।
ଋକ୍ଷ କପିମାନଙ୍କୁ ଦେଲେ ଫଳମୂଳ
ବଇତଙ୍କୁ ଦେଲେ ମାଂସ ଯେ ଆହାର ।
ସକଳେ ଦେଖନ୍ତି ସୀତା ଆଣି ପରଷନ୍ତି
ଉତ୍ତମ ପଦାର୍ଥ ରାଜା ପ୍ରଜା ଭୁଞ୍ଜନ୍ତି ।
ଯେ ଯାହା ବାଞ୍ଛା କରେ ତାହାକୁ ନେଇଦ୍ୟନ୍ତି
ଭୋଜନରେ ରାଜାମାନେ ସନ୍ତୋଷ ହୁଅନ୍ତି ।
ବିଚାରିଲେ ଯେଉଁଠାରେ ପରମ ଲକ୍ଷ୍ମୀବିଜେ
ଯେଉଁଠି ପରମବ୍ରହ୍ମ ଶ୍ରୀରାମ ରୂପେ ବିଜେ ।
ସେଠାବରେ କିସ ଅବା ଅପୂର୍ବ ଯେ ପୁଣ
ଅମ୍ବର ଗରବ ଆଜ ଗଞ୍ଜିଲେ ନାରସୁଣି ।
ଭୋଜନ ସାରିଣ ସର୍ବେ ଆଚୋବନ କଲେ
ଯେ ଯାହାର ଶାଢ଼ୀଘରକୁ ରାଜା ଚଳିଗଲେ
ବଇତେ ଭୋଜନ କରି ଲଙ୍କାଗଡ଼କୁ ଗଲେ
ଋକ୍ଷ କପି ଭୁଞ୍ଜିଣ ସନ୍ତୋଷ ହୋଇଲେ ।
ଦେବୀମାନେ ସମସ୍ତେ କଲେକ ଭୋଜନ
ସନ୍ତୋଷ ହେଲେ ଦେବୀ ପ୍ରସନ୍ନ କଲେ ମନ
ପିଶାଚୁଣୀଗଣ ଆସି ପ୍ରବେଶ ହୋଇଲେ
ମଦମାଂସ ଭକ୍ଷିଣ ଆନନ୍ଦ ମନ ହେଲେ ।
ସୀତାଙ୍କ ଚରଣେ ସର୍ବେ ନମସ୍କାର କଲେ
ଶ୍ରୀରାମଙ୍କ ଆଗରେ ସେ ବିସ୍ମର ଭଜ୍ଞ ହେଲେ
ଦେଖିକରି ଶ୍ରୀରାମ ବୋଇଲେ ବଚନ
ଯୁଦ୍ଧ ତ ସରିଲା ଏବେ ଚଳ ନିଜ ସ୍ଥାନ ।
ଦେବଙ୍କ କାର୍ଯ୍ୟକର ତ ଅଇଲ ଯର୍ଜିପାଇଁ
ଯେ ଯାହାର ଆଶ୍ରମକୁ ଚଳ ବେଗହୋଇ ।
ବାଣେଳୀ ବୋଇଲେ ହେବ ଆହୁରିଅଛିଯୁଦ୍ଧ
କେତେ ଦୈତ୍ୟ ନାଶିବେ ମାରିବେ ରାଘବ
ଦୁଷ୍ଟ ରାକ୍ଷସଙ୍କୁ ଆମ୍ଭେ କରିବୁ ଭସ୍ମରାଶି
ତେବେ ସିନା ଉଶ୍ୱାସକୁ ଲଭିବ ଧରଣୀ ।
ଏତେକହି ଦେବଗଣ ପର୍ବତକୁ ଗଲେ
ସେଠାରୁ ଦାଶରଥି ମନରେ ବିଚାରିଲେ ।
ପବନକୁ ସୁମରଣା କଲେ ରଘୁଧାତ୍ର
ପବନ ଦେବତା ବେଗେ ଶୀଘ୍ରରେ ଆସି ମିଳି
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମରୁତ
ସମସ୍ତେ ଭୋଜନ କଲେ ପଡ଼ିଛି ଉଚ୍ଛିଷ୍ଟ ।
ତୁମ୍ଭେ ବିଚାରିଲେ ଏ ସମସ୍ତ ଯିବ ନଷ୍ଟ
ଶୁଣିଣ ପବନ ଦେବତା ମାରେ କରତାଳି ।
ଉଚ୍ଛିଷ୍ଟ ପତ୍ରମାନ କେଣେ ଗଲେ ଉଡ଼ି
ସମୁଦ୍ରରେ ପକାଇ ଦେଲା ନେଇକରି ।
ତତ୍ପରେ ମେଘମାନେ ଜଳ ବୃଷ୍ଟି କଲେ
ଉଚ୍ଛିଷ୍ଟ ସ୍ଥାନ ନିର୍ମଳ ଭୁବତେ ହେଲା ଭଲେ
ହସ୍ତୀ ଅଶ୍ୱ ସାରେଣୀ କଲେକ ଆହାର
ଯେ ଯାହାର ପଞ୍ଚବ୍ରଜକ ପରଶିଲେ ସତ୍ୱର
ପାର୍ବତୀ ବୋଇଲେ କେବ ଆହୁରି କଥା ଅଛି
ଦେବୀମାନେ ସମସ୍ତଙ୍କୁ ଦେଲେ ଯେ ପରଶି ।
ଅନେକ ଦେବୀ ସେଥିରେ ଦେଖିଲେ ସକଳ
କେମନ୍ତେ ବିଚାର କଲେ କହ ହେ ଶଙ୍କର ।
ଈଶ୍ୱର ବୋଇଲେ ଦେବୀ କୃତ ମାୟାକଲେ
ଏକ ସୀତା ପରଶନ୍ତି ସମସ୍ତେ ଦେଖିଲେ ।
ପାର୍ବତୀ ବୋଇଲେ ଏଥି ଉତ୍ତରୁ ହେଲା କିସ
ଅଯୋଧ୍ୟାକୁ ଗଲେ ଟିକ ଦଶରଥ ଶିଷ୍ୟ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣଗୋ ଶାକମ୍ଭସ
ଲକ୍ଷେ ରାଜାଙ୍କ ମନ ତ୍ରପତ ରାମକରି ।
ଅଯୋଧ୍ୟାକୁ ଯିବାକୁ ଚଞ୍ଚଳ ତାଙ୍କ ମନ
ଏମନ୍ତ ସମୟରେ ମିଳେ ବିଭୀଷଣ ।
ଲଙ୍କାଗଡ଼ରେ ଯେତେ ଯୁବାସ୍ତ୍ରି ପୁଣ
ନାନାରତ୍ନେ ଭୂଷଣ ହୋଇଲେ ତତକ୍ଷଣ ।
ସୁବର୍ଣ୍ଣର ଘଟରେ ଜଳ ଭରି ଘେନ
ଶିରଧା କରିଣ ଯେ ଦେଖନ୍ତି ରଘୁମଣି ।
ବିଭୀଷଣ କଣାଏ ଶୁଣିବା ରଘୁବୀର
ତୁମ୍ଭେ ଦେବେ ଶ୍ରୀରାମ ହେ ମାଜଣା ବିଧିସାର
ଜଟା ଫେଡ଼ି ତୁମ୍ଭେ କୁସୁମେ ବେଣି ବାନ୍ଧ
ନାନା ଅଳଙ୍କାର ଦେବ ଶିରରେ ଦେବୋମନ୍ତ୍ର

ଏକା ଏବେଣେ ଗଲେ ମୁଁ ପାଇବ କେଉଁ ସୁଖ
ଏତେ ଥାଟ ଗୃହଗଲେ ପାଇବେ ବହୁ ଦୁଃଖ
ବିଭୀଷଣ ବୋଇଲେ ହେ ଶୁଣିବା ଗୋସାଇଁ
ଏହୁ ଦେବଯାନକୁ ସୈନ୍ୟ କୁସ୍ତର ନାହିଁ ।
ଶତେ ଯୋଜନ ବିସ୍ତାର ଏ କାମରୂପୀ ରଥ
ଆବର କଥା ଏ ତୁମ୍ଭେ ଶୁଣ ହେ ରଘୁନାଥ ।
ସେ ବିମାନେ ବସି ପୁଣ ଧରିବା ମନେଯାହା
ତତକ୍ଷଣେ ହେ ସ୍ୱାମୀ ପାଇବା ଆମ୍ଭେ ତାହା
ଦେବଙ୍କର ବିମାନ ଏ ଷଡ ଋତୁ ମିଶା
ଏ ରଥରେ ବସିଲେ ନ ବାଧେ କ୍ଷୁଧା ତୃଷା
ଶୁଣିକରି ଶ୍ରୀରାମ ମନରେ ସନ୍ତୋଷ
ବିଭୀଷଣଙ୍କୁ ବୋଇଲେ ଯାନ ଯେ ବେଗଆସ
ତତକ୍ଷଣେ ଲଙ୍କପତି ଆଣିଲା ବିମାନ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ମିଳିଲେ ଏକ ସ୍ଥାନ ।
ଅଷ୍ଟରତ୍ନେ କଳସ ଯେ ନେତର ଚନ୍ଦ୍ରାଳ
ଚଉକତି ଲମ୍ବଇ ମୁକୁତା ମାଳ ମାଳ ।
ଚନ୍ଦ୍ରକାନ୍ତ ହୀରା ଯେ କଳସ ଉପରେ
ନେତର ଚନ୍ଦ୍ରାଳ ଯେ ଉଡ଼ଇ ଚହିଁରେ ।
ପୂରେ ପୂରେ ମଣ୍ଡପ ଶୃଙ୍ଗ ବନ୍ଧା ଫେର
ବିଚିତ୍ର କମ ବେଢ଼ ଅଛଇ ଚହିଁ ପର ।
ଗଜଦନ୍ତର ପିଢ଼ୁଳା ସୁବର୍ଣ୍ଣ ରସାଣୀ
ଖଞ୍ଜାଖଞ୍ଜି ପିଢ଼ୁଳାରେ ପଦ୍ମରାଗ ମଣି ।
ନୀଳାର ପିଢ଼ା ସେଥିରେ ପୋଏଳାର ଖମ୍ବ
ଅନ୍ତହିଁ ଆରମ୍ଭରେ ଅଶେ ମହା ଦମ୍ଭ ।
ନେତ ପାଟ ପତାକା ଦେବାଙ୍ଗ ବସ୍ତ୍ର ମାନ
ଦେଖିଣ ଶ୍ରୀରାମଙ୍କର ଆନନ୍ଦ ହେଲା ମନ ।
କୈକେୟୀ ପ୍ରସାଦେ ମୋର ଏ ରଥ ସଜନ
ଏହି ଯେ ପୁଷ୍ପରଥ ଦେବତାଙ୍କର ଯାନ ।
ଏତେ କହି ଶ୍ରୀରାମ ଯାନକୁ ପୂଜା କଲେ
ଦେବଯାନ ବୋଲିଣ ଆଦରେ ରଖିଲେ ।
କୈକେୟୀଙ୍କୁ ବୋଇଲେ ଶୁଣ ମୋ ବଚନ
କେତେଦିନେ ଅଯୋଧ୍ୟାରୁ ଅଇଲ ତୁମ୍ଭେପୁଣ
କରଯୋଡ଼ି ଭରତ ଆଗରେ ଉଭା ହୋଇ
ପକ୍ଷକରେ ମୁଁ ଯେ ଅଇଲି ଗୋସାଇଁ ।
ଦଣ୍ଡକେ ଋଷ୍ୟମୂକ ପର୍ବତେ ରହିଲୁ
କିଷ୍କିନ୍ଧ୍ୟା ନଗର ଏହୁ ବୋଲିଣ ଜାଣିଲୁ ।

ଆମ୍ଭର ଗହଳ ଦେଖି ଅଙ୍ଗଦ ମାତା ତାର
ଦୂର ପଠିଆଇ ଆମଙ୍କୁ ଘେନଗଲା ।
କପୀଶ୍ୱରଙ୍କ ସଙ୍ଗେ ମୁଁ ଯେ ଗଲି ତାଙ୍କ ପୁର
ଅଙ୍ଗଦ ମାତା କହିଲା ମୋତେ କରତାକୁସ୍ତର
ବୋଇଲା ଋଷ କପି ଘେନିଣ ବାଣରଥି
ଲଙ୍କାଗଡ଼ରେ ଯାଇଣ ସମର କରନ୍ତି ।
ତୁମ୍ଭର ଭଉଜ ସୀତାଙ୍କୁ ରାବଣ ଘେନଗଲା
ତାଙ୍କ ସଙ୍ଗେ ସେଥିଯୋଗୁ ରାଘବ ଯୁଦ୍ଧକଲା
ତାହାଠାରୁ ଶୁଣି ଆମ୍ଭେ ହୋଇଲୁ ଚଞ୍ଚଳ
ପାଞ୍ଚଦିନେ ପ୍ରବେଶ ସୁବେଳଗିରି ପର ।
ଶୁଣିଣ ଶ୍ରୀରାମ ଯେ ପରମ ତୋଷ ହେଲେ
କେମନ୍ତେ ବାରତାକୁ ପାଇଲୁ ବୋଇଲେ ।
ଭରତ ବୋଇଲେ ମୋତେ କହିଲା ମାରୁତି
ଲକ୍ଷ୍ମଣ ଶକ୍ତିଭେଦ ବୋଲିଣ କହେ ସେଠି ।
ଗନ୍ଧମାଦନରୁ ସେ ଔଷଧ ଆଣୁଥିଲା
ବୃଦ୍ଧା ବସ୍ତ୍ର ରାଣଦ୍ୟନ୍ତେ ସେ ପାଶକୁ ଅଇଲା
ପରତେ ହେବାରୁ କହିଲା ମୋତେ ପୁଣ
ରାମାୟଣ ଯୁଦ୍ଧ ଲଙ୍କାରେ ସମର କରନ୍ତି ସେପୁଣ
ମୂର୍ଚ୍ଛି ଶୁଣି ଲକ୍ଷେ ରାଜା ଘେନିଣ ଅଇଲି
ଶତ୍ରୁଘନଙ୍କୁ ନଗରେ ରଖାଇ ପୁଣ ଦେଲି ।
ମୂର୍ଚ୍ଛି ନ ଆସୁ ଶତ୍ରୁଘନ ମିଳିଲା ଏଥେ ଆସି
ଶୁଣିକରି ଶ୍ରୀରାମ ଯେ ଭରତଙ୍କୁ ପୁଚ୍ଛି ।
ଲକ୍ଷେ ରାଜା କେମନ୍ତେ ଆସି ହେବେ ଠୁଳ
ଭରତ ବୋଇଲେ ଶୁଣ ଅଯୋଧ୍ୟା ଠାକୁର
ଦିନ ଗଣିବାରେ ତୁମ୍ଭ କାମନା ପୂରିଲା
ଅଭିଷେକ ହେବାକୁ ଯେ ତୁମର ଦିନହେଲା
ତେଣୁକରି ଶତ୍ରୁଘନ ଗଲେ ରାଜା ବରି
ସ୍ୱରମାନେ ସ୍ୱରବର୍ଗ ଆଣିଲେ ସେ ବରି ।
ଅଯୋଧ୍ୟା ନଗ୍ରରେ ଠୁଳ ହେଲେ ମାସ ତିନ
ମାରୁତି କୁଣ୍ଡରୁ ଶୁଣି ଅଇଲୁ ଆମ୍ଭେ ପୁଣି ।
ଶ୍ରୀରାମ ବୋଇଲେ ସେ ପର୍ବତ କେଣେ ଖୁଣ
କେମନ୍ତେ ଅଇଲ ବାକୁ ଦିନକର ନକଟ ।
ଭରତ ବୋଇଲେ ଗୁହ ନାମେ ଯେ ଶବର
ବନସ୍ତ କାଟି ବାଟ ସଳଖ କଲା ସାର ।
କୋତାଳିଆ ଆସି ମୂଳ ତାଡ଼ି ଉଛ କଲେ
ଛେଦଦାର କୃପ ବାମ୍ପୀ ବାଟରେ ଖୋଆଇଲେ

ବଶିଷ୍ଠ ଯେ କାମଧେନୁ ସଙ୍ଗରେ ଆଣିଲେ
କାମଧେନୁ ପ୍ରସାଦରେ ସମସ୍ତେ ସୁଖୀହେଲେ
ଦୁଇଶତ ଯୋଜନ ପଥ ଏଠାକୁ ଅଯୋଧ୍ୟା
ସପ୍ତ ଦିବସେ ଅଇଲୁ ବାଟ କରି ସୋଧା ।
ଲଙ୍କାର କାଣ୍ଡ ଗୋଟାଏ ଅଯୋଧ୍ୟାକୁ ପୁଣ
ସ୍ମର ଯୋଜନ ଓସାରରେ ମେଳ ଅଛି ଜାଣ ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଯୂଥପତି ସେନାପତି ସୁଗ୍ରୀବ ବୋଇଲେ ।
ଭୃତ ଆସିବାର ବାଟେ କରିବା ଗମନ
ଆସିଲବେଳକୁ ଚାରି କହୁଛନ୍ତି ପୁଣ ।
ସ୍ନାନସାରି ଉଠିଣ ଯେ ସେଠାରୁ ଚଳସଲେ
ରାଜାମାନଙ୍କୁ ଯାଇଣ ବୁଝାଇ କହିଲେ ।
ବୋଇଲେହେ ରାଜାମାନେ ଆମ୍ଭରବାଣୀଶୁଣ
ନସାର୍ଥକବେଳେ ମୋତେ ସାର୍ଥକ ହେବପୁଣ
ଏବେ ଯେ ଯାହା ଭୁବନକୁ ଯାଅ ତୁମ୍ଭେଚଳି
ନିଜ ରାଜ୍ୟମାନଙ୍କୁ ତୁମ୍ଭେ ରଖ ପ୍ରଜାପାଳି ।
ଭ୍ରାତ ବନ୍ଧୁ କୁଟୁମ୍ବ ଯେ ପୁତ୍ର ନାତି ଦେଖ
ନିଶ୍ଚିନ୍ତ ହୋଇଣ ତୁମ୍ଭେ ସୁଖ ଭୋଗ ପାଅ ।
କୌଣସି ଯେ ଭୟ ଆଉ ନୋହିବ ତୁମ୍ଭଙ୍କୁ
ଭୟ ହେଲେ ସ୍ମରି ପେଶ ମୋହର ପାଶକୁ
ଶୁଣିକରି ରାଜାମାନେ ବୋଲନ୍ତି ଉତ୍ତର
ଅଯୋଧ୍ୟାକୁ ତୁମ୍ଭ ସଙ୍ଗେ ଯିବୁ ହେ ରଘୁବୀର
ନୟନେ ଦେଖିଲେ ତୁମ୍ଭଙ୍କୁ ସ୍ୱର୍ଗ ଲାଭ ପାଇ
ବୁଦ୍ଧି ମନ ପ୍ରକୃତି ତୁମ୍ଭଠାରେ ଥାଇ ।
ଯିବାକୁ ତ ମନ ନୁହେଁ ରହିବୁ ତୁମ୍ଭ ସଙ୍ଗେ
ତ୍ରୈଲୋକ୍ୟ ଠାକୁର ଯେ ଅଟ ପ୍ରଭୁ ତୁମ୍ଭେ
ଏତେକହି ରାଜାଗଣ ଚରଣେ ନମିଲେ
ଶୁଣିଣ କୋଦଣ୍ଡଧାରୀ ସନ୍ତୋଷ ମନ ହେଲେ
ବୋଇଲେ ସମସ୍ତେ ତୁମ୍ଭେ ହୁଅ ବେଗେସଜ
ଅଯୋଧ୍ୟାକୁ ଚଳିଯିବା ନ ରହି ଏଥି ଆଜ ।
ରାଜାଙ୍କୁ କହି ଶ୍ରୀରାମ ଲେଉଟି ଅଇଲେ
କନକ ସିଂହାସନ ଉପରେ ବିଜେ କଲେ ।
ଲଙ୍କାର ନରନାରୀ ଯେତେ ଥିଲେ ରହି
ସମସ୍ତଙ୍କୁ ଶ୍ରୀରାମ ବୁଝାଇ ପୁଣ କହି ।
ଯେଯାହା ଘରେ ଯାଇଣ ନିଶ୍ଚିନ୍ତେତୁମ୍ଭେରହ
ଭୋରସ୍ତ ଶାଶୁ ନଣନ୍ଦ ବନ୍ଧୁ କୁଟୁମ୍ବ ପାଅ ।

ପିତାମାତା ଶ୍ୱଶୁର ଜାତି ଇଷ୍ଟ ଅଟେ
ଏମାନଙ୍କୁ ସେବାକର ନ କରି କପଟେ ।
ଶୁଣିକରି ନାରୀଗଣେ ସନ୍ତୋଷ ମନ ହେଲେ
ଯେ ଯାହାର ଘରକୁ ସୁଖ ମନରେ ଚଳିଲେ
ବିଭୀଷଣଙ୍କୁ ଡକାଇ କହିଲେ ଦାଶରଥି
ମନ୍ଦୋଦରୀଙ୍କ କନ୍ୟା ଆସ ହେ ତତ୍ପତି ।
ଯିବୁ ଯେ ଅଯୋଧ୍ୟାପୁରେ ନ ରହୁ ଏଥେଆମ୍ଭେ
ଶୁଣିକରି ବିଭୀଷଣ ଗଲା ଉଦବେଗେ ।
ମଯୂବୈଚିତ୍ୟକୁ ବୋଇଲେ ତୁମ୍ଭ ପୁର ଯାଅ
ନିଶ୍ଚିନ୍ତ ହୋଇଣ ତୁମ୍ଭେ ନିଜ ପୁରେ ଥାଅ
ଦେବକାର୍ଯ୍ୟ କରିବଟି ନ କରିବ ହେଳା
ଦୁଷ୍ଟବୁଦ୍ଧି ନ କରିବ ବୈଚିତ୍ୟହୋଇ ମେଳା
ମୟୂବୈଚିତ୍ୟ ବୋଇଲା ମୁଁ ଅଯୋଧ୍ୟାକୁ ଯିବି
ଶ୍ୟାମଳ ରୂପଗୋଟି ମୁଁ ନୟନରେ ଦେଖୁଥିବି
ତ୍ରିଜଟାକୁ ଡକାଇଣ କୋଦଣ୍ଡ ଧାରୀ
ବୋଇଲେ ପିତାଙ୍କ ପୁରେ ଚଳ ଗୋକୁମାରୀ
ଜନମମାନଙ୍କ ସଙ୍ଗେ ନିଶ୍ଚିନ୍ତେ ଯାଇ ରହ
ଅତିସୁଲକ୍ଷଣୀ ହୋଇ ନିର୍ଜୀବ ହୋଇ ଥାଅ ।
ତ୍ରିଜଟା ବୋଇଲା ପିତା ମୋରଠାରୁ ଶୁଣ
ମୋର ମାତା ଜାନକୀ ମୁଁ ଦୁହିତା ତାରପୁଣ
ଯେଉଁଦିନ ଦଶଗ୍ରୀବ ଆଣିଲା ବଇଦେହୀ
ଅଶୋକବନରେ ନେଇ ଲୁଚାଇଣ ଥୋଇ ।
ମୋତେବୋଇଲାଦୁହିତାଗୋ ଏହାକୁଜଗିରହ
ତ୍ରୈଲୋକ୍ୟ ଠାକୁରାଣୀ ଏ ରାମଚନ୍ଦ୍ର ପ୍ରିୟ ।
ତୁଜାର କ୍ଷମା ଏହାକୁ ନ ଦେଖିବ କଷ୍ଟ
ଏ ଜାନକୀ ସେବାକଲେ ବହୁତ କାର୍ଯ୍ୟ ଅଛି
ଏତେବୋଲି ଦଶଗ୍ରୀବ ମୋତେ ବୁଝାଇଲା
ତତ୍ପରନ ବାଣୀ ବଇଦେହୀଙ୍କ କହିଲା ।
ମୁଁ ବୋଇଲି ପିତା ତୁମ୍ଭେ ଜାଣିଛ ପୁଣ
ଜାଣୁ ଜାଣୁ କମଳାଙ୍କୁ କହୁଛ ବଚନ ।
ଦଶମାସ ହୋଇଲେ ଏଥିରେ କାର୍ଯ୍ୟ ଅଛି
କମଳାଙ୍କୁ ରୁନ୍ଧିଲେ ମୁଁ ଯିବି ସ୍ୱର୍ଗପୁରକୁ ।
ବାସୁଦେବ ବନିତା ଏ ହୋଇ ଯେବେମୋର
ନକର ମରିବ ମୁଁ ଶ୍ରୀରାମ ବାଣର ।
ତେବେ ମୋତେ ବଶିଷ୍ଠ ଦ୍ୱାରା ହେବ ପରାପତି
ନୋହିଲେ ଅସୁର ଦେହ ନୁହଇ ଖସୁତ ।

ସକଳ ଦେବତା ମୋର ଅଟନ୍ତି ସେବକ
ନାରାୟଣଠାରେ ମୋର ଅଛି ଯେ ଅଭାବ ।
ସେ ମୋତେ ମାରିଲେ ମୁଁ ବଇକୁଣ୍ଠ ଯିବି
ନୋହିଲେ ଜାନକୀ ସଙ୍ଗେ ପ୍ରୀତ ମୁଁ କରିବି ।
ମୁଁ ବୋଇଲମୋରକଥା ଶୁଣକୁଯେବେପିତା
ସୀତାକୁ କ୍ରୋଧ ହେଲେମୁଁକହିବିତୋତେକଥା
ତେତେବେଳେ ଶାନ୍ତି ଯେ ଲଭିବୁ ଦଶଗ୍ରୀବ
ତେବେ ମୁଁ ସୀତା ପାଶେ ରହିବି ସେବକ ।
ଶୁଣିଣ ରାବଣ ଯେ ସିଂହଦ୍ୱାର କଲେ
ଫେରିକରି ନିଜ ନଗରେ ପ୍ରବେଶ ହୋଇଲେ
ସେହିଦିନୁ ଜାନକୀର ଅଟେ ମୁଁ ଦୁହିତା
ମୋର ପିତା ତୁମ୍ଭେ ହେ ଅଟ ଜଗଜ୍ଜିତା ।
ଶ୍ରୀରାମ ବୋଇଲେ ଭଲ କଥାଏ ହୋଇଲା
ବଇଦେହୀ ଯେବେ ତୋତେ ପୋଷାଝିଅ କଲା
ମାଗ ତାକୁ ବର ଯେ ବାଞ୍ଛୁ ଦେବେ ସେହି
ଶୁଣିକରି ନିକଷା ଯେ ବଚନ କହଇ ।
ଯେତେବେଳେ ପିତାମୋର ତୁମ୍ଭର ଚରଣେ
ଶରଣ ପଶିଲେ ସେ ଜୀବନ କାରଣେ ।
ଶରଣ ରଖିଣ ତୁମ୍ଭେ ଅଭୟବର ଦେଲ
ଲଙ୍କାଖଣ୍ଡେ ରାଜା ତୋତେ କରିବ ବୋଇଲ
ସେତେବେଳେ କଥା ଜାନକୀରେ ଜଣାଗଲା
ମୋହର ଶିରରେ ନେଇ ପାଟେକ ବାନ୍ଧିଲା
ବୋଇଲେ ଶ୍ରୀରାମଯେତୋପିତାକୁକଲେରାଜା
ରାଜାତୋତେମୁଁକରିବିମୋକଥା ନୁହେବୋଜା
ଦୁଇଜଣଙ୍କର ନାମ ଅମ୍ବର ପୁଣ ରହୁ
ପୁରାଣମାନଙ୍କରେ ବିଖ୍ୟାତ ହୋଇ ରହୁ ।
ଶୁଣିଣ ଦାଶରଥି ଯେ ପ୍ରସ୍ତୀଭୂତ ହେଲେ
ଅଲଙ୍ଘିତ କଥା ଏବେ ଶୁଣିଲୁ ବୋଇଲେ ।
ବିସ୍ମରିଲେ ଜାନକୀ ଯେ ଜାଣନ୍ତି ତାଙ୍କ କଥା
କେଉଁଠାରେ ରାଜାହେବ ବିଭୀଷଣ ଦୁହିତା
ଏଥୁଅନନ୍ତରେ ଯେ ବିଭୀଷଣ ରାୟେ
ମନ୍ଦୋଦରୀ ପାଶରେ ପ୍ରବେଶ ଯାଇ ହୁଏ ।
ରାଣୀହଂସ ଡକାଇଣ ବୋଲନ୍ତି ରାଜନ
ଅଯୋଧ୍ୟା ନଗରକୁ ଯାଉଅଛନ୍ତି ଶ୍ରୀରାମ ।
ତାଙ୍କ ସଙ୍ଗେ ମୁହିଁ ଯିବି ଦେଖିବି ତାଙ୍କପୁର
ସବୁଦିନେ ଦୟାଥିବ ମୋଠାରେ ତୁମ୍ଭର ।

ରାଜ୍ୟକୁ ବୁଝିଣ ତୁମ୍ଭେ ପରଜା ପାଳିବ
ଅଯୋଧ୍ୟାରୁ ଫେରି ମୁଁ ଆସିବି ସତ୍ୱର ।
ଶୁଣିଣ ମନ୍ଦୋଦରୀ କହଇ ବଚନ
ଶ୍ରୀରାମ ଗଲେ ଆମ୍ଭେ ହେବାଟି ହୀନମାନ ।
ଆମ୍ଭର ଉପରେ ଯେ ବୀର ଅଛି ଶଲ
ସେକଥା ବିସ୍ମରି ତୁମ୍ଭେ କରହେ ଚତୁର ।
ବଇରୀ କେତେ ଅଛି ବୋଇଲେ ବିଭୀଷଣ
ମନ୍ଦୋଦରୀ ବୋଇଲେ ତୁମ୍ଭେଶୁଣହେରାଜନ
ଇନ୍ଦ୍ରଜିତ ସୁତ ଅଟେ ମହୀ ଯେ ରାବଣ
ତୁମ୍ଭର ଭାଇକୁ ସେହୁ କହିଲା ଆସି ପୁଣ ।
ବୋଇଲା ହେ ଦଶଗ୍ରୀବ କମ୍ପାଇଁ କରୁ ଚିନ୍ତା
କୂପାଣରେ ଶ୍ରୀରାମକୁ ମାରିବା କରି ଏକା ।
ଅଯୋଧ୍ୟା ନଗରରେ ତୁମ୍ଭେ ହୋଇବ ନୃପତି
ଶ୍ରୀରାମ ଧରଣୀ ଭୋଗ କରିବ ଲଙ୍କପତି ।
ରାବଣ ବୋଇଲା କେଉଁ ଉପାୟରେ ମାରି
ମହୀରାବଣ ବୋଇଲା ଅଛି ମୁଁ ବିସ୍ମରି ।
ପିତାର ଶତ୍ରୁ ମୋର ଅଟଇ ଲକ୍ଷ୍ମଣ
ତାକୁ ହରିନେଇ ମୁଁ ଯେ ମାରିବି ସୁପତେଣ
ଶ୍ରୀରାମକୁ ତୁମ୍ଭେ ପୁଣ କରହେ ବିନାଶ
ରାବଣ ବୋଇଲା ତାର ଅଯୋଧ୍ୟାରେ ବାସ
ଭରତ ଶତ୍ରୁଘନ ଯେ ଅଛନ୍ତି କନା ଦେଶ
ବାରତା ପାଇଲେ ମୋତେ କରିବେ ବିନାଶ
ଏକମୁଖା ବୋଲେ ମୋର ଅଛି ଯେ ବିସ୍ମର
ଅଲକା ରାଜନ ଯେ ଅଟେ ମିତ ମୋର ।
ତାହାକୁ କହି ମୁଁ ଯେ ଅଯୋଧ୍ୟା ଭେଦିବି
ଭରତ ଶତ୍ରୁଘନକୁ ସେଠାରେ ମରାଇବି ।
ମୁହିଁ ନେଇ ମାରିବି ଲକ୍ଷ୍ମଣ ହନୁମନ୍ତ
ତୋସଙ୍ଗେ ସଙ୍ଗହୋଇ ଯୁଝିବ ସହସ୍ରମୁଖ ।
ଏମନ୍ତ ବିସ୍ମର କରି ଏଥୁ ଚଳିଗଲା
ଶତମୁଖାକୁ କହିଣ ଲେଉଟି ଅଇଲା ।
ମିହିର ଉଦୟରେ ଯୁଝିଲା ସେହୁ ଯାଇ
ସବଂଶ ସେନ ଯମପୁରକୁ ଚଳିଯାଇ ।
ମହୀରାବଣ କହିଣ ଅଲଙ୍କାପୁର ଗଲା
ସହସ୍ରମୁଖା ଆଗରେ ଯାଇଣ କହିଲା ।
ସେ ବୋଇଲେ ମୋରସଙ୍ଗେ ନୁହଇ ବଇରୀ
ପର ପାଇଁକ କମ୍ପା ଜୀବନ ମୁଁ ହାରି

ସେଠାରୁ ଫେରିଆସି ଲକ୍ଷ୍ମଣ ହରନେଲା
ସେହି ଲକ୍ଷ୍ମଣ ହସ୍ତରେ ବଂଶ ମରାଇଲା ।
ସମ୍ବନ୍ଧୀ ଅଟଇ ଯେ ସହସ୍ରମୁଖା ମୋର
ସେହିମୋତେ ଶତ୍ରୁ ଯେ ହୋଇବ ବଳଆର
ଶ୍ରୀରାମ ଏଥୁ ଗଲେ ଆସିବେ ଲଙ୍କାଗଡ଼
ତୁମ୍ଭଙ୍କୁ ମାରି ମୋତେ ନେବ ତାର ପୁର ।
ବଳବନ୍ତ ପଣ ମୋତେ ଜଲେ ମୁଁ ମରିବ
ଏମନ୍ତ ବିଚାର ମୋର ମନରେ ଯେ ଭାବ ।
ଶ୍ରୀରାମଙ୍କୁ କହି ଯେବେ ମରାଇପାର ତାକୁ
ତେବେ ସେ ସନମାନ ହୋଇବ ଆମ୍ଭଙ୍କୁ ।
ତେବେ ଆମ୍ଭେ ଲଙ୍କାରେ ସ୍ଥିର ହୋଇରହି
ଏମନ୍ତ ବିଚାର ଯେ ମନ୍ଦୋଦରୀ କହି ।
ବିଭୀଷଣ ବୋଇଲେ ଶୋ ସମସ୍ତ ରାଣୀତଳ
ଶ୍ରୀରାମ ପାଦତଳେ ଯାଇଣ ବେଗେ ପଡ଼ ।
ଶୁଣିଣ ମନ୍ଦୋଦରୀ ପରମ ତୋଷ ହେଲା
ରାଣୀହଂସ ଘେନିଣ ବେଗେ ଚଳିଗଲା ।
ଶ୍ରୀରାମ ସମ୍ମୁଖେ ଯାଇ ହେଲେ ପରବେଶ
ଦେଖିକରି ଶ୍ରୀରାମ ଯେ ହେଲେ ହସ ହସ ।
ଚରଣତଳେ ରାଣୀ ଶୋଇଲେ ପାଏ ପଡ଼ି
ଉଠ ଉଠ ବୋଲିଣ ବୋଲନ୍ତି କୃପାଧାରୀ ।
ଉଠିଣ ଶିରରେ କର ଦେଲେ ରାଣୀହଂସ
ଶ୍ରୀରାମ ବୋଇଲେ ଆମ୍ଭେ ଯାଉଛୁ ନିଜଦେଶ
ମନ୍ଦୋଦରୀ ବୋଲେ ତୁମ୍ଭେଆମ୍ଭଙ୍କୁସଙ୍ଗେନିଅ
ଦାସୀଗଣ କରି ତୁମ୍ଭ ନଗ୍ରରେ ନେଇ ଥୁଅ ।
ଶ୍ରୀରାମ ବୋଇଲେଏକଥା କହିଲ କିବସ୍ଥରେ
ବିଭୀଷଣ ମନକୁ କି ନ ଆସେ ତୁମ୍ଭରେ ।
ଏକମୁଖା ବିଭୀଷଣ କି ଦଶମୁଖାକୁ ସରି
ସେଥିସକାଶେ ଦୁଃଖ କଲ କି ମନ୍ଦୋଦରୀ ।
ମନ୍ଦୋଦରୀବୋଲେମୋମନକୁକର୍ମ ନଆସନ୍ତା
ଅଚିନ୍ତା ନକରି ଯାଉଛ ଏତୁମ୍ଭରିକେଉଁକଥା
ଶ୍ରୀରାମ ବୋଇଲେ ଆଉ କେଉଁ କଥାତୋର
ସେକଥା କମ୍ପାଇଁ ନ କୁହ ମୋ ଆଗର ।
ଯେଉଁ ରୂପେ ନିର୍ଶ୍ଚିନ୍ତ ହୋଇବ ତୁମ୍ଭ ପଣ
ସେକଥା କରିବାର ଅଟଇ ପ୍ରମାଣ ।
ମନ୍ଦୋଦରୀ ବୋଇଲେ ସୁଗ୍ରୀବ ବିଭୀଷଣ
ନାଥ ହୋଇଲେ ଦେବ ଏହି ଦୁଇଜଣ ।
ବିଲଙ୍କା ବୋଲି ଦେବ ଅଛି ଏକ ଗଡ଼
ଏଥକୁ ଶତେ ଯୁଣ ଅଟଇ ବଡ଼ା ବେଢ଼ ।
ସହସ୍ରମୁଖା ରାବଣ ସେଥିରେ ଅଛି ରହି
ଦଶଗ୍ରୀବର ସେ ଯେ ସମ୍ବନ୍ଧୀ ଅଟଇ ।
ରାବଣ ମରିବାର ପାଇବ ବାରତା
ସୈନ୍ୟସାଗର ବଳ ଯେ ଅଟେ ବଳବନ୍ତା ।
ସୁଗ୍ରୀବ ବିଭୀଷଣଙ୍କୁ ମାରିବ ଆସି ପୁଣ
ସମ୍ବନ୍ଧୀ ରାଗରେ ସେ ନ ରଖିବ ପ୍ରାଣ ।
ତାକୁ ଯେବେ ଡକାଇ ଜଣ୍ଡିକରି ଦିବ
ତେବେ ଲଙ୍କାଗଡ଼ରେ ରହିବୁ ରାମଦେବ ।
ଶୁଣିକରି ଶ୍ରୀରାମ ଯେ ସନ୍ତୋଷ ମଣହେଲେ
ସେକଥା ବୁଝିବା ତୁମ୍ଭେନିଶ୍ଚିନ୍ତେରହଇଲେ
ଶୁଣିଣ ମନ୍ଦୋଦରୀ ସପତ୍ନୀ ଘେନ
ଖାଡ଼ୀଘରେ ରହିଲେ ନ ଗଲେ ଲଙ୍କା ପୁଣି
ଏଥୁଅନନ୍ତରେ ଶୁଣ ଶୋ ଶ୍ରୀକମ୍ବସା
ଶ୍ରୀରାମଚନ୍ଦ୍ର ମନେ ମନେ ଯେ ବିଚାରି ।
ବୋଇଲେ ସବୁକଥା ତ ହେଉଛି ଝଞ୍ଜାଳ
ସୁଗ୍ରୀବ ବିଭୀଷଣଙ୍କୁ ହେଉଛି ପୁଣ କାଳ ।
ଆମ୍ଭେ ଗଲେ ଏହାଙ୍କ ସଙ୍ଗେ କରିବ ସେକଳ
ସହସ୍ରେ ସୁଗ୍ରୀବକୁ ଏ ଯେ ସମରେ ନପାରି
ଡକାଇ ଆଣିଣ ତାକୁ କରିବା ସନମାନ
ନ ଆସିଲେ ତାର ସଙ୍ଗେ କରିବା ଯୁଦ୍ଧପୁଣ
ଏମନ୍ତ ବିଚାରି ଶ୍ରୀରାମ ବିଭୀଷଣଙ୍କୁ ରାଇ
ବୋଇଲେ ଶୁଣ ତୁମ୍ଭେ ଲଙ୍କାର ନୃପସାଇଁ ।
ସହସ୍ରମୁଖା ରାବଣକୁ ଦିଅ ହେ ବାରତା
ରାବଣ ମାରି ଶ୍ରୀରାମ ନେଲେ ତାଙ୍କ ସୀତା
ବିଭୀଷଣ ଲଙ୍କାରେ ହେଲେ ନୃପବର
ଏ ବଚନମାନ ଯାଇ କହ ତା ଆଗର ।
ଏହା ଶୁଣି ଯେବେ ଆସିବେ ନରପତି
ସମସ୍ତଙ୍କୁ ମେଳ ଆମ୍ଭେ କରିଦେବା ଏଥି ।
ନୋହିଲେ ଆମ୍ଭେ ଦୂତ ପଠାଇବା ପୁଣ
ଡକାଇ ଆଣିବା ସହସ୍ରଗ୍ରୀବକୁ ଜାଣ ।
ଯେବେ ଆମ୍ଭ ବୋଲେ ନଆସିବେ ସେନାପତି
ତେବେ ତାହାକୁ ମୃତ୍ୟୁ ନିଶ୍ଚୟ ଜାଣ ଅଛି ।
ସୁଗ୍ରୀବ ବିଭୀଷଣ ଶୁକ ସାରଣ ରାଇ
ବୋଇଲେ ବିଲଙ୍କାକୁ ଯାଅ ବ୍ୟଗ୍ରହୋଇ ।

କହିବ ଶ୍ରୀରାମ ରାବଣକୁ ନାଶ କଲେ
ବିଭୀଷଣଙ୍କୁ ଲଙ୍କାରେ ରାଜା କରାଇଲେ ।
ଶୁଣି ଶୁକ ସାରଣ ବେଗେ ଚଳିଗଲେ
ଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ସହସ୍ରଗ୍ରୀବ ବସିଛି ଜଗତିରେ
ଶୁକ ସାରଣ ଦର୍ଶନ କଲେ ଯେ ପ୍ରଭୁରେ ।
ରାବଣ ବୋଇଲା ହୋ ଅଇଲ କଅପାଇଁ
ବେନି ମନ୍ତ୍ରୀ କହନ୍ତି ଯେ ଶିରେ କରଦେଇ ।
ଶୁଣ ଦେବ ବଲଙ୍କା ରାଜନ ଦୈତ୍ୟେଶ୍ୱର
ଦଶଗ୍ରୀବ ଅଟନ୍ତି ଯେ ସମ୍ବନ୍ଧୀ ତୁମ୍ଭର ।
ଦଶରଥ ନନ୍ଦନ ଅଟେ ଶ୍ରୀରାମ ଯେତ
ତାର ଭାର୍ଯ୍ୟାକୁ ଚୋରାଇ ଆଣିଲା ଲଙ୍କପତି
ସେ ଛଳେ ଶ୍ରୀରାମ ରାବଣ ବଧ କଲା
ପୁତ୍ର ନାତି ଭାଇ ବନ୍ଧୁ ସମସ୍ତଙ୍କୁ ମାରିଲା ।
କୁମ୍ଭକର୍ଣ୍ଣର ଥିଲା ସେଥି ଗୋଟିଏ ନନ୍ଦନ
ଅଲଙ୍କାଗଡ଼ରେ ରାଜା କଲେକ ଶ୍ରୀରାମ ।
ଶତଗ୍ରୀବଙ୍କୁ ଶ୍ରୀରାମ ଭାଇ ଆସି ମାରି
ଦଶଗ୍ରୀବକୁ ଶ୍ରୀରାମ ପକାଇଲେ ଦଳି ।
ନାଭ ନାମେ ତାର ପୁତ୍ର ଗୋଟିଏକ ଥିଲା
ତାକୁ ଜ୍ୟୋତିଲଙ୍କାରେ ଶ୍ରୀରାମ ରାଜା କଲା
ଭାଇ ବିଭୀଷଣ ଶ୍ରୀରାମରେ ଶରଣ ପଶିଲା
ସୁବର୍ଣ୍ଣମୟ ଲଙ୍କାରେ ସେହୁ ରାଜା ହେଲା ।
ଦଶଗ୍ରୀବର ରାଣୀ ଅଟଇ ମନ୍ଦୋଦରୀ
ବିଭୀଷଣ ଛଳେ ତାକୁ ରଖିଲେ ଜଟାଧାରୀ ।
ଶୁଣିଣ ବଲଙ୍କେଶ୍ୱର କ୍ରୋଧରେ ଜରଜର
ବୋଇଲା ନର ଯେତେ ଜିଣିଲା ଅସୁର ।
ସ୍ୱର୍ଗର ଦେବତାଙ୍କୁ ଖଟାଏ ପାଦତଳେ
ନରରାଜା ଦୈତ୍ୟଙ୍କୁ ଯେ ଦଳିଲା ବାହୁବଳେ
ଯେବେ ହେ ମୋର ପରେ କରିବ ବଳବାନ
ତାର ବଂଶ ନିଶୋଧନ କରିବ ମୋର ମନ
ଗୁପତ ହୋଇଣ ଯେବେ ଯିବ ସେ ପଳାଇ
ସୁଗ୍ରୀବ ବିଭୀଷଣଙ୍କୁ ମାରିବ ନିଶ୍ଚେ ଯାଇ ।
ଏତେବୋଲି ଦୈତ୍ୟ ରାହୁ କରେକ ଗର୍ଜନ
ଶୁକ ସାରଣକୁ ବୋଲେ ବେଗରେ ଚଳପୁଣ
ଲଙ୍କାଗଡ଼ କିଷ୍କିନ୍ଧ୍ୟା କରିବ ଏକ ରାଜ୍ୟ
ବିଭୀଷଣ ମରାଇଲା ସକଳ ଦନୁଜ ।

ଶୁଣିଣ ଶୁକ ସାରଣ ଫେରି ବେଗେ ଆସି
ଶ୍ରୀରାମ ସିଂହାସନ ଉପରେ ଛନ୍ତି ବସି ।
ପାଏ ପଡ଼ି ଶୋଇଣ ଉଠିଲେ କରଯୋଡ଼ି
ବୋଇଲେ ବଲଙ୍କାକୁ ଗଲେ ଶୀଘ୍ର କରି ।
ଆମ୍ଭଙ୍କୁ ଦେଖିଣ କୁଶଳ ପଚାରିଲା
ରାବଣ ମାରିବା ଶୁଣି ବଡ଼ କ୍ରୋଧ ହେଲା ।
ବୋଲେ ନିଶ୍ଚେ ବଧ କରିବି ସୁଗ୍ରୀ ବିଭୀଷଣ
ତାଙ୍କ ଯୋଗୁ ମଲେ ପିତା ବିଶ୍ରବା ନନ୍ଦନ ।
ବଳ ହେଲେ ସୁଗ୍ରୀ ବିଭୀଷଣ କଲେ ଛିଦ୍ର
ଦଶରଥ ପୁଅ ଆସି ମାରିଲା ଦନୁଜ ।
ଯେଉଁନରରାଜାଙ୍କମାଂସଦେଖିଲେଆମ୍ଭେଖାଉ
ସେ ନର ରାଜା ମାରିଲେ ଦନୁଜକୁଳ ରାହୁ
ଏତେ କହି କ୍ରୋଧ ହେଲା ଦନୁଜ ଗରୁତର
ସହସ୍ରମୁଖ ହସାଇ କହେ ଦୈତ୍ୟଶୂର ।
ବୋଲେ ସୁଗ୍ରୀ ବିଭୀଷଣ ଦୁହିଁଙ୍କି ବଧ କରି
ଦଶରଥ ପୁଅକୁ ମୁଁ ପକାଇବି ମାରି ।
ତେବେ ବଲଙ୍କେଶ୍ୱର ରାଜା ମୁଁ ବୋଲାଇବି
ସେମାନଙ୍କୁ ସଙ୍ଖୋଳି ଅରେ ମୂର୍ଖ ଯିବ ।
ଶୁଣିକରି ଶ୍ରୀରାମ ଯେ କଣ୍ଠରେ ହସ୍ତ ଦେଇ
ଜାଣିବାରେ ସହସ୍ରମୁଖା କେତେ ବଳ ବହି ।
ଏତେବୋଲି ଶ୍ରୀରାମ ମନରେ ବିଚାରିଲେ
ମନ୍ଦୋଦରୀ କଥାକୁ ସତ ସେ ମଣିଲେ ।
ଉମା ପଚାରନ୍ତି ଶୁଣ ହେ ତ୍ରିଲୋଚନ
ଏଠାରୁ କିସ ହେଲା କହିବ ବେଗ ପୁଣ ।
ଈଶ୍ୱର କହନ୍ତି ଶୁଣ ଶ୍ରୀରାମ ନୃପମଣି
ଏମନ୍ତ ପ୍ରତିଜ୍ଞା ବଲଙ୍କା ନୃପତିର ଶୁଣି ।
ଶୁଣିଣ ବିଭୀଷଣ ଯୋଡ଼ି ବେନିକର
ସାବଧାନେ ଶୁଣ ହେ କୋଦଣ୍ଡ ଚାପଧର ।
ସହସ୍ରମୁଖା ରାବଣର ଶୁଣିଲେ ଗୁମାନ
ସେ ମୋତେ ରଖିବକି ତୁମ୍ଭେ ଏଥିରୁ ଗଲେ ପୁଣ
ଖେଳେ ହେବ ଅମର ମୋତେ କେମନ୍ତେ କଲ ପୁଣ
ସହସ୍ରମୁଖ ଯେବେ ଅଛଇଁ ଜୀବନେଣ ।
ତୁମ୍ଭେ ତ ଅଯୋଧ୍ୟାକୁ ବିଜୟ କରି ଯିବ
ଦଶଗ୍ରୀବ ନିଧନ ସେ ଜାଣିଲା ସବୁଭବ ।
ତାହାର ସମ୍ବନ୍ଧୀ ସେ ଅଟଇ ଯୁକତେ
ଏ ବାର୍ତ୍ତା ଶୁଣି ପ୍ରାଣେ ନ ଥୋଇବ ମୋତେ

ଶୁଣିଣ ଶ୍ରୀରାମ ଯେ ବିଭୀଷଣଙ୍କୁ ପୁଚ୍ଛି
ସହସ୍ରମୁଖା ରାବଣ କାହାର ଅଟେ ବଂଶି ।
ଶୁଣିଣ ବିଭୀଷଣ କହେ ଯୋଡ଼କର
ମନୁ ସତ୍ୟଯୁଗେ ଦ୍ରୋହ ନାମେଣ ଅସୁର ।
ଦ୍ରୋଣାସୁର ବୋଲିଣ ତାହାର ତନୟେ
କାର୍ତ୍ତିସୁର ବୋଲିଣ ତାର ପୁତ୍ର ଜାତ ହୁଏ ।
ସିଂହାସୁର ବୋଲିଣ ଯେ ତାହାର ନନ୍ଦନ
ତାହାର ପୁତ୍ର ହାବେ ପ୍ରଚଣ୍ଡାସୁର ଜାଣ ।
କାଳ ଧ୍ୱଂସନ ବୋଲିଣ ତାହାର ପୁତ୍ର ହୁଏ
ଗ୍ରୀବାସୁର ବୋଲିଣ ତାହାର ତନୟେ ।
ତାହାର ନନ୍ଦନ ଯେ ଅଟେ ମେଘାସୁର
ସ୍ୱର୍ଗରେ ପଶିଣ ଯେ ଜିଣେ ପୁରନ୍ଦର ।
ଉତେଜଲେ ସେ ଯେ ଅମର ଭୁବନ
ଅପସରା ବିଦ୍ୟାଧରୀ ବଳେ କଲାକ ରମଣ ।
ଏ ଦୈତ୍ୟ ଭୟରେ ସ୍ୱର୍ଗେ ନ ରହିଲେ କେହି
ସଞ୍ଜିବନୀ ଗ୍ରନ୍ଥ ଯମ ଗଲେକ ପଳାଇ ।
ବଡ଼ ପ୍ରତାପୀ ସେ ଯେ ଅଟଇ ଅସୁର
ବିକଟାଳ ବଦନ ଯେ ଦିଶେ ଭୟଙ୍କର ।
କାଳଚକ୍ର ପ୍ରାୟେ ତାର ବୁଲଇ ନୟନ
ଚଉଦ ପୁରେ ଦାନବ କରଇ ଭ୍ରମଣ ।
କେବଣ ନୃପତିକ ସେ ଜୀବନେ ମାରଇ
କେଉଁ ଭୁବନେ କଟକ କରି ବନଦୁଇସ୍ୱରହରି
ଏମନ୍ତେ ଏକାଦଶେ ବର୍ଷରେ ଅସୁର
ସାଧି ହୋଇଲା ମୋତେ ସ୍ୱର୍ଗ ମର୍ତ୍ତ୍ୟପୁର ।
ଏବେ ଯେ ପାତାଳପୁରକୁ ମୁହିଁ ଯିବ
ବସୁକୁ ଜିଣିଲେ ମୁଁ ଯେ ଅମର ହୋଇବ ।
ତାଙ୍କୁ ସମରେ ଜିଣିପାରଇ ମୁହିଁ ଯେବେ
ତିନପୁରଯାକ ସାଧି ହୋଇବନ ତେବେ ।
ଆଉ କେହି ମୋତେ ଯେ ନୋହିବେଜଣନ୍ତା
ତିନପୁରେ ମୋହର କାହାକୁ ନାହିଁ ଚିନ୍ତା ।
ଏତେ ବାବୁରି ଦଳତ ହୋଇଲେକ ସଜ
ଢାଲ ଚନ୍ଦ୍ର ଗଦା ଯେ ଧରିଲା ବେନି ଭୁଜ ।
କଷଣୀ କଷି ପୁଣି ଧନୁଶର ଧରି
କାଇମାଟି ନେଇଣ ଯେ ଆପଣା ଅଙ୍ଗେବୋଳି
ଯାରବେଶ ହୋଇଣ ସେ ବସନ ପିନ୍ଧିଲା
କଳାମେଘ ଜାଣିକରି ଶରୀର ବଳଶିଲା ।

ଏମନ୍ତ ବେଶ ଘୋଟିଏ ହୋଇଲା ଅସୁର
ବାଦ୍ୟନାଦ କରିଣ ଯେ ହୋଇଲା ବାହାର ।
ମନମଥ ନାମେ ଯାନ ଚଢ଼ିଲା ସେ ରଥ
ପାତାଳ ଭୁବନକୁ ଚଳେ ସେ ତଇତ ।
ବାଟରେ ଯାଆନ୍ତେ ଅନନ୍ତ ନାଗକୁ ଦେଖଇ
ଡାହାଣ ପାଖରେ ଉଲ୍ଲୁକ ଯେ ରବଦେଇ ।
ମସ୍ତକ ଉପରେ ତାର ବୋବାଏ କାକପକ୍ଷୀ
ମତ୍ତ ହେଲେ ଗମଇ ସେ ନ ଜାଣଇ କିଛି ।
ଏମନ୍ତେ ଦୈତ୍ୟସାର ଅନେକ ଦୂର ଗଲା
ପାତାଳ ବିମ୍ବର ଦ୍ୱାରେ ପ୍ରବେଶ ହୋଇଲା ।
ଉତରେ ପଶିଲା ହେଇଣ କରି ମୁଷ୍ଟି
ବାଟରେ କ୍ଷେତ୍ରପାଳମାନଙ୍କୁ ଯାଇ ଭେଟି ।
କ୍ଷେତ୍ରପାଳଙ୍କୁ ବୁଝିଣ ବୋଲେ ନିଶାଚର
ଉତରକୁ ଯିବ ମୁହିଁ ଗୁଣ୍ଡ ମୋତେ ଦ୍ୱାର ।
ଶୁଣିଣ କ୍ଷେତ୍ରପାଳ ବୋଲଇ ବଚନ
ଉତରକୁ ଯିବୁ ତୁରେ କେବଣ କାରଣ ।
ଅଚେତା ହୋଇଣ ପ୍ରଭୁ ଅଛନ୍ତି ଯେ ଶୋଇ
ମନପବନ ରୁନ୍ଧଣ ଅଛନ୍ତି ନିଦ୍ରାଯାଇ ।
ପ୍ରଭୁଙ୍କର ଆଜ୍ଞା ହୋଇବ ପୁଣ ଯେବେ
ଉତରକୁ ଗୁଣ୍ଡଦେଇ ପାରଇ ମୁହିଁ ତେବେ ।
ତାହାଠାରୁ ଶୁଣିକରି ବୋଲେ ଦୈତ୍ୟସାର
ମୋତେ ଓଗାଳିବାକୁ ହେଲୁରେ ତୋହର
ଭଲେ ତୁ ବାଟ ଗୁଣ୍ଡରେ ଉତରକୁ ଯିବଇଁ
ନୋହିଲେ ତୋହର ଯେ ଜୀବନ ହରଇ ।
ଏତେବୋଲି ଦୈତ୍ୟସାର ହେଲା ଯେ ପ୍ରଜ୍ୱଳ
ଅଡ଼ହୁଅ ବୋଲିଣ ପଦାବର ତୋଳ ।
କ୍ଷେତ୍ରପାଳ ବୋଇଲା ହୋଇଲୁ ଜରେ ବାଇ
ବସ୍ତୁ ହାର ବୋଲି ତୋର ମନରେ ଭୟ ନାହିଁ
ଶୁଣିଣ ଦୈତ୍ୟରାୟ ମନରେ କ୍ରୋଧ ବଳି
କ୍ଷେତ୍ରପାଳ ଉପରେ ପ୍ରହାର କଲା ନେଇ ।
ଦେଖିଣ କ୍ଷେତ୍ରପାଳ ଫେରଇ ପୁଣ ଗଲା
କାଳାନ୍ତକ ମୁଦ୍‌ଗର ହସ୍ତରେ ଧରିଲା ।
ଆଗରେ ଅସୁରକୁ ଓଗାଳିଲା ଯାଇ
କହରେ ଦାନବ ଧନୁଶର ଯେ ଧରଇ ।
ବୋଲଇ ମୋର ଶର ସମ୍ଭାଳ କ୍ଷେତ୍ରପାଳ
ଆଜ ତୋର ପାଞ୍ଜିରେ ପୋଛେ ନାଶକର ।

ଏମନ୍ତ କହିଣ ବାଣ ଗୁଣରେ ବସାଇ
ଆକର୍ଣ୍ଣ ପରଯନ୍ତେ ଓଟାରି ଆଣଇ ।
ରେ ରେ କାଳ କରିଣ ପୁଣ ଦେଲା ଛାଡ଼ି
ଜଳଦାମାସରେ ଯେହ୍ନେ ମେଘ ଘଡ଼ଘଡ଼ି ।
ବଜ୍ରନଳ ଜ୍ୟୋତ୍ସ୍ନା ଯେହ୍ନେଗମନ୍ତେତେହ୍ନେବାଣ
ଦୂରୁ ଦେଖି କ୍ଷେତ୍ରପାଳ ଧରିଲା ଧନୁ ହୋଣ
ବଇଷ୍ଣବା ଧନୁରେ ଶର ଯେ ବସାଇ
ଦୈତ୍ୟର ଶର ସବୁ ଛେଦିଣ ପକାଇ ।
ଦେଖିଣ କୌଣପ ଯେ ମହାକୋପ କରି
ଷନ୍ମୁଖା ଶରକୁ ଯେ ଗୁଣରେ ଜଡ଼ିର ।
ମନ୍ତ୍ର ଧ୍ୟାନ କରିଣ ସେ ବେଗେ ଛାଡ଼ିଦେଲା
କ୍ଷେତ୍ରପାଳ ଜୀବନ ଘେନସି ବୋଇଲା ।
ଫୁତ୍କାର ଶବଦରେ ଚଳଯାଏ ବାଣ
କ୍ଷେତ୍ରପାଳ ଗରୁଡ଼ା ଶରେ କଲେ ରଣଭଣ
ପୁଣି ମେଘାଶରକୁ ସୁମରିଲା ଦୈତ୍ୟ
ତତକ୍ଷଣେ ଶର ଆସି ହେଲା ପରାପତ ।
ଷଆରିଣ ବାଣ ଯେ ବେଗେ ଦେଲା ଛାଡ଼ି
ଜଦ୍ରାକାଳେ ଯେସନେ ମେଘ ଘଡ଼ଘଡ଼ି ।
ନାରଚ ଆସନ୍ତେ ଦୂରୁ ଦେଖେ କ୍ଷେତ୍ରପାଳ
ପବନାଶର ଗୁଣରେ ବସାଏ ତତକାଳ ।
ମନ୍ତ୍ର ଅଧ୍ୟା ନ କରି ଦେଲାକ ବେଗେ ଛାଡ଼ି
ପବନର ଘାତରେ ମେଘ ଯାନ୍ତି ଉଡ଼ି ।
ମହାଘୋର ସମର କରେ ଯେ ଅସୁର
ଶର ଆଘାତରେ ନ ବଞ୍ଚେ ବନଚର ।
କ୍ଷେତ୍ରପାଳ ବିନ୍ଧଇ ଯେତେ ତୀକ୍ଷ୍ଣ ଶର
ଛୁପ ଯେ ନ ଭେଦଇ ତାହାର ଶରୀର ।
ବଜ୍ରମୁନା ଶର ଯେ ବସାଇ ଗୁଣରେ
ଅସୁରକୁ ନାରାଚ ମାରେ କୋପଭରେ ।
ଦେଖିଣ ଅସୁର ଯେ ଘାତେ ନେଇ ଅଙ୍ଗ
ଚେଡ଼େ ମହା ଶରମାନ ପୁଣ ହେଲା ଭଙ୍ଗ ।
କ୍ଷେତ୍ରପାଳ ପୁଣ କଲୁରି ନାରାଚ ମାରି
ଗତାର ଘାତେ ଦୈତ୍ୟ ଦୂରରୁ ନିବାରି ।
କ୍ଷେତ୍ରପାଳକୁ ଅନେକ ଶରମାରେ ମହାବଳୀ
ଛେଲ ତନ୍ତ କୋନ୍ତ ଯେ ନର୍କିଆ ଶାବେଳୀ
ବିନ୍ଧନ୍ତେ କ୍ଷେତ୍ରପାଳ ଯେ ବିମୁଖ ଦୈତ୍ୟ ହୁଏ
ଛଳେ ନ ଭେଦଇ ଯେ ଅସୁରର କାୟେ ।

ମନରେ ବିଚାରେ ଯେ କି ବୁଦ୍ଧି କରିବି
କେଉଣ ପ୍ରକାରେ ମୁଁ ଦୈତ୍ୟକୁ ମାରିବି ।
ଏହାକୁ ନ ମାରି ମୁଁ ଛାଡ଼ିବେବି ଯେବେ
ମୋତେ ତ ନାରାୟଣ କବୋଲିବେ ତେବେ
ଏମନ୍ତ ବିଚାର ମନେ କରନ୍ତେ ସେହୁ ପୁଣି
ପ୍ରବେଶ ହେଲେ ଆସି ନାରଦ ମହାମୁନି ।
ହସ୍ତରେ ବିଦଣ୍ଡ ଯେ କର୍ଣ୍ଣରେ କୁଣ୍ଡଳ
କଳଧୋକଡ଼ ମୂର୍ତ୍ତି ଦେହ ଶୋଭେ କଟିସ୍ଥଳ ।
ଦେଖିଲେ ଦୁଇଜଣଙ୍କର ଲାଗିଅଛି କଳି
ରଣଭୂମିରେ ନାରଦ ନାଚେ ତଳ ତଳ ।
ଲାଗୁ ଲାଗୁ ବୋଲିଣ ହଲାଏ ବିଦଣ୍ଡ
ବେଳବେଳ ଗୋଳ ଯେ ହେଲାକ ପ୍ରଚଣ୍ଡ ।
କଳଧୋକଡ଼ରୁ ମୁଣ୍ଡ ମୁଠାଏ ପୁଣ ମାରି
କୁକୁହୋଳ ସଂଗ୍ରାମ ଲାଗେ ତଡ଼ବଡ଼ ।
ଗର୍ଜିଣ ଉଠିଲା ସେ ଦୈତ୍ୟକୁଳମଣି
କରରେ ସହସ୍ତ ଧରି ହଟେ ଶିର ଧୁଣି ।
ବୋଲଇ ନିଷ୍ଠୁରରେ ପୂରିଲା ତୋର କାଳ
ଆଜ ମୁହିଁ ତୋତେଟରେ ପେଷିବି ଯମଆଳ ।
ମୃତ୍ୟୁଲୋକ ସଙ୍ଗେ ତୋତେ କରିବି ଗଣନା
କେମନ୍ତେ ବିଷ୍ଣୁ ତୋତେ ରଖିବ ଦେଖିବନା
ଏତେବୋଲି ଦୈତ୍ୟ ଯେ ଅମୋଘଶରପେଷି
କାଳାନ୍ତକ ଶରରେ କ୍ଷେତ୍ରପାଳ ନାଶି ।
ଏମନ୍ତେ ଅନେକ ଶର ପେଷେ ଦୈତ୍ୟସାଇଁ
ଛେଲ ତନ୍ତ କୋନ୍ତ ମୁଦଗର ମାରଇ ।
କେବଳବେଳ ସମର ଯେ ମହାଘୋର
ଦେଖିଣ ନାରଦ ମୁନି ହସେ କର କର ।
ବୋଲନ୍ତି ଏତେଦିନେ ସମର ଦେଖିଲଇଁ
ଅନାଦିଙ୍କ ଛାମୁରେ ମୁଁ କହିବଇଁ ଯାଇ ।
ସ୍ୱମନେ କ୍ଷେତ୍ରପାଳ ହେଲେ ସେ ନିସତ
ଏବେ ଅମ୍ଭେ ଯାଇ ଯେ କହିବା ବିଷ୍ଣୁନାଥ
ଏତେବୋଲି ନାରଦ ଗଲେ ତତକ୍ଷଣ
ପ୍ରବେଶ ହେଲେ ଯାଇ ବିଷ୍ଣୁଙ୍କ ସନ୍ନିଧାନ ।
ଦେଖିଲେ ନିଦ୍ରା ଯାଇ ଅଛନ୍ତି ନାରାୟଣ
ଶ୍ରୀମୁଖ ଗୁହିଁ ସ୍ତୁତି କଲେ ବ୍ରହ୍ମଙ୍କ ନନ୍ଦନ ।
ଜୟ ହୁ ନାରାୟଣ ଶ୍ୟାମଳ ଚିନ୍ତାମଣି
ଜୟ ହୁ ନାରାୟଣ ଶଙ୍ଖ ଚକ୍ରପାଣି ।

ଜୟ ତୁ ନାରାୟଣ ସକଳ ଘଟରେ ସମ୍ଭୂତ
ଜୟ ତୁ ନାରାୟଣ ସଂସାର ଜନ ନାଥ ।
ଜୟ ତୁ ନାରାୟଣ ସକଳ ଅନ୍ତର୍ଯ୍ୟାମୀ
ଜୟ ତୁ ନାରାୟଣ ପରମବ୍ରହ୍ମ ସ୍ୱାମୀ ।
ଜୟ ତୁ ନାରାୟଣ ଅନାଦି ପୁରୁଷ
ଜୟ ତୁ ନାରାୟଣ ଦେବ ହୃଷିକେଶ ।
ଜୟ ତୁ ନାରାୟଣ ସେନ ମୋର ସେବା
ତକ୍ଷ ଫେଡ଼ଣ ମୋତେ କାରେକ ସୃଷ୍ଟିବା ।
ଅଚକ୍ଷା ହୋଇଣ ଦେବ କନ୍ଦ୍ରା ଯାଅ କେତେ
ସଂସାର ଦେଲ କ ଦେବ ଅସୁରର ହସ୍ତେ ।
କ୍ଷେତ୍ରପାଳଙ୍କୁ ଦେବ ହେ ଅସୁର କଲେ ନାଶ
ଦ୍ୱାରପାଳକୁ ରକ୍ଷାକର ହେ ପୀତବାସ ।
ଏମନ୍ତେ ଅନେକ ସ୍ତୁତି କଲେ ବ୍ରହ୍ମାଙ୍କସୁତ
ଚକ୍ଷୁମେଳ ମୁନଙ୍କ ଯେ ସ୍ତୁତିଲେ ଅଚ୍ୟୁତ ।
ନାରଦଙ୍କୁ ସୃଷ୍ଟିଣ ବୋଲନ୍ତି ଜନାର୍ଦ୍ଦନ
କ ଅର୍ଥେ ମୁନବର କଲ ହେ ଆଗମନ ।
କରଯୋଡ଼ ନାରଦ କରନ୍ତି ଉତ୍ତର
କ୍ଷେତ୍ରପାଳ ସଙ୍ଗେ ଯୁଦ୍ଧ କରେ ମେଘାସୁର ।
ବୋଲଇ ଦ୍ୱାର ମୋତେ ଛାଡ଼ିଦିଅ ତୁମ୍ଭ
ଅସୁରର ସଙ୍ଗେ ଯୁଦ୍ଧ କରିବ ମୁହିଁ ଯାଇ ।
ସେ କହନ୍ତେ କ୍ଷେତ୍ରପାଳ ଦ୍ୱାରକୁ ନ ଛାଡ଼ଇ
କୋପରେ ଅସୁର ମହାଯୁଦ୍ଧ ଯେ କରଇ ।
କୌଣସି ସହସ୍ରେ ସେତୁ ନୋହିଲା ନିଧନ
କାଣ୍ଡ ଖଣ୍ଡା ଶସ୍ତ୍ର ତାର ନ ଭେଦେଶରୀରେଣ
ନାରଦ କହିବାରୁ ନାରାୟଣ ଶୁଣି
ମନେ ମନେ ବିଚାର କରନ୍ତି ଚକ୍ରପାଣି ।
ବୋଲନ୍ତି ଅସୁର ମହା ବଳିଷ୍ଠ ଅଟଇ
କ୍ଷେତ୍ରପାଳ ଶର ତାର ଶରୀରେ ନ ଫୁଟଇ ।
ଆମ୍ଭେ ଯେବେ ସାହାଯ୍ୟ ନୋହିବା ତାହାକ
ସମରେ ଜିଣି ନ ପାରେ ଅସୁରକୁ ସେହି ।
ଏମନ୍ତ ମନରେ ବିଚାରି ନାରାୟଣ
ସାରଙ୍ଗ ଧନୁ ନାରଦଙ୍କୁ ଦେଲେ ସେ ବହନ
ବୋଇଲେ ଯାଇ ହୋ ନାରଦ ତପୋଧନ
କ୍ଷେତ୍ରପାଳକୁ ଧନୁଶର ଦିଅ ଯା ବହନ ।
ବୋଲିବ ଏ ଶର ତାର ହୃଦକୁ ମାରିବ
ତେବେ ସେ ଅସୁର ଯେ ପ୍ରାଣରେ ନାଶଯିବ
ଏହା ଶୁଣି ନାରଦ ଯେ ତତକ୍ଷଣେ ଯାଇ
କ୍ଷେତ୍ରପାଳ ହସ୍ତରେ ନେଇ ଧନୁଶର ଦେଇ
ନାରାୟଣ ଧନୁଶର ପାଇଣ କ୍ଷେତ୍ରପାଳ
ତତକ୍ଷଣେ ତାହାର ଯେ ହୋଇଲାକ ବଳ ।
ଅସୁରକୁ ସୃଷ୍ଟିଣ ବୋଲେ ଦ୍ୱାରପାଳ
ଏ ଶରକୁ ସମ୍ଭାଳ ମୋର ତୁ ଏଥର ।
ଶୁଣିଣ ଦୈତ୍ୟବୀର ଧାଇଁଲା କୋପଭରେ
ତୁ କସ କରିବୁରେ ତୋହ ଗୁର ବଳେ ।
ଶୁଣିଣ କ୍ଷେତ୍ରପାଳ ହୋଇଲା କୋପଭର
ନାରାୟଣ ଧନୁଶର ଧରିଲାକ କର ।
ଦେଖୁଦେଖ ଅସୁର ଯେ ମହାକ୍ରୋଧ ହେଲା
କଳଡ଼ା ବୃଷ୍ଟି ଜାଣି ନାରାଚ ବରଷିଲା ।
ଦେଖିଣ କ୍ଷେତ୍ରପାଳ ଶରକୁ ଛାଡ଼ଇ
ବଇତର ପ୍ରାଣ ତୁରେ ଯେନ ବେଗେ ଯାଇ
ନାରାୟଣଙ୍କର ତୁମ୍ଭ ଅଟ ଯେବେ ଶର
ଏହିକ୍ଷଣି ଦୈତ୍ୟକୁ ତୁ ପ୍ରାଣରେ ନାଶକର ।
ନାରାଚକୁ ଛାଡ଼ିଣ ଦେଲା ବେଗେ ଛାଡ଼
ବଜ୍ରସମ ଶର ଦୈତ୍ୟର ହୃଦେ ପଡ଼ ।
ଶରପଡ଼ କର ପିଠିକ ଗଳଗଲା
ଘୋର ଗର୍ଜନ କରିଣ ଢଳିତ ପଡ଼ିଲା ।
ପାଞ୍ଚଯୁଣ ମାଡ଼ଣ ଅସୁର ପଡ଼ିଲା
ଦେଖିଣ କ୍ଷେତ୍ରପାଳ ହସ ହସ ହେଲା ।
ଦୈତ୍ୟର ନିଧନ ଯେ ଦେଖି ସୁରଗଣ
କ୍ଷେତ୍ରପାଳ ଶିରେ ପୁଷ୍ପ କଲେକ ବରଷଣ ।
ଜୟ ଜୟ ବାଣୀ ଯେ ହରଷେ ସୁରଇନ୍ଦ୍ର
ଏବେ ଆମ୍ଭର ଦୁଃଖ ହରିଲା ଦ୍ୱାଶ କ୍ଷଣ୍ଣ ।
ପାଞ୍ଚଶ ଆଗରେ ଏହା କହନ୍ତି ବିଲୋଚନ
ଶୁଣ ତୁମ୍ଭେ ଜାହ୍ନବୀ ଗୋ ହୋଇ ଏକମନ ।
ପ୍ରାଣରେ ନାଶଗଲା ଯେ ମେଘାସୁର ଦୈତ୍ୟ
ପ୍ରତାପସୁର ବୋଲିଣ ଅଟେ ତାର ସୁତ ।
ତାହାର ନନ୍ଦନ ଯେ ଦଶାଖା ବୋଲି ଜାଣ
ତାର ନନ୍ଦନ ଅଟେ ସହସ୍ରମୁଖା ସେରାବଣ
ଶ୍ରୀରାମ ଗ୍ରମୁରେ ବିଭୀଷଣ ଏହା କହି
ଦାଶରଥି ପଚାରନ୍ତି ବିଭୀଷଣକୁ ସୃଷ୍ଟି ।

କେମନ୍ତେ ସମ୍ବନ୍ଧ ଏ ଦୁଇଜଣ ହେଲେ
ଏକଥା ବୁଝାଇଣ କହ ମୋତେ ଭଲେ ।
ଶୁଣିକରି ବିଭୀଷଣ କରଯୋଡ଼ି କହେ
ଶୁଣ ହେ ରାମଚନ୍ଦ୍ର କହୁଛୁ କଥାଏ ।
ଶ୍ରୀରାମ ପଚାରିବାରୁ କହେ ବିଭୀଷଣ
ସେହିଁଠାରେ ଅଛନ୍ତି ସହସ୍ରମୁଖା ସେ ରାବଣ
ଅଲଙ୍କାଗଡ଼ ବୋଲିଣ ଅଟେ ଏକ ଦେଶ
ତାହାର ମହିମା ମୁଁ କହିବି ସେ କଥ ।
ବଡ଼ଇ ଭାଗ୍ୟବନ୍ତ ଅଟେ ହାଟେ ସେହି
ତା ଗୃହର ଚେଷ୍ଟା ସେ କଳଣା ନ ଯାଇ ।
ହୀରା ନୀଳା ବାଡ଼ି ଅଟେ ସ୍ଫଟିକ ରୁପ ଖମ୍ବ
ଯୋହଲାର ଓସ ସେ ପ୍ରବାଳର ସ୍ତମ୍ଭ ।
ତହିଁର ଉପରେ ସେ ସୁବର୍ଣ୍ଣ ଶ୍ରେଣୀ
କ ଜାଣି ଉଦୟ କ ହୋଇଛୁ ଦିନମଣି ।
ଅକଣ୍ଟକପୁର ସେ ଅଶେଷ ଶୋଭାବନ
ତହିଁରେ ରାଜ୍ୟ କରଇ ସହସ୍ରମୁଖା ଜାଣ ।
ନିଶ୍ଚିନ୍ତ ହୋଇଣ ସେ ରାଜ୍ୟ ସେ ପାଳଇ
ବାସୁଦେବ ନର ରାକ୍ଷସଙ୍କୁ ତାର ଭୟ ନାହିଁ
ବଡ଼ାଇ ପ୍ରତାପି ସେ ଅଟଇ ଅସୁର
ତାର ଶିରରେ ବହଇ ସହସ୍ରେକ ଶିର ।
ଦୁଇସହସ୍ର ଭୁଜ ସେ ଅଟଇ ତାହାର
ସହସ୍ରେ ଧନୁରେ ନାରାଚ ବନ୍ଧେ ଦୈତ୍ୟବୀର
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
ବଇକୁଣ୍ଠରେ ଅନନ୍ତ ଶୟନ ଅଟେ ପୁଣ ।
ଅଷ୍ଟରତ୍ନେ ନିପୁଣ ସେ ସେହି ପୁର ଗୋଟି
ଅନନ୍ତ ପରେ ଶୟନ ବାସୁଦେବ ନିତି ।
ଚରଣ ମଣ୍ଡାଳ ତାର ସିନ୍ଧୁର ଦୁହିତା
ବାଣାଧର ଶାୟନ କରେ ବୃକ୍ଷ ମାତା ।
ସେ ଦ୍ୱାରେ ଦ୍ୱାରପାଳ ଜୟ ସେ ବିଜୟେ
କ୍ଷେତ୍ରପାଳ କେମନ୍ତେ ଦ୍ୱାରପାଳ ହୁଏ ।
ଏକଥା ବୁଝାଇ ମୋତେ କହ ହେ ବିଶ୍ୱନାଥ
ତୁମ୍ଭ ମୁଖରୁ ଶୁଣିଲେ ମୁଁ ହୋଇବି ମୁକତ ।
ସଦାଶିବ ବୋଇଲେ ଶୁଣ ଗୋ ଶାକମ୍ଭରୀ
ଅନନ୍ତ ବୈକୁଣ୍ଠରେ ବିଜେ ନରହରି ।
ବାରଲକ୍ଷ ପୁଣ ସେ ପୁର ଗୋଟି ଜାଣ
ସେ ପୁରରେ ନାରାୟଣର ସେବକସଙ୍ଗେ ପୁଣ
ରମ୍ୟକ ଦ୍ୱୀପ ନାମ ସେ ଅଟଇ ତାହାର
ବିଷ୍ଣୁର ସେବକ ସେପୁରେ ସଙ୍ଗେ ଠୁଳ ।
ଶ୍ରୀହରିପାଟଣା ସେ ପୁରକୁ ବୋଲି ଜାଣ
ବାସୁଗ ପଦ୍ମଧର ସେଥିରେ ଠୁଳ ପୁଣ ।
ସେ ବଇକୁଣ୍ଠରେ ଶୟନ ଅନନ୍ତ ନାରାୟଣ
ଲକ୍ଷେ ପୁଣ ପାଟେଶ୍ୱରୀ ହୀରା ମଳାରେ ଜାଣ ।
ଦୁଇଗୋଟି ଦ୍ୱାର ସେଥିରେ ଅଛି ପୁଣ
ପୂର୍ବଦ୍ୱାରେ କ୍ଷେତ୍ରପାଳ ବିଜେ କରେ ଜାଣ ।
କ୍ଷେତ୍ରପାଳକୁ କହି ଚଳନ୍ତି ଦେବଗଣ
ପଶ୍ଚିମ ଦ୍ୱାରେ ରଖେ ଜୟ ବିଜୟ ଜାଣ ।
ସନକ ପଶ୍ଚିମ ଦ୍ୱାରେ ଅଙ୍ଗିର ଋଷିଗଲେ
ଜୟ ବିଜୟ ଦୁହେଁ ନିରୋଧ ତାଙ୍କୁ କଲେ ।
କ୍ରୋଧରେ ବ୍ରହ୍ମାସୁତ ଶାପଦେଲେ ପୁଣ
ମନୁଏ ପର୍ଯ୍ୟନ୍ତେ ଅସୁରେ ପଶୁରେ ହୁଅଜନ୍ମ
ପ୍ରଥମେ ଗଜ କୁମ୍ଭୀର ହୋଇଲ ତୁମ୍ଭେ ଯାଇ
ଦ୍ୱିତୀୟରେ ଅସୁର କୁଳରେ ଜାତ ହୋଇ ।
ତୃତୀୟେ ହେବ ତୁମ୍ଭେ ଋଷିର ନନ୍ଦନ
ମାତାଗୁଣ ଯୋଗ ଅସୁର ହେବ ପୁଣ ।
ଚତୁର୍ଥରେ ନର ରାଜାଙ୍କ ପୁତ୍ର ହେବ
ମାନବ ହୋଇ ଅସୁର ବୁଦ୍ଧି ଆଚରିବ ।
ପଞ୍ଚମେ ଜାତ ହେବ ଦମନର କୁଳେ
ଦନୁଜ ଅସୁର ବୋଲି ବୋଲିବେ ସକଳେ ।
ନାରାୟଣଙ୍କ ହସ୍ତରେ ନିଶ୍ଚୟ ପ୍ରାଣ ଦେବ
ତେବେ ତୁମ୍ଭେ ବଇକୁଣ୍ଠ ଦ୍ୱାରକୁ ଆସିବ ।
ଏମନ୍ତ କହି ମୁନି ସେ ଗଲେ ସେଠାବରୁ
ପଶୁ ଜନ୍ମ ଜୟ ବିଜୟ ଏହୁ ହନ୍ତାରୁ ।
ଜଳ ସ୍ଥଳରେ ଗଜ କୁମ୍ଭୀର ଯୁଦ୍ଧ କଲେ
ହତେ ପଡିଯନ୍ତେ ସେଥିରେ ରହିଲେ ।
ସେ ଦିବାରୁ ପଶ୍ଚିମଦ୍ୱାର ହେଲା ବନ୍ଦ
ପୂର୍ବଦ୍ୱାରେ ଗଲେ ଦେବାସୁର ସେ ସନ୍ଧ
ସେ ଦୁଆରେ ମେଘାସୁର ହେଲା ପରବେଶ
କ୍ଷେତ୍ରପାଳ ହସ୍ତରେ ସେହୁ ଗଲା ନାଶ ।
ଶୁଣିଣ ପାର୍ବତୀ ଦେବୀ ସନ୍ତୋଷ ହୋଇଲେ
କ ପ୍ରାୟେ ଗଜ କୁମ୍ଭୀର ମଲେ ପଚାରିଲେ ।
ଈଶ୍ୱର ବୋଇଲେ ସେହୁ କଲ୍ପ ପରିଯନ୍ତେ
ଜଳ ସ୍ଥଳ ବାସକରି ରହିଲେ ନିଶ୍ଚିନ୍ତେ ।

ଗଜ ଗଲ ପାଣି ଖାଇ ପଶିଣ ସରୋବରରେ
ଋଷମ ନାଗବଳ ସେ ଅଟଇ ବଳରେ ।
ଋଷମ ନାମେ ଗ୍ରାହ ପଦ୍ମବନରେ ଥିଲା ଜାଣ
ଗଜ ପାଣି ଖାଆନ୍ତେ ତାକୁ ଧରିଲାକ ପୁଣ ।
ସହସ୍ର ବର୍ଷ ପର୍ଯ୍ୟନ୍ତେ ସେହୁ ଯୁଦ୍ଧ କଲେ
ଗଜନ୍ଦ୍ରି ହାରିଲା ଗ୍ରାହ ଜିଣିଲା ବଳରେ ।
ଗଜ ଚିନ୍ତା କରିବାରୁ ଗ୍ରାହକୁ ପ୍ରଭୁ ଛେଦ
ନାରାୟଣ ଦର୍ଶନରେ ଗଜ ପ୍ରାଣ ଛେଦ ।
ସତର ଯୁଗ ପର୍ଯ୍ୟନ୍ତେ ବୈକୁଣ୍ଠେ ରହିଲେ
ହିରଣ୍ୟ କଶ୍ୟପ ରୂପେ ଜନମ ସେ ହେଲେ ।
ନୃସିଂହ ରୂପରେ ନାରାୟଣ ତାକୁକଲେନାଶ
ରାବଣ କୁମ୍ଭକର୍ଣ୍ଣ ନାମରେ ନିଶେଷ ।
ପାର୍ବତୀ ବୋଇଲେ ସହସ୍ରମୁଖା ରାବଣର
ସେକଥା ରାମକୁ କହେ ଶୁଣିବା କୁମର ।
ଈଶ୍ୱର ବୋଇଲେ ଶ୍ରୀରାମ ବିଭୀଷଣଙ୍କୁ ପୃଚ୍ଛି
ସହସ୍ରଗ୍ରୀବାର କଥା କହ ହେ ବୁଝାଇ ।
ଆନ ଆନ ରୂପ ସେ ଧରେ ଦୈତ୍ୟଗଣ
ସ୍ଥଳକେ ପୃଥ୍ୱୀବେଶ ଯେ ହୁଏ କର୍ମମାନ ।
ବଜ୍ରତୁଁ ଆଣ୍ଠ ଅଟେ ତାହାର ଶରୀର
ଦେହ ତାର ଦିଶଇ ଯେସନେ ଗିରିବର ।
ଏମନ୍ତେ କେତେକ ଦିନର ଅନ୍ତରେ
ରାଜ୍ୟ ଭୂମି ଯାଇଥିଲେ ଦଶାନନ ସାଥେ ।
ସଙ୍ଗତରେ ଥିଲେ ତାର ଭାଇ ବିଭୀଷଣ
ଏକଇ ଯାନରେ ବସିଲେ ବେନଜନ ।
ଏମନ୍ତେ ଅନେକ ଦୂର ବୁଲିଲ ପୁଣ ଯାନ୍ତି
ମେରୁର ପୂର୍ବ ଭାଗରେ ଯାଇଣ ହୁଅନ୍ତି ।
ଦେଖିଲେ ନଦୀ ଏକ ଯାଉଅଛି ବହି
ସେ ନଦୀର ମହିମା ଯେ କହିଲେ ନ ସରଇ
କ୍ଷୀର ସମୁଦ୍ରେ ସେ ଜଳ ଯାଇଣ ସମ୍ଭାଇ
ଅପୂର୍ବ କଥା ଏକ ଦେଖିଲୁ ବେନଭାଇ ।
ସେଠାରେ ବିଜେ କରିଅଛନ୍ତି ମହାମାୟୀ
ଖଡ୍ଗ ଖପର ଧରି ଭୟଙ୍କର ହୋଇ ।
ମହାପ୍ରତାପୀ ସେ ଯେ ଅଟନ୍ତି କାତ୍ୟାୟିନୀ
ବାଞ୍ଛା କଲ୍ପ ଫଳ ସେ ଦିଅନ୍ତି ତତକ୍ଷଣି ।
ତାର ପାଖେ ଭାନୁପାଶା ନଦୀ ଅଛି ବହି
ତହିଁର ମହିମା ଯେ କହିଲେ ନ ସରଇ ।

ପ୍ରତ୍ୟକ୍ଷେ ଧବଳାଙ୍ଗୀ ଯେ ମାଇ ସମ୍ଭାଳଣୀ
କୋଟିଏ ତୀର୍ଥଏରେ ଅଟେ ସେ ତାରେଣୀ ।
ତହିଁରେ ଏକବାର କରିବ ଯେ ସ୍ନାନ
ସ୍ୱଦେହ ଘେନି ବସିବ ବୈକୁଣ୍ଠ ଭୁବନ ।
ସେହି ନଦୀ କୂଳରେ ଦଶାନନ ଯାଇ
ସହସ୍ରମୁଖାକୁ ସେ ଦେଖିଲା ଖଣ୍ଡେଦୂର ଯାଇ
ଦେଖିଣ ଦଶାନନ ଚମତ୍କାର ହେଲା
ସହସ୍ର ମସ୍ତକେ ସହସ୍ର ମୁକୁଟ ଦେଖିଲା ।
ଦୁଇସହସ୍ର କୁଣ୍ଡଳ ସୂର୍ଯ୍ୟଜ୍ୟୋତି ଜାଣ
ଚନ୍ଦ୍ରପାଣିଆ ଝଟକେ କର୍ଣ୍ଣର ମଧ୍ୟେ ପୁଣ ।
ଅଷ୍ଟରତ୍ନରେ କଙ୍କଣ ଦୁଇସହସ୍ର ହସ୍ତରେ
ବାହୁଟି ବାନ୍ଧିଛି ଦୁଇସହସ୍ର ବାହୁରେ ।
ପଦକ ଚନ୍ଦ୍ର ହାର ଗଳାରେ ମୋତିମାଳ
ସହସ୍ର ବକ୍ଷସ୍ଥଳକୁ ଦିଶେ ଯେ ସୁନ୍ଦର ।
ବସି ଧବଳାଙ୍ଗୀ ପାଶରେ କରେ ସେ ତର୍ପଣ
ଦେଖିଣ ପାଶକୁ ତାର ଗଲା ଦଶାନନ ।
ଦଶମୁଖାକୁ ଦେଖିଣ ସହସ୍ରାନନ ଭାଷି
କେବଣ ଦେଶରୁ ତୁମ୍ଭେ ବେନଜନ ଆସି ।
କେଉଁ ଦେଶରେ ତୁମ୍ଭର ଅଟନ୍ତି ବନ୍ଧୁଜନ
କେଉଁ ଦେଶରେ ଜନ୍ମ ହୋଇଅଛ ପୁଣ ।
କେତେ ନାତି ପୁତ୍ର ଯେ ଅଟନ୍ତି ତୁମ୍ଭର
ଶୁଣିକରି ଦଶାନନ କହେ ଯେ ଉତ୍ତର ।
ଲଙ୍କାଗଡରେ ମୂର୍ତ୍ତି ଅଟଇ ଦଣ୍ଡଧର
ଭାଇ ବନ୍ଧୁ କୁଟୁମ୍ବ ଅଛନ୍ତି ଅପାର ।
ମୋହର ନାମକୋଟି ଯେ ଅଟଇ ରାବଣ
ଅନୁଜ ଭାଇଯୋଟି ମୋର ଅଟେ ବିଭୀଷଣ ।
ଅପାର ଦୂର ଆମ୍ଭେ ଆସିଲୁ ଯେ ବୁଲି
ତର୍ପଣ କରିବାକୁ ଏ ଠାବକୁ ଅଇଲି ।
ବିସ୍ତ ହେଲା କଥା ମୋତେ ପଚାରିଲ ଯାହା
ମୟଦୈତ୍ୟ ଦୁହିତା ମୁଁ ଆଗରେ ହେଲି ଭାବ
ମଂଷାସୁର ଦୁହିତା ଶମ୍ଭୁ ନନ୍ଦୁଙ୍କର ଝିଅ
ଶଙ୍ଖାସୁର ଜଳନ୍ଧର ରକ୍ତବୀର୍ଯ୍ୟର ଝିଅ ।
ଏମନ୍ତେ ଅନେକ ନାରୀ ବିଭା ମୁହିଁ ପୁଣ
ଷାଠିଏ ସହସ୍ର ମୋର ଅଟନ୍ତି ନାରୀଗଣ ।
ପୁତ୍ର ବାହସ୍ତରୀ ମୋର ନାତି ତେର ଶତ
ଦୁହିତା ଅଟନ୍ତି ମୋର ସାତଶ ପଞ୍ଚାଶତ ।

ଜ୍ୟେଷ୍ଠ ନାରୀ ମୋର ଯେ ମନ୍ଦୋଦରୀ ପୁଣ
ତିନକୋଟି ଦୁହିତା ତାର ଗର୍ଭରୁ ଜାତ ପୁଣ
ତୁମ୍ଭଙ୍କୁ ଦେଖିଣ ମୁଁ ଯେ କରଇ ବିଚାର
ବଡ଼ ଅପୂର୍ବ କଥା ଏ ଦେଖିଲି ଏଠାର ।
ମୁହିଁ ରାବଣ ମୋର ଅଟେ ଦଶମଥା
ଅଲଙ୍କାଗଡ଼ରେ ଅଛି ରାବଣ ଶତେମୁଖା ।
ତୁମ୍ଭର ଦେଖିଲି ମୁଁ ଯେ ସହସ୍ର ବଦନ
ସେଥିର ସକାଶେ ଆସଇ ମୁହିଁ ପୁଣ ।
ବିସ୍ତରଇ କେବଣ ଦେଶର ଅଧିକାରୀ
ଏମନ୍ତ ବିସ୍ତରି ମୁଁ ଅଇଲି ପଚାରି ।
ଶୁଣିଣ ସହସ୍ରାନନ କହଇ ଉତ୍ତର
ମୁହିଁ ଅଲଙ୍କାରେ ଅଟେ ଦଣ୍ଡଧର ।
ମୋହର ନାମ ସହସ୍ରମୁଖା ଯେ ରାବଣ
ମୋ ପୁଅ ତୋ ଦୁହିତା ବିଭା କରିବା ପୁଣ ।
ତୁମ୍ଭେ ଆମ୍ଭେ ଦୁହେଁ ହେଲୁ ମଇତ୍ର
ଏତେ ବୋଲି ସମ୍ବନ୍ଧୀ ହେଲେ ବେନଗୋତ୍ର
ଏତେ କହି ଉଠିଲେ ଦେବ ଦୈତ୍ୟ ସାର
ବୋଲ ସମ୍ଭାଷଣ ହେଲେ ନୃମୁଣ୍ଡଶେଖର ।
ସହସ୍ରଗ୍ରୀବା ଯେ ବୋଲଇ ବଚନ
ମୋ ଘର ଅଲଙ୍କା ତୁମ୍ଭ ଘର ଲଙ୍କା ପୁଣ ।
ଆଜହୁଁ ବନ୍ଧୁ ତୁମ୍ଭେ ହେଲ ଯେ ଆମ୍ଭର
ତୁମ୍ଭର ଦୁହିତାକୁ ଆମ୍ଭର କୁମର ।
ତୁମ୍ଭର ଯେଉଁ ନାମ ଆମ୍ଭର ସେହି ନାମ
ତୁମ୍ଭର ଆମ୍ଭର ଆଜୁ ଏକକାୟ ଜାଣ ।
ଅଭ୍ୟାନ୍ତର ନ ଥାଉ ଯେ କାହାର ହୃଦରେ
ଏତେ କହି ପ୍ରମାଣ କଲେ ସେହିଠାରେ ।
ଯେହୁ ହାଡେ ହୃଦରେ ଯେ କୁଟିଳ ବହିବ
ସତ୍ୟରୁ ଅସତ୍ୟ ହେଲେ ସେହୁ ନାଶ ଯିବ
ଶୁଣିଣ ଦଶାନନ କହଇ ବଚନ
ଯାହା କହିଲ ତୁମ୍ଭେ ହେ ବନ୍ଧୁ ଲକ୍ଷଣ ।
ଅସମୟ କାଳରେ ଯେହୁ କରିବ ଅନ୍ତର
ଅବଶ୍ୟ ହାନି ସେହୁ ପାଇବ ଧର୍ମଦ୍ୱାର ।
ଏସନ ବିସ୍ତର କରି ପଥ ବହିଗଲେ
ସମୁଦ୍ର ପାରିହୋଇ ଗଡ଼ରେ ମିଳିଲେ ।
ସୁବର୍ଣ୍ଣ ଲଙ୍କାଗଡ଼ ଅଟନ୍ତି ସୁନ୍ଦର
ସ୍ଫଟିକ ଧବଳ ଯେ ଅଲଙ୍କା ନାମେ ପୁର ।

କିଛୁଦିନ ଅନ୍ତରେ ସହସ୍ରାନନ ପୁଣି
ଦଶଗ୍ରୀବ ନଗରେ ଆସି ମିଳେ ଜାଣି ।
ସୁବର୍ଣ୍ଣ ଲଙ୍କାଗଡ଼ ନଗରେ ହେଲା ଯାଇ
ଶୁଣିକରି ଦଶାନନ ଅଇଲା ବେଗ ହୋଇ ।
ସୁପକାରଙ୍କୁ ଡକାଇ ଆଜ୍ଞା ଦିଏ ଦଶାନନ
ମନୋହର ଯୋଗାଡ଼ ପାକ କରି ହେ ବହନ ।
ଶୁଣିକରି ସୁପକାର ତତକାଳେ ଗଲା
ରୋଷଶାଳରେ ଯାଇ ପ୍ରବେଶ ହୋଇଲା ।
ତେରଶତ ସୁପକାର ସମସ୍ତେ ରୁଣ୍ଡହୋଇ
ରନ୍ଧଣା ସଞ୍ଚାମାନ ସଜାଡ଼ିଲେ ନେଇ ।
ମେଷ ମଇଁଷି ଗଜ ଘୋଡ଼ା ଯେ ଶ୍ୱାନ
ଶିରଚ୍ଛେଦ ଏମାନଙ୍କୁ କରନ୍ତି ରନ୍ଧନ ।
ଉତ୍ତମ ଶାଳୀଅନ୍ନ ରାନ୍ଧିଲେ ତତପର
ନାନା ବର୍ଣ୍ଣରେ ପିଠା ସୁପକ୍ୱ ଆହାର ।
ଏମନ୍ତେଣ ସକଳ ଦ୍ରବ୍ୟ ପାକ କଲେ
ରାବଣର ସମ୍ମୁଖେ ଯାଇଣ ମିଳିଲେ ।
ସେବାକାରୀମାନେ ଯେ ଯେଉଁଆଡ଼େ ଥିଲେ
ଯେ ଯାହାର ସେବାରେ ଯାଇଣ ମିଳିଲେ ।
ଡାକୁଆ ଲମ୍ବହଡା ରଜତ ମାହୁନ୍ତ
ଯେ ଯାହାର ସେବାରେ ଲାଗିଲେ ତୁରିତ ।
ସହସ୍ରଗ୍ରୀବାକୁ ରାବଣ ଲଙ୍କାକୁ ଦେଖାଇ
ଏହି ସମୟରେ ସୁପକାରମାନେ ଯାଇ ।
ଭୋ ଦେବ ତିଆରି ଯେ ହେଲା ମଡ଼ପୂଲ
କମର୍ଥେ ଦେବ ଆଜ ବିଳମ୍ବ ଯେ କରି ।
ଶୁଣିକରି ରାବଣ ଯେ ତତକାଳେ ଉଠି
ସହସ୍ର ବଦନ କର ଧରିଣ ନଅନ୍ତି ଡାକି
ବୋଇଲେ ଆସମଇତ୍ର ମନୋହରେଭୋଜନକରି
ଶୁଣିକରି ସହସ୍ରାକ୍ଷ ଉଠିଲା ତତପର ।
ଭିତରକୁ ବିଜୟ ସେ କଲେ ବେନି ଜଣେ
ମନର ସାନନ୍ଦେ କଲେକ ଭୋଜନେ ।
ନାନା ବର୍ଣ୍ଣରେ ସେ ସୁପକ୍ୱ ମାଂସ ଭକ୍ଷି
ସନ୍ତୋଷରେ ସହସ୍ରମୁଖା ଅନେକ ପ୍ରଶଂସି
ଭୋଜନ ସାରିଣ ଯେ ଆଚୋବନ କଲେ
ତାମ୍ବୁଳ ଭୁଞ୍ଜିଣ ଯେ ସନ୍ତୋଷ ହୋଇଲେ ।
ମହାସୁଖ ପାଇଣ ବୋଲେ ସହସ୍ରାନନ
ଆସ ହେ ସମ୍ବନ୍ଧୀପିବା ଆମ୍ଭର ଭୁବନ ।

ଆଣ କୁମ୍ଭର ଦୁହିତା ନେତ୍ରରେ ଦେଖିବା
କୁଳବଧୂ ଦେଖି ମନ ସନ୍ତୋଷ କରିବା ।
ମୋର ଜ୍ୟେଷ୍ଠ କୁମର କୁମ୍ଭର ଜ୍ୟେଷ୍ଠ ବାଳୀ
ଉତ୍ତମ ଯୋଗରେ ଆଜ ହୋଇଥାଉ ମେଳି
ଶୁଣିକରି ଦଶାନନ ବେଗେ ଚଳିଗଲା
ମନ୍ଦୋଦରୀଙ୍କ କନ୍ୟା ଦୁହିତା ଆଣାଇଲା ।
ସ୍ୱର୍ଗ ଅପସରୀ ପ୍ରାୟ ଝଲେ ସେ ସୁନ୍ଦରୀ
ଦେଖିକରି ସହସ୍ରାନନ ମନ ସନ୍ତୋଷ କରି
ଏମନ୍ତ ଶୁଣି ରାବଣ ଉଠିଲା ତତପର
ଆନନ୍ଦେ ବସିଲେ ଯାଇ ବିମାନ ଉପର ।
ଦଶଗ୍ରୀବ ସଙ୍ଗରେ ଯେ ମନ୍ତ୍ରୀ ପୁଣ ଯାଇ
ପଥ କଟିଯାନ୍ତେ ସେ ନାନା କଥା କହି ।
ଅନ୍ତରୀକ୍ଷେ ତିନିଜଣ କରନ୍ତେ ଗମନ
ବିଲଙ୍କା ଦେଶରେ ଯେ ହେଲେ ଯାଇ ପୁଣ ।
ଦେଖିକରି ରାବଣ ମନରେ ବିଚାରଇ
ମୋର ପୁତ୍ରକୁ ସହସ୍ରେ ଗୁଣରେ ବଳଇ ।
ଏମନ୍ତେ ପ୍ରଶଂସା ଯେ କରଇ ଅପାର
ତକ୍ଷଣେ ମିଳିଲେ ସେ ସହସ୍ରାନନର ମନ୍ଦିର
ଯାନରୁ ଉଲ୍ଲଙ୍ଘି ସେ ଭିତରେ ପଶିଲା
ଅଷ୍ଟରତ୍ନ ଜଡ଼ିତ ମଣ୍ଡପ ଦେଖିଲା ।
ଯାଇଣ ଛାମୁରେ ଯେ ବସିଲେ ସଙ୍ଗଜନ
ସେବକ ସାମନ୍ତ ଯେ ବେଢ଼ିଲେ ପାଶେ ପୁଣ
ସୁହାଗ ଦାସୀ ସେଠାରେ ଲାଗିଲା ଅନେକ
ଚାମରେ ଖଣ୍ଡିଆ ଯେ ବେଢ଼ିଛନ୍ତି ତାଙ୍କ ।
ସହସ୍ରମୁଖା ଭାରିଯା ଯେ ଅଟଇ ସରିତା
ଅନ୍ତଃପୁରେ ଥାଇଣ ସେ ପାଇଲା ବାରତା ।
ଆପଣା ହସ୍ତରେ ଯେ ସମ୍ପାଦେ ମଡ଼ପୁଲି
ନାନାବିଧ ବ୍ୟଞ୍ଜନ ଯେ ଅନ୍ନ ଆଦି କରି ।
ପାକ ସମ୍ପାଦଣ ସେ ଯେ ମୁଦୁସୁଲିଙ୍କ ସଙ୍ଗ
ରାଜାଙ୍କୁ ଜଣାଅ ବେଗେ କରନ୍ତୁ ମଣୋହି ।
ଶୁଣିକରି ମୁଦୁସୁଲି ତତପରେ ଗଲା
ସହସ୍ରମୁଖା ଛାମୁରେ ଯାଇଣ ଜଣାଇଲା ।
ହୋଇଲା ବେଳ ଦେବ ହେ ଶୁଣ ସାବଧାନେ
ମଣୋହିକି ବିଜେ କର ହେ ଆପଣେ ।
ଶୁଣିକରି ସହସ୍ରମୁଖା ତକ୍ଷଣେ ଉଠିଲା
ଦଶଗ୍ରୀବଙ୍କୁ ଘେନିଣ ଭିତରେ ପଶିଲା ।

ମଣୋହିରେ ବିଜେକଲେ ଦେବ ସ୍ଥାନରେ ଯାଇ
ବିଭୀଷଣ ବସିଲା ତାଙ୍କର ସଙ୍ଗ ହୋଇ ।
ପିଠାପଣା ଆଦରି କଦଳୀ ନଡ଼ିଆଳ
ଘୃତରେ ସରିତା ଯେ ଘୃତପକ୍ୱ ସାର ।
ଅନେକ ପ୍ରକାରେ ଯୋଗାଡ଼ କରନ୍ତି ଭୁଆଣ
ଭୁଞ୍ଜିଣ ସନ୍ତୋଷ ହେଲେ ରାବଣ ବିଭୀଷଣ ।
ଭୋଜନ ସାରିଣ ତିନିଜଣ ଆଚୋବନ କଲେ
ମୁଦୁସୁଲି ଯୋଗାଡ଼ ବଟୁଆ ଆଣିଦେଲେ ।
ସହସ୍ରାନନ ସମ୍ବନ୍ଧୀଙ୍କ ଗଉରବ କଲା
ରତ୍ନ ଅଳଙ୍କାର ସେ ବହୁତ ଆଣି ଦେଲା ।
ବିବିଧ ପ୍ରକାରେ ସେତୁ ବେଲେକ ଦୁକୂଳ
ଦେଖାଇଲା ନେଇଣ ସକଳ ଅନ୍ତଃପୁର ।
ସେଠାବରେ ରାବଣ ଯେ ବନା ସୁରି ରଙ୍ଗ
ପୁତ୍ରକୁ ତାହାର ଦେଖାଇ ପୁଣ ନେଇ ।
ବିଭାଘର ନିର୍ଣ୍ଣୟ କରି ଦଶାନନ
ସମ୍ବନ୍ଧୀଙ୍କ ମେଲାଣି ମାଗଇ ବହନ ।
ଆପଣା ନିଜ ଦେଶରେ ହେଲା ପରବେଶ
ବିଭାର ସଂଯୋଗ ଯେ କରେ ଦଶାଈଶ ।
ବିଲଙ୍କାରୁ ଲଙ୍କାକୁ ଲାଗେ ଯାନକୁ ଯାନ
ବିଜେ ହୋଇଲେ ସହସ୍ରାନନର ନନ୍ଦନ ।
ମଙ୍ଗଳକୃତ୍ୟ କଲେ ସୁବର୍ଣ୍ଣ ଲଙ୍କାଗଡ଼େ
ବିପ୍ରର ଉତ୍ସବରେ ଦଶାନନ ସ୍ଥାନେ ।
ଅସୁର ଘର ବିଧିରେ ବିଭାଘର କଲେ
ସ୍ତ୍ରୀକେଶା ଦୁହିତାକୁ ନେଇଣ ସମର୍ପିଲେ ।
ସହସ୍ରମୁଖା ପୁତ୍ର ନାମ ଗୁମାନ ସ୍ତ୍ରୀ ପୁଣ
ବିଭସାରି ଦନ୍ୟା ଘେନ ଚଳେ ସ୍ୱରାଜ୍ୟ ଜାଣ
ଗଜ ଅଶ୍ୱ ଧନ ରତ୍ନ ଅନେକ ଯଉତୁକ
ଶରଧାରେ ଦେଲେ ତାଙ୍କୁ ବଶ୍ୱବାର ସୂତ
ବିଲଙ୍କାରେ ସହସ୍ରାନନ ହେଲେ ପରବେଶ
ଏଥୁଅନନ୍ତରେ ଶୁଣ ଶୁଣ ଦିବ୍ୟରସ ।
ଅନେକ ଆନନ୍ଦରେ ଥାଆନ୍ତି ବେନିସ୍ଥାନ
କାହାରି ମନ ବୁଦ୍ଧି ନାହିଁ ଯେ ତାଙ୍କର ।
ଯେତେବେଳେ ବାରତା ପାଏ ଦଶାନନ
ସହସ୍ରମୁଖା ପୁତ୍ରକୁ ଚଳଇ ବହନ ।
ଏମନ୍ତେ ଅତ୍ୟନ୍ତ ଭାବ ଦୁଇ ଜଣଙ୍କର
କେବେହେଁ ଦୁଇଜଣ ନୁହନ୍ତି ଅବେଗର ।

ଚତୁବର୍ଗଣ୍ଡା ଯୁଗ ଜନ୍ମରୁ ଦଶଗ୍ରୀବ
କୁମ୍ଭର ଘରଣୀଙ୍କ ସ୍ନେହକରିବାରୁ ବଳ୍ପ ।
ପୁତ୍ର ଇନ୍ଦ୍ରଜିତ ଯେ ମରିବାରୁ ପୁଣ
ବାରତା ପାଇଲା ନାଶ ମନ୍ତ୍ରୀ ଯେ ରାବଣ ।
ଅକାଠାରେ ପ୍ରବେଶ ହୋଇଲା ସେ ବେଗ
କୃଷ୍ଣ ବୁଦ୍ଧିମାନ କହିଲା ହୋଇ ରାଗ ।
ଶତେମୁଖା ରାବଣ ବଶାନନର ମିତ
ତାହାକୁ ଭେଟିଲା ଅଯୋଧ୍ୟାକୁ ସେ ଗୁପତ ।
ଶତ୍ରୁଘନ ସଙ୍ଗରେ ଯୁଦ୍ଧକରି ମଲା
ସେଠାରୁ ମନ୍ତ୍ରୀରାବଣ ବଳଙ୍କାଗଡ଼ ଗଲା ।
ସହସ୍ରମୁଖା ଆଗ୍ରରେ କହିଲା ସକଳ
ଶୁଣିଣ ସହସ୍ରାନନ ନ କଲା ସୀଉକାର ।
ଅସିବ ବୋଲିଣ ସେ ଓପ୍ରୋଧ କହିଲା
ଅଳ ପଣ୍ଡିତ ସେ ଭାଙ୍କିକ ନ ଆସିଲା ।
ସେଠାରୁ ମନ୍ତ୍ରୀରାବଣ ଲକ୍ଷ୍ମଣ ହରିନେଲା
ମନ୍ଦବୁଦ୍ଧି କରି ସେ ଆପଣେ ନାଶଗଲା ।
ମନ୍ଦୋଦରୀ କହିଲା ଆମ୍ଭକୁ ଆସି ପୁଣ
ରାମ ଗଲେ ଏଠାକୁ ଆସି ମାରିବ ବଶାନନ
ତୁମ୍ଭେ କହିବାରୁ ଗୁର ଭେଟିଲି ମୁହିଁ ଭଲେ
ଶୁଳ ସାରଣ କହିଲେ କୁମ୍ଭର ଆଗରେ ।
ସେହି ନଷ୍ଟଯୁ ଲଙ୍କାଗଡ଼କୁ ଆସିବ
ସରୋଜ ସହିତେ ମୋର ବଂଶ ନଠାରିବ ।
କୋଟିଏ ସିଂହର ବଳ ବହେ ସହସ୍ରାନନ
ତାକୁ ବଳେ ସମାନ ନୋହିବେ ଇନ୍ଦ୍ର ପୁଣ ।
ବିଭୀଷଣଠାରୁ ଏସନ ଶୁଣି ରଘୁପତି
ଆକାଶକୁ ଚାହିଁଣ ନିଃଶ୍ୱାସ ଛାଡ଼ନ୍ତି ।
ବୋଲନ୍ତି ବିଧାତା ତୁ କସ ଅଛୁ ଲେଖି
ଏତେ ଅନର୍ଥ କରିବାକୁ ତୋହର ମନହୋଇ
ସଂସାର ଭିତରେ କେତେ ନାହାନ୍ତି ଅବତାର
ରାଜପୁତ୍ର ହୋଇ ମୁଁ ଯେ ହେଲି ଏତେସର
ତାହାକୁ କସ କରୁନାହୁଁ ହୋ ବିଧାତା
ତୁମ୍ଭେ ସିନା ଜାଣ ହେ ହାନ ଲଭ କଥା ।
ବିଭୀଷଣ ବୋଇଲା ମୁଁ ନୋହିବ ବନ୍ଧୁଧାରୀ
ହେଲକୁ ହେଲ ଦୁଃଖ ତ ହେଉଛୁ କୁମ୍ଭର ।
ବିଭୀଷଣ କହିବାରୁ ରଘୁନାଥ ସ୍ୱାମୀ
ବୋଲନ୍ତି ଏଠାକୁ ସେ କେତେ ଦୂର ହୋଇ
ଶୁଣିକରି ବିଭୀଷଣ କରଯୋଡ଼ କହି
ଏଠାକୁ ବଳଙ୍କା ଶତେ ପୂର୍ଣ ଯେ ଅଟଇ ।
ଏହି ଲଙ୍କାଗଡ଼ର ଦକ୍ଷିଣ ଭାଗରେ
ବଇଡୂର୍ଯ୍ୟ ସ୍ଥାନ ଅଛି ସମୁଦ୍ର ଭିତରେ ।
ସେ ସ୍ଥାନରେ ଗଡ଼ କରି ରହିଛି ସହସ୍ରାନନ
ଶୁକ୍ଳାମ୍ବର ପୁର ଯେ ଅଟେ ସେହି ସ୍ଥାନ ।
ଶୁଣିକରି ରଘୁନାଥ ଜାମ୍ବବ ମୁଖ ଚାହିଁ
ଏଥକୁ କସ ଉପାୟ ନ କହ କମାଇଁ ।
ଅସୁର ସତ୍ୟ ବିଭୀଷଣକୁ ନୃପତି କରିବାକୁ
ଏହାକୁ ନିଶ୍ଚିନ୍ତ କଲେ ଯିବା ଅଯୋଧ୍ୟାକୁ ।
ଏ ବଚନ ଶୁଣିକରି ବୋଲନ୍ତି ଜାମ୍ବବ
ଶ୍ରୀମୁଖ ସେନ ଅଙ୍ଗଦ ବଳଙ୍କାପୁର ଯିବ ।
ଶ୍ରୀରାମ ଆଜ୍ଞା ବୋଲି କହୁ ଯେ ତାହାକୁ
ଆସିଲେ ସଙ୍ଗତରେ ଆସୁ ଏ ଠାବକୁ ।
ତାହାକୁ ପ୍ରବୋଧନା କରିଣ କହିବା
ବିଭୀଷଣକୁ ତାକୁ ସମାଧାନ କରିଯିବା ।
ବଳୀ ନୃପତି ବଧ ତ ଶୁଣିଥିବ କର୍ଣ୍ଣରେ
ଆଦର ନାଶଗଲେ ଶତେଗ୍ରୀବ ବଣିଣିରେ ।
ଏ କଥାକୁ ଯେବେ ବଳଆର ସେ ହୋଇବ
ପ୍ରୀତି ନ କରି ଯେବେ ଯୁଦ୍ଧ ଆରମ୍ଭିବ ।
ନ ବୁଝି ହଦ୍ଦ ଯେବେ କରିବ ଆମ୍ଭ କୁଳେ
କୁମ୍ଭଙ୍କୁ ଜଣନ୍ତା ତ ନୋହିବ ସେହି ଭଲେ ।
ଶୁଣିକରି ରଘୁନାଥ ବୋଲନ୍ତି ବଚନ
କାହାଠାରୁ ବର ପାଇଛି ସହସ୍ରାମୁଖ ପୁଣ ।
ଜାମ୍ବବ ବୋଇଲେ ଦେବ ଅଚ୍ଛୁତ ବରଚାର
ବ୍ରହ୍ମା ଶିବ ହରପାଳେ ନ ଦେଲେ ତାକୁ ବର
ଜନ୍ମ ହୋଇ କେନ ଯୁଗ ତାର ବଞ୍ଚିଗଲା
କେନ ଯୁଗ ଅନ୍ତରେ ସେ ତପୋବନ୍ତ ହେଲା
ଯୋଗସାଧନାକରି ଯେବେ ସେ ପଡ଼ଇବେକ
ଅଙ୍ଗିରା ଋଷି ଆସି ହୋଇଲେ ତାର ଆଗ
ବୋଇଲେ ନୈତ୍ୟସାର କମା କୁ ତପ କରୁ
ଅସୁର ବୋଇଲା ମୁଁ ଯେ ହେବ ମହାମେରୁ ।
ବୃହସ୍ପତି ଋଷି ବୋଇଲେ ହୋ ଆମ୍ଭଠାରୁ ଶୁଣ
ଯମଦେବତାଙ୍କୁ ତୁ ସୁମର ତତକ୍ଷଣ ।
ସମସ୍ତଙ୍କର ପ୍ରାଣ ହରନ୍ତି ଜଳପତି
ତା ପ୍ରାଣ ହାରିବାକୁ ନାହିଁ କା ଶକତି ।

ସେ କୋଟେ ବଳବେଳେ ଭୁଝୋଇବୁ ଅବଗ
ଦେବତା ଏ ମାର କୋଟେ ନ ପାରବେ ସାଇ
ଏତେକକ୍ତ ଅର୍ଜିଣ ସେ ସ୍ୱର୍ଗପୁର ଗଲେ
ସୂର୍ଯ୍ୟ ପୁତ୍ର ସ୍ୱମଲ୍ଲଣା ଅସୁର କଲେ ଭଳେ ।
ଜନୁପତ୍ତ ଯାଇ ତାକୁ ବର ଦେଲେ ପୁଣ
ଅମର ପଦ ତ ନୁହଇ ଦୈନ୍ୟଗଣ ।
ବଶବଦଗମାନେ ସେ ଦେବଗଣ ଆଜ
ଜନ୍ମ ହେଲେ ମୃତ୍ୟୁ ପୁଣ ହୁଅନ୍ତ ଅସୁର ବଧ
ସହସ୍ରାନନ ବୋଇଲ ମୁଁ ଦେବତା ମାନବରେ
ଅସୁର ନାଗବଳ ନ ମାନୁଁବ ମୋର ।
ଜଳରେ ନ ବୁଡ଼ନ୍ତ ଅଗ୍ନିରେ ନ ପୋଡ଼ନ୍ତ
ପବନେ ନ ଉଡ଼ନ୍ତ ଅସ୍ତ୍ରେ ଉଣ୍ଟନ୍ତ ।
ମୋର ଯେବେ କେବେ ମୃତ୍ୟୁ ହୋଇବାକ ପୁଣ
ନାଗପୁଣ ଜଳତା ଧରବ ସଦାଶିବଲ ବାଣ
ସୁବର୍ଣ୍ଣମୂକ କୁଳେ ସେ ସମ୍ଭୂତ ହୋଇଥିବ
ଯୋନରେ ଜନ୍ମହୋଇ ଅଯୋଗ୍ୟ ବୋଲାଇବ
ଏ ସ୍ୱରୂପକାରେ ହେବ ଥିବ ଯାହାଠାରେ
ସେ ମୋତେ ମାରବ ଅସ୍ତ୍ରେ ଉଜ୍ଜଳ କୁସ୍ତେ
ମୋର ଥିବା ଯା ଏ ମୋର ବଂଶ ଥିବ ନଷ୍ଟ ଜରେ
ମୋଠାରୁ ସବଳ ଯେ ମୋର କୁଳ ଭଳେ ।
ଶୁଣିକରି ଜନୁପଣ ତାକୁ ବର ଦେଲେ
ମନଇଚ୍ଛା ବର ତୋତେ ପ୍ରାପତ ହେଉ ବୋଲେ
ଅମଳାନ କମାନ ସେ ତାଙ୍କୁ ଅର୍ପିଦେଲେ
ଏଥିରେ ବସି ଗମନ କର ହୋ ବୋଇଲେ
ଏ କମାନେ ବସିଥିଲେ ମିଳଣ ତୋତେ ନାସ୍ତି
ଏତେକକହି ଜନୁପଣ ସଞ୍ଜିବନୀ ଯାଇ ।
ଏହା ଶୁଣି ଶ୍ରୀରାମ ସନ୍ତୋଷ ହୋଇଲେ
ଜନୁପତ୍ତ ବର ଦିନା ମନରେ ବସ୍ତୁରିଲେ ।
ବୋଇଲେ ଅଶ୍ୱସ୍ଥ ଜ ହୋଇବ ଏବ୍ତ ଦାଣ
ମୋହର ସନ୍ଦେଶ ଘେନଯାଉ ବାର୍ତ୍ତା ଶିଷ୍ୟ ।
ଜମ୍ଭେଦକୁ ସ୍ପୃଷ୍ଟି ରାମ ବୋଲନ୍ତ ବଚନ
ଲେଖ ଶ୍ରୀମୁଖ ଯାଉ ତାହାର ନନ୍ଦନ ।
ଲଙ୍କେ ରାଜା ମୁଖରେ ଆମ୍ଭଙ୍କୁ ଦେବ ଲଙ୍କା
ଗୁରୁଭାଇ ଆଉ ଯେବେ ବିଭୀଷଣ ହୋଇବ ରାଜା
ଗଲେ ଏଥୁ ବସ୍ତୁବେ ଲଙ୍କେ ରାଜାମାନେ
ଶ୍ରୀରାମ ଭଣିଲେ ସହସ୍ରାନନକୁ ଏଣେ ।

ବିଭୀଷଣ ଶରଣ ପଶିଲ ଚରଣେ
ଅଷ୍ଟକ ଭଣ ଲଙ୍କାରେ ନ ରଖିଲେ ଏଣେ ।
ଚଉଦ ଗୁଣରେ ଏ ଯେ ଅନନ୍ତ ନାଗପୁଣ
ଅସୁରକୁ ମାରିବାକୁ ଜନ୍ମ କଲେ ପୁଣ ।
ଏମନ୍ତ ବଚନ ଦେଇ ସେ ପ୍ରସନ୍ନମୁଖ ହୋଇ
ବାନର ସୁତ ଏବେ ବଲଙ୍କା ଦେଶ ଯାଇ ।
ଶୁଣିକରି ଜମ୍ଭେଦ ରାଜପତ୍ର ସେ ଲଭିଲେ
ସହସ୍ରମୁଖା ଠାବକୁ ଶ୍ରୀମୁଖ ଲେଖିଲେ ।
(ଚଉତିଶା)ଅଞ୍ଜନ ବରଞ୍ଜନ ଶ୍ରୀଚରଣେ ଶରଣ
ଶ୍ରୀହସ୍ତ ଧାରଣ ଶ୍ରୀରଘୁକୁଳ ମଣ୍ଡନ ।
ଉଲ୍ଲାସ ମାନଧାତା ଭଗିରଥ ବଳଚନ୍ଦନ
ଅଜରାଜାନନ୍ଦନମହାରାଜା ଦଶରଥସ୍ୱାମିମଣ୍ଡନ
ଶଳଞ୍ଜ ବର୍ଗ ମଧ୍ୟ ଭୃଷ୍ୟଶୃଙ୍ଗ ପୂର୍ଣ୍ଣଆହୁତ
ଏବଗଭ ଜନ୍ମକେ ନାଗପୁଣ ଅବତାରରଘୁମୂର୍ତ୍ତି
ଦଶରଥଙ୍କ ନନ୍ଦନ କଉଶିକ ଯାଗ ରକ୍ଷଣ
ତାଡ଼କା ପ୍ରାଣ ହରଣ ଅହଲ୍ୟା ତାରଣ ।
ସକଳ ମନରଞ୍ଜନ ମିଥିଳା ଗମନ
ଜନକ ସଭାରେ ପ୍ରବେଶି ଶିବଧନୁ ଭଞ୍ଜନ
ଜାନକୀ ପୁଷ୍ପମାଳା ଦେଇଣ ଶ୍ରୀରାମେ ବରଣ
ପରଶୁରାମ ଦର୍ପ ଗଞ୍ଜନ ଅଯୋଧ୍ୟା ପ୍ରବେଶନ
ଦଶରଥ ବଶିଷ୍ଟଙ୍କ ଘେନଣ ଭରଲେଖିବକେପୁଣ
ଶ୍ରୀରାମଙ୍କୁ ବଣ୍ଡଧାସ୍ତ କରଣ ସେଣ୍ଟ ଗଦେଣ ।
କେବେ ବସ୍ତୁରଣ ଶ୍ରୀରାମଙ୍କୁ ବନକୁ ଗମନ
ତାଙ୍କ ସଙ୍ଗେ ସୀତା ଲକ୍ଷ୍ମଣ ତଜଣ ଚଳଯାଇଣ
ଦଣ୍ଡକାରଣ୍ୟେ କୁଟୀର କରଣ ଜଣ୍ଟିରେ ରହିଣ
ସେଠାରୁ ସୀତା ହରଣ ଦଶଗ୍ରୀବ ନଅକ୍ଷେଣ
ଅଶୋକବନେ ରଖଣ ଶ୍ରୀରାମଖୋଜନ ପାଇଣ
ଏହୁ ସମୟେ ହନୁ ଭେଟିଣ ।
ସୁଗ୍ରୀବ ସଙ୍ଗେ ମଇତ୍ର ହୋଇଣ
ବାଳିକ ବନାଶନ ସୁଗ୍ରୀବରକୁ କରି ରାଜନ
ଦୂତ ପେଷିଣ ଜାନକୀ ଠାବ କରିଣ
ମଧୁବନ ଭଙ୍ଗିଣ ଲଙ୍କା ପୋଡ଼ିଣ ।
ଶ୍ରୀରାମେ ବାର୍ତ୍ତା କହିଣ ସୈନ୍ୟ ଘେନିଣ
ସମୁଦ୍ର ବନ୍ଧ ବାନ୍ଧିଣ ବିଭୀଷଣ ଶରଣ ରଖଣ
ଋଷ୍ୟକପି ପାଞ୍ଚ କରି ସୁବଳସ୍ତାରେ ରହିଣ
ଜାହାକୁ ଛଳେ ଦଶଗ୍ରୀବ ବଂଶ ନିସୂଦନ ।

କୋଦଣ୍ଡ ଟଙ୍କାରନ୍ତି ଅକ୍ଷୟ ଧନୁର୍ଦ୍ଧର
ଧନୁଙ୍କ ଚୂଡ଼ାମଣି ଜାଣ ।
ଜନପୁର ନେତ୍ରମଣି ତ୍ରିଭୁବନ ନାୟକ
ସଜ୍ଜନ ଦେବ ବିପ୍ରପାଳକ ଦୁଷ୍ଟ ବିନାଶକ ।
ସନ୍ଥଜନ ପ୍ରଣତାଙ୍କର ଜାନକୀ ହୃଦୟ ମଣ୍ଡନ
ବ୍ରହ୍ମାଦି ଦେବଗଣ ବନ୍ଦେ ମହାଭବ ଭଞ୍ଜନ ।
ଶ୍ରୀ ଶ୍ରୀ ଶ୍ରୀ ଦାଶରଥୀ ଶିରୋମଣିଙ୍କର
ଶ୍ରୀ ଶ୍ରୀ ଶ୍ରୀ ରଘୁନାଥ ଠାକୁରଙ୍କର ।
ସହସ୍ର ମଥାଙ୍କୁ ଶ୍ରୀମୁଖ ଆଜ୍ଞା ଲେଖ
ଆହେ ସହସ୍ର ମାଥ ।
ଆମ୍ଭେ ରାବଣକୁ ବଧ କରି
ଜାନକୀ ଯୁବତୀ ଗିର
କୁମ୍ଭକ ଆଦି ମେଘନାଦ ଯେଣ ଅସି
ବିଭୀଷଣଙ୍କୁ କରିବ ଦଣ୍ଡଧାର ।
ଏମନ୍ତ ବୋଲିଣ ଶ୍ରୀମୁଖ ଲେଖିଲେ
ପବନ ଶକ୍ତିରେ ବାନ୍ଧି ଚନ୍ଦନମୁଦ ଦେଲେ
ଶ୍ରୀରାମ ଚରଣେ ନେଇଣ ସମର୍ପିଲେ
। ଭଣ । (ଶଠାଙ୍ଗ ସମ୍ପୂର୍ଣ୍ଣ)
ଅଙ୍ଗଦକୁ ଚାହିଁଣ ବୋଲନ୍ତି ରଘୁନାଥ
ବଳଙ୍କ ପିତାଙ୍କୁ ତୁ ଦେଖୁ କି ସାମର୍ଥ ।
ଶୁଣିକରି ଅଙ୍ଗଦ ଯେ ଶିରେ କର ଦେଇ
ମୋତେ ଆଜ୍ଞା କର ଦେବ ଶ୍ରୀମୁଖ ନେବଇଁ
ଏହ୍ନମଣି ମୁହିଁ ପିତ ଆଜ୍ଞା ପରମାଣେ
ଯେଉଁଠାରେ ଅଛୁ ସହସ୍ରମୁଖା ଯେ ରାବଣେ
ତାହାକୁ ମୁଁ ନେଇଣ ଶ୍ରୀମୁଖ ଲଷା ଦେବ
ଆଜ୍ଞା ପରମାଣେ ତାକୁ ଘେନିଣ ଆସିବ ।
ଯେବେ ନ ଆସିବ ସେ ମୋହର ସଙ୍ଗରେ
ତାର ପୁର ମୁହିଁ ଯେ କରିବ ଭସ୍ମସାରେ ।
ଗଡ ନଗ୍ର ତାର ମୁଁ ଭାଙ୍ଗିଣ ଉଜାଡ଼ିବ
ସହସ୍ରମୁଖା ରାବଣକୁ ବାନ୍ଧିଣ ଆଣିବ ।
ଏତେ କହି କରି ଯେ ପହ୍ନିକ କରଇ
ରୋମ ଟାଙ୍କରେ ଯେ ଶରୀର ଫଳଇ ।
ଅଙ୍ଗଦକୁ ଚାହିଁଣ ବୋଲନ୍ତି ରାମରାଜ
ତାହାର ତୁଳେ ବାଦ କରିବା କସ କାର୍ଯ୍ୟ ।
ଯେମନ୍ତ ଆସନ୍ତ ସେ ତେମନ୍ତ କରି ଆଣ
ତାର ସଙ୍ଗେ ଦ୍ୱନ୍ଦ୍ୱକରେ କାର୍ଯ୍ୟ ନୁହେ ଜାଣ
କାର୍ଯ୍ୟବେଳେ ଦୁଷ୍ଟଲୋକଙ୍କୁ ହୋଇବ ବିନତ
ତେବେ ସେକାର୍ଯ୍ୟ ସାଧିବାବୋଲନ୍ତି ରଘୁପତି
ଯେବେ ବିନତ ହେଲେ ଆଇମ୍ଭେ ଦୁଷ୍ଟପଣ
ତେବେ ଅଭିଷ୍ଟ ଉପୁଜିବା ପରମାଣ ।
ବେଳକୁବେଳ ଯେବେ ପୁଣ ହୁଏ ଦ୍ୱନ୍ଦ୍ୱ
ଦ୍ୱନ୍ଦ୍ୱ ଆରମ୍ଭିଲେ ଯେ କାର୍ଯ୍ୟ ହୁଏ ମନ୍ଦ ।
ଦେଖ ଜନ ମଧ୍ୟରୁ ଜଣିପାରେ ଯେହୁ
ଆପଣାର ମହିମା ଘେନ କାର୍ଯ୍ୟ ସାଜ ସେହୁ
ଏବେ ବାବୁ ଅଙ୍ଗଦରେ କାର୍ଯ୍ୟଟି ଆସ୍ଥର
ଏଥିକୁ ବିସ୍ତର କର ତାହାର କୁମର ।
ଏହି ପ୍ରାୟେ ଅଙ୍ଗଦକୁ ରାମ ଭିଆଇଲେ
ଶ୍ରୀକରେ ଲୁଷାନେଇ ଅଙ୍ଗଦ କରେ ଦେଲେ
ଆଷାଢ଼ ଶୁକ୍ଳ ଯେ ଦ୍ୱିତୀୟା ସେହୁଦିନ
ଆକାଶେ ଉଡ଼ନ୍ତି ମେଘ ଖଣ୍ଡମାନ ।
ଦେଖିକରି ଅଙ୍ଗଦ ବୀର ହୋଇଲା ହରଷ
ମିଥୁନ ସଙ୍କ୍ରାନ୍ତି ତେଇଶି ଦିବସ ।
ସେଦିନ ଯୋଗ୍ନି ଉତ୍ତର ଦିଗରେ ଅଛଇ
ଦକ୍ଷିଣକୁ ଯାତ୍ରା ହୁଏ ବୃହସ୍ପତି କହି ।
ଶୁଣିକରି ଶଚୀନାଥ ଆନନ୍ଦ ହୋଇ
ଏମନ୍ତ ବିସ୍ତର ସେ ସ୍ୱର୍ଗପୁରେ ହୋଇ ।
ଦେବଗୁରୁ ବୃହସ୍ପତି ଇନ୍ଦ୍ରକୁ କହିଲେ
ସହସ୍ରାନନ ମରିବ ବୋଲି ମନରେ ବିସ୍ମୟରେ
ଦେବତାଙ୍କର ଗ୍ରଳେଣି ସ୍ୱର୍ଗପୁରେ ହୋଇ
ସହସ୍ରମୁଖା ମଲେ ଆମର ସଳ ଯାଇ ।
ଏମନ୍ତ ବିସ୍ତର ସେ ସ୍ୱର୍ଗପୁରେ କଲେ
ଏଥୁଅନନ୍ତରେ ପରସ ଶୁଣ ଭଲେ ।
ଶ୍ରୀମୁଖ ଘେନଣ ଉଚ୍ଚ ହୋଇଲା କୁମର
ଶ୍ରୀରାମ ବୋଇଲେ ସତ୍ୱରେ ଶୁଭକାର୍ଯ୍ୟ କର
ଶୁଣିକରି ଅଙ୍ଗଦ ପଡ଼ିଗଲା ଶୋଇ
ମୋତେ ଦୟାକର ହେ ଜାନକୀର ସାଇଁ ।
ଶ୍ରୀରାମ ବୋଇଲେ କୁମର ଆମ୍ଭଠାରୁ ଶୁଣ
ଦେବଙ୍କ କଷ୍ଟ ସରେ ସହସ୍ରମୁଖା ମଲେ ପୁଣ
ଯାଅ ବାବୁ ସତ୍ୱରେ ଦେବକାର୍ଯ୍ୟ କର
ଦେବକାର୍ଯ୍ୟ କରି ପିତାମାତାଙ୍କୁ ଉଦ୍ଧାର ।
କାନ୍ଥରେ ବଜ୍ର ତୋର ଖଣ୍ଡନ୍ତୁ ଗଣପତି
ଦୁର୍ଗତି ଖଣ୍ଡନ୍ତୁ ଦୁର୍ଗା ସାଥିରେ ହୋଇ ସାଥି

ସହସ୍ରମୁଖାକୁ ସୁସ୍ଥେ କହିବୁ ବାରତା
କହେବୋଲି ବୋଲଇ ଯେ ବସୁଧାର ସୁତା ।
ଶୁଣିଣ ବାଳିସୁତ ମନରେ ବିଚାରଇ
ରାମନାମ ସୁମରଣା ମନରେ କରଇ ।
ସହସ୍ର ଗୁଣରେ ସେ ଯେ ପୂର୍ଣ୍ଣ ହେଲେ ମୋଟ
ହୁଙ୍କାର ନାଦେ ଶୂନ୍ୟକୁ ଉଠେ ତାରା ସୁତ
ଦେଖିକରି ବନ୍ଦୋଳା ମନରେ ବିସ୍ମୟଇ
ସହସ୍ରମୁଖା ରାବଣକୁ କେମନ୍ତେ ମାରିବଇଁ
ଦେଖ ଦେଖ ଅଙ୍ଗଦ ଯେ ବିଲଙ୍କା ଦେଶଯାଇ
ଶୂନ୍ୟରେ ଗମଇ ଗାଢ଼ ବେଗବନ୍ତ ହୋଇ
ଦେଖିକରି ବନ୍ଦୋଳା ଭଗନ୍ତି ବିସ୍ମୟ
ଶୁଭବେଳେ ଗମଇ ସେ ବାଳିର କୁମର ।
କନ୍ୟାରେ ଚନ୍ଦ୍ରମା ଯେ ଅଛଇ ବିଦ୍ୟମାନ
ଉତ୍ତମ ନାମେ କରଣ କୁମ୍ଭଯୋଗ ପୁଣ ।
ଦେଖୁ ଦେଖୁ ଅଙ୍ଗଦ ଯେ ହୋଇଲା ଅଦୃଶ୍ୟ
ଆକାଶରେ ଦେବଗଣ ଦେଖନ୍ତି ବିଶେଷ ।
ସେଦିନ ଅଙ୍ଗଦର ମନରେ ହରଷ
ଗଲାବେଳେ ଅଙ୍ଗଦକୁ ଡାକରେ ରଘୁଶିଷ୍ୟ ।
ଏଥିଅନନ୍ତରେ ଯେ ବୃହସ୍ପତି କହି
ବାଳିର ସୁତ ଯେ ଆକାଶରେ ଗମିଯାଇ ।
ସହସ୍ରମୁଖାକୁ ଏ ଯେ କିଛି କହି ନ ପାରିବ
ଫେରିକରି ରଘୁନାଥେ ବାରତା କହିବ ।
ଏମନ୍ତ ବଚନ ଯେବେ କୁହାକୁହି ହୋନ୍ତି
ପାର୍ବତୀଙ୍କ ଆଗରେ ଯେ ଶଙ୍କର କହନ୍ତି ।
ଅଙ୍ଗଦ ଲେଉଟିଯିବ ଶ୍ରୀରାମ କଟକ
ସବୁ ବୃତ୍ତାନ୍ତ କହିବ ଲେଉଟି ଯାଇଟି ।
ଶୁଣିକରି ରଘୁନାଥ ହେବେ ଯେ ଚକିତ
ସନ୍ନିଧିରେ ଥିବ ଯେ ପବନର ସୁତ ।
ଶିରେ କର ଦେଇ ଯେ ବୋଲିବ ବଚନ
ମୋତେ ଆଜ୍ଞା ହେଉ ହେ ଦେବ ରଘୁନାଥ ।
ମୁହିଁ ବିଲଙ୍କା ଯିବି ବୋଲିଣ କହିବ
ଶ୍ରୀମୁଖ ନେଇଣ ସହସ୍ରମାଥଠାରେ ଦେବ ।
ଶ୍ରୀମୁଖ ଶୁଣି ସେ ଯେ ହେବ କୋପଭର
ଶ୍ରୀରାମର ସଙ୍ଗେ ଆସି ସେ କରିବ ସମର ।
ଏମନ୍ତ ବୋଲି ଦେବଗୁରୁ ଯେ ଭଣିଲେ
ଶୁଣିକରି ସନ୍ତୋଷ ଶଚୀସ୍ୱାମୀ ହେଲେ ।

ଏକଳ ଦେବ ଶୁଣି ହେଲେ ତୋଷମନ
ଏଥିଅନନ୍ତରେ ଯେ ଭଗବତୀ ଶୁଣ ।
ବାଳିର ନନ୍ଦନ ଯେ ଶୂନ୍ୟରେ ଯାଏ ଗମି
ଦୂରରେ ଦେଖିଲା ଯେ ବିଲଙ୍କା ଦେଶ ଭୂମି
ଦେଖିଣ ଅଙ୍ଗଦ ଯେ ମନରେ ବିଚାରଇ
ଲଙ୍କାପୁରକୁ ଏ ତ ସମାନେ ଜଣଇ ।
ଲସ ଉପମା ଦେବା ଯେ ଏହି ଭୁବନକୁ
ସହସ୍ରମୁଖା ଭୋଗକରେ ଅବଶେଷ ରାଜ୍ୟକୁ ।
ଏତେବୋଲି ଅଙ୍ଗଦ ଯେ ବିଲଙ୍କାରେ ହୋଇ
ସନ୍ଧିରେ ସନ୍ଧିରେ ସେ ଯେ ଆକାଶୁ ଖସଇ
ଉତ୍ତରିଣ ଅଙ୍ଗଦ ଶରୀର ଗୋପ୍ୟ କଲା
ଉତ୍ତର ଗଡ଼ଦ୍ୱାର ବାଟରେ ପଶିଲା ।
ସେ ଦ୍ୱାରେ ଦ୍ୱାରପାଳ ନଅଙ୍କ ଅସୁର
ତାକୁ ଦେଖି ଅଙ୍ଗଦ ଗୁପତ ପ୍ରକାର ।
ମଞ୍ଜାର ରୂପ ଧରି ସେ ଭିତରକୁ ଗଲା
ବସ୍ତ୍ରାଳଙ୍କ କାଣ୍ଡ କଢ଼ ବକଢ଼ ବୁଲିଲା ।
ଦେଖଇ ଅସୁରଙ୍କର ଘର ମାଳ ପୁର
ଉପରେ ଅଛି ଗୁଞ୍ଜଣୀ ସୁବର୍ଣ୍ଣ ଝିଙ୍କର ।
ସୁବର୍ଣ୍ଣ କଳସ ଉପରେ ଧ୍ୱଜା ପୁଣି ଶୋଭି
ଉତ୍ତମ ପାଟସୂତା ଗଣ୍ଠି କରିଣ ଦେଇ ।
ରୂପାର ବତାମାନ ପରିଭା ହୋଇଅଛି
ଦେଖିଣ ପ୍ରଶଂସା କରେ ବାଳିରାଜା ବସି ।
ଏମନ୍ତ ଯେତେ ପୁର ବିଶେଷ ଶୋଭନ
ଅଳକାପୁର ତହିଁକି ନୁହଇ ସମାନ ।
ଯାର ମନ ହୃଦରେ ଶୋକ କରୁଥିବ
ସେପୁରେ ପଶିଲେ ସମସ୍ତ ପାଶୋରିବ ।
ଏମନ୍ତ ଅଙ୍ଗଦ ଯେ ଦେଖିଲେ ସର୍ବପୁର
ପଶ୍ଚିମ ଭାଗେ ଦେଖିଲା ଶତେକ ଗିରିବର ।
ଏ ଗିରିରେ କିସ ଅଛି ମନରେ ବିଚାରିଲା
ପଶ୍ଚିମ ଦ୍ୱାର ବାଟରେ ଗିରିକି ଚଳିଗଲା ।
ଦେଖିଲା ଗିରିବର ଅଷ୍ଟରହେ ଜାଳ
ଶୀତଳ ଗଙ୍ଗା ବୋଲି ନଦୀ ଏ ଉପଗତ ।
ସେ ନଦୀ କୂଳରେ ଋଷି କରୁଛନ୍ତି ତପ
ତପୀଙ୍କ ପାଶକୁ ଅସୁରଙ୍କର ନାହିଁ ଧାପ ।
କୂଳରେ ସହସ୍ର ଋଷ ମଠକରି ପୁଣ
ସେ ସ୍ଥାନେ ଅସୁର ଗୁପ୍ତ ହୋନ୍ତି ଜାଣ ।

ବାଉସୁଣ ସଢ଼ସଟଙ୍କ ତପୀଙ୍କର ସ୍ଥାନ
ମତଙ୍ଗଗୁରୁ ସେଠାରେ ଶାପଦେଲେ ପୁଣ ।
ଦଣ୍ଡକା ବ୍ରହ୍ମଋଷି ସେଠାରେ ଆଗେ ଥିଲେ
ବୃହସ୍ପତି ତାଙ୍କୁ ଦେଖିବାପାଇଁ ଗଲେ ।
ଏଣୁ ସମସ୍ତେ ଦୈତ୍ୟଗଣ ପୁଣ
ଋଷିଙ୍କୁ କଷ୍ଟାନ କରନ୍ତି ଯାଇ ଜାଣ ।
କଷ୍ଟାନ ଦେଖିଣ ଗୁରୁ ଶାପ ତାଙ୍କୁ ଦେଲେ
ଏଠାକୁ ଦୈତ୍ୟ ଯେ ନ ଆସିବେ ଭଲେ ।
ଏ ସ୍ଥାନକୁ ଆଇଲେ ସେ ହୋଇବ ଗୁପତ
ତପୀମାନଙ୍କର ସ୍ଥାନ ଅଟେ ଏ ପର୍ବତ ।
ଶାପ ଦେଇ ଗୁରୁ ସେ ସ୍ୱର୍ଗପୁର ଗଲେ
ବାଉସୁଣ ତିଷ୍ଠି ମନାଇଲେ ଭଲେ ।
ତପୀମାନେ ଦେଖିଲେ ଅଙ୍ଗଦ ନାମେ ବୀର
ଗିରିଶିଖ ବୁଲିଣ ସେ ଦେଖିଲେ ସକଳ ।
ଅମୃତ ସମାନରେ ସ୍ୱାଦୁ ଫଳ ତହିଁ
ଦେଖିକରି ଅଙ୍ଗଦ ମନରେ ତୋଷ ହୋଇ ।
ସେଠାରୁ ଅଙ୍ଗଦ ସେ ଫେରିକରି ଗଲା
ଗଡ଼ର ନିକଟେ ଯାଇ ପ୍ରବେଶ ହୋଇଲା ।
ସପ୍ତାନନ ନିକଟରେ ଯାଇ ହେଲା ପ୍ରବେଶ
ଚନ୍ଦନ ଅଗୁରୁ ପ୍ରାୟ ବାସେ ତା ନିଜବାସ ।
ଦେଖିଲା ସପ୍ତମୁଖ ବସିଛି ଜଗତିରେ
ଲକ୍ଷେ ବାନାସୁଣୀ ନୃତ୍ୟ କରନ୍ତି ସମ୍ମୁଖରେ ।
କେହୁ ତାଳ ଢୋଲ ବଜାନ୍ତି ବୀଣା ଧରି
ସିତାର ସ୍ୱରରେ ସେ ନାଚନ୍ତି ସୁନ୍ଦରୀ ।
କେନ ମାରୁଣରେ କେନ ଭ୍ରମର ଅଛନ୍ତି
ପଂଖା ଆଳଟ ଘେନ ସପ୍ତାନନକୁ ଖଟନ୍ତି ।
ଏମନ୍ତେ ବଳେକରି ଅଛନ୍ତି ସପ୍ତମାଥି
ପାତ୍ର ମନ୍ତ୍ରୀ ସମସ୍ତେ ଅଛନ୍ତି ଚଉପାଶ ।
ସେଠାରେ ଅଙ୍ଗଦ ବୀର ଆଚମ୍ଭ ଦେଖାଇ
ପିବାକୁ ଜଳନ୍ତ ତାଟ ସେ ନ ପାଇ ।
ମନରେ ବିଚାରଇ ମୁଁ କି ବୁଦ୍ଧି କରିବ
କେମନ୍ତ ପ୍ରକାରେ ମୁଁ ଶ୍ରୀମୁଖ ନେଇ ଦେବ ।
ଉପରକୁ ଉଠିଣ ମୁଁ ଯିବ ଯେବେ
ଦୁଷ୍ଟ ରାକ୍ଷସମାନେ ଦ୍ୱନ୍ଦ୍ୱ ଆରମ୍ଭିବେ ।
ଏତେ ବିଚାରି ଅଙ୍ଗଦ ଗଗନେ ବଢ଼ିମିଲା
ଶୂନ୍ୟରେ ରହିଣ ସେ ଦୈତ୍ୟକୁ ଡାକଦେଲା

ବୋଇଲା ଶୁଣ କୁଦେହୀ ରାକ୍ଷସକୁଳ ସାଇଁ
ପାହାଡ଼ ପରି ରଘୁନାଥଙ୍କ ଆଜ୍ଞା ଘେନ ତୁହ
ଧ୍ୱଂସିହୋଇ ଅଙ୍ଗଦ ଯେ ଦେଉଛି ଉତ୍ତର
ବେଗେ ଉଠି ଶ୍ରୀମୁଖ ଘେନ ସପ୍ତଶୀର ।
ଏହିପରି ଅଙ୍ଗଦ ଯେ ବେଳ ସ୍ୱର ଡାକଇ
ଶୁଣିଣ ସପ୍ତମାଥ ଚରିଦିଗକୁ ଅନାଇ ।
ବୋଲଇ କେହୁରେ ଫୁକାରେ ପୁଣ ଆସି
ବଚନ କହୁଅଛି ବଡ଼ାଇ ଭରସି ।
ଏତେକହି ସପ୍ତାନନ ଜଗତିରୁ ଉଠି
ଉପରକୁ ସ୍ଥିର କରି ଚାହିଁଲା ସେ ହାସି ।
ଯହିଁ ସେ ଉପରକୁ ସପ୍ତାନନ ଚାହିଁ
ତା ନିଃଶ୍ୱାସ ଘାତରେ ଯେ ଅଙ୍ଗଦ ଉଡ଼ିଯାଇ
ନିଃଶ୍ୱାସର ଘାତରେ ଅଙ୍ଗଦ ଉଡ଼ିଗଲା
ଶତେ ଯୋଜନରେ ସେ ଯାଇଣ ପଡ଼ିଲା ।
ଦେଖିଲା ସପ୍ତାନନ ଉପରେ କେହୁ ନାହିଁ
ଏ କେଉଁଣ ଚଞ୍ଚଳ ପାତ୍ର ମନ୍ତ୍ରୀଙ୍କ ପଚାରଇ
କହନ୍ତି ପାତ୍ରମନ୍ତ୍ରୀ ଶିରରେ ଦେଇ କର
କାହୁଁ ପ୍ରଚ୍ଛେକ ଆସିଥିଲା ଯେ ଶୂନ୍ୟର ।
ଅପାର ଦେଳକୁ ସେ ଶୂନ୍ୟରୁ ଦେଖାହୋଇ
କିସ ବଚନ କହଇ ବୁଝି ନ ହୁଅଇ ।
ଏହାକଥା ଏକ ଶୁଭୁଅଛି ମୋତେ ପୁଣ
ଶ୍ରୀରଘୁନାଥଙ୍କ ଆଜ୍ଞା ଘେନସି ବୋଲିଣ ।
ଆଜ କିଛୁ ନକହୁ ହେଲା ଅନ୍ତର୍ଧାନ
କେଉଁ ରାଜାଠାରୁ ଆସି କହିଲା ବଚନ ।
ଶୁଣିକ୍ଷି ସଦପ୍ତାନନ ମନ୍ତ୍ରୀଙ୍କ ପଚାରଇ
କିସ ବୋଲୁଥିଲାକ ସେ ବୁଝିହୁ କି କୁହ ।
ଶୁଣିକରି ମନ୍ତ୍ରୀବର କରଯୋଡ଼ି କହି
ରଘୁନାଥ ଆଜ୍ଞାବୋଲି ଶୂନ୍ୟରେ ଡାକଇ ।
ମନ୍ତ୍ରୀର ତହୁଁ ଏମନ୍ତ ଶୁଣି ସପ୍ତାନନ
ବୋଲେ କିସ ସନ୍ଦେଶ ଏ ନଗର କାରଣ ।
ଶୁଣିକ୍ଷି ମନରେ ସେ ବିଚାରି ବୋଇଲା
କି ଅବା ଆକାଶବାଣୀ ଅଦ୍ଭୁତେ ଶୁଭିଲା ।
ଏମନ୍ତ ବୋଲିଣ ସେ ମନରେ ଗୁଣଇ
ପାର୍ବତୀଙ୍କ ଆଗେ ଏହା ସଦାଶିବ କହି ।
ଶୁଣ ଗୋ ଭଗବତୀ ଅଙ୍ଗଦର କଥା
ଶୁଣିଲେ ଛୁଟିଯିବ ମନରୁ ଭବ ବ୍ୟଥା ।

ସସ୍ରମାଥ ନିଃଶ୍ୱାସରେ ଅଙ୍ଗଦ ଉଡ଼ିଗଲା
ଶତେ ଯୋଜନ ଅନ୍ତରେ ଯାଇଣ ପଡ଼ିଲା ।
ଚେତାପାଇ ଅଙ୍ଗଦ କରଇ ବିଚାର
ପ୍ରତିଜ୍ଞା କରିଛି ସସ୍ରାନନକୁ ଆଣିବାର ।
ଶତେପୂର୍ଣ ଆସିଣ ନ କଲି କିଛି କାର୍ଯ୍ୟ
କି ବୁଦ୍ଧି କରିବି ମୁଁ କାହ୍ନିପିବ ଆଜ ।
କେବଣ ଅରଣ୍ୟରେ ପଶିବି ମୁଁ ଯାଇ
ଏ କଥାରେ ଲଜ୍ଜା ମୋତେ ବହୁତ ହୁଅଇ ।
ସମ୍ମୁଖରେ ମୁଁ କି କହିବି ଚାହିଁବି କା ବଦନ
କସମୋତେ ବୋଲିବେ ଯେ ପବନ ନନ୍ଦନ
ଜମ୍ବେବ ସୁଷେଣ କି ବୋଲିବେ ଏହା ଶୁଣି
ଧିକ ଧିକ ପ୍ରାଣ ମୋର ଯାଉ ଏହିକ୍ଷଣି ।
କେମନ୍ତେ ବାର୍ତ୍ତା ପାଇବେ ଶ୍ରୀରାମ ରାଜନ
ଏ କଥାକୁ ଚିନ୍ତା ମୋତେ ହୋଇଲାକ ପୁଣ
ଶ୍ରୀରାମ ସମ୍ମୁଖରେ ଯେବେ ବାର୍ତ୍ତା ନ କହିବ
ଜନ୍ମେ ଜନ୍ମେ ଶ୍ରୀଚରଣେଦୋଷୀହୋଇବ
ଏତେକହି ଅଙ୍ଗଦ ଭାଳଇ ପଞ୍ଚମନ
କ୍ଷଣ କ୍ଷଣକରେ ସେ କରଇ ରୋଦନ ।
ଧିକ ହେଉ ଧିକ ହେଉ ମୋହର ଯେ ଦେହ
ନିଲକ୍ଷଣ ଜୀବନ ମୋର ରହିଛି କସପାଇଁ ।
ଏତେ ବିଚାରି ଯେ କରଇ ଅଙ୍ଗଦ
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ବିଚାରିବେ ଖଙ୍ଗ ।
ଏତେବୋଲି ଆପଣାର ବାହୁକୁ କାମୁଡ଼ି
ବଇକୁଣ୍ଠ ହୋଇଣ ଭୂମିପରେ ଗଡ଼ି ।
ମନେ ବିଚାରେ ମୋ ବଳ ପ୍ରାକର୍ମ କେଣେଗଲା
ଏତେବେଳେ ବିଧାତା ଏହା ମୋତେ କଲା ।
ଏତେବୋଲି ଅଙ୍ଗଦ ଭାଳିକରି ବସି
ବୁଦ୍ଧି ଏକ ପ୍ରସନ୍ନ ହେଲା ମନେ ଆସି ।
ବିଚାରଇ ଆଗେ ମୁଁ ବାରତା କହିବ
କେ ଅବା କସ ବୋଲିବ ସେକଥା ଶୁଣିବ ।
ଯେବେ କାହା ମୁଖରେ ଶୁଣିବ ମନ୍ଦବାଣୀ
ଅଗ୍ନି ଜାଳ ପଶିବ ସତ୍ୟ ମୋର ପୁଣି ।
ଏତେ ବିଚାରି ଅଙ୍ଗଦ ଉଠେ ବେଗ ହୋଇ
ସୁବର୍ଣ୍ଣ ଲଙ୍କାଗଡ଼ରେ ପ୍ରବେଶ ହେଲା ଯାଇ ।
ଅଙ୍ଗଦ ଯିବାବେଳେ ଯେତକ ଦେଖିଥିଲେ
ଚଳନ୍ତିଠାଣି ବେଳରେ ବାରତା ପଚାରିଲେ ।
ବୋଲନ୍ତି ତୋତେ କସ କହୁ ସସ୍ରମାଥ
ଆମ୍ଭଙ୍କୁ ନ କହୁ କଥା କରୁଛୁ ଗୁପତ ।
କେହୁ ବୋଲୁଛୁ କରେ ଆସଇ ସସ୍ରମାଥ
ଶୁଣିଲୁଟିକ ସେ ରାବଣ ନିଧନ ତ ।
କହୁଯାଅ ବୋଲି କେ ଆଗେ ଉଗାଳଇ
ହନ୍ତେ ଭଦ୍ର ବୋଲି କେ ପଛରେ ଗୋଡ଼ାଇ
କେ ବୋଲଇ ଶ୍ରୀରାମର ଆଗରେ ନକହିଲେ
କେମନ୍ତେ କହିବ ସେ ଆମର ଆଗରେ ।
ରାକ୍ଷସ ରାକ୍ଷସୁଣୀ ଗୋଡ଼ାଇ ପଚାରନ୍ତି
ଲଙ୍କାରେ କଥା ନକହେ ବାଳିପୁତ୍ରା ବସ୍ତି ।
ପଛରେ ଗୋଡ଼ାଇଛନ୍ତି ଅନେକ ନିଶାଚର
ବାର୍ତ୍ତା ଶୁଣିବା ବୋଲି କେ ଧାମନ୍ତି ସଭର ।
କେତେଁମାନେ ପୁଣ ଆଗରେ ଚଳଯାନ୍ତି
କସ କହିବ ଅଙ୍ଗଦ ଶୁଣିବା ବୋଲନ୍ତି ।
ଏମନ୍ତେ ଅଙ୍ଗଦ ଯେ ବେଗେ ଚଳିଗଲା
ସୁବେଳସ୍ୱା ଗିରିର ନିକଟେ ମିଳିଲା ।
ଦୂରରୁ ହନୁମନ୍ତ ଅଙ୍ଗଦକୁ ଚାହିଁ
ସୁଗ୍ରୀବର ଆଗରେ ଜଣାଏ ବେଗ ଯାଇ ।
ହୋଇଲେ ଅଙ୍ଗଦ ତ ଶ୍ରୀମୁଖ ଘେନିଗଲା
ବଡ଼ ବେଗରେ ସେତ ବାହୁଡ଼ି ଆସିଲା ।
ଏମନ୍ତ ବୋଲିଣ ହନୁମନ୍ତ ଯେ ବୋଇଲା
ପୁଣି ମନେ ବିଚାରଇ ଯେ କରୁଣା କହିଲା ।
ବିଚାରେ ଅଙ୍ଗଦ କାର୍ଯ୍ୟ ନ ସାଧିଲା କର
ସସ୍ରାନନକୁ ନ ଦେଖି ଅଇଲା ବାହୁଡ଼ି ।
କି ଅବା ଅଙ୍ଗଦ ଯେ ବାଟ ନ ଜାଣିଲା
କି ଅବା ବାଟରୁ ସେ ବାହୁଡ଼ି ଅଇଲା ।
କି ଅବା ଚଳଙ୍କାରେ ନାହିଁ ସସ୍ରାନନ
ତେଣୁକରି ତେଜିଛି ସେ ଅଇଲା ବହନ ।
ଶୁଣିକରି ହନୁମନ୍ତ ସୁଗ୍ରୀବକୁ କହି
ଚହିଁର ତରତ ମୁଁ କେମନ୍ତେ ଜାଣିଲଇଁ ।
ସେକଥା ଏବେ ତୁମ୍ଭେ ମୋରଠାରୁ ଶୁଣ
ଅଙ୍ଗଦ ତ ଦିଶୁନାହିଁ ସୁଲଭ ଲକ୍ଷଣ ।
ସେ ଯେବେ ଯାଇ ନଷ୍ଟପ୍ରାୟ କାର୍ଯ୍ୟ କରିଥାନ୍ତା
ଶତଦଳ ପଦ୍ମପ୍ରାଣ ଶ୍ରୀମୁଖ ଦିଶନ୍ତା ।
ପଛରେ ଚାରଯେତେ ଗୋଡ଼ାଇଛନ୍ତି ସୈନ୍ୟ
ସବୁକୁ ହସିକରି କହନ୍ତା ବଚନ ।

ଏ ସଙ୍କେତମାନ ତାର କହୁ ହନୁମାନ୍ତି
ମୁଖ ଶୁଖାଇ ଆସୁଛୁ ମନ୍ଦ ମନ୍ଦ ହୋଇ ।
ନିରସ ବଦନ ହୋଇ ଯହୁଁ ସେ ଆଇଲେ
ଜାଣିଲୁ ଅଙ୍ଗଦ କାର୍ଯ୍ୟ କରି ନ ପାରିଲେ ।
ହନୁମନ୍ତ ସୁଗ୍ରୀବର ଦୁଅନ୍ତେ କୁହାକୁହି
ଶ୍ରୀରାମଙ୍କ ସମ୍ମୁଖରେ ଅଙ୍ଗଦ ହୋଇଯାଇ ।
କହେ ରଘୁନନ୍ଦନ ବୋଲି ପାଏ ପଡ଼ି ଶୋଇ
ଲାଜକଥା ଧରି ମନେ ଶିର ନ ଟେକଇ ।
ଶ୍ରୀରାମ ବୋଲନ୍ତି ଅଙ୍ଗଦ ଉଠତୁବେଗହୋଇ
ସତ୍ୟସମୁଖାର କଥା କହ ମୋତେ ତହିଁ ।
କପି ବୋଲେ ତୋତେରେ ବଣାଖା ନନ୍ଦନ
ଉଠ ଉଠ ଅଙ୍ଗଦ ମୋତେ କହରେ ବଚନ
ଶ୍ରୀରାମଙ୍କର ଆଜ୍ଞାରେ ଅଙ୍ଗଦ ବେଗେ ଉଠି
ଶିରପରେ ବେନିକର ଯୋଡ଼ି କହେ ସେଠି ।
ବୋଲଇ ଶୁଣିବା ହେଉ ଜାନକୀର ସାଇଁ
ଶ୍ରୀମୁଖ ବେନଣ ଯେ ଏଠାରୁ ଗଲି ମୁହିଁ ।
ଶୂନ୍ୟରେ ବନମିଣ ମୂର୍ତ୍ତି ହୋଇ ଗଲି
ଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲି ।
ଉତ୍ତର ଦ୍ୱାର ବାଟରେ ଭିତରେ ପଶିଲି
ଅପୂର୍ବ ନଗର ଶୋଭା ସେଥିରେ ଦେଖିଲି ।
ଅସୁରଙ୍କର ଅପୂର୍ବ ମନ୍ଦିର ଯେ ପୁଣ
ହୀରାକଣି ପଡ଼ିବାରେ ଦିଶେ ଶୋଭନ ।
ମାଳାଭି କଳସମାନ ସବୁ ଘରେ ଶୋଭି
ସୁବର୍ଣ୍ଣ ପ୍ରଏଣୀ ସବୁରି ଘରେ ହୋଇ ।
ନେତର ପାଟପତନୀ ଉଡ଼ଇ ଫର ଫର
ଅଷ୍ଟରତ୍ନେ ଜଡ଼ିତ ସେ ସବୁଙ୍କର ଘର ।
ଦେଖିବାକୁ ସୁନ୍ଦର କହିତ ମୁଖେ ନୋହି
କୋଟିଏ ଆଦିତ୍ୟ ତେଜ ସେଥିରେ ଦିଶଇ ।
ଘରଙ୍କର ମଣ୍ଡି ଛନ୍ତି ଚନ୍ଦ୍ରାତପ ମାନ
ସୁରିପାଖେ କେତେ ଖଞ୍ଜି ଛନ୍ତି ଅମଳାନ ।
ମୁକୁତା ଭାନ୍ତରେ ଲେଖା ଚିତ୍ରପଟମାନ
ଗ୍ରୀଷ୍ମ ହାତେ ଲଗିଅଛୁ କବାଟ ଦର୍ପଣ ।
ଏମନ୍ତ ପ୍ରକାରେ ଯେ ସବୁ ଘରେ ଶୋଭେ
ସାମନ୍ତ ପାଟଙ୍କ ପୁରି ବାରଣ ନ ଯାଏ ।
କାଣ୍ଡରେ ଉଡ଼ଇ ବେଦ କର୍ପୂରର ଧୂଣ
ମନ୍ତ୍ର ଗନ୍ଧରେ ଦଇତେ ମନ୍ଦିର ପାନକର ।

ସେ ପୁରର ମହିମା ମୁଁ କହିବଇଁ କେତେ
ଦେଖିଲି ଦାଣ୍ଡରେ କନ୍ଦ ବଜାର ଯେ ଶତେ ।
ଦାଣ୍ଡ କନ୍ଦମାନଙ୍କରେ ବସାଇଛୁ ହାଟ
ଘାଟର କଥାମାନ ନୁହଇ କଳନ ।
ସବୁ ଦାଣ୍ଡେ ପସରା ହଟ୍ଟାଣ୍ଡ ବଜାର
ବିବିଧ ଦ୍ରବ୍ୟମାନ ଯେ ବିକା କିଣା କରି ।
ଆମ୍ବ ଯେ ପଣସ ଯେ କଦଳୀ ନଟୀକାଳ
କେନ୍ଦୁ କଇଁଥ ଯେ ବିବିଧ ବର୍ଣ୍ଣେ ଫଳ ।
ଯେଉଟ ନାରଙ୍ଗ ଯେ ଡାଳିମ୍ବ ବରକୋଳି
ଟଭ କରମଙ୍ଗା ଲେମ୍ବୁ ଯେ କଦଳୀ ।
କଂସା ଗରିଆ ଗଡ଼ୁ ଝରିପାଣି ପିଆ
ସୁନାରେ ଛନ୍ତି ଗଢ଼ି ଗିନା ଥାଳି ବାକୁଆ
ଘଣ୍ଟି ଘାଗୁଡ଼ି କଜଳପାତି ବଡ଼ିଆ ବାମା
ତାଳକଂସାଳ ମେଲି ବସିଛୁ ବନ୍ଧାଣି ।
ଭିନ୍ନେ ଭିନ୍ନେ ପସରା ହାଟୁଆ ଦେଇଛନ୍ତି
ସୁବର୍ଣ୍ଣର ହାର ମାଳା କସ୍ତୁ ବସ୍ତୁ କରନ୍ତି ।
କୁମ୍ଭକାର ପସରା ଦେଇଅଛୁ ପୁଣି
କନକ ହାଣ୍ଡି ମାଠିଆ ଆଟିକା ଢକେ ଜାଣି ।
ହାଟ ବସିଅଛୁ ଯେ ନବର ଭିତରେ
ବିକା କିଣା କରି ଯେ ଅନନ୍ତ ଦୈତ୍ୟବଳେ ।
ସାତକନ୍ଦ ନବାତ ମିଠାଇ ଖଜା ମୁଆଁ
ଏମାନେ ଖାଇଲେ କନେ ମନରେହୋନ୍ତିସୁହା
ନାନାବିଧ ପସରାମାନ ଅଛୁ ସେତୁ ହାଟେ
ନାମଧରି ତାହା ମୁଁ କହିବଇଁ କେତେ ।
ଧନ୍ୟ ଧନ୍ୟ ବିଶ୍ୱକର୍ମା କରିଛୁ ସେ ପୁରି
ଦୁଇପାଖରେ ଲବଣ ସମୁଦ୍ର ମଧ୍ୟେଅଟେଘର
ପାଞ୍ଚ ପୁଣ ଛଡ଼ାରେ ଗିରି ପର୍ବତ ଘେରିଅଛି
ସେଥିରେ ଦଶଯୁଣ ଜଙ୍ଗଲ ଝାଡ଼ ଅଛି ।
ଶାଳ ଶିଶୁଖାଇ ଯେ ଧଳାଙ୍କୁ ପିଆଶାଳ
ସମସ୍ତେ ବେଢ଼ିଛନ୍ତି ପର୍ବତ ଆକାର ।
ବାଘମୂର୍ତ୍ତି କୋଳାହଳ କରୁଛୁ ବାଟବଣା
ଗଜ ଅଶ୍ୱ ରକ୍ଷିଣ କରିଛୁ ସେଥି ଠଣା ।
ସହସ୍ରେ ମୁନି ଜପ ବନରେ ତପ କରେ ପୁଣ
ଦୈତ୍ୟମାନେ ସିବାକୁ ସେ ମନାଅଛୁ ଜାଣ ।
କେବଗୁରୁ ବୃହସ୍ପତି ଅସୁରଙ୍କୁ ଶାପଦେଲେ
ଏ ବନକୁ ଅଇଲେ ରୂପତ ହେବ ଭଲେ ।

ସେ ବନ ଉତ୍ତରୁ ଉତ୍ତର ଭେଦକରି
ଗୁପତ ଗଙ୍ଗା ସେଥିରେ ହୋଇଛୁ ପ୍ରସିଦ୍ଧି ।
ଝର ଝର ହୋଇଣ ବହେ ଚଉପାଶ
ସମୁଦ୍ର ଭିତରେ ହୋଇଛୁ ପରବେଶ ।
ସେଥିଉତ୍ତରୁ ସେ ବଳଙ୍କା ପାଟେଶ
ହୀରା ମାଳା ବଇଡୂର୍ଯ୍ୟ ଅଛୁ ଯେ ସଜାଡ଼ି ।
ବାରଯୁଣ ଉଚ ସେ ଦୁଇଯଣ ଓସାର
ସବୁ କାଞ୍ଚନ ଦେଇଛୁ ଦର୍ପଣ ଜାଲିବାଡ଼ର
ସେଥିର ଭିତରେ ନଗର କରିଛୁ ରଚନା
ସ୍ୱର୍ଗ ପ୍ରାନ୍ତ ଚଉରସ ଆଠ ଯୁଣ ସୀମା ।
ଗୁରି ଦ୍ୱାର ନଗରୁ କରିଛୁ ବାହାର
ଶ୍ୱାନ ଶୃଗାଳ ଗଣ୍ଡା ଗମ୍ଭୂଳ ଗୁରି ଦ୍ୱାର ।
ସେମାନେ ଦ୍ୱାରପାଳ ହୋଇଛନ୍ତି ପୁଣି
ନଗର କରିଅଛୁ ଭିନ୍ନେ ଭିନ୍ନେ ଜାଣି ।
ନଗ୍ରମାନଙ୍କର ବର୍ଣ୍ଣ ଅଟେ ଭିନ୍ନାଭିନ୍ନ
ରଙ୍ଗ କଳା ଧଳା ନୀଳ ବସନ୍ତ ପଞ୍ଚବର୍ଣ୍ଣ ।
ନଗ୍ର ଗୁରିକଣେ ଅଛୁ ଗୁରି ସେ ଜଗଅ
ଦେଉଳମାନଙ୍କରେ ଦେବତା ରଖିଅଛୁ ।
ଦ୍ୱାଦଶ ବନ ସେଥିରେ କରିଛୁ ଭିଆଣ
ଅଶୋକ ମଧୁବନ ଖାଣ୍ଡବ ମଲ୍ଲିବନ ।
ତୁଳସୀ ଚମ୍ପାବନ ବକୁଳ ନାଗେଶ୍ୱର
କେତକୀ ମାଳତୀ ସେ ଚନ୍ଦନ ଅଗୁରୁ ।
ଏମନ୍ତେ ବନମାନ ଭିନ୍ନ ଭିନ୍ନ କରି
କର୍ପୂର ଧୂଳି କରିଣ ମୂଳରେ ପିଢ଼ କରି ।
ସମସ୍ତଙ୍କର ଦ୍ୱାରେ ସେ ମର୍କତ ପାବଛ
ଗାଈ ମଇଁଷି ଗଧ ଅଛନ୍ତି ବହୁତ ।
ଦୈତ୍ୟଙ୍କ ଘରଣୀ ହସ୍ତେ ହୀରା ମାଣିକ୍ୟ ଚୂଡ଼ି
ସମସ୍ତେ ସଧବା ଅଟନ୍ତି ବିଧବା ନାହିଁ ସ୍ତ୍ରୀ
ସବୁ ଦୈତ୍ୟଙ୍କ ହସ୍ତରେ ସୁବର୍ଣ୍ଣ କଙ୍କଣ
ସେହି ପୁର ଦୈତ୍ୟେ ବଶନ୍ତି ଶୁକଳ ବର୍ଣ୍ଣ ।
ସେ ପୁରେ ଦେଶ ନାମ ଅଟଇ ଭଗ୍ନିଧେଶ
ଖରସଣ ଦୈତ୍ୟ ବୋଲାଉଛନ୍ତି ପୁଣି ।
ଛଡ଼ାଛଡ଼ ନଗର ସେ ସମସ୍ତଙ୍କର ପିନା
ଘରକୁ ଘର ଲଗା ସେପୁର ନୁହଇ ରଚନା
ନବଲକ୍ଷ ଘର ସେଥିରେ ଅଛନ୍ତି
ଏକ ଜାତି ଅଟନ୍ତି ଭିନ୍ନ ସେ ନ ବଶନ୍ତି ।

ଷଟାସ୍ତ୍ର ବଜାସ୍ତ୍ର ଲମ୍ବଧ୍ୱଜା ଉଡନ୍ତାସ୍ତ୍ର
ଅଛନ୍ତି ବାଦ୍ୟକାର କଣ୍ଡାଳ ଏକ ବାର ।
ଅଶ୍ୱମାନ ଯୋଡ଼ି ଯାନପଟେ ଯାନ୍ତି
ସ୍ତ୍ରୀ ପୁରୁଷ ଏକଠାକରେ ବସିଥାନ୍ତି ।
ଅବସରେ ରମଣ କରନ୍ତି ସେହୁ ଦାସୀ
ଯାହାକୁ ଯାହାର ଇଚ୍ଛା ସେ ତାକୁ ଆଦର ।
ନାନାବର୍ଣ୍ଣେ ମେଳା କରନ୍ତି ନଗରେ
ଅଭକ୍ଷ ପଦାର୍ଥମାନ ଖାଆନ୍ତି ଦେଖାରେ ।
ସେପୁରେ ରାଜା ଅଟଇ ମହସ୍ରପାଶ ସାର
ପାଶରେ ଅଛନ୍ତି ତାର ଅନେକ ଅସୁର ।
ସ୍ୱାମନ୍ତ ପାତ୍ରମାନେ ଅଛନ୍ତି ଭଲ ହୋଇ
ସେ ଯାହାର ସେବାରେ ଲାଗିଣ ଛନ୍ତି ସେହି
ଅନେକ ବଳାସୁଣୀ ତା ଗୃହେ ଖଟନ୍ତି
କେହୁ ବୀଣା ତୁମ୍ବରୁ ଧରିଣ ନାଚନ୍ତି ।
ଏମନ୍ତେ ଖଟିଣଛନ୍ତି ଉଦ୍‌ଯୋଗୀ ଲୋକଗଣ
ରାଉତେ ଅଛନ୍ତି ଗଜ ଅଶ୍ୱ ଉପରେଣ ।
ରଥ ପଦାତି ସେ ଏପ୍ରକାର ପୁଣି
ସ୍ତ୍ରୀ ସେ ପୁରୁଷ କାରଣ ନ ଜାଣି ।
କ୍ଷୀର ଉପରେ ଠେକାଇ ଦୁଇଲକ୍ଷ ଛତି
ଦୁଇଲକ୍ଷ ଲୁମର ସେ ସଙ୍ଗତେ ଅଛନ୍ତି ।
ଦୁଇଲକ୍ଷ କାଣ୍ଡ ତାର ଦୁଇପାଖେ ଖଟି
ବାରଲକ୍ଷ ଜୁଆଳି ତାର ଆଗପଛେ ଝର୍ଣ୍ଣି ।
ଦଶ ମର୍କତ ତାର ଅଟନ୍ତି ମହାବେଶ
ସଭଙ୍କ ପରେ ଶ୍ରେଷ୍ଠ ସବୁଠା ଅଟଇ ।
କନ୍ୟାଗୋଟିକେତାରପାଞ୍ଚପୁଅଜଣେଯେଦୁହିତା
ବଧୂମାନଙ୍କର ସେ ଦଶ ଦଶ ସୁତା ।
ଚନ୍ଦ୍ରବନ ପ୍ରାସ୍ତୁଜ ସେ ଅଟେ ବଂଶ ତାର
ଦୁଇଶତ ଯୋଜନରେ କରିଛି ନଗର ।
ସନ୍ଧ୍ୟରେ ବଡ଼େ କରାଇଛନ୍ତି ଯନ୍ତ୍ର ଶୀଘ୍ର
ପଦ୍ମେକ ନାଭୁଣୀ ତାର ଶୁଣ ହେ ରଘୁବୀର
ଏତେକ ସମାଗ୍ରର ମୁଁ ଯାଇ ଦେଖିଲି
ଜଗତ୍ରେ ସତ୍ୟନାମ ତାକୁ ଗୁଣ୍ଠିଦେଲି ।
ଯେମନ୍ତେ ଶ୍ରୀମୁଖ ଦେବ ମନେ ଚିନ୍ତଇ
ଦେଖିଲି ଉପରକୁ ଯିବାକୁ ବାଟ ନାହିଁ ।
ଏତେକ କଥାମାନ ଦେଖି କଲି ମୁଁ ଚତୁର
ଦ୍ୱାରକୁ ମନାକରି ଅଛନ୍ତି ରଦ୍ଗାର ।

ଏହାଙ୍କୁ ଶ୍ରୀମୁଖ ଦେବ ମୁଁ କେବଣ ପ୍ରକାରେ
ବଳାତ୍କାର କଲେ ଦ୍ୱନ୍ଦ୍ୱ ହେବ ଯେ ଏଠାରେ
ଏହୁ ତ ଜଗତ୍ରେ ଅଛୁ ପୁଣ ବସି
ମୁହିଁ ବୋଇଲେ ଏ କି ଶ୍ରୀମୁଖ ନେବ ଆସି
ତଳେ ଥାଇ ଶ୍ରୀମୁଖଦେବମୁଁକେବଣ ପ୍ରକାରେ
ଶ୍ରୀରାମ ଆଜ୍ଞା ମୁଁ କହିବ ଥାଇଣ ଉପରେ ।
ଏମନ୍ତ ବିଚାରି ମୁଁ ଆକାଶକୁ ଗଲି
ରଘୁନାଥଙ୍କର ଆଜ୍ଞା ଘେନ ମୁଁ ବୋଇଲି ।
କେବେହେଁ ମୋଡା ସେ କର୍ଣ୍ଣରେ ନ ଶୁଣିଲା
ନୃତ୍ୟଗୀତ ଦେଖିବାକୁ ମନ ଦେଇଥିଲା ।
ତାହାକୁ ଦେଖି ମୁହିଁ ଡାକଦେଲି ଯେ ଟାଣେ
ରଘୁନାଥଙ୍କର ଆଜ୍ଞା ଘେନ ତୁ ହୋ ଜଣେ
ଆଣରେ ମୋହର ଡାକ ଯହୁଁ ସେ ଶୁଣିଲା
ଆଜ୍ଞାଘେନ ବୋଲି କେ ଶୂନ୍ୟରେଡାକଦେଲା
ପୁଣିହିଁ ଡାକ ଦେଲି ସହସ୍ରାନନ ଶୁଣ
ରଘୁନାଥଙ୍କର ଆଜ୍ଞା ଘେନ ତୁ ବହନ ।
ହେଳା ତୁ ନ କରଣ ବେଗକର ଉଠ
ଶାହାଡ଼ା ପାଖ ଶ୍ରୀରାମଙ୍କ ଶ୍ରୀମୁଖ ଫେଡ଼ଦେଖ
ଏ ବଚନ ଶୁଣିଣ ସେ ସ୍ୱହେଁ କ୍ରୋଧଭରେ
ସହସ୍ରମୁଖେ ନିଃଶ୍ୱାସ ଛାଡ଼ିଦେଲା ଖରେ ।
ବଡ଼ବା ପବନ ଯେ ତାହାର ନିଃଶ୍ୱାସ
ଅଣବୃଷ ପବନ କି ବହିଲା ଆକାଶ ।
ସମ୍ଭାଳ ନ ପାରିଣ ମୁଁ ଯେ ଉଡ଼ିଣ ଆଇଲି
ଲଙ୍କାଗଡ଼ ମଧୁବନ ଭିତରେ ପଡ଼ିଲି ।
ବଡ଼ ବଳଆର ଯେ ସହସ୍ରାନନ ପୁଣ
ନିଃଶ୍ୱାସକେ ଉଡ଼ି ମୁଁ ଆଇଲି ଶତେପୁଣ ।
ପଡ଼ିବାରୁ ଅଚେତା ମୁଁ ହୋଇଲି ହେ ଜାଣ
ଘଡ଼ିକରେ ଚେତନା ପାଇଲି ରଘୁରାଣ ।
ଉତ୍ତରଗଡ଼ ଦ୍ୱାର ବାଟେ ଗଡ଼ରୁ ଆଇଲି
ସୁବଳ ଗିରିରେ ଆସି ତୁମ୍ଭଙ୍କୁ ଭେଟ କଲି ।
ଏମନ୍ତ ବଚନ କହେ ବାଳିର ନନ୍ଦନ
ଚମକ ହେଲେ ଶୁଣି ସକଳ ଥାଟ ସୈନ୍ୟ ।
ଭରତ ଲକ୍ଷ୍ମଣ ଶତ୍ରୁଘନ ତହିଁ ବିଚାରନ୍ତି
ବଡ଼ ଗରିଷ୍ଠ ସେହୁ ଦାନବ ଅଟନ୍ତି ।
ରାଜାମାନେ ବିଚାର କରନ୍ତି ମନରେ
ସ୍ତବକ ବହିଆଣନ୍ତି ଯେବଣ କପିଗାରେ ।

ସହସ୍ରାନନ ନିଃଶ୍ୱାସରେ ରହି ନ ପାରନ୍ତି
ନିଃଶ୍ୱାସରେ ଉଡ଼ିଆସି ଅନ୍ୟସ୍ଥାନରେ ପଡ଼ନ୍ତି
ଏ ଠାବରେ ଆମ୍ଭଙ୍କୁ ହୋଇବ ମରଣ
ଏତେ ବୋଲି ବିଚାର କରନ୍ତି ରାଜାଗଣ ।
ପଦାତି ରଥିଗଣ ବିଚାର ସେଥି କଲେ
ଅବଶ୍ୟ ଯୁଦ୍ଧ ଏଥିରେ ହେବ ବିଚାରିଲେ ।
ରୁଷ କପି ବିଚାରିଲେ ବଦ୍ଭୁତ କାର୍ଯ୍ୟ ହେବ
ସହସ୍ରମୁଖା ସଙ୍ଗରେ ଯୁଝିବେ ରାଘବ ।
ଅସୁରେ ବିଚାରନ୍ତି ମନରେ ତାଙ୍କର
ରାମ ନ ପାରିବେ ମାରି ସହସ୍ରାନନ ଗାର ।
ରଘୁନାଥ ଶୁଣି ମହା ବିସ୍ମୟ ହୋଇଲେ
କି ବୁଦ୍ଧି କରିବ ବୋଲି ମନରେ ବିଚାରିଲେ
ଏତେ ବଳଆର ସେ ଅଛି ଦୈତ୍ୟରାଣ
ସେ କମା ଆସିବ ମୋର ଶ୍ରୀମୁଖ ପାଇଣ ।
ଜାଣିଥିଲି ବିଧାତା ମୋତେ କଷଣୁ କଲାପାରି
ଏଥର ସୁଖେ ଯିବୁ ହେ ଅଯୋଧ୍ୟା ନଗରୀ ।
ସୀତାଙ୍କୁ ଘେନ ମୁଁ ସୁଖେ ଅଭିଷେକ ହେବ
ଋଷିମାନଙ୍କୁ ତପରେ ନିଶ୍ଚିନ୍ତ କରାଇବ ।
ଅଯୋଧ୍ୟାରେ ରାଜାପଣେ ଯାଇଣ ବସିବ
ଏମନ୍ତ ବିଚାର କଲେ ମୁଁ କସ ହୋ କରିବ ।
ମୋହର କର୍ମରେ ଯାହା ଲିହିଛି ଦଇବ
କେତେ ଦୁଃଖ ମୋତେ ସେ ବିଚାରି ବହିବ ।
କେସନ୍ତ ଫଳ ହାଦେ ଭୁଞ୍ଜିବ ସିନା ପୁଣି
ଜନ୍ମରୁ କଷ୍ଟ ମୋତେ ଦେଲେ ପଦ୍ମଯୋନି ।
ଚଉଦ୍ଦବନ ମୋତେ ହେଲା ହାବଣ ବରଷ
ସମସ୍ତ ଋଷିମାନେ ମିଳିଲେ ପିତା ପାଶ ।
ଅନେକ ସ୍ତୁତେ ମୋର ପିତାଙ୍କୁ କହିଲେ
ଯଜ୍ଞ ରଖିବାକୁ ମୋତେସଙ୍ଗରେ ଘେନଗଲେ
ଋଷିମାନଙ୍କର ଯାଗ ମୁଁ ରଖିଲି ଧନୁଧରି
ସେଠାରେ ନାଶକଲି ମୁଁ ତାଡ଼କା ଅସୁରୀ ।
ସେଠାରୁ ବିଶ୍ୱାମିତ୍ର ମୋତେ ଘେନଗଲେ
ମିଥିଳାନଗରେ ଧନୁ ସଭା ଦେଖାଇଲେ ।
ସେଠାରେ ଥିଲେ ଲକ୍ଷେ ନୃପତିଗଣେ ପୁଣ
ଦେବାସୁର ନର ଆସିଥିଲେ ଯେ ରାବଣ ।
ସେଠାରେ ଶିବଧନୁ ମୁଁ ହେଳାରେ ଭାଙ୍ଗିଲି
ସୀତାଙ୍କୁ ବିଭା ହୋଇଣ ଅଯୋଧ୍ୟାକୁ ଗଲି ।

ରାଜ୍ୟର ଲୋକ ଦେଖିଣ ହରଷ ହୋଇଲେ
ପିତା ଦେଖିଣ ମୋତେ ମନରେ ବିଚାରିଲେ
ବୋଲନ୍ତି ମୋର ହୃଦରେ ଥାଉ ଥାଉ ପ୍ରାଣ
ଶ୍ରୀରାମଙ୍କୁ ରାଜ୍ୟରେ ମୁଁ କରିବି ରାଜନ ।
ଏତେବୋଲି ପିତା ପାଞ୍ଚ ମନ୍ତ୍ରୀଙ୍କି ରାଇଲେ
ରାଜ୍ୟରେ ନିଶାଣ ଦେଇ ପୁରକୁ ମଣ୍ଡିଲେ ।
ରାଜ ପାଞ୍ଚିଲେ ଯେ ମୋତେ କରିବେ ରାଜନ
ରାଜ ଅଭିଷେକ ବିଧି କଲେକ ଭିଆଣ ।
ଏମନ୍ତ ଦେଖ ପୁଣ ବିଧାତାର ଗତି
ଯାହା ସେ କର୍ମରେ ମୋର ଲେଖିଛି ପ୍ରଜାପତି
ସେ ଫଳ ବିନା ମୋତେ ପ୍ରାପତ ହୋ'ଇବ
ରାଜା ନହେବା ଜାଣି କୂଟ କଲେକ ଦଇବ ।
ଏହି ବାରତା ପାଇଲେ କଇକେୟୀ ଆଈ
ରାଜାଙ୍କୁ ଡାକ ନେଇ ସ୍ୱୀକୃତ କରାଇ ।
ବୋଇଲେ ଭରତ ମୋର ଏ ରାଜ୍ୟେ ରାଜନ
ଚଉଦ ବରଷ ଯାଉ ଶ୍ରୀରାମ ଘୋରବନ ।
ଏମନ୍ତ ବଚନ ଯହୁଁ ମୋ ପିତା ଶୁଣିଲେ
ଧରଣୀରେ ପଡ଼ିଣ ମୂର୍ଚ୍ଛାଗତ ହେଲେ ।
ବଣ୍ଡିକ ଉତ୍ତାରୁ ସେ ପାଇଲେ ଚେତନା
ଲେଉଟି ଆସନରେ ବିଜେ କଲେ ସିନା ।
ପାଞ୍ଚ ମନ୍ତ୍ରୀଙ୍କି ବୃତ୍ତାନ୍ତ ସମସ୍ୟା ନବୋଇଲ
ଅନ୍ତ୍ରାରେ ଝର କ୍ରୋଧଭର ସେ ହୋଇଲେ
ପିତା ମନ ଜାଣିଲେ ବଶିଷ୍ଠ ମୁନିବର
ବୋଲନ୍ତି ଶୁଣ ହୋ ଦଶରଥ ନୃପବର ।
କିମ୍ପାଇଁ ବିରସ ବଦନ କରିଛ ରାଜନ
ରାମଙ୍କୁ ରାଜ୍ୟ ତୁମ୍ଭେ ଦେବଟିକ ପୁଣ ।
ପିତା ମୋର ଶୁଣି ଥନ ଥନ କଲେ ଆଖି
ରାଜାପଣ ଶ୍ରୀରାମର ନ ପାଇବି ଦେଖି ।
ଶୁଣିକରି ବଶିଷ୍ଠ ବଚନ ବୋଲନ୍ତି
କିମ୍ପାଇଁ ନ ଦେଖିବ ଶ୍ରୀରାମ ନୃପତି ।
ରାଜତ ଶେଷରେ ତୁମ୍ଭେ କରିବ ଦର୍ଶନ
ଭଜନା ପାଇଲେ ରାଜା ହେବଟି ରାମ ପୁଣ
କିମ୍ପା ତୁମ୍ଭେ ରାଜନ ମନରେ ଧର ଆନ
ଦଶରଥ ବୋଲେ ଶୁଣ ବ୍ରହ୍ମାଙ୍କ ନନ୍ଦନ ।
କଥାଏ ନ ବିଚାରି ହେଲି ମୁଁ ଏଥି ଧ୍ୱଂସି
କଣ୍ଡ ମନକଥା ଏବେ ପ୍ରବେଶ ହେଲା ଆସି ।

କୈକେୟୀ ରାଣୀ ମୋତେ ନିୟମ କରାଇଲା
ଶ୍ରୀରାମ ବନ ଯାଉ ବୋଲିଣ ବୋଇଲା ।
ଏଥିରେ ଭରତ ରାଜା ଚଉଦ ବରଷ
ରାମ ବନଯାଉ ଯେ ନ ମାଡ଼ିବ ଦେଶ ।
ତେଣୁକରି ମୂର୍ଚ୍ଛି ହୋଇଲି ଅସ୍ଥିର
ଶୁଣିକରି ବିରସ ହେଲେ ମୁନିବର ।
ଏସନ ସମୟେ ପିତା ସନ୍ନିଧି ମୁଁ ଗଲି
ମୁନିଙ୍କ ମୁଖରୁ ମୁଁ ବାରତା ପାଇଲି ।
ପିତା ସତ୍ୟ ପାଳି ମୁଁ ଅଇଲି ଘୋରବନ
ମୋତେ ନଦେଖି ପିତା ମୋ ମଲେ ବାରଦିନ
ଏମନ୍ତ ପ୍ରକାରେ କଷ୍ଟ ଲେଖିଛି କର୍ମେ ମୋର
ରାଜ୍ୟରେ ରାଜା ନୋହି ବୁଲଇ ବନଘୋର
ଅଟନ୍ତାରେ ମୁନି ଥିଲେ ବନବାସେ
ସେଥିରେ ଉପଦ୍ରବ କଲେ ଯେ ରାକ୍ଷସେ ।
ଏମନ୍ତ ବନରେ ଆମ୍ଭେ ବୁଲୁ ତିନିଜଣ
କନ୍ଦମୂଳ ଭକ୍ଷି କଷ୍ଟ କଲୁ ପତ୍ରଭାଣ ।
ଝରଣା ପାଣି ପିଇଣ ବନ ବସୁଥିଲୁ
ବରଷାରେ ପଞ୍ଚବଟୀରେ ମଡ଼ିଆ ରଚିଲୁ ।
ସେ ବନ ବୃକ୍ଷକୁ ଆମ୍ଭେ ଆଶ୍ରୟ ଯେ କରି
ଦୁଃଖ ସୁଖରେ ଆମ୍ଭେ ଦିନ ନେଉ ହରି ।
ଏମନ୍ତେ ଦେଖ ହୋ ଦଇବ ଭବିଷ୍ୟ
ସୁବର୍ଣ୍ଣରେ ମୃଗେକ ହେଲା ପରବେଶ ।
ଦେଖିକରି ଘରଣୀ ମୋ ବଳାଇଲା ମନ
ସେହି ମୃଗ ମାରିବାକୁ ଗଲି ମୁଁ ବହନ ।
ଧନୁରେ ବସାଇ ମୁଁ ନାରାଚ ଛାଡ଼ିଦେଲି
ପ୍ରାଣଗଲା ମୃଗ ଡାକେ ଲକ୍ଷ୍ମଣ ହାହି ବୋଲି
ପର୍ଣ୍ଣକୁଟୀରେ ଲକ୍ଷ୍ମଣ ସୀତାଙ୍କୁ ଜଗିଥିଲା
ମୃଗର ଡାକ ଶୁଣି ପାଶକୁ ମୋର ଗଲା ।
ସେହିକାଳେ ରାବଣ ଆସିଲା ମୋର ସଙ୍ଗ
ମାୟାମୃଗ ପେଷିଣ ହୋଇଲା ମାୟା ଯତି ।
ମୃଗମାରି ଆମ୍ଭେ ଆସିଲୁ ବେନଭାଇ
ପର୍ଣ୍ଣକୁଟୀରେ ଦେଖିଲୁ ଜାନକୀ ମୋର ନାହିଁ
ବ୍ୟାକୁଳେ ଗିରିବରକୁ ପଚାରୁ ଥୁପ ଲେଛୁ
ବାଟରେ ପକ୍ଷୀଜଟାକୁ ଭେଟିଲୁ ଆମ୍ଭେ ଆସି
ରାବଣ ନେଲା ବୋଲି ପକ୍ଷୀଜଟା କହି
ସେଠାରୁ କିଷ୍କିନ୍ଧ୍ୟାରେ ପ୍ରବେଶହେଲୁ ଯାଇ

ବାଳି ସୁଗ୍ରୀବର ଦୁହିଙ୍କର ଜନ୍ମ
ସୁଗ୍ରୀବର ଭାରଯାକୁ ବାଳି ବଳେ ହରି ।
ଦୁଷ୍ଟପଣ ଦେଖିଣ ବାଳିକି ବଧ କଲୁ
ସୁଗ୍ରୀବରକୁ କିଷ୍କିନ୍ଧ୍ୟାରେ ରାଜନ କରାଇଲୁ
ସୁରଦଗକୁ ଦୂତ ସେଠାରୁ ବରଗିଲୁ
ଲଙ୍କାରେ ଅଛି ବୋଲି ବାରତା ପାଇଲୁ ।
କପିମାନେ ବେଢ଼ିଣ ପର୍ବତ ବହି ନେଲେ
ସମୁଦ୍ରେ ବନ୍ଧ କରିଣ ସୁବଳେ ଉତ୍ତରିଲେ ।
ସୀତାଙ୍କୁ ମଗାଇ ପଠାଇଲି ପୁଣ
ନ ଦେଇ ଯୁଦ୍ଧ କଲା ଦଶସ୍ରବା ନନ୍ଦନ ।
ମାଥା କାଟି କରିଣ ସେ ଆପଣେ ଗଲା ନାଶ
ତାହା ଭାରିଯାକୁ ଦେଲି ଔଅରର ପାଶ ।
ଲଙ୍କାର ବିଭୀଷଣ ରାଜପଣ କଲା
ସେ ଯେଣୁ ମୋଠାରେ ଶରଣ ପଶିଲା ।
ଜାନକୀ ଆଣିଲି ମୁଁ ଅଯୋଧ୍ୟାକୁ ଯିବାକୁ
ସଜ ହୋଇଅଛି ଯେ ରଥରେ ବସିବାକୁ ।
ଏତେ ଦୁଃଖରେ ବିଧାତାର ଦୟା ଧର୍ମନାହିଁ
ପରର ହସ୍ତରେ ମୋତେ ଅଟକ କରାଇ ।
ମନ୍ଦୋଦରୀ ମୋ ଚରଣେ ପଶିଲା ଶରଣ
ବୋଲେ ନିସ୍ତୁଳ ମୋତେ କରିଯାଅ ରଘୁରାଣ
ଅଲଙ୍କା ନଗରେ ସହସ୍ରାନନ ଅଛି
ଦଶଗ୍ରୀବର ସମ୍ବନ୍ଧୀ ସେହି ଅଇଲଟି ।
ତୁମ୍ଭେ ଗଲେ ପ୍ରାଣେ କରିବ ମୋତେ ନାଶ
ତାରଠାରେ ମୋତେ ହେ କରାଅ ଅବିଶ୍ୱାସ
ବୋଲନ୍ତେ ବିଭୀଷଣଙ୍କୁ ସଙ୍ଗତରେ ନିଅ
ଅଗ୍ନିରେ ଝାସଦେବ ମୋହରଟି ଦେହ ।
ଶୁଣିଣ ବିଭୀଷଣଙ୍କୁ ଆମ୍ଭେ ପଚାରିଲୁ
ଶୁକ ସାରଣ ମନ୍ତ୍ରୀଙ୍କ ତାର ଭେଟିଦେଲୁ ।
ସେ ବୋଇଲେପ୍ରବୋଧଯେ ନୃତେସହସ୍ରାନନ
ବୋଇଲା ଯୁଦ୍ଧ ମୋରେ ଶ୍ରୀରାମ ସଙ୍ଗେ ପୁଣ
ତାହାଶୁଣି ଆମ୍ଭେ ଅଙ୍ଗଦ ଭେଢ଼ି ଦେଲୁ
ସନମାନ କରିବାକୁ ଚିଠାଉ ଲେଖିଲୁ ।
ଉପରେ କହିବାରୁ ନିଃଶ୍ୱାସେ ମାରିଲା
ଦୁଇଶତ ଯୁଣେ ଆସି ଅଙ୍ଗଦ ପଡ଼ିଲା ।
ଏତେ ବଡ଼ ଅନର୍ଥ କରିବ ଦୈତ୍ୟସାର
ଏ କଥା କହେ ଶ୍ରୀରାମ ଭରତ ଆଗର ।

କରଯୋଡ଼ି ଭରତ ଆଗରେ ଭଗ ହେଲେ
ତା ପାଶକୁଭେଦମୋତେବୋଲିଣବୋଇଲେ
ଶ୍ରୀରାମ ବୋଲନ୍ତି ସାନୁଜ ହୋଇଲୁ କ ବାଇ
ସେ ଦୈତ୍ୟକୁ ମୋହର ବୁଦ୍ଧି ପାରୁନାହିଁ ।
କାଳଦଣ୍ଡ ପାଶକୁ ଦେଇଛି ଜନ୍ମପତ
ତ୍ରିନପୁର ନେଳକଙ୍କୁ ଯନ୍ତ୍ରିରେ ବାନ୍ଧିଅଛି ।
ସୁର ଅସୁର ଯେ ମାନବ ନାଗବଳ
କାହାକୁ ନ ଡରଇ ରହିର କୁମର ।
ମିତା ଦଶରଥ ମୋର ତାହାକୁ ଜିଣିଥିଲା
ସଦାଶିବ ନନ୍ଦନ ଯେ ଗଣେଶ ବାନ୍ଧିନେଲା ।
ମୂଷିକ ବାହନ ହୋଇଅଛି ତାର ପାଶ
ଗ୍ରୀଷ୍ମ ରୂପ ସଞ୍ଜିବନୀ ହୋଇଛି ପ୍ରକାଶ ।
ଦୈତ୍ୟଙ୍କର ଯୁଦ୍ଧ କାବୁରେ ଏଥିରେ
ଅସମ୍ଭାଳ ନୁହ କାବୁ ଯୁଝିବ ବେଳରେ ।
ନିଷ୍ଟୟ ସହସ୍ରାନନ କରିବ ଯୁଦ୍ଧ ପୁଣ
ଦେବତାମାନେ କରିଛନ୍ତି ଏ ଭିଆଣ ।
ଏତେ କହି ଶ୍ରୀରାମ ଉପରକୁ ଚାହିଁ
କରଯୋଡ଼ି ହନୁମନ୍ତ ଆଗରେ ଉଭା ହୋଇ
ବୋଇଲା ଯେ ଦେବ ମୁଁ ଅଲଙ୍କାକୁ ଯିବ
ସହସ୍ରାନନ ଆଗରେ ଶ୍ରୀମୁଖ ନେଇ ଦେବ ।
ଶୁଣିଣ ଶ୍ରୀରାମଚନ୍ଦ୍ର ସନ୍ତୋଷ ହୋଇଲେ
ଶୁଭେ କାର୍ଯ୍ୟ କରିଆସ ହନୁକୁ ବୋଇଲେ ।
ବେନି ହନୁମନ୍ତ ଅଙ୍ଗଦ ମୁଖ ଚାହିଁ
ମୋଠାରେ ଅହଲ୍ୟା ତୁ ନ କରିବୁରେ ଭାଇ
ଯେମନ୍ତରେ ସୁଖରେ ଚୋଟିବ ମୋହର
ସେ କଥାମାନ ଜାଣୁ ତ ମାରୁତି କୁମର ।
ଏବେ ଦୟା କର ମୋତେ ତୋହମୁଖେପୁଣ
ଯେମନ୍ତେ କାର୍ଯ୍ୟକରି ଆସିବ ବହନ ।
ମାରୁତି ବୋଲେ ଶୁଣ କହୁଁବ ସୁଷେଣ
ସୁଗ୍ରୀବ ନଳ ନୀଳ ଜାମ୍ବବ ବିଭୀଷଣ ।
କଙ୍କଣ କାଳମୁଖ ବଧୀ ମୁଖ ଆଉ
ଅଞ୍ଜନ ଶତବାଳି ଯେ ବସନ୍ତ ପନଶୀକ ।
ସମସ୍ତ ହୋଇ ମୋତେ ଅନୁଗ୍ରହ କର
ଯେମନ୍ତେ ଶୁଭ କାର୍ଯ୍ୟ କରିବ ଦିଗୁର ।
ରୁଷ କପି ଗୁଣ୍ଡକହାଇ ବୋଲନ୍ତି ବଚନ
ଯାଅ ହୋ ମାରୁତି ଶୁଭେ ଆସ ହୋ ବହନ

ଶୁଣିକରି ହନୁମନ୍ତ ଶିରେ କର ଦେଲ
ଋକ୍ଷ ରାଜାଙ୍କ ଚରଣେ ଓଳଗି ଶୋଇଲ ।
ଲକ୍ଷେ ରାଜାଙ୍କୁ ଓଳଗ ମେଲଏ ମାରୁତି
ଦେଖଣାହାରି ପବାଡ ରଥିଙ୍କ ବନତି ।
ଭରତ ଲକ୍ଷ୍ମଣ ଶତ୍ରୁଘନ ତିନି ଭାଇ
ଶତେବାର ଓଳଗଇ ପବନ ତନୟୀ ।
ବଶିଷ୍ଠ ଚରଣେ ଯାଇଣ ଓଳଗିଲ
ଶ୍ରୀରାମ ଚରଣେ ଗଡ଼ିଯାଇ ଶୋଇଲ ।
ଜାନକୀ ଚରଣ ଧରି ସ୍ତୁଏ ଲୋଟଗାଳ
ଜାନକୀ ବୋଇଲେ ବାବୁ ତୁ ଯାଅଦେଖକରି
ଶୁଭକାର୍ଯ୍ୟ କରି ଯାଇ ପବନ ନନ୍ଦନ
ବାଟରେ ତୋର ପିତା ସହାୟ ହୋନ୍ତୁ ପୁଣ
ଶୁଣିକରି ମାରୁତି ତୋଷ ମନ ହୋଇ
ରୋମ ଟାଙ୍କୁରାଇ ସେ କାୟାକୁ ବଢ଼ାଇ ।
ମହାଭୟଙ୍କର ରୂପ ସେହୁ ଧରି
ହୁଙ୍କାର ନାଦକରି ଶୂନ୍ୟରେ ଗଲ ଉଡ଼ି ।
ଦକ୍ଷିଣକୁ ମୁଖକରି ଶୂନ୍ୟରେ ଉଡ଼ିଯାଇ
ଶ୍ରୀରାମ ସୀତା ବୋଲିଣ ସେ ମୁଖରେଭାଷଇ
ଏମନ୍ତେ ଗମନ ଯେ କରଇ ମାରୁତି
ଫର ଫର ଉଡ଼ଇ ତାର ନେତର ପଣନ୍ତ ।
ବେଳକୁବେଳ କାୟା ଯେ ବଢ଼ାଏ ହନୁମନ୍ତ
ଧୂମକେତୁ ପ୍ରାୟ ସେ ଯେ ଦିଶଇ ସଞ୍ଜାତ ।
ଏମନ୍ତେ ହନୁମନ୍ତ କରଇ ଗମନ
ଆକାଶେ ଥାଇ ପ୍ରଶଂସା କରନ୍ତି ଦେବଗଣ
ବୋଲନ୍ତି ଧନ୍ୟ ଧନ୍ୟ ପବନର ସୁତ
ଦେବକାର୍ଯ୍ୟ କରିବାକୁ ତୁମ୍ଭେ ଯେ ସମର୍ଥ ।
ଏତେ ବୋଲିଣ ଦେବେ ସାନନ୍ଦ ମନହୋଇ
ପୁଷ୍ପବୃଷ୍ଟି କଲେ ହନୁମନ୍ତ ଶିରେ ନେଇ ।
ବ୍ରହ୍ମାଣ୍ଡ ଦେବତା ସେ ସକଳ ଦିଗପାଳ
ବୋଲନ୍ତି ଯଶ କରି ତୁ ପବନର ବାଳ ।
ଏତେ ଶୁଣି ହନୁମନ୍ତ ଅଳଙ୍କା ଦେଶ ଯାଇ
ଦେଖିଲ ସହସ୍ରମୁଖା ଜଗତରେ ଅଛଇଁ ।
ମନରେ ବିଚାରଇ ପବନର ସୁତ
ଏହି ହାତେ ପୁଣ ଅଟଇ ସହସ୍ର ମାଥ ।
ଧନ୍ୟ ଏହାର ଜନନୀ ଗର୍ଭରେ ଧରିଥିଲ
କେଉଁବଣ ପ୍ରାୟ ଏହାକୁ ଜନମ ସେହୁ କଲ ।

ଏହୁ ଯେବେ କୋପିତ ହେବ ହୃଦୟର
କ୍ଷଣକେ ନାଶ କରିବ ସଂସାର ତିନପୁର ।
ହର ବ୍ରହ୍ମା ଯେବେ ଏହା ବୁଲରେ ଯୁଝିବେ
ଅସୁରାଦିଗଣ ହେଲେ ଏହାକୁ ନ ମାରିବେ
ମୁହିଁ ଏବେ ଉପାୟ ଯେ କେବଣ କରିବି
କେଉଁ ଉପାୟରେ ଏହାକୁ ଶ୍ରୀମୁଖ ମୁଁ ଦେବି
ଏମନ୍ତ ବୋଲିଣ ମନେ ମାରୁତି ବିଚାରଇ
ପିତାଙ୍କୁ ସୁମରଣା କଲ ଶୂନ୍ୟେ ରହି ।
ଜୟ ଜୟ ପବନ ଦେବତା ମୋର ପ୍ରାଣ
ଦେବକାର୍ଯ୍ୟ ନିମିତ୍ତ ମୁଁ ଆସିଅଛୁ ପୁଣ ।
ସଚରାଚର ଠାକୁର ଅଟନ୍ତି ଶ୍ରୀରାମ
ସସ୍ରାନନ ପାଶକୁ ମୋତେ ପେଷିଲେ ଆପଣ
ସହସ୍ରାନନ ମଲେଦେବେ ହେବେ ଯେକୁଶଳ
ଏଥିକି ବିଚାର କର କଶ୍ୟପର ବାଳ ।
ହନୁମନ୍ତ ସ୍ତୁତି ଶୁଣି ପବନ ଅଇଲ
କର୍ମା ତୁ ବାଳ ପୋଇ ଲେଡ଼ିଲୁ ବୋଇଲ ।
ପିତାକୁ ଦେଖି ମାରୁତି ହେଲ ନମସ୍କାର
ପବନ ବୋଲେ କର୍ମାଇଁ ଲେଡ଼ିଲୁ କୁମର ।
ମାରୁତି ବୋଲେ ଦେବ ମୋତେ ବସ୍ତାକର
ସହସ୍ରମାଥର ପବନ ବେଗେ ଯାଇ ହର ।
ଖୋଳକଳା ପବନରୁ ଶ୍ରୀକଳା ରଖ
ତେଟେବଟି ଶ୍ରୀରାମର ଦେବ ମୁଁ ଶ୍ରୀମୁଖ ।
ଶୁଣିଣ ପବନ ଦେବ ବୋଲଇ ବଚନ
ବିଶ୍ୱମୂର୍ତ୍ତି ଗୁଡ଼ ତୁ ହୁଅରେ ସାମାନ୍ୟ ।
ବାରପୂର୍ଣ ପାର୍ଶ୍ୱ ପ୍ରତି ଅଟେ ସହସ୍ର ମୁଖା
ଚହଟ ପୁଣ ପାର୍ଶ୍ୱ ହୁଅରେ ତୁ ପୂତା ।
ପଶ୍ଚିମ ଦ୍ୱାର ବାଟରେ କରରେ ଗମନ
ଜଗତି ପରେ ଯାଇ ବସ ତୁ ବହନ ।
ଶ୍ରୀମୁଖ ଶୁଣାଇ ତାକୁ ବହିବୁ ଶୋଧ ମତ
ତେବେ ଯାଇ ବିଶ୍ୱମୂର୍ତ୍ତି ହେବୁରେ ମାରୁତି
ମୁକୁଟ କୁଣ୍ଡଳ ନେବୁ ଶ୍ରବଣ ଆବକରି
ତେବେ ଭରସା ପାଇବେ କୋଦଣ୍ଡରୂପଧାରୀ
ଏତେକହି ପବନ ବେଗେ ଚଳଗଲ
ସହସ୍ରାନନ ହୃଦରୁ ପବନ ହରିଲ ।
ବୃଷଭଗ କରି ବେଗେ ରଖିଲ ହୃଦରେ
ତନଭଗ ହରିନେଲ ନିଜ ଉପାୟରେ ।

ଏଥିଅନନ୍ତରେ ତୁମ୍ଭେ ଶୁଣ ଭଗବନ୍ତ
ଶୂନ୍ୟରେ ଉଡ଼ିଣ ଯାଉଥିଲନ୍ତି ମାରୁତ ।
ପିତାର ବଚନେ ସେ ତଳକୁ ଓହ୍ଲାଇଲା
ବିଶ୍ୱରୂପ ଛାଡ଼ିଣ ସେ ସାମାନ୍ୟ ରୂପ ହେଲା ।
ତକ୍ଷଣ ପୁଣ ଉତ୍ସର୍ଗ ପବନର ଶିଷ୍ୟ
ସହସ୍ରସୂର୍ଯ୍ୟକୁ କୋଟି ହୋଇଲା ପ୍ରକାଶ ।
ପଶ୍ଚିମଦ୍ୱାର ବାଟରେ କରଇ ଗମନ
ସହସ୍ରାନନ ସିଂହଦ୍ୱାରେ ମିଳିଲା ଯାଇ ପୁଣ ।
ଦାଣ୍ଡରେ ବୁଲୁଥାଆନ୍ତି ସେ ନଗ୍ରନରନାରୀ
କେଉଁ ଦେଶ ମାଙ୍କଡ଼ ଏ ଦିଶେ ଦନ୍ତକାଶ ।
କେ ବୋଲେ ଏମନ୍ତ କପି ନୟନେ ନ ଦେଖି
କେ ବୋଲଇ ପ୍ରମାଦ ଯେ କରିବ ଏ କପି ।
କେବୋଲେ ପଙ୍କଜପ୍ରାୟ ଦିଶେ ଏହାରଶରୀର
କେ ବୋଲେ ସନକେ ବୁଲୁଗଲା ସିଂହଦ୍ୱାର
ଏମନ୍ତ ବିଚାର ଯେ କରନ୍ତି ସେ ପୁରେ
ଦ୍ୱାରପାଳ ପୃଚ୍ଛାକଲେ ହନୁର ଆଗରେ ।
ବୋଇଲେରେ ବନ ଜୀବ ଅଇଲୁ କିସପାଇଁ
ମରିବାକୁ ତୋର କରେ ମନରେ ଭୟନାହିଁ
ମାରୁତ ବୋଲେ ମୋତେ ଛାଡ଼ିଦିଅ ଦ୍ୱାର
ଶ୍ରୀରାମର ଦୂତ ମୁଁ ଆଣିଛି ଖବର ।
ତୁମର ରାଜାକୁ ଯାଇ କହିବି ଶ୍ରୀରାମରକଥା
କବୋଲ ବୋଲିବ ତୁମ୍ଭର ସହସ୍ର ଯେ ମଥା
ଦ୍ୱାରପାଳ ବୋଲେ ଆମ୍ଭେ ଛାମୁରେ କହିବୁ
ଆଜ୍ଞାହେଲେ ତୋତେ ଯେ ଏଠାରୁ ଘେନିବୁ
ହନୁମନ୍ତ ବୋଇଲାରେ ବେଗହୋଇ ଯାଅ
ତୁମ୍ଭର ରାଜା ଆଗେ ଜଣାଇ ମୋତେ କହ
ଶୁଣିଣ ଦ୍ୱାରପାଳ ବେଗେ ଚଳିଗଲା
ସହସ୍ରାନନ ଚରଣେ ଓଳଗି ଶୋଇଲା ।
ଦେଖିଣ ସହସ୍ରଗ୍ରୀବ ବୋଲଇ ବଚନ
ଭୃତ୍ୟ ସେ ପୁଚ୍ଛାଇଲା ବିଶାଖା ନନ୍ଦନ ।
ବୋଇଲା କିସ ପାଇଁରେ ଭୃତ୍ୟ କହୁ ଆସି
ନିଶଙ୍କ ହୋଇ ମୋର ଛାମୁରେ କହସି ।
ଶୁଣିଣ ଦ୍ୱାରପାଳ କରଯୋଡ଼ି କହି
ପବନ ସମାନେ କପିସିଂହ ଦ୍ୱାରେ ରହି ।
ବୋଇଲା ଦ୍ୱାର ମୋତେ ଛାଡ଼ିଦିଅ ବେଗେ
ସହସ୍ରାନନ ଆଗକୁ ମୁଁ ଯିବଇ ତୁରିତେ ।

ତାର କଥା ଶୁଣି ଆମ୍ଭେ ତାକୁ ପୁଚ୍ଛାଇଲୁ
ତୁମ୍ଭେ ଆମ୍ଭରପ୍ରଭୁ ତେଣୁ ଆଗରେଜଣାଇଲୁ
ଶୁଣିଣ ସହସ୍ରାନନ ମନ୍ତ୍ରୀର ମୁଖ ଚାହିଁ
ମର୍କଟ ଗୋଟାଏ କମା ଅଇଲା ମୋର ଭୁଇଁ
ଗୁଣସାଗର ମନ୍ତ୍ରୀ କହେ ଶୁଣ ଆହେ ଦେବ
ପବନସୁତ ହନୁ ଆଣିଅଛି ଯେ ହୁକୁମ ।
ଦଶଗ୍ରୀବ ସମ୍ବନ୍ଧୀ ତୋର ଅନ୍ୟାୟ ପୁଣକଲା
ରଘୁନାଥ ଘରଣୀକି ଚୋରାଇ ଆଣିଲା ।
ଘରଣୀ ଛଳେ ରାମ ବାଳିକି ବଧ କଲେ
ସୁଗ୍ରୀବଙ୍କରକ ତାର ସେ ରାଜ୍ୟରଖାଇଲେ
ଓଷ୍ଟ କପିବଳ ଘେନ ସମୁଦ୍ରେ ବାନ୍ଧ ବନ୍ଧ
ଦଶଗ୍ରୀବ ସଙ୍ଗରେ କଲେକ କଳିଦ୍ୱନ୍ଦ୍ୱ ।
ମହୀରାବଣ ଆସିଣ ଛାମୁରେ ତୋର କହି
ଯୁଦ୍ଧକୁ ଯିବ ସମ୍ବନ୍ଧୀ ଅଛି ପଠିଆଇ ।
ତୁମ୍ଭେ ନାସ୍ତି କରିବାରୁ ଫେରିଣ ପୁଣ ଗଲା
ଦଶଗ୍ରୀବ ଆଗରେ ଯାଇଣ ଜଣାଇଲା ।
ଶ୍ରୀରାମଙ୍କୁ ରାବଣ ଯେ ନୋହିଲା ସମର୍ଥ
ରଘୁନାଥ ବାଣରେ ମଲା ଦଶମାଥ ।
ବିଭୀଷଣ ଶ୍ରୀରାମର ଶରଣ ପଶିଲା
ଲଙ୍କାଖଣ୍ଡରେ ଶ୍ରୀରାମ ତାକୁ ରାଜା କଲା ।
ତୋତେ ଡର ବିଭୀଷଣ ମନ୍ତ୍ରୀକି ଗୁର ଭେଦ
ଶୁକ ସାରଣକୁ ଦେଖି ତୁମ୍ଭେପରାହେଲରାଗି
ବେନ ମନ୍ତ୍ରୀ ଯାଇଣ ଶ୍ରୀରାମ ଆଗେ କହି
ସେଥି ସକାଶେ ଶ୍ରୀରାମ ଦୂର ଭେଜିଲଇଁ ।
ତୁମ୍ଭଙ୍କୁ ଡରି ଶୂନ୍ୟରେ ଡାକ ଦେଲା
ତୁମ୍ଭେ ନ ଶୁଣିବାରୁ ଓହ୍ଲାଇ ଅଇଲା ।
ଏବେ ସିଂହଦ୍ୱାରେ ଆସି ଦୂତ ଅଛି ରହି
ଦ୍ୱାରୀମାନଙ୍କ ହସ୍ତରେ ପଠିଆଏ କହି ।
ଶୁଣିକରି ସହସ୍ରାନନ ମନେ ଗରବ କଲା
ମାର କଳା ପବନ ତା ଦେହରୁ ହଜିଲା ।
ବୋଇଲା କିସ ଯେ କହିବ କପି ଦୂତ
ତାହାକୁ ଛାମୁରେ ମୋ ଆଣରେ ତୁରିତ ।
ଶୁଣିଣ ଦ୍ୱାରପାଳ ବେଗେ ବୁଲିଗଲେ
ହନୁମନ୍ତ ଆଗରେ ଯାଇ ତୁରିତେ ମିଳିଲେ ।
ମାରୁତିକି କହିଲା ଆସ ହୋ ସତ୍ୱର
ରାଜା ଆଜ୍ଞା ଦେଲେ ଯିବୁ ତୁ ତାଙ୍କ ଛାମୁର

ଶୁଣିକରି ମାରୁତି ତାର ସଙ୍ଗେ ଗଲା
ସହସ୍ରାନନ ସମ୍ମୁଖରେ ଯାଇଣ ମିଳିଲା ।
ଶ୍ରୀମୁଖକୁ ମାରୁତି ଧରିଲା କରରେ
ରଘୁନାଥଙ୍କର ଅଜ୍ଞା ଘେନ ତୁ ଶିରରେ ।
ସୂର୍ଯ୍ୟବଂଶେ ଜାତ ଦଶରଥ ଯେ ନୃପତି
ତାଙ୍କ କୋଳେ ରଘୁନାଥ ହେଲେ ଉତପତ୍ତି
ସେ ରଘୁନାଥ ଛନ୍ତି ଲଙ୍କା ସୁବଳଗିରି
ଘରଣୀ ଛଳେ ଶ୍ରୀରାମ ରାବଣକୁ ମାରି ।
ମୂର୍ତ୍ତି ଯେ ହନୁମନ୍ତ ଶ୍ରୀମୁଖ ଆଣିଅଛୁ
ତୁମ୍ଭଙ୍କୁ ନେବାକୁ ମୋତେ ଶ୍ରୀରାମଚନ୍ଦ୍ର ପେଷି
ତୁମ୍ଭେ ବେଗେ ମୋ ସଙ୍ଗରେ କରହେ ଗମନ
ଲଙ୍କାରେ ବିଭୀଷଣକୁ କରିବ ରାଜନ ।
ଶୁଣିଣ ସହସ୍ରମାଥ ଚଉଦିଗ ଚାହିଁ
ରଘୁନାଥ ଆଜ୍ଞା ଘେନ ବୋଲ୍ଲଣ ଏହୁ କହି ।
ରାବଣ ନିଧନ ହେଲା କହୁଅଛୁ ଏହି
ଏତେକବଡ଼ ସ୍ରାକର୍ମ ଅଙ୍ଗରେ ଅଛୁ ବହି ।
ଏହିକାଳେ ମାରୁତି ହସ୍ତକୁ ଦେଲା ଚାହିଁ
ନେତ କନାରେ ଶ୍ରୀମୁଖ ବନ୍ଧାଅଛୁ ହୋଇ ।
ଦେଖିଣ ସହସ୍ରାନନ ହସ୍ତରୁ ଘେନଗଲା
ଚନ୍ଦନ ମୁଦ ଭାଙ୍ଗି ଶ୍ରୀମୁଖ ପଢ଼ିଲା ।
ପଢ଼ିଣ ଶ୍ରୀମୁଖ ଯେ ହଲାଏ ସହସ୍ର ଶିର
ତୋର ନାମ କସ ହନୁମନ୍ତକୁ ପଚାରି ।
ମୋର ନାମଗୋଟି ଏବେ ଶୁଣ ସହସ୍ରାନନ
ପ୍ରଭଞ୍ଜନ ସୁତ ମୁଁ ଯେ ପବନ ନନ୍ଦନ ।
ବାଳି ସୁଗ୍ରୀବର ମୋର ଅଟନ୍ତି ମଉଳା
ଶ୍ରୀରାମ ଦୂତ ମୁଁ ଶୁଣ ଫଣାଖାର ବାଳା ।
ସହସ୍ରାନନ କହେ ବିଭୀଷଣ ଏ କୃତ୍ୟ କଲା
ଭାଇକି ମରାଇ ଯେ ଲଙ୍କାରେ ରାଜା ହେଲା ।
ଆମ୍ଭେଗଲେ ଜାଣିବା ତାର ଗାରିମାବଡ଼ପଣ
କେମନ୍ତେ ସେ ଲଙ୍କାଗଡ଼େ ହେବ ଯେ ରାଜନ
କେମନ୍ତେ ତାହାକୁ ରଖିବ ରଘୁନାଥ
ଦଶରଥ ପୁତ୍ରକୁ ମୁଁ କରିବ ନିଶ୍ଚେ ହତ ।
ଶ୍ରୀରାମ ବିଭୀଷଣକୁ ଯେବେ ମୁଁ ନ ନାଶିବି
ସମ୍ବନ୍ଧୀର ନିଧନ ମୁଁ କେମନ୍ତେ ସହିବି ।
ଆହାରେ ସମ୍ବନ୍ଧୀ ମୋର ହୃଦର ପଞ୍ଚପ୍ରାଣ
ତାଙ୍କ ବିନୁ ମୋର ଦେହୁ ଯାଉ ଯେ ଜୀବନ

ପୁଣି ବୋଲେ ସମ୍ବନ୍ଧୀ ମୋର ଅଧର୍ମକର୍ମାକଲା
କେଉଁ ଘରଣୀ ତାହାକୁ ଅପୂର୍ବ ହୋଇଥିଲା
ଏମନ୍ତ ବଚନ କହି ମନରେ ଭାଳଇ
କହି ବିଧାତା ଏହା ଭିଆଇ ଅଛଇଁ ।
ଏତେ ବିଚାରଣ ସେ ହନୁମନ୍ତକୁ ଚାହିଁ
ନିଃଶ୍ୱାସ ଛାଡଇ ଯେ ବିସ୍ମୟ ମନ ହୋଇ ।
ପାଖେ ଥାଇ ହନୁମନ୍ତ ବାରତା କହୁଥିଲା
ନିଃଶ୍ୱାସ ପବନରେ ଉଡ଼ିଣ ସେହୁ ଗଲା ।
ସେଠାରୁ ହନୁମନ୍ତ ଗଲା ପୁଣି ଉଡ଼ି
ବାରଯୁଣ ଅନ୍ତରେ ଯାଇଣ ସେ ପଡ଼ି ।
ଉଠିଣ ହନୁମନ୍ତ ମନରେ ବିଚାରଇ
ଧନ୍ୟରେ ସହସ୍ରମାଥ ବୋଲଇଣ କହଇ ।
କେବଣ ବିଧାତା ତୋତେ ଦେଲା ଏତେବଳ
ତୋର ନିଃଶ୍ୱାସରେ ମୁଁ ପଡ଼ିଲି ଏତେଦୂର ।
ବାରବର୍ଷା ପବନ ପିତା ମୋହର ନେଲା
ସ୍ୱରିବର୍ଷା ପବନରେ ଏତେ ଦୂର କଲା ।
ଏତେବୋଲି ହନୁମନ୍ତ ସେଠାରୁ ଉଡ଼ିଗଲା
ସୁବଳସ୍ଥା ଗିରିର ନିକଟେ ମିଳିଲା ।
ସୁବଳଗିରିର ପରେ ହେଲା ପରବେଶ
ଧୀର ଧୀର ହୋଇ ଆସେ ପବନର ଶିଷ୍ୟ
ଦୂରରୁ ଅନାଇଣ ଚହ୍ନିଲା ସୁଷେଣ
ବୋଲଇ ଏହି ତ ଅଟେ ପବନ ନନ୍ଦନ ।
ଚହ୍ନି କରି ସୁଷେଣ ତତକ୍ଷଣେ ଯାଇ
ଦାଶରଥିଙ୍କ ସମ୍ମୁଖରେ ଯାଇଣ ଜଣାଇ ।
ହୋଇଲା ଶୁଣିବା ହେଉ ଜାନକୀର କାନ୍ତ
ସହସ୍ରାନନ ପାଶକୁ ଯାଇଥିଲା ହନୁମନ୍ତ ।
ମୂର୍ତ୍ତି ଦେଖିଲି ଏକା ହୋଇ ସେ ଆସୁଅଛି
ଅଙ୍ଗରେ ତାହାର ନାହିଁ ଫଣାଖାର ବସି ।
ତାଠରେ ହନୁମନ୍ତକୁ ଦେଖିଲି ଯେ ମୂର୍ତ୍ତି
ତୁମ୍ଭର ସମ୍ମୁଖେ ଦେବ ଜଣାଇବା ପାଇଁ ।
ସୁଷେଣଠାରୁ ଏମନ୍ତ ଶୁଣି ରଘୁନାଥ
ବୋଲନ୍ତି କାର୍ଯ୍ୟମୋର କଲାକି ହନୁମନ୍ତ ।
ଏମନ୍ତ ବୋଲଇଣ ଯେ ହୁଅନ୍ତି ତୁହାଲୁହ
ଶ୍ରୀରାମ ନିକଟେ ହନୁମନ୍ତ ହେଲା ଯାଇ ।
ଅଙ୍ଗଦ ଦେଖିଣ ଯେ ବୋଇଲା ବଚନ
କାର୍ଯ୍ୟକରି ପାରିଲୁକିରେ ପବନ ନନ୍ଦନ ।

ସହସ୍ରମୁଖା ରାବଣକୁ ଦେଖିଲୁ କରେ ଭାଇ
କେଉଁ ପ୍ରକାରେ ତାକୁ ଶ୍ରୀମୁଖ ଦେଲୁ ନେଇ
ଶ୍ରୀମୁଖ ପଢ଼ିଣ କସ ବୋଲେ ସସ୍ର ଶିର
ସଜହୋଇ ଆସଇ କି ବଣାଖା କୁମର ।
ଏମନ୍ତ ବୋଲଣ ଯେ ଅଙ୍ଗଦ ପଚାରଇ
ଶ୍ରୀରାମ ଚରଣେ ହନୁମନ୍ତ ଓଳଗଇ ।
ସୁକଲ୍ୟାଣ କରଣ ଯେ ବୋଲନ୍ତି ରଘୁନାଥ
କସ କସ ବାରତା ଆଣିଛୁ ହନୁମନ୍ତ ।
ଶୁଣିଣ ପାବନି ଯେ ଶିରେ କର ଦେଇ
ସହସ୍ରାନନର କଥା କୁମ୍ଭେ ଶୁଣ ହେ ରଘୁସାଇଁ
ଏ ଠାବରେ ଗଲି ମୁଁ ଯେ କାଲି ପ୍ରଭାତରେ
ପ୍ରବେଶ ହୋଇଲି ଯାଇ ସନ୍ଧ୍ୟା ସମୟରେ ।
ଦେଖିଲେ ଜଗତୀରେ ବସିଛି ସସ୍ର ମାଥ
ଲକ୍ଷେକ ବଳାସୁଣୀ ଗୁମ୍ଫରେ କରେ ନୃତ୍ୟ ।
ଚଉପାଶେ ବେଢ଼ିଣ ଅଛନ୍ତି ଅସୁରଗଣେ
ଗୁମ୍ଫରେ ଅଛନ୍ତି ତାର ଦୁଇଲକ୍ଷ ଯେନନ୍ଦନେ
ବାରଲକ୍ଷ ଜୁଆଇଁ ତାର ବଣଲକ୍ଷ ନାତି
ବଣଲକ୍ଷ ଶାଳକ ତା ସୁରପାଶେ ଖଟି ।
ଗୁଣସାଗର ନାମେ ଯେ ମନ୍ତ୍ରୀ ଅଟେ ତାର
ସହସ୍ରାନନ ଗୁମ୍ଫରେ ପଜାଏ ସମର ।
ଶିର ପରେ ଛତ୍ରେ ତାର ବେଣଲକ୍ଷ ଛତ୍ର
ଗଜତ ମାତ୍ତନ୍ତ ତାର ପଛଆରେ ଛନ୍ତି ।
ଦୁଇଲକ୍ଷ ନନ୍ଦନ ଯେ ଅଟେ ତାର ପୁଣ
ସାନପୁତ୍ର ନାମଟୋକି ଅକ୍ଷୟସେନ ଜାଣ ।
ପୁତ୍ରମାନଙ୍କର ମହିମା କହଣା ନ ଯାଇ
ତାହାଙ୍କର ଭୟରେ ପୃଥିବୀ ଲସି ହୋଇ ।
ଏମନ୍ତ ସମ୍ପଦେ ରାଜେ କରେ ସହସ୍ରାନନ
ପାଶକୁ ଯିବାକୁ ଇଚ୍ଛା କଲା ମୋର ମନ ।
ଦେଖିଲି ଭିତରକୁ ଯିବାକୁ ବାଟ ନାହିଁ
ପିତାକୁ ମୋହର ସୁମରଣା କଲି ତହିଁ ।
ପିତା ମୋର ମନ ଜାଣି ମୋ ଆଗରେ ମିଳି
ସହସ୍ରାନନ ଗୁମ୍ଫକୁ ଯିବାକୁ ପିତାସଙ୍ଗେ ଗଲି
ପିତାକୁ ବୋଇଲେ ପବନ କର ତୁ ନବର୍ତ୍ତି
ବାରଜଣା ହରନେଲି କଣ୍ଠପର ସୁତ ।
ଦ୍ୱାରୀଙ୍କ ଆଗରେ ଯାଇ ହେଲି ପରବେଶ
ଶ୍ରୀରାମ ଆଜ୍ଞାବୋଲି କହିଲି ବିଶେଷ ।

ସେ ବୋଇଲା ଜଣାଇଲେ ସହସ୍ର ଯେ ମାଥ
ତେବେ ଗୁମ୍ଫକୁ ତୋତେ ନେବ ଆରେ ଦୂତ
ଏତେବୋଲି ଦ୍ୱାରୀ ଯାଇ ଗୁମ୍ଫରେ ଜଣାଇଲା
ମର୍କଟ ଗୋଟାଏ ଦେଖ ଆସିଛି ବୋଇଲା ।
ଆଜ୍ଞା ଦେଲେ ଗୁମ୍ଫକୁ ଆଣିବ ତାହାକୁ
ଶୁଣିଣ ସସ୍ର ବୋଲେ ଘେନଆସ ତାକୁ ।
ମୋତେ ଘେନ ଦ୍ୱାରୀ ଯେ ସେଠାକୁ ଚଳିଗଲା
ସହସ୍ରାନନ ଗୁମ୍ଫରେ ଯାଇଣ ମିଳିଲା ।
ଦେଖିଲି ଜଗତୀରେ ବସିଛି ଦୈତ୍ୟକୁଳମଣି
ଗୁମ୍ଫରେ ଖଟନ୍ତି ତାର ଲକ୍ଷେ ବଳାସୁଣୀ ।
ନୃତ୍ୟ ଛୁଡ଼ାଇଣ ସେ ମୋତେ ପଚାରିଲା
କେଉଁଠାରୁ ଅଇଲୁ ହୋ ବୋଲିଣ ବୋଇଲା
ସହସ୍ରେ ବଦନକୁ ନେତ୍ରରେ ଦେଖିଲି
ରାମନାମ ମୂର୍ତ୍ତି ଯେ ଭୁଷ୍ଟରେ ଘଷିଲି ।
ମୁଁ ବୋଇଲି ଶ୍ରୀମୁଖ ଘେନରେ ସସ୍ରମାଥ
ଶ୍ରୀମୁଖ ଦେଇଛନ୍ତି ଦଶରଥଙ୍କ ସୁତ ।
ଉଠ ଉଠ ଆଜ୍ଞାବେନ ହେ ସରକାର ସାଇଁ
ଶୁଣିଣ ଶ୍ରୀମୁଖ ମୋ ହସ୍ତରୁ ଘେନଯାଇ ।
ସହସ୍ରେ ବଦନରେ ଶ୍ରୀମୁଖକୁ ଚୁମ୍ବିଲା
ମୁଦ ଭଙ୍ଗିଣ ସେ ଯେ ଶ୍ରୀମୁଖ ପଢ଼ିଲା ।
ପଢ଼ିକରି ଦୈତ୍ୟ ଯେ ହେଲା ଅନ୍ତସଳ
ତମ୍ବାଚମ୍ବପର ବୁଲିଏ ବେଣସହସ୍ର ନେତ୍ର ତାର
କଡ଼ ଚୋଧହୋଇ ସେ ଯେ ଉପରକୁ ଚହିଁ
ଆଜ ସଭଙ୍କ ମାରିବ ବୋଲି ନିଃଶ୍ୱାସ ଛାଡ଼ଇ
ମୂର୍ତ୍ତି ରହି ପାଖରେ ବାରତା ଶୁଣୁଥିଲି
ନିଃଶ୍ୱାସ ଘାତରେ ତାର ଉଡ଼ି ମୁଁ ଅଇଲି ।
ଅଣଚାଶ ପବନ ପ୍ରାୟ ନିଃଶ୍ୱାସ ବହଇ
କି ଅବା ପ୍ରଳୟକାଳେ ଜଗତ ଦହଇ ।
ସେହିରୂପେ ବହେ ତାର ନାସିକା ପବନ
ମୁଖ ଯାର ବାରଯୁଣ ଅଟେ ଆୟତନ ।
ଧନ୍ୟ ସେ ସହସ୍ରାନନ ଧନ୍ୟ ତା ପିତାମାତା
କେବଣ ପ୍ରକାରେ ସେ ହୋଇଲା ସମ୍ଭୁତା ।
କେବଣ ଦେବକୁ ସେ ଭଜୁଥି ହୋଇଲା
ତେଣୁ ସହସ୍ରେ ଶିର ଅସୁର ବହିଲା ।
କି ଅବା କଷ୍ଟରେ ସେବା କଲା ହିଲୋଚନ
ଭକ୍ତି ଦେଖି ସଦାଶିବ ହେଲେ ବା ପ୍ରସନ୍ନ ।

ଚେଣୁକର ଅଜା ଦୈତ୍ୟ ବରକୁ ପାଇଲା
ନୋହିଲେ ଏତେକଜଣ ଆରକାହୁଁ ସେ ହୋଇଲା
ଏମନ୍ତ କଥା ଯହୁଁ ହନୁମନ୍ତ କହିଲା
ଶୁଣିଣ ବିଭୀଷଣ ଉତ୍ତର ବୋଇଲା ।
କରଯୋଡ଼ି ବିଭୀଷଣ ଆଗରେ ଉଭାହୋଇ
ତାହାର ପୂର୍ବକଥା ଶୁଣ ହେ ରଘୁସାଇଁ ।
ପବନ ସୁତ ଯାହା କହିଲା କପିନାହା
ମନଦେଇ ଶୁଣ ତୁମ୍ଭେ ମୁଁ କହୁଅଛି ତାହା ।
ମାରୁତି ବୋଇଲା କେତେ ବଡ଼ ସହସ୍ରମାଥ
କେଉଁରୂପେ ସେହୋଇଲା କେବଣ ଦଇବତ ।
ତୁମ୍ଭର ଆଗରେ ମୁଁ ଯେ ସମ୍ପି କହଇ
ସହସ୍ରାନନ ମୁଖରୁ ମୁଁ ତାହା ଶୁଣିଛଇଁ ।
କ୍ଷୀର ସମୁଦ୍ରକୁ ଯେବେ ତର୍ପଣ କରି ଯାଇଥିଲା
ଏ ବାଟରେ ଆସି ରାବଣକୁ ଦେଖାହେଲା ।
ବୋଇଲା କ୍ଷୀରସମୁଦ୍ରେ ତର୍ପଣ ମୁହିଁ ସାରି
ତୁମ୍ଭଙ୍କୁ ଦେଖିବାକୁ ଅଇଲି ଏଣ୍ଟବାଟେ ଫେରି
ଏମନ୍ତେ କୁହାକୁହି ହୁଅନ୍ତି ଦେନି ସାରି
କ୍ରୀଡାରସ କଥାମାନ କହନ୍ତି ଆନନ୍ଦର ।
ଦଶଗ୍ରୀବ ପଚାରଇ ସହସ୍ରାନନକୁ ରୁଣ୍ଟି
କଥାଏ ମୋତେ କହ ସଂଶୟ ଫିଟାଇ ।
ଶୁଣିଣ ସହସ୍ରଗ୍ରୀବ କହଇ ଉତ୍ତର
କିସ ପଚାରୁ କହ ମୋହର ଆଗର ।
ଶୁଣିକରି ରାବଣ ବଚନ ବୋଲଇ
ସହସ୍ରେ ଶିର ତୁମ୍ଭର ହେଲା କିସ ପାଇଁ ।
ଏହିକଥା ମୋତେ କହ ହେ ସମ୍ବନ୍ଧୀ
ମାତାଙ୍କର ଗର୍ଭରୁ କି ହୋଇଅଛ ସିଦ୍ଧି ।
ଏକଥା ମୋହର ଆଗରେ ସଂଶୟ ଫେଡ଼ି କହ
ଶୁଣିକରି ଫିଟୁ ମୋର ମନରୁ ସଂଶୟ ।
ଶୁଣି ସହସ୍ରମାଥ ଦଶାନନକୁ ରୁଣ୍ଟି
ଯାହା ପଚାରିଲ ସମ୍ବନ୍ଧୀ ଶୁଣ ମନଦେଇ ।
ଏମନ୍ତେ ଯେ ସାତପୁର ବନରୁ ଅଚେତଣ
ପ୍ରବେଶ ହେଲେ ଆସି ନାରଦ ମହାମୁନି ।
ବୋହଇ ଭସ୍ମଛଟା କପାଳେ ଶୋଭିତ
କଣ୍ଠ କମଣ୍ଡଳୁ ଯେଜନ ବ୍ରହ୍ମାଙ୍କ ସୁତ ।
ତାହାଙ୍କୁ ଦେଖି ମୁଁ ଯେ ନମସ୍କାର କଲି
ବସିବାକୁ କୃଷ୍ଣାଜିନ ଆସନ ମୋହି ଦେଲି ।
ସନ୍ତୋଷ ହୋଇ ନାରଦ ଆସନେ ବସିଲେ
ସମସ୍ତ କୁଶଳଟି ବୋଲିଣ ପଚାରିଲେ ।
ମୁଁ ବୋଇଲି ମୁନିବର ତୁମ୍ଭର କଲ୍ୟାଣରେ
ଜନ୍ମୁ ଚିନ୍ତା ନାହିଁ ଯେ ମୋହର ପୁରରେ ।
ଅକଣ୍ଟକ ରାଜ୍ୟ ମୁଁ ଯେ ନିଶ୍ଚିନ୍ତେ ପାଳଇ
ତୁମ୍ଭ କଲ୍ୟାଣେ ମୋହର କାହାକୁ ଭୟ ନାହିଁ
ନାରଦ ବୋଇଲେ ତୁ କାହାକୁ ମନାଇଲୁ
ଏତେ ବଳବାନ ତୁ କେମନ୍ତେ ହୋଇଲୁ ।
ସହସ୍ରାନନ ବୋଲେ ମୋର ଅଜା ମେଘାସୁର
ତାର ନନ୍ଦନ ଅଟେ ବିଶାଖା ମାତା ମୋର ।
ମହାସୁର ଦୈତ୍ୟକୁ ସେ ନନ୍ଦନକ ବଶ କଲା
ପ୍ରଥମରୁ ବିଶାଖା ଯେ ମୋତେ ଜନ୍ମ କଲା ।
ମେଘାସୁର ଅସୁରର ନ ଥିବାରୁ ସୁତ
ଜନମ ନେଇ ମୋତେ ଦେଲାକ ତାର ହସ୍ତ
ଦେଖିକରି ମୋର ଅଜା ସନ୍ତୋଷ ହୋଇଲା
ପୋଷିଆ ପୁତ୍ରକରି ମୋତେ ସେ ରଖିଲା ।
ସନ୍ତୋଷରେ ବର ମୋତେ ଦେଲା ଦୈତ୍ୟରାଜ
ଶତକୋଟି ସିଂହବଳ ଦେହରେ ତନୁଜ ।
ତିନିପୁର ଚଉଦ ଭୁବନ ଭୁରେ ଜଣ
ଏକା ବିଷ୍ଣୁ ଉଜାରି ଯେ ଦେବତାର ଜାଣ
ଏତେକହି ଅଜା ମୋର ବିଷ୍ଣୁପୁର ଗଲା
ଷହପାଳ ହାରି ହସ୍ତେ ମରଣ ପାଇଲା ।
ଅଜା ମରିବାରୁ ହୋଇଲି ଏଥେ ରାଜା
ତିନିପୁର ଚଉଦ ଭୁବନେ ବଜାଇ ବାରବାଜା
ଦେବତାଙ୍କୁ ଆଣି ପାବଚକରେ ଖଟାଇଲି
ଦେବତେ କହନ୍ତେ ମୁଁ ତାଙ୍କୁ ଛାଡ଼ିଦେଲି ।
ମର୍ତ୍ତ୍ୟପୁରେ ଲକ୍ଷେ ରାଜା ଜିଣିଲଇଁ ହେଳେ
ଲକ୍ଷେ ଦୁହିତା ତାଙ୍କର ବିଭାହେଲି ବଳେ ।
ପାତାଳେ ପଶିଣ ନାଗରାଜାକୁ ଜିଣିଲି
ଲକ୍ଷେ ନାଗକନ୍ୟା ଆଣି ଦାସୀ କରାଇଲି
ଇନ୍ଦ୍ରକୁ ଜିଣିଣ ମୁଁ ହେଲି ରାଜ୍ୟେଶ୍ୱର
ଲକ୍ଷେ ଢଳାପୁଣୀ ନେଲି ଦେବଙ୍କ ଈଶ୍ୱର ।
ଏମନ୍ତ ପ୍ରକାରେ ମୁଁ ଅଟେ ବଳବାନ
ସହସ୍ରେ ଧନୁ ମୁଁ ଯେ କରରେ ଧରେ ପୁଣ
ଶୁଣି ନାରଦ ମୁନି କହିଲେ ବଚନ
ବାହୁ ଭୁଜବଳେ ସାଧି ଏ ତିନି ଭୁବନ ।

ଏବେ ପାରିବୁ ଯେବେ ତପସ୍ୟା ସିଦ୍ଧି କରି
ମନାଇ ପାରିବୁ ଯେବେ ଦେବ ତ୍ରିପୁରାରି ।
ସେ ଯେବେ ପ୍ରସନ୍ନ ହୋଇଣ ବର ଦେବେ
ଅକାଳ ମୃତ୍ୟୁ ତୋର ଛୁଟିବ ଯେ ଏବେ ।
ପ୍ରସନ୍ନ କରାଇ ତାଙ୍କୁ ମାଗ ଏବେ ବର
ଅଜର ଅମର ହେବୁ ତୁରେ ବଲଙ୍କା ଈଶ୍ୱର
ଆଉର ମାଗିବୁ ବେନି ସହସ୍ର ଯେ ଭୁଜ
ସହସ୍ରେକ ଶିର ତାକୁ ମାଗିବୁ ଦୈତ୍ୟରାଜ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନ ଜିଣିବେ ତୋତେ
ତୋରଭଲ କହିଲି ମୁଁ ବିଚାର ଦୈତ୍ୟନାଥେ
ଏମନ୍ତ ମନାଇ ଯେବେ ମାଗିପାରୁ ବର
ତେବେଅଜରଅମରହେବୁକାହାକୁନଥିବଡର
ଏତେ କହି ମୁନିବର ସ୍ୱର୍ଗପୁର ଗଲେ
ଆଉ କଥା ଏ କହିବ ଶୁଣ ତୁ ବୋଇଲେ ।
ଉପର ଜନ୍ମରେ ତୋର ବିଷ୍ଣୁର ହସ୍ତେମଲେ
ହେଳାକଲେ ମରିବୁ ତୁହି ତାଙ୍କ ଭୁଲେ ।
ଈଶ୍ୱରଙ୍କୁ ସେବାକରି ଯେନ ମାଗିବର
ବିଷ୍ଣୁଙ୍କୁ ଜିଣିବାକୁ ଯେବେ ଅଛି ତୋ ମନର
ଏମନ୍ତ ବୋଲିଣ ସେଯେ ମୋତେ କହିଗଲେ
ଜାଣ କୁମ୍ଭେ ସମ୍ବନ୍ଧୀ ହେ ଏକଥାକୁ ଭଲେ
ସେହିଦିନରୁ ମୁଁ ଯେ ବିଚାର କଲି ମନ
କେଉଁଠାରେ ବସି ମୁଁ ଯେ ସେବିବି ତ୍ରିଲୋଚନ
କେମନ୍ତ କରି ମନାଇବି ମୁହିଁ ସଦାଶିବ
କାରୁପେ ତପସ୍ୟା ମୋର ସୁଫଳ ହୋଇବ ।
ଏମନ୍ତ ବିଚାର ମୋର ହୃଦରେ ମୁଁ କଲି
କାଶୀ ନଗ୍ର ତୀରରେ ଯାଇ ପ୍ରବେଶ ହୋଇଲି
ସେଠାରେ ଦେଖିଲି ବିଜୟେ ବିଶ୍ୱନାଥ
ପାର୍ବତୀଙ୍କି କୋଳକରି ବସିଛନ୍ତି ଶୂଳହସ୍ତ ।
ସେ ନଗ୍ର କୂଳରେ ଯେ ଅଛି ଏକ ବନ
ହର ପାର୍ବତୀଙ୍କର ଅଟଇ କ୍ରୀଡ଼ାସ୍ଥାନ ।
ସେ ବନ କୋଟିରେ ଯେ ନ ରହନ୍ତି କେହି
ତେଣୁ ସେ ବନ ନାମ ଏକାମ୍ବର ହୋଇ ।
ସେ ବନ ଭିତରେ ମୁଁ ପଶିଲି ଯାଇଣ
ଦେଖିଲି ତହିଁରେ ଅଛି ଉତ୍ତମ ବିଦ୍ୟାସ୍ଥାନ ।
ନିର୍ମଳ ସ୍ଥାନ ଦେଖି ମନରେ ବିଚାରଇ
ତପସ୍ୟା କରିବାକୁ ଉତ୍ତମ ସ୍ଥାନ ଏହି ।

ଏମନ୍ତ ବୋଲି ମୁଁ ମନରେ ବିଚାରିଲି
ଈଶ୍ୱରଙ୍କୁ ସୁମରି ମୁଁ ତପରେ ବସିଲି ।
ପ୍ରଥମେ ନିରୋଧ କଲି ମୁହିଁ ଯେ ପବନ
ଦନ୍ତଅଗ୍ରେ ଛନ୍ଦିଲି ମୁଁ ଆପଣା ପଞ୍ଚମନ ।
ମନପବନକୁ ଛନ୍ଦିଲି ମୁଁ ଯହୁଁ
ଷଡ଼ଇନ୍ଦ୍ରି ପ୍ରକୃତି ଯେ ନାଶ ଗଲ ତହୁଁ ।
ଏମନ୍ତ ପ୍ରକାରେ ଯେ ଆସନ ଧଇଲି
ତ୍ରିକୂଟ ସ୍ଥାନରେ ପରମହଂସକୁ ଭେଟିଲି ।
ଶୋକ ଦଳ ଉପରେ ଭେଟିଲି ତ୍ରିଲୋଚନ
ମନରେ ମୁଁ ସୁମରିଲି ଈଶ୍ୱର ଭଜନ ।
ଏମନ୍ତ ପ୍ରକାରେ ଯେ ରହିଲି ମନଦେଇ
ଜଳ ପବନ ଆହାର କିଛି ମୋର ନାହିଁ ।
ଯେବଣ ଦିନେ କ୍ଷୁଧା ଲାଗେ ହାତେ ପୁଣ
ଲୁଣ ଚଣାସଙ୍ଗେ ଖାଏ ରଙ୍ଗମାଟିର ପାଷାଣ
ଏମନ୍ତେ ତପ କଲି ସହସ୍ରେ ବରଷ
ତଥାପି ସଦାଶିବ ନୋହିଲେକ ଦୃଶ୍ୟ ।
ଯହୁଁ ଈଶ୍ୱରଙ୍କୁ ଯେ ଦର୍ଶନ ନ ପାଇଲି
ବେନି ନୟନ ଖୋଲିଣ ସେଠାରୁ ଲକ୍ଷ୍ୟକଲି
ଏମନ୍ତେ ସହସ୍ର ବରଷ ପୁଣି ଯାଇ
ତଥାପି ଈଶ୍ୱରଙ୍କୁ ଭେଟ ଯେ ନ ପାଇ ।
ଏମନ୍ତ ଦେଖିଣ ଯେ ମନରେ ବିଚାରିଲି
କିମ୍ପାଇ ଈଶ୍ୱର ଦର୍ଶନ ନୋହିଲ ବୋଇଲି
କି ଅବା ତପସ୍ୟା କରି ନ ପାରିଲି ମୁହିଁ
କି ଅବା ଅପରାଧୀ ହୋଇଅଛି ମୁହିଁ ।
ତେଣୁକରି ଅବା ମୋତେ ନୋହିଲେ ପ୍ରସନ୍ନ
ଏସନ ବୋଲି ବିଚାର କରଇ ମୋର ମନ
ପୁଣି ବୋଇଲି ମୁଁ ଯେ ଏମନ୍ତ କରିବି
ଅଗ୍ନି ଆରୋପଣ କରି ଶରୀର ଦହିବି ।
ଏମନ୍ତ ବୋଲିଣ ଯେ ବିଚାରଇ ମନ
ତତକ୍ଷଣେ ଚିତା ଯେ କଲି ଆରୋପଣ ।
ଜଳ ପବନ ତେଜବନ୍ତ ହେବରୁ ଯେ ହୋଇ
ଶସ୍ତ୍ର ଧରି ଆପଣା ଶରୀର କାଟଇ ।
ଶରୀର ମାଂସ କାଟି ପକାଇ ଅନଳରେ
ଏମନ୍ତେ ତପସ୍ୟା କଲି ଅତି ଯେ କଷ୍ଟରେ
ଆପଣାର ଶରୀର କଲି ଯେ ବହୁତ
ଦେଖିକୁଦେଖି ଶରୀର ହୁଏ ମହାତେଜ ।

ପୁଣ ପୁଣ ଶରୀରରୁ କାଟଇ ମାଂସମାନ
ବେଳକୁବେଳ ଶରୀର ହୁଅଇ ନବକର୍ଣ୍ଣ ।
ଶୁଣ ତୁମ୍ଭେ ପାର୍ବତୀ ଗୋ ଏକମନ ହୋଇ
ଏମନ୍ତେ ବିଭୀଷଣ ଶ୍ରୀରାମ ଆଗେ କହି ।
ଏମନ୍ତେ ମହାଘୋର ତପସ୍ୟା ସେ କଲା
କପିଳାସପୁରେ ଈଶ୍ୱରଙ୍କ ଆସନ କମ୍ପିଲା ।
ଜାଣିକରି ସଦାଶିବ ମନରେ ବିଚାରିଲେ
ପାର୍ବତୀ ଆଗେ ଅସୁର ନିୟମ କହିଲେ ।
ଶୁଣ ଗୋ ଭଗବତୀ ହୋଇ ଏକ ଚିତ୍ତ
ଏକାମ୍ର ବନେ ତପ କଲା ବଣାଖାର ସୁତ ।
ବଡ଼ କଷ୍ଟରେ ସେହୁ ତପ ଯେ କରଇ
ଅଜର ଅମରହୋଇବବୋଲିମନେ ବିଚାରଇ
ଏବେ ଆମ୍ଭେ କିସ ଯେ ଉପାୟ କରିବା
କେବଣ ପ୍ରକାରେ ତାକୁ ଅଭୟ ବର ଦେବା
ସୁରାପେ ରାକ୍ଷସ ଯେ ଅଟେ ବଳିଆର
ସ୍ୱର୍ଗରେ ପଶିଣ ଯେ ଜିଣେ ପୁରନ୍ଦର ।
ଏବେ ତପସ୍ୟା କରଇ ସହସ୍ର ଶିର ପାଇଁ
ଆଉର ବୋଲଇ ଅଜର ଅମର ହେବି ମୁହିଁ
ଏମନ୍ତେ ସେ ଅସୁର ଘୋର ତପ କରେ
ଶରୀରୁ ମାଂସ କାଟି ଅଗ୍ନିରେ ଦେଇ ଭରେ
ଏମନ୍ତେ ସପ୍ତଣ ସହସ୍ର ବର୍ଷ ତପ କଲା
ଆମ୍ଭଙ୍କୁ କେବେହେଁ ଯେ ଦର୍ଶନ ନ ପାଇଲା ।
ଏବେ ଆମ୍ଭେତୋଷେତାକୁଯେବେଦେବାବର
ସବୁଙ୍କୁ ଜିଣିବ ସେ ରାକ୍ଷସ ନିଶାଚର ।
ଏମନ୍ତ ବୋଲଣ ଆମ୍ଭେ ନିରାଶ ତାକୁ କଲୁ
ବେଳକୁବେଳ ତପସ୍ୟା କଠୋର ଦେଖିଲୁ ।
ଏମନ୍ତ ଶୁଣି ଗିରିଜା ବୋଲନ୍ତି ବଚନ
କିମ୍ପା ପ୍ରସନ୍ନ ତାକୁ ନୋହିଲ ତ୍ରିଲୋଚନ
ସେ ଯେବେ ତପସ୍ୟା ଏତେ କଷ୍ଟରେ କରଇ
ତାର ସେବା ନିଷ୍ଫଳ କି କରିବ ଗୋସାଇଁ ।
ନିରପେକ୍ଷ ହେବ ଯେବେ ପ୍ରସନ୍ନ ନୋହିବ
ଆଉ କିଏ ସେ ତୁମ୍ଭଙ୍କୁ ସେବା ଯେ କରିବ ।
ସେହି ଯେବେ ଏଡ଼େକଷ୍ଟେ ସେବା ଯେ କରଇ
ଛତା ଆହ୍ୱେପ କରିଣ ଶରୀରକୁ ଦହି ।
ଚାଲସେଠାକୁ ଆମ୍ଭେ ହେ ଯିବା ବେଗହୋଇ
ଦେବଙ୍କ ଦେବ ଅଟ ତ୍ରିଲୋକ୍ୟ ଗୋସାଇଁ

ଏତେକହି ବେଗେଣ ଉଠିଲେ ହେମବନ୍ତୀ
ବୃଷଭ ଆରୋହଣେ ଚଳିଲେ ପଶୁପତି ।
ବିଭୂତି ଭୂଷଣ ଅଙ୍ଗେ ପ୍ରଭୁ ଦେବରାୟେ
ଜଟାମୁକୁଟ ଗଇଣ ଦୁହୁଁ ଶୋଭାପାଏ ।
ବେନିକର୍ଣ୍ଣେ ଅଛି ଯେ କୁଣ୍ଡଳ ଶୋଭିତ
କଣ୍ଠା କଉପୁଷ୍ପ ଯେ କଣ୍ଠରେ ନୀଳକଣ୍ଠ ।
ଶ୍ରୀଭୁଜରେ ଅଛି କଙ୍କଣ ଶୋଭିତ
ବାମ ଆଦିତ୍ୟ ଜାଣି ଦକ୍ଷିଣ ନୟନ ତ ।
ଗଳାରେ ଅସ୍ଥିରଜ କରିଛନ୍ତି ମାଳ
ଚରଣାଙ୍କୁ ଚୋଟେ ଯେନି ବଜାପୁ କପାଳୀ
ଉଲଟ୍ସେ ସଦାଶିବ ବୃଷଭ ଆରୋହୀ
ଅନ୍ତରୀକ୍ଷେ ମଣ୍ଡଳକ୍ଷ ଡମ୍ବରୁ ବାଜଇ ।
ଏମନ୍ତ ପ୍ରକାରେ ଚଳେ ତ୍ରିଲୋଚନ
ପ୍ରବେଶ ହେଲେ ଯାଇ ଏକାମ୍ର ବନ ।
ଦେଖିଲେ ତପ ତୀର୍ଥରେ ଦୈତ୍ୟ ଯେ କରଇ
ମନ ଚଇତନ ଏକଠାବେ ଲୟ କରି ।
ଏମନ୍ତ ଦେଖିଣ ଯେ କହେ ଶାକମ୍ଭରୀ
ମହାଘୋର ତପ କରେ ଦେଖ ହେ ତ୍ରିପୁରାରି
ପାର୍ବତୀଙ୍କଠାରୁ ଈଶ ନ ଶୁଣିଲେ ଏମାନ
ବୋଲନ୍ତି ଦୈତ୍ୟ ତୁହୁରର ବର ମାଗି ନେନ
ଶୁଣିଣ ଅସୁର ଈଶ୍ୱରଙ୍କୁ ଯେ ବୋଲଇ
ତୁ କେଉଁ ଦେବତା ମୁଁ ତୁମ୍ଭଙ୍କୁ ନ ଜାଣଇ ।
କେବଣ ପ୍ରକାରେ ତୋତେ ମୁଁ ମାଗିବି ବର
ଏମନ୍ତ ବଚନ ଶୁଣି ବୋଲନ୍ତି ଈଶ୍ୱର ।
ଆମ୍ଭେ ଯେ ଈଶ୍ୱର ଦୈନ୍ୟ ଶୁଣ ଆମ୍ଭ ବାଣୀ
କେଉଁ କଥାକୁ ଏଡ଼େ ତପ କରୁ ପୁଣି ।
ସେକଥା ଆସୁର ଆଗେ ଫେଡ଼ି କହ ପୁଣ
ଆମ୍ଭେଟି ତ୍ରିଲୋଚନ ହୋଇଲୁ ପ୍ରସନ୍ନ ।
ଦଇତ ବୋଇଲା ତୁମ୍ଭେ ଯେବେ ହେ ଈଶ୍ୱର
ମୋତେ ଦିଅ ବର ମୋର ଯେଉଁ ସହସ୍ରଶିର
ଶୁଣିକରି ସଦାଶିବ ଅସ୍ତୁ ହେଉ ବୋଲି
ତକ୍ଷଣେ ସହସ୍ରେ ଶିର ଉଠିଲା ଜଅଁଳ ।
ଶୁଣିଣ ସଦାଶିବ ଯେ ବୋଲନ୍ତି ବଚନ
ମାଗ ଦୈତ୍ୟ ତୋହରମନେ ଯାହା ଅଛି ପୁଣ
ଶୁଣି ଦୈତ୍ୟରାଜ କର ଯୋଡ଼ିଣ ମାଗଇ
ଅଜର ଅମର କର ମୋତେ ସହସ୍ର ଭୁଜଇଁ

ଶୁଣିଣ ସଦାଶିବ ବୋଲନ୍ତି ବଚନ
ଦୁଇ ସହସ୍ର ଭୁଜ ତୋର ହେଉ ହୋ ବହନ
ଦେଖିଣ ଦୈତ୍ୟନାଥ ଈଶ୍ୱରଙ୍କୁ ସ୍ତୁତି
ସହସ୍ର ମୁଖରେ ସ୍ତୁତି ବଚନ ଭାଷଇ ।
ଜୟ ତୁ ସଦାଶିବ ଜୟ ତ୍ରିଲୋଚନ
ଅଜ କୃଷ୍ଣ ତତ୍ତ୍ୱକୁ ହେଉ ତୁ ପ୍ରସନ୍ନ ।
ଜୟ ତୁ ସଦାଶିବ କୈଳାସବାସୀ
ଗିରିଜା ବଲ୍ଲଭ ହେମବନ୍ତୀର ମନ ତୋଷି ।
ଜୟ ସଦାଶିବ ଦକ୍ଷ ପ୍ରଜାପତି ଯାଗଭଗ୍ନ
କଣ୍ଠିତ ଦୃଷ୍ଟିରେ ଦର୍ପ କଲୁ ତୁ ଦହନ
ଜୟ ହେ ସଦାଶିବ ବାଧା ଭାର ମୋଡ଼ଲଶିତ
ମହାଯୋଗ ସାଧୁଣ ହତ୍ୟା କଲୁ ପାର ।
ଜୟ ତୁ ସଦାଶିବ ଗଉରୀ ରମଣ
ବଳଙ୍କା ପରା ମୋତେ ହେଉ ପରସନ୍ନ ।
ଜୟ ଜୟ ସଦାଶିବ ଅଷ୍ଟାଙ୍ଗ ଯୋଗଧ୍ୟାନ
ନୀଳକଣ୍ଠ କୃପାକର ସେବକ ଉପ୍ରେଷ ।
ଶୁଣିଣ ସନ୍ତୋଷ ହେଲେ ଦେବ ତ୍ରିପୁରଘ୍ନ
ଏମନ୍ତେ ସ୍ତୁତି ଅନେକ ସହସ୍ରମାଥ ଭରି ।
ବୋଲନ୍ତି ସଦାଶିବ ଶୁଣି ସହସ୍ର ଶିର
ଆଉ କସ ବାଞ୍ଛା ଥିଲେ ମାଗି ନେଉ ବର
ସହସ୍ରାନନ ବୋଲଇ ଶୁଣ ହେ ଈଶାନ
ଆଜ୍ଞାକରୁ ମାଗିବ ସେବକ ହେ ତ୍ରିଲୋଚନ ।
କୁମର ସୁତସ୍ଥା ଯେବେ ହେଲା ମୋର ଠାରେ
ଆଉର ବର ମାଗୁଛି ଦେବ ହେ ସତ୍ବରେ ।
ସଦାଶିବ ବୋଲନ୍ତି ଶୁଣ ସହସ୍ର ଶିର
କମାଇଁ ଉକମ୍ପ ତୁ କରୁଛୁ ଦୈତ୍ୟେଶ୍ୱର ।
ସହସ୍ରମାଥ ଜର ଯେ ଗୁଣ ମ ଗଇ
କାହାର ହସ୍ତରେ ବଧ ନୋହିବ ଯେ ମୁହିଁ ।
ଅଜର ଅମର ହୋଇଣ ରହିବ ଯୁଗେ ଯୁଗେ
ଏମନ୍ତ ବର ମୋତେ ଏଥ ଦେବ ବେଗେ ।
ଯେତିମାନେ ନିଦ୍ରାରେ ଭରନ୍ତି ଶପନ
ସେମାନଙ୍କ ହସ୍ତରେ ମୁଁ ନୋହିବ ନିଧନ ।
ଶୁଣି ବୋଲନ୍ତି ପ୍ରଭୁ ଦେବ ତ୍ରିଲୋଚନ
ଯାହା ବାଞ୍ଛିଲୁ ତୋତେ ଆପଣେ ହେଉ ସେମାନ
ଅଜର ଅମର ବରରେ ନାହିଁ ଅଧିକାର
ଜନମ ହୋଇ ଅମର କାହାନ୍ତି ମଞ୍ଚପୁର ।

ଯମ ସିନା ହରଇ ହୋ ସମସ୍ତଙ୍କ ପ୍ରାଣ
ତାକୁ ମନାଇ ତୁ ଅମର ବର ନେଉ ।
ଶୁଣିକରି ଦଇତ ମନରେ କଲା ଶଙ୍କା
ହୋଇଲା ଅମର ପଦ ନୋହିଲା ସିନା ଏକା
ଈଶ୍ୱରଙ୍କୁ ମନାଇ ମୁଁ ପାଙ୍ଗଣ ମାଗିବ
ମନରେ ବିଚାରଇ ମୁଁ ଏମନ୍ତ କରିବ ।
ତେବେ ସେ ଜାଣିବ ସିନା ଈଶ୍ୱରଙ୍କ ଦୟା
ନହେଲେ ମୋହଠାରେ ନଷ୍ଟସ୍ତୁ ଭରେମାସ୍ତା
ଏମନ୍ତ ବୋଲି ମନରେ ବିଚାରଇ ପୁଣି
ଜାଣିଲେ ମନ ତାର ହେମବନ୍ତର ଦୁଲଣୀ ।
ହୋଇବେ ପାପିଷ୍ଟର ଦେଖ ମନ ବୁଦ୍ଧି
ଆମ୍ଭଠାରୁ ବର ପାଇ ଅମର ହବାଇ ।
ଏମନ୍ତେ ଗଉରୀ ଯେ ବୋଲନ୍ତି ବଚନ
ତୁ ଯାହା ବିଚାରିଲୁ ଶୁଣ ସହସ୍ରାନନ ।
ଆମ୍ଭଠାରୁ ବର ପାଇଲେ ଅନ୍ୟଙ୍କୁ ମନ ଭଳୁ
ତେବେ ତୋତେ ଆସିବେ ହେଉ ଅକାଳମୃତ୍ୟୁ
ଏହି କଥାକୁ ମନେ ଥିବୁ ଦୃଢ଼ କରି
ନଷ୍ଟସ୍ତୁ ଜାଳନ୍ଧର ଶବର ତୋତେ ଧରି ।
ହରିଙ୍କ ଘରଣୀ କମଳା ହସ୍ତରେ ଯିବୁ ନାଶ
ଛଇଞ୍ଜିଘ ହୋଇ ତୋର ନ ରହିବେ ବଂଶ
ଏମନ୍ତ ବୋଲି ଉମା ଶାପ ଦେଲେ ପୁଣ
ଶୁଣିକରି ଦଇତ ହେଲା କମ୍ପମାନ ।
ଏବେକ ତାହାକୁ ପାଙ୍ଗଣ ଦେଖା କହି
ଉମା ସେଣ ମହେଶ୍ୱର କୈଳାସ ଯାଇ ।
ନନ୍ଦସ୍ଥାନେ ବଟେକଲେ ପ୍ରଭୁ ଦେବକାଶୀ
ରହସ୍ୟ କଥା ପାଙ୍ଗଣ ଆଗେ କହି ହସି ।
ବୋଲନ୍ତି ଗଉରୀ ଯେ ଶୁଣ ତ୍ରିଲୋଚନ
ତମାତେ ନେବାକୁ ଦୈତ୍ୟର ଥିଲା ବଡ଼ମନ
ଈଶ୍ୱର ହୋଇଲେ ଦୈତ୍ୟ ଯେ ବଡ଼ଦୁଷ୍ଟଜାଣ
ସେହି ସକାଶେ ନାହିଁ ମୁଁ କରୁଥିଲି ପୁଣ ।
ତୁମ୍ଭେ କହିଲ ତାକୁ ଏଥ ଦେବେ ବର
କହିବାର କଥା ଏବେ ତୁମ୍ଭେ ଜେଗକର ।
ଶାପପାଇ ସହସ୍ରାମୁଖ ଗଲା ତାର ପୁର
ଯାହା ଯାହା ହେଲା କହୁଛି ଶୁଣ ତୋଆଗର
ଆମ୍ଭଠାରୁ ସମ୍ମାନ ବର ଯେ ପାଇଣ
ତନ୍ତଘଲ୍ଲ ଦୈତ୍ୟ ପୁଣ ବଳଙ୍କା ଭୁବନ ।

ପଥରେ ଚଳଇ ସେ ହରଷ କରି ମନ
ଏଡ଼େ ବଳ ପାଇ ମୁଁ ହେଲି ଅକାରଣ ।
ଏତେ ବୋଲିଣ ସେ ମନରେ ଗୁଣଇ
ପୁଣି ବୋଲେ ପରସ୍ତ୍ରୀ ଛୁଇଁଲେ ମରଇ ।
ନ ଛୁଇଁଲେ ମୋର ନୋହିବ ମରଣ
ନୋହୁ ମୋର ପଛେ ପରସ୍ତ୍ରୀ ହରଣ ।
ଦଶଲକ୍ଷ ରାଣୀ ଜ ଅଛନ୍ତି ମୋହର
ଅଶୀଲକ୍ଷ ଅଛନ୍ତି ସେପାଇଲି ପରିବାର ।
ଏମାନଙ୍କୁ ସେବି କି ସୁଦଶା ବଡ଼ ହେବ
ପଞ୍ଚଭୂତ ଆତ୍ମା ମୋର କେବେ ସେ ନୋହିବ
ଜନପୁର ଖୋଜିଣ ମୁଁ ଆଣିଛି ସୁଦଶା
ଯେତେ ଯେଉଁ ପୁରେ ଥିଲେ ଅବଳାସମନାଶ
ସମସ୍ତେ ଅଛନ୍ତି ଯେ ମୋହର ଭୁବନ
ଏତେବୋଲି ଆନନ୍ଦ ଯେ କଲା ତାର ମନ ।
ତତକ୍ଷଣେ ଚଳଇ ସେ ବିଶାଖାର ସୁତ
ବିଲଙ୍କା ବେଶରେ ସେ ଯୁବେଶ ଭୂଷିତ ।
ଆପଣାର ରାଜ୍ୟଲୋକ ଦେଖି ଉପ୍ରାନ୍ତ
କେବଣ ବୈଚିତ୍ର୍ୟ ଏ ଯେ ବୋଲିଣ ବୋଲନ୍ତି
କେ ବୋଲଇ ଅସ୍ମରାଜ୍ୟ ନାହାନ୍ତି ଦଣ୍ଡଧାରୀ
ନଷ୍ଟ ହୋଇଛି ଯେ ଏହୁ ଜନପୁରୀ ।
କେହୁ ବୋଲନ୍ତି ଯେ ଅସ୍ମର ରାଜେଶ୍ୱର
ତପ ସାଧି କରି କି ଆଇଛନ୍ତି ବର ।
କେହୁ ବୋଲନ୍ତି ସ୍ୱର୍ଗ ତାଙ୍କ ପାଶେ ଯିବା
କାର୍ତ୍ତିକ ରାକ୍ଷସ ସେ ସଗୁଣ ବୁଦ୍ଧିକା ।
କେହୁ ବୋଲନ୍ତି ଜଡ ରାଜପୁତ୍ରଙ୍କ ସମ୍ମୁଖ
ସେ ଶୁଣିଲେ କସ ଅବା କରିବେ ବିସ୍ତର ।
ଏମନ୍ତ ବୋଲି ଦୈତ୍ୟ ବେଗେ ଧାଇଁଗଲେ
ଗୁଣସାଗର ମନ୍ତ୍ରୀ ଆଗରେ ଜଣାଇଲେ
ବୋଇଲେ ଶୁଣନ୍ତୁ ଆହେ ଶୁଣ ମନ୍ତ୍ରୀବର
କାହୁଁ ଜଣେ ଆସିଅଛି ତାର ସହସ୍ରେକ ଶିର
ଶୁଣିଣ ମନ୍ତ୍ରୀବର ସୈନ୍ୟ ଅଣାଇଲା
ସହସ୍ରାନନ କୁମରଙ୍କୁ ଘେନଣ ବାହାରିଲା ।
ସଙ୍ଗତେ ଅଛନ୍ତି ତାର ସାମନ୍ତ ପାତ୍ରମାନ
ତତକ୍ଷଣେ ଗଲେ ସହସ୍ରାନନ ସନ୍ନିଧାନ ।
ଗୁଣସାଗର ମନ୍ତ୍ରୀଙ୍କ ଦୃଷ୍ଟି ସହସ୍ରମୁଖ ସ୍ୱାମୀ
ବୋଲଇ ରାଜ୍ୟଲୋକେ ସୁଖେ ଛନ୍ତି କି ରହି

ମନ୍ତ୍ରୀବର କହଇ ଯୋଡ଼ିଣ ଦେନିକର
ଆସ୍ମ ତହିଁ ଦଶା ଛାଡ଼ୁ ତୁମ୍ଭେ କାହିଁ ରାଜ୍ୟେଶ୍ୱର
ଶୁଣିଣ ସହସ୍ରମାଥ ବୋଲଇ ବଚନ
ମୂର୍ତ୍ତି ଅଟଇ ହ୍ରାକେଦ ହେ ଏଥିର କାରଣ ।
ତପ ସାଧିବାକୁ ମୁଁ ଏଥିରୁ ଯାଇଥିଲି
ପାଞ୍ଚସହସ୍ର ବର୍ଷ ମୁଁ ଈଶ୍ୱର ସେବା କଲି ।
ମୋର ସେବା ଦେଖି ଈଶ୍ୱର ପରସନ୍ନ
ସନ୍ତୋଷରେ ବରମୋତେଦେଲେ ତ୍ରିଲୋଚନ
ତେଣୁ ମୂର୍ତ୍ତି ହେଲି ଯେ ଏମନ୍ତ ଶରୀର
ମହାଶିବ ବରରେ ହୋଇଲି ସହସ୍ରେକଶିର
ଏମନ୍ତ ବଚନ ଯେ ସହସ୍ରାନନ ଭାଷି
ପାତ୍ରମନ୍ତ୍ରୀ ସାମନ୍ତ ହେଲେ ବଡ଼ ତୋଷି ।
ଦେବଲକ୍ଷ କୁମର ସଜ ହୋଇଣ ଆସିଲେ
ସମସ୍ତେ ପିତାଙ୍କର ଚରଣେ ଲୋଟିଲେ ।
ଏମନ୍ତେ ଅନେକ ସୈନ୍ୟ ଯେ ଥିଲେ ଆସି
ବାରଲକ୍ଷ ଜୁଆଁରି ଯେ ଦଶଲକ୍ଷ ନାଟ ।
ଛପ୍ପନ କୋଟି ସେନାପତି ପୁଣ
ଗଜ ଅଶ୍ୱ ସାଢେଣୀ ଅକଳନ ଜାଣ ।
ବାଦ୍ୟର ଶବ୍ଦ ଯେ ତାହାର ପ୍ରମାଣ
ଅଙ୍କ କଥା କଳଣା ନ ଯାଇ ରଘୁପତି ।
ସମସ୍ତେ ପାଟୋଳିଟି ଗଲେ ହୋଇ ମହାତୋଷି
ପ୍ରଜାସ ମେଳାଣ ମନରେ ହେଲେ ଖୁସି ।
ସିଂହାସନେ ବସାଇ ରାଜାକୁ ସେବାକଲେ
ଦଶାନନ ପୁତ୍ରବାବୁ ସହସ୍ରାନନ କହିଲେ ।
ବୋଇଲେ ସମସ୍ତଙ୍କୁ ତୁମ୍ଭେ ମୋର ପଞ୍ଚପ୍ରାଣ
କୁମ୍ଭ ଦୁହିତାକୁ ଜଲ ମୋ ପୁତ୍ରକୁ ସମର୍ପଣ ।
ଅତି ହରଷରେ କୁହାକୁହି ଦୁଇଜଣ
ନ ସହିବନ୍ତୁ ସୁଖ କଲା ସହସ୍ରାନନ ପୁଣ ।
ଶୁଣନ୍ତୁ ଶ୍ରୀରାମ ଯେ ବିଭୀଷଣ କହି
ଏମନ୍ତେ ସହସ୍ର ମାଥ ରାବଣେଶ୍ୱର କହି ।
ରାଜସ୍ୱ ଆଗରେ ଏହା କହିଲେ ତ୍ରିଲୋଚନ
କଳାସ୍ମ ବାସ ସର୍ବାଣୀକରେ ଶରଣ ।
ଏଥୁଅନନ୍ତରେ କହନ୍ତି ପଞ୍ଚାନନ
ଶୁଣ ଗୋ ଭଗବତୀ ହୋଇ ଏକମନ ।
ଶ୍ରୀରାମ ଆଗେ ଯହୁଁ କହିଲା ବିଭୀଷଣ
ଶୁଣିଣ ବୋଲନ୍ତି ସେ ଜାନକୀ ରମଣ ।

ବିଭୀଷଣଙ୍କୁ କହନ୍ତି ଜୟ କରିବା ହୋ ଏବେ
ଏତେକାଳ କଲ୍ପ ଦୈତ୍ୟ ପାଇଅଛି ଯେବେ ।
ସେ ଦୈତ୍ୟ ଆଜ୍ଞା ସେ କେମନ୍ତେ ନାଶ ଯିବ
ଏକଥା ତ ଶୁଣ ମୋତେ ଲାଗେ ଅସମ୍ଭବ ।
ବୋଇଲେ ଅଙ୍ଗଦ କି ତାର ନିଃଶ୍ୱାସେ ଉଡ଼ଇ
ସମୁଦ୍ରେ ମାରୁତି ତାର ରହି ନ ପାରଇ ।
ସେ ଯେବେ ସମର ଆସି ଭୂଜରେ କରିବ
କେହୁ ରହି ସମୁଦ୍ରେ ଯୁଝିବ ସବଳକ ।
ନିଶ୍ଚୟ ତାହାକୁ ଆମ୍ଭେ ନ ପାରିବା ଜିଣି
ଏଥିକୁ ଜୟ ଉପାୟ କହ ଲଙ୍କମଣି ।
ଏମନ୍ତ ବୋଲନ୍ତେ ଈଶ୍ୱର ଜଗନ୍ନ ରଘୁନାଥ
ବୋଲନ୍ତି ଶୁଣ ସମସ୍ତେ ଯିବା ହୋ ଏଠାର
ସେ ଅସୁର ସଙ୍ଗେ ଆମ୍ଭେ ନୋହିବା ଯୁଦ୍ଧେ ସମ
କମାଇଁ ଏତେ ସୈନ୍ୟ ଏତେ ରଜା ମାର ।
ପୁଷ୍କର ଦ୍ୱୀପକୁ ଯାଇ ନୋହି ହୋ ମରଣ
ଜୟ ଦୁର୍ଗା ହସ୍ତରେ ସେ ହେବ ସେ ନିଧନ
ମହିଷାସୁର ଶୁମ୍ଭ ଯେ ନିଶୁମ୍ଭ ଯାର ଥିଲେ
ସେହି ସର୍ବାଣୀଙ୍କ କରରେ ମରାଇଲେ ।
ତାହାଙ୍କୁ ଭଜନ୍ତି ମାଇଲେ ଆସି ପୁଣ
ନବକୋଟି କେଶ ଚୌଷଠି ଯୋଗିନୀଗଣ
ଛପନକୋଟି ପିଶାଚୁଣୀ ସଙ୍ଗରେ ତାଙ୍କର
ରକ୍ତ ମାଂସ ଖାଇ ଭସ୍ମକଲେ ସେ ଅସୁର ।
ଶୁଣିକରି ଜାମ୍ବବ କହନ୍ତି କରଯୋଡ଼
ଋଷିଙ୍କର ବେଳର ଯେ ସବୁଦନେ ବଢ଼ି ।
ହାରିଲେ ଜିଣିଲେ ପିନା ଋଷିଙ୍କ ଯଶ ଅଛି
ଛଡ଼ି ପଳାଇଲେ ବେଦ ଧର୍ମ ଯେ ନଯାଛି ।
ପାରୁ ନପାରୁ ଋଷି ଯେ କହନ୍ତି ସମର
ଦେବେ ହାରି ଖଟିଲେ ଅସୁର ପସୁର ।
କେତେଥର ଜଗୁରୁ ବାସୁଦେବ ଯେ ଜାଣନ୍ତି
ଦେବଙ୍କର ଛଳନେ ଯେ ଅସୁର ନିବାରନ୍ତି ।
ତୁମ୍ଭେ ଯେବେ ପଳାଇବ ହେ ରଘୁନାଥ
ଅଯୋଧ୍ୟାରେ ଯୁଦ୍ଧ ଯାଇ କରିବ ଭରତ ।
ଲକ୍ଷେ ରଜା ମୁକ୍ତିନନ୍ଦା ପାଇବ ତୁମ୍ଭେ ଜାଣ
ତୁମ୍ଭଙ୍କୁ ବଡ଼ ବୋଲିଣ କେ ନ ମାନିବେ ପୁଣ
ଦଶଗ୍ରୀବ ମରିବାରୁ ଦେବଙ୍କ କଷ୍ଟ ଗଲା
ଶତଗ୍ରୀବ ମରିବାରୁ ବାସୁକି ସୁଖୀ ହେଲା ।
ମହୀରାବଣ ମରିବାରୁ ଗଲା ଅସୁରଙ୍କ କୂଟ
ସହସ୍ରାନନ ମଲେ ରାଜାମାନେ ପାଇବେଟି ସୁଖ
ଯେବେ ସେ ନ ମରିବ କରିବା ଯତ୍ନର
ତେବେତେବେକେ ଦେବଙ୍କ ସୁମରିବା ରଘୁବୀର
ତୁମ୍ଭେ ଯେ ବୋଲୁଅଛ ଈଶ୍ୱର ବର ଦେଲେ
ଆମ୍ଭେ ତାକୁ ମାରି ଯେ ନ ପାରିବୁ ଭଲେ ।
ଭରତ ଲକ୍ଷେ ରାଜା କେଜଣ ଅଇଲ
କାର୍ତ୍ତିକ ପ୍ରଭାତେ ଈଶ୍ୱର ତା ସଙ୍ଗେ ଯୁଦ୍ଧକଲ
ଭରତ ବାଟନକେ ମୋହ ହେଲେ ତ୍ରିଲୋଚନ
ପାର୍ବତୀ ଆସି ଜନ୍ମ ବୋଧଗଲେ ପୁଣ ।
ନିଜ ଦେହ ଯେଉଁ ଈଶ୍ୱର ନ ସମ୍ଭାଳ
ପରକୁ ବର ଦେଲେକି ଅମର ହୋଇପାର
ଏମନ୍ତ ବୋଲିଣ ଯେ ଜାମ୍ବବ କହିଲେ
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ ।
ଈଶ୍ୱର ବୋଇଲେ ଗଜସ ଶୁଣଆଗୋ କଥା
ଜାମ୍ବବ କହିବାରୁ ହେଲେ ସେ ସତର୍କତା ।
ଶ୍ରୀରାମ ବୋଲନ୍ତି ଯେ ଜାମ୍ବବକୁ ଚାହିଁ
ଦଶଗ୍ରୀବ ସଙ୍ଗେ ନେଇଲି ସହସ୍ରାନନ ଦୈତ୍ୟପାଇଁ
ସମ୍ବନ୍ଧୀର ସଙ୍ଗେ ସଙ୍ଗ ହୋଇବ ସେ ପୁଣ
ତାର ଏବେ ଧର୍ମହାନି ହୋଇଲା ଯେ ଜାଣ
ଏତେବୋଲି ଶ୍ରୀରାମ ଜଗରେ ଦେଲେହାତ
ସମସ୍ତଙ୍କୁ ବୋଇଲେ ଶୁଣ ମୋ ନିଅତ ।
ଶତମୁଖା ରାବଣକୁ ଶତ୍ରୁଘନ ମାରି
ଯାର ବଂଶ ଶେଷ କଲା ଧନୁଶର ଧରି ।
ସେ ରାଜ୍ୟରେ ରାଜା କଲା ସୁକର୍ଣ୍ଣ ଯେ ଯାର
ମହୀରାବଣକୁ ମାରେ ସଉମିତ୍ରୀ ଯାର ।
ଯାବତାହୁ କୁମରକୁ ସେହୁ ରାଜା କଲା
ଈଶ୍ୱରଙ୍କୁ ବାଟରେ ଯେ ଭରତ ଜିଣିଲା ।
ଦଶଗ୍ରୀବ ପୁଅକୁ ସେ କଲେକ ରାଜନ
ମୂର୍ତ୍ତି ଯେ ମାରିଲି ରାବଣ ଏଥି ପୁଣ ।
ବିଭୀଷଣଙ୍କୁ ରାଜାକରି ଲଙ୍କାରେ ସ୍ଥାପିଲୁ
ଏବେ ସମସ୍ତ ରାଜାରେ ଏଠାରେ କହିଲୁ ।
ସହସ୍ରାନନକୁ ଯେ କରିବ ବଧ ପୁଣ
ସେହି ଶଲଙ୍କାରେ ହେବ ହେ ରାଜନ ।
ରାଜା ନୋହିଲେ ସେ ରାଜା କରାଇବ
କଳିଯୁଗକୁ କଥା ତାହାର ରହିଥିବ ।

ଶୁଣିକରି ସନ୍ତୋଷ ହେଲେ ସର୍ବଜନ
ଏଥୁଅନନ୍ତରେ ଶୋ ଭଗବନ୍ତ ଶୁଣ ।
ସହସ୍ରାନନ ମନ୍ତ୍ରୀକି ସ୍ମରିଣ ବୋଲଇ
ମହା କୋପାନଳ ହୋଇ ଦୈତ୍ୟକୁଳ ସାଇଁ
ଶୁଣ ହେ ମନ୍ତ୍ରୀବର ମୋହର ବଚନ
ସାଜକରି ଆଣ ମୋର ସକଳ ଥାଟ ସୈନ୍ୟ
ଆଜ୍ଞା ପାଇଣ ଉପସ୍ତ ତତକ୍ଷଣେ ଯାଇ
ରାଜ୍ୟରେ ନିଶାଣ ଦେଇ ବାଣ୍ଡରେ ଡାକଇ
ବୋଲଇ ବ୍ୟଗ୍ରରେ ସମସ୍ତେ ହୁଅ ସଜ
ରଜତ ମାତଙ୍ଗ ସମସ୍ତେ ଅଶ୍ୱ ଗଜ ।
ରାଜାଙ୍କର ଆଜ୍ଞା ଯେ ହୋଇଅଛୁ ପୁଣି
ନଗର ସିଂହଦ୍ୱାରକୁ ଯିବ ଏହିକ୍ଷଣି ।
ପଦାତି ପଏକାର ସେନାପତି ରଥି
ଶାଳକ ନାତି ଜୁଆଇଁ ଆସ ହେ ତଡ଼ତି ।
ଏମନ୍ତ ବୋଲିଣ ଯେ ଉପସ୍ତ ଡାକ ଦେଇ
ସମସ୍ତ ସୈନ୍ୟବଳ ଅଇଲେ ସଜ ହୋଇ ।
ରଜତ ମାତଙ୍ଗ ଚଢ଼ି ଅଶ୍ୱ ଗଜମାନ
ସିପାହିମାନେ ଛନ୍ତ ଖଜ ପିଠରେଣ ।
ଯେ ଯାହାର ଯାନବାହନ ଆରୋହି
ନଗର ସିଂହଦ୍ୱାରେ ପ୍ରବେଶ ହେଲେ ଯାଇଁ
ରଥିମାନେ ରଥ ଚଢ଼ିଣ ମିଳିଲେ
ବାହ୍ତରି କୋଟି ଯେ ସେନାପତି ଗଲେ ।
ନଅ ପଦ୍ମ ପଦାତି ହେଲେ ପରବେଶ
ବାଦ୍ୟକାର ଗଲେ ଯେ ଷଢ଼ଣି ତିରିଶ ।
ପୁତ୍ର ନାତି ଜୁଆଇଁ ଯେ ଶାଳକଗଣ ପୁଣ
ସମସ୍ତେ ଠୁଳ ହେଲେ ସିଂହଦ୍ୱାରେ ଜାଣ ।
ଶବଦରେ ତିନିପୁର କମ୍ପେ ଥରହର
ବାସୁକୀ ଫଣାକୁ ଭର ହେଲେ ଯେ ଅସୁର
ସ୍ୱର୍ଗରେ ଦେବତାଏ କରନ୍ତି ଦସ୍ବର
ନିଶ୍ଚୟ ବଡ଼ ଦ୍ୱନ୍ଦ୍ୱ କରିବ ଅସୁର ।
ସହସ୍ର ମାଥର ଯେ ଦୁଇଲକ୍ଷ ନନ୍ଦନ
ସଙ୍ଗତେ ଘେନିଆସନ୍ତି ବହୁତ ଯେ ସୈନ୍ୟ ।
ପ୍ରଥମେ ଆସିଲା ଅଜସ୍ର ନାମେ କୁମର
ଅନେକ ସୈନ୍ୟ ଯେ ଘେନିଣ ସଙ୍ଗର ।
ପାଞ୍ଚମର୍ବୁଦ ଅଶ୍ୱ ଯେ ଦଶମର୍ବୁଦ ହସ୍ତୀ
ପାଞ୍ଚମର୍ବୁଦ ରଥ ତେରସାଗର ପଦାତି ।

ଦୁଇକୋଟି ସାରେଣୀ ଖଧ ମର୍ବୁଦ ତିନ
ବୋବାଳକୁମର ଭେଟେ ଏତେସୈନ୍ୟଘେନ
ତିରିଶ କୋଟିଅଶ୍ୱ ପନ୍ଦର ମର୍ବୁଦ ହସ୍ତୀ
କୋଡ଼ିଏମର୍ବୁଦ ଖଧ ପନ୍ଦର ଷଢ଼ଣୀ ପଦାତି
ବତିଶଷଢ଼ଣୀ ଅଛନ୍ତି ମୁକୁଟ ଯୋଦ୍ଧା ପୁଣି
ଏତେ ସୈନ୍ୟଘେନ ଭେଟେ କୁମରମହାଶନ
ଏବେ କଣଙ୍କ କୁମରର ପ୍ରସଙ୍ଗ ଯେ ଶୁଣ
ଅନେକ ଥାଟ ଘେନ ଆସେ ସଙ୍ଗତେଣ ।
ତାର ସଙ୍ଗେ ଅନେକ ଯେ ଅଛନ୍ତି ସଇନ
ପଞ୍ଚମର୍ବୁଦ ରଥ ଅଛି ସଙ୍ଗେ ଘେନ ।
ବାଳଶ କୋଟି ସଙ୍ଗରେ ଅଛି ମତ୍ତ ନାଗ
ସହସ୍ରମର୍ବୁଦ ଚଢ଼ି ଆସନ୍ତି ମଞ୍ଜ ବ୍ୟାଘ୍ର ।
ଅଶୀକୋଟି ଯେ ଛନ୍ତି ତାର କୁଟିଲ
କୋଡ଼ିଏମର୍ବୁଦ ସାରେଣୀବାନାବୁହେଇଲେ
ସହସ୍ରାନନକୁ ବେଷ୍ଟିସଙ୍ଗେ ଓଳଗି ହୋଇଲେ
ବନ୍ଧୁ ଭାଇ କୁଟୁମ୍ବ ସମସ୍ତେ ଦେଖିଲେ ।
ସହସ୍ର ସୈନ୍ୟଙ୍କୁ ଦେଖିଣ ସହସ୍ର ଶିର
ବୋଲଇ କର୍ମ ନାହିଁ ଗୁମାନସୁର ମୋର
ସହସ୍ରାନନ ପୁଣି ମନ୍ତ୍ରୀଙ୍କୁ ଅନାଇ
ବୋଲେ ଗୁମାନସୁରକୁ ଆଣ ବେଗେ ଯାଇ
ରାଜାଙ୍କଠାରୁ ଶୁଣି ମନ୍ତ୍ରୀ ବେଗେ ଗଲା
ଗୁମାନସୁର ପାଶକୁ ଉପସ୍ତ ପେଷିଦେଲା ।
ବୋଇଲା ଭୁବନ୍ତ ତାକୁ କହିବ ଯେ ଯାଇ
ରାଜାର ଆଜ୍ଞା ହୋଇଛି ଆସ ବେଗହୋଇ ।
ଶୁଣିକରି ଉପସ୍ତ ବେଗେ ଚଳିଗଲା
ଗୁମାନସୁର ସନ୍ନିଧେ ଯାଇଣ ମିଳିଲା ।
ବୋଇଲା ଶୁଣିବା ହେତୁ ଗୁମାନ ଜେନାମଣି
ଠାକୁରଙ୍କ ଆଜ୍ଞା ହୋଇଛି ଯିବ ଏହିକ୍ଷଣି ।
ଯେତେକ ସୈନ୍ୟ କୁମର ସଙ୍ଗରେ ଅଛନ୍ତି
ସଙ୍ଗତରେ ଘେନିଯିବ ଆଜ୍ଞା ଦେଇଛନ୍ତି ।
ଶୁଣିକରି ଗୁମାନ ଯେ ପରବେଶ ହେଲା
ସୈନ୍ୟଙ୍କୁ ଡାକ ଦେ ଯେ ସଜ ଆଜ୍ଞା ଦେଲା ।
ବୋଇଲା ଯେ ଯାହାର ବେଗେ ହୁଅ ସଜ
ଏହିକ୍ଷଣି ଆଜ୍ଞା ଦେଇଛନ୍ତି ମହାରାଜ ।
ଶୁଣିକରି ସୈନ୍ୟ ଯେ ଯାହାର ଗଲେ
ମାଲ ବେଶ ହୋଇଣ ଯେ ଆୟୁଧ ଧରିଲେ

ହାଣ୍ଡି ରଥ ଘୋଡ଼ା ଯେ ଅନେକ ସଏବାର
ସମସ୍ତେ ମିଳିଲେ ଯାଇ ରାମାଙ୍କ ଆଗର ।
ଦେଖିଣ ରାମାଙ୍କସୁତ ଭିତରକୁ ଯାଇ
ଆପଣା ଘରଣୀକି ପ୍ରବୋଧି ସେ କହି ।
ବୋଇଲା ଠାକୁରଙ୍କର ଆଜ୍ଞା ହୋଇଅଛି
ଥାଟ ସୈନ୍ୟ ଘେନିଣ ଭେଣୁ ମୁଁ ଯାଉଛି ।
ମୋର ଆସିବାଯାଏ ନ କରିବୁ ଜୁ ଚିନ୍ତା
ଘରଣୀ ହସ୍ତଧରି କହେ ରାମାଙ୍କ କଳବନ୍ତା ।
ସୁଖ ମୋଠାରେ ରଖିଥିବୁ ଟୋ ସଙ୍ଗାଭୁଣୀ
ସନ୍ତୋଷରେ ମୋତେ ତୁ ବିଦ୍ର ଦୋ ମେଲାଣି
ଶୁଣିକରି ପଦ୍ମାବତୀ ଦିଅଇ ଉତ୍ତର
କେବଣ କାର୍ଯ୍ୟେ ଡକାଇଛନ୍ତି ନୃପବର ।
ସେକଥା ମୋର ଆଗେ ତୁମ୍ଭେ ଫେଡ଼ି କହ
ଶୁଣିଲେ ଫିଟିବ ମୋର ମନରୁ ସନ୍ଦେହ ।
ରାମାଙ୍କସୁତ ବୋଲେ ସଖୀ ତାହା ମୁଁ ନଜାଣି
ଉପରୁ କହୁଛି ତୁମ୍ଭେ ଯିବ ଏହିକ୍ଷଣି ।
ବୋଇଲା ଠାକୁରଙ୍କର ଆଜ୍ଞା ତୁମ୍ଭେ ଯିବ
ତୁମ୍ଭ ଥାଟ ସୈନ୍ୟ ସବୁ ସଙ୍ଗତରେ ନେବ ।
ଏମନ୍ତ ବୋଲିଣ ମୋତେ ଉପରୁ କହିଲା
ଶୁଣିକରି ପଦ୍ମାବତୀ ମନରେ ବିଚାରିଲା ।
ବୋଲଇ ଶୁଣ ଆହେ ମୋର ପ୍ରାଣେଶ୍ୱର
ଭଲକଥା ପ୍ରାୟେ ଦିଶୁନାହିଁ ଏଥର ।
ଏକଥା ଶୁଣି କହେ ରାମାଙ୍କସୁତ ପୁଣି
ଭଲକଥା ବୋଲି ନୁହଇ କହୁଛ କିମ୍ପାଣି ।
ସେ ମୋହର ପିତା ମୁଁ ଅଟେ ତାଙ୍କ ସୁତ
ଆଜ୍ଞାଦେଲେ ସୈନ୍ୟ ଘେନି ଯିବାକୁ ଉଚିତ
ଏମନ୍ତ ଶୁଣି ପଦ୍ମାବତୀ ଯେ ବୋଲଇ
ଅବଶ୍ୟ ଏଥିରେ ମନ୍ଦ ହୋଇବ ଗୋସାଇଁ ।
ସେ ଯେବେ ଯିବାପାଇଁ ବୋଲନ୍ତି ତୁମ୍ଭନ୍ତ
ପୁଣି ବୋଲନ୍ତି ସୈନ୍ୟ ନେବାକୁ ସମସ୍ତ ।
ଏକଥା ମୋର ମନେ ହେଉଛି ଅପରନ୍ତେ
ରାଜାଙ୍କୁ ଶତ୍ରୁ କମ୍ପା ହୋଇଛି ଉପରେ ।
ଶୁଣିକରି ରାମାଙ୍କ ଯେ କହଇ ସିଦ୍ଧାନ୍ତ
ତହିଁକି ଆମ୍ଭର ଯିବା ଅଟଇ ଉଚିତ ।
ଯେବେ ହେଲେ ଶତ୍ରୁ ଉପରେ ବାରତା
ଆମ୍ଭେ ଯିବାର ଉଚିତ ଅଟଇ ଧର୍ମକଥା ।

ଏତେବେଳରେ ଆମ୍ଭେ ଯେବେ ଗୋପନ ଯିବ
ପୁତ୍ର ଗୁଣ ଆମ୍ଭେ କେମନ୍ତେ ସୁଝିବା ।
ସେହୁତ ଆମ୍ଭଙ୍କୁ କରିଛନ୍ତି ଜାତ
ଅସମର୍ଥ କାଳେ ରକ୍ଷାକରିବ ବୋଲି ପୁତ୍ର ।
ଏମନ୍ତ ବଚନ ମୋତେ ପ୍ରାଣପଣ ଥିଲେ
ସ୍ୱାନବନ୍ଧୁ ଜାଣିଲେ କଷ୍ଟ ମୋତେ କଲେ ।
ଏତେବେଳେ ମୁହିଁ ଯେବେ ତ ନ ଯିବ
ପୁତ୍ର ଗୁଣ କେମନ୍ତେ ତାଙ୍କୁ ମୁଁ ସୁଝିବ ।
ଗଜ୍ଜ ବନ୍ତ ବୋଇଲେ ଯେ ଏ ବଚନ ଶୁଣି
ଯିବାକୁ କହୁ ସ୍ୱାମୀର ମନେ ନ କର ପୁଣି ।
ସନ୍ଦସମାଥଙ୍କର ଜ୍ୟୋତି ଅଟ ତୁମ୍ଭେ
ଦୁଇଲକ୍ଷ ଭାଇରେ ଜ୍ୟେଷ୍ଠ ଅଟ ଏବେ ।
ଅଧର୍ମ କଥା ତୁମ୍ଭର ପିତା ଅର୍ଜିଲେ
ଶ୍ରୀରାମ ସଜନଙ୍କ କେଉଁଠାରେ ନ ମାନିଲେ ।
ହୋଇଲେ ଯେବେ ମୋଠାରୁ କାଟିଛି ଶ୍ରୀମୁଖ
ଭରଷ ପୁତ୍ର ମୁଁ ଯେ ତାର ସମକକ୍ଷ ।
ଏତେ ବୋଲିଣ ରାମ୍ଭେ ଲୋଡ଼ାଏ ସଭିଙ୍କି
ଯୁଦ୍ଧକରି ଯିବେ ସଙ୍ଗେ ଶ୍ରୀରାମ କଟକ ।
ତମ ପିତା ଦଶଗ୍ରୀବ ଲଙ୍କାରେ ରଜା ଥିଲା
ଛନପୁର ଦେବତାଙ୍କୁ ସେବାରେ ଖଟାଇଲା ।
ଅଧର୍ମ କରିବାରୁ ପୁଣି ଘଟିଲ ସେହି ନାଶ
ଖୁଡ଼ୁତା ବଳରେ ମୋର ଜନମ ସମସ୍ତ ।
ଲଙ୍କାଗଡ଼ରେ ଖୁଡ଼ୁତା ମୋର ହେଲେ ରଜା
ବାପ୍ପରା ଭାଇ ତେତିଶ କୋଟି ନାଶ ଗଲେ ପ୍ରଜା
ବଡ଼ ଖୁଡ଼ୁତା କୁମ୍ଭକର୍ଣ୍ଣଙ୍କର ଗୋଟିଏ ନନ୍ଦନ
ପିତାଙ୍କର ଗୋଟିଏ ପୁତ୍ର ଶୁଣ ସାବଧାନ ।
ସାରବାନ୍ତ ବୋଲି ମୋର ଯେଉଁ ଭାଇ ଥିଲା
ଶ୍ରୀରାମ ଭକତ ହୁଅନ୍ତେ ତା ପୁତ୍ର ବଞ୍ଚିଲା ।
ଏମାନଙ୍କୁ ଶ୍ରୀରାମ ସ୍ନେହଦୃଷ୍ଟି ପୁଣ କଲେ
ତିନଙ୍କି ତିନି ଗଡ଼େ ରଜା କରାଇଲେ ।
ମିଶ ଅଟେ ଦଶମୁଖ ମୋହର ପିତାର
ଉଗ୍ରାଧିରେ ଯୁଦ୍ଧ ସେତୁ ବଳେକ ଅପାର ।
ମିତର ଏଙ୍କରେ ସଞ୍ଜିବନୀ ଗଲେ
ତାର ବଂଶରୁ ଗୋଟିଏ କେହି ନ ରହିଲେ ।
ଜ୍ୟେଷ୍ଠଭାଇର କୁମର ମନ୍ତ୍ରୀ ଯେ ରାବଣ
ସେହି ନାଶ ଗଲା କରିଣ ଟାଣ ପଣ ।

ସେତେବେଳେ ମୋ ପିତା କୁମ୍ଭ ପିତାକୁ କହ୍ନି
ସେକଥାକୁ ଯନମତ ନ କଲେ କର୍ମା ଏହି ।
ଏତେବେଳେ ତାଙ୍କ ସଙ୍ଗେ କରିବେ ଯୁଦ୍ଧପୁଣ
ନାରାୟଣ ଜାତ ଅଟେ ଶ୍ରୀରାମ ରୂପେଣ ।
ଅସୁର କୁଳକୁ ସେ କରିବେ ନିଧନ
ଦେବଙ୍କ କୂଟରେ ଜାତ ହୋଇଛନ୍ତି ପୁଣ ।
ଶୁଣିଣ ଗୁମାନସୁର କରଇ ଉତ୍ତର
ମୋର ଶ୍ୱଶୁର ବଂଶକୁ ମାରିଛି ରଘୁବୀର ।
ତେବେ ମୋହର ଯେ ଅଟଇ ବଇରି
ତାହାକୁ ମାରିବ ମୁଁ ଉପ୍ରୋଧ ନ କରି ।
ଏ ମନ୍ତ୍ରୀମଣ୍ଡଳେ ସବୁ କେତେ ଅଛୁ ମୋତେ
ଶ୍ରୀରାମ ମାରିବ ବୋଲି କରିଛୁ ପରତେ ।
ମୁହିଁ ତ ମହାବଳ ଅଟଇ ପରଚଣ୍ଡ
କ୍ଷଣକେ ନାଶ କରଇ ପୃଥିବୀ ନବଖଣ୍ଡ ।
ଏମନ୍ତ ବୋଲି ସେହି ଯେ ଗର୍ଜନ କରଇ
ପରାକ୍ରମ କରିଣ ସ୍ୱଭାବ ମନ ମୋହି ।
ଅନେକ ପ୍ରକାର ସେ ଯେ କହେ କୁଟୁବାଣୀ
ଘରଣୀଠାରୁ ସେ ଯେ ହୋଇଲା ମେଲାଣି ।
ପଦ୍ମାବତୀ ବୋଲଇ ଶୁଣ ହେ ପ୍ରାଣଧନ
ମୋହଠାରୁ ଶୁଣିଥାଅ ଏକଇ ବଚନ ।
ସେ ଯେଉଁ ଶ୍ରୀରାମଚନ୍ଦ୍ର ସାକ୍ଷାତେ ପରଂବ୍ରହ୍ମ
ତାଙ୍କ ସଙ୍ଗେ ତୁମ୍ଭେ ହେ ନ କରିବ ଗ୍ରାମ ।
ବାଳକାଳରେ ତାଙ୍କୁ ବିଶ୍ୱାମିତ୍ର ମୁନି ନେଲେ
ତାଡ଼କା ଅସୁରୀକି ଶ୍ରୀରାମ ବଧକଲେ ।
ସେଠାରେ ଅହଲ୍ୟା ପାଷାଣ ହୋଇଥିଲା
ସେହି ଶ୍ରୀରାମ ପାଦଲାଗି ମୁକତ ହୋଇଲା ।
ମିଥିଳା ନଗ୍ରକୁ ବିଶ୍ୱାମିତ୍ର ଘେନି ଗଲେ
ଜନକ ସଙ୍ଗରେ ସେ ଯାଇଣ ମିଳିଲେ ।
ଜନକର ନନ୍ଦିନୀ ସୀତା ନାମେ ବାଳୀ
ତାଙ୍କ ପାଇଁ ସ୍ୱୟମ୍ବର ଜନକ ରାଜା କରି ।
ଲକ୍ଷେ ନୃପତିଙ୍କି ସେହୁ ବରିଥିଲେ ଭଲେ
ସେହିକାଳେ ଶ୍ରୀରାମ ସେଠାରେ ପ୍ରବେଶିଲେ
ଲକ୍ଷେ ରାଜା ଦେଖିଣ ହେଲେ ଚମତ୍କାର
ବୋଲଇଲେ ଏ ଦୁଇ ନନ୍ଦନ ଅଟନ୍ତି କାହାର
ବିଶ୍ୱାମିତ୍ରଙ୍କୁ ଜନକ ରୂଷି ପଚାରିଲେ ।
ଏ ଦୁଇ ନନ୍ଦନ କାହାର ଅଟନ୍ତି ହେ ଭଲେ

ବିଶ୍ୱାମିତ୍ର ବୋଇଲେ ଶୁଣ ହେ ଜନକ
ଦଶରଥଙ୍କ ନନ୍ଦନ ଶ୍ରୀରାମ ଲକ୍ଷ୍ମଣେକ ।
ଧନୁ ଯାଗ କରିବାକୁ ଏହି ଆସିଛନ୍ତି
କଅଁଳା ପୁଅ ଶ୍ରୀରାମ କିଛି ନ ଜାଣନ୍ତି ।
ଲକ୍ଷେକ ନୃପତି ଦେଖି ହୋଇଲେ ଆନନ୍ଦ
ସେ ଠାବରେ ଧନୁକୁ ଭଙ୍ଗିଲେ ଶ୍ରୀରାମଚନ୍ଦ୍ର
ଧନୁଭଙ୍ଗି ଜାନକୀଙ୍କି ବଶ୍ୟ ସେ ହୋଇଲେ
ସେହି କଥାମାନ ମୋର ପିତା କହୁଥିଲେ ।
ଜାଣୁ ଜାଣୁ ସେହି ଜାନକୀଙ୍କି ହେଲିକଲେ
ସବୋଧ ମରାଇ ଆପଣେ ନାଶ ଗଲେ ।
ସେ ଶ୍ରୀରାମ ପାଶକୁ ନ ଯାଅ ପ୍ରାଣନାଥ
ଗଲେ ନଷ୍ଟେ ପ୍ରାଣରେ ତୁମ୍ଭେ ହେବ ହତ
ଗୁମାନି ବୋଇଲା ଯାହା କହିଲୁ ତୁ ସତ୍ୟ
ନାରଦ ମୁନି ମୋତେ ଯାଇଛନ୍ତି କହି ।
ପରମ ବ୍ରହ୍ମ ମୂରତି ଶ୍ରୀରାମ ଅଟନ୍ତି
ତାଙ୍କସଙ୍ଗେ କେତେବେଳେ ହୋଇବ ବିବାଦଟି
ଯେସନ୍ତି କଥାକୁ ତ ମନରେ ଦେଲୁ କରି
ସାଉଅଛି ମୋତେ ନ କରୋଧ ସୁନ୍ଦରୀ ।
ଆପଣାର ହାତରେ ଆସି ପ୍ରବେଶ ହୋଇଲା
ମନର ଉଦ୍‌ବେଗେ ଯାଇ ନଦରେ ପଶିଲା ।
ବଡ଼ାଇ ପ୍ରତାପୀ ସେ ଅଟଇ ବଳବନ୍ତ
ସଂଗ୍ରାମରେ ଗୁମାନ ତାର କାହାକୁ ନଗଣନ୍ତ
ସଙ୍ଗରେ ସୈନ୍ୟ ତାର ଦେଖିଅଛି ଯେତେ
ସଞ୍ଚରି କରିଣ ମୁଁ କହିବଇଁ କେତେ ।
ନବକୋଟି ବଳ ତାର ଗଣଣା ନ ଯାଇ
ହାତୀ ରଥ ପଦାତି ତାର ଅନେକ ଅଛଇଁ ।
ଜଣେ ମର୍ଦ୍ଦି ତ ଘୋଡ଼ା ଦୁଇ ମର୍ଦ୍ଦି ତ ରଥ
ଅଣୀ ମର୍ଦ୍ଦି ତ ତାର ଅଟନ୍ତି ମହାରଥ ।
ଦଶ ମର୍ଦ୍ଦି ତ ସେନା ମର୍ଦ୍ଦିତେ ସାହେଣୀ
ପୃଥ୍ୱୀ ଲସି ଯାଉଛି ଗର୍ଜନ ନାଦ ଶୁଣି ।
ହସ୍ତୀଙ୍କର ଉପରେ ମାହୁନ୍ତ ଛଡ଼ଛଡ଼
ନାଗଙ୍କର ଗର୍ଜନ କି ମେଘ ଘଡ଼ଘଡ଼ ।
ରଥଙ୍କ ଘୋଷ ଯେ ଅଶ୍ୱଙ୍କ ହେଷାରାବ
ଡେଙ୍ଗରେଭାର କରିଣ ଧାମନ୍ତି ସୈନ୍ୟ ସଙ୍ଗ ।
ଏହି ସମସ୍ତଙ୍କରେ ବାହିନୀ ବଳ ଗୁମାନସୁର
ତକ୍ଷଣେ ମିଳିଲା ଯାଇ ପିତାର ପାଶର ।

ପିତାଙ୍କୁ ଦେଖିଣ ସେ ନମସ୍କାର କରି
ମୋତେ କନ୍ୟା ଆଜ୍ଞା ହେଲା କହ ବନ୍ଧୁଧାସା
ଶୁଣିଣ ସହସ୍ରମାଥ ବୋଲଇ ବଚନ
ବୋଲଇ ଶୁଣରେ ଗୁମାନସୁର ପୁଣ ।
ଲଙ୍କାଗଡ଼ ରଜା ଅଟେ ତୋହର ଶ୍ୱଶୁର
ତାର ନାମ ଦଶଶିର ସେ ସମ୍ବନ୍ଧୀ ମୋହର
ତାହାର ସାନୁଜ ଯେ ଅଟେ ବିଭୀଷଣ
କପଟରେ ମରଇଲା ଶ୍ରୀରାମ ହସ୍ତେ ପୁଣ ।
ଶ୍ରୀରାମ ଘରଣୀ ଛଳେ ହୋଇଥିଲେ କ୍ରୋଧି
ଛିଦ୍ର କଥା କହି ଗଲା ତାର ବଂଶ ଛେଦ ।
ସବୁ ମରଇ ଭରସା ପାଇଲା ତାହାର
ଦୁଇମନ୍ତ୍ରୀ ଭେଦଦେଲା ମୋହର ପୁତ୍ରର ।
ମନ୍ତ୍ରୀ ଫେରି ଯିବାରୁ ଉପାୟ ପୁଣ କଲା
ଶ୍ରୀରାମଙ୍କୁ କହିଣ ଦୂତେକ ପେଶିଲା ।
ଉପରେ ଥାଇ ସେ କଲେ ସମ୍ଭାଷଣ
ସ୍ୱହାଁନ୍ତେ କେଣେ ହଜଲ ନ ଦେଖିଲୁ ପୁଣ ।
ସେ ଯିବାରୁ କପି ଯେ ଗୋଟାଏ ଅଇଲା
ଶ୍ରୀରାମ ଆଜ୍ଞା ବୋଲି ମୋ ପୁତ୍ରରେ କହିଲା
ତିନ ରାବଣ ମାରି ଶ୍ରୀରାମ ପାଇଲା ଭରସା
ଦୂତକୋଟି ଆସି ମୋତେ କହିଲା କରିହିଂସା ।
ସେମାନଙ୍କୁ ନାଶକରି ଭରସା ତାହାର
ଦୂତ ଶ୍ରୀମୁଖ ଦେଲା ମୋହର ପୁତ୍ରର ।
ଶ୍ରୀରାମ ଆଜ୍ଞା ଘେନ ବୋଲିଣ ବୋଇଲା
ମୋ ପୁତ୍ରରେ ପାର୍ଶ୍ୱରେ ଅର୍ପିଣ କହିଲା ।
ଏତେବଡ଼ ପ୍ରତାପି ସେ ହୋଇଅଛି ଜାଣ
ତିନରାବଣମାରିବାରୁ ମୋତେ ଲେଖାଦେଲା ପୁଣ
ପାଞ୍ଚ ସହସ୍ର ବରଷ ମୁହିଁ ଯେ ତପ କଲି
କପିଳାସବାସୀ ଈଶ୍ୱରଙ୍କୁ ମନାଇଲି ।
ତେବେ ବରଦେଲେ ମୋତେ ପାର୍ବତୀରମଣ
ଦୁଇସହସ୍ର ବାହା ମୋର ସହସ୍ରେ ଶିରଜାଣ
ଦଶକୋଟି ସିଂହର ବଳ ମୋତେ ଦେଲେ
ଅଜର ଅମର ହୁଅ ବୋଲିଣ ବୋଇଲେ ।
ବର ବଢ଼ିବାର ପାଇଁ ମୁଁ ମାଗିଲି ପାର୍ବତୀ
ସେହିଠାରୁ ମୋତେ ଶାପଦେଲେ ସେହି ସତୀ
ଯେତେବେଳେ ନାରାୟଣ କନ୍ୟାକୁ ତୋଳେଇ
ସେଥିରୁ କମଳା ତୋତେ ନଷ୍ଟେ କରି ବଧ
କାଳଚକ୍ରରେ ତୋତେ କରିବେ ନିପାତ
ସେତେବେଳେ ମୃତ୍ୟୁ ତୋର ମନେହେବୁଜର
ଏତେକହି କପିଳାସ ଗଲେ ତ୍ରିଲୋଚନ
ତାଙ୍କ ବରେ ସାଧ କଲି ଚଉଦ ଭୁବନ ।
ଦେବବଳ ନାଗବଳ ନର ରାଜାଗଣ
ସମସ୍ତଙ୍କୁ ସାଧ କରି ଆଣିଲଇଁ ଶୁଣ ।
ଦେବତାଏ ବଳାସୁଣୀ ମୋତେ ଦେଇଗଲେ
ନର ଅସୁର ରାଜାଏ ଦୋହିତା ସମର୍ପିଲେ ।
ପ୍ରଭଞ୍ଜନ ଶତେଜଣ ସୁବର୍ଣ୍ଣ ହଏ ନାଗ
ସନମାନ କରି ସଙ୍ଗେ ଗଲେ ଯେ ଯାହାଠାର
ତ୍ରିଲୋଚନ କହିଲେ ଯେ ଯମ ହରଇ ଜୀବନ
ତାହାକୁ ଅନାଇ ବଶ କଲି ମୁହିଁ ପୁଣ ।
ଜାଣି ଜନୁପଶଙ୍କି ମୁଁ ସୁମରିଲି ମନ
ସେ ବୋଲେ ବଂଶ ତୋର କ୍ଷୟ ନୋହୁଜନ
ଏମନ୍ତେ ଅଭୟ ବର ପାଇଅଛି ମୁହିଁ
ନର ରାଜା ଶ୍ରୀରାମ ଯେ ଶ୍ରୀମୁଖ ପାଟଇ ।
ଏ ବଚନ ଶୁଣି ଗୁମାନସୁର ଯେ ବୋଲଇ
ଏ ପୁର କଥାକୁ ସୈନ୍ୟ ସାଜୁହଦୈତ୍ୟସାଇଁ
ଆଜ୍ଞାଦିଅ ଏହିକ୍ଷଣି ମୁହିଁ ଚଳିଯିବ
ଶ୍ରୀରାମ ବିଭୀଷଣକୁ ବାନ୍ଧିଣ ଆଣିବ ।
ଏ ପୁର କଥାକୁ ଏତେ କରୁଛ କଟାଳ
ଆଜ୍ଞାଦେଲେ ମୁହିଁ ଯିବି ତତକାଳ ।
ଏହାଶୁଣି ସହସ୍ରମାଥ ମନ୍ତ୍ରୀକି ଅନାଇ
ଗୁମାନସୁର କଥାକୁ କସ ବିଚାରୁ କହି ।
ଶୁଣିଣ ମନ୍ତ୍ରୀବର କରଯୋଡ଼ି କହି
ଯାହା କହିଲେ କେନାମଣି ସତ ଯେ ଅଟଇ
ଏକାଳେ ସୈନ୍ୟ କନ୍ୟା ଆମ୍ଭେ ଘେନିଯିବା
ଯିବା ଆସିବାରେ ଆମ୍ଭେ ଦୁଃଖ ତ ପାଇବା
ଏହାର ସମାନେ ଥାଟ ଅଟଇ ଆମ୍ଭର
ନିକଟେ ଥାଟ ଛନ୍ତି ଦଶରଥର କୁମର ।
କେତେକ ବଳ ତାର କରିବା କଳଣା
କେତେବେ ତହିଁକ ଉଣ୍ଠର କରିବା ଆମ୍ଭେ ସିନା
ସ୍ୱରକ୍ଷିତ କରି ଆମ୍ଭ ଥାଟ ବଣ୍ଟାକର
ପୁରି କୁମର ହୁଅନ୍ତୁ ଥାଟରେ ସରଦାର ।
ଶୁଣିଣ ସହସ୍ରାନନ ମନ୍ତ୍ରୀବର ବସ୍ତର
ସ୍ୱରକ୍ଷିତ କଲା ଯେ ସୈନ୍ୟବଳ ସକଳ ।

ଅଶ୍ୱହସ୍ତୀ ସାରେଣୀ ସେନାପତି କୁମର
ନାତି ଜୁଆଇଁ ଶାଳଗଣ ସେ ସକଳ ।
ଏହିରୂପେ ସମସ୍ତଙ୍କୁ ସମ୍ଭାଷଣ କଲା
ହରଷେ ରୁମାଣସୁର ପୁତ୍ରକୁ ସମର୍ପିଲା ।
ଗୁଣସାଗର ମନ୍ତ୍ରୀକି ବୋଇଲା ରସ୍ୱେ ପୁଣି
ଶତେ ଯୁଣ ସାଗର ଲବଣ ଲୁଣିପାଣି ।
ଏଥିରେ କେମନ୍ତେ ଥାଟ ଯିବେ ସେ ଆମ୍ଭର
ଅଗାଧ ଅଟଇ ଦେଖ ସାତେରର ଜଳ ।
ଖାଲଖଣା ଗଭୀର ସେ କଳଣା ନଯାଇ
କେମନ୍ତେ ସୈନ୍ୟବଳ ପାର ହୋଇଯାଇ ।
ଏହା ଶୁଣି ବୋଇଲା କୋଦାଳସୁର ପୁଣ
ଶତେଯୁଣ ବଳଙ୍କାକୁ ଲଙ୍କା ଅଟେ ଜାଣ ।
ଅଶ୍ୱଗଜ ପଦାତି ପଥ ସୈନ୍ୟ ଯିବେ
ଶାର୍ଦ୍ଦୋଳ ମଇଁଷି ମୃଗ ସଅମ୍ଭର ତେବେ ।
ଏମାନେ କେଉଁବାଟେ କରିବେ ଗମନ
ଏଥିକି ଉପାୟ କର ବଳଙ୍କା ରାଜନ ।
ଶୁଣି ଶତ୍ରୁଜିତ ସୁତ କରଯୋଡ଼ି କହି
ଯେଉଁ ରାମଚନ୍ଦ୍ର ସେ ବଧିରେ ଲଙ୍କସାଇଁ ।
କପି ସୈନ୍ୟ ଆସିବାକୁ ବାନ୍ଧିଲେ ସେତୁବନ୍ଧ
ସେ ବନ୍ଧରେ ବୁଲିଆସି ରୁଷ କପିବୃନ୍ଦ ।
ତେବେ ସୈନ୍ୟବଳ ଆଣି ଲଙ୍କାରେ ଠୁଳକଲା
ଉପାୟରେ ବନ୍ଧ ବାନ୍ଧି ଲଙ୍କାକୁ ଅଇଲା ।
ରଥିମାନେ ରଥଚଢ଼ି ଆମ୍ଭର ଯିବେ ଉଡ଼ି
ଆଉ ଯିବାକୁ ବାଟ ନାହିଁ ଦେଖେ ବଣ୍ଡଧାରୀ
ପୁତ୍ରର ବଚନ ଶୁଣି ବୋଲେ ସସ୍ରାନନ
କେବଣ ଉପାୟରେ ଯିବେ ମୋର ସୈନ୍ୟ
ଶୁଣିଣ ଅଜସ୍ରସେନ କରଯୋଡ଼ି କହି
ନରରାଜା ହୋଇ ଯେବେ ଦରଆ ବାନ୍ଧଇ ।
ଅସୁର ରାଜା ଆମ୍ଭେ ଦେବଙ୍କ ସଙ୍ଗେ ସରି
ଦେବତାଏ ଆମ୍ଭର ଅଟନ୍ତି ଭାଇଆଳି ।
ଆମ୍ଭେ ଯେବେ ଉପାୟେ କରିଣ ନ ଯିବା
ପଳାଇଯିବାକୁ ବାଟ ଯେବେ ଆମ୍ଭେ ନ ରଖିବା
ଯୁଦ୍ଧ କଲେ ହାନ ଅପଚସ୍ୱେ ଅଛି ଜାଣ
ଏତେବୋଲି ଅଜସ୍ରସେନ କହଇ ବଚନ ।
ଏହା ଶୁଣି କରଯୋଡ଼ି ନଶଙ୍କସୁର କହି
ଆଜ୍ଞାଦେଲେ ସୁଖରେ ସେ ସୈନ୍ୟଚଳିଯାଇ
ଯେତେକ ବୋଇତ ସେ ଜାହାଜ ପିଉସ
ଏମାନ ଅଣାଇ ରୂପ ବନ୍ଧା ହେ ନରଈଶ ।
ନଙ୍ଗର ପକାଇ ରୂପ କରରେ ଅଟକ
ତଖ ଯୁଣ ଓସାରରେ କରିବ ସବୁ ମୋଟ ।
ଶତେଯୁଣ ଉସ୍ରର୍ଗ ସେ ବଳଙ୍କା ଲଙ୍କାଗଡ଼
କୁବଳୟା ପର୍ବତେ ଠଣା କରନ୍ତୁ ସୈନ୍ୟବଳ
ଶୁଣିଣ ସହସ୍ରାନନ ସନମତ କଲା
ଜାହାଜ ପିଉଷ ବୋଇତ ବେଗେ ଅଣାଇଲା
ବନ୍ଧାଣି ଉଜାଇଣ ବାନ୍ଧିଲା ରୂପପଟା
ଦଶଯୁଣ ଓସାରରେ ବାନ୍ଧିଲା କରପଟା ।
ନଙ୍ଗରମାନ ପକାଇ ଅଟକ କରାଇଲା
ଲୁହା ଜଳା ମରାଇ ଆଉଜା ବାଟ କଲା ।
ବୋଇଲା ଶ୍ରୀରାମ ସେ ପର୍ବତେ ବନ୍ଧ କଲା
ମୋହର ନାବରେ ବନ୍ଧ ଶତେ ଯୁଣ ହେଲା ।
ଏହାକୁ ଦେଖି ପଳାଇବ ଦଶରଥ ସୁତ
ବିଭୀଷଣ ସୁଗ୍ରୀବର ଯିବେ ତା ସଙ୍ଗତ ।
ଲଙ୍କା କିଷ୍କିନ୍ଧ୍ୟାରେ ମୋର ପୁତ୍ର ହେବରାଜା
ତାକୁ ମାରି ଅଯୋଧ୍ୟାରେ ପୁତ୍ର ହେବ ରାଜା
ତେବେ ସିନା ତିନି ପୁର ଭୟ ସେ ରଖିବେ
ସହସ୍ରାନନ ଦୈତ୍ୟର ବଳର ଏମନ୍ତ ଭାବେ ।
ବଳଙ୍କାରୁ ଲଙ୍କାରୁ ଲାଗିଲା ବଡ଼ ବନ୍ଧ
କୁବଳୟା ପର୍ବତକୁ କଲା ଠଣା ଭାବ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ବ୍ରହ୍ମଗନ୍ତୁ ହବେଗେସୈନ୍ୟବନ୍ଧରେପାରହୋନ୍ତି
କୁବଳୟା ପର୍ବତରେ ସୈନ୍ୟ ହୋନ୍ତି ଠୁଳ
ହାତୀ ରଥୀ ପଦାତି ଶ୍ୱାନ ସେ ଶାର୍ଦ୍ଦୋଳ ।
କରଯୋଡ଼ି ମନ୍ତ୍ରୀ ଗୁଣସାଗର ଜଣାଇ
ଅକ୍ଷଦଅ କେନାମଣି ଯାଆନ୍ତୁ ବେଗହୋଇ ।
ସୈନ୍ୟଦଳ ଗଲେ ଗଜ ଅଶ୍ୱ ସକଳ
କମ୍ପା କଳମ୍ବ କରନ୍ତୁ ବଳଙ୍କା ରାଜେଶ୍ୱର ।
କେନାମଣି ଏବେ ବେଗେ ଚଳଣ ଯାଆନ୍ତୁ
ରାମ ବିଭୀଷଣକୁ ସେ ବାନ୍ଧିଣ ଆଣନ୍ତୁ ।
ଏହାକୁ ଜଣନ୍ତା କ ହେବ ତାହା ଗୁର
ଯା ନାମ ଶୁଣି କମ୍ପେ ସ୍ୱର୍ଗ ପୁରନ୍ଦର ।
କେନାମଣି ତୁଲେ କ ସମର କରିବେ
ଯୁଦ୍ଧକଲେ ସେହି ନଜ ତାହାକୁ ଜିଣିବେ ।

ଏମାନଙ୍କୁ ଜିଣିଣ ସେ ଦେବେ ଯଦ ବଳ
ଦାରଚା ପାଇ ସୈନ୍ୟ ଦେଉଥିବା ରଙ୍ଗ ।
ଯେମନ୍ତେ ଏତେ ହୋଇଣ ପଡ଼ିବ କବାଟ
ଛେଚେଦେଲେ ଖେନାଇଣ ପିବା ସବୁଥାଟ
ଏମନ୍ତ ବୋଲନ୍ତେ ଯହୁଁ ମନ୍ତ୍ରୀବର କହି
ଶୁଣିଣ ସନ୍ତୋଷ ହେଲା ଦୈତ୍ୟକୁଳ ସାଇଁ ।
ବୋଇଲା ହୋ ମୋତେ ତୁ କହିଲୁ ମନ୍ତ୍ରୀବର
ଏମନ୍ତରେ ବଧି ଅଛୁ ଯୁଦ୍ଧର ପ୍ରକାର ।
ଏତେବୋଲି ଧୂମାକ୍ଷସୁରକୁ ପାଶେ ଗଲା
ପ୍ରବୋଧ କରି କହିଣ ଫୁଲ ଚନ୍ଦନ ଦେଇ ।
ବୋଲେ ଜ୍ୟେଷ୍ଠ କୁମର ଯାଅ ବେଗ ହୋଇ
ଆଣ ବାନ୍ଧି ବିଭୀଷଣକୁ ଯାଇ ତୁହି ।
ତୁ ମୋର କୁଳଚନ୍ଦ୍ରମା ଅଟୁରେ ଧୂମାକ୍ଷ
ମୋର ରାଜପଣ ତୁମ୍ଭମାନଙ୍କୁ ଦେଖ ।
ଏମନ୍ତ ବୋଲନ୍ତେ ଯହୁଁ ସହସ୍ରମାଥ କହି
ଶୁଣିଣ ଧୂମାକ୍ଷସୁର ପିତାଙ୍କୁ ଉଳଗଇ ।
ବୋଲଇ କେତେ ଦେବ ହେ ତୁମ୍ଭ ପରସାଦେ
ମୋହର କାହାକୁ ଭୟ ତ୍ରିଜଗର ମଧ୍ୟେ ।
ସୈନ୍ୟଯାକ ଛାର ମୁଁ ପକାଇବି ମାରି
କୁମ୍ଭର ବୋଲନ୍ତେ ଦେବ ଯାଉଛୁ ବେଗକରି
ଶ୍ରୀରାମ ବିଭୀଷଣକୁ ଆଣିବି ମୁଁ ବାନ୍ଧି
ପାଶୋରି ସମ୍ବନ୍ଧୀକଷ୍ଟ ଶିରଛାରଦେବିଛେଦ
ଏମନ୍ତ ବୋଲନ୍ତେ ପାରି ପନ୍ଥକ କରଇ
ବାହା ଦୁଇ ମୋଡ଼ିଣ ନଣରେ ହସ୍ତ ଦେଇ ।
ବୋଲଇ ଆଜ ଯେବେ ମୁଁ ନ ଜିଣିବି ଧରି
ଶ୍ୱଶୁର କଷ୍ଟ ପାଶୋରିବି କେମନ୍ତ କରି ।
ଏତେକହି ପାର ଯେ ଯାନରେ ବସିଲା
ବଜ୍ରସମ ଗଦା ଦେଖ ହସ୍ତରେ ଧଇଲା ।
ଆବର ଧଇଲା ଯେ ଧନୁଶର ତୋଣ
ମନର ଉତ୍ସବେ ଗେ କରଇ ଗମନ ।
ବହୁତ ସୈନ୍ୟ ତାର ଚଳଗଲେ ସଙ୍ଗେ
ଛଲଙ୍କା ଦେଶ ଛେଜ ସରିଲା ପାର ବେଗେ ।
ପଥରେ ଗମନ୍ତେ ଶୁନ୍ୟେ ଶୁଭେ ହାଲହୋଳ
ସପତ ସମୁଦ୍ରକ ଆସୁଛି ଉଛୁଳ ।
ହସ୍ତୀଙ୍କର ଘଣ୍ଟି ରବ ଶୁଭେ ବଡ଼ ଟାଣ
ଅଶ୍ୱଙ୍କର ଘାଗୁଡ଼ି ଶୁଭେ ଛୁଣଛୁଣ ।

ସୈନ୍ୟଙ୍କର ଡାକ ଯେ ଭେରେଭାରି ବାଣୀ
ନାଗପୁରେ ଗମନ୍ତେ ଅଦୃଶ୍ୟ ଦିନମଣି ।
ଏମନ୍ତେ ଚଳଇ ଯେ ଧୂମାକ୍ଷ ଅସୁର
ପ୍ରବେଶ ହେଲା ଯାଇ ସୁବଳ ଗିରିର ।
ପର୍ବତ ଉପରେ ରହେଁ ଶ୍ୱଶୁର ନଗର
ଦଶାନନ ବନ୍ଧୁନେ ଦିଶୁଛି ଅସୁନ୍ଦର ।
ଦେଖିଣ ଧୂମାକ୍ଷସୁର ମନେ ବିସ୍ମରଇ
ବିଭୀଷଣ ଯୋଗରୁ ଏମନ୍ତ ସିନା ହୋଇ ।
ଏପରି ବିସ୍ମରି ଦୈତ୍ୟ ହେଲା କ୍ରୋଧଭର
ନୟନ ଦୁଇଏ ଜାଳଚକର ଆକାର ।
ପର୍ବତରୁ ଓହ୍ଲାଇ ସୈନ୍ୟଙ୍କୁ ସଙ୍ଗେ ଘେନି
ଲଙ୍କାପଡ଼େ ମିଳିଲା ଦୈତ୍ୟ ପାରମଣି ।
ପୁରେ ପୁରେ ପଶିଣ ଖୋଜଇ ଉପଲେସି
କେଉଁଠାରେ ଶ୍ରୀରାମ ବିଭୀଷଣ ଛନ୍ତି ବସି ।
ଏହା ଶ୍ରବଣ ସେ ଖୋଜେ ଚଉଦିଗ
କହନ୍ତି ସଦାଶିବ ଗଉରୀ ଦେବୀ ଆଗ ।
ଶୁଣ ଗୋ ପାର୍ବତୀ ଦେବୀ ରହସ୍ୟ କଥାଏ
ସୁବେଳସ୍ଥା ଗିରିରେ ବିଜୟେ ରାମ ରାୟେ ।
ଆଗରେ ଉଭାହୋଇ ଯେ ଅଛନ୍ତି ଲକ୍ଷ୍ମଣ
ଭରତ ଶତ୍ରୁଘନ ପାଛୁଗରେ ପୁଣ ।
ଅଙ୍ଗଦ ହନୁମନ୍ତ ଜାମ୍ବେବ ସୁଷେଣ
ଅଷ୍ଟସେନାପତି ଯେ ପ୍ରମୁରେ ଛନ୍ତି ପୁଣ ।
କମ୍ପଣ କାଳମୁଖ ଦଧିମୁଖ ପାର
ଗବୟ ଗବାକ୍ଷ ଯେ ଦୁର୍ବାର ପନଶିଳ ।
ମହେନ୍ଦ୍ର ବିରୁପାକ୍ଷ ଗନ୍ଧମାଦନ
ତାରକ ନଳ ନୀଳ ସୁଗ୍ରୀବ ବିଭୀଷଣ ।
ବସନ୍ତ ଶରଭ ଯେ ଧୂମାକ୍ଷ ବିରୁପାକ୍ଷ
ମଣ୍ଡଳ ଯୂଥପତି ଯେ ଅଛନ୍ତି ଚଉପାଶ ।
ଲକ୍ଷେ ଧ୍ୱଜା ଶାଢ଼ୀ ଘରେ ଅଛନ୍ତି ବଳେଇଣ
ଯେ ପାହାର ସୈନ୍ୟବଳ ପାହମନ୍ତ୍ରୀ ଧରି ।
ଆନନ୍ଦରେ ସୁବେଳସ୍ଥା ଗିରି ଚମକଇ
ଏଥିଉପରୁ ତୁମ୍ଭେ ଶୁଣ ମନଦେଇ ।
ଏହାଙ୍କ ମୂଳେ ଅଛନ୍ତି ଅନେକ ଯେ ସୈନ୍ୟ
ବାନର ଭଲ୍ଲୁ ଅଗଣିତ କଳଣା ନାହିଁ ପୁଣ ।
ଏପରି ସମ୍ପ୍ରେ ବିଜେ କରିଅଛନ୍ତି ରଘୁସାଇଁ
ଚୈତ୍ରବାଡ଼େ ଅଛନ୍ତି ଯେ ଜନକ ତନୟୀ ।

ଏମନ୍ତେ ରଘୁନାଥ ବିଭୀଷଣଙ୍କୁ ପୁଚ୍ଛିଁ
ବୋଲନ୍ତି କଉପାୟେ କରିବା ନକହ କଥାଇଁ
ହନୁମନ୍ତ ବୋଲେ ତୁମ୍ଭେ ଜାଣିଲ ସମସ୍ତେଣ
ବନ୍ଧ ସାଜ ନ ପୁଣ ଆସେ ବଣାଖା ନନ୍ଦନ
ଏମନ୍ତ ବଚନ ଯହୁଁ ବୋଲନ୍ତି ଗମଗଣ
ଶୁଣିକରି ବୋଲନ୍ତି ଜାମ୍ବବ ସୁଷେଣ ।
ହେ ଦେବ ରଘୁନାଥ ଶୁଣ ହେ ମୋରବାଣୀ
ଏଥିକୁ ଆସିବ ଅବଶ୍ୟ ସହସ୍ରମାଥ ପୁଣି ।
ସମ୍ବନ୍ଧୀ ନିଧନରେ ସେ କରିବ ସମର
ମହାପ୍ରତାପୀ ସେ ଅଟଇ ଅସୁର ।
ଏଥିକୁ ଆମ୍ଭେ ଏବେ ଏମନ୍ତ କରିବା
ସକଳ ସୈନ୍ୟ ରଜାଙ୍କୁ ବାରତା କହିଥିବା
ଶୁଣିକରି ଶ୍ରୀରାମ ଯେ ଦୂତ ବରଗିଲେ
ଲକ୍ଷେ ରଜାଙ୍କୁ ବାରତା ଯାଇଣ କହିଲେ ।
ସେନାପତି ରଥୀ ପଦାତି ସୈନ୍ୟବଳ ପୁଣ
ଋକ୍ଷ ଭାଲୁଙ୍କୁ ଯେ କହିଲେ ତଆରଣ ।
ଜାମ୍ବବ ବୋଇଲେ ଅଙ୍ଗଦ ବେଗେ ଯାଉ
ଋକ୍ଷ କପି ଘେନିଣ ବ୍ୟଗ୍ରରେ ଆସୁ ସେଠୁ ।
ଏହା ଶୁଣିଣ ଆଜ୍ଞା ଦେଲେ ରଘୁନାଥ
ବୋଲଇ ଶୁଣ ହେ ବାଳିରଜା ସୁତ ।
ବେଗେ ଯାଅ ବାବୁରେ ସୈନ୍ୟ ଘେନ ଆସ
ତୁମ୍ଭେ କଲ ବାବୁରେ ମୋହର ଏତେ ଯଶ
ନୋହିଲେ କି ମୋହର ହସ୍ତେସମରକରିବୁଏ
ତୁମ୍ଭଯୋଗୁ ଲଙ୍କାଗଡ଼ ମୋତେଁହେଲା ଜସ୍ତେ
ଏହାଶୁଣି ଶତ୍ରୁଘନ ବୋଲଇ ବଚନ
ଲକ୍ଷେ ରଜା ଲକ୍ଷେ କପି ଅଟନ୍ତି ସଜନ ।
ସେନାପତି ଯୁଥପତି ସରଦାର ମାନ
ମଲ୍ଲ ମହାମଲ୍ଲ ସଙ୍ଗେ ଘେନିଣ ଆପଣ ।
ସମସ୍ତେ ଆସିଛନ୍ତି ନାହାନ୍ତି ଆଉ କେହି
ଧବଳ ସଭ ଉପରେ ଲକ୍ଷେରଜା ରୁଣ୍ଡହୋଇ
ଏହାଙ୍କର ଘରଣୀମାନେଅଛନ୍ତିଯେଯାହାନଗ୍ରେ
ଆଉ କଥା ଅଙ୍ଗଦ ଯିବ ସେଠୁ ମାର୍ଗେ ।
ଲକ୍ଷେ କପି ରାଜାଙ୍କୁ ଯେ ଲକ୍ଷେ ନରରାଜା
ଆଉ ସୈନ୍ୟ ଅଣାଇଲେ ପାଇବକୁମ୍ଭେଲଜ୍ଜା
ହର୍ଷହୋଇ ଭସ୍ଥ କଥା କର ହେ ଯୁଦ୍ଧକୁ
ହାନ ଅପଟସ୍ତ ସିନା ଲଗିଛି ଦେହକୁ ।
ହାରିବା ଜଣିବା ସିନା ଯଦିଙ୍କ ବେଭର
ସବୁଦିନେ ଦର ରାକ୍ଷସ ନୁହନ୍ତି ଅମର ।
ଆସୁ ସୈନ୍ୟଘେନ ପଛେ ବଣାଖାର ସୁତ
ଅନାଚାର ମେଘାସୁରକ୍ଷେଦପାଳଙ୍କସଙ୍ଗେହତ
ବାପ ତାର ସୁରାସୁର କୁବେର ହତ କଲା
ସହସ୍ରମାଥ ପୁତ୍ର ତାର ଦେବଙ୍କୁ ଜଣିଲା ।
ଦେବତାଙ୍କୁକଷ୍ଟଦେଲେଦେବତାହୁଅନ୍ତି ଅଜ୍ଞାନ
ସବୁକାଳେ ଦେବକୁଠ ଅସୁର ପରେ ଜାଣ ।
ଆମ୍ଭ ହସ୍ତେ ନାଶଯିବ ସହସ୍ରାନନ ବଂଶ
ସେହି ଲଙ୍କାଗଡେ ରାଜା ହୋଇବ ଆନବଂଶ
ଶୁଣିକରି ଶ୍ରୀରାମ ମନେସନ୍ତୋଷ ହୋଇଲେ
କୋଦଣ୍ଡରେ ଗୁଣ ଦେଇ ପାଶରେ ରଖିଲେ
ଶନଘ୍ନଙ୍କି ବୋଇଲେ ଧନୁରେ ଗୁଣଯୋଚ
ସେନାପତିଙ୍କି ବୋଇଲେ ସାଜେଣି ହୁଅସଜ
ଏଥୁ ଅନନ୍ତରେ ଶୁଣ ମୋ ଭଗବତ
ମେରୁ ଉତ୍ତର ପାର୍ଶ୍ବରୁ କପି ଯେ ଆସନ୍ତି ।
କଳାମୁଖା ଭାଲୁ ବାଇଶି କୋଟି ଆସି
ସୁବଳସ୍ଥା ଗିରିର ଉପରେ ଯାଇ ଉଠି ।
ଦେଖିଣ ଋକ୍ଷକପି ଅଙ୍ଗଦରେ କହି
ଧାଇଁଣ ବାଳିସୁତ ସୈନ୍ୟଙ୍କ ଆଗେ ହୋଇ
ବୋଇଲେ ସମସ୍ତେ ତୁମ୍ଭେ ଏଥିଠାରେ ରହ
ଶ୍ରୀରାମଙ୍କୁ ଦର୍ଶନ କରାଇବି ସ୍ନେହ ।
ଏତେକହି ଅଙ୍ଗଦ ବେଗହୋଇ ଗଲା
କରଯୋଡ଼ି ଶ୍ରୀରାମ ଛାମୁରେ ଜଣାଇଲା ।
ଅଇଲେ ମେରୁ ହୋଠରୁ ଅନେକ ଋକ୍ଷ କପି
ଆଜ୍ଞାଦେଲେ ଦର୍ଶନ କରିବେ ଏଥେ ଆସି ।
ଶ୍ରୀରାମ ବୋଇଲେ ରଣଭୂମିରେ ସେହୁଥା ନ୍ତୁ
ଯୁଦ୍ଧବେଳେ ଆମ୍ଭଙ୍କୁ ସେ ଦର୍ଶନ କରନ୍ତୁ ।
ଚରଣ୍ଣ କରଣ ତାଙ୍କୁ ରଖ ତୁମ୍ଭେ ପୁଣ
ଶୁଣିଣ ଅଙ୍ଗଦ ଚରଣ୍ଣ କଲକ ଯାଇଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତ
ଶ୍ରୀରାମଚନ୍ଦ୍ରଙ୍କ କଥା ଶୁଣି ତୋଷମତ ।
ଜାମ୍ବବ ମୁଖ ଚାହିଁଣ ଶ୍ରୀରାମ ବୋଲନ୍ତି
କସ କରିବା କହ ମନ୍ତ୍ରୀକ ପୁଚ୍ଛନ୍ତି ।
ଶୁଣିଣ ଜାମ୍ବବ ଯେ ବୋଲନ୍ତି ଉତ୍ତର
ଶ୍ରୀଅଙ୍ଗକୁ ଅଳସ ହେଉଛି ତୁମ୍ଭର ।

ଶୁଣିଣ ଉଠିଲେ ଦେବ ରାବଣାରି
ଭନଜ୍ଜଇ ସଙ୍ଗେ ଯେତେ ମଣୋହ୍ର ଦେବଗଣର
ଜନକ ଦୁଲଣୀ ପରଷନ୍ତି ଷଡ଼ରସ
ରଭଳଇ ଭୋଜନ କଲେକ ମନତୋଷ ।
ଭୋଜନ ସାରିଣ ଯେ ଆଶ୍ଚୋଦନ କଲେ
ପଲଙ୍କ ଉପରେ ରଭଳଇ ଯେ ବସିଲେ ।
ଛଡ଼ଆଲଗି ହୋଇଣ କହନ୍ତି ବଚନ
ଅଷ୍ଟସେନାପତି ବୋଇଲେ ତୁମ୍ଭେ ଶୁଣ ।
ଲକ୍ଷେ ରାଜାଙ୍କ ଚରଣ ଋଷ କପି ବଳ
ସେନାପତି ରଥି ପଦାତି ସୈନ୍ୟବଳ ।
ଏମାନଙ୍କୁ ସଙ୍ଖୋଳା ଯାଇ ତୁମ୍ଭେ କର
ଗଜ ଅଶ୍ୱ ସାରେଣୀ ଏହାଙ୍କୁ ସଙ୍ଖୋଳ ।
ହଟାରି ବଜାରି ଯେ ଶଗଡ଼ ବଳଦ
ଲମ୍ବହଟା ଉଳବାରି ସେବକ ସମ୍ବାଦ ।
ଶୁଣିଣ ଅଷ୍ଟସେନା ବେଗେ ଚଳଗଲେ
ଲକ୍ଷେ ରାଜାଙ୍କର ଚରଣ୍ଟ ଯାଇଣ ବୁଝିଲେ ।
ରାଜାଗଣ ବୋଇଲେ ଶ୍ରୀରାମ ପ୍ରସାଦରେ
ଉତ୍ତମ ପଦାର୍ଥ ଯେ ମିଳଇ ଆମ୍ଭରେ ।
ପାତ୍ରମନ୍ତ୍ରୀ ବୋଇଲେ ହେଉଛୁ ବଡ଼ ସୁଖ
ଆମ୍ଭେମାନେ ହେଲୁ ଯେ ଭୋଜନେ ସନ୍ତୋଷ
ସେନାପତି ରଥି ଯେ ପଦାତି ବଳ ଶୁଣ
ସମସ୍ତେ ବୋଇଲେ ହେଲା କୁଶଳେ ଭୋଜନ
ଗଜ ଅଶ୍ୱ ସାରଣୀ ମାହୁନ୍ତ ସିପାହୀ
ବେପାରୀମାନେ ଏହାଙ୍କୁ ଯେ ଦାନା ଦେଇ
ହଟାରି ବଜାରି ହରଷେ ଛନ୍ତି ପୁଣ
ସେବାକାରୀମାନେ ଯେ ଆନନ୍ଦ ମନେଣ ।
ଏମାନଙ୍କ କୁଶଳକୁ ବୁଝିଣ ସେନାପତି
ଋଷକପି ପତିଙ୍କ କୁଶଳ ଯାଇଣ ପୁଛନ୍ତି ।
ବାନର ଭାଲୁ ବୋଇଲେ ଶୁଣ ହେ ଅଙ୍ଗଦ
ତୋର ବାପଥିଲା ବନେ ଏମନ୍ତ ନୋହୁଭୋଗ
ଯେ ଯାହା ମନାସୁଛି ତାକୁ ତାହା ମିଳ
ମନଇଚ୍ଛା ଭୋଜନ ସମସ୍ତେ ଅଛୁ କରି ।
ତାହା ଶୁଣି ସେନାପତି ବେଗେ ଚଳଗଲେ
ଶ୍ରୀରାମ ଛାମୁରେ ଯାଇ ସକଳ କହିଲେ ।
ସୁଗ୍ରୀବର ବିଭୀଷଣ ଗୁହ ନାମେ ଶବର
ଏମାନଙ୍କୁ ଶଙ୍ଖୋଳା କଲେ ରଘୁବୀର ।
ଭରତକୁ ବୋଇଲେ ତୁମ୍ଭେ ବେଗ ହୋଇଚଳ
ବଶିଷ୍ଠ ବାମଦେବଙ୍କୁ ଚରଣ୍ଟ ବେଗ କର ।
ଶୁଣିକରି କୈକେୟୀ ବେଗେ ଚଳଗଲା
ବଶିଷ୍ଠଙ୍କ ଚରଣେ ଦର୍ଶନ ଯାଇ କଲା ।
ବଶିଷ୍ଠ ବୋଇଲେ ଶୁଣରେ କୈକେୟୀ
ଉତ୍ତମ ଭୋଜନରେ ଆମ୍ଭମନ ଖୁସିହୋଇ ।
ଯୋଗରେ ଜାଣିଲୁ ଆମ୍ଭେ ଆଜର ଦିନର
କାଲିଠାରୁ ପାଣ୍ଡବନ ଯୁଦ୍ଧ ହେବ ଘୋର ।
ଷଡ଼ଦିନେ ନଷ୍ଟି କି ସପ୍ତମଦିନେ ଅନୁକୂଳ
ଅଷ୍ଟମରେ ଲଙ୍କାପଡ଼ୁ ଯିବା ଯେ ସକଳ ।
ଶୁଣିକରି କୈକେୟୀ ବେଗେ ଚଳଗଲା
ଶ୍ରୀରାମଙ୍କ ଛାମୁରେ ଯାଇଣ ମିଳଲା ।
କହିଲା କୁଶଳରେ ଅଛନ୍ତି ମୁନିବର
ବଶିଷ୍ଠ କହିଲେ ଶୁଣ ଦେବ ରୂପଧର ।
କାଲିଠାରୁ ପାଣ୍ଡବନେ ହୋଇବ ସମର
ଷଡ଼ଦିନେ ନଷ୍ଟି କି ଯୁଦ୍ଧରୁ ସକଳ ।
ସପ୍ତମେ ଅଯୋଧ୍ୟାକୁ କରିବା ଗମନ
ଅଷ୍ଟଦିନେ ସିନ୍ଧୁକୂଳେ ରହିବା ଯାଇଣ ।
ଶୁଣିକରି ଶ୍ରୀରାମ ଯେ ସନ୍ତୋଷ ମନ ହେଲେ
କେତେ କଷ୍ଟ ଆଦ୍ଭୁତ ଯେ ମିଳବ ବୋଇଲେ
ଶତ୍ରୁଘନକୁ ବୋଇଲେ ବେଗହୋଇ ଚଳ
ଲୋମପାଦ ରାଜା ଅଟନ୍ତି ମଉସା ଆମ୍ଭର ।
ଚରଣ୍ଟ କରିଣ ଯେ ବେଗ ଆସ ଫେରି
ଶୁଣିକରି ଶତ୍ରୁଘନ ବେଗେ ଗଲେ ଚଳି ।
ଲୋମପାଦ ରାଜାପାଶେ ପ୍ରବେଶ ହୋଇଲେ
ନମସ୍କାର କରି ତାଙ୍କ ଚରଣ୍ଟ ବୁଝିଲେ ।
ଚମ୍ପାବତୀ ଦେଶ ରାଜା କହନ୍ତି ବଚନ
ଧନ୍ୟ ହେ ଦଶରଥ ଜନମ କଲ ଶ୍ରୀରାମ ।
ଦେବେ ତୋଷ ହେଲେ ଅସୁରେ ହେଲେଭସ୍ମ
ଦଇପୁଣ ଧରଣୀ ଧରିଲେ ଅବଶେଷ ।
ଝିଲୋଚନ ଥିଲେ ଯେଉଁ ପଶୁର ବଳରେ
କୈକେୟୀକ ହାଉ ସେତୁ ପଡ଼ିଲେ ପୃଥ୍ୱୀରେ
ପାଙ୍କତି ଆସିଣ ତାଙ୍କୁ ମୁକୁଳାଇ ଦେଲା
ମସ୍ତକୁ ଜଆଁଇଣ ଶ୍ରୀରାମ ପୁଣ ଦେଲ ।
ଶୁଣିକରି ଶତ୍ରୁଘନ ଫେରିଗଲେ ବେଗ
ମଉସା କୁଶଳେ ଛନ୍ତି ଶୁଣ ହେ ପ୍ରଭୁ ଦେବ

ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବିରାଜଇ ଏକମେକ ହୋଇଣ ଶର୍ବରୀ ।
ଶ୍ରୀରାମ ଥାଳରେ ସୀତା କଲେକ ଭୋଜନ
ଉଚ୍ଛିଷ୍ଟ ଉଠାଇଲା ତ୍ରିଜଟା ବେଗେ ପୁଣ ।
ତ୍ରିଜଟା ଭୋଜନ କଲା ସୀତା ଦେଲେ ଆଣି
ଭୋଜନ ସାରିଣ ଉଠିଲା ତତକ୍ଷଣି ।
ସେନାପତିମାନଙ୍କୁ ବୋଇଲେ ଚାପଧାରୀ
ସୈନ୍ୟବଳ ସମ୍ଭାଳ ସ୍ଥଳରେ ତୁମ୍ଭେ ଫେରି
ଶୁଣିକରି ହନୁ ଅଙ୍ଗଦ ଗଲେ ଚଳି
ଯୂଥପତି ଘେନିଣ ସୈନ୍ୟଯାକ ଫେରି ।
ଭ୍ରାତକୁ ବୋଇଲେ କୋଦଣ୍ଡ ଚାପଧାରୀ
ଧନୁଶର ଧରିଣ ଜଗ ହେ ପାହାରି ।
କୈକେୟୀ ଧନୁଶର ଧରିଣ ଜଗିରହି
ଦୁଇଭାଇଙ୍କି କହିଲେ ଯାଅରେ ବେଗହୋଇ
ଶୁଣିକରି ଲକ୍ଷ୍ମଣ ଶତ୍ରୁଘନ ଗଲେ
ବାହାର ଶାଢ଼ୀ ଘରେ ଯାଇଣ ରହିଲେ ।
ଉଠିକରି ଶ୍ରୀରାମ ଯେ ପଲଙ୍କେ ପହୁଡ଼ି
ଜାନକୀ ସ୍ୱାମୀଙ୍କର ଚରଣ ମଞ୍ଜାଳ ।
ତ୍ରିଜଟାକୁ ବୋଇଲେ ଯାଅ ତୁ ବେଗହୋଇ
ସାନୁଜଙ୍କ ଚରଣକୁ ମଞ୍ଜାଳ ବେଗେ ଯାଇ ।
ଶୁଣିକରି ତ୍ରିଜଟା ବେଗେ ଚଳିଗଲା
ଲକ୍ଷ୍ମଣ ଶତ୍ରୁଘନଙ୍କ ପାଦ ମଞ୍ଜାଳିଲା ।
ଏମନ୍ତେ ରଜନୀ ହୋଇଲାକ ଶେଷ
ଗଗନେ ଦିନମଣି ହୋଇଲେ ପ୍ରକାଶ ।
ଦେବଙ୍କର ଆଳରେ ଯେ ଶୁଭେ ଶଙ୍ଖଧ୍ୱନି
ଶଯ୍ୟା ତେଜି ଉଠିଲେ ରଘୁକୁଳମଣି ।
ନିତ୍ୟକର୍ମ କରିବାକୁ ନଦୀରେ ପଶିଲେ
ସନ୍ଧ୍ୟା ନିତ୍ୟକର୍ମ ସାରି ରଘୁକୁଳ ଘରେ ।
ଜନଭାଇ ଏହିରୂପେ ନିତ୍ୟକର୍ମ ସାରି
ସନ୍ନିଧେ ବସିଲେ ଆସି ସକଳ ସେବାକାରୀ
ଋକ୍ଷ କପି ସମସ୍ତେ ହେଲେ ଆସି ମେଳ
ଯୁଦ୍ଧର କଥାମାନ ସେ କରନ୍ତି ବିଚାର ।
ସମସ୍ତେ ସହସ୍ରାନନର କଥା କୁହାକୁହି
ବୋଲନ୍ତି କହୁଛ ଗୋପନରେ ଆମ୍ଭଙ୍କୁ ଦେଖିନାହିଁ
ତନୁ ଆସିବାର ହେଲା ଦୁଇ ଯେ ଦିବସ
ଆଜ ପର୍ଯ୍ୟନ୍ତେ ନ ଆସିଲେ ରାକ୍ଷସ ।

କେହି କେହି ବୋଲନ୍ତି ସେ କମ୍ପାଇ ଆସିବ
ଘର ପାଇଁ କମ୍ପା ସେ ଆପଣେ ନାଶ ଯିବ ।
କେହୁ ବୋଲନ୍ତି ସେ ଆସିବ ନିଶ୍ଚେ ଜାଣ
ତାହାର ସମ୍ଭାଳୀ ଅଟେ ଦଶଗ୍ରୀବ ରାଣ ।
କେ ବୋଲଇ ଏକଥା ତ ମନକୁ ନ ଆସଇ
ସମ୍ଭାଳୀ ସଙ୍ଗାତ ପାଇଁ କେ ପ୍ରାଣ ମୁଞ୍ଚଇ ।
କେହୁ ବୋଲନ୍ତି ହୋ ତୁମ୍ଭେ ତ ନ ଜାଣ
ସ୍ୱଜନ ମେଳଥିଲେ ବିଏ ସେ ପରାଣ ।
ଏମନ୍ତ ବୋଲିଣ ସର୍ବେ ହେଲେ କୁହାକୁହି
ଲଙ୍କାଗଡ଼ ଉପରୁ ଆସି ବାରତା ଜଣାଇ ।
ବୋଲଇ ଶୁଣିବା ହେ ଦେବ ସାବଧାନେ
କେଉଁ ବେଶ୍ରୁ ଆସିଅଛୁ ଏବଇ ରାଜନେ ।
ସଙ୍ଗରେ ସୈନ୍ୟବଳ ଅନେକ ଆଣିଅଛୁ
ଘରରେ ଶ୍ରୀରାମ ବିଭୀଷଣ କେଉଁଠାରେ ଛନ୍ତି
ବୋଲନ୍ତି ହାବୁଡ଼େ ପଡ଼ିଲେ ତାଙ୍କୁ ଯେବାନ୍ଧିବ
ତାହାଠାରୁ ଶୁଣିଣ ଅଇଲ ମୂର୍ଚ୍ଛି ବେଗି ।
ଏଥିକୁ କସ ଆଜ୍ଞାଦିଅ ହେ ରଘୁନାଥ
ଶୁଣିକରି ବିଭୀଷଣ ହେଲା ବିସ୍ମୀଭୂତ ।
ଏହା ଶୁଣି ରଘୁନାଥ ବିଭୀଷଣକୁ ପୁଚ୍ଛି
ବୋଇଲେ ଲଙ୍କାରେ ଯେ କିଏ ସେ ପଶଇ
ଉପରୁ ଏମନ୍ତ ବୋଲି ବାରତା କହିଲା
ସୈନ୍ୟସେନା କେଉଁ ରାଜା ଲଙ୍କାରେ ମିଳିଲା
ବେଗେ ଯାଅରେ ବାବୁ ପବନ କୁମର
କେବଣ ରାଜ୍ୟର ସେ ଅଟେ ଦଣ୍ଡଧର ।
କଅବା ସହସ୍ରାନନ ଅଇଲା ଯେ ବାହି
କଅବା ସୈନ୍ୟକୁ ଆଗେ ଦେଇଛି ପଠାଇ
ଏଥିକୁ ତଥ୍ୟ କରି ବୁଝି ଯାଇ ଆସ
ଦେବ କି ମାନବ ସେ ଅଟଇ ରାକ୍ଷସ ।
ଶୁଣିଣ ମାରୁତି ଯେ ବେଗ ହୋଇ ଗଲା
ଲଙ୍କାର ବାଣ୍ଡରେ ସେ ଯାଇଣ ମିଳିଲା ।
ଦୂରରୁ ଦେଖିଲା ସେ ଅସୁର ସକଳ
ସମ୍ମୁଖରେ ବଳେ କରିଅଛି ଯେ ବିମାନ ।
ସଙ୍ଗତରେ ତାହାର ଅନେକ ସୈନ୍ୟ ଛନ୍ତି
ଧାଇଁଣ ଅସୁରେ କଳକଳା ରବ ଦିଅନ୍ତି ।
କେହୁ ଭାଳ ଖଣ୍ଡ ଖେଳେ ଲୁଚିଅଛି ପୁଣ
କେହୁ ବୋଲନ୍ତି ଧର ରାମ ବିଭୀଷଣ ।

ଯେ ବୋଲେ ଲୁଚିଲେ କୁମ୍ଭ କାନ୍ଥିରେ ପଶିଣ
କାଳସର୍ପ ମୁଖରୁ କି ମଣ୍ଡୂକ ଉବୁରିବ ।
ହେତୁ ବୋଲନ୍ତି ବୀର ହୋ ଆଣିବା ତାଙ୍କୁ ଧରି
ମାଂସ କାଟି ତାଙ୍କର କରିବା ପୋଡ଼ାବଳ ।
ଏମନ୍ତ କହି ଯେ ଗର୍ଜନ କରନ୍ତି
କଳକଳା ରବ ଦେଇ ତର୍ଜ ମାରୁଛନ୍ତି ।
ଏମନ୍ତ ବଚନ ତହୁଁ ମାରୁତି ଦେଖିଲ
ସସ୍ରାନନ ସୁତ ବୋଲି ଚିହ୍ନିଣ ଲେଉଟିଲ ।
ତକ୍ଷଣେ ମିଳିଲ ଯାଇ ସୁବେଳସ୍ଥା ଗିରି
ଦେଖିଣ ରଘୁନାଥ ହନୁକୁ ପଚାରି ।
କହ ହୋ ହନୁମନ୍ତ କେତୁ ସେ ଅଟଇ
ଶୁଣିଣ ମାରୁତି କରଯୋଡ଼ିଣ କହଇ ।
ବୋଇଲ ଶୁଣିବା ହେଉ ଜାନକୀର କାନ୍ତ
ସୈନ୍ୟ ଘେନ ଆସୁଅଛି ସସ୍ରାନନ ସୁତ ।
ସେ ବୋଲଇ ରାମ ବିଭୀଷଣ କାହିଁ ଗଲେ
ଆମ୍ଭଙ୍କୁ ଦେଖିଣ ସେ କାନ୍ଥିରେ ଲୁଚିଲେ ।
ଏମନ୍ତ ବୋଲିଣ ସେ ଖୋଜନ୍ତି ପୁରେ ପୁରେ
ଅନେକ ସୈନ୍ୟ ଅଛନ୍ତି ତାହାର ସଙ୍ଗରେ
ସମସ୍ତେ ହୋଇଛନ୍ତି ଘୋର ଯେ ଡାକ୍ଷେଣୀ
ମଧ୍ୟରେ ବଳେ କରିଛି ଅସୁର ଗୁମାନ ।
ହେତୁ ବୋଲେ କେଣେ ଗଲେ ରାମ ବିଭୀଷଣ
ଦେଖିଲେ ଆଜ ତାଙ୍କର ନେବଇ ପରାଣ ।
ଏତେ କହୁଣ ସେ ଉଠନ୍ତି ଗଳଗାଜ
ମେଦିନୀରେ ଆକାଶ କି ପଡ଼ୁଅଛି ବଜ୍ର ।
ରାକ୍ଷସ ମାହୁନ୍ତମାନେ ଗର୍ଜନ କରନ୍ତି
ନିଶଙ୍କ କୁମର ନିଜ ବାହାକୁ ଉଠନ୍ତି ।
ବୋଲନ୍ତି କେଉଁଠାରେ ଯିବେ ବେନି ଜଣ
ପୋଡ଼ାବଳ କରିବୁ ଯେ ରାମ ବିଭୀଷଣ ।
ଏମନ୍ତ ବୋଲିଣ ଯେ ସୈନ୍ୟ ଚଳିଯାନ୍ତି
ଆଠ ସୈନ୍ୟ ଅନେକ ଅଛନ୍ତି ହାତୀ ରଥ ।
ଏତେ ସେତେ ବୋଲି ଯେ କଳଣା ନ ଯାଇ
ତାହା ଶୁଣି ବୋଲନ୍ତି ଯେ ଜାନକୀର ସାଇଁ ।
ଏଥକୁ କସ ବିଚାର ଯେ ଜାମ୍ବବ ସୁଷେଣ
ଉପାୟ କିସ କରିବା କହ ବିବରଣ ।
ଶୁଣିଣ ବିଭୀଷଣ କରଯୋଡ଼ି କହି
କସ କହିବ ଦେବ ମୋ ଶରୀରେ ଜ୍ଞାନ ନାହିଁ

ଏମନ୍ତ ଶୁଣିଣ ଯେ ଜାମ୍ବବ ବୋଲନ୍ତି
ସୈନ୍ୟ ସଜ କରି ଯିବାକୁ ଏ ଘାନ୍ତ ।
ଆଗହୋଇ ସୈନ୍ୟଯୋଦ୍ଧେ ଯାଆନ୍ତୁ ଯେତେକ
ଗୁମାନସୁରର ଆଗେ ରହନ୍ତୁ ଓଗାଳ ।
ସମସ୍ତ ସୈନ୍ୟ ଘେନିଣ ଆମ୍ଭେ ପଛେ ଯିବା
ପାରୁ ନ ପାରୁ ଯୁଦ୍ଧ ଆରମ୍ଭ କରିବା ।
ସୈନ୍ୟନପେଷିଣହେଲାଯେ କରିବରଗୁସାଇଁ
ଏହିକ୍ଷଣି ଅସୁର ସୈନ୍ୟ ଆସିବେ ଚଳାଇ
ଶତ୍ରୁଘନ ବୋଇଲେ ଅଛନ୍ତି ଲକ୍ଷେ ରଜା
ଅକଳନ ସୈନ୍ୟଆସୁରଦେଖିହେବେବରଜା
ତାଙ୍କ ଉପରୁ ଆମ୍ଭେ ଥାଇ ଯେ ବେନଭାଇ
ଦୈତ୍ୟଘରକୁ ଡର ଯେ ହେଉଛୁ କମାଇଁ ।
ଆମ୍ଭର ହସ୍ତରେ ଖଡ୍ଗଅଛି ଯେ ତାହାର
ଶତେମୁଖାକୁ ବଳବଳ ସହସ୍ରମୁଖା ପାଇ ।
ଏମନ୍ତ ବୋଲିଣ ଯେ ଶତ୍ରୁଘନ କହି
ଶୁଣିଣ ରଘୁନାଥ ସୈନ୍ୟଙ୍କୁ ଆଜ୍ଞାଦେଲ ।
ବୋଇଲେ ଋକ୍ଷକପି ଆଗେ ଚଳିଯାଅ
ଗୁମାନସୁରର ଆଗେ ଓଗାଳି ଯେ ଥାଅ ।
ପୁଣି ଅନାଇ ଯେ ବୋଲନ୍ତି ରଘୁନାଥ
ଆଗେ ସୈନ୍ୟ ଘେନିଯାଉ ପବନର ଶିଷ୍ୟ ।
ଆଜ୍ଞା ପାଇଣ ଅଙ୍ଗଦ ହନୁମନ୍ତ ଗଲେ
ଗିରିବର ପ୍ରାୟେ ବୃକ୍ଷେକ ଘେନ ଚଳେ ।
ସଙ୍ଗରେ ଘେନିଛନ୍ତି ଅନେକ ଋକ୍ଷ କପି
କଳାରେ ମୁଖା ବାନର ପଦ୍ମ ବରଣକ ।
ପାଞ୍ଚପଦ୍ମ ବାହାର ହେଲେ ଭଙ୍ଗମୁଖା
ଗୋଲାଙ୍ଗୁଳା ଦୁଇପଦ୍ମ ବାହାରହେଲେଏକା
ସମସ୍ତେ ଗିରିବର ଘେନିଣ ଧାମନ୍ତି ।
ଏକକୁ ଆରେକ ଆଗେ ବଳିଆଇ ଯାନ୍ତି ।
କେତୁ ଧାମନ୍ତି କରେ ଶିଳା ବୃକ୍ଷଧରି
ସୈନ୍ୟ ସମସ୍ତେଣ କମ୍ପଇ ବସୁନ୍ଧରା ।
ଆଗପଛ ଘଟ୍ଟଆରେ ଯେ ଅଙ୍ଗଦ ହନୁମନ୍ତ
ସମର ଭୂମିରେ ଗୁମାନସୁର ଦୈତ୍ୟ ।
ଦୂରରୁ ଦେଖି ହନୁମନ୍ତ ଯେ ଡାକଦେଇ
କାହିଁକି ଯାଉଛ ସେଠାରେ ନ ରହି ।
ଏମନ୍ତ ବୋଲିଣ ଯେ ମାରୁତି ଡାକଦେଲ
ଦୂରରୁ ଗୁମାନସୁର ତାହା ଯେ ଶୁଣିଲ ।

ବୋଇଲା କେତୁରେ ଆଗରେ ଡାକନେଇ
ଏମନ୍ତ ବୋଲିଣ ପାଖଲୋକଙ୍କୁ ପଚାରଇ ।
ପାଖରେ ଲୋକେ ଶୁଣି ବୋଲନ୍ତି ଉତ୍ତର
ରହ ରହ ବୋଲିଣ ସେ ଡାକଇ ବାନର ।
ତାର କୁଳେ ସଇନ ଯେ ଅଛନ୍ତି ଅନେକ
ସମସ୍ତେ ଅଟନ୍ତି ନର ବାନର ଭଲ୍ଲୁକ ।
କରରେ ଧରିଛନ୍ତି ସେହୁ ଯେ ଗିରିବର
ଶାଳ ବୃକ୍ଷ ଉପାଡ଼ି ଧରିଛନ୍ତି କର ।
ଏମନ୍ତ ବୋଲି ଯହୁଁ ଗୁମାନସୁର ଶୁଣି
ଦଶଗ୍ରୀବ ମାରିଲେ ଏ ବାନରେ ପୁଣି ।
ଏବେ ତୁମ୍ଭେ ବାବୁରେ ଉପ୍ରୋଧ ନ କର
ଯେମନ୍ତେ ପାରିବା ବାବୁରେ ବାନରସୈନ୍ୟମାର
ଏମନ୍ତ ଆଟ ସୈନ୍ୟ ଯାଆନ୍ତି ବେଗେଚଳି
ଅଙ୍ଗଦ ହନୁ ଦେଖି ଆଗରେ ଓଗାଳି ।
ବୋଲନ୍ତି କର୍ମାଇଁରେ ଆସୁଅଛ ତୁମ୍ଭେ
ଇସ୍ତୁନାହିଁ କରେ ବୃକ୍ଷର ଅଛୁ ବୋଲି ଆମ୍ଭେ
ଶୁଣିଣ ରାକ୍ଷସକଳ ବୋଲନ୍ତି ଉତ୍ତର
ରାବଣେଶୁଣିଲୁମାଇଲ ତୁମ୍ଭେ ସ୍ଥାନକଲୁ ସ୍ଥିର
ଆଜ ଜାଣିବା ତୁମ୍ଭର ପାଇମା ବଡ଼ପଣ
ଚାହିଁଛନ୍ତି ତୁମ୍ଭର ରାମ ଲକ୍ଷ୍ମଣ ।
ଏତେବୋଲି ଦୈତ୍ୟ ଯେ ମହାକ୍ରୋଧହେଲେ
ଗଦା ନେଇ ହନୁର ଉପରେ ପିଟିଲେ
ଦେଖିକରି ପାବନି ଯେ ମହା କ୍ରୋଧ ହେଲା
ଶାଳ ବୃକ୍ଷ ଧରିଣ ସେ ଦୈତ୍ୟଙ୍କୁ ପିଟିଲା ।
ପାଖରେ ଅଙ୍ଗଦ ଯେ ଥିଲା ଉଭା ହୋଇ
ହନୁମନ୍ତ ଧାମନ୍ତେ ଅଟଳା ପୁଣ ଧାଇଁ ।
ହସ୍ତରେ ଧରିଲା ଯେବଣ ବେଳ ବୃକ୍ଷ
ନଇପେଷରେ ଦୈତ୍ୟଙ୍କୁ ପିଟେ ବାଳି ବସ୍ତ୍ର ।
ତାର ପଛ କଣ୍ଡରେ ଦୈତ୍ୟବଳ ଥିଲେ
ହନୁ ଅଙ୍ଗଦ ଯୁଦ୍ଧ ଦେଖି ସମସ୍ତେ ଧାଇଁଲେ
କପି ବୀରମାନେ ଧରିଛନ୍ତି ତରୁ ଶିଳ
ଶାଳବୃକ୍ଷ କେତୁ ଧରିଣ ଛନ୍ତି କର ।
ରାବଣ ଯୁଦ୍ଧକାଳେ ଯେଉଁମାନେ ଲାଗିଥିଲେ
ତହିଁରୁ ଖଣ୍ଡେ ଖଣ୍ଡେ ଯେବଣ ଧାଇଁଲେ ।
ସକଳ ବୁଢ଼ା ହାତରେ ପଡ଼ିଲେ ପୁଣ ଧାଇଁ
ରାକ୍ଷସଙ୍କୁ ଯେବଣ ତଳେ କଟିବେଲେ

ଘୋଡ଼ାଙ୍କ ଉପରେ ରାଉତମାନଙ୍କୁ ପକାନ୍ତି
ଧଣ ପାଞ୍ଚ ହୋଇ ରଥ ଉପରେ ଉଠନ୍ତି ।
ରଥର ସାରଥିଙ୍କି ବେଢ଼ିଣ ଜାମ୍ବୁବନ୍ତ
ତାଙ୍କର ହସ୍ତରୁ ଶସ୍ତ୍ର ଘେନ ଉଜୁଡ଼ନ୍ତି ।
ରଥକୁ ଭାଙ୍ଗି ଖଣ୍ଡ ଖଣ୍ଡ ସେ କରନ୍ତି
ରଥ ଦଣ୍ଡ ଧରିଣ ସେ ଦୈତ୍ୟଙ୍କୁ ପିଟନ୍ତି ।
କେତୁ ଯାଇ ହସ୍ତୀଙ୍କର ଥୋର ହସ୍ତ ଧରି
ଉପରୁ ଧରି ମାହୁନ୍ତକୁ ପକାନ୍ତି ସେ ମାରି ।
ଅସୁର ଉପରକୁ ସେ ଛଅନ୍ତି ପକାଇ
କେଉଁ ହସ୍ତୀ ଉପରେ ବସନ୍ତି ପୁଣ ଯାଇ ।
ଏମନ୍ତ କପିବଳ ମାରନ୍ତି ଘୋଡ଼ାଇ
ଖଣ୍ଡେ ଦୂରେ ଥାଇ ଗୁମାନସୁର ଯେବେ ଦେଖଇ
ଖର କରି ଯାନ ଯେ ବାହୁଡ଼େଲା ପୁଣି
ଅଙ୍ଗଦ ହନୁମନ୍ତ ଉପରେ ରଥ ଟେଳିଲା ଜାଣି
ବୋଲଇ ଆରେ ତୁମ୍ଭେ ବାନର ସ୍ଥିରହୋଇ
ଏତେବଡ଼ ଭରସାରେ ତୁମ୍ଭର ବାହିଁପାଇଁ ।
ରାବଣ ପରାସ୍ତେ ଜରେ ମୋତେ ସେବୁଝିଲ
ତେଣୁକରି ଆସି ସିନା ଯୁଦ୍ଧ ଆରମ୍ଭିଲ ।
ଆଜ ଜଣାଯିବରେ ତୁମ୍ଭର ସହିତ
ନଷ୍ଟେ ପାଞ୍ଚି ତୁରରେ ପୋଷିଲା ଯମରାଜ ।
ତେଣୁକରି ସିନା ମୋର ଆଗରେ ପଡ଼ିଲ
ଅକାରଣେ ଋଷକପି ଗୁଡ଼ାଏ ଆଜ ମଲ ।
ଏତେବୋଲି ବୀର ଯେ ଉଠିଲା କ୍ରୋଧହୋଇ
କରରେ ଘେନିଲା ଗଦାବର ଦୁଇ
ରଥର ଉପରୁ ଡେଇଁ ପଡ଼ିଲାକ ତଳେ
ନେଇ ଗଦା ପହଡିଲା ଗଦାର ଉପରେ ।
ଦେଖିଣ ହନୁମନ୍ତ ପାତିଲା ନେଇ ମୁଣ୍ଡ
ବଜ୍ରସମ ଗଦା ପଡ଼ି ହେଲା ଖଣ୍ଡ ଖଣ୍ଡ ।
ଗଦାବର ଭାଙ୍ଗିବା ଯହୁଁ ଗୁମାନ ଦେଖିଲା
ତତକ୍ଷଣେ ଯାଇ ରଥ ଉପରେ ଉଠିଲା ।
କୋପାନଳ ହୋଇ ସେ ଧନୁ ଯେ ଧରଇ
ବରଷଣ ପ୍ରାୟୁ କରି ଶର ଯେ ଛାଡ଼ଇ ।
ଯେତେକଶର ସବୁ ଯେ ଗୁମାନସୁର ଛନ୍ଦ
ତଳେ ନ ଭେଦଇ ହନୁମନ୍ତ ମହାଯୋଦ୍ଧି ।
ଦେଖିଣ ଗୁମାନସୁର କ୍ରୋଧକର ହୋଇ
ଅଗ୍ନିଶର ନେଇଣ ଗୁଣରେ ବସାଇ ।

ମନ୍ତ୍ର ଅଧ୍ୟାନ କରିଣ ବେଗେ ଗୁଡ଼ାକେଶ
ଏଥର ସନ୍ଧାନ କପି ହୋଇଣ ହୋଇଲା ।
ତଳକ୍ଷଣ ବାଣ ଯେ ଜଳଇ ପ୍ରଚଣ୍ଡ
ଦେଖିଣ ହନୁମାର ଯେ ହସ୍ତାରକେଲା କୁଣ୍ଡ ।
ତତକ୍ଷଣେ ବାଣ ଯାଇ ଗର୍ଭରେ ପଶିଲା
ଛେଦେ ଶରଗୋଟା ଯେ ଦୁଅର୍ଦ୍ଧ ହୋଇଗଲା
ଏପରି ଦୈତ୍ୟବଳ ଯେତେକ ଆସିଥିଲେ
ବାନରଙ୍କ ସଙ୍ଗତେ ସମସ୍ତେ ଯୁଦ୍ଧ କଲେ ।
ରାମାନସୁର ଯୁଦ୍ଧ କଲା ସହସ୍ର ଗଦାଧର
ନଉକ୍ରୋଧ ହୋଇଣ ମାରନ୍ତି କାଣ୍ଡ ଗୁଳ ।
କେହୁ ଯେ ମାରନ୍ତି ପୁଣ ଗଦାବର ତୋଳି
ଏପରି ଅସୁର ଯେ କ୍ରୋଧରେ ପ୍ରଜ୍ଜ୍ୱଳି ।
କେହୁ ପରିଘ ଖଣ୍ଡା ଘେନଣ ଧାମନ୍ତି
ଗୋଡ଼ାଇ ବାନର ଯେ ସୈନ୍ୟକୁ ହାଣନ୍ତି ।
ଏପରି ଅନେକ ଯୁଦ୍ଧ ହେଲା ଅପ୍ରମାଣ
କେହୁ କହିବ ତାହା ସଞ୍ଚପି କରିଣ ।
ରାମାନସୁର ସଙ୍ଗରେ ଷରିଶି ସହସ୍ର ଭାଇ
ପୁଅ ପୁତୁସ ଲକ୍ଷେ ଶୁଣ ମନଦେଇ ।
ଜୁଆଇଁ ଭଣଜା ତାର ସଙ୍ଗରେ ପ୍ରତ୍ୟକ୍ଷ
ସତୁରି ଲକ୍ଷ ଶାଳକ ସଙ୍ଗରେ ପ୍ରତ୍ୟକ୍ଷ ।
ରଥି ସେନାପତି ଯେ ପଦାତି ବଳ ପୁଣ
ଅକଳଣା ଅଟଇ ଯେ ପାର୍ବତୀ ଦେବୀ ଶୁଣ ।
ଶ୍ୱାନ ଗଧ ମଇଁଷି ଅଶ୍ୱ ଗଜ ବଳ
ଶାର୍ଦ୍ଦୋଳ ସାରେଣୀ ଯେ ମୃଗ ସଅମ୍ବର ।
ପାଞ୍ଚ ଯୁଣ ଓସାର ହେ ସତୁରି ଯୁଣ ଲମ୍ବ
ଏଥିରେ ସୈନ୍ୟ ଯେ ନଅଣ୍ଟ ନାହିଁ ଫନ୍ଦ ।
ମୋର ସ୍ଥିର ବଳ କ କହିପାରେ ତାହା
କେବଳ ମୋଠାରେ ସଦାଶିବ କଲେ ଦୟା
ହରପାର୍ବତୀ ସକାଶେ ମୁଁ କହିଲି ଯେ ଗ୍ରନ୍ଥ
ରାମାୟଣ ଗ୍ରନ୍ଥ ହରପାର୍ବତୀଙ୍କଠାରୁ ଜାତ ।
ଏବେ ତୁମ୍ଭର ମନକୁ ଯେପରି ଆସଇ
ଏପରି କଲ୍ୟାଣ କଲେ ପାର୍ବତୀ ଦେବୀ ସାଇଁ
କହନ୍ତି ହୈମବତୀ ଶୁଣ ହେ ଈଶ୍ୱର
ଅସୁରଙ୍କର ସଇନକୁ ଶ୍ରୀରାମଙ୍କ ବଳ ।
ଜୟ କଲେ କେବେ ସେକଥା କହ ମୋତେ
ଶୁଣିଲେ ମୋ ମନରେ ଯିବଇଁ ସରତେ ।

ସଦାଶିବ ବୋଇଲେ ହେଲା ଘୋର ରଣ
ଗୋଡ଼ାଇ ଦୈତ୍ୟ ଯେ ହାଣନ୍ତି କପିଗଣ ।
କେତେ ପଦ୍ମ ବାନର ଯେ ପଡ଼ିଲେ ଯୁଦ୍ଧର
ପାଞ୍ଚ ପଦ୍ମ ପଡ଼ିଲେ ବଧି ମୁଖା ବାନର ।
ଷାଠିଏ ସହସ୍ର ପଡ଼ିଲେ କଳା ମୁଖାସଇନ
ଗୋଲାଙ୍ଗୁଳା ପାଞ୍ଚ ଅଇବୁତ ପଡ଼ିଲେକ ପୁଣି
ଏପରି ଯୁଦ୍ଧ ଯେ କରନ୍ତି ଦୈତ୍ୟ ରହି
ସମର ଭୂମିରେ ଯେ ରକତ ନଦୀ ବହି ।
ମହାଘୋର ଯୁଦ୍ଧ ଯେ କଲେ ଦୈତ୍ୟ ବଳ
ପଳାନ୍ତି କପିବଳ ହୋଇଣ ବିକଳ ।
ଅଙ୍ଗଦ ଯୁଝୁଥିଲେ ହନୁମାର ସଙ୍ଗେ ରହି
ରିକ୍ଷବଳ ପଳାଇବାର ରହି ସେ ଦେଖଇ ।
ରହ ରହ ବୋଲି ସେ ଦୂରରୁ ଡାକ ଦେଲା
ତେନ୍ତୁଳି ବୃକ୍ଷ ସେ କରରେ ଧଇଲା ।
ମହାବେଶ କରିଣ ଧଇଲା ସେ ବେଗେ
ବୁଲଇ ପିଟିଲା ନେଇ ଦୈତ୍ୟଙ୍କର ଅଙ୍ଗେ ।
କେବଣ ରାକ୍ଷସକୁ ମାରିଲା ଡେଇଁଯାଇ
କାହାର ଦେହ ଧରି ମୁଣ୍ଡ ଯେ ମୋଡ଼ଇ ।
କାହାକୁ ନାତେ ମାରି ଦୁଏ ଫୋପଡ଼ାଇ
ବୁକୁପରେ ବସିଣ କାହାର ଚୋଟିଯେଛିଣ୍ଡାଇ
ଏପରି ଅଙ୍ଗଦ ଯେ ମହାଯୁଦ୍ଧ କଲା
ଷରିଶ ମର୍କଟ ସୈନ୍ୟ ଭଡ଼କେ ମାଇଲା ।
ହନୁ ବୁଲେ ରାମାନ କରେ ମହାରଣ
ଯହୁଁ ଉକଳ ସେ ଅଗ୍ନି ଶର ବାଣ ।
ଦେଖିକରି ଦୈତ୍ୟ ଯେ କୋପାନଳ ହୋଇ
ଧନ୍ୟରେ ବାନରେଶ୍ୱର ବୋଲଣ ବୋଲଇ
ପୁଣି ବୋଲଇ କାହାର ଅଟୁରେ ନନ୍ଦନ
ଧନ୍ୟ ତୋତେ ଗର୍ଭଧାରୀ କରେ ପୁଣ ଜନ୍ମ
ଏପରି ବୋଲି ରାମାନସୁର ଯେ ବୋଲଇ
ଲଜ୍ଜାଭରି କଥାରେ ତା ଶରୀର ଜଳଇ ।
ପୁଣି ବୋଲଇ ତୋତେ ମାଇଲେ ଜୟକାର୍ଯ୍ୟ
ତୋତେ ହାରିଲେ ଜିଣିଲେ ମୋତେବଡ଼ଲାଜ
ରାମାନସୁର ଯହୁଁ ବୋଲଇ ଏପରି
କେତେ ବଡ଼ାଇକହୁରେ ବୋଲେ ହନୁମାର
ବୋଇଲା ତୋ ସ୍ଥିର ବଳରେ ଦୁଏ ଜୟ
ତୋହର କାଳରେ ପୂରିଲା ଅବଶ୍ୟ ।

ଯେତେ ଶର ଆଣିଥିବରେ ବାନ୍ଧ ମୋଉକାବ୍ୟେ
ମୋତେ ମାରିଲୁ କରେ ଆନର ସମ୍ବନ୍ଧେ ।
ଏ ବଚନ ଯହୁଁ ହନୁମନ୍ତ ଯେ କହିଲା
ଶୁଣିଣ ଗୁମାନସୁର ଓଷ୍ଠ କାମୁଡ଼ିଲା ।
ବୋଲଇ ଆଜ ତୋର ଯେନବ ଜୀବନ
ଶଣ୍ଡକନ୍ତୁ ବୋଲିଣ ଓଗ୍ରୋଧ କଲା ପୁଣ ।
ଏତେ ବୋଲିଣ ତୂଣୀରୁ କାଢ଼ିଲା ବେଗେ ଶର
ସନ୍ଧିବ ନାରାଚ ନେଇ ବସାଏ ଗୁଣର ।
ଅତି ଯତ୍ନକରି ସେ ଶରକୁ ଛାଡ଼ିଲା
କପିର ଜୀବନ ଯେ ନେବାକୁ ବୋଲଇ ।
ଚଳଇ ନାରାଚ ଯେ ଘୋର ନାଦ କରି
ଦେଖିଣ ହନୁମନ୍ତ ଯେ ମନରେ ବିଚାରି ।
ବୋଲଇ ଶ୍ରୀରାମ ହେ ମୋତେ କର ରକ୍ଷା
ଏତେକହି ଉପରକୁ ଗଲା ସେ ଡେଙ୍ଗୁଇ ।
ନାରାଚ ଆସନ୍ତେ ଅଧାବାଟରୁ ଧଇଲା
ଦେଇ ଖଣ୍ଡ କରିଣ ସେ ଭାଙ୍ଗି ପକାଇଲା ।
କୋପାନଳ ହୁଏ ଯେ ପବନର ସୁତ
ଗୁମାନର ଯାନରେ ମାରେ ନେଇ ହାତ ।
ପାଦ ପ୍ରହାରନ୍ତେ ଯାନ ପଛକୁ ଘୁଞ୍ଚିଲା
ଯୁଣକ ଅନ୍ତରେ ଯାଇ ଘୁଞ୍ଚିଣ ରହିଲା ।
ପୁଣି ମାରୁତ ତାଳ ବୃକ୍ଷେକ ହସ୍ତେ ଧରି
ଗୁମାନସୁର ରଥରେ ପିଟିଲା ଆଣ୍ଟିକରି ।
ବେଳକୁବେଳ ଯୁଦ୍ଧ ହେଲା ଯେ ଅପାର
ଦେଖିଣ ଓଷ୍ଠ କାମୁଡ଼େ ଗୁମାନ ନାମେ ବୀର
ବୋଲଇ ଗ୍ରାମ ବାନରକୁ ମୁଁ ନପାରିଲି ମାରି
ଏତେ ବୋଲିଣ ଧ୍ୱଂସମୁନା କରେ ଧରି ।
ହନୁମନ୍ତର ଉପରେ ବେଗେ ସେ ପ୍ରହାରି
ଦୂରୁ ଦେଖି ହନୁମନ୍ତ ଭାଙ୍ଗିଦିଏ ଧରି ।
ଏମନ୍ତ ଦେଖିଲା ଯହୁଁ ଗୁମାନସୁର ଦୈତ୍ୟ
କରରେ ଧରିଲା ସେ ଅଣୀମୁନା କୁନ୍ତ ।
ହନୁର ଉପରକୁ ସେ ମାରେ ବେଗ କରି
ନାରାଚ ଆସନ୍ତେ ଅଧାବାଟେ ମାରୁତି ତା ଧରି
ଦେଇଖଣ୍ଡ କରିଣ ସେ ଭାଙ୍ଗି ପକାଇଲା
ଦେଖିଣ ଗୁମାନସୁର ଚାଟକା ହୋଇଲା ।
ଏମନ୍ତ ଯୁଦ୍ଧ ଯେ ହେଲା ଅପ୍ରମିତ
ମେରୁ ଉହାଡ଼େ ଗଲେ ଦିନକର ନାଥ ।
ଉଦସ ଯାଇ ଘନ ହେଲା ସରବେଶ
ଦେଖି ଜନଙ୍କର ଯୁଦ୍ଧ ନ ହୋଇଲା ଚେଷ୍ଟ ।
ଗୁମାନସୁର ଶର ମାରେ ନିରନ୍ତର
ଅବିଶ୍ରାମ ସମର ହେଲା ବେଳୁବେଳ ।
ରାକ୍ଷସ ସଙ୍ଗରେ ଅଙ୍ଗଦ ଯୁଝୁଥିଲା
ରକ୍ଷଦଳ ଘେନି ହନୁ ପାଶରେ ମିଳିଲା ।
ବୋଲଇ ଭାଇ ଜୟ କରିବା ଏବେ ପୁଣି
ଉଦସ ଯାଇ ପ୍ରବେଶ ହୋଇଲା ରଜନୀ ।
ଏବେ ଯୁଝିବା ଅନ୍ଧାରେ କେମନ୍ତ କରିଣ
ବାନରଙ୍କୁ ନାଶିଲେ ଦନୁଜଙ୍କ ସୈନ୍ୟ ।
ଖରପେଷ ସେହୁ ଯେ ଅଟନ୍ତି ମହାଯୋଦ୍ଧି
କପିଦଳ ସବୁ ଯେ ମାଇଲେ ନିଶୋଧି ।
ଏମନ୍ତ ଦେଖିଣ ପୁଣ ଧାଇଁଣ ମୁଁ ଗଲି
ଦୈତ୍ୟଙ୍କର ସଙ୍ଗରେ ମୁଁ ମହାଯୁଦ୍ଧ କଲି ।
ଅନେକ ହାତୀ ରଥ ସେନାପତି ମାରି
ରକତ ନଦୀ ବୋହିଟା ଯେ ବହିଲାକ ପୁରି ।
ନେଇଜଟିଣ ବାନରେ ଅନେକ ଯୁଦ୍ଧ କଲେ
ମୂର୍ଚ୍ଛି ଅଇଲା ଜୟ କରିବା ବୋଇଲେ ।
ଜୟ କରିବା ଏବେରେ କହ ହନୁମାନ
ଏମନ୍ତେ ପଚ୍ଚରଇ ବାଳିର ନନ୍ଦନ ।
ଶୁଣିକରି ପାବନ କହଇ ଉତ୍ତର
ଯୁଦ୍ଧ ଛାଡ଼ କେଉଁଣେ ଯିବା ବାଳିର କୁମର ।
ଗୁମାନସୁର ଯେ ସମରେ ନ ଘୁଞ୍ଚଇ
ଯୁଦ୍ଧ ଛାଡ଼ି ଯିବାର ତ ଆମ୍ଭର ନ ଯୋଗାଇ
ଏମନ୍ତ ବୋଲିଣ ଦୁହେଁ କୁହାକୁହି ହୋନ୍ତେ
କୁନ୍ତକ ନାରାଚ କଲା ଗୁମାନସୁର ଦୈତ୍ୟେ
ଚଳଇ ନାରାଚ ଯେ କରି ଘୋର ରଡ଼
ଧମର ଭୂମିଯାକ ଯେ ମାଡ଼ିଲା କୁହୁଡ଼ି ।
ଏକେ ରଜନୀ ହିଁ ଅଛନ୍ତି କୁହୁଡ଼ି ଘୋଟିଲା
ପର କେ ଆପଣା ବୋଲି ବାରଣ ନ ଗଲା ।
ଏପରି ଯହୁଁ ହନୁପାର ଅଙ୍ଗଦ ଦେଖିଲେ
ଧମର ଛାଡ଼ିଣ ଅଲଗା ହୋଇଣ ଗଲେ ।
ଆପଣା ଆପଣାରେ ଦୈତ୍ୟେ ହୁଅନ୍ତି ମହାସମର
ପର କେ ଆପଣା ବୋଲି କଳ ତ ନପାରି ।
ଏପରି ଅନେକ ଯୁଦ୍ଧ ହୋଇଲାକ ରାତ୍ରି
ଅନେକ ଅସୁର ବଳ ପଡ଼ିଲେ ରଣଭୂଇଁ ।

ଶ୍ରୀରାମର କପିବଳ ଘୂର୍ଣ୍ଣ ଯୁଝିଥିଲେ
ସମର ଭୂମିରେ ସେ ଥୋକେ ପଡ଼ି ମଲେ ।
ଏମନ୍ତ ଯୁଦ୍ଧ ଯହୁଁ ମାରୁତି ଦେଖିଲା
ସୁପଥରେ ଅଙ୍ଗଦକୁ ଯାଇଣ ଭେଟିଲା ।
ବୋଲଇ ସୁବଳସୁତା ଗିରିକ ବେଗେ ଯାଅ
ରଘୁନାଥଙ୍କ ଆଗରେ ବାରତା ଯାଇ କହ ।
ବୋଲନ୍ତି କଳଜ୍ୟାର ଅନନ୍ତ ଅସୁରେ
ଅନେକ ବାନର ଦେବ ମାଇଲେ ଅସୁରେ ।
ହନୁ ସଙ୍ଗେ ଯୁଦ୍ଧ କରଇ ଧୂମାକ୍ଷ
କପିବଳ ମାରନ୍ତି ଅନେକ ସଇନ ।
ଏମନ୍ତ ବୋଲିଣ ସେ କହ ଦେଖ ଯାଇ
ରଣମରେ ଭେଟିବେ ଜାନକୀର ସାଇଁ ।
ଶୁଣିକରି ଅଙ୍ଗଦ ସେ ତତକ୍ଷଣେ ଗଲା
ରଘୁନାଥଙ୍କ ଚରଣେ ଯାଇଣ ଜଣାଇଲା ।
ଚଞ୍ଚମାନେ ଅଦ୍ଭୁତ ହୁଳା ସେ କଲଇ
ରଘୁନାଥଙ୍କ ଚରଣେ ଅଙ୍ଗଦ ଓଳଗଇ ।
ଅଙ୍ଗଦକୁ ବୁଝିଣ ଶ୍ରୀରାମ ପୁଛନ୍ତି ସମ୍ବାଦ
କହ କହ ବାରତା କହ ହୋ ଅଙ୍ଗଦ ।
ଯୁଝିକରି ଅଙ୍ଗଦ କରଯୋଡ଼ି କହି
ଯୁଦ୍ଧର ଚେଷ୍ଟା ହାଟେ ଶୁଣ ହେ ରଘୁସାଇଁ
ବଢ଼ାଇ ନରପକ୍ଷ ଅନନ୍ତ ଅସୁର
ଯୁଦ୍ଧରେ ମାରିଲେ ସେ ଅନେକ ବାନର ।
ଏମନ୍ତ ଦେଖିଣ ମୁଁ ଧାଇଁଗଲି ବେଗ
ଶାଳବୃକ୍ଷ ଉପାଡ଼ି ପିଟିଲି ଦନୁଜଙ୍କ ଆଗ ।
ଅନେକ ହାତୀ ରଥୀ ମାରି ପକାଇଲି
ଧୂମାକ୍ଷସୁର ସଙ୍ଗରେ ଅନେକ ଯୁଦ୍ଧ କଲି ।
ଏମନ୍ତେ ବେଳୁଟେକ ଅନେକ ଯୁଦ୍ଧ ହେଲା
ଅଶ୍ୱତ୍ଥାମ ସମର ବେଳେହେଁ ନ ରହିଲା ।
ଏମନ୍ତେ ଆସିଲା ସେ ହୋଇଲା ରଜନୀ
କୁହୁକ ମାୟାର ସେ କଲାକ ଧୂମାକ୍ଷ ।
କୁହୁକ ମାଡ଼ନ୍ତେ ଦେବ ଜଣା ସେ ନ ଯାଇ
ଅନେକ ସୈନ୍ୟ ଦେବ ମଲେ ମାଡ଼ହୋଇ
ଆସୁର ପଡ଼ିଲେ ଦେବ ଅନେକ ସେ ସୈନ୍ୟ
ଏମନ୍ତେ ଦେଖି ମୋତେ ପେଷିଲେ ହନୁମାନ
ବୋଲଇ ସୁବଳସୁତା ଗିରିକ ବେଗେ ଯାଅ
ରଘୁନାଥଙ୍କ ସମ୍ମୁଖରେ ଯାଇଣ ଜଣାଅ ।

ମୋହର ବୋଲେ ଯୁଦ୍ଧ କରଇ ଧୂମାକ୍ଷ
ଡିହାଇଲା ରଘୁନାଥଙ୍କୁ ଆସ ବୁଦ୍ଧି ଘେନ ।
କୁହୁକ ନିବାରିଣ ଏହା ସଙ୍ଗତେ ଯୁଝିଲୁ
ରଜନୀ ନ ପାହୁଣୁ ସେ ଏହାକୁ ମାରନ୍ତୁ ।
ଏହାର ପଡ଼ିଲେଖ ଅନେକ ସଇନ
ତୁମ୍ଭେ ହେଳା ନ କର ହେ ରଘୁକୁଳମଣି ।
ଏମନ୍ତ ବୋଲିଣ ମୋତେ ସେ କହିଦେଲା
ତୁମ୍ଭର ସମ୍ମୁଖ ବେଗ ମୋତେ ସେ ପେଷିଲା
ଏମନ୍ତ କହି ଉଠିଲେ ଯେ ରଘୁକୁଳ ସାଇଁ
ଶୁଣିକରି ଉଠିଲେ ଯେ ରଘୁକୁଳ ସାଇଁ ।
ଦେଖିଣ ଶତ୍ରୁଘନ ଆଗରେ ଉଭାହୋଇ
ଆମ୍ଭେ ଥାଉ ତୁମ୍ଭେ କମ୍ପା ଯିବ ହେ ଗୋସାଇଁ
ମୋ ହଠାରୁ ଯେବେ ଉବୁରିବ ସେହୁ ଦୈତ୍ୟ
ପଛେ ତୁମ୍ଭେ କରିବ ହେ ଜାନକୀର କାନ୍ତ
ଏତେବୋଲି ଧନୁଶର ହସ୍ତରେ ଧରିଲା
ନମସ୍କାର କରିଣ ସାର ବାହାରିଲା ।
ଅସୁର ଦଳନ ରଥ ଚଳନ ଦେଲା ଆଣି
ରାମ ନାମ ସୁମରି ବସିଲା ସାରମଣି ।
ଶ୍ରୀରାମ ଲକ୍ଷ୍ମଣ ସୀତା ଭରତ ଗୁରୁଜଣ
ସୁକଲ୍ୟାଣ କରନ୍ତି ଶତ୍ରୁଘନକୁ ପୁଣ ।
ଶତ୍ରୁ ଜୟ କରିଣ ମାରିବେ ଦୈତ୍ୟବଳ
ଶୁଭକଥା ଶୁଣନ୍ତି ସକଳ ସୈନ୍ୟବଳ ।
ଚନ୍ଦନ ସାରଥି ହୋଇ ରଥ ନେଲା ବାହି
ଅର୍ଜ୍ଜୁନ ଜଣିଣ ରଥ ବେଗେ ସେ ଚଳଇ ।
ଅର୍ଜ୍ଜୁନର ବାହରେ ଜମ୍ବନ୍ତ ଶନିପୁର
ଶୁଣିକରି ଅସୁରେ ହୋଇଲେ ଅଚଳ ।
ଶ୍ରୀରାମ ପାଶେ ଥିଲେ ଜମ୍ବୁବ ସୁଷେଣ
ସୁଗ୍ରୀବ ଶତବାଳ ଗନ୍ଧମାଦନ ।
ପବନ ପନଶିଳ ବସନ୍ତ ସଜରି
ଦଧିମୁଖ କାଳମୁଖ ଦୁର୍ଦ୍ଧର କେଶରୀ ।
ଗବୟ ଗବାକ୍ଷ ଯେ ସମ୍ପାତି ପନଶିକ
ଅନେକ ସୈନ୍ୟ ଯେ ହେଲେ ଏକମେଳ ।
ସମସ୍ତେ ଶତ୍ରୁଘନ ସଙ୍ଗତେ ଚଳିଯାନ୍ତି
ଲକ୍ଷ ବାନର ସେ ପଛରେ ଗୋଡ଼ାନ୍ତି ।
ଅଦ୍ଭୁତ ହୁଳା ଅନେକ କଲଇ ସେ ବାଟେ
ଆଗେ ଅଙ୍ଗଦ ବାଟ କଢ଼ାଏ ଉଚ୍ଚାଟେ ।

ଏମନ୍ତେ ରଣଭୂମିରେ ହେଲେ ପରବେଶ
ଦେଖିଲେ ଅନ୍ଧକାର ଝଟେ ଝଣଝଣ ।
ସୂର୍ଯ୍ୟବେଦୀ ଶରକୁ ଶତ୍ରୁଘନ କାଢ଼ିଲେ
ଗୁଣରେ ବସାଇଣ ସୁମରି ଗୁଡ଼ିଦେଲେ ।
କୁଟିଳ କୁହୁକ ଯେ ପଳାଇଲାକ ପୁଣ
ନିର୍ମଳ ଦିଶିଲା ରଣଭୂମି ଗୋଟା ଜାଣ ।
ଦେଖିଲେ ମହାଯୁଦ୍ଧ କରଇ ଅସୁର
ମରମରି ପିଟାପିଟି ଲାଗିଛି ଅପାର ।
ହନୁମନ୍ତ ଯୁଦ୍ଧ କରେ ଧୂମାକ୍ଷସୁର ତୁଲେ
କ୍ରୋଧଭରେ ଦୈତ୍ୟକୁ ମାରେ ହନୁମନ୍ତ ଘାତେ
ଏମନ୍ତ ସମର ଶତ୍ରୁଘନ ଯେ ଦେଖିଲେ
ଆଗଭର ହୋଇକରି ଯୁଦ୍ଧରେ ପଶିଲେ ।
ସେନାଏ ଆବୋରିଲେ ଶତ ଶତ ରଥ
ଋକ୍ଷ ବାନର ସବୁ ଯେ ଗୋଡ଼ାଇ ମାରନ୍ତି ।
ଏହିପରି ଯୁଦ୍ଧ ଯେ କରେ ଅପ୍ରମାଣ
ଶତ୍ରୁଘନ ଆଉ ଯେ ବସିଛନ୍ତି ଯାନେଣ ।
ରଥରେ ବଜ୍ରସ୍ଥ ଯେ ଶତ୍ରୁଘନ କରି
ବାମକରେ ଧନୁଧରି ନାରାଚ ସୁମରି ।
ଗୁଣରେ ବସାଇ ସୂର୍ଯ୍ୟାବର୍ତ୍ତକ ନାରାଚ
ଝଟଇ ମାର୍ଗଣ ଯେ ଆଦିତ୍ୟର ତେଜ ।
ରେରେକାର କରିଣ ଝଙ୍କାରଇ ବାଣ
ଚଳନ୍ତେ ବାଣ ଯେ କରଇ ଗରଜନ ।
ଦୁଷ୍ଟ ତାହା ଧୂମାସୁର ଦେଖିଲାଟି
ବାଣ ପଡ଼ନ୍ତେ ତା ବାଣ ଘୂର୍ଣ୍ଣିଲା ଲେଉଟି ।
ବୋଲଇ କେହୁ ଏବେରେ ସମରେ ଦିଶିଲା
କେଉଁବାଣ ଝଙ୍କଇ ସେ ଜଣା ତ ନ ଗଲା ।
ପୁଣି ବଦରଇ ଅବା ଝଙ୍କିଲା ବାନର
କେମନ୍ତ କରି ଏହା ଜାଣିବ ନିକର ।
ଏତେ ବଲ୍ଗରି କରରେ ଧରିଲା ଧନୁ କ୍ରୋଣ
ଷନସା ଶର ନେଇ ବସାଇଲା ପୁଣ ।
ବୋଲଇ କେହୁ ଆସିଣ ସମର କରଇ
ତାହାକୁ ନାଶ କରି ଭୁଲ୍ଲେ ବେଗେ ଯାଇ ।
ଏହିପରି ବିଆରିଣ ଗୁଡ଼ିଲା ନାରାଚ
ଫୁତ୍କାର କରି ତଳେ ହୋଇ ଘୋର ତେଜ
ନାଗପାଶ ଆସିବାର ଦେଖି ରାମଭାଇ
ଗରୁଡ଼ାଶର ନେଇ ଗୁଣରେ ବସାଇ ।
ଧନୁର୍ବେଦ ପଢ଼ିଣ ଶରକୁ ବିଆରି
ବୋଲଇ ପନ୍ନଗା ଶର ରଥ କୁ ଧରକରି ।
ଏମନ୍ତ ବୋଲିଣ ଶର ବେଗେ ଦେଲେ ଗୁଡ଼ି
ପାଣଯାନ୍ତେ ଶବଦ ଶୁଭେ ଘଡ଼ଘଡ଼ି ।
ଦୈତ୍ୟର ଶର ଯେ ଶୂନ୍ୟରେ ଆସୁଥିଲା
ଗରୁଡ଼ାଶର ସବୁ ଧରିଣ ଗିଳିଦେଲା ।
ସମସ୍ତ ସର୍ପମାନଙ୍କୁ ଭକ୍ଷିଲା ଗୋଡ଼ାଇ
ଆଦନ୍ତରେ ଦୈତ୍ୟର ଶୀଷରେ ପଡ଼ଇ ।
ଦେଖିକରି ଦୈତ୍ୟ ଯେ କୋପାନଳ ହେଲା
ପନ୍ନଗ ନାରାଚ ଯେ ଗୁଣରେ ବସାଇଲା ।
ଧନୁରୁ ବାଣ ଯହୁଁ ସେ ଉଡୁଣ ଗଲା
ମହାଘୋର ଅନ୍ଧକାରେ ପଥ ନ ଦିଶିଲା ।
ଏପରି ଶର ଯହୁଁ ଶତ୍ରୁଘନ ଦେଖି
ତତକ୍ଷଣେ ପେଷିଲେ ସେ ଶର କଳୁଷକ ।
ସବୁ ଶର ତାର ଯେ ପକାଇଲେ ହାଣି
ଏପରି ଅନେକ ସମର କରନ୍ତି ଯେ ପୁଣି ।
ଧୂମାକ୍ଷସୁର ସଙ୍ଗତେ ହନୁ ଯେ ଯୁଝୁଥିଲା
ଶତ୍ରୁଘନ ଆସିବା ଦେଖି ଶୀଘ୍ରେ କରି ବେଗ
ପୁଣ ଯୁଦ୍ଧରେ ଆଉ ପଶିଲାକ ଯାଇ
ଅନେକ ହାତୀ ରଥ ଧରିଣ କଚାଡ଼ଇ ।
ତାହାକୁ ଧାଇଁକରି ଯେ ମାରଇ ଚପେଟେ
ଅଶ୍ୱକୁ ଧରି କାହା ଉପରେ କଚାଡ଼େ ।
କାହାକୁ ହୋଇ କବଳ ନେଇ ଦାନ୍ତ
ବୁକୁରେ ମାଡ଼ସି ମାରେ ବଜ୍ରମୁଥ ।
ପୁଣ ଧାଇଁଯାଇ ସାରେଣୀ କରେ ଧରି
ରଥର ଉପରେ ଯେ ତାହାକୁ କଚାଡ଼ି ।
ଖଣ୍ଡଖଣ୍ଡ ହୋଇ ରଥ ଭାଙ୍ଗିଯାଏ ଯହୁଁ
ଘୋଡ଼ା ଧରିଣ କଚାଡ଼େ ପୁଣ ତହୁଁ ।
ଡେଇଁଯାଇ ଜାହାର ରଥରେ ବସଇ
ମୁଣ୍ଡ ଧରିଣ ତାହାର ମୋଡ଼ିଣ ଛିଣ୍ଡାଇ ।
ଏହିରୂପେ ଯୁଦ୍ଧକରେ ଅଙ୍ଗଦ ଜାମ୍ବବନ୍ତ
ପଚିଶ ଯୂଥପତି ମାରନ୍ତି ଏମନ୍ତ ।
ସୁଗ୍ରୀବର ନଳ ନୀଳ ତାରଷ ସୁଷେଣ
ସନ୍ଧସ ଶତବାଳି ଯେ ବସନ୍ତ ପବନ ।
କଞ୍ଚନ କାଳମୁଖ ଦଧିମୁଖ ଆଉ
ସାରସ ଗାବକ୍ଷ ବଦଧ ଶତବଳ ।

ଏମାନେ ମାଇଲେ ଯେ ଅନେକ ଦୈତ୍ୟବଳ
ଖଣ୍ଡନ୍ତି ଦୈତ୍ୟମାନେ ଗର୍ଜ୍ଜନ ମହାରୋଳ ।
ଏମନ୍ତେ ଅନେକ ଯୁଦ୍ଧ ହେଲା ଅପ୍ରମିତ
ରଜନୀ ଶେଷ ହୋଇଣ ହୋଇଲା ପ୍ରଭାତ ।
ଦେବତାଙ୍କ ଆଜ୍ଞରେ ଶୁଭେ ଶଙ୍ଖ ଧ୍ୱନ
ଗଗନରେ ଉଦୟ ହେଲେ ଦିନମଣି ।
ଦେଖିଲା ଗୁମାନସୁର ଶତ୍ରୁଘ୍ନ ଆସୁ
ଧନୁଶର ଧରିଣ ଶୂନ୍ୟକୁ ସେ ଚାହେଁ ।
ଦେଖିଲା ପଡିଲେ ସବୁ ପତାକ ସୈନ୍ୟବଳ
ସବୁଦିଗରେ ପୂରିଛନ୍ତି ମର୍କଟ ଭଲୁମାନ ।
ଏମନ୍ତ ଦେଖିଣ ଯେ ଅସୁର ଗୁମାନ
ମହାକ୍ରୋଧ ହୋଇଣ ଭାବରେ ମନେ ପୁଣି ।
ଦେଖିଲା ରଥ ଗଜ ସାରଥୀ ଗଧ ଶ୍ୱାନ
ଶାର୍ଦ୍ଦୂଳ ସଅଶ୍ୱର ଗଜ ଦଳମାନ ।
ସମସ୍ତଙ୍କୁ ମାଇଲେ ହେ ବନର ବାନରେ
ଦେଖିଣ ସ୍ତମ୍ଭୀଭୂତ ଅସୁର ମନରେ ।
ଉଦ୍ଧରଇ ବନ ଜୀବ ଯେବଣ ନରଦେହୀ
ଦୈତ୍ୟବଳଙ୍କୁ ମୋର ଖଦାଇ ସେ ଖାଇ ।
ଗଜ ଭଗକୁ ସେ ଅନାଇ ଦେଖ ପୁଣ
ପୃଷ୍ଠ ପ୍ରକୁଷ୍ଟ ଅଛନ୍ତି ଦେନ ଲକ୍ଷ ଜାଣ ।
କ୍ଷରିଣସହସ୍ର ଯେ ଅଛନ୍ତି ସଙ୍ଗେ ଭାଇ
ଭଣୋଇ ଅଛନ୍ତି ତାର ଦୁଇଲକ୍ଷ ରଥ ।
ବାଉକୋଟି ସେନାପତି ରଥୀଙ୍କର କୁଳେ
ଅଛଗରେ ସମସ୍ତେ ଅଛନ୍ତି ସୈନ୍ୟଦଳେ
ଦେଖିକରି ବସ୍ତ ଯେ ଗୁମାନସୁର ହୋଇ
ଛଡରେ ଡାକଦେଲା ମାରରେ ବୁହାଇ ।
ଶୁଣିଣ ଶତ୍ରୁଘ୍ନ ଧନୁ ଟଙ୍କାର କଲା
ମନଭେଦ ଶର ନେଇ ଗୁଣରେ ବସାଇଲା ।
ଆଚ୍ଛଣ ଶରକୁ ଯେ କହିଲେ ସ୍ତୁତିବାଣୀ
ଦୈତ୍ୟବଳ ସଭିଙ୍କି ପକାଅ ବେଗେ ହାଣି ।
ଶୁଣିକରି ମନଭେଦ ବେଗେ ଚଳିଗଲା
ଦୈତ୍ୟବଳ ସମସ୍ତଙ୍କୁ ହାଣି ପକାଇଲା ।
ଦେଖିଲା ଗୁମାନସୁର ରଥ ପରେ ଥାଇ
ପୃଷ୍ଠ ପ୍ରକୁଷ୍ଟ ଶାଳେକ ସମସ୍ତେ ପଡ଼ିଲଇଁ ।
ଗଜ ରଥ ସହିତେ ସକଳେ ନାଶ ଗଲେ
ରଣଭୂମିରେ ଆଉ ଗୋଟିଏ ନ ଦିଶିଲେ ।

ଦେଖିଣ ଉଗ୍ରରଇ ସହସ୍ରାନନ ହୂତ
ଧନ୍ୟରେ ମାନବୀ ତୋର ଜନମ ଯଥାର୍ଥ ।
ଏକା ଶରରେ କେତେ ସୈନ୍ୟଙ୍କୁ ହତ
ବହୁତ କାଳରେ ଯୋଦ୍ଧା ପାଇଲି ତୋତେତ
ହାଣିବା କଣିବା ଆଜ ଜାଣିବାରେ ଭଲ
ମର ହୋଇ ଦୈତ୍ୟଙ୍କର ମାଉଁସ କୁ ଖାଇ
ଏମନ୍ତ ବୋଲି କ୍ରୋଧ ଯେ ଗୁମାନସୁରହୋଇ
ଲକ୍ଷେକ ବ୍ରହ୍ମଶର ଦିନ୍ଧଇ ବୁହାଇ ।
ନାରାୟଣ ଶରେ ଶତ୍ରୁଘ୍ନ ତା ନିବାରି
ଅସୁର ଶର ଦୈତ୍ୟ ଦେଖେଣ ହେଲା ଭ୍ରମ.
ବାଦଲ ଶରେ ତାହା ଜବାରେ ରାମ ଭାଇ
ପଶୁପତି ଶରକୁ ଦୈତ୍ୟ ଯେ ଦିନ୍ଧଇ ।
ଦେଖି ଶତ୍ରୁଘ୍ନର ଅନନ୍ତ ନାରାଚ କଲା
ପାଶୁପତ ଶର ଜପିକାସବୁ ପକାଇଲା ।
ଦେଖିଣ ଗୁମାନସୁର କାଳ ବଢାଳ ମାରି
ଘୋଟିଲା ତ୍ରିପୁର ଅନ୍ଧାରମୟ କରି ।
ଶତ୍ରୁଘ୍ନ ମାରିଲା ଯେ ଅରୁଣ ହେଲା ଶର
କାଳ ବଢାଳ ପଶିଲେ ସମୁଦ୍ର ଭିତର ।
କ୍ରୋଧଭର ହୋଇଣ ଯେ ଶ୍ରୀରାମର ଭାଇ
ଈଶ୍ୱର ଦେଲା ଶର ତୂଣୀରୁ କାଢ଼ଇ ।
ପଶୁପତି ବୋଲିଣ ଅଟଇ ଯେଉଁ ଶର
ପାଞ୍ଚକୋଟି ମୁନ ଯେ ଏକଇ ଶରର ।
ତତକ୍ଷଣେ ସେ ଧନୁରେ ବସାଇଲା
ମନ୍ତ୍ର ଅଧ୍ୟାନ କରି ଶର ପେଷିଦେଲା ।
ଚଳଇ ନାରାଚ ଗର୍ଜ୍ଜନ ଘୋର କରି
ଦେଖିଣ ଗୁମାନ ଯେ ଅନେକ ଶର ମାରି ।
ନିଛାଇ ନ ପାରିବା ଶରକୁ ଯେ ସେହୁ
ଅପାଳିଟ ଶର ସେ କଟାଇବଟି ଜାହୁଁ ।
ଯେବେ ସେ ଅନନ୍ତ ଦେବତା ସେବଥାନ୍ତା
ଆମ୍ଭର ଶର ତେବେ ସିନା ନିବାରି ହୁଅନ୍ତା
ଆକଟ ନୋହିବାରୁ ଗଲା ସେ ବେଗେ ଚଳି
ଗୁମାନସୁର ଉପରେ ପଡ଼ିଲା କଣ୍ଠ ଗଲାଛିଡ଼ି
ଅସୁରକୁ ମାରିଣ ସେ ଶତ୍ରୁଘ୍ନ ଶର
ସମୁଦ୍ରେ ସ୍ନାନ କରି ପଶିଲାଏ ତୂଣୀର ।
ଦୈତ୍ୟର ଶରୀରୁ ପ୍ରାଣ ଯେଉଁବେଳେ ଗଲା
ପାଞ୍ଚକୋଶ ମାଡ଼ି ଭୂମି ଉପରେ ପଡ଼ିଲା ।

ଦେଖିଣ ଲକ୍ଷ ମର୍କଟ ଜୟ ଜୟ ଭଣେ
ଭଲୁ ସୈନ୍ୟମାନେ ଗାଲଭୁଷି ବଜାଇଲେ ।
ସକଳ ଦେବତା ଆସି ପୁଷ୍ପ ବରଷିଲେ
ଆକାଶରେ ଥାଇ ଶ୍ରୀରାମଙ୍କୁ ପ୍ରଶଂସିଲେ ।
ବୋଇଲେ ସେ ଏକ ଆତ୍ମା ଅଟ ରଘୁବୀର
ଦେବଙ୍କ କଷ୍ଟ ନିବାରି ମଞ୍ଚରେ ଜନ୍ମହୋଇ
ଏମନ୍ତ ଦୈତ୍ୟକୁ ସେ ନିବାରି ଶତ୍ରୁଘନ
ସନ୍ନିଧେ ମିଳିଲେ ଆସି ଅଙ୍ଗଦ ହନୁମାନ ।
ତାରଷ ନଳନୀଳ ଜାମ୍ବୁବ ସୁଷେଣ
ସଙ୍ଗତରେ ଅଛନ୍ତି ଭଲ ବାନର ଯେ ସୈନ୍ୟ
ଶତ୍ରୁଘନ ସଣଧିରେ ପ୍ରବେଶ ହେଲେ ଯାଇ
ରଣଜୟ କରିଣ ସୁବଳସ୍ଥା ଗିରିକି ଚଳଇ ।
ସବୁଙ୍କର ଶରୀର ଅରୁଣ ବର୍ଣ୍ଣ ଦିଶେ
ଭାଇମାନ୍ତି ଘେନଗଲ ପ୍ରାପ୍ତ ଶରୀର ବିକାଶେ
ସମସ୍ତେ ଚଳିଲେ ସୁବଳସ୍ଥା ଗିରି
ଅସୁର ଦଳନ ଇଥିରୁ ଶତ୍ରୁଘନ ଜୁଝାର ।
ଶ୍ରୀରାମ ଚରଣେ ଯାଇ ଓଳଗି ଶୁଆଇ
ଉଠ ଉଠ ବୋଲିଣ ସେ ଶ୍ରୀରାମ ଆଜ୍ଞା ଦେଇ
ଜାନକୀ ଚରଣେ ଶିର ଓଳଗିଲେ ଯାଇ
ଜନକ ସୁତା ବୋଇଲେ ଏରୂପ କାହିଁପାଇଁ
ହନୁମନ୍ତ ବୋଇଲେ ଅସୁର ବଧ କଲୁ
ରକତ ପିଚ୍ଛିଳାରେ ରଙ୍ଗ ଯେ ଦିଶିଲୁ ।
ଭରତ ଚରଣେ ଓଳଗେ ଶିର ପୁଣି
ଲକ୍ଷ୍ମଣଙ୍କୁ ନମସ୍କାର ହେଲେ ତତକ୍ଷଣି ।
ତେତେବେଳେ ଦେଲ ଯେ ହୋଇଛୁ ଖଣ୍ଡବଡ଼
ଘଡ଼କର ଭିତରେ ଯେ ଅସୁରକୁ ମାର ।
ଶୁଭକଥା ଦେଖିଣ ଯେ ଶ୍ରୀରାମ ଉଠିଲେ
ଜନସ୍ଥଳ ଘେନିଣ ଯେ ମାଜଣା ହୋଇଲେ ।
ନଗରେ ପଶିଣ ବେଗେ କଲେକ ସ୍ନାହାନ
ନିତ୍ୟକର୍ମ ସାରିଣ ଅଇଲେ ରଘୁରାଣ ।
ଅମଳାନ ବସ୍ତ୍ର ପିନ୍ଧି ତିଳକ ଲଗି ହେଲେ
ସୁରବଲ ମେଳହୋଇ ଭୋଜନ ବେସେକଲେ
ସମସ୍ତେ ଭୋଜନ କରି ହେଲେକ ସନ୍ତୋଷ
ବଶିଷ୍ଠଙ୍କୁ ସୁମନ୍ତ ଯେ କହିଲେ ବିଶେଷ ।
ସହସ୍ରାନନର ଜ୍ୟେଷ୍ଠ କୁମର ଗୁମାନ
ଶତ୍ରୁଘନ ତାହାକୁ ପକାଇଲେ ହାଣି ।

ରାଜାମାନେ ଜାଣିଲେ ଗୁମାନସୁର ମଲା
ଶ୍ରୀରାମଙ୍କ ଭାଇ ତାଙ୍କୁ ନାରତେ ମାଇଲା ।
ଏମନ୍ତ କୁହାକୁହି ହୁଅନ୍ତି ରାଜାଗଣ
ଅସୁର ମାରିବା କଥା ଜାଣିଲେ ସର୍ବେ ପୁଣ
ଏବେ ଶୁଣ ଗୋ ପାର୍ବତୀ ଏକମନ ହୋଇ
ଗୁମାନସୁର ଯହୁଁ ପଡ଼ିଲା ରଣଭୂଇଁ ।
ତାହାର ଥାଟ ସୈନ୍ୟ ଯେତେକ ଆସିଥିଲେ
ସମର ଭୂମିରେ ସେ ସମସ୍ତେ ପ୍ରାଣଦେଲେ ।
ସେଥିରୁ ସୈନ୍ୟ ଅବୁରିଥିଲେ ଯେତେଜଣ
ଗୁମାନସୁର ପଡ଼ିବାରୁ ପଳାଇଲେ ପୁଣ ।
ସହସ୍ରାନନ ଛାମୁରେ ଯାଇଣ ମିଳିଲେ
ଯୁଦ୍ଧରେ ଚେଷ୍ଟା ମାନ ଯାଇଣ କହିଲେ ।
ଶୁଣିକରି ସହସ୍ରମାଥ ତାହାଙ୍କୁ ପଚାରଇ
କସ କସ ବାରତା ଯେ କହରେ ବୋଲଇ
ଶୁଣିକରି ବୀରମାନେ କହନ୍ତି ଉତ୍ତର
ସାବଧାନେ ଶୁଣ ହେ ସହସ୍ରମାଥ ବୀର ।
ଗୁମାନ କେନାମଣିକ ପେଶିଥିଲୁ କୁହ
ରାମ ବିଭୀଷଣକୁ ବାନ୍ଧି ଆଣିବା ପାଇଁ ।
ତୁମ୍ଭର ଆଜ୍ଞାରେ ଯେ ଆମ୍ଭେମାନେ ଗଲୁ
ଲଙ୍କାଗଡ଼େ ଯାଇଣ ପ୍ରବେଶ ହୋଇଲୁ ।
ଖୋଜିଲୁ ପଶିଣ ଆମ୍ଭେ ସମସ୍ତଙ୍କ ପୁର
କାହିଁ ନ ଦେଖିଲୁ ବିଭୀଷଣ ରଘୁବୀର ।
ଏମନ୍ତ ଲଙ୍କାପୁର ଖୋଜନ୍ତେଣ ବୁଲି
ଏକଇ ବାନର ଦେଖ ଆଗେ ଉଭାଳି ।
ଅନେକ ସୈନ୍ୟ ସେ ସଙ୍ଗରେ ଅଛି ଘେନ
ସର୍ବେ ଅଟନ୍ତି ଭଲୁ ବାନର ସରମା ।
ସେ ବୋଇଲେ ଅସୁର ଯାଉଅଛ କେଣେ
ତର ଭୟ ନାହିଁକରେ ଆମ୍ଭେ ଅଛୁ ଏଣେ ।
ଏମନ୍ତ ବୋଲିଣ ସେ ଯହୁଁ ତ ବୋଇଲା
ଶୁଣିଣ ଗୁମାନସୁର ଆମ୍ଭଙ୍କୁ ଆଜ୍ଞା ହେଲା ।
ବୋଇଲା ବାନରଙ୍କୁ ଉଦ୍ବୋଧ ନ କର
ଯେମନ୍ତେ ମରିବ ତେମନ୍ତ କରିବାର ।
ଏମନ୍ତ ଆଜ୍ଞା ପାଇ ସମସ୍ତେ ଧାଇଁଲୁ
ବାନରଙ୍କୁ ଗଦାରେ ନେଇଣ ପିଟିଲୁ ।
ବଜ୍ରସମ ଅଟେ ଦେବତଙ୍କ ଶରୀର
ଗଦାଗଣ ଆମ୍ଭର ହେଲା ଶତେ ଚୂର ।

ସବାଇଗ୍ନ ଦେଖି ଗୁମାନ ସେକ୍ଷଣେ ଅଗ୍ନିଶର
କୁଣ୍ଡ ବସ୍ତ୍ରାର ତାହା ଗିଳେ ହନୁମାର ।
ଏମନ୍ତେ ଯୁଦ୍ଧ ଚଳିଁରେ ହେଲା ଅପ୍ରମିତ
ଦିବସ ଶେଷେ ହୋଇଣ ହେଲା ପୁଣ ରାତ ।
ତେବେ ସେ ଯୁଦ୍ଧ କେବେହେଁ ନ ସରିଲା
ଅନ୍ଧାର ହେବାରୁ ରାତ୍ର ଜଣା ନ ଗଲା ।
ଏହିପରି ଯୁଦ୍ଧ ହୋଇ ରାତ୍ର ହେଲା ଶେଷ
ଦୁଇଆଡ଼ୁ ସୈନ୍ୟ ଯେ ପଡ଼ିଲେ ଅଶେଷ ।
ଏମନ୍ତେଣ ଚଳିଁରେ ମହାଯୁଦ୍ଧ ହୋଇ
ସମସ୍ତେ ଶତ୍ରୁଗଣ ସେଠାରେ ମିଳଇ ।
ସେ ଆସିଣ ସମରେ ପଶିଲେକ ପୁଣ
ମହାଘୋର ଯୁଦ୍ଧ ସେହୁ କଲେକ ଯେ ଜାଣ ।
ତାହାର ମହିମା ଦେବ ଜଣା ନ ଯାଇ
ସମର ଭୂମିରେ ପଶି ଯୁଦ୍ଧ ସେ କରଇ ।
ତାର କୁଳେ ଆସିଥିଲେ ଯେତେ ସୈନ୍ୟବଳ
ଘୋଡ଼ାଇଣ ମାଇଲେ ଅନେକ ଦୈତ୍ୟବଳ ।
ନଳପକ୍ଷ ହୁତବସ୍ତୁ ସେ ହୋଇଣ ମାରନ୍ତି
ଏମନ୍ତେ ବାନର ଦଳ ଯୁଦ୍ଧ ଯେ କରନ୍ତି ।
ନଶଙ୍କ ହୋଇଣ ଯୁଦ୍ଧ କଲୁ ସେ ଭୂମିରେ
ଗୁମାନ ସଙ୍ଗେ ସଂଗ୍ରାମ କରି ଯୁଦ୍ଧ କରେ ।
ଦେଳକୁଦେଳ ସମର ଅନେକ ହୋଇଲା
ଦେଖିଣ ସଂଗ୍ରାମ ଭଇ କ୍ରୋଧଭର ହେଲା ।
ଶରେକ ଭେଦିଲା ଯେ ନାମ ମନରେଣ
ପୁତ୍ର ନାଶ ସଙ୍ଗତରେ ସମସ୍ତଙ୍କୁ ଛେଦ ।
ଗୁମାନସୁର ଯେ ଅନେକ ଯୁଦ୍ଧ କଲା
କୌଣସି ପ୍ରକାରେ ଶତ୍ରୁଗଣକୁ ନ ଜିଣିଲା ।
ପଶୁପତ ଶର ଶତ୍ରୁଘନ ଗୁଡ଼ିଦେଲା
ଗୁମାନସୁର ତାହା ନିବାରି ନ ପାରିଲା ।
ତତକ୍ଷଣି କଣ୍ଠରେ ପଡ଼ିଲା ଆସି ଶର
ଦୁଇ ଖଣ୍ଡ ହୋଇଣ ପଡ଼ିଲା ପୁତ୍ର ତୋର ।
ଦେଳ କୁଇସଢ଼ିଲାରେ ଗୁମାନ ପଡ଼ିଲା
ଏମନ୍ତ ବୋଲି ବାରତା ଦୂତ ଜଣାଇଲା ।
ପୁତ୍ର ମଲା ବୋଲିଣ ସହସ୍ରାନନ ଶୁଣି
ଆହା ପୁତ୍ର ବୋଲିଣ ସେ ପଡ଼ିଲା ଧରଣୀ ।
ସଚେତ ହୋଇ ପୁଣ ଉଠିଣ ବସଇ
ଆହାରେ ଗୁମାନବୋଲିମୋହଭରେବେଳଇ ।
ଗୁଣମାନ ସୁମରି ବାହାଇ ସହସ୍ରାନନ
ତୋର ବଦନରେ କାଳେ ହେଲା ନଉନ ।
ଏମନ୍ତ ବୋଲିଣ ସେ ବୁକୁରେ କରତାଡ଼
ହୃଦସ୍ତ ଉଜଲେ ଆପଣା ଭୁଜକୁ କାମୁଡ଼ ।
ପୁଣି ସେ ବୋଇଲାରେ ଏତେ କୃତ୍ୟ କଲା
କାଳସର୍ପ ମୁଖରେ ସେ ଅଙ୍ଗୁଳ ଭରିଲା ।
ମହାକ୍ଷମୀ ଅଟୁ କୁଳରେ ଗୁମାନ କୁମର
ସ୍ୱର୍ଗରେ ଏକାକୀ ତୁ ଜିଣିଲୁ ପୁରନ୍ଦର ।
ସଂଗ୍ରାମ ଭୂମିରେ ତୋର ଗୁମାନ ଜନ୍ମତ
ଏବେ କମ୍ପା କାହୁରେ ତୁ ହୋଇଲୁ ଏମନ୍ତ
କଅବା ଧନୁଶର ନଥିଲା ତୋର କର
ବସି ନଥିଲୁ କରେ ଯାନର ଉପର ।
ତୁମ୍ଭର ସମର ନ କଲୁ କରେ ବଳା
ଦାଉତ ସେଥିପାଇଁ କଲୁକ ଅବହେଳା ।
ଏତେ କହିକରି ସେ ବହୁତ ଶୋକ କଲା
ରାଣୀହଂସ ପୁରେ ଯାଇ ବାରତା ହୋଇଲା
କଳଣା ନଯାଇ ଯେ ଶୋକରେ ତାହାଙ୍କର
ପଦ୍ମାବତୀ କନ୍ୟା ଥିଲା ଅନ୍ତପୁର ମଧ୍ୟର ।
ସେ କନ୍ୟା ବାରତା ହେ ପାଇଲାକ ପୁଣ
ଲୁଣ୍ଠ ହୋଇଯାଏ ପୁଣ ତୋହର ବଦନ ।
କୁମ୍ଭ ବହୁତେ କେମନ୍ତେ ବଞ୍ଚିବ ଜୀବନ
କମ୍ପାଇଁ ଜୀବନ ରଖିବ ଆଉ ପୁଣ ।
ଧିକ ଧିକ ହେଉ ଯେ ମୋହର ଶରୀର
ନିର୍ଲଜ ଜୀବ କମ୍ପାଇଁ ରହିଛି ହୃଦୟର ।
ମୁହିଁ ରଡ଼େଣୀ ତ ମନ୍ଦକୃତ୍ୟ କଲି
ସ୍ୱାମୀ ମୋର ଯିବାବେଳେ ବାହୁଁମୁଁଓଗାଳିଲି
ତେଣୁକରି ଏ ଦଣ୍ଡ ହେଲା ଅବା ପୁଣି
କମ୍ପା ଜୀବନ ଧରି ମୁଁ ରହିଛି ରଡ଼େଣୀ ।
ସ୍ୱାମୀର ବଚନେ ଜସ କାର୍ଯ୍ୟ ଯେ ମୋହର
କେମନ୍ତେ ମୁହିଁ ଗୁହିଁବ ସଂସାର ଜନଙ୍କର ।
ଏତେବୋଲି ମନରେ କରଇ ବିଚାର
କେଣେ ଗୁଡ଼ିଗଲ ବୋଲି ଉଜଳ ଶରୀର ।
ପୁଣି ବୋଲଇ ବିଧାତା ମୋତେ ଏହା କଲା
ପୁବାକାଳେ ମୋତେ ବିଧବା କଷ୍ଟ ଦେଲା ।
ଜାଣିଲି ବଡ଼ ମନ୍ଦ ଅଟୁ ତୁହୋ ବିହି
କୁମ୍ଭଯୋଗ୍ୟ ଏତେ ଶାସ୍ତି ପାଇଲି ଯେ ମୁହିଁ

କେଉଁରୂପେ ସଂସାରେବୋଲନ୍ତି ତୋତେଭଲ
ମୂର୍ଚ୍ଛି ଜାଣିଲ ତୁମ୍ଭ ଅଙ୍ଗ ପାଷାଣ ତୁଲ ।
ଏମନ୍ତ ବୋଲିଣ ଯେ କରନ୍ତି ରୋଦନ
କ୍ଷଣ କ୍ଷଣକରେ ସେ ହୁଅଇ ଅଜ୍ଞାନ ।
ପୁଣି ସେ ସ୍ୱାମୀ ବୋଲି ଉଚ୍ଚରେ କାନ୍ଦଇ
ତୁମ୍ଭର ବଚନେ ଅଲଙ୍କାର ଯେ ନ ଇଚ୍ଛଇ ।
ସ୍ତ୍ରୀମାନଙ୍କର ଭୂଷଣ ଯେ ଅଟନ୍ତି ପୁରୁଷ
କେଉଁ ଦୋଷେ କାନ୍ତମୋତେ କଲେକଣରସ
ଏତେକହି ବହୁତ ରୋଦନ ଯେ କଲା
ପୁତ୍ରକୁ ନେଇଣ ଶ୍ୱଶୁର ପାଶରେ ସମର୍ପିଲା ।
ବୋଇଲା ପୁତ୍ରକୁ ମୋର ସମ୍ଭାଳ ତୁମ୍ଭେହେଇ
ଏହାର ପିତା ମଲା ଗୁରୁସ୍ତ ମୋର ନାହିଁ ।
ଦଶକୋଟି କୁମରରୁ ନବକୋଟି ମଲେ
କୋଟିଏ କୁମର କେବଳଅଛଇ ମୋରକୁଳେ
ସ୍ୱାମୀ କାର୍ଯ୍ୟ କରିବ ଅଗ୍ନିକର ହେଆଶ୍ୱେପଣ
ସହସ୍ରାନନ ଆଗରେ କହିଲା ଯେ ପୁଣ ।
ମୋର ଶରୀର ବଞ୍ଚାଏ ଯେବେ ମୁଁ କରିବ
ସ୍ୱାମୀର ଚରଣେ କେମନ୍ତେ ମୁଁ ଖଟିବ ।
ଏତେବୋଲି ଚିତା ଯେ କଲା ଆୱେଶଣ
ଖଣ୍ଡଖଣ୍ଡକୁ ଘୃଣିଣ ପଶିଲା ହୁତାଶନ ।
ସହସ୍ରଗ୍ରୀବ ଦେଖିଣ ବ୍ୟାକୁଳ ହୋଇଲା
ଏତେକାଳେ ପୁତ୍ରକଷ୍ଟ ବଇବ ମୋତେହେଲା
ଏମନ୍ତ ବୋଲିଣ ଦଶଦଶକୁ ଅନାଇ
ଗୁମାନ ମୋତେ ଘୁଡ଼ିଲୁ ବୋଲଣ କାନ୍ଦଇ ।
ଏଥିଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ତରଣୀ ସହସ୍ର କୁମର ମଲେ ଯେ ତାହାର ।
ଦଶଲକ୍ଷ ନାତି ତନଲକ୍ଷ ଜୁଆଁଇ ମଲେ
ସମସ୍ତଙ୍କ ଘରଣୀ ଶୁଣିଣ ସେହିକାଳେ ।
ପଦ୍ମାବତୀ ସଖୀ ଯିବାର ଦେଖିଲେକ ପୁଣ
ସମସ୍ତେ ବେଶ ଭୂଷଣ ହେଲେ ତତକ୍ଷଣ ।
ଅମଳାନଶାଢ଼ୀ ପିନ୍ଧିଅଳଙ୍କାରକେତେକେତେ
ସମୁଦ୍ର ଭିତରେ ଯାଇ ପଶିଲେ ସଭିଏଁ ।
ବାର ସାଗର ସ୍ତ୍ରୀଏସେସମୁଦ୍ରେ ଝାସଦେଲେ
ବଧୂ ନାତୁଣୀ ବଧୂ ଦୁହିତାଙ୍କର କୁଳେ ।
ଯେ ଯାହା ସ୍ୱାମୀ ସଙ୍ଗରେ ହେଲେଯାଇମେଳ
ମୁକତି ଲଭିଲେ ସେ ଦୈତ୍ୟଙ୍କର କୁଳ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଯେତେକ ଦୈତ୍ୟବଳ ମଲେ ରଣେ ପୁଣ ।
ସେମାନଙ୍କ ଶବ ଯେ ରଣଭୂମିରେ ରହି
କସହେଲା ସେକଥା ଦେବ ଯେ ମୋତେକହି
ଦେବକଣ୍ଠ ସେଠାରେ କେହିକି ପରବେଶ
ଯୋଗିନୀ ପିଶାଚୁଣୀ ଭକ୍ଷିଲେକିକ ମାଂସ ।
କେତେକଣ ଫେରି ଯେ ଦୈତ୍ୟବଳ ଗଲେ
ସହସ୍ରାନନ ଆଗେ ଯାଇ ବାରତା କହିଲେ
ଅଠାଇଶ ସହସ୍ର ଯେ ମଲେ କପି ଭାଲୁ
ଏମାନେ ବଞ୍ଚିଲେକିକ ସେ ରଣଭୂମିରୁ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ଯେତେ ସୈନ୍ୟ ସହସ୍ରାନନରଆସିଲେରଣଭୂଇଁ
ସମସ୍ତେ ନାଶ ଗଲେ ସତର ଘଟିଲ ବଳ
ସହସ୍ରାନନ ଆଗରେ ବାରତା ଯାଇକହି ।
ତ୍ରିଅବୋହୂ ସଙ୍ଗରେ ସମସ୍ତେ ଝାସଦେଲେ
ମୁକତ ହୋଇଣ ସର୍ବେ ସ୍ୱର୍ଗରେ ବସିଲେ ।
ଯେତେକ ଦୈତ୍ୟବଳ କପି ଭାଲୁ ମିଶି
ରଣଭୂମିରେ ସମସ୍ତେ ହୋଇଥିଲେ ଧ୍ୱଂସି ।
ରଣଭୂମି କଣ୍ଟକ ହେବାରୁ ତୁମ୍ଭେ ଜାଣ
୬୪କୋଟିଯୋଗିନୀଙ୍କ ଆଜ୍ଞାହେଲାବାସେକପୁଣ
ଆଜ୍ଞାପାଇ ଯୋଗିନୀବଳ ରଣଭୂମିକି ଗଲେ
ପିଶାଚୁଣୀ ବାଜନ କୋଟି ଯେ ଅଇଲେ ।
ରକତ ମାଂସକୁ ଭକ୍ଷ ଦୈତ୍ୟ ଭସ୍ମ କଲେ
ସନ୍ତୋଷ ହୋଇଣ ଦେଶ ମନରେ ବସିରଲେ
ଦେବକାର୍ଯ୍ୟ କରିବା ବୋଲି ସର୍ବେ ଫେରି
ଯେତେକ ଭାଲୁ ବାନର ରଣରେ ଥିଲେ ପଡ଼ି
ଖଣ୍ଡି ମୁଣ୍ଡ ଯୋଡ଼ିଣ ଶବ ସଜାଡ଼ିଲେ
ରଣଭୂମି ଘୁଞ୍ଚ ଦେଶ ନଗରେ ମିଳିଲେ ।
ସ୍ନାନ ନ ସାରିଣ ଯେ ଜଳ ଭଲେ ପାନ
ସ୍ୱବଳସ୍ତ୍ରୀ ବସିଣ ସାରୁଥେ ରାହୁ ପୁଣ ।
ଦେଶଯାକେ ଯିବାରୁ ରଣଭୂମି ଶୂନ୍ୟ ହେଲା
ଶୁକ୍ରଦେବ ଯାଇଣ ରଣଭୂମିରେ ଉଭା ହେଲା
ମୃତ୍ୟୁସଞ୍ଜିବନୀ ପଢ଼ି ପ୍ରାଣ ମନ୍ତ୍ରିଲେ ଦେଖ
ସବୁ ଶବ ଉପରେ ସିଞ୍ଚିଲେ ଶୁକ୍ରଦେବ ।
ସେ ମନ୍ତ୍ର ପଢ଼ିଣ ସକଳେ ବଞ୍ଚିଲେ
ଶୂନ୍ୟକୁ ଯାଇଣ ମନ୍ତ୍ରୀ ଅମୃତ ବରଷିଲେ ।

ବଳପାଇ କପି ଶଲ୍ଲ ଗ୍ରହିଲେ ଖଣ୍ଡ ଖଣ୍ଡ
ରଣ ନ ଦେଖି ଗଲେ ସୁବଳ ପର୍ବତ ପାଶ ।
ଶଲ୍ଲବେଳେ ଲକ୍ଷକପି ଗର୍ଜ୍ଜନ ନାଦ କଲେ
ସୁବଳଗିରିରେ ସମସ୍ତେ ଚମକି ପଡ଼ିଲେ ।
ଜାମ୍ବବକୁ ଚାହିଁଣ ଯେ ଶ୍ରୀରାମ ପଚାରି
ଏ କେଉଁ ଶବଦ ମନ୍ତ୍ରୀ କହ ହେ ବସ୍ତର ।
ଅସୁର ଆସିଲେ କି କଲେ ଗରଜନ
ଜାମ୍ବବ ବୋଇଲେ ନୀଳକୁ ହକାରବେ ପୁଣ
ଅରୁଣ ନାମେ କପିକି ବେଗେ ଭେଟଦେଲେ
ନୀଳ ସେନାପତିକି ଆଣରେ ବୋଇଲେ ।
ଶୁଣିଣ ଅରୁଣ ଯେ ବେଗେ ଚଳିଗଲା
ନୀଳ ସେନାପତିକି ଘେନିଣ ଅଇଲା ।
ଶ୍ରୀରାମ ପଚାରିଲେ ଶବଦ କିଏ କଲା
ନୀଳ ବୋଲେ ସ୍ୱର୍ଗରୁ ଦେବତା ଅଇଲା ।
ମଲ୍ଲ ବୃକ୍ଷ ଶଲ୍ଲଙ୍କୁ ଜାଆଇଁଦେଲେ ସେଠି
ସେସ୍ଥଠାରୁ ସୈନ୍ୟବଳ ଉଠିଲେ କୁହାଟି ।
ବାନର ଶଲ୍ଲବଳ ଉଠିଣ ଆସିଲେ
ଆସିଲାବେଳେ ସେ ଗର୍ଜ୍ଜନ ନାଦ କଲେ ।
ପୁଣି ଶ୍ରୀରାମ ପଚାରନ୍ତି ଶୁଣ ନୀଳ ତୁମ୍ଭେ
ଦୈତ୍ୟବଳ ମଲେ ଯୋଗିନୀଙ୍କ ଲେକମ୍ପା ଏବେ
ନୀଳ ବୋଇଲେ ଦେବ ବୁଝାଗଲେ କହି
ସେକଥା ପାଶୋରିଲ କି ଜାନକୀର ପାଇଁ ।
ଚଉଷଠି କୋଟି ଯୋଗିନୀ ଘେନିଣ ବାସେଲୀ
ବାଉନକୋଟି ପିଶାଚୁଣୀ କାଳିକା ଘେନିକରି
ସୁବଳସ୍ଥା ଗିରିର ଦକ୍ଷିଣ ପାର୍ଶ୍ୱେ
ରହିଛନ୍ତି ଶୁଣ ହେ ଜାନକୀ ବିଳାସେ ।
ଯୁଦ୍ଧ ସରିବାରୁ ସେ କରନ୍ତି ଗମନ
ରକ୍ତ ମାଂସ ଦୈତ୍ୟଙ୍କର କରନ୍ତି ଭୋଜନ ।
ଏମନ୍ତ ଦେବକୁଟ ସେ ହୋଇଛି ଏଠାରେ
ଶୁଣିକରି ଦାଶରଥି କୋପଭର ହେଲେ ।
ପାଙ୍ଗି ବୋଇଲେ ଦେବ ସହସ୍ରାନନ ପୁଣ
ସୁତ ନାଶ ମରିବାରୁ କଲକ କାରୁଣ୍ୟ
ପୁଣି କସ ବସୁର କଲକ ସୁଗ୍ରୀବ
ଏକଥା ବିସ୍ମୃତ ମୋତେ କହସେଁ ଲୋକ୍ୟଦେବ
ସଦାଶିବ କହନ୍ତି ଶୁଣ ଗୋ ଗିରିଜା
ସହସ୍ର ଆନନ ଯେ ନ ଧରେ ଧଇର୍ଯ୍ୟ ।

ଅତି ସ୍ନେହର ମୋର ସୁପାଙ୍କସୁର ଜାତ
କେ କହିପାରିବ ତାର କ୍ରୋଧ ଅପ୍ରମିତ ।
ପଡ଼ିଲ ଗଡ଼ିଲ ଯେ ଲୋଟଇ ଧରଣୀ
କ୍ଷଣ କ୍ଷଣକରେ ସେ ହୁଏ ମହାମାନୀ ।
ପୁଣି ଉଠିଣ ଯେ କୋହାଳ ଗୁରୁଇ
କାହିଁ ଗୁରୁଗଲୁ ବଳା ଚଣ୍ଡି କାହିଁ ଦେଇ ।
ଏବେ ଗୁରୁପିବାକୁ କଲୁ ତୁ ବସୁର
ମୋତେ କହ କମ୍ପାରେ ନ ଗଲୁ କୁମର ।
ମୋତେ ଗୁରୁ କୁମରରେ କେଉଁଆଡ଼େ ଗଲୁ
ଏ କାଳରେ ମୋହର ତୁ ଭେଳା ବୁଡ଼ାଇଲୁ
ମୋର ଆୟୁଷ ଘେନି କମ୍ପା ନ ବର୍ତ୍ତିଲୁ କୁହ
ତୋର ମରିବାରେ ଆଇଲ ଦୁଃଖ ମୁହିଁ ।
ଏମନ୍ତ ପୁତ୍ରଗୁଣ ସୁମରି କାନ୍ଦଇ
ଆପଣା ମୁଣ୍ଡ ଯେ ମେଦିନୀରେ କୋଡ଼ହୋଇ
ଅତିଷ୍ଠ ବ୍ୟାକୁଳରେ ଲୋଟଇ ଧରଣୀ
ଦେନକର ନେଇଣ ମାତଇ ମୂର୍ଚ୍ଛନ ।
ସଚେତ ହୋଇଣ ସହସ୍ରମାଥ ଯେ ବୋଇଲା
ଆଜ ସବୁଙ୍କୁ ମାରିବ ମନରେ ବିଚାରିଲା ।
ରାମ ଲକ୍ଷ୍ମଣ ଦୁହିଁଙ୍କୁ ଆଜ ମୁଁ ମାରିବଇଁ
ସୁପାଙ୍କସୁରର କଷ୍ଟ ତେବେ ମୁଁ ପାଶୋରିବ ।
ଏମନ୍ତ ବୋଲିଣ ବହୁତ ପଣ୍ଡିତ ଯେ କଲା
ଗୁଣସାଗର ମନ୍ତ୍ରୀଙ୍କ ଚାହିଁଣ ଆଜ୍ଞା ଦେଲା ।
ବୋଇଲା ସାଜବେଗେ ମୋହର ଥାଟସୈନ୍ୟ
ଆଜ ମୁଁ ମାରିବ ଜନେଷ୍ଟେ ରାମ ଲକ୍ଷ୍ମଣ ।
ଏମନ୍ତ ବୋଲିଣ ଯହୁଁ ସହସ୍ରାନନ କହି
ଶୁଣିକରି ମନ୍ତ୍ରୀବର ବଚନ ବୋଲଇ ।
ଆଜଦିନ ଦେବ ବିଳମ୍ବ କରିବା
ଦାନ ପୁଣ୍ୟ ଦେବ ପୂଜା ସମସ୍ତ ସାରିବା ।
କାଲି ପ୍ରଭାତରୁ ସବୁ ଥାଟ ସୈନ୍ୟ ଘେନି
ଯାଇଣ ବଧିବା ରାମ ଲକ୍ଷ୍ମଣ ଦେନି ।
ଶୁଣିଣ ସହସ୍ରାନନ ଶାନ୍ତ ଯେ ଭଜଇ
ଆପଣେ ସହସ୍ରାନନ ମାଜଣା ହେଲା ଯାଇ
ବିପ୍ରଙ୍କୁ ଡାକିଣ ଯେ ଦାନ ପୁଣ୍ୟ କଲା
ଦେବତାଙ୍କ ଆଳରେ ଭୋଗ ବଳିଦିଲା ।
କରଟୀ ବୋଲିଣ ଯେ ଅଟଇ ଦେଶ ତାର
ଦୋଦା ଗୁରୁଜ ମଇଁଷି ଯେ ଅପାର ।

ନନ୍ଦନ ହୋଇଣ ସେ ଦେବାଙ୍କି କହିଲ
ରାମ ବିଭୀଷଣଙ୍କୁ ମୁଁ ମାରିବି ବୋଇଲ ।
ଏମନ୍ତେ ଶମିର ଆସି ହୋଇଲ ପରବେଶ
ସସ୍ତ୍ରମାଥ ପୁରରେ ସବୁରି ମନ ଯେ ବିରସ
ଜାହାର ମନରେ ପୁଣ ହରଷ ଯେ ନାହିଁ
ପୁତ୍ର ନାତି ଜୁଆଇଁ ପଡ଼ିଲେ ରଣଭୂଇଁ ।
ସବୁଙ୍କର ହୋଇଛି ଚଞ୍ଚଳ ଯେ ମନ
ନିଦ୍ରା ନ ଆସଇ ଯେ ଜାହାର ନୟନ ।
ସମସ୍ତେ ରହିଲେ ଯେ ଉଜାଗର ହୋଇ
ବଲଙ୍କା ନଗ୍ର ଲୋକେ ବିଚାର କଲେ ତହିଁ ।
ନ ପୁଣ ବାନର ସୈନ୍ୟ ଘେନିଣ ରଘୁପତି
ଗୁମାନଙ୍କୁ ମାରିଣ ଅବା ଏଥକୁ ଆସନ୍ତି ।
କେବୋଲେ ଆମ୍ଭର ରାଜା ଯୋଗ୍ୟପଣକଲେ
ସାହେରଭିତରେ ନାବରେ ବନ୍ଧ ବନ୍ଧାଇଲେ
ବାଟନଥିଲେ ବରିଆରେ କେମନ୍ତ ଆସନ୍ତେଣ
ନାବ ସେତୁବନ୍ଧରେ ଆସନ୍ତି ବାନର ସୈନ୍ୟ
କେ ବୋଲଇ କର୍ମା ସେ ବନ୍ଧକୁ ଆସିବେ
ରାବଣ ପୁଷ୍ପକ ବିମାନେ ସୁଖେଣ ବସିବେ ।
ଦୁଇଘଡ଼ିରେ ପାରି ହୋଇବେ ସମୁଦ୍ର
ଯେଉଁ ବିମାନକୁ ଠାବନ୍ତ ଏ ଭୁବନ ଚଉଦ ।
କେ ବୋଲଇ ଶ୍ରୀରାମ ଘେନ ଆସିବେ ଏଥ
ତାର ସଙ୍ଗେ ଯୁଦ୍ଧ କଲେ ମାରିବେ ନିଅଚ ।
କେ ବୋଲଇ କର୍ମା ସେ ଆସିବେ ତ ପୁଣ
ସବୁ ଏବେ ନାଶ କଲେ ଆମ୍ଭର ରାଜନ ।
ଶ୍ରୀରାମ ଲେଖାଦେଲେ ଏହାଙ୍କୁ ଯିବାପାଇଁ
ବିଭୀଷଣଙ୍କୁ ରାଜା କରିବେ ଲଙ୍କାଭୂଇଁ ।
ସେକଥାକୁ ଏହି ଯେ କଲେ ମନେ ରୋଷ
ବିଚାରିଲେ ଶ୍ରୀରାମର କିଛି ନାହିଁ ଦୋଷ ।
ବିଚାରକରି ଏ ଯେବେ ଥିର ପେଷିଥାନ୍ତେ
ଏ ଠାବକୁ ଆସ ବୋଲି ଡକାଇ ଆଣିଥାନ୍ତେ
ଏହାଙ୍କର ବୋଲ ଯେବେ ନ କରନ୍ତେସେହୁ
ତେବେ ସିନା ଯୁଦ୍ଧ କରନ୍ତେ ମହାବାହୁ ।
ନବୁଝି ରାଜା ଆମର ତାଙ୍କପରେ ରୋଷ
ପୁତ୍ରନାତି ଶଳା ଜୁଆଇଁ ଗଲେ ନାଶ ।
କେ ବୋଲେ ତଥ୍ୟକରି ଜାଣିଥାଅ ଏହା
ନିଶ୍ଚୟ ତାହାକୁ ଯେ ଧର୍ମ ଅଛି ସାହା ।

ତାଙ୍କୁ ଜୟ କରିବେ ଯେ ଏହାଙ୍କର ବଳେ
ଆପଣା ଇଚ୍ଛାରେ ଏହୁ ମରିବେ ସକଳେ ।
ଦଶଗ୍ରୀବ ଯେ ତାହାର ଭାରିଯା ହେରିକଲ
ସେହି ଛଳେ ଶ୍ରୀରାମ ଯେ ଲଙ୍କାକୁ ଅଇଲ ।
ଶତବାର ପର୍ଯ୍ୟନ୍ତ ସେ ମାଗିଲ ଧରଣୀ
ନ ଦେବାରୁ ମାରିଲ ସେ ଲଙ୍କା ନୃପମଣି ।
ଶଚେମୁଖା ରାବଣର ଅଳଙ୍କାରେ ବର
ମଇନ ଅଟଇ ସେହୁ ବଣ ଯେ ଗ୍ରୀବର ।
ରାବଣ କହିବାରୁ ଅଯୋଧ୍ୟାକୁ ଗଲ
ସଙ୍କଟ ମରାଇଣ ଆପଣେ ନାଶଗଲ ।
ଏହି ଶ୍ରୀରାମ ସାନଭାଇ ଯେ ମାରିଲ ତାହାକୁ
ସେହି ନାଶ କଲ ଏବେ ଗୁମାନସୁରକୁ ।
ମଣ୍ଡିରାବଣ ଅଟଇ ଯେ ଇନ୍ଦ୍ରଜିତ ପୁତ୍ର
ଶ୍ରୀରାମଙ୍କୁ ମାରିବାକୁ କଲ ସେ କପଟତ ।
ତାର ତଳଭାଇକୁ ଯେ ଆଣିଲ ସେହୁ ହରି
ସେ ମାଇଲ ତାହାକୁ ଯେ ପାଶୁପତ ଧରି ।
ଭରତନାମେ ତା ଭାଇ ଅଯୋଧ୍ୟାରେ ଥିଲ
ଲକ୍ଷେ ରାଜା ଘେନିଣ ସେ ଲଙ୍କାକୁ ଅଇଲ
ଈଶ୍ୱର ଯେ କଳ କଲେ ବାଟରେ ତାସଙ୍ଗେ
ହାରିକରି ପଳାଇଲେ କପିଳାସ ବେଗେ ।
ସେହି ଈଶ୍ୱର ବର ଯେ ଦେଇଛନ୍ତି ଏହାକୁ
କେମନ୍ତେ ଜିଣିବ ଏ ଶ୍ରୀରାମଚନ୍ଦ୍ରଙ୍କୁ ।
ସ୍ୱରଭାଇ ଲକ୍ଷେ ରାଜା ରିଷ କପିବଳ
ଯାହା ବୋଲେ ପଥର ନ ବୁଡ଼ଇ ଜଳ ।
ଯାହାର ବୋଲେ ବନ ଜୀବ କରନ୍ତି ସମର
ରାଜାପାଖେ କପିଏ ଆସି କହିଲ ସକଳ ।
କେହୁ ବୋଲନ୍ତି ତୁମ୍ଭେ ଯେ ନିଶ୍ଚୟଥାଅଜାଣି
କାଲି ପ୍ରଭାତରେ ବିଜେ କରିବେ ନୃପମଣି ।
ଯାହାଙ୍କର ଆଗରେ କି ରହି ସେ ପାରିବେ
ଯୁଦ୍ଧ କଲେ ଦୈତ୍ୟକୁଳ ସେହି ନ ଜିଣିବେ ।
ଯାହାର କୋପକୁ ଯେ ଡରଇ ଶଚୀସାଇଁ
ବାନର ସୈନ୍ୟ ଘେନ କି ଯୁଦ୍ଧ ସେ କରଇ
କାଲି ସମରେ ଯେ ହାରିବେ ନିଶ୍ଚେ ପ୍ରାଣ
ଆରେକ କହିଲ ପୁଣି ଶୁଣ ମୋ ବଚନ ।
ବୋଲଇ ଯାହାର ଯେ ଧର୍ମବଳ ଥାଇ
ଲକ୍ଷେ ଆୟୁଧ ଥିଲେ ତାକୁ ଜୟ ସେକରଇ

ଏମନ୍ତେ ବଳଇ ଯେ କରନ୍ତ ବର୍ବର
ଆକାଶରେ ଉଦୟ ଯେ ହେଲେ ଦିବାକର ।
ଦେବତାଙ୍କ ଆଜ୍ଞେ ଯେ ଶୁଭେ ଶଙ୍ଖଧ୍ୱନି
ପଲଙ୍କପରୁ ଉଠେ ସହସ୍ରାନନ ପୁଣି ।
ଗୁଣସାଗର ମନ୍ତ୍ରୀକି ହକାରି ଆଣିଲା
ସୈନ୍ୟମୋର ସଜକର ବୋଲଣ ଆଜ୍ଞାଦେଲା
ଆଜ ସେ ଜାଣିବା ତା ତାର ଷଣ୍ଢୀପଣ
କରୁଥେ ଖାଇଁବେ ଯେ ରାମ ବିଭୀଷଣ ।
ଏତେବୋଲି ସାରଥିକି ବୋଲଇ ତାହାର
ବେଗେ ସଜକର ଆଣରେ ରଥବର ମୋର
ଶୁଣିକରି ସାରଥି ଯେ ତତକ୍ଷଣେ ଗଲା
ରଣଜିତା ଯାନ ସେ ଯତନେ ସାଜିଲା ।
ରଥର ଚଉପାଶେ ମାଳାଝରି ତୋରା
ଅଣଶୋଭ ଦିଶେ ଯେ ବୋହଲା ବଇଲା ।
ସ୍ଫଟିକ ବୃନ୍ଦ ବର୍ଣ୍ଣନ ଝଲକ ଦିଶନ୍ତି
ଗଗନରେ ଉଦୟକ ହୋଇଛୁ ତାରାପନ୍ତି ।
ଚଉପାଶେ ମଣ୍ଡିଲା ଶ୍ୱେତ ଯେ ଚାମର
ଉପରେ ରଙ୍ଗନେତ ଉଡ଼ଇ ଫର ଫର ।
ଛତ୍ର ଯେ ପିଳୁଳା ଅନେକ ଅଛି ଶୋଭି
ରଥର ଜ୍ୟୋତିକ ଯେ ବର୍ଣ୍ଣିଣ ନୁହଇ ।
କିସ ଉପମା ଦେବା ସେ ରଣଜିତା ଯାନ
ଯତ୍ନରେ ମଣ୍ଡି ସାରଥି ଆଣିଲା ତତକ୍ଷଣ ।
ସହସ୍ରମାଥ ସମ୍ମୁରେ କଳିକ ରଥ ନେଇ
ତତକ୍ଷଣେ ସହସ୍ରାନନ ଅଇଲା ସଜହୋଇ ।
ରଥରେ ସହସ୍ରମାଥ ବିଜେ ଯାଇ କଲା
ଖର କମାଣ ମୁଦ୍‌ଗର ରଥରେ ଥୋଇଲା ।
ଆବର ଥୋଇଲା ସେ ଫର ଖଣ୍ଡା କୋନ୍ତ
ନାନାବର୍ଣ୍ଣରେ ବାଣମାନ ଯେ ସମ୍ଭୂତ ।
ସହସ୍ରମାଥ ସାରଥିକି ବର୍ତ୍ତିଣ ପୁଚ୍ଛଇ
ଲଙ୍କାଗଡ଼କୁ ରଥ ନିଅ ବେଗେ ବାହି ।
ସହସ୍ରମାଥର ଆଜ୍ଞା ପାଇଲା ଯହୁଁ ସେହି
ଶୁଣିକରି ସାରଥି ଯେ ତତକ୍ଷଣେ ବାହି ।
ଆକାଶ ମାର୍ଗରେ ରଥ ବେଗେ ଚଳିଯାଇ
ନାବବନ୍ଧେ ସକଳ ସୈନ୍ୟ ଉଚ୍ଚହୋଇ ।
ଅଜୟସେନ ନାମରେ ସେହିଣ କୁମର
ଥାଟ ସୈନ୍ୟ ଘେନକରି ଅଛଇ ସଙ୍ଗର ।

ଆବର ତାହାର ଯେ ଦୁଇଲକ୍ଷ ପୁତ୍ର
ବାରଲକ୍ଷ ଜ୍ୱାଇଁ ନାତି ଦୁଇଲକ୍ଷ ।
ଷାଠିଏଲକ୍ଷ ତାର ଶାଳକଗଣ ପୁଣ
ନଅକୋଟି ସେନାପତି ଅଟନ୍ତି ପରିମାଣ ।
ରଥ ପଦାତିବଳ କଳଣା ନ ଯାଇ
ନାବବନ୍ଧ ଉପରେ ସମସ୍ତେ ଗଲେ ବାହି ।
ରାମାନସୁର ସଙ୍ଗରେ କଟୁ ମରଥିଲେ
ଆଜ ସମସ୍ତେ ସହସ୍ରାନନ ସଙ୍ଗରେ ଅଇଲେ
ପାଞ୍ଚଲକ୍ଷ ବଳ ଯେ ଧୁମୁର ବଜାନ୍ତି
ଧୁମୁର ଶବଦରେ ମୂଳକ ଚମକାନ୍ତି ।
ସାତ ମଭୂତ ମହୁରୀ ଦଶମଭୂତ ନିଶାଣ
ପାଞ୍ଚମଭୂତ କାହାଳୀ ବଜାଇ ଘନ୍ତୁ ଟାଣ ।
ସୈନ୍ୟବଳ ତାର ଯେ କଳଣା ନଯାଇ
ମହା ସମ୍ଭ୍ରମରେ ବିଜେ ସଇତାରି ସାଇଁ ।
ତତକ୍ଷଣେ ପ୍ରବେଶ ଯେ ହେଲା ଲଙ୍କଭୂଇଁ
ଗୁଣସାଗର ମନ୍ତ୍ରୀକି ବୋଲଇ ଶୁଣ ତୁହି ।
ଦେଖ ହୋ ମନ୍ତ୍ରୀବର ସମ୍ମୁଖୀ ନଗ୍ରମାନ
ଦଶାନନ ବସ୍ତୁନେ ପୁର ଦିଶେ ସ୍ଥାନମାନ ।
ବିଭୀଷଣ ଚଣ୍ଡାଳ ଯେ ଏତେ କୃତ୍ୟକଲା
ଶତ୍ରୁର କୁଳେ ଛେଦ ଭେଦ ଯେ କହିଲା ।
ନୋହିଲେ କି ଶ୍ରୀରାମ ରାବଣ ମାରଇ
ତାହାର ବଳେ ଏତେ ଯୋଗ୍ୟତା ହେବକାହିଁ
ଏବେ ଚାଲ ଆମ୍ଭେ ଯେ ଏମନ୍ତ କରିବା
ଏ ସମୟରେ ରାମ ବିଭୀଷଣକୁ ମାରିବା ।
କର୍ମାର ଜଳମୂ ହେ କରିବା ଆମ୍ଭେ ଆଉ
ତାହାକୁ ମାରିଲେ ମୋର ପୁଷ କଷ୍ଟଯାଉ ।
ଏମନ୍ତ ବୋଲି ସହସ୍ରାନନ କହଇ ବଚନ
ଗୁଣସାଗର ମନ୍ତ୍ରୀ କହେ କରଯୋଡ଼ି ପୁଣ ।
ଶ୍ରୀ ଦେବ ସହସ୍ରମାଥ ଏମନ୍ତ ନୁହଇ
କପଟଯୁଦ୍ଧ କଲେ ହେ ରଣରେ ଜୟ ନୋହି
ଦଶଗ୍ରୀବ ନଗରରେ ଆମ୍ଭେ ଯେ ରହିବା
ପଛେ ଥାଟ ସୈନ୍ୟ ଘେନ ତାସଙ୍ଗେ ଯୁଝିବା
ଜେତେ ବଡ଼ ସାମର୍ଥ ଯେ ଯୋଦ୍ଧା ଅଟଇ
କେମନ୍ତ ଯୁଦ୍ଧରେ ଆମ୍ଭଙ୍କୁ ଜିଣିପିବେ ସେହି
ଶୁଣିଣ ସହସ୍ରମାଥ ଯେ ବୋଲଇ ଉତ୍ତର
ଆଗେ ଯେ ମାଇଲା ମୋର ରାମାଙ୍କ କୁମର ।

ତାହାକୁ କେମନ୍ତେ ଆମ୍ଭେ ଉପ୍ରୋଧ କରିବା
କେତେ କୃତ୍ୟ ସେହୁ ଯେ ନକଲ ମାନବା ।
ଶୁଣିଣ ମନ୍ତ୍ରୀବର ବୋଲଇ ବଚନ
ଅଳପ ଥାଟେ ନାଶଗଲ ଗୁମାନସୁର ପୁଣ ।
ସଂଗ୍ରାମ ଭୂମିରେ ଯେ ଗୁମାନ ବହନ୍ତ
ସମରଭୂମିରେ ହେଳା ଯୁଦ୍ଧ ଯେ କରନ୍ତ ।
ତେମନ୍ତେ ଲୋକ ହାବେ ନ ଜଣଇ ପୁଣି
ଏମନ୍ତ ବଚନ ଯେ ବୋଲନ୍ତ ମନ୍ତ୍ରୀମଣି ।
ଏବେ ଆମ୍ଭ କୁଳେ ସେ ହୋଇବେ ଜାନ୍ଧିବର
ଏମନ୍ତ ବୋଲଣ ଯେ କହନ୍ତ ଈଶ୍ୱର ।
ସକଳ ଥାଟ ସୈନ୍ୟ ଯେ ଅଛନ୍ତ ସଙ୍ଗରେ
ସୈନ୍ୟ ଯୁଦ୍ଧ କରନ୍ତୁ କୁମ୍ଭ ଅଜସ୍ର କୁମରେ ।
ପୁତ୍ରକୁ କଣନ୍ତା ଯେବେ ହୋଇବାକ ସେହୁ
ଥାଥ ସୈନ୍ୟ ଘେନ ଆମ୍ଭେ ପଶିବାକ ତହୁଁ
ଶ୍ରୀରାମ ବିଭୀଷଣକୁ ଆଣିବା ଆମ୍ଭେ ଧରି
ଗୁମାନସୁର ବନ୍ଧନେ ତାକୁ ପକାଇବା ମାରି
ତାହାର ଶରୀରଯାକୁ ଆମ୍ଭେସଙ୍ଗରେପିବାଘେନ
ଯାହା ସଙ୍କାଶେ ନାଶଗଲ ଦଶଗ୍ରୀବ ପୁଣି ।
ଏମନ୍ତ ବୋଲଣ ଯହୁଁ କହିଲା ମନ୍ତ୍ରୀବର
ପ୍ରବୋଧ ବଚନ ଶୁଣି ରହିଲା ରାବଣ ନବର
ଏମନ୍ତେତାରକୁଳେଥିଲେଯେତେଥାଟସୈନ୍ୟ
ସମସ୍ତେ ମିଳଲେ ଆସି ଲଙ୍କାର ଭୁବନ ।
ପୁତ୍ର ନାତି କୁଆଁରେ ଶଳା ସେନାପତି ରଥି
ସମସ୍ତେ ଉଲଗି ହେଲେ ସସ୍ତ୍ରାନନ କତି ।
ବେଗିଣ ସସ୍ତ୍ରମାଥ ଯେ ବୋଲଇ ଉତ୍ତର
ଅଜସ୍ରସେନ ରହୁ ଇନ୍ଦ୍ରଜିତ ପୁର ।
ଅକ୍ଷୟକୁମର ନବର ରହୁ ଆର ଯେ କୁମର
ନିଶଙ୍କ ରହୁ କୁମ୍ଭକର୍ଣ୍ଣ ଭୁବନର ।
ଏମନ୍ତେ ତାର ଦୁଇଲକ୍ଷ ଯେ କୁମର
ଚଉଷଷ୍ଠିସହସ୍ର ଊଣା ରହିଲେ ଯେ ସମସ୍ତଙ୍କର
ଥାଟ ସୈନ୍ୟସବୁ ଯେ ରହିଲେ ଠଣାଧର
ଗଜ ଅଶ୍ୱ ଗର୍ଜ୍ଜନ କ ସମୁଦ୍ର ଲହରୀ ।
ବାଣ୍ଟି ଦାଟ ପୁରିଣ ଯେ ରହିଲା ସୈନ୍ୟବନ
ମେଘମା ଚମକୁଅଛି କୁଣ୍ଡର ଗହଳ ।
କେତୁବେଳ ସୈନ୍ୟ ଯେତେ ଚଳ ଆସୁଛନ୍ତି
ସାମନ୍ତପାଶ ନବସୁରେ ରହିଲେ ଦଶଲକ୍ଷ ନାତି

ଗୁମାନସୁରର ଯେ ଜ୍ୟେଷ୍ଠପୁତ୍ର ଗୋଟି
ଶତ୍ରୁଜିତ ବୋଲିଣ ନାମ ଯେ ତାହାରଟି ।
ସେ ଯାଇ ରହିଲା ସେ ସହସ୍ରମାଥ କତି
ପାବଙ୍କ ଆଗରେ ସଭାଶିକ ଯେ କହନ୍ତ ।
ଶୁଣ ଗୋ ଭଗବତୀ ଏକମନ ହୋଇ
ସୁବଳସ୍ଥା ଗିରିରେ ରହିଲେ ରଘୁସାଇଁ ।
ବିଭୀଷଣକୁ ବସାଇ ଯେ କହନ୍ତ ବଚନ
କିସ ଏବେ କରିବା ନ ଜାଣୁ କି ତ ପୁଣ ।
ଗୁମାନଅସୁର ଯେ ଆସିଥିଲା ବାହୁ
କାଲି ସମର ଭୂମିରେ ପଡ଼ିଲୁ ସେ ରହୁ ।
ତାହାର କୁଳେ ଯେତେକ ସୈନ୍ୟଆସିଥିଲେ
ସମସ୍ତ ସୈନ୍ୟସାକ ଯୁଦ୍ଧରେ ନାଶଗଲେ ।
କେବଳ ଦଶ ପାଞ୍ଚ ଗଲେକ ପଳାଇ
ବାରତା କହିଲେ ଯାଇ ଲଙ୍କା ରାଜାଠାଇଁ
ପୁତ୍ରର ନିଧନ ସହସ୍ରାନନ ଯେ ଜାଣିଲା
ଦୁଃଖରେ କାଲି ବଦନ ବିକଳ ଯେ ଜଳ ।
ମହାକ୍ରୋଧ ହୋଇ ଆଜ ବାହୁଣ ଆସିବ
ପୁତ୍ରର ଛଳେ ଅନେକ ଯୁଦ୍ଧ ସେ କରିବ ।
ଏଥିକୁ କିସ ଏବେ କରିବା ଉପାୟେ
ଅଙ୍ଗଦ ହନୁ ଉଡ଼ିଲେ ନିଃଶ୍ୱାସର ଘାଏ ।
କିସ ଉପାୟ କରିବାବୋଲି ଜଳନ୍ତିରଘୁସାଇଁ
ଶୁଣିକରି ସୁଷେଣ ଯେ କରଯୋଡ଼ି କହି ।
ବୋଲଇ ହେ ସ୍ୱାମୀ ଏବେ ନ କର ବିସ୍ମର
ଏଥିକୁ ଉପାୟ ଦେବ ଅଛଇଁ ମୋହର ।
ଶ୍ୱେତନାମେ ପର୍ବତ ଯେ କାଶୀ ନିକଟରେ
ଏକଇ ମହୌଷଧି ଅଛଇ ତହିଁ ପରେ ।
ସେ ପର୍ବତ ପଙ୍କଜରେ ଅଛଇ ଦେଖ ଜାଣ
ଏକ ବୃକ୍ଷଣାଗଛ ଯେ ଅଛଇ ତହିଁ ପୁଣ ।
ସେ ବୃକ୍ଷର ପତ୍ର ଯେ ଅଟଇ ବଡ଼ ସରୁ
ତାହାର ମହିମା ଦେବ କେ କହିବ ପାରୁ ।
ବୃକ୍ଷର ଉତ୍ସର୍ଗ ଯେ ଅଟଇ ବେନି ହାତ
ତାର ଶାଖ ସହଇ ଶ୍ୱେତନାମେ ଯେ ପର୍ବତ
ଆନ କେହି ଦୁହନ୍ତା ଯେ ନୁହଇ ତାହାକୁ
ସେତେ ପର୍ବତ ପଶିଲା ପାତାଳ ତଳକୁ ।
ଧନ୍ୟ ସେ ବୃକ୍ଷରାଜ ଯେ ଅଟଇ ଅମରଷ
କଲ୍ପାନ୍ତେକ ବୃକ୍ଷ ସେ ଅଟଇ ମହୌଷଧି ।

ସେ ବୃକ୍ଷରୁ ଚେର ଖଣ୍ଡିଏ ବାଟିଣ ପିଇଲେ
ଶତେସିଂହର ବଳ ଯେ ହୋଇବ ଶରୀରରେ
ପତର ମୁଠିଏକ ଶିଳାରେ ବାଟିବ
ଶରୀରେ ବୋଳିବେ ସବୁଦିନରେ ସେହି ଭାବ
ଅପୂର୍ବିକ ହୋଇଥିବ ଯେବଣ ଯୁବତୀ
ଶୁଦ୍ଧସ୍ନାନ କରି ବୃକ୍ଷରୁ ପୁଷ୍ପ ଯେ ଖାଆନ୍ତି ।
ସେହି ସ୍ନାନ ପାଳରେ ହୁଅନ୍ତି ଗର୍ଭବାସ
ଦଶମାସ ସମ୍ପୂର୍ଣ୍ଣେ ଜାତ ହୁଅଇ ତାରଶିଷ୍ୟ
ସେ ବୃକ୍ଷ ବକଳ ଘେନି କପାଳେ ଘେନଲେ
ନୟନେ ଅଞ୍ଜନ ଘେନ ସ୍ତ୍ରିଏକ ରଞ୍ଜିଲେ ।
ଯେଉଁ ସ୍ତ୍ରୀକି ରଞ୍ଜିବ ଲାଗେ କାମ ବାଧା
ସେ ସ୍ତ୍ରି ସେ ପୁରୁଷକୁ ଧରି କରେ ଶ୍ରଦ୍ଧା ।
ଯେବଣ ସ୍ତ୍ରୀ ପୁରୁଷ ସଙ୍ଗରେ ନ ଗଚ୍ଛଇ
ସେ ବୃକ୍ଷ ବକଳ ଯେବେ ହସ୍ତରେ ବାନ୍ଧଇ ।
ଦେଖିବା ମାତ୍ରକେ ପୁରୁଷ ହୁଅଇ ଉଚାଟ
ସେହିକ୍ଷଣି ସ୍ତ୍ରୀର ଯାଏ ଅନଙ୍ଗ କଷ୍ଟ ।
ସେ ବୃକ୍ଷର ମହିମା ଦେବ କଳଣା ନ ଯାଇ
ଯୁଗଶେଷ କାଳଯାଏ ସେହି ରୂପ ଥାଇ ।
ସେ ବୃକ୍ଷରୁ ଚେରଖଣ୍ଡିଏ ଯାଇହନୁମନ୍ତଆଣୁ
ଥାଟ ସୈନ୍ୟ ମଉଷଧି ପାଣି ପାନ୍ତୁ ଏଣୁ ।
ତେବେ ସେ ଦେବକାର୍ଯ୍ୟ ହୋଇବ ଅସୁର
ସହସ୍ରମାଥକୁ ଆସୁର ନଥିବ ଯେ ଡର ।
ତାହାର ପ୍ରାୟ ଲକ୍ଷେ ସହସ୍ରମାଥ ହେଲେ
ଅସୁରଙ୍କୁ ସରି ଯେ କେବେହେଁ ନୁହେଁ ଭଲେ
ଅଣଗୁଣ ପବନଯେବେ ଏକାବେଳକେ ବହିବ
ଅସୁର ଶରୀରୁ ଲୋମ ଗୋଟିଏ ନ ହଲିବ ।
ଏମନ୍ତେ ବଚନ ଯହୁଁ ବୋଲନ୍ତି ସୁଷେଣ
ହନୁମନ୍ତକୁ ଚାହିଁ ଯେ ବୋଲନ୍ତି ରାମରାଣ ।
ଏଥକୁ କସ କରିବା କହରେ ପାବନି
ସୁଷେଣ ମନ୍ତ୍ରୀ କହନ୍ତି ମୌଷଧି ଗୁଣ ପୁଣି ।
ସେ ମଉଷଧି ଆସିବ କେବଣ ପ୍ରକାର
ଶୁଣିକରି ହନୁମନ୍ତ ଶିରେ ଦେଲେ କର ।
ବୋଲଇ ଦେଲେ ଆଜ୍ଞା ଯିବ ଧାଡିକାର
ମୋଠାରେ ସୁଦସ୍ତା କମ୍ପା ନ କର ରଘୁବୀର
ଯେବଣ ଠାବରେ ମଉଷଧି ଯେ ଅଛଇଁ
ଏହିକ୍ଷଣି ମଉଷଧି ମୁଁ ଯାଇ ଆଣିବଇଁ ।

ଏମନ୍ତ ବଚନ ଯହୁଁ ହନୁମନ୍ତ ଭାଷି
ଶୁଣିକରି ରଘୁନାଥ ଅଳପ କରି ହସି ।
ବୋଲନ୍ତି ପାବନି ହୋ ତୁହି ସେ ମହାମଲ୍ଲ
ଦୈତ୍ୟଙ୍କର କୁଳକୁ ଯେ ତୁହି ହେଲୁ ସଲ ।
ମୋହର ଦେଖନ୍ତେକେତେନାଶିଲୁଦୈତ୍ୟବଳ
ଜାଣିଣ ହନୁମନ୍ତ ନାମ ଦେଲେ ଯେ ପୁରନ୍ଦର
ଏବେ ଚଳସା ବାବୁ ବେଗେ ଯେ ହୋଇଣ
ଶ୍ୱେତ ପର୍ବତରୁ ବାବୁରେ ମଉଷଧି ଆଣ ।
ଆଜ୍ଞାପାଇ ଚଳିଗଲା ବେଗେ ଯେ ହନୁବୀର
ତତକ୍ଷଣେ ମିଳିଲା କାଶୀ ନଗ୍ର ଦ୍ୱାର ।
ସେ ନଗ୍ରର ଦ୍ୱାରରେ ବିଜୟ କାଶୀଶ୍ୱର
ତାଙ୍କୁ ଦେଖି ହନୁମନ୍ତ କଲାକ ନମସ୍କାର ।
ରାମନାମ ସୁମରି ସେ ପର୍ବତେ ଉଠିଲା
କେଉଁଠାରେ ମଉଷଧି ଅଛି ଯେ ଖୋଜିଲା ।
ପର୍ବତର ଉପରେ ଏକ ଖାଡେକ ଦେଖିଲା
ହରଷି ହନୁମନ୍ତ ମନରେ ଭାଳିଲା ।
ତହିଁ ଉପରେ ଦେଖିଲା ଏକ ଗଛ
ଏକପୁରୁଷା ହୋଇ ସେ ଯେ ବଢ଼ିଯାଇଛି ।
ଦେଖିଣ ହନୁମନ୍ତ ମନରେ ବିଚାରଇ
ଏହି ମଉଷଧି ଗଛ ବୋଲିଣ ବିଚାରଇ ।
ଯେବଣ ପ୍ରକାରେ କହିଥିଲେ ଯେ ସୁଷେଣ
ଏହି ବୃକ୍ଷ ଅଟଇ ସେହି ସଞ୍ଜାତେଣ ।
ଦେଖିଣ ହନୁମନ୍ତ ହୋଟ ଉପରେ ପଶିଲା
ଚାରିପାଶରୁ ପଥର ଖୋଳି ପକାଇଲା ।
ପୂର୍ବମୁଖ ହୋଇ ଉଭା ସେ ହୋଇଲା
ବୃକ୍ଷଯାକ ନେବି ବୋଲି ଉପାଡ଼ି ପକାଇଲା ।
ନ ଚଳିଲା ବୃକ୍ଷ ଯେ ମେରୁରୁ ଆଣ୍ଠ ହୋଇ
ଧନ୍ୟରେ ବୃକ୍ଷଯାକ ହନୁ ଯେ ପ୍ରଶଂସଇ ।
ତୋହଠେ ଶ୍ରୀରାମ କାର୍ଯ୍ୟ ହୋଇବବୋଲଇ
ଏମନ୍ତେ ଯେ ପାବନି ମନରେ ବିଚାରଇ ।
ବୋଲଇ ମୌଷଧି ନେବଇଁ କେମନ୍ତ କରି
ଉପାଡ଼ି ନ ପାରିଲି ମେରୁର ତୁଲ ସରି ।
ମଉଷଧି ନନେଲେ ଯେ ହୋଇବ କାର୍ଯ୍ୟମନ୍ଦ
କବୋଲି ବୋଲିବେ ମୋତେ ଜମ୍ବୁବଅଙ୍ଗଦ
ଏମନ୍ତ ବୋଲିଣ ମହା ବିସ୍ମୟେ ଭାଳଇ
ପୁଣିହିଁ ମାରୁତ ଯେ ମନରେ ବିଚାରଇ ।

ବୋଲଇ ମୋତେ ଯେ ପେଷିଲେ ରାମରାଣ
ଏଥିରୁ ଖଣ୍ଡିଏ ଚେର ନେବାକୁ ଯେ ପୁଣ ।
ଏଥକୁ କମ୍ପାଇ ଯେ ମୂର୍ଚ୍ଛି ପଡୁଅଛି
ଏତେବୋଲି ଚେରଖଣ୍ଡିଏ ଘେନପବନବହ୍ନି
ସେ ବୃକ୍ଷରୁ ପତ୍ରଗୁଡ଼ିଏ ତୋଳିଲା
ଦୁଇ ପଦାର୍ଥକୁ ସେ ପଣନ୍ତେ ବାନ୍ଧିଲା ।
ଶିରର ଉପରେ ସେ ଥୋଇଲାକ ନେଇ
ଶ୍ରୀରାମ ସୁମରି ହନୁମନ୍ତ ବାହୁଡ଼ଇ ।
ବାଟରେ ହନୁମନ୍ତ ଆସନ୍ତେଣ ଚଳି
ଔଷଧର ବାସ ସେ ଯେ ନପାରେ ସମ୍ଭାଳି ।
ଶିରପରେ ଥାଇ ମହାବାସ ସେ ହୋଇଲା
ବେଳୁଟିବଳ ପର୍ବତ ପ୍ରାପ୍ତ ମାତ୍ର ସେ ବସିଲା
ମହୌଷଧି ହେଲା ଯହୁଁ ଏମନ୍ତ ସଞ୍ଚତ
ଶ୍ରୀରାମ ସୁମରି ପଥେ ଚଳଇ ହନୁମନ୍ତ ।
ଏଣେ ଯେ ସୈନ୍ୟବଳ ପଥ ଚାହିଁଛନ୍ତି
ନ ଦେଖିଣ ମନେ ବ୍ୟାକୁଳିତ ହୁଅନ୍ତି ।
ଆକାଶକୁ ସମସ୍ତେ ଚାହାନ୍ତି ନିରେଖି
ଦେଖିଲେ ହନୁମନ୍ତ ଯେ ଆସୁଅଛି କ୍ଷେପି ।
ସମସ୍ତେ ଦେଖିଣ ଯେ ଜୟ ଜୟ କଲେ
ସୁବେଳସ୍ଥାନରେ ହନୁ ଯାଇ ପ୍ରବେଶ ହୋଇଲେ
ଶ୍ରୀରାମ ଚରଣେ ହନୁ କଲାକ ତରଣନ
ଶିରେ କର ଦେଇ ଉଭା ହେଲାକ ହନୁମାନ
ଦେଖିକରି ଶ୍ରୀରାମ ଆନନ୍ଦ ମନ ହୋଇ
ମହୌଷଧି ଆଣରେ ବାବୁ ବୋଲଣଅଜ୍ଞାଦେଇ
ତତକ୍ଷଣେ ହନୁମନ୍ତ ପଣନ୍ତ ଫେଡ଼ିଦେଲେ
ରଘୁନାଥଙ୍କ ଛାମୁକୁ ଔଷଧ ଆଣି ଦେଲେ ।
ଦେଖିଣ ଶ୍ରୀରାମ ଯେ ହୋଇଲେ ଆନନ୍ଦ
ହନୁକୁ ଆଶ୍ୱାସନା କଲେ ରାମଚନ୍ଦ୍ର ।
ପାଖୁଶରେ ଥିଲେ ଯେ ଜମ୍ବେବ ସୁଷେଣ
ସୁଷେଣ ମନ୍ତ୍ରୀକ ଯେ ବୋଲ ରଘୁରାଣ ।
ମହୌଷଧି ଆଣିଲା ଏବେ ଯେ ହନୁମନ୍ତ
କସ କର ଏବେ ବୁଝିଣ କହତ ।
ଶୁଣିଣ ସୁଷେଣ ଯେ କରଯୋଡ଼ି କହି
ମହୌଷଧି ବାଟି ଆଣ ମଧୁର ଜଳଦେଇ ।
ଏମନ୍ତ ବୋଲଣ ଯହୁଁ କହିଲେ ସୁଷେଣ
ତତକ୍ଷଣେ ମହୌଷଧି ବାଟି ଆଣିଲା ହନୁମାନ ।
କସ କରବ ଏବେ ବୁଝିଣ କହତ
ସୁଷେଣଙ୍କ ଦେଇଣ ପତ୍ରରେ ହନୁମନ୍ତ ।
ସୁଷେଣ ବୋଇଲେ ଦେବ ଅକଳତ ବଳ
ପିଇଲେ ନ ଅଣ୍ଟିବ ଦେବ ଶୁଣହେ ନୃପଧର
ମହୌଷଧି ନେଇଣ ବଶିଷ୍ଠଙ୍କ ପାଶେ ଥୁଅ
ସୁରଭିଙ୍କି କହିଣ ବଦୁତ କସଅ ।
ଶୁଣିକରି ହନୁମନ୍ତ ବେଗେ ଚଳିଗଲା
ବଶିଷ୍ଠଙ୍କୁ କହିଣ ସୁରଭି ଅଣାଇଲା ।
ସୁରଭି ଛୁଇଁବାରୁ ସେ ଯେ ହେଲା ଅସରନ୍ତ
ଶ୍ରୀରାମ ଛାମୁରେ ହନୁ ଦେଲେକ ଝଟତ ।
ଜମ୍ବେବବୋଇଲାଦେବ ସ୍ୱରଭାଗ ଯେ କରିବା
ରାଜାଙ୍କୁ ଭାଗେ ଦେବା କପିଙ୍କୁ ଭାଗେ ଦେବ
ପଦାତିଙ୍କର ଭାଗେ ସେନାପତିଙ୍କ ଭାଗେ
ଏମନ୍ତେ ସ୍ୱରଭାଗ କର ଦେବ ଏବେ ।
ଶୁଣିକରି ଶ୍ରୀରାମ ମଣୋହ୍ୱ ଯେ କଲେ
ତିନଭାଇଙ୍କୁ ନେଇଣ ସେଥିରୁ ପୁଣ ଦେଲେ
ବିଭୀଷଣଙ୍କୁ ନେଇଣ ଦେଇଲ ଯେ ଶ୍ରୀରାମ
ସୁଗ୍ରୀବରକୁ ଭାଗେ ଯେ ସମର୍ପିଲେ ରାମ ।
ସୁଗ୍ରୀବର ଜମ୍ବେବ ଅଷ୍ଟ ସେନାପତି
ଏମାନେ ମହୌଷଧି ନେଇଣ ଭକ୍ଷନ୍ତି ।
ଅଙ୍ଗଦ ନେଇଣ ସୈନ୍ୟଙ୍କୁ ଗ୍ଳଦେଲା
ସୈନ୍ୟବଳ ସମସ୍ତେ ଖାଇଲେ ଅଣ୍ଟିଲା ।
ଋକ୍ଷକପି ଭାଲୁ ଖାଇ ସନ୍ତୋଷ ହୋଇଲେ
ସାଧୁରେ ହନୁମନ୍ତ ବୋଲିଣ ବୋଇଲେ ।
ଆଉକ ଭାଗ ବେନି ପାଳିବ ହନୁ ପୁଣ
ରାଜାମାନଙ୍କୁ ବାଣ୍ଟିଦେଲେ ସେ ତତକ୍ଷଣ ।
ଲକ୍ଷେ ରାଜା ଭକ୍ଷିଲେ ସୈନ୍ୟଙ୍କ ସହିତେ
ଆଉକ ଭାଗ ଦେଲା ପଦାତି ଦଳ ଯେତେ ।
ଆଉକ ଭାଗ ରଖି ସେନାପତିଙ୍କି ଦେଲା
ପାଞ୍ଚବାଡ଼ ସମସ୍ତେ ସବୁଙ୍କୁ ଖୁଆଇଲା ।
ହନୁ ଶତେ ଗୁଣରେ ହେଲେ ବଳବନ୍ତ
ଶ୍ରୀରାମ ସହିତେ ସୈନ୍ୟ ଯେ ସମସ୍ତ ।
ପତରଗୁଡ଼ିକ ଯେ ହନୁ ଆଣିଥିଲା
ସୁଷେଣ ସମ୍ଭାଳି ଯେ ତାହାକୁ ରଖିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ହାଲହୋଳି ଶବଦ ସେ ଲଙ୍କାପଢ଼େ ପୂରି ।

ଡାକନ୍ତି ଅସୁରେ ଯେ ଭେରେକାର କରି
ମୁଖଶବ୍ଦ ଶବଦ ଯେ ମେଘ ଘଡ଼ଘଡ଼ ।
ହସ୍ତୀଙ୍କର ଗର୍ଜନ ଅଶ୍ୱଙ୍କ ହ୍ରେସାରବ
ବ୍ୟାଘ୍ରଙ୍କର ଗର୍ଜନରେ ଚମକେ ଲଙ୍କାଠାବ
ଏମନ୍ତ ପ୍ରକାରେ ଯେ ଶୁଭଇ ଶବଦ
ଶୁଣିଣ ଋକ୍ଷକପି ଯେ ହୋଇଲେ ତବଦ ।
ରଘୁନାଥଙ୍କ ଛାମୁରେ ଜଣାଇଲେ ଯାଇ
ଲଙ୍କାଗଡ଼ରେ ଦେବ ହେ ଚହଳ ଶୁଭଇ ।
ସମୁଦ୍ର ଗର୍ଜନ ପ୍ରାୟେ ଶୁଭଇ ଶବଦ
ଶୁଣିଣ ଆମ୍ଭ ସୈନ୍ୟ ହୋଇଲେ ତବଦ ।
ଏମନ୍ତ ବୋଲିଣ କପିବଳ ଯେ କହନ୍ତି
ଲଙ୍କାର ଗଡ଼ରୁ ଦୈତ୍ୟେ ପଳାଇ ଆସନ୍ତି ।
ଯେତେକ ନରନାରୀ ଥିଲେ ଲଙ୍କାପୁରୀ
ବିଭୀଷଣ ନାରୀ ଯେ ସହିତେ ମନ୍ଦୋଦରୀ ।
ରାବଣ ସାତଶ ପତ୍ନୀ କୋଟି ନାରୀ
ଆମ୍ଭାର ବଳକେ ଚଳଲେ ସୁବଳସ୍ତ୍ରୀ ଗିରି ।
ଲଙ୍କାରେ ହୁରିଯୁରି ଯହୁଁ ସେ ଦେଖିଲେ
ଶ୍ରୀରାମର ପାଶକୁ ସମସ୍ତେ ପଳାଇଲେ ।
ଦେଖିଲେ ବିଜେକରି ଅଛନ୍ତି ଚାପଧାରୀ
ଖଣ୍ଡେଦୂରରୁ ରହିଲେ ସମସ୍ତେ ଭୟକରି ।
ଏକାହୋଇ ମନ୍ଦୋଦରୀ ସନ୍ନିଧିକୁ ଗଲେ
ଶ୍ରୀରାମ ଚରଣେ ଯାଇ ଓଳଗି ଶୋଇଲେ ।
ଦେଖିଲେ ସମସ୍ତେ ଯେ ଉଭା ହୋଇଛନ୍ତି
ଋକ୍ଷକପି ବିଭୀଷଣ ରାଜାପଣେ ଛନ୍ତି ।
ଏହି ସମସ୍ତେ ମନ୍ଦୋଦରୀ ସମ୍ଭାଷଣ ଦେଇ
କ୍ରୋଧଭରେ ହୋଇ ରାଣୀ ବଚନ କହଇ ।
ବୋଲଇ ଶୁଣ ତୁମ୍ଭେ ଜାନକୀର ସାଇଁ
ତୁମ୍ଭେ ଖାତେ ଅନାଥ ଯେ ହୋଇଲିଁ ମୁହିଁ
ରାବଣ ଚଣ୍ଡାଳ ଯେ ମନ୍ଦକୃତ୍ୟ କଲା
ତୁମ୍ଭର ଘରଣୀ ଆଣି ଆପେ ସେ ନାଶଗଲା
ମୁହିଁ ଯେତେ ବୁଝେ କହିଲି ତଥାରି
ସୀତା ସମର୍ପ ବୋଇଲେ ମିଛଇମୋତେମାରି
ମୋହର ବୋଲ ନକରି ଆବନେ ଗଲା ନାଶ
ତାର ବନୁ ମୁହିଁ ଛାଡ଼ି ପଳାଇଲି ଦେଶ ।
ଏମନ୍ତ ଶୋକ କରିଣ ସେହି ଯେ କହଇ
ଶୁଣିଣ ପଚାରନ୍ତି ରଘୁକୁଳ ସାଇଁ ।

କି ବାରତା ମୋତେ ନ କହୁ ବିଭୀଷଣ ନାରୀ
ସାମାନ୍ୟ ନକଲୁ କର୍ମା ଏତେ କ୍ରୋଧକରି ।
ଶୋକ ସମ୍ଭାଳଣ ଏବେ କହଗୋ ବଚନ
କର୍ମା ଛାଡ଼ି ଅଇଲୁ ଗୋ ନିଜର ଭୁବନ ।
କିଏ ଲେ କସ ତୁମ୍ଭଙ୍କୁ କହିଲା ଯେ ପୁଣ
କି ଅବା ତୋ ମନକୁଟିଳଇଲା ବିଭୀଷଣ ।
କି ଅବା ସେବକ ତୋତେ ନକଲେ କସେବ ।
ଗଭଥାଟ ତୋର ରାଜ୍ୟ ପଶିଲେ କି ଅବା
ଏମନ୍ତ ବଚନ କହନ୍ତି ରାମ ଦେବ
ଶୁଣିକରି ମନ୍ଦୋଦରୀ କହେ ସଦଭାବ ।
ବୋଲଇ ଶୁଣ ହେ କୋଦଣ୍ଡ ଧାରଣ
ମନକୁ କର୍ମା ନ ଆସନ୍ତା ରାଜା ବିଭୀଷଣ ।
ଏକାରେ ଦଶଗ୍ରୀବ ଶମନପୁରକୁ ସାଧିଗଲା
ଲଙ୍କମଣି ଥିଲାପାକ ଭୟ ଯେ ନ ଥିଲା ।
ମନ୍ତ୍ରୀସୁଖେ ଥିଲେ ମୋର ଜନ ଯେ ପରଜା
ସମସ୍ତେ ପଳାଇଲେ ବିଭୀଷଣ ହେବାରୁ ରାଜା
ରାଜାଙ୍କୁ ଛାଡ଼ିଣ ଯେ ପଳାଇଲେ ସମସ୍ତେ
ଏବେ ଗଡ଼ରେ ଆସିଣ ପଶିଲା ସତ୍ରମାଥେ ।
ସଦଳ ପୁରପାଳ ଯୁଦ୍ଧ କରି ନେଲା
ଆମ୍ଭଙ୍କୁ ସଉଡ଼ ଦେଇ ନଦରେ ରହିଲା ।
କେହୁ ଅବା ତାହାକୁ କହିବ ଆଣ କରି
ଜୀବନରେ ସେହୁ ଯେ ଯାଇବ ମାରି ।
ଥାଟ ସୈନ୍ୟ ତାର ସଙ୍ଗେ ଅଛନ୍ତି ବହୁତ
ବଡ଼ ସମ୍ଭଦେ ବଜେପୁ ବଣାଖାର ସୁତ ।
ସମସ୍ତେ ବୋଲନ୍ତି ଜାହିଁ ଶ୍ରୀରାମ ବିଭୀଷଣ
ତାଙ୍କୁ ମାରି ରୁମାନର କସ୍ତୁ ପାଶୋରିବୁ ପୁଣ
ଏମନ୍ତ ବୋଲିଣ ଯେ ପଦ୍ବଜ କରନ୍ତି
ଲଙ୍କାର ଲୋକଙ୍କୁ ସେ ଗୋଡ଼ାଇ ମାରନ୍ତି ।
ଏ ବଚନ ମନ୍ଦୋଦରୀ ଯହୁଁ ସେ କହିଲା
ଶ୍ରୀରାମ ହୃଦେ ମନ୍ଦୋଦରୀ ବଚନ ବାଜିଲା ।
ଏବେ ଯାଇ ସମସ୍ତେ ରହ ଜାନକୀର ପାଶ
ଦୈତ୍ୟ ନାଶଗଲେ ଯିବ ଆପଣାର ଦେଶ ।
ଏମନ୍ତେ ବୋଲି କହିଲେ ତାଙ୍କୁ ରାବଣାରି
ଯେତେ ଧନ ନାଶକରିବ ସନ୍ତ୍ରାନନ ତୋହରି
ତୋର ରାଜ୍ୟ ଯେତେ ନେବ ସେ ଅସୁର
ସମସ୍ତଙ୍କୁ ସବୁ ଦେବ ନ କର ବିସ୍ମର ।

ଲଙ୍କାରେ ପଶିଲ ଯେବେ ମୃତ୍ୟୁ ହେବ ତାର
ତାକୁ ମାରି ମନୋରଥ କରିବ ମୁଁ ସ୍ଥିର ।
ଏମନ୍ତ ବଚନ ଯହୁଁ କହିଲେ ରାକ୍ଷସୀ
ସୀତାଙ୍କ ପାଶେ ରହିଲେ ସମସ୍ତେ ଯେ ଦାନବି
ଏଥୁଅନନ୍ତରେ ଯେ ହେଲା କିସ କାଣ୍ଡ
ମନ ଦେଇଣ ଶୁଣ ଗୋ ହେମବନ୍ତୀ ।
ସୁବେଳଗିରିରେ ଯେ ବସନ୍ତେ ରଘୁମଣି
ଜାମ୍ବବର ମୁଖ ଚାହିଁ ବୋଲନ୍ତି ଯେ ବାଣୀ ।
ଶୁଣିଲ ଟିକ ଯାହା ଯେ କହିଲା ମନ୍ଦୋଦରୀ
ଏଥିର ଚରିତ୍ର ତୁମ୍ଭେ ବୁଝ ତଥ୍ୟକରି ।
ଶୁଣିଣ ଜାମ୍ବେବ ଯେ ବୋଲନ୍ତି ଦେବ ଶୁଣ
ଲଙ୍କାଗଡ଼ରେ ଯେବେ ଠୁଳ ହେଲେ ପୁଣ ।
ଯୁଝିବାକୁ ହେବ ଯେ ଉତ୍ତମ ସଜ ହେଲ
ଚାରିଦ୍ୱାର ନିରୋଧ କରିବା ଯୁଦ୍ଧ ଲୀଳା ।
ଏମନ୍ତ କହଇ ଜାମ୍ବେବ ଅଙ୍ଗଦକୁ ଚାହିଁ
କେତେ ସୈନ୍ୟ ସହିତନ ଆଣିଛୁ ମୁଁ ଦେଖଇ
ଏମନ୍ତ ବଚନ ଯହୁଁ ଅଙ୍ଗଦ ବୋଇଲା
ତତକ୍ଷଣେ ତାରସୁତ ବେଗେ ଚଳିଗଲା ।
ସାମାନ୍ୟ ରୂପ ଗୋଟିଏ ଧରିଲାକ ସେହି
ଲଙ୍କାଗଡ଼ ଭିତରେ ଯାଇଣ ପଶଇ ।
ଦେଖିଲା ପୂରିଛନ୍ତି ଅନେକ ଥାଟ ସୈନ୍ୟ
ମାଛି ପଳିବାକୁ ନାହିଁ ସେଥିରେ ସ୍ଥାନ ।
ଅନେକ ହାତୀ ରଥ ଯେ ଅଛନ୍ତି ପଦାତି
ଏତେ କେତେ ବୋଲିଣ ଯେ କଳଣା ନଯାନ୍ତି
ହାତୀ ରଥ ସୈନ୍ୟ ଯେ ଅଛନ୍ତି ଅନେକ
ମେଘମା ଚମକଇ ଯେ ତାହାଙ୍କର ଡାକ ।
ରଣଯୋଦ୍ଧା ବୀର ଯେ ଅଛନ୍ତି ଅପାର
ନାଚୁଛନ୍ତି ଦୈତ୍ୟ ଯେ ହୋଇଣ ମତ୍ତଭୋଳ
ବୀରବର ବାଜୁଛନ୍ତି ଯେ ହୋଇଣ ସମସ୍ତେ
ରାବଣ ଜଗତିରେ ବସିଅଛି ସସ୍ତ୍ରମାଥେ ।
ସନ୍ନିଧରେ ତିଷ୍ଠି ତାର ଗୁଣସାଗର ମନ୍ତ୍ରୀ
ଶହାଳତ ପାଖରେ ଅଛଇ ତାର ନାତି ।
ସହସ୍ରମାଥ ଆଗରେ ପକାନ୍ତି ଚାମର
ଗୁଣସାଗର ମନ୍ତ୍ରୀ ଯେ ଉଭା ଯୋଡ଼କର ।
ସହସ୍ରମାଥ ଯେ ତାହାକୁ କହନ୍ତି ବଚନ
ବେଗକରି ସାଜଆଣ ଆମ୍ଭର ଥାଟ ସୈନ୍ୟ ।
ରାମ ବିଭୀଷଣକୁ ମୁଁ ଆଜ ଆଣିବ ଧରି
ପୂର୍ବ କଷ୍ଟ ପାସୋରିବ ତାକୁ ମାରକରି ।
ଏମନ୍ତ ବଚନ ମନ୍ତ୍ରୀକି କହେ ସହସ୍ରଶିର
ଶୁଣିକରି ମନ୍ତ୍ରୀବର ବୋଲଇ ଉତ୍ତର ।
ହେ ଦେବ ଶୁଣିବା ହେଉ ସହସ୍ରଆନନ
ଥାଟ ସୈନ୍ୟ ଘେଣଯାନ୍ତୁ କୁମାର ଜୟସେନ
କୋଦାଳସୁର ଯାଉ ତାଙ୍କର ଯେ କୁଳେ
ଯୁଦ୍ଧ ଆରମ୍ଭ ସେ କରନ୍ତୁ ଯାଇ ଭଲେ ।
ତାଙ୍କର ପଛେ ପଛେ ଆମ୍ଭେ ପୁଣ ଯିବା
ଯୁଦ୍ଧ ଠାବରେ ମେଣ୍ଟ ହୋଇଣ ଯୁଝିବା ।
କେତେ ଯେବେ ଆମ୍ଭେ ଯୁଦ୍ଧକୁ ଯିବାପାଇଁ
ଶତ୍ରୁ ଆମ୍ଭଙ୍କୁ ଜାଣିନ ଦେଖିବ ଗୋସାଇଁ ।
ଏ ବଚନ ଯହୁଁ ମନ୍ତ୍ରୀବର ଯେ କହିଲା
ସହସ୍ରମାଥ ମନକୁ ଏକଥା ମୋପାଇଲା ।
ଏହି ସମୟରେ ଯାଇ ଜଣାଇଲେ ବୀର
ଶୁଣ ଦେବ କଲଙ୍କା ଠାକୁର ନୃପବର ।
ଶ୍ରୀରାମ ଆଗରେ ଯାଇ ଲଙ୍କାଲୋକ କହି
ଲଙ୍କାଗଡ଼ ଲୁଟିକଲା ସହସ୍ରମାଥ ରହି ।
ଘରଦ୍ୱାର ଛାଡ଼ି ଆମ୍ଭେ ଅଇଲୁ ପଳାଇ
ଧନ ଦ୍ରବ୍ୟ ସକଳ ଜୁରି କଲ ସେହି ।
ଶୁଣିଣ ଶ୍ରୀରାମଚନ୍ଦ୍ର ବୋଧିଣ କହିଲେ
ଭଲତ ହୋଇଲା ଏବେ ଲଙ୍କାରେ ରହିଲେ
ଚାରିଦ୍ୱାର ରୁନ୍ଧ କରି ମାରିବା ତାଙ୍କୁ ପୁଣ
ପଳାଇଯିବାକୁ ବାଟ ନ ଥିବଟି ଜାଣ ।
ଏମନ୍ତ ବଚନ ଶୁଣି ଧାଇଁ ମୁଁ ଅଇଲି
ତୁମ୍ଭର ଛାମୁରେ ମୁଁ ଏବେ ଜଣାଇଲି ।
ଶୁଣିଣ ସହସ୍ରାନନ ମନ୍ତ୍ରୀକି କହିଲା
ପଦାରେ ରଣକରିବା ବୋଲିଣ ବୋଇଲା ।
ବୋଲଇ ମନ୍ତ୍ରୀବର ଶୁଣ ମୋ ଉତ୍ତର
ବେଗେ ଯାଇ ଆଣ ମୋର ଅଜସ୍ର କୁମର ।
ବାରତା କହ ଯାଇ କୋଦାଳ କୁମର ସେନ
ସଙ୍ଗରେ ଘେନିଆସ ସକଳ ସୈନ୍ୟ ପୁଣ ।
ଆଜ୍ଞାଘେନି ମନ୍ତ୍ରୀବର ତତକ୍ଷଣେ ଯାଇ
ଡଗରକୁ ବୋଲଇ ଅଜସ୍ର କୋଦାଳକୁ କହ
ବାରତା କହିଲା ଯାଇ କୋଦାଳସେନକୁ
ଆଜ୍ଞାହେଲା ବେଗେ ଯାଅ ଠାକୁର ଛାମୁକୁ ।

ଯେତେ ଥାଟ ସୈନ୍ୟ ଯେ ଅଛନ୍ତି କୁମ୍ଭକୁଟଳ
ସମସ୍ତଙ୍କୁ ଘେନଣ ତୁମ୍ଭେ ଯାଅ ଧାଡ଼ିକାରେ
ଏତେ କହ୍ନ ସେଠାରୁ ଗଲ ଯେ ଉପର
ବାରତା କହିଲ ଯାଇ ଅଜସ୍ର କୁମର ।
ବୋଇଲ ଉପରା ଅଜସ୍ରସେନକୁ ବୃହି
ଠାକୁରଙ୍କର ଆଜ୍ଞା ଯିବ ହେ ବେଗହୋଇ ।
ସକଳ ଥାଟ ସୈନ୍ୟ ବେଗେ ଘେନଯାଅ
ଠାକୁରଙ୍କ ଆଜ୍ଞାହେଁ ବଣ୍ଡେହେଁ ନ ରହ ।
ଏମନ୍ତ ବାରତା ଯହୁଁ ସେ ଉପର କହ୍ନ
ଥାଟସୈନ୍ୟ ଘେନ ବେଗେ ଅଜସ୍ରସେନଯାଇ
ପିତାର ଚରଣେ ଉଳଗି ହୁଏ ପୁଣ
ତାହାର ପଛରେଆସେ ପୁତ୍ର କୋଦାଳସେନ
ପିତାର ଚରଣେ ଯାଇ ନଉଚ୍ଛଳ କଲ
କସ ଆଜ୍ଞା ହେଉଛୁ ହେ ବୋଲଣ ବୋଇଲ
ଶୁଣିଣ ସହସ୍ରଶିର ବୋଲଇ ଉତ୍ତର
ବେନିଜଣ ତୁମ୍ଭେ ଯାଅ ଯୁଦ୍ଧକୁ ଧାଡ଼ିକାର ।
ରାମ ବିଭୀଷଣଙ୍କୁ ଆଗେ ଧରିକରି
ରୁମାନସୁରର କଣ୍ଠ ଯାଶୋରିବ ମାରି ।
ଏତେବୋଲି ମୁକୁଟ ବାନ୍ଧିଲ ତାଙ୍କ ଶିରେ
ବୋଲଇ ବାବୁରେ ତୁମ୍ଭେ ଯାଅ ଧାଡ଼ିକାରେ
ଏମନ୍ତ ଆଜ୍ଞା ଯହୁଁ ହେଲ ସହସ୍ର ମାଥ
ଶିରପରେ କରିଦେଇ ବାହାର ବେନି ସୁତ
ରଣଯୋଦ୍ଧା ରାଉତେ ଯେ ଅଛନ୍ତି ଅପାର
ଦେଖିକରି ହରଷଇ ବାଳୀର କୁମର ।
ବୋଲେ କୋଦାଳସେନ ସମରକରିବଟିଆଜ
ମୁହିଁ ଆଗେ କହିବି ଶୁଣିବେ ରାମରାଜ ।
ଏମନ୍ତ ବିଚାରି ସେ ବେଗେ ବାହୁଡ଼ିଲ
ସୁବଳଗିରିରେ ଯାଇ ପ୍ରବେଶ ହୋଇଲ ।
ଶ୍ରୀରାମ ଚରଣରେ ଉଳଗଇ ଯାଇ
ଦେଖିଣ ପଚ୍ଚରନ୍ତି ଯେ ଜାନକୀର ସାଇଁ ।
କସ ବାରତା ବେଗେ କହରେ ବାଳିସୁତ
କରଯୋଡ଼ି ଆଗେ କହଇ ଅଙ୍ଗଦ ତ ।
ବୋଲଇ ଶ୍ରୀ ଦେବଦେବ ଶୁଣିବା ସାବଧାନେ
ସହସ୍ରାନନକୁ ମୁଁ ଦେଖିଲି ଲଙ୍କାର ଭୁବନେ ।
ତାର ସଙ୍ଗେ ଅଛନ୍ତି ଅନେକ ଅଶ୍ୱ ହସ୍ତୀ
ଏତେ ତେତେ ବୋଲି ଦେବ କଳଣା ନଯାନ୍ତି
ଲକ୍ଷେ ସତୁରି ସହସ୍ର ଅଛନ୍ତି କୁମର
ତିରିଶ ସହସ୍ର ଗଲେ ରୁମାନ ସଙ୍ଗତର ।
ସାରବର ବେଣ ଯେ ଆଠଲକ୍ଷ ନାଶ
ଦୁଇଲକ୍ଷ ଗଲେ ରୁମାନସୁରର କଣ୍ଠ ।
ବାରଲକ୍ଷ ଜୁଆଇଁ ଯେ ଅଛନ୍ତି ସଙ୍ଗର
ସତାଇଶ ଲକ୍ଷ ଛନ୍ତି ଶାଳକଗଣ ତାର ।
ଗୁଣସାଗର ମନ୍ତ୍ରୀକ ଘେନିଣ ସହସ୍ର ଶିର
ଯାଇଣ ବସିଛନ୍ତି ରାବଣ ଜଗତିର ।
ଏମନ୍ତ ସମୟେ ଯେ ଦେଖିଲି ମୁହିଁ ଯାଇ
ଗୁଣସାଗର ମନ୍ତ୍ରୀକ ଯେ ସହସ୍ରାନନ କହି ।
ଦେବେସାଜ ମୋର ହେ ସକଳ ଥାଟସୈନ୍ୟ
ରାଇ ଆଣ କୁମର ମୋହର ଅଜସ୍ରସେନ ।
ରଣଯୋଦ୍ଧାସୈନ୍ୟମୋରଆସନ୍ତୁ ବେଗହୋଇ
ରାମ ବିଭୀଷଣଙ୍କୁ ଆମ୍ଭେ ମାରିବାକୁ ଯାଇ ।
ଏମନ୍ତ ବଚନ ଯହୁଁ ସହସ୍ରାନନ କହି
ଶୁଣିଣ ମନ୍ତ୍ରୀବର ତାହାଙ୍କୁ ପ୍ରବୋଧଇ ।
ବୋଲଇ ଶ୍ରୀଦେବ ହେ ଏମନ୍ତ ନ କହ
ଯୁଦ୍ଧ କଲେ କ୍ଷତ୍ର ଯେ ନଜନ ଦେଖିବଇଁ ।
ଅଜସ୍ରସେନ ଯେ କୋଦାଳସେନ ଯାନ୍ତୁ
ଶ୍ରୀରାମ ସୈନ୍ୟ ସଙ୍ଗରେ ଯାଇଣ ଯୁଝନ୍ତୁ ।
ଯେବେ ଶ୍ରୀରାମ ବିଭୀଷଣ ଆସିବେ ଯୁଦ୍ଧକୁ
ତେବେ ଆମ୍ଭେ ଯିବା ସମର କରିବାକୁ ।
ଶ୍ରୀରାମ ବିଭୀଷଣଙ୍କୁ ବାନ୍ଧଣ ଆଣିବା
ଆମ୍ଭର ବେଣ୍ଠାରେ ଛେଦ କରାଇବା ।
ଥାଟସୈନ୍ୟବେନକୋଦାଳସେନଶ୍ରୀଯାଉସଙ୍ଗର
ଯୁଦ୍ଧ ଆରମ୍ଭ କରନ୍ତୁ ରଣ ଯେ ଭୂମିର ।
ଏମନ୍ତ ଶୁଣିଣ ସହସ୍ରାନନ ଯେ ଆଜ୍ଞାଦେଲ
ତତକ୍ଷଣେ ମନ୍ତ୍ରୀ ଯେ କୁମରଙ୍କୁ ଅଣାଇଲ ।
ପିତାର ଚରଣେ ଯାଇ କଲେ ନମସ୍କାର
ଦେଖିଣ ସହସ୍ରମାଥ କରଇ ଉତ୍ତର ।
ବୋଇଲେ ବାବୁ ତୁମ୍ଭେ ବେଗେ ଚଳଯାଅ
ଶ୍ରୀରାମ ବିଭୀଷଣଙ୍କୁ ବାନ୍ଧ ଆଣିଦିଅ ।
ଏମନ୍ତ ବଚନ କୁମରଙ୍କୁ ସେ କହିଲା
ସପ୍ତଶାଖାମୁକୁଟ ସେ ଶିରରେ ବାନ୍ଧଦେଲା
ପିତାଙ୍କର ଆଜ୍ଞାରେ ଯେ ସେ ବେନି କୁମର
ଯୁଦ୍ଧ କରିବେ ବୋଲି ସେ ହୋଇଲେବାହାର

ଏତକଥା ଦେଖି ଦେଖି ଯେ ଅଇଲ ମୁଁ ଧାଇଁ
କୁମ୍ଭଳ ବଜ୍ରରକୁ ଯେମନ୍ତ ଯେ ଖାଇ ।
ଏମନ୍ତ ବାରତା ଯହୁଁ ଅଙ୍ଗଦ ବୋଇଲେ
ଜମ୍ବେବଙ୍କ ମୁଖ ଚାହିଁ ଶ୍ରୀରାମ ପଚାରିଲେ ।
ଏବେ କିସ ଉପାୟ କରିବା କହ ମନ୍ତ୍ରୀ
ଶୁଣିଣ ଜମ୍ବେବ ଯେ ବଚନ ବୋଲନ୍ତି ।
ହେ ଦେବ ରଘୁନାଥ ଶୁଣିବା ସାବଧାନେ
ଆମ୍ଭର ଆଗ ହୋଇ ଯାଆନ୍ତୁ ଆଠ ସୈନ୍ୟେ
କପିଙ୍କର ସଙ୍ଗରେ ଭରତ ଯେ ଯାଉ
ଶସ୍ତ୍ର ନୟନ ସୈନ୍ୟଙ୍କୁ ସେ ଉଗାଳିଣ ଥାଉ
ଏଣିକି କେବେହେଁ ତାଙ୍କୁ ଛାଡ଼ ନ ହଅନ୍ତୁ
ବଳବନ୍ତ ପଣକଲେ ସମର କରନ୍ତୁ ।
ଯେବେ ସହସ୍ରାନନ ଦୈତ୍ୟ ଆସିବ ରଣକୁ
ତେବେ ଆପଣ ଯିବେ ଯେ ଯୁଦ୍ଧ କରିବାକୁ ।
ଶୁଣିଣ ହନୁମନ୍ତକୁ ଶ୍ରୀରଘୁନାଥ କହୁ
ଦୈତ୍ୟେ ଏଣେ ନ ଆସନ୍ତୁ ଉଗାଳକେଉଯାଉ
ଶୁଣିଣ ସୁଗ୍ରୀବର ହନୁମନ୍ତ ଯେ ଧାଇଁଲେ
ଏକ ଏକ ଗିରିବର କରରେ ଧଇଲେ ।
ପଛରେ ଗୋଡ଼ାଇଲେ ଋକ୍ଷ କପି ସୈନ୍ୟ
ଶାଳ ଶିଳ ବୃକ୍ଷ ଯେ ହସ୍ତରେ ଧରିଣ ।
ସମସ୍ତେ ଧାମନ୍ତି ଯେ ଏକ ମୁଖ ହୋଇ
କପିଙ୍କ ପାଦଘାତରେ ମେଦିନୀ କମ୍ପଇ ।
ଏଥୁଅନ୍ତେ ଶୁଣ ହେମବନ୍ତର ଦୁହିତା
ସୈନ୍ୟ ଯିବାର ଦେଖି ଶ୍ରୀରାମ ଜଗଜ୍ଜିତା ।
ଭରତକୁ ବୋଇଲେ ସାଜରେ ରଥ ମୋର
ବେଗେ ଯାଇ ବାବୁରେ କର ତୁ ସମର ।
ଅଯୋଧ୍ୟା ଛାଡ଼ି କମ୍ପାଇଁ ଅଇଲୁ ଏଥେ ଧାଇଁ
ସମର କରିବାରରେ କଷ୍ଟ ସହ ତୁହି !
ସୁମନ୍ତ ମନ୍ତ୍ରୀକି ଯେ ଭରତ ପୁଣ ଡାକି
କନଅର ରଥ ମୋର ଆଣ ହେ ଏଥିକି ।
କଳାମେଘ ଆକାରରେ ରଥ ସଜକର
ସପତ ଅଶ୍ୱ ଯୋଚ ଆଣ ମୋ ପାଖର ।
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗେ ଚଳିଗଲା
କଣିଅର ରଥ ସାଜ ବେଗେ ସେ ଆଣିଲା ।
କଳାମେଘ ସଦୃଶ୍ୟ କ୍ଷଣେ ସେହୁ ଯାନ
ଯମର କଷାଣ ଭର୍ତ୍ତି ହୋଇଛି ଖଣ୍ଡମାନ ।

ଦେଖିଣ ଭକ୍ତ ଭାର ଶ୍ରୀରାମଙ୍କୁ ସଗାଳିଲା
ଜାନକୀଙ୍କ ଚରଣରେ ଯାଇଣ ପଡ଼ିଲା ।
ଉଠ ଉଠ ବାବୁରେ କଲ୍ୟାଣ ତୋତେ ହେଉ
ଶତ୍ରୁ ମାରିଣ ଯଶ ତ୍ରିଜଗୁରେ ଥାଉ ।
ଶୁଣିଣ ଭରତବୀର ବେଗେ ଚଳିଗଲା
ପିତାର ଯାନ ପରେ ଯାଇଣ ଭଟେ କଲା ।
ନାନା ଅସ୍ତ୍ର ଆୟୁଧ ଥୋଇଲା ନେଇ ରଥେ
ବଜ୍ର ବାଟୁଳ ଧନୁ ଯେ ଧଇଲା ନେଇ ହସ୍ତେ
ମନ୍ତ୍ରୀକି ବୋଇଲା ରଥ ବାହା ହେ ତୁରିତ
ଅଜସ୍ରସେନ ଆଗରେ ଭେଟାଅନେଇମୋତେ
ଶୁଣିଣ ସୁମନ୍ତ ମନ୍ତ୍ରୀ ରଥ ବାହୁନେଲା
ରଣଭୂମିରେ ନେଇ ରଥକୁ ଉଭା କଲା ।
ଏଥୁଅନନ୍ତରେ ଶୁଣ ଗୋ ଶାତମ୍ଭସ୍ତି
ସହସ୍ରାନନ କୁମର ଯୁଦ୍ଧକୁ ଆସନ୍ତି ।
ପଚିଶ ଖଣ୍ଡ ରଥ ଯେ ଶତେ ଖଣ୍ଡ ପବାଣ
ସତୁରି ଖଣ୍ଡ ରଥ ଯେ ପାଞ୍ଚ ଖଣ୍ଡ ରଥୀ ।
ପାଞ୍ଚଲକ୍ଷ ନାଗ ତିରିଶ ସହସ୍ର ମଦନ
ଏହାଙ୍କ ଉପରେ ଶ୍ରେଷ୍ଠ ଯେ ଅଜସ୍ରସେନ ।
ଏହାର ଅନୁଜ ଯେ ଭୋଭାଳସୁର ଜାଣ
ସଙ୍ଗତରେ ଘେନଆସେତାହାର ଥାଟସୈନ୍ୟ
ଆବର ସଙ୍ଗରେ ଯେ ତରିଶ ସହସ୍ର ଭ୍ରାତ
ପାଞ୍ଚଲକ୍ଷ ନାଗ ଯେ ଅଛନ୍ତି ସମସ୍ତ ।
ଘୋର ନାଦ କରିଣ ସମସ୍ତେ ଧାମନ୍ତି
ହୟଗ୍ରୀବ ଅଶ୍ୱଙ୍କର ଶବଦ ଉଚ୍ଚୁଚ୍ଛି ।
ଏମନ୍ତେ ଭୋଦାଳ ଅଜସ୍ରସେନ ବୀର
ପ୍ରବେଶ ହେଲେ ଯାଇ ସମର ଭୂମିର ।
ଦେଖିଲେ କପିବଳ ସମୁଦ୍ର ଆକାର
କଳନ ନୁହଇ କେତେ ଋକ୍ଷ ଯେ ବାନର ।
ଡକନ୍ତି ରାକ୍ଷସ ଯେ ପଚାର କରିଣ
କେଉଁଠାରେ ଅଛରେ ରାମ ବିଭୀଷଣ ।
କେତୁ ବୋଲନ୍ତି ଯେ ଯୁଦ୍ଧକୁ ଆସିନାହିଁ
ସୁବେଳଗିରିକୁ ସ୍ୱର ଯାନ୍ତୁ ଧାଇଁ ।
ସେହୁଠାରେ ପୁଣ ଯେ ସମସ୍ତେ ରହିଥିବେ
ଚାର ମୁଖରୁ ଶୁଣିଲେ ସେଠାକୁ ଯିବା ଆଗେ
ଡାଇତେ କହୁଛନ୍ତି ଘୋର ନାଦ କରି
ଆଜ ରାମ ବିଭୀଷଣ ଯିବେ ଯମପୁରୀ ।

ଏହିମନ୍ତେ ରାକ୍ଷସ ଯେ ମତ୍ତଭ୍ରୋଳ ହୋଇ
ନାଚନ୍ତି ସମସ୍ତେ ଯେ ରଣ ଗୀତ ଗାଇ ।
କୋହାଳସେନ ଯେ ଆପଣା ଆଟେ ଥିଲା
ସୁଗ୍ରୀବରକୁ ଦେଖି ଯେ ଅଜସ୍ୱସେନ ଗଲା ।
ବୋଲଇ ଦେଖ ଏ ଯେ କପିଙ୍କ ଗାରିମା
କରେ ଧରିଛନ୍ତି ବୃକ୍ଷ ପାଷାଣ ସିମା ।
ତେଣେ ଦେଖିଡାକଇଯେ କୋହାଳସେନପୁତ୍ର
ଆଗରେ ମିଳଲେ ଯାଇ ଅନେକ କପିସୈନ୍ୟ
କାହା କରେ ଗିରିବର କା କରେ ତରୁଶୀଳ
ହେରେକାର ଶବଦ ଯେ କରନ୍ତି ଭପୂର ।
ତକ୍ଷଣେ ଭେଟିଲେ ଯାଇ ରାକ୍ଷସ ସଇନ
ଆଗରେ ଉପାଡ଼ିଲେ ଶିଳାବୃକ୍ଷ ଘେନ ।
କୋହାଳସେନକୁ ଯାଇ ଉଗାଳେ ହନୁମନ୍ତ
ସୁଗ୍ରୀବର ଉଗାଳିଲା ଅଜସ୍ୱସେନ ରଥ ।
ଦୁଇଆଡ଼ରୁ ସୈନ୍ୟ ଉଚ୍ଚନାଦ ହୋଇ
ପଶ୍ଚିକ କରନ୍ତି ରଙ୍ଗ ସମରର ଭୂଇଁ ।
ଭରତ ଯେ ରଥର ଉପରେ ବସିଥିଲା
ଅଜସ୍ୱସେନ ଆଗକୁ ରଥ ବାହୁନେଲା ।
ଦେଖିଣ ଅଜସ୍ୱସେନ ମନରେ ବିସ୍ମରଇ
ଏହିପରି ଶ୍ରୀରାମ ଆସୁଛି ରଣଭୂଇଁ ।
ଏମନ୍ତ ବିଚାରି ଘାର ଶର ବୃଷ୍ଟି କଲା
ଭରତ ରଥକୁ ଯେ ଶରରେ ଲୁଚାଇଲା ।
ଦେଖିଣ ସୁଗ୍ରୀବଇ ଯେ ମାରିଲା ପଥର
ଛେଦିଲା ଦୂରରୁ ସହସ୍ରାନନର କୁମର ।
ଦେଖିକରି ଭରତ ଯେ ଧନୁଶର ଧରି
ଯିବକ ନାରାଚକୁ ଗୁଣରେ ସନ୍ଧାରି ।
ଛନ୍ଦନ୍ତେ ଅସୁରର ଧନୁ ଟଳେ ପଡ଼
ଲୁହାର ଧନୁ ଦୈତ୍ୟ ଧରିଲା ବାଛିକରି ।
ଜଳଧାରା ଶର ଯେ ଅସୁର ବରଷିଲା
ପବନା ଶରରେ ଭରତ ଉଡ଼ାଇ ତାକୁ ଦେଲା
ଦୂରରୁ କୋହାଳସୁର ଦେଖି ବିସ୍ମରଇ
ଏହି ତ ନଷ୍ଟସ୍ୱ ଯେ ଶ୍ରୀରାମ ଅଟଇ ।
ସାରଥି ବୋଇଲା ଏ ତ ଶ୍ରୀରାମର ଭାଇ
ଶ୍ରୀରାମ ପରାୟେ ଏହାର ଶରୀର ଦିଶଇ ।
ଅସୁର ବିସ୍ମରେ ଏହାର କୋମଳ ଶରୀର
ଏ କେହ୍ୱଧରି କେମନ୍ତେ କରିବ ସମର ।

ଦେଖିଲେ ଭରତଙ୍କର କୋହାଳସୁରକୁ
ସୁଗ୍ରୀବରକୁ ବୋଇଲେ ଉଗାଳ ଏହାକୁ ।
କୋହାଳସୁରକୁ ମୁଁ ନାଶିବି କେମନ୍ତେ
ଏତେବୋଲି ଭରତଙ୍କର ବିସ୍ମର କରେ ଚିତ୍ତେ
ଦେଖିକରି ଅସୁର ଯେ ବିସ୍ମୟେ ମନକୁ
ଏହି ରଥ ଟେକିଲା ତ ମୋହର ଉପରକୁ ।
ଏମନ୍ତ ବୋଲି ମନରେ ବିସ୍ମରକରେ ଦୈତ୍ୟ
ପୁଣି ବୋଲଇ ଆଜ ସମର ଜିଣିବା ତ ।
ଏତେ ବୋଲିଣ ଘୋର ଗର୍ଜିଣ ଉଠଇ
ଅଶ୍ୱୋକ ନାମେ ଧନୁ କରରେ ଧଇଲ ।
ଆପଣା ସୈନ୍ୟକୁ ସେ ବୋଲଇ ଉତ୍ତର
ଉପ୍ରୋଧ ନ କରି ତୁମ୍ଭେ ବାନରକୁ ମାର ।
ଏତେ କହି ଧନୁଶର କରରେ ଧରିଲା
ମନ୍ତ୍ର ଆଧାନ କରି ଶରକୁ ଛାଡ଼ିଦେଲା ।
ଦୂରରୁ ଦେଖିଲେ ତାହା କୈକେୟୀର ସୁତ
ମାତୁଳଙ୍କ ଡାକକରି ଆପଣେ ଆଗତ ।
କରରେ ଧରିଲା ସେ ବଜ୍ର ଧନୁଶର
କୋହାଳସୁରକୁ ଶର ଯେତେଣେ ଭଡ଼ ଘାର ।
ଶର ଚଳିଲା ବୃନ୍ଦନ ଜ୍ୟୋଛନା ଯେ ଜାଣି
ଦୈତ୍ୟ ଶରମାନ ପକାଇଲା ହାଣି ।
ଦେଖିକରି ଦୈତ୍ୟ ଯେ ମହାକ୍ରୋଧ ହୋଇ
କଙ୍କପକ୍ଷୀ ନାରାଚ ଗୁଣରେ ବସାଇ ।
ବୋଇଲା ମାନବାରୁ ଘେନ ହୋ ପରାଣ
ଏମନ୍ତେ କହିବ ବାଣ ପେଶିଲା ଯେ ପୁଣ ।
ବାଣ ଚଳିଗଲା ଯେ ଘୋର ନାଦ କରି
ଭରତ ଘାର ତାହାକୁ ପ୍ରତିଶର କରି ।
ଗୁଣରେ ବସାଇ ତୀକ୍ଷ୍ଣମୁନା ଯେ ନାରାଚ
ମନ୍ତ୍ର ସୁମରି ପେଶିଲେ ଶ୍ରୀରାମ ସାନୁଜ ।
ଏମନ୍ତେ ବାଣ ଯେ ବଡେ ପରଚଣ୍ଡ
କୋହାଳସେନ ଶରକୁ କଲେ ଖଣ୍ଡ ଖଣ୍ଡ ।
ଏମନ୍ତ ଦେଖିଲା ପଦ୍ମ ସହସ୍ରମାଥ ସୁତ
ଶରକୁ ପେଶଇ କ୍ରୋଧ କରିଣ ଅତ୍ୟନ୍ତ
ପୁଣି ସେ ନାରାଚ ଯେ ଗୁଣରେ ବସାଇ
ଭରତର ଉପରକୁ ବିନ୍ଧଇ କୁହାଇ ।
ଏମନ୍ତେଣ ଯୁଦ୍ଧ ଯେ ହେଲା ଅପ୍ରମିତ
ଦୁଇଜଣ ଅଟନ୍ତି ଯେ ସମରେ ସାମର୍ଥ ।

ଏଥିଅନନ୍ତରେ ଶୋ ଶୁଣ ଭଗବତୀ
ସୁବଳଗିରି ଉପରେ ଶ୍ରୀରାମ ବସିଛନ୍ତି ।
ବୋଇଲେ ଶତ୍ରୁଙ୍କ ରଣ ହୋଇଗଲା ପୁଣ
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରାମରାଣ ।
ଆଜର ଯୁଦ୍ଧ ତ ଅଟଇ ବଡ଼ ଟାଣ
ଦୈତ୍ୟଙ୍କର ମାୟା ତ ଭ୍ରତ ନ ଜାଣଇ ପୁଣ
ଭ୍ରତ ଦୈତ୍ୟଙ୍କ ସଙ୍ଗରେ କରି ନାହିଁ ଯୁଦ୍ଧ
ଚିନ୍ତାରେ ତନୁ ତାର ହୋଇଅଛୁ ଭେଦ ।
ଏବେ ତଳ ବାବୁରେ କରେ ଶସ୍ତ୍ର ଧରି
ରଥରେ ବସ ବାବୁ ଯୁଦ୍ଧ ବେଗ କରି ।
ଶୁଣି ସଉମିତ୍ରୀ ସୁଷେଣଙ୍କୁ ଡକାଇଲା
ରଥ ସଜ କରି ଆଣ ବୋଲି ଆଜ୍ଞାଦେଲା ।
ତାଳଧ୍ୱଜ ରଥକୁ ସୁଷେଣ ସଜ କରି
ବାରଗୋଟି ଅଶ୍ୱ ତହିଁରେ ଯୋଚେବେଗକରି
ସେ ରଥରେ ଲକ୍ଷ୍ମଣ ବସିଲେ ବେଗକରି
ସୁଷେଣ ସାରଥି ଯେ ବେଗେ ରଥ ଚଳା ।
ଅଜସ୍ନେହ ଆଗରେ ବେଗେ ରଥ ହେଲା
ଦେଖିକରି ଦୈତ୍ୟଙ୍କର ମନରେ ଚମତ୍କାରିଲା ।
ସୁଗ୍ରୀବରକୁ ପଛକରି ଲକ୍ଷ୍ମଣ ହେଲା ଆଗ
ଦେଖିଣ ନାରାଚ ଯେ କରେ ଦୈତ୍ୟରାଜ
କଞ୍ଚରେ ସଉମିତ୍ରୀ ତାହା ନିବାରଇ
ବେଲକୁବେଳ ସମର କରନ୍ତି କୁଡାଇ ।
ନରାପକ୍ଷ ଦୈତ୍ୟେ ଅଟନ୍ତି ରଣରଙ୍ଗା
ସମର ଭୂମିକ ତାଙ୍କର କଛୁ ନାହିଁ ଶଙ୍କା ।
ରେରେକାର କରି ଡାକେ ଅଜସ୍ର କୁମାର
ବୋଲଇ ମାନବାରେ ସମ୍ଭାଳ ମୋର ଶର
ଏତେବୋଲି ଦୈତ୍ୟ ଗୁଣରେ ଶରଦେଇ
ଭଇରବୀ ନାରାଚକୁ ଗୁଣରେ ବସାଇ
ବୋଲଇ ମାନବାରେ ଜେନ ତୁ ପରାଣ
ଏମନ୍ତ କହିଣ ସେ ପେଶିଲାକ ବାଣ ।
ଚଳଇ ନାରାଚ ଯେ ଘୋଟିଣ ଆକାଶ
ଦେଖିଣ ଋକ୍ଷକପି ମନରେ କଲେ ତ୍ରାସ ।
ଦୂରରୁ ତାହା ଯେ ଦେଖଇ ଲକ୍ଷ୍ମଣ
ଅର୍ଦ୍ଧଚନ୍ଦ୍ର ବାଣ ଯେ ବସାଇଲେ ପୁଣ ।
ମନ୍ତ୍ର ଆଧାନ କରି ବେଗେ ଦେଲେ ଛାଡ଼ି
ନାରାଚ ଚଳନ୍ତେ ଶୁଭେ ମେଘ ଘଡ଼ଘଡ଼ି ।

ଆକାଶ ମାର୍ଗକୁ ସେ ଶର ଚଳିଗଲା
ଅଜସ୍ନେହ ଶରକୁ ଛେଦ କରାଇଲା ।
ଦେଖିଣ କଉଣପ ମହା କ୍ରୋଧ ହୋଇ
ଶରଭଗ୍ନ ଦେଖିଣ ଯେ କମ୍ପାଇ ହାତବେଇ
ବୋଇଲା ମାନବା ତ କଲା ବଡ଼ ଯଶ
ମୋ ର ସମ୍ମୁଖରେ ରହି କରେ ଯୁଦ୍ଧ ରସ ।
ଏତେବୋଲି ମେଘାସ୍ତ୍ର ବସାଇ ଗୁଣରେ
ଧନୁଟଙ୍କାର ସ୍ୱନରେ ବନ୍ଧିଲା ଅନ୍ତ ଖରେ ।
ଘୋର ଗରଜନ କରି ଶର ଚଳିଯାଇ
ଘଡ଼ଘଡ଼ି ଶବଦରେ ମେଦିନୀ ଚମକଇ ।
ଏମନ୍ତ ବାଣ ଯହୁଁ ଦେଖିଲେ ସଉମିତ୍ରୀ
ପବନା ଶର କନକ ଗୁଣରେ ବସାନ୍ତି ।
କର୍ଣ୍ଣମୂଳ ପରିଯନ୍ତେ ଆଣିଲା ଓଟାରି
ତକ୍ଷଣେ ପେଷିଲା ସେ ଶରକୁ କୁଆରି ।
ଚଳଇ ନାରାଚ ଯେ ଘୋଟିଣ ଦଶଦିଗ
ପ୍ରଳୟକାଳେ ଯେସନେ ବହଇ ବତାସ ।
ସେହି ସମୟରେ ଯେ ଚଳିଗଲା ଶର
ଉଠିଲା ବେଗେ ଶର ଯେ ଗଗନ ମାର୍ଗର ।
ମେଘାଶରକୁ ଯେ ନାଶ କଲା ଯାଇ
ଦେଖିଣ ଦୈତ୍ୟବଳ ବିସ୍ମୟ ମନ ହୋଇ ।
ଏମନ୍ତ ହେଲା ଯହୁଁ କୁମର ଅଜସ୍ନେହ
ତତକ୍ଷଣେ ବସାଇଲା ଅଗ୍ନିଶର ପୁଣ ।
ଧନୁରେ ବସାଇ ନାରାଚକୁ କୁଆରଇ
କର୍ଣ୍ଣମୂଳ ପରିଯନ୍ତେ ଓଟାରି ଛାଡ଼ିଦେଇ ।
ଚଳଇ ନାରାଚ ଯେ ପ୍ରଚଣ୍ଡ ତେଜ ହୋଇ
ଶୂନ୍ୟରେ ଗମନ୍ତେ ସେ ଅଗ୍ନି ବରଷଇ ।
ନେଖିକରି ସଉମିତ୍ରୀ ମନରେ କ୍ରୋଧ ହେଲେ
ଜଳଧାରା ଶରନେଇ ଗୁଣରେ ବସାଇଲେ
ମନ୍ତ୍ର ଆଧାନ କରିଣ ଛାଡ଼ିଦେଲେ ବେଗି
ଜଳ ବରଷନ୍ତେ ଅଗ୍ନି ବେଗେ ଗଲା ଲିଭି ।
ପୁଣିହିଁ ଶର ଯେ ଲକ୍ଷ୍ମଣ ଏଡ଼ନ୍ତି
ମୋର ଶର ଏଥର ସମ୍ଭାଳରେ ଡାକନ୍ତି ।
ମହାକ୍ରୋଧରେ ଯେ ଏଡ଼ନ୍ତି ସେହୁ ଶର
ଶରର ଆଘାତେ ପୃଥ୍ୱୀ ଅନ୍ଧାର ।
ଏମନ୍ତେ ଅନେକ ଯୁଦ୍ଧ କଲେ ରାମଭାଇ
ହାଣ୍ଡି ଭର୍ତ୍ସଙ୍କି ଜେନ ତନୁ କମ୍ପଇ ।

ଜମ୍ବବ ଗବାକ୍ଷ ସୁଗ୍ରୀବ ନଳ ନୀଳ
ଏମାନେ ଗୋଡ଼ାଇ ମାରନ୍ତି ଦୈତ୍ୟଦଳ ।
ପନସ ସନ୍ନଦ୍ଧ ପ୍ରଜ ସନ୍ନଦ୍ଧ ନନ୍ଦନ ଆସିଥିଲେ
ତାଙ୍କ କୁଳେ ସୁଗ୍ରୀବର ଅଙ୍ଗଦ ଯୁଟିଲେ ।
ଦଧିମୁଖ ବଳମୁଖ ସମ୍ପାତି ସହସ୍ର
କଞ୍ଚଣ ପବନ ଯେ କମ୍ପନ୍ତ କେଶରୀ ।
ଏମାନେ ସୁଗ୍ରୀବ ସଙ୍ଗେ ଧାଇଁଣ ଯୁଝନ୍ତି
ଅନେକ ହାତୀ ରଥ ଧାଇଁଣ ମାରନ୍ତି ।
କୁନ୍ଦ କାମୋଦ ଯେ ଗନ୍ଧମାଦନ
ଦୁର୍ଦ୍ଧର ପନଶୀଳ ଅବଧ ପବନ ।
ଏମାନଙ୍କ ସଙ୍ଗତରେ କପିଦଳ ଛନ୍ତି
କଉଣପ ସୈନ୍ୟଙ୍କୁ ସେ ଗୋଡ଼ାଇ ମାରନ୍ତି
ଧାଇଁପଡ଼ଣ ତାହାର ଧରନ୍ତି ସେ ବାଳ
ତାହାକୁ ଧରି ନେଇଣ କଚାଡ଼ନ୍ତି ତଳ ।
ତାହାକୁ ଦଶ ପାଞ୍ଚ ହୋଇଣ ବେଢ଼ନ୍ତି
ଡେଣା ଧରିଣ ରଣଭୂମିରେ ଘୋଷାଡ଼ନ୍ତି ।
ତାହାର କଟୁ ଖଣ୍ଡା ଛଡ଼ାଇଣ ଧରି
ସେହି ଖଣ୍ଡା ଧରିଣ ତାହାକୁ ଯେ ମାରି ।
କେବଣ ଦୈତ୍ୟ ପରେ ବସନ୍ତି ଚୁଲୁମାଡ଼ି
ଦୁଇସ୍କନ୍ଧ ପୁଣି ତାକୁ ପକାନ୍ତି ଚାମୁଡ଼ି ।
ଜୀବନର ଭୟରେ କେତେ ସେ ପଳାନ୍ତି
କେବଣ ତଳିତ ପ୍ରାଣ ହାରିଣ ପଡ଼ନ୍ତି ।
କେ ଅବା ଆରମ୍ଭେ ଟେକନ୍ଥାନ୍ତି ଧନୁଶର
ଦଶ ପାଞ୍ଚ କପି ଯେ ଧାମନ୍ତି ଦେଖିଣ ।
ଦଶ ବଂଶ ହୋଇ ରଥ ଉପରେ ଉଠନ୍ତି
ଧନୁଶର ତାର ଯେ ଛଡ଼ାଇ ନିଅନ୍ତି ।
ଖଣ୍ଡ ଖଣ୍ଡ କରିଣ ଫିଙ୍ଗିଣ ପକାନ୍ତି
ସାରଥିର ବାଳଧରି ରଥରେ ପିଟନ୍ତି ।
ଜୀବନେ ତାହାକୁ ପକାନ୍ତି ସେହୁ ମାରି
କେବଣ ଦଇତକୁ ବେନଫାଳ କରି ।
କେତେ ଧାଇଁ ଯାଇଣ ଧରନ୍ତି ଦୈତ୍ୟ କର
ନେଇଣ କଚାଡ଼ନ୍ତି ହସ୍ତୀଙ୍କ ଉପର ।
କେବଣ ଦଇତଙ୍କୁ ଭୂମିରେ ପିଟନ୍ତି
ବେକମୋଡ଼ି ତାହାର ଛିଣ୍ଡାଇ ପକାନ୍ତି ।
କେ ଅବା ମାଡ଼ଖାଇ ଯାଆନ୍ତି ପଳାଇ
କେବଣ ଦୈତ୍ୟ ରକ୍ତବାନ୍ତି କରି ମରଇ ।

ଅନେକ ଯୁଦ୍ଧ ତହିଁ କପିଦଳ କଲେ
ଘଡ଼ିକରେ ପାଞ୍ଚ ଖର୍ବ ରାକ୍ଷସ ମାରିଲେ ।
ଦଶ ମର୍କ୍କଟ ପଡ଼ିଲେ ହାତୀ ରଥ ସେନା
ପଦାତି ପଡ଼ିବାରୁ ଯେ ନ ଯାଇ କଳଣା ।
ସଂଗ୍ରାମ ଭୂମିରେ ଯେ ରକତ ନଦୀ ବହି
ଦୁଇକୋଶ ଓସାରରେ ଧାର ଲଗିଥାଇ ।
କବନ୍ଧ ନାଚନ୍ତି ଯେ ବୃନ୍ଦ ବୃନ୍ଦ ହୋଇ
ସଙ୍ଗହୋଇ ବେଶମାନେ ରକ୍ତ ପିଅନ୍ତି ତହିଁ
କଦଳୀର ଭେଳା ପ୍ରାୟେ ରାକ୍ଷସ ଭାସିଯାନ୍ତି
ଏମନ୍ତେ ଘୋର ଯୁଦ୍ଧ ହୋଇଲାଟି ସେଥି ।
ନାନା ବର୍ଣ୍ଣରେ ଶର ଛାଡ଼ଇ ଦୈତ୍ୟଙ୍କର
ଭରତର କୂଳେ ଯୁଦ୍ଧ କରଇ କୋଶଳକୁମର
ଅନେକ ନାରାଚ ମାରଇ ସେହୁ ପୁଣି
କୌଣସି ପ୍ରକାରେ ସେ ନ ପାରିଲା ଜିଣି ।
ହୋଇଲା ଆନ ପ୍ରାୟେ ମଣିଥିଲା ଏହାକୁ
ଏବେ ତ ନନ୍ଦନ ଯେ ହୋଇଲା ବେଳକୁ ।
ଏତେବୋଲି କଉଣପ ଘୋର ଯୁଦ୍ଧ କଲା
ପନ୍ନଗାଶର ନେଇ ଗୁଣରେ ବସାଇଲା ।
ଧନୁର୍ବେଦ ପଢ଼ିଣ ଯେ ଶରକୁ ଛଆରଇ
ମାନବର ପ୍ରାଣନେବ ବୋଲି ପେଷିଦେଇ ।
ଚଳଇ ନାରାଚ ଯେ ଘୋଟିଣ ଆକାଶ
ଶୂନ୍ୟରେ ଝନମଣି ହୋଇଲେ ଅଦୃଶ୍ୟ ।
ଏମନ୍ତ ଶର ଯହୁଁ ଦେଖିଲେ ପୁଣି ଭରତ
ବଜ୍ରଶର ଗୁଣରେ ବସାଇ ତୁରିତ ।
ମନ୍ତ୍ର ଅଧ୍ୟାନ କରିଣ ଦଶରଥ ବାଳ
ଛାଡ଼ିଦେଲେନାରାଚଦେଖିଲୁଟଳେ ପନ୍ନଗମାଳ
ପୁଣି ଭରତର ଯେ କ୍ରୋଧଭର ହୋଇ
ଫିରିକା ନାରାଚ ଯେ ଗୁଣରେ ବସାଇ
ମନ୍ତ୍ର ଅଧ୍ୟାନ କରି ଶରକୁ ଛଆରିଲେ
ଦୈତ୍ୟ ହସ୍ତରୁ ଧନୁ ଛେଦଯାଇ ଭଲେ ।
ଏତେ ଜହ୍ନୁଣ ବେଗେ ପେଷିଦେଲେ ଶର
ଚଳଇ ନାରାଚ ଯେ ଗଗନ ମାର୍ଗର ।
ଗର୍ଜ୍ଜନ ନାଦ କରିଣ ବେଗେ ଚଳିଯାଇ
କୋଦାଳସେନ ଧନୁରେ ଯାଇଣ ପଡ଼ଇ ।
ବେନି ଖଣ୍ଡ କରି ଧନୁ କାଟିଲାକ ଯହୁଁ
ଦେଖିକରି ରାକ୍ଷସ ଝଙ୍କର କରେ ତହୁଁ ।

ଏମନ୍ତେ ନାରାଚ ଯେଣେ କୈକେୟୀର ବଳା
ସାରଥିର ଶିର ଛିଡ଼ି ତଳରେ ପଡ଼ିଲା ।
ଦେଖିକରି ରାକ୍ଷସ କ୍ରୋଧଭର ହେଲା
କୋଦାଳ ଆୟୁଧ ଯେ କରରେ ଧରିଲା ।
ରଥର ଉପରକୁ ଯେ ପଡ଼ିଲାକ ଡେଇଁ
ଅନେକ ବାନର ସୈନ୍ୟ ଗୋଡ଼ାଇ ମାରଇ
କେବଣ କପିଙ୍କି ଫିଙ୍ଗି ଦିଅଇ ସେ ଧରି
କାହାକୁ ଜୀବନରେ ପକାଇଲା ମାରି ।
କାହାକୁ ଚର୍ବଣ କରଇ ଦୁଇଫାଳ
କାହାର ଅନ୍ତକୁ ଗଳାରେ କରେ ମାଳ ।
କେବଣ ବାନରକୁ ଗିଳି ସେ ଦିଅଇ
ଆଜ କୁ କାହିଁପିବୁରେ ବୋଲଣ ବୋଲଇ
ଏ ରୂପେ ଅନେକ କପି ମାରିଲା ଦଇତ
ଘଡ଼ିକ ମଧ୍ୟରେ ମାରେ ଦଶ ଯେ ମର୍କଟ ।
ଜଣପେକ୍ଷ ମାରେଣୀ ମାରେ ଦୈତ୍ୟଗଣ
ଦେଖି କ୍ରୋଧଭର ହେଲେ ଦଶରଥ ନନ୍ଦନ
ବୋଲଇ ବାବୁଆରେ ସ୍ଥିର ହୋଇ ରହ
ଏ ମୋହର ଶରକୁ ବାରେ ମାତ୍ର ସହ ।
ଏମନ୍ତ ବୋଲି ନାରାଚ ଗୁଣରେ ବସାଇ
ଦୈତ୍ୟର ଉପରକୁ ଲକ୍ଷଲେକ ନେଇ ।
ତତକ୍ଷଣେ ନାରାଚ ପଡ଼େ ଦୈତ୍ୟକାୟେ
ଦେଖିଣ କୋଦାଳସେନ ହୃଦୟେ କମ୍ପାଏ ।
ଜଣ୍ଟୁସୁ ମାନବାରେ ଆଜ ବୁଝ ମଲୁ
କାଳସର୍ପ ମୁଖରେ କୁ ଖଣ୍ଡି ଆଜ ହେଲୁ ।
ଆଜ ପାଞ୍ଚି ଯୋଛିଲ ଜନ୍ମପଣ୍ଡ କୋର
ଏତେବୋଲି କଜଣପ କୋଦାଳ ଧରେ କର
ତନ ଆକାର କରି ସେ ବୁଲାଇ ଫିଙ୍ଗିଲା
ଭରତ ବାମ ପାଦୁଣେ ଯାଇଣ ପଡ଼ିଲା ।
ଦେଖିକରି କୈକେୟୀ ମନରେ କ୍ରୋଧବନ୍ତ
ଅସନ୍ତି ଦେଲା ଶର ଗୁଣରେ ବସାଇ ।
ଶରକୁ ଲକ୍ଷିଣ ଯେ ବୋଲଇ ବଚନ
ବେଗେଯାଇ ଶରରେ ଦୈତ୍ୟକୁ କୁ ହାଣ ।
ଏତେବୋଲି ଶରକୁ ପେଶିଲେ କୈକେୟୀ
ଅଗ୍ନିର ସଞ୍ଚାତ ରଣଭୂମି ଯେ ହୋଇ ।
ଏମନ୍ତେଣ ବାଣ ଯେ ଅନେକ ହାସ କଲା
କଇତର ହୃଦରେ ଯାଇଣ ପଡ଼ିଲା ।

ଫଠି କଣ୍ଡଳ ଭାଇ ଶର ଗଲା ଗଳ
ପଡ଼ିଲାକ ଦୈତ୍ୟ ଯେ ଘୋର ନାଦ କରି ।
ଦେଖିକରି ଆନନ୍ଦ ହୋଇଲେ କୈକେୟୀ
ଦେବ ପୁଷ୍ପ ବରଷିଲେ ଆକାଶରେ ଥାଇ ।
ଯହୁଁ କୋଦାଳସେନ ପଡ଼ିଲା ଯୁଦ୍ଧର
ଦେଖିକରି ହସିଲେ କୈକେୟୀ କୁମର ।
ବୋଲନ୍ତି ଲକ୍ଷ୍ମଣ ଯେ ସମର କରୁଥିଲା
ଅଜସୁସେନକୁ ସେ ଜିଣି ନ ପାରିଲା ।
ଏତେବୋଲି ସନ୍ଧିକୁ ଯମନ୍ତେ କୈକେୟୀ
ଦେଖିକରି ସଉମିତ୍ରୀ ମହାକ୍ରୋଧ ହୋଇ ।
ରାକ୍ଷସକୁ ନାରାଚ କରନ୍ତି ସେ ଛନ୍ଦି
ଘଡ଼ିଲେ ଦୈତ୍ୟକୁ ଜିଣି ଅଇଲେ ଜ୍ୟେଷ୍ଠଭାଇ
ଦଇତ ଘରକୁ ମୁଁ ନ ପାରିଲି ଜିଣି
ଶୁଣିଲେ କହିବେ ମୋତେ ଯେ ରଘୁମଣି
ଏତେବୋଲି ମନରେ ଯେ ମହାକ୍ରୋଧହୋଇ
ରାକ୍ଷସକୁ ନାରାଚ କରନ୍ତି ଯେ ସେହି ।
ଶ୍ରାବଣ ବରଷା ଜାଣି ବରଷଇ ଶର
ଦେଖିଣ ପ୍ରଚଣ୍ଡ ଶର କରଇ ଅସୁର ।
କୌଣସି ପ୍ରାପ୍ତ ଶରକୁ ନିବାରି ନ ପାରିଲା
ଶଷ୍ପ ପଡ଼ନ୍ତେ ଯେ ଦୈତ୍ୟ ଖଣ୍ଡ ଖଣ୍ଡ ହେଲା
ଆମ୍ଭାର ବଳନେ ରଙ୍ଗ ଗୁଡ଼ଇ ଦଇତ
କରରେ ଧରିଲା ସେ ନନ୍ଦନଶୀ କୁନ୍ତ ।
ସଉମିତ୍ରୀ ଉପରକୁ ପେଷଇ ଯେ ପୁଣି
ଚଳଇ କାରାତ ଯେ ସୂର୍ଯ୍ୟର ପ୍ରଭା ଜାଣି ।
ଯହୁଁ ତାର ଶର ଯେ ଦେଖିଲେ ସଉମିତ୍ରୀ
କାଳାନ୍ତକ ନାରାଚ ଯେ ପେଶିଲେ ତତ୍କ୍ଷଣ ।
ବୋଇଲେ ଅଜଣସେନଶିରକାଟିପକାଦେବେଗେ
ତତକ୍ଷଣେ ଧାଇଥିଲା ପଡ଼ିକୁ ହୃଦ ବେଗେ ।
ସେ ସାରଥିର ଦେହଂଜ ଯେ ବେଳକୁ ଜୀବନ
ମନ୍ତ୍ରପଢ଼ି ଶରକୁ କଲେ ଯେ ଆଧାନ ।
ଏତେବୋଲି ଶର ଯେ ପେଶିଲେ ତତକ୍ଷଣି
ଚଳଇ ନାରାଚ ଯେ ପବନ ଗତି ଜାଣି ।
ଅଜସୁସେନ ଶର ସବୁ ପକାଇଲା ହାଣି
ସାରଥିର ଉପରେ ଶର ପଡ଼ିଲା ତତକ୍ଷଣି ।
ତକ୍ଷଣେ ସାରଥିର ହୃଦରେ ପଡ଼ିଲା
ପ୍ରଠିକଣ୍ଡଳ ଭାର ତତକ୍ଷଣେ ତଳପଲା ।

ପୁଣି ଲକ୍ଷ୍ମଣ ବୀର ଯେ କୋପାନଳ ହୋଇ
ଖଡ୍ଗା ଶରକୁ ସେ ଗୁଣରେ ବସାଇ ।
ମନ୍ତ୍ର ଆଧାନ କରିଣ ଶରକୁ ଛାଡ଼ଇ
ଦୈତ୍ୟର ପ୍ରାଣ ହରେ ଯେମନ୍ତି ବୋଲଇ ।
ଚଳଇ ନାରାଚ ଯେ ଘୋଟିଣ ଆକାଶ
ଗଗନରେ ଦିନମଣି ହୋଇଲେ ଅଦୃଶ୍ୟ ।
ଅନଳର ତେଜ ଶର ଗମନ୍ତେ ଦିଶଇ
ଅଜସ୍ରସେନ କଣ୍ଠରେ ପଡ଼ିଲାକ ଯାଇ ।
ଛୁଡ଼ିଲାକ କଣ୍ଠ ଯେ ହେଲା ଦେନ ଖଣ୍ଡ
ପୁଣି କଣ୍ଠରେ ଯାଇ ଲାଗିଲା ସେହି ମୁଣ୍ଡ ।
ଶ୍ରୀରାମ ଅନୁଜ ଦେଖିଣ ଭୟରନ୍ତ
ମହାବ୍ରକଣ ପରାସ୍ତ ହୋଇଲା ଏ ଘାନ୍ତ ।
ଏସନ ସମୟେ ପୁଣି ଅଜସ୍ର କୁମର
ସଉମିତ୍ରୀଙ୍କ ଝଣ୍ଡିଲା ଅନର୍ଯ୍ୟାପ୍ତ ଶର ।
ଦେଖିଣ ପ୍ରତିଶର କରିଣ ସଉମିତ୍ରୀ
ଲକ୍ଷ୍ମଣର ଶର ସବୁ ଛେଦେ ଦୈତ୍ୟପତି ।
ପୁଣିହିଁ ଶର ଯେ ପେଷିଲେ ଲକ୍ଷ୍ମଣ
ଅଜସ୍ରସେନ ହସ୍ତରୁ ଛେଦିଲେ ଧନୁଶର ।
ଦେଖିକରି ଦୈତ୍ୟ ଯେ କୋପାନଳ ହେଲା
ବଜ୍ରସମ ଗଦା ଯେ କରରେ ଧରିଲା ।
ରଥର ଉପରୁ ସେ ପଡ଼ିଲା ବେଗେ ଡେଇଁ
ଦେଖିଣ ହନୁମନ୍ତ ଆପରେ ଓଗାଳଇ ।
ବୋଲଇ କାହିଁକିରେ ଯାଉଛୁ ନିଶାଚର
ଏତେବୋଲି ଯାଇଣ ଛଡ଼ାଏ ଗଦାବର ।
ସେହି ଗଦା ଯେବଣ ପାବନି ପିଟଇ
କେବେହେଁ ଅସୁର ପ୍ରାଣତ୍ୟାଗ ଯେ ନୁହଇ ।
ଦେଖିଣ ରଘୁବର ପବନର ସୁତ
ଧନ୍ୟ ଧନ୍ୟ ବଇତରେ ତୋର ପିତା ମାତ
ଏମନ୍ତ ବୋଲି ପାବନି ମନରେ ବିଚାରଇ
ଧାମରିଁ ହଇକ ଯେ ଘୋର ରଡ଼ଦେଇ ।
ଗୋଡ଼ାଇ ମାରିଲା ଯେ ବାନର କପିବଳ
ପଳାନ୍ତି ରକ୍ଷ ଭାଲୁ ହୋଇଣ ବିକଳ ।
ଏମନ୍ତ ମାରୁତି ଯତ୍ନ ଦେଖିଲେ ସଉମିତ୍ରୀ
ଅଜସ୍ର ବର ଏହାଙ୍କୁ ଦୁର୍ଗା ଦେଇଛନ୍ତି ।
ଏବେ ହେ ସଉମିତ୍ରୀ କ୍ରୋଧ ଶାନ୍ତ କର
ଦେନ ନୟନକୁ ଦେନ ଶର ମାର ।

କଣ୍ଠତଟକୁ ତାର ବନ୍ଧ ଏକ ବାଣ
ତେବେ ସେ ଅସୁରର ଯିବଟି ପରାଣ ।
ଏମନ୍ତ ବୋଲି ଯତ୍ନ କହିଲେ ଦେବବୃନ୍ଦ
ଶୁଣିଣ ସଉମିତ୍ରୀ ଯେ ହୋଇଲେ ଆନନ୍ଦ ।
ବୋଇଲେ ଏଥର ନଷ୍ଟେ ନାଶିବି ଦୈତ୍ୟ
ଗୁଣରେ ବସାଇବେ ନାରାଚ କଳୁଷ ତ ।
କଙ୍କପକ୍ଷୀ ଭଇରବୀ ଆବର ରୁଦ୍ରବାଣ
ଏ ତିନ ନାରାଚକୁ ସେ ବସାଇଲେ ପୁଣ ।
ଦୈତ୍ୟକୁ ବୋଲନ୍ତି ଯେ ରେଟେରକାର କର
କେବଣ କାରଣେ ରକ୍ଷ କପିଙ୍କି ଯାଉ ମାରି
ଛୋହପର ଖଣୀ ହୋଇ ଏତେ କର୍ମ କଲୁ
ଧନୁଶର ଗୁଣ୍ଡ ଖାଲି ହସ୍ତରେ ବୁଲିଲୁ ।
ଅବୋଧେ ରକ୍ଷକପି ମାରୁଛୁ କାହିଁପାଇଁ
ଏବେ ମୋର ନାରାଚକୁ ସମ୍ଭାଳରେ ତୁହି ।
ଏତେବୋଲି ଶରକୁ ଯେ ଛାଡ଼ିଲେ ସଉମିତ୍ରୀ
ଦୈତ୍ୟର ଉପରକୁ ବାହୁଲେ ଚଡ଼ତି ।
ଚଳିଲାକ ନାରାଚ ପବନ ଗତି ଜାଣି
ତତକ୍ଷଣେ ପଡ଼ିଲା ଅସୁର ନୟନରେ ପୁଣି ।
କଣ୍ଠରେ ପଡ଼ିଲା ଯାଇ ରୁଦ୍ରଶର ବାଣ
ତତକ୍ଷଣେ ଦୈତ୍ୟ ଯେ ହାରିଲା ଜୀବନ ।
ଦୁଇଲକ୍ଷ ମାତ୍ତ ପାଞ୍ଚସହସ୍ର କୁମର
ତିରିଶ ମତ୍ତ ଯେ ଅଦ୍ଭୁତ ତାହାର ।
ପାଞ୍ଚସହସ୍ର ସେନାପତି ତିରିଶସହସ୍ର ରଥ
ଏକାକ୍ଷୀ ଏତେ ସୈନ୍ୟ ମାରେ ପବନ ସୁତ
ଜମ୍ବୁବ କେଶରୀ ଯେ ତାରକ୍ଷ ନଳ ନୀଳ
ଏହାଙ୍କର ସଙ୍ଗରେ ଅନେକ କପିବଳ ।
ହାତୀ ରଥ ଧରିଣ ଏମାନେ ମାରନ୍ତି
ପ୍ରଥମରେ ମାରନ୍ତି ପାଞ୍ଚ ମତ୍ତ ପଦାତି ।
ଷୋଡ଼ଏସହସ୍ର କୁମର ଯେ ଦଶମତ୍ତ ରଥ
ପଞ୍ଚମତ୍ତ ହସ୍ତୀ ତିରିଶ ମତ୍ତ ହସ୍ତୀ ।
ଦେଢ଼ଲକ୍ଷ ମାତ୍ତ ଯେ ପଡ଼ିଲେ ସମରେ
ରକ୍ଷସବଳ ନିବାରି ସମସ୍ତେ ବାହୁଡ଼ିଲେ ।
ସୁଗ୍ରୀବ ବିଭୀଷଣ ଗନ୍ଧମାଦନ
ଏମାନେ ବାହୁଡ଼ିଲେ ମାରି ଅସୁର ସୈନ୍ୟ
ସୁବଳଗିରିକି ବଟେ କଲେ ବେଢ଼ଣଭଇ
ଏତେବୋଲି ସଦାଶିବ ପାର୍ବତୀ ଆଗେ କହି

ବୋଲନ୍ତି ଭଗବତୀ ଶୁଣ ହେ ବିଲୋଚନ
କୁମ୍ଭର କଥା ଶୁଣି ମୁଁ ଆଚମ୍ବିତ ପୁଣ ।
ତୁମ୍ଭେ ବୋଲ ଅଜୟ ପାଇଅଛୁ ବର
ତେଣୁକରି କାଟିଲେ ପାଲଟି ଲଗେ ଶିର ।
ଏକଥା ସଞ୍ଚପିଣ କହ ହେ ଶଙ୍କରସାଇଁ
ବର ପାଇଲା କେଉଁ ଯେ ମଲ୍ଲ କସପାଇଁ ।
ଏମନ୍ତ ବୋଲି ଯହୁଁ ପଚାରିଲେ ଉମା
ସଦାଶିବ ବୋଲନ୍ତି ଶୁଣ ଗୋ ପ୍ରିୟତମା ।
ଯେଉଁ ରୂପେ ବର ପାଇଅଛି ଅଜୟସେନ
ବାରଯୁଗ ତାହାକୁ ଦୁଅନ୍ତେ ଯେ ପୁଣ ।
ଏକଦିନେ ବସ୍ତ୍ରଭଇ ସହସ୍ରମାଥର ସୁତ
ବୋଇଲା ତାହାକୁ ଯେ ଦେବବ ବଚନ୍ତ ।
ବୋଲଇ କସ ଉପାୟ ମୂର୍ତ୍ତି ଯେ କରିବ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ କେମନ୍ତ ଜିଣିବ ।
ମୋହର ତୁଲେ କେହି ନୋହିବେ ସାମର୍ଥ୍ୟ
ସମରଭୂମିରେ କେହି ନୋହିବେ ଜଗଜ୍ଜିତ
ଏମନ୍ତ ବସ୍ତ୍ରର ଯେ ମନରେ ସେହୁ ଭାବ
ବୋଲଇ ମୂର୍ତ୍ତି ଯେ ପିତାକୁ ପଚାରିବ ।
ସେହୁ ମୋତେ ସଞ୍ଚପି କହିବେ ଯେମନ୍ତ
ପିତା ଆଜ୍ଞା ମାନ ମୁଁ କରିବ ତେମନ୍ତ ।
ଏମନ୍ତ ବସ୍ତ୍ରର ମନେ ତତକ୍ଷଣେ ଗଲା
ସହସ୍ରାନନ ସ୍ଥାନରେ ଯାଇଣ ମିଳିଲା ।
ଆଗରେ ଭିଆ ହୋଇଣ କରଇ ନମସ୍କାର
କେଡଗିଣ ପଚାରଇ ବଶାଖା କୁମର ।
କହ କୁହି ବାବୁରେ ରାଜ୍ୟର ବାରତା
ଆଜ୍ଞାପାଇ କୁମର କହଇ ହୋଇ ସ୍ରୋତା
ବୋଲଇ ଶ୍ରୀ ଦେବ ଶୁଣିବା ସାବଧାନେ
ତୋହର ପ୍ରସାଦେ ସୁଖେ ବଞ୍ଚନ୍ତି ସର୍ବଜନେ
ତାହାଙ୍କ ଯେ ମନରେ କିଛି ଚିନ୍ତା ନାହିଁ
ସମସ୍ତେ ଅଛନ୍ତି ଯେ ମହାସୁଖ ପାଇ ।
ଶ୍ରୀ ଦେବ ତୋ ରାଜ୍ୟରେ ଯମଦଣ୍ଡ ନପଶଇ
ବେଳକାଳ ଜାଣିଣ ଇନ୍ଦ୍ର ବରଷଇ ।
ଆଜ୍ଞାରେ ପୃଥ୍ୱୀଦେବୀ ଦେଉଛି ଶସ୍ୟ ଫଳ
ସକଳଦେବେ ତୋର ଖଟନ୍ତି ପାଦତଳ ।
ଏ ପୁରରେ କେବେ କେହି ନାହିଁ ଯେଅସାର
ଏମନ୍ତ ବୋଲି କହିଲା ଅଜୟ କୁମର ।

ଶୁଣିକରି ସହସ୍ରାନନ ଆନନ୍ଦ ହୋଇଲେ
ପୁତ୍ରକୁ ସ୍ନେହିଁଣ ସେ ବଚନ ବୋଇଲେ ।
କହ ବାବୁ କସ କାର୍ଯ୍ୟ ଅଇଲୁରେ ପୁଣି
ଶୁଣିକରି କୁମର କରଯୋଡ଼ି ଭଣି ।
ଶ୍ରୀ ଦେବ ଶୁଣ ହେ ତନପୁର ସାଇଁ
ଈଶ୍ୱର ସେବାକୁ ମନ ମୋର ହୋଇ ।
ପୁତ୍ରର ବଚନ ଶୁଣି ସହସ୍ରାନନ କହି
ଈଶ୍ୱରଙ୍କର ସେବା କଠୋର ଅଟଇ ।
ବଡ଼ାଇ କରିପକ୍ଷ ଅଟନ୍ତି ଈଶ୍ୱର
ବହୁତକାଳ ସେବିଲେ ଦିଅନ୍ତି ସେ ବର ।
ସେ କଠୋର ତପକୁ ବାବୁରେ ପାରିବୁ କିହ
ଏବେ କହିବା କଥା ତୋତେ ତ ଯୋଗାଇ
ସବୁଦିନେ ତୁରେ ହୋଇବୁ ଅଜୟ
ଦେବାସୁର ନରକୁ ନ ଥିବ ତୋର ଭୟ ।
ସମସ୍ତଙ୍କୁ ଜିଣିଣ ତୁହି ହେବୁ ସର୍ବ
ଅମର ବର ପାଇବୁ ଦୁର୍ଗାଙ୍କୁ ସୁମର ।
ଦେବୀ ତୋତେ ଯେବେରେ ହେବେ ପରସନ
ଜିଣିବୁ ତୁ ଚଉଦ ଭୁବନ ।
ଅଳପ ତପରେ ପ୍ରସନ୍ନ ହେବେ ମହାମାୟୀ
ଦେବୀଙ୍କର ସେବା ବାବୁରେ କଠୋର ନୁହଇ
ଦେବୀ ଭକ୍ତ ହୁଅନ୍ତି ଜାଣେ ଯେବଣ ଜନ
ପୁତ୍ର ଗୃହ ଆଦିକରି ଲଭନ୍ତି ଧର୍ମ ଧନ ।
ଏମନ୍ତ ବୋଲିଣ ଯହୁଁ ସହସ୍ରମାଥ କହି
ଶୁଣିଣ କୁମର କର ଯୋଡ଼ିଣ ଜଣାଇ ।
ବୋଲଇ ଶ୍ରୀ ଦେବ ଶୁଣିବା ନୃପବର
ଦୁର୍ଗାଙ୍କୁ ସେବା କରିବ କେବଣ ପ୍ରକାର ।
ସେକଥା ସଞ୍ଚପି ମୋତେ କହହେ ଗୋସାଇଁ
ତୁମ ମୁଖରୁ ଶୁଣିଲେ ସେବିବ ମହାମାୟୀ ।
ଏତେ ବାଟେ ଯହୁଁ କହିଲା କୁମର
ଶୁଣିଣ ବୋଲଇ ଯେ ସହସ୍ରାନନ ବୀର ।
ସେକଥାକୁ ବାବୁରେ କହିବା ତୋତେ
ନ କହିଲେ ବାବୁରେ ତୁ ଜାଣିବୁ କେମନ୍ତେ
ଏକମନ ହୋଇଣ ନଗରେ ସ୍ନାନ କର
ନିତ୍ୟକର୍ମ ସାରିଣ ଯାଅ ତୁ ସତ୍ୱର ।
ବଳଙ୍କାର ଦେବୀ ଯେ ନାମ ତା କହନ୍ତି
ଭୂପତି ଜଗତ ବଳଦେବ ତୁ ଦେଇଛି ।

ତାହାର ଆଗରେ ତୁ ବସିବୁ ନିଷ୍ଠା କରି
ମନପବନ ରୁନ୍ଧଣ ଜପିବୁ ଏକାକ୍ଷରୀ ।
ତେବେ ସେ କାତ୍ୟାୟନୀ ହୋଇବେ ପରସନ୍ନ
ଯେ ତୋହର ମନବାଞ୍ଛା ମାଗିଣ ତା ଘେନ
ମୁହକୁ ଯେ ଏମନ୍ତ କହେ ସହସ୍ରାନନ
ଶୁଣି ତତକ୍ଷଣେ ଗଲା ରାକ୍ଷସ ନନ୍ଦନ ।
ନଦୀରେ ପଶିଣ ସେ ସ୍ନାନ ବେଗେ କଲା
ଚଳିଙ୍କ ଦେବୀ ପାଶରେ ପ୍ରବେଶ ହୋଇଲା ।
ନିତ୍ୟକର୍ମ କରିଇଲା ଲୋକ ହକରାଇ
ଖେଳମାନ ଦେଲା ତାଙ୍କୁ ଅନେକ ବଳଦେଇ
ତାପୂର୍ଣ୍ୟ ହୋଇଣ ସେ ଅନେକ ସ୍ତୁତି କଲା
ଆସନ କରି ଦେବୀ ସମ୍ମୁଖରେ ବସିଲା ।
ମନପବନ ରୁନ୍ଧଣ୍ଣ ବସିଲା ଯେ ସେଠାରୁ
ଆତ୍ମାର ନିଷ୍ଠାରେ ଏକ ଅକ୍ଷର ଜପଇ ।
ପବନ ନିରୋଧି ସେ ଉଜାଣି ଟେକିଲା
ତ୍ରିକୂଟ ସ୍ଥାନରେ ନେଇ ଲୟ ଲଗାଇଲା ।
ଏମନ୍ତ ପ୍ରକାରେ ଯେ ବସିଲାକ ସେଠାରୁ
ଶତେ ବରଷ ଏଥିରେ ବିନ ଗଲା ବହି ।
ନିରାପକ୍ଷରେ ବସେ ଅସୁର ନନ୍ଦନ
ଜାଣିଲେ ମହାମାୟା ଦୈତ୍ୟର ଦୃଢ଼ ମନ ।
ପାଷାଣରୁ ଫୁଟି ସେଠୁ ହୋଇଲେ ବାହାର
ଖଡ଼ଗ ଖପର ସେ ଧରିଣ କରସ୍ଥାନ ।
କଣ୍ଠରେ ଶୋଭିତ ଯେ ଅଭୟ ମୁଣ୍ଡମାଳ
ଲହ ଲହ ଜିହ୍ୱା ଯେ ନୟନ ବିକଟାଳ ।
ମୁକୁଳିତ କେଶ ଯେ ଶୋଭିତ ଚିକୁର
କୃଷ୍ଣବର୍ଣ୍ଣ କେଶ ଯେ ଦିଶଇ ସୁନ୍ଦର ।
ଏମନ୍ତ ସ୍ୱରୂପରେ ବିଜୟେ ଗୋସାମଣି
ଦୈତ୍ୟକୁ ଚାହିଁଣ ଯେ ବୋଲନ୍ତି ମୃଦୁବାଣୀ
ବରମାଗରେ କୁମର ଯେ ତୋହ ମନର
ଯାହା ତୁ ମାଗିବୁ ମୁହିଁ ଦେବି ଏହିକ୍ଷଣ ।
ଏମନ୍ତ ବୋଲିଣ ଯହୁଁ ବୋଲନ୍ତି କାତ୍ୟାୟନୀ
ଶୁଣିଣ କୁମର ଯେ ଯୋଡ଼େ ବେନିପାଣି ।
ବୋଲଇ ଶୁଣିବା ହେଉ ହେ ମହାମାୟୀ
ତୁମ୍ଭେ ଜଏ ଅଟ ମୁହିଁତ ନ ଜାଣଇ ।
କେଉଣ ପ୍ରକାରେ ମୁହିଁ ମାଗିବ ଯେ ବର
ଏ ବଚନ ଶୁଣି ଦେବୀ କହନ୍ତି ଉତ୍ତର ।
ଶୁଣରେ କୁମରମଣି ମୁଁ ଯେତୁ ଅଟଇ
ଜଗତ୍ତ୍ରୀ ଚଳଙ୍କା ଈଶ୍ୱରୀ ମୁଁ ବୋଲାଇ ।
ତୋର ସେବା ଦେଖି ମୁଁ ହେଲି ପରସନ୍ନ
ଏବେ ତୋର ଇଚ୍ଛାରେ ବର ମାଗି ଘେନ ।
ଶୁଣିକରି କୁମର ବିନତ ହୋଇ କହି
ତୁମ୍ଭେ ଯେବେ ଚଳଙ୍କା ଗଡ଼ର ମହାମାୟୀ ।
ମୋହର ସେବା ଯେବେ ଘେନିଲ ଠାକୁରାଣୀ
ସମରେ ଜୟୀ ହେବି ଏ ବର ଦିଅ ଜାଣି ।
ତିନିପୁରେ ମୋତେ କେହି ନୋହି ସେ ସାମରଥ୍ୟ
ଦେବାସୁରମାନଙ୍କୁ ନଥିବ ମୋର ଚିନ୍ତା ।
ସବୁଦିନରେ ମୁଁ ଯେ ହେବି ଅଜର ଅମର
ମୋଠାରେ ଯେବେ ସୁଦୟା ଦିଅ ଏହି ବର
ଶୁଣିଣ ଶାକମ୍ଭରୀ ଅମୃତବାଣୀ କହି
ଅଜୟସେନ ନାମ ହେଉରେ ତୋହର ।
ଏମନ୍ତ ବର ଯହୁଁ ଦେଲେ ମହାମାୟୀ
ଶୁଣିକରି ସନ୍ତୋଷ ଅସୁର ହୁଅଇ ।
ଦେବୀର ସୁନ୍ଦରପଣ ଦେଖିଣ ଅସୁର
ମନେ ବିଚାରିଲା ସୁରତରେ ବଢାଇ ଶରୀର ।
ଏତେ ବିଚାରି ଜାଣୁ ଯଉବନ ବଧ
ଅସୁରକୁ ଦେବୀ ତର୍ଜିଲେ ହୋଇ କ୍ରୋଧୀ ।
ମୋରଠାରୁ ବର ପାଇ ମୋତେ ତୁ ବଳିଲୁ
ଜାଣିଲି ମୁହିଁ ତ ଅଜ୍ଞାନପଣ କଲୁ ।
ତୋତେ ଯେ ଅଜୟ ବର ଦେଇଅଛି ମୁହିଁ
ତାହାରି ଦେଲେ ଆଉ ଅନ୍ୟଥା ନୁହଇ ।
ଶରୀର ବନ୍ଧିଲେରେ ଅବଶ୍ୟ ନାଶ ହୋନ୍ତି
ଦେବାସୁର ଅସୁର କେହି ନ ରହନ୍ତି ।
ଯେଉଁ ନେହେ ଦେଖିରେ ବନ୍ଦନା କଲୁ ମୋତେ
ସେ ନେହକୁ ନ ବସିଲେ ମରିବୁ କୁରତେ ।
ମଲାର ବେଳେ ପୃଥିରେ ହେବୁ କରଥିବୁ
ଏବେ ନେହରେ ଶର ବାଜନ୍ତେ ମରିବୁ ।
ବେନି ଡେହ ଫୁଟିଣ କଣ୍ଠରେ ଶର ପଡ଼ି
ତେବେ ବେନିଖଣ୍ଡହେବ ଦେହଯେ ତୋହରି
ତେବେ ଯୁଦ୍ଧ ସଂଗ୍ରାମରେ ହେବୁରେ ନିଧନ
ଜଣକା ନୋହିବେ କୋଟେଥିଲେ ତୋନସୂନ
ଶତେଥର କାଟିଲେ ଲାଗିବ ତୋର ଶିର
ନୟନକୁ ନ ବସିଲେ ମରିବୁ ନିକର ।

ଏମନ୍ତ ବୋଲଣ ଯେ ବୋଲଇ ଗୋସାମଣୀ
ଏତେ କହି ଅନ୍ତର୍ଦ୍ଧାନ ହେଲେ ଠାକୁରାଣୀ
ବର ପାଇ ଅଜସ୍ର କୁମର ବେଗେ ଗଲା
ପିତାର ପାଶରେ ଯାଇ ତତକ୍ଷଣେ ମିଳିଲା ।
ସକଳ ବୃତ୍ତାନ୍ତ ଯେ ପିତାର ଆଗେ କହି
ବୋଲନ୍ତ ବିଲୋଚନ ଶୁଣ ଗୋ ମହାମାୟୀ
ତୁମ୍ଭ ପତ୍ରିକୁ ଅଜସ୍ର କୁମରର ବାଣୀ
ଏଣୁକରି ସଞ୍ଜିବିନୀ ଶର ବାନ୍ଧେ ପୁଣି ।
ନୋହିଲେ ରାକ୍ଷସ ନହନ୍ତା ଯସ୍ୟ ପୁଣ
ବେଳହୁଁ ମରଣ ତାକୁ ନାହିଁ ଦେଖ ଜାଣ ।
ଏମନ୍ତ ବଚନ ଯେ ବୋଲନ୍ତ ବିଲୋଚନ
ଶୁଣିକରି ମହାମାୟୀ ତୋଷ କଲେ ମନ ।
ପାଙ୍କଷ ବୋଲନ୍ତି ତୁମ୍ଭେ ଶୁଣ ହେ ଈଶାନ
ଏଥିରୁ ଉତ୍ତରୁ କଥା ହୋଇଲା କେମନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ପ୍ରାଣସଖି
ତିନି ପ୍ରହର ବେଳେ ଅସୁର ନାଶଯାଇ ।
ସମରେ ଜୟକରି ଲକ୍ଷ୍ମଣ ଭରତ
ଯାଇଣ ମିଳିଲେ ସେ ସୁବଳ ପର୍ବତ ।
ଶ୍ରୀରାମ ଗ୍ରାମରେ ଯାଇ ହେଲେ ପରବେଶ
ରାମତାଳ ହୁଳହୁଳି ପୂରଇ ଆକାଶ ।
ଆଗରେ ଋକ୍ଷ ଭାଲୁ ନୃତ୍ୟ ଯେ କରନ୍ତି
ବାଦ୍ୟର ଶବଦରେ କମ୍ପେ ବସୁମତୀ ।
ଭରତ ଲକ୍ଷ୍ମଣ ଆସି ପ୍ରବେଶ ରାମ ପାଶ
ଦେଖିକରି ଶ୍ରୀରାମ ଯେ ମନରେ ହରଷ ।
ଆଗରେ ଉତ୍ତ ଗୁହ ନାମରେ ଶବର
ପ୍ରେମଭାବ ଭେଟକଲେ ଶ୍ରୀରାମ ପାଶର ।
ଭରତ ଲକ୍ଷ୍ମଣ ଯେ ଉଭଗି ହୋଇଲେ
ସୁଗ୍ରୀବ ହନୁମନ୍ତ ଜାମ୍ବବ ନଳ ନୀଳେ ।
ଅଙ୍ଗଦ ସଙ୍ଗେ ସେନା ପଚିଶ ଯୂଥପତି
ମଲ୍ଲ ମହାମଲ୍ଲ ତୁଲେ ବର୍ଣ୍ଣନ କରନ୍ତି ।
ମୃଗଚର୍ମ ଉପରେ ବିଜୟ ରଘୁସାଇଁ
ସ୍ତୁତି ଋଷି ଆସନରେ ବସିଛନ୍ତି ତହିଁ ।
ଶ୍ରୀରାମ ବୋଇଲେ ବାବୁରେ କରଯାଇ ସ୍ନାନ
ରଣରେ ଶ୍ରମିତ ହେ ହୋଇଅଛ ପୁଣ ।
ଶୁଣିଣ ଭ୍ରାତାର ଲକ୍ଷ୍ମଣ ବେଗେ ଗଲେ
ଋକ୍ଷକପି ଭାଲୁ ଯେ ସମସ୍ତେ ମିଳିଲେ ।
ନଦୀରେ ପଶିଣ କଲେକ ସ୍ନାନ ବେଗେ
ନିତ୍ୟକର୍ମ ସାରିଣ ଅଇଲେ ଯେଯାହା ଠାବେ
ଲକ୍ଷ୍ମଣ ଭରତ ଯାଇ ପ୍ରବେଶ ହୋଇଲେ
ସନ୍ଧ୍ୟା ସୁମରି ସେ ପିତୃଙ୍କୁ ଜଳ ଦେଲେ ।
ଷଡ଼ରସେ ଭୋଜନ କଲେ ଦୁଇଜଣ
ଜନକ ଦୁହିତା ପରଷି ଦେଲେ ପୁଣ ।
ଆଚ୍ଛୋଦନ ସାରିଣ ବସିଲେ ଶ୍ରୀରାମର ପାଶ
ବଡ଼ଆ ଲାଗି କରାଏ ବିଜଟା ହରଷ ।
ଏମନ୍ତେ ଦିନମଣି ହେଲେ ପୁଣ ଅସ୍ତ
ସମରେ ପଡ଼ିଲେ ସହସ୍ରମାଥର ବେଳପୁତ୍ର ।
ତାହାଙ୍କର ତୁଲେ ଯେତେକ ଆସିଥିଲେ
ସମସ୍ତେ ପଡ଼ିଲେ ଦଶ ପାଞ୍ଚ ପଳାଇଲେ ।
ସହସ୍ରାନନ ଗ୍ରାମରେ ଜଣାଏ ଚର ଯାଇ
ଶୁଣିଣ ସହସ୍ରାନନ ମନ୍ତ୍ରୀକ ଆଜ୍ଞାଦେଇ ।
କେତୁ କସ କହିଲେ କୁହ ହେ ମନ୍ତ୍ରୀବର
ଶୁଣିଣ କାଉଣସ ବୋଲନ୍ତ ଯୋଡ଼କର ।
ଯୁଦ୍ଧରେ ପଡ଼ିଲେ ଅଜସ୍ରସେନ କୋଦାଳସୁର
ହେ ସ୍ୱାମୀ ବଳଙ୍କା ରଜା ଶୁଣିବା ଉତ୍ତର ।
ଯାଙ୍କ ସଙ୍ଗେ ଯେତେ ପୁତ୍ର ନାତି ଯାଇଥିଲେ
ଜୁଆଇଁ ଶଳା ବନ୍ଧୁ ସମସ୍ତେ ନାଶଗଲେ ।
ଏମନ୍ତ ବଚନ ଯହୁଁ ସହସ୍ରମାଥ ଶୁଣି
ମୂର୍ଚ୍ଛାଗତେ ସେ ଯେ ପଡ଼ିଲା ଧରଣୀ ।
ଦେଖିଣ ମନ୍ତ୍ରୀବର ତୋଳିଣ ଧଇଲା
ଶଙ୍କାଜିତ କୁମର ମୁଖରେ ଜଳ ଦେଲା ।
ଶୁଣିହିଁ ବାହୁଇ ହସ୍ତେ ବାଣୀ ଯେ ଧରି
ସହସ୍ରାନନକୁ ସଚେତ କରଇ ବସ୍ତ୍ରର ।
ଏମନ୍ତେ ତହିଁରେ ଘଡ଼ିଏ ବହିଗଲା
ମୋହ ଛେକ ସସ୍ରମାଥ ଉଠିଣ ବସିଲା ।
ଆମ୍ଭ ବଳକେ ମନ୍ତ୍ରୀକ ଶୁଣିଣ ବୋଲଇ
ତୁମ୍ଭର ବୁଦ୍ଧିରେ ପୁତ୍ରକୁ ମରାଇଲି ମୁହିଁ ।
ଆଗହୋଇ ଯେବେ ମୁଁ ଯୁଦ୍ଧକୁ ଯାଇଥାନ୍ତି
ଶ୍ରୀରାମ ବଶାଖଣକୁ ସମରେ ମାରିଥାନ୍ତି ।
ତାଙ୍କର ଲକ୍ଷରାକୁ ଆଣନ୍ତି ମୁଁ ଯେ ଧରି
ତେବେ ପୁତ୍ର ବଞ୍ଚିଥାନ୍ତ ହେ ପାଷୋରି ।
ତୋହର ବୋଲକରି ମୁଁ ପେଷିଲି ପୁତ୍ର ତ
ଅଖଣ୍ଡେ ମରାଇଲି ମୁହିଁ ସହସ୍ରେ ସୁତ ।

ଦ୍ୱିବିଲକ୍ଷ ନାଶ ଯେ ଖଣ୍ଡଲକ୍ଷ ଜୁଆଇଁ
ଖାଲେକ ବନ୍ଧୁ ମୋର ମଲେ ବତ୍ସ ତହିଁ ।
ଆବର ହରାଇଲି ମୁଁ ରଥି ସେନାପତି
ହାତୀ ଘୋଡ଼ା ଅନେକ ମଲେଟି ପଦାତି ।
ଏତେ ଲକ୍ଷଣ ଯେ କ୍ରୋଧେ କାନ୍ଦଇ
କେଣେ ଗଲ ପୁତ୍ରରେ ଦେଖିଲି ନାହିଁ ମୁହିଁ ।
ପୁଣ ମନ୍ତ୍ରୀଙ୍କ ଚାହିଁଣ ସେହୁ ସେ ବୋଲଇ
କମାଇଁ ର ବଦ୍ୱର କଲୁ ହୋ ମନ୍ତ୍ରୀ ତୁମ୍ଭ ।
ପୁଣସାଗର ମନ୍ତ୍ରୀ ଯେ କହେ କର ଯୋଡ଼ଣ
ଶୁଣିଣ ହେଉ ଦେବ ସାବଧାନେ ପୁଣ ।
ମୋହର ଅନ୍ୟାୟ କମାହେଲ ହେ ଗୋସାଇଁ
କେଉଁଠାରେ ରଜାର ଯୁଝିବା ଆସେ ନାହିଁ
ଶ୍ରୀରାମ ଯେ ଏ ଯୁଦ୍ଧରେ ଅଟନ୍ତି ସଜନ
ଶଜ ରାଇକ ଭେଦଲେ ଆସେ ସେହୁ ପୁଣ ।
ଜମ୍ବୁକଶ ଶଙ୍ଖରାଇ ନେଲେଟି ରଣୁ ଘଲେ
ଋଷକପି ଯେବେ ତୋର ପୁତ୍ରକୁ ନାଶ କଲେ
ଦେଖ ତୋର କେତେ ଷଣ୍ଢୀ ଅଟଇ ଗୁମାନ
ତାହାକୁ ଶ୍ରୀରାମ ଭାଇ ଶତ୍ରୁଘନ ମାରେ ପୁଣି ।
ଶୁଣି କୋବାଳସେନ ଅଜୟସେନ ଘଲେ
ଅଶୀସହସ୍ର ନନ୍ଦନ ତାଙ୍କ ସଙ୍ଗେ ମଲେ ।
ଆବର ମଲେ ଯେ ଦ୍ୱିଶଲକ୍ଷ ନାଗ
ବାନରଙ୍କ ହସ୍ତରେ ସେ ହୋଇଲେ ନପାତ ।
ଯେବେ ତୁମ୍ଭର ଦେବ ଥାଆନ୍ତା ଧର୍ମବଳ
ଏଡ଼େ ଏଡ଼େ ଷଣ୍ଢିଙ୍କି ମାରନ୍ତେ ନରବାନର
ଯେତେବେଳେ ଶ୍ରୀରାମ ଧର୍ମକୁ ରଖିଲେ
ସ୍ୱର ହସ୍ତେ ଲେଖାଦେଇ ତୋତେ ଡକାଇଲେ
ତୋର ଧର୍ମବଳ ଥିଲେ ଯାଇଥାନ୍ତୁ ବୁଝି
ତେବେ ତୋର ସଙ୍ଗେ ଯୁଦ୍ଧ କରନ୍ତେ କମାଇଁ
ଧର୍ମବନ୍ତ ତାଙ୍କର ହେଉଅଛି ଯଶ
ଅଧର୍ମରୁ ବଂଶ ତୋର ଗଲେ ଏବେ ନାଶ ।
ଏ ବଚନ ମନ୍ତ୍ରୀବର ଯହୁଁ ସେ କହିଲା
ଶୁଣିକରି ସହସ୍ରାନନ ମହାକ୍ରୋଧ ହେଲା ।
ବୋଲଇ ମୋର ପୁତ୍ରକୁ ତୁମ୍ଭ ମରାଇଲୁ
ଏତେବେଳେ ଅଧର୍ମ ହେଲା ତୁ ବୋଇଲୁ ।
ଏବେ ମୁଁ ଜାଣିଲି ଯେ ତୁମ୍ଭ ବଡ଼ ମନ୍ଦ
ମୋହର ମରଣକୁ ବସୁଛୁ ଛନ୍ଦ ।

ମୋହର ରାଜ୍ୟ ନ ତୁମ୍ଭ ଭୋଗ କରିବୁ
ପୁତ୍ର ନାଶ ମରାଇ ଜରେ ମୋ ଜୀବନ ନେବୁ
ଏମନ୍ତ ବିଗ୍ରହରେ ଅଟଇ ତୋହର
ଯଥା ବିଭୀଷଣ ମରାଇଲା ଦଶ ଶିର ।
ତାଠାରୁ ଶିଖିଲୁ କଟଇ ଆରେ ବୋଲକସ
ଏତେକହି ସହସ୍ରମଥା କ୍ରୋଧରେ ଗର୍ଜିଲା ।
ଖଣ୍ଡାକାଢ଼ି ନାଗକ ସେ ବୋଇଲା ହାତେ ଚାହିଁ
ଏ ମୋହର ଶିର କାଟି ପକାଅରେ ତୁମ୍ଭ ।
ଏତେବୋଲି ସହସ୍ରମଥା ଯହୁଁ ଆଜ୍ଞାଦେଲା
ଶୁଣି ମନ୍ତ୍ରୀବର କରଯୋଡ଼ି ଜଣାଇଲା ।
ବୋଲଇ ଶୁଣ ଦେବ ହେ ଶଲଙ୍କାଗଡ଼ ସାଇଁ
ଆସେ ଦୋଷ ବୁଝିଣ ପଛେ ମାର ତୁମ୍ଭ ।
ତୁମ୍ଭ ଆଜ୍ଞା ଲଙ୍ଘିବାକୁ ନୁହଇ ମୋହ ଗୁର
ସମୁଦ୍ର ଲଙ୍ଘିଲେ କୂଳ କେତେକ ମାତର ।
ମାତା ହୋଇ ଯେବେ ପୁତ୍ରକୁ ବିଷ ଦେବ
ରାଜା ହୋଇଣ ଯେବେ ଅନ୍ୟାୟ କରିବ ।
ପିତା ହୋଇଣ ଯେବେ ଶିଳବ ନଜ ସୁତ
ଆପଣ ଭାର୍ଯ୍ୟାକୁ ଦଣ୍ଡିଲେ ନଜ କାନ୍ତ ।
ସ୍ୱାଆନ୍ତ ହୋଇ ଯେବେ ସେବକକୁ ଦଣ୍ଡଇ
ଏକଥା ଦେବ କାହା ଆଗରେ କହିବଇଁ ।
ଏକଥା ବୁଝି ଦେବ କର ମୋତେ ନାଶ
ତଥାଂକରି କହୁଛୁ ଯେ ମୋର ନାହିଁ ଦୋଷ
ନୋହିଲେ ଅକାରଣେ ମରାଉଅଛ ମୋତେ
ଆଜଳାରୁ ଦକବ ଗୁଡ଼ିଲା ରାଜା ତୋତେ ।
ଶୁଣିକରି ସହସ୍ର ମାଥ କ୍ରୋଧଭର ହୋଇ
ମନ୍ତ୍ରୀବର ବଚନ ବୋଲଇ ବୁଝାଇ ।
ଯେବଣ ରାଜାର ଦେବ ମନ୍ତ୍ରୀ ଯେ ନଥାଇ
ଯେଉଁ ପୁରୁଷର ବୋଲ ଘରଣୀ ନ କରଇ ।
ଯେବଣ ସେବକ ପ୍ରଭୁକୁ ନ ଦିଏ ଉତ୍ତର
ତାର କୁଳେ ଶତ୍ରୁ ଆସି ଲାଗେ ନିରନ୍ତର ।
ଯେବଣ ଦେଶକୁ ଦେବ ଲାଗେ ରାଜଭୟେ
ଏତେଠାରେ ଯଶ ପୁଣି ନାହିଁଟି କେବେହେଁ
ଆବର କଥାଏ ଶୁଣ ହେ ସହସମାଥ
ପିତା ବୋଲ ନ କରଇଟି ଯେବଣ ପୁତ୍ର ।
ଯେବଣ ଶିଷ୍ୟ ଦେବ ଗୁରୁଙ୍କୁ ନ ମାନନ୍ତି
ବିଧବା ସ୍ତ୍ରୀ ସଙ୍ଗତେ ପ୍ରୀତି ଯେ କରନ୍ତି ।

ଯେତ୍ତୁ ବିଶ୍ୱାସରେ କରନ୍ତି ଅନ୍ୟ ଭେଦ
ସେ ଅବା ମଇଁଲୁ ହୃଦରେ ଘାଟେ ମଦ ।
ଯେବଣ ଛାରିଯା ଗୁରସ୍ତକୁ ନ ମାନଇ
ଏତେ ଲୋକଙ୍କୁ ଦେବ ଧର୍ମଟି ଗୁଡ଼ଇ ।
ଯେଉଁ ପ୍ରାଣୀମାନେ ଶରଣ ନ ରଖନ୍ତି
ଅପଳ ସମସ୍ତରେ ବଂଶ ତା ନାଶ ଯାନ୍ତି ।
ଏହା ଶୁଣି ସହସ୍ରାନନ କୋପାନଳ ହେଲା
ନାଶ ତାର ଶତ୍ରାଜିତକୁ ଆଜ୍ଞା ଦେଲା ।
ବୋଇଲା ମନ୍ତ୍ରୀ ସନ୍ତ୍ରତ ଏକଇ କହୁଲ
ନୋହିଲେ ଓ ନ ଜାଟି ରଖନ୍ତୁ ଏହାର ଶିର
ନ ଜାଣୁ କରେ ତୋର ଏଯେବଣକୃତ୍ୟକଲ
ତୋହର ପିତାକୁ ଏ କୁପାଞ୍ଚେ ମଣ୍ଡଇଲ ।
ମୁହିଁ ଯେ ସମରକୁ ଯିବଇ ବୋଇଲ
ମୋତେ ମନାକଲ ନ ଯାଅ କୁମ୍ଭେ ବୋଲି
ମୁଁ ଯେବେ ହେଲହୁଁ ଯୁଦ୍ଧକୁ ଯ ଇଥାନ୍ତି
ଏତେକ ପୁତ୍ର ନାଶ କମାଇଁ ମରାନ୍ତି ।
ତୋର ପିତା ନାଶ ଗଲ ଏହାର ବୁଦ୍ଧିରେ
ତୋହର ଏ ଶତ୍ରୁ ଅଟେ ମାରରେ ଏହାରେ
ପାରିବାର ପୁତ୍ର ଯେବେ ପିତୃଋଣ ଶୁଝି
ଗଜଭବ ନକରି ସେ ଶତ୍ରୁକୁ ପାରେ ଗଞ୍ଜି
ସୋଦରରେ ହିଂସା କହନ୍ତି ଯେତେ ପ୍ରାଣୀ
ଦେଳକାଳେ ଯେତ୍ତୁ ଯେ ନାଶ ଯାନ୍ତି ପୁଣି ।
ଆବର କଥାଏ କୁ ଶୁଣରେ ନନ୍ଦନ
ଏତେଲୋକ ନାଶ ଗଲେ ଘଟଇଟି ଧର୍ମ ।
ପିତା କଇଲ ମାତାବଇଲ ଆବରଦାରାବଇଲ
ଆଶା କଇଲ ଆଦ୍ୟକରି ଗୁରୁଦ୍ରୋହ କରି ।
ଏ ଲୋକମାନଙ୍କୁ ଯେବେ କରିବଟି ନାଶ
ଆପଣା ବଂଶ ଉଦ୍ଧରି ସ୍ୱର୍ଗରେ ପାଏ ବାସ ।
ଅଯୋଗ୍ୟ ହୋଇ ବାଳୁରେ ଯେଉଁ ପୁତ୍ରଥାନ୍ତି
ପିତାମାତା କାର୍ଯ୍ୟ କରି ନ ପାରନ୍ତି ।
ସେ ପୁତ୍ରମାନଙ୍କୁ ହାଦେ କାହିଁ ନାହିଁ ପାର
ଦେଖ ଯୋଷ ଉଜାଡ଼ି ପଡ଼େ ସେ ନର୍କର ।
ଏମନ୍ତ ବୋଲନ୍ତେ ଯେ ସହସ୍ରମାଥ କହି
ଶୁଣିଣ ଶତ୍ରାଜିତ ଖଡ଼ଗ ଧରଇ ।
କୋପାନଳ ହୋଇ ସେ ମନ୍ତ୍ରୀକି ଚାହିଁଣ
ବୋଲଇ ତୋ ଇଷ୍ଟଦେବ କର ସୁମରଣ ।

ଶୁଣିକରି ମନ୍ତ୍ରୀବର ବଚନ ବୋଲଇ
ମୋର ଇଷ୍ଟଦେବତା ଧର୍ମ ଯେ ଅଟଇ ।
ସେହି ଯେ ଜାଣନ୍ତି ମୋର ହାନଲାଭ କଥା
ମୋ ମନେ ଅଧର୍ମ ଥିଲେସେଜାଣଇମନକଥା
ଧର୍ମରେ ସିନା ସୃଷ୍ଟି ଆତଯାତ ହୋଇ
ଧର୍ମରେ ସିନା ଅଛି ସପତ ଦ୍ୱୀପ ମହୀ ।
ଧର୍ମ ବିନୁ ପ୍ରାଣୀକି ଆନେ ନାହିଁ ପାର
ଧର୍ମେ ସିନା ଆତଯାତ ହେଉଛି ସଂସାର ।
ଧର୍ମ ଯେବେ ରକ୍ଷାରେ କରିବମୋତେହାତେ ର
କସ କତପାରିବରେ ଅଧର୍ମ ବିଗ୍ରହରେ ।
ଏତେ ବୋଲନ୍ତେ ଗୁଣସାଗର ମନ୍ତ୍ରୀ ଭଣ୍ଡ
ଶୁଣିଣ ଶତ୍ରାଜିତ ଅଧର କାମୁଡ଼ଇ ।
ବୋଲଇ କାହିଁରେଧର୍ମତୋହରଏତେବେଳେ
ପାରିଲେ ତୋତେ ରକ୍ଷାକରନ୍ତୁ ସେ ଆସିଥରେ
ପୁଣି ବୋଲେ ହାନଜାତ ଅଟୁରେ ବୃଦ୍ଧ ଘୋର
ତୋତେ ମାରି ପାସୋରିବ ପିତୃ କଷ୍ଟମୋର
ଏତେବୋଲି ଦାନବ ଉଠେ ଶିରଝୁଣି
ଗୁଣସାଗର ମନ୍ତ୍ରୀର ପକାଏ ଶିର ହାଣି ।
ଦେହଠାରୁ ବେନଖଣ୍ଡ ହୋଇଣ ଛୁଡ଼ିଗଲା
ଏଗାର ଘଡ଼ି ରାତ୍ରରେ ମନ୍ତ୍ରୀର ପ୍ରାଣଗଲା ।
ମନ୍ତ୍ରୀର ନିଧନ ଯହୁଁ ସହସ୍ରମାଥ ଦେଖି
ନିଶଙ୍କ ନନ୍ଦନକୁ ଆଜ୍ଞାଦେଇ ସେ ଡାକ
ବୋଇଲେ ସାଜ ବେଗେ ସକଳଥାଟସୈନ୍ୟ
ଯିବ ମୁଁ ରଣ କରି ଶ୍ରୀରାମ ସଙ୍ଗେଣ ।
ଶତ୍ରାଜିତ ନାଶିକ ବୋଲେ ସହସ୍ର ଶିର
ଦେଖଜାଇ ସାଜରେ ରଥବର ତୋର ।
ସମସ୍ତେ ସ୍ୱଳରେ ବାକୁ ବେଗ ହୋଇଯିବା
ରାମ ବିଭୀଷଣଙ୍କୁରେ ଜୀବନେ ମାରିବା ।
ଏମନ୍ତ ବଚନ ଯହୁଁ ବୋଲଇ ବଇତ
କରଯୋଡ଼ି ଜଣାଇଲା ନିଶଙ୍କାସୁର ଦୈତ୍ୟ ।
ବୋଲଇ ଦେବେବ ହେ ଏମନ୍ତ ନୁହଇ
ଏହି ଯେ ରାତ୍ରକାଳ ଅନ୍ଧାର ଅଟଇ ।
ଏତେବେଳେ କେମନ୍ତେ ଯିବା ରଣଭୂଇଁ
ପାହେ ଯିବା ଦେବ ହେ ରାତ୍ର ପାଇଁ ଯାଉ ।
ଶ୍ରୀରାମ ବିଭୀଷଣଙ୍କୁ ମାରି ପକାଇବା
ତାହାଙ୍କର ଛାରିଯାକୁ ବେନଣ ଆସିବା ।

ଚେତେବେଳେ ସନ୍ତୋଷ ହେବ ତୋର ମନ
ତାଙ୍କୁ ଘରଣୀ କରି ସୁଖରେ ନେବୁ ଧନ ।
ଏ ବଚନ ବୋଲଇ ଜଣଙ୍କ କୁମର
ଶୁଣିଣ ସହସ୍ର ମାଥର ପୁଲକେ ଶରୀର ।
ପୁଣିହିଁ ବୋଲଇ ସେ ପୁତ୍ରର ମୁଖ ଚୁମ୍ବି
ସମରେ ପଡ଼ିଲେ ତୋଣ୍ଡ ଚିରି ସହସ୍ର ଶିର ।
ଆବର ପାଞ୍ଚଲକ୍ଷ ପୁତ୍ର ତୋର ମଲେ
ଅନେକ ସୈନ୍ୟବଳ ପ୍ରଚଣ୍ଡ ନାଶଗଲେ ।
ଏଥିଅନନ୍ତରେ ଶୁଣ ଗୋ ଶାକମ୍ବସ
ଆଠଗଡ଼ ସ୍ୱପଠାରେ ବାସେଳୀ ବାହାର ।
ଯୋଗ୍ନୀ ପିଶାଚୁଣୀ ଯେଜଣ ସଙ୍ଗରେ
ପ୍ରବେଶ ହୋଇଲେ ସେ ରଣଭୂମିଠାରେ ।
ରକତ ମାଂସ ଖାଇଣ ଅସୁର ଭସ୍ମକଲେ
ରକ୍ଷ କପିବଳଙ୍କ ଶବ ସଳଖିଲେ ।
କଳକଳା ରବଦେଇ ଆଇଲେ ସେତୁ ଫେରି
ଦେବ ନଦୀରେ ପଶି ସ୍ନାନ ଦେଲେ ସାରି ।
ମଧୁର ଜଳଖାଇ ସେଠାରୁ ଚଳିଗଲେ
ସୁବଳଯ୍ୟା ପର୍ବତ ଦକ୍ଷିଣେ ରହିଲେ ।
ନବଘଡ଼ି ରଜନୀ ହୋଇଛି ଯେତେବେଳେ
ସ୍ୱର୍ଗରୁ ଶୁକ୍ରଦେବ ଆଇଲେ ତତକାଳେ ।
ମୃତ୍ୟୁସଞ୍ଜିବନୀ ପାଣି ସିଞ୍ଚିଲେ ରଣଭୂମି
ଅମୃତ ସିଞ୍ଚିଲେ ମନ୍ତ୍ରି ହରଷମନେ ପୁଣି ।
ରକ୍ଷକପି ସକଳ ଯେ ଉଠିଲେ ସତ୍ୱରେ
ତୁଳତୁଳ ହୋଇକରି ସୁବଳଯ୍ୟା ଗଲେ ।
ଏମନ୍ତେ ଏଗାରଘଡ଼ି ରଜନୀ ହୋଇଲ
ସ୍ୱର୍ଗପୁରକୁ ଶୁକ୍ର ଦେବତା ଚଳିଗଲ ।
ଶ୍ରୀରାମ ରହିଲେ ଯେ ସୁବଳଯ୍ୟା ଗିରି
ସଙ୍ଗତରେ ଶୋଭନ୍ତି ଜନକ କୁମାରୀ ।
ବିଭୀଷଣ ସୁଗ୍ରୀବର ଅଙ୍ଗଦ ହନୁମନ୍ତ
ସୈନ୍ୟ ସେନାପତି ଆଦି ଅଛନ୍ତି ସମସ୍ତ ।
ରକ୍ଷକପି ଯେତେକ ଶ୍ରୀରାମ ସଙ୍ଗ କରି
ବଳରାମ ଦାସ ମୁଁ ସେ ପାଦ ସେବାକାରୀ ।
ଶ୍ରୀରାମ ପ୍ରସାଦେ ହର ଗଉରୀ ଚରିତ
ଚତୁର୍ଥ ଖଣ୍ଡ ଲଙ୍କା କଲି ମୁଁ ସମାପତ ।
ସୁଜନ ଜନେ ମୋର ନ ଧରିବ ଦୋଷ
ସାଧୁଜନଙ୍କ ସେବା କରିବାକୁ ମୋହର ଆଶ

ଇତି ଶ୍ରୀ ଲଙ୍କାକାଣ୍ଡ ଚତୁର୍ଥ ଖଣ୍ଡ ସଦାଜସ୍ତେ ସମ୍ପୂର୍ଣ୍ଣ ।

ଭୀମସ୍ୟାପି ରଣେ ଭଙ୍ଗ ମୁନେରପି ମତିଭ୍ରମ
ଯଦି ଶୁଦ୍ଧ ମଶୁଦ୍ଧଂ ବା ମମ ଦୋଷ ନ ଦୀୟତେ ।

# ଲଙ୍କା କାଣ୍ଡ

## ଜଗମୋହନ ବା ଦାଣ୍ଡି ରାମାୟଣ

### ପଞ୍ଚମ ଖଣ୍ଡ

ଜୟ ଜୟ ଜଗନ୍ନାଥ ନୀଳାଦ୍ରି ନିବାସ
ଜୟ ଜୟ ଜଗନ୍ନାଥ ଦଶରଥ ଶିଷ୍ୟ ।
ଜୟ ଜୟ ଜଗନ୍ନାଥ ବାଳି ବିଧ୍ୱଂସନ
ଜୟ ଜୟ ଜଗନ୍ନାଥ ସମୁଦ୍ର ବନ୍ଧନ ।
ଜୟ ଜୟ ରାମଚନ୍ଦ୍ର ସୁଗ୍ରୀବ ନିସ୍ତାରଣ
ଜୟ ଜୟ ରାମଚନ୍ଦ୍ର ବିଭୀଷଣ ରକ୍ଷଣ ।
ସକଳ ଜନ ହୃଦରେ ଅଛ ବିଜେ କରି
ମୂର୍ଖକୁ ପଣ୍ଡିତ କର କୃପା କଲେ ହରି ।
ବଳରାମ ଦାସ ତୁମ୍ଭ ପାଦରେ ଶରଣ
ଅଗାଧ ସମୁଦ୍ର ପୂର୍ଣ୍ଣ ନୋହିଲା ରାମାୟଣ ।
ତୁମ୍ଭ କୃପା ହେଲେ ପ୍ରଭୁ ପୂର୍ଣ୍ଣ ଏହୁ ହେବ
ହୃଦୟରେ ବସି ମୋର ପଦ କହିଦେବ ।
ଏଥୁଅନନ୍ତରେ ଯେ ପୃଚ୍ଛନ୍ତି ପାର୍ବତୀ
ସୁବଳସ୍ୟା ଗିରିରେ ଶ୍ରୀରାମ ରହିଛନ୍ତି ।
ସେଠାବରୁ ରାମଚନ୍ଦ୍ର କି ଚରିତ୍ର କଲେ
ସହସ୍ର ମୁଖା ରାବଣକୁ କେମନ୍ତେ ମାଇଲେ ।
ଏକଥା ସଞ୍ଚପି ମୋତେ କହ ତ୍ରିଲୋଚନ
ଈଶ୍ୱର ବୋଇଲେ ଗୋ ଗଉରୀଦେବୀ ଶୁଣ ।
ଲଙ୍କାଗଡ଼େ ଅଛି ସହସ୍ରମୁଖା ରାବଣ
ଗୁଣସାଗର ମନ୍ତ୍ରୀକି ମରାଇ ତତକ୍ଷଣ ।
ନିଶଙ୍କା କୁମରକୁ ଗର୍ଜ୍ଜିଣ ଆଜ୍ଞା ଦେଲା
ସୁର ଯେତେ ଜୁଆଡ଼ିଙ୍କି ତାହା କହିଅ ବୋଇଲା
ଆଜ୍ଞା ପାଇ ନିଶଙ୍କା ଅଦ୍ଭୁତ ହୁଳା ସେନ
ରଣଭୂମିରେ ଯାଇ ମିଳିଲା ତତକ୍ଷଣି ।
ଦେଖିଲା ମୃତ୍ୟୁ ଶବ ଗୋଟିଏ ସେଥି ନାହିଁ
ଅସୁର ବାନର ଶଲ୍ୟ ନ ଦେଖେ ତାହାଙ୍କୁଇ
ବୁଲିଣ ନ ଦେଖିଲା ତାହାର ସଞ୍ଚାର
ଫେରିକରି ନିଶଙ୍କା ଯେ ଗଲା ଲଙ୍କାପୁର ।
ସହସ୍ରାନନ ଛାମୁରେ ଯାଇଣ କହିଲା
ରଣଭୂମିକି ଯାଇଥିଲି ବୋଲିଣ ବୋଇଲା ।
ରଣଭୂମିରେ ଦେବ ତାହାକୁ ନ ଦେଖିଲି
ଅସୁର ବାନର ଯେ ଭଲ ପୁରୁଷ ଯୋହର ।
ବୁଲିଣ ନ ପାଇଲି ଗୋଟିଏ ତାହାକୁ
ସମସ୍ତେ ପଶିଗଲେ ସମୁଦ୍ର ଭିତରକୁ ।
ଶୁଣିକରି ସହସ୍ରାନନ ସନ୍ତୋଷ ହୋଇଲା
ଦେବଙ୍କ କୁଟ ସେଥିରେ ଗୁପତେ ରହିଲା ।
ନାରଦ ସେଠାରୁ ଯେ ସ୍ୱର୍ଗକୁ ଯାଉଥିଲେ
ତେରସଡ଼ରଜମାରେ ଶ୍ରୀରାମ ଛାମୁରେ ମିଳିଲେ
ବୋଇଲେ କି ଚରିତ୍ର କର ହେ ରଘୁଧାରୀ
ସହସ୍ରାନନ ଦୈତ୍ୟ ଯେ କ୍ରୋଧରେ ପ୍ରଜ୍ୱଳ
ସୈନ୍ୟଦଳ ଆଠ ଯେ ସାଜିଲା ସକଳ
ଆଜ ରୋଳ କରିବ ଦଶାଖା କୁମର ।
କୁମ୍ଭର ଲକ୍ଷେ ରାଜା ରୁଷ ଜପିବଳ
ହାତୀ ରଥ ପଦାତି ସକଳ ସଜ କରି ।
ଶୁଣିକରି ଶ୍ରୀରାମ ଯେ ଅଙ୍ଗଦଙ୍କୁ ଚାହିଁ
ହନୁମନ୍ତକୁ ବୋଇଲେ ଯାଅରେ ବେଗରେ
ସକଳ ରାଜାଙ୍କୁ ବାରତା ଯାଇ କହ
ପ୍ରଭାତୁ ଯୁଝିଯିବ ଦେଖେ ସଜ ହୁଅ ।
ସୈନ୍ୟଦଳ ରଥ ଯେ ସଜାଡ଼ ମାହୁନ୍ତ
ଯେ ଯାହାର ସୈନ୍ୟ ଘେନ ଯିବେଟି ସମସ୍ତ
ଦଶାଖା କୁମର ଯେ ଅଟେ ସହସ୍ରାନନ
ସବ ପାଇଲେ ରଣ କରିବଟି ଜାଣ ।

ଏମନ୍ତ ବୋଲିଣ ରାଜାମାନଙ୍କୁ ରାମ କହି
ସବୁ ଥାଇଁ ସଜ ଯେ ହୁଅନ୍ତୁ ନର ଦେହି ।
ସେ ଯେବେ ରଣଭୂମିରେ ଯୁଦ୍ଧ ନ କରିବେ
ପଛକେ ମାନ୍ୟକରି ଆମ୍ଭଙ୍କୁ କହିବେ ।
ବୋଲିବେ ଆମ୍ଭେମାନେ ଲଙ୍କାକୁ ଯାଇଥିଲୁ
ଶ୍ରୀରାମର ନବରକୁ କେବେହେଁ ନ ଆସିଲୁ ।
ଏବେ ବୋଲିଣ ପଛେ କହିବେ ସେହୁ ପୁଣ
କହିଥିଲେ ଆମ୍ଭେ ଯେ କରିଥାନ୍ତୁ ରଣ ।
ଏବେ ଥରେ ସେ ଯେ ଯାଆନ୍ତୁ ରଣଭୂଇଁ
ଏବେ ବାହୁର ଶ୍ରୀରାମ ଭେଟିଲେ ବୀର ଦୁଇ ।
ଶୁଣିକରି ହନୁମନ୍ତ ଅଙ୍ଗଦ ଚଳିଗଲେ
ସକଳ ନୃପତିଙ୍କି ଯାଇଣ କହିଲେ ।
ପ୍ରଭାତରୁ ରଣ ହୋଇବ କାଲି ଠାଣ
ସଜ ହୁଅ ଯୋଦ୍ଧା ସୈନ୍ୟଘେନ ହେ ଆପଣ ।
ପ୍ରଭାତ ସମୟରୁ ରଣକୁ ବିଜେ କର
ଆମ୍ଭଙ୍କୁ ପେଷିଲେ ଶ୍ରୀରାମ ଠାକୁର ।
ଶୁଣିଣ ରାଜାମାନେ ସନ୍ତୋଷ ହୋଇଲେ
ମନ୍ତ୍ରୀମାନଙ୍କୁ ଡାକି ସେ ରଥ ସଜ କଲେ ।
ହାସ୍ତି ରଥ ଘୋଡ଼ା ଯେ ପଦାତି ପଏକାର
ଢାହାଳ ଷଣା ଡମ୍ବୁର କୁସ ବାଦ୍ୟକାର ।
ଯେ ଯାହାର ରଥ ସମସ୍ତେ କଲେକ ସାଜେଣି
ନାନାବର୍ଣ୍ଣେ ମଣ୍ଡିଲେ ରଥମାନ ପୁଣି ।
କହିକରି ହନୁମନ୍ତ ଅଙ୍ଗଦ ଚଳିଗଲେ
ଋଷବାନର ଭଲ୍ଲୁଙ୍କୁ ଯାଇଣ କହିଲେ ।
ସମସ୍ତଙ୍କୁ କଆର ଅଇଲେ ଦୁଇବୀର
ପ୍ରବେଶ ହେଲେ ଆସି ଶ୍ରୀରାମ ଛାମୁର ।
ଅଙ୍ଗଦ ହନୁମନ୍ତ ଉଲଗି ହୋଇ ଶୋଇ
ସମସ୍ତଙ୍କୁ କହିଣ ଅଇଲୁ ଗୋସାଇଁ ।
ସମସ୍ତେ ଯୋଦ୍ଧା ସଜ ହୋଇଲେଣି ପୁଣ
ତୁମର ବଚନକୁ ଯେମନ୍ତେ ଆସେ ଜାଣ ।
ଶୁଣିଣ ଶ୍ରୀରାମ ଭ୍ରାତ ଶତ୍ରୁଘନକୁ କହି
ସିବଟିକ ବାବୁରେ ଆଜ ରଣଭୂଇଁ ।
ଶୁଣିଣ ଜନଗାଇ ବୋଇଲେ ଆଜ୍ଞା ହେଲେ
ରଣଭୂମିରେ ଆମ୍ଭେ ଶୁଝିବୁ ଯାଇ ଭଲେ ।
ଶ୍ରୀରାମ ବୋଇଲେ ଯେ ଯାହାର ରଥସଜକର
କୋଦଣ୍ଡ ନାରାଚ ହେଜଣ କରିରେ ଧର ।

ସୁଷେଣ ଚନ୍ଦନକୁ ଡକାଇ ଅଣାଇଲେ
ରଥ ସଜକର ବୋଲିଣ ବୋଇଲେ ।
ସୁମନ୍ତ ମାତଳିକ ଡକାଇଲେ ପୁଣ
ରଥ ସଜକର ଆଣ ହେ ବହନ ।
ଶୁଣିଣ ବୀର ସାରଥି ବେଗେ ଚଳିଗଲେ
ବୀର ରଥକୁ ସାରଥି ସାଜିଣ ଆଣିଲେ ।
ବିଭୀଷଣକୁ ବୋଇଲେ କୋଦଣ୍ଡ ରୂପଧାରୀ
ଶୁକ ସାରଣ ମନ୍ତ୍ରୀକି ହକାରି ତୋହର ।
ଶୁଣିକରି ବିଭୀଷଣ ଶୁକ ସାରଣକୁ ଗଣାଇ
ଆଣ ଦେବଦଳନ ଶ୍ରୀରାମ ଆଜ୍ଞା ଦେଇ ।
ଶୁଣିଣ ବେନି ମନ୍ତ୍ରୀ ବେଗେ ଚଳିଗଲେ
ଦେବଦଳନ ରଥକୁ ସାଜେଣି କରାଇଲେ ।
ଘେନିଣ ଶ୍ରୀରାମ ପାଶେ ହେଲେ ପରବେଶ
ଶ୍ରୀରାମ ବୋଇଲେ ଏଥିରେ ବିଭୀଷଣ ବସ ।
ସହସ୍ରାନନ ଦୈତ୍ୟର ମୋହଠାରେ କ୍ରୋଧ
ମୂର୍ଚ୍ଛି ମାଇଲା ତାର ସମୁଦ କଣକନ୍ଧ ।
ବିଭୀଷଣ ଯେଣୁ ହୋଇଲା ନୃପତି
ଆମ୍ଭ ଦୁହିଁଙ୍କି ମାଇଲେ ହୋଇବ କୁପତି ।
ଲୋମପାଦକୁ ଚାହିଁଣ ବୋଲନ୍ତି ରାମଚନ୍ଦ୍ର
ପୁତ୍ରମାନଙ୍କୁ ଘେନି ସଜହୁଅ ବାବୁ ।
କାଲି ଯୁଦ୍ଧ ହୋଇବ ବଡ଼ ପରମାଦ
ଜଗି ରହି ଯୁଦ୍ଧ କରିବ ତୁମ୍ଭେ ସଙ୍ଗ ।
ଅଯୋଧ୍ୟା ନବକୋଟି ରଥିଙ୍କି ଡକାଇଲେ
ଶତ୍ରୁଘନ ତୁଲେ ରହ ଯା ବୋଇଲେ ।
ସୁଗ୍ରୀବର ବୋଇଲେ ଯୂଥପତିଙ୍କ ତୁଲେ
ଘେନିଣ ଯୁଦ୍ଧ କରିବ ତୁମ୍ଭେ ଅଙ୍ଗଛଳେ ।
ଅଙ୍ଗଦ ହନୁମନ୍ତକୁ ଚାହିଁଣ ବୋଇଲେ
ସେନାପତିମାନେ ତୁମ୍ଭେ ରହିବ ଭ୍ରାତ ତୁଲେ
ମଲ୍ଲ ମହାମଲ୍ଲଙ୍କୁ ଚାହିଁଣ ଆଜ୍ଞା ଦେଲେ
ଲକ୍ଷ୍ମଣଙ୍କୁ ମୋହର ନ ଛାଡ଼ିବ ଭଲେ ।
ଇନ୍ଦ୍ରଜିତ ପିତା ଯେ ବ୍ରହ୍ମାଣ୍ଡକୁ କଳ
ସେହିହେତୁ ଲକ୍ଷ୍ମଣ ମୋ ହୃଦରେ ନାଚଇ ।
ଗୁହ ନାମେ ଶବରକୁ ବୋଇଲେ ମିତ ଶୁଣ
ମୋହ ସାଙ୍ଗରେ ଆଜ ରହିବ ତୁମ୍ଭେ ପୁଣ ।
ଯେତେକ ସୈନ୍ୟ ଅଛନ୍ତି ତୁମ୍ଭର
ସଜକରି ଘେନିଆସ ବେଗରେ ସତ୍ୱର ।

ମନ୍ଦୋଦରୀଙ୍କ ଡାକଣ ଶ୍ରୀରାମ ଆଜ୍ଞାଦେଲେ
ଜାନକୀ ସେନ ଏଠାରେ ତୁମ୍ଭେ ଥିବ ଭଲେ
ବାହାର ହୋଇଣ ଆଉ କେଉଁଠି ନ ଯିବ
ସହସ୍ରାନନ ଆଜ ଯୁଦ୍ଧ ବଡ଼ ଯେ କରିବ ।
ଦଣ୍ଡକାରଣ୍ୟରେ ଛାଡ଼ିଗଲୁ ସୀତା
ହରିକରି ଆଣିଲା ଲଙ୍କାର ଦଶମଥା ।
ସେହୁକଥା ମନରେ ପଡ଼ଇ ଯେତେବେଳେ
ଶରୀରୁ ପ୍ରାଣ ମୋର ଛାଡ଼ଇ ତତକାଳେ ।
ଏମନ୍ତେ ଭୃଆରି ଯେ ନଷ୍ଟ ଶେଷହେଲା
ସୁନ୍ଦରରୁ ଉନମଣି ଉଦାସ୍ତ ହୋଇଲା ।
ନାରଦଙ୍କ ମୁଖରୁ ରାମଚନ୍ଦ୍ର ଶୁଣି
ସକଳ ସୈନ୍ୟସାଜ କରିଲେ ରଘୁମଣି ।
ଏଥୁଅନନ୍ତରେ ଗୋ ଶୁଣ ଶାକମ୍ବରୀ
ସହସ୍ରାନନ ଯେ ଥାଟକୁ ସଜକରି ।
କୁମର ଅଜୟସେନ ପିତାଠାରୁ ଶୁଣି
ଟମକଆରୁ ଆଜ୍ଞା ଦେଲେ ତତକ୍ଷଣି ।
ଏତେ କହିଗଲା ସେ ଆପଣା ବସାଘର
ସାରଥିଙ୍କ ବୋଇଲା ସାଜ ରଥବର ।
ସକଳ ଥାଟ ସୈନ୍ୟ ହୁଅନ୍ତୁ ବେଗେ ସଜ
ସମରଭୂମିକି ସମସ୍ତେ ଯିବା ଆଜ ।
ଶ୍ରୀରାମ ବିଭୀଷଣଙ୍କୁ ପକାଇବା ମାରି
ଘରି ପ୍ରଭୁରଙ୍କୁ ବନ୍ଧୁ କେବେହେଁ ପାଶୋରି ।
ଏତେବୋଲି ଅମୋଦସେନ ଯେ କହିଲା
ରଥବର ସାଜଣ ସାରଥି ଆଣିଲା ।
ଆପଣେ ସାରବେଶ ହେଲେ ତତକ୍ଷଣ
ଯାଇଣ ବସିଲା ସେ ଶତ୍ରୁଜୟ ଯାନ ।
ସାରଥିଙ୍କ ବୋଇଲେ ବାହାବେଗେ ରଥ
ସଜହୋଇ ଆସିଲେ ତ ସମସ୍ତ ସୈନ୍ୟତ ।
ଆଜ୍ଞା ପାଇଣ ସାରଥି ବେଗେଣ କହିଲା
ସହସ୍ରାନନ ଛାମୁରେ ନେଇଣ ରଥକଲା ।
ଏହି ସମୟେ ଜଣଙ୍କା କୁମର ଆସଇ
ଅନେକ ଥାଟ ସୈନ୍ୟ ସଙ୍ଗରେ ଆଣଇ ।
ପଞ୍ଚଶ ମର୍ଦ୍ଦିତ ଯେ ଅଛଇ ରଥ ଗଜ
କେନପକୁ ପଦାତି ହୋଇ ସାର ସଜ ।
ସକୁରି ଖଙ୍ଗ ରଥ ଅଛଇ ସଙ୍ଗରେ
ଯାଇଣ ମିଳିଲା ସେ ପିତା ସନ୍ନିଧରେ ।

ଶନ୍ତାଜତ ବୋଲିଣ ଯେ ସେ ଗୃମାଚସ୍ତୁରସୁତ
ଯେ କହୁପାରିବ ତାର ବଡ଼ିମା ଅପ୍ରମିତ ।
ମହାବଳବନ୍ତ ଅଟେ ସେହୁ ପୁଣି
ବଳବନ୍ତ ଶତ୍ରୁକୁ ସେ ଦୃଷ୍ଟିରେ ନ ଗଣି ।
ଅନେକ କଷ୍ଟ କରଇ ସେ ସଂଗ୍ରାମ ଭୂମିର
ନୋହିଲେ କେମନ୍ତେତାକୁ ହାରିଲେସୁରନର
ବଡ଼ାଇ ପ୍ରତାପୀ ସେ ଅଟେ ମହାବଳ
ଅନେକ ହାତୀ ରଥ ସଙ୍ଗରେ ଘେନ ଚଳ ।
ସହସ୍ରଗ୍ରୀବ ଛାମୁରେ ହେଲା ସେ ଯାଇଣ
ସଙ୍ଗରେ ଜନ୍ତ ପାଞ୍ଚଲକ୍ଷ ଘଇ ପୁଣ ।
ସହସ୍ରାନନ ଛାମୁରେ ଓଳଗ ମେଲାଇ
ସମସ୍ତେ ଉଲ୍ଲହେଲେ ଭାପୁର୍ଦ୍ଦ ମତ ହୋଇ
ଲକ୍ଷେ କୋଡ଼ିଏ ସହସ୍ର ନନ୍ଦନ ତାର ପୁଣ
ଆସି ଓଳଗିଲେ ପିତାର ଚରଣ ।
ଦେଖିକରି ସହସ୍ରାନନ ଆନନ୍ଦ ହୋଇଲା
ଶତ୍ରୁଜିତ ଯାନପରେ ଯାଇ ବସିଲା ।
ଅନେକ ରୂପେ ନାଦିତ ଖୋଇଲାକ ନେଇ
କୋଦାଳ ମୃଦୁଙ୍ଗର କୁଷ୍ଟୀ ଶକ୍ତ ଖୋଇ ।
ସୈନ୍ୟଙ୍କୁ ଲୁହିଁ ସେ ବୋଲଇ ଉତ୍ତର
ଆସିଲେଟିକ ସମସ୍ତେ ଥାଟ ଯେ ମୋହର ।
ଏତେ ବୋଲି ସାରଥିଙ୍କ ପଚାରଇ
ରଥ ବାହା ବୋଲି ଆଜ୍ଞା ଦେହୁ ଦେଇ ।
ଆଜ୍ଞାପାଇ ସାରଥି ବାହିଲାକ ଯାନ
ପଛରେ ଗୋଡ଼ାଇଲେ ସକଳ ଥାଟ ସୈନ୍ୟ
ସମସ୍ତ ସୈନ୍ୟଛନ୍ତି ସାରବେଶ ହୋଇ
ପଚ୍ଛକ କରନ୍ତି ଯେ ଜଣରେ ହାତ ଦେଇ ।
କେହୁ ବୋଲନ୍ତି ଆଜ ଯେ ମାରିବା ରଘୁପତି
କେ ବୋଲେ ବିଭୀଷଣ ଅସୁର ଲଗରେଟି ।
କେହୁ ବୋଲନ୍ତି ହୋ ଘୁଳ ଦେଖ ହୋଇ
ଶ୍ରୀରାମ ବିଭୀଷଣ ହେ ଅଛନ୍ତି କେଉଁଠାଇଁ ।
କେ ବୋଲନ୍ତି କପିଦଳ ଯିବେ ଆଜ କାହିଁ
ଯଦ୍ବିଁ ନମନ୍ତେ ଠାକୁରେ ଯାଉଛନ୍ତି ଧାଇଁ ।
ତାହାଙ୍କର ଜନ ଆଜ ରହିବ ଜୀବନ
ନାଶକରି ଯେବେଯିବେ ଶ୍ରୀରାମ ବିଭୀଷଣ ।
ଏମନ୍ତେ ଯେ ସୈନ୍ୟବଳ ଗର୍ଜନ କରନ୍ତ
ଘୋର ରଡ଼ି କରି ଆଗକୁ ଧାମନ୍ତି ।

ଏଥିଅନନ୍ତରେ ଗୋ ଶୁଣ ଶାକମ୍ଭରି
ସ୍ୱର୍ଗରେ ଦେବତାଏ ଦେଖିଣ ବସ୍ତୁ ।
ଦେବରାଜା ଆଗରେ ବୃହସ୍ପତି କହି
ଆଜର ଯୁଦ୍ଧ ଦେବ ଜଣା ନ ଯାଇ ।
ବଡ଼ ସମ୍ଭ୍ରମରେ ଭଜେ ସହସ୍ରାନନ
ହାରିବେ ରାମଚନ୍ଦ୍ର ଜିଣିବେ ଦୈତ୍ୟ ପୁଣ ।
ପୁରନ୍ଦରକୁ ବୋଇଲେ ପବନକୁ ଚାହିଁ
ସହସ୍ରାନନ ପାଶକୁ ଯିବୁଟିରେ ବାବୁ ତୁହି ।
ଶୋକକଲା ପବନକୁ ଗୁରୁକଲା ଭକ୍ଷି
ବାରକଲା ପବନ ହରଣ କରିବୁ ବୁଝି ।
ତେଜବନ୍ତ ତାହାର ଅଙ୍ଗରେ ବହନ
ଦେବଙ୍କର କଷ୍ଟ ଯିବ ସହସ୍ରାନନ ମଲେପୁଣ
ଶୁଣିଣ ପବନ ଯେ ବେଗେ ଚଳିଗଲା
ସହସ୍ରାନନ ଶରୀରେ ଯାଇ ଅଟେ କଲା ।
ବାରକଲା ପବନ ହରଣ କରି ପୁଣ
ଦେବଙ୍କର ସଙ୍ଗରେ ମିଳିଲା ତତକ୍ଷଣ ।
ଶଚୀନାଥ ବୋଇଲେ ଶୁଣ ତୁ ଆରେ ଭାଇ
ସୁବଳସ୍ୱା ପର୍ବତକୁ ଯାଅଯା ବେଗହୋଇ
ବାସେଳୀ କାଳକା ଯେ ଅଛନ୍ତି ତହିଁରେ
ତାଙ୍କୁ ଡକାଇ କହିବୁ ଯାଇଣ ସତ୍ୱରେ ।
ବୋଲିବୁ ଦେବତାଏ କହିଲେ ତୁମ୍ଭେ ଜାଣ
ଶ୍ରୀରାମ ସଙ୍ଗରେ ଯୁଦ୍ଧ କରିବ ସହସ୍ରାନନ ।
ତାହାକୁ ଶ୍ରୀରାମ ଯେ ନ ପାରିବେ ରଣେ
ନର ବାନର ଭାଲୁ ଯେ ହେବେ ମୋହମାନେ
ସ୍ୱରିହାଇ ଲକ୍ଷେରାଜା ସହିତେ ମୋହହେବେ
ଜାନକୀ ଯୁଦ୍ଧରେ ପୁଣି ମାରିବେ ଦଶଗ୍ରୀବେ
କପିଳାସ ପୁରକୁ ଯିବ ତୁ ବହନ
ପାର୍ବତୀଠାରୁ ପୁଣି ଆଣିବୁ ମାୟା ଯାନ ।
ପିନାକ୍ଷ ଅକ୍ଷୟ ତୋଣକୁ ଆଣିବୁ
କାଳ କଳୁଷ ଶର ଦୁର୍ଗାଙ୍କୁ ମାଗିବୁ ।
ଯେକଣ ସକଳ ଆଣିବୁ ସୁବଳସ୍ୱା
ଜାନକୀର ସାରଥି ହୋଇବ ସେହୁ ପ୍ରିୟା ।
ଏମନ୍ତ ବଚନ ଶୁଣି ପବନ ଚଳିଗଲା
ସୁବଳସ୍ୱା ଗିରିର ଦକ୍ଷିଣେ ମିଳିଲା ।
ବାସେଳୀ କାଳକାଙ୍କୁ କହିଲା ପୁଣି ଯାଇ
ଶ୍ରୀରାମ ହସ୍ତରେ ସହସ୍ରଗ୍ରୀବ ନ ମରଇ ।

ବିଷ୍ଣୁଙ୍କର ଘରଣୀ ଯେ ଅଟଇ ଜାନକୀ
ତାହାର ହସ୍ତେ ମରିବ ସହସ୍ରଗ୍ରୀବ ଜନ ।
ଏଥିପାଇଁ ପୁରନ୍ଦର ମୋତେ ଭେଜିଦେଲେ
ଅଳକାପୁରକୁ ଚଳ ନ କରି ତୁମ୍ଭେ ହେଳା ।
ସଦାଶିବ ଘରଣୀ ଦୁର୍ଗାଠାରୁ ପୁଣ
ମନ ମାୟାଯାନ ଯେ ଆଣି ତୁ ତତକ୍ଷଣ ।
ପିନାକ୍ଷ ଅକ୍ଷୟ କାଳ ଯେ କଳୁଷ
କହିଣ ତାହାଙ୍କୁ ଆଣ ଗୋ ବେଗକରି ।
ତୋର ଆସ୍ଥଳରେ ଗୁପତେ ରଖିଥିବୁ
ପିନାକ୍ଷ ଅକ୍ଷୟ କାଳକଳୁଷ ସମର୍ପିବୁ ।
ପବନଠାରୁ ଶୁଣି ଯେ ବାସେଳୀ ଚଳିଗଲେ
ଅଳକାପୁରେ ଯାଇ ପ୍ରବେଶ ଯାଇ ହେଲେ ।
ସକଳ ବୃତ୍ତାନ୍ତ ଯେ କହିଲେ ତୁମ୍ଭଙ୍କୁ
ମନମାୟା ଯାନ ଦେଲ ଆପଣ ତାହାକୁ ।
ପିନାକ୍ଷ ଅକ୍ଷୟ କାଳ ଯେ କଳୁଷ
ବାସେଳୀ ହସ୍ତରେ ଦେଲ ଗୋ ଶାକମ୍ଭରି ।
ବାସେଳୀ ଯେକଣ ଯେ ସେଠାରୁ ଚଳିଗଲା
ସୁବଳଗିରିରେ ନେଇ ଗୁପତେ ରଖିଲା ।
ସେଠାରୁ ପବନଦେବ ବେଗେ ଚଳିଗଲେ
ଶଚୀନାଥ ଆଗେଯାଇ ସକଳ କହିଲେ ।
ଦେବଙ୍କରେ ପାର୍ବତୀ ତାଙ୍କୁ ଦେଇଛନ୍ତି ଶାପ୍ୟ
ପୁରୁଷ ହସ୍ତରେ ତୁ ଯେ ନୋହିବୁ କେବେନାଶ
ବାସୁଦେବ ଘରଣୀ ମୋହର ଶରେ ମାରି
ସେତେବେଳେ ସାରଥି ମୁଁ ହୋଇବି ତାହାରି
ଏମନ୍ତ ବଚନ ଯେ ସଦାଶିବ କହି
ପାର୍ବତୀ ବୋଇଲେ ଦେବ ସେଠାରୁ କସହୋଇ
ଈଶ୍ୱର ବୋଇଲେ ଦେଖ ମୋରଠାରେ ଶୁଣ
ସକଳ ସୈନ୍ୟ ସାଜିଣ ବାହାର ସହସ୍ରାନନ
ଅଳପ ନିଃଶ୍ୱାସ ଚାର ମନ୍ଦ ମନ୍ଦ ବହେ
ବଳ ବପୁ ତେଜ ଚାର ନ ରହିଲା ଦେହେ ।
ଏଥିଅନନ୍ତରେ ଗୋ ଶୁଣ ଶାକମ୍ଭରି
ଶ୍ରୀରାମଚନ୍ଦ୍ର ଥିଲେ ସୁବଳସ୍ୱା ଗିରି ।
ରାକ୍ଷସଙ୍କ ଧ୍ୱନି ଶୁଭିଲା ତହଳ
ନିଧୂମ କପି ଆସି କହିଲା ଆଗର ।
ଆପଣେ ସହସ୍ରାନନ ସକଳ ସୈନ୍ୟ ସେନ
ଯୁଦ୍ଧକୁ ବଜାଇଲେ ଦୈତ୍ୟ କୁଳମଣି ।

ଶୁଣିଣ ଜାମ୍ବେବ ମୁଖକୁ ଚାହିଁ ରାବଣାରି
କଷ୍ଟେସ୍ତେ ସହସ୍ରାନନ ଅଭଲ ଯୁଦ୍ଧ କରି ।
ବେଗେ ଆମ୍ଭର ଆଠ ଆସନ୍ତୁ ସକଳ
କୁଳ ସମସ୍ତେ ଯିବା ରଣ ଯେ ଭୂମିର ।
ଏଣିକ ରାକ୍ଷସେ ଯେମନ୍ତେ ନ ଆସନ୍ତି
ଆମ୍ଭଆଗେ ଉଗାଳିବା କହନ୍ତି ରଘୁପତି ।
ଶୁଣିଣ ଜାମ୍ବେବ ହନୁମନ୍ତ ଯେ ବୁଝି
ବେଗେଣ ସମସ୍ତ ସୈନ୍ୟ ଯାଆନ୍ତୁ ବଥ କରି
ଶୁଣିଣ ଅନୁମନ୍ତ ବେଗେ ଚଳିଗଲା
ନର ବାନର ସୈନ୍ୟ ସମସ୍ତ ଅଣାଇଲା ।
ଶ୍ରୀରାମଙ୍କୁ ଦର୍ଶନ ସମସ୍ତେ ଆସି କଲେ
ଦେଖିକରି ରଘୁନାଥ ସନ୍ତୋଷ ହୋଇଲେ ।
ସୀତାଙ୍କୁ ସ୍ମରି ରାମ ହୋଇଲେ ବାହାର
ନନ୍ଦିଘୋଷ ରଥପରେ ବସିଲେ ରଘୁବୀର ।
ତାଳଧ୍ୱଜ ରଥରେ ବସନ୍ତେ ଲକ୍ଷ୍ମଣ
କଣିଅର ରଥରେ ଭରତ ବସେ ପୁଣ ।
ଅସୁର ଦଳଣ ରଥରେ ଶତ୍ରୁଘନ ବସଇ
ଏମନ୍ତେ ଚାରିଭାଇ ବସିଲେ ଯାନେ ଯାଇ ।
ଦେଖିକରି ବିଭୀଷଣ ବେଗେ ଚଳିଗଲା
ମନ୍ଦୋଦରୀ ଆଗରେ ପ୍ରବେଶ ଯାଇ ହେଲା ।
ବୋଇଲା ଶୁଣ ଗୋ ମୋର ବାଣୀ ଏବେ
ରାମ ସଙ୍ଗରେ ମୁଁ ଯେ ଯାଉଛି ଯୁଦ୍ଧେ ।
ମଲେ ହଜିଲେ ମୋତେ ନ କରିବୁ ଘଟକଣି
ରାମଠାରେ ବଶ୍ୟାସକହିଁ ଥିବୁ ଲଙ୍କାପାଟରାଣୀ
ଯାହା ବଳିରବୁ ସେତେବେ ତୋତେ ଆଣି ।
ଏମନ୍ତ ବୋଲିଣ ଯେ ବିଭୀଷଣ ଭଣି ।
ମନ୍ଦୋଦରୀ ବୋଇଲା ସେ ତୁମ୍ଭଠାରେ ହେ'ଧ
ଅବଶ୍ୟ ତୁମ୍ଭସଙ୍ଗେ ଜିତିବ ସେତୁ ବନ୍ଧ ।
ଶ୍ରୀରାମ ସଙ୍ଗରେ ତୁମ୍ଭେ ଥିବ ହେ ପ୍ରାଣନାଥ
ଶୁଣିଣ ବିଭୀଷଣ ଗଲକ ତୁରିତ ।
ଦେବଦଳଣ ରଥରେ ଯାଇଣ ବସିଲା
ଶ୍ରୀରାମଙ୍କୁ ବନ୍ଦିଣ ନମସ୍କାର କଲା ।
ଏଥିଅନନ୍ତରେ ଶୁଣ ଗୋ ଶାକମ୍ବରୀ
ମାତଳିକ ବନ୍ଦିଣ ରାମ ଯେ ସତ୍ୱର ।
ବାହା ରଥ ମୋର ସହସ୍ରାନନ ପାଶ
କେମନ୍ତ ରୂପ ତାର ଦେଖିବା ବିଶେଷ ।

ଶୁଣିକରି ମାତଳି ରଥ ବେଗେ ବାହି
ମଙ୍ଗଳ ସୈନ୍ୟ ଯେ ପଛରେ ଗୋଡ଼ାଇ ।
ମାରୁତି ଧରେ ତାଳବୃକ୍ଷ ଯେ ଗୋଡ଼ାଏ
ଅଙ୍ଗଦ ରୂପଧରି ଆଗରେ ଚଳଯାଏ ।
ଆଗରେ ଶ୍ରୀରାମ ଦେଖିଣ ତାଙ୍କୁ ପୁଣ
ସାଧୁରେ ହନୁମନ୍ତ ପବନ ନନ୍ଦନ ।
ତାହାଙ୍କୁ ପ୍ରଶଂସା ଯେ କରନ୍ତି ରାଘବ
ପଛେ ପଛେ ଗୋଡ଼ାଇ ଅଛନ୍ତି ଜାମ୍ବେବ ।
ବିଶାଖରେ ଖଡ୍ଗ ଯେ ବାନର ରଙ୍ଗମୁଖା
ମଣ୍ଡାଶୋଇ ଖଡ୍ଗ ଅଛନ୍ତି ଦଧିମୁଖା ।
ଷାଠିଏ ପଦ୍ମ କାଳମୁଖା ଯେ ବାନର
ଅନେକ ଭଲ୍ଲୁ ସୈନ୍ୟ ଘୋଟିଣ ମେଘସାର
ନେ କପି ଷଡ଼ଜ କରି ତରାମାରି ଯାନ୍ତି
ଦାନ୍ତ ରେଙ୍କଟି କେତୁ ଯେ ଶବଦ କରନ୍ତି ।
କେବଣ କପି ପୁଣ ଆକାଶେ ଉଡ଼ଇ
କେତୁ ନାଚୁଛନ୍ତି ଯେ ଗାଲବୁଣ୍ଡ ବାଇ ।
ଅନେକ ବାହାର ହେଲେ କପି ଯଥ
କନ୍ଦଶ କ୍ଷକ୍ଷଣୀ ବାଦ୍ୟ ବାଜଇ ସମ୍ଭୂତ ।
ଲଙ୍କା ଉତ୍ତର ପାଖ ବାନରର ଗ୍ରାଇ
ସମସ୍ତଙ୍କ ହସ୍ତେ ଶିଳା ବୃକ୍ଷ ଯେ ଅଛଇ ।
ଶ୍ରୀରାମ ପିଦାରୁ ସମସ୍ତେ ପଛେ ଗଲେ
ଭରତ ଲକ୍ଷ୍ମଣ ଶତ୍ରୁଘନ ଚଳିଗଲେ ।
ତିନକୋଇ ତଳବ ରୁ ତଳଂଲ ଲକ୍ଷେ ରାଜା
ଲକ୍ଷେ ଛତ୍ର ଟେକାଇ ବଜାନ୍ତିରେ ବାଜା ।
ଲକ୍ଷେକ ଭାଦାଳ ତୁରୀ ବାଜଇ ଆଗରେ
କଳାଛନ୍ତି ତରାସ ଟେକାନ୍ତି ଶିରପରେ ।
ଘୋଟିକ ରାଜାଙ୍କର କୋଟିଏ ଲେଖାଏଁ ରଥ
ଲକ୍ଷେ ରାଜାଙ୍କର ଏତ୍ତ ପ୍ରାୟେ ସୈନ୍ୟଜନ୍ତି
ପାଞ୍ଚକୋଟି ପଦାତି କୋଟିଏ ଗଜ ଅଶ୍ୱ
ଯନ୍ତ୍ରିର ଶବଦ ପୂରଇ ଆକାଶ ।
ଦଶସହସ୍ର ଲେଖାଏଁ ବାଦ୍ୟକାର ଜାଣ ।
ସ୍ୱର୍ଗ ମର୍ତ୍ତ୍ୟ ଦୁଇପୁର ବିଶେଷ ଶୋଭେ ପୁଣ ।
ନେତର ପାଟ ପତାକା ଉଡ଼େ ଫରଫର
ରଥ ଘର୍ଘନରେ ପୂରେ ଲଙ୍କାପୁର ।
ସୁବଳସ୍ଥା ଗିରିରୁ ସମସ୍ତେ ଚଳିଗଲେ
ପଶ୍ଚିମ ଦ୍ୱାରରେ ଯାଇ ରାଜାଏ ବେଢ଼ିଲେ

ରାଜାଙ୍କର ସଙ୍ଗରେ ଭରତ ଶତ୍ରୁଘନ
କପିଙ୍କର ସଙ୍ଗରେ ଶ୍ରୀରାମ ଲକ୍ଷ୍ମଣ ।
ପଶ୍ଚିମ ଦ୍ୱାରଠାରୁ ପୂର୍ବଦ୍ୱାର ଯାଏ
ଜନଦ୍ୱାର ଯୋଡ଼ି ନଳ ବାନର ଯେ ଉଦେ ।
ସୁବନାମେ ଶବର ନୀଳପାଦ ବିଭୀଷଣ
ଶ୍ରୀରାମଙ୍କ ସଙ୍ଗତେ ଅଛନ୍ତି ଏମାନ ।
ଲକ୍ଷ୍ମଣ ସଙ୍ଗେ ସୁଗ୍ରୀବ ଅଷ୍ଟ ସେନାପତି
ଯୂଥପତିମାନେ ଯେ ଭରତ ସଙ୍ଗେ ଛନ୍ତି ।
ମଲ୍ଲ ମହାମଲ୍ଲ ଯେ ଶତ୍ରୁଘନ କୁଳ
ଅସୁରଙ୍କୁ ଭେଟିଲେ ଆସିଣ ବାହାର ।
ସମର ଭୂମିରେ ମିଳନ୍ତେ ସତ୍ତ୍ୱରେ
ଦୂରରୁ ଦୈତ୍ୟବଳ ଦେଖିଣ ଧାଇଁଲେ ।
କେ ବୋଲନ୍ତି ଦେଖନ୍ତେ ନରବାନର ସୈନ୍ୟ
ଖେପି ଆସନ୍ତି ସେ ଯେ ମେଘମା ଘୋଟିଣ ।
କେ ବୋଲନ୍ତି ଆଜ୍ଞାରେ ଦେଖିବାର ପାଇଁ
ଏକାବେଳକେ ସମସ୍ତେ ଆସୁଛନ୍ତି ଧାଇଁ ।
କେହୁ ଡାକନ୍ତି ଦୂରରୁ ଘୋର ନାଦକରି
ଆଜ ନରବାନର ଯିବେ ଯମପୁରୀ ।
ଅସୁରେ ବୋଲନ୍ତି କୁମ୍ଭ ମରଣ ନିକଟ
ବେଳକାଳ ଜାଣି ଦେଲ ଭେଟ ।
କେହୁ ବୋଲନ୍ତିରେ ଯିବ ଆଜ କାହିଁ
ସଞ୍ଚାଣର ମୁଖରୁକରେ ପାରୁଆ ଉବୁରଇ ।
କେବୋଲେ କୁମ୍ଭର ଜାଣିବା ଆଜ ଯେ ଲକ୍ଷଣ
ସମର ଭୂମିରେ କୁମ୍ଭେ ସମସ୍ତେ ନାଶଜାଣ ।
ସହସ୍ର ନନ ଡାକେ ଶ୍ରୀରାମ ବିଭୀଷଣ କାହିଁ
ତାଙ୍କୁ ଦେଖିଲେ ମୋରରେ ପୂର୍ବକଷ୍ଟ ଯାଇ
ତାହାର ସାନୁଜ ଯେ ଅଟନ୍ତି ଲଙ୍କେଶ୍ୱର
ଅଛି ସହସ୍ର ପୁତ୍ର ମାଇବେକ ସେହୁ ।
ଏମନ୍ତ ବୋଲିଣ ଯେ ଡାକେ ସହସ୍ରାନନ
ତାର ଆଗରୁ ରଥ ଟେକିଲେ ରାମଗଣ ।
ଦେଖିଣ ସହସ୍ର ମାଥ ଦୂରରୁ ଅନାଇଲା
ରଥର ଉପରେ ଶ୍ରୀରାମଚନ୍ଦ୍ରଙ୍କୁ ଦେଖିଲା ।
ବଡ଼ ଅପୂର୍ବ କଥାତ ଅଟେ ଏହୁ ପୁଣ
ସମରଭୂମିକି ରଥ ଟେକନ୍ତି କରି ଟାଣ ।
ବାନର ନର ରାଜା ଦେଖିଣ ବୋଲଇ
କଲ୍ଲାପତ ଜାଣି ଶରୀର କମ୍ପଇ ।

ବୋଲେ ନର ବାନରେ କାହିଁ ଆଜ ଯିବ
କାଳସର୍ପ ମୁଖରୁ ମଣ୍ଡୁକ ଉବୁରିବ ।
ଏତେବୋଲି କରେ ଯେ ଧଇଲା ଧନୁଶର
ବାଣକୁ ବନ୍ଧଇ କଣ୍ଠଣ ରେରେକାର ।
ଦୂରରୁ ଦେଖିଲା ଯେ ଆସେ ହନୁମନ୍ତ
କରେ ଧରିଅଛି ଏକଇ ପର୍ବତ ।
ବୋଲଇ ଡାକିଲରେ ଯାଉଛୁ ବଇତ
ଜାଣିନାହୁଁ କରେ ଏଣେ ଅଛନ୍ତି ରଘୁନାଥ
ଛନ୍ତି ଅମୋଦସେନ ରଥରୁ ଯୋଗାଡ଼ି ଦେଖ
ଦେଖିକରି ସାରଥି ରଥ ଅଲଗା କରିନେଲା ।
ଦେଖିଣ ଅମୋଦସେନ ଶର ଯେ ପେଷିଲା
ଦେଖିଣ ହନୁମନ୍ତ ତା ଦୂରରୁ ନିବାରିଲା ।
ଲଙ୍କାପୁରେ ଯୁଦ୍ଧକଲେ ଅମୋଦ ଯେ ସେନ
ନଳଙ୍କ ସଙ୍ଗେ ଯୁଦ୍ଧ ଜମ୍ବେକ ମନ୍ତ୍ରୀ ଜାଣ ।
ଘନାକତ କୁମରଙ୍କୁ ଭେଟେ ସଉମିତ୍ରୀ
ସୁଗ୍ରୀ ବିଭୀଷଣ ଉଗାଳିଲେ ଏକ ରଥ ।
କଣ୍ଠଣ କାଳମୁଖ କଳମୁଖ ସାର
ଗବଏ ଗବକ୍ଷ ଯେ ତାରକ୍ଷ ନଳ ନୀଳ ।
କୁନ୍ଦ ଯେ କମୋଦ ଦୁନ୍ଦଦ କେଶରୀ
ଧତବାନ ବସନ୍ତ ପବନ ଆଦିକରି ।
ଏମାନ କଲେ ଅନେକ ବୃକ୍ଷ ସୈନ୍ୟ
ଘୋଡ଼ାଇମାଇଲେ ଯେ ଅନେକ ଦୈତ୍ୟଗଣ
ଲକ୍ଷେକୋଟିକୁମରସହସ୍ରାନନର ଯାଇଥିଲେ
ଲକ୍ଷେ ରାଜାଙ୍କୁ ସେ ଯାଇଣ ଦେଖିଲେ ।
ଷଡ଼ଲକ୍ଷ ନାତି ଯେ ଦେଖିଲେ ରଘୁବର
ଭରତ ଶତ୍ରୁଘନଙ୍କୁ ପଚାରିଲେ ବେଗ ।
ଯୂଥପତିମାନେ ଯେ ସଙ୍ଗରେ ଘେର ପଡ଼ି
ଚେଳନ ପରେ ଶାଙ୍କେ ଲ ଯେସବେଯାଇବେରେ
ଦେଖିଣ ଦେବଗଣ ମନରେ ବିସ୍ମରନ୍ତି
ବଜ୍ର ବାଟୁଳ ଶର ଯେ ଭରତ ଧରିଛନ୍ତି ।
ଇନ୍ଦ୍ରଧନୁ ଯୋଡ଼ିଏ ଧରିଛି ଶତ୍ରୁଘନ
ଗୁଣ ଟଙ୍କାର କରଇ ରଥରେ ବସି ପୁଣ ।
ଲକ୍ଷଲକ୍ଷ ବଜ୍ରସୂତ ଉଡ଼ିକି ସୁମରିଲା
ଇନ୍ଦ୍ରଧନୁ ଉପରେ ନେଇଣ ବସାଇଲା ।
ବଜ୍ର ବାଟୁଳ ଧରି ବନ୍ଧିଲେକ ନେଇ
ବାଜିଣ ରଥମାନେ ପଡ଼ୁଛନ୍ତି ଭୂଇଁ ।

ଲକ୍ଷେ ଲକ୍ଷେ ଭଣ୍ଡ ଏକାବେଳକେ ମାରଇ
କାହାର ପେଟ ଫୁଟି ପିଠିକି ଗଳଯାଇ ।
କାହାର କପୋଳେ ବାଜି ଆର ପାଖେ ଗଳ
କାହାର କୁକୁଫୁଟି ପିଠିକି ନକଳ ।
କାହାର ଯାନୁ ସ୍ୱର୍ଗିଣ ଖଣ୍ଡ ସେହୁଠାରେ
କାହାର ଚୋଟରେ ଖଣ୍ଡ ଖଣ୍ଡା କରେ ।
ଏମନ୍ତେ ଅନେକ ସୈନ୍ୟ ନାଶକଲା
ଯାଇ ମେଣ୍ଢରେ ବୃଷଭ ଯେମନ୍ତେ ପଶିଲା ।
ଦେଖିକରି ଅସୁରେ ନାରାଚ ବରଷି
ଗଗନ ମେଘମା ଯେ ଶରରେ ଗ୍ରାସି ଦିଶି ।
ଦେଖିକରି କକଇସୁତ ଧନୁଶର ଧରି
ଖ୍ରାସମୁନା ନାରାଚ ବନ୍ଧିଲେ ଟାଣିକରି ।
ଶୀଳ ବାଣ ଭୁଜବାଣ ବସାଇ ବନ୍ଧିଲା
ଦୈତ୍ୟବଳ ମାରବୋଲି ମନ୍ତ୍ରି ଛାଡ଼ିଦେଲା ।
ଦୁଇଲକ୍ଷ ଶର ଯେ ଏକାବେଳେ ଗଲେ
ଗର୍ଜ୍ଜନ ନାଦ କରି ବାହାରି ହୋଇଲେ ।
ଘୋର ଶବଦରେ ଧନୁ ଦୈତ୍ୟଙ୍କ କରୁ ଛିଣ୍ଡ
ଶୀଳବାଣ ଭୁଜବାଣ ପଡ଼ିଲା ଯାଇକରି ।
ଦୁଇଲକ୍ଷ ନାଣ୍ଡ ଯେ ଭଟଙ୍କୁ ବେଢ଼ିଥିଲେ
ସମସ୍ତଙ୍କୁ ବାଣ ଯାଇ କାଟିଗଲା ବଳେ ।
ଆଉଥରେ କକଇ ମାଇଲା କାଳ ଶର
ଶତକୋଟି ସେନାପତି ମଲେ ଉବଟଳ ।
କ୍ରୋଧଭରେ କକଇ ଯେ ହୋଏ ଜରଜର
ବାରକୋଟି ଗଣ୍ଡୁସତ ବନ୍ଧିଲା ଶର ।
ବାରକୋଟି ପ୍ରଚଣ୍ଡ ଯେ ରଥ ନାଶଗଲେ
ଗଜ ଅଶ୍ୱ ସ୍ୱାନ ଯେ ସାଗରେ ପଶିଲେ ।
ଏମନ୍ତ ପ୍ରକାରେ ଯେ କକଇ ଯୁଦ୍ଧକଲା
ଦୁଇଘଡ଼ିରେ ବାର ମର୍ଦ୍ଦିତ ମାଇଲା ।
ଗଜ ଅଶ୍ୱ ସ୍ୱାନ ମାଇଲା ଶତ ଖଣ୍ଡ
ପ୍ରଚଣ୍ଡ ନାଶଗଲେ ସତର ଯେ ପଦ୍ମ ।
ଦୁଇପୁହ ଗଲେ ସେନାପତି ବାରକୋଟି
ରକତନଦୀ ଗୋଟି ବହିଲା ଘାଲଟି ।
କୋଟି କୋଟି କବନ୍ଧ ଯେନାଚଲେ ସେଥିରେ
ସପ୍ତତାଳ ଗଣ୍ଡରେ ରକତ ନଦୀ ଛୁଟଲେ ।
କଦଳୀବେଳା ପ୍ରାୟେ ଖସିଯାନ୍ତି ଦୈତ୍ୟ
ସ୍ୱର୍ଗରେ ଦେବତାଏ ଦେଖି ହେଲେ ତୋଷ ।
ଭରତ ନୃପରେ ପୁଷ୍ପ ବୃଷ୍ଟି କଲେ ପୁଣି
ଅପସରା ଗଣେ ଯେ ନୃତ୍ୟ ଗୀତ ଜାଣି ।
ଶୁଣିକରି ପାର୍ବତୀ ବୋଲନ୍ତି ବଚନ
ଶତ୍ରୁଘନ କିସକଲା କହ ହେ ତ୍ରିଲୋଚନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ଶୁଣି ଯେମନ୍ତ କଲେ ଶ୍ରୀରାମ ସାନଭାଇ ।
ତେତିଶକୋଟି ଦେବତା ଶର ଦେଇଥିଲେ
ବଜ୍ର ଅଦ୍ଭୁତ ଶିବ ତା ଅଙ୍ଗରେ ବୋଳିଲେ ।
ଅକ୍ଷୟ ତୋଣ ଦେଇଥିଲୁ ଯେ ବ୍ରହ୍ମ ତାକୁ
ସମସ୍ତଙ୍କ ବଳରେ ତାହାର ବଡ଼ ବପୁ ।
ଅତିପ୍ରାୟ ଯୁଦ୍ଧ ଯେ କରନ୍ତି ଶତ୍ରୁଘନ
ଏକାରେ ଶତେମୁଖାକୁ ଧ୍ୱଂସିଲେ ସେହୁ ପୁଣ
ଗୁମାନସୁରକୁ ମକାରେ ମାଇଲା
ସହସ୍ରାନନ ନାତିର ସମସ୍ତ ପୁତ୍ର ନାଶକଲା ।
ଏବେ ସହସ୍ରାନନର ଦୁଇଲକ୍ଷ ନାତି
ତାହାକୁ ମାରିବାକୁ ସେ ବେଢ଼ ଦେଇଛନ୍ତି ।
କେଶିଣ ସଜମିଶ୍ରୀ ଯେ ଗଳଧନୁ ଧରି
ଗୁଣ ଟଙ୍କାର କରି ବଜ୍ରଶର ଭରି ।
ଦୁଇଲକ୍ଷ ବଜ୍ରସୂତ ବସାଇ ଗୁଣରେ
ବନ୍ଧିଲା ଶତ୍ରୁଘନ ରଣର ମଧ୍ୟରେ ।
ଗର୍ଜ୍ଜନର ନାଦେ ଯେ ପୃଥିବୀ କମ୍ପଇ
ସମୁଦ୍ର ଲହରୀ ଯେ ଉଠିଲା ସ୍ଥିର ହୋଇ ।
ଦୈତ୍ୟଙ୍କର କୋଦଣ୍ଡ ପଡ଼ିଲା ତଳେ ଛିଣ୍ଡ
ଋକ୍ଷ ବାନର ପଙ୍କତ ଚଉଷଠି ଗୁଣ୍ଡ ।
ସହସ୍ରାନନର ଶସ୍ତ୍ର ହସ୍ତରେ ଧରିଥିଲା
ତଡ଼ରର ଗରଜନେ ଛିଡ଼ିଣ ପଡ଼ିଲା ।
ଶ୍ରୀରାମ ଯେ କୋଦଣ୍ଡ ଧରିଥିଲେ କରେ
ଓହାଣ ହସ୍ତକୁ ନ ଆସିଲା ବନ୍ଧିବାରବେଳେ
ଦୁଇଲକ୍ଷ ବଜ୍ରସୂତ ବେଗେ ଚଳିଗଲା
ସହସାନନ ନାତିଙ୍କର କଣ୍ଠରେ ପଡ଼ିଲା ।
ଶିର ଛିଣ୍ଡନ୍ତେ ସେ ଯେ ପଡ଼ିଲେ ଧରଣୀ
ପୁଣି ଶତ୍ରୁଘନ ଯେ ମେଘାଶର ସେନ ।
ବନ୍ଧନେ ବ୍ରହ୍ମମେଘେ ବରଷନ୍ତି ପାଣି
ରଣଭୂମିରେ ତହଳ ପଡ଼ିଲା ବଢ଼ି ଜାଣି ।
ରକ୍ତନଦୀ ଜଳନଦୀ ହେଲେ ମିଶାମିଶି
ସପ୍ତ ହ୍ରଦରେ ବଇତେ ସମୁଦ୍ରରେ ପଶି ।

ପୁଣି ଘଡ଼ଘଡ଼ ମାଇଲ ବଜ୍ର ଟାଣ
ଚଡ଼କର ବାଜନ୍ତେ ଉଲ୍କାପାତ ପୁଣ ।
ପୁଣି ବ୍ରହ୍ମଶର ବାରକୋଟି ଜାଣ
ବନ୍ଧନ୍ତେ ବାରକୋଟି ସେନାପତି ମଲେ ପୁଣ ।
ଆଉ ବେଳେ ବାବନ ଯେତେ ଶତ୍ରୁଘନ
କାଟି ପକାଇଲେ ଲକ୍ଷେ ମାତ୍ର ଶିର ପୁଣ ।
ପୁଣି ଶତ୍ରୁଘନ ମନଭେଦକ ମାଇଲେ
ସବୁରି କୋଟି ପଦାତି ମାରି ପକାଇଲେ ।
ପୁଣି ପଶୁପତି ଶର ମାଇଲେ ଯେ ଟାଣି
ଶାକୋଳ ମୃଗପଲ ପକାଇଲେ ହାଣି ।
ଆଉବେଳେ ମାରେ ସୂର୍ଯ୍ୟାବୃତେକ ଶର
ଗଜ ମଇଁଷି କାଟିଲେ ବାଜି ଯେ ସାଗର ।
ଯନ୍ତ୍ରି ଏତେ ସୈନ୍ୟ ଯେ ଶତ୍ରୁଘନ ମାରି
ଦୈତ୍ୟ ଲକ୍ଷଦାରୁ ବେଢ଼ ଫିଟିଲ ତାହାରି ।
ବନ୍ଧିଲ ଚକ୍ରନଗ ଯନ୍ତ୍ରତାଳ ଉତ୍ସର୍ଗ
ଭାସିଗଲେ ଦୈତ୍ୟ ଯେ ଯେସନ୍ତ ଖରେ ବେଗ
ସ୍ୱର୍ଗର ଦେବତାଏ ଦେଖି ତୋଷହେଲେ
ଶତ୍ରୁଘନ ଉପରେ ପୁଷ୍ପ ବୃଷ୍ଟି କଲେ
ଅପସରମାନେ କଲେକ ବହୁ ନୃତ୍ୟ
ପାଣୀଧରି ଆନନ୍ଦ ହେଲେ ନାରଦ ତ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଲକ୍ଷେରାଜା ଗଲେ ଯେ ଯୁଦ୍ଧଭୂମିକି ପୁଣ ।
ସେମାନେ କସକଲେ କହ ମହେଶ୍ୱର
ସେକଥା ଶୁଣିବାକୁ ଶରଧା ମୋହର ।
ଶାନ୍ତମ୍ଭ ବଚନେ ତ୍ରିଲୋଚନ କହି
ଲକ୍ଷେ ରାଜାଙ୍କର କଥା ପୁଣ ମହାଦେଈ ।
ସହସ୍ରାନନର ଲକ୍ଷେ ସହସ୍ର ନନ୍ଦନ
ଲକ୍ଷେ ରାଜାଙ୍କୁ ଯାଇ ବେଢ଼ିଲେକ ପୁଣ ।
ପନର ଲକ୍ଷ ଶାକେଳଗଣ ସଙ୍ଗରେ ଘେନ
ଦଶଲକ୍ଷ ଜୁଆଇଁ ସଙ୍ଗରେ ଛନ୍ତି ପୁଣି ।
ରାଜାମାନ ସଙ୍ଗରେ ଅନେକ ଯୁଦ୍ଧ କଲେ
ଶ୍ରାବଣ ବରଷା ଜାଣି ଶର ବରଷିଲେ ।
ଦେଖିକରି ରାଜାମାନେ ଶର ତାଙ୍କର କାଟି
ନାରଜ ବରଷିଲେ ଗଗନମାର୍ଗ ଘୋଟି ।
ପନରଲକ୍ଷ ଶାଳକଗଣ ନୃପତି ନାଶକଲେ
ଆଉବେଳେଦୈତ୍ୟେଯୁଝିଲେ ରାଜାଙ୍କରକୁଳେ

ହାତୀରଥି ପଦାତି ଅସୁର ନାଶକଲେ
ଦେଖିକରି ନୃପତି ମନରେ ତୋଷ ହେଲେ ।
ଅସୁରଙ୍କ କାଟୁଣି ଦେଖିଣ ନୃପତି
ଡାକହାକ କରିଣ ଶର ସେ ବନ୍ଧନ୍ତି ।
ଦଶଲକ୍ଷ ଜୁଆଇଁ ଯେ ସହସ୍ରାନନର ଥିଲେ
ତାହାଙ୍କୁ ନସୋଧି ଯେ ନୃପତି ମାଇଲେ ।
ସେଠାରୁ ଲଙ୍କପତିର ପୁତ୍ରେ କଲେ ଛଳ
ଅସୁର ଶର ସବୁ ବନ୍ଧିଲେ ଦୈତ୍ୟବଳ ।
ନୃପତି ବରୁଣରେ ତାହାଙ୍କୁ ନିବାରିଲେ
ଦେଖିକରି ଦୈତ୍ୟେ ଯେ ବ୍ରହ୍ମଶର କଲେ ।
ସେ ଶର ନିବାରିଲେ ନାରାୟଣ ଶରେ
କୁମ୍ଭକ ଶର ଯେ ବନ୍ଧିଲେ କ୍ରୋଧରେ ।
ସୂର୍ଯ୍ୟାସ୍ତ୍ରେ ନୃପତି ତାହା ନିବାରିଲେ
ଏଥିଅନ୍ତେ ଯାହା ହେଲା ଶୁଣ ତାହାଭଲେ ।
କ୍ରୋଧରେ ନୃପତିମାନେ ହେଲେ ଜରଜର
ଛେଦିଲେ ସୈନ୍ୟବଳ ଦୈତ୍ୟଙ୍କର କୁଳ ।
ବାରସାଗର ପଦାତି ସାତସାଗର ରଥି
ଅଶ୍ୱ ଗଜ ଗଧ ଯେ ମାଇଲେ ଅକ୍ଷୋଭ ।
ଦେଖିକରି ଅସୁରେ କ୍ରୋଧରେ ପ୍ରଖର
ବାଦଲ ଶର ମାଇଲେ ରାଜାଙ୍କ ଉପର ।
ଦେଖିକରି ରାଜାମାନେ ଗୂଢ଼ ପଳାଇଲେ
ପଶୁପତି ନାରଚ ଯେ ଓଟାରି ବନ୍ଧିଲେ ।
ଲକ୍ଷେକ କୁମର ଯେ ପଡ଼ିଲେ ଧରଣୀରେ
ବେନଖଣ୍ଡ ହୋଇଣ ଯେ ସର୍ବେ ଛୁଡ଼ିଗଲେ
କୋଡ଼ିଏ ସହସ୍ର ନନ୍ଦନ ଲକ୍ଷ ନାତି ପୁଣ
ପଳାଇଣ ଗଲେ ଯୁଦ୍ଧଭୂମିକୁ ଛାଡ଼ିଣ ।
ସହସ୍ରାନନ ପାଖରେ ଯାଇଣ କହିଲେ
ଲକ୍ଷେ ଅଶୀ ସହସ୍ର ପୁତ୍ର ନାଶ ଗଲେ ।
ଜୁଆଇଁ ନାଶଗଲେ ଏଗାର ଲକ୍ଷ ପୁଣ
ନାତି ତୋର ନାଶଗଲେ ନବଲକ୍ଷ ଜାଣ ।
ଶାଳକଗଣନାଶଗଲେ ଯେ କୋଡ଼ିଏଲକ୍ଷଅଶୀ
ସେନାପତି କୋଡ଼ିଏ କୋଡ଼ିଏ ଯେ ଅଛନ୍ତି
ପଦାତି ରଥି ତୋର କଳଣା ନ ଯାଇ
ଶୁଣିକରି ସହସ୍ରାନନ ଗର୍ଜିଣ ଉଠଇ ।
ଶ୍ରୀରାମ ଆଗରେ ଯେ ଥିଲା ସହସ୍ରମାଥ
ପଶ୍ଚିମ ଦ୍ୱାର ଭାଙ୍ଗି ଅଇଲେ ତାର ଥାଟ ।

ଏଥିଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଦୈତ୍ୟବଳ ଯହୁଁ ପଳାଇଲେ ଘୁଞ୍ଚିକରି ।
ଶତ୍ରୁଘନ ଭରତ ଲକ୍ଷେ ରାଜା ସୈନ୍ୟ ସଙ୍ଗେ
ଭାଗୀରଥି ପତାକ ସକଳ ସୈନ୍ୟ ରଥେ ।
ସେଠାରୁ ଆସି ଶ୍ରୀରାମ ଥାଟେ ମିଶି
ଶ୍ରୀରାମଙ୍କୁ ଆଦରି ସମସ୍ତେ ମିଶାମିଶି ।
ଦୈତ୍ୟବଳ ବାନରେ କରନ୍ତି ଯୁଦ୍ଧମେଳ
ଦେଖିକରି ବାନରେ ମାରନ୍ତି ତରୁଶୈଳ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେପଞ୍ଚାନନ
ସହସ୍ରାନନ ସଙ୍ଗେ ଶ୍ରୀରାମ କଲେ କେମନ୍ତପୁଣ
ଲକ୍ଷ୍ମଣ କାହାସଙ୍ଗେ କରନ୍ତି ପୁଣ ଯୁଦ୍ଧ
ସେନାପତି ଯୂଥପତି ଆବର ସୁଗ୍ରୀବ ।
ଶୁଣିକରି ପଞ୍ଚାନନ କହନ୍ତି ତୋଷମନେ
ଏକମନେ ଭଗବତୀ ଶୁଣ ଗୋ ତୁମ୍ଭେ ଏଣେ
ସହସ୍ରାନନ ଶ୍ରୀରାମର ହୋଇଲେ ଏକ ଭେଟ
ଶଙ୍ଖ କମ୍ବୁ ରଥପାଶକୁ ଟେକଲେ ନାଦଘୋଷ
ଏମନ୍ତେ ଦୁଇବଳ ହୋଇଲେ ମିଶାମିଶି
ଦୈତ୍ୟଙ୍କର ସଙ୍ଗରେ ଋକ୍ଷକପି ମିଶି ।
ଏମନ୍ତ ଯୁଦ୍ଧ ଦେଖିଣ କର ତାରସାଇଁ
ସମରକୁ ଦୃଷ୍ଟି ଦେଇଣ ଅଲଗା ହୋଇ ରହି
ବୋଲଇ ଦେଖିବା ଆଜ ବାନର ସମର
କେମନ୍ତେ ଯୁଝନ୍ତି ସେ ଦୈତ୍ୟଙ୍କ ସଙ୍ଗର ।
ଯେବେ ସେ ବାନରେ ଦୈତ୍ୟଙ୍କୁ ଜିଣିବେ ବଳି
ତେବେ ମୁଁ ସମରେ ପଶିବି ଧନୁ ଧରି ।
ଏତେବୋଲି ସହସ୍ରମୁଖ ଅଲଗା ହୋଇଲା
ପ୍ରଭୁଙ୍କର ପଛେ ରହି ସମର ନ କଲା ।
ଶ୍ରୀରାମଚନ୍ଦ୍ର ଥିଲେ ଯେ ସହସ୍ରମାଥ ଜାଣି
ଯୁଦ୍ଧରୁ ଅଲଗା ହୋଇ ସେହୁଁ ଯେ ରହନ୍ତି ।
ଲକ୍ଷ୍ମଣ ଭରତ ଯେ ଶତ୍ରୁଘନ ପୁଣି
ଜନକରାଇ ଲକ୍ଷେ ରାଜା ସେନଣ ସଙ୍ଗେ ପୁଣି
ଏମନ୍ତେ ଅଲଗା ଯେ ରହେ ବିଭୀଷଣ
ଦେଖନ୍ତି କୁତୁହଳେ ମହାଯୁଦ୍ଧ ପୁଣ ।
ଅମୋଘ ସଙ୍ଗତେ ଯେ ହନୁମନ୍ତ ଯୁଝି
ମହାକ୍ରୋଧେ ବାଣ ହୋନ୍ତି ବନ୍ଧାବନ୍ଧି ।
ଦୂରରୁ ବାଣ ଦେଖି ଯେ ପବନ କୁମର
ଶର ଆସନ୍ତେ ଦୂରରୁ କରଇ ନାରଖାର ।

ଏମନ୍ତେ ଯହୁଁ ସେ ଅମୋଘସେନ ଦେଖି
ଏହା କ୍ରୋଧେ ଅଗ୍ନିବାଣଗୁଣରେବନ୍ଧେଯୋଖି
ଅତି ଯତ୍ନ କରିଣ ସେ ଶରକୁ ଜଆରିଲା
ବାନର ପ୍ରାଣ ଘେନରେ ବୋଲିଣ ବୋଇଲା
ଯମନ୍ତ୍ରେଣ ବାଣ ଯେ ଜଳେ ହୁତାଶନ
ଖେପିକରି ଆସୁଅଛି ଯେସନେ ପବନ ।
ବାଣ ଆସିବା ଦେଖିଲେ ପ୍ରଭଞ୍ଜନ ସୁତ
ଉପରକୁ ଉଠାଇଣ ପର୍ବତ ଦ୍ରୁତ ।
ନାରାଚ ଆସନ୍ତେ ଅଧବାଟରୁ ଉଗଳଇ
ଚୂର୍ଣ୍ଣ ବନ୍ଧାରଣ ବାଣ ସେ ଗିଳିଦେଇ ।
ବୋଲଇ ଶୁଣ ତୁରେ ରାକ୍ଷସ କୁମର
ବେଗେ ତୁ ବନ୍ଧ ତୁରେ ପାଇବୁ ଯେତେଶର
କର୍ମାଇଁ ବଳମ୍ବରେ କରୁଅଛୁ ତୁହି
ମୁଁ ସାମାନ୍ୟ ଯୋଦ୍ଧା ନୁହଇ ।
ଏ ବଚନ ଯହୁଁ ଅମୋଘସେନ ଶୁଣି
ହନୁମନ୍ତକୁ ଚାହିଁ ବଚନ ବୋଲେ ପୁଣି ।
ଆରେ ତୁମ୍ଭେ ଅଟରେ ପଶୁକୁଳେ ଜାତ
ଏତେ ବଡ଼ାଇରେ କହୁଛ କେମନ୍ତ ।
ମୁହିଁ ତୋହଠାରେ ଉତ୍ପ୍ରୋଧରେ ଯୁଦ୍ଧକରି
ଉଶ୍ବାସ ପାଇବାରୁ ତୁହି ଗଲୁ ଫୁଲି ।
ଆଜ ସେ ଜାଣିବାରେ ତୁହି ପିବୁ ନାହିଁ
ନଷ୍ଟସ୍ବେ ପାଞ୍ଜି ତୋର ଗୋଟିଲ କରୁସାଇଁ
ଶୁଣିକରି ହନୁମନ୍ତ କହଇ ବଚନ,
ପଛେ ବଡ଼ାଇକରି କହିବୁ ବନ୍ଧ ଏବେ ବାଣ
ଏତ୍ନମତେ ତୋର ହୃଦରେ ଗୁମାନ
ତୋହର ସର୍ବସ୍ବ କେତେ କହୁଥିଲ ବାଣୀ ।
ସଙ୍ଗରେ ଆଣିଥିଲ କେତେ ଦୈତ୍ୟବଳ
ମୋତେ ସେ ବାନ୍ଧିଲ ସେ ଅପର୍ଯ୍ୟାପ୍ତ ଶର ।
ସେ ପୁଣି ଏଥିରୁ ହବୁରି ନ ଗଲ
ସୈନ୍ୟଙ୍କର ସଙ୍ଗରେ ରଣକରି ମଲ ।
ତହିଁ ଉତ୍ତାରୁ ଅଇଲା ଅଜସ୍ର ଯେ ସେନ
ସେହି ପୁଣି ନବର୍ତ୍ତି ପଡ଼ିଲ ରଣସ୍ଥାନ ।
ତୁ ଏବେ ଆସିଅଛୁରେ କରିବୁ କସ ରଣ
ଆଜ ଜାଣିବା ଯଦିପଣ ତୋର ପୁଣ ।
ଆଜ ମୋର ସଙ୍ଗରେ ଯୁଦ୍ଧକର ଜାଣ
କେତେ ବଡ଼ାଇରେ କହୁଛୁ ଦୈତ୍ୟ ପୁଣ ।

ମୋହର ଭୁଜେ ଆଜଭୁରେ କରସି ସମର
ମୋଠାରୁ ଜୀବୁରିଲେ ଦେଖିବୁ ରଘୁବୀର ।
ଏତେ ବୋଲିଣ ଯହୁଁ ମାରୁତି କହିଲା
ଶୁଣିକରି ଦାନବ କ୍ରୋଧ ମନରେ ହେଲା ।
ବୋଲଇ ଯୋଉ ଶରରେ ସମ୍ଭାଳ ବାନର
ଆଜ ତୁ ନଷ୍ଟସ୍ୱରେ ଯିବୁଁ ଯମପୁର ।
ଗର୍ଜ୍ଜନା ଶରକୁ ପୁଣ ଗୁଣରେ ବସାଇ
ହନୁମନ୍ତ ଉପରକୁ ବିନ୍ଧିଲା ଜୁହାଇ ।
ଚଳଇ ନାରାଚ ଯେ ଘୋରନାଦ କରି
ଆଷାଢ଼ ମାସେ ଯେହ୍ନେ ମେଘ ଘଡଘଡ଼ ।
ଶର ଆସିବାର ଯେ ମାରୁତି ଦେଖିଲା
ନାରାଚ ଆସିବାରୁ ମୁଣ୍ଡକୁ ପାତିଦେଲା ।
ପଡ଼ିଲାକ ନାରାଚ ହନୁମନ୍ତ ସିର
କପୋଳେ ବାଜିଣ ଅଗ୍ନି ହୋଇଲା ବାହାର
ପୁଣିହିଁ ନାରାଚ ଗୁଣରେ ବସାଇ
ମାରୁତିର ଉପରକୁ ମାରଇ ଜୁହାଇ ।
ଦେଖିଣ ହନୁମନ୍ତ ପାଇଲାକ ଖଙ୍ଗ
ପଡ଼ିଣ ଶରମାନେ ହୋଇଲେକ ଭଙ୍ଗ ।
ପୁଣିହିଁ ହନୁମନ୍ତ ଝାଡ଼ଝୁଡ଼ ହୋଇ
କରରେ ଘେନିଣ ସେ ଶାଳବୃକ୍ଷ ଦୁଇ ।
ଅମୋହସେନ ରଥରେ ନେଇଣ ପିଟିଲା
ସାରଥିର ବାଳଧରି କରରେ କଚାଡ଼ିଲା ।
ଦେଖିଣ ଅମୋହସେନ କ୍ରୋଧଭର ହୋଇ
ବଜ୍ରଶର ନେଇଣ ଗୁଣରେ ବସାଇ ।
ମନ୍ତ୍ର ଅଧ୍ୟାନ କରିଣ ବେଗେ ଛାଡ଼ିଦେଲା
ଦେଖିକରି ହନୁମନ୍ତ ବାହାକୁ ପାତିଲା ।
ନାରାଚ ପଡ଼ିଲା ଯେ ଗିରିସମ ଜାଣି
ଦେଖିଣ ମହାକ୍ରୋଧ ହୋଇଲା ପାବନି ।
କରରେ ଘେନିଲା ସେ ଏକଇ ଗିରିବର
ନେଇଣ କଚାଡ଼ିଲା ଦଇତ ଛାମୁର ।
ପୁଣିହିଁ ଧାଇଁଯାଇ ହସ୍ତୀ ଏକ ଧରି
ଅମୋହସେନ ରଥ ଉପରେ କଚାଡ଼ି ।
ଭାଙ୍ଗିଗଲା ରଥ ଯେ ଖଣ୍ଡ ଖଣ୍ଡ ହୋଇ
ରଥରୁ ଓହ୍ଲାଇ ଅମୋହସେନ ଯେ ପଳାଇ
ଘୋଡ଼ାଏ ହନୁମନ୍ତ ତାର ପଛହତ
ରହ ରହ ବୋଲିଣ ଯେ ଡାକଇ ମାରୁତି ।
ନ ଶୁଣଇ ଦାନବ ଯେ ହନୁମନ୍ତର ବାଣୀ
ପଳାଇଯାଏ ଯେହ୍ନେ ପବନ ଗତି ଜାଣି ।
ମାରୁତି ଡାକଇ ପୁଣି ରେରେକାର କରି
କେଣେ ପଳାଉଛୁରେ ଏକଥା କହକରି ।
ତୋହପରି କ୍ଷତ୍ରି ହୋଇ ପଳାଉଛୁ କାହିଁପାଇଁ
ପଳାଇଲେ ମୋଠାରୁ ଯିବୁରେ ଆଜ କାହିଁ
ତୋର ନାମ ଭଲରେ ଅଟେ ଜୟସେନ
ଏଣୁ କ୍ଷତ୍ରୀ କଥାଏ ତୋର ଏଣୁ କ୍ଷତ୍ରୀ ଆନ ।
କାହିଁପାଇଁ ତୁରେ ଅସତ ହୋଇଲୁ
ସମର ବାଳେ ହେତୁକାଳେ ଦେଖିଣ ନ ଥିଲୁ
ଭୁଞ୍ଜିବା ଶୋଇବା ତୁରେ ଏକଇ ମଣୁଛୁ
ଏବେ କର୍ମ ବୁଝୁରେ ଯାଉଛୁ ପଳାଇ ।
ଶ୍ରବଣେ ଶୁଣି ନାହୁଁ କରେ ଯୁଦ୍ଧର ଚରିତ
କେତେ ଛାଡ଼ିଦେବ ତୋତେ ହେଲେରେ ନସତ
ଏତେକହି ମାରୁତି ଯେ ବେଗେ ଧାଇଁଯାଇ
ଅମୋହସେନକୁ ଓଗାଳେ ଆଗେ ଯାଇ ।
ଦେଖିଣ ଦଇତ ଯେ ମନରେ ବିଚାରିଲା
ନଷ୍ଟସ୍ୱ ଦଇବ ତ ମୋତେ ନାଶକଲା ।
ଯେବେ ଦଇବ ମୋତେ ହୁଅନ୍ତା ବାମରେ
ତେବେ କି ଧନୁଶର ଛାଡ଼ନ୍ତି ଯୁଦ୍ଧରେ ।
ଏବେ ଆସି ଆଗରେ ଓଗାଳେ ହନୁମନ୍ତ
କସ ବେନ ଏହାସଙ୍ଗେ କରିବ ସମର ତ ।
ଏହାର ଆଗରୁ ମୁଁ ଯିବକ ଉବୁରି
ଯାବି ନପାରି ମୁଁ ଲାଗଇ ଧରାଧରି ।
ନୋହିଲେ କି ଜୀବନ ଧରିଣ ମୁଁ ଯିବ
ସହସ୍ରମାଥ ଛାମୁରେ କି ବୋଲି କହିବ ।
କ୍ଷତ୍ରିର ଧର୍ମ ମୁଁ ଯେ ସମର କଲେ ଭଙ୍ଗେ
କବୋଲି ବୋଲିବେ ମୋତେ ସହସ୍ର ନରଏ
ଏମନ୍ତ ଭାବୁଛି ଯେ ଧରାଧରି ହେଲେ
ଛାତି ଛାତି ଲଗାଇ ଉଡ଼ାଉଡ଼ ହେଲେ ।
ଧରାଧରି ହୋଇଣ ସେ ଗଡ଼ନ୍ତି ଗଡ଼ନ୍ତି
ପୁଣି ଉଠି କଟଇ ସେ ଧରାଧରି ହୋନ୍ତି ।
ଏମନ୍ତେ ଦୁହିଁଙ୍କର ଲାଗିଲା ଘୋର ରଣ
ହନୁକୁ ମାଡ଼ିଣ ବସେ ଅମୋହସେନ ।
ବୋଲଇ ବାନରରେ ପୂରିଲା ତୋର କାଳ
ଆଜ ତୁରେ ନଷ୍ଟସ୍ୱରେ ଯିବୁ ଯମଆଳ ।

ଶକ୍ରୁଜନ୍ତୁ ବୋଲନ୍ତି ମୁଁ ସମର ନକଲି
ତେଜ୍ୟାକରି ବାହୁଡ ଯେ ମୁର୍ଚ୍ଛି ଯାଉଥିଲି ।
ମଣିକୁ ବୋଲି କୁରେ ଯୋଡ଼ାଇଆସୁ ପୁଣି
ଆଜ ଙ୍କୁ ନଷ୍ଟସ୍ୱ କରେ ମିକୁ ସଞ୍ଜିବନୀ
ଏତେବୋଲି ରାକ୍ଷସ ଯେ ଗର୍ଜ୍ଜନ କରଇ
ତନେ ଥାଇ ମାରୁତି ଯେ ଶ୍ରୀରାମ ସୁମରଇ
ଯେତେବେଳେ ମାରୁତି ଯେ ଶ୍ରୀରାମ ସୁମରିଲା
ନୃସିଂହ ମୂରତି ହୁଦେ ପ୍ରବେଶ ହୋଇଲା ।
ତତକ୍ଷଣେ ମାରୁତିକୁ ପକାଏ ଲେଉଟାଇ
ବୃକ୍ଷ ପରେ ତାର ଯେ ଯାଇଣ ବସଇ ।
ବୋଲଇ ବଇତରେ ଶଲ୍ୟ ପୁଣି ନାଶ
ଇଷ୍ଟଦେବତା ସୁମର ସହସ୍ରାନନର ସୁତ ।
ଏତେକହି ମାରୁତି ଯେ କ୍ରୋଧରେ ଜରଜର
ବଇତ ଗଳାରେ ହାତ ଦେଲା ମହାବୀର ।
ବୋଲଇ ଇଷ୍ଟସ୍ୱରେ ଆଜ ନାଶଗଲୁ
ମରଣକାଳେ ମୋହର ଗ୍ରମୁରେ ପଡ଼ିଲୁ ।
ଏତେକହି କ୍ରୋଧ ହେଲା ପବନ ଯେ ସୁତ
ହୃଦରେ ତାହାର ମାରିଲା ବଜ୍ର ମୁଥ ।
ଦଇତର କପୋଳେ ମାରୁତି ନେଇମାରି
ତତକ୍ଷଣେ ଅନଳ ମୁଣ୍ଡରୁ ବାହାରି ।
ତେବେହେଁ ଦଇତ ଯେ ନଗଲା ପୁଣ ନାଶ
ମନରେ ବିସ୍ମରଇ ପବନର ଶିଷ ।
ବୋଲଇ ଅଜଟସ୍ୱ କୁମର ଘର୍ଷ ହୋଇ
ଯେତେହେଁ ମାଇଲେ ଏହୁ ତ ନ ମରଇ ।
ଏତେବୋଲି ପାବନ ମହାକ୍ରୋଧ ହେଲା
ତାର ବୃକ୍ଷରେ ବସି ହୃଦ ବିଦାରିଲା ।
ତତକ୍ଷଣେ ବାହାର କଲା ଅନ୍ତନାଡ଼
ଆପଣାର ଗଳାରେ ଲମ୍ବାଇଲା ବୀର
ଆକାଶରେ ଦେବେ ଯେ ସାଧୁ ସାଧୁ ଭଲେ
ଧନ୍ୟରେ ମାରୁତି କୁ ବୋଲିଣ ବୋଇଲେ ।
ମାରିଣ ମାରୁତି ଯେ ସାନନ୍ଦ ମନ ହୋଇ
ଅମୋହସେନ ଶର କରରେ ଘେନ ଗଲ ।
ରାକ୍ଷସ ସଇନ ଦେଖିଣ ପାବନ
ଯୋଡ଼ାଇ ମାରଇ ଯେ ଶକ୍ରୁ ଶବ ଘେନ ।
ପୁଣି ଧାଇଁଯାଇ ଗଜନ୍ତ ଧରଇ
ରଥମାନଙ୍କ ଉପରେ ନେଇଣ କଚାଡ଼ଇ ।

ଖଣ୍ଡ ଖଣ୍ଡ ହୋଇ ରଥ ଭଙ୍ଗିଯାଏ ପଟ୍ଟ
ରଥି ସାରଥିକ ଧରି କଚାଡ଼ଇ ସେହୁ ।
ଏମନ୍ତକ ଯୁଦ୍ଧ ସେ କଲାକ ଅପାର
ପାଞ୍ଚକୋଟି ରାକ୍ଷସ ମାରେ ପବନ କୁମର ।
ଦେଖି ଅସୁର ଯେ ଘୋଟିଲେ ରକ୍ଷସୈନ୍ୟ
ଘୋରନାଦ କରି ମାଇଲେ ଲଫି ପୁଣ ।
ଦେନଖଣ୍ଡ କରିଣ କପିଙ୍କି ବାନ୍ଧନ୍ତି ଟାଣି
ତାହାକୁ ଧରିଣ ସେ ଛନ୍ତିତ୍ୟନ୍ତ ପୁଣି ।
ଏମନ୍ତ ସମର ଯେ କରନ୍ତି ନିଶାଚରେ
ସମରେ ପଡ଼ିଲେ ଯେ ଅନେକ ବାନରେ ।
ଏମନ୍ତ ଦେଖି ଧାଇଁଲେ କଞ୍ଚଣ କାଳମୁଖ
ସୁଗ୍ରୀବ ସଙ୍ଗସ୍ତ ସତବାଳ ବଳମୁଖ ।
ରାକ୍ଷସ ସୈନ୍ୟକୁ ମାରନ୍ତି ଯୋଡ଼ାଇ
କେତୁ ଧାଇଁ ତାହାର ବାଳ ଯେ ଧରଇ ।
ତଣ ପାଞ୍ଚମେଳ ହୋଇ ବେଢ଼ନ୍ତି ପୁଣ ଯାଇ
ଡେଣା ଧରି ଉଡ଼ନ୍ତେ ସେଠାରେ ମରଇ ।
ଏମନ୍ତେ ଅନେକ ଯୁଦ୍ଧ କରନ୍ତି ରକ୍ଷ ସୈନ୍ୟ
ଧରିଣ କଚାଡ଼ନ୍ତି ଅଶ୍ୱ ଗଜମାନ ।
ରଥି ସାରଥିଙ୍କି ବେଢ଼ିଣ ମାରନ୍ତି ଯାଇ
ଖଣ୍ଡ ଖଣ୍ଡ କରିଣ ରଥ ଭଙ୍ଗିଣ ପକାଇ ।
ଏମନ୍ତେ ସମର କରନ୍ତି ବାନର ଦଳ
ଅନେକ ରାକ୍ଷସ ଯେ ପଡ଼ିଲେ ଯୁଦ୍ଧର ।
ଶନ୍ଧାଜତ କୁଟିଲେ ଯୁଦ୍ଧ କରନ୍ତି ନିଶାଚରେ
ଗୁଣରେ ବସାଇଲେ ଶଙ୍କତା ନାମେ ଶରେ ।
ମନ୍ତ୍ର ଆଧାନ କରି ଶରକୁ ତିଆରି
ସଉମିତ୍ରୀ ଉପରକୁ ବିନ୍ଧେ ରେରେକାରକରି
ଚଳଇ ନାରାଚ ଯେ ଗର୍ଜ୍ଜନ କରିଣ
ଘୋଟି ଆସଇ ସେ ଗଗନ ମାର୍ଗେଣ ।
ଦୂରରୁ ତାହା ଯେ ଦେଖିଲେ ସଉମିତ୍ରୀ
ବଜ୍ରଶର ନେଇଣ ଗୁଣରେ ବସାନ୍ତି ।
ମନ୍ତ୍ର ଆଧାନ କରି ଦେଲେ ବେଗେ ଗୁଢ଼
ବାଣ ଗମିଯାନ୍ତେ ଶୁଭେ ଘଡ଼ଘଡ଼ ।
ଘୋଟିଲା ନାରାଚ ଯେ ଆକାଶ ମଣ୍ଡଳ
ଅନ୍ତରୀକ୍ଷେ ଉଡ଼ିଲେ ସବୁ ପକ୍ଷମାଳ ।
ଦେଖିଣ ଶନ୍ଧାଜତ ଯେ ମହା କ୍ରୋଧକରି
ସଉମିତ୍ରୀ ଉପରକୁ ବିନ୍ଧେ ଶସ୍ତ୍ର ଧରି ।

ଅନର୍ଘ୍ୟାସ୍ତ୍ର ଶର ଯେ ହାଣେ ବେଳୁବେଳ
ଯେ ଜନ୍ମପାଶର ଅବା ସମର ତାଙ୍କର ।
ଦେଖିଣ ପ୍ରହସ୍ତର କରନ୍ତି ଲକ୍ଷ୍ମଣ
ବେଳକୁବେଳ ସମର ହରେ ଦୈତ୍ୟ ପୁଣ ।
ଅନର୍ଘ୍ୟାସ୍ତ୍ର ଶର ଯେ ନ ସହନ୍ତି କ୍ଷଣେ
ନିଶଙ୍କା ସୁତ ସଙ୍ଗେ ଜମ୍ବେବ ଯୁଝେ ତେତେଣେ
ତାହାଙ୍କର ସମର ଯେ ଜାଣଣା ନ ଯାଇ
ନିରୁପକ୍ଷ ହୋଇଣ ଯେ ସମର କରଇ ।
ବଡ଼ାଇ ପ୍ରତାପୀ ସେ ଅଟେ ମହାବଳ
ଅନର୍ଘ୍ୟାସ୍ତ୍ର ଶର ଯେ ହାଣେ କୋପକର ।
ଦେଖିଣ ଋକ୍ଷକପି କେଶରୀ ଧାଇଁଲେ
ଗିରିବର ପରାଏ ସେ ବୃକ୍ଷକୁ ଧଇଲେ ।
ନେଇଣ ପିଟିଲେ ସେ ନିଶଙ୍କାସୁର ଯାନ
ଦେଖିଣ ପ୍ରଜ୍ୱଳିତ ହୋଇଲା ଦୈତ୍ୟ ପୁଣ ।
କରରେ ଘେନିଲା ସେ ଡାକିଲା ନାମେ ଶର
ଧନୁର୍ବେଦ ସୁମରି ବନ୍ଧିଲା ତତପର ।
ଚଳିଲା ନାରାଚ ଯେ ଘୋରନାଦ କରି
ଦେଖିଣ ଜମ୍ବେବ ତା ଦୂରରୁ ନିବାରି ।
କେଶରୀ ସାରୁ ଥିଲା ଜମ୍ବେବର ଜନ୍ତ
ଦେଖିକରି ସାରୁ ଯେ ଧାଇଁଲା ତଣ୍ଡନ୍ତ ।
କରରେ ଘେନିଲା ଯେ ଏକାଇ ଗିରିବର
ନେଇଣ ପିଟିଲା ନିଶଙ୍କା ଯାନ ପର ।
ଜାଣିଣ ଯାନ ତାର ଶତେ ଖଣ୍ଡ ହୋଇଗଲା
ଜମ୍ବେବ ଯାଇ ସାରଥି ହାକ ଯେ ଧରିଲା ।
ରଥ ଉପରୁ ତାକୁ ଆଣିଲାକ ଧରି
କ୍ରୋଧଭରି ଜମ୍ବେବ ଭୂମିରେ କଚାଡ଼ି ।
ନିଶଙ୍କାସୁରର ରଥ ସଙ୍ଗେ ସେ ଭାଙ୍ଗିଗଲା
ଦୁଇଗଦା ଘେନିଣ ସେ ଡେଇଁଣ ପଡ଼ିଲା ।
ନେଇଣ ପକାଇଲା ସେ କେଶରୀ ଉପରେ
ଦେଖିଣ କେଶରୀ ଯେ ଘାତେ ନେଇ ଶିରେ
ହାଜଣ ଗଦାବର ହୋଇଲାକ ଧୂଳି
ଦେଖିଣ ଜମ୍ବେବ ଯେ ହେଲା ପରଜ୍ୱଳି ।
ଯେବଣ ବୃକ୍ଷକୁ ସେ ଘେନିଥିଲା କରେ
ନେଇଣ ପିଟିଲା ସେ ନିଶଙ୍କା ଉପରେ ।
ପୁଣି ହଲଇ ଯେ ମୁଣ୍ଡ ମାରେ ଘେନ
କ୍ରୋଧରେ ଜମ୍ବେବକୁ ମାରଇ ନେଇ ପୁଣି ।

ଦେଖି ଜମ୍ବେବ ଉପରେ ଡେଇଁଗଲା
ଗ୍ରାସପ ଚରଣ ଯାଇଣ ଧରିଲା ।
ଆଉକ ଚରଣ ଧରିବାକୁ କଲା ମନ
ଦୁଇଚରଣ ଧରନ୍ତେ କେଶରୀ ମିଳ ପୁଣ ।
କେଶରୀ ଜମ୍ବେକ ଦୁଇ ଚରଣ ଧରି ଭିଡ଼ି
କେନଫାଳ ହୋଇଲା ମଧ୍ୟରୁ ଚିହାରି ।
ଦୁଇଖଣ୍ଡ ହୋଇଣ ପଡ଼ିଲା ନିଶାରେ
ପିଣ୍ଡରୁ ପବନ ତାର ଗଲା ଧାଇଁକାରେ ।
ଦେଖିଣ ଜମ୍ବେବ ଯେ କେଶରୀ ସାନନ୍ଦ
ଆକାଶରେ ଆନନ୍ଦିତ ହେଲେ ଦେବବୃନ୍ଦ ।
ବୋଲନ୍ତି ଶଙ୍ଖାକଟକୁ ଶର ବେଗେ ମରୁ
ସହସ୍ରାନନ ନିଧନରେ ଆମ୍ଭର କଷ୍ଟ ଯରୁ ।
ଏତେ ବୋଲି ସ୍ତୁତି ଯେ କରନ୍ତି ଦେବଗଣ
ରଘୁନାଥଙ୍କର ଯେ ଶ୍ରୀମୁଖ ବର୍ଣ୍ଣିଣ ।
ଜୟ ଜୟ ରଘୁନାଥ ଦଶରଥଙ୍କ ନନ୍ଦନ
ସକଳ ଦୈତ୍ୟଙ୍କୁ ତୁମ୍ଭେ କଲ ହେ ନିଧନ ।
ଦେବଙ୍କ ଦୁଃଖ ଦେଖି ମର୍ତ୍ତ୍ୟେ ଜାତ ହେଲ
ଯାଗରକ୍ଷି ପଶୁ'ଧ୍ୱମ ଦର୍ପକୁ ଭାଙ୍ଗିଲ ।
ପିତା ସତ୍ୟ ପାଳଣ ବନରେ ନେଇ ଉନ
ଜାନକୀର ଛଳେ ଏବେ ମାଇଲ ରାବଣ ।
ହତ୍ୟାଶଣ ଶରଣ ରଖିଲ ଦେବ ତୁମ୍ଭ
ଭକତ ଛଳରେ ଯେ ଅଛ ରିପୁ ଦମ୍ଭ ।
ସହସ୍ରାନନ ଏବେ ଦେବଗଣର ମାରି
ଦୁଷ୍ଟ ରାବଣ ମଲେ ପୃଥ୍ୱୀରୁ ଯିବ ସଲ ।
ଏମନ୍ତ ବୋଲିଣ ଦେବେ କହନ୍ତି କରଯୋଡ଼ି
ଅନେକ ସ୍ତୁତି କରନ୍ତି ଶ୍ରୀରାମ ନାମ ଧରି ।
ଏମନ୍ତ ବଚନ କହୁଲେ ତ୍ରିଶୂଳି
ପୁଣି ପଚାରନ୍ତି ଦେବୀ ଶାକମ୍ଭରୀ ।
ଶୁଣ ମୋହଠାରୁ ହେ ଦେବ ତ୍ରିଲୋଚନ
ସହସ୍ରଗ୍ରୀବର ମଲେ ଅନେକ ଥାଟ ପୁଣ ।
କୁମାରମାନଙ୍କର ନିଧନ ଦେଖି ସେହି
କାହିଁ ସମର ନ କରି ରହିଛ ଚୁନହୋଇ ।
ଏହା ସମ୍ପ୍ରତି ମୋତେ କହ ହେ ସଦାଶିବ
ତୁମ୍ଭ ମୁଖରୁ ଶୁଣିଲେ ସଂଶୟ ଫିଟିବ ।
ଏମନ୍ତ ବଚନ ଯହୁଁ କହୁଲେ ଶାକମ୍ଭରୀ
ଶୁଣିକରି କହନ୍ତି ଦେବ ତ୍ରିପୁରାରି ।

କୁମ୍ଭେ ଯାହା ଗର୍ବିଲ ଶୁଣ ହେମବନ୍ତୀ
ସହସ୍ରମାଥ ଥିଲ ଯେ ଯୁଦ୍ଧଭୂମିର ଅନ୍ତ ।
ଅମୋହସେନ ନିଧନକୁ ତାର କୁମ୍ଭେ ନାହିଁ
ନିଶଙ୍କା କୁମରଠାରେ ଅଛୁ ମନଦେଇ ।
ଯହୁଁ ଦେଖିଲ ନିଶଙ୍କାସୁରର ନିଧନ
ମହାକ୍ରୋଧରେ ସେ ଯେ କରଇ ଗର୍ଜନ ।
ପୁଣିହିଁ ସୈନ୍ୟଙ୍କୁ ଅନାଇଣ ଦେଇ
ରଣଭୂମିରେ ପଡ଼ିଛୁ ଅମୋହସେନ ଯାଇ ।
ତାର କୁଳେ ପଡ଼ିଲେ ଅନେକ ନିଶାଚର
ପାଞ୍ଚଲକ୍ଷ ନାତି ତାର ଲକ୍ଷେ ଯେ କୁମର
ଅନେକ ହାସ୍ତି ରଥ ପଡ଼ିଲେଣି ତହିଁ
ପୁଣି ହନୁମନ୍ତ ଚେଣେ ମାରଇ ଗୋଡ଼ାଇ ।
ତଜ୍ଜଦରେ ପୂରେ ବାନର ସଇନି
ଅନେକ ରଥ ଯେ ପୂରଣ ଅଛୁ ପୁଣି ।
ଦେଖିଣ ସହସ୍ରମାଥ ବୋଲେ ମୁଁ କସ କଲି
ଅଖଣ୍ଡରେ ସବୁ ପୁତ୍ର ନାତି ମରାଇଲି ।
ଜୁଆଇଁ ଶଳା ଶ୍ୱଶୁର ବନ୍ଧୁ ଇଷ୍ଟ ମଲେ
ରହସ୍ୟ ଦେଖିବାରେ ସମସ୍ତ ନାଶଗଲେ ।
ଏତେବୋଲିକ୍ରୋଧ ଯେ ହୋଏ ସହସ୍ରଗ୍ରୀବ
ଘନ ଘନ କରଯେ ନିଃଶ୍ୱାସ ଛାଡ଼େ ବେଗ ।
ବେକ ସହସ୍ର ପୁଡ଼ାରେ ବହଇ ପବନ
ନିଷ୍ଟଳରେ ଉଡ଼ୁଛନ୍ତି ବାନରବଳ ସୈନ୍ୟ ।
ଯେଉଁ ମହୌଷଧି ଅଛି ଥୋଇଲେକ ପୁଣି
ସେହୁ ମହୌଷଧିରେ ଶରୀର ଗଢୁ ଜାଣି ।
ଦେଖିଣରଘୁନାଥଯେ କ୍ରୋଧରେବୋଲନ୍ତିପୁଣ
ଶତ୍ରୁଘନକୁ ଚାହିଁଣ ବୋଲନ୍ତି ବଚନ ।
ଶୁଣରେ ସାନୁଜ ତୁହି କି କରି ମାରିବା
ସହସ୍ରମାଥର କୁଳେ କେମନ୍ତ ଯୁଝିବା ।
ବଡ଼ାଇ ପ୍ରତାପୀ ଯେ ଅଟଇ ବୈଚିତ୍ର୍ୟସ୍ୱଣ
ଅନେକ ଯୁଦ୍ଧ ଅଜ କରିବ ବଡ଼ ଟାଣ ।
ତାର କୁଳେ ସମର କରିବା କେଉଁ ବାଟେ
ଋକ୍ଷବାନର ତାକୁ ନ ଆହାରିବେ ଯେବେ ।
ଶୁଣିଣ ଶତ୍ରୁଘନ ବୋଲେ ଦେବ ଶୁଣ
ଶର ବାଡ଼ କରିବନ୍ଧ ସହସ୍ରମାଥକୁ ପୁଣ ।
ଶ୍ରୀରାମ ବୋଇଲେ ଯେବେ କରିବା ଶର ବାଡ଼
ସୈନ୍ୟ ଭାଙ୍ଗିଣିକ କୁଳ ନ ରହିବ ସେକାଳ

ଏମନ୍ତ ଶୁଣିଣ ଯେ ବୋଲେ ଶତ୍ରୁଘନ
କିଛି ନ ଡରିବ ହେ ଜାନକୀ ରମଣ ।
ଘୋର ଅସୁରକୁ କିମ୍ପା କରିଅଛ ଭୟେ
ସମର କେମନ୍ତେ ଛାଡ଼ିବା ହେ ଶ୍ରୀରାମ ରାଏ ।
ଲକ୍ଷେ ନାତି ବୋଡ଼ଏ ସହସ୍ର ନନ୍ଦନ
ଲକ୍ଷେ ଜୁଆଇଁଛନ୍ତି ଲକ୍ଷେ ଶଳାଙ୍କ ଗଣ ।
ସହସ୍ରେ ମଥାର ଯେ ଏତେକ ବଳ ଛନ୍ତି
ଏକାଥରକରେ ସମସ୍ତେ ମରିବେ ରଘୁପତି
ବେଢ଼ିକରି ସମସ୍ତ ମରିବା ସହସ୍ରାନନ
କିମ୍ପାଇଁ ମନରେ ଧୋକା କରିଣ ଶ୍ରୀରାମ ।
ଆଉ କେବଳ ଏକା ସହସ୍ରାନନ ଅଛି
ଲକ୍ଷ୍ମଣ ସଙ୍ଗେ ଯୁଝିଇ ଗୁପାନିସୁର ବସ୍ତି ।
ଏମାନେ ନାଶଗଲେ ସବୁରି ସଲ ସର
ଏହି ଘୋର କଥାକୁ ଦେବ ମନରେ ତୁମ୍ଭେ ଗଳ
ଏମନ୍ତ ବଚନ ଯହୁଁ ଶତ୍ରୁଘନ କହି
ସନ୍ତୋଷ ହୋଇଲେ ଯେ ରଘୁକୁଳ ସାଇଁ ।
ମଧ୍ୟରେ ରହିଲେ ଯେ ଶ୍ରୀରାମ ସହସ୍ରାନନ
ଶତ୍ରୁଜିତ ଆଦିକରି ଆଦର ଲକ୍ଷ୍ମଣ ।
ନର ବାନର ଭାଲୁ ଯେ ଅଛନ୍ତି ଅପାର
ହାସ୍ତି ରଥ ଆଦିକରି ଅନେକ ନିଶାଚର ।
ଲକ୍ଷେକ ନୃପତି ଯେ ଅଛନ୍ତି ବଳେକରି
ଗୁହନାମେ ଶବର କେମପାଦ ଆଦିକରି ।
ସୁଗ୍ରୀବ ବିଭୀଷଣ ଯୂଥପତି ସେନାପତି
ଏମନ୍ତେ ସର୍ବସୈନ୍ୟ ବେଢ଼ିଣ ଅଛନ୍ତି ।
ଦେଖିକରି ସେ ଯେ ଦଶାଖାର ବଳ
ମହାକ୍ରୋଧ ହୋଇଣ ସେ ଯୁଦ୍ଧରେ ପଶିଲ ।
କରରେ ଧଇଲ ସେ ଅଇଷ ଧନୁଶର
ଅନର୍ଘ୍ୟାସ୍ତ୍ର ଶରବନ୍ଧେ ବଣାଖ କୁମର ।
ପୁଣି କ୍ରୋଧରେ ବାଣ ବନ୍ଧେ ବୈଚିତ୍ର୍ୟସ୍ୱଣ
ଛୁଦ୍ରଶର ନେଇଣ ବସାଇଲ ଗୁଣ ।
ମନ୍ତ୍ର ଆଧାନ କରିଣ ଯେ ଶରକୁ ତିଆରି
ବୋଲଇ ତୋତେ ଦେଉଛନ୍ତି ଯେ ତ୍ରିପୁରାରି
ତୁହି ହେ ଶର ରାଜା ଚଳଯା ବହନ
ନାଶକର ଜନ୍ମେବ କେଶବକ ପୁଣ ।
ତାହାଙ୍କ ନାମ ଗଲେ ସରଇ ଶ୍ରୀରାମଦଣ୍ଡପଣ
ତାଙ୍କୁ ମାରିଯିବ ପୁଣ କଷ୍ଟ ପାଶୋରିଣ ।

ଏତେବୋଲି ଶରକୁ ଉଆରି ଗୁଡ଼ିଦେଲା
ଆକର୍ଣ୍ଣ ପରିଯନ୍ତେ ଓଟାରି ବିନ୍ଧିଲା ।
ଚଳଇ ନାରାଚ ଯେ ପବନ ଗତି ଜାଣି
ଜମ୍ବେବର ଶିର ଯେ ପକାଇଲେ ହାଣି ।
ଦେଖିଣ ପଳାଇ ଯେ କେଶରୀ ବେଗେ ଗଲା
ଶ୍ରୀରାମ ପଛରେ ଯାଇ ଲୁଚିଣ ରହିଲା ।
ଦେଖିଣ ଶ୍ରୀରାମ ଯେ ପ୍ରଚଣ୍ଡଶର କରି
କ୍ରୋଧଭରେ ଶ୍ରୀରାମ ଯେ ଶରକୁ ଉଆରି ।
ଏମନ୍ତ ବେକୁଟବଳ ହେଲା ଘୋର ରଣ
ଭୁବନର ନାଥ ସେ ଯେ ମେରୁ ଓହାଡ଼େଣ ।
ଦିବସ ଯାଇଣ ସେ ଯେ ହୋଇଲକ ରତି
ଗଗନରେ ଉଦୟ ଯେ ହୋଇଲେ ନିଶାପତି
ଚନ୍ଦ୍ରଙ୍କର କିରଣରେ ଦିଶଇ ନିର୍ମଳ
ସମର କରଇ ଯେ ବିଶାଖା କୁମର ।
ସମର ଭୂମିରେ ଯେ ଲଗାଲଗି ହୋଇ
ଋକ୍ଷ ରାକ୍ଷସ ସୈନ୍ୟ ଯୁଝନ୍ତି ଜୁହାଇ ।
ଅନର୍ଯ୍ୟାତ୍ର ଶର ଯେ ମାରନ୍ତି ଅନେକ
ଦେଖିଣ ଆକାଶରେ ଭୟେ ବଳେ ସୁରଲୋକ
ଏମନ୍ତ ପଦ୍ମଜ ଯେ କରେ ସହସ୍ରାନନ
ଆଜ ନିଶ୍ଚୟ ତୋର ଗଲକ ଜୀବନ ।
କିମ୍ପାଇଁ ସମରକୁ ଅଇଲୁ ବୁରେ ବାନ୍ଧି
ସହସ୍ରାନନ ବୋଲେମୋତେନଜାଣୁକରେବୁଦ୍ଧି
ଏବେ ନିଶ୍ଚୟ ପୂରିଲା ତୋର କାଳ
ଏତେବୋଲି ଦୈତ୍ୟ ଯେ ହେଲା ଅନ୍ତରାଳ ।
ଦେଖିଣ ଶତ୍ରୁଘନ ମନରେ କ୍ରୋଧହୋଇ
ମନଭେଦ ଶରକୁ ଗୁଣରେ ବସାଇ ।
ଆକର୍ଣ୍ଣ ପରିଯନ୍ତେ ଓଟାରି ଆଣିଲା
ଶନ ଜୁଆଇଁ ଶାଳକଗଣ ଯେ ମାଇଲା ।
ଏକା ମନଭେଦକୁ ହେଲା ଅନେକ ଶର
ସାତଲକ୍ଷ ଶାଳକ ଛେଦିଲେ ତତକାଳ ।
ଲକ୍ଷେ ସେନାପତି ଲକ୍ଷେ ଜୁଆଇଁ ମାରି
ଦେହ ଦେହ ଖଣ୍ଡିକରି ଅଇଲା ଯେ ଫେରି ।
କୋଡ଼ିଏ ସହସ୍ର ଯେ ନନ୍ଦନ ତାର ଥିଲେ
ଭରତ ସଙ୍ଗରେ ସେ ନଶାଇ ଯୁଝିଲେ ।
ଦେଖିଣ ଭରତ କରେ ବଜ୍ର ବାଟୁଳ ଧରି
ମନ୍ତ୍ର ସୁମରି ସିରମାରେ ଟାଣକରି ।

ସମସ୍ତ କପାଳରେ ବାଟୁଳ ଜଣ୍ଡିଲା
କୋଡ଼ିଏ ସହସ୍ର ନନ୍ଦନ ଭୂମିରେ ଲୋଟାଇଲା
ନଉକୋଟି ତାହାର ଯେ ଅଛନ୍ତି ସେନାପତି
ବାଉନକୋଟି ଏଥିରୁ ନାଶ ଯାଉଛନ୍ତି ।
ବାକି ଅଠତିରିଶ କୋଟି ସେଥିରେ ଥିଲେ
ଲକ୍ଷେ ରାଜା ସଙ୍ଗରେ ଜୁହାଇ ଯୁଦ୍ଧ କଲେ ।
ଧନୁଶର ଧରି ରାଜା କରନ୍ତି ଯୁଦ୍ଧ ଟାଣ
କେଉଁ ଶତେ କେଉଁ ସହସ୍ରେ ହାଣେ ପୁଣ ।
କେଉଁ ପାଞ୍ଚସହସ୍ର କେଉଁ ସାତସହସ୍ର ହାଣି
ଗୁହନାମେ ଶବର ଯେ ବିନ୍ଧେ ଶର ଟାଣି ।
ଲକ୍ଷେକ କନ୍ଧ ଲକ୍ଷେ ଶବର ଯେ ଥିଲେ
ଅକାଟ ଶସ୍ତ୍ର ତାଙ୍କର ଯେ ଭଲେ ।
କୋଟିଏ ସେନାପତି ପକାଇଲେ ହାଣି
ରକତ ପିଶକାରେ ରଙ୍ଗବର୍ଣ୍ଣ ପୂଣି ।
ଲୋମପାଦ ରାଜା ଶତେ କୁମର ସଙ୍ଗେ ଘେନ
କୋଟି କୋଟି କବନ୍ଧ ନାଶିଲେ ସେଥି ପୁଣି
ପାଞ୍ଚକୋଟି ସେନାପତି ସେଠରୁ ପଳାଇଲେ
ଘୋଡ଼ା ସାରେଣି ମୁକୁଳା ବୁଲିଲେ ।
କେତେ ନଦୀରେ ମଡ଼ା ଯେ ଯାନ୍ତି ଭାସି
ସୁବଳସ୍ତା ଗିରରୁ ଯୋଗ୍ନୀବଳ ଆସି ।
ବାସେଳୀ କାଳିକା ଅଛନ୍ତି ସଙ୍ଗତରେ
ଯୋଗ୍ନୀ ପିଶାଚଗଣ ପଶିଲେ ରଣରେ ।
ରକତ ମାଂସ ଖାଇଣ କରନ୍ତି ନାନା ଲୀଳା
ଯେତେ ଦୈତ୍ୟମଲେ ତାଙ୍କୁ ଭସ୍ମକଲେଜନ ।
ନର ବାନର ଶବ ଗୁଡ଼ିଣ ଦେଖା ପୁଣ
ଅସୁରଙ୍କର ଶବ ଭକ୍ଷି କରନ୍ତି ଭସ୍ମ ଜାଣ ।
ଏଥୁଅନନ୍ତରେ ଭଗବତୀ ଶୁଣ
ଶତ୍ରୁଘ୍ନ ଦେଖିଲା ଯୁଦ୍ଧ ଆରମ୍ଭ ପୁଣ ।
ବିଶାଖା କୁମରକୁ ଦେଖିଲା ଶତ୍ରୁଘନ
ଗୁଣରେ ବସାଇଲା ଚଣ୍ଡକ ସସ୍ତ୍ର ପୁଣ ।
ଆକର୍ଣ୍ଣ ପରିଯନ୍ତେ ଓଟାରି ବିନ୍ଧିଲା
ସହସ୍ରାନନର ବାହୁ ଛେଦରେ ବୋଇଲା ।
ତତକ୍ଷଣେ ଚଣ୍ଡକ ଗର୍ଜନ ନାଦ କରି
ଯେସନକ ଚଳଇ ଝଟକ ବିଜୁଳି ।
ଦେଖିଣ ସହସ୍ରାନନ ପ୍ରଚଣ୍ଡଶର କଲା
ତେବେହେଁ ଚଣ୍ଡକୁ ନିବାରି ନ ପାରିଲା ।

ପଡ଼ନ୍ତେ ଦୁଇ ସହସ୍ର ବାହୁ ଛିଡ଼ିଗଲା
ସହସ୍ରେ ଧନୁ ତାଳ ତଳରେ ପଡ଼ିଲା ।
ଦେଖିଣ ସହସ୍ରମାଥ ବୃଦ୍ଧିଲା ତତ୍ପଟି
ଦୁଇସହସ୍ର ବାହୁ ଯେ ଲଗିଲା ପାଲଟି ।
ଦେଖିଣ ଶତ୍ରୁଘନ ବଜ୍ରସ୍ତ୍ର ମାରି
ସହସ୍ରେକ ମୁଣ୍ଡ ତାର ଛିଡ଼ିଗଲା ସଡ଼ ।
ସହସ୍ରେକ ମୁଣ୍ଡ ଯାଇ ଲଙ୍କରେ ଲାଗିଲା
ଦେଖିଣ ଶତ୍ରୁଘନ ମନରେ କ୍ରୋଧ ହେଲା ।
ପୁଣି ମନଭେଦ ଶରକୁ ବସାଇଲା
ପ୍ରଚଣ୍ଡ ବଳ ଛେଦ ବୋଲିଣ ବୋଇଲା ।
ମନ୍ତ୍ର ବେଗେ ଶର ଯେ ଚଳେ ଘନଘନ
ଦେଖିଣ ପ୍ରତିଶର କରେ ସହସ୍ରାନନ ।
ଦୈତ୍ୟର ପ୍ରତିଶର ନମାନ ସେହୁ ଗଲା
ପଞ୍ଚଲକ୍ଷ ସାଗର ପ୍ରକାଣ୍ଡ ଛେଦିଲା ।
ଦେଖିଣ ଭୃତ ସ୍ୱର କ୍ରୋଧରେ ଗରଜଇ
ବଜ୍ର ବାଟୁଳିକ ତତ୍କ୍ଷଣେ ବିନ୍ଧଇ ।
ବାରିଖଣ୍ଡ ରଥ ଯେ କଲା ସେହୁ ନାଶ
ବନ୍ଧିଲା ରଜତ ନଷ୍ଟ ହୋଇଣ ବିଶେଷ ।
ରଥର ଚକ୍ର ଯେ ବୁଡ଼ିଣ ଖଲିଯାଇ
ମୋହିତରେ ମଣ୍ଡାମାନେ ହସିଗଲେ ତହିଁ ।
ଖେଚର ଚଣ୍ଡୀଗୁମଣ୍ଡା ଯୋଗିନୀ ଯେ ପିଶୁଣୀ
ଏମାନେ ନାଚୁଛନ୍ତି ରକ୍ତନଦୀରେ ପୁଣି ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ଦେଖିଣ ବିସ୍ମୟ କଲେ ସହସ୍ରାନନ ।
ଈଶ୍ୱର ବୋଇଲେ ଯେ ସୁରଦଳକୁ ଚାହିଁ
ଦେଖିଲା ପୃଥିନାଥ ସୈନ୍ୟ ମଲେ ତହିଁ ।
ରଥ ପ୍ରକାଣ୍ଡ ଯେ ସମସ୍ତ କ୍ଷୟ ଗଲେ
ଦେଖି ସହସ୍ରାନନ ମନରେ ବିସ୍ମରିଲେ ।
ସମସ୍ତେ କ୍ଷୟ ଗଲେ ମୋହର ବୁଦ୍ଧି ଛି
ସୁରଜନକ କେମନ୍ତେ ମାରିବ ଏଥିକୁ ।
ଲକ୍ଷେସରା ହନୁ ଅଙ୍ଗଦ ଯେବେ ମାରି
ସୁଗ୍ରୀ ବିଭୀଷଣକୁ ଯେବେ ମୁଁ ନବାରି ।
ନର ବାନର ମୁହିଁ ଯେବେ କରିବି ନାଶ
ଫେରିଯିବାକୁ ଯେବେ ନ ରହିବେ ଶେଷ ।
ତେବେ ମୋର ମନରେ ହୋଇବ ସନ୍ତୋଷ
ଶ୍ରୀରାମ ନାଶିକ ବସାଇ ନେଇ ଏହି ରଥ ।

ତାହାକୁ ନେଇ ଯେବେ ମୁଁ ଶ୍ରେଷ କରଇ
ବିରଞ୍ଚ ବାନା ଭଜନପୁରରେ ଉଡ଼ାଇବଇଁ ।
ଏମନ୍ତ ବିଚାରି ଯେ କରଇ ଗର୍ଜନ
କ୍ରୋଧରେ ଜର ଜର ବିଶାଖା ତନୁଜ ।
କାଳପକ୍ଷୀ ଶର ଯେ ଯୋକଲାଗ କରେ
ନେଇ ବସାଇଲା ଗୁଣର ଉପରେ ।
କର୍ଣ୍ଣ ପର୍ଯ୍ୟନ୍ତେ ଆଣିଲା ଟଙ୍କାରି
ଶ୍ରୀରାମ ଉପରକୁ ବିନ୍ଧଇ ମନ୍ତ୍ର ପଢ଼ି ।
ସ୍ୱର୍ଗ ମର୍ତ୍ତ୍ୟ ଧରି ଯେ ନାରାଚ ଚଳଇ
ଶର ଯାନ୍ତେ ଅଗ୍ନି ଯେ ବରଷା କରଇ ।
ଦେଖି ଶ୍ରୀରାମ ଯେ ପ୍ରତିଶର କରି
କକୁସ୍ଥ ନାରାଚ ଗୁଣେ ବସାଇ ଟଙ୍କାରି ।
ବୋଲନ୍ତି ଦୈତ୍ୟ ଶରାପକାଅ ବେଗେ ହାଣି
ତବନ୍ତରେ ସଇରେ ଚଳଯିବୁ ପୁଣି ।
ସମସ୍ତ ଛନ୍ଦ ତାର ପକାଇବୁ ହାଣି
ଏମନ୍ତ ଚିଆରି ପେଷିଲେ ରଘୁମଣି ।
ତତ୍କ୍ଷଣେ ନାରାଚ ବେଗେ ଚଳିଗଲା ।
ଦୈତ୍ୟର ଶର ସବୁ କାଟି ପକାଇଲା ।
ପୁଣି ବେନ ଲକ୍ଷ ଛନ୍ଦ ପ୍ରକାଏ ଯେ ହାଣି
ଖଣ୍ଡ ଖଣ୍ଡ ହୋଇଣ ସେ ପଡ଼ିଲା ଧରଣୀ ।
ଦେଖି ରାକ୍ଷସ ଯେ ଗର୍ଜିଣ ଉଠଇ
ସହସ୍ର ନାରାଚ ସେ ଧରିଣ ବରଷଇ ।
ଯେସନେ କକଡ଼ାମାସେ ବରଷଇ ଜଳ
ଶରକୁ ପେଷଇ ତେସନ ପ୍ରକାର ।
ଦେଖିକରି ରଘୁନାଥ ପ୍ରତିଶର କଲେ
ଆସନ୍ତେ ଅଧବାଟରୁ ନିବାରିଲେ ।
ପୁଣିହିଁ ରାକ୍ଷସ ହୋଇଣ ଚମନ
ତତକ୍ଷଣେ ବାଛି ବାଣ ବସାଇଲା ଗୁଣ ।
ମନ୍ତ୍ରକୁ ଅଧ୍ୟାୟନ କରି ବେଗେ ପେଷଇ
ଶ୍ରୀରାମର ଜୀବନ ବୁ ଯେନ ହୋ ବୋଲଇ ।
ଚଳଇ ନାରାଚ ଗଗନ ମାର୍ଗେଣ
ସମରଭୂମି ଘୋଟା କଲଇ ହୁତାସନ ।
ଦେଖିକରି ଶ୍ରୀରାମ ଯେ ପ୍ରତିଶର କଲେ
ଜଳଧାରା ଶରନେଇ ଗୁଣରେ ବସାଇଲେ ।
ଧନୁର୍ବେଦ ସୁମରି ଯେ ପେଷିଲେ ତତକ୍ଷଣ
ଘୋଟିଲା ନାରାଚ ଯେ ଗଗନ ମାର୍ଗେଣ ।

ସମରଭୂମିଯାକ ଭେଟିଲା ବେଗେ ଯାଇ
ଅଗ୍ନିଶର ଉପରେ ଜଳ ବରଷଇ ।
ତକ୍ଷଣେ ଅଗ୍ନିଶର ଲଭି ଭସ୍ମ ହେଲା
ଦେଖିଣ କ୍ରୋଧ କରଇ ନିଶାଚର ବଳା ।
ପୁଣିହିଁ ମେଘାଶର ଗୁଣରେ ବସାଇ
ଶ୍ରୀରାମଙ୍କ ଉପରକୁ ବେଗେ ସେ ପେଷଇ ।
ଚଳଇ ଯେ ନାରାଚ ଗଗନ ମାର୍ଗରେ
ଘଡ଼ଘଡ଼ ଚଡ଼ଚଡ଼ ଶବଦ ଅତି ଘୋରେ ।
ଶର ଆସନ୍ତେ ଯେ ଶ୍ରୀରାମ ଦେଖିଲେ
ପବନା ଶର ନେଇ ଗୁଣରେ ବସାଇଲେ ।
ମନ୍ତ୍ର ଆଧାନ କରି ବେଗେ ବେଢେ଼ଲେ ଗୁଡ଼
ପବନର ଘାତେ ଯେ ମେଘ ଗଲେ ଉଡ଼ି ।
ଏମନ୍ତେ ଅନେକ ଯୁଦ୍ଧ କଲେ ନିଶାଚର
ଯେ କଲ୍ପପାରିବ ତାଙ୍କର ରଣ ଘୋର ।
ଅନର୍ଯ୍ୟାପ୍ତ ଶର କୁହାଇ ବିନ୍ଧଇ
ଦେଖିଣ ପ୍ରତିଶର କରନ୍ତି ରଘୁସାଇଁ ।
ଏହିରୂପେ ଯୁଦ୍ଧ ତିନିଦିନ ତିନିରାତି
ଶତ୍ରୁଜିତର କୁଟିଳ ଯୁଦ୍ଧନ୍ତି ସଉମିତ୍ରୀ ।
ଅନର୍ଯ୍ୟାପ୍ତ ଶର ଯୁଦ୍ଧ ଯେ କଳଣା ନ ଯାଇ
ଲକ୍ଷ୍ମଣ ପରେ ନାରାଚ ବଇଚ ପ୍ରେରଇ ।
ଏକାଥରକେ ବନ୍ଧେ ବେଣିଶତ ଯେ ନାରାଚ
ଦେଖିଣ ପ୍ରତିଶର କରନ୍ତି ସାନୁଜ ।
କୌଣସି ରୂପେ ଦୈତ୍ୟ ନ ପାରିଲା ଜିଣି
ମନରେ ବିଷାଦ ହୋଇ ଭାଳଇ ସେ ପୁଣି ।
ବୋଲେ ମାନବ ଦୁଇଙ୍କୁ ନ ପାରିଲି ଜିଣି
ତିନି ଦିବସ ତିନି ରାତି ଯୁଦ୍ଧକଲି ପୁଣି ।
ବୋଲଇ ଧନ୍ୟ ଏହାର ଜନମ ପିଅର
ସକଳ ଶର ଭଙ୍ଗି କଲା ନାରଖାର ।
ଏତେବୋଲି ମନରେ ବିଚାର କରେ ସେହି
ଅନର୍ଯ୍ୟାପ୍ତ ଶର ଯେ ବିନ୍ଧିଲେ ଶ୍ରୀରାମର ଭାଇ
ବାଣର ଗର୍ଜ୍ଜନରେ ସମୁଦ୍ର ଶୁଖିଯାଇ
ଶତ୍ରୁଜିତ ଯାନରେ ପଡେ଼ ବାଣ ଯାଇ ।
ଖଣ୍ଡ ଖଣ୍ଡ ହୋଇଣ ଯେ ରଥ ଭଙ୍ଗିଗଲା
ଦେଖିଣ ଦୈତ୍ୟମନେ ମହାକ୍ରୋଧ ହେଲା ।
ବଜ୍ରାଣ୍ଡିଣ କରେ ଯେ ଧଇଲା ଧନୁଶର
ଯାଇଣ ବସିଲା ଯେ ମତ୍ତଗଜ ପର ।
ସାରଥି ତାହାର ଯେ ରଥ ବାହୁଥିଲା
ରଥ ଭଙ୍ଗିଯାନ୍ତେ ତଳରେ ପଡ଼ିଲା ।
ମତ୍ତଗଜ ପରେ ଯେ ବସିଲା ନିଶାଚର
କରରେ ଧରିଛି ଯେ ତାହାର ଧନୁଶର ।
ସଉମିତ୍ରୀ ଉପରକୁ ନାରାଚ ପେଷିଲା
ଦେଖିଣ ପ୍ରତିଶର ଶ୍ରୀରାମ ଭାଇ କଲା ।
ଗନ୍ଧର୍ବା ଶର ଗୁଣରେ ବସାଇ ଲକ୍ଷ୍ମଣ
ଦୈତ୍ୟର ଉପରକୁ ବିନ୍ଧିଲେ ତକ୍ଷଣ ।
ପୁଣିହିଁ ବେଣିଶର ଗୁଣରେ ବସାଇ
ନାଗର ଉପରକୁ ବିନ୍ଧିଲେ କୁହାଇ ।
ଚଳନ୍ତେ ନାରାଚ ଶବଦ କଲା ଘୋର
ଯାଇଣ ପଡ଼ିଲା ହସ୍ତୀର କପୋଳ ।
ଶତ୍ରୁଜିତ ଉପରେ ଗନ୍ଧର୍ବ ଶର ପଡ଼ି
ସେହିକ୍ଷା ଫୁଟି ହୃଦରେ ପଡ଼ିଲା ରାବଣର ।
ଦେଖିଣ ଶତ୍ରୁଜିତ ହେଲା କୋପାନଳ
ହୃଦରେ ତାର ଯନ୍ତ୍ରଁ ଭେଦିଲାକ ଶର ।
ହସ୍ତୀର ଉପରୁ ସେ ପଡ଼ିଲାକ ତେଇଁ
ପାଦଗାମୀ ହୋଇଣ ଯେ ଗଲାକ ପଳାଇ ।
ଦେଖିଲା ପଳାଇଲେ ମାରିବ ଅବଶ୍ୟ
ସଙ୍କଟେ ପୂରିଛନ୍ତି ଶ୍ରୀରାମର ଥାଟ ।
ଦୈତ୍ୟବଳ ସମସ୍ତେ ହେଲେଣି ନିପାତ
ବୁଦ୍ଧି ନଷ୍ଟରେ ଏକାରେ ଗୁମାନସୁର ସୂତ
ତକ୍ଷଣେ ମାୟାକଲା ସେହୁ ଆଣି
ମାୟାକର ପାତାଳକୁ ହରିନେଲା ପୁଣି ।
ଲକ୍ଷ୍ମଣ ନ ଜାଣନ୍ତି ପାତାଳ ବୋଲିଣ
ଦୈତ୍ୟର ପଛରେ ଗୋଡ଼ାଇଛନ୍ତି ପୁଣ ।
ଘୋର ଯୁଦ୍ଧ ଆରମ୍ଭ କଲେକ ଯହିଁ ତହିଁ
ଆପଣାର ଯାନକୁ ମନରେ ସୁମରଇ ।
ତତକ୍ଷଣେ ରଥ ଆସି ହେଲା ଉପଗତ
ଯାନରେ ବସିଲା ଯାଇ ଅସୁର ଶତ୍ରୁଜିତ ।
ତତକ୍ଷଣେ ଧନୁଶର ଧରି ନିଜ କରେ
ନାରାଚ ବରଷିଲା ସଉମିତ୍ରୀ ଉପରେ ।
ତାଳଧ୍ୱଜ ରଥରେ ବଢେ଼ ସେ ଲକ୍ଷ୍ମଣ
ଦେଖିଣ ପ୍ରତିଶର ସେହୁ କରନ୍ତି ପୁଣ ।
ଏମନ୍ତେ ଅନେକ ଯୁଦ୍ଧ ହୋଇଲାକ ତହିଁ
ଅନେକ ଶର ଯେ କୁହାଇ ବିନ୍ଧଇ ।

ଏମନ୍ତେ ଯେ ଘୋର ଯୁଦ୍ଧ ହେତୁହେଳହେଲ
ପୁଙ୍ଖଶର ଆସି ପଡ଼ୁଁ କର୍ମଳ ଝଷିଲ ।
ଦେବତାଙ୍କ ଆକାଶେ ଶୁଭେ ଶଙ୍ଖଧ୍ୱନ
ବାଜ ଦୁନ୍ଦୁଭି ଯେ ସ୍ୱନ ଭଲେ ପୁଣି ।
ଆକାଶରେ ଚାରଣ ମଙ୍ଗଳ ଭଣିଲେ
ପଡ଼ୁଁ ସେ ଝଳମଣି ଜଳସ୍ଥ ହୋଇଲେ ।
ତଭଣତ ଝଷିଲ ଯେ ଉମିର ଫୁଟିଣ
ରଘୁନାଥ ସଙ୍ଗେ ଯୁଦ୍ଧକଲେ ସହସ୍ରାନନ ।
ଅବଶ୍ରାମ ସମର ଯେ ଭରେ ଋଷ୍ଟାବର
ଯେତେବେଳେ ପୁତ୍ର ନାଶ ପଡ଼ିଲେ ଯୁଦ୍ଧର ।
କାହାକୁ ନ ବ୍ରହ୍ମିଣ ଭରଇ ସମର
ଭକଳୁ ବ୍ରହ୍ମିଣ ସେ ମନକୁ ଭଲ ସ୍ଥିର ।
ଦେଖିଲ୍ଲ ସକଳ ସୈନ୍ୟ ପୁତ୍ର ନାଶ ଭୁଲେ
ଘୋଟିଏ ନାହାନ୍ତ ଆଉ ତାହାର ସଙ୍ଗରେ ।
ଯେତେକ ସୈନ୍ୟଦଳ ଭଲୁଝଣ ଥିଲେ
ସହସ୍ରାନନକୁ ଗ୍ଲଡ଼ଣ ଗଡ଼ରୁ ପଳାଇଲେ ।
ସହସ୍ରାନନ ନାଶକୁ ନ ଦେଖିଣ ବ୍ରହ୍ମି
ଦେଉଁଆଡ଼େ ନ ଦେଖିଲ୍ଲ ତାହାର ଶକ୍ତର ।
ସମରେ ପଡ଼ିଛନ୍ତି ଦୁଇଲକ୍ଷ ଯେ ନନ୍ଦନ
ବଣଲକ୍ଷ ନାଶ ଯେ ପଡ଼ିଛନ୍ତି ପୁଣ ।
ସତ୍ତାଇଶ ଲକ୍ଷ ଶାଳକ ବାରଲକ୍ଷ ଜୁଆଁ
ସବୁରିକୋଟି ସେନାପତି ରଥ ହସ୍ତୀ ଗର୍ଭ ।
ଏମନ୍ତ ଦେଖି ସହସ୍ରମାଥ ସମର ତେଜଇ
ଶତ୍ରୁଶଳ ନାଶକୁ ଯୋଜବାରେ ସେ ଲାଗିଲ
ସମରଭୂମି ସେ ଯେ ଖୋଜଇ ନଦେଖ
ଯୁଦ୍ଧରେ ପଡ଼ିଲ୍ଲ ବୋଲ୍ଲି ଦେଖେ ତୋଳ ।
ଦେଖି ସହସ୍ରାନନ ଯେ ଚଞ୍ଚଳ ହୋଇଲ
କେତେଣେଗଲ ବୋଲିଣ ମନରେ ଚିନ୍ତିଲ ।
ଶ୍ରୀରାମ ସହସ୍ରାନନ ଦୁଇରେ ଯୁଝୁଥିଲ
ସମର ତେଜନ୍ତେ ଦୈତ୍ୟ ଅଲଗା ହୋଇଲ
ନର ବାନରଙ୍କୁ ସେ ନଦେଖି ସ୍ୱହାନ୍ତ
ସମସ୍ତେ ଅଛନ୍ତି ସେ ନଯୁବେ ଦେଖନ୍ତ ।
ସବୁରି ଖଣ୍ଡ ବାନର ବଣଶ ଖଣ୍ଡ ନର
ବାରକୋଟି ରଥ ଯେ ପଡ଼ିଲେ ଯୁଦ୍ଧର ।
ମନ୍ତ୍ରୀ ଜମ୍ବେବ ଯେ ପଡ଼ିଛି ରଣରେ
ଦେଖଣ୍ଡ ଭରଣ ହାଣିଛି ଦୈତ୍ୟସ୍ୱରେ ।

ଲକ୍ଷେ ନୃପତିଙ୍କର ସଙ୍ଗରେ ବେଳଇ
ସୁଗ୍ରୀ ବଣ୍ଣଣ ଯେ ଅଛନ୍ତି ଭୂର୍ଣ୍ଣ ହୋଇ ।
ଅଙ୍ଗଦ ନଳ ନୀଳ ଭଣଣ ଭାଲୁମୁଖ
ପଞ୍ଚାଶ ଯୂଥପତି ନାହାନ୍ତି ଯେ ଏଥ ।
ଭଲ ଶତ୍ରୁଘନକୁ ବ୍ରହ୍ମିଣ ବୋଇଲେ
ଲକ୍ଷ୍ମଣ କେଉଁଣେ ଗଲ ନ ଦଶେ ଏଥିରେ ।
ଯୂଥପତି ରଣପତି ନାହାନ୍ତି ରଣଭୂମିରେ
କେଉଁଣେ ସେ ଗଲେ ଭୁମେମାନେ ବେଖରେ
ଅଦ୍ଭୁତ କଥା ଏତ ଜଣା ତ ନ ଯାଇ
ନହୋ ଦେଖ କେଉଁଣେଗଲ ନ ତହ ଭାଇ
ହନୁମନ୍ତ ବୋଲେ ଦେବ ଶତ୍ରୁଶତ ସଙ୍ଗେ
କଇତନ ହେଲ ଯୁଦ୍ଧ ଭରନ୍ତ ନାନାରଙ୍ଗେ ।
ଅସୁରେ ମାୟାସେ ଯେ ଜାଣନ୍ତ ବହୁ ଛନ୍ଦ
କେଉଁଣେ ସେ ହରିନେଲ ସୁଗ୍ରୀବ ଅଙ୍ଗଦ ।
ଦଶଗ୍ରୀବ ନାଶ ସବୁବୁଅରେ ହରିନେଲ
ମାରି ନପାରି ଆସେ ନଧନ ହୋଇଲ ।
ଲଙ୍କା ନଗର ଦେବ ହେ ଜାନକୀ ପଳାଶ
ସେନାପତି ଯୂଥପତି ଅଛନ୍ତି ତାଙ୍କ ପାଶ ।
ଶୁଣିଣ ଶ୍ରୀରାମ ଯେ ମାରୁତିଙ୍କ ଭଣ
ଜମ୍ବେବ ଖଣ୍ଡି ମୁଣ୍ଡ ଦେଖପାଅ ଭୂଇଁ ।
ଯୁବଳସ୍ପ ଗିରିରେ ଗୁପତ ସ୍ଥାନରେ
ପାଳୁ ନ ଦଣ୍ଡିବେ ଯତ୍ନେ ରଖିବୁ ସେଠାରେ ।
ଶୁଣିଣ ମାରୁତି ଯେ ବେଗେ ଚଳିଗଲ
ଖଣ୍ଡି ମୁଣ୍ଡ ଦେଖିଣ ଗିରିରେ ମିଳିଲ ।
ଗୁପତ ସ୍ଥାନରେ ରଖିଲ ଲୁଚାଇ
ସମର ଭୂମିରେ ଯେ ମିଳିଲ ବେଗେ ଯାଇ ।
ଶ୍ରୀରାମ ବୋଇଲେ ଏବେ ଲକ୍ଷ୍ମଣ ଗଲ
ଏତେବେଳେ ମୋହହେବେ ଭରତ ଭଳା ।
ତେତା ଗାଇଲ ଦେବ ଅନେକ କ୍ରୋଧ ଭର
ଦୁରନ୍ତ ଝଳଳରେ ଆବୋରନ୍ତ ସବଣାଶ ।
ଧିକ ମେଉଁତକାରେ ମୋହର ଜୀବନ
କେମାଁ ଶଙ୍କରେ ମୋର ରହିଅଛି ପ୍ରାଣ ।
ଦେଉଁ ମୁଖ ଦେଖ ଆଉ ଭରତର ପାଇଁ
କେମାଁ ଶପରକୋଟି ଧରିଅଛି ମୁହିଁ ।
ଏବେ ମୁଁ କଷ୍ଟରେ ବଳୁଛି ଭରତ
ମା ଲକ୍ଷ୍ମଣ ଯୋଗ୍ୟ ଅଗି ଜାଳଣ ମରିବ ।

ଭରତ ବୋଇଲେ ଦେବ ନ ଦୁଃଖ ବିକଳ
କ୍ଷତ୍ରିଙ୍କର ମରିବା ଜାଣିବା କୁଶଳ ।
ମରିଲେ ସ୍ୱର୍ଗ ପ୍ରାପତ ରହିଲେ ପରଶଂସା ।
ଯୁଦ୍ଧଭୂମିରେ ଦେବ ନ କର କେବେ ଚିନ୍ତା ।
ଧର୍ମବଳରେ ଥିଲେ ଆସୁର ଆସିବ ହାରିପୁଣ
ଅଧର୍ମ ଥିଲେ ହରିବ ଦେବ ଯେ କଷଣ ।
ସହସ୍ରାନନର ଦୁଇଲକ୍ଷ ନନ୍ଦନ ଦଶଲକ୍ଷନାତି
ବାରଲକ୍ଷ ଜୁଆଇଁ ତାର ମଲେ ଆସି ଏଥି
ଧୈର୍ଯ୍ୟଧରି କେମନ୍ତେ କର ଯୁଦ୍ଧ
ତୁମ୍ଭେ କମ୍ପା ଅଧୈର୍ଯ୍ୟ ହେଉଛ ରାମଦେବ ।
କ୍ଷତ୍ରିର ପୁଅ ସିନା ଯୁଦ୍ଧରେ ପଡ଼ିଲା
ସେକଥା ଆସୁର ଯେ ବହୁତ ଭଲ ହେଲା ।
ଶୁଣିଣ ଶ୍ରୀରାମ ଯେ ବୋଲନ୍ତି ଉତ୍ତର
କେତେ କଷ୍ଟ ପାଇଲାରେ ମୋର ସକାଶର
ମୂର୍ଚ୍ଛି ପାଇ ହଅଇ ମୋ ଧରଣୀ ହଏ ପାଇ
କେବେହେଁ ଭାଇ ମୋର ନହୁଏ ବ୍ୟାକୁଳ ।
ଏମନ୍ତ ଭାଇ କରେ ନୁହଇ ମୂର୍ଚ୍ଛ
ଏମନ୍ତ ବଚନ ଶ୍ରୀରାମ ଭରତ ଆଗେ ପୁଚ୍ଛି
ଏତେକହି ବ୍ୟାକୁଳ ଯେ ହେଲେ ରଘୁପତି
ହନୁମନ୍ତ ମୁଖ ଚାହିଁ ବଚନ କହନ୍ତି ।
ବେଗେ ଯାଅଜନା ବାବୁ ତୁମ୍ଭ ଶୀଘ୍ର ହୋଇ
ସୁବଳଗିରିକି ଅବା ଲକ୍ଷ୍ମଣ ଯାଇଥାଇ ।
ସମର ଗୋଳରେ ଅବା ଯତ୍ନଁ ଦେଖିଲି
ଜାନକୀଙ୍କ ଆଜ୍ଞାରେ ଜଗିବାକୁ ଗଲି ।
ଏବେ ତୁ ସୁବଳସ୍ୱାଗିରି ଯାଇ ଦେଖ
ଲକ୍ଷ୍ମଣ ବାରତା କହି ମୋର ପ୍ରାଣ ରଖ ।
ଏମନ୍ତ ବଚନ ଯତ୍ନଁ କହିଲେ ରୂପଧାରୀ
ଶୁଣିଣ ହନୁମନ୍ତ ଯେ ଗଲା ବେଗକରି ।
ତତକ୍ଷଣେ ସୁବଳଗିରିରେ ଯାଇ ମିଳି
ସଙ୍ଗତ ଖୋଜ ନ ପାଇଲେ ବୁଲି ବୁଲି ।
ଯାଇଣ ମିଳିଲେ ସେ ସୀତା ଦେବୀର କତ
ଦେଖିକରି ଜାନକୀ ଯେ ବାରତା ପୁଚ୍ଛନ୍ତି ।
ଶୁଣିଣ ମାରୁତ ଯେ ଧୀରେ କର ଦେଇ
ଲକ୍ଷ୍ମଣ ଆସିଛନ୍ତି ବୋଲିଣ ବୋଲଇ ।
ଶୁଣି ଜାନକୀ ଯେ ବୋଲନ୍ତି ବଚନ
କିସ ବୋଲି ଯେ କହୁଛୁ ହନୁମାନ ।

ଜନନୀ ଆଗରେ ମାରୁତି ଜଣାଇଲେ
ଶ୍ଳେ ମାତ ଶହାଜିତ ଲକ୍ଷ୍ମଣ ଯୁଦ୍ଧ କଲେ ।
ସହସ୍ରାନନ ତୁଲେ ଯୁଦ୍ଧ କରନ୍ତି ରଘୁନାଥ
ବାନର ଯୋଡ଼ାଇଣ ଯେ ମାଇଲେ ଦଇତ ।
ଭରତ ମାଇଲେ ଲକ୍ଷେ ନନ୍ଦନ ତାହାର
ଷଡ଼ଲକ୍ଷ ନାତିକୁ ଶତ୍ରୁଘନ କଲେ ଚୂର ।
ବାରଲକ୍ଷ ଜୁଆଇଁ ତାର ରାଜାମାନେ ମାରି
ସତାଇଶ ଖଣ୍ଡ ତାର ଶାଳକ ଯେ ମରି
ସୈନ୍ୟବଳ ଅକଳନ ମଲେ ଯେ ତାହାର
ନାତି ଅଜା ଦୁହେଁ ଯେ ଅଛନ୍ତି ତାହାର ।
ଆସୁର ଯେ ରାଜାଗଣେ ଯୂଥପତି ରଥି
ସେନାପତି ନର ଯେ ବାନର ଶୁଭେ ଛନ୍ତି ।
ସତୁରି ଖଣ୍ଡ ଆସୁର ମଲେ ସୈନ୍ୟବଳ
ଜମ୍ବେବ ମନ୍ତ୍ରୀ ଆସୁର ମଲେ ଯେ ସେଠାର
ଏମନ୍ତେ ଶନ ସ୍ୱର ତିନ ଦିନ ଗଲା
ସହସ୍ରାନନର ଯେ ସକଳ ସୈନ୍ୟ ନାଶଗଲା
ଅନର୍ଯ୍ୟାପ୍ତ ଯୁଦ୍ଧ ଯେ ହେଲା ଆଜ ରାତି
ଶହାଜିତ ସଙ୍ଗେ ଯୁଦ୍ଧ କଲେ ସଉମିତ୍ରୀ
ଦିବସ ଯାଇ ଯେ ତିମିର ଘୋଟିଲା
କେହୁ କେଣେ ଗଲା ଜଣା ଯେ ନ ଗଲା ।
ଅନେକ ସମର ଯେ ହେଲା ରାତ୍ରି ପୁଣ
ପର ଆପଣା କେହି ନ ଗଲେ ବାରଣ ।
ମୂର୍ଚ୍ଛି ଥିଲା ପୁଣି ଯେ ଶ୍ରୀରାମଙ୍କର ପାଶ
ଆକାଶରେ ଦିନମଣି ହେଲେ ଯେ ପରକାଶ
ତିମିର ଫାଟି ଯେ ଦିବସ ହୋଇଲା
ଚଉଦପଯାକ ଯେ ନର୍ମଳ ଦିଶିଲା ।
ସହସ୍ରାନନ ଶ୍ରୀରାମ ସଙ୍ଗରେ ଯୁଝୁଥିଲା
ସମର ତେଜ ଯୁଦ୍ଧଭୂଇଁକି ଚାହିଁଲା ।
ନରେଖି ଚାହିଁଲା ଯେ ବଣାଖାର ସୁତ
ଦେଖିଲା ତାର ସୈନ୍ୟ ପଡ଼ିଲେ ବହୁତ ।
ପୁଅ ନାତି ଜୁଆଇଁ ଯେ ଶାଳକଗଣ ତାର
ସମସ୍ତେ ନାଶ ଗଲେ ଏ ତିନ ଦିନର ।
ଗୋଟିଏ ରହିଥିଲା ଶହାଜିତ ଯାର
ତାହାକୁ ଖୋଜଇ ଯେ ପ୍ରଢ଼ଣ ସମର ।
ନାତିକ ତହୁଁ ଯାଇ ଖୋଜିଲା ଦୈତ୍ୟସାର
ଆସୁର ସୈନ୍ୟଙ୍କୁ ଏତେ ଚାହିଁଲେ ରଘୁବୀର

ତାରକ୍ଷ ନଳ ନୀଳ ସୁଗ୍ରୀବ ସମ୍ପାତି
ଜମ୍ବଣ କାଳମୁଖ ଅଙ୍ଗଦ ସଉମିତ୍ରୀ ।
ତାଳଧ୍ୱଜ ରଥରେ ସୁଷେଣ ସାରଥି
ପବନ ଶତବାଳ ମହେନ୍ଦ୍ର ଗବାକ୍ଷଟି ।
ଏମାନେ ସମରେ ନାହାନ୍ତି ଜେନ୍ତ
ନ ଦେଖିଣ ରଘୁନାଥ କ୍ରୋଧଭର ହୋଇ ।
ଯହୁଁ ସେ ନ ଦେଖିଲେ ଅନୁଜ ଲକ୍ଷ୍ମଣ
ଧରଣୀରେ ଲୋଟି ସ୍ୱାମୀ କରନ୍ତି ରୋଦନ ।
ଅନେକ ବଚନ ଯେ ହେଲେ ରଘୁସାଇଁ
ମୋତେ ପେଷିଲେ ବୁସ୍ୱପାଣଦେଖିଯିବାପାଇଁ
ତେଣୁକରି ମୁଁ ଆସିଅଛି ଧାଇଁ
ଶ୍ରୀରଘୁନାଥ ମୋତେ ଥିବେ ବାଟ ଚହିଁ ।
ମୁହିଁ ବାରତା ଘେନିଯିବା ପରଯନ୍ତେ
ବସ୍ତ'ହୋଇଥିବେ କି କୋଦଣ୍ଡ କାଣ୍ଡ ହସ୍ତେ
ଏ ବଚନ ତାହାଠାରୁ ଜାନକୀ ଶୁଣିଲେ
ଆହା ମୋଲକ୍ଷ୍ମଣ ବୋଲି ରୋଦନହେଷାକଲେ
ଶୁଣ ସୁମରଣ ଜାଦନ୍ତି ହେଷା ସଖି
କେଣେ ଗୁଡ଼ଗଲରେ ବୋଲି ବୋଲନ୍ତି ।
କେ ଏନ୍ତ ବିଧାତା ହେ କଲ ଏତେ ଗତି
ଆହା ଲକ୍ଷ୍ମଣ ବୋଲି କରେ କର ଦ୍ୟନ୍ତି ।
ବୋଲନ୍ତି ହେ ଲକ୍ଷ୍ମଣ ଏଡ଼େ କୃତ୍ୟ କଲୁ
ବନେ ଅନେକ କଷ୍ଟ ପାଇଣ ସେବିଲୁ ।
ମୁହିଁ ଯେ ନ ଜାଣି ହୀନ ବୁଦ୍ଧି କଲି
ସୁବର୍ଣ୍ଣ ମୃଗ ଦେଖି ସ୍ୱାମୀଙ୍କ ମାଗିଲି ।
ମୋର ବୋଲ ନଶଙ୍କି ଗଲେଯେବେଗହୋଇ
ମୋତେ ସଉମିତ୍ରି ତୋତେ ଗଲେକ ଜଣାଇ
ମାୟା ସବ କୁରଙ୍ଗିର ଜାଣି ନ ପାରିଲି
ଝିଙ୍କାସ ବଚନ କହି ତୋତେ ମୁଁ ପେଷିଲି ।
ଯହୁଁ ମୋର ନିଷ୍ଠୁର ବଚନ ଶୁଣିଲୁ
ଠାକୁରଙ୍କ ଠାବକୁ ତୁ ବେଗ ହୋଇ ଗଲୁ ।
ଏଣେ ତପସ୍ୱୀ ରୂପ ଧରିଣ ରାବଣ
ଭିକ୍ଷା ଦେଲାକ୍ଷଣି ମୋତେ ଆଣିଲା ବଳେଣ
ଚଉଦ ମାସ ରଖିଲା ନେଇ ବାନ୍ଧକରି
ତୋତେସଙ୍ଗେଘେନଶ୍ରୀରାମ ମାଇଲେଦଶଶିର
କୁ ବିନାଶ କଲୁରେ ବାବୁ ଦୁଷ୍ଟ ଇନ୍ଦ୍ରଜିତ
ତୋହର ବୋଲେ ସ୍ୱାମୀକୁମୁଁହେଲି ପରାପତ
ତେତେ଼ ବିପତ୍ତିରୁ ମୋତେ ଉଦ୍ଧରି ଆଣିଲୁ
ଏବେ କେଣେ ସଉମିତ୍ରି ହୋ ଗୁଡ଼କରି ଗଲୁ
ଏତେକହି ଜାନକୀ ରୋଦନ କ୍ରୋଧ କରି
ପ୍ରବୋଧକରି କହିଲାତାଙ୍କୁମସୁବୈତ୍ୟକୁଳାଣ
ହୋଇଲେ ତୁମ୍ଭେ ଜଗତ ଠାକୁରାଣୀ
ତୋ ସ୍ୱାମୀ ଦଶରଥଙ୍କୁ କେ ପାରିବ ଜିଣି ।
ଅସୁରେ ଗୋ ବଡ଼ ମାୟାସୀ ଅଟନ୍ତି
ନପାରି ସମରେ ସେ ବଡ଼ ଉପାୟ କରନ୍ତି ।
ମହୀରାବଣ ନାତି ଯେ ମୋର ପୁରେ ଥିଲା
ଲକ୍ଷ୍ମଣଙ୍କୁ ପଦ୍ମନାଡ଼େ ସେହି ହରିନେଲା ।
ମାରି ନପାରି ସେହୁ ଆପେ ହେଲା ନାଶ
ସକଳ ଘେନିଗଲା ସଞ୍ଜିବନ ଦେଶ ।
ସେହିରୂପେ ଶକ୍ରାଜିତ ହରି ନେଇଅଛି
ଯୁଦ୍ଧେ ନ ପାରିଲା ଯହୁଁ ପଦ୍ମାବତୀର ବସ୍ତି
ଏତେକହି ତିଆରିଲେ ନିଜଟା ମନ୍ଦୋଦରୀ
ଶ୍ରୀମୁଖ ପୋଛିଦେଇ ବସାଏ କୋଳକରି ।
ବୋଇଲେ ଶୁଣିମା ଗୋ ହେଉ ବଇଦେହୀ
ପଛରେ ସ୍ୱୀ ରାବଣେ ସ୍ୱାମୀଙ୍କୁ ବାଧଇ ।
ଏହିମତେ ମନ୍ଦୋଦରୀ କହଇ ବଚନ
ନ ଦେଖ ଉଭଦେଶ ହନୁମନ୍ତର ମନ ।
ଜାନକୀର ଚରଣେ ନମସ୍କାର କଲା
ଯୁଦ୍ଧଭୂମିକି ବୋଲି ସେ ବେଗେ ଚଳିଗଲା
ଯାଇ ମିଳିଲା ସେ ଶ୍ରୀରାମର ପାଶ
ଦୂରୁଦେଖି ବଚନ ବୋଲନ୍ତି ରଘୁଶ୍ରୀଷ ।
କହ ବାବୁ ଲକ୍ଷ୍ମଣ କି ଯାଇଛି ସୁବଳୟା
ତୋହଠାରୁ ଶୁଣି ମୋର ସ୍ଥିରହେଉ କାୟା
ଏମନ୍ତ ବୋଲି ଯହୁଁ ବୋଲନ୍ତି ରଘୁନାଥ
ହନୁମନ୍ତ ଜଣାଇଲା ଶିରେ ଦେଇ ହସ୍ତ ।
ଶୁଣିବା ହେଉ ଏବେ କୋଦଣ୍ଡ ରୂପଧାରୀ
ନାହାନ୍ତି ଲକ୍ଷ୍ମଣ ଦେବ ସୁବଳୟା ଗିରି ।
ଶୁଣିଣ ରଘୁନାଥ ମୂର୍ଚ୍ଛାଗତ ହେଲେ
ଚେତା ବୁଡ଼ାଇ ଧରଣୀରେ ସେ ପଡ଼ିଲେ ।
ଦେଖିଣ ହନୁମନ୍ତ କୋଳକରି ଧରି
ମୁଖରେ ଜଳ ସିଞ୍ଚି ସଚେତ ସେ କରି ।
ସଚେତ ହୋଇ ଶ୍ରୀରାମ ଉଠିଣ ବସିଲେ
ହନୁମନ୍ତକୁ ଚହିଁ ବଚନ ବୋଇଲେ ।

ମାରୁତି ବୋଇଲେ ଦେବ ଶୁଣ ମୋ ବଚନ
ଯୂଥପତି ସେନାପତି ନାହାନ୍ତି କେହି ପୁଣ ।
କେବଣ ମନକୁ ମୋର ଏମନ୍ତ ଆସୁଛି
ବହୁତ ମାୟା ଜାଣଇ ଗୁମାନର ବହ୍ନି ।
ମହୀରାବଣ ପ୍ରାୟେକ ନେଇଛି ସେ ହରି
ମାରିଣ ଆସିବେ ଯେ ଲକ୍ଷ୍ମଣ ଉବୁରି ।
ଏମନ୍ତ ବୋଲିଣ ଯେ ବୋଲଇ ହନୁମନ୍ତ
ପ୍ରବୋଧ କରିଣ ତିଆରିଲ ରଘୁନାଥ ।
ଶତ୍ରୁଘନ ବୋଲନ୍ତି ଶୁଣ ହେ ବୃପଧାରୀ
ଆଜ ଲକ୍ଷ୍ମଣଦେବଙ୍କୁ ମାରି ଆସିଲେ ଫେରି
କେବେ ହରି ନେଇଅଛି କ କରିବ ସେହି
ଚିନ୍ତା ନକର ଦେବ ହେ ରହ ସ୍ଥିରହୋଇ
ସ୍ୱର୍ଗକୁ ଗଲେ ତ ଦେବତା ଛନ୍ତି ସାହ୍ୟ
ମର୍ତ୍ତରେ ଆମ୍ଭର ତ ଅଟନ୍ତି ସମସ୍ତେ ପ୍ରିୟ ।
ପାତାଳେ ନାଗରଜା ତ ଅଟେ ମାୟାରପ୍ରୀତି
କ କରିପାରିବ ଦୈତ୍ୟ ଆମ୍ଭର ଭାଇକ ।
ଶୁଣିଣ ଶ୍ରୀରାମ ଯେ ସାନୁଜ ଖବର
ମନରେ ବିସ୍ମିଲେ କମଳାର ବର ।
ସମସ୍ତଙ୍କ ମନରେ ଚିନ୍ତା ତ ନ ଦେଖିଲି
ଲକ୍ଷ୍ମଣ ଅନନ୍ତ ତ ଜାଣିଛି ତଥ୍ୟକରି ।
ଏବେ ତ ଡାହାଣ ନେତ୍ର ଫୁରୁଛି ମୋହର
ନାଶକରି ଲକ୍ଷ୍ମଣ କ ଆସିବ ମୋହର ।
ଏମନ୍ତ ସମୟେ ପବନ କର୍ଣ୍ଣେ କହି
ପାତାଳେ ତୁମ୍ଭ ଭାଇ ଯୁଦ୍ଧ କରେ ଯାଇ ।
ଶୁଣିକରି ଶ୍ରୀରାମ ଯେ ସନ୍ତୋଷମନ ହେଲେ
ପାର୍ବତୀ ଆଗେ ଏହା ଶଙ୍କର କହିଲେ ।
ରାମାୟଣ ଗ୍ରନ୍ଥ ଶୁଣି ମନରେ ହୃଷ୍ଟ ତୋଷ
ଶୁଣିକରି ଗଉରୀ ପୁଚ୍ଛରେ ସନ୍ଦେଶ ।
ଈଶ୍ୱର ବୋଲନ୍ତି ତୁମ୍ଭେ ଏକମନେ ଶୁଣ
ପାତାଳରେ ଦୈତ୍ୟସଙ୍ଗେ ଯୁଝନ୍ତି ଲକ୍ଷ୍ମଣ ।
ମହାଘୋର ସଂଗ୍ରାମ ସେ କରନ୍ତି ଅନେକ
କ କହିପାରିବ ତାହା କରିଣ ନିୟୁତ ।
ବଡ଼ ନିର୍ଘଷ ସେ ଦଇତ ଅଟଇ
ଏକାବେଳେ ଲକ୍ଷେଲକ୍ଷେ ଶର ସେ ବିନ୍ଧଇ
ଅନେକ ସମର ସେ କରେ ଦୃଢ଼ କରି
ତ ଦେଖିଣ ସଉମିତ୍ରୀ ଯେ ମହାକ୍ରୋଧ କରି ।

କୋଣରୁ କାଢ଼ିଲେ ସେ ନାଗଫୁଣା ଶର
ତତକ୍ଷଣେ ବସାଇଲେ ନେଇ ସେ ଗୁଣରେ
ଧନୁଟଙ୍କ ସୁମରି ସେ ପେଷିଦେଲେ ବାଣ
ଚଳଇ ନାରାଚ ଯେ କରିଣ ଗର୍ଜ୍ଜନ ।
ଶୂନ୍ୟରେ ଗମନ୍ତେ ବାଣ ଅଗ୍ନି ଝଲକଇ
ଦଇତ ଜାନୁରେ ପଡ଼ଇ ସହସ୍ରେ ମୁନହୋଇ
ନାସ୍ତତ ପଡ଼ନ୍ତେ ତାର ରଥ ଭଙ୍ଗିଗଲା
ଦେଖିଣ ଦୈତ୍ୟସାର କ୍ରୋଧରେ ଜଳିଲା ।
ରଥଭଗ୍ନ ହୋନ୍ତେ ଦୈତ୍ୟ ଭୂମିଗାମୀହେଲା
ବଜ୍ରସମ ମୁଦୁଗର ସେ କରରେ ଧଇଲା ।
ନେଇଣ ପହୁଡ଼ିଲା ସେ ଲକ୍ଷ୍ମଣ ଉପର
ଦେଖିଣ ଅଙ୍ଗଦ ତାକୁ ଧଇଲା କରର ।
ହସ୍ତରୁ ତାହାର ଯେ ନେଲାକ ଉଚ୍ଛୁଡ଼ି
ତାହାର ମୁଦ୍‌ଗର ଧରି ତାହାକୁ ସେମାରି ।
ସନ୍ଧିଧରେ ଯେ କଉଣ ନଳ ନୀଳ
କରେ ଧରିଣ ଥିଲେ ପଥର ଚଟୁଶିଳ ।
ଯହୁଁ ପାବଗାମୀ ଦେଖିଲେ ଦଇତର
ନେଇ ପିଟିଲେ ସେ ରାକ୍ଷସ ଉପର ।
ଦେଖିକରି ଦୈତ୍ୟ ଯେ ପାତେ ନେଇ ଜାନୁ
ବାଜଇ ମୁଦୁଗର ଭାଜିଗଲା ତେଣୁ ।
ଏମନ୍ତ ବେଳୁବେଳ ଯେ ହୋଇଲା ସମର
ମନରେ ବିସ୍ମରଇ ରହିଣ ନିଶାଚର ।
ବୋଲଇ ମୁହିଁ ପୁଣି ମାୟାରେ ଯୁଦ୍ଧ କଲି
ମାରିବି ବୋଲି ମୁଁ ପାତାଳକୁ ହରି ଆଣିଲି ।
ଏହାକୁ ନ ମାରି ଯେ ଯାଉଅଛି ନାଶ
କ ବୁଦ୍ଧି କରିବ ବୋଲି ବିସ୍ମରେ ରାକ୍ଷସ ।
ମନେ ବିଚାର କରଇ ସୁମାଳି ନନ୍ଦନ
ଚାରିପାଖେ ବେଢ଼ିଛନ୍ତି ଯୂଥପତି ସୈନ୍ୟ ।
କେହୁ ପାଦ ଧରି ତାର ଓଟାରି ନଅନ୍ତି
ଚାରିପାଖୁ ଚଟୁଶିଳ ପଥର ଫୋପାଡ଼ନ୍ତି ।
କେହୁ ଯାଇ ମୁଣ୍ଡ ଉପରେ ଉଠନ୍ତି
ଶିରର ମୁକୁଟରେ ଝିଙ୍କି କରି ନିଅନ୍ତି ।
ଏମନ୍ତେ ଯୂଥପତି ମାରନ୍ତି ଅନେକ
ସମସ୍ତେ ମାରନ୍ତି ଯେ ହୋଇଣ ଏକମୁଖ ।
ଦେଖିକରି ଦଇତ ଯେ କୋପଭର ହୋଇ
ବାନର ସୈନ୍ୟଙ୍କୁ ଯେ ବରାଣ୍ଡି ଧରଇ ।

ଧରନ୍ତେ ହାତେ ତାର କେହ୍ନ ନ ପଡ଼ନ୍ତି
ସନ୍ଧାଣ ଛଡ଼ିବା ପ୍ରାୟେ ଗଗନେ ମିଶନ୍ତି ।
ଏମନ୍ତ ଯତ୍ନ ସେ ଦେଖିଲେ ଲକ୍ଷ୍ମଣ
ତତକ୍ଷଣେ ବିନ୍ଧିଲେ ନର୍ବାଚ ଶର ଜାଣ ।
ପଡ଼ିଲା ବାଣ ଯାଇ ବଳତ ଶରୀର
ରକତରେ ଶରୀର ତାର ହେଲା ଜର ଜର ।
ଅନ୍ତର୍ଦ୍ଧି କଟାକ ଯୁଦ୍ଧ କରଇ ଗ୍ରୁମାନର ସୁତ
ସହି ନ ପାରି ସେ ପଳାଏ ତୁରିତ ।
ଦେଖିଣ ଯୂଥପତି ସେ ପଛରେ ଗୋଡ଼ାଇ
ରହ ରହ ବୋଲିଣ ସେ ଲକ୍ଷ୍ମଣ ଡାକଇ ।
ନ ଶୁଣଇ ଶକ୍ରାଜିତ ସଉମିତ୍ରୀ ବାଣୀ
ମନର ଉଦବେଗେ ପଳାଏ ଦୈତ୍ୟ ପୁଣି ।
ପବନରୁ ବେଗହୋଇ କାତରେ ପଳାଇ
ପଛରେ ସମସ୍ତେ ସେ ଅଛନ୍ତି ଗୋଡ଼ାଇ ।
ଯାଇଣ ମିଳିଲା ସେ ଆପଣା ରାଜ୍ୟର
ଦେଖିଣ ଅଙ୍ଗଦ ସେ ବଲ୍ଲରେ ମନର ।
ସଉମିତ୍ରୀ ଛାମୁରେ ଯୋଡ଼ଇ ବେନିକର
ହେ ସ୍ୱାମୀ ଶୁଣିମା ସେ ମୋହର ଉତ୍ତର ।
ଏହି ତ ନୁହଇ ବାବୁ ରାବଣ ଲଙ୍କାପତି
ମାୟାକରି ଆମ୍ଭଙ୍କୁ ଆଣିଛି ନଶାତଳ ।
ଏହିନ୍ତି ହାତେ ଦେହ କଳଙ୍କା ଅଟଇ
ସହସ୍ରମାଥର ଦେବ ହେ ଜଳ ସ୍ଥାନ ଏହି ।
ଆମ୍ଭେ ତ ଅଭଳର ଏଥକୁ ଦେ ଲଣ
ତେଣେ ଚିନ୍ତା କରୁଥିବ ସେକୋଦଣ୍ଡଧାରଣ
ଏମନ୍ତ ବଚନ କହେ ବାଳିର ଦୁଲଳ
ଶୁଣିକରି ଲକ୍ଷ୍ମଣ ସେ ହେଲେ ଅନ୍ତରଳ ।
ମହାକ୍ରୋଧ ଭରେ ସେ ଦୈତ୍ୟକୁ ଡାକନ୍ତି
ନ ରହି ପଳାଇଲା ସହସ୍ରାନନର ନାତି ।
ଦେଖିଣ ଲକ୍ଷ୍ମଣ ସେ ମନରେ କ୍ରୋଧହୋଇ
ଗୁଣେ ବସାଇଲେ ଶବ୍ଦ ଜିତ ଶର ନେଇ ।
ଧନୁର୍ବେଦ ପଢ଼ିଣ ଶରକୁ ଛଞ୍ଚାରି
ଦୈତ୍ୟକୁ ନାମ ବୋଇଲେ ଇନ୍ଦ୍ରଜିତରଅଭିଷ୍ଟ
କର୍ଣ୍ଣର ପର୍ଯ୍ୟନ୍ତେ ଓଟାରି ଆଣିଲେ
ରାମ ନାମ ଧରିଣ ସେ ନାରାଚ ଛାଡ଼ିଲେ
ଚଳଲାକ ନାରାଚ ସେ ଗର୍ଜ୍ଜନ କରିଣ
କୁଣ୍ଡଳ ଝଟକ ଜାଣି ଉଷେ ତାର କର୍ଣ୍ଣ ।

ଦେବତାଏ ଭୟ କଲେ ସ୍ୱର୍ଗପୁରେ ଥାଇ
ଟଳ ବଳ କମ୍ପମାନ ହୋଇଲା ସେ ମହୀ ।
ଆକାଶ ଛନ୍ନଛନ୍ନ ହେଲା ଉଲ୍କାପାତ
ଉଛରେ ଥାଇ ସ୍ତୁତି କରନ୍ତି ଦେବଲୋକ ।
ନାରାଚର ତେଜ ସେ ଘୋଟିଲା ତ୍ରିପୁର
ଉଦ୍ଧରେ ସଞ୍ଚିବଣ ଗ୍ରହେ ନାଶ କର ।
ଅସାର ବଦନ ସେ ନାରାଚର ତେଜ
ପଳାଏ ଶକ୍ରାଜିତ ମନରେ ଉଦବେଗ ।
ଚଳମଳ ନାରାଚ ସେ ପବନ ଗତି ଜାଣି
ଶକ୍ରାଜିତ ଶିର ସେ ପକାଇଲା ହାଣି ।
ଆମ୍ଭାର ବଳକେ ଦୈତ୍ୟ ପଳାଇ ସେ ଗଲା
ନାରାଚ ପଡ଼ନ୍ତେ ସେ ଦେହଖଣ୍ଡ ହେଲା ।
କନ୍ଧରୁ ଛିଡ଼ି ମୁଣ୍ଡ ସେ ପଡ଼ିଲା ଧରଣୀ
ଗଣ୍ଡି ତାର ପଳାଏ ପବନ ଗତି ଜାଣି ।
ମୁଣ୍ଡ ଛିଡ଼ିଗଲା ସେ ନାରାଚର ଘାଏ
ଗଣ୍ଡି ପଳାଇଲୁ ସେ ବେନି ଯୋଜନଯାଏ ।
ଦେଖିଣ ଯୂଥପତି ସେନାପତି ହସି
ଅଙ୍ଗଦ ସୁଷେଣ ସେ ଆଦିକରି ସଉମିତ୍ରି ।
ମହାତାଳ ମାରିଣ ସେ ହସନ୍ତି ସମସ୍ତେ
ପଡ଼ିଲା ଗଣ୍ଡି ମୁଣ୍ଡ ବେନି ଯୋଜନ ଅନ୍ତେ ।
ଦେଖିକରି ଲକ୍ଷ୍ମଣ ସେ ହୋଇଲେ ଆନନ୍ଦ
ମୁଖ ପ୍ରକାଶଇ ତାଙ୍କର ପୂର୍ଣ୍ଣମୀର ଚନ୍ଦ ।
ଆକାଶରେ ସାଧୁ ସାଧୁ କହନ୍ତି ଦେବଗଣ
ଧନ୍ୟ ଧନ୍ୟ ସଉମିତ୍ରୀ କୁମର ଷଟିପଣ ।
ଏଥୁ ଆସନରେ ସେ ଇନ୍ଦ୍ର ବୃହସ୍ପତି
ପୁଷ୍ପ କରିଣ ଶିରେ କୁସୁମ ବରଷନ୍ତି ।
ଶରବନ ସେ ଆଷାଢ଼ ଶୁକ୍ଳ ପଞ୍ଚମୀ
ମେଘନ ନକ୍ଷତ୍ର ସେ ସେଦିନ ଅଟଇ ପୁଣି ।
ତ୍ରୈଲୋକ୍ୟ ନାମେ କରଣ ଧଣିବୃନ୍ଦାମେ ଯୋଗ
କୁଳରେ ଚନ୍ଦ୍ରମା ସେ ଷାଠଏ ଦଣ୍ଡଭୋଗ ।
ସେହିଦିନ ଅଟେ ଶତ ପ୍ରହର ଜାଣ
ଶକ୍ରାଜିତ ପଡ଼ିଲା ଗଜ ଦକ୍ଷିଣ ହାତେଣ ।
ଅନେକ ଆନନ୍ଦ ସେ ହେଲେକ ଲକ୍ଷ୍ମଣ
ଅଙ୍ଗଦକୁ ଚାହିଁଣ ବୋଲନ୍ତି ବଚନ ।
ଏବେ କହ ଉପାୟ କଦ ହେ ଭାସରୁଟ
ଲଙ୍କାକୁ ଯିବା ଏବେ କଡ଼ାଅ ଆସେବାଟ ।

ଅଙ୍ଗପାଇ ଅଙ୍ଗଦ କାୟା ବଢ଼ାଇଲା
ହୁଙ୍କାର ନାଦକରି ଶୂନ୍ୟରେ ଉଠମିଲା ।
ଯୂଥ ସେନାପତି ଅଗ୍ରରେ ଯୋଡ଼ାଇ
ତାଳଧ୍ୱଜ ପରେ ଲକ୍ଷ୍ମଣ ଚଳିଯାଇ ।
ଯୋଗକୁ ଅଙ୍ଗଦ ଯେ ଆଗରେ ଯାଏ ପୁଣ
ପଛରେ ସମସ୍ତେ ଯେ ଚଳନ୍ତି ଘନଘନ ।
ଅଲଙ୍କା ଭୁବନକୁ ଛାଡ଼ିଗଲେ ପୁଣ
ଦୁଇଘଡ଼ିରେ ଗଲେ ଶତେକ ଯୋଜନ ।
ମନରେ ଆନନ୍ଦ ଯେ ସମରୁ ଜୟକରି
ତତକ୍ଷଣି ପ୍ରବେଶ ହେଲେ ଲଙ୍କାପୁରୀ
ହନୁମନ୍ତ ଯେ ଆକାଶ ମାର୍ଗକୁ ଉଠିଲା
ଲକ୍ଷ୍ମଣ ଆସିବାର ଦୂରରୁ ଦେଖିଲା ।
ତତକ୍ଷଣେ ଜଣାଏ ଯାଇ ଶ୍ରୀରାମ ଛାମୁରେ
ଜୟକରି ଅଇଲେ ଦେବ ଭାଇ ଯେ କୁମ୍ଭର ।
ସ୍ନେହେକ କୋପ ସଂହରି ଅଇଲେ ସଉମିତ୍ରି
ଶୁଣିକରି ଆନନ୍ଦ ହେଲେ ରଘୁପତି ।
ସତକରି କହରେ ପବନ ନନ୍ଦନ
ସେନା ପଥପତି ଛନ୍ତି ଲକ୍ଷ୍ମଣ ସଙ୍ଗେଣ ।
କତ୍ତ କତ୍ତ ସଉମିତ୍ରୀ ମିଳିଲେ ବହନ
ରଥୁ ଓହ୍ଲାଇ ଶ୍ରୀରାମ ଗୁମ୍ଫକୁ ଗଲେ ପୁଣ ।
ଦୂରରୁ ଦେଖି ଯେ ଶ୍ରୀରାମଙ୍କୁ ଲକ୍ଷ୍ମଣ
ନମସ୍କାର କରି ଓଳଗି ହୁଏ ପୁଣ ।
ଦେଖି ଧାଇଁଲେ ଯେ ରଘୁକୁଳ ପତି
ବୋଇଲେ ଏବେ ମୋହର ରହିଲା ପ୍ରାଣଟି ।
ତତକ୍ଷଣେ ଲକ୍ଷ୍ମଣଙ୍କୁ ଧଇଲେ କୋଳକରି
ଲକ୍ଷ୍ମଣ ମୁଖକୁ ଚାହିଁ ରୋଦନ୍ତି ରଘୁଣାଥ ।
କୁମ୍ଭ ସ୍ନେହଭରେ ଜହ୍ର କ ହୋଇଣ
ବେନି ନୟନୁ ବହେ ନେତ୍ରଜ ଘନଘନ ।
ଶ୍ରୀରାମଙ୍କୁ ଚାହିଁଣ ଲକ୍ଷ୍ମଣ ପୁଛନ୍ତି
ପଡ଼େ ବ୍ୟାକୁଳ କମ୍ପା ହେଉଛ ରଘୁପତି ।
ଶୁଣିକରି ରାବଣାରି କହନ୍ତି ବଚନ
ମୋତେ କେଉଁଣେ ଛାଡ଼ିଗଲୁ ସୁମିତ୍ରା ନନ୍ଦନ ।
ଏତେ କୃତ୍ୟ ବାବୁରେ କେମନ୍ତ କଲୁ ତୁହି
ମୋତେକ ଛାଡ଼ିବାକୁ ଚଉ ତୋର ବଳଇ ଚହିଁ
ବାଳକାଳେବିଶ୍ୱାମିତ୍ରନେଲେତୋତେମୋତେ
ତୋତେ ଯେନ ଯାଗ ମୁଁରେ ରଖିଲି କୁରତେ
ସେଠାରୁ ବିଶ୍ୱାମିତ୍ର ଯେ ସଙ୍ଗରେ ଘେନିଣ
ତୋତେ ଅହଲ୍ୟାଙ୍କୁ ମୁକତି କଲୁ ପୁଣ ।
ସେଠାରୁ ବିଶ୍ୱାମିତ୍ର ଯେ ମିଥିଳାଦେଶନେଲେ
ଲକ୍ଷେ ରାଜାଙ୍କୁ ଜନକ ବରଣ କରିଥିଲେ ।
ଧନୁ ଆମଷନ କାଳେ ସମସ୍ତେ ଚାହିଁଛନ୍ତି
ମୋତେ ବୋଇଲୁ ଶିର ନ ନୁଆଁ ନୃପତି
ସେହିବନଠାରୁରେ ତୋତେ ମୁଁ ଜାଣଇ
ମୋହର ପଞ୍ଚଭୂତ ଆତ୍ମା କୁ ଅଟୁ ଭାଇ ।
ପିତାଙ୍କର ସତ୍ୟପାଳ ବନକୁ ଅଇଲି ମୁହିଁ
ଦେଶଘୋଷଣା ଛାଡ଼ିକରି ମୋସଙ୍ଗେଘୋଡ଼ାଇ
ଯେଉଁକାଳେ ଲକ୍ଷ୍ମଣ ତୋତେ ବ୍ରହ୍ମଶକ୍ତି କଲା
ବୁକୁଫଟା ଶର ଯେ ମେଘରୁ କର୍ଷିଲା ।
ସେକାଳେ ପବନ ସୁତ ହନୁମନ୍ତ ବୀର
ଔଷଧ ଆଣି ତୋତେରେ ଜିଆଇଁ ତତପର
କୁହରେ ବାବୁମୋର ଅଛୁରେ ଜୀବନ
ତୋର ବିନୁ ମୋରରେ ନ ରହଇ ପ୍ରାଣ ।
କହ କେଣେ ଯାଇଥିଲୁ ଲକ୍ଷ୍ମଣରେ ତୁହି
ମାୟା ନକରି ମୋର ଆଗରେ କହ ଭାଇ ।
ଶୁଣିଣ ସଉମିତ୍ରି ବଦନ୍ତି ଯୋଡ଼ି କର
ଏକମନେ ଶୁଣ ହେ କୋଦଣ୍ଡ ଚାପଧର ।
ତିନଦିନ ସମର ହେଲା ମହାଘୋର
ମହସ୍ରାନନ ସଙ୍ଗରେ କୁମ୍ଭର ସମର ।
ମୋର ସଙ୍ଗେ ଯୁଦ୍ଧକଲେ ଗୁମାନସୁର ଜାଣ
ବଡ଼ମାୟା ଜାଣଇ ସହସ୍ରାନନ ନାତି ପୁଣ ।
କଳନା ନଯାଇ ଦେବ ତାର ଯନ୍ତ୍ର ପଣ
ଅନେକ ମାୟା ସେ ଯେ ଜାଣେ ଦୈତ୍ୟଗଣ
ତାହାର ଯୁଦ୍ଧ ଦେବ କଳନା ନଯାଇ
ଅନେକ ସୈନ୍ୟ ଆମ୍ଭର ମାଇଲା ଯୋଡ଼ାଇ
ଭକଲେ ପଳାଇଲେ ନର ଯେ ବାନର
ଏମନ୍ତେ ଯୁଦ୍ଧ ସେ ଯେ କଲାକ ଅପାର ।
ଅନର୍ଯ୍ୟାସ୍ତ୍ର ଶର ଯେ କଲାକ ବୁହାଇ
ଯେବଣ ଯାନରେ ସେ ବସି ଯୁଝଇ ।
ନାରାଚ ପଡ଼ନ୍ତେ ରଥ ଶତେଖଣ୍ଡ ହେଲା
ଦେଖି ଶହାଜିତ ମନରେ ବିସ୍ମରିଲା ।
ଯାନର ଭଗ୍ନ ଯନ୍ତ୍ର ଦେଖିଲା ସେ ଦୈତ୍ୟ
ନାଗର ଉପରେ ଯାଇ ବସିଲା ତୁରିତ ।

ପୃଥିବୀଁ ଯୁଦ୍ଧ ସେ ଯେ ଆରମ୍ଭ କଲା ପୁଣି
ଅନେକ ସମର ସେ ଯେ କଲାକ ଦୈତ୍ୟମଣି
ଏବେ ତ ଅନ୍ଧାର ଅଟେ ନିଶାକାଳ
ଆକାଶରେ ଆତଯାତ ହୋନ୍ତି ଦେବଗଣର ।
ତାହାଦେଖି ନାରାଚ ବର୍ଷିଲ ମୂର୍ତ୍ତି ପୁଣି
ଗଜ କପୋଳେ ନାରାଚ କଣ୍ଡିଲାକ ଜାଣି ।
ଦେଖିଣ ଶକ୍ରଜିତ ମହାକ୍ରୋଧ କଲା
ମାୟାକରି ଆମ୍ଭଙ୍କୁ ହରି ଘେନଗଲା ।
ଆଗରେ ପଳାଇଲା କେ ଅସମ୍ଭାଳ ହୋଇ
ଯୂଥପତି ସେନାପତିଘେନ ତାପଛେ ଗୋଡ଼ାଇ
ପଳାଇ ପଶିଲା ଯାଇ ପାତାଳ ସେ ପୁରେ
ଯାନରେ ବସି ସେ ମହାଯୁଦ୍ଧ କରେ ।
ଅନେକ ପ୍ରକାରେ ଦୈତ୍ୟ ବର୍ଷିଲା ପୁଣ ବାଣ
କେବେହେଁ ଯୁଝି ନପାରିଲା ସେ ଦୈତ୍ୟଗଣ
ମୋହର ସଙ୍ଗରେ ଥିଲେ ଯୂଥପତି ଗଣ
ପାତାଳପୁର ବୋଲି କହିଲେ ସେ ଜାଣ ।
ସେ ପୁରରେ ଅପେ ଯୁଦ୍ଧ ଯେ ଯାଇକଲା
ଅମ୍ବର ନାରାଚେ ତାର ରଥ ଭାଜିଗଲା ।
ଇନ୍ଦ୍ରବର ଦୈତ୍ୟର ଯନ୍ତ୍ର ସେ ଭାଜିଗଲା
ସମର ଛାଡ଼ିଣ ସେଠାରୁ ଚଳିଗଲା ।
ତାରପଛେ ଆମ୍ଭେ ସେ ଗୋଡ଼ାଇଲୁ ପୁଣି
ବଲଙ୍କା ଗଡ଼ରେ ଯାଇ ମିଳିଲୁ ତତକ୍ଷଣି ।
ରଜନୀ ଶେଷ ହୋଇଣ ହୋଇଲା ଦିବସ
ନିର୍ମଳ ହୋଇ ଯେ ଦିଶିଲା ଦଶଦିଶ ।
ଦେଖିଣ ଅଙ୍ଗଦ ଯେ କହଇ ବଚନ
ଏତ ଅଟଇ ଦେବ ବଲଙ୍କା ଭୁବନ ।
ସହସ୍ରାନନର ଏ କଟକ ଅଟଇ
ଆମ୍ଭେ ତ ଆସି ଦେବ ଏଥିରେ ହୋଇଲଇଁ
ଅଙ୍ଗଦଠାରୁ ଦେବ ଏମନ୍ତ ଶୁଣିଲ
ନାରାଚ ପେଶି ଦେବ ଦୈତ୍ୟଙ୍କୁ ନାଶକଲ ।
ଯନ୍ତ୍ର ଶକ୍ରଜିତ ହେଲା ପ୍ରାଣେ ନାଶ
ଦେବେ ଜୟେ ଜୟେ କଲେକ ଆକାଶ ।
ବୋଇଲେ ସହସ୍ରାନନକୁ ଦେବକରି ମାର
ଅସୁର ବଧ କରି ସ୍ୱର୍ଗ ରକ୍ଷାକର ।
ଏ ବଚନ ଦେବତାଙ୍କ ମୁଖରୁ ଶୁଣିଲୁ
ବଲଙ୍କାଗଡ଼ ତେଜି ବେଗେ ଯେ ଆଇଲୁ ।

ଏମନ୍ତେ ବଚନ ଯେ କହିଲେ ସଉମିତ୍ରି
ଶରୀର ଆଉଁଷିଣ ବୋଲନ୍ତି ରଘୁପତି ।
ମେରୁ ଉହାଡ଼ ଯାଇ ବଟେକଲେ ଗ୍ରହପତି
ଯେ ଯାହା ନିତ୍ୟକର୍ମ ସାରିଲେ ଝଟତ ।
ବୋଲନ୍ତି କୋଦଣ୍ଡଧାରୀ ହନୁମନ୍ତକୁ ସୃଷ୍ଟି
ସୁବଳଗିରିକି ଚାଲ ଯିବା ବେଗହୋଇ ।
ଶୁଣିକରି ପାବନ ଝିଟରେ ଭର ଦେବା
ସୁଗ୍ରୀବର ରାଜାଙ୍କୁ ଯାଇଣ କହିଲା ।
ଯୂଥମାନଙ୍କୁ ସଙ୍ଗରେ ଘେନ ଚଳି
ଶ୍ରୀରାମ ବାହୁଡ଼ ବିଜେ କଲେକ ସୁବଳ ।
ଲକ୍ଷ୍ମଣ ଶ୍ରୀରାମ ପାଶରେ ଚଳିଗଲା
ଭରତର ଚରଣେ ଯାଇ ଊଳଗି ହୋଇଲା ।
ଭରତ ଊଳଗିଲେ ଶ୍ରୀରାମ ଚରଣେ ଯାଇ
ଶତ୍ରୁଘନ ଲକ୍ଷ୍ମଣ ଚରଣେ ଊଳଗଇ ।
ଅଙ୍ଗଦ ଊଳଗିଲା ସୁଗ୍ରୀବ ଚରଣ
ଯୂଥପତି ସେନାପତି ଘେନ ବାନର ସୈନ୍ୟ ।
ସୁବଳଗିରିକି ଲେଉଟିଲେ ସଙ୍ଗେ
ଲକ୍ଷେ ରଜା ଲେଉଟିଲେସୈନ୍ୟ ଘେନସଙ୍ଗେ
ହାତୀ ରଥ ପଦାତି ଅଶ୍ୱ ସରଦାର
ସକଳ ସୈନ୍ୟ ଘେନ ବିଜେ ନୃପବର ।
ଢୋଲ ଦମାଲୁ ବାଜଇ କୁକୁହଳ
ଶଙ୍ଖ ମହୁରୀ ଶୃଙ୍ଗ ଭେଣ୍ଡଙ୍କ ସକଳ ।
ବାଜଇ ବାଜଣା ଯେ କାହାଳ ଶଙ୍ଖଭେରୀ
ମାଦଳ ଘଣ୍ଟା ଘଣ୍ଟି ସୀତାର ବୀଣା ତୂରୀ ।
ଛତ୍ରମାନ ରଥରେ ଟେକାଇ ରଜାମାନେ
ଢୋଲଙ୍କି ବାଜା ଯେ ବଜାଇ ଚଳେଚଳେ
ଆଗରେ ନୃତ୍ୟଗୀତ କରନ୍ତି ନୃତ୍ୟକାରୀ
ଦୁନ୍ଦୁଭି ରାମତାଳ ଶବଦ ସ୍ୱର୍ଗ ପୂରି ।
ନନ୍ଦିଘୋଷ ରଥରେ ବିଜେ ସୀତାପତି
କପିଅର ଧ୍ୱଜରଥେ ଭରତ ଚଳନ୍ତି ।
ତାଳଧ୍ୱଜ ରଥରେ ଲକ୍ଷ୍ମଣ ଯାଏ ପୁଣ
ଅସୁର ଦଳନ ରଥେ ବିଜେ ଶତ୍ରୁଘନ ।
କଳକଳନ ରଥପରେ ବିଭୀଷଣ ଚଳେ
ମତ୍ତନାଗ ପରେ ସୁଗ୍ରୀବର ବିଜେ କଲେ ।
ଶ୍ୱେତ ହସ୍ତୀପରେ ଗୁହନାମେ ଯେ ଶବର
ଲୋମପାଦ ଛତ୍ରପୁର ଘେନରଥରେ ବାହାର

ନିଶାଣ ବଇରଖ ଯେ ପତାକା ଛତ୍ରଗଳ
ଆଗରେ ଚାମର ଯେ ପଡ଼େ ରାଜାଙ୍କର ।
ପୁରବେଶ ସାଜେଣିରେ ସମସ୍ତେ ଚଳିଗଲେ
ସୁବେଳଗିରିରେ ପ୍ରବେଶ ଯାଇ ହେଲେ ।
ପଛରେ ଶ୍ରୀରାମ ସଙ୍ଗରେ ଲକ୍ଷ୍ମଣଇ
ବିଭୀଷଣ ସୁଗ୍ରୀବ ଗୁହନାମେ ଶବରଇଁ ।
ପୁଷ୍ପକେ ଟେକାଇ ଜାନକୀ ବିଳାସ
ଚାମର ଢାଳନ୍ତି ବାଟରେ ତାଙ୍କ ପାଶ ।
ସୁବେଳଗିରିରେ ହେଲେ ପୁରବେଶ
ରଥରୁ ଓହ୍ଲାଇ ରାଜା ଯେ ବିଶେଷ ।
ଶାଢ଼ୀଘର ମାନଙ୍କରେ ପ୍ରବେଶ ହୋଇଲେ
ମାଜଣା ହୋଇଣ ନଦୀରେ ସ୍ନାନକଲେ ।
ନିତ୍ୟକର୍ମସାରି ରାଜା କଲେକ ଭୋଜନ
ପଲଙ୍କ ଉପରେ ନିଦ୍ରାଗଲେ ରାଜାଗଣ ।
ପଦାତି ସେନାପତି ସରଦାର ଯେତେ
ସେବାକାରୀ ବାଦ୍ୟକାରୀ ରାଜା ଯେ ସନ୍ତତେ
ସମସ୍ତେ ସ୍ନାନକରି ଭୋଜନ ରନ୍ଧାକଲେ
ଦାନା ଘାସପାଣି ଅଶ୍ୱଗଜ ଯେ ଖାଇଲେ ।
କପିବଳ ସେତୁବନ୍ଧରେ ସ୍ନାନ ଯେ ସାରିଣ
ଫଳ ମୂଳ ଭୁଞ୍ଜି ସନ୍ତୋଷ ହୋଇଲେକ ପୁଣ
ନନ୍ଦିଘୋଷ ରଥରୁ ଓହ୍ଲାଇ ରଘୁପତି
କନକ ମଣ୍ଡପରେ ବିଜୟେ ଦାଶରଥି ।
ରଥରୁ ଓହ୍ଲାଇ ଭରତ ଶତ୍ରୁଘନ
ଜାନକୀର ଚରଣେ ଓଳଗେ ଯାଇ ପୁଣ ।
ଲକ୍ଷ୍ମଣ ଓହ୍ଲାଇ ରଥରୁ ବେଗେ ଗଲ
ବଇଦେହୀ ଚରଣେ ଓଳଗି ବସାଇଲ ।
ଦେଖିଣ କଲ୍ୟାଣ କଲେ ଜନକ ଦୁହିତା
ଅତି କୋମଳ ଭାବ କହେ ବେଶ ସୀତା ।
ଶୁଣହେ ସାନୁଜ କୁଟେନ୍ତ ଥିଲ କାହିଁ
ନ ଥିବାରୁ ବାରତା ହନୁମନ୍ତ କହି ।
ଶୁଣିଣ ହୃଦୟ ଯେ ବ୍ୟାକୁଳ ମୋର ହୋଇ
ମନୋଦରୀ ବିକଟା ସମ୍ଭାଳେ ମୋରଦେହ
ଶୁଣିକରି ସଉମିତ୍ରୀ ଶିରେ ଦେଲେ କର
ଜାନକୀ ସ୍ଥାନରେ କହେ ଯୁଦ୍ଧର ବେଭାର ।
ଶହାକିତ ଅସୁର ସହସ୍ରାନନର ନାଶ
ମୋର ସଙ୍ଗେ ଯୁଦ୍ଧ ଯେ କଲେକ ସାଉ ଷଢ଼ି
ତିନଧନ ତିନରଥ ସମର ଘୋର କଲ
ନ ପାରିଲ ଯହୁଁ ସେ ମାୟା ଆରମ୍ଭିଲ ।
ପାତାଳପୁରକୁ ହରି ନେଲାକ ଗୁପତେ
ପଳାଇଲ ଦୈତ୍ୟ ମାରି ତାଙ୍କର ବେଶେ ।
ଜାନକୀବୋଇଲେଭଲତୋରଭରତକିସକଲ
ଲକ୍ଷ୍ମଣ ବୋଲନ୍ତି କଣ ଲକ୍ଷ ଯେ ମାଇଲ ।
ଜାନକୀ ବୋଇଲେ ସେ ସାନୁଜ କୁମର
କିଯକଲ ସଉମିତ୍ରୀ କହ ମୋ ଆଗର ।
ଲକ୍ଷ୍ମଣ ବୋଇଲେ ତାର ଅଠ ଯୁଦ୍ଧ ଠାଣ
ନାଗଜକେ ଛେଦିଲେ ସହସ୍ରେ ରଥ ଜାଣ ।
ଘୋଡ଼ାଏ ଯେ ସହସ୍ର ଛେଦିଲେ ନନ୍ଦନ
ଆଉ ନାଗରେ ତାଙ୍କ ଛେଦିଲେ ଶତ୍ରୁଘନ ।
ଜାନକୀ ବୋଇଲେ ଲକ୍ଷେ ରାଜା ଯାଇଥିଲେ
ସେମାନେ କେମନ୍ତେ ରଣଭୂମିରେ ଯୁଦ୍ଧକଲେ
ଲକ୍ଷ୍ମଣ ବୋଇଲେ ଦୈତ୍ୟର ଶାଳକଗଣ
ସତାଇଶ ଲକ୍ଷ ଯେ ଅଟନ୍ତି ପରିମାଣ ।
ରାଜାମାନେ ସେମାନଙ୍କୁ କଲେ ପୁଣ ହତ
ସେନାପତିମାନଙ୍କୁ ସେନାପତି ସୁତ ।
ପଦାତିକ ପଦାତି ଅଶ୍ୱ ଗଜକୁ ବାନର
ଅଜସ୍ର କୁମରଙ୍କୁ ମାଇଲ ହନୁବୀର ।
ଦଶଙ୍କ କୁମରକୁ ଜମ୍ବେଦ ବୀରମାରି
ଦୁଇଫାଳ କରି ତାକୁ ପକାଇଲେ ତରି ।
ବଇଦେହୀ ବୋଇଲେ କି କଲେ ନୃପଧାରୀ
ଲକ୍ଷ୍ମଣ ବୋଇଲେ ଅଜ ନାହାନ୍ତି ସେ ମାରି
ଜାନକୀ ବୋଇଲେ ତାର କୁମର କେତେ
ଲକ୍ଷ୍ମଣ ବୋଇଲେ ଶୁଣ ଏକ ଚିତ୍ତେ ।
ଦୁଇଲକ୍ଷ କୁମର ଯେ ତଣକ୍ଷ ନାତି
ବାରଲକ୍ଷ କୁଆଁରି ସତାଇଶକୋଟିଶାଳକୋଟି
ଘଇବନ୍ଧୁ କୁଟୁମ୍ବ ଯେ କଳଣା ନ ଯାଇ
ପାଞ୍ଚପୁର ଏକନାଥ ପାରିବାର ଛନ୍ତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନପୁର ଜିଣି
ସକଳ ସୁରଙ୍କୁ ପାଖେ ଖଟାଇଲେ ଆଣି ।
ବଡ଼ପୁଅ ବ୍ରହ୍ମାନନ୍ଦ ଶତ୍ରୁଘନ ମାରି
ଭରତ ମାରେ କୋଟାଳସୁରକୁ ବଡାରି ।
ପ୍ରମୋଦସେନ ଶହାକଟକୁ ମୂର୍ଚ୍ଛି ନାଶକଲ
ନିଶଙ୍କା ଅଜସ୍ରକୁ ଜମ୍ବେଦ ହନୁମାରି ।

ପାଞ୍ଚଜନ ସମରେ ହେଲେ ଏତେ ନାଶ
ସୈନ୍ୟବଳ ଅକଳନ୍ତ ହେ ଶୁଣ ଜନକ ଦୁହିତ
ସମୁଦ୍ରରୁ ଝଟେକ ଯେ ହୋଇଲା ରକତ
ଶୁଣଗୋଦାବରୀଦେଖି·ଏକାରହେବପାଖାରଦୂତ
ଜାନକୀ ବୋଇଲେ ବିଭୀଷଣ ଜୟ କଲେ
ଲକ୍ଷ୍ମଣ ବୋଇଲେ ସେ ଶ୍ରୀରାମ ସଙ୍ଗେ ଥିଲେ
ଜାନକୀ ବୋଇଲେ ଭଲ କଥା ଏ ହୋଇଲେ
ଅଯୋଧ୍ୟା ନୃପତିଙ୍କ ଲଙ୍କା ନୃପତି ରଚିଲେ
ମନ୍ଦୋଦରୀ ଜାନକୀ କଲେ ହାସ୍ୟ ପୁଣ
ଆଜ ଯୁଦ୍ଧେ ଦୁଇରଜା ହାରିଲେ ଯେ ଜାଣ
ତ୍ରିଜଟା ବୋଇଲେ ତୁମ୍ଭେ ଶୁଣ ଦୁଇମାତ
ମୋର ଦୁଇ ପିତାଙ୍କୁ ଲଙ୍କା ଏକଧା ତ ।
ମାଜଣା ମଙ୍ଗନ ଯେ ରଘୁବୀର ହେଲେ
ଦେବ ନଦୀରେ ଯାଇ ସ୍ନାନ ବେଗେ କଲେ ।
ସେନା ଯୂଥପତି ଅଙ୍ଗଦ ସୁଗ୍ରୀବର
ହନୁ ବିଭୀଷଣ ଯେ ଗୁହ ନାମେ ଶବର ।
ଦେବ ନଦୀରେ ସମସ୍ତେ ସ୍ନାନ କଲେ
ଯେ ଯାହା ଭୁବନକୁ ଚଳଣ ବେଗେ ଗଲେ
ଯେ ଯାହାର ସୁଖରେ କଲେକ ଭୋଜନ
ଏଥୁଅନନ୍ତରେ ଗୋ ଭଗବତୀ ଶୁଣ ।
ସ୍ନାନ ନିତ୍ୟକର୍ମ ଯେ ସାରିଲେ ରଘୁବୀର
ସନ୍ଧ୍ୟା ତର୍ପଣ କରି ଅଇଲେ ବେଗହୋଇ ।
ଅମଳାନ ଶାଢ଼ୀପିନ୍ଧି ତିଳକ ଲଗି ହେଲେ
ଭୋଜନ କରିବାକୁ ରଘୁବୀର ଗଲେ ।
ଜନକ ଦୁହିତା ପରଷେ ବେଗେ ଆସି
ଷଡ଼ ରସରେ ଭୋଜନ କରନ୍ତି ରଘୁମଣି ।
ଆଞ୍ଚୋଦନ ସାରିଣ ପଲଙ୍କେ ଯାଇ ବସେ
ସକଳସ ଗୁଣ୍ଡି ଯେ କଲେ ତଉପାଶେ ।
ବନ୍ଧୁଆ କରେ ବିଭୀଷଣର ବୋହିତ
ଯୁଦ୍ଧରେ ଆକସରେ ଶରୀର ଆହତ ।
ଶ୍ରୀରାମ ଚରଣେ ମଞ୍ଜାଳଇ ପବନର ସୁତ
ଏଥୁଅନନ୍ତରେ ଗୋ ଶୁଣ ହେମବନ୍ତ ।
'ଏ ସମସ୍ତେ ଆପିଣ ବଜାସୁ ଲକ୍ଷ୍ମଣ
ଧନୁଶର ଧରିଣ ବଜାସ୍ତେ କଲେ ପୁଣ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ସଉମିତ୍ରୀ
ଭ୍ରାତକୁ ଡାକ ଆଣରେ ମୋର କତି ।

ଶୁଣିକରି ଲକ୍ଷ୍ମଣ ଭ୍ରାତକୁ ଡାକ ଆଣି
ଦେଖିଣ ଦାଶରଥି କହନ୍ତି ମୃଦୁବାଣୀ ।
ଧନଶର ଧରି ରହ ତୁ ମୋର ପାଶ
ଲକ୍ଷ୍ମଣ ଯୁଦ୍ଧରେ ପାଇଅଛୁ ତ୍ରାସ ।
ହନୁମନ୍ତକୁ ବୋଇଲେ କୋଦଣ୍ଡ କାପଧାରୀ
ଯୂଥପତି ବେନକର ଜଗ ତୁ ପାହାର ।
ଶୁଣିଣ ହନୁମନ୍ତ ବେଗେ ଚଳିଗଲା
ଯୂଥପତି ଦେନକର ସୈନ୍ୟକୁ ଜଗିଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶ୍ୱର
ପାଞ୍ଚଘଡ଼ି ରଜନୀ ହୋଇଲା ନିକର ।
ବାନରକୋଟି ପିବୁଶୁଣି ଜଳଷଠି କୋଟିଯୋଗି
କାଳକା ବାସେନ ଯେ ସଙ୍ଗରେ ବେଳବେଗି
ରଣଭୂମିରେ ସେ ହେଲେ ପରବେଶ
ଭଗତମାନେ ସଖାଇ ମନକୁ କଲେ ତୋଷ
ଦୈତ୍ୟପାଳ ନିପାତ କରିଣ ଭସ୍ମ କଲେ
ସୁବଳଗିରି ଦକ୍ଷିଣ ପାଖରେ ରହିଲେ ।
ଏମନ୍ତେ ନବଘଡ଼ି ରଜନୀ ବହିଗଲା
ସ୍ୱର୍ଗରେ ଦେବତାଙ୍କର ଘଳେଣି ପଡ଼ିଲା ।
ଶୁକ୍ର ମନ୍ତ୍ରୀଙ୍କ ଡକାଇ କହିଲେ ପୁରନ୍ଦର
ନରବାନର ଯାଆଇଁ ଆସ ହେ ସତ୍ୱର ।
ଶୁଣିଣ ଶୁକ୍ର ମନ୍ତ୍ରୀ ବେଗେ ଚଳିଗଲେ
ରଣଭୂମିରେ ଯାଇ ପ୍ରବେଶ ବେଗେ ହେଲେ
ମୃତ୍ୟୁସଞ୍ଜୀବନୀ ପାଣି ସିଞ୍ଚି ରଣଭୂଇଁ
ମଲର ସକଳ ସୈନ୍ୟ ଜୀବ ସଙ୍କପାଇ ।
ପୁଣି ଅମୃତ ଯେ ବରଷିଲେ ଦେବ
ଉଠିଣ ସବମାନ ହେଲେ ସଦଳବ ।
ଦେଖିଲେ ସମସ୍ତେ ଯେ ଯୁଦ୍ଧ ଭଙ୍ଗ ନାହିଁ
ଧିର ଧିର ହୋଇଣ ଯେ ସେଠାରୁ ଚଳିଯାଇ
ଦେବ ନଦୀରେ ଯାଇଣ ପ୍ରବେଶ ହୋଇଲେ
ସ୍ନାନ କରିଣ ଯେ ଯାହା ସ୍ଥାନକୁ ଚଳିଗଲେ
ବାନର ଫଳମୂଳ ଖାଇ ହେଲେ ତୋଷ
ନରମାନେ ରନ୍ଧଣା ବଧି କରିଣ କଲେ ଗ୍ରାସ
ଆଳସରେ ନିଦ୍ରା ଯେ ଗଲେକ ସମସ୍ତ
ପାହାର ଜଗିଲା ସେବନ ହନୁମନ୍ତ ।
ଏଥୁଅନନ୍ତରେ ଯେ ଶୁକ୍ରଦେବ ଗଲେ
ସୁବଳଗିରିରେ ଯାଇ ପ୍ରବେଶ ହୋଇଲେ ।

ଯେଉଁଠାରେ ରହିଅଛି ଜମ୍ବେବର ଗଣ୍ଡି ମୁଣ୍ଡ
ସେଠାରେ ପ୍ରବେଶଯେଯାଇହେଲେଶୁକ୍ରଦେବ
ଆପଣା ହସ୍ତେ କାଢ଼ିଆଣିଲେ ସେତୁ ବେଗ
ଗଣ୍ଡି ମୁଣ୍ଡ ଯୋଡ଼ଣ କଲେ ଏକ ଠାବ
ସଞ୍ଜିବନୀ ମନ୍ତ୍ର ଯେ ପଢ଼ିଲେ ବେଗକରି
ଜମ୍ବେବ ଶରୀରେ ପାଣି ସିଞ୍ଚିଲେ ଯତ୍ନକରି ।
ପୁଣି ଅମୃତ ନେଇ ସିଞ୍ଚିଲେ ତାର ଶିରେ
ଚେତାପାଇ ଜମ୍ବେବ ଉଠିଲେ ଧାଇଁକରେ
ଶୁକ୍ରଦେବଙ୍କୁ ଦେଖିଣ ନମସ୍କାର କଲେ
କେଣେ ଆସିଥିଲ ବୋଲିଣ ବୋଇଲେ ।
ଶୁକ୍ରଦେବ ବୋଇଲେ ଅଇଲୁ ସ୍ୱର୍ଗରୁ
ମଲ୍ଲୋକ ଗାଆଇଁ ଦେଲୁ ଯେ ଏଥିରୁ ।
ତୋତେ ଯେ ସହସ୍ରାନନ ହାଣିଥିଲା ପୁଣି
ଶ୍ରୀରାମ ଆଜ୍ଞାରେ ହନୁ ଏଥେ ଥୋଇଗଲା ପୁଣି
ଏଠାରେ ଗୁପତ କରିଣ ରଖିଥିଲା
ସେଥିର ସକାଶେ ଆମ୍ଭେ ଅଇଲୁ ଏଥେପର
ସକଳ ସୈନ୍ୟ ଗାଆଇଁ ତୋତେ ଗାଆଇଁଲୁ
ଦେବତାଙ୍କର ବୋଲରେ ଏମନ୍ତ ଆମ୍ଭେ କଲୁ
ପ୍ରତିଦିନେ ଏଣ୍ଟୁରେ ଯାଆଇଁ ଆସିକରି
ଶ୍ରୀରାମଙ୍କର ସୈନ୍ୟ ଗୋଟିଏ ନ ମରି ।
ଦେବତାର କୁଟ ଯେ ଅଟଇ ଭିଆଣ
ଅସୁରମାରି ଶ୍ରୀରାମ ଦେବେ ରହିବେ ସ୍ୱର୍ଗପୁଣି
ଏତେକହି ଶୁକ୍ରଦେବ ସ୍ୱର୍ଗପୁରେ ଗଲେ
ସୁଧର୍ମା ସଭାରେ ଇନ୍ଦ୍ର ସଙ୍ଗରେ ବସିଲେ ।
ସେଠାରୁ ଜମ୍ବେବ ଯେ ଉଠିକରି ଗଲା
ଦେବ ନଦୀରେ ଯାଇ ସ୍ନାନ ବେଗେ କଲା ।
ସନ୍ଧ୍ୟାତର୍ପଣ କରି ଚଳିଲେ ବହନ
ଫଳମୂଳ ଭୁଞ୍ଜିଣ କଲେକ ଶୟନ ।
ଏଥିଅନନ୍ତରେ ଶୁଣ ହୋ ଭଗବତୀ
ସହସ୍ରାନନ ଖୋଜଇ ଶତ୍ରାଜିତର ନାତି ।
ଶତ୍ରୁଜିତ ସେ ସମରେ ନ ଦେଖିଲା
ଏଥିଉତ୍ତାରୁ ସେ କସ ସ୍ୱତ କଲା ।
ଯୁଦ୍ଧଭୂମିରେ ସହସ୍ରମାଥ ଯେ ବୁଲଇ
ରୁମାଙ୍କର ପୁଅକୁ ଜରତେ ଖୋଜଇ ।
କେଉଁଠାରେ ତାହାର ନ ଦେଖିଲା ଚିହ୍ନ
ମନରେ ବ୍ୟାକୁଳ ଯେ ହୁଅଇ ସହସ୍ରାନନ ।

ବୋଇଲେକେଣେଗଲୁରେମୋହର ଶତ୍ରାଜିତ
ତୋର ବିହୁନେ ମୋତେ ନ ଦିଶଇ ପଥ ।
ଅନାଥବନ୍ଧୁ ମୋରରେ ଅଛୁ ତୁ ପୁଅଗୋଟି
ତୋତେ ନଦେଖିଲେମୋର ହୃଦୟଯାଏଫାଟି
ଏମନ୍ତେଅନେକରୋଦନଯେକରେସହସ୍ରାଶିର
ଦଇବକୁ ସୁମରି କପୋଳେ ମାରେ କର ।
ବୋଲଇ କର୍ମା ମୋତେ ନୋହିଲା ମରଣ
ମୋରଆଗେମଲେମୋର ଦୁଇଲକ୍ଷଯେନନ୍ଦନ
ଆବର ମଲେ ମୋର ଦଶଲକ୍ଷ ନାତି
କେଉଁଠାରୁ ମୁଁ ଯେ ଏଠାରୁ ଯିବ ଗୃହ ।
ଏତେବୋଲି ଦଇତ ଯେହୋଇଲା ବ୍ୟାକୁଳ
ଦେଖ ସହସ୍ର ଭୁଜେ ଛୁଣ୍ଡାଏ ଆପଣାରଶିର
ପୁଣିହିଁ ମେଦିନୀରେ ଜ୍ଞାନ ହାରିଣ ପଡ଼ିଲା
ଶତ୍ରାଜିତ ଶତ୍ରାଜିତ ବୋଲି ସେ ରୋଦନକଲା
ବୋଲଇ କେଣେ ଛାଡ଼ି ଗଲୁରେ ନନ୍ଦନ
ଦେଖାଉକନା ବାରେ ତୋର ଚନ୍ଦ୍ରମାବଦନ
ଯୁଦ୍ଧଭୂମିରେ ତୋତେ ଦେଖିଲା ମୋର ନାହିଁ
କେଉଁ ବାଟରେ ପୁଅଗଲୁ ଆଢ଼ ହୋଇ ।
ଏମନ୍ତ ବ୍ୟାକୁଳ ଯେ ହୁଅନ୍ତେ ଦଇତ
ମେରୁ ଉହାଡ଼ ହେଲେ ଦିନକର ନାଥ ।
ଦେବତାଙ୍କ ଆଳରେ ଶୁଭେ ଶଙ୍ଖ ଧ୍ୱନି
ଆକାଶରେ ଉଦୟେ ହେଲେ ଚନ୍ଦ୍ରମଣି ।
ଯୁଦ୍ଧ ଛାଡ଼ି ରାବଣାରି ଗଲେ ସୁବଳଗିରି
ଦେଖିଣ ସହସ୍ରମାଥ ମନରେ ବିଚାରି ।
ବୋଲଇ ଦଇବ ମୋତେ ଦେଲାକ କଷଣ
ଦେବତାମାନଙ୍କର ଏକଥା ଭିଆଣ ।
ନୋହିଲେକ ଆନବେଳେ ଏମନ୍ତ କୃତ୍ୟହୋଇ
ନର ବାନର କାହିଁ ଦୈତ୍ୟଙ୍କୁ ଦଳଇ ।
ଏବେ ଜାଣିଲି ଏସବୁ ଦେବତାଙ୍କର ବୁଦ୍ଧି
ଦେବତାମାନଙ୍କୁ ନଷ୍ଟେ ମାରିବ ନଶୋଧି ।
ସ୍ୱର୍ଗରେ ଆନ ଇନ୍ଦ୍ର ଯେ ମୁଁ କରିବ ଆଜ
ଅମରଭୂମିଯାକ ମୁଁ କରିବ ଉଜ୍ଜଡ ।
ଏତେବୋଲି ଦୈତ୍ୟ ଯେ କରେ ଗରଜନ
ଶୁଣିଣ ସ୍ୱର୍ଗେ କମ୍ପିଲେ ସକଳ ଦେବଗଣ ।
ଆକାଶରୁ ସେଥିର ହେଲା ପୁଣ ବୃଷ୍ଟି
ମେଢ଼ ମଣ୍ଡପ ଜଗତୀ ହୋଇଲାକ ଘୋଡ଼ ।

ଆକାଶରେ ଉତପାତ ହୋଇଲା ବହୁତ
ମନରେ ମହାଭୟ କଲେକ ସୁରନାଥ ।
ବୃହସ୍ପତିକ ବନ୍ଦିଣ ବୋଲନ୍ତି ସୁରପତି
କମ୍ପାଇଁ ସ୍ୱର୍ଗପୁର ଲାଗୁଅଛି ଘାତ ।
ଶୁଣିଣ ଦେବାସୁର ବୋଲନ୍ତି ବଚନ
ତୁମ୍ଭେ ଯାହା ପଚାରିଲ ଶୁଣହେ ମଘବାନ ।
ଯେବଣ କାରଣେ ସ୍ୱର୍ଗଭୁବନ କମ୍ପିଲା
ଯହୁଁ ସହସ୍ରାନନ ଗର୍ଜନ ଛାଡ଼ିଲା ।
ଶୁଣିଣ ପୁରନ୍ଦର ବଚନ କହନ୍ତି
କେବଣ କାରଣ କହ ହେ ବୃହସ୍ପତି ।
କହନ୍ତି ଦେବଗୁରୁ ଶୁଣ ହେ ଶଚୀସାଇଁ
ଶ୍ରୀରାମର ସଙ୍ଗେ ସହସ୍ରମାଥ ଯେ ଯୁଝଇ ।
ବଢ଼ାଇ ପ୍ରତାପି ସେ ଅଟଇ ନିଶାଚର
ସକଳ ସୁହନାଶ ମାଇଲେ ରଘୁବୀର ।
ସୈନ୍ୟବଳ ତାର ଯେ କଲେକ ନିଧନ
ଦେଖିଣ ରାକ୍ଷସ ଯେ ଭଲଇ ମନେ ମନ ।
ବୋଲଇ ଦେବତାଏ ଦୁଷ୍ଟ ଏହାକଲେ
କପଟରେ ମୋହର ସବଂଶେ ମରାଇଲେ ।
ସକଳ ଦେବତାଙ୍କୁ ମୁଁ ପକାଇବି ମାରି
ଇନ୍ଦ୍ରପଦରେ ଆସି ବସିବି ସ୍ୱର୍ଗପୁରୀ ।
ଏତେ କହିଣ ସେ କରେ କରେ ଗରଜନ
ସ୍ୱର୍ଗକୁ ଆସିବାକୁ ସେ କରିଅଛି ମନ ।
ଏମନ୍ତ ବଚନ ଯହୁଁ କହିଲେ ବୃହସ୍ପତି
ଶୁଣିଣ ସ୍ତମ୍ଭୀଭୂତ ହେଲେ ଶଚୀପତି ।
କିସ ଉପାୟେ ବୋଲନ୍ତି ପୁରନ୍ଦର
ଶୁଣିତରି ବୃହସ୍ପତି ବୋଲନ୍ତି ଉତ୍ତର ।
ଏଥକୁ ଉପାୟ ହେ ଅଛି ଶଚୀପତି
ସେକଥାକୁ ମୋଠାରୁ ଶୁଣ ହେ ଦୃଢ଼ମତି
କେମନ୍ତେ ଶାନ୍ତ ଯେ ହେବ ନିଶାଚର
ସରସ୍ୱତୀଙ୍କି ତୁମ୍ଭେ ସୁମରଣା କର ।
ସେ ଦେବୀ ଆସିଣ ଯେ ବସିବେ ଦୈତ୍ୟକଣ୍ଠ
ତେବେ ଶାନ୍ତ ହେବ ସହସ୍ରମାଥ ।
ଶୁଣିଣ ଶଚୀନାଥ ଆନନ୍ଦ ହୋଇଲେ
କର ଯୋଡ଼ିଣ ସେ ଦେବୀଙ୍କି ସୁମରିଲେ ।
ହେବଳାଏ ତୋର ଚରଣେ ଶରଣ
ଏତେବୋଲି ପୁରନ୍ଦର କଲେକ ଜଣାଣ ।

ବୈକୁଣ୍ଠ ଭୁବନେ ଥାଇ ଜାଣିଲେ ବୁଦ୍ଧମାତା
ବୋଇଲେ ଶଚୀନାଥ କମ୍ପାଇଁ କଲେ ଚିନ୍ତା
ତତକ୍ଷଣେ ଦେବତାଙ୍କ ସନ୍ନିଧେ ମିଳିଲେ
ଦେଖିଣ ଦେବତାଏ ସନ୍ତୋଷ ହୋଇଲେ ।
ଶଚୀନାଥ ବୋଲେ ମାତା ଶୁଣ ମୋ ଉତ୍ତର
ଅସୁର ସଙ୍କଟରୁ ରଖ ଗୋ ଏଥର ।
ଜଳଙ୍କାଗଡ଼ର ସହସ୍ରାନନ ଯେ ରାବଣ
ଶ୍ରୀରାମ ସଙ୍ଗତେ ସେ କରଇ ମହାରଣ ।
ଅନେକ ମାୟା ସେ କରେ ନିଶାଚର
ସୁହନାଶ ଭାଇବନ୍ଧୁ ମାଇଲେ ରଘୁବୀର ।
ତେଣୁ ସେ ରାକ୍ଷସଯୋନରେ କ୍ରୋଧହୋଇ
ବୋଲେ ଦେବତାଙ୍କର ଯେ ଭିଆଣ ଅଟଇ
ନୋହିଲେଦୈତ୍ୟଙ୍କୁମାରନ୍ତେ ନରଯେବାନର
ଏମାନେ କି ମୋର ସଙ୍ଗେ କରନ୍ତେ ସମର
ଏତେବୋଲି ଦୈତ୍ୟ ଯେ ଛାଡ଼ି ସିଂହରଡ଼ି
ମେରୁଗିରି ମନ୍ଦର କି ପଡ଼ିବ ନଷ୍ଟେ ଝଡ଼ି ।
ଅବଶ୍ୟ ବାହୁଣ ଆସିବ ସ୍ୱର୍ଗପୁର
ତୁମ୍ଭେ ସାହାହୋଇ ମାଗୋ ଦେବକାର୍ଯ୍ୟକର
ତୋହର ପୁତ୍ର ଆମ୍ଭେ ଶହାସୁରଗଣ
ଅସମୟ ବେଳରେ ଭରସା ତୁହି ପୁଣ ।
ଯେବେ ମାତ ତୋର ଗୋ ନୋହିବ ସୁଦୟା
ନଷ୍ଟହେ ସ୍ୱର୍ଗ ଛାଡ଼ିଯିବୁ ଗୋ ମହାମାୟା ।
ଏତେ ବୋଲିଣ ଯହୁଁ କହିଲେ ଦେବଗଣ
ଶୁଣିଣ ଶାକମ୍ବରୀ ସନ୍ତୋଷ ହେଲେ ପୁଣ ।
ବୋଇଲେ ପୁରନ୍ଦର କରିବି ମୁଁ କିସ
ଦେବରାଜା ବୋଇଲେ ତୁ ଚାଲ ଲଙ୍କାଦେଶ
ସହସ୍ରାନନ ଶରୀରେ ଯାଇଣ ବଟେଜ କର ।
ଯେମନ୍ତେ ସ୍ୱର୍ଗପୁରେ ନ ଆସେ ଅସୁର ।
ଦେବତାଙ୍କ ବଚନ ଶୁଣିଣ ଗଲେ ଚଳି
ସହସ୍ରଗ୍ରୀବ କଣ୍ଠରେ ଯାଇଣ ବଟେଜ କରି ।
ତତକ୍ଷଣେ ଅସୁରକୁ କଲେ ମୋହମାନ
ଶାନ୍ତହୋଇ ସହସ୍ରାନନ କହଇ ବଚନ
ବୋଲଇ ଭୁଶଳେ ତ ଅଛଇଁ ମୁହିଁ ପୁଣ ।
ସୁତନାଚି ଭାଇବନ୍ଧୁ ମଲେ ସିନା ଜାଣ
ସେକଥାକୁ ବସ୍ତୁରିଲେ ହେବ କେଉଁ କାର୍ଯ୍ୟ
ଯେତେବେଳେ ତିନପୁର କଲି ମୁହିଁ ସାଧ୍ୟ ।

ଜେତେବେଳେ ପୁତ୍ରନାଶ କେହ୍ନ ଯେ ନଥିଲେ
ଅଛନ୍ତେ ସକଳେସିନା ମୋଠାରୁ ଜାତହେଲେ
ଏବେ ସେକଥାକୁ ଭଜଇ କସପାଇଁ
ରାବ ପାଛଲେ ଯୁଦ୍ଧକୁ ଯେ ଯିବଇଁ ମୁହିଁ ।
ଯାଇଣ ଶ୍ରୀରାମର ମାରିବ ଭ୍ରାତଭାଇ
ସୁଗ୍ରୀ ବଭୀଷଣ ଅଙ୍ଗଦକୁ ମାରିବଇଁ ।
ଏମନ୍ତ ବଚନ ସେ ଭଣେ ସହସ୍ରାନନ
ବାଳ ରହିଥିଲେ ସ୍ୱର ସହସ୍ର ନନ୍ଦନ ।
ଲକ୍ଷେକ ଉବୁଡ ଯେ ଥିଲେ ତାର ନାତି
ଷାଠିଏ ସହସ୍ର କୁଆଁରି ବର୍ଗି ଯେ ଅଛନ୍ତି ।
ସମସ୍ତେ ଏକମୁଖ ହୋଇଣ ବୋଲନ୍ତି
ନର ବାନରଙ୍କୁ ଆମ୍ଭେ ମାରିବା ବୋଲନ୍ତି ।
ଅସୁର କୁଳକୁ ଲଜ୍ଜା ହୋଇଲାକ ବଡ଼
ଆମ୍ଭର ଆଜ ସେ ଭସ୍ମ ହୋଇଲା ଅପାର ।
ଏହି ସମୟରେ ଯେ ବଳଙ୍କା ଦେଶ ବୀର
ସହସ୍ରାନନ ଗ୍ରାମରେ ଯେ ମିଳିଲ ସଭର ।
ରାଜାଙ୍କୁ ଦେଖିଣ ସେ ଶିରେ କର ଦେଇ
ବେନକର ଯୋଡ଼ିଣ ସେ ବଚନ କହଇ ।
କେ ଦେବ ଶୁଣିମା ହେ ବଳଙ୍କା ଦଣ୍ଡଧାରୀ
ଏହିକ୍ଷଣି ଥିଲି ମୁଁ ବଳଙ୍କା ଦେଶ ପୁର ।
ଗୁମାଜସୁର ନନ୍ଦନ ଯେ ଶତ୍ରାଜିତ ବୀର
ତାଙ୍କବାରତା ହେବାକୁ ପେଷିଲେ ସ୍ୱଶୀ ତୋତ
ଶୁଣିଣ ସହସ୍ରଗ୍ରୀବ ବୋଲଇ ବଚନ
ଯୁଦ୍ଧରୁ କେଉଁଣେ ଗଲା ନ ଦେଖିଲ ତା ବଦନ
ତାକୁ ନ ଦେଖି ମୁଁ ଯେ ହେଉଛୁ ବାଉଳ
ଭୁଲିଜାଣୁ କେଉଁଣେ ଗଲା ଶତ୍ରାଜିତ ମୋର ।
କହ ବାବୁରେ ଶତ୍ରାଜିତର କାହାଣୀ
ହୃଦୟ ବ୍ୟଥା ଉଛୁ ତୋହଠାରୁ ଶୁଣି ।
ଶୁଣିଣ ଚର ଆଗେ କହଇ ବଚନ ।
ନବରକୁ ଯାଇନାହିଁ ଶତ୍ରାଜିତ ପୁଣ
ତାହାର କଥା କେବ ଯେ ଶୁଣିଲ ପୁଣ ମୁହିଁ
ଶତ୍ର ଜିତ ଗଲା ଯେ ସମରକୁ ଧାଇଁ ।
ଶ୍ରୀରାମର ଭାଇ ଯେ ଅଟନ୍ତି ଲକ୍ଷ୍ମଣ
ଶତ୍ରାଜିତ ସଙ୍ଗରେ ସମର କଲା ଟାଣ ।
ସମର ଦେଖି ବୀର ମୟ ତାକୁ ନେଲା
କୁହୁକ ଅନ୍ଧାର କରି ଲଙ୍କାରୁ ହରିନେଲା ।

ଅନ୍ଧାର ଦେଖିଲେ ହରଣ କଲା ନାତି
ବମ୍ବରଦ୍ୱାର ବାଟରେ ପାତାଳ ନେଲା ସେହି
ପାତାଳରେ ଅନେକ ସମର ପୁଣି କଲା
ଲକ୍ଷ୍ମଣ ତାର ଯାଗ ଭଙ୍ଗି ପକାଇଲା ।
ଯେତେକ ସୈନ୍ୟ ତାର ସଙ୍ଗରେ ଥିଲେଯାଇ
ସମସ୍ତଙ୍କୁ ମାଇଲା ଶ୍ରୀରାମଚନ୍ଦ୍ର ଭାଇ ।
ଏକାହେଳକରୁ ନାତିତୋର ଉଦରଣ ପକାଇଲା
ନେଇ ବମ୍ବର ବାଟରେ ବାହାର ହୋଇଲା ।
ବଳଙ୍କା ଗଡ଼ରେ ନେଇ ପଶିଲ ବେଗେ ଯାଇ
ଗଡ଼ରେ ଶ୍ରୀରାମର ଭାଇ ଅଛଇ ଯୋଡ଼ାଇ ।
ଗଡ଼ର ଦକ୍ଷିଣ ଦ୍ୱାରେ ଗରୁଦେଶ ବୀର
ତେବେ ଲକ୍ଷ୍ମଣ ବନ୍ଧନେଲ ତାକୁ ଶର ।
ବେବଖଣ୍ଡ ହୋଇଣ ଛୁଟିଲା କଣ୍ଠାରୁ
ରଣ୍ଡି ପକାଇଲାକ ତାର ଯୋଜନକ ଦୂରୁ ।
ସେଠାରୁ ଶ୍ରୀରାମର ଭାଇ ଲେଉଟି ଆଇଲେ
ମଲାବେଳେ ନାତି ତୋର ସିଂହରଡ଼ି ଦେଲେ
ତାହା ଜାଣି ଦ୍ୱାରପାଳ ମୁଣ୍ଡକୁ ନେଇଗଲା
ମାଟମହାଦେଇ ଆଗେ ନେଇଣ ଦେଖାଇଲା
ଶରିଣ ରାଣୀ ତୋର ମୋହିତ ହେଲାରେଢ
ତୋହର ଗ୍ରାମରେ ଆସି କହିଲ ନୃପବନ୍ଧ ।
ଶୁଣିଣ ସହସ୍ରାନନ ବୋଲଇ କଥା ସତ
ସତ୍ତେ ତୋଡ଼ାଇ ତାଙ୍କୁ ମାଇଲ ଶ୍ରୀରାମର ଭ୍ରାତ
ଏମନ୍ତ ବୋଲି ଅସୁର ମୂର୍ଚ୍ଛାଗତ ହୋଇପଡ଼ି
ଶତ୍ର ଜିତ ବୋଲି ବ୍ୟାକୁଳ ହୋଇ ପଡ଼ି ।
ଏମନ୍ତ ସହସ୍ରାନନ ରୋଦନ କରଇ
ଗୁଣମାନ ସୁମରି ଯେ ଭୂମିରେ ଗଡ଼ଇ ।
ପୁଣି ସଚେତ ଯେ ହେଲା ସହସ୍ରାନନ
ପୁତ୍ରନାଶକ ଗୁହିଁଣ ବୋଲଇ ବଚନ ।
ଶୁଣ ହେ ପୁତ୍ର ନାଶଏ ବଚନ ମୋହର
ରାବ ନ ପାଉ ତୁମ୍ଭେ ସୈନ୍ୟଙ୍କୁ ସଜକର ।
ଦାଣ୍ଡରଥି ପଦାତି ଯେ ଅଶ୍ୱ ସେନାପତି
ସମସ୍ତେ ବୀରବେଶ ହୁଅରେ ଝଡ଼ତି ।
ସମସ୍ତେ ଚଳିଯିବା ସୁବଳସ୍ଥା ଗିରି
ଶ୍ରୀରାମର ସୈନ୍ୟଙ୍କୁ ଯେ ଆମ୍ଭେ ଦେବାଧାଡ଼ି
ଶ୍ରୀରାମ ଭ୍ରାତଭାଇ ଯେ ସୁଗ୍ରୀବ ବଭୀଷଣ
ସେନାପତି ଯୂଥପତି ସେନାଧ୍ୟକ୍ଷ ଜାଣ ।

ଅଙ୍ଗଦ ହନୁମନ୍ତ ସହିତେ ମାରଣ
ପୂର୍ବକାଳ କଷ୍ଟ ପାଶୋରିବା ମାରଣ ।
ଏମନ୍ତ ବୋଲଣ ଯେ ଗର୍ଜ୍ଜନ କରଇ
ପୂର୍ବ କାଳ କହନ୍ତେ ତାର ଶରୀର ଦହଇ ।
ଏଥି ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ସହସ୍ରାନନ ମନରେ ବିଚାରି ପୁଣ କହି ।
ବୋଇଲା ଏହିକ୍ଷଣି ଶିବ କପିଳାସ
ତ୍ରିଲୋଚନଙ୍କୁ କହିବି ମୋହର ସବୁ ଦୁଃଖ ।
ସେହି ମୋତେ ଅମର ବର ଦେଇଥିଲେ
ପୁଣି ଏତେ ଦୁଃଖ କିମ୍ପାଇ କହିଲେ ।
ଏମନ୍ତ ବିଚାରି ସେ ଦଶାସ୍ୟ ନନ୍ଦନ
ମନ୍ତ୍ରୀଙ୍କ ବୋଲେ ଯାନ ବାହା ତତକ୍ଷଣ ।
କପିଳାସ କନ୍ଦରକୁ ବେଗେ ରଥ ଘେନ
ମୁହିଁ ଯାଇ ଦର୍ଶନ କରିବି ତ୍ରିଲୋଚନ ।
ଶୁଣିଣ ମନ୍ତ୍ରୀ ଯେ ରଥ ବାହେ ଖରେ
ଆଣିଣ ମିଳିଲା ଦୈତ୍ୟ ମୋର ଆଗରେ ।
ଚରଣ ତଳେ ମୋହର ଶୋଇଲା ଲୋଟଗାଳ
ବେନିକର ଯୋଡିଣ ବୋଲଇ ଶୁଣ ଶୂଳୀ ।
ମୋତେ ପୂର୍ବେ ତୁମ୍ଭେ ଅମର ବର ଦେଲ
ନର ବାନରଙ୍କ ହସ୍ତେ ମୋ ବଂଶ ମରିଇଲ
ଈଶ୍ୱର ବୋଇଲେ ଶୁଣରେ ସହସ୍ରାନନ
ବର ଦେବାର ତୋତେ ଅଛଇ ପ୍ରମାଣ ।
ଆମ୍ଭେ ପ୍ରସନ୍ନ ହୋଇ ତୋତେ ଦେଲୁ ବର
ତୋ ପୂର୍ବ କାଳଙ୍କ କରିନାହିଁ ଯେ ଅମର ।
ତୁହି ତ ଗର୍ଭେ ଅମର ହୋଇଥିବୁ
ଅନନ୍ତ ନାରାୟଣଙ୍କ ବନିତାସଙ୍ଗରେ ନଯୁଝିବୁ
ଯେବେ ତୁ ସମର କରିବୁ ତାଙ୍କ ସଙ୍ଗ
ବେନିଫାଳ କରି ଚିରିଦେବେ ତୋର ଅଙ୍ଗ
ସେତେବେଳେ ତୋତେ ଯେ ହୋଇବ ମରଣ
ନର ବାନର ତୋତେ ନ ପାରିବେ ଜିଣିବା
ଶ୍ରୀରାମର ପ୍ରାଏ କୋଟିଏ ରାମ ହେଲେ
ମାରି ନ ପାରିବେ ତୋତେ କହୁଛି ଏତେବେଳେ
ସ୍ତ୍ରୀ ବିନୁ ତୋତେ ପୁରୁଷେ ନାହିଁ ବଧ
ଏହା ଶୁଣି ବୋଇଲା ଦୈତ୍ୟ ଯେ ସଗର୍ବ ।
ବୋଇଲା ତୋହଠାରୁ ଏ ବଚନ ଶୁଣି
ଜନ୍ମଭରକ ମଣାଇଲା ମୁହିଁ ଜାଣି ।

ଶତେ ବରଷ ବସି ତପ ମୁହିଁ କଲି
ଉଦର କୁମରକୁ ତେବେ ମୁଁ ଦେଖିଲି ।
ବୋଇଲେ କିମ୍ପାଇଁ ତୁ କରୁ ସୁମରଣା
ମୁହିଁ ବୋଇଲି ଦେବ କର ହେ କରୁଣା ।
ସେ ବୋଇଲେ ଯାହା ଇଚ୍ଛା ମାଗି ନେଉଣ
କଶ୍ୟପର ନାତି ମୋତେ ଯାଚିଲେ କଲ୍ୟାଣ
ମୁଁ ବୋଇଲି ପୂର୍ବକାଳ ମୋର କରିବ ଅମର
ସେବୋଇଲେ ବନାଦରେ ଯେବେ କଣ୍ଠ ଭ୍ରମର
ଶତ୍ରୁ ନୋହିଲେ କର ସଙ୍ଗେ ଯୁଦ୍ଧ କଲେ ପୁଣ
ଏକା ତୋଷରେ ସେହି ପାଇବେ ମରଣ ।
ଶତ୍ରୁ ସଙ୍ଗେ ଯୁଝିଲେ ହୋଇବ ଅଜୟେ
ତିନିପୁରେ ସୁରେ ଅସୁରେ କଇଦେବା ଭୁଇଁଏ
ଏମନ୍ତ ବଚନ ଯହୁଁ ନାଶକର କହି
ପୂର୍ବ କାଳ ତିନିପୁରେ ଜିଣିଲେକ ଯାଇ ।
ଅସୁର ସୁର ଲୋକେ ସମସ୍ତେ ଡରିଲେ
ମୋହର ବୋଲରେ ସେ ମୋତେ ସେବା କଲେ
ଏବେ ନର ବାନର ମାଇଲେ ପୂର୍ବ କାଳ
ଦେଲ ବର ଲଙ୍ଘି ତ ହେଲ ପଶୁପତି ।
ଶୁଣିକରି ତାରଠାରୁ ତାହାଙ୍କୁ କହିଲୁ
ନାଶ କର ପରେ ଯାଇଁ ପଶୁର ହୋଇଲୁଁ
ରତକାଳେ ସହସ୍ରାନନ ଆମ୍ଭଠାରୁ ଜାଣ
ସଞ୍ଜିବନୀ ପୁରେ ଯାଇଁ ପ୍ରବେଶ ହୋଇଲା ।
ଜନ୍ମପଣ୍ଡିତ ଦେଖି କହେ ସହସ୍ରାନନ
ତୁମ୍ଭର ଦେଲ ବର ଲଙ୍ଘିତ ହେଲା ପୁଣି ।
ସଦାଶିବ ବରେ ମୁଁ ଯେ ହୋଇଲି ଅମର
ତୋର ବରେ କ୍ଷୟ ହେଲେ ପୂର୍ବକାଳ ମୋର
ତୁମ୍ଭେ ପ୍ରସନ୍ନ ହୋଇଣ କହିଥିଲ ମୋତେ
ପୂର୍ବ କାଳ ଅମର କରିବା ନିମନ୍ତେ ।
ତାହା ଶୁଣି ବୋଇଲେ ଯେ କଶ୍ୟପର ନାତି
ଶୁଣ ସହସ୍ରାନନ କଲୁ ଯେ ଅପାତ ।
ନର ବାନର ତୋର ନୁହନ୍ତି ଶତ୍ରୁ ପୁଣ
ଏକା ତୋଷେ ଯୁଦ୍ଧ କଲୁ ତାଙ୍କରସଙ୍ଗେ ଜାଣ
ସେ ତୋଷରୁ ପୂର୍ବ କାଳ ଗଲେ ତୋର ନାଶ
ସେ କଥା ଚେତ ନ ପାଇଲୁ ରେ ସହସ୍ରାସ୍ୟ
ଦଶଗ୍ରୀବ ରାବଣ ଯେ ମନ୍ଦବୁଦ୍ଧି କଲା
ଶ୍ରୀରାମର ଘରଣୀକି ହରିଣ ଆଣିଲା ।

ସେ ଦୋଷରୁ ରଘୁନାଥ ମାଇଲେ ତାହାକୁ
ରାବଣ ଯେ ଶତ୍ରୁ ହେଲା ଶ୍ରୀରାମଚନ୍ଦ୍ରଙ୍କୁ ।
ସେ ଦୋଷରୁ ବଂଶ ଯେ ତାର ହେଲା ନାଶ
ତେଣୁକରି ତାହାର ଯେ ନ ରହିଲା ଅଂଶ
ବିଭୀଷଣ ଶରଣ ଯେ ପଶିଥିଲା ପୁଣ
ତାରଠାରେ ଦୟା ଯେ ବହିଲେ ରାମରାଣ ।
ଲଙ୍କାରେ ନୃପତି ଯେ ତାକୁ ଶ୍ରୀରାମ କଲେ
ଦଶଗ୍ରୀବ ଘରଣୀକି ତା ତଳେ ରଖିଲେ ।
ବିଭୀଷଣ କହିଲା ଯେ ମୋ ପରେ ଅଛୁ ବଡ଼
ରାବଣର ସମ୍ବନ୍ଧ ସହସ୍ରାନନ ଗାଢ଼ ।
ତାକୁ ଡକାଇ ମୋତେ ସନମାନ କର
ତେଣୁକରି ତୋଠାକୁଶ୍ରୀରାମଭେଦଦେଲେଶ୍ୱର
ତୋତେ ଯଶହେବାକଥା ଲୁଷାଇଲୁ ଅବଗୁଣ
ସମ୍ବନ୍ଧର ଶତ୍ରୁ ସଙ୍ଗେ କଲୁ ତୁ ଯାଇ ରଣ ।
ଅଧମରେ ତୋର ପୁତ୍ର ନାତି କ୍ଷୟଗଲେ
ଏ କଥାକୁ ବିଚାର କର ତୁ ମନରେ ।
ଏମନ୍ତ ବଚନ ଯହୁଁ ଶୁଣିଲା ସହସ୍ରାନନ
ବୋଲଇ ସୁଦୟା କର ହେ ରବିର ନନ୍ଦନ
ପୁତ୍ର ନାତି ମରିବାରେ ବ୍ୟାକୁଳ ମୋରଦେହ
କେଉଁ ପ୍ରାୟେ ଶ୍ରୀରାମଙ୍କୁ ମାରିବି କହ ତୁହି ।
ନୋହିଲେ ତୋତେ ମୁହିଁ କରିବି ଆଜ ନାଶ
କେତେ ଧର୍ମ କହୁ ତୁରେ ରବିଙ୍କର ଶିଷ୍ୟ ।
ଅନେକ ଲୋକଙ୍କୁ ତୁ ଯେ ନାଶ କରୁ ପୁଣ
ତୋତେମାଇଲେଅମର ହୋଇବେସର୍ବେଜାଣ
ଏତେ ବୋଲି ମୋର ସହସ୍ରାନନ ଧରି
ସହସ୍ର ମୁଖରେ ସେ ଯେ ଗର୍ଜନ ନାଦକରି
ତାହାର ଗର୍ଜନ ଦେଖି ବୁଲନ୍ତି ଜନ୍ତୁପତି
ଛିଦ୍ରଗୁପତେ ଯାଇ ହେ କର ତାକୁ ଶାନ୍ତି ।
ଶୁଣି ଚିତ୍ରଗୁପତ ଦୁହେଁ ଚଳିଗଲେ
ସହସ୍ରାନନ ଆଗରେ ଯାଇଣ କହିଲେ ।
ବୋଇଲେ କମ୍ପା ଦୈତ୍ୟ ବରହୁ ବୁଦ୍ଧିରାଗି
ତୋର ମନକଥା ଯେ ଜାଣିଲୁ ଆମ୍ଭେ ଆଜ
ଶ୍ରୀରାମର ସୈନ୍ୟବଳ କର ତୁ ଯାଇ ନାଶ
ସୁରସୁର ଲୋକ କେହୁ ନ ରହିବେ ଶେଷ ।
ତେବେ ତୋର ମନ ଯେ ହେବ ପରିପୂର୍ଣ୍ଣ
ମାର ଯା ଶ୍ରୀରାମଙ୍କୁ ନ କର ହେଳା ଜାଣ ।

ଏହା ଶୁଣି ସହସ୍ରାନନ ଶାନ୍ତ ମୂର୍ତ୍ତି ହେଲା
କି ରୂପେ ମାରିବି ବୋଲି ତାକୁ ପଚାରିଲା ।
ସେ ବୋଇଲେଜନ୍ତୁପତିଦେବେ ତୋତେଶର
ସେ ଶରେ ନାଶ ଯିବେ ଶ୍ରୀରାମ ସକଳ ।
ଶୁଣିଣ ଯେ ସସ୍ରାନନ ନାଶକରିବୁ କହି
ବେଗେ ଦିଅ ଶର ମୋତେ ଯିବି ରଣଭୂଇଁ
ଶୁଣିକରି ଜନ୍ତୁପତି କାଳଫାସ ଦେଲେ
ଏ ଶର ବନ୍ଧିଲେ ସର୍ବେ ନାଶ ଯିବେ ଭଲେ
ଏକାବେଳେ ମାରିବୁରେ ଅପାଲଟକା ଶର
ଯେବେ ବିସ୍ମରିବୁ ତେବେ ମରିବେ ସକଳ ।
ରାବଣ ବୋଇଲେ ଶର ଅଟଇ ଅପାଲଟିତ
ଏହାକୁ କଣିବାକୁ ଶର କେହୁ ସେ ସାମର୍ଥ ।
ନାଶକର ବୋଇଲେ ହେ ବ୍ରହ୍ମା ବିଷ୍ଣୁ ହର
ତେତିଶ କୋଟି ଦେବତା ନର ଯେ ବାନର
ଅସୁର ଯେ ନାଗବଳ କେହି ନ ବର୍ତ୍ତିବେ
ଯାହାକୁ ମାରିବୁ ସେ ନକଟରେ ମରିବେ ।
ଏଣା ଈଶ୍ୱରଙ୍କ ପୁତ୍ର ଅଟନ୍ତି ଗଣେଶ
ତାହାକୁ ନକାଟିବାକୁରେ ମୋର କାଳପାଶ
ତାର ପାଶ ଅଙ୍କୁଶ ଶର ମୋର ଭେଦ
କାଳ ପାଶ ମୋହର ସେ ପଛାଏ ପୁଣଛେଦ
ଶୁଣିଣ ସହସ୍ରାନନ ସନ୍ତୋଷ ହୋଇଲା
କାଳ ପାଶ ଯମଠାରୁ ନେଇଣ ଧଇଲା ।
ମନ୍ତ୍ରୀକି ବୋଇଲା ମୋରରଥବାହା ବେଗକରି
ଏତେ ବୋଲି ରଥପରେ ବସିଲା ଶସ୍ତ୍ର ଧରି
ଶୁଣିକରି ମନ୍ତ୍ରୀବର ରଥ ବାହିଲାକ ବେଗେ
ଲଙ୍କାଗଡ଼ ପ୍ରବେଶ ରଜନୀ ଶେଷ ଭାଗେ ।
ଏଥୁ ଅନନ୍ତରେ ଯେ ହେଲା କସ ସାତ
ରଜନୀ ପାହିଣ ତେଣେ ରବି ଉଦେ ହୋନ୍ତି
ପୁତ୍ରନାତି ମରଣରେ ଯେ ଭାବରେ ନିଦ୍ରାନାହିଁ
କ୍ଷୁଧା ତୃଷା ତାହାକୁ ଯେ କିଛି ନ ଲାଗଇ ।
ତକ୍ଷଣେ ଗଇଲା ସୁର ସହସ୍ର ନନ୍ଦନ
ଲକ୍ଷେକ ନାତି ଯେ ଅଣାଇ ବହନ ।
ବୋଲଇ ବାବୁରେ ସମସ୍ତେ ହୁଅ ସଜ
ବିଭୀଷଣ ଶ୍ରୀରାମ ମାରିବା ଆମ୍ଭେ ଆଜ ।
ଶଙ୍ଖାଜତକୁ ମାଇଲା ଶ୍ରୀରାମର ଭାଇ ପୁଣ
ସୁର ଭାଇଙ୍କି ମୁଁ ଯେ କରିବି ନିବାରଣ ।

ତେବେମୁଁ ବୋଲଇ ପ୍ରତାପି ଲଙ୍କାରଈଶ୍ୱର
କୋହଳେ ଲେଉଟି ଯେ ଯିବ ମୋର ପୁର
ଏତେ ବୋଲିଣ ଅସୁର ପ୍ରତିଜ୍ଞା ବନ୍ଧ କଲା
ଶତ୍ରୁ ଜୟ ଯାନରେ ଯାଇଣ ବସିଲା ।
ସମସ୍ତ ସୈନ୍ୟଙ୍କୁ ସେ ବୋଲେ ସମ୍ଭାଳି
ବେଗେ ଆସ ବୋଲିଣ ଦେଲାକ ଚଳାଇ ।
ନିଶାଚର ବଳ ଯେ ଗର୍ଜନ୍ତି ଘୋର ରଡ଼ି
କେହୁଆଗେ କେହୁପଛେ ଧାମନ୍ତି ତରମାରି
କେବଣ ଅସୁର ଯାଏ ଗାଲଭୁସା ଦେଇ
ସୁବଳସ୍ତା ଗିରିକ ସେ ବେଗେ ଚଳିଯାଇ ।
ମହା ସମ୍ଭ୍ରମେ ବଜେ କଲା ସହସ୍ରାନନ
ସୁବଳସ୍ତାରେ ଅଛନ୍ତି କୌଶଲ୍ୟା ନନ୍ଦନ ।
ଯହୁଁ ଶୁଣିଲେ ସେ ଯେ ଅସୁରଙ୍କ ଧ୍ୱନି
ଲକ୍ଷ୍ମଣ ମୁଖ ଚାହିଁଣ ବୋଲନ୍ତି ରଘୁମଣି ।
ଶୁଣ ହେ ସଉମିତ୍ରୀ କରିବା ଆମ୍ଭେ ଜୟ
ଯୁଦ୍ଧକୁ ବାହାରିଲା ଯେ ଦଶାସ୍ୟର ଶିଷ୍ୟ ।
ପୂର୍ବ ନାତିଙ୍କର ଛଳେ କରିବ ଘୋର ରଣ
ମରିବାକୁ ତାର ଆଜ ନାହିଁ ନିସ୍ତରଣ ।
ଜାଣଟିକ ବାବୁରେ ମେଘନାଦର ଛଳେ
ରାବଣ ବ୍ରହ୍ମଶକ୍ତି ମାଇଲା ସେତେବେଳେ ।
ଦଶରଥ ମୋତେ ଯେ ବଶିଲା ଅନ୍ଧାର
ବିଧାତା ପୁରୁଷ ମୋତେ ସେଥିରୁକଲେପାର
ତେଣୁକରି ବାବୁରେ ଡାଆରୁଛୁ ମୁହିଁ
ସତର୍କ ହୋଇଣ ଆଜ ଯୁଦ୍ଧରେ ଥିବୁରହି ।
ସୁଗ୍ରୀବକୁ ଚାହିଁଣ ବୋଲନ୍ତି ରଘୁନାଥ
କହ ଏବେ କସ ଯେ କରିବା ମଇତ ।
ଶୁଣିଣ ସୁଗ୍ରୀବର ବୋଲଇ ବଚନ
ଏଥକୁ ଚିନ୍ତା କମ୍ପା କରହେ ରଘୁନାନ ।
ତୁମ୍ଭ ଆଜ୍ଞାକୁ ସାବଧାନ ସୁର ଲୋକେ
ଏ କଥା ତୁମ୍ଭଙ୍କୁ ନ ଗୁର ଆଚମ୍ବିତେ ।
ଏହାଶୁଣି ରଘୁନାଥ ହର୍ଷରେ ମନରେ
ନଜରିପାରି ଦୈତ୍ୟ ତାହାର ହସ୍ତରେ ।
ହନୁମନ୍ତ ଚାହିଁଣ ବୋଲନ୍ତି ରୂପଧାରୀ
ନର ବାନର ସୈନ୍ୟ ଆଣହେ ହକାରି
ଅଙ୍ଗଦକୁ ବୋଇଲେ ବହନ ହୋଇତଳ
ଲକ୍ଷେ ରଜାଙ୍କୁ ଯାଇ କହ ତୁ ସତ୍ୱର ।

ବୋଲିବୁ ସଜ ହୋଇ ସମସ୍ତେ ବେଗେଚଳ
ଯୁଦ୍ଧ କରିବାକୁ ଆସେ ଦଶାସ୍ୟର ବାଳ ।
ଶୁଣିକରି ଅଙ୍ଗଦ ବେଗେ ଚଳିଗଲା
ନୃପତିମାନଙ୍କୁ ଯାଇ ବାରତା ଜଣାଇଲା ।
ଦୈତ୍ୟବଳ ଯୁଦ୍ଧକୁ ଅଇଲେ ଦେଖ ଏବେ
ତୁମ୍ଭେମାନ ରଣକୁ ବାହାର ହୁଅବେଗେ ।
ଶ୍ରୀରାମ ବୃଷଙ୍କର ବାନର ରୁକ୍ଷକପି
ସୁଗ୍ରୀ ବିଭୀଷଣ ଯେ ବାହାର ହୁଅନ୍ତି ।
ଶୁଣିଣ ରଜାମାନେ ବୀରବେଶ ହେଲେ
ରଥି ସେନାପତି ଯେ ପାଦାନ୍ତି ସେନ ଚଳେ
ଅଙ୍ଗଦ ଲେଉଟି ଆସି ଶ୍ରୀରାମ ଆଗେ କହୁ
ଲକ୍ଷେ ରଜା ସଜ ହେଲେ ରଣ ଭୂଇଁ ।
ଶୁଣିଣ ଶ୍ରୀରାମ ଯେ ବେଗେ ସଜ ହେଲେ
ଭରତ ଲକ୍ଷ୍ମଣ ଶତ୍ରୁଘନର ତୁଲେ ।
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁମାନ
ନର ବାନର ସମସ୍ତେ ଚଳିଲେ ତତକ୍ଷଣ ।
ସୈନ୍ୟ ଗହଳରେ ସିନ୍ଧୁ ଉଚ୍ଛୁଳୁଛି
ଦଲ ଦଲ ହୋଇଣ କମ୍ପେ ବସୁମତି ।
ଶ୍ରୀରାମ ସନ୍ନିଧେ ହନୁ କରଯୋଡ଼ି କହି
ନର ବାନର ସୈନ୍ୟ ଅଇଲେ ଗୋସାଇଁ ।
ଶୁଣିଣ ରଘୁନାଥ ହେଲେ ତୋଷମନ
ବୋଇଲେ ଆଗ ହୋଇ ଚଳିଯାନ୍ତୁ ସୈନ୍ୟ
ପାଞ୍ଚ ସାତ ଯୁଣେ ଠଣା କରିଣ ରହନ୍ତୁ
ପର୍ବତ ଉପରକୁ ଅସୁରଙ୍କୁ ନ ଘୁଞ୍ଚନ୍ତୁ ।
ଶୁଣିଣ ନର ବାନର ବେଗେ ଚଳିଗଲେ
ପାଞ୍ଚଯୁଣ ତିନଯୁଣ ଠାବରେ ରହିଲେ ।
ଶୁଭ ଅନୁକୂଳ ସେନ ଉଠିଲେ ରାମବାଣ
ନନ୍ଦଘୋଷ ରଥରେ ବଜସ୍ଥ ଆପଣ ।
ବଜେ କଲେ ତାଳଧ୍ୱଜରେ ଲକ୍ଷ୍ମଣ ବୀର ପୁଣ
ଅସୁର ଦଳନ ରଥରେ ବସିଲେ ଶତ୍ରୁଘନ
କଣୀର ରଥରେ ବସିଲେ ଭ୍ରୂଥଯାଇ
ଦେବଦଳନ ରଥରେ ବିଭୀଷଣ ଯେ ବସଇ
ଶ୍ୱେତହସ୍ତୀ ଉପରେ ବସେ ସୁଗ୍ରୀବର
ମାୟାଦୈତ୍ୟ ପଛରେ ଗୃହନାମରେ ଶବର
ଶ୍ୱେତ ନାଗ ଉପରେ ଲୋମପାଦ ଶତେପୁଷ୍ଟ
ଧନୁ କମାଣ ଧରି ବସିଲେ ବୁଝିତ ।

ସୁବର୍ଣ୍ଣ ରଥରେ ବଜେ ଲେମପାତ
ଯୂଥପତି ସେନାପତି ହନୁମନ୍ତ ଅଙ୍ଗଦ ।
ଆଗରେ ବାଜା ଯେ ବାଜେ ଝଝଧେଣ
ଭ୍ରାକ୍ୟର ଶବଦରେ କମ୍ପଇ ଗିରି ପୁଣ ।
ନନ୍ଦିଘୋଷ ରଥରେ ବଜେ କରୁଣ ଶ୍ରୀରାମ
ସାରଥିକ ବୋଇଲେ ଶୀଘ୍ରରେ ମୋରଯାଉ ।
ଚତଷ୍ଟଣ୍ଡ ମାତଳି ନନ୍ଦିଘୋଷ ବାହି
ତାଙ୍କ ପଛେ ସମସ୍ତେ ହେଲେକ ଚଳାଇ
ଛିନ୍ନକପି ହେଲ ଯେ କଳଣା ନ ଯାଇ
ସଭୁଙ୍କର କରରେ ଯେ ତରୁଶିଳ ଅଛଇଁ ।
ଏମନ୍ତେ ସକଳ ସୈନ୍ୟ ବେଗେଯାନ୍ତି ଚଳ
ଲକ୍ଷ୍ମଣଙ୍କୁ ଚାହିଁ ବୋଲନ୍ତି ରାବଣାରି ।
ତୁମ୍ଭେ ଭ୍ରାତ ଲକ୍ଷ୍ମଣରେ ମୋ ସଙ୍ଗେ ଥିବ
ମୋ ପାଶ ଛାଡ଼ିଣରେ କେଣିକି ନଯିବ ।
ଅନେକ ମାୟା ଯେ ଜାଣନ୍ତି ନିଶାଚରେ
କ୍ଷଣକ ଭିତରେ ଆନୁଆନ କରିପାରେ ।
ଏମନ୍ତ କହିଣ ଯେ ବୋଇଲେ ରଘୁମଣି
ସହସ୍ର ମାଥ ସୈନ୍ୟ ଗୋଳେ ଆସି ।
ଦୁଇଆଡରୁ ସୈନ୍ୟ ହେଲେ ମିଶାମିଶି
ସହସ୍ର ଶିଳାବୃକ୍ଷ ହେଲେ ପିଟାପିଟି ।
ଦୁଇ ସହସ୍ର ଭୁଜରେ ଧନୁ ସହସ୍ର ଧରି
ଶ୍ରୀରାମର ଉପରକୁ ନାରାଚ ବୃଷ୍ଟି କରି ।
ଦେଖିଣ ପଞ୍ଚଶର କରନ୍ତି ରାବଣାରି
ସହସ୍ରାନନ ଶରମାନ ଆସନ୍ତେ ନିବାରି ।
ଦେଖିକରି ଦଇତଯେ ହେଲା କୋପଭର
କୋଟିଏ ସହସ୍ରବାଣ ପେଶେ ଶ୍ରୀରାମ ଉପର
ଦେଖିକରି ବାଣ ଯେ ପେଷିଲେ ରଘୁସାଇଁ
କୋଟିଏ ସହସ୍ର ନାରଚ ପକାଇ ଛିଣ୍ଡାଇ ।
ଦେଖିକରି ଆଶ୍ଚର୍ଯ୍ୟ ହେଲା ଦୈତ୍ୟରାଣ
ବୋଇଲା ମାନବ ରେ ଜୀବନ ତୋ ଧନ୍ୟ ।
କୋଟିଏ ସହସ୍ର ବାଣ ଏକାବେଳେକଲୁ ନାଶ
ଏତଗଳ ହେଲେ ନାଶ ଯାଆନ୍ତେ ଅବଶ୍ୟ
ଏମନ୍ତ ସମୟେ ହନୁମନ୍ତ ଯେ ଧାଇଁଲା
ଚିକଳାଇ ନେଇ ଦୈତ୍ୟ ରଥରେ କଚାଡ଼ିଲା
ସନଧଇ ଥିଲେ ତାରକ ନଳନୀଳ
ଗନ୍ଧମାଦନ ଯେ ବିଭୀଷଣ ସୁଗ୍ରୀବର ।

କଞ୍ଚଣ କାଳମୁଖ ଦଧିମୁଖ ବୀର
ଏମାନେ ଶିଳାବୃକ୍ଷ ଧରି ପଶିଲେ ଯୁଦ୍ଧରେ ।
ଆବର ଯେତେକ ନର ବାନର ବଳ
ଦୈତ୍ୟଙ୍କ ରସଙ୍ଗରେ କଲେସବେ ଗୋଳ ।
ଅଙ୍ଗଦ ସଙ୍ଗେ ମଲ୍ଲ ମହାମଲ୍ଲ ପୁଣ
ଦୈତ୍ୟଙ୍କର ସଙ୍ଗରେ କରନ୍ତି ସେହୁ ରଣ ।
ଲକ୍ଷେ ନାତି ସଙ୍ଗେ ଲକ୍ଷେ ନୃପବର
ତିନିଭାଇ ସଙ୍ଗେ ସ୍ଥିତ କୁମର ସମର ।
ଭରତ ସଙ୍ଗରେ ଯୁଦ୍ଧ ସହସ୍ରେ କୁମର
ଶ୍ରାବଣ ବରଷା ଜାଣି ବରଷନ୍ତି ଶର ।
ବଜ୍ର ବାଟୁଳି ଶରେ କୈକେୟୀ ତାହାଙ୍କେବ
ଲକ୍ଷେ କୋଟି ବାଣ ଦଇତ୍ୟେଯେ ଝଞ୍ଜ ।
ଲକ୍ଷ୍ମଣର ସଙ୍ଗରେ ସହସ୍ରେ କୁମର
ଶର ବୃଷ୍ଟି କଲେ ଯେ ଲକ୍ଷ୍ମଣ ଉପର ।
ଦେଖିଣ ସଉମିତ୍ରି ପ୍ରତିଶର କଲ
ଦୈତ୍ୟଙ୍କର ବାଣସବୁ ଛେଦ ପକାଇଲା ।
ଦୁଇ ସହସ୍ର କୁମର ଯେ ସହସ୍ରା ନର
ଶତ୍ରୁଘ୍ନ ସଙ୍ଗେ ଯୁଦ୍ଧ କରନ୍ତି ମହାଘୋର ।
ଶତ୍ରୁଘ୍ନ ପବନା ଶର ଧରି କରେ
ସମସ୍ତଙ୍କ ଶର ଉଡାଇ ପକାଏ ସମୁଦ୍ରରେ ।
ଏକାବେଳେ କୋଟି କୋଟି ଝଞ୍ଜ ପବନଶର
ବହନ୍ତି ଅସୁର ଯେ ହୋଇ ମହୁଆଳ ।
ଦେଖିଣ ଶତ୍ରୁଘ୍ନ ମନ ଭେଦ ଧରି
ସବୁଙ୍କର ଶରକୁ ଛେଦଇ କ୍ରୋଧ କରି ।
ସେନାପତି ପଦାତି ଯେ କପିବଳ ମାରି
ରଥୀଙ୍କ ସଙ୍ଗରେ ରଥୀ ଯେ ଯୁଦ୍ଧ କରି ।
ଗଜଙ୍କର ସଙ୍ଗରେ ସେନା ଯୂଥପତି
ମାହୁନ୍ତକୁ ମାରି ଗଜକୁ କବୁଡନ୍ତି ।
ଅଶ୍ୱକୁ ମାରିଣ ସିଆଣ୍ଡି ଚରି ବ୍ୟନ୍ତ
ଏମନ୍ତେ ସେନାପତି ଯେ ଯୂଥପତି ।
ପଦାତି କି ପଦାତି କରନ୍ତି ରଣଗୋଳ
କୁନ୍ତ ଭଲ ଖଣ୍ଡାରେ ଏକେ କାଟେ କାହା ଶିର
ଶାର୍ଦ୍ଦୁଳ ପଲରେ ହନୁ ଅଙ୍ଗଦ ସୁଗ୍ରୀବର
ଶ୍ୱାନ ଗଧ ଶୃଗାଳ ମାରନ୍ତି କରି ଗୋଳ ।
ସାରେଣି ପଙ୍କ୍ତିରେ ଗୃଦ୍ଧ ଶବର ପଶି
ବସିବା ଲୋକ ମାରିଣ ସାରେଣି ପେଟ ଭୁଞ୍ଜି

ଜହ୍ନ ଶଙ୍କର ଯେ କଳ୍ପାନ୍ତ ରଣ ଠାଣ
ଦୈତ୍ୟଙ୍କୁ ମାରଣ ଯେ କରନ୍ତି ରଣଭଣ ।
ଲକ୍ଷେ ରାଜା ଲକ୍ଷେ ନାଡ ସଙ୍ଗରେ ଯୁଦ୍ଧକରି
କୁତୁହଳ ପ୍ରାତ୍ୟେକ ଶର ଛାଡ଼ନ୍ତି ଦୈତ୍ୟ ଧରି ।
ଛେଦନ୍ତି ରାଜଗଣେ ଜାଣି ପ୍ରଚଣ୍ଡ ଶର
ଏମନ୍ତେ ଯୁଦ୍ଧ ହେଲା ଜଗତ ଦୁଇକୁଳ ।
ଦେଖିଣ ଶ୍ରୀରାମଙ୍କୁ କୋପକରେ ସହସ୍ରାନନ
ବୋଲଇ ମାନବା ମୁଁ ନେବି ତୋର ଜୀବନ
ତୁମ୍ଭର ଆୟୁଷ ଏବେ ଯେତେ ଦିନ ଥିଲା
ଏଥି ଯୁଦ୍ଧକାଳ ତୁମ୍ଭର ଜାଣି ଯେ ନୋହିଲା ।
ନିଶ୍ଚୟେ ତୁମ୍ଭର ଆଜ ପୂରିଲାଟି କାଳ
ପାପ ପୁଣ୍ୟ ସଙ୍ଗେ ଘେନ ସଞ୍ଚି କମ ଚଳ ।
ନର ବାନର ରାଜା ସକଳ କରି ନାଶ
ମୁଁ ହେବି ଜମ୍ବୁଦ୍ୱୀପେ ଏକାକ୍ଷୀ ନରେଶ ।
ଏତେବୋଲି ପ୍ରତିଜ୍ଞା କରେ ସହସ୍ର ଗ୍ରୀବ
ବୋଇଲା ତୋର ଯୁଦ୍ଧ ବୁଝିବାରେ ଆଜ ।
ମୁଁ ମାଇଲେ ସ୍ୱରଗର ସରିବ କୁଳ ତୋର
ଲଙ୍କେଶ୍ୱରାନ୍ତ ଜମ୍ବୁଦ୍ୱୀପେ କେବେ ନୃପବର ।
ଶ୍ରୀରାମ ବୋଇଲେ ତୁରେ ଶୁଣ ପଞ୍ଚମୁଖା
ଏ କୁଲକ୍ଷଣ ରୂପ ଯେ ନଥିଲା ଆମ୍ଭ ଦେଖା ।
କେଉଁ ବିଧାତାରେ ଏମନ୍ତ ଜନ୍ମ ଦେଲା
ଦୁଇ କୋଟି ସହସ୍ର ମୁଖ କରିଣ ଗଢ଼ିଲା ।
ଗୋଟିଏ ପେଟକୁ ତୋର ଦୁଇ ସହସ୍ର ହାତ
ଦୁଇ ସହସ୍ର କର୍ଣ୍ଣକୁ ତୋର ଶୁଭୁଛି କେମନ୍ତ
କେଉଁ ସ୍ତ୍ରୀମାନେ ତୋର ସଙ୍ଗରେ ଭରନ୍ତି ମେଳା
ଦେଖି ତୁମ୍ଭା ନର ବାନରେ ହାସ୍ୟ କରନ୍ତି ସବ
ଶୁଣିଣ ସହସ୍ରାନନ ହସିଣ ବୋଇଲା
ତୋତେ ମାରି ତୋର ଘରଣୀକି ନେବି ଆଜ ସବ
ତେବେ ତୁମ୍ଭ ମନରେ ହୋଇବ ପୁଣ ତୋଷ
ସୀତାଙ୍କୁ କଷ୍ଟ ଘରଣୀ କରିବି ମୋର ଆସ
ଏତେ ବୋଲି ଦୈତ୍ୟ ହେଲା ସକୋପ
ଛତ୍ରଶର ଗୁଣରେ ବସାଏ ମହାବଳ ।
ତପ୍ତସିନ୍ଧୁ ବେଗ ତୁଟିଇ ଯେନପି ଜୀବନ
ଭୁଜଙ୍ଗେଶ୍ୱରଙ୍କ ଠାରୁ ହୋଇଛି ନିର୍ମାଣ ।
ଏମାନଙ୍କୁ ବେଗେ ତୁରେ ପକାଅ ବିନାଶି
ଏତେ ବୋଲି ଧନୁର୍ବେଦ ସୁମେରି ବିଶେଷି

ଗୁଣରୁ ନାରାଚ ଯେ ବେଗେ ଚଳିଯାଇ
ଗଗନ ମାର୍ଗେ ଗମଇ ଗର୍ଜନ ହାବେ ସେହି
ଆକାଶରେ ତାରାଯାନ୍ତେ ଅନ୍ଧାର ଦିଶଇ
ନାରାଚ ମୁନରୁ ଯେ ଅଗ୍ନି ଝଲକଇ ।
ଦୂରରୁ ସେ ବାଣକୁ ଦେଖିଲେ ରଘୁନାଥ
ଗୁଣେ ନାରାୟଣ ଶର ବସାଇଲେ ତୁରିତ
ମନ୍ତ୍ର ଅଧ୍ୟୟନ କରି ବେଗେ ଦେଲେ ଛାଡ଼ି
ନାରାଚ ଚଳନ୍ତେ ଯେ ଶବଦ ଘଡ଼ଘଡ଼ି ।
ସଦାଶିବ ଶରକୁ ସେ କାଟି ପକାଇଲା
ଧ୍ରୁବ ଲୋକ ପର୍ଯ୍ୟନ୍ତେ ଶବଦ ଶୁଭିଲା ।
ଦେଖିଣ ସହସ୍ରାନନ ଧନୁ ସହସ୍ର ଧରି
ପାଞ୍ଚଲକ୍ଷ ନାରାଚ ବିନ୍ଧିଲା କୋପକରି ।
ଅଞ୍ଜିତ ମାତ୍ରେ ତାହା ନିବାରି ରଘୁଧାରି
ଦେଖିଣ ଦୈତ୍ୟ ପୁଣ କୋଟିଏ ଶର ମାରି
ବାବନ ଶରେ ଶ୍ରୀରାମ ତାହାକୁ ନିବାରି
ଗୁଣ ଟଙ୍କାର କରନ୍ତେ କୋଦଣ୍ଡ ରଘୁଧାରି ।
ପୁଣ ଲକ୍ଷେ ନାରାଚ ବସାନ୍ତେ ଗୁଣରେ
ଶ୍ରୀରାମ ଉପରକୁ ବିନ୍ଧିଲା ଧାଡକାରେ ।
ଦେଖିଣ ଶ୍ରୀରାମ ଯେ ପ୍ରଚଣ୍ଡ ଶର କଲେ
ଲକ୍ଷେ ଶରକୁ ଏକା ନାରାଚେ ପ୍ରହାରିଲେ ।
ଦେଖିଣ ତାର ଘର ରଘୁକୁଳ ସାଇଁ
କୋଟିଏ ନାରାଚ ଗୁଣରେ ବସାଇଁ ।
ଧନୁର୍ବେଦ ସୁମରି ନାରାଚ ଛାଡିଦେଲେ
ସହସ୍ରାନନ ଦେଖିଣ ନିବାରିଲା ହେଳେ ।
ଦେଖିଣ କୋପାନଳ ହେଲ ସହସ୍ର ଶିର
ଧନୁରେ ବସାଇଲା ସବୁରି ଅସ୍ତ୍ର ଶର ।
ମନ୍ତ୍ର ସୁମରିଣ ଶର ବେଗେ ଦେଲା ଛାଡ଼ି
ଯେସନେ ପ୍ରଳୟ କାଳେ ମେଘ ଗଡ଼ଗଡ଼ି ।
ପୁଣି ବିନ୍ଧିଲା ଯେ ପଞ୍ଚାଶ ସହସ୍ର ଶର
ଧୃଷ୍ଟିହିଁ ଲକ୍ଷେ ନାରାଚ ବସାଇ ଗୁଣରେ ।
ପୁଣି ଅସୁର ଯେ ବୋଇଲା ପ୍ରଚଣ୍ଡ
ମନ୍ତ୍ରି କରି ପେଷିଲା ଷାଠିଏ ଅସ୍ତ୍ର କାଣ୍ଡ ।
ତକ୍ଷଣେ ନାରାଚ ପେଶେ କ୍ରୋଧ କରି
ଅବଶ୍ରାମ ଯୁଦ୍ଧକରେ ସେହୁ କୋପ କରି ।
ଚକ୍ଷୁ ପିଲ୍ଲଡ଼ିଆ ମାତ୍ରକେ ଶରଗଣ ପୁଣ
ବେଗେ ବେଗେ ବିନ୍ଧଇ ଲକ୍ଷ ଲକ୍ଷ ବାଣ ।

ମର୍ଦ୍ଦ ମର୍ଦ୍ଦ କରି ନାରାଚ ବରଷି
ରଣଭୂମି ଗୋଟି ଅନ୍ଧାର ଯେ ହସି ।
ହନନ୍ତ ଜାମେନ୍ତ ଯୋଟିଲ୍ଲ ଏକାବେଳେ
ଦେଖିଣ ଚକିତ ଯେ ହେଲେ ରଘୁବାଳେ ।
ପର୍ଶୁରାମ ଦେଲ୍ଲ ଧନୁରେ ଦେଇଗୁଣ
ଗୁଣରେ ବସାଇଲେ ପଞ୍ଚଦଶ ବାଣ ।
ପୁଣିହିଁ ଅଗ୍ନି ଶର ଯେ ବସାଇଲେ ନେଇ
ସହସ୍ରାନନ ଉପରକୁ ପେଶିଲେ ରଘୁସାଇଁ ।
ଘୋର ଗର୍ଜନ କରି ଯେ ଅଗ୍ନି ଶର ଗଲ୍ଲ
ସକଳ ଶର ତାର ଛେଦ ପକାଇଲ୍ଲ ।
ଯେତେଶରଦୈତ୍ୟ ଯେକ୍ରୋଧରେପେଷିଥିଲ୍ଲ
ଅଗ୍ନି ଶର ତେଜରେ ସେ ଭସ୍ମ ହୋଇଲ୍ଲ ।
ଦେଖିଣ ଆଶ୍ଚର୍ଯ୍ୟ ହେଲ୍ଲ ହଲଙ୍କାର ପତି
ବୋଇଲ୍ଲ ବଡ଼ ସ୍ପର୍ଦ୍ଧି ଅଟଇ ରାମ ଯତି ।
ନୋହିଲେ କି ଦଶଗ୍ରୀବ ବଂଶ ନାଶ କଲ୍ଲ
ମୋର ବଂଶ ଏବେତ ମୂଳରୁ ମାଇଲ୍ଲ ।
ଏତେ ବୋଲିଣ ସେ ମନରେ କ୍ରୋଧ କରି
ଗୁଣେ ବସାଇଲ୍ଲ ନାରାଚ ସହସ୍ର ସ୍ଥିର ।
ଦେଖିଣ ଶ୍ରୀରାମ ଯେ ହେଲେ କ୍ରୋଧ ମନ
ବାବଲ୍ ନାରାଚ ନେଇ ବସାଇଲେ ଗୁଣ ।
ମନ୍ତ୍ର ଆଧାସ୍ନନ କରି ଯେ ଶରକୁ ଛଆରନ୍ତି
ଦୈତ୍ୟର କର ଛେଦ ବୋଲିଣ ବୋଲନ୍ତି ।
କର୍ଣ୍ଣ ପରିଯନ୍ତେ ଆଣିଲେ ଓଟାଇ
ଦଇତ୍ୟକୁ ବାନ୍ଧିଲେ ରେ ରେ କାର କରି ।
ଚଳଇ ନାରାଚ ଯେ ଗଗନ ମାର୍ଗେ ଘୋଟି
ଶୂନ୍ୟରେ ଗମନ୍ତେ ଯେ ଅଗ୍ନି ଜଳ ଉଠି ।
ବିଷ୍ଣୁରୂପ ଧରିଣ ନାରାଚ ଚଳିଗଲ୍ଲ
ସହସ୍ରାନନ ଉପରେ ଯାଇଣ ପଡ଼ିଲ୍ଲ ।
ନାରାଚ ପଡନ୍ତେ ଯେ ଦେଖ ସହସ୍ର ଭୁଜଛିଡ଼ି
ଭୁଜ ଛିଡ଼ନ୍ତେ ଦୈତ୍ୟରଗ୍ଣଡ଼ନ୍ତେ ଘୋରରଡ଼ି
ତତକ୍ଷଣେ ଭୁଜ ତାର କମ୍ପିଳ ଅଇଲ୍ଲ
ସେହି କରେ ଧନୁଶର ଦୈତ୍ୟ ଯେ ଧଇଲ୍ଲ ।
ଦଶଲକ୍ଷ ନାରାଚ ଗୁଣରେ ବସାଇଲ୍ଲ
ସବୁ ସୈନ୍ୟକୁ ଏକାବେଳକେ ମାଇଲ୍ଲ ।
ଶ୍ରୀରାମକୁ ସହସ୍ରେ ଲକ୍ଷ୍ମଣକୁ ଲକ୍ଷେ ଶର
ନନ୍ଦିଘୋଷ ରଥକୁ ବାନ୍ଧିଲ୍ଲ ସହସ୍ର ବାର ।

ଅଙ୍ଗଦକୁ ଶତେ ତାରାକ୍ଷକୁ ଯେ କୋଡ଼ିଏ
ନଳ ନୀଳ ଦୁର୍ବିନ୍ଦ ଯେ ଶର ଦଶା ଶତେ ।
ଶତେ ଶତେ ନାରାଚ ସୁଗ୍ରୀବ ବିଭୀଷଣ
ଗବୟେ ଗବାକ୍ଷକୁ ପାଞ୍ଚ ପାଞ୍ଚ ବାଣ ।
ଆଦର ଯେତେକ ଋଷପତ ସୈନ୍ୟ
ସବୁଙ୍କୁ କାଣ୍ଡେ କାଣ୍ଡେ ବାନ୍ଧିଲ୍ଲ ସହସ୍ରାନନ ।
ନାରାଚ ଆସନ୍ତେ ପୃଥ୍ୱୀ ଅନ୍ଧାର ଦିଶଇ
ଦେଖିଣ ପ୍ରତିଶର କରନ୍ତି ରଘୁସାଇଁ ।
ଯାଇଣ ବସିଲ୍ଲ ଯେ ଆରକ ଯାନ ପରେ
ଆପଣାର ଧନୂଶର ଧଇଲକ କରେ ।
ଯାନ ପରେ ବସିଣ ଶୂନ୍ୟକୁ ସ୍ୱହିଁଲ୍ଲ
ବାରରେ ଦୈତ୍ୟବଳ ମାରନ୍ତି ହୋଇ ମେଳ
କେବଣ ଦୈତ୍ୟକୁ ମାରିଣ ବସନ୍ତି
କେବଣ ଦଇତ୍ୟକୁ ଧରି ଘୋଷାରନ୍ତି ।
କେବଣ ଦଇତର ବୁକୁରେ ବସେ ଯାଇ
ତୋଟି ଛିଣ୍ଡାଇଣ ଯେ ମାରନ୍ତି ଘୋଷରାଇ ।
ପଛ ଆଡ଼ ମୁଣ୍ଡ ଆଡ଼ କେହୁ ପୁଣ ଧରି
ମଡ଼ାର ପ୍ରାୟେ କରିଣ ନଅନ୍ତି ଘୋଷାରି ।
କେହୁ ହାତିକେହୁ ଘୋଡ଼ା ବେଗେସେଧରନ୍ତି
ହୁଙ୍କା ହୁର୍କି ହୋଇଣ ସେ ଛିରି ପକାନ୍ତି ।
ଏମନ୍ତ ଅନେକ ଦୈତ୍ୟ ମାରନ୍ତି ଋଷ କପି
ନରପଦ ମାରୁତି ମାରନ୍ତି ହୋଇ କୋପି ।
ଯହୁଁ ଦେଖେ ଆପଣାର ବଳ ଯେ ନିଧନ
ମନରେ ମହାକ୍ରୋଧ କରେ ସହସ୍ରାନନ ।
ବୋଲଇ ଭରସା ଦେଖ ଶାନ କପିଙ୍କର
ଯୁଦ୍ଧରେ ନିଶଙ୍କା ହୋଇ ମାରନ୍ତି ଅସୁର ।
ଦେଖିଣ କାଳାନ୍ତକ ନାରାଚ ଧରିକରେ
ପୁଣି ଭଦ୍ର ଶର ବସାଏ ଗୁଣରେ ।
ମନ୍ତ୍ର ଆଧାସ୍ନନ କରିଣ ଗୁଣରୁ ଦେଲ୍ଲଛାଡ଼ି ।
ଶୂନ୍ୟରେ ନାରାଚ ଯେ କରେ ଘୋର ରଡ଼ି
ପବନରୁ ବେଗେ ଯେ ନାରାଚ ଚଳିଗଲ୍ଲ
ଦେଖିଣ ଶ୍ରୀରାମ ପ୍ରତିଶରେ ନିବାରିଲ୍ଲ ।
ପୁଣିହିଁ ନାରାଚ ଯେ ଛନ୍ଦେ ଦୈତ୍ୟଗଣ
ଚକ୍ଷୁ ପିଚ୍ଛଦ୍ୱାରେ ବାନ୍ଧିଲେ ଲକ୍ଷେ ବାଣ ।
କବୁରି ନାରାଚ ଯେ ରୁଦ୍ର ଦେଲ୍ଲ ଶର
ଧରିଣ ଦୈତ୍ୟଙ୍କର ବାନ୍ଧିଲ ଦେହର ।

ଅନୁଜ ଶର ତାହା ଶ୍ରୀରାମ ନିବାରି
ଦେଖିଣ ଦୈତ୍ୟ ସେ ମନରେ କ୍ରୋଧକରି
ଦେଖିଣ ହନୁମନ୍ତ ମନରେ କ୍ରୋଧ ହେଲା
ଗିରିବର ଉପାଡ଼ି ସେ କରରେ ଧଇଲା ।
ଧାଇଁଲା ପାବେନ ସେ କୋପ ମୁଖ ହୋଇ
ସହସ୍ର ମାଥ ଯାନରେ ପିଟିଲା ବେଗେ ନେଇ
ଶୁଣିହିଁ ଧାଇଁ ଯାଇ ଧରଇ ଗିରିବର
ସହସ୍ର ମାଥ ଯାନରେ କଷ୍ଟେ ହନୁବୀର ।
ରଥବର ଗୋଟି ଚାରି ଖଣ୍ଡି ପକାଇଲା
ହେଠି ସହସାନନ ଆନ ରଥରେ ବସିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସ୍ୱରି ସହସ୍ର କୁମର ସହସାନନ ବଳ ।
ରାମ ଲକ୍ଷ୍ମଣ ଭ୍ରାତ ସଙ୍ଗରେ ଯୁଦ୍ଧ କଲେ
ପ୍ରହରେ ପର୍ଯ୍ୟନ୍ତ ଶର ବୃଷ୍ଟି କଲେ ।
ଯେସନେକ ସମୁଦ୍ର ଘୋଟି ଆସେ ପୁଣ
ତେସନେ ବଳନ୍ତି ସହସାନନର ନନ୍ଦନ ।
ଅନୁଜ ଶରେ ଛନ ଛାଇ ଯେ ନିବାରି
ଦେଖିଣ ଅସୁର ସେ କ୍ରୋଧରେ ଧଜ୍ଜୋଳ ।
ବେଳକୁ ବେଳ ସମର କରନ୍ତି ଅତି ଘୋର
ଦେଖିଣ ଶତ୍ରୁଘନ ହସ୍ତରେ ମନର ।
ମନ ଭେଦ ଶର ଯେ କାଟେ ସଙ୍ଗମିର୍ଣି
ଗୁଣରେ ବସାଇଣ ହନେ ସେ ତତ୍ତ୍ୱ ।
ତତ୍କାଳେ ଶର ଯେ ମନୁ ବେଗେ ଗଲା
ଗଲାବେଳେ ରଣ ଭୂଇଁ ଅନ୍ଧାର ହୋଇଲା ।
ନର ବାନର ଅସୁର ନୋହିଲେ ବାରଣ
ମନଭେଦ ଭେଦିଲା ସହସାନନର ନନ୍ଦନ ।
ଦୁଇ ସହସ୍ର କୁମରେ ଯେ ଛେଦ ପକାଇଲା
ବେନି ଖଣ୍ଡ କରନ୍ତେ ଦୈତ୍ୟଙ୍କ ପ୍ରାଣଗଲା
ଲେଉଟି ମନ ଭେଦ ତୂଣରେ ସମ୍ଭାଇ
ତେବେ ସେ ରଣଭୂମି ଆଲୋକ ଦିଶଇ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ସହସେ ନନ୍ଦନ ଯେ ଭ୍ରତଙ୍କୁ ଥିଲେ ଘୋଟି ।
ଶ୍ରାବଣ ବରଷା ଜାଣି ବରଷନ୍ତି ଶର
ମେଦିନୀ କମ୍ପିଣ ଯେ ହେଲା ଥର ହର ।
ଅନୁଜ ଶରରେ ତାହା ଭରତ ନିବାରଇ
ବେଳକୁ ବେଳ ନାରାଚ ମାରଇ ବୁହାଇ ।

କ୍ଷଣକେ ଦୁଇଲକ୍ଷଲେଖାଁଏ ମାରନ୍ତି ଅଗ୍ନି ଶର
ଏକାବେଳେ ହାଣିଲେ ସହସେ କୁମର ।
ଅଗ୍ନି ଶର ତେଜ ଯେଣ ଉଠେ ହୁତାଶନ
ପାଶରୁ ଦେବତାଏ ପଳାନ୍ତି ବହନ ।
ସ୍ୱର୍ଗ ମର୍ତ୍ତ୍ୟ ଘୋଟିଣ ଆସେ ଦାବାନଳ
ଦେଖିଣ ଭ୍ରତବୀର କଲେ ଅନୁଜ ଶର ।
ଜଳଧାର ଶର ଯେ ବେଗେ ପେଷି ଦେଲା
ଗର୍ଜନ ନାଦ କରି ସ୍ୱରମେଘ ବରଷିଲା ।
ରଣ ଭୂମି ଗୋଟି ପଡ଼ିଲା ବଦଳ
ତତକ୍ଷଣେ ଦାବାନଳ ଲଭିଣ ଶୀତଳ ।
ଦେଖିଣ ଦୈତ୍ୟବଳ କ୍ରୋଧଭର ହେଲେ
ଲକ୍ଷ ଲକ୍ଷ ଶର ପୁଣି ବାନର ବରଷିଲେ ।
ଅନୁଜ ଶରରେ ତାହା ନିବାରି କୈକେୟୀ
ବେଳକୁ ବେଳ ଶର ହାନନ୍ତି ବୁହାଇ ।
ଦେଖିଣ ଭ୍ରତବୀର କ୍ରୋଧରେ ଜର୍ଜର
ବଜ ବାଟୂଳ ଧରି ଧନୁଧରି ବାମକର ।
ସହସ୍ର ବାଟୂଳ ଯେ ବସାଇଲା ତହିଁ
ବୋଇଲେପୁରନ୍ଦର ମୋତେଯେ ଥିଲେବେଇ
ବୋଇଲେ ଯେତେବେଳେ ପଡବ ପ୍ରମାଦ
ତେତେବେଳେ ମାରିବୁ ନୋହିବୁ ବିଷାଦ ।
ଏବେ ମୋତେ ଘୋଟିଛୁ ଆସି କାଳ
କୁମ୍ଭେ ଶରମାନେ ଯେ ବେଗ୍ର ହୋଇଚଳ ।
ସହସ୍ର ଦୈତ୍ୟଙ୍କର କଣ୍ଠିବ କପୋଳେ
ପ୍ରାଣ ଘେନ ଯାଇଣ ପଡ଼ିବ ଭୂମିରେ ।
ଏମନ୍ତ ବୋଲିଣ ଯେ ଶରକୁ ଟଆରିଲା
ଆକର୍ଣ୍ଣ ପରିଯନ୍ତେ ଓଟାରି ଆଣିଲା ।
ମନ୍ତ୍ର ସୁମରଣା କରି ଗୁଡ଼ିଦେଲା ବେଗେ
ଚଳଲକ ନାରାଜ ଘଡଘଡ ଛଡ଼ଚଡ଼ ନାଦେ
ସମସ୍ତଙ୍କ କରରୁ ଧନୁ ନାରାଜ ପଡ଼େ ଝଡ଼ି
ମନୁ ବେଗେ ନାରାଜ ଗଲାକ ବେଗ କରି ।
ସହସେ ନନ୍ଦନଙ୍କର କପୋଳେ ଲାଗିଲା
ବାଟୂଳ ବାଜନ୍ତେ ତାଙ୍କର ପ୍ରାଣ ଗୁଡ଼ିଗଲା ।
ରଥ ଉପରୁ ଖସି ପଡ଼ିଲେ ଯାଇଁ ତଳେ
ନେଉଟି ବଜ ବାଟୂଳ ଅଇଲା ସତ୍ତରେ ।
କକେଇର ତୂଣରେ ଯାଇଣ ସମ୍ଭାଇଲା
ଦେଖିଣ କକେଇ ଅଗ୍ନି ବାଟଳ ଧଇଲା ।

ମନ୍ତ୍ର ସୁମରି ସେହୁ ଗୁଣ ଦେଲା ବେଗେ
ବାହୁନି ଚଳିଗଲା ହାହୋଳି ବାଣ ତେଜେ ।
ସହସ୍ର ରଥ ସହସ୍ରେ ସାରଥିକ ଯାଇଁ
ଏକାବେଳେ ଗୋଡ଼ଦେଲା ମଲେ ଭସ୍ମହୋଇ
ଦେଖିଣ କକେୟୀ ଶୁଣ ଟଙ୍କାରିକଲା
ମନରେ ଭରତ ବୀର ଆନନ୍ଦ ହୋଇଲା ।
ଏଥୁଅନନ୍ତରେ ଶୁଣ ଗୋ ଗଉରି
ସହସ୍ରାନନ କୁମର ଲକ୍ଷ୍ମଣଙ୍କୁ ଘେରି ।
ଚକ୍ଷୁ ପିଟୁଳକେ ସେ ମାରନ୍ତି ଶରମାନ
ଅନୁଜ ଶରେ ତାହା ନିବାରି ଲକ୍ଷ୍ମଣ ।
ବେଳୁବେଳ ସମର କରନ୍ତି ଅତି ଗାଢ଼
ଲକ୍ଷ୍ମଣ ଚଉପାଶେ ବୁହୁଛନ୍ତି ଶର ।
ଦେଖିଣ ସଉମିତ୍ରି ମନରେ ବିଚାରିଲେ
କେମନ୍ତେ ଏହାଙ୍କୁ ନାଶ କରିବି ବୋଇଲେ
ଦୈତ୍ୟ ରଡ଼ି ଛାଡ଼ନ୍ତେ ସମ୍ଭାଳ ଆରେ ଯତି
ତୋ ପାଇଁ ଚତୁର୍ଭୁଜ ଆଜ ପୋଛୁଛନ୍ତି ।
ଆମ୍ଭର ବଂଶ ଯୁଝିଣ କରି ଅଛୁ ନାଶ
ଏବେ ଶିବୁ ସଞ୍ଜିବନୀ ଖଜାଇ ତୁ ପାଶ ।
ଏହୋ ବୋଲି ନାଗଜ ବନ୍ଧନ୍ତି ଅଗୋଚରେ
ସ୍ୱର୍ଗ ମର୍ତ୍ତ୍ୟ ଗୁଳି ଯେ କଲେ ଦୈତ୍ୟ ବୀରେ
ଅନୁଜ ଶରେ ତାହା ଲକ୍ଷ୍ମଣ ନିବାରି
ବାମହସ୍ତେ ଧନୁ ଧଇଲା ଗତି କରି ।
ସହସ୍ରେ ଶଳବାଣ ଶୂଳବାଣ କାଢ଼ି
ଯେଉଁ ନାଶ ନାଗରାଜା ଦେଲେ ଯାଚକରି ।
ସେ ବାଣ କଷାଏ ନେଇ ଗୁଣରେ ଉପର
ମନ୍ତ୍ର ସୁମରି ବନ୍ଧିଲେ ସୁମିତ୍ରା କୁମର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ କମ୍ପିଲା ଥରହର
ସ୍ୱର୍ଗ ସହସ୍ରାକ୍ଷ ପଳାଏ ପୁରନ୍ଦର ।
ଦେବତାମାନେ ରାମନାମ ସୁମରିଲେ
ନାଗଲୋକ ଅନନ୍ତ ବାସୁକୀ ଚିନ୍ତାକଲେ ।
ମର୍ତ୍ତ୍ୟ ଲୋକେ ନାରାୟଣ ସୁମରେ ଅନ୍ତର୍ଗତେ
ଯୋଗିମାନେ ଧ୍ୟାନ ଯେ ଛାଡ଼ିଲେ ଭୟରତେ ।
ସୁବଳୟାରେ ଥାଇ ଜାନକୀ ବିଚାରିଲେ
ଆଜର ଯୁଦ୍ଧ ଅପ୍ରମାଦ ହେଲା ଭଲେ ।
ରଣ ଭୂମିରେ ଯେତେ ସୈନ୍ୟ ବଳ ଥିଲେ
ସମସ୍ତେ ଧରଣୀରେ ପାସୋରି ପଡ଼ିଲେ ।

ଶ୍ରୀରାମ ସହସ୍ରାନନର ହୋଇଲା କରବଢ
ବୁଦ୍ଧି ନ ସ୍ଫୁରଇ ଶର ହୋଇଛନ୍ତି ଶଳାଶଙ୍କ
ହନୁମନ୍ତ ଅଙ୍ଗଦ ସୁଗ୍ରୀବ ବିଭୀଷଣ
ଏମାନେ ସ୍ତମ୍ଭକରେ ରହିଲେ ଯୁଦ୍ଧେ ପୁଣ ।
ଲକ୍ଷେ ରାଜା ତେଣେ ଯେ ଯୁଦ୍ଧ କରୁ ମଲେ
ଜଡ଼ପ୍ରାୟେ ହୋଇଣ ସେ ସ୍ତମ୍ଭିତ ହୋଇଲେ
ଏହି ସମୟରେ ବାଣ ଚଳିଗଲା
ରଥ ସାରଥି ଯେ ସଭିଙ୍କି ମାରିଲା ।
ସହସ୍ର କୁମରଙ୍କୁ କଲା ଖଣ୍ଡ ଖଣ୍ଡ
ଲେଉଟିଣ ଶର ଯେ ହୋଇଲା ପ୍ରଚଣ୍ଡ ।
ସମୁଦ୍ରେ ପଶିଣ ସେ ସ୍ନାନ ସାରି କଲା
ଲକ୍ଷ୍ମଣ ତୂଣରେ ଯାଇଣ ସମ୍ଭାଇଲା ।
ଦେଖିକରି ସଉମିତ୍ରି ଆନନ୍ଦ ମନ ହେଲେ
ସନ୍ତୋଷରେ ରଥ ପରେ ଶଙ୍ଖ ଶବ୍ଦ କଲେ ।
ବୀର ସହସ୍ର ନନ୍ଦନ ମାରିଣ ତିନି ଭାଇ
ଶ୍ରୀରାମର ପାଶରେ ପ୍ରବେଶ ହେଲେ ଯାଇ ।
ସହସ୍ରାନନ ବୀର ପାଶରେ ରହିଲେ
ଏକା ସହସ୍ରାନନକୁ ବୀର ଘାଇ ଓଗାଳିଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ସହସ୍ର ମୁଖା ରାବଣ ଚାହିଁଲା ନିରେଖି ।
ଦେଖିଲା ଗୋଟିଏ କୁମର ଆଉ ନାହିଁ
କପୋଳେ କର ମାରି ବିଧାତା ସୁମରଇ ।
ବୋଇଲା ଦୁଇ ଲକ୍ଷ କୁମର ଜାତ କଲି
ହେଲା ଯୁଦ୍ଧେ ମରଇ ଅନାଥ ହୋଇଲି ।
ପୁଣ ବିଚାରଇ ଏ ବୁଦ୍ଧି କମା କଲି
ପର ପାଇଁ ମୋହର ବଂଶ ମରାଇଲି ।
ଏମନ୍ତେ ଶୋକ ସେ କଲାକ ଅପାର
ସାରଥି ପ୍ରବୋଧିବାରେ ହୋଇଲା ସେହୁଣିକ
ପାଙ୍ଖଶି ବୋଇଲେ ତୁମ୍ଭେ ଶୁଣ ପଞ୍ଚାନନ
ସହସ୍ରାନନର ଲକ୍ଷେ ଜୁଆଇଁ ବର୍ତ୍ତେପୁଣ ।
ସେମାନେ ଯାଇ ସାରଥିଙ୍କ ସଙ୍ଗେ ସୁଦ୍ଧି
କଏ ଜିଣିଲା କଏ ହାରିଲା ନ ପାରିଲା ବୁଝି ।
ସହସ୍ର ମୁଖା ରାବଣ କଥା ଶୁଣ ମନ ଭେଦ
ଲକ୍ଷେ ଜୁଆଇଁଙ୍କ ପାଇ ବେଢ଼ିଥିଲେ ଉଷ୍ଣ ।
ଅନେକ ସମର ସେ ଦୈତ୍ୟ ଆସି କଲେ
କର୍ମର ଅବଳରେ ଜୀବନ ହରାଇଲେ ।

ଏମନ୍ତ ଯୁଦ୍ଧ ଯହୁଁ ଦେଖିଲେ ସଉମିତ୍ରୀ
ବୋଇଲେ ଏ ଅସୁର ଅଟଇ ବଡ଼ କ୍ଷତ୍ରୀ ।
ବୋଲନ୍ତି ଅସୁରରେ ଯିବୁ ଆଜ କାହିଁ
ଏଠାରୁ ବର୍ତ୍ତିଯାଇ କରେ ଘର କରିବୁ ତୁହି
ତୋର ପର କ୍ଷତ୍ର ହୋଇ କାହିଁକି ତୁହି ଗର୍ଜୁ
ମୋର ସଙ୍ଗରେ କମ୍ପା ଯୁଦ୍ଧ ତୁ ନକରୁ ।
ତୁ ଯେବେ ନଷ୍ଟସ୍ତ୍ରରେ ହୋଇଥାନ୍ତୁ କ୍ଷତ୍ରୀ
ଆମ୍ଭଙ୍କୁ ଗୁଢ଼ କମ୍ପାରେ ମାରନ୍ତୁ ରକ୍ଷ କପି
ମରିବାକୁ କମ୍ପା ତୁରେ ଆସି ଏଥକୁ
ପରପାଇଁ କମ୍ପାରେ ଅଂଶ ବଂଶ ମରନ୍ତୁ ।
ଶୁଣିଣ ସହସ୍ରମାଥ ଶିର କମ୍ପାଇଲା
ଆଜ ତୁମ୍ଭ ଦୁଇଭାଇଙ୍କ କାଳ ଯେ ପୂରିଲା
ଏତେ ବୋଲି ଦୈତ୍ୟଯେ କ୍ରୋଧଭରହୋଇ
ପନ୍ନଗ ନାରାଜକୁ ଗୁଣରେ ବସାଇ ।
ମନ୍ତ୍ର ଅଧ୍ୟାୟନ କରି ନାରାଚ ଉଚ୍ଚାରି
ରାମ ଦୁଇଭାଇଙ୍କି ନାଶ କର ଯାଇକରି ।
ଚଳିଲା ନାରାଜ ଯେ ଆକାଶ ମାର୍ଗେଣ
ଫୁଫୁକାର ଗର୍ଜନ ସେ ବିଶେଷ କରିଣ ।
ନାରାଜ ଆସନ୍ତେ ଦେଖିଲେ ରଘୁସାଇଁ
ଗରୁଡ଼ା ଶର ଗୁଣରେ ବସାଇଲେ ନେଇ ।
ଧନୁର୍ବେଦ ସୁମରି ବିନ୍ଧିଲେ ରଘୁବଂଶି
ନାଗପାଶ ଶରକୁ ବେଗେଦିଅ ଭକ୍ଷି ।
ଶୁଣି ଗରୁଡ଼ା ଶର ବେଗେ ଚଳିଗଲା
ଗରୁଡ଼କୁ ଦେଖନ୍ତେ ପନ୍ନଗ ପଳାଇଲା ।
ସନ୍ନିଧିରେ ଥିଲେ ତାର ସଉମିତ୍ରୀ ପୁଣତାର
ଗନ୍ଧର୍ବା ଶରକୁ ବହାଇ ଗୁଣର ।
ସହସ୍ରମାଥ ଉପରକୁ ବିନ୍ଧିଲେ ଖରକରି
ବୋଇଲେ ଦୈତ୍ୟକୁ ପଳାଅ ବେଗେ ମାରି
ଚଳିଲା ନାରାଜ ଯେ ଗଗନ ମାର୍ଗ ଘୋଟି
ତତକ୍ଷଣେ ସହସ୍ରମାଥ ପରେ ପିଟି ।
ମୁକୁଟ ଫିଟିଣ ଯେ ଲଲାଟେ ଗଳିଗଲା
ଝରଝର ହୋଇଣ ଶୋଣିତ ନିକଳିଲା ।
ଆମ୍ଭାରେ ବାଧେକ ହୋଇଲା ବିକଳେ
ବ୍ରହ୍ମଶକ୍ତି ଗୋଟିଏ ଧଇଲା ବେଗ କରେ ।
ହୁଙ୍କାର ନାଦରେ ବାହୁବଳେ ତୋଳି
ରାମଲକ୍ଷ୍ମଣ ମାରୁ ବୋଲି ଦୈତ୍ୟ ବୋଲି ।

ଶକତି ଚଳିଲା ପବନ ଗତି ଜାଣି
ଆସନ୍ତେ କମ୍ପମାନ ହେଲା ଯେ ଧରଣୀ ।
ଆକାଶରେ ଥାଇ ଦେବେ ଯୁଦ୍ଧ ଦେଖୁଥିଲେ
ଶକତିର ତେଜେ ରହି ନ ପାରିଲେ ।
ଆସଇ ସହସ୍ର ଯେ ବିଶ୍ୱରୂପ ଧରି
ଦେଖିଣ ଦେବତାଏ ଗଲେ ଅପସରି ।
ଭଗ ଛନ୍ନ ଛନ୍ନ ଯେ ବିଶେ ଉଲ୍କାପାତ
ମେରୁ ଉହାଡରେ ଯାଇ ରହିଲେ ଆଦିତ୍ୟ
କହିଣା ନ ଯାଏ ଯେ ଶକତି ମହିମା
ଇନ୍ଦ୍ର ଚନ୍ଦ୍ର ହୋଇଲେ ନକରେ ତାକୁ କ୍ଷମା
ଦେଖିଲେ ଶ୍ରୀରାମ ଯେ ଲକ୍ଷ୍ମଣ ବେନି ଭାଇ
ଅନେକ ନାରାଜ ସେ ମାଇଲେ ତୁହାଇ ।
କେବେହେଁ ଶକତି ବାରି ନ ପାରିଲେ
ଅନେକ ନାରାଜ ସନ୍ଧାନ ପୁଣ କଲେ ।
ଅନେକ ନାରାଜ ସନ୍ଧାନ ବିଖଣ୍ଡି
ଧନୁରେ ବସାଇଲେ କକୁସ୍ଥ ଶର କାଣ୍ଡି ।
ଧନୁର୍ବେଦ ସୁମରି ଦେଲେ ପୁଣ ଗୁଢ଼
ସହସମାଥ କପୋଳେ ନାରାଜ ଯାଇ ପଡ଼ ।
ସହସ ମୁଣ୍ଡରେ ଯେ ରକତ ଝର ଝର
ପୁଣି ଲକ୍ଷେକାଣ୍ଡି ବିନ୍ଧିଲେ ଲକ୍ଷ୍ମଣ ବୀର ।
ତେଣୁ ସେ ବ୍ରହ୍ମ ଶକତି ନିବାରି ନୋହିଲା
କାଣ୍ଡି ବିନ୍ଧନ୍ତେ ଅସୁର ଶରୀରେ ଫୁଟିଲା ।
ପୁଣି ସହସ୍ର କାଣ୍ଡି ବିନ୍ଧିଲେ ରଘୁବୀର
ସହସ୍ରମାଥ ହୃଦରେ ପଡ଼ିଲା ଯାଇ ଶର ।
ସର୍ପ ଯେସନ୍ତେ ବିମ୍ବରେ ପଶିଣ ପଳାଇ
ତେମନ୍ତେ ଶରମାନ ହୃଦରେ ଗଲେ ବହି
ରକତେ ଜର ଜର ହେଲା ତାର କାୟେ
ଦେଖିଣ ଦୈତ୍ୟ ମନେ କଲା ମହା ଭୟେ
ଅନେକ ନାରାଜ ବିନ୍ଧିଲେ ରଘୁପତି
କେବେହେଁ ନ ପାରିଲେ ନିବାରି ଶକତି ।
ଗର୍ଜନ କରିଣ ଶକ୍ତି ବେଗେ ଯେ ଅଇଲା
ଯେଣୁ ସେ ବ୍ରହ୍ମଶକ୍ତି ଶ୍ରୀରାମଙ୍କ ଉପରେପଡ଼ିଲା
ଅପଲଟକ ଶର ଯେ ନିବାରି ନୋହିଲା
ତତକ୍ଷଣେ ଦକ୍ଷିଣ ଜାନୁ ଫୁଟିଗଲା ।
ରଥ ଉପରେ ଯେ ବସିଥିଲେ ରଘୁସାଇଁ
ଶର ପଡ଼ିବାରେ ରଥେ ପଡ଼ିଲେ ଢଳିଯାଇ

ଦେଖିକରି ମାତଳି ରଥ ବାହୁ ନେଲା
ସୁବଳସ୍ଥା ଗିରି ଉପରେ ରଖିଲା ।
ତାଳଧ୍ୱଜ ରଥରେ ଥିଲେ ଯେ ଲକ୍ଷ୍ମଣ
ତେତେବେଳେ ଦାରୁକ ମିଳିଲା ଯାଇପୁଣ ।
ବୋଇଲା ଦେବମୋକେତେବେଳେ ଯେପଠିଆଇ
ସବୁ ଦିନେ କୃଷ୍ଣର ମୁଁ ଯେ ସାରଥି ଅଟଇ ।
ଏ ଜନ୍ମରେ ସେବା ମୁଁ ଯେ କରି ନ ପାରିଲି
ସେ ସକାଶେ କୃଷ୍ଣ ପାଶେ ପ୍ରବେଶ ହୋଇଲି
ଶୁଣିଣ ଲକ୍ଷ୍ମଣ ଯେ ବୋଇଲେ ବେଗେ ଆସ
ତାଳଧ୍ୱଜ ରଥରେ ବେଗ ହୋଇ ବସ ।
ଶୁଣିଣ ଦାରୁକ ରଥରେ ବସିଲାକ ଯାଇ
ସୁଷେଣଙ୍କୁ ବୋଇଲେ ଯାଅ ତୁ ବେଗହୋଇ
ଶ୍ରୀରାମ ଶକତିରେ ମୋହ ହୋଇଛନ୍ତି
ଜାନୁ ଫୁଟିବାରେ ପ୍ରଭୁ ଉନ୍ମାଦ ହୁଅନ୍ତି ।
ବିସ୍ମରଣ ତାଙ୍କ କାର୍ଯ୍ୟ କର ହେ ବହନ
ଜାମ୍ବବ ହନୁମନ୍ତଙ୍କୁ ଡାକ କାର୍ଯ୍ୟକର ପୁଣ ।
ସୁଷେଣ ବୋଇଲେ ଜାମ୍ବବ କାଲି ମଲାରଣ
କାହୁଁ ଆଣିବ ମନ୍ତ୍ରୀଙ୍କ କହ ତୁ ଭାଇ ପୁଣ ।
ଦାରୁକ ବୋଇଲେ କାଲି ଅସୁର ମାଇଲା
ଗଣ୍ଡି ମୁଣ୍ଡ ନେଇ ହନୁ ପର୍ବତେ ରଖିଲା ।
ରାତ୍ରରେ ଶୁକ୍ରଦେବ ଆସିଲେ ସେଠାକୁ
ଗଣ୍ଡି ମୁଣ୍ଡ ଯୋଡ଼ି ଦେବ ଦେଲେକତାହାକୁ
ସୁଷେଣ ବୋଇଲେ ଜୀବ ସେ ପାଇଲା
ଯୁଦ୍ଧ ଭୂମିକି କମ୍ପା ଆଜ ସେ ନଇଲା ।
ଦାରୁକ ବୋଇଲେତାଙ୍କୁ ଦେବତାମନାକଲେ
ଆଜଦିନ ଯୁଦ୍ଧକୁ ନ ଯିବୁ ବୋଇଲେ ।
ସେ ସକାଶେ ଗୁପତରେ ରହିଲେ ଜାମ୍ବବ
ଶୁଣିଣ ସୁଷେଣ ଯେ ଧାଇଁଗଲା ବେଗ ।
ତାର ପଛେ ହନୂମନ୍ତ ବେଗେ ଚଳିଗଲେ
ଶ୍ରୀରାମ ପାଶେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଅଚେଷ୍ଟା ହୋଇ ଶୋଇଛନ୍ତି ସ୍ୱାମି
ଜାମ୍ବବ ପ୍ରବେଶ ହେଲେ ସେଠାବରେ ପୁଣି
ଜାମ୍ବବ ସୁଷେଣ ହନୂମନ୍ତ ଯେ ମାତଳି
ନନ୍ଦିଘୋଷ ରଥପରେ ସ୍ୱାମୀଙ୍କ ଜଗିକରି ।
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରି
ତାଳଧ୍ୱଜ ରଥରେ ଲକ୍ଷ୍ମଣ ବିଜେକରି ।
ଶ୍ରୀରାମ ଅଚେଷ୍ଟା ହେବା ଦେଖି ସଉମିତ୍ରୀ
ସହସ୍ରେ ବ୍ରହ୍ମରେ ଗୁଣରେ ବସାନ୍ତି ।
ମନ୍ତ୍ର ଅଧ୍ୟାପନ କରିଣ ବେଗେ ଛାଡ଼ିଦେଲେ
ସହସ୍ରେ ଶିର ତାରକାଟ ବୋଲିଣବୋଇଲେ
ତକ୍ଷଣେ ବ୍ରହ୍ମଶର ବେଗେ ଚଳିଗଲା
ସହସ୍ରେ ଶିର ଯେ କାଟି ପକାଇଲା ।
ଧରଣୀ ପରେ ଶିର ପଡ଼ିଲାକ ଲୋଟି
ପୁଣି ସହସ୍ର ଶିର ଯେ କଅଁଳ ତାର ଉଠି ।
ଦେଖିଣ ଲକ୍ଷ୍ମଣ ଯେ ବ୍ରହ୍ମଶର କଲା
ଦୁଇ ସହସ୍ର ବାହୁତାର କାଟି ପକାଇଲା ।
ଛିଡ଼ିଗଲେ ପଡ଼ନ୍ତେଣ ଦୁଇ ସହସ୍ର ବାହା
ପୁଣି କଅଁଳତାର ବେଗେ ଦେଲ ଏହା ।
ସେଠାରୁ ସହସ୍ରାନନ କ୍ରୋଧରେ ଜରଜର
ସହସ୍ର ଭୁଜରେ ଧନୁ ଧଇଲା କରିଦୃଢ଼ ।
ରୁଦ୍ରର ଶକତି ବୁଲାଇ ଛାଡ଼ି ଦେଲା
ଲକ୍ଷ୍ମଣର ପ୍ରାଣହର ବୋଲିଣ ବୋଇଲା ।
ଶକତି ଆସନ୍ତେ ଯେ ଦେଖିଲେ ଭ୍ରଥବୀର
ନାରାୟଣ ବାଟୁଳିକ ଧରିକରି ଦୃଢ଼ ।
ଯନ୍ତ୍ରକୁ ସୁମରି ସେ ବେଗରେ ଛାଡ଼ିଦେଲେ
ରୁଦ୍ରଶର ନାଶ କରରେ ବୋଇଲେ ।
ବାଟୁଳି ତେଜରେ ପୂରିଲା ଚଉଦିଗ
ନାରାୟଣ ବର୍ଣ୍ଣଗୁଆ ହୋଇଲା ବଡ଼ଭାଗ ।
ଦେଖିଣ ରୁଦ୍ରଶର ବେଗେ ପଳାଇଲା
କପିଳାସ କନ୍ଦରେ ଯାଇଁ ପ୍ରବେଶ ହୋଇଲା ।
ପଛରେ ନାରାୟଣ ବାଟୁଳି ଗୋଡାଇ
ଆମ୍ଭଠାରେ ଆମ୍ଭଶର ଶରଣ ପଶଇ ।
ନାରାୟଣ ଶରକୁ ଯେ ଅମ୍ଭେ ସ୍ତୁତି କଲୁ
ନାରାୟଣ ରଖବୋଲି ଯହୁଁ ସେ ବୋଇଲୁ ।
ଶାନ୍ତଶୀଳ ହୋଇଣ ଯେ ଶର ଚଳିଗଲା
ଭରତର ତୋଣରେ ଯାଇଣ ସମ୍ଭାଇଲା ।
ନାରାୟଣ କର୍ଣ୍ଣ ଗୁଆ ଅଷ୍ଟବଜ୍ର ନେଲେ
ତେଜବନ୍ତ କରିଣ ଯତନେ ରଖିଲେ ।
ଭରତଙ୍କୁ ସେ ସହସ୍ର ଦେଲେ ପ୍ରସନ୍ନରେ
ସେ ଶର ମାଇଲା ଭରତ ଆମ୍ଭର ଶକତରେ
ତେତିଶ କୋଟି ଦେବତା ବ୍ରହ୍ମାବିଷ୍ଣୁ ହର
ଭରତଙ୍କୁ ଜିଣିବାକୁ ନାହାନ୍ତି ତିନ ପୁର ।

ସୁଦର୍ଶନ ଚକ୍ର ଯେ ବାସୁଦେବ ଏହୁ
ଦେବସ୍ତ୍ରାନନ ମାରିବାକୁ ତାର ବଳ ନାହିଁ ।
ବ୍ରହ୍ମ ଶାପ ଦେଲ ଯେ କମଳା ହସ୍ତେ ମୃତ୍ୟୁ
ସୁକୁଷ ମାଇଲେ ତୋର ବର୍ତ୍ତ ନ ଛୁଟୁ ।
ରୁଦ୍ରଶକ୍ତି ମାରି ବଜ୍ର ବାଟୁଳି ମାଇଲ
ସହସ୍ରେକ ବାଟୁଳି ସେ ଗୁଣେ ବସାଇଲ ।
ସହସ୍ରାନନ ଉପରେ ଛାଡ଼ିଲ ବେଗେ ଟାଣି
ସହସ୍ରେ କପୋଳରେ କଣ୍ଡିଲ ଯାଇ ପୁଣି ।
ସହସ୍ର ଧାର ହୋଇଣ ବହିଲ ରକତ
ଘାଏ ଘୁମାଇଲ ଯେ ଦଶାଖାର ସୁତ ।
ଦେଖିଣ ଶତ୍ରୁଘନ ମନରେ ବଡ଼ କ୍ରୋଧ
ସହସ୍ରେ ବଜ୍ରସୂଚି ବସାଇ ଗୁଣମଧ୍ୟ ।
ଆକର୍ଣ୍ଣ ପରିଯନ୍ତେ ଓଟାରି ଆଣିଲ
ସହସ୍ରାନନକୁ ମାର ବୋଲିଣ ଗୁଡ଼ ଦେଲ ।
ତତକ୍ଷଣେ ବଜ୍ରସୂଚି ଚଳିଲ ତକ୍ଷଣ
ଦୈତ୍ୟର ମୁଖରେ ଯେ ପଡ଼ିଲ ତତକ୍ଷଣ ।
ପିଠି ଆଡ଼ରେ ଶର ଯେ ବାହାର ହୋଇଲ
ଯାନପରୁ ସହସ୍ରାନନ ଭୂମିଣ ପଡ଼ିଲ ।
ଦେଖିଣ ସାରଥି ତାର ରଥ ଲେଉଟାଇ
ଲଙ୍କାଗଡ଼ ଭିତରକୁ ନେଲ ସେ ବାହୁଡ଼ାଇ ।
ତିନଭାଇ ତାର ପଛରେ ଗୋଡ଼ାଇ ଥିଲେ
ଲଙ୍କାର ପଶ୍ଚିମ ଦ୍ୱାରୁ ଫେରିଣ ଆଇଲେ ।
ନର ବାନର ରାଜା ଯେ ଅଶ୍ୱ ରଥି ଥିଲେ
ସମସ୍ତଙ୍କ ବାହାର କରିଣ ଘେନ ଗଲେ ।
ସୁବଳଦ୍ୱୀପରେ ଗିରିରେ ହେଲେ ପରବେଶ
ହେଥା ଶାନ୍ତି ଘରେ ରାଜାମାନେ ଯେପ୍ରବେଶ
ନନ୍ଦିଗ୍ରାମର ସହିତେ ସକଳ ରାଜାଗଣ
ହେଳେ ନଗରେ ଯାଇଣ କଲେକ ସ୍ନାହାନ ।
ନିତ୍ୟକର୍ମ ସାରିଣ ରନ୍ଧଣା ବଧି କଲେ
ଭୋଜନ ସାରି ଯେଝା ନିଶ୍ଚିନ୍ତେ ଶୋଇଲେ ।
ବାନରେ ଭଲୁ ଫଳ ମୂଳେ କଲେକ ଆହାର
ଯୂଥପତି ନଳ ମହାବଳ ଯେ ସକଳ ।
ଶ୍ରୀରାମ ଯେଠାରେ ରହିଛନ୍ତି ଯାଇଁ
ଛାମୁଡ଼ାରେ ପ୍ରବେଶ ହେଲେ ତିନ ଭାଇ ।
ସୁଗ୍ରୀବ ବିଭୀଷଣ ଯେ ଅଙ୍ଗଦ ବଳ
ଅଷ୍ଟ ସେନାଗଣ ସହିତେ ହେଲେ ଠୁଳ ।

ତେତେବେଳେ ରଜନୀ ହୋଇଛି ଦୁଇଘଡ଼ି
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ ।
ଏକାକେ ଯୁଦ୍ଧ ଯେ ସହସ୍ରାନନ କରୁଥିଲା
ମୋହ ଯିବରୁ ତାକୁ ସାରଥି ଘେନଗଲା ।
ଦଶାନନ ନବରେ ପ୍ରବେଶ ହେଲେ ଯାଇ
ଶ୍ରାଙ୍ଗି ଯିବାରୁ ଆଟ ପ୍ରବେଶ ହେଲେ ତହିଁ
ରାବଣ ସିଂହ ଦ୍ୱାରେ ଲାଗିଲା ଚହଳ
ଚେତା ପାଇ ଉଠିଲେ ଯେ ସହସ୍ରାନାସେଶ୍ୱର
ଅନେକ ଔଷଧ ଦୁଳା ଲାଗିଲା ଘାମୁରେ
ରଥର ଉପରୁ ଉଠିଲା ଧାଡ଼କାରେ ।
ଆସ୍ଥାନ କରିଣ ତହିଁ ବସେ ସହସ୍ରାନନ
ଆପଣା ଥାଟକୁ ବୃଦ୍ଧି ବୋଲଇ ବଚନ ।
ତପସ୍ୱୀ ବାପୁଡ଼ା ଆଜ କରୁଥିଲା ଟାଣ
ଅକାରଣେ ପୁତ୍ର ନାତି ମରାଇଲା ଜାଣ ।
ମୁଣିକି ବୋଇଲ ଯେ ମୁହିଁ ନ ଜାଣିଲି
ବେଳହୁଁ କର୍ମା ମୁଁ ଯେ ଶକତ ନ ମାଇଲି ।
ଆଗହୁଁ ଯେବେ ମୁହିଁ ଶକତ ମାରିଥାନ୍ତି
କର୍ମାଇ ମରନ୍ତେ ମୋର ଜୁଆଇଁ ପୁତ୍ରନାତି ।
ଏତେ କହିଣ ଯାଇ ହୋଇଲା ମଜ୍ଜନ
ମର୍ଦ୍ଦନ ମାର୍ଜ୍ଜଣା ସାରିଲା ବହନ ।
ଯାଇଣ ଭୋଜନରେ ବଇସେ ସହସ୍ରମାଥ
ଭୋଜନ ସାରି ଆଞ୍ଚୋବଚନ କଲକ ଦଇତ
ହାତଆ ଭୁଞ୍ଜିଣ ଯେ ଶେଯ୍ୟାରେ ପହୁଡ଼ିଲା
ଏଥର ପଳାଇ ଯିବେ ବୋଲିଣ ବୋଲଇ ।
କୋହଳେ ଯୁଦ୍ଧ ଯେବେ କରିବେ କାଲି ପୁଣ
ସମସ୍ତଙ୍କୁ ମାରି ମୁଁ ନିଶ୍ଚିନ୍ତ ହେବି ଜାଣ ।
ଏତେ ବୋଲି ଦୈତ୍ୟ ଶଯ୍ୟାରେ ପହୁଡ଼ିଲା
ପୁତ୍ର ନାତିଙ୍କି ସୁମରି ନିଦ୍ରା ନ ମାଡ଼ିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଗିରିଜା
ତିନଭାଇ ବିଭୀଷଣ ସୁଗ୍ରୀବ ହନୁ ଦ୍ୱଜା ।
ଭନ୍ଦଘୋଷ ରଥପାଶେ ମିଳିଲେ ତୁରିତ
ଦେଖିଲେ ରଘୁନାଥର ଚେତନା ନାହିଁତ ।
ଜାନୁରେ ଫିଟିଶକ୍ତି ରଥରେ ଅଛି ଲେଉ
ଦେଖିଣ ତିନଭାଇ ବ୍ୟାକୁଳ ହୋଇ କାନ୍ଦ ।
ଲକ୍ଷ୍ମଣ ଯାଇଣ ଶକ୍ତି ଧଇଲେକ ବଳେ
ଉପାଡ଼ି ନ ପାରିଣ ଲେଉଟି ଆଇଲେ ।

ଉରତେ ଯାଇଣ ଧଇଲେ ଶକ୍ତି ଗଢ଼େ
ଜାନୁ ପୃଷ୍ଠି ଶକ୍ତି ଯେ ଭେଦନ୍ତୁ ରଥରେ ।
ଉପାଡ ନ ପାରିଣ ଲଙ୍କ'ଈର ହୋଇ
ଲେଉଟି ଆସିଣ ସେ ମଉନେ ବସଇ ।
ଶଙ୍ଖ ଘନ ଯାଇଣ ଧଇଲା ପୁଣି ଟାଣି
କେବେହେଁ ଶକତି ଯେ ନ ହଲିଲା ପୁଣି ।
ଘୁଡ଼ିଣ ଚନଘଇ ଅଲଗା ହୋଇଗଲେ
ଆହାସ୍ୱାମୀ ବୋଲିଣ ରୋଦନ ପୁଣ କଲେ ।
ହନୁମନ୍ତ ବୋଲେ ତୁମ୍ଭେ ନକର ଶୋଚନା
ରୋଦନ କଲେ କାର୍ଯ୍ୟ କଛୁ ନୁହେଁ ସିନା ।
ତ୍ରୈଲୋକ୍ୟ ଠାକୁର ମୋର ନଦ୍ରାଯାଇଛନ୍ତି
ଏହିକ୍ଷଣି ଉଠିବେ ସେ ଦଶରଥ ବହ୍ନି ।
ଏମନ୍ତ ସମୟେ ସକଳ ଦେବଗଣ
ଆକାଶରେ ଥାଇ ଯେ ବୋଲନ୍ତି ବଚନ ।
ବୋଲନ୍ତି ଶୁଣ ତୁରେ ପବନ କୁମର
ଶ୍ରୀରାମ ଦେହରୁ ବାହାର କର ଶର ।
ତଦନ୍ତରେ ମଉଷୋଧି ବେଗେ ଆଣିଦଅ
ଶ୍ରୀରାମଙ୍କୁ ବେଗରେ ଚେତା ଯେ କରାଅ ।
ଏମନ୍ତ ବଚନ ଯହୁଁ ବୋଇଲେ ଦେବତାଏ
ଶୁଣିଣ ହନୁମନ୍ତର ପୁଲକିତ କାୟେ ।
ମନରେ ଆନନ୍ଦ ହୋଇ ପବନ ନନ୍ଦନ
ଶ୍ରୀରାମ ଚରଣେ ଊଳଗି ହୋଏ ପୁଣ ।
ବୋଲଇ ଦାଶରଥି ହେ ସ୍ୱାମି ମୋତେକର
ମୋହର ହନତି ଯେନ ଦୋଷଯେ ନ ଧର
ତୁମ୍ଭର ଚରଣର ଦାସ ଅଟଇ ମୁହିଁ
ତୁମ୍ଭଦେହୁଶକ୍ତି ଉପାଡ଼ିବାକୁ ମନେବଳୁରଇ
ଏତିକ ସାହା ମୋତେ ଦିଅ ହେ ଦାଶରଥି
ତୁମ୍ଭ ତୋତେ ରକ୍ଷାକର ଯେନମୋ ହନତି
ଏତେ କହି ହନୁମନ୍ତ ହନସ୍ତୁ ଉଭ ହୋଇ
ଧୀର ଧୀର କରିଣ ସେ ଶକତି ଉପାଡ଼ଇ ।
ବାମ ପାଶରୁ ସେ ଅଳପ ଟାଳି ଦେଲା
ଶ୍ରୀରାମ ନାମ ସୁମରି ଶକତି ଉପାଡ଼ିଲା ।
ଦେଖିଲା ଜାନୁରେ ହୋଇଛି ମହାଗାତ
ସେହି ଘାଆ ମୁଖରେ ବାହାର ରକତ ।
ମଲ୍ଲି ମଲ୍ଲି ବୁକୁରେ ବୋଲିଣ କୋଡ଼ହୋଇ
ଚରଣ ତଳେ ଊଳଗି ହୋଇଣ ଶୁଅଇ ।

ସେଠାରୁ ଉଠିଣ ସେ ହନୁମନ୍ତ ବୀର
ଜମ୍ୱେବ ସୁଷେଣାଙ୍କୁ ପୃଚ୍ଛି କହେ ଧୀର ।
ସୁଷେଣ ଜମ୍ୱେବକୁ ହନୁମନ୍ତ କହି
ଏବେ କି ବୁଦ୍ଧି କରିବା କହହେ ମନ୍ତ୍ରୀଦୁଇ
କେବଣ ପ୍ରକାରେ ଜୀଇବେ ରଘୁବୀର
ସେଥିର ଉପାୟ ମୋତେ କହହେମନ୍ତ୍ରୀବର
ଏହା ଶୁଣି ଜମ୍ୱେବ ସୁଷେଣ ମନ୍ତ୍ରୀ କହି
ଉତ୍ତର ହାସରେ ପୋଥିକ ଅନାଇ ॥
ପୃଷ୍ଠାକୁ ପୃଷ୍ଠା ପୁଣ ଲେଉଟାଇ ଦେଲେ
ଗ୍ରନ୍ଥ ପୃଷ୍ଠା ଅନ୍ତେ ମଉଷୋଧି ସେ ପାଇଲେ
ଯେବଣ ଶସ୍ତ୍ରକୁ ଯେବଣ ମଉଷୋଧି
ଉପାଏ କରି ବିଧାତା ଛଆଇ ଅଛୁବଧି ।
ବ୍ରହ୍ମ ଶକ୍ତିକି ଯେବଣ ସେ ଦ୍ରବ୍ୟ
ଦେଖିଣ ସୁଷେଣ ସେ ତାହାକଲା ଠାବ
ବୋଲନ୍ତି ସୁଷେଣ ତୁରେ ଶୁଣ ପବନନନ୍ଦନ
ବେଗେଣଯାଅ ବାବୁରେଖାଣ୍ଡବ ନାମେବନ
ଇନ୍ଦ୍ର ଦେବତାର ନନ୍ଦନ ବନ ସେ ଅଟଇ
ଅନେକ ମଉଷୋଧି ସେ ବନରେ ଅଛଇ ।
ତୋଟାରେ ପୂର୍ବଭାଗସେ ଈଶାନ କୋଣରେ
ଅଛଇ ସେ ଗଛ ଅତ୍ୟନ୍ତ ନର୍ଭରେ ।
ଅତି ଉଚ ନୁହଇ ସେ ପୁଣ ବୃକ୍ଷଗୋଟି
ଫଳଇରେ ଡାଳ ସେ ଭୂମିରେ ପୁଣଲେଟି
ସେ ବୃକ୍ଷରେ ଯେବଣ ଫୁଲ ଯେ ଅଟଇ
ଖାଣ୍ଡବ ବନଯାକ ଗନ୍ଧରେ ତହଟଇ ।
ପଞ୍ଚ ଗୋଟିକ ଦିଶେ ସୁବର୍ଣ୍ଣର ଜ୍ୟୋତି
ଫଳ ଦିଶଇ ତାର ମାଣିକ୍ୟ ଆକୃତି ।
ସେହି ବୃକ୍ଷରପଞ୍ଚ ଯେବେଲେଟିଏ ପାଇଲୁଆଣି
ତେବେ ସେ ବାବୁରେ ଜିଇବେ ରଘୁମଣି ।
ରାତ୍ର ନ ପାହୁ ଯେବେ ଆଣିବୁ ତାହା ଯାଇ
ତେବେ ସେ ଏ କଷ୍ଟରୁ ବାବୁରେ ତରିବଇ
ଶୁଣିକରି ହନୁମନ୍ତ ଆନନ୍ଦ ହୋଇଲା
ଏଠାରୁ କେତେଦୂର ଅଟେସେ ବୋଇଲା ।
ଶୁଣିଣ କହିଲେ ସେ ସୁଷେଣ ମନ୍ତ୍ରୀବର
ଅଶୀସହସ୍ରଯୁଣ ବାବୁରେ ଅଟେ ସେହିଦୂର
ପଶ୍ଚିମରେଅଟେବାବୁରେଖାଣ୍ଡବନାମେବନ
ଶୀଘ୍ର ହୋଇଣ ତୁ ଚଳରେ ହନୁମାନ ।

ହସିଣ ବୋଇଲେ ଟେ ପବନର ସୁତ
କସ ଯେ ଦୁଗମ ଅଟେ ଏହୁ ପଥ ।
ଏହ୍ଷଣି ଯାଇ ଆସିବ ମୁଁ ଯେ ପୁଣି
ଏତେ ବୋଲି ଆନନ୍ଦ ହେଲେ କପିମଣି ।
ଏକଥାକୁ ତୁମ୍ଭେ ଯେ ଥିବ ହେତୁ କରି
ଏତେ ବୋଲି ତାହାରନ୍ତ ଅକ୍ଷୟ ଅଇରି ।
ରାମନାମ ସୁମରି ସେ ଅନୁକୂଳ କଲା
ସବୁରି ଯୋଜନ ସେ ଶୂନ୍ୟକୁ ଉଡ଼ିଗଲା ।
ପଶ୍ଚିମ ମୁଖ ହୋଇ ଗଲାକ ମହାବୀର
ଗଗନ ମାର୍ଗରେ ସେ ଚଳେ ଅତି ଖର ।
ଶୁଣନ୍ତ ପାର୍ବତୀ ଯେ କହନ୍ତି ସଦାଶିବ
ଏଥୁ ଅନନ୍ତରେ ଶୁଣ ହେ ଯେବଣ ଭାବ ।
ସହସ୍ର ମାଥ ଶ୍ରୀରାମଙ୍କୁ ଶକତି ମାରିଗଲା
ଏହି ସମୟରେ ଗୋ ରବି ଅସ୍ତ ହେଲା ।
ସୁବଳଯ୍ୱାରେପ୍ରବେଶହେଲେଯେତେବେଳେ
ରାତ୍ର ଘଡ଼ିଏକଯେ ହୋଏ ତେତେବେଳେ ।
ଶକତି ଉପାଡନ୍ତେ ଯେ ପବନର ସୁତ
ଦୁଇଘଡ଼ି ପ୍ରବେଶ ହୋଇଲାତ ରାତ୍ର ।
ସୁଷେଣ ମଉଷଧି ଖୋଜନ୍ତେ ଯୋଥି ଫେଡ଼ି
ସେତେବେଳେ ପ୍ରବେଶ ରଜନୀ ତିନଘଡ଼ି ।
ଯେତେବେଳେ ହନୁମନ୍ତବାହାରହୋଇଗଲା
ରାତ୍ର ପହରକ ଠାରେ ପ୍ରବେଶ ହୋଇଲା ।
ଆକାଶରେ ଗମନ କରନ୍ତେ ହନୁମନ୍ତ
ଚଳଚଳ ହୋଇଣ କମ୍ପିଲା ଜଗତ ।
ଅଣରୁଣ ପବନକ ଏକାବେଳକେ ବୋହିଲା
ସମୁଦ୍ରର ଲହରୀ ସ୍ଥକତ ହୋଇଲା ।
ଧରଣୀ ଶୂନ୍ୟକ ଏକାନ୍ତ ହେ ଇଲା
ଥରଥର ହୋଇ ସୁବଳଗିରି ଯେ କମ୍ପିଲା ।
ଏସନକ ଉପଦ୍ରବ ଯହୁଁ ଦେଖିଲେ ଜାନକୀ
ମନ୍ଦୋଦରୀକ ଗୁହିଁଣ ବଚନ ପୁଚ୍ଛନ୍ତି ।
କସ ପ୍ରମାଦ ଅଟେ ଗୋ ସଙ୍ଗାତ
ଭଲ କଥା ପରାଏ ଦିଶୁନାହିଁ ଏତ ।
ଶ୍ରୀରାମ ଲକ୍ଷ୍ମଣ ନଇ ବାନର ବଳସେନ
ଯୁଦ୍ଧକୁ ଗଲେ ବିଭୀଷଣ ସୁଗ୍ରୀବ ଯେ ପୁଣି ।
ଲକ୍ଷେକ ନୃପତି ଯେ ଯାଇଥିଲେ ସଙ୍ଗେ
କି ପ୍ରମାଦ ଆଜ ଯେ ହେଲା ରଣରଙ୍ଗେ ।

ଏତେବେଳଯାଏ କୁ ବାହୁଡ଼ି ନ ଆସିଲେ
ବାରତା ନ ପାଇଲଇଁ କେବଣ କୃତ୍ୟକଲେ
ମୋହର ମନକୁ ଆସୁଛି ଏମନ୍ତ
ରାତ୍ର ଘାଇକ ମାଇଲା ଦଶାଖାର ସୁତ ।
ଏ ବଚନ ଯହୁଁ ସୀତା ମନ୍ଦୋଦରୀକ ପୁଚ୍ଛି
ନୋହିଲେକ ଏତେ ଉଚ୍ଚର ହୋଇଅଛି ।
ଶୁଣିଣ ମନ୍ଦୋଦରୀ କହେ ଧୀରେ ବାଣୀ
ଯାହା ପଚାରିଲ ଶୁଣ ଗୋ ଠାକୁରାଣୀ ।
ଏହ୍ଷଣି ମୁହିଁ ଗୋ ପାଇଲି ବାରତା
ଶ୍ରୀରାମକୁ ଶକ୍ତିମାରି ଗଲାକ ସହସ୍ରମଥା ।
ବ୍ରହ୍ମଶକ୍ତି କେବେ ନବାଇ ନୋହିଲା
ଶ୍ରୀରାମର ବାମ ଜାନୁରେ ଶକତି ଫିଟିଗଲା ।
ଅଚେତହୋଇଣ ତେଣୁ ପଡ଼ିଲେ ରଘୁଧୀରା
ଆଜ ଜୟେ ଯୁଦ୍ଧରେ ସହସ୍ରାନନ ବୀର ।
ଦୁଇଲକ୍ଷ କୁମର ଦଶଲକ୍ଷ ନାତି
ବାରଲକ୍ଷ ଜୁଆଇଁ ତାର ମାଇଲେରଘୁପତି
ରଥୀ ହାତୀ ପଦାତି କଳଣା ନଯାଇ
ଶ୍ୱାନ ଶୃଗାଳ ଗଧଙ୍କୁ ମାଇଲେ ନବାଇ ।
ସ୍ୱମ୍ବର ମୃଗ ମଇଁଷି ସାରେଣି ଯେ ଅଶ୍ୱ
ଏମାନଙ୍କୁ ସବୁରି କପି କଲେ ନାଶ ।
ପୁତ୍ର ନାତି ଛଳେ ମାଇଲା ଶକତି
ଭ୍ରଥ ଶତ୍ରୁଘନ ବାଣେ ହେଲା ମୋହମତି ।
ସାରଥି ଘେନଗଲା ରଥ ଲେଉଟାଇ
ମୋହର ପୁରେ ପ୍ରବେଶ ହୋଇଲାଏ ଯାଇଁ
ତେବେ ଚେତା ପାଇଲା ଏ ବଳକା ରାବଣ
ସମସ୍ତ ସୈନ୍ୟ ଅଇଲେ ସୁବଳଯ୍ୱା ପୁଣ ।
ତିନଭାଇ ଜଗି ରହିଲେ ତୁମ୍ଭ ସ୍ୱାମୀ
ସୁଗ୍ରୀ ବିଭୀଷଣ ସଙ୍ଗରେ ଛନ୍ତି ପୁଣି ।
ସୁଷେଣକୁ ପଚାରି ହନୁ ଗଲା ବେଗେ
ଅମର ମଉଷଧି ଆଣିବାର ଲାଗେ ।
ତାର ପବନର ବାଏ କମ୍ପଇ ମେଦିନୀ
ଖାଣ୍ଡବ ବନକୁ ଗଲାକ ପାବେନ ।
ଏହା ଶୁଣି ସୀତାୟୀ ଛାଡ଼ିଲେ ନିଃଶ୍ୱାସ
ଶୁଣିକରି ଜାନକୀର ଉଡ଼ିଲା ସାହସ ।
ମନ୍ଦୋଦରୀ ଗୁହିଁ ବୋଲନ୍ତି ବଚନ
କାହିଁଛନ୍ତି ଶ୍ରୀରାମ କରାଅ ଦରଶନ ।

ମୂର୍ଚ୍ଛି ସଢ଼େଣୀ ଯେ ଅଟେ ସ୍ଥାନ ଜନ୍ମ
ମୋହପାଇଁ କେତେ କଷ୍ଟ ପାଇଲେସ୍ୱାମୀପୁଣ
ମିଥିଳା ଦେଶରେ ଯେ ଜନେକ ସଭାରେ
ବୈଷ୍ଣବୀ ଧନୁକୁ ଭଙ୍ଗିଲେ ଶ୍ରୀରାମ ହେଲେ
ସେକାଳେ ସର୍ବେ ଜାଣିଲେ ପରମବ୍ରହ୍ମ ଏହି
ଜାନକୀ କେତେ ପୁଣ୍ୟ କରିଥିଲ ଗୋ ଆଇ
ଏତେ ବୋଲି ଦେବୀ ଯେ ଉଚ୍ଛେଦେବନକର
କରପତ୍ର ଯୋଡ଼ିଣ ବୋଲଇ ମନ୍ଦୋଦରୀ ।
କମ୍ପାଇଁ କ୍ରୋଧ ମାଗୋ କରୁଛ ଅକାମିତେ
ଏହିକ୍ଷଣି ଜୀଇବେ ତୋର ସ୍ୱାମୀ ରଘୁନାଥେ
ତୁମ୍ଭେତ କମଳା ଜଗତ ଠାକୁରାଣୀ
ତୁମ୍ଭର ସ୍ୱାମୀକି ବିପତ୍ତି କେବେ ନାହିଁ ପୁଣି
ବଚନରେ ଜାନକୀ ଯେ ବୋଲନ୍ତି ବଚନ
ଭେଟାଅ ମୋତେ ନେଇ ରାମଚନ୍ଦ୍ରଙ୍କୁ ପୁଣ
ଶୁଣିଣ ମନ୍ଦୋଦରୀ ବୋଲଇ ଉତ୍ତର
କାହିଁକି ମନେ ତୁମ୍ଭେ ଚିନ୍ତର ନ କର ।
ଶ୍ରୀରାମଚନ୍ଦ୍ର ଯେ ହୋଇଛନ୍ତି ଶକ୍ତିଭେଦ
ସ୍ତ୍ରିୟା ସେଠାକୁ ଯିବାକୁ ଅଟଇ ନିଷେଧ ।
ସ୍ତ୍ରିୟାଙ୍କର ଦୃଷ୍ଟି ଯେବେ ପଡ଼େ ଘାଆମୁଖେ
ସେ ଘାଆ ଶୁଖିବାକୁ କରେ ବଡ଼ କଷ୍ଟେ ।
ଏହିକ୍ଷଣି ମହୌଷଧି ଆଣିବ ମାରୁତ
ତତକ୍ଷଣେ ଉଠିବେ ସ୍ୱାମୀ ତୋର ରଘୁପତି
ଶୁଣିଣ ଜାନକୀ ଯେ ହରଷ ହୋଇଲେ
ରାଣୀହଂସ ମଧ୍ୟରେ ବିଜୟେ ଯାଇ କଲେ ।
ଜାନକୀର ମନରେ କାହିଁକି ସୁଖ ନାହିଁ
ନିରନ୍ତରେ ମନ ଯେ ଶ୍ରୀରାମଠାରେ ତହିଁ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମହୌଷଧି ଆଣିବାକୁ ଗଲା ଯେ ମାରୁତି ।
ଯାଇଣ ମିଳିଲା ସେ ଖାଣ୍ଡବ ବନକତ
ଦେଖିଲା ବନନ୍ତ ସୁସଞ୍ଚ ଶୋଭା ଅତ ।
ଚିତ୍ରରଥି ଗନ୍ଧର୍ବ ରଖନ୍ତି ସେ ବନ
ଛତ୍ର ଆରମ୍ଭେ ବନରେ ଖାଣ୍ଡବ କାନନ ।
ହନୁମନ୍ତ ପ୍ରବେଶ ହୋଇଲେ ତହିଁ ଯାଇ
ଗନ୍ଧର୍ବଙ୍କୁ ଦେଖିଣ ମନରେ ବିଚାରଇ ।
ବୋଇଲା ଦୁଷ୍ଟ ଗନ୍ଧର୍ବ ଅଛନ୍ତି ଏ ଯେତେ
ନପୁଣ ଯୁଦ୍ଧ ଏ କରନ୍ତି ମୋ ସଙ୍ଗତେ ।

ଏହାଙ୍କର ସଙ୍ଗେ ମୁଁ ଯେ ଯୁଦ୍ଧ କେ କରିବ
ଶ୍ରୀରାମର କାର୍ଯ୍ୟ ମୁଁ ତ କରି ନ ପାରିବ ।
ରାତ୍ର ପାହିଗଲେ କିସ ହେବ ମହୌଷଧି
ମୋ ବିନ୍ଧ ବିଧାତା ମୁଁ କରିବ କିସ ବୁଦ୍ଧି ।
ଏତେ ବୋଲି ବିଚାର କରେ ହନୁମାନ
ବୁଦ୍ଧି ଏକ ପ୍ରବେଶ ହୋଇଲା ତାର ମନ ।
ବୋଇଲା ଗୋଟିଏ ମୁଁ ଫିକର କରିବ
ଶରୀର ଗୋପ୍ୟକରି ମହୌଷଧି ନେବ ।
ଏମାଙ୍କ ସଙ୍ଗେ ଯୁଦ୍ଧ କଲେ ହେବ କିସ କାର୍ଯ୍ୟ
ରାତ୍ର ପାଇଲେ ନ ଜୀଇବେ ଶ୍ରୀରାମରାଜ ।
ଏତେ ବିଚାରି ଯେ ଶରୀର ଗୋପ୍ୟକଲା
ଖାଣ୍ଡବ ବନ ଭିତରେ ଯାଇଣ ପଶିଲା ।
ବେଗ ବେଗ ହୋଇଣ ସେ କରଇ ଗମନ
ଚୋଟାଇ ପୃଥ୍ୱୀରାଗକୁ ଚଳଇଁବହନ ।
ବୃକ୍ଷ ନିରେଖିଣ ଯେ ଖୋଜଇ ପାବନ
ଏମନ୍ତେ ରାତ୍ରକାଳେ ନ ପାରିଲା ଚିହ୍ନି ।
ନିର୍ମଳ ହେଲେ ତହିଁ ଚନ୍ଦ୍ରର କିରଣ
ମନେ ମନେ ମହୌଷଧି ଖୋଜେ ହନୁମାନ
ସବୁ ବୃକ୍ଷମାନ ଯେ ନିରେଖି ବୁଲୁଁଇ
ମହୌଷଧି ବୃକ୍ଷ ପାଶେ ମିଳିଲାକ ଯାଇ ।
ଦେଖି କରି ଆନନ୍ଦ ହେଲା ହନୁମନ୍ତ
ବୋଇଲା ମହୌଷଧି ଅଟେ ଏହି ବୃକ୍ଷ ।
ସୁଷେଣ କହିଥିଲେ ଯେବଣ ସଙ୍କେତ
ଏ ବୃକ୍ଷ ଅଟଇ ହାଦେ ତେସନକ ମତ ।
ଏତେ ବୋଲି ମାରୁତ ଆନନ୍ଦ ହୋଇଲା
ସେ ବୃକ୍ଷ ମୂଳ ଗୋଟିଏ ତୋଳିଲା ।
ପଛକୁ ଚାହିଁ ପୁଣ ବୁଲିଲା ପାଖଟି
ତତକ୍ଷଣେ ଖାଣ୍ଡବ ବନୁ ଆସଇ ଲେଉଟି ।
ହୁଙ୍କାର ନାଦ କରିଣ ଶୂନ୍ୟରେ ଭ୍ରମିଲା
ଖାଣ୍ଡବ ବନଯାକ କମ୍ପମାନ ହେଲା ।
ଗଗନେ ବିଜୟମିଣ ଆସେ ମହାବୀର
ପ୍ରବେଶ ହେଲାଯାଇ ସୁବଳଯା ଗିରିବର ।
ଉଭତ ଶତ୍ରୁଘ୍ନ ସନ୍ନିଧେ ହେଲା ଯାଇ
ସୁଗ୍ରୀ ବିଭୀଷଣ ପ୍ରଶଂସା କଲେ ତହିଁ ।
ସୁଷେଣକୁ ବୁଲିଁ ବୋଲେ ପବନ କୁମର
ମହୌଷଧି ଆଣିଲି ମୁଁ ଖାଣ୍ଡବ ବନରୁ ।

ଶୀଘ୍ର କରଣ ଏହା କହସି ବେଗକର
ଶୁଣିକରି ସୁଷେଣ ବୋଲନ୍ତି କର ଧରି ।
ବୋଲନ୍ତି ମାରୁତି ତୁ ବାଟଆକୁ ନେଇ
ଶ୍ରୀରାମ ଜାନୁରେ ବୋଳିବା ଶୀଘ୍ର ହୋଇ ।
ଶୁଣିଣ ହନୁମନ୍ତ ବୋଲଇ ବଚନ
କେଉଁଠେ ରାଜ୍ୟ ଅଛଇ କହ ହେ ମନ୍ତ୍ରୀ ପୁଣ ।
ଶୁଣି କରି ମନ୍ତ୍ରୀ ଯେ ବଚନ ବୋଲଇ
ଆସୁରୀ ରାଜ୍ୟ ଯେ ପ୍ରଶ୍ନରେ ଅଛଇଁ ।
ପ୍ରହରକ ରାଜ୍ୟଠାରେ ତୁମ୍ଭେ ଏଥି ଗଲୁ
ପ୍ରହରେ ରାଜ୍ୟ ଅଟ୍ଟ ପ୍ରବେଶ ଆସି ହେଲୁ ।
ପ୍ରହରକେ ଅଶୀ ସହସ୍ର ଯୋଜନ ଗଲୁ ପଥ
ପ୍ରହରକେ ଆସିବାର ବଡ଼ ଆଶ୍ଚର୍ଯ୍ୟ ତ ।
ଏମନ୍ତ ଯହୁଁ ହନୁମନ୍ତ ହେ ଶୁଣିଲା
ମହୌଷଧି ନେଇଣ ଶିଳାରେ ବାଟିଲା ।
ଅତି ଯତନରେ ମହୌଷଧି ବାଟିଣ
ନେଇକରି ଦେଲା ସୁଷେଣ ହସ୍ତରେଣ ।
ଦେଖିକରି ସୁଷେଣ ହସ୍ତରେ ଧଇଲେ
ଶ୍ରୀରାମଙ୍କ ଜାନୁ ଘାଆରେନେଇଲେପଦେଲେ
ଯହୁଁ ଶ୍ରୀରାମ ଜାନୁରେ ଲେପଦେଲେ ନେଇ
ତତକ୍ଷଣେ ଘାଆ ମୁହଁ ଗଲା ବୁଜ ହୋଇ ।
ଚେତନା ପାଇଣ ଯେ ଉଠିଲେ ରଘୁବୀର
ଅବନୀ ଦେବ ଯେ ରାହିଲେ ସ୍ଥିର ।
ଯହୁଁ ଶ୍ରୀରାମଚନ୍ଦ୍ର ଉଠି ବସିଲେକ
ସମସ୍ତଙ୍କ ତୁଣ୍ଡେ ଜୟ ଶବଦ ଶୁଭିଲାକ ।
ହନୁମନ୍ତକୁ ରହିଁ ବୋଲନ୍ତି ରଘୁନାଥ
କହୋ ହନୁମନ୍ତ ଏକ ସୁବଳସ୍ୱା ଗିରି ।
ଏତେକ୍ଷଣି ସହସ୍ରାନନ ସଙ୍ଗରେ ଯୁଦ୍ଧ ମୋର
କେଉଁଣ ପ୍ରକାରେ ଅଇଲୁ ସୁବଳସ୍ୱା ପର ।
ଶୁଣିଲା ପାବନ ଯେ ଯୋଡ଼ି କେନକର
ଶୁଣିବା ହେଉ ଦେବ କୋଦଣ୍ଡ ରୂପଧର ।
ସହସ୍ରାନନ ହେ ଯୁଦ୍ଧ କରୁଥିଲା
ବ୍ରହ୍ମଶକତି ଦେବ ତୁମ୍ଭଙ୍କୁ ମାରିଲା ।
ସେ ଶକତି ତୁମ୍ଭଠାରେ ବାଜିଲା ପୁଣ ଯାଇ
ଜାନୁ ଫୁଟି ଶକତି ଯେ ରଥରେ କଣ୍ଡିଲା
ସୁଷେଣ କହିବାରୁ ଖାଣ୍ଡବ ବନ ଗଲି
ନେଇଟାଇ ରଥକୁ ମାଡିଲି ଆଣେ ଫେଲି ।
ଖାଣ୍ଡବ ବନରୁ ଯାଇ ଆଣିଲି ମହୌଷଧି
ବାଟିକରି ଦ୍ୟନ୍ତେ ଚେତା ପାଇଲ ଗୁଣନିଧି
ସହସ୍ରାନନ ଯେ ମାରଣ ଶକ୍ତି ପୁଣ
ଶତ୍ରୁଘନ ଭରତ ସଙ୍ଗେ ଜାମ୍ବବାନ୍ ଯୋଗେଣ
ଶତ୍ରୁଘନ ଚେତନ ମାରନ୍ତେ ମୋହଗଲା
ଭୂମି ବାଟୁଳରେ ଅଜ୍ଞାନ ପୁଣ ହେଲା ।
ସାରଥି ରଥକୁ ଘେନ ପଳାଇଲା ତାକୁ
ରାବଣ ନଗରେ ପାଇଲା ଚେତାକୁ ।
ରଘୁନାଥ ବୋଲନ୍ତି ଏ ବଚନ ଶୁଣି
ସୁଷେଣ ହନୁମନ୍ତ ମୋତେ ଯେ ଜାଣେଣି ।
ଏମନ୍ତ ସମୟେ ଜାମ୍ବବ ମିଳିଲେ ଆସି ପୁଣ
ଓଳଗି ହୋଇଲା ଶ୍ରୀରାମ ପଦ୍ମର ସମ୍ମୁଖେଣ
ଜାମ୍ବବକୁ ଦେଖିଣ ଶ୍ରୀରାମ ପଚ୍ଛର
ଦେହଖଣ୍ଡ କଲୁ ଯେ ସହସ୍ରାନନ ମାରି ।
କେମନ୍ତ ଜୀବନ ପାଇଲୁ ଆଜ
ଜାମ୍ବବ ବୋଇଲେ ଦେବଦେବଙ୍କଲେ କାର୍ଯ୍ୟ
ସ୍ୱର୍ଗରୁ ଶୁକ୍ରଦେବ ଆସିଲେ ଯେ ବେଗେ
ଗଣ୍ଡି ମୁଣ୍ଡ ଯୋଡ଼ଣ ଜୀଆଇ ଦେଲେ ବେଗେ
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ବୈକୁଣ୍ଠ ହୋଇ ଛନ୍ତି ବୋଲିଣ ବୋଇଲେ
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ରଣଭୂମି ଶୂନ୍ୟ ହେଲା ଦୁଇଘଡ଼ି ରାତି
ସୁବଳ ଗିରିର ଦକ୍ଷିଣ ଭାଗେ ଥିଲେ
କାଳେଶ୍ୱରୀଙ୍କୁ ଆଜ୍ଞାରେ କାଳିକା ବାହାରିଲେ
ଚଉଷଠି କୋଟି ଯେ ଅଛନ୍ତି ପିଶୁଣୀ
ବାଉନକୋଟି ଯୋଗିନୀ ଯେ ଉଠିଲେ ଘୁଣି
ରଣଭୂମିରେ ଯାଇ ପ୍ରବେଶ ହୋଇଲେ
ରକତ ମାଂସ ଖାଇ କାଳିକା ରଙ୍ଗ ହେଲେ
ନର ବାନର ଯେତେକ ଯେ ପଡ଼ିଥିଲେ ରଣେ
ଗୁଡ଼ବାଣ୍ଡ ବଳାକାର ସଳଖ କଲେ ତେଣେ
ଦେହଖଣ୍ଡ ହେବାରୁ ଯୋଡ଼ିଲେ ଗଣ୍ଡି ମୁଣ୍ଡ
ଅସୁରଙ୍କୁ ଭକ୍ଷିଣ କଲେ ଭସ୍ମକୁଣ୍ଡ ।
ରୁଧିର ପାନ କରିଣ ଆନନ୍ଦ ହୋଇଲେ
ସ ଚଣ୍ଡ ରକ୍ତମାଂସରେ ରଣଭୂମିରୁ ଗଲେ ।
ସୁବଳଗିରିରେ ଯାଇ ହେଲେ ପରବେଶ
ରକ୍ତ ମାଂସ ଖାଇ ମନରେ ହରଷ ।

ଦେବ ନଦୀରେ ପଶିଣ ସ୍ନାନ ଯାଇ କଲେ
ନିତ୍ୟକର୍ମ ସାରିଣ ରହିବା ଥାନେ ଗଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସ୍ୱର୍ଗରୁ ଶୁକ୍ର ଦେବତା ଆଇଲେ ବେଗକରି ।
ମୃତ୍ୟୁ ସଞ୍ଜିବନୀ ପାଣି ସିଞ୍ଚିଲେ ରଣଭୂଇଁ
ନର ବାନର ଭାଲୁ ପାଇଲେ ଜୀବ ତହିଁ ।
ଅମୃତ ବୃଷ୍ଟି ଯେ ଶୁକ୍ରଦେବ କଲେ
ବଳ ପାଇ ଭାଲୁ ବାନର ଉଠିଲେ ।
ଦେଖିଲେ ରଣ ଭୂମିରେ କେହି ନାହିଁ ପୁଣ
ଗର୍ଜନ କରି ଚଳିଲେ ସୁବଳଗିରି ଜାଣ ।
ହସ୍ତୀ ଘୋଡ଼ା ଶାରେଣି ସମସ୍ତ ଜୀବ ପାଇ
ବନସ୍ତରେ ପଶିଲେ ଯାଇଣ ବେଗ ହୋଇ ।
ଯେତେକ ନର ବାନର ରଣରେ ପଡ଼ିଥିଲେ
ଦେବ ନଦୀରେ ପଶିଣ ସ୍ନାନ ସେ ସାରିଲେ ।
ଜଳବିଧି ରନ୍ଧଣାରେ ଭୁଞ୍ଜିଲେକ ଅନ୍ନ
ବାନର ଫଳ ମୂଳ କଲେକ ଭୋଜନ ।
ଏମନ୍ତେ ରଜନୀ ତେରଘଡ଼ି ଗଲା
ଚଉଦ ଘଡ଼ିରେ ଶ୍ରୀରାମ ଚେତା ଯେ ପାଇଲା
କଥା କହୁଅନ୍ତେ ସେଥିରେ ଗଲା ଦୁଇଘଡ଼ି
ଶର୍ବରୀ ଶେଷ ହେଲା ଛୁଟିଲା ତିମିର ।
ପୂର୍ବଦିଗେ ଉଦୟ ହେଲେ ଦିନମଣି
ନିଦଘୋଷରୁ ଉଠିଲେ ଶ୍ରୀରାମ ସ୍ନାନକଲେପୁଣି
ଦେବ ନଦୀରେ ପଶିଣ କରନ୍ତି ସ୍ନାହାନ
ନିତ୍ୟକର୍ମ ସାରିଲେ ଯେ ରଘୁବୀର ପୁଣ ।
ଆପଣା ନିଜ ସ୍ଥାନେ ହେଲେ ପରବେଶ
ଝୀନ ବସନ ପିନ୍ଧିଣ ମନରେ ହରଷ ।
ଦେଖିଣ କାମିନୀ ଯେ ବଡ଼ ତୋଷ ହେଲେ
ଛତିରସ ପ୍ରକାରେ ରନ୍ଧଣା ବାଢ଼ିକଲେ ।
ବସିଣ ରଘୁବୀର କଲେକ ଭୋଜନ
ଅଷ୍ଟସେନାପତି ଯେ ସୁଗ୍ରୀବ ବିଭୀଷଣ ।
ଆଲୋଚନ ସାରିଣ ଯେ ପଲଙ୍କରେ ବସି
ବିଡ଼ିଆ ନେଇ ଦେଲା ବିଭୀଷଣର ଦୁହିତ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଯହୁଁ ସେ ରଜନୀ ଅଛି ଦୁଇ ଘଡ଼ି ।
ବିଲଙ୍କା ରାବଣ ଯେ ନିଦ୍ରାରେ ଶୋଇଥିଲା
ଚେଇଁଆଲେ ଯହୁଁ ଶବଦ ଶୁଭିଲା ।

ଶଯ୍ୟାରୁ ଉଠିଣ ସେ ବାହାର ଅବକାଶ
ପ୍ରବୃତ୍ତ ସେବକ ଆସି ମିଳିଲେ ତାର ପାଶ ।
ପଡ଼ିହାରୀଙ୍କି ଡ଼ାକିଣ ବୋଲଇ ବଚନ
ହକାରିଣ ଆଣ ଯେତେକ ଅଛନ୍ତି ସୈନ୍ୟ ।
ଶୁଣିଣ ପଡ଼ିହାରୀ ବେଗେ ଚଳିଗଲା
ଉବୁରିଲା ସୈନ୍ୟଙ୍କୁ ଡ଼କାଇ ଆଣାଇଲା ।
ସୈନ୍ୟମାନଙ୍କୁ ଚାହିଁଣ ବୋଲଇ ଦୈତ୍ୟରାଣ
ଚାଲ ହୋ ବେଗେ ଯିବା ବିଲଙ୍କା ଭୁବନ ।
ଶତ୍ରୁ ନାଶ ତ ଆମ୍ଭର ହୋଇଲାଣି ପୁଣଏବେ
ଆମ୍ଭର ଗଲେ ସମସ୍ତେ ପଳାଇଯିବେ ବେଗେ
ମନ୍ତ୍ରୀ ବୋଇଲା ଦେବ ତିନଭାଇ ଅଛନ୍ତି
ସୁଗ୍ରୀବ ବିଭୀଷଣ ହନୁ ଅଙ୍ଗଦ ଅଛନ୍ତି ।
ଲକ୍ଷେ ରାଜା ନର ବାନର ଯେ ଭାଲୁବଳ
ସମସ୍ତେ ଅଛନ୍ତି ଦେବ ମଲା ଯେ ଉଦ୍ଧାର ।
ଯେଉଁ ଦୁଇଭାଇ ତାର ତୋତେ ମୋହକଲେ
ଯେଉଁ ଭାଇ ଶକ୍ରାଜିତ ମାଇଲା ବଳରେ ।
ସେମାନେ ଅଛନ୍ତି ଦେବ କରନ୍ତୁ ଯୁଦ୍ଧ ଠାଣ ।
ଶୁଣିଣ ସହସ୍ରାନନ କହଇ ବଚନ ।
ସୁବଳ ଗିରିକି ରଥ ମୋର ବାହ
ସୁଗ୍ରୀ ବିଭୀଷଣ ସମସ୍ତଙ୍କୁ ମାରିବି ଆଜ ରହ ।
ସମସ୍ତଙ୍କୁ ମାରିଣ ମୁଁ କରିବି ଯେ ଶୂନ୍ୟ
ଗୋଟିଏ ବରତ ଆଜ ନ ଯିବେ ନିଜ ସ୍ଥାନ
ତେବେ ମୁଁ ତାର ଘରଣୀ ଏଥୁ ଘେନିଯିବି
ବିଲଙ୍କା ଭୁବନେ ଯାଇ ନିଶ୍ଚିନ୍ତେ ରହିବି ।
ଏତେ ବୋଲି ରାବଣ ବସିଲା ଯାଇ ରଥେ
ସାରଥିକି ବୋଲେ ରଥ ବାହାରେ ତୁରିତେ
ଶୁଣିକରି ସାରଥି ଯେ ରଥ ବାହିନେଲା
ସୁବଳ ଗିରିର ନିକଟେ ନେଇ କଲା ।
ପଛରେ ଗୋଡ଼ାଇଲେ ସକଳ ନିଶାଚର
ଯେତେକ ସୈନ୍ୟବଳ ଉବୁରିଥିଲେ ତାର ।
ଯେ ଯାହାର ଯାନରେ ବେଗେ ଚଳିଗଲେ
ଆନନ୍ଦ ହୋଇଣ କଳକଳା ରବହେଲେ ।
ନାଚନ୍ତି ଅସୁର ଯେ ଗାଲ ତୁରି ବାଇ
ବୋଲନ୍ତି ଏଥର ଯୁଦ୍ଧ ଠାଣ ହେବ ତହିଁ ।
କେତୁ ଆଡ଼ମ୍ବର ମାରିଣ ଧାମନ୍ତ
କାହାର ମନରେ ଯେ କିଛି ନାହିଁ ଭ୍ରାନ୍ତି ।

ବୀରବାଦ୍ୟ ନାଦ ଯେ ଶୁଭେ ଅତି ଘୋର
ଏମନ୍ତ ସମୟେ ହଜେ ସହସ୍ରନନା ବୀର ।
ଦୈତ୍ୟଙ୍କର ଧ୍ୱନିରେ ମେଦିନୀ କମ୍ପଇ
ସୁବଳସ୍ଥା ଗିରିରେ ପ୍ରବେଶ ହେଲେ ଯାଇ ।
ଶ୍ରୀରାମ ଶୁଣିଲେ ମୁଖରବ ଦୈତ୍ୟଙ୍କର
ସୁଷେଣଙ୍କୁ ଚାହିଁଣ ବୋଲନ୍ତି ରଘୁବୀର ।
ସହସ୍ରାନନ ପୁଣ ଆସେ ସୈନ୍ୟ ଘେନି
ପୁଷ୍ପନାଶ ଛଳରେ ଆସଇ ସେହୁ ପୁଣି ।
କହ ଏବେ କିସ ଯେ ଉପାୟ କରିବା
କେବଣ ପ୍ରକାରେ ଏହୁ ଦୈତ୍ୟକୁ ମାରିବା ।
ଏକଥାକୁ ଉତ୍ତର କର ହେ ମନ୍ତ୍ରୀବର
କାଲି ବ୍ରହ୍ମଶକ୍ତି ମାଇଲୁ ସହସ୍ର ଶିର ।
ଆଜ ଯୁଦ୍ଧ କରିବାକୁ ଉଠ ବାହୁଅଛି
ସୁଷେଣ ମୁଖକୁ ଚାହିଁ ଶ୍ରୀରାମ ଯେ ପୁଚ୍ଛି ।
ଶୁଣିଣ ସୁଷେଣ ଯେ ଯୋଡ଼ିଣ କରେ କର
ବୋଲଇ ଶୁଣିବା ହେଉ କୋଦଣ୍ଡ ଚାପଧର
ଆମ୍ଭର ହାରିବା ଦେଖି କାଲି ସହସ୍ରାନନ
ଯେଣୁ ଜିଣି ଭରସା ପାଇ ଆସେ ପୁଣ ।
ଆମ୍ଭର ଏବେ ଦେବ ଚିନ୍ତା କାହିଁପାଇଁ
ସକଳ ସୈନ୍ୟ ଘେନ ଯୁଝିବା ଆମ୍ଭେ ଯାଇ ।
ଆଜ ଦୈତ୍ୟଙ୍କୁ ହେ ଦେବ କରିବା ବିନାଶ
କେଳକୁ କେଳ ରାକ୍ଷସ କରିବ ରଣ ଦର୍ପ ।
ମାରିବାକୁ ଚିନ୍ତା ଯେ ନାହିଁ ରଘୁସାଇଁ
ତୋରସୈନ୍ୟବଳକୁ ଦେବତା ଦେଲେଜ୍ୟାଇଁ
ନର ବାନର ଯେତେକ ତୋହର ଆଉମଲେ
ରଣରେ ଦେବତା ଆସି ଜିଆଇଦ୍ୟନ୍ତି ଭଲେ
ମୁହିଁ ପୋଥି ଘେନ ବସିଛି ଦେବ ଦେଖ
ତୁମ୍ଭର ପାଇଁ ହନୁ କରୁଛି ପ୍ରତ୍ୟକ୍ଷ ।
ଯେଣିକ ଭେଦକ ଦେବ ତେଣିକ ଏ ଯାଏ
ଯାହା କହିଲେ ଦେବ ଆଣି ଏ ବେଗେ ଦିଏ
ଶୁଣିଣ ରଘୁନାଥ ହରଷ ହୋଇଲେ
ସୁଷେଣ ଜମ୍ବେବକୁ ପରଶଂସା କଲେ ।
ପୁଣିହିଁ ବୋଲନ୍ତି ଯେ ଜାନକୀର ସାଇଁ
ବେଗେ ସଜ ହୁଅନ୍ତୁ ସକଳ ସୈନ୍ୟ ରାଇ ।
ନର ବାନର ହସ୍ତି ହାଣ୍ଡି ରଥି ଅଶ୍ୱ
ରାଜାଗଣ ସେନାଗଣ ଯୂଥପତି ଯେ ସମସ୍ତ ।

ଏତେବୋଲି ଆଜ୍ଞା ଯେ ଦେଲେ ରଘୁରାଣ
ସମସ୍ତଙ୍କୁ କହିଲେ ସେ ପବନ ନନ୍ଦନ ।
ଆପଣେ ସଜ ଯେ ହେଲେ ରଘୁନାଥ
କାଣ୍ଡ କୋଦଣ୍ଡ ସେ ଧଇଲେ ବେନି ହସ୍ତ ।
ନନ୍ଦିଘୋଷ ରଥେ ଯେ ବସିଲେ ଦେବ ଯାଇ
ସଜ ହୋଇ ତିନଭାଇ ଅଇଲେ ବ୍ୟଗ୍ର ହୋଇ
ତାଳଧ୍ୱଜ ରଥେ ଲକ୍ଷ୍ମଣ ବସିଲେ
କାଣ୍ଡ କୋଦଣ୍ଡକୁ ନେଇ ପାଖରେ ରଖିଲେ
ଅଶ୍ୱ ରଥରେ ବିଜୟେ କୈକେୟୀ
ନିଜ ଧନୁ ବଜ୍ର ବାଟୁଳି ଘେନିଣ ବସଇ ।
ଅସୁର ଦଳନ ରଥରେ ଶତ୍ରୁଘ୍ନ ବିଜେକରିଲେ
ଅସୁର ଦଳନ ରଥରେ ବିଭୀଷଣ ବସିଲେ ।
ଶ୍ୱେତ ଗଜ ଅଶ୍ୱରେ ସୁଗ୍ରୀବର ବସି
ଶ୍ରୀରାମ ପାଶରେ ଚଳନ୍ତି ଉରୁଶିଷି ।
ରଥମାନଙ୍କରେ ରଥୀ ଅଶ୍ୱରେ ସେନାପତି
ରାଜାମାନେ ସକଳେ ବେଶହୋଇ ବାହାରନ୍ତି
ଯେ ଯାହାର ଯାନପରେ ରାଜାମାନେ ବସି
ଧନୁ କମାଣ ଧରିଣ ପଡ଼ିଲେ ଗିରିରୁ ଖସି ।
ଆଗୁଆଣି ଥାଟରେ ଅଙ୍ଗଦ ହନୁମନ୍ତ
ଅନେକ ଋକ୍ଷକପି ଘେନିଣ ବଳବନ୍ତ ।
ଅନେକ ବାନର ଧରି ଚଳେ ସୁଗ୍ରୀବର
ଜାମ୍ବେବ ସୁଷେଣ ଯେ ଆବର ନଳନୀଳ ।
ଧରନ୍ତେ କରେ ସମସ୍ତେ ଶାଳ ଶିଳା ଧରି
କିଳିକିଳା ଶବଦରେ ଗଗନ ଉଛୁଳି ।
ଆଗରେ ଧାମଇଁ ଯେ ପବନର ବଳି
ଗିରିବରେ ସଦୃଶରେ ବୃକ୍ଷେକ ଧରିଅଛି ।
ବାମକରେ ତାହାର ପର୍ବତ ଏକ ଶୋହି
ପଡ଼ିଲେ ଯୋଜନେ ମାଡ଼ିବସିବ ଯେ ମହୀ ।
ଏଡ଼େ ଗିରିବର ଯେ ଧରିଛି ବାମହସ୍ତେ
ହକମିଣ ଧାମଇ ବୀର ହନୁମନ୍ତେ ।
ପଛରେ ନନ୍ଦିଘୋଷ ବାହଇ ମାତଳି
ତାଳଧ୍ୱଜ ରଥକୁ ଦାରୁକ ବେଗେ ଚାଳି ।
କର୍ଣ୍ଣର ଯାନ ଯେ ସୁମନ୍ତ ମନ୍ତ୍ରୀ ବାହି
ଯେଝା ଯାନପରେ ଯେ ଅଛନ୍ତି ଆରୋହି ।
ସାରଥିକ ଉତ୍ତର ବୋଲେ ସହସ୍ରାନନ
କମ୍ପାଇ ଧାଇଁଛନ୍ତି ନର ବାନର ସୈନ୍ୟ ।

ନ ଅବା ଜଲ ଏ ଯେ ନ ଥିଲେ ପୁଣ ତହିଁ
ମୋତେ ଦେଖି ଆଜ ଯାଆନ୍ତ ପଳାଇ ।
ଏମନ୍ତ ବୋଲିଣ ସେ ହସ୍ତରେ ଦଇତ
ଆଗରେ ଓଗାଳିଲା ପବନର ସୁତ ।
ହନୁମନ୍ତବୋଇଲେରେହେଁଣେଯଉଛନଶାଚର
କାଲିର ପରସ୍ତେ କରେ ବୁଝିଛ ପାମର ।
ଆଜ ଜାଣିବାରେ ତୁମ୍ଭର କେତେ ପଣ
ନିଶ୍ଚୟେ ମୁଣ୍ଡ ତୋର କାଟିବେ ରାମଗଣ ।
ଏତେବୋଲି ଗର୍ଜନ ଯେ କରଇ ପାବନ
ଶୁଣିଣ ସହସ୍ରମାଥ ଉଠିଲା ଶିର ଝୁଣି ।
ବୋଲଇ ନିଶ୍ଚୟରେ ପୂରିଲା ତୋ କାଳ
ଏକାକେଳେସମସ୍ତେ ଯିବରେ ନିଶ୍ଚେଯମଆଳ
ଏତେବୋଲି ଦୂତ ଯେ କ୍ରୋଧଭର ହୋଇ
ସହସ୍ରେ ଧନୁ ଯେ କରରେ ଧରଇ ।
ଗର୍ଜନ କରିଣ ଯେ ବୋଲେ ଦୈତ୍ୟଗଣ
କାହିଁଛନ୍ତି ତୋରରେ ଶ୍ରୀରାମ ଲକ୍ଷ୍ମଣ ।
ତାହାଙ୍କୁ ଭେଟାଅ ମୋତେ ଆଗ
ତୋତେ ମାଇଲେ କିଛୁ କାର୍ଯ୍ୟନୁହେଁ ଯୋଗ
ଏମନ୍ତ କହିଣ ଗର୍ଜନ କରେ ଦୈତ୍ୟ
ନନ୍ଦିଘୋଷ ରଥ ଚଢ଼ି ରଘୁନାଥ ।
ଦେଖିକରି ଦଇତ ଯେ ସ୍ତମ୍ଭୀଭୂତ ହୋଇ
ଶ୍ରୀରାମଙ୍କ ସୈନ୍ୟବଳ ଆଡ଼କୁ ଅନାଇ ।
କାଲି ତୋତେ ମୁହିଁରେ ମାଇଲି ବ୍ରହ୍ମଶକ୍ତି
ତହିଁ କୁ ଉବୁରିଲୁ କେବଣ ଏ ଗତି ।
ଧନ୍ୟ ତୋର ପିତା ଧନ୍ୟ ତୋ ଗର୍ଭଧାରି
ନୋହିଲେକ ମୋରରେ ନାରାଜ ଉବୁରି ।
ଯେବଣ ଶକ୍ତିର ଘାତେ ନବର୍ତ୍ତେ ସୁରାସୁର
ସେହି ଶରକୁ କେମନ୍ତେ କଲୁରେ ନିବାର ।
କେମନ୍ତେ ଶସ୍ତ୍ର ଘାତରୁ ବଞ୍ଚିଲୁ ଏବେ
ପୁଣିହିଁ ସମରକୁ ଆସିଅଛ ତୁମ୍ଭେ ।
ନିଶ୍ଚୟେ ଜାଣିଲି ତୁମ୍ଭର ଜୀବନେ ଆଶାନାହିଁ
ପ୍ରାଣକୁ ଆଶାଥିଲେ କି ଆସନ୍ତେ ରଣଭୂଇଁ ।
ଆଜରେ ଜାଣିବା ତୁମ୍ଭର ଷଣ୍ଢୀପଣ
ନିଶ୍ଚୟ ତୁମ୍ଭର ପ୍ରାଣ ନେବରେ ଜନ୍ତୁଗଣ ।
ଏତେ ବୋଲି ଦୈତ୍ୟ ଯେ ହେଲା କ୍ରୋଧଭର
ଗୁଣରେ ବସାଇଲା ସହସ୍ରେକ ଶର ।
ମନ୍ତ୍ରରେ ଆଧାନ ନାରାଜ ତିଆରି
ଶ୍ରୀରାମଙ୍କୁ ହାଣଇ ଯେ ରେରେକାର କରି ।
ପୁଣିହିଁ ସହସ୍ର ନାରାଜ ଗୁଣରେ ବସାଇ
ମାରୁତି ଉପରକୁ ହାଣିଲା ତୁହାଇ ।
ପୁଣିହିଁ ହାଣିଲା ପାଞ୍ଚ ସହସ୍ର ବାଣ
ମନରେ ମହାକ୍ରୋଧ ହୋଇଣ ଦୈତ୍ୟଗଣ
ଚଳନ୍ତି ନାରାଜ ଗଗନ ମାର୍ଗ ଘୋଟି
ଯେସନେକ ଜଳଦ ମାସରେ କରେ ବୃଷ୍ଟି
ସଞ୍ଚାରିତ ବାଣ ଆସେ ଆକାଶେଣ
ଦେଖିକରି ପ୍ରଶଂସା କରନ୍ତି ରାମଗଣ ।
ଗୁଣରେ ବସାଇଲେ ନାରାଜ କତୁରି
ଧନୁର୍ବେଦ ସୁମରି ମାଇଲେ ଖରଣାରି ।
ତତକ୍ଷଣେ ନାରାଜ ବେଗେ ଚଳିଗଲା
ଦୈତ୍ୟର ଶର ସବୁ ଛେଦି ପକାଇଲା ।
ଦେଖିଣ ଦୈତ୍ୟବଳ ହେଲେ କୋପାନଳ
ହେମ ଶର ନେଇ ଯେ ବସାଏ ଗୁଣର ।
ମନ୍ତ୍ର ଆଧ୍ୟୂନକରି ଶରକୁ ତିଆରି
ଶ୍ରୀରାମର ସୈନ୍ୟଙ୍କୁ ହାଣିଲା କୋପକରି ।
ଚଳଇ ନାରାଜ ଗର୍ଜନ କରି ଘୋର
ଯେସନେ ମକର ମାଘେ ପଡ଼ଇ ଶିଶିର ।
ତେସନେ ସଞ୍ଚରି ଯେ ଆସଇ ଚଳି ପୁଣ
ସକଳ ସୈନ୍ୟ ଯେ ତହିଁ ହେଲେ କମ୍ପମାନ
କରଚରଣ କେହି ଯେ ହଲି ନ ପାରିଲେ
କରରୁ ସହସ୍ର ମାନ ଝୁଡ଼ିଣ ପଡ଼ିଲେ ।
ବେଳକୁ ବେଳ ହେମ ପଡ଼ିଲାକ ମାଡ଼ି
ରହିଲେ ଶ୍ରୀରାମର ସୈନ୍ୟ ସମର ଛାଡ଼ି ।
ସହସ୍ର ମାନ ଛାଡ଼ିଣ ବସିଲେ ନୀଚହୋଇ
କାହାରି ଦେହରେ ଆଉ ପ୍ରାକ୍ରମ ଯେ ନାହିଁ
ଏମନ୍ତ ଗତି ଯହୁଁ ଦେଖିଲେ ରଘୁନାଥ
ଅଗ୍ନି ଶର ନେଇ ବସାଇ ତୁରିତ ।
ମନ୍ତ୍ର ଆଧାୟୂନକରିଣ ନାରାଜ ତିଆରିଲେ
ହେମକୁ ନାଶ କରି ବୋଲିଣ ଆଜ୍ଞାଦେଲେ
ଚଳିଲାକ ନାରାଜ ଯେ ଗଗନ ମାର୍ଗ ଘୋଟି
କୋଟିଏ ଆଦିତ୍ୟ ତେଜଘୋଟିଲା ନବସୃଷ୍ଟି
ତେସନ ସଞ୍ଚାରି ଯେ ସମର ଭୂମିଲଗେ
ହେମ ପଳାବନ୍ତେ ସମସ୍ତେ ଉଠିଲେକବେଗେ

ଯେ ଯାହାର ଆୟୁଧ ଯେ ଧଇଲେକ ଯାଇ
ଧାଇଁଲେ ନରବାନର କଳକଳା ରବଦେଇ
ଦୈତ୍ୟବଳ ଉପରକୁ ପଡ଼ିଲେ ବେଗେଯାଇ
ଦେଖିଣ ଦୈତ୍ୟବଳ ପଳାନ୍ତେ ରଣଛାଡ଼ି ।
ଦଶପାଞ୍ଚ କପି ଯେ ହୋଇଲେ ଏକମେଳ
ଯାଇକରି ଧରନ୍ତି ଯେ ଦୈତ୍ୟଙ୍କର ବଳ ।
ଧରାଧରି ମରାମରି ହୋନ୍ତି କପିବଳ
ଅନେକ ମାଇଲେ ଯେ ଅସୁରଙ୍କର ବଳ ।
ଅନେକ ରାକ୍ଷସ କପିଏ ନାଶକଲେ
ଏଥୁ ଅନନ୍ତରେ ଯେ ଶୁଣ ଭୂମେ ଭଲେ ।
ବେଲକୁ ବେଳ ଯୁଦ୍ଧ ଯେ ହେଲା ଅପ୍ରମିତ
କପିଙ୍କି ଗୋଡ଼ାଇଣ ମାଇଲେ ଦଇତ ।
ଶ୍ରୀରାମଙ୍କ ପଛରେ ଲକ୍ଷ୍ମଣ ଥାଉଥିଲେ
ଦୈତ୍ୟଙ୍କର ମାରୁଣିପଣ୍ଟ ସେ ଦେଖିଲେ ।
ତହୁଁ ଧନୁ ଶସ୍ତ୍ର ଧଇଲେ ବେଗକରି
ଦୈତ୍ୟଙ୍କ ଉପରକୁ ବନ୍ଧିଲେ କୋପକରି ।
ଦେଖିଣ ରଘୁନାଥ ଲକ୍ଷ୍ମଣଙ୍କୁ କହି
ଯୁଦ୍ଧକୁ ଆଗଭରି ନୁହରେ ବାବୁ ଭୁହି ।
ଶୁଣିଣ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ
ଏକାବେଳେ ବନ୍ଧିଲେ କୋଟିକୋଟି ବାଣ ।
ଖଣ୍ଡଖଣ୍ଡ ଚଡ଼ଚଡ଼ ବଜ୍ର ପୁଣ ମାରି
ଦୈତ୍ୟବଳ ସବୁ ସେ ପକାଇଲେ ତଳ ।
ମଲେକ ଦୈତ୍ୟ ବଳ ନ ରହିଲେ କେହି
ଦଶ ପାଞ୍ଚ ଥିବାରୁ ଗଲେକ ପଳାଇ ।
ଏକାଳେ ସହସ୍ରାନନ କରଇ ସମର
ଏକାବେଳକେ ବନ୍ଧଇ କୋଟି କୋଟି ଶର
ନର ବାନର ରାଜା ଯେ ଋଥି ସେନାପତି
ଛାଲୁବଳ ପାଦାନ୍ତି ଯେ ଶ୍ରୀରାମର ଜତି ।
ସମସ୍ତେ ସ୍ଥିର ହୋଇ ରହିଣ ଦେଖେ ପୁଣ
ଶ୍ରୀରାମ ଛେଦନ୍ତି ସହସ୍ରାନନର ଶର ପୁଣ ।
ଭରତ ଶତ୍ରୁଘ୍ନ ଲକ୍ଷ୍ମଣ ତିନ ଭାଇ
ନାରାଚ ବନ୍ଧନ୍ତି ସେ ଗଗନ ନ ଦିଶଇ ।
ସହସ୍ରାନନ ଦେହରେ ହେଲା ଘାଇ ପୁଣ
ଢଣାଖାଉ କୁମର ଛେଦଇ ଘନଘନ ।
ଏମନ୍ତେ ଯୁଦ୍ଧ ପଣ୍ଟ ଦେଖିଲେ ରଘୁବୀର
ଗୁଣରେ ବସାଇଲେ ମହାକାଳ ଶର ।

ଧନୁର୍ବେଦ ସୁମରି ବେଗେ ଦେଲେ ଛାଡ଼ି
ଚଳଗଲା ନାରାଚ ଯେ ଘୋର ଗର୍ଜନ କରି ।
ସହସ୍ର ମାଥ ନାରାଜ ସଙ୍ଗରେ ଭେଟ ହୋଇ
ସମସ୍ତଙ୍କ ତେଜରେ ଅନଳ ନାଶ ଯାଇ ।
ଅଧା ସ୍ୱର୍ଗ ବେନଶର ହେଲେ ପଡ଼ି ତାକୁ
ଉଠିଲାକ ଜଳି ଯେସନେ ଦାବାନଳ ।
ଶରର ପ୍ରତାପରେ ସ୍ୱର୍ଗରେ ନରହି
କ୍ଷୀର ସମୁଦ୍ରେ ଦେବତାଏ ପଶିଲେକ ଯାଇ
ଧୂ ବଳେକ ପର୍ବତନ୍ତେ ଉଠିଲା ଅଗ୍ନି ଶିଖା
ଦେଖିକରି ଦେବଗଣ ହେଲେ ଯେ ତାଟକା
ସନମାନ ହୋଇଣ ଦୁଇଶର ବେଗେ
ଯେ ଯାହାର ସ୍ଥାନକୁ ଚଳଲେ ଶୂନ୍ୟମାର୍ଗେ
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସହସ୍ରାନନ ଭୁଲରେ ସୁଝନ୍ତି ରଘୁପତି ।
ଘୃକ୍ଷ୍ଣ ମୁନା ନାରଦ ଯେ ଗୁଣରେ ବସାଇ
ବାବଲଶର ସେଥିରେ ଯୋଗେଯୋଡେନେଇ
ଧନୁର୍ବେଦ ସୁମରି ବନ୍ଧିଲେ କୋପଭରେ
ଘୋର ଗର୍ଜନ କରି ଚଳଲେ ସତ୍ୱରେ ।
ଚଳିଲାକ ନାରାଚ ଯେ ଗଗନ ମାର୍ଗ ଘୋଟି
ତତକ୍ଷଣେ ସହସ୍ରାନନ ଶରୀରଯାଇ ଫୁଟି ।
ଦେଖିଣ ଦନୁଜ ଯେ ହେଲା ଅନ୍ତରଳ
ବୋଇଲା ନଷ୍ଟପୁତ୍ରରେ ପୁରିଲାତୋର କାଳ ।
ଏତେ ବୋଲି ରୁଦ୍ରଶର ବସାଇଲା ଗୁଣେ
ଶ୍ରୀରାମଙ୍କ ଉପରକୁ ବନ୍ଦେ ତତ୍ପ ଠାଣେ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ହେଲେ ରାମରାଣ
ନାରାୟଣ ଶରକୁ ପେଷିଲେ ବେଗେ ପୁଣ ।
ନାରାୟଣ ଶର ରୁଦ୍ର ଶରକୁ ନାଶ କଲା
ଦେଖିକରି ଦନୁଜ ଯେ ଶିର କମ୍ପାଇଲା ।
ପୁଣିହିଁ ଅଗ୍ନିଶର ଯେ ପେଷିଲା ଦନୁଜ
ଜଳଧାର ଶରରେ ନବାରି ରଘୁରାଜ ।
ପୁଣିହିଁ ମେଘାଶର ପେଷିଲା ଦଇତ
ପବନାଶରେ ତାହା ନବାରେ ରଘୁନାଥ ।
ପର୍ବତ ଶର ବନ୍ଧିଲା ଦଳଙ୍କା ଗଡ଼ ସାଇଁ
ବଜ୍ରଶରେ ନବାରିଲେ ଦଶରଥ ତନୟୀ ।
ପନ୍ନଗାଶର ପୁଣ ପେଷିଲେ ଦୈତ୍ୟରାଣ
ଗରୁଡ଼ାଶରେ ନବାରେ କୈକେୟୀସୁତପୁଣ

ଦେଖିଣ କୋପାନଳ ହେଲା ଦୈତ୍ୟ ସାଇଁ
ପାଞ୍ଚଲକ୍ଷ ନାରାଜ ଏକାବେଳକେ ପେଶଇ ।
ସହସ୍ର କରେ ଧଇଲା ସହସ୍ରେକ ଧନୁ
ନାରାଜ ବନ୍ଧଇ ଯେ ବଣାଖାର ତନୁ ।
ପୁଣିହିଁ ଆମଣ୍ଡଳ ଧରିଣ ଧନୁ ଗୁଣ
କୋପଭରେ ବନ୍ଧିଲା ଯେ ଦଶଲକ୍ଷ ବାଣ ।
ପୁଣିହିଁ ଦଇତ ଯେ ହେଲା କୋପାନଳ
ଅଶି କୋଟି ବାଣ ଯେ ପେଶିଲା ଅନର୍ଗଳ ।
ପୁଣିହିଁ ଆମଣ୍ଡଳ କଲା ଧନୁର୍ଗୁଣ
ମନ୍ତ୍ର ବଳେ ପେଶିଲା ସତ୍ତୁରି ସହସ୍ର ବାଣ ।
ରେ ରେ କାରଶବଦଯେ କରେ ମହାଘୋର
ପୁଣିହିଁ ବନ୍ଧିଲା ଯେ ଷାଠିଏ କୋଟି ଶର ।
ପୁଣି ମନ୍ତ୍ର ଆଧାନ କଲାକ ଦୈତ୍ୟରାଣ
କୋପଭରେ ବନ୍ଧିଲା ଅନର୍ଯ୍ୟାପ ବାଣ ।
ଏଣେ ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ
ଏକାବେଳେ ସ୍ମରିଣ କଲେକ ଆଧାନ ।
ସ୍ମରି ଭାଇଙ୍କର ଶର ନବାଟରେ ଅସୁର
ଏମନ୍ତ ପ୍ରକାରେ ରଣ କରେ ଦୈତ୍ୟସାର ।
ଦେଖିଣ ଶତ୍ରୁଘ୍ନ କ୍ରୋଧ ମନରେ କଲା
ଦୁଇ ସସ୍ର ବଜ୍ର ସୂଚ ଗୁଣରେ ବସାଇଲା ।
ଗର୍ଜନ ତର୍ଜନ ସବୁ ଚଣ୍ଡକ ସଙ୍ଗେ ସ୍ଥାପି
ବନ୍ଧନ୍ତେ ନାରାଜ ଯେ ଗଗନ ମାର୍ଗ ଘୋଟି ।
ଗର୍ଜନ ତର୍ଜନ କରି ବେଗେ ଚଳଗଲା
ଚଣ୍ଡକର ଶବଦରେ ସମୁଦ୍ର ସ୍ଥିର ହେଲା ।
ନର ବାନର ଅସୁର ଯେତେକ ସୈନ୍ୟବଳ
ସମସ୍ତେ ଦେଖଣାହାରି ହୋଇଣ ଦେଖିଲେ ।
ଚଳନ୍ତକ ନାରାଜ ହୋଇଣ ଖରତରେ
ସହସ୍ରେକ ଶିର ତାର ଛେଦିଲା ଏକାବେଳେ
ଦୁଇ ସହସ୍ର ବାହୁତାର ଛେଦି ପକାଇଲା
ତଳରେ ନପଡ଼ୁ ମୁଣ୍ଡ ଶୂନ୍ୟରେ କଅଁଳିଲା ।
ବାହୁମାନ ହୃଦରୁ ଯେ ହୋଇଲା ବାହାର
ଦେଖିଣ ଭରତ ବୀର ହେଲା କୋପଭର ।
ବାର ଲକ୍ଷ ବଜ୍ର ବାଟୁଳି ଗୁଣରେ ବସାଇଲା
ମନ୍ତ୍ର ସୁମରି କର୍ଣ୍ଣେଇ ବେଗେ ଛାଡ଼ି ଦେଲା ।
ସହସ୍ରାନନ ଶିରରେ ପଡ଼ିଲେକ ଯାଇ
ବାଜି ବଜ୍ର ବାଟୁଳି ଆରପାଖରେ କଅଁଳାଇ

ବାର ସହସ୍ର କଳା ଯେ ହେଲକ ଶରୀର
ବିକଳ ହୋଇଣ ଦୈତ୍ୟ ଚାହେଁ ସେଭୂମିରେ
ଦେଖିଲା ଯେ ତାର ବଳ ଗୋଟିଏ ନାହାନ୍ତି
ରକ୍ତ ନଦୀରେ ଦୈତ୍ୟ ବାନର ଭାସୁଚନ୍ତି ।
ମନରେ ବିଚାରିଲା ସେ ଯେ ବଣାଖାର ସୂତ
ସମସ୍ତଙ୍କୁ ମାରି ମୁଁ ଯେ ମରିବ ନିଶ୍ଚୁତ ।
ଏଠାରୁ ଏହାଙ୍କୁ ମୁଁ ଯେ ଅଲଗା କରି ନେବି
ଗୋଟି ଗୋଟି କରି ଯାଙ୍କୁ ମାରିଣ ଆସିବି ।
ତେବେ ଏ ମରିବ ଯେ ସ୍ମରିଭାଇ ପୁଣ
ଏକାଠାରେ ଥିଲେ ଯାଙ୍କୁ ନ ପାରେ ଯୁଝିଣ
ଏମନ୍ତେ ମନରେ ଦୈତ୍ୟ ବିଚାରି ସେ କଲା
ସାରଥିକ ଅନାଇଣ ବଚନ କହିଲା ।
ବୋଇଲା ହେ ମୋର ସୈନ୍ୟ କେହ୍ନଛନ୍ତି
ସାରଥି ବୋଇଲା ଦେବ ସମସ୍ତେ ମଲେ ଏଥି
ଦଶ ପାଞ୍ଚ ଯେହୁ ଥିଲେ ପଳାଇଣ ଗଲେ
ରଣ ଭୂମିରେ ଆଉ କେହୁ ଯେ ନ ରହିଲେ
ଶୁଣି କରି ସହସ୍ରାନନ କହେ ଯେ ଉତ୍ତର
ବୋଲଇ ରଥ ମୋର ବାହା ସ୍ୱର୍ଗ ପୁର ।
ମୋର ସୈନ୍ୟ ପାଶକୁ ରଥ ବାହା ବେଗେ
ଯେମନ୍ତେ ଯୁଦ୍ଧ କରନ୍ତି ଦେଖିବା ବଳ ଭାବେ
ଶୁଣି କରି ସାରଥି ତାର ରଥ ଟେକି ନେଲା
ଧୀର ଧୀର କରି ରଥ ଗଗନେ ବାହିଲା ।
ଦେଖି କରି ଶତ୍ରୁଘ୍ନ ସାରଥିକ କହି
ତା ପଛରେ ମୋର ରଥ ବାହା ବେଗହୋଇ
ଶୁଣି ଚନ୍ଦନ ସାରଥି ରଥ ବାହି ନେଲେ
ସହସ୍ରାନନ ଆଗରେ ନେଇ ଉଭା କଲେ ।
ଦେଖିଣ ଯେ ଭରତ ବୀର ସୁମନ୍ତ୍ରକୁ କହି
ମୋର ରଥ ବାହାରେ ସହସ୍ରାନନ ପଛି ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ରଥ ବେଗେ ଚଳା
ସହସ୍ରାନନ ପାଖରେ ବେଗେ ଯାଇ ମିଳା ।
ଦେଖିଣ ଶ୍ରୀରାମଚନ୍ଦ୍ର ବିକଳ ମନରେ
ବୋଇଲେ ଲକ୍ଷ୍ମଣ ତୁହି ଥିବୁ ଏହିଠାରେ ।
ସ୍ୱର୍ଗରେ ପଶିଲା ଦୈତ୍ୟ ଯାଉଅଛୁଁ ଆମ୍ଭେ
ସମସ୍ତଙ୍କୁ ଘେନ ତୁହି ଥିବୁ ଏହି ଠାବେ ।
ଦେବତାଙ୍କ ସଙ୍ଗେ ଗୋଳ କରିବ ଅସୁର
ଦୁଇ ଭାଇ ଗଲେ ମୁଁ ଯେ ଯାଉଛି ସତ୍ୱର ।

ଏତେ ବୋଲି ରାମ ହନୂ ଅଙ୍ଗଦଙ୍କୁ କହି
ନନ୍ଦିଘୋଷ ରଥରେ ବସରେ ବେଗେ ଯାଇ
ଦେଖିଣ ଅଙ୍ଗଦ ହନୂ ରଥରେ ବସିଲେ
ଦେଖିଣ ମାତଳି ଶୀଘ୍ର ରଥ ବାହି ନେଲେ
ଗଗନ ମାର୍ଗରେ ରଣ ଯାଇଣ ମିଳିଲା
ଅସୁର ଆଗରେ ହେଲେ ଦଶରଥ ବଳା ।
ତିନି ଭାଇ ଶର ଯେ ହାନନ୍ତି କୋଟି କୋଟି
ଏକାଳେ ସହସ୍ରାନନ ଛେଦଇ ସବୁଟି ।
ସହସ୍ର ମୁଖରେ ସେହି କରଇ ଗର୍ଜନ
ଦେବଙ୍କ ପାଞ୍ଜି ଆଜ ପୋଛିବ ଜନ୍ତୁରାଣ ।
ଶୁଣି ଦେବତାଗଣ ଶୂନ୍ୟରୁ ପଳାଇଲେ
ଯେ ଯାହାର ନିଜ ସ୍ଥାନେ ଯାଇଣ ଲୁଚିଲେ ।
ହାନଇ ସହସ୍ରାନନ ଲକ୍ଷେ ଲକ୍ଷେ ଶର
ନନ୍ଦିଘୋଷ ରଥେ ଥାଇଁ ଛେଦେ ରଘୁବାଳ ।
ଭରତ ଶତ୍ରୁଘ୍ନ ମାରନ୍ତି ଯେତେ ଶର
ଏକାବେଳେ ଛେଦଇ ତାହାଦୈତ୍ୟଅନର୍ଗଳ
ଘନ ଘନ କରି ଶର ଅସୁର ହାନିଲେ
ସ୍ୱର୍ଗମର୍ତ୍ତ୍ୟ ଦୁଇପୁର କ୍ଷଣକେ ଲୁଚାଇଲେ ।
ଦେଖିକରି ରଘୁନାଥ ଦଇତ ଶର ଛେଦ
ମାରନ୍ତି ତିନିଭାଇ ଏକାବେଳେ ଛନ୍ଦ ।
ସହସ୍ର ଧନୁରେ ଛେଦେ ଶର ଦୈତ୍ୟସାଇଁ
ଦେଖିଣ କ୍ରୋଧଭରି ହେଲେ ରଘୁସାଇଁ ।
ନୟନ ଦୁଇ ସହସେ ଶର ଗଲା ଗଳି
ପୁଣିନୂଆ ନୟନ ଯେ ଉଠିଲା କଅଁଳ ।
ଶର ଛୁଟିବାରୁ ଭୟ କରେ ସହସ୍ରାନନ
ସାରଥିକି ବୋଇଲା ତୁ ବାହା ମୋର ଯାନ
ଅଲଙ୍କା ଭୁବନ ବସ୍ତି ଅଛଇ ତଳରେ
ସେ ଗଡକୁ ବାହା ରଥ ଯିବାରେ ସତ୍ୱରେ
ଶୁଣିଣ ସାରଥି ତାର ରଥ କାଢି ନେଲା
ଅଲଙ୍କାଗଡ଼ରେ ଯାଇ ତକ୍ଷଣେ ମିଳିଲା ।
ଶତ୍ରୁଘ୍ନ ଶ୍ରୀଭରତ ଶ୍ରୀରାମ ତାର ତୁଲେ
ଅଲଙ୍କା ଗଡ଼ରେ ଯାଇ ତକ୍ଷଣେ ମିଳିଲେ ।
ପ୍ରଥମରେ ଦେଖିଲେ ସମୁଦ୍ର ଚାରିପାଖ
ଦ୍ୱିତୀୟେ ଦେଖିଲେ ଗିରି ପର୍ବତ ସେତ ।
ତୃତୀୟେ ଦେଖିଲେ ନଦୀ ସରଯୂ ଗଙ୍ଗା ଜଳ
ଚତୁର୍ଥେ ଦେଖିଲେ ଅଗ୍ନି ତଉପାଶେ ଘେର

ପଞ୍ଚମେ ଦେଖିଲେ ଗଡ ପାଚେରିକି ପୁଣ
ନୀଳ ବର୍ଣ୍ଣ ପାଚେରି ଯେ ଉଚ୍ଚ ଶହେ ଯୁଣ ।
ତହିଁର ଭିତରେ ନଗ୍ର ଅଛଇ ଯେ ପୁରୀ
ଶତମୁଖା ଜଗତରେ ସୁବର୍ଣ୍ଣ ବସି କରି ।
ହାତୀ ରଥି ପଦାତି ଯେ ସେନାପତି ଗଣ
ସମସ୍ତଙ୍କୁ ଲୟକରି ବୁଝୁଅଛୁ ପୁଣ ।
ଏମନ୍ତ ସମୟେ ସହସ୍ରାନନ ଯାଇ ମିଳି
ଶତମୁଖା ସିଂହଦ୍ୱାରେ ଲଗାଇଲା କଳି ।
ଗର୍ଜନ ତର୍ଜନ କରି ହାନେ ଶରାସନ
ଆଖିର ପଲକେ ହାନେ କୋଟି କୋଟି ବାଣ
ଗଗନ ଅଦୃଶ୍ୟ ଅଂଶୁମାଳି ତତକ୍ଷଣ
ରବି ଅଦୃଶ୍ୟ ହେବାରୁ ଅଦୃଶ୍ୟ ସବୁଜାଣ ।
ସୁଧାଚନ୍ଦ୍ର ବାଣ ଯେ ପ୍ରେରିଲେ ରଘୁନାଥ
ତତକ୍ଷଣେ ମାୟା ତାର ହୋଇଲାକ ହତ ।
ଭରତ ଶତ୍ରୁଘ୍ନ ହାନିଲେ ବଜ୍ର ଶର
ଆକୁଳ ହୋଇଣ ଦୈତ୍ୟ ହାନେ ମହାଘୋର
ଗର୍ଜନର ନାଦଶୁଣି ସୁକଣ୍ଠ ରହିଁଲ
ନନ୍ଦିଘୋଷ ରଥକୁ ତା ନେତ୍ରରେ ଦେଖିଲା
ଦେଖିଣ ଅନ୍ତଃପୁରକୁ ଗଲାକ ବହନ
ସମସ୍ତ ରାଣୀଙ୍କୁ ଡାକ ଆଣେ ତତକ୍ଷଣ ।
ବୋଇଲା ପରମ ବ୍ରହ୍ମ ମୂରତି ହେଜେକଲେ
ଯେ ମୋତେ ଶରଣ ରଖି ଏଡୁ ପୁରଦେଲେ
କେ କରେ କୁଠାର ଦେଇ ପାରିଲା ପାହାଡା
ସମସ୍ତଙ୍କୁ ଘେନ ସୋଦ୍ୟେ କୁମ୍ଭକର୍ଣ୍ଣ ବଳା ।
ମନେ ମନେ ମେହିତ ବହୁତ ସ୍ତୁତିକଲା
ଅପରାଧ କ୍ଷମାହେଉ ବୋଲିଣ ବୋଇଲା ।
ଶ୍ରୀରାମ ବୋଇଲେ ଏବେ ଶୁଣ ହେ ମାରୁତି
କେବଣ ରାଜାର ସ୍ଥାନ କହହୋ ନରେପି ।
ହନୁମନ୍ତ ବୋଲେ ଦେବ ଅଟେ ଏ ଅଲଙ୍କା
ଶତମୁଖା ରାବଣର ଗଡ ଅଟେ ଏକା ।
ରାବଣର ବୋଲେ କୁମ୍ଭ ସଙ୍ଗେ ଶତ୍ରୁଘନ
ଶତ୍ରୁଘନ ତାରବଂଶ କଲେ ନସ୍ତନ ।
କୁମ୍ଭକର୍ଣ୍ଣ ପୁଅକୁ ସେ କଲେ ଏଥି ରାଜା
ନନ୍ଦିଘୋଷ ରଥ ଦେଖି ସର୍ବ କଲା ତେଜ୍ୟା
ତବନ୍ତେ ତ ରଣ ଧରି ବେକରେ କୋଠରି
ପାହାଡ଼ ପାଡ଼ିଣ ବୀର କରେ ନମସ୍କାର ।

ଶୁଣିକରି ରଘୁନାଥ ମାରୁତିକି କହି
ବେଗରେ ଚଳିଯାଅରେ ତାକୁ ତାର ଚହିଁ ।
ବୋଲିକୁ ଶ୍ରୀରାମଚୋତ ଆଜ୍ଞାଦେଲେ ଏବେ
ସତ୍ରାଜନ ଯୁଦ୍ଧକଲେ ଶ୍ରୀରାମଙ୍କ ସଙ୍ଗେ ।
ସ୍ୱର୍ଗ ପଳାଇଣ ତୁ ନିଶ୍ଚିନ୍ତ ହୋଇଥିବୁ
ସହସ୍ରାଠାରୁ ଗଲେ କବାଟ ଖୋଲିବୁ ।
ଶୁଣିକରି ମାରୁତିଯେ ବେଗେ ଚଳିଗଲା
ସୁକଣ୍ଠ ଦଇତ ଆଗେ ଯାଇଣ କହିଲା ।
ଶୁଣିଣ ଦୈତ୍ୟରାଜ ଗୃହଦ୍ୱାରକୁ ମୁଦ
ଭୂମିରେ ସେ ଛିଡ଼ାହୋଏ କରଯୋଡ଼ିବେଗି
ପବନର ସୁତଯେ କହିଣ ଚଳିଗଲା
ନନ୍ଦିଘୋଷ ରଥେ ଯାଇ ପ୍ରବେଶ ହୋଇଲା ।
ସହସ୍ର ଆନନ୍ଦ ଶର ବହିଲ ଅପାର
ତିନିଭାଇ ମାରିବାରୁ ହେଲା ସେ ଅସ୍ଥିର ।
ସେଠାରୁ ରଥ ଘେନିଣ ପଳାଇଲା ଦୈତ୍ୟ
ତାର ପଛେ ତିନିଭାଇ ଚଳିଲେ ତୁରିତ ।
ଅଯୋଧ୍ୟା ନଗ୍ରରେ ନେଇ ରଥ ସେହୁ କଲା
ଗଗନରୁ ରଥ ଆସି ସେଠାରେ ମିଳିଲା ।
ତାର ପଛେ ତିନିଭାଇ ଆସିଲେକ ପୁଣ
ଶ୍ରୀରାମର ସିଂହଦ୍ୱାରେ ହୋଇଲାକ ରଣ ।
ମେଘର ଗର୍ଜନ ପ୍ରାୟେ ଦୈତ୍ୟର ଗର୍ଜନ
ଘନଘନ କରିଣଯେ ବର୍ଷେ ଘୋର ବାଣ ।
ସ୍ୱର୍ଗମର୍ତ୍ତ୍ୟ ଲୁଚିଇଲା ଅଦୃଶ୍ୟ ଅଂଶୁମାଳି
ଦେଖିଣ ପର୍ଶୁରାମ ଧାଇଁଲେ କୋପକରି ।
ଦେଖିଲେଯେ ଶ୍ରୀରାମଙ୍କୁ ତିନିଭାଇ ସଙ୍ଗ
କୋଠାରମାଇଲେନେଇ ଦୈତ୍ୟଉରେବେଗ
ସହସ୍ରେକ ଶିର ଛିଡ଼ି ତଳରେ ପଡ଼ିଲା
ତକ୍ଷଣେ ସହସ୍ରେ ଶିର ଜନ୍ମିଲା ଉଠିଲା
ଦେଖିକରି ପର୍ଶୁରାମ ହୋଇଲା ତାଟକା
ରଘୁନାଥଙ୍କୁ ବୋଇଲେ ଏ କେବଣ କଥା ।
ରଘୁନାଥ ବୋଇଲେଯେ ତୁମ୍ଭେ ଜମା ଯୁଝ
ପର୍ଶୁରାମ ବୋଇଲେ ଶୁଣହେ ଦେବରାଜ ।
ଅଯୋଧ୍ୟାକୁ ଶତେମୁଖ ରାବଣ ଆଇଲା
ତୋର ଭାଇ ଶତ୍ରୁଘନ ସଙ୍ଗେ ଯୁଦ୍ଧକଲା ।
ଭରତ ଲକ୍ଷେ ରାଜା ଘେନିଣ ଯାଇଥିଲା
ଦୈତ୍ୟ ପଳାଇବନ୍ତେ ଶତ୍ରୁଘନ ଗୋଡ଼ାଇଲା

ମୂର୍ଚ୍ଛି ତପ କରୁଥିଲି ଗଙ୍ଗା ଯେ ସାଗର
ସ୍ୱର୍ଗର ଯେ ପୁରନ୍ଦର ଗଲା ମୋହଠାର ।
ବୋଇଲାହେ ପର୍ଶୁଧର ବେଗେ ତୁମ୍ଭେଚଳ
ଅଯୋଧ୍ୟଯେ ଶୂନ୍ୟ ହୋଇଲା ତହିଁଯାଇମିଳ
ରାମ ବୃନ୍ଦଭାଇ ଦୈତ୍ୟ ସଙ୍ଗେ ଗଲେ ରଣ
ମୁଁର ରାବଣ ମାରି ଆସିବେ ରାମଗଣ ।
ପତର ଯୁଗଯାଏ ନିଶ୍ଚିନ୍ତ ଦେବ ହେବେ
ବାସୁଦେବ ଜନମ ହୋଇଅଛନ୍ତି ଏବେ ।
ଅଯୋଧ୍ୟା ଶୀତଳ ଗିରିପରେ ଯାଇଥିବ
ଜାନକୀ ଘେନିଣ ଯହୁଁ ଶ୍ରୀରାମ ଆସିବ ।
ତେବେ ଅଯୋଧ୍ୟାରୁ ଆସି କର ତୁମ୍ଭେ ତପ
ଏତେବୋଲି ସମ୍ଯୋଜ କହିଲା ସ୍ୱରୂପ ।
ତାର ବୋଲେ ମୁଁ ଆସି ଜଗିଛୁତୋରଦେଶ
ଉପଦ୍ରବ ଯେ କରିବ କରିବ ତାଙ୍କୁ ନାଶ ।
ଶ୍ରୀରାମ ବୋଇଲେ ଋଷି ମୋହ ରାଜ୍ୟ ଅଛ
ପ୍ରଜାଙ୍କୁ କେହୁ ପାଳଇ କହହେ ପ୍ରତ୍ୟକ୍ଷ ।
ପର୍ଶୁରାମ ବୋଇଲେଦେବ ଶୁଣମୋ ବଚନ
ତୁମ୍ଭେ ଗଲ ପିତା ମଲେ ଶୁଣିଛ ଆପଣ ।
ଭରତକେବେହେଁ ରାଜାନୋହିଲେ ଏଥିରେ
ଶତ୍ରୁଘନ ନ ବୁଝିଲ ତୁମ୍ଭ ରାଜ୍ୟ ଭଲେ ।
ଲୀଳାବତୀ ଜନନୀ ତୋ ରାଜ୍ୟ ବୁଝୁଥିଲେଣି
ଶତ୍ରୁଘନ ରଥରେ ସେ ସାରଥି ହୋଇଲେ ।
ଏବେ ପୁଣି ଲୀଳାବତୀ ଜନନୀ ତୋହର
ପରଜାଙ୍କୁ ପାଳୁଅଛି ଶୁଣ ରଘୁବର ।
ପର୍ଶୁରାମଙ୍କୁ ବୋଇଲେ ଶ୍ରୀରାମଯେ ପୁଣ
ତୁମ୍ଭ ହସ୍ତେ ଏ ଅସୁର ନମରେହେ ଜାଣ ।
ଦଶଲକ୍ଷ ଭ୍ରମର ତାର ଦଶଲକ୍ଷ ନାତି
ବାରଲକ୍ଷ ଜୁଆଇଁ ତା ମାରିଲି ନପାରି ।
ସୈନ୍ୟବଳ ଅକଳନ କହିବେ ପାରିବ
ପାଞ୍ଚଦିନେ ସମସ୍ତେହେ ମଲେ ଛୁଟିଦେବ ।
ତିନିଭାଇ ଯୁଦ୍ଧରସଙ୍ଗେ କରୁଅଛୁ ଯୁଦ୍ଧ
ଲକ୍ଷ୍ମଣ ରହିଛନ୍ତି ପୁଣ ଲଙ୍କାଗଡ଼ ମଧ୍ୟେ ।
ସୁଗ୍ରୀବ ବଶିଷ୍ଠ ନଳ କପି ରାଜାଗଣ
ସମସ୍ତେ ରହିଛନ୍ତି ଲଙ୍କାଗଡ଼ ଭୁବନ ।
ପଦାତି ସେନାପତିଙ୍କି ଯାଇ ତୁମ୍ଭେ କହ
ଶଙ୍କା ନ କରିଣ କିଛି ନିଶ୍ଚିନ୍ତରେ ରହ ।

ଜନକମାନଙ୍କୁ ମୋର ବୁଝାଇ କହିବ
ତିନିଭାଇ ଯୁଝୁଛନ୍ତି ଅସୁରର ସଙ୍ଗ ।
ଶୁଣିଣ ପରଶୁରାମ ବେଗେ ଚଳିଗଲେ
ରଥିପଦାତିଙ୍କି ଯାଇଁ ମନା ସେହୁ କଲେ ।
ରାଣୀହଂସ ପୁରେ ଯାଇ ହେଲେ ପରବେଶ
କଳାବତୀ ବୋଲେ ଶୁଣ ଯମଦଗ୍ନି ଶିଷ୍ୟ ।
ତୁମ୍ଭେ ଥାଉ ଆମ୍ଭ ରାଜ୍ୟ ହେଲା ଉତପାତ
କେବଣ ଅସୁର ଆସି କରଇ ଅନର୍ଥ ।
ପଶୁରାମ ବୋଇଲେ ହେ ଶୁଣ ତୁମ୍ଭେ ଏବେ
ତିନି ରାବଣଙ୍କୁ ତିନିଭାଇ ମାରେ ବେଗେ ।
ସହସ୍ରମୁଖା ବୋଲିଣ ଏକଇ ରାବଣ
ସୈନ୍ୟବଳ ଘେନି ରାମ ସଙ୍ଗେ କରେ ରଣ
ତା ପୁତ୍ର ନାତି ସୈନ୍ୟ ମାରିଲେ ତୁମ୍ଭ ବାଳ
ଏକାକୀ ଯୁଦ୍ଧ କରଇ ସହସ୍ରାନନ ବୀର ।
ଭରତ ଯେ ଶତ୍ରୁଘ୍ନ ଶ୍ରୀରାମ କୁମର
ତାର ସଙ୍ଗେ ଯୁଦ୍ଧ ପୁଣି କରନ୍ତି ଅପାର ।
ହାଣିଲେ କାଟିଲେ ଶିର କଅଁଳୁଛି ପୁଣି
ଏକାକୀ ଯୁଦ୍ଧ କରୁଛି ବୁଲିଣ ଧରଣୀ ।
ଅଛନ୍ତି ଭରତ ଶତ୍ରୁଘ୍ନ ଶ୍ରୀରାମ ସଙ୍ଗେ
ବନ୍ଧିକରି ନାରାଚ ଛେଦନ୍ତି ନାନା ରଙ୍ଗେ ।
ଲକ୍ଷ୍ମଣ ଜାନକୀ ଲଙ୍କାଗଡ଼ରେ ଅଛନ୍ତି
ଶ୍ରୀରାମ କହିଦେଲେ ମାତାଙ୍କୁ ଜଣାଣ ।
ଶୁଣିକରି ମାତାଗଣ ଆନନ୍ଦ ହୋଇଲେ
ପଞ୍ଜର ଦୁଆର ବାଟେ ପୁତ୍ରଙ୍କୁ ଚାହିଁଲେ ।
ଏଥିଅନନ୍ତରେ ତୁମ୍ଭେ ଶୁଣ ଶାକମ୍ଭରୀ
ଅଯୋଧ୍ୟାନଗ୍ର ଶ୍ରୀରାମ ଚାହିଁଲେ ନରେନ୍ଦ୍ର ।
ସମସ୍ତ ଧବଳପୁର ଦାଣ୍ଡ ନିରମଳ
ଯୁଣକ ଓସାରେ ଦାଣ୍ଡ ହୋଇଛି ବିସ୍ତାର ।
କୋଶେକ ଓସାର ଘରକୋଣ ଅଟେ ଲମ୍ବ
ଘରଗୋଟି ନବର କରିଛି ମଳାଖମ୍ବ ।
ସୁବର୍ଣ୍ଣ କଳସମାନ ଚରଳ ଯେ ଝଡ଼େ
ପ୍ରତିଘରେ ପୂର୍ଣ୍ଣକୁମ୍ଭ ଚୂତପତ୍ର ଡ଼ାଳେ ।
ଦେଖିଣ ଶ୍ରୀରାମ ମନେ ବହୁ ତୋଷ ହେଲେ
ବାବଲ ଶର ଧରି ଗୁଣରେ ବସାଇଲେ ।
ଆକର୍ଣ୍ଣ ପରଯନ୍ତେ ଯେ ଆଣିଲେ ଓଟାରି
ଛାଡ଼ନ୍ତେ ସସ୍ରାନନ ମଥାରେ ଗଲା ଗଳି ।

ଧନୁଶର ଗୁଣ୍ଡ ପଡ଼ିଲା ମୋହ ଯାଇ
ଦେଖିଣ ସାରଥି ତାର ରଥ ନେଲା ବାହି ।
ଶୂନ୍ୟରେ ଗମନ୍ତେ ତିନିଭାଇ ଗୋଡ଼ାଇଲେ
ଖଣ୍ଡେ ଦୂର ଯାଇଣ ଦୈତ୍ୟ ଚେତା ପାଇଲେ
ସାରଥିକି ବୋଇଲାରେ ରଥ କେଣେ ନେଉ
ଯୁଦ୍ଧ ଛାଡ଼ି କମ୍ପାଇ ଆନ ବାଗରେ ବାହୁ ।
ସାରଥି ବୋଇଲା ଦେବ ଶୁଣ ମୋ ଉତ୍ତର
ଶ୍ରୀରାମର ବାଣେ ମୋହଗଲ ରଥ ପର ।
ତେଣୁକରି ରଥ ମୁଁ ବାହଇ ଶୂନ୍ୟମାର୍ଗେ
ସହସାନନ ବୋଲେ ରଥ ଲେଉଟାକୁ ବେଗେ
କଷ୍କିନ୍ଧ୍ୟା ନଗରକୁ ବାହା ମୋହର ଯାନ
ବାଳି ଭୁବନରେ ରହି କରିବା ଯୁଦ୍ଧ ପୁଣ ।
ତାହାଶୁଣି ସାରଥି ତଳକୁ ରଥ ଆଣି
କଷ୍କିନ୍ଧ୍ୟା ନଗ୍ରକୁ ରଥ ବାହେ ବ୍ୟଗ୍ର ପୁଣି ।
ବାଳିର ସିଂହଦ୍ୱାରରେ ଛୁହାଇଲା ରଥ
ଭରତ ଶତ୍ରୁଘ୍ନ ମିଳିଲା ଯାଇ ପାଶ ।
ଦେଖିଣ ଦୈତ୍ୟବୀର କରଇ ଗରଜନ
ସହସ ଧନୁରେ ନାରାଚ ଯୋଚିଲା ପୁଣ ।
ଶତ୍ରୁଘ୍ନ ନିବାରଇ ତା ଅସ୍ତ୍ର ଖରେ
ଏ ସମୟେ ଶ୍ରୀରାମ ମିଳିଲେ ତା ଆଗରେ ।
ବାବଲ ଶର ଶ୍ରୀରାମ ଗୁଣରେ ବସାଇ
ଛାଡ଼ନ୍ତେ ନାରାଚ ଗର୍ଜ୍ଜନ କରି ଚଳଇ ।
ସହସାନନ କପାଳେ ଯାଇଣ କଣ୍ଟିଲା
ବାହାରି ହୋଇଣ ଶର ପଛେ ନିକଳିଲା ।
ବିକଳ ହୋଇଣ ମନେ ସରିଭାର ସାଇଁ
ଅସୁର ଶରକୁ ସେହୁ ଛାଡ଼ିଲା ବୁହାଇ ।
ନାରାୟଣ ଶର ତିନିବାର କଲେ ରାମ
ପୁଣି ଲକ୍ଷ୍ମଣ ନାରଚ ଛାଡ଼ିଲା ଦୈତ୍ୟଭ୍ରମ ।
ଅଙ୍ଗଦକୁ ବୋଇଲେ କୋଦଣ୍ଡ ରୂପଧାରି
ଯାଅରେ କୁମର ଏବେ ନଗ୍ରକୁ ତୋହରି ।
ଜନନୀଙ୍କ ତୋ'ର ସବୁ କହିବୁ ବୁଝାଇ
ସୈନ୍ୟବଳ ପରଜା ସମ୍ଭାଳ ବେଗେ ଯାଇ ।
ଶୁଣିଣ ଅଙ୍ଗଦ ଯେ ରଥରୁ ଓହ୍ଲାଇଲା
ଆପଣାର ନଗ୍ରରେ ସେ ଯାଇଣ ପଶିଲା ।
ଜନନୀ ଆଗରେ ପ୍ରବେଶ ହୋଇଲା ଯାଇଁ
ଚରଣ ତଳେ କୁମର ଗଡ଼ିଗଲା ଶୋଇ ।

ଉଠିଣ ତାର ତାହାକୁ କୋଳକରିନେଲ
ପାଶରେ ବସାଇ ତାକୁ ବାରତା ପୁଛିଲ ।
କହ ବାବୁ ଶ୍ରୀରାମ ଅଛନ୍ତି କିକ ଭଲେ
ଖ୍ରତ୍ରୀତ ସୁଗ୍ରୀବର ଏଛନ୍ତି କି କୁଶଳେ ।
ରକ୍ଷକପି ଯୂଥପତି ମଲ୍ଲ ମହାମଲ୍ଲ
ବିଭୀଷଣ ସୁଷେଣ ଜାମ୍ବବ ହନୁ ଭୁଲ ।
ଆମ୍ଭର ସିଂହଦ୍ୱାରେ ଶୁଭୁଅଛି ଗହଳ
ଶର ଆଘାତରେ ଅନ୍ଧାର ମୋର ପୁର ।
ଅଙ୍ଗଦ ବୋଇଲ ମାତ ବିଲଙ୍କାରାବଣ
ଦଶଗ୍ରୀବ ରାବଣ ସମ୍ବନ୍ଧୀ ଅଟେ ପୁଣ ।
ଲଙ୍କା ରାବଣ ମରିବାରୁ ଛଳରେ ଅଇଲ
ରାମ ବିଭୀଷଣ ସୁଗ୍ରୀ ମାରିବ ବୋଇଲ ।
ରକ୍ଷ ବାନର ସୈନ୍ୟ ସବୁ କରିବ ନାଶ
ଶ୍ରୀରାମ ଘରଣୀକି ନେବ ମୋହର ଦେଶ ।
ଏମନ୍ତ ବିସ୍ମିର ଯେ ସହସାମୁଖା ବୀର
ସଙ୍ଗତରେ ସୈନ୍ୟବଳ ଯୋଜନେ ଅପାର ।
ହାଣ୍ଡି ରଥ ପାଦାନ୍ତ ଯେ କଳଣା ନ ଯାଇ
ପୁଷ୍କନାତ ଯେନ ଦୈତ୍ୟ ଅଇଲ ଚଳାଇ ।
ପର୍ବତରେ ସେତୁବନ୍ଧ କଲକ ସିନ୍ଧୁରେ
ସେତୁବନ୍ଧପରେ ଦୈତ୍ୟବଳ ପାରିହେଲେ
ସ୍ତ୍ରୀରଜନ ଯୁଦ୍ଧରେ ସମସ୍ତେ ହେଲେ ନାଶ
ଶକ୍ତିମାରେ ପାଞ୍ଚଜନେ ଶ୍ରୀରାମେ ରାକ୍ଷସ ।
ହନୁମନ୍ତ ଖାଣ୍ଡବ ବନକୁ ଚଳିଗଲ
ମହୌଷଧି ଆଣନ୍ତେ ଶ୍ରୀରାମ ଭଲହେଲ ।
ସେହିତ ଶ୍ରୀରାମ ପୁଣି କଲେକ ସମର
ହୋତିଣ ସ୍ତ୍ରୀରଜାଇ ମାଇଲେ ଦୈତ୍ୟବଳ ।
ଏକା ହୋଇ ସସାନନ ପଳାଇ ଅଇଲ
ତାରପଛେ ଭରତ ଶତ୍ରୁଘ୍ନ ଗୋଡ଼ାଇଲା ।
ତହିଁପଛେ ଶ୍ରୀରାମ ଗମନ କଲେ ପୁଣ
ଆଜ ସର୍ବେ ରହିଲେ ଲଙ୍କାଗଡେ ଜାଣ ।
ଅଲଙ୍କାଗଡ଼େ ଯାଇ ସମର ଦୈତ୍ୟ କଲ
ସମ୍ଭାଳି ନ ପାରି ଦୈତ୍ୟ ସେଠୁଁ ପଳାଇଲ
ଅଯୋଧ୍ୟାରେ ସମର କଲକ ଅତି ଘୋର
ସମ୍ଭାଳି ନ ପାରି ଦୈତ୍ୟ ପଳାଏ ବ୍ୟଗ୍ରର
ଏବେ ଆମ୍ଭ ସିଂହଦ୍ୱାରେ କରଇ ସମର
ଶ୍ରୀରାମ ଜନକଇ ଏକା ଯେ ଦୈତ୍ୟବୀର ।

ହନୁମନ୍ତ ସ୍ତ୍ରୀହିଁ ଆମ୍ଭେ ଦୁଇଜଣ ପୁଣ
ଶ୍ରୀରାମଙ୍କ ରଥରେ ବସି ଅଇଲୁଁ ଜାଣ ।
ଆମ୍ଭଦ୍ୱାରେ ଯୁଦ୍ଧଦେଖି ଭେଦମୋତେଦେଲେ
ଜନନୀଙ୍କ ତୋହର ସମ୍ଭାଳରେ ବୋଇଲେ
ଆମ୍ଭେ ଯିବା ଯାଅରେ ସମ୍ଭାଳ ତୋରନସ୍ତ
ଶୁଣିଣ ଜନନୀ ମନେ ହୋଇଲେ ଆନନ୍ଦ ।
ହନୁମନ୍ତ ନନ୍ଦଘୋଷ ରଥରେ ଯେ ଥିଲା
ରଥରୁ ଓହ୍ଲାଇ ଯାଇ ପର୍ବତେ ମିଳିଲା ।
ଗିରିବର ଉପାଡିଣ ଆଣିଲାକ ବନ୍ଧ
ଦଇତର ରଥରେ ଯେ କସ୍ମିଲା ନେଇ ।
ରଥ ଧ୍ୱଜ ଖଣ୍ଡ ଖଣ୍ଡ ହୋଇଣ ପଡ଼ିଲା
ଦୈତ୍ୟ ସ୍ୱରନ୍ତେ ରଥ ଭୂମିରୁ ବାହାରିଲା
ସେ ରଥରେ ଚଢ଼ି ଦୈତ୍ୟ କଲା ଗରଜନ
ପଛରେ ଗୋଡ଼ାଇଲେ ଭରତ ଶତ୍ରୁଘନ ।
ତାହା ଦେଖି ଅଙ୍ଗଦ ଯେ ବେଗେ ବଳିଗଲା
ନନ୍ଦଘୋଷ ରଥେ ଯାଇ ପ୍ରବେଶ ହୋଇଲା
ଜ୍ୟୋତିଲଙ୍କାରେ ଯାଇଣ ହେଲେ ପରବେଶ
ଜ୍ୟୋତିଲଙ୍କାରେ ଦୈତ୍ୟବୀର ରହି ବିଶେଷ
ସେଠାରେ ଅନେକ ଯୁଦ୍ଧ କଲା ସସାନନ
ଲକ୍ଷେଶର ବଢ଼ଇ ଯେ ବିଶାଖା ନନ୍ଦନ ।
ଅଚଳ ଶରରେ ତାହା ଶତ୍ରୁଘନ ଛେଦି
ମାଳବାଣ ଗୁଣେ ବସାଇ ଶ୍ରୀରାଳ ଭେଦି ।
ବାଜନ୍ତେ ମାଳବାଣ ଅସୁର ମୋହଗଲା
ଦେଖିଣ ସାରଥି ରଥ ଘେନି ପଳାଇଲା ।
ସୁଲଙ୍କା ଗଡ଼ରେ ଯାଇ ହେଲେକ ପ୍ରବେଶ
ଚେତା ପାଇଣ ଉଠିଲେ ବିଶାଖାର ଶିଷ୍ୟ ।
ଶ୍ରୀରାମ ଜନକଇ ପଛରେ ଯାଉଥିଲେ
ସୁଲଙ୍କା ଗଡ଼ଦ୍ୱାରେ ଦୈତ୍ୟକୁ ଭେଟିଲେ ।
ଜନଆଡୁ ବେଢ଼ିଣ ମାଇଲେ ତାକୁ ଶର
ହୃଦସ୍ଥ ଯାକ ସ୍ଥିର ଯେ ହୋଇଲା ତାହାର
କାଣ୍ଡମୁନେ ରକତ ବହଇ ଝରଝର
ବିକଳରେ ଦୈତ୍ୟ ଯେ ଗର୍ଜଇ ମହାଘୋର
ଯାତମନ ଶରକୁ ନେଇ ଗଣେ ବସାଇଲା
ଆକର୍ଣ୍ଣ ପରିପନ୍ତେ ଓଟାରି ସେ ବିନ୍ଧିଲା ।
ଘୋଟିଲା ତମିର ଯେ ନବଣେ ପୂର୍ଣପଥ
ବନମଣି ଶରଯେ ବିନ୍ଧିଲେ ରଘୁନାଥ ।

ଶ୍ରୀ

ତତକ୍ଷଣେ ଯାମେନ ପଳାଇ କେଣେ ଗଲା
ଏଗାର ଷଣ୍ଢ ଢଳ ସେଠାରେ ହୋଇଲା ।
କୁହକ ଶରପୂର୍ଣ୍ଣ ବାନ୍ଧଇ ଦୈତ୍ୟବୀର
ତକ୍ଷିପକ୍ଷେ ପ୍ରହାର କଲେକ ଅଗ୍ନିଶର ।
ସୂର୍ଯ୍ୟଶର ଜଳଶର ଦୁଇ ଯେତେ ଭୁଥ
ଏକାବେଳେ ନାଶି କୁହୁଡ଼ି ଅଗ୍ନି ସମେତ ।
ବାବନ ଶରକୋଟି ପେଶଇ ଶତ୍ରୁଘନ
ଦୁଇ ଜାନୁ ତାହାର ଫୁଟିଲାକ ବହନ ।
ସେଠାରୁ ପଳାଇ ସହସ୍ରା ରାବଣ
ଆପଣା ଦେଶରେ ଯାଇ ପ୍ରବେଶିଲା ପୁଣ ।
ଆପଣା ସିଂହଦ୍ୱାରେ ରଥ ରୁହାଇଲା
ଦୁଇକୋଟି ନାରାଚ ଗୁଣରେ ବସାଇଲା ।
ତିନଭାଇ ଉପରକୁ ବାନ୍ଧିଲା ସେ ଟାଣି
ନାରାଚ ଆସନ୍ତେ ଭରତ ପକାଏ ହାଣି ।
ଦେଖିଣ ଦୈତ୍ୟବୀର ଅସୁର ଶରକଲା
ବାନ୍ଧନ୍ତେ ନାରାଚ ଯାଇ ଆକାଶ ଘୋଟିଲା ।
ନାରାୟଣ ଶରେ ତା ନବାରେ ଶତ୍ରୁଘନ
ଦେଖିଣ ମନେ କ୍ରୋଧହେଲା ସହସ୍ରାନନ ।
ସମର ଦେଖିସ ଭାଗୀରଥୀ ଆଦ ସୈନ୍ୟ
ରାଜାର ନିକଟରେ ମିଳିଲେ ଆସି ପୁଣ ।
ତିନଭାଇଙ୍କି ସେ ବେଢି ପକାଇଲେ ତକ୍ଷି
ଦେଖିଣ ଶତ୍ରୁଘନ ମନରେ ବିସ୍ମରଇ ।
ରଙ୍ଗଜଇ ପରାସ୍ତେ ତାହାର ଦୈତ୍ୟବଳ
ଯେତେବାଗେମାଇଲେନମରେଦୈତ୍ୟବଳ
ଏତେବୋଲି ମନଭେଦ ଶରକୁ କାଢ଼ିଲେ
ଗୁଣରେ ବସାଇସେ ବେଗେ ଛାଡ଼ିଦେଲେ ।
ସମସ୍ତଙ୍କୁ ମନଭେଦ ଛେଦିଲାକ ପୁଣ
ତତକ୍ଷଣେ ରଙ୍ଗନଦୀ ବହିଲା ବେଗେଣ ।
କୋଟି କୋଟି କବନ୍ଧ ନାଚନ୍ତି ପୁଣ ତକ୍ଷି
ବାକିଯେତେକ ଥିଲେସେ ଗଲେକ ପଳାଇ
ହସ୍ତୀଘୋଡ଼ା ଯେତେକ ସଙ୍ଗରେ ଆସିଥିଲେ
ମୁକୁଳା ହୋଇଣ ରଣ ଭୂମିରେ ବୁଲିଲେ ।
ଦେଖିଣ ହନୁମନ୍ତ ଅଙ୍ଗଦ ଓହ୍ଲାଇଲେ
ହସ୍ତୀଙ୍କର ଉପରେ ହସ୍ତୀଙ୍କି କଷ୍ଟଡ଼ିଲେ ।
ଅଶ୍ୱଙ୍କର ଉପରେ ଅଶ୍ୱଙ୍କୁ ଫେଇପିଟି
ହସ୍ତୀଘୋଡ଼ା ଘଡ଼କରେ ଭୂମିରେ ପଡ଼ିଲେଟି

ମାରିଣ ହନୁମନ୍ତ କେଶ ଚଳିଗଲା
ଶତ୍ରୁଜୟ ରଥପରେ ଯାଇଣ ବସିଲା ।
ଧଶକର ରୁପିଦ୍ୟନ୍ତେ ପଶିଲା ପାତାଳ
ପାଦଗଣ୍ଡ ହୋଇ ଯୁଦ୍ଧ କରେ ଅନର୍ଗଳ ।
କାଳ ବିକାଳ ହିଂଫାଳ ଶର ଧରି ଦୈତ୍ୟ
ମନ୍ତ୍ର ସୁମରି ହିଶର ବାନ୍ଧିଲା ତୁରିତ ।
ଅପଲଟକ ଶର ସେ ନିବାରି ନୋହିଲା
ଶ୍ରୀରାମ ଶତ୍ରୁଘ୍ନ ଭରତ ତିନ ମୋହ କଲା ।
ଦେଖିଣ ସାରଥିସେ ଉପ ଯେ ପୁଣକଲେ
ତିନରଥ ଲେଉଟାଇ ଲଙ୍କା ଚଳିଗଲେ ।
ଲଙ୍କଗଡ଼ ରଣସ୍ଥାନେ ହେଲେ ପରବେଶ
ଚେତନା ପାଇ ଶ୍ରୀରାମ ଉଠିଲେ ତୁରିତ ।
ଭରତ ଶତ୍ରୁଘନସେ ପାଇଲେ ଚେତନା
ଦେଖିଲେ ସୈନ୍ୟବଳ ଲକ୍ଷ୍ମଣ ଅଛିକନା ।
ହନୁମନ୍ତ ଅଙ୍ଗଦ ରଥରୁ ଓହ୍ଲାଇଲେ
ସୁଗ୍ରୀବର ବିଭୀଷଣ ଆସିଣ ମିଳିଲେ ।
ଏଥୁଅନନ୍ତରେ ଶୁଣଆଗୋ ଶାକମ୍ବରୀ
ସହସ୍ରାମୁଖ ରାବଣ ଯାଦ ଗତି କରି ।
ତିନଶରରେ ତିନଭାଇ ସେ ମୋହଗଲେ
ରଥ ବାହୁଡ଼ାଇ ଲଙ୍କାଗଡ଼କୁ ଅଇଲେ ।
ସହସ୍ରାନନ ସ୍ମରଣ କଲା ନିଜରଥ
ତତକ୍ଷଣେ ଯାନ ଆସି ହୋଇଲା ଉପଗତ ।
ସାରଥିଙ୍କି ଆଜ୍ଞାଦେଲା ବିଶାଖାର ବଳା
ଯୋଚଣ ଅଶ୍ୱମାନଙ୍କୁ ରଥ ବେଗେ ଚଳା ।
ଲଙ୍କାଗଡ଼କୁ ରଥ ମୋ ଘେନ ବେଗକରି
ନଗଲେ ଆଜ ପଳାଇବ ଜଟାଧାରୀ ।
ଏହି ସମୟରେ ତାର ଘରଣୀ ସରିତା
ହାନ୍ଦୋଳାରେ ଅଇଲା ବଳିରାଜା ଦୁହିତା ।
କରଯୋଡ଼ି ସ୍ୱାମୀକି ସେ କହଇ ବଚନ
ସବୁ ଚିନ୍ତା ଛାଡ଼ି ନବରକୁ ଆସ ପୁଣ ।
ତୁମ୍ଭେ ଥିଲେ ପୁତ୍ରନାଶ ହୋଇବସେ କାଲି
ଶ୍ରୀରାମଟି ନାରାୟଣ ନପାରିବ ମାରି ।
ଅନ୍ୟାୟରେ ଯୁଦ୍ଧକଲୁ ସର୍ବେଗଲେ ନାଶ
ଏବେ ଛାଡ଼କରି ଗଲେ ଶ୍ରୀରାମ ତୋରଦେଶ
ଧର୍ମବନ୍ତ ଲୋକକୁ ତୁ ନପାରିବୁ ଜିଣି
ତାରସଙ୍ଗେ ଯୁଦ୍ଧଯେବେ କର ନୃପମଣି ।

ତେବେ ଆଉ ବଲଙ୍କାକୁ ନ ଦେଖିବ ତୁମ୍ଭେ
ଏହିଠାରୁ କୁଳ ଚୋର ସନ୍ତୁଅଛୁ ଏବେ ।
ଘରଣୀ ବଚନ ଶୁଣି ନ ଶୁଣେ ସସ୍ରାମୁଖ
ସାରଥିକ ବୋଇଲା ତୁ ବେଗେ ବାହ ରଥ ।
ଆଜ୍ଞାମାନ ସାରଥି ଯେ ରଥ ବାହିନେଲା
ଲଙ୍କାଗଡେ ଶ୍ରୀରାମ ଆଗରେ ନେଇ କଲା ।
ସସ୍ରାନନ ଘରଣୀ ଲେଉଟିଣ ଗଲା
ନିଜ ମନ୍ଦିରରେ ଯାଇ ପ୍ରବେଶ ହୋଇଲା ।
ସଉରେଭି ଦାସୀକି ସେ ବୋଇଲକ ପୁଣ
ମୋହର ବୋଲରେ ତୁହି ଚଳାଅ ବହନ ।
ବଧୂ ନାତୁଣିବଧୂ ସମସ୍ତ ଆଣ ଡାକି
ବାରଲକ୍ଷ ଦୁହିତା ସଙ୍ଗରେ ଆଣ ତୁଟି ।
ଶୁଣିଣ ସଉରେଭି ଯେ ବେଗେ ଚଳିଗଲା
ନାତୁଣୀ ବଧୂ ଦୋହିତା ମାନଙ୍କୁ କହିଲା ।
ବେଗେ ଆନ ରାଣୀ ଯେ ଡକାଇ ଅଛନ୍ତି ପୁଣ
ଶୁଣିକରି ସମସ୍ତେ ଅଇଲେ ତତକ୍ଷଣ ।
ଶାଶୁଙ୍କୁ ଓଳଗି ହୋଇଲେକ ସର୍ବେ ପୁଣ
ଦୋହିତାମାନେ ନମିଲେ ମାତାର ଚରଣ ।
ସ୍ୱାମୀଙ୍କର ନାମ ଧରି କରନ୍ତି ରୋଦନ
କେହୁ ପୁତ୍ର ନାମ ଧରି କରନ୍ତି କାରୁଣ୍ୟ ।
ସରିତା ରାଣୀ ବୋଲେ ସମସ୍ତେ ତୁମ୍ଭେ ଶୁଣ
ସ୍ୱାମୀମାନଙ୍କର କାର୍ଯ୍ୟ କର ଗୋ ତତକ୍ଷଣ ।
ଝାସଦଅ ଯାଇ ତୁମ୍ଭେ ସମୁଦ୍ରର ତୀରେ
ସ୍ୱାମୀମାନଙ୍କୁ ଦେଖିବ ଯାଇ ସ୍ୱର୍ଗପୁରେ ।
ଶୁଣିକରି ସମସ୍ତେ ଯେ ଯାହା ପୁରେ ଗଲେ
ଆପଣା ମନ୍ଦିରେ ଯାଇ ବେଶଭୂଷା ହେଲେ
ଫୁଲ ଚନ୍ଦନ ଆଦି ଦେବାଙ୍ଗ ବସ୍ତ୍ରମାନ
ଅଳଙ୍କାର ଭୂଷଣ ହୋଇଲେ ସର୍ବେ ଜାଣ ।
ହରଷରେ ସର୍ବେ ଯେ ହୋଇଲେ ବାହାର
ସମୁଦ୍ର କୂଳରେ ଯାଇ ପ୍ରବେଶ ସକଳ ।
ନମସ୍କାର କରିଣ ଜଳରେ ସର୍ବେ ପଶି
ଲବଣର ଘାତରେ ସମସ୍ତେ ଗଲେ ଖସି ।
ପାର୍ଥିବ ଦେହ ଛାଡ଼ିଣ ସ୍ୱର୍ଗକୁ ଚଳିଗଲେ
ସ୍ୱର୍ଗପୁରେ ଯାଇଣ ଯେଝା ସ୍ୱାମୀଙ୍କି ଭେଟିଲେ
ବଷଙ୍କର ପୁରେ ଯାଇ ହେଲେ ପରବେଶ
ନିଶ୍ଚିନ୍ତରେ ରହିଲେ ଶୁଣ ଗୋ ହେମବନ୍ତ ।

ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
ସାରବାହୁର କୁମର ସୁବାହୁ ଅଟେ ପୁଣ ।
[illegible]ବଣର କୁମର ନାଦ ନାମେ ପୁଣି
ଜ୍ୟୋତିଲଙ୍କା ସୁଲଙ୍କାରେ ଦୁହେଁ ନୃପମଣି ।
ତାଙ୍କ ସିଂହଦ୍ୱାରେ ଶ୍ରୀରାମ ଯୁଦ୍ଧକଲେ
ସେ କମ୍ପାଇ ଶ୍ରୀରାମଙ୍କୁ ଭେଟ ଯେ ନୋହିଲେ
କହୁଛନ୍ତି ସଦାଶିବ ଶୁଣ ଗୋ ହେମବନ୍ତ
ଜ୍ୟୋତି ଲଙ୍କାରେ ଶ୍ରୀରାମ ଯୁଦ୍ଧ ଯେ କରନ୍ତି
ଅଳପ ଯୁଦ୍ଧରେ ସେ ଅସୁର ମୋହ ଗଲା
ସାରଥି ଘେନ କରିଣ ପଳାଇ ଅଇଲା ।
ସଲଙ୍କାରେ ଚେତା ପାଇଲା ସସ୍ରାନନ
ଶ୍ରୀ[illegible]ମ ତିନିଥର ଗୋଡ଼ାଏ ପଛେ ପୁଣ ।
ନାଦକୁମର ଶୁଣିଣ ଅଇଲା ବେଳକୁ
ଯୁଦ୍ଧ ଭଙ୍ଗ ଣ ଶ୍ରୀରାମ ଗଲେଣି ଦୂରକୁ ।
ସୁଲଙ୍କା ଗଡ଼ରେ ଯାଇଣ ସେ ଯୁଦ୍ଧକଲେ
ଅସୁର ପଳାଇଲା ତା ସଙ୍ଗେ ଗୋଡ଼ାଇଲେ ।
ସୁବାହୁ ଆସିକରି ଲେଉଟି ପୁଣ ଗଲା
ଶ୍ରୀରାମଙ୍କୁ ନ ଦେଖି ବିକଳ ମନେ ହେଲା ।
ପାର୍ବତୀ ବୋଇଲେ ସେହି କଥା ଥାଉ ପୁଣ
ସହସ୍ରାନନ ମିଳିଲା ଶ୍ରୀରାମ ଆଗେ ପୁଣ ।
ତେତେବେଳକୁ ବେଳ ପହର ଘଡ଼ି ଜାଣ
ମେରୁ ଉହାଡ଼କୁ ଗଲେ ଦିନମଣି ପୁଣ ।
ଈଶ୍ୱର ବୋଇଲେ ଶ୍ରୀରାମ ଆଗେ ପ୍ରବେଶ
ସହସ୍ର ଧନୁଧରି ସେ ବିଶାଖାର ଶିଷ୍ୟ ।
ଶ୍ରୀରାମ ଉପରକୁ ବିନ୍ଧିଲା ବେଗେ ଶର
ଅନୁଜ ଶରେ ନିବାରି ଦ୍ୟନ୍ତି ରଘୁବୀର ।
ଶ୍ରୀ ରଘୁନାଥ ଗୁଣରେ ବସାଇ ନ ରାଚ
ବିନ୍ଧିଲେ ତୀକ୍ଷ୍ଣମୁନା ଗଳକ ମନ୍ତ୍ର ବେଗ ।
ସହସ୍ରାନନ କପୋଳେ ଫୁଟିଲା ସହସ୍ରେ କାଣ୍ଡ
ଘାତ ପାଇ ଦଇତ୍ୟ ହୋଇଲା ଲଣ୍ଡଭଣ୍ଡ ।
ଏମନ୍ତ ସମୟେ ସେ ଗଳକ ହନୁମନ୍ତ
କରରେ ଧରିଲା ଏକଇ ପର୍ବତ ।
ସହସ୍ରାନନ ଉପରେ ପଡ଼ିଲା ବେଗେ ଧାଇଁ
ଦଇତର ଉପରେ କଚାଡ଼ିଲା ନେଇ ।
ଦେଖିଣ ଅସୁର [illegible] ପାତିଲା ନେଇ ଶିର
ମୁଣ୍ଡେ ବାଜ ପର୍ବତ ହୋଇଲା ଶତଚୂର ।

ପୁଣ କୋପଭରେ ହୋଇ ପବନର ବଳ
କରରେ ଧଇଲ ସେ ଏକଇ ଶାଳ ବୃକ୍ଷ ।
ପବନରୁ ବେଗେ ଧାଇଁଲ ପାବେନ
ବଇରର ଉପରେ ପିଟିଲ ବୃକ୍ଷ ଘେନ ।
ପୁଣିହିଁ ଯାନପଟରେ ମାଇଲ ବାହାଦଣ୍ଡ
ରାଜନ ରଥ ତାହାର ହେଲ ନବ ଖଣ୍ଡ ।
ଦେଖିଣ ଦଇତ୍ୟ ବୀର ପାଦ ଗତି ହେଲ
ଅଇଲ୍ ଜବାର ରଥ ସୁମରଣା କଲ ।
ସେ ରଥରେ ସହସ୍ରାନନ ବସିଲକ ଯାଇ
ବେନ ସହସ୍ର ଧନୁ କରେ ସେ ଧରଇ ।
ପାଞ୍ଚଲକ୍ଷ ନାରାଚ ସେ ବେଳେ ଖରକର
ପୁଣିହିଁ ଦଇତ କାଳାନ୍ତେକ ଶର ମାରି ।
ଶ୍ରୀରାମ ଭ୍ରାତୃଭାଇଙ୍କି ବନ୍ଧିଲ ତତକ୍ଷଣ
ଦେଖିଣ ଶ୍ରୀରାମ ଯେ ଅନୁଜ ଶରେ ପୁଣ ।
ମହୁଶର ଛେଦି ତାର ପକାଇଲେ ହସ୍ତୁ
ବାର କୋଟି ଶର ବନ୍ଧେ କରିଣ ସେ ବପୁ ।
ନବକୋଟି ବଜ କାଟୂଳ ଭୁତ ବନ୍ଧିଲେ
ନବକୋଟି ଜଳା ଶରୀରେ ତାହାର କଲେ ।
ଉଜମ ଶେଷ ହୋଇଣ ହବସ ହୋଇଲେ
ପୃଙ୍ଗବେ ଜନମହି ଉଦସ୍ତ ହୋଇଲେ ।
ଏକା ଏ ସହସ୍ରାନନ ରାମ ଶଇର ତୁଲେ
ବଢଇ ନ ରାଜ ଗଗନରେ ଘୋଟେ ଭଲେ ।
ରାମ ଭାଇଙ୍କର ଶର ଛେଦଇ ଦୈତ୍ୟ ସନ୍ତ
ରାମ ଭାଇଙ୍କର ଶର ସମ୍ଭାଳେ ଯେ ସେତୁ ।
ପଛକୁ ବଳଲ ଯେ ହେଲ ଅତି ଘୋର
ଯହୁଁ ଶରୀରରେ ଘା ହୋଇଲ ତାହାର ।
ବଗୁରଲ ନିସ୍ଥସ୍ତ ଯିବ ଯେ ମୋର ପ୍ରାଣ
ଯମ ଦେଲ କାଳଫାଶ ଧରେ ଦୈତ୍ୟକ୍ଷଣ ।
ଦେଖିଣ ଦଇତ ମନଭେଦ ଶର ମାରି
ଶରବାଜ କରିଣ ରୁନ୍ଧିଲ ବେଗକରି ।
ଉପର ତଳପାଶ କଲକ ବାଡ଼ବନ୍ଧ
ପିମ୍ପୁଡ଼ି ଚଳିବାକୁ ନ ରଖିଲକ ସନ୍ଧ ।
ହାତୀ ରଥ ଲକ୍ଷେ ରାଜା ଋକ୍ଷ ଯେ ବାନର
ସମସ୍ତେ ରହିଲେ ଶର ବାଡ଼ର ଭିତର ।
ଏମନ୍ତ କୁପାଞ୍ଚ ଯେ ଦଇତ୍ୟ ପୁଣ କଲ
ବ୍ୟାଘ କୁ ନେଇଣ ଯେ ଲଙ୍କାରେ ପକାଇଲ

ଏଥିଅନନ୍ତରେ ଆଗୋ ଶୁଣ ଭଗବତ
କାଳଫାଶ ବାଣ ଯେ ଦଇତ ହସ୍ତେ ଅଛି ।
ମନ୍ତ୍ର ସୁମରି ବନ୍ଧିଲ କାଳଫାଶ ବାଣ
କାଳଘୋଟି ଅଇଲକ ମଞ୍ଜପୁର ପୁଣ ।
ସମସ୍ତଙ୍କ ଦେହରେ ଛୁଇଁଲ ଯାଇକରି
ହତ ଜ୍ଞାନ ହୋଇଲେ କୋଦଣ୍ଡ ଗୁଣଧାରୀ ।
ନର ବାନର ରଥି ଯେ ସେନାପତି ତୁଲେ
ମଲ୍ଲ ମହାମଲ୍ଲ ଯୁଥପତି ଯେ ସକଳେ ।
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ରାଜାଗଣ
ସୁଗ୍ରୀବର ଅଙ୍ଗଦ ଆବର ବିଭୀଷଣ ।
ସମସ୍ତେ ପଡ଼ିଲେ ଟଳି ଯେ ଯାହାସ୍ଥାନରେ
ନିଃଶ୍ୱାସ ବହଇ ଜିବ ଅଛି ଯେ ଦେହରେ ।
ଏକା ହନୁମନ୍ତକୁ କାଳ ଯେ ନ ଛୁଇଁଲ
ସମସ୍ତେ ପଡ଼ିବା ଦେଖି ହନୁ ଚଳିଗଲ ।
ଜାନକୀ ଆଗରେ ଯାଇ କହିଲ ବାରତା
ସକଳ ସୈନ୍ୟ ମାଇଲ ଦଶାଶିର ସୁତ ।
ଶ୍ରୀରାମର ସଙ୍ଗେ ମାଇଲ ରାମ ଭାଇ
ଉଡ଼ିଲେ ରଥି ପାଦାନ୍ତ ଲକ୍ଷେରାଜା ଆଉ ।
ସେନାପତି ଯୁଥପତି ମଲ୍ଲ ମହାମଲ୍ଲ
ନର ବାନର ସନ୍ତତେ ସର୍ବେ ମଲେ ତୋର
ଏକାରେ ମୁଁ ସେହଠାରୁ ଅଇଲି ଗୋ ଜାଣ
ସବୁକଥା ଅକାରଣ ହେଲ ମାତା ପୁଣ ।
ଶୁଣିକରି ଜାନକୀ ଯେ ରୋଦନ କରନ୍ତି
ଭରତ ଶତ୍ରୁଘ୍ନଙ୍କୁ ନାମ ସେ ଧରନ୍ତି ।
ତୁମ୍ଭେ କମ୍ପା ଅଇଲ ରଖନ୍ତି କୁଳ ଅବା
ରାମ ଭାଇଙ୍କି ଏକାବେଳକେ ଯୋଗଥିବା ।
ଏଥିରେ ଲକ୍ଷେରାଜାଙ୍କୁ ମରାଇଲ ଜାଣ
କେହୁ ଏ ବୁଦ୍ଧି ଦେଲ କହରେ ମୋତେପୁଣି
ନର ବାନର ମୋର ସକାଶେ ସ୍ୱାମୀ ଆଣି
ସମସ୍ତଙ୍କୁ ସଙ୍ଗେ ନେଇ କୋଦଣ୍ଡ ଗୁଣପାଣି ।
ଏମନ୍ତ ରୋଦନ ପୁଣ କରନ୍ତି ଜାନକୀ
ମନ୍ଦୋଦରୀ ବୋଲେ ତୁମ୍ଭେ ହୁଅ ମାଏ ଶାନ୍ତି
ଝଅର ଗିରସ୍ତ ତୋ ଖାଇବେ ଏବକ୍ଷଣି
ତାଙ୍କୁ ମାରିବାକୁ କି ପୁରେ କେ ଅଛି ପୁଣି ।
ସମସ୍ତେ ଖାଇବେ ଯେ ଗୋଟିଏ ନ ମରିବେ
ବାଣର ବାଡ଼ରେ ମୋହ ହୋଇଛନ୍ତି ଏବେ

ବେଦନ ନକର ସ୍ୱାମୀଙ୍କି ହୋଇବ ପୀଡା
ପବନର ସୁତ ଯେବେ ଜାଇଛନ୍ତି ପର୍ବ ।
ଶୁଣିକରି ଶାନ୍ତଯେ ହୋଇଲେ ଦେବୀ ସୀତା
ବାମକର ବାମନେତ୍ର ସ୍ଫୁରି ହୋଏ ଶୋଭା
ମାରୁତିଙ୍କ ମନ୍ଦୋଦରୀ ପଚ୍ଛରଇ ପୁଣ
କ କରୁଛନ୍ତି ଏବେ ସୁଗ୍ରୀବ ବିଭୀଷଣ ।
ମାରୁତିବୋଇଲେ ସେହି ତାଙ୍କସଙ୍ଗେ ମିଳେ
ଗୋଟିଏ ହୋଇ ସେଥିରେ ନ ବର୍ତ୍ତିଲେ ।
ଜାନକୀ ବୋଇଲେ ମୋର ବାମନେତ୍ର ସ୍ଫୁରି
ଆନନ୍ଦ ମନମୋର ଶୁଣଗୋ ମନ୍ଦୋଦରୀ ।
ତାହାଶୁଣି କହିଲା ଯେ ଇନ୍ଦ୍ରଜିତ ମାତା
ଶୁଣଗୋ ଜାନକୀ ତୁମ୍ଭ ସ୍ୱାମୀ ଜଗଜିତା ।
ଏହିକ୍ଷଣି ମୋହ ତେଜି ଉଠିବେ ସମସ୍ତେ
ଦୁର୍ଗାଙ୍କୁ ସୁମରଣା କରଗୋ ଅନ୍ତର୍ଗତେ ।
ଶୁଣିକରି ବଇଦେହୀ ଆନନ୍ଦ ହୋଇଲେ
ଯୋଗମାୟାଙ୍କୁ ମନରେ ସୁମରଣା କଲେ ।
ତତକ୍ଷଣେ ବାସେନ ଯେ ଅଇଲେ ବହନ
ଜୟ ବିଜୟ ଯାନକୁ ଘେନ ସଙ୍ଗେ ପୁଣ ।
ଅକ୍ଷୟ ହୋଣ ପୁଣି କାଳ କକୁରି ଶର
ଜାନକୀର ଆଗେ ଯାଇ ମିଳିଲେ ସତ୍ୱର ।
ବୋଇଲେ ବଇଦେହୀ ଗୋ ଶ୍ରୀରାମ ଘରଣୀ
ଦୈତ୍ୟବାଣେମୋହଗଲେସ୍ୱାମୀ ଦଅରପୁଣି
କାଳଫାଶ ବାନ୍ଧିଲା ଯେ ଦୈତ୍ୟ ଅନର୍ଗଳ
ମୋହ ଯାଇଛନ୍ତି ସକଳ ସଇନ ତୋର ।
ସ୍ୱାମୀ ଦଅର ସହିତେ ଲକ୍ଷେକ ନୃପତି
ସମସ୍ତେ ମୋହଗଲେଗୋ ତୁମ୍ଭେ ଶୁଣ ସତୀ
ଯେତେବେଳେବାରତାକୁଦେଲେତ୍ରିଲୋଚନ
ବରପାଇ ମନେ ଦୈତ୍ୟ ବିସ୍ମରିଲା ପୁଣ ।
ପାର୍ବତୀଙ୍କି ଦେଖି ମନେ କଲା ଲୋଭ ଚଉ
ଜାଣିଣ ଯେ ଭଗବତୀ ଦେଲେ ତାକୁ ଶାପ ।
ବୋଇଲେ ଆମ୍ଭଠାରୁ ପାଇଣ ତୁହି ବର
ଆମ୍ଭଙ୍କୁ ଲୋଭ କରିଲୁ ଦୈତ୍ୟମୂଢ଼ତର ।
ସ୍ତ୍ରୀଙ୍କର ହସ୍ତରେ ପ୍ରାଣ ତୋହର ଯିବ
ବାସୁଦେବ ବନିତାଯେ ସେତୋତେମାରିବ
ସେତେବେଳେ ପୁଷ୍ପନାଭ ଇଷ୍ଟବନ୍ଧୁ ତୋର
କେହି ନଥିବେ ଏକାକୀଥିବୁ ଦୈତ୍ୟବୀର ।

ମୋର ରଥେ ଯେଉଁ ସ୍ତ୍ରୀ ବସିବ ଧନୁଧରି
ମୋରଧନୁମୋଶରେଦ୍ୱଫାଳତୋତେ କରି
ତେବେ ତୁ ମରଣ ପାଇବୁରେ ଦୈତ୍ୟବୀର
କାଳ କକୁରି ଶର କରିବ ଦୁଇଫାଳ ।
ସେ ବୋଇଲା ବଂଶମୋର ହେବଯେ ଅମର
ତ୍ରିଲୋଚନ ବୋଲେ ଯାଅସଞ୍ଜିବନୀ ପୁର ।
ଯମକୁ ମନାଇଁ ତୁ ଅମର ବଂଶ କର
ଶୁଣିଣ ଦୈତ୍ୟବୀର ଗଲାକ ଯମପୁର ।
ଜନ୍ତୁପତିଙ୍କ ଦେଖିଣ ବହୁ ସ୍ତୁତି କଲା
ମୋବଂଶଅମରହେବହେବୋଲିଣ ବୋଇଲା ।
ଶୁଣିକରି ଜନ୍ତୁପତି କହଇ ବଚନ
ବିନାଦୋଷେ ଯୁଦ୍ଧକଲେ ବଂଶ ମରିବେଣ ।
ଏତେ ବୋଲିଣ ଜନ୍ତୁପତି କାଳଫାଶ ଦେଲା
ଯେତେ ଇଚ୍ଛା କରିବୁ ତେତେମାରିବୁ ଭଲା
ସେଠାରୁଯେ ଦୈତ୍ୟବୀର ନିଜ ପୁର ଆସି
ବସ୍ତ୍ରାଳଶ ଗଣ୍ଡାଯୁଗ ଯୋଗ କଲା ବସି ।
ଦଶଗ୍ରୀବ ଅଟଇଯେ ସମ୍ବନ୍ଧ ତାହାର
ତୋର ଛଳେ ଶ୍ରୀରାମ ଛେଦିଲେ ଦଶଶିର ।
ତାର ଛଳେ ସହସ୍ରାନନ କଲା ସମର
ପୁଷ୍ପନାଭ ଇଷ୍ଟବନ୍ଧୁ ମଲେ ଯେ ସକଳ ।
ତୋର ସ୍ୱାମୀ ସଙ୍ଗେ ସେହି କଲା ବହୁରଣ
ସ୍ୱାମୀ ଦଅରଙ୍କ ହସ୍ତେ ନାହିଁ ଯେ ମରଣ ।
ତୁମ୍ଭର ହସ୍ତେ ମରିବ ବଶାଗା ତୁମର
ଦେବତାଏ ଜାଣିଣଭେଦଣ ଦେଲେ ସ୍ଥିର ।
ତାଙ୍କବୋଲେ ମୁହିଁ ପୁଣି କପିଳାସ ଗଲି
ପାର୍ବତୀଙ୍କ ଠାରୁ ଧନୁଶର ଅଣାଇଲି ।
ପୁଣି ଦେବତାଏ ମୋତେ କହିଲେ ବଚନ
ଶ୍ରୀରାମ ଚେତାପାଇବେ ବେଗେଗଲେପୁଣ ।
ଜନ୍ତୁପତି ଅଟେ ଗଣପତିଙ୍କ ବାହନ
ପାସାଣ ଦେଖି କାଳଫାଶ ଯିବ ପୁଣ ।
ହନୁମନ୍ତ ବେଗେ ଯାଇ ଗଣେଶଙ୍କୁ ଆଣୁ
ତେବେଚେତାପାଇବେସକଳସୈନ୍ୟତେଣୁ
ଲକ୍ଷେ ନୃପତି ସେନାପତି ସ୍ୱାମୀ ଦଅର
ଭ୍ରାତ ବୀର ସୁଗ୍ରୀବର ବିଭୀଷଣ ବୀର ।
ମୁହିଁ ନେଇ ରଥକୁ ଯେ ରଖିଛୁ ଗୁପତେ
ସହସ୍ରାନନ ଦୈତ୍ୟ ଆସି କହିବ ତୋତେ

ତୁମ୍ଭେ ତାଙ୍କୁ ସମର ମାଗିବ ବଇଦେହୀ
ତୋର ରଥେ ସାରଥି ଯେ ହୋଇଥିବ ମୂର୍ତ୍ତି
ଏତେବୋଲି ବାହେଳ ଯେ ରଥବେଗେନେଲ
ସୁବଳ ଗିରିରେ ନେଇ ଗୁପତେ ରଖିଲ ।
ସୀତାୟାଙ୍କ ସଙ୍ଗରେ ଆସି ରହିଲ ପୁଣ
ଦାସୀ ପ୍ରାୟେ ଦିଶନ୍ତି ବାହେଳଦେବୀ ଜାଣ ।
ଶୁଣିଣ ପରମ ତୋଷ ହୋଇଲେ ଜାନକୀ
ମାରୁତଙ୍କ ଚାହିଁଣ ଯେ ବଚନ ବୋଲନ୍ତି ।
ଯାଅ ବେଗେ କପିଳାସ ଆଣ ଦୁର୍ଗା ସୁତ
ସେ ଅଇଲେ ସ୍ୱାମୀ ମୋର ପାଇବେ ଜୀବତ
ଶୁଣିକରି ମାରୁତ ଯେ ଉଲଗି ହୋଇଲ
ରାମ ନାମ ସୁମରି ଶୂନ୍ୟରେ ଉଡ଼ିଗଲ ।
କପିଳାସପୁରେ ଯାଇ ହୋଇଲ ପରବେଶ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟ ରସ ।
ସହସ୍ରାନନ ସମସ୍ତଙ୍କୁ ମାଇଲକ ଯେଣୁ
ମନେ ବିଚାର କଲା ସେ ହଣ ଖାର ତନୁ ।
ଶ୍ରୀରାମ ଘରଣୀକି ମୁଁ ମୋର ପୁର ନେବି
ତାକୁ ଭୋଗକଲେ ପୁତ୍ରନାତି ପାଶୋରିବି ।
ଏମନ୍ତ ବିଚାର ମନେ କରଇ ଦଶାନନ
ଶ୍ରୀରାମ ଘରଣୀକି ନେବାକୁ କରେ ମନ ।
ବୋଲୁଛନ୍ତି ସଦାଶିବ ଶୁଣ ମୋ ବଚନ
ଯୁଦ୍ଧ ଜୟକରି ସହସ୍ରାମୁଖା ରାବଣ ।
ଅନେକ ସାନନ୍ଦ ସେହୁ ହୋଇଲା ମନର
ହୋଇଲା ରାଜ୍ୟକୁ ଏବେ ଯିବଇଁ ମୋହର ।
ଏମନ୍ତ ବୋଲିଣ ଦୈତ୍ୟ ମନେ ବିଚାରଇ
ସୀତା କାହିଁ ବୋଲିଣ ସେ ଚଉଦିଗେ ଚାହିଁ
ଯାଇଣ ମିଳିଲା ସେହୁ ସୁବଳୟା ଗିରି
ଖଣ୍ଡେ ଦୂରୁ ଦେଖି ତାକୁ କହେ ମନ୍ଦୋଦରୀ
ଜାନକୀଙ୍କ ଚାହିଁଣ ସେ ବଚନ ବୋଲଇ
ସହସ୍ରମୁଖା ଆସୁଛି ଦେଖ ରୁଦ୍ରମୂର୍ତ୍ତି ।
ଶୁଣିଣ ସୀତାୟା ଦେବୀ କହନ୍ତି ବଚନ
ସହସ୍ରେ ବଦନ କେମନ୍ତେ ବହେ ସେ ପୁଣ
ଦେଖିବା ମନ୍ଦୋଦରୀ ଗୋ ତାକୁ ତୁମ୍ଭେ ଜାଣ
ଏମନ୍ତ ବୋଲି ସୀତା ବାହାରେ ହଜେ ପୁଣ
ଦୂରରୁ ଦେଖିଲେ ସେ ବଲଙ୍କା ଦେଶ ଧାଇଁ
ଛାବଗାମୀ ହୋଇଣ ଆସଇ ବେଗେ ହୋଇ

ତାହାର ଆସିବାର ଦେଖିଣ ବେନେ ସଖୀ
ନିଜସ୍ୱ ତେଜ ପ୍ରକାଶ ଆଣି ସେ କରନ୍ତି ।
ମୋତେ ନେବାପାଇଁ ଯେ ଆସଇ ଦୈତ୍ୟପୁଣ
ଏମନ୍ତ ବିଚାର କରନ୍ତି ମନ ମଧ୍ୟେଣ ।
ସହସ୍ରମାଥ ସଖୀ ସନ୍ନିଧେ ଯାଇ ମିଳି
ଦେଖିଲ ଜାନକୀ ପୁଣି ମନ୍ଦୋଦରୀ ବାଳୀ ।
ସୀତାଙ୍କ ନିକଟେ ଯାଇ ମନେ ବିଚାରଇ
ଏହି ହେତୁ ଶ୍ରୀରାମର ଭାରିଯା ଅଟଇ ।
ଏହାକୁ ମୁଁ ଯେବେ ରାଜ୍ୟକୁ ନେଇଯିବି
ତେବେ ପୁତ୍ରନାତିଙ୍କର କଷ୍ଟ ପାଶୋରିବି ।
ପୁଣ ପୁଣ ସୀତାୟାଙ୍କୁ ନିରେଖି ଚାହାଁଇ
ଧନ୍ୟ ଧନ୍ୟ ସଖୀ ବୋଲି ବହୁ ପ୍ରଶଂସଇ ।
ତୋତେ କେତେକାଳ ବ୍ରହ୍ମା ବସିଣ ଗଢିଲା
ସଂସାର ଚନ୍ଦ୍ରା ଗୁଡ଼ିଣ ବ୍ରହ୍ମା ନର୍ଗ କଲା ।
ନୋହିଲେ ଏମନ୍ତ ରୂପ ମଞ୍ଚରେ କି ପୁଣ
ମନ ଚଇତନ ହେଲା ଗଢ଼ିଲେକ ଜାଣ ।
ଧନ୍ୟ ରୂପବତୀ ତୋର ଧନ୍ୟ ଗୋ ବଦନ
ତୋର ଲାଗି କେମନ୍ତେ ମଲା ଗୋ ଦଶାନନ
କୋଟିଏ ଚନ୍ଦ୍ରମା ତୋ ମୁଖକୁ ନୋହେସରି
ତୋତେ ଦେଖିଣ ମଦନ ଯିବ ଅପସରି ।
ଏତେବୋଲି ସହସ୍ରାନନ କାମେ ଭୋଳ ହୋଇ
ସୀତାର ମୁଖକୁ ଚାହିଁ ବଚନ ବୋଲଇ ।
ଆସ ଆସ ସଖୀ ଗୋ ଯିବା ଆମ୍ଭର ପୁରୀ
ସମରେ ନାଶ ଗଲେ ଦଅର ସ୍ୱାମୀ ତୋର
ତୁ ଏବେ ଏଥିରେ ଥାଇ କରିବୁଟି କସ
ମୋହର ଭୁବନକୁ ଯିବା ଗୋ ବେଗେ ଆସ
ଯେତେବେଳକୁଥିଲା ତୋ ତୋତେ ଯେଉଁ ଭୋଗ
ବଧାତା ଆଣି ତୋତେ ଦେଲାତ ଅଇଶ୍ୱର୍ଯ୍ୟ
ଆସ ଆସ ସଖିରେ ବସ ମୋହର କୋଳେ
ରତ୍ନମୟ ପୁର ତୁ ବିଳାସ କର ହେଳେ
ତେଦିଲକ୍ଷ ମହାଦେଈ ଅଛନ୍ତି ମୋହର
ତାଙ୍କ ଉପରେ ଠାକୁରାଣୀ ହେବୁ ତୁ ବିଚାର ।
ତୁ ଯେବେ ନରାଶ ମୋତେ କରିବୁ ସଙ୍ଗାତ
ତୋର ଲାଗି ପ୍ରାଣଘାତ ହେବି ମୁଁ ନିଶ୍ଚିତ ।
ପୁରୁଷ ହତ୍ୟା ଦୋଷ ଲଭିବୁ ଆଗୋ ସଖୀ
ସୁଲଭ ଦଶା ତୋତେ ଦେଇଛି ବିଧାତାହିଁ

ଆଉ କି ସ୍ୱାମି ତୋହର ଜିଇଣ ଆସିବ
ମନେ ହୃଷ୍ଟ ହୋଇ ଗ୍ଲାନଲେ କିସ ହେବ ।
ତାଙ୍କଠାରେ ପ୍ରୀତିଆଶ ଛାଡ଼ରେ ଯୁବତୀ
ମୋହର ସଙ୍ଗରେ ଆରମ୍ଭ କର ରତି ।
ଏତେ କହିଣ ଦୈତ୍ୟ ଯେ ହେଲା ମତିହୀନ
ଆସଆସ ବୋଲିଣ ବଢ଼ାଏ ଦୈତ୍ୟକର ।
ଦେଖିଣ ଜାନକୀ ତାହା କ୍ରୋଧଭରେ କହି
ଯେବେ ମୋର ସ୍ୱାମୀକି ମାରିଲୁ ଦୈତ୍ୟବୁହି
କର ସମର ମୋର ସଙ୍ଗେ ଯୁଦ୍ଧ ଆଜ
ହାରିଲେ ତୋର ପୁରକୁ ଯିବ ଦୈତ୍ୟରାଜ
ସହସ୍ରମୁଖ କହଇ ଶୁଣ ଆଗୋ ସତୀ
ରାବଣ ଆଣିଲା ତୋତେ ଧରି ବଳେଣକ ।
ତାର ସଙ୍ଗେ କମ୍ପା ଯୁଦ୍ଧ ନ କଲୁ ସମର
ମୋସଙ୍ଗେ ସମର କରିବାକୁ ମନ ତୋର ।
ଜାନକୀ ବୋଇଲେ ଶୁଣ ଆରେ ଦୈତ୍ୟବୀର
ଯେତେବେଳେସ୍ୱାମୀଯେ ଜୀବନେଥିଲେମୋର
ପୁରୁଷ ଥିଲେ ସ୍ତ୍ରୀଏ ନକରନ୍ତି ଗୋଳ
ଏବେ ଯୁଦ୍ଧ ମାଇଲୁ ଯେ ସ୍ୱାମୀକି ମୋହର ।
ଶୁଣିଣ ସହସ୍ରାନନ ବୋଲଇ ବଚନ
ଧର ଧନୁଶର ଦେଖ କରିବାକ ରଣ ।
ଶୁଣିଣ ଜାନକୀ ବାସେଳକ ସୁମରିଲେ
ତତକ୍ଷଣେ ବାସେଳ ରଥ ଘେନିଣ ମିଳିଲେ ।
ରଥର ଉପରେ ଯାଇ ବସିଲେ ବଇଦେହୀ
ବାସେଳକ ବୋଇଲେ ସାରଥି ହୁଅ ଯୁଦ୍ଧ ।
ଅକ୍ଷୟେ ଧନୁ କରରେ ଧଇଲେ ଜାନକୀ
ଗୁଣ ଟଙ୍କାର କରନ୍ତେ କମ୍ପେ ବସୁମତୀ ।
ଶୂନ୍ୟରେ ଦେବତାଏ କରନ୍ତି ହରଷ
ଆଜ ନଘଡ଼ ବେଳେ ମୃତ୍ୟୁ ସସ୍ରାନନର ।
ସହସ୍ରାନନ ରାବଣ ପାଦଗତି ଥିଲା
ଜାନକୀ ରଥରେ ଯାଇ ବସିବା ଦେଖିଲା ।
ଧନୁଶର ଧରିବାର ଦେଖିଣ ନୟନେ
ଖଡ୍ଗ ଜୟ ରଥରେ ବସିଲା ତତକ୍ଷଣେ ।
ସହସ୍ର ଭୁଜେ ଧନୁ ଧଇଲା ଦୈତ୍ୟବୀର
ଗୁଣରେ ବସାଇଲା ନେଇଣ ତୀକ୍ଷ୍ଣଶର ।
ମନ୍ତ୍ର ଅଧ୍ୟାପନ କରି ବେଗେ ଛାଡ଼ିଦେଲା
ଦେଖିକରି ଜାନକୀ ଅକ୍ଷୟେ ହୋଣ କଲା ।

ଏବାଣ କରେ ତାହା କଳେକ ନିଧନ
ପୁଣ ହରଷ ଦୈତ୍ୟ ପକାଇ ପାଏ ପୁଣ ।
ଏମନ୍ତ ହରଷ ଦେଖି ମନ ଖେଦ କଲେ
ପଞ୍ଚପଥ ନିରୋଧ ବୋଲିଣ ସେ ବୋଇଲେ ।
ତତକ୍ଷଣେ ପଞ୍ଚପଥ ନିରୋଧ ହେଲା ପୁଣ
ଅକ୍ଷୟେ ହୋଣରୁ ବାଣ ଚଳେ ଘନ ଘନ ।
କେତେବେଳେମେଘାଶରକେତେବେଳେବଜ୍ର
କେତେବେଳେ ହାଣନ୍ତି ସେ ବାବଲ ନାଗତ
କେତେବେଳେମନଖେଦକେତେବେଳେଅଗ୍ନି
କେତେବେଳେ ପବନ କୁହୁକ ଶର ଗର୍ଜି ।
ବେଲୁବେଳ ସମର ହେଲା ଘୋର ଟାଣ
ସ୍ୱର୍ଗ ମଞ୍ଚ ଲୁଚିଏ ଅକ୍ଷୟ ନାମେ ହୋଣ ।
ଦେଖିଣ ସହସ୍ରାନନ ଛେଦେ ଘନ ଘନ
ଶର ବନ୍ଧବାକୁ ତାକୁ ନାହିଁ ଯେ ବିଶ୍ରାମ ।
ସହସ୍ରମୁଖ ହୃଦରେ ନିଷ୍ଟେ ମୁହିଁ ମଲି
ପାର୍ବତୀଙ୍କ ଶାପକୁ ମୁଁ ହେଜୁ ଯେ ନକଲି ।
ଏମନ୍ତ ହରଷ ଦୈତ୍ୟ ସାରଥିକି କହି
ପଳାଇ ଯିବାକୁ ବାଟ ଦେଗେ ଖୋଜ ବୁଝି
ସମରେ ଏହାକୁ ଆମ୍ଭେ ନ ପାରିବା ଜାଣ
ପଳାଇଲେ ସ୍ଥିର ରହିବଟି ସତ ପୁଣ ।
ସାରଥି ବୋଇଲା ଦେବ ମୋହଠାରୁ ଶୁଣ
ପଳାଇ ଯିବାକୁ ବାଟ ଏଥିନାହିଁ ପୁଣ ।
ଚାରିପାଶେ ଶରବାଡ଼ ଉପରେ ନାହିଁ ମେଲ
ନିଷ୍ଟୟେ ଧଇବ ତୋତେ ଏଠାରେ ଛାଡ଼ିଲା
ଶୁଣିଣ ସେ ଦୈତ୍ୟବୀର କ୍ରୋଧରେ ପ୍ରଜ୍ୱଳି
ବଇଦେହୀ ଶର ସେତୁ ପକାଏ ନିବାରି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ହନୁମନ୍ତ ଚଳଗଲା କପିଳାସ ପୁରୀ ।
ଦେଖେ ହରପାର୍ବତୀ ବିଜୟ କରିଛନ୍ତି
ଚରଣେ ଓଳଗି ହୋଏ ପବନ ସନ୍ତତି ।
ତୁମ୍ଭେ ପଚ୍ଛରିଲ କମ୍ପା ଅଇଲୁ ତୁମର
କରଯୋଡ଼ି କହିଲା ଯେ ହନୁମନ୍ତ ବୀର ।
ସହସ୍ରମୁଖା ରାବଣ ରାମଙ୍କ ସଙ୍ଗେ ଯୁଝି
ପୁତ୍ରନାତି ସହିତେ ମାଇଲେ ରାମ ଖୋଜି ।
ଯମହେଲା କାଳ ପାଖ ମାଇଲଟି ଦୈତ୍ୟ
ସେ ବାଣରେ ମୋହ ଏବେହେଲେ ରଘୁନାଥ

ତାଙ୍କର ଘରଣୀ ଅଟେ ଜନକ ଦୁହିତା
ମୋତେବୋଇଲେ କପିଳାସ ପାଖରେ ପୁତ
ପାର୍ବତୀଙ୍କ ନନ୍ଦନ ତୁ ଆଣ ଗଜାନନ
ତେବେ ମୋ ସ୍ୱାମୀ ଦଅର ପାଇବେ ଜୀବନ
ଶୁଣିଣ କୁହ ଶୀଘ୍ର ପୁତ୍ରକୁ କହିଦେଲୁ
ଲଙ୍କାଗଡ଼ ଯାଅବେଗେ ବୋଲିଣ ବୋଇଲୁ
ପିତାତୋର ମୋହଗଲେ ଜନନୀ ଡକାଏ
ଯମ କାଳଫାଶରେ ସମସ୍ତେ ମୋହହୋଏ ।
ଶୁଣି ଗଜାନନ କ୍ରୋଧରେ ଜର ଜର
ମୂଷିକ ବାହନ ପରେ ଚଳେ ଧୀର ଧୀର ।
ଆଗରେ ମାରୁତି ଯାଏ ପଛେ ଗଜାନନ
ପ୍ରବେଶ ହେଲେ ଯାଇ ଲଙ୍କାଗଡ଼େ ପୁଣ ।
ସୁବଳପୁ ଗିରିରେ ବିଜୟ ଯାଇ କଲେ
ଜାନକୀ ଯୁଝନ୍ତି ତେଣେ ଅସୁର ସଙ୍ଗରେ ।
ଜାନକୀ ପାଶେ ଯାଇ ପ୍ରବେଶ ବେଗେହେଲେ
ବଇଦେହୀ ଚରଣରେ ଓଳଗି ହୋଇଲେ ।
ଦେଖିକରି ବଇଦେହୀ ବୋଲନ୍ତି ବଚନ
କସ ଦେଖ ଅଛ ପିତାକୁ ଜଆଅ ପୁଣ ।
ସୈନ୍ୟବଳ ସହିତେ ସବୁଙ୍କୁ ଦେବୁ ଜ୍ୟାଇ
ସୁବଳପୁ ଗିରିରେ ଥିବୁରେ ବାବୁରହି ।
ଅସୁରକୁ ମାରି ମୁହିଁ ଯିବି ଯେତେବେଳେ
ତୋହରମୋହର ଭେଟ ହେବାଯେତେବେଳେ
ଶୁଣିଣ ଗଜାନନ ବେଗେ ଚଳି ଗଲେ
ପିନାକ ଧନୁକୁ ହସ୍ତରେ ସେହୁ ଧଇଲେ ।
ଫାଶ ଅଙ୍କୁଶକୁ ଗୁଣରେ ବସାଇ
ମନ୍ତ୍ରବଳ ସୁମରି ଛନ୍ଦିଲେ ବେଗେ ନେଇ ।
ଗଜାନନ ଶର ଫାଶ କଲେକ ଗମନ
ପଳାଇଲା କାଳଫାଶ ଡରି ବେଗେ ପୁଣ ।
ଜମ୍ବୁପତି ଆଗେଯାଇ ହୋଇଲା ପରବେଶ
ବୋଲେ ଦୈତ୍ୟ ନଣ୍ଡାଳହେ ରାମଙ୍କୁଫାଶ
ସକଳ ସୈନ୍ୟକୁ ମୁଁ ଯେ ମୋହ କରାଇଲି
ଶ୍ରୀରାମ ଶ୍ରୀହରିଙ୍କି ଅଚେତ କରାଇଲି ।
ପାର୍ବତୀ ନନ୍ଦନ ଆସି ମାଇଲା ଅଙ୍କୁଶ
ହୃଦୟ ଘାଉ ହେଲା ଦେହକୁ ଦେଲା ତ୍ରାସ ।
ପଳାଇ ନ ଆସିଲେ ମାରନ୍ତେ ମୋତେଆଜ
ଶୁଣିଣ ଜମ୍ବୁପତି ବୋଲଇ କର କାର୍ଯ୍ୟ ।

ଶ୍ରୀରାମ ଘରଣୀ ପାଶେ ଚଳକୁ ବହନ
କାଳକନ୍ଧୁସି ଶରେ ବସିଣ ଥିବୁ ପୁଣ ।
ଯେତେବେଳେ ଜାନକୀପେଷିବେ ସେହିଶର
ସହସ୍ର ମୁଖାକୁ ବାନ୍ଧ ଆଣିବୁ ମୋ ପୁର ।
ଶୁଣିଣ ସେ କାଳଫାଶ ବେଗେ ଚଳିଗଲା
ସସ୍ର ମୁଖା ରଥପରେ ଯାଇଣ ବସିଲା ।
କାଳଫାଶ ଯହୁଁ ଗୁଡ଼ ପଳାଇଣ ଗଲା
ଶ୍ରୀରାମ ହୃଦରେ ପୁଣ ଚେତନା ବସିଲା ।
ଲକ୍ଷ୍ମଣ ଯେ ଚେତାହେଲେ ଭ୍ରାତ ଚେତାଜାଣ
ଶତ୍ରୁଘନ ଚେତା ହୋଇ ଉଠିଲେକ ପୁଣ ।
ଲଙ୍କେଶ୍ୱର ସଙ୍ଗେ ଚେତା ପାଇଣ ଉଠିଲେ
ଯୁଥପତି ସେନାପତି ଉଠିଣ ବସିଲେ ।
ନଉବାନର ଭାଲୁ ଯେ ଉଠିଲେ ସକଳ
ଉଣ୍ଠାଖି ପାହାନ୍ତି ଯେତେକ ଥିଲେ ବଳ ।
ଶ୍ରୀରାମ ବୁଝିଲେ ରଣ କରେ ସସ୍ରାନନ
ଗଜାନନ ଅଛଇ ରଣ ଭୂମିରେ ପୁଣ ।
ତାର ସଙ୍ଗେ ମାରୁତି ଅଛଇ ଉଭାହୋଇ
ଶର ଆଚ୍ଛାଦରେ ଆକାଶ ନ ଦିଶଇ ।
ଦେଖିଣ ଶ୍ରୀରାମ ଧୃଷି ମନରେ ବିଚାରିଲେ
ଅଚେତା ହେଲୁଁ କେହୁ ଯୁଦ୍ଧକରେତା ଭୁଲେ
ଏହି ସମୟରେ ଆସି ମିଳିଲା ମାରୁତି
ଶ୍ରୀରାମ ଚରଣେ ଯାଇ ଓଳଗିଲା ଧାତି ।
ଶ୍ରୀରାମ ପଚାରିଲେ କହୋ ପବନ କୁମର
ସସ୍ରାନନ ସଙ୍ଗେ କେହୁ କରୁଛି ସମର ।
ମାରୁତି ବୋଇଲେ ଦେବ କାଳଫାଶ ମାରି
ସମସ୍ତଙ୍କୁ ମୋହକଲା ଶରରେ ତାହାରି ।
ସମସ୍ତେ ଅଚେତା ହେଲେ ନ ରହିଲେକେହି
ଏକମାତ୍ର ସେଥିରୁ ଉବୁରି ଗଲି ମୁହିଁ ।
ମୋତେ ଦେଖିଜାନକୀ ଅନେକ ଶୋକକଲେ
ଶୋକ ଦେଖି ବାସେକ ଯେ ମିଳିଲା ଆଗରେ
ଅନେକ ପ୍ରକାରେ ତାଙ୍କୁ ହର୍ଷ କରାଇଲେ
ଜୟ ବିଜୟ ରଥ ଅଧୟୁ ହୋଣ ଦେଲେ ।
ଆପଣେ ସାରଥି ତହିଁ ହୋଇଲେ ବାସେକ
ଶ୍ରୀରାମର ହସ୍ତେ ନ ମରଇ ନିଶାଚର ।
ତୁମ୍ଭର ହସ୍ତେ ମରିବ କହି ତୁମ୍ଭେ ରଣ
ଆସି ସହସ୍ରାନନ କହିଲା ବଚନ ।

କ୍ରୋଧରେ ଜାନକୀ ଯାଇ ରଥରେ ବସିଲେ
ଅକ୍ଷୟେ କ୍ଷୋଣ ଧରି ଶର ଯେ ପେଷିଦେଲେ
ବାସେଳଯେତେବେଳେ ମୋତେବୃହିଁଣପୁଣ
କପିଳାସ କନ୍ଦରକୁ ଚଳ ତୁ ବହନ ।
ପାର୍ବତୀ ନନ୍ଦନ ଯେ ଅଟେ ଗଜାନନ
ସେ ଆସିଲେ ସ୍ୱହସ୍ତେ ଯେ ପାଇବେ ଜୀବନ
ତାଙ୍କଠାରୁ ଶୁଣିଣ ବେଗରେ ଚଳଗଲା
ଗଜାନନ ଘେନି କରି ଏଠାରେ ମିଳିଲା ।
ପିନାକ ଧନୁରେ ଗୁଣ ଦେଇଣ ବହନ
ଭୋ ଧରଣୀକୁ ନମସ୍କାର କରି ସେ ପୁଣ ।
ନାରାଚ ବନ୍ଧନେ କାଳଫାଶ ପଳାଇଲା
ଚେତା ପାଇବାରୁ ଗହଳଠାରେ ହେଲା ।
କଥା ହୁଅନ୍ତେ ଶ୍ରୀରାମ ମାରୁତି ସଙ୍ଗର
ସୁଗ୍ରୀବ ବିଭୀଷଣ ଅଙ୍ଗଦ ସୁଷେଣ ବୀର ।
ସମସ୍ତେ ମିଳିଲେ ଆସି ଶ୍ରୀରାମର ପାଶ
ଭରତ ଶତ୍ରୁଘ୍ନ ଯେ ଜାଣିଲେ ସନ୍ଦେଶ ।
ଏମନ୍ତ ସମୟେ ହେଲ ହେଲା ନବଘଡ଼
ବିଶାଖାର ତନୁଜ ଗର୍ଜ୍ଜଇ କରି ରଡ଼ ।
ତାହାର ଗର୍ଜ୍ଜନ ଦେଖି ବୋଇଲା ବାସେଳ
କାଳ କକୁର ବିନ୍ଧ ଗୋ ଜନକ ଦୁଲାଳ ।
ଉଠିଲେଣି ସୈନ୍ୟବଳ ସ୍ୱାମୀ ଯେ ବିଅର
ମାର ଏହି ଅସୁରକୁ ଯିବା ନିଜପୁର ।
ଶୁଣିକରି ଜାନକୀ ମନର ହରଷରେ
କାଳକକୁର ଶରକୁ ବସାଇ ଗୁଣରେ ।
ଆକର୍ଣ୍ଣ ପରିଯନ୍ତେ ଟା ଆଣିଲେ ଓଟାରି
ମନ୍ତ୍ର ଦେଇ ଶରକୁ ଯେ କହିଲେ ଡିଆରି ।
ସହସ୍ରମୁଖୀ ରାବଣ କରି ତୁରେ ନାଶ
ଶିର ଦୁଇଫାଳ କରି ନ ରଖ ତୁ ଶେଷ ।
ଏତେବୋଲି ଶରକୁଯେ ବେଗେ ଛାଡ଼ିଦେଲେ
ନିବିଡ଼ ଅନ୍ଧାର କରି ଚଳେ ଶର ଖରେ ।
ଦେଖି ସହସ୍ରାନନ ଅନେକ ଶର କଲା
କେବେହେଁ କାଳଶର ନିବାରି ନପାରିଲା ।
ଦୁଇ ଫାଳ କରି ଶିର ଦେଲା ପୁଣ
ମଲାବେଳେ ଗର୍ଜ୍ଜନ କରଇ ଦୈତ୍ୟରାଣ ।
ମେଘ ଘଡ଼ଘଡ଼ି ଯେହ୍ନେ ଆଷାଢ଼ ମାସରେ
ତେସନକ ଶୁଭେ ସ୍ୱର୍ଗ ମର୍ତ୍ତ୍ୟ ତିନପୁରେ ।

ଦେବତାଏ ଶୂନ୍ୟେ ଥାଇପୁଷ୍ପ ବୃଷ୍ଟି କଲେ
ଦୁଇଫାଳ ହୋଇଦୈତ୍ୟ ପଡ଼ି ମରିଗଲେ ।
ଜୟ ଶଙ୍ଖ ବଜାଇଲା ବାସେଳ ସାରଥି
ଜୟ ବିଜୟ ରଥକୁ ଲେଉଟାଏ ଧରି ।
ଝଟକ ବିଜୁଳି ପ୍ରାଏ ରଥ ଚଳିଗଲା
ଜାନକୀ ବିଶ୍ରାମ ସ୍ଥାନେ ଯାଇଣ ମିଳିଲା ।
ରଥରୁ ଓହ୍ଲାଇ ବେଗେ ଅଇଲେ ବୈଦେହୀ
ବିଜଟା ମନ୍ଦୋଦରୀ ଆସିଣ ଘେରିଯାଇ ।
ମାର୍ଜନା ମର୍ଦ୍ଦନ କରି ସ୍ନାନ କରାଇଲେ
ଅମଳାଣ ଶାଢ଼ୀ ଜାନକୀଙ୍କୁ ପିନ୍ଧାଇଲେ ।
ଯାନଘେନି ବାସେଳ ଯେ ବେଗେ ଚଳିଗଲା
ପାର୍ବତୀ ସମ୍ମୁଖରେ ଦେଇ ଫେରିଣ ଅଇଲା ।
ଗଜାନନ କୁମରକୁ ଡ଼ାକିଣ ଜାନକୀ
ରଥର ମଧ୍ୟରେ ତାଙ୍କୁ ରଖାଇଲେ ନିକି ।
ମନ୍ଦୋଦରୀକି ବୋଲେ ଅମୃତ ଲଡ଼ୁ ଆଣ
ଗଜାନନ କୁମର ମୋ କରିବ ଭୋଜନ ।
ଶୁଣିକରି ମନ୍ଦୋଦରୀ ବେଗେ ଆଣିଦେଲା
ସନ୍ତୋଷରେ ଗଜାନନ ଭୋଜନ ସାରିଲା
ଓଳଗ ମେଲାଇ ବେଗେ ଗଲା ଧାଡିକାର
ପ୍ରବେଶ ହୋଇଲା ଯାଇ ଶ୍ରୀରାମ ସମ୍ମୁଖ ।
ସ୍ତୁତି ଭାଇଙ୍କି ଓଳଗି ମେଲିଏ କୁମର
ମୂଷିକ ବାହନ ଚଢ଼ି ଗଲା ନିଜପୁର ।
କପିଳାସ କନ୍ଦରେ ହୋଇଲା ପରବେଶ
ଜନନୀ ଆଗରେ କଥା କହିଲା ସମସ୍ତ ।
ଅସୁରକୁ ଜନନୀ ମାଇଲେ ତହିଁ ପୁଣ
କାଳଫାଶ ଉତୁରାଇ ଅଇଲି ମୁଁ ଜାଣ ।
ଶ୍ରୀରାମ ସୁଦ୍ଧାଇ ସକଳ ସୈନ୍ୟ ତୁଳେ
ନର ବାନର ଯେ ଚେତା ପାଇଲେ ସକଳେ
ଅନେକ ଗଉରବ ଜନନୀ ମୋତେ କଲା
ମାର୍ଜଣା କରାଇ ମୋତେ ସ୍ନାନ କରାଇଲା ।
ଅମଳାନ ବସନ ଦେଲା ଯେ ମୋତେ ଆଣି
ଅଳଙ୍କାର ଖଞ୍ଜିଲା ଶିରରେ ମୋର ପୁଣି ।
ଭୁଞ୍ଜିବାକୁ ଅମୃତ ଲଡ଼ୁ ସେ ମୋତେଦେଲା
ତୋର ଜନନୀକ ପାଇଁ କହିବୁ ବୋଇଲା ।
ଦେବତାଙ୍କ ପାଇଁ ମୋର ଏତେ କଷ୍ଟ ପୁଣ
ପୁଅ ଶୁଣ ସୁଝିଲୁରେ ଯାଅ ଗଜାନନ ।

ତୁମର ଆସିଣ ତୋର ସମ୍ମୁଖରେ କହିଲା
ପୁତ୍ର ମୁଖୁଁ ଶୁଣି ତୋ ଆନନ୍ଦ ମନ ହେଲା ।
ପାର୍ବତୀ ବୋଇଲେ ଦୈତ୍ୟ ମାରଠାକୁରାଣୀ
ନିଜସ୍ଥାନେ ପ୍ରବେଶ ହୋଇଲେ ଆସିପୁଣି ।
ସେଥିଉତ୍ତାରୁ କଥା ଯେ କେମନ୍ତେ ହୋଇଲା
ସେ କଥା ଶୁଣି ମନସନ୍ତୋଷ ହେବ ପରା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ହେମବନ୍ତ
ହନୁମନ୍ତଠାରୁ ପୁଣି ଶ୍ରୀରାମ ଶୁଣନ୍ତ ।
ଜାମ୍ବବକୁ ପଚାରିଲେ କମ୍ଭୁତ କଥା ଏହି
ଜାମ୍ବବ ସୁଷେଣ ବୋଲେ ଶୁଣମନଦେଇ ।
ପାର୍ବତୀ ଶାପରେ ତାର ସ୍ତ୍ରିୟ ହସ୍ତେ ମୃତ୍ୟୁ
ଈଶ୍ୱରଙ୍କ ବରରେ ଅଜରାମର ବପୁ ।
ଯମର ବରରେ ତାହାର ବଂଶ ନଶେପି
ଜନ୍ତୁପତି କହିଥିଲେ ହୋଇ ତାକୁ କୋପି ।
ବନାଦୋଷେ ଯୁଦ୍ଧକଲେ ମରିବେ ତୋରବଂଶ
ସ୍ତ୍ରୀ ସଙ୍ଗେ ଯୁଦ୍ଧକଲେ ତୁମ୍ଭ ସିବୁନାଶ ।
ଏତେକହି କାଳଫାଶ ଦେଲେ ଜନ୍ତୁପତି
ବୋଇଲେ କାଳଫାଶର ଅଛଇ ନଅନ୍ତ ।
ଯାହାକୁ ଭୁଯେତେବେଳେମାରିବୁରେ ଦୈତ୍ୟ
ବ୍ରହ୍ମା ବିଷ୍ଣୁ ଈଶ୍ୱର ହୋଇଲେ ହେବମୃତ ।
ନରବାନର ଦେବତା ସର୍ବେ ନାଶ ଯିବେ
ବନାଦୋଷେ ମାଇଲେ ସେ ଜୀବନ ପାଇବେ
ଏମନ୍ତ ବୋଲିଣ ତାକୁ ନାଶକର କହି
ସେହିକଥା ଏକାବେଳେ ଭେଟିଲାରଘୁସାଇଁ ।
ପାର୍ବତୀ ଶାପ୍ୟଦେବାର ଏବେ ସେ ଭେଟିଲା
ଜନେକ ସୁତାହସ୍ତେ ଅସୁର ଏବେ ମଲା ।
ଶୁଣିଣ ସନ୍ତୋଷମନ ହେଲେ ରାବଣାରି
ବୋଲେ କେମନ୍ତେମଲା ଦେଖିବା ଯାଇକରି
ଶୁଣିଣନର ବାନର ଗଲେ ବେଗେ ପୁଣ
ଗହଳେ ଯନ୍ତାଜନ୍ତୁ ହୁଅନ୍ତି ସର୍ବ ସୈନ୍ୟ ।
ଶ୍ରୀରାମ ରଘୁରାଇ ସୁଗ୍ରୀବ ବିଭୀଷଣ
ହନୁମନ୍ତ ଅଙ୍ଗଦ ଯେ ଜାମ୍ବବ ସୁଷେଣ ।
ମଲ୍ଲ ମହାମଲ୍ଲ ସେନାପତି ଯୂଥପତି
ପାଦାନ୍ତି ରଥିବଳ ରାଜାଏ ଚଳିଯାନ୍ତି ।
ସହସ୍ରମୁଖା ରାବଣକୁ ସମସ୍ତେ ଦେଖିଲେ
ଦୁଇଫାଳ ହୋଇ ସେ ପଡ଼ିଛି ଦୁଇଠାରେ ।

ରାମତାଳ ହରିବୋଲ ଶବ୍ଦ ଉଚ୍ଚେ କଲେ
ରାମତାଳ ବଜାଇଣ ହୁଳହୁଳି ଦେଲେ ।
ଏହି ସମୟେ ବେଳ ଚଉଦ ଦଣ୍ଡ ପୁଣ
ସକଳ ସୈନ୍ୟଙ୍କୁ ଆଜ୍ଞାଦେଲେ ରାମରାଣ ।
ବୋଇଲେ ସୁବଳଯ୍ୟା ସମସ୍ତେ ତୁମ୍ଭେ ଚଳ
ନିତ୍ୟକର୍ମ ସାରିଣ ଦେହକୁ ସୁସ୍ଥ କର ।
ଶୁଣିଣ ସକଳ ସୈନ୍ୟ ବେଗେ ଚଳିଗଲେ
ନୃତ୍ୟଗୀତ କରିଣ ବାଜଣା ବଜାଇଲେ ।
କେହୁନାଚେ କେହୁଡାକେ ମାରଲ ଭଉଁରି
ଅଣ୍ଡଚରୀ ମାରିଣ କେ ଫରି ଖଣ୍ଡାକରି ।
ଘଣ୍ଟି ଘାଘୁଡି ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ଚଳିଲେ ସକଳ ବଳ ହୋଇଣ ଆନନ୍ଦ ।
ସୁବଳଯ୍ୟା ଗିରିରେ ସମସ୍ତେ ଯାଇହେଲେ
ଦେବ ନଦୀରେ ପଶି ସ୍ନାନ ସର୍ବେ କଲେ ।
ରାଜାବଳ ସମସ୍ତେ କରିଲେକ ରନ୍ଧଣା
ହାତିଘୋଡ଼ା ସମସ୍ତେ ଖାଇଲେ ଘୃଣିଦାନା ।
ଫଳମୂଳ ଭୋଜନ ବାନରବଳ କଲେ
ଅମୃତ ପ୍ରାଏ ଭୁଞ୍ଜିଣ ସର୍ବେ ତୋଷହେଲେ
ଯେଝା ସ୍ଥାନରେ ଯାଇଣ କଲେକ ଶୟନ
ଏଥୁ ଅନନ୍ତରେ ଶୁଣଦେବୀ ତୁମ୍ଭେ ପୁଣ ।
ସମସ୍ତଙ୍କୁ ବୁଦ୍ଧି ଦେଇ ଶ୍ରୀରାମ ରଘୁରାଇ
ସୁଗ୍ରୀବବିଭୀଷଣ ଅଙ୍ଗଦ ହନୁସଙ୍ଗେ ରହି ।
ଅତି ସମ୍ଭ୍ରମରେ ବିଜୟେ ଶ୍ରୀରାମ ରାଣ
ଘଣ୍ଟମାଦଳ ଭୁଷୀକାହାଳୀ ବାଜେ ଜାଣ ।
ନୃତ୍ୟଗୀତ ଆନନ୍ଦ ହୁଅଇ ନାନା ଛନ୍ଦେ
ମଦନ ମୋହନ ଯେସନ୍ତେ ବିଜେହଉଦାନ୍ତେ
ନରେନ୍ଦ୍ର ରୂପରୁ ଯେସନ୍ତେ ଆସନ୍ତି ବିଜେକରି
ସେରୂପେ ବିଜେକଲେ କୋଦଣ୍ଡ ରୂପଧାରୀ ।
ମଦନମୋହନ ଯେସନ୍ତେ ଦେଉଳେବିଜେକରି
ସୁବଳଗିରି ରାମ ଯେ ରୂପେ ଯାନ୍ତି ଚଳି ।
ସିଂହାସନେ ବିଜେକଲେସକଳଲୋକେଫେରି
ଚରଣେ ଦଣ୍ଡ ପ୍ରମାଣ ଯେଉଁ ରୂପେକରି ।
ସେ ରୂପେ ରାମ ଚରଣେ ବଳରାମ ଦାସ
ରଘୁନାଥଙ୍କ ଚରଣେ ଉଳଗେ ବିଶେଷ ।
ଦୁଇ ରଜମାରେ ସୁବଳଯ୍ୟାରେ ରହିଲେ
ରଥରୁ ଓହ୍ଲାଇ ରାମ ପାଦ ଲାଗି ହେଲେ ।

ଭରତ ଶତ୍ରୁଘନ ଲକ୍ଷ୍ମଣ ବେଗେ ଗଲେ
ଦେବ ନଦୀରେ ସ୍ନାହାନ ସମସ୍ତେ ସାରିଲେ ।
ତିଳକ ଲଗି ହୋଇ ମଣୋହି ସର୍ବେ କଲେ
ଜନେକ ଦୋହିତା ଯେ ଆଣି ପରଷିଲେ ।
ଆଞ୍ଚୋବନ କରିଣ ସେଠାରୁ ଚଳିଗଲେ
ଷାଢ଼ୀଶ୍ୱର ମାନଙ୍କରେ ଯାଇଣ ମିଳିଲେ ।
ହନୁମନ୍ତ ଅଙ୍ଗଦ ଜାନକୀ ପରଷିଲେ
ଭୋଜନ ସାରିଣ ଦୁହେଁ ତହୁଁ ଚଳିଗଲେ ।
ଜାନକୀ ଭୁଞ୍ଜିଣ ବେଶ ହୋଇଲେ ତୁରିତ
ରତ୍ନ ପଲଙ୍କରେ ଦେଖା ହେଲେ ଉପଗତ ।
ଏହି ସମୟରେ ପୁଣ ଜାମ୍ବୁବ ସୁଷେଣ
ଶ୍ରୀରାମ ଛାମୁରେ ଆସି କଲେ ଦରଶନ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମନ୍ତ୍ରୀବର
କେତେ ସୈନ୍ୟ ମାଇଲା ସେ ବଶାଖା କୁମର
ସୁଷେଣ ବୋଇଲେ ଦେବ ଶୁଣ ମୋ ବଚନ
ପ୍ରଥମ ଦିନ ଯୁଦ୍ଧରେ ଷାଠିଏ ପଦ୍ମ ଜାଣ ।
ଦ୍ୱିତୀୟ ଦିନରେ ମଲେ ନଅ ଯେ ସାଗର
ତୃତୀୟ ଦିନଯୁଦ୍ଧ ହୋଇଲା ମୋହାଘୋର ।
ଚତୁର୍ଥ ଦିନ ଦୁଇ ଲକ୍ଷ୍ୟ ହୋଇଲେ ହତ
ପାଞ୍ଚଦିନେ ସମସ୍ତେ ହୋଇଲେ ମୋହଗତ ।
ଶୁଣିଣ ଶ୍ରୀରାମ ମନେ ବିରସ ହୋଇଲେ
ମୋର ପାଇଁ ଯିବା ଏତେ ଜୀବ କ୍ଷୟ ଗଲେ ।
ସୁଷେଣ ବୋଇଲେ ଦେବ ଶୁଣ ମୋ ଉତ୍ତର
ଯୁଦ୍ଧରେ ଦେବତାଏ ଜୀଆଇଦେଲେ ବଳ ।
ପଞ୍ଚଦିନେ ଗଜାନନ ଏଥି ବିଜେ କଲେ
ତୁମ୍ଭ ଚରଣୀଙ୍କ ବୋଲେ ସବୁ ଜୀଆଇଲେ ।
ନର ବାନର ବାରପଦ୍ମ କାଟିଛି ସହସ୍ରାନନ
ଦୁଇଖଣ୍ଡ ହୋଇଣ ପଡ଼ିଛନ୍ତି ସର୍ବେ ପୁଣ ।
ଜୀଆଇ ଦେବାକୁ ଯେ ଦଇବ ମନାକଲା
ଶ୍ରୀରାମ ଆଗରେ ଆମ୍ଭେ ଜୀଆଇବା ବୋଇଲା
ସମସ୍ତେ ଜୀଇବେ ଆଜ ପ୍ରହରେ ସେ ପୁଣ
ଲକ୍ଷେ ବାନରହିବେତୁମ୍ଭେଦେଖିବାକୁ ଜାଣ ।
ଆଉର କଥାଏ ଦେବ ଅଛି ଏବେ ଶୁଣ
ଯେତେବେଳେକାଳଫାଶ ଧଇଲାଦୈତ୍ୟଜାଣ
ତୁମ୍ଭ ଭାଇ ଶତ୍ରୁଘନ ସେତେବେଳେ ପୁଣି
ହସ୍ତରେ କାଳଫାଶ ମୋକ୍ଷ କରିବ ଜାଣି ।
ମୋହପଡ଼ିଲେ ସମସ୍ତେ ଦୈତ୍ୟଜାନକୀ ନେବ
ବଳବନ୍ତ ପଣ କଲେ ଜାନକୀ ପ୍ରାଣ ଯିବ ।
ଏମନ୍ତ ବଚ୍ଚର ସେ ଉପାୟ ପୁଣ କଲେ
ମନଭେଦ ଶରକୁ ସେ ଗୁଣରେ ବସାଇଲେ ।
ଛାଡ଼ିଦେଲ ଶରବାଡ଼ ହୋଇଲାକ ପୁଣ
ପଞ୍ଚପଥ ରୁନ୍ଧଅଛି ବୃରପାଖେ ବାଟନାହିଁଜାଣ
କେମନ୍ତେ ଯେ ଶୁକ ମନ୍ତ୍ରୀ ଏଠାକୁ ଆସିବେ
ମନ୍ତ୍ର ଲୋକଙ୍କୁ ଆସିଲେ ଜୀଆଇଣ ଦେବେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁକହେମନ୍ତୀ ଦୁଇ
ହନୁମନ୍ତ କ ରୂପେ ଯେ କପିଳାସ ଯାଇ ।
ଗଜାନନ କେଉଁପ୍ରାଏ ଏଠାକୁ ଅଇଲେ
ବାସେଳକରୂପେ ରଥନେଇଣ ତାଙ୍କୁ ଦେଲେ
ସୁଷେଣ ବୋଇଲେଦେବ ତୁମ୍ଭଭାଇକ ପତ୍ର
ସେତୁବନ୍ଧ ଉପରେ ରଖିଲେ ଗୁପ୍ତଦ୍ୱାର ।
ସେହିବାଟେ ଏମାନେ ଯେ ଯାଇଣ ପୁଣଗଲେ
ଶ୍ରୀରାମ ବୋଇଲେଶୁକଆସିବେ ସେ ବାଟରେ
ରଜନୀ ପାଇଲେ ଶରବାଡ ଫିଟାଇବା
ସୈନ୍ୟବଳ ଆଜ ନିଶି ନିଶ୍ଚିନ୍ତେ ଶୁଆଇବା
ଶୁଣିଣ ଜାମ୍ବୁବ ଯେ ସୁଷେଣ ଚଳିଗଲେ
ନିଜ ଆଶ୍ରମରେ ଯାଇ ଶୟନ ସେହି କଲେ ।
ସେଠାରୁ ଉଠିଣ ଗଲେ ଦଶରଥ ସୁତ
ପଲଙ୍କ ପରେ ବିଜେ କଲେକ ତୁରିତ ।
ଜାନକୀ ବୋଇଲେ ଗୋ ବଡ଼ କାର୍ଯ୍ୟ କଲ
ସୈନ୍ୟେକର ଶତ୍ରୁକୁ ଯେ ଶର ପକାଇଲ ।
ରାବଣକୁ କମ୍ପାଇ ନ ମାଇଲ ଯେତେବେଳେ
ଏତେ ଦୁଃଖ କମ୍ପାଇଗୋ ସହିଲ ଦେହରେ
ଜାନକୀ ଘେନି ଶ୍ରୀରାମ ପଲଙ୍କେ ପହୁଡ଼ି
ଏଥୁ ଅନନ୍ତରେ ଯେ ରଜନୀ ସାତ ଘଡ଼ି ।
ଯୋଗିନୀଗଣ ପିତୃଶୁଣି ଘେନି ବାସେଳ ଚଳିଲା
ରଣଭୂମିରେ ଯାଇ ପ୍ରବେଶ ହୋଇଲା ।
ରକ୍ତମାଂସ ଖାଇ ଦୈତ୍ୟଙ୍କୁ କଲେ ଭସ୍ମ
ନର ବାନର ଭାଲୁଙ୍କୁ କଲେ ଯେ ସଳଖ ।
ଗଣ୍ଡି ମୁଣ୍ଡ ଯୋଡ଼ିଣ ଏକଠାବ କଲେ
ସୁବଳସ୍ୱା ଗିରିକ ସମସ୍ତେ ଚଳିଗଲେ ।
ଦେବ ନଦୀରେ ପଶି କଲେକ ସ୍ନାହାନ
ହସ୍ତରେ କାଲି ସ୍ୱର୍ଗଯିବା ଆମ୍ଭେ ପୁଣ ।

ଏଥୁଅନ୍ତେ ସ୍ୱର୍ଗରୁ ଅଇଲେ ଶୁକ୍ରଦେବ
ଗୃପତ ବାଟରେ ଆସି କଲେ ରଣଠାବ ।
ମୃତ୍ୟୁ ସଞ୍ଜିବନୀ ପାଣି ନେଇଣ ସିଞ୍ଚିଲେ
ତହିଁପରେ ଅମୃତବୃଷ୍ଟି ନେଇ କଲେ ।
ଜୀବ ପାଇଣ ଯେ ସୈନ୍ୟବଳ ଉଠିଲେ
ସୁବଳ ଗିରିକି ସେ ବହନ ଚଳିଗଲେ ।
ଦେବ ନଦୀରେ ପଶି କଲେକ ସ୍ନାହାନ
ବେଗେ ଯାଇ ମିଳିଲେ ଯେଯାହାର ସ୍ଥାନ ।
ରତ୍ନକରି କୁଶଳରେ ଭୁଞ୍ଜିଣ ଶୋଇଲେ
ନରବାନର ହାଲୁ ଯେ ଗୁଡ଼ିଏ ରହିଲେ ।
ଶୁକ୍ରମନ୍ତ୍ରୀ ଚଳିଲେ ସ୍ୱର୍ଗପୁରକୁ ପୁଣ
କେତେବେଳେରଜନୀ ପାଇଣ ହେଲାଦିନ ।
ଦେବଆଳେ ଶଙ୍ଖ ଶବଦ ଯହୁଁ ହେଲା
ଉଠିଲେ ନରବାନର ଗହଳ ଲାଗିଲା ।
ରାଜାମାନେ ଉଠିଲେ ଉଠିଲେ ଦାଶରଥି
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁ ଉଠି ।
ନିଦ୍ରା ତେଜି ଶ୍ରୀରାମ ଉଠିଲେ ପଲଙ୍କରୁ
ଭିନ୍ନଭାଇ ଉଠିଣ ଅଇଲେ ଶଯ୍ୟାରୁ ।
ନଦୀର କୂଳକୁ ସମସ୍ତେ ଚଳିଗଲେ
ନିତ୍ୟକର୍ମ ସାରିଣ ସ୍ନାହାନ ଯେ ସାରିଲେ ।
ଅମଳାନ ବେନା ପିନ୍ଧିଲେକ ରାମାରାଣ
କନକ ମୃଗ ଚର୍ମେ ବସିଲେ ଆପଣ ।
ବିଭୀଷଣକୁ ଚାହିଁଣ ବୋଲନ୍ତି ରୂପଧାରୀ
ଶତ୍ରୁକ୍ଷୟ ଗଲାଯେ ଏବେ ତୋହରି ।
ରାଣୀମାନଙ୍କୁ ଘେନିଣ ନଗରକୁ ଯାଅ
ଦ୍ୱାରପୁର କରୁଥିବ ଅବା ବଣାଖାର ପୁଅ ।
ଶୁଣିକରି ବିଭୀଷଣ ବେଗେ ଚଳିଗଲା
ମନ୍ଦୋଦରୀ ରାଣୀଙ୍କି ସେ ଯାଇଣ କହିଲା ।
ଚାଲ ଆମ୍ଭେ ନଗରକୁ ଯିବାଗୋ ସୁନ୍ଦରୀ
ରାଜ୍ୟର ଲୋକଙ୍କୁ ସେଥି ରଖିବା ଅଯୂକରି ।
ଶୁଣିକରି ମନ୍ଦୋଦରୀ ବେଗେ ଜ ହେଲା
ସପତ୍ନୀମାନଙ୍କୁ ଘେନ ସଙ୍ଗତେ ଚଳିଗଲା ।
ଆପଣାର ନଗରରେ ହେଲା ପରବେଶ
ଘରଦ୍ୱାର ଭଣ୍ଡାର ରଖିଲା ବିଶେଷ ।
ରାଜ୍ୟ ଲୋକମାନଙ୍କୁ ଡ଼କାଇ ରଖିଲା
ଯାହାର ଯେଉଁଠାରେ ପୁଣ ଥିଲା ।

ରାଜ୍ୟଲୋକେ ଲୁଚିଥିଲେ ଅଣାଇଲା ବେଗ
ସମସ୍ତଙ୍କୁ ରଖାଇ କହିଲା ସବଭାବ ।
ଚିନ୍ତା ସମସ୍ତେ ଛାଡ଼ିଣ ନିଶ୍ଚିନ୍ତେ ରହିଲେ
ସପତ୍ନୀ ରଖାଇ ସ୍ୱାମୀଙ୍କରସଙ୍ଗେ ଚଳେ ।
ସୁବଳ ଗିରିରେ ଯାଇ ହେଲେ ପରବେଶ
ଶ୍ରୀରାମ ଚରଣେ ଯାଇ ଭେଟିଲେ ବିଶେଷ ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ପୁଣି
ଶତ୍ରୁଘ୍ନ ଚାହିଁଣ କହିଲେ ମୃଦୁବାଣୀ ।
ଫିଟାଅ ଶରକାଣ୍ଡ କମ୍ପାଇ ଆଉଥିବ
ଶତ୍ରୁକ୍ଷୟେ ଗଲାତ ସେଥିରେ କେଉଁଭାବ ।
ଶୁଣିଣ ଶତ୍ରୁଘ୍ନ ଯେ କୋଦଣ୍ଡ କରେଧରି
ମନଭେଦ ଶର ମନେ ସୁମରଣା କରି ।
ଫିଟିଗଲା ଶରକାଣ୍ଡ ଦିଶିଲା ଆଲୋକ
ସ୍ୱର୍ଗରୁ ଦେବତାଏ ଅଇଲେ ଲଙ୍କାପୁର
ବ୍ରହ୍ମା ରୁଦ୍ର ଇନ୍ଦ୍ର ମଉଳତ ହୋଇ ମେଳେ
ଅଷ୍ଟବସୁ ନବଗ୍ରହ ଦଶଦିଗପାଳେ ।
ବରୁଣ କୁବେର ଚନ୍ଦ୍ର ସଙ୍ଗେ ଅଗ୍ନି ଆସି
ପବନ ବୃହସ୍ପତି ସମସ୍ତେ ମିଳେ ସେଥି ।
ତାଙ୍କୁ ଦେଖି ଶ୍ରୀରାମ ନମସ୍କାର କଲେ
ସକଳ ଦେବତାଙ୍କୁ ସେ ଚାହିଁଣ ବୋଇଲେ ।
ଆଜ କସ ଅନସ୍ଥ ଅଛୁ ହେ ଦେବବର
ବିଧାତା ବୋଇଲେ ସରିଗଲା କଷ୍ଟମୋର ।
ବୀର ରାବଣଙ୍କୁ ଆପଣତ କଲେ ନାଶ
ଦେବତାଏ ନିଶ୍ଚିନ୍ତେ ବସିଲେ ସ୍ୱର୍ଗଦେଶ ।
ଶ୍ରୀରାମବୋଇଲେମୋରମଲେଯେତେସୈନ୍ୟ
ଦେବବର ବୋଇଲେ ଜୀଇବେ ସର୍ବେପୁଣ
ରଣ ଭୂମିରେ ଲକ୍ଷେ ଅଛନ୍ତି ତୋର ପଡ଼ି
ଦେବଗୁରୁ ଯାଇ ଜୀଆଇବେ ସର୍ବେଲୋଡ଼ି ।
ଶୁଣିକରି ବୃହସ୍ପତି ବେଗେ ଚଳିଗଲେ
ନିକ୍ଷେକ ରିଷକପି ସକଳ ଜିଆଇଲେ ।
ମୃତ୍ୟୁ ସଞ୍ଜିବନୀ ପାଣି ସିଞ୍ଚି ତାଙ୍କଠାରେ
ଜୀବ ପାଇଁଣ ସମସ୍ତେ ଉଠିଲେ ସତ୍ୱରେ ।
ତାହାଙ୍କୁ ଘେନି ଗୁରୁ ଶ୍ରୀରାମ ପାଶୋରିଲେ
ଦେଖିକରି ରଘୁନାଥ ମନେ ତୋଷହେଲେ
ହନୁମନ୍ତ ଅଙ୍ଗଦ ପଚାଶ ଯୂଥପତି
ସମସ୍ତଙ୍କୁ ଡକାଇ କହିଲେ ରଘୁପତି ।

ରଣଭୂମିଯାକ ବୁଲି ଦେଖିଆସ ଯାଇ
କଣାକୁଣା ହୋଇଣ ସଇନ୍ୟ ଥିବେ ତହିଁ ।
ଦେଖିଲେ ନିଆଇ ଆଣିବା ତ ବେଗେ ପୁଣ
ଏତେବୋଲି ଆଜ୍ଞାଦେଲେ କୋଦଣ୍ଡଧାରଣ
ଶୁଣିଣ ଏହା ଯୂଥପତି ସେନାପତି ଗଲେ
ଲଙ୍କାରେ ରଣଭୂମିରେ ବୁଲିଣ ଅଇଲେ ।
ଶ୍ରୀରାମର ସମ୍ମୁରେ କହିଲେ ଆସି ପୁଣ
କଛୁ ନ ଦେଖିଲୁ ଯେ ରଣଭୂମିରେ ଜାଣ ।
ଶୁଣିକରି ଶ୍ରୀରାମ ତାହାଙ୍କୁ ଆଜ୍ଞା ଦେଲେ
କପିରାଜଙ୍କୁ ଯାଇଣ ପଚାର ବୋଇଲେ ।
ଶୁଣିଣ ଯୂଥପତି କପିରାଜାଙ୍କୁ ପୁଚ୍ଛି
ଯେ ଯାହାର ସଇନ୍ୟଙ୍କୁ ଚାହିଁଲେ ନିରେଖି ।
କାହାର କ୍ଷୟ ନାହାନ୍ତି ସକଳ କହିଲେ
ସମ୍ପାଦିଣ ଯୂଥପତି ଫେରିଣ ଅଇଲେ ।
ଶୁଣି ରାଜାମାନଙ୍କୁ ପୁଚ୍ଛିଲେ ଯାଇକରି
ରାଜାଏବୋଇଲେ ସର୍ବସୈନ୍ୟ ଅଛନ୍ତି ଆମ୍ଭରି
ଶ୍ରୀରାମଙ୍କ ଦୟାରେ ସକଳ ବଞ୍ଚିଛନ୍ତି
ରଘୁନାଥ ଥିଲେକ ଆମ୍ଭର କ୍ଷୟେ ଅଛି ।
ଶୁଣିଣ ଯୂଥପତି ଯେ ବେଗେଣ ଅଇଲେ
ଶ୍ରୀରାମଙ୍କର ଆଗରେ ଆସିଣ କହିଲେ ।
ବିଭୀଷଣ ଜଣାଇଲା ଶ୍ରୀରାମ ସମ୍ମୁର
ଗୁଣ ସାଗର ମନ୍ତ୍ରୀ ମାଇଲା ସସ୍ତ୍ର ଶିର ।
ସେ ଆମ୍ଭର କୁଳର ଦେଳକୁ ପୁଣ ଥିଲା
ଶ୍ରୀରାମର ସଙ୍ଗେ ଯୁଦ୍ଧ ନ କର ବୋଇଲା ।
ସେହି ଦୋଷରୁ ତାକୁ ଯେ ମାଇଲା ରାକ୍ଷସ
ଗଣ୍ଡି ମୁଣ୍ଡ ପଡ଼ିଛି ମୋ ଦ୍ୱାରପାଳ ପାଶ ।
ଶାର୍ଦ୍ଦୋଳକୁ କୋପକରି ରାବଣ ମାରିଲା
ତାହାର ଗଣ୍ଡି ମୁଣ୍ଡ ପଡ଼ିଛି ଦେଖ ଭଲ ।
ଶ୍ରୀରାମ ବୋଇଲେ ତାଙ୍କୁ ଘେନି ବେଗେ ଆସ
ଯେବେ ଜପକାରୀ ଅଟନ୍ତି ଆମ୍ଭ ବିଶ୍ୱାସ ।
ଶୁଣି ବିଭୀଷଣ ବେଗେ ଚର ଭେଦ ଦେଲା
ଗୁଣସାଗର ଶାର୍ଦ୍ଦୋଳ ଆଣରେ ବୋଇଲା ।
ତତକ୍ଷଣେ ଚର ଘେନି ଅଇଲେକ ଯାଇ
ଦେଖିଣ ରଘୁନାଥ ବୃହସ୍ପତିଙ୍କି କହି ।
ମୃତ୍ୟୁ ସଞ୍ଜିବନୀ ପାଣି ସିଞ୍ଚି ଦେବ ଗୁରୁ
ଜୀବ ପାଇ ଦୁଇ ଦୈତ୍ୟ ଉଠିଲେ ଭୂମିରୁ ।

ଗୁଣ ସାଗର ମନ୍ତ୍ରୀର ଭାଇ ଯେ ସୁଗୁଣ
ତାହାକୁ ଘେନି ଯୁଦ୍ଧ କଲା ସହସ୍ରାନନ ।
ସସ୍ରାନନ ମରିବାରୁ ବାଟ ନ ପାଇଲା
ଖଡ୍ଗଜୟେ ରଥ ପରେ ପୁଣ ସେହୁ ଥିଲା ।
ଭାଇର ସଙ୍ଗରେ ମିଳିଲା ଆସି ସେହି
ଶ୍ରୀରାମଙ୍କ ଚରଣେ ଓଳଗି ଶୁଅଇ ।
ଶ୍ରୀରାମ ବୋଇଲେ ବାବୁ ଦୁଇ ଭାଇ ଚଳ
ରକ୍ଷ ପୁର ବିଲଙ୍କା ସମ୍ଭାଳ ତୁମ୍ଭେ କର ।
ରାଜା ହେବା ଯାଏ ତୁ ଭଣ୍ଡାର ସମ୍ଭାଳିବୁ
ରାଜ୍ୟର ଲୋକଙ୍କୁ ତୁ ନିଷ୍ଟିନ୍ତ କରାଇବୁ ।
ହାତୀ ରଥ ଘୋଡ଼ା ଆଦ ସାରେଣି ପଦାତି
ସେନାପତି ରଥିଙ୍କୁ ସମ୍ଭାଳ ଯାଇ ଧାତି ।
ସାମନ୍ତ ସେବକ ସମସ୍ତଙ୍କୁ ସମ୍ଭାଳିବୁ
ଦୂର ଯୁବକଲେ ରାବଣ ସଙ୍ଗେ ସଙ୍ଗ ହେବୁ ।
ଶୁଣିଣ ଗୁଣ ସାଗର ଶୁଣ ଦୁଇ ମନ୍ତ୍ରୀ
ରଥର ପରେ ଚଢ଼ିଣ ଚଳିଲେ ଝଟତି ।
ନାବର ବନ୍ଧେ ଯାଇ ହୋଇ ପରବେଶ
କେତୁଆଳକୁ କହିଲେ ରାଜା ଗଲେ ନାଶ ।
ଏତେ କହି ଦୁଇଜଣ ବେଗେ ଚଳିଗଲେ
ବିଲଙ୍କା ଦେଶରେଯାଇ ପ୍ରବେଶ ହୋଇଲେ
ସସ୍ରାନନ ନଗ୍ରରେ ମିଳିଲେ ଯାଇ ବେଗ
ବୋଇଲେ ରାଜାକୁମ୍ଭର ହୋଇଲେ ବିଯୋଗ
ଶ୍ରୀରାମ କୁଳେ ସେହୁ ଅନେକ ଯୁଦ୍ଧ କଲେ
ସୈନ୍ୟବଳ ଶ୍ରୀରାମ ଚିହ୍ନ ଭାଇ ମରିଲେ ।
ଶ୍ରୀରାମ ଘରଣୀ ନାମ ଅଟଇ ଯେ ସୀତା
ରଥେ ବସି ଯୁଦ୍ଧ କଲେ ଜନେକ ଦୁହିତା ।
କାଳ କକୁରି ଶରେ ଦୁଇ ଫାଳ କଲା
କାଲି ନବ ଘଡ଼ିରେ ରାଜା କୁମ୍ଭର ମଲା ।
ଶୁଣିଣ ସକଳ ରାଣୀ କଲେକ ରୋଦନ
ବୋଇଲେ କାହାଇ ଆମ୍ଭେ ରଖିବୁ ଜୀବନ ।
ସୁବେଶବୋଇସବେ ବାହାର ବେଗେ ହେଲେ
ସକଳ ରାଣୀ ଯାଇ ସମୁଦ୍ରରେ ପଶିଲେ ।
ସ୍ୱର୍ଗପୁର ତାହାଙ୍କୁ ହୋଇଲା ପରାପତ
ଦୁଇ ମନ୍ତ୍ରୀ ଆସି ସମ୍ଭାଳ କଲେ ବିତ୍ତ ।
ଭଣ୍ଡାର ନଗର ପୁର ସକଳ ରୁନ୍ଧିଲେ
ସାମନ୍ତ ପାଇକଙ୍କୁ ବୁଝାଇ କହିଲେ ଭଲେ ।

ତୁମ୍ଭେ ଚିନ୍ତା ନ କରିବ କହୁଛନ୍ତି ରାମ
ରାଜା କରିବାକୁ ଆସିବେଟି ସେହୁ ପୁଣ ।
ପରଜା ପାଦାନ୍ତ ରଥିକ ସେ ଡକାଇଲେ
ନିଶ୍ଚିନ୍ତରେ ରହବୋଲି ତାହାଙ୍କୁ କହିଲେ ।
ହାତୀ ରଥ ଅଶ୍ୱ ଯେ ସେବକ ସେବାକରି
ଗୁଣ ସାଗର ରଖିଲ ସବୁ ବୋଧ କରି ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ଶ୍ରୀରାମଚନ୍ଦ୍ର ସୁବେଳ ଗିରିରେ ଅଛନ୍ତି ।
ତେତିଶ କୋଟି ଦେବ ଅଛନ୍ତି ସଙ୍ଗରେ
କନକ ମଣ୍ଡପରେ ବିଜୟ ରଘୁବୀର ।
ବ୍ରହ୍ମା ମୁଖ ଚାହିଁ ପଚାରନ୍ତି ରଘୁସାଇଁ
ବିଲଙ୍କାର ଦେଶତ ନିରେଖ ହୋଇଲଇଁ ।
କି ବିଚାର ଏବେତ କରିବା ପଦ୍ମଯୋନି
ସମ୍ରାଥ ପ୍ରାଣ ତ୍ୟାଗ ହେଲ ରଣ ଭୂମି ।
ପୁତ୍ରନାତି ତାହାରଯେ ସମସ୍ତେ ନାଶଗଲେ
ଜୀବନରେ କେହିଯେ ଗୋଟିଏ ନରହିଲେ ।
ନିଚ୍ଛିଦ୍ର ହୋଇଣ ଅଛି ବିଲଙ୍କା ଭୁବନ
କାହାକୁ ସେଥିରେ ଏବେ କରିବା ରାଜନ ।
ଏକଥା ସଞ୍ଚପି ମୋତେ କହିବ ବିଚାରି
ବ୍ରହ୍ମାଙ୍କ ମୁଖ ଚାହିଁ କହନ୍ତି ରାବଣାରି ।
ବ୍ରହ୍ମଙ୍କର ପାଶରେ ନାରଦ ମୁନି ଥିଲେ
କଥାର ପରିବନ୍ଧେ ଶ୍ରୀରାମଙ୍କୁ କହିଲେ ।
ବୋଲନ୍ତି ହେ ଦେବ ଆହେ ଶୁଣ ରଘୁସାଇଁ
ଏ କଥାକୁ ବିଚାର ନକରହେ ରଘୁସାଇଁ ।
ସେହୁ ରାଜା ହୋଇବଟି ବିଲଙ୍କା ଭୁବନ
ତପସ୍ୟା କରୁଅଛି କାମ୍ୟକ ନାମେ ବନ ।
ବହୁତ କଷ୍ଟରେ ସେହୁ ତପ ଯେ କରଇ
ଜଳ ପବନ ଆହାର କିଛି ତାର ନାହିଁ ।
ବିଲଙ୍କାରେ ତାହାକୁ କରହେ ରାଜନ
ଶୁଣିଣ ପୁଚ୍ଛା କଲେ ଶ୍ରୀ ରଘୁକୁଳରାଣ ।
କହ ବ୍ରହ୍ମଋଷି ସେହୁ କାହାର ନନ୍ଦନ
କେବଣ କୁଳରେ ସେ ହୋଇଛି ଜନମ ।
ଏକଥା ସଞ୍ଚପି ମୋତେ କହ ତପୋଧନ
ଶୁଣିଣ ବୋଲୁଅଛନ୍ତି ବ୍ରହ୍ମାଙ୍କର ସୁତ ।
ମନୁଷ୍ୟ ଏହି ଯୁଗରେ ଯୁଗାନ୍ତକ ଋଷି
ମନରୁ ଜାତ କରିଲେ ତାହାଙ୍କର ଶିଷି ।
ବିଷ୍ଣୁ ସେ ମନରୁ ଜାତକଲେ ଏକ ତନୁ
ଟେଣ୍ଡୁକର ନାମ ତାର ଦେଲ ପଞ୍ଚାନନୁ ।
ସେହୁ ପୁତ୍ର ତାର ଯେ ଅନେକ ତପ କଲା
ସୁର ମୁନି ବୋଲିଣ ପ୍ରତ୍ୟେକ ଜାତ କଲା ।
ତାହାର ମନରୁ ଜାତ ହେଲ ସୁର ମନୁ
ଆଜ ମନ ବୋଲିଣ ହୋଇଲ ତାର ତନୁ ।
ମହା ତପୋଧନ ସେହୁ ଅଟଇ କୁମର
ପବନ ଛନ୍ଦଣ ତପ କାମ୍ୟକ ବନର ।
ବିଲଙ୍କା ରାଜ୍ୟକୁ ସେହୁ ମନେକରି ବାଞ୍ଛା
ସେହି ତପ କରୁଅଛି ଆପଣାର ଇଚ୍ଛା ।
ଏଠାକୁ ରାମଚନ୍ଦ୍ର ଆସିବେ ଯେତେବେଳେ
ନୃପତି ହୋଇବ ସେହି ବିଲଙ୍କା ରାଜ୍ୟରେ
ଏହାଶୁଣି ବୋଲନ୍ତି ଯେ ଜାନକୀର ସାଇଁ
ଏହି ଠାବକୁ ସେହୁତ କେମନ୍ତେ ଆସଇ ।
କିଏ ସେ ଯାଇ ତାହାଙ୍କୁ ଆଣିବ ଏଠାକୁ
କିଏ ସେ ଦେଖିଅଛି ପୁଣି ତପ ସ୍ଥାନକୁ ।
ଏମନ୍ତ ବଚନଯେ ବୋଇଲେ ରାବଣାରି
ଶୁଣିଣ ନାରଦ ଚଳିଗଲେ ବେଗକରି ।
ମନ ପବନ ଦଣ୍ଡରେ ସେହୁ ଆରୋହଣ
କାମ୍ୟେକ ବନରେ ଯାଇ ମିଳିଲେକ ପୁଣ ।
ଦେଖିଲେ ତାପରେ ସୁର ମନୁ ବସିଅଛି
ମନ ପବନ ଛନ୍ଦଣ ଧ୍ୟାନ ସେ କରୁଛି ।
ଦେଖିକରି ନାରଦ ସାନନ୍ଦ ମନ ହୋଇ
ପଞ୍ଚମ ସ୍ୱରେ ଗାୟନ କଲେ ବୀଣା ବାଇ ।
ନ ଶୁଣଇ ସୁର ମନୁ ଧ୍ୟାନେ ମନଦେଇ
ନାରଦଙ୍କ ଚରିତ୍ର କର୍ଣ୍ଣରେ ନ ଶୁଣଇଁ ।
ମୁନି ବୋଲନ୍ତି ତପ ସିଦ୍ଧ ହେଲ ତୋହର
ଏବେ ଆସ ବାବୁ ଭେଟାଇବା ନସ୍କାର ।
ବିଲଙ୍କାର ରାଜ୍ୟରେ ତୁହି ହୋଇବୁ ରାଜନ
ଅତି ଟାଣେ କହନ୍ତି ଯେ ବ୍ରହ୍ମାଙ୍କ ନନ୍ଦନ ।
ନୟନ ଫେଡ଼ି ଚାହିଁଲା ସ୍ୱୟଂ ମନୁ ଶିଷ୍ୟ
ନାରଦଙ୍କୁ ଦେଖିକରି ହୋଇଲ ହରଷ ।
ହସିଣ ବଚନଯେ କହନ୍ତି ବ୍ରହ୍ମା ସୁତ
ବେଗେ ଆସି ବାବୁରେ ସୁବେଳସ୍ଥା ପର୍ବତ ।
ଶ୍ରୀରାମ ରହିଛଇ ସକଳ ଦେବଗଣ
ସହସ୍ରାନନକୁ ଯେ ମାଇଲେ ରାମ ପୁଣ ।

ଦଶଗ୍ରୀବ ଶତେଗ୍ରିବ ସହିତେ ନାଶ ଗଲେ
ଶ୍ରୀରାମଙ୍କ ଠାରେ ଯହୁଁ ଅପରାଧ ହେଲେ ।
ରଘୁନାଥଙ୍କ ଘରଣି ଅଟନ୍ତି ଜାନକୀ
ତାହାଙ୍କୁ ହେରଇ ଯେ ଆଣିଲା ଲଙ୍କପତି ।
ତାହାଙ୍କ ଛଳେ ରାମ ରାବଣ ନାଶ କଲେ
ମିତ ସମୂର୍ଦ୍ଧି ରାମଙ୍କ ସଙ୍ଗେ ଯୁଦ୍ଧ କଲେ ।
ସେହି ଦୋଷରୁ ଶ୍ରୀରାମ ମାଇଲେ ତାହାଙ୍କୁ
ପୁଅ ନାତି ସହିତେ ମାଇଲେ ସମସ୍ତଙ୍କୁ ।
ଶୁଣି କରି ବୈଦସୁତ ଉଠିଲେ ତଡ଼ତି
ନାରଦଙ୍କ ସଙ୍ଗରେ ଅଇଲେ ଶୀଘ୍ରଗତି ।
ନଉ ସହସ୍ର ଯୁଣ ଅଟଇ ତାହା ଦୂର
ଏକମନେ ବେନି ଜଣେ ଅଇଲେ ସତ୍ୱର ।
ସୁବଳ ଗିରିରେ ଆସି ହେଲେ ପରବେଶ
ଦେଖିଲେ ଶ୍ରୀରାମ ସଙ୍ଗେ ଦେବତା ବିଶେଷ
ଏହା ଶୁଣି କହେ ହେମବନ୍ତର ଦୁଲଣୀ
କମ୍ପାଇ ବଲଙ୍କାକୁ କ୍ରୋଧ ମୁନିଙ୍କ ପୁଣି ।
ଏହା ମୋତେ ବୁଝାଇ କହ ହେ ଦେବକାଶି
କେଉଁ ଗୁଣେ ସହସ୍ରାନନ ହୋଇଲା ଦୋଷି
ଶୁଣିଣ ତାହା ସଦାଶିବ ବଚନ ବୋଲନ୍ତି
ଯାହା ପଚାରିଲେ ଶୁଣ ଆଗୋ ହେମବନ୍ତୀ ।
ଏମନ୍ତେ କେତେଦିନ ହୋଇଲା ଅନ୍ତର
ବଲଙ୍କାରେ ରାଜ୍ୟକରେ ସସ୍ରାନନ ବୀର ।
ବଡାଇ ପ୍ରତାପି ସେ ଅଟଇ ଦୈତ୍ୟସାଇଁ
ଦେବ ନର ରାକ୍ଷସ କାହାକୁ ନ ମାନଇ ।
ନାଶକର ଦେବତାଙ୍କ ସଙ୍ଗେ ଯୁଦ୍ଧକଲା
ସକଳ ଦେବତାଙ୍କୁ ସେଠାରେ ଜିଣିଲା ।
ଏମନ୍ତେ ଏକ ଦିନରେ ସରିତାର ସାଇଁ
ତାର ସନଧିକୁ ମନୁଗଲେ ବେଗ ହୋଇ ।
ଦେବଙ୍କର ଆସନରେ ମନୁ ଉଭା ହେଲେ
ଆସନେ ବସିଛି ସସ୍ରାମୁଖକୁ ଦେଖିଲେ ।
ପ୍ରହର ପରିଯନ୍ତେ ସ୍ୱୟଂ ମନୁ ବଳା
ଉଭା ହେଲେ ଗୁରୁ ନକଲା ବିଶାଖାର ବଳା
ଏସନ ରୀତି ଯହୁଁ ଦେଖିଲେ ମନୁରାୟେ
ହୃଦୟେ ତାଙ୍କର ମହାକ୍ରୋଧ ଜାତ ହୁଏ ।
ବୋଲନ୍ତି ଗୁରୁ ଦଇତ ଭେଳ ଭ୍ରଷ୍ଟ ହେଲୁ
ମଣ୍ଡଳରେ ଆମ୍ଭଙ୍କୁ ଚହ୍ନି ନ ପାରିଲୁ ।

ତୁ ଗୁରୁ ଦଇତ୍ୟରେ ଅଟୁ ଦୁରାଚର
ଦେବଙ୍କୁ ଖଟାଇ ଅଛୁ ପଦରେ ତୋହର ।
ରାଜାପଣ କରିବାରୁ ଏତେ ହେଳ ହେଲୁ
ଦେବଋଷି ବ୍ରହ୍ମଋଷି କାହାକୁ ନ ଚହ୍ନିଲୁ
ଏତେ ବୋଲି ମୁନିବର ହୋଇଲେ ବିମୁଖ
ହୃଦପଦ୍ମେ ତାହାଙ୍କର ଉପୁଜିଲା ଦୁଃଖ ।
ସ୍ୱୟଂମନୁ କୁମର ମନେ ସନ୍ତାପ କରିଣ
ବୋଇଲେ ମୁଁ ଏ ରାଜ୍ୟରେ ହେବ ଦଣ୍ଡଧାରୀ
ଏତେକ ବିଚାର କରି ମନେ କ୍ରୋଧ ହୋଇ
କାବେରୀ ବନରେ ତପସ୍ୟା କଲେ ଯାଇ ।
ମହା କଷ୍ଟରେ ତପସ୍ୟା କଲ ମୁନି ଯହୁଁ
ସସ୍ରାନନର ଉଭୁତ ବୁଝିଲା ତହୁଁ ।
ଏବେ ତପ ସିଦ୍ଧ ହୋଇଲାକ ତାହାର
ସଙ୍ଗେ ଘେନି ଆସିଲେ ନାରଦ ମୁନିବର ।
ଏମନ୍ତ ଶୁଣିଣ ବୋଲନ୍ତି ଗଉରି ଯେ ଦେବୀ
କଥାଏ ପଚାରିବି କହ ହେ ମୋତେ ବେଗି
ଯେତେବେଳେ ବିଭୀଷଣ ଶ୍ରୀରାମ ଶରଣ
ହନୁମନ୍ତ କହିଲା ଯେ ସୀତାର ଆଗେଣ ।
ବିଭୀଷଣକୁ ଶରଣ ରଖି ରଘୁନାଥ
ଲଙ୍କାରେ ନୃପତି କରି ବାନ୍ଧିଲେ ମୁଣ୍ଡେପାଟ
ଯେତେବେଳେ ସସ୍ରାନନ ରାମସଙ୍ଗେ ଯୁଝି
ତେତେବେଳେ ଶ୍ରୀରାମ ମନରେ ସତ୍ୟମଣ୍ଡି
ବୋଇଲେ ସତ୍ୟ ଯେ ମୁହିଁ କହୁଛି ବଚନ
ଯେ ଯାହାକୁ ମାରିବ ସେରାଜ୍ୟରେ ରାଜାପୁଣି
ସହସ୍ରାନନକୁ ଯେହୁ କରିବଟି ନାଶ
ସେ ରାଜ୍ୟରେ ରାଜା ହେବ ମୁଁ କହିଲି ସତ୍ୟ
ରାଜାହିଁ ନୋହିଲେ ସେହି ରାଜ୍ୟହିଁ କରିବ
ମୋହର ଅଧିକାର ସେଥିରେ ନଥିବ ।
ଏବେ ତାହାକୁ ଯେ ମାଇଲେକ ବଇଦେହୀ
ସେ ମୁନିବରଙ୍କୁ ରାମ କମ୍ପାଇ ଅଣାଇ ।
ଈଶ୍ୱର ବୋଇଲେ ସେ କଥା ହେବା କିସ
ସ୍ୱୟଂ ମନୁସୁତ ଶୁଣି ବଶ ହୋଇ ନାହିଁ ।
ବିଭୀଷଣ ଦୋହିତା ଅଟଇ ନବ ଯୁବା
ବୟସ ବାରବରଷ ହୋଇନାହିଁ ବଶ ।
ସ୍ୱୟଂ ମୁନି ବାଡ଼ ଅରେ ନୋହିବେ ନୃପତି
ବଶ ହୋଇନାହିଁ କେମନ୍ତେ ହେବ ନପତ

ଏଥି ପ୍ରକାଶୁ ରାମ ଶୁଣାଇଲେ ମୁନିରାଜ
ସକଳ ଦେବଥାଇଁ କରିବେ ବଡ଼ କାର୍ଯ୍ୟ ।
ଶୁଣିଣ ରାଜଋଷି ଯେ ମନରେ ହେଲେ ତୋଷ
କେମନ୍ତେ ଦୁଇଜଣ ମନରେ ହେବେ ହର୍ଷ ।
ଦେଖିଣ ମୁନିଙ୍କି ବୀର ହନୂମନ୍ତ କହ
ସତ୍ୟ କର ଆପଣ ନ ଯୁଞ୍ଜ କାହିଁପାଇଁ ।
ଯେ ମାରିବ ସସ୍ରାନନ ସେ ହେବ ରାଜନ
ବଇଦେହୀ ନାଶ କଲେ ସସ୍ରମାଥ ପୁଣ ।
ଶୁଣିଣ ଶ୍ରୀରାମଚନ୍ଦ୍ର ମନରେ ବିଚାର
କଥା ଅସଜ ହେଲ କେମନ୍ତେ ଏବେ କର ।
ମୁନିଙ୍କି ଶୁଣାଇଲି ନ କଲେ ଦେବ ଶାପ
ତେଣୁ ମୋର ସତ୍ୟଭଗ୍ନ ହୋଇଛି ନିଅଚ ।
ଶ୍ରୀରାମର ମନଜାଣି ବିଧାତା କହେ ବାଣୀ
ଦୁଇ କଥା ସମତୁଲ କରିବ ମୁଁ ପୁଣି ।
ସ୍ୱୟଂ ମନୁକୁ ବ୍ରହ୍ମିଣ ବିଧାତା ବୋଇଲା
ଉପସ୍ଥିତ କରିଣ ଏବେ ଅଇଲୁ କ ବଳା ।
ବିଲଙ୍କା ଦେଶରେ ତୁମ୍ଭ ହେବୁଟିକ ରାଜା
ବିଷ୍ଟହେଲେ ପିତା ବାବୁରେ ପାଳବୁ ପରଜା ।
ବିଷ୍ଟତ ନୋହିଲେ ରାଜାକୁ ନଦେବୁ ଯୋଗୀ
ଶୁଣିଣ ସ୍ୱୟଂ ମନୁ ବୋଲଇ ପୁଣ ଦେବ
ତୁମ୍ଭ ବିସ୍ମରିକୁ କଥା ଯେମନ୍ତ ଆସଇ
ସେହିରୂପେ ମୋର କଥା କର ପିତା ତୁମ୍ଭ ।
ଶୁଣିଣ ବିଧାତା ମନେ ସନ୍ତୋଷ ହୋଇଲେ
ବିଭୀଷଣକୁ ବ୍ରହ୍ମିଣ ବଚନ ବୋଇଲେ ।
ତୋହର ଦୁହିତା ଗୋଟି ଅଟଇ ତ୍ରିଜଟା
ଶ୍ରୀରାମ ଘରଣୀ ତାଙ୍କୁ କରିଛୁ ସୋରଟା ।
ରାଜା କରିବ ବୋଲି ମନରେ ଇଚ୍ଛା ତାର
ଏବେ ଅବିବାହ ଅଛୁ ଦୁଲଣୀ ତୋହର ।
ସେହି ବଳ୍ଲ ହେଲେତ କରିବ ରାଜାପଣ
ଦୁଇକଥା ଯାକ ଆସି ହୋଇଛୁ ସମାନ ।
ତ୍ରିଜଟା ସକାଶେ ସୀତା ମାରି ସସ୍ରାନନ
ସସ୍ରାନନ ବଂଶ ଶ୍ରୀରାମ କଲେକ ନିଧନ ।
ସେହିରାଜ୍ୟ ଏବେ ଦୁହଜଣଙ୍କର ହେଲା
ମୁନ ଶୁଣାଏ ରାମ ତ୍ରିଜଟା ସଖ ଦେଲା ।
ଦୁଇଜଣଙ୍କର କଥା ରହିବ କାଳେ କାଳେ
ବିଭର ସମ୍ଭାର ଶୁଣାଅ ବେଗରେ ।·

ସକଳ ରାଣୀହଂସ ଏଠାବକୁ ଆଣ
ବିଭା କରିବାଟି ଆମ୍ଭେ ସମସ୍ତେ ଥାଇଣ ।
ଶୁଣିଣ ବିଭୀଷଣ ଯେ ବେଗେ ଚଳିଗଲା
ମନ୍ଦୋଦରୀ ଆଗରେ ସେ ଯାଇଣ ମିଳିଲା ।
ଶୁଣିକରି ମନ୍ଦୋଦରୀ ବୋଇଲା ବଚନ
ଉତ୍ତମ କଥା ଆମ୍ଭଙ୍କୁ ହେଲା ସ୍ୱାମୀ ପୁଣ ।
ଆମ୍ଭର ବଡ଼ଭାଗ୍ୟ ଏ କଥା ବେଗେ କର
ତୁମ୍ଭେ ଋଷି ତୁମର ଜ୍ୱାଇଁ ମୁନ ଆମ୍ଭର ।
ଋଷିର ତୁଲ ଆମ୍ଭଙ୍କୁ ଲାଗିଣ ରହିଲା
ଏମନ୍ତ କଥା ଯହୁଁ ମନ୍ଦୋଦରୀ କହିଲା ।
ତ୍ରିଏ ଜ୍ୱାଇଁଙ୍କ ପାଇଁ ଅଳଙ୍କାର ଆଣ
ଅମଳାଣ ବସନ ଦୁହିଁଙ୍କ ପାଇ ପୁଣ ।
ରାଣୀହଂସ ସକଳ ଯେ ଶୁଣାଅ ସକଳ
ଶୁଣିକରି ବିଭୀଷଣ ଚଳିଗଲେ ଖର ।
ଶୁକଶାରଣ ମନ୍ତ୍ରୀ ଦୁହିଁକ ସେ ଡାକିଲା
ବିଭର ସାମଗ୍ରୀ ଶୁଣାଅ ବେଗେ ବୋଇଲା ।
ଭଣ୍ଡାର ଫେଡ଼ାଇ ଧନ ଆଏ ଅଳଙ୍କାର
ଅମଳାଣ ଶାଢ଼ୀ ପାଞ୍ଚ ଶୁଣାଅ ସତ୍ୱର ।
ଗହଣାମାନ ଘେନିଣ ବେଗେ ସେ ଅଇଲେ
ଲଙ୍କାଗଡ଼ ଯାକରେ ଧେଣ୍ଡୁରା ଫେରାଇଲେ
ତ୍ରିଜଟା ବିଭା ବୋଲି ଶବଦ ତହିଁ କଲେ
ଶୁଣିକରି ରାକ୍ଷସ ରାକ୍ଷାସୁଣୀ ଅଇଲେ ।
ସମସ୍ତେ ପ୍ରବେଶ ହେଲେ ସୁବଳସ୍ଥା ଗିରି
ଲକ୍ଷାବନ ତରୁଶିଳା ଗହଳରେ ପୂରି ।
ବେଦୀ ଗୋଟିଏ ରଚଣ ସ୍ତମ୍ଭ ତ୍ରିଅ କଲେ
ବିଭର ସମ୍ଭାର ସକଳ ଯେ ଶୁଣାଇଲେ ।
ବିଭୀଷଣ ରାଣୀ ସମସ୍ତ ବେଶହେଲେ
ଫୁଲଗଭା କାଞ୍ଚୁଲା ଶରୀରେ ଲଗାଇଲେ ।
ମନ୍ଦୋଦରୀ ବେଶ ହୋଇଗଲା ସୀତା ପାଶ
ଦେଖିକରି ଜାନକୀ ଯେ ହେଲେ ହସ ହସ ।
ବୋଇଲେ ସଙ୍ଗାତୁଣୀଗୋ ଆଜ ବେଶତୋର
ଶତ୍ରୁ ନାଶ ଯିବାରୁ କ ଏହି ବେଶ ହେଲା ।
ମନ୍ଦୋଦରୀ ବୋଇଲେ ବିଲଙ୍କାପୁର ମନ୍ଦ
ସେରାଜ୍ୟରେ ସ୍ୱୟଂ ମନୁ ରାଜା ହେବପରା ।
ଶୁଣିଣ ଜାନକୀ ମନେ ହରଷ ହୋଇଲେ
ମୋର କଥା ନିଷ୍ଫଳତ ହୋଇଲା ବୋଇଲେ

ବିଜଟାର ମୁଣ୍ଡେ ପାଟ ବାନ୍ଧିଥିଲେ ପୁଣି
ସେ ରାଜ୍ୟରେ ରାଜା ତାକୁ କରନ୍ତୁ ନେଇ ପୁଣି
ମୋର ପ୍ରଭୁ ମୋତେ କମ୍ପା କଥା ନ ପଚ୍ଛ
ସ୍ୱୟଂ ମନୁଙ୍କୁ ରାଜା କରିବାକୁ ବଚ୍ଛିବ ।
ଶୁଣିକରି ମନ୍ଦୋଦରୀ କହଇ ଉତ୍ତର
ତୁମ୍ଭେମାର ସପ୍ତମୁଖା ସେମାନ୍ତ ବଂଶ ଛାର
ଏ ସକାଶୁ ସେହୁ ଦେଶ ଦୁଇ ଜଣଙ୍କର
ତୁମ୍ଭେ ବିଜଟାକୁ ରାଜା କରିବା ବଚ୍ଛର ।
ଅଭିବାଞ୍ଛିତା ନାରୀ ତ ଅଟଇ ବିଜଟା
ପୁରୁଷ ନ ଥିଲେ ରାଜା କେମନ୍ତେ ହୁଅନ୍ତା
ସ୍ୱୟଂ ମନୁଙ୍କୁ ଅଣାଇ ପ୍ରଭୁ ଯେ ତୁମ୍ଭର
ସେହି ବଶ ହୋଇବାନ୍ତି ମୁନିର କୁମର ।
ବିଜଟାକୁ ସ୍ୱୟଂ ମନୁ ବିଭା ହେବେ ଆଜ
ବିଲଙ୍କାଦେଶରେ ହୋଇବେ ରାଜା ହେବେ ବୁଝ
ସ୍ତ୍ରୀୟଙ୍କ ବପରେ ରାଜା ବିଜଟା ହୋଇବ
ସ୍ତ୍ରୀୟଙ୍କର ନ୍ୟାୟ ଧର୍ମ କଥା ସେ ବୁଝିବ ।
ପୁରୁଷମାନଙ୍କ ନ୍ୟାୟ ସ୍ୱୟଂ ମନୁ କରି
ଦୁଇ କୁଳ ଶିଷ୍ଟ ହେବ ଶୁଣ ଗୋ ସୁନ୍ଦରୀ ।
ମୋର କୁଳ ଉଜ୍ଜ୍ୱଳ ଗୋ କଲ ଠାକୁରାଣୀ
ଶ୍ୱଶୁର ମୋହର ଋଷି ଜ୍ୱାଇଁ ହେଲେ ମୁନି
ଶୁଣିଣ ଜାନକୀ ମନେ ହରଷ ହୋଇଲେ
ଆଣିକରି ମୁନିଙ୍କ ଯେ ସ୍ୱାମୀ ଭେଟାଇଲେ ।
ବିଜଟାକୁ ବୋଇଲେ ଯେ ଭଲ ଯୋଗ ହେଲା
ତୋହର କର୍ମରେ ବିଧି ସୁଯୋଗ ଲେଖିଲା ।
ଦେବଗଣ ରାଜାଗଣ ରାକ୍ଷସ ବାନର
ସମସ୍ତେ ଥାଇଣ ବିଭା ହେବୁ ମୁନିବର ।
ତୁହି ବିଲଙ୍କା ଦେଶରେ କରିବୁ ରାଜୁତି
ସୁତଙ୍କ ସଙ୍ଗରେ ଲେଖା ହେଲୁ ଏବେ ନିଜ
ଶୁଣିଣ ବିଜଟା ଆସି ଚରଣେ ନମିଲେ
ତୁମ୍ଭର ଦୟା ଥିବାରୁ ସକଳେ ମିଳିଲେ ।
ତୁମ୍ଭେ ଗୋ ମୋହର ଅଟ ଜନନୀ ଧର୍ମରେ
ଯେଉଁକଥା କହିଥିଲ ଦେଲ ଯେ ମୋହରେ
ସୋହଠାରେ ସପକ୍ଷ ଯେ ହୋଇଥିବ ମାତ
ଆଜଠାରୁ ଦେଖିବାର ଗଲା ମୋହରତ ।
ଏମନ୍ତ ବୋଲି ବିଜଟା ହୋଇଲା ବାହାର
ମନ୍ଦୋଦରୀ ସଙ୍ଗେ ଗଲା ଜନନୀର ପୁର ।

ମାତାଙ୍କର ପୁରେ ଯାଇ ପ୍ରବେଶ ହୋଇଲେ
ସ୍ୱୟଂ ମନୁଙ୍କୁ ସେମାନେ ବେଶ କରାଇଲେ ।
ବର କନ୍ୟାକୁ ବେଦିରେ ବସାଇଲେ ପୁଣ
ନାରଦ ବଶିଷ୍ଠ ବସି କଲେକ ଭିଆଣ ।
ଲବଣ ଚଉରି ପରେ ହସ୍ତ ଗଣ୍ଠି ଦେଲେ
ଶିଳା ବରଣ କରାଇ ଗୋଡ ଉଛାରିଲେ ।
ହସ୍ତ ଗଣ୍ଠି ଫିଟାଇଣ ଲକ୍ଷା ହୋମ କଲେ
ପଞ୍ଚ ରାଶି ମରାଇ ବିଭା କର୍ମ ସାରିଲେ ।
ଶଙ୍ଖେ ପାଣି ଛୋଳ ଦେଲେ ବିଭୀଷଣ ରାଏ
ଅନେକ ସମ୍ପଦେ ଧନ ଯଉତୁକ ଦିଏ ।
ମନ୍ଦୋଦରୀ ସଙ୍ଗରେ ସକଳ ରାଣୀ ହଂସ
ଯଉତୁକ ବନ୍ଦାପନା କରଇ ବିଶେଷ ।
ଶତେ ରଥ ପାଣିଦ୍ରବ୍ୟ ଆଣିଣ ସେ ଦେଲେ
ବନ୍ଦାପନା ସାରିଣ ଯେ ସନ୍ତୋଷ ହୋଇଲେ
ଶ୍ରୀରାମଚନ୍ଦ୍ର ବୋଇଲେ ବିଭୀଷଣ ରାଇ
ଦେନ ଗୋଟି ତୁମର ଆଣରେ ତୋର ଯାଇ
ଶୁଣିକରି ବିଭୀଷଣ ନିଜର କୁମର
ବେଗେଣ ଆଣାଇଲା ଶ୍ରୀରାମ ଛାମୁର ।
ଯୁବରାଜା ଆଟରଜା ଦୁଇ ଶାଢି ଦେଲେ
ଋଷିଙ୍କ ସଙ୍ଗେ ବିଲଙ୍କା ଦଳରେ ବୋଇଲେ
ଦେନ ଗୋଟି ରଥ ଆଣିଦେଲା ବିଭୀଷଣ
ବୃନ୍ଦାବରଣେ ଓଲଗି ବସି ମୁନି ପୁଣ ।
ଜନକମାନଙ୍କୁ ଯାଇ ଓଲଗେ ବିଜଟା
ଜାନକୀର ପାଶେ ଯାଇ ଓଲଗେ ବିଜଟା ।
ଯାଉଛି ଜନନୀ ମୋତେ କର ଗୋ ସୁବସ୍ଥା
ଏତେବେଳ ବିଜ । ଆଗରେ ହେଲେ ଠିଆ
ଜାନକୀ ବୋଇଲେ ତୁ ଗୋ ସର୍ବ ଶୁଭେ ଚଳ
ଚନ୍ଦ୍ର ସୂର୍ଯ୍ୟ ଥିବା ଯାଏ ହୁଅ ଗୋ ନିଶ୍ଚଳ ।
ପତସ୍ତ୍ରେ ଅପୁସା ଯେ ତୋହର ସଙ୍ଗେ ଥିଲେ
ତାହାଙ୍କୁ ଦାସୀ କରି ଗୋ ନିଅ ତୋ ସଙ୍ଗରେ
ଦେନଭାଇ ତୋହର ସଙ୍ଗରେ ଏବେ ଗଲେ
ଆଟରଜା ଯୁବରାଜା ହୋଇଲେ ତୋ ପୁରେ
ଶୁଣିଣ ବିଜଟା ମନ ସନ୍ତୋଷ ହୋଇଲେ
ଜାନକୀ ନେତ୍ରେଣ ପାଟ ମୁଣ୍ଡରେ ବାନ୍ଧିଲେ ।
ଅଶ୍ରୁଜଳ ମାଥେ ଦେଲେ ଶ୍ରୀରାମ ଘରଣୀ
ରାଜ ଅଭିଷେକ ତାକୁ କରାଇଲେ ପୁଣି ।

ସେଠାରୁ ବିଜଟା ସନ୍ତୋଷ ମନରେ ଗଲା
ଶ୍ରୀରାମଙ୍କ ଚରଣରେ ଓଳଗି ହୋଇଲା ।
ଶତ୍ରୁଘ୍ନ ଲକ୍ଷ୍ମଣ ଭରତଙ୍କ ଚରଣେ ପୁଣ
ସର୍ବ ଦେବଙ୍କୁ ଓଳଗି ହେଲା ତତକ୍ଷଣ ।
ବ୍ରହ୍ମାରୁଦ୍ର ଦୁହିଁଙ୍କି ସେ ନମସ୍କାର କଲା
ରାଜାଗଣଙ୍କୁ ପୁଣି ସେ ବନ୍ଦନ୍ତ ହୋଇଲା ।
ଧୀର ଧୀର ହୋଇ ପୁଣ୍ଡ ଗଲାକ ଚଳଣ
ମୁନିଙ୍କି ଉଦ୍ଦେଶେ ପ୍ରଣାମ ଅଣାଇଲେ ପୁଣ ।
ସ୍ୱୟମ୍ଭୁ ମନ୍ତ୍ର ଶିରରେ ପାଟ ନେଇ ବାନ୍ଧି
ଘଟଜଳେ ଅଭିଷେକ କଲେ ଦେବ ସ୍ୱାମୀ ।
ବୋଇଲେ ହେ ମୁନିବର ବେଗେ ଚଳଯାଅ
ବିଲଙ୍କା ଦେଶେଯାଇଁ ନିଶ୍ଚିନ୍ତେ ରାଜା ହୁଅ
ଚନ୍ଦ୍ରସୂର୍ଯ୍ୟ ଥିବ ଯାଏ ତୁମ୍ଭେ ଥିବ ରହି
ଦେବତାମାନଙ୍କ ଠାରେ ଭକ୍ତିଥିବ ହୋଇ
ଏତେବୋଲି ଶ୍ରୀରାମ ଯେ ମୁନିଙ୍କ କହିଲେ
ନାରଦଙ୍କୁ ଚାହିଁଣସେ ପୁଣ ଆଜ୍ଞା ଦେଲେ ।
ବୋଇଲେ ମୁନିବର ଯାଅ ଏହାଙ୍କ ସଙ୍ଗେ
ସେରାଜ୍ୟରେରାଜାକରି ଆସିବତୁମ୍ଭେବେଗେ
ହନୁ ଅଙ୍ଗଦ ଚାହିଁ ବୋଲନ୍ତି ରଘୁଧାରୀ
ମୁନି ବିଜଟାକୁ ନେଇ ସ୍ଥାପିବ ଲଙ୍କାପୁରୀ ।
ଶୁଣି ହନୁ ଅଙ୍ଗଦ ନାରଦ ତିନିଜଣ
ତିନିରଥେ ବସିଲେ ଯାଇଣ ତତକ୍ଷଣ ।
ବିଭୀଷଣ ଦୂତ ପୁଣ ଦୂତରଥେ ବସି
ଶୁକଶାରଣ ଦୁହେଁ ସଙ୍ଗରେ ଗଲେ ନିକି ।
ବିଜଟା ଯାଇଣ ରଥ ଉପରେ ବସିଲା
ମୁନିବର ବିଜଟାକୁ କୋଳରେ ଧଇଲା ।
ସମସ୍ତେ ଚଳିଲେ ବ୍ୟଗ୍ର ହୋଇଣ ଗଗନେ
ପ୍ରବେଶ ହୋଇଲେ ଯାଇଁ ବିଲଙ୍କା ଭୁବନେ
ରଥରୁ ଓହ୍ଲାଇ ସର୍ବେ ନଗରକୁ ଗଲେ
ବିଜଟାକୁ ଘେନି ମୁନି ସତ୍ୱରେ ଚଳିଲେ ।
ପଟହଣ୍ଡ ମଣାଇ ଦାସୀମାନେ ଘେନିଗଲେ
ଶୁଣିଣ ଗୁଣ ସାଗର ବନ୍ଦନ ଅଇଲେ ।
ସାମନ୍ତ ପାତ୍ରମନ୍ତ୍ରୀ ରଥ ଆଦି ପଦାତି
ସକଳେ ଆସିଣ ରୁଣ୍ଡ ହୋଇଲେକ ସେଥି ।
ଶୁକ ଶାରଣ ବୋଇଲେ ଶୁଣ ମନ୍ତ୍ରୀବର
ତୁମ୍ଭର ଦେଶ ରାଜାଙ୍କୁ ତୁମ୍ଭେ ସେବା କର
ପାଟରାଜା ଯୁବରାଜା ଅଛନ୍ତି ଦୁଇଜଣ
ଏହାଙ୍କର ବୋଲରେ ତୁମ୍ଭେ ଥିବ ଅନୁକ୍ଷଣ
ସକଳ ମଣାଇ କହି ସୁଗୁଣ ଗୁଣକୁ
ରାଜାଙ୍କ ସମର୍ପି ଦେଲେ ତାହାଙ୍କୁ ।
ସାମନ୍ତ ପାତ୍ରମାନଙ୍କୁ କହିଲେ ସେ ପୁଣ
ପାଟ ମହାଦେଈ ଯେ ସ୍ତ୍ରୀଙ୍କର ରାଜା ଜାଣ
ଶୁଣି ଗୁଣସାଗର ଧେଣ୍ଡୁରା ଫେରାଇଲା
ଏ ରାଜ୍ୟରେ ନୂଆରାଜାହେଲେ ଏବୋଇଲା
ସକଳ ରାକ୍ଷସ ଶୁଣି ଅଇଲେ ବେଗରେ
ନୂଆ ରାଜାଙ୍କୁ ଯାଇ ଦର୍ଶନ କଲେ ଭଲେ
ଭେଟ ହୋଇଣ ଭେଟି ସକଳି ଦେଇଗଲେ
ରାକ୍ଷସୁଣୀମାନେ ଆସି ରାଣୀକି ଭେଟିଲେ
ସାନ୍ଧ୍ୟ ଗନ୍ଧର୍ବ କରି ଗଲେ ଯେଝା ଘରେ
ବାଜିଲା ଗହଳ ଯାଇ ନଗର ମଧ୍ୟରେ ।
ସେବାକାରୀମାନେ ଆସି ସେବା ଆଦରିଲେ
ହଟ ବଜାର ସର୍ବେ ଦେଖି ସୁଖୀ ହେଲେ
ସତ୍ତ୍ୱ ମଣାଇ ହନୁ ଅଙ୍ଗଦ ମୁନିବର
ଲେଉଟି ଲଙ୍କାରେ ଯାଇ ମିଳିଲେ ସତ୍ୱର ।
ଶ୍ରୀରାମ ଚରଣେ ଆସି ଦରଶନ କଲେ ·
ଏଥୁ ଅନନ୍ତରେ କଥା ଶୁଣ ଦେବୀ ଭଲେ ।
ଦେବଗଣେ ଶ୍ରୀରାମ ସଙ୍ଗରେ ରହିଥିଲେ
ବ୍ରହ୍ମାରୁଦ୍ର ମୈରୁତ ବରୁଣ କୁମର
ବୋଇଲେ ଆହେ ଶ୍ରୀରାମ ଅଯୋଧ୍ୟାକୁ ଚଳ
ଏଥିରେ ରହିଲେ ଆଉ କିଛି ନାହିଁ ଭଲ ।
ସୀତା ଘେନି ଅଯୋଧ୍ୟାରେ ରାଜପଣ କର
ଏତେକହି ଦେବବର ବାସେଳ ସୁମନ୍ତ ।
କାଳକାବାସେଳୀ ଦୁହେଁ ଆଗେ ଆସିମିଳିଲେ
ଚରଣ ବନ୍ଦନା କରି ଉଠି ଉଭା ହେଲେ ।
ଦେବବର ବୋଲେ ଏବେହେଲା ଆତ୍ମକାର୍ଯ୍ୟ
ଆଜ ଯୁଦ୍ଧ ହେବନାହିଁ ଚଳ ତୁମ୍ଭେ ବେଗ ।
ଶୁଣିଣ ବାସେଳୀ ଯେ କାଳକା ଚଢ଼ି ଗଲେ
ଯୋଗିନୀ ପିଶାଚୁଣୀ ବାହନକୋଟି ତୁଲେ ।
ସମସ୍ତଙ୍କୁ ଘେନି ଦେବୀ ହୋଇଲେ ବାହାର
ପ୍ରବେଶ ହେଲେ ଯାଇଣ ଶ୍ରୀରାମ ସମ୍ମୁଖ ।
ଦେବୀଙ୍କି ଦେଖି କରି ବାନର ପଳାଇଲେ
ଶ୍ରୀରାମର ପାଦେ ଯାଇ ଶରଣ ପଶିଲେ ।

ଶ୍ରୀରାମ ବୋଇଲେ କସ ଭସ୍ମ ହେଲା ପୁଣ
କାହାର ଭୟେ ସୈନ୍ୟ ପଳାଉଛନ୍ତି ଜାଣ
ହନୁମନ୍ତ ବୋଇଲେ ଅଇଲେ ଯୋଗିନୀବଳ
ତାଙ୍କ ସଙ୍ଗେ ଅଛନ୍ତି ଯେ ପିଶ୍ଚୁଣୀ ଦଳ ।
ଶ୍ରୀରାମ ବୋଇଲେ କମ୍ପା ଆସନ୍ତି ଏଥୁ ଏବେ
ଦେବ ସେଥିଲେ ଏଠାରେ ହନୁମନ୍ତ ବୋଲେ
ରକ୍ତ ମାଂସ ଖାଇ ଦୈତ୍ୟଙ୍କୁ ଭସ୍ମ କଲେ
ବିଧାତାଙ୍କ ବୋଲେ ନିଜସ୍ଥାନକୁ ଚଳିଲେ ।
ଶ୍ରୀରାମ ବୋଇଲେ କାହାର ବୋଲରେ ପୁଣ
ଏଠାକୁ ଆସିଥିଲେ କହ ହେ ହନୁମାନ ।
ମାରୁତି ବୋଇଲେ ସ୍ୱାମୀ ଦେବ ବୈକୁଣ୍ଠ
ଦୈତ୍ୟ ରକ୍ତ ଭକ୍ଷିବାକୁ ପେଷିଲେ ଏହାନ୍ତ
ଯୁଦ୍ଧ ସରିବାରୁ ଏବେ ଚଳ ନିଜପୁର
ଦେବବର ଆଜ୍ଞାଦେଲେ ଯାଅଗୋ ସତ୍ୱର
ଶ୍ରୀରାମବୋଇଲେ ତାଙ୍କୁ ଦେଖିବା ହେ ସ୍ଥଳ
ଏଡ଼େବଡ଼ ସୈନ୍ୟ ପଳାଉଅଛନ୍ତି ମୋର ।
ପାଦଗାମି ହୋଇ ରାମ ପର୍ବତେ ଉଠିଲେ
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁ ତୁଲେ ।
ଦେଖିଲେ ଶ୍ରୀରାମଚନ୍ଦ୍ର ଯୋଗିନୀ ପିଶ୍ଚୁଣି
ଘୋଟିଛନ୍ତି ରଣ ଭୂମି ଭୟଙ୍କର ପୁଣି ।
ଦେବବରଙ୍କୁ ବୋଲେ ଦେଖିଲ ରଘୁରାଜ
ଶାନ୍ତ ହୋଇଣ କମ୍ପା ନ ଯାନ୍ତି ଦେବୀବୃନ୍ଦ
ବିଧାତା ବୋଇଲେ ତୁମ୍ଭେ ଶୁଣହେ ରୂପଧାରୀ
ନର ବାନରଙ୍କୁ ଦେଖି ପ୍ରତାପ ସେ କରି ।
ଏହି ସମୟରେ ବାସେଲୀ ଆସି ମିଳି
ଯାଉଛି ବୋଲି ଶ୍ରୀରାମ ଚରଣେ ପଡ଼ି ।
ଯାଅବୋଲି ଆଜ୍ଞାଦେଲେ କେ ଦଣ୍ଡରୂପଧାରୀ
ସାମାନ୍ୟ ରୂପେ ଦେବୀ ଚଳିଲେ ନିଜପୁରୀ ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ନିଜସ୍ଥାନେ ଦେବୀମାନେ ଚଳିଲେ ତୁରିତ ।
ଶ୍ରୀରାମ ବୋଇଲେ ବିଧାତାର ମୁଖ ଚାହିଁ
ଦେବତାଙ୍କୁ ଘେନି ଚଳ ଆହେ ଧାତା ତୁହି
ଶୁଣିଣ ପଦ୍ମଯୋନି ସକଳ ଦେବ ଘେନି
ସ୍ୱର୍ଗକୁ ଚଳିଲେ ସେ ଆନନ୍ଦମନେ ପୁଣି ।
ସ୍ୱର୍ଗରେ ଦେବତାଏ ହୋଇଲେ ପରବେଶ
ସଙ୍କଟର ସମସ୍ତେ ହସି ମନ ହରଷ ।

କପିଳାସ କନ୍ଦରକୁ ଆମ୍ଭେ ଯେ ଅଇଲୁ
ଚଉଦକୋଟି ରୁଦ୍ର ଗଣ ସଙ୍ଗେ ଆଣିଲୁ ।
ସ୍ୱରୂପକଣ ମହିମା ଶୁଣ ତୁମ୍ଭେ ଏବେ
ଶ୍ରୀରାମ ଯେ ନାଶକଲେ ସକଳ ଦନୁଜେ ।
ସମୁଦ୍ର ମଧ୍ୟରେ ଗଡ଼ ଅଟେ ପାଞ୍ଚ ଲଙ୍କା
ତେଣୁକରି ଦୈତ୍ୟଙ୍କର ନଥାଇଟି ଶଙ୍କା ।
ଦେବଋଷି ବ୍ରାହ୍ମଣ କାହାକୁ ନ ମାନିଲେ
ତେଣୁକରି ବାସୁଦେବ ତାଙ୍କୁ ନାଶ କଲେ ।
ଶୁଣିଣ ମନ ତୋର ହୋଇଲା ଟିକ ତୋଷ
ଯେ ନାମ ସ୍ମରଣେ ପାତକ ହୋଏ ଧ୍ୱଂସ
ପାର୍ବତୀ ବୋଲେ ଦେବ କଥାଏ ମୁହିଁ କହ
କେମନ୍ତେ ଅଯୋଧ୍ୟାକୁ ଚଳିଲେ ରଘୁସାଇଁ
ସଦାଶିବ କହନ୍ତି ଶୁଣ ଗୋ ମନଦେଇ
ସୁବଳ ଗିରିରେ ଯେ ଶ୍ରୀରାମଚନ୍ଦ୍ର ରହି ।
ଅଯୋଧ୍ୟାକୁ ଆସିବାକୁ ଶ୍ରୀରାମ ବସ୍ତୁର
ଦେବତାମାନେ ଯହୁଁ ଚଳିଲେ ସ୍ୱର୍ଗପୁର ।
ଏହି ସମୟରେ ଲକ୍ଷ୍ମଣ ନୃପତି ଯାଇଁ
ଶ୍ରୀରାମଙ୍କର ସମ୍ମୁଖରେ ଜଣାଇଲେ ସେହି ।
ବୋଇଲେ ହେ ଦେବ ହେ ତ୍ରୈଲୋକ୍ୟ ଠାକୁର
ଆମ୍ଭର ଗୁହାରି ଏବେ ଅବଧାନ କର ।
ଅଲଙ୍କା ବିଲଙ୍କା ଯେ ସୁଲଙ୍କା ଜ୍ୟୋତିଲଙ୍କା
କେମନ୍ତେ ଗଡମାନ ଆମ୍ଭଙ୍କୁ ଲାଗେ ଶଙ୍କା ।
ତୁମ୍ଭେ ପ୍ରସନ୍ନ ହେଲେ ଦେଖନ୍ତୁ ଆମ୍ଭେ ଥରେ
ଏଜନ୍ମ ଆମ୍ଭର ସୁଫଳ ହୁଅନ୍ତା ବାରେ ।
ଶୁଣିଣ ଶ୍ରୀରାମଚନ୍ଦ୍ର ମନରେ ଆନନ୍ଦ
ମୁଖ ବିକାଶିଲେ ଯେହ୍ନେ ପୂର୍ଣ୍ଣିମାର ଚନ୍ଦ ।
ବିଭୀଷଣଙ୍କୁ ଚାହିଁ ବୋଲନ୍ତି ରାମାୟଣ
ପୁଷ୍ପକ ଯାନ ଅଣାଅ ଆମ୍ଭେ ଯିବା ପୁଣ ।
ଶତ୍ରୁ କ୍ଷୟ ଗଲା ମନେ ଯେ ସବନ୍ଧନ
ତୋବଂଶ ହୋଇଲେ ପାଞ୍ଚ ଗଡ଼ରେ ରାଜନ
ଶୁଣିଣ ବିଭୀଷଣ ବିମାନ ଅଣାଇଲା
ଶ୍ରୀରାମଙ୍କ ଆଗରେ ନେଇଣ ରଖିଲା ।
ଦେଖିକରି ରଘୁନାଥ ସନ୍ତୋଷ ହୋଇଲେ
ରାଜାମାନଙ୍କୁ ଚାହିଁଣ ବଚନ ବୋଇଲେ ।
ବେଗରେ ସଜ ହୋଇଣ ରଥେ ତୁମ୍ଭେ ବସ
ଲଙ୍କା ପାଞ୍ଚ ଗଡ଼କୁ ଦେଖିଣ ହୁଅ ତୋଷ ।

ରଥୀମାନେ ରଥରେ ବସନ୍ତୁ ବେଗେ ପୁଣ
ମନ୍ଦୋଦରୀ ଘେନିଚଳ ଲଙ୍କାର ରାଜନ ।
ହନୁମନ୍ତକୁ ବୋଇଲେ ଆଣ ରଖିଅଛି
ପୁଷ୍ପକ ବିମାନେ ଯାଇ ବସନ୍ତୁ ତତକାଳ ।
ଶୁଣିଣ ହନୁମନ୍ତ ବେଗରେ ଚଳିଲା
ବାନର ଭଲ୍ଲୁ ଗଣ ଡାକିଣ ଆଣିଲା ।
ଶ୍ରୀରାମ ବୋଇଲେ ସର୍ବେ ବସ ରଥପରେ
ସବୁ ଗଡ ବୁଲିଣ ଦେଖିବା ଆମ୍ଭେ ଥରେ ।
ପଞ୍ଚାଶ ପିଢେ ବସି ବାନର ଭଲ୍ଲୁ ପୁଣ
ରାଜାଗଣ ବସିଲେକ ପଞ୍ଚଶ ପିଢେଣ ।
ହଟାରି ବଜାରି ଯେ ସେବକ ପଣ୍ଡିହାରି
ସର୍ବେ ବସିଲେ ପୁଷ୍ପକ ବିମାନ ଆବରି ।
ପଞ୍ଚଶ ଯୂଥପତି ଯେ ମଲ୍ଲ ମହାମଲ୍ଲ
ଅଷ୍ଟସେନାପତି ବୃଦ୍ଧ ନାମେ ଯେ ଶବର ।
ଲୋମପାଦ ଶତେ ପୃଷ୍ଠ ତଳିଁରେ ବସିଲେ
ଅଶିପିଢ଼ ପୁଷ୍ପକ ଯେ ବିମାନ ପୂରିଲେ ।
ଶୁକ ସାରଣ ସେଥିରେ ହୋଇଲେ ସାରଥି
ଦେବଦଳନ ରଥରେ ବିଭୀଷଣ ବସି ।
ମନ୍ଦୋଦରୀ ସଙ୍ଗରେ ସକଳ ରାଣୀ ଛନ୍ତି
ଦେଖିଣ ସୀତାୟୀ ଯେ ଆନନ୍ଦ ମନ ହୋନ୍ତି ।
ଆଗେ ବିଭୀଷଣ ପଛେ ପୁଷ୍ପକ ବିମାନ
ସକଳ ରଥୀମାନେ ତଳିଁର ପଛେ ପୁଣ ।
ସମସ୍ତଙ୍କ ପଛେ ବଟେକ କଲେ ରାଜାଗଣ
ରାଜାଙ୍କ ପଛେ ଭ୍ରଥ ଶତ୍ରୁଘ୍ନ ଲକ୍ଷ୍ମଣ ।
ସମସ୍ତଙ୍କ ପଛରେ ବିଜୟେ ରଘୁନାଥ
ଜାନକୀ ଘେନି ବସିଲେ ନନ୍ଦଘୋଷ ରଥ ।
ଅଙ୍ଗଦ ଯାଇ ବସିଲେ ଲକ୍ଷ୍ମଣ ସଙ୍ଗରେ
ସୁଷେଣ ଜାମ୍ବବ ବସିଲେ ଭ୍ରଥ ପାଶରେ ।
ଗବଏ ଗବାକ୍ଷ ପବନ ପନଶିଳ ଚନ୍ଦନ
ଏମାନେ ବସିଲେ ଯାଇ ଶତ୍ରୁଘ୍ନ ଯାନ ।
ହନୁମନ୍ତ ବସିଲାକ ନନ୍ଦଘୋଷ ରଥ
ପୂର୍ବ ଦିଗକୁ ଚଳିଲେ ସମସ୍ତେ ତୁରିତ ।
ଅଲଙ୍କା ଗଡରେ ଯାଇ ହେଲେ ପରବେଶ
ବୃକ୍ଷପାଖେ ପର୍ବତ ଯେ ଦେଖିଲେ ବିଶେଷ ।
ପର୍ବତ ଉପରୁ ଗୁପ୍ତ ଗଙ୍ଗାକୁ ସେ ଦେଖି
ଦେଖିଲେ ଗଙ୍ଗା ପରେ ଅଗ୍ନି ନଦୀକ ସେଥି
ଅଗ୍ନି ନଦୀ ଉପରୁ ସେ ଗଡ଼ରେ ପଶିଲେ
ଚଉଷଠି ଦାଣ୍ଡେ କନ୍ଦ ବିକନ୍ଦ ଦେଖିଲେ ।
ରାଜାଙ୍କର ନବର ପୁନଙ୍କର ଇଆସ
ପୋଖରୀ ଅଟ୍ଟାଳି ଆଉ ଗାଡ଼ିଆ ବିଶେଷ ।
ସକଳ ଦେଖିଣ ସର୍ବେ ହୋଇଲେ ସନ୍ତୋଷ
ଜାନକୀ ବୋଲନ୍ତି ଅଟଇ କେଉଁ ଦେଶ ।
ଶ୍ରୀରାମ ବୋଇଲେ ଏ ଅଲଙ୍କା ନାମେ ଗଡ଼
ଶତେ ମୁଖା ରାବଣ ଏଥିରେ ଅଟେ ଗାଡ଼ ।
ରାବଣ ବୋଲରେ ସେ ଅଯୋଧାକୁ ଗଲା
ଶତ୍ରୁଘ୍ନ ସଙ୍ଗରେ ବହୁତ ଯୁଦ୍ଧକଲା ।
ବଂଶ ମରାଇଣ ଆପଣେ ସେ ଗଲା ନାଶ
ଏ ପୁରରେ ରାଜା ହେଲା କୁମ୍ଭକର୍ଣ୍ଣ ଶିଷ୍ୟ ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ଧନ୍ୟ ଧନ୍ୟ ବିଧାତା ଏ ପୁର ବିଆଇଲେ ।
ସୁବର୍ଣ୍ଣ ରାଜନ ଅନ୍ତଃପୁର ମଧ୍ୟେ ଥିଲା
ଚର ଯାଇଁ ତାର ଠାରେ ଜାଣତା କହିଲା ।
ଶ୍ରୀରାମଚନ୍ଦ୍ରଙ୍କୁ ଶୀଘ୍ର ଦେଖି ତୁମେ ଯାଇଁ
ଶୁଣିଲାରୁ ସୁବର୍ଣ୍ଣ ଯେ ଉପରକୁ ଚାହିଁ ।
ନନ୍ଦଘୋଷେ ଦେଖିଲେ କୋଦଣ୍ଡ ରୂପଧାରୀ
ହେଳରେ କୋଠାରୁ ଦଣ୍ଡରେ ଚରଣ ଧରି
ପାଏ ପଡ଼ ତଳରେ ଶୋଇଲା କୁମର
ରାଣୀହଂସ ସଙ୍ଗରେ ଘେନିଣ ତାହାର ।
ତାହାକୁ ଅନାଇ ଯେ କହନ୍ତି ବଇଦେହୀ
ଏ ରାଜା ରାଣୀ କମ୍ପା ପାଏଡ଼ା ପଡ ଶୋଇ ।
ଶ୍ରୀରାମ ବୋଇଲେ ତୁମ୍ଭେ ଦେଖ ପ୍ରାଣସଖି
କୁମ୍ଭକର୍ଣ୍ଣ କୁମର ଏ ସୁବର୍ଣ୍ଣ ଅଟଇ ।
ଶତ୍ରୁଘ୍ନ ଏଥିରେ ଏହାକୁ ରାଜା କଲା
ଆମ୍ଭେ ଆସିବା ଜାଣି ଶୋଇଣ ଅଛି ବଳା ।
ଜାନକୀ ବୋଇଲେ ଯେବେ ହୋଇଲା ଉପ[illegible]
ପ୍ରବୋଧ କରିବାର ଉଚିତ ଧର୍ମ ଅଛି ।
ଶ୍ରୀରାମ ବୋଇଲେ ଯେବେ ପ୍ରବୋଧ କରିବା
ଉତ୍ତର ହୋଇଲା ଆଜ ଏଠାରେ ରହିବା ।
ଜାନକୀ ବୋଇଲେ ଯେବେ ଯିବା ତାର ପାଶ
ପ୍ରବୋଧ କରି କହିବା ଅଟଇ ଉଚିତ ।
ଶୁଣିଣ ଶ୍ରୀରାମଚନ୍ଦ୍ର ମାତଳିକୁ କହି
ସୁବର୍ଣ୍ଣ ସିଂହଦ୍ୱାରକୁ ରଥ ବାହା ହୁହି ।

ଶୁଣିକରି ମାତଳି ରଥକୁ ଖସାଇଲା
ସୁବର୍ଣ୍ଣ ସିଂହ ଦ୍ୱାରେ ନେଇଣ ଉଭା କଲା ।
ଦେଖିଣ ସୁବର୍ଣ୍ଣ ସେ ଉଠିଲା ବେଗକରି
ରାଣୀକିବୋଲେଦୈତ୍ୟ କୋଦଣ୍ଡ ରୂପଧାରୀ
ଦାସୀକି ବୋଲେ ତୁମ୍ଭେ ପାଏଡା ପଡ଼ିବ
ଯେଉଁଠାରେ ଅଛନ୍ତି ସେ ରଘୁକୁଳଦେବ ।
ଅବଳା ରାଣୀକି ବୋଲେ ମୋ ପଛରେଆସ
ଦଣ୍ଡ ପ୍ରଣାମ କରି ସ୍ୱାମୀଙ୍କ ମନ ତୋଷ ।
ଏତେ ବୋଲିଣ କୁମର ହୁଅଇ ପ୍ରଣାମ
ଯେଉଁଠାରେ ରହିଛନ୍ତି ରଘୁକୁଳ ଘଣ ।
ରାଣୀକି ଘେନିଣ ସଙ୍ଗେ ପ୍ରଣାମ କରିଣ
ସିଂହଦ୍ୱାରେ ଯାଇଣ ହୋଇଲା ତତକ୍ଷଣ ।
ଶ୍ରୀରାମ ବୋଇଲେ ଉଠ ଉଠରେ କୁମର
ନିଶ୍ଚିନ୍ତ ହୋଇଥାଅ ଯାଉଛୁ ଆମ୍ଭପୁର ।
ସୁବର୍ଣ୍ଣ ବୋଇଲା ଦେବ ଯେବେ ଦୟାକଲ
ସ୍ନାହାନ କରିଣ କମ୍ପା ଏଠାରେ ନ ଗଲ ।
ଶ୍ରୀରାମ ବୋଇଲେ ଅଜନ୍ତ ଦେଖ ସର୍ବେ
ଉଛୁର ହୋଇବ ବାବୁ ଯିବୁ ଆମ୍ଭେବେଗେ
ଅବଳା ରାଣୀ ସଙ୍ଗେ ସକଳ ରାଣୀ ଗଣ
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣାଇ ବନ୍ଦନ ।
ଶ୍ରୀରାମ ଜାନକୀଙ୍କି ସେ ବନ୍ଦାପନା କଲେ
ଧୂପ ଦୀପ ମଙ୍ଗଳ ଆରତି ଆରମ୍ଭିଲେ ।
ଥାଅ କୁମର ବୋଲି ବୋଇଲା ରଘୁନାଥ
ମାତଳିକି ବୋଇଲେ ବାହା ତୁ ବେଗେରଥ
ଶୁଣିଣ ମାତଳି ଶୀଘ୍ର ରଥ କାଢିନେଲା
ଗଗନ ମାର୍ଗରେ ସେ ରଥକୁ ନେଇ କଲା ।
ଦକ୍ଷିଣର ଦିଗକୁ ବାହିଲା ଯାନ ପୁଣି
ବିଲଙ୍କାରେ ପ୍ରବେଶ ହୋଇଲେ ରଘୁମଣି ।
ଗୁଣସାଗର ସେ ମନ୍ତ୍ରୀ ଦେଖିଲକ ପୁଣ
ନନ୍ଦିଘୋଷ ରଥରେ ବିଜୟେ ରଘୁରାଣ ।
ସ୍ୱୟଂ ମନୁ ଆଗରେ ଯାଇଣ ଜଣାଇଲେ
ସକଳ ସୈନ୍ୟ ଘେନିଣ ରାମ ବିଜେ କଲେ
ଶୁଣିକରି ମୁନିବର ବେଗେ ଚଳିଗଲେ
ତ୍ରିଜଟାକୁ ଯାଇଣ ସେ ବଚନ କହିଲେ ।
ଦେଖ ଗୋ ପାଟରାଣୀ ବିଜୟେ ରଘୁନାଥ
ସକଳ ସୈନ୍ୟ ଘେନି ଆସିଲେ ଦେବ ଏଥ

ଶୁଣିଣ ତ୍ରିଜଟା ଶୀଘ୍ର ପାଏଡା ପକାଲା
ମୁନିଙ୍କି ଘେନିଣ ଦଣ୍ଡ ପ୍ରଣାମ ସେ କଲା ।
ଜାନକୀ ବୋଲେଦେବ ଅହେ ଏ କେଉଁଗଡ଼
ରାଜା ରାଣୀ ଦୁଇ କରୁଛନ୍ତି ନମସ୍କାର ।
ଶ୍ରୀରାମ ବୋଇଲେ ଏ ତ୍ରିଜଟା ସ୍ୱୟଂ ମନୁ
ବିଲଙ୍କା ଗଡ଼ ଶୁଣ ଜନକ ରୂଷ ଭନୁ ।
ଜାନକୀ ବୋଇଲେ ଦେବ ରଥ ବେଗେନଅ
କେତେ ସେବା କରିଅଛୁ ବିଭୀଷଣ ଝିଅ ।
ଜନକ ରାଣୀଠାରୁ ଅଧିକ ପ୍ରତିପାଳି
ଚଉଦ ମାସ ପର୍ଯ୍ୟନ୍ତେ ଶୀତଳ ସେ ନାରୀ ।
ପାଲିଟା ଧୂଅଇ ମୋର ସଙ୍ଗେ ଥାଏ ଜଗି
ରାକ୍ଷସୁଣୀ ରାଗିଗଲେ କହେ ତାଙ୍କୁବୋଧି ।
ରାବଣ ଆଇଲେ ତାର ପଡ଼ଇ ଚରଣେ
କ୍ରୋଧ କରି ରାକ୍ଷସକୁ କହେ ସେହୁ କ୍ଷଣେ ।
କ୍ରୋଧ କରି ରାବଣଫେରାଇ ପୁଣ ଦେଇ
ମୂର୍ଚ୍ଛିଶୋକକଲେମୋତେ ବୋଧସେ କରଇ
ତିଳକଣ ଘେନିଣ ସେ ଘଷଇ ମୋର ଅଙ୍ଗ
ନିମିଷେ ମୋହ ପାଶରୁ ନ ଛାଡ଼ଇ ସଙ୍ଗ ।
ସେହୁ ନ ଥିଲେ ମୁଁ କଷ୍ଟେ ମରିଥାନ୍ତି ପୁଣ
ମୋତେ ନ ଦେଖିଣ ତୁମ୍ଭେ କଧନ୍ତ ବଦନ
ଫେରିକରି ଅଯୋଧ୍ୟାକୁ ଦୁଇ ଭାଇ ଯାନ୍ତ
ଏତେକ ଯଶ ଆଜ କେମନ୍ତେ ପାଇଥାନ୍ତ ।
ଶୁଣିଣ କୋଦଣ୍ଡଧାରୀ ମାତଳିକି କହି
ତ୍ରିଜଟା ସିଂହଦ୍ୱାରକୁ ରଥ ବାହା କହି ।
ଶୁଣିଣ ମାତଳି ବେଗେ ରଥ ବାହି ନେଲା
ସ୍ୱୟଂ ମନୁ ସିଂହଦ୍ୱାରେ ରଥ ନେଇ କଲା
ଦେଖିଲା ସ୍ୱୟଂ ମନୁ ତ୍ରିଜଟା ଘେନି ସଙ୍ଗେ
ସିଂହଦ୍ୱାରେ ପ୍ରବେଶ ଆସି ହୋଇଲେ ବେଗେ ।
ଦୁଇଜଣ ଏକାବେଳେ ପଡ଼ି ପାଦତଳେ
କରଯୋଡ଼ି ଉଭା ହୋଇ କହିଲେ ରାମରେ
ଧ୍ୟାନମାଜଣ ନୋହିଲେ ପଣିବୃଷ୍ଟି ସିନ୍ଧୁଜଳ
ମାଜଣା ନୋହିଲେ ପକ୍ଷିବୃଷ୍ଟି ସିନ୍ଧୁଜଳ ।
ତୁମ୍ଭେ ଅ... ଆମ୍ଭ ପିତା ଆମ୍ଭେ ପୁଅ ଦୁହିତା
ନିରାଶ କରିଣ ମୋତେ ନ ଯା ଏଥୁ ପିତା ।
ଶୁଣିଣ ଶ୍ରୀରାମ ସେ ପରମ ତୋଷ ହେଲେ
ନନ୍ଦିଘୋଷ ରଥର ଉପରୁ ଓହ୍ଲାଇଲେ ।

ଜାନକୀର କର ଧରି ଦଶରଥ ବଳା
ଜନକ ମଣ୍ଡପରେ ବିଜୟ କଲେ ପର ।
ସ୍ୱୟଂମକୁ ହସ୍ତଧରି ଶ୍ରୀରାମଙ୍କୁ ନେଲେ
ସିଂହାସନ ଉପରେ ନେଇ ବସାଇଲେ ।
ବିଜଟା ବାହୁ ଧରି ଜାନକୀ ନେଲା ପୁଣ
ପଞ୍ଚଣ୍ଡ ମଣାଇ ନବ ମନ ହରଷେଣ ।
ଭିତରି ସିଂହାସନେ ନେଇଣ ବସାଇଲେ
ଚନ୍ଦନ ଅଣାଇଣ ମାର୍ଜଣା ଆଗେ କଲେ ।
ସୁବାସ ଜଳରେ ନେଇ କରାଇଲେ ସ୍ନାନ
ଅମଳାଣ ଶାଢ଼ୀ ନେଇ ପିନ୍ଧାଇ ବହନ ।
ଭୁଞ୍ଜିବାକୁ ଆଣିଣ ଶୀତଳ ଦ୍ରବ୍ୟ ଦେଲା
ଆଞ୍ଜୋବନକରାଇ ସିଂହାସନରେ ବସାଇଲା ।
ଉଚ୍ଛିଷ୍ଟ ସେବା କଲା ଆଗେ ଯେ ବିଜଟା
ବୋଇଲା ଜଳମାଙ୍କର କାହିଁମୋଠାଚଉଖୋଣ୍ଟା ।
ଚନ୍ଦନ ନେଇ ଭରଣ ସ୍ୱୟଂମକୁ ଗଲା
ଶ୍ରୀରାମଙ୍କୁ ଆପଣେ ମାର୍ଜଣା କରାଇଲା ।
ସୁବାସିତ ଜଳ ଆଣି ସ୍ନାନ କରାଇଲେ
ନୂତନ ଅମଳାଣ ଶ୍ରୀଅଙ୍ଗେ ପିନ୍ଧାଇଲେ ।
ରତ୍ନ ସିଂହାସନରେ ବସାଇ ନେଇ ପୁଣ
ଧୂପ ଦୀପ ନେଇ ପୂଜା କଲା ତତକ୍ଷଣ ।
ମଙ୍ଗଳ ଆରତି ଶ୍ରୀରାମଙ୍କୁ ରାଇ କଲା
ଶୀତଳ ମଣୋହି କରାଇ ସନ୍ତୋଷ ହେଲା ।
ଶ୍ରୀରାମ ବୋଇଲେ ଗୁଣ ସାଗର ମନ୍ତ୍ରୀଙ୍କ
ସମସ୍ତଙ୍କୁ ଚରନ୍ତୁ କରିବେ ବାବୁ ଏଥି ।
ହନୁମନ୍ତଙ୍କୁ ବୋଇଲେ ଚଳରେ ବହନ
ରାଜାମାନେ ବେଗେ ଚରନ୍ତୁ ହୁଅନ୍ତୁ ଜାଣ ।
ଶୁଣିଣ ହନୁମନ୍ତ ଯେ ବେଗେ ଚଳିଗଲା
ଶ୍ରୀରାମ ଆଜ୍ଞାହେଲା ବୋଲିଣ ବୋଇଲା ।
ଶୁଣିଣ ଲକ୍ଷେ ନୃପତି ଉଠାଇ ଅଇଲେ
ସଇନ ବଳେ ମୁନି ନବରେ ଠୁଳହେଲେ ।
ଗୁଣସାଗର ମନ୍ତ୍ରୀ ସଭିଙ୍କି ଚଉଠିଲା
ମାର୍ଜଣା ମଣୋହି ସମସ୍ତଙ୍କୁ କରାଇଲା ।
ଅଙ୍ଗଦକୁ ଶୁଣିଣ ବୋଲନ୍ତି ରାମରାଣ
ବନରେ ବାନର ଭାଲୁ କରନ୍ତି ଭୋଜନ ।
ଶୁଣିକରି ଅଙ୍ଗଦ ଯେ ବେଗେ ଚଳଗଲା
ଯାଇ ବାନର ଭାଲୁଙ୍କୁ ଜଣାଇ କହିଲା ।

ବୋଇଲା ଋକ୍ଷକପି ଶୁଣ ମୋର ବଚନ
ବନମାନଙ୍କରେ ପଶି କର ହେ ଭୋଜନ ।
ଡାଳହିଁ ନ ଭାଙ୍ଗିବ ଉପାଡ଼ି ନ କରିବ
ମନ ଇଚ୍ଛାରେ ଭୋଜନ କରି ଯାଇ ସବ ।
ଶୁଣିଣ ବାନର ଭାଲୁ ବେଗେ ଚଳଗଲେ
ବନମଧ୍ୟେ ଫଳ ମୂଳ ପଶିଣ ଖାଇଲେ ।
ଭକ୍ଷିଣ କପିବଳ ରଥରେ ବସେ ଆସି
ରାଜାଗଣେ ଭୁଞ୍ଜିଣ ଯେ ଯାନପରେ ବସି ।
ରଥି ସେନାପତି ଯୁଥପତି ମହାମଲ୍ଲ
ଏମାନେ ସମସ୍ତେ ଯାଇ ବସିଲେ ରଥର ।
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ସଜହେଲେ
ଆପଣା ଆପଣା ରଥେ ଯାଇଣ ବସିଲେ ।
ବଳଙ୍କା ଚଡ଼କୁ ଦେଖି ବୁଲି ସର୍ବେ ପୁଣ
ଡାଣ୍ଡି ହାଟ ବୁଲିଣ ପ୍ରଶଂସା କଲେ ଜାଣ ।
ବିଭୀଷଣ ସୁଗ୍ରୀବ ରଥରୁ ଓହ୍ଲାଇଲେ
ବିଜଟାର ମନ୍ଦିରରେ ଯାଇଣ ମିଳିଲେ ।
ମନ୍ଦୋଦରୀ ସଙ୍ଗରେ ସମସ୍ତ ମହାଦେଇ
ପ୍ରବେଶ ହେଲେ ଯାଇ ବିଜଟା ପୁରେ ସେହି
ଜନନୀମାନଙ୍କୁ ଦେଖି ଓଳଗେ ଦୋହିତା
ସିଦ୍ଧିଙ୍କ ଚରଣେ ନମିଲା ଯାଇ ବିଜଟା ।
ଭୁରି ଭୋଜନ ତହିଁରେ ସମସ୍ତେ ଭୁଞ୍ଜିଲେ
ଯାନକୀଙ୍କି ମାନ୍ୟ କରି ରଥରେ ବସିଲେ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଉଠି
ନନ୍ଦିଘୋଷ ରଥ ପରେ ଯାଇଣ ସେ ବସି ।
ଯାନକୀଙ୍କି ଘେନିଣ ବିଯଟା ତହିଁ ଗଲା
ନନ୍ଦିଘୋଷ ରଥପରେ ନେଇ ଛାଡ଼ିଦେଲା ।
ଚରଣରେ ଓଳଗି ଶୋଇଲା ଶତବାର
ବୋଇଲା ମୋତେ ଛାଡ଼ିଲ ଯନମୀ ଏଥର ।
ଏମନ୍ତେ ବୋଲିଣ ରୋଦନ କରନ୍ତି ବିଯଟା
ଶ୍ରୀରାମ ବୋଇଲେ କାହିଁକି ତୁମ୍ଭ ଦୋହିତା ।
ମାତଳିକି ବୋଇଲେ ରଥ ମୋହର ଚାଳ
ଶୁଣିଣ ମାତଳି ରଥ ବାହି ଦେଲା ଖର ।
ଗଗନ ମାର୍ଗରେ ରଥ ବେଗେ ଚଳଗଲା
ସକଳ ରାଜା ନର ବାନର ରଥି ଧରା ।
ପଛରେ ଗମନ କରନ୍ତି ସେହି ଯାଣ
ସମସ୍ତେ ଚଳଗଲେ ପଶ୍ଚିମ ଦଗେ ପୁଣ ।

ଜେମନ୍ତ ଲଙ୍କାରେ ଯାଇଣ ହେଲେ ପରବେଶ
ଦେଖିଲେ ସେହି ଗଡ଼ ଅଟଇ ବିଶେଷ ।
ରାବଣେଶ୍ୱର ନନ୍ଦନ ନାଦ ନାମ ପୁଣ
ସଭାକରି ବସିଛି ଜଗତ ଉପରେଣ ।
ହାଟ ବାଟ ପର୍ବତ ବନ ସେ ଦେଖିରାମ
ଲକ୍ଷେକ ରାଜନଙ୍କ ସକଳ ବଳ ପୁଣ ।
ଦେଖିଣସନ୍ତୋଷ ମନରେ ସର୍ବେ ହୋଇଲେ
ମାଲ ବର୍ଣ୍ଣି ପୁର ଦେଖି ପ୍ରଶଂସାଯେ କଲେ ।
ନନ୍ଦଘୋଷ ରଥକୁ ମାତଳି ନେଇ ପୁଣି
ନାଦର ସିଂହଦ୍ୱାରେ ପ୍ରବେଶ ତତକ୍ଷଣି ।
ନାଦ କୁମର ଦେଖିଣ ବହନ ଉଠିଲା
ଶତେବାର ଶ୍ରୀରାମ ଚରଣେ ପ୍ରଣମିଲା ।
ମହାଦେଈଙ୍କ ଆଣି ଚରଣେ ଶୁଆଇଲା
ନମସ୍କରି ବୋଲି କରଯୋଡ଼ି ଉଭାହେଲା ।
ଶ୍ରୀରାମ ବୋଇଲେ ପୁତ୍ର ଶୁଣ ମୋ ବଚନ
ତୋ ପୁର ଦେଖିବାକୁ ରାଜାଏ କଲେମନ ।
ଜନମ ପିତା ପକ୍ଷରେ ଅଇଲେ ମୋ ସଙ୍ଗେ
ଆମ୍ଭେ ଯାଉଅଛୁ ତୁହି ଥାଅ ସୁଖ ରଙ୍ଗେ ।
ଏତେ କହି ମାତଳିକି ବୋଲେ ରଘୁଧୀର
ମୋ ରଥବାହବେଗେସୁଲଙ୍କା ଗଡ଼ବେଲି ।
ଶୁଣିକରି ମାତଳି ସେ ରଥ ବାହିନେଲା
ସୁଲଙ୍କା ଗଡ଼ରେ ରଥ ନେଇ ଉଭାକଲା ।
ପଛରେ ସକଳ ବଳ କଲେକ ଗମନ
ସୁଲଙ୍କାଗଡ଼ ଦେଖିଣହେଲେ ତୋଷମନ ।
ସୁର ଭାଇଙ୍କର ରଥ ସିଂହଦ୍ୱାରେ ରହି
ବାଘ ମୁଣ୍ଡ କରି ସେ ଲାଙ୍ଗୁଳ ଅଛି ଉଆଇ
ଧବଳ ପୁର ଗୋଟି ସେ ବଶଇ ସୁନ୍ଦର
ହାଟ ବାଟ ଦାଣ୍ଡ କାଛ ଅଶୋଭ ତାର ।
ବାଟ ବାଟ ଦାଣ୍ଡ ତାର ମଗର ମୁହାଁତ
ଲଢ ବକଛ ଯାକ ତେଣୁ କମ ପୁରତ ।
ମଧୁବନ ନନ୍ଦନବନ ଖାଣ୍ଡବବନ
ଫଳ ପାଚଇ ଫୁଟଇ ବନେ ଶୋଭାବନ ।
ଦେଖିଣ ସକଳ ସୈନ୍ୟ ଆନନ୍ଦ ହୋଇଲେ
ଧନ୍ୟରେ ବିଧାତାବୋଲିମନେ ବସୁରିଲେ ।
ଶ୍ରୀରାମ ସୁରଭାଇ ସେ ସିଂହଦ୍ୱାରେ ତାର
ସୁର ରଥରୁ ଓହ୍ଲାଇଲେ ସର୍ବେ ସତ୍ୱର ।

ମାତଳି ପାଟରାଣୀଙ୍କ ଜଣାଇଲେ ବାର୍ତ୍ତା
କେବଳ ଦେବତା ତୋର ସିଂହଦ୍ୱାରେ ଆସି
ବିଜୟେ କରି ଅଛନ୍ତି ମୁଁ ଦେଖି ଅଇଲି
ରାଜାଙ୍କୁ କହ ଯାଇ ଯାଆନ୍ତୁ ବେଗ କରି ।
ଶୁଣିଣ ମହାଦେଈ ସେ ବେଗେ ଚଳିଗଲା
ରାଜାର ଆଗରେ ସେ ଯାଇଣ ଜଣାଇଲା ।
ଶୁଣିକରି ସୁବାହୁ ସେ ଉଠିଲେ ବହନ
ସିଂହଦ୍ୱାରେ ଦେଖିଲା ବିଜୟେ ରାମରାଣ ।
ଗଳାରେ କୋଠରେ ହୋଇ ଦନ୍ତରେ ତୃଣ
ରାମନାମ ପଦଗୋଟି କରି ଉଚ୍ଚାରିଣ ।
ପାଏଡ଼ା ପଡ଼ିଣ ସେ ଶୋଇଲା ଶତେବାର
ଦେଖିକରି ଶ୍ରୀରାମ ସେ ଉଠିଲେ ସତ୍ୱର ।
ନନ୍ଦଘୋଷ ରଥୁ ଦେବ ବେଗେ ଚଳିଗଲେ
ସୁବାହୁ କୁମରକୁ ଭୂମିରୁ ଉଠାଇଲେ ।
ଦେଖିଲେ ଶ୍ୱେତଳ ଦେହ କରଇ ପ୍ରଣମଣି
ଶ୍ରୀରାମ ନାମ ମଦରେ ମନହେଲା ପୂର୍ଣ୍ଣି ।
ଏ ସମୟରେ ମାତଳି ନାମରେ ପାଟ
ଅର୍ଘ୍ୟ ଥାଳି ଘେନିଣ ସେ ଅଇଲା ତୁରିତ ।
ଶ୍ରୀରାମଙ୍କର ଶିରରେ ଅର୍ଘ୍ୟ ନେଇଦେଲା
ବନ୍ଦାପନା କରି କରଯୋଡ଼ି ଉଭାହେଲା ।
ସୁରବାହୁ କୁମର ସେ ଉଠି ବେଗେ ପୁଣ
ନେତକ ଧାତ ବୋହୁଛି ବେଳେସେ ନୟନ
ମଙ୍ଗଳ ଆଳତି ରାମଚରଣରେ କଲା
ନମସ୍କରି ବୋଲି କରଯୋଡ଼ି ଉଭାହେଲା ।
ଶ୍ରୀରାମ ବୋଇଲେ ତୁ ହେ ରୋଧନ ନଗର
କାସ ଚିନ୍ତା କରୁଛୁରେ କହ ମୋ ଆଗର ।
ସୁବାହୁ ବୋଇଲା ଦେବ କୁମ୍ଭର ଚରଣେ
ମୋର ମନ ଚିତ୍ତ ରହିଥିବ ଅନୁକ୍ଷଣେ ।
ମୋତେ ଦୟା କରିଥିବ ଶ୍ରୀରାମ ଠାକୁର
ଦେଖିଲି ନିମିଷରେ ମୁଁ ମନରେ ଥିଲାମୋର
ଶ୍ରୀରାମ ବୋଇଲେ ଥାଅ ଯାଉଅଛୁ କୁମର
ଚିନ୍ତାକଲେ ଦେଖାଦେବ ନେତ୍ରରେ ତୋହର
ସୁବାହୁ ବୋଲେ ଦେବ ମୋ ପୁରେଆଜରହ
ମୋଠାରେ ଯେବେ ଦୟା ହେ ଦଶରଥ ପୁଅ
ଶ୍ରୀରାମ ବୋଇଲେ ଆମ୍ଭେ ବହୁତ ଦିନୁ ପୁଣ
ଅଯୋଧ୍ୟାକୁ ଦେଖିନାହୁଁ ପିତାର ନନ୍ଦନ ।

ତୋ ରାଜ୍ୟ ଦେଖିବାକୁ ଅଇଲି ମୁହିଁ ଥରେ
ନର ବାନର ଦେଖିବାକୁ କହିଲେମୋରେ ।
ଏତେ କହି ରାମଚନ୍ଦ୍ର ରଥରେ ବସିଲେ
ମାତଳି ବାହିଲା ରଥ ଗଗନେ ଚଳିଲେ ।
ସୁବଳ ଗିରି ଯାଇ ହେଲେ ପରବେଶ
ରଥରୁ ଓହ୍ଲାଇ ରାମଚଳିଲେ ଭୁଷିତ ।
ଜାନକୀର ହସ୍ତ ଧରି ନିଜ ସ୍ଥାନେ ମିଳି
ତିନି ଭାଇ ରଥପରୁ ବେଗେ ଗଲେ ଚଳି ।
ପୁଷ୍ପକ ଯାନ ଆସିଣ ମିଳିଲା ତୁରିତ
ଶ୍ରୀରାମ ଆଜ୍ଞା ଦେଲେ ଚଳ ସମୁଦ୍ର ତଟ ।
ଆରକୂଳରେ ସରବେ ରହିବା ନଷ୍ଟିଲେ
ରାଜାମାନେ ଚଳିଯାନ୍ତୁ ଯେଯାହା ଦେଶରେ
ରଥୀମାନେ ରଥରେ ହସ୍ତୀପରେ ସିପାହୀ
ହସ୍ତୀ ସାରେଣୀ ବଳଦ ଶଗଡ଼ି ଜନ୍ତୁ ବାହି
ହଟାରି ବଜାରି ଯେ ସେବାକରି ଗଣ
ସମସ୍ତେ ଚଳିଯାନ୍ତୁ ନ ରହି କେହି ପୁଣ ।
ଶୁଣିକରି ସମସ୍ତେ ସଜ ହୋଇଣ ଗଲେ
ସେତୁ ବନ୍ଧ ଉପରେ ଗହଳେ ଚଳିଗଲେ ।
ତିନିଦିନେ ସେତୁବନ୍ଧ ହେଲେ ସର୍ବେ ପାରି
ଲକ୍ଷ୍ମଣ ଶତ୍ରୁଘ୍ନ ଭରତ ଗଲେ ଚଳି ।
ବଶିଷ୍ଠ ନାରଦ ଯେ କଶ୍ୟପ ବାମଦେବ
ଏମାନେ ରହିଲେ ଯାନରେ ହୋଇଣ ସଜ ।
ସୁରଭିଙ୍କ ସଙ୍ଗରେ ଘେନିଣ ଚଳିଗଲେ
ସୁବଳସ୍ଥା ଗିରିକ ଯେତେ ସମସ୍ତେ ଛାଡ଼ିଲେ ।
ବିଭୀଷଣଙ୍କୁ ଡାକ ବୋଲନ୍ତି ନୃପଧାରୀ
ଆମ୍ଭେ ଯାଉଅଛୁ ତୁମ୍ଭେ ଯାଅ ତୁମ୍ଭପୁରୀ ।
ବିଭୀଷଣ ବୋଇଲେ ମୁଁ ସଙ୍ଗତରେ ଯିବି
ତୁମ୍ଭଙ୍କୁ ଅଯୋଧ୍ୟାରେ ଛାଡ଼ିଣ ଆସିବି ।
ମନ୍ଦୋଦରୀ ଚରଣରେ ଲୋଟଇ ଆସି ପୁଣି
ଅଯୋଧ୍ୟା ଯାଏ ମୁହିଁ ଯିବି ରଘୁମଣି ।
ଶ୍ରୀରାମ ବୋଇଲେ କଥା ଉଚିତ ନୁହଇଁ
ଲଙ୍କାଗଡ଼େ କେ ରହିବ କହ ରାଣୀ ତୁହି ।
ତୋ ସ୍ୱାମୀ ଆସିବା ଯାଏ ରାଜ୍ୟ ତୋରପାଳ
ଚନ୍ଦ୍ର ସୂର୍ଯ୍ୟଥିବ ଯାଏ ହୁଅ ତୁ ଅମର ।
ଶୁଣିଣ ମନ୍ଦୋଦରୀ ମେଲାଣି ହୋଇଗଲା
ସପତ୍ନୀ ଘେନ ନିଜ ମନ୍ଦିରେ ମିଳିଲା ।

ଶତେ ରଥ ପାଣି ଦ୍ରବ୍ୟ ସଜ କରି ପୁଣ
ଶ୍ରୀରାମ ଛାମୁରେ ଡାଳି ଦେଲା ତତକ୍ଷଣ ।
ଦୁଇଶ ପାଣିଦ୍ରବ୍ୟ ସୁକଣ୍ଠ ଘେନ ଆସି
ଶ୍ରୀରାମ ଛାମୁରେ ଦେଲା କୁମ୍ଭକର୍ଣ୍ଣ ଅଛି ।
ମେଲାଣି ହୋଇ ବେଗେ ଅଳଙ୍କାପୁରୀଗଡ଼ଗଲା
ବୈବଣେଶ୍ୱରର ପୁଷ୍ପଦାନ ଯେ ମିଳିଲା ।
ତିନି ଶତ ରଥ ପାଣି ଦ୍ରବ୍ୟ ଆଣି ଦେଲା
ରାମ ମେଲାଣି ଦେବାରୁ ହୋଇ ଲଙ୍କାଗଲା
ଲକ୍ଷେ ପାଣିଦ୍ରବ୍ୟ ଘେନ ବାରିବାହୁ ସୁତ
ସୁବଳ ଗିରିରେ ଯାଇ ହେଲା ଉପଗତ ।
ଚରଣେ ଓଳଗି ହୋଇଣ ଶ୍ରୀରାମେ କହିଲା
କୋଦଣ୍ଡ ନୃପଧାରୀ ଆଜ୍ଞାରେ ଚଳିଗଲା ।
ଦୁଇଲକ୍ଷ ରଥ ପାଣିଦ୍ରବ୍ୟ ସଙ୍ଗେ ଘେନି
ସ୍ୱୟମ୍ଭୁ ତ୍ରିଜଟା ମିଳିଲେ ଆସି ପୁଣି ।
ଶ୍ରୀରାମଙ୍କ ଚରଣରେ ରଥ ସମର୍ପିଲେଁ
ଜାନକୀଙ୍କ ଚରଣରେ ତ୍ରିଜଟା ଶୋଇଲେ ।
କହିଲେ ପ୍ରବୋଧି ସେ କର୍ମାଇ ତୁମ୍ଭେରହ
ଶ୍ରୀରାମ କହିବାରୁ ହୋଇଲା ଅତି ସ୍ନେହ ।
ନମସ୍କାର କରିଣ ସେ ବେଗେ ଚଳିଗଲେ
ପାଣିଦ୍ରବ୍ୟ ମାନ ଶ୍ରୀରାମ ଡାଳି ଦେଲେ ।
ଭରତ ଛାମୁରେ ଦିଅ ବୋଲିଣ ବୋଇଲେ
ପାଣିଦ୍ରବ୍ୟମାନ ଘେନ ଚଳିଲେ ସତ୍ୱରେ ।
ଯେତେ ପାଣିଦ୍ରବ୍ୟ ଡାଳିଦେଲେ ରାମରାଣା
ଭରତ ଛାମୁରେ ମିଳିଲେକ ସର୍ବେ ଜାଣ ।
ଦେଖିଣେ ଭରତ କଶ୍ୟପଙ୍କୁ ଡ଼କାଇଲେ
ପାଣିଦ୍ରବ୍ୟସମ୍ଭାଳହେ ବୋଲିଣ ବୋଇଲେ
ଗଜରୋବ କହି ଯେ ସୁବଳସ୍ଥାରେ ଥିଲା
ଶ୍ରୀରାମ ଚରଣେ ଆସି ଦର୍ଶନ ସେ କଲା ।
ଶ୍ରୀରାମ ବୋଇଲେ ତୁ ସୁବଳସ୍ଥାରେ ଥିବୁ
ଚନ୍ଦ୍ର ସୂର୍ଯ୍ୟ ଗଲେ ତୁ ଏଥିରୁ ପୁଣ ଯିବୁ ।
ଶତେସିଂହ ରଢ଼ି ଦେବୁ ବରଷକେ ଥରେ
ଶବ୍ଦ ଉପଗତ ପୃଷ୍ଠ ନୋହିବେ ଏଥିରେ ।
କୋଟିଏ କପି ଘେନିଣ ରହ ତୁ ଏଥିର
ଶୁଣିଣ ଗଜରୋବ କରିଲା ମନ ସ୍ଥିର ।
ଏମନ୍ତେ ରଜନୀ ଆସି ହୋଇଲାକ ଶେଷ
ପୂର୍ବଦିଗେ ଦିନମଣି ହେଲେ ପରକାଶ ।

ସୀତା ସ୍ୱାମ ନନ୍ଦିଘୋଷେ ବିଜେକଲେ
ସିଂହାସନ ଉପରେ ଯାଇଣ ବସିଲେ ।
ଅଙ୍ଗଦ ନଳନୀଳ ଜାମ୍ବୁବ ହନୁମନ୍ତ
ସୁଷେଣ ତାରଷ ସହ ଗବଏ ଗବାକ୍ଷ ।
ନନ୍ଦିଘୋଷ ରଥେ ସର୍ବେ ଯାଇଣ ବସିଲେ
ଦେଖିଣ ବିଭୀଷଣ ଚରଣେ ଓଳଗିଲେ ।
ବୋଇଲା ସବୁକଥା କୁଶଳ ଦେବ ମୋର
ଆହୁରି କଥାଏକ ମୁଁ କହିବି ଗୁମୁର ।
ସେତୁବନ୍ଧ ଦେବ ଯେବେ ରହିବ ଏପରି
ସମସ୍ତେ ଆସିବେ ଲଙ୍କା କୋଦଣ୍ଡ ରୂପଧାରି
ଯେମନ୍ତେ ନିଶ୍ଚଳ ହୋଇ ରହିବି ମୁଁ ପୁଣ
ଏକଥା ବିସ୍ତର କର କୋଦଣ୍ଡ ଧାରଣ ।
ବିଭୀଷଣ କହନ୍ତେ ଶ୍ରୀରାମ ଆଜ୍ଞାଦେଲେ
ମଝିରେ ତିନିଧାରଯେ କାଟିବ ବୋଇଲେ ।
ଏତେବୋଲି ଦେବ ସ୍ୱାମୀ ମାତଳିକି କହି
ସେତୁବନ୍ଧ ପରେ ରଥ କାହ୍ନିଅ ବୁହି ।
ଶୁଣିଣ ମାତଳି ରଥ ବେଗେନେଲା କାଢ଼ି
ସିଂହାସନ ଶାଢ଼ୀଘର ରଖିଲେ ନିବାଢ଼ି ।
ଆଷାଢ଼ ଶୁକଳ ଯେ ଦଶମୀ ଗୁରୁବାର
ଲଙ୍କାକୁ ସେବାଦନ ଛାଡ଼ିଲେ ରଘୁବୀର ।
ଉତ୍ତମ ମୁଖେ ଅଯୋଧ୍ୟା କଲେ ଅନୁକୂଳ
ମାତଳି ବାହିଲା ରଥ ଗଗନ ମାର୍ଗର ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ରରାୟେ
ରଥର ଉପରେ ସିଂହାସନରେ ବିଜୟେ ।
ସିଂହାସନ ଉପରେ ସଜାଇ ଅଛି ଶେଜ
ସୀତାଙ୍କୁ ଘେନି ସେଥିରେ ବିଜେ ରାମରାଜ ।
ଉତ୍ତର ବିମାନ ସବୁ ଯାନ ପରେ ସାର
ଚଉକତିରେ ଜଳାଜବାଟି ଫେର ତାର ।
ବାହାର ଲୋକଙ୍କୁ ଏହା ନ ଦିଶଇ କିଛି
ଶ୍ରୀରାମ ସୀତାଙ୍କୁ ଯେ ସକଳ ଦିଶୁଅଛି ।
ତହୁଁ ଶ୍ରୀରାମଙ୍କର ରଥକୁ ବାହିନେଲେ
ଲଙ୍କାର ରାକ୍ଷସମାନେ ବାଦ୍ୟ ବଜାଇଲେ ।
ହୁଳହୁଳି ଦେଲେ ଲଙ୍କା ସର୍ବ ନାରୀଗଣ ।
ସ୍ୱର୍ଗେ ଦେବତା ବଜାଇଲେ ଦୁନ୍ଦୁଭି ପୁଣ ।
ରାମତାଳି ହରିବୋଲି ଶବ୍ଦ ହେଲା ଗୋଳ
ସୁବଳ ଗିରି ଛାଡ଼ି ଆଇଲେ ରଘୁବୀର ।

ସୁବଳ ଗିରି ଛାଡ଼ି ଲଙ୍କାକୁ ନେଲେ ଗଲେ
ଯେ ଯାହା ମନ୍ଦିରେ ପୁଣି ଯାଇଣ ମିଳିଲେ ।
ରାକ୍ଷସେ ଜୟେ ଜୟେ କରନ୍ତି ଶବଦ
ବଜାଇଲେ ଅସୁରେ ଅସୁରଙ୍କର ବାଦ୍ୟ ।
ପଞ୍ଚୁବନ ପୁଷ୍ପ ଯେ ବରଷନ୍ତି ସୁରଗଣ
ଏଥୁ ଅନନ୍ତରେ ଶୁଣେ ଭଗବତୀ ଶୁଣ ।
ଆକାଶ ମାର୍ଗରେ ଯହୁଁ ଚଳେ ନନ୍ଦିଘୋଷ
ଜଗତକୁ ଦେଖିଲ ଜାନକୀ ଶ୍ରୀରାମତ ।
ଦେଖିଲେ ରଘୁନାଥ ଲଙ୍କାର ଆସ୍ଥାନ
ମେଢ଼ ମଣ୍ଡପ ସବୁ ଅଟ୍ଟାଳି ଘରମାନ ।
ତୋଟାପୁର ହ୍ରଦଯେ କୂପ ବାପୀ ନଦୀ
ଶୋଭାପାଏ ଅଟ୍ଟାଳି ଜଗତି ପ୍ରସାଦ ।
ରତ୍ନମୟ ପୁରଯେ ରାଜାର ନବର
କୁମ୍ଭକର୍ଣ୍ଣ ମନ୍ଦିରଯେ ଇନ୍ଦ୍ରଜିତ ପୁର ।
ନିକୁମ୍ଭିଳା ବଟଯେ ଅଶୋକ ବଣିକ
ଲଙ୍କେଶ୍ୱର ଦେବତାଯେ ଗଡ଼ର ଈଶାନ ।
ଲଙ୍କାର ଆସ୍ଥାନଯେ ମଧୁବନ ତୋଟା
ଜଗତି ଅଟ୍ଟାଳିମାନ ଦିଶେ ଗୋଟାଗୋଟା ।
ଦେଖିକରି ରଘୁନାଥ ପ୍ରଶଂସା କରନ୍ତି
ଧନ୍ୟ ଧନ୍ୟ ଏ କଟକ ବୋଲିଣ ବୋଲନ୍ତି
ଏତେ ସମ୍ପଦ ଛାଡ଼ିଣ ରାବଣେଶ୍ୱର ମଲା
ନର ବାନର ଯୋଗୁ କଟକ ଭାଙ୍ଗିଗଲା ।
ନାରଖାର ଦିଶୁଅଛି ଏଡ଼େ ନଗ୍ରପୁର
ମୋ ଆଜ୍ଞାରେ ପଶିଣ ବାନର କଲେ ଜୁର
ଏମନକ ବଚନରଯେ କଲେ ରାମ ତହୁଁ
ସୀତାର ମୁଖ ଚାହିଁଣ ପଚାରନ୍ତି ସେହୁ ।
ଅଶୋକ ବନେ ନେଇ ତୁମ୍ଭଙ୍କୁ ରଖିଥିଲା
ଜନେକ ଜେମା ଶୁଣ ହୋଇଣ ବୋଇଲା ।
ଏଥୁ ଅନନ୍ତରେ ଯେ ନନ୍ଦିଘୋଷ ଯାନ
ଧୀର ଧୀର ହୋଇଣ ସେ କରନ୍ତି ଗମନ ।
ଉତ୍ତର ମୁଖ ହୋଇ ଚଳିଲା ଯହୁଁ ଯାନ
ଦେଖିଣ ଦେବତାମାନେ ହରଷକଲେ ମନ
ପୁଷ୍ୟା ନକ୍ଷତ୍ରରେ ସେ କଲେ ଅନୁକୂଳ
ଉତ୍ତରକୁ ଗୁରୁବାରେ ଯାତ୍ରା ଅଟେ ସାର ।
ଆଷାଢ଼ ଶୁକ୍ଳ ଦ୍ୱିତୀୟା ଅଟେ ଯେମନ୍ତେ ଜନ
ନନ୍ଦିଘୋଷ ଯେସନେ ଜଗନ୍ନାଥ ପୁଣ ।

ପଚଶ ଯୋଜନରେ ଉଠିଲା ଦେବ ରଥ
ଉତ୍ତର ମୁଖତ ପ୍ରତ ହେଲେ ରଘୁନାଥ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମ ଚରିତ ଶୁଣି ପାତକ ଯାଉ ତୋର ।
ଉତ୍ତର ମୁଖ ହୋଇ ଶ୍ରୀରାମଚନ୍ଦ୍ରରାୟେ
ସମସ୍ତଙ୍କୁ ଆଗେ ଗୁଳ ପଛରେ ବଜାୟେ ।
ସଂଗ୍ରାମ ଭୂମିକି ପୁଣ ଦେବ ଦେଲେ ଦୃଷ୍ଟି
ସୀତାଙ୍କୁ ବୋଲନ୍ତି ତୁମ୍ଭେ ଶୁଣଗୋ ବରମ୍ଭୋରୁ
ଏ ଲଙ୍କା ଗଡ଼କୁ ଯେ ଗଢ଼ିଲା ବିଶ୍ୱକର୍ମା
ରାବଣକୁ ପ୍ରସନ୍ନରେ ଦେଇଥିଲେ ବ୍ରହ୍ମା ।
ଏହି ପୁର ଏବେ ମୁଁ ଯେ ବିଭୀଷଣକୁ ଦେଲି
ତୋହର ନିମନ୍ତେ ମୁଁ ଏତେ କର୍ମ କଲି ।
ଦେବେ ଲଙ୍ଘି ନ ପାରନ୍ତି ଯେବଣ କଟକ
ଚଉଦ ଭୁବନେ ଯେ ଲଙ୍କାଗଡ଼ ଶ୍ରେଷ୍ଠ ।
ଦୈତ୍ୟମାନେ ବାନରହସ୍ତରେ ପ୍ରାଣଦେଲେ
ବୁଦ୍ଧି ହରାଇ ପ୍ରାକର୍ମ ଦେଖାଇ ସର୍ବେ ମଲେ
ଜାନକୀ ବୋଇଲେ ଦେବ ଦିଶୁଛି ରଣ ଭୂମି
ମରିବାର ଲୋକେତ ଗୋଟାଏ ନାହାନ୍ତି ସ୍ୱାମି
କେବଳ ପାଞ୍ଚଜଣ ଦିଶୁଅଛି ଏଥି
ଏଥିର କଥା ଦେବ କହ ହେ ସଞ୍ଚପି ।
ଶ୍ରୀରାମ ବୋଇଲେ ଯେ ଯେ ଅଟନ୍ତି ପାଞ୍ଚଜଣ
ଆମ୍ଭେ ନାଶକଲୁ କୁମ୍ଭକର୍ଣ୍ଣ ଯେ ରାବଣ ।
ମହୀରାବଣ ଇନ୍ଦ୍ରଜିତ ଲକ୍ଷ୍ମଣ ନାଶକଲେ
ଏଥିରୁ ଏକ ରାବଣ ଅଗ୍ନିରେ ପୋଡ଼ିଗଲେ ।
ପର୍ବତ ସମାନେ ଯେ ଦିଶୁଅଛି ଉପୁଙ୍କର
ସେହିଟି କୁମ୍ଭକର୍ଣ୍ଣ ଭାଇ ଯେ ରାବଣର ।
ଯେବଣ ଗୋଟି ଗଡ଼ ଭିତରେ ପଡ଼ିଅଛି
ଇନ୍ଦ୍ରଜିତ ଅଟଇ ଯେ ରାବଣର ବନ୍ଦି ।
ଯେବଣ ଦୈତ୍ୟ ଗୋଟି ଦିଶଇ ଧବଳ
ଇନ୍ଦ୍ରଜିତ କୁମର ମହୀରାବଣ ନାମ ତାର ।
ଗିରିବର ପରାୟେ ଗୋ ଯେହୁ ପଡ଼ିଅଛି
ରାବଣର ମୈନ୍ଦ ସେହୁ ଶତମୁଖା ଏଟି ।
ଅଲଙ୍କା ଗଡ଼ରେ ଅଟେ ଏହାର ଘର
ସାନୁଜ ଶତ୍ରୁଘନ ମାଇଲା ମୋହର ।
ଦୁଇଭାଗ ହୋଇଣ ପଡ଼ିଛି ଯେହୁ ପୁଣ
ସୁବଳୟା ପରାୟେ ଅଟେ ଭଳ ଜାଣ ।

ତୁମ୍ଭେ ଯେ ଯାହାକୁ ପୁଣ ନାଶ କଲ
ଦୁଇଫାଳ କରିଣ ତାର ପକାଇଲ ।
ଜାନକୀ ବୋଇଲେ ଦେବ ଆଜ ଗଲେ ନାହିଁ
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ଗୋ ପ୍ରାଣସହି
ଦେବତାମାନେ କୁଟ କଲେ ଯେ ଏଥିରେ
ଯୋଗିଣୀ ପିଣ୍ଡିଗୁଣିକ ଭେଦିଲେ ଏଠାରେ ।
ସେହିମାନେ ଆସିଣ ଦୈତ୍ୟଙ୍କୁ ଭସ୍ମ କଲେ
ରକ୍ତ ମାଂସ ଖାଇ ଗୋଟିଏ ନ ରଖିଲେ ।
ଶୁଣିକରି ଜାନକୀ ମନରେ ହେଲେ ତୋଷ
କେମନ୍ତେ ବଞ୍ଚନ୍ତା ଆଉ ବିଶ୍ରବାର ସୁତ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣଗୋ ସଙ୍ଗାତୁଣି
ନିର୍ମଳ ଦିଶୁଛି ରଣ ଭୂମି ଗୋଟା ପୁଣି ।
ଏଠାରେ ରାବଣ ହେଲା ପ୍ରାଣନାଶ
ଅନେକ ଅସୁର ତା ସଙ୍ଗରେ ହେଲେ ଭସ୍ମ
ଏଠାରେ ଲକ୍ଷ୍ମଣ ଗୋ ହେଲା ଶକ୍ତିଭେଦ
ଏଠାରେ ବ୍ରହ୍ମଶର ମାଇଲା ମେଘନାଦ ।
ଏଠାରେ ଇନ୍ଦ୍ରଜିତ ମାୟାବୃଷ୍ଟି କଲା
କୁମ୍ଭର ପରାଏ କରି ସୃଷ୍ଟିଏ ମାଇଲା ।
ଏଠାବରେ ନାଗଫାଶ ବାନ୍ଧିଲା ଆମ୍ଭ ଦେହି
ଦେଖାଇ ପଳାଇଲା ଆମ୍ଭଙ୍କୁ ତୁମ୍ଭ ଭୁଇଁ ।
ଦେଖ ଏ ସୁବଳୟା ଗିରିରେ ରହିଲୁ
ଏହାକୁ ଆଶ୍ରେକରି ସଂଗ୍ରାମେ ଜିଣିଲୁ ।
ଏହି ଗିରି ଭରସା ହେଲା ଦୁଃଖ କାଳେ
ଏହାର ପ୍ରସାଦେ ମୁଁ ମାଇଲି ଲଙ୍କପାଳେ ।
ମୋତେ ଯେ ନ ସମ୍ଭାଳ ଥାନ୍ତି ଗିରିବର
ତାହିଁ ବସିଥାନ୍ତି ମୁଁ ବସ୍ତୁ ଯାନଘର ।
ଇନ୍ଦ୍ର ଉପବନ ଯହିଁ ଦେଖିଲା ପୁଣ ମୋତେ
ସେ ସକାଶୁ ସଖୀରେ ପାଇଲି ମୁଁ ତୋତେ ।
ଏ ଯେ ପଡ଼ିଅଛି ନଗତଉ ସ୍ଥଳ
ଲଙ୍କାରୁ ଆଣିଲା ତାକୁ ବାନର ଦୁମ୍ମଳ ।
ଦେଖଗୋ ରତ୍ନ ମୁକୁଟ ପଡ଼ିଛି ଏଠାରେ
ମାଲ ଯୁଦ୍ଧ କରିଣ ଆଣିଲେ ସୁଗ୍ରୀବରେ ।
ଏଠାରେଯେ ଆଗେ ଆସି କରିଥିଲେ ଠଣା
ଏଠାରେ ସେ ଲଙ୍କପତି କଲା ରାତି ହଣା ।
ଦେଖ ସଖୀ ସାଗର ଭିତରେ ସେତୁବନ୍ଧ
ଏହାର ଯୋଗୁ ଆମ୍ଭେ ଜିଣିଲୁ ଦଶକନ୍ଧ ।

ଏମନ୍ତ ବୋଲି ଶ୍ରୀରାମ ସୀତାଙ୍କୁ ଦେଖାଇଣ
ଏଥୁ ଅନନ୍ତରେ ତୁମ୍ଭେ ଭଗବତୀ ଶୁଣ ।
ସେତୁବନ୍ଧ ଉପରେ ଯେ ରଥଗୁଳ ଆସି
ଘଡ଼ରେ ଆସଇ ଯେ ବିଶବାର ବହି ।
ସୁଷେଣ ବୋଇବେ ଦେବ ଏହୁଠାରେ ରହ
ବିଭୀଷଣ କଥା ଶୁଣ ଦଶରଥ ପୁଅ ।
ଲଙ୍କାଗଡ଼ ରକ୍ଷିବାକୁ ତାଙ୍କୁ ଆଜ୍ଞାଦେଲେ
ସେତୁବନ୍ଧ କାଟିବାକୁ ବୋଲିଣବୋଇଲେ ।
ସତାଇଶ ଯୁଣ ହେଲା ଏଠାକୁ ବନ୍ଧର
ଛଡପୁଣ ଏଠାରେ କାଟ ହେ ରଘୁବୀର ।
ଶୁଣିଣ ଶ୍ରୀରାମ ଯେ କୋଦଣ୍ଡ କରେ ଧରି
ବଜ୍ରଶର ବନ୍ଧିଲେ ତହିଁରେ ନୃପଧାରୀ ।
ଦସ୍ତାକରି ବ୍ରହ୍ମଶର ଗୋଟିଏ ବନ୍ଧିଲେ
ସେତୁ ବନ୍ଧକୁ ସେଠାରେ ରଖିଣ ଦଗ୍ଧ କଲେ
ହନୁମନ୍ତକୁ ବୃହିଁଣ ବୋଲନ୍ତି ରାମରାଣ
ମଧ୍ୟରୁ ଛାଗେ ତୁ ଯେ ଉଠାଇ ଆଣ ପୁଣ ।
ଶୁଣିଣ ହନୁମନ୍ତ ନଳ ଉଧ୍ଳାଇଲେ
ଶ୍ରୀରାମ ନନ୍ଦଘୋଷରୁ ଉଧ୍ଳାଇ ଅଇଲେ ।
ଛଡ଼ଯୁଣ ସେଥିରୁ କାଟିଲେ ଧନୁହସ୍ତେ
ଆଉଯାଇ ହନୁ ଯେ ଆଣିଲେକ ବଳେ ।
ସୋଲ ଭେଳା ପରାଏ ଯାଉଁଳନେଇ କଲ
ନଳଛୁଇଁଣ ତାଙ୍କୁ ଅଚଳ କରାଇଲ ।
ସେତାରୁ ରଘୁନାଥ ଯାନପରେ ବସି
ସତାଇଶ ଯୁଣଯାଏ ଚଳରେ ବ୍ରହ୍ମରୂଷି ।
ସେଠାରୁ ହନୁମନ୍ତ ନଳକୁ ହେନପୁଣ
ସାତଯୁଣ ମଧ୍ୟରୁ କାଟିଲେ ବନ୍ଧ ଜାଣ ।
ଆଉଯାଇ ଆଣି ତାଙ୍କୁ ଯାଉଁଳ ବନ୍ଧକଲେ
ନଳକୁ ଛୁଆଁଇଣ ନିଶ୍ଚଳ କରାଇଲେ ।
ସେଠାରୁ ଯାନପରେ ଚଳିଲେ ରାମରାହୁ
ସତାଇଶ ଯୁଣ ପୁଣ ଗଲେ କହୁଁ କହୁଁ ।
ସେଠାରୁ ଉଧ୍ଳାଇ ସପ୍ତଯୁଣ କାଟି
ନିଶ୍ଚଳ କଲେ ଆଉଯାଇ ନଳକୁ ଛୁଆଇଁସେଟି
ବିଭୀଷଣକୁ ବୋଇଲେ ହେଲଟିକ ଏବେ
ଯେଉଁ କଥାକୁ ଶଙ୍କାକୁରେ କରିଥିଲୁ ପୂର୍ବେ
ଶୁଣିଣ ବିଭୀଷଣ ଚରଣେ ଉଳଗଇ
ମୋର ସକଳ କଥା ତୁମ୍ଭେତ ଜ୍ଞବଗ୍ରାସ୍ତ ।

ସେଠାରୁ ରଥପରେ ବିଜୟେ ନୃପଧାରୀ
ହନୁମନ୍ତ ନଳ ଯେ ବସିଲେ ଆସିକରି ।
ତିନଧାର ବହୁଁ କାଟିଦେଲେ ରାମରାଣ
ସନ୍ତୋଷ ହୋଇଲ ଦେଖି ଦଶରଥ ନନ୍ଦନ ।
ଯାନଉପରେ ବସିଣ ବେଗେ ଚଳିଗଲେ
ଜନକ ଦୋହିତାକୁ ଘେନ ଶ୍ରୀରାମ ବୋଲେ
ହେ ମହାସତୀ ଗୋ ସିନ୍ଧୁ ଉତ୍ତରକୂଳ
ଏଠାରେ ଶରଣ ପଶିଲ ବିଭୀଷଣ ଅନର୍ଗଳ
ଶରଣ ପଶିବା ହେତୁ ଅଭିଷେକ କଲୁ
ଏହୁଠାରେ ଲଙ୍କାରେ ନୃପତି କରାଇଲୁ ।
ଏହୁଠାରେ ସମୁଦ୍ରକୁ ମାଗିଲଇ ବାଟ
ବୁଝି ତ ହରାଇଲୁ ପାଇଲୁ ବହୁ କଷ୍ଟ ।
କୁଶପାରି ଏଠାରେ ଶୋଇଲୁ ତିନଦିନ
ଏଠାରେ ସେ ବ୍ରହ୍ମା ଅସ୍ତ୍ରକଲୁଟି ଅଧ୍ୟାନ ।
ବରୁଣ ସଙ୍ଗେ ଆସି ଗଙ୍ଗା ଯମୁନା ବେନି
ପ୍ରବୋଧ କଲେ ମୋତେ ଗୋଟିଏ ରହୁବେନ
ଏହୁଟି ସମ୍ପାତି ଗିରି ବୃହାଁ ସ୍କନ୍ଦମୁଷ୍ଟିଁ
ଦ୍ୱାଦଶଦିନ ପର୍ଯ୍ୟନ୍ତେ ଫଳ ମୂଳେ ରହି ।
ଜାନକୀ ବୋଇଲେ ଦେବ ଶୁଣ ମୋ ବଚନ
ସେତୁବନ୍ଧ କମ୍ପା କାଟିଲ ତିନଠାବେଣ ।
ଶ୍ରୀରାମ ବୋଇଲେ ଲଙ୍କାକୁ ବାଟ ହୋଇଲ
ବିଭୀଷଣ ନୃପତି ମନରେ ଚିନ୍ତା କଲ ।
ବୋଇଲ ଏହୁବାଟରେ ସମସ୍ତେଟି ଯିବେ
ମୋହର ଲଙ୍କାଗଡ଼କୁ କମନା କରିବେ ।
ତେଣୁକରି ଅଚିନ୍ତା ଯେ କରାଇଲୁ ପୁଣ
ତିନଧାର କାଟିବାରୁ ବାଟ ନରୋଧିଣ ।
ବଇଦେହୀ ବୋଇଲେ ସରିଲ ସିନ୍ଧୁ ପାରି
କମ୍ପା ଏଠି ରହିଲେ ନର ଭଲୁକ ହରି ।
ରାମ ବୋଇଲେ ରହିବ ଏଠି ବନତନ
ଧାମ ଗୋଟିଏ ଉଆରି କରିଯିବା ପୁଣି ।
ରାବଣେଶ୍ୱର ମାଉଣ ଲଙ୍କା ଜୟ ହେବା
ସେତୁବନ୍ଧ ରମେଶ୍ୱର ବୋଲି ନାମେ ହେବ
ଦ୍ୱାରକା ଯେ ଅଛି ଧାମ ପଶ୍ଚିମରେ ଜାଣ
ରାମକୃଷ୍ଣ ଅବତାର ପୂଜାହେବେ ପୁଣ ।
ଉତ୍ତର ହେମାଳ ଲଗି ବଦରି ଆଶ୍ରମ
ସବୁଢନେ ସେହାରେ ବିଶ୍ରାମ ନାରାୟଣ ।

ପୂର୍ବଯୁଗେ ପୁରୁଷୋତ୍ତମ ନାମେଣ ପୁରି
ନୀଳଗିରି ବିଜୟ ନୀଳମାଧବ ସାରି ।
କଳିଯୁଗେ ଏ ମୂର୍ତ୍ତି ଚତୁର୍ଦ୍ଧା ରୂପ ହେବ
ଭକ୍ତବତ୍ସଳ ନାନା ବିଖ୍ୟାତ କରାଇବ ।
ରତ୍ନ ପାଷାଣ ଦେଉଳରେ ରହିବେ ହରି
ଘୋଷଯାତ୍ରା ସେଥି ମଧ୍ୟରେ ଭିଆଣ କରି ।
ନୀଳମାଧବ ରୂପ ଦେଖିଛ ନୟନରେ
ରୋହିଣୀକୁଣ୍ଡ ଅଛି ତାଙ୍କର ପାରୁଶରେ ।
ତହିଁର ପାଖେ ଅଛି କଳପ ନାମେ ବଟ
ପଙ୍କତ ତଳକୁ ସିନ୍ଧୁ ଲହଜା ମୁରଟ ।
ସେ ମାଧବ ଉତ୍ତର ଅଛନ୍ତି କଣ୍ଡୁ ଋଷି
ସବୁଦିନେ ସେ ଧ୍ୟାନେ ଜପ କରନ୍ତି ବସି ।
ପୂର୍ବେ ବେଲେଶ୍ୱର ଦୋ ଲିଙ୍ଗପୂଜା ମୋର
ପଶ୍ଚିମେ ଲଭେଶ୍ୱର ପୂଜ ମହେଶ୍ୱର ।
ଦକ୍ଷିଣେ ସ୍ୱରଗ ଦ୍ୱାର ସିନ୍ଧୁର କୂଳେରେ
ଉତ୍ତରେ ଭାର୍ଗବୀ ବହେ ସଧୀରେ ସଧୀରେ
ଶଙ୍ଖ ଲଭରେ ବିଜୟେ ନୀଳ ଯେ ମାଧବ
ସେହିଥାନ ସବୁଦିନେ ମୁକ୍ତିଦ୍ୱାର ଲଭ ।
ଜମ୍ବୁଦ୍ୱୀପ ମଣ୍ଡଳରେ ବଇକୁଣ୍ଠ ସେହି
ବଦରି ଆଶ୍ରମ ସ୍ୱର୍ଗ ଧାମ ଯେ ବୋଲାଇ ।
ଦେବତାଏ ସେଠାରେ ଦେଖନ୍ତି ନାରାୟଣ
ଧୂପ ପାପ ମଙ୍ଗଳ ଆଳତି କରେ ପୁଣ ।
ଦ୍ୱାରକାରେ ବାସୁଦେବ ସବୁଦିନେ ରହି
ସେରୂପ ଦର୍ଶନ ନ କଲେ ଦେବ ସଙ୍ଗେ ରହି
ଏମନ୍ତେ ତିନଧାମ ହୋଇଛି ପ୍ରମାଣ
ଏମନ୍ତେ ଗୋଟିଏ ଧାମ କରିବା ଭିଆଣ ।
ସେତୁବନ୍ଧ ଦେଖିବାକୁ ଆସିବେ ଯେ ନର
ରାମ ଲକ୍ଷ୍ମଣ ସୀତା ଦେଖିଣ ହେବେ ସ୍ଥିର ।
ଦୁଇପାଖେ ଦୁଇଭାଇ ମଧ୍ୟେ ତୁମେ ଥିବ
ଦର୍ଶନ କଲେ ପାପ ହରିବେ ସୁରଦେବ ।
ଶୁଣିଣ ଜାନକୀ ଯେ ମନରେ ତୋଷହେଲେ
ଏଥୁ ଅନ୍ତେ ଶୁଣ ହେମବନ୍ତର ଦୁହିତାଲେ ।
ଶତ୍ରୁଘନକୁ ଚାହିଁଣ ବୋଲନ୍ତି ରାମରାଣ
ରାଜାମାନଙ୍କୁ ଯାଇଣ କହରେ ବଚନ ।
ଏଠାରେ ରାଜାମାନେ ରଥରୁ ଓହ୍ଲାନ୍ତୁ
ଶାଢ଼ୀଘର ଏହିଠାରେ ରହିଣ କରନ୍ତୁ ।

ମାଜଣା ସ୍ନାନ କରି କରନ୍ତୁ ନିତ୍ୟକର୍ମ
ଯେ ଯାହା ମନଇଚ୍ଛାରେ କରନ୍ତୁ ଭୋଜନ ।
ଶୁଣି ଶତ୍ରୁଘନ ବେଗେ ହୋ ଚଳଗଲା
ଶ୍ରୀରାମ ଆଜ୍ଞାବୋଲିଣ ରାଜାଙ୍କୁ କହିଲା ।
ଶୁଣିଣ ରାଜାମାନେ ରଥପରୁ ଓହ୍ଲାଇ
ଶାଢ଼ୀଘରେ ଭିଆଣ କଲେ ଯେ ବେଗେ ତହିଁ
ମାଜଣାସ୍ନାନଦାନ ବଧ୍ୟ ନପାରେ ଯେକଲେ
ଶାଢ଼ୀଘରେ ନିତ୍ୟକର୍ମ ମାନ ସେ ସାରିଲେ
ଭରଥକୁ ଚାହିଁଣ ବୋଲନ୍ତି ରାମ ରାହୁ
ରଥପରୁ ବେଗେ ଓହ୍ଲାଅ ତୁରେ ବାବୁ ।
ବଶିଷ୍ଠଙ୍କ ସନ୍ନିଧିକୁ ଯାଅ ବେଗକରି
ଗୁରୁଙ୍କ ଚରଣେ ଓଳଗିବୁ ଯାଇକରି ।
ବୋଲିବୁ ସୁରଭିକୁ ଯେ ଆଣିଦିଅ ମୁନି
ନର ବାନରଙ୍କୁ ଭୋଜନ ଦିଅ ପୁଣି ।
ଶୁଣିଣ ଭରତ ଯେ ରଥରୁ ଓହ୍ଲାଇଲା
ବଶିଷ୍ଠଙ୍କର ଆଗରେ ଯାଇଣ ମିଳିଲା ।
ଓଳଗି ହୋଇଣ ଉଠିଲା କରଯୋଡ଼ି
ବୋଲେ ଶ୍ରୀରାମ ମୋତେ ତୁମକୁ ଦେଲେଭଳ
ବୋଇଲେ ଗୁରୁଙ୍କ ଆଗେ କହ ଯାଇ ବେଗ
ସୁରଭିଙ୍କି କହିଣ ଯେ କରନ୍ତୁ ସଯୋଗ ।
ଶୁଣିଣ ବଶିଷ୍ଠ ଋଷି ସୁରଭିକ କହି
ସକଳ ସୈନ୍ୟ ଭୁଞ୍ଜିବେ ପଦାର୍ଥ ଦିଅ ତୁହି
ସୁରଭି ବୋଲେ ହଟାରି ବଜାରି ବସାଅ
ଯେ ଯାହାର ମନ ଇଚ୍ଛା ନେଇ ସର୍ବ ଖାଅ
ନର ରାକ୍ଷସ ସର୍ବେ କରନ୍ତୁ ଯେ ରନ୍ଧଣ ।
ବାନରେ ଫଳ ମୂଳ ଭୋଜନ କରି ଜନା ।
ଏତେ ବୋଲି ସୁରଭି ଅମୃତ ବୃଷ୍ଟି କଲା
ଯେ ଯାହା ଲୋଡ଼ିଲା ତାହାକୁ ଦ୍ରବ୍ୟ ମିଳିଲା
ହନୁମନ୍ତ ଅଙ୍ଗଦ ଚାହିଁ ଶ୍ରୀରାମ କହି
ବାନର ଭାଲୁଙ୍କୁ ତୁମ୍ଭେ କହ ଜଣା ଯାଇ ।
ରଥରୁ ଓହ୍ଲାଇ ସର୍ବେ କରନ୍ତୁ ଭୋଜନ
ଫଳମୂଳ ଯାହାକୁ ଯେ ସୁଖ ହୋଏ ପୁଣ ।
ଶୁଣିଣ ହନୁମନ୍ତ ଅଙ୍ଗଦ ଚଳଗଲେ
ବାନର ଭାଲୁମାନଙ୍କୁ ବଚନ ବୋଇଲେ ।
ବୋଇଲେ ସମସ୍ତେ ତୁମ୍ଭେ ରଥରୁ ଓହ୍ଲାଅ
ବନସ୍ତରେ ପଶିଣ ଫଳ ମୂଳ ସେ ଖାଅ ।

ଲୋମପାଦ ଗୃହ ନାମେ ଶବରକୁ କହି
ଶାଢ଼ୀଘରେ ନିତ୍ୟକର୍ମ ସାରି ତୁମ୍ଭେ ଯାଇ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ଏମାନଙ୍କୁ ଦୃଷ୍ଟି ବୋଲେ ଦଶରଥ ବାଳ ।
ତୁମ୍ଭେମାନେ ଯାଇଣ ସ୍ନାହାନ ବେଗେ କର
ଯେ ଯାହା ମନଇଚ୍ଛା ଭୋଜନ ବେଗେ କର
ଇଥି ପାଦାନ୍ତ ବଳକୁ ବୋଲେ ତୁମ୍ଭେ ଯାଅ
ସ୍ନାହାନ ଭୋଜନ ତୁମ୍ଭେ କରି ସୁସ୍ଥେ ରହ ।
ସିପାହୀ ମାହୁନ୍ତ ଶଗଡ଼ିଆ ବଳଦିଆ
ଏମାନଙ୍କୁ ଦାନ ଦିଅ ଯେଉଁ ଦାନା ଖିଆ ।
ଲକ୍ଷ୍ମଣକୁ ବୋଇଲେ ରଥରୁ ବେଗେ ଚଳ
କନକ ମଣ୍ଡପ ଘର ନେଇଣ ତିଆର ।
ଶୁଣିକରି ସଉମିତ୍ରୀ ବେଗେ ଚଳିଗଲା
ଶାଢ଼ୀଘର କନକ ମଣ୍ଡପ କରି ନେଲା ।
ନିର୍ମଳ କରିଣ ଥାନ ଦେଖିଲା ଯହିଁରେ
କନକ ମଣ୍ଡପ ନେଇ ରଖିଲା ତହିଁରେ ।
ସେଥିର ଭିତରେ ସିଂହାସନ ନେଇ ରଖି
ଶାଢ଼ୀଘର ଗୋଟିଏ ତିଆରି କଲା ସେଥି ।
ଅଲଗା ଶାଢ଼ୀଘର ତିନୋଟି ତିଆରିଲା
ବର୍ଣ୍ଣଂଗିରି ନଦୀ ନିକଟ ସେହି କଲା ।
ବୈଷ୍ଣବ ରୂପଧାରୀ ରଥରୁ ଓହ୍ଲାଇଲେ
ଜାନକୀ କର ଧରି ତଳରେ ଉଭା ହେଲେ ।
ଶାଢ଼ୀଘର ଭିତରେ ପଶିଲେ ବଇଦେହୀ
ମାଜଣା ମାର୍ଜିତ ହୋଇ ସ୍ନାନ କରି ତହିଁ ।
ସ୍ନାନ ସାରି ବେଗେ ଅମାଳାଣ ବସ୍ତ୍ର ପିନ୍ଧି
ରନ୍ଧଣାରେ ବିଜେକଲେ ସର୍ବ କଥା ରଖି ।
ଛତିଶ ରସ ପ୍ରକାରରେ ପାକ ସମ୍ପାଦିଲେ
ଏଥୁ ଅନନ୍ତରେ ତୁମ୍ଭେ କଥା ଶୁଣ ଭଲେ ।
ଶ୍ରୀରାମ ଯେ କନକ ମଣ୍ଡପେ ବିଜେ କଲେ
ଭରତାଦି ସେନ ଦେବ ମାଜଣା ସରିଲେ ।
ବର୍ଣ୍ଣଂ ନଦୀରେ ଯାଇଣ କଲେକ ସ୍ନାହାନ
ନିତ୍ୟକର୍ମ ସାଧିଣ ଅଇଲେ ବେଗେ ପୁଣ ।
ଅମଳାଣ ଶାଢ଼ୀ ପିନ୍ଧି ତିଳକ ଲଗି ହେଲେ
ଶାଢ଼ୀ ଘର ଭିତରେସେ ପ୍ରବେଶ ହୋଇଲେ
ଛତିଶରସେ ଭୋଜନ ଯେ କଲେ ଗୁରୁ ଭାଇ
ଜନକ ବୋହିତା ଆଣି ତାଙ୍କୁ ପରସଇ ।

ଆଚମ୍ବନ ସାରିଣ କନକ ମଣ୍ଡପରେ
ବିଜୟେ କଲେ ଶ୍ରୀରାମ ପଲଙ୍କ ଉପରେ ।
ବିଡ଼ିଆ ନେଇଣ ଦେଲା ପବନ କୁମର
ଆଲଟ ପକାଇଲା ଯେ ବାଳିର ଦୁଲାଳ ।
କନକ ଦଣ୍ଡ ନେଇଣ ଟେକେ ବିଭୀଷଣ
ରାମତାଳି ଦେଲେ ତହିଁ ସୁଗ୍ରୀବର ପୁଣ ।
ସୁଷେଣ ନଳ ନୀଳ ଚନ୍ଦନ ସୁରଜଣ
ଧରି ଛତ୍ର ଟେକିଣ ଆଗରେ ଉଭା ପୁଣ ।
ଗବୟେ ଗବାକ୍ଷ ଏହି ବେନ ବୀର ପୁଣି
କାହାଳି ତୁରୀ ଆଗରେ ବାଜିଲା ସେକ୍ଷଣି ।
ହରିବୋଲ ରାମତାଳି କପିବଳ କଲେ
ଭାଲୁକ ବଳ ତହିଁରେ ହୁଳହୁଳି ଦେଲେ ।
ଏହି ସମୟରେ ଆସି ନାରଦ ବଶିଷ୍ଠ
ଶ୍ରୀରାମଙ୍କ ସମ୍ମୁଖରେ ସେ ହେଲେ ଉପଗତ ।
ଦେଖିକରି ଶ୍ରୀରାମ ଆସନରୁ ଉଠିଲେ
ମୁନିଙ୍କର ଚରଣରେ ନମସ୍କାର କଲେ ।
ରତ୍ନ ସିଂହାସନ ପରେ ବସାଇଲେ ନେଇ
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ରଘୁସାଇଁ ।
ଏଠାରେ ବିଳମ୍ବ କିମ୍ପା କରୁଅଛ ରହି
ଏକଥା ଗୋଟି ମୋତେ ତ ସନ୍ଦେହ ଲାଗଇ
ଶ୍ରୀରାମ ବୋଇଲେ ଏଠି କାର୍ଯ୍ୟ ଅଛି ମୋର
ଏହି ଜଗତରେ ଧାମ ନାହିଁ ବାସୁଦେବଙ୍କର ।
ଏ ସକାଶେ ଏଠାରେ ରହିବୁ ତିନିଦିନ
ବାସୁଦେବ ମୂର୍ତ୍ତି ଏଠାରେ ହେବ ଭିଆଣ ।
ସମସ୍ତେ ଏହି ସ୍ଥାନକୁ କରିବେ ଗମନ
ସେତୁବନ୍ଧ ନାରାୟଣ କରିବେ ଦର୍ଶନ ।
ଶୁଣିଣ ବଶିଷ୍ଠ ନାରଦ ମୁନି ସନ୍ତୋଷ
ନାରଦଙ୍କୁ ଦୃଷ୍ଟି କହେ ଦଶରଥ ଶିଷ୍ୟ ।
ତୁମ୍ଭେ କଳହ ଋଷି ଏବେ ସ୍ୱର୍ଗକୁ ଯାଅ
ବ୍ରହ୍ମା ଇନ୍ଦ୍ର ଆଦି ଯେତେ ଦେବତା ଅଣାଅ ।
ରୁଦ୍ର ଦିଗପାଳ ଅଷ୍ଟବସୁ ନଇରିତ
ସମସ୍ତଙ୍କୁ କହିଣ ଯେ ଅଣାଅ ତୁରିତ ।
ଶୁଣିଣ ନାରଦ ଋଷି ବେଗେ ଚଳିଗଲେ
ଦେବଙ୍କର ଆଗରେ ଯାଇଣ କହିଲେ ।
ଦେବବରଙ୍କୁ କହିଣ କପିଳାସ ଗଲେ
ସଦାଶିବ ଆଗରେ ଯାଇ ଜଣାଇଲେ ।

ସେଠାରୁ ସ୍ୱର୍ଗପୁରେ ହେଲେ ଉପଗତ
ସଭାକରି ବସିଛନ୍ତି ଦେବତା ସମସ୍ତ ।
ନାରଦ ଉଭାହୋଇଲେ ଇନ୍ଦ୍ରଙ୍କ ଆଗରେ
ରଘୁନାଥ ପେଶିଛନ୍ତି ତୁମ୍ଭର ପାଶରେ ।
ଲଙ୍କାଗଡ଼ ଗୁଡ଼ ଦକ୍ଷିଣ ସମୁଦ୍ର କୂଳରେ
ସକଳ ବଳ ଘେନି ଅଛନ୍ତି ରଘୁବୀରେ ।
ସେତୁବନ୍ଧେ ତିନଧାର କାଟିଦେଲେ ପୁଣି
ସମ୍ପାତି ପର୍ବତ ପରେ ଛନ୍ତି ରଘୁମଣି ।
ତୁମ୍ଭେଗଲେ ସେଠାରୁ ସେ ଯିବେ ଅଯୋଧ୍ୟାକୁ
ମୋତେ ପେଶିଚନ୍ତି ତୁମ୍ଭର ପାଶକୁ ।
ଶୁଣିଣ ପୁରନ୍ଦର ବୃହସ୍ପତିଙ୍କି ସ୍ମରି
କିମ୍ଭୂତ କଥା ଏହୁ କହ ହେ ଗୁରୁତହିଁ ।
ଶୁଣିଣ ବୃହସ୍ପତି ଯେ କହନ୍ତି ବଚନ
ସେଠାରେ ଶ୍ରୀରାମ ଧାମ ହୋଇବଟି ଜାଣ ।
ସେତୁବନ୍ଧ ବୋଲି ଧାମ ହେବ ଯେ ପ୍ରମାଣ
ସେତୁବନ୍ଧ ଦେଖିବାକୁ ଯିବେ ଯେତେ ଜନ
ସେଠାରେ ଶ୍ରୀରାମ ରୂପ କରିବେ ଦର୍ଶନ
ପାତକ ଦହ୍ୟଁ ହେବ ଦେଖି ଯେହ୍ନୁ ସ୍ଥାନ ।
ତିନଦିଗରେ ଧାମ ହୋଇଅଛୁ ପ୍ରସିଦ୍ଧି
ସେଦିଗେ ଧାମହେଲେ ଚାରିଦିଗେ ପ୍ରସିଦ୍ଧି ।
ଶୁଣିଣ ଦେବରାଜା ମନକଲେ ଆନନ୍ଦ
ମୁଖ ବିକାଶିଲା ଯେହ୍ନେ ପୂର୍ଣ୍ଣିମୀର ଚନ୍ଦ୍ର ।
ସକଳ ଦେବ ଘେନିଣ ଶଚୀଦେବୀ ସାଇଁ
ସୁଧର୍ମା ସଭାରେ ସମସ୍ତଙ୍କୁ ଯେ ବସାଇ ।
ସମ୍ପାତି ପର୍ବତରେ ହୋଇଲେ ପରବେଶ
ସକଳ ଦେବତା ଦେଖି ଶ୍ରୀରାମ ସନ୍ତୋଷ ।
ଦେଖିଣ ଶ୍ରୀରାମ ଯେ ମଣ୍ଡପରୁ ଉଠିଲେ
ସକଳ ଦେବତାଙ୍କୁ ସେ ନମସ୍କାର କଲେ ।
ଦେଖିଣ ବେଦବର ଯେ ବୋଇଲେ ବଚନ
କର୍ମାଇ ଅଣାଇଲ ହେ କୋଦଣ୍ଡ ଧାରଣ ।
ଶ୍ରୀରାମ ବୋଇଲେ ଏହିଠାରେ ଧାମହେଉ
ଚାରିଦିଗେ ଚାରିଧାମ ପ୍ରସିଦ୍ଧି ବୋଲାଉ
ସେତୁବନ୍ଧ ଦେଖି ଆସିବେ ଯେତେକ ନର
ନାରାୟଣଙ୍କୁ ଦର୍ଶନ କରିବେ ଏଠାରୁ ।
ତେବେ ସିନା ଯୁଗେ ଯୁଗେ ରହିବ ମୋନାମ
ଶୁଣିଣ ସନ୍ତୋଷ ଯେ ହୋଇଲେ ଦେବବ୍ରହ୍ମ
ବେଦବର ବୋଇଲେ ଶୁଣ ହେ ରୂପଧାମ
ଧାମ କର୍ମାଇ ଏଠାରେ କରିବ ବିସ୍ତର ।
ଦକ୍ଷିଣ ଦିଗରେ କ୍ଷେତ୍ର ଧାମ ଯେ ନଥିଲା
ତେଣୁକରି ଏ ଲୋକଙ୍କର ଗତି ନଥିଲା ।
ଏବେ ଏହି ଧାମଗୋଟି ହେଲା ପୁଣି ସାର
ନାରାୟଣ ରୂପ ଦେଖି ଯିବେ ସ୍ୱର୍ଗପୁର ।
ରାମ କ୍ଷେତ୍ର ବୋଲି କରି ଏଠାବ ହୋଇବେ
ଶ୍ରୀରାମ ଲକ୍ଷ୍ମଣ ସୀତା ଏଠାରେ ରହିବେ ।
ସକଳ ଦେବତା ଆମ୍ଭେ ଆସି ଏ ଠାବକୁ
ସ୍ୱର୍ଗ ସଭା ସୁଧର୍ମା ଯେ ଆଣି ଏ ସ୍ଥାନକୁ ।
ନର ବାନର ରାକ୍ଷସ ସୁରଗଣ ସର୍ବ
ପଞ୍ଚବର୍ଣ୍ଣ ହୋଇଲେ ପବିତ୍ର ସ୍ଥାନ ବୋଲି ।
ତଳ ପୁରରୁ ନାଗ ଦେବତା ଯେବେ ଆସି
ତେବେ ସିନା ପବିତ୍ର ହୋଇବ ଏ ସ୍ଥାନଟି ।
ଶ୍ରୀରାମ ବୋଇଲେ ଏବେ କାହାକୁ ଭେଦବା
ନାଗ ରାଜାଙ୍କୁ ଡ଼କାଇ ଏଠାକୁ ଆଣିବା ।
ବେଦବର ବୋଇଲେ ଭରଥ ଏବେ ଯାଉ
ନାଗ ରାଜାଙ୍କୁ ଘେନିଣ ବେଗେ ଆସୁ ସେହୁ
ଶୁଣିଣ ଶ୍ରୀରାମ ହେଲେ ମନରେ ଆନନ୍ଦ
ମୁଖ ବିକାଶଇ ଯଥା ପୂର୍ଣ୍ଣିମାର ଚନ୍ଦ୍ର ।
ଭରଥକୁ ଡ଼କାଇ ଆଣିଲେ ବେଗକରି
ବୋଇଲେ ପାତାଳକୁ ଚଳ ତୁ ମନକରି ।
ନାରଦ ମୁନିଙ୍କ ସଙ୍ଗରେ ଘେନିଣ ଚଳ
ନାଗ ରାଜାଙ୍କୁ ଘେନିଣ ଆସ ତୁ ଏଠାର ।
ଶୁଣିଣ ଭରତ ବୀର ବେଗେ ସଜହେଲା
ସକଳ ଦେବତାଙ୍କ ଚରଣେ ନମିଲା ।
ବେଦବର ଚରଣେ କଲେକ ନମସ୍କାର
ଯାଇ ସଦାଶିବଙ୍କର ଅଳଗେ ପଯ୍ୟର ।
ବଶିଷ୍ଠ ଋଷିଙ୍କର ଚରଣେ ଓଳଗିଲା
ଶ୍ରୀରାମଙ୍କୁ ଯାଇଣ ସେ ନମସ୍କାର କଲା ।
ବୋଇଲେ ଦେବ ମୁଁ ଯେ ଯାଉଛି ତଳପୁର
ମେତେ ସୁଦୟା କର ହେ ବ୍ରହ୍ମାଣ୍ଡ ଠାକୁର
ଶ୍ରୀରାମ ବୋଇଲେ ତୁରେ ବେଗହୋଇ ଯାଅ
ନାଗ ରାଜାଙ୍କୁ କହିଣ ବେଗେଣ ଅଣାଅ ।
ସେଠାରୁ କକୟୀ ବୀର ବେଗେ ତଳଗଲା
ଜାନକୀର ଚରଣେ ଓଳଗି ଶୋଇଲା ।

ଜାନକୀ ବୋଇଲେ ବାବୁ ସୁକଲ୍ୟାଣ ହୁଅ
ତୁମ୍ଭଠାରେ ସ୍ନେହକଲେ କୌଶଲ୍ୟାଙ୍କ ପୁଅ
କେଉଁଠାକୁ ଭେଟିଲେ ତୁମ୍ଭଙ୍କୁ ଏବେ ପୁଣ
ଚଞ୍ଚଳତ ହେଉଛ ଯିବାକୁ କରି ମନ ।
ଭରଥ ବୋଇଲେ ମୁଁ ଯାଉଛି ତଳପୁର
ନାଗ ରାଜାଙ୍କୁ ଡାକି ଯେ ଆଣିବି ଏଠାର ।
ଜାନକୀ ବୋଇଲେ ତୁମ୍ଭେ ବେଗ ହୋଇଯାଅ
କିଛି ଚିନ୍ତା ନ କର ସୁଫଳେ ଯାଇ ଖାଅ ।
ଶୁଣି ଭରଥ ବୀର ନାରଦ ସଙ୍ଗେ ଚଳି
ନାରଦଙ୍କ ମନ୍ତ୍ର ଧୂଳି ମସ୍ତକରେ ବୋଳି ।
କଞ୍ଚଣ ଗିରିରେ ଯାଇ ପରବେଶ ହେଲେ
ପାତାଳକୁ ବିବର ଅଛି ସେଠି ପେଷିଲେ ।
ନାଗରାଜା ପୁରେ ଯାଇ ହେଲେ ପରବେଶ
ବାସୁକିଙ୍କି ଭେଟିଲେ ଦଶରଥ ଶିଷ୍ୟ ।
ନାରଦଙ୍କୁ ଦେଖିଣ ବାସୁକି ରଜା କହି
କେଉଁ କାର୍ଯ୍ୟେ ଏଥକୁ ଅଇଲ ମୁନି ଦେହି ।
ନାରଦ ବୋଇଲେ ତୁମ୍ଭେ ଯିବ ମଧ୍ୟପୁର
ଦକ୍ଷିଣ ମହୋଷଧି ସମ୍ପାତ୍ତ ପର୍ବତର ।
ସେଠାବରେ ତ୍ରିଦଶ ଦେବତାମାନେ ତୁଷ୍ଟ
ସେଠାରେ ଯଗ ଧାମ କରିବେ ରାମଚନ୍ଦ୍ର ।
ଅନନ୍ତ ବୋଇଲେ ଧରଣୀ କିଏ ଧରିବ
ମୁନି କହେ ବାସୁଦେବ ଚକ୍ର ଯେ ଧରିବ ।
ଶୁଣିଣ ବାସୁକି ନାଗ ବୋଲେ ଆସ ବେଗ
ନାରଦ ବୋଇଲେ ଭରଥ ଧର ପୃଥ୍ୱୀ ଭାଗ ।
ଶୁଣିଣ ଭରଥ ବେଗ ହୋଇ ଚଳିଗଲେ
ଶ୍ୟାମଳ ଧନୁ ନେଇ ପୃଥ୍ୱୀକି ଲଗାଇଲେ ।
ବାମ ଚରଣ ପରେ ଥୋଇଲେ ନେଇକରି
ଦେଖିଣ ନାଗରାଜା ମନରେ ବିସ୍ମୟ କରି ।
ସୁଦର୍ଶନ ନୋହିଲେ କେ ଧରନ୍ତା ଧରଣୀ
ଏତେ ବୋଲି ନାଗବଳ ଡାକିଲା ସେ ପୁଣି ।
ଅଷ୍ଟକୁଳା ନାଗ ଘେନି ବେଗେ ଚଳି ଆସି
ଆଗରେ ବ୍ରହ୍ମାନନ୍ଦନ ପଛରେ ବାସୁକି ।
ମାଲ୍ୟବନ୍ତ ନିକଟେ ପ୍ରବେଶ ହେଲେ ଆସି
ବିବର ଦ୍ୱାର ବାଟରେ ବାହାରି ସେ ଋଷି ।
ଦକ୍ଷିଣ ମହୋଦଧି କୂଳରେ ପରବେଶ
ଦେବତାମାନଙ୍କୁ ଦେଖି ନାଗରାଜା ତୋଷ ।

ଏଥି ଅନନ୍ତରେ ତୁମ୍ଭେ ଶୁଣ ହେମବନ୍ତ
ମେରୁ ଇନ୍ଦ୍ରାଡ଼କୁ ଗଲେ କଶ୍ୟପର ବଶି ।
ସନ୍ଧ୍ୟା ଯେ ତର୍ପଣ କଲେ ଦେବତା ସକଳ
ବିଶ୍ୱକର୍ମାଙ୍କୁ ପୃଚ୍ଛି ବିଧାତା କହେ ଗିର ।
ଏଠାରୁ ଯୁଗେକ ଛଡ଼ା ଚଳଯାଅ ବେଗେ
ଯୁଗେକ ଆୟୁଭିନରେ ପାଚେରି ସଂଯୋଗେ
ସ୍ୱର୍ଗ ବାହ୍ମ ସ୍ୱର୍ଗ ହୋଶ ହୋଇବ ତାହାର
ମେଘନାଦ ପାଚେରି ଯେ ନାମ ହେବ ତାର
ସେଠାରୁ ସ୍ୱର୍ଗର ବେଢ଼ା ତଞ୍ଚପାଶ କରି
ଦେଉଳ ଅଟାଳି ତୁମ୍ଭ କର ବେଗ କରି ।
ମୋହନ ମୁଖଶାଳାଦି ଭୋଗ ଯେ ମଣ୍ଡପ
ନକ୍ସୁନ୍ଦିଲ ବଟ ରଖି ଉତ୍ତର ପାରୁଶ ।
ସ୍ୱରସ୍ୱତୀ କୁଣ୍ଡ ତହିଁ ଉପରେ ଥାପିବୁ
ସ୍ୱର୍ଗ ଯଗେ ସ୍ୱର୍ଗ ଦ୍ୱାରମାନ ତୁ କରିବୁ ।
ପୂର୍ବ ଦୁଆରରେ ସିଂହ ବସାଇବ ନେଇ
ପଶ୍ଚିମେ ଶାର୍ଦ୍ଦୂଳ ଘୋଡ଼ା ରଖିବୁ ଭିଆଇ
ଦକ୍ଷିଣ ଦ୍ୱାରେ ଅଶ୍ୱ ଉତ୍ତରେ ହସ୍ତୀ ରଖ
ଲକ୍ଷେକ ଦେଉଳ ତୁମ୍ଭ ଶୀଘ୍ର ଦିଅ ରଖ ।
ବିଷ୍ଣୁଶିଳା ସ୍ଥାପିବୁ ତୁ ବ୍ୟାଳିଶି ସହସ୍ର
ରୁଦ୍ରଶିଳା ସ୍ଥାପିବୁ ତୁ ତେତିଶି ସହସ୍ର ।
ସତାଇଶ ସହସ୍ର ତୁ ବ୍ରହ୍ମଶିଳା କର
ଏମନ୍ତେ ଲକ୍ଷେ ଶିଳା ସ୍ଥାପିବୁ ତତକାଳ ।
ବଡ଼ ଦେଉଳେ ସ୍ଥାପି ରାମ ଲକ୍ଷ୍ମଣ ସୀତା
ବସନ୍ତ ଶ୍ୱେତ ବର୍ଣ୍ଣ ନୀଳ ବରଣ ଲେଖା ।
ଏହି ପ୍ରାସ୍ତେ ବେଗେ ତୁମ୍ଭ କର ଯେ ଭିଆର
ସମସ୍ତେ ଅଷ୍ଟରତନେ ହୋଇବେ ନିବାଡ଼ ।
ସେଥିର ସ୍ୱର୍ଗପାଖେ ରଖିବୁ ରତ୍ନ ପୁର
ଅଷ୍ଟରତ୍ନେ ଭରି ପୂର୍ଣ୍ଣ ହୋଇବ ମନ୍ଦିର ।
ଚବିଶ ଦାଣ୍ଡ ସେଥିରେ କରିବୁ ଯେ ମେଳ
କୋଣ୍ଡି ବିକୋଣ୍ଡି ସେଥିରେ ଅଗଣିତ ପଣ୍ଡ ।
ସପତ ଗୋଟି ତୀର୍ଥ କରିବୁ ସ୍ୱର୍ଗପାଖେ
ଲକ୍ଷେକ ଘର ସେଥି ରଚିବୁ ଅନୁରୂପେ ।
ସ୍ୱର୍ଗପାଖେ ବିନ୍ଧ୍ୟନଗ୍ରୀ ବେଢ଼ିଥିବ ପୁଣି
ଦକ୍ଷିଣକୁ ରାଜବାଟ କରିବୁ ତୁ ଜାଣି ।
ସ୍ୱର୍ଗକୁ ବାଟ ରଖିଣ ଦ୍ୱାର ରଖିଥିବୁ
ଯିବା ଆସିବାକୁ ତାହା ଫରସ୍ତ କରିବୁ ।

ରାମ ଘାଟେ ଯେହୁ ପୁଣି ପାଇବ ମରଣ
ସ୍ୱର୍ଗରେ ବସିବ ସେ ଯାବେକ ନାହିଁ ଜାଣ
ତୀର୍ଥମାନଙ୍କର ନାମ ଦେବ ଯେ ପ୍ରମାଣ
ସପତ ଗୋଦାବରୀ ପୂର୍ବ ଦିଗରେ ପୁଣ ।
କୃଷ୍ଣ ବେଣୀ ରାମ ତୀର୍ଥ ତିନ ଯେ ପୂର୍ବରେ
ଦକ୍ଷିଣରେ ରାମଘାଟ ଏକା ଯେ ସେଥିରେ ।
ପଶ୍ଚିମେ କଉଳା ତୀର୍ଥ ରଖିବୁ ବିସ୍ତର
ଉତ୍ତରେ ଗଉଘା ତୀର୍ଥ ରଖିବୁ ବିସ୍ତର ।
ଶୁଣିଣ ଯେ ବିଶ୍ୱକର୍ମା ବେଗେ ଚଳିଗଲା
ଦକ୍ଷିଣେ ରାମଘାଟ ପଶ୍ଚିମେ କଉଳାମାଳା ।
ଉତ୍ତରେ ଗୌଘ ତୀର୍ଥ ଆରମ୍ଭ ଯାଇ କଲା
ପୂର୍ବେ ଗୋଦାବରୀ କୃଷ୍ଣ ରାମ ତୀର୍ଥ କଲା ।
ସୀତା କୁଣ୍ଡ ବୋଲି ସେଥି କଲେକ ପ୍ରକାଶ
ତୀର୍ଥ ଶବ୍ଦ ବୋଲି ତାକୁ ବୋଇଲେ ବିଶେଷ
ସେଠାରୁ ଲକ୍ଷେ ଘର ରତ୍ନରେ ନିବାଡ଼ିଲା
ଅଷ୍ଟରତ୍ନ ନେଇ ସବୁ ଘରରେ ଭରିଲା ।
ସେଠାରୁ ମେଘନାଦ ଯାଗେଶ ଯାଇ କଲା
ଚାରି ଦିଗକୁ ଚାରି ଗୋଟି ଦ୍ୱାର ରଖିଲା ।
ସେଠାରୁ ସାଗର ବେଢା କଲେକ ନିର୍ମାଣ
ସେଥିରେ ଦେଉଳ କଲା ଷାଠିସହସ୍ର ଜାଣ ।
ବିଷ୍ଣୁ ପ୍ରତିମା ଶିଳା ଯେ କୋଡ଼ିଏ ସହସ୍ର
ଶିବ ପ୍ରତିମା ଶିଳା ବିଶେଷ ସତାଇଶ ।
ବ୍ରହ୍ମା ପ୍ରତିମା ଶିଳା ତେର ସହସ୍ର କଲା
ସେଠାରୁ ବଡ଼ଦେଉଳ ଗୋଟି ଆରମ୍ଭିଲା ।
କୋଶେକ ଓସାର ଯେ ଯୋଜନେକ ଉଚ୍ଚ କଲା
ମୁଖଶାଳା ମୋହନ ଲଗାଇ ତୋଳାଇଲା ।
ଭୋଗ ମଣ୍ଡପ ଗୋଟିଏ କନକ ତିଆରି
ନିର୍ମିଲା ବଟ ରଖି ଉତ୍ତର ପାଖରି ।
ତହିଁ ପାଖେ ରଖିଲା ଗଉଘ ନାମେ କୁଣ୍ଡ
ସେଥି ଉତ୍ତରେ ଦେଉଳ ରଳଷି ସସ୍ତ୍ର କୁଣ୍ଡ
ସେଥିରେ ତିନ ପ୍ରକାର ଶିଳମାନ ରଖି
ବଡ଼ ଦେଉଳେ ରାମ ଲକ୍ଷ୍ମଣ ସୀତା ସ୍ଥାପି ।
ଏକା ଶକତରେ ରଖିଲାକ ତିନିଜଣ
ନୀଳ ଧବଳ ଯେ ବସନ୍ତ ବରଣ ପୁଣ ।
ଯେଉଁ ରୂପରେ ବିଧାତା ତାକୁ କହି ଥିଲେ
ସେହି ରୂପେ ବିଶ୍ୱକର୍ମା ସର୍ବ ନିର୍ମ କଲେ ।

ଏମନ୍ତେ ସମସ୍ତେ ରଜନୀ ହୋଇଲା ଶେଷ
ପୂର୍ବରେ ଉଦୟ ହେଲେ କଶ୍ୟପର ଶିଷ୍ୟ ।
ଶଯ୍ୟନ ତେଜି ଉଠିଲେ ତହିଁ ସର୍ବ ବଳ
ନର ବାନର ରାକ୍ଷସ ଉଠିଲେ ସକଳ ।
ଦେବତାଏ ଯାଇଣ ନଦୀରେ ସ୍ନାନ କଲେ
ନିର୍ମଳ ହୋଇ ଆସିଣ ସଭାରେ ବସିଲେ ।
ଶ୍ରୀରାମ ଲକ୍ଷ୍ମଣ ସୀତା ଶଯ୍ୟାରୁ ଉଠିଲେ
ସ୍ନାନ କରି ସେଠାରୁ ନଦୀରୁ ଅଇଲେ ।
କନକ ମଣ୍ଡପରେ ହୋଇଲେ ପରବେଶ
ଅମଳାଣ ପିନ୍ଧି ଶ୍ରୀରାମ ମନ ହରଷ ।
ଏଥୁ ଅନନ୍ତରେ ଶୁଣ ଆଗୋ ଶାକମ୍ବରି
ଦେବତାଙ୍କ ବିଧାତା ଯେ କହିଲେ ବିସ୍ତରି ।
ସକଳ ଦେବେ ତୁମ୍ଭେ ବେଗେ ଚଳିଣ ଯାଅ
ଶିଳାମାନ ଆଦରିଣ ଜୀବନ୍ୟାସ ଦିଅ ।
ଶୁଣିଣ ଦେବତାମାନେ ବେଗେ ଚଳିଗଲେ
ମନ୍ତ୍ର ବଳେ ଶିଳାକୁ ସେ ଜୀବନ୍ୟାସ କଲେ
ଲକ୍ଷେକ ଶିଳା ପୂଜା କରିଣ ଦେବତାଏ
ଜୀବଦାନ ଦେଇଣ ସେଠାରୁ ଚଳିଯାଏ ।
ଲକ୍ଷେକଘର ଯାଇ ପବିତ୍ର କଲେ ପୁଣ
ଶ୍ରୀରାମ ନଗ୍ର ବୋଲି ଦେଲେକ ଦେବଗଣ ।
ସେଠାରୁ ଆସିଣ ସଭାରେ ବିଜୟ କଲେ
ଦେବବର ଗୁହିଁଣ ତାହାଙ୍କୁ ଆଜ୍ଞା ଦେଲେ
ଚାରିପାଖରେ ଯାଗ କରିଣ ବଳି ଦିଅ
ବିଧି ଅନୁସାରେ ସର୍ବ କାର୍ଯ୍ୟ କରିନିଅ ।
ନାଗବଳକୁ ବୋଇଲେ ଯାଅ ବେଗକରି
ଅଷ୍ଟଦିଗେ ଅଷ୍ଟନାଗ ରହ ଯାଇକରି ।
ବାସୁକି ନାଗକୁ ବୋଇଲେ ଶୁଣ ବଚନ
ଫେଣା ବିସ୍ତାରି କରି କ୍ଷେତ୍ର ରଖ ବହନ ।
ଶୁଣି ବାସୁକି ନାଗ ଫଣାଏ ଯୁଡ଼ିଦେଲେ
ଫେଣା ଉପରେ ସେକ୍ଷେତ୍ର ନିଶ୍ଚିନ୍ତେ ରହିଲେ
ତାହାପରେ ବ୍ରହ୍ମା ଶିବ ପୁରନ୍ଦର ମୁନି
ଦେଉଳକୁ ପବିତ୍ର କରିଲେ ତତକ୍ଷଣି ।
ଚାରିପାଖେ ବୁଲିଣ ଅମୃତ ନିଗାଡ଼ିଲେ
ଯାଗକରି ଜୀବନ୍ୟାସ ଦେଉଳକୁ କଲେ ।
ସାଗର ସମାପତେ ସକଳ ଦେବ ଆସି
ଦେଉଳ ଭିତରେ ସର୍ବେ ଠୁଳ ହୋଇ ବସି

ଶ୍ରୀରାମ ଲକ୍ଷ୍ମଣ ସୀତା ଗଲେ ତିନିଜଣ
ତିନି ଲିଙ୍ଗ ଧରଣ କରିଲେ ତିନିଜଣ ।
ଶ୍ରୀହରିଦେବ ଅଧାନ କରିଲେ ଅଷ୍ଟ ଆଖି
ରାମ ଅଙ୍ଗୁ ଷଡ଼କଳା କାଢି ପରମେଷ୍ଠି ।
ନୀଳ ଲିଙ୍ଗର ଭିତରେ ନେଇଣ ରଖିଲେ
ଲିଙ୍ଗ ରୂପେ ଶ୍ରୀରାମ ଯେ ପ୍ରସନ୍ନ ହୋଇଲେ
ଲିଙ୍ଗ ଶବଦରେ ଅଟୁ ପୁ ନାରାୟଣ
କ୍ଷୀର ସାଗର ମଧ୍ୟରେ ଅଟେ ବାସ ପୁଣ ।
ତୁମ୍ଭ ପ୍ରସନ୍ନରେ ଆମ୍ଭେ ଏଠାରେ ରହିଲୁ
ମନ୍ତ୍ର ବଳେ ପାଷାଣ ଲିଙ୍ଗରେ ବାସ କଲୁ ।
ବେଦବରବୋଲେ ତୁମ୍ଭେ ଏବେ ନିଜେକଲ
ପ୍ରତିଜ୍ଞା ତୁମ୍ଭର ଏବେ ଦେଖାଅ ଏଠାର ।
ରାମଲିଙ୍ଗ ବୋଇଲେହେ ପ୍ରତ୍ୟକ୍ଷରେ ଦେଖ
ଏତେବୋଲିରହିଲେ ସେ ଛିଡ଼ରହିଗଲେକ
ପୁଣି ସେ ନିଜନ ହୋଇଲେ ଶରୀର ଗୋଟା
ସୀତା ଲିଙ୍ଗଗୋଟି ପୁଣି ହୋଇଲେ ପ୍ରତିଷ୍ଠା
ସୀତାର ଅଙ୍ଗରୁ ପୁଣି ଛଡ଼କଳା ଭରି
ଲିଙ୍ଗର ଶରୀରେ ନେଇ ବେଦବର ହରି ।
ଠାକୁରାଣୀ ଅଙ୍ଗ ସଙ୍ଗ ହୋଇଲା ପାଷାଣ
ତାଳକର ଛିଡ଼ରେ ବଢ଼ିଲା ତତକ୍ଷଣ ।
ପୁଣି ନିଜନ ହୋଇଣ ସାମାନ୍ୟ ସେହେଲେ
ଦେଖିକରି ପରମେଷ୍ଠି ସନ୍ତୋଷ ହୋଇଲେ
ଧବଳ ଲିଙ୍ଗରେ ହସ୍ତ ଦେଲେ ଯେ ଲକ୍ଷ୍ମଣ
ଛଡ଼କଳା ତାଙ୍କଠାରୁ ବାହାରହେଲା ଜାଣ
ପାଷାଣ ଦେହରେ ସେ ହୋଇଲେପରବେଶ
ତତକ୍ଷଣେ ଲିଙ୍ଗଗୋଟି ବଢ଼ିଲା ତାଳେକ ।
ପୁଣି ସେ ନିଜନ ହୋଇ ସାମାନ୍ୟହୋଇଲେ
ଦେଖିଣ ଶ୍ରୀରାମ ଯେ ମନରେ ତୋଷହେଲେ
ସେଠାରୁ ତିନିଜଣ ଉଠିଲେକ ବହନ
ଆଗରେ ଉଭା ଯାଇ ହୋଇଲେ ତିନିଜଣ ।
ନମସ୍କାର କରିଲେ ଯେ ତିନିଜଣ ପୁଣି
ପାହାଡ଼ା ପାଡ଼ିଣ ଓଳଗି ହୋଇଲେ ଜାଣି ।
ସେଠାରୁ ତିନିଜଣ ଫେରିଣ ଏବଦେଖି
ମେଡ଼ ମଣ୍ଡପ ଆଦି ଦେଖିଲେ ପରଶଂସି ।
ଶ୍ରୀହରିଦ୍ୱାରେ ବୁଲିଣ ସେ ନବର ଦେଖିଲେ
ଶ୍ରୀହରିଦ୍ୱାରେ ଶ୍ରୀହରିନଗ୍ର ବିଶ୍ୱକର୍ମା କଲେ ।

ନଗର ଦେଖିଣ ସପତ ତୀର୍ଥ ଦେଖିଲେ
ସପତ ତୀର୍ଥରେ ସ୍ନାହାନ ପୁଣ କରିଲେ ।
ଏମହାଁ ଦେଖିଲେ ସ୍ୱର୍ଗକୁ ଫିଟେ ବାଟ
ସେ ପୁର ଗୋଟାକ ସବୁ ରତ୍ନମୟ ଶ୍ରେଷ୍ଠ ।
ଶ୍ରୀହରିପାଖେ ବୁଲୁଅଛି ବଞ୍ଜି ନାମେ ନଦୀ
ସ୍ୱର୍ଗକୁ ପଟାନ୍ତର ସେ ପାତାଳକୁ ଭେଦ ।
ଦେଖିଣ ତିନିଜଣ ସନ୍ତୋଷମନ ହେଲେ
ସକଳ ଦେବତା ଯାଇ ଦର୍ଶନ କଲେ ।
ଆଗରେ ବ୍ରହ୍ମା ରୁଦ୍ର ରହିଲେକ ସେଠାରେ
ସିଂହଦ୍ୱାରେ ରହିଲେକ ରତ୍ନଖମ୍ବ ପରେ ।
କାଦେଳ କାଳକା ଆଦି ଯୋଗମାୟା ପୁଣି
ଦେଉଳ ପଛେ ରହିଲେ ସପ୍ତଦେବୀ ସେନ
ସେଠାରୁ ନର ବାନରେ ସଙ୍ଗେ ଚାଲଗଲେ
ରାମନାଥ ଦେବତାଙ୍କୁ ଦର୍ଶନ ସେ କଲେ ।
ରାଜାମାନେ ଯାଇଣ କଲେ ଦରଶନ
ନଗ୍ରରେ ସହସ୍ରେ ଋଷି ରହିଲେଯେ ପୁଣ ।
ସହସ୍ରେ ବସ୍ତ୍ର ରହିଲେ ସେଥି ପୁଣ ଯାଇ
ହଟାରେ ବଜାରେ ଛତିଶ ପାଟକ ରହି ।
ଲକ୍ଷେ ଲୋକ ଲକ୍ଷେ ରୁଷ ଯାଇଣ ରହିଲେ
ନଗ୍ରଲୋକ ଭରି ପୂର୍ଣ୍ଣ କହିରୁ ଦେବେକଲେ
ଛତିଶା ନିଯୋଗ ସାନ ବିଧାତା ସରିଲା
ଜିନିଧୂପ ପାଞ୍ଚ ଅବକାଶ ଯେ ଖଞ୍ଜିଲା ।
ସକଳ ନିର୍ଣ୍ଣ କରି ବିଧାତା କହେ ପୁଣ
ଶୁଣହେ ରାମଚନ୍ଦ୍ର କୋଦଣ୍ଡ ଧାରଣ ।
ସକଳ ସିଦ୍ଧି ହେଲା ଗୋଟିଏ ଅଛି ବାକି
ଏକଥା ସମ୍ପୂର୍ଣ୍ଣ ହେଲେ ସବୁ ସୁଫଳଟି ।
ଶୁଣିକରି ଶ୍ରୀରାମ ବ୍ରହ୍ମଙ୍କୁ ପଚାରିଲେ
କେଉଁକଥା ନୋହିଲା କହହେ ତୁମ୍ଭେ ଭଲେ
ବିଧାତା ବୋଇଲେ ନୋହିଲା ଏ ପୁର
କେମନ୍ତେ ଏପୁର ରକ୍ଷା ହେବ ହେ ଏଥର
ଶ୍ରୀରାମ ବୋଇଲେ ଏଠି ହେବ କିଏ ରାଜା
ଏକଥାକୁ ବିଚାରି କହହେ ଦେବ ରାଜା ।
ବେଦବ୍ରହ୍ମା ବୋଲେ ଖଡ଼ଗ ନୃପତିର ସିନା
କିଷ୍କିନ୍ଧ୍ୟା କଟକରେ ତାହାର ରାଜ୍ୟସିନା ।
ବାଳିକି ମାରି ତୁମ୍ଭେ ସୁଗ୍ରୀବ ରାଜ୍ୟ ଦେଲ
କିଷ୍କିନ୍ଧ୍ୟାରେ ସୁଗ୍ରୀବରକୁ ରଜାକରାଇଲ ।

କିଷ୍କିନ୍ଧ୍ୟାରେ ରାଜା ତୁମ୍ଭେ ଅଙ୍ଗଦକୁ କର
ଏକ୍ଷେତ୍ର ଗୋଟି ତୁମ୍ଭେ ସମ୍ଭାଳ ରଘୁବୀର ।
ଏ କଥା ଶୁଣି ଶ୍ରୀରାମ ସନ୍ତୋଷ ହୋଇଲେ
ଅଙ୍ଗଦ ସୁଗ୍ରୀବଙ୍କୁ ଦୁହିଁଙ୍କ ଡକାଇଲେ ।
ବୋଇଲେ କିଷ୍କିନ୍ଧ୍ୟାରେତ ରାଜା ଅଟ ତୁମ୍ଭେ
ଅଧର୍ମ କରଣ ବାଳି ନାଶଗଲା ଏବେ ।
କିଷ୍କିନ୍ଧ୍ୟାରେ ତା ପୁତ୍ର ଅଙ୍ଗଦ ରାଜା ହେଉ
ସ୍ଥିର ସୁତକୁ ମୋର ଯେ କଥା ରହିଥାଉ ।
ସୁଗ୍ରୀବତ ବୋଇଲେ ଏକଥା ମୋତେ ଭଲ
ଯେଉଁ କଥା ସଂସାରକୁ ଦିଶିବ ସୁନ୍ଦର ।
ଅଙ୍ଗଦ ମୋର ପୁତ୍ର ଏକଥା ମୋତେ ଭଲ
କିଷ୍କିନ୍ଧ୍ୟାରେ ରାଜାହେଲେ ମୋହର କୁଶଳ ।
ବିଧାତା ବୋଲେ ତାଙ୍କୁ କରିବ ଅଭିଷେକ
ତାହାର ଘରଣୀକି ଏଠାକୁ ଘେନିଆସ ।
ଶୁଣିଣ ଶ୍ରୀରାମ ଯେ ହନୁମନ୍ତକୁ କହି
ଅଙ୍ଗଦ ଘରଣୀକି ଘେନି ଆସିବୁ ଯାଇ ।
ଶୁଣିଣ ମାରୁତି ବେଗେ ଚଳିଗଲା
କିଷ୍କିନ୍ଧ୍ୟା ନଗ୍ରରେ ଯାଇ ପ୍ରବେଶ ହୋଇଲା
ତା'ରଙ୍କର ଚରଣେ ଓଳଗି ଶୋଏ ପୁଣ
ପୁତ୍ର ତୋର ରାଜା ହେବ ବଧୂ ନେଲେ ଜାଣ
ତାର ବୋଇଲେ ଯୁଦ୍ଧ ସରିଲା ଘରେ ବାବୁ
ମାରୁତି ବୋଇଲେ ସ୍ଥିରରାବଣ ମଲେ ସବୁ ।
ଲଙ୍କାକୁ ଗୁଡ଼ ଶ୍ରୀରାମ ଆସିଲେ ଏ କୂଳ
କୂଳେ ରାମନାଥ ଧାମ କଲେ ରଘୁବୀର ।
ରାମେଶ୍ୱର ବୋଲି ନଗ୍ର ଗୋଟି ଭିଆଇଲେ
ତହିଁରେ ଲକ୍ଷେଶ୍ୱର ଶ୍ରୀରାମ ବସ୍ତି କଲେ ।
କିଷ୍କିନ୍ଧ୍ୟା ରାଜ୍ୟ ଗୋଟି ଅଙ୍ଗଦକୁ ଦେଲେ
ସେଥିରେ ରାଜା ତାଙ୍କୁ କରିବେ ରାମଭଲେ ।
ଶୁଣିକରି ତାରାଦେବୀ ଆନନ୍ଦ ହୋଇଲେ
ଦୁଇଗୋଟି ବଧୂଙ୍କୁ ସୁବେଶ କରାଇଲେ ।
ଶତେକ ଦାସୀ ଆଣିଣ ତାଙ୍କ ସଙ୍ଗେ ଦେଲେ
ପୁଣି ସାନ ବଧୂକୁ ବେଗରେ ଅଣାଇଲେ ।
ବତିଶ ଦାସୀପୁଣ ଅଇଲେ ତାର ସଙ୍ଗେ
ଦେବଦଳନ ରଥରେ ବସିଲେ ଯାଇ ସର୍ବେ
ସୁଖନ୍ଦ କୁମର ଗୋଟି ସଙ୍ଗତରେ ଗଲା
ସମସ୍ତଙ୍କୁ ଘେନି ହନୁ ବେଗେ ଚଳିଗଲା ।

ସେତୁବନ୍ଧ ରାମେଶ୍ୱର ହେଲେ ପରବେଶ
ଦେଖିକରି ଶ୍ରୀରାମ ଯେ ମନରେ ହରଷ ।
ନଗ୍ରମଧ୍ୟେ ରାଣୀହଂସ ପ୍ରବେଶ ହୋଇଲେ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଶ୍ରୀରାମ ସଙ୍ଗତେ ଗଲେ ।
ଅଙ୍ଗଦକୁ ଅଭିଷେକ କରାଇଲେ ଯାଇ
କୋଳରେ ବସାଇଲେ ଚନ୍ଦ୍ରାବତୀକି ନେଇ ।
ତୀର୍ଥଜଳ ଢାଳଣ କରିଲେ ଅଭିଷେକ
ଶିରରେ ବାନ୍ଧିଲେ ପାଟ ଦଶରଥ ସୁତ ।
ଛତ୍ର ଟେକାଇଣ କାହାଳି ବଜାଇଲେ
ଅଭିଷେକ କରାଇ ସ୍ଥିର ଦେବେ ଗଲେ ।
ଅଙ୍ଗଦ ଉଠି ପୁଣ ନମସ୍କାର କଲା
ଚନ୍ଦ୍ରାବତୀ ଉଠିଣ ଚରଣେ ନମିଲା ।
ସୁଗ୍ରୀ ବିଭୀଷଣଙ୍କର ଚରଣେ ଲୋଟି
ସୀତାଙ୍କର ଚରଣରେ ଚନ୍ଦ୍ରାବତୀ ଖଟି ।
ଲକ୍ଷ୍ମଣ ଶତ୍ରୁଘ୍ନ ପଦେ ଅଙ୍ଗଦ ଓଳଗି
ଚନ୍ଦ୍ରାବତୀ ଘେନି ଅଙ୍ଗଦ ବାହାରେ ବେଗି ।
ଯାନପରେ ବସିଣ ନଗ୍ରରେ ବୁଲିଲେ
ଛତିଶା ନିଯୋଗ ଆସି ସେବାରେ ଖଟିଲେ
ଶ୍ରୀରାମ ବୋଇଲେ ବାବୁ କର ଦେବକାର୍ଯ୍ୟ
ରାମନାଥ ଦେବଙ୍କ ବୃତ୍ତିକୁ ହାନିଲାଭ ।
ଏତେବୋଲି ସେଠାରୁ ସମସ୍ତେ ଚଳିଗଲେ
ସୁଧର୍ମା ସଭାରେ ବ୍ରହ୍ମା ରୁଦ୍ର ଯେ ମିଳିଲେ ।
ଶ୍ରୀରାମଙ୍କୁ କହିଲେ ସୁରଗଣ ପୁଣ
ସୁଧର୍ମା ସଭା ଘେନି ଚଳିଲେ ସ୍ୱର୍ଗ ଜାଣ ।
ଦେବ ବ୍ରହ୍ମା ଚଳିଗଲେ ଯଶୋବନ୍ତ ପୁରେ
ସକଳ ମୁନିମାନଙ୍କୁ ଘେନି ସଙ୍ଗତରେ ।
ଆମ୍ଭେ ଚଳି ଶଇଲୁ ଯେ କପିଳାସ ପୁଣି
ସକଳ ମହେଶ୍ୱର ଅଇଲେ ମୋରସଙ୍ଗେପୁଣି
ନବକୋଟି ଡମ୍ବରୁ ଶୂନ୍ୟରେ ବଜାଇଲେ
ଅସୁରଙ୍କ ଭୟରୁ ନିଶ୍ଚିନ୍ତ ପୁଣ ହେଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ରାମନାଥ ରହିଲେ ଦକ୍ଷିଣ ଦିଗେ ପୁଣ ।
ସେତୁଦେବ ପ୍ରତିଜ୍ଞା କେମନ୍ତେ ପୁଣ ହେଲେ
ସେ କଥା ମୋରଆଗେ କହ କେଦେବରଲେ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ରାମକ୍ଷେତ୍ର ନାମଟି ବୋଲାଇଲେ ସେହି ।

ରାମଘାଟ ସ୍ୱର୍ଗଦ୍ୱାର ହେଲା ଏବେ ପୁଣ
ସେହିଘାଟେ ଦେବତା ଆସନ୍ତି ଅନୁକ୍ଷଣ ।
ସୂର୍ଯ୍ୟର ଉଦୟକୁ କରନ୍ତି ଦରଶନ
ତାଳେ ପର୍ଯ୍ୟନ୍ତେ ବଢ଼ନ୍ତି ରାମଘାଟେ ପୁଣ ।
ତେବେ ଗଲେ ସାମାନ୍ୟ ରୂପ ଯେ ହୁଅନ୍ତି
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ହେମବନ୍ତି
ଅଙ୍ଗଦ ଯେ ରଜା ସେହି ସ୍ଥାନରେ ହୋଇଲା
ହଶାଣରେ ପୁଣ ସେ ରାଜ୍ୟହିଁ ଭୋଗକଲା ।
ଛତିଶା ନିଯୋଗ ମାନ ସେଥିରେ ରହିଲେ
ଚନ୍ଦନଧୂପ ପଞ୍ଚ ଅବକାଶରେ ଲାଗିଲେ ।
ଷାଠିଏ ପଉଟି ଭୋଗ କଲେକ ରନ୍ଧନ
ପାଣ୍ଡମାନେ ସେଥିରେ ଭିଆଣ କଲେ ପୁଣ ।
ଘୋଷଯାତ୍ରା ଭିଆଣ ସେ ନଗ୍ରରେ ହେଲା
ବାରମାସେ ତେରଶ ଯାତ୍ରା ଭିଆଣ କଲା ।
ପ୍ରତିଦିନ ଗଙ୍ଗାଜଳ ଭକ୍ତ ଦେବେ ଶିରେ
ଗଙ୍ଗାଙ୍କ ଜଳରେ ତୋଷ ଲଭନ୍ତି ଦେବତାରେ
ପ୍ରସାଦ କାରଣ ଯେ ସେଠାରେ ଆଉ ନାହିଁ
ବ୍ରାହ୍ମଣ ଶୁଦ୍ର ଏକତ୍ର ଭୁଞ୍ଜନ୍ତି ବସି ତହିଁ ।
ଅନନ୍ତ ବାସୁକୀ ନାଗ ପାତାଳେ ଚଳିଲେ
ନିଜ ମନ୍ଦିରେ ଯାଇ ପ୍ରବେଶ ବେଗହେଲେ
ଧରଣୀକି ଫଣାରେ ଧଇଲେ ନାଗରଜା
ଭ୍ରତକୁ ବୋଇଲେ ଅହ୍ନ ବେଗେ ତୁହି ଯା ।
କେକଇ ବୋଲନ୍ତି କି କରନ୍ତି ରାମରାଣ
ବାସୁକୀ ବୋଇଲେ ରାମ ଧାମ କଲେ ପୁଣ ।
ଶୁଣିଣ ଭରତ ବୀର ବେଗେ ଚଳ ଆସି
ମାଲ୍ୟବନ୍ତ ବନ୍ଦରେ ବାହାର ହେଲେ ସେଠି
ଶ୍ରୀରାମ ଚରଣେ ଯାଇ ନମସ୍କାର କଲା
ଜଳଗ ମେଲାଇ କରଯୋଡ଼ି ଠିଆ ହେଲା ।
ଶ୍ରୀରାମ ବୋଇଲେ ଭ୍ରତ ଯାଅ ତୁ ସତ୍ୱର
ରାମନାଥ ଦେଖ ଯାଇ ଦେଉଳ ଭିତର ।
ଶୁଣିଣ ଭରତ ବୀର ବେଗେ ଚଳିଗଲା
ନଗର ଦ୍ୱାର ପାଖରେ ବୁଲିଣ ଦେଖିଲା ।
ନଗ୍ରଭିତରେ ପଶିଣ ପୁରମାନ ଦେଖି
ସପ୍ତତୀର୍ଥେ ସ୍ନାନ କଲେ କୈକେଇର ବତ୍ସି
ମେଘନାଦ ପାଟେଶ୍ୱରୀକି ଯାଇଣ ଦେଖିଲା
ସିଂହଦ୍ୱାର ବାଟରେ ସେ ଭିତରେ ପଶିଲା
ଦୁଇ ବେଢ଼ାରେ ଲକ୍ଷେ ଦରଶନ କଲେ
ବଡ଼ ଦେଉଳ ଭିତରେ ପଶିଲେ ଯାଇଭଲେ
ଦେଖିଲା ନୀଳ ଧବଳ ବସନ୍ତ ଚନ୍ଦ୍ରରୂପ
ଶତେଥର ଓଳଗିଲେ କୈକେୟୀର ସୁତ ।
ସେଠାରୁ ବେଗେ ଚଳିଗଲା ସେ ଭରତ
ପଶ୍ଚିମ ଦ୍ୱାରବାଟେ ଯାଏ କୈକେୟୀର ସୁତ
ଦେଖିଲା ଅଙ୍ଗଦ ଯେ ଅଛଇ ଦଣ୍ଡକର
ବାଳିକୁମର ଯାଇ ଓଳଗେ ପାଦଧରି ।
ତାହାର ନଗ୍ର ଭିତର କେଇ ଦେଖାଇଲା
ଏହିଥାନ ମୋତେ କୋଦଣ୍ଡଧାରୀ ଦେଲା ।
ତା ରାଣୀ ଚନ୍ଦ୍ରାବତୀ ଆସି ବେଗେ ପୁଣ
ପାଏଡ଼ା ପାଡ଼ି ଶୋଇଲା ଭରତ ଚରଣ ।
ସେଠାବରୁ ଭରତ ଯେ ବେଗେ ଚଳିଯାଇ
ଶ୍ରୀରାମ ଛାମୁରେ ପ୍ରବେଶ ହୋଇଲେ ସେହି
ଦୁଇଦିନ ଦୁଇରାତ୍ର ସେଠାରୁ ରହିଗଲା
ଆରଦିନ ହେଲ ପୁଣି ସାତଘଡ଼ି ହେଲା ।
ଶ୍ରୀରାମ ଆଜ୍ଞାଦେଲେକ ସୁଗ୍ରୀବକୁ ତହିଁ
କିଷ୍କିନ୍ଧ୍ୟା ନଗ୍ରକୁ ତୁମ୍ଭେ ଯାଅ ବେଗହୋଇ
ଅଷ୍ଟସେନା ଘେନଯାଉ ପବନର ସୁତ
ତୁମ୍ଭପୁରେ ଆଜରାତ୍ର କର ନିବାସତ ।
ଏତେ ବୋଲି ଶ୍ରୀରାମ କହିଲେ ଯହୁଁ ପୁଣ
ସୁଗ୍ରୀବ ହନୁମନ୍ତ ଚଳିଲେ ବେଗେ ଜାଣ ।
ବୀଣା ବଜାଇ ଛତ୍ର ଟେକାଇ ଚଳିଗଲେ
କିଷ୍କିନ୍ଧ୍ୟା ନଗ୍ରରେ ଯାଇ ପ୍ରବେଶ ହୋଇଲେ
ଦେଖି ତାରା ମହାଦେଈ ଆସି ଅର୍ଘ୍ୟଦେଲା
ଦାସୀଗଣ ଧଇଣ ସେ ବନ୍ଦାପନା କଲା ।
ହନୁମନ୍ତ ବୁଝିଣ ବୋଇଲେ ସୁଗ୍ରୀବର
ଲକ୍ଷେ ନୃପତିଙ୍କି ଯାଇ କର ତୁ ସତ୍କାର ।
ଶୁଣିଣ ହନୁମନ୍ତ ଜମ୍ବୁଦ୍ୱୀପ ନିଳମାର
ସମସ୍ତେ ନଗ୍ରରେ ପଶିଲେକ ସତ୍କାର ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ସୁଗ୍ରୀବର ଆଗରେ ମିଳିଲା ତାରା ସତୀ ।
ବୋଇଲେ ପ୍ରାଣେଶ୍ୱର ଶୁଣ ମୋ ବଚନ
ଅସୁର ମାରି ଶ୍ରୀରାମ ସୀତା ଆଣି ପୁଣ ।
ଆନ୍ଧ୍ୟପୁରେ ବଜେ କି କୋଦଣ୍ଡ ରୂପଧାରୀ
ଏକଥା ପ୍ରାଣନାଥ କହ ହେ ବସ୍ତୁରି ।

ଯେଉଁ ଅସୁର ସଙ୍ଗରେ ଶ୍ରୀରାମ ଶତ୍ରୁଘନ
ଯୁଦ୍ଧକଲେ ଏଥିରେ ପ୍ରହରେ ସେହି ପୁଣ ।
ତହୁପନ୍ତରେ ତାର ସହସ୍ର ମୁଖ ପୁଣି
ଅଙ୍ଗଦ ହନୁଥିଲେ ରାମ ସଙ୍ଗେ ତକ୍ଷଣି ।
ସେହି ଦୈତ୍ୟ ମନ୍ତ୍ରିକି ଶ୍ରୀରାମର ହସ୍ତ
ଶୁଣିଣ ସୁଗ୍ରୀବର କହଇ ତା ଅଗ୍ରତେ ।
ସେ ଦୈତ୍ୟକୁ ମାରେ ସଖି ଶ୍ରୀରାମ ଧରଣୀ
ସେ ଦୈତ୍ୟ ମାଇଲା ନ ରଖି ତାହାକୁ ପୁଣି
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ
ଲକ୍ଷେକ ନୃପତିଙ୍କି ସେ କଲେକ ନିଧନ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ମୋ ସଙ୍ଗେ ବିଭୀଷଣ ସମସ୍ତ କଲ ଚୂର ।
ଏକମାତ୍ର ହନୁମନ୍ତ ରହିଲା ଅସୁର
ଆଉ ସମସ୍ତେ ଆମ୍ଭେ ଯେ ଧରଣୀରେ ପଡ଼ି ।
ଜାନକୀ ନେବାକୁ ସେହି ହେଲ ଉପଗତ
ବଇଦେହୀ ପାଶରେ ସେ ମିଳିଲା ତୁରିତ ।
ସେଠାରୁ ଜନେକ ସୁତାମାନେ ଯୋଧହେଲେ
ବାସେଳକ ମନରେ ସେ ସୁମରଣା କଲେ ।
ରଥଘେନ ବାସେଳୀ ଯେ ମିଳିଲା ନଗର
ସେ ରଥରେ ବସି ଯୁଦ୍ଧ କଲେକ ଅପାର ।
କାଳ କକୁଶ ଶରେ ତାହାକୁ ଚର ପୁଣ
ପବନ ସୁତକୁ ସୁମରଣା କଲେ ମନ ।
ଗଜାନନ ଯାଇ ସମସ୍ତଙ୍କୁ ଜୀଆଇଲେ
ସେଠାରୁ ଶ୍ରୀରାମ ଲଙ୍କା ଗଡ଼କୁ ଛାଡ଼ିଲେ ।
କିଷ୍କିନ୍ଧ୍ୟାରେ ରାଜାକଲେ ଅଙ୍ଗଦ କୁମର
ଏବେ ଆଜ ଆସିଲେ ଇଷ୍କିନ୍ଧା ରଘୁବୀର ।
ଶୁଣ କହେ ମହାଦେଇ ସନ୍ତୋଷ ମନରେ
ଶ୍ରୀରାମ ଲକ୍ଷ୍ମଣ ସୀତା ଦେଖିବ ନେତ୍ରରେ ।
ଏଥୁଅନନ୍ତରେ ହେ ଶ୍ରୀରାମଚନ୍ଦ୍ର ରାୟେ
ଆଜ୍ଞାଦେଲେ ସୈନ୍ୟଙ୍କୁ ଚଳ ଇଷ୍କିନ୍ଧାଯାଏ
ଯେ ଯାହା ସଙ୍ଗରେ ଥିଲେ ଚଳିଲେ ବହନ
ବାନର ଭାଲୁ ସଙ୍ଗେ ଅଙ୍ଗଦ ଗଲା ପୁଣ ।
ଲକ୍ଷେରଜା ଚଳିଲେ ଚତୁର୍ଦ୍ଦିଣ ରଥ ଯାନ
ରାମାଙ୍କର ସଙ୍ଗରେ ଭରତ ଶତ୍ରୁଘନ ।
ଭାଗୀରଥୀ ଅଶ୍ୱ ଯେ ଚଳଣ ଗଲେ ଖରେ
ସୈନ୍ୟଙ୍କ ସଙ୍ଗରେ ଲକ୍ଷ୍ମଣ ଚଳିଗଲେ ।

ରାକ୍ଷସଗଣ ଘେନଣ ବିଭୀଷଣ ଯାଇ
ସେଠାରୁ ସମସ୍ତେ ମିଳନ ହୋଇଲେ ତହିଁ ।
ସମସ୍ତେ ଯିବାର ଯେ ଦେଖିଣ ରଘୁଧୀର
ନଡ଼ଘୋଷେ ବଇଦେହୀ ସୀତାଙ୍କୁ କୋଳେଃଧର
ମାତଳିକ ହୋଇଲେ ହାହାରେବେଗେରଥ
ଶୁଣିକରି ମାତଳି ରଜନା ନଡ଼ଘୋଷ ।
ଧୀରେ ଧୀରେ ରଥ ଯେ ଚଳିଲା ଗଗନରେ
ଶ୍ରୀରାମ ଜାନକୀ ସିଂହାସନର ଉପରେ ।
ଜାନକୀଙ୍କି ଶ୍ରୀରାମ ଯେ କହନ୍ତି ଦେଖାଇ
ଏହିଟି ମାଲ୍ୟବନ୍ତ ଦେଖ ଗୋ ଚନ୍ଦ୍ରମୁହିଁ ।
ଚାରିମାସ ବରଷା ବଞ୍ଚିଲୁ ଏଥିରେ
ଅନେକ ଯୁଗ ପରାୟେ ଲାଗିଲା ଏଠାରେ ।
କାନ୍ଦି କାନ୍ଦି ଦିନ ଯେ ସାରିଲୁ ଆମ୍ଭେ ଏଥେ
ଦୁଃଖ ମିଳିଲା ପ୍ରିୟେ ଗୋ ତୁମ୍ଭର ସକାଶେ ।
ଏଥିରେ ଥାଇ ଆମ୍ଭେ ପେଷିଲୁ ପୁଣ ଦୂତ
ଏଠାକୁ ଥାଟ ଘେନ ଅଇଲା ମୋର ମିତ ।
ପର୍ବତେ କଣ୍ଡୁ ଋଷି ଅଗସ୍ତି ଭେଟ ମୋତେ
ସ୍ୱପନରେ ଦେଖିଲାରେ ସଖି ମୂର୍ତ୍ତି ତୋତେ ।
ଏଠାରେ କୁକୁଟ ପକ୍ଷୀ ବାରତା କହିଲା
ତୋହର ସଙ୍କେତ ମୋତେ ବକପକ୍ଷୀ ହେଲା
ଏ ଯେ ଦିଶୁଛି ସଖୀ ଋଷିମୁଖ ପର୍ବତ
ଏଥିରେ ସୁଗ୍ରୀବର ସଙ୍ଗରେ ହେଲୁ ମିତ ।
ଏଠାରେ ମିତ ଦେଲେ ତୋ ଅମଳାଣଶାଢ଼ି
ଶାଢ଼ୀ ସଙ୍ଗତେ ଥିଲା ହୀରା ମାଣିକ୍ୟ ଚୂଡ଼ି ।
ଏହିଠାରେ ଦୁନ୍ଦୁଭି ହାଡ଼କୁ ଫିଙ୍ଗି ଦେଲୁ
ଏଠାରେ ସପ୍ତଶିଳା ଛେଦନ ପୁଣ କଲୁ ।
ଏହିଟି ଜାନକୀ ଗୋ ଇଷ୍କିନ୍ଧ୍ୟା ନାମେ ନଗ୍ର
ଏଥିରେ ରଜା ଆମ୍ଭେ କଲୁ ଯେ ସୁଗ୍ରୀବ ।
ଏଠାରେ ବାଳକ ଗୋ ମାଇଲୁ ଆମ୍ଭେ ବାଣେ
ଏତେକ ମହାବୀର ପଡ଼ିଲା ଏକବାଣେ ।
ଦେଖ ସଖୀ ପର୍ବତ ଯେ କଟି ଦିଶୁଅଛି
ଅନେକ ପ୍ରକାର ଏହା ବାଳିବାର ସିଞ୍ଚି ।
ଜଳ ବେଢ଼ି ମଧ୍ୟରେ ବନ ପର୍ବତ ଘନ
ଝଡ଼ଗ ନୃପତି ଥିଲା ସବୁ କର ପୁଣି ।
ନନ୍ଦବନ ପର୍ବତ ସେ ଅଗମ୍ୟ ଦିଶଇ
ଇଷ୍କିନ୍ଧ୍ୟା ନଗ୍ରକୁ ରାମ କହୁ ପ୍ରଶଂସଇ ।

ଏତେ ଆଗମନ ଯେ ଦେଖାନ୍ତି ରଘୁପତି
ଏଠାରେ ହନୁମନ୍ତ ଭେଟିଲା ଆଗେ ପୁଣି ।
ଜାନକୀ ବୋଇଲେ ଦେବ ପଦ୍ମର ମୂର୍ତ୍ତି
ଦଶମୁଣ୍ଡ ଓସାର ନିର୍ମଳ କୀର୍ତ୍ତି ଭୂଇଁ ।
ରାମ ବୋଲନ୍ତି ଏବାଟେ ଗଲା ଭ୍ରଥସାର
ଲଙ୍କା ଜାଳି ବାଟ ଗୋଟି କଲାକ ଏଠାର ।
ଏହିବାଟେ ଲକ୍ଷେଶ୍ୱର ଯେନ ସାର ଗଲା
ଦଶଗ୍ରୀବ ଯୁଦ୍ଧବେଳେ ମୋତେ ଯେ ଭେଟିଲା
ହାଣି ରଥୀ ସାରେଣି ଯେ ହଟାଣ ବଜାଣ
ଖଗଡ଼ ବଳଦ ଯେ ପଦାତି ପଏକାଣ ।
ଏ ବାଟରେ ସମସ୍ତେ ଯେ କଲେକ ଗମନ
ଋଷ୍ୟମୂକ ପର୍ବତରେ ରହି ସହେ ପୁଣ ।
ଏ ଭାଇମାନଙ୍କୁ ମୋର ଅବଗୁଣ ନାହିଁ
ରାଜ୍ୟ ରାଜା ନୋହିଲେ ଚଉଦ ବରଷତହିଁ
କୈକେୟୀ ମାତା ଆମ୍ଭର ଉପକାର କଲେ
ଏତେ ସମ୍ପତ୍ତି ମୋତେ ତା ବୁଦ୍ଧିରେ ଦେଲେ
ନର ବାନର ରାଜାଏ ଦେଖ ର ରାକ୍ଷସ
ବ୍ରହ୍ମା ଇନ୍ଦ୍ର ରୁଦ୍ର ଦେବ ସକଳ ତ୍ରିଦଶ ।
ସମସ୍ତେ ପୂଜା କଲେ ମୋହର ଚରଣ
ରୁଷ୍ଟ ରାବଣ ମରିବାରୁ ସମସ୍ତେ ସୁସ୍ଥ ପୁଣ ।
ଏମନ୍ତ କହି ସୀତାଙ୍କୁ ବୋଧି ରୂପଧାରୀ
ଶୁଣିଣ ଜାନକୀ ଶ୍ରୀରାମ ଚରଣ ଧରି ।
ମୋହ ଗୁର ପାଇଁ ଦେବ କେତେ କଷ୍ଟ ପାଇ
କ୍ଷମାକର ଦୋଷ ମୋର ମୁଁ ପାପୀ ଅଟଇ ।
କଥା ହୋଉନ୍ତେ ମାତଳ ଯେ ରଥ ବାହି ନେଲେ
ସୁଗ୍ରୀବର ସିଂହଦ୍ୱାରେ ରଥ ନେଇ କଲେ ।
କିଷ୍କିନ୍ଧ୍ୟା ନଗ୍ର ଦାଣ୍ଡରେ ରଥ ଗଲା ଚଳି
ଦେଖିକରି ସ୍ତ୍ରୀମାଏ ଦେଲେକ ହୁଳହୁଳି ।
ରାମତାଳ ହରିବୋଲ ଶବ୍ଦ ହେଲା ଗୋଳ
ଯେସନେ ପହଣ୍ଡି ବିଜେ ଜଗନ୍ନାଥଙ୍କର ।
ସିଂହଦ୍ୱାରେ ଯାଇ ଯହୁଁ ହେଲେ ପରବେଶ
ଦେଖିଣ ତାରାଦେଇ ଅର୍ଘ୍ୟ ଘେନ ବିଶେଷ ।
ଦାସୀଙ୍କ ସଙ୍ଗେ ଘେନ ପ୍ରବେଶ ଆସି ହେଲା
ଅର୍ଘ୍ୟ ବନ୍ଦାପନା କରି ଆଳତି ସେ କଲା ।
ଧୂପଦୀପ ଦେଇଣ ଚରଣେ ଓଳଗଇ
ତୁମାତେ ସୁବସ୍ତ୍ର କରି ଜନେକ ଜେମା ଲୁହି
ଶୁଣିକରି ଶ୍ରୀରାମ ରଥରୁ ଓହ୍ଲାଇଲେ
ଜାନକୀର କର ଧରି ଚଳେ ଉଭାହେଲେ ।
ତାରା ମହାଦେଈ ଚରଣେ ଓଳଗିଲା
ଦନ୍ତରେ ତୃଣ ଧରି ବିନତି ହୋଇଲା ।
କର ଧରି ଜାନକୀର ଚଳେ ଧୀର ଧୀର
ପହଣ୍ଡ ମଣାଇ ନେଲା ଭିତର ଯେ ପୁର ।
ରତ୍ନ ପଲଙ୍କ ପରେ ନେଇଣ ବସାଇଲା
ଚରଣ ଧୋଇ ପାଦ ଉଦକ ସେବା କଲା ।
ଝୀନ ବସନେ ଚରଣ ପୋଛି ଦେଲା ନେଇ
କୋମଳ କରଣ ହସା ଗୁମୁରେ ଜଣାଇ ।
ମାଣିକ୍ୟର ଘାପମାନ ଚଉପାଶେ ଜାଳି
ପାଦ ମଞ୍ଜାଳଇ ମାଏ ବାନର ଦୁଲଣି ।
ମାୟାସୀତା ଆସିଣ ଯେ ପାଦ ମଞ୍ଜାଳଇ
ରେମାନାସ ଆସିଣ ଚରଣେ ଓଳଗଇ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେମବତୀ
ସେ ନଗ୍ର ଲୋକେ ଦେଖିଣ ଆସିଲେ ଜାନକୀ
ସୀତାଙ୍କୁ ଦେଖିବାକୁ ଲାଗିଲେ ଧାସ ପୁଣ
ପଶ୍ଚିମ ଦ୍ୱାର ବାଟେ ଅଇଲେ ନଗ୍ରଜନ ।
ପ୍ରଥମରୁ ବୃଦ୍ଧ ସ୍ତ୍ରୀଏ ଦରଶନ କଲେ
ଚରଣେ ଓଳଗିଣ ନିଜ ମନ୍ଦିରେ ଚଳିଲେ ।
ଦ୍ୱିତୀୟେ ଯୁବା ସ୍ତ୍ରୀଏ କଲେକ ଗମନ
ବଇଦେହୀ ଚରଣରେ କଲେ ଦରଶନ ।
ସେମାନେ ଯିବାରୁ ନୂତନ ସ୍ତ୍ରୀଏ ଆସି
ଦର୍ଶନ କରିଲେକ ସେ ସୀତା ଶୁଭ୍ରକେଶୀ ।
ସମସ୍ତେ ଦେଖିଣ ମନେ ତୋଷ ହୋଇଗଲେ
ସାତଘଡ଼ି ରଜନୀ ଆସି ହେଲା ଭଲେ ।
ଅମଳାଣ ଶାଢ଼ୀ ତାର ସଖୀ ଆଣି ଦେଲା
ଜାନକୀଙ୍କ ମାୟାସୀତା ନେଇ ପିନ୍ଧାଇଲା ।
ମର୍ଦ୍ଦନ ମାଜଣା କରି ବେଶ କରାଇଲା
ଫୁଲ ଚନ୍ଦନ ଦେଇ କାଞ୍ଚୁଲି ପିନ୍ଧିଲା ।
ଶୀତଳ ମଣୋହି ଆଣି ତାରା ସମର୍ପିଲା
ହରଷରେ ଜାନକୀ ଭୋଜନ ପୁଣ କଲା ।
ସୁବାସିତ ଜଳରେ ଯେ ଆଞ୍ଚୋବନ ସାରି
ଖଡ଼ିଆ ଲାଗି ହୋଇଲେ କନକ କୁମାରୀ ।
ରତ୍ନ ପଲଙ୍କରେ ଯାଇ ପହୁଡିଲେ ସଖୀ
ଜାନକୀର ପାଦ ଯାଇ ସେବା ମଞ୍ଜାଳନ୍ତି ।

ଦାସୀଗଣ ଯାଇ ସେବାରେ ଲାଗିଲେ ପୁଣ
ଆଲଟ ଚାମର ଯେ ବଞ୍ଚଣି ଢାଳ ତକ୍ଷଣ ।
ଏଥୁ ଅନନ୍ତେ ଆଗୋ ଶୁଣ ଶାକମ୍ବରୀ
ଲକ୍ଷେ ରାଜାଙ୍କ ଆଦେଶ ସୁଗ୍ରୀବର କରି ।
ଆପଣାର ନଗ୍ରେ ସମସ୍ତଙ୍କୁ ଥାନ ଦେଲା
ରାଜ ବଧି ପ୍ରକାରେ ଭୋଜନ କରାଇଲା ।
ଶୀତଳ ମଣୋହିରେ ସନ୍ତୋଷ ସର୍ବରାଜା ।
ଆଚ୍ଛୋଦନ ସାରି ବଡ଼ିଆ ଭୁଞ୍ଜିଲେ ରାଜା ।
ସେବାକାରୀମାନେ ଯାଇଣ ଯେ ସେବା କଲେ
ଆଲଟ ଚାମର ବଞ୍ଚଣି ଧୀରେ ଢାଳିଲେ ।
ପଲଙ୍କରେ ଶୟନ କଲେକ ରାଜାଗଣ
ଖଟଣି ଲୋକମାନେ ମଞ୍ଜାଳେ ପାଦ ପୁଣ ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
କପି ଭାଲୁଙ୍କୁ ରାମ୍ଭି ବୋଲନ୍ତି ରଘୁପତି ।
ଫଳମୂଳ ଆହାର କର ହେ ତୁମ୍ଭେ ଯାଇ
ଶୁଣିଣ ବାନର ଭାଲୁ ବେଗେ ଚଳଯାଇ ।
ଯେ ଯାହା ମନ ଇଚ୍ଛାରେ କଲେକ ଭୋଜନ
ହାତୀ ରଥୀ ପଦାନ୍ତି ସାରେଣି ଅଶ୍ୱ ପୁଣ ।
ସମସ୍ତଙ୍କୁ ତରତ୍ତ୍ୱ ଯେ କଲେ ସୁଗ୍ରୀବର
ଏଥୁ ଅନନ୍ତରେ କଥା ଯେବଣ ପ୍ରକାର ।
ଶ୍ରୀରାମ ତିନିଭାଇଙ୍କ ସୁଗ୍ରୀବର ଘେନି
ବଜ୍ରସ୍ତ ମଣ୍ଡପରେ ବସାଇ ନେଇ ପୁଣି ।
ରତ୍ନଖଟ ଉପରେ ବସିଲେ ତିନିଭାଇ
ରତ୍ନ ସିଂହାସନେ ଶ୍ରୀରାମ ବସନ୍ତି ଯାଇଁ ।
ନୂତନ ଅମଲାଣ ସୁଗ୍ରୀବ ରାଜା ଦେଲା
ରତ୍ନମୟେ କାଞ୍ଚନ ଆଗରେ ସଞ୍ଜୋଗିଲା ।
ରତ୍ନମୟେ ମୁକୁଟ ଆଣିଲା ତିରି ପୁଣ
ପଞ୍ଚମାଳବର୍ଣ୍ଣ ଫୁଲ ଆଣଇ ବହନ ।
ଅଗରୁ ଚନ୍ଦନ ଚୁଆ ଆଣି ସେହି ପୁଣି
ଚାରିଭାଇଙ୍କ ମର୍ଦ୍ଦନ କରାଇ ନୃପମଣି ।
ମାର୍ଜଣା ବିଧି ପୁଣ ସାରିଲା ତତକ୍ଷଣି
ରାଜାଦେଶ କରାଇ ଚାରିଭାଇଙ୍କ ପୁଣି ।
ରତ୍ନ ସିଂହାସନ ପରେ ବସିଲେକ ତିନିଭାଇ
ଯେସନ ମାଳାଞ୍ଚଳରେ ଚତୁର୍ଦ୍ଧା ମୂର୍ତ୍ତି ହୋଇ
ବଶିଷ୍ଠ ନାରଦ ଯେ କଶ୍ୟପ ବାମଦେବ
ଏ ଚାରିଙ୍କ ଡ଼କାଇ ଆଣିଲେ ସୁଗ୍ରୀବ ।

କନକ ମଣ୍ଡପରେ ନେଇଣ ବସାଇଲେ
ଚାରି ସିଂହାସନ ଚାରି ମୁନିଙ୍କି ସେ ଦେଲେ
ଚରଣ ଧୋଇଣ ଉଦକ ସେବା କରିଲା
ଶୀତଳ ମଣୋହି ଯେ ମୁନିଙ୍କ ଆଣିଦେଲା ।
ଭୋଜନ ସାରିଣ ମୁନି ଆଚ୍ଛୋଦନ କଲେ
ରତ୍ନ ପଲଙ୍କରେ ଚାରି ମୁନି ନିଦ୍ରା ଗଲେ ।
ଶ୍ରୀରାମ ଚାରିଭାଇ ସିଂହାସନରୁ ପରେ
ବିଜୟେ କରିଅଛନ୍ତି ଚତୁର୍ଦ୍ଧା ମୂର୍ତ୍ତିରେ ।
କିଷ୍କିନ୍ଧ୍ୟା ନଗର ଲୋକେ ଦେଖିଣ ଅଇଲେ
ପ୍ରଥମୁ ବୃଦ୍ଧାମାନେ ଦର୍ଶନ ଆସି କଲେ ।
ଦ୍ୱିତୀୟେ ଯୁବା ପୁରୁଷ କଲେ ଦରଶନ
ତୃତୀୟେ ବାଳକେ ଦରଶନ କଲେ ପୁଣ ।
ଦଶଦଣ୍ଡ ରାତ୍ରଠାରେ ହେଲା ଜନ୍ମୁଆଣି
ଶୀତଳ ମଣୋହିରେ ବିଜୟେ ରଘୁମଣି ।
ଚାରି ଭାଇଙ୍କ ଘେନି ଭୋଜନ ବସି କଲେ
ଆଚ୍ଛୋଦନ ସାରିଣ ପଲଙ୍କେ ବିଜେକଲେ ।
ବଡ଼ିଆ ଲାଗିହୋଇ କୋଦଣ୍ଡ ରୂପଧାରୀ
ପଲଙ୍କରେ ପହୁଡ଼ିଲେ ନିଦ୍ରାଳସେ ଘାରି ।
ସେଠାରୁ ସୁଗ୍ରୀବ ସେନା ଯୂଥପତି ଘେନି
ଆପଣାର ନଗରେ ପ୍ରବେଶ ହେଲେ ପୁଣି ।
ସମସ୍ତଙ୍କୁ ଘେନି ମଣୋହିରେ ବିଜେ କଲା
ଛତିଶରସେ ତାରାଦେବୀ ଆଣି ପରଷିଲା ।
ଭୋଜନ ସାରିଣ ଆଚ୍ଛୋଦନ ସର୍ବେ କଲେ
ବଡ଼ିଆ ଭୁଞ୍ଜିଣ ପଲଙ୍କରେ ନିଦ୍ରାଗଲେ ।
ଏଥୁ ଅନନ୍ତରେ ଆଗୋ ଶୁଣ ଶାକମ୍ବରୀ
କେତେବେଳ ଉତ୍ତାରୁ ଶେଷ ହେଲା ଶର୍ବରୀ
ଦେବତାଙ୍କ ଆଳେ ଶଙ୍ଖ ଶବଦ ଶୁଭିଲା
ପୂର୍ବଦିଗେ ଦିନମଣି ଉଦୟ ହୋଇଲା ।
ନିଦ୍ରା ତେଜିଣ ସକଳ ବଳ ଯେ ଉଠିଲେ
ନର ବାନର ଭାଲୁଏ ନିଦ୍ରା ଯେ ତେଜିଲେ
ହସ୍ତୀ ଅଶ୍ୱ ଶାରେଣୀ ରଥି ଯେ ତୈଳ୍ୟବଳ
ସମସ୍ତେ ଉଠିବାରୁ ଲାଗିଗଲା ଚହଳ ।
ପଲଙ୍କରୁ ଶ୍ରୀରାମ ଚାରିଭାଇ ଉଠିଲେ
ସୁଗ୍ରୀବରୁ ବିଭୀଷଣ ଅଙ୍ଗଦ ଅଇଲେ ।
ହନୁମନ୍ତ ସଙ୍ଗରେ ଅଇଲେ ଯୂଥପତି
ରାଜାମାନେ ଆସିଣ ଯେ ଦର୍ଶନ କରନ୍ତି ।

ରଜାଙ୍କୁ ଶୁଣିଣଯେ ବୋଲନ୍ତି ରଘୁଧାରୀ
ରଥମାନଙ୍କୁ ସଙ୍ଗରେ ଚଳ ଯୋଗକରି ।
ମାତୃକୁ ପିତାଙ୍କୁ ଦେଖିଣ ଆଜ୍ଞାଦେଲେ
ଶାରେଣି ଚଢ଼ିଣ ତୁମ୍ଭେ ଯାଅରେବୋଇଲେ
ଶୁକ ସାରଣଙ୍କୁ ପୁଣ ଡକାଇ ବଚନ
କପି ଭାଲୁଙ୍କୁ ବୋଳନ୍ତି ଚଢଏ ବିମାନ ।
ଶୁଣିଣ ବାନର ଭାଲୁ ବେଗେ ଚଳିଗଲେ
ଉଥର ବତିଶ ପୁରେ ଯାଇଣ ବସିଲେ ।
ଯୂଥପତି ସେନାପତି ମଲ୍ଲ ମହାମଲ୍ଲ
ଏମାନେ ବସିଲେ ରକ୍ଷ ଭାଲୁଙ୍କ ସଙ୍ଗର ।
ପଦାତି ହଟାରି ବଜାରି ସେବକମାନେ
ଯାନ ଅଠାଇଶ ପୁରେ ବସିଲେ ତତକ୍ଷଣ ।
ରାକ୍ଷସ ବସିଲେ ଯେ ପନ୍ଦର ପୁରେ ଯାଇ
ଯାନ ପଚିଶ ପୁର ମେଲି ଅଛି ହୋଇ ।
ଶୁକ ସାରଣ ଯାନ ଯେ ବାହିଲେ ଆଗରେ
ରଥିମାନେ ଚଳିଗଲେ ତାଙ୍କର ପଛରେ ।
ହସ୍ତୀ ଅଶ୍ୱ ସାରେଣି ଯେ ଶଗଡ଼ ବଳଦ
ଏମାନେ ଚଳିଗଲେ ଭୂଅର ବାଟେ ବେଗ ।
ଲାଗିଲା ଗହଳ ଯେ ସକଳେ ଗଲେ ଚଳି
ଏଥୁ ଅନନ୍ତରେ ଆଗୋ ଶୁଣ ଶାକନ୍ଦରୀ ।
ନିଦ୍ରାରୁ ଜାନକୀ ଦେବୀ ଉଠିଲେ ବହନ
ବାସ ପାଣିରେ ମୁଖ ପଖାଳି ସେହୁ ପୁଣ ।
ପାଦ ପଖାଳି ପଲଙ୍କେ ଯାଇଣ ବସିଲେ
ତାରସ୍ୱଣି ଜାନକୀଙ୍କି ବେଶ କରାଇଲେ ।
ରତ୍ନଚୂଡ଼ ବାହୁଟି ଯେ ନୁପୁର ଝୁଣ୍ଟିଆ
କାପ ମାଳିକଣ୍ଠି ମାଳି ବସନ ଯେ ନୂଆ
ନାନାରଙ୍ଗେ ବେଶ କଲା ଅଙ୍ଗଦର ମାତ
ରତ୍ନ ପଲଙ୍କରେ ନେଇ ବସାଏ ତୁରିତ ।
ସେହି ପ୍ରକାରେ ବେଶ ମାୟା ସୀତାକୁ କଲା
ରତ୍ନ ପଲଙ୍କ ଉପରେ ନେଇ ବସାଇଲା ।
ଦେଖିଣ ଜାନକୀ ଯେ ମନରେ ବିସ୍ମରିଲେ
ମୋହର ସ୍ୱରୂପ ଅଟଇ ଏ ସ୍ତ୍ରୀ ଭଲେ ।
ଏତେ ବିସ୍ମରି ତାରକୁ ପଚ୍ଛରି ବୈଦେହୀ
ଏଡ଼େ ସୁନ୍ଦର ସ୍ତ୍ରୀ ଏ କାହାର ଅଟଇ ।
ତାରସ୍ୱଣି ବୋଲେ ଏ ଶ୍ରୀରାମଙ୍କର ଦାସୀ
ଦୁଇମାସ ହେଲା ମୁଁ ରଖିଛି ଯତ୍ନକରି ।

ଜାନକୀ ବୋଲେ ରାମଙ୍କୁ କେମନ୍ତେ ଏ ପ୍ରିୟା
କେଉଁଦିନ ଶ୍ରୀରାମ ହେଲେ ଏହାକୁ ବାହା ।
ତାରସ୍ୱଣି ବୋଇଲେ ଶୁଣ ଗୋ ଠାକୁରାଣୀ
ମନରେ ଚିନ୍ତା ଯେବେ କରିବ ଫେଡ଼କରି ।
ଜାନକୀବୋଇଲେ ମୋତେ ଫେଡ଼କରି କହ
କେମନ୍ତେ ବିଭାହେଲେ ଦଶରଥଙ୍କ ପୁଅ ।
ତାରସ୍ୱଣି ବୋଲନ୍ତି ଯୋଡ଼ିଣ ବେନକର
ସିଂହିକା ନାମେ ଅସୁର ଲଙ୍କାଯେ ଭିତର
ତାହାର ଦୋହିତା ନାମ ଅଟେ ପ୍ରିୟତମା
ଜନ୍ମରୁ ନାରାୟଣଙ୍କୁ କରେ ସୁମରଣା ।
ଶ୍ରୀରାମ ଲଙ୍କାଗଡ଼ରେ ଯାଇ ଯୁଦ୍ଧ କଲେ
ଦେଖିଣ ଅସୁରମାନେ କୁଳ ବରୁଥିଲେ ।
ରାବଣର ଜ୍ୟେଷ୍ଠପୁତ୍ର ଅଟେ ଇନ୍ଦ୍ରଜିତ
ସିଂହିକା ଦୋହିତାକୁ କହିଲାଯାଇ ସେତ ।
ବୋଇଲା ଶ୍ରୀରାମଙ୍କ ହେବୁ ତୁ ଘରଣୀ
ଗଙ୍ଗା କୂଳକୁ ଚଳ ତୁ ଏବେ ଏହିକ୍ଷଣି ।
ଗଙ୍ଗାରେ ଝାସ ଦେଇଣ ସୀତାରୂପ ଧର
ତେବେ ତୁ ମନୋବାଞ୍ଛା ହୋଇବୁ ଶ୍ରୀରାମର
ଅଯୋଧ୍ୟାପୁରେ ଯାଇ ହେବୁ ତୁ ପାଟରାଣୀ
ଅନେକ ଭୋଗ କରିବୁ ରାମ ସଙ୍ଗେ ପୁଣି ।
ଶୁଣିକରି ସିଂହିକା ଦୋହିତା ଚଳିଗଲା
ଧବଳମୁଖୀ ଗଙ୍ଗାରେ ଯାଇ ଝାସ ଦେଲା ।
ଶ୍ୟାମଳ ବଟର ତଳେ ମନାସିଲା ପୁଣ
ଜାନକୀର ରୂପ ମୋର ହେଉ ଯେ ଘଟଣ ।
ନାରାୟଣ ବନିତା ମୁଁ ହେବି କାଳେକାଳେ
ଅମର ହୋଇବି ମୁଁ ନ ମରି କେତେବେଳେ
ହାଣିଲେ କାଟିଲେ ମୋତେ ଜିଆଇଣଦେବେ
ଶ୍ରୀରାମ ସ୍ୱର୍ଗଗଲେ ଛୁଟିବ କେତେବେଳେ ।
ଶ୍ରୀରାମ ଚରଣେ ଦାସୀ ରୂପରେ ଖଟିଥିବି
ଆର ଜନ୍ମେ ମୁହିଁ ପୁଣି ବଲ୍ଲଭୀ ହୋଇବି ।
ଏତେ କହି ଝାସ ଦେଲାକ ସେହୁ ନାରୀ
ତତକ୍ଷଣେ କୃଷ୍ଣରୂପ ହୋଇଲା ତାହାରି ।
ଲଙ୍କାରେ ଆପଣ ସେହୁ ପ୍ରବେଶ ହୋଇଲା
ଇନ୍ଦ୍ରଜିତ ମାୟାସୀତା କରି କାଟିଦେଲା ।
ଦୁଇଖଣ୍ଡ କରିଣ କାଟି ଦେଲାକ ଯହୁଁ
ଚିହ୍ନି ନପାରି ସ୍ୱାମୀ ଶୋକକଲେ ତହୁଁ ।

ଆମ୍ଭଠାରୁ ଖବର ପାଇଲେ ତୁମ୍ଭ ପତି
ମୃତ୍ୟୁପିଣ୍ଡ ଗୁଡ଼ିଣ ମନକୁ କଲେ ଶାନ୍ତ ।
ସେ ଗଣ୍ଡି ମୁଣ୍ଡ ଦେବତା ଆସି ଯୋଡ଼ି ପୁଣ
ଜୀବନ୍ୟାସ କରି ଛେଢ଼ଦେଲେ ମୋ ପୁରେଣ
ହନୁମନ୍ତ ଆଣିଣ ଏଠାରେ ରଖିଗଲ
ଜାନକୀ ସଙ୍ଗେ ଏହାଙ୍କୁ ଦେବଗୋ ବୋଇଲା
ଏ ଜନ୍ମରେ ସୀତାଙ୍କର ହେବ ଦାସୀ ପୁଣ
ଆର ଜନ୍ମେ ନାରାୟଣ ଲଭିବ ଏ ଜାଣ ।
ସେଥିର ସକାଶେ ମୁଁ ରଖିଛି ଯତ୍ନକରି
ଏ ତୁମ୍ଭର ଦାସୀ ହେବ ଜନକ କୁମାରୀ ।
ଶୁଣିକରି ବଇଦେହୀ ହରଷ ହୋଇଲେ
ଦେବ କୃତ ଏ କଥା ମନରେ ବିଚାରିଲେ ।
ଏକଥା ଭଲପୁଣ ହୋଇଲା ଏବେ ମୋତେ
ମୋରସଙ୍ଗେ ଗଲେୟାକୁ ଦେଖିବେ ସମସ୍ତେ
ତାରସ୍ୱଷ୍ଟି ବୋଇଲେ ଚରଣ ଧରି ପୁଣି
ମୋତେ ସୁଦୟାକର ଧୈଲେକ୍ୟଠ କୁମାରୀ
ଯନ୍ତ୍ରିର ପାଇଁ ମୁଁ ମନେ କରିଛି ବିଚାର
ମୋତେ ସୁଦୟା ହେଲେ ବସାଇବ ପାଖର
ଏତେକହି ତାରସ୍ୱଷ୍ଟି ଦୁହିଁଙ୍କୁଣେ ନେଇ
ପଲଙ୍କ ଉପରେ ସେ ବସାଇଲାକ ତହିଁ ।
ତୁମ୍ଭଦୁହିଁଙ୍କି ତୋସ୍ୱାମୀ ଚିହ୍ନିବେ କେମନ୍ତେ
କାହାକୁ ନେବେ ସେହିତ ଜାଣିବା ନିମନ୍ତେ
ଶୁଣିକରି ଜାନକୀଯେ ଅଳପ ହସିଲେ
ଏକଥାକୁ ପରଖ ତୋ ବୋଲିଣ ବୋଇଲେ
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ସମସ୍ତେ ଯିବାରତ ଦେଖିଲେ ଦାଶରଥି ।
ଭରଥକୁ ବୋଇଲେ ତୁ ବେଗହୋଇ ଚଳ
ତାରପୁରରୁ ଜାନକୀ ଅଣାଅ ସତ୍ୱର ।
ଶୁଣିଣ ଭରଥ ବୀର ବେଗେ ଚଳିଗଲା
ତାରସ୍ୱଷ୍ଟି ଅନ୍ତଃପୁରେ ଯାଇଣ ମିଳିଲା ।
ଦେଖିଲା ଦୁହିଁଙ୍କି ଯାଇ ପଲଙ୍କ ଉପରେ
ବିଜୟ ଦୁଇ ସୀତା ଏକଇ ସ୍ୱରୂପରେ ।
କରଯୋଡ଼ି ଆଗେ ହୋଇ ଅଙ୍ଗଦର ମାତ
ଭରଥ ବୋଇଲେ ତୁମ୍ଭେ ଶୁଣଗୋ ସଙ୍କେତ
ଜାନକୀଙ୍କ ଅଣାଅ ଯେ ଯିବେ ରାମରାଣ
ତାରସ୍ୱଷ୍ଟି ବୋଲୁଛନ୍ତି ଶୁଣ ମୋ ବଚନ ।

ଭାଉଜ କଏ ତୁମ୍ଭର ଚିହ୍ନିକରି ନିଅ
ନୋହିଲେ ଫେରି ଯାଇଣ ଶ୍ରୀରାମଙ୍କୁ କହ ।
ଆପଣାର ଧନକୁ କି ଆପଣେ ନ ଚିହ୍ନି
ଏମନ୍ତ ବଚନ କହେ ଅଙ୍ଗଦ ମାତା ପୁଣି ।
ଶୁଣିଣ ଭରଥ ବୀର ଦୁହିଁଙ୍କ ଚାହିଁଲେ
କାହାକୁ ନେବ ବୋଲି ମନରେ ବିଚାରିଲେ
ଜାନକୀ ନ ନେଇ ଯେ ଅନ୍ୟ ନେବ ମୂର୍ତ୍ତି
ଦେଖିଲେ ହାସ୍ୟ କରିବେ ରଘୁକୁଳ ସାଇଁ
ଏମନ୍ତ ବିଚାରି ଭରଥ ବାହୁଡ଼ି ଗଲା
ଶ୍ରୀରାମ ସ୍ମୁମୁରେ ଯାଇ ପ୍ରବେଶ ହୋଇଲା ।
ବୋଇଲା ଶୁଣିବା ହୋ କୋଦଣ୍ଡ ରୂପଧାରୀ
ଅନ୍ତଃପୁରକୁ ମୋତେ ଭେଜିଲେ ବେଗକରି
ମୁହିଁ ଯାଇ ଦେଖିଲି ଯେ ଦୁଇଗୋଟି ସୀତା
ତାର ବୋଲେ ଚିହ୍ନି ନିଅ ଜନକ ଦୁହିତା ।
ମୁଁ ନପାରି ଦେବ ଫେରିଣ ଅଇଲି
ତାର ବଡ଼ ମାୟାକଲା ମନରେ ବିଚାରିଲି ।
ଆମ୍ଭର ବୁଦ୍ଧି ବଳକୁ କଷିବାର ପାଇଁ
ମାୟାର ସୀତା ଗୋଟିଏ ଅଛଇ ତିଆଇ ।
ଶୁଣିକରି ରଘୁନାଥ ଅଳପ ହସିଲେ
ଲକ୍ଷ୍ମଣ ଶୁଣିଣ ସେ ବଚନ ବୋଇଲେ ।
ଯାଅରେ ସୌମିତ୍ରୀ ଜାନକୀକି ତୁମ୍ଭେ ଆଣ
କି ଉପାୟ କରିଛି ଅଙ୍ଗଦ ମାତା ପୁଣ ।
ଶୁଣିକରି ଲକ୍ଷ୍ମଣଯେ ବେଗେ ଚଳିଗଲେ
ଅନ୍ତଃପୁର ମଧ୍ୟେ ଯାଇ ପ୍ରବେଶ ହୋଇଲେ
ତାରସ୍ୱଷ୍ଟି ବୋଇଲେ ଆସିଲେ ସଉମିତ୍ରି
ଏହି ଚଉଦ ବରଷ ଥିଲେ ତୁମ୍ଭ କତି ।
ସେ ଅବା ଚିହ୍ନିକରିଣ ନେବେ ଠାକୁରାଣୀ
ଏହି ବଚନ କହିଲେ ସୁଗ୍ରୀବର ରାଣୀ ।
ଲକ୍ଷ୍ମଣକୁ ବୋଇଲା ଅଇଲ କସ ପାଇଁ
ମୂର୍ଚ୍ଛିତ ରାବଣ ନୁହେଁ ଦୈତ୍ୟକୁଳ ସାଇଁ ।
ଶୁଣି ଲକ୍ଷ୍ମଣ ବୋଲେ ପେଷିଲେ ରାମରାଣ
ଆସିଛି ବଇଦେହୀଙ୍କି ନେବାପାଇଁ ଜାଣ ।
ତାର ବୋଲେ ଆପଣାର ଭାଉଜଙ୍କୁ ନିଅ
ରଘୁନାଥଙ୍କ ସ୍ମୁମୁରେ ଲଜ୍ଜା ହିଁ ନ ପାଅ ।
ଶୁଣିଣ ସଉମିତ୍ରି ଚାହିଁଲା ସ୍ଥିରକରି
ଦୁଇ ଜଣକୁ ଦେଖିଲା ଦୁହେଁ ଏକାପରି ।

ବାହୁ ନ ପାରି ଘାର ଲଙ୍କାରେ ଲେଉଟିଲା
ଶ୍ରୀରାମଙ୍କ ଆଗରେ ଯାଇଣ ଜଣାଇଲା ।
ଶୁଣି ଶ୍ରୀରାମ ଶତ୍ରୁଘ୍ନଙ୍କୁ ଆଜ୍ଞା ଦେଲେ
ଜାନକୀଙ୍କ ଘେନିଆସ ବୋଲିଣ ବୋଇଲେ ।
ଶତ୍ରୁଘ୍ନ ଯାଇଣ ପ୍ରବେଶ ଅନ୍ତଃପୁରେ
ଦେଖି ଜନକ ଜେମା ବସିଛି ପଲଙ୍କରେ ।
ଦୁଇ ଗୋଟି ଯାକ ତ ସୀତା ପ୍ରାୟ ଦିଶି
ଚରଣ ଓଳଗିଲେ ସୁମିତ୍ରାଙ୍କର ଶିଶି ।
ବୋଇଲେ ଶ୍ରୀରାମ ଯେ ଯିବାକୁ ଉଦବେଗ
ଛନ୍ଦକରି ରଖିଛ ଜାନକୀ ଦେବୀ ଅଙ୍ଗ ।
ତାରା ବୋଇଲା ତୁମ୍ଭ ଠାକୁରାଣୀଙ୍କ ନଅ
ମୋତେ ଦୋଷ ଦେଉଅଛ ସୁମିତ୍ରାଙ୍କ ପୁଅ ।
ଶୁଣିକରି ଫେରିଣ ଶତ୍ରୁଘ୍ନ ଅଇଲା
ତାରା ମନ୍ଦୋଦରୀ କୁସି ତାଙ୍କ ଯେ ମାଇଲା ।
ଶତ୍ରୁଘ୍ନଙ୍କୁ ଦେଖି ଉଠିଲେ ରୂପଧାରୀ
ତାରାର ଅନ୍ତଃପୁରେ ଯାଇଣ ବେଗେ ମିଳି ।
ଦେଖିଣ ତାରା ରୋମା ଚରଣେ ଲୋଟଗାଲି
ଦୁଇ ସୀତା ଚରଣେ ନମିଲେ ଉଠିକରି ।
ଶ୍ରୀରାମ ଦେଖିଲେ ଦୁହେଁ ଏକରୂପ ଗୋଟି
ବୋଇଲେ ଅଯୋଧ୍ୟା ପୁର ଯିବ ଟିକ ।
ଜାନକୀ ବୋଇଲେ ଦେବ କଥା ଛନ୍ଦ ଶୁଣ
ଯେଉଁ ସୀତା ମାରିଥିଲା ରାବଣ ନନ୍ଦନ ।
ସେ ସୀତାକୁ ଗିଆଇଲେ ଦେବଗଣେ ଆସି
ଏହିଠାରେ ରଖିଣ ସେ କହିଲେ ବଶେଷି ।
ଶ୍ରୀରାମ ଅଇଲେ ତାଙ୍କ ସଙ୍ଗେ ଦେବୁ
ଜାନକୀର ରୂପକୁ ନିରେଖ ନ କରିବୁ ।
ଶ୍ରୀରଘୁ ନନ୍ଦନଙ୍କର ଦାସୀ ପଣ କରି
ଜାନକୀଙ୍କର ତ ଏ ହୋଇବ ପରିବାରୀ ।
ଶ୍ରୀରାମ ବୋଇଲେ ଯେବେ ତୁମ୍ଭସଙ୍ଗେ ଲକ୍ଷ୍ୟ
ମୋହର ତାରଠାରେ କେବେହେଁ ନାହିଁସୁଖ
ଏକ ପତିବ୍ରତା ଅଟଇ ମୋର ଅଙ୍ଗ
ଅନ୍ୟ ସ୍ତ୍ରିଙ୍କ ସଙ୍ଗେ ମୋର କେବେନୁହେସଙ୍ଗ
ଜାନକୀ ବୋଇଲେ ଆମ୍ଭେ ସଙ୍ଗତରେନେବା
ଆପଣାର ରୂପ କି ପରକୁ ଦିଆଇବା ।
ଶୁଣିଣ ଦାଶରଥି ମନରେ ତୋଷ ହେଲେ
ମାୟା ସୀତାକୁ ଘେନି କରିଣ ଚଳିଗଲେ ।
ପହଣ୍ଡି ମଣାଇ ନଏ ତାରା ମନ୍ଦୋଦରୀ
ସିଂହଦ୍ୱାରେ ପ୍ରବେଶ ହେଲେ ଯାଇଣ ସେହି
ନନ୍ଦିଘୋଷ ରଥରେ ବିଜୟେ ଯାଇ କଲେ
ତାରା ମନ୍ଦୋଦରୀଙ୍କ ଜାନକୀ ଆଜ୍ଞାଦେଲେ ।
ମୂର୍ତ୍ତି ଥିବାଯାଏ ତୁମ୍ଭେ ଥିବ ନିଶ୍ଚିନ୍ତରେ
ଦାଶରଥି ସଙ୍ଗେ ତୁମ୍ଭେ ଯା ସ୍ୱର୍ଗପୁରେ ।
ଅଚିନ୍ତା ବୈକୁଣ୍ଠପୁରେ ନିଶ୍ଚିନ୍ତରେ ରହ
ଏତେ ବୋଲିଣ ଜାନକୀ ମନରେ ସନ୍ଦେହ ।
ସେଠାରୁ ମାତଳୀ ଦେବ ରଥବାହି ନେଲା
ତାରା ଲେଉଟି ଅନ୍ତଃପୁରକୁ ଚଳିଗଲା ।
ଶ୍ରୀରାମ ତିନି ଭାଇଙ୍କ ତୁହିଁ ଆଜ୍ଞାଦେଲେ
ରାଜା ସୈନ୍ୟବଳଙ୍କ ସଙ୍ଗରେ ଯାଅଇଲେ ।
ଶୁଣିକରି ତିନିଭାଇ ବେଗେ ଚଳିଗଲେ
ଆଗପଛ ମଝି ତିନି ଭାଗରେ ରହିଲେ ।
ବିଭୀଷଣ ଚଳିଗଲେ ତାଙ୍କ ସଙ୍ଗତରେ
ହନୁମନ୍ତ ସୁଷେଣ ଜାମ୍ବବ ନଳ ନୀଳେ ।
ଏମାନେ ନନ୍ଦିଘୋଷ ରଥ ପରେ ବସିଲେ
ଶ୍ରୀରାମ ସଙ୍ଗରେ ଏହିମାନେ ଚଳିଗଲେ ।
ସୁଗ୍ରୀବ ଅଙ୍ଗଦ ଯେ ଭିତର ପୁର ଗଲେ
ତାରା ମନ୍ଦୋଦରୀଙ୍କ ଯାଇଣ ସେ କହିଲେ ।
ଅଯୋଧ୍ୟାକୁ ଆମ୍ଭେ ଯାଇ ଆସିବା ପର୍ଯ୍ୟନ୍ତେ
ଦୁଇ ରାଜ୍ୟ ରକ୍ଷାକରି ଥିବୁ ଗୋ ନିଶ୍ଚିନ୍ତେ
ଏତେ କହି ଦୁଇଜଣ ରଥରେ ବସିଲେ
ଶ୍ରୀରାମଙ୍କ ପଛରେ ସେ ଦୁହେଁ ଚଳିଗଲେ ।
ଜାନକୀଙ୍କ ବୋଲନ୍ତି ଯେ କୋଦଣ୍ଡ ଧାରଣ
କିଷ୍କିନ୍ଧ୍ୟା ନଗ୍ରକୁ ତ ଦେଖିଲ ତୁମ୍ଭେ ପୁଣ ।
ସୀତାଙ୍କୁ କହନ୍ତି ତୁମ୍ଭେ ଶୁଣ ସଙ୍ଗାତୁଣୀ
ଦୁଧପାଇଁ ବଗୁମୁଣ୍ଡ ବନ୍ଧା ଦେଲୁ ପୁଣି ।
ଏନାବନେ ଶବରଣୀ ମୋକ୍ଷ ହୋଇଗଲା
ମୋର କ୍ଷୁଧା ଦେଖି ସେ ପାଚିଲା ଆମ୍ବଦେଲା
ଏଠାରେ ଛେଳି ଗୋଟି ସ୍ୱର୍ଗ ପୁରକୁ ଗଲା
ଘରଣୀ କି ଘେନିଯାଇ ସ୍ୱର୍ଗରେ ବସିଲା ।
ଏଠାରେ କୋବନ୍ଧ ଧଇଲା ମୋତେ ବଳେ
ଲକ୍ଷ୍ମଣ ହାଣିଲା ତାକୁ ପ୍ରଚଣ୍ଡ ଖଣ୍ଡାରେ ।
ଏହିଠାରେ କୋବନ୍ଧକୁ ଆମ୍ଭେ ପୋଡ଼ିଦେଲୁ
ହେ ସଖି ପକ୍ଷୀଜଟାକୁ ଏଠାରେ ଦେଖିଲୁ ।

ଏଠାରେ ହୁତାଶନରେ ଆମ୍ଭେଚଲୁ ବହୁ
ମାୟାମୃଗକୁ ଭଞ୍ଜିଲୁ ଏଠାରେଟି ଗୃହଁ ।
ଏଠାରେ ଖର ଦୂଷଣ ଆମ୍ଭେ ନାଶକଲୁ
ଚଉଦ ସହସ୍ର ବଳକୁ ଏଠାରେ ମାରିଲୁ ।
ଏଠାରେ ସୂର୍ପଣଖାର କାଟି ନାକ କାନ
ଦେଖ ଦେଖ ସଖି ଏହି ଦଣ୍ଡକ ଅରଣ୍ୟ ।
ଏହିଟି ପଞ୍ଚବଟି ଗୋ ଗୋଦାବରୀ କୂଳ
ଏଠାରେ ବଞ୍ଚିଲଇଁ ତିନ ବରଷ କାଳ ।
ତୁହି ଏହି ବନସ୍ତରେ କ୍ରୀଡ଼ା କରୁଥାଉ
ଜଟାଇଣକୁ ଆହାର ବୃକ୍ଷମୂଳେ ଦେଉ ।
ଏହି ପର୍ଣ୍ଣକୁଟୀରେ ଗୋ ହରିଇଲା ତୋତେ
ଏହିଠାରେ ନଦେଖି ଗୋ କରିଗଲୁ ମୋତେ
ଏଣାରେ ଫଳ ଫଳନ୍ତି ଦେଖ ସଖି ଯାଇ
ନାନା ବିନୋଦ ଏଠାରେ ଆମ୍ଭେ କରିଲଇଁ
ଏହିଠାରେ ଶରଭଙ୍ଗ ଋଷି ରହିଥିଲେ
ଆମ୍ଭଙ୍କୁ ଦେଖିବାରୁ ସେ ମୋକ୍ଷ ହୋଇଗଲେ
ଏହିବନମଧ୍ୟେ ମୃଗ ଆମ୍ଭେ ମାରୁ ପୁଣି
ଖେଳ ଖେଳୁଥାଉ ତୁ ଗୋ ଜାଣ କମଳିନୀ ।
ଅଗସ୍ତି ମୁନିବର ଥିଲେଟି ହାଦେ ଏଥ
ପଞ୍ଚବଟି ବନକୁ ଦେଖାଇ ଦେଲେ ହାତ ।
ଅକ୍ଷୟ ତୂଣୀ ଧନୁ ଖଡ଼ଗ ଦେଲେ ମୋତେ
ପୁରାତନ କଥାମାନ ଶୁଣାଇଲେ କେତେ ।
ଅମଳାଣ ଶାଢ଼ୀ ଅନୁସୂୟା ତୋତେ ଦେଲେ
ତୋହର ଜନ୍ମ କାଳର କଥା ପଚାରିଲେ ।
ଦେଖ ସଖି ଏ ବନେ ଋଷିଙ୍କ ଘରମାନ
ଏହି ଘୋରବନେ କରିଅଛନ୍ତି ଆଶ୍ରମ ।
ଏଠାରେ ବିରାଧ ଦୈତ୍ୟକୁ ନାଶକଲୁ
ଦୈତ୍ୟମାର ବନଭାଗ ଉଶ୍ବାସ କରିଲୁଁ ।
ଋଷିକୁଲ୍ୟା ତଟରେ ପୂଜିଲୁ ଏହି ହର
ମୁଦ୍ରିକା ହାର ଲାଗି ଚିନ୍ତା ଘୁଞ୍ଚିଲା ମୋର ।
ଏହି ଚଣ୍ଡିକ ପୁଣ ଲକ୍ଷ୍ମଣ ପୂଜାକଲେ
ଲକ୍ଷ୍ମଣ ଚଣ୍ଡି ବୋଲି ତାହାର ନାମ ଦେଲେ
ଏହି ମାଳଗିରି ଆଗୋ ସ୍ତ୍ରୀପୁରୁଷେ ଉମ
ମାଳ ଯେ ମାଧବ ରୂପେ ବିଜୟେ ଉତ୍ତମ ।
ହେ ସଖି ପୃଥ୍ୱୀର ଏହିଟି ଐଶାନ୍ୟ କୋଣ
ମାଳଗିରି ବନ ବୋଲି ପୁବଁରୁ ଉଆଣ ।

ମୈନ୍ଦେୟ ନାମେ ଆଦିତ୍ୟ ଏଥେ ସଦା ଥାଇ
ଏହାର ପଶ୍ଚିମଭାଗେ ଅଛି ମହାମାୟୀ ।
ଏ କୃତ୍ତିବାସଟି ଏକାମ୍ର ନାମେ ବନ
ଭୁବନେଶ୍ୱର ବୋଲିଣ ବିଜୟେ ଈଶାନ୍ୟ ।
ଦେଖ ଦେଖ ସଖିରେ ଦକ୍ଷିଣ ବାରାଣସୀ
ବାଲୁଙ୍କେଶ୍ୱର ନାମେ ପୂଜିଲୁ ହରକାଶୀ ।
ଏ ସେନ୍ନହର ପ୍ରୟାଗ ଅଟଇ ଅଗ୍ନିକୁଣ୍ଡ
ଏଥିରେ ସ୍ନାନକରି ଦେଲୁ ଯେ ଆମ୍ଭେ ପିଣ୍ଡ
ଏହି ସେ ନର୍ମଦା ନଦୀ ପଶ୍ଚିମେ ବାହେନ
ଏଠାରେ ଦେଖିଲୁ ଆମ୍ଭେ ସୁତୀକ୍ଷଣ ମୁନି ।
ଏହିଟି ଜାନକୀ ଗୋ ଫଲ୍‌ଗୁନଦୀକୁ ଚାହଁ
ଗଦାଧର ରୂପ ଧରି ବିଜୟେ ତହିଁବାହ ।
ଏଥିରେ ବାଲିପିଣ୍ଡ ତୁ ଦେଲୁ ଶ୍ରଦ୍ଧମୁହିଁ
ମୋହର ପିତୃ ସ୍ୱର୍ଗ ବସିଲେ ତୋଷ ହୋଇ
ବ୍ରାହ୍ମଣମାନେ ଏଠାରେ ପୂର କଲେ ଆସ୍ତେ
ଗୋଡ଼ାଇଲେ ବିପ୍ରଗଣ ଏହିଠାର ଯାଏ ।
ଦେଖ ଦେଖ ସଖି ଆଗୋ ବାରାଣସୀ କ୍ଷେତ୍ର
ଏଥିରେ ସର୍ବଦା ବିଜେକରି ତ୍ରୟନେତ୍ର ।
ଏହି ଗଙ୍ଗାନଦୀକି ଗୋ ଗଲୁ ସ୍ନାନକରି
ଆଗରେ ଦେଖରେ ସଖି ଚିତ୍ରକୂଟ ଗିରି ।
ଏଠାରେ କାକପକ୍ଷୀ କସ୍ତୁରୀ ମାଂସ ନେଲା
ଏଠାରେ ଭରତ ଆସି ଦର୍ଶନ ମୋତେ କଲା
ଏ ଧାତୁ ଶିଳାପରେ ବସିଣ ଥିଲୁ ସୀତା
ଏଠାରେ ଗୋରୁଚନ୍ଦନ କପେଲେ ଦେଲୁ ତତା
ଏ ମହାଅଗ୍ନି ଜଳରେ ସ୍ନାନ ଆମ୍ଭେ କଲୁ
ଏ ପୁଷ୍ପ ବନକାରେ ବିନୋଦ ଆଚ୍ଛାଦିଲୁଁ ।
ଏହି ବୃକ୍ଷ ନାମ ଅଟେ ଗୋ ଶ୍ୟାମଳ ବଟ
ଏହିଠାକୁ ପ୍ରୟାଗ ଗୋ ଅଟଇ ନିକଟ ।
ଏସନେକ ଭାଳେଣି ଭାଳନ୍ତି ସୀତା ଅଙ୍ଗେ
ନନ୍ଦିଘୋଷ ଯାନ ଯେ ଚଳଇ ଶୂନ୍ୟମାର୍ଗେ
ତନ୍ତ୍ରଦେବତା ଯେତେହେଁ ରବ କରଣ ଗର୍ଜି
ବିବିଧ କରି କଥା କହନ୍ତି ମନରଞ୍ଜି ।
ପ୍ରୟାଗ ସଳଖରେ ହୋଇଲା ଯାଇ ରଥ
ଦେଖି ରଥ ମାତଳି ବୋଇଲେ ରଘୁନାଥ ।
ଆଜ୍ଞା ପ୍ରମାଣରେ ରତ୍ନାଳକ ରଥବର
ଗଗନ ଶିଖରୁ ସେ ଖସଇ ଧୀର ଧୀର ।

ସ୍ୱର୍ଗରୁ ଶ୍ରୀହ କ ଆସି ପଡ଼ଇ ମେଦିନୀ
ସୁଧର୍ମା ସଭା ଅଇଲେ କି ସୁରଗଣ ଘେନି ।
ଆଦିତ୍ୟ ଦେବତା ପୃଥ୍ୱୀକି ସାଧିକଲି
ତେସନେକ ନନ୍ଦିଘୋଷ ରଥ ଯେ ଦିଶିଲା ।
ଉଦିତଲେ ତେଣୁ ଆସି ହୋଇଲା କି ଯାନ
ଏମନ୍ତ ସମୟେ ମିଳେ ପୁଷ୍ପକ ବିମାନ ।
ଋଷକପି ରାକ୍ଷସେ ବଜାନ୍ତି ବାଦ୍ୟମାନ
ଭିଜଣ୍ଡ ଆସିଣ ମିଳିଲେ ତତକ୍ଷଣ ।
ଲଙ୍କେଶ ନୃପତି ଯେ ଆସିଣ ମିଳିଲେ
ରଥୀମହାରଥୀମାନେ ପ୍ରବେଶ ହୋଇଲେ ।
ହସ୍ତୀଘୋଡ଼ା ସାରେଣି ଯେ ଶଗଡ଼ ବଳଦ
ଆସି ନପାରିବାରୁ ବହୁରି ରାମଦେବ ।
ପ୍ରୟାଗ ତୀର୍ଥରେ ଅଛନ୍ତି ଅନେକ ଦେଖା
ବେଢ଼ି ଅଛନ୍ତି ଗଙ୍ଗା ଯମୁନା ବେନି ନଦୀ ।
ସମସ୍ତଙ୍କୁ ଦେଖି ଶ୍ରୀରାମ ଆନନ୍ଦ ହେଲେ
ଶତ୍ରୁଘନେ ବୁଝିଣ ଶ୍ରୀରାମ ପଚାରିଲେ ।
ସମସ୍ତେ ଅଇଲେ କି ରହିଲେ କେତେ ବଳ
ଶତ୍ରୁଘନ ବୋଲେ ଦେବ ଅଇଲେ ସକଳ ।
ଶଗଡ଼ ବଳଦ ହସ୍ତୀ ଅଶ୍ୱ ଗଜ ଥିଲେ
କେଉ ପର୍ଯ୍ୟ ଅଇଲେ ମୋତେ କହଇଲେ
ଶତ୍ରୁଘନ ବୋଲେ ଆସିବା ବିଳମ୍ବ ଦେଖି
ପୁଷ୍ପକ ବିମାନେ ସର୍ବେ ବସିଲେ ଯାଇଟି ।
ଶୁଣିଣ ଦାଶରଥି ଯେ ସନ୍ତୋଷ ହୋଇଲେ
ପାର୍ଶ୍ୱସ୍ଥ ଆଗରେ ଏହା ଇଶ୍ୱର କହିଲେ ।
ରହିଲେ ପୁଣ ଭରଦ୍ୱାଜଙ୍କର ଆଶ୍ରମ
ସନ୍ଧ୍ୟା ସମୟେ ମୁନି ଅଗ୍ନିରେ ଦ୍ୟନ୍ତି ହୋମ
ଏସନକ ସମୟେ ଦ୍ୱାରେଣ ରଥ ରହି
ଦେଖିଣ ଶିଷ୍ୟମାନେ ମୁନିକି ଯାଇ କହି ।
ହେ ମୁନି ଆମ୍ଭ ଦ୍ୱାରେ ଯେ ଯାନ ଉପଗତ
ନର ବାନର ରାକ୍ଷସ ଅଛନ୍ତି ସମସ୍ତ ।
ଅପୂର୍ବ ବିମାନ ଦେବ ନଦୀରଥ ମଧ୍ୟେ
ଶୁଣିକରି ମୁନିଙ୍କର ଉଲ୍ଲସଇ କାୟେ ।
ଅଗ୍ନିପୂଜା ବିଧିସାରି ଉଠିଲେ ତୁରିତ
ହୋମସରିବାରୁ ବାହାର ହେଲେ ମହାଯତି ।
ପର୍ଣ୍ଣକୁଟି ଦ୍ୱାରେ ମିଳିଲେକ ପୁଣ ଆସି
ଶ୍ରୀରାମ ନନ୍ଦିଘୋଷ ଉପରେ ଥିଲେ ବସି ।
ମୁନିଙ୍କି ଦେଖି ଶ୍ରୀରାମ ରଥୁ ଓହ୍ଲାଇଲେ
ତାଳଧ୍ୱଜ ରଥପରୁ ଲକ୍ଷ୍ମଣ ଅଇଲେ ।
ଜାଣିଅରି ରଥରୁ ଓହ୍ଲାଏ ପୁଣ ଭ୍ରାତ
ଅସୁର ଦଳନ ରଥୁଁ ଶତ୍ରୁଘ୍ନ ଉପଗତ ।
ବିଭୀଷଣ ସୁଗ୍ରୀବ ରଥରୁ ଓହ୍ଲାଇଲେ
ହନୁମନ୍ତ ଅଙ୍ଗଦ ଜାମ୍ବବ ନଳ ନୀଳେ ।
ଗନ୍ଧମାଦନ ଯେ ଶରଭ ଶତବଳ
ସେନା ଯୂଥପତିମାନେ ପଛରେ ସକଳ ।
ନର ରାକ୍ଷସ ବାନରେ ସକଳ ଓହ୍ଲାଇଲେ
ହସ୍ତୀ ଅଶ୍ୱ ସାରେଣି ରଥରୁ ବାହାରିଲେ ।
ଶଗଡ଼ ବଳଦ ଆଦି ହାଟୁଆ ବଜାର
ସେବାକାରୀ ଲୋକମାନେ ରଥରୁ ଉତ୍ତୁରି ।
ଲକ୍ଷେ ରଥୁଁ ଲକ୍ଷେରଜା ଉତ୍ତୁରିଲେ ପୁଣ
ରଥିମାନେ ରଥପରୁ ଓହ୍ଲାଇଲେ ଜାଣ ।
ସମସ୍ତେ ଓହ୍ଲାଇବାରୁ ଶାଢ଼ୀ ଘର କଲେ
ରଜାମାନେ ଯାଇ ଶାଢ଼ୀ ଘରରେ ରହିଲେ
ସୈନ୍ୟ ଅକଳନ୍ତ ଶ୍ରୀରାମଙ୍କର ଅଟନ୍ତି
କେ କଳପାରିବ ଲକ୍ଷେ ରଜା ଯୁଣ୍ଡିଛନ୍ତି ।
ଅକଳନ୍ତ ବଳ ପୁଣ ପୂରିଲେ ଧରଣୀ
ଶ୍ରୀରାମଯେ ରହିଲେ ଜନକ ଦୋହିତ ।
ଅଗୁସାରି ହୋଇଣ ଅଛନ୍ତି ଛଡ଼ିଜଣ
ଶ୍ରୀରାମ କନ୍ଧେ ଅଛି ଅକ୍ଷୟ ବେନି ତୂଣ ।
ବାମେଣ କୋଦଣ୍ଡ କାଣ୍ଡ ଅଛି ସୁବାମୂର୍ତ୍ତି
ନବ ଦୁର୍ବାଦଳ ଯେ ଶରୀର ଦିବ୍ୟ ଜ୍ୟୋତି
ସର୍ବାଙ୍ଗ ଭୂଷଣମାନ ଶ୍ରୀକର୍ପୂର ଧୂଳି
ଯାଇ କୁସୁମରେ ଦେଇଛନ୍ତି ବାଳମୁଣ୍ଡି ।
ଫରହର ନଖ କସ୍ତୁରୀରେ ଖରସମ
ପାଦପଦ୍ମକୁ ସମ ନୁହଇ କୋଟି କାମ ।
ସୁବର୍ଣ୍ଣ କାନ୍ତି ଜିଣିଣ ବିରାଜେ ପଇତା
କପୋଳରେ କସ୍ତୁରୀ ତିଳକ ଠିଆ ଗତା ।
ଫରହର ଉଡ଼ଇ ଯେ ନେତର ଚାଦର
ବାମପାଖେ ଯମଦାଢ଼ କଟିରେ ମେଖଳ ।
ସୀତାର ମଣି ଗୋଟି ହୃଦ ପଦ୍ମରେ ଲୁଳି
କଉସ୍ତୁଭ ମଣିକି ଲଇଲେ ବନମାଳୀ ।
ବଳିଷ୍ଠ ବିଶେ ବାହା ବିକ୍ରମ ସିଂହଠାଣି
ସକଳ ରୂପ ବିଧାତା ଠୁଳ କଲା ଆଣି ।

ଦେଖିଣ ଋଷିମାନେ ମୋହମାନ ହୋଇଲେ
ଯେଉଁ ପ୍ରଭୁ ଅବତାର ମାନବ ଦେହରେ ।
ଦେଖିଣ ମନେ ଆନନ୍ଦ ଭରଦ୍ୱାଜ ମୁନି
ସୀତାୟା ସଖି ଅନନ୍ତ ସ୍ୱୟଂ କମଳିଣୀ ।
ଶ୍ରୀରାମର ଦକ୍ଷିଣ ପାର୍ଶ୍ୱେ ଦେଖା ଛନ୍ତି
ସଖୀର ସଙ୍ଗରେ ମାୟା ସୀତା ରୂପବନ୍ତି ।
ବାମପାର୍ଶ୍ୱେ ଲକ୍ଷ୍ମଣ କୋଦଣ୍ଡ କାଣ୍ଡ କର
ଶୁଦ୍ଧ ସୁବର୍ଣ୍ଣ ପରାୟେ ଦିଶେ କଳେବର ।
ନହ୍ଲ ବୟସ ଅଟେ ସୁକୁମାର କାୟେ
ମତ୍ତସିଂହ ପ୍ରାୟେତ ଗମନ କରି ଆୟେ ।
ଦେଖିକରି ପ୍ରଶଂସା କରନ୍ତି ମୁନିବର
ସାଧୁ ସାଧୁ ଶ୍ରୀରାମ ହେ ମହିମା ତୁମ୍ଭର ।
ଶ୍ରୀରାମର ତଳଭାଇ ଅଟେ ବୀର ଭରତ
ଶ୍ରୀରାମ ସଦୃଶ ଦିଶଇ ତାର ଗାତ୍ର ।
ଶ୍ୟାମଳ ବର୍ଣ୍ଣଗୋଟି ଶୋଭା ପରାୟେ ପୁଣ
ତାହାକୁ ଦେଖି ମୁନି ପ୍ରଶଂସା କଲେ ଜାଣ ।
ଲକ୍ଷ୍ମଣର ତଳଭାଇ ଅଟେ ଶତ୍ରୁଘ୍ନ
ଧବଳ ବର୍ଣ୍ଣ ଦିଶଇ ଅଙ୍ଗ ଗୋଟି ପୁଣ ।
ଯେସନକ ମତ୍ତସିଂହ ହସ୍ତୀକି ଦଳଇ
ତେସନ ପ୍ରାୟେ ତେଜ ଶ୍ରୀରାମ ସାନଭାଇ ।
ଦେଖିଣ ମୁନି ତାହାଙ୍କୁ ହରଷ ହୋଇଲେ
ସକଳ ସୁର ଦେବତା ଏହି ସେ ବୋଇଲେ
ଦଶରଥ ରାମ କୌଶଲ୍ୟା କୋଳେ ଜାତ
ଯେଣୁ ସେ ଦୈତ୍ୟ କୁଳକୁ କରିଲେ ନିପାତ
ପରମ ଆତ୍ମା ଜୀବ ପ୍ରକୃତି ତିନି ମୂର୍ତ୍ତି
ଶ୍ରୀରାମ ଲକ୍ଷ୍ମଣ ସୀତା ଜନକ ଦୋହିତ୍ରୀ ।
ସତ୍ତ୍ୱ ରଜ ତମ ଯେ ଘେନିଣ ତିନି ଗୁଣ
ଏହି ସେ ବେଦମଣି ଶଙ୍କର ନାରାୟଣ ।
ଶଙ୍ଖ ଚକ୍ର ଅଟନ୍ତି ଭରତ ଶତ୍ରୁଘ୍ନ
ଏକଳେ ଶ୍ରୀରାମ ଅଟନ୍ତି ହରି ପୁଣ ।
କୃତାର୍ଥ ହୋଇଲି ମୁଁ ଦେଖିଲି ପୁଣ ଆଜ
ଜାଣିଲି ସୁଦୟା ମୋତେ କଲେ ଦେବରାଜ
ଏସନ ସମୟେ ଯେ ଶ୍ରୀରାମଚନ୍ଦ୍ର ରାୟେ
ମୁନିଙ୍କ ଚରଣ ତଳେ ନମସ୍କାର ହୋଏ
ଲକ୍ଷ୍ମଣ ଭରତ ଯେ ଶତ୍ରୁଘ୍ନ ପୁଣି
ମୁନିଙ୍କର ଚରଣେ ନମିଲେ ତତକ୍ଷଣି ।
ଜାନକୀ ମାୟାସୀତା ଯେ ଚରଣେ ନମିଲେ
ଉଠିଣ ଉଭା ହୋଇଣ ଶିରେ କର ଦେଲେ
ସୁଗ୍ରୀବ ବିଭୀଷଣ ଜାମ୍ବବ ବେନି ମନ୍ତ୍ରୀ
ଅଙ୍ଗଦ ହନୁମନ୍ତ ପାଏ ପଡ଼ି ଶୁଅନ୍ତି ।
ଗବଏ ଗବାକ୍ଷ କାଳମୁଖ ସୁଶୋଦନ
ସୁଷେଣ ତାରକ୍ଷ ନଳ ନୀଳ ଯେ ଚନ୍ଦନ ।
ମହେନ୍ଦ୍ର ଦୁର୍ବିନ୍ଦ ଗନ୍ଧମାଦନ ସହିତେ
ସେନା ଯୂଥପତି ବାନର ଭଲ୍ଲୁକ ଯେତେ ।
ନର ରାକ୍ଷସ ସର୍ବେ ଶୋଇଲେ ଗଡ଼ଗାଳି
ଉଠ ଉଠ ତୁମ୍ଭେମାନେ ମହାମୁନି ବୋଲି ।
ରାଜା ରଥିମାନେ ଯେ ପଦାତି ସେନାପତି
ସମସ୍ତେ ଓଳଗ କଲେ ମୁନି ପାଦଗତି ।
ହଟାଶ୍ୱ ବଜାଶ୍ୱ ସେବକାଦି ଲୋକମାନେ
ସମସ୍ତେ ନମିଲେ ଯାଇ ମୁନିଙ୍କ ଚରଣେ
ଶ୍ରୀରାମଙ୍କ ହସ୍ତ ଧରି ମୁନି ଘେନିଗଲେ
ଜଗତ ପିତା ଜବା କାମଦେବକୁ ନେଲେ ।
ଆଶ୍ରମରେ ବସାଇଣ କଲେ ଗଉରବ
ପୂଜାବିଧି କରି ମୁନି ଦେଲେ ଛତ୍ର ଅର୍ଘ୍ୟ ।
କୁଳଗୋତ୍ର ପୁଚ୍ଛାପୁଚ୍ଛି ବେନିଜନେ ହୋନ୍ତି
ଋଷି ମୁଖ ଚାହିଁଣ ଶ୍ରୀରାମ ବୋଲନ୍ତି ।
ହେ ମୁନି କଥା ଏ ପଚାରିବି କହ ମୋତେ
ଜନନୀମାନେ କି ଅଛନ୍ତି କୁଶଳ ଚତ୍ତେ ।
ଜାଣିଛ ମୁନି ଆହେ ତାଙ୍କର ବାରତା
ଶୁଣିକରି ଦେବ ହୋଇଲେ ବ୍ରହ୍ମବେତ୍ତା ।
ସକଳ କୁଶଳ ତୁମ୍ଭ ଅଯୋଧ୍ୟା କଟକ
କ୍ଷେମେଣ ବର୍ତ୍ତିଛନ୍ତି ସକଳ ପ୍ରଜା ଲୋକ ।
ତୁମ୍ଭର ମାତୃଗଣ ଅଛନ୍ତି ବାବୁ ଭଲେ
ସାମନ୍ତ ପାତ୍ର ମନ୍ତ୍ରୀ ଅମାତ୍ୟଙ୍କ କୁଳେ ।
ଉଗ୍ର ନରନାରୀମାନେ ଶୁଦ୍ଧେଣ ଅଛନ୍ତି
ଘୃତକ ଚଡାଇ ପ୍ରାୟେ ତୋତେ ନିରେପନ୍ତି ।
ଦେବକୂଟ ବାବୁରେ କରିଲେ ତୋର ପୁରେ
ଶତମୁଖୀ ରାବଣ ଅଇଲା ଅଯୋଧ୍ୟାରେ ।
ଦେବେ ଆସିଣ ଶତ୍ରୁଘ୍ନଙ୍କୁ ଶସ୍ତ୍ର ଦେଲେ
ଅସୁର ଦଳନ ରଥ ଆଣି ସମର୍ପିଲେ ।
ଜନନୀ ଲୀଳାବତୀ ସେଥି ହେଲେ ସାରଥି
ଅସୁରଦଳ ଶତ୍ରୁଘ୍ନ ପକାଇଲେ ମାରି ।

ଦୈତ୍ୟ ମରିବାରୁ ପଳାଇଲା ଶତେମୁଖ
ତାର ସଙ୍ଗେ ଗୋଡ଼ାଇଲେ ସୁମିତ୍ରାଙ୍କ ସୁତ
ସେଠାରୁ ପର୍ଶୁରାମଙ୍କୁ ଦେଟେ ଦେଲେ ଗ୍ଳାନ
ତୋହର କଟକ ଭଲେ ଜଗିଅଛୁ ଭଲ ।
ଭରତବୀର ଅଯୋଧ୍ୟାରେ ନୃପତି ନୋହିଲେ
ମିଳାବଣି ଜନନୀଗୋ କଟକ ବୁଝିଲେ ।
ଏବେ କଳାବଣି ମାତାପାଳେ ପ୍ରଜା ତୋର
ଶୁଣିକରି ସନ୍ତୋଷ ହୋଇଲେ ରଘୁବୀର ।
ମୁନି ବୋଇଲେ ବାବୁରେ ସବୁ ଯେ କୁଶଳ
କୈକେୟୀ ଜନନୀର ମନ ନୁହଇ ସ୍ଥିର ।
ରାତ୍ର ଦିବସ ଶୋକ କରଇ ସେହୁ ନାରୀ
ବୋଲଇ ଶ୍ରୀରାମ ଜାନକୀରେ ମୁଁ ବଇରୀ ।
ଆହାର ନ କରଇ ନଯାଇ ନିଦ୍ରା ପୁଣ
ରାମରାମ ସୀତାସୀତା ବୋଲେ ସେ କ୍ଷଣେଣ
ନେତ୍ରେ ଦେଖିବ ବୋଲି ଜୀବନ ଅଛି ଧରି
ତୋତେ ଦେଖିଲେ ମନ ତା ହେବପୂରସରି
ତୁମ୍ଭେ ଦୁଇଭାଇ ଯେବେ ନ କହିବ କଥା
ନିଶ୍ଚେ ମରିବ ଭରତ ଜନନୀ କରି ଚିନ୍ତା ।
ସ୍ମରିଥାଇ ତୁମ୍ଭେ ପୁଣ ଅଟ ଏକ ଦେହ
ମେନ୍ତେ ରାବଣ ଯିବ ଯେ ଯାହାର ସ୍ନେହ ।
କେମନ୍ତେ ରଘୁନାଥ ଏତେ ଯଶ କଲ
ବଳଦ ଭୁବନରେ କଥାଳ ରୁହାଇଲ ।
ହିଦଶ ଦେବେ ସେ ନ ପାରନ୍ତି ଏହାକରି
ତୁମ୍ଭର ବଳେ ବିନା ଦୈତ୍ୟଙ୍କୁ ହୁଏ ମାରି
ପର୍ବତ ଘେନି ରାମ ପୋତିଲ ମହାଜଳ
ଏ କଥା ଅସମ୍ଭବ ଶୁଣିବା ଚମତ୍କାର ।
ଭରଦ୍ୱାଜ ଋଷିଙ୍କଠାରୁ ଶୁଣି ବଚନ
ଶୁଣିଣ ମନେ ମନେ ହସନ୍ତି ହନୁମାନ ।
ମୋହର ପ୍ରସାଦେ ରାମ ମାରି ଦଶଶିର
ମୋଲାଗି ଆଣିଲେ ସ୍ୱାମୀ ଜନକ କୁମାରୀ ।
ମୁହିଁ ବିନା ପର୍ବତ ବହିଣ ବନ୍ଧ କଲି
ଲକ୍ଷ୍ମଣ ଶକ୍ତି ଭେଦରୁ ମୁହିଁ ସେ ରଖିଲି ।
ଦୁର୍ଲଭ ଠାବେ ବିନା କଲଇ ମୁହିଁ ବନ୍ଧ
ନାଗପାଶ ବନ୍ଧରେ ଆଣିଲି ମାତଙ୍କ ।
ଏକାରେ ମୁଁ ଅନେକ ଦଇତ ସଂହାରିଲି
ଅକ୍ଷୟକୁ ମାରି ଲଙ୍କାଗଡ ପୋଡ଼ିଦେଲି ।

ରାବଣ ଆଗେ ନିର୍ଭୟେ ମୁହିଁତ କହଇ
ଅସୁରଙ୍କୁ ମୁହିଁ କୋପାନଳରେ ଦହଇ ।
ମୋତେଘେନି ରାମପୁଣ ଏତେ ଯଶପାଇ
ମୋତେ ନଦେଖିଲ୍ୟାକ ହୋଇଥିଲେ ବାଇ
ମୁହିଁ ବିନା ସୁଗ୍ରୀବରେ କରାଇଲି ଦେଖା
ସେତୁୟା ଯୁଗରେ ସ୍ୱର୍ଣ୍ଣୀ ମୁହିଁ ବିନାଲେଖା ।
ଏମନ୍ତ ମନରେ ଯେ ଭାଳଇ ହନୁମନ୍ତ
ସେ କଥା ଜାଣିଲେ ସ୍ୱାମୀ ଜାନକୀର କାନ୍ତ
ସର୍ବଜ୍ଞ ପୁରୁଷ ସେହୁ ସର୍ବ ଅନ୍ତର୍ଯାମି
ହନୁମନ୍ତ ମନକଥା ଜାଣିଲେଟି ସ୍ୱାମୀ ।
ମନରେ ହସିଲେ ମାରୁତି ଗର୍ବ କଲା
ସଂଗ୍ରାମ କଲାକୁ ମୁହିଁ ଜାଣି ସେ ବୋଇଲା ।
ଅଜ୍ଞାନ ବାପୁଡ଼ା ଏତ ନ ଜାଣଇ କିଛି
ରାମାୟଣ ଯୁଦ୍ଧରେ ବଡ଼ିମା କହୁଅଛି ।
ଆଜଏହାର ବଳକୁ କଳବଇଁ ମୁହିଁ
କେତେମାନ ଶଉର୍ଯ୍ୟ ଶରୀରେ ଅଛି ବହି ।
ଏସନକ ସମୟରେ ହେଲା ସନ୍ଧ୍ୟାକାଳ
ବଶିଷ୍ଠ ନାରଦ ଯାଇ ମିଳିଲେ ମୁନିଆଳ ।
ଦେଖିକରି ଭରଦ୍ୱାଜେ କୃତକୃତ ହେଲେ
ଆସନ ଦେଇ ରାମ ଋଷିଙ୍କ ବସାଇଲେ ।
କଶ୍ୟପ ବାମଦେବ ମିଳିଲେ ଯାଇ ପୁଣ
ଭରଦ୍ୱାଜ ମୁନିଙ୍କି କରିଲେ ଦରଶନ ।
ଫଳମୂଳ ଆଣିଣ ଦେଲେକ ତପଶିଳ
ବାନର ଭାଲୁ ସରବେ କଲେକ ଆହାର ।
ଦିବ୍ୟ ତଣ୍ଡୁଳ ହାଣ୍ଡିକାଠଯେ ଢାଳିଦେଲେ
ରାଜାମାନେ ସମସ୍ତେ ରନ୍ଧଣା ବାଢ଼ିକଲେ ।
ଭୋଜନକରିଣ ସର୍ବେ ସନ୍ତୋଷ ହୋଇଲେ
ସମସ୍ତଙ୍କୁ ମହାଋଷି ଭଣୋଇ କହିଲେ ।
କେବଳ ଆମ୍ଭେ ଏହିଯେ ବନସ୍ତରେ ଥାଉ
କନ୍ଦମୂଳ ଖାଇଣ ନିର୍ଝର ପାଣି ପିଉ ।
ଶ୍ରୀରାମଚନ୍ଦ୍ର ଆମ୍ଭଙ୍କୁ ଦୟା ମାତ୍ର କଲ
ଯିବାଆସିବା ବେଳେ ଆମ୍ଭଙ୍କୁ ପଚାରିଲ ।
ଏତେ ଅସମୟ କାଳରେ ସେହୁ ଅଇଲେ
ନଶିକାଳେ ଆସିବାରୁ କିଛିହିଁ ନ ମିଳେ ।
କାଲି ଏଠି ଶ୍ରୀରାମଙ୍କୁ ଯତ୍ନେ ରୁହାଇବ
ଯେମନ୍ତେ ମନମିଳିବ ଭୁରି ଭୋଜନଦେବ ।

ଏସନେକ ବୋଲିଣ ବୋଇଲେ ତପଶୀଳ
ତୋଷ ହେଲେ ନର ବାନର ରାକ୍ଷସ ବଳ ।
ଦେଖିକରି ବଶିଷ୍ଠ ନାରଦ ତଳଗଲେ
ସୁରଗାଭି କହିଣ ଅମୃତ ବୃଷ୍ଟି କଲେ ।
ଯେ ଯାହା ଇଚ୍ଛାକରିଲା ସେ ତାହା ଭୁଞ୍ଜିଲା
ଅଶ୍ୱ କପି ସାରେଣିଙ୍କୁ ଦାନା ଯେ ମିଳିଲା ।
ଏହି କଥା ଭରଦ୍ୱାଜେ ନ ଜାଣନ୍ତି ପୁଣ
ବଶିଷ୍ଠଙ୍କ ସଙ୍ଗେ ସୁରଭି ଅଛି ନେଲିଣ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାଏ
ହନୁମନ୍ତକୁ ଚାହିଁଣ ଏକାନ୍ତରେ କହେ ।
ତୁହି ମୋ ମାରୁତି ଏବେ ମୋର ବୋଲ ଶୁଣ
ଅସୁରଙ୍କ ସଙ୍ଗରେ ତୁ କଲୁ ମହାରଣ ।
ଯୁଦ୍ଧରେ ଶରୀର ତୋର ଅଛି ପୀଡ଼ା ପାଇ
ଆତ୍ମା ସନ୍ତୋଷ କର ତୁ ଫଳମୂଳ ଖାଇ ।
ଏ ଯେ ଦଣ୍ଡଛତ୍ରରେ ବାବୁ ପଶ୍ଚିମ ଦ୍ୱପିନ
ଆଜ ଏ ନିଶାରେ ତୁହି ବଞ୍ଚ ହନୁମାନ ।
ପ୍ରଭାତୁ ଆସିଣ ତୁ ଆମ୍ଭର ପାଦେ ଖଟ
ଶୁଣିଣ ତୋଷ ହୋଇଲା ପବନର ସୁତ ।
ଶ୍ରୀରାମଙ୍କର ଦଇବ ମାୟାରେ ମୋହ ହେଲା
ତାହାଙ୍କର ମାୟାରେ ଈଶ୍ୱର ଭୁଲିଥିଲା ।
ଏ କଥା ଶୁଣି ପୁଚ୍ଛିଲେ ଦେବୀ ଭଗବତୀ
କେଉଁ ପ୍ରକାରେ ତୁମ୍ଭଙ୍କୁ ଭଣ୍ଡିଲେ ଶ୍ରୀପତି ।
ବୋଲନ୍ତି ସଦାଶିବ ଶୁଣ ଆଗୋ ପାର୍ବତୀ
ଅପାର କାଳର କଥା ଶୁଣ ହେମବତୀ ।
ଥରେ ବଇକୁଣ୍ଠ ପୁର ଗଲି ଶୂଳହସ୍ତେ
ହରିହର ଭେଟ ହୋଇ ବସିଲୁ ଏକାନ୍ତେ ।
ନାନା କଥାମାନ ଆମ୍ଭେ ହେଲୁ କୁହାକୁହି
ଦେବଜନ ମନରେ ପରମ ତୋଷ ହୋଇ
ଆନନ୍ଦ କାଳେ ଆମ୍ଭେ କହିଲୁ ତାଙ୍କୁ ପୁଣ
କଥାଏ ପଚାରିବି କହିବ ନାରାୟଣ ।
କେଉଁ ପ୍ରକାରେ ମଧୁ କୈଟଭ ନାଶ କଲ
ସଚରାଚର ପୃଥ୍ୱୀ କେମନ୍ତେ ଉଆଇଲ ।
ସେ ବେଳାର ମାୟାକୁ ଦେଖାଅ ପୁଣମୋତେ
ଅନେକ ପ୍ରକାରେ ମୁଁ ଯେ କହୁଅଛି ମୋତେ
ଜାଣିବା ଏ ପ୍ରକୃତି ତୋହର କେତେ ମାନ
ମାତେ ଏବେ ଭଣ୍ଡି କି ପାରିବୁ ଭଗବାନ

ଶୁଣିଣ ବାସୁଦେବ ଯେ ହସିଣ ବୋଲନ୍ତି
ଦେବାସୁର ନରେ ଏଥେ ଯେତେକ ଅଛନ୍ତି
ସ୍ଥାବର ଜଙ୍ଗମ କୀଟ ପତାଙ୍ଗାଦିମାନ
ସମସ୍ତେ ମୋହ ହେବେ ମାୟାରେ ହତଜ୍ଞାନି
ତୁମ୍ଭର ସହିତେ ବ୍ରହ୍ମା ଦେବେ ଯେତେ ପୁଣ
ବସ୍ତୁ ମାୟାରେ କେହି ନ ପାରେ ଉବୁରିଣ
ଶୁଣି ଆମ୍ଭ ମନରେ ବହୁତ କୋପ ହେଲା
ଦେଖିବା ତୁମ୍ଭ ମାୟା କେମନ୍ତେ ଅଟେ ଭଲା
ମୋତେ ଯେବେ ତୁମ୍ଭେ ଏଥି ପାରିବ ଆଜ
ଏଡ଼େବଡ଼ ପଣ ତୋ ହୋଇବ ମୋର ବୃଷି
ନ ଜାଣି ଶ୍ରୀହରି ତୁମ୍ଭେ କହି ଗର୍ବ କଥା
ଶିର ହଲଇ ମୁଁ ଯେ କହିଲି ଗର୍ବକଥା ।
ହସିଣ ନାରାୟଣ ଯେ କହିଲେ ସିଦ୍ଧାନ୍ତ
ନୁହ ତାମସିକ ତୁମ୍ଭେ ପାର୍ବତୀର କାନ୍ତ ।
ମୂର୍ତ୍ତିଟି ବାସୁଦେବ ବ୍ରହ୍ମାଣ୍ଡ ଉଆଇଲ
ତୁମ୍ଭଙ୍କୁ ଈଶ୍ୱର ପଦ ମୂର୍ତ୍ତି ସିନା ଦେଲ ।
ନାସା ପୁଡ଼ାକୁ ପୂଜାଇ ଅଳପ ହସନ୍ତି
ନାସାକୁ ଟେକିଣ ଶାଢ଼ୀ ପଣନ୍ତ ବୋଡ଼ାନ୍ତି ।
ପ୍ରେମରସ ଦେଖିଣ ଯେ ଆକର୍ଷିଲୁ ଆମ୍ଭେ
ମଦନେ ବଶ ହୋଇ କର ବଡ଼ାଇ ଆମ୍ଭେ
ଧରୁ ଧରୁ ସ୍ୱାମୀ ପୁଣି ପଳାନ୍ତି ଉବୁରି
ଯାନ୍ତୁ ଯଜ୍ଞବନ ଯେ ଦଶଇ ତାହାଙ୍କରି ।
ମୂର୍ତ୍ତି କାମ ଭରେ ଯେ କମ୍ପଇ ଥର ହର
କୋଳେ ଧରନ୍ତେ ଆଡ଼ ହୁଅନ୍ତି ଚକ୍ରଧର ।
ମଦନ ବାଣରେ ଆମ୍ଭେ ହୋଇଲୁ ଯେ ବାଇ
ଗୋଡ଼ାଇଣ ଯେ ଫୁଟିଲୁ ମାୟା ରୂପକଇ ।
ସ୍ୱଭାବେ ଉଲଗ୍ନ ହେଲୁ ଉଦଣ୍ଡ ଅଖଣ୍ଡ
ଜାନୁରେ ବାଜ ଧାତୁ ଗଳଇ ପ୍ରଚଣ୍ଡ ।
ଉଚ୍ଛୁଳିଣ ବୀର୍ଯ୍ୟ ଯେ ପଡ଼ଇ ବୋହି ତଳେ
ଲେଉଟିଣ ଆମ୍ଭେ ତାହାଙ୍କୁ ଗୋଡ଼ାଇବାକାଳେ
ମନ ହେତୁ ମତି ଟେଣୁ ବୁଡ଼ିଲା ମୋହରି
ଦଇବ ମାୟାରେ ମୋହ କଲେ ନରହରି ।
ଧଇର୍ଯ୍ୟ ପଣ ଗୁଣ ମଦନେ ବଶ ହେଲୁ
ସ୍ୱାମି ସୁନ୍ଦର ସ୍ତ୍ରୀଙ୍କି ଯେ ରମି ନ ପାରିଲୁ ।
ମୁରୁଛି ନ ପାରିଣ ସୁରତି କଲୁ ଖେଦ
ଉଚ୍ଛୁଳି ବୀର୍ଯ୍ୟ ରସ ପଡ଼ଇ ଗଦ ଗଦ ।

ଜାନୁରେ ଅସ୍ତ୍ର ବାଜଣ ଗନ୍ତୁଅଛୁ ସାର୍ଯ୍ୟ
ଭୂମିରେ ପଡ଼ ଆମ୍ଭେଯେ ଦେଖିଲୁ ହତସାର୍ଯ୍ୟ ।
ଆଉବେଳେକେଆମ୍ଭେ ତୋଡ଼ାଇଲେ ଉଠିଲୁଁ
ଏହୁକ୍ଷଣି ଉଠିବ ମନରେ ବିଚାରିଲୁଁ ।
ଖଳଖଳ ଶରୀରୁ ଯେ ବହେ ଶ୍ରମ ଝାଳ
ଟଳ ଟଳ ହୋଇଣ ଯେ ପଡ଼ିଲି ଭୂମିତଳ ।
ଧରି ନ ପାରିଲି ମୁଁ ଯୁବତୀ ରତ୍ନନିଧି
ହାତ ଲଗୁ ଲଗୁ ସେ ପଳାଇ ଗୁଣନିଧି ।
ଏମନ୍ତେ ସ୍ୱର୍ଗ ମର୍ତ୍ତ୍ୟ ବୁଲିଲି ତିନବେଳ
ଫୁଟିଣ ତଳେ ପଡ଼ ମୁଁ ହେଲି ଅନ୍ତରାଳ ।
ବେଗରେ ଉଲଗ୍ନ ମୁଁ ଉଠନ୍ତୁଅଛୁ ଅଣ୍ଡ
ଜଙ୍ଘରେ ବାଜି ସାର୍ଯ୍ୟ ପଡ଼ିଇ ଭୂମି ଖଣ୍ଡ ।
ଅକ୍ଷୟ ସାର୍ଯ୍ୟ ମୋର ନୁହଇ କେବେ କ୍ଷୟେ
ଯେହୁ ସେ ପାରଦ ହୋଇଣ ଜାତ ହୁଏ ।
ଅତି ଅଶକତ ହେବ ହେଲି ପୁଣ ଯହୁଁ
ଅନ୍ତର୍ଯ୍ୟାମୀ ନାଥ ମନେ ଜାଣିଲେକ ତହୁଁ ।
ସଦାଶିବ ନଷ୍ଟପ୍ରାୟ ମଣିବ ବିଚାରିଲେ ।
ଆରତଭଞ୍ଜନ ନାଥ ଦୟା ମୋତେ କଲେ
ଯୁବତୀ ରୂପ ତେଜ ହୋଇଲେ ଦିବ୍ୟତନୁ
ଶରୀର ବରଣେ ନବ ଶରଦର ଘନୁ ।
ଶଙ୍ଖ ଚକ୍ର ଗଦା ଯେ ଶାରଙ୍ଗ ଚତୁଃକର
ଶ୍ରୀବତ୍ସ ଲାଞ୍ଛିଣ କଉସ୍ତୁଭ ପୀତାମ୍ବର ।
କର୍ଣ୍ଣେ କୁଣ୍ଡଳ ହାର କରରେ କଙ୍କଣ
ପ୍ରସନ୍ନ ବଦନ ହୋଇ କମଳ ରମଣ ।
ଦେଖି ତାହାଙ୍କୁ ଆମ୍ଭର ନ ସ୍ଫୁରଇ ବଚ୍ଛୁ
ମନରେ ବିଚାରିଲି ମୁଁ ଭଣ୍ଡିଲେ ଶ୍ରୀବତ୍ସି ।
ହୋଇଲି ଉଲଗ୍ନ ମୁଁ ସରିଲା ବଡ଼ପଣ
ଏ ସଂସାର ମାୟାକୁ ଯେ ରଚିଲ ଆପଣ ।
ମୁଁ ନ ଜାଣିବା ପଣେ କଷଣ ତାଙ୍କୁ ଦେଲି
ଏବେ ବିଚାରିଲେ ମୁଁ ଯେ ଲଜ୍ଜାରେ ହାରିଲି
ଜଗତ ସୃଷ୍ଟି ଯାହାର ମାୟା ସଞ୍ଚରଇ
ଏହାଙ୍କଠୁ ସକଳ ସୃଷ୍ଟି ଜାତ ହୋଇ ।
ନିଦ୍ରା ଆହାର ମୈଥୁନ ଯାଙ୍କର ଯେ ନାହିଁ
ଯାହାର ମାୟାରେ ଗୋ ଜଗତ ବିଶ୍ୱ ହୋଇ
ତାହାଙ୍କର ନାଭିରୁ ଯେ ଜନ୍ମ ହେଲେ ବ୍ରହ୍ମା
ସମସ୍ତ ପ୍ରାଣୀଙ୍କର ସେ ପ୍ରାଣର ପ୍ରତିମା ।

ପୂର୍ବରୁ ନାମ ମୋର ଶଙ୍କର ଅଟେ ସିନା
ମୁହିଁ ଏକାରେ ବସଇ ରୁଦ୍ରଗଣେ ସିନା ।
ନାରାୟଣଙ୍କୁ ଆଶ୍ରୟ କଲି ଯହୁଁ ମୁହିଁ
ତେଣୁ ଅନୁଗ୍ରହ ମୋତେ କଲେକ ଗୋସାଇଁ
ମହାଦେବ ପଣେ ମୋତେ ବସାଇଲେ ପୁଣି
ମହେଶ୍ୱର ବୋଲିଣ ବ୍ରହ୍ମାଣ୍ଡେ ମୋତେ ଜାଣି
ଏତେବଡ଼ ସମ୍ପଦ ମୁଁ ଯାହାରେ ପାଇଲି
ସେହିଙ୍କ ସଙ୍ଗୁ ଆସି କଇଲାସେ ରହିଲି ।
ଚୌଦକୋଟି ଶିବଗଣ କଲେ ମୋତେସେବା
ମୋତେ ଦେଖିବାରୁ ଦୂରୁ ଉଠନ୍ତି ମଘବା ।
ଯେବଣ ବାସୁକୀ ଯେ ଧରନ୍ତି ମହୀଭାର
ମୋହର ଗଳାରେ ସେ ହୋଇଣ ଅଛି ହାର
ଉଲଗ୍ନ ହେବାରୁ ମୋତେ ସେହି ଶୋଭାହେଲା
ତହୁଁ ନାରାୟଣ ପ୍ରଭୁ ଏହା ମୋତେ କଲେ ।
ପ୍ରେତ ଭୂତ ପିଶାଚଙ୍କ ସଙ୍ଗରେ ମୁଁ ଥାଇଁ
ହାଡ଼ଚର୍ମ ଶରୀରରେ ଭୂଷଣ ହୋଇଲଇ ।
ଗୋରୁ ଧର୍ମଶାବ ତେଣୁ ବାହନ ମୋହର
ଜଗତ ପିତାର ମୁଁ ଯେ ଛେଦିଲଇଁ ଶିର ।
ଦକ୍ଷର ଯଜ୍ଞ ଭାଙ୍ଗି କାମ ଦହନ କଲି
ଋଷିପତ୍ନୀଙ୍କ ଆଗରେ ଅଣ୍ଡ ଦେଖାଇଲି ।
ଏତେବଡ଼ ଦୁର୍ଗତି ଯାହାରେ ପାଇଗଲି
ତାହାଙ୍କୁ ଏ ପାପ ଆମ୍ଭା କଷଣ ମାଗିଲି ।
ଏବେ ତ କାସ ବୁଦ୍ଧି ଯେ କରିବଇଁ ମୁହିଁ
ବିଷ ଖାଇଲି ହୋ ଡରଇ ଯାହାକୁ ପ୍ରାଣୀ
ତ୍ରିପୁର ଦୈତ୍ୟକୁ ମୁଁ ବଧିଲି ତାର ବଳେ
ତେଣୁକରି ପାର୍ବତୀ ବସନ୍ତି ମୋର କୋଳେ
ଯାହାର ପ୍ରସାଦେ ମୁହିଁ ଅଗ୍ର ପୂଜାପାଇ
ଗଣନାଥ ଦେବରେ ସେନାପତି ହୋଇଲଇ ।
ଏବେ ଏ ବଡ଼ପଣ ତାହାର ମତେ ଥାଇ
ତିନପୁର ଚଉଦ ଭୁବନେ ପୂଜାପାଇ ।
ଏତେ ବଡ଼ ପଣ ମୋତେ ଦେଲେ ଯେଉଁନାଥ
ସୁରତି କରିବ ବୋଲି ବଢ଼ାଏ ମୁଁ ହାତ ।
ଅପରା ପର ମୁଁ ଯେ ନପାରିଲି ଜାଣି
ବୈଷ୍ଣବମାୟାରେ ମୋତେ ଭଣ୍ଡିଲେ ଚକ୍ରପାଣି
ଏତେ ବୋଲି ମଉନ ଯେ ହେଲି ମୁଁ ପୁଣି
ଏଥିରୁ ଗୁରୁ ମୋର ଶାପ ଗଲା ଜାଣି ।

ଜାଣିଣ ବାସୁଦେବ ଯେ ମୋତେକୋଳକଲେ
ମୁହିଁ ତୋର ଜନମା ବୋଲିଣ ବୋଇଲେ ।
ନକର ଅଭିମାନ ନୁହଁ ତୁ ବିମୁଖ
ନିଜକରେ ତୋଳିଣ ଚୁମ୍ବିଲେ ପଦ୍ମମୁଖ ।
ଲଜଭରେ ତାହାଙ୍କୁ ମୁଁ ନ କହଇ ବାଣୀ
ପ୍ରସନ୍ନ ହୋଇଣ ବର ଦେଲେ ଚକ୍ରପାଣି ।
ବୋଇଲେ ଆଜୁଁତୋତେ ନଲଗୁମୋରମାୟା
କଳ୍ପକଳ୍ପାନ୍ତରେ ରହିଥିବ ତୋର କାୟା ।
ଏସନକ ବର ଯହୁଁ ଦେଲେ ଚକ୍ରପାଣି
ଅନ୍ତର୍ଦ୍ଧାନ ହୋଇଲେ ବିଜୁଳି ଯେହ୍ନେଜାଣି
ଯହୁଁ ବାସୁଦେବ ଚଳିଗଲେ ନିଜ ପୁର
ମନଦୁଃଖେ ଅଇଲଇଁ କପିଳାସ ପୁର ।
ଅଳକାପୁରେ ଯାଇଣ ହେଲୁ ପରବେଶ
ସେହିଦିନୁ ଗର୍ବ ଆମ୍ଭେ ଛାଡ଼ ପୀତବାସ ।
ଯେବଣ ନାରାୟଣ ଆମ୍ଭଙ୍କୁ ଏହା କଲା
ଆତ୍ମପର ଦେବଙ୍କୁ ଛଟକେ ଭଣ୍ଡିଲା ।
ତାହାଙ୍କର ମାୟାରୁ କେହୁ ଉବୁରି ପାରିବ
ହେଲେଣ ହନୁମନ୍ତଙ୍କୁ ଭଣ୍ଡିଲେ ରାଘବ ।
ବୋଇଲେ ବିପିନେ ଫଳମୂଳ ଖାଅ ଯାସି
ରାତ୍ର ହେଉଅଛୁ ବେଗ ହୋଇଣ ଯାଆସି ।
ସେକଥାକୁ ସତମଣି ଗଲକ ପାବନ
ହସିଣ ଶିରେ କର ଯୋଡ଼ି ହନୁ ପୁଣି ।
ବୋଇଲା ସ୍ୱାମୀଙ୍କର ହୋଇଲା ଯେବେ ଦୟା
ଫଳମୂଳ ଖାଇଣ ତୋଷ କରିବି କାୟା ।
ଏସନ ବୋଲି ହନୁ ବିକ୍ରମ ପୁଣ ଗଲା
ପଶ୍ଚିମ ବିପିନରେ ସେ ଯାଇଣ ପଶିଲା ।
ଏହାକୁ ଦେଖିଣ ସେ ଭଲନ୍ତି ଜୀବଜନ୍ତୁ
ବୋଇଲେ ଆମ୍ଭଙ୍କୁ ଆଜ ନିଶ୍ଚେ ହେବ ମୃତ୍ୟୁ
ଏସନକ ବୋଲିଣ ଛାଡ଼ିଲେ ନିଜବାସ
ତରଳ ନୟନରେ ଚାହାଁନ୍ତି ଦଶ ଦିଶ ।
ଦେଖିଣ ହନୁମନ୍ତ ଓଗାଳେ ପୁଣ ଯାଇଁ
ବୋଇଲେ କେବଣ ଅର୍ଥେ ଯାଉଛ ପଳାଇ ।
କାହାକୁ ଭୟ କର କହ ମୋର ଆଗେ
କେବଣ କାରଣେ ହେ ପଳାଅବେଗେବେଗେ
ଶୁଣିଣ ଜନ୍ତୁମାନେ ବୋଲନ୍ତି ବଚନ
ବାଟଛାଡ଼ ଆଡହୁଅ ଆହେ କପିଗଣ ।
ତୋତେ ଦେଖିଆମ୍ଭେମାନେ ହୋଇଲୁ ତ୍ରସ୍ତ
ଏହିକ୍ଷଣି ଶତ୍ରୁ ଆସି ହେବ ଉପଗତ ।
ସମ୍ବଳର ପୁରଳେ ଅରେକ ସେ ଆସଇ
ଯେ ତାର ମୁଖେ ପଡ଼ଇ ତାହାକୁ ସେ ଭକ୍ଷଇ
ତେଣୁକରି ଆମ୍ଭର ଯେ ବଂଶ କ୍ଷୟେ ଗଲା
କେବଣ ଜନ୍ତୁ ଆସି ଆମ୍ଭଙ୍କୁ ଏହା କଲା ।
ତୋତେ ଦେଖି ମଣିଲୁ ଯେ ତାହାରପକ୍ଷୟେ
ଆତଙ୍କରେ ଆମ୍ଭର ଆତ୍ମା ବିକଳ ହୁଏ ।
ଯୁକତେ ପାଳି ତାହାର ପଡ଼ିବ ଯେ ଆଜ
ଏହିକ୍ଷଣି ଧାଇଁ ଆସିବ ମହାଭୁଜ ।
ରାତ୍ରଅର୍ଦ୍ଧ ଠାରେ ସେ ଆମ୍ଭଙ୍କୁ ଦେବ ଧାଡ଼
ଆସନ୍ତେ ବନ ପର୍ବତ ହୋଇ ଯିବ ଚୂର ।
ଏବେ ମହାତମା ତୁମ୍ଭ ନ କର ଜଞ୍ଜାଳ
ବାଟ ଛାଡ଼ଦିଅ ଆମ୍ଭେ ନରେଖ ସକଳ ।
ହନୁମନ୍ତ ତାଙ୍କର ବିକଳ ଦେଖି ପୁଣି
ନୁହ ଆରତ ତୁମ୍ଭେ ସକଳ ଜୀବ ପୁଣି ।
ଯେ ତୁମ୍ଭର ଭଗାରି ମାରିବି ତାକୁ ଆଜ
ଯେତେବେଳେ ଆସିବ ଦେଖାଅମୋତେତୁଜ
ହନୁମନ୍ତ ବୋଇଲେ ଶୁଣହେ ଜନ୍ତୁମାନେ
କମ୍ପାଇଁ ତୁମ୍ଭେମାନେ ରହିଛ ଏହିବନେ ।
ଏତେଭୟ ତୁମ୍ଭ ମନେ ଯେବେ ଉପୁଜଇ
ଅକାରଣେ କମ୍ପା ତୁମ୍ଭେ ଏଥେ ଅଛ ରହି ।
ଏହି ଅରଣ୍ୟ ତୁମ୍ଭେ ହୋ ନ ତେଜ କମ୍ପାଇଁ
କେହୁତ ତୁମ୍ଭଙ୍କୁ ଯେ ଆଉ ଡସନ୍ତା ନାହିଁ ।
ଜନ୍ତୁମାନେ ବୋଇଲେ ଆମ୍ଭର ଜନ୍ମଭୂଇଁ
ତେଣୁ ଛାଡ଼ି ଯିବାକୁ ଯେ ସତ ବଳୁନାହିଁ ।
ହନୁମନ୍ତ ବୋଇଲେରେ ତୁମ୍ଭେ ତ ଅଜ୍ଞାନ
ଯେଉଁ ଦେଶରେ ଦେଖିବ ନାହିଁ ସନମାନ ।
ତହିଁରେଟି ରହିବାର କସ ପଉରୁଷ
ବାପ ପୋଖରୀ ବୋଲି ମାଟିକି କର ଆଶ ।
ଜୀବମାନେ ବୋଇଲେ ହେ ବରଷକେ ଥରେ
ଜାଣିକରି ଆତଙ୍କେ ହେଲେଯାଏ କେତେଦୂରେ
ନିତଦିନ ପ୍ରମାଦ ଯେ ପଡ଼ୁଥାଇ ଯହିଁ
ତହିଁର ପ୍ରାଣୀମାନେ ତହିଁ ଥାନ୍ତି ରହି ।
ଏସନ ସମୟେ ହୋଇଲାକ ରାତ୍ର ଅର୍ଦ୍ଧ
ମତ୍ତ ମତ୍ତ ଶବଦ ଶୁଭିଲା ମହା ନାଦ ।

ବନଗିରି ମାଡ଼ଣ ସେ ଆସୁଅଛି ଖର
ଶୁଣିକରି ଜନ୍ତୁମାନେ ହୋଇଲେ କାତର ।
ହନୁକୁ ବୋଇଲେ ତୋହ ଯୋଗୁ ନାଶଗଲୁ
ଏତେଜୀବ ଆମ୍ଭେମାନେ ଅକାରରେ ମଲୁ ।
ତୁ ଯେବେ ନ ରୁହାନ୍ତୁ ପଳାଇ ଆମ୍ଭେ ଯାନ୍ତୁ
ଏତେଜୀବ ଆମ୍ଭେ କମ୍ପାଇ ମରିଥାନ୍ତୁ ।
ବିଶ୍ୱାସଘାତକ ତୁ ହେଲୁଟିରେ କପିବର
ପୂର୍ବରୁ ବଇରି ଆମ୍ଭେ ନୋହୁ ଯେ ତୋହର
ଦେଖି ଦଣ୍ଡକାଳ ଭୁଜ ତ ର ଯେ ବଶଇ
ମେଘ ଗର୍ଜନ କରିଣ ବେଗରେ ଆସଇ ।
ଏମନ୍ତ ବିକଳ ଯେ ଦେଖିଣ ହନୁମନ୍ତ
ଧାଇଁଣ ଭୁଜକୁ ସେ ଧଇଲା ବଳବନ୍ତ ।
ଆକର୍ଷି ଧରି ନପାରି ପଡେ ହନୁମନ୍ତ
ପୁଣି ଉଠିଯାଇ ତାକୁ ଧରେ ବଳବନ୍ତ
ହନୁମନ୍ତ ଧରିବାରୁ ଭୁଜଙ୍ଗି ପଡ଼ିଲା
ଉଠିଣ ଭୁଜ ଆକର୍ଷି ହନୁକୁ ଧରିଲା ।
ଜଡ଼ବନ୍ଧେ ଗଡାଗଡ଼ି ହେଲେ ଦୁଇଜଣ
ଶରୀରରୁ ଶ୍ରମ ଝାଳ ବୋହିଣ ଖରେଣ ।
ଲଙ୍କାରେ ରାମାୟଣ ଯୁଦ୍ଧରେ ଯେହ୍ନେ ଯୁଝି
ରାବଣ ପ୍ରାୟ ସୀରକୁ ଜାଠ ପ୍ରାୟ ବୁଝି ।
ସେ ହନୁ ହାରିଲା ଯେ ବଳ ମାଲର ଭୁଲେ
ଦୁଇଘଡି ପର୍ଯ୍ୟନ୍ତେ ସମର ଦୁହେଁ କଲେ ।
କୋପଭରେ କୋବନ୍ଧ ଧଇଲା ଯାଇ କେଶ
ଉଚ୍ଛୁଡ଼ ଆଣିଣ ପକାଇଲା ତାର ପାଶ ।
ଗିଳିଦେବ ବୋଲି ଭରିଲା ତାର ମୁଖେ
ହନୁମାନ ରାମନାମ ସ୍ମରି ମହାଦୁଃଖେ ।
ରକ୍ଷାକର ପ୍ରଭୁ ବୋଲି ଉଚେ ଡାକଦେଲା
ଶୁଣିଣ କୋବନ୍ଧ ପୁଣ ତାକୁ ପୁଚ୍ଛା କଲା ।
କହରେ କାହାର ମର୍କଟ ତୁ କାହାର ତନୟେ
କସ ନାମ ତୋହର କହ ମୋହରଠାଏ ।
ମରିବାର ବେଳେ କମ୍ପା ହେଉଛୁ ନିଶତ
ମିଛରେ ବୋଲୁଅଛୁ ତୁ ଶ୍ରୀରାମର ଦୂତ ।
ଶ୍ରୀରାମ ସ୍ୱାମୀ ପୁଣ ଅଛନ୍ତି ତୋର କାହିଁ
ଦମ୍ଭ ହୋଇ କହରେ ଭୟ ତୋତେ ନାହିଁ
ଶୁଣି ପ୍ରଭଞ୍ଜନ ସୁତ କହଇ ବଚନ
ଶ୍ରୀରାମ ନାମରେ ଦଶରଥଙ୍କ ନନ୍ଦନ ।
ଅଯୋଧ୍ୟାରୁ ଯାଇଣ ଲଙ୍କାରେ ବିଜେକଲେ
ରାବଣର ବଂଶ ସଂଗ୍ରାମରେ ନାଶକଲେ ।
ସ୍ୱରି ରାବଣଙ୍କୁ ସେହ୍ନେ ମାଇଲେ ଯେ ଭଲେ
ଏବେ କୋଶଳକୁ ଫେରୁ ଅଛନ୍ତି କୁଶଳେ ।
ବାହୁଡ଼ି ପ୍ରୟାଗରେ ଆସିଣ ରହିଛନ୍ତି
ଭରଦ୍ୱାଜଙ୍କ ମଠରେ ରଜନୀ ବଞ୍ଚନ୍ତି ।
ମୋତେ ଅନୁଗ୍ରହ କରି ଆଜ୍ଞାଦେଲେ ରାଇ
ଏହିବନେ ପକ୍ୱ ଫଳ ଭୁଞ୍ଜି ତୁହି ଯାଇ ।
ତେଣୁକରି ପ୍ରବେଶ ହୋଇଲି ମୁହିଁ ଏଥ
ପ୍ରୟାଗରେ ରହିଣ ଅଛନ୍ତି ରଘୁନାଥ ।
ମୁହିଁ ସେ ଶ୍ରୀରାମ ଦୂତ ପବନ ତନୟେ
ମଉଳା ମୋର ଅଟନ୍ତି ସୁଗ୍ରୀବର ରାୟେ ।
ଶୁଣିଣ ଅଷ୍ଟଭୁଜ ହର୍ଷିଣ ବୋଇଲା
ମୋହର ଆଜ ପଛକେ ଉପବାସ ହେଲା ।
ଶ୍ରୀରାମର ଦୂତ ଏ ମୁଁ ଖାଇବି କେମନ୍ତେ
ଉପବାସେ ରହିଣ ମୁଁ ରହିଲି ପଶ୍ଚାନ୍ତେ ।
ଏତେ ହର୍ଷିଣ ଗୁଡ଼ିଲା ତାହାର ବାଳ
ପ୍ରାଣ ପାଇଲାକ ତହୁଁ ପବନ କୁମର ।
ହନୁମାନ ପଚ୍ଛରିଲା କୋବନ୍ଧକୁ ସ୍ତୁହିଁ
ତୁହେ ମହାତମା ଏତେ ଅଛୁ କାହିଁପାଇଁ ।
ତୋର ନାମ କସ ହେ ତୁ କାହାର ତନୟେ
କେବଣ କାରଣେ ଏଥେ ବାସକରି ରହେ ।
ଅଷ୍ଟଭୁଜ ବୋଇଲା ତୁ ଶୁଣରେ ମାରୁତି
ସତ୍ୟଯୁଗେ ବଳି ନାମେଣ ଥିଲେ ନୃପତି ।
ଅଷ୍ଟମଲ୍ଲ ଥିଲୁ ଆମ୍ଭେ ତାହାର ସେବକ
ତୁ ହନୁମନ୍ତ କେମନ୍ତେ ରାମଚନ୍ଦ୍ର ଲୋକ ।
ସେହି ରଘୁନାଥ ଯେ ଅଟନ୍ତି ଆଦିମୂଳ
ସମସ୍ତ ଦେବତାଏ ତାହାର ପୁଷ୍ପ ଫଳ ।
ଏହି ଶ୍ରୀରାମ ଯୁଗେ ବାମନ ରୂପ ହୋଇ
ବଳିକ ଭୂମିଦାନ ମାଗିଲେକ ଗୋସାଇଁ ।
ତିନପାଦ ଭୂମି ସେ ବାଳଙ୍କ ସତ୍ୟକରି
ମାୟାରେ ବାସୁଦେବ ମୋହିଲେ ମନ ଭାଣ୍ଡ
ତିନିଧୂରକୁ ତିନି ପାଦରେ ଘୋଡ଼ାଇଲେ
ପାତାଳ ପୁରେ ନେଇଣ ବଳିକ ରଖିଲେ
ଦେଖିଣ ଅଷ୍ଟମଲ୍ଲ ଧାଇଁଲୁ ପାଦକାଢ଼ି
ସେ ପ୍ରଭୁଙ୍କୁ ଯାଇଣ ଧଇଲୁ ସବେ ବେଢ଼ି ।

କୋପନଳରେ ସେ ପାଦ ଦେଲେକ ସିଞ୍ଚାଡ଼
କେକେଣେ ପଡ଼ିଲେ ଯେ ଯାଇଣ ସର୍ବେ ଜଡ଼
ମୁହିଁ ଆସି ଶତଯୂଣେ ଏଥି ପଡ଼ିଅଛି
ହେତୁ ମତ୍ତ ବୁଡ଼ିଲା ଜ୍ଞାନ ମୋ ନାହିଁ କିଛି ।
ସମସ୍ତେ ଆସିଣ ଶରୀରେ ଜୀବ ପଶି
ହଇବ ନର୍ବାଣ ଧାଡା ଡାହା କଲ ଆସି ।
ବରଷକରେ ଥରେ ବଢ଼ାଏ ପୁଣ ହାତ
ଜୀବଜନ୍ତୁ ଖାଇଣ ଶରୀର କରେ ସୁସ୍ଥ ।
ମୋର ମୁଖରେ ଏବେ ପଡ଼ିଲୁ ହନୁମନ୍ତ
କେମନ୍ତେ ଖାଇବି ମୁଁ ଯେ ଶ୍ରୀରାମଙ୍କ ଦୂତ ।
ଆଜଠାରୁ ବର୍ଷେ ଯାଏ ହେବ ଉପବାସ
ଶ୍ରୀରାମ ଠାକୁର ଯେଣୁ ମହତ ପୁରୁଷ ।
ପାତାଳେ ବଳିକି ଯେହ୍ନେ ରଖିଲେ ଲୁଗ୍ରଇ
ଯତନ କରି ଶରୀରେ ଚନ୍ଦ ମୁଦ ଦେଇ ।
ପୁଣି ସତ୍ୟଯୁଗରେ ହୋଇବେ ଦେବରାଜା
ଚଉଦ ଭୁବନେ ପାଇବେ ପାଦପୂଜା ।
ଏହି ଶ୍ରୀରାମ ଅସୁର କୁଳକୁ କରେ କ୍ଷୟେ
ତୁ ମୋତେ ଉଣ୍ଟୁଛୁ ବାହୁ ବାସୁଦେବ ପ୍ରାୟେ
ଏତେ କହିକରି ଅସ୍ତ୍ରକର ଛଡ଼ିଁ ଗଲା
ହନୁମନ୍ତ ମନରେ ବିସ୍ମୟ ପୁଣ କଲା ।
ମନରେ ବିସ୍ମରିଲା ଶ୍ରୀରାମ ନରହରି
ତାହାଙ୍କରେ ହୋଇଲା ଅସୁରବଳ ମାରି ।
ଦେବତାଙ୍କ ଛଳରେ ଏ ହୋଇଛନ୍ତି ଜାତ
ଦେବଙ୍କ ହସ୍ତେ ଯେଣୁ ନ ମରେ ଦଶମାଥ ।
ସୀତେୟୁ ମହାଲକ୍ଷ୍ମୀ ପ୍ରତ୍ୟେକ୍ଷ କମଳମା
ଦଶରଥ ନନ୍ଦନ ଅନନ୍ତ ଚକ୍ରପାଣି ।
କାଲି କହୁଥିଲେ ଭରଦ୍ୱାଜଙ୍କ ଆଗରେ
ସଂଗ୍ରାମର ବାରତା କହିଲେ ରଘୁବୀରେ ।
ସେ ମୁନି ପୁଣି ପ୍ରଶଂସା ଭଲେକ ବହୁତ
ଧନ୍ୟ ଧନ୍ୟ ମହିମା ହେ ଦଶରଥ ସୁତ ।
ଏସନ ସମୟେ ମୁହିଁ ବିସ୍ମରିଲି ମନେ
ସୁଗ୍ରୀବ ସଙ୍ଗେ ଭେଟ ମୁଁ କଲି ରଘୁରାଣେ ।
ସମୁଦ୍ର ଡେଇଁଣ ମୁଁ ସୀତାଙ୍କୁ ଠାବ କଲି
ଲଙ୍କା ପୋଡ଼ି ଦେଇଣ ମାରିଲି ଦୈତ୍ୟବଳି
ମୋ ଲାଗି ଏତେ ଯଶ ପାଇଲେ ସୀତାକାନ୍ତ
ମୁହିଁ ନଥିଲେ ଶ୍ରୀରାମ ଯୁଝନ୍ତେ କେମନ୍ତ ।

ଏତେ ବୋଲିଣ ମୁହିଁ ଭାବିଲି ହୃଦଗତ
ପୋଡ଼ି ନଲଙ୍କ ଆମ୍ଭା ନଗରି କମ୍ପା ଏଥ ।
ଶ୍ରୀରାମଙ୍କ ଚରଣେ ଦ୍ରୋହ ମୁଁ କଲି ଯେଣୁ
ସେଦୋଷୁଁ ଶ୍ରୀରାମ ମୋତେ ଦଣ୍ଡଦେଲେତେଣୁ
ଏସନକ ବୋଲିଣ ଭାବିଲି ମୋର ହୃଦେ
ଜାଣିଣ ରଘୁନାଥ ପେଷିଲେ ମୋତେକ୍ରୋଧେ
ଏବେ କିସ ବୁଦ୍ଧି ମୁହିଁ କରିବଇଁ ପୁଣ
ଶ୍ରୀରାମଙ୍କ ସମ୍ମୁଖୁ ମୁଁ ଯିବି କେମନ୍ତେଣ ।
ଏମନ୍ତ ବିଚାରନ୍ତେ ରଜନୀ ହୋଏ ଶେଷ
ଯମୁନାରେ ସ୍ନାନକଲା ପବନର ଶିଷ୍ୟ ।
ଭରଦ୍ୱାଜ ଆଶ୍ରମେ ଶ୍ରୀରାମ ଛନ୍ତି ରହି
ହନୁମନ୍ତ ଦର୍ଶନ କଲାକ ଯାଇ ତହିଁ ।
ଗଙ୍ଗାଜଳେ ସ୍ନାନ ଯେ କରନ୍ତି ଦାଶରଥି
ପୂର୍ବମୁଖ ହୋଇ ରାମ ସନ୍ଧ୍ୟା ସୁମରନ୍ତି ।
ବିଭୀଷଣ ସୁଗ୍ରୀବର ଜାମ୍ବବ ଅଙ୍ଗଦ
ପଚଆଶ ରହିଛନ୍ତି କପିକୁଳ ବୃନ୍ଦ ।
ଏହି ସମୟେ ହନୁ ଦର୍ଶନ କଲା ଯାଇ
ପାଦ୍ୟେପଡ଼ି ଶୋଇଣ ଶିରରେ କର ଦେଇ
ବୋଲଇ ଦୋଷ କ୍ଷମାକର ହେ ଦେବମୋର
ମୁଁ ପାପୀ ଅପରାଧୀ ହୋଇଲି ଶ୍ରୀପଦ୍ମର ।
ତେଣୁକରି ପ୍ରଭୁ ମୋତେ ଏ ଦଣ୍ଡ ବିହିଲ
ଆପେ ନ ମାରିଣ ମୋତେ ପରଭବ ଦେଲ
ଏହା ଶୁଣି ଶ୍ରୀରାମ ଅଳପ ହୋଇ ହସି
ହନୁମନ୍ତକୁ ପୁଣି କହନ୍ତି ଯେ ଆଶ୍ୱାସି ।
ନିତ୍ୟକର୍ମ ସାରିଣ ବାହୁଡ଼ା ବିଜେ କଲେ
ଜନକ ମଣ୍ଡପରେ ପ୍ରବେଶ ଯାଇ ହେଲେ ।
ଏକାନ୍ତେ ହନୁମନ୍ତକୁ ହକାରିଲେ ପାଶ
ଗୁପତ କରିଣ କଥା କହନ୍ତି ବିଶ୍ୱାସ ।
ହୋଇଲେ ଆଜ ତୁରେ ବପିନେ ଯାଇଥିଲୁ
ଅନ୍ୟ ପଦାର୍ଥ ଅବା କିସ ତୁହି ଦେଖିଲୁ ।
ଶୁଣିଣ ହନୁମନ୍ତ ଯୋଡ଼ିଇ ବେନିକର
ବୋଲଇ ହେ ଦେବ ଦୋଷ କ୍ଷମାକର ମୋର
ରକ୍ଷାକର ମୋତେ ହେ ଜାନକୀଦେବୀ ପତି
ମୁହିଁ ଘୋର ହୀନ ଯେ ଅଜ୍ଞାନ ପଶୁ ଜାତି ।
ଆଜ ମୁହିଁ ପ୍ରାଣ ତୁମ୍ଭ ଲାଗି ପାଇଲି
ତୁମ୍ଭନାମ ଧରିବାରୁ ଉଦ୍ଧରି ଅଇଲି ।

ବନ ମାଳ ଆସିଣ ଧଇଲା ମୋତେ ବଳେ
ଆକର୍ଷି ଧରନ୍ତେ ମୁଁ ଯେ ଚେଇଁଲି ବ୍ୟାକୁଳେ
ତୁମ୍ଭର ସେବକ ବୋଲି କହିଲି ମୁଁ ଯହୁଁ
କେଶ ଗୁଡ଼ାଣ ଦୟା ମୋତେ କଲାକ ସେତହୁଁ
ତୁମ୍ଭର ରୂପଗୁଣ ସ୍ୱରୂପ ମୁଁ କହିଲି
ଅଷ୍ଟକର କହିଲା ଉପବାସେ ରହିଲି ।
ହେ ରଘୁନନ୍ଦନ ମୁଁ ପାଦରେ କଲି ଦ୍ରୋହ
ଏତେକହି ଶୋକ କରେ ପବନର ପୁଅ ।
ଦେଖିଣ ରଘୁନାଥ ଉଠିଣ କୋଳକଲେ
ତୁ ମୋହର ପ୍ରାଣ ସିନା ବୋଲିଣବୋଇଲେ
ଅନେକ ପ୍ରବୋଧିଣ ଯେ ତାହାକୁ ଉଆରି
ଏଥୁ ଅନନ୍ତରେ ଯେ କୋଦଣ୍ଡ ରୂପଧାରୀ ।
ଭରତ ଶତ୍ରୁଘ୍ନଙ୍କୁ ଅଣାଇ ବହନ
ବଶିଷ୍ଠ କଶ୍ୟପ ବାମଦେବ ଯେ କୃପଣ ।
ସୁମନ୍ତ ମନ୍ତ୍ରୀଙ୍କି ଅଣାଇଲେକ ପୁଣ ଶ୍ରୀରାମ
ବୋଇଲେ କଥାଏ ତୁମ୍ଭେ ଶୁଣ ହେ ଉତ୍ତମ
ଏଠାରୁ ଅଯୋଧ୍ୟା ନଗ୍ର ହୋଇଲା ନିକଟ
ସମସ୍ତେ ଆସିଛନ୍ତି ନାହାନ୍ତି ତହିଁ ଶ୍ରେଷ୍ଠ ।
ଅଯୋଧ୍ୟା ପୁରକୁ ତୁମ୍ଭେ ଚଳହେ ବହନ
ଅକଳିତ ବଳଛନ୍ତି ମୋ ସଙ୍ଗରେ ପୁଣ ।
ରାଜାଗଣ ହାତିରଥ ପାଦାନ୍ତି ଅଶ୍ୱବଳ
ଏମାନଙ୍କୁ ସଙ୍ଗେ ଘେନି ଚଳ ହୋ ସତ୍ୱର ।
ବସାଘର ଦେଇଣ ରାଜାଙ୍କୁ ସୁଚେଷ୍ଟେ ରଖ
ହସ୍ତୀ ଘୋଡା ପାଦାନ୍ତି ଯେମନ୍ତେ ପାଳିସୁଖ
ଏକାବେଳେ ଗଲେ ଯେ ହୋଇବ ଗହଳ
ବାରଣ ନ ଯିବ ତହିଁରେ କହୁଛି ରକ୍ଷବଳ ।
ନର ବାନର ରାକ୍ଷସ ହେବେ ସେଥି ମେଳ
ଘରକାଏ ପ୍ରାସ ଯେ ପାଇବେ ଦେଖିକରି ।
ଆଗେ ତୁମ୍ଭେ ଚଳିଲେ ରାଜ୍ୟକୁ ବଡ ଭଲ
ରାଜାମାନେ ସୈନ୍ୟଘେନି ହୋଇବେ ସମ୍ଭାଳ
ଏତେ କହି ମେଲାଣି ଯେ ଦେଲେ ଦାଶରଥି
ଭରତ ଶତ୍ରୁଘ୍ନ ଶୁଣି ଆନନ୍ଦ ହୁଅନ୍ତି ।
ଶ୍ରୀରାମଙ୍କ ଚରଣେ ଓଳଗି ହେଲେ ଯାଇ
ଲକ୍ଷେରାଜା ଡକାଇ କହିଲେ ରଘୁଆଇଁ ।
ବୋଇଲେ ସମସ୍ତେ ତୁମ୍ଭେ ଚଳ ଅଯୋଧ୍ୟାକୁ
ସମ୍ଭାଳି ସୁସ୍ଥ ହୁଅ ଆମ୍ଭର ପିତାକୁ ।

ପଛେ ଆମ୍ଭେ ଯାଉଛୁ ରହିଣ ତିନିଦିନ
ଏତେବୋଲି ଆଜ୍ଞାଦେଲେ ଶ୍ରୀରାମ ଯେ ପୁଣ
ଶୁଣିଣ ସୁମନ୍ତ ମୁନିଙ୍କର ପାଶେ ଗଲେ
ଭରଦ୍ୱାଜଙ୍କୁ ନମସ୍କାର କରି ଚଳିଲେ ।
ଶତ୍ରୁଘ୍ନ ଭରତ ଯେ ଦରଷନ କଲେ
ସୁମନ୍ତଙ୍କ ସଙ୍ଗରେ ଯେ ସେହୁ ଚଳିଗଲେ ।
ରାଜାମାନେ ଦର୍ଶନ କରିଣ ଯାନ୍ତି ଚଳି
ଗଙ୍ଗାଙ୍କୁ ପାରିହେଲେ ରୂପରେ ବସିକରି ।
ସକଳ ସୈନ୍ୟ ଘେନିଣ ବେଗେ ଚଳିଗଲେ
ତିନିଦିନେ ଅଯୋଧ୍ୟାରେ ପ୍ରବେଶ ହୋଇଲେ
ଶଗଡ଼ ବଳଦ ହାସ୍ତୀ ରଥ ଅଶ୍ୱ କୁଳେ
ସେମାନେ ରହିଲେ ଯାଇ ଯାହା ସୁଖରେ
ରାଜାଙ୍କୁ ନଗର ପାନ୍ଥମାନଙ୍କୁ ଉଆସ
ସମସ୍ତଙ୍କୁ ଥାନ ଦେଲେ କୈକେୟୀର ଶିଷ୍ୟ
ବଶିଷ୍ଠ ବାମଦେବ ଯେ କଶ୍ୟପ ସୁମନ୍ତ
ସମସ୍ତଙ୍କୁ ତରସ୍ତ ସେ କରନ୍ତି ବିଶେଷ ।
ନିଶ୍ଚିନ୍ତ ହୋଇ ସର୍ବେ ରହିଲେ ଯେଝାମାନ
ଶତ୍ରୁଘ୍ନ ଭରଥ ଗଲେ ନବର ତତକ୍ଷଣ ।
ଜନନୀମାନଙ୍କୁ ଯାଇ କଲେ ନମସ୍କାର
କୌଶଲ୍ୟା ବୋଲନ୍ତି ଶ୍ରୀରାମରେ କାହିଁ ମୋର
ଭରଥ ବୋଇଲେ ଜନନୀ ବିକଳ ଏବେ ନୁହ
ଶ୍ରୀରାମ ସଙ୍ଗେ ଅଛନ୍ତି ଜନକର ଝିଅ ।
ଭରଦ୍ୱାଜ ମୁନିଙ୍କର ମଠରେ ଅଛନ୍ତି
ଅସଂଖ୍ୟ ବଳ ତାଙ୍କର ସଙ୍ଗରେ ଅଛନ୍ତି ।
ଆମ୍ଭଙ୍କୁ ବୁଝି ଦେଲେକ କୋଦଣ୍ଡ ଧାରଣ
ଲକ୍ଷେ ନୃପତି ଅଇଲେ ଆମ୍ଭର ସଙ୍ଗେଣ
ଶୁଣିଣ କଉଶଲ୍ୟା ମନରେ ହରଷିତ
ଶତ୍ରୁଘ୍ନଙ୍କୁ ପୁଛି ବୋଲେ ଶ୍ରୀରାମର ମାତ ।
ତୁମ୍ଭିତ ଅଇଲୁ ବାବୁ ଲୀଳାବତୀ କାହିଁ
ଚଉଦବରଷ ହେଲା ପରଜା ପାଳଇ ।
ଶତ୍ରୁଘ୍ନ ବୋଇଲେ ଶୁଣ ଆଗୋ ଜନନୀ
ପିତାଙ୍କ ସଙ୍ଗରେ ଗଲେ ମାତା ମୋର ପୁଣି
ଦୂତଷଠି ପୁରୁଷଙ୍କୁ ଘେନି ପିତା ମୋର
ଆସିଣ ହରେଜକଲେ ଦେବତାଙ୍କ ସଙ୍ଗର ।
ଜନକ ଦୋହିତା ଅଗ୍ନି ପରୀକ୍ଷା ଯେ ସାରି
ସ୍ୱର୍ଗେ ଚଳିଲେ ପିତା ଜନନୀ ସଙ୍ଗେ ଧରି ।

ଶୁଣିଣ କଉଶଲ୍ୟାଏ ଭରତଙ୍କୁ ଚୁମ୍ବି
ମୋତେ କର୍ମା ଛାଡ଼ିଗଲେ ରଘୁକୁଳସାଇଁ ।
ଏଥୁ ଅନନ୍ତରେ ପୁଣି ପାର୍ବତୀ ପଚାରେ
ଶ୍ରୀରାମ କିସ କରିଲେ କହନ୍ତେ ଈଶ୍ୱର ।
ସଦାଶିବ ବୋଇଲେ ଶୁଣଗୋ ହେମବନ୍ତ
ସମସ୍ତଙ୍କୁ ବୁଝାଇଣ ରାମ ତୋଷ ହୋନ୍ତି ।
ଭରଦ୍ୱାଜ ମୁନିଙ୍କର ସନ୍ନିଧିକୁ ଗଲେ
ପବନର ସୁତକୁ ସେ ସଙ୍ଗରେ ଘେନିଗଲେ
ଦେଖିଣ ମୁନି ଛଡ଼ି ଅର୍ଘ୍ୟରେ ପୂଜାକଲେ
ମଙ୍ଗଳ ଆରତି କରି ମଧୁର କହିଲେ ।
ପ୍ରଣିପତ୍ୟ କରିଣ ବସିଲେ ତାଙ୍କ କତି
ସନ୍ତୋଷରେ କଲ୍ୟାଣ କରିଲେ ମହାଯତି ।
ବୋଇଲେ ଶ୍ରୀରାମ ଆହେ ମାଗ ତୁମ୍ଭେ ବର
ଯେମନ୍ତେ ମନରେ ବାଞ୍ଛା ଅଛଇ ତୋହର
ଶୁଣିଣ ଶ୍ରୀରାମ ଯୋଡ଼ିନ୍ତି କର ବେନି
ବୋଲନ୍ତି ଯାହା ଆଜ୍ଞା ଦେଲହେ ମହାମୁନି ।
ଏ ଯେତେ ଋକ୍ଷକପି ମୋ ସଙ୍ଗରେ ଅଛନ୍ତି
ଦୈତ୍ୟଙ୍କର ସଙ୍ଗତରେ ଅନେକ ଯୁଝନ୍ତି ।
କ୍ଷମାଦାନ କରି ମୁହିଁ ଦେଇନି ତାହାଙ୍କୁ
ଘରଦ୍ୱାର ଛାଡ଼ିଣ ମୋହର ପାଦେ ଖଟୁ ।
ଯେବେ ମୋତେ ପ୍ରସନ୍ନ ହେଲହେ ତପସାଇଁ
ବର ମ ଗୁଅଛୁ ଏବେ ଏହାଙ୍କର ପାଇଁ ।
ଯେତେବେଳେ ଲୋଡ଼ିବ ପାଇବେ ଫଳମୂଳ
ଏସନ ଆଜ୍ଞା ମୋତେ ଦିଅହେ ତପଶୀଳ ।
ଶୁଣିଣ ମହାମୁନି ବୋଇଲେ ସୁଖି ହୋନ୍ତୁ
ନିଶ୍ଚିନ୍ତରେ ରହିଣ ସେ ଫଳମୂଳ ଖାନ୍ତୁ ।
ଏସନକ ବର ଯହୁଁ ଦେଲେ ତପୋବନ୍ତ
ଶୁଣିଣ ହାଲୁ ମର୍କଟ ହୋଇଲେ ହସନ୍ତ ।
ଏଥୁ ଅନନ୍ତରେ ତୁମ୍ଭେ ଶାକମ୍ବରୀ ଶୁଣ
ତିନି ଦିବସ ସେଥି ରହିଲେ ରଘୁରାଣ ।
ଋଷି ଫଳମୂଳ ଯେ ସମ୍ପୂର୍ଣ୍ଣ କରିଦେଲେ
ଯେ ଯାହା ଅନୁରୂପେ ଭୂରି ଭୋଜନ କଲେ
ଶୁଣିଣ ପାର୍ବତୀ ଦେବୀ ବୋଲନ୍ତି ବଚନ
ମୋତେ ତୁମ୍ଭେ ଭଣ୍ଡୁଅଛ ଶୁଣ ତ୍ରିଲୋଚନ
କଥାର ପରମ ସନ୍ଧି ରହିଲା ଯେ ଜାଣ
ଯେତେବେଳେ ଶ୍ରୀହରଗର୍ଭିଣୀ ହୋଇଲେ ପୁଣ
ତାଙ୍କୁ ଦେଖି ତୁମ୍ଭର ବୀର୍ଯ୍ୟ ଯେ ଉଛୁଳିଲା
ଅକ୍ଷୟ ବୀର୍ଯ୍ୟ ସେହୁ ଯେ କ୍ଷୟିତ ନୋହିଲା ।
ସେ ବୀର୍ଯ୍ୟଗୋଟି ଦେଲ ପାରେଶ୍ୱରଙ୍କୁ ପୁଣ
ମୋତେ ଘେନି ରମଣ କରହେ ପଞ୍ଚାନନ ।
ସେ ବୀର୍ଯ୍ୟଗୋଟି ଦେବ କର୍ମାଇ ହେଲାକ୍ଷୟ
ସେକଥା ବୁଝାଇ ମୋତେ କହ ଦେବରାୟେ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ପୂର୍ବକଥାମାନ କି ତୁମ୍ଭର ମନେ ନାହିଁ ।
ଯେତେବେଳେ ବିଗବିଜେ କରିଥିଲୁ ଆମ୍ଭେ
ଆମ୍ଭର ସଙ୍ଗରେ ବିଜେ କରିଗଲ ତୁମ୍ଭେ ।
ଚଉଦ ଭୁବନେ ଆମ୍ଭେ କଲୁ ଯେ ଭ୍ରମଣ
କାଦମ୍ବରୀ ବନେ ପବେଶ ହେଲୁ ପୁଣ ।
ସେଠାରେ ଗୋମାତାରଦୋହିତାଶୁଭ୍ରକେଶି
ସ୍ୱାମୀ ସଙ୍ଗତରେ ସେହୁ କଲେ ରତିପ୍ରୀତି ।
ସେ ବନରେ ଥାନକରି ରହିଥାଏ ସେହୁ
ଦଶମାସ ସମ୍ପୂର୍ଣ୍ଣ ହୋଇଲାକ ଯହୁଁ ।
ଆମ୍ଭେ ଗଲା ସମୟରେ ପାଉଥିଲା କଷ୍ଟ
କଷ୍ଟଦେଖି ତୁମ୍ଭେ ମୋତେ ପଚାରିଲ ତୁରିତ
ମୁଁ ବୋଇଲି ଗୋରୁର ଜନମ ହେବ ଫଳ
ତୁମ୍ଭେ ଦେଖି ବୋଇଲ ଏକଷ୍ଟ ମହାଘୋର
ଏତେକଷ୍ଟ ମୋହର ଯେ ସହିବାକୁ ନାହିଁ
ଫଳ ଜାତ ନୋହୁ ପଛେ ବର ଦିଅ ତୁହି ।
ମୁଁ ବୋଇଲି ଅସ୍ତୁହେଉ ନୋହୁ ଗର୍ଭତୋର
ମନରୁ ଜନମ ହେଉ ଏକଇ କୁମର ।
ସେ କଥାରୁ ଗଣନାଥ ହେଲେ ତୋର ପୁତ୍ର
ଏବେ ସେ କଥାକୁ ମନେ ଚେତହେ ସଙ୍ଗାତ
ସେ ଦୋଷରୁ ତୋର ଗର୍ଭ ବୀର୍ଯ୍ୟକ୍ଷୟ ଗଲା
ଯୁଗେ ଯୁଗେ ସେ କଥା ଚିରନ୍ତନ ହେଲା ।
ପାର୍ବତୀ ବୋଇଲେ ଦେବ ଆହୁରି କଥାଏ
ପଚାରୁଛି ସତ ମୋତେ କହ ଦେବରାୟେ ।
ସମୁଦ୍ର ଭିତରେ ଶ୍ରୀରାମ ବନ୍ଧ ବାନ୍ଧିଲେ
ଜାନକୀ ଛଳେ ଲଙ୍କା ରାବଣ ନାଶକଲେ ।
ସେ ବନ୍ଧର ନାମ କର୍ମା ଦେଲେ ସେତୁବନ୍ଧ
ଏକଥାକୁ ବୁଝାଇ ମୋତେ କହ ଦେବଇନ୍ଦ୍ର
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ବରୀ
ସତ୍ୟରେ ଶ୍ରୀ ରାମଚନ୍ଦ୍ର ସିନ୍ଧୁ ବନ୍ଧକରି ।

ସୀତାଙ୍କୁ ଲଙ୍କେଶ୍ୱର ନେଇ ଥିଲା ଧରି
ସତ୍ୟ ସୀତା ଦୁଇକଥା ମନରେ ବିଚାରି ।
ସେଠାରୁ ସେତୁବନ୍ଧ ତାହାର ନାମଦେଲେ
କାଳ ଯୁଗକୁ ସେକଥା ସଙ୍କେତ ରଖିଲେ ।
ଶୁଣିଣ ଭଗବନ୍ତ ବୋଲୁଛନ୍ତି ବଚନ
ଭ୍ରଥ ଶତ୍ରୁଘ୍ନ ଗଲେ ଅଯୋଧ୍ୟା ଭୁବନ ।
କଉଶଲ୍ୟା ସଙ୍ଗତରେ ସକଳ ଜନନୀ
କୁଶଳ ବାରତା ଆସି ପଚାରିଲେ ପୁଣି ।
ଭରତ ଜନନୀ ଯେ ମନରେ ଯୋଭକରି
ଚନ୍ତାକରି ବସିଥିଲା ନବରେ ତାହାରି ।
ପୁତ୍ରକୁ ଦେଖିଣ ସେହୁପୁଣ ଜସ କଲା
ପୁତ୍ରକୁ ଆସିଣ କେଉଁ କଥା ବିଚାରିଲା ।
ଈଶ୍ୱର ବୋଇଲେ ସେ ଲକ୍ଷଣ ବସିଥିଲା
ପୁତ୍ରକୁ ଦେଖିଣ ମନେ ଆନନ୍ଦ ହୋଇଲା ।
ପୁତ୍ରକୁ ପୁଚ୍ଛା କରିଲା ଶ୍ରୀରାମର କଥା
ଭରଥ ବୋଇଲେ ତୋତେ ବହୁତ ପ୍ରଶଂସା
ଯୁଦ୍ଧବେଳେ ବିରକତ ହେଉଥିଲେ ସ୍ୱାମୀ
ପିତାଙ୍କୁ ଦେଖି ମନେ ବିଚାରେ ଅନ୍ତର୍ଯାମୀ
କୈକେୟୀ ଜନନୀ ସିନା ଏହା ମୋତେ କଲା
ମରିବା ପିତାକୁ ମୋର ଆଣି ଦେଖାଇଲା ।
ସେ ମୋତେ ବନକୁ ଯେବେ ନ ପେଷନ୍ତା ପୁଣ
ଅଯୋଧ୍ୟାରେ ରାଜା ହୋଇଥାନ୍ତି ମୁହିଁ ଜାଣ
ସତଷଠି ପୁରୁଷ ପିତୃ କାହୁଁ ଦେଖନ୍ତି
ଦେବତାଙ୍କ ସଙ୍ଗେ ମୁଁ କେମନ୍ତେ ବସନ୍ତି ।
ଏତେ ବଡ଼ ଯଶ ହୁଅନ୍ତା ଯେ କାହୁଁ ପୁଣ
ଏତେ କହି ସନ୍ତୋଷହୋଇଲେ ରାମରଣ ।
ସେହି ବନରୁ କୌଶଲ୍ୟା ମାତାଙ୍କୁ ଭେଟିଲେ
କୈକେୟୀ ଜନନୀ ବୋଲି ମନରେ ଭାବିଲେ
ମାଳାବତୀ ମାତା ଗଲ୍ଲବେଳେ ପିତା ସଙ୍ଗେ
ବୋଇଲା ଶ୍ରୀରାମ ତୁଲେ ଶୁଣ ହେ ସରାଗେ
କୈକେୟୀ ଜନନୀ ତୋ ଚନ୍ତରେ ତନୁ କ୍ଷୀଣ
ତାହାକୁ ପ୍ରସନ୍ନ ବାବୁ ହେବୁ ଅନୁକ୍ଷଣ ।
ପିତାହିଁ କହୁଣଗଲେ ନ କରିବୁ ହେଳା
ଦେବତା କୃତ ରାବଣ ମରିବାକୁ ପରା ।
ଖଳ ଦୁର୍ବଳ ପେଷି ବନକୁ ଅଣାଇଲେ
ଦଶଗ୍ରୀବ ଦୈତ୍ୟ ମରାଇବା ବିଚାରିଲେ ।

ଶୁଣିଣ ଦାଶରଥି ମନରେ ହେଲେ ତୋଷ
ଶୁଣିକରି କେକେୟୀ ଯେ ମନରେ ହରଷ ।
ବୋଇଲା ନାରାୟଣଙ୍କ ହୋଇଲେଇଁଦୋଷୀ
ଭ୍ରଥା ବୋଲନ୍ତି ତୋଠାରେ ଶ୍ରୀରାମଟି ତୋଷି
ଭ୍ରତ ବୋଲେ ଶ୍ରୀରାମ ଅନନ୍ତ ବାସୁଦେବ
ଭକତ ହୋଇଲେ ଦୟା କରନ୍ତି ରାଘବ ।
ମୋତେ ଦେଖିଣ ସ୍ୱାମୀ ଆଦର ଭାବକଲେ
ଅଯୋଧ୍ୟାକୁ କମା ଗୁଡ଼ଲୁ ବୋଲି ବୋଇଲେ
ଶୁଣିଣ ଭଗବତୀ ମନେ ହେଲେ ତୋଷ
ଶ୍ରୀରାମ ଜସ କରିଲେ କହ ହେ ସନ୍ଦେଶ ।
ଶୁଣିଣ ତ୍ରିଲୋଚନ ଯେ କହନ୍ତି ବଚନ
ମୁନିଠାରୁ ଶୁଣି ଶ୍ରୀରାମ କଲେ ତୋଷ ମନ
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ଅଯୋଧ୍ୟାକୁ ଯିବାକୁ ମନରେ ଉଦବେଗହୁଏ
ହନୁମନ୍ତ ଶୁଣିଣ କହିଲେ ରାମରାଣ
ଅଯୋଧ୍ୟାକୁ ବାବୁ ଆରେ ଚଳ ତୁ ବହନ ।
ଶତ୍ରୁଘ୍ନ ଭରଥ ଯେ ଅଯୋଧ୍ୟାକୁ ଗଲେ
ଲକ୍ଷେ ନୃପତି ସଙ୍ଗରେ ସୈନ୍ୟବଳ ଭଲେ
ସମସ୍ତେ ତରସ୍ତ ହୋଇ ରହିଲେ କି ସ୍ଥିର
ରାଜ୍ୟକୁ ଯାଇ କି ବିଚାର କରି ସକଳ ।
ଏକଥା ବୁଝିକରିଣ ବେଗ ହୋଇ ଆସ
ତେବେ ସେ ଆମ୍ଭେଯିବା ଅଯୋଧ୍ୟାନଜଦେଶ
ଶୁଣିକରି ମରୁତ ଯେତ୍ତୁବେଗେ ଚଳଗଲା
ସିଂଘିକା ପୁରେ ଯାଇଣ ପ୍ରବେଶ ହୋଇଲା
ଗୁହନାମେ ଶବର ଧାରେଣ ପରବେଶ
ଶବର ଘରଣୀ ଆସି ପଚାରେ ସନ୍ଦେଶ ।
ବୋଇଲା କପି ତୁ ରେ କେବଣ ଦେଶୁ ଆଏ
ତୋତେ ଦେଖି ମୁଁ ଯେମଣୁ ହି ଦେବତା ପ୍ରାୟେ
ମୋହର ସ୍ୱାମୀ ନାହାନ୍ତି ଏ ପୁରରେ ପୁଣ
ଶ୍ରୀରାମ ଦର୍ଶନକୁ ସେ ଯାଇଛନ୍ତି ଜାଣ ।
ଲଙ୍କାରେ ରଘୁନାଥ କରୁଛନ୍ତି ସମର
ଭରଥ ସଙ୍ଗରେ ସ୍ୱାମୀ ଚଳିଲେ ମୋହର ।
ମରୁତି ବୋଇଲା ତୁ ଗୋ ଶୁଣ ମୋ ବଚନ
ଭ୍ରତ ସଙ୍ଗେ କମା ଗଲେ ଗୁହସ୍ତ ତୋ ପୁଣ
ଶବରଣୀ ବୋଲେ ତାଙ୍କ ଭଇ ରଘୁନାଥ
ମୋର ସ୍ୱାମୀ ସଙ୍ଗତରେ ହୋଇଛନ୍ତି ମିତ ।

ଏବେଶରେ ମୋ ସ୍ୱାମୀକ ରାଜା କରାଇଲେ
ତେଣୁକରି ମୁହିଁ ଦାସ ତାଙ୍କ ଚରଣରେ ।
ମାରୁତି ବୋଇଲେ ସ୍ୱାମୀ ଶ୍ରୀରାମ ଅଇଲେ
ଦୈତ୍ୟବଳ ନାଶିଣ ପ୍ରୟାଗେ ବିଜେକଲେ
ଲକ୍ଷେ ରାଜା ଘେନ ଯେ ଭରଥ ଯାଇଥିଲେ
ଦୁଇଦନ ହେଲା ଅଯୋଧ୍ୟାକୁ ସେ ଅଇଲେ
ତୋରସ୍ୱାମୀ ତାଙ୍କସଙ୍ଗେଅଛି ଅଯୋଧ୍ୟାରେ
ଶୁଣି ଶବରଣୀ ନମେ ମାରୁତି ଚରଣରେ ।
ଫଳମୂଳ ଆଣିଣ ଯେ ମାରୁତିଙ୍କ ଦେଲା
ଭୁଞ୍ଜିଣ ପବନ ସୁତ ସନ୍ତୋଷ ହୋଇଲା ।
କହିଣ ମାରୁତି ଯେ ଚଳିଲା ବେଗକରି
ଶୀତଳ ଗିରିରେ ବସିଛନ୍ତି ତପକରି ।
ପର୍ଶୁରାମଙ୍କୁ ଦେଖିଣ କଲା ନମସ୍କାର
ପର୍ଶୁଧର ବୋଲେ ଶୁଣ ପବନ କୁମର ।
ଶ୍ରୀରାମ ଅଇଲେ କରେ ଅଯୋଧ୍ୟାକୁ ଏବେ
ମାରୁତି ବୋଇଲେ ପ୍ରଭୁ ରହିଲେ ପ୍ରୟାଗେ
ଭରତ ଶତ୍ରୁଘ୍ନ ରାଜାଗଣଙ୍କୁ ଘେନ
ଅଯୋଧ୍ୟାକୁ ଅଇଲେ ସକଳ ନୃପମଣି ।
କାଲି ମଧ୍ୟରେ ଶ୍ରୀରାମ ଅଯୋଧ୍ୟାକୁ ଆସିବେ
ମୋତେଆଜ୍ଞାକରି ଭେଦଦେଲେ ରାମଦେବେ
ଏତେକହି ମାରୁତି ସେଠାରୁ ଚଳିଗଲେ
ଅଯୋଧ୍ୟା କଟକେଯାଇ ପ୍ରବେଶ ହୋଇଲେ
ଦେଖିଣ ରାଜାମାନେହୋଇଲେ ମନେତୋଷ
ଅଇଲେ କି ରାମାୟଣ ଯୁଦ୍ଧର କବାଟ ।
ପ୍ରଭଞ୍ଜନ ସୁତ ତହୁଁ ବେଗେ ଚଳିଯାଇ
ଅନ୍ତଃପୁରରେ ପ୍ରବେଶ ହୋଇଲେକ ଯାଇ ।
ଶ୍ରୀରାମ ମାତାଙ୍କୁ ଦେଖି ନମସ୍କାର କଲା
ଚରଣରେ ଗଡ଼ଢାଳି ମାରୁତି ଶୋଇଲା ।
କଉଶଲ୍ୟା ବୋଇଲେ ଶୁଣ ପବନ ସୁତ
ଶ୍ରୀରାମ ଲକ୍ଷ୍ମଣ ସୀତା ଆସିବା କି ସତ୍ୟ ।
ମାରୁତି ବୋଲେ ମାତ ପ୍ରୟାଗେ ଅଛନ୍ତିଟି
କାଲି ଅଯୋଧ୍ୟାକୁ ଦେବ ଆସିବେ ଶୁଣଟି ।
ହନୁମନ୍ତ ଆସିବାରୁ ପଡ଼ିଲା ଡହଳ
ସକଳ ଜନମୀ ଆସି ମିଳିଲେ ସେଠାଇ ।
କେ ବୋଲନ୍ତି ଶ୍ରୀରାମ ଲକ୍ଷ୍ମଣ ସୀତା କାହିଁ
କେଂବୋଲେ ଶ୍ୟାମଳରୂପଦେଖିବୁ ଆମ୍ଭେଯାଇ

କେବୋଲଇ ଜନେକ ଦୋହିତା ସୁକୁମାରୀ
ବଡ଼ ଦୁଃଖ ପାଇଲେ କୂଳବଧୂ ଆମ୍ଭର ।
ମାରୁତି ବୋଇଲେ କାଲି ଆସିବେ ଶ୍ରୀରାମ
ବିକଳ ନୁହ ତୁମ୍ଭେ ସକଳ ମାତାଗଣ ।
କୈକେୟୀବୋଲେମୋରଜୀବନ ଯାଉନାହିଁ
ମୋର ସକାଶୁ ଦୁଃଖ ସହିଲେ ରାମ ଦେହି ।
ମାରୁତି ବୋଇଲେ ମାତ ତୁମ୍ଭେ ଏଥେସାର
ତୁମ୍ଭ ସକାଶେ ଶ୍ରୀରାମ ଜିଣି ତ୍ରିନପୁର ।
ବନକୁ ତୁ ଯେବେ ନ ପେଶନ୍ତୁ ରାମଗଣ
ଏତେବଡ଼ ଯଶ କିବା ପାଆନ୍ତେ ଶ୍ରୀରାମ ।
କାଲି ଦେଖିବୁ ଜନନୀ ଶ୍ରୀରାମ ସମ୍ପ୍ରତି
ନର ବାନର ରାକ୍ଷସ ଦେବତା ବିଜେଏଥି ।
ଏତେ କହି ମାରୁତି ସେଠାରୁ ଚଳିଗଲା
ଭରତ ସେଠାବରେ ପ୍ରବେଶ ହୋଇଲା ।
ଦେଖିଣ ଭରଥ ଶତ୍ରୁଘ୍ନ ବେଗେ ଉଠିଲେ
ମାରୁତିଙ୍କ ଆଣିଣ ଆସନେ ବସାଇଲେ ।
ବୋଇଲେ ରଘୁନାଥ ଆସିଲେ କରେ ପୁଣ
ମାରୁତି ବୋଇଲେ ସ୍ୱେ ଅଛନ୍ତି ପ୍ରୟାଗେଣ
କାଲି ଆସିବେ ପ୍ରଭୁ ଅଯୋଧ୍ୟା ନଗ୍ରପୁର
ମୋତେ ଭେଦଦେଲେ ଏଥେ ଶ୍ରୀରାମଠାକୁର
ରାଜାମାନଙ୍କ ତରସ୍ତୁ ସୈନ୍ୟଙ୍କର ସୁଖ
ସାମନ୍ତପାଦ ନଗ୍ର ପରଜା ଯେତେ ଲୋକ ।
ଏମାନଙ୍କୁ ଦେଖି ତୁରେ ଆସ ଯା ମାରୁତି
ତେବେ ଆମ୍ଭେଅଯୋଧ୍ୟାକୁ ଯିବା ହେଉଁଟି
ଶୁଣିଣ ଭରତ ବୀର ଆନନ୍ଦ ହୋଇଲା
ଶ୍ୱେତହସ୍ତୀ ଗୋଟିଏ ବେଗେସେ ଅଣାଇଲା
ସେଥିର ଉପରେ ବସାଇଲା ହନୁବୀର
ଅଯୋଧ୍ୟା ନଗ୍ର ମଧ୍ୟରେ ବୁଲଏ ଝରର ।
ଦାଣ୍ଡରେ ବୁଲିଯାନ୍ତେ ପରଜାମାନେଦେଖେ
କେ ବୋଲନ୍ତି ଏହି ଅଟେ ପବନର ସୁତେ
କେ ବୋଲେ ରାମ ଲକ୍ଷ୍ମଣ ଆସିବେ ଏଷଣି
ନୟନେ ଦେଖିବ ନୀଳମାଧବ ରୂପ ପୁଣି ।
ଜନକ ଦୁହିତାଙ୍କୁ ଯେ ନେତ୍ରରେ ଦେଖିବା
ଏ ଜନ୍ମରୁ ଆମ୍ଭେମାନେ ମୁକତ ଲଭିବା ।
କେ ବୋଲଇ ଏହୁଟେ ବାନର ଗୋଟି ପୁଣ
ରାମାୟଣ ଯୁଦ୍ଧରେ ସେ ସାମର୍ଥ୍ୟ ଜାଣ ।

କେ ବୋଲେ ତାର ନାମ ଅଟଇ ହନୁମନ୍ତ
କେ ବୋଲେ ଶ୍ରୀରାମଙ୍କର ଅଟେ ବିଶ୍ୱାସତ ।
କେ ବୋଲେ ସିନ୍ଧୁ ଡେଇଁଣ ଏ ବାନରଗଲା
ଜନକ ଦୋହିତାଙ୍କୁ ଯାଇଣ ଠାବକଲା ।
କେ ବୋଲେ ଲକ୍ଷ୍ମଣ ଶକ୍ତିଶକ୍ତିଭେଦହେଲେ
ଔଷଧି ପାଇଁ ଶ୍ରୀରାମ ଏହାଙ୍କୁ ଭେଦଦେଲେ ।
କେ ବୋଲେ ଭରତଙ୍କ କହିଲା ସନ୍ଦେଶ ତ
ଲଙ୍କେ ରଜା ଘେନଗଲେ ଶ୍ରୀରାମ ସାନଭ୍ରାତ ।
ଏମନ୍ତେ କୁହାକୁହି ହୁଅନ୍ତି ନଗରଜନ
ହନୁମନ୍ତ ବୁଲିଣ ଦେଖଇ ସବୁ ପୁଣ ।
ଦେଖିଲା ହରଷ ଯେ ସକଳ ଲୋକମାନେ
ଦେଉଳ ଅଟାଳି ଯେ ଦେଖିଲେ ତୋଷମନେ
ଶ୍ରୀରାମ ଆସିବାର କହିଲେ ଭ୍ରଥ ଯତ୍ନଁ
ଦାଣ୍ଡ ହାଟ ଜଳ ନିର୍ମଳ କରିଲେ ତତ୍ନଁ ।
ସମସ୍ତଙ୍କ ଦ୍ୱାରେ ପୂର୍ଣ୍ଣକୁମ୍ଭ ନାରିକେଳ
ରମ୍ଭା ବେନ ବୃକ୍ଷଗୋଟି ପୋତିଛନ୍ତି ଦ୍ୱାର ।
ଦେଖି ହନୁମନ୍ତ ସନ୍ତୋଷ ପୁଣ ହୋଇଲା
ଶ୍ୱେତ ନାଗ ଉପରୁ ବେଗେଣ ଉତ୍ତୁରିଲା ।
ଭରତ ଶତ୍ରୁଘ୍ନ ବଶିଷ୍ଠ ବାମଦେବ
କଶ୍ୟପ ଆଦି ସୁମନ୍ତ ସାମନ୍ତ ସରବ ।
ଶ୍ରୀରାମ ଆସିବେ ବୋଲି ସମସ୍ତଙ୍କ ଦୃଷ୍ଟି
ହନୁମନ୍ତ ଯାଇଣ ମିଳିଲା ତାଙ୍କଗୋଷ୍ଠି ।
ବଶିଷ୍ଠ ଚରଣେ ଯାଇ ନମସ୍କାର କଲା
ଭରତ ଶତ୍ରୁଘ୍ନଙ୍କୁ ଓଳଗି ହୋଇଲା ।
ବୋଇଲେ ଶ୍ରୀରାମ ପାଶକୁ ଯାଉଅଛୁ ମୁହିଁ
ସମସ୍ତ ରାଜାସୈନ୍ୟ ତରବ କର ତୁହି ।
ଭରଥ ବୋଇଲେ ମାରୁତି କଥା ଏବେ ଶୁଣ
ଫଳମୂଳ ଖାଇ ଯାଅ ତୁ ସୁସ୍ଥ ହୋଇଣ ।
କାଲି ମଧ୍ୟେ ଯେମନ୍ତେ ଆସିବେ ପ୍ରଭୁ ପୁଣ
ଏମନ୍ତ କହିଣ ପ୍ରଭୁଙ୍କୁ ବେଗେ ତୁ ଆଣ ।
ଶୁଣିଣ ହନୁମନ୍ତ ଯେ ସନ୍ତୋଷ ହୋଇଲା
ଶତ୍ରୁଘ୍ନ ଘେନିଣ ସେଠାରୁ ତାଙ୍କୁ ଗଲା ।
ଫଳମୂଳ ଆଣିଣ ଦେଲେକ ସୁରଗଣ
ଭୁଞ୍ଜିଣ ମାରୁତି ହୋଇଲା ତୋଷମନ ।
ତକ୍ଷଣେ ମାରୁତି ଗଲା ନନ୍ଦିଗ୍ରାମେ ପୁଣ
ଉଡ଼ିଏ ଦେଇଣ ସେହୁ ଉଡ଼ିଲା ଗଗନ ।
ସକୁଳ ଯୂଣ ମୋଟରେ ଉଚ୍ଚ ଯେ ହୋଇଲା
ଗଗନରେ ହର୍ଷମିଣ ହନୁମନ୍ତ ଗଲା ।
ଶ୍ରୀରାମ ପାଶରେ ପ୍ରବେଶ ହୋଇଲା ଯାଇ
ଧୀର ଧୀର ହୋଇଣ ସେ ଗଗନୁ ଖସଇ ।
ଦେଖିଣ ଅଯୋଧ୍ୟାଲୋକେ ଆଚମ୍ବିତହେଲେ
ମାରୁତି ଗର୍ଜନ ଶୁଣି ଟଳିଣ ପଡ଼ିଲେ ।
ବୋଇଲେ ଏ ଜନ କେମା ନ ଲଙ୍ଘନ୍ତା ସିନ୍ଧୁ
ଶ୍ରୀରାମ କରୁଣାରେ ହର ଆଣିପାରେ ଇନ୍ଦୁ ।
ଏମନ୍ତ କହୁରିଲେ ଅଯୋଧ୍ୟା ନରନାରୀ
ଶ୍ରୀରାମ ସମ୍ମୁରେ ହନୁମନ୍ତ ଯାଇ ମିଳି ।
ପାଦ୍ୟେ ପଡ଼ି ଶୋଇଣ ଉଠିଲେ କର ଯୋଡ଼ି
ବୋଇଲେ ତୁମ୍ଭ ଆଜ୍ଞାରେ ଗଲି ଏଥୁଁ ଚଳି
ସିଙ୍ଘଳା ପୁରେ ଯାଇଣ ହେଲି ପରବେଶ
ଗୁହନାମେ ଶବରଣୀ ପୁରେ ଉପଗତ ।
ତୁମ୍ଭର କଥା ଦେବ ସକଳ ପୁଚ୍ଛା କଲି
ଶବର ଯାଇଣ କି କରୁଛି ସେ ବୋଇଲି ।
ମୁଁ ବୋଇଲି ଶ୍ରୀରାମଙ୍କ ଚରଣେ ଦର୍ଶନ
ଶ୍ରୀରାମଙ୍କ ସଙ୍ଗରେ ସେ ଆସୁଅଛୁ ପୁଣ ।
ବଦ୍ରିକା ଆଶ୍ରମରେ ଅଛନ୍ତି ରୂପଧାରୀ
ଜନକ ଦୋହିତା ସଙ୍ଗେ ଅଛନ୍ତି ତାଙ୍କର ।
ବୋଇଲା ଦୁଷ୍ଟ ଦାନବ କଲେଟିକ ନାଶ
ଯେହୁଁ ରାବଣ ସୀତାଙ୍କୁ ଦେଲାଏ କଲେଶ ।
ମୁଁ ବୋଇଲି ସୁତ ରାବଣ ସେ ନାଶ କଲେ
ଜାନକୀ ଘେନି ରାମ ଅଯୋଧ୍ୟା ବିଜେକଲେ ।
ମୋରଠାରୁ ଶୁଣି ନାରୀ ପାଦ୍ୟେଢ଼ା ପାଡ଼ିଲା
ଶରେବାର ପରଯନ୍ତେ ଓଳଗି ହୋଇଲା ।
ବୋଇଲା ଏ ବାଟେ କି ଆସିବେ ଦାଶରଥି
ନେତ୍ରରେ ଦେଖିଲେ ମୁହିଁ ହୋଇବି ମୁକତି
ଏତେବୋଲି ଫଳମୂଳ ମୋତେ ଆଣିଦେଲା
ମଧୁଫଳ ଭୁଞ୍ଜିଣ ଶୀତଳ ଦେହ ହେଲା ।
ସେଠାରୁ ଚଳିଗଲି ଶୀତଳଗିରି ମୁହିଁ
ଶ୍ୱେତବର୍ଣ୍ଣ ପର୍ବତେ ପ୍ରବେଶ ହେଲି ଯାଇ ।
ପର୍ଶୁରାମଙ୍କ ଚରଣେ କଲି ନମସ୍କାର
ବୋଇଲେ ଦାଶରଥି ଅଇଲେକି ଏଥର ।
ମୁଁ ବୋଇଲି କାଲି ଯେ ଆସିବେ ରଘୁନାଥ
ବୋଇଲେ ଆମ୍ଭ ଦୋହିତା ଆଣିଲେ କରଥ

ମୁହିଁ ବୋଇଲି ଜାନକୀ ସଙ୍ଗରେ ଅଛନ୍ତି
ତେଣୁ ତୋଷ ହେଲେ ମୋତେ ଯେମହାଯତି
ଶ୍ରୀରାମ ମୋଠାରୁ ଯେ କୋଦଣ୍ଡ ନେଇଥିଲେ
ସେ କୋଦଣ୍ଡ ଶ୍ରୀରାମ ଧରିଛନ୍ତି କି କରେ ।
ମୁଁ ବୋଇଲି ସେ ଧନୁକୁ ଧରିଥିଲେ ଯବେ
କୁମ୍ଭକର୍ଣ୍ଣ ମରିଲା ଯେ ସେହି ଧନୁବାଣେ ।
ବୋଇଲେ ଯଜ୍ଞଭୁକ ଦେଲି ମୁଁ ତାଙ୍କୁ ତାହା
ଭଗ୍ନହେଲେ ଯହୁଁ ବୈଦେହୀକ ଚଉବାହା ।
ବୋଇଲେ ରାମାୟଣ ଯୁଦ୍ଧରେ ତୁ ଶକତା
ସ୍ୱୟଂ ନାରାୟଣ ଅଟେ ଦଶରଥ ସୁତା ।
କାଳେ କାଳେ ତୁମ୍ଭ ଚିରଞ୍ଜିବୀ ହେଲୁ ଏବେ
ଦାସପଣେ ଖଟିଲୁ ତୁ ଶ୍ରୀରାମଙ୍କ ଯେବେ ।
ମୁଁ ବୋଇଲି ଅଯୋଧ୍ୟାକୁ ଜଗିଅଛ ପୁଣ
ଧନୁଶର ନାହିଁତ କରନ୍ତ କେହ୍ନେ ରଣ ।
ସେ ବୋଇଲେ କୁଠାର ଖଣ୍ଡିଏ ଅଛି ପଡ଼ି
ଦେବଦୈତ୍ୟ ପଡ଼ିଲେ ଏଥିରେ ପାରେ ମାରି
ମୋତେ ବୋଇଲେ ତୁଯେବେ ଅନୁବଳବନ୍ତ
ମୋର କୁଠାର ସେଠାରୁ ଆଣ ହନୁମନ୍ତ ।
ତାହା ଶୁଣିଣ ମୁହିଁ ଯେ ବେଗେ ଚଳିଗଲି
କୋଠାର ଖଣ୍ଡିକ ହସ୍ତରେ ମୁହିଁ ଧରିଲି ।
ତୋଳି ନ ପାରିଲି ମୁହିଁ ତାହା ଯେତେବେଳେ
ହସିଣ ମହାମୁନି ଦେଖିଣ କ୍ରୋଧଭରେ ।
ବୋଇଲେ ମୋର କୁଠାର ଟେକି ନ ପାରିଲୁ
କେମନ୍ତେ ମହାବୀର ତୁହିତ ବୋଲାଇଲୁ ।
ଶୁଣିକରି ଲଜ୍ଜା ଯେ ପାଇଲି ଦେବ ମୁହିଁ
ଯୋଡ଼ିଏ ଫଳ ମୋତେ ଦେଲେକ ମୁନି ତହିଁ
ସେହି ଫଳ ମୋତେ ହେଲା ଅମୃତ ଭୋଜନ
ସନ୍ତୋଷ ହୋଇଣ ମୁଁ ସବୁଠାରୁ ଗଲି ପୁଣ ।
ନନ୍ଦି ଗ୍ରାମରେ ଯାଇ ପ୍ରବେଶ ଦେବ ହେଲି
ପ୍ରଥମେ ତୁମ୍ଭ ମାତା ଦର୍ଶନ ଯାଇ କଲି ।
ହିଖିଗ୍ୟେ ତୋର ଜନନୀ ସର୍ବଙ୍କି ଦେଖିଲି
ଚରଣ ତଳେ ପଡ଼ି ଓଳଗ ମେଲାଇଲି ।
କୁଶଳ ପଚାରିଲେ କହିଲି ସବୁ ମୁହିଁ
ସେ ବୋଇଲେ ରଘୁନାଥ ନଇଲେ କମାଇ
ମୁଁ ବୋଇଲି କାଲି ଆସିବେଟି ରାମ ରାଣ
ସବୁ ଜନନୀ ହରଷ ହୋଇଲେକ ପୁଣ ।

ସାତ ପଛେ କୈକେୟୀ ଜନନୀ ତୋର ଆସି
ବେନି ନେତ୍ରୁ ଲୋତକ ତା ପଡ଼ୁଅଛି ଖସି ।
ବୋଲେ ବାବୁ ମାରୁତି ଆସିଛ କିସପାଇଁ
ଶ୍ରୀରାମ ଲକ୍ଷ୍ମଣ ସୀତା ଅଛନ୍ତି ମୋ କାହିଁ ।
ତିନିପୁରେ ଅପକୀର୍ତ୍ତି ମୋ ନାମରେ ହେଲା
ନିର୍ଲଜ୍ଜ ଜୀବନ ମୋର କାହାଁଇ ନ ଗଲା ।
ଚଉଦ ବର୍ଷ ହେଲା ଭାଳୁଛି ଘରେ ବସି
ପୁତ୍ର ବଧୂରେ ଶତ୍ରୁ ମୁଁ ହେଲି ବାବୁ ଦୋଷୀ
ଏତେ କହି ରୋଦନ କରନ୍ତି ପୁଣ ପୁଣ
ଶୁଣି ତାଙ୍କୁ ସମାର୍ଜନା ମୁହିଁ କଲି ଜାଣ ।
ବୋଇଲେ ହୋପାପ ଦେହି ନଷ୍ଟେମୃତ୍ୟୁହେବ
ଶ୍ରୀରାମ ସୀତା ଦେଖି ମନ ସନ୍ତୋଷ ହେବ ।
ଶତ୍ରୁଘ୍ନ ଭରଥ ତାଙ୍କୁ ପ୍ରବୋଧି କହିଲେ
କାହାରି ବୋଲରେ ସେହୁ ନି ପୁତ୍ର ନୋହିଲେ
ସେଠାରୁ ଆସିଣ ମୁହିଁ ରାଜାଙ୍କୁ ଦେଖିଲି
ସମସ୍ତଙ୍କର ହର୍ଷ ହରଷ ନ ଦେଖିଲି ।
ନଗ୍ରଯାକ ବୁଲି ଦେଖିଲି ମୁହିଁ ତୁମ୍ଭର
ଉଚ୍ଛବ କରିଅଛନ୍ତି ଦାଣ୍ଡ ଯେ ଦୁଆର ।
କଦଳୀ ଗଛ ପୋତି ରହି ଯେ ମାଛ ଥାପି
ଘୁମୁଣ୍ଡିଆ କରିଣ ନାରିକେଳ ଯେ ଗୁନ୍ଥି ।
ପୂର୍ଣ୍ଣକୁମ୍ଭ ଚୂତପତ୍ର ଦୁଆରେ ଛନ୍ତି ଥୋଇ
ଆକାଶକୁ ଗୁହିଁ ନାମ ସୁମରନ୍ତି ସେହି ।
ବାଦ୍ୟ ଦୁନ୍ଦୁଭିରେ କମ୍ପୁଛି ବେଦବର
ସମସ୍ତଙ୍କ ହରଷ ଦେଖିଲି ବେଦବର ।
ଭରଥ ଦୁଇଦିନ ହେଲା ଅଯୋଧ୍ୟାକୁ ଗଲେ
ଉପବାସରେ ବସିଛି କୈକେୟୀର ବାଳେ ।
ଶ୍ରୀରାମ ଅଇଲେ ମୁଁ ଯେ କରିବି ଭୋଜନ
ତୋର ନାମଗୋଟି ଏକା କରେ ସୁମରଣ ।
ସର୍ବ ସୁଳଭ ଦେଖି ଅଇଲି ବେଗକରି
ତୁମ୍ଭେ ହସ୍ତର କର କୋଦଣ୍ଡ ରୂପଧାରୀ ।
ଶ୍ରୀରାମ ବୋଲନ୍ତି ରଜନୀ ଶେଷେ ଚଳିବା
ଅଯୋଧ୍ୟା ନଗ୍ରରେ କାଲି ପ୍ରବେଶ ହୋଇବା
ଶୁଣିକରି ହନୁମନ୍ତ ଶିରେ କର ଦେଇ
କଥାଏ ଜଣାଉଅଛି ଶୁଣ ହେ ଗୋସାଇଁ ।
ମନରେ ଗର୍ବ କରିଲି ମୋହର ଯେ ପୁଣି
ଦୁଇ ଥାନରେ ମୋତେ କଷିଲ ରଘୁମଣି ।

ପଶ୍ଚିମ ଦ୍ୱାପିନ୍ୟକୁ ଭେଦଣ ଦେଲ ମୋତେ
ଧରଣ କୋଦଣ୍ଡା ସୁର ଗିଳିଥିଲୁ ସେଥେ ।
ତୁମ୍ଭନାମ ସୁମରିବାରୁ ସେ ଛାଡ଼ିଦେଲ
ମୋତେ ପେଷିଲ ଅଯୋଧ୍ୟା ଦଶରଥବଳା ।
ପଶୁରାମ କୁଠାର ଯେ ନ ପାରିଲ ତୋଳି
ଏ କଥାରେ ବଡ଼ ଚିନ୍ତା ହେଲାଯେ ମୋହରି
ଶ୍ରୀରାମ ବୋଇଲେ ସେ ଯେ ଷଡ଼ ଅବତାର
ବାସୁଦେବ ରୂପ ଅଟେ ପଶୁରାମ ବୀର ।
ତ୍ରିପୁର ଚଉଦଭୁବନ ସାଧିକଲେ
ବାରକୋଟି ରାକ୍ଷସ ଯେ ମୋପାଇଁ ରଖିଲେ
ତାଙ୍କ କୁଠାର ତୋଳିବା ତୁକ ସ୍ଥଳେ ପୁଣ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହରନ୍ତି ଯେ ଜାଣ ।
ସ୍ୱୟଂ ନାରାୟଣ ଅଟେ ପଶୁରାମ ରୂପ
ଯାନାମ ଶୁଣି ଦେବତା କମ୍ପନ୍ତି ସମସ୍ତ ।
ପ୍ରସନ୍ନେ ଧନୁ ଦେଲେ ସେ ଯମଦଗ୍ନିବଳା
ଧନୁ ଥରେ ଧଇଲେ ଆଉ ଥରକୁ ଖସା ।
ସେହି କଥା କେବେ ବାବୁ ନକହିରେ ତୁହି
ତାଙ୍କ କ୍ରୋଧେ ତ୍ରିପୁର ନଷ୍ଟହେବ ଦହି ।
କୋଦଣ୍ଡ କଷ୍ଟକର ଯେ ଅଟେ ବଳମାଲ
ବନରେ ରହି ଜନ୍ତୁଙ୍କ କରୁଛି ଆହାର ।
ପାତକରେ ଗ୍ରାହିକ ଯେ ହୋଇଅଛି ସେହି
ତାହାକୁ ମାରଯାଇ ସେଥିରେ ଦୋଷ ନାହିଁ
ଶୁଣିଣ ହନୁମନ୍ତ ଯେ ବେଗେ ଚଳିଗଲ
କୋଦଣ୍ଡ ରହିବାଠାରେ ପ୍ରବେଶହୋଇଲ ।
ତାର ଯେତେକ ବନ ଭାଙ୍ଗିଲା ହନୁ ପୁଣ
ଦେଖିଣ ଅଷ୍ଟକର କ୍ରୋଧରେ ବାହାରିଣ ।
ବୋଇଲ ବାନରରେ ତୁ ଭଣ୍ଡାସ ପାଇଲୁ
ଥରେ ଛାଡ଼ି ଦେଲୁକୁରେ ଏବେ ଆହାକଲୁ ।
ଏତେ ବୋଲି ହନୁକୁ ଧଇଲା ଆସିକରି
ତଳେ ପକାଇଲା ସେ ହନୁର ବାଳଧରି ।
ଦେଖିଣ ମାରୁତି ମନରେ କ୍ରୋଧ ହୋଇଲା
ଗୋଡ଼ଧରି କୋଦଣ୍ଡକୁ ମାଡ଼ିଣ ବସିଲା ।
ବୁକୁପରେ ଏକଗୋଡ଼ ଦେଲାକ ବହନ
ବଜ୍ରମୁଠ ପ୍ରହାରିଲା କଙ୍କାଳକୁ ପୁଣ ।
ମୁଣ୍ଡରେ ନାତେକ ସେହୁ ମାଇଲାକ ପୁଣି
ଛକଳେ ଅଷ୍ଟକର ଗର୍ଜନ କରେ ଜାଣି ।

❋

ଉଲ୍କାପାତ ପ୍ରାଏ କମ୍ପଇ ବସୁନ୍ଧରି
ଜୀବମାନେ ପଳାଇଲେ ଛାଡ଼ି ବନ ଗିରି ।
ରାମ ନାମ ସୁମରି ତୋଟିରେ ଗୋଡ଼ଦେଲା
ନାଭିଠାରୁ ପେଟ ତାର ଚିରି ପକାଇଲା ।
ଦୁଇଫାଳ କରନ୍ତେ କୋଦଣ୍ଡ ନାଶଗଲା
ଦେଖିଣ ପବନ ସୁତ ହରଷ ହୋଇଲା ।
ବନସ୍ତରେ ପଶିଣ ଫଳମୂଳ ସେ ଖାଇ
ସନ୍ତୋଷରେ ହନୁମନ୍ତ ବେଗେ ଚଳିଯାଇ ।
ଶ୍ରୀରାମ ପାଶରେ ଯାଇ ହେଲ ପରବେଶ
ଏ ସମୟେ କଟି ହୋଇଲାକ ଆସି ଶେଷ ।
ପାଏ ପଡ଼ି ଶୋଏ ହନୁ ଶ୍ରୀରାମ ଚରଣ
ଶ୍ରୀରାମ ବୋଇଲେ ହନୁ ଉଠରେ ବହନ ।
ଅଯୋଧ୍ୟା ନଗ୍ରକୁ ଏବେ ଚଳରେ ବହନ
କହିବୁ ଭରଥକୁ ମୋର ଆସିଲେ ଶ୍ରୀରାମ ।
ଶୁଣିଣ ମାରୁତି ବ୍ୟଗ୍ର ହୋଇ ଚଳିଗଲା
ଅଯୋଧ୍ୟା ନନ୍ଦ ଗ୍ରାମରେ ପ୍ରବେଶ ହୋଇଲା ।
ଭରଥକୁ ବୋଇଲେ ହନୁ ଅଇଲେ ଶ୍ରୀରାମ
ଶୁଣିଣ ସକଳ ଜନେ ହେଲେ ତୋଷମନ ।
ଏଥୁ ଅନନ୍ତରେ ଆଗୋ ଶୁଣ ଶାକମ୍ଭରି
ଭରଥବୀର ଉଠିବେଗେ ସକଳ ତିଆରି ।
ଶତ୍ରୁଘନକୁ ରହିଁଣ ବୋଲନ୍ତି କୈକେୟୀ
ନଗ୍ରପୁର ମଣ୍ଡଣ କରାଅ ବେଗେ ନେଇ ।
ରଥ ଗଜ ଅଶ୍ୱ ସକଳ କର ତୁ ସଜ
ଏହିକ୍ଷଣି ବିଜୟେ କରିବେ ରାମରାଜ ।
ଯେଉଁ ସ୍ଥାନରେ ବିଜୟ କରିବେ ଏକ୍ଷଣି
ଲୋକ ପେଷି ସେ ସ୍ଥାନକୁ କରାଅ ମଣ୍ଡଣି ।
ହନୁମନ୍ତ ବୋଇଲେ ଅଣାଅ ମତ୍ତହସ୍ତୀ
ଅଳଙ୍କାର ଭୂଷଣ ହୋନ୍ତୁ ଲକ୍ଷେ ଯୁବତୀ ।
ଲକ୍ଷେ ପରିବାରି ଧରି ଲକ୍ଷେକ ରାମରି
ବ୍ୟଗ୍ରରେ ଏହାଙ୍କୁ ଅଣାଅ ହେ ମନ୍ତ୍ରୀବର ।
ହନୁମନ୍ତ କହିଲେ ଅଇଲେ ଶ୍ରୀରାମତ
ଏହିକଥା ଗୋଟି ସତ ଅଟଇ ଏବେତ ।
ଏତେ ବୋଲି ଭରଥ ଯେ ଅଣାଏ ସୁବର୍ଣ୍ଣ
ମାରୁତିକ ଦେଲେ ସେ ଯେ କଲେକ ସମ୍ମାନ
ଶାଢ଼ୀ କୁସୁମ ମାଳା ଶରୀରେ ମଣ୍ଡାଇଲେ
ସୁନା ଖଡ଼ୁ ବୀରବଳି ହାର ମାନଛି ଦେଲେ

ପଦକ ରୂପସର ଯେ ରତ୍ନମୁଦ୍ର ଆଦ
ତାଡ଼ ଚୌଡ଼ର ବଳୟ ଅଳଙ୍କାର ଖଞ୍ଜି ।
ଚତୁଃସମ ବୋଲିଣ କସ୍ତୁରୀ ନଉଡ଼ଇ
ଗଉରବ କରି ହନୁମନ୍ତଙ୍କୁ କହଇ ।
ହନୁମନ୍ତଙ୍କୁ ହସ୍ତି ଉପରେ ବସାଇଲେ
ଶ୍ୱେତ ହସ୍ତି ଉପରେ ଅମର ବଜେକଲେ ।
ଛତ୍ର ଉପରେ ଟେକାଏ ଉଦଣ୍ଡ ପସ୍ୱାଣ
ଆଗରେ ବାଜୁଅଛି ଯେ ଟମକ ନିଶାଣ ।
ଝମଳ ଆଲମ୍ବ ବଧୁ କର କୋଣ ଛଡ଼ା
ଘଟୁଆରରେ ଛତ୍ର ଅନେକ ମଯ୍ୟେ ମଡ଼ା ।
ରଥ ମାହୁନ୍ତ ପଦାତ୍ତ ଆସନ୍ତି ଅପାର
ନନ୍ଦି ଗ୍ରାମରେ ଚଳଇ ପବନ କୁମର ।
ଦେଖିଲା ଶତ୍ରୁଘନ ଉପତ ପୁଣ ତହିଁ
ଚଉକୋଣ ଆଡ଼ଘର୍ଷ ରତ୍ନ ପାଚେରି ହୋଇ
ନୀଳବର୍ଣ୍ଣ ଦଶେ ସେ ପାଚେରି ଗୋଟି ପୁଣ
ପାଚେରି ଭିତରେ ଘର ହୋଇଛି ନିର୍ମାଣ ।
ଲକ୍ଷେକ ଘରମାନ ଅଟେ ସବୁ ନୀଳବର୍ଣ୍ଣ
ସେଥିରେ ଦେଉଳ କୂପ ବାମ୍ପୀଅଛି ପୁଣ ।
ସରୋବର ପୁଷ୍କରିଣୀ ତହିଁ ଅଛି ରଞ୍ଜ
ଫୁଲବନ ମାନ ଦୁଇ କୋଣର ଆକୃତି ।
ପଶ୍ଚିମ ଦ୍ୱାରେ ଶାର୍ଦ୍ଦୂଳ ଦୁଇଗୋଟି ଉଭା
ନୀଳବର୍ଣ୍ଣ ଦ୍ୱାରକୁ ପାଇଛି ବଡ଼ ଶୋଭା ।
ଦେଖିଣ ହନୁମନ୍ତ ହସ୍ତିରୁ ଓହ୍ଲାଇଲା
ସେହିଦ୍ୱାର ବାଟେରେ ଭିତରକୁ ଗଲା ।
ଦେଖିଲାକ ରତ୍ନପୁର ନୀଳବର୍ଣ୍ଣ ପୁଣ
ବାହାର ଜଗତି ଅଛି ଦୁଇଗୋଟି ଜାଣ ।
କଳାବତୀ ଜନନୀ ଯେ ରାଜବେଶ ଧରି
ବୋଇଲେକ ମାରୁତିରେ ଆସ ବେଗକରି ।
ସାନୁଜ ଶତ୍ରୁଘନ ଉଆସ ଦେଖ ଯା ଯା
ଜ୍ୟେଷ୍ଠକୁମର ରାମର ଦୂତ ଅଟୁ ପରା ।
ଶୁଣିକରି ମାରୁତି ଭିତରେ ଚଳି ଗଲା
ବୁଲିଣ ସକଳ ଥାନ ଦେଖି ଲେଉଟିଲା ।
ଶତେପଘ୍ନଶ ଜନନୀ ଆସିହେଲେ ଛିଡ଼ା
ଦେଖିଣ ହନୁମନ୍ତ ହୋଇଲେ ଭୂମି ଗଡ଼ା ।
ଉଠିକରି ଶିରେକର ଦେଇଣ ମାରୁତି
କୁମର ରାମ ଲକ୍ଷ୍ମଣ ସୀତା ଆସୁଛନ୍ତି ।

ଏତେକହି ସେଠାରୁ ଚଳେ ହନୁମନ୍ତ
ପ୍ରବେଶ ହୋଇଲା ଘୋଷ ଯାହାର ଯେ ସ୍ଥାନ
ଦୁଇକୋଶ ଘେର୍ଘ ପ୍ରନ୍ତ ସବୁ ରତ୍ନମୟେ
ଅଟ୍ଟାଳ ଜଗତି ଦେଖି ହନୁ ତୋଷ ହୁଏ ।
ଦକ୍ଷିଣ ଦ୍ୱାରେ ତାହାର ଦୁଇଗୋଟି ସିଂହ
ବାହାର ହନୁମନ୍ତ ଚଳିଣ ଗଲା ବେଗ ।
ଭରତ ନଗରେ ପଶିଲା ସେ ଯାଇ କରି
ଦେଖିଲା ସୁବର୍ଣ୍ଣମୟ ଅଟେ ତାରପୁରୀ ।
ଭିତରେ ଦୁଇ ଜଗତି ନାନା ବର୍ଣ୍ଣେ ରଞ୍ଜ
ଗୃହପାଖେ ମେଘନାଦ ପାଚେରି ସୁସଜ୍ଜ ।
କୈକେୟୀଙ୍କର ସଙ୍ଗେ ଦୁଇଶତ ଜନନୀ
ହନୁମନ୍ତ ଦେଖିଣ ଅଇଲେ ବେଗେ ପୁଣି ।
ବୋଇଲେ ମାରୁତି ଶ୍ରୀରାମ ହୃତକାର
ଶୁଣି ପବନ ସୁତ ଚରଣେ ଲୋଟି ଗଲା ।
ଉଠିଣ କରଯୋଡ଼ି ଆଗରେ ଉଭା ହୋଇ
କୃତ୍ୟ କୃତ୍ୟ ହୋଇଣ ସେ ବଚନ କହଇ ।
ସେ ସ୍ଥାନରୁ ହନୁମନ୍ତ ବେଗେ ଚଳି ଗଲା
ହସ୍ତୀପରେ ଚଢ଼ିଣ ବଡ଼ ଦାଣ୍ଡେ ବାହାରିଲା ।
ରଥପରେ ଭରତ ବସିଣ ପୁଣ ବେଗେ
ହନୁମନ୍ତଙ୍କୁ ଘେନିଣ ଚଳିଲା ସରାଗେ ।
ଅଯୋଧ୍ୟା କଟକରେ ହୋଇଲେ ପ୍ରବେଶ
ରଥରୁ ଓହ୍ଲାଇଲେ କୈକେୟୀର ଶିଷ୍ୟ ।
ହସ୍ତୀରୁ ଓହ୍ଲାଇଣ ମାରୁତି ଉଭା ହେଲା
ଅଯୋଧ୍ୟା ନଗ୍ରକୁ ସେହି ନଗେଳ ଗୃହିଁଲା ।
ହସ୍ତୀଘର ବାଟରେ ସେ ପଶିଲା ଭିତର
ଦେଖିଲା ଧବଳ ପୁର ହରଇ ସୁନ୍ଦର ।
ସବୁସ୍ଥାନ ମାନ ହନୁ ନରେଳଦେଖିଲା
ଉର୍ମିଳା କନ୍ୟା ଯାଇ ଶାଶୁଙ୍କୁ ଜଣାଇଲା ।
ଦେଖିଆସ ଜନନୀ ଆସିଛି ହନୁମନ୍ତ
ଆଜ ଠାକୁର ଠାକୁରାଣୀ ଆସିବେ ଭୁରିତ ।
ଦେଖିଣ ଠାକୁରାଣୀ ଆସିଲେ ବେଗକରି
ଦୁଇଶତ ସପତ୍ନୀ ଛନ୍ତି ସଙ୍ଗେ ତାରି ।
ସୁମିତ୍ରା ବୋଇଲେ ଆରେ ପବନ ତନୟେ
ଆସିବେ କେତେବେଳେ ଶ୍ରୀରାମ କହ ଥାଏ ।
ଶୁଣିଣ ହନୁମନ୍ତ ଚରଣେ ଲୋଟି ଗାଳି
ଆଜ ପୁତ୍ରବଧୂ ଗୋ ଆସିବେ ଭୁମ୍ମତ ।

ଶୁଣିଣ ସୁମିତ୍ରା ବୋଲେ ଲକ୍ଷ୍ମଣ ନଗ୍ର ଏହ୍ବ
ଦେଖ ହନୁମନ୍ତରେ ବୁଲିଣ ବେଗେ ତୁହ୍ବ ।
ଶୁଣିଣ ମାରୁତି ଯାଇ ସମସ୍ତ ଦେଖିଲା
ହସ୍ତୀଦ୍ୱାର ବାଟରେ ବାହାର ହୋଇଗଲା ।
ଶ୍ରୀରାମଙ୍କ ସିଂହଦ୍ୱାରେ ହେଲା ପରବେଶ
ଭିତରେ ଗଲାଗଲାକ ପବନର ଶିଷ୍ୟ ।
କଉଶଲ୍ୟା ପୁରରେ ସେ ହେଲା ପରବେଶ
ଦେଖିଣ ମାରୁତି ତାଙ୍କୁ ଓଳଗେ ବିଶେଷ ।
ଦଶସପତଣୀ ହେନ ଶ୍ରୀରାମର ମାତ
ହନୁକୁ ବୋଇଲେ ମୋର ଶ୍ରୀରାମ କାହିଁତ ।
କେତେବେଳେ ସୀତା ରାମ ଲକ୍ଷ୍ମଣ ଆସିବେ
କରଯୋଡ଼ି କହଇ ମାରୁତି ମାତାଆଗେ ।
ଆଜର ମଧ୍ୟରେ ପୁତ୍ରବଧୂ ତୁମ୍ଭେ ଦେଖ
ଶୁଣି କଉଶଲ୍ୟା ମନରେ ପାଇ ବଡ଼ ସୁଖ ।
କହିଣ ହନୁମନ୍ତ ସେଠାରୁ ଚଳିଗଲା
ବିରଞ୍ଚି ନାରାୟଣ ଦର୍ଶନ ଯାଇ କଲା ।
ସେଠାରୁ ଚଳିଯାଇ ମିଳଇ ନନ୍ଦ ଗ୍ରାମେ
ସକଳ ପାତ୍ର ମନ୍ତ୍ରୀ ଅଛନ୍ତି ଯେଉଁ ଥାନେ ।
ଏଥୁ ଅନନ୍ତରେ ପୁଣ ବୀର ଶତ୍ରୁଘ୍ନ
ନଗ୍ର ମଣ୍ଡନ କରିଣ ଅଇଲେ ବହନ ।
ସ୍ୱରଭାଇଙ୍କର ନଗ୍ରେ ଜଗତି ମଣ୍ଡିଲେ
ସେ ଜଗତିରେ ରତ୍ନ ସିଂହାସନ ରଞ୍ଚିଲେ ।
ଫୁଲ ଚନ୍ଦନ କସ୍ତୁରି ଅଗରୁ ପକାଇ
ଫୁଲବିଞ୍ଚଣି କରି ଅଇଲେ ବେଗ ହୋଇ ।
ଯେଉଁ ଘରେ ଶ୍ରୀରାମଙ୍କର ପାଦୁକା ଅଛି
ସେ ନଗ୍ର ଗୋଟି ମଣ୍ଡିଲେ ସୁମିତ୍ରାର ବଛି ।
ଦ୍ୱାରରେ ପୂର୍ଣ୍ଣକୁମ୍ଭ କଦଳୀ ବୃକ୍ଷମାନ
ବିଚିତ୍ର ବସ୍ତ୍ରମାନ ଚାମର ବିତାନ ।
ନାନାବର୍ଣ୍ଣେ ବେଶ କରି ଲମ୍ବାଏ ତୋରଣା
ସକଳ ଲୋକ ନାଚନ୍ତି ବାଇ ତାଳ ବୀଣା ।
ଦାଣ୍ଡ ନିର୍ମଳ କରିଣ ଚନ୍ଦନ ଛେରା ଦିଅନ୍ତି
ପଞ୍ଚବର୍ଣ୍ଣେ ଫୁଲ ନେଇ ଦ୍ୱାରରେ ବିଞ୍ଚନ୍ତି ।
ନଗ୍ର ନର ନାରୀମାନେ ଉସତେଣ ଗୃହୀଁ
ଶ୍ରୀରାମଙ୍କୁ ଦେଖିବାକୁ ଆସିଛନ୍ତି ଧାଇଁ ।
ଲକ୍ଷେ ନୃପତି ନନ୍ଦ ଗ୍ରାମରେ ହେଲେ ଠୁଳ
ରଘୁନାଥ ଦେଖିବାକୁ ପଞ୍ଚା ପଞ୍ଚାମେଳ ।

ଚତୁରଙ୍ଗ ବଳ ସହ୍ବ ବେଗ ସବୁଙ୍କର
ଭରତ ସମ୍ମୁଖରେ ଆସି ମିଳ ଦଣ୍ଡଧାରୀ ।
ବଶିଷ୍ଠ ବାମଦେବ ଯେ କଶ୍ୟପ ଜାବାଳି
ସିଂହଦ୍ୱାରରେ ପ୍ରବେଶ ହୋଇଲେ ଯାଇକରି ।
ପାଟେଛି ଯିବାକୁ ଉଦବେଗ ହୁଏ ଭ୍ରାତ
ସୁମନ୍ତ୍ର ସାଜିଣ ଆଣେ କଣିଅର ରଥ ।
ଅସୁର ଦଳନ ରଥେ ଶତ୍ରୁଘ୍ନ ବସି
ଲକ୍ଷେକ ନୃପତି ରଥପରେ ଛନ୍ତି ବସି ।
ଶ୍ରୀରାମ ଲକ୍ଷ୍ମଣ ଦେଖିବାକୁ ସେ ଉଷତ
ମାତୃଗଣ ଦେଖିବାକୁ ଅଇଲେ ତୁରିତ ।
ରତ୍ନ ହାଦୋଳାରେ ବସି ମାତୃଗଣ ବାହାର
ଧାଈ ମୁଦୁସୁଲୀମାନେ ସଙ୍ଗରେ ଅପାର ।
ନଗ୍ର ନରନାରୀ ଆବ୍ଦ ବାଳ ବୃଦ୍ଧ ଯୁବା
ଧାଅନ୍ତି କୁହାକୁହି ଶ୍ରୀରାମ ଦେଖିଯିବା ।
ଏକକୁ ଆରେକ ଯେ ଯାଆନ୍ତି ପୁଣ ଛାଣି
ଖୋଜାଖୋଜି ହୋଇଣ ଆସୁଛନ୍ତି ତରୁଣୀ ।
ଭ୍ରାତ ମହାବୀର ଅମାତ୍ୟଙ୍କର କୁଳେ
ପଟୁଆରେ ରହିଛନ୍ତି ଅନେକ ଭୂପାଳେ ।
ଶ୍ରୀରାମ ପାଦୁକାକୁ ଧରଇ ଦଣ୍ଡଛତ୍ର
ସମ୍ଭ୍ରମରେ ଚଳିଯାଏ କୈକେୟୀର ସୁତ ।
ବାଜଇ ଢମକ ଯେ ନିଶାଣ ଶଙ୍ଖ ଭେରୀ
ଢୋଲ ଦମା ଢମକ ଯେ ମର୍ଦ୍ଦଳ ମହୁରୀ ।
ନାଚନ୍ତି ଯୁବତୀମାନେ ଧରିଣ ଚାମର
ଉଦଣ୍ଡ ଆଲମ୍ବ ଯେ ବିଲମ୍ବ ନିରନ୍ତର ।
ଦକ୍ଷିଣ ମୁରତି ହୋଇ ଚଳନ୍ତି ସଇନ
ଆଗରେ ବାଟ କଢ଼ାଇ ଅଛନ୍ତି ମାବେନ ।
ନଗ୍ରରୁ ବାହାର ହୋଇ ବୋଇଲାକ ଭ୍ରାତ
କହୋ ହନୁମନ୍ତ କାହିଁ ରହିଲେ ରଘୁନାଥ ।
ଏତେ ବେଳଯାଏ ବିଳମ୍ବ ଯେ କାହିଁପାଇଁ ।
ପାବେନ ବୋଲେ ଏହ୍ବ ଆସିବେ ରଘୁସାଇଁ ।
ଏଥୁ ଅନନ୍ତରେ ଶୁଣ ଆଗୋ ହୈମବନ୍ତି
ପ୍ରୟାଗ ତଟରେ ଥିଲେ ସୀତା ଦାଶରଥି ।
ଭରଦ୍ୱାଜ ମୁନିଙ୍କ ମଠରେ ରହିଥିଲେ
ତିନିହେଁ ସେଠାରେ ରହିଲେ ରଘୁବୀରେ ।
ହନୁମନ୍ତକୁ ପଠାଇଲେ ଅଯୋଧ୍ୟା ରାଜ
ବୁଝିଲା କୁଶଳ ସବୁ ପବନ ଆତ୍ମଜ ।

ଶ୍ରୀରାମ ଆଗରେ ହନୁକୁ ଚାଳଣ ଦେଲେ
ପଛରେ ଆମ୍ଭେଯାଉଛୁ ବୋଲିଣ ବୋଇଲେ
ହନୁମନ୍ତ ଆସିବାରୁ ରାମଚନ୍ଦ୍ର ପୁଣ
ମୁନିଙ୍କି ମେଲାଣି ମାଗି ବାହାରିଲେ ଜାଣ ।
ପୁଷ୍ପକ ବିମାନେ ରିକ୍ଷ ରାକ୍ଷସ ବସାଇ
ରୂପଧାରୀ ବୋଇଲେ ଚଳହୋ ବେଗହୋଇ
ପୁଷ୍ପକ ବିମାନ ବ୍ୟଗ୍ର ହୋଇ ଚଳିଯାଇ
ସୁଗ୍ରୀବର ଅଙ୍ଗଦ ଅଛନ୍ତି ତହିଁ ରହି ।
ବିଭୀଷଣ ଦେବଦଳନ ରଥରେ ଚଢ଼ି
ସେହି ଚଳିଗଲେ ଶୁଣ ଆଗୋ ଶାକମ୍ଭରୀ ।
ନନ୍ଦଘୋଷ ରଥରେ ବିଜୟ କଲେ ଶ୍ରୀରାମ
ଜାନକୀଙ୍କୁ କୋଳେ ଘେନ ବିଜେ ସିଂହାସନ
ଦେଖିକରି ମାତଳି ବାହିଲେ ପୁଣ ରଥ
ଶୂନ୍ୟେ ଗମନ କରି ଆସନ୍ତି ରଘୁନାଥ ।
ଏଥୁ ଅନନ୍ତରେ ଆଗୋ ହେମବନ୍ତୀ ଶୁଣ
ଭ୍ରଥ ପଚାରିଲେ ଯେ ହନୁମନ୍ତକୁ ପୁଣ ।
କି ହୋ ମାରୁତି କାହାନ୍ତି ଆମ୍ଭ ରଘୁନାଥ
ଶୂନ୍ୟରେ ଗମିଲେ ଆଗ ପଛେ ତିନିରଥ ।
ସକଳ ନୃପତିଙ୍କ ଆଗରେ ହନୁମାନ
ନଗ୍ରୁ ବାହାର ହୋଇ ପଦାରେ ବିଜେପୁଣ
ହନୁ ବୋଲେ ଦେଖ ଆସୁଛନ୍ତି ରାମରାଣ
ଶବଦ ତ ଶୁଭୁଅଛି ଅତି ବିଚକ୍ଷଣ ।
ନ ଶୁଣକି ଗଗନରେ ଶୁଭୁଅଛି ଗୋଳ
ବିବିଧ ତୁରୁ ବାଦ୍ୟ ଯେ ମୁଖର ଚହଳ ।
ଦେଖ ଆହେ ଗଗନରେ ମେଘ ଖଣ୍ଡ ପ୍ରାଏ
ପୁଷ୍ପକ ଯାନ ଗଗନେ ବିଜୟମଣି ଆଏ ।
ତହିଁ ପଛେ ଆସଇ ଦେବଦଳନ ରଥ
ତାର ପଛେ ଆସୁଅଛି ନନ୍ଦଘୋଷ ରଥ ।
ସନ୍ତୋଷ ହେଲେ ମନେ ସକଳ ଲୋକେଶୁଣି
ଏଥୁ ଅନ୍ତେ ଶୁଣ ହେମବନ୍ତର ନନ୍ଦନୀ ।
ଯେ ଯାହାର ବାହାନକୁ ଚଢ଼ିଣ ତୁରିତ
ଊର୍ଦ୍ଧ୍ୱ ମୁଖରେ ସମସ୍ତେ ଯାନ ନିରେଖନ୍ତି ।
ସିଂହବେଣି ପୁରକୁ ଢଳିଲା ପୁଣ ରଥ
ଗୁହନାମେ ଶବରଣୀ ଶିରେ ଦେଲା ହସ୍ତ ।
ନଉଚ୍ଛଳ ହୋଇଣ ଶୋଇଲା ଗଡ଼ଘାଳି
ମାତାଳିକ ଚାହିଁଣ ଶ୍ରୀରାମଚନ୍ଦ୍ର ବୋଲି ।
ଏବେ ଦିଶୁଅଛି ଆହୋ ସିଂହବେଣିପୁର
ପର୍ବତ ବେଢ଼ି ଭିତରେ ବିପିନ ଗହଳ ।
ସିଂହବେଣିପୁରେ ଗୁହ ନାମରେ ଶବର
ବାଲ୍ୟକାଳରୁ ମଇତ୍ର ଅଟଇ ସେ ମୋର ।
ଭରତ ସଙ୍ଗରେ ସୈନ୍ୟବଳ ସଜକରି
ଏହି ଦାଣ୍ଡ ମେଲାକଲା ସେହିଟି ବିଚାରି ।
ତାହା'ର ଘରଣୀ ଏହି କରୁଛି ଦର୍ଶନ
ଦେଖ ତୁରେ ଲକ୍ଷ୍ମଣ ମିତ୍ର ଭାବର ଗୁଣ ।
ବିଭୀଷଣ ଅଙ୍ଗଦ ବୋଇଲେ ରୂପଧାରୀ
ତୁମ୍ଭେ ଚଳିଯାଅ ହେ ଅଯୋଧ୍ୟାନାମେ ପୁରି
ମୁହିଁ ପ୍ରବୋଧ କରିଣ କହିଯିବି ଏବେ
ଏହି ସମୟରେ ରଥ ଖସାଏ ରାମରାୟେ ।
ସିଂହବେଣି ପୁରେ ରଥ ପ୍ରବେଶ ହୋଇଲା
ଦେଖିଣ ଶବରଣୀ ପାଏ ପଡ଼ ଶୋଇଲା ।
ଶ୍ରୀରାମ ଜାନକୀ ଯେ ଲକ୍ଷ୍ମଣ ତିନିଜଣ
ରଥରୁ ଓହ୍ଲାଇ ସୀତା ତୋଳି ତାକୁ ପୁଣ ।
ବୋଇଲେ ବନବାସୁଁ ଅଇଲୁ ଆମ୍ଭେ ଏବେ
ନିଶ୍ଚିନ୍ତ ହୋଇଣ ଥାଅ ପୁରେ ତୁମ୍ଭେ ଏବେ
ଶୁଣିଣ ଶବରଣୀ କୃତ କୃତ ହୋଇଲା
ଏ ଜନ୍ମରେ ତୁମ୍ଭଙ୍କୁ ମୁଁ ଦେଖିଲି ବୋଇଲା
ଜାନକୀ ବୋଲେ ଆମ୍ଭେ ଯାଉଛୁ ଅଯୋଧ୍ୟାକୁ
ଏତେ କହିଣ ଗଲେ ରଥର ଉପରକୁ ।
ମାତଳିକି ବୋଇଲେ ରଥ ବେଗରେ ଚାଳ
ଶୁଣିଣ ମାତଳି ଯେ ଯାନ ବାହିଲା ଖର ।
ଏଥୁଁ ଅନନ୍ତରେ ତୁମ୍ଭେ ଶୁଣ ହେମବନ୍ତୀ
ଚାରି ରଥ ଚଳିଲା ଗଗନେ ଶୀଘ୍ର ଗତି ।
ନନ୍ଦଗ୍ରାମ ସଲଖେ ପୁଷ୍ପକ ଯାନ ଯାଇ
ଲୋକେ ପରମ ସନ୍ତୋଷ ଉପରକୁ ଚାହିଁ ।
କଉଶଲ୍ୟା ସହିତରେ ଜନନୀ ସକଳ
ହାହୋଳା ଡେକିବାରୁ ଲାଗିଲା ବଡ଼ଗୋଳ ।
ଉପରକୁ ମୁଖକରି ଚାହିଁଣ ବୋଲନ୍ତି
ସୀତା ଶ୍ରୀରାମ ଲକ୍ଷ୍ମଣ ବୋଲି ସୁମରନ୍ତି ।
ନଗ୍ର ନରନାରୀମାନେ ହୁଳହୁଳି ଦେଲେ
ବେଦଧ୍ୱନି ଘୋଷଯେ ବ୍ରାହ୍ମଣମାନେ କଲେ ।
ଜୟ ଜୟ ଶବଦ ଯେ ଶୁଭେ ଚଉପାଶ
ବାଜଇ ଝମକ ଆଦି ନିଶାଣର ଘୋଷ ।

ଘଣ୍ଟି ଘାଗୁଡ଼ି ଝମକ ଢୋଲ ଶଙ୍ଖ ଭେରି
ତାଳ ଯନ୍ତ୍ର କଂସାଳ ଯେ ମର୍ଦ୍ଦଳ ମହୁରି ।
ଗହ ଗହ ଶବଦ ଯେ ଶୁଭେ ମହାଗୋଳ
ଉଡ଼ୁଅଛି ଆଲମ୍ବ ଚଗଲ ଫରହର ।
ନର ନାରୀଏ ଗୀତ ଗାବନ୍ତି ନୃତ୍ୟକରି
ଆକାଶରୁ ବିମାନ ଖସଇ ହୋଇ ଥରଥରି ।
ଋକ୍ଷକପି ରାକ୍ଷସ ବଜାନ୍ତି ସର୍ବେ ବାଜା
ସ୍ୱର୍ଗରୁ କୁସୁମ ବରଷନ୍ତି ଦେବରାଜା ।
ଅପସରାମାନେ ମିଳି ହୁଳହୁଳି ଦ୍ୟନ୍ତି
ଗାନ୍ଧାର ରାଗେ କିନ୍ନରୀ ଗୀତ ଯେ ଗାବନ୍ତି ।
ଦୁନ୍ଦୁଭି ବାଦ୍ୟ ବଜାଇ ଏହି ସମୟରେ
ବ୍ରହ୍ମାଣ୍ଡ ଉଚ୍ଛୁଳୁଅଛି ସବୁ ବାଦ୍ୟ ଗୋଳେ ।
ଯେସନେ ଗୁଣ୍ଡିଚା ଘରୁ ଆସି ଜଗନ୍ନାଥ
ତେସନେ ସଞ୍ଜାତ ଦିଶନ୍ତି ରଘୁନାଥ ।
ପୁଷ୍ପକ ବିମାନରୁ ଓହ୍ଲାଇଲେ ସମସ୍ତ
ମହୀପରେ ରହିଲା ପୁଷ୍ପକ ନାମେ ରଥ ।
ଦେବ ଦଳନ ରଥ ତହିଁର ପଛେ ଖସି
ସମ୍ପୂର୍ଣ୍ଣ ଚନ୍ଦ୍ରମା କିବା ମେଘମାଳ ଆସି ।
ତହିଁ ପଛେ ତାଳଧ୍ୱଜ ରଥ ଯେ ଅଇଲା
ଯହିଁରେ ବିଜେ କରିଛି ସୁମିତ୍ରାର ବଳା ।
ଏମନ୍ତେ ସୂରରଥ ଭୂମିରେ ଆସି ମିଳି
ବିଭୀଷଣ ଲକ୍ଷ୍ମଣ ରଥପରୁ ଉତ୍ତୁରି ।
ଦେଖିଣ ଓଳଗି ଯାଇ କଲେ ଭ୍ରଥାର
ଶତ୍ରୁଘ୍ନ ସହିତେ ଲକ୍ଷେକ ନୃପବର ।
ଲକ୍ଷ୍ମଣ ବିଭୀଷଣ ଅଙ୍ଗଦ ସୁଗ୍ରୀବର
ପାଞ୍ଚଶ ଯୂଥପତି ଯେ ମଲ୍ଲ ମହାମଲ୍ଲ ।
ସମସ୍ତେ ଆସିଣ ତହିଁ ମାନ୍ୟଧର୍ମ କଲେ
ଶ୍ରୀରାମ ସୀତା ଚରଣେ ସର୍ବେ ଓଳଗିଲେ ।
ମନ୍ତ୍ରୀ ଅମାନାତ୍ୟ ପରିବାରି ଲୋକମାନେ
ନଗ୍ର ପୁର ନରନାରୀ ଯେ ଯାହା ବିଧାନେ ।
ଜନନୀମାନେ ସମସ୍ତେ ଆଗସରି ଯାନ୍ତି
ପରିବାରୀମାନେ ସର୍ବେ ବେଢ଼ିଣ ଅଛନ୍ତି ।
ଲୋକଙ୍କର ଗହଳ ସେଠାରେ ଲେଖାନାହିଁ
ଭୂମିରେ ନନ୍ଦିଘୋଷ ରଥ କଲେ ନେଇ ।
ଜଗନ୍ନାଥ ରଥ ଯେସନେ ସିଂହଦ୍ୱାରେ ରହି
ସ୍ତୁତି କରୁଅଛନ୍ତି ସମସ୍ତ ଲୋକ ତହିଁ ।

ସେସନ୍ତ ନନ୍ଦିଘୋଷ ରଥ ଶ୍ରୀରାମଙ୍କ ଯାନ
ଚଉକତି ପଟୁଆରି ବେଢ଼ିଛନ୍ତି ସୈନ୍ୟ ।
ଯେତେବେଳେ ଭୂମିଗତ ହେଲା ସୂରରଥ
ତଳକୁ ଓହ୍ଲାଇଲେ ଯେ ସଇନ ସମସ୍ତ ।
ବାନର ଭାଲୁ ରାକ୍ଷସ ନର ସର୍ବେ ଠୁଳ
ଲକ୍ଷେ ନୃପତିଙ୍କର ସଙ୍ଗରେ ହେଲେ ମେଳ ।
ମିଶାମିଶି ହୋଇଗଲେ ସୂରଜାତି ଆଠ
ଆଲୋକ ହୋଇଲା ପୁଣି ତେଡ଼େ ମହାରାଷ୍ଟ୍ର ।
ବିବିଧ ବିନୋଦରେ ବାଜଇ ମୋହାଗୋଳ
ଆକାଶରେ ଥାଇଣ ଦେଖନ୍ତି ଦିଗପାଳ ।
ନନ୍ଦିଘୋଷ ବିମାନ ଉପରେ ରାମଥିଲେ
ସୀତାଙ୍କ ହସ୍ତ ଧରି ତଳକୁ ଓହ୍ଲାଇଲେ ।
ଲକ୍ଷ୍ମଣ ସୁଗ୍ରୀବର ବିଭୀଷଣ ନୃପତି
ଅଙ୍ଗଦ ହନୁମନ୍ତ ଯେ ଜମ୍ବୁବ ପ୍ରଭୃତି ।
ରଥ ଉପରୁ ଶ୍ରୀରାମ ତଳେ ବିଜେକଲେ
ଦେଖିକରି ଯୁବତୀଏ ହୁଳହୁଳି ଦେଲେ ।
ଭରତ ଶତ୍ରୁଘ୍ନ ପୁଣିହିଁ ଓଳଗିଲେ
ଆପଣେ ଶ୍ରୀହସ୍ତେ ଧରି ଶ୍ରୀରାମ ତୋଳିଲେ ।
ସୀତା ଶ୍ରୀରାମ ଚରଣେ କଲେ ନମସ୍କାର
ଲକ୍ଷ୍ମଣ ଶତ୍ରୁଘ୍ନ ଭରତ ନାମେ ବୀର ।
ମାତାମାନେ ଯାଇ ହେଲେ ଶ୍ରୀରାମର ପାଶ
ଚାତକ ଯେସନେ ଗଗନ ପାଣି କରେ ଆଶ ।
ତେସନ ପ୍ରକାରେ ହୋଇଲେକ ମାତୃଗଣ
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ପୁଣ ।
କଇକେୟୀଙ୍କ ଚରଣେ ନମସ୍କାର କଲେ ।
ପଛନ୍ତେ ସୁମିତ୍ରା କୌଶଲ୍ୟାଙ୍କୁ ଓଳଗିଲେ ।
ସକଳ ଜନନୀଙ୍କି ଓଳଗିହେଲେ ପୁଣ
କଳାବତୀ ମାତା କହେ ରାମ ଆଗେ ଜାଣ ।
କରେ ଗୁଣନିଧି ଶ୍ରୀରାମଚନ୍ଦ୍ର ମୋହର
କାହିଁ ଅଛନ୍ତି ଜନନୀ ମାଳାବତୀ ତୋର ।
ଶ୍ରୀରାମ ବୋଲେ ମାତା ପିତା ସଙ୍ଗେ ଗଲେ
କୈକେୟୀମାତା ସକାଶେ ଏ ସମ୍ପଦ ମୋରେ
କୈକେୟୀ ଜନନୀ ଗୁଣ ଶୁଝି ନ ପାରିବି
ମୋରେ ଏଡ଼େ ଯଶ ତାଙ୍କର ଯୋଗୁଁ ଲଭି ।
କଳାବତୀ ବୋଲେ ରାମ କମ୍ପା ଏହା କହୁ
ବନକୁ ପେଷିଣ ଉପକାରୀ ହିନା ସେହୁ ।

Digitized by PPRACHIN, SOA

ଶ୍ରୀରାମ ବୋଲନ୍ତି ସେହି ମୋର ଗର୍ଭଧାରୀ
ମୋତେ ଏତେକ ଯଶ ତାହାର ଲାଗି କରି ।
ଦେବେ ଦୁଃଖି ହେଲେ ବ୍ରହ୍ମା ବିଷ୍ଣୁ ପୁରନ୍ଦର
ବାନରଙ୍କୁ ଘେନ ମୁଁ ଦଳିଲି ଦୈତ୍ୟବଳ ।
ମଲେ ଗଲେ ଦେଖିବାକୁ ଅପୂର୍ବ ସେ କଥା
ସତ୍ତଷଠି ପୁରୁଷେ ମୋ ପିତା କହେ କଥା ।
ଦଶରଥ ମହାରାଜା କୋଳ ମୋତେ କଲେ
ମାଳାବନ୍ତୀ ହସ୍ତଧରି ସ୍ୱର୍ଗେ ଚଳିଗଲେ ।
ଭରଥ ଶତ୍ରୁଘନ ଯେ ରହିଲେ ରାଜ୍ୟରେ
ସେ ପୁଣି ପ୍ରବେଶ ହେଲେ ମୋହର ସଙ୍ଗରେ
କଳାବନ୍ତୀ ବୋଲେ ପୁତ୍ର ବଧୂ ଏକ ଗଲା
ଅଇଲା ବେଳକୁ ଦୁଇଟି କେମନ୍ତେ ହେଲା ।
ଶ୍ରୀରାମ ବୋଇଲେ ମାତ ମୋରଠାରୁ ଶୁଣ
ଜନକ ଦୋହିତାଙ୍କୁ ରାବଣ ନେଲା ପୁଣ ।
ଯେତେବେଳେ ରାକ୍ଷସ ବଳକୃତ କରିଲା
ସେତେବେଳେ ଜାନକୀ ଯେ ଅଗ୍ନିରେ ପଶିଲା
ନିଜ ରୂପ ରଖିଣ ପ୍ରକାଶ ମାୟା ରୂପ
ସେ ରୂପ ଘେନଗଲା ରାକ୍ଷସ କଉଣୋପ ।
ରାବଣ ମାରି ଯେତେବେଳେ ସୀତା ଆଣିଲୁ
ନର ବାନର ରାକ୍ଷସ ଦେବଙ୍କୁ ଲୋଡ଼ିଲୁ ।
ଋଷିଗଣ ନାଗଗଣ ଶିବଗଣ ତୁଲେ
ଅଗ୍ନିରେ ପଶେ ଜନକ ସୁତା ତେତେବେଳେ
ଅଗ୍ନିରୁ ନିଜରୂପ ହୋଇଲା ପରକାଶ
ମାୟାରୂପ ଅଗ୍ନିରେ ଗୁପ୍ତ ହେଲା ବିଶେଷ ।
ଅଇଲାବେଳେ ମାତଗୋ ମୋତେଯା ଶଦେଲେ
ତୁମ୍ଭର ଦାସୀକି ସଙ୍ଗେ ନିଅ ହେ ବୋଇଲେ
ତାଙ୍କ ବୋଲେ ମାୟା ସୀତା ସଙ୍ଗରେ ଆଣିଲି
ତୁମ୍ଭ ପଚାରିବାରୁ ମୁଁ ସନ୍ଦେହ କହିଲି ।
କେତେ ପ୍ରକାରେ ବୁଝାଇ କହିଲୁ ରଘୁମଣି
କେବେହେଁ ନିବର୍ତ୍ତି ନୋହେ ଭରଥ ଜନନୀ
ଶୁଣିଣ କଳାବତୀ ମାତା ବୋଲନ୍ତି ବଚନ
ଚଉଦ ବର୍ଷ ଅଷ୍ଟମାସ ହୋଇଲା ପୂର୍ଣ ।
ବଡ଼ ମାସରେ ପନ୍ଦର ବର୍ଷ ଦୁଇମାସ
କୈକେୟୀ ଏତେଦିନ କରିଛି ବଡ଼ ଶୋକ ।
କହିଲେ ଶ୍ରୀରାମ ଲକ୍ଷ୍ମଣ ସୀତା ମୋ କାହିଁ
ତାହାକୁ ଦେଖିଲେ ତୋଷ ହେବମୋରଦେହୀ
ଶୁଣି ରାମ ଲକ୍ଷ୍ମଣ ଜାନକୀ ଚଳିଗଲେ
କୈକେୟୀଙ୍କର ଚରଣେ ଓଳଗି ହୋଇଲେ ।
ବୋଇଲେ ଜନନୀ ତୋର ସିନା ଅଟେ ମୁହିଁ
ମୋରଠାରେ ସୁଦୟା କର ଗୋ ଏବେ ତୁହି
କୈକେୟୀ ବୋଇଲେ ପୁଅ ବହୁ ନିନ୍ଦା ହେଲା
ନିନ୍ଦନରୁ ମୋର ମନ ଥୟ ନୋହେ ବଳା ।
ଭରଥ ରାଜା ନୋହି ରହିଲା ନିମଗ୍ନରେ
ତେତେବେଳୁଁ ଜାଣିଲି ମୁଁ ଏକ ଅଙ୍ଗତୋରେ
ଶ୍ରୀରାମ ବୋଇଲେ ମାତା ପିତା ଦୁଇଜଣ
ଜନମ କରି ପୁତ୍ରକୁ କରନ୍ତି ପାଳନ ।
ବିଚାରନ୍ତି ବିଦ୍ୟାବନ୍ତ କରିବା ପୁତ୍ରକୁ
କୁଳ ଉଜ୍ଜ୍ୱଳ ହୋଇବ ପାଳିବ ଆମ୍ଭଙ୍କୁ ।
ଏତେ ବୋଲି ବିଦ୍ୟାଗୁରୁ ପାଶେ ନେଇଦେଇ
ମାଡ଼ ମାରିଣ ବିଦ୍ୟା ପଢ଼ାଉଥାନ୍ତି ସେହି ।
କାଳେ ବିଦ୍ୟାବନ୍ତ ହୋଇ ଗୁଣବନ୍ତ ସେହୁ
ପିତା ମାତାଙ୍କ ଗୁଣ ପ୍ରକାଶ କରେ ତହୁଁ ।
ଯେତେବେଳେ ବିଦ୍ୟା ପଢ଼େ ହୁଏ ବିରକତ
ବିଚାରଇ ମାତା ପିତା ଯେବେ ହୋନ୍ତେ ହତ
ତେବେ ମୁଁ ଏଥିରୁ ପାରି ହୋଇ ସୁଖିହୋନ୍ତି
ଏମନ୍ତ ବିଚାର ତାର ନ ରହଇ କିଛି ।
ବିଦ୍ୟାବନ୍ତ ଲୋକ ସିନା ହୁଅଇ ପ୍ରସିଦ୍ଧ
ସେହିରୂପେ ଆମ୍ଭ କଥା ହୋଇଲା ଗୋସିଦ୍ଧ ।
ଗଲାବେଳେ ମନଦୁଃଖ ଆସିଲାରେ ତୋଷି
ଏମନ୍ତ ବୋଲି ଶ୍ରୀରାମ କହିଲେ ପ୍ରଶଂସି ।
ଶୁଣିଣ କୈକେୟୀ ମାତା ମନରେ ସୁଖି ହେଲା
ଶ୍ରୀରାମ ଜାନକୀଙ୍କି କୋଳରେ ବସାଇଲା ।
ଶ୍ରୀଅଙ୍ଗ ଆଉଁସିଣ ମୁଖରେ ଚୁମ୍ବଦେଲେ
ଏଥର ମୁଁ ସୁଖି ହେଲି ବୋଲିଣ ବୋଇଲେ
ଏଥୁଅନନ୍ତରେ ଶୁଣ ଆଗୋ ଭଗବତୀ
କୌଶଲ୍ୟାଙ୍କ ପାଦରେ ଶ୍ରୀରାମ ଓଳଗନ୍ତି ।
ଲକ୍ଷେ ରାଜାଙ୍କୁ ଶ୍ରୀରାମ କୃତାଞ୍ଜଳି ହେଲେ
ନଗ୍ରର ନରନାରୀଙ୍କି ବୁଝାଇ କହିଲେ ।
ସାମନ୍ତ ପାତ୍ର ଆସିଣ ମାନ୍ୟ ଧର୍ମ କଲେ ।
ଶ୍ରୀରାମ ପାଦେ ଭରତ କଟାଉ ସମର୍ପିଲେ ।
କରପତ୍ର ଯୋଡ଼ିଣ ଭରଥ ବୋଇଲେ ସ୍ୱାମୀ
ଲକ୍ଷ୍ମଣ ହେଲେ ତୁମ୍ଭ ସଙ୍ଗରେ ବନଗାମୀ ।

ସେହୁ ସେ ସାଧୁ ଅଟଇ ସୁମିତ୍ରାର ସୁତ
ତାହାର ଜୀବନ ଧନ୍ୟ ଧନ୍ୟ ହୋଇଲା ତ ।
ମୁହିଁ ମହାପାପୀ ଅଟେ ସ୍ୱାମୀରେହୋଇରହା
ପୂର୍ବ କର୍ମରେ ମୁହିଁ ଯେ ଅର୍ଜିଅଛୁ ଏହା ।
ଭରତ ବଚନ ଶୁଣି ଶ୍ରୀରାମ ଗୋସାଇଁ
ବୋଇଲେ ଦେବତାଏ କହିଲେ ଯାହା ତହିଁ
ଲକ୍ଷ୍ମଣ ଅନନ୍ତ ଅଟେ ସବୁଦିନ ମୋର
ମୋତେ ସେବା କରି ସେ ଅଛଇଁ ନିରନ୍ତର ।
ତୁମ୍ଭେ ତ ଆୟୁଧ ମୋର ସୁଦର୍ଶନ ଚକ୍ର
ଶତ୍ରୁଘନ ଅଟେ ମୋ ଡାହାଣ ହାତ ଶଙ୍ଖ ।
ଏ ଜନ୍ମରେ ଆୟୁଧ ମୁଁ ନ ଧରିଲି ଯେଣୁ
ତୁମ୍ଭ ଦୁହିଁଙ୍କୁ ଘେନି ମୁଁ ଜନ୍ମ ହେଲି ତେଣୁ ।
ଦେବତାଏ ମୋତେ ଯେ ଏଥିରେଜନ୍ମ କଲେ
ଦୈତ୍ୟର ସକାଶେ ସ୍ୱର୍ଗେ ରହି ନ ପାରିଲେ
ତେଣୁକରି ବନକୁ ମୁଁ କରିଲି ଗମନ
ରାକ୍ଷସ ମାରି ଦେବଙ୍କୁ ସ୍ୱର୍ଗ ଦେଲି ପୁଣ ।
ଆମ୍ଭ ଦୁହିଁଙ୍କ ଆଦେଶ ସହଇ ଲକ୍ଷ୍ମଣ
ସେହିଟି ମୋହର ସାକ୍ଷୀ ଜାଣ ତୁମ୍ଭେ ପୁଣ ।
ଶୁଣିଣ ଭ୍ରାତାର ଯେ ଓଳଗି ହୋଇଲା
ଶ୍ରୀରାମ କହିବାରୁ ମନରେ ତୋଷ ହେଲା ।
ଭରତ ବଚନ ଶୁଣି ଶ୍ରୀରାମ ଗୋସାଇଁ
ଭାଇଙ୍କି କୋଳ କରିଣ ଉଠିଲେ ବୋବାଇ ।
ଶ୍ରୀରାମ କାନ୍ଦନ୍ତି କାନ୍ଦନ୍ତେ ଯେ ଚାରି ଭ୍ରାତ
ଶୁଣି ବିଭୀଷଣ କାନ୍ଦେ କାନ୍ଦେ ହନୁମନ୍ତ ।
ଅଙ୍ଗଦ ନଳ ନୀଳ ସଉରି ସେନାପତି
ଜାମ୍ବବ ତାରକ୍ଷ ମନ୍ତ୍ରୀ ବସନ୍ତ ପ୍ରଭୃତି ।
ଶତ୍ରୁଘନ ଗନ୍ଧ ମାରଦନ କାଳଞ୍ଜନ
ସୁମନ୍ତ ବଶିଷ୍ଠ ଜାବାଳି ସୁଶୋଧନ ।
ଲକ୍ଷେକ ନୃପତି ହୋଇଲେ ବିକଳ ଭାବ
ଗବୟ ଗବାକ୍ଷ ଯେ କାଶ୍ୟପ ବାମଦେବ ।
ଋକ୍ଷ ବାନରମାନେ ଯେ ଆବର ରାକ୍ଷସ
ଶ୍ରୀରାମ ରୋଦନେ ପାଇଲେକ ମନେ ତ୍ରାସ ।
ସମସ୍ତଙ୍କ ନୟନରୁ ବହେ ଅଶ୍ରୁଧାର
ମାତାମାନେ ରୋଦନ ଯେ କରନ୍ତି ଅପାର ।
ସୀତସ୍ୱାସହିତରେ ଅଯୋଧ୍ୟା ନରନାରୀ
ଶ୍ରୀରାମଚନ୍ଦ୍ର ରୋଦନ୍ତେ ହା ହା କାର କରି ।

ଗୁରୁ ମନ୍ତ୍ରୀଙ୍କ ଘେନିଣ ବଶିଷ୍ଠ ତଥାର
ତଥାରନ୍ତେ ଶୋକ ସମ୍ଭାଳିଲେ ରଘୁପଧୀର ।
ଶତ୍ରୁଘନ ବୋଇଲେ ଶୁଣ ହେ ଦେବ ସ୍ୱାମୀ
ସୁକାସନେ ବିଜେକର ପ୍ରଭୁ ଅନ୍ତର୍ଯ୍ୟାମୀ ।
ରାମ ବୋଇଲେ ତୋତେ ବୁଦ୍ଧିରେ ନାହିଁବଡ଼
ସବୁଠାରେ ସିଦ୍ଧି ରଖେ ସୁମିତ୍ରା ଠାକୁର ।
ଏତେବୋଲି ଶ୍ରୀରାମ ସୁକାସନରେ ବସି
ରତ୍ନ ହାନ୍ଦୋଳାରେ ବସେ ସୀତାଶ ଭ୍ରୁକେଶୀ
ଆଗରେ ଜାନକୀ ପଛଭାଗେ ମାୟା ସୀତା
ତହିଁ ପଛେ ମାତାଗଣ ଦାସୀଗଣେ ସ୍ରୋତା ।
ତହିଁ ପଛେ ରାମ ତାଙ୍କ ପଛେ ତିନି ଭାଇ
ରତ୍ନ ପାଦୁକା ଶ୍ରୀରାମ ପୟରେ ଲଗାଇ ।
କଳା ଧଳା ନୀଳ ଯେ ବସନ୍ତ ବର୍ଣ୍ଣ ପୁଣି
ଗୃହଛତ୍ର ଟେକିଲେ ଜାନକୀ ଆଗେ ଜାଣି ।
ଯୋଡ଼ା କାହାଳି ତୁରି ଯେ ଶୀରବାଜା ବାଜେ
ଆଗରେ ଜନକ ହୋହିତା କରିଲେ ବିଜେ ।
ସକଳ ନୃପତି ପୁଣ ରଥି ସେନାପତି
ସମସ୍ତେ ଶ୍ରୀରାମଙ୍କର ପଛରେ ଚଳନ୍ତି ।
ଯେଉଁ ସ୍ଥାନରେ ପାଦୁକା ରାଜାହୋଇଥିଲେ
ସେଠାରେ ଶ୍ରୀରାମ ଯାଇ ପ୍ରବେଶ ହୋଇଲେ
ଦେଖିଲେ ସେହି ମନ୍ଦିର ଅପୂର୍ବ ମଣ୍ଡିଣି
ସେଥିରେ ବିଜେକଲେ ଯାଇଣ ରଘୁମଣି ।
ଜାନକୀ ହାନ୍ଦୋଳାରୁ ଓହ୍ଲାଇ ବେଗେ ଗଲେ
ମାୟାସୀତା ଘେନିଣ ସେ ନଗ୍ରରେ ମିଳିଲେ
ସୀତା ପାଶୁଁ ଦାସୀଗଣ କହୁଁ ଗଲେ ଚଳି
ସେହି ନଗ୍ର ଭିତରେ ରହିଲେ ଯାଇଁକରି ।
ଶ୍ରୀରାମ ଉଠିଣ ମନ୍ଦିରରେ ଯାଇ ଦେଖି
ଗୋଟିଏ ମନ୍ଦିର ଋଷି ମଠପ୍ରାଏ ଦିଶି ।
ବିଭୂତି ଫଳମୂଳ କମଣ୍ଡଳରେ ପାଣି
ଋଷି ଆଶ୍ରମ ପ୍ରାୟ ଶ୍ରୀରାମ ତାକୁ ମଣି ।
କୃଷ୍ଣାଜିନ ଆସନ ତହିଁ ମଧ୍ୟରେ ଛନ୍ତି
ଦେଖିଣ ଶ୍ରୀରାମ ରଣ ବିଚାର କରନ୍ତି ।
ମୋର ବୋଲେ ଭରତ ଯେ ନୃପତି ନୋହିଲା
ଅଗସ୍ତି କହିବା କଥା ପ୍ରତ୍ୟକ୍ଷେ ଦେଖାଗଲା ।
ତପୁସୀର ବେଶରେ ଏଥିରେ ଦିନ ନେଲା
ନୋହିଲେ କି ଋଷିଙ୍କି ଏଥିରେ ରଖିଥିଲା ।

ମାତାଗଣ ମଧ୍ୟରେ ବିଜୟ କଲେ ଯାଇ
ବୋଇଲେ ସର୍ବ ଜନନୀ ଶୁଣ ମୋର ତହିଁ ।
ସକଳ ମନ୍ଦିର ତ ଦିଶଇ ଶୋଭାବନ
ଗୋଟିଏ ମନ୍ଦିର କମ୍ପା ଋଷିର ଆଶ୍ରମ ।
କଳାବତୀ ବୋଇଲେ ଶୁଣ ହେ ଜ୍ୟେଷ୍ଠ ପୁତ୍ର
ପାଦୁକାକୁ ଆଣି ଏଥିରେ ରାଜା କଲେ ଭରଥ ।
ସକଳ ତେଜ୍ୟାକରି ତୋହର ନାମ ଜପି
ବଳକଳ ପିନ୍ଧି ଜଟା ବିଭୂତି ଅଙ୍ଗେ ମାଖି ।
ମୃଗଛାଲ ଉପରେ ବସିଣ ତପ କଲା
ରାଜ୍ୟର ଭଲମନ୍ଦ କିଛି ସେ ନ ବୁଝିଲା ।
ଶୁଣିଣ ଶ୍ରୀରାମଚନ୍ଦ୍ର ବଚନ ବୋଲନ୍ତି
ଲକ୍ଷେ ରାଜାଙ୍କୁ ବଳ ଆଣିଲ କଏ ଏଥି ।
ଜନନୀ ବୋଇଲେ ତୁମ୍ଭ ବଣ ପୁର ଯିବାରୁ
ଭରଥ ଶତ୍ରୁଘନକୁ ଭେଦିଲେ ସେଠାରୁ ।
ଲକ୍ଷେ ରାଜାଙ୍କୁ ଯାଇ ଆଣିଲେ ଶତ୍ରୁଘନ
ସେବିଲୁ ଚଞ୍ଚଳ ହେଲା ଭରଥର ମନ ।
ଅନ୍ଧାରେ ବଜେ କରି ଜଗଇ ନଗରଗୋଟି
ଲକ୍ଷେ ରାଜାଙ୍କ ଅର୍ଦ୍ଦୋଳ ବଶିଷ୍ଠେ ସହିନ୍ତି ।
ଶ୍ରୀରାମ ବୋଲନ୍ତି ରାଜ୍ୟ କଏ ଭଜ କଲା
ଜନନୀ ବୋଲେ ଭରଥ ସକଳ ତିଆରିଲା ।
ତିନିଭାଇଙ୍କ ପାଇଁ ତିନୋଟି ନଗ୍ର କରି
ପିତାଙ୍କର ନଗ୍ରଗୋଟି ତୋ ପାଇଁ ତିଆରି ।
ରାଜ୍ୟ ପରିମଳ ପୁଣ କରିଅଛି ଜାଣ
ସମସ୍ତେ ଅଛନ୍ତି ସୁଖୀ ଶୁଣ ହେ ଶ୍ରୀରାମ ।
ଶ୍ରୀରାମ ବୋଲନ୍ତି ରାଜ୍ୟ କେ ପାଳିଲା ପୁଣି
କଳାବତୀ ବୋଲେ ଶୁଣରେ ପୁତ୍ରମଣି ।
ଯେଉଁ ମାତା ଲୀଳାବତୀ ପିତା ସଙ୍ଗେ ଗଲା
ଚଉଦ ବରଷ ରାଜ୍ୟ ସେହୁ ଯେ ପାଳିଲା ।
ଶ୍ରୀରାମ ବୋଇଲେ ଶତ୍ରୁଘ୍ନ ସଙ୍ଗତେ ମାତା
କମ୍ପା ରାଜ୍ୟ ଛାଡ଼ିଲା ଯାଜପୁର ଦୋହିତା ।
କଳାବତୀ ବୋଇଲେ ସକଳ ଦେବେ ଆସି
ପୁତ୍ରର ରଥେ ମାତାଙ୍କୁ କଲେ ଯେ ସାରଥି ।
ଶ୍ରୀରାମ ବୋଲନ୍ତି ଯୁଦ୍ଧ କେହୁ ଆସି କଲା
କେତେଦିନ ଏ ଠାବରେ ଯୁଦ୍ଧ ଯେ ହୋଇଲା
କଳାବତୀ ବୋଲେ ଯୁଦ୍ଧ ହେଲା ପାଞ୍ଚଦିନ
ଶତମୁଖା ରାବଣ ଯୁଝିଲା ଏଥୁ ଥାନ ।

ଶ୍ରୀରାମ ବୋଇଲେ ଭରତ କମ୍ପା ନ ଯୁଝିଲା
କଳାବତୀ ବୋଲେ ଭରତ ରାଜ୍ୟରେ ନଥିଲା
ଅନ୍ଧାରି ବିଜୟ କଲା ଏକଦିନେ ଭରତ
ହନୁମନ୍ତ କହିଗଲା ଭରତକୁ ସଙ୍କେତ ।
ବୋଇଲା ଭାଇ ତୋର ଲକ୍ଷ୍ମଣ ଶକ୍ତିଭେଦ
ରାବଣର ସଙ୍ଗରେ ଶ୍ରୀରାମ କଲେ ଯୁଦ୍ଧ ।
ତୁମ୍ଭ ଭାଉଜ ଜାନକୀଙ୍କି ରାବଣ ନେଲା
ଜାନକୀ ଛଳେ ଶ୍ରୀରାମ ଲଙ୍କାଗଡ଼ ଗଲା ।
କପିବଳ ଘେନି ସମୁଦ୍ରରେ ବନ୍ଧ ବାନ୍ଧି
ରାବଣ ବଂଶ ମାରି ତା ସଙ୍ଗେ ହୋଇ ବାଦୀ ।
ସେ କଥା ଶୁଣି ଭରତ ରାଜାମାନଙ୍କୁ ଘେନି
ପାତ୍ରମନ୍ତ୍ରୀ ବଶିଷ୍ଠ ସଙ୍ଗରେ ଗଲେ ପୁଣି ।
ଏକମାତ୍ର ଶତ୍ରୁଘନ ରହିଲାକ ପୁଣ
ଏହି ସମୟେ ଅସୁର ଆସି କଲା ରଣ ।
ଜିଣି ନ ପାରି ଅସୁର ପଳାଇଣ ଗଲା
ତାର ସଙ୍ଗେ ଶତ୍ରୁଘନ ଗୋଡ଼ାଇଣ ଗଲା ।
ଶ୍ରୀରାମ ବୋଇଲେ ରାଜ୍ୟ କେ ରଖିଲା ଜନନୀ
ଶୁଣିଣ ମାତା କହନ୍ତି ପଶୁରାମ ମୁନି ।
କଳାବତୀ ବୋଲେ ପୁତ୍ର ସମସ୍ତେ ଯିବାରୁ
ପଶୁରାମ ମୁନି ଯେ ଅଇଲେ ପର୍ବତରୁ ।
ନଗ୍ରେ ବୁଲି ସମସ୍ତଙ୍କୁ କହି ଶବଦାଇ
ଚିନ୍ତା ନ କରିଣ ସର୍ବେ ରହ ସୁଖୀ ହୋଇ ।
ଶୀତଳ ଗିରି ପରେ ଅଛି ମୁଁ ନଗ୍ର ଜଗି
ଶ୍ରୀରାମ ଅଇଲେ ମୁଁ ଯିବି ଏଥିରୁ ବେଗି ।
ଶୁଣି ପ୍ରଜାଜନମାନେ ସନ୍ତୋଷ ହୋଇଲେ
ସେଠାରୁ ପଶୁରାମ ଆମ୍ଭର ପୁର ଗଲେ ।
ବୋଇଲେ କାଶୀରାଜା ଦୋହିତା କଳାବତୀ
ଶ୍ରୀରାମ ଆସିବା ଯାଏ ପ୍ରଜା ପାଳ ଏଥି ।
ଆମ୍ଭଙ୍କୁ ବୋଧ କରି ଶୀତଳ ଗିରି ଗଲେ
ପକ୍ଷକେ ଦିନେ ସେହୁ ବୁଲନ୍ତି ଏହୁ ପୁରେ ।
ତାହାଙ୍କର ବଚନ ପାଳନ୍ତି ପ୍ରଜାଜନ
ସେ ମୁନିଛନ୍ତି ଶୀତଳ ଗିରିରେଟି ପୁଣ ।
ଶୁଣିଣ ଶ୍ରୀରାମ ହେଲେ ହରଷ ମନରେ
ସେହି ମୁନି ପିତା ମୋର ବୋଇଲେ ତୁଣ୍ଡରେ
ଜାନକୀ ବୋଇଲେ ତୁମ୍ଭେ ହାନ୍ଦୋଳାରେ ବସ
ପଶୁରାମଙ୍କୁ ଦର୍ଶନ କରିଲା ହେବ ତୋଷ ।

ସକଳ ମାତାଗଣେ ତିନି ଯାଆଙ୍କୁ ଘେନି
ଆଗରେ ବିଜୟ କଲେ ଜନକ ଦୁଲଣୀ ।
ପଛରେ ଶ୍ରୀରାମ ଭରତ ଲକ୍ଷ୍ମଣ ଶତ୍ରୁଘ୍ନ
ରଥି ସେନାପତି ମଲ୍ଲ ମହାମଲ୍ଲ ପୁଣ ।
ଯୁଥପତି ରାଜାଗଣେ ସର୍ବେ ବିଜେ କଲେ
ଶୀତଳ ଗିରିରେଯାଇ ପ୍ରବେଶ ହୋଇଲେ ।
ଗହଳରେ ଶବଦ ଶୁଭଇ ଅତି ଟାଣ
ମେରୁଗିରି ଚମକଇ ଭୁଣ୍ଡ ଗହଳେଣ ।
ଯମଦଗ୍ନି ସୁତ ଗିରିପରେ ରହିଥିଲେ
ଶବଦ ଶୁଣିଣ ଧନୁ କୁଠାର ଧଇଲେ ।
ତମ୍ବା ଚକ୍ର ପ୍ରାୟେ ନେତ୍ର ବୁଲଇ ତାଙ୍କର
କ୍ରୋଧେ ଜରଜର ହେଲେ ରେଣୁକା କୁମର
ପର୍ବତ ଉପରୁ ସେହୁ ଆସନ୍ତି ଓହ୍ଲାଇ
ଭୟେ ନର ବାନର ଅଲଗା ହୋଇ ରହି ।
ରାଜାଗଣମାନେ ସର୍ବେ ପଳାଏ ପଛକୁ
ବୋଇଲେ ଶ୍ରୀରାମଚନ୍ଦ୍ର ରଖ ହେ ଆମ୍ଭଙ୍କୁ
ଅଇଲେ ପର୍ଶୁଧର ମାରିବେ ଏହିକ୍ଷଣି
କ୍ରୋଧ ହୋଇ ଆସୁଅଛି ଆମ୍ଭ ଶତ୍ରୁ ପୁଣି ।
ଶ୍ରୀରାମ ବୋଇଲେ ତୁମ୍ଭେ ନ ଯାଅ ପଛକୁ
କିଛି ଚିନ୍ତା ନ କର ରେଣୁକା କୁମରକୁ ।
ଏହି ସମୟେ ପ୍ରବେଶ ହେଲେ ପର୍ଶୁରାମ
ହାନ୍ଦୋଳରୁ ଉତୁରି ଜାନକୀ ଦେବୀ ପୁଣ ।
ତିନିଭଗ୍ନୀ ଘେନିଣ ସେ ଚରଣେ ନମିଲେ
ଦେଖିଣ ପର୍ଶୁଧର ମନରେ ତୋଷ ହେଲେ
ବୋଇଲେ ଦୁଲଣୀ ଲୋ ଅକ୍ଷୟେ କ୍ଷୟ କଲୁ
ସ୍ୱର୍ଗର ଦେବତାଙ୍କୁ ନିଶ୍ଚିନ୍ତରେ ରଖିଲୁ ।
ଏବେ ସ୍ୱାମୀ ସଙ୍ଗତେ ନିଶ୍ଚିତ ହୋଇଥାଅ
ଦୁଇପୁତ୍ର ଜନ୍ମକରି ବୈକୁଣ୍ଠ ଯାଅ ।
ମାତାଗଣମାନେ ଯାଇ ନମିଲେ ଚରଣ
ଦେଖିଣ ପର୍ଶୁରାମ ବୋଲନ୍ତି ତାଙ୍କୁ ପୁଣ ।
ରତ୍ନପୁତ୍ର ଅଇଲେ ତୁମ୍ଭର ଏବେ ପୁଣି
ଜମ୍ବୁଦ୍ୱୀପେ ଶ୍ରୀରାମ ହେଲେ ମଉଡ଼ମଣି ।
ଏବେ ନିଶ୍ଚିନ୍ତ ହେଲ ଚିନ୍ତା ମନରୁ ଗଲା
ଯାଅ ନିଜପୁର ବୋଲି ଋଷି ଆଜ୍ଞା ଦେଲା ।
ଏଥୁଅନ୍ତେ ଯେ ଶ୍ରୀରାମଚନ୍ଦ୍ର ପୁଣି
ତିନିଭାଇ ଘେନି ଶ୍ରୀରାମ ଚରଣେ ନମି ।
ପର୍ଶୁଧର ବୋଇଲେ ସରିଲା ବନବାସ
ଅକ୍ଷୟ ଯଶ କରିଣ ରଖିଲ ତ୍ରିଦଶ ।
ଅଯୋଧ୍ୟାରେ ଅଭିଷେକ ହୋଇ ତୁମ୍ଭେଥାଅ
ଆଶ୍ରମକୁ ଯାଉଛୁ ହେ ଦଶରଥ ପୁଅ ।
ଶ୍ରୀରାମ ବୋଇଲେ ମୋର ଅଭିଷେକ ସାରି
ତୁମ୍ଭର ଆଶ୍ରମକୁ ତୁମ୍ଭେ ଯିବ ତପସ୍ୱିରି ।
ଶୁଣିଣ ପରଶୁଧର ସନ୍ତୋଷ ହୋଇଲେ
ସୁକାସନେ ବିଜେକରି ଅଯୋଧ୍ୟାକୁ ଗଲେ ।
ଅଇଲେ ସକଳ ବଳ ରାମ ଚାରିଭାଇ
ମାତାଗଣଙ୍କ ସଙ୍ଗେ ବଇଦେହୀ ଆସଇ ।
ଶୁଣ ଗୋ ଶାକମ୍ବରୀ ଶ୍ରୀରାମ କଥା ରସ
ସେ ପୁରି ନରନାରୀ ସମସ୍ତେ ହରଷ ।
କୈକୟୀଙ୍କୁ ଅହନ୍ତା ସକଳ ରାଣୀଙ୍କର
ଯେତେବେଳେର ଅଇଲେ ଶ୍ରୀରାମ ତାଙ୍କର ।
ସବୁଙ୍କର ହୃଦୟରୁ ଛାଡ଼େ ହିଂସାଭାବ
ପୁତ୍ରମୁଖ ଦେଖିବାରୁ ହୋଇଲା ସୁଲଭ ।
ଏକକୁ ଆରେକ ଦେଖି ସ୍ନେହଭାବ କରି
ମନ୍ଥଡ଼ର ଗେଲ ପୁଣି କହିଲେ ନ ସରି ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ପୁଷ୍ପକ ବିମାନକୁ କରୁଣା କରି ଚାହେଁ ।
ବୋଇଲେ ଯାନତୁରେ ଉତ୍ତର ଦିଗେ ଯାସି
କୁବେର ନିଧିପତି ଅଳକାପୁରବାସୀ ।
ସେ ତୋର ପୂର୍ବାପୂର୍ବେ ଅଟଇ ନାୟକତ
ମତ୍ତ ଗର୍ବେ ହରି ନେଲା ଲଙ୍କା ରାବଣତ ।
କେବଳ ପାପରେ ହେଲୁ ଅସୁର ବାହନ
ତୋହଠାରୁ ଦୋଷଗଲା ଶୁଣ ଆରେ ଯାନ
ଆମ୍ଭେ ତୋତେ ଅଣାଇଲୁ ଆସିବାକୁ ଘରେ
ଆମ୍ଭେ ପ୍ରବେଶ ହେଲୁ ଦେଖ ଆମ୍ଭର ପୁରେ
ଏବେ ତୋର ନିଜ ଆଶ୍ରମକୁ ଚଳିଯାଅ
ବ୍ରହ୍ମାଙ୍କର ଆଜ୍ଞାରେ କୁବେର ପାଶେ ଥାଅ ।
ଶୁଣି ପୁଷ୍ପକ ବିମାନ ଗଗନେ ଚଳିଲା
ଅଳକାପୁରେ ଯାଇଣ ପ୍ରବେଶ ହୋଇଲା ।
ଯାନଦେଖି ଧନପତି ବୋଲନ୍ତି ବଚନ
କହେ ପୁଷ୍ପକ ତୁ କିମ୍ପା ଅଇଲୁ ଏ ସ୍ଥାନ ।
ନିଧିପତି ବୋଲନ୍ତି ଶୁଣ ମୋର ବଚନ
ବାହୁଡ଼ି ଅଯୋଧ୍ୟାକୁ ଯାଅରେ ବେଗେ ଯାନ

ଯେତେକାଳ ଶ୍ରୀରାମ ଯେ ଥିବେ ମୃତ୍ୟୁପୁରେ
ତେତେକାଳ ଶ୍ରୀରାମଙ୍କୁ ବହିବୁ ତୁ ଶିରେ ।
ଶ୍ରୀରାମ ପରମବ୍ରହ୍ମ ନ ଜାଣୁ କି ରଥ
ଏହି ଶ୍ରୀରାମ ଅଟନ୍ତି ବୈକୁଣ୍ଠର ନାଥ ।
ସର୍ବଦେବ ବିସ୍ତାରଣ ଦୈତ୍ୟକୁଳ କାଳ
ସୁରଗଣ ରଖିବାକୁ ଦଶରଥ ବାଳ ।
ପାତକ କରିବାରୁ ଅସୁର ମୋତେ ନେଲା
ଚଉଦ ବର୍ଷଯୁଗ ତୋ ଉପରେ ବସିଲା ।
ପାତକ କ୍ଷୟ ହେବାରୁ ହେଲୁ ଭାଗ୍ୟବାନ
ନାରାୟଣଙ୍କୁ ବୋହିବା ହୋଇଲୁ ଭାଜନ ।
ଯାଅ ତୁ ଅଯୋଧ୍ୟାକୁ ନ ରହ ଏଥି କ୍ଷଣେ
ଶୁଣିଲେ କୋପ ମୋତେ କରିବେ ସୁରଗଣେ
ଶୁଣି ଏହା ରଘୁବର କୁବେରକୁ ପୁଚ୍ଛି
କେବଣ ପାତକେ ମୋତେ ଅସୁର ନେଲାଟି
କୁବେର ବୋଲେ ସତର ବର୍ଷା ଯୁଗତଳେ
ଯେତେବେଳେ କଣ୍ଡୁ ଋଷି ହେଲେ ନାଶକରେ
ତେତେବେଳରେ ଗୋଲକମନୁ ଆଜ୍ଞା ଦେଲେ
କଣ୍ଡୁ ଋଷି ଶବକୁ ବହିବୁ ମସ୍ତକରେ ।
ସେ କଥାକୁ ନାସ୍ତି ତୁ କଲୁ ଯାନ ପୁଣ
ତେତେ ଶାପ୍ୟ ଦିହଲେ ଗୋଲକମୁନି ଜାଣ
ବୋଇଲେକ ଅସୁରକୁ ହେବ ଯାଇ ତୁହି
ଶ୍ରୀରାମଙ୍କୁ ବହିଲେ ପାତକ ହେବ ଦହି ।
ବୋଇଲୁ ଶ୍ରୀରାମ କେଉଁଠାରେ ଜାତ ହେବେ
କାହାପାଇଁ ନାରାୟଣ ମାନବ ହୋଇବେ ।
ମୁନି ବୋଇଲେ ବିଶ୍ରବା ଋଷିର ନନ୍ଦନ
ଅସୁର ରୂପ ଧରିବ ତା ନାମ ରାବଣ ।
ତିନିପୁର ଚଉଦ ଭୁବନ ସେ ଜିଣିବ
କୁବେରପୁରେ ଥିବୁ ତୋତେ ସେ ଧରି ନେବ
କେତେକାଳ ଅନ୍ତରେ ଶ୍ରୀହରି ହେବେ ଜାତ
ଦଶରଥ ରାଜାପୁତ୍ର ନାମ ରଘୁନାଥ ।
ରାବଣକୁ ମାରି ତୋ ଉପରେ ବିଜେକରି
ତେବେ ତୁ ମୋର ଶାପ୍ୟରୁ ହେବୁ ପାରିପାରି
ତୁ ବୋଲିବୁ କେତେକାଳ ହରିଙ୍କି ଦହିବି
ତେବେ ମୁଁ ଶକତି ଗତି ପାଇଣ ଆସିବି ।
ବୋଇଲେ ତ୍ରେତାଯୁଗେ ଏଗାର ସହସ୍ର ବର୍ଷ
ତୋ ଉପରେ ବସିବେ ଯେ ବୈକୁଣ୍ଠ ନାୟକ ।
ତେବେ ତୁ ସ୍ୱର୍ଗପୁରେ ଆସିବୁ ଯାନ ପୁଣି
ଧନପତି ସଙ୍ଗେ ରହିବୁ ନିଶ୍ଚଳ ଜାଣି ।
ସେ କଥାମାନ ଆସିଣ ମୋତେ ତୁ କହିଲୁ
କେତେଦିନ ଉତ୍ତାରେ ଅସୁର ପୁରେ ଥିଲୁ ।
ତୁ ଏବେ ଶ୍ରୀରାମଙ୍କର ହୋଇଲୁ ବାହନ
ଏ ପାପ ଭୋଗକରି ଯାଇଣ ଆସ ଯାନ ।
ଶୁଣିଣ ରଘୁବର ବାହୁଡ଼ି ଗଲା ଧାଇଁ
ଧାଇଁଣ ଅଯୋଧ୍ୟାରେ ଭେଟିଲା ଦାଶରଥି ।
ଦେଖିଣ ଶ୍ରୀରାମଚନ୍ଦ୍ର ବଶିଷ୍ଠଙ୍କୁ ପୁଚ୍ଛି
କେଉଁ କାରଣରେ ଯାନ ବାହୁଡ଼ି ଆସୁଛି ।
ଯୋଗବଳେ ଋଷିବର ଜାଣିଲେକ ତାହା
ବୋଲନ୍ତି ମହାମୁନି ଶୁଣ ହେ ରଘୁନାହା ।
ଦେବତାଙ୍କର ଭିଆଣ ଅଛି ପୂର୍ବ ବାଣୀ
ଯେତେକାଳ ଏଥେ ରହିବ ହେ ରାମ ପୁଣି ।
ଏ ରଥେ ଚଢ଼ି ତୁମ୍ଭେ ଦିଗ୍‌ବିଜୟ କରିବ
ସନ୍ଥଜନ ପାଳିଣ ଦୁଷ୍ଟଙ୍କୁ ନିବାରିବ ।
ଏସନକ ବୋଲିଣ ଭବିଷ୍ୟ ଅଛି ପୁଣି
କୁବେରଠାରୁ ବଳେ ନେଲା ଯେ ଲଙ୍କାମଣି ।
ରାବଣକୁ ମାରି ଏବେ ନେଲେ ରାମପୁଣ
ଏଥିକୁ କର୍ମା ଯାନ ଆସଇ ଲେଉଟିଣ ।
ଏତେବୋଲି କୁବେର ଲେଉଟାଇଲେ ବେଗେ
ତୁମ୍ଭେ ଶ୍ରୀରାମ ଯାନକୁ ସମ୍ଭାଳିବ ଏବେ ।
ଏସନକ ବାଣୀ ପୁଣି ବଶିଷ୍ଠ କହନ୍ତି
ରଘୁନାଥ ହରଷ ହୋଇଲେ ମନେ ଚିନ୍ତି ।
ସୁମନ୍ତ୍ର ମନ୍ତ୍ରୀବରଙ୍କୁ ତହିଁ ଆଜ୍ଞା ଦେଲେ
ଏ ଦେବ ଯାନକୁ ନେଇ ସମ୍ଭାଳ ବୋଇଲେ
ଆଜ୍ଞାପାଇ ମନ୍ତ୍ରୀବର ବେଗେ ଯାନ ନେଲା
ଅତି ଯତ୍ନ କରି ରଥ ଥୋଇଣ ଅଇଲା ।
ଏଥୁ ଅନନ୍ତରେ ତହିଁ କୈକେୟୀର ସୁତ
ଶ୍ରୀରାମଙ୍କୁ ଚାହିଁଣ ଯୋଡ଼ଇ ବେନି ହସ୍ତ ।
କାତର ହୋଇ ବୋଲଇ ସ୍ୱାମୀ ରକ୍ଷାକର
ଏବେ ସମ୍ଭାଳ ଦେଶ ତୁମ୍ଭର ରାଜ୍ୟଭାର ।
ଅନ୍ୟ ଏହା କହିବାକୁ ନୁହଇ ରାଜନ
ଚରଣ ପାଦୁକା ମୁଁ ବହିଲି ଏତେ ଦିନ ।
ଚଉଦ ବରଷ କଷ୍ଟ କହିଲେ ନ ସରି
ତନୁକ୍ଷୀଣ ହେଲା ଅନୁକ୍ଷଣେ ଚିନ୍ତାକରି ।

ଯେବେ ମୋହଠାରେ ପ୍ରଭୁ ଅଛୁ ଯେ ସଦୟ
ଆଜ ରଘୁନାଥ ହେବ ଏଥୁ ତୁମ୍ଭେ ରାୟ ।
ଭରଥ କହିବାରୁ ବଶିଷ୍ଠ ପିଠି ହୋନ୍ତି
ବାମଦେବ ଜାବାଳି ଯେ କଶ୍ୟପ କହନ୍ତି ।
ସୁଗ୍ରୀବର ବିଭୀଷଣ ଲକ୍ଷ୍ମଣ କହିଲେ
ଅଙ୍ଗଦ ହନୁମନ୍ତ ଜାମ୍ବବ ଜଣାଇଲେ ।
ସୁମନ୍ତ୍ର ସୁଷେଣ କୁନ୍ଦ କେଶରୀ ପ୍ରବୋଧି
ଶତ୍ରୁଘନ କହନ୍ତେ ହସିଲେ ଦୟାନିଧି ।
ମୁହିଁରେ ଭାଇ ଏବେ ହୋଇବ ଅଭିଷେକ
ଚୌଦବର୍ଷ ମୁହିଁ ଯେ ପାଳିଲି ପିତାସତ୍ୟ ।
ଅନୁକୂଳ ବିଚାରି ଯେ ଅଯୋଧ୍ୟାକୁ ଯିବା
ପିତା ନଗ୍ରେ ଶୁଭବେଳେ ଅଭିଷେକ ହେବା
ନନ୍ଦିଗ୍ରାମେ ଶତ୍ରୁଘନ ନିଶାଣ ପିଟାଅ
ବୋଲି ସବୁଲୋକ ତୁମ୍ଭେ ଅଯୋଧ୍ୟାକୁ ଯାଅ
ଚନ୍ଦବଚନ୍ଦ କରଣ ଉପରେ ଗୁନ୍ଦୁଆ
ସୁଗ୍ରୀବ ବିଭୀଷଣ ପାଇଁ ଉଆସ ବେଗେଭିଆ
ଏତେ ବୋଲି କହିଲେ ଯେ ଦଶରଥ ପୁଅ
ହାତୀ ରଥ ଘୋଡ଼ା ଶାଳ ଋକ୍ଷ କପି ଗୁହ ।
ଆବର ଯେତେକ ଆସି ଅଛନ୍ତି ଅସୁର
ସେମାନଙ୍କ ପାଇଁ ପୁର ନିର୍ମାଅ ସତ୍ୱର ।
ଆମ୍ଭେ ବିଜେ କରିବୁ ରହିଣ ଦନ ଚାରି
ଏମାନଙ୍କୁ ଅଯୋଧ୍ୟାରେ ରଖ ଯାଇକରି ।
ଶୁଣିଣ ଶତ୍ରୁଘନ ବୋଇଲେ ଦେବ ଶୁଣ
ଆଗହୁଁ ସକଳ କଥା ହୋଇଛି ଭିଆଣ ।
ରାଜା ପାଇଁ ନଗ୍ର ପାତ୍ରଙ୍କ ପାଇଁ ଉଆସ
ସୈନ୍ୟବଳ ରହିବାକୁ ଘର ଯେ ବିଶେଷ ।
ଋଷିମାନଙ୍କ ପାଇଁ ହୋଇଅଛି ତୋଟାଉଜ
ସବୁକଥା ଭିଆଣ ହୋଇଛି ରାମରାଜ ।
ଶ୍ରୀରାମ ବୋଇଲେ ତୁମ୍ଭେ ବେଗେ ଚଳିଯାଅ
ସମସ୍ତଙ୍କୁ ନିଶ୍ଚିନ୍ତ କରାଇ ରଖିଥାଅ ।
ଶୁଣିଣ ଶତ୍ରୁଘନ ଯେ ବେଗେ ଚଳିଗଲେ
ନରବାନର ସଭିଙ୍କୁ ନିଶ୍ଚିନ୍ତେ ରଖାଇଲେ ।
ରାଜା ପାତ୍ରମନ୍ତ୍ରୀ ଆଦି ରଥୀ ସେନାପତି
ଯେଯାହାର ବଳସେନ ରହିଲେହୋଇସ୍ଥିତି
ସୁରଭି ଅମୃତ ଯେ ବୃଷ୍ଟି ତହିଁରେ କଲା
ଯେଯାହା ବାଞ୍ଛାକଲେ ସେ ତାହା ଭୁଞ୍ଜିଲା ।
ହସ୍ତୀ ଅଶ୍ୱ ସାରେଣି ଏମାନଙ୍କୁ ଘାସ ଦାନା
ଋକ୍ଷ କପିମାନଙ୍କୁ ଯେ ଫଳ ମୂଳ ସିନା ।
ଋଷିଙ୍କି ଫଳ ମୂଳ ଦେଇଣ ଚରଚଲା
ଶ୍ରୀରାମର ଆଗରେ ଯାଇଣ ବାରତା କହିଲା
ବୋଇଲେ ସମସ୍ତ ସୈନ୍ୟ ରାଜାଗଣ ତୁଲେ
ଚରଗୃହୋଇଲେଦେବ ରହିଲେନିଶ୍ଚିନ୍ତରେ
ଶୁଣିଣ ଶ୍ରୀରାମ ମନେ ସନ୍ତୋଷ ହୋଇଲେ
ଶତ୍ରୁଘନ ସୁମନ୍ତ୍ରଙ୍କୁ ପରଶଂସା କଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣଗୋ ଭଗବତୀ
ସିଂହାସନେ ବିଜେ କଲେ ଯାଇଣ ଦାଶରଥି
ଜାନକୀ ଅନ୍ତଃପୁରେ ହେଲେ ପରବେଶ
ତିନିଭଗ୍ନୀ ଆସିଣ ଓଳଗେ ବିଶେଷ ।
ମାନମୀ ଊର୍ମିଳା ଯେ ସୁକ୍ଷିତା ଭଗ୍ନୀ ଦେଖି
କୋଳକରି ରୋବାଇଣ ଶରଦ ଚନ୍ଦ୍ରମୁଖୀ ।
ମୁଦୁସୁଳମାନେ ଆସି ତିଆରେ ଜାନକୀଙ୍କି
ଗୃହ ଭଗିନ ଶୋକ ସମ୍ଭାଳ ହେଲେ ନିକ ।
ସଖୀ ସଙ୍ଗାତୁଣୀ ଯେ ପୀରତି ଲୋକମାନେ
ସୀତାଙ୍କୁ ଦେଖିବାକୁ ଆନନ୍ଦ ସର୍ବମନେ ।
କେହୁ କୋଳ କରଣ ମୁଖରେ ଚୁମ୍ବ ଦେଇ
କେବୋଲେ ନିସ୍ତରିଲି ଦେଖିଣ ବଇଦେହୀ ।
ମାନ୍ୟଧର୍ମ କରଣ ଯାନ୍ତି ଯେବଣ ଯେ ନାରୀ
ଅଶ୍ରୁ ନଉଗୁଳ ପୁଣି ସ୍ନେହ ଭରରେ କରି ।
କେହୁ ରୁପ ବାଡ଼ୁନ ଯେ ପକାବନ୍ତି ଲୁହ
କେବଣ ଯୁବତୀଙ୍କ ମାଡ଼ୁଅଛି କୋହ ।
କେହୁ ସ୍ନେହଭରେ ଶରୀର ଆଉଁସି
ଯେସନେ କେ ଆନନ୍ଦ ଉଚ୍ଛବ ପରଶଂସି ।
ପାର୍ବତୀଙ୍କ ଆଗରେ କହନ୍ତି ଶୂଳଧର
ଏହିମତେ ଅଯୋଧ୍ୟାର ନାରୀନର ।
ଶୁଣ ତୁ ଭଗବତୀ ଶ୍ରୀରାମ ମହିମା
ଦଶଗ୍ରୀବ ମାରି ଶ୍ରୀରାମ ଛୁଡ଼ାଇଲେ ସୀମା ।
ଅଯୋଧ୍ୟାର ନନ୍ଦିଗ୍ରାମେ ଯାଇଣ ବିଜେକଲେ
ପାଦୁକା ସିଂହାସନ ଉପରେ ବସିଲେ ।
ସଜ ଉଲଗି ହୋଇ ଧନୁଶର ଥୋଇ
ଏସନକ ସମୟେ ବେଳ ଏତାରଘଡ଼ି ହୋଇ
ମର୍ଦ୍ଦନ ମାଜଣା ବେଗେ ହେଲେ ରାମଚନ୍ଦ୍ର
ସୁବାସ ଜଳରେ ସେ ହୋଇଲେ ଚନ୍ଦ୍ର ।

ଭୃତ୍ୟଙ୍କୁ ଆଜ୍ଞାଦେଲେ ଦଶରଥ ବାଳ
ତତକ୍ଷଣେ ଅଣାଇଲେ ମାଜଣା ସମ୍ଭାର ।
ନାନାତୀର୍ଥ ଜଳ ଘେନି ଗନ୍ଧ ଯେ ପରିମଳ
ତିଳ ଅଁଳା ଲଗାଇ ଗନ୍ଧ ଯେ ସକଳ ।
ଏମନ୍ତେ ସ୍ନାନ ବିଧି ଯେ ଆସେ ସଖୀମାନ
ମଲା ପୀଢ଼ା ମର୍କତ ସ୍ଫଟିକ ପୀଢ଼ାମାନ ।
ତହିଁରେ ବିଜେକଲେ ଦଶରଥ ବଳି
ମାଜଣା ସଖୀ ସୁମନ୍ତ୍ର ଘେନାଇ ଉଭାଅଛି ।
ସୁଗ୍ରୀବ ବିଭୀଷଣ ଅଙ୍ଗଦ ଲକ୍ଷ୍ମଣ
ଭୃତ୍ୟ ଶତ୍ରୁଘ୍ନ ଭୁଲେ ଜମ୍ବୁବ ସୁଷେଣ ।
ସେନା ଯୂଥପତି ଯେ ଅମାତ୍ୟଗଣେ
ତୀର୍ଥ ଜଳରେ ଶ୍ରୀରାମ ସ୍ନାହାନ ତତକ୍ଷଣେ ।
ଶୀତଳ ଜଳ ଘେନିଣ ପଖାଳିଲେ କେଶ
ସ୍ୱବର ଚିକୁର ଯେ ଆମୋଦେ ସ୍ୱରୁକେଶ
କୃଷ୍ଣ ଭ୍ରମର ଜାଣିଣ ବସେ ତାର ସଞ୍ଜ
କୁଟିଳ କବେର ସେ ସୁମାଳ ମହାସଞ୍ଜ ।
କେଶ ଫେଡ଼ିଣ ବେଗେ ଶ୍ରୀଅଙ୍ଗ ପଖାଳି
ଚନ୍ଦନ କସ୍ତୁରୀ ଘେନି ଶ୍ରୀଅଙ୍ଗ ଶାମଳ ।
ପବିତ୍ର ଜଳ ଘେନିଣ ଧୋଇଲେ କଳେବର
କେହୁ ପିଠି କେହୁ ଭୁଜ କେହିକ୍ଷନ୍ତ ପୟର ।
ମାଜଣା ସାରିଣ କେହୁ କ୍ଷୀନବାସ ଘେନି
ଶ୍ରୀଅଙ୍ଗ ପୋଛିଲେ ସୁଗ୍ରୀବ ବିଭୀଷଣ ବେନି ।
ଅଙ୍ଗଦ ହନୁମନ୍ତ ପୟର ପୋଛନ୍ତି
ହିମୁଣ୍ଡ ସଜାଇ ଅଛି ସୁମିତ୍ରାର ବଳି ।
ବିବିଧବର୍ଣ୍ଣରେ ଚାତୁରେ କୁସୁମ ଗନ୍ଧବୋଳ
ଶ୍ରୀରାମ କେଶକୁ ବାନ୍ଧିଲେ ଗମ୍ଭୀର କରି ।
ପୀତବସନ କୁଞ୍ଚିଣ ପିନ୍ଧାଇଲେ ନେଇ
ରଙ୍ଗ ପତନୀ ଦୋଷଡ଼ା ପଦ୍ମରେ ରଘୁସାଇଁ ।
କର୍ଣ୍ଣରେ କୁଣ୍ଡଳ କଣ୍ଠେ ନାନା ହାର
ବିଦ ମୁଦି ବାହୁଟି ନାନାବର୍ଣ୍ଣେ ଅଳଙ୍କାର ।
ଚରଣରେ ନେପୁର ଯେ ପୟରେ କଠାଉ
ଦେବାର୍ଚ୍ଚନ ମଣ୍ଡପରେ ବିଜେ ରାମ ସାହୁ ।
ବିଭୀଷଣ ନେଇ ଦେଲା କନେକର ଦଣ୍ଡ
ନାହିଁ ନାହିଁ ପଟାନ୍ତର ଭେଦ ବ୍ରହ୍ମାଣ୍ଡ ।
ବରୁଣ ଛତ୍ର ସେ ଧରିଣ ରତ୍ନ ମୟେ
ଯତନେ ବିଶ୍ୱକର୍ମା ନିର୍ଭେ ତାକୁ କଲେ ।

ଚନ୍ଦ୍ର ସୂର୍ଯ୍ୟ ଅଗି କି ହୋଇଅଛି ସୀମା
ତହିଁତଳେ ଥିଲେ ପୁଣ ନାହିଁ ଯେ କ୍ଷୁଧାତୃଷା
ମହା ମହିମା ସେ ଯେ ଅପୂର୍ବ ଛତ୍ର ଗୋଟି
ଟେକିଧଇଲେ ରତ୍ନବର ସେ କୋଟିକୋଟି ।
ମାଣିକ୍ୟର ହୀରା ଯେ କନକ ବଇଡୂର୍ଯ୍ୟ
ମୁକୁତା ରତ୍ନାବଳି ମାଣିକ୍ୟ ଅଟେ ଉଜ ।
ଶେତଛତ୍ର ଟେକିଣ ଧଇଲେ ନୀର ନଳ
ଶତେକୋଟି ରତ୍ନ ଛିଡ଼ି ପଡ଼ିଲିକ ତଳ ।
ଦେବାର୍ଚ୍ଚନ ନବରେ ବିଜୟେ ଦେବ କଲେ
ଲକ୍ଷ୍ମୀ ନାରାୟଣଙ୍କର ପ୍ରତିମା ମଣ୍ଡିଲେ ।
ପ୍ରସାଦ ଘେନି ଶ୍ରୀରାମ ବାହୁଡ଼ା ବିଜୟେ
ଆସ୍ଥାନ ନବରେ ଯାଇ ଅବକାଶ ହୋଏ ।
ଭରତ ଲକ୍ଷ୍ମଣ ଶତ୍ରୁଘ୍ନର ମୁଖ ଚାହିଁ
ଆଜ୍ଞାଦେଲେ ସ୍ୱାମୀ ଜାନକୀର ଦେଖା ପାଇଁ ।
ମାଜଣା ମର୍ଦ୍ଦନ ତୁମ୍ଭେ ହୁଅ ଯାଇ ବେଗ
ଏତେବୋଲି ଶ୍ରୀରାମ କରଏ ଉଦ୍‌ଯୋଗ ।
ଏଥୁଅନନ୍ତରେଭଣ୍ଡାରୁ ଅଳଙ୍କାରଅଣାଇଲେ
ଯେ ଯାହା ଅନୁରୂପେ ଭୂଷଣ ନେଇକଲେ ।
ଭରତ ଶତ୍ରୁଘ୍ନ ଲକ୍ଷ୍ମଣଘେନିଲେ ଅଳଙ୍କାର
କର୍ଣ୍ଣରେ ନୀରବଳି ହୃଦରେ ଚନ୍ଦ୍ରହାର ।
ସ୍ୱାମୀରୁ ଅଇଲେ ସେ ହରଷ ମୁଖ ହୋଇ
ସ୍ନାହାନ ବିଧି କଲେ ମର୍ଦ୍ଦନ ମାଜଣାଇଁ ।
ଦିବ୍ୟ ବେଶ ହୋଇଣ ଦର୍ଶନ ଯାଇ କଲେ
ଶୁଣ ଗୋ ଶାକମ୍ଭରୀ କହନ୍ତି ଈଶ୍ୱରେ ।
ଜାନକୀ ଅନ୍ତଃପୁରରେ ହୋଇଲେ ମାଜଣା
ସୁବର୍ଣ୍ଣ ସମାନେ ଶରୀର ଅଟେ କଣା ।
ଉର୍ମିଳା ସୁକୀର୍ତ୍ତି ମାଳତୀ ଏ ଯେ ତିନି
କଜାଣି ହସନ୍ତି ଏ ଚନ୍ଦ୍ର ସୂର୍ଯ୍ୟ ବେନି ।
ପରିବାରୀ ପଣରେ ସୀତାଙ୍କୁ ସେବାକଲେ
ସୁବାସିତ ଆଭରଣ ଦେବୀ ଭୂଷଣ ହେଲେ ।
ଜାନକୀଙ୍କି ଅଳଙ୍କାର ମଣ୍ଡନ୍ତି ସୁଖ ପାଇ
କୈକେୟୀ କଉଶଲ୍ୟା ସୁମିତ୍ରା ତିନି ଧାଈ ।
ସକଳ ଜନନୀମାନେ ମାଜଣା ଯେ ହେଲେ
ସୁବାସିତ ଜଳରେ ସ୍ନାହାନ ସର୍ବେ କଲେ ।
କ୍ଷୀନ ବସନ ପିନ୍ଧିଣ ହୋଇଲେ ଶୋଭାବନ
ଏଥୁ ଅନନ୍ତରେ ଗୋ ହେମବତୀ ଶୁଣ ।

ଅନ୍ତଃପୁର ପୁରକୁ ବିଜେ କଲେକ ଶ୍ରୀରାମ
ଜନନୀମାନଙ୍କୁ ବୋଲେ ଶୁଣ ମୋ ବଚନ ।
ଶତ୍ରୁଘନ ନଗ୍ରକୁ ସମସ୍ତେ ଏବେ ଚଳ
ବଧୂମାନଙ୍କୁ ଘେନ ପାକ ଯେ ତର୍ତ୍ତି କର ।
ଶୁଣିଣ ସକଳ ମାତା ଗୃହ ବଧୂମାନଙ୍କୁ ଘେନ
ଶତ୍ରୁଘନ ନବରେ ପ୍ରବେଶ ହେଲେ ପୁଣି ।
ପାକ କରି ଅନ୍ନ ବ୍ୟଞ୍ଜନ ଯେ ହରଷେ
ଭୋଜନକୁ ଜଣାଇଲେ ଶ୍ରୀରାମଚନ୍ଦ୍ର ପାଶେ ।
ଶୁଣିକରି ଶ୍ରୀରାମ ଯେ ତିନି ଭାଇଙ୍କ ଘେନ
ମଣୋହି ଠାବରେ ପ୍ରବେଶ ହେଲେ ପୁଣି ।
ଷଡ଼ରସେ ଭୋଜନ କରନ୍ତି ଚାରିଭାଇ
ଜନକ ଦୋହିତା ଯେ ପରଷେ ପୁଣ ନେଇ ।
ଅଞ୍ଚାବନ ସାରିଣ ବସିଲେ ସିଂହାସନେ
ବିଡ଼ିଆ ଲଗିକଲେ ଦାସୀଗଣମାନେ ।
ପଲଙ୍କ ପରେ ଶ୍ରୀରାମ ଅଳସ ଛଡ଼ାଇଲେ
ପାଦୁକା ସିଂହାସନେ ଯାଇଣ ବିଜେକଲେ ।
ପଞ୍ଚା ପଞ୍ଚା ହୋଇଣ ଆସନ୍ତି ରାଜାଗଣ
ଶ୍ରୀରାମଚନ୍ଦ୍ର ସର୍ବେ କରନ୍ତି ଦରଶନ ।
ସକଳ ରାଜାଗଣ ଦରଶନ କରି
ପ୍ରବେଶ ହେଲେ ଯାଇ ଯେ ଯାହାର ପୁରୀ ।
ସୈନ୍ୟବଳ ସମସ୍ତେ କରନ୍ତି ଦରଶନ
ରଥୀ ସେନାପତି ଦେଖିଲେ ଆସି ପୁଣ ।
ବାନର ଋକ୍ଷକପି କରନ୍ତି ଦରଶନ
ସେନାପତି ଯୂଥପତି ମିଳିଲେ ଯାଇ ପୁଣ ।
ମଲ୍ଲ ମହାମଲ୍ଲ ସମସ୍ତେ ଯେ ଆଇଲେ
ସକଳେ ଦରଶନ ଶ୍ରୀରାମଙ୍କୁ କଲେ ।
ନନ୍ଦ ଗ୍ରାମ ନରନାରୀ ଅଯୋଧ୍ୟାର ଜନ
ସାମନ୍ତ ପାତ୍ର ମନ୍ତ୍ରୀ କରନ୍ତି ଦରଶନ ।
ଏଥୁ ଅନନ୍ତରେ ଯେ ରଜନୀ ଅର୍ଦ୍ଧ ହୋଇ
ସମସ୍ତଙ୍କୁ ମେଲାଣି ଦେଇଣ ରଘୁସାଇଁ ।
ଅନ୍ତେଶ୍ୱର ପୁରକୁ କରନ୍ତି ଗମନ
ତିନି ଭାଇ ସଙ୍ଗରେ ଘେନିଣ ରାମରାଣ ।
ଷଡ଼ରସେ ଭୋଜନ କଲେକ ଚାରିଭାଇ
ବିଡ଼ିଆ ଲଗି ହୋଇଣ ଯେ ଯାହା ପୁରେଯାଇ
ରତ୍ନପଲଙ୍କରେ ଯାଇ କଲେକ ଶୟନ
ପାଖରେ ଜନକ ସୁତା ଖଟନ୍ତି ଯାଇ ପୁଣ ।

ଶ୍ରୀରାମ ପହୁଡ଼ିଲେ ଯେ ରତ୍ନ ପଲଙ୍କରେ
ବଇଦେହୀ ଆସିଣ ଯେ ଖଟିଲେ ପୟରେ ।
ମାୟୁ! ସୀତା ଚରଣ ମଞ୍ଚାଳେ ପୁଣ ବସି
ନିଦ୍ରାରେ ଶ୍ରୀରାମ ଯେ ଅଚେତ ହୁଅନ୍ତି ।
ଜନେକ ଦୋହିତା ପାଶରେ ନିଦ୍ରାଗଲେ
ନାନା ବିନୋଦେ ସୀତାଙ୍କୁ ଘେନ ଲୀଳାକଲେ
ବିନୋଦ ସାରିଣ ଯେ ବୋଲନ୍ତି ରାମରାଣ
ଶତ୍ରୁଘନ ଭୁବନ ଦେଖିବା ଚାଲ ପୁଣ ।
ଶତେକ ଦାସୀଙ୍କି ଯେ ଡକାଇ ରାମଚନ୍ଦ୍ର
ଶତେକ ହୀରା ଯେ ଧଇଲେ କରେ ସେହୁ ।
ସକଳ ପୁର ଫେଡ଼ି ଦେଖିଲେକ ପୁଣ
ଲଙ୍କାରୁ ଅଧିକ ଯେ ଦଶେ ଶୋଭାବନ ।
କନକ ବଇଡ଼ୂର୍ଯ୍ୟ ମାଣିକ୍ୟ ହୀରା ମାଳା
ସ୍ଫଟିକ ମୁଗୁନିରେ ପାଷାଣ ଘର ତୋଳା ।
ଦେଖିକରି ଶ୍ରୀରାମ ମନରେ ତୋଷ ହେଲେ
ବିଶ୍ୱକର୍ମା ଏ ଭୁବନ ନର୍ମ ଏ ଯେ କଲେ ।
ସେଠାରୁ ଚଳିଗଲେ ନନ୍ଦନ ବନ ପୁଣ
ଦେଖିଲେ ଫୁଲବନ ହୋଇଛୁ ମଣ୍ଡନ ।
ଫୁଲ ବନରୁ ଯାଇଣ ଫଳ ବନ ଦେଖିଲେ
ଅତି ଶୋଭା ପାଉଛୁ ଯେ ସେ ବନ ସେଥିରେ
ତୀରେ ପାଶେ ମେଘନାଦ ପାଚେରୀ ଅଛୁ ଘେରେ
ସୁବର୍ଣ୍ଣ ପାଚେରୀ ଗୋଟି ହୋଇଛୁ ଉହାଡ଼ ।
ଦେଖିକରି ଶ୍ରୀରାମ ସନ୍ତୋଷ ମନ ହେଲେ
କୂପ ବାପୀ ପୁଷ୍କରିଣୀ ଯତନେ ଦେଖିଲେ ।
ଫେରିଣ ଶ୍ରୀରାମ ଯେ ଆଇଲେ ବେଗହୋଇ
ଏମନ୍ତ ସମୟରେ ରଜନୀ ଗଲା ପାହି ।
ବାହାର ଅବକାଶ ହେଲେ ରାମରାଣ
ଦର୍ଶନ କଲେ ଆସି ସକଳ ଜନେ ପୁଣ ।
ମର୍ଦ୍ଦନ ମାଜଣା ହୋଇଣ ସ୍ନାନ କଲେ
ଶ୍ରୀଅଙ୍ଗ ପୋଛି କ୍ଷୀନ ବସନ ପିନ୍ଧିଲେ ।
ଜନକର ଦୋହିତା କଲେକ ସ୍ନାନଯାଇ
ସଙ୍ଗତରେ ଭଗିନୀଗଣ ଦାସୀଗଣ ନେଇ ।
ତିନିଭାଇ ନିତ୍ୟକର୍ମ ସାରିଣ ଆଇଲେ
ଶ୍ରୀରାମ ଚରଣରେ ଦରଶନ କଲେ ।
ଶତ୍ରୁଘନକୁ ରହିଣ ବୋଲନ୍ତି ରାବଣାରି
ଅନ୍ତେଶ୍ୱର ପୁରକୁ ଯାଅରେ ବେଗ କରି ।

ସକଳ ଜନନୀ ଜାନକୀ ଘେନି ସଙ୍ଗେ
ଭରତ ନଗ୍ରକୁ ଆନ ଯାଆନ୍ତୁ ସର୍ବବେଗେ ।
ଶୁଣିଣ ଶତ୍ରୁଘ୍ନ ବେଗେ ଚଳିଗଲା
ରୂତବଧୂ ମାତାମାନଙ୍କୁ ଜଣାଇଲା ।
ବୋଇଲେ ଚଳ ସମସ୍ତେ ଭ୍ରାତ ଠାକୁର ପୁର
ଏମନ୍ତେ ବୋଇଲେ ଯେ ସୁମିତ୍ରା କୁମର ।
ଶୁଣିକରି ସର୍ବେ ଯେ ବେଗେ ଚଳିଗଲେ
ଭରତର ନଗ୍ରେର ପ୍ରବେଶ ହୋଇଲେ ।
କନକ ମଣ୍ଡପରେ ବିଜେ ରାମ ରାହୁ
ସମସ୍ତେ ଦର୍ଶନ କଲେ ସେଠାବକୁ ଯହୁଁ ।
ଦେବାର୍ଚ୍ଚନ ମଣ୍ଡପରେ ବିଜେ ରାମଗଣ
ବାଦ୍ୟର ନିଶାଣରେ ପୁରେ ନଗ୍ରପୁଣ ।
ଦେବାର୍ଚ୍ଚନ ସାଂଗଣ ଭିତରେ ବିଜେକଲେ
ସୀତା ଘେନି ସକଳ ମନ୍ଦିର ଦେଖିଲେ ।
ଦେବାଳୟ ପୁର ଯାଏ ହୋଇଲେ ଘଟନ
ଦେଖିଣ ସନ୍ତୋଷ ହେଲେ ରଘୁକୁଳ ରାଣ ।
ଖାଣ୍ଡବ ବନ ଭିତରେ ପଶିଲେକ ସେହି
ଫୁଲବନ ଫଳବନ ଦେଖିଣ ତୋଷ ହୋଇ
ସେଠାରୁ ଫେରିଣ ବାହାର ଅବକାଶ
ଅନ୍ତଃପୁରେ ପାକ ଯେ କଲେକ ଷଡ଼ରସ ।
ତିନିଭାଇ ଘେନି ରାମ କଲେକ ଭୋଜନ
ପଲଙ୍କରେ ପହୁଡ଼ିଲେ କୌଶଲ୍ୟା ନନ୍ଦନ ।
ରଜନୀ ହୁଅନ୍ତେ ରାମ ଭୋଜନ ଯାଇ କଲେ
ବିଡ଼ିଆ ଲାଗି ହୋଇ ପଲଙ୍କେ ପହୁଡ଼ିଲେ ।
ଜନେକର ଦୋହିତା ହେଲେ ଦିବ୍ୟ ବେଶ
କୋଦଣ୍ଡଧାରୀ ପାଶେ ହେଲେ ପରବେଶ ।
ଶ୍ରୀରାମ ସଙ୍ଗରେ କରିଣ ରତି ଲୀଳା
ନାନାଦିରସେ ରଜନୀ ପାହାଏ ଦଶରଥବଳା
ଦେବ ଆଳେ ଶଙ୍ଖ ଶବଦ ଯହୁଁ ହେଲା
ସେଠାରୁ ରଘୁମଣି ପଲଙ୍କ ଉପେକ୍ଷିଲା ।
ତିନିଭାଇ ଶୟନ କରିଥିଲେ ଜାଣ
ରଜନୀ ଶେଷହେବାରୁ ଅଇଲେ ସେହିପୁଣ ।
ଶ୍ରୀରାମ ଚରଣେ କଲେ ଦରଶନ
ବାହାରେ ଅବକାଶ ହେଲେ ରାମରାଣ ।
ମାତଳିକି ଚାହିଁଣ ବୋଇଲେ ରଘୁବର
ନନ୍ଦିଘୋଷ ରଥଘେନି ଚଳ ହୋ ତତକ୍ଷଣ ।

ପୁରନ୍ଦରଙ୍କ ଆଗରେ ଦେବୁ ନେଇ ଯାନ
ବୋଲିବୁ ଭଣ୍ଡାରରେ ସାଇତି ଦେବଜାଣ ।
ଶୁଣିକରି ମାତଳି ରଥ ଘେନି ଗଲା
ଇନ୍ଦ୍ରଙ୍କ ଭୁବନରେ ପ୍ରବେଶ ଯାଇ ହେଲା ।
ଦେଖିକରି ପୁରନ୍ଦର ମନରେ ହେଲେତୋଷ
ଭଣ୍ଡାର ଘରେ ଥୋଇଲେ ବିଶେଷ ।
ବୋଇଲେ ଏଜନ୍ମେ ତାର ଆଉ ନାହିଁପୁଣ୍ୟ
ଶ୍ରୀରାମ ବିଜେ କରିବେ ପୁଷ୍ପକ ବିମାନ ।
କୃଷ୍ଣ ଅବତାର ଯେ ହେବେ ଯେତେବେଳେ
ସେତେବେଳେ ବସିବେ ତୋହର ଉପରେ
ଶୁଣିକରି ମାତଳି ମନରେ ତୋଷ ହେଲା
ଭଣ୍ଡାରଘରେ ନେଇ ଯାନକୁ ସାଇତିଲା ।
ଏଥି ଅନନ୍ତରେ ଯେ ରାମଚନ୍ଦ୍ର ରାୟେ
ସୁମନ୍ତ୍ରକୁ ଚାହିଁଣ ପୁଣ ଆଜ୍ଞା ଦିଏ ।
ପୁଷ୍ପକର ଯାନକୁ ଆଣ ସଜକରି
ତହିଁପରେ ବସିଯିବା ଅଯୋଧ୍ୟା ନଗ୍ରପୁରୀ ।
ଶୁଣିଣ ସୁମନ୍ତ୍ର ରଥକୁ ସାଜି ଆଣି
ଶ୍ରୀରାମ ସମ୍ମୁଖରେ ଯୋଗାଏ ସେହୁ ପୁଣି ।
ଦେଖିଣ ଦାଶରଥି ଶତ୍ରୁଘ୍ନରେ କହି
ମାତାଙ୍କୁ ମୋର ବେଗେ ଘେନି ଆସଯାଇ ।
ଶୁଣିଣ ଶତ୍ରୁଘ୍ନ ବେଗେ ଚଳିଗଲା
ସକଳ ଜନନୀଙ୍କୁ ଘେନିଣ ଅଇଲା ।
ପୁଷ୍ପକ ବିମାନ ପରେ ଯେ ପିଢ଼ିରେ
ଶତେକ ଜନନୀ ଯେ ବସିଲେ ତଥି ପରେ ।
ଆରେକ ପିଢ଼େ ଦାସୀ ଗଣେ ଯେ ବସିଲେ
ଜାନକୀ ଘେନି ରାମ ଚଢ଼ିଲେ ରଥପରେ ।
ମାୟାସୀତା ଦାସୀଗଣ ପୁଣ ପୁଣ ଗଲେ
ରାମର ଆଲଟ ଯେ ବିଞ୍ଚଣି ଧଇଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ତିନିଭାଇ
ତିନିରଥେ ବିଜେକର ଘରଣୀମାନ ନେଇ ।
ଶୁଣିଣ ତିନିଭାଇ ବେଗରେ ଚଳିଗଲେ
ଘରଣୀମାନଙ୍କୁ ଘେନି ରଥରେ ବସିଲେ ।
ଦେଖିଣ ରାଜାଗଣ ଅଇଲେ ରଥଚଢ଼ି
ଆଲଟ ପାଟ ଛତ୍ର ଆଗରେ ଉହାଡ଼ି ।
ଋକ୍ଷକପି ସମସ୍ତେ ରାକ୍ଷସ ଗଣ ତୁଲେ
ବିଭୀଷଣ ସୁଗ୍ରୀବର ଅଇଲେ ରଥପରେ ।

ଯୁଥପତି ସେନାପତି ମଲ୍ଲ ମହାମଲ୍ଲ
ଶ୍ୱେତନାଗ ଚଢ଼ି ସର୍ବେ ହୋଇଲେ ବାହାର
ଗୁହନାମେ ଶବର ଚଢ଼ିଲେ ମତ୍ତହସ୍ତୀ
ଶତେ ରଥ ଚଢ଼ିଲା ଲୋମପାଦ ଯେ ନୃପତି
ସପତ ସୁକାସନେ ସପତ ଋଷି ବସି
ଆଗରେ ବିଜୟ କଲେ ବ୍ରହ୍ମାଙ୍କର ବଚ୍ଛି ।
ତହିଁ ପଛେ ଶ୍ରୀରାମ ବିଜୟ ଯେ କଲେ
ତିନି ଭାଇ ଶ୍ରୀରାମ ପଛରେ ଚଳିଗଲେ ।
ତାଙ୍କ ପଛେ ଲକ୍ଷେ ରାଜା କଲେକ ଗମନ
ବିଭୀଷଣ ସୁଗ୍ରୀବର ଆବର ଯେତେ ପୁଣ ।
ତହିଁପଛେ ହସ୍ତୀ ଘୋଡ଼ା ସାବରେଣି ଯେତେଦଳ
ନର ରାକ୍ଷସ ବାନର ହେଲେ ଏକମେଳ ।
ରାମ ତାଳ ହୁଲହୁଳ ହରିବୋଲ ଡାକ
ଶବଦରେ ସ୍ୱର୍ଗପୁର ପଡ଼ିଲା ଚମକ ।
ଦେବଗଣେ ଅଧାସ୍ୱର୍ଗେ ଥାଇଣ ଦୃଷ୍ଟି କଲେ
ପଞ୍ଚବର୍ଣ୍ଣ କୁସୁମ ଯେ ଉପରେ ବୃଷ୍ଟି କଲେ ।
ନନ୍ଦିଗ୍ରାମ ଚଳିଣ କୋଦଣ୍ଡ ରୂପଧାରୀ
କନ୍ଦକ କନ୍ଦ ସବୁ ଦେଖିଲେ ସେ ଯେ ଫେରି
ସକଳ ଦେଖିଣ ବଡ଼ ବାଣ୍ଡିଲେ ବିଜେ କଲେ
ରାମତାଳ ହୁଲହୁଳ ପଡ଼ୁଛି ଆଗରେ ।
ଟମକ ନିଶାଣ ବାଦ୍ୟ ବାଜଇ ଭେରିପୁଣ
ଆଲଟ ଚାମର ଧରି ବାଜନ୍ତି ନଗ୍ରଜନ ।
ଦେଖିଲେ ଦାଶରଥିଯେ ଦେବାଳ ପୁରଫେରି
ସମସ୍ତଙ୍କର ଦ୍ୱାରେ ମୁକୁତା କେରି କେରି ।
ମାଏକ ଓସାର ଯେ ଦୁଇକୋଶ ଲମ୍ବ
ବଡ଼ ଦାଣ୍ଡ ଶୋଭ ବିଶେଷସ୍ୱର୍ଗରୁ ବଡ଼ ଉଚ୍ଚ ।
ସେଠାବ ଦେଖିଲେ ଶ୍ରୀରାମ ଯେ ପୁଣି
ଅଯୋଧ୍ୟା ନଗ୍ରଯାକ ଫେରନ୍ତି ଆପଣେ ।
ବସ୍ତ୍ରାଳଶୀ ଦାଣ୍ଡ କନ୍ଦ ବିକନ୍ଦ ବୁଲିଲେ
ଦେଖିଣକୋଦଣ୍ଡଧାରୀ ମନରେ ତୋଷହେଲେ
ଲକ୍ଷ୍ମଣ ନଗ୍ରରେ ଯାଇ ହେଲେ ପରବେଶ ।
ମାତାଗଣେ ରଥରୁ ଗଲେ ଯେ ବିଶେଷ ।
ତାଙ୍କପଛେ ଗଲେ ଯେ ଜନକ ଦୋହିତା
ଦାସୀ ଗଣଙ୍କୁ ଘେନି ମିଳିଲେ ଦେବୀସୀତା ।
ତିନିଭଗ୍ନି ଓହ୍ଲାଇଣ ଭିତରକୁ ଗଲେ
ନଗ୍ରରେ ପ୍ରବେଶହୋଇ ସ୍ନାନ ଯାଇକଲେ ।
ଝୀନ ଅମଳାଣ ଶାଢ଼ୀ ଯାଇଣ ପିନ୍ଧିଲେ
କେଶକୁ ଶାମଳ ସେ ଗଭାକୁ ବାନ୍ଧିଲେ ।
ରଥୁଭାଇ ଓହ୍ଲାଇଣ ଭିତରକୁ ଗଲେ
କନକ ମଣ୍ଡପରେ ଶ୍ରୀରାମ ବିଜେ କଲେ ।
ମର୍ଦ୍ଦନ ମାଜଣା ହୋଇ କଲେକ ସ୍ନାନ
ଦେବାର୍ଚ୍ଚନ ମଣ୍ଡପରେ ବିଜେ ରାମଗଣ ।
ଝୀନ ଧବଳ ବସନ ପିନ୍ଧିଲେ କୁଞ୍ଚକରି
ସମସ୍ତଙ୍କୁ ବୋଇଲେ ଯାଅ ଯେଝା ପୁରୀ ।
ରାଜାଗଣେ ନର ବାନର ରାକ୍ଷସ
ଯେଝା ବସା ସ୍ଥାନରେ ହେଲେ ପରବେଶ ।
ମର୍ଦ୍ଦନ ବାଜଣା ହୋଇ ସମସ୍ତେ ସ୍ନାନ କଲେ
ଯେ ଯାହା ମନ ଇଚ୍ଛାରେ ଭୋଜନବିଳାସିଲେ
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ପୁଣ
ମଣୋହିଁ କଲେ ତିନି ଭାଇଙ୍କ ଘେନିଣ ।
ଷଡ଼ରସେ ଭୋଜନ କଲେକ ରାମଗଣ
ଆଚମନ ସାରିଣ ବଡ଼ଆ ଲାଗି ପୁଣ ।
ଶୀତଳ ପଲଙ୍କରେ ଯାଇଣ ନିଦ୍ରା ଗଲେ
କେତେବେଳ ଉତ୍ତାରୁ ଉଠିଲେ ରାମଭଲେ ।
ମୁଖ ପାଖାଳି ଶ୍ରୀରାମ ବିଜେ ସିଂହାସନେ
ବଶିଷ୍ଠ ଆସିଣ ଯେ ପ୍ରବେଶ ସେହି ସ୍ଥାନେ ।
ବୋଇଲେ ଦାଶରଥି ଶୁଣ ମୋ ବଚନ
କାଲି ଶୁଭଯୋଗ ପ୍ରବେଶ ହେବ ଜାଣ ।
ବିଶାଖା ନାମେ ନକ୍ଷତ୍ର ଚନ୍ଦ୍ରନାମେ ଯୋଗଥିବ
ପୁଷ୍ୟା କକଡ଼ାକୁ ପଞ୍ଚମ ଯେ ଚନ୍ଦ୍ର ହେବ ।
କେବଳ ନାମେ କରଣ ଶୁଭ ନାମେ ଯୋଗ
କୁମ୍ଭ ନକ୍ଷତ୍ରକୁ ପରମତାର ଭୋଗ ।
ତିନିଘଡ଼ି ସମୟରେ ଆମ୍ଭେ ବେଗେ ଯିବା
ପ୍ରହରକ ଭିତରେ ନଗ୍ରରେ ହୋଇବା ।
କାଲିହେବ ତ୍ରୟୋଦଶୀ ତୁମ୍ଭେହେବ ଅଭିଷେକ
ତେବେ ସିନା ଆନନ୍ଦ ହୋଇବ ତିନିଲୋକ ।
ଶୁଣିଲେ ରଘୁନାଥ ଯେ ବଶିଷ୍ଠଙ୍କର ବାଣୀ
ହେଉ ବୋଲି ବୋଇଲେ ଧନୁକ ଚୁଡ଼ାମଣି ।
ଲେଖିଲେ ଶ୍ରୀରାମ ଅକ୍ଷର ଏକ ଏକ ବଦନେ
ଜାଣିଣ ଭିତରକୁ ଗଲେ ଯେ ରଘୁନାଥନେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣି ହୁଅ ତୋଷ
ଶ୍ରୀରାମ ହେଲେ ଅନ୍ତଃପୁରରେ ପ୍ରବେଶ ।

ଶ୍ରୀରାମ ଭରତଙ୍କୁ ଅଣାଇ ଆଜ୍ଞାଦେଲେ
ଆମ୍ଭ ଚତୁରାଙ୍ଗବଳ ସାଜରେ ବୋଇଲେ ।
ଏମନ୍ତ କହନ୍ତେ ସେ ଭିତରେ ବାଜେ କଲେ
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକଦେଲେ
ଯିବାର ବେଳେ ରାମ ରହିଲେ ସୁଗ୍ରୀବର
ବିଭୀଷଣ ହନୁମନ୍ତ ଅଙ୍ଗଦ କୁମର ।
ଜାମ୍ବବ ସୁଷେଣ ପୁଣ ଗନ୍ଧମାଦନ
ନଳ ନୀଳଙ୍କୁ ରହିଣ ବୋଲନ୍ତି ବଚନ ।
ଆମ୍ଭଙ୍କୁ ସମ୍ଭାଳିଲ ହୋ ସୁବଳୟା ଗିରି
ଏବେ ଅଯୋଧ୍ୟା ପ୍ରବେଶ ହେଲକରି ।
ଏବେ ତୁମ୍ଭେ ନବର ବେଢ଼ି କରି ରହ
ଭରତକୁ ବୋଇଲେ ଏମାନଙ୍କୁ ଫଳମୂଳ ଦିଅ
ଏତେ କହି ଶ୍ରୀରାମ ଭିତର ପୁରେ ଗଲେ
ଜନନୀମାନଙ୍କ ପାଶେ ପ୍ରବେଶ ଯାଇ ହେଲେ
ଏଥୁ ଅନନ୍ତରେ ସେ ଯେ କୈକେୟୀର ସୁତ
ଋକ୍ଷ କପିଙ୍କି ଫଳମୂଳ ଦେଲେ ଯେ ବହୁତ ।
ଯାହାର ବାଡ଼ି ଘରରେ ଯେତେ ଦ୍ରବ୍ୟ ଥିଲା
ଲୋକମାନଙ୍କ ହସ୍ତରେ ସେ ବୁହାଇ ଅଣାଇଲା
ହାଲୋହୋଳ ପଡ଼ିଲା ପୁଣି ଅଯୋଧ୍ୟା ନଗର
କୁହାକୁହି ହୋଇ ସର୍ବେ କରନ୍ତି ବିଚାର ।
ଜାଣିବା ଲୋକେ ବୋଇଲେ ବେଗକରି ନ୍ୟନ୍ତୁ
ଋକ୍ଷକପିମାନେ ସର୍ବେ ଭୁଞ୍ଜିଣ ତୋଷହୋନ୍ତୁ
ଏକଇ ଜଣେ ଯେ ନ ପାରିଲା ସହି
ବୋବାଳି ପଡ଼ିଲା ରାଜା ସିଂହଦ୍ୱାରେ ଯାଇ ।
ଦେଖିକରି ଭରତବୀର କୋପ ତାକୁ କଲା
ଦୁଆରି ପେଷିଣ ତାକୁ ବାହାର କରିଦେଲା ।
ରାଗରେ ସେ ଜଣକ ପଶ୍ଚିମ ଦ୍ୱାରେ ମିଳି
ଶ୍ରୀରାମ ଶୁଣନ୍ତୁ ବୋଲି ଦେଲାକ ବୋବାଳି ।
ପୋଡ଼ୁ ଏ ରାଜ୍ୟ ପଛକେ ନଥିବା ଆମ୍ଭେଏଥ
ଦେଶ ଯାକ ଉଜାଡ଼ି କରୁଣ ଅଛି ଭରଥ ।
ଭିତରେ ଥାଇ ତାହା ଶୁଣିଲେ ରଘୁପତି
ବାହାର ଅବକାଶ ହେଲେ ସେ ତତ୍‌କ୍ଷଣେ ।
ବୋଇଲେ କିସ ଗୁହାରି କରଇ ଯେହୁ ପୁଣ
ତୁମ୍ଭକୁ ଘେନି ଆସ ଆଜ୍ଞାଦେଲେ ଜାଣ ।
ଶୁଣିଣ ପଡ଼ିହାରି ଗଲାକ ବେଗ ହୋଇ
ଗୁହାରିଆକୁ ଘେନି ଛାମୁରେ ମିଳେ ଯାଇ ।

ଦେଖି ପଚାରିଲେ ତାକୁ ଜାନକୀର ନାହା
ପଶ୍ଚିମ ଦ୍ୱାରେ ତୁରେ ବୋଲୁଥିଲୁ ଯାହା ।
ସେ କଥା କହ ତୁରେ ଶୁଣିବା ଆଜିବେଳେ
ସେବୋଇଲାଗୋସାଇଁଦୁଃଖହେଲାଏତେକାଳେ
ଭରଥର ଭୟରେ ଆଜି ରାଜ୍ୟରେ ନ ରହି
ମିଛେ ଏ ଜଟା ବାନ୍ଧିଣ ତପସି ବୋଲାଇ ।
ଏହାର ଜନନୀ ଦେବ ଅଟଇ କେକୟୀ
ତୁମ୍ଭଠାରେ ଭୋଗଦେବ ସେହି କଲେ ମାୟା ।
ତୁମ୍ଭଙ୍କୁ ବନ ପେଶି ପୁଅକୁ ରାଜ୍ୟ ଦେଇ
ପ୍ରଜାମାନଙ୍କର ଧନ ସେ ଯେ ହରି ନେଇ ।
ଏ କଥା ଶୁଣି ବଶିଷ୍ଠ ଛୁଇଁଲେ ଶ୍ରବଣ
କାହିଁକି ମିଥ୍ୟାକଥା କହୁଛୁ ଏମାନ ।
ଶ୍ରୀରାମ ଭରଥକୁ ଚାହିଁଣ କହିଲେ
ଏହି ଗୁହାରିଆ ଏହା କହୁଛି ବୋଇଲେ ।
ଶୁଣିକରି ଭରଥବୀର ଯୋଡ଼ଇ ବେନିକର
ଶୁଣିମା ହେଉ ଭୋଗଦେବ ଅଯୋଧ୍ୟା ଈଶ୍ୱର ।
ଯେତେଦିନ ଭୋଗଦେବ ବିପିନେ ବାସକଲ
ଚରଣ ପାଦୁକା ରାଜ୍ୟରେ ଦେଇ ଗଲ ।
ତୁମ୍ଭର ଆଜ୍ଞା ପ୍ରମାଣେ ଭୋଗଦେବ ଅଛି ମୁହିଁ
ଅନ୍ୟାୟ କେବେ ଦେବ ମୁହିଁ କରି ନାହିଁ ।
ବାନରଙ୍କୁ ଫଳମୂଳ ଦିଅ ବୋଲି ଆଜ୍ଞାଦେଲ
ଯେସନା ମୁଥପତିଙ୍କି ତରଗ୍ଗୁ କର ବୋଲ ।
ତେଣୁ ମୁଁ ଲୋକ ପେଶିଣ ଆଣିଲି ଫଳମୂଳ
ଫଳମୂଳ ଆଣିବାରୁ ଗୁହାରି କରେ ରଘୁବୀର
ବଶିଷ୍ଠ ବାମଦେବ କହିଲେ ଏହୁ ବାଣୀ
ଜାବାଳି କଶ୍ୟପ ସୁମନ୍ତ୍ର ମୁଖ ଶୁଣି ।
ଆପଣା ହୃଦେ ବିଚାର କଲେ ରଘୁମଣି
କଳାବତ୍ତୀ ଜନନୀକି ଡକାଇଲେ ପୁଣି ।
ବୋଇଲେ ମୋର ଜନନୀ ଲକ୍ଷ୍ମଣ ଜନନୀ
ସଙ୍ଗତେ ଘେନି ଆସ ଯାଇଣ ବେଗେ ପୁଣି ।
ଶୁଣିଣ କଳାବତ୍ତୀ ବେଗ୍ରରେ ଚଳିଗଲା
ଦୁଇମାତାଙ୍କୁ ଘେନିଣ ପ୍ରବେଶ ଆସି ହେଲା ।
ଶ୍ରୀରାମ ବୋଇଲେ ଶୁଣ ଗୋ ଜନନୀ
ଚଉଦ ବରଷ ଯାକ କେ ଦେଶ ପାଳଇ ପୁଣି
କଉଶଲ୍ୟା ବୋଇଲେ ବାବୁ ନିଳାବତ୍ତୀ ବୁଝେ
ମାଣକରେ କର କାହାଣେପରଜାଦ୍ୟନ୍ତି ସର୍ବେ

କକସ୍ତ ଭରଥ ଯେ ଦୁଇଜଣ ପୁଣ
ଝୁରୁଝୁରୁ ଚଉଦ ବରଷ ଗଲାଦନ ।
ଯେଉଁଦନ ଫଳମୂଳ ନ ମିଳଇ ପୁଣି
ବାଡ଼ କନସିରକ ଖାଆନ୍ତି ଦୁଇ ପ୍ରାଣୀ ।
ନିୟମ କରଥିଲେ ମାତାପୁତ୍ର ପୁଣ
ଶ୍ରୀରାମ ଲକ୍ଷ୍ମଣ ଦେଖିଲେ କରବାଭୋଜନ ।
ଶୁଣିଣ ରଘୁନାଥ କର୍ଣ୍ଣେଲେ ହାତ ଦେଲେ
ମୋରଆଗେମିଥ୍ୟାରୁରେ କେମନ୍ତେକହୁଥିଲେ
ପଡିହାରି ଚାହିଁଣ ଶ୍ରୀରାମ ଠାରଦେଲେ
ଏମନ୍ତାକୁ ନିଅ ବୋଲିଣ ଶ୍ରୀମୁଖେଆଜ୍ଞାଦେଲେ
ଶୁଣିକରି ପଡିହାରି ଘେନିଗଲେ ପୁଣି
ବୋଇଲେ କେମନ୍ତେ ମିଛ କହିଲୁରେ ଆଣି
ପଡିହାରିମାନେ ମିଶି ଗଳଥା ମାରିନେଲେ
ରହିବୁ ବୋଲିଣ କକସ୍ଥା ସୁତଯେ ବୋଇଲେ
ରାଜାଙ୍କର ପୁତ୍ର ଯେ ଅଟନ୍ତି ପରଜା
ମେ ହ ଶାପ୍ୟ ଘେନିଣ ତୁ ଏଠାରୁ ବେଗେଯା
ତୁମ୍ଭଙ୍କୁ କଳିଯୁଗେ ଅନ୍ନ ନ ମିଳିବ
ରାଜାଙ୍କୁ ଭୟ କରି ଚିନ୍ତାରେ ଦିନ ଯିବ ।
ପ୍ରତ୍ୟେକରି ସାଧୁଯେ ନଦେବେ କେଭେଧନ
ଦୟା ନ କରିବେ କେଭେ କୌଣସି ଜନ ।
ଆପ୍ତପ୍ରତେଦେଖାଇଲେହୋଇବ ତୁମ୍ଭେବୈର
ରାନ୍ଧିଲ ଅନ୍ନ ତୁମ୍ଭର ଭୁଞ୍ଜିବ ନେଇ ପର ।
ଦିନକୁ ଦିନ ଦୁଃଖ ହୋଇବ ତୁମ୍ଭର
କେହି ଦୟା ନକରିବେ ରାଜ୍ୟରେ ରାଜ୍ୟନର
ବ୍ରହ୍ମଣୀ ହୋଇଣ ତୁମ୍ଭେ ପାଇବ ମୃତ୍ୟୁଗତି
ଆଧାର ନ ମିଳିବ ନୋହିବ ସିପୁତି ।
ଦାନଧ୍ୟାନ କଲେ ଫଳ ନୋହିବ ଯେ କିଛି
ବସ୍ତ୍ରବର ହୋରେହାହେଲେ ଏତେକଷ୍ଟଅଛି
ସେବା କରି କଳିଯୁଗେ ନୀଚଲୋକରେରହି
ତୁହି ହୋ ମହାତ୍ମା ଏନଗ୍ରୁ ବେଗ ଯାଅ ।
ଏତେବୋଲି ନଗ୍ରୁ ବାହାର କରିଦେଲେ
ବଶିଷ୍ଠ ସୁମନ୍ତ୍ରକୁ ଚାହିଁଣ କହିଲେ ।
ପରଜାମାନେ କେମନ୍ତେ ଗୁହାରି କରନ୍ତି
ତେଣା ଫଳାଇ ଗୁହାରି କରିଣ ଆସନ୍ତି ।
ଆନ ଲୋକ ହୋଇଥିଲେ ପାଆନ୍ତାଟିକି ପ୍ରାଣ
ଭଲ ବୁଝିଲେ ସେହୁ କୌଶଲ୍ୟା ନନ୍ଦନ ।

ଏମନ୍ତେ ବିଗୁରି ଯେ ଯାହାରେ ଚଳିଯାନ୍ତି
ବୋଲନ୍ତି ସିଲୋଚନ ଶୁଣ ଗୋ ଭଗବନ୍ତି ।
ବଶିଷ୍ଠ ସୁମନ୍ତ୍ରକୁ ପୁଚ୍ଛନ୍ତେ ଯେ ବାଣୀ
କଳିଯୁଗ ସାଧୁଙ୍କର ଧର୍ମ କେମନ୍ତେ ଜାଣି ।
ବୋଲନ୍ତି ରଘୁନାଥ ଶୁଣ ମୁନିବର
କଳିଯୁଗ ସାଧୁଙ୍କର ନୋହିବ ବିଗୁର ।
ରାଗେଣ କରିଣ ଯାହାକୁ ପଣେ ଦେବେ
ଯେଉଁ ଖାତକ ନେବ ନ ଅର୍ପିବ କେବେ ।
ନଅର୍ପରୁ ଖାତକ ନ ପାରିବ ସୁଝି
ତାକୁ ଧରି ଆଣିଣ ମାରିବେ ନ ବୁଝି ।
ବୋଲିବେବାଡ଼ିବୃତ୍ତିତାର କେତେକଅଛଇଁ
ଲେଖିଦେଇ ଆମ୍ଭଙ୍କୁ ଘରକୁ ଯାଅ ତୁହି ।
ଯେତେତେଲୋକ ସାଧୁଙ୍କର ପକ୍ଷପାଖରେ ଥାନ୍ତି
ଏକଥା ଶୁଣିଣ ଯେ ଆନନ୍ଦ ମନହୋନ୍ତି ।
ସେଠାରୁ ଖାତକଙ୍କୁ ନ ମିଳିବ ଅନ୍ନ
କୁଟୁମ୍ବ ଯାକ ତାହାର ନାଶ ଯିବେ ପୁଣ ।
କଳିଯୁଗେ ପ୍ରଜାମାନେ ବୋଲିବେଟେକବାଣୀ
ଏହି ସାଧୁଙ୍କ ଲାଗି ମଲେ ସ୍ତ୍ରୀ ବଂଶ ପୁଣି ।
ସେ କଥାକୁ ସାଧୁଯେ ଖଙ୍ଗସ ମଣିବେ
କହିଲା ଲୋକଙ୍କଠାରେ କର୍କଶ ରଖିବେ ।
ଅଧର୍ମ କଲି ସାଧୁ ଯେ ଅଳ୍ପକ ନାଶଯିବେ
ଖାତକଙ୍କ ପିଡ଼ାଭରା ତାଙ୍କ କହିଲା ଭୁଞ୍ଜିବେ
ସେହିକାଳେ ବୋଲିବେ ସେହି ରାଜ୍ୟଜନ
ସାଧୁଙ୍କର ଘରପିଲାଏ କରନ୍ତି ନାନାକର୍ମ ।
ଶ୍ରୀରାମଚନ୍ଦ୍ର ବୋଇଲେ ବଶିଷ୍ଠ ହେ ଶୁଣ
କଳିଯୁଗ ସାଧୁଙ୍କର ହେବ ଏକଥା ମାନ ।
କାହାର ଘର ହୋଇ ନ ରହିବ ବିତ୍ତ
ବଢିଲା ନଦୀ ପ୍ରାୟେ ମଣିବେ ସମସ୍ତ ।
ନଦୀ ବଢ଼ିଲା କାଳରେ ନଈ ଉଠିଥିଲା
ଗଜସଙ୍ଗେ ଯେମନ୍ତେ ମଇଷ ଭାବକାଲା ।
କଳିଯୁଗ ସାଧୁଙ୍କର ଏସନକ ରୀତି
ସେହି ପ୍ରାଣନାଶ ଯିବେ ବେଳରେ ଜାଣନ୍ତି ।
ଯେଉଁଜନମାନଙ୍କର ବାସୁଦେବ ଭକ୍ତି
ସୁଦାମା ଦାରିଦ୍ର୍ୟ ପ୍ରାଏ ମୋଚନ ଲଭନ୍ତି ।
ବଶିଷ୍ଠ ସୁମନ୍ତ୍ର ଆଦି ସମସ୍ତେ ଶୁଣିଲେ
ଶ୍ରୀରାମଚରଣେ ଲକ୍ଷ୍ମଣ ପ୍ରଳମ୍ବିତ ହେଲେ ।

ଶ୍ରୀରାମ ଲକ୍ଷ୍ମଣଙ୍କୁ ଆଜ୍ଞା ଦେଲେ ରାଇ
ବୋଇଲେ ମୋର ନଗ୍ର ମଣ୍ଡନ କରଯାଇ ।
ଲକ୍ଷ୍ମଣ ବୋଇଲେ ଦେବ ସକଳ ବେଶମଣ୍ଡି
ଛଅପଟ ସହିତେ ରୁନ୍ଦୁଆ ଅଛୁ ବାନ୍ଧି ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ମନହେଲେ
ଈଶ୍ୱର କହିବାରୁ ପାର୍ବତୀ ଶୁଣେ ଭଲେ ।
ଏଥୁ ଅନନ୍ତରେ ଯେ ରଜନୀ ପ୍ରବେଶ
ଗଲେ ନରବାନର ଯେ ଯାହାର ବାସ ।
ସକଳ ଲୋକେ ଯିବାରୁ ଶ୍ରୀରାମଚନ୍ଦ୍ର ପୁଣି
ସନ୍ଧ୍ୟା ସୁମରିଲେ ଦେବ ସକଳ ବିଧି ଆଣି ।
ସେଠାରୁ ତିନିଭାଇ କଲେକ ଭୋଜନ
ଛଅ ରସେ ଭୋଜନ କଲେକ ତୋଷମନ ।
ଆଚମନ ସାରିଣ ଶ୍ରୀରାମଚନ୍ଦ୍ର ରାଏ
ରତ୍ନ ପଲଙ୍କରେ ସେସେ କଲେକ ବିଜୟେ ।
ମାୟାସୀତା ଆଣିଣ ବଢ଼ିଆ ନେଇ ଦେଲେ
ରତ୍ନପଲଙ୍କେ ଶ୍ରୀରାମ ନିଶ୍ଚିନ୍ତେ ନିଦ୍ରାଗଲେ ।
ଜନେକ ଦୋହ୍ଲିତା ଆସି ହେଲେ ପରଶେଷ
ଜାନକୀଙ୍କ ଘେନିଶ୍ରୀରାମ ବିନୋଦେ ନାନାରସ
ବିନୋଦ ରତିଲୀଳା ଛାଡ଼ି ଦେବ ପୁଣି
ଜାନକୀ ହସ୍ତଧରି ଚଳିଲେ ରଘୁମଣି ।
ଦିହୁଡ଼ି ଦୀପ ଘେନିଣ ସଖୀଗଣମାନେ
ଲକ୍ଷ୍ମଣ ନଗ୍ର ଦେଖିବାକୁ ବିଜେ ରାମରାଣେ ।
ସହସ୍ରେକ ଘର ଯେ ଦେଖିଲେ ସେଠାରେ
ନାନାବର୍ଣ୍ଣେ ସ୍ଥାନମାନ ବିଶ୍ୱକର୍ମା କରେ ।
ନଗ୍ରପୁର ବୁଲି ଫୁଲ ବନରେ ପ୍ରବେଶ
ଅନେକ ବନେ ଫୁଲ ଫୁଟିଛି ବିଶେଷ ।
ଫୁଲବନ ଯାଇଣ ସେଠାରେ ଦେଖିଲେ
ନାନାବର୍ଣ୍ଣେ ଫୁଲଦେଖି ସନ୍ତୋଷମନହେଲେ
ନନ୍ଦନ ବନ ପ୍ରାୟେ ଦିଶେ ଶୋଭାବନ
ଇନ୍ଦ୍ର ଉପବନ ନାମ ଅଟେ ତାର ପୁଣ ।
ମେଘନାଦ ପାଚେରୀ ବେଢ଼ିଛି ଚଉପାଶ
ଦେଖିକରି ଶ୍ରୀରାମ ହୋଇଲେ ସନ୍ତୋଷ ।
ଜାନକୀ ହସ୍ତଧରି ଅଇଲେ ରାବଣାରି
ବାହାରେ ଅବକାଶ ହେଲେ ନୃପଧାରୀ ।
ଏମନ୍ତ ସମୟରେ ରଜନୀ ହେଲା ଶେଷ
ମର୍ଦ୍ଦନ ମାଜଣା ହେଲେ ରଘୁକୁଳ ଶିଷ୍ୟ ।
ସ୍ନାନ କରିଣ ବେଗେ ନିତ୍ୟକର୍ମ ସାରି
ଅମଳାଣ ବସନ ପିନ୍ଧିଲେ ଯାଇକରି ।
ଦେବାର୍ଚ୍ଚନ ମଣ୍ଡପେ ବିଜେ ଯାଇ କଲେ
ଦେବାର୍ଚ୍ଚନ ସାରିଣ ସେଠାରୁ ଅଇଲେ ।
ରତ୍ନ ପାଦୁକା ଦୁଇ ଯେ ଲଗାଇ ପାଦରେ
ବିଜୟ କଲେ ଦେବ ଦେବାଳ ମଧ୍ୟରେ ।
ଭରତ ଲକ୍ଷ୍ମଣ ଯେ ଶତ୍ରୁଘ୍ନ ତିନି
ବିଭୀଷଣ ସୁଗ୍ରୀବର ଅଙ୍ଗଦ ହନୁ ଜାଣି ।
ବଶିଷ୍ଠ ବାମଦେବ କଶ୍ୟପ ନାରଦ
ସମସ୍ତେ ଚଳିଗଲେ ଶ୍ରୀରାମ ପଛଭାଗ ।
ବିରଞ୍ଚି ନାରାୟଣଙ୍କୁ କଲେକ ଦରଶନ
ପ୍ରସାଦ ଘେନି ଶ୍ରୀରାମ ଫେରି ଆସିଲେ ପୁଣ
ଗୃହିଁକେ ଅପୂର୍ବ ଯେ ସୁନ୍ଦର ଦିଶେ ଶୋଭା
ମେଘନାଦ ପାଚେରୀକି ମଗର ବେଢ଼ି ପ୍ରଭା
ଶତେକ ଦେଉଳରେ ପ୍ରତିଦେବତା ରହି
ବଡ଼ଦେଉଳରେ ନାରାୟଣ ଛନ୍ତି ଶୋଇ ।
ଦେଖିକରି ଶ୍ରୀରାମ ମନରେ ତୋଷ ହେଲେ
ଭରତଙ୍କୁ ତହିଁରେ ପରଶଂସା କଲେ ।
ସେଠାରୁ ବିଜେକରି ଗଲେ ନୃପଧାରୀ
ଲକ୍ଷ୍ମଣ ନଗ୍ରରେ ଯାଇବିଜେ ଦେବ କରି ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଜାନକୀ ମର୍ଦ୍ଦନ ମାଜଣା ହୁଅନ୍ତି ।
ସ୍ନାନ ସାରିଣ ଦେବୀଯେ ହୋଇଲେ ସୁବେଶ
ଶାଶୁଙ୍କୁ ତିନି ଭଗ୍ନୀ ଘେନିଣ ବିଶେଷ ।
ବିରଞ୍ଚି ନାରାୟଣଙ୍କ ଦର୍ଶନେ ଚଳିଗଲେ
ଧାଣ୍ଡି ମୃଦୁଙ୍ଗ ସଙ୍ଗରେ ଛନ୍ତି ଭଲେ ।
ଦେଉଳ ଶୋଧନ କରି ପଶିଲେ ଭିତରେ
ମାୟା ସୀତା କରଧରି ଚଳନ୍ତି ଧୀରେ ଧୀରେ
ନାରାୟଣଙ୍କୁ ଯାଇଣ କଲେ ଦରଶନ
ଦେଖିଣ ଦେବୀ ମନରେ ସନ୍ତୋଷ ହେଲେପୁଣ
ଦେବୀଙ୍କି ଦେଖିଣ ଯେ ନାରାୟଣ କହି
ବିଳମ୍ବ କରୁଛ କିମ୍ପା ଅଭିଷେକ ନୋହି ।
ଆଜ ମଧ୍ୟରେ ଅଭିଷେକ ବେଗେ ହୁଅ
ଶୁଣିଣ ଜାନକୀର ସନ୍ତୋଷ ହେଲା ଦେହ ।
ସେଠାରୁ ଚଳିଆସି ନଗ୍ରରେ ପରବେଶ
ରତନ ପଲଙ୍କରେ ବସିଲେ ହରଷ ।

ଏଥୁ ଅନନ୍ତରେ ଯେ ଶୁଣ ଭଗବତୀ
ଶ୍ରୀରାମ ଯେ କନକ ମଣ୍ଡପରେ ଛନ୍ତି ।
ରତ୍ନ ସିଂହାସନ ପରେ ବସିଲେ ଯାଇକରି
ନର ବାନର ରାକ୍ଷସେ ଅଇଲେ ବେଗ୍ର କରି
ସକଳ ନୃପତି ଆସି ନମସ୍କାର କଲେ
କରଯୋଡ଼ି ସମସ୍ତେ ଆଗରେ ଠିଆହେଲେ ।
ସେନାପତି ଯୂଥପତି ପାତ୍ର ଅମାନାତ୍ୟ
ନରବାନର ରାକ୍ଷସ ଅଛନ୍ତି ବହୁତ ।
ପଟୁଆର ପଡ଼ିଣ ଅଛନ୍ତି ଚଉକତି
ଲଙ୍କାଗଡ଼ କଥା ମା କୁହାକୁହି ହୋନ୍ତି ।
ଏଥୁ ଅନନ୍ତରେ ପୁଣ ଗଲା ଗୃରଦ୍ୱନ
ଭୃତ ଜଣାଇ ପ୍ରଭୁ ରୂପଧାରୀ ଶୁଣ ।
ତୁମ୍ଭର ନବର ଗୋଟି ହୋଇଛି ନିର୍ମାଣ
ଅମରାବତୀ ପୁରକୁ ଦିଶେ ଶୋଭାବନ ।
ବଶିଷ୍ଠ ଋଷିଙ୍କ ଆଜ୍ଞା ଦିଅ ହେ ଗୋସାଇଁ
ଅନୁକୂଳ ଖୋଜନ୍ତୁ ବିଜେ କରହେ ରଘୁସାଇଁ
ଭୃତର ବଚନ ଶୁଣି ରଘୁନାଥ ତୋଷ
ସୁଗ୍ରୀବର ରାଜାକୁ ହକାରିଲେ ପାଶ ।
ଆବରହିଁ ଅଣାଇଲେ ବିଭୀଷଣ ରାଏ
ନାମଧର ହନୁମନ୍ତକୁ ହକାରି କରାଏ ।
ଏତିକଙ୍କି ଶୁଣିହିଁଣ ଯେ ବୋଇଲେ ରାବଣାରି
ତୁମ୍ଭେ ଯାଇ ଦେଖିଆସ ମୋହର ନଗ୍ରପୁରୀ
ଶୁଣିକରି ଚାରିଜଣ ସେଠାରୁ ଚଳିଗଲେ
ସୁଗ୍ରୀ ବିଭୀଷଣ ହନୁ ଅଙ୍ଗଦର ଭୁଲେ ।
ଅଯୋଧ୍ୟା ନଗ୍ରେ ପ୍ରବେଶ ହୋଇଲେ ସତ୍ୱର
ରଥ ଗଜ ପଦାତ୍ମବଳ ଯେ ଅପାର ।
ଦେଖିଣ ଚନ୍ଦ୍ରକିରଣ ଜାଣିଣ ନଗ୍ରଗୋଟି
ସୁବର୍ଣ୍ଣ କଳସ ଧାଡ଼ି ଧାଡ଼ି ସେ ବସନ୍ତି ।
ନଗ୍ରର ନାରୀମାନେ ଯେ ରତିକାମ ଜାଣି
ଅମରାବତୀ ପ୍ରାଏ ଅଯୋଧ୍ୟାପୁର ମଣି ।
ରାଜନଗ୍ରେ ପ୍ରବେଶ ହେଲେ ଚାରି ବୀରେ
ଦେଖନ୍ତି ନବରମାନ ପଶିଣ ଭିତରେ ।
ଏଥୁ ଅନନ୍ତରେ ଯେ ଜାନକୀଦେବୀ ସାଇଁ
ସେମାନଙ୍କୁ ପଠାଇଲେ ନଗ୍ରକୁ ଦେଖ ଯାଇ
ଆପଣେ ବାହୁ ଲଗି ହୋଇଣ ବିଜେ କଲେ
ନଗ୍ରର ସିଂହଦ୍ୱାରେ ପ୍ରବେଶ ଯାଇ ହେଲେ ।
ଥିଲା ଲୋକମାନେ ଧଇଲେ ତୁରଙ୍ଗମ
ଭିତରକୁ ବିଜେ କରିଗଲେ ଯେ ଶ୍ରୀରାମ ।
ଏସନେକ ବେଳେ ଯାଇ ମିଳିଲେ ଲକ୍ଷ୍ମଣ.
ବଶିଷ୍ଠ ସହିତେ ଅମାନାତ୍ୟ ଗଣ ।
ରଘୁନାଥଙ୍କ ସଙ୍ଗରେ ପଟୁଆରେ ଯାନ୍ତି
କେତେହେଁକବେଳେ ସେହୁ ଭୃତକୁ ଦେଖନ୍ତି
ସୁଗ୍ରୀବର ହନୁମନ୍ତ ବିଭୀଷଣ ବୀର
ଶ୍ରୀରାମକୁ ଦେଖିଣ ଯେ କରନ୍ତି ଜୁହାର ।
ଠାକୁରେ ବିଜେକଲେ ଏବେ ହେ ପୁଣ ଦେଖ
ଲକ୍ଷ୍ମଣ ଶତ୍ରୁଘ୍ନ ସଙ୍ଗରେ ପ୍ରତ୍ୟକ୍ଷ ।
ଏତେବୋଲି ବାହୁଡ଼ି ଶ୍ରୀରାମ ପାଶେ ଗଲେ
ଭରତ ବିଭୀଷଣ ଅଙ୍ଗଦ ହନୁ ଭୁଲେ ।
କରଯୋଡ଼ି ଭରତ ଶ୍ରୀରାମ ଆଗେ କହି
ଏ ଅପ୍ରତିଷ୍ଠା ସ୍ଥାନକୁ ଦେବ ଅଇଲ କିମ୍ପାଇଁ
ଶ୍ରୀରାମ ବୋଇଲେ ଏ ପ୍ରତିଷ୍ଠା ହୋଇଲାଣି
ଯେତେବେଳେ ଏମାନଙ୍କ ପାଦ ପଡ଼ିଲାଣି ।
ତାହା ତୋତେ ବୁଝାଇଯେ କହିବା ଭ୍ରଥବୀର
ପୁଣିହିଁ ଶ୍ରୀରାମ ଯେ ବୋଲନ୍ତି ଉତ୍ତର ।
ଏ ପୁରମାନ ପୁଣ କେମନ୍ତେ ହେଲା ନିର୍ମା
ରତ୍ନମୟେ ପୁର ତ ଦିଶେ ବଡ଼ ଶୋଭା ।
ଭରତବୋଇଲେଦେବମୋହେରେନଜା'ନାଇ
ସ୍ୱର୍ଗର ଦେବତାମାନେ ବିଶ୍ୱକର୍ମା ପଠାଇ ।
ଅଷ୍ଟରତ୍ନ ପୁରମାନ କରିଛି ଘଟଣ
କଳସ ବସାଇଲା ଧାଡ଼ି ଧାଡ଼ି ଜାଣ ।
ଶ୍ରୀରାମବୋଇଲେଯେବେଦେବତାବିଜେକଲେ
ଆପେ ରୁଦ୍ର ବ୍ରହ୍ମା ନଗ୍ର ନିର୍ମାଣ କଲେ
ତେବେ କିମ୍ପା ଶୋଭା ଯେନୁହନ୍ତାମୋରପୁର
ସକଳ ଦେବତାମାନେ ପକ୍ଷ ଯେ ମୋହର ।
ଭରତ ବୋଇଲେ ଦେବ ପବନର ସୁତ
ସେ ଆସି କହିବାରୁ ମୁଁ କଲି ଏମନ୍ତ ।
ଶୁଣିଣ ଶ୍ରୀରାମ ଯେ ମନରେ ତୋଷ ହେଲେ
ଗଉରୀ ଆଗରେ ଯେ ଈଶ୍ୱର କହିଲେ ।
ସହସ୍ର ଘର ନବରେ ଦେଖିଲେ ରାମରାଣି
ଲକ୍ଷେକ କଳସ ଯେ ବସିଣ ଅଛି ପୁଣ ।
ଉତ୍ତର ଜଗତି ଯେ ହୋଇଛି ଗୋଠା ଦାରି
ବାହାର ଜଗତି ଷୋଳଗୋଟି ସାରି ।

ସ୍ଫଟିକରେ ସୁବର୍ଣ୍ଣ ହୋଇଛି ନିର୍ମାଣ
ଆଉ ଘରମାନ ସବୁ ରତ୍ନରେ ଭୂଷଣ ।
ଦେଖିବାକୁ ଶ୍ରୀରାମ ଯେ ମଧୁବନ ଗଲେ
ଫଳବନ ମଧୁବନ ଅଛାଳ ଦେଖିଲେ ।
ପୁଷ୍କରିଣୀ ସରୋବର କୂପବାପୀ ଦେଖି
ସମସ୍ତଙ୍କ ମନହେଲା ବଡ଼ ସୁଖୀ ।
ସେଠାରୁ ଶ୍ରୀରାମ ଯେ ଲେଉଟିଲେ ବେଗ
ଦେଖିଣ ତୋଷହେଲେ ନଗର ରାମଦେବ ।
ଏଥୁ ଅନନ୍ତରେ ଗୋ ହେମବନ୍ତ ଶୁଣ
ଶ୍ରୀରାମ କହନ୍ତି ଯେ ଭକ୍ତ ଆଗେ ପୁଣ ।
ବ୍ରହ୍ମା ସଦାଶିବ ଯେ ସକଳ ଦେବେ ଆସି
ଏ ପୁର ନିର୍ମା କଲେଟି ଯେବେ ବସି ।
ତେବେ ଏ ପୁରଗୋଟି ହୋଇଲା ପ୍ରତିଷ୍ଠା
ଭଗତଜନ ମେଳ ହେବାକୁ ସୁଖକଥା ।
ସେ ପୁରରେ ଯେତେକ ଥିଲା ଅବଗୁଣ
ଭଗତ ଅଛନ୍ତି ଯେ ଏ ସମସ୍ତ ପୁଣ ।
ଦୋଷମାନ ଏଥିରୁ ସମସ୍ତ କ୍ଷୟ ଗଲା
ବିଷ୍ଣୁ ଭକ୍ତ ଲୋକ ପାଦ ଏଥିରେ ପଡ଼ିଲା ।
ସୁଗ୍ରୀବର ବିଭୀଷଣ ହନୁମନ୍ତ ତିନି
ସରି ନୁହନ୍ତି ଯେ ଯ୍ୟାଙ୍କୁ ଦେବତାମାନେ ପୂଜି
ଏ ପୁଣ୍ୟ ପୁରୁଷମାନେ ପରଉପକାରୀ
ଏହାଙ୍କୁ ପଟାନ୍ତର କି ଆନ ହୋଇପାରି ।
ବାସୁଦେବ ସେବକ ଏ ଅଟନ୍ତି ନିଶ୍ଚୟେ
ଏହାଙ୍କର ସଙ୍ଗେ ଥିଲେ କିଛି ନାହିଁ ଭୟେ ।
ଶୁଣିବାକୁଁ ବାବୁ କରେ ଅପୂର୍ବ କାହାଣୀ
ବାସୁଦେବ ପାଦ ଧୋଇଲେ ଯେଉଁ ପ୍ରାଣୀ ।
ସେ ଜଳ ସୁରସୁରି ବୋଲିଣ ଜଣାଇଲା
ଜାଣି ସଦାଶିବ ତାହା ଶିରରେ ଧଇଲା ।
ଅଦ୍ୟାପି ଏ ପୃଥ୍ୱୀରେ ଅଛନ୍ତି ଯେତେ ଜଳ
ଗଙ୍ଗାର ସଙ୍ଗରେ କି ହୋଇବ ସମତୁଲ ।
ବିଷ୍ଣୁ ବିଷ୍ଣୁ ବୋଲି ଶିରେ ସିଞ୍ଚିଲେ ପବିତ୍ର
ଏ ସେ ପବିତ୍ର ପୁଣ ହୋଇଲା ଜଗତ ।
ଚଣ୍ଡାଳକୁ ବ୍ରାହ୍ମଣ ଛୁଇଁଲେ ସ୍ନାନ କରି
ସ୍ନାହାନ ନ କଲେ ସେ ଚଣ୍ଡାଳ ସଙ୍ଗେ ସରି
ଗଙ୍ଗା ବାସୁଦେବଙ୍କ ଚରଣେ ସେବା କଲା ।
ସକଳ ଜନଙ୍କୁ ଯେ କୃତାର୍ଥ ଚିତ୍ତ ଦେଲା ।

ବଡ଼ଲୋକ ଆଶ୍ରେ କଲେ ବଡ଼ଯେ ବୋଲାଇ
ତୁ କିମ୍ପାଇ ଅଜ୍ଞାନ ହେଉଛୁ କଏକଇ ।
ପ୍ରହଲ୍ଲଦ କୁମର ବିଷ୍ଣୁଙ୍କୁ ଆଶ୍ରେ କଲା
ପ୍ରସନ୍ନ ହୋଇ ବିଷ୍ଣୁ ଯେ ତାକୁ ବର ଦେଲା
ହିରଣ୍ୟ ପୁତ୍ରକୁ ଯେ ରଖିଲେ ଦେବା ରାୟେ
ବିଷ୍ଣୁଠାରେ ଭକତିକଲେ ନିର୍ମଳ ହୁଏ ।
ସୁଗ୍ରୀବର ରାଜା ବିଭୀଷଣ ଏ ନୃପତି
ସଂଗୋଷ ମରାଇ ମୋତେ ସେବା କରୁଛନ୍ତି ।
ଏହି ହନୁମନ୍ତ କେଶରୀ କପିର ତନୟେ
କହିଲେ ନ ସରଇ ଏହାର ବିନଏ ।
ପରଉପକାରୀ ଯେ ଅଟନ୍ତି ତିନିଜଣ
ଏମାନଙ୍କୁ ସାମାନ୍ୟ ଯେ ନୁହନ୍ତି ମୁନିଗଣ ।
ଏହାଙ୍କଯୋଗୁଁ ଦେବତାଙ୍କ ଶତ୍ରୁ ମଲେଏବେ
ଚଉଦ ଭୁବନ ଦୁଃଖ ସରିଲା ଏବେ ହାଦେ ।
ବିଷ୍ଣୁତେଜ ନଥିଲେ ଦୈତ୍ୟଙ୍କୁ ହୋଏମାରି
ଦୈତ୍ୟଙ୍କୁ ମାଇଲେ ନାମ ବୋଲାଏ ଦଇତାରି
ଯେ ଦୈତ୍ୟଙ୍କୁ ଯେମାରଇ ଅଟେସେନାରାୟଣ
ମୁଁ ତାହାକୁ ମଣଇ ଯେ କମଳା ରମଣ ।
ସ୍ୱରୂପ ମୁଁ କହୁଛି ଯେହି ସେ ନରହରି
ଭୂତ ଭଗତ ହେଲେ ଭୂତରେ ଅଧିକାରୀ ।
ଏହାଙ୍କ ପ୍ରସାଦେ ସୀତା ଆଣିଲି ଉଦ୍ଧାରି
ଅଶ୍ୱମେଧ ଯାଗ ଯେଉଁଠାରେ କରି ।
ଏ ପୁଣ୍ୟ ପ୍ରାଣୀଙ୍କର ପାଦରେଣୁ ଲାଗି
ଦୋଷକୃତମାନ ଏଠାରୁପଳାଇବେ ସବୁଭାଗି
ଅଶ୍ୱମେଧ ଯାଗ ଯେ ଯେଉଁଠାରେ କରି
ଏମାନଙ୍କ ଚରଣକୁ ନୋହେ ସେହୁ ସରି ।
ଆଜ ନବର ତ ମୋର ହୋଇଲା ପବିତ୍ର
ଲୋକମାନଙ୍କ ଆଗୁର ଆମ୍ଭେ କରିବା ବିହିତ
ଏତେ କହି ଶ୍ରୀରାମ ବିଜେ କରିଗଲେ
ବୁଲିକରି ସବୁ ସ୍ଥାନ ଦେଖିଲେ ରଘୁବୀରେ ।
କେବଣ ଘରଗୋଟି ମର୍କତ ପାଷାଣ
କେବଣ ଘରଗୋଟି ସୁବର୍ଣ୍ଣ ନିର୍ମାଣ ।
କାହିଁତେ କାଚ ଚଳ କାହିଁରେ ରୁପା ଚଳ
କେବଣ ଘର ଟଗୋଟି ମାଣିକ୍ୟ ନିବଡ଼ ।
କାହିଁରେ କୁରୁବିନ୍ଦ ପଦ୍ମରାଗ ବେଣୀ
କେବଣ ଘରରେ ଯେ ଲମ୍ବେ ଲୀଳାମଣି ।

କାହିଁରେ ପଟ୍ଟପଟ ଅଛଇ ଛୁଆଇଁ
କେବଣ ଘରଗୋଟି ହୀରାରେ ବିରାଜଇ ।
ଅଗୁରୁ ଚନ୍ଦନରେ କେବଣ ଘରଗୋଟି
କେଉଁ ଘର ଉପରେ ମାଣିକ୍ୟ ଫୁଲ ଫୁଟି ।
କାହିଁରେ ନବରତ୍ନ ପିଣ୍ଡୁଳ ନିରନ୍ତର
ସ୍ଫଟିକରେ ନିର୍ମାଣ ଅଟେ କେଉଁ ଘର ।
ତମ୍ବାର କବାଟ କାହିଁ କଂସାବାଡ଼ କର
କେଉଁ ଘର ଚନ୍ଦନ ଯେ ଅଙ୍ଗରେ କସ୍ତୁରୀ ।
କେଉଁ ଘରେ ପକାଇଛୁ କର୍ପୂରର ଧୂଳି
କେଉଁ ଘର କୃଷ୍ଣବର୍ଣ୍ଣରେ ଅଛୁ ତୋଳି ।
କେଉଁ ଘରେ ଗଣ୍ଡି କରିଅଛନ୍ତି ପାଟସୂତା
ଝିଡ଼ିମି ପରଦା କାହିଁରେ ପାଡ଼ିଣ ଅଛୁ ବତା ।
ଗୋହଲାର ଘର କାହିଁ ଗୁଜ ଯେ ପଞ୍ଝାମୋଡ଼ି
କେବଣ ଘରଗୋଟି ଶବଦ ଚନ୍ଦ୍ରକାନ୍ତ ।
ସିନ୍ଦୂରିଆ ପାଲଟରେ କାହିଁ ପଡ଼ିଅଛୁ ଟେର
କାହିଁ ନେତ ଝରାଳ ଉଡ଼େ ଫରହରା ।
କେଉଁ ଘର ଭିତରେ ଚନ୍ଦ୍ରାତପ ଟାଣି
କାହିଁରେ କେରା କେରା ଲମ୍ବିଛି ନୀଳମଣି ।
ପିତଳ ପାବଛ କାହିଁରେ ବନ୍ଧା ଫେର ନାଳ
କେବଣ ଘର ଗୋଟି ଦିଶଇ ଉଜ୍ଜ୍ୱଳ ।
ଅବକାଶ ନିଅବକାଶ ଘର ମାନ
ମାତାମାନଙ୍କର ପୁର ପବିତ୍ର ବିଧାନ ।
ଆସ୍ଥାନ ନବର କାହିଁରେ ଘୋଡ଼ାଶାଳ
ଦେଖିଣ ପ୍ରଶଂସା କରନ୍ତି ରଘୁବାଳ ।
ବିଭୀଷଣ ସୁଗ୍ରୀବରଙ୍କୁ ପଚାରନ୍ତି ଯେ ତହିଁ
ସେମାନେ ବୋଲନ୍ତି ଦେବ ମଞ୍ଚରେ ଏ ନାହିଁ
ଶ୍ରୀରାମ ବୋଇଲେ ଭ୍ରାତ ରାବଣ ଘର ଭଲ
ହନୁମନ୍ତ ଦେଖିଣ ଆମ୍ଭ ଆଗରେ କହୁଥିଲା ।
ଶୁଣିଣ ପବନ ସୁତ ଯୋଡ଼ିଇ ବେନିକର
ରାମଦେବ ଯାହା ଆଜ୍ଞା ଦେଲେହେ ରଘୁବୀର
ରାବଣ ମନ୍ଦିର ଦିଶେ ଏହି ରୂପେ ସଞ୍ଚ
ସବୁ ସୁବର୍ଣ୍ଣତାର ନୁହଇ ଅନ୍ୟ ରୂପ ।
ବିଭୀଷଣ ବୋଇଲେ ଶୁଣିମା ରଘୁସାଇଁ
ଏସନକ ନବର ଦେଖିଲେ ମୋର ନାହିଁ ।
ସୁଗ୍ରୀବର ପ୍ରଶଂସା ଯେ କରଇ ବହୁତ
ନିଷ୍ଠାମନେ ପୁରସଣ କରେ ଅପ୍ରମିତ ।

ଶୁଣିଣ ଶ୍ରୀରାମ ଯେ ଭ୍ରାତୃଙ୍କୁ ପ୍ରଶଂସିଲେ
ନବର ଦେଖିରାମ ବାହୁଡ଼ି ଅଇଲେ ।
ହସ୍ତୀବର ଆରୋହଣ ପୁଣିହିଁ ଧାପ ଦେଲେ
ଲକ୍ଷ୍ମଣ ନବରେ ପ୍ରବେଶ ବେଗେ ହେଲେ ।
ନବରେ ବିଜେକଲେ ଜାନକୀର ପତି
ବଶିଷ୍ଠ ମୁନିଙ୍କି ଦେବ ଗୃହିଣ କହନ୍ତି ।
ରାମଦେବମୋରନବରେପ୍ରବେଶହେବାବେଳେ
ଖୋଜ ଅନୁକୂଳ ଦେବ ଅମୂଲ୍ୟ ଯୋଗବଳେ
ବଶିଷ୍ଠ ବୋଲନ୍ତି ଶ୍ରୀରାମ ଅଛଇ ମୁହିଁ ଜାଣି
ଯେଉଁ ଦିନ ନଗ୍ରରେ ହେବ ନୃପମଣି ।
ଆଗହୁଁ ଏହା ମୁହିଁ ବୁଝିଛି ରଘୁବୀର
ଶ୍ରାବଣକୃଷ୍ଣପକ୍ଷ ତ୍ରୟୋଦଶୀ ଗୁରୁବାର ।
ବିଶାଖାର ନକ୍ଷତ୍ର ଚନ୍ଦ୍ର ନାମେ ତିଥି
ପୁଷ୍ୟା କକଡ଼ାକୁ ତୋର ପଞ୍ଚମ ଦିନ ସେଟି ।
କୌଳବ ନାମେ କରଣଚନ୍ଦ୍ର ନାମେ ଯୋଗ
ଭୂମ୍ଭର ନକ୍ଷତ୍ରକୁ ପରମ ସୁଯୋଗ ।
ତିନିଘଡ଼ି ଭିତରେ ଶ୍ରୀରାମ ଏଥୁପିବ
ପ୍ରହରକ ଠାରେ ନଗ୍ରରେ ପଶିବ ।
ତ୍ରୟୋଦଶୀ ଆଜ ଯେ ହେବ ଅଭିଷେକ
ତେତେବେଳେ ଆନନ୍ଦ ଯେ ହେବେ ସର୍ବଲୋକ ।
ଶୁଣିଲେ ରଘୁନାଥ ବଶିଷ୍ଠଙ୍କ ବାଣୀ
ହେଉବୋଲି ବୋଇଲେ ଧାନୁଷ୍କ ଚୂଡ଼ାମଣି ।
ଭରତ ସୁମନ୍ତକୁ ଆଜ୍ଞାଦେଲେ ପୁଣି
ଅଯୋଧ୍ୟାରେ ଘୋଷଣ ଦିଆଅ ତୁମ୍ଭେ ଜାଣି ।
ଶୁଣିଣ ସୁମନ୍ତ ଯେ ଡଗରା ପେଶିଦେଲା
ଅଯୋଧ୍ୟା ନଗ୍ରରେ ଘୋଷଣ ଦିଆଇଲା ।
ଚତୁରଙ୍ଗ ବଳଯେ ଅଇଲେ ସଜ ହୋଇ
ନରବାନର ରାକ୍ଷସେ ମିଳିଲେ ବେଗହୋଇ ।
ରାଜାଗଣମାନେ ଯେ ଯାହାର ବଳଘେନି
ବୀରବେଶ ହୋଇଣ ଅଇଲେ ସର୍ବେ ପୁଣି ।
ରଥମାନ ମଣ୍ଡିଣି କରିଣ ବିଜେ କଲେ
ବାଜାବଜାବ ସକଳ ବଜାଏ ଚଳିଲେ ।
ଧବଳ ଛତ୍ର ମାନ ଟେକାଇ ଆଗରେ
ବାଦ୍ୟର ନିଶାଣରେ ବାଜେ ଅତି ଘୋରେ
ମେଘୁଗିରି ଚମକିଣ ହୋଇଲା ଅଧିର
ସକଳ ଲୋକ ଜାଣିଣ ହୋଇଲେ ବାହାର ।

ସମସ୍ତେ ଆସିଣ ରୁଣ୍ଡ ହୋଇଲେ ଯହୁଁ ପୁଣ
ଭରତ ସୁମନ୍ତ ଜଣାଇଯେ ଶ୍ରୀରାମ ଛାମୁରେଣ
ଠାବେ ଠାବେ ଉଭାରେ ସମସ୍ତ ତୃଣାରଖି
ରାଜଦଣ୍ଡ ପଅଁର ପାଏଡ଼ା ପକାବନ୍ତି ।
ପଜଅର ପାଣିସିଞ୍ଚ ଚନ୍ଦନ ଦେଲେ ଛେରା
ଏମନ୍ତ ପ୍ରକାରେ ବିଧି କଲେକ ଯେ ତୋରା
ଆଗହୁଁ ସଜହୋଇ ଥିଲେ ଯେ ସମସ୍ତେ
ନିଶାଣ ରବ ଶୁଣି ଅଇଲେ ତ୍ୱରିତେ ।
ମନୁଷ୍ୟ ରାକ୍ଷସ ଯେ କପିମାନେ ମିଶି
ଅସଂଖ୍ୟ ବଳ ଯେ ପୂରିଲେ ଦଶଦିଶି ।
ଯାଆନ୍ତି ଯାଉଅଛୁ ଯେ ରହନ୍ତିମାନେ ରହି
ସୈନ୍ୟଙ୍କ କଦାଚରେ ପୂରିଲା ସର୍ବ ଭୂଇଁ ।
ଏସନ ସମୟେ ଗୁହ ନାମେ ଶବର
ଦରଶନ କଲେ ଆସି ଶ୍ରୀରାମ ଛାମୁର ।
ଶତେ ଶ୍ୱେତ ଚାମର ଅଯତ ଅଣାଇଲା
ଶ୍ରୀରାମଙ୍କ ଛାମୁରେ ନେଇଣ ତାହା ଦେଲା ।
ଦେଖିଣ ଶ୍ରୀରାମ ବହୁ ପ୍ରଶଂସା କରେ
ତୁମ୍ଭେ ତ ଅଛ ଏଠାରେ କେହୁ ଆଣିଦେଲେ
ଶବର ବୋଇଲା ଦେବ ଅଣାଇଲି ମୁହିଁ
ମୋର ରାଜ୍ୟକୁ ରାତ୍ରର ଭେଦଥିଲ ହେଗୋସାଇଁ
ଯାଅଛୁ ତୁମ୍ଭେ ଆଗୁଆଣ ହୁଅ ହେ ମଇସ
ଧରାଇଣଥିବ ତୁମ୍ଭେ ମୟୂର ପୁଛ ଛଇ ।
ଏସନ ଆଜ୍ଞାପାଇ ଶବର ବେଗେ ଚଳି
ସିଂହଦ୍ୱାରେ ରହିଣ ସେ ବାଜଣା ବଜାଇଲା
ଢକଢୋଲ କୁଣ୍ଡଳ ଯେ ଶୃଙ୍ଗ କମକଡ଼ା
ମର୍ଦ୍ଦଳ ଘଣ୍ଟ ଇଲା ବାଦ୍ୟ ଘୁମୁଘମୁଯେଦୁମୁରା
ଝାଞ୍ଜର କାହାଳ ବଜାଏ ରଣରଣ
ନାଚନ୍ତି କନ୍ଧ ଲୋଧା ଶବର ଗେଲକରେ ।
ଅସୁରଙ୍କରବାଦ୍ୟଯେବାନରଙ୍କରଯେଦାଉଣ୍ଡି
ଶୁଣିଣ ନଗ୍ରଲୋକେ ହେଲେ ଯେ ଆଉଣ୍ଡି ।
ଲକ୍ଷେ ରାଜାଙ୍କର ଯେ ବାଜିଲା ବାଜଣା
ସବୁ ଶବଦରୁ ଯେ ରାମତାଳ ଜଣା ।
ଲକ୍ଷେକ ଟମକ ଯେ ବାଜଇ ଏକା ବେଳେ
କ ଜାଣି ମେଦିନୀ ଯେ ପଡ଼ିବ ରସାତଳେ ।
ନାନାଦେଶ ମାନର ବିବିଧ ଛତ୍ର ଚାମର
ଆନ ଆନ ପ୍ରକାର ଆଲମ୍ବ ସେ ଉଭାର ।
ରଥ ଗଜ ଅଶ୍ୱ ଯେ ଅଟେ ଅଗଣିତା
ସ୍ୱର୍ଗରେ ଥାଇ ଦେଖନ୍ତି ସକଳ ଦେବତା ।
ବାନରେ ବିଶ୍ୱରୂପ ଲଙ୍କାରେ ହୋଇଥିଲେ
ସଂଗ୍ରାମ ସରିବାରୁ ସାମାନ୍ୟ ରୂପହେଲେ ।
ବିଧାତା ହରିନେଲେ ସବୁ ରୂପ ବଳ
ପୂର୍ବେ ଯେଉଁରୂପ ହୋଇଥିଲେତାଳେ ତାଳ
ସତେଯୁଣଲଙ୍କା ରତ୍ନକଶକୋଷ ସେତୁବନ୍ଧପ୍ରତି
ସମୁଦ୍ରରୁ ଉତୁରିଣ କୂଳରେ ଉତପତି ।
ଏତେ ରକ୍ଷକପି ପୁଷ୍ପକ ଯାନରେ ବସାଇ
ତେତେ ସୈନ୍ୟମାନଙ୍କୁ ଅଯୋଧ୍ୟା ସମ୍ଭାଳଇ
ନବରବେଢ଼ ହେ ଶ୍ରୀରାମ ଆଜ୍ଞାଦେଲେ
ବିଧାତାର ଆଜ୍ଞାରେ ତହିଁକି ନ ଅଣ୍ଟିଲେ ।
ସମସ୍ତେ ଅଛନ୍ତି ଯେ ଗୋଟିଏ ଜଣାନାହିଁ
ତେଡ଼େ ବପୁବଳଗଲା ତାଙ୍କର ଏବେକାହିଁ ।
ଦେହରେ ବଳ ନାହିଁ ବୋଲି ନଜାଣନ୍ତିପୁଣି
ମନରେ ବିଚାରନ୍ତି ସ୍ୱର୍ଗକୁ ପାରୁଜିଣି ।
ସେନାପତି ଯୂଥପତି ମାନେ ଅନୁରୂପେତେଜ୍ୟ
ପୂର୍ବରୁ ଶଙ୍କରଯାଏ ସୁଗ୍ରୀବର ରାଜ ।
ହନୁମନ୍ତ ଅଙ୍ଗଦ ଜମ୍ବେବ ମନ୍ତ୍ରୀବର
ନଳ ନୀଳ ଗନ୍ଧମାର୍ଦ୍ଦନ ହନୁର ପିଅର ।
ଉଗ୍ରତେଜ ଗୁଡ଼ିଣ ଧଇର୍ଯ୍ୟ ତେଜ ହୋନ୍ତି
କୋପକଲେ ଜଗତ ଜିଣି ନ ପାରନ୍ତି ।
ଯେଯାହାର ଅନୁରୂପେ ହୋଇଲେ କାଛେଣି
ସିଂହଦ୍ୱାରେ ପଟୋଆରେ ରହିଲେ ବେଳଜାଣି
ରଣଜୟ ବାନାମାନ ଫରହର ଉଡ଼ି
ବାଜଣାର ଘାଏ ଯେ ପର୍ବତ ପଡ଼େ ଝଡ଼ି ।
ରିକ୍ଷଭାଲୁ ରାକ୍ଷସ କନ୍ଧ ଶବର ମଧ୍ୟାର
ମନଶ୍ୱ ଗଜ ଅଶ୍ୱ ବାନର ଉଷ୍ଟ୍ରବର ।
ଅପ୍ରମିତ ବଳ ଯେ ହେଲେ ମିଶାମିଶି
ସ୍ୱର୍ଗର ପୁରେ ଥାଇ ସୁରେ ପରଶଂସି ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାୟେ
ନବରକୁ ଯିବେବୋଲି ବେଗେ ସଜହୋଏ
ଯେ ବିଧି ନିତ୍ୟକର୍ମ ସାରିଲେ ତଡ଼ିତି
ବେଗ ବେଗ କରିଣ ଭୂଷଣ ହୁଅନ୍ତି ।
ଭିତର ନଗରେ ଯାଇ ବିଜେକଲେ ବେଗେ
ଲକ୍ଷ୍ମୀ ନାରାୟଣ ପ୍ରତିମା ଦର୍ଶନ କଲେଶୁଭେ

ପ୍ରସାଦ କରେ ଯେବଣ ବାଦ୍ଯ଼ ଆସେ ପୁଣ
ଯିବାକୁ ସଜ ଶ୍ରୀରାମ ହୋଇଲେକ ଜାଣ ।
ବସ୍ତ୍ର ପରିହରଣ ଶୁକଳ ଗନ୍ଧା ପିନ୍ଧ
ଝୁର ଶୁକଳ ପାଗ ଶିରପରେ ବାନ୍ଧ ।
ଶୁକ୍ଳ କୁସୁମରେ ମଣ୍ଡିଲେ କେଶ ଭାର
ଝୀନବାସ ପିନ୍ଧଣ ଦିଶିଲେ ଶୋଭା ଘୋର ।
ଠେକା ପାଗ ବାନ୍ଧବାରୁ ଶ୍ରୀରାମଙ୍କୁ ସୋହଇ
ଧିରେ ଧିରେ ଶ୍ରୀରାମ ଗମନ କରଯାଇ ।
ଗନ୍ତାଲଗି ହୋଇଣ ସେଠାରୁ ଚଳଗଲେ
ତଡ଼ାଗ ମାନ ଦେଖିଣ ଲକ୍ଷ୍ମଣ ଅଇଲେ ।
ବରୁଣ ଦେଇଥିଲେ ଯେବଣ ଅଳଙ୍କାର
ସେ ରତ୍ନ ଆଭରଣ ହେଲେ ରଘୁବୀର ।
ବ୍ରହ୍ମକାନ୍ତ ଗ୍ରୀବ ମୁକୁତା ସପ୍ତଶାଖା
ଉପରେ ଅଛୁ ଗଜ ମୁକୁତା ନାୟକା ।
କଡ଼ି କଡ଼ି ଲଗିଅଛୁ ପଦ୍ମରାଗ ମଣି
କୁରୁବନ୍ଦ ପାଟିରେ କି ନଳାରଙ୍ଗ ଅଞ୍ଚଣି ।
ପୁଞ୍ଜି ପୁଞ୍ଜି ମୁକୁତା ଯେ କେଶ କେଶ ଝର
ନଳବର୍ଣ୍ଣେ ଉଦେକ ଗଗନେ ଯେସନ୍ତେ ତାର
କି ଜାଣି ପଟାନ୍ତର କି ନବଗ୍ରହ ପ୍ରଭା
ଶ୍ୟାମଳ ବର୍ଣ୍ଣ ରୂପକୁ ଦିଶେ ଅତି ଶୋଭା ।
କର୍ଣ୍ଣରେ କୁଣ୍ଡଳ ମଗର ମୁହଁ କମ
ନବରତ୍ନେ ନର୍ବାଣ କରି ରୁପିଲଶୁଦ୍ଧହେମ ।
ହସିଣ କହିଲେ ଦେବ ଚଳଇ ଗଣ୍ଡସ୍ଥଳ
ଝଟ ଝଟ ଦିଶଇ ଯେ ମର୍କତ କୁଣ୍ଡଳ ।
କଣ୍ଠରେ କଣ୍ଠିମାଳ ଶୋହେ ଗଜ ମୋତି
ଶରଦ ଚନ୍ଦ୍ରମା ଜିଣି ବିରାଜଇ ଜ୍ୟୋତି ।
ଏକସରି ଦୋସରି ନିଶିରି ଗଜସରି
ଘଞ୍ଚାଘଞ୍ଚ ମୁକୁତା ସପତ ସରି ହାର ।
ବିବିଧ ପଦକ ଗୋଟି ଅଛୁ ଯେ ନାନାପ୍ରନ୍ତି
ଶ୍ରୀରାମ ବକ୍ଷସ୍ଥଳେ ଥାଇଣ ବିରାଜନ୍ତି ।
ନାନାଜାତି ଫୋଏଲା ଦୋସରି ମାଳଗୁଚ୍ଛା
ସୁଗନ୍ଧ ସୁବର୍ଣ୍ଣରେ ଯେ ଆବର ସୁନାସୂତା ।
ମାଣିକ୍ୟ ରତ୍ନମାଳା ଲମ୍ବଇ ନାଭିଯାଏ ।
ରତନରେ ଭୂଷଣ ଶ୍ରୀରାମର କାୟେ ।
ଭୁଜରେ ସୁନା ବାହୁଟି ସିକଳି କଙ୍କଣ
କାହ୍ନରେ ଖଞ୍ଜିଲେ ସିକଳି ତାଡ଼କ ଆଭରଣ
ବିଦମୁଦ ବଳୟ ବିଜୁଳି ଜ୍ୟୋତି ଜାଣି
କଟିରେ କଟିମେଖଳା ଖଞ୍ଜିଲେକ ଆଣି ।
ବାମରେ ଛୁରିନେତ ଫର ହର ଉଡ଼େ
ଚରଣ ଯୁଗରେ ଯେ ଝୁମୁ ଝୁମୁ ବାଜେ
ଚଳନ୍ତେ ନେପୁର ଯେ ଝୁମୁଝୁମୁ ବାଜେ ।
ପୟର ଅଙ୍ଗୁଷ୍ଠିରେ ମୁଦ୍ରିକା ବିରାଜେ
ତଡ଼ାର ଲଗି ହୋଇ ରାମଚନ୍ଦ୍ର ରାୟେ
ମେଡ଼ରୁ ଓହ୍ଲାଇ ରତ୍ନ ପିଢ଼ାରେ ବିଜୟେ ।
ମଙ୍ଗଳ ଆଳତି ଯେ ବଶିଷ୍ଠ ଘେନ ଆସି
ଜୟ ଜୟ ଶବଦ ସକଳ ଜନେ ଭାଷି ।
ସୁବର୍ଣ୍ଣ ପିଢ଼ାରେ ଶ୍ରୀରାମଚନ୍ଦ୍ର ବସି
ଗୋରଚନା ଟିକା ତାଙ୍କୁ ଦେଲେଦେବଋଷି
ତହିଁର ଉପରେ ନେଇ ସିନ୍ଦୂର ଟିକାଦେଲେ
ମଙ୍ଗଳ ଆଳତି ସେ ଯେ ଘେନଣ ବନ୍ଦାଇଲେ
ନିଶାଖା ଶେତ ଦୂବକୁ ଶିରରେ ଦେଇପୁଣ
ଏହିସମୟରେ ଶତେ ଶଙ୍ଖ ବାଜେ ଜାଣ ।
ପନର ଲଗିରେ ଖଂର ଅଛୁ ଦାଡ଼ି
କସ୍ତୁରି ରେଖେ ନଶ ଅଛଇ ଉଭାରି ।
କୋଟିଏ କନ୍ଦର୍ପ ଜାଣି ଶ୍ରୀରାମର ରୂପ
କନ୍ଧରେ ହୋଣ ଭିଡ଼ି ଧଇଲେକ ଭୂପ ।
ସାଧବ ଯୁବତୀମାନେ ହୁଳହୁଳି ଦେଲେ
କେଯାଇ ଆଗର ଶେତପାରୁଆ ଦେଖାଇଲେ
କେହୁ ରାଜହଂସ ଯେ କରେ ଧରିଛନ୍ତି
ମଙ୍ଗଳ ଅଷ୍ଟକମାନ ଜ୍ୟୋତିଷେ ପଢ଼ନ୍ତି ।
ଦଧିଭାଣ୍ଡ ପୂର୍ଣ୍ଣକୁମ୍ଭ ଯେ କଦଳୀ ବୃକ୍ଷଗଛ
ଚୂତପତ୍ର ନଟିକାଳ ସୁବର୍ଣ୍ଣ ରୌପ୍ୟମାଛ ।
ବିବିଧ ବେଶବୃଣି ହେଲେ ରଘୁମଣି
କି ଜାଣି ପଟାନ୍ତର ସ୍ୱର୍ଗ ନାୟକାଣୀ ।
ଶେତଚାମର ଯେ ଡାଳନ୍ତି ଅବିଚ୍ଛନ୍ନ
ମଙ୍ଗଳ ଗୁଜ୍ଜରି ରାଗେ ବଜାନ୍ତି ଯନ୍ତ୍ରମାନ ।
ବଶିଷ୍ଠ ଜଣାଇଲେ ହୋଇଲା ଅନୁକୂଳ
ଦୁଇଘଡ଼ି ପ୍ରବେଶ ଯେ ଆସି ହେଲାବେଳ ।
ଶୁଣିଣ ଶ୍ରୀରାମଚନ୍ଦ୍ର ଉଠିଲେ ତତକ୍ଷଣ
ବିଭୀଷଣ ତୋଳଣ ଧଇଲେ ଶୀଘ୍ରହସ୍ତ ।
ସୁମନ୍ତ୍ର ସାଜିଦେଲା ପୁଷ୍ପକ ନାମେ ରଥ
ତହିଁରେ ବିଜେକଲେ ପ୍ରଭୁ ରଘୁନାଥ ।

ଶତ୍ରୁଜୟ ଗଜରେ ଚଢ଼ିଣ ସୁଗ୍ରୀବର
ଡାହାଣ ପାଶେ ଥାଇଣ ଢାଳନ୍ତି ଚାମର ।
ଶତ୍ରୁ ମର୍ଦ୍ଦନ ଚଢ଼ିଣ ଲକ୍ଷ୍ମଣ ଯାଇଁମିଳି
ଶ୍ୱେତଚାମର ବୀର କରେଧରି ଢାଳି ।
ଅସୁର ଦଳନ ରଥ ଶତ୍ରୁଘନ ଯେ ଆରୋହି
କନକ ଦଣ୍ଡ ଧରି ଶ୍ରୀରାମ ଆଗେ ରହି ।
ଭରତ ଚଢ଼ିଲେକ କଣିଅର ରଥ
ପଛ ପଟୁଆରେ ରୁହାଇଲେ ରଘୁନାଥ ।
ହନୁମନ୍ତ ବସେ ଯେ ଅଇରି ଗଜ କନ୍ଧେ
ମହାମେଘ ହସ୍ତୀକନ୍ଧେ ବସିଲୁ ଆନନ୍ଦେ ।
ଜମ୍ବେବ ଶୁଚେଣ ତାଳମ୍ବ ଶତବଳ
ବଳମୁଖ କାଳମୁଖ ବସନ୍ତ ନଳନୀଳ ।
ଦଧିମୁଖ କଞ୍ଚଣ କୁମୁଦ ସୁଶୋଦନ
ଆଗପଛ ହସ୍ତୀ ଉପରେ ସେହିପୁଣ ।
ମହେନ୍ଦ୍ର ଦୁର୍ବନ୍ଦ ଯେ ପବନ କେଶରି
ସାରସେଲୁ ସାରସ କାଳଞ୍ଜନ ଯେ ସଉରୀ ।
ଏମାନେ ସମସ୍ତେ ଯେ ଚଢ଼ିଣ ମତ୍ତ ଗଜ
ସଙ୍ଗୁ ଆଜ୍ଞାଦେଲେ ରଘୁକୁଳ ରାଜ ।
ଶ୍ରୀରାମର ଆଲଟ କେହୁ କରେ ଅଛି ଧରି
ଦୁଇପାଖରେ ସର୍ବେ ଅଛନ୍ତି ଆବୋରି ।
ବୀର ମହାବୀର ଯେ ମଲ୍ଲ ମହାମଲ୍ଲେ
ଅଶ୍ୱଚଢ଼ି କରି ଯେ ଧାମନ୍ତି ଦଳେ ଦଳେ ।
କେବଣ ହସ୍ତୀପରେ ଯେ ମର୍କଟ ଯେ ବଂଶ
କେବଣ ହସ୍ତୀପରେ ଭାଲୁ ଯେ ପଞ୍ଚାଶ ।
ଆଗକୁ କାହାର ମୁଖ ପଛକୁ କାର ଦୃଷ୍ଟି
କେହୁ ବାମ ଡାହାଣେ କରଛି ଲଏଟି ।
ଯେ ଯାହାର ଭୂଷଣ ଆଭରଣ ହୋନ୍ତି
ଏକକୁ ଆରେକ ପୁଣ ଆଗସରି ଯାନ୍ତି ।
ଲକ୍ଷେଧୂପ କାଠ ବଶିଷ୍ଠ ନେଇଦେଲେ
ଗୁଗୁଳ ଗୁଣ୍ଡି ଅଗରୁ ଚନ୍ଦନ ମିଶାଇଲେ ।
ଏକଇ ଧରଇ ଆରେକ ତା ବାଞ୍ଛଇ
କର୍ପୂର ଛେଲା କେହୁ ବାଟରେ ପକାଇ ।
କୋଳାହଳ ଶବଦ ଯେ ଶୁଭଇ ମହାଉଚ୍ଚ
ବଶିଷ୍ଠ ଲଗାଇଲେ ଧୂପକାଠି ସଞ୍ଚ ।
ଲକ୍ଷେକ ନୃପତି ଯେ ଲକ୍ଷେକ ରଥ ଚଢ଼ି
ରାମଚନ୍ଦ୍ର ଗୁମ୍ଫରେ ଅଛନ୍ତି ପଟୁଆରି ।

ବଭୀଷଣ ସଙ୍ଗରେ ଚାରିମନ୍ତ୍ରୀ ଆସ୍ଥେ
ତାହାଙ୍କୁ ଲଗାଇଲେ ଶ୍ରୀରାମଚନ୍ଦ୍ର ରାସ୍ତେ ।
ତୁମ୍ଭଥାଟ ଘେନକରି ଅଶ୍ୱ ବେଗ ଚଢ଼ି
ଆଗୁଆଣି ଦଣ୍ଡଘେନି ବେଗ ହୋଇ ଚଳ ।
ଶୁଣି ହସ୍ତୁ ଆରୋହିଲେ ଦଶକାଳ ବୃଦ୍ଧ
ସଙ୍ଗରେ ଚଳିଯାନ୍ତି ଆବର ବବୁଧ ।
ନିଶଙ୍କାରେ ଚଳିଯାନ୍ତି ମନରେ ହୋଇଯୋଗ
ସମସ୍ତେ ଚଢ଼ିଣ ଯେ ଅଛନ୍ତି ତୁରଙ୍ଗ ।
ଅସୁର ସୈନ୍ୟ ଥୋକାଏ ହସ୍ତୀ ଆରୋହିଲେ
ଥୋକାଏ ହସ୍ତୁବର ଚଢ଼ିଣ ଧାଇଁଲେ ।
ବଶିଷ୍ଠ ବାମଦେବ ଜାବାଳି କଶ୍ୟପ
ଏମାନଙ୍କୁ ଗୃହିଁଣ ବୋଲନ୍ତି ରାମ ନୃପ ।
ମାତୃଗଣେ ମାନଙ୍କୁ ଘେନଣ ତୁମ୍ଭେଆସ
ଏ ମହା ଗହଳର ଭିତରେ ନ ପଶ ।
ସୀତା ବଜେକଲେ ଭଗିନୀମାନଙ୍କୁ ସଙ୍ଗେଘେନି
ଶୁଣିଣ ବାହୁଡ଼ିଲେ ବଶିଷ୍ଠ ମହାମୁନି ।
ପଶ୍ଚିମ ଦ୍ୱାରେଯାଇ ହେଲେ ପରବେଶ
ହାନ୍ଦୋଳାରେ ଚଢ଼ିଣ ଯେ ଆସନ୍ତି ରାଣୀହଂସ
ଅଯୋଧ୍ୟା ଅଙ୍ଗବଳ ତାଙ୍କର ସଙ୍ଗେ ଆଏ
ଆଡ଼ୋ ଆଡ଼ୋ ବୋଲଣଖୁଣ୍ଟିଆ ଡାକଦିଏ ।
ଧିରଧିର ହୋଇଣ ପୁଷ୍ପକ ରଥଚଳି
ଦେଖିକରି ଯୁବତୀଏ ଦିଅନ୍ତି ହୁଳହୁଳି ।
ଥାଟ ଚଳିବାରେ ଯେ ଶୁଭଇ ଚହଳ
ଯାଆନ୍ତେଣ ପଟୁଆର ଅଛନ୍ତି ଅଙ୍ଗବଳ ।
ସମ୍ଭବ ହୋଇଣ ଯେ ଚଳନ୍ତି ମହାଥାଟ
ଗହଳରେ ଦଣ୍ଡକେ ହୋଇଲେ ମୁରାଟ ।
ଅଯୋଧ୍ୟା କଟକ ଯାକ ହେଲା ହାଲହୋଳି
ବୀରତୁରେ ଛନ୍ଦେ ନିସାଣ ମହାଘୋରି ।
ଦେଖିଲେ ଆଗରେ ଗୁହ ନାମରେ ଶବର
ବୋଇଲେ ମଇତ୍ର ଅଟେ ଶ୍ରୀରାମର ଏ ବୀର ।
ସକଳ ସୈନ୍ୟତାର ସଙ୍ଗରେ ଅଛି ଘେନି
ଦେଖ ସୁବର୍ଣ୍ଣ ରଥରେ ବସିଛନ୍ତି ପୁଣି ।
ଦେବତାଙ୍କର ସମାନେ ଦିଶେ ବନ୍ଧୁରାଏ
ନବରତ୍ନେ ଅଳଙ୍କାର ଭୂଷଣ ତାଙ୍କ କାୟେ ।
ଏଥୁ ଅନନ୍ତରେ ଯେ ଦେଖିଲେ ଦୈତ୍ୟବଳ
ଭିଦଣ୍ଡ ପାଟଛତ୍ର ଆଲଟ ଚାମର ।

ଲକ୍ଷେ ନୃପତିଙ୍କର ରହିଲ ପୁଣ ରଥ
ମଧ୍ୟରେ ବିଜେ କରି ଅଛନ୍ତି ରଘୁନାଥ ।
ପୂର୍ବର ସିଂହଦ୍ୱାରେ ମିଳିଲେ ଭରତ
ମନ୍ତ୍ରୀକି ଚାହିଁଣ ରାମ ବୋଇଲେ ବାରତ ।
ଏମନ୍ତ କରିପୁଣ ମଣ୍ଡିଣି କେଡ୍ଡ ସଙ୍ଗେ
ମନ୍ତ୍ରୀ ବୋଲେ ମୋର ପୁଷ୍ପସେନ ଏତେ ।
ଶୁଣିଣ ପ୍ରଶଂସା ତାଙ୍କୁ କଲେ ରଘୁରାଣ
ବୋଇଲେ ପୁନ୍ୟତୋ ପଛେ ଦେଖ ଅ ପୁଣ ।
ଯେତେବେଳେ ଶ୍ରୀରାମ ରଥରୁ ଓହ୍ଲାଇଲେ
ଯେଯାହାର ଯାନ ଯେବାହନ ତେଜ୍ୟାକଲେ
ପଚୁଆଣୀ ଦଣ୍ଡରେ ଭରତ ବୀର ଥିଲା
ରଥଗୁଡ଼ ଶ୍ରୀରାମଙ୍କୁ ଦର୍ଶନ ଆସି କଲା ।
କଇକର ଭୁଜକୁ ଧଇଲେ ରଘୁପତି
ଶୁଭଯୋଗରେ ନବର ଭିତରେ ପଶନ୍ତି ।
ଶ୍ରୀରାମ ସଙ୍ଗେ ଗୋଡ଼ାନ୍ତି ସକଳ ନୃପତି
ଶ୍ରୀରାମ ଶିରେ ଆଭରଣ କଲେ ବୀରଛତି ।
ବିଭୀଷଣ ରାଜା ଯେ ଅଛନ୍ତି ତାହାଧରି
କନକ ଦଣ୍ଡକୁ ଶତ୍ରୁଘ୍ନ ଯେ ଉହାଡ଼ି ।
ମୁଦିଣ ଶତ୍ରୁଘ୍ନ ଭଣ୍ଡାରେ ଥୁଅ ନେଇ
ଏଥୁ ଅନନ୍ତରେ ରଘୁକୁଳ ସାଇଁ ।
ମଧ୍ୟାହ୍ନେ ଜଗତି ଉପରେ ବିଜେ କଲେ
ସଜ ଉଲଗି ହୋଇଣ ଭିତରେ ପଶିଲେ ।
ଭରତକୁ ବୋଇଲେ ତୁ ଶୁଣରେ କକୟୀ
ଋଷିମାନେ ଆସିଛନ୍ତି ଚରଣ କରତୁହି ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଭଗବତି
ନାରଦ ମହାଋଷି ଯେ ସେଠାରୁ ଚଳିଯାନ୍ତି ।
ସ୍ୱର୍ଗପୁରେ ସକଳ ଋଷିମାନଙ୍କୁ କହି
ବାସୁଦେବ ଅଭିଷେକ ଦେଖ ବେଗେଯାଇ ।
ଶୁଣିଣ ଦେବତାଏ ସକଳ ସ୍ୱର୍ଗୁ ଆସି
ଅଯୋଧ୍ୟା କଟକରେ ପ୍ରବେଶ ହେଲେଆସି ।
ଦେଖିବାରୁ ଭରତ ପାଦ ପୂଜା କଲେ
ଭିତର ଜଗତିରେ ନେଇଣ ବସାଇଲେ ।
ସେଠାରୁ ନାରଦ ଯେ ଅଇଲେ ମଧ୍ୟପୁର
ବ୍ରହ୍ମର୍ଷି ରାଜର୍ଷିଙ୍କି କହିଲେ ସତ୍ୱର ।
ରାମରୂପେ ନାରାୟଣ ଅବତାର ପୁଣ
ଅଭିଷେକ ହେଉଛନ୍ତି ଚଳ ହେ ବେଗପୁଣ

ଶୁଣିଣ ସକଳ ଋଷି ବେଗେ ଚଳିଆସି
ଅଯୋଧ୍ୟା କଟକରେ ମିଳିଲେ ସର୍ବଋଷି ।
ଦେଖିଣ ଭରତ ବୀର ପାଦପୂଜା କଲେ
ଭିତର ଜଗତିରେ ନେଇଣ ବସାଇଲେ ।
ମଧ୍ୟପୁରୁ ନାରଦ ଯେ ତଳପୁର ଗଲେ
ପାତାଳପୁର ଋଷିଙ୍କି ଯାଇଣ କହିଲେ ।
ସିଦ୍ଧଋଷି ନାଗଋଷି ଅଇଲେ ବହନ
ଅଯୋଧ୍ୟା କଟକରେ ପ୍ରବେଶ ତକ୍ଷଣ ।
ଦେଖିଣ ଭରତବୀର ପାଦ ପୂଜା କଲେ
ଭିତର ଜଗତିରେ ନେଇଣ ବସାଇଲେ ।
ଏଥୁ ଅନନ୍ତରେ ଯେ ଶୁଣ ହେମବନ୍ତି
ତଳ ପୁରରୁ ନାରଦ ଅଇଲେ ଝଟତି ।
ଆମ୍ଭର ପୁରେ ଆସିଣ ହୋଇଲେ ପ୍ରବେଶ
ଆମ୍ଭଙ୍କୁ ବୋଇଲେ ତୁମ୍ଭେ ଚଳ ଅଯୋଧ୍ୟାଦେଶ
ବାସୁଦେବ ଅଭିଷେକ ମଧ୍ୟପୁରେ ହୋଇ
ଆଶିଷ ଦେବାକୁ ଚଳିବ ବେଗେ ତହିଁ ।
ଶୁଣିଣ ଚଉଦ କୋଟି ଶିବଗଣ ଘେନି
ଅଯୋଧ୍ୟାରେ ପ୍ରବେଶ ହେଲୁ ବେଗେ ପୁଣି ।
ଆମ୍ଭେ ଯିବାରୁ ଚଳିଗଲେ ମହାଋଷି
ବ୍ରହ୍ମଙ୍କ ପୁରେ ଯାଇ ହେଲେ ପ୍ରବେଶଟି ।
ବୋଇଲେ ଶ୍ରୀରାମ ଯେ ହେବେ ଅଭିଷେକ
ସେଠାରୁ ଚଳଦେବ ହୋଇଣ ହରଷ ।
ଶୁଣିଣ ବେଦବର ହଂସ ବାହନରେ
ଚଳିଣ ଅଇଲେ ଦେବ ଅଯୋଧ୍ୟା କଟକରେ
ଶ୍ରୀରାମ ପାଶେ ଯାଇ ହେଲେ ପରବେଶ
ରାମଆଗେ ଜଣାଇଲେ ଯମଦଗ୍ନି ସୁତ ।
ବୋଇଲେ ସ୍ୱର୍ଗରୁ ଯେ ବିଧାତା ଅଇଲେ
କପିଳାସୁ ପଞ୍ଚାନନ ଯେ ବିଜେ କଲେ ।
ଶୁଣିକରି ରାମ ଲକ୍ଷ୍ମଣେ ଡାକିଲେ
ଦେବଙ୍କର ଚରଣ ତୁ କରରେ ବୋଇଲେ
ଶୁଣିକରି ସଉମିତ୍ରୀ ବେଗେ ଚଳିଗଲା
ବେଦବର ସଦାଶିବଙ୍କୁ ଧୂପ ଦୀପଦେଲା ।
ଶୀତଳ ଜଗତିରେ ବସାଇଲା ନେଇ
ସକଳ ମହେଶ୍ୱର ତାଙ୍କ ସଙ୍ଗେ ରହି ।
ଶୂନ୍ୟରେ ସକଳ ଦେବ ରହି ଦେଖୁଥିଲେ
ଆମ୍ଭେ ବିଜେ କରିବାରୁ ବେଦବରଙ୍କ ଭୁଲେ

ସକଳ ଦେବତାଏ ଶୂନ୍ୟରୁ ଆଇଲେ
ଶ୍ରୀରାମଙ୍କ ନଗରେ ପ୍ରବେଶ ହୋଇଲେ ।
ଦେଖିଣ ଲକ୍ଷ୍ମଣ ଯେ ତାଙ୍କୁ ପୂଜାକଲେ
ଧୂପଦୀପ ଦେଇଣ ସନ୍ତୋଷ କରାଇଲେ ।
ସୁଧର୍ମା ସଭାରେ ସକଳ ଦେବ ପୁଣ
ଭିତର ନଗରେ ଦେବ କଲେକ ବିଶ୍ରାମ ।
ଦେବତାଙ୍କ ଯିବା ଦେଖିଣ ନାରଦ
ପିତୃଙ୍କର ପୁରେ ଯାଇ ହେଲେ ମୁନି ଇନ୍ଦ୍ର ।
ଦେଖିଣ ଦଶରଥମାନଧାତାହରିଚନ୍ଦନବଦାତା
ଭଗୀରଥି ସଙ୍ଗରେ ଉଠିଣ ପ୍ରଲମ୍ବିତା ।
ନାରଦ ବୋଇଲେ ତୁମ୍ଭେ ବେଗ ହୋଇଚଳ
ତୁମ୍ଭର ପୁଅ ଶ୍ରୀରାମ ହେଉଛି ରାଜେଶ୍ବର ।
ଋଷି ଦେବତା ନର ବାନର ରାକ୍ଷସ
ସମସ୍ତେ ଅଯୋଧ୍ୟାରେ ହୋଇଲେ ହରଷ ।
ତୁମ୍ଭେମାନେ ସେଠାବକୁ ଚଳ ବେଗ ହୋଇ
ଶ୍ରୀରାମର ଉତ୍ସବ ଦେଖ କନା ଯାଇ ।
ଶୁଣିକରି ଦଶରଥ ହରଷ ହୋଇଲେ
ସତ ଷଷ୍ଟି ଉପର ବଂଶ ଘେନିଣ ଚଳିଲେ ।
ଶ୍ରୀରାମଙ୍କ ପାଶରେ ହେଲେ ପରବେଶ
ଦେଖିକରି ପର୍ଶୁରାମ କହିଲେ ରାମ ପାଶ ।
ଦେଖ ଶ୍ରୀରାମ ହୋ ପିତୃଲୋକେ ବିଜେକଲେ
ସତଷଷ୍ଟି ପୁରୁଷ ପିତୃଗଣ ଭୁଲେ ।
ଶୁଣିକରି ରାମଚନ୍ଦ୍ର ଶତ୍ରୁଘ୍ନେ କହି
ପିତା ମୋର ଆସିଛନ୍ତି ଚଳ ତୁ ବେଗହୋଇ
ଶୁଣିଣ ଶତ୍ରୁଘନ ବେଗେ ଚଳିଗଲ
କନକ ଥାଳିରେ ଅର୍ଘ୍ୟ ଆଣେ ସୁମିତ୍ରାରବଳ।
ଧୂପ ଦୀପ ମଙ୍ଗଳ ଆଳତି ସଙ୍ଗେ ନେଲ
ପିତୃଙ୍କର ସମ୍ମୁଖରେ ପ୍ରବେଶ ହୋଇଲ ।
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ରାଣ
ସଙ୍ଗରେ ଘେନିକରି ବଶିଷ୍ଠ ଋଷି ପୁଣ ।
ବ୍ରହ୍ମା ଶିବ ସମ୍ମୁଖରେ ହେଲେ ପରବେଶ
ନମସ୍କାର କରିଣ ମନରେ ହେଲେ ତୋଷ ।
ଧୂପ ଦୀପ ଦେଇ ମଙ୍ଗଳ ଆଳତି ଯେ କଲେ
ସେଠାରୁ ଦେବଙ୍କ ପାଶେ ଯାଇଣଉଭାହେଲେ
ଦେବଙ୍କୁ ନମସ୍କାର କଲେକ ରାମରାୟ
ଧୂପ ଦୀପ ମଙ୍ଗଳ ଆଳତି କଲେ ତହିଁ ।

ସେଠାରୁ ରାବଣାରି ବେଗେ ଚଳି ଗଲେ
ଦେବଋଷି ବ୍ରହ୍ମଋଷି ସମ୍ମୁଖରେ ମିଳିଲେ ।
ଧୂପ ଦୀପ ଦେଇ ମଙ୍ଗଳ ଆଳତି ବେଗେସାରି
ସିଦ୍ଧଋଷି ନାଗଋଷି ଠାବରେ ଯାଇ ମିଳି ।
ତାହାଙ୍କୁ ଛଡ଼ଅର୍ଘ୍ୟ ପୂଜା ଦେବ କଲେ
ମଙ୍ଗଳ ଆଳତି କରି ଧୂପ ଦିଆଇଲେ ।
ରାଜଋଷି ସିଦ୍ଧଋଷି ପାଶରେ ପରବେଶ
ଧୂପ ଦୀପ ଦେଇ ତାଙ୍କୁ କଲେକ ସନ୍ତୋଷ ।
ସେଠାରୁ ଚଳିଯାଇ ପିତୃଙ୍କ ପାଶେ ମିଳି
ଦେଖିଣ ପିତୃଙ୍କ ମନରେ ସୁଖମେଳି ।
ଷଡ଼ଅର୍ଘ୍ୟ ପୂଜା ରାମ କଲେକ ଚରଣ
ଧୂପ ଦୀପ ମଙ୍ଗଳ ଆଳତି ଆରୋପଣ ।
ନମସ୍କାର କରିଣ ଭିତରେ ଚଳି ଗଲେ
ତୁମ୍ଭେ ଗୋ ଭଗବନ୍ତି ଶୁଣ ଏଥୁ ଉଭଲେ ।
ଶ୍ରୀରାମ ଡକାଇଣ ଶତ୍ରୁଘନଙ୍କୁ କହି
ମାତାମାନଙ୍କୁ ଦର୍ଶନ କରାଅ ବେଗେ ନେଇ
ଶୁଣିଣ ସୁମିତ୍ରା ସୁତ ବେଗେ ଚଳିଗଲେ
ଜନନୀମାନଙ୍କ ଆଗେ ଯାଇଣ ଜଣାଇଲେ ।
ବୋଇଲେ ଦେବତାଏ ବ୍ରହ୍ମା ଶିବ ପୁଣି
ସକଳ ଋଷିମାନେ ବିଜେକଲେ ଜାଣି ।
ପିତାଙ୍କୁ ସଙ୍ଗେ ଘେନି ଆଇଲେ ମାତଜାଣ
ଦର୍ଶନ କର ତୁମ୍ଭେ ତାଙ୍କର ଚରଣ ।
ଶୁଣିଣ ମାତାଗଣ ହରଷ ହୋଇଲେ
ସକଳ ଜନନୀ ଯେ ନଗରୁ ବାହାରିଲେ ।
ଦେବତାଙ୍କ ଚରଣରେ ହୋଇଲେ ଓଳଗି
ସେଠାରୁ ଋଷିଙ୍କଚରଣେପ୍ରଣାମକଲେ ବେଗି
ସେଠାରୁ ଚଳିଯାଇ ଦେଖିଲେ ସ୍ୱାମୀଙ୍କି
ଶଶୁରମାନଙ୍କୁ ଦେଖି ଓଳଗି ହେଲେ ସେଥି
ଚରଣେ ଲୋଟିଗାଲି ଶୋଇଲେ ସକଳ
ବୋଇଲେ ସଙ୍ଗେ ଆମ୍ଭଙ୍କୁନନେଲେ ନୃପବର
ଦଶରଥ ବୋଇଲେ ଯାଇ କସ ଯେ କରିବ
ଶ୍ରୀରାମ ବାସୁଦେବ ଦେଖିଲେ ରାଜ ହେବ ।
ଶପୁନ ତେଜ୍ୟାକରି ଆଇଲେ ରାମ ରାଣ
ତୁମ୍ଭର ଗର୍ଭେ ସମ୍ଭୂତ ହେଲେ ସେହି ପୁଣ ।
ସକଳ ଦେବ ମୁନିବର ଯେ ବାନର
ଯାହାର ନାମଧରି ହୁଅନ୍ତି ଭବପାର ।

ସେ ଦେବଙ୍କୁ ଦର୍ଶନ କରୁଛ ତୁମ୍ଭେ ନିତ୍ୟ
ସ୍ୱୟଂ ନାରାୟଣ ଶ୍ରୀରାମ ରୂପେ ସମ୍ଭୂତ ।
ଜନେକ ଦୁଲଣୀ ଯେ ଅଟନ୍ତି କମଳିଣୀ
ବିଷ୍ଣୁଙ୍କର ପାଟରାଣୀ ଅଟନ୍ତି ଠାକୁରାଣୀ ।
ତାହାଙ୍କୁ ଦେଖିଣ ତୁମ୍ଭେ ବୈକୁଣ୍ଠ ପୁରଯିବ
ଏହାଠାରୁ ଅଧିକ ତ ନାହିଁ ଅନ୍ୟ ଦେବ ।
କୌଶଲ୍ୟା ବୋଇଲେ ମୋହର ପୁତ୍ର ସେପୁଣ
ଆମ୍ଭେ ତ ନଜାଣୁ ଶ୍ରୀରାମ ଅଟନ୍ତି ନାରାୟଣ ।
ଦଶରଥ ବୋଇଲେ ଶ୍ରୀରାମ ଲକ୍ଷ୍ମଣ ଦେଖିଥିବ
ସେ ଯେଉଁବଚନ ବୋଲିବେ ସେହିବଚନ ଯିବ ।
ଶୁଣିଣ ସକଳ ରାଣୀ ହରଷ ହୋଇଲେ
ନମସ୍କାର କରିଣ ନବରେ ଚଳିଗଲେ ।
ସେଠାରୁ ଶତ୍ରୁଘ୍ନ ଚଳିଲେ ବହନ
ସୀତାଙ୍କ ଚରଣେ ଯାଇ କଲେ ମାନ୍ୟଧର୍ମ ।
ବୋଇଲ ଠାକୁରେ ଯେ ଆଜ୍ଞାଦେଲେମୋରେ
ଦେବ ପିତୃଋଷି ବଜେ କଲେ ଯେ ସଭାରେ
ତାହାଙ୍କୁ ମାନ୍ୟଧର୍ମ କରିବ ତୁମ୍ଭେ ଯାଇ
ଶୁଣିକରି ଜାନକୀ ଯେ ହରଷ ମନ ହୋଇ ।
ଭଗିନୀମାନଙ୍କୁ ସଙ୍ଗେ ଘେନିଣ ଚଳି ଗଲେ
ମାୟା ସୀତା ହସ୍ତରେ ଅର୍ଘ୍ୟ ସ୍ଥାଳ ଦେଲେ ।
ବ୍ରହ୍ମା ସଦାଶିବଙ୍କୁ ଦେଲେ ଅର୍ଘ୍ୟ ପୁଣ
ସକଳ ଦେବତାଙ୍କୁ କଲେ ଆରୋପଣ ।
ନମସ୍କାର କରିଣ ସେଠାରୁ ଚଳିଗଲେ
ଋଷିମାନଙ୍କୁ ଅର୍ଘ୍ୟ ବନ୍ଦାପନା କଲେ ।
ଓଳଗି ହୋଇଣ ଯେ ଚଳେ ସେଠାବରୁ
ପିତୃଙ୍କର ଆଗରେ ମିଳିଲେ ସେଠାରୁ ।
ନମସ୍କାର କରିଣ ଅର୍ଘ୍ୟ ବନ୍ଦାଇଲେ
ଅମୃତ ଦୃଷ୍ଟିରେ ମୋତେପ୍ରସନ୍ନହୁଅବୋଲେ
ଦଶରଥ ବୋଇଲେ ମୋ କୁଳର ଚନ୍ଦ୍ରମା
ତୁମ୍ଭର ସକାଶେ ଯେ ଦେଖିଲି ଦେବବ୍ରହ୍ମା ।
ଆମ୍ଭର କୁଳରେ ଭାଗ୍ୟ ହୋଇବାରୁ ପୁଣ
ତୁମ୍ଭଙ୍କୁ ନେତ୍ରେ ଦେଖି କୃତାର୍ଥ ହେଲିଜାଣ ।
ଶୁଣିକରି ଗୁରୁବଧୂ ନମସ୍କାର କଲେ
ଲେଉଟି ନବରେ ଯାଇ ପ୍ରବେଶ ହୋଇଲେ
ଏଥୁ ଅନନ୍ତରେ ନାରଦ ଋଷି ପୁଣ
ଅପସରା କନ୍ୟାସ ବଣ୍ଠଙ୍କୁ ଘେନି ସଙ୍ଗତେଣ ।

ଦେବତାଙ୍କ ଆଗରେ ଯାଇ ହେଲେପରବେଶ
ଦେଖିଣ ସକଳ ଦେବେ ହୋଇଲେ ହରଷ ।
ବେଦ ବ୍ରହ୍ମା ବୋଇଲେନୃତ୍ୟ ଯେକରତୁମ୍ଭେ
ଶୁଣିଣ ଅପସରା ଆନନ୍ଦ ମନ ଦେମ୍ଭେ ।
ଦେବତାଙ୍କ ଆଗରେ କଲେ ନୃତ୍ୟ ରଙ୍ଗ
ଋଷିଙ୍କ ଆଗେ କନ୍ୟା କଲେ ଯେନୃତ୍ୟରଙ୍ଗ
ଦେବତାଙ୍କ ଆଗେ ଦକ୍ଷନାରୀ କଲେ ନୃତ୍ୟ
ଦୁନ୍ଦୁଭି ଶବ୍ଦରେ ଯେ ପୂରିଲା ଜଗତ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗରୁଡ଼ା
ଶ୍ରୀରାମଚନ୍ଦ୍ର ଯେ ଭିତରେ ବଜେ ଯାଇକରି
ଭରଥକୁ ପୃଚ୍ଛି ବୋଇଲେ ସୁଗ୍ରୀବଙ୍କୁ ନେଇ
ବାହାର ଅଶୋକ ବନେ ରଖ ଠାବଦେଇ ।
ମଧୁବନେ ନେଇଣ ରଖ ଭୂ ଲଙ୍କାପତି
ଏମାନଙ୍କୁ ଧାଙ୍ଗଡ଼ାରେ ଦିଅ ଯେ ଠାବଟି ।
ଅଷ୍ଟ ସେନାପତି ଯୂଥପତି ମହାମଲ୍ଲ
ବାନର ଭାଲୁ ଯେତେ ଅଛନ୍ତି ସକଳ ।
ଯେ ଯାହା ଅନୁରୂପେ ଦିଅ ନେଇ ବାସ
ଫଳମୂଳ ସଞ୍ଚା ଯେ ଭୁଞ୍ଜନ୍ତୁ ଦିବ୍ୟରସ ।
ଲକ୍ଷେ ନୃପତିଙ୍କି ତୁମ୍ଭେ ରଖ ନୃପବର
ଭିତର ଜଗତିରେ ଯେ ରଖ ନୃପବର ।
ଏମାନଙ୍କୁ ସୁସ୍ଥ ଯାଇ କର ତୁମ୍ଭେ ଭରଥ
ଉଚ୍ଚ ସ୍ଥାନରେ ରଖ ପୁଷ୍ପକ ନାମେ ରଥ ।
ସୁମନ୍ତ୍ରଙ୍କୁ ଘେନିଣ ଯାଅରେ ବେଗ ହୋଇ
ସମସ୍ତଙ୍କୁ ସମ୍ଭାଳ କହିଲ ଯାହା ମୁହିଁ ।
ଆଜ୍ଞା ପାଇଣ ଭରଥ ସୁମନ୍ତ୍ର ବେଗେ ଗଲେ
ଯେ ଯାହା ଅନୁରୂପେ ରହିବା ଠାବଦେଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ବଶିଷ୍ଠ ମହାଯତି
ଶ୍ରୀରାମ ବୋଇଲେ ଶୁଣ ବଶିଷ୍ଠ ମହାଯତି ।
ସୀତାଙ୍କୁ ବେଶକରି ଯେ ଘେନି ଆସ ଯାଇ
ଜନକ ଦୁହିତା ଆଣ ସମ୍ମୁଖ କରାଇ ।
ଏସନେକ ସମୟରେ ବଜେ ମହାଯତି
ବୃଦ୍ଧ ସ୍ତ୍ରୀ ଗୋଟିଏକ ଅଇଲେ ତତ୍କ୍ଷଣ ।
ଆଜ ଅଯୋଧ୍ୟା କଟକ ସୁଫଳ ହୋଇଲା
ସ୍ୱୟଂ କମଳିମା ଆସି ଏଥି ବଜେ କଲା ।
ଯିବାବେଳେ ମାତ ତୋତେଦେଖିଥିଲି ସୀତା
ଏବେଆଣି ଭେଟ କରାଇଲ ଯେ ବିଧାତା ।

ପୂର୍ବ ପୁଣ୍ୟବଳେ ମାଗୋ ଦେଖିଲୁ ହାଦୋଳା
ସୁଫଳ ହେଲା ମାଗୋ ଆମ୍ଭର ବେନଡୋଳା
ଏବେ ଶ୍ରୀରାମଙ୍କୁ ତୁମ୍ଭେ ସୁଖେ ଭୋଗକର
ସୁକଲ୍ୟାଣ ହେଉ ମାଗୋ ହୁଅ ଯେ ଅମର ।
ବୋଇଲେ ବଇଦେହୀ ମାଆମାସୀମାନଙ୍କୁ ଚାହିଁ
ଶୁଣ ମୋର ବଚନ ସ୍ଥିର କର ତୁମ୍ଭେ
ଏ ବୃଦ୍ଧ ସ୍ତ୍ରୀ ମାନଙ୍କୁ ଶତେକ ଧନଦିଅ
ତାର ଦେହେ ବଳନାହିଁ ତୁମ୍ଭେ ବୋଲୁଛନ୍ତି
ଆବର ଯେତେ ପୁଣି ଅଛନ୍ତି ସ୍ତ୍ରୀମାନଙ୍କ
ତାହାଙ୍କର ଆଗରେ ଯେ ସୁନା ରୂପା ବୁଣ ।
ପଞ୍ଚରତ୍ନ ବୃଷ୍ଟି ତୁମ୍ଭେ କର ଯାଇ ବାଟେ
ଦେଖିଲାର ଲୋକଙ୍କୁ ଦିଅ ପାଟେ ପାଟେ
ଶୁଣି ପରିବାରମାନେ ସ୍ୱର୍ଣ୍ଣ ବୃଷ୍ଟି କଲେ
ଦୁଃଖୀ ଦରିଦ୍ର ଲୋକଙ୍କୁ ଧନ ରତ୍ନ ଦେଲେ ।
ସମ୍ଭବ ହୋଇଣ ଯେ ଚଳନ୍ତି ଦେବୀ ସୀତା
ପଛରେ ଗୋଡ଼ାଇ ପୁଣ ଅଛନ୍ତି ବନିତା ।
ନଗର ପଶ୍ଚିମ ଦ୍ୱାରକୁ ବୋଲି ଚଳିଲେ
ଶୁଭ ଲଗ୍ନବେଳେ ଯାଇଁ ପ୍ରବେଶ ହୋଇଲେ
ବଶିଷ୍ଠ ମୁନି କହିଲେ ଶ୍ରୀରାମର ପାଶ
ଅନ୍ତଃପୁରେ ପ୍ରବେଶ ହେଲେ ରାଣୀହଂସ ।
ଶୁଣି ରଘୁନାଥ ଅଙ୍ଗଦକୁ ହକାରିଲେ
ଚାରି ବାଡ଼ରେ ରହିବୁ ବୋଲିଣ ବୋଇଲେ
ଶୁଣିଣ ବାଳିସୁତ ବେଗେ ଚଳିଲା
ଋକ୍ଷକପି ଘେନି ଚାରି ବାଡ଼ ରକ୍ଷାକଲା ।
ଏଥୁ ଅନନ୍ତରେ ଯେ ଶ୍ରୀରାମ ଦଣ୍ଡଧାରୀ
ଅଭିଷେକକୁ ସଜ ଯେ ହୋଇଲେ ଦଣ୍ଡଧାରୀ
ମାଜଣା ମହୋତ୍ସବ ଯେ ସାରିଣ ଚଳନ୍ତି
ମନ୍ତ୍ରୀଗଣମାନଙ୍କୁ ରାଇଣ ଆଜ୍ଞାଦ୍ୟନ୍ତି ।
କାଲି ଅଭିଷେକ ଆମ୍ଭେ ହୋଇବା ପ୍ରଭାତେ
ଯାହା ଲାଗିବ ସାମଗ୍ରୀ କରସି ତୁରିତେ ।
ନଳ ସେନାପତିଙ୍କି ବୋଇଲେ ରାବଣାରି
ତୋର ସଙ୍ଗେ ଯାଆନ୍ତୁ ଯେ ସାତପାଞ୍ଚ ହରି
ସକଳ ତୀର୍ଥରୁ ତୁମ୍ଭେ ଅଣାଅ ଜଳମାନ
ଅଭିଷେକ ହୋଇବା ବୋଇଲେ ରଘୁନାଥ
ଦକ୍ଷିଣ ସମୁଦ୍ରରେ ଶଉରି ବେଗେ ଯାଉ
ତୀର୍ଥର ବାରୁଣୀ ଠାରୁ ଜଳ ଆଣି ଦେଉ ।

ପଶ୍ଚିମ ସମୁଦ୍ରକୁ ଯାଆନ୍ତୁ ଋଷ ରାଜେ
ଜାମ୍ବବାନଗଲେ ଯେ କାର୍ଯ୍ୟମୋରନୋହେ ।
ସେହି ତୀର୍ଥମାନୁ ମୋତେ ଆଣିଦେବ ପାଣି
ଏତେବୋଲି ସୁଗ୍ରୀବକୁ ରାଇଲେ ରଘୁମଣି ।
ଉତ୍ତର ସମୁଦ୍ର ତୁମ୍ଭେ ଯାଅ ଆଜ୍ଞାଦେଲେ
କୁରୁମ ସମୁଦ୍ର ପାଣି ଆଣିବ ବୋଇଲେ ।
ପୂର୍ବ ସମୁଦ୍ରକୁ ପୁଣ ପେଷିଲ ସୁଷେଣ
ଚାରି ସମୁଦ୍ରକୁ ବରଗିଲେ ତତକ୍ଷଣ ।
ଅଭିଷେକର ବିଧି ଯେ ବଶିଷ୍ଠ କହିଲେ
ଆପଣେ ରଘୁନାଥ ପାଞ୍ଜିରେ ଲିହିଲେ ।
ସୁମନ୍ତ୍ରଙ୍କ ହସ୍ତକୁ ପକାଇଦେଲେ ପତ୍ର
କସ ଲାଗଇ ଅଣାଅ ହେ ରଘୁକୁଳଚନ୍ଦ୍ର ।
ବେଗ୍ରରେ ସମ୍ପାଦ କର ଏହା ତୁମ୍ଭେ ଆଣ
ଶୁଣିଣ ସେ ସୁମନ୍ତ୍ର ଯେ ଗଲା ତତକ୍ଷଣ ।
ସବୁଦ୍ରବ୍ୟ ରୁଣ୍ଡକରି ଆଣିଲେ ତଡ଼ନ୍ତି
ଏଥୁଅନ୍ତେ ରାତ୍ର ଆସି ହୋଇଲା ପାହାନ୍ତି ।
ନଗ୍ରପୁର ମଣ୍ଡପକୁ ମଣ୍ଡନ କଲେଧାତି
ଅଭିଷେକ ହେବାକୁ ଉଠିଲେ ରଘୁପତି ।
ଶୁଣିବା କାହାଣୀ ପୁତ୍ର ଏଥୁ ଅନନ୍ତରେ
ଶଙ୍ଖର ଶବଦ ଯେ ହେଲା ଦେବାଳରେ ।
ଏସନେକ ସମୟେ ଶଉରୀ ମହାବୀର
ଦକ୍ଷିଣ ସମୁଦ୍ରରୁ ସେ ଆଣିଲା ନୀର ।
ରକତ ଚନ୍ଦନ ପତ୍ର ଉପରେ ଘେଡ଼ାଇ
ସୁବର୍ଣ୍ଣ ଝାରିରେ ତୀର୍ଥ ଜଳ ଯେ ପୂରାଇ ।
ଶ୍ରୀରାମ ସମ୍ମୁଖରେ ଦର୍ଶନ କଲା ଆସି
ଦେଖିଣ ପରମ ତୋଷ ହେଲେ ରଘୁଶିଷି ।
ସୁବର୍ଣ୍ଣ ଘଟରେ ଯେ ଉଦକ ଆଣିଛନ୍ତି
ଦେଖିକରି ସନ୍ତୋଷ ଯେ ହେଲେ ରଘୁପତି
ଉପର ଅଗ୍ର ବୃକ୍ଷର ପତର ଘୋଡ଼ାଇଲେ
ରଘୁନାଥଙ୍କ ସମ୍ମୁଖରେ ଆଣିଣ ଦେଖାଇଲେ ।
ଉତ୍ତର ସମୁଦ୍ରରୁ ଅଇଲେ ସୁଗ୍ରୀବର
ପବିତ୍ର ଜଳ ଆଣିଛି ସୁବର୍ଣ୍ଣ ଘଟର ।
ଚୂତ ପତ୍ର ଘୋଡ଼ାଇ ରାମଙ୍କୁ ଦେଖାଇଲା
ଏସନକ ସମୟରେ ସୁଷେଣ ଅଇଲା ।
ପୂର୍ବ ସମୁଦ୍ରକୁ ଯାଇ ଆଣିଲେ ଯେ ଜଳ
ଉପରେ ଘୋଡ଼ାଇଯେ ଅଛନ୍ତି ବେଲଡାଳ ।

ରାଘବର ଗୁମ୍ଫରେ ଯେ ଦୃଶ କରାଇଲେ
ଦେଖିଣ ସନ୍ତୋଷ ହେଲେ ଦଶରଥ ବାଳେ ।
ମାଳ ଆଣି ଦେଲ ଯେ ସକଳ ତୀର୍ଥ ଜଳ
ସୁବର୍ଣ୍ଣ ଘଟରେ ଘେନ ଅଛନ୍ତି କପିବଳ ।
ଗଙ୍ଗା ଗୋଦାବରୀ ଯେ ନର୍ମଦା ଗୋମତୀ
କୃଷ୍ଣବେଣୀ କାବେରୀ ଯମୁନା ସରସ୍ୱତୀ ।
ମହାଅଗ୍ନି ସରଯୁ ଗଣ୍ଡକୀ ଯେ ପାବେନ
ଦେବନଦୀ ମାନରୁ ଅଇଲେ ଜଳଘେନ ।
କୁଶନଦୀ ଚନ୍ଦ୍ରଭାଗା ସେ ଋଷି ବୋଇଲ
ପ୍ରାଚୀ ବଇତରଣୀରୁ ଜଳ ଯେ ଆଣିଦେଲ ।
ଗଉରୀ ତୀର୍ଥ ବେଣୀ ନାମ ମହେଶ୍ୱର
ଶ୍ୱେତ ଗଙ୍ଗା ପୂର୍ଣ୍ଣଭଦ୍ରା ବିନ୍ଦୁ ଯେ ସାଗର ।
ଗନ୍ଧନଦୀ ପ୍ରୟାଗ କଉଶିକରୁ ଆଣି
ପ୍ରବାହ ତୀର୍ଥମାନ ଯେ ସରୋବର ପାଣି ।
ଆକାଶ ଗଙ୍ଗା ସହିତେ ଜଳମାନ ଆଣି
ମହୀନ୍ଦ୍ର ତନୟ ଯେ ନଦୀରୁ ଜଳ ଆଣି ।
ପୁଲକ ତୁଙ୍ଗଭଦ୍ରା ସୁବର୍ଣ୍ଣ ରେଖା ନଈ
ଋଷ୍ୟମେକ ପର୍ବତରୁ ଜଳ ଆଣିଲେକ ଯାଇ ।
ଆଠ ସହସ୍ର ନଦୀ ଯେ ମଧ୍ୟରେ ତୀର୍ଥମାନ
ସବୁଠାରୁ ଜଳ ଯେ ଆଣିଲେ କପିସୈନ୍ୟ ।
ଦେଖିକରି ସନ୍ତୋଷ ଯେ ହେଲେ ରଘୁସାଇଁ
ଏଥୁ ଅନନ୍ତରେ ପୁଣ ନଶୀଗଲା ପାହି ।
ଅଭିଷେକ ଯୋଗାଡ଼ ସୁମନ୍ତ ଘେନି ଆଏ
ଆସ୍ଥାନ ନବରେ ବିଜେ ଶ୍ରୀରାମଚନ୍ଦ୍ର ରାୟେ ।
ଜାନକୀ ସଜ ହୋଇଣ ଅଇଲେ ତଡ଼ିତ
ପଟୁଆର କରିଛନ୍ତି ସକଳ ଯୁବତୀ ।
ଝଡ଼ା ମୃଦୁସୁଲ୍ଲିମାନେ ହୁଳହୁଳି ଦେଲେ
ସକଳ ଯୁବତୀମାନେ ସଙ୍ଗରେ ଅଇଲେ ।
ଲାଜଭର ହୋଇଣ ଗୃହାନ୍ତି ଗୃହମୁହାଁ
ଶ୍ରୀରାମଙ୍କ ଗୁମ୍ଫରେ ପ୍ରବେଶ ହେଲେ ଯାଇ ।
ରତ୍ନ ସିଂହାସନରେ ବସିଲେ ବେଦଜନ
ସୁସ୍ଥାନରେ ଥୋଇଲେ ଶିଳା ଶାଳଗ୍ରାମ ।
ଋଷିଗଣ ସଙ୍ଗେ ଘେନି ବଶିଷ୍ଠ ଯେ ମୁନି
ସାଧବ ଯୁବତୀମାନେ ଦେବେ ହୁଳହୁଳି ।
ଶ୍ରୀରାମ ପାଶରେ ଜନକ ଦୁଲଣୀ
ବିଷ୍ଣୁଙ୍କର ପାଶରେ ବସିଲେ କମଳିନୀ ।

କରେ କାଣ୍ଡ କୋଦଣ୍ଡ ଅକ୍ଷୟ ତୋଶକାନ୍ଧେ
ଦକ୍ଷିଣ ପବନ ଯେ ବହେ ମନ୍ଦେ ମନ୍ଦେ ।
ପାଠ ଯଉତିଷ ଯେ କହଇ ଯୋଡ଼ିକର
ଶ୍ରୀଦେବ ଅନୁକୂଳ ବେଳ ହେଲା ରଘୁବୀର
ଶୁଣିଣ ସପତ ଋଷି ହେଲେ ଆଗସର
ବଶିଷ୍ଠ ନବରତ୍ନ ମୁକୁଟ ସଜକରି ।
ଶ୍ରୀ ରାମଙ୍କ ଶିରେ ନେଇ ପାଠ ବେଢ଼ାଇଲା
ଅଭିଷେକ ହେବେ ଶ୍ରୀରାମ ମୁକୁଟ ବାନ୍ଧିଲା ।
ସୀତୟାର ମସ୍ତକେ ରାଇଲ ରତ୍ନ ସୋଲ
ଜୟେ ଜୟେ ଶବଦେ ଶୁଭିଲ ମହାଗୋଳ ।
ଅଷ୍ଟବସୁ ନବଗ୍ରହ ଦିଗପାଳ ଆଦି କରି
ବ୍ରହ୍ମା ଶଙ୍କର ସହିତେ ଉଠିଲେ ବଜ୍ରଧାରୀ ।
ବ୍ରହ୍ମବୃଷୀ ରୁଦ୍ରଗୁରୀ ଆବର ଏକାଦଶ
ମେଘ ଶୃଙ୍ଗ ଯେନକରି ଉଠିଲେ ବିଶେଷ ।
ଅଣଞ୍ଚାଶ ପବନ ପଞ୍ଚଅଗ୍ନି ଯେ ଆକାଶ
ସିଦ୍ଧ ସାଧକ ସନାତନ ଯେ ବିଶେଷ ।
ଅପସରୀ କିନ୍ନରୀ ଯେ ବିଦ୍ୟାଧର ମାନ
ଏମାନେ ନୃତ୍ୟକଲେ ରହିଣ ସେହି ସ୍ଥାନ ।
ବେଦବ୍ରହ୍ମା ସଦାଶିବ ଇନ୍ଦ୍ରକୁ ଘେନି ମିଳି
ଦଶରଥ ରାଜାଛନ୍ତି ସଙ୍ଗରେ ତାଙ୍କରି ।
ଋଷିଗଣଙ୍କୁ ଘେନି ବଶିଷ୍ଠ ଆସି ମିଳି
ଏକକୁ ଆରକ ଯେ ମନେ ମନେ ଭାଳି ।
ଅନେକ କାଳରୁ ଯେ ଅଛଇ ଆଶ୍ରେକରି
ଏବେ ଦିଶିଲା ରୂପ ଯେ ଆଷାଢ଼ ମେଘପରି ।
ଶ୍ରୀରାମ ଅଭିଷେକ ଦେଖିବେ ବୋଲିଣ ତ୍ରିଦଶ
ଯାହାର ଦର୍ଶନେ ପାଇବ ଯେ କଳୁଷ ।
ଲକ୍ଷ୍ମୀ ନାରାୟଣ ହେଉଛନ୍ତି ଅଭିଷେକ
ଦେଖିଣ ଉସତ ଯେ ହୁଅନ୍ତି ସୁରଲୋକ ।
ଗନ୍ଧ ଚନ୍ଦ୍ର ଧଉଳ ହୋଏ ଯେ ସେହୁପୁରୀ
ବ୍ରହ୍ମାଦି ସହିତେ ସକଳ ଛନ୍ତି ଘେରି ।
ସ୍ୱର୍ଗର ଦେବତା ଏଯେସ୍ୱେଠାରେ ବିଜେପୁଣି
ଦେବଙ୍କର ସଙ୍ଗରେ ଅଛନ୍ତି ପଦ୍ମଯୋନି ।
ଶିରରେ କରଦେଇ ଦେବତା କଲେ ସ୍ତୁତି
ଜୟ ଜୟ ନାରାୟଣ ଅନନ୍ତ ମୂରତି ।
ଅନେକ ପ୍ରକାରେ ସ୍ତୁତି ବିଧାତା ସ୍ତୁତିକଲେ ।
ରୁଦ୍ରଦେବ ହରଷରେ ମସ୍ତକେ କରଦେଲେ ।

ଇନ୍ଦ୍ରଦେବ ସହିତେ ଦଶଦିଗପାଳ
ଉଛର ଧର ବୋଲି ଡାକଲେ ସକଳ ।
ଅପସରୀ ବିଦ୍ୟାଧରୀ ହୁଳହୁଳି ଦେଲେ
ଗାନ୍ଧାର ରାଗେଣ ଯେ କିନ୍ନରୀ ଗୀତକଲେ ।
ସ୍ବର ମୁଖରେ ବ୍ରହ୍ମା ଚତୁର୍ବେଦ ଭଣି
କୁରୁମମାନ ବୃଷ୍ଟି କଲେ ଚନ୍ଦ୍ରାୟଣୀ ।
ଗନ୍ଧର୍ବେ ବଜାଇଲେ ଦୁନ୍ଦୁଭି ସୁମଞ୍ଜ
ଅଷ୍ଟ ଅପସର ବୃନ୍ଦ ନାଚନ୍ତି ନିଘଞ୍ଜ ।
ଏସନକ ସମୟରେ ସକଳ ମହାଋଷି
ବେଦରୁ ସର୍ବ ଋଷି ଷୋଳକାଣ୍ଡି ଘୋଷି ।
ନାନାତୀର୍ଥ ଜଳ ଯେ ଶୁଦ୍ଧ ତହିଁରେ କଲେ
ସକଳ ସୁବର୍ଣ୍ଣ ସର୍ବ ଘଟ ଯେ ଧଇଲେ ।
ପଞ୍ଚାମୃତ ଯୋଗାଡ଼ ସଞ୍ଚାଯେ ସେହୁକରି
ତହିଁରେ ବଶିଷ୍ଠଋଷି ପଞ୍ଚାମୃତ ଭରି ।
କୃଷ୍ଣାଜିନ ଛାଲ ଆଣି ପଞ୍ଚୁଛାଲ ଥୋଇ
ଗଣକବେ ଇଲେଦେବଅଭିଷେକବେଳ ହୋଇ
ଶୁଣିଣ ମହାଋଷି ଘେନିଲେ ଦ୍ରବ୍ୟମାନ
ପୂର୍ବମୁଖ ହୋଇ ବସିଅଛନ୍ତି ରଘୁନାଥ ।
ପାଟଗଜ ପାଟ ଅଶ୍ବ ପୁଷ୍ପକ ରଥ ଅଛି
ସେମାନଙ୍କୁ ପୂଜାକଲେ ବ୍ରହ୍ମାଙ୍କର ବଚ୍ଛି ।
କନକ ଦଣ୍ଡ ତୋରଣ ଧଇଲେ ଲକ୍ଷ୍ମଣ
ସୀତା କୋଳେ ଧରି ବସିଅଛନ୍ତି ରଘୁରାଣ ।
ସପତ ମହାଋଷି ପଞ୍ଚାମୃତ ଘେନ
ବେଦପଢ଼ି ଢାଳନ୍ତେ ଶ୍ରୀଧର ମୂର୍ଦ୍ଧନ ।
ଦେଖିକରି ଅପସରି ହୁଳହୁଳି ଦେଲେ
ନର ବାନର ରାକ୍ଷସେ ଜୟ ଜୟ କଲେ ।
ନାନାତୀର୍ଥ ଜଳମାନ ନଜଡ଼ିଲେ ନେଇ
ରାମର ଢାଳୁଛନ୍ତି କର୍ଣ୍ଣିଦ୍ବାର ପାଇଁ ।
ବିଭୀଷଣ ଶ୍ବେତଛତ୍ର ଧରିଣ ଆଗେଉଭା
ନେଖିଣ ହନୁମନ୍ତ ଉଲ୍ଲସଇ ପ୍ରଭା ।
ଜାମ୍ବବ ଶ୍ରୀରାମର ଚାହିଁଲେ ଶ୍ରୀମୁଖ
କୋଟିଏ ଜନ୍ମର ହାଦେ ଗଲାଯେତାର ଦୁଃଖ
ଲକ୍ଷେକ ରାଜା ସେଥିରେ ଧରିଣ ଚାମର
ମୂର୍ଦ୍ଧନା ଅଭିଷେକ ଦେଖନ୍ତି ଶ୍ରୀରାମର ।
ମୁନିମାନେ କରନ୍ତି ସ୍ନାହାନ ମାର୍ଜନ
ଦଧି ଦୁଧ ଘୃତ ଯେ ଢାଳନ୍ତି ଅବଛନ ।

ସ୍ତମ୍ଭିଭୂତ ହୋଇଣ ଅଛନ୍ତି ରାବଣାରି
ନୀଳଗିରି ଜଗନ୍ନାଥ ଯେମନ୍ତେ ସ୍ନାନକରି ।
ବଜାନ୍ତି ତମ୍ବୁଳଦଙ୍ଗ ଶଙ୍ଖ ଭେରି ଜାଣ
ମଙ୍ଗଳ ଗୁଜୁରି ରାଗେ ବାଜେ ମହୁରି ପୁଣ ।
ଚଉକଣ୍ଡରେ ବେଢ଼ି ନୃପତି ଠାବ ଠାବ
ଅମରାବତୀକି ଜିଣି ଅଯୋଧ୍ୟା ଦୀପ୍ତ ଉଜ ।
ଅଗସ୍ତି ବୋଇଲେ ମାରକଣ୍ଡୁକୁ ଯେ ଚାହିଁ
ମାଲ୍ୟବନ୍ତ ପର୍ବତରେ ମୁଁ ଯାହାଥିଲି କହି ।
ଏହି ଶ୍ରୀରାମ ଚରି ରାବଣ କ୍ଷୟ କଲା
ଏବେ ଆସି ଐଶ୍ବର୍ଯ୍ୟ ଯେ ଭୁଞ୍ଜିଲା ।
ଦେବଋଷି ବ୍ରହ୍ମଋଷି ସିଦ୍ଧ ଋଷିମାନେ
ଲକ୍ଷ ନୃପତି ରାମର ବଞ୍ଚନ୍ତି ଅନୁକ୍ଷଣେ ।
ଦେଖି ସୁଧର୍ମା ସଭା ଘେନ ଆସନ୍ତି ଦେବଗଣ
ଆଗରେ ଉଭାହୋଇ ସ୍ତୁତି କରୁଛନ୍ତି ପୁଣ ।
ଶଙ୍କର ବେଦବର ଆଗରେ ଛନ୍ତି ରହି
କିନ୍ନରୀ ଅପସରି ନୃତ୍ୟ କରନ୍ତି ଚାହିଁ ।
ସୁର ଅସୁର ନର ବାନର ନାଗବଳ
ସମସ୍ତେ ମିଶାମିଶି ହେବେ ଏକଠୁଳ ।
ଶିରେ କରଦେଇ ହେଉ ଅଛନ୍ତି କାପୁର୍ନ୍ୟ
ତେତେବେଳେ ଦେଖିଥିଲ କର୍ଣ୍ଣେଯେ ଋଷିପୁଣ
ଆପଣେ ଯେ ବଜ୍ରଧାରି ପୁଷ୍ପବୃଷ୍ଟି କରି
ରୁଦ୍ର ନୃତ୍ୟ କରିଣ ଶ୍ରୀରାମ ମନ ହରି ।
ଏକଠାରେ ଦେଖ ବ୍ରହ୍ମା ବିଷ୍ଣୁ ତ୍ରିପୁରାରି
ହେ ଶ୍ରୀରାମ ହସ୍ତେ ହୋଏ ଅସୁର ବଳମାରି ।
ଦେବଙ୍କର ଦୁଃଖ ସେ ଦେଖିବା ନିମନ୍ତେ
ରହିଥିଲ ଦେବ ଯେ ମାଲ୍ୟବନ୍ତ ପର୍ବତେ ।
ଅପସରି ମାନେ ଯେ ଆନନ୍ଦେ ନାଚିଲେ
ଏସନକ ବ୍ୟବସ୍ଥା ଯେ ସମସ୍ତେ ଦେଖିଲେ ।
ତୁମ୍ଭେ ଯେ ନାରାୟଣ ବଚର ଭଲ କଲ
ଏହି ନାରାୟଣ ଯେ ନୁହଇ ବୋଇଲ ।
ଏବେ ସମ୍ପ୍ରତେ ତୁମ୍ଭେ କଲକି ମହାଋଷି
ଅଗସ୍ତି କହିବାରୁ ଅଳପ ମୁନିହସି ।
ହେ କୁମ୍ଭସୁତ ତୁମ୍ଭେ ଯାହା କହିଲ ସତ
ଏ ଯେଉଁ ଶ୍ରୀରାମଚନ୍ଦ୍ର ଅଭୟ ଅଚ୍ୟୁତ ।
ତୁମ୍ଭର ପରସାଦେ ଦୁଃଖ ମୋର ଗଲା
ଏ ଶ୍ରୀରାମ ଅଭିଷେକ ନୟନେ ଦେଖାଗଲା ।

ବ୍ରହ୍ମା ରୁଦ୍ର ସହିତେ ଦେବତା ମୁନିମାନେ
ଦଣ୍ଡବତପାଳେ ଯେ ଅଷ୍ଟବସୁ ଏଣେ ।
ଚଉଦ ଭୁବନରେ ଯେତେକ କୁମ୍ଭଯୋନି
ବଶିଷ୍ଠ ନଉଡ଼ିଲେ ଯେ ପଞ୍ଚାମୃତ ଧେନ ।
ସ୍ନାହାନ ନପାଡ଼ଣ ପଢ଼େ ଯେଉଁମାନଙ୍କର ତହିଁ
ନିସ୍ତରିଲୁ ବୋଲି ସର୍ବେ କହି ।
ଏ କଥା ଶୁଣିଣ ମୁଁ ଯେ ହୋଇଲଇ ଶାନ୍ତ
ଶୁଣିଣ ହୃଦରେ ମୋର ଉପୁଜଇ ଭ୍ରାନ୍ତ ।
ସଂସାର ପ୍ରଳୟ ଯେ ହେଲା ଯେଉଁକାଳେ
ବଟ ପୁଟ ଉପରେ ଉତ୍ତାନ ଶୟନରେ ।
ମୁହିଁ ପଡ଼ି ବୁଡ଼ନ୍ତେ ଧଇଲେ ଜନାର୍ଦ୍ଦନ
ତେଣୁ ମୁହିଁ ରହିଲି ହରିର କରେଣ ।
ସେ ରୂପ ଅନୁସରଣ ନଦେଖିଲି ସହୁଁ
ମୀନ କୂର୍ମ ବରାହ ଆବର ଲକ୍ଷେ ତହୁଁ ।
ବାମନ ପଶୁରାମ ନରସିଂହ ଯେ ନାଥ
ଏହିତ ଏକ ନୁହନ୍ତି ତେସନ ସଞ୍ଜାତ ।
ଏସନକ ବୋଲନ୍ତେ ଶ୍ରୀରାମଚନ୍ଦ୍ର ଜାଣି
ଅଗସ୍ତିଙ୍କି ବୋଇଲେ ଯେ କୋଦଣ୍ଡଚାପପାଣି
ଏ ଯୁଗ ଅନନ୍ତରେ ଯେ ଅନେକ ଯୁଗ ଯିବ
ଦ୍ୱାପର ଯୁଗରେ କୃଷ୍ଣ ଅବତାର ହେବ ।
ତେବେ ସେ ଶେଷ ହେବ ଧରଣୀର ଭାର
ମାୟାକରି ସଂହାରିବୁ ସୃଷ୍ଟିର ଦୁଃଖଭାର ।
ସେଠାରେ ମୋରରୂପ ଦେଖିବ ମୁନି ଶ୍ରେଷ୍ଠ
ତେବେ ମୋତେ ଚହ୍ନିବ ତହିଁ ତପନିଷ୍ଠ ।
ଏସନକ ବୋଲିଣ ମାରକଣ୍ଡକୁ ଛଆରି
କେହି ନଜାଣନ୍ତି ତାହା କହିଲେ ଚାପଧାରୀ ।
ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ
ନାରଦ ଯେ କହିଗଲେ ସକଳ ଋଷିଗଣ ।
ଶୁଣିଣ ବଶବାଋଷି ଲଙ୍କାଗଡ଼ ଗଲେ
ମନ୍ଦୋଦରୀ ଆଗରେ ପ୍ରବେଶ ହୋଇଲେ ।
ଶଶୁରଙ୍କୁ ଦେଖିଣ ଉଠିଲେ ମନ୍ଦୋଦରୀ
ବଶବାଋଷି ବୋଇଲେ ଶୁଣଗୋ ବଧୂ ମୋର
ଶ୍ରୀରାମ ଅଭିଷେକ ଆଜ ଦିନ ପୁଣ
ଆମ୍ଭେ ଦେଖିବାକୁ କରିଲୁ ଗମନ ।
ଶୁଣିକରି ମନ୍ଦୋଦରୀ କହନ୍ତି ବଚନ
ତାଙ୍କ ସଙ୍ଗରେ ଗଲେ ଭୁମ୍ବର ପୁତ୍ର ପୁଣ ।

ବ୍ରହ୍ମାଣ୍ଡ ଠାକୁର ଅଟନ୍ତି ରାମଚନ୍ଦ୍ର
ଦୟାଳୁ ପୁରୁଷ ଯେ କରୁଣା ସାଗର ସେହୁ ।
ମୋର ଦୋଷ କ୍ଷମାକର କର ଯେ କଥାଏ
ପୁତ୍ରବଧୂଙ୍କର ଠାରେ ଅଛି ଯେ ସଦସ୍ୟେ ।
ଦାଶରଥିଙ୍କ ପାଇଁ କଛି ମୁଁ ଦେବ ରତ୍ନ
ଶ୍ରୀରାମ ଛାମୁରେ ଦେବ ହେ ଭୁରତ ।
ଏତେବୋଲିମନ୍ଦୋଦରୀଡାକେଧେନସସ୍ରଦତ୍ୟ
ସହସ୍ରେକ ରଥ ପୁଣ ଆଣିଲେ ଭୁରତ ।
ବ୍ରହ୍ମକାନ୍ତି ହୀରା ସେଥିରେ ପୂର୍ଣ୍ଣ କଲା
ସହସ୍ରେକ ରଥ ଋଷିଙ୍କ ସଙ୍ଗରେ ଗୁଳାଦେଲା
ଶ୍ରୀରାମ ଛାମୁରେ ଋଷି ହେଲେ ଉପଗତ
ଦେଖିଣ ଶ୍ରୀରାମଙ୍କୁ ମନରେ ଉସତ ।
ମୁନି ବୋଲନ୍ତି ଶୁଣ ହେ କୋଦଣ୍ଡ ଚାପଧାରୀ
ସହସ୍ରେକ ହୀରା ରଥେ ଦେଲା ବିଭୀଷଣ ନାରୀ
ଶୁଣିକରି ଶ୍ରୀରାମ ସନ୍ତୋଷ ମନ ହେଲେ
ଭରତକୁ ଚାହିଁଣ ଆପଣେ ଆଜ୍ଞାଦେଲେ ।
ଭିତର ଭଣ୍ଡାରେ ରଖ ଅନେକ ବସ୍ତୁ
ଶୁଣିଣ ନକଇ ଯେ ଚଳିଲା ଭୁରତ ।
ଲଙ୍କାର ନୃପତିଙ୍କ ସଙ୍ଗରେ ଘେନିଗଲା
ଭିତର ଭଣ୍ଡାରେ ନେଇ ଯତନେ ଥୋଇଲା ।
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ନାରଦଙ୍କ ମୁଖୁ ମନୁରଜା ବାରତା ପାଇଣ
ସହସ୍ରେକ ରଥରେ ପାଣିଦ୍ରବ୍ୟ ଭରି
ସବୁ ଅଟେ ହୀରା ମାଳା ବଇଡ଼ୂର୍ଯ୍ୟ ଆଦିକରି
ଅଯୋଧ୍ୟାରେ ପ୍ରବେଶ ଆସି ହେଲେ ମୁନି
ଶ୍ରୀରାମ ଅଭିଷେକ ଦେଖିଣ ବ୍ରହ୍ମ ଜ୍ଞାନୀ ।
ସନ୍ତୋଷ ହୋଇଣ ଯେ କହିଲେକ ପୁଣ
ବସ୍ତୁ ଫଳ ଦର୍ଶନ ଆଣିଛୁ ରାମରାଣ ।
ଶୁଣିଣ ଭରତକୁ ଠାରି ଦେଲେ ରଘୁନାଥ
ଶୁଣିକରି ଭରତ ଯେ ଚଳିଲେ ଭୁରିତ ।
ଭରତ ଭଣ୍ଡାରରେ ନେଇଣ ସାଇତିଲେ
ସେଠାବରୁ ଶୁଣ ଗୋ କସ ରୀତି ହେଲେ ।
ରାବଣର କୁମର ଅଟଇ ନାଦ ପୁଣ
ଶ୍ରୀରାମ ସଙ୍ଗରେ ଆସିଥିଲେ ଦୈତ୍ୟ ପୁଣ ।
ଅଯୋଧ୍ୟାରେ ଶ୍ରୀରାମ ପ୍ରବେଶ ହେବାରୁ
ତିନି ରାଜାଙ୍କର ଦୈତ୍ୟ ଫେରିଲେ ସେଠାରୁ

ସୁଲଙ୍କା ନେଇ ପତ୍ତଲଙ୍କା ଅଲଙ୍କା ଗଡ଼ରେ
ପ୍ରବେଶ ହୋଇଣ କହୁଛେ ରାଜାର ଗ୍ରାମରେ
ସହସ୍ରେକ ରଥରେ ସୁବର୍ଣ୍ଣ ପୁଣ ଭରି
କ୍ୟୋତି ଲଙ୍କାରୁ ଅଇଲେ ନାଦ ନୃପଧାରୀ
ଲଙ୍କା ଗଡ଼ରେ ଯେ ସୁବର୍ଣ୍ଣ ଦଣ୍ଡଧାରୀ
ମୋତି ମାଣିକ୍ୟ ସହସ୍ରେ ରଥରେ ଭରିକରି
ଦୁଇ ରାଜା ସଙ୍ଗ ହୋଇଣ ଅଇଲେ
ଅଯୋଧ୍ୟା କଟକରେ ପ୍ରବେଶ ଆସି ହେଲେ ।
ସିଂହଦ୍ୱାର ବାଟରେ କଲେକ ଗମନ
ଶ୍ରୀରାମଙ୍କୁ ଦେଖିଣ ଓଳଗି ହେଲେ ପୁଣ ।
ଅଭିଷେକ ଦେଖିଣ ସନ୍ତୋଷ ମନ ହେଲେ
ଦରଶନ ଧନ ଦେଖାଯାଉଁବୋଲିଣବୋଇଲେ
ଶୁଣିକରି ଭରତ ବେଗେ ଚଳିଗଲା
ଭିତର ଭଣ୍ଡାରେ ନେଇଣ ରଖାଇଲା ।
ଏଥୁଅନନ୍ତରେ ଯେ ଶୁଣ ଭଗବତୀ
ବୀରବାହୁ କୁମର ସୁବାହୁ ନୃପତି ।
ଶତକେ ପରଶୁ ପଥର ରଥ ପରେ ଥୋଇ
ଶ୍ରୀରାମ ଅଭିଷେକ ଦେଖି ଅଇଲାବେଗ ହୋଇ
ସିଂହଦ୍ୱାରେ ଆସିଣ ହେଲେ ପରକାଶ
ରଥରୁ ଓହ୍ଲାଇଲା ବୀରବାହୁ ଶିଷ୍ୟ ।
ପାଏଡ଼ା ପାଡ଼ିଣ ଯେ ଶୋଇଲା ବୀର ତହିଁ
ସେହିଠାରୁ ଦଣ୍ଡ ପ୍ରଣାମ କରେ ସେହି ।
ଦନ୍ତରେ ତୃଣ ତାର ଗଳାରେ କୋଠାର
ବେନି ନୟନରୁ ନୀର ଝରେ ଝରଝର ।
ଦଣ୍ଡପ୍ରଣାମ କରନ୍ତେଲୋକେଆଡ଼ହୋଇଗଲେ
ଶ୍ରୀରାମ ଅଭିଷେକଠାକୁ ଗଲେ ବୀର ଭଲେ ।
ଚରଣର ତଳେ ସେ ହେଲେ ପରବେଶ
ଶ୍ରୀରାମ ଚରଣ ଧରେ ବୀରବାହୁ ଶିଷ୍ୟ ।
ବାମକରେ ଜାନକୀର ଚରଣ ଧଇଲା
ନିସ୍ତରିଲ ନିସ୍ତରିଲ ତୁଣ୍ଡରେ ଧଇଲା ।
ଶ୍ରୀରାମ ବୋଇଲେ ପୁତ୍ର ମୁହିଁରେ ବିକଳ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ରହ ତୁ ନିଶ୍ଚଳ ।
ସୁବାହୁ ବୋଇଲେ ଦେବ ବର ମୋତେ ଦିଅ
ତୁମ୍ଭର ଶ୍ରୀଚରଣେ ରହୁ ମୋର ସ୍ନେହ ।
ଭରତ ବୋଇଲେ ଶୁଣରେ କକୟୀ
ସୁବାହୁର ଦରଶନ ଥୁଅ ପୁଣି ନେଇ ।

ସମସ୍ତ ରତ୍ନରୁ ଅଟଇ ଏ ଯେ ସାର
ସେ ରତ୍ନର ନାମ ପରଶୁ ପଥର ।
ଶୁଣିଣ କକଇ ଯେ ବେଗେ ଚଳିଗଲା
ନିଷ୍କଳଙ୍କ ଭଣ୍ଡାରରେ ନେଇଣ ଥୋଇଲା ।
ଏଥୁଅନନ୍ତରେ ଯେ ଶୁଣ ଗୋ ଶାକମ୍ଭରୀ
ପାତାଳ ପୁରେ ଅଟଇ ନାଗ ନୃପଧାରୀ ।
ତାହାର ଆଗରେ ଯେ ନାରଦେ ଥିଲେ କହି
ନକତ୍ତା ଅଯୋଧ୍ୟା ଦଶୀଦ୍ଧନଶ୍ରୀରାମଅଭିଷେକହୋଇ
ଜାଣିଣ ନାଗରାଜା ଲକ୍ଷେକ ସିଂହାସନ
ସୁବର୍ଣ୍ଣରେ ନିର୍ମାଣ କଲାକ ସେହୁ ପୁଣ ।
କନକ ମଣ୍ଡପ ଯେ ଶତେଦଶ କରି
ସହସ୍ରଫଣା କାଳିଅକୁ ଭେଦିଲା ମଧ୍ୟପୁରୀ ।
ଦୁଇସହସ୍ର କୋଡ଼ିଏ ନାଗ ସଙ୍ଗେ ଘେନି
ଅଯୋଧ୍ୟା କଟକରେ ପ୍ରବେଶ ଆସି ପୁଣି ।
ଶ୍ରୀରାମ ସିଂହଦ୍ୱାରେ ହେଲେ ପରବେଶ
ଦେଖି ପଳାଇଲେ ନର ବାନର ସମସ୍ତ ।
ଶ୍ରୀରାମଙ୍କ ନବରେ ଯେ ପଡ଼ିଲା ଗୁଗୁଡ଼ି
ବଶିଷ୍ଠଙ୍କୁ ପଚାରନ୍ତି କୋଦଣ୍ଡ ଗୃପଧାରୀ ।
କମ୍ପାଇଁ ପଳାଉଛନ୍ତି ନ ରହିଣ ଏଥି
ବଶିଷ୍ଠ ବୋଇଲେ ଦେବ କାଳି ଆସୁଅଛି ।
ସିଂହାସନ କନକ ମଣ୍ଡପ ଘେନି ପୁଣ
ବିଜୟେ କଲା ଆସି ସିଂହ ଦୁଆରେଣ ।
ସମସ୍ତ ଫଣା ତାର ଅଟେ ବଳିଆର
ରୂପ ଦେଖି ସମସ୍ତେ ହେଲେ ଭୟଙ୍କର ।
ଦାଶରଥି ବୋଇଲେ ସେକାହାରେହେବବଶ
ବଶିଷ୍ଠ ବୋଇଲେ ଲକ୍ଷ୍ମଣ ଶତ୍ରୁଘନରେତୋଷ
ଶୁଣିଣ ଲକ୍ଷ୍ମଣ ଶତ୍ରୁଘନ ବେଗେ ଗଲେ
କାଳିୟ ଅହିର ପାଶେ ପବେଶ ହୋଇଲେ
ଦେଖି କାଳିୟ ନାଗ ସନ୍ତୋଷ ହୋଇଲା
ଦୁଇଭାଇଙ୍କ ଚରଣେ ଓଳଗି ଶୋଇଲା ।
ତେଜମାନ ଗୁଡ଼ିଣ ହୋଇଲେ ନିଉନ
ଶ୍ରୀରାମ ଚରଣେ ଯାଇ କଲେକ ଦରଶନ ।
ଶ୍ରୀରାମ ବୋଇଲେତୁମ୍ଭେରେବେଗେଚଳିଯାଅ
ନାଗେଶ୍ୱର ବନରେ ଯାଇଣ ରହିଥାଅ ।
ଶୁଣିଣ କାଳିୟ ଅହି ବେଗେ ଚଳିଗଲା
ନାଗେଶ୍ୱର ବନରେ ଯାଇଣ ରହିଲା ।

ସିଂହାସନ କନକ ମଣ୍ଡପ ଭୃତ ନେଲ
ଭିତର ଭଣ୍ଡାର ଘରେ ନେଇଣ ରଖିଲ ।
ଏଥୁଅନନ୍ତରେ ଗୋ ଶୁଣ ଭଗବତୀ
ତୀର୍ଥଜଳ ପଞ୍ଚାମୃତ ଅଭିଷେକ ହୋନ୍ତି ।
ଏଥୁଅନନ୍ତରେ ଯେ ହରିଲ ଅଭିଷେକ
ଦେଖିଲେ ଶ୍ରୀରାମ ଯେ ସକଳ ଜନ ମୁଖ ।
ଦେବରାଜା ସେଥିରେ ବିଜେ କରିଥିଲେ
ବ୍ରହ୍ମା ଶିବଙ୍କୁ ବ୍ରହ୍ମିଣ ତହୁଁ ପଚାରିଲେ ।
ବୋଇଲେ କନକ ସ୍ନାନ କରାଇବା ଆମ୍ଭେ
ଶୁଣିକରି ବିଧାତା କହିଲେ ତାଙ୍କୁ ବଚନେ ।
ଅଣାଅ ସୁବର୍ଣ୍ଣ କଳସ ଯେ ସ୍ନାନ ପାଇଁ
ଶୁଣିଣ ଦେବରାଜା ମାତଳିକୁ ଚାହିଁ ।
ବୋଇଲେ ମୋ ନଗରକୁ ବେଗେ ଚଳିଯାଅ
ଶ୍ରୀରାମ ଅଭିଷେକକୁ ଲକ୍ଷେ ସୁବର୍ଣ୍ଣ ଅଣାଅ ।
ଶୁଣିଣ ମାତଳି ଯେ ବେଗେ ଚଳିଗଲ
ଲକ୍ଷେ ସୁବର୍ଣ୍ଣ ଭଣ୍ଡାରୁ ଘେନିଣ ଆଣିଲ ।
ସୁବର୍ଣ୍ଣ ମଧ୍ୟରେ ଯେ ଅକ୍ଷର ଅଛି ଲିହି
ରାମ ଲକ୍ଷ୍ମଣ ସୀତା ନାମ ଯେଣିକ ରହି ।
ପୁରନ୍ଦର ବୋଇଲେ ହେ ଋଷିମାନେ ଉଠ
ଶୁଣିଣ ଋଷିମାନେ ଯେ ଧାଇଲେ ସମ୍ମୁଖ ।
ଆଡ଼େ ହୋଇ ଯେ ରହିଲେ ଋଷିଗଣ
ବ୍ରହ୍ମା ବିଜେ କଲେ ତାହାଙ୍କର ପାଶେ ପୁଣ
ସଦାଶିବ ବିଜେ କଲେ ବାମ ପାଶେ ଯାଇ
ପୁରନ୍ଦର ଦେବତା ପଛରେ ଯାଇ ରହି ।
ବୃହପାଶେ ଚୈସ୍ୱାଡ଼ ଅମ୍ଲାନ ବସ୍ତ୍ରରେ
ଶ୍ରୀରାମଙ୍କୁ ବୋଇଲେ ଉଠ ଉଠ ସତ୍ୱରେ ।
ଜାନକୀ ଆଗରେ ହେ ତୁମ୍ଭେ ପଛ ବସ
କନକ ସ୍ନାହାନ ଦେବ କରାଇବୁ ଆଜ ।
ଶୁଣିଣ ଶ୍ରୀରାମ ଯେ ଜାନକୀ ଘେନ ଉଭା
ଲକ୍ଷେକ ସୁବର୍ଣ୍ଣ ନଉଡ଼ିଲେ ଦେବ ରାଜା ।
ରାମତାଳି ହରିବୋଲ ଶବଦ ହୁଳହୁଳି
ନାଚନ୍ତି କିନ୍ନରୀ ଅପସରୀ ବିଦ୍ୟାଧରୀ ।
କନକ ସ୍ନାନ ରାମଙ୍କୁ କରାଇ ଦେବଗଣ
ବିଜେକଲେ ଶ୍ରୀରାମ ଯେ ରତ୍ନସିଂହାସନ ।
ଅଭିଷେକ ସୁବର୍ଣ୍ଣ ଭରତ ଘେନିଗଲେ
ଭିତର ଭଣ୍ଡାର ଘରେ ନେଇଣ ଥୋଇଲେ

ରତ୍ନ ସିଂହାସନରେ ବିଜେ ବେନିଜନ
ଦେବତାଏ ପୁଷ୍ପ ବୃଷ୍ଟି କଲେ ଉପରେଣ ।
ପୁଷ୍ପବାସ ଘେନିଣ ଉଠିଲେ ରଘୁଣାଥ
ଜାନକୀ ଉଠିଣ ଚଳିଗଲେ ଅନ୍ତଃପୁର ।
ସେଠାରୁ ଉଠି ଶ୍ରୀରାମ ଭିତରକୁ ଗଲେ
ସୁବାସ ଗଙ୍ଗା ଜଳରେ ସ୍ନାହାନ କରିଲେ ।
ସୀତାସ୍ତ୍ରୀ ଶୀତଳ ଜଳେ ସ୍ନାନ କରି ହରଷ
ଶୁଣ ହେ ଭଗବତୀ ଶ୍ରୀରାମଚନ୍ଦ୍ର ରସ ।
ଲକ୍ଷେ ଭ୍ରମର ଗଣ୍ଡେ ସୀତାଙ୍କର ପାଶ
ଏଥୁଅନନ୍ତରେ ହୋ ଶୁଣ ଅବ୍ୟରସ ।
ନାନାରତ୍ନେ ଅଲଙ୍କାର କଲେକ ଗୁଏଣି
ଶ୍ରୀରାମର ବାମ ପାଶେ ବସାଇଲେ ଆଣି ।
ସୁବର୍ଣ୍ଣମସ୍ତ ଘର ଉପରେ ଚନ୍ଦ୍ରାତପ
ତହିଁରେ ବନ୍ଦାପନା ହୋଇଲେ ରାମନୃପ ।
ଦୁଇଘଡ଼ି ସମସ୍ତରେ ଶ୍ରୀରାମ ବନ୍ଦାପନା
ଲକ୍ଷେ କୁମ୍ଭ ଘେନି ଉଭା ହୋଇଛନ୍ତି କନ୍ୟା
ଲକ୍ଷେ ଡାହାଣବୁଲ ଶଙ୍ଖ ସୁରଇ ନାନାଘୋଷ
ତିନିଦ୍ୱାର ଫେଡ଼ିଦେଲେ ଭିତରେ ପରବେଶ
ଫେଡ଼ିଦେଲ ଯହୁଁ ତିନିଦ୍ୱାର ପଡ଼ିହାରୀ
ଅର୍ଘ୍ୟଘେନି ବନ୍ଦାନ୍ତି ସକଳ ନରନାରୀ ।
ସ୍ୱର୍ଗର ଦେବତାମାନେ ଆନନ୍ଦେ ଦେଖନ୍ତି
ଅପସରୀ ବିଦ୍ୟାଧରୀ ହୁଳହୁଳି ଦିଅନ୍ତି ।
ପଞ୍ଚମ ସ୍ୱରରେ ଯେ କିନ୍ନରୀ ଗୀତଗାଏ
ଶ୍ରୀରାମର ବନ୍ଦାପନା ଦେଖନ୍ତି ଦେବତାଏ ।
ଓବରତ୍ନେ ପଢ଼ଅଛି ସୁବର୍ଣ୍ଣର ମାଳା
ପବନ ହାତରେ ଦେଲେ ଦିଗପାଳ ପରା ।
କୁବେରହିଁ ମୁକୁତାମାନ ଆଣି ଦେଲ
ଶରଦ ଚନ୍ଦ୍ର ଜିଣି ପୁଣି ସେ ବିରାଜିଲ ।
ବରୁଣ ଦେଲ ପଦ୍ମରାଗ ମାଣିକ୍ୟ ମାଳ
କିରଣ ବିରାଜଇ କି ଧୂମ ଅଗ୍ନି ଜାଳ ।
ତିନି ମାଳ ଘେନି ଚଳି ଆଇଲ ବୁଲିତ
ଶ୍ରୀରାମ ଗ୍ରମୁରେ ମାଳା ଦେଲକ ମରୁତ ।
ଶ୍ରୀରାମ ଗଳାରେ ଦେଲେ ମାଣିକ୍ୟର ମାଳ
ସୀତାକଣ୍ଠେ ଲମ୍ବାଇଲେ ମୁକୁତା ରତ୍ନମାଳ
ପାରିଜାତ ପୁଷ୍ପ ଯେ ମରୁତ ଆଣିଦେଲ
ଶ୍ରୀରାମ ଜାନକୀଙ୍କ ଶିରରେ ଗନ୍ଧ ହେଲ ।

ନୀଳମେଘରେ ଯେହ୍ନେ ବିଜୁଳି ବିରାଜଇ
ଶ୍ରୀରାମ ହୃଦରେ ମାଳା ତେସନ ଦିଶଇ ।
ସୁବର୍ଣ୍ଣ ପ୍ରତିମା କି ମାଣିକ୍ୟ ଆଭରଣ
ସୀତା ଶ୍ରୀରାମ ଦିଶନ୍ତି ତେସନେ ଭୂଷଣ ।
ପବନ ଦେବତା ଆସି ଆଗରେ ବିଜେକଲେ
ମଥାରେ ହାତ ଦେଇ ସେ ପଛକୁ ଘୁଞ୍ଚିଲେ ।
ମୁନିମାନେ ଶ୍ରୀରାମ ସୀତାଙ୍କୁ ଅର୍ଘ୍ୟ ଦେଲେ
ଶୁଭଯୋଗେ ରାଜ୍ୟ ତୁମ୍ଭେ କରସିବୋଇଲେ
ଲକ୍ଷ୍ମଣ ତୋଳି ଧଇଲେ ଦେଖେ ଶିର ଛତ୍ର
ପାଦଧରି ବସିଅଛି ପବନର ସୁତ ।
ଆଗେ ଭରତ ଶତ୍ରୁଘନ ଚାଳନ୍ତି ଚାମର
ଆଲଟ ଧରି ଅଛନ୍ତି ବିଭୀଷଣ ବୀର ।
ସୁଗ୍ରୀବର ଆଗରେ ଯେ ବଞ୍ଚଇ ବଞ୍ଚଣୀ
ଦର୍ପଣ ଧରିଅଛି ଜାମ୍ବବ ମନ୍ତ୍ରୀ ପୁଣି ।
ଅଙ୍ଗଦ ଧୂପକାଠି ଯେ ନଳଖଣ୍ଡା ଛୁରୀ
ସୁବର୍ଣ୍ଣର ପାଦୁକା କଅଣ ଅଛି ଧରି ।
ଆଲଟ ଦଧିମୁଖ ପରିଘ ନୀଳ ଜାଣ
ଗନ୍ଧମାଦନ କାଡ଼ି ବରସ୍ତ ଧରିଣ ।
ତାରାକ୍ଷ ବୀର ବସଇ ଧରିଣ ଝୀନ ବାସ
ସଜରି ଧରିଅଛି ହସ୍ତରେ ଆଲଟ ।
ବଶିଷ୍ଠ ବାମଦେବ ଯେ କଶ୍ୟପ ଯାବାଳି
ବେଦ ପଢ଼ୁଛନ୍ତି ମୁନିଗଣମାନେ ମିଳି ।
ସୁମନ୍ତ୍ର ପଟୁଆସି କରାଉଅଛି ନୃତ୍ୟ
ଶଙ୍କର ମଣ୍ଡୁଅଛି ପୁଷ୍ପକ ନାମେ ରଥ ।
ପାଟଗଜ ପାଟଅଶ୍ୱ ସଙ୍ଗରେ ତାର ଅଛି
ବନ୍ଦାପନା ବାଦ୍ୟ ଯେ ହୋଏ ରଘୁବଂଶି ।
ଲକ୍ଷେକ ନୃପତି ଯେ ଆଣିଣ ଅର୍ଘ୍ୟଦେଲେ
ଜାନକୀ ଶ୍ରୀରାମଙ୍କ ଦୁହିଁଙ୍କ ଉପରେ ।
କଇକେୟୀ କଉଶଲ୍ୟା ସୁମିତ୍ରା ଏମାନେ
ସାତଶପଞ୍ଚଶ ରାଣୀ ଯେଜଣ ଗହଣେ ।
ସୁବର୍ଣ୍ଣ ଥାଳରେ ପଞ୍ଚ ମାଣିକ୍ୟ ଯେ ଭରି
ରତ୍ନଦୀପ ଦୀପାବଳୀ ଦୂର୍ବାକ୍ଷତ ଧରି ।
ଆପଣେ ମନ୍ଥୁଡ଼ି ଯେ ସ୍ୱଳେ ଯେତେ ଖେଳେ
ଦେଲେ ଜନନୀଏ ଅର୍ଘ୍ୟ ଶ୍ରୀରାମ ଉପରେ ।
ଦୂର୍ବାକ୍ଷତ ଦୀପାବଳୀରେ ଘୃତ ଜାଳି
ଏକକୁ ଆରେକ ଯହିଁ ଉବୁରା ଉବୁରି ।

ଶ୍ରୀରାମ ଉରୁରୁ ସୀତାଙ୍କୁ ଯେ ଅର୍ଘ୍ୟ ଦେଲେ
ଦୂର୍ବାକ୍ଷତ ନେଇଣ ଶିରରେ ନଉଡ଼ିଲେ ।
ସପତ ମହାଋଷି ଯେ ଆଗେ ଅର୍ଘ୍ୟ ଦେଲେ
ଜନନୀମାନେ ଯାଇଣ ଭିତରେ ରହିଲେ ।
କପିମାନଙ୍କ ବଭୂତ ଶିରରେ ଲଗିଲା
ସ୍ତ୍ରୀଶଙ୍କ ଦେହ ହଳଦୀ ମୁନିଙ୍କ ଦେହେ ପରା
ନୃପତିମାନେ ଦେଖି ହେଉଛନ୍ତି ବଶ
ମୁକୁଟାରୁ ମଣି ଝଡ଼ିପଡ଼ିଲା ତାଙ୍କ ପାଶ ।
ଏକକୁ ଆରେକ ଜେନ୍ତି ନ ପାରନ୍ତି ବାରି
ଶ୍ରୀରାମଙ୍କୁ ଦେଖିବାକୁ ଉବୁରା ଉବୁରି ।
ସଡ଼ଏ ପରିଯନ୍ତେ ହେଲା ମହାଗୋଳ
ନାନାବିଧ ପ୍ରକାରେ ବାଦ୍ୟ ଯେ କୋଳାହଳ
ଏହି ସମୟରେ ବନ୍ଦାପନା ଯେ ସାରିଲେ
ଶ୍ରୀରାମଚନ୍ଦ୍ରଙ୍କ ପାଶ୍ୱୁ ସୀତାଦେବୀ ଗଲେ ।
ସୁମନ୍ତ୍ରକୁ ଚାହିଁଣ ବୋଇଲେ ଶ୍ରୀରାମ
ଯେତେକ ବ୍ରାହ୍ମଣ ଯେ ଅଛନ୍ତି ମୋର ଗ୍ରାମ
ସୁବର୍ଣ୍ଣ ଦାନ ବ୍ରାହ୍ମଣଙ୍କୁ ହେ ଦିଅ ନେଇ
ଦରିଦ୍ରମାନଙ୍କୁ ଧନ ବସ୍ତ୍ର ଦିଅ ତୁହି ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ଧନ ଫଳୋହିଲା
ଲକ୍ଷେକ ସୁବର୍ଣ୍ଣ ନେଇ ବାଣ୍ଟିକରି ଦେଲା ।
ଏଥୁଅନନ୍ତରେ ଶୁଣ ଆଗୋ ଭଗବତୀ
ଦେବବର ଯଜ୍ଞେ କରିଥିଲେ ଯେଥି ।
ଶ୍ରୀରାମଙ୍କୁ ବନ୍ଦାପନା ସାରିଣ ମାତାଗଣ
ବ୍ରାହ୍ମଣଙ୍କ ଚରଣରେ ନମିଲେ ଯାଇ ପୁଣ ।
ବୋଇଲେ ତୁମ୍ଭେ ଯେବେ କହିବ ଦେବବର
ସ୍ୱାମୀଙ୍କ ସଙ୍ଗତେ ଆମ୍ଭେ ଯିବା ସ୍ୱର୍ଗପୁର ।
ଶୁଣିଣ ବେଦବ୍ରହ୍ମା ଯେ ବୋଲନ୍ତି ବଚନ
ଦୁଇଶତ ରାଣୀ ରହି ଚଳ ସଙ୍ଗେ ପୁଣ ।
ଶ୍ରେଷ୍ଠ ରାଣୀ ଦୁଇଶତ ଦେବବର ବାଛି
ଥାଉ ପାଞ୍ଚଶଙ୍କୁ ଏକଠାବେ ନେଇ ରଖି ।
ଦଶରଥ ଭାଗିରଥୀଙ୍କି କହି ଦେବବର
ଶ୍ରୀରାମଙ୍କ ଅଭିଷେକ ସରିଲା ଏଥର ।
ସ୍ୱର୍ଗପୁର ତୁମ୍ଭେ ଚଳ କହିଣ ଶ୍ରୀରାମଙ୍କୁ
ଶୁଣିଣ ଦଶରଥ ଡକାଏ ଶ୍ରୀରାମଙ୍କୁ ।
ଭରତ ଶତ୍ରୁଘନଙ୍କୁ ଡକାଇ ଆଣିଲେ
ଋଷିବଧୁଙ୍କୁ ଅଣାଇ ଏକଠାବେ କଲେ ।

ଦଶରଥ ବୋଇଲେ ଶ୍ରୀରାମଚନ୍ଦ୍ର ଶୁଣ
ଆମ୍ଭେ ଯାଉଛୁ ବାବୁରେ ସ୍ୱର୍ଗକୁ ଏବେ ପୁଣ
ନିଶ୍ଚିନ୍ତ ହୋଇଣ ଯେ ରାଜ୍ୟ ତୁମ୍ଭେ କର
ସନ୍ଥକୁ ପାଳ ବାବୁ ଦୁଷ୍ଟକୁ ନିବାର ।
ଦୁଇଶତ ଜନନୀ ରହିଲେ ତୁମ୍ଭ ସଙ୍ଗେ
ଚାରିନଗ୍ରେ ଚାରି ଭାଇ ରହିବ ସୁଖରଙ୍ଗେ ।
ଜଣକେ ପଞ୍ଚାଶ ଜନନୀ ତୁମ୍ଭର
ଆଉ ସକଳ ଜନନୀ ଯିବେ ମୋ ସଙ୍ଗର ।
ଶ୍ରୀରାମ ବୋଇଲେ ପିତା ଥାନ୍ତୁ ଏଥିଠାରେ
କିମ୍ପାଇଁ ମାତା ଯିବେ ତୁମ୍ଭର ସଙ୍ଗରେ ।
ଭଗିରଥ ବୋଲେ ତାଙ୍କୁ ବିଧାତା ନକହିଲେ
ଆମ୍ଭ ସଙ୍ଗତରେ ଯିବେ କୋଉଣ ବୋଲିଲେ
ଏମନ୍ତ ସମୟରେ ଅଇଲା ଦେବଯାନ
ଧାତା ବୋଇଲେ ରଥରେ ବସାଅ ରାଣୀଗଣ
ଶୁଣିକରି ପଞ୍ଚଶତ ରାଣୀ ଚଳଗଲେ
ରଥର ଉପରେ ଯାଇ ସମସ୍ତେ ବସିଲେ ।
ସତଷଠି ପୁରୁଷ ଯେତେକ ପିତୃଗଣ
ଦଶରଥଙ୍କୁ ଘେନି ଚଳେକ ରଥେଣ ।
ଦେଖିକରି ଚାରିପୁତ୍ରେ ନମସ୍କାର କଲେ
ଚାରିବଧୂ ପିତୃଙ୍କ ଚରଣେ ଉଳଗିଲେ ।
ଉଡ଼ିଲା ଦେବଯାନ ମଧ୍ୟପୁର ଛାଡ଼ି
ଦେଖଣାହାରି ଲୋକେ ଯେ ଦେଲେ ହୁଳହୁଳି
ଅଦୃଶ୍ୟ ହେଲା ରଥ ମିଳିଲା ସ୍ୱର୍ଗସ୍ଥାନେ
ରଥରୁ ଓହ୍ଲାଇଗଲେ ନିଜର ଆସନେ ।
ନିଜ ଆଶ୍ରମରେ ପିତୃ ନିଶ୍ଚିନ୍ତେ ରହିଲେ
ଏଥିଅନନ୍ତରେ ଶୁଣ ଗୋ ଦେଖ ଭଲେ ।
ଆମ୍ଭେ ଯାଇ କହିଲୁ ଶ୍ରୀରାମଚନ୍ଦ୍ର ଶୁଣ
କୈଳାସପୁରକୁ ଆମ୍ଭେ ଯାଉଅଛୁ ପୁଣ ।
ଶୁଣିଣ ଚାରିଭାଇ ନମସ୍କାର କଲେ
ଚାରିବଧୂ ଆସିଣ ଉଳଗି ହୋଇଲେ ।
ମାତାଗଣେ ଆସିଣ କଲେ ମାନ୍ୟ ଧର୍ମ
ବୃଷଭ ଉପରେ ଆମ୍ଭେ ଚଢେ କଲୁ ପୁଣ ।
ଚଉଦକୋଟି ରୁଦ୍ର ଘେନିଣ ବାହାରି ଅଇଲୁ
ନବକୋଟି ଡାକିନୀ ଯେ ଡମ୍ବରୁ ବଜାଇଲୁ ।
କୈଳାସପୁରେ ଆସି ହେଲୁ ପରବେଶ
ତୁମ୍ଭେ ପଚାରିବାରୁ କହିଲୁ ସମସ୍ତ ।

ଏଥୁଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଶ୍ରୀରାମଙ୍କୁ କହିବାକୁ ସକଳ ଦେବେ ମିଳ ।
ଆମ୍ଭେ ଯାଉଛୁ ଉପରକୁ ତୁମ୍ଭେ ଥାଅ ଏଥି
ପୃଥ୍ୱୀ ଉଶ୍ୱାସକର ଶ୍ରୀରାମ ନଗିଲା ତୁମ୍ବକୁଟି ।
ଏତେକହି ଦେବତାଏ ସଭାରେ ବାହୁଡ଼ିଲେ
ସୁଧର୍ମା ସଭାକୁ ଘେନ ସ୍ୱର୍ଗପୁର ଗଲେ ।
ଶ୍ରୀରାମ ଚାରିଭାଇ ନମସ୍କାର କଲେ
ଚାରିବଧୂ ଯାଇଣ ଚରଣେ ଉଳଗିଲେ ।
ମାତାଗଣମାନେ ଯେ ଶିରରେ ଦେଲେ କର
ରାମତାଳ ହୁଳହୁଳି ପଡ଼ିଲା ଅପାର ।
ସ୍ୱର୍ଗରେ ଦେବେ ଯାଇ ହେଲେ ପରବେଶ
ସଭାକରି ପୁରନ୍ଦର ବସିଲେ ହରଷ ।
ଏଥିଅନନ୍ତରେ ତୁମ୍ଭେ ଶୁଣ ଗୋ ହେମବନ୍ତୀ
ଅପସରୀ କନ୍ନରୀ ବିଦ୍ୟାଧରୀ ଯେ କହନ୍ତି ।
ଆମ୍ଭେ ଯିବୁ ସ୍ୱର୍ଗପୁର ଦୟାକର ଏବେ
ଶ୍ରୀରାମ ବୋଇଲେ ତୁମ୍ଭେ ଯାଅବନା ବେଗେ
ଦେବତାଏ ଗଲେ ତୁମ୍ଭେ ନ ରହ ଆଉ ଏଥି
ଶୁଣିଣ ବିଦ୍ୟାଧରୀ ଯେ ଚରଣେ ନମନ୍ତି ।
ହୁଳହୁଳି ଦେଇଣ ଶୂନ୍ୟରେ ବେଗେ ଗଲେ
ସୁଧର୍ମା ସଭାତଳେ ଯାଇଣ ମିଳିଲେ ।
ଏଥିଅନନ୍ତରେ ଶୁଣ ଗୋ ମନୁମାୟୀ
ଦେବବର ଉଡାଇଲେ ନାଗ ଯେ କାଳିଆ ।
ନାଗେଶ୍ୱର ବନରେ କାଳସ୍ୟ ଯାଇଥିଲା
ଉଡାଇବାରୁ ଶ୍ରୀରାମ ଦର୍ଶନେ ଅଇଲା ।
ଆସନ୍ତେ ବାଣ୍ଡଦାଣ୍ଟରୁ ସକଳେ ପଳାଇଲେ
ଅଷ୍ଟକୁଳୀ ନାଗ ଘେନ ଭଉରେ ପଶିଲେ ।
ଚାରିଭାଇଙ୍କି ଯାଇଣ କଲେ ନମସ୍କାର
ବୋଇଲେ ଶ୍ରୀରାମ ଦୋଷ କ୍ଷମାକର ମୋର
ଶ୍ରୀଚରଣ ମୋର ପରେ ଯେବେ ତୁମ୍ଭେଦେବ
ଶାପରୁ ମୁକତ ତୁମ୍ଭେ ଏବେ କରିବ ।
ଶ୍ରୀରାମ ବୋଇଲେ ତୋତେ ଋଷିଶାପଦେଲେ
ମଧୁପୁରେ ସତର ଯୁଗ ରହିବୁ ବୋଇଲେ ।
ତେବେ ତୋର ଦୋଷ ଦେହରୁ ପାରଯିବ
କୃଷ୍ଣ ଅବତାରେ ମୋର ପଦ୍ମର ଧ୍ୱଂସିବ ।
ଜଠାଉର ଚିହ୍ନ ଯେ ରହିବ ତୋ ଫଣାରେ
ନୃତ୍ୟ କରିବୁ ଆମ୍ଭେ ତୋର ମସ୍ତକରେ ।

ସେତେବେଳେ ଶାପରୁ ମୁକତ ହୋଇବୁ
ବାସୁକି ନାଗ ପାଶରେ ନିଶ୍ଚିନ୍ତେ ବସନେବୁ
ଏବେ ତଳ କୁଣ୍ଡରେ ମଥୁରା ବୃନ୍ଦାବନ
ଯମୁନା ନିକଟରେ କାଳିନ୍ଦ ଅଛି ଜାଣ ।
ପଦ୍ମବନ ଭିତରେ ରହିବୁ ଯାଇକରି
ସେ ଜଳ କର ଗରଳ ଭକ୍ଷନ୍ତୁ କେହ୍ନି ସବୁ ।
ଯେତେବେଳେ ମଥୁରାରେ ଜନମ ହୋଇବୁ
କଂସ ଡରେ ଗୋପପୁରେ ଯାଇଣ ମିଳିବୁ ।
ପଦ୍ମଫୁଲ ତୋଳିବାକୁ ଯିବୁ ଯେତେବେଳେ
ତେତେବେଳେ ମୁକତକରିବ ତୋତେହେଲେ
ଶୁଣିଣ କାଳିସ୍ମ ନାଗ ବେଗେ ଚଳିଗଲା
କାଳିନ୍ଦ ହ୍ରଦରେ ଯାଇଣ ବସାକଲା ।
ଅଷ୍ଟକୁଳା ନାଗ ଯେ ଚଳିଲେ ତଳପୁର
ବାସୁକି ନାଗ ଆଗରେ ମିଳିଲେ ସତ୍ୱର ।
କରଯୋଡ଼ି ଜଣାଇଲେ ବାସୁକି ସ୍ୱାମୀରେ
ସତରୂପ କାଳିସ୍ମ ରହିଲା ମର୍ତ୍ତ୍ୟପୁରରେ ।
ରଙ୍କା ଅବତାରେ ଯେ ହୋଇବ ଶାପୁ ପାର
ତେବେ ସେ ଆସିବ ଯେ ତୋହର ସ୍ୱାମୁର ।
ଶୁଣିଣ ନାଗରାଜା ହରଷ ମନ ହେଲା
ଶ୍ୱେତ ପଦ୍ମ ପ୍ରାୟେକ ରୂପ ପ୍ରକାଶିଲା ।
ଏଥିଅନନ୍ତରେ ଗୋ ଶୁଣ ଶାକମ୍ବରି
କାଳିସ୍ମ ନାଗ ତହୁଁ ଗଲା ବଢ଼େକରି ।
ସେଠାରୁ ଦେବର୍ଷି ବ୍ରହ୍ମର୍ଷି ଆସିଛନ୍ତି
ଦେଖିଣ ରଘୁରାଇ ମସ୍ତକେ କର ଦ୍ୟନ୍ତି ।
ଭରତକୁ ବୋଇଲେ ଯେ ଚଳିଯାଅ ବେଗ
ବ୍ରହ୍ମକାଣ୍ଡ ହୀରା ଅଣାଅ ମୋର ଆଗ ।
ଶୁଣିକରି ଭରତ ବେଗେ ଚଳିଗଲା
ଭରତ ଭଣ୍ଡାର ଘରୁ ହୀରା ଅଣାଇଲା ।
ପୋଣକୋଟି ହୀରା ଦେଲକ ଆଣି ପୁଣ
ମୁନି ଗୋଟିକେ ଗୋଟିଏ ହୀରା ଦେଲେ ଜାଣ
ସ୍ୱର୍ଗପୁରେ ପଚାଶ କୋଟି ମୁନିଗଣ
ତାହାଙ୍କୁ ସନ୍ତୋଷ କଲେ ଦେଇ ରାମଧନ ।
ଶ୍ରୀରାମଙ୍କୁ ଆଶିଷ ଦେଇ ଋଷି ଗଲେ
ସ୍ୱର୍ଗପୁରେ ପ୍ରବେଶ ଯାଇ ବେଗେ ହେଲେ ।
ତାଙ୍କର ସଙ୍ଗରେ ଚଳିଲେ ଅଷ୍ଟ ଆଖି
ଶ୍ରୀରାମଙ୍କୁ ବୋଇଲେ କଲ୍ୟାଣ ଥାଅ ଏଥି ।

ଶୁଣିକରି ଶ୍ରୀରାମ ଯେ ନମସ୍କାର କଲେ
ରଘୁରାଇଙ୍କି ଯେଉଁଣ ଋଷିଙ୍କି ଓଳଗିଲେ ।
ତିନି ଭଗିନୀ ଯେଉଁଣ ସୀତା ସୁଭକେଶୀ
କେଉବର ଶିରପରେ ଅର୍ଘ୍ୟ କଢ଼ାବନ୍ତି ।
ଚରଣେ ମାନ୍ୟ ଧର୍ମ କଲେ ସ୍ୱର ଭଗ୍ନୀ
ସନ୍ତୋଷ ହୋଇଣ ବ୍ରହ୍ମା ଚଳିଗଲେ ପୁଣି ।
ଯଶୋବନ୍ତୀପୁରେ ଯାଇ ହେଲେ ପରବେଶ
ଗାୟତ୍ରୀ ସାବିତ୍ରୀଙ୍କି କହିଲେ ସନ୍ଦେଶ ।
ଏଥିଅନନ୍ତରେ ଯେ ଶୁଣ ଗୋ ଭଗବତୀ
ବ୍ରହ୍ମା ରୁଦ୍ରଦେବ ଋଷି ସ୍ୱର୍ଗପୁରେ ଯାନ୍ତି ।
ପାତାଳପୁର ମୁନି ହେଲେ ଶ୍ରୀରାମର ଆଗ
ଦେଖିଣ ରାମ ଭରତଙ୍କୁ କହିଲେକ ବେଗ ।
ବ୍ରହ୍ମକାଣ୍ଡ ହୀରାକୁ ଅଣାଅ ଭଣ୍ଡାରୁ
ଶୁଣିଣ ଭରତ ବୀର ଚଳିଲେ ସେଠାରୁ ।
ବତିଶ କୋଟି ହୀରା ଅଣାଇଲା ବେଗ
ଚନ୍ଦ୍ରପ୍ରଭ ସଦୃଶ୍ୟ ଝଟେ ତାର ତେଜ ।
ମୁନିଗୋଟିକ ଗୋଟିଏ ଲେଖାଏଁ ସେବେଳେ
ବତିଶ କୋଟି ମୁନିଙ୍କି ସନ୍ତୋଷ କରାଇଲେ
ସନ୍ତୋଷ ହୋଇ ମୁନି ଚଳିଲେ ତଳପୁର
ଶ୍ରୀରାମ ରଘୁରାଇ ଯେ ନମିଲେ ପସୁର ।
ତିନିଭଗିନୀ ଯେନ ସୀତା ଚରଣେ ଓଳଗିଲା
ମୁନି ବୋଲେ ଦୁହିତା ଯାଉଛୁ ଆମ୍ଭେ ପରା
କଲ୍ୟାଣ କରି ମୁନି ତଳପୁର ଗଲେ
ଦୁଷ୍ଟମାରି ସନ୍ଥପାଳ ବୋଲିଣ ବୋଇଲେ ।
ତହୁଁ ସପ୍ତଋଷି ମିଳି ଶ୍ରୀରାମ ଆଗର
ଦେଖିକରି ରଘୁରାଇ ଓଳଗି ପସୁର ।
ସୀତା ତିନି ଭଗିନୀ ଯେନ ଚରଣେ ନମିଲେ
ଜନମାମାନେ ଆସି ଚରଣେ ଓଳଗିଲେ ।
ବହ୍ମକାଣ୍ଡ ହୀରା ଚଉର୍ଦ୍ଦଶ ଅଣାଇଲେ
ମୁନି ଜଣକରେ ହୀରା ଦୁଇ ଦୁଇ ଦେଲେ ।
ଚଳିଲେ ସପ୍ତଋଷି ଅସର ଭୁବନ
ଏଥିଅନନ୍ତରେ ଗୋ ହେମବନ୍ତି ଶୁଣ ।
ମଧ୍ୟପୁରର ଋଷି ତେସ୍ତ୍ରାଅଶି କୋଟି
ପର୍ଶୁରାମଙ୍କୁ ଯେନ ଶ୍ରୀରାମ ଆଗେ ଭେଟି ।
ଦେଖିଣ ଶ୍ରୀରାମଚନ୍ଦ୍ର ରଘୁରାଇ ଯେନ
ଚରଣେ ମ୍ଲେଟ୍ଟପାଳ ଶୋଇଲେ ଯେ ପୁଣି ।

ଜାନକୀ ନମିଲେ ସଙ୍ଗେ ଶତ୍ରୁଘ୍ନ ଯେନ
ମାତାଗଣ ନମିଲେ ଉଲଗି ହୋଇ ଖୁସି ।
ଭରତ ଭଣ୍ଡାରୁ ଯେ ଆଣିଣ ହୀର ଦେଲେ
ବ୍ରହ୍ମଜାତ ହୀରାପାଇ ଋଷି ଚଳିଗଲେ ।
ଯେ ଯାହାର ଆଶ୍ରମେ ମିଳିଲେ ଯାଇବେଗେ
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତ ମୁନିସଙ୍ଘେ ।
ଏଥିଅନନ୍ତରେ ଯେ ଶୁଣଗୋ ଶାଳମଣି
ଅଗସ୍ତି ଋଷି ସିଂହ ନାରଦ ଆସି ମିଳି ।
ଭୃଗୁରାମ ଦୁର୍ବାସା ଯେ ଜନକଙ୍କ ଯେଣ
ଷଡ଼ଋଷିଙ୍କି ଦେଖି ରାମ ବନ୍ଦରନ୍ତ ପୁଣି ।
ଷଡ଼ ଅର୍ଘ୍ୟ ପାଦପୂଜା କଲେକ ଶ୍ରୀରାମ
ଧୂପଦୀପ ଦେଇ ରାମ ବସାଇଲେ ପୁଣ ।
ସୁରଭିଙ୍କି ଯେନ ଚରଣେ ଲୋଟପାଳ
ଶତ୍ରୁଘ୍ନ ଯେନ ସୀତା ଚରଣ ତଳେ ପଡ଼ି
ବ୍ରହ୍ମଜାତ ହୀରାରୁ ଯେ ଦୁଇଗୋଟି ଦେଲେ
ଅଭିଷେକ ଶୁନସ୍ୱା ଆଣିଣ ସମର୍ପିଲେ ।
ସନ୍ତୋଷ ହୋଇମୁନି ରାମଙ୍କୁ କହେ ବାଣୀ
ଏସାର ସହସ୍ର ବର୍ଷ ଭୋଗକର ସାରମଣୀ ।
ତେବେ କ୍ଷୀରସାଗର ନଜପୁର ଯିବ
କଶ୍ୟପ କରି ଶତ୍ରୁପୁର ଅନନ୍ତ ରୂପେ ଥିବ ।
ଏତେକହିଲ ଷଡ଼ଋଷି ବେଗେ ଚଳିଗଲେ
ଯେ ଯାହା ନିଜସ୍ଥାନେ ଯାଇଣ ମିଳିଲେ ।
ଏଥୁଅନନ୍ତରେ ବୁଝେ ଶୁଣ ଗୋ ପାର୍ବତୀ
ଅଯୋଧ୍ୟାରୁ ଗଲେ ଋଷି ଯେ ଦେବତାନ୍ତି ।
ଦେଖିଣ ଶ୍ରୀରାମଚନ୍ଦ୍ର ମନ୍ତ୍ରୀକି ଆଜ୍ଞାଦେଲେ
ରାଜାଙ୍କୁ ଶସ୍ତ୍ର ଆଣି ଦିଅରେ ବୋଇଲେ ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ସର୍ବଙ୍କି ଧନଦେଲ
ରାଜାମାନଙ୍କୁ ଚୂର ଖଣ୍ଡା ଭଳୋଲ୍ଲିଲ ।
ଜଣ ଜଣକେ ଖଣ୍ଡା ଭଙ୍ଗପଟଣ ଦୁଇଶାଢ଼ୀ
ରଘୁନାଥ ଆଜ୍ଞାରେ ସୁମନ୍ତ୍ର ଦେଲ କାଢ଼ି ।
ମାଳ ଚନ୍ଦନମାନ ଷଧିରେ ଅଳଙ୍କାର
ପାଇଣ ଆନନ୍ଦ ଯେ ହେଲେ ନୃପବର ।
ସୁବାହୁ ସୁକଣ୍ଠି ନାବକୁ ଦେଲେ ଶାଢ଼ୀ
ଆପଣା ହୃଦରୁ ସୁବର୍ଣ୍ଣ ମାଳ କାଢ଼ି ।
ମାଳ ଚନ୍ଦନମାନ ଷଧିରେ ଅଳଙ୍କାର
ପାଇଣ ଆନନ୍ଦ ଯେ ହେଲେ ନୃପବର ।

ତିନିଙ୍କର ଗଳାରେ ନେଇଣ ଲମ୍ବାଇଲେ
ସେନ୍ଧସମସ୍ୟାରେସ୍ୱୟଂମୁନିଙ୍କି ଶାଢ଼ୀଦେଲେ
ଅଙ୍ଗଦ ସୁଗ୍ରୀବଙ୍କୁ ଡାକିଣ ଶାଢ଼ୀଦେଲେ
ଶାଢ଼ୀ ପାଇ ଦୁଇସର ଚରଣେ ଲୋଟିଲେ ।
ଇନ୍ଦ୍ର ଦେଇଥିଲେ ଯେଉଁ ନବରତ୍ନ ମାଳ
ଅଙ୍ଗଦ ସୁଗ୍ରୀବଙ୍କୁ ଦେଲେ ରଘୁବୀର ।
ଦେଖିକରି ଆନନ୍ଦ ହେଲେ ସୁଗ୍ରୀବର
ଶ୍ରୀଚରଣେ ନମସ୍କାର କଲେ ବାରମ୍ବାର ।
ମାଣିକ୍ୟ ମାଳଗୋଟି ବରୁଣ ଦେଇଥିଲ
କୁବେର ଦେଇଥିଲେ ଯେଉଁ ରତ୍ନମାଳା ।
ଅଙ୍ଗଦ ସୁଗ୍ରୀବଙ୍କୁ ଦେଲେ ରଘୁବୀର
ଦେଖିକରି ଆନନ୍ଦ ହେଲେ ସୁଗ୍ରୀବର ।
ମାଣିକ୍ୟ ମାଳାଗୋଟି ବରୁଣ ଦେଇଥିଲ
କୁବେର ଦେଇଥିଲ ମୁକୁତା ରତ୍ନମାଳା ।
ସୀତାର ଗଳାରେ ଦେଇଥିଲେ ରାମ ନେଇ
କ୍ଷଣଧାରେ ସାଉଜନ୍ମ ଭଳୋଣ୍ଡବା ପାଇଁ ।
ସେ ରତ୍ନମାଳା ସୀତାସ୍ୱା କଣ୍ଠରୁ କାଢ଼ିଲେ
ଅନଙ୍ଗରେ ହନୁମନ୍ତ ଗଳାରେ ନେଇ ଦେଲେ
ରତ୍ନମାଳାନେଲଦେଲେବୋଲେ ଦେଖସୀତା
ଏ ବ୍ରହ୍ମାଣ୍ଡେ ହନୁମନ୍ତ ହେବୁ ତୁ ବଳବନ୍ତା ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଶରୀର ତୋର ଥିବ
ଏ ମୋହର ବଚନ ଅନ୍ୟଥା ନୋହିବ ।
ଶୁଣିଣ ସର୍ବଜନେ ସାଧୁ ସାଧୁ କଲେ
ମହାଲକ୍ଷ୍ମୀଙ୍କର ଦୟା ହୋଇଲା ବୋଇଲେ ।
ହନୁମନ୍ତର ଶିରେ ଦେଲେ ନେଇ ଅର୍ଘ୍ୟ
ପ୍ରସନ୍ନ ହୋଇ ବୋଇଲେ ତୁରେ ବରମାଗ
ସୀତାଙ୍କର ବଚନେ ବୋଇଲେ ମାରୁତି
ଯେତେକାଳ ଏଥି ଥିବ ଶ୍ରୀରାମର କୀର୍ତ୍ତି ।
ତେତେକାଳଯାଏ ମୁଁ ଯେ ଥିବ ଭଲହୋଇ
ଏ ବରରୁ ଆନ ମୋର ବରରେ କାର୍ଯ୍ୟନାହିଁ
ଶୁଣିକରି ସୀତାସ୍ୱା ଯେ ବୋଇଲେ ଅସ୍ତୁହେଉ
ତୁ ଯାହା ମାଗିଲୁ ବାବୁ ଯୁଗେ ଯୁଗେ ରହୁ
ଯହୁଁ ରଘୁନାଥ ଦେବ ଶୁଣିଲେ ପୁଣ ଏହା
ହନୁମନ୍ତଙ୍କୁ ପ୍ରଶଂସା କରନ୍ତି ରଘୁନାହା ।
ହନୁମନ୍ତଙ୍କୁ ଶ୍ରୀରାମ କୋଳରେ ବସାଇଲେ
କସ ଆହାର କରିବୁ ଅମୃତ ହେବଉଲେ ।

ଏମନ୍ତ କଲ୍ୟାଣ ଯେ କରନ୍ତି ରଘୁବୀର
ଏହା ପରକର୍ମ ତୋର ରହୁ ସବୁକାଳ ।
ବ୍ରହ୍ମଶର ପଶୁପତ ବଜ୍ରଶର ଘାଏ
ଏ ଶସ୍ତ୍ରରେ ତୋର ଭୟ ନୋହିବଟି କାୟେ
ଏମନ୍ତ ସମ୍ପୂର୍ଣ୍ଣବର ହୋଇଲେ ହେଣାସ୍ତ
ବସିବା ଠାବେ ଅମୃତ ଖାଇବୁ ମାରୁତ ।
ସବୁକାଳେ ଆରୋଗ୍ୟ ହୋଇବ ତୋରତନୁ
କଳ୍ପ କଳ୍ପାନ୍ତରେ ଯେ ବଞ୍ଚିଥିବୁ ହନୁ ।
ଯେଉଁଜନେ ଆଜନ୍ମ ତୋତେ ସେବାକରିବେ ପ୍ରଣ
ଅପୁତ୍ର ହେବ ଭକ୍ତି ଜୀବନ ତାର ଧନ୍ୟ
ଏସନକ ଆଜ୍ଞା ତାଙ୍କୁ ଦେଲେ ରାମରାଣୀ
ଶୁଣିଣ ସକଳ ଜନେ କୃତ୍ୟ କୃତ୍ୟ ପୁଣି ।
ଏଥିଅନ୍ତେ ଶ୍ରୀରାମ ସାରିଲେ ରାଜକର୍ମ
ଅନ୍ତେଶ୍ୱରପୁର ଗଲେ ତୈଳୋକ୍ୟ ଲକ୍ଷଙ୍କାଣ
କୈକୟୀ କଳ୍ୟାଣେ ସୁମିତ୍ରା କଲାବନ୍ଦ ଯେତେଲେ
ଆବର ଶାଶୁମାନଙ୍କ ଗହଣରେ ଯୋଡ଼ାଇଲେ
ସୁମିତ୍ରା ସୀତାଙ୍କୁ ଧରିଅଛନ୍ତି କୋଳକରି
ଧୀରେ ଧୀରେ ସ୍ଥଳମାଗେ ବୋଲନ୍ତି ସଙ୍ଗନାଶ
ହେବ ସ୍ତ୍ରୀଙ୍କ ମଧ୍ୟରେ ଚଞ୍ଚଳା ଯେମନ୍ତ ଝଶଲ
ଶାଶୁଙ୍କ ସଙ୍ଗରେ ସୀତା ଅନ୍ତଃପୁରକୁ ଯାଇ
ଧାତ୍ରୀମାନେ ଯାଇଣ ଯେ ଯାହାରେ ଖଟିଲେ
ସୁଲକ୍ଷଣୀ ଦାସୀମାନେ ହୁଳହୁଳି ଦେଲେ ।
ଯାଇଣ ଦେଖିଲେ ନିଜ ପୁରରେ ପ୍ରବେଶ
ଦେଖିବାକୁ ହେଉଛନ୍ତି ସକଳ ରାଣୀହଂସ ।
ଏଥିଅନନ୍ତେ ଯେ ଜନକ ଦୁହିତା
ଅନ୍ତଃପୁରକୁ ଗଲେ ଶ୍ରୀରାମ ବନିତା ।
ସେଠାରେ ପ୍ରବେଶ ହେଲେ ସର୍ବ ମୃଦୁସଲ
ସୀତାୟାଙ୍କ ପାଶରେ ବାରତା ଯାଇକରି ।
କରଯୋଡ଼ି କହନ୍ତି ଶୁଣ ଏବେ ମାଏ
ଆଜ୍ଞା ଦେଇଛନ୍ତି ମୋତେ ରଘୁକୁଳ ରାୟେ ।
ରନ୍ଧଣା ବିଧି ଏବେ କର କୃପେ ମାଏ
ମଣୋହି କରିବେ ଯେ ତୈଳୋକ୍ୟଦେବରାଏ
ଲଙ୍କେରାଜା ଆବର ପଞ୍ଚାଶ ଯୂଥପତି
ମନ୍ତ୍ରୀ ଅମାତ୍ୟ ଯେ ଅଷ୍ଟ ସେନାପତି ।
ଭରତ ଶତ୍ରୁଘ୍ନ ଯେ ଲକ୍ଷ୍ମଣ ହନୁମାନ
ଶ୍ରୀରାମ ସଙ୍ଗତରେ କରିବେ ଭୋଜନ ।

ସୁମନ୍ତ୍ର ଆଣିଅଛି ରାନ୍ଧଣା ସଞ୍ଜାବିଧି
ବେଗକରି ବଇଦେହୀ ପାକକର ସିଦ୍ଧି ।
ଶୁଣିକରି ସୀତାୟା ଗୁଡ଼ିଲେ ସର୍ବଚିନ୍ତା
ରାନ୍ଧଣା ସଞ୍ଜା ନେଇ ଦେଲେକ ମନ୍ତ୍ରୀପୁତା ।
ସଞ୍ଜାଦେଖି ବଇଦେହୀ ହୋଇଲେ ସନ୍ତୋଷ
ଯାହାର ଆଜ୍ଞା ପ୍ରମାଣେ ଉତ୍ପନ୍ନେ ଜଗତ ।
ଅନ୍ନ ବ୍ୟଞ୍ଜନ ରନ୍ଧଣା ତାହାଙ୍କୁ କଷ୍ଟତ
ଅମୃତ ସମାନେ ପାକକଲେ ବିଧିମତ ।
ଯେଉଁପରି ଦ୍ୱାପରେ ନଳ ପାକ କଲେ
ପାଣ୍ଡବଙ୍କ ଆଗେ ଏହା ଶଙ୍କର କହିଲେ ।
କ୍ଷଣକ ଭିତରେ ସକଳ ନର୍ଜ୍ଜା ହେଲ
ହେମବନ୍ତୀଙ୍କ ଆଗରେ ଈଶ୍ୱର କହେଇଲ ।
ଶୁଣ ଗୋ ଶାକମ୍ଭରୀ ଏଥୁଅନନ୍ତରେ
ଶ୍ରୀରାମ ଭଜେଇଲେ ମଣୋହି ହୋଠାରେ ।
ବଶିଷ୍ଠ ସହିତରେ ସକଳ ମୁନିବର
ଏହାଙ୍କର ଅକ୍ଷତ ଯେସନେ ହେଲାର ।
ଦକ୍ଷିଣାର ବିଧିରେ ଲକ୍ଷେ ସୁବର୍ଣ୍ଣ ଦେଲେ
ଗୁହନାମେ ଶବରଙ୍କୁ ଉଠିଣ କୋଳକଲେ ।
ପଟ୍ଟକମାଳ ଗୋଟିଏ ସୈନ୍ୟମାନଙ୍କୁ ଦେଲେ
ସମସ୍ତଙ୍କର ମନ ସେଥିରେ ରଞ୍ଜାଇଲେ ।
ଶତେ ସୁବର୍ଣ୍ଣ ଗୋଟି ଅଭିଷେକ ଯେ ଶୁନଶା
ଗୁହନାମେ ଶବରଙ୍କୁ ଦେଲେ ରଘୁନାଥ ।
ନେମପାଦ ରଜାର ଶତେ ପୁତ୍ରଙ୍କୁ ଡକାଇଲେ
ସୁନାଖଣ୍ଡ ଖରବଲ୍ଲୀ ପଦକ ରତ୍ନକଲେ ।
ଶତେ ମୁକୁଟ ଦେଲେ ରତ୍ନ ଜଡ଼ିତର ପୁଣ
ମଞ୍ଜୁଷା ପୁତ୍ରମାନଙ୍କୁ କରେ ଯେ ଭୂଷଣ ।
ଯୂଥପତି ସେନାପତି ମଲ୍ଲି ମହାମଲ୍ଲି
ରିକ୍ଷକପିଙ୍କ ଉପରେ ଲକ୍ଷେକ ନୃପବର ।
ସେମାନଙ୍କୁଡକାଇ ଶ୍ରୀରାମ ଦେଲେରତ୍ନମାଳ
ମୁକୁଟମାନ ଦେଲେ ରତ୍ନରେ ଶୋଭକର ।
ରାଜପୁତ୍ର ପ୍ରାୟେ ସର୍ବେ ବସିଲେ ଶୋଭବନ
ସକଳ କପି ଡକାଇଲେ ଶ୍ରୀରାମଚନ୍ଦ୍ର ପୁଣ ।
ମର୍କଟ ବଳକୁ ପୁଣି ଅଳଙ୍କାର ଦେଲେ
ମାଳତଳକୁ ସୁବର୍ଣ୍ଣ ଖଣ୍ଡ ଯେ ବଣ୍ଟୋଇଲେ
ଛପ୍ପାଣୋଇ ସାଗର ଅଟନ୍ତି କପିବଳ
ବାହ୍ତର ସାଗର ଯେ ଅଟନ୍ତି ଭଲୁବଳ ।

ସମସ୍ତେ ସୁବର୍ଣ୍ଣରେ ଆଭରଣ ହେଲେ
ବାନର ଭଲ୍ଲୁ ଦେବତା ପ୍ରାପ୍ତେକ ବଶିଲେ ।
ଏଥିଅନନ୍ତରେ ଯେ ଶୁଣ ଗୋ ଶାକମ୍ଭରୀ
ରାଜ୍ୟଲୋକଙ୍କୁ ଅନ୍ନବସ୍ତ୍ର ଦେଲେ ଯ ତଳର ।
ଲକ୍ଷେ ରାଜାଙ୍କର ବଳ ଶଜ ଯେ ସାଗର
ସୁବର୍ଣ୍ଣରେ ଭୂଷଣ ହୋଇଲେ ସକଳ ।
ରାଜାମାନଙ୍କୁ ଉଜାଇ ବେଶ କରାଇଲେ
ରତ୍ନ ଅଳଙ୍କାର ଭୂଷଣ ତାଙ୍କୁ ଦେଲେ ।
ଶତେକ ସୁବର୍ଣ୍ଣ ଯୋଟିଏଲେଖା ଦେଲେସ୍ପ୍ରୀ
ଜଣକେ ସିଂହାସନ କନକ ମଣ୍ଡପରେତୋରି
ଯେତେ ରାଜା ସେତେ ସିଂହାସନକନକମଣ୍ଡପ
ସମସ୍ତ ରାଜାମାନେ ପାଇଣ ସନ୍ତୋଷ ।
ପାଞ୍ଚଗଡ଼ ରାଉସେ ଆସିଥିଲେ ପୁଣ
ମାଳ ମୁକୁଟ ଦେଇ ସନ୍ତୋଷ କଲେ ପୁଣ ।
ନରବାନର ରାକ୍ଷସେ ସମସ୍ତେ ହରଷ
ବୋଇଲେ ଶ୍ରୀରାମଙ୍କୁ ହେଉ ସବୁଠାରେଯଶ
ଏଥି ଅନନ୍ତରେ ଯେ ବଶିଷ୍ଠ କହେ ପୁଣି
ରାଜ୍ୟରେ ଅଭିଷେକ ହେଲେ ରଘୁମଣି ।
ରଥରେ ବସି କଟକ ବୁଲ ହେ ଭୂମ୍ବର
ରାଜାମୁଖ ଦେଖି ଦୁଃଖଯାଉ ପ୍ରଜାଙ୍କର ।
ଲୋକେ ମୁଖେ ଦେଖନ୍ତୁ ଭୂମ୍ବର ଏବେ ବଟେଜ
ବୋଇଲେହେ ନୂଆରାଜାଦେଖନ୍ତୁପ୍ରଜାସୁଖେ
ବଶିଷ୍ଠ ବଚନେ ରାମ ସୁମନ୍ତଙ୍କୁ କହି
ରଥ ସଜକରି ଆଣ ନଗ୍ର ଫେରିବଇଁ ।
ହୁରଦେଶୁ ପ୍ରବେଶି ଦେଖନ୍ତୁ ସର୍ବଲୋକ
ଏତେବୋଲି ଆସନରୁ ଉଠିଲେ ରାମନୃପେ
ପୁଷ୍ପକ ବିମାନ ଯେ ସୁମନ୍ତ ଦେଲା ଆଣି
ଉଚ୍ଚଁପରେ ବିଜେକଲେ ରଘୁକୁଳମଣି ।
ବିଭୀଷଣ ପ୍ରଜା ଚୋଳ ଧଇଲେ ପୁଣ ଛତ୍ର
ଡାହାଣ ପାଶରେ ପୁଣ ଚଢ଼ିଣ ମରୁତସୁତ ।
ସୁଗ୍ରୀବର ସଙ୍ଗତେ ଶତେକ ନୃପବର
ଗଜ ଆରୋହଣ ସଙ୍ଗେ ଡାକନ୍ତି ଜୟମର ।
ଲକ୍ଷେକ ରାଜା ଉଚ୍ଚଁରେ ଝଟକେ ସାରଥିର
ରାଜାମାନଙ୍କ ଇନ୍ଦ୍ର ଦଶରଥ ସୁତ ।
ଶରତ ଚନ୍ଦ୍ର ଜାଣିଣ ଶ୍ୱେତଛତ୍ର ଶୋଭା
ଶ୍ରୀରାମ ସୁନ୍ଦର ଯେଣୁ ମଦନ କାମସୁବା ।

ଆଗରେ ନିଶାଣ ଯେ ବାଜେ ସାରବୁର
ଆଲଟ ପାଟଛତ୍ର ଚାମର ସମ୍ଭାର ।
ନବରୁ ବାହାର ହୋଇ ଉଚ୍ଚ ପୁଣ ରଥ
ସ୍ତୀରାସ୍ତାରେ ଝଟକେ ପୁଷ୍ପକ ନାମେ ରଥ ।
ମୂର୍ଚ୍ଛନା ଅଭିଷେକ ସୂର୍ଯ୍ୟବଂଶ ରାୟେ
ବନ୍ଦାପନା ଦେବେ ରାମ ବିଜେକରି ଯାଏ ।
ଦେଖନ୍ତି ନରନାରୀ ଶ୍ରୀରାମର ରୂପ
ମଧୁର ମୂରତି ହାସ୍ୟ ହସନ୍ତି ଅଳପ ।
କଣ୍ଠରେ ରତ୍ନହାର ବାହାରେ ସାର ନେତ
ମୁଖକୁ ଚାହିଁ ସର୍ବେ ହୋଇଲେ ଚକିତ ।
ଅଜ୍ଞାନ ହୋଇ ଶରୀର ଗଳକ ସବୁଙ୍କର
କାମଦେବ ଅଭିନବ କୋଟିଏ ରୂପଧର ।
ଅଯୋଧ୍ୟାର ନରନାରୀ ଗୋଡ଼ାଇ ଦେଖନ୍ତି
କଟକ ବୁଲଣ ରାମ ନବରେ ପଶନ୍ତି ।
ରତ୍ନବର ଓହ୍ଲାଇ ଜଗଣ୍ଠରେ ବିଜେକଲେ
ନରନାରୀଙ୍କି ଯାଅ ବୋଲିଣ ଆଜ୍ଞାଦେଲେ ।
ବଶିଷ୍ଠଙ୍କୁ ବୋଇଲେ ସମ୍ଭାଳ ଏହାନେଇ
ଶୁଣିଣ ବଶିଷ୍ଠ ଯେ ସନ୍ତୋଷ ମନହୋଇ ।
ଶୁଣିଣ ବ୍ରହ୍ମପୁତ୍ର ହେଲେ ମହାତୁଷ୍ଟ
ସୁରଭି ଦେଇଣ ବିଜେକଲେ ତପନିଷ୍ଠ ।
ଏଥି ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ରାଏ
ଲକ୍ଷେ ନୃପତିଙ୍କି ଯେ ଘରକୁ ହକରାଏ ।
ଅଷ୍ଟସେନା ଆବର ପଞ୍ଚଶ ଯୂଥପତି
ସୁଗ୍ରୀବର ବିଶାଳ ଗୃହ ଖବର ପ୍ରଭୃତି ।
ବିଚିତ୍ର ମନ୍ଦିରରେ ଶ୍ରୀରାମ ବିଜେକଲେ
ସମସ୍ତଙ୍କୁ ସୁବର୍ଣ୍ଣ ପିଢ଼ା ସମର୍ପିଲେ ।
ଭରତ ଲକ୍ଷ୍ମଣ ଯେ ସଙ୍ଗତେ ଶତ୍ରୁଘ୍ନ
ସଭର୍ଙ୍କି ଭୋଜନ ଭୁଞ୍ଜିବସିଲେ ରଘୁନାଥ ।
ଶ୍ରୀପତ୍ନୀର ପଖାଳ ଆଳ ଛଡ଼ପ ବାନ୍ଧ
ଗଙ୍ଗଫେଇ ପଖାଇଣ ଆତ ଗଙ୍ଗ ବାନ୍ଧ ।
ଉପରାଣ ତୋଷଡ଼ା କନ୍ଧେଣ ଅଛୁ ବାନ୍ଧ
ଭବ୍ୟ ଆସନେ ପୁଣି ଶ୍ରୀରାମଚନ୍ଦ୍ର ବସି ।
ସବୁ ନୃପତିଙ୍କି ଯେ ଡାକନ୍ତି ରଘୁବଂଶି
ଚଉଦ ବରଷ ବ୍ରତ ପୂରିଲା ଆଜଟି ।
ପିତା ସତ୍ୟ ପାଳ ମୁଁ ବନବାସ କଲି
ସମସ୍ତଙ୍କ ବଳରୁ ସେଥିରୁ ଆସିଲି ।

ଏବେ ମୁଁ ଅଯୋଧ୍ୟାରେ ହେଲି ନୃପବର
ତୁମ୍ଭେମାନେ ସମସ୍ତେ ଅଟ ହେ ମୋହର ।
ସମସ୍ତ ନୃପତି ଆଜ କରିବା ଭୋଜନ
ଶୁଣିଣ ରାଜାମାନେ ହେଲେ ତୋଷମନ ।
ରାଜାଙ୍କର ବଚନ ଶୁଣିଣ ରାମରାଣ
ବଶିଷ୍ଠଙ୍କୁ ବୋଇଲେ ଅଣାଅ ବିପ୍ରଜନ ।
ନୂତନରେ ଶାସନ ଶତେକ ବସାଇବା
ଲକ୍ଷେ ବ୍ରାହ୍ମଣଙ୍କୁ ଭୂମିଦାନ ଦେବା ।
ଶୁଣିଣ ବଶିଷ୍ଠ ଯେ ଲୋକ ବରଗିଲେ
ଲକ୍ଷେ ବିପ୍ରବର ତହିଁ ଡକାଇ ଅଣାଇଲେ
ଶାସନ ଖୋଟିକରେ ସହସ୍ର ଘରକର
ପ୍ରଥମେ ଆପଣା ନାମେ ଖୋଲି ଶାସନକରି
ଦ୍ୱିତୀୟେ ଲକ୍ଷ୍ମଣ ନାମେ ଖୋଲି ଯେ ଶାସନ
ତୃତୀୟେ ସୀତା ନାମରେ ଏହି ରୂପେ ଜାଣ
ଚତୁର୍ଥେ ଭରତନାମେ ଖୋଲି ଯେ ପୁଣ ପୁଣ
ପଞ୍ଚମେ ଶତ୍ରୁଘନ ନାମରେ ଖୋଲି ପୁଣ ।
ଷଷ୍ଠ ସପ୍ତମ ପ୍ରଭୃତିନାମେ ଷୋଡ଼ଏଶାସନ
ଏରୂପେ ଶତେକ ଶାସନ ଶ୍ରୀରାମ ଦେଲେଦାନ
ଅନ୍ନବସ୍ତ୍ର ବିପୁଳ ଘର କରିଦେଲେ
ଦଶ ବର୍ଷକୁ ଲେଖିକରି ସକଳ ସମର୍ପିଲେ ।
ଦାନ ସରିବାରୁ ଜମଁଳ କଲେ ପୁର
ମଉଳା ଅଜାଙ୍କୁ ଡାକିଲେ ରଘୁବୀର ।
ବୋଇଲେ ପନ୍ଦରସହସ୍ର ବନ୍ଧୁ ଅଛ ମୋର
ରାଜାମାନଙ୍କୁ ପରଷ ବ୍ୟଞ୍ଜନ ସକଳ ।
ଅଷ୍ଟସେନାପତି ପଞ୍ଚଶ ଯୂଥପତି ପୁଣି
ମଲ୍ଲ ମହାମଲ୍ଲ ଯେ ସରଦାର ଜାଣି ।
ଏମାନଙ୍କୁ ଡକାଇ କହିଲେ ରାବଣାରି
ରତ୍ନ ଥାଳୀଙ୍କୁ ବ୍ୟଞ୍ଜନ ପରଷ ନେଇକରି ।
ଲୋମପାଦ ରାଜାଙ୍କୁ ଡକାଇ ରାମରାଣ
ତୋ ବଂଶ ଯେଣୁ ଶବରଙ୍କୁ ପରଷ ଅନ୍ନ ।
ହନୁକୁ ବୋଲେ ବିଭୀଷଣ ଯେ ସୁକଣ୍ଠ
ଏମାନଙ୍କୁ ଯେବଣ ପରଷ ତୁମ୍ଭେ ଅନ୍ନ ।
ଯେମନ୍ତେ ବୈଚିତ୍ର୍ୟବଳ ହୁଅନ୍ତି ସନ୍ତୋଷ
ତେସନ କରିଣ ଯେ କରାଅ ହରଷ ।
ଶୁଣିଣ ସମସ୍ତେ ବସିଲେ ଯାଇ ପୁଣ
ଶ୍ରୀରାମଙ୍କ ଆଜ୍ଞାରେ ପ୍ରବେଶ ସର୍ବେ ଜାଣ ।
ମହାଲକ୍ଷ୍ମୀ ପାକ ସର୍ବେ କରନ୍ତି ଭୋଜନ
ଷଡ଼ରସେ ନେଇଣ ପରଷିଲେ ସର୍ବେ ପୁଣ ।
କ୍ଷୀରିପିଠା ଘୃତ ଯେ ଦୁଧବନ୍ଧ ଛେନା
ଖଣ୍ଡ ସାକର ନେଇଣ ଦେଲେ ଯେତ୍ତକନା ।
ଷଡ଼ରସେ ମର୍ଦ୍ଦନ ଘିଅ ପଣାପାଣି
ଏମନ୍ତ ପ୍ରକାରେ ଯେ ପରଷେ ମନଜାଣି ।
ନାନାବର୍ଣ୍ଣେ ଆଣିଣ ନାନାଫଳ ଦେଲେ
ପାଚିଲା କଦଳୀ ସପୁରି ପଣସ ପରଷିଲେ ।
ନାରିକେଳ ଅମୃତ ରସାବଳ ଦେଲେ
ଅମୃତ ରସରେ ସଭିଙ୍କୁ ତୋଷକଲେ ।
ଗଙ୍ଗାଜଳ ସୁବାସ ପାଣି ଆଣିଦେଲେ
ତୃଷାରେ ସେହି ଜଳ ପିଇଲେ ସେହୁ ଭଲେ
ସୁଧାସମ ଭୋଜନ କଲେକ ସଇନ
ମନରେ ବିସ୍ମୟ କହନ୍ତି ସର୍ବେ ପୁଣି ।
ମହାଲକ୍ଷ୍ମୀ ବୋଲନ୍ତେ କି ଅମୃତପାନ ବ୍ୟନ୍ତା
ସମସ୍ତଙ୍କ ମନରେ କି ସନ୍ତୋଷ କରନ୍ତା ।
ଏମନ୍ତ ବିସ୍ମୟ ସମସ୍ତେ ସୁଧାହରି
ଭୋଜନ ସାରିଣ ଯେ ଉଠିଲେ ବେଗକରି ।
ଆଚମନ ସାରିଣ ଆଶ୍ରମକୁ ଗଲେ
ସମସ୍ତଙ୍କୁ ବିଡ଼ିଆ ଲଗି କରାଇଲେ ।
ଏମନ୍ତ ସମୟରେ ରଜନୀ ପରବେଶ
ପରଷୁଣି ଭୋଜନ କଲେକ ବିଶେଷ ।
ପାଙ୍କଣ୍ଠ ବୋଇଲେ ଦେବ ଶୁଣ ମୋ ବଚନ
ସେ ଉଚ୍ଛିଷ୍ଟପତ୍ର କେହୁ ତୋଳନ୍ତେ ପୁଣ ।
ଈଶ୍ୱର ବୋଇଲେ ଯେ ସେକଥା କେବାକହି
ଅଠର ଅକ୍ଷୌହିଣୀ ବାଦ୍ୟକାର ଅଯୋଧ୍ୟାରେ ରହି
ରାକ୍ଷସ ବାଦ୍ୟକାର ବନଶ ଷଷ୍ଟିଣି
ରାଜାଙ୍କର ବାଦ୍ୟକାର ବତିଶ ଲକ୍ଷ ପୁଣି ।
କପିଙ୍କର ବାଦ୍ୟକାର ସତାଇଶ କୋଟି
ଯେ ଯାହା ଜାତିରେ ସେ ଚଣ୍ଡାଳ ଅଟନ୍ତି ।
ବାନର ରାକ୍ଷସଙ୍କର ଯେତେକ ଉଚ୍ଛିଷ୍ଟ
ସେଥିରେ ବସି ଏମାନେ ଭୁଞ୍ଜିଲେ ତୁରିତ ।
ଷଡ଼ରସେ ଭୋଜନ କରିଣ ତୋଷହେଲେ
ଉଚ୍ଛିଷ୍ଟପତ୍ରମାନଙ୍କୁ ତୋଳି ସେ ଘେନଗଲେ
ଯୋମସ୍ତ ଲଗାଇଣ କଲେକ ଜମଁଳ
ଶୁଣିକରି ପାଙ୍କଣ୍ଠ ମନରେ ତୋଷଶୀଳ ।
ଏଥିଅନନ୍ତରେ ଯେ ସତ୍ୱରେ ଶାକମ୍ଭସ
ବ୍ରାହ୍ମଣଙ୍କୁ ଦାନ ଯେ ଦେଲେ ସବଣାସ ।
ସେ କର୍ମା ଭୋଜନ ଯେ କଲେ ତାଙ୍କ ପୁରେ
ଏକଥା ବିସ୍ତର ମୋତେ କହ ଶୂଳଧରେ ।

ଜାଣୁଛ ହୋଇଲେ ତୁମ୍ଭେ ଶୁଣ ମହାଦେଈ
ବ୍ରାହ୍ମଣଙ୍କୁ ଡାକିଦେଲେ ରଘୁକୁଳ ସାଇଁ ।
ନଇଲେଣି ତତ୍ପର ହୋଇ ନମସ୍କାର କଲେ
ଗଣିତଂଶ ସ୍ୱୟଂକର ଚରଣେ ବସିଲେ ।
ଭରତ ଶତ୍ରୁଘନ ଲକ୍ଷ୍ମଣ ତିନି ଭାଇ
ଏହାଙ୍କୁ ବୃଝିଣ ଶ୍ରୀରାମ ଆଜ୍ଞା ଦେଇ ।
ହୋଇଲେ ଦ୍ୱିଜବରଙ୍କୁ ଭୁଞ୍ଜ ଭୋଜନ ପଥ
ବିପ୍ରଙ୍କର ମନକୁ ସନ୍ତୋଷ କରାଅ ।
ଶୁଣିଲେ ତିନିଭାଇ ବେଗହୋଇ ଗଲେ
ଲକ୍ଷେ ବ୍ରାହ୍ମଣଙ୍କୁ ଭୋଜନ କରାଇଲେ ।
ପାଚଲ ପରମ ଅନ୍ନ ମାଣ୍ଡ ପତରୀ
ସାନ୍ତ ଜଳାଗ ଶାଳନ୍ତ ଦେଲେ ଆଣିକରି ।
ଭୁଞ୍ଜିଣ ବିପ୍ରବର ହୋଇଲେ ସନ୍ତୋଷ
ବାମପାଣିରେ କୁଳ କଲେକ ଉଲ୍ଲାସ ।
ବିଡ଼ିଆ ଦେଇଣ ଯେ ଭରତ ତୋଷିଲେ
ବିପ୍ରେକ ଶତ ସୁନା ଦକ୍ଷିଣା କନକ ଦେଲେ ।
ସନ୍ତୋଷ ହୋଇଣ ଯେ ବିପ୍ର ଚଳିଗଲେ
ସେଥିଉତ୍ତାରୁ ରାଜାମାନେ ଭୋଜନ ପାଇଲେ
ରାଜାମାନଙ୍କ ଭୋଜନ ସରିବାରୁ ପୁଣ
ସକଳ ସୈନ୍ୟପାଇ କଲେକ ଭୋଜନ ।
ଶୁଣିକରି ସନ୍ତୋଷ ଶାକମ୍ଭରୀ ହେଲେ
ପଚାରିଲେ ଏଥିଉତ୍ତାରେ ହେମବନ୍ତନନ୍ଦିନୀକେ ।
ରଜନୀ ହେବାରୁ କସ କଲେକ ରଘୁଶିର
ଶୁଣିଣ ବିବେଚନ କହନ୍ତି ତାଙ୍କୁ ହସି ।
ସେହିକଥାରେ କି ଏବେ ତୋତେ ଦେବାଭଣ୍ଡ
ନୃସିଂହ ସୈନ୍ୟକଲ ଭୋଜନ କରି ରଙ୍ଗ ।
ଦେଖିଣ ଶ୍ରୀରାମ ଯେ ସନ୍ତୋଷ ମନ ହେଲେ
ସମସ୍ତ ବୃଝିଣ ଶ୍ରୀରାମଚନ୍ଦ୍ର ବୋଇଲେ ।
ଆଜ୍ଞାଦେଲେ ଯେଯାହା ବସାକୁ ତୁମ୍ଭେ ଯାଅ
ଭୋଜନ କରିଅଛ ଭକ୍ଷ ଯେ କମ ତୃପ୍ତ ।
ଶୁଣିକରି ସନ୍ତୋଷେ ଶିରେ କର ଦେଲେ
ଯେ ଯାହାର ବସାକୁ ଭୋଜନ କରି ଗଲେ ।
ସମସ୍ତେ ସିବାରୁ ବୃଝିଲ ଚଳିଗଲେ
ଶ୍ରୀରାମଚନ୍ଦ୍ର ଯାଇଣ ସନ୍ଧ୍ୟା ସ୍ମରିଲେ ।
ସନ୍ଧ୍ୟା ତର୍ପଣ କରିଣ ବେଗେ ଉଠିଗଲେ
ଅନ୍ତଃପୁରେ ଯାଇଣ ପ୍ରବେଶ ହୋଇଲେ ।
ରତ୍ନ ସିଂହାସନରେକ ବସିଲେ ଶ୍ରୀରାମ
ଦେଖିଣ ତୁଳତୁଳ ହେଲେ ମାତାଗଣ ।

ସ୍ନେହରେ ରଜନୀ ଆସି ହେଲ ପରବେଶ
କୁଙ୍କୁମ ଲଗିହେଲେ କୌଶଲ୍ୟା ର ଶିଷ୍ୟ ।
ରଙ୍ଗପଟମା ପିନ୍ଧ ରଙ୍ଗ ହୋଷଡା ଅଦ୍ଭୁତ
କର୍ପୂର କସ୍ତୁରୀ ଗୋଳହୋଇଲେ ତାଙ୍କଗାତ
ଚମ୍ପା ବକୁଳ ଯାଇ ଯେ ନେବଙ୍ଗ ପାଟଳ
ନିର୍ମୁଣ୍ଡି ଗନ୍ଧମାଳ ମ ବଶେ ମୋହାଉକ ।
ଚତୁଃସମ ଗନ୍ଧ ଯେ ବେଣ୍ଟିଲେ ଅଙ୍ଗରେଣ
ଶିଉରେ ଖୋସିଲେ ଯନ୍ତ ମଧ୍ୟରେ ପୁଣଥୋଇ
ତାଙ୍କୁ ଉପରେ ଦେଲେ ମାଳତୀ ଫୁଲ
କେଶ ଉପରକୁ ସେହି ବିଶେ ମହାଶୋଭା ।
କପୋଳରେ ମୃଗନାଭି ଲଗାଇଲେ ଦେବ
ଓଠେ ଚତୁଃସମ ଗନ୍ଧ ଲେଖିଲେ ଉଛବ ।
ବସ୍ତ୍ରାଦିରେ ଧୂପ ଦେଲେ ଅବକାଶ
ପଦ୍ମୋଛ ଠାବରେ ରମ ହେବେ ପରବେଶ ।
ରତ୍ନ ପିଢା ଉପରେ ବସିଲେ ରାମଚାଣ
ସହସେ ଯୁବତୀ ଆସି ମିଳିଲେକ ପୁଣ ।
ନେବନ୍ତ ଯୁବତୀମାନେ ନଥ ବଧ ବେଶହୋଇ
ବିଦ୍ରୁମ ମାଣିକ୍ୟ ପାଗ ଜାଳନ୍ତ ତୋଷହୋଇ
ମାଣ୍ଡୁ ସୀତା ଚନ୍ଦ୍ରରେ ବେଶହୋଏ ଜଗତ
ସ୍ୱୀକା ମାଣିକ୍ୟ ଚଢ଼ ଦୁଇ ହସ୍ତରେ ଯରା ।
ଜାନକୀଙ୍କ ବଳ ଚାରୁ ରୂପ ବଢାଇଲ
ଦେଖିଲେ ମାତାଗଣ ହେଲେ ତାଙ୍କୁ ମୋହ
ଏଥୁ ଅନ୍ତରରେ ବସି ଶୁଣ ଦିବ୍ୟ ସତ୍ତ
ଶ୍ରୀରାମ ବୃନ୍ଦାବନଙ୍କ ଅନ୍ନ ପରସେ ଦେବାପୁନ
ମଣୋହି ସମ୍ପୂର୍ଣ୍ଣ ସୀତା ଅନ୍ତଃପୁରକୁ ଯଲେ
ଭୁଞ୍ଜିସାରି ବୃନ୍ଦାବନ ଆଚ୍ଛାଦନ କଲେ ।
ବିଡ଼ିଆ ଲଗିହୋଇ ମଲଙ୍କ ଛନ୍ଦେ କଲେ
ଉଚ୍ଛେ ନୀଳପଦ୍ମା ଶାଶୁମାନଙ୍କୁ ଅନ୍ନ ପରସିଲେ
ଭଜନ ଭଲ୍ୟୁଣି ବଢାଇ ବିଅଣ୍ଟ ପୁଣି ଅନ୍ନ
ଅନ୍ତଃପୁରେ ଭୋଜନ କଲେ ରାଣୀଗଣ ।
ତୃପତ ହୋଇ ସର୍ବେ ଆଚ୍ଛାଦନ କଲେ
ଦାସୀ ପରିବାରପାଇ ଉଚ୍ଛିଷ୍ଟ କାଢ଼ିଦେଲେ
କଉଶଲ୍ୟା ବୋଇଲେ ତୁମ୍ଭେ ଶୁଣ ଗୋ ବଇଦେହୀ
ମୁହିଁ ଅନ୍ନ ପରଶିବ ଶ୍ରଦ୍ଧା ମୋର ହୋଇ ।
ଶୁଣିଣ ପରମ ତୋଷ ଜନକ କୁମାରୀ
ପାଦପଖାଳିଲେ ସେହୁରାଣୀମାନଙ୍କୁ ଘେନକରି
ଅନ୍ନ ଭୁଞ୍ଜି ବସିଲେ ଜନକ ଦୁଲଣୀ
ଭୁଞ୍ଜିସାରି ସ୍ୱଡ ଆଚ୍ଛାଦନ କଲେ ପୁଣି ।

ଚଉଦ ବରଷ ଗୃହେ ଅନ୍ନଷ୍ଟି ନ ଭୁଞ୍ଜି
ଶାଶ୍ରୁ ପଦ୍ମଷନ୍ତେ ସେ ମନରେ ତୋଷ ରଞ୍ଜି
ଚନ୍ଦନ ଗୋଳଣ କୁଙ୍କୁମ ଲେପିଲେ
ଷଷର ଆଭୂଷଣ ମଣ୍ଡିଲେ ମୋତିମାଳେ ।
କପୋଳରେ ସିନ୍ଦୂର ତିଳକ ଲଗିଦେଲେ
ଭୂଷା ବଳାଇ ଅଙ୍ଗଦ ତାଟି ବାଜୁ ଦେଲେ ।
ନେତ୍ର ଦୋଷାଧି ଜଟେଷ୍ୱଧି ଠଣାମାନ ଦେଲ
ଚନ୍ଦନ ଖାଟରେ ଦେଲ ଉକୁଟ ଜରିତୋରା ।
ଦେବଦାରୁ ଖାଟରେ ଅନେକ ଫୁଲ ଦାମ
ଛତ୍ରିରେ ଘସିଅଛୁ କର୍ପୂର ଚନ୍ଦ୍ରସମ ।
ତର୍ପଣ ସ୍ୱମର ସେ ମଣ୍ଡିଣ ଦ୍ରବ୍ୟ ବାସ
ନତ୍ର ଧୂପ ଗ୍ରହଣ କଲେ ଉପବାସ ।
ପଲ୍ଲଙ୍କର ଖୋରା କ ଚନ୍ଦ୍ର ଗର ମାଣିକ୍ୟ
ମାଳାରେ ସଗଡ଼ ସେ ପ୍ରଥମ ସରଏକ ।
ସାସିଶୁଆ ତାହୁକ ହଂସ ଲେଖି ନହମାଟି
ମଧ୍ୟସୁବର୍ଣ୍ଣ ଉପରେ ଘୋଡ଼ଣ ବଚାଗଣ୍ଡି ।
ମୁକୁତାମାନ ବାନ୍ଧିଣ ସରୁ କୁଳକର
ବିଶ୍ୱକର୍ମା ନବାଉଛୁ କସ ଉପମା ଦେଇପାରି
ନାଗେଶ୍ୱର ଗୁଣ୍ଡିରେ ଦେ ଭରୁ ମୂତନ
ଭିନ୍ନ ରତ୍ନପାଟରେ କଣିଅର ପତ୍ର କ ।
ଉପରେ ଶେଯାଇଲ ଏଥିଂ ରତ୍ନପାଟ
ତଥିପରେ ପୁଷ୍ପି ଓଢ଼ଣ ପାଟ ପୋତ ।
ସେବତୀ ପାଖୁଡ଼ାରେ କୁସୁମ ପୁଷ୍ପି ସିଞ୍ଚ
କର୍ପୂର କସ୍ତୁରୀ ଗୁଣ୍ଡି ଚୂନ ଛତ୍ରିରେ ସିଞ୍ଚ ।
ନଜପାଶରେ ଲମ୍ବଭ ମାଣିକ୍ୟର ମୋତି
ଛତ୍ରିପରେ ଶଯ୍ୟନ କଲେ ରଘୁପତି ।
ତଳେଥାଇ ଚରଣ ମଣ୍ଡାଲେ ମାଯୁା ସୀତା
ଏ ସମୟେ ପ୍ରବେଶ ସେ ଜନକ ଦୁହିତା ।
ଶ୍ରଦ୍ଧାରେ ରଘୁନାଥ ଦୋଳକରି ନେଲେ
ରତ୍ନପଲଙ୍କ ଉପରେ ନେଇଣ ବସାଇଲେ ।
ଲକ୍ଷ୍ମୀ ନାରାୟଣ ସେ ହେଲେ ଅବକାଶ
ଶ୍ରୀଜଗନ୍ନାଥ ଚରଣ ମୁଁ ବଳରାମ ଦାସ ।
ସୀତା ସେନ ଶ୍ରୀରାମ ବିନୋଦ ରତିକଲେ
ଅତି ଆନନ୍ଦରେ ସେହୁ ରଜନୀ ବଞ୍ଚିଲେ ।
ଏଥୁଅନନ୍ତରେ ଶୋ ଶୁଣ ଶାକମ୍ଭରୀ
ଭରତ ଲକ୍ଷ୍ମଣ ଶତ୍ରୁଘନ ଆଦିକରି ।
ଶୟନ ମନ୍ଦିରେ ସେ ପ୍ରବେଶ ହେଲେ ପୁଣ
ରତ୍ନପଲଙ୍କରେ ଯାଇ କଲେକ ଶୟନ ।

ଏମନ୍ତ ସମୟରେ ମିଳିଲେ ତିନ କନ୍ୟା
ଶତେ ଶତେ ଦାସୀ ସେନ ଚଳିଲେ ହେଲୁ କନ୍ୟା
ସେ ଯାହା ସ୍ୱାମୀଙ୍କର ପାଶରେ ପରବେଶ
ପଲଙ୍କରେ ନଦ୍ରା ଗଲେ ହୋଇଣ ହରଷ ।
ନାନା ବିନୋଦରେ ସେ ରତିକ୍ରୀଡ଼ା କଲେ
ଅତି ଆନନ୍ଦରେ ସେ ରଜନୀ ପୁହାଇଲେ ।
ପାହିଲାକ ରଜନୀ ସେ ଶୁଣି ଶଙ୍ଖଧ୍ୱନି
ସ୍ନାହାନ କରିବାକୁ ଚଳିଲେ ସଙ୍ଗେ ପୁଣି ।
ନିତ୍ୟକ ନୃପତି ସେ ସାରିଲେ ନିତ୍ୟକର୍ମ
ଶେଯରୁ ଉଠିଲେ ବେଗେ ଶ୍ରୀରାମ ।
ଜନକ ଦୁହିତା ଅନ୍ତଃପୁରେ ଗଲେ
ଏଥୁଅନନ୍ତରେ ଶୁଣ ହେମବନ୍ତର ଦୁଲଣେ
ସୂର୍ଯ୍ୟଭୂମି ନିତ୍ୟକର୍ମ ସାରିଲେ ତତକ୍ଷଣ
ଉଦୟ ଭାନୁ ଦେଖିଣ ସନ୍ଧ୍ୟା ସୁମନ୍ତ୍ର ।
ଭରତ ଶତ୍ରୁଘନ ଲକ୍ଷ୍ମଣ ଭେଟ ହେଲେ
ବିଭୀଷଣ ହନୁମନ୍ତ ଅଙ୍ଗଦ ଅଇଲେ ।
ନିତ୍ୟକ ନୃପତି ସେ ଅଇଲେ ତତକ୍ଷଣ
ଦେଖିକରି ଆସନ୍ତୁ ଉଠିଲେ ରଘୁରାଣ ।
ନୃପତିମାନେ ଉଲଗି ହୋଇଲେ ଧାଇପୁଣି
ଦେଖିକରି ଶ୍ରୀରାମ ବୋଇଲେ ସେ ବାଣୀ
ସେ ଯାହାର ନଗରକୁ ଯାଅ ବେଗେ ଚଳି
ଏତେବୋଲି ଆଜ୍ଞା ସେ ଦେଲେ ରାବଣାରି
ରାଜାମାନଙ୍କର ସେ ଯିବାକୁ ମନ ନାହିଁ
ଯାଅବୋଲି ବୋଇଲେ ସେ ରଘୁକୁଳସାଇଁ
ଗୃହବାସେ ଶବରକୁ ମେଲାଣି ଦେଲେ ପୁଣ
ବିଭୀଷଣ ସୁଗ୍ରୀବ ନାଦ ସେ ସୁବର୍ଣ୍ଣ ।
କୁମ୍ଭମାନେ ଯାଅ ଦେ ଆପଣା ରାଜ୍ୟେଣ
ସମସ୍ତଙ୍କୁ ମେଲାଣି ଦେଲେ ରାମରାଣ ।
ବୋଇଲେ ତୁମ୍ଭେ ଯାଇ ମନଲେ ଚଳିଯାଅ
ସେହିଁଠାର ଯାହା ମନ ଆସିଣ ଦେଖାଦିଅ ।
ଶତ୍ରୁ ଉପଗତ ହେଲେ ସ୍ମର ସେ ବରଗ
ଏତେବୋଲି ଆଜ୍ଞା ଦେଲେ ଦେବାଧିଦେବରାଜ
ଖଟେ ବରଷରେ ଅରେ ଅଗଢ଼କେ କରି
ତୁମ୍ଭମାନଙ୍କର ନଗ୍ର ଆସିବୁ ଅମ୍ଭେ ଫେରି ।
ଯେତେବେଳେ ସ୍ୱର୍ଗକୁ କରିବ ଗମନ
ସମସ୍ତେ ଆସିବ ତୁମ୍ଭେ ମୁଁ ନେବ ସଙ୍ଗତେଣ
ବିଭୀଷଣ ସଙ୍ଗରେ ରହିବେ ପାଞ୍ଚଜଣ
ଅମର ହୋଇ ରହିବେ କାଳେ କାଳେ ପୁଣ

ଜମ୍ବେବ ହନୁମନ୍ତ ଉଦ୍ଧଟେ କୁମ୍ଭ ସଙ୍ଗେ
ଏତେକବୋଲି କହିଲେ ଶ୍ରୀରାମଚନ୍ଦ୍ର ରଙ୍ଗେ ।
ଶୁଣିଣ ବିଭୀଷଣ ଯୋଡେ କେବଳକର
ଏ ଯୁଗ ଗଲେ ପ୍ରଭୁ ହୋଇବ ଅନ୍ତର ।
ଆଜ ସଙ୍ଗେ କେଉଁଠାରେ ଦେଖିବଇଲେବର,
ରାମ ବୋଇଲେ ତୋର ଜନକୁ ନୂତନ ମୁଁ ଦୂର
ରଙ୍ଗାଅବତାରେ ଯଜୁପି ଯାଗରଭେଟହେବୁ
ଘନକୃଷ୍ଣ ରୂପ ବୃନ୍ଦ ନେତରେ ଦେଖିବୁ ।
ସେ ଅବତାର ଗଲେ କଳିଯୁଗରେ ମାଳଗିରି
ଗୁଣ୍ଡିଚ୍ଛ ନାମେ ଯାତ୍ରା ଗୁଣ୍ଡିଚ୍ଛ ରାଣୀକରି ।
ସେଦିନ ରଥରେ ଯାଇଣ ଆମ୍ଭେ ଯେ ବସିବୁ
ଗୁଣ୍ଡିଚ୍ଛ ଘରେ ଯାଇ ପବେଶ ହୋଇବୁ ।
ଯେତେବେଳେ ହେବୁ ଆମ୍ଭେ ଦକ୍ଷିଣ ମୂରତି
ସେତେବେଳେତୋଲଙ୍କାକୁଦେବୁ ଆମ୍ଭେଦୃଷ୍ଟି
ତୋ ଲଙ୍କାଗଡ଼ ପାଚେରୀ ଖଣ୍ଡେ ରଖିଥିବ
ତେବେ ତୁ ଦର୍ଶନ କରିବୁ ସତଭାବ ।
ବିଭୀଷଣକୁ ଦେବ ଏମନ୍ତ କହିଲେ
ଶୁଣିଣ ବିଭୀଷଣ ତୃପତ ହୋଇଲେ ।
ସୁଗ୍ରୀବରକୁ କହିଲେ ଅଙ୍ଗଦର କଥା
ତୋତେ ସଗଳ ଏହାର ଯେସନ ବ୍ୟବସ୍ଥା ।
ହନୁକୁ ବୋଇଲେ ତୁ କଦଳୀ ବନ ଯାଅ
ଏହି ଦେହ ଧରିଣ ତୁ ଯୁଗେ ଯୁଗେ ଥାଅ ।
ନନ୍ଦିଘୋଷ ରଥ ତଳରେ ବସିଥିବୁ
କୁରୁମଣ୍ଡଳ ମଧ୍ୟରେ ଗାରିମା ଦେଖାଇବୁ ।
ଶ୍ରୀରାମ ସଙ୍ଗେ ଯେତେ ବାନର ଭାଲୁଥିଲେ
ଶ୍ରୀରାମ ଆଜ୍ଞାପାଇ ସେ ଯାହା ଦେଶ ଗଲେ
ନଳ ନୀଳ ଅଙ୍ଗଦ ଯେ ଯୁଥପତି ବଳ
ସଭିଙ୍କି ପଠାଇଲେ ଦଶରଥ ବାଳ ।
କୁମ୍ଭଙ୍କୁ ବିଦା ଦେଇ ସ୍ୱଷ୍ଟିକ କୁମ୍ଭ ଓଶ
ତନପୁର ଲଙ୍କୁ ଉଦ୍ଧାର କଲ ଜାଣ ।
ଆଜ୍ଞା ପ୍ରମାଣେ କପି ଏ ମୋର ବୋଲକଲ
ଇଷ୍ଟଦତ୍ତ ହୋଇବ ପ୍ରାପ୍ତେକ ସକଳ ।
ସୁଖେ ରାବଣକୁ ତୁମ୍ଭ ମୋତେ ମାରଦେଇ
ନିଜପୁରେ ଯାଅ ବିଦା ଦେଲେ ଯେ ବଧାଇ ।
ଶୁଣିଣ ଯୁଥପତି ଆନନ୍ଦ ହୋଇଲେ
ସେ ଯାହାର ନିଜପୁରେ ଯାଇଣ ମିଳିଲେ ।
ସେ ଯାହାର ଘରଦେଖି ଆନନ୍ଦ ହୋଇଲେ
ଜରଦ୍ରବ୍ୟମାନ ନେଇସେଯାହାରଘରେଗଲେ

ମର୍କଟ ହୋଇଲେ ରାଣୀହଂସପୁରେଯେତେକି
ଘରେ ଘରେ ପଶିଣ ସମସ୍ତ ଜୁର କଲେ ।
ନାନାଦି ମଣିମାନ ନେଇଥିଲେ ଯାହା
ଯେ ଯାହାର ଘରେ ଦେଲେ ନେଇ ତାହା ।
କେତେବୋଲେପେଡ଼ଗୋଟିଏ ଆଣିଅଛୁସଖିତାହୁ
ନାନାଦି ମଣିରତ୍ନ ସେ ପେଡ଼ରେ ଅଛି ।
କେ ବୋଲେ ପେଡ଼କ ଫେଡ଼ ଦେଖ କହି
ପେଡ଼ ଦେଖିଲ ବେଳକୁ ହଟମା ପୂରିଥାଇ ।
ଘରଣୀମାନେ ଦେଖିଲେ ଗୁଭଘର ବୋଲେ
ପେଡ଼କ ଫେଡ଼ ଦେଖିଲେ ସୁବର୍ଣ୍ଣ ସମ୍ପଦରେ
ସୁବର୍ଣ୍ଣ ଦେଖି କପି କପାଳେ ମାରେ ହସ୍ତ
ମୋହର କପାଳେ ଘାଣ୍ଟି ଏବେ ସେହୁ ବସ୍ତ
ଏଥଅନନ୍ତରେ ଯେ ଶୁଣ ଗୋ ଗଉରି
ସେନାପତିକି ଶ୍ରୀରାମ ମେଲାଣି ଦେଲେ ପରା
ଶୁଣିଣ ସେନାପତିମାନେ ଯେ ଚଳିଗଲେ
ଊଜାବେକ୍ୟ ପାଇଣ ପ୍ରବେଶ ସଙ୍ଗେ ହେଲେ
ସେ ଯାହାର ଘରଣୀ ଦେଖିଲେ ଆସି ପୁଣ
ରତ୍ନ ଭୂଷଣ ଝଟକେ ସ୍ତ୍ରୀ ଜାଣ ।
ମେଲାଣି ମାଗିଣ ସେନାପତିମାନେ ସକଳ
ସେ ଯାହାର ନଗରେ ଯାଇଣ ମିଳିଲେ ।
ଭରତ ସଣ୍ତେସ ସେ ସିଂହାସନ ନେଇ
ଉତ୍ତରପୁରେ ରହିଲେ ଅତ୍ୟନ୍ତ ଶୋଭାମାନ
ଏଥ ଅନନ୍ତରେ ବିଭୀଷଣ ପୁଷ୍ପଦାନ୍ତ ଘେନ
ଲଙ୍କାଗଡ଼େ ପ୍ରବେଶ ହେଲସ ଇ ପୁଣି ।
ସେ ଯାହାର ଗଡ଼କୁ ସେଠାରୁ ଚଳିଗଲେ
ମନ୍ଦୋଦରୀ ଆଗେ ବିଭୀଷଣ ଯେ କହିଲେ ।
ଜାନକୀ ଘେନି ଶ୍ରୀରାମ ଅଭିଷେକ କଲେ
ସେଠାରୁ କୁମ୍ଭଙ୍କୁ ଯେ ବହୁତ ପ୍ରଶଂସା କଲେ.
ସମ୍ପନ୍ନ ପ୍ରବେଶ ହେଲେ ଲଙ୍କାର
କିଷ୍କିନ୍ଧାକୁ ସନ୍ତୋଷ ତୋଠାରେ ରଘୁବୀର
ସୁଗ୍ରୀବର ଅଙ୍ଗଦ ବେଗେ ଚଳିଗଲେ
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ହୋଇଲେ ।
ତାହାଙ୍କୁ ଦେଖିଣ ଯେ ସୁଗ୍ରୀବର କହି
ଜାନକୀ ଶ୍ରୀରାମ ସନ୍ତୋଷ କହିଲେ ନୃପବର
ଅଙ୍ଗଦ ଯାଇଣ ମାତାଙ୍କୁ ନମସ୍କାର କଲେ ପୁଣ
ସେଠାରୁ ଚଳିଗଲେ ରାମନଗ୍ରେ ଜାଣ ।
ଚନ୍ଦ୍ରାବତୀ ଆସିଣ ତରଣନ ଜଳ
ଅଙ୍ଗଦ ଚରଣେ ପଡ଼ି ଘାଳିଣ ଲୋଡ଼ଳ ।

ଶୁଣ ତୁମ୍ଭେ ଭଗବତୀ ବୋଲନ୍ତି ପଶୁପତି
ରାବଣ ମାରିଣ ଶ୍ରୀରାମ ଆସିଲେ ମହାସ୍ୱତ ।
ଅଯୋଧ୍ୟାରେ ଅଭିଷେକ ହେଲେ ମହାମୁନି
ମୂର୍ତ୍ତି ଶୂଳଧର ବଜ୍ରଧର ଯେ ସତୁଯୋନି ।
ଯାଇଣ ଆମ୍ଭେମାନେ ପ୍ରବେଶ ଯେଥିହେଲୁ
ରଘୁନାଥ ଅଭିଷେକ ମୂର୍ଦ୍ଧନା ଦେଖିଲୁ ।
ତୁମ୍ଭେ ପଚାରିଲ ଲଙ୍କାକାଣ୍ଡର ଏହୁ ବାଣୀ
ଏବେ ସେ ତରିଯାଅ ଶ୍ରୀରାମ କଥା ଶୁଣି ।
ଯେ ଅବା ପଢ଼ନ୍ତି ଶୁଣନ୍ତି ଯେଉଁ ନର
ଅଇଶ୍ୱର୍ଯ୍ୟ ଭୋଗ ଯେ ହୋଏ ତାହାଙ୍କର ।
ରାମାୟଣ ପୁରାଣ ଏ ସାମ ବେଦରୁ ଜାତ
ନିଗମରେ ଶୁଣିଲେ ଧନ ପୁତ୍ରବନ୍ତ ।
ବ୍ରହ୍ମାଙ୍କର ପ୍ରସନ୍ନରେ ମହାକାବ୍ୟ କଲେ
ଶୁଣନ୍ତି ଶାକମ୍ଭରୀ ଈଶ୍ୱର କହିଲେ ।
ଏଥୁ ଅନନ୍ତରେ ଶାକମ୍ଭରୀ କହି
ସୁତ ନଗ୍ର ସେଥିରେ ସୁରସ୍ୱାଇଙ୍କ ପାଇଁ ।
ସେ ନଗ୍ରମାନଙ୍କରେ ରହିଲେ ଟିକି ଯାଇ
ସେକଥା ମୋର ଆଗେ କହ ହେ ବୁଝାଇ ।
ଈଶ୍ୱର ବୋଇଲେ ଯେ ଶୁଣ ଗୋ ଭଗବତୀ
ବଶିଷ୍ଠ ପଚାରନ୍ତେ ହେଲେ ଏକମତି ।
ସେଠାରୁ ଶ୍ରୀରାମ ତିନିଭାଇଙ୍କି ଡକାଇଲେ
ଯେ ଯାହାର ନଗରକୁ ଯାଅରେ ବୋଇଲେ
ସୁମିତ୍ରାଙ୍କୁ ଡକାଇ ବୋଇଲେ ରଘୁରାଜ
ଲକ୍ଷ୍ମଣର ନଗରକୁ ନେଇ ତୁମ୍ଭେ ବେଗ ।
ପଞ୍ଚାଶ ଜନନୀ ସଙ୍ଗରେ ତୋର ଘେନ
ନଗରେ ପ୍ରବେଶ ହେଲ ଲକ୍ଷ୍ମଣ ଜନନୀ ।
କଉଶଲ୍ୟା କୋଳାବତୀଙ୍କ ଡାକଣ ବେଗେ ରାମ
ବୋଇଲେ ଜନନୀ ଗୋ ଶୁଣ ଯେ ଉତ୍ତମ ।
ନନ୍ଦିଗ୍ରାମ ଦୁଇନଗ୍ରକୁ ବେଗେ ଯାଅ
ଭରତ ଶତ୍ରୁଘନଙ୍କ ଘରଣୀ ସେଥି ନିଅ ।
ଶତେକ ଜନନୀ ଯେ ଦୁଇଜଣଙ୍କର ସଙ୍ଗେ
ନଗ୍ରରେ ପ୍ରବେଶ ଯେ ହୁଅ ଯାଇ ବେଗେ ।
ଶୁଣିକରି କଉଶଲ୍ୟା ଯେ କୋଳାବତୀ ଗଲେ
ଦୁଇ ବଧୂ ସପତ୍ନୀ ଦାସୀ ଘେନି ଗଲେ ।

ସୁରନଗ୍ର ଗୃହସ୍ଥଇ ରହିଲେ ଯାଇକରି
ଦନ୍ତବୃଷ୍ଟି ଲକ୍ଷ୍ମଣ ବନ ସେଥି ହରି ।
ଏଥୁ ଅନନ୍ତରେ ଉତ୍ତରାକାଣ୍ଡ ଗୀତ
ଶୁଣିମା ହେ ସୁଜ୍ଞଜନ ଏ ଚରିତ ଅଦ୍ଭୁତ ।
ମାଳଗିରି ଜଗନ୍ନାଥ ପ୍ରସନ୍ନ ହୋଇଲେ
ତେଣୁକରି ଗ୍ରନ୍ଥ ମୋ ମୁଖରୁ ପସରିଲେ ।
ଜଗତ ଜନଙ୍କ ପାଇଁ ଆଖ୍ୟାନ ମୁଁ କଲି
ସୁଜନ ଜନଙ୍କୁ ମୁଁ ସତ ପୁଣ୍ୟମାର୍ଗ ଦେଲି ।
ଜଗମୋହନ ରାମାୟଣ ଭଜେ ଜଗନ୍ନାଥ
ତାହାଙ୍କର ଆଜ୍ଞାରେ ପୁରାଣେ ମୋର ରତି
ବଳରାମ ଦାସ ଶ୍ରୀରାମ ଅବତାର ମୁଁ ହେଲି
ଦଶମୁଣ୍ଡ ଧରିକରି ମୁଁ ସମସ୍ତ ଦେଖିଲି ।
ତେଣୁକରି ପ୍ରଭୁ ମୋତେ ଆଜ୍ଞାଦେଲେ ଯିବୁ
କଳିଯୁଗରେ ଶୁଦ୍ର ଯୋନିରେ ଜନ୍ମହେବୁ ।
ଆମ୍ଭେ କଳିରେ ବସ୍ତୁ ଅବତାର ହୋଇ
ଭକତବତ୍ସଳ ସେଣୁ ମୋହର ଗୋସାଇଁ ।
ଜଗନ୍ନାଥ ପ୍ରଭୁ ମୋର ପ୍ରାଣର ବଲ୍ଲଭ
ଲଙ୍କାକାଣ୍ଡ ଯୋଡ଼ିଲଇଁ ଏଥେ ମୁଁ ସୁଲଭ ।
ମନ୍ତ୍ରୀନାମ ସୋମନାଥ ନାମରେ ମହାପାତ୍ର
ବଳରାମ ଦାସ ମୁଁ ଅଟଇ ତାଙ୍କ ପୁତ୍ର ।
ଏତେକ ଲିଖିଣ ମୁଁ ଯେ କଲଇ ବିସ୍ତର
ଯମର ଭୟରୁ ତରିଲି ମରଣ ଅକାଳ ।
ଯମ ଅଗୁମ୍ଭ ମୋର ଅଟନ୍ତି ଜଗନ୍ନାଥ
ଜପ୍ତ ଜପ୍ତ ଜଗନ୍ନାଥ ମନ୍ତ୍ର ଯେ ମୋର ସାର୍ଥ
ମାଇ ପିତୃର ମୁଖ ଜଗନ୍ନାଥର ସୂର୍ତ୍ତି
ବଞ୍ଚିଲ ଦୁର୍ଗତି ମୁଁ ଜଗନ୍ନାଥର କଥା କହି ।
ଶ୍ରୀପୁରୁଷୋତ୍ତମକୁ ନଚେଂ ମୋର ଆଶ
ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଲଙ୍କାକାଣ୍ଡ ସମାପ୍ତ ପଞ୍ଚମଖଣ୍ଡ ପୁଣ
ଏଗାର ସହସ୍ର ଦୁଇଶତରେ ପଦ ପୂର୍ଣ୍ଣ ।
ଗ ଏ ଏ ପଞ୍ଚମଖଣ୍ଡ ଲଙ୍କାନ ସପ୍ତ ଛନ୍ଦ
ସୁଜ୍ଞଜନମାନେ ଶୁଣ ହୁଅ ହେ ଆନନ୍ଦ ।

ଶ୍ରୀ ଲଙ୍କାକାଣ୍ଡ ସଦାଜୟେ ସମ୍ପୂର୍ଣ୍ଣ






ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ - ୨
ଫୋନ୍ : (୦୬୭୧) ୨୬୦୮୨୯୬